॥ ଓଁ ଶ୍ରୀପରମାତ୍ମନେ ନମଃ ॥

1100

# ଶ୍ରୀମଦ୍‌ଭଗବଦ୍‌ଗୀତା

ତତ୍ତ୍ୱବିବେଚନୀ ଓଡ଼ିଆ-ଟୀକା ସହିତ

**श्रीमद्भगवद्गीता तत्त्वविवेचनी ( ओड़िआ )**



ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।
ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ ॥

GITA PRESS, GORAKHPUR [SINCE 1923]

ଟୀକାକାର

ଜୟଦୟାଲ ଗୋୟନ୍ଦକା

★ ଶ୍ରୀହରି ★

# ଗୀତା ତତ୍ତ୍ୱବିବେଚନୀ ଟୀକାସହିତ ଶ୍ରୀମଦ୍‌ଭଗବଦ୍‌ଗୀତାର ବିଷୟ-ସୂଚୀ

| କ୍ରମିକ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|

## ତୃତୀୟ ଅଧ୍ୟାୟ



## ଚତୁର୍ଥ ଅଧ୍ୟାୟ



## ପଞ୍ଚମ ଅଧ୍ୟାୟ



## ଷଷ୍ଠ ଅଧ୍ୟାୟ



## ସପ୍ତମ ଅଧ୍ୟାୟ

| କ୍ରମିକ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|



## ଅଷ୍ଟମ ଅଧ୍ୟାୟ



## ନବମ ଅଧ୍ୟାୟ



## ଦଶମ ଅଧ୍ୟାୟ

## ଏକାଦଶ ଅଧ୍ୟାୟ



## ଦ୍ୱାଦଶ ଅଧ୍ୟାୟ



## ତ୍ରୟୋଦଶ ଅଧ୍ୟାୟ

| କ୍ରମିକ ସଂଖ୍ୟା | ବିଷୟ | ପୃଷ୍ଠା |
|---|---|---|

## ଚତୁର୍ଦ୍ଦଶ ଅଧ୍ୟାୟ



## ପଞ୍ଚଦଶ ଅଧ୍ୟାୟ



## ଷୋଡ଼ଶ ଅଧ୍ୟାୟ



## ସପ୍ତଦଶ ଅଧ୍ୟାୟ



## ଅଷ୍ଟାଦଶ ଅଧ୍ୟାୟ

ଓଁ ଶ୍ରୀପରମାତ୍ମନେ ନମଃ

# ନମ୍ର ନିବେଦନ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ । ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ତ୍ୱମେବ ମାତା ଚ ପିତା ତ୍ୱମେବ । ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ । ତ୍ୱମେବ ସର୍ବଂ ମମ ଦେବଦେବ ॥
ବସୁଦେବସୁତଂ ଦେବଂ କଂସଚାଣୂରମର୍ଦ୍ଦନମ୍ । ଦେବକୀପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍ଗୁରୁମ୍ ॥

## ଗୀତାର ମହିମା

ଶ୍ରୀମଦ୍‌ଭଗବଦ୍‌ଗୀତା ହେଉଛି ସାକ୍ଷାତ୍ ଭଗବାନଙ୍କର ଦିବ୍ୟବାଣୀ । ଏହାର ମହିମା ଅପାର ଓ ଅପରିମିତ । ଏହାର ଯଥାର୍ଥ ବର୍ଣ୍ଣନା କେହି କରିପାରିବେ ନାହିଁ । ମନୁଷ୍ୟମାନଙ୍କ କଥା କ'ଣ କହିବା, ଶେଷ, ମହେଶ ଓ ଗଣେଶ ମଧ୍ୟ ଏହାର ମହିମା ପୂର୍ଣ୍ଣରୂପେ ବର୍ଣ୍ଣନା କରିପାରିବେ ନାହିଁ । ଇତିହାସ, ପୁରାଣ ଆଦିରେ ସ୍ଥାନେ ସ୍ଥାନେ ଏହାର ମହିମା ଗାନ କରାଯାଇଛି; ତଥାପି ଏପର୍ଯ୍ୟନ୍ତ ଏହାର ଯେତେ ମହିମା ଗାନ କରାଯାଇଛି, ତାହାକୁ ଏକତ୍ର କରିଦେଲେ ମଧ୍ୟ, କୁହାଯାଇପାରିବ ନାହିଁ ଯେ, ଗୀତାର ମହିମା ଏତିକିମାତ୍ର । ବାସ୍ତବରେ କହିବାକୁ ଗଲେ, ଏହାର ମହିମା ପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇପାରିବ ନାହିଁ । ଯେଉଁ ବସ୍ତୁର ବର୍ଣ୍ଣନା ହୋଇପାରେ, ତାହା ଆଉ ଅପରିମିତ ହୋଇ କିପରି ରହିବ; ତାହା ତ ପରିମିତ ହୋଇଗଲା ।

ଗୀତା ଏକ ପରମ ରହସ୍ୟମୟ ଗ୍ରନ୍ଥ । ଏଥିରେ ସମସ୍ତ ବେଦର ସାର ସଂଗ୍ରହ କରାଯାଇଛି । ଏହାର ରଚନା ଏତେ ସୁନ୍ଦର ଓ ସରଳ ଯେ, ଟିକିଏ ଅଭ୍ୟାସ କଲେ, ମନୁଷ୍ୟ ଏହାକୁ ସହଜରେ ବୁଝିପାରିବ; ତଥାପି ଏହାର ଅନ୍ତର୍ନିହିତ ତଥ୍ୟ ଏପରି ଗୂଢ଼ ଓ ଗମ୍ଭୀର ଯେ, ଆଜୀବନ ନିରନ୍ତର ଅଭ୍ୟାସ କରିଚାଲିଲେ ମଧ୍ୟ, ଏହାର ଅନ୍ତ ମିଳିପାରେ ନାହିଁ । ଏଥିରୁ ପ୍ରତିଦିନ ନୂଆ ନୂଆ ଭାବ ଉତ୍ପନ୍ନ ହେଉଥାଏ; ତେଣୁ ଏହା ସର୍ବଦା ନବୀନ ହୋଇ ହିଁ ରହେ ଏବଂ ଏକାଗ୍ରଚିତ୍ତ ହୋଇ ଶ୍ରଦ୍ଧା-ଭକ୍ତି ସହିତ ବିଚାର କଲେ ଏହାର ପ୍ରତିଟି ପଦରେ ପରମ ରହସ୍ୟ ପୂର୍ଣ୍ଣ ହୋଇ ରହିଥିବା ପ୍ରତ୍ୟକ୍ଷ ପ୍ରତୀତ ହୁଏ । ଏହି ଗୀତାଶାସ୍ତ୍ରରେ ଭଗବାନଙ୍କର ଗୁଣ, ପ୍ରଭାବ, ସ୍ୱରୂପ, ତତ୍ତ୍ୱ, ରହସ୍ୟ ଏବଂ ଉପାସନା ତଥା କର୍ମ ଓ ଜ୍ଞାନର ବର୍ଣ୍ଣନା ଯେପରିଭାବରେ କରାଯାଇଛି, ତାହା ଅନ୍ୟ କୌଣସି ଗ୍ରନ୍ଥରେ ଏକସଙ୍ଗରେ ମିଳିବା କଠିନ । ଭଗବଦ୍‌ଗୀତା ଏପରି ଏକ ଅନୁପମ ଶାସ୍ତ୍ର ଯେ, ଏହାର ଗୋଟିଏ ବି ଶବ୍ଦ ସଦୁପଦେଶରୁ ବିଚ୍ୟୁତ ନୁହେଁ । ଗୀତାରେ ଗୋଟିଏ ହେଲେ ଶବ୍ଦ ଏପରି ନାହିଁ, ଯାହାକୁ ଚାଟୁବାଣୀ ବୋଲି କୁହାଯାଇପାରେ । ଏଥିରେ ଯେଉଁସବୁ କଥା କୁହାଯାଇଛି, ସେସବୁ ଅକ୍ଷରେ-ଅକ୍ଷରେ ଯଥାର୍ଥ । ସତ୍ୟସ୍ୱରୂପ ଭଗବାନଙ୍କ ବାଣୀରେ ମନୋରଞ୍ଜନ କଳ୍ପନା କରିବା ଅର୍ଥ ତାହାର ଅନାଦର କରିବା ।

ଗୀତା ସର୍ବଶାସ୍ତ୍ରମୟୀ । ଗୀତାରେ ସମସ୍ତ ଶାସ୍ତ୍ରର ସାର ପୂର୍ଣ୍ଣ ହୋଇ ରହିଛି । ଏହାକୁ ସବୁଶାସ୍ତ୍ରର ଭଣ୍ଡାର ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଭଲଭାବରେ ଗୀତାଜ୍ଞାନ ହୋଇଯିବା ପରେ, ସବୁ ଶାସ୍ତ୍ରର ତାତ୍ତ୍ୱିକ ଜ୍ଞାନ ସ୍ୱତଃ ଉଦୟ ହୋଇଯିବ; ସେଥିପାଇଁ ପୃଥକ୍ ପରିଶ୍ରମ କରିବାର ଆବଶ୍ୟକତା ରହିବ ନାହିଁ ।

ମହାଭାରତରେ ମଧ୍ୟ କୁହାଯାଇଛି ; **'ସର୍ବଶାସ୍ତ୍ରମୟୀ ଗୀତା'** (ଭୀଷ୍ମ- ୪୩/୨) । କିନ୍ତୁ ଏତିକି କହିଦେଲେ ଯଥେଷ୍ଟ ହୋଇଗଲା ନାହିଁ; କାରଣ ସମସ୍ତ ଶାସ୍ତ୍ରର ଉତ୍ପତ୍ତି ବେଦରୁ ହୋଇଛି, ବେଦ ବ୍ରହ୍ମାଙ୍କ ମୁଖରୁ ଉଚ୍ଚାରିତ ହୋଇଛି ଏବଂ ବ୍ରହ୍ମା ଭଗବାନଙ୍କ ନାଭିକମଳରୁ ଉତ୍ପନ୍ନ ହୋଇଛନ୍ତି । ତେଣୁ ଶାସ୍ତ୍ର ଓ ଭଗବାନଙ୍କ ମଧ୍ୟରେ ବହୁ ବ୍ୟବଧାନ ରହିଯାଇଛି । କିନ୍ତୁ ଗୀତା ସ୍ୱୟଂ ଭଗବାନଙ୍କ ମୁଖାରବିନ୍ଦରୁ ନିଃସୃତ ହୋଇଛି; ତେଣୁ ଏହାକୁ ଶାସ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବ ନାହିଁ । ସ୍ୱୟଂ ଭଗବାନ୍ ବେଦବ୍ୟାସ କହିଛନ୍ତି —

**ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରସଂଗ୍ରହୈଃ ।**
**ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍‌ବିନିଃସୃତା ॥**

(ମହାଭାରତ/ଭୀଷ୍ମ - ୪୩/୧)

ଅର୍ଥାତ୍ 'ଗୀତା ହିଁ ଭଲଭାବରେ ଶ୍ରବଣ, କୀର୍ତ୍ତନ, ପଠନ-ପାଠନ, ମନନ ଏବଂ ଧାରଣ କରାଯିବା ଉଚିତ; ଅନ୍ୟ ଶାସ୍ତ୍ର ସଂଗ୍ରହ କରିବା କି ଆବଶ୍ୟକ ? କାରଣ ଏହା ସ୍ୱୟଂ ପଦ୍ମନାଭ ଭଗବାନଙ୍କର ସାକ୍ଷାତ୍ ମୁଖକମଳରୁ ନିଃସୃତ ହୋଇଛି ।'

ଶ୍ଳୋକରେ 'ପଦ୍ମନାଭ' ଶବ୍ଦ ପ୍ରୟୋଗ କରି ମହାଭାରତକାର ଏହି କଥା କହିଛନ୍ତି । ତାତ୍ପର୍ଯ୍ୟ ଏହି ଯେ, ଏହି ଗୀତା ସେହି ଭଗବାନଙ୍କ ମୁଖକମଳରୁ ନିଃସୃତ ହୋଇଛି, ଯାହାଙ୍କ

ନାଭିକମଳରୁ ବ୍ରହ୍ମା ଉତ୍ପନ୍ନ ହୋଇଛନ୍ତି ଏବଂ ବ୍ରହ୍ମାଙ୍କ ମୁଖରୁ ସମସ୍ତ ଶାସ୍ତ୍ରର ମୂଳ ବେଦ ପ୍ରକଟ ହୋଇଛନ୍ତି ।

ଗୀତା ଗଙ୍ଗାଙ୍କ ଠାରୁ ମଧ୍ୟ ଶ୍ରେଷ୍ଠତର । ଶାସ୍ତ୍ରରେ ଗଙ୍ଗାସ୍ନାନର ଫଳ ମୁକ୍ତି ବୋଲି କୁହାଯାଇଛି । ତଥାପି ଗଙ୍ଗାସ୍ନାନ କରୁଥିବା ଲୋକ ସ୍ୱୟଂ ସିନା ମୁକ୍ତ ହୋଇପାରେ, ତା'ଠାରେ ଅନ୍ୟକୁ ମୁକ୍ତ କରିବାର ସାମର୍ଥ୍ୟ ନ ଥାଏ । କିନ୍ତୁ ଗୀତାରୂପୀ ଗଙ୍ଗାରେ ବୁଡ଼ ପକାଉଥିବା ଲୋକ ସ୍ୱୟଂ ତ ମୁକ୍ତ ହୁଏ, ତା'ସହିତ ଅନ୍ୟକୁ ବି ମୁକ୍ତ କରିବାକୁ ସମର୍ଥ ହୋଇଯାଏ । ଗଙ୍ଗା ତ ଭଗବାନଙ୍କ ଚରଣରୁ ଉତ୍ପନ୍ନ ହୋଇଛନ୍ତି ; ଗୀତା ସାକ୍ଷାତ୍ ଭଗବାନ୍ ନାରାୟଣଙ୍କ ମୁଖାରବିନ୍ଦରୁ ନିଃସୃତ ହୋଇଛନ୍ତି । ପୁଣି ଯେଉଁମାନେ ଗଙ୍ଗାକୁ ଆସି ସ୍ନାନ କରନ୍ତି, ଗଙ୍ଗା କେବଳ ସେହିମାନଙ୍କୁ ମୁକ୍ତ କରିଦିଅନ୍ତି; କିନ୍ତୁ ଗୀତା ତ ଗୃହେ ଗୃହେ ବୁଲି ସମସ୍ତଙ୍କୁ ମୁକ୍ତିର ମାର୍ଗ ଦେଖାଇଦିଅନ୍ତି । ଏହିସବୁ କାରଣରୁ ଗୀତା ଗଙ୍ଗାଙ୍କ ଠାରୁ ଶ୍ରେଷ୍ଠତର ବୋଲି କୁହାଯାଇଛି ।

ଗୀତା ଗାୟତ୍ରୀଠାରୁ ମଧ୍ୟ ଶ୍ରେଷ୍ଠତର । ଗାୟତ୍ରୀଜପଦ୍ୱାରା ଯେ ମନୁଷ୍ୟର ମୁକ୍ତି ହୁଏ, ତାହା ଠିକ୍; କିନ୍ତୁ ଗାୟତ୍ରୀ ଜପ କରୁଥିବା ଲୋକ କେବଳ ସ୍ୱୟଂ ମୁକ୍ତ ହୁଏ, ଅଥଚ ଗୀତା ଅଭ୍ୟାସ କରୁଥିବା ଲୋକ ସ୍ୱୟଂ ତରେ ଓ ଅନ୍ୟକୁ ତାରେ । ଯେଉଁଠି ସ୍ୱୟଂ ମୁକ୍ତିଦାତା ଭଗବାନ୍ ତା'ର ହୋଇଯାନ୍ତି, ସେଠାରେ ମୁକ୍ତିର କଥା ଆଉ କ'ଣ କହିବା ! ମୁକ୍ତି ତା'ର ଚରଣଧୂଳିରେ ନିବାସ କରେ । ସେ ମୁକ୍ତିର ସତ୍ର ଖୋଲିଦିଏ ।

ଗୀତାକୁ ଆମେ ସ୍ୱୟଂ ଭଗବାନଙ୍କ ଠାରୁ ବି ଶ୍ରେଷ୍ଠ ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଭଗବାନ୍ ସ୍ୱୟଂ କହିଛନ୍ତି-

**ଗୀତାଶ୍ରୟେଽହଂ ତିଷ୍ଠାମି ଗୀତା ମେ ଚୋତ୍ତମଂ ଗୃହମ୍ ।**
**ଗୀତାଜ୍ଞାନମୁପାଶ୍ରିତ୍ୟ ତ୍ରୀଁଲ୍ଲୋକାନ୍ ପାଳୟାମ୍ୟହମ୍ ॥**

**(ବାରାହ ପୁରାଣ)**

ଅର୍ଥାତ୍ 'ମୁଁ ଗୀତାର ଆଶ୍ରୟରେ ରହିଛି, ଗୀତା ମୋର ଶ୍ରେଷ୍ଠ ଗୃହ । ଗୀତାଜ୍ଞାନର ଆଶ୍ରୟ ନେଇ ମୁଁ ତିନିଲୋକକୁ ପାଳନ କରୁଛି ।'

ଏହା ଛଡ଼ା, ଗୀତାରେ ଭଗବାନ୍ ମୁକ୍ତକଣ୍ଠରେ ଘୋଷଣା କରିଛନ୍ତି, ''ଯେକେହି ମୋର ଗୀତାରୂପକ ଆଜ୍ଞାକୁ ପାଳନ କରିବ, ସେ ନିଃସନ୍ଦେହ ମୁକ୍ତ ହୋଇଯିବ (୩/୩୧) ।'' କେବଳ ଏତିକି ନୁହେଁ, ଭଗବାନ୍ କହିଛନ୍ତି, ''ଯେକେହି ଏହା ଅଧ୍ୟୟନ କଲେ ବି, ତା'ଦ୍ୱାରା ମୁଁ ଜ୍ଞାନଯଜ୍ଞରେ ପୂଜିତ ହେବି (୧୮/୭୦) ।'' ଯଦି କେବଳ ଗୀତା ଅଧ୍ୟୟନରେ ଏତେ ମାହାତ୍ମ୍ୟ ରହିଛି, ତେବେ ଯେଉଁ ଲୋକ ଏହାର ଉପଦେଶ ଅନୁସାରେ ନିଜର ଜୀବନ ଗଠନ କରନ୍ତି, ଏହାର ରହସ୍ୟ ଭକ୍ତମାନଙ୍କୁ ଅବଗତ କରାନ୍ତି ଏବଂ ଏହାର ପ୍ରସାର ଓ ପ୍ରଚାର କରନ୍ତି, ତାଙ୍କ କଥା ଆଉ କ'ଣ କହିବା ! ତାଙ୍କ ବିଷୟରେ ତ ଭଗବାନ୍ କହନ୍ତି, ''ସେ ମୋର ଅତିଶୟ ପ୍ରିୟ ।'' ତାଙ୍କୁ ଭଗବାନଙ୍କର ପ୍ରାଣଠାରୁ ବି ଅଧିକ ପ୍ରିୟ ବୋଲି କହିଲେ କିଛି ଅନୁଚିତ ହେବ ନାହିଁ । ଭଗବାନ୍ ଏପରି ଭକ୍ତଙ୍କର ଅଧୀନ ହୋଇଯାନ୍ତି ।

ଉତ୍ତମ ପୁରୁଷମାନଙ୍କ ପକ୍ଷରେ ବି ଦେଖାଯାଏ ଯେ, ସେମାନଙ୍କ ସିଦ୍ଧାନ୍ତ ପାଳନ କରୁଥିବା ଲୋକ ସେମାନଙ୍କର ଯେତେ ପ୍ରିୟ, ନିଜର ପ୍ରାଣ ମଧ୍ୟ ସେମାନଙ୍କ ପାଇଁ ସେତେ ପ୍ରିୟ ନୁହେଁ । ଗୀତା ହେଉଛି ଭଗବାନଙ୍କର ପ୍ରଧାନ ରହସ୍ୟମୟ ଆଦେଶ । ଏପରି ଅବସ୍ଥାରେ, ସେହି ଆଦେଶ ପାଳନ କରୁଥିବା ଲୋକ ଯେ ତାଙ୍କର ପ୍ରାଣଠାରୁ ବି ଅଧିକ ପ୍ରିୟ ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଗୀତା ହେଉଛି ଭଗବାନଙ୍କର ଶ୍ୱାସ, ହୃଦୟ ଏବଂ ତାଙ୍କର ବାଙ୍ମୟୀ ମୂର୍ତ୍ତି । ଯାହାଙ୍କ ହୃଦୟରେ, ବାଣୀରେ, ଶରୀରରେ ତଥା ସମସ୍ତ ଇନ୍ଦ୍ରିୟମାନଙ୍କରେ ଏବଂ କ୍ରିୟାକଳାପରେ ଗୀତା ଓତପ୍ରୋତଭାବରେ ଜଡ଼ିତ ହୋଇଯାଇଛି, ସେହି ପୁରୁଷ ହେଉଛନ୍ତି ଗୀତାର ସାକ୍ଷାତ ପ୍ରତିମୂର୍ତ୍ତି । ତାଙ୍କର ଦର୍ଶନ, ସ୍ପର୍ଶନ, ଭାଷଣ ଏବଂ ଚିନ୍ତନରେ ମଧ୍ୟ ଅନ୍ୟମାନେ ପବିତ୍ର ହୋଇଯାନ୍ତି । ତେଣୁ ତାଙ୍କର ଆଜ୍ଞାପାଳନ ଓ ଅନୁକରଣ କରୁଥିବା ଲୋକଙ୍କର କଥା ବା କ'ଣ କହିବା ! ବାସ୍ତବରେ ସଂସାରରେ ଗୀତାସମାନ ଯଜ୍ଞ, ଦାନ, ତପ, ତୀର୍ଥ, ବ୍ରତ, ସଂଯମ ଏବଂ ଉପବାସ ଆଦି କିଛି ମଧ୍ୟ ନାହିଁ ।

ଗୀତା ହେଉଛି ସାକ୍ଷାତ୍ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖାରବିନ୍ଦରୁ ନିଃସୃତ ବାଣୀ । ଶ୍ରୀବ୍ୟାସଦେବ ହେଉଛନ୍ତି ଏହାର ସଙ୍କଳନକର୍ତ୍ତା । ଭଗବାନ୍ ଶ୍ରୀକୃଷ୍ଣ ନିଜର ଉପଦେଶର ଅଧିକାଂଶ ଶ୍ଳୋକରେ ହିଁ କହିଥିଲେ; ବ୍ୟାସଦେବ ତାହା ଅବିକଳ ରଖିଦେଇଛନ୍ତି । ଯେଉଁ ଅଂଶ ସେ ଗଦ୍ୟରେ କହିଥିଲେ, ତାହା ବ୍ୟାସଦେବ ନିଜେ ଶ୍ଳୋକବଦ୍ଧ କରିଦେଇଛନ୍ତି ; ତା'ସଙ୍ଗେ ସଙ୍ଗେ ସେ ଅର୍ଜୁନ, ସଞ୍ଜୟ ଏବଂ ଧୃତରାଷ୍ଟ୍ରଙ୍କ ବଚନକୁ ମଧ୍ୟ ନିଜ ଭାଷାରେ ଶ୍ଳୋକବଦ୍ଧ କରିଦେଇଛନ୍ତି ଏବଂ ଏପରି ସାତଶହ ଶ୍ଳୋକରେ ସମ୍ପୂର୍ଣ୍ଣ ହୋଇଥିବା ଗୀତାଗ୍ରନ୍ଥକୁ ଅଠର ଅଧ୍ୟାୟରେ ବିଭକ୍ତ କରି ମହାଭାରତରେ ଯୋଗ କରିଦେଇଛନ୍ତି, ଯାହାକୁ କି ଆଜି ଆମେ ଏହି ରୂପରେ ପାଇପାରିଛୁ ।

## ଗୀତାର ତାତ୍ପର୍ଯ୍ୟ

ଗୀତା ହେଉଛି ଜ୍ଞାନର ଅଗାଧ ସମୁଦ୍ର । ଏହାମଧ୍ୟରେ ଜ୍ଞାନର ଅନନ୍ତ ଭଣ୍ଡାର ପୂର୍ଣ୍ଣ ହୋଇ ରହିଛି । ଏହାର ତତ୍ତ୍ୱ ବୁଝାଇବାକୁ ବଡ଼ ବଡ଼ ଦିଗ୍‌ବିଜୟୀ ବିଦ୍ୱାନ୍ ତଥା ତତ୍ତ୍ୱ ଆଲୋଚକ ମହାତ୍ମାମାନଙ୍କର ବାଣୀ ମଧ୍ୟ କୁଣ୍ଠିତ ହୋଇଯାଏ; କାରଣ ଭଗବାନ୍ ଶ୍ରୀକୃଷ୍ଣ ହିଁ ଏହାର ପୂର୍ଣ୍ଣ ରହସ୍ୟ ଜାଣନ୍ତି । ତାଙ୍କ ପରେ ଏହାର ସଙ୍କଳନକର୍ତ୍ତା ବ୍ୟାସଦେବ ଏବଂ ଶ୍ରୋତା ଅର୍ଜୁନଙ୍କର ସ୍ଥାନ ଆସେ । ଗୋଟିଏ ସାଧାରଣ ପକ୍ଷୀ ଅନନ୍ତ ଆକାଶର ପରିସୀମା ନିର୍ଣ୍ଣୟପାଇଁ ପ୍ରଯତ୍ନ କରିବା ଯାହା, ମୋ ପରି ଜଣେ ସାଧାରଣ ମନୁଷ୍ୟ ପକ୍ଷରେ ଅଗାଧ ରହସ୍ୟମୟୀ ଗୀତାର ଅନ୍ତର୍ନିହିତ ତାତ୍ପର୍ଯ୍ୟ ଓ ମହତ୍ତ୍ୱ ନିର୍ଣ୍ଣୟ କରିବାର ପ୍ରଚେଷ୍ଟା ମଧ୍ୟ ତାହା ।

ଗୀତା ହେଉଛି ଅନନ୍ତ ଭାବର ଏକ ଅଗାଧ ସମୁଦ୍ର । ରତ୍ନାକରର ଅତଳ ଗର୍ଭରେ ବୁଡ଼ି ଅନୁସନ୍ଧାନ କଲେ ଯେପରି ରତ୍ନପ୍ରାପ୍ତି ହୁଏ, ସେହିପରି ଏହି ଗୀତାସାଗରରେ ନିମଜ୍ଜିତ ହେଲେ ହିଁ ଜିଜ୍ଞାସୁମାନଙ୍କୁ ନିତ୍ୟ ନୂତନ ଅପୂର୍ବ ଭାବ-ରତ୍ନ-ରାଶି ଉପଲବ୍ଧ ହୁଏ । କିନ୍ତୁ ଆକାଶରେ ଗରୁଡ଼ ଉଡ଼େ ଏବଂ ସାଧାରଣ ମଶା ମଧ୍ୟ ଉଡ଼େ ! ତଦନୁସାରେ ସମସ୍ତେ ନିଜ ନିଜର ଭାବ ଅନୁଯାୟୀ କିଛି କିଛି ଅନୁଭୂତି ଲାଭ କରନ୍ତି ।

ଅତଏବ ବିଚାର କଲେ ପ୍ରତୀତ ହୁଏ ଯେ, ଗୀତାର ମୁଖ୍ୟ ତାତ୍ପର୍ଯ୍ୟ ହେଉଛି ଅନାଦିକାଳରୁ ଅଜ୍ଞାନବଶତଃ ସଂସାର-ସାଗରରେ ପଡ଼ିଥିବା ଜୀବମାନଙ୍କୁ ପରମାତ୍ମପ୍ରାପ୍ତ କରାଇବା; ଏବଂ ସେମାନଙ୍କ ନିମନ୍ତେ ଗୀତାରେ ଏପରି ଉପାୟ ସବୁ ନିର୍ଦ୍ଦେଶ କରାଯାଇଛି ଯେ, ସେହି ନିର୍ଦ୍ଦେଶକୁ ଧରି ମନୁଷ୍ୟ ନିଜର ସାଂସାରିକ କର୍ତ୍ତବ୍ୟକର୍ମ ଭଲଭାବରେ ଆଚରଣ କରିପାରିଲେ ହିଁ ପରମାତ୍ମାଙ୍କୁ ପ୍ରାପ୍ତି କରିପାରିବ । ବ୍ୟବହାରରେ ପରମାର୍ଥପ୍ରୟୋଗର ଏହି ଅଦ୍ଭୁତ କଳା ଗୀତାରେ ଶିଖାଇ-ଦିଆଯାଇଛି ଏବଂ ଅଧିକାରୀଭେଦରେ ପରମାତ୍ମପ୍ରାପ୍ତିପାଇଁ ଦୁଇପ୍ରକାର ନିଷ୍ଠା ପ୍ରତିପାଦନ କରାଯାଇଛି । ସେହି ଦୁଇଟି ନିଷ୍ଠା ହେଲା- **ଜ୍ଞାନନିଷ୍ଠା** ଅର୍ଥାତ୍ ସାଂଖ୍ୟଯୋଗ, ଏବଂ **ଯୋଗନିଷ୍ଠା** ଅର୍ଥାତ୍ କର୍ମଯୋଗ (୩/୩) ।

ଏଠାରେ ପ୍ରଶ୍ନ ଉଠେ, ଭଗବାନଙ୍କୁ ପାଇବାପାଇଁ ପ୍ରାୟ ସବୁ ଶାସ୍ତ୍ରରେ ତିନୋଟି ପ୍ରଧାନ ମାର୍ଗ ନିର୍ଦ୍ଦେଶ କରାଯାଇଛି, ଯଥା- କର୍ମମାର୍ଗ, ଉପାସନାମାର୍ଗ ଏବଂ ଜ୍ଞାନମାର୍ଗ; ଏପରି ସ୍ଥଳେ ଗୀତାରେ ଦୁଇଟିମାତ୍ର ନିଷ୍ଠା ବା ମାର୍ଗ କିପରି ସ୍ୱୀକାର କରାଯାଇଛି ? ଗୀତାରେ କ'ଣ ଭକ୍ତିମାର୍ଗକୁ ସ୍ୱୀକାର କରାଯାଇ ନାହିଁ ? ବହୁଲୋକ ତ ଗୀତାର ଉପଦେଶକୁ ଭକ୍ତିପ୍ରଧାନ ବୋଲି ମାନନ୍ତି ଏବଂ ଅନେକ ସ୍ଥଳରେ ଭଗବାନ୍ ଭକ୍ତିର ବିଶେଷ ମହତ୍ତ୍ୱ ମଧ୍ୟ ସ୍ପଷ୍ଟଭାବରେ କହିଛନ୍ତି (୬/୪୭) ଏବଂ ଭକ୍ତିଦ୍ୱାରା ତାଙ୍କୁ ପାଇବା ସୁଲଭ ବୋଲି କହିଛନ୍ତି (୮/୧୪) । ଏହାର ଉତ୍ତର ଏହି ଯେ, ଶାସ୍ତ୍ରମାନଙ୍କରେ କର୍ମ ଓ ଜ୍ଞାନ ଛଡ଼ା ଯେଉଁ ଉପାସନା ପ୍ରକରଣ ଦିଆଯାଇଛି ସେହି ଉପାସନା ଏହି ଦୁଇ ନିଷ୍ଠାର ଅନ୍ତର୍ଗତ । ଯଦି ନିଜକୁ ପରମାତ୍ମାଙ୍କ ଠାରୁ ଅଭିନ୍ନ ମାନି ଉପାସନା କରାଯାଏ, ତେବେ ତାହା ସାଂଖ୍ୟନିଷ୍ଠାର ଅନ୍ତର୍ଗତ ହୋଇଯାଏ ଏବଂ ଯଦି ଭେଦଦୃଷ୍ଟିରେ କରାଯାଏ, ତେବେ ତାହା ଯୋଗନିଷ୍ଠାର ଅନ୍ତର୍ଗତ ହୋଇଯାଏ । ସାଂଖ୍ୟନିଷ୍ଠା ଓ ଯୋଗନିଷ୍ଠା ମଧ୍ୟରେ ଏହା ହିଁ ମୁଖ୍ୟ ପ୍ରଭେଦ । ଏହା ଅନୁଯାୟୀ ତେର ଅଧ୍ୟାୟର ଚବିଶ ଶ୍ଳୋକରେ କେବଳ ଧ୍ୟାନଦ୍ୱାରା ପରମାତ୍ମାଙ୍କୁ ପାଇହେବ ବୋଲି କୁହାଯାଇଛି । କିନ୍ତୁ ସେଠାରେ ମଧ୍ୟ ବୁଝିବା ଉଚିତ ଯେ, ଅଭେଦଦୃଷ୍ଟିରେ କରାଗଲେ, ଧ୍ୟାନ ସାଂଖ୍ୟନିଷ୍ଠାର ଅନ୍ତର୍ଗତ ହୁଏ ଏବଂ ଭେଦଦୃଷ୍ଟିରେ କରାଗଲେ, ତାହା ଯୋଗନିଷ୍ଠାର ଅନ୍ତର୍ଗତ ହୁଏ । ଗୀତାରେ ଭକ୍ତିକୁ ଭଗବତ୍‌ପ୍ରାପ୍ତିର ପ୍ରଧାନ ସାଧନ ବୋଲି ଯାହା କୁହାଯାଇଛି, ତାହା ମଧ୍ୟ ଠିକ୍ । ଗୀତାରେ ଭକ୍ତିକୁ ବହୁ ଉଚ୍ଚ ସ୍ଥାନ ଦିଆଯାଇଛି ଏବଂ ସ୍ଥାନେ ସ୍ଥାନେ ଅର୍ଜୁନଙ୍କୁ 'ଭକ୍ତ ହୁଅ' ବୋଲି ଆଜ୍ଞା ମଧ୍ୟ ଦିଆଯାଇଛି (୯/୩୪, ୧୨/୮, ୧୮/୫୭, ୬୫, ୬୬) । ତଥାପି ଗୀତାରେ ଦୁଇପ୍ରକାର ନିଷ୍ଠା ହିଁ ସ୍ୱୀକାର କରାଯାଇଛି । ଏ ଦିଗରୁ ଭକ୍ତି ଯୋଗନିଷ୍ଠାର ଅନ୍ତର୍ଗତ ହୋଇଯାଇଛି । ଯେହେତୁ ଭକ୍ତିରେ ଦ୍ୱୈତଭାବ ରହିଛି; ତେଣୁ ଏପରି ମାନିବା ଯୁକ୍ତିବିରୁଦ୍ଧ ବୋଲି କୁହାଯାଇ ନ ପାରେ । ଭକ୍ତି କିପରି ଯୋଗନିଷ୍ଠା ସହିତ ମିଶି ରହିଛି, ତାହା ପରେ ବିଚାର କରାଯିବ ।

ଗୀତାରେ କେବଳ ଭଜନ-ପୂଜନ ଅଥବା କେବଳ ଧ୍ୟାନରେ ଭଗବତ୍‌ପ୍ରାପ୍ତି ହେବ ବୋଲି ନିର୍ଦ୍ଦେଶ କରି ଭଗବାନ୍ ଦର୍ଶାଇଦେଇଛନ୍ତି ଯେ, ଯୋଗନିଷ୍ଠାର ପୂର୍ଣ୍ଣସାଧନାରେ ତ ଭଗବତ୍‌ପ୍ରାପ୍ତି ନିଶ୍ଚୟ ହୋଇଥାଏ; ଯୋଗନିଷ୍ଠାର ଗୋଟିଏ ଗୋଟିଏ ଅଙ୍ଗ ସାଧନା କରି ମଧ୍ୟ ତାଙ୍କୁ ପ୍ରାପ୍ତ କରାଯାଇପାରେ । ଭଗବାନ୍‌ଙ୍କର ଏତେ କୃପା ଯେ, ସେ ନିଜକୁ ଜୀବମାନଙ୍କ ପାଇଁ ଅତ୍ୟନ୍ତ ସୁଲଭ କରିଦେଇଛନ୍ତି ।

ଏହା ଛଡ଼ା ଗୀତାରେ **'ଜ୍ଞାନ'** ଓ **'କର୍ମ'** ଶବ୍ଦର ପ୍ରୟୋଗ ଯେଉଁ ଯେଉଁ ଅର୍ଥରେ କରାଯାଇଛି, ତାହା ମଧ୍ୟ ବିଶେଷ ରହସ୍ୟମୟ । ଗୀତାର କର୍ମ ଓ କର୍ମଯୋଗ ଗୋଟିଏ ବସ୍ତୁ ନୁହେଁ; କି ଜ୍ଞାନ ଓ ଜ୍ଞାନଯୋଗ ଗୋଟିଏ ବସ୍ତୁ ନୁହେଁ । ଗୀତା ଅନୁସାରେ

ଶାସ୍ତ୍ରବିହିତ କର୍ମ ଜ୍ଞାନନିଷ୍ଠା ଏବଂ ଯୋଗନିଷ୍ଠା ଉଭୟଦୃଷ୍ଟିରେ ହୋଇପାରେ । ଜ୍ଞାନନିଷ୍ଠାରେ କର୍ମର ବିରୋଧ ନାହିଁ ଏବଂ ଯୋଗନିଷ୍ଠାରେ ତ କର୍ମସମ୍ପାଦନକୁ ହିଁ ସାଧନା ବୋଲି ଗ୍ରହଣ କରାଯାଇଛି (୬/୩) ଓ କର୍ମର ସର୍ବଥା ତ୍ୟାଗକୁ ବରଂ ବାଧକ ବୋଲି କୁହାଯାଇଛି (୩/୪) । ଦ୍ୱିତୀୟ ଅଧ୍ୟାୟରେ ୪୭ ଶ୍ଳୋକରୁ ୫୧ ଶ୍ଳୋକପର୍ଯ୍ୟନ୍ତ ତଥା ତୃତୀୟ ଅଧ୍ୟାୟରେ ଉଣେଇଶ ଏବଂ ଚତୁର୍ଥ ଅଧ୍ୟାୟରେ ବୟାଳିଶ ଶ୍ଳୋକରେ ଅର୍ଜୁନଙ୍କୁ ଯୋଗନିଷ୍ଠା ଦୃଷ୍ଟିରେ କର୍ମ କରିବାପାଇଁ ଆଜ୍ଞା ଦିଆଯାଇଛି ଏବଂ ତୃତୀୟ ଅଧ୍ୟାୟର ଅଠେଇଶ ତଥା ପଞ୍ଚମ ଅଧ୍ୟାୟର ଅଷ୍ଟମ, ନବମ ଏବଂ ତ୍ରୟୋଦଶ ଶ୍ଳୋକରେ ସାଂଖ୍ୟ ଅର୍ଥାତ୍ ଜ୍ଞାନନିଷ୍ଠା- ଦୃଷ୍ଟିରେ କର୍ମ କରିବା କଥା କୁହାଯାଇଛି । ସକାମ କର୍ମନିମନ୍ତେ କୌଣସି ବି ନିଷ୍ଠାରେ ସ୍ଥାନ ନାହିଁ; ସକାମ କର୍ମୀମାନଙ୍କୁ ଭଗବାନ୍ ତୁଚ୍ଛବୁଦ୍ଧି ବୋଲି କହିଛନ୍ତି (୨/୪୨-୪୪, ଏବଂ ୪୯; ୭/୨୦-୨୩, ୯/୨୦,୨୧,୨୩,୨୪) ।

ଗୀତାରେ ଜ୍ଞାନର ଅର୍ଥ ମଧ୍ୟ କେବଳ ଜ୍ଞାନଯୋଗ ନୁହେଁ; ଫଳତଃ ଜ୍ଞାନ, ଯାହା କି ସବୁପ୍ରକାର ସାଧନାର ଫଳ, ଯାହା ଜ୍ଞାନନିଷ୍ଠା ଏବଂ ଯୋଗନିଷ୍ଠା ଉଭୟର ଫଳ ଏବଂ ଯାହାକୁ ଯଥାର୍ଥ ଜ୍ଞାନ ଅଥବା ତତ୍ତ୍ୱଜ୍ଞାନ ମଧ୍ୟ କହନ୍ତି, ତାହାକୁ ମଧ୍ୟ 'ଜ୍ଞାନ' ଶବ୍ଦରେ ହିଁ ପ୍ରକାଶ କରାଯାଇଛି । ଚତୁର୍ଥ ଅଧ୍ୟାୟର ଚବିଶ ଏବଂ ପଚିଶ ଶ୍ଳୋକର ଉତ୍ତରାର୍ଦ୍ଧରେ ଜ୍ଞାନଯୋଗର ବର୍ଣ୍ଣନା ଅଛି ଏବଂ ସେହି ଅଧ୍ୟାୟର ଛତିଶଠାରୁ ଅଣଚାଳିଶପର୍ଯ୍ୟନ୍ତ ଶ୍ଳୋକରେ ଫଳରୂପ ଜ୍ଞାନର ବର୍ଣ୍ଣନା ରହିଛି । ଏହିପ୍ରକାରେ ଅନ୍ୟସ୍ଥାନରେ ମଧ୍ୟ ଜ୍ଞାନର ଅର୍ଥ ପ୍ରସଙ୍ଗ ଅନୁସାରେ ବୁଝିନେବା ଉଚିତ ।

ବର୍ତ୍ତମାନ ସାଂଖ୍ୟନିଷ୍ଠା ଓ ଯୋଗନିଷ୍ଠାର ସ୍ୱରୂପ କ'ଣ, ସେ ଦୁଇଟି ମଧ୍ୟରେ ପାର୍ଥକ୍ୟ କ'ଣ, ଏବଂ ସେ ଦୁଇଟି ମଧ୍ୟରେ କେତେ ଏବଂ କି କି ପ୍ରକାର ଅବାନ୍ତର ଭେଦ ରହିଛି ତଥା ଉକ୍ତ ଦୁଇ ନିଷ୍ଠା ସ୍ୱତନ୍ତ୍ର ନା ପରସ୍ପରସାପେକ୍ଷ, ସେହି ଦୁଇ ନିଷ୍ଠାରେ ଅଧିକାରୀ କିଏ, ଇତ୍ୟାଦି ବିଷୟ ଉପରେ ସଂକ୍ଷେପରେ ବିଚାର କରାଯାଉଛି ।

## ସାଂଖ୍ୟନିଷ୍ଠା ଓ ଯୋଗନିଷ୍ଠାର ସ୍ୱରୂପ

(୧) ସମସ୍ତ ପଦାର୍ଥ ମୃଗତୃଷ୍ଣାର ଜଳପରି ବା ସ୍ୱପ୍ନର ସୃଷ୍ଟିପରି ମାୟାମୟ ହୋଇଥିବାରୁ ମାୟାର କାର୍ଯ୍ୟରୂପ ଗୁଣମାନେ ହିଁ ଗୁଣରେ ପ୍ରବୃତ୍ତ ହୁଅନ୍ତି — ଏହା ଜାଣି ମନ, ଇନ୍ଦ୍ରିୟ ଏବଂ ଶରୀରଦ୍ୱାରା ହେଉଥିବା ସମସ୍ତ କର୍ମରେ କର୍ତ୍ତାପଣରୁ ଅଭିମାନ ରହିତ ହୋଇଯିବା (୫/୮-୯) ଏବଂ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକାନ୍ତଭାବରେ ନିତ୍ୟସ୍ଥିତ ହୋଇ ରହି ଏକ ସଚ୍ଚିଦାନନ୍ଦଘନ ବାସୁଦେବଙ୍କ ବ୍ୟତୀତ ଅନ୍ୟ କାହାର ବି ଅସ୍ତିତ୍ୱ-ଭାବନା ନ ରଖିବା (୧୩/୩୦)ର ନାମ ସାଂଖ୍ୟନିଷ୍ଠା । ଏହାର ଅନ୍ୟନାମ **'ଜ୍ଞାନଯୋଗ'** ଓ **'କର୍ମସଂନ୍ୟାସ'** ମଧ୍ୟ ।

(୨) ସବୁକିଛି ଭଗବାନଙ୍କର ବୋଲି ଭାବି ସିଦ୍ଧି-ଅସିଦ୍ଧିରେ ସମଭାବ ରଖି, ଆସକ୍ତି ଓ ଫଳାକାଙ୍କ୍ଷା ତ୍ୟାଗ କରି ଭଗବତ୍ ଆଜ୍ଞା ଅନୁସାରେ ସମସ୍ତ କର୍ମ ଆଚରଣ କରିବା (୨/୪୭-୫୧) ଅଥବା ଶ୍ରଦ୍ଧାଭକ୍ତିପୂର୍ବକ ମନ, ବଚନ ଏବଂ ଶରୀରରେ ସବୁପ୍ରକାରେ ଭଗବାନଙ୍କର ଶରଣ ନେଇ ତାଙ୍କର ନାମ, ଗୁଣ ଏବଂ ପ୍ରଭାବ ସହିତ ନିରନ୍ତର ତାଙ୍କର ସ୍ୱରୂପ ଚିନ୍ତନ କରିବାର (୬/୪୭) ନାମ **ଯୋଗନିଷ୍ଠା** । ଏହାକୁ ଭଗବାନ୍ ସମତ୍ୱଯୋଗ, ବୁଦ୍ଧିଯୋଗ, ତଦର୍ଥକର୍ମ, ମଦର୍ଥକର୍ମ ଏବଂ ସାତ୍ତ୍ୱିକ ତ୍ୟାଗ ଆଦି ନାମରେ ଉଲ୍ଲେଖ କରିଛନ୍ତି ।

ଯୋଗନିଷ୍ଠାରେ ସାମାନ୍ୟରୂପରେ ଅଥବା ପ୍ରଧାନରୂପରେ ଭକ୍ତି ଅବଶ୍ୟ ରହିଛି । ଗୀତାର ଯୋଗନିଷ୍ଠା ଭକ୍ତିଶୂନ୍ୟ ନୁହେଁ । ଯେଉଁଠାରେ ସ୍ପଷ୍ଟ ଭାଷାରେ ଭକ୍ତି କିମ୍ବା ଭଗବାନଙ୍କର ଉଲ୍ଲେଖ ନାହିଁ (୨/୪୭-୫୧), ସେଠାରେ ମଧ୍ୟ ଭଗବାନଙ୍କର ଆଜ୍ଞାପାଳନ ତ ନିଶ୍ଚୟ ରହିଛି — ଏହି ଦୃଷ୍ଟିରୁ ଭକ୍ତିର ସମ୍ବନ୍ଧ ସେଠାରେ ମଧ୍ୟ ରହିଛି ।

ଜ୍ଞାନନିଷ୍ଠା ସାଧନାପାଇଁ ଭଗବାନ୍ ଅନେକ ପ୍ରଣାଳୀ କହିଛନ୍ତି ; 'ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କର ପ୍ରାପ୍ତି' ହିଁ ସେହିସବୁର ଏକମାତ୍ର ଉଦ୍ଦେଶ୍ୟ । ଜ୍ଞାନଯୋଗର ବହୁ ଅବାନ୍ତରଭେଦ ରହିଥିଲେ ମଧ୍ୟ ସେଗୁଡ଼ିକୁ ଚାରିଗୋଟି ମୁଖ୍ୟ ବିଭାଗରେ ବିଭକ୍ତ କରାଯାଇପାରେ ।

**(୧) ଯାହାକିଛି ଅଛି, ସେ ସବୁ ବ୍ରହ୍ମ ହିଁ ଅଟେ ।**

**(୨) ଯାହାକିଛି ଦୃଶ୍ୟପ୍ରପଞ୍ଚ ରହିଛି, ତାହା ମାୟାମୟ । ବାସ୍ତବରେ ଏକମାତ୍ର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ବ୍ୟତୀତ ଆଉ କିଛି ହିଁ ନାହିଁ ।**

**(୩) ଯାହା କିଛି ପ୍ରତୀତ ହେଉଛି, ସେସବୁ ମୋର ହିଁ ସ୍ୱରୂପ; ମୁଁ ହିଁ ଅଟେ ।**

**(୪) ଯାହାକିଛି ପ୍ରତୀତ ହେଉଛି, ତାହା ମାୟାମୟ, ଅନିତ୍ୟ, ବାସ୍ତବରେ କିଛି ହିଁ ନାହିଁ; କେବଳ ଏକ ନିତ୍ୟଚେତନ ଆତ୍ମା ମୁଁ ହିଁ ଅଛି ।**

ଏଥିମଧ୍ୟରୁ ପ୍ରଥମ ଦୁଇଟିସାଧନା **'ତତ୍ତ୍ୱମସି'** ମହାବାକ୍ୟର **'ତତ୍'** ପଦଦୃଷ୍ଟିରୁ ଏବଂ ପରବର୍ତ୍ତୀ ଦୁଇଟି

ସାଧନା 'ତ୍ୱମ୍' ପଦଦୃଷ୍ଟିରୁ ଆସିଛି । ଏହାର ସ୍ପଷ୍ଟୀକରଣ ଏହିପରି କରାଯାଇପାରେ :-

(୧) ଏହି ଚରାଚର ଜଗତରେ ଯାହାକିଛି ପ୍ରତୀତ ହେଉଛି ତାହାସବୁ ବ୍ରହ୍ମ ହିଁ ଅଟେ । କୌଣସି ବସ୍ତୁ ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରୁ ଭିନ୍ନ ନୁହେଁ । କର୍ମ, କର୍ମର ସାଧନା ଏବଂ ଉପକରଣ ତଥା ସ୍ୱୟଂକର୍ତ୍ତା -- ସବୁ କିଛି ବ୍ରହ୍ମ (୪/୨୪) । ସମୁଦ୍ରରେ ପଡ଼ିଥିବା ବରଫଖଣ୍ଡର ବାହାରେ ଓ ଭିତରେ ସର୍ବତ୍ର ଯେପରି କେବଳ ଜଳ ହିଁ ଥାଏ ଏବଂ ସେହି ବରଫ ଖଣ୍ଡ ମଧ୍ୟ ଜଳରୂପ ହୋଇଥାଏ, ସେହିପରି ସମସ୍ତ ଚରାଚର ଭୂତଙ୍କ ବାହାରେ ଓ ଭିତରେ ସର୍ବତ୍ର ଏକମାତ୍ର ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇଛନ୍ତି ଏବଂ ସମସ୍ତ ଭୂତଙ୍କ ରୂପରେ ବି ସେ ହିଁ ଅଛନ୍ତି (୧୩/୧୫) ।

(୨) ଯାହାକିଛି ଦୃଶ୍ୟବର୍ଗ ଅଛି, ତାହାକୁ ମାୟାମୟ, କ୍ଷଣିକ ଏବଂ ନାଶବାନ୍ ବୋଲି ବୁଝି ସେସବୁର ଅଭାବ କରିଦେଇ କେବଳ ସେହିସବୁର ଅଧିଷ୍ଠାନସ୍ୱରୂପ ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ଅଛନ୍ତି ଏବଂ ଅନ୍ୟ କିଛି ନାହିଁ ବୋଲି ବୁଝି ମନ ଓ ବୁଦ୍ଧିକୁ ମଧ୍ୟ ବ୍ରହ୍ମରେ ଏକାକାର କରିବାକୁ ପଡ଼ିବ ଏବଂ ପରମାତ୍ମାଙ୍କ ଠାରେ ଏକୀଭାବରେ ସ୍ଥିତ ହୋଇ ତାଙ୍କ ଅପରୋକ୍ଷଜ୍ଞାନଦ୍ୱାରା ତାଙ୍କ ସହିତ ଏକ ହୋଇଯିବାକୁ ପଡ଼ିବ (୫/୧୭) ।

(୩) ତେ, ଅତେ ସବୁ ବ୍ରହ୍ମ ଏବଂ ସେହି ବ୍ରହ୍ମ ହେଉଛି ମୁଁ, ତେଣୁ ସବୁ ମୋର ହିଁ ସ୍ୱରୂପ— ଏହିପରି ବିଚାର କରି ସକଳ ଚରାଚର ପ୍ରାଣୀଙ୍କୁ ନିଜର ଆତ୍ମା ବୋଲି ବୁଝିବାକୁ ହେବ ।

ଏପରି ସାଧନା କରୁଥିବା ମନୁଷ୍ୟର ଦୃଷ୍ଟିରେ ଏକ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ରହେ ନାହିଁ; ସେ ନିଜର ସେହି ବିଜ୍ଞାନାନନ୍ଦଘନ ସ୍ୱରୂପରେ ହିଁ ଆନନ୍ଦ ଅନୁଭବ କରେ (୫/୨୪, ୬/୨୭, ୧୮/୫୪) ।

(୪) ଏହି ମାୟାମୟ ତ୍ରିଗୁଣର କାର୍ଯ୍ୟରୂପୀ ଯେଉଁ ଦୃଶ୍ୟବର୍ଗ ରହିଛି, ତାହାକୁ ଏବଂ ତାହାଦ୍ୱାରା ହେଉଥିବା ସମସ୍ତ କ୍ରିୟାକୁ ନିଜଠାରୁ ପୃଥକ୍, ବିନାଶଶୀଳ ଏବଂ ଅନିତ୍ୟ ବୋଲି ବୁଝିବା ତଥା ଏ ସବୁର ଅତ୍ୟନ୍ତାଭାବ କରିଦେଇ କେବଳ ଭାବରୂପକ ଆତ୍ମାର ସତ୍ତା ହିଁ ଅନୁଭବ କରିବାକୁ ହେବ(୧୩/୨୭,୩୪) ।

ଏହିପରି ସ୍ଥିତି ପ୍ରାପ୍ତି କରିବାପାଇଁ ଭଗବାନ୍ ଗୀତାରେ ବହୁ ଯୁକ୍ତି ଦେଇ ସାଧକମାନଙ୍କୁ ସ୍ଥାନେ ସ୍ଥାନେ ବୁଝାଇଛନ୍ତି ଯେ, ଆତ୍ମା ଦ୍ରଷ୍ଟା, ସାକ୍ଷୀ, ଚେତନ ଓ ନିତ୍ୟ ଏବଂ ପ୍ରତୀତ ହେଉଥିବା ଦେହାଦି ଜଡ଼ ଦୃଶ୍ୟବର୍ଗ ଅନିତ୍ୟ ହୋଇଥିବାରୁ ଅସତ୍ । କେବଳ ଆତ୍ମା ହିଁ ସତ୍ । ଏହି କଥାକୁ ପୁଷ୍ଟ କରିବାପାଇଁ ଭଗବାନ୍ ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ନିତ୍ୟ, ଶୁଦ୍ଧ, ବୁଦ୍ଧ, ନିରାକାର, ନିର୍ବିକାର, ଅକ୍ରିୟ, ଗୁଣାତୀତ ଆତ୍ମାର ସ୍ୱରୂପ ବର୍ଣ୍ଣନା କରିଛନ୍ତି । ଆତ୍ମାର ସ୍ୱରୂପ ଏପରି ବୋଲି ମାନି ଅଭେଦଭାବରେ ସାଧନା କଲେ, ସାଧକମାନଙ୍କୁ ଆତ୍ମାର ସାକ୍ଷାତ୍ ମିଳିଥାଏ । ଯାହା କିଛି ଚେଷ୍ଟା ହେଉଛି, ତାହା କେବଳ ଗୁଣମାନଙ୍କର ଗୁଣମାନଙ୍କ ଠାରେ ହିଁ ହେଉଛି; ସେଥିରେ ଆତ୍ମାର କୌଣସି ସମ୍ବନ୍ଧ ନାହିଁ (୫/୮, ୯:୧୪/୧୯) ସେ କିଛି କରେ ନାହିଁ, କି କରାଏ ନାହିଁ— ଏପରି ବୁଝି ନିତ୍ୟ ନିରନ୍ତର ସେ ନିଜେ ନିଜଭିତରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରେ (୫/୧୩) ।

ଜ୍ଞାନଯୋଗର ଉପରୋକ୍ତ ଚାରି ସାଧନାମଧ୍ୟରୁ ପ୍ରଥମ ଦୁଇଟି ସାଧନା ବ୍ରହ୍ମ ଉପାସନା ସହିତ ସଂଯୁକ୍ତ ଏବଂ ତୃତୀୟ ଓ ଚତୁର୍ଥ ସାଧନା ଅହଂଗ୍ରହ ଉପାସନା ସହିତ ସଂଯୁକ୍ତ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଉପରୋକ୍ତ ଚାରିଟି ସାଧନା ବ୍ୟୁତ୍ଥାନ (ବ୍ୟବହାର) ଅବସ୍ଥାରେ କରିବା ଉଚିତ, ନା ଧ୍ୟାନାବସ୍ଥାରେ କରିବା ଉଚିତ, ନା ଏହା ଉଭୟ ଅବସ୍ଥାରେ କରାଯାଇପାରେ ? ଏହାର ଉତ୍ତର ଏହି ଯେ, ଚତୁର୍ଥ ସାଧନାର ଶେଷରେ ଯେଉଁ ପ୍ରକ୍ରିୟା ପଞ୍ଚମ ଅଧ୍ୟାୟର ନବମ ଶ୍ଳୋକାନୁସାରେ ବୁଝାଇଦିଆଯାଇଛି, ତାହା ତ କେବଳ ବ୍ୟବହାର କାଳରେ କରିବା କଥା ଏବଂ ଦ୍ୱିତୀୟ ସାଧନାର ଆରମ୍ଭରେ ପଞ୍ଚମ ଅଧ୍ୟାୟର ସତର ଶ୍ଳୋକ ଅନୁସାରେ ଯେଉଁ ସାଧନା ବୁଝାଇଦିଆଯାଇଛି, ତାହା କେବଳ ଧ୍ୟାନକାଳରେ କରାଯାଇପାରେ । ଅବଶିଷ୍ଟ ସବୁ ପ୍ରାୟ ଉଭୟ ଅବସ୍ଥାରେ କରାଯାଇପାରେ ।

ଏଠାରେ କେହି ପଚାରିପାରନ୍ତି, **'ବାସୁଦେବଃ ସର୍ବମିତି'**- ଅର୍ଥାତ୍ ଯାହାକିଛି ଦେଖାଯାଉଛି, ତାହା ବାସୁଦେବଙ୍କ ସ୍ୱରୂପ (୭/୧୯) ତଥା **'ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ'**- ଅର୍ଥାତ୍ ଯେଉଁ ପୁରୁଷ ଏକୀଭାବରେ ସ୍ଥିତ ହୋଇ ସମସ୍ତ ଭୂତରେ ଆତ୍ମରୂପରେ ସ୍ଥିତ ମୋତେ ଅର୍ଥାତ୍ ସମସ୍ତ ସଚ୍ଚିଦାନନ୍ଦଘନ ବାସୁଦେବଙ୍କୁ ଭଜନ କରନ୍ତି (୬/୩୧), ଏହି ବିଷୟଟି ପ୍ରଥମ ସାଧନାରେ କାହିଁକି ଉଲ୍ଲେଖ କରା ନ ଗଲା ? ଏହାର ଉତ୍ତର ଏହି ଯେ, ଏହି ଦୁଇଶ୍ଳୋକ ଭକ୍ତିପ୍ରସଙ୍ଗରେ ଆସିଛି ଏବଂ ଉଭୟରେ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ବର୍ଣ୍ଣନା ରହିଛି । ତେଣୁ ଏହାର

ଉଲ୍ଲେଖ ଏହି ପ୍ରସଙ୍ଗରେ କରାଯାଇ ନାହିଁ । କିନ୍ତୁ ଯଦି କେହି ଏହାକୁ ଜ୍ଞାନପ୍ରସଙ୍ଗରେ ନେଇ ଏହା ଅନୁସାରେ ସାଧନା କରିବାକୁ ଚାହାଁନ୍ତି, ତେବେ ସେ କରିପାରନ୍ତି । ଏପରି କରିବାରେ କୌଣସି ଆପତ୍ତି ନାହିଁ ।

ସାଂଖ୍ୟନିଷ୍ଠାକୁ ଯେପରି ଉଲ୍ଲିଖିତରୂପରେ ଚାରିଭାଗରେ ବିଭକ୍ତ କରାଯାଇଛି, ଯୋଗନିଷ୍ଠାକୁ ସେହିପରି ତିନିଗୋଟି ମୁଖ୍ୟ ବିଭାଗରେ ବିଭକ୍ତ କରାଯାଇଛି ।

ଯଥା : ୧) କର୍ମପ୍ରଧାନ କର୍ମଯୋଗ ।
୨) ଭକ୍ତିମିଶ୍ରିତ କର୍ମଯୋଗ ।
୩) ଭକ୍ତିପ୍ରଧାନ କର୍ମଯୋଗ ।

*୧- କର୍ମପ୍ରଧାନ କର୍ମଯୋଗ :* - ସମସ୍ତ କର୍ମରେ ଓ ସାଂସାରିକ ପଦାର୍ଥରେ ଫଳ ଓ ଆସକ୍ତି ସର୍ବଥା ତ୍ୟାଗ କରି ନିଜର ବର୍ଣ୍ଣାଶ୍ରମାନୁସାରେ ଶାସ୍ତ୍ରବିହିତ କର୍ମ କରି ରହିବା ହିଁ କର୍ମପ୍ରଧାନ କର୍ମଯୋଗ । ଏହି ଉପଦେଶରେ କେତୋଟି ସ୍ଥାନରେ ଭଗବାନ୍ ଫଳତ୍ୟାଗ କଥା କହିଛନ୍ତି (୫/୧୨;୬/୧;୧୨/୧୧;୧୮/୧୧); ଅନ୍ୟ କେତୋଟି ସ୍ଥାନରେ କେବଳ ଆସକ୍ତିତ୍ୟାଗ କଥା କହିଛନ୍ତି (୩/୧୯;୬/୪) ଓ ଅନ୍ୟ କେତେକ ସ୍ଥାନରେ ଫଳ ଓ ଆସକ୍ତି ଉଭୟ ତ୍ୟାଗ କରିବା କଥା କହିଛନ୍ତି (୨/୪୭;୪୮; ୧୮/୬,୯) । ଯେଉଁଠାରେ ଫଳତ୍ୟାଗ କଥା କୁହାଯାଇଛି, ସେଠାରେ ତାହା ସହିତ ଆସକ୍ତିତ୍ୟାଗ କଥା କୁହାଯାଇଛି ବୋଲି ବୁଝିନେବାକୁ ହେବ ଏବଂ ଯେଉଁଠାରେ କେବଳ ଆସକ୍ତିତ୍ୟାଗ କଥା କୁହାଯାଇଛି, ସେଠାରେ ଫଳତ୍ୟାଗ କଥା କୁହାଯାଇଛି ବୋଲି ବୁଝିନେବାକୁ ହେବ । ଯେତେବେଳେ ଫଳ ଓ ଆସକ୍ତି ଉଭୟ ତ୍ୟାଗ ହୁଏ, ସେତେବେଳେ କର୍ମଯୋଗ ସାଧନା ବାସ୍ତବରେ ପୂର୍ଣ୍ଣ ହୁଏ ।

*୨- ଭକ୍ତିମିଶ୍ରିତ କର୍ମଯୋଗ :* ଏଥିରେ ସମଗ୍ର ସଂସାରରେ ପରମେଶ୍ୱର ବ୍ୟାପ୍ତ ହୋଇ ରହିଛନ୍ତି ବୋଲି ବୁଝି ନିଜ ନିଜର ବର୍ଣ୍ଣୋଚିତ କର୍ମଦ୍ୱାରା ଭଗବାନ୍‌ଙ୍କୁ ପୂଜା କରିବା କଥା କୁହାଯାଇଛି (୧୮/୪୬) । ତେଣୁ ଏହାକୁ ଭକ୍ତିମିଶ୍ରିତ କର୍ମଯୋଗ କୁହାଯାଇପାରେ ।

*୩- ଭକ୍ତିପ୍ରଧାନ କର୍ମଯୋଗ :* ଏଥିରେ ଦୁଇଟି ଅବାନ୍ତରଭେଦ ରହିଛି ।

ଯଥା : (କ) 'ଭଗବଦର୍ପଣ' କର୍ମ
(ଖ) ଏବଂ 'ଭଗବଦର୍ଥ' କର୍ମ

ଭଗବଦ୍-ଅର୍ପଣ କର୍ମ ମଧ୍ୟ ଦୁଇପ୍ରକାରେ କରାଯାଏ, ଯଥା —

(୧) ଯେଉଁଥିରେ ସମସ୍ତ କର୍ମରେ ମମତ୍ୱ, ଆସକ୍ତି ଏବଂ ଫଳ ଇଚ୍ଛା ତ୍ୟାଗ କରି ତଥା ସବୁକିଛି ଭଗବାନଙ୍କର, ମୁଁ ମଧ୍ୟ ଭଗବାନଙ୍କର ଏବଂ ମୋଦ୍ୱାରା ଯେଉଁ କର୍ମ ହେଉଛି, ତାହା ମଧ୍ୟ ଭଗବାନଙ୍କର, କାଠକଣ୍ଢେଇକୁ ନଚାଇଲାପରି ଭଗବାନ୍ ମୋଦ୍ୱାରା ସବୁକିଛି କରାଉଛନ୍ତି— ଏପରି ବୁଝି ଭଗବାନଙ୍କ ଆଜ୍ଞାନୁସାରେ, ଭଗବାନଙ୍କର ପ୍ରସନ୍ନତାପାଇଁ ଶାସ୍ତ୍ରବିହିତ କର୍ମ କରାଯାଏ । (୩/୩୦, ୧୨/୬, ୧୮/୫୭,୬୬) ତାହାକୁ ପୂର୍ଣ୍ଣ ଭଗବଦର୍ପଣ କୁହାଯାଏ ।

(୨) ଏହାଛଡ଼ା ପ୍ରଥମେ କିଛି ଅନ୍ୟ ଉଦ୍ଦେଶ୍ୟରେ କରାଯାଇଥିବା କର୍ମକୁ ପରେ ଭଗବାନଙ୍କୁ ଅର୍ପଣ କରିଦେବା, କର୍ମ କରୁ କରୁ ମଝିରେ ଭଗବାନଙ୍କୁ ଅର୍ପଣ କରିଦେବା, କର୍ମ ସମାପ୍ତ ହେବା ସଙ୍ଗେ ସଙ୍ଗେ ଭଗବାନଙ୍କୁ ଅର୍ପଣ କରିଦେବା ଅଥବା କର୍ମର ଫଳମାତ୍ର ଭଗବାନଙ୍କୁ ଅର୍ପଣ କରିଦେବା— ଏହା ମଧ୍ୟ 'ଭଗବଦ୍ ଅର୍ପଣ'ର ଅନ୍ତର୍ଗତ; ଏହା 'ଭଗବଦ୍ ଅର୍ପଣ'ର ପ୍ରାରମ୍ଭିକ ସୋପାନ । ଏହିପରି କରୁ କରୁ ଉପରୋକ୍ତ ପୂର୍ଣ୍ଣ 'ଭଗବଦ୍ ଅର୍ପଣ' ହୋଇଯାଏ ।

'ଭଗବଦର୍ଥ' କର୍ମ ମଧ୍ୟ ଦୁଇପ୍ରକାର ଯଥା :

ଯେଉଁ ଶାସ୍ତ୍ରବିହିତ କର୍ମ ଭଗବତ୍‌ପ୍ରାପ୍ତି, ଭଗବଦ୍‌ପ୍ରେମ ଅଥବା ଭଗବାନଙ୍କର ପ୍ରସନ୍ନତାପାଇଁ ଭଗବତ୍ ଆଜ୍ଞା ଅନୁସାରେ କରାଯାଏ ଏବଂ ଭଗବାନଙ୍କର ବିଗ୍ରହ ଆଦିର ଅର୍ଚ୍ଚନ ତଥା ଭଜନ, ଧ୍ୟାନ ଆଦି ଉପାସନାରୂପକ ଯେଉଁ କର୍ମ ଭଗବାନଙ୍କ ନିମିତ୍ତ କରାଯାଏ ଏବଂ ଯେଉଁ କର୍ମର ସ୍ୱରୂପ ମଧ୍ୟ ଭଗବତ୍-ସମ୍ବନ୍ଧୀୟ ଅଟେ, ସେହି ଉଭୟ କର୍ମ 'ଭଗବଦର୍ଥ' କର୍ମର ଅନ୍ତର୍ଗତ । ଗୀତାରେ ଏହି ଦୁଇପ୍ରକାର କର୍ମକୁ ଯଥାକ୍ରମେ 'ମତ୍‌କର୍ମ' ଓ 'ମଦର୍ଥକର୍ମ' ବୋଲି ଉଲ୍ଲେଖ କରାଯାଇଛି (୧୧/୫୫; ୧୨/୧୦) ।

ଯାହାକୁ ଅନନ୍ୟଭକ୍ତି ଅଥବା ଭକ୍ତିଯୋଗ ବୋଲି କୁହାଯାଇଛି (୮/୧୪,୨୨, ୯/୧୩,୧୪,୨୨,୩୦,୩୪; ୧୦/୯; ୧୩/୧୦; ୧୪/୨୬), ତାହା ମଧ୍ୟ 'ଭଗବଦର୍ପଣ' ଏବଂ 'ଭଗବଦର୍ଥ' ଉଭୟ କର୍ମରେ ସମ୍ମିଳିତ ହୋଇଛି । ଏହି ସମସ୍ତର ଫଳ ଏକ ଭଗବତ୍‌ପ୍ରାପ୍ତି ହିଁ ଅଟେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଯୋଗନିଷ୍ଠା ସ୍ୱତନ୍ତ୍ରଭାବରେ ଭଗବତ୍‌ପ୍ରାପ୍ତି କରାଇଦିଏ, ନା ଜ୍ଞାନନିଷ୍ଠାର ଅଙ୍ଗ ହୋଇ କରାଇଥାଏ । ଏହାର ଉତ୍ତର ଏହି ଯେ, ଗୀତା ଦୁଇଟିଯାକ କଥା ସ୍ୱୀକାର କରନ୍ତି ଅର୍ଥାତ୍ ଭଗବଦ୍‌ଗୀତା ଯୋଗନିଷ୍ଠାକୁ ଭଗବତ୍‌ପ୍ରାପ୍ତିର ତଥା ମୋକ୍ଷର ସ୍ୱତନ୍ତ୍ର ସାଧନା ବୋଲି ମାନନ୍ତି ଏବଂ ଜ୍ଞାନନିଷ୍ଠାରେ ସହାୟକ ବୋଲି ମଧ୍ୟ ମାନନ୍ତି ଓ ସାଧକ

ଚାହିଁଲେ ଜ୍ଞାନନିଷ୍ଠାର ବିନା-ସହାୟତାରେ ସିଧାସଳଖ କର୍ମଯୋଗଦ୍ୱାରା ପରମ ସିଦ୍ଧିପ୍ରାପ୍ତି କରିପାରନ୍ତି କିମ୍ବା କର୍ମଯୋଗ ଦ୍ୱାରା ଜ୍ଞାନନିଷ୍ଠା ପ୍ରାପ୍ତି କରି ପୁଣି ଜ୍ଞାନନିଷ୍ଠାଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତି କରିପାରନ୍ତି । ଦୁଇଟି ମାର୍ଗ ମଧ୍ୟରୁ କେଉଁ ମାର୍ଗଟି ଗ୍ରହଣ କରିବା ଉଚିତ, ତାହା ସାଧକର ରୁଚି ଉପରେ ନିର୍ଭର କରେ । ଭଗବାନ କୃଷ୍ଣ ଶବ୍ଦରେ କହିଛନ୍ତି ଯେ, ଯୋଗନିଷ୍ଠା ସ୍ୱତନ୍ତ୍ର ସାଧନା (୫/୪,୫ ତଥା ୧୩/୨୪) । ଭଗବାନଙ୍କ ଠାରେ ଚିତ୍ତ ଲଗାଇ ଭଗବାନ୍‌ଙ୍କ ପାଇଁ କର୍ମ କରୁଥିବା ସାଧକକୁ ଭଗବାନଙ୍କ କୃପାରୁ ଭଗବାନ୍ ଯେ ମିଳିପାରନ୍ତି, ଭଗବାନ୍ ତାହା ବି ସ୍ଥାନେ ସ୍ଥାନେ କହିଛନ୍ତି (୮/୭; ୧୧/୫୪, ୫୫,୧୨/୬ ରୁ ୮) ।

ଏହିପରି ନିଷ୍କାମ କର୍ମ ଏବଂ ଉପାସନା ଉଭୟେ ଜ୍ଞାନନିଷ୍ଠାର ଅଙ୍ଗ ମଧ୍ୟ ହୋଇପାରନ୍ତି (୫/୬;୧୪/୨୬); କିନ୍ତୁ ଜ୍ଞାନଯୋଗରେ ଅଭେଦ-ଉପାସନା ଅଛି । ଏଣୁ ଜ୍ଞାନନିଷ୍ଠା ଭେଦ-ଉପାସନାରୂପକ ଭକ୍ତିଯୋଗର ଅର୍ଥାତ୍ ଯୋଗନିଷ୍ଠାର ଅଙ୍ଗ ହୋଇ ନ ପାରେ । ଯଦି ସାଧନା କରୁ କରୁ କୌଣସି ଜ୍ଞାନନିଷ୍ଠ-ସାଧକଙ୍କର ରୁଚି ବା ମତ ବଦଳିଯାଏ ଏବଂ ସେ ଜ୍ଞାନନିଷ୍ଠା ଛାଡି ଯୋଗନିଷ୍ଠାକୁ ଧରିନିଅନ୍ତି ଏବଂ ତାଙ୍କୁ ଯୋଗନିଷ୍ଠାଦ୍ୱାରା ଭଗବତ୍‌ପ୍ରାପ୍ତି ହୋଇଯାଏ, ତେବେ ତାହା ଏକ ଭିନ୍ନ କଥା ।

ଯଦି କେହି ପ୍ରଶ୍ନ କରନ୍ତି, 'କର୍ମଯୋଗ ସାଧନା କରି ପୁଣି ସାଂଖ୍ୟଯୋଗ ସାଧନାଦ୍ୱାରା ଯେଉଁମାନେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି, ସେମାନଙ୍କର ପ୍ରଣାଳୀ କେଉଁ ପ୍ରକାର ?', ତେବେ 'ତ୍ୟାଗ'କୁ ସାତୋଟି ଶ୍ରେଣୀରେ ବିଭକ୍ତ କରି ସେ ନିମ୍ନଲିଖିତପ୍ରକାରେ ବୁଝିବା ଉଚିତ, ଯଥା :-

**୧- ସର୍ବଥା ନିଷିଦ୍ଧକର୍ମ ତ୍ୟାଗ**

ମନ, ବଚନ ଓ ଶରୀରଦ୍ୱାରା ଚୋରି, ବ୍ୟଭିଚାର, ମିଥ୍ୟା, କପଟ, ଛଳ, ବଳତ୍କାର, ହିଂସା, ଅଭକ୍ଷ୍ୟଭୋଜନ ଏବଂ ପ୍ରମାଦ ଆଦି ଶାସ୍ତ୍ରନିଷିଦ୍ଧ ନୀଚକର୍ମ କୌଣସିପ୍ରକାରେ ନ କରିବା ହେଉଛି ପ୍ରଥମ ଶ୍ରେଣୀର ତ୍ୟାଗ ।

**୨- କାମ୍ୟ-କର୍ମ ତ୍ୟାଗ**

ସ୍ତ୍ରୀ, ପୁତ୍ର ଏବଂ ଧନ ଆଦି ପ୍ରିୟ ବସ୍ତୁ ପ୍ରାପ୍ତିନିମନ୍ତେ ତଥା ରୋଗ-ସଙ୍କଟ ଆଦିରୁ ନିବୃତ୍ତିନିମନ୍ତେ ନିଜ ସ୍ୱାର୍ଥପାଇଁ କରାଯାଉଥିବା ଯଜ୍ଞ, ଦାନ, ତପ ଓ ଉପାସନା ଆଦି ସକାମ କର୍ମ ନ କରିବା ହେଉଛି ଦ୍ୱିତୀୟ ଶ୍ରେଣୀର ତ୍ୟାଗ ।

ଯଦି ସଂଯୋଗବଶତଃ କୌଣସି ଲୌକିକ ଅଥବା ଶାସ୍ତ୍ରୀୟ କର୍ମ କରିବାକୁ ପଡେ, ଯାହା କି ସ୍ୱରୂପତଃ ସକାମ ଅଟେ ଅଥଚ ତାହା ନ କଲେ କାହାରି ମନରେ କଷ୍ଟ ହୁଏ ବା କର୍ମ ଉପାସନାର ପରମ୍ପରାରେ କୌଣସିପ୍ରକାର ବାଧା ଆସିଯାଏ ବୋଲି ସ୍ୱାର୍ଥତ୍ୟାଗ କରି କେବଳ ଲୋକସଂଗ୍ରହପାଇଁ କରାଯାଏ, ତେବେ ତାହା ସକାମ କର୍ମରୂପେ ଗଣ୍ୟ ହୁଏ ନାହିଁ ।

**୩- ସର୍ବଥା ତୃଷ୍ଣା ତ୍ୟାଗ**

ମାନ, ବଡିମା, ପ୍ରତିଷ୍ଠା, ସ୍ତ୍ରୀ, ପୁତ୍ର ଏବଂ ଧନ ଆଦି ଯାହାକିଛି ବି ଅନିତ୍ୟ ପଦାର୍ଥ ପ୍ରାରବ୍ଧ ଅନୁସାରେ ପ୍ରାପ୍ତ ହୋଇଥାଏ, ତାହା ବଢ଼ାଇବାରେ ଇଚ୍ଛାକୁ ଭଗବତ୍‌ପ୍ରାପ୍ତିରେ ପ୍ରତିବନ୍ଧକ ବୋଲି ବୁଝି ତାହା ତ୍ୟାଗ କରିବା ହେଉଛି ତୃତୀୟ ଶ୍ରେଣୀ ତ୍ୟାଗ ।

**୪- ସ୍ୱାର୍ଥପାଇଁ ଅନ୍ୟଦ୍ୱାରା କରାଯାଉଥିବା ସେବା ତ୍ୟାଗ**

ନିଜର ସୁଖପାଇଁ କାହାରିଠାରୁ ଧନାଦି ପଦାର୍ଥ ଅଥବା ସେବା ପ୍ରାର୍ଥନା କରିବା ଏବଂ ବିନା ପ୍ରାର୍ଥନାରେ ଦିଆଯାଇଥିବା ପଦାର୍ଥକୁ ବା ସେବାକୁ ସ୍ୱୀକାର କରିବା ତଥା କୌଣସିପ୍ରକାରେ କାହାରି ଦ୍ୱାରା ନିଜର ସ୍ୱାର୍ଥସିଦ୍ଧିପାଇଁ ଇଚ୍ଛା ରଖିବା ଇତ୍ୟାଦି ସ୍ୱାର୍ଥପାଇଁ ଅନ୍ୟମାନଙ୍କ ଦ୍ୱାରା ସେବା କରାଇବାର ଯେଉଁ ଭାବ ରହିଛି, ତାହା ତ୍ୟାଗ କରିବା ହେଉଛି ଚତୁର୍ଥ ଶ୍ରେଣୀର ତ୍ୟାଗ ।

ଯଦି ସ୍ୱତଃ ଏପରି କୌଣସି ଅବସର ଆସିଯାଏ ଯେ, ଶରୀରସମ୍ବନ୍ଧୀ ସେବା ଅଥବା ଭୋଜନାଦି ପଦାର୍ଥ ଗ୍ରହଣ ନ କଲେ କାହାରିକୁ କଷ୍ଟ ହେଉଥିବ ବା ଲୋକଶିକ୍ଷାରେ କୌଣସିପ୍ରକାର ବାଧା ପହଞ୍ଚୁଥିବ, ତେବେ ସେପରି ଅବସ୍ଥାରେ ସ୍ୱାର୍ଥ ତ୍ୟାଗ କରି କେବଳ ଅନ୍ୟମାନଙ୍କ ପ୍ରୀତିପାଇଁ ଉକ୍ତ ସେବା ଆଦି ସ୍ୱୀକାର କଲେ ତାହା ଦୋଷଯୁକ୍ତ ହେବ ନାହିଁ, କାରଣ ସ୍ତ୍ରୀ, ପୁତ୍ର ଓ ଭୃତ୍ୟଙ୍କ ଦ୍ୱାରା କରାଯାଉଥିବା ସେବା ଏବଂ ବନ୍ଧୁବାନ୍ଧବ ଓ ମିତ୍ର ଆଦିଙ୍କ ଦ୍ୱାରା ଦିଆଯାଉଥିବା ଭୋଜନ ସ୍ୱୀକାର ନ କଲେ ସେମାନଙ୍କୁ କଷ୍ଟ ହେବ ଏବଂ ସମ୍ଭବତଃ ଲୋକମର୍ଯ୍ୟାଦାରେ ବାଧା ପଡିବ ।

**୫- ସମସ୍ତ କର୍ତ୍ତବ୍ୟକର୍ମରେ ସର୍ବଥା ଆଳସ୍ୟ ଏବଂ ଫଳାକାଙ୍କ୍ଷା ତ୍ୟାଗ**

ଈଶ୍ୱରଙ୍କୁ ଭକ୍ତି, ଦେବତାମାନଙ୍କର ପୂଜା, ମାତା-ପିତା ଗୁରୁଜନଙ୍କର ସେବା, ଯଜ୍ଞ, ଦାନ, ତପ ତଥା ବର୍ଣ୍ଣାଶ୍ରମ ଅନୁସାରେ ଆଜୀବିକା ଏବଂ ଶରୀରସମ୍ବନ୍ଧୀୟ ଖାଇବା-ପିଇବା ଆଦି ଯେତେ ଯେତେ କର୍ତ୍ତବ୍ୟକର୍ମ ରହିଛି, ସେସବୁରେ

ସବୁପ୍ରକାର ଆଳସ୍ୟ ଏବଂ ସବୁପ୍ରକାର କାମନା ତ୍ୟାଗ କରିବା ହେଉଛି ପଞ୍ଚମ ଶ୍ରେଣୀର ତ୍ୟାଗ ।

**୬- ସକଳ ସାଂସାରିକ ପଦାର୍ଥରେ ଓ କର୍ମରେ ସର୍ବଥା ମମତ୍ୱ ଓ ଆସକ୍ତି ତ୍ୟାଗ**

ଧନ, ଗୃହ, ବସ୍ତ୍ର ଆଦି ସମସ୍ତପ୍ରକାର ବସ୍ତୁ, ତଥା ସ୍ତ୍ରୀ, ପୁତ୍ର ଏବଂ ମିତ୍ରାଦି ସମସ୍ତ ବନ୍ଧୁବାନ୍ଧବ ଏବଂ ମାନ, ବଡ଼ିମା ପ୍ରତିଷ୍ଠା ଆଦି ଇହଲୋକର ତଥା ପରଲୋକର ଯେତେସବୁ ବିଷୟଭୋଗରୂପକ ପଦାର୍ଥ ରହିଛି, ସେସବୁ କ୍ଷଣଭଙ୍ଗୁର ଓ ବିନାଶଶୀଳ ହୋଇଥିବାରୁ ଅନିତ୍ୟ ବୋଲି ଜାଣି ସେଥିରେ ମମତ୍ୱ ଓ ଆସକ୍ତି ନ ରଖିବା, ତଥା କେବଳ ଏକ ପରମାତ୍ମାଙ୍କ ଠାରେ ହିଁ ଅନନ୍ୟଭାବରେ ବିଶୁଦ୍ଧ ପ୍ରେମ ରଖିଥିବାହେତୁ ମନ, ବଚନ, ଶରୀରଦ୍ୱାରା ହେଉଥିବା ସକଳ କ୍ରିୟା ପ୍ରତି ତଥା ନିଜର ଶରୀର ପ୍ରତି ମମତ୍ୱ ଓ ଆସକ୍ତିଶୂନ୍ୟ ହୋଇଯିବା ହେଉଛି ଷଷ୍ଠଶ୍ରେଣୀର ତ୍ୟାଗ ।

ଉକ୍ତ ଷଷ୍ଠଶ୍ରେଣୀର ତ୍ୟାଗ ପ୍ରାପ୍ତ ହୋଇଥିବା ପୁରୁଷମାନଙ୍କର ସମସ୍ତ ସାଂସାରିକ ପଦାର୍ଥରେ ବୈରାଗ୍ୟ ଆସିଯାଇ କେବଳ ଏକ ପରମ ପ୍ରେମମୟ ଭଗବାନଙ୍କ ଠାରେ ହିଁ ଅନନ୍ୟ ପ୍ରେମ ଜାତ ହୋଇଯାଏ । ଫଳରେ ସେମାନଙ୍କୁ ଭଗବାନଙ୍କର ଗୁଣ, ପ୍ରଭାବ ଏବଂ ରହସ୍ୟରେ ପୂର୍ଣ୍ଣ ବିଶୁଦ୍ଧ ପ୍ରେମ ବିଷୟକ କଥା ଶୁଣିବା, ଶୁଣାଇବା ଓ ମନନ କରିବା ତଥା ଏକାନ୍ତ ସ୍ଥାନରେ ରହି ନିରନ୍ତର ଭଗବାନଙ୍କର ଭଜନ, ଧ୍ୟାନ ଏବଂ ଶାସ୍ତ୍ରର ମର୍ମ ବିଚାର କରିବାକୁ ଭଲ ଲାଗେ । ବିଷୟାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ ରହି ହାସ୍ୟ, ବିଳାସ, ପ୍ରମାଦ, ନିନ୍ଦା, ବିଷୟଭୋଗ ଏବଂ ବ୍ୟର୍ଥ କଥାରେ ନିଜର ଅମୂଲ୍ୟ ସମୟର ଏକକ୍ଷଣ ମଧ ନଷ୍ଟ କରାଇଦେବାକୁ ସେମାନଙ୍କୁ ଭଲ ଲାଗେ ନାହିଁ ଏବଂ ସେମାନଙ୍କର ସମସ୍ତ କର୍ତ୍ତବ୍ୟକର୍ମ ଭଗବାନଙ୍କର ସ୍ୱରୂପ ଏବଂ ନାମର ମନନ ହୋଇଯାଇ ବିନା ଆସକ୍ତିରେ କେବଳ 'ଭଗବଦର୍ଥ' ହୋଇଯାଏ ।

ଏହା ହିଁ କର୍ମଯୋଗ ସାଧନା । ଏହି ସାଧନା କରୁ କରୁ ସାଧକ ପରମାତ୍ମାଙ୍କ କୃପାରେ ପରମାତ୍ମାଙ୍କ ସ୍ୱରୂପକୁ ତତ୍ତ୍ୱତଃ ଜାଣି ଅବିନାଶୀ ପରମପଦ ପ୍ରାପ୍ତ ହୋଇଯାନ୍ତି (୧୮/୫୬) ।

କିନ୍ତୁ ଯଦି କେହି ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତି କରିବାକୁ ଚାହାଁନ୍ତି, ତେବେ ସେ ଉପରୋକ୍ତ ସାଧନା କରିବା ପରେ ନିମ୍ନଲିଖିତ ସପ୍ତମ ଶ୍ରେଣୀର ପ୍ରଣାଳୀ ଅନୁସାରେ ସାଂଖ୍ୟଯୋଗ ସାଧନା କରିବା ଆବଶ୍ୟକ ।

**୭- ସଂସାର, ଶରୀର ଓ ସକଳ କର୍ମରେ ସର୍ବଥା ସୂକ୍ଷ୍ମ ବାସନା ଏବଂ ଅହଂଭାବ ତ୍ୟାଗ**

ସଂସାରର ସକଳ ପଦାର୍ଥ ମାୟାର କାର୍ଯ୍ୟ ହୋଇଥିବାରୁ ସର୍ବଥା ଅନିତ୍ୟ ; ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ସର୍ବତ୍ର ସମଭାବରେ ପରିପୂର୍ଣ୍ଣ ହୋଇ ରହିଛନ୍ତି– ଏପରି ଦୃଢ଼ନିଶ୍ଚୟ ହୋଇ ଶରୀରସମେତ ସଂସାରର ସମସ୍ତ ପଦାର୍ଥରେ ଓ ସମସ୍ତ କର୍ମରେ ସର୍ବଥା ସୂକ୍ଷ୍ମବାସନାର ଅଭାବ ହୋଇଯିବା ଉଚିତ । ଏପରି କି, ଏହାର ଚିତ୍ର ଅନ୍ତଃକରଣରେ ସଂସ୍କାରରୂପରେ ମଧ ନ ରହିବା ଏବଂ ସର୍ବଥା ଅହଂଭାବ ଶୂନ୍ୟ ହୋଇ ମନ, ବଚନ ଓ ଶରୀରଦ୍ୱାରା ହେଉଥିବା କୌଣସି ବି କର୍ମରେ ସାମାନ୍ୟମାତ୍ର କର୍ତ୍ତାପଣ ଅଭିମାନ ନ ରହିବା ତଥା ଶରୀର ପ୍ରତି, ସକଳ ପଦାର୍ଥ ପ୍ରତି ଓ ସମସ୍ତ କର୍ମ ପ୍ରତି ସେହିପରି ସକଳପ୍ରକାର ବାସନା ଓ ଅହଂଭାବ ସମ୍ପୂର୍ଣ୍ଣ ଶୂନ୍ୟ ହୋଇ କେବଳ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକୀଭାବରେ ନିତ୍ୟ ନିରନ୍ତର ଦୃଢ଼ସ୍ଥିତିରେ ରହିଯିବା— ଏହା ହେଉଛି ସପ୍ତମ ଶ୍ରେଣୀର ତ୍ୟାଗ ।

ଏହିପରି ସାଧନା କଲେ ପୁରୁଷ ଅଚିରେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ସୁଖପୂର୍ବକ ପାଇଯାଏ (୬/୨୮) । କିନ୍ତୁ ଯେଉଁ ପୁରୁଷ ଏପରି କର୍ମଯୋଗ ସାଧନା ନ କରି ଆରମ୍ଭରୁ ହିଁ ସାଂଖ୍ୟଯୋଗ ସାଧନା କରେ, ସେ ବହୁ କଷ୍ଟରେ ପରମାତ୍ମାଙ୍କୁ ପାଏ ।

**ସଂନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ । (୫/୬)**

ଏଠାରେ ପ୍ରଶ୍ନ ଉଠେ, କୌଣସି ସାଧକ ଏକ ସମୟରେ ଦୁଇଟିଯାକ ନିଷ୍ଠା ଅନୁସାରେ ସାଧନା କରିପାରିବେ, ନା ନାହିଁ ? ଯଦି ପାରିବେ ନାହିଁ, ତେବେ କାହିଁକି ? ଏହାର ଉତ୍ତର ହେଉଛି : ସାଂଖ୍ୟଯୋଗ ଏବଂ କର୍ମଯୋଗ— ଏହି ଉଭୟ ସାଧନା ଏକ ସମୟରେ ଜଣେ ପୁରୁଷଙ୍କ ଦ୍ୱାରା କରାଯାଇ ପାରିବ ନାହିଁ । କାରଣ କର୍ମଯୋଗୀ ସାଧନାକାଳରେ କର୍ମକୁ, କର୍ମଫଳକୁ, ପରମାତ୍ମାଙ୍କୁ ଓ ନିଜକୁ ଭିନ୍ନ ଭିନ୍ନ ମାନି କର୍ମଫଳ ଓ ଆସକ୍ତି ତ୍ୟାଗ କରି ଈଶ୍ୱରାର୍ଥ ବା ଈଶ୍ୱରାର୍ପଣବୁଦ୍ଧିରେ ସମସ୍ତ କର୍ମ କରନ୍ତି (୩/୩୦; ୫/୧୦; ୧୧/୫୫; ୧୨/୧୦; ୧୮/୫୬-୫୭) ଓ ସାଂଖ୍ୟଯୋଗୀ ମାୟାରେ ଉତ୍ପନ୍ନ ସକଳ ଗୁଣ ଗୁଣରେ ହିଁ ପ୍ରବୃତ୍ତ ରହନ୍ତି ଅଥବା ଇନ୍ଦ୍ରିୟମାନେ ଇନ୍ଦ୍ରିୟମାନଙ୍କ ଅର୍ଥରେ ହିଁ ପ୍ରବୃତ୍ତ ରହନ୍ତି ବୋଲି ବୁଦ୍ଧି, ମନ, ଇନ୍ଦ୍ରିୟ ଏବଂ

ଶରୀରଦ୍ୱାରା ହେଉଥିବା କୌଣସି କ୍ରିୟାରେ କର୍ତ୍ତାପଣ ଅଭିମାନ ନ ରଖି କେବଳ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଅଭିନ୍ନଭାବରେ ସ୍ଥିର ରହନ୍ତି (୩/୨୮; ୫/୧୩; ୧୩/୨୯, ୧୪/୧୯,୨୦; ୧୮/୪୯ ରୁ ୫୫)। କର୍ମଯୋଗୀ ନିଜକୁ କର୍ମର କର୍ତ୍ତା ବୋଲି ମାନନ୍ତି (୫/୧୧), ସାଂଖ୍ୟଯୋଗୀ ନିଜକୁ କର୍ତ୍ତା ବୋଲି ମାନନ୍ତି ନାହିଁ (୫/୮,୯)। କର୍ମଯୋଗୀ ନିଜର କର୍ମକୁ ଭଗବାନଙ୍କୁ ଅର୍ପଣ କରନ୍ତି (୯/୨୭,୨୮), ସାଂଖ୍ୟଯୋଗୀ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ହେଉଥିବା ଅହଂଭାବରହିତ କ୍ରିୟାମାନଙ୍କୁ କର୍ମ ବୋଲି ମାନନ୍ତି ନାହିଁ (୧୮/୧୭)। କର୍ମଯୋଗୀ ପରମାତ୍ମାଙ୍କୁ ନିଜଠାରୁ ପୃଥକ୍ ବୋଲି ମାନନ୍ତି (୧୨/୧୦), ସାଂଖ୍ୟଯୋଗୀ ସର୍ବଦା ଅଭେଦ ବୋଲି ମାନନ୍ତି (୧୮/୨୦)। କର୍ମଯୋଗୀ ପ୍ରକୃତି ଓ ପ୍ରକୃତିର ପଦାର୍ଥମାନଙ୍କର ସତ୍ତାକୁ ସ୍ୱୀକାର କରନ୍ତି (୧୮/୬୧), ସାଂଖ୍ୟଯୋଗୀ ଏକ ବ୍ରହ୍ମ ବ୍ୟତୀତ ଅନ୍ୟ କୌଣସି ସତ୍ତା ମାନନ୍ତି ନାହିଁ (୧୩/୩୦)। କର୍ମଯୋଗୀ କର୍ମଫଳ ଓ କର୍ମର ସତ୍ତା ମାନନ୍ତି। ସାଂଖ୍ୟଯୋଗୀ ବ୍ରହ୍ମଭିନ୍ନ କର୍ମ ଓ କର୍ମଫଳର ସତ୍ତା ମାନନ୍ତି ନାହିଁ, କି ସେଥିରେ ନିଜର କୌଣସି ସମ୍ବନ୍ଧ ଅଛି ବୋଲି ମାନନ୍ତି ନାହିଁ। ଏହିପରି ଦେଖିଗଲେ, ଦୁହିଁଙ୍କର ସାଧନାପ୍ରଣାଳୀ ଏବଂ ମାନ୍ୟତାରେ ପୂର୍ବ ଓ ପଶ୍ଚିମପରି ସମ୍ପୂର୍ଣ୍ଣ ଭିନ୍ନତା ରହିଛି। ଏପରି ଅବସ୍ଥାରେ ଜଣେ ମନୁଷ୍ୟ ଏକ ସମୟରେ ଉଭୟ ନିଷ୍ଠାର ସାଧନା କରିପାରିବେ ନାହିଁ। ଯେପରି ଭାରତବର୍ଷରୁ ଆମେରିକାର ନ୍ୟୁୟର୍କ ସହରକୁ ଯିବାକୁ ଚାହୁଁଥିବା ଲୋକ ଯଦି ଏଠାରୁ କେବଳ ପୂର୍ବଦିଗକୁ ହିଁ ଚାଲନ୍ତି, ତେବେ ସେ ଆମେରିକାରେ ପହଞ୍ଚିଯିବେ, ଏବଂ ଯଦି କେବଳ ପଶ୍ଚିମ ଦିଗକୁ ଚାଲନ୍ତି, ତେବେ ମଧ୍ୟ ଆମେରିକାରେ ପହଞ୍ଚିଯିବେ, ସେହିପରି ସାଂଖ୍ୟଯୋଗ ଏବଂ କର୍ମଯୋଗର ସାଧନାପ୍ରଣାଳୀରେ ପରସ୍ପର ପ୍ରଭେଦ ରହିଥିଲେ ମଧ୍ୟ, ମନୁଷ୍ୟ ସେ ଦୁଇଟିମଧ୍ୟରୁ ଯେକୌଣସି ଗୋଟିଏ ପ୍ରଣାଳୀ ଦୃଢ଼ତାପୂର୍ବକ ନିଷ୍ଠାର ସହିତ ପାଳନ କଲେ, ସେହି ଦୁଇମାର୍ଗର ଏକମାତ୍ର ପରମ ଲକ୍ଷ୍ୟ ପରମାତ୍ମାଙ୍କ ପାଖରେ ଶୀଘ୍ର ପହଞ୍ଚି ଯାଇପାରିବ (୫/୪)।

## ଅଧିକାରୀ

ବର୍ତ୍ତମାନ ପ୍ରଶ୍ନ ହୁଏ, ଗୀତାରେ କୁହାଯାଇଥିବା ସାଂଖ୍ୟଯୋଗ ଏବଂ କର୍ମଯୋଗର ଅଧିକାରୀ କିଏ ? କ'ଣ ସବୁ ବର୍ଣ୍ଣର, ସବୁ ଆଶ୍ରମର ତଥା ସବୁ ଜାତିର ଲୋକ ଏହା ଆଚରଣ କରିପାରିବେ, ନା କୌଣସି ବିଶେଷ ବର୍ଣ୍ଣ, କୌଣସି ବିଶେଷ ଆଶ୍ରମ ତଥା ବିଶେଷ ଜାତିର ଲୋକ ଏହା ସାଧନା କରିପାରିବେ ? ଏହାର ଉତ୍ତର ଏହି ଯେ, ଯଦ୍ୟପି ଗୀତାରେ ଯେଉଁ ପଦ୍ଧତି ନିରୂପଣ କରାଯାଇଛି, ତାହା ସର୍ବଥା ଭାରତୀୟ ଏବଂ ଋଷିସେବିତ, ତଥାପି ଗୀତାର ଶିକ୍ଷା ଉପରେ ବିଚାର କରି ଏତିକି କୁହାଯାଇପାରେ ଯେ, ଗୀତାରେ କୁହାଯାଇଥିବା ସାଧନା-ଗୁଡ଼ିକ ଅନୁସାରେ ଆଚରଣ କରିବାର ଅଧିକାର ମନୁଷ୍ୟମାତ୍ରକେ ସମସ୍ତଙ୍କର ଅଛି। ଜଗଦ୍‌ଗୁରୁ ଭଗବାନ୍ ଶ୍ରୀକୃଷ୍ଣ ସମସ୍ତ ମାନବସମାଜପାଇଁ ଏହି ଉପଦେଶ ପ୍ରଦାନ କରିଛନ୍ତି। ଏହା କୌଣସି ବିଶେଷ ବର୍ଣ୍ଣ ଅଥବା ବିଶେଷ ଆଶ୍ରମପାଇଁ ଉଦ୍ଦିଷ୍ଟ ନୁହେଁ। ଏହା ହିଁ ଗୀତାର ବିଶେଷତ୍ୱ। ଭଗବାନ୍ ନିଜର ଉପଦେଶରେ ସ୍ଥାନେ ସ୍ଥାନେ 'ମାନବଃ', 'ନରଃ', 'ଦେହଭୃତ୍', 'ଦେହୀ' ଆଦି ଶବ୍ଦ ପ୍ରୟୋଗ କରି ଏହି କଥା ସ୍ପଷ୍ଟ କରିଦେଇଛନ୍ତି। ଯେଉଁଠାରେ ସାଂଖ୍ୟଯୋଗକୁ ମୁଖ୍ୟ ସାଧନା ବୋଲି କହିଦିଆଯାଇଛି, ସେଠାରେ ଭଗବାନ୍ 'ଦେହୀ' ଶବ୍ଦ ପ୍ରୟୋଗ କରି ମନୁଷ୍ୟମାତ୍ରେ ସମସ୍ତଙ୍କୁ ଏହାର ଅଧିକାରୀ ବୋଲି କହିଛନ୍ତି (୫/୧୩)। ଏପରିଭାବରେ ଭଗବାନ୍ ସ୍ପଷ୍ଟ ଶବ୍ଦରେ କହିଛନ୍ତି ଯେ, ମନୁଷ୍ୟମାତ୍ରେ ସମସ୍ତେ ନିଜ ନିଜର ଶାସ୍ତ୍ରବିହିତ କର୍ମଦ୍ୱାରା ସର୍ବବ୍ୟାପୀ ପରମେଶ୍ୱରଙ୍କୁ ପୂଜା କରି ସିଦ୍ଧି ପ୍ରାପ୍ତି କରିପାରିବେ (୧୮/୪୬)। ଠିକ୍ ଏହିପରି ଭକ୍ତିପାଇଁ ମଧ ସ୍ତ୍ରୀ, ଶୂଦ୍ର – ଏପରି କି ପାପଯୋନିମାନେ ବି ଅଧିକାରୀ ଅଟନ୍ତି ବୋଲି ଭଗବାନ୍ କହିଛନ୍ତି (୯/୩୨)। ପୁଣି ଯେଉଁ ଯେଉଁଠାରେ ଭଗବାନ୍ ଯେକୌଣସି ସାଧନା ସମ୍ବନ୍ଧରେ ଉପଦେଶ ଦେଇଛନ୍ତି, ସେଠାରେ ଉକ୍ତ ସାଧନା କରିବାପାଇଁ କୌଣସି ଏକ ବିଶେଷ ବର୍ଣ୍ଣ, ଆଶ୍ରମ ବା ଜାତିର ହିଁ ଅଧିକାର ଅଛି ଏବଂ ଏଥିପାଇଁ ଅନ୍ୟମାନଙ୍କର ଅଧିକାର ନାହିଁ ବୋଲି କହି ନାହାନ୍ତି।

ତଥାପି ସ୍ମରଣ ରଖିବା ଉଚିତ ଯେ, ସମସ୍ତ କର୍ମ ସମସ୍ତ ମନୁଷ୍ୟଙ୍କ ପାଇଁ ଉପଯୋଗୀ ନୁହେଁ। ସେଥିପାଇଁ ଭଗବାନ୍ ବର୍ଣ୍ଣଧର୍ମ ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି। ଯେଉଁ ବର୍ଣ୍ଣପାଇଁ ଯେଉଁ କର୍ମ ବିହିତ, ତାହାପାଇଁ ହିଁ ସେହି କର୍ମ କର୍ତ୍ତବ୍ୟ; ଅନ୍ୟ ବର୍ଣ୍ଣଙ୍କ ପାଇଁ ନୁହେଁ। ଏହି କଥା ଧ୍ୟାନରେ ରଖି ହିଁ କର୍ମ କରିବା ଉଚିତ। ଏପରି ବର୍ଣ୍ଣଧର୍ମଦ୍ୱାରା ନିୟତ କର୍ତ୍ତବ୍ୟ କର୍ମକୁ ମନୁଷ୍ୟମାତ୍ରେ ନିଜ ନିଜର ଅଧିକାର ଓ ରୁଚି ଅନୁକୂଳ କରିପାରିବେ। ବର୍ଣ୍ଣଧର୍ମର ଅତିରିକ୍ତ ମାନବମାତ୍ରପାଇଁ ପାଳନୀୟ ସଦାଚାର, ଭକ୍ତି ଆଦି ସାଧନା ସମସ୍ତେ କରିପାରିବେ।

କେତେକ ଲୋକ ଏପରି ମନେ କରନ୍ତି ଯେ, ସାଂଖ୍ୟଯୋଗ ସାଧନାରେ କେବଳ ସନ୍ନ୍ୟାସୀମାନଙ୍କର ଅଧିକାର

ରହିଛି; ଅନ୍ୟ ଆଶ୍ରମୀମାନଙ୍କର ନାହିଁ । ଏହା ମଧ୍ୟ ଯୁକ୍ତିସଙ୍ଗତ ବୋଲି ମନେ ହୁଏନା । ଭଗବାନ୍ ସାଂଖ୍ୟ ଦୃଷ୍ଟିରେ ବି ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି (୨/୧୮) । ଭଗବାନ୍ ଯଦି କେବଳ ସନ୍ନ୍ୟାସୀମାନଙ୍କୁ ସାଂଖ୍ୟଯୋଗର ଅଧିକାରୀ ବୋଲି ମାନିଥାନ୍ତେ, ତେବେ ଅର୍ଜୁନଙ୍କୁ ଏହି ଦୃଷ୍ଟିରୁ ଯୁଦ୍ଧ କରିବାକୁ କଦାପି ଆଜ୍ଞା ଦେଇ ନ ଥାନ୍ତେ । କାରଣ ଯୁଦ୍ଧରୂପୀ ଘୋର କର୍ମର କଥା ବା କ'ଣ କହିବା ସନ୍ନ୍ୟାସ ଆଶ୍ରମରେ କର୍ମ- ମାତ୍ରକେ ତ୍ୟାଗ କରିବାକୁ କୁହାଯାଇଛି; ପୁଣି ଅର୍ଜୁନ ତ ସନ୍ନ୍ୟାସୀ ନ ଥିଲେ । ତାଙ୍କୁ ଭଗବାନ୍ ଜ୍ଞାନୀମାନଙ୍କ ପାଖକୁ ଯାଇ ଜ୍ଞାନ ଶିକ୍ଷା କରିବାକୁ କହିଛନ୍ତି (୪/୩୪) ।

ଏହାଛଡ଼ା ତୃତୀୟ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ଭଗବାନ୍ କେବଳ ସ୍ୱରୂପତଃ କର୍ମତ୍ୟାଗରେ ସାଂଖ୍ୟଯୋଗର ସିଦ୍ଧି ମିଳେ ନାହିଁ ବୋଲି କହିଛନ୍ତି । ଯଦି କେବଳ ସନ୍ନ୍ୟାସୀମାନେ ହିଁ ସାଂଖ୍ୟଯୋଗର ଅଧିକାରୀ ବୋଲି ଭଗବାନ୍ ମାନୁଥାନ୍ତେ, ତେବେ ସାଂଖ୍ୟଯୋଗପାଇଁ କର୍ମମାତ୍ରକେ ତ୍ୟାଗ କରିବା ଆବଶ୍ୟକ ବୋଲି କହିଥାନ୍ତେ ଏବଂ କହି ନ ଥାନ୍ତେ ଯେ, କେବଳ ସ୍ୱରୂପତଃ କର୍ମତ୍ୟାଗ କରିଦେଲେ ସାଂଖ୍ୟଯୋଗର ସିଦ୍ଧି ହୋଇଯାଏ ନାହିଁ । କେବଳ ସେତିକି ନୁହେଁ; ୧୩/ ୭ ରୁ ୧୧ ଶ୍ଳୋକରେ, ଯେଉଁଠାରେ ଜ୍ଞାନସାଧନା କଥା କୁହାଯାଇଛି, ସେଠାରେ ସ୍ତ୍ରୀ, ପୁତ୍ର, ଧନ, ଗୃହ, ସମ୍ପଦ ଆଦିରେ ଆସକ୍ତି ଏବଂ ମମତ୍ୱତ୍ୟାଗକୁ ଏକ ସାଧନା ବୋଲି କୁହାଯାଇଛି ।

ଯଥା : **'ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାରଗୃହାଦିଷୁ'** ।

ସ୍ତ୍ରୀ, ପୁତ୍ର, ଧନ, ଗୃହ ଆଦି ସହିତ ସ୍ୱରୂପତଃ ସମ୍ବନ୍ଧ ରହିଥିଲେ ହିଁ ସେମାନଙ୍କ ପ୍ରତି ଆସକ୍ତି ଓ ମମତ୍ୱ-ତ୍ୟାଗର କଥା କୁହାଯାଇପାରନ୍ତା । ସନ୍ନ୍ୟାସ ଆଶ୍ରମରେ ଏସବୁ ସ୍ୱଭାବତଃ ତ୍ୟାଗ କରାଯାଇଥାଏ; ଏପରି ଅବସ୍ଥାରେ ଯଦି ସନ୍ନ୍ୟାସୀମାନଙ୍କର ହିଁ ଜ୍ଞାନଯୋଗରେ ସାଧନା କରିବାର ଅଧିକାର ଥାଆନ୍ତା, ତେବେ ସେମାନଙ୍କ ପାଇଁ ଏସବୁ ପ୍ରତି ଆସକ୍ତି ଓ ମମତ୍ୱ-ତ୍ୟାଗର କଥା କହିବା ଅନାବଶ୍ୟକ ଥିଲା ।

ତୃତୀୟ କଥା ହେଲା, ଅଠର ଅଧ୍ୟାୟରେ ଅର୍ଜୁନ ଯେଉଁଠାରେ ସନ୍ନ୍ୟାସ ଏବଂ ତ୍ୟାଗ ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି, ସେଠାରେ ଭଗବାନ୍ ସନ୍ନ୍ୟାସ ସ୍ଥାନରେ ସାଂଖ୍ୟଯୋଗର ହିଁ ବର୍ଣ୍ଣନା କରିଛନ୍ତି (୧୮/୧୩ ରୁ ୪୦); କୌଣସିଠାରେ ବି ସନ୍ନ୍ୟାସ ଆଶ୍ରମର ଉଲ୍ଲେଖ ନାହିଁ । ଯଦି ଭଗବାନଙ୍କୁ 'ସନ୍ନ୍ୟାସ' ଶବ୍ଦରୁ ସନ୍ନ୍ୟାସ ଆଶ୍ରମ ଅଭିପ୍ରେତ ହୋଇଥାଆନ୍ତା ଅଥବା ସେ ଯଦି କେବଳ ସନ୍ନ୍ୟାସୀମାନଙ୍କୁ ସାଂଖ୍ୟଯୋଗର ଅଧିକାରୀ ବୋଲି ମାନିଥାନ୍ତେ, ତେବେ ଏହି ପ୍ରସଙ୍ଗରେ ନିଶ୍ଚିତଭାବରେ ଏହା ସ୍ପଷ୍ଟଶବ୍ଦରେ ଉଲ୍ଲେଖ କରିଥାନ୍ତେ । ଏହିସବୁ କଥାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସାଂଖ୍ୟଯୋଗରେ କି ସନ୍ନ୍ୟାସୀ, କି ଗୃହସ୍ଥ ସମସ୍ତଙ୍କର ସମାନରୂପରେ ଅଧିକାର ଅଛି । ହଁ, ଏତିକି କଥା ଅବଶ୍ୟ କୁହାଯାଇପାରେ ଯେ, ସାଂଖ୍ୟଯୋଗ ସାଧନା କରିବା-ନିମିତ୍ତ ସନ୍ନ୍ୟାସ ଆଶ୍ରମରେ ଅନେକ ସୁବିଧା ରହିଛି; ଏହି ଦୃଷ୍ଟିରୁ ଏହି ଆଶ୍ରମକୁ ଗୃହସ୍ଥାଶ୍ରମ ଅପେକ୍ଷା ସାଂଖ୍ୟଯୋଗର ସାଧନାପାଇଁ ଅଧିକ ଉପଯୁକ୍ତ ବୋଲି କହିପାରନ୍ତି ।

କର୍ମଯୋଗ ସାଧନାରେ କର୍ମର ପ୍ରାଧାନ୍ୟ ରହିଛି ଏବଂ ସ୍ୱବର୍ଣ୍ଣୋଚିତ ବିହିତ କର୍ମ କରିବା ଉଚିତ ବୋଲି ବିଶେଷରୂପରେ ଆଜ୍ଞା ଦିଆଯାଇଛି (୩/୮; ୧୮/୪୫,୪୬); ବରଂ କର୍ମମାତ୍ରକେ ତ୍ୟାଗ କରିବାକୁ ଏହି ଯୋଗରେ ବାଧକ ବୋଲି କୁହାଯାଇଛି (୩/୪) । ତେଣୁ ସନ୍ନ୍ୟାସ ଆଶ୍ରମରେ କର୍ମପ୍ରଧାନ କର୍ମଯୋଗ ଆଚରିତ ହୋଇପାରେ ନାହିଁ; କାରଣ ସେଠାରେ ଦ୍ରବ୍ୟ ଏବଂ ଯଜ୍ଞଦାନାଦି କର୍ମ ସମ୍ପୂର୍ଣ୍ଣ ତ୍ୟାଗ କରାଯାଏ; କିନ୍ତୁ ସବୁ ଆଶ୍ରମରେ ଭଗବାନଙ୍କୁ ଭକ୍ତି କରାଯାଇପାରେ, ଏଣୁ ଭକ୍ତିପ୍ରଧାନ କର୍ମଯୋଗ ସବୁ ଆଶ୍ରମରେ ହୋଇପାରିବ ।

କିଛି ଲୋକଙ୍କ ମଧ୍ୟରେ ଭ୍ରମ ବ୍ୟାପିଯାଇଛି ଯେ, ଗୀତା ହେଉଛି ସାଧୁସନ୍ନ୍ୟାସୀମାନଙ୍କ ସାଧନାର ବିଷୟ; ଏହା ଗୃହସ୍ଥଙ୍କ ପାଇଁ ନୁହେଁ; ତେଣୁ କାଳେ ପୁଅ ଗୃହସ୍ଥାଶ୍ରମ ତ୍ୟାଗ କରିଦେବ, ଏହି ଭୟରେ ସେମାନେ ବାଳକମାନଙ୍କୁ ପ୍ରାୟ ଗୀତା ପଢ଼ିବାକୁ ଦିଅନ୍ତି ନାହିଁ । କିନ୍ତୁ ସେମାନଙ୍କର ଏପରି ବୁଝିବା ପୂରାପୂରି ଭୁଲ; ଏହା ଉପରଲିଖିତ ଆଲୋଚନାରୁ ସ୍ପଷ୍ଟ ହୋଇଯାଏ । ମୋହହେତୁ ନିଜର କ୍ଷାତ୍ରଧର୍ମରେ ବିମୁଖ ହୋଇ ଅର୍ଜୁନ ଭିକ୍ଷା ଅନ୍ନରେ ଜୀବନ ନିର୍ବାହ କରିବାପାଇଁ ଉଦ୍ୟତ ହେଉଥିବାବେଳେ ଯେଉଁ ପରମ ରହସ୍ୟମୟ ଗୀତା-ଉପଦେଶ ଶୁଣି ଆଜୀବନ ଗୃହସ୍ଥାଶ୍ରମରେ ରହି, ନିଜର କର୍ତ୍ତବ୍ୟ ପାଳନ କରିଥିଲେ, ସେହି ଗୀତାଶାସ୍ତ୍ରର ବିପରୀତ ପରିଣାମ କିପରି ହୋଇପାରେ ! କେବଳ ସେତିକି ନୁହେଁ; ଗୀତାର ଉପଦେଷ୍ଟା ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଯେପର୍ଯ୍ୟନ୍ତ ଏହି ଧରାଧାମରେ ଅବତାରରୂପରେ ରହିଥିଲେ, ସେପର୍ଯ୍ୟନ୍ତ ସେ ନିରନ୍ତର କର୍ମ କରୁଥିଲେ; ସାଧୁମାନଙ୍କୁ ରକ୍ଷା କରୁଥିଲେ; ଦୁଷ୍ଟଙ୍କୁ ସଂହାର କରି ସନ୍ଥଙ୍କୁ ଉଦ୍ଧାର କରୁଥିଲେ ଏବଂ ଧର୍ମ ସ୍ଥାପନା କରୁଥିଲେ । କେବଳ ସେତିକି ନୁହେଁ; ସେ ଏହା ମଧ୍ୟ କହିଥିଲେ ଯେ, ଯଦି ସେ ସାବଧାନ ହୋଇ କର୍ମ ନ କରନ୍ତି, ତେବେ ଲୋକେ ତାଙ୍କର ଦେଖାଦେଖି କର୍ମତ୍ୟାଗ କରି ଅବସନ୍ନ ହୋଇଯିବେ ଏବଂ ଏହିପରିଭାବରେ ଲୋକମର୍ଯ୍ୟାଦା ଛିନ୍ନଭିନ୍ନ

ହେବାର ଦାୟିତ୍ୱ ତାଙ୍କ ଉପରକୁ ଆସିଯିବ (୩/୨୩,୨୪) । ଏହାର ଅର୍ଥ ନୁହେଁ ଯେ, ଗୀତା ସନ୍ନ୍ୟାସୀମାନଙ୍କ ପାଇଁ ନୁହେଁ; ଗୀତା ସମସ୍ତ ବର୍ଣ୍ଣାଶ୍ରମ ବ୍ୟକ୍ତିମାନଙ୍କ ପାଇଁ । ସମସ୍ତେ ନିଜ ନିଜର ବର୍ଣ୍ଣାଶ୍ରମକର୍ମ କରି ସାଂଖ୍ୟ ବା ଯୋଗ– ଦୁଇଟି ମଧ୍ୟରୁ ଯେକୌଣସି ଗୋଟିକୁ ନିଷ୍ଠାର ସହିତ ଅଧିକାର ଅନୁସାରେ ସାଧନା କରିପାରିବେ ।

## ଗୀତାରେ ଭକ୍ତି

ଗୀତାରେ ଭକ୍ତି, ଜ୍ଞାନ, କର୍ମ– ସବୁ ବିଷୟରେ ବିଶଦରୂପରେ ବିବେଚନା କରାଯାଇଛି । ସବୁ ମାର୍ଗରେ ଚାଲୁଥିବା ଲୋକମାନଙ୍କୁ ଏଥିରୁ ଯଥେଷ୍ଟ ସାମଗ୍ରୀ ମିଳିପାରିବ । କିନ୍ତୁ ଅର୍ଜୁନ ଭଗବାନଙ୍କର ଭକ୍ତ ଥିଲେ । ତେଣୁ ସବୁ ବିଷୟ ପ୍ରତିପାଦନ କରିସାରି ଯେଉଁଠାରେ ଭଗବାନ୍ ଅର୍ଜୁନଙ୍କୁ ସ୍ୱୟଂ ଆଚରଣ କରିବାକୁ ଆଜ୍ଞା ଦେଇଛନ୍ତି, ସେଠାରେ ଭଗବାନ୍ ପ୍ରାୟ ଭକ୍ତିପ୍ରଧାନ କର୍ମଯୋଗର ଉପଦେଶ ହିଁ ଦେଇଛନ୍ତି (୩/୩୦; ୮/୭; ୧୨/୮; ୧୮/୫୭, ୬୨, ୬୫, ୬୬) । କୌଣସି କୌଣସିଠାରେ ସେ କେବଳ କର୍ମ କରିବାକୁ ଆଜ୍ଞା ଦେଇଛନ୍ତି (୨/୪୮, ୫୦; ୩/୮, ୯,୧୯; ୪/୪୨; ୬/୪୬; ୧୧/୩୩,୩୪), କିନ୍ତୁ ତା' ସହିତ ଅନ୍ୟସ୍ଥଳରୁ ବି ନେଇ ଭକ୍ତିର ଅଧ୍ୟାହାର କରିନେବା ଉଚିତ । ଚତୁର୍ଥ ଅଧ୍ୟାୟରେ ଚଉତିରିଶ ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ଜ୍ଞାନୀମାନଙ୍କ ପାଖକୁ ଯାଇ ଜ୍ଞାନ ଶିକ୍ଷା କର ବୋଲି ଆଜ୍ଞା ଦେଇଛନ୍ତି, କିନ୍ତୁ ତାହା ଦେଇଛନ୍ତି ଜ୍ଞାନ ପ୍ରାପ୍ତି କରିବାର ପ୍ରଣାଳୀ କହିଦେବାପାଇଁ ଏବଂ ଅର୍ଜୁନଙ୍କୁ ଚେତାବନୀ ଦେବାପାଇଁ । ବାସ୍ତବରେ ଅର୍ଜୁନଙ୍କୁ ଜ୍ଞାନ ଶିଖିବାକୁ ଅନ୍ୟ କୌଣସି ଜ୍ଞାନୀଙ୍କ ପାଖକୁ ପଠାଇବା ଭଗବାନଙ୍କର ଅଭିପ୍ରାୟ ନ ଥିଲା ଏବଂ ଅର୍ଜୁନ ମଧ୍ୟ ଏହି ପ୍ରକ୍ରିୟାରେ କୌଣସି ଜ୍ଞାନ ଶିଖି ନ ଥିଲେ । ଉପକ୍ରମ-ଉପସଂହାର ଦେଖିଲେ ଶରଣାଗତିରେ ହିଁ ଗୀତାର ପର୍ଯ୍ୟବସାନ ହୋଇଛି ବୋଲି ପ୍ରତୀତ ହେଉଛି । ଏହି କଥାଟି ତ ଗୀତାର ଉପଦେଶ **ଅଶୋଚ୍ୟାନନ୍ୱଶୋଚସ୍ତ୍ୱମ୍** (୨/୧୧) ଏହି ଶ୍ଳୋକରେ ପ୍ରାରମ୍ଭ ହୋଇଛି, କିନ୍ତୁ ଉପକ୍ରମର ବୀଜ ଅର୍ଜୁନଙ୍କର ଭକ୍ତି **କାର୍ପଣ୍ୟଦୋଷୋପହତସ୍ୱଭାବଃ** (୨/୭)ରେ ରହିଛି; ଏଥିରେ **'ପ୍ରପନ୍ନମ୍'** ପଦରେ ଶରଣାଗତିର ଭାବ ସ୍ପଷ୍ଟ ହୋଇଯାଇଛି । ତେଣୁ **ସର୍ବଧର୍ମାନ୍ ପରିତ୍ୟଜ୍ୟ** (୧୮/୬୬) ଶ୍ଳୋକରେ ଭଗବାନ୍ ଶରଣାଗତିରେ ହିଁ ନିଜ ଉପଦେଶର ଉପସଂହାର କରିଛନ୍ତି ।

ଗୀତାରେ ଏପରି କୌଣସି ବି ଅଧ୍ୟାୟ ନାହିଁ, ଯେଉଁଥିରେ କି କୌଣସି ନା କୌଣସିଠାରେ ଭକ୍ତିର ପ୍ରସଙ୍ଗ ଆସେ ନାହିଁ । ଉଦାହରଣ ସ୍ୱରୂପ ଦ୍ୱିତୀୟ ଅଧ୍ୟାୟର ଏକଷଠି, ତୃତୀୟ ଅଧ୍ୟାୟର ତିରିଶ, ଚତୁର୍ଥ ଅଧ୍ୟାୟର ଏଗାର, ପଞ୍ଚମ ଅଧ୍ୟାୟର ଅଣତିରିଶ, ଷଷ୍ଠ ଅଧ୍ୟାୟର ସତଚାଳିଶ, ସପ୍ତମ ଅଧ୍ୟାୟର ଚଉଦ, ଅଷ୍ଟମ ଅଧ୍ୟାୟର ଚଉଦ, ନବମ ଅଧ୍ୟାୟର ଚଉତିରିଶ, ଦଶମ ଅଧ୍ୟାୟର ନବମ, ଏଗାର ଅଧ୍ୟାୟର ଚଉବନ, ବାର ଅଧ୍ୟାୟର ଦ୍ୱିତୀୟ, ତେର ଅଧ୍ୟାୟର ଦଶମ, ଚଉଦ ଅଧ୍ୟାୟର ଛବିଶ, ପନ୍ଦର ଅଧ୍ୟାୟର ଊଣେଇଶ, ଷୋହଳ ଅଧ୍ୟାୟର ପ୍ରଥମ (ଯେଉଁଥିରେ **ଜ୍ଞାନଯୋଗବ୍ୟବସ୍ଥିତିଃ** ପଦଦ୍ୱାରା ଭଗବାନ୍ ଧ୍ୟାନ କଥା କହିଛନ୍ତି), ସତର ଅଧ୍ୟାୟର ସତେଇଶ ଏବଂ ଅଠର ଅଧ୍ୟାୟର ଛଅଷଠିତମ ଶ୍ଳୋକରେ ଏହା ଦେଖିବା ଉଚିତ । ଏହିପରି ପ୍ରତ୍ୟେକ ଅଧ୍ୟାୟରେ ଭକ୍ତିର ପ୍ରସଙ୍ଗ ଆସିଛି । ସପ୍ତମ ଅଧ୍ୟାୟରୁ ଦ୍ୱାଦଶ ଅଧ୍ୟାୟପର୍ଯ୍ୟନ୍ତ ଭକ୍ତିଯୋଗର ପ୍ରକରଣ ହିଁ ପରିପୂର୍ଣ୍ଣ ହୋଇ ରହିଛି । ତେଣୁ ଏହି ଛ' ଅଧ୍ୟାୟକୁ ଭକ୍ତିପ୍ରଧାନ ମନେ କରାଯାଏ । ଉଦାହରଣପାଇଁ ଏଠାରେ ପ୍ରତ୍ୟେକ ଅଧ୍ୟାୟର କେବଳ ଗୋଟିଏ ଗୋଟିଏ ଶ୍ଳୋକର ସଂଖ୍ୟା ଉଲ୍ଲେଖ କରାଯାଇଛି ।

ଏହିପରି ଦେଖିଲେ ଜ୍ଞାନପରକ ଶ୍ଳୋକ ମଧ୍ୟ ଗୀତାର ବହୁତ ଅଧ୍ୟାୟରେ ମିଳେ । ଉଦାହରଣ ନିମିତ୍ତ ଦ୍ୱିତୀୟ ଅଧ୍ୟାୟର ଅଣତିରିଶ, ତୃତୀୟ ଅଧ୍ୟାୟର ଅଠେଇଶ, ଚତୁର୍ଥର ଚବିଶ, ପଞ୍ଚମର ତେର, ଷଷ୍ଠର ଅଣତିରିଶ, ଅଷ୍ଟମର ତେର, ନବମର ପନ୍ଦର, ବାର ଅଧ୍ୟାୟର ତୃତୀୟ, ତେରର ଚଉତିରିଶ, ଚଉଦର ଊଣେଇଶ ଏବଂ ଅଠର ଅଧ୍ୟାୟର ଅଣଚାଶ ଶ୍ଳୋକ ଦେଖିବା ଉଚିତ । ଏଗୁଡ଼ିକ ମଧ୍ୟରେ ବି ଦ୍ୱିତୀୟ, ପଞ୍ଚମ, ତେର, ଚଉଦ ଅଧ୍ୟାୟରେ ଓ ଅଠର ଅଧ୍ୟାୟରେ ଜ୍ଞାନପରକ ଶ୍ଳୋକ ବହୁ ସଂଖ୍ୟାରେ ମିଳେ ।

ଗୀତାରେ ଭକ୍ତି ଓ ଜ୍ଞାନର ରହସ୍ୟ ଯେପରି ଭଲଭାବରେ ଖୋଲିଦିଆଯାଇଛି, କର୍ମର ରହସ୍ୟ ମଧ୍ୟ ସେହିପରିଭାବରେ ଖୋଲିଦିଆଯାଇଛି । ଦ୍ୱିତୀୟ ଅଧ୍ୟାୟର ଅଣଚାଳିଶ ଶ୍ଳୋକଠାରୁ ତେପନ ଶ୍ଳୋକପର୍ଯ୍ୟନ୍ତ, ତୃତୀୟ ଅଧ୍ୟାୟର ଚତୁର୍ଥ ଶ୍ଳୋକଠାରୁ ପଞ୍ଚତିରିଶ ଶ୍ଳୋକପର୍ଯ୍ୟନ୍ତ, ଚତୁର୍ଥ ଅଧ୍ୟାୟର ତେର ଶ୍ଳୋକଠାରୁ ବତିଶ ଶ୍ଳୋକପର୍ଯ୍ୟନ୍ତ, ପଞ୍ଚମ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକଠାରୁ ସପ୍ତମ ଶ୍ଳୋକପର୍ଯ୍ୟନ୍ତ ତଥା ଷଷ୍ଠ ଅଧ୍ୟାୟର ପ୍ରଥମରୁ ଚତୁର୍ଥ ଶ୍ଳୋକପର୍ଯ୍ୟନ୍ତ କର୍ମର ରହସ୍ୟ ପୂର୍ଣ୍ଣରୂପରେ ଭରି ହୋଇ ରହିଛି । ଏମାନଙ୍କ ମଧ୍ୟରୁ ବି ଦ୍ୱିତୀୟ

ଅଧ୍ୟାୟର ସତଚାଳିଶ ତଥା ଚତୁର୍ଥ ଅଧ୍ୟାୟର ଷୋହଳଠାରୁ ଅଠର ଶ୍ଳୋକପର୍ଯ୍ୟନ୍ତ କର୍ମର ରହସ୍ୟ ବିଶେଷରୂପରେ ବିବେଚନା କରାଯାଇଛି । ଏହା ବ୍ୟତୀତ ଅନ୍ୟ ଅଧ୍ୟାୟମାନଙ୍କରେ ମଧ୍ୟ କର୍ମର ବର୍ଣ୍ଣନା ରହିଛି ।

ସ୍ଥାନସଙ୍କୋଚରୁ ଅଧିକ ପ୍ରମାଣ ଦିଆଯାଇପାରୁ ନାହିଁ । ଏଥିରୁ ଏତିକି ଜଣାଯାଉଛି ଯେ, ଗୀତାରେ କେବଳ ଭକ୍ତିର ବର୍ଣ୍ଣନା ନାହିଁ; ଜ୍ଞାନ, କର୍ମ ଓ ଭକ୍ତି ତିନୋଟିଯାକ ସମ୍ୟକ୍‌ରୂପେ ପ୍ରତିପାଦିତ ହୋଇଛି ।

## ସଗୁଣ-ନିର୍ଗୁଣ ଉପାସନା ଏବଂ ତତ୍ତ୍ୱ

ଉପରେ ଯାହାସବୁ ଆଲୋଚିତ ହୋଇଛି, ସେଥିରେ କୁହାଯାଇଛି ଯେ, ପରମାତ୍ମାଙ୍କର ଉପାସନା ଭେଦଦୃଷ୍ଟିରେ କରାଯାଉ, କି ଅଭେଦ ଦୃଷ୍ଟିରେ କରାଯାଉ, ଦୁହିଁଙ୍କର ଫଳ ଏକ । ପ୍ରଶ୍ନ ଉଠୁଛି, ଏହା କିପରି ସମ୍ଭବ ? କାରଣ ଭେଦ-ଉପାସକଙ୍କୁ ଭଗବାନ୍ ସାକାରରୂପରେ ଦର୍ଶନ ଦିଅନ୍ତି ଏବଂ ଏହି ଶରୀର ଛାଡିବା ପରେ ସେମାନେ ତାଙ୍କର ପରମଧାମକୁ ଚାଲିଯାଆନ୍ତି ଏବଂ ଅଭେଦ-ଉପାସକ ସ୍ୱୟଂ ବ୍ରହ୍ମରୂପ ହୋଇଯାଆନ୍ତି । ସେ କେଉଁଠାକୁ ଯାଆନ୍ତି ନାହିଁ, କି ଆସନ୍ତି ନାହିଁ । ଏହାର ଉତ୍ତରରେ ଏତିକି କୁହାଯାଇପାରେ ଯେ, ଉପରେ ଯାହା କୁହାଗଲା, ତାହା ଠିକ୍ ଏବଂ ପ୍ରଶ୍ନକର୍ତ୍ତା ଯାହା କହିଛନ୍ତି, ତାହା ମଧ୍ୟ ଠିକ୍ । ଦୁହିଁଙ୍କ କଥାର ସମନ୍ୱୟ କିପରି ହେବ, ତାହା ଏଠାରେ ବିଚାର କରାଯାଉଛି ।

ସାଧନାକାଳରେ ସାଧକ ଯେଉଁପରି ଭାବ ଓ ଶ୍ରଦ୍ଧାରେ ଭାବିତ ହୋଇ ପରମାତ୍ମାଙ୍କର ଉପାସନା କରନ୍ତି, ତାଙ୍କର ସେହି ଭାବ ଅନୁସାରେ ପରମାତ୍ମପ୍ରାପ୍ତି ହୁଏ । ଯେ ଅଭେଦରୂପରେ ଅର୍ଥାତ୍ ନିଜକୁ ପରମାତ୍ମାଙ୍କ ଠାରୁ ଅଭିନ୍ନ ମାନି ପରମାତ୍ମାଙ୍କୁ ଉପାସନା କରନ୍ତି, ତାଙ୍କୁ ଅଭେଦରୂପରେ ପରମାତ୍ମପ୍ରାପ୍ତି ହୁଏ ଏବଂ ଯେ ଭେଦରୂପରେ ଭଜନ କରନ୍ତି ତାଙ୍କୁ ଭେଦରୂପରେ ସେ ଦର୍ଶନ ଦିଅନ୍ତି । ସାଧକଙ୍କର ସଙ୍କଳ୍ପ ଅନୁସାରେ ପରମାତ୍ମା ଭିନ୍ନ ଭିନ୍ନରୂପରେ ସମସ୍ତ ଲୋକଙ୍କୁ ମିଳନ୍ତି ।

ଭେଦ ଉପାସନା ତଥା ଅଭେଦ ଉପାସନା- ଉଭୟ ଉପାସନା ଭଗବାନ୍‌ଙ୍କର ଉପାସନା । କାରଣ ପରମାତ୍ମା ସଗୁଣ-ନିର୍ଗୁଣ, ସାକାର-ନିରାକାର, ବ୍ୟକ୍ତ-ଅବ୍ୟକ୍ତ ସବୁକିଛି ଅଟନ୍ତି । ଯେଉଁମାନେ ପରମାତ୍ମାଙ୍କୁ ନିର୍ଗୁଣ-ନିରାକାର ବୋଲି ବୁଝନ୍ତି, ସେମାନଙ୍କ ପାଇଁ ଭଗବାନ୍ ନିର୍ଗୁଣ-ନିରାକାର (୧୨/୩) । ଯେଉଁମାନେ ତାଙ୍କୁ ସଗୁଣ-ନିରାକାର ବୋଲି ମାନନ୍ତି, ସେମାନଙ୍କ ପାଇଁ ଭଗବାନ୍ ସଗୁଣ-ନିରାକାର (୮/୯) । ଯେଉଁମାନେ ତାଙ୍କୁ ସର୍ବଶକ୍ତିମାନ୍, ସର୍ବାଧାର, ସର୍ବବ୍ୟାପୀ, ସର୍ବୋତ୍ତମ ଅର୍ଥାତ୍ ସବୁପ୍ରକାର ଉତ୍ତମ ଗୁଣରେ ଯୁକ୍ତ ବୋଲି ମାନନ୍ତି, ସେମାନଙ୍କ ପାଇଁ ଭଗବାନ୍ ସର୍ବସଦ୍‌ଗୁଣସମ୍ପନ୍ନ (୧୫/୧୫, ୧୭, ୧୯)* । ଯେଉଁମାନେ ତାଙ୍କୁ ସର୍ବରୂପ ବୋଲି ମାନନ୍ତି, ସେ ତାଙ୍କ ପାଇଁ ସର୍ବରୂପ ଅଟନ୍ତି (୭/୭-୧୨, ୯/୧୬ - ୧୯) । ଯେଉଁମାନେ ତାଙ୍କୁ ସଗୁଣ-ସାକାର ବୋଲି ମାନନ୍ତି, ସେମାନଙ୍କ ପାଇଁ ସେ ସଗୁଣ-ସାକାରରୂପରେ ପ୍ରକଟ ହୁଅନ୍ତି (୪/୮; ୯/୨୬) ।

ଉପରେ ଯାହାକିଛି କୁହାଗଲା, ସେସବୁ ଠିକ୍; ତଥାପି ଏଥିରେ ପ୍ରଶ୍ନକର୍ତ୍ତାଙ୍କର ମୂଳ ଶଙ୍କାର ସମାଧାନ ହୋଇ ନାହିଁ; ଏହା ଯେପରିକୁ ସେପରି ହୋଇ ରହିଯାଉଛି । ଶଙ୍କା ଥିଲା ଯେ, ଯଦି ଭଗବାନ୍ ବିଭିନ୍ନ ନିଷ୍ଠାର ସାଧକଙ୍କୁ ବିଭିନ୍ନରୂପରେ ମିଳନ୍ତି, ତେବେ ସମସ୍ତେ ଏକାଫଳ କିପରି ପାଆନ୍ତି ? ଏହାର ଉତ୍ତର ହେଲା : ପ୍ରଥମେ ପରମାତ୍ମା ସାଧକଙ୍କୁ ନିଜର ଭାବ ଅନୁସାରେ ମିଳନ୍ତି; ଏହାପରେ ଭଗବାନଙ୍କର ଯେଉଁ ଯଥାର୍ଥ ତତ୍ତ୍ୱ ଉପଲବ୍ଧି ହୁଏ, ତାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ; ତାହା ଭାଷାରେ ମଧ୍ୟ କୁହାଯାଇପାରିବ ନାହିଁ । ଭେଦ ଅଥବା ଅଭେଦରୂପରେ ଭଗବାନଙ୍କର ଯେତେପ୍ରକାର ଉପାସନା ହୁଏ, ସେସବୁର ଅନ୍ତିମ ଫଳ ଏକ ହୁଏ । ଏହି କଥାକୁ ସ୍ପଷ୍ଟ କରିବାନିମିତ୍ତ ଭଗବାନ୍ ଅଭେଦ-ଉପାସକଙ୍କୁ ନିଜର ପ୍ରାପ୍ତି କଥା କହିଛନ୍ତି । (୧୨/୪; ୧୪/୧୯; ୧୮/୫୫) ଏବଂ ଭେଦ- ଉପାସକଙ୍କ ପାଇଁ କହିଛନ୍ତି ଯେ, ସେ ବ୍ରହ୍ମକୁ ପ୍ରାପ୍ତି କରନ୍ତି (୧୪/୨୬), ଶାଶ୍ୱତୀ ଶାନ୍ତି ପ୍ରାପ୍ତି କରନ୍ତି (୯/୩୧), ବ୍ରହ୍ମକୁ ଜାଣିଯାଆନ୍ତି (୭/୨୯) ଅବିନାଶୀ ଶାଶ୍ୱତପଦ ପ୍ରାପ୍ତି କରନ୍ତି (୧୮/୫୬) ଇତ୍ୟାଦି ଇତ୍ୟାଦି । ଅଭେଦ-ଉପାସନା ଓ ଭେଦ-ଉପାସନା ଉଭୟ ଉପାସନାର ଫଳ ଏକ ହୁଏ -- ଏହି କଥାଟି ପ୍ରତି ଦୃଷ୍ଟି ଆକର୍ଷଣ କରାଇବାପାଇଁ ଭଗବାନ୍ ଗୋଟିଏ କଥାକୁ ଭିନ୍ନ ଭିନ୍ନ ରୂପ ଦେଇ ବିଭିନ୍ନପ୍ରକାରେ କହିଛନ୍ତି ।

* ଉପରୋକ୍ତ ଶ୍ଳୋକମାନଙ୍କରେ ଭଗବାନ୍‌ଙ୍କର ଶ୍ରେଷ୍ଠ ଗୁଣଗୁଡିକର ବର୍ଣ୍ଣନା ହୋଇଛି । ଅତଏବ (୧୫/୧୫)ରେ ଆମେ 'ଅପୋହନ' ଶବ୍ଦର ଅର୍ଥ ଜ୍ଞାନ ଓ ସ୍ମୃତିନାଶ ବୋଲି ନ ନେଇ ସଂଶୟ-ବିପର୍ଯ୍ୟୟନାଶ ବୋଲି ଗ୍ରହଣ କରିଛୁ ।

ଭେଦ-ଉପାସକ ତଥା ଅଭେଦ-ଉପାସକ ଉଭୟଙ୍କ ଦ୍ୱାରା ପ୍ରାପଣୀୟ ବସ୍ତୁ, ଯଥାର୍ଥ ତତ୍ତ୍ୱ ଏକ ହିଁ ଅଟେ । ଏହାକୁ କେଉଁଠି ପରମ ଶାନ୍ତି ତ କେଉଁଠି ଶାଶ୍ୱତ ସ୍ଥାନ ବୋଲି କୁହାଯାଇଛି (୧୮/୬୨); କେଉଁଠି ପରମଧାମ ନାମରେ (୧୫/୬) ତ କେଉଁଠି ଅମୃତ ନାମରେ (୧୩/୧୨), କେଉଁଠି 'ମାମ୍' ପଦରେ (୯/୩୪), କେଉଁଠାରେ ପରମଗତି ନାମରେ (୮/୧୩), କେଉଁଠି ସଂସିଦ୍ଧି ନାମରେ (୧୮/୪୫), କେଉଁଠାରେ ଅବ୍ୟୟପଦ ନାମରେ (୧୫/୫), କେଉଁଠି ବ୍ରହ୍ମନିର୍ବାଣ ନାମରେ (୫/୨୪) ଏବଂ କେଉଁଠି ନିର୍ବାଣପରମା ଶାନ୍ତି ନାମରେ (୬/୧୫) ବ୍ୟକ୍ତ କରାଯାଇଛି । ଏହାଛଡ଼ା ଗୀତାରେ ଆହୁରି କେତେକ ଶବ୍ଦ ବି ଏହି ଅନ୍ତିମ ଫଳ ବ୍ୟକ୍ତ କରିବାପାଇଁ ପ୍ରଯୁକ୍ତ ହୋଇଛି । ଯାହାହେଉ ସେହିସବୁ ବସ୍ତୁ ସାଧନାର ଫଳ, ଏତିକି ଛଡ଼ା ଏହା ବିଷୟରେ ଆଉ କିଛି କୁହାଯାଇ ପାରିବ ନାହିଁ । ଏହା ବାଣୀର ଅବିଷୟ । ଯାହାଙ୍କୁ ଏହି ବସ୍ତୁ ପ୍ରାପ୍ତ ହୋଇଛି, ସେ ତାହା ଜାଣନ୍ତି; କିନ୍ତୁ ସେ ମଧ୍ୟ ତାହା ବର୍ଣ୍ଣନା କରିପାରିବେ ନାହିଁ; ଉପର୍ଯୁକ୍ତ ଶବ୍ଦ ତଥା ଏହିପରି ଅନ୍ୟ ଶବ୍ଦଦ୍ୱାରା ଶାଖାଚନ୍ଦ୍ର-ନ୍ୟାୟରେ ଏହାର ଲକ୍ଷ୍ୟମାତ୍ର କରାଯାଇପାରେ । ଏଣୁ ସବୁ ସାଧନାର ଫଳରୂପ ଯେଉଁ ପରମତତ୍ତ୍ୱ ରହିଛି, ତାହା ଏକ ଅଟେ । ଏହା ହିଁ ଯୁକ୍ତିସଙ୍ଗତ ।

ପରମାତ୍ମାଙ୍କର ଏହି ତାତ୍ତ୍ୱିକ ସ୍ୱରୂପ ଅଲୌକିକ, ପରମ ରହସ୍ୟମୟ, ଗୁହ୍ୟତମ । ଯାହାଙ୍କୁ ଏହା ପ୍ରାପ୍ତ ହୁଏ, ସେ କେବଳ ଏହା ଜାଣନ୍ତି । ତଥାପି ଏହି କଥା ମଧ୍ୟ ତାଙ୍କର ଲକ୍ଷ୍ୟ କରିବା ଉଦ୍ଦେଶ୍ୟରେ କୁହାଯାଇଛି । ଯୁକ୍ତି ଦେଇ ବିଚାର କରି ଦେଖିଲେ, ଏହା ମଧ୍ୟ କହି ହେବ ନାହିଁ ।

## ଗୀତାରେ ସମତ୍ୱ

ଗୀତାରେ ସମତ୍ୱ କଥା ପ୍ରଧାନରୂପରେ ଆସେ । ଭଗବତ୍‌ପ୍ରାପ୍ତିପାଇଁ ସମତ୍ୱ ହିଁ କଷଟି । ଜ୍ଞାନ, କର୍ମ ଏବଂ ଭକ୍ତି ଏହି ତିନୋଟିଯାକ ମାର୍ଗରେ ସାଧନାରୂପରେ ମଧ୍ୟ ସମତ୍ୱର ଆବଶ୍ୟକତା ରହିଛି ବୋଲି କୁହାଯାଇଛି ଏବଂ ତିନି ମାର୍ଗରେ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ମଧ୍ୟ ସମତ୍ୱ ଏକ ଅସାଧାରଣ ଲକ୍ଷଣ ବୋଲି କୁହାଯାଇଛି । ସାଧନା ମଧ୍ୟ ଏହା ବିନା ଅସଂପୂର୍ଣ୍ଣ ହୋଇ ରହିଯିବ; ସିଦ୍ଧି ତ ସବୁବେଳେ ଅପୂର୍ଣ୍ଣ । ଯାହାଠାରେ ସମତ୍ୱ ନାହିଁ; ସେ ବା କି ସିଦ୍ଧ! **'ସମଦୁଃଖସୁଖମ୍'** ପଦରେ ଜ୍ଞାନମାର୍ଗର ସାଧକମାନଙ୍କ ମଧ୍ୟରେ ସମତ୍ୱ ଥିବା ଲୋକଙ୍କୁ ହିଁ ଅମୃତତ୍ୱର ଅର୍ଥାତ୍ ମୁକ୍ତିର ଅଧିକାରୀ ବୋଲି କୁହାଯାଇଛି (୨/୧୫) **'ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ'** କର୍ମଯୋଗର ସାଧକମାନଙ୍କୁ ଏହିପରି ସମତ୍ୱଯୁକ୍ତ ହୋଇ କର୍ମ କରିବାକୁ ଆଜ୍ଞା ଦିଆଯାଇଛି (୨/୪୮) ଏବଂ ଭକ୍ତିମାର୍ଗର ସାଧକଙ୍କୁ ଏହି ଗୁଣ ଧାରଣ କରିବାକୁ କୁହାଯାଇଛି (୧୨/୨୦) । ଗୁଣାତୀତ (ସିଦ୍ଧ ଜ୍ଞାନଯୋଗୀ)ଙ୍କ ଲକ୍ଷଣରେ ମଧ୍ୟ ସମତ୍ୱକୁ ଏହିପରି ପ୍ରାଧାନ୍ୟ ଦେଇ ବର୍ଣ୍ଣନା କରାଯାଇଛି (୧୪/୨୪,୨୫) ଏବଂ ସିଦ୍ଧ କର୍ମଯୋଗୀଙ୍କୁ ସମ ବୋଲି କୁହାଯାଇଛି (୬/୭ରୁ ୯) ତଥା ସିଦ୍ଧ ଭକ୍ତଙ୍କ ଲକ୍ଷଣରେ ମଧ୍ୟ ସମତ୍ୱର ଉଲ୍ଲେଖ କରାଯାଇଛି (୧୨/୧୮,୧୯)

ଏହି ସମତ୍ୱତତ୍ତ୍ୱକୁ ଭଲଭାବରେ ସତତରୂପରେ ବୁଝାଇବାପାଇଁ ଶ୍ରୀଭଗବାନ୍ ଗୀତାରେ ବିଭିନ୍ନପ୍ରକାରେ ସକଳ ପ୍ରାଣୀ, କ୍ରିୟା, ଭାବ ଏବଂ ପଦାର୍ଥରେ ସମତ୍ୱର ବ୍ୟାଖ୍ୟା କରିଛନ୍ତି, ଯଥାଃ-

### ମନୁଷ୍ୟମାନଙ୍କ ମଧ୍ୟରେ ସମତ୍ୱ

**ସୁହୃନ୍ମିତ୍ରାର୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।**
**ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ ।। ୬/୯ ।।**

ସୁହୃଦ୍, ମିତ୍ର, ବୈରୀ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ ଏବଂ ବନ୍ଧୁଗଣଙ୍କ ପ୍ରତି, ତଥା ଧର୍ମାତ୍ମା ଓ ପାପୀମାନଙ୍କ ପ୍ରତି ମଧ୍ୟ ସମାନଭାବ ରଖୁଥିବା ଲୋକ ଅତ୍ୟନ୍ତ ଶ୍ରେଷ୍ଠ ।

### ମନୁଷ୍ୟ ଓ ପଶୁମାନଙ୍କ ପ୍ରତି ସମତ୍ୱ

**ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।। ୫/୧୮ ।।**

ଜ୍ଞାନୀମାନେ ବିଦ୍ୟା-ବିନୟଯୁକ୍ତ ବ୍ରାହ୍ମଣଙ୍କ ଠାରେ ତଥା ଗାଈ, ହାତୀ, କୁକୁର ଏବଂ ଚଣ୍ଡାଳଙ୍କ ଠାରେ ମଧ୍ୟ ସମଦର୍ଶୀ ହୋଇଥାନ୍ତି ।

### ସକଳ ଜୀବଙ୍କ ପ୍ରତି ସମତ୍ୱ

**ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।**
**ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ।। ୬/୩୨।।**

'ହେ ଅର୍ଜୁନ ! ଯେଉଁ ଯୋଗୀ ସମସ୍ତ ଭୂତଙ୍କୁ ନିଜ - ସମାନ ଦେଖନ୍ତି ଏବଂ ସୁଖ ଅଥବା ଦୁଃଖରେ ମଧ୍ୟ ସମସ୍ତଙ୍କ ଠାରେ ସମଦର୍ଶନ କରନ୍ତି, ସେ ହିଁ ପରମ ଶ୍ରେଷ୍ଠ ଯୋଗୀ ବୋଲି ଗଣ୍ୟ ହୁଅନ୍ତି ।'

କେତେକ ସ୍ଥାନରେ ଭଗବାନ୍ ବ୍ୟକ୍ତି, କ୍ରିୟା, ପଦାର୍ଥ

ଓ ଭାବର ସମତ୍ୱକୁ ଏକତ୍ର ବର୍ଣ୍ଣନା କରିଛନ୍ତି । ଯଥା :-

**ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ ।**
**ଶୀତୋଷ୍ଣ ସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ ॥**

**(୧୨/୧୮)**

'ଯେ ଶତ୍ରୁ ଓ ମିତ୍ରଙ୍କ ଠାରେ ଏବଂ ମାନ-ଅପମାନରେ ସମାନ ତଥା ଶୀତ-ଉଷ୍ଣ ଏବଂ ସୁଖଦୁଃଖାଦି ଦ୍ୱନ୍ଦ୍ୱରେ ସମାନ ଓ ଆସକ୍ତି ରହିତ, (ସେ ହିଁ ଭକ୍ତ) ।'

ଏଠାରେ ଶତ୍ରୁମିତ୍ର 'ବ୍ୟକ୍ତି' ବାଚକ; ମାନ-ଅପମାନ 'ପରକୃତ କ୍ରିୟା', ଶୀତ-ଉଷ୍ଣ 'ପଦାର୍ଥ' ଏବଂ ସୁଖଦୁଃଖ 'ଭାବ' ।

**ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ ।**
**ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ॥**

**(୧୪/୨୪)**

'ଯେ ନିରନ୍ତର ଆତ୍ମଭାବରେ ଅବସ୍ଥିତ, ଦୁଃଖ ଓ ସୁଖକୁ ସମାନ ଜ୍ଞାନ କରନ୍ତି, ମାଟି, ପଥର ଓ ସୁନାକୁ ସମାନ ଜ୍ଞାନରେ ଦେଖନ୍ତି, ଜ୍ଞାନୀ ଅଟନ୍ତି, ପ୍ରିୟ ଓ ଅପ୍ରିୟଙ୍କୁ ଏକାପରି ଦେଖନ୍ତି ଏବଂ ନିଜର ନିନ୍ଦା ଓ ସ୍ତୁତିକୁ ବି ସମାନଭାବରେ ଗ୍ରହଣ କରନ୍ତି, (ସେ ଗୁଣାତୀତ) ।'

ଏଥିରେ ମଧ୍ୟ ଦୁଃଖ ଓ ସୁଖ 'ଭାବ'; ଢେଲା, ଅଶ୍ମ ଓ କାଞ୍ଚନ 'ପଦାର୍ଥ', ନିନ୍ଦା-ସ୍ତୁତି 'ପରକୃତକ୍ରିୟା'; ଏବଂ ପ୍ରିୟ-ଅପ୍ରିୟ 'ପ୍ରାଣୀ', 'ଭାବ','ପଦାର୍ଥ' ତଥା 'କ୍ରିୟା'— ସବୁର ବାଚକ ।

ଏପରିଭାବରେ ଯେ ସବୁଠାରେ ସମଦୃଷ୍ଟି ରଖନ୍ତି, ବ୍ୟବହାରରେ, କଥାବାର୍ତ୍ତାରେ ଅହଂତ୍ୱ-ମମତ୍ୱ ରଖୁଥିଲେ ମଧ୍ୟ ଯେ ସବୁଠାରେ ସମବୁଦ୍ଧି ରଖନ୍ତି, ଯାହାଙ୍କର ସମଷ୍ଟିରୂପକ ସମଗ୍ର ସଂସାରରେ ସମଭାବ ଥାଏ, ସେ ହେଉଛନ୍ତି ସମତ୍ୱଯୁକ୍ତ ପୁରୁଷ ଏବଂ ସେ ପ୍ରକୃତ ସାମ୍ୟବାଦୀ ।

## ଆଜିର ସାମ୍ୟବାଦ

ଗୀତାର ସାମ୍ୟବାଦ ଓ ଆଜି କାଲି ର ସାମ୍ୟବାଦମଧ୍ୟରେ ବହୁ ପାର୍ଥକ୍ୟ ରହିଛି, ଯଥା – (୧) ଆଜିର ସାମ୍ୟବାଦ ଈଶ୍ୱରବିରୋଧୀ; ଗୀତାର ସାମ୍ୟବାଦ ସର୍ବତ୍ର ଈଶ୍ୱର ଦର୍ଶନ କରେ । (୨) ଆଜିର ସାମ୍ୟବାଦ ଧର୍ମର ନାଶକ; ଗୀତାର ସାମ୍ୟବାଦ ଧର୍ମର ରକ୍ଷକ । (୩) ଆଜିର ସାମ୍ୟବାଦ ହିଂସାରେ ପୂର୍ଣ୍ଣ; ଗୀତାର ସାମ୍ୟବାଦ ଅହିଂସାର ପ୍ରତିପାଦକ । (୪) ଆଜିର ସାମ୍ୟବାଦ ସ୍ୱାର୍ଥମୂଳକ; ଗୀତାର ସାମ୍ୟବାଦ ସ୍ୱାର୍ଥକୁ ପାଖରେ ପୂରାଏ ନାହିଁ । (୫) ଆଜିର ସାମ୍ୟବାଦ ଖାଦ୍ୟପେୟରେ, ସ୍ପର୍ଶାଦିରେ ବାହ୍ୟ ଏକତା ଦେଖାଇ ଅନ୍ତରରେ ଭେଦଭାବ ରଖେ; ଗୀତାର ସାମ୍ୟବାଦ ଖାଦ୍ୟପେୟ, ସ୍ପର୍ଶାଦିରେ ଶାସ୍ତ୍ରମର୍ଯ୍ୟାଦା ଅନୁସାରେ ଯଥାଯୋଗ୍ୟ ଭେଦଭାବ ରଖି ମଧ୍ୟ ଅନ୍ତରରେ କୌଣସି ଭେଦଭାବ ରଖେ ନାହିଁ, ବରଂ ସର୍ବତ୍ର ପରମାତ୍ମାଙ୍କୁ ସମାନଭାବରେ ଦେଖିବାର ଶିକ୍ଷା ଦିଏ । (୬) ଆଜିର ଲକ୍ଷ୍ୟ କେବଳ ଧନର ଉପାସନା; ଗୀତାର ଲକ୍ଷ୍ୟ ପରମାତ୍ମପ୍ରାପ୍ତି । (୭) ଆଜିର ସାମ୍ୟବାଦରେ ଦଳଗତ ଅଭିମାନ ଓ ଅନ୍ୟପ୍ରତି ଅନାଦରଭାବ ରହିଛି; ଗୀତାର ସାମ୍ୟବାଦରେ ସର୍ବଥା ଅଭିମାନଶୂନ୍ୟତା ରହେ ଓ ଜଗତରେ ସର୍ବତ୍ର ପରମାତ୍ମାଙ୍କୁ ଦର୍ଶନ କରି ସମସ୍ତଙ୍କ ପ୍ରତି ସମ୍ମାନ ରହେ । (୮) ଆଜିର ସାମ୍ୟବାଦ ବାହ୍ୟ ବ୍ୟବହାର ଉପରେ ପ୍ରାଧାନ୍ୟ ଦିଏ; ଗୀତାର ସାମ୍ୟବାଦ ଅନ୍ତଃକରଣର ଭାବ ଉପରେ ପ୍ରାଧାନ୍ୟ ଦିଏ । (୯) ଆଜିର ସାମ୍ୟବାଦରେ ଭୌତିକ ସୁଖ ମୁଖ୍ୟ ଧ୍ୟେୟ; ଗୀତାର ସାମ୍ୟବାଦରେ ଆଧ୍ୟାତ୍ମିକ ସୁଖ ମୁଖ୍ୟ ଧ୍ୟେୟ । (୧୦) ଆଜିର ସାମ୍ୟବାଦ ପରଧନ ଓ ପରମତ ପ୍ରତି ଅସହିଷ୍ଣୁ; ଗୀତାର ସାମ୍ୟବାଦ ସମସ୍ତଙ୍କୁ ସମାନ ଆଦର କରେ । (୧୧) ଆଜିର ସାମ୍ୟବାଦ ରାଗଦ୍ୱେଷପୂର୍ଣ୍ଣ; ଗୀତାର ସାମ୍ୟବାଦ ରାଗଦ୍ୱେଷରହିତ ।

## ଜୀବମାନଙ୍କର ଗତି

ଗୀତାରେ ଜୀବମାନଙ୍କର ଗୁଣ ଓ କର୍ମ ଅନୁସାରେ ସେମାନଙ୍କର ଉତ୍ତମ, ମଧ୍ୟମ ଓ ଅଧମ— ତିନିପ୍ରକାର ଗତି ହୁଏ ବୋଲି କୁହାଯାଇଛି । କର୍ମଯୋଗ ତଥା ସାଂଖ୍ୟଯୋଗ ଦୃଷ୍ଟିରୁ ଶାସ୍ତ୍ରୋକ୍ତ କର୍ମ ଓ ଉପାସନା କରୁଥିବା ସାଧକମାନଙ୍କ ଗତି ବିଷୟ ଅଷ୍ଟମ ଅଧ୍ୟାୟର ଚବିଶ ଶ୍ଳୋକରେ କହିଦିଆଯାଇଛି । ସେମାନଙ୍କ ମଧ୍ୟରୁ ଯେ ଯୋଗଭ୍ରଷ୍ଟ ହୋଇଯାଆନ୍ତି, ସେମାନଙ୍କ ଗତିର ବର୍ଣ୍ଣନା ଷଷ୍ଠଅଧ୍ୟାୟର ଚାଳିଶଠାରୁ ପଇଁଚାଳିଶ ଶ୍ଳୋକ ମଧ୍ୟରେ କରାଯାଇଛି । ସେଠାରେ କୁହାଯାଇଛି ଯେ, ମୃତ୍ୟୁପରେ ସେମାନେ ସ୍ୱର୍ଗାଦିଲୋକ ପ୍ରାପ୍ତ ହୁଅନ୍ତି ଏବଂ ସୁଦୀର୍ଘ କାଳ ପର୍ଯ୍ୟନ୍ତ ସେହି ଦିବ୍ୟଲୋକରେ ସୁଖଭୋଗ କରି ପବିତ୍ର ଆଚରଣଯୁକ୍ତ ଉତ୍ତମ ଲୋକଙ୍କ ଘରେ ଜନ୍ମ ହୁଅନ୍ତି ଅଥବା ସ୍ୱର୍ଗକୁ ନ ଯାଇ ସିଧାସଳଖ ଯୋଗୀମାନଙ୍କ କୁଳରେ ଜନ୍ମ ହୁଅନ୍ତି ଏବଂ ସେଠାରେ ପୂର୍ବ ଅଭ୍ୟାସହେତୁ ପୁନର୍ବାର ଯୋଗସାଧନରେ ପ୍ରବୃତ୍ତ ହୋଇ ପରମଗତି ପ୍ରାପ୍ତି କରନ୍ତି ।

ସକାମଭାବରେ ବିହିତକର୍ମ ଏବଂ ଉପାସନା କରୁଥିବା ଲୋକଙ୍କର ଗତିର ବର୍ଣ୍ଣନା ନବମ ଅଧ୍ୟାୟର ବିଂଶ ଓ ଏକବିଂଶ ଶ୍ଳୋକରେ କରାଯାଇଛି । ସେଠାରେ ସ୍ୱର୍ଗକାମନାରେ ଯାଗଯଜ୍ଞ ଆଦି ବେଦବିହିତ କର୍ମ କରୁଥିବା ଲୋକମାନେ ସ୍ୱର୍ଗଭୋଗ ପ୍ରାପ୍ତି କରିବାର ଏବଂ ପୁଣ୍ୟ କ୍ଷୟ ହୋଇଯିବା ପରେ ପୁଣି ଥରେ ମର୍ତ୍ତ୍ୟଲୋକକୁ ଖସିପଡିବାର କଥା କୁହାଯାଇଛି । ଏହି ଲୋକେ କେଉଁ ମାର୍ଗରେ ତଥା କିପରି ସ୍ୱର୍ଗକୁ ଯାଆନ୍ତି, ତାହାର ପ୍ରକ୍ରିୟା ଅଷ୍ଟମ ଅଧ୍ୟାୟର ପଚିଶ ଶ୍ଳୋକର ବ୍ୟାଖ୍ୟାରେ କୁହାଯାଇଛି ।

ଚତୁର୍ଦ୍ଦଶ ଅଧ୍ୟାୟର ଚଉଦ, ପନ୍ଦର ଏବଂ ଅଠର ଶ୍ଳୋକରେ ସାମାନ୍ୟଭାବରେ ସମସ୍ତ ପୁରୁଷଙ୍କର ଗତି ସଂକ୍ଷେପରେ କୁହାଯାଇଛି । ସତ୍ତ୍ୱଗୁଣ ବୃଦ୍ଧିରେ ମରୁଥିବା ଲୋକେ ଉତ୍ତମ ଲୋକକୁ ଯାଆନ୍ତି; ରଜୋଗୁଣ ବୃଦ୍ଧିରେ ମରୁଥିବା ଲୋକେ ମନୁଷ୍ୟମାନଙ୍କ ମଧ୍ୟରେ ଉତ୍ପନ୍ନ ହୁଅନ୍ତି ତଥା ତମୋଗୁଣବୃଦ୍ଧିରେ ମରୁଥିବା ଲୋକେ ପଶୁ-ପକ୍ଷୀ, କୀଟ-ପତଙ୍ଗ ଏବଂ ବୃକ୍ଷାଦି ଯୋନିରେ ଜନ୍ମ ହୁଅନ୍ତି । ଏହିପରି ସତ୍ତ୍ୱଗୁଣରେ ସ୍ଥିତ ପୁରୁଷ ମରିବା ପରେ ଊର୍ଦ୍ଧ୍ୱଲୋକକୁ ଯାଆନ୍ତି, ରଜୋଗୁଣରେ ସ୍ଥିତ ରାଜସ ପୁରୁଷ ମନୁଷ୍ୟଲୋକରେ ରହନ୍ତି ଏବଂ ତମୋଗୁଣରେ ସ୍ଥିତ ତାମସପୁରୁଷ ଅଧୋଗତି ଅର୍ଥାତ୍ ନରକ ଏବଂ ତିର୍ଯ୍ୟକ୍ ଯୋନି ପ୍ରାପ୍ତ ହୁଅନ୍ତି । ଷୋହଳ ଅଧ୍ୟାୟର ଉଣେଇଶ ଓ କୋଡ଼ିଏ ଶ୍ଳୋକରେ ଆସୁରୀ ପ୍ରକୃତିର ତାମସ ମନୁଷ୍ୟଙ୍କ ସମ୍ବନ୍ଧରେ ଭଗବାନ୍ କହିଛନ୍ତି ଯେ, ସେମାନଙ୍କୁ ଭଗବାନ୍ ବାରମ୍ବାର ଆସୁରୀ ଯୋନିରେ ଅର୍ଥାତ୍ କୁକୁର, ଘୁଷୁରୀ ଆଦି ଯୋନିରେ ପକାନ୍ତି ଏବଂ ତାହାପରେ ସେମାନେ ଘୋର ନରକରେ ପଡ଼ନ୍ତି । ଏହିପରି ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଗୁଣକର୍ମ ଅନୁସାରେ ଗୀତାରେ ଜୀବଙ୍କର ଗତି ବିଷୟ କହିଦିଆଯାଇଛି । ମୁକ୍ତ ପୁରୁଷଙ୍କର ଗତିର ବର୍ଣ୍ଣନା ବିସ୍ତାରିତଭାବରେ ସାଂଖ୍ୟ ଓ ଯୋଗର ଫଳରୂପରେ ସ୍ଥାନେ ସ୍ଥାନେ ବର୍ଣ୍ଣନା କରାଯାଇଛି । ଜୀବନ୍ମୁକ୍ତ ପୁରୁଷଙ୍କର କେଉଁଠାକୁ ଯିବା ଆସିବା ହୁଏ ନାହିଁ । ସେମାନେ ତ ଏଠାରେ ହିଁ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଆନ୍ତି ।

## ଗୀତାର କେତୋଟି ବିଶେଷ କଥା

### (୧) ଗୁଣମାନଙ୍କର ପରିଚୟ

ଗୀତାରେ ସାତ୍ତ୍ୱିକ-ରାଜସ-ତାମସ ପଦାର୍ଥମାନଙ୍କର, ଭାବମାନଙ୍କର ଏବଂ କ୍ରିୟାମାନଙ୍କର କେତୋଟି ବିଶେଷ ପରିଚୟ କହିଦିଆଯାଇଛି । ତାହା ଏହିପରି :

(କ) ଯେଉଁ ଭାବ ବା କ୍ରିୟାରେ ସ୍ୱାର୍ଥର ସମ୍ବନ୍ଧ ନ ଥାଏ ଏବଂ ଯେଉଁଥିରେ ଆସକ୍ତି ଏବଂ ମମତ୍ୱ ନ ଥାଏ, ତଥା ଯାହାର ଫଳ ଭଗବତ୍‌ପ୍ରାପ୍ତି, ତାହା ସାତ୍ତ୍ୱିକ ବୋଲି ଜାଣିବା ଉଚିତ ।

(ଖ) ଯେଉଁ ଭାବ ବା କ୍ରିୟାରେ ଲୋଭ, ସ୍ୱାର୍ଥ ଏବଂ ଆସକ୍ତିର ସମ୍ବନ୍ଧ ରହେ, ତଥା ଯାହାର ଫଳ କ୍ଷଣିକ ସୁଖପ୍ରାପ୍ତି ଓ ଅନ୍ତିମ ପରିଣାମ ଦୁଃଖ, ତାହା ରାଜସ ବୋଲି ବୁଝିବାକୁ ହେବ ।

(ଗ) ଯେଉଁ ଭାବ ବା କ୍ରିୟାରେ ହିଂସା, ମୋହ ଏବଂ ପ୍ରମାଦ ଜାତ ହୁଏ, ତଥା ଯାହାର ଫଳ ଦୁଃଖ ଏବଂ ଅଜ୍ଞାନରେ ପୂର୍ଣ୍ଣ, ତାହା ତାମସ ବୋଲି ବୁଝିବା ଉଚିତ ।

ଏହିପରି ତିନିପ୍ରକାର ଭାବ ଏବଂ କ୍ରିୟାର ପ୍ରଭେଦ ବୁଝାଇଦେଇ ଭଗବାନ୍ ସାତ୍ତ୍ୱିକ ଭାବ ଏବଂ କ୍ରିୟାମାନଙ୍କୁ ଗ୍ରହଣ କରିବାକୁ ତଥା ରାଜସ ଓ ତାମସ ଭାବ ଏବଂ କ୍ରିୟାମାନଙ୍କୁ ତ୍ୟାଗ କରିବାକୁ ଆଜ୍ଞା ଦେଇଛନ୍ତି ।

### (୨) ଗୀତାରେ ଆଚରଣ ଅପେକ୍ଷା ଭାବର ପ୍ରାଧାନ୍ୟ

ଯଦ୍ୟପି ଉତ୍ତମ ଆଚରଣ ଏବଂ ଅନ୍ତଃକରଣର ଉତ୍ତମ ଭାବ—ଉଭୟକୁ ଗୀତାରେ କଲ୍ୟାଣର ସାଧନ ବୋଲି ନିର୍ଣ୍ଣୟ କରାଯାଇଛି, ତଥାପି ଭାବକୁ ହିଁ ପ୍ରାଧାନ୍ୟ ଦିଆଯାଇଛି । ଦ୍ୱିତୀୟ, ଦ୍ୱାଦଶ ଓ ଚତୁର୍ଦ୍ଦଶ ଅଧ୍ୟାୟର ଶେଷରେ କ୍ରମଶଃ ସ୍ଥିତପ୍ରଜ୍ଞ, ଭକ୍ତ ଏବଂ ଗୁଣାତୀତ ପୁରୁଷଙ୍କ ଲକ୍ଷଣରେ ଭାବର ପ୍ରାଧାନ୍ୟ ବିଷୟ ବୁଝାଇଦିଆଯାଇଛି (୨/୫୫ ଠାରୁ ୭୧, ୧୨/୧୩ଠାରୁ ୧୯, ୧୪/୨୨ ରୁ ୨୫) । ଦ୍ୱିତୀୟ ଓ ଚତୁର୍ଦ୍ଦଶ ଅଧ୍ୟାୟରେ ଅର୍ଜୁନ ଆଚରଣକୁ ପ୍ରଧାନ ବୋଲି ମାନି ପ୍ରଶ୍ନ କରିଥିଲେ; କିନ୍ତୁ ଭଗବାନ୍ ଭାବର ପ୍ରାଧାନ୍ୟ ରଖି ଉତ୍ତର ଦେଇଛନ୍ତି ।

ଗୀତା ଅନୁସାରେ ସକାମଭାବରେ କରାଯାଉଥିବା ଯଜ୍ଞ, ଦାନ, ତପ, ସେବା, ପୂଜା ଆଦି ମହତ୍ତର କ୍ରିୟା ଅପେକ୍ଷା ନିଷ୍କାମଭାବରେ କରାଯାଉଥିବା ଯୁଦ୍ଧ, ବ୍ୟବସାୟ, କୃଷି, ଶିଳ୍ପ ଏବଂ ସେବା ଆଦି ସାମାନ୍ୟତର କ୍ରିୟା ମଧ୍ୟ ମୁକ୍ତିଦାୟକ ହୋଇଥିବାରୁ ଶ୍ରେଷ୍ଠ ବୋଲି କୁହାଯାଇଛି (୨/୪୦,୪୯; ୧୨/୧୨; ୧୮/୪୬) । ଚତୁର୍ଥ ଅଧ୍ୟାୟରେ ଯେଉଁଠାରେ କେତେକପ୍ରକାର ଯଜ୍ଞରୂପକ ସାଧନା ବିଷୟ ବୁଝାଇଦିଆଯାଇଛି (୪/୨୪ ରୁ ୩୨), ସେଥିରେ ବି ଭାବର ପ୍ରାଧାନ୍ୟରେ ହିଁ ମୁକ୍ତି ମିଳେ ବୋଲି କୁହାଯାଇଛି ।

## ଗୀତା ଓ ବେଦ

ଗୀତା ବେଦକୁ ବିଶେଷ ଆଦର କରନ୍ତି । ଭଗବାନ୍ ନିଜକୁ ସମସ୍ତ ବେଦଦ୍ୱାରା ଜ୍ଞେୟ, ବେଦାନ୍ତର ରଚୟିତା ଓ

ବେଦଜ୍ଞ କହି ବେଦର ମହତ୍ତ୍ୱ ବଢ଼ାଇଦେଇଛନ୍ତି (୧୫/୧୫)। ସଂସାରରୂପୀ ଅଶ୍ୱତ୍ଥବୃକ୍ଷର ବର୍ଣ୍ଣନା କରିବାକୁ ଯାଇ ଭଗବାନ୍ କହନ୍ତି ଯେ, ମୂଳ ସହିତ ସେହି ଅଶ୍ୱତ୍ଥକୁ ତତ୍ତ୍ୱତଃ ଜାଣିଥିବା ବ୍ୟକ୍ତି ହିଁ ବାସ୍ତବରେ ବେଦତତ୍ତ୍ୱକୁ ଜାଣିଛନ୍ତି (୧୫/୧)। ଏଥିରେ ଭଗବାନ୍ କହିଛନ୍ତି ଯେ, ଜଗତର କାରଣରୂପ ପରମାତ୍ମାଙ୍କ ସହିତ ଜଗତର ବାସ୍ତବିକ ସ୍ୱରୂପକୁ ତତ୍ତ୍ୱତଃ ଜାଣିବା ହିଁ ବେଦର ତାତ୍ପର୍ଯ୍ୟ। ଭଗବାନ୍ କହିଛନ୍ତି, 'ଯାହା ବେଦଦ୍ୱାରା ବିଭାଗପୂର୍ବକ କୁହାଯାଇଛି, ତାହା ମୁଁ କହୁଛି (୧୩/୪)'। ଏହିପରି ନିଜର ଉକ୍ତିମାନଙ୍କ ସମର୍ଥନରେ ବେଦର ପ୍ରମାଣ ନିର୍ଦ୍ଦେଶ କରି ଭଗବାନ୍ ବେଦର ମହିମାକୁ ବିଶେଷଭାବରେ ବଢ଼ାଇଦେଇଛନ୍ତି। ଭଗବାନ୍ ଋକ୍‌ବେଦ, ଯଜୁର୍ବେଦ ତଥା ସାମବେଦ– ବେଦତ୍ରୟକୁ ନିଜର ସ୍ୱରୂପ ବୋଲି କହି ତାହାକୁ ଆହୁରି ଅଧିକ ଗୌରବ ଦେଇଛନ୍ତି (୯/୧୭)। ଭଗବାନ୍ ବେଦକୁ ନିଜଠାରୁ ପ୍ରକଟ ବୋଲି କହିଛନ୍ତି (୩/୧୫, ୧୭/୨୩)। ଭଗବାନ୍ କହିଛନ୍ତି ଯେ, ପରମାତ୍ମାଙ୍କୁ ପ୍ରାପ୍ତି କରିବାପାଇଁ ବେଦରେ ଅନେକ ସାଧନା ଦିଆଯାଇଛି (୪/୩୨)। ଏଥିରୁ ଜାଣନ୍ତୁ ଯେ, ଭଗବାନ୍ ସ୍ପଷ୍ଟରୂପରେ କହିଛନ୍ତି, ବେଦରେ କେବଳ ଭୋଗପ୍ରାପ୍ତିର ସାଧନା ହିଁ ନାହିଁ– ଯାହା କି କେତେକ ଅବିବେକୀ ଲୋକମାନଙ୍କର ଧାରଣା– ଭଗବଦ୍‌ପ୍ରାପ୍ତିପାଇଁ ମଧ୍ୟ ଗୋଟିଏ ଦୁଇଟି ନୁହେଁ, ଅନେକ ସାଧନା ପୂର୍ଣ୍ଣ ହୋଇ ରହିଛି। ଭଗବାନ୍ ପରମପଦ ନାମରେ ନିଜର ସ୍ୱରୂପ ବର୍ଣ୍ଣନା କରି କହିଛନ୍ତି ଯେ, ବେଦବେତ୍ତାମାନେ ତାଙ୍କୁ ଅକ୍ଷର (ଓଁକାର) ନାମରେ ନିର୍ଦ୍ଦେଶ କରନ୍ତି। ଏହାଦ୍ୱାରା ଭଗବାନ୍ ସୂଚାଇଛନ୍ତି କି, ବେଦରେ କେବଳ ସକାମ-ପୁରୁଷଙ୍କ ଦ୍ୱାରା ପ୍ରାପଣୀୟ ଇହଲୋକର ଏବଂ ସ୍ୱର୍ଗର ଅନିତ୍ୟ ଭୋଗର ହିଁ ବର୍ଣ୍ଣନା ନାହିଁ, ସେଥିରେ ପରମାତ୍ମାଙ୍କ ଅବିନାଶୀ ସ୍ୱରୂପର ମଧ୍ୟ ବିଶଦ ବର୍ଣ୍ଣନା ରହିଛି। ଉପରୋକ୍ତ ବର୍ଣ୍ଣନାରୁ ସ୍ପଷ୍ଟ ହୋଇଯାଏ ଯେ, ଭଗବାନ୍ ବେଦକୁ ବିଶେଷ ଆଦର କରନ୍ତି।

ଏଠାରେ ଶଙ୍କା ହୁଏ, ''ପୁଣି ଭଗବାନ୍ କେତେ ସ୍ଥଳରେ ବେଦର ନିନ୍ଦା କରିଛନ୍ତି କାହିଁକି ? ଉଦାହରଣ ସ୍ୱରୂପ, ସେ ସକାମପୁରୁଷଙ୍କୁ ବେଦବାଦରେ ରତ ଏବଂ ଅବିବେକୀ ବୋଲି କହିଛନ୍ତି (୨/୪୨); ତଥା ବେଦମାନଙ୍କୁ ତ୍ରିଗୁଣର କାର୍ଯ୍ୟରୂପ ସାଂସାରିକ ଭୋଗମାନଙ୍କର ତଥା ସେମାନଙ୍କ ସାଧନାର ପ୍ରତିପାଦକ ବୋଲି କହି ଏହି ଭୋଗରେ ଆସକ୍ତ ନ ହେବାକୁ ଅର୍ଜୁନଙ୍କୁ କହିଛନ୍ତି (୨/୪୫) ଏବଂ ବେଦତ୍ରୟୀ ଧର୍ମର ଆଶ୍ରୟ ନେଉଥିବା ସକାମପୁରୁଷଙ୍କ ସମ୍ବନ୍ଧରେ ଭଗବାନ୍ କହିଛନ୍ତି ଯେ, ସେମାନେ ବାରମ୍ବାର ଜନ୍ମ ହୁଅନ୍ତି ଏବଂ ମରନ୍ତି; ସେମାନେ ଜନ୍ମ-ମୃତ୍ୟୁର ଚକ୍ରରୁ ମୁକ୍ତି ପାଇପାରନ୍ତି ନାହିଁ (୯/୨୧)। ଏପରି ସ୍ଥିତିରେ କ'ଣ ମାନିବା ଉଚିତ ?''

ଏହି ଶଙ୍କାର ସମାଧାନ ଏହି ଯେ, ଉପରୋକ୍ତ ବଚନରେ ଯଦିଓ ବେଦର ନିନ୍ଦା ପ୍ରତୀତ ହେଉଛି, ତଥାପି ବାସ୍ତବରେ ଏଥିରେ ବେଦର ନିନ୍ଦା କରାଯାଇ ନାହିଁ। ଗୀତାରେ ସକାମ ଭାବ ଅପେକ୍ଷା ନିଷ୍କାମଭାବକୁ ଅଧିକ ମହତ୍ତ୍ୱ ଦିଆଯାଇଛି ଏବଂ ଭଗବତ୍‌ପ୍ରାପ୍ତିପାଇଁ ଏହା ଆବଶ୍ୟକ ବୋଲି କୁହାଯାଇଛି। ତେଣୁ ନିଷ୍କାମଭାବ ଅପେକ୍ଷା ସକାମଭାବକୁ ନୀଚ ଏବଂ ନାଶବାନ୍ ବିଷୟସୁଖଦାୟୀ ବୋଲି କହିବାପାଇଁ ହିଁ ସ୍ଥାନେ ସ୍ଥାନେ ସକାମ କର୍ମକୁ ତୁଚ୍ଛ ସିଦ୍ଧ କରିଛନ୍ତି; କିନ୍ତୁ ନିଷିଦ୍ଧ କର୍ମକୁ ନିନ୍ଦା କଲାପରି ତାହାକୁ ନିନ୍ଦା କରି ନାହାନ୍ତି। ଯେଉଁଠାରେ ବେଦର ଫଳକୁ ଲଙ୍ଘନ କରିଯିବା କଥା କୁହାଯାଇଛି, ସେଠାରେ ମଧ୍ୟ ସକାମ କର୍ମକୁ ଲକ୍ଷ୍ୟ କରି ହିଁ ଏପରି କୁହାଯାଇଛି (୮/୨୮)। ଉପର୍ଯ୍ୟୁକ୍ତ ବିବେଚନାରୁ ଏହା ସ୍ପଷ୍ଟ ହୋଇଗଲା ଯେ, ଭଗବାନ୍ ବେଦକୁ ଗୀତାରେ କୌଣସିଠାରେ ନିନ୍ଦା କରି ନାହାନ୍ତି; ବରଂ ସ୍ଥାନେ ସ୍ଥାନେ ବେଦର ପ୍ରଶଂସା ହିଁ କରିଛନ୍ତି।

## ଗୀତା ଓ ସାଂଖ୍ୟଦର୍ଶନ ତଥା ଯୋଗଦର୍ଶନ

କେହି କେହି କହନ୍ତି ଯେ, ଗୀତାରେ ଯେଉଁ ଯେଉଁ ସ୍ଥାନରେ 'ସାଂଖ୍ୟ' ଶବ୍ଦ ପ୍ରୟୋଗ ହୋଇଛି, ସେଠାରେ ତାହା ମହର୍ଷି କପିଳଙ୍କ ଦ୍ୱାରା ପ୍ରବର୍ତ୍ତିତ ସାଂଖ୍ୟଦର୍ଶନର ବାଚକ। କିନ୍ତୁ ଏହା ଯୁକ୍ତିସଙ୍ଗତ ମନେ ହୁଏ ନାହିଁ। ଗୀତାର ତ୍ରୟୋଦଶ ଅଧ୍ୟାୟରେ ଲାଗ ଲାଗ ତିନୋଟି ଶ୍ଳୋକରେ (୧୯,୨୦,୨୧) ତଥା ଅନ୍ୟତ୍ର ମଧ୍ୟ 'ପ୍ରକୃତି' ଓ 'ପୁରୁଷ' ଶବ୍ଦ ଦୁଇଟି ଏକାସାଥିରେ ପ୍ରୟୋଗ ହୋଇଛି ଏବଂ 'ପ୍ରକୃତି-ପୁରୁଷ' ସାଂଖ୍ୟଦର୍ଶନର ମୁଖ୍ୟ ଶବ୍ଦ; ତେଣୁ ଲୋକେ ଅନୁମାନ କରିନେଇଛନ୍ତି ଯେ, ଗୀତାକୁ କାପିଳ ସାଂଖ୍ୟର ସିଦ୍ଧାନ୍ତରୂପେ ମାନ୍ୟତା ଦିଆଯାଇଛି। ଏହିପରି ଯୋଗ ଶବ୍ଦକୁ କିଛି ଲୋକ ପାତଞ୍ଜଳ ଯୋଗର ବାଚକ ବୋଲି ମଧ୍ୟ କହନ୍ତି। ପଞ୍ଚମ ଅଧ୍ୟାୟର ପ୍ରାରମ୍ଭରେ ତଥା ଅନ୍ୟତ୍ର କେତେକ ସ୍ଥାନରେ ମଧ୍ୟ 'ସାଂଖ୍ୟ' ଓ 'ଯୋଗ' ଶବ୍ଦ ଏକାସାଥିରେ ପ୍ରୟୋଗ କରାଯାଇଛି; ତେଣୁ ଲୋକେ ମାନିନେଇଛନ୍ତି ଯେ, 'ସାଂଖ୍ୟ' ଓ 'ଯୋଗ' ଶବ୍ଦ କ୍ରମଶଃ କାପିଳ ସାଂଖ୍ୟ ତଥା ପାତଞ୍ଜଳଯୋଗର ବାଚକ; କିନ୍ତୁ ଏହା ଯୁକ୍ତିସଙ୍ଗତ ମନେ ହେଉ ନାହିଁ। ଗୀତାର 'ସାଂଖ୍ୟ' କାପିଳ 'ସାଂଖ୍ୟ' ନୁହେଁ, କି ଗୀତାର 'ଯୋଗ' ପାତଞ୍ଜଳ ଯୋଗ ନୁହେଁ। ନିମ୍ନଲିଖିତ କଥାରୁ ଏହା ସ୍ପଷ୍ଟ ହୋଇଯାଏ।

(୧) ଗୀତା ଶଙ୍କରଙ୍କୁ ଯେଉଁପରି ମାନେ, ସାଂଖ୍ୟଦର୍ଶନ ସେପରି ମାନେ ନାହିଁ ।

(୨) ଯଦ୍ୟପି 'ପ୍ରକୃତି' ଶବ୍ଦ ଗୀତାରେ କେତେ ସ୍ଥାନରେ ପ୍ରୟୋଗ କରାଯାଇଛି, ତଥାପି ଗୀତାର 'ପ୍ରକୃତି' ଏବଂ 'ସାଂଖ୍ୟ'ର 'ପ୍ରକୃତି' ମଧ୍ୟରେ ବିରାଟ ପାର୍ଥକ୍ୟ ରହିଛି । କାପିଳସାଂଖ୍ୟର ପ୍ରକୃତି ତ୍ରିଗୁଣର ସାମ୍ୟାବସ୍ଥାକୁ ବୁଝାଏ । କିନ୍ତୁ ଗୀତାର ପ୍ରକୃତି ହେଉଛି ତ୍ରିଗୁଣର କାରଣ; ଗୁଣ ହେଉଛି ତାହାର କାର୍ଯ୍ୟ (୧୪/୫) । ପ୍ରକୃତିକୁ ସାଂଖ୍ୟ ଅନାଦି ଓ ନିତ୍ୟ ବୋଲି ସ୍ୱୀକାର କରିଛି; ଗୀତା ବି ପ୍ରକୃତିକୁ ଅନାଦି ବୋଲି ସ୍ୱୀକାର କରିଛି (୧୩/୧୯) କିନ୍ତୁ ନିତ୍ୟ ବୋଲି ମାନି ନାହିଁ ।

(୩) ଗୀତାର 'ପୁରୁଷ' ଏବଂ ସାଂଖ୍ୟର 'ପୁରୁଷ' ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । କାପିଳ ସାଂଖ୍ୟ ମତରେ ପୁରୁଷ ଅନେକ; କିନ୍ତୁ ଗୀତାର ସାଂଖ୍ୟ ପୁରୁଷକୁ ଏକ ବୋଲି ହିଁ ମାନେ (୧୩/୨୨,୩୦; ୧୮/୨୦) ।

(୪) ଗୀତାର 'ମୁକ୍ତି' ଓ ସାଂଖ୍ୟର 'ମୁକ୍ତି' ମଧ୍ୟରେ ବି ବିରାଟ ପାର୍ଥକ୍ୟ ରହିଛି । ସାଂଖ୍ୟମତରେ ଦୁଃଖମାନଙ୍କର ଆତ୍ୟନ୍ତିକ ନିବୃତ୍ତି ହିଁ ମୁକ୍ତିର ସ୍ୱରୂପ ଏବଂ ଗୀତାର ମୁକ୍ତିରେ ଦୁଃଖମାନଙ୍କର ଆତ୍ୟନ୍ତିକ ନିବୃତ୍ତି ତ ଅଛି; କିନ୍ତୁ ତା ସଙ୍ଗେ ସଙ୍ଗେ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କ ପ୍ରାପ୍ତି ମଧ୍ୟ ରହିଛି (୬/ ୨୧,୨୨) ।

(୫) ଉପରୋକ୍ତ ସିଦ୍ଧାନ୍ତଗତ ପ୍ରଭେଦ ବ୍ୟତୀତ ପାତଞ୍ଜଳଯୋଗରେ ଯୋଗର ଅର୍ଥ 'ଚିତ୍ତବୃତ୍ତିର ନିରୋଧ' କିନ୍ତୁ ଗୀତାରେ ପ୍ରକରଣ ଅନୁସାରେ 'ଯୋଗ' ଶବ୍ଦକୁ ବିଭିନ୍ନ ଅର୍ଥରେ ପ୍ରୟୋଗ କରାଯାଇଛି (୨/୫୩ ଟୀକା ଦେଖନ୍ତୁ)

ଗୀତା ଓ ସାଂଖ୍ୟଦର୍ଶନ ତଥା ଯୋଗଦର୍ଶନର ସିଦ୍ଧାନ୍ତ ମଧ୍ୟରେ ଏହିପରି ବିଶେଷ ପାର୍ଥକ୍ୟ ରହିଛି ।

## ଏହି ଟୀକାର ପ୍ରୟୋଜନ

ବହୁତ ଦିନରୁ କେତେକ ବନ୍ଧୁ ଆଗ୍ରହ ଓ ପ୍ରେରଣା ଦେଉଥିଲେ ଯେ, ମୁଁ ନିଜର ଭାବ ଅନୁସାରେ ଗୀତାର ଏକ ବିସ୍ତୃତ ଟୀକା ଲେଖେ । ଗୀତା ଉପରେ ପୂଜ୍ୟପାଦ ଆଚାର୍ଯ୍ୟ, ସନ୍ଥମହାତ୍ମାମାନେ ଏବଂ ଶାସ୍ତ୍ରର ମର୍ମ ଜାଣିଥିବା ବିଦ୍ୱାନ୍‌ମାନେ ତ ଏପରି ଅନେକ ଭାଷ୍ୟ, ଟୀକା ଏବଂ ବ୍ୟାଖ୍ୟା କରିଛନ୍ତି; ସେସବୁ ଆଦରଣୀୟ ଏବଂ ସବୁଥିରେ ନିଜ ନିଜ ଦୃଷ୍ଟିରୁ ଗୀତାର ମର୍ମକୁ ବୁଝାଇବାପାଇଁ ଚେଷ୍ଟା କରାଯାଇଛି; କିନ୍ତୁ ସେଥିରୁ ଅଧିକାଂଶ ସଂସ୍କୃତରେ ଲିଖିତ ଏବଂ ବିଦ୍ୱାନମାନଙ୍କର ବିଶେଷ ଉପଯୋଗୀ । ତେଣୁ ବନ୍ଧୁମାନେ କହୁଥିଲେ ଯେ, ଯଦି ସରଳ ଭାଷାରେ ଏପରି ଏକ ସର୍ବୋପଯୋଗୀ ଟୀକା ଲେଖାଯାଆନ୍ତା ଯେ, ତାହା ସର୍ବସାଧାରଣଙ୍କର ବୋଧଗମ୍ୟ ହୁଅନ୍ତା ଏବଂ ସେଥିରେ ଗୀତାର ତାତ୍ପର୍ଯ୍ୟ ବିସ୍ତାରିତଭାବରେ ଖୋଲିଦିଆଯାଆନ୍ତା, ତେବେ ସୁନ୍ଦର ହୁଅନ୍ତା । ଏହି ଦୃଷ୍ଟି ରଖି ତଥା ସବୁଠାରୁ ଅଧିକ ଲାଭ ମୋର ହେବ, ଏହା ବିଚାର କରି ଏହି କାର୍ଯ୍ୟ ଆରମ୍ଭ କରାଗଲା । କିନ୍ତୁ ଏହି କାର୍ଯ୍ୟ ଆପାତତଃ ଯେତେ ସହଜ ଜଣାପଡୁଥିଲା, ପରେ ଅନୁଭବରୁ ଦେଖାଗଲା ଯେ, ଏହା ସେତେ ସହଜ ନୁହେଁ; ବରଂ ଅଧିକ କଠିନ ବୋଲି ସିଦ୍ଧ ହେଲା ।

ମୁଁ ଜାଣେ, ଯୋଗ୍ୟତା ଏବଂ ଅଧିକାର– ଉଭୟ ଦୃଷ୍ଟିରୁ ମୋର ଏହି ପ୍ରୟାସ ଏକ ଦୁଃସାହସମାତ୍ର । ବର୍ଣ୍ଣରେ ତ ମୁଁ ବୈଶ୍ୟ ଏବଂ ବିଦ୍ୟାବୁଦ୍ଧିଦୃଷ୍ଟିରୁ ମଧ୍ୟ ମୁଁ ନିଜକୁ ଏହି କାର୍ଯ୍ୟପାଇଁ ନିତାନ୍ତ ଅଯୋଗ୍ୟ ବୋଲି ମନେ କରୁଛି । ଏଣୁ ଗୀତାପରି ସର୍ବମାନ୍ୟ ଗ୍ରନ୍ଥ ଉପରେ ଟୀକା ଲେଖିବାକୁ ମୁଁ ସର୍ବଥା ଅନଧିକାରୀ । ବାକି ରହିଲା ଭାବସମ୍ବନ୍ଧର କଥା । ଭଗବାନଙ୍କ ଉପଦେଶର ସମ୍ପୂର୍ଣ୍ଣ ଭାବ ବୁଝିବାର କଥା ଦୂରେ ଥାଉ, ମୁଁ ଯେ ତାହାର ଏକ ଶତାଂଶ ବୁଝିପାରିଛି, ତାହା କହିବା ମଧ୍ୟ ମୋର ଦୁଃସାହସ ହେବ । ଭଗବାନଙ୍କର ଉପଦେଶ ଯତ୍‌କିଞ୍ଚିତ୍ ବୁଝି ମଧ୍ୟ ତାହାକୁ କାର୍ଯ୍ୟରେ ଲଗାଇବା ଅତ୍ୟନ୍ତ କଠିନ । ଯେଉଁମାନଙ୍କ ଉପରେ ଭଗବାନଙ୍କର ଅଶେଷ କୃପା, କେବଳ ସେହିମାନେ ହିଁ ତାହାକୁ କାମରେ ଲଗାଇପାରିବେ । ପୂରା ଉପଦେଶକୁ କାମରେ ଲଗାଇବା ତ ଦୂରର କଥା, ଯେଉଁମାନେ ଗୀତାର ସାଧନାତ୍ମକ କୌଣସି ଏକ ଶ୍ଳୋକ ଅନୁସାରେ ମଧ୍ୟ ନିଜର ଜୀବନ ଅତିବାହିତ କରନ୍ତି, ସେହି ଲୋକମାନେ ବି ବାସ୍ତବରେ ଧନ୍ୟ ଏବଂ ସେମାନଙ୍କ ଚରଣରେ ମୋର କୋଟି କୋଟି ପ୍ରଣାମ । ସେପରି ଲୋକ ହିଁ ଗୀତାର ବ୍ୟାଖ୍ୟା କରିବାକୁ ଅଧିକାରୀ ।

ମୋର ଏହି ପ୍ରୟାସ ସବୁଦୃଷ୍ଟିରୁ ଦୁଃସାହସପୂର୍ଣ୍ଣ ଏବଂ ବାଳଚେଷ୍ଟା ହିଁ ଅଟେ; ତଥାପି ଏହି ବାହାନାରେ ଗୀତାର ତାତ୍ପର୍ଯ୍ୟ ନେଇ ଯତ୍‌କିଞ୍ଚିତ୍ ଆଲୋଚନା କରାଯାଇଛି; ଭଗବାନଙ୍କର ଦିବ୍ୟ ଉପଦେଶ ମନନ କରାଯାଇଛି; ଅଧ୍ୟାତ୍ମ ବିଷୟ ଯାହା କିଛି ଚର୍ଚ୍ଚା ହୋଇଛି ଓ ଜୀବନର ଏହି ସମୟଟକ ଯେଉଁ ମହତ୍ କାର୍ଯ୍ୟରେ ଲାଗିଛି, ସେଥିପାଇଁ ମୁଁ ନିଜକୁ ଧନ୍ୟ ମନେକରୁଛି । ଏହାଦ୍ୱାରା ଯଦ୍ୟପି ମୋର ଗୀତାସମ୍ବନ୍ଧୀୟ ଜ୍ଞାନ ବଢ଼ିଛି ଓ ବହୁ ଭୁଲ୍ ମାର୍ଜନ ହୋଇଯାଇଛି, ତଥାପି ଏହି କାର୍ଯ୍ୟରେ ଭୁଲ୍ ତ ପଦେ ପଦେ

ହୋଇଥିବ, କାରଣ ଗୀତାର ତାତ୍ପର୍ଯ୍ୟ ମୁଁ ଶହେଭାଗରୁ ଭାଗେମାତ୍ର ବୁଝିଛି ବୋଲି ବି କୁହାଯାଇପାରିବ ନାହିଁ; ଗୀତାର ବାସ୍ତବିକ ତାତ୍ପର୍ଯ୍ୟ ପୂର୍ଣ୍ଣଭାବରେ ସ୍ୱୟଂ ଭଗବାନ୍ ହିଁ ଜାଣନ୍ତି ଓ ଯାହାଙ୍କ ଉଦ୍ଦେଶ୍ୟରେ ଭଗବାନ୍ ଗୀତା କହିଥିଲେ, କିଛି ଅଂଶରେ ସେହି ଅର୍ଜୁନ ଜାଣନ୍ତି । ଯେଉଁମାନେ ପରମାତ୍ମପ୍ରାପ୍ତ ହୋଇ ସାରିଛନ୍ତି, ଯାହାଙ୍କୁ ଭଗବତ୍‌କୃପାର ପୂର୍ଣ୍ଣ ଅନୁଭବ ହୋଇସାରିଛି, ସେମାନେ ମଧ୍ୟ କିଛି କିଛି ଜାଣିଥାଇପାରନ୍ତି । ମୁଁ ବା ଏ ବିଷୟରେ ଆଉ କ'ଣ କହିପାରିବି ! ଯେଉଁ ଯେଉଁ ପୂଜ୍ୟ ମହାନୁଭାବମାନେ ଗୀତା ଉପରେ ଭାଷ୍ୟ ଅଥବା ଟୀକାମାନ ଲେଖିଛନ୍ତି, ମୁଁ ସେମାନଙ୍କ ଠାରେ ଅତ୍ୟନ୍ତ କୃତଜ୍ଞ ଓ ଋଣୀ, କାରଣ ଏହି ଟୀକା ଲେଖିବାରେ ମୁଁ ବହୁତ ଭାଷ୍ୟ ଓ ଟୀକାର ବିଶେଷ ସହାଯ୍ୟ ନେଇଛି । ଏଣୁ ମୁଁ ସେହି ସମସ୍ତ ବନ୍ଦନୀୟ ପୁରୁଷମାନଙ୍କୁ କୃତଜ୍ଞତାପୂର୍ଣ୍ଣ ହୃଦୟରେ କୋଟି କୋଟି ପ୍ରଣାମ କରୁଛି ।

ହଁ, ଏହି ଟୀକା ସମ୍ବନ୍ଧରେ ମୁଁ ନିଃସଙ୍କୋଚଭାବରେ ଏତିକି କହିପାରେ ଯେ, ଏହା ସର୍ବଥା ଅପୂର୍ଣ୍ଣ । ଭଗବାନଙ୍କର ଭାବକୁ ବ୍ୟକ୍ତ କରିବା ତ ଦୂରର କଥା, ବହୁତ ସ୍ଥାନରେ ତାହାକୁ ବୁଝିବାରେ ମୋର ଭୁଲ ହୋଇଯାଇଥାଇ ପାରେ ଏବଂ ବହୁତ ସ୍ଥାନରେ ତା'ର ବିପରୀତ ଭାବ ମଧ୍ୟ ଆସିଯାଇଥିବ । ଏହିସବୁ ଭୁଲପାଇଁ ମୁଁ ଦୟାଳୁ ପରମାତ୍ମାଙ୍କୁ ତଥା ସମସ୍ତ ଗୀତାପ୍ରେମୀଙ୍କୁ ହାତ ଯୋଡ଼ି କ୍ଷମା ପ୍ରାର୍ଥନା କରୁଛି । ଯାହାକିଛି ମୁଁ ଲେଖିଛି, ତାହା ନିଜର ତୁଚ୍ଛ ବୁଦ୍ଧି ଅନୁସାରେ ଲେଖିଛି ଏବଂ ଏହିପରି ନିଜର ବୋଧଜ୍ଞାନର ପରିଚୟ ଦେଇ ମୁଁ ଯେଉଁ ବାଳଚପଳତା କରିଛି, ତାହା ବିଜ୍ଞଜନମାନେ କ୍ଷମା କରିବେ । ଏହି ଟୀକାରେ ମୁଁ କୌଣସି ଆଚାର୍ଯ୍ୟ ଅଥବା ଟୀକାକାରଙ୍କର ସିଦ୍ଧାନ୍ତ ଉଲ୍ଲେଖ କରି ନାହିଁ ଏବଂ କାହାରି ସିଦ୍ଧାନ୍ତ ଖଣ୍ଡନ କରି ନାହିଁ । କିନ୍ତୁ ନିଜର କଥା କହିବାବେଳେ ଭାବଦ୍ୱାରା କାହା ବିରୁଦ୍ଧରେ କୌଣସି କଥା ଆସିଯାଇପାରିଥାଏ; ତେଣୁ ମୁଁ ସମସ୍ତଙ୍କୁ କ୍ଷମା ମାଗୁଛି । ଖଣ୍ଡନ-ମଣ୍ଡନ କରିବା ଅଥବା କାହାରି ସିଦ୍ଧାନ୍ତକୁ ଅନ୍ୟ ସିଦ୍ଧାନ୍ତ ସହିତ ତୁଳନା କରିବା ମୋର ଉଦ୍ଦେଶ୍ୟ ନୁହେଁ ।

କେଉଁଠି ହେଲେ ପୂର୍ବାପର ବିରୋଧ ଯେପରି ନ ଆସେ, ମୁଁ ସେଥି ପ୍ରତି ମଧ୍ୟ ଧ୍ୟାନ ଦେଇଛି; ତଥାପି ଟୀକାର କଳେବର ବହୁତ ବଡ଼ ହୋଇଯିବାରୁ ଏହା ବି ସମ୍ଭବ ଯେ, କୌଣସି କୌଣସିଠାରେ ଏହିପରି ଦୋଷ ରହିଯାଇଥିବ । ଆଶା, ବିଜ୍ଞପାଠକମାନେ ଏହିପରି ଭୁଲକୁ ସୁଧାରି ନେବେ ଏବଂ ମୋତେ ମଧ୍ୟ ସୂଚନା ଦେବାର କୃପା କରିବେ ।

ଏହି ଟୀକା ଲେଖିବାରେ ମୁଁ କେତେକ ପୂଜ୍ୟ ମହାନୁଭବ, ମିତ୍ର , ବନ୍ଧୁମାନଙ୍କର ଅମୂଲ୍ୟ ସହାୟତା ପାଇଛି । ଆଜିକାଲିର ପରିପାଟୀ ଅନୁସାରେ ସେମାନଙ୍କର ନାମ ଉଲ୍ଲେଖ କରିବା ଆବଶ୍ୟକ; ପରନ୍ତୁ ଯଦି ମୁଁ ଏପରି କରିବାକୁ ଯିବି, ତେବେ ପ୍ରଥମେ ସେମାନଙ୍କୁ କଷ୍ଟ ଦେବି; ପୁଣି ସେମାନଙ୍କ ସହିତ ମୋର ଯେପରି ସମ୍ବନ୍ଧ ଅଛି, ସେହି ଦୃଷ୍ଟିରୁ ଦେଖିବାକୁ ଗଲେ, ସେମାନଙ୍କର ପ୍ରଶଂସା କରିବା ନିଜର ପ୍ରଶଂସା କରିବା ସଙ୍ଗେ ସମାନ । ତେଣୁ ମୁଁ ଏଠାରେ କାହାରି ନାମ ଉଲ୍ଲେଖ ନ କରି ଏତିକିମାତ୍ର କହିଦେବା ପର୍ଯ୍ୟାପ୍ତ ବୋଲି ଭାବୁଛି ଯେ, ସେହି ଲୋକମାନେ ଯଦି ମନଯୋଗ ସହିତ ଏହି କାର୍ଯ୍ୟରେ ସହଯୋଗ କରି ନ ଥାନ୍ତେ, ତେବେ ଏହି ଟୀକା ଏହି ରୂପରେ କଦାଚିତ୍ ପ୍ରକାଶିତ ହୋଇପାରି ନ ଥାନ୍ତା ।

ବିନୀତ- **ଜୟଦୟାଳ ଗୋୟନ୍ଦକା**

## ଏହି ଟୀକା ପ୍ରସ୍ତୁତିରେ ସହାୟକ ଗ୍ରନ୍ଥମାନଙ୍କର ନାମ

ଶ୍ରୀମଦ୍‌ଭଗବଦ୍‌ଗୀତାର ପ୍ରାୟ ମୁଖ୍ୟ ମୁଖ୍ୟ ସଂସ୍କୃତ-ଭାଷ୍ୟ ଓ ଅନେକ ଟୀକା ଛଡ଼ା ନିମ୍ନଲିଖିତ ଗ୍ରନ୍ଥମାନଙ୍କରୁ ମଧ୍ୟ ସହାୟତା ନିଆଯାଇଛି—

ଋଗ୍‌ବେଦସଂହିତା, ଐତରେୟ ବ୍ରାହ୍ମଣ, ଶତପଥ ବ୍ରାହ୍ମଣ, ଈଶାବାସ୍ୟୋପନିଷଦ୍, କେନୋପନିଷଦ୍, କଠୋପନିଷଦ୍, ମୁଣ୍ଡକୋପନିଷଦ୍, ତୈତ୍ତିରୀୟୋପନିଷଦ୍, ଛାନ୍ଦୋଗ୍ୟୋପନିଷଦ୍, ବୃହଦାରଣ୍ୟକୋପନିଷଦ୍, ଶ୍ୱେତାଶ୍ୱତରୋପନିଷଦ୍, ବ୍ରହ୍ମୋପନିଷଦ୍, ନାରାୟଣୋପନିଷଦ୍, ବୃହଜ୍ଜାବାଲୋପନିଷଦ୍, ଯୋଗଦର୍ଶନ, ସାଂଖ୍ୟକାରିକା, ମନୁସ୍ମୃତି, ବଶିଷ୍ଠସ୍ମୃତି, ସଂବର୍ତସ୍ମୃତି, ବୃହଦ୍‌ଯୋଗିଯାଜ୍ଞବଲ୍କ୍ୟସ୍ମୃତି, ଶଙ୍ଖସ୍ମୃତି, ଅତ୍ରିସ୍ମୃତି, ଉତ୍ତରଗୀତା, ଶ୍ରୀମଦ୍‌ଭାଗବତ, ଅଗ୍ନିପୁରାଣ, ବାୟୁପୁରାଣ, ବାରାହପୁରାଣ, ଗରୁଡ଼ପୁରାଣ, ମାର୍କଣ୍ଡେୟପୁରାଣ, ବ୍ରହ୍ମବୈବର୍ତପୁରାଣ, ସ୍କନ୍ଦପୁରାଣ, ବୃହଦ୍ଧର୍ମପୁରାଣ, ମତ୍ସ୍ୟପୁରାଣ, ବ୍ରହ୍ମାଣ୍ଡପୁରାଣ, ଶିବପୁରାଣ,ପଦ୍ମପୁରାଣ, ବ୍ରହ୍ମପୁରାଣ, ବିଷ୍ଣୁପୁରାଣ, କୂର୍ମପୁରାଣ, ଦେବୀଭାଗବତ, ମହାଭାରତ, ହରିବଂଶ, ବାଲ୍ମୀକୀୟ ରାମାୟଣ, ନାରଦଭକ୍ତିସୂତ୍ର, ଶାଣ୍ଡିଲ୍ୟସୂତ୍ର, ସୂର୍ଯ୍ୟସିଦ୍ଧାନ୍ତ, ଶ୍ରୀରାମଚରିତମାନସ, ବିନୟପତ୍ରିକା, କୃଷ୍ଣକର୍ଣ୍ଣାମୃତ ଏବଂ ଭକ୍ତମାଳା ଇତ୍ୟାଦି ।

ଓଁ ଶ୍ରୀପରମାତ୍ମନେ ନମଃ

ଶ୍ରୀମଦ୍‌ଭଗବଦ୍‌ଗୀତା ପାଠକ୍ରମ

## ଅଥ କରନ୍ୟାସଃ

ଓଁ ଅସ୍ୟ ଶ୍ରୀମଭଗବଦ୍‌ଗୀତାମାଳାମନ୍ତ୍ରସ୍ୟ ଭଗବାନ୍ ବେଦବ୍ୟାସ ଋଷିଃ । ଅନୁଷ୍ଟୁପ୍ ଛନ୍ଦଃ । ଶ୍ରୀକୃଷ୍ଣଃ ପରମାତ୍ମା ଦେବତା ।। ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ଇତି ବୀଜମ୍ ।। ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ଇତି ଶକ୍ତିଃ ।। ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚ ଇତି କୀଳକମ୍ ।। ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକ ଇତ୍ୟଙ୍ଗୁଷ୍ଠାଭ୍ୟାଂ ନମଃ ।। ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତ ଇତି ତର୍ଜନୀଭ୍ୟାଂ ନମଃ ।। ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ମଧ୍ୟମାଭ୍ୟାଂ ନମଃ ।। ନିତ୍ୟଃ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନ ଇତ୍ୟନାମିକାଭ୍ୟାଂ ନମଃ ।। ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶ ଇତି କନିଷ୍ଠିକାଭ୍ୟାଂ ନମଃ ।। ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ଇତି କରତଳକରପୃଷ୍ଠାଭ୍ୟାଂ ନମଃ ।। ଇତି କରନ୍ୟାସଃ ।।

## ଅଥ ହୃଦୟାଦିନ୍ୟାସଃ

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକ ଇତି ହୃଦୟାୟ ନମଃ ।। ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତ ଇତି ଶିରସେ ସ୍ୱାହା ।। ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ଶିଖାୟୈ ବଷଟ୍ ।। ନିତ୍ୟଃ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନ ଇତି କବଚାୟ ହୁମ୍ ।। ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶ ଇତି ନେତ୍ରତ୍ରୟାୟ ବୌଷଟ୍ ।। ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ଇତି ଅସ୍ତ୍ରାୟ ଫଟ୍ ।।

ଶ୍ରୀକୃଷ୍ଣପ୍ରୀତ୍ୟର୍ଥେ ପାଠେ ବିନିଯୋଗଃ ।।

## ଧ୍ୟାନଶ୍ଳୋକାଦି

ଓଁ ପାର୍ଥାୟ ପ୍ରତିବୋଧିତାଂ ଭଗବତା ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତମ୍ ।
ଅଦ୍ୱୈତାମୃତବର୍ଷିଣୀଂ ଭଗବତୀମଷ୍ଟାଦଶାଧ୍ୟାୟିନୀ-
ମମ୍ବ ତ୍ୱାମନୁସନ୍ଦଧାମି ଭଗବଦ୍‌ଗୀତେ ଭବଦ୍ୱେଷିଣୀମ୍ ।। ୧ ।।
ନମୋଽସ୍ତୁତେ ବ୍ୟାସ ବିଶାଳବୁଦ୍ଧେ ଫୁଲ୍ଲାରବିନ୍ଦାୟତପତ୍ରନେତ୍ର ।
ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।। ୨ ।।
ପ୍ରପନ୍ନପାରିଜାତାୟ ତୋତ୍ରବେତ୍ରୈକପାଣୟେ ।
ଜ୍ଞାନମୁଦ୍ରାୟ କୃଷ୍ଣାୟ ଗୀତାମୃତଦୁହେ ନମଃ ।। ୩ ।।

ବସୁଦେବସୁତଂ ଦେବଂ କଂସଚାଣୂରମର୍ଦ୍ଦନମ୍ ।
ଦେବକୀପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍ ॥ ୪ ॥
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ କୈବର୍ତ୍ତକଃ କେଶବଃ ॥ ୫ ॥
ପାରାଶର୍ଯ୍ୟବଚଃସରୋଜମମଳଂ ଗୀତାର୍ଥଗନ୍ଧୋତ୍କଟଂ
ନାନାଖ୍ୟାନକକେସରଂ ହରିକଥାସମ୍ବୋଧନାବୋଧିତମ୍ ।
ଲୋକେ ସଜ୍ଜନଷଟ୍‌ପଦୈରହରହଃ ପେପୀୟମାନଂ ମୁଦା
ଭୂୟାଦ୍ଭାରତପଙ୍କଜଂ କଳିମଳପ୍ରଧ୍ୱଂସି ନଃ ଶ୍ରେୟସେ ॥ ୬ ॥
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଂଘୟତେ ଗିରିମ୍ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥ ୭ ॥

### ଅଥ ଧ୍ୟାନମ୍

ଶାନ୍ତାକାରଂ ଭୁଜଗଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗିଭିର୍ଧ୍ୟାନଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବଲୋକୈକନାଥମ୍ ॥ ୧ ॥
ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥ ୨ ॥
ବଂଶୀବିଭୂଷିତକରାନ୍ନବନୀରଦାଭାତ୍
ପୀତାମ୍ବରାଦରୁଣବିମ୍ବଫଳାଧରୋଷ୍ଠାତ୍ ।
ପୂର୍ଣ୍ଣେନ୍ଦୁସୁନ୍ଦରମୁଖାଦରବିନ୍ଦନେତ୍ରାତ୍
କୃଷ୍ଣାତ୍ପରଂ କିମପି ତତ୍ତ୍ୱମହଂ ନ ଜାନେ ॥ ୩ ॥

## ଗୀତା - ମାହାତ୍ମ୍ୟ

### ଶ୍ରୀଭଗବାନୁବାଚ

ନ ବନ୍ଧୋଽସ୍ତି ନ ମୋକ୍ଷୋଽସ୍ତି ବ୍ରହ୍ମୈବାସ୍ତି ନିରାମୟମ୍ ।
ନୈକମସ୍ତି ନ ଚ ଦ୍ୱିତ୍ୱଂ ସଚ୍ଚିଦ୍‌ଭାସଂ ବିଜୃମ୍ଭତେ ॥ ୧ ॥
ଗୀତାସାରମିଦଂ ଶାସ୍ତ୍ରଂ ସର୍ବଶାସ୍ତ୍ରସୁନିଶ୍ଚିତମ୍ ।
ଯତ୍ର ସ୍ଥିତଂ ବ୍ରହ୍ମଜ୍ଞାନଂ ବେଦଶାସ୍ତ୍ରସୁନିଶ୍ଚିତମ୍ ॥ ୨ ॥
ଇଦଂ ଶାସ୍ତ୍ରଂ ମୟା ପ୍ରୋକ୍ତଂ ଗୁହ୍ୟବେଦାର୍ଥଦର୍ପଣମ୍ ।
ଯଃ ପଠେତ୍‌ପ୍ରୟତୋ ଭୂତ୍ୱା ସ ଗଚ୍ଛେଦ୍‌ବିଷ୍ଣୁଶାଶ୍ୱତମ୍ ॥ ୩ ॥

ଶ୍ରୀଭଗବାନ୍ କହିଲେ- ବନ୍ଧନ ନାହିଁ କି ମୋକ୍ଷ ନାହିଁ, କେବଳ ନିରାମୟ ବ୍ରହ୍ମ ହିଁ ସର୍ବତ୍ର ବିରାଜମାନ । ଅଦ୍ୱୈତ ନାହିଁ କି ଦ୍ୱୈତ ନାହିଁ, କେବଳ ସଚ୍ଚିଦାନନ୍ଦ ହିଁ ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଛନ୍ତି ॥ ୧ ॥ ଗୀତାର ସାରଭୂତ ଏହି ଶାସ୍ତ୍ର ହେଉଛି ସକଳ ଶାସ୍ତ୍ରମାନଙ୍କ ଦ୍ୱାରା ଭଲଭାବରେ ନିଶ୍ଚିତ କରାଯାଇଥିବା ସିଦ୍ଧାନ୍ତ, ଏଥିରେ ବେଦ-ଶାସ୍ତ୍ରମାନଙ୍କର ଭଲଭାବରେ ନିଶ୍ଚିତ କରାଯାଇଥିବା ବ୍ରହ୍ମଜ୍ଞାନ ବିଦ୍ୟମାନ । ମୋ ଦ୍ୱାରା କୁହାଯାଇଥିବା ଏହି ଗୀତାଶାସ୍ତ୍ର ବେଦର ଗୂଢ ଅର୍ଥକୁ ଦର୍ପଣପରି ପ୍ରକାଶିତ କରେ ; ଯେ ପବିତ୍ର ହୋଇ, ମନ-ଇନ୍ଦ୍ରିୟମାନଙ୍କୁ ବଶରେ ରଖି ଏହାକୁ ପାଠ କରନ୍ତି , ସେ ମୋତେ ଅର୍ଥାତ୍ ସନାତନଦେବ ଭଗବାନ୍ ବିଷ୍ଣୁଙ୍କୁ ପାଇଯାନ୍ତି ॥୩॥

ଏତତ୍‌ପୁଣ୍ୟଂ ପାପହରଂ ଧନ୍ୟଂ ଦୁଃଖପ୍ରଣାଶନମ୍ ।
ପଠତାଂ ଶୃଣ୍ୱତାଂ ବାପି ବିଷ୍ଣୋର୍ମାହାତ୍ମ୍ୟମୁତ୍ତମମ୍ ॥ ୪ ॥
ଅଷ୍ଟାଦଶପୁରାଣାନି ନବବ୍ୟାକରଣାନି ଚ ।
ନିର୍ମଥ୍ୟ ଚତୁରୋ ବେଦାନ୍ ମୁନିନା ଭାରତଂ କୃତମ୍ ॥ ୫ ॥
ଭାରତୋଦଧିନିର୍ମଥ୍ୟ ଗୀତାନିର୍ମଥିତସ୍ୟ ଚ
ସାରମୁଦ୍ଧୃତ୍ୟ କୃଷ୍ଣେନ ଅର୍ଜୁନସ୍ୟ ମୁଖେ ଧୃତମ୍ ॥ ୬ ॥
ମଳନିର୍ମୋଚନଂ ପୁଂସାଂ ଗଙ୍ଗାସ୍ନାନଂ ଦିନେ ଦିନେ ।
ସକୃଦ୍‌ଗୀତାମ୍ଭସି ସ୍ନାନଂ ସଂସାରମଳନାଶନମ୍ ॥ ୭ ॥
ଗୀତାନାମସହସ୍ରେଣ ସ୍ତବରାଜୋ ବିନିର୍ମିତଃ ।
ଯସ୍ୟ କୁକ୍ଷୌ ଚ ବର୍ତ୍ତେତ ସୋଽପି ନାରାୟଣଃ ସ୍ମୃତଃ ॥ ୮ ॥

ଭଗବାନ୍ ବିଷ୍ଣୁଙ୍କର ଏହି ଉତ୍ତମ ମାହାତ୍ମ୍ୟ ( ଗୀତା ଶାସ୍ତ୍ର ) ପାଠକ ଓ ଶ୍ରୋତାଙ୍କର ପୁଣ୍ୟବର୍ଦ୍ଧକ, ପାପନାଶକ, ଧନ୍ୟବାଦଯୋଗ୍ୟ ଏବଂ ସମସ୍ତ ଦୁଃଖ ଦୂର କରିବାକୁ ସମର୍ଥ ॥୪॥ ମୁନିଶ୍ରେଷ୍ଠ ବ୍ୟାସଦେବ ଅଠର ପୁରାଣ, ନଅ ବ୍ୟାକରଣ ଓ ଚାରି ବେଦକୁ ମନ୍ଥନ କରି ମହାଭାରତ ରଚନା କରିଛନ୍ତି; ପୁଣି ମହାଭାରତରୂପୀ ସମୁଦ୍ରର ମନ୍ଥନରୁ ପ୍ରକଟ ହୋଇଥିବା ଗୀତାକୁ ମଧ୍ୟ ମନ୍ଥନ କରି ଭଗବାନ୍ ଶ୍ରୀକୃଷ୍ଣ ( ଉପର୍ଯ୍ୟୁକ୍ତ ଗୀତା-ସାର ରୂପରେ ) ତହିଁରୁ ନିଃସୃତ ତାଙ୍କ ଅର୍ଥରୂପକ ସାରକୁ ଅର୍ଜୁନଙ୍କ ମୁଖରେ ରଖିଦେଇଛନ୍ତି । ଗଙ୍ଗାରେ ପ୍ରତିଦିନ ସ୍ନାନ କଲେ ମନୁଷ୍ୟମାନଙ୍କର ମଇଳା ଦୂର ହୋଇଯାଏ, ପରନ୍ତୁ ଗୀତାରୂପିଣୀ ଗଙ୍ଗାର ଜଳରେ ଥରେମାତ୍ର ସ୍ନାନ ସମ୍ପୂର୍ଣ୍ଣ ସଂସାରମଳକୁ ନଷ୍ଟ କରିଦେବାକୁ ସମର୍ଥ । ଗୀତାର ସହସ୍ରନାମଦ୍ୱାରା ଯେଉଁ ସ୍ତବରାଜ ନିର୍ମିତ ହୋଇଛି, ତାହା ଯାହାର ହୃଦୟରେ ବର୍ତ୍ତମାନ ଥିବ, ଅର୍ଥାତ୍ ଯେ ତାହାକୁ ମନେ ମନେ ସ୍ମରଣ କରୁଥିବ, ସେ ମଧ୍ୟ ସାକ୍ଷାତ୍ ନାରାୟଣ ସ୍ୱରୂପ ବୋଲି କୁହାଯାଇଛି ।

ସର୍ବବେଦମୟୀ ଗୀତା ସର୍ବଧର୍ମମୟୋ ମନୁଃ ।
ସର୍ବତୀର୍ଥମୟୀ ଗଙ୍ଗା ସର୍ବଦେବମୟୋ ହରିଃ ॥ ୯ ॥
ପାଦସ୍ୟାପ୍ୟର୍ଦ୍ଧପାଦଂ ବା ଶ୍ଳୋକଂ ଶ୍ଳୋକାର୍ଦ୍ଧମେବ ବା ।
ନିତ୍ୟଂ ଧାରୟତେ ଯସ୍ତୁ ସ ମୋକ୍ଷମଧିଗଚ୍ଛତି ॥ ୧୦ ॥
କୃଷ୍ଣବୃକ୍ଷସମୁଦ୍‌ଭୂତା ଗୀତାମୃତହରୀତକୀ ।
ମାନୁଷୈଃ କିଂ ନ ଖାଦ୍ୟେତ କଳୌ ମଳବିରେଚନୀ ॥ ୧୧ ॥
ଗଙ୍ଗା ଗୀତା ତଥା ଭିକ୍ଷୁଃ କପିଳାଶ୍ୱତ୍ଥସେବନମ୍ ।
ବାସରଂ ପଦ୍ମନାଭସ୍ୟ ପାବନଂ କିଂ କଳୌ ଯୁଗେ ॥ ୧୨ ॥
ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍‌ବିନିଃସୃତା ॥ ୧୩ ॥
ଆପଦଂ ନରକଂ ଘୋରଂ ଗୀତାଧ୍ୟାୟୀ ନ ପଶ୍ୟତି ॥ ୧୪ ॥

ଗୀତା ସମ୍ପୂର୍ଣ୍ଣବେଦମୟୀ, ମନୁସ୍ମୃତି ସର୍ବଧର୍ମମୟୀ, ଗଙ୍ଗା ସର୍ବତୀର୍ଥମୟୀ ତଥା ଭଗବାନ୍ ବିଷ୍ଣୁ ସର୍ବଦେବମୟ ଅଟନ୍ତି । ଯେ ଗୀତାର ପୂରା ଏକଶ୍ଳୋକ, ଅଧେଶ୍ଳୋକ, ଏକ ଚରଣ ଅଥବା ଅଧେ ଚରଣ ମଧ୍ୟ ପ୍ରତିଦିନ ଧାରଣ କରନ୍ତି, ସେ ଶେଷରେ ମୋକ୍ଷ ପାଇଯାନ୍ତି ॥ ୧୦ ॥ ମନୁଷ୍ୟମାନେ ଶ୍ରୀକୃଷ୍ଣରୂପୀ ବୃକ୍ଷରୁ ପ୍ରକଟ ହୋଇଥିବା ଗୀତାରୂପକ ଅମୃତମୟୀ ହରୀତକୀ କାହିଁକି ଭକ୍ଷଣ କରୁ ନାହାନ୍ତି, ଯାହା ସମସ୍ତ କଳିମଳକୁ ଶରୀରରୁ ନିଷ୍କାସନ କରିଦେବାକୁ ସମର୍ଥ ଅଟେ ! ॥ ୧୧ ॥ କଳିଯୁଗରେ ଶ୍ରୀଗଙ୍ଗା, ଗୀତା, ପ୍ରକୃତ ସନ୍ୟାସୀ, କପିଳାଗାଈ, ଅଶ୍ୱତ୍ଥବୃକ୍ଷର ସେବା ଏବଂ ଭଗବାନ୍ ବିଷ୍ଣୁଙ୍କ ପର୍ବଦିନ ( ଏକାଦଶୀ ଆଦି ) ଠାରୁ ଅଧିକ ପବିତ୍ରକାରୀ ବସ୍ତୁ ଆଉ କ'ଣ ହୋଇପାରେ ! ॥୧୨॥ ଅନ୍ୟ ଶାସ୍ତ୍ରମାନଙ୍କର ବିସ୍ତାରରେ କି ପ୍ରୟୋଜନ ? ସାକ୍ଷାତ୍ ଭଗବାନ୍ ବିଷ୍ଣୁଙ୍କ ମୁଖକମଳରୁ ପ୍ରକଟ ହୋଇଥିବା କେବଳ ଏହି ଗୀତାକୁ ସମ୍ୟକପ୍ରକାରେ ଗାନ ( ପଠନ ଓ ମନନ ) କରିବା ଉଚିତ । ॥ ୧୩ ॥ ଗୀତା ସ୍ୱାଧ୍ୟାୟ କରୁଥିବା ମନୁଷ୍ୟଙ୍କୁ ଆପଦ ଓ ଘୋର ନରକ ଦେଖିବାକୁ ପଡ଼େ ନାହିଁ ।

ଇତି ଶ୍ରୀସ୍କନ୍ଦପୁରାଣେ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ
ଶ୍ରୀ ଗୀତାସାରେ ଭଗବଦ୍‌ଗୀତାମାହାତ୍ମ୍ୟଂ ସମ୍ପୂର୍ଣ୍ଣମ୍ ।

।। ଶ୍ରୀହରିଃ ।।

# ଅଥ ଗୀତାମାହାତ୍ମ୍ୟମ୍

ଗୀତାଶାସ୍ତ୍ରମିଦଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ପୁମାନ୍ ।
ବିଷ୍ଣୋଃ ପଦମବାପ୍ନୋତି ଭୟଶୋକାଦିବର୍ଜିତଃ ।। ୧ ।।
ଗୀତାଧ୍ୟୟନଶୀଳସ୍ୟ ପ୍ରାଣାୟାମପରସ୍ୟ ଚ ।
ନୈବ ସନ୍ତି ହି ପାପାନି ପୂର୍ବଜନ୍ମକୃତାନି ଚ ।। ୨ ।।
ମଳନିର୍ମୋଚନଂ ପୁଂସାଂ ଜଳସ୍ନାନଂ ଦିନେ ଦିନେ ।
ସକୃଦ୍ ଗୀତାମ୍ଭସି ସ୍ନାନଂ ସଂସାରମଳନାଶନମ୍ ।। ୩ ।।
ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍ ବିନିଃସୃତା ।। ୪ ।।
ଭାରତାମୃତସର୍ବସ୍ୱଂ ବିଷ୍ଣୋର୍ବକ୍ତ୍ରାଦ୍ ବିନିଃସୃତମ୍ ।
ଗୀତାଗଙ୍ଗୋଦକଂ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।। ୫ ।।
ସର୍ବୋପନିଷଦୋ ଗାବୋ ଦୋଗ୍ଧା ଗୋପାଳନନ୍ଦନଃ ।
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂ ମହତ୍ ।। ୬ ।।
ଏକଂ ଶାସ୍ତ୍ରଂ ଦେବକୀପୁତ୍ରଗୀତ-
ମେକୋ ଦେବୋ ଦେବକୀପୁତ୍ର ଏବ ।
ଏକୋ ମନ୍ତ୍ରସ୍ତସ୍ୟ ନାମାନି ଯାନି
କର୍ମାପ୍ୟେକଂ ତସ୍ୟ ଦେବସ୍ୟ ସେବା ।। ୭ ।।

ଓଁ ଶ୍ରୀପରମାତ୍ମନେ ନମଃ

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ପୂର୍ଣ୍ଣମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥
ବସୁଦେବସୁତଂ ଦେବଂ କଂସଚାଣୂରମର୍ଦ୍ଦନମ୍ । ଦେବକୀପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍ ॥
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ । ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିମ୍ । ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥

# ଶ୍ରୀମଦ୍‌ଭଗବଦ୍‌ଗୀତା

## ( ତତ୍ତ୍ୱବିବେଚନୀ ଟୀକାସହିତ )

## ପ୍ରଥମୋଽଧ୍ୟାୟଃ

### ଅର୍ଜୁନ-ବିଷାଦ-ଯୋଗ

**ଅଧ୍ୟାୟର ନାମ** ଶ୍ରୀଭଗବାନ୍ ଅର୍ଜୁନଙ୍କୁ ନିମିତ୍ତ କରି ଶ୍ରୀଗୀତାରୂପରେ ସମସ୍ତ ବିଶ୍ୱକୁ ଯେଉଁ ମହାନ୍ ଉପଦେଶ ଦେଇଛନ୍ତି, ଏହି ଅଧ୍ୟାୟଟି ହେଉଛି ତାହାର ଅବତାରଣାମାତ୍ର। ଏଥିରେ ଦୁଇପକ୍ଷର ପ୍ରଧାନ ପ୍ରଧାନ ଯୋଦ୍ଧାଙ୍କ ନାମ ଉଲ୍ଲେଖ କରାଯିବା ପରେ ମୁଖ୍ୟତଃ ବନ୍ଧୁନାଶ-ଆଶଙ୍କାରୁ ଉତ୍ପନ୍ନ ହୋଇଥିବା ଅର୍ଜୁନଙ୍କର ମୋହଜନିତ ବିଷାଦ ବର୍ଣ୍ଣନା କରାଯାଇଛି। ଉତ୍ତମ ସଙ୍ଗ ମିଳିଗଲେ ଏପରି ବିଷାଦ ସାଂସାରିକ ଭୋଗରେ ମଧ୍ୟ ବୈରାଗ୍ୟ ଉଦୟ କରାଇଦିଏ ଏବଂ ବୈରାଗ୍ୟ-ଭାବନାଦ୍ୱାରା ମନୁଷ୍ୟକୁ କଲ୍ୟାଣ ଦିଗରେ ମଧ୍ୟ ନେଇଯାଏ। ତେଣୁ ଏହି ଅଧ୍ୟାୟର ନାମ **ଅର୍ଜୁନ-ବିଷାଦ-ଯୋଗ** ରଖାଯାଇଛି।

**ଅଧ୍ୟାୟର ସାରାଂଶ** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଧୃତରାଷ୍ଟ୍ର ସଂଜୟଙ୍କୁ ଯୁଦ୍ଧର ବିବରଣୀ ପଚାରିଛନ୍ତି। ଦ୍ୱିତୀୟ ଶ୍ଳୋକରେ ସଂଜୟ ବର୍ଣ୍ଣନା କରିଛନ୍ତି ଯେ, ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ ଦୁର୍ଯ୍ୟୋଧନ କଥାବାର୍ତ୍ତା ଆରମ୍ଭ କଲେ। ତୃତୀୟ ଶ୍ଳୋକରେ ବିଶାଳ ପାଣ୍ଡବସେନାକୁ ଦେଖନ୍ତୁ ବୋଲି ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କୁ କହିଛନ୍ତି ଏବଂ ଚତୁର୍ଥରୁ ଷଷ୍ଠପର୍ଯ୍ୟନ୍ତ ସେହି ସେନାର ପ୍ରମୁଖ ଯୋଦ୍ଧାମାନଙ୍କ ନାମ କହିଛନ୍ତି। ସପ୍ତମରେ ଦ୍ରୋଣାଚାର୍ଯ୍ୟଙ୍କୁ ନିଜ ସେନାର ପ୍ରଧାନ ସେନାନାୟକମାନଙ୍କୁ ଭଲରୂପେ ଜାଣିନେବାକୁ କହି ଦୁର୍ଯ୍ୟୋଧନ ଅଷ୍ଟମ ଓ ନବମ ଶ୍ଳୋକରେ ସେମାନଙ୍କ ମଧ୍ୟରୁ କେତେକଙ୍କର ନାମ ଓ ସବୁ ବୀରଙ୍କର ପରାକ୍ରମ ତଥା ଯୁଦ୍ଧକୌଶଳ ବର୍ଣ୍ଣନା କରିଛନ୍ତି। ଦଶମରେ ନିଜ ସେନାକୁ ଅଜେୟ ଏବଂ ପାଣ୍ଡବଙ୍କ ସେନାକୁ ନିଜ ସେନା ଅପେକ୍ଷା ଦୁର୍ବଳ ବୋଲି କହି ଏଗାରରେ ସବୁ ବୀର ଭୀଷ୍ମଙ୍କୁ ରକ୍ଷା କରନ୍ତୁ ବୋଲି ଅନୁରୋଧ କରିଛନ୍ତି। ବାରରେ ଭୀଷ୍ମ ପିତାମହଙ୍କ ଶଙ୍ଖବାଦନର ଏବଂ ତେରରେ କୌରବସେନାର ଶଙ୍ଖ, ନାଗରା, ଢୋଲ, ଦୁନ୍ଦୁଭି ଓ ରଣଭେରୀ ଆଦି ବିଭିନ୍ନ ବାଦ୍ୟ ଏକସଙ୍ଗେ ବାଜି ଉଠିବାର ବର୍ଣ୍ଣନା କରାଯାଇଛି। ଚଉଦରୁ ଅଠର ଶ୍ଳୋକପର୍ଯ୍ୟନ୍ତ କ୍ରମଶଃ ଭଗବାନ୍ ଶ୍ରୀକୃଷ୍ଣ, ଅର୍ଜୁନ, ଭୀମସେନ, ଯୁଧିଷ୍ଠିର, ନକୁଳ, ସହଦେବ ତଥା ପାଣ୍ଡବସେନାର ଅନ୍ୟାନ୍ୟ ସମସ୍ତ ବିଶିଷ୍ଟ ଯୋଦ୍ଧାଙ୍କ ଦ୍ୱାରା ନିଜ ନିଜର ଶଙ୍ଖ ବଜାଇବା କଥା ଓ ଉଣେଇଶରେ ସେହି ଶଙ୍ଖଧ୍ୱନିର ଭୟଙ୍କର ଶବ୍ଦରେ ଆକାଶ ଓ ପୃଥିବୀ କମ୍ପି ଉଠିବା କଥା ସହିତ ଦୁର୍ଯ୍ୟୋଧନ ଆଦିଙ୍କ ବ୍ୟଥିତ ହେବାର ବର୍ଣ୍ଣନା ରହିଛି। କୋଡ଼ିଏ ଓ ଏକୋଇଶରେ ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ଯୁଦ୍ଧନିମିତ୍ତ ପ୍ରସ୍ତୁତ ଥିବା ଦେଖି ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ନିଜର ରଥ ଦୁଇସେନାଙ୍କ ମଧ୍ୟସ୍ଥଳକୁ ନେଇଯିବାକୁ କହିଛନ୍ତି ଏବଂ ବାଇଶ ଓ ତେଇଶରେ ସମସ୍ତ ସେନାଙ୍କୁ ଭଲଭାବରେ ଦେଖିପାରିବାପର୍ଯ୍ୟନ୍ତ ରଥକୁ ସେଠାରେ ସ୍ଥିର ରଖିବାକୁ କହି ଅର୍ଜୁନ ସମସ୍ତଙ୍କୁ ଦେଖିବାର ଇଚ୍ଛା ପ୍ରକାଶ କରିଛନ୍ତି। ଚବିଶ ଓ ପଚିଶରେ ରଥକୁ

ଦୁଇସେନାଙ୍କ ମଧ୍ୟରେ ଠିଆ କରାଇଦେଇ ଶ୍ରୀକୃଷ୍ଣ ଯୁଦ୍ଧପାଇଁ ଏକତ୍ରିତ ହୋଇଥିବା ସମସ୍ତ ବୀରଙ୍କୁ ଦେଖିବାଲାଗି ଅର୍ଜୁନଙ୍କୁ କହିଛନ୍ତି। ତା'ପରେ ତିରିଶ ଶ୍ଳୋକପର୍ଯ୍ୟନ୍ତ ସ୍ୱଜନ ସମୁଦାୟଙ୍କୁ ଦେଖିବା ପରେ ଅର୍ଜୁନଙ୍କ ବ୍ୟାକୁଳତା ତଥା ଶୋକାକୁଳ ସ୍ଥିତି ବର୍ଣ୍ଣିତ ହୋଇଛି। ଏକତିରିଶ ଶ୍ଳୋକରେ ଯୁଦ୍ଧର ବିପରୀତ ପରିଣାମ କଥା କହି ବତିଶ ଓ ତେତିଶରେ ଅର୍ଜୁନ ବିଜୟ ଓ ରାଜ୍ୟସୁଖ ଚାହାଁନ୍ତି ନାହିଁ ବୋଲି ଯୁକ୍ତିପୂର୍ଣ୍ଣ ବକ୍ତବ୍ୟ ଦେଇଛନ୍ତି। ଚଉତିରିଶ ଓ ପଇଁତିରିଶରେ ଆଚାର୍ଯ୍ୟ ଆଦି ସ୍ୱଜନଙ୍କର ବର୍ଣ୍ଣନା କରି ଅର୍ଜୁନ କହିଛନ୍ତି, ''ମୋତେ ମାରିଦେଲେ ମଧ୍ୟ, ତିନିଲୋକର ରାଜ୍ୟପ୍ରାପ୍ତି-ସୁଯୋଗ ମିଳିବାର ଥିଲେ ମଧ୍ୟ, ମୁଁ ଏହି ଆଚାର୍ଯ୍ୟ ଓ ପିତାପୁତ୍ରାଦି ଆତ୍ମୀୟସ୍ୱଜନଙ୍କୁ ମାରିବାକୁ ଇଚ୍ଛା କରେ ନାହିଁ।'' ଛତିଶ ଓ ସଇଁତିରିଶରେ ଅର୍ଜୁନ କହିଛନ୍ତି ଯେ, ଦୁର୍ଯ୍ୟୋଧନାଦି ସ୍ୱଜନ ଆତତାୟୀ ହେଲେ ମଧ୍ୟ ସେମାନଙ୍କୁ ମାରିଲେ ପାପ ହେବ ଓ ସୁଖ ତଥା ପ୍ରସନ୍ନତା ମିଳିବ ନାହିଁ। ଅଠତିରିଶ ଓ ଅଣଚାଳିଶରେ କୁଳନାଶ ଓ ମିତ୍ରଦ୍ରୋହରୁ ହେଉଥିବା ପାପରୁ ରକ୍ଷା ପାଇବାପାଇଁ ଯୁଦ୍ଧ ନ କରିବା ଉଚିତ ବୋଲି କହି ଅର୍ଜୁନ ଚାଳିଶରୁ ଚଉରାଳିଶ ଶ୍ଳୋକରେ କୁଳନାଶରୁ ଉତ୍ପନ୍ନ ହେଉଥିବା ଦୋଷକୁ ବିସ୍ତୃତଭାବରେ ବର୍ଣ୍ଣନା କରିଛନ୍ତି। ପଇଁଚାଳିଶ ଓ ଛୟାଳିଶରେ ରାଜ୍ୟ ଓ ସୁଖାଦିଲୋଭରେ ସ୍ୱଜନଙ୍କୁ ମାରିବାପାଇଁ କରାଯାଉଥିବା ଯୁଦ୍ଧର ପ୍ରସ୍ତୁତି ଘୋର ପାପର ଆରମ୍ଭ ବୋଲି କହି, ଶୋକ ପ୍ରକାଶ କରି ଅର୍ଜୁନ ଦୁର୍ଯ୍ୟୋଧନ ଆଦିଙ୍କ ଦ୍ୱାରା ନିଜେ ମରିଯିବା ଶ୍ରେୟସ୍କର ବୋଲି କହିଛନ୍ତି। ଶେଷ ସତଚାଳିଶ ଶ୍ଳୋକରେ ସେ ଯୁଦ୍ଧ ନ କରିବାକୁ ନିଶ୍ଚୟ କରିଛନ୍ତି ଏବଂ ଶୋକନିମଗ୍ନ ଅର୍ଜୁନ ଅସ୍ତ୍ରତ୍ୟାଗପୂର୍ବକ ରଥ ଉପରେ ବସିପଡ଼ିଲେ ବୋଲି କହି ସଂଜୟ ଅଧ୍ୟାୟ ସମାପ୍ତ କରିଛନ୍ତି।

**ସମ୍ବନ୍ଧ**— ପାଣ୍ଡବମାନଙ୍କର ରାଜସୂୟ ଯଜ୍ଞରେ ସେମାନଙ୍କର ମହାନ୍ ଐଶ୍ୱର୍ଯ୍ୟ ଦେଖି ଦୁର୍ଯ୍ୟୋଧନଙ୍କ ମନରେ ଅତ୍ୟନ୍ତ ଈର୍ଷା ଜାତ ହୋଇଗଲା; ତେଣୁ ଶକୁନି ଆଦିଙ୍କ ସମ୍ମତିରେ ଜୁଆ ଖେଳିବାପାଇଁ ସେ ଯୁଧିଷ୍ଠିରଙ୍କୁ ଡକାଇଲେ ଏବଂ ଛଳରେ ତାଙ୍କୁ ହରାଇ ତାଙ୍କର ସର୍ବସ୍ୱ ହରଣ କରିନେଲେ। ଶେଷରେ ନିଶ୍ଚୟ ହେଲା ଯେ, ଯୁଧିଷ୍ଠିରାଦି ପାଞ୍ଚଭାଇ ଦ୍ରୌପଦୀଙ୍କ ସହିତ ବାରବର୍ଷ ବନବାସ କରିବେ ଏବଂ ଗୋଟିଏ ବର୍ଷ ଅଜ୍ଞାତବାସ କରିବେ; ଏହିପରିଭାବରେ ତେରବର୍ଷପର୍ଯ୍ୟନ୍ତ ସମସ୍ତ ରାଜ୍ୟ ଉପରେ ଦୁର୍ଯ୍ୟୋଧନଙ୍କ ଆଧିପତ୍ୟ ରହିବ ଓ ପାଣ୍ଡବମାନେ ଏକବର୍ଷ ଅଜ୍ଞାତବାସକାଳରେ ଧରା ନ ପଡ଼ିଲେ, ତେରବର୍ଷ ପରେ ସେମାନଙ୍କ ରାଜ୍ୟ ସେମାନଙ୍କୁ ଫେରାଇଦିଆଯିବ। ଏହି ସର୍ତ୍ତ ଅନୁସାରେ ତେରବର୍ଷ ପୂରିଯିବା ପରେ ଯେତେବେଳେ ପାଣ୍ଡବମାନେ ନିଜ ରାଜ୍ୟ ଫେରାଇବାପାଇଁ କହିଲେ, ଦୁର୍ଯ୍ୟୋଧନ ସ୍ପଷ୍ଟ ମନା କରିଦେଲେ। ତାଙ୍କୁ ବୁଝାଇବାପାଇଁ ଦ୍ରୁପଦଙ୍କର ଜ୍ଞାନବୃଦ୍ଧ ଓ ବୟୋବୃଦ୍ଧ ପୁରୋହିତଙ୍କୁ ପଠାଗଲା; କିନ୍ତୁ ସେ କୌଣସି କଥା ମାନିଲେ ନାହିଁ। ତେଣୁ ଉଭୟ ପକ୍ଷରୁ ଯୁଦ୍ଧର ପ୍ରସ୍ତୁତି ଆରମ୍ଭ ହେବାକୁ ଲାଗିଲା।

ଭଗବାନ୍ ଶ୍ରୀକୃଷ୍ଣଙ୍କୁ ରଣ-ନିମନ୍ତ୍ରଣ ଦେବାପାଇଁ ଦୁର୍ଯ୍ୟୋଧନ ଦ୍ୱାରକାରେ ପହଞ୍ଚିଲେ; ସେହିଦିନ ଅର୍ଜୁନ ମଧ୍ୟ ସେଠାରେ ପହଞ୍ଚିଗଲେ। ଦୁହେଁ ଯାଇ ଦେଖିଲେ, ଭଗବାନ୍ ନିଜ ଭବନରେ ଶୋଇଛନ୍ତି। ତାଙ୍କୁ ଶୋଇଥିବାର ଦେଖି ଦୁର୍ଯ୍ୟୋଧନ ତାଙ୍କର ମୁଣ୍ଡ ପାଖରେ ଗୋଟିଏ ମୂଲ୍ୟବାନ ଆସନରେ ବସିଲେ ଏବଂ ଅର୍ଜୁନ ଦୁଇହାତ ଯୋଡ଼ି ନମ୍ରତାର ସହିତ ପାଦପାଖରେ ଠିଆ ହୋଇ ରହିଲେ। ନିଦରୁ ଉଠୁ ଉଠୁ ଭଗବାନ୍ ଶ୍ରୀକୃଷ୍ଣ ନିଜ ଆଗରେ ଅର୍ଜୁନ ଠିଆ ହୋଇଥିବାର ଦେଖିଲେ ଏବଂ ପୁଣି ପଛକୁ ଚାହିଁବାବେଳକୁ ଦୁର୍ଯ୍ୟୋଧନ ବସିଥିବାର ଦେଖାଗଲା। ଭଗବାନ୍ ଶ୍ରୀକୃଷ୍ଣ ଦୁହିଁଙ୍କୁ ସ୍ୱାଗତ ସତ୍କାର କଲେ ଏବଂ ଆସିବାର କାରଣ ପଚାରିଲେ। ଦୁର୍ଯ୍ୟୋଧନ କହିଲେ, ''ମୋ ଠାରେ ଓ ଅର୍ଜୁନଙ୍କ ଠାରେ ଆପଣଙ୍କର ଏକାପ୍ରକାର ପ୍ରେମ ରହିଛି ଏବଂ ଆମେ ଦୁହେଁ ଆପଣଙ୍କର ସମ୍ବନ୍ଧୀୟ। ତଥାପି ଆପଣଙ୍କ ପାଖକୁ ପ୍ରଥମେ ମୁଁ ଆସିଛି। ସଜ୍ଜନଙ୍କ ନିୟମ ଏହି ଯେ, ସେ ପ୍ରଥମେ ଆସିଥିବା ଲୋକକୁ ସାହାଯ୍ୟ ଦେଇଥାନ୍ତି। ସାରା ଭୂମଣ୍ଡଳରେ ଆଜି ଆପଣ ସମସ୍ତ ସଜ୍ଜନମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ସମ୍ମାନନୀୟ; ତେଣୁ ଆପଣ ମୋର ସହାୟତା କରିବା ଉଚିତ।'' ଭଗବାନ୍ କହିଲେ, ''ନିଃସନ୍ଦେହ ଆପଣ ପ୍ରଥମେ ଆସିଛନ୍ତି; କିନ୍ତୁ ମୁଁ ପ୍ରଥମେ ଅର୍ଜୁନଙ୍କୁ ଦେଖିଛି। ତେଣୁ ମୁଁ ଉଭୟଙ୍କୁ ସାହାଯ୍ୟ କରିବି। ତଥାପି ଶାସ୍ତ୍ର ଅନୁସାରେ ବାଳକଙ୍କ ଇଚ୍ଛା ପ୍ରଥମେ ପୂରଣ କରିବା ଉଚିତ।

ତେଣୁ ପ୍ରଥମେ ମୁଁ ଅର୍ଜୁନଙ୍କ ଇଚ୍ଛା ପୂରଣ କରିବା ଆବଶ୍ୟକ। ମୁଁ ଦୁଇପ୍ରକାର ସହାୟତା କରିବି। ଗୋଟିଏ ପକ୍ଷରେ ମୋର ଅତ୍ୟନ୍ତ ବଳଶାଳୀ ନାରାୟଣୀ-ସେନା ରହିବ ଏବଂ ଅନ୍ୟ ପକ୍ଷରେ ମୁଁ ଯୁଦ୍ଧ ନ କରିବାର ପଣ ନେଇ ଏକାକିଆ ରହିବି। ମୁଁ ଶସ୍ତ୍ର ପ୍ରୟୋଗ କରିବି ନାହିଁ। ଅର୍ଜୁନ! ଧର୍ମ ଅନୁସାରେ ପ୍ରଥମେ ତୁମର ଇଚ୍ଛା ପୂରଣ କରିବା ଉଚିତ; ତେଣୁ ଉପରୋକ୍ତ ଦୁଇଟି ମଧ୍ୟରୁ ତୁମେ ଯେଉଁଟି ଇଚ୍ଛା କରୁଛ, ମାଗିନିଅ।'' ଏହା ଶୁଣି ଅର୍ଜୁନ ଶତ୍ରୁନାଶକ ନାରାୟଣ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ମାଗିଲେ। ତେଣୁ ଦୁର୍ଯ୍ୟୋଧନ ତାଙ୍କର ନାରାୟଣୀ ସେନା ମାଗିଲେ ଓ ଉକ୍ତ ସେନା ନେଇ ସେ ଅତ୍ୟନ୍ତ ଆନନ୍ଦରେ ହସ୍ତିନାପୁରକୁ ଫେରିଗଲେ।

ଏହାପରେ ଭଗବାନ୍ ଅର୍ଜୁନଙ୍କୁ ପଚାରିଲେ, ''ଅର୍ଜୁନ! ମୁଁ ତ ଯୁଦ୍ଧ କରିବି ନାହିଁ; ତୁମେ କାହିଁକି ନାରାୟଣୀସେନାକୁ ଛାଡ଼ିଦେଇ ମୋତେ ଗ୍ରହଣ କଲ?'' ଅର୍ଜୁନ କହିଲେ, ''ଭଗବନ୍! ଆପଣ ଏକାକୀ ସମସ୍ତଙ୍କୁ ନାଶ କରିଦେବାକୁ ସମର୍ଥ; ତେଣୁ ସେନା ନେଇ ମୁଁ କ'ଣ କରିବି? ତା'ଛଡ଼ା ଆପଣ ମୋର ସାରଥି ହୁଅନ୍ତେ କି ବୋଲି ମୋର ଅନେକ ଦିନରୁ ଇଚ୍ଛା ଥିଲା। ବର୍ତ୍ତମାନ ଏହି ମହାଯୁଦ୍ଧରେ ମୋର ସେହି ଇଚ୍ଛା ଆପଣ ଅବଶ୍ୟ ପୂରଣ କରନ୍ତୁ।'' ଭକ୍ତବତ୍ସଳ ଭଗବାନ୍ ଅର୍ଜୁନଙ୍କ ଇଚ୍ଛାନୁସାରେ ତାଙ୍କ ରଥର ଘୋଡ଼ାମାନଙ୍କୁ ଚଳାଇବାର ଭାର ଗ୍ରହଣ କଲେ। ଏହି ପ୍ରସଙ୍ଗ ଅନୁସାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କର ସାରଥି ହୋଇଥିଲେ ଏବଂ ଯୁଦ୍ଧାରମ୍ଭ ସମୟରେ କୁରୁକ୍ଷେତ୍ରରେ ତାଙ୍କୁ ଦିବ୍ୟ ଗୀତା ଉପଦେଶ ଶୁଣାଇଥିଲେ।

ଦୁର୍ଯ୍ୟୋଧନ ଓ ଅର୍ଜୁନ ଦ୍ୱାରକାରୁ ଫେରିଆସିବା ପରେ, ଉଭୟ ପକ୍ଷର ସେନା ଏକତ୍ରିତ ହେବାକୁ ଲାଗିଲେ। ସେହି ସମୟରେ ଭଗବାନ୍ ଶ୍ରୀକୃଷ୍ଣ ହସ୍ତିନାପୁର ଯାଇ ଦୁର୍ଯ୍ୟୋଧନଙ୍କୁ ବିଭିନ୍ନପ୍ରକାରେ ବୁଝାଇବାକୁ ଚେଷ୍ଟା କଲେ। କିନ୍ତୁ ଦୁର୍ଯ୍ୟୋଧନ ସ୍ପଷ୍ଟ କହିଦେଲେ, ''ମୁଁ ବଞ୍ଚି ଥାଉ ଥାଉ ପାଣ୍ଡବମାନେ ରାଜ୍ୟ ପାଇପାରିବେ ନାହିଁ— ଏପରି କି ତୀକ୍ଷ୍ଣ ଛୁଞ୍ଚିଅଗରେ ଯେତିକି ଭୂମି ଧରିବ, ସେତିକି ଭୂମି ମଧ୍ୟ ମୁଁ ପାଣ୍ଡବମାନଙ୍କୁ ଦେବି ନାହିଁ'' (ମହା/ଉଦ୍ୟୋଗ ୧୨୭/୨୨ ରୁ ୨୫)। ତେଣୁ ମାତା କୁନ୍ତୀଙ୍କର ଆଜ୍ଞା ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରେରଣାରେ ପାଣ୍ଡବମାନେ ନିଜର ନ୍ୟାୟୋଚିତ ସ୍ୱତ୍ୱ ପାଇବା ନିମନ୍ତେ ଯୁଦ୍ଧ ହିଁ ଧର୍ମ ବୋଲି ବୁଝି ଯୁଦ୍ଧ କରିବାକୁ ସଂକଳ୍ପ କଲେ।

ଯେତେବେଳେ ଦୁଇପକ୍ଷରୁ ଯୁଦ୍ଧପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲା, ସେତେବେଳେ ଭଗବାନ୍ ବେଦବ୍ୟାସ ଧୃତରାଷ୍ଟ୍ରଙ୍କ ପାଖକୁ ଆସି କହିଲେ, ''ଯଦି ତୁମେ ଘୋର ସଂଗ୍ରାମ ଦେଖିବାକୁ ଇଚ୍ଛା କରୁଛ, ତେବେ ମୁଁ ତୁମକୁ ଦିବ୍ୟଦୃଷ୍ଟି ପ୍ରଦାନ କରିବି।'' ଏହା ଶୁଣି ଧୃତରାଷ୍ଟ୍ର କହିଲେ, ''ବ୍ରହ୍ମର୍ଷିଶ୍ରେଷ୍ଠ! ମୁଁ କୁଳର ଏହି ହତ୍ୟାକାଣ୍ଡ ନିଜ ଆଖିରେ ଦେଖିବାକୁ ଇଚ୍ଛା କରୁ ନାହିଁ, କିନ୍ତୁ ଯୁଦ୍ଧର ସମସ୍ତ ବୃତ୍ତାନ୍ତ ଶୁଣିବାକୁ ଇଚ୍ଛା କରୁଛି।'' ତେଣୁ ମହର୍ଷି ବେଦବ୍ୟାସ ସଂଜୟଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କରି ଧୃତରାଷ୍ଟ୍ରଙ୍କୁ କହିଲେ, ''ଏହି ସଂଜୟ ତୁମକୁ ଯୁଦ୍ଧର ସମସ୍ତ ବୃତ୍ତାନ୍ତ ଶୁଣାଇବେ। ଯୁଦ୍ଧର ସମସ୍ତ ଘଟଣାବଳୀ ସେ ପ୍ରତ୍ୟକ୍ଷ ଦେଖିପାରିବେ, ଶୁଣିପାରିବେ ଓ ଜାଣିପାରିବେ। ଆଗରେ ବା ପଛରେ, ଦିନରେ ବା ରାତିରେ, ଗୁପ୍ତରେ ବା ପ୍ରକାଶ୍ୟରେ ଘଟୁଥିବା କିମ୍ବା କେବଳ ମନରେ ଆସୁଥିବା ଏପରି କୌଣସି ବିଷୟ ରହିବ ନାହିଁ, ଯାହା କି ତାଙ୍କ ଠାରୁ ଛପି ରହିଯିବ। ସେ ସବୁକଥା ସ୍ପଷ୍ଟରୂପେ ଜାଣିଯିବେ। ତାଙ୍କ ଶରୀରକୁ କୌଣସି ଶସ୍ତ୍ର ସ୍ପର୍ଶ କରିପାରିବ ନାହିଁ, କି ସେ କେବେ କ୍ଲାନ୍ତ ହେବେ ନାହିଁ।'' ଶେଷରେ ସେ କହିଲେ, ''ଯାହା ହେବାର ଥିବ, ତାହା ଅବଶ୍ୟ ହେବ; ଏହି ସର୍ବନାଶକୁ କେହି ବନ୍ଦ କରିପାରିବେ ନାହିଁ। ଶେଷରେ ଧର୍ମର ହିଁ ଜୟ ହେବ।''

ମହର୍ଷି ବେଦବ୍ୟାସ ଚାଲିଯିବା ପରେ ଧୃତରାଷ୍ଟ୍ରଙ୍କ ପଚାରିବାରେ ସଂଜୟ ତାଙ୍କୁ ପୃଥିବୀର ବିଭିନ୍ନ ଦ୍ୱୀପର ବୃତ୍ତାନ୍ତ ଶୁଣାଇଲେ; ସେଥିରେ ସେ ଭାରତବର୍ଷର ବର୍ଣ୍ଣନା କରିଥିଲେ। ତାହାପରେ ଯେତେବେଳେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା ଏବଂ ଲାଗି ଲାଗି ଦଶଦିନପର୍ଯ୍ୟନ୍ତ ଯୁଦ୍ଧ ହେବା ପରେ ପିତାମହ ଭୀଷ୍ମ ରଣଭୂମିରେ ରଥରୁ ପଡ଼ିଗଲେ, ସେତେବେଳେ ସଂଜୟ ଧୃତରାଷ୍ଟ୍ରଙ୍କ ପାଖକୁ ଆସି ତାଙ୍କୁ ହଠାତ୍ ଭୀଷ୍ମଙ୍କ ପତନର ସମାଚାର ଶୁଣାଇଲେ (ମହା/ଭୀଷ୍ମ / ୧୩)। ତାହା ଶୁଣି ଧୃତରାଷ୍ଟ୍ରଙ୍କର ଅତ୍ୟନ୍ତ

ଦୁଃଖ ହେଲା ଏବଂ ଯୁଦ୍ଧର ସମସ୍ତ କଥା ବିସ୍ତାରପୂର୍ବକ ଶୁଣାଇବାକୁ ସେ ସଂଜୟଙ୍କୁ କହିଲେ। ତେଣୁ ସଂଜୟ ଦୁଇପକ୍ଷର ସେନାଙ୍କ ବ୍ୟୂହରଚନା ଆଦି ବିସ୍ତୃତରୂପେ ବର୍ଣ୍ଣନା କଲେ। ତା'ପରେ ଧୃତରାଷ୍ଟ୍ର ଆରମ୍ଭରୁ ସେପର୍ଯ୍ୟନ୍ତ ଘଟିଥିବା ସମସ୍ତ ଘଟଣା ବିସ୍ତୃତରୂପେ ଶୁଣାଇବାକୁ ସଂଜୟଙ୍କୁ କହିଲେ। ସେଠିଠାରୁ ଶ୍ରୀମଦ୍‌ଭଗବଦ୍‌ଗୀତାର ପ୍ରଥମ ଅଧ୍ୟାୟ ଆରମ୍ଭ ହୋଇଛି। ଏହା ମହାଭାରତର ଭୀଷ୍ମପର୍ବରେ ପଚିଶତମ ଅଧ୍ୟାୟରେ ରହିଛି। ଆରମ୍ଭରେ ଧୃତରାଷ୍ଟ୍ର ସଂଜୟଙ୍କୁ ପ୍ରଶ୍ନ କରୁଛନ୍ତି —

ଧୃତରାଷ୍ଟ୍ର ଉବାଚ

## ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ।
## ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଂଜୟ॥ ୧ ॥

**ଅନ୍ୱୟ –** **ସଂଜୟ** = ହେ ସଂଜୟ; **ଧର୍ମକ୍ଷେତ୍ରେ, କୁରୁକ୍ଷେତ୍ରେ** = ଧର୍ମଭୂମି କୁରୁକ୍ଷେତ୍ରରେ; **ସମବେତାଃ** = ଏକତ୍ରିତ ହୋଇଥିବା; **ଯୁଯୁତ୍ସବଃ** = ଯୁଦ୍ଧ କରିବାକୁ ଇଚ୍ଛୁକ; **ମାମକାଃ** = ମୋର; **ଚ, ଏବ** = ଓ; **ପାଣ୍ଡବାଃ** = ପାଣ୍ଡୁଙ୍କର ପୁତ୍ରମାନେ; **କିମ୍** = କଣ; **ଅକୁର୍ବତ** = କଲେ।

**ଧୃତରାଷ୍ଟ୍ର ପଚାରିଲେ – ହେ ସଂଜୟ! ଧର୍ମଭୂମି କୁରୁକ୍ଷେତ୍ରରେ ଯୁଦ୍ଧ କରିବା ଇଚ୍ଛାରେ ଏକତ୍ରିତ ହୋଇଥିବା ମୋର ଓ ପାଣ୍ଡୁଙ୍କର ପୁତ୍ରମାନେ କଣ କଲେ?॥ ୧ ॥**

**ପ୍ରଶ୍ନ –** **କୁରୁକ୍ଷେତ୍ର** କେଉଁ ସ୍ଥାନର ନାମ ଏବଂ ଏହାକୁ ଧର୍ମକ୍ଷେତ୍ର ବୋଲି କାହିଁକି କୁହାଯାଏ ?

**ଉତ୍ତର –** ମହାଭାରତ ବନପର୍ବର ତେୟାଅଶୀ ଅଧ୍ୟାୟରେ ଏବଂ ଶଲ୍ୟପର୍ବର ତେପନ ଅଧ୍ୟାୟରେ **କୁରୁକ୍ଷେତ୍ର**ର ମାହାତ୍ମ୍ୟ ବିଶେଷଭାବରେ ବର୍ଣ୍ଣିତ ହୋଇଛି। ସେଥିରେ ଏହା ସରସ୍ୱତୀ ନଦୀର ଦକ୍ଷିଣଭାଗ ଏବଂ ଦୃଷଦ୍‌ବତୀ ନଦୀର ଉତ୍ତରଭାଗ ମଧ୍ୟରେ ଅବସ୍ଥିତ ବୋଲି କୁହାଯାଇଛି। କଥିତ ଅଛି, ଏହାର ଦୈର୍ଘ୍ୟ ଓ ପ୍ରସ୍ଥ ପାଞ୍ଚ ପାଞ୍ଚ ଯୋଜନ ଥିଲା। ଏହି ସ୍ଥାନଟି ଅମ୍ବାଲାଠାରୁ ଦକ୍ଷିଣ ଏବଂ ଦିଲ୍ଲୀଠାରୁ ଉତ୍ତର ଦିଗରେ ଅବସ୍ଥିତ। ଏବେ ମଧ୍ୟ ସେଠାରେ କୁରୁକ୍ଷେତ୍ର ନାମକ ସ୍ଥାନ ରହିଛି। ଏହାର ଗୋଟିଏ ନାମ ସମନ୍ତପଞ୍ଚକ। ଶତପଥ ବ୍ରାହ୍ମଣାଦି ଶାସ୍ତ୍ରରେ କୁହାଯାଇଛି ଯେ, ଏଠାରେ ଅଗ୍ନି, ଇନ୍ଦ୍ର, ବ୍ରହ୍ମା ଆଦି ଦେବତାମାନେ ତପସ୍ୟା କରିଥିଲେ; ରାଜା କୁରୁ ମଧ୍ୟ ଏଠାରେ କଠିନ ତପସ୍ୟା କରିଥିଲେ। ପୁଣି ଏଠାରେ ମରୁଥିବା ଲୋକଙ୍କୁ ପରମଗତି ପ୍ରାପ୍ତ ହୁଏ। ଏହା ଛଡ଼ା ଅନ୍ୟ କେତେକ କଥା ମଧ୍ୟ ରହିଛି; ଏହିସବୁ କାରଣରୁ ଏହାକୁ ଧର୍ମକ୍ଷେତ୍ର ବା ପୁଣ୍ୟକ୍ଷେତ୍ର କୁହାଯାଏ।

**ପ୍ରଶ୍ନ –** ଧୃତରାଷ୍ଟ୍ର କେଉଁମାନଙ୍କୁ ଲକ୍ଷ୍ୟ କରି **ମାମକାଃ** ଓ **ପାଣ୍ଡବାଃ** ପଦ ବ୍ୟବହାର କରିଛନ୍ତି? ପୁଣି ତାହା ସହିତ **ସମବେତାଃ** ଓ **ଯୁଯୁତ୍ସବଃ** ବିଶେଷଣ ଲଗାଇ ଯେଉଁ **କିମ୍ ଅକୁର୍ବତ** କହିଛନ୍ତି, ତା'ର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଧୃତରାଷ୍ଟ୍ର **ମାମକାଃ** ପଦଟି ନିଜ ପକ୍ଷର ସମସ୍ତ ଯୋଦ୍ଧାମାନଙ୍କ ସହିତ ନିଜର ଦୁର୍ଯ୍ୟୋଧନାଦି ଏକଶହଏକ ପୁତ୍ରଙ୍କ ପାଇଁ କହିଛନ୍ତି ଏବଂ ଯୁଧିଷ୍ଠିରଙ୍କ ପକ୍ଷର ସମସ୍ତ ଯୋଦ୍ଧାଙ୍କ ସହିତ ଯୁଧିଷ୍ଠିରାଦି ପାଞ୍ଚଭାଇଙ୍କ ପାଇଁ **ପାଣ୍ଡବାଃ** ପଦ କହିଛନ୍ତି। **ସମବେତାଃ** ଓ **ଯୁଯୁତ୍ସବଃ** ବିଶେଷଣ ଦେଇ ଓ **କିମ୍ ଅକୁର୍ବତ** କହି ଧୃତରାଷ୍ଟ୍ର ଗତ ଦଶଦିନର ଭୀଷଣ ଯୁଦ୍ଧର ପୂର୍ଣ୍ଣବିବରଣୀ ଯଥା, ଯୁଦ୍ଧପାଇଁ ଏକତ୍ରିତ ହୋଇଥିବା ଏହିସବୁ ଲୋକମାନେ ଯୁଦ୍ଧର ପ୍ରାରମ୍ଭ କିପରି କଲେ, କିଏ କାହା ସହିତ ଯୁଦ୍ଧ କଲେ ଏବଂ କିଏ କାହାଦ୍ୱାରା କେତେବେଳେ ନିହତ ହେଲେ ଇତ୍ୟାଦି ଜାଣିବାକୁ ଚାହିଁଥିଲେ।

ଭୀଷ୍ମ ପିତାମହ ତଳେ ପଡ଼ିଯିବାପର୍ଯ୍ୟନ୍ତ ଭୀଷଣ ଯୁଦ୍ଧର ସମାଚାର ତ ଧୃତରାଷ୍ଟ୍ର ଶୁଣିସାରିଥିଲେ, ସୁତରାଂ ତାଙ୍କ ପ୍ରଶ୍ନର ତାତ୍ପର୍ଯ୍ୟ ଏହା ହୋଇପାରେ ନା ଯେ, ତାଙ୍କୁ ସେପର୍ଯ୍ୟନ୍ତ ଯୁଦ୍ଧର ସମ୍ବାଦ କିଛି ଜଣା ନ ଥିଲା; ତେଣୁ ସେ ଧର୍ମକ୍ଷେତ୍ରର ପ୍ରଭାବରେ ତାଙ୍କର ପୁତ୍ରମାନଙ୍କର ବୁଦ୍ଧି ସୁଧୁରିଯିବାରୁ ସେମାନେ ପାଣ୍ଡବମାନଙ୍କୁ ସେମାନଙ୍କର ସ୍ୱତ୍ୱ ଦେଇ ଯୁଦ୍ଧ କଲେ ନାହିଁ କି, ଅଥବା ଧର୍ମରାଜ ଯୁଧିଷ୍ଠିର ହିଁ ଧର୍ମକ୍ଷେତ୍ରର ପ୍ରଭାବରେ ପ୍ରଭାବିତ ହୋଇ ଯୁଦ୍ଧରୁ ନିବୃତ୍ତ ହୋଇଗଲେ କି, ବା ସେପର୍ଯ୍ୟନ୍ତ ଦୁଇ ପକ୍ଷର ସେନା ଠିଆ ହୋଇଛନ୍ତି କି, କିମ୍ବା ଯୁଦ୍ଧ ହୋଇଛି, ନା ନାହିଁ ଏବଂ ଯଦି ହୋଇଛି, ତାହାର ପରିଣାମ କଣ, ଇତ୍ୟାଦି ଇତ୍ୟାଦି ବିଷୟ ଜାଣିବାକୁ ଚାହିଁଥିଲେ ବୋଲି ମଧ୍ୟ କୁହାଯାଇ ନ ପାରେ।

**ସମ୍ବନ୍ଧ —** ଧୃତରାଷ୍ଟ୍ରଙ୍କ ପଚାରିବାରେ ସଂଜୟ କହିଲେ —

**ସଂଜୟ ଉବାଚ**

## ଦୃଷ୍ଟ୍ବା ତୁ ପାଣ୍ଡବାନୀକଂ ବ୍ୟୂଢଂ ଦୁର୍ଯ୍ୟୋଧନସ୍ତଦା ।
## ଆଚାର୍ଯ୍ୟମୁପସଙ୍ଗମ୍ୟ ରାଜା ବଚନମବ୍ରବୀତ୍ ।। ୨ ।।

**ଅନ୍ୱୟ —** ତଦା = ସେହି ସମୟରେ (ଯୁଦ୍ଧାରମ୍ଭରେ); **ରାଜା, ଦୁର୍ଯ୍ୟୋଧନଃ** = ରାଜା ଦୁର୍ଯ୍ୟୋଧନ; **ବ୍ୟୂଢମ୍** = ବ୍ୟୂହରଚନାଯୁକ୍ତ; **ପାଣ୍ଡବାନୀକମ୍** = ପାଣ୍ଡବସେନାକୁ; **ଦୃଷ୍ଟ୍ବା** = ଦେଖି; **ତୁ** = ଓ; **ଆଚାର୍ଯ୍ୟମ୍** = ଦ୍ରୋଣାଚାର୍ଯ୍ୟଙ୍କ; **ଉପସଙ୍ଗମ୍ୟ** = ପାଖକୁ ଯାଇ; **ବଚନମ୍, ଅବ୍ରବୀତ୍** = (ଏ) କଥା କହିଲେ ।

**ସଂଜୟ କହିଲେ — ଯୁଦ୍ଧାରମ୍ଭ ସମୟରେ ରାଜା ଦୁର୍ଯ୍ୟୋଧନ ବ୍ୟୂହରଚନାଯୁକ୍ତ ପାଣ୍ଡବସେନାକୁ ଦେଖି, ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ କହିଲେ, — ।। ୨ ।।**

**ପ୍ରଶ୍ନ —** ଦୁର୍ଯ୍ୟୋଧନଙ୍କୁ ରାଜା ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ସଂଜୟଙ୍କ ଦ୍ୱାରା ଦୁର୍ଯ୍ୟୋଧନଙ୍କୁ ରାଜା କୁହାଯିବାରେ ବିଭିନ୍ନ ଭାବ ଥାଇପାରେ , ଯଥା :—

(କ) ଦୁର୍ଯ୍ୟୋଧନ ବଡ଼ ବୀର ଓ ରାଜନୀତିଜ୍ଞ ଥିଲେ ତଥା ଶାସନର ସମସ୍ତ କାର୍ଯ୍ୟ ଦୁର୍ଯ୍ୟୋଧନ କରୁଥିଲେ ।

(ଖ) ସଞ୍ଜୟ ସମସ୍ତଙ୍କୁ ସମ୍ମାନ ଦିଅନ୍ତି ଓ ସଂଜୟ ସନ୍ଥସ୍ୱଭାବର ଲୋକ ଥିଲେ ।

(ଗ) ପୁତ୍ରଙ୍କ ପ୍ରତି ଆଦରସୂଚକ ବିଶେଷଣ ପ୍ରୟୋଗ ଶୁଣି ଧୃତରାଷ୍ଟ୍ର ଆନନ୍ଦିତ ହେବେ ।

**ପ୍ରଶ୍ନ —** ବ୍ୟୂହରଚନାଯୁକ୍ତ ପାଣ୍ଡବସେନାକୁ ଦେଖି ଦୁର୍ଯ୍ୟୋଧନ ଆଚାର୍ଯ୍ୟ ଦ୍ରୋଣଙ୍କ ପାଖକୁ ଗଲେ — ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ତାତ୍ପର୍ଯ୍ୟ ହେଉଛି, ପାଣ୍ଡବସେନାର ବ୍ୟୂହରଚନା ଏପରି ବିଚିତ୍ର ଢଙ୍ଗରେ କରାଯାଇଥିଲା ଯେ, ତାହା ଦେଖି ଦୁର୍ଯ୍ୟୋଧନ ଚକିତ ହୋଇଗଲେ ଏବଂ ଅଧୀର ହୋଇ ସ୍ୱୟଂ ତାହାର ସୂଚନା ଦେବାକୁ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଦୌଡ଼ିଗଲେ । ସେ ଭାବିଲେ, ପାଣ୍ଡବସେନାର ବ୍ୟୂହରଚନା ଦେଖି ଓ ଶୁଣି ଧନୁର୍ବେଦର ମହାନ୍ ଆଚାର୍ଯ୍ୟ ଗୁରୁ ଦ୍ରୋଣ ପାଣ୍ଡବସେନା ଅପେକ୍ଷା ନିଜ ସେନାରେ ଅଧିକ ବିଚିତ୍ର ଢଙ୍ଗରେ ବ୍ୟୂହରଚନା କରନ୍ତୁ ବୋଲି ପିତାମହଙ୍କୁ ପରାମର୍ଶ ଦେବେ ।

**ପ୍ରଶ୍ନ —** ଦୁର୍ଯ୍ୟୋଧନ ରାଜା ହୋଇ ସ୍ୱୟଂ ସେନାପତିଙ୍କ ପାଖକୁ କାହିଁକି ଗଲେ ? ତାଙ୍କୁ ନିଜ ପାଖକୁ ଡକାଇ ସବୁକଥା କାହିଁକି ବୁଝାଇ ନ ଦେଲେ ?

**ଉତ୍ତର —** ପିତାମହ ଭୀଷ୍ମ ପ୍ରଧାନ ସେନାପତି ଥିଲେ ସତ, ତଥାପି କୌରବସେନାରେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ସ୍ଥାନ ମଧ୍ୟ ଅତ୍ୟନ୍ତ ଉଚ୍ଚ ଏବଂ ଦାୟିତ୍ୱପୂର୍ଣ୍ଣ ଥିଲା । ସେନାରେ ମୁଖ୍ୟ ଯୋଦ୍ଧାମାନଙ୍କର ଯେଉଁ ସ୍ଥାନରେ ନିଯୁକ୍ତି ହୁଏ, ଯଦି ସେ ସେଠାରୁ ଚାଲିଯାଆନ୍ତି, ତେବେ ସୈନ୍ୟସଜ୍ଜାରେ ଅବ୍ୟବସ୍ଥା ଆସିଯାଏ । ତେଣୁ ଦ୍ରୋଣାଚାର୍ଯ୍ୟଙ୍କୁ ତାଙ୍କ ସ୍ଥାନରୁ ନ ଘୁଞ୍ଚାଇ ଦୁର୍ଯ୍ୟୋଧନ ସ୍ୱୟଂ ତାଙ୍କ ପାଖକୁ ଯିବା ଉଚିତ ବୋଲି ମନେ କଲେ । ତା' ଛଡ଼ା ଦ୍ରୋଣାଚାର୍ଯ୍ୟ ବୟୋବୃଦ୍ଧ ଓ ଜ୍ଞାନବୃଦ୍ଧ ହୋଇଥିବା ସଙ୍ଗେ ସଙ୍ଗେ ଗୁରୁ ହୋଇଥିବାରୁ ସମ୍ମାନର ପାତ୍ର ଥିଲେ; ପୁଣି ଦୁର୍ଯ୍ୟୋଧନଙ୍କୁ ତାଙ୍କ ସାହାଯ୍ୟରେ ନିଜର ସ୍ୱାର୍ଥସାଧନ କରିବାର ଥିଲା; ତେଣୁ ତାଙ୍କୁ ସମ୍ମାନ ଦେଇ ତାଙ୍କର ପ୍ରିୟପାତ୍ର ହେବାକୁ ଦୁର୍ଯ୍ୟୋଧନଙ୍କର ଅଭିଳାଷ ଥିଲା । ପାରମାର୍ଥିକ ଦୃଷ୍ଟିରୁ ସମସ୍ତଙ୍କୁ ନମ୍ରତାପୂର୍ଣ୍ଣ ସମ୍ମାନଯୁକ୍ତ ବ୍ୟବହାର ପ୍ରଦର୍ଶନ କରିବା ଉଚିତ; ରାଜନୀତିରେ ମଧ୍ୟ ବୁଦ୍ଧିମାନ୍ ପୁରୁଷ ନିଜର କାର୍ଯ୍ୟସିଦ୍ଧିପାଇଁ ଅନ୍ୟମାନଙ୍କୁ ଆଦର କରିଥାନ୍ତି । ଏହିସବୁ ଦୃଷ୍ଟିରୁ ସେ ସେଠାକୁ ଯିବା ଉଚିତ ଥିଲା ।

**ସମ୍ବନ୍ଧ —** ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ ଦୁର୍ଯ୍ୟୋଧନ ଯାହା କହିଥିଲେ, ବର୍ତ୍ତମାନ ତାହା କୁହାଯାଉଛି —

**ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂମ୍ ।**
**ବ୍ୟୂଢାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା ॥ ୩ ॥**

**ଅନ୍ୱୟ—** ଆଚାର୍ଯ୍ୟ = ହେ ଆଚାର୍ଯ୍ୟ; ତବ = ଆପଣଙ୍କର; **ଧୀମତା** = ବୁଦ୍ଧିମାନ୍; **ଶିଷ୍ୟେଣ** = ଶିଷ୍ୟ; ଦ୍ରୁପଦପୁତ୍ରେଣ = ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନଦ୍ୱାରା; ବ୍ୟୂଢାମ୍ = ବ୍ୟୂହାକାରରେ ସଜ୍ଜିତ ହୋଇଥିବା; ପାଣ୍ଡୁପୁତ୍ରାଣାମ୍ = ପାଣ୍ଡୁପୁତ୍ରମାନଙ୍କର; ଏତାମ୍ = ଏହି; ମହତୀମ୍ = ବିରାଟ; ଚମୂମ୍ = ସେନାକୁ; ପଶ୍ୟ = ଦେଖନ୍ତୁ ।

**ହେ ଆଚାର୍ଯ୍ୟ ! ଆପଣଙ୍କ ବୁଦ୍ଧିମାନ୍ ଶିଷ୍ୟ ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନଦ୍ୱାରା ବ୍ୟୂହାକାରରେ ସଜ୍ଜିତ ପାଣ୍ଡୁପୁତ୍ରମାନଙ୍କର ଏହି ବିରାଟ ସେନାକୁ ଦେଖନ୍ତୁ ॥ ୩ ॥**

**ପ୍ରଶ୍ନ—** 'ଧୃଷ୍ଟଦ୍ୟୁମ୍ନ ଦ୍ରୁପଦଙ୍କ ପୁତ୍ର, ଆପଣଙ୍କର ବୁଦ୍ଧିମାନ୍ ଶିଷ୍ୟ'— ଦୁର୍ଯ୍ୟୋଧନ କେଉଁ ଅଭିପ୍ରାୟରେ ଏପରି କହିଲେ ?

**ଉତ୍ତର—** ଦୁର୍ଯ୍ୟୋଧନ ବଡ଼ ଚତୁର କୂଟନୀତିଜ୍ଞ ଥିଲେ । ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ପ୍ରତିହିଂସା ତଥା ପାଣ୍ଡବଙ୍କ ପ୍ରତି ଦ୍ରୋଣାଚାର୍ଯ୍ୟଙ୍କର ମନ୍ଦଭାବନା ଉତ୍ପନ୍ନ କରାଇ ତାଙ୍କୁ ବିଶେଷ ଉତ୍ତେଜିତ କରିବାପାଇଁ ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୁପଦପୁତ୍ର ଏବଂ 'ଆପଣଙ୍କର ବୁଦ୍ଧିମାନ୍ ଶିଷ୍ୟ' ବୋଲି କହିଛନ୍ତି । ଏହି ଶବ୍ଦପ୍ରୟୋଗଦ୍ୱାରା ସେ ତାଙ୍କୁ ସୂଚାଇଦେଇଥିଲେ, ''ଦେଖନ୍ତୁ, ଦ୍ରୁପଦ ଆପଣଙ୍କ ସହିତ ପ୍ରଥମେ ଅନୁଚିତ ବ୍ୟବହାର କରିଥିଲେ ଏବଂ ପରେ ସେ ଆପଣଙ୍କୁ ବଧ କରିବା ଉଦ୍ଦେଶ୍ୟରେ ଯଜ୍ଞ କରି ଧୃଷ୍ଟଦ୍ୟୁମ୍ନଙ୍କୁ ପୁତ୍ରରୂପେ ପାଇଥିଲେ । ଧୃଷ୍ଟଦ୍ୟୁମ୍ନ ଏପରି କୂଟନୀତିଜ୍ଞ ଏବଂ ଆପଣ ଏପରି ସରଳ ଯେ, ଆପଣଙ୍କୁ ମାରିବାକୁ ଜନ୍ମ ହୋଇ ମଧ୍ୟ ସେ ଆପଣଙ୍କ ଦ୍ୱାରା ଧନୁର୍ବେଦ ଶିକ୍ଷା ପାଇଛି । ପୁଣି ବର୍ତ୍ତମାନ ମଧ୍ୟ ତା'ର ବୁଦ୍ଧିମତ୍ତା ଦେଖନ୍ତୁ ଯେ, ସେ ଆପଣଙ୍କୁ ପରାସ୍ତ କରିବାକୁ ଅତି ସୁନ୍ଦର ବ୍ୟୂହ ରଚନା କରିଛି । ଏପରି ପୁରୁଷକୁ ପାଣ୍ଡବମାନେ ନିଜର ପ୍ରଧାନ ସେନାପତି କରିଛନ୍ତି । ବର୍ତ୍ତମାନ ଆପଣଙ୍କର କର୍ତ୍ତବ୍ୟ କଣ, ଆପଣ ବିଚାର କରନ୍ତୁ ।''

**ପ୍ରଶ୍ନ—** କୌରବସେନା ଏଗାର ଅକ୍ଷୌହିଣୀ ଥିଲା ଏବଂ ପାଣ୍ଡବସେନା କେବଳ ସାତ ଅକ୍ଷୌହିଣୀ ଥିଲା; ତଥାପି ଦୁର୍ଯ୍ୟୋଧନ ତାହାକୁ ବିରାଟ ବୋଲି କାହିଁକି କହିଲେ ଏବଂ ତାହାକୁ ଦେଖିବାପାଇଁ ଆଚାର୍ଯ୍ୟଙ୍କୁ କାହିଁକି ଅନୁରୋଧ କଲେ ?

**ଉତ୍ତର—** ସଂଖ୍ୟାରେ କମ୍ ହେଲେ ମଧ୍ୟ ବଜ୍ରବ୍ୟୂହରେ ସଜ୍ଜିତ ହୋଇଥିବାରୁ ପାଣ୍ଡବସେନା ବିରାଟ ଜଣାଯାଉଥିଲା; ପୁଣି ସଂଖ୍ୟାରେ ଅପେକ୍ଷାକୃତ ସ୍ୱଳ୍ପ ଥାଇ ମଧ୍ୟ ଯେଉଁ ସେନାରେ ପୂର୍ଣ୍ଣ ସୁବ୍ୟବସ୍ଥା ଥାଏ, ସେହି ସେନା ବିଶେଷ ଶକ୍ତିଶାଳୀ ବୋଲି ପରିଗଣିତ ହୁଏ । ତେଣୁ ଦୁର୍ଯ୍ୟୋଧନ କହିଥିଲେ, ''ଆପଣ ଏହି ବ୍ୟୂହାକାରରେ ଠିଆ ହୋଇଥିବା ସୁବ୍ୟବସ୍ଥିତ ବିରାଟସେନାକୁ ଦେଖନ୍ତୁ ଏବଂ ଆମ ପକ୍ଷର ଯେପରି ବିଜୟ ହେବ, ସେପରି ଉପାୟ କରନ୍ତୁ ।''

**ସମ୍ବନ୍ଧ—** *ପାଣ୍ଡବସେନାଙ୍କ ବ୍ୟୂହରଚନା ଦେଖାଇ ବର୍ତ୍ତମାନ ଦୁର୍ଯ୍ୟୋଧନ ପରବର୍ତ୍ତୀ ତିନିଟି ଶ୍ଳୋକରେ ପାଣ୍ଡବସେନାର ପ୍ରମୁଖ ମହାରଥୀମାନଙ୍କର ନାମ କହୁଛନ୍ତି—*

**ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜୁନସମା ଯୁଧି ।**
**ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ ॥ ୪ ॥**
**ଧୃଷ୍ଟକେତୁଶ୍ଚେକିତାନଃ କାଶିରାଜଶ୍ଚ ବୀର୍ଯ୍ୟବାନ୍ ।**
**ପୁରୁଜିତ୍କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଙ୍ଗବଃ ॥ ୫ ॥**
**ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍ ।**
**ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବ ଏବ ମହାରଥାଃ ॥ ୬ ॥**

**ଅନ୍ୱୟ—** **ଅତ୍ର** = ଏହି ସେନାରେ; **ମହେଷ୍ୱାସାଃ** = ମହା ମହା ଧନୁର୍ଦ୍ଧାରୀମାନେ; **ଚ** = ତଥା; **ଯୁଧି** = ଯୁଦ୍ଧରେ; **ଭୀମାର୍ଜୁନସମାଃ** = ଭୀମ ଓ ଅର୍ଜୁନଙ୍କ ସମାନ; **ଶୂରାଃ** = ଶୂରବୀରମାନେ; **ଯୁଯୁଧାନଃ** = ସାତ୍ୟକି; **ଚ** = ଓ; **ବିରାଟଃ** = ବିରାଟ; **ଚ** = ତଥା; **ମହାରଥଃ** = ମହାରଥୀ; **ଦ୍ରୁପଦଃ** = ରାଜା ଦ୍ରୁପଦ; **ଧୃଷ୍ଟକେତୁଃ** = ଧୃଷ୍ଟକେତୁ; **ଚ** = ଓ; **ଚେକିତାନଃ** = ଚେକିତାନ; **ଚ** = ତଥା; **ବୀର୍ଯ୍ୟବାନ୍** = ବଳବାନ୍; **କାଶିରାଜଃ** = କାଶିରାଜ; **ପୁରୁଜିତ୍** = ପୁରୁଜିତ୍, **କୁନ୍ତିଭୋଜଃ** = କୁନ୍ତିଭୋଜ; **ଚ** = ଓ; **ନରପୁଙ୍ଗବଃ** = ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ; **ଶୈବ୍ୟଃ** = ଶୈବ୍ୟ; **ବିକ୍ରାନ୍ତଃ** = ପରାକ୍ରମୀ; **ଯୁଧାମନ୍ୟୁଃ** = ଯୁଧାମନ୍ୟୁ; **ଚ** = ତଥା; **ବୀର୍ଯ୍ୟବାନ୍** = ବଳବାନ୍; **ଉତ୍ତମୌଜାଃ** = ଉତ୍ତମୌଜା; **ସୌଭଦ୍ରଃ** = ସୁଭଦ୍ରାପୁତ୍ର ଅଭିମନ୍ୟୁ; **ଚ** = ଏବଂ; **ଦ୍ରୌପଦେୟାଃ** = ଦ୍ରୌପଦୀଙ୍କର ପାଞ୍ଚପୁତ୍ର (ଏମାନେ); **ସର୍ବେ, ଏବ** = ସମସ୍ତେ; **ମହାରଥାଃ** = ମହାରଥୀ (ଅଟନ୍ତି)।

**ଏହି ସେନାରେ ମହା ମହା ଧନୁର୍ଦ୍ଧାରୀ ତଥା ଯୁଦ୍ଧରେ ଭୀମ ଓ ଅର୍ଜୁନଙ୍କ ସମାନ ଶୂରବୀର ସାତ୍ୟକି, ବିରାଟ ତଥା ମହାରଥୀ ରାଜା ଦ୍ରୁପଦ, ଧୃଷ୍ଟକେତୁ ଓ ଚେକିତାନ ତଥା ବଳବାନ୍ କାଶିରାଜ, ପୁରୁଜିତ୍, କୁନ୍ତିଭୋଜ ଓ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶୈବ୍ୟ, ପରାକ୍ରମୀ ଯୁଧାମନ୍ୟୁ ତଥା ବଳବାନ୍ ଉତ୍ତମୌଜା, ସୁଭଦ୍ରାପୁତ୍ର ଅଭିମନ୍ୟୁ ଏବଂ ଦ୍ରୌପଦୀଙ୍କ ପାଞ୍ଚପୁତ୍ର ଅଛନ୍ତି; ଏମାନେ ସମସ୍ତେ ମହାରଥୀ। ॥ ୪,୫,୬ ॥**

**ପ୍ରଶ୍ନ—** ଏଠାରେ **ଅତ୍ର** ପଦ କେଉଁ ଅର୍ଥରେ ପ୍ରୟୋଗ କରାଯାଇଛି ?

**ଉତ୍ତର—** ଏଠାରେ **ଅତ୍ର** ପଦ ପାଣ୍ଡବସେନା ଅର୍ଥରେ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** **ଯୁଧି** ପଦର ଅନ୍ୱୟ **ଅତ୍ର** ସହିତ ନ କରି **ଭୀମାର୍ଜୁନସମାଃ** ସହିତ କାହିଁକି କରାଗଲା ?

**ଉତ୍ତର—** **ଯୁଧି** ପଦ ଏଠାରେ **ଅତ୍ର**ର ବିଶେଷ୍ୟ ହୋଇପାରିବ ନାହିଁ; କାରଣ ଏହି ସମୟରେ ଯୁଦ୍ଧ ଆରମ୍ଭ ହୋଇ ନ ଥିଲା। ଏହା ଛଡ଼ା ପ୍ରଥମେ ପାଣ୍ଡବସେନାର ବର୍ଣ୍ଣନା ହୋଇଥିବାରୁ **ଅତ୍ର** ପଦ ସ୍ୱଭାବତଃ ତାହାର ବାଚକ। ତେଣୁ ଏହା ସହିତ କୌଣସି ବିଶେଷ୍ୟର ସଂଯୋଗ ଆବଶ୍ୟକ ନୁହେଁ। **ଭୀମାର୍ଜୁନସମାଃ** ସହିତ **ଯୁଧି** ପଦର ଅନ୍ୱୟ କରି ଦେଖାଇଦିଆଯାଇଛି ଯେ, ଯେଉଁ ମହାରଥୀମାନଙ୍କର ନାମ ଦିଆଯାଇଛି, ସେମାନେ ପରାକ୍ରମୀ ଏବଂ ଯୁଦ୍ଧବିଦ୍ୟାରେ ଭୀମ ଓ ଅର୍ଜୁନଙ୍କ ସହିତ ସମାନ।

**ପ୍ରଶ୍ନ—** ଯୁଯୁଧାନ, ବିରାଟ, ଦ୍ରୁପଦ, ଧୃଷ୍ଟକେତୁ, ଚେକିତାନ, କାଶିରାଜ, ପୁରୁଜିତ୍, କୁନ୍ତିଭୋଜ, ଶୈବ୍ୟ, ଯୁଧାମନ୍ୟୁ ଓ ଉତ୍ତମୌଜା— ଏମାନେ ସବୁ କିଏ ?

**ଉତ୍ତର—** ଅର୍ଜୁନଙ୍କ ଶିଷ୍ୟ ସାତ୍ୟକିଙ୍କର ଅନ୍ୟ ନାମ **ଯୁଯୁଧାନ** (ମହା/ଉଦ୍ୟୋଗ/୮୧/ ୫ ରୁ ୮)। ସେ ଯାଦବବଂଶୀୟ ରାଜା ଶିନିଙ୍କର ପୁତ୍ର ଥିଲେ (ମହା/ଦ୍ରୋଣ/୧୪୪/୧୭-୧୯)। ସେ ଭଗବାନ୍ କୃଷ୍ଣଙ୍କର ପରମ ଅନୁଗତ ଥିଲେ ଏବଂ ବଡ଼ ବଳବାନ୍ ଓ ଅତିରଥୀ ଥିଲେ। ସେ ମହାଭାରତଯୁଦ୍ଧରେ ନ ମରି ଯାଦବମାନଙ୍କର ପାରସ୍ପରିକ ଯୁଦ୍ଧରେ ମରିଥିଲେ। ଯୁଯୁଧାନ ନାମରେ ଅନ୍ୟ ଜଣେ ଯାଦବବଂଶୀୟ ଯୋଦ୍ଧା ମଧ୍ୟ ଥିଲେ (ମହା/ଉଦ୍ୟୋଗ/୧୫୨/୬)।

**ବିରାଟ** ଥିଲେ ମତ୍ସ୍ୟଦେଶର ଧାର୍ମିକ ରାଜା। ପାଣ୍ଡବମାନେ ତାଙ୍କ ନଅରରେ ଏକ ବର୍ଷ ଅଜ୍ଞାତବାସ କରିଥିଲେ। ତାଙ୍କର ପୁତ୍ରୀ ଉତ୍ତରାର ବିବାହ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କ ସହିତ ହୋଇଥିଲା। ସେ ମହାଭାରତ ଯୁଦ୍ଧରେ ଉତ୍ତର, ଶ୍ୱେତ ଓ ଶଙ୍ଖନାମକ ତାଙ୍କ ତିନି ପୁତ୍ରଙ୍କ ସହିତ ନିହତ ହୋଇଥିଲେ।

**ଦ୍ରୁପଦ** ଥିଲେ ପାଞ୍ଚାଳଦେଶର ରାଜା ପୃଷତ୍‌ଙ୍କର ପୁତ୍ର। ରାଜା ପୃଷତ୍ ଓ ଭରଦ୍ୱାଜ ମୁନି ପରସ୍ପର ମିତ୍ର ଥିଲେ। ଦ୍ରୁପଦ ମଧ୍ୟ ବାଲ୍ୟାବସ୍ଥାରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ରହିଥିଲେ। ତେଣୁ ଭରଦ୍ୱାଜଙ୍କ ପୁତ୍ର ଦ୍ରୋଣଙ୍କ ସହିତ ତାଙ୍କର ମିତ୍ରତା ହୋଇଥିଲା। ପୃଷତ୍‌ଙ୍କ ପରଲୋକଗମନ ପରେ ଦ୍ରୁପଦ ରାଜା ହେଲେ। ତେଣୁ ଦିନେ ଦ୍ରୋଣ ତାଙ୍କ ନିକଟକୁ ଯାଇ ତାଙ୍କୁ ନିଜର ମିତ୍ର ବୋଲି କହିଲେ। ଦ୍ରୁପଦଙ୍କୁ ତାହା ଭଲ ଲାଗିଲା ନାହିଁ। ତେଣୁ ଦ୍ରୋଣ କ୍ଷୁବ୍ଧ ହୋଇ ସେଠାରୁ ଚାଲି ଆସିଲେ। ସେ କୌରବ ଓ ପାଣ୍ଡବଙ୍କୁ ଅସ୍ତ୍ରବିଦ୍ୟା ଶିକ୍ଷା ଦେଇ, ଗୁରୁଦକ୍ଷିଣାସ୍ୱରୂପ ଅର୍ଜୁନଙ୍କ ଦ୍ୱାରା ଦ୍ରୁପଦଙ୍କୁ

ପରାଜିତ କରାଇ, ନିଜ ଅପମାନର ପ୍ରତିଶୋଧ ନେବା ସଙ୍ଗେ ସଙ୍ଗେ ତାଙ୍କର ଅଧେରାଜ୍ୟ ଅଧିକାର କରିନେଇଥିଲେ। ଦ୍ରୁପଦ ଉପରେ ଉପରେ ଦ୍ରୋଣଙ୍କୁ ପ୍ରୀତି କରୁଥିଲେ ମଧ୍ୟ ତାଙ୍କ ମନରେ କ୍ଷୋଭ ରହିଥିଲା। ସେ ଦ୍ରୋଣଙ୍କୁ ମାରିବାଭଳି ପୁତ୍ରପ୍ରାପ୍ତିପାଇଁ ଯାଜ ଏବଂ ଉପଯାଜ ନାମକ ଋଷିଙ୍କ ଦ୍ୱାରା ଯଜ୍ଞ କରାଇଥିଲେ। ସେହି ଯଜ୍ଞବେଦୀରୁ ଧୃଷ୍ଟଦ୍ୟୁମ୍ନ ତଥା କୃଷ୍ଣା ପ୍ରକଟ ହୋଇଥିଲେ। କୃଷ୍ଣା 'ଦ୍ରୌପଦୀ' ବା 'ଯାଜ୍ଞସେନୀ' ନାମରେ ପ୍ରସିଦ୍ଧ ହେଲେ ଏବଂ ସ୍ୱୟମ୍ବରରେ ଜୟ କରି ପାଣ୍ଡବମାନେ ତାଙ୍କୁ ବିବାହ କରିଥିଲେ। ରାଜା ଦ୍ରୁପଦ ବଡ଼ ଶୂରବୀର ଓ ମହାରଥୀ ଥିଲେ। ମହାଭାରତ ଯୁଦ୍ଧରେ ଦ୍ରୋଣଙ୍କ ହାତରେ ତାଙ୍କର ମୃତ୍ୟୁ ହୋଇଥିଲା (ମହା/ଦ୍ରୋଣ/୧୮୬)।

**ଧୃଷ୍ଟକେତୁ** ଚେଦିଦେଶର ରାଜା ଶିଶୁପାଳଙ୍କର ପୁତ୍ର ଥିଲେ। ସେ ମହାଭାରତ ଯୁଦ୍ଧରେ ଦ୍ରୋଣଙ୍କ ହାତରେ ମରିଥିଲେ (ମହା/ଦ୍ରୋଣ/୧୨୫)।

**ଚେକିତାନ** ଥିଲେ ବୃଷ୍ଣିବଂଶୀୟ ଯାଦବ (ମହା/ଭୀଷ୍ମ/୮୪/୨୦); ସେ ମହାରଥୀ, ଯୋଦ୍ଧା ଓ ବଡ଼ ଶୂରବୀର ଥିଲେ। ପାଣ୍ଡବମାନଙ୍କର ସାତ ଅକ୍ଷୌହିଣୀ ସେନାର ସାତ ସେନାପତିଙ୍କ ମଧ୍ୟରୁ ସେ ଜଣେ ସେନାପତି ଥିଲେ (ମହା/ଉଦ୍ୟୋଗ/୧୫୧)। ସେ ମହାଭାରତ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ହାତରେ ମରିଥିଲେ (ମହା/ଶଲ୍ୟ/୧୨)।

**କାଶିରାଜ** କାଶୀର ରାଜା ଥିଲେ। ସେ ବଡ଼ ବୀର ଓ ମହାରଥୀ ଥିଲେ। ତାଙ୍କର ଠିକ୍ ନାମ କଣ, ଜଣା ପଡ଼େ ନାହିଁ (ମହା/ଉଦ୍ୟୋଗ/ ୧୭୧); କାଶିରାଜଙ୍କ ନାମ ସେନାବିନ୍ଦୁ ଓ କ୍ରୋଧହନ୍ତା ବୋଲି କୁହାଯାଇଛି। କର୍ଣ୍ଣପର୍ବ ଷଷ୍ଠ ଅଧ୍ୟାୟରେ, ଯେଉଁଠାରେ କାଶିରାଜଙ୍କ ମରିଯିବାର ବର୍ଣ୍ଣନା ଅଛି, ସେଠାରେ ତାଙ୍କର ନାମ ଅଭିଭୂ ବୋଲି କୁହାଯାଇଛି।

**ପୁରୁଜିତ୍ ଓ କୁନ୍ତିଭୋଜ** ଦୁହେଁ କୁନ୍ତୀଙ୍କର ଭାଇ ଥିଲେ ଓ ଯୁଧିଷ୍ଠିର ଆଦିଙ୍କର ମାମୁଁ ଥିଲେ। ଏ ଦୁହେଁ ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟଙ୍କ ହାତରେ ମରିଥିଲେ (ମହା/କର୍ଣ୍ଣ/୬/୨୨ ରୁ ୨୩)।

**ଶୈବ୍ୟ** ଥିଲେ ଧର୍ମରାଜ ଯୁଧିଷ୍ଠିରଙ୍କ ଶ୍ୱଶୁର। ତାଙ୍କର କନ୍ୟା ଦେବିକାଙ୍କ ସହିତ ଯୁଧିଷ୍ଠିରଙ୍କ ବିବାହ ହୋଇଥିଲା (ମହା/ଆଦି/୯୫)। ସେ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଅତ୍ୟନ୍ତ ବଳବାନ୍ ଓ ବୀର ଯୋଦ୍ଧା ଥିଲେ। ତେଣୁ ତାଙ୍କୁ ନରପୁଙ୍ଗବ କୁହାଯାଇଛି।

**ଯୁଧାମନ୍ୟୁ ଓ ଉତ୍ତମୌଜା** ଦୁଇ ଭାଇ ପାଞ୍ଚାଳଦେଶୀୟ ରାଜକୁମାର ଥିଲେ (ମହା/ଦ୍ରୋଣ/୧୩୦)। ସେମାନଙ୍କୁ ପ୍ରଥମେ ଅର୍ଜୁନଙ୍କ ରଥର ପହି ରକ୍ଷା କରିବାରେ ନିଯୁକ୍ତ କରାଯାଇଥିଲା (ମହା/ଭୀଷ୍ମ/୧୫/୧୯)। ସେ ଦୁହେଁ ବଡ଼ ପରାକ୍ରମୀ ଓ ବଳବାନ୍ ବୀର ଥିଲେ, ତେଣୁ ସେମାନଙ୍କ ନାମ ସହିତ କ୍ରମଶଃ 'ବିକ୍ରାନ୍ତ' ଓ 'ବୀର୍ଯ୍ୟବାନ୍'— ଦୁଇ ବିଶେଷଣ ଯୋଗ କରାଯାଇଛି। ସେ ଦୁହେଁ ଶୋଇଥିବା ସମୟରେ ଅଶ୍ୱତ୍ଥାମାଙ୍କ ହାତରେ ମରିଥିଲେ (ମହା/ସୌପ୍ତିକ/୮/୩୪ ରୁ ୩୭)

**ପ୍ରଶ୍ନ– ଅଭିମନ୍ୟୁ କିଏ ?**

**ଉତ୍ତର–** ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କ ଭଉଣୀ ସୁଭଦ୍ରାଙ୍କୁ ବିବାହ କରିଥିଲେ। ତାଙ୍କ ଗର୍ଭରୁ ଅଭିମନ୍ୟୁ ଜନ୍ମ ହୋଇଥିଲେ। ମତ୍ସ୍ୟଦେଶର ରାଜା ବିରାଟଙ୍କ କନ୍ୟା ଉତ୍ତରାଙ୍କ ସହିତ ଅଭିମନ୍ୟୁଙ୍କର ବିବାହ ହୋଇଥିଲା। ସେ ନିଜର ପିତା ଅର୍ଜୁନ ଓ ପ୍ରଦ୍ୟୁମ୍ନଙ୍କ ଠାରୁ ଯୁଦ୍ଧବିଦ୍ୟା ଶିକ୍ଷା କରିଥିଲେ। ସେ ଅସାଧାରଣ ବୀର ଥିଲେ। ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ଦିନେ ଏପରି ଚକ୍ରବ୍ୟୂହ ରଚନା କଲେ ଯେ, ପାଣ୍ଡବ ପକ୍ଷର ଯୁଧିଷ୍ଠିର, ଭୀମ, ନକୁଳ, ସହଦେବ, ବିରାଟ, ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ଆଦି କୌଣସି ବୀର ସେଥିରେ ପଶିପାରିଲେ ନାହିଁ; ଜୟଦ୍ରଥ ସମସ୍ତଙ୍କୁ ପରାସ୍ତ କରିଦେଲେ। ସେଦିନ ଅର୍ଜୁନ ଅନ୍ୟ ଆଡ଼େ ଯୁଦ୍ଧରେ ଲାଗିଥିଲେ। ବୀର ଯୁବକ ଅଭିମନ୍ୟୁ ଏକାକୀ ଉକ୍ତ ବ୍ୟୂହ ଭେଦ କରି ଭିତରେ ପଶିଗଲେ ଏବଂ ଅସଂଖ୍ୟ ବୀରଙ୍କୁ ସଂହାର କରି ନିଜର ଅସାଧାରଣ ବୀରତ୍ୱର ପରିଚୟ ଦେଲେ। କିନ୍ତୁ ସେ ଏକାକୀ ଥିବା ଅବସ୍ଥାରେ ତାଙ୍କୁ ଦ୍ରୋଣ, କୃପାଚାର୍ଯ୍ୟ, କର୍ଣ୍ଣ, ଅଶ୍ୱତ୍ଥାମା, ବୃହଦ୍‌ବଳ ଓ କୃତବର୍ମା– ଏହି ଛଅ ମହାରଥୀ ମିଶି ଅନ୍ୟାୟପୂର୍ବକ ଘେରିଗଲେ। ଏପରି ଅବସ୍ଥାରେ ମଧ୍ୟ ସେ ଏକାକୀ ଅନେକ ବୀରଙ୍କୁ ସଂହାର କଲେ। ଶେଷରେ ଦୁଃଶାସନଙ୍କ ପୁତ୍ର ତାଙ୍କ ମୁଣ୍ଡ ଉପରେ ନିର୍ଘାତ ଗଦା ପ୍ରହାର କଲା; ସେଥିରେ ତାଙ୍କର ମୃତ୍ୟୁ ହୋଇଗଲା (ମହା/ଦ୍ରୋଣ/୪୯)। ରାଜା ପରୀକ୍ଷିତ ତାଙ୍କର ପୁତ୍ର ଥିଲେ।

**ପ୍ରଶ୍ନ –** ଦ୍ରୌପଦୀଙ୍କ ପାଞ୍ଚ ପୁତ୍ର କିଏ କିଏ ?

**ଉତ୍ତର –** ପ୍ରତିବିନ୍ଧ୍ୟ, ସୁତସୋମ, ଶ୍ରୁତକର୍ମା, ଶତାନୀକ ଓ ଶ୍ରୁତସେନ– ଏହି ପାଞ୍ଚ ପୁତ୍ର କ୍ରମଶଃ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବଙ୍କ ଔରସରେ ଦ୍ରୌପଦୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ (ମହା/ଆଦି/୨୨୦/୭୯-୮୦)। ରାତିରେ ଶୋଇଥିବା ଅବସ୍ଥାରେ ସେମାନଙ୍କୁ ଅଶ୍ୱତ୍ଥାମା ହତ୍ୟା କରିଥିଲେ (ମହା/ସୌପ୍ତିକ/୮)।

**ପ୍ରଶ୍ନ – ସର୍ବେ ଏବ ମହାରଥାଃ —** ଏହି କଥାର ମର୍ମ କଣ ?

**ଉତ୍ତର – ଶାସ୍ତ୍ର ଓ ଶସ୍ତ୍ରବିଦ୍ୟାରେ ଅତ୍ୟନ୍ତ ନିପୁଣ ଅସାଧାରଣ ବୀରଙ୍କୁ ମହାରଥୀ କହନ୍ତି; ସେ ଏକାକୀ ଦଶହଜାର ଧନୁର୍ଦ୍ଧାରୀ ଯୋଦ୍ଧାଙ୍କୁ ସଂଚାଳନ କରନ୍ତି।**

**ଏକୋ ଦଶସହସ୍ରାଣି ଯୋଧୟେଦ୍ୟସ୍ତୁ ଧନ୍ୱିନାମ୍।**
**ଶସ୍ତ୍ରଶାସ୍ତ୍ରପ୍ରବୀଣଶ୍ଚ ମହାରଥ ଇତି ସ୍ମୃତଃ॥**

ଦୁର୍ଯ୍ୟୋଧନ ଯେଉଁ ଯୋଦ୍ଧାମାନଙ୍କ ନାମ ଦେଇଛନ୍ତି, ସେମାନେ ସମସ୍ତେ ମହାରଥୀ ବୋଲି ଏଠାରେ କୁହାଯାଇଛି। ମହାଭାରତ ଉଦ୍ୟୋଗପର୍ବର ୧୬୯ ରୁ ୧୭୨ ଶୋକପର୍ଯ୍ୟନ୍ତ ପ୍ରାୟ ଏହି ସମସ୍ତ ବୀରଙ୍କ ପରାକ୍ରମ ପୃଥକ୍ ପୃଥକ୍‌ଭାବରେ ବିଶେଷରୂପେ ବର୍ଣ୍ଣନା କରାଯାଇଛି। ସେଠାରେ ସେମାନଙ୍କୁ ଅତିରଥୀ ଓ ମହାରଥୀ ବୋଲି କୁହାଯାଇଛି। ସେମାନଙ୍କ ଛଡ଼ା ପାଣ୍ଡବସେନା ମଧ୍ୟରେ ଆହୁରି ଅନେକ ମହାରଥୀ ଥିଲେ; ସେମାନଙ୍କ ନାମ ମଧ୍ୟ ସେଠାରେ ଦିଆଯାଇଛି। **ସର୍ବେ** ପଦଦ୍ୱାରା ଦୁର୍ଯ୍ୟୋଧନ ସେହି ସମସ୍ତଙ୍କୁ ବୁଝାଇଛନ୍ତି।

***ସମ୍ବନ୍ଧ –*** *ପାଣ୍ଡବସେନାର ପ୍ରଧାନ ଯୋଦ୍ଧାମାନଙ୍କ ନାମ କହି ବର୍ତ୍ତମାନ ଦୁର୍ଯ୍ୟୋଧନ ଆଚାର୍ଯ୍ୟ ଦ୍ରୋଣଙ୍କୁ ନିଜ ସେନାର ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କ ନାମ ଶୁଣିବାକୁ ଅନୁରୋଧ କରୁଛନ୍ତି –*

## ଅସ୍ମାକଂ ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ ।
## ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ ॥ ୭ ॥

**ଅନ୍ୱୟ –** **ଦ୍ୱିଜୋତ୍ତମ** = ହେ ବ୍ରାହ୍ମଣଶ୍ରେଷ୍ଠ; **ଅସ୍ମାକମ୍** = ଆମ ପକ୍ଷରେ; **ତୁ** = ବି; **ଯେ** = ଯେଉଁ; **ବିଶିଷ୍ଟାଃ** = ପ୍ରଧାନ (ଯୋଦ୍ଧାମାନେ); **(ସନ୍ତି)** = ଅଛନ୍ତି; **ତାନ୍** = ସେମାନଙ୍କୁ; **ନିବୋଧ** = (ଆପଣ) ଜାଣିନିଅନ୍ତୁ; **ତେ** = ଆପଣଙ୍କ; **ସଂଜ୍ଞାର୍ଥମ୍** = ଜାଣିବାପାଇଁ; **ମମ** = ମୋର; **ସୈନ୍ୟସ୍ୟ** = ସେନାର; **ନାୟକାଃ** = (ଯେଉଁ) ସେନାପତିମାନେ (ଅଛନ୍ତି); **ତାନ୍** = ସେମାନଙ୍କୁ (ସେମାନଙ୍କର ନାମ); **ବ୍ରବୀମି** = କହୁଛି।

**ହେ ବ୍ରାହ୍ମଣଶ୍ରେଷ୍ଠ! ଆମ ପକ୍ଷରେ ବି ଯେଉଁ ପ୍ରଧାନ ଯୋଦ୍ଧାମାନେ ଅଛନ୍ତି, ସେମାନଙ୍କୁ ଆପଣ ଜାଣିନିଅନ୍ତୁ। ମୋ ସେନାର ଯେଉଁ ସେନାପତିମାନେ ଅଛନ୍ତି, ଆପଣଙ୍କ ଜାଣିବାନିମନ୍ତେ ସେମାନଙ୍କ ନାମ କହୁଛି ॥ ୭ ॥**

**ପ୍ରଶ୍ନ – ତୁ** ପ୍ରୟୋଗର ଅଭିପ୍ରାୟ କଣ ? **ଅସ୍ମାକମ୍** ସହିତ ଏହା ପ୍ରୟୋଗ କରି କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର – ତୁ** ଏଠାରେ ବି ଅର୍ଥରେ ଆସିଛି, **ଅସ୍ମାକମ୍** ସହିତ ଏହା ପ୍ରୟୋଗ କରି ଦୁର୍ଯ୍ୟୋଧନ କହିବାକୁ ଚାହୁଁଛନ୍ତି, ''କେବଳ ପାଣ୍ଡବସେନାରେ ନୁହେଁ, ଆମ ସେନାରେ ମଧ୍ୟ ବହୁ ମହାନ୍ ଶୂରବୀର ଅଛନ୍ତି।''

**ପ୍ରଶ୍ନ – ବିଶିଷ୍ଟାଃ** ପଦଦ୍ୱାରା କେଉଁମାନଙ୍କୁ ଲକ୍ଷ୍ୟ କରାଯାଇଛି ? **ନିବୋଧ** କ୍ରିୟାର ଅର୍ଥ କଣ ?

**ଉତ୍ତର –** ଦୁର୍ଯ୍ୟୋଧନ ଯାହାଙ୍କୁ ଲକ୍ଷ୍ୟ କରି **ବିଶିଷ୍ଟାଃ** ପଦ ପ୍ରୟୋଗ କରିଛନ୍ତି, ସେମାନେ ହେଉଛନ୍ତି ତାଙ୍କ ସେନାର ସବୁଠାରୁ ବଡ଼ ବୀର, ଧୀର, ବଳବାନ୍, ବୁଦ୍ଧିମାନ୍, ସାହସୀ, ପରାକ୍ରମୀ, ତେଜସ୍ୱୀ ଓ ଶସ୍ତ୍ରବିଦ୍ୟାବିଶାରଦ ପୁରୁଷ। **ନିବୋଧ** କ୍ରିୟାପଦଦ୍ୱାରା ସେ ସୂଚିତ କରୁଛନ୍ତି, ''ଆମ ସେନାମଧ୍ୟରେ ବି ଏପରି ସର୍ବୋତ୍ତମ ଶୂରବୀରଙ୍କ ସଂଖ୍ୟା କିଛି କମ୍ ନୁହେଁ। ମୁଁ ସେମାନଙ୍କ ମଧ୍ୟରୁ କେତେକ ବଛା ବଛା ବୀରଙ୍କ ନାମ ଆପଣଙ୍କ ବିଶେଷ ଗୋଚରାର୍ଥେ କହିଦେଉଛି; ଆପଣ ମୋ ଠାରୁ ଶୁଣନ୍ତୁ।''

**ସମ୍ବନ୍ଧ –** ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଦୁର୍ଯ୍ୟୋଧନ ନିଜପକ୍ଷର ପ୍ରଧାନ ବୀରମାନଙ୍କ ନାମ କହି ଅନ୍ୟାନ୍ୟ ବୀରମାନଙ୍କ ସହିତ ସେମାନଙ୍କର ପ୍ରଶଂସା କରୁଛନ୍ତି —

**ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତିଞ୍ଜୟଃ ।**
**ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତିସ୍ତଥୈବ ଚ ॥ ୮ ॥**

**ଅନ୍ୱୟ –** ଭବାନ୍ = ଆପଣ-ଦ୍ରୋଣାଚାର୍ଯ୍ୟ; ଚ = ଏବଂ; **ଭୀଷ୍ମଃ** = ପିତାମହ ଭୀଷ୍ମ; ଚ = ତଥା; **କର୍ଣ୍ଣଃ** = କର୍ଣ୍ଣ; ଚ = ଓ; **ସମିତିଞ୍ଜୟଃ** = ସଂଗ୍ରାମବିଜୟୀ; **କୃପଃ** = କୃପାଚାର୍ଯ୍ୟ; ଚ = ତଥା; **ତଥା** = ସେହିପରି; **ଏବ** = ହିଁ; **ଅଶ୍ୱତ୍ଥାମା** = ଅଶ୍ୱତ୍ଥାମା; **ବିକର୍ଣ୍ଣଃ** = ବିକର୍ଣ୍ଣ; ଚ = ଓ; **ସୌମଦତ୍ତିଃ** = ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ।

**ଆପଣ ଦ୍ରୋଣାଚାର୍ଯ୍ୟ, ପିତାମହ ଭୀଷ୍ମ, କର୍ଣ୍ଣ ଏବଂ ସଂଗ୍ରାମବିଜୟୀ କୃପାଚାର୍ଯ୍ୟ ତଥା ସେହିପରି ଅଶ୍ୱତ୍ଥାମା, ବିକର୍ଣ୍ଣ ଓ ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ଏବଂ- - -॥ ୮ ॥**

**ପ୍ରଶ୍ନ – ଦ୍ରୋଣାଚାର୍ଯ୍ୟ** କିଏ ? ଏବଂ ଦୁର୍ଯ୍ୟୋଧନ ସମସ୍ତ ବୀରମାନଙ୍କ ମଧ୍ୟରେ ତାଙ୍କୁ 'ଆପଣ' କହି କେଉଁ କାରଣରୁ ସର୍ବପ୍ରଥମେ ତାଙ୍କ ନାମ କହିଥିଲେ ?

**ଉତ୍ତର – ଦ୍ରୋଣାଚାର୍ଯ୍ୟ** ମହର୍ଷି ଭରଦ୍ୱାଜଙ୍କ ପୁତ୍ର ଥିଲେ । ସେ ମହର୍ଷି ଅଗ୍ନିବେଶ୍ୟ ଏବଂ ପରଶୁରାମଙ୍କ ଠାରୁ ସମସ୍ତ ରହସ୍ୟମୟ ଅସ୍ତ୍ରଶସ୍ତ୍ର ପ୍ରାପ୍ତ ହୋଇଥିଲେ । ସେ ବେଦବେଦାଙ୍ଗର ଜ୍ଞାତା, ମହାନ୍ ତପସ୍ୱୀ, ଧନୁର୍ବେଦ ତଥା ଶସ୍ତ୍ରାସ୍ତ୍ରବିଦ୍ୟାରେ ଅତ୍ୟନ୍ତ ମର୍ମଜ୍ଞ ଓ ଅନୁଭବୀ ଥିଲେ ଏବଂ ଯୁଦ୍ଧକଳାରେ ଜଣେ ନିପୁଣ ତଥା ପରମ ସାହସୀ ଅତିରଥୀ ବୀର ଥିଲେ । ବ୍ରହ୍ମାସ୍ତ୍ର, ଆଗ୍ନେୟାସ୍ତ୍ର ଆଦି ବିଚିତ୍ର ଅସ୍ତ୍ର ପ୍ରୟୋଗ କରିବା ତାଙ୍କୁ ଭଲଭାବରେ ଜଣା ଥିଲା । ଯୁଦ୍ଧକ୍ଷେତ୍ରରେ ସେ ଯେତେବେଳେ ନିଜର ପୂର୍ଣ୍ଣଶକ୍ତିରେ ଅଗ୍ରସର ହେଉଥିଲେ, ସେତେବେଳେ ତାଙ୍କୁ କେହି ଜୟ କରିପାରୁ ନ ଥିଲେ । ମହର୍ଷି ଶରଦ୍ୱାନ୍ଙ୍କ କନ୍ୟା କୃପୀଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ଅଶ୍ୱତ୍ଥାମା ତାଙ୍କର ପୁତ୍ର ଥିଲେ । ସେ ରାଜା ଦ୍ରୁପଦଙ୍କର ବାଲ୍ୟସଖା ଥିଲେ । ଅତଏ ସେ ଦ୍ରୁପଦଙ୍କ ନିକଟକୁ ଯାଇ ତାଙ୍କୁ 'ପ୍ରିୟ ମିତ୍ର' ବୋଲି ସମ୍ବୋଧନ କରିଥିଲେ । ଐଶ୍ୱର୍ଯ୍ୟମଦରେ ପ୍ରମତ୍ତ ଦ୍ରୁପଦ ତାଙ୍କୁ ଅପମାନ ଦେଇ କହିଥିଲେ, "ମୋ ପରି ଐଶ୍ୱର୍ଯ୍ୟସମ୍ପନ୍ନ ରାଜାଙ୍କ ସହିତ ତୁମ ପରି ନିର୍ଦ୍ଧନ, ଦରିଦ୍ର ଲୋକର ମିତ୍ରତା କୌଣସିପ୍ରକାରେ ସମ୍ଭବ ହୋଇପାରେ ନା ।" ଦ୍ରୁପଦଙ୍କ ତିରସ୍କାର ତାଙ୍କୁ ବଡ଼ ବାଧିଥିଲା ଏବଂ ସେ ହସ୍ତିନାପୁରକୁ ଆସି ନିଜର ଶାଳକ କୃପାଚାର୍ଯ୍ୟଙ୍କ ପାଖରେ ରହିଥିଲେ । ସେଠାରେ ପିତାମହ ଭୀଷ୍ମଙ୍କ ସହିତ ତାଙ୍କର ପରିଚୟ ହେଲା ଏବଂ ତାଙ୍କୁ କୌରବ-ପାଣ୍ଡବଙ୍କର ଶିକ୍ଷାନିମିତ୍ତ ନିଯୁକ୍ତ କରାଯାଇଥିଲା । ଶିକ୍ଷାଦାନ ସମାପ୍ତ କରି ଗୁରୁଦକ୍ଷିଣାରୂପରେ ସେ ତାଙ୍କର ଶିଷ୍ୟମାନଙ୍କୁ ରାଜା ଦ୍ରୁପଦଙ୍କୁ ବାନ୍ଧିଆଣିବାକୁ କହିଥିଲେ । କେବଳ ମହାତ୍ମା ଅର୍ଜ୍ଜୁନ ହିଁ ଗୁରୁଦେବଙ୍କର ଉକ୍ତ ଆଜ୍ଞା ପାଳନ କରିବାକୁ ସକ୍ଷମ ହୋଇଥିଲେ ଏବଂ ଦ୍ରୁପଦଙ୍କୁ ରଣକ୍ଷେତ୍ରରେ ହରାଇ ତାଙ୍କୁ ତାଙ୍କ ମନ୍ତ୍ରୀଙ୍କ ସହିତ ବାନ୍ଧିଆଣିଥିଲେ । ଦ୍ରୋଣ ଦ୍ରୁପଦଙ୍କୁ ମୃତ୍ୟୁଦଣ୍ଡ ନ ଦେଇ ଛାଡ଼ିଦେଇଥିଲେ; କିନ୍ତୁ ଭାଗୀରଥୀଠାରୁ ଉତ୍ତରଦିଗକୁ ଥିବା ତାଙ୍କ ରାଜ୍ୟ ନେଇଯାଇଥିଲେ । ମହାଭାରତଯୁଦ୍ଧରେ ସେ ପାଞ୍ଚଦିନପର୍ଯ୍ୟନ୍ତ ସେନାପତିପଦରେ ରହି ଘୋର ଯୁଦ୍ଧ କରିଥିଲେ ଏବଂ ଶେଷରେ ନିଜ ପୁତ୍ର ଅଶ୍ୱତ୍ଥାମା ମରିଗଲେ ବୋଲି ଭ୍ରାନ୍ତିମୂଳକ ସମ୍ବାଦ ପାଇ, ଶସ୍ତ୍ରାସ୍ତ୍ର ପରିତ୍ୟାଗପୂର୍ବକ ସମାଧିସ୍ଥ ହୋଇ ଭଗବାନଙ୍କ ଧ୍ୟାନରେ ନିମଗ୍ନ ହୋଇଯାଇଥିଲେ । ପ୍ରାଣତ୍ୟାଗ କରିବା ସମୟରେ ତାଙ୍କର ଜ୍ୟୋତିର୍ମୟ ସ୍ୱରୂପ ଏପରି ତେଜ ବିସ୍ତାର କରିଥିଲା ଯେ, ସେଥିରେ ସମସ୍ତ ଆକାଶମଣ୍ଡଳ ତେଜୋରାଶିରେ ପୂର୍ଣ୍ଣ ହୋଇଯାଇଥିଲା । ଏହି ଅବସ୍ଥାରେ ଧୃଷ୍ଟଦ୍ୟୁମ୍ନ ତୀକ୍ଷ୍ଣ ତରବାରିରେ ତାଙ୍କର ମସ୍ତକ ଛେଦନ କରିଦେଇଥିଲା ।

ଏଠାରେ ଦୁର୍ଯ୍ୟୋଧନ 'ଆପଣ' କହି ସର୍ବପ୍ରଥମେ ତାଙ୍କୁ ଗଣନା କରିବାର ଉଦ୍ଦେଶ୍ୟ ଥିଲା, ସେ ଅତ୍ୟନ୍ତ ପ୍ରସନ୍ନ ହୋଇ ତାଙ୍କ ପକ୍ଷରେ ଅଧିକ ଉତ୍ସାହର ସହିତ ଯୁଦ୍ଧ କରିବେ । ଦ୍ରୋଣ ଶିକ୍ଷାଗୁରୁ ହୋଇଥିବାରୁ, ତାଙ୍କୁ ସମ୍ମାନ ଦେଖାଇ ସର୍ବପ୍ରଥମେ 'ଆପଣ' କହି ଗଣନା କରିବା ମଧ୍ୟ ଯୁକ୍ତିସଙ୍ଗତ ଥିଲା ।

**ପ୍ରଶ୍ନ – ଭୀଷ୍ମ କିଏ ?**

**ଉତ୍ତର – ଭୀଷ୍ମ** ଥିଲେ ମହାରାଜ ଶାନ୍ତନୁଙ୍କର ପୁତ୍ର। ଗଙ୍ଗାଦେବୀଙ୍କ ଠାରୁ ତାଙ୍କର ଜନ୍ମ ହୋଇଥିଲା। ସେ **ଦ୍ୟୋ** ନାମକ ନବମ ବସୁଙ୍କ ଅବତାର ଥିଲେ (ମହା/ଶାନ୍ତି/ ୫୦/୨୬)। ତାଙ୍କର ପ୍ରଥମ ନାମ ଥିଲା **ଦେବବ୍ରତ**। ସେ ସତ୍ୟବତୀଙ୍କ ସହିତ ନିଜ ପିତାଙ୍କର ବିବାହ କରାଇବା ନିମନ୍ତେ ସତ୍ୟବତୀଙ୍କ ପାଳକପିତାଙ୍କ ଆଜ୍ଞାନୁସାରେ ପୂର୍ଣ୍ଣଯୌବନାବସ୍ଥାରେ ଜୀବନରେ କେବେ ହେଲେ ବିବାହ ନ କରିବାକୁ ତଥା ରାଜପଦ ତ୍ୟାଗ କରିବାକୁ ଭୀଷଣ ପ୍ରତିଜ୍ଞା କରିଥିଲେ; ଏପରି ଭୀଷଣ ପ୍ରତିଜ୍ଞା କରିଥିବାରୁ ତାଙ୍କ ନାମ **ଭୀଷ୍ମ** ହୋଇଥିଲା। ପିତାଙ୍କୁ ଆନନ୍ଦ ଦେବାପାଇଁ ସେ ମନୁଷ୍ୟମାତ୍ରଙ୍କେ ପ୍ରାୟ ସମସ୍ତଙ୍କର ପରମ ଲୋଭନୀୟ ସ୍ତ୍ରୀସୁଖ ଏବଂ ରାଜ୍ୟସୁଖ ସମ୍ପୂର୍ଣ୍ଣ ତ୍ୟାଗ କରିଦେଇଥିଲେ। ସେଥିରେ ପରମ ପ୍ରସନ୍ନ ହୋଇ ପିତା ଶାନ୍ତନୁ ତାଙ୍କୁ ଇଚ୍ଛାମୃତ୍ୟୁ ବର ଦେଇଥିଲେ। ସେ ବାଳ-ବ୍ରହ୍ମଚାରୀ, ଅତ୍ୟନ୍ତ ତେଜସ୍ୱୀ, ଶସ୍ତ୍ର ଓ ଶାସ୍ତ୍ରରେ ପୂର୍ଣ୍ଣପାରଦର୍ଶୀ, ଅନୁଭବୀ, ମହାନ୍ ଜ୍ଞାନୀ, ମହାନ୍ ବୀର ତଥା ଦୃଢ଼ନିଶ୍ଚୟୀ ମହାପୁରୁଷ ଥିଲେ। ତାଙ୍କ ଠାରେ ଶୌର୍ଯ୍ୟ, ବୀର୍ଯ୍ୟ, ତ୍ୟାଗ, ତିତିକ୍ଷା, କ୍ଷମା, ଦୟା, ଶମ, ଦମ, ସତ୍ୟ, ଅହିଂସା, ସନ୍ତୋଷ, ଶାନ୍ତି, ବଳ, ତେଜ, ନ୍ୟାୟପ୍ରିୟତା, ନମ୍ରତା, ଉଦାରତା, ଲୋକପ୍ରିୟତା, ସ୍ପଷ୍ଟବାଦିତା, ସାହସ, ବ୍ରହ୍ମଚର୍ଯ୍ୟ, ବୈରାଗ୍ୟ, ଜ୍ଞାନ, ବିଜ୍ଞାନ, ମାତୃପିତୃଭକ୍ତି ଏବଂ ଗୁରୁସେବା ଆଦି ସମସ୍ତ ସଦ୍‌ଗୁଣ ପୂର୍ଣ୍ଣରୂପରେ ବିକଶିତ ହୋଇ ରହିଥିଲା। ତାଙ୍କର ଜୀବନ ତ ଭଗବଦ୍‌ଭକ୍ତିରେ ଓତପ୍ରୋତ ହୋଇ ରହିଥିଲା। ତାଙ୍କ ଠାରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଓ ତତ୍ତ୍ୱର ଜ୍ଞାନ ଭଲଭାବରେ ଥିଲା ଏବଂ ସେ ତାଙ୍କର ପରମ ପ୍ରେମୀ, ଏକନିଷ୍ଠ, ପୂର୍ଣ୍ଣଶ୍ରଦ୍ଧାଳୁ ଭକ୍ତ ଥିଲେ। ମହାଭାରତଯୁଦ୍ଧରେ ତାଙ୍କର ସମ୍ମୁଖୀନ ହେବାକୁ ଅନ୍ୟ କୌଣସି ବୀର ନ ଥିଲେ। ସେ ଦୁର୍ଯ୍ୟୋଧନଙ୍କ ସମ୍ମୁଖରେ ପ୍ରତିଜ୍ଞା କରିଥିଲେ, "ପଞ୍ଚପାଣ୍ଡବଙ୍କୁ ମୁଁ କଦାପି ମାରିବି ନାହିଁ; କିନ୍ତୁ ପ୍ରତିଦିନ ଦଶହଜାର ଯୋଦ୍ଧାଙ୍କୁ ମାରିବି।" (ମହା/ଉଦ୍ୟୋଗ/ ୧୫୬/୨୧)। ସେ କୌରବପକ୍ଷରେ ପ୍ରଧାନ ସେନାପତିପଦରେ ରହି ଦଶଦିନପର୍ଯ୍ୟନ୍ତ ଘୋର ଯୁଦ୍ଧ କରିଥିଲେ। ତତ୍ପରେ ଶରଶଯ୍ୟାରେ ପଡ଼ିଥିବା ସମୟରେ ସମସ୍ତଙ୍କୁ ମହାନ୍ ଜ୍ଞାନୋପଦେଶ ଦେଇ ଉତ୍ତରାୟଣ ହୋଇଯିବା ପରେ ସ୍ୱେଚ୍ଛାରେ ଦେହ ତ୍ୟାଗ କରିଥିଲେ।

**ପ୍ରଶ୍ନ – କର୍ଣ୍ଣ କିଏ ?**

**ଉତ୍ତର – କର୍ଣ୍ଣ** କୁନ୍ତୀଙ୍କ ପୁତ୍ର ଥିଲେ। ସୂର୍ଯ୍ୟଦେବଙ୍କ ପ୍ରଭାବରେ କୁନ୍ତୀଙ୍କ କୁମାରୀ ଅବସ୍ଥାରେ ତାଙ୍କର ଜନ୍ମ ହୋଇଥିଲା। କୁନ୍ତୀ ତାଙ୍କୁ ପେଟୀରେ ପୂରାଇ ନଦୀରେ ଭସାଇଦେଇଥିଲେ; କିନ୍ତୁ ଭାଗ୍ୟବଶତଃ ତାଙ୍କର ମୃତ୍ୟୁ ହୋଇ ନ ଥିଲା। ପେଟୀ ଭାସି ଭାସି ଆସି ହସ୍ତିନାପୁରରେ ଲାଗିଥିଲା। ଅଧିରଥ ନାମକ ଜଣେ ସୂତ ତାଙ୍କୁ ଘରକୁ ନେଇଯାଇଥିଲେ ଓ ତାଙ୍କର ପତ୍ନୀ ରାଧା ତାହାଙ୍କୁ ପୁତ୍ରପରି ଲାଳନପାଳନ କରିଥିଲେ। କବଚ-କୁଣ୍ଡଳରୂପକ ଧନ ସହିତ କର୍ଣ୍ଣଙ୍କର ଜନ୍ମ ହୋଇଥିଲା; ତେଣୁ ଅଧିରଥ ତାଙ୍କର ନାମ **ବସୁଷେଣ** ରଖିଥିଲେ। ସେ ଦ୍ରୋଣାଚାର୍ଯ୍ୟ ଓ ପରଶୁରାମଙ୍କ ଠାରୁ ଶସ୍ତ୍ରାସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ ଏବଂ ଶାସ୍ତ୍ର ଓ ଶସ୍ତ୍ରବିଦ୍ୟା ଉଭୟରେ ବଡ଼ ପଣ୍ଡିତ ଓ ଅନୁଭବୀ ଥିଲେ। ଶସ୍ତ୍ରବିଦ୍ୟାରେ ଏବଂ ଯୁଦ୍ଧକଳାରେ ସେ ଅର୍ଜୁନଙ୍କ ସମକକ୍ଷ ବୀର ଥିଲେ। ଦୁର୍ଯ୍ୟୋଧନ ତାଙ୍କୁ ଅଙ୍ଗଦେଶର ରାଜା କରିଦେଇଥିଲେ। ଦୁର୍ଯ୍ୟୋଧନଙ୍କ ସହିତ ତାଙ୍କର ପ୍ରଗାଢ଼ ବନ୍ଧୁତା ଥିଲା ଏବଂ ସେ ଉଭୟ କାୟ ଓ ମନଦ୍ୱାରା ତାଙ୍କର ହିତଚିନ୍ତନରେ ଲାଗିରହିଥିଲେ। ଏପରି କି, ମାତା କୁନ୍ତୀ ଓ ଭଗବାନ୍ କୃଷ୍ଣ ବୁଝାଇବା ପରେ ମଧ୍ୟ, ସେ ଦୁର୍ଯ୍ୟୋଧନଙ୍କୁ ଛାଡ଼ି ପାଣ୍ଡବପକ୍ଷ ଗ୍ରହଣ କରି ନ ଥିଲେ। ସେ ସର୍ବଦା ସୂର୍ଯ୍ୟଦେବଙ୍କର ପୂଜା କରୁଥିଲେ ଏବଂ ତାଙ୍କର ଦାନଶୀଳତା ଅଦ୍ୱିତୀୟ ଥିଲା। ସୂର୍ଯ୍ୟପୂଜା କରିବା ସମୟରେ ତାଙ୍କୁ ଯେ ଯାହା ମାଗୁଥିଲା, ସେ ତାହା ଆନନ୍ଦରେ ଦେଇଦେଉଥିଲେ। ଦିନେ ଦେବରାଜ ଇନ୍ଦ୍ର ଅର୍ଜୁନଙ୍କ ମଙ୍ଗଳପାଇଁ ବ୍ରାହ୍ମଣବେଶ ଧରି ତାଙ୍କର ସହଜାତ ନୈସର୍ଗିକ କବଚ-କୁଣ୍ଡଳ ମାଗିଥିଲେ। କର୍ଣ୍ଣ ବଡ଼ ପ୍ରସନ୍ନତାର ସହିତ ତାହା ତାଙ୍କୁ ଦେଇଦେଇଥିଲେ। ଏହାର ପ୍ରତିଦାନରେ ଇନ୍ଦ୍ର ତାଙ୍କୁ ବୀରଘାତିନୀ ଅମୋଘ ଶକ୍ତି ପ୍ରଦାନ କରିଥିଲେ; କର୍ଣ୍ଣ ସେହି ଶକ୍ତିଦ୍ୱାରା ଭୀମସେନଙ୍କ ପୁତ୍ର ଘଟୋତ୍କଚଙ୍କୁ ଯୁଦ୍ଧସମୟରେ ବଧ କରିଥିଲେ। ଦ୍ରୋଣାଚାର୍ଯ୍ୟଙ୍କ ପରେ କର୍ଣ୍ଣ ଦୁଇଦିନପାଇଁ ପ୍ରଧାନ ସେନାପତିପଦରେ ରହି ଅର୍ଜୁନଙ୍କ ଦ୍ୱାରା ନିହତ ହୋଇଥିଲେ।

**ପ୍ରଶ୍ନ – କୃପାଚାର୍ଯ୍ୟ କିଏ ?**

**ଉତ୍ତର –** ସେ ଥିଲେ ଗୌତମବଂଶୀୟ ମହର୍ଷି ଶରଦ୍ୱାନ୍‌ଙ୍କ ପୁତ୍ର। ସେ ଧନୁର୍ବିଦ୍ୟାରେ ବଡ଼ ପାରଦର୍ଶୀ ଓ ଅନୁଭବୀ ଥିଲେ। ତାଙ୍କର ଭଉଣୀଙ୍କ ନାମ କୃପୀ। ମହାରାଜ ଶାନ୍ତନୁ କୃପା କରି ଦୁହିଁଙ୍କୁ ପାଳିଥିଲେ; ତେଣୁ

ତାଙ୍କର ନାମ କୃପ ଓ ଭଉଣୀଙ୍କ ନାମ କୃପୀ ହୋଇଥିଲା । ସେ ଥିଲେ ବେଦଶାସ୍ତ୍ରର ଜ୍ଞାତା, ଧର୍ମାତ୍ମା ତଥା ସଦ୍‌ଗୁଣସମ୍ପନ୍ନ ସଦାଚାରୀ ପୁରୁଷ । ଦ୍ରୋଣାଚାର୍ଯ୍ୟଙ୍କ ପୂର୍ବରୁ ସେ ପାଣ୍ଡବ, କୌରବ ଓ ଯାଦବମାନଙ୍କୁ ଧନୁର୍ବେଦ ଶିକ୍ଷା ଦେଉଥିଲେ । ସମସ୍ତ କୌରବବଂଶ ନାଶ ହେବା ପରେ ମଧ୍ୟ ସେ ଜୀବିତ ଥିଲେ । ସେ ପରୀକ୍ଷିତଙ୍କୁ ଅସ୍ତ୍ରବିଦ୍ୟା ଶିକ୍ଷା ଦେଇଥିଲେ । ସେ ଥିଲେ ବଡ଼ ବୀର ଓ ଶତ୍ରୁ ଉପରେ ବିଜୟ ପ୍ରାପ୍ତ କରିବାରେ ନିପୁଣ । ତେଣୁ ତାଙ୍କର ନାମ ସହିତ **ସମିତିଞ୍ଜୟଃ** ବିଶେଷଣ ଯୋଗ କରାଯାଇଛି ।

**ପ୍ରଶ୍ନ – ଅଶ୍ୱତ୍ଥାମା କିଏ ?**

**ଉତ୍ତର –** ଅଶ୍ୱତ୍ଥାମା ଥିଲେ ଆଚାର୍ଯ୍ୟ ଦ୍ରୋଣଙ୍କ ପୁତ୍ର । ସେ ଥିଲେ ଶସ୍ତ୍ରାସ୍ତ୍ରବିଦ୍ୟାରେ ଅତ୍ୟନ୍ତ ନିପୁଣ, ଯୁଦ୍ଧକଳାରେ ପ୍ରବୀଣ ଓ ବଡ଼ ଶୂରବୀର ମହାରଥୀ । ସେ ତାଙ୍କର ପିତା ଦ୍ରୋଣାଚାର୍ଯ୍ୟଙ୍କ ଠାରୁ ଯୁଦ୍ଧବିଦ୍ୟା ଶିକ୍ଷା କରିଥିଲେ ।

**ପ୍ରଶ୍ନ – ବିକର୍ଣ୍ଣ କିଏ ?**

**ଉତ୍ତର –** ଧୃତରାଷ୍ଟ୍ରଙ୍କ ଦୁର୍ଯ୍ୟୋଧନାଦି ଶହେ ପୁତ୍ରଙ୍କ ମଧ୍ୟରୁ ଜଣକର ନାମ ଥିଲା ବିକର୍ଣ୍ଣ । ସେ ବଡ଼ ଧର୍ମାତ୍ମା, ବୀର ଓ ମହାରଥୀ ଥିଲେ । କୌରବ ରାଜସଭାରେ ଅତ୍ୟାଚାରପୀଡ଼ିତା ଦ୍ରୌପଦୀ ଯେତେବେଳେ ପଚାରିଲେ, 'ମୁଁ ହାରିଗଲି; ନା ନାହିଁ?', ସେତେବେଳେ ବିଦୁରଙ୍କୁ ଛାଡ଼ି ଅନ୍ୟ ସମସ୍ତ ସଭାସଦ୍ ଚୁପ୍ ରହିଥିଲେ । ଏକମାତ୍ର ବିକର୍ଣ୍ଣ ହିଁ ସଭାରେ ଠିଆ ହୋଇ ଅତ୍ୟନ୍ତ ତୀବ୍ରକଣ୍ଠରେ ନ୍ୟାୟ ଓ ଧର୍ମର ଅନୁକୂଳ କଥା କହିଥିଲେ , "ଦ୍ରୌପଦୀଙ୍କ ପ୍ରଶ୍ନର ଉତ୍ତର ଦିଆ ନ ଯିବା ବଡ଼ ଅନ୍ୟାୟ । ମୋ ମତରେ, ଆପଣମାନେ ଦ୍ରୌପଦୀଙ୍କୁ ଜିତି ନାହୁଁ ।" (ମହା/ସଭା/ ୬୭/୧୮ ରୁ ୨୪) ।

**ପ୍ରଶ୍ନ – ସୌମଦତ୍ତି କିଏ ?**

**ଉତ୍ତର –** ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବାଙ୍କୁ **ସୌମଦତ୍ତି** କୁହାଯାଉଥିଲା । ସେ ଥିଲେ ଶାନ୍ତନୁଙ୍କ ବଡ଼ଭାଇ ବାହ୍ଲୀକଙ୍କ ପୌତ୍ର । ସେ ବଡ଼ ଧର୍ମାତ୍ମା, ଯୁଦ୍ଧକଳାରେ କୁଶଳ ଓ ଶୂରବୀର ମହାରଥୀ ଥିଲେ । ସେ ବହୁଳ ପରିମାଣରେ ଦକ୍ଷିଣା ଦେଇ ଅନେକ ଯଜ୍ଞ କରିଥିଲେ । ସେ ମହାଭାରତଯୁଦ୍ଧରେ ସାତ୍ୟକିଙ୍କ ହାତରେ ମରିଥିଲେ ।

**ପ୍ରଶ୍ନ – ତଥା ଓ ଏବ ଦୁଇ ଅବ୍ୟୟପଦ ପ୍ରୟୋଗର ଅଭିପ୍ରାୟ କ'ଣ ?**

**ଉତ୍ତର –** ଏହି ଦୁଇଟି ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଅଶ୍ୱତ୍ଥାମା, ବିକର୍ଣ୍ଣ ଏବଂ ଭୂରିଶ୍ରବା ମଧ୍ୟ କୃପାଚାର୍ଯ୍ୟଙ୍କ ପରି ସଂଗ୍ରାମବିଜୟୀ ଥିଲେ ।

**ଅନ୍ୟେ ଚ ବହବଃ ଶୂରା ମଦର୍ଥେ ତ୍ୟକ୍ତଜୀବିତାଃ ।**
**ନାନାଶସ୍ତ୍ରପ୍ରହରଣାଃ ସର୍ବେ ଯୁଦ୍ଧବିଶାରଦାଃ ।। ୯ ।।**

**ଅନ୍ୱୟ – ଅନ୍ୟେ ଚ** = (ଏମାନଙ୍କ ଛଡ଼ା) ଆହୁରି ମଧ୍ୟ; **ମଦର୍ଥେ** = ମୋ ପାଇଁ; **ତ୍ୟକ୍ତଜୀବିତାଃ** = ଜୀବନର ଆଶା ତ୍ୟାଗ କରିଦେଇଥିବା; **ବହବଃ** = ବହୁ; **ଶୂରାଃ** = ଶୂରବୀରମାନେ; **ନାନାଶସ୍ତ୍ରପ୍ରହରଣାଃ** = ନାନାପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ; **ସର୍ବେ** = ସମସ୍ତେ; **ଯୁଦ୍ଧବିଶାରଦାଃ** = ଯୁଦ୍ଧରେ ନିପୁଣ ।

**ଏମାନଙ୍କ ଛଡ଼ା ମୋ ପାଇଁ ଜୀବନର ଆଶା ତ୍ୟାଗ କରିଦେଇଥିବା ଆହୁରି ବହୁ ଶୂରବୀର ମଧ୍ୟ ନାନାପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଉପସ୍ଥିତ ଅଛନ୍ତି । ସେମାନେ ସମସ୍ତେ ଯୁଦ୍ଧରେ ନିପୁଣ ।। ୯ ।।**

**ପ୍ରଶ୍ନ –** ଏହି ଶ୍ଲୋକର ଭାବ କଣ ?

**ଉତ୍ତର –** ଏହା ପୂର୍ବରୁ ଶଲ୍ୟ, ବାହ୍ଲୀକ, ଭଗଦତ୍ତ, କୃତବର୍ମା ଏବଂ ଜୟଦ୍ରଥ ଆଦି ମହାରଥୀଙ୍କ ନାମ ନିଆଯାଇ ନାହିଁ । ଏହି ଶ୍ଲୋକରେ ସେହି ସମସ୍ତଙ୍କୁ ଦେଖାଇ ଦୁର୍ଯ୍ୟୋଧନ ନିଜର ମନକଥା ପ୍ରକାଶ କରୁଛନ୍ତି, "ମୋ ପକ୍ଷର ଯେଉଁ ଯେଉଁ ଶୂରବୀରଙ୍କ ନାମ ମୁଁ ଆଗରୁ କହିଛି, ସେମାନଙ୍କ ଛଡ଼ା ଆହୁରି ବହୁ ଯୋଦ୍ଧା ମଧ୍ୟ ତରବାରି, ଗଦା, ତ୍ରିଶୂଳ ଆଦି ହାତରେ ଧରାଯାଉଥିବା ଶସ୍ତ୍ରରେ ଏବଂ ବାଣ, ତୋମର, ଶକ୍ତି ଆଦି ନିକ୍ଷେପ କରାଯାଉଥିବା ଅସ୍ତ୍ରରେ ଭଲଭାବରେ ସଜ୍ଜିତ ହୋଇ ରହିଛନ୍ତି । ସେମାନେ ଯୁଦ୍ଧକଳାରେ କୁଶଳ ମହାରଥୀ ଏବଂ ସମସ୍ତେ ମୋ ପାଇଁ ପ୍ରାଣପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ପ୍ରସ୍ତୁତ । ଏଥିରୁ ଆପଣ ଏତିକି ବୁଝନ୍ତୁ ଯେ, ସେମାନେ ମରିବାପର୍ଯ୍ୟନ୍ତ ମୋ ପାଇଁ ପ୍ରାଣପଣେ ଯୁଦ୍ଧ କରିବେ ।"

*ସମ୍ବନ୍ଧ – ନିଜର ମହାରଥୀମାନଙ୍କ ପ୍ରଶଂସା କରିବା ପରେ ବର୍ତ୍ତମାନ ଦୁର୍ଯ୍ୟୋଧନ ଦୁଇପକ୍ଷର ସେନାକୁ ତୁଳନା କରି ନିଜସେନାକୁ ପାଣ୍ଡବସେନାଠାରୁ ଅଧିକ ଶକ୍ତିଶାଳୀ ଓ ଉତ୍ତମ ବୋଲି କହୁଛନ୍ତି।*

## ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଳଂ ଭୀଷ୍ମାଭିରକ୍ଷିତମ୍ ।
## ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଳଂ ଭୀମାଭିରକ୍ଷିତମ୍ ॥ ୧୦ ॥

**ଅନ୍ୱୟ –** **ଭୀଷ୍ମାଭିରକ୍ଷିତମ୍** = ଭୀଷ୍ମଙ୍କ ଦ୍ୱାରା ରକ୍ଷିତ; **ଅସ୍ମାକମ୍** = ଆମ୍ଭମାନଙ୍କର; **ତଦ୍** = ସେହି; **ବଳମ୍** = ସେନା; **ଅପର୍ଯ୍ୟାପ୍ତମ୍** = ଅପରିମିତ ଅର୍ଥାତ୍ ସବୁ ଦୃଷ୍ଟିରୁ ଅଜେୟ; **ତୁ** = ଏବଂ; **ଭୀମାଭିରକ୍ଷିତମ୍** = ଭୀମଙ୍କ ଦ୍ୱାରା ରକ୍ଷିତ; **ଏତେଷାମ୍** = ଏମାନଙ୍କର; **ଇଦମ୍** = ଏହି; **ବଳମ୍** = ସେନା; **ପର୍ଯ୍ୟାପ୍ତମ୍** = ପରିମିତ, ଅର୍ଥାତ୍ ଏହାକୁ ଜୟ କରିବା ଅତି ସହଜ।

**ଭୀଷ୍ମଙ୍କ ଦ୍ୱାରା ରକ୍ଷିତ ଆମ୍ଭମାନଙ୍କର ସେନା ଅପରିମିତ ଅର୍ଥାତ୍ ସବୁ ଦୃଷ୍ଟିରୁ ଅଜେୟ ଏବଂ ଭୀମଙ୍କ ଦ୍ୱାରା ରକ୍ଷିତ ଏମାନଙ୍କର ଏହି ସେନା ପରିମିତ ଅର୍ଥାତ୍ ଏହାକୁ ଜୟ କରିବା ଅତି ସହଜ। ॥ ୧୦ ॥**

**ପ୍ରଶ୍ନ –** ଦୁର୍ଯ୍ୟୋଧନ ନିଜସେନାକୁ ଭୀଷ୍ମ-ପିତାମହଙ୍କ ଦ୍ୱାରା ରକ୍ଷିତ ଏବଂ ଅପରିମିତ କହି କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଏହାଦ୍ୱାରା ଦୁର୍ଯ୍ୟୋଧନ କାରଣସହିତ ନିଜସେନାର ମହତ୍ତ୍ୱ ସିଦ୍ଧ କରିଛନ୍ତି। ତାଙ୍କର ବକ୍ତବ୍ୟର ଅର୍ଥ ହେଲା : ଆମର ସେନା ଉପରୋକ୍ତ ବହୁ ମହାରଥୀଙ୍କ ଦ୍ୱାରା ପରିପୂର୍ଣ୍ଣ, ପରଶୁରାମଙ୍କ ପରି ବୀରଙ୍କର ସମ୍ମୁଖୀନ ହେବାକୁ ସମର୍ଥ ତଥା ଭୂମଣ୍ଡଳର ଅଦ୍ୱିତୀୟ ବୀର ଭୀଷ୍ମପିତାମହଙ୍କ ଦ୍ୱାରା ସୁରକ୍ଷିତ ଏବଂ ସଂଖ୍ୟାରେ ପାଣ୍ଡବଙ୍କ ସୈନ୍ୟ ଅପେକ୍ଷା ଚାରି ଅକ୍ଷୌହିଣୀ ଅଧିକ। ଏପରି ସେନା ଉପରେ ବିଜୟ ଲାଭ କରିବା କାହାରି ପକ୍ଷରେ ସମ୍ଭବ ନୁହେଁ। ଆମ ସେନା ସମସ୍ତପ୍ରକାରେ ଅପର୍ଯ୍ୟାପ୍ତ — ଆବଶ୍ୟକତାଠାରୁ ଯଥେଷ୍ଟ ଅଧିକ ଶକ୍ତିଶାଳୀ; ଅତଏବ ସର୍ବଥା ଅଜେୟ। ମହାଭାରତ ଉଦ୍ୟୋଗ ପର୍ବର ପଞ୍ଚାବନ ଅଧ୍ୟାୟରେ ଯେଉଁଠାରେ ଦୁର୍ଯ୍ୟୋଧନ ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ନିଜସେନାର ବର୍ଣ୍ଣନା କରିଛନ୍ତି, ସେଠାରେ ପ୍ରାୟ ଏହି ମହାରଥୀମାନଙ୍କ ନାମ ନେଇ ତଥା ଭୀଷ୍ମଙ୍କ ଦ୍ୱାରା ସଂରକ୍ଷିତ ବୋଲି କହି ସେମାନଙ୍କ ମହତ୍ତ୍ୱ ବ୍ୟକ୍ତ କରିଛନ୍ତି। ଦୁର୍ଯ୍ୟୋଧନ ସ୍ପଷ୍ଟ ଶବ୍ଦରେ କହିଛନ୍ତି :–

**ଗୁଣହୀନଂ ପରେଷାଞ୍ଚ ବହୁ ପଶ୍ୟାମି ଭାରତ।**
**ଗୁଣୋଦୟଂ ବହୁଗୁଣମାତ୍ମନଶ୍ଚ ବିଶାମ୍ପତେ॥**

(ମହା/ଉଦ୍ୟୋଗ/ ୫୫/୬୭)

ଅର୍ଥାତ୍ 'ହେ ଭରତବଂଶୀ ରାଜନ୍! ମୁଁ ବିପକ୍ଷର ସେନାକୁ ବହୁଳାଂଶରେ ଗୁଣହୀନ ଦେଖୁଛି ଏବଂ ନିଜର ସେନାକୁ ବହୁଗୁଣରେ ଯୁକ୍ତ ତଥା ପରିଣାମରେ ଗୁଣର ଉଦୟକାରୀ ବୋଲି ମନେ କରୁଛି। ତେଣୁ ମୋର ପରାସ୍ତ ହେବାର କୌଣସି କାରଣ ନାହିଁ।'

ସେହିପରି ଭୀଷ୍ମପର୍ବରେ, ଯେଉଁଠାରେ ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କ ଆଗରେ ପୁନର୍ବାର ନିଜ ସେନାର ବର୍ଣ୍ଣନା କରିଛନ୍ତି, ସେଠାରେ ଗୀତାର ଉପରୋକ୍ତ ଶ୍ଲୋକଟି ଅବିକଳ ଦ୍ୱିତୀୟ ଥର କହିଦେଇଛନ୍ତି (ମହା/ଭୀଷ୍ମ/୫୧/୬) ଏବଂ ତାହାର ପୂର୍ବଶ୍ଲୋକରେ ମଧ୍ୟ କହିଛନ୍ତି :

**ଏକୈକଶଃ ସମର୍ଥା ହି ଯୂୟଂ ସର୍ବେ ମହାରଥାଃ।**
**ପାଣ୍ଡୁପୁତ୍ରାନ୍ ରଣେ ହନ୍ତୁଂ ସସୈନ୍ୟାନ୍ କିମୁ ସଂହତାଃ॥**

(ଭୀଷ୍ମ ୫୧/୫)

ଅର୍ଥାତ୍ 'ଆପଣମାନେ ସମସ୍ତେ ଏପରି ମହାରଥୀ ଯେ, ଯୁଦ୍ଧରେ ଏକାକୀ ସସୈନ୍ୟ ପାଣ୍ଡବମାନଙ୍କୁ ମାରିଦେବାକୁ ସମର୍ଥ ଅଟନ୍ତି। ଯଦି ସମସ୍ତେ ମିଶି ଯୁଦ୍ଧ କରିବେ, ତେବେ ତ ନିଶ୍ଚିତଭାବରେ ସେମାନଙ୍କୁ ସଂହାର କରିବେ; ଏଥିରେ କହିବାର କଣ ଅଛି ?'

ଅତଏବ **ଅପର୍ଯ୍ୟାପ୍ତ** ଶବ୍ଦରେ ଦୁର୍ଯ୍ୟୋଧନ ନିଜସେନାର ମହତ୍ତ୍ୱ ବ୍ୟକ୍ତ କରିଛନ୍ତି ଏବଂ ଏଠାରେ ଏହି ଶ୍ଲୋକଟି ନିଜପକ୍ଷର ଯୋଦ୍ଧାମାନଙ୍କୁ ଉତ୍ସାହିତ କରିବାପାଇଁ ହିଁ କୁହାଯାଇଛି। ଏପରି କହିବା ଉଚିତ ଏବଂ ପ୍ରାସଙ୍ଗିକ ମଧ୍ୟ ହୋଇଛି।

**ପ୍ରଶ୍ନ –** ପାଣ୍ଡବସେନାକୁ ଭୀମଙ୍କ ଦ୍ୱାରା ରକ୍ଷିତ ଏବଂ **ପର୍ଯ୍ୟାପ୍ତ** କହିବାଦ୍ୱାରା କେଉଁ ଭାବ ପ୍ରକାଶ ପାଉଛି ?

**ଉତ୍ତର —** ଏହାଦ୍ୱାରା ଦୁର୍ଯ୍ୟୋଧନ ପାଣ୍ଡବପକ୍ଷର ନ୍ୟୂନତା ସିଦ୍ଧ କରିଛନ୍ତି। ତାଙ୍କ କହିବାର କଥା ହେଲା : ଯେଉଁଠାରେ ଆମସେନାର ସଂରକ୍ଷକ ଭୀଷ୍ମ, ସେଠାରେ ସେମାନଙ୍କ ପକ୍ଷର ସଂରକ୍ଷକ ଭୀମ। ଭୀମ ଶରୀରଦୃଷ୍ଟିରୁ ଅତ୍ୟନ୍ତ ବଳବାନ୍ ହେଲେ ମଧ୍ୟ ଭୀଷ୍ମଙ୍କ ସମକକ୍ଷ ନୁହନ୍ତି। ରଣକଳାକୁଶଳ ଶସ୍ତ୍ରଶାସ୍ତ୍ରନିପୁଣ ପରମ ବୁଦ୍ଧିମାନ୍ ଭୀଷ୍ମପିତାମହଙ୍କ ତୁଳନାରେ ଧନୁର୍ବିଦ୍ୟାରେ ଅକୁଶଳ ସ୍ଥୂଳବୁଦ୍ଧି ଭୀମଙ୍କ ସ୍ଥାନ କେଉଁଠି! ତେଣୁ ସେମାନଙ୍କ ସେନା 'ପର୍ଯ୍ୟାପ୍ତ' ଅର୍ଥାତ୍ ସୀମିତ-ଶକ୍ତିଶାଳୀ; ଆମର ସେନା ସହଜରେ ସେମାନଙ୍କ ଉପରେ ବିଜୟ ଲାଭ କରିପାରିବ।

***ସମ୍ବନ୍ଧ —** ଏପରିଭାବରେ ଭୀଷ୍ମଙ୍କ ଦ୍ୱାରା ସଂରକ୍ଷିତ ନିଜର ସେନାକୁ ଅଜେୟ ବୋଲି କହି, ବର୍ତ୍ତମାନ ଦୁର୍ଯ୍ୟୋଧନ ବହୁପ୍ରକାରେ ଭୀଷ୍ମଙ୍କୁ ରକ୍ଷା କରିବାନିମନ୍ତେ ଦ୍ରୋଣାଚାର୍ଯ୍ୟ ଆଦି ସମସ୍ତ ମହାରଥୀଙ୍କୁ ଅନୁରୋଧ କରୁଛନ୍ତି —*

**ଅୟନେଷୁ ଚ ସର୍ବେଷୁ ଯଥାଭାଗମବସ୍ଥିତାଃ।**
**ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବ ଏବ ହି ।। ୧୧ ।।**

**ଅନ୍ୱୟ —** ଚ = ତେଣୁ; **ସର୍ବେଷୁ** = ସକଳ; **ଅୟନେଷୁ** = ବ୍ୟୂହଦ୍ୱାରରେ; **ଯଥାଭାଗମ୍** = ନିଜ ନିଜ ସ୍ଥାନରେ; **ଅବସ୍ଥିତାଃ** = ସଜାଗ ରହି; **ଭବନ୍ତଃ** = ଆପଣମାନେ; **ସର୍ବେ, ଏବ** = ସମସ୍ତେ; **ହି** = ନିଶ୍ଚିତଭାବରେ; **ଭୀଷ୍ମମ୍** = ଭୀଷ୍ମଙ୍କୁ; **ଏବ** = ହିଁ; **ଅଭିରକ୍ଷନ୍ତୁ** = ସକଳ ଦିଗରୁ ରକ୍ଷା କରନ୍ତୁ।

**ତେଣୁ ସକଳ ବ୍ୟୂହଦ୍ୱାରରେ ନିଜ ନିଜ ସ୍ଥାନରେ ରହି ଆପଣମାନେ ସମସ୍ତେ ନିଶ୍ଚିତଭାବରେ ଭୀଷ୍ମ ପିତାମହଙ୍କୁ ହିଁ ସକଳ ଦିଗରୁ ରକ୍ଷା କରନ୍ତୁ। ।। ୧୧ ।।**

**ପ୍ରଶ୍ନ —** ଏହି ଶ୍ଲୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ପିତାମହ ଭୀଷ୍ମ ନିଜକୁ ରକ୍ଷା କରିବାକୁ ସର୍ବଥା ସମର୍ଥ ବୋଲି ଦୁର୍ଯ୍ୟୋଧନ ଜାଣିଥିଲେ। କିନ୍ତୁ ଭୀଷ୍ମ ପ୍ରଥମରୁ କହିଦେଇଥିଲେ, ''ଦ୍ରୁପଦପୁତ୍ର ଶିଖଣ୍ଡୀ ପ୍ରଥମେ ସ୍ତ୍ରୀ ଥିଲା; ପରେ ପୁରୁଷ ହୋଇଛି; ସ୍ତ୍ରୀରୂପରେ ଜନ୍ମ ହୋଇଥିବାରୁ ମୁଁ ତାହାକୁ ସ୍ତ୍ରୀ ବୋଲି ମାନେ। ସ୍ତ୍ରୀଜାତି ଉପରେ ବୀରପୁରୁଷମାନେ ଶସ୍ତ୍ର ପ୍ରୟୋଗ କରନ୍ତି ନାହିଁ; ତେଣୁ ସେ ମୋ ଆଗକୁ ଆସିଗଲେ, ମୁଁ ତା' ଉପରେ ଶସ୍ତ୍ର ପ୍ରୟୋଗ କରିବି ନାହିଁ।'' ତେଣୁ ସମସ୍ତ ସେନା ଏକତ୍ର ହୋଇଯିବା ପରେ ଦୁର୍ଯ୍ୟୋଧନ ସମସ୍ତ ଯୋଦ୍ଧାଙ୍କ ସହିତ ଦୁଃଶାସନଙ୍କୁ ପ୍ରଥମରୁ ହିଁ ସାବଧାନ କରି ବିସ୍ତାରିତଭାବରେ ଏହି କଥା ବୁଝାଇଦେଇଥିଲେ (ମହା/ଭୀଷ୍ମ/ ୧୫/୧୪ରୁ ୨୦)।

ଏଠାରେ ମଧ୍ୟ ସେହି ଭୟର ଆଶଙ୍କା କରି ଦୁର୍ଯ୍ୟୋଧନ ନିଜପକ୍ଷର ସମସ୍ତ ପ୍ରଧାନ ପ୍ରଧାନ ମହାରଥୀମାନଙ୍କୁ ଅନୁରୋଧ କରିଛନ୍ତି, ''ଆପଣମାନେ ଯେ ଯେଉଁ ବ୍ୟୂହଦ୍ୱାରରେ ସୈନ୍ୟଦଳ ନେଇ ନିଯୁକ୍ତ ଅଛନ୍ତି, ସେ ସେଠାରେ ଦୃଢ଼ ହୋଇ ଏବଂ ଅତ୍ୟନ୍ତ ସାବଧାନ ହୋଇ ରହନ୍ତୁ, ଯେପରି କି କୌଣସି ବି ବ୍ୟୂହଦ୍ୱାରଦେଇ ଶିଖଣ୍ଡୀ ଆମ ସେନା ମଧ୍ୟରେ ପ୍ରବେଶ କରି ଭୀଷ୍ମପିତାମହଙ୍କ ସମ୍ମୁଖରେ ପହଞ୍ଚିପାରିବ ନାହିଁ। ସମ୍ମୁଖରେ ପଡ଼ିଲେ ହିଁ ତାକୁ ମାରି ତାଡ଼ିଦେବାକୁ ସମସ୍ତ ମହାରଥୀ ପ୍ରସ୍ତୁତ ହୋଇ ରହନ୍ତୁ। ଯଦି ଆପଣମାନେ ଶିଖଣ୍ଡୀଠାରୁ ଭୀଷ୍ମପିତାମହଙ୍କୁ ରକ୍ଷା କରିପାରିବେ, ତେବେ ଆମର କୌଣସିପ୍ରକାର ଭୟ ନାହିଁ। ଅନ୍ୟାନ୍ୟ ମହାରଥୀମାନଙ୍କୁ ପରାଜିତ କରିବା ଭୀଷ୍ମପିତାମହଙ୍କ ପକ୍ଷରେ ଅତି ସହଜ।''

***ସମ୍ବନ୍ଧ —** ଦୁର୍ଯ୍ୟୋଧନଙ୍କ ଦ୍ୱାରା ନିଜପକ୍ଷର ମହାରଥୀମାନଙ୍କୁ, ବିଶେଷତଃ ପିତାମହ ଭୀଷ୍ମଙ୍କୁ ପ୍ରଶଂସା କରାଯିବାର ବର୍ଣ୍ଣନା ଶୁଣାଇବା ପରେ ସଂଜୟ ତାହାର ପରବର୍ତ୍ତୀ ଘଟଣା ବର୍ଣ୍ଣନା କରୁଛନ୍ତି —*

**ତସ୍ୟ ସଂଜନୟନ୍ ହର୍ଷଂ କୁରୁବୃଦ୍ଧଃ ପିତାମହଃ।**
**ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଙ୍ଖଂ ଦଧ୍ମୌ ପ୍ରତାପବାନ୍।। ୧୨ ।।**

**ଅନ୍ୱୟ –** **କୁରୁବୃଦ୍ଧଃ** = କୌରବମାନଙ୍କ ମଧ୍ୟରେ ବୃଦ୍ଧ; **ପ୍ରତାପବାନ୍** = ମହାପ୍ରତାପୀ; **ପିତାମହଃ** = ପିତାମହ ଭୀଷ୍ମ; **ତସ୍ୟ** = ତାହାଙ୍କର (ଦୁର୍ଯ୍ୟୋଧନଙ୍କ ହୃଦୟରେ); **ହର୍ଷମ୍** = ହର୍ଷ; **ସଂଜନୟନ୍** = ଉତ୍ପନ୍ନ କରାଇ; **ଉଚ୍ଚୈଃ** = ଉଚ୍ଚ ସ୍ୱରରେ; **ସିଂହନାଦମ୍** = ସିଂହନାଦପରି; **ବିନଦ୍ୟ** = ଗର୍ଜନ କରି; **ଶଙ୍ଖମ୍** = ଶଙ୍ଖ, **ଦଧ୍ମୌ** = ବଜାଇଲେ ।

**କୁରୁବୃଦ୍ଧ ମହାପ୍ରତାପୀ ପିତାମହ ଭୀଷ୍ମ ଦୁର୍ଯ୍ୟୋଧନଙ୍କ ହୃଦୟରେ ହର୍ଷ ଉତ୍ପନ୍ନ କରାଇ ଉଚ୍ଚସ୍ୱରରେ ସିଂହନାଦପରି ଗର୍ଜନ କରି ଶଙ୍ଖ ବଜାଇଲେ । ।। ୧୨ ।।**

**ପ୍ରଶ୍ନ –** ଏହି ଶ୍ଳୋକର ଅର୍ଥ କଣ ?

**ଉତ୍ତର –** ଭୀଷ୍ମ ପିତାମହ କୁରୁକୁଳରେ ବାହ୍ଲୀକଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କ ଠାରୁ ବୟସ୍କ ଥିଲେ । କୌରବ ଓ ପାଣ୍ଡବଙ୍କ ସହିତ ତାଙ୍କର ଏକାପରି ସମ୍ବନ୍ଧ ଥିଲା ଏବଂ ପିତାମହରୂପରେ ସେ ଉଭୟଙ୍କର ପୂଜ୍ୟ ଥିଲେ; ତେଣୁ ସଂଜୟ ତାହାଙ୍କୁ କୌରବମାନଙ୍କ ମଧ୍ୟରେ ବୃଦ୍ଧ ଓ ପିତାମହ ବୋଲି କହିଛନ୍ତି । ବୟସରେ ଅତ୍ୟନ୍ତ ବୃଦ୍ଧ ହେଲେ ମଧ୍ୟ ତେଜ, ବଳ, ପରାକ୍ରମ, ବୀରତ୍ୱ ଏବଂ କ୍ଷମତାରେ ବଡ଼ ବଡ଼ ବୀରଯୁବକମାନଙ୍କ ଠାରୁ ବି ସେ ଶ୍ରେଷ୍ଠତର ଥିଲେ । ତେଣୁ ତାଙ୍କୁ **ପ୍ରତାପବାନ୍** କୁହାଯାଇଛି । ଏପରି ପିତାମହ ଭୀଷ୍ମ ଯେତେବେଳେ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ଠିଆ ହୋଇଥିବା ଦୁର୍ଯ୍ୟୋଧନଙ୍କୁ ପାଣ୍ଡବ ସେନାକୁ ଚାହିଁ ଚକିତ ଓ ଚିନ୍ତିତ ଥିବାର ଦେଖିଲେ ଏବଂ ତା' ସହିତ ଏହା ବି ଦେଖିଲେ ଯେ, ନିଜ ଚିନ୍ତାକୁ ଲୁଚାଇ ସେ ଯୋଦ୍ଧାମାନଙ୍କର ଉତ୍ସାହ-ବର୍ଦ୍ଧନପାଇଁ ସେମାନଙ୍କୁ ପ୍ରଶଂସା କରୁଛନ୍ତି ଓ ତାଙ୍କୁ (ଭୀଷ୍ମଙ୍କୁ) ରକ୍ଷା କରିବାକୁ ଦ୍ରୋଣାଚାର୍ଯ୍ୟ ଆଦି ମହାରଥୀମାନଙ୍କୁ ଅନୁରୋଧ କରୁଛନ୍ତି, ସେତେବେଳେ ନିଜର ପ୍ରଭାବ ଦେଖାଇ ସେମାନଙ୍କୁ ପ୍ରସନ୍ନ କରିବାନିମନ୍ତେ ତଥା ପ୍ରଧାନ ସେନାପତିରୂପରେ ସମସ୍ତ ସେନା ମଧ୍ୟରେ ଯୁଦ୍ଧାରମ୍ଭର ଘୋଷଣା କରିବାନିମନ୍ତେ ସେ (ଭୀଷ୍ମ) ସିଂହନାଦପରି ଉଚ୍ଚସ୍ୱରରେ ଗର୍ଜନ କରି ଶଙ୍ଖ ବଜାଇଲେ ।

**ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ ।**
**ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ ।। ୧୩ ।।**

**ଅନ୍ୱୟ –** **ତତଃ** = ତା' ପରେ ପରେ; **ଶଙ୍ଖାଃ** = ବହୁ ଶଙ୍ଖ; **ଚ** = ଓ; **ଭେର୍ଯ୍ୟଃ** = ବହୁ ଭେରୀ; **ଚ** = ଓ; **ପଣବାନକଗୋମୁଖାଃ** = ନାଗରା, ମର୍ଦ୍ଦଳ ଓ ରଣଶିଙ୍ଗା ଆଦି ବାଦ୍ୟ; **ସହସା ଏବ** = ଏକସଙ୍ଗେ; **ଅଭ୍ୟହନ୍ୟନ୍ତ** = ବାଜିଉଠିଲା; **ସଃ** = ସେହି; **ଶବ୍ଦଃ** = ଶବ୍ଦ; **ତୁମୁଳଃ** = ଅତି ଭୟଙ୍କର; **ଅଭବତ୍** = ହେଲା ।

**ତା'ପରେ ପରେ ବହୁ ଶଙ୍ଖ, ଭେରୀ, ନାଗରା, ମର୍ଦ୍ଦଳ ଓ ରଣଶିଙ୍ଗା ଆଦି ବାଦ୍ୟ ଏକସଙ୍ଗେ ବାଜିଉଠିଲା । ସେସବୁର ଶବ୍ଦ ଅତି ଭୟଙ୍କର ହେଲା ।। ୧୩ ।।**

**ପ୍ରଶ୍ନ –** ଏହି ଶ୍ଳୋକର ଭାବ କଣ ?

**ଉତ୍ତର –** ଭୀଷ୍ମ ପିତାମହ ଯେତେବେଳେ ସିଂହନାଦପରି ଗର୍ଜନ କରି ଶଙ୍ଖ ବଜାଇ ଯୁଦ୍ଧାରମ୍ଭର ଘୋଷଣା କରିଦେଲେ, ସେତେବେଳେ ସବୁଆଡ଼େ ଉତ୍ସାହ ଖେଳିଗଲା ଏବଂ ସମସ୍ତ ସେନାମଧ୍ୟରେ ସବୁଦିଗରୁ ସେନାନାୟକମାନେ ଶଙ୍ଖ ଏବଂ ଭିନ୍ନ ଭିନ୍ନ ଯୁଦ୍ଧବାଦ୍ୟ ଏକସଙ୍ଗେ ବଜାଇଲେ । ବାଦ୍ୟସବୁ ଏକସଙ୍ଗରେ ବାଜିଉଠିବାରୁ ଏପରି ଭୟାନକ ଶବ୍ଦ ହେଲା ଯେ, ସେହି ଶବ୍ଦରେ ସମଗ୍ର ଆକାଶ ପ୍ରତିଧ୍ୱନିତ ହୋଇଗଲା ।

*ସମ୍ବନ୍ଧ – ଧୃତରାଷ୍ଟ୍ର ପଚାରିଥିଲେ, "ଯୁଦ୍ଧପାଇଁ ଏକତ୍ର ହେବା ପରେ ମୋର ପୁତ୍ରମାନେ ଏବଂ ପାଣ୍ଡୁଙ୍କ ପୁତ୍ରମାନେ କଣ କଲେ ?" ତାହାର ଉତ୍ତରରେ ସଂଜୟ ଏପର୍ଯ୍ୟନ୍ତ ଧୃତରାଷ୍ଟ୍ରଙ୍କ ପକ୍ଷର କଥା ଶୁଣାଉଥିଲେ । ବର୍ତ୍ତମାନ ପାଣ୍ଡବମାନେ କଣ କଲେ, ତାହା ପରବର୍ତ୍ତୀ ପାଞ୍ଚଟି ଶ୍ଳୋକରେ କହୁଛନ୍ତି –*

**ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ ।**
**ମାଧବଃ ପାଣ୍ଡବଶ୍ଚୈବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ ।। ୧୪ ।।**

ଅନ୍ୱୟ— ତତଃ = ତାହାପରେ; ଶ୍ୱେତୈଃ, ହୟୈଃ = ଧଳାଘୋଡ଼ାଦ୍ୱାରା; ଯୁକ୍ତେ = ଯୋଚା ଯାଇଥିବା; ମହତି = ଉତ୍ତମ; ସ୍ୟନ୍ଦନେ = ରଥରେ; ସ୍ଥିତୌ = ବସିଥିବା; ମାଧବଃ = ଶ୍ରୀକୃଷ୍ଣ ପରମାତ୍ମା; ଚ = ଓ; ପାଣ୍ଡବଃ, ଏବ = ଅର୍ଜୁନ ମଧ୍ୟ; ଦିବ୍ୟୌ = ଅଲୌକିକ; ଶଙ୍ଖୌ = ଶଙ୍ଖ; ପ୍ରଦଧ୍ମତୁଃ = ବଜାଇଲେ ।

**ତାହାପରେ ଧଳାଘୋଡ଼ା ଯୋଚା ଯାଇଥିବା ଉତ୍ତମ ରଥରେ ବସି ଶ୍ରୀକୃଷ୍ଣ ପରମାତ୍ମା ଓ ଅର୍ଜୁନ ମଧ୍ୟ ନିଜ ନିଜର ଦିବ୍ୟ ଶଙ୍ଖ ବଜାଇଲେ ॥ ୧୪ ॥**

**ପ୍ରଶ୍ନ—** ଏହି ଶ୍ଳୋକର ଭାବ କଣ ?

**ଉତ୍ତର—** ଅର୍ଜୁନଙ୍କ ରଥ ଅତ୍ୟନ୍ତ ବିଶାଳ ଓ ଉତ୍ତମ ଥିଲା । ସୁବର୍ଣ୍ଣରେ ଆଚ୍ଛାଦିତ ସେହି ରଥଟି ଅତ୍ୟନ୍ତ ତେଜୋମୟ, ପ୍ରକାଶଯୁକ୍ତ, ସୁଦୃଢ଼, ବିରାଟ ଏବଂ ପରମ ସୁନ୍ଦର ଥିଲା । ତାହା ଉପରେ ଅନେକ ପତାକା ଉଡୁଥିଲା ଏବଂ ପତାକାମାନଙ୍କରେ ଘୁଙ୍ଗୁର ଲଗାଯାଇଥିଲା । ରଥର ଚକଗୁଡ଼ିକ ସୁଦୃଢ଼ ଓ ବିଶାଳ ଥିଲା । ରଥର ଅଗ୍ରଭାଗରେ ଥିବା ଧ୍ୱଜା ବିଜୁଳିପରି ଚମକୁଥିଲା; ସେଥିରେ ଚନ୍ଦ୍ର ଓ ତାରାମାନଙ୍କର ଚିହ୍ନ ଥିଲା ଏବଂ ତା' ଉପରେ ହନୁମାନ ବିରାଜମାନ ଥିଲେ । ଧ୍ୱଜା ସମ୍ବନ୍ଧରେ ସଂଜୟ ଦୁର୍ଯ୍ୟୋଧନଙ୍କୁ କହିଥିଲେ, "ସେହି ଧ୍ୱଜା ତେରଛାରେ ଓ ଉପରେ ସବୁଆଡ଼େ ଏକ ଯୋଜନପର୍ଯ୍ୟନ୍ତ ଲମ୍ବି ଉଡୁଥିଲା । ଆକାଶରେ ଇନ୍ଦ୍ରଧନୁ ଯେପରି ଉଜ୍ଜ୍ୱଳ ବିଚିତ୍ର ରଙ୍ଗରେ ଦେଖାଯାଏ, ଧ୍ୱଜାର ରଙ୍ଗ ସେହିପରି ଦେଖାଯାଉଥିଲା । ଏତେ ବଡ଼ ହୋଇ ଏତେ ଦୂରପର୍ଯ୍ୟନ୍ତ ଉଡୁଥିଲେ ମଧ୍ୟ, ତାହା ଓଜନିଆ ନ ଥିଲା ଏବଂ କେଉଁଠାରେ ଅଟକୁ ନ ଥିଲା । ବୃକ୍ଷମାନଙ୍କ ମଧ୍ୟଦେଇ ତାହା ଏପରି ଅବାଧରେ ଉଡ଼ିଯାଉଥିଲା ଯେ, ବୃକ୍ଷମାନେ ତାହାକୁ ଛୁଇଁପାରୁ ନ ଥିଲେ ।" ରଥରେ ଚାରିଗୋଟି ବଡ଼ ସୁନ୍ଦର, ସୁସଜ୍ଜିତ, ସୁଶିକ୍ଷିତ, ବଳିଷ୍ଠ ଓ ବେଗଗାମୀ ଦିବ୍ୟ ଶ୍ୱେତ ଅଶ୍ୱ ଯୋଚାଯାଇଥିଲେ । ସେମାନେ ଥିଲେ ଚିତ୍ରରଥ ଗନ୍ଧର୍ବ ଦେଇଥିବା ଶହେ ଦିବ୍ୟ ଅଶ୍ୱମାନଙ୍କ ମଧ୍ୟରୁ ଚାରିଟି । ସେହି ଶହେ ଅଶ୍ୱଙ୍କ ମଧ୍ୟରୁ କେତେକ ମରିଯାଉଥିଲେ ମଧ୍ୟ ସଂଖ୍ୟାରେ ସେମାନେ ସବୁବେଳେ ଶହେକୁ ଶହେ ହୋଇ ରହୁଥିଲେ । ସେମାନଙ୍କର ସଂଖ୍ୟା କେବେ କମ୍ ହେଉ ନ ଥିଲା ଏବଂ ସେମାନେ ପୃଥିବୀ, ସ୍ୱର୍ଗ ଆଦି ସବୁ ସ୍ଥାନକୁ ଯାଇପାରୁଥିଲେ । ଅର୍ଜୁନଙ୍କ ରଥ ଏହିପରି ଦିବ୍ୟ ଥିଲା (ମହା/ଉଦ୍ୟୋଗ/ ୫୬) । ଖାଣ୍ଡବବନଦହନ ସମୟରେ ଅଗ୍ନିଦେବତା ପ୍ରସନ୍ନ ହୋଇ ଅର୍ଜୁନଙ୍କୁ ସେହି ରଥଟି ଦେଇଥିଲେ (ମହା/ଆଦି/ ୨୨୫) । ଏପରି ମହାନ୍ ରଥ ଉପରେ ବିରାଜିତ ଭଗବାନ୍ ଶ୍ରୀକୃଷ୍ଣ ଏବଂ ବୀରବର ଅର୍ଜୁନ ଯେତେବେଳେ ଭୀଷ୍ମ ପିତାମହଙ୍କ ସମେତ କୌରବସେନାଦ୍ୱାରା ବଜାଯାଉଥିବା ଶଙ୍ଖ ଓ ଅନ୍ୟାନ୍ୟ ରଣବାଦ୍ୟର ଧ୍ୱନି ଶୁଣିଲେ, ସେତେବେଳେ ସେମାନେ ମଧ୍ୟ ଯୁଦ୍ଧାରମ୍ଭ ଘୋଷଣା କରିବାକୁ ନିଜ ନିଜର ଶଙ୍ଖ ବଜାଇଲେ । ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର ଶଙ୍ଖ ଥିଲା ଅସାଧାରଣ । ଉକ୍ତ ଶଙ୍ଖ ଅତ୍ୟନ୍ତ ବିଲକ୍ଷଣ, ତେଜୋମୟ ଏବଂ ଅଲୌକିକ ଥିଲା । ତେଣୁ ତାହା ଦିବ୍ୟ ବୋଲି କୁହାଯାଇଛି ।

## ପାଞ୍ଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଞ୍ଜୟଃ ।
## ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖଂ ଭୀମକର୍ମା ବୃକୋଦରଃ ॥ ୧୫ ॥

ଅନ୍ୱୟ— ହୃଷୀକେଶଃ = ଶ୍ରୀକୃଷ୍ଣ ପରମାତ୍ମା; ପାଞ୍ଚଜନ୍ୟମ୍ = ପାଞ୍ଚଜନ୍ୟନାମକ; ଧନଞ୍ଜୟଃ = ଅର୍ଜୁନ; ଦେବଦତ୍ତମ୍ = ଦେବଦତ୍ତନାମକ; ଭୀମକର୍ମା = ଭୟାନକକର୍ମକାରୀ; ବୃକୋଦରଃ = ଭୀମସେନ; ପୌଣ୍ଡ୍ରମ୍ = ପୌଣ୍ଡ୍ରନାମକ; ମହାଶଙ୍ଖମ୍ = ମହାଶଙ୍ଖ; ଦଧ୍ମୌ = ବଜାଇଲେ

**ଶ୍ରୀକୃଷ୍ଣ ପରମାତ୍ମା ପାଞ୍ଚଜନ୍ୟନାମକ, ଅର୍ଜୁନ ଦେବଦତ୍ତନାମକ ଏବଂ ଭୟାନକକର୍ମକାରୀ ଭୀମସେନ ପୌଣ୍ଡ୍ରନାମକ ମହାଶଙ୍ଖ ବଜାଇଲେ ॥ ୧୫ ॥**

**ପ୍ରଶ୍ନ –** ଭଗବାନଙ୍କୁ କାହିଁକି **ହୃଷୀକେଶ** ନାମ ଦିଆଯାଇଛି ? ତାଙ୍କୁ **ପାଞ୍ଚଜନ୍ୟ ଶଙ୍ଖ** କିପରି ମିଳିଥିଲା ?

**ଉତ୍ତର –** ହୃଷୀକ ହେଉଛି ଇନ୍ଦ୍ରିୟମାନଙ୍କର ନାମ; ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରି ରଖିଥିବା ବ୍ୟକ୍ତି ବା ସ୍ୱାମୀଙ୍କୁ ହୃଷୀକେଶ କହନ୍ତି।* ପୁଣି ହର୍ଷ, ସୁଖ ଏବଂ ସୁଖମୟ ଐଶ୍ୱର୍ଯ୍ୟର ନିଧାନଙ୍କୁ ମଧ୍ୟ **ହୃଷୀକେଶ** କହନ୍ତି।** ଭଗବାନ୍ ଇନ୍ଦ୍ରିୟମାନଙ୍କର ଅଧୀଶ୍ୱର ଏବଂ ହର୍ଷ, ସୁଖ ଓ ପରମ ଐଶ୍ୱର୍ଯ୍ୟର ନିଧାନ ମଧ୍ୟ ଅଟନ୍ତି। ତେଣୁ ତାଙ୍କର ଗୋଟିଏ ନାମ **ହୃଷୀକେଶ। ପଞ୍ଚଜନ** ନାମକ **ଶଙ୍ଖରୂପଧାରୀ** ଏକ ଦୈତ୍ୟକୁ ମାରି ଭଗବାନ୍ ତାଙ୍କୁ ଶଙ୍ଖରୂପରେ ଗ୍ରହଣ କରିଥିଲେ। ତେଣୁ ତାଙ୍କ ଶଙ୍ଖର ନାମ **ପାଞ୍ଚଜନ୍ୟ** ହୋଇଗଲା (ହରିବଂଶ ୨/୩୩/୧୭)।

**ପ୍ରଶ୍ନ –** ଅର୍ଜୁନଙ୍କର **ଧନଞ୍ଜୟ** ନାମ କାହିଁକି ହେଲା ? ଏବଂ ତାଙ୍କୁ **ଦେବଦତ୍ତ ଶଙ୍ଖ** କେଉଁଠାରୁ ମିଳିଥିଲା ?

**ଉତ୍ତର –** ରାଜସୂୟଯଜ୍ଞ ସମୟରେ ଅର୍ଜୁନ ଅନେକ ରାଜାଙ୍କୁ ଜୟ କରି ଅପାର ଧନସମ୍ପତ୍ତି ନେଇଆସିଥିଲେ; ସେହି କାରଣରୁ ତାଙ୍କର ନାମ **ଧନଞ୍ଜୟ** ହୋଇଥିଲା ଏବଂ ନିବାତକବଚାଦି ଦୈତ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରିବା ସମୟରେ ଇନ୍ଦ୍ର ତାଙ୍କୁ **ଦେବଦତ୍ତ**ନାମକ ଶଙ୍ଖଟି ଦେଇଥିଲେ (ମହା/ବନ/ ୧୭୪/୫)। ସେହି ଶଙ୍ଖର ଶବ୍ଦ ଏପରି ଭୟଙ୍କର ହେଉଥିଲା ଯେ, ତାହା ଶୁଣି ଶତ୍ରୁସୈନ୍ୟମାନେ ଭୟଭୀତ ହୋଇଯାଉଥିଲେ।

**ପ୍ରଶ୍ନ –** ଭୀମସେନଙ୍କ ନାମ **ଭୀମକର୍ମା** ଏବଂ **ବୃକୋଦର** କିପରି ହେଲା ? ତାଙ୍କର ପୌଣ୍ଡ୍ର ନାମକ ଶଙ୍ଖକୁ ମହାଶଙ୍ଖ ବୋଲି କାହିଁକି କୁହାଗଲା ?

**ଉତ୍ତର –** ଭୀମସେନ ଅତ୍ୟନ୍ତ ବଳବାନ୍ ଥିଲେ। ତାଙ୍କର କର୍ମ ଏପରି ଭୟାନକ ହେଉଥିଲା ଯେ, ତାହାକୁ ଦେଖିବା-ଶୁଣିବା ଲୋକମାନଙ୍କ ମନରେ ଅତ୍ୟନ୍ତ ଭୟ ଉତ୍ପନ୍ନ ହୋଇଯାଉଥିଲା। ତେଣୁ ତାଙ୍କୁ ଭୀମକର୍ମା ବୋଲାଯାଏ। ତାଙ୍କର ଭୋଜନର ପରିମାଣ ବହୁତ ଅଧିକ ଥିଲା ଏବଂ ଜୀର୍ଣ୍ଣ କରିବାକୁ ତାଙ୍କର ବିଶେଷ ଶକ୍ତି ଥିଲା; ତେଣୁ ତାଙ୍କୁ **ବୃକୋଦର** କୁହାଯାଉଥିଲା। ତାଙ୍କର ଶଙ୍ଖ ବିଶାଳ ଆକାରର ଥିଲା ଏବଂ ତାହାଦ୍ୱାରା ଭୟାନକ ଶବ୍ଦ ହେଉଥିଲା; ତେଣୁ ତାହାକୁ ମହାଶଙ୍ଖ କୁହାଯାଇଛି।

**ଅନନ୍ତବିଜୟଂ ରାଜା କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।**
**ନକୁଳଃ ସହଦେବଶ୍ଚ   ସୁଘୋଷମଣିପୁଷ୍ପକୌ ॥ ୧୬ ॥**

**ଅନ୍ୱୟ –** **କୁନ୍ତୀପୁତ୍ରଃ** = କୁନ୍ତୀପୁତ୍ର; **ରାଜା** = ରାଜା; **ଯୁଧିଷ୍ଠିରଃ** = ଯୁଧିଷ୍ଠିର; **ଅନନ୍ତବିଜୟମ୍** = ଅନନ୍ତବିଜୟନାମକ; **ନକୁଳଃ** = ନକୁଳ; **ଚ** = ଓ; **ସହଦେବଃ** = ସହଦେବ; **ସୁଘୋଷ-ମଣିପୁଷ୍ପକୌ** = ସୁଘୋଷ ଓ ମଣିପୁଷ୍ପକ ନାମକ ଶଙ୍ଖ (ବଜାଇଲେ)।

**କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଅନନ୍ତବିଜୟନାମକ ଏବଂ ନକୁଳ ଓ ସହଦେବ ଯଥାକ୍ରମେ ସୁଘୋଷ ଓ ମଣିପୁଷ୍ପକ ନାମକ ଶଙ୍ଖ ବଜାଇଲେ ॥ ୧୬ ॥**

**ପ୍ରଶ୍ନ –** ଯୁଧିଷ୍ଠିରଙ୍କୁ 'କୁନ୍ତୀପୁତ୍ର' ଓ ରାଜା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ମହାରାଜ ପାଣ୍ଡୁଙ୍କର ପାଞ୍ଚପୁତ୍ରଙ୍କ ମଧ୍ୟରୁ ଯୁଧିଷ୍ଠିର, ଭୀମ ଏବଂ ଅର୍ଜୁନ କୁନ୍ତୀଙ୍କ ଠାରୁ ଏବଂ ନକୁଳ ଓ ସହଦେବ ମାଦ୍ରୀଙ୍କ ଠାରୁ ଜନ୍ମ ହୋଇଥିଲେ। ଏହି ଶ୍ଳୋକରେ ନକୁଳ ଓ ସହଦେବଙ୍କ ନାମ ମଧ୍ୟ ଅଛି; ଯୁଧିଷ୍ଠିର ଏବଂ ନକୁଳ-ସହଦେବଙ୍କ ମାତା ଭିନ୍ନ ଭିନ୍ନ ଥିଲେ; ଏହା ଦର୍ଶାଇଦେବାକୁ ଯୁଧିଷ୍ଠିରଙ୍କୁ କୁନ୍ତୀପୁତ୍ର କୁହାଯାଇଛି। ବର୍ତ୍ତମାନ ରାଜ୍ୟଭ୍ରଷ୍ଟ ହୋଇଥିଲେ ମଧ୍ୟ ଯୁଧିଷ୍ଠିର ପ୍ରଥମେ ରାଜସୂୟ ଯଜ୍ଞରେ ସମସ୍ତ ରାଜାମାନଙ୍କ ଉପରେ ବିଜୟ ଲାଭ କରି ଚକ୍ରବର୍ତ୍ତୀ ସାମ୍ରାଜ୍ୟ ସ୍ଥାପନ କରିଥିଲେ। ସଂଜୟଙ୍କର ବିଶ୍ୱାସ ଥିଲା ଯେ, ସେ ଭବିଷ୍ୟତରେ ରାଜା ହେବେ ଏବଂ ଯୁଦ୍ଧବେଳେ ମଧ୍ୟ ତାଙ୍କ ଶରୀରରେ ସମସ୍ତ ରାଜଚିହ୍ନ ଥିଲା। ତେଣୁ ସେ ତାଙ୍କୁ ରାଜା ବୋଲି କହିଛନ୍ତି।

---

★ ହୃଷୀକାଣୀନ୍ଦ୍ରିୟାଣ୍ୟାହୁସ୍ତେଷାମୀଶୋ ଯତୋ ଭବାନ୍। ହୃଷୀକେଶସ୍ତତୋ ବିଷ୍ଣୋ ଖ୍ୟାତୋ ଦେବେଷୁ କେଶବ ॥ (ହରିବଂଶ/ ୨୭୯/୪୬)।

ଅର୍ଥାତ୍, ହେ ବିଷ୍ଣୋ! ଇନ୍ଦ୍ରିୟମାନଙ୍କୁ ହୃଷୀକ କହନ୍ତି। ଆପଣ ସେମାନଙ୍କର ଈଶ (ସ୍ୱାମୀ), ତେଣୁ ହେ କେଶବ! ଆପଣ ଦେବତାମାନଙ୍କ ମଧ୍ୟରେ ହୃଷୀକେଶ ନାମରେ ବିଖ୍ୟାତ।

★★ ହର୍ଷାତ୍ ସୁଖାତ୍ ସୁଖୈଶ୍ୱର୍ଯ୍ୟାଦ୍ ହୃଷୀକେଶତ୍ୱମଶ୍ନୁତେ। (ମହା/ଉଦ୍ୟୋଗ/ ୭୦/୯)

ହର୍ଷ (ହୃଷୀ) ସୁଖ (କ), ସୁଖମୟ ଐଶ୍ୱର୍ଯ୍ୟ (ଈଶ) ହେତୁ ଶ୍ରୀକୃଷ୍ଣ ହୃଷୀକେଶ-ପଦବୀ ପାଇଥିଲେ।

**କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ ।**
**ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ ।। ୧୭ ।।**
**ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ ।**
**ସୌଭଦ୍ରଶ୍ଚ ମହାବାହୁଃ ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ ।। ୧୮ ।।**

ଅନ୍ୱୟ – ପରମେଷ୍ୱାସଃ = ଶ୍ରେଷ୍ଠ ଧନୁର୍ଦ୍ଧାରୀ; **କାଶ୍ୟଃ** = କାଶିରାଜ; **ଚ** = ଓ; **ମହାରଥଃ** = ମହାରଥୀ; **ଶିଖଣ୍ଡୀ** = ଶିଖଣ୍ଡୀ; **ଚ** = ଓ; **ଧୃଷ୍ଟଦ୍ୟୁମ୍ନଃ** = ଧୃଷ୍ଟଦ୍ୟୁମ୍ନ; **ଚ** = ଓ; **ବିରାଟଃ** = ରାଜାବିରାଟ; **ଚ** = ଓ; **ଅପରାଜିତଃ** = ଅଜେୟ; **ସାତ୍ୟକିଃ** = ସାତ୍ୟକି; **ଦ୍ରୁପଦଃ** = ରାଜା ଦ୍ରୁପଦ; **ଚ** = ଓ; **ଦ୍ରୌପଦେୟାଃ** = ଦ୍ରୌପଦୀଙ୍କ ପଞ୍ଚପୁତ୍ର; **ଚ** = ଓ; **ମହାବାହୁଃ** = ମହାବାହୁ; **ସୌଭଦ୍ରଃ** = ସୁଭଦ୍ରାପୁତ୍ର ଅଭିମନ୍ୟୁ (ଏ ସମସ୍ତେ); **ପୃଥିବୀପତେ** = ହେ ରାଜନ୍; **ସର୍ବଶଃ** = ସକଳ ଦିଗରୁ; **ପୃଥକ୍, ପୃଥକ୍** = ପୃଥକ୍ ପୃଥକ୍; **ଶଙ୍ଖାନ୍** = ଶଙ୍ଖମାନ; **ଦଧ୍ମୁଃ** = ବଜାଇଲେ ।

**ଶ୍ରେଷ୍ଠ ଧନୁର୍ଦ୍ଧାରୀ କାଶିରାଜ, ମହାରଥୀ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ, ରାଜାବିରାଟ, ଅଜେୟ ସାତ୍ୟକି, ରାଜା ଦ୍ରୁପଦ, ଦ୍ରୌପଦୀଙ୍କ ପାଞ୍ଚ ପୁତ୍ର, ସୁଭଦ୍ରାପୁତ୍ର ମହାବାହୁ ଅଭିମନ୍ୟୁ– ହେ ରାଜନ୍ ! ଏ ସମସ୍ତେ ସକଳ ଦିଗରୁ ପୃଥକ୍ ପୃଥକ୍ ଶଙ୍ଖ ବଜାଇଲେ ।। ୧୭ - ୧୮ ।।**

**ପ୍ରଶ୍ନ –** କାଶିରାଜ, ଧୃଷ୍ଟଦ୍ୟୁମ୍ନ, ବିରାଟରାଜା, ସାତ୍ୟକି, ଦ୍ରୁପଦ ତଥା ଦ୍ରୌପଦୀଙ୍କ ପଞ୍ଚପୁତ୍ର ଏବଂ ଅଭିମନ୍ୟୁଙ୍କ ପରିଚୟ ତ ପ୍ରଥମେ ପ୍ରସଙ୍ଗକ୍ରମେ ଆସିଯାଇଛି । **ଶିଖଣ୍ଡୀ** କିଏ ? ଏବଂ ତାଙ୍କର ଜନ୍ମ କିପରି ହୋଇଥିଲା ?

**ଉତ୍ତର –** ଶିଖଣ୍ଡୀ ଓ ଧୃଷ୍ଟଦ୍ୟୁମ୍ନ ଉଭୟେ ରାଜା ଦ୍ରୁପଦଙ୍କର ପୁତ୍ର । **ଶିଖଣ୍ଡୀ** ବଡ଼ ଓ ଧୃଷ୍ଟଦ୍ୟୁମ୍ନ ସାନ ଥିଲେ । ପ୍ରଥମେ ଯେତେବେଳେ ରାଜା ଦ୍ରୁପଦଙ୍କର କୌଣସି ସନ୍ତାନ ନ ଥିଲା, ସେତେବେଳେ ସେ ସନ୍ତାନପାଇଁ ଆଶୁତୋଷ ଭଗବାନ୍ ଶଙ୍କରଙ୍କୁ ଉପାସନା କରିଥିଲେ । ଭଗବାନ୍ ଶଙ୍କର ପ୍ରସନ୍ନ ହେବା ପରେ ରାଜା ତାଙ୍କୁ ସନ୍ତାନ ପ୍ରାର୍ଥନା କଲେ; ତେଣୁ ଶଙ୍କର କହିଲେ, ''ତୁମକୁ ଗୋଟିଏ କନ୍ୟା ପ୍ରାପ୍ତ ହେବ ।'' ରାଜା ଦ୍ରୁପଦ କହିଲେ, ''ଭଗବନ୍ ! ମୋର କନ୍ୟା ଲୋଡ଼ା ନାହିଁ, ମୋର ଗୋଟିଏ ପୁତ୍ର ଆବଶ୍ୟକ ।'' ଏହା ଶୁଣି ଭଗବାନ୍ ଶଙ୍କର କହିଲେ, ''ଏହି କନ୍ୟା ଭବିଷ୍ୟତରେ ପୁତ୍ରରେ ପରିଣତ ହୋଇଯିବ ।'' ଏହି ବରଦାନର ଫଳସ୍ୱରୂପ ଦ୍ରୁପଦଙ୍କର ଗୋଟିଏ କନ୍ୟା ଜାତ ହେଲା । ରାଜାଙ୍କର ଭଗବାନ୍ ଶିବଙ୍କ କଥା ଉପରେ ପୂର୍ଣ୍ଣବିଶ୍ୱାସ ଥିଲା; ତେଣୁ ସେ ତାକୁ ପୁତ୍ର ବୋଲି ପ୍ରଚାର କଲେ । ରାଣୀ ମଧ୍ୟ କନ୍ୟାକୁ ସମସ୍ତଙ୍କ ଠାରୁ ଲୁଚାଇ ପ୍ରକୃତ କଥା କାହାରିକୁ ଜାଣିବାକୁ ଦେଇ ନ ଥିଲେ । ସେହି କନ୍ୟାର ନାମ ପୁଅଙ୍କ ପରି ଶିଖଣ୍ଡୀ ରଖାଯାଇଥିଲା ଏବଂ ତାଙ୍କୁ ରାଜକୁମାରପରି ପୋଷାକ ପିନ୍ଧାଇ ଉପଯୁକ୍ତ କ୍ରମରେ ଯଥାବିଧି ବିଦ୍ୟାଧ୍ୟୟନ କରାଇଦିଆଗଲା । ସମୟକ୍ରମେ ଦଶାର୍ଣ୍ଣଦେଶର ରାଜା ହିରଣ୍ୟବର୍ମାଙ୍କ କନ୍ୟା ସହିତ ତାଙ୍କର ବିବାହ ହୋଇଥିଲା । ହିରଣ୍ୟବର୍ମାଙ୍କ କନ୍ୟା ଯେତେବେଳେ ଶ୍ୱଶୁରାଳୟକୁ ଆସିଲା, ସେତେବେଳେ ସେ ଜାଣିପାରିଲା ଯେ, ଶିଖଣ୍ଡୀ ପୁରୁଷ ନୁହନ୍ତି, ସ୍ତ୍ରୀ; ତେଣୁ ସେ ଅତ୍ୟନ୍ତ ଦୁଃଖିତ ହେଲା ଏବଂ ସମସ୍ତ କଥା ଦାସୀଦ୍ୱାରା ନିଜର ପିତା ହିରଣ୍ୟବର୍ମାଙ୍କୁ କହିପଠାଇଲା । ରାଜା ହିରଣ୍ୟବର୍ମାଙ୍କର ଦ୍ରୁପଦଙ୍କ ଉପରେ ବଡ଼ କ୍ରୋଧ ହେଲା ଏବଂ ସେ ଦ୍ରୁପଦଙ୍କୁ ଆକ୍ରମଣ କରି ତାଙ୍କୁ ମାରିଦେବେ ବୋଲି ନିଶ୍ଚୟ କଲେ । ଏହି ସମ୍ବାଦ ପାଇ ଯୁଦ୍ଧରୁ ରକ୍ଷା ପାଇବାନିମନ୍ତେ ରାଜା ଦ୍ରୁପଦ ଦେବ-ଆରାଧନା କଲେ । ଏଣେ ପୁରୁଷବେଶ ଧରିଥିବା ଶିଖଣ୍ଡୀ ତାଙ୍କ ହେତୁ ପିତାଙ୍କ ଉପରେ ଭୟାନକ ବିପତ୍ତି ମାଡ଼ିଆସିବାର ଦେଖି ବଡ଼ ଦୁଃଖିତ ହେଲେ ଏବଂ ପ୍ରାଣତ୍ୟାଗ କରିବାକୁ ନିଶ୍ଚୟ କରି ଚୁପ୍‌ଚାପ୍ ଘରୁ ବାହାରିଗଲେ । ବଣରେ ସ୍ଥୂଣାକର୍ଣ୍ଣ ନାମରେ ଜଣେ ଐଶ୍ୱର୍ଯ୍ୟବାନ୍ ଯକ୍ଷଙ୍କ ସଙ୍ଗେ ତାଙ୍କର ଭେଟ ହେଲା । ଯକ୍ଷ ଦୟା କରି ତାଙ୍କୁ କିଛିଦିନପାଇଁ ନିଜର ପୁରୁଷତ୍ୱ ଦାନ କରି ତା'ବଦଳରେ ତାଙ୍କର ସ୍ତ୍ରୀତ୍ୱ ଗ୍ରହଣ କରିନେଲେ । ଏପରିଭାବରେ ଶିଖଣ୍ଡୀ ସ୍ତ୍ରୀରୁ ପୁରୁଷ ହୋଇଗଲେ ଓ ଘରକୁ ଫେରି ମାତାପିତାଙ୍କୁ ଆଶ୍ୱାସନା ଦେଲେ ଏବଂ ଶ୍ୱଶୁର ହିରଣ୍ୟବର୍ମାଙ୍କୁ ନିଜ ପୁରୁଷତ୍ୱର ପରୀକ୍ଷା ଦେଇ ଶାନ୍ତ କରାଇଲେ । ପରେ କୁବେରଙ୍କ ଶାପରେ

ସ୍ଥୂଣାକର୍ଣ୍ଣ ଯାବଜ୍ଜୀବନ ସ୍ତ୍ରୀ ହୋଇ ରହିଗଲେ। ତେଣୁ ଶିଖଣ୍ଡୀଙ୍କୁ ଆଉ ପୁରୁଷତ୍ୱ ଫେରାଇବାକୁ ପଡ଼ିଲା ନାହିଁ। ଏପରିଭାବେ ସେ ପୁରୁଷ ହୋଇ ରହିଗଲେ। ପିତାମହ ଭୀଷ୍ମଙ୍କୁ ଏସବୁ ବୃତ୍ତାନ୍ତ ଜଣା ଥିଲା। ତେଣୁ ସେ ତାଙ୍କ ଉପରକୁ ଶସ୍ତ୍ର ପ୍ରୟୋଗ କରି ନ ଥିଲେ। ଶିଖଣ୍ଡୀ ମଧ୍ୟ ନିଜେ ଜଣେ ବିଖ୍ୟାତ ଶୂରବୀର, ମହାରଥୀ ଓ ଯୋଦ୍ଧା ଥିଲେ। ତାଙ୍କୁ ସମ୍ମୁଖରେ ରଖି ଅର୍ଜୁନ ପିତାମହ ଭୀଷ୍ମଙ୍କୁ ମାରିଥିଲେ।

**ପ୍ରଶ୍ନ –** 'ସମସ୍ତେ ପୃଥକ୍ ପୃଥକ୍ ଶଙ୍ଖ ବଜାଇଲେ' – ଏହି କଥାରେ କ'ଣ କିଛି ବିଶେଷ ତାତ୍ପର୍ଯ୍ୟ ଅଛି ?

**ଉତ୍ତର – ସର୍ବଶଃ** ଶବ୍ଦଦ୍ୱାରା ସଂଜୟ ଏହା ଦେଖାଇଦେବାକୁ ଯାଉଛନ୍ତି ଯେ, ଶ୍ରୀକୃଷ୍ଣ, ପଞ୍ଚପାଣ୍ଡବ ଏବଂ କାଶିରାଜ ଆଦି ପ୍ରଧାନ ପ୍ରଧାନ ଯୋଦ୍ଧାମାନେ – ଯାହାଙ୍କର ନାମ ପୂର୍ବରୁ କୁହାଯାଇଛି — ଓ ତା'ଛଡ଼ା ପାଣ୍ଡବସେନାମଧ୍ୟରେ ଯେତେ ରଥୀ, ମହାରଥୀ ଏବଂ ଅତିରଥୀ ବୀର ଥିଲେ, ସେମାନେ ସମସ୍ତେ ନିଜ ନିଜର ଶଙ୍ଖ ବଜାଇଲେ। ଏହା ହିଁ ଏହି କଥାର ବିଶେଷ ତାତ୍ପର୍ଯ୍ୟ।

*ସମ୍ବନ୍ଧ – ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ପରେ ପାଣ୍ଡବ ସେନାର ଅନ୍ୟାନ୍ୟ ଶୂରବୀରଙ୍କ ଦ୍ୱାରା ଚତୁର୍ଦ୍ଦିଗରୁ ଶଙ୍ଖ ବଜାଯାଇଥିବା କଥା କହି ବର୍ତ୍ତମାନ ସେହି ଶଙ୍ଖଧ୍ୱନିର କି ପରିଣାମ ହେଲା, ତାହା ସଂଜୟ କହୁଛନ୍ତି –*

## ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍।
## ନଭଶ୍ଚ ପୃଥିବୀଂ ଚୈବ ତୁମୁଲୋ ବ୍ୟନୁନାଦୟନ୍॥ ୧୯ ॥

**ଅନ୍ୱୟ –** ଚ = ଏବଂ; **ସଃ** = ସେହି; **ତୁମୁଳଃ** = ଭୟଙ୍କର; **ଘୋଷଃ** = ଶବ୍ଦ; **ନଭଃ** = ଆକାଶ; ଚ = ଓ; **ପୃଥିବୀମ୍** = ପୃଥିବୀକୁ; ଏବ = ମଧ୍ୟ; **ବ୍ୟନୁନାଦୟନ୍** = ପ୍ରତିଧ୍ୱନିତ କରି; **ଧାର୍ତ୍ତରାଷ୍ଟ୍ରାଣାମ୍** = ଦୁର୍ଯ୍ୟୋଧନାଦି କୌରବମାନଙ୍କର; **ହୃଦୟାନି** = ହୃଦୟମାନଙ୍କୁ; **ବ୍ୟଦାରୟତ୍** = ବିଦୀର୍ଣ୍ଣ କରିଦେଲା।

**ଏବଂ ସେହି ଭୟଙ୍କର ଶବ୍ଦ ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କରି ଦୁର୍ଯ୍ୟୋଧନାଦି କୌରବମାନଙ୍କର ହୃଦୟ ବିଦୀର୍ଣ୍ଣ କରିଦେଲା। ॥ ୧୯ ॥**

**ପ୍ରଶ୍ନ –** ଏହି ଶ୍ଳୋକର ଭାବ କଣ ?

**ଉତ୍ତର –** ପାଣ୍ଡବସେନା ମଧ୍ୟରେ ଯେତେବେଳେ ସମସ୍ତ ବୀରଙ୍କର ଶଙ୍ଖ ଏକାସଙ୍ଗେ ବାଜିଉଠିଲା, ସେତେବେଳେ ତାହାର ଧ୍ୱନି ଏପରି ବିଶାଳ, ଗମ୍ଭୀର, ତୀବ୍ର ଏବଂ ଭୟଙ୍କର ହେଲା ଯେ, ତାହା ସମସ୍ତ ଆକାଶ ତଥା ପୃଥିବୀରେ ବ୍ୟାପ୍ତ ହୋଇଗଲା। ଏପରିଭାବରେ ଚତୁର୍ଦ୍ଦିଗରେ ସେହି ଘୋର ଧ୍ୱନି ବ୍ୟାପିଯିବାରୁ ସର୍ବତ୍ର ତାହାର ପ୍ରତିଧ୍ୱନି ଉତ୍ପନ୍ନ ହୋଇଗଲା ଓ ତାହାଦ୍ୱାରା ଆକାଶ ଓ ପୃଥିବୀ ପ୍ରତିଧ୍ୱନିତ ହେବାକୁ ଲାଗିଲା। ସେହି ଧ୍ୱନି ଶୁଣି ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନାଦି ପୁତ୍ରମାନଙ୍କ ହୃଦୟରେ ତଥା ତାଙ୍କ ପକ୍ଷର ଅନ୍ୟ ଯୋଦ୍ଧାମାନଙ୍କ ହୃଦୟରେ ଏପରି ଭୟ ଉତ୍ପନ୍ନ ହୋଇଗଲା ଯେ, ସେମାନଙ୍କ କଳିଜା ଚିରି ହୋଇଗଲାପରି ଲାଗିଲା।

*ସମ୍ବନ୍ଧ – ପାଣ୍ଡବମାନଙ୍କର ଶଙ୍ଖଧ୍ୱନି ଶୁଣି କୌରବ ବୀରମାନେ ବ୍ୟଥିତ ହୋଇଯିବା ଘଟଣା ବର୍ଣ୍ଣନା କରିସାରିବା ପରେ, ସଂଜୟ ପରବର୍ତ୍ତୀ ଚାରିଟି ଶ୍ଳୋକରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ଅର୍ଜୁନଙ୍କର ଉତ୍ସାହପୂର୍ଣ୍ଣ ବଚନ ବର୍ଣ୍ଣନା କରୁଛନ୍ତି।*

## ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ।
## ପ୍ରବୃତ୍ତେ ଶସ୍ତ୍ରସମ୍ପାତେ ଧନୁରୁଦ୍ୟମ୍ୟ ପାଣ୍ଡବଃ ॥ ୨୦ ॥

**ହୃଷୀକେଶଂ ତଦା ବାକ୍ୟମିଦମାହ ମହୀପତେ ।**

**ଅର୍ଜୁନ ଉବାଚ**

**ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ ।। ୨୧ ।।**

ଅନ୍ୱୟ – ମହୀପତେ = ହେ ରାଜନ୍; **ଅଥ** = ଏହା ପରେ; **କପିଧ୍ୱଜଃ** = କପିଧ୍ୱଜ; **ପାଣ୍ଡବଃ** = ଅର୍ଜୁନ; **ବ୍ୟବସ୍ଥିତାନ୍** = ବ୍ୟୂହ ରଚନା କରି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ରହିଥିବା; **ଧାର୍ତ୍ତରାଷ୍ଟ୍ରାନ୍** = ଧୃତରାଷ୍ଟ୍ରଙ୍କ ସମ୍ବନ୍ଧୀୟମାନଙ୍କୁ; **ଦୃଷ୍ଟ୍ୱା** = ଦେଖି; **ତଦା** = ସେହି ସମୟରେ; **ଶସ୍ତ୍ରସମ୍ପାତେ ପ୍ରବୃତ୍ତେ** = ଶସ୍ତ୍ର ଚଳାଇବାକୁ ଯାଉଥିବା ସମୟରେ; **ଧନୁଃ** = ଧନୁ; **ଉଦ୍ୟମ୍ୟ** = ଉଠାଇ; **ହୃଷୀକେଶମ୍** = ହୃଷୀକେଶ ଶ୍ରୀକୃଷ୍ଣ ପରମାତ୍ମାଙ୍କୁ; **ଇଦମ୍** = ଏହି; **ବାକ୍ୟମ୍** = ବଚନ; **ଆହ** = କହିଲେ; **ଅଚ୍ୟୁତ** = ହେ ଅଚ୍ୟୁତ; **ମେ** = ମୋ; **ରଥମ୍** = ରଥକୁ; **ଉଭୟୋଃ, ସେନୟୋଃ** = ଉଭୟ ସେନାଙ୍କ; **ମଧ୍ୟେ** = **ମଧ୍ୟରେ; ସ୍ଥାପୟ** = ଠିଆ କରାନ୍ତୁ ।

**ହେ ରାଜନ୍ ! ଏହାପରେ ବ୍ୟୂହରଚନାପୂର୍ବକ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ରହିଥିବା ଧୃତରାଷ୍ଟ୍ରଙ୍କ ସମ୍ବନ୍ଧୀୟମାନଙ୍କୁ ଦେଖି ଶସ୍ତ୍ରପ୍ରୟୋଗ କରିବାକୁ ଯାଉଥିବା ସମୟରେ କପିଧ୍ୱଜ ଅର୍ଜୁନ ନିଜ ଧନୁ ଉଠାଇ ହୃଷୀକେଶ ଶ୍ରୀକୃଷ୍ଣ ଭଗବାନଙ୍କୁ କହିଲେ, "ହେ ଅଚ୍ୟୁତ ! ମୋ ରଥକୁ ନେଇ ଦୁଇ ସେନାଙ୍କ ମଧ୍ୟରେ ଠିଆ କରାନ୍ତୁ ।" ।। ୨୦ - ୨୧ ।।**

**ପ୍ରଶ୍ନ** – ଅର୍ଜୁନଙ୍କୁ **କପିଧ୍ୱଜ** ବୋଲି କାହିଁକି କୁହାଯାଇଛି ?

**ଉତ୍ତର** – ମହାବୀର ହନୁମାନ ଭୀମସେନଙ୍କୁ କଥା ଦେଇଥିଲେ (ମହା/ବନ/ ୧୫୧/୧୭,୧୮); ତେଣୁ ସେ ଅର୍ଜୁନଙ୍କ ରଥର ବିଶାଳ ଧ୍ୱଜା ଉପରେ ବିରାଜିତ ରହୁଥିଲେ ଏବଂ ଯୁଦ୍ଧରେ ବେଳେ ବେଳେ ଭୀଷଣ ଗର୍ଜନ କରୁଥିଲେ (ମହା/ଭୀଷ୍ମ/ ୫୨/୧୮) । ଧୃତରାଷ୍ଟ୍ରଙ୍କୁ ଏହି କଥା ସ୍ମରଣ କରାଇଦେବାକୁ ସଂଜୟ ଅର୍ଜୁନଙ୍କ ପାଇଁ **କପିଧ୍ୱଜ** ବିଶେଷଣ ପ୍ରୟୋଗ କରିଥିଲେ ।

**ପ୍ରଶ୍ନ** – ଅର୍ଜୁନ ଯେତେବେଳେ ଦେଖିଲେ ଯେ, ଦୁର୍ଯ୍ୟୋଧନ ଆଦି ଭାଇମାନେ କୌରବପକ୍ଷର ସମସ୍ତ ଯୋଦ୍ଧାଙ୍କୁ ନେଇ ଯୁଦ୍ଧପାଇଁ ସୁସଜ୍ଜିତ ତଥା ଶସ୍ତ୍ରଚାଳନା– ଆରମ୍ଭପାଇଁ ପ୍ରସ୍ତୁତ ହେଲେଣି, ସେତେବେଳେ ସେ ଧନୁ ଉଠାଇଲେ – ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଅର୍ଜୁନ ଯେତେବେଳେ ଦେଖିଲେ ଯେ, ଦୁର୍ଯ୍ୟୋଧନାଦି ସବୁ ଭାଇ କୌରବପକ୍ଷର ଯୋଦ୍ଧାମାନଙ୍କୁ ନେଇ ଯୁଦ୍ଧପାଇଁ ସୁସଜ୍ଜିତ ହୋଇଛନ୍ତି ତଥା ଶସ୍ତ୍ରଚାଳନାପାଇଁ ପ୍ରସ୍ତୁତ ହୋଇସାରିଛନ୍ତି, ସେତେବେଳେ ତାଙ୍କ ମନରେ ମଧ୍ୟ ବୀରରସ ଜାଗ୍ରତ ହେଲା । ତେଣୁ ସେ ଯଥାଶୀଘ୍ର ନିଜର ଗାଣ୍ଡୀବ ଧନୁ ଉଠାଇଲେ ।

**ପ୍ରଶ୍ନ** – ସଂଜୟ ଏଠାରେ ଭଗବାନଙ୍କୁ ପୁନର୍ବାର 'ହୃଷୀକେଶ' ବୋଲି କାହିଁକି କହିଲେ ?

**ଉତ୍ତର** – ଭଗବାନଙ୍କୁ ହୃଷୀକେଶ କହି ମହାରାଜ ଧୃତରାଷ୍ଟ୍ରଙ୍କୁ ସଂଜୟ ସୂଚନା ଦେଉଛନ୍ତି, "ଯେଉଁ ଅର୍ଜୁନଙ୍କ ରଥରେ ଇନ୍ଦ୍ରିୟମାନଙ୍କର ସ୍ୱାମୀ ସାକ୍ଷାତ୍ ପରମେଶ୍ୱର ଶ୍ରୀକୃଷ୍ଣ ସାରଥିର କାର୍ଯ୍ୟ କରୁଛନ୍ତି, ତାହାଙ୍କ ସହିତ ଯୁଦ୍ଧ କରି ଆପଣମାନେ ବିଜୟ ଆଶା କରିବା କେତେ ବଡ଼ ମୂର୍ଖତା ନୁହେଁ !"

**ପ୍ରଶ୍ନ** – ନିଜ ରଥକୁ ଦୁଇସେନାଙ୍କ ମଧ୍ୟରେ ଅବସ୍ଥାପିତ କରିବାକୁ ଅନୁରୋଧ କରିବା ସମୟରେ ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କୁ **ଅଚ୍ୟୁତ** ବୋଲି ସମ୍ବୋଧନ କଲେ କାହିଁକି ?

**ଉତ୍ତର** – ଯାହାଙ୍କର କୌଣସି ସମୟରେ ପରାଜୟ ବା ପତନ ହୁଏ ନାହିଁ, ଅଥବା ଯେ ନିଜର ସ୍ୱରୂପ, ଶକ୍ତି ଓ ମହତ୍ତ୍ୱରେ ସର୍ବଥା ତଥା ସର୍ବଦା ଅବିଚଳିତ ରହନ୍ତି, ତାଙ୍କୁ **ଅଚ୍ୟୁତ** କୁହାଯାଏ । ଅର୍ଜୁନ ଏହି ନାମରେ ସମ୍ବୋଧନ କରି ଭଗବାନଙ୍କର ମହତ୍ତ୍ୱ ଏବଂ ତାଙ୍କର ସ୍ୱରୂପ ସମ୍ବନ୍ଧରେ ନିଜର ଜ୍ଞାନ ପ୍ରକଟ କରୁଛନ୍ତି । ସେ କହୁଛନ୍ତି, "ଆପଣ ରଥର ସାରଥି ହେଲେ କ'ଣ ହେବ, ବସ୍ତୁତଃ ଆପଣ ସଦାସର୍ବଦା ସାକ୍ଷାତ୍ ପରମେଶ୍ୱର ହିଁ ଅଟନ୍ତି ।"

**ଯାବଦେତାନ୍ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍ ।**
**କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ ରଣସମୁଦ୍ୟମେ ।। ୨୨ ।।**

**ଅନ୍ୱୟ –** ଯାବତ୍ = ଯେପର୍ଯ୍ୟନ୍ତ; **ଅହମ୍** = ମୁଁ; **ଏତାନ୍** = ଏହି; **ଅବସ୍ଥିତାନ୍** = ଯୁଦ୍ଧକ୍ଷେତ୍ରରେ ଠିଆ ହୋଇଥିବା; **ଯୋଦ୍ଧୁକାମାନ୍** = ଯୁଦ୍ଧାଭିଳାଷୀମାନଙ୍କୁ; **ନିରୀକ୍ଷେ** = ଭଲରୂପେ ଦେଖି ଚିହ୍ନିବି (କି); **ଅସ୍ମିନ୍** = ଏହି; **ରଣସମୁଦ୍ୟମେ** = ଯୁଦ୍ଧରୂପକ ବ୍ୟାପାରରେ; **ମୟା** = ମୋ ଦ୍ୱାରା; **କୈଃ** = କେଉଁ କେଉଁମାନଙ୍କ; **ସହ** = ସହିତ; **ଯୋଦ୍ଧବ୍ୟମ୍** = ଯୁଦ୍ଧ କରିବା ଯୋଗ୍ୟ (ସେପର୍ଯ୍ୟନ୍ତ ରଥ ଠିଆ କରାନ୍ତୁ)

**ଏହି ଯୁଦ୍ଧରୂପକ ବ୍ୟାପାରରେ ମୋତେ କେଉଁମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ, ଯୁଦ୍ଧକ୍ଷେତ୍ରରେ ଠିଆ ହୋଇଥିବା ସେହି ଯୁଦ୍ଧାଭିଳାଷୀ ବିପକ୍ଷୀ ଯୋଦ୍ଧାମାନଙ୍କୁ ଯେପର୍ଯ୍ୟନ୍ତ ମୁଁ ଭଲରୂପେ ଦେଖି ଚିହ୍ନି ନ ନେଇଛି, ସେପର୍ଯ୍ୟନ୍ତ ରଥ ଠିଆ କରାନ୍ତୁ । ॥ ୨୨ ॥**

**ପ୍ରଶ୍ନ –** ଏହି ଶ୍ଳୋକର ସ୍ପଷ୍ଟୀକରଣ କରନ୍ତୁ ।

**ଉତ୍ତର –** ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କୁ କହିଲେ, "ଆପଣ ମୋ ରଥକୁ ଦୁଇ ସେନାଙ୍କ ମଧ୍ୟସ୍ଥଳକୁ ନେଇଯାଇ ଏପରି ଏକ ଉପଯୁକ୍ତ ସ୍ଥାନରେ ଏବଂ ଏପରି ସମୟପର୍ଯ୍ୟନ୍ତ ଠିଆ କରାନ୍ତୁ, ଯଦ୍ଦ୍ୱାରା ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଥିବା ସମସ୍ତଯୋଦ୍ଧାଙ୍କୁ ମୁଁ ଭଲରୂପେ ଦେଖିପାରିବି । ଏହି ରଣୋଦ୍ୟମରେ, ଯୁଦ୍ଧର ବିକଟ ଅବସ୍ଥାରେ କେଉଁ କେଉଁ ବୀରମାନଙ୍କ ସହିତ ସ୍ୱୟଂ ମୋତେ ଯୁଦ୍ଧ କରିବାକୁ ହେବ, ମୁଁ ତାହା ଜାଣିବାକୁ ଚାହେଁ ।"

**ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ ।**
**ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେର୍ଯୁଦ୍ଧେ ପ୍ରିୟଚିକୀର୍ଷବଃ ॥ ୨୩ ॥**

**ଅନ୍ୱୟ –** **ଦୁର୍ବୁଦ୍ଧେଃ** = ଦୁର୍ବୁଦ୍ଧି; **ଧାର୍ତ୍ତରାଷ୍ଟ୍ରସ୍ୟ** = ଦୁର୍ଯ୍ୟୋଧନର; **ଯୁଦ୍ଧେ** = ଯୁଦ୍ଧରେ; **ପ୍ରିୟଚିକୀର୍ଷବଃ** = ହିତାକାଙ୍କ୍ଷୀ; **ଯେ** = ଯେଉଁ; **ଏତେ** = ଏହି ରାଜାମାନେ; **ଅତ୍ର** = ଏହି ସେନାରେ; **ସମାଗତାଃ** = ଆସିଛନ୍ତି; (**ତାନ୍**) **ଯୋତ୍ସ୍ୟମାନାନ୍** = (ସେହି) ଯୋଦ୍ଧାମାନଙ୍କୁ; **ଅହମ୍** = ମୁଁ; **ଅବେକ୍ଷେ** = ଭଲ କରି ଦେଖିବି ।

**ଦୁର୍ବୁଦ୍ଧି ଦୁର୍ଯ୍ୟୋଧନର ଯୁଦ୍ଧରେ ହିତାକାଙ୍କ୍ଷୀ ହୋଇ ଯେଉଁ ରାଜାମାନେ ଏହି ସେନାରେ ଆସିଛନ୍ତି, ସେହି ଯୋଦ୍ଧାମାନଙ୍କୁ ମୁଁ ଟିକିଏ ଭଲ କରି ଦେଖିବି ॥ ୨୩ ॥**

**ପ୍ରଶ୍ନ –** ଦୁର୍ଯ୍ୟୋଧନଙ୍କୁ ଅର୍ଜୁନ 'ଦୁର୍ବୁଦ୍ଧି' ବୋଲି କାହିଁକି କହିଲେ ?

**ଉତ୍ତର –** ବନବାସ ତଥା ଅଜ୍ଞାତବାସର ତେରବର୍ଷ ପୂର୍ଣ୍ଣ ହେବା ପରେ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇଦେବାକୁ ସ୍ଥିର ହୋଇଥିଲା ଏବଂ ଯେପର୍ଯ୍ୟନ୍ତ ତାହା କୌରବମାନଙ୍କ ନିକଟରେ ନ୍ୟାସଭୂତ ହୋଇ ରହିଥିଲା, କିନ୍ତୁ ଦୁର୍ଯ୍ୟୋଧନ ତାହାକୁ ଅନ୍ୟାୟପୂର୍ବକ ମାଡ଼ିବସିଲେ ଏବଂ ଫେରାଇବାକୁ ପୁରାପୁରି ମନା କରିଦେଲେ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ପ୍ରତି ଯେପର୍ଯ୍ୟନ୍ତ ଅନେକ ଥର ଅନ୍ୟାୟ ତଥା ଅତ୍ୟାଚାର କରି ଆସିଥିଲେ; କିନ୍ତୁ ଏଥରର ଅନ୍ୟାୟ ଅସହ୍ୟ ହୋଇଗଲା । ତାଙ୍କର ଏହି ପାପବୁଦ୍ଧି ସ୍ମରଣ କରି ଅର୍ଜୁନ ତାଙ୍କୁ 'ଦୁର୍ବୁଦ୍ଧି' ବୋଲି କହିଲେ ।

**ପ୍ରଶ୍ନ –** 'ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ହିତ କାମନା କରି ଯେଉଁ ଯେଉଁ ରାଜାମାନେ ତାଙ୍କ ସେନାରେ ଯୋଗ ଦେଇଛନ୍ତି, ସେମାନଙ୍କୁ ମୁଁ ଦେଖିବି' – ଅର୍ଜୁନଙ୍କର ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏଥିରୁ ଅର୍ଜୁନଙ୍କର ଏହି ଭାବ ପ୍ରତୀତ ହେଉଅଛି : ପାପବୁଦ୍ଧି ଦୁର୍ଯ୍ୟୋଧନର ଅନ୍ୟାୟ ଓ ଅତ୍ୟାଚାର ସାରା ଜଗତରେ ପ୍ରତ୍ୟକ୍ଷ ପ୍ରକଟିତ ହୋଇଛି । ତଥାପି ତା'ର ମଙ୍ଗଳ କରିବା ଇଚ୍ଛା ନେଇ ଯେଉଁ ରାଜାମାନେ ଏକତ୍ରିତ ହୋଇଛନ୍ତି, ସେମାନଙ୍କ ବୁଦ୍ଧି ଯେ ଦୁର୍ଯ୍ୟୋଧନଙ୍କ ବୁଦ୍ଧିପରି ଦୂଷିତ ହୋଇଯାଇଛି, ତାହା ଏଥିରୁ ଜଣାପଡ଼ିଯାଉଛି । ତେଣୁ ସେମାନେ ଏହିସବୁ ଅନ୍ୟାୟର ଖୋଲାଖୋଲି ସମର୍ଥନ କରିବାକୁ ଏକତ୍ରିତ ହୋଇଛନ୍ତି ଓ ନିଜର ବଡ଼ିମା ଦେଖାଇ ଦୁର୍ଯ୍ୟୋଧନଙ୍କ ପିଠି ଥାପୁଡ଼ାଉଛନ୍ତି, କିନ୍ତୁ ତାଙ୍କ ମଙ୍ଗଳ କରିବାକୁ ଯାଇ ବାସ୍ତବରେ ସେମାନେ ତାଙ୍କର ଅମଙ୍ଗଳ ହିଁ କରୁଛନ୍ତି । ନିଜକୁ ବଡ଼ ବଳବାନ୍ ମନେ କରି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ସେହି ଯେଉଁମାନେ ଠିଆ ହୋଇଛନ୍ତି, ସେମାନେ ସବୁ କିଏ, ମୁଁ ତାହା ଟିକିଏ ଭଲରୂପେ ଦେଖିବି; ସେମାନେ କେତେ ବଡ଼ ବୀର, ତାହା ଯୁଦ୍ଧସ୍ଥଳରେ ବି ଦେଖିବି ଏବଂ ଅନ୍ୟାୟ ଓ ଅଧର୍ମର ପକ୍ଷ ନେଇଥିବାର ମଜା ଚଖାଇଦେବି ।"

**ସମ୍ବନ୍ଧ –** ଅର୍ଜୁନ ଏହିପରି କହିବା ପରେ ଭଗବାନ୍ କ'ଣ କଲେ, ପରବର୍ତ୍ତୀ ଦୁଇଟି ଶ୍ଳୋକରେ ସଂଜୟ ତାହା ବର୍ଣ୍ଣନା କରୁଛନ୍ତି–

ସଂଜୟ ଉବାଚ

**ଏବମୁକ୍ତୋ ହୃଷୀକେଶୋ ଗୁଡ଼ାକେଶେନ ଭାରତ ।**
**ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମମ୍ ॥ ୨୪ ॥**
**ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାମ୍ ।**
**ଉବାଚ ପାର୍ଥ ପଶ୍ୟୈତାନ୍ ସମବେତାନ୍ କୁରୂନିତି ॥ ୨୫ ॥**

ଅନ୍ୱୟ – ଭାରତ = ହେ ଧୃତରାଷ୍ଟ୍ର; **ଗୁଡ଼ାକେଶେନ** = ଅର୍ଜୁନଙ୍କ ଦ୍ୱାରା; **ଏବମ୍** = ଏହିପରି; **ଉକ୍ତଃ** = କୁହାଯାଇଥିବା; **ହୃଷୀକେଶଃ** = ଭଗବାନ୍ ଶ୍ରୀକୃଷ୍ଣ; **ଉଭୟୋଃ** = ଦୁଇ; **ସେନୟୋଃ** = ସେନାଙ୍କ; **ମଧ୍ୟେ** = ମଝିରେ; **ଭୀଷ୍ମଦ୍ରୋଣପ୍ରମୁଖତଃ** = ଭୀଷ୍ମ ଓ ଦ୍ରୋଣଙ୍କ ସମ୍ମୁଖରେ; **ଚ** = ତଥା; **ସର୍ବେଷାମ୍** = ସମସ୍ତ; **ମହୀକ୍ଷିତାମ୍** = ରାଜାମାନଙ୍କ ସମ୍ମୁଖରେ; **ରଥୋତ୍ତମମ୍** = ଉତ୍ତମ ରଥଟିକୁ; **ସ୍ଥାପୟିତ୍ୱା** = ଠିଆ କରାଇଦେଇ; **ଇତି** = ଏହିପରି; **ଉବାଚ** = କହିଲେ; **ପାର୍ଥ** = ହେ ପାର୍ଥ; **ସମବେତାନ୍** = (ଯୁଦ୍ଧପାଇଁ) ଏକତ୍ରିତ ହୋଇଥିବା; **ଏତାନ୍** = ଏହି; **କୁରୂନ୍** = କୌରବମାନଙ୍କୁ; **ପଶ୍ୟ** = ଦେଖ ।

**ସଞ୍ଜୟ କହିଲେ – ହେ ଧୃତରାଷ୍ଟ୍ର! ଅର୍ଜୁନ ଏପରି କହିବାରୁ, ଭଗବାନ୍ ଶ୍ରୀକୃଷ୍ଣ ଦୁଇସେନାଙ୍କ ମଧ୍ୟରେ ଭୀଷ୍ମ ଓ ଦ୍ରୋଣାଚାର୍ଯ୍ୟଙ୍କ ସମ୍ମୁଖରେ ତଥା ସମସ୍ତ ରାଜାଙ୍କ ସମ୍ମୁଖରେ ଉତ୍ତମ ରଥଟି ଠିଆ କରାଇଦେଇ କହିଲେ, 'ହେ ପାର୍ଥ, ଯୁଦ୍ଧପାଇଁ ଏକତ୍ରିତ ହୋଇଥିବା ଏହି କୌରବମାନଙ୍କୁ ଦେଖ ।' ॥ ୨୪-୨୫ ॥**

**ପ୍ରଶ୍ନ –** ଗୁଡ଼ାକେଶର ଅର୍ଥ କ'ଣ ? ଏବଂ ସଂଜୟ ଅର୍ଜୁନଙ୍କୁ ଏଠାରେ ଗୁଡ଼ାକେଶ ବୋଲି କାହିଁକି କହିଲେ ?

**ଉତ୍ତର –** **ଗୁଡ଼ାକା** ଅର୍ଥ ନିଦ୍ରା । ଯେ ନିଦ୍ରାକୁ ଜୟ କରି ନିଜର ବଶ କରିଦେଇଛନ୍ତି, ତାଙ୍କୁ **ଗୁଡ଼ାକେଶ** କୁହାଯାଏ । ଅର୍ଜୁନ ନିଦ୍ରାକୁ ଜୟ କରିଥିଲେ; ସେ ନ ଶୋଇ ରହିପାରୁଥିଲେ । ନିଦ୍ରା ତାଙ୍କୁ କଷ୍ଟ ଦେଇପାରୁ ନ ଥିଲା; ସେ କେବେ ବି ଆଳସ୍ୟର ବଶ ହେଉ ନ ଥିଲେ । ସଂଜୟ ତାଙ୍କୁ **ଗୁଡ଼ାକେଶ** କହି ସୂଚିତ କରୁଛନ୍ତି, ''ଯେଉଁ ଅର୍ଜୁନ ସଦାସର୍ବଦା ଏତେ ସାବଧାନ ଓ ଜାଗ୍ରତ, ତାଙ୍କୁ ଆପଣଙ୍କ ପୁତ୍ରମାନେ କିପରି ଜୟ କରିପାରିବେ ?''

**ପ୍ରଶ୍ନ –** 'ଯୁଦ୍ଧପାଇଁ ଏକତ୍ରିତ ହୋଇଥିବା ଏହି କୌରବମାନଙ୍କୁ ଦେଖ' – ଭଗବାନଙ୍କର ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଜଣାଇଦେଉଛନ୍ତି, ''ତୁମେ କହିଥିଲ, 'ଯେପର୍ଯ୍ୟନ୍ତ ମୁଁ ସମସ୍ତଙ୍କୁ ଭଲରୂପେ ଦେଖି ନ ପାରିଛି, ସେପର୍ଯ୍ୟନ୍ତ ରଥକୁ ସେଠାରେ ଠିଆ କରି ରଖିବ ।' ସେହି ଅନୁସାରେ ମୁଁ ସମସ୍ତଙ୍କ ମଧ୍ୟସ୍ଥଳରେ ରଥକୁ ଆଣି ଏପରି ସ୍ଥାନରେ ରଖିଛି ଯେ, ଏଠାରୁ ତୁମେ ସମସ୍ତଙ୍କୁ ଭଲରୂପେ ଦେଖିପାରିବ । ରଥ ସ୍ଥିର ହୋଇ ରହିଛି; ବର୍ତ୍ତମାନ ତୁମେ ଯେତେ ସମୟପର୍ଯ୍ୟନ୍ତ ଦେଖିବାକୁ ଚାହୁଁଛ, ସମସ୍ତଙ୍କୁ ସେତେ ସମୟ ଭଲରୂପେ ଦେଖ ।''

ଏଠାରେ **କୁରୂନ୍ ପଶ୍ୟ** ଅର୍ଥାତ୍ 'କୌରବମାନଙ୍କୁ ଦେଖ' ଏହି ଦୁଇ ଶବ୍ଦ ପ୍ରୟୋଗ କରି ଭଗବାନ୍ ସୂଚାଇଦେଉଛନ୍ତି, ''ଏହି ସେନାମଧ୍ୟରେ ଯେତେ ଲୋକ ଅଛନ୍ତି, ପ୍ରାୟ ସମସ୍ତେ ତୁମ ବଂଶର ତଥା ଆତ୍ମୀୟସ୍ୱଜନ ହିଁ ଅଟନ୍ତି । ସେମାନଙ୍କୁ ତୁମେ ଭଲରୂପେ ଦେଖିନିଅ ।'' ଭଗବାନ୍ ଏହି ସଙ୍କେତରେ ଅର୍ଜୁନଙ୍କ ଅନ୍ତଃକରଣରେ ଛପି ରହିଥିବା କୁଟୁମ୍ବସ୍ନେହକୁ ପ୍ରକାଶ କରିଦେଲେ । ଅର୍ଜୁନଙ୍କ ମନରେ ବନ୍ଧୁସ୍ନେହରୁ ଉତ୍ପନ୍ନ କରୁଣାଜନିତ କାପୁରୁଷତା ପ୍ରକାଶ କରାଇବାପାଇଁ ଏହି ଶବ୍ଦ, ଜାଣନ୍ତୁ, ବୀଜରୂପ ହୋଇଗଲା । ଏଥିରୁ ଜଣାଯାଉଛି ଯେ, ଅର୍ଜୁନଙ୍କୁ ନିମିତ୍ତ କରି ଲୋକକଲ୍ୟାଣନିମନ୍ତେ ସ୍ୱୟଂ ଭଗବାନ୍ ହିଁ ଏହି ଶବ୍ଦଦ୍ୱାରା ଅର୍ଜୁନଙ୍କ ହୃଦୟରେ ଏପରି ଭାବନା ଉତ୍ପନ୍ନ କରାଇଦେଲେ, ଯାହା ଫଳରେ କି ସେ ଯୁଦ୍ଧ କରିବାକୁ ମନା କରିଦେଲେ ଏବଂ ତାହାର

ଫଳସ୍ୱରୂପ ସାକ୍ଷାତ୍ ଭଗବାନଙ୍କ ମୁଖାରବିନ୍ଦରୁ ଯେଉଁ ତ୍ରିଲୋକପାବନ ଦିବ୍ୟ ଗୀତାମୃତର ପରମ ଧାରା ନିଃସୃତ ହେଲା, ତାହା ଅନନ୍ତକାଳପର୍ଯ୍ୟନ୍ତ ଅନନ୍ତକୋଟି ଜୀବଙ୍କର ପରମକଲ୍ୟାଣ କରିଚାଲିଥିବ।

**ସମ୍ବନ୍ଧ –** ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଜ୍ଞା ଶୁଣି ଅର୍ଜୁନ କ'ଣ କଲେ, ବର୍ତ୍ତମାନ ତାହା କହୁଛନ୍ତି –

**ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ ପିତୃନଥ ପିତାମହାନ୍।**
**ଆଚାର୍ଯ୍ୟାନ୍ ମାତୁଳାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା ॥ ୨୬ ॥**
**ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପି।**

**ଅନ୍ୱୟ –** **ଅଥ** = ଏହାପରେ; **ପାର୍ଥଃ** = ପୃଥାପୁତ୍ର ଅର୍ଜୁନ; **ତତ୍ର** = ସେହିଠାରେ; **ଉଭୟୋଃ; ସେନୟୋଃ** = ଉଭୟସେନା ମଧ୍ୟରେ; **ଅପି** = ମଧ୍ୟ; **ସ୍ଥିତାନ୍** = ଥିବା; **ପିତୃନ୍** = ପିତୃମାନଙ୍କୁ; **ପିତାମହାନ୍** = ପିତାମହମାନଙ୍କୁ; **ଆଚାର୍ଯ୍ୟାନ୍** = ଗୁରୁମାନଙ୍କୁ; **ମାତୁଳାନ୍** = ମାମୁମାନଙ୍କୁ; **ଭ୍ରାତୃନ୍** = ଭାଇମାନଙ୍କୁ; **ପୁତ୍ରାନ୍** = ପୁତ୍ରମାନଙ୍କୁ; **ପୌତ୍ରାନ୍** = ନାତିମାନଙ୍କୁ; **ତଥା** = ତଥା; **ସଖୀନ୍** = ମିତ୍ରମାନଙ୍କୁ; **ଶ୍ୱଶୁରାନ୍** = ଶ୍ୱଶୁରମାନଙ୍କୁ; **ଚ** = ଓ; **ସୁହୃଦଃ** = ସୁହୃଦ୍‌ମାନଙ୍କୁ; **ଏବ** = ହିଁ; **ଅପଶ୍ୟତ୍** = ଦେଖିଲେ।

**ତା'ପରେ ପୃଥାପୁତ୍ର ଅର୍ଜୁନ ସେହି ଉଭୟସେନା ମଧ୍ୟରେ ବିଦ୍ୟମାନ ପିତୃ, ପିତାମହ, ଆଚାର୍ଯ୍ୟ, ମାମୁ, ଭାଇ, ପୁଅ, ନାତି, ମିତ୍ର, ଶ୍ୱଶୁର ଓ ସୁହୃଦ୍‌ମାନଙ୍କୁ ହିଁ ଦେଖିବାକୁ ପାଇଲେ ॥ ୨୬ ଓ ୨୭ ଶ୍ଳୋକର ପୂର୍ବାର୍ଦ୍ଧ ॥**

**ପ୍ରଶ୍ନ –** ଏହି ଦେଢ଼ଟି ଶ୍ଳୋକର ସ୍ପଷ୍ଟୀକରଣ କରନ୍ତୁ।

**ଉତ୍ତର –** ଭଗବାନଙ୍କ ଆଜ୍ଞା ପାଇ ଅର୍ଜୁନ ଦୁଇସେନାଙ୍କ ମଧ୍ୟରେ ସ୍ଥିତ ନିଜର ସମସ୍ତ ସ୍ୱଜନଙ୍କୁ ଦେଖିଲେ। ତନ୍ମଧ୍ୟରେ ଭୂରିଶ୍ରବା ଆଦି ପିତାଙ୍କ ଭାଇ ଓ ପିତୃତୁଲ୍ୟ ପୁରୁଷମାନେ ଥିଲେ; ଭୀଷ୍ମ, ସୋମଦତ୍ତ ଏବଂ ବାହ୍ଲୀକ ଆଦି ପିତାମହ-ପ୍ରପିତାମହମାନେ ଥିଲେ; ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଆଦି ଗୁରୁମାନେ ଥିଲେ; ପୁରୁଜିତ୍, କୁନ୍ତିଭୋଜ ଓ ଶଲ୍ୟ ଆଦି ମାମୁମାନେ ଥିଲେ; ଅଭିମନ୍ୟୁ, ପ୍ରତିବିନ୍ଧ୍ୟ, ଘଟୋତ୍କଚ, ଲକ୍ଷ୍ମଣ ଆଦି ନିଜର ଓ ଭାଇମାନଙ୍କର ପୁତ୍ରମାନେ ଥିଲେ। ଲକ୍ଷ୍ମଣ ପ୍ରଭୃତିଙ୍କର ପୁତ୍ରମାନେ ଥିଲେ; ସମ୍ବନ୍ଧରେ ସେମାନେ ଥିଲେ ଅର୍ଜୁନଙ୍କର ନାତି। ସେମାନଙ୍କ ସହିତ ବହୁ କ୍ରୀଡ଼ାବନ୍ଧୁ, ମିତ୍ର ଓ ସଖା ବି ଥିଲେ। ଦ୍ରୁପଦ, ଶୈବ୍ୟ ଆଦି ଶ୍ୱଶୁରମାନେ ଥିଲେ ଏବଂ ବିନା କାରଣରେ ତାଙ୍କର ମଙ୍ଗଳ ଇଚ୍ଛା କରୁଥିବା ଅନେକ ସୁହୃଦ୍ ମଧ୍ୟ ଥିଲେ।

**ସମ୍ବନ୍ଧ –** ଏପରିଭାବରେ ସମସ୍ତଙ୍କୁ ଦେଖିବା ପରେ ଅର୍ଜୁନ କଣ କଲେ, ସଞ୍ଜୟ ବର୍ତ୍ତମାନ ତାହା କହୁଛନ୍ତି –

**ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ ସର୍ବାନ୍ ବନ୍ଧୂନବସ୍ଥିତାନ୍ ॥ ୨୭ ॥**
**କୃପୟା ପରୟାଽଽବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍।**

**ଅନ୍ୱୟ –** **ତାନ୍** = ସେହି; **ଅବସ୍ଥିତାନ୍** = ଉପସ୍ଥିତ; **ସର୍ବାନ୍** = ସମସ୍ତ; **ବନ୍ଧୂନ୍** = ବନ୍ଧୁମାନଙ୍କୁ; **ସମୀକ୍ଷ୍ୟ** = ଦେଖି; **ସଃ** = ସେହି; **କୌନ୍ତେୟଃ** = କୁନ୍ତୀପୁତ୍ର ଅର୍ଜୁନ; **ପରୟା** = ଅତ୍ୟନ୍ତ; **କୃପୟା ଆବିଷ୍ଟଃ** = କରୁଣାଦ୍ୱାରା ପରବଶ ହୋଇ; **ବିଷୀଦନ୍** = ଶୋକ କରୁ କରୁ; **ଇଦମ୍** = ଏହା; **ଅବ୍ରବୀତ୍** = କହିଲେ।

**ସେହି ଉପସ୍ଥିତ ସମସ୍ତ ବନ୍ଧୁଙ୍କୁ ଦେଖି କୁନ୍ତୀପୁତ୍ର ଅର୍ଜୁନ ଅତ୍ୟନ୍ତ କରୁଣାପରବଶ ହୋଇ ଶୋକ କରୁ କରୁ କହିଲେ,- - ॥ ୨୭ ଉତ୍ତରାର୍ଦ୍ଧ, ୨୮ ପୂର୍ବାର୍ଦ୍ଧ ॥**

**ପ୍ରଶ୍ନ –** 'ଉପସ୍ଥିତ ସମସ୍ତ ବନ୍ଧୁଙ୍କୁ' କହି କେଉଁମାନଙ୍କୁ ଲକ୍ଷ୍ୟ କରାଯାଇଛି ?

**ଉତ୍ତର –** ପୂର୍ବୋକ୍ତ ଦେଢ଼ଶ୍ଳୋକରେ ଅର୍ଜୁନ 'ପିତା-ପିତାମହାଦି' ଅନେକ ପୁରୁଷଙ୍କ କଥା କହିସାରିଛନ୍ତି; ସେମାନଙ୍କ ଛଡ଼ା ଯେଉଁମାନଙ୍କ ସମ୍ବନ୍ଧ ବିଷୟରେ ସ୍ପଷ୍ଟ କରି କିଛି କହି ନାହାନ୍ତି, ସେପରି ବ୍ୟକ୍ତିମାନଙ୍କୁ, ଯଥା-ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ସୁରଥ ଆଦି ଶାଳକ ତଥା ଜୟଦ୍ରଥ ଆଦି ଭିଣୋଇ ଓ ଅନ୍ୟାନ୍ୟ ଯେଉଁମାନେ ଅନେକପ୍ରକାରେ ସମ୍ବନ୍ଧୀୟ ସ୍ୱଜନ ଉଭୟ ପକ୍ଷର ସୈନ୍ୟମାନଙ୍କ ମଧ୍ୟରେ ଥିଲେ, ସେହି ସମସ୍ତଙ୍କୁ ଲକ୍ଷ୍ୟ କରି ସଂଜୟ 'ଉପସ୍ଥିତ ସମସ୍ତ ବନ୍ଧୁଙ୍କୁ' ବୋଲି କହିଛନ୍ତି।

**ପ୍ରଶ୍ନ –** 'ଅର୍ଜୁନ ଅତ୍ୟନ୍ତ କରୁଣାପରବଶ ହୋଇଗଲେ' – ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଅର୍ଜୁନ ଯେତେବେଳେ ଚତୁର୍ଦ୍ଦିଗରେ ନିଜର ଉପରୋକ୍ତ ସ୍ୱଜନମାନଙ୍କୁ ଦେଖିଲେ ଏବଂ ବିଚାର କଲେ ଯେ, ଯୁଦ୍ଧରେ ସେହି ସମସ୍ତଙ୍କର ସଂହାର ହୋଇଯିବ, ସେତେବେଳେ ବନ୍ଧୁସ୍ନେହହେତୁ ତାଙ୍କର ହୃଦୟ କମ୍ପିଉଠିଲା ଏବଂ ତାଙ୍କ ଠାରେ ଯୁଦ୍ଧର ବିପରୀତ ଏକପ୍ରକାର କରୁଣାଜନିତ କାପୁରୁଷତା ପ୍ରବଳରୂପରେ ଜାଗ୍ରତ ହୋଇଗଲା। ଏହି 'ଅତ୍ୟନ୍ତ କରୁଣା'କୁ ସଂଜୟ **ପରୟା କୃପୟା** ବୋଲି କହିଛନ୍ତି ଏବଂ ଏହି କାପୁରୁଷତାର ଆବେଶରେ ଅର୍ଜୁନ ନିଜର କ୍ଷତ୍ରିୟୋଚିତ ବୀରସ୍ୱଭାବ ଭୁଲିଯାଇ ଅତ୍ୟନ୍ତ ମୋହଗ୍ରସ୍ତ ହୋଇଗଲେ; ଏହା ହିଁ ତାଙ୍କର 'କରୁଣାପରବଶତା'।

**ପ୍ରଶ୍ନ – ଇଦମ୍** ପଦଟି ଅର୍ଜୁନଙ୍କର କେଉଁ କଥାକୁ ସୂଚାଉଛି ?

**ଉତ୍ତର –** ପରବର୍ତ୍ତୀ ଶ୍ଳୋକରୁ ଆରମ୍ଭ କରି ଛୟାଳିଶ ଶ୍ଳୋକପର୍ଯ୍ୟନ୍ତ ଅର୍ଜୁନ ଯେଉଁସବୁ କଥା କହିଛନ୍ତି, **ଇଦମ୍** ପଦଟି ସେସବୁପାଇଁ ପ୍ରୟୋଗ କରାଯାଇଛି।

***ସମ୍ବନ୍ଧ –*** *ବନ୍ଧୁସ୍ନେହହେତୁ ଅର୍ଜୁନଙ୍କର କିପ୍ରକାର ସ୍ଥିତି ହେଲା, ପରବର୍ତ୍ତୀ ଅଢ଼େଇ ଶ୍ଳୋକରେ ଅର୍ଜୁନ ସ୍ୱୟଂ ତାହା ବର୍ଣ୍ଣନା କରୁଛନ୍ତି –*

ଅର୍ଜୁନ ଉବାଚ

**ଦୃଷ୍ଟ୍ୱେମଂ ସ୍ୱଜନଂ କୃଷ୍ଣ ଯୁଯୁତ୍ସୁଂ ସମୁପସ୍ଥିତମ୍ ।। ୨୮ ।।**
**ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି।**
**ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।। ୨୯ ।।**

**ଅନ୍ୱୟ –** **କୃଷ୍ଣ** = ହେ କୃଷ୍ଣ; **ସମୁପସ୍ଥିତମ୍** = (ଯୁଦ୍ଧକ୍ଷେତ୍ରରେ) ଦୃଢ଼ଭାବରେ ଦଣ୍ଡାୟମାନ ହୋଇଥିବା; **ଯୁଯୁତ୍ସୁମ୍** = ଯୁଦ୍ଧାଭିଳାଷୀ; **ଇମମ୍** = ଏହି; **ସ୍ୱଜନମ୍** = ସ୍ୱଜନସମୁଦାୟଙ୍କୁ; **ଦୃଷ୍ଟ୍ୱା** = ଦେଖି; **ମମ** = ମୋର; **ଗାତ୍ରାଣି** = ଅଙ୍ଗମାନ; **ସୀଦନ୍ତି** = ଶିଥିଳ ହୋଇଯାଉଛି; **ଚ** = ଓ; **ମୁଖମ୍** = ମୁଖ; **ପରିଶୁଷ୍ୟତି** = ଶୁଖିଯାଉଛି; **ଚ** = ଓ; **ମେ** = ମୋ; **ଶରୀରେ** = ଦେହରେ; **ବେପଥୁଃ** = କମ୍ପ; **ଚ** = ଓ; **ରୋମହର୍ଷଃ** = ରୋମାଞ୍ଚ; **ଜାୟତେ** = ଜାତ ହେଉଛି।

**ଅର୍ଜୁନ କହିଲେ — ହେ କୃଷ୍ଣ ! ଯୁଦ୍ଧକ୍ଷେତ୍ରରେ ଦୃଢ଼ଭାବରେ ଦଣ୍ଡାୟମାନ ହୋଇଥିବା ଏହି ଯୁଦ୍ଧାଭିଳାଷୀ ସ୍ୱଜନସମୁଦାୟଙ୍କୁ ଦେଖି ମୋର ଅଙ୍ଗମାନ ଶିଥିଳ ହୋଇଯାଉଛି, ମୁଖ ଶୁଖିଯାଉଛି ଓ ଦେହରେ କମ୍ପ ତଥା ରୋମାଞ୍ଚ ଜାତ ହେଉଛି ।। ୨୮ ଉତ୍ତରାର୍ଦ୍ଧ, ୨୯ ।।**

**ପ୍ରଶ୍ନ –** ଅର୍ଜୁନଙ୍କ ଏହି କଥନର ଅର୍ଥ କଣ ?

**ଉତ୍ତର –** ଏଠାରେ ଅର୍ଜୁନଙ୍କ କଥନର ଅର୍ଥ ହେଉଛି : ''ଏହି ମହାଯୁଦ୍ଧର ପରିଣାମ ଅତ୍ୟନ୍ତ ଭୟଙ୍କର ହେବ। ଏହିସବୁ ଛୋଟବଡ଼ ବନ୍ଧୁବାନ୍ଧବ ତଥା ଆତ୍ମୀୟସ୍ୱଜନ, ଯେଉଁମାନେ କି ମୋର ଚକ୍ଷୁସମକ୍ଷରେ ଅଛନ୍ତି, ସେମାନେ ମୃତ୍ୟୁମୁଖରେ ପଡ଼ିଯିବେ। ଏହି କଥା ଚିନ୍ତା କରି ମୋର ଏପରି ମାର୍ମିକ ପୀଡ଼ା ହେଉଛି ଯେ, ମୋ ହୃଦୟରେ ଏପରି ଭୟଙ୍କର ଦାହ ଓ ଭୟ ଉତ୍ପନ୍ନ ହୋଇଯାଇଛି ଯେ, ତା'ଫଳରେ ମୋ ଶରୀରର ଏପରି ଦୁରବସ୍ଥା ହେଉଛି।''

**ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ ।**
**ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ ।। ୩୦ ।।**

**ଅନ୍ୱୟ –** ହସ୍ତାତ୍ = ହାତରୁ; **ଗାଣ୍ଡୀବମ୍** = ଗାଣ୍ଡୀବ ଧନୁ; **ସ୍ରଂସତେ** = ଖସିପଡୁଛି; ଚ = ଓ; **ତ୍ୱକ୍** = ଚର୍ମ; **ଏବ** = ବି; **ପରିଦହ୍ୟତେ** = ଅତ୍ୟନ୍ତ ଦଗ୍ଧ ହେଉଛି; ଚ = ତଥା; **ମେ** = ମୋର; **ମନଃ** = ମନ; **ଭ୍ରମତି, ଇବ** = ଘୂର୍ଣ୍ଣିତ ହେଲାପରି ଲାଗୁଛି; **(ଅତଃ)** = ଏଣୁ; **ଅବସ୍ଥାତୁମ୍** = (ମୁଁ) ଠିଆ ହୋଇ ରହିବାକୁ; ଚ = ବି; ନ, **ଶକ୍ନୋମି** = ସମର୍ଥ ହୋଇପାରୁ ନାହିଁ।

**ହାତରୁ ଗାଣ୍ଡୀବ ଧନୁ ଖସିପଡୁଛି, ଚର୍ମ ବି ଭୀଷଣ ଜ୍ୱାଳା କରୁଛି ତଥା ମୋର ମନ ଘୂର୍ଣ୍ଣିତ ହେଲାପରି ଲାଗୁଛି। ତେଣୁ ମୁଁ ଠିଆ ହୋଇ ରହିବାକୁ ବି ସମର୍ଥ ହୋଇପାରୁ ନାହିଁ। ।। ୩୦ ।।**

**ପ୍ରଶ୍ନ –** ଏହି ଶ୍ଳୋକର ଭାବ କଣ ?

**ଉତ୍ତର –** କରୁଣାଜନିତ କାପୁରୁଷତାରେ ଅର୍ଜୁନଙ୍କ ଅବସ୍ଥା ବଡ଼ ଶୋଚନୀୟ ହୋଇଯାଇଛି। ତାହା ବର୍ଣ୍ଣନା କରି ସେ କହୁଛନ୍ତି, "ମୋର ସମସ୍ତ ଅଙ୍ଗ ଅତ୍ୟନ୍ତ ଶିଥିଳ ହୋଇଯାଇଛି; ହାତ ଏପରି ଶକ୍ତିଶୂନ୍ୟ ହୋଇଯାଇଛି ଯେ, ସେଥିରେ ଗାଣ୍ଡୀବ ଧନୁ ଧରି ବାଣ ମାରିବା ତ ଦୂରର କଥା, ମୁଁ ତାହାକୁ ଧରି ହିଁ ପାରୁ ନାହିଁ; ତାହା ହାତରୁ ଖସିପଡୁଛି। ଯୁଦ୍ଧର ଭବିଷ୍ୟତ ପରିଣାମ ଚିନ୍ତା କରି ମନରେ ଏପରି ଜ୍ୱାଳା ଆରମ୍ଭ ହୋଇଯାଇଛି ଯେ, ମୋର ଚର୍ମ ବି ପୋଡ଼ିଉଠୁଛି ଏବଂ ଭୀଷଣ ମାନସିକ ପୀଡ଼ାହେତୁ ମୋର ମନ କୌଣସି କଥାରେ କ୍ଷଣେ ହେଲେ ସ୍ଥିର ହୋଇ ରହିପାରୁ ନାହିଁ। ତାହାର ପରିଣାମସ୍ୱରୂପ ମୋର ମୁଣ୍ଡ ଘୂରାଇହେଉଛି ଏବଂ ଲାଗୁଛି, ମୁଁ ଏହିକ୍ଷଣି ମୂର୍ଚ୍ଛା ହୋଇ ତଳେ ପଡ଼ିଯିବି।"

**ପ୍ରଶ୍ନ –** ଅର୍ଜୁନଙ୍କ ଗାଣ୍ଡୀବ ଧନୁ କିପରି ଥିଲା ? ଏବଂ ତାହା ତାଙ୍କୁ କିପରି ମିଳିଥିଲା ?

**ଉତ୍ତର –** ଅର୍ଜୁନଙ୍କ ଗାଣ୍ଡୀବ ଧନୁ ଦିବ୍ୟ ଥିଲା। ତାହାର ଆକାର ତାଳଗଛପରି ବିଶାଳ ଥିଲା (ମହା/ଉଦ୍ୟୋଗ/୧୬୧)। ଗାଣ୍ଡୀବର ପରିଚୟ ଦେବାକୁ ଯାଇ ବୃହନ୍ନଳାରୂପରେ ସ୍ୱୟଂ ଅର୍ଜୁନ ଉତ୍ତରକୁମାରଙ୍କୁ କହିଥିଲେ, "ଏହା ଅର୍ଜୁନଙ୍କର ଜଗତ୍‌ପ୍ରସିଦ୍ଧ ଧନୁ। ଏହା ସ୍ୱର୍ଣ୍ଣରେ ଆଚ୍ଛାଦିତ ହୋଇଛି। ଏହି ଧନୁ ସବୁ ଶସ୍ତ୍ରମାନଙ୍କ ମଧ୍ୟରେ ଉତ୍ତମ ଏବଂ ଲକ୍ଷେ ଆୟୁଧସମାନ ଶକ୍ତିଶାଳୀ। ଏହି ଧନୁଦ୍ୱାରା ଅର୍ଜୁନ ଦେବତା ଓ ମନୁଷ୍ୟମାନଙ୍କ ଉପରେ ବିଜୟ ଲାଭ କରିଥିଲେ। ଏହି ବିଚିତ୍ର, ରଙ୍ଗବେରଙ୍ଗ, ଅଦ୍ଭୁତ, କୋମଳ ଏବଂ ବିଶାଳ ଧନୁକୁ ଦେବତା, ଦାନବ ଓ ଗନ୍ଧର୍ବମାନେ ଦୀର୍ଘକାଳପର୍ଯ୍ୟନ୍ତ ଆରାଧନା କରିଥିଲେ। ଏହି ପରମ ଦିବ୍ୟ ଧନୁକୁ ବ୍ରହ୍ମା ଏକହଜାର ବର୍ଷ, ପ୍ରଜାପତି ପାଞ୍ଚଶହ ତିନି ବର୍ଷ, ଇନ୍ଦ୍ର ପଞ୍ଚାଅଶୀ ବର୍ଷ, ଚନ୍ଦ୍ର ପାଞ୍ଚଶହ ବର୍ଷ ଏବଂ ବରୁଣ ଶହେ ବର୍ଷପର୍ଯ୍ୟନ୍ତ ପାଖରେ ରଖିଥିଲେ (ମହା/ବିରାଟ/୪୩)। ଖାଣ୍ଡବବନ ଦହନ ସମୟରେ ଅଗ୍ନିଦେବତା ଏହାକୁ ବରୁଣ ଦେବତାଙ୍କ ଠାରୁ ଆଣି ଅର୍ଜୁନଙ୍କୁ ଦେଇଥିଲେ (ମହା/ଆଦି/୨୨୫)।"

**ସମ୍ବନ୍ଧ –** ନିଜର ଚିନ୍ତାଦମୟ ସ୍ଥିତି ବର୍ଣ୍ଣନା କରି ବର୍ତ୍ତମାନ ଅର୍ଜୁନ ନିଜ ବିଚାର ଅନୁସାରେ ଯୁଦ୍ଧର ଅନୌଚିତ୍ୟ ସିଦ୍ଧ କରୁଛନ୍ତି—

**ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ।**
**ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ।। ୩୧ ।।**

**ଅନ୍ୱୟ –** **କେଶବ** = ହେ କେଶବ; **ନିମିତ୍ତାନି** = ଲକ୍ଷଣମାନଙ୍କୁ; ଚ = ବି; **ବିପରୀତାନି** = ବିପରୀତ ହିଁ; **ପଶ୍ୟାମି** = ଦେଖୁଛି; **ଆହବେ** = ଯୁଦ୍ଧରେ; **ସ୍ୱଜନମ୍** = ସ୍ୱଜନସମୁଦାୟକୁ; **ହତ୍ୱା** = ମାରି; **ଶ୍ରେୟଃ** = କଲ୍ୟାଣ; ଚ = ବି; ନ, **ଅନୁପଶ୍ୟାମି** = ଦେଖିପାରୁ ନାହିଁ।

**ହେ କେଶବ! ମୁଁ ଲକ୍ଷଣସବୁକୁ ବିପରୀତ ହିଁ ଦେଖୁଛି। ଯୁଦ୍ଧରେ ସ୍ୱଜନସମୁଦାୟକୁ ମାରିବାରେ କୌଣସି କଲ୍ୟାଣ ବି ଦେଖିପାରୁ ନାହିଁ। ।। ୩୧ ।।**

**ପ୍ରଶ୍ନ –** 'ମୁଁ ଲକ୍ଷଣସବୁକୁ ମଧ୍ୟ ବିପରୀତ ହିଁ ଦେଖୁଛି।' ଏହାର ଅର୍ଥ କଣ ?

**ଉତ୍ତର –** କୌଣସି କାର୍ଯ୍ୟର ଭବିଷ୍ୟତ ପରିଣାମର ସୂଚନା ଦେଉଥିବା ଶକୁନାଦି ଚିହ୍ନକୁ ଲକ୍ଷଣ କୁହାଯାଏ; ଶ୍ଲୋକରେ **ନିମିତ୍ତାନି** ପଦଟି ଏହିପରି ଲକ୍ଷଣମାନଙ୍କ ପାଇଁ ଦିଆଯାଇଛି। ଅର୍ଜୁନ ଲକ୍ଷଣସବୁକୁ ବିପରୀତ କହି ଜଣାଉଛନ୍ତି, ''ଅସମୟରେ ଗ୍ରହଣ ଲାଗିବା, ଧରଣୀ କମ୍ପିଉଠିବା, ଆକାଶରୁ ଉଲ୍କା ଖସିବା ଆଦି ମନ୍ଦ ସୂଚନାରୁ ଏହା ପ୍ରତୀତ ହୁଏ ଯେ, ଯୁଦ୍ଧର ପରିଣାମ ଭଲ ହେବ ନାହିଁ। ତେଣୁ ମୋ ମତରେ ଯୁଦ୍ଧ ନ କରିବା ଶ୍ରେୟସ୍କର।''

**ପ୍ରଶ୍ନ –** 'ଯୁଦ୍ଧରେ ସ୍ୱଜନସମୁଦାୟକୁ ମାରିବାରେ କଲ୍ୟାଣ ମଧ୍ୟ ଦେଖୁ ନାହିଁ – ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଅର୍ଜୁନଙ୍କ କହିବାର ତାତ୍ପର୍ଯ୍ୟ ହେଲା : ''ଯୁଦ୍ଧରେ ନିଜର ବନ୍ଧୁବାନ୍ଧବମାନଙ୍କୁ ମାରିବାରେ କୌଣସିପ୍ରକାର ମଙ୍ଗଳ ହେବାର ସମ୍ଭାବନା ନାହିଁ। କାରଣ ପ୍ରଥମତଃ ଆତ୍ମୀୟସ୍ୱଜନମାନଙ୍କୁ ମାରିଲେ ଚିତ୍ତରେ ପଶ୍ଚାତ୍ତାପଜନିତ କ୍ଷୋଭ ହେବ; ଦ୍ୱିତୀୟରେ ସେମାନଙ୍କ ମୃତ୍ୟୁରେ ଜୀବନ ଦୁଃଖମୟ ହୋଇଯିବ ଏବଂ ତୃତୀୟରେ ସେମାନଙ୍କୁ ମାରିଲେ ଭୀଷଣ ପାପ ହେବ। ଏହିସବୁ ଦୃଷ୍ଟିରୁ ଇହଲୋକରେ କିମ୍ବା ପରଲୋକରେ କୌଣସି ମଙ୍ଗଳ ହେବ ନାହିଁ। ଅତଏବ ମୋ ବିଚାରରେ ଯୁଦ୍ଧ କରିବା କୌଣସିପ୍ରକାରେ ଉଚିତ ନୁହେଁ।''

*ସମ୍ବନ୍ଧ –* *ଅର୍ଜୁନ କହିଲେ ଯେ, ସ୍ୱଜନମାନଙ୍କୁ ନିଧନ କଲେ କୌଣସିପ୍ରକାର ହିତସାଧନ ହେବାର ସମ୍ଭାବନା ନାହିଁ। ବର୍ତ୍ତମାନ ସେହି କଥାକୁ ପୁଷ୍ଟ କରି ସେ ପୁନର୍ବାର କହୁଛନ୍ତି –*

**ନ କାଙ୍କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ ।**
**କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା ।। ୩୨ ।।**

**ଅନ୍ୱୟ –** କୃଷ୍ଣ = ହେ କୃଷ୍ଣ (ମୁଁ); ବିଜୟମ୍ = ବିଜୟ; ନ, କାଙ୍କ୍ଷେ = ଚାହୁଁନାହିଁ; ଚ = ଓ (କି); ରାଜ୍ୟମ୍ = ରାଜ୍ୟ; ଚ = ତଥା; ସୁଖାନି = ସୁଖ (ମଧ୍ୟ); ନ = ଚାହୁଁନାହିଁ; ଗୋବିନ୍ଦ = ହେ ଗୋବିନ୍ଦ; ନଃ = ଆମର (ଏପରି) ରାଜ୍ୟେନ = ରାଜ୍ୟରେ; କିମ୍= କି ପ୍ରୟୋଜନ; ବା = ଅଥବା; ଭୋଗୈଃ = (ଏପରି) ଭୋଗମାନଙ୍କରେ; ଜୀବିତେନ = (ଓ) ଜୀବନରେ; କିମ୍= କି (ଲାଭ ଅଛି)

**ହେ କୃଷ୍ଣ! ମୁଁ ବିଜୟ ଚାହୁଁ ନାହିଁ, କି ରାଜ୍ୟ ତଥା ସୁଖ ମଧ୍ୟ ଚାହୁଁ ନାହିଁ। ହେ ଗୋବିନ୍ଦ! ଆମର ଏପରି ରାଜ୍ୟରେ କି ପ୍ରୟୋଜନ! ଅଥବା ଏପରି ଭୋଗମାନଙ୍କରେ ଓ ଜୀବନରେ ବି କି ଲାଭ ଅଛି! ।। ୩୨ ।।**

**ପ୍ରଶ୍ନ –** ଅର୍ଜୁନଙ୍କ ଏହି କଥାର ଭାବ କଣ ?

**ଉତ୍ତର –** ଅର୍ଜୁନ ନିଜ ଚିତ୍ତର ସ୍ଥିତି ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, ''ହେ କୃଷ୍ଣ ! ଏହି ଆତ୍ମୀୟସ୍ୱଜନମାନଙ୍କୁ ମାରିବା ପରେ ଯେଉଁ ବିଜୟ, ରାଜ୍ୟ ଓ ସୁଖ ମିଳିବ, ମୁଁ ତାହା ଟିକିଏ ହେଲେ ଚାହୁଁ ନାହିଁ। ମୋତେ ଲାଗୁଛି, ଏମାନଙ୍କୁ ମାରିବା ପରେ ଆମକୁ ଇହଲୋକ ଓ ପରଲୋକରେ କେବଳ ସନ୍ତାପ ମିଳିବା ହିଁ ସାର ହେବ। ତେଣୁ କାହିଁକି ବା ଯୁଦ୍ଧ କରାଯିବ ଏବଂ ଏମାନଙ୍କୁ ମରାଯିବ ? କ'ଣ ହେବ ଏହି ରାଜ୍ୟ ଓ ଭୋଗ ? ମୋ ବିଚାରରେ ଏମାନଙ୍କୁ ମାରି ବଞ୍ଚିବାରେ କୌଣସି ଲାଭ ନାହିଁ।''

*ସମ୍ବନ୍ଧ –* *ବର୍ତ୍ତମାନ ଅର୍ଜୁନ ସ୍ୱଜନବଧରେ ମିଳୁଥିବା ରାଜ୍ୟ, ଭୋଗ ଆଦି ନ ଚାହିଁବାର କାରଣ ଦେଖାଉଛନ୍ତି –*

**ଯେଷାମର୍ଥେ କାଙ୍କ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ ।**
**ତ ଇମେଽବସ୍ଥିତା ଯୁଦ୍ଧେ ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ ।। ୩୩ ।।**

**ଅନ୍ୱୟ –** ନଃ = ଆମର; ଯେଷାମ୍ = ଯେଉଁମାନଙ୍କ; ଅର୍ଥେ = ପାଇଁ; ରାଜ୍ୟମ୍ = ରାଜ୍ୟ; ଭୋଗାଃ = ଭୋଗ; ଚ = ଓ; ସୁଖାନି = ସୁଖାଦି; କାଙ୍କ୍ଷିତମ୍ = ଅଭୀଷ୍ଟ; ତେ = ସେମାନେ (ହିଁ); ଇମେ = ଏସବୁ;

**ଧନାନି** = ଧନ; **ଚ** = ଓ; **ପ୍ରାଣାନ୍** = ଜୀବନ (ର ଆଶା); **ତ୍ୟକ୍ତ୍ୱା** = ପରିତ୍ୟାଗ କରି; **ଯୁଦ୍ଧେ** = ଯୁଦ୍ଧରେ; **ଅବସ୍ଥିତାଃ** = ଠିଆ ହୋଇଛନ୍ତି ।

**ଆମେ ଯେଉଁମାନଙ୍କ ପାଇଁ ରାଜ୍ୟ, ଭୋଗ ଓ ସୁଖାଦି ଅଭିଳାଷ କରୁଛୁ, ଏହି ସେହିମାନେ ଧନ ଓ ଜୀବନର ଆଶା ପରିତ୍ୟାଗ କରି ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି ।। ୩୩ ।।**

**ପ୍ରଶ୍ନ** – ଅର୍ଜୁନଙ୍କ ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଏଠାରେ ଅର୍ଜୁନ କହୁଛନ୍ତି, ''ମୋର ନିଜପାଇଁ ରାଜ୍ୟ, ଭୋଗ ଏବଂ ସୁଖାଦିର ଆବଶ୍ୟକତା ନାହିଁ; କାରଣ ମୁଁ ଜାଣିଛି, ଏଥିରେ ସ୍ଥାୟୀ ଆନନ୍ଦ ମିଳେ ନାହିଁ ଏବଂ ଏହା ନିତ୍ୟ ନୁହେଁ । ମୁଁ ଏହି ଭାଇବନ୍ଧୁ ଆଦି ସ୍ୱଜନଙ୍କ ପାଇଁ ରାଜ୍ୟାଦି ଇଚ୍ଛା କରିଥିଲି; କିନ୍ତୁ ମୁଁ ଦେଖୁଛି, ସେମାନେ ସମସ୍ତେ ଯୁଦ୍ଧରେ ପ୍ରାଣପର୍ଯ୍ୟନ୍ତ ଦେଇଦେବାକୁ ପ୍ରସ୍ତୁତ ହୋଇ ଠିଆ ହୋଇଛନ୍ତି । ଯଦି ସେମାନଙ୍କର ମୃତ୍ୟୁ ହୋଇଯାଏ, ତେବେ ରାଜ୍ୟ, ଭୋଗ ଏବଂ ସୁଖ ଆଦି କେଉଁ କାମରେ ଲାଗିବ ? ତେଣୁ ଏହି ଯୁଦ୍ଧ କରିବା କୌଣସିପ୍ରକାରେ ଉଚିତ ନୁହେଁ ।''

*ସମ୍ବନ୍ଧ* – *ଏପରିଭାବରେ ଯୁଦ୍ଧର ଅଯଥାର୍ଥତା ଦେଖାଇବା ପରେ ବର୍ତ୍ତମାନ ଅର୍ଜୁନ ଯୁଦ୍ଧରେ ମରିବାକୁ ପ୍ରସ୍ତୁତ ହୋଇ ଆସିଥିବା ସ୍ୱଜନସମୁଦାୟଙ୍କ ମଧ୍ୟରେ ଯେଉଁମାନେ ଅଛନ୍ତି, ସେମାନଙ୍କର ବର୍ଣ୍ଣନା ସଂକ୍ଷେପରେ କରୁଛନ୍ତି* –

**ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ ।**
**ମାତୁଲାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଳାଃ ସମ୍ବନ୍ଧିନସ୍ତଥା ।। ୩୪ ।।**

**ଅନ୍ୱୟ** – **ଆଚାର୍ଯ୍ୟାଃ** = ଗୁରୁମାନେ; **ପିତରଃ** = ପିତୃମାନେ; **ପୁତ୍ରାଃ** = ପୁତ୍ରମାନେ; **ଚ** = ଏବଂ; **ତଥା ଏବ** = ସେହିପରି; **ପିତାମହାଃ** = ପିତାମହମାନେ; **ମାତୁଲାଃ** = ମାମୁଁମାନେ; **ଶ୍ୱଶୁରାଃ** = ଶ୍ୱଶୁରମାନେ; **ପୌତ୍ରାଃ** = ନାତିମାନେ; **ଶ୍ୟାଳାଃ** = ଶାଳକମାନେ; **ତଥା** = ତଥା; **ସମ୍ବନ୍ଧିନଃ** = ଅନ୍ୟ ସମ୍ବନ୍ଧୀୟମାନେ (ବି ଅଛନ୍ତି) ।

**ଗୁରୁମାନେ, ପିତୃମାନେ, ପୁତ୍ରମାନେ ଏବଂ ସେହିପରି ପିତାମହମାନେ, ମାମୁଁମାନେ, ଶ୍ୱଶୁରମାନେ, ନାତିମାନେ, ଶାଳକମାନେ ତଥା ଅନ୍ୟ ସମ୍ବନ୍ଧୀୟମାନେ ବି ଅଛନ୍ତି ।। ୩୪ ।।**

**ପ୍ରଶ୍ନ** – ଏହି ସମ୍ବନ୍ଧୀୟମାନଙ୍କର ନାମ ନେଇ ଅର୍ଜୁନ କଣ କହିବାକୁ ଚାହୁଁଛନ୍ତି ?

**ଉତ୍ତର** – ଆଚାର୍ଯ୍ୟ, ପିତୃ, ପିତାମହ ଆଦି ସମ୍ବନ୍ଧୀୟମାନଙ୍କ କଥା ତ ପୂର୍ବରୁ ସଂକ୍ଷେପରେ କୁହାଯାଇ ସାରିଛି । ଏଠାରେ **ଶ୍ୟାଳାଃ** ଶବ୍ଦରେ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଏବଂ ସୁରଥ ଆଦିଙ୍କୁ ଏବଂ **ସମ୍ବନ୍ଧିନଃ** ଶବ୍ଦରେ ଜୟଦ୍ରଥ ଆଦିଙ୍କୁ ସ୍ମରଣ କରି ସେ କହିବାକୁ ଚାହୁଁଛନ୍ତି ଯେ, ସଂସାରରେ ମନୁଷ୍ୟ ନିଜର ପ୍ରିୟ ସମ୍ବନ୍ଧୀୟମାନଙ୍କ ପାଇଁ ଭୋଗପଦାର୍ଥ ସଂଗ୍ରହ କରେ; ଯଦି ସେମାନେ ସମସ୍ତେ ମରିଯିବେ, ତେବେ ରାଜ୍ୟଭୋଗ ମିଳିଗଲେ କ'ଣ ହେବ ? ଏପରି ରାଜ୍ୟଭୋଗ ତ କେବଳ ଦୁଃଖର କାରଣ ହୋଇଯିବ ।

*ସମ୍ବନ୍ଧ* – *ସେନାମଧ୍ୟରେ ଉପସ୍ଥିତ ଶୂରବୀରଙ୍କ ସହିତ ନିଜର ସମ୍ବନ୍ଧ ବର୍ଣ୍ଣନା କରି ବର୍ତ୍ତମାନ ଅର୍ଜୁନ କୌଣସିପ୍ରକାରେ ମଧ୍ୟ ସେମାନଙ୍କୁ ମାରିବାକୁ ନିଜର ଅନିଚ୍ଛା ବ୍ୟକ୍ତ କରୁଛନ୍ତି* –

**ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ ।**
**ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ କିଂ ନୁ ମହୀକୃତେ ।। ୩୫ ।।**

**ଅନ୍ୱୟ—** **ମଧୁସୂଦନ** = ହେ ମଧୁସୂଦନ; **ଘ୍ନତଃ** = (ଏମାନେ ମୋତେ) ମାରିଦେଲେ; **ଅପି** = ବି (କ୍ରିୟା); **ତ୍ରୈଲୋକ୍ୟରାଜ୍ୟସ୍ୟ** = ତିନିଲୋକର ରାଜ୍ୟାଧିକାରର; **ହେତୋଃ** = ନିମନ୍ତେ; **ଅପି** = ମଧ୍ୟ; **ଏତାନ୍** = (ମୁଁ) ଏମାନଙ୍କୁ; **ହନ୍ତୁମ୍** = ମାରିବାକୁ; **ନ**, **ଇଚ୍ଛାମି** = ଚାହେଁ ନାହିଁ; **ମହୀକୃତେ** = ପୃଥିବୀ ଲାଭ କରିବା ନିମନ୍ତେ (ବା); **ନୁ**, **କିମ୍** = କହିବା କ'ଣ !

**ହେ ମଧୁସୂଦନ! ଏମାନେ ମୋତେ ମାରିଦେଲେ ବି ମୁଁ ଏମାନଙ୍କୁ ମାରିବାକୁ ଚାହେଁ ନାହିଁ। ପୃଥିବୀ ଲାଭ କରିବା କଥା କିଏ ପଚାରେ, ତିନିଲୋକର ରାଜ୍ୟାଧିକାର ମିଳିବାର ଥିଲେ ମଧ୍ୟ, ମୁଁ ଏମାନଙ୍କୁ ମାରିବାକୁ ଚାହେଁ ନାହିଁ ।। ୩୫ ।।**

**ପ୍ରଶ୍ନ—** ଅର୍ଜୁନ କାହିଁକି କହିଲେ ଯେ, ତାଙ୍କୁ ମାରିଦେଲେ ମଧ୍ୟ, ସେ ସେମାନଙ୍କୁ ମାରିବାକୁ ଚାହାଁନ୍ତି ନାହିଁ? —କାରଣ ଦୁଇ ସେନାଙ୍କ ମଧ୍ୟରେ ସ୍ଥିତ ସମ୍ବନ୍ଧୀୟମାନଙ୍କ ମଧ୍ୟରୁ ଯେଉଁମାନେ ଅର୍ଜୁନଙ୍କ ପକ୍ଷରେ ଥିଲେ, ସେମାନେ ଅର୍ଜୁନଙ୍କୁ ମାରିବାର କଳ୍ପନା ମଧ୍ୟ କରାଯାଇ ନ ପାରେ।

**ଉତ୍ତର—** ସେଥିପାଇଁ ଅର୍ଜୁନ **ଘ୍ନତଃ** ଏବଂ **ଅପି** ଶବ୍ଦ ପ୍ରୟୋଗ କରିଛନ୍ତି। ତାଙ୍କର କହିବାର ଉଦ୍ଦେଶ୍ୟ ହେଲା : ''ମୋ ପକ୍ଷର ଲୋକମାନଙ୍କୁ ନେଇ ତ କୌଣସି କଥା ନାହିଁ; ପରନ୍ତୁ ମୁଁ ଯେତେବେଳେ ଯୁଦ୍ଧରୁ ନିବୃତ୍ତ ହୋଇଯିବି, ସେତେବେଳେ ବିପକ୍ଷରେ ଥିବା ସମ୍ବନ୍ଧୀୟମାନେ ବି ସମ୍ଭବତଃ ମୋତେ ମାରିବାକୁ ଇଚ୍ଛା କରିବେ ନାହିଁ; କାରଣ, ସେମାନେ ରାଜ୍ୟଲୋଭରେ ହିଁ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଛନ୍ତି। ଯଦି ଆମ୍ଭେମାନେ ଯୁଦ୍ଧରୁ ନିବୃତ୍ତ ହୋଇ ରାଜ୍ୟର ଆକାଂକ୍ଷା ହିଁ ଛାଡ଼ିଦେବୁ, ତେବେ ତ ମାରିବାର କୌଣସି କାରଣ ହିଁ ରହିବ ନାହିଁ। କିନ୍ତୁ ଯଦି ଏହା ପରେ ସେମାନଙ୍କ ମଧ୍ୟରୁ କେହି କେବେ ମୋତେ ମାରିବାକୁ ଇଚ୍ଛା କରିବେ, ତେବେ ମଧ୍ୟ ମୋତେ ମାରିବାକୁ ଚେଷ୍ଟା କରୁଥିବା ସେହି ଲୋକଙ୍କୁ ମୁଁ ମାରିବି ନାହିଁ।''

**ପ୍ରଶ୍ନ—** 'ପୃଥିବୀଲାଭ କଥା କିଏ ପଚାରେ, ତିନି ଲୋକର ରାଜ୍ୟାଧିକାର ମିଳିବାର ଥିଲେ ମଧ୍ୟ ନୁହେଁ' —ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଏହା କହି ଅର୍ଜୁନ ଯେଉଁ ଭାବ ପ୍ରକାଶ କଲେ ତାହା ହେଲା : ''ପୃଥିବୀର ରାଜ୍ୟ ଏବଂ ସୁଖଭୋଗ କଥା କିଏ ପଚାରେ, ଯଦି ସେମାନଙ୍କୁ ମାରିଦେଲେ ତ୍ରିଲୋକର ନିଷ୍କଣ୍ଟକ ରାଜ୍ୟଶାସନ ଅଧିକାର ମିଳିବାର ଥାଏ, ତେବେ ମଧ୍ୟ ମୁଁ ଏହି ଆଚାର୍ଯ୍ୟାଦି ଆତ୍ମୀୟସ୍ୱଜନମାନଙ୍କୁ ମାରିବାକୁ ଇଚ୍ଛା କରେ ନାହିଁ।''

*ସମ୍ବନ୍ଧ— ଏଠାରେ ଯଦି ପଚରାଯାଏ, ''ଆପଣ ତ୍ରିଲୋକରାଜ୍ୟପାଇଁ ମଧ୍ୟ ଏମାନଙ୍କୁ ମାରିବାକୁ କାହିଁକି ଇଚ୍ଛା କରୁ ନାହାନ୍ତି ?'', ତେବେ ଅର୍ଜୁନ ନିଜର ସମ୍ବନ୍ଧୀୟମାନଙ୍କୁ ମାରିଲେ ଲାଭ ହେବ ନାହିଁ ଏବଂ ପାପର ସମ୍ଭାବନା ରହିବ ବୋଲି କହି ନିଜ କଥାକୁ ପୁଷ୍ଟ କରିଦେଉଛନ୍ତି —*

**ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ।**
**ପାପମେବାଶ୍ରୟେଦସ୍ମାନ୍ ହତ୍ୱୈତାନାତତାୟିନଃ ।। ୩୬ ।।**

**ଅନ୍ୱୟ—** **ଜନାର୍ଦ୍ଦନ** = ହେ ଜନାର୍ଦ୍ଦନ!; **ଧାର୍ତ୍ତରାଷ୍ଟ୍ରାନ୍** = ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ; **ନିହତ୍ୟ** = ମାରି; **ନଃ** = ଆମକୁ; **କା** = କେଉଁ; **ପ୍ରୀତିଃ** = ପ୍ରସନ୍ନତା; **ସ୍ୟାତ୍** = ହେବ; **ଏତାନ୍** = ଏସବୁ; **ଆତତାୟିନଃ** = ଆତତାୟୀମାନଙ୍କୁ; **ହତ୍ୱା** = ମାରିଲେ (ତ); **ଅସ୍ମାନ୍** = ଆମକୁ; **ପାପମ୍** = ପାପ; **ଏବ** = ହିଁ; **ଆଶ୍ରୟେତ୍** = ଲାଗିବ।

**ହେ ଜନାର୍ଦ୍ଦନ! ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ମାରିଦେଲେ ଆମକୁ କି ସୁଖ ମିଳିବ? ଏହି ଆତତାୟୀମାନଙ୍କୁ ମାରିଲେ ତ ଆମକୁ ପାପ ହିଁ ଲାଗିବ ।। ୩୬ ।।**

**ପ୍ରଶ୍ନ—** 'ଧୃତରାଷ୍ଟ୍ରଙ୍କ ପୁତ୍ରଙ୍କୁ ମାରିଲେ ଆମକୁ କି ସୁଖ ମିଳିବ ?' —ଏ କଥାର ଅର୍ଥ କ'ଣ ?

**ଉତ୍ତର—** ଅର୍ଜୁନ କହୁଛନ୍ତି, ''ବିପକ୍ଷରେ ଥିବା ଏହି ଧୃତରାଷ୍ଟ୍ରପୁତ୍ରମାନଙ୍କୁ ଏବଂ ସେମାନଙ୍କ ସାଥୀମାନଙ୍କୁ

ମାରିଲେ ଇହଲୋକରେ ଏବଂ ପରଲୋକରେ ଆମର କୌଣସି ଇଷ୍ଟସିଦ୍ଧି ହେବ ନାହିଁ। ଯଦି ଇଚ୍ଛିତ ବସ୍ତୁ ହିଁ ମିଳିବ ନାହିଁ, ତେବେ ସୁଖ କିପରି ମିଳିପାରିବ ? ଅତଏବ କୌଣସି ଦୃଷ୍ଟିରୁ ବି ମୁଁ ଏମାନଙ୍କୁ ମାରିବାକୁ ଇଚ୍ଛା କରୁ ନାହିଁ।''

**ପ୍ରଶ୍ନ –** ସ୍ମୃତିକାରମାନେ ସ୍ପଷ୍ଟ ଶବ୍ଦରେ କହିଛନ୍ତି –

**ଆତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍ ॥**
**ନାତତାୟିବଧେ ଦୋଷୋ ହନ୍ତୁର୍ଭବତି କଶ୍ଚନ।**

(ମନୁ/୮/ ୩୫୦-୩୫୧)

ଅର୍ଥାତ୍ ''ଆମ ଅନିଷ୍ଟ କରିବାକୁ ଆସୁଥିବା ଆତତାୟୀକୁ ବିନା ବିଚାରରେ ମାରିଦେବା ଉଚିତ। ଆତତାୟୀକୁ ମାରିଦେଲେ ମାରିବା ଲୋକର କୌଣସି ଦୋଷ ହୁଏ ନାହିଁ।''

ବଶିଷ୍ଠସ୍ମୃତିରେ ଆତତାୟୀମାନଙ୍କର ଲକ୍ଷଣ ଏହିପ୍ରକାରେ କୁହାଯାଇଛି :–

**ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ।**
**କ୍ଷେତ୍ରଦାରାପହର୍ତ୍ତା ଚ ଷଡେତେ ହ୍ୟାତତାୟିନଃ ॥**

(୩/୧୯)

ଅର୍ଥାତ୍ ''ନିଆଁ ଲଗାଇଦେଉଥିବା, ବିଷ ଦେଉଥିବା, ହାତରେ ଶସ୍ତ୍ର ନେଇ ମାରିବାକୁ ଉଦ୍ୟତ ହେଉଥିବା, ଧନ ଅପହରଣ କରୁଥିବା, ଭୂମି ଛଡ଼ାଇନେଉଥିବା ଓ ସ୍ତ୍ରୀକୁ ହରଣ କରୁଥିବା – ଏହିପରି ଛଅପ୍ରକାର ଲୋକଙ୍କୁ ଆତତାୟୀ କୁହାଯାଏ।''

ଦୁର୍ଯ୍ୟୋଧନ ଆଦିଙ୍କ ଠାରେ ଆତତାୟୀମାନଙ୍କର ଉପରୋକ୍ତ ଲକ୍ଷଣଗୁଡ଼ିକ ପୂର୍ଣ୍ଣଭାବରେ ରହିଥିଲା। ଲାକ୍ଷାଭବନରେ ଅଗ୍ନି ଲଗାଇ ସେମାନେ ପାଣ୍ଡବମାନଙ୍କୁ ପୋଡ଼ିଦେବାକୁ ଚେଷ୍ଟା କରିଥିଲେ। ସେମାନେ ଭୀମସେନଙ୍କ ଖାଦ୍ୟରେ ବିଷ ମିଶାଇଦେଇଥିଲେ। ହାତରେ ଶସ୍ତ୍ର ନେଇ ମାରିବାକୁ ପ୍ରସ୍ତୁତ ଥିଲେ। ଜୁଆରେ ଛଳ କରି ସେମାନେ ପାଣ୍ଡବମାନଙ୍କର ସମସ୍ତ ଧନ ଏବଂ ସମ୍ପୂର୍ଣ୍ଣ ରାଜ୍ୟ ହରଣ କରିନେଇଥିଲେ। ଅନ୍ୟାୟପୂର୍ବକ ଦ୍ରୌପଦୀଙ୍କୁ ସଭାକୁ ଟାଣିଆଣି ଘୋର ଅପମାନ ଦେଇଥିଲେ ଓ ଜୟଦ୍ରଥ ତାଙ୍କୁ ହରଣ କରିନେଇଥିଲା। ଏପରି ଅବସ୍ଥାରେ ଅର୍ଜୁନ କିପରି କହିଲେ, ''ସେହି ଆତତାୟୀମାନଙ୍କୁ ମାରିଦେଲେ ଆମକୁ ପାପ ଲାଗିବ ?''

**ଉତ୍ତର –** ଏହା ସତ୍ୟ ଯେ, ସ୍ମୃତିକାରମାନଙ୍କ ମତରେ ଆତତାୟୀମାନଙ୍କୁ ବଧ କରିବା ଦୋଷାବହ ବୋଲି କୁହାଯାଇ ନାହିଁ ଏବଂ ଏହା ମଧ୍ୟ ନିର୍ବିବାଦ ସତ୍ୟ ଯେ, ଦୁର୍ଯ୍ୟୋଧନାଦି ଆତତାୟୀ ଥିଲେ। କିନ୍ତୁ କୌଣସି ସ୍ମୃତିକାର ଗୋଟିଏ ବିଶେଷ କଥା ମଧ୍ୟ କହିଛନ୍ତି, ଯଥା –

**ସ ଏବ ପାପିଷ୍ଠତମୋ ଯଃ କୁର୍ଯ୍ୟାତ୍ କୁଳନାଶନମ୍।**

ଅର୍ଥାତ୍, 'ଯେ ନିଜର କୁଳକୁ ନାଶ କରେ, ସେ ସବୁଠାରୁ ବଡ଼ ପାପୀ।'

ଏହି ବାକ୍ୟକୁ ପୂର୍ବୋକ୍ତ ସାମାନ୍ୟ ନୀତିବାଣୀଠାରୁ ବଳବାନ୍ ବୋଲି ବୁଝି ଏଠାରେ ଅର୍ଜୁନ କହିଛନ୍ତି, ''ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଆତତାୟୀ ହୋଇଥିଲେ ମଧ୍ୟ, ଯେହେତୁ ସେମାନେ ଆମର କୁଟୁମ୍ବ, ତେଣୁ ସେମାନଙ୍କୁ ମାରିଲେ ଆମର ନିଶ୍ଚିତଭାବରେ ପାପ ହେବ ଏବଂ କୌଣସିପ୍ରକାର ଲାଭ ହେବ ନାହିଁ। ଏପରି ଅବସ୍ଥାରେ ମୁଁ ସେମାନଙ୍କୁ ମାରିବାକୁ ଚାହେଁ ନାହିଁ।'' ଅର୍ଜୁନ ଏହି ଅଧ୍ୟାୟର ଶେଷପର୍ଯ୍ୟନ୍ତ ଏହି କଥାର ସ୍ପଷ୍ଟୀକରଣ କରିଛନ୍ତି।

*ସମ୍ବନ୍ଧ – ସ୍ୱଜନଙ୍କୁ ମାରିବା ସବୁପ୍ରକାରେ କ୍ଷତିକାରକ ବୋଲି କହି ଅର୍ଜୁନ ବର୍ତ୍ତମାନ ନିଜର ମତ ବ୍ୟକ୍ତ କରୁଛନ୍ତି –*

## ତସ୍ମାନ୍ନାର୍ହା ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍।
## ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ ॥ ୩୭ ॥

**ଅନ୍ୱୟ –** ତସ୍ମାତ୍ = ତେଣୁ; ମାଧବ = ହେ ମାଧବ; ସ୍ୱବାନ୍ଧବାନ୍ ଧାର୍ତ୍ତରାଷ୍ଟ୍ରାନ୍ = ନିଜର ବାନ୍ଧବ ଦୁର୍ଯ୍ୟୋଧନାଦିଙ୍କୁ; ହନ୍ତୁମ୍ = ମାରିବାକୁ; ବୟମ୍ = ଆମ୍ଭେମାନେ; ନ, ଅର୍ହାଃ = ଯୋଗ୍ୟ ନୋହୁଁ; ହି = କାରଣ; ସ୍ୱଜନମ୍ = ନିଜ କୁଟୁମ୍ବଲୋକଙ୍କୁ; ହତ୍ୱା = ମାରି; କଥମ୍ = (ଆମେ) କିପରି; ସୁଖିନଃ = ସୁଖୀ; ସ୍ୟାମ = ହେବୁ ?

**ତେଣୁ ହେ ମାଧବ! ନିଜର ବାନ୍ଧବ ଦୁର୍ଯ୍ୟୋଧନାଦିଙ୍କୁ ମାରିବା ଆମ ପକ୍ଷରେ ଉଚିତ ହେବ ନାହିଁ; କାରଣ ନିଜ କୁଟୁମ୍ବ ଲୋକଙ୍କୁ ମାରି ଆମେ କିପରି ସୁଖୀ ହୋଇପାରିବୁ ? ॥ ୩୭ ॥**

**ପ୍ରଶ୍ନ –** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ଶ୍ଳୋକରେ **ତସ୍ମାତ୍** ପଦ ପ୍ରୟୋଗ କରି ଅର୍ଜୁନ କହୁଛନ୍ତି, "ମୋର ଯେଉଁ ସ୍ଥିତି ହୋଇଛି ଏବଂ ଯୁଦ୍ଧ ନ କରିବାକୁ ଏପର୍ଯ୍ୟନ୍ତ ମୁଁ ଯାହା କିଛି କହିଛି, ତଥା ମୋ ବିଚାରରେ ଯାହା ଠିକ୍, ସେସବୁଥିରୁ ମୁଁ ଏହା ନିଶ୍ଚୟ କରୁଛି ଯେ, ଦୁର୍ଯ୍ୟୋଧନାଦି ବନ୍ଧୁମାନଙ୍କୁ ମାରିବା ଆମ ପକ୍ଷରେ ସର୍ବଥା ଅନୁଚିତ ହେବ। କୁଟୁମ୍ବଙ୍କୁ ମାରିଲେ ଆମକୁ ଇହଲୋକରେ ବା ପରଲୋକରେ ଯେ କୌଣସିପ୍ରକାର ସୁଖ ମିଳିବ, ତାହାର କୌଣସି ସମ୍ଭାବନା ନାହିଁ। ଅତଏବ ମୁଁ ଯୁଦ୍ଧ କରିବାକୁ ଚାହୁଁ ନାହିଁ।"

**ସମ୍ବନ୍ଧ –** *ଏଠାରେ ପ୍ରଶ୍ନ ହୋଇପାରେ, 'କୁଟୁମ୍ବନାଶ ହେବାର ଦୋଷ ତ ଦୁହିଁଙ୍କ ପାଇଁ ସମାନ, କିନ୍ତୁ ଯଦି ଏହି ଦୋଷ ଉପରେ ବିଚାର କରି ଦୁର୍ଯ୍ୟୋଧନାଦି ଯୁଦ୍ଧରୁ ବିରତ ହେଉ ନାହାନ୍ତି, ତେବେ କେବଳ ତୁମେ କାହିଁକି ଏତେ ବିଚାର କରୁଛ ?' ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଅର୍ଜୁନ ତାହାର ଉତ୍ତର ଦେଉଛନ୍ତି –*

**ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ ।**
**କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ ।। ୩୮ ।।**
**କଥଂ ନ ଜ୍ଞେୟମସ୍ମାଭିଃ ପାପାଦସ୍ମାନ୍ନିବର୍ତ୍ତିତୁମ୍ ।**
**କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ ।। ୩୯ ।।**

**ଅନ୍ୱୟ –** **ଯଦ୍ୟପି** = ଯଦ୍ୟପି; **ଲୋଭୋପହତଚେତସଃ** = ଲୋଭରେ ଭ୍ରଷ୍ଟଚିତ୍ତ ହୋଇଥିବା; **ଏତେ** = ଏମାନେ; **କୁଳକ୍ଷୟକୃତମ୍ ଦୋଷମ୍** = କୁଳକ୍ଷୟଜନିତ ଦୋଷକୁ; **ଚ** = ଓ; **ମିତ୍ରଦ୍ରୋହେ** = ମିତ୍ରଦ୍ରୋହରେ; **ପାତକମ୍** = ପାପକୁ; **ନ, ପଶ୍ୟନ୍ତି** = ଦେଖିପାରୁ ନାହାନ୍ତି (ତଥାପି); **ଜନାର୍ଦ୍ଦନ** = ହେ ଜନାର୍ଦ୍ଦନ; **କୁଳକ୍ଷୟକୃତମ୍** = କୁଳକ୍ଷୟରୁ ଉତ୍ପନ୍ନ; **ଦୋଷମ୍** = ଦୋଷକୁ; **ପ୍ରପଶ୍ୟଦ୍‌ଭିଃ** = ଜାଣିପାରୁଥିବା; **ଅସ୍ମାଭିଃ** = ଆମ୍ଭମାନେ; **ଅସ୍ମାତ୍** = ଏହି; **ପାପାତ୍** = ପାପରୁ; **ନିବର୍ତ୍ତିତୁମ୍** = ଦୂରେଇ ରହିବାକୁ; **କଥମ୍** = କାହିଁକି; **ନ, ଜ୍ଞେୟମ୍** = ବିଚାର ନ କରିବୁ।

**ଯଦ୍ୟପି ଲୋଭବଶତଃ ଭ୍ରଷ୍ଟଚିତ୍ତ ହୋଇଥିବା ଏହି ଲୋକେ କୁଳକ୍ଷୟଜନିତ ଦୋଷ ଓ ମିତ୍ରଦ୍ରୋହଜନିତ ପାପ ଜାଣିପାରୁ ନାହାନ୍ତି, ତଥାପି ହେ ଜନାର୍ଦ୍ଦନ! କୁଳନାଶରୁ ଉତ୍ପନ୍ନ ଦୋଷକୁ ଜାଣିପାରୁଥିବା ଆମ୍ଭେମାନେ ଏପରି ପାପରୁ ଦୂରେଇଯିବାକୁ ବିଚାର ନ କରିବୁ କାହିଁକି? ।। ୩୮-୩୯ ।।**

**ପ୍ରଶ୍ନ –** ଏହି ଦୁଇ ଶ୍ଳୋକର ସ୍ପଷ୍ଟ ଭାବ କଣ ?

**ଉତ୍ତର –** ଅର୍ଜୁନଙ୍କ କଥନର ଭାବ ହେଲା, "ଦୁର୍ଯ୍ୟୋଧନାଦିଙ୍କର ଏହି କାର୍ଯ୍ୟ ନିଶ୍ଚିତଭାବରେ ଅତ୍ୟନ୍ତ ଅନୁଚିତ; କିନ୍ତୁ ସେମାନଙ୍କ ପକ୍ଷରେ ଏହା ସେପରି କିଛି ବଡ଼ କଥା ନୁହେଁ; କାରଣ ଲୋଭ ସେମାନଙ୍କର ଅନ୍ତଃକରଣର ବିବେକକୁ ନଷ୍ଟଭ୍ରଷ୍ଟ କରିଦେଇଛି। ସେମାନେ କୁଳନାଶଦ୍ୱାରା କି କି ଅନର୍ଥ ଓ ଦୁଷ୍ପରିଣାମ ହେବ, ତାହା ଦେଖିପାରୁ ନାହାନ୍ତି, କି ଦୁଇ ସେନାରେ ଏକତ୍ରିତ ହୋଇଥିବା ବନ୍ଧୁବାନ୍ଧବ ଓ ମିତ୍ରମାନଙ୍କ ମଧ୍ୟରେ ଶତ୍ରୁତା ସୃଷ୍ଟି ହୋଇ ଏକ ଆରେକକୁ ମାରିବାଦ୍ୱାରା କେତେ ଯେ ଭୟଙ୍କର ପାପ ହେବ, ସେମାନେ ତାହା ବି ଦେଖିପାରୁ ନାହାନ୍ତି। କିନ୍ତୁ ଆମ୍ଭେମାନେ ସେମାନଙ୍କ ପରି ଲୋଭରେ ଅନ୍ଧ ହୋଇଯାଇ ନାହୁଁ; ଆମେ କୁଳନାଶଦ୍ୱାରା ହେଉଥିବା ପାପ ବିଷୟରେ ଭଲଭାବରେ ଜାଣିଛୁ। ତେଣୁ ଜାଣିଶୁଣି ଆମେ ଘୋର ପାପରେ କାହିଁକି ପ୍ରବୃତ୍ତ ହେବୁ ? ଆମ୍ଭେମାନେ ତ ବିଚାର କରି ଏ ଯୁଦ୍ଧରୁ ଦୂରେଇଯିବା ଉଚିତ।"

**ସମ୍ବନ୍ଧ –** *କୁଳନାଶଦ୍ୱାରା ଯେଉଁସବୁ ଦୋଷ ଉତ୍ପନ୍ନ ହୁଏ, ଅର୍ଜୁନ ତାହା କହୁଛନ୍ତି —*

**କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ ।**
**ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ ।। ୪୦ ।।**

**ଅନ୍ୱୟ –** **କୁଳକ୍ଷୟେ** = କୁଳନାଶ ହେଲେ; **ସନାତନାଃ** = ସନାତନ; **କୁଳଧର୍ମାଃ** = କୁଳଧର୍ମ; **ପ୍ରଣଶ୍ୟନ୍ତି** = ନଷ୍ଟ ହୋଇଯାଏ; **ଧର୍ମେ** = ଧର୍ମ; **ନଷ୍ଟେ** = ନଷ୍ଟ ହୋଇଗଲେ; **କୃତ୍ସ୍ନମ୍** = ସମୁଦାୟ; **କୁଳମ୍** = କୁଳକୁ; **ଅଧର୍ମଃ** = ପାପ; **ଉତ** = ମଧ୍ୟ; **ଅଭିଭବତି** = ବିଶେଷଭାବରେ ବ୍ୟାପିଯାଏ ।

**କୁଳନାଶ ହେଲେ ସନାତନ କୁଳଧର୍ମ ନଷ୍ଟ ହୋଇଯାଏ । ଧର୍ମ ନଷ୍ଟ ହୋଇଗଲେ, ସମୁଦାୟ କୁଳକୁ ପାପ ମଧ୍ୟ ବିଶେଷଭାବରେ ବ୍ୟାପିଯାଏ । ।। ୪୦ ।।**

**ପ୍ରଶ୍ନ –** – 'ସନାତନ କୁଳଧର୍ମ' କେଉଁ ଧର୍ମମାନଙ୍କୁ କହନ୍ତି ? ଏବଂ କୁଳନାଶଦ୍ୱାରା ଧର୍ମ କିପରି ନାଶ ହୋଇଯାଏ ?

**ଉତ୍ତର –** ନିଜ ନିଜର କୁଳପରମ୍ପରାରେ ଚଳିଆସିଥିବା ଯେଉଁସବୁ ଶୁଭ ଓ ଶ୍ରେଷ୍ଠ ମର୍ଯ୍ୟାଦା ଥାଏ, ଯାହାଦ୍ୱାରା ସଦାଚାର ସୁରକ୍ଷିତ ହୁଏ ଏବଂ କୁଳର ସ୍ତ୍ରୀ-ପୁରୁଷମାନଙ୍କ ମଧ୍ୟରେ ଅଧର୍ମ ପ୍ରବେଶ କରିପାରେ ନାହିଁ, ସେହିସବୁ ଶୁଭ ଓ ଶ୍ରେଷ୍ଠ କୁଳମର୍ଯ୍ୟାଦାକୁ 'ସନାତନ କୁଳଧର୍ମ' କହନ୍ତି । କୁଳର ନାଶଦ୍ୱାରା ଯେତେବେଳେ ଏହି କୁଳଧର୍ମ ଜାଣିଥିବା ଏବଂ ତାହାକୁ ରକ୍ଷା କରିଥିବା କୁଳବୃଦ୍ଧମାନେ ମରିଯାନ୍ତି, ସେତେବେଳେ ଅବଶିଷ୍ଟ ରହିଥିବା ବାଳକ ଓ ସ୍ତ୍ରୀମାନଙ୍କ ମଧ୍ୟରେ ଉପରୋକ୍ତ ଧର୍ମ ସ୍ୱାଭାବିକରୂପରେ ରହିପାରେ ନାହିଁ ।

**ପ୍ରଶ୍ନ –** 'ଧର୍ମନାଶ ହୋଇଯିବା ପରେ ସମୁଦାୟ କୁଳରେ ବିଶେଷରୂପେ ପାପ ବ୍ୟାପିଯାଏ,' —ଏହା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅଧର୍ମରୁ ରକ୍ଷା ପାଇବା ଏବଂ ଧର୍ମକୁ ସୁରକ୍ଷିତ ରଖିବାରେ ସମର୍ଥ ହେବାନିମନ୍ତେ ପାଞ୍ଚଗୋଟି ହେତୁ ରହିଛି, ଯଥା : ୧– ଈଶ୍ୱରଭୟ, ୨– ଶାସ୍ତ୍ରର ଶାସନ, ୩– କୁଳମର୍ଯ୍ୟାଦା ନାଶ ହେବାର ଭୟ, ୪– ରାଜ୍ୟର ନିୟମ ଏବଂ ୫– ଶାରୀରିକ ତଥା ଆର୍ଥିକ ଅନିଷ୍ଟର ଆଶଙ୍କା । ଏଗୁଡ଼ିକ ମଧ୍ୟରୁ ଈଶ୍ୱର ଓ ଶାସ୍ତ୍ର ସର୍ବଥା ସତ୍ୟ ହେଲେ ମଧ୍ୟ, ସେଦୁଇଟି ଶ୍ରଦ୍ଧା ଉପରେ ନିର୍ଭର କରେ; ପ୍ରତ୍ୟକ୍ଷ ହେତୁ ନୁହେଁ । ରାଜ୍ୟର ନିୟମ ମୁଖ୍ୟତଃ ପ୍ରଜାମାନଙ୍କୁ ପାଳନ କରିବାପାଇଁ ହୋଇଥାଏ; କିନ୍ତୁ ଯେଉଁମାନଙ୍କ ହାତରେ ଅଧିକାର ଥାଏ, ସେମାନେ ପ୍ରାୟ ତାହା ମାନନ୍ତି ନାହିଁ । ଶାରୀରିକ ଓ ଆର୍ଥିକ ଅନିଷ୍ଟର ଆଶଙ୍କା ପ୍ରାୟତଃ ବ୍ୟକ୍ତିଗତରୂପରେ ହୁଏ । କୁଳମର୍ଯ୍ୟାଦା ଏପରି ଏକ ବସ୍ତୁ ଯେ, ତାହାର ସମ୍ବନ୍ଧ ସମୁଦାୟ କୁଟୁମ୍ବଙ୍କ ସହିତ ଥାଏ । ଯେଉଁ ସମାଜ ବା କୁଳରେ ପରମ୍ପରାକୁ ଧରି ଚଳିଆସୁଥିବା ଶୁଭ ଓ ଶ୍ରେଷ୍ଠ ମର୍ଯ୍ୟାଦା ନଷ୍ଟ ହୋଇଯାଏ, ସେହି ସମାଜ ବା କୁଳ ଲଗାମଛଡ଼ା ମତୁଆଲା ଘୋଡ଼ାପରି ଯଥେଚ୍ଛାଚାରୀ ହୋଇଯାଏ । ଯଥେଚ୍ଛାଚାର କୌଣସି ନିୟମ ନ ମାନି ମନୁଷ୍ୟକୁ ଉଚ୍ଛୃଙ୍ଖଳ କରିଦିଏ । ଯେଉଁ ସମାଜରେ ବା ମନୁଷ୍ୟମାନଙ୍କ ମଧ୍ୟରେ ଏହିପରି ଉଚ୍ଛୃଙ୍ଖଳତା ଆସିଯାଏ, ସେହି ସମାଜରେ ବା କୁଳରେ ସହଜରେ ସର୍ବତ୍ର ପାପ ବ୍ୟାପିଯାଏ ।

***ସମ୍ବନ୍ଧ –*** *ଏପରିଭାବରେ ଯେତେବେଳେ ସମଗ୍ର କୁଳରେ ପାପ ବ୍ୟାପିଯାଏ, ସେତେବେଳେ କଣ ହୁଏ, ଅର୍ଜୁନ ବର୍ତ୍ତମାନ ତାହା କହୁଛନ୍ତି—*

**ଅଧର୍ମାଭିଭବାତ୍କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ ।**
**ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଙ୍କରଃ ।। ୪୧ ।।**

**ଅନ୍ୱୟ –** **କୃଷ୍ଣ** = ହେ କୃଷ୍ଣ; **ଅଧର୍ମାଭିଭବାତ୍** = ପାପ ଅଧିକ ବଢ଼ିଗଲେ; **କୁଳସ୍ତ୍ରିୟଃ** = କୁଳସ୍ତ୍ରୀମାନେ; **ପ୍ରଦୁଷ୍ୟନ୍ତି** = ଅତ୍ୟନ୍ତ ଦୂଷିତା ହୋଇଯାଆନ୍ତି; **ବାର୍ଷ୍ଣେୟ** = ହେ ବାର୍ଷ୍ଣେୟ; **ସ୍ତ୍ରୀଷୁ** = ସ୍ତ୍ରୀମାନେ; **ଦୁଷ୍ଟାସୁ** = ଦୂଷିତା ହୋଇଗଲେ; **ବର୍ଣ୍ଣସଂକରଃ** = ବର୍ଣ୍ଣସଙ୍କର; **ଜାୟତେ** = ଉତ୍ପନ୍ନ ହୁଏ ।

**ହେ କୃଷ୍ଣ ! ପାପ ଅଧିକ ବଢ଼ିଗଲେ କୁଳସ୍ତ୍ରୀମାନେ ଅତ୍ୟନ୍ତ ଦୂଷିତା ହୋଇଯାଆନ୍ତି; ହେ ବାର୍ଷ୍ଣେୟ ! ସ୍ତ୍ରୀମାନେ ଦୂଷିତା ହୋଇଗଲେ, ବର୍ଣ୍ଣସଙ୍କର ଉତ୍ପନ୍ନ ହୁଏ ।। ୪୧ ।।**

**ପ୍ରଶ୍ନ —** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର —** କୁଳଧର୍ମ ନାଶ ହୋଇଗଲେ ଯେତେବେଳେ କୁଳର ସ୍ତ୍ରୀ-ପୁରୁଷମାନେ ଉଚ୍ଛୃଙ୍ଖଳ ହୋଇଯାଆନ୍ତି, ସେତେବେଳେ ସେମାନଙ୍କର ପ୍ରାୟ ସମସ୍ତ କ୍ରିୟା ଅଧର୍ମଯୁକ୍ତ ହୋଇଯାଏ; ତଦ୍ୱାରା ପାପ ଅତିମାତ୍ରାରେ ବଢ଼ିଯାଇ ସମଗ୍ର ସମାଜରେ ମାଡ଼ିଯାଏ; ସର୍ବତ୍ର ପାପ ମାଡ଼ିଯିବା ପରେ ସମାଜରେ ସ୍ତ୍ରୀ-ପୁରୁଷଙ୍କ ଦୃଷ୍ଟିରେ କୌଣସି ମର୍ଯ୍ୟାଦାର କିଛି ମୂଲ୍ୟ ରହେ ନାହିଁ ଏବଂ ତାହା ପାଳନ କରିବା ତ ଦୂରର କଥା, ସେମାନେ ତାହା ଜାଣିବାକୁ ମଧ୍ୟ ଚେଷ୍ଟା କରନ୍ତି ନାହିଁ। ଯଦି ଏ ବିଷୟରେ କେହି କିଛି କହେ, ତେବେ ତାହାକୁ ଥଟ୍ଟାପରିହାସରେ ଉଡ଼ାଇଦେଇ ସେମାନେ ତା'ସହିତ ଶତ୍ରୁତା କରନ୍ତି। ଏପରି ଅବସ୍ଥାରେ ପବିତ୍ର ସତୀଧର୍ମ, ଯାହା କି ସମାଜଧର୍ମରକ୍ଷାର ଆଧାର, ତାହା ନଷ୍ଟ ହୋଇଯାଏ। ସତୀତ୍ୱର ମହତ୍ତ୍ୱ ନଷ୍ଟ କରିଦେଇ ପବିତ୍ରକୁଳର ସ୍ତ୍ରୀମାନେ ଘୃଣିତ ବ୍ୟଭିଚାର ଦୋଷରେ ଦୂଷିତା ହୋଇଯାଆନ୍ତି। ବିଭିନ୍ନ ବର୍ଣ୍ଣର ପୁରୁଷଙ୍କ ସହିତ ସେମାନଙ୍କର ସଂଯୋଗ ହୁଏ। ମାତା ଓ ପିତା ଭିନ୍ନ ଭିନ୍ନ ବର୍ଣ୍ଣର ହେବାରୁ, ଯେଉଁ ସନ୍ତାନମାନେ ଉତ୍ପନ୍ନ ହୁଅନ୍ତି, ସେମାନେ ବର୍ଣ୍ଣସଙ୍କର ହୁଅନ୍ତି। ଏପରିଭାବରେ ସହଜରେ କୁଳର ପରମ୍ପରାଗତ ପବିତ୍ରତା ପୂରାପୂରି ନଷ୍ଟ ହୋଇଯାଏ।

**ସମ୍ବନ୍ଧ —** *ବର୍ଣ୍ଣସଙ୍କର ସନ୍ତାନ ଉତ୍ପନ୍ନ ହେଲେ କିପ୍ରକାର କ୍ଷତି ହୁଏ, ଅର୍ଜୁନ ବର୍ତ୍ତମାନ ତାହା କହୁଛନ୍ତି—*

**ସଙ୍କରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ ।**
**ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ ।। ୪୨ ।।**

**ଅନ୍ୱୟ —** **ସଙ୍କରଃ** = ବର୍ଣ୍ଣସଙ୍କର; **କୁଳଘ୍ନାନାମ୍** = କୁଳନାଶକାରୀମାନଙ୍କୁ; **ଚ** = ଓ; **କୁଳସ୍ୟ** = କୁଳକୁ; **ନରକାୟ** = ନରକକୁ ନେଇଯିବାଲାଗି; **ଏବ** = ହିଁ (ହୋଇଥାଏ); **ଲୁପ୍ତପିଣ୍ଡୋଦକକ୍ରିୟାଃ** = ପିଣ୍ଡ ଓ ଜଳଦାନ-କ୍ରିୟା ଲୁପ୍ତ ହୋଇଥିବା (ଶ୍ରାଦ୍ଧ ଓ ତର୍ପଣରୁ ବଞ୍ଚିତ ହୋଇ); **ଏଷାମ୍** = ଏମାନଙ୍କର; **ପିତରଃ** = ପିତୃଲୋକମାନେ; **ହି** = ବି; **ପତନ୍ତି** = ଅଧୋଗତି ପ୍ରାପ୍ତ ହୁଅନ୍ତି।

**କୁଳନାଶକାରୀମାନଙ୍କୁ ତଥା କୁଳକୁ ନରକକୁ ନେଇଯିବା ଲାଗି ହିଁ ବର୍ଣ୍ଣସଙ୍କର ହୋଇଥାଏ। ପିଣ୍ଡ-କ୍ରିୟା ଓ ଜଳଦାନ-କ୍ରିୟା ଲୁପ୍ତ ହେବାରୁ ପିତୃଲୋକମାନେ ଶ୍ରାଦ୍ଧ ଓ ତର୍ପଣରୁ ବଞ୍ଚିତ ହୋଇ ଅଧୋଗତି ପ୍ରାପ୍ତ ହୁଅନ୍ତି। ।। ୪୨ ।।**

**ପ୍ରଶ୍ନ —** 'କୁଳନାଶକାରୀ' କେଉଁମାନଙ୍କୁ କୁହାଯାଇଛି ଏବଂ ଏହି ଶ୍ଳୋକରେ **କୁଳସ୍ୟ** ପଦ ସହିତ **ଚ** ଅବ୍ୟୟ ପ୍ରୟୋଗ କରି କଣ ସୂଚିତ କରାଯାଇଛି ?

**ଉତ୍ତର —** ଯେଉଁମାନେ ଯୁଦ୍ଧ ପ୍ରଭୃତିରେ ନିଜର କୁଳର ସଂହାର କରନ୍ତି, ସେମାନଙ୍କୁ କୁଳନାଶକାରୀ କୁହାଯାଇଛି। **କୁଳସ୍ୟ** ପଦ ସହିତ **ଚ** ଅବ୍ୟୟ ପ୍ରୟୋଗ କରି ସୂଚିତ କରାଯାଇଛି ଯେ, ବର୍ଣ୍ଣସଙ୍କର ସନ୍ତାନ କେବଳ ସେହି କୁଳନାଶକାରୀମାନଙ୍କୁ ନରକରେ ପହଞ୍ଚାଇବାର କାରଣ ହୁଏ ନାହିଁ, ବରଂ ସମସ୍ତ କୁଳକୁ ମଧ୍ୟ ନରକକୁ ନେଇଯାଏ।

**ପ୍ରଶ୍ନ —** "ପିଣ୍ଡଦାନ-କ୍ରିୟା ଓ ଜଳଦାନ-କ୍ରିୟା ଲୋପ ହେବାରୁ ପିତୃଲୋକମାନେ ମଧ୍ୟ ଅଧୋଗତି ପ୍ରାପ୍ତ ହୁଅନ୍ତି," —ଏହାର ଅର୍ଥ କ'ଣ ?

**ଉତ୍ତର —** ଶ୍ରାଦ୍ଧରେ ଯେଉଁ ପିଣ୍ଡଦାନ କରାଯାଏ ଏବଂ ପିତୃଲୋକଙ୍କ ପାଇଁ ଯେଉଁ ବ୍ରାହ୍ମଣଭୋଜନାଦି କରାଯାଏ, ତାହା ହିଁ 'ପିଣ୍ଡକ୍ରିୟା' ଏବଂ ତର୍ପଣରେ ଯେଉଁ ଜଳାଞ୍ଜଳି ଦିଆଯାଏ, ତାହା 'ଉଦକକ୍ରିୟା'। ଏହି ଦୁଇ କ୍ରିୟା ମିଶିଲେ ପିଣ୍ଡୋଦକକ୍ରିୟା ହୁଏ। ଏହାର ନାମ ଶ୍ରାଦ୍ଧତର୍ପଣ। ଶାସ୍ତ୍ର ଓ କୁଳମର୍ଯ୍ୟାଦା ଜାଣିବା-ମାନିବା ଲୋକେ ଶ୍ରାଦ୍ଧ-ତର୍ପଣ କରନ୍ତି। କିନ୍ତୁ କୁଳନାଶକାରୀମାନଙ୍କ କୁଳରେ ଧର୍ମ ନଷ୍ଟ ହୋଇଯିବାରୁ ଯେଉଁ ବର୍ଣ୍ଣସଙ୍କରମାନେ ଉତ୍ପନ୍ନ ହୁଅନ୍ତି, ସେମାନେ ଅଧର୍ମରୁ ଉତ୍ପନ୍ନ ଏବଂ ଅଧର୍ମାଭିଭୂତ ହୋଇଥିବାରୁ ଏକେ ତ ଶ୍ରାଦ୍ଧ-ତର୍ପଣାଦି କ୍ରିୟା ଜାଣନ୍ତି ନାହିଁ, ପୁଣି କେହି ବତାଇଦେଲେ ମଧ୍ୟ




कृपासिन्धु भगवान् श्रीकृष्ण

Lord Kṛṣṇa, the ocean of grace



अनन्य चिन्तनका फल Undivided devotion fructified




ध्रुवपर अनुग्रह

Shower of grace of Dhruva

ଶ୍ରଦ୍ଧା ନ ଥିବାହେତୁ, ତାହା କରନ୍ତି ନାହିଁ। ଯଦି ବା କେହି କରନ୍ତି, ଶାସ୍ତ୍ରବିଧି ଅନୁସାରେ ସେମାନଙ୍କର ସେଥିରେ ଅଧିକାର ନ ଥିବାରୁ ତାହା ପିତୃମାନଙ୍କୁ ମିଳେ ନାହିଁ। ଏପରିଭାବରେ ଯେତେବେଳେ ପିତୃମାନଙ୍କୁ ସନ୍ତାନମାନଙ୍କ ଦ୍ଵାରା ପିଣ୍ଡ ଓ ଜଳ ମିଳେ ନାହିଁ, ସେତେବେଳେ ସେମାନଙ୍କର ପତନ ହୋଇଯାଏ।

**ସମ୍ବନ୍ଧ –** ବର୍ଣ୍ଣସଙ୍କରକାରକ ଦୋଷରେ କି କ୍ଷତି ହୁଏ, ବର୍ତ୍ତମାନ ତାହା କହୁଛନ୍ତି–

**ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଙ୍କରକାରକୈଃ ।**
**ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ ।। ୪୩ ।।**

**ଅନ୍ୱୟ –** ଏତୈଃ = ଏହି; **ବର୍ଣ୍ଣସଙ୍କରକାରକୈଃ** = ବର୍ଣ୍ଣସଙ୍କରକାରକ; **ଦୋଷୈଃ** = ଦୋଷମାନଙ୍କ ଦ୍ୱାରା; **କୁଳଘ୍ନାନାମ୍** = କୁଳଘାତକମାନଙ୍କର; **ଶାଶ୍ୱତାଃ** = ସନାତନ; **କୁଳଧର୍ମାଃ** = କୁଳଧର୍ମ; **ଚ** = ଓ; **ଜାତିଧର୍ମାଃ** = ଜାତିଧର୍ମ; **ଉତ୍ସାଦ୍ୟନ୍ତେ** = ନଷ୍ଟ ହୋଇଯାଆନ୍ତି।

**ଏହି ବର୍ଣ୍ଣସଙ୍କରକାରକ ଦୋଷମାନଙ୍କ ଦ୍ୱାରା କୁଳଘାତକମାନଙ୍କର ସନାତନ କୁଳଧର୍ମ ଓ ଜାତିଧର୍ମ ନଷ୍ଟ ହୋଇଯାଏ। ।। ୪୩ ।।**

**ପ୍ରଶ୍ନ –** 'ବର୍ଣ୍ଣସଙ୍କରକାରକ ଦୋଷ' ମଧ୍ୟରେ କେଉଁ କେଉଁ ଦୋଷ କୁହାଯାଇଛି ?

**ଉତ୍ତର –** ଉପରୋକ୍ତ ପଦମାନଙ୍କ ଦ୍ୱାରା ଯେଉଁ ଦୋଷଗୁଡ଼ିକ କଥା କୁହାଯାଇଛି, ସେଗୁଡ଼ିକ ହେଉଛି ବର୍ଣ୍ଣସଙ୍କର ଉତ୍ପତ୍ତିର କାରଣ। ସେହି ଦୋଷ ଚାରିପ୍ରକାର, ଯଥା, ୧–କୁଳନାଶ, ୨–କୁଳନାଶ ହେତୁ କୁଳଧର୍ମନାଶ, ୩–ପାପବୃଦ୍ଧି, ୪–ପାପବୃଦ୍ଧିଦ୍ୱାରା କୁଳସ୍ତ୍ରୀମାନେ ବ୍ୟଭିଚାରଦୋଷରେ ଦୂଷିତା ହେବା। ଏହି ଚାରି ଦୋଷରୁ ବର୍ଣ୍ଣସଙ୍କର ଉତ୍ପନ୍ନ ହୁଏ।

**ପ୍ରଶ୍ନ –** 'ସନାତନ କୁଳଧର୍ମ' ଏବଂ 'ଜାତିଧର୍ମ' ମଧ୍ୟରେ ପ୍ରଭେଦ କଣ ? ଉପରୋକ୍ତ ଦୋଷଦ୍ୱାରା ଏସବୁ କିପରି ନାଶ ହୁଏ ?

**ଉତ୍ତର –** ବଂଶପରମ୍ପରାଗତ ସଦାଚାରପୂର୍ଣ୍ଣ ମର୍ଯ୍ୟାଦାମାନଙ୍କର ନାମ 'ସନାତନ କୁଳଧର୍ମ'। ଚାଳିଶ ଶ୍ଳୋକରେ ଏହା ସହିତ **ସନାତନାଃ** ବିଶେଷଣ ଦିଆଯାଇଛି ଏବଂ ଏଠାରେ ଏହା ସହିତ **ଶାଶ୍ୱତାଃ** ବିଶେଷଣ ପ୍ରୟୋଗ କରାଯାଇଛି। ବେଦଶାସ୍ତ୍ରୋକ୍ତ 'ବର୍ଣ୍ଣଧର୍ମ'ର ନାମ 'ଜାତିଧର୍ମ'। କୁଳର ଶ୍ରେଷ୍ଠ ମର୍ଯ୍ୟାଦାଗୁଡ଼ିକ ଜାଣିଥିବା ଏବଂ ଆଚରଣ କରୁଥିବା ବୟୋବୃଦ୍ଧମାନେ ନାଶ ହୋଇଗଲେ ଯେତେବେଳେ 'କୁଳଧର୍ମ' ନଷ୍ଟ ହୋଇଯାଏ ଏବଂ ବର୍ଣ୍ଣସଙ୍କରକାରକ ଦୋଷ ବଢ଼ିଯାଏ, ସେତେବେଳେ 'ଜାତିଧର୍ମ' ମଧ୍ୟ ନଷ୍ଟ ହୋଇଯାଏ। କାରଣ ଅନ୍ୟ ବର୍ଣ୍ଣର ସଂଯୋଗରେ ଉତ୍ପନ୍ନ ହୋଇଥିବା ସଙ୍କରସନ୍ତାନଠାରେ ବର୍ଣ୍ଣଧର୍ମ ରହିପାରେ ନାହିଁ। ଏପରିଭାବରେ ବର୍ଣ୍ଣସଙ୍କରକାରକ ଦୋଷଦ୍ୱାରା ଏହିସବୁ ଧର୍ମ ନାଶ ହୋଇଯାଏ।

**ସମ୍ବନ୍ଧ –** 'କୁଳଧର୍ମ' ଏବଂ 'ଜାତିଧର୍ମ' ନାଶଦ୍ୱାରା କି କ୍ଷତି ହୁଏ, ତାହା ବର୍ତ୍ତମାନ କହୁଛନ୍ତି—

**ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ ।**
**ନରକେଽନିୟତଂ ବାସୋ ଭବତୀତ୍ୟନୁଶୁଶ୍ରୁମ ।। ୪୪ ।।**

**ଅନ୍ୱୟ –** ଜନାର୍ଦ୍ଦନ = ହେ ଜନାର୍ଦ୍ଦନ; **ଉତ୍ସନ୍ନକୁଳଧର୍ମାଣାମ୍** = ଯେଉଁମାନଙ୍କର କୁଳଧର୍ମ ନଷ୍ଟ ହୋଇଯାଇଛି (ସେପରି); **ମନୁଷ୍ୟାଣାମ୍** = ମନୁଷ୍ୟମାନଙ୍କର; **ଅନିୟତମ୍** = ଅନିଶ୍ଚିତକାଳପର୍ଯ୍ୟନ୍ତ; **ନରକେ** = ନରକରେ; **ବାସଃ** = ବାସ; **ଭବତି** = ହୁଏ; **ଇତି** = ଏପରି (ବୋଲି); **ଅନୁଶୁଶ୍ରୁମ** = (ଆମେ) ଶୁଣିଆସିଛୁ।

**ହେ ଜନାର୍ଦ୍ଦନ! ଯେଉଁମାନଙ୍କର କୁଳଧର୍ମ ନଷ୍ଟ ହୋଇଯାଇଛି, ସେମାନଙ୍କର ଅନିଶ୍ଚିତ କାଳପର୍ଯ୍ୟନ୍ତ ନରକବାସ ହୁଏ ବୋଲି ଆମେ ଶୁଣିଆସିଛୁ ।। ୪୪ ।।**

**ପ୍ରଶ୍ନ –** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଅର୍ଜୁନ କହୁଛନ୍ତି, ''ଯେଉଁମାନଙ୍କର 'କୁଳଧର୍ମ' ଏବଂ 'ଜାତିଧର୍ମ' ନଷ୍ଟ ହୋଇଯାଏ, ସର୍ବଦା ଅଧର୍ମରେ ଲିପ୍ତ ରହୁଥିବା ପାପର ଫଳସ୍ୱରୂପ ସେମାନଙ୍କୁ ଦୀର୍ଘକାଳପର୍ଯ୍ୟନ୍ତ କୁମ୍ଭୀପାକ ଓ ରୌରବ ଆଦି ନରକରେ ପଡ଼ି ଭିନ୍ନ ଭିନ୍ନପ୍ରକାର ଭୀଷଣ ଯମ-ଯନ୍ତ୍ରଣା ସହିବାକୁ ପଡ଼େ; ଏହା ଆମ୍ଭେମାନେ ପରମ୍ପରାରୁ ଶୁଣିଆସିଛୁ। ଅତଏବ କେବେହେଲେ କୁଳନାଶର ଚେଷ୍ଟା କରିବା ଉଚିତ ନୁହେଁ।''

**ସମ୍ବନ୍ଧ –** *ଏପରିଭାବରେ ସ୍ୱଜନବଧରେ ହେଉଥିବା ଭୀଷଣ ଅନର୍ଥ ବିଷୟ ବର୍ଣ୍ଣନା କରିସାରି ଅର୍ଜୁନ ବର୍ତ୍ତମାନ ଯୁଦ୍ଧର ଉଦ୍ୟୋଗ କରିଥିବାହେତୁ ନିଜର କୃତ୍ୟପାଇଁ ଶୋକ ପ୍ରକାଶ କରୁଛନ୍ତି —*

## ଅହୋ ବତ ମହତ୍ପାପଂ କର୍ତ୍ତୁଂ ବ୍ୟବସିତା ବୟମ୍।
## ଯଦ୍‌ରାଜ୍ୟସୁଖଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ॥ ୪୫ ॥

**ଅନ୍ୱୟ –** ଅହୋ = ହାୟ !; ବତ = (କି) ଦୁଃଖର କଥା !; ବୟମ୍ = ଆମେ (ବୁଦ୍ଧିମାନ୍ ହୋଇ ମଧ୍ୟ); ମହତ୍ = ମହା; ପାପମ୍ = ପାପ; କର୍ତ୍ତୁମ୍ = କରିବାକୁ; ବ୍ୟବସିତାଃ = ପ୍ରସ୍ତୁତ ହୋଇଯାଇଛୁ; ଯତ୍ = ଯେ; ରାଜ୍ୟସୁଖ-ଲୋଭେନ = ରାଜ୍ୟ ଓ ସୁଖପ୍ରାପ୍ତି ଲୋଭରେ; ସ୍ୱଜନମ୍ = ଆତ୍ମୀୟସ୍ୱଜନଙ୍କୁ; ହନ୍ତୁମ୍ = ମାରିଦେବାକୁ; ଉଦ୍ୟତାଃ = ଉଦ୍ୟତ ହୋଇଯାଇଛୁ।

**ହାୟ ! କି ଦୁଃଖର କଥା ! ଆମ୍ଭେମାନେ ବୁଦ୍ଧିମାନ୍ ହୋଇ ମଧ୍ୟ ମହାପାପ କରିବାକୁ ପ୍ରସ୍ତୁତ ହୋଇଯାଇଛୁ; ରାଜ୍ୟ ଓ ସୁଖପ୍ରାପ୍ତି ଲୋଭରେ ଆମେ ନିଜର ଆତ୍ମୀୟସ୍ୱଜନମାନଙ୍କୁ ମାରିଦେବାକୁ ଉଦ୍ୟତ ହୋଇଯାଇଛୁ ! ॥ ୪୫ ॥**

**ପ୍ରଶ୍ନ –** 'ଆମ୍ଭେମାନେ ମହାପାପ କରିବାକୁ ପ୍ରସ୍ତୁତ ହୋଇଯାଇଛୁ' ଏହି ବାକ୍ୟ ସହିତ **ଅହୋ** ଏବଂ **ବତ** ଏହି ଦୁଇ ଅବ୍ୟୟ ପଦ ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର –** **ଅହୋ** ଅବ୍ୟୟ ଏଠାରେ ଆଶ୍ଚର୍ଯ୍ୟସୂଚକ ଏବଂ **ବତ** ପଦ ଭୀଷଣ ଶୋକର ସୂଚନା ଦେଉଛି। ଏହି ଦୁଇ ପଦ ପ୍ରୟୋଗ କରି ଉପରୋକ୍ତ ବାକ୍ୟଦ୍ୱାରା ଅର୍ଜୁନ ନିଜର ଭାବ ପ୍ରକାଶ କରୁଛନ୍ତି, ''ଆମ ପରି ଧର୍ମାତ୍ମା ଓ ବୁଦ୍ଧିମାନ୍ ବୋଲି କୁହାଯାଉଥିବା ଲୋକ, ଯେଉଁମାନଙ୍କ ପକ୍ଷରେ ଏପରି ପାପକର୍ମରେ ପ୍ରବୃତ୍ତ ହେବା କୌଣସିପ୍ରକାରେ ଉଚିତ ନୁହେଁ, ସେମାନେ ମଧ୍ୟ ଏପରି ଘୋର ପାପକର୍ମ କରିବାକୁ ନିଶ୍ଚୟ କରିସାରିଛନ୍ତି। ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ଏବଂ ଶୋକର ବିଷୟ।''

**ପ୍ରଶ୍ନ –** 'ରାଜ୍ୟ ଓ ସୁଖ ଲୋଭରେ ସ୍ୱଜନଙ୍କୁ ମାରିବାକୁ ଆମେ ଉଦ୍ୟତ ହୋଇଯାଇଛୁ'—ଏପରି କହିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ପ୍ରକାଶ କରୁଛନ୍ତି, ''ରାଜ୍ୟ ଓ ସୁଖ ଲୋଭରେ ଆମ୍ଭମାନଙ୍କର ଏପରି ପ୍ରସ୍ତୁତ ହୋଇଯିବା ସବୁଠାରୁ ବଡ଼ ଦୋଷ।''

**ସମ୍ବନ୍ଧ –** *ଏହିପରି ପଶ୍ଚାତ୍ତାପ କରିବା ପରେ ଅର୍ଜୁନ ବର୍ତ୍ତମାନ ନିଜର ଅଭିପ୍ରାୟ ଶୁଣାଉଛନ୍ତି —*

## ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ।
## ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍॥ ୪୬ ॥

**ଅନ୍ୱୟ –** ଯଦି = ଯଦି; **ଅଶସ୍ତ୍ରମ୍, ଅପ୍ରତୀକାରମ୍,** ମାମ୍ = ନିଃଶସ୍ତ୍ର ପ୍ରତିକାରରହିତ ମୋତେ; **ଶସ୍ତ୍ରପାଣୟଃ** = ଶସ୍ତ୍ରଧାରୀ; **ଧାର୍ତ୍ତରାଷ୍ଟ୍ରାଃ** = ଦୁର୍ଯ୍ୟୋଧନାଦି କୌରବମାନେ; **ରଣେ** = ଯୁଦ୍ଧରେ; **ହନ୍ୟୁଃ** = ମାରିଦିଅନ୍ତି; **ତତ୍** = ତାହା (ବି); **ମେ** = ମୋ ପକ୍ଷରେ; **କ୍ଷେମତରମ୍** = ଅଧିକ ମଙ୍ଗଳକର; **ଭବେତ୍** = ହେବ।

**ଯଦି ମୋପରି ନିଃଶସ୍ତ୍ର ଓ ପ୍ରତିକାରରହିତ ଲୋକକୁ ଧୃତରାଷ୍ଟ୍ରଙ୍କ ଶସ୍ତ୍ରଧାରୀ ପୁତ୍ରମାନେ ଯୁଦ୍ଧରେ ମାରିଦିଅନ୍ତି, ତେବେ ବି ତାହା ମୋ ପକ୍ଷରେ ଅଧିକ ମଙ୍ଗଳକର ହେବ । ॥ ୪୬ ॥**

**ପ୍ରଶ୍ନ –** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଅର୍ଜୁନ କହୁଛନ୍ତି, "ଏପରି ଯୁଦ୍ଧର ଘୋଷଣା ହୋଇଯିବା ପରେ ବି ଯଦି ମୁଁ ଶସ୍ତ୍ର ତ୍ୟାଗ କରିଦେବି ଏବଂ ସେମାନଙ୍କର କୌଣସି କ୍ରିୟାର ପ୍ରତିକାର ନ କରିବି, ତେବେ ସମ୍ଭବତଃ ସେମାନେ ଯୁଦ୍ଧ କରିବେ ନାହିଁ ଏବଂ ଏହା ଫଳରେ ସମସ୍ତ ଆତ୍ମୀୟସ୍ୱଜନଙ୍କର ରକ୍ଷା ହୋଇଯିବ । କିନ୍ତୁ ଯଦି ସେମାନେ ଏପରି ନ କରି ମୋତେ ଶସ୍ତ୍ରହୀନ ଦେଖି ଓ ଯୁଦ୍ଧରୁ ନିବୃତ୍ତ ଜାଣି ମାରିଦିଅନ୍ତି, ତେବେ ମଧ୍ୟ ସେହି ମୃତ୍ୟୁ ମୋ ପାଇଁ ଅତ୍ୟନ୍ତ କଲ୍ୟାଣକର ହେବ, କାରଣ ତାହା ଫଳରେ ଏକେ ତ ମୁଁ କୁଳନାଶରୂପକ ଭୟାନକ ପାପରୁ ବଞ୍ଚିଯିବି; ଦ୍ୱିତୀୟରେ ମୋର ବନ୍ଧୁବର୍ଗ ଓ ଆତ୍ମୀୟସ୍ୱଜନମାନେ ରକ୍ଷା ପାଇଯିବେ; ତୃତୀୟରେ କୁଳରକ୍ଷାଜନିତ ମହାନ୍ ପୁଣ୍ୟକର୍ମ ଫଳରେ ପରମପଦପ୍ରାପ୍ତି ମଧ୍ୟ ମୋ ପାଇଁ ସହଜଲଭ୍ୟ ହୋଇଯିବ ।" ଅର୍ଜୁନ ନିଜର ପ୍ରତିକାରରହିତ ଉପରୋକ୍ତ ମରଣଦ୍ୱାରା ନିଶ୍ଚିତଭାବରେ କୁଳରକ୍ଷା ଓ ନିଜର ମଙ୍ଗଳ ହେବ ବୋଲି ଧରିନେଇଛନ୍ତି; ତେଣୁ ସେ ସେପରି ମରଣକୁ ଅତ୍ୟନ୍ତ ମଙ୍ଗଳକର (କ୍ଷେମତରମ୍) ବୋଲି କହିଛନ୍ତି ।

**ସମ୍ବନ୍ଧ –** *ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଏହା କହିବା ପରେ ଅର୍ଜୁନ କଣ କଲେ, ତାହା ବର୍ଣ୍ଣନା କରି ସଂଜୟ କହୁଛନ୍ତି –*

**ସଂଜୟ ଉବାଚ**

**ଏବମୁକ୍ତ୍ୱାର୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍ ।**
**ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ ॥ ୪୭ ॥**

**ଅନ୍ୱୟ –** **ସଂଖ୍ୟେ** = ରଣଭୂମିରେ; **ଶୋକସଂବିଗ୍ନମାନସଃ** = ଶୋକରେ ଉଦ୍‌ବିଗ୍ନମନା; **ଅର୍ଜୁନଃ** = ଅର୍ଜୁନ; **ଏବମ୍** = ଏପରି; **ଉକ୍ତ୍ୱା** = କହି; **ସଶରମ୍** = ବାଣସହିତ; **ଚାପମ୍** = ଧନୁକୁ; **ବିସୃଜ୍ୟ** = ତ୍ୟାଗ କରିଦେଇ; **ରଥୋପସ୍ଥେ** = ରଥର ପଛପଟେ; **ଉପାବିଶତ୍** = ବସିପଡ଼ିଲେ ।

**ସଂଜୟ କହିଲେ — ରଣଭୂମିରେ ଶୋକରେ ଉଦ୍‌ବିଗ୍ନମନା ଅର୍ଜୁନ ଏପରି କହି, ବାଣସହିତ ଧନୁ ତ୍ୟାଗ କରିଦେଇ ରଥର ପଛପଟେ ବସିପଡ଼ିଲେ ॥ ୪୭ ॥**

**ପ୍ରଶ୍ନ –** ଏହି ଶ୍ଳୋକରେ ସଂଜୟଙ୍କ କଥନର ଭାବ କଣ ?

**ଉତ୍ତର –** ଏଠାରେ ସଂଜୟ କହୁଛନ୍ତି, "ବିଷାଦଗ୍ରସ୍ତ ଅର୍ଜୁନ ଭଗବାନଙ୍କୁ ଏତିକି କହି ବାଣସହିତ ଗାଣ୍ଡୀବ ଧନୁକୁ ରଥରେ ଥୋଇଦେଲେ ଏବଂ ଯାଇ ରଥର ପଛଭାଗରେ ଚୁପ୍‌ଚାପ୍ ବସିପଡ଼ି ନାନାପ୍ରକାର ଚିନ୍ତାରେ ବୁଡ଼ିଗଲେ । ତାଙ୍କ ମନରେ କୁଳନାଶ ଏବଂ ତାହାଦ୍ୱାରା ହେବାକୁ ଯାଉଥିବା ଭୟାନକ ପାପ ଓ ପାପଫଳର ଭୀଷଣ ଚିତ୍ର ଖେଳିଗଲା । ତାଙ୍କ ମୁଖମଣ୍ଡଳରେ ବିଷାଦ ଖେଳିଗଲା ଏବଂ ନେତ୍ର ଶୋକାକୁଳ ହୋଇଗଲା ।"

★

*ଓଁ ତତ୍‌ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଅର୍ଜୁନବିଷାଦଯୋଗୋ*
*ନାମ ପ୍ରଥମୋଽଧ୍ୟାୟଃ ॥ ୧ ॥*

ପ୍ରତ୍ୟେକ ଅଧ୍ୟାୟର ସମାପ୍ତିପରେ ଯେଉଁ ଉପରୋକ୍ତ ପୁଷ୍ପିକା ଦିଆଯାଇଛି, ସେଥିରେ ଶ୍ରୀମଦ୍‌ଭଗବଦ୍‌ଗୀତାର ମାହାତ୍ମ୍ୟ ଓ ପ୍ରଭାବ ପ୍ରକାଶ କରାଯାଉଛି । **ଓଁ ତତ୍ସତ୍** ହେଉଛି ଭଗବାନଙ୍କର ପବିତ୍ର ନାମ । (୧୭/୨୩); ସ୍ୱୟଂ ଭଗବାନଙ୍କ ଦ୍ୱାରା ଗାନ କରାଯାଇଥିବା ହେତୁ ଏହାର ନାମ **ଶ୍ରୀମଦ୍‌ଭଗବଦ୍‌ଗୀତା** । ଏଥିରେ ଉପନିଷଦର ସାରତତ୍ତ୍ୱ ସଂଗୃହୀତ ହୋଇଛି ଏବଂ ଏହା ସ୍ୱୟଂ ଉପନିଷଦ ଅଟେ; ତେଣୁ ଏହାକୁ **ଉପନିଷଦ** କୁହାଯାଇଛି । ନିର୍ଗୁଣ ନିରାକାର ପରମାତ୍ମାଙ୍କ ପରମତତ୍ତ୍ୱର ସାକ୍ଷାତ୍କାର କରାଇପାରୁଥିବାରୁ, ଏହାର ନାମ ବ୍ରହ୍ମବିଦ୍ୟା ହୋଇଛି । ଯେଉଁ କର୍ମଯୋଗକୁ ଯୋଗନାମରେ ବର୍ଣ୍ଣନା କରାଯାଇଛି, ସେହି ନିଷ୍କାମଭାବପୂର୍ଣ୍ଣ କର୍ମଯୋଗର ତତ୍ତ୍ୱ ବୋଧ କରାଉଥିବାରୁ, ଏହାର ନାମ ଯୋଗଶାସ୍ତ୍ର ହୋଇଛି । ଏହା ସାକ୍ଷାତ୍ ପରମପୁରୁଷ ଭଗବାନ୍ ଶ୍ରୀକୃଷ୍ଣ ଓ ଭକ୍ତବର ଅର୍ଜୁନଙ୍କ ସମ୍ବାଦ । ଏହାର ପ୍ରତ୍ୟେକ ଅଧ୍ୟାୟରେ ପରମାତ୍ମାଙ୍କୁ ପ୍ରାପ୍ତ କରିପାରୁଥିବା ଯୋଗର ବର୍ଣ୍ଣନା କରାଯାଇଛି; ତେଣୁ **ଶ୍ରୀକୃଷ୍ଣାର୍ଜୁନସଂବାଦେ .... ଯୋଗୋ ନାମ** .... ଅଧ୍ୟାୟ ବୋଲି କୁହାଯାଇଛି ।

ଓଁ ଶ୍ରୀପରମାତ୍ମନେ ନମଃ

# ଦ୍ୱିତୀୟୋଽଧ୍ୟାୟଃ

## ସାଂଖ୍ୟଯୋଗ

***ଅଧ୍ୟାୟର ନାମ :*** *ଏହି ଅଧ୍ୟାୟରେ ଶରଣାଗତ ଅର୍ଜୁନ ନିଜ ଶୋକନିବୃତ୍ତିର ଐକାନ୍ତିକ ଉପାୟ ପଚାରିବାରୁ ଭଗବାନ୍ ପ୍ରଥମ ତିରିଶ ଶ୍ଲୋକପର୍ଯ୍ୟନ୍ତ ଆତ୍ମତତ୍ତ୍ୱ ବର୍ଣ୍ଣନା କରିଛନ୍ତି। ସାଂଖ୍ୟଯୋଗ ସାଧନାରେ ଆତ୍ମତତ୍ତ୍ୱର ଶ୍ରବଣ, ମନନ ଓ ନିଦିଧ୍ୟାସନ ହିଁ ମୁଖ୍ୟ। ଏହି ଅଧ୍ୟାୟରେ ତିରିଶ ଶ୍ଲୋକ ପରେ ସ୍ୱଧର୍ମ ବିଷୟରେ ବର୍ଣ୍ଣନା କରି କର୍ମଯୋଗର ସ୍ୱରୂପ ମଧ୍ୟ ବୁଝାଇଦିଆଯାଇଥିଲେ ବି ଉପଦେଶର ଆରମ୍ଭ ସାଂଖ୍ୟଯୋଗରୁ ହିଁ ହୋଇଛି ଏବଂ ଆତ୍ମତତ୍ତ୍ୱର ବର୍ଣ୍ଣନା ଅନ୍ୟ ଅଧ୍ୟାୟ ଅପେକ୍ଷା ଏଥିରେ ଅଧିକ ବିସ୍ତାରିତଭାବରେ ଦିଆଯାଇଛି। ତେଣୁ ଏହି ଅଧ୍ୟାୟର ନାମ ସାଂଖ୍ୟଯୋଗ ରଖାଯାଇଛି।*

***ଅଧ୍ୟାୟର ସାରାଂଶ :*** *ଏହି ଅଧ୍ୟାୟର ପ୍ରଥମ ଶ୍ଲୋକରେ ସଞ୍ଜୟ ଅର୍ଜୁନଙ୍କର ବିଷାଦ ବର୍ଣ୍ଣନା କରିଛନ୍ତି। ଦ୍ୱିତୀୟ ଓ ତୃତୀୟ ଶ୍ଲୋକରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କର ମୋହ ଓ କାପୁରୁଷତାପୂର୍ଣ୍ଣ ବିଷାଦକୁ ନିନ୍ଦା କରି ତାଙ୍କୁ ଯୁଦ୍ଧ କରିବାପାଇଁ ଉତ୍ସାହିତ କରିଛନ୍ତି। ଚତୁର୍ଥ ଓ ପଞ୍ଚମରେ ଅର୍ଜୁନ ଭୀଷ୍ମ-ଦ୍ରୋଣ ଆଦି ପୂଜ୍ୟ ଗୁରୁଜନମାନଙ୍କୁ ମାରିବା ଅପେକ୍ଷା ଭିକ୍ଷାନ୍ନଦ୍ୱାରା ଜୀବନ ନିର୍ବାହ କରିବା ଶ୍ରେଷ୍ଠ ବୋଲି କହିଛନ୍ତି। ଷଷ୍ଠରେ ଯୁଦ୍ଧ କରିବେ କି ନ କରିବେ, ସେ ବିଷୟରେ ସଂଶୟ ପ୍ରକାଶ କରିଛନ୍ତି ଏବଂ ସପ୍ତମରେ ମୋହ ଓ କାପୁରୁଷତା ଦୋଷର ବର୍ଣ୍ଣନା କରି, ଭଗବାନଙ୍କ ଶରଣ ନେଇ କଲ୍ୟାଣପ୍ରଦ ଉପଦେଶ ଦିଅନ୍ତୁ ବୋଲି ପ୍ରାର୍ଥନା କରିଛନ୍ତି। ଅଷ୍ଟମରେ ତ୍ରିଲୋକର ନିଷ୍କଣ୍ଟକ ରାଜ୍ୟ ମଧ୍ୟ ତାଙ୍କୁ ଶୋକ-ନିବୃତ୍ତିର କାରଣ ହୋଇ ପାରିବ ନାହିଁ ବୋଲି କହି ବୈରାଗ୍ୟ ଭାବ ପ୍ରଦର୍ଶନ କରିଛନ୍ତି। ଏହା ପରେ ଅର୍ଜୁନ ଯୁଦ୍ଧ ନ କରି ଚୁପ୍ ହୋଇ ବସିରହିବା ଓ ଭଗବାନ୍ ଦରଦର ହସି ତାଙ୍କୁ କହିବା ବିଷୟ ସଂଜୟ ନବମ ଓ ଦଶମ ଶ୍ଲୋକରେ କହିଛନ୍ତି। ତା'ପରେ ଏଗାର ଶ୍ଲୋକରୁ ଭଗବାନ୍ ଉପଦେଶ ଆରମ୍ଭ କରି ବାର ଓ ତେରରେ ଆତ୍ମାର ନିତ୍ୟତା ଏବଂ ନିର୍ବିକାରତା ନିରୂପଣ କରିଛନ୍ତି। ଚଉଦରେ ସମସ୍ତ ଭୋଗକୁ ଅନିତ୍ୟ ବୋଲି କହି ସୁଖ-ଦୁଃଖ ଆଦି ଦ୍ୱନ୍ଦ୍ୱକୁ ସହିଯିବାପାଇଁ କହିଛନ୍ତି। ପନ୍ଦରରେ ଏହି ସହନଶୀଳତା ମୋକ୍ଷପ୍ରାପ୍ତିର ହେତୁ ବୋଲି କହିଛନ୍ତି। ଷୋହଳରେ ସତ୍ ଓ ଅସତ୍‌ର ଲକ୍ଷଣ କହି ସତରରେ 'ସତ୍' ଏବଂ ଅଠରରେ 'ଅସତ୍' ବସ୍ତୁର ସ୍ୱରୂପ ବୁଝାଇଦେଇଛନ୍ତି ଓ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି। ଉଣେଇଶରେ ଆତ୍ମାକୁ ମର ଓ ମାରକ ବୋଲି ଭାବୁଥିବା ଲୋକଙ୍କୁ ଅଜ୍ଞାନୀ ବୋଲି କହିଛନ୍ତି। କୋଡ଼ିଏରେ ଜନ୍ମ ଆଦି ଷଡ୍‌ଭାବବିକାରରୁ ରହିତ ଆତ୍ମସ୍ୱରୂପର ନିରୂପଣ କରି ଏକୋଇଶରେ ସିଦ୍ଧ କରିଛନ୍ତି ଯେ, ଆତ୍ମତତ୍ତ୍ୱର ଜ୍ଞାତା କାହାରିକୁ ମାରନ୍ତି ନାହିଁ, କି ମରାନ୍ତି ନାହିଁ। ତା'ପରେ ବାଇଶରେ ମନୁଷ୍ୟର ବସ୍ତ୍ର ବଦଳାଇବା ଉଦାହରଣ ଦେଇ ଦେହାନ୍ତରପ୍ରାପ୍ତି ତତ୍ତ୍ୱ ବୁଝାଇଦେଇଛନ୍ତି। ତେଇଶଠାରୁ ପଚିଶପର୍ଯ୍ୟନ୍ତ ଆତ୍ମତତ୍ତ୍ୱକୁ ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଳେଦ୍ୟ ଏବଂ ଅଶୋଷ୍ୟ ତଥା ନିତ୍ୟ, ସର୍ବଗତ, ସ୍ଥାଣୁ, ଅଚଳ, ସନାତନ, ଅବ୍ୟକ୍ତ, ଅଚିନ୍ତ୍ୟ ଓ ନିର୍ବିକାର ବୋଲି କହି ଏଥିପାଇଁ ଶୋକ କରିବା ସର୍ବଥା ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ଛବିଶ ଓ ସତେଇଶରେ ଆତ୍ମାକୁ ସର୍ବଦା ଜନ୍ମ ଓ ମରଣଶୀଳ ବୋଲି ମାନୁଥିବା ସତ୍ତ୍ୱେ ଅଠେଇଶରେ ଶରୀର ଅନିତ୍ୟ ହୋଇଥିବାରୁ ଶୋକ କରିବା ଅନୁଚିତ ବୋଲି କହିଛନ୍ତି। ଅଣତିରିଶରେ ଆତ୍ମତତ୍ତ୍ୱର ଦ୍ରଷ୍ଟା, ବକ୍ତା ଓ ଶ୍ରୋତା ଅତି ଦୁର୍ଲଭ ବୋଲି ପ୍ରତିପାଦନ କରି ତିରିଶରେ ଆତ୍ମତତ୍ତ୍ୱ ସର୍ବଦା ଅବଧ୍ୟ ହୋଇଥିବାରୁ କୌଣସି ପ୍ରାଣୀପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ଏକତିରିଶରୁ ଛତିଶପର୍ଯ୍ୟନ୍ତ କ୍ଷାତ୍ରଧର୍ମଦୃଷ୍ଟିରୁ ଯୁଦ୍ଧକୁ ଅର୍ଜୁନଙ୍କର ସ୍ୱଧର୍ମ ବୋଲି କହି ତାହା ତ୍ୟାଗ କରିବା ସବୁମତେ ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ସଇଁତିରିଶରେ ଯୁଦ୍ଧ ଇହଲୋକ ଓ ପରଲୋକ ଉଭୟରେ ଲାଭପ୍ରଦ ବୋଲି ବୁଝାଇ ଅର୍ଜୁନଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ*

ଆଜ୍ଞା ଦେଇଛନ୍ତି। ଅଠତିରିଶରେ ଯୁଦ୍ଧାଦି କର୍ମରେ ସମତ୍ୱକୁ ପାପରୁ ନିର୍ଲିପ୍ତ ହେବାର ଉପାୟ ବୋଲି ବର୍ଣ୍ଣନା କରି ଅଣଚାଳିଶରେ କର୍ମବନ୍ଧନକୁ କାଟିବାପାଇଁ କର୍ମଯୋଗବିଷୟକ ବୁଦ୍ଧି ବର୍ଣ୍ଣନା କରିବାକୁ ପ୍ରସ୍ତାବନା କରିଛନ୍ତି। ଚାଳିଶରେ କର୍ମଯୋଗର ମହିମା ବୁଝାଇଦେଇ ଏକଚାଳିଶରେ ନିଶ୍ଚୟାତ୍ମିକା-ବୁଦ୍ଧି ଓ ଅବ୍ୟବସାୟୀ-ସକାମ-ପୁରୁଷର ବୁଦ୍ଧି ମଧ୍ୟରେ ପାର୍ଥକ୍ୟ ନିରୂପଣ କରିଛନ୍ତି। ବୟାଳିଶରୁ ଚଉରାଳିଶଯାଏ ସ୍ୱର୍ଗପରାୟଣ ସକାମ ମନୁଷ୍ୟର ସ୍ୱଭାବ ବର୍ଣ୍ଣନା କରିଛନ୍ତି। ପଇଁଚାଳିଶରେ ଅର୍ଜୁନଙ୍କୁ ନିଷ୍କାମ, ନିର୍ଦ୍ୱନ୍ଦ୍ୱ, ନିତ୍ୟସତ୍ତ୍ୱସ୍ଥ, ଯୋଗକ୍ଷେମଭାବନାଶୂନ୍ୟ ତଥା ଆତ୍ମସଂଯମୀ ହେବାକୁ କହି ଛୟାଳିଶରେ ବ୍ରହ୍ମଜ୍ଞ ବ୍ରାହ୍ମଣଙ୍କ ପାଇଁ ବେଦୋକ୍ତ କର୍ମଫଳରୂପକ ସୁଖଭୋଗ ଅପ୍ରୟୋଜନୀୟ ବୋଲି ନିର୍ଦ୍ଦେଶ କରିଛନ୍ତି। ସତଚାଳିଶରେ ସୂତ୍ରରୂପରେ କର୍ମଯୋଗର ସ୍ୱରୂପ ବିଷୟ କହିଛନ୍ତି। ଅଠଚାଳିଶରେ ଯୋଗର ପରିଭାଷା ସମତ୍ୱ ବୋଲି କହିଛନ୍ତି। ଅଣଚାଶରେ ସମବୁଦ୍ଧି ଅପେକ୍ଷା ସକାମ କର୍ମ ଅତ୍ୟନ୍ତ ତୁଚ୍ଛ ଏବଂ ଫଳ ଆକାଂକ୍ଷା କରୁଥିବା ଲୋକେ ଅତ୍ୟନ୍ତ ଦୀନ ବୋଲି କହିଛନ୍ତି। ପଚାଶ ଓ ଏକାବନରେ ଭଗବାନ୍ ସମବୁଦ୍ଧିଯୁକ୍ତ କର୍ମଯୋଗୀଙ୍କର ପ୍ରଶଂସା କରି ଅର୍ଜୁନଙ୍କୁ କର୍ମଯୋଗରେ ଲାଗିଯିବାକୁ ଆଜ୍ଞା ଦେଇଛନ୍ତି ଓ ସମତ୍ୱଭାବର ଫଳ ଅନାମୟପଦପ୍ରାପ୍ତି ବୋଲି କହିଛନ୍ତି। ଏହା ପରେ ବାଉନ ଓ ତେପନରେ ଭଗବାନ୍ କହିଛନ୍ତି, ବୈରାଗ୍ୟସହିତ ବୁଦ୍ଧି ଶୁଦ୍ଧ, ସ୍ୱଚ୍ଛ ଓ ନିଶ୍ଚଳ ହୋଇଯିବା ପରେ ପରମାତ୍ମପ୍ରାପ୍ତି ହୋଇପାରିବ। ଚଉବନରେ ଅର୍ଜୁନ ସ୍ଥିରବୁଦ୍ଧିସମ୍ପନ୍ନ ପୁରୁଷଙ୍କ ବିଷୟରେ ଚାରିଗୋଟି ପ୍ରଶ୍ନ କରିଛନ୍ତି। ଭଗବାନ୍ ପଞ୍ଚାବନରେ ପ୍ରଥମ ପ୍ରଶ୍ନର, ଛପନ ଓ ସତାବନରେ ଦ୍ୱିତୀୟର ତଥା ଅଠାବନରେ ତୃତୀୟ ପ୍ରଶ୍ନର ଉତ୍ତର ସୂତ୍ରରୂପରେ ଦେଇଛନ୍ତି; ଏହି ସନ୍ଦର୍ଭରେ ଭଗବାନ୍ ଶ୍ରୀକୃଷ୍ଣ ପଞ୍ଚାବନଠାରୁ ଅଠାବନପର୍ଯ୍ୟନ୍ତ ସମ୍ପୂର୍ଣ୍ଣ କାମନାରହିତ ହେବା, ବାହ୍ୟସାଧନର ଅପେକ୍ଷା ନ ରଖି ଅନ୍ତରାତ୍ମାରେ ସର୍ବଦା ସନ୍ତୁଷ୍ଟ ରହିବା, ଦୁଃଖରେ ଉଦ୍‌ବିଗ୍ନ ନ ହେବା, ସୁଖପ୍ରତି ନିଃସ୍ପୃହ ହେବା, ରାଗ, ଭୟ ଓ କ୍ରୋଧରୁ ସର୍ବଥା ରହିତ ହେବା, ଶୁଭାଶୁଭ ପ୍ରାପ୍ତିରେ ହର୍ଷ-ଶୋକ ଏବଂ ରାଗ-ଦ୍ୱେଷ ନ କରିବା ତଥା ସମସ୍ତ ଇନ୍ଦ୍ରିୟଙ୍କୁ ବିଷୟଠାରୁ ଦୂରେଇ ନେଇ ନିଜ ବଶରେ ରଖିବା ଇତ୍ୟାଦିକୁ ସ୍ଥିରବୁଦ୍ଧି ପୁରୁଷଙ୍କ ଲକ୍ଷଣ ବୋଲି ବର୍ଣ୍ଣନା କରିଛନ୍ତି। ଅଣଷଠିରେ ଭଗବାନ୍ କହିଛନ୍ତି, ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟ ଗ୍ରହଣ କରା ନ ଗଲେ, ବିଷୟର ନିବୃତ୍ତି ହୁଏ, କିନ୍ତୁ ଆସକ୍ତିର ନିବୃତ୍ତି ହୁଏ ନାହିଁ; ଆସକ୍ତିର ନିବୃତ୍ତି ପରମାତ୍ମଦର୍ଶନରେ ହୁଏ ବୋଲି କହି ଷାଠିଏରେ ଇନ୍ଦ୍ରିୟମାନଙ୍କର ପ୍ରବଳତା ବିଷୟ ନିରୂପଣ କରିଛନ୍ତି। ଏକଷଠିରେ ମନ ଏବଂ ଇନ୍ଦ୍ରିୟସଂଯମପୂର୍ବକ ଭଗବଦ୍‌ପରାୟଣ ହେବାକୁ କହି ଭଗବାନ୍ ଇନ୍ଦ୍ରିୟବିଜୟୀ ପୁରୁଷଙ୍କର ପ୍ରଶଂସା କରିଛନ୍ତି। ବାଷଠି ଓ ତେଷଠିରେ ବିଷୟଚିନ୍ତନଜନିତ ପତନର କ୍ରମ କହିଛନ୍ତି। ଚତୁର୍ଥ ପ୍ରଶ୍ନର ଉତ୍ତର ଆରମ୍ଭ କରି ଚୌଷଠି ଓ ପଞ୍ଚଷଠିରେ ରାଗଦ୍ୱେଷରହିତ ହୋଇ କର୍ମ କରୁଥିବା ଲୋକଙ୍କୁ ପ୍ରସାଦ ପ୍ରାପ୍ତ ହୁଏ ତଥା ତଦ୍ୱାରା ତାଙ୍କର ସମସ୍ତ ଦୁଃଖ ନାଶ ହୁଏ ଏବଂ ବୁଦ୍ଧି ଶୀଘ୍ର ସ୍ଥିର ହୋଇଯାଏ ବୋଲି କହିଛନ୍ତି। ଛଷଠିରେ ଅଯୁକ୍ତପୁରୁଷଙ୍କୁ ଶ୍ରେଷ୍ଠବୁଦ୍ଧି, ଭଗବଚ୍ଚିନ୍ତନ, ଶାନ୍ତି ଓ ସୁଖ ମିଳେ ନାହିଁ ବୋଲି ଦେଖାଇଛନ୍ତି। ସତଷଠିରେ ବାୟୁ ଓ ନୌକାର ଦୃଷ୍ଟାନ୍ତ ଦେଇ ମନର ସଂଯୋଗଦ୍ୱାରା ଯେକୌଣସି ଇନ୍ଦ୍ରିୟ ମଧ୍ୟ ବୁଦ୍ଧିକୁ ହରଣ କରିନିଏ ବୋଲି କହିଛନ୍ତି। ଅଠଷଠିରେ ଭଗବାନ୍ ସିଦ୍ଧ କରିଛନ୍ତି ଯେ, ଯେଉଁମାନଙ୍କର ଇନ୍ଦ୍ରିୟଗୁଡ଼ିକ ନିଜ ବଶରେ ଅଛନ୍ତି, ସେମାନେ ବାସ୍ତବରେ ସ୍ଥିରବୁଦ୍ଧି। ଅଣସ୍ତରିରେ ସାଧାରଣ ପୁରୁଷମାନଙ୍କ ପାଇଁ ବ୍ରହ୍ମାନନ୍ଦ ରାତ୍ରିପରି ଏବଂ ତତ୍ତ୍ୱ ଜାଣିଥିବା ଯୋଗୀଙ୍କ ପାଇଁ ବିଷୟସୁଖ ରାତ୍ରିପରି ବୋଲି କହିଛନ୍ତି। ସତୁରିରେ ସମୁଦ୍ରର ଦୃଷ୍ଟାନ୍ତ ଦେଇ ଜ୍ଞାନୀ-ମହାପୁରୁଷଙ୍କ ମହିମା କହିଛନ୍ତି ଏବଂ ଏକସ୍ତରିରେ ସମସ୍ତ କାମନା, ସ୍ପୃହା, ମମତ୍ୱ ଏବଂ ଅହଙ୍କାରରୁ ରହିତ ହୋଇ ବିଚରଣ କରୁଥିବା ପୁରୁଷ ପରମଶାନ୍ତି ଲାଭ କରିପାରନ୍ତି ବୋଲି କହି ବାସ୍ତରି ଶ୍ଳୋକରେ ଏହି ବ୍ରାହ୍ମୀ ସ୍ଥିତିର ମାହାତ୍ମ୍ୟ ବର୍ଣ୍ଣନାପୂର୍ବକ ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ —** ପ୍ରଥମ ଅଧ୍ୟାୟରେ ଗୀତୋକ୍ତ ଉପଦେଶର ପ୍ରସ୍ତାବନାରୂପରେ ଦୁଇପକ୍ଷର ମହାରଥୀମାନଙ୍କର ଏବଂ ସେମାନଙ୍କ ଶଙ୍ଖଧ୍ୱନିର ବର୍ଣ୍ଣନା କରି ଅର୍ଜୁନଙ୍କ ରଥକୁ ଦୁଇସେନାର ମଝିରେ ଠିଆ କରାଇବା କଥା କୁହାଯାଇଛି। ଏହା ପରେ ଦୁଇସେନାରେ ଥିବା ସ୍ୱଜନସମୁଦାୟଙ୍କୁ ଦେଖି ଅର୍ଜୁନ ଶୋକ ଓ ମୋହହେତୁ ଯୁଦ୍ଧରୁ ନିବୃତ୍ତ ହେବା ଏବଂ ଅସ୍ତ୍ର-ଶସ୍ତ୍ର ଛାଡ଼ିଦେଇ ବିଷାଦଗ୍ରସ୍ତ ହୋଇ ବସିଯିବା କଥା କହି ଅଧ୍ୟାୟ ସମାପ୍ତ

କରାଯାଇଛି। ଏପରି ସ୍ଥିତିରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କ'ଣ କହିଲେ ଏବଂ କିପରି ତାଙ୍କୁ ଯୁଦ୍ଧପାଇଁ ପୁଣି ଥରେ ପ୍ରସ୍ତୁତ କରାଇଲେ, ତାହା ବୁଝାଇ କହିବାର ଆବଶ୍ୟକତା ଦେଖାଦେବାରୁ ସଂଜୟ ଅର୍ଜୁନଙ୍କ ସ୍ଥିତି ବର୍ଣ୍ଣନା କରି ଦ୍ୱିତୀୟ ଅଧ୍ୟାୟ ଆରମ୍ଭ କରୁଛନ୍ତି—

ସଂଜୟ ଉବାଚ

**ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍ ।**
**ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ ।। ୧ ।।**

**ଅନ୍ୱୟ —** ତଥା = ସେପରି; କୃପୟା = କରୁଣାରେ; ଆବିଷ୍ଟମ୍ = ବ୍ୟାପ୍ତ; **ଅଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍** = ଅଶ୍ରୁଦ୍ୱାରା ପୂର୍ଣ୍ଣ ତଥା ବ୍ୟାକୁଳ ନେତ୍ରଯୁକ୍ତ; **ବିଷୀଦନ୍ତମ୍** = ଶୋକାକୁଳ; **ତମ୍** = ସେହି ଅର୍ଜୁନଙ୍କୁ; **ମଧୁସୂଦନଃ** = ଭଗବାନ୍ ମଧୁସୂଦନ; **ଇଦମ୍** = ଏହି; **ବାକ୍ୟମ୍** = କଥା; **ଉବାଚ** = କହିଲେ।

**ସଂଜୟ କହିଲେ— ସେପରି କରୁଣାବିଷ୍ଟ ଏବଂ ଅଶ୍ରୁପୂର୍ଣ୍ଣ ବ୍ୟାକୁଳନେତ୍ର ଶୋକାକୁଳ ଅର୍ଜୁନଙ୍କୁ ଭଗବାନ୍ ମଧୁସୂଦନ ଏହି କଥା କହିଲେ,—।। ୧ ।।**

**ପ୍ରଶ୍ନ —** **ତମ୍** ପଦଟି ଏଠାରେ କାହାର ବାଚକ? ଏବଂ ଏହା ସହିତ ତଥା **କୃପୟାବିଷ୍ଟମ୍, ଅଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍** ଏବଂ **ବିଷୀଦନ୍ତମ୍** — ଏହି ତିନୋଟି ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କଣ?

**ଉତ୍ତର —** ପ୍ରଥମ ଅଧ୍ୟାୟ ଶେଷରେ ଯେଉଁ ଅର୍ଜୁନ ଶୋକମଗ୍ନ ହୋଇ ବସିଯିବା କଥା କୁହାଯାଇଛି, ଏହି **ତମ୍** ପଦଟି ହେଉଛି ସେହି ଅର୍ଜୁନଙ୍କ ବାଚକ। ଏଠାରେ **ତମ୍** ପଦ ଏବଂ ତାହା ସହିତ ଉପରୋକ୍ତ ବିଶେଷଣ ପ୍ରୟୋଗ କରି ତାଙ୍କ ସ୍ଥିତିର ବର୍ଣ୍ଣନା କରିଛନ୍ତି। ଅଭିପ୍ରାୟ ଏହି ଯେ, ପ୍ରଥମ ଅଧ୍ୟାୟରେ ଯାହାଙ୍କର ବର୍ଣ୍ଣନା ବିସ୍ତାରିତଭାବରେ ହୋଇସାରିଛି, ସେହି ବନ୍ଧୁସ୍ନେହଜନିତ-କରୁଣାଯୁକ୍ତ-କାପୁରୁଷତା ଭାବରେ ବ୍ୟାପ୍ତ ହୋଇଥିବା, ନେତ୍ର ଅଶ୍ରୁପୂର୍ଣ୍ଣ ଓ ବ୍ୟାକୁଳ ହୋଇଥିବା ତଥା ବନ୍ଧୁବାନ୍ଧବଙ୍କର ନାଶର ଆଶଙ୍କାରେ ଏବଂ ସେମାନଙ୍କୁ ମାରିଦେଲେ ଭୟାନକ ପାପ ହେବ ବୋଲି ଭୟରେ ଶୋକମଗ୍ନ ହୋଇଯାଇଥିବା ଅର୍ଜୁନଙ୍କୁ ଭଗବାନ୍ କହିଲେ।

**ପ୍ରଶ୍ନ —** ଏଠାରେ **ମଧୁସୂଦନ** ନାମ ପ୍ରୟୋଗର ଏବଂ **ବାକ୍ୟମ୍** ସହିତ **ଇଦମ୍** ପଦ ପ୍ରୟୋଗର ଭାବ କଣ?

**ଉତ୍ତର —** ଭଗବାନଙ୍କର **ମଧୁସୂଦନ** ନାମ ପ୍ରୟୋଗ କରି ତଥା **ବାକ୍ୟମ୍** ସହିତ **ଇଦମ୍** ବିଶେଷଣ ଦେଇ ସଂଜୟ ଧୃତରାଷ୍ଟ୍ରଙ୍କୁ ଚେତାବନୀ ଦେଇଛନ୍ତି। ଅଭିପ୍ରାୟ ହେଉଛି, ''ଯେଉଁ ଭଗବାନ୍ ଶ୍ରୀକୃଷ୍ଣ ଦେବତାମାନଙ୍କ ଉପରେ ଅତ୍ୟାଚାର କରୁଥିବା **ମଧୁ**ନାମକ ଦୈତ୍ୟକୁ ମାରି ମଧୁସୂଦନ ନାମ ଗ୍ରହଣ କରିଥିଲେ, ସେହି ଭଗବାନ୍ ଯୁଦ୍ଧବିମୁଖ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଉତ୍ସାହିତ କରୁଛନ୍ତି। ଏପରି ପରିସ୍ଥିତିରେ ଆପଣଙ୍କ ପୁତ୍ରମାନଙ୍କର କିପରି ଜୟ ହେବ? କାରଣ ଆପଣଙ୍କ ପୁତ୍ରମାନେ ଅତ୍ୟାଚାରୀ ଏବଂ ଅତ୍ୟାଚାରୀମାନଙ୍କୁ ବିନାଶ କରିବା ଭଗବାନଙ୍କର କାର୍ଯ୍ୟ। ଅତଏବ ନିଜର ପୁତ୍ରମାନଙ୍କୁ ବୁଝାଇ ଏବେ ବି ଆପଣ ସନ୍ଧି କରିନିଅନ୍ତୁ; ସେମାନଙ୍କର ସଂହାର ବନ୍ଦ ହୋଇଯିବ।'' ★

ଶ୍ରୀଭଗବାନୁବାଚ

**କୁତସ୍ତ୍ୱା କଶ୍ମଳମିଦଂ ବିଷମେ ସମୁପସ୍ଥିତମ।**
**ଅନାର୍ଯଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜୁନ ।। ୨ ।।**

★ ସ୍ମରଣ ରଖନ୍ତୁ ଯେ, ଏହି କଥା ସଂଜୟ ଧୃତରାଷ୍ଟ୍ରଙ୍କୁ ଦଶଦିନ ଯୁଦ୍ଧ ହୋଇସାରିଲା ପରେ କହିଥିଲେ; ତେଣୁ 'ବର୍ତ୍ତମାନ ମଧ୍ୟ ସନ୍ଧି କରାଯାଇ ପାରିବ'ର ଅର୍ଥ ବା ଅଭିପ୍ରାୟ ଏହି ଯେ, ବାକି ରହିଥିବା ପୁତ୍ରମାନଙ୍କୁ ମଧ୍ୟ ରକ୍ଷା କରିବାପାଇଁ ସନ୍ଧି କରିବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ।

**ଅନ୍ୱୟ** — **ଅର୍ଜୁନ** = ହେ ଅର୍ଜୁନ; **ତ୍ୱା** = ତୁମକୁ; **ବିଷମେ** = ଏହି ଅସମୟରେ; **ଇଦମ୍** = ଏହି; **କଶ୍ମଳମ୍** = ମୋହ; **କୁତଃ** = କେଉଁଠାରୁ; **ସମୁପସ୍ଥିତମ୍** = ପ୍ରାପ୍ତ ହେଲା; (କାରଣ ଏହା) **ଅନାର୍ଯ୍ୟଜୁଷ୍ଟମ୍** = ଶ୍ରେଷ୍ଠ ପୁରୁଷମାନଙ୍କ ଦ୍ୱାରା ଆଚରିତ ନୁହେଁ; **ଅସ୍ୱର୍ଗ୍ୟମ୍** = (କିମ୍ବା) ସ୍ୱର୍ଗପ୍ରଦାୟକ ନୁହେଁ (କି); **ଅକୀର୍ତ୍ତିକରମ୍** = କୀର୍ତ୍ତିପ୍ରଦାୟକ ମଧ୍ୟ ନୁହେଁ।

**ଶ୍ରୀଭଗବାନ୍ କହିଲେ — ହେ ଅର୍ଜୁନ! ତୁମକୁ ଏହି ଅସମୟରେ ଏହି ମୋହ କେଉଁଠୁ ଆସିଗଲା? କାରଣ ଏହା ଶ୍ରେଷ୍ଠ ପୁରୁଷମାନଙ୍କ ଦ୍ୱାରା ଆଚରିତ ନୁହେଁ, କିମ୍ବା ସ୍ୱର୍ଗପ୍ରଦାୟକ କି କୀର୍ତ୍ତିପ୍ରଦାୟକ ମଧ୍ୟ ନୁହେଁ॥ ୨ ॥**

**ପ୍ରଶ୍ନ** — ଇଦଂ ବିଶେଷଣ ସହିତ **କଶ୍ମଳମ୍** ପଦଟି କାହାର ବାଚକ? ତଥା 'ତୁମକୁ ଅସମୟରେ ଏହି ମୋହ କେଉଁଠୁ ଆସିଲା?' —ଏହି ବାକ୍ୟର ଅଭିପ୍ରାୟ କ'ଣ?

**ଉତ୍ତର** — ଏଠାରେ **ଇଦମ୍** ବିଶେଷଣ ସହିତ **କଶ୍ମଳମ୍** ପଦଟି ହେଉଛି ଅର୍ଜୁନଙ୍କ ମୋହଜନିତ ଶୋକ ଏବଂ କାପୁରୁଷତାର ବାଚକ। ଉପରୋକ୍ତ ବାକ୍ୟରେ ଭଗବାନ୍ ଅର୍ଜୁନଙ୍କୁ ଶାସନ କରିବା ଭଙ୍ଗୀରେ ଆଶ୍ଚର୍ଯ୍ୟ ହୋଇ ପଚାରିଛନ୍ତି, "ଏହି ବିଷମସ୍ଥଳରେ ଅର୍ଥାତ୍ ଯେଉଁଠି କାପୁରୁଷତା ଓ ବିଷାଦ ସମ୍ପୂର୍ଣ୍ଣ ଅନୁପଯୁକ୍ତ, ସେପରି ରଣସ୍ଥଳରେ ଏବଂ ଠିକ୍ ଯୁଦ୍ଧାରମ୍ଭ ସମୟରେ, ବଡ଼ ବଡ଼ ମହାରଥୀଙ୍କୁ ସହଜରେ ପରାସ୍ତ କରିଦେବାକୁ ସମର୍ଥ ତୁମପରି ବୀରଙ୍କ ପକ୍ଷରେ ଯେଉଁ ମୋହର ସମ୍ଭାବନା କେବେ ବି କରାଯାଇ ନ ପାରେ, ସେପରି ମୋହ (କାତରଭାବ) କେଉଁଠୁ ଆସିଲା?"

**ପ୍ରଶ୍ନ** — ଉପରୋକ୍ତ 'ମୋହ' (କାତରଭାବ)କୁ **ଅନାର୍ଯ୍ୟଜୁଷ୍ଟ, ଅସ୍ୱର୍ଗ୍ୟ** ଏବଂ **ଅକୀର୍ତ୍ତିକର** କହିବାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର** — ଏହାଦ୍ୱାରା ଭଗବାନ୍ ନିଜର ଉପରୋକ୍ତ ଆଶ୍ଚର୍ଯ୍ୟକୁ କାରଣସହିତ ସ୍ପଷ୍ଟ କରିଛନ୍ତି। ଅଭିପ୍ରାୟ ହେଲା, "ତୁମେ ଯେଉଁ ଭାବରେ ବୁଡ଼ି ରହିଛ, ତାହା ଶ୍ରେଷ୍ଠ ପୁରୁଷଙ୍କ ପକ୍ଷରେ ଆଚରଣଯୋଗ୍ୟ ନୁହେଁ, ସ୍ୱର୍ଗଦାୟୀ ନୁହେଁ, କି କୀର୍ତ୍ତିବିସ୍ତାରକ ନୁହେଁ। ଏହାଦ୍ୱାରା ତୁମକୁ ମୋକ୍ଷପ୍ରାପ୍ତି ହେବ ନାହିଁ; କି ଧର୍ମ, ଅର୍ଥ ଓ ଭୋଗ ମିଳିପାରିବ ନାହିଁ। ଏପରି ଅବସ୍ଥାରେ ବୁଦ୍ଧିମାନ୍ ହୋଇ ମଧ୍ୟ ତୁମେ ଏହି ମୋହ (କାତରଭାବ)କୁ କିପରି ସ୍ୱୀକାର କରିନେଲ?"

**କ୍ଳୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ।**
**କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ॥ ୩ ॥**

**ଅନ୍ୱୟ** — **ପାର୍ଥ** = (ତେଣୁ) ହେ ଅର୍ଜୁନ; **କ୍ଳୈବ୍ୟମ୍** = ନପୁଂସକତା; **ମା, ସ୍ମ, ଗମଃ** = ପ୍ରାପ୍ତ ହୁଅ ନାହିଁ; **ତ୍ୱୟି** = ତୁମ ପକ୍ଷରେ; **ଏତତ୍** = ଏହା; **ନ, ଉପପଦ୍ୟତେ** = ଉଚିତ ନୁହେଁ; **ପରନ୍ତପ** = ହେ ଶତ୍ରୁତାପନ!; **କ୍ଷୁଦ୍ରଂ, ହୃଦୟଦୌର୍ବଲ୍ୟମ୍** = ହୃଦୟର ତୁଚ୍ଛ ଦୁର୍ବଳତାକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ଉତ୍ତିଷ୍ଠ** = (ଯୁଦ୍ଧ କରିବାକୁ) ଠିଆ ହୋଇଯାଅ।

**ତେଣୁ ହେ ଅର୍ଜୁନ! ନପୁଂସକତା ପ୍ରାପ୍ତ ହୁଅ ନାହିଁ। ତୁମ ପକ୍ଷରେ ଏହା ଉଚିତ ନୁହେଁ। ହେ ଶତ୍ରୁତାପନ! ହୃଦୟର ତୁଚ୍ଛ ଦୁର୍ବଳତା ତ୍ୟାଗ କରି ଯୁଦ୍ଧ କରିବାକୁ ଠିଆ ହୋଇଯାଅ॥ ୩ ॥**

**ପ୍ରଶ୍ନ** — **ପାର୍ଥ** ସମ୍ବୋଧନ ସହିତ 'ନପୁଂସକତା ପ୍ରାପ୍ତ ହୁଅ ନାହିଁ' ଏବଂ 'ଏହା ତୁମ ପକ୍ଷରେ ଉଚିତ ନୁହେଁ' — ଏହି ଦୁଇ ବାକ୍ୟର ଅଭିପ୍ରାୟ କ'ଣ?

**ଉତ୍ତର** — କୁନ୍ତୀଙ୍କର ଦ୍ୱିତୀୟ ନାମ ଥିଲା ପୃଥା। କୁନ୍ତୀ ବୀରମାତା ଥିଲେ। ଯେତେବେଳେ ଭଗବାନ୍ ଶ୍ରୀକୃଷ୍ଣ କୌରବ-ପାଣ୍ଡବଙ୍କ ମଧ୍ୟରେ ସନ୍ଧି କରାଇବାପାଇଁ ହସ୍ତିନାପୁର ଯାଇଥିଲେ ଏବଂ ନିଜର ପିଉସୀ କୁନ୍ତୀଙ୍କୁ ସାକ୍ଷାତ୍ କରିଥିଲେ, ସେହି ସମୟରେ କୁନ୍ତୀ ଶ୍ରୀକୃଷ୍ଣଙ୍କ ହାତରେ ଅର୍ଜୁନଙ୍କ ନିକଟକୁ ଏକ ବୀରରସପୂର୍ଣ୍ଣ ସନ୍ଦେଶ ପଠାଇଥିଲେ। ସେଥିରେ ସେ ବିଦୁଲା ଓ ତାଙ୍କର ପୁତ୍ର ସଂଜୟଙ୍କର ଉଦାହରଣ ଦେଇ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଉତ୍ସାହିତ କରିଥିଲେ। ଏଣୁ ଏଠାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ **ପାର୍ଥ** ନାମରେ ସମ୍ବୋଧନ କରି ମାତା କୁନ୍ତୀଙ୍କର କ୍ଷତ୍ରିୟୋଚିତ ସନ୍ଦେଶ ସ୍ମରଣ

କରାଇଦେଇଛନ୍ତି ଏବଂ ଉପରୋକ୍ତ ଦୁଇ ବାକ୍ୟଦ୍ୱାରା ସୂଚିତ କରାଇଦେଇଛନ୍ତି, ''ତୁମେ ବୀରମାତାଙ୍କର ବୀରପୁତ୍ର; ତୁମ ମଧ୍ୟରେ ଏପ୍ରକାର କାପୁରୁଷତା ସୃଷ୍ଟି ହେବା ସର୍ବଥା ଅନୁଚିତ। କାହିଁ ତୁମର ମହାନ୍ ମହାନ୍ ମହାରଥୀଙ୍କ ହୃଦୟରେ କମ୍ପନସୃଷ୍ଟିକାରୀ ସେହି ଅତୁଳ ଶୌର୍ଯ୍ୟ ଏବଂ କାହିଁ ତୁମର ଏହି ଦୀନ ସ୍ଥିତି! ଏହି ସ୍ଥିତିରେ ତ ତୁମ ଶରୀରର ଲୋମ ଟାଙ୍କୁରିଉଠୁଛି, ଦେହ ଥରୁଛି, ହାତରୁ ଗାଣ୍ଡୀବଧନୁ ଖସିପଡୁଛି ଏବଂ ଚିତ୍ତ ବିଷାଦଗ୍ରସ୍ତ ହୋଇ ଘୂର୍ଣ୍ଣିତ ହେଉଛି। ତୁମ ପକ୍ଷରେ ଏପରି କାପୁରୁଷତା ଓ ଭୀରୁତା ଆଦୌ ଶୋଭନୀୟ ନୁହେଁ।''

**ପ୍ରଶ୍ନ –** ଏଠାରେ **ପରନ୍ତପ** ସମ୍ବୋଧନର ଭାବ କଣ ?

**ଉତ୍ତର –** ଯେ ଶତ୍ରୁମାନଙ୍କୁ ଭୟଭୀତ କରିବାକୁ ସମର୍ଥ, ତାଙ୍କୁ **ପରନ୍ତପ** କହନ୍ତି। ଏଣୁ ଏଠାରେ ଅର୍ଜୁନଙ୍କୁ 'ପରନ୍ତପ' ନାମରେ ସମ୍ବୋଧନ କରିବାର ତାତ୍ପର୍ଯ୍ୟ ହେଉଛି : ଅର୍ଜୁନ ଶତ୍ରୁମାନଙ୍କୁ ଭୀତତ୍ରସ୍ତ କରାଇବାରେ ପ୍ରସିଦ୍ଧ। ଯେ ନିବାତକବଚାଦି ଅସୀମ ଶକ୍ତିଶାଳୀ ଦାନବମାନଙ୍କୁ ଅନାୟାସରେ ପରାଜିତ କରିଦେଇଥିଲେ, ତାଙ୍କ ପରି ବୀର ଆଜି କ୍ଷତ୍ରିୟ ସ୍ୱଭାବର ବିପରୀତ ଏହି କାପୁରୁଷୋଚିତ ନପୁଂସକତା ସ୍ୱୀକାର କରି ଓଲଟା ଶତ୍ରୁମାନଙ୍କୁ ପ୍ରସନ୍ନ କରୁଛନ୍ତି କିପରି ?

**ପ୍ରଶ୍ନ – କ୍ଷୁଦ୍ରମ୍** ବିଶେଷଣ ସହିତ **ହୃଦୟଦୌର୍ବଲ୍ୟମ୍** ପଦ କେଉଁ ଭାବର ବାଚକ ? ଏବଂ ତାହା ତ୍ୟାଗ କରି ଯୁଦ୍ଧପାଇଁ ଠିଆ ହେବାକୁ କହିବାର ଅର୍ଥ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ତୁମପରି ବୀରପୁରୁଷଙ୍କ ଅନ୍ତଃକରଣରେ ରଣଭୀରୁ ନପୁଂସକମାନଙ୍କ ହୃଦୟରେ ରହୁଥିବା, ଶୂରବୀରଙ୍କ ଦ୍ୱାରା ସର୍ବଥା ତ୍ୟାଜ୍ୟ, ଏହି ତୁଚ୍ଛ ଦୁର୍ବଳତାର ପ୍ରାଦୁର୍ଭାବ କୌଣସିପ୍ରକାରେ ବି ଉଚିତ ନୁହେଁ। ଅତଏବ ଅତି ଶୀଘ୍ର ଏହା ତ୍ୟାଗ କରି ତୁମେ ଯୁଦ୍ଧ କରିବାକୁ ବଦ୍ଧପରିକର ହୋଇ ଠିଆ ହୋଇଯାଅ।''

*ସମ୍ବନ୍ଧ – ଭଗବାନ୍ ଏହିପରି କହିବାରୁ, ଗୁରୁଜନମାନଙ୍କ ସହିତ ଯୁଦ୍ଧ କରିବା ଅନୁଚିତ ବୋଲି ଜଣାଇ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଅର୍ଜୁନ ନିଜର ନିଶ୍ଚିତାଭିପ୍ରାୟ ଜଣାଉଛନ୍ତି —*

ଅର୍ଜୁନ ଉବାଚ

**କଥଂ ଭୀଷ୍ମମହଂ ସଂଖ୍ୟେ ଦ୍ରୋଣଂ ଚ ମଧୁସୂଦନ ।**
**ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ ॥ ୪ ॥**

**ଅନ୍ୱୟ –** ମଧୁସୂଦନ = ହେ ମଧୁସୂଦନ; **ଅହମ୍** = ମୁଁ; **ସଂଖ୍ୟେ** = ରଣଭୂମିରେ; **କଥମ୍** = କିପରି; **ଇଷୁଭିଃ** = ବାଣମାନଙ୍କ ଦ୍ୱାରା; **ଭୀଷ୍ମମ୍** = ଭୀଷ୍ମପିତାମହ; **ଚ** = ଓ; **ଦ୍ରୋଣମ୍** = ଦ୍ରୋଣାଚାର୍ଯ୍ୟଙ୍କ; **ପ୍ରତିଯୋତ୍ସ୍ୟାମି** = ବିରୁଦ୍ଧରେ ଲଢ଼ିବି ?; **(ଯତଃ)** = ଯେଣୁ; **ଅରିସୂଦନ** = ହେ ଅରିସୂଦନ !; **(ତୌ)** = ସେ ଦୁହେଁ; **ପୂଜାର୍ହୌ** = (ମୋର) ପୂଜନୀୟ ଅଟନ୍ତି।

**ଅର୍ଜୁନ କହିଲେ — ହେ ମଧୁସୂଦନ ! ରଣଭୂମିରେ ଭୀଷ୍ମପିତାମହ ଓ ଦ୍ରୋଣାଚାର୍ଯ୍ୟଙ୍କ ବିରୁଦ୍ଧରେ ମୁଁ କିପରି ବାଣ ମାରି ଲଢ଼ିବି ? କାରଣ ହେ ଅରିସୂଦନ ! ସେ ଦୁହେଁ ମୋର ପୂଜନୀୟ ॥ ୪ ॥**

**ପ୍ରଶ୍ନ –** ଏହି ଶ୍ଳୋକରେ **ଅରିସୂଦନ** ଏବଂ **ମଧୁସୂଦନ** ଏହି ଦୁଇ ସମ୍ବୋଧନ ସହିତ **କଥମ୍** ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ମଧୁନାମକ ଦୈତ୍ୟକୁ ସଂହାର କରିଥିବାରୁ ଭଗବାନଙ୍କର ନାମ **ମଧୁସୂଦନ** ଏବଂ ଶତ୍ରୁମାନଙ୍କୁ ନାଶ କରିଥିବାରୁ ତାଙ୍କୁ **ଅରିସୂଦନ** ବୋଲି କୁହାଯାଏ। ଏହି ଦୁଇ ନାମରେ ସମ୍ବୋଧନ କରିବା ସହିତ ଏହି ଶ୍ଳୋକରେ **କଥମ୍** ପଦ ପ୍ରୟୋଗ କରି ଅର୍ଜୁନ ନିଜର ଆଶ୍ଚର୍ଯ୍ୟ ପ୍ରକଟ କରିଛନ୍ତି। ଅଭିପ୍ରାୟ ହେଲା, ''ଆପଣ ମୋତେ ଯେଉଁ ଭୀଷ୍ମ ଓ ଦ୍ରୋଣାଦିଙ୍କ

ସହିତ ଯୁଦ୍ଧ କରିବାକୁ ପ୍ରୋତ୍ସାହିତ କରୁଛନ୍ତି, ସେମାନେ ଦୈତ୍ୟ ନୁହଁନ୍ତି, କି ଶତ୍ରୁ ନୁହଁନ୍ତି; ସେମାନେ ତ ମୋର ପୂଜନୀୟ ଗୁରୁଜନ ଅଟନ୍ତି। ପୁଣି ନିଜ ସ୍ୱାଭାବିକ ଗୁଣର ବିରୁଦ୍ଧାଚରଣ କରି ଆପଣ ମୋତେ ଗୁରୁଜନମାନଙ୍କ ସହ ଯୁଦ୍ଧ କରିବାକୁ କିପରି କହୁଛନ୍ତି? ଏପରି ଘୋର ପାପକର୍ମ ମୁଁ କିପରି କରିପାରିବି?''

**ପ୍ରଶ୍ନ –** **ଇଷୁଭିଃ** ପଦର ଅର୍ଥ କ'ଣ?

**ଉତ୍ତର –** ବାଣକୁ **ଇଷୁ** କୁହାଯାଏ। ଏଠାରେ **ଇଷୁଭିଃ** ପଦ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି, ''ଯେଉଁ ଗୁରୁଜନଙ୍କ ପ୍ରତି ସାମାନ୍ୟ ଅସଂଯତ ବଚନ-ପ୍ରୟୋଗକୁ ମଧ୍ୟ ପାପ ବୋଲି ଗଣନା କରାଯାଏ, ସେମାନଙ୍କ ପ୍ରତି ତୀକ୍ଷ୍ଣ ବାଣ ପ୍ରୟୋଗ କରି ମୁଁ କିପରି ଯୁଦ୍ଧ କରିବି? ଆପଣ କାହିଁକି ମୋତେ ଏହି ଘୋର ପାପରେ ପ୍ରବୃତ୍ତ କରାଉଛନ୍ତି?''

**ଗୁରୂନହତ୍ୱା ହି ମହାନୁଭାବାନ୍**
**ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହ ଲୋକେ।**
**ହତ୍ୱାର୍ଥକାମାଂସ୍ତୁ ଗୁରୂନିହୈବ**
**ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍॥ ୫ ॥**

**ଅନ୍ୱୟ –** **ମହାନୁଭାବାନ୍** = ମହାନୁଭାବ; **ଗୁରୂନ୍** = ଗୁରୁଜନମାନଙ୍କୁ; **ଅହତ୍ୱା** = ନ ମାରି (ମୁଁ); **ଇହଲୋକେ** = ଏହି ଲୋକରେ; **ଭୈକ୍ଷ୍ୟମ୍** = ଭିକ୍ଷାନ୍ନ; **ଅପି** = ମଧ୍ୟ; **ଭୋକ୍ତୁମ୍** = ଭୁଞ୍ଜିବାକୁ; **ଶ୍ରେୟଃ** = କଲ୍ୟାଣକାରକ (ବୋଲି ମନେ କରୁଛି); **ହି** = କାରଣ; **ଗୁରୂନ୍** = ଗୁରୁଜନମାନଙ୍କୁ; **ହତ୍ୱା** = ମାରିଲେ; **(ଅପି)** = ମଧ୍ୟ; **ଇହ** = ଏହି ଲୋକରେ; **ରୁଧିରପ୍ରଦିଗ୍ଧାନ୍** = ରକ୍ତସିକ୍ତ; **ଅର୍ଥକାମାନ୍** = ଅର୍ଥ ଓ କାମରୂପକ; **ଭୋଗାନ୍**, **ଏବ** = ଭୋଗମାନଙ୍କୁ ହିଁ; **ତୁ** = ତ; **ଭୁଞ୍ଜୀୟ** = ଭୋଗ କରିବି।

**ତେଣୁ ଏହି ମହାନୁଭବ ଗୁରୁଜନମାନଙ୍କୁ ମାରିବା ଅପେକ୍ଷା ମୁଁ ଏହି ଲୋକରେ ଭିକ୍ଷାନ୍ନଦ୍ୱାରା ଜୀବିକା ନିର୍ବାହ କରିବା କଲ୍ୟାଣକର ବୋଲି ମନେ କରୁଛି; କାରଣ ଗୁରୁଜନମାନଙ୍କୁ ମାରିଲେ ଏହି ଲୋକରେ ସେମାନଙ୍କ ରକ୍ତସିକ୍ତ ଅର୍ଥ ଓ କାମରୂପକ ଭୋଗସାମଗ୍ରୀ ହିଁ ତ ଭୋଗ କରିବି॥ ୫ ॥**

**ପ୍ରଶ୍ନ –** **ମହାନୁଭାବାନ୍** ବିଶେଷଣ ସହିତ **ଗୁରୂନ୍** ପଦ ଏଠାରେ କାହାର ବାଚକ?

**ଉତ୍ତର –** ଦୁର୍ଯ୍ୟୋଧନଙ୍କ ସେନାମଧ୍ୟରେ ଯେଉଁ ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଆଦି ଅର୍ଜୁନଙ୍କ ଆଚାର୍ଯ୍ୟ ତଥା ବାହ୍ଲୀକ, ଭୀଷ୍ମ, ସୋମଦତ୍ତ, ଭୂରିଶ୍ରବା ଓ ଶଲ୍ୟ ଆଦି ଗୁରୁଜନ ଥିଲେ, ଯେଉଁମାନଙ୍କର ମନୋଭାବ ଅତ୍ୟନ୍ତ ଉଦାର ଓ ମହାନ୍ ଥିଲା, **ମହାନୁଭାବାନ୍** ବିଶେଷଣ ସହିତ **ଗୁରୂନ୍** ପଦଟି ହେଉଛି ସେହି ଶ୍ରେଷ୍ଠ ପୂଜ୍ୟ ପୁରୁଷମାନଙ୍କର ବାଚକ।

**ପ୍ରଶ୍ନ –** ଏଠାରେ **ଭୈକ୍ଷ୍ୟମ୍** ସହିତ **ଅପି** ପଦ ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି?

**ଉତ୍ତର –** ଯଦ୍ୟପି କ୍ଷତ୍ରିୟମାନଙ୍କ ପାଇଁ ଭିକ୍ଷାନ୍ନରେ ଶରୀର ନିର୍ବାହ କରିବା ନିନ୍ଦନୀୟ, ତଥାପି ଗୁରୁଜନମାନଙ୍କୁ ସଂହାର କରି ରାଜ୍ୟ ଭୋଗ କରିବା ଅପେକ୍ଷା ସେହି ନିନ୍ଦନୀୟ କାର୍ଯ୍ୟ ମଧ୍ୟ ଭଲ– ଏଠାରେ ଏହି ଭାବ ଦେଖାଇଦିଆଯାଇଛି।

**ପ୍ରଶ୍ନ –** **ଭୋଗାନ୍** ସହିତ **ରୁଧିରପ୍ରଦିଗ୍ଧାନ୍** ଏବଂ **ଅର୍ଥକାମାନ୍** ବିଶେଷଣ ପ୍ରୟୋଗର ତଥା ଏବ ଅବ୍ୟୟ ପ୍ରୟୋଗର ଅଭିପ୍ରାୟ କଣ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ପ୍ରକାଶ କରିଛନ୍ତି ଯେ, ଗୁରୁଜନମାନଙ୍କୁ ମାରିବା ସର୍ବଥା ଅନୁଚିତ। ସେମାନଙ୍କୁ ମାରିଲେ ମିଳିବ ବା କଣ? ତାହାଦ୍ୱାରା ମୁକ୍ତି ମିଳିବ ନାହିଁ, କି ଧର୍ମର ସିଦ୍ଧି ହେବ ନାହିଁ; କେବଳ ଇହଲୋକରେ ଅର୍ଥ ଏବଂ କାମରୂପକ ତୁଚ୍ଛ ଭୋଗ ହିଁ ମିଳିବ, ଯାହାର ମୂଲ୍ୟ ଏହିସବୁ ଗୁରୁଜନମାନଙ୍କ ଜୀବନ ତୁଳନାରେ କିଛି ବି ନୁହେଁ। ଆହୁରି ମଧ୍ୟ ତାହା ଗୁରୁଜନମାନଙ୍କ ହତ୍ୟାର ଫଳସ୍ୱରୂପ ମିଳିଥିବାରୁ, ଏକପ୍ରକାରେ ସେମାନଙ୍କ ରକ୍ତରେ ହିଁ ରଞ୍ଜିତ ହୋଇଥିବ। ଅତଏବ ଏପ୍ରକାର ଭୋଗ

ପ୍ରାପ୍ତ ହେବାପାଇଁ ଗୁରୁଜନମାନଙ୍କୁ ବଧ କରିବା ଆଦୌ ଉଚିତ ନୁହେଁ।

**ପ୍ରଶ୍ନ –** **ଅର୍ଥକାମାନ୍** ପଦକୁ ଯଦି **ଗୁରୂନ୍**ପଦର ବିଶେଷଣ ବୋଲି ଧରିନିଆଯାଏ, ତେବେ କ୍ଷତି କଣ ?

**ଉତ୍ତର –** **ଗୁରୂନ୍** ସହିତ **ମହାନୁଭାବାନ୍** ବିଶେଷଣ ରହି ନ ଥିଲେ, ଏପରି ମଧ୍ୟ ଧରିନିଆଯାଇପାରନ୍ତା; କିନ୍ତୁ ସେହି ଏକା ଶ୍ଳୋକରେ ଅର୍ଜୁନ ଗୁରୁଙ୍କୁ ପ୍ରଥମେ ମହାନୁଭାବ ବୋଲି କହିଥିଲେ, ସେ ସେମାନଙ୍କୁ ଯେ ପରେ **ଅର୍ଥକାମାନ୍** ଅର୍ଥାତ୍ ଧନଲୋଭୀ କହିବେ, ତାହା କଳ୍ପନା କରିବା ଉଚିତ ହେଉ ନାହିଁ। ଦୁଇ ବିଶେଷଣ ପରସ୍ପରବିରୋଧୀ ବୋଲି ଜଣାପଡ଼ିଯାଉଛି। ତେଣୁ **ଅର୍ଥକାମାନ୍** ପଦକୁ **ଗୁରୂନ୍**ର ବିଶେଷଣ ବୋଲି ସ୍ୱୀକାର କରାଯାଇ ନାହିଁ।

**ସମ୍ବନ୍ଧ –** ଏପରିଭାବରେ ନିଜର ସିଦ୍ଧାନ୍ତ କହିଦେବା ପରେ ମଧ୍ୟ ଯେତେବେଳେ ଅର୍ଜୁନଙ୍କର ସନ୍ତୋଷ ହେଲା ନାହିଁ ଓ ନିଜର ସିଦ୍ଧାନ୍ତରେ ଶଙ୍କା ଉତ୍ପନ୍ନ ହେଲା, ସେତେବେଳେ ସେ ପୁନର୍ବାର କହୁଛନ୍ତି –

**ନ ଚୈତଦ୍ୱିଦ୍ମଃ କତରନ୍ନୋ ଗରୀୟୋ**
**ଯଦ୍ୱା ଜୟେମ ଯଦି ବା ନୋ ଜୟେୟୁଃ।**
**ଯାନେବ ହତ୍ୱା ନ ଜିଜୀବିଷାମ–**
**ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ ॥ ୬ ॥**

**ଅନ୍ୱୟ –** **ନଃ** = ଆମର (ଯୁଦ୍ଧ କରିବା କିମ୍ବା ନ କରିବା); **କତରତ୍** = ଏହି ଦୁଇଟି ମଧ୍ୟରୁ କେଉଁଟି; **ଗରୀୟଃ** = ଶ୍ରେଷ୍ଠ; **(ନ ବିଦ୍ମଃ)** = ଜାଣି ନାହୁଁ; **ଯଦ୍**, **ବା**, **ଜୟେମ** = ଆମେ ସେମାନଙ୍କୁ ଜିତିବୁ; **ଯଦି**, **ବା** = ଅଥବା; **ନଃ** = ଆମକୁ; **ଜୟେୟୁଃ** = (ସେମାନେ) ଜିତିବେ; **ଏତତ୍**, **ଚ**, **ନ**, **ବିଦ୍ମଃ** = ତାହା ମଧ୍ୟ ଜାଣି ନାହୁଁ; **ଯାନ୍** = ଯେଉଁମାନଙ୍କୁ; **ହତ୍ୱା** = ମାରି; **ନ**, **ଜିଜୀବିଷାମଃ** = ଆମେ ବଞ୍ଚିବାକୁ ବି ଇଚ୍ଛା କରୁ ନା (ଆମର ଆତ୍ମୀୟ); **ତେ**, **ଧାର୍ତ୍ତରାଷ୍ଟ୍ରାଃ** **ଏବ** = ଧୃତରାଷ୍ଟ୍ରଙ୍କର ସେହି ପୁତ୍ରମାନେ ହିଁ; **ପ୍ରମୁଖେ**, **ଅବସ୍ଥିତାଃ** = ଯୁଦ୍ଧପାଇଁ ସମ୍ମୁଖରେ ଠିଆ ହୋଇଛନ୍ତି।

**ଆମର ଯୁଦ୍ଧ କରିବା ଓ ନ କରିବା — ଏହି ଦୁଇଟି ମଧ୍ୟରୁ କେଉଁଟି ଶ୍ରେଷ୍ଠ, ଆମେ ତାହା ଜାଣି ନାହୁଁ; ଆମେ ସେମାନଙ୍କୁ ଜିତିବୁ, କି ସେମାନେ ଆମକୁ ଜିତିବେ, ତାହା ମଧ୍ୟ ଜାଣି ନାହୁଁ, ଯେଉଁମାନଙ୍କୁ ମାରି ଆମେ ବଞ୍ଚିବାକୁ ଇଚ୍ଛା ମଧ୍ୟ କରୁ ନାହୁଁ, ଆମର ସେହି ଆତ୍ମୀୟ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ହିଁ ଆମ ସମ୍ମୁଖରେ ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି ॥ ୬ ॥**

**ପ୍ରଶ୍ନ –** ''ଆମ ପକ୍ଷରେ ଯୁଦ୍ଧ କରିବା ଶ୍ରେଷ୍ଠ, ନା ନ କରିବା ଶ୍ରେଷ୍ଠ, ତାହା ଆମେ ଜାଣି ନାହୁଁ'' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଯେଉଁ ଭାବ ପ୍ରକାଶ କରିଛନ୍ତି, ତାହା ହେଲା : ଆମ ପକ୍ଷରେ ଯୁଦ୍ଧ କରିବା ଶ୍ରେଷ୍ଠ, ନା ଯୁଦ୍ଧ ତ୍ୟାଗ କରିବା ଶ୍ରେଷ୍ଠ – ଏହି ଦୁଇଟି ମଧ୍ୟରୁ କେଉଁଟି ଠିକ୍, ତାହା ଆମେ ନିର୍ଣ୍ଣୟ କରିପାରୁ ନାହୁଁ; କାରଣ ଯୁଦ୍ଧ କରିବା କ୍ଷତ୍ରିୟର ଧର୍ମ ବୋଲି କୁହାଯାଇଛି; ପୁଣି ତାହାର ଫଳସ୍ୱରୂପ ଯେଉଁ କୁଳନାଶ ହେବ, ତାହା ମହାଦୋଷ ବୋଲି କୁହାଯାଉଛି।

**ପ୍ରଶ୍ନ –** 'ଆମେ ଜିତିବୁ, ନା ଆମକୁ ସେମାନେ ଜିତିବେ' – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ବାକ୍ୟରେ ଅର୍ଜୁନ କହୁଛନ୍ତି, ''ଯଦି ଯୁଦ୍ଧ କରିବା ହିଁ ଶ୍ରେଷ୍ଠ ବୋଲି ଆମେ ମାନିନେବା, ତେବେ ବିଜୟ ଆମର ହେବ, ନା ସେମାନଙ୍କର ହେବ, ତାହା ମଧ୍ୟ ଜଣା ନାହିଁ।''

**ପ୍ରଶ୍ନ –** 'ଯେଉଁମାନଙ୍କୁ ମାରି ଆମେ ବଞ୍ଚିବାକୁ ମଧ୍ୟ ଇଚ୍ଛା କରୁ ନାହୁଁ, ଆମର ସେହି ଆତ୍ମୀୟ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଆମ ଆଗରେ ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି', — ଏହି ବାକ୍ୟର ଭାବ କଣ ?

**ଉତ୍ତର —** ଏହି ବାକ୍ୟରେ ଅର୍ଜୁନ କହିଛନ୍ତି, "ଯଦି ଧରିନିଆଯାଏ ଯେ, ଆମର ହିଁ ବିଜୟ ହେବ, ତେବେ ମଧ୍ୟ ଯୁଦ୍ଧ କରିବା ଶ୍ରେଷ୍ଠ ବୋଲି ଜଣାପଡୁ ନାହିଁ; କାରଣ ଯେଉଁମାନଙ୍କୁ ମାରି ଆମେ ବଞ୍ଚିବାକୁ ବି ଇଚ୍ଛା କରୁ ନାହୁଁ, ସେହି ଦୁର୍ଯ୍ୟୋଧନାଦି ଆମର ଭାଇମାନେ ମରିବାକୁ ପ୍ରସ୍ତୁତ ହୋଇ ଆମ ଆଗରେ ଠିଆ ହୋଇଛନ୍ତି। ଅତଏବ ଯଦି ଆମର ହିଁ ବିଜୟ ହେବ, ତେବେ ଏମାନଙ୍କୁ ମାରିବା ପରେ ହିଁ ହେବ। ତେଣୁ ଆମ ପକ୍ଷରେ କଣ କରିବା ଉଚିତ, ତାହା ଆମେ ଠିକ ନିର୍ଣ୍ଣୟ କରିପାରୁନାହୁଁ।"

**ସମ୍ବନ୍ଧ —** *କର୍ତ୍ତବ୍ୟ ନିର୍ଣ୍ଣୟ କରିବାରେ ନିଜର ଅସାମର୍ଥ୍ୟ ପ୍ରକାଶ କରିବା ପରେ, ଅର୍ଜୁନ ବର୍ତ୍ତମାନ ଭଗବାନଙ୍କର ଶରଣ ଗ୍ରହଣ କରି ନିଜର ନିଶ୍ଚିତ କର୍ତ୍ତବ୍ୟ କଣ, ତାହା ନିର୍ଦ୍ଦେଶ କରିବାକୁ ତାଙ୍କୁ ପ୍ରାର୍ଥନା କରୁଛନ୍ତି—*

**କାର୍ପଣ୍ୟଦୋଷୋପହତସ୍ୱଭାବଃ**
**ପୃଚ୍ଛାମି ତ୍ୱାଂ ଧର୍ମସଂମୂଢଚେତାଃ।**
**ଯଦ୍ ଶ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ**
**ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍॥ ୭ ॥**

**ଅନ୍ୱୟ —** **କାର୍ପଣ୍ୟଦୋଷୋପହତସ୍ୱଭାବଃ** = କାପୁରୁଷତାରୂପକ ଦୋଷହେତୁ ନଷ୍ଟସ୍ୱଭାବଯୁକ୍ତ (ତଥା); **ଧର୍ମସମ୍ମୂଢଚେତାଃ** = ଧର୍ମ ବିଷୟରେ ମୋହିତଚିତ୍ତ ହୋଇଥିବା (ମୁଁ); **ତ୍ୱାମ୍** = ଆପଣଙ୍କୁ; **ପୃଚ୍ଛାମି** = ପଚାରୁଅଛି (ଯେ); **ଯତ୍** = ଯାହା କରିବା; **ନିଶ୍ଚିତମ୍** = ନିଶ୍ଚିତଭାବରେ; **ଶ୍ରେୟଃ** = କଲ୍ୟାଣପ୍ରଦ; **ସ୍ୟାତ୍** = ଅଟେ; **ତତ୍** = ତାହା; **ମେ** = ମୋତେ; **ବ୍ରୂହି** = କହନ୍ତୁ (କାରଣ); **ଅହମ୍** = ମୁଁ; **ତେ** = ଆପଣଙ୍କର; **ଶିଷ୍ୟଃ** = ଶିଷ୍ୟ (ତେଣୁ); **ତ୍ୱାମ୍** = ଆପଣଙ୍କୁ; **ପ୍ରପନ୍ନମ୍** = ଶରଣାଗତ ହୋଇଥିବା; **ମାମ୍** = ମୋତେ; **ଶାଧି** = ଉପଦେଶ ଦିଅନ୍ତୁ

**ତେଣୁ କାପୁରୁଷତାରୂପକ ଦୋଷହେତୁ ନଷ୍ଟସ୍ୱଭାବଯୁକ୍ତ ତଥା ଧର୍ମବିଷୟରେ ମୋହିତଚିତ୍ତ ହୋଇଥିବା ମୁଁ ଆପଣଙ୍କୁ ପଚାରୁଛି, ମୋ ପକ୍ଷରେ କ'ଣ କରିବା ନିଶ୍ଚିତ କଲ୍ୟାଣକର, ତାହା ମୋତେ କହନ୍ତୁ; କାରଣ ମୁଁ ଆପଣଙ୍କର ଶିଷ୍ୟ। ମୋପରି ଶରଣାଗତକୁ ଆପଣ ଉପଦେଶ ଦିଅନ୍ତୁ॥ ୭ ॥**

**ପ୍ରଶ୍ନ — କାର୍ପଣ୍ୟଦୋଷ** କ'ଣ? ଏବଂ ଅର୍ଜୁନ ନିଜକୁ ଯେଉଁ ଉପହତସ୍ୱଭାବ ବୋଲି କହିଛନ୍ତି, ତାହାର ତାତ୍ପର୍ଯ୍ୟ କଣ?

**ଉତ୍ତର —** 'କୃପଣ' ଶବ୍ଦ ବିଭିନ୍ନ ଅର୍ଥରେ ବ୍ୟବହୃତ ହୁଏ ଯଥା— (୧) ଯାହା ପାଖରେ ପର୍ଯ୍ୟାପ୍ତ ଧନ ଥାଏ, କିନ୍ତୁ ଧନରେ ପ୍ରବଳ ଆସକ୍ତିଯୋଗୁଁ ଏବଂ ଲୋଭହେତୁ ଯେ ଦାନ, ଭୋଗାଦିରେ ନ୍ୟାୟସଙ୍ଗତ ଓ ଉପଯୁକ୍ତ ସମୟରେ ବି ଗୋଟିଏ ହେଲେ ପଇସା ଖର୍ଚ୍ଚ କରେ ନାହିଁ, ସେହି ଅତିଲୋଭୀ ଲୋକକୁ କୃପଣ କହନ୍ତି।

(୨) ମନୁଷ୍ୟ ଜୀବନର ଶାସ୍ତ୍ରସମ୍ମତ ଏବଂ ସନ୍ଥଜନାନୁମୋଦିତ ପ୍ରଧାନ ଲକ୍ଷ୍ୟ ହେଲା, 'ଭଗବାନଙ୍କ ତତ୍ତ୍ୱକୁ ଜାଣି ତାହା ପ୍ରାପ୍ତ କରିବା'; ଯେଉଁ ମନୁଷ୍ୟ ସେହି ଲକ୍ଷ୍ୟକୁ ଭୁଲି ବିଷୟଭୋଗରେ ନିଜର ଜୀବନକୁ ନଷ୍ଟ କରିଦିଏ, ସେହି ମୂର୍ଖକୁ ବି କୃପଣ କୁହାଯାଏ। ଶ୍ରୁତି କହନ୍ତି—

**ଯୋ ବା ଏତଦକ୍ଷରଂ ଗାର୍ଗ୍ୟବିଦିତ୍ୱାଽସ୍ମାଲ୍ଲୋକାତ୍ପ୍ରୈତି ସ କୃପଣଃ।**

(ବୃହ/ଉ/ ୩/୮/୧୦)

'ହେ ଗାର୍ଗି! ଯେ କେହି ହେଉ ନା କାହିଁକି, ଏହି ଅବିନାଶୀ ପରମାତ୍ମାଙ୍କୁ ନ ଜାଣି ସେ ଯଦି ଇହଲୋକରେ ମରିଯାଏ, ତେବେ ସେ 'କୃପଣ'।'

ଭଗବାନ୍ ମଧ୍ୟ ଭୋଗ ଓ ଐଶ୍ୱର୍ଯ୍ୟରେ ଆସକ୍ତ ଫଳକାମନାଯୁକ୍ତ ମନୁଷ୍ୟମାନଙ୍କୁ 'କୃପଣ' ବୋଲି କହିଛନ୍ତି, ଯଥା :— **'କୃପଣାଃ ଫଳହେତବଃ'** (୨/୪୯)।

(୩) ସାଧାରଣତଃ ଦୀନସ୍ୱଭାବର ବାଚକ ମଧ୍ୟ 'କୃପଣ'। ଏଠାରେ ଅର୍ଜୁନଙ୍କ ଠାରେ ଯେଉଁ 'କାର୍ପଣ୍ୟ' ଦେଖାଯାଉଛି, ତାହା ଲୋଭଜନିତ କୃପଣତା ନୁହେଁ, କି ଭୋଗାସକ୍ତିରୂପକ କୃପଣତା ନୁହେଁ; କାରଣ ଅର୍ଜୁନ ସ୍ୱଭାବତଃ ଅତ୍ୟନ୍ତ ଉଦାର, ଦାନୀ ଏବଂ ଇନ୍ଦ୍ରିୟବିଜୟୀ ପୁରୁଷ। ଏଠାରେ ବି ସେ ସ୍ପଷ୍ଟଭାଷାରେ କହିଛନ୍ତି, 'ମୋର ନିଜପାଇଁ ରାଜ୍ୟ, ବିଜୟ ଓ ସୁଖଲାଭର ଆକାଙ୍କ୍ଷା ନାହିଁ। ଯେଉଁମାନଙ୍କ ପାଇଁ ଏସବୁ ଆବଶ୍ୟକ, ସେହି ଆତ୍ମୀୟ ସ୍ୱଜନମାନେ ମରିବାକୁ ଠିଆ ହୋଇଛନ୍ତି। ଏହି ପୃଥିବୀର କଥା କ'ଣ କହିବା, ତିନିଲୋକର ରାଜ୍ୟ ଲାଭପାଇଁ ମଧ୍ୟ ମୁଁ ଦୁର୍ଯ୍ୟୋଧନାଦିଙ୍କୁ ମାରିବାକୁ ଇଚ୍ଛା କରୁନାହିଁ (୧/୩୨-୩୫)। ସମସ୍ତ ଭୂମଣ୍ଡଳର ନିଷ୍କଣ୍ଟକ ରାଜ୍ୟ ଏବଂ ଦେବତାମାନଙ୍କର ଆଧିପତ୍ୟ ମଧ୍ୟ ମୋତେ ଶୋକରହିତ କରିପାରିବ ନାହିଁ (୨/୮)।' ଯେ ଏତେ ତ୍ୟାଗ କରିବା ପାଇଁ ପ୍ରସ୍ତୁତ, ସେ ଲୋଭୀ ବା ଭୋଗାସକ୍ତ ହୋଇପାରିବ ନାହିଁ। ତେଣୁ ଏହି ପ୍ରସଙ୍ଗରେ ଏପରି ଅର୍ଥ ଗ୍ରହଣ କରିବା ସର୍ବଥା ଅନୁଚିତ। ଏଠାରେ ଅର୍ଜୁନଙ୍କର ଏହି କାର୍ପଣ୍ୟ ଏକପ୍ରକାର ଦୈନ୍ୟ ହିଁ ଅଟେ, ଯାହା କି କରୁଣାଯୁକ୍ତ କାପୁରୁଷତା ଏବଂ ଶୋକରୂପରେ ପ୍ରକଟ ହୋଇଛି। ସଂଜୟ ପ୍ରଥମ ଶ୍ଳୋକରେ **କୃପୟାବିଷ୍ଟମ୍** ପଦ ପ୍ରୟୋଗ କରି ଏହି କରୁଣାଜନିତ କାପୁରୁଷତା ସୂଚିତ କରିଦେଇଛନ୍ତି। ତୃତୀୟ ଶ୍ଳୋକରେ ସ୍ୱୟଂ ଶ୍ରୀ ଭଗବାନ୍ ମଧ୍ୟ **କ୍ଲୈବ୍ୟମ୍** ପଦ ପ୍ରୟୋଗ କରି ଏହାର ପୁଷ୍ଟି କରିଛନ୍ତି। ଅତଏବ ଏହା ପ୍ରତୀତ ହୁଏ ଯେ, ଅର୍ଜୁନଙ୍କର ଏହି କାର୍ପଣ୍ୟ ବନ୍ଧୁନାଶ ଆଶଙ୍କାରୁ ଉତ୍ପନ୍ନ କରୁଣାଯୁକ୍ତ କାର୍ପଣ୍ୟ ହିଁ ଅଟେ।

ଅର୍ଜୁନ ଥିଲେ ଆଦର୍ଶ କ୍ଷତ୍ରିୟ, ସ୍ୱଭାବତଃ ଶୂରବୀର; ତେଣୁ ତାହା ଯେକୌଣସି କାରଣରୁ ହୋଇଥାଉ ନା କାହିଁକି, ତାଙ୍କ ପାଇଁ କାପୁରୁଷତା ଏକ ଦୋଷ ହିଁ ଅଟେ। ତେଣୁ ଅର୍ଜୁନ ଏହାକୁ **କାର୍ପଣ୍ୟଦୋଷ** ବୋଲି କହିଛନ୍ତି।

ଏହି **କାର୍ପଣ୍ୟଦୋଷ**ଦ୍ୱାରା ଅର୍ଜୁନଙ୍କର ଅତୁଳନୀୟ ଶୌର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, ଚାତୁର୍ଯ୍ୟ, ସାହସ ଏବଂ ପରାକ୍ରମସମ୍ପନ୍ନ କ୍ଷତ୍ରିୟସ୍ୱଭାବ ନଷ୍ଟସମ ହୋଇଗଲା। ତେଣୁ ତାଙ୍କର ଅଙ୍ଗ ଶିଥିଳ ହୋଇଯାଉଥିଲା; ମୁଖ ଶୁଖିଯାଉଥିଲା; ଅଙ୍ଗପ୍ରତ୍ୟଙ୍ଗ ଥରୁଥିଲା; ଶରୀର ଜଳିଗଲାପରି ଲାଗୁଥିଲା ଏବଂ ମନ ଭ୍ରମିତ ହୋଇଯାଉଥିଲା। କରୁଣାଯୁକ୍ତ କାପୁରୁଷତାର ଆବେଶରେ ଅର୍ଜୁନ ନିଜଠାରେ ଏହିସବୁ ସ୍ୱଭାବବିରୁଦ୍ଧ ଲକ୍ଷଣମାନ ଦେଖି କହୁଛନ୍ତି, "ମୁଁ କାର୍ପଣ୍ୟଦୋଷରେ ଉପହତ-ସ୍ୱଭାବ ହୋଇଯାଇଛି"।

**ପ୍ରଶ୍ନ –** ଅର୍ଜୁନ ନିଜକୁ **ଧର୍ମସଂମୂଢଚେତାଃ** ବୋଲି କାହିଁକି କହିଛନ୍ତି ?

**ଉତ୍ତର –** ଧର୍ମ-ଅଧର୍ମ ବା କର୍ତ୍ତବ୍ୟ-ଅକର୍ତ୍ତବ୍ୟକୁ ଯଥାର୍ଥ ନିର୍ଣ୍ଣୟ କରିବାରେ ଯାହାଙ୍କର ଅନ୍ତଃକରଣ ସର୍ବଥା ଅସମର୍ଥ ହୋଇଯାଇଛି, ତାଙ୍କୁ **ଧର୍ମସଂମୂଢଚେତାଃ** କହନ୍ତି। ଅର୍ଜୁନଙ୍କ ଚିତ୍ତ ଏହି ସମୟରେ ଭୟାନକ ଧର୍ମସଙ୍କଟରେ ପଡ଼ିଯାଇଛି। ସେ ଏକ ଆଡ଼େ ପ୍ରଜାପାଳନ, କ୍ଷାତ୍ରଧର୍ମ, ସ୍ୱତ୍ୱସଂରକ୍ଷଣ ଆଦି ଦୃଷ୍ଟିରୁ ଯୁଦ୍ଧକୁ ଧର୍ମ ବୋଲି ବୁଝି ସେଥିରେ ପ୍ରବୃତ୍ତ ହେବା ଉଚିତ ବୋଲି ଭାବୁଛନ୍ତି ଏବଂ ଅନ୍ୟ ଆଡ଼େ ତାଙ୍କ ଚିତ୍ତର ବର୍ତ୍ତମାନ କାର୍ପଣ୍ୟବୃତ୍ତି ତାଙ୍କୁ ଯୁଦ୍ଧର ନାନାପ୍ରକାର ଭୟାବହ ପରିଣାମ ବିଷୟରେ ସୂଚାଇଦେଇ ଭିକ୍ଷାବୃତ୍ତି, ସନ୍ନ୍ୟାସ ଓ ବନବାସରେ ପ୍ରବୃତ୍ତ କରାଇବାକୁ ବସିଛି। ଚିତ୍ତ ଏପରି କରୁଣାସିକ୍ତ ହୋଇଯାଇଛି ଯେ, ସେ ବୁଦ୍ଧିକୁ କୌଣସି ସିଦ୍ଧାନ୍ତରେ ପହଞ୍ଚାଇପାରୁ ନାହାନ୍ତି। ତେଣୁ ନିଜକୁ କିଂକର୍ତ୍ତବ୍ୟବିମୂଢ଼ ଦେଖି ଅର୍ଜୁନ ଏପରି କହୁଛନ୍ତି।

**ପ୍ରଶ୍ନ –** **ନିଶ୍ଚିତଂ ଶ୍ରେୟଃ**ର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଭୀଷ୍ମ-ଦ୍ରୋଣ-କର୍ଣ୍ଣାଦି ବିଶ୍ୱବିଖ୍ୟାତ ଅଜେୟ ଶୂରବୀର-ସଂରକ୍ଷିତ କୌରବ ସେନାକୁ ନିଜର ସୈନ୍ୟବାହିନୀ ଅପେକ୍ଷା ଅତି ବିଶାଳ ହୋଇଥିବା ଦେଖି ଅର୍ଜୁନ ଯେ ଭୟ କରିଗଲେ ଏବଂ ଯୁଦ୍ଧରେ ନିଜର ବିଜୟ ସମ୍ଭାବନା ନେଇ ନିରାଶ ହୋଇଯିବାରୁ ଯୁଦ୍ଧ କଲେ ନିଜର କଲ୍ୟାଣ ହେବ, ନା ନ କଲେ, ତାହା ଜାଣିବା ଉଦ୍ଦେଶ୍ୟରେ ସେ ଯେ **ଶ୍ରେୟଃ** ଶବ୍ଦ ପ୍ରୟୋଗ କରିଛନ୍ତି ଓ ଜୟପରାଜୟ ସମ୍ବନ୍ଧରେ ଗୋଟିଏ ନିଶ୍ଚିତ ସିଦ୍ଧାନ୍ତ ଦେବାକୁ ଯେ ଭଗବାନଙ୍କୁ ପଚାରିଛନ୍ତି, ସେସବୁ ଏଠାରେ ଆସୁ ନାହିଁ। ଏଠାରେ ତ ତାଙ୍କ ଚିତ୍ତରେ ବନ୍ଧୁସ୍ନେହ ଜାଗ୍ରତ ହୋଇଛି ଏବଂ ବନ୍ଧୁନାଶଜନିତ ଏକ ବିରାଟ ପାପର ସମ୍ଭାବନା ଦେଖାଯାଉଛି; ସେପରି ପାପ ପରମକଲ୍ୟାଣରେ ବିରାଟ ପ୍ରତିବନ୍ଧକ ସୃଷ୍ଟି କରିବ ବୋଲି ସେ ଭାବୁଛନ୍ତି ଏବଂ ଅନ୍ୟ ଏକ ଦିଗରୁ ମନରେ ଭାବନା ଜାଗ୍ରତ ହେଉଛି ଯେ, କ୍ଷତ୍ରିୟଧର୍ମସମ୍ମତ ଯୁଦ୍ଧକୁ ସେ ତ୍ୟାଗ କରିଦେଉଛନ୍ତି; ତାହା ଏକ ଅଧର୍ମ ହୋଇ ତାଙ୍କର ପରମକଲ୍ୟାଣର ପ୍ରତିବନ୍ଧକ ହେବ ନାହିଁ ତ !

ତେଣୁ ସେ 'ନିଶ୍ଚିତ ଶ୍ରେୟ' କଥା ପଚାରିଛନ୍ତି। ତାଙ୍କର ସେହି 'ନିଶ୍ଚିତ ଶ୍ରେୟ' ଜୟ-ପରାଜୟ ସହିତ ସମ୍ବନ୍ଧ ରଖେ ନାହିଁ। ତାହାର ଲକ୍ଷ୍ୟ ହେଉଛି ଭଗବଦ୍‌ପ୍ରାପ୍ତିରୂପକ ପରମକଲ୍ୟାଣ। ଅର୍ଜୁନ ଏଠାରେ କହୁଛନ୍ତି, 'ଭଗବନ୍! ମୁଁ କର୍ତ୍ତବ୍ୟ ନିର୍ଣ୍ଣୟ କରିବାକୁ ଅସମର୍ଥ। ମୋର ପରମ କଲ୍ୟାଣର ସାଧନ କଣ, ଆପଣ ନିଶ୍ଚିତଭାବରେ ତାହା କହିଦିଅନ୍ତୁ।'

**ପ୍ରଶ୍ନ** – 'ମୁଁ ଆପଣଙ୍କର ଶିଷ୍ୟ; ମୋପରି ଶରଣାଗତକୁ ଆପଣ ଶିକ୍ଷା ଦିଅନ୍ତୁ' – ଏକଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରିୟ ସଖା ଥିଲେ। ଆଧ୍ୟାତ୍ମିକ ତତ୍ତ୍ୱ ଅଲଗା ହୋଇପାରେ, କିନ୍ତୁ ବ୍ୟବହାରରେ ଅର୍ଜୁନଙ୍କ ସହିତ ଭଗବାନଙ୍କର ପ୍ରାୟ ସବୁକ୍ଷେତ୍ରରେ ସମସ୍କନ୍ଧ ସମ୍ବନ୍ଧ ରହିଥିଲା। ଖାଇବା, ପିଇବା, ଶୋଇବା ଏବଂ ବସିବା ଉଠିବା ଇତ୍ୟାଦି ସକଳ କ୍ଷେତ୍ରରେ ଭଗବାନ୍ ତାଙ୍କ ସହିତ ସଖାପରି ବ୍ୟବହାର କରୁଥିଲେ। ଭଗବାନଙ୍କର ଶ୍ରେଷ୍ଠତ୍ୱ ପ୍ରତି ମନରେ ଶ୍ରଦ୍ଧା ଓ ସମ୍ମାନ ରହିଥିଲେ ମଧ୍ୟ, ଅର୍ଜୁନ ତାଙ୍କ ସହିତ ସମସ୍କନ୍ଧ ବନ୍ଧୁପରି ବ୍ୟବହାର କରୁଥିଲେ। ବର୍ତ୍ତମାନ ନିଜର ଏପରି ଶୋଚନୀୟ ଦଶା ଦେଖି ଅର୍ଜୁନ ଅନୁଭବ କରୁଛନ୍ତି ଯେ, ଭଗବାନଙ୍କ ସହିତ ସେ ସମସ୍କନ୍ଧଙ୍କ ପରି ବ୍ୟବହାର ପ୍ରଦର୍ଶନ କରିବାର ଯୋଗ୍ୟ ନୁହଁନ୍ତି। ସମସ୍କନ୍ଧ ବ୍ୟବହାରରେ ପରାମର୍ଶ ମିଳେ; ଉପଦେଶ ମିଳେ ନାହିଁ; ପ୍ରେରଣା ମିଳେ କିନ୍ତୁ ବଳପୂର୍ବକ ଅନୁଶାସନ ହୁଏ ନାହିଁ। ଅର୍ଜୁନଙ୍କ କାମ ଆଜି ପରାମର୍ଶ ବା ପ୍ରେରଣାରେ ଚଳିବ ନାହିଁ। ତାଙ୍କର ତ ଆଜି ଗୁରୁ ଆବଶ୍ୟକ, ଯେ କି ଉପଦେଶ ଦେଇ ଏବଂ ବଳପୂର୍ବକ ଅନୁଶାସନ କରି ତାଙ୍କୁ ଶ୍ରେୟମାର୍ଗରେ ଚଳାଇନେବେ ଏବଂ ତାଙ୍କର ଶୋକ, ମୋହକୁ ସର୍ବଥା ନଷ୍ଟ କରି ତାଙ୍କୁ ପରମକଲ୍ୟାଣ ପ୍ରାପ୍ତ କରାଇଦେବେ। ପୁନଶ୍ଚ ଶ୍ରୀକୃଷ୍ଣଙ୍କ ଠାରୁ ବଳି ଗୁରୁ ତାଙ୍କୁ କେଉଁଠୁ ବା ମିଳିବେ! ଶିଷ୍ୟରୂପୀ କ୍ଷେତ୍ର ଯେତେବେଳେ ଉପଦେଶ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେବ, ସେତେବେଳେ ହିଁ ସଦ୍‌ଗୁରୁଙ୍କର ଉପଦେଶାମୃତ ବର୍ଷଣ ହେବ। ତେଣୁ ଅର୍ଜୁନ କହିଛନ୍ତି, ''ଭଗବନ୍! ମୁଁ ଆପଣଙ୍କର ଶିଷ୍ୟ।''

ଶିଷ୍ୟ ବିଭିନ୍ନପ୍ରକାର ହୁଅନ୍ତି। ଯେଉଁ ଶିଷ୍ୟମାନେ ଗୁରୁଙ୍କ ଠାରୁ ଉପଦେଶ ଗ୍ରହଣ କରନ୍ତି ଅଥଚ ନିଜ ପୁରୁଷାର୍ଥର ଅହଙ୍କାର ରଖନ୍ତି ବା ନିଜ ସଦ୍‌ଗୁରୁଙ୍କୁ ଛାଡ଼ି ଅନ୍ୟ ଗୁରୁଙ୍କ ଉପରେ ଭରସା ରଖନ୍ତି, ସେମାନେ ଗୁରୁକୃପାରୁ ଯଥାର୍ଥ ଲାଭ ଉଠାଇପାରନ୍ତି ନାହିଁ। ତେଣୁ ଅର୍ଜୁନ ଶିଷ୍ୟତ୍ୱ ସହିତ ଅନନ୍ୟଶରଣତ୍ୱର ଭାବନା ରଖି କହୁଛନ୍ତି, ''ଭଗବନ୍! ମୁଁ କେବଳ ଶିଷ୍ୟ ନୁହେଁ, ମୁଁ ଆପଣଙ୍କର ଶରଣ ମଧ୍ୟ ନେଇଛି।'' **'ପ୍ରପନ୍ନ'** ଶବ୍ଦର ଭାବାର୍ଥ ହେଲା, ଭଗବାନଙ୍କୁ ଅତ୍ୟନ୍ତ ସମର୍ଥ ଏବଂ ପରମଶ୍ରେଷ୍ଠ ବୋଲି ବୁଝି ତାଙ୍କଠାରେ ନିଜକୁ ପୂର୍ଣ୍ଣ ସମର୍ପଣ କରିଦେବା। ଏହାର ନାମ 'ଶରଣାଗତି', 'ଆତ୍ମନିକ୍ଷେପ' ବା 'ଆତ୍ମସମର୍ପଣ'। ଭଗବାନ୍ ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବାନ୍ତର୍ଯାମୀ, ଅନନ୍ତ ଗୁଣର ଅପାର ସମୁଦ୍ର, ସର୍ବାଧିପତି, ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, ଧର୍ମ, ଶୌର୍ଯ୍ୟ, ଜ୍ଞାନ, ବୈରାଗ୍ୟ ଆଦିର ଅନନ୍ତ ଆକର, କ୍ଳେଶ, କର୍ମ, ସଂଶୟ ଏବଂ ଭ୍ରମାଦିର ସର୍ବଥା ନାଶକାରୀ, ପରମ ପ୍ରେମୀ, ପରମ ସୁହୃଦ୍, ପରମ ଆତ୍ମୀୟ, ପରମ ଗୁରୁ ଏବଂ ପରମ ମହେଶ୍ୱର ଅଟନ୍ତି। ଏପରି ବିଶ୍ୱାସ କରି ନିଜକୁ ସର୍ବଥା ନିରାଶ୍ରୟ, ନିରବଲମ୍ବ, ନିର୍ବୁଦ୍ଧି, ନିର୍ବଳ ଓ ନିଃସତ୍ତ୍ୱ ବୋଲି ମାନି ତାଙ୍କର ଆଶ୍ରୟ, ଅବଲମ୍ବନ, ଜ୍ଞାନ, ଶକ୍ତି, ସତ୍ତ୍ୱ ଏବଂ ଅତୁଳନୀୟ ଶରଣାଗତବତ୍ସଳତାକୁ ଦୃଢ଼ ଓ ଅନନ୍ୟ ଭରସା କରି ନିଜକୁ ସବୁପ୍ରକାରେ ଏବଂ ସବୁ ସମୟପାଇଁ ତାଙ୍କରି ଚରଣରେ ଉତ୍ସର୍ଗ କରିଦେବା ଉଚିତ। ପୁଣି ଅପଲକ ନେତ୍ରରେ ତାଙ୍କର ମନୋନୟନାଭିରାମ ମୁଖଚନ୍ଦ୍ରକୁ ନିରୀକ୍ଷଣ କରି ରହିବା ଓ କାଠକଣ୍ଢେଇପରି ନିତ୍ୟନିରନ୍ତର ତାଙ୍କରି ଇଙ୍ଗିତରେ ହିଁ ନାଚିବା ନିମନ୍ତେ ଏକମାତ୍ର ଅଭିଳାଷ ରଖି ତାଙ୍କୁ ଅନନ୍ୟ ଚିନ୍ତନ କରିବା ହିଁ ଭଗବାନଙ୍କର **ପ୍ରପନ୍ନ** ହେବା। ଅର୍ଜୁନ ଇଚ୍ଛା କରୁଛନ୍ତି, ''ମୁଁ ଭଗବାନଙ୍କର ଏହିପରି ଶରଣ ନେଇଯିବି'', ଏବଂ ଏପରି ଭାବି ସେ କହୁଛନ୍ତି, ''ଭଗବନ୍! ମୁଁ ଆପଣଙ୍କର ଶିଷ୍ୟ ଏବଂ ଆପଣଙ୍କ ଶରଣରେ ଆସିଛି; ଆପଣ ମୋତେ ଶିକ୍ଷା ଦିଅନ୍ତୁ।'' **ତେ** ଏବଂ **ତ୍ୱାମ୍** ପଦ ପ୍ରୟୋଗ କରି ଅର୍ଜୁନ ଏହା ହିଁ କହୁଛନ୍ତି। ଅର୍ଜୁନଙ୍କର ଏହି ଶରଣାଗତିର ସର୍ବୋତ୍ତମ ଓ ଶୁଦ୍ଧ ଭାବନା ଯେତେବେଳେ ଅଠର ଅଧ୍ୟାୟର ପଞ୍ଚଷଠି ଓ ଛଅଷଠି ଶ୍ଳୋକରେ ଭଗବାନଙ୍କର ସର୍ବଗୁହ୍ୟତମ ଉପଦେଶ ପ୍ରଭାବରେ ବାସ୍ତବ ଶରଣାଗତିରେ ପରିଣତ ହୋଇଯିବ ଏବଂ ଯେତେବେଳେ ଅର୍ଜୁନ ଭଗବାନଙ୍କ କଥାନୁସାରେ ଚଳିବାକୁ ପ୍ରସ୍ତୁତ ହୋଇଯିବେ, ସେତେବେଳେ ଗୀତାର ଉପଦେଶ ସମାପ୍ତ ହୋଇଯିବ। ବସ୍ତୁତଃ ଏହି ଶ୍ଳୋକରୁ ଗୀତା-ସାଧନାର ଆରମ୍ଭ ହୋଇଛି; ଏହା ହେଉଛି ଉପଦେଶ ଉପକ୍ରମର ବୀଜ ଏବଂ **ସର୍ବଧର୍ମାନ୍ ପରିତ୍ୟଜ୍ୟ** ଶ୍ଳୋକରେ ହିଁ ସାଧନାର ସିଦ୍ଧି ହୋଇଛି; ତାହା ହିଁ ଉପସଂହାର।

**ସମ୍ବନ୍ଧ –** ଏପରିଭାବରେ ଶିକ୍ଷା ଦେବାପାଇଁ ଭଗବାନଙ୍କୁ ପ୍ରାର୍ଥନା କରିସାରି, ଅର୍ଜୁନ ବର୍ତ୍ତମାନ ସେହି ପ୍ରାର୍ଥନାର କାରଣ କହିବାକୁ ଯାଇ ନିଜର ବିଚାର ପ୍ରକାଶ କରୁଛନ୍ତି –

**ନ ହି ପ୍ରପଶ୍ୟାମି ମମାପନୁଦ୍ୟାଦ୍**
**ଯଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍ ।**
**ଅବାପ୍ୟ ଭୂମାବସପତ୍ନମୃଦ୍ଧଂ**
**ରାଜ୍ୟଂ ସୁରାଣାମପି ଚାଧିପତ୍ୟମ୍ ।। ୮ ।।**

**ଅନ୍ୱୟ –** ହି = କାରଣ; ଭୂମୌ = ଭୂଲୋକରେ; ଅସପତ୍ନମ୍ = ନିଷ୍କଣ୍ଟକ; ଋଦ୍ଧମ୍ = ଧନଧାନ୍ୟସମ୍ପନ୍ନ; ରାଜ୍ୟମ୍ = ରାଜ୍ୟକୁ; ଚ = ଏବଂ; ସୁରାଣାମ୍ = ଦେବତାମାନଙ୍କର; ଆଧିପତ୍ୟମ୍ = ଆଧିପତ୍ୟକୁ; ଅବାପ୍ୟ = ପ୍ରାପ୍ତ ହୋଇ; ଅପି = ମଧ୍ୟ (ମୁଁ); ଯତ୍ = ଯାହା; ମମ = ମୋର; ଇନ୍ଦ୍ରିୟାଣାମ୍ = ଇନ୍ଦ୍ରିୟମାନଙ୍କୁ; ଉଚ୍ଛୋଷଣମ୍ = ଶୁଷ୍କ କରିଦେଉଥିବା; ଶୋକମ୍ = ଶୋକକୁ; ଅପନୁଦ୍ୟାଦ୍ = ଦୂର କରିପାରିବ; (ତତ୍) = ସେହି ଉପାୟକୁ; ନ, ପ୍ରପଶ୍ୟାମି = ଦେଖିପାରୁ ନାହିଁ;

**କାରଣ ଇହଲୋକରେ ନିଷ୍କଣ୍ଟକ, ଧନଧାନ୍ୟସମ୍ପନ୍ନ ରାଜ୍ୟ ଏବଂ ଦେବତାମାନଙ୍କର ଆଧିପତ୍ୟ ପାଇଗଲେ ମଧ୍ୟ ମୁଁ ମୋର ଇନ୍ଦ୍ରିୟମାନଙ୍କୁ ଶୁଷ୍କ କରିଦେଉଥିବା ଶୋକକୁ ଦୂର କରିପାରିବାପରି କୌଣସି ଉପାୟ ଦେଖିପାରୁ ନାହିଁ ।। ୮ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଅର୍ଜୁନ ଯାହା କହିଛନ୍ତି, ତା'ର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଅର୍ଜୁନ ଭଗବାନଙ୍କୁ ଶିକ୍ଷା ଦେବା ନିମିତ୍ତ ପ୍ରାର୍ଥନା କରିଛନ୍ତି; ତେଣୁ ଏଠାରେ ମନର ଭାବ ପ୍ରକାଶ କରି କହିଛନ୍ତି, "ଆପଣ ପ୍ରଥମେ ମୋତେ ଯୁଦ୍ଧ କରିବାକୁ କହୁଛନ୍ତି; ଉକ୍ତ ଯୁଦ୍ଧର ସର୍ବାପେକ୍ଷା ଶ୍ରେଷ୍ଠ ଫଳରୂପେ ବିଜୟପ୍ରାପ୍ତ ହେବା ପରେ ଇହଲୋକରେ, ଅର୍ଥାତ୍ ପୃଥିବୀରେ ନିଷ୍କଣ୍ଟକ ରାଜ୍ୟ ଭୋଗ କରିବାକୁ ମିଳିପାରେ । କିନ୍ତୁ ମୁଁ ବିଚାର କରି ଦେଖୁଛି ଯେ, ଏହି ପୃଥିବୀର ରାଜ୍ୟ କଥା କ'ଣ କହିବା, ଯଦି ମୋତେ ଦେବତାମାନଙ୍କର ଆଧିପତ୍ୟ ବି ମିଳିଯାଏ, ତେବେ ମଧ୍ୟ ମୋର ଇନ୍ଦ୍ରିୟମାନଙ୍କୁ ଶୁଷ୍କ କରିଦେଉଥିବା ଶୋକ ଦୂର କରିବାକୁ ମୁଁ ସମର୍ଥ ହୋଇପାରିବି ନାହିଁ । ଅତଏବ ମୋତେ କିଛି ନିଶ୍ଚିତ ଉପାୟ କହିଦିଅନ୍ତୁ, ଯାହା କି ମୋର ଇନ୍ଦ୍ରିୟମାନଙ୍କୁ ଶୁଷ୍କ କରୁଥିବା ଶୋକରୁ ମୋତେ ପୂର୍ଣ୍ଣରୂପେ ମୁକ୍ତ କରି ସୁଖୀ କରିଦେବ ।"

**ସମ୍ବନ୍ଧ –** ଏହା ପରେ ଅର୍ଜୁନ କଣ କଲେ, ତାହା କୁହାଯାଉଛି —

ସଂଜୟ ଉବାଚ

**ଏବମୁକ୍ତ୍ୱା ହୃଷୀକେଶଂ ଗୁଡ଼ାକେଶଃ ପରଂତପ ।**
**ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ ।। ୯ ।।**

**ଅନ୍ୱୟ –** ପରନ୍ତପ = ହେ ରାଜନ୍; ଗୁଡ଼ାକେଶଃ = ନିଦ୍ରାକୁ ଜୟ କରିଥିବା ଅର୍ଜୁନ; ହୃଷୀକେଶମ୍ = ଇନ୍ଦ୍ରିୟମାନଙ୍କ ସ୍ୱାମୀ ଶ୍ରୀକୃଷ୍ଣଙ୍କୁ; ଏବମ୍ = ଏହିପରି; ଉକ୍ତ୍ୱା = କହି (ପୁଣି); ଗୋବିନ୍ଦମ୍ = ଗୋବିନ୍ଦ ଭଗବାନଙ୍କୁ; ନ, ଯୋତ୍ସ୍ୟେ = 'ଯୁଦ୍ଧ କରିବି ନାହିଁ; ଇତି = ବୋଲି; ହ = ସ୍ପଷ୍ଟଭାବରେ; ଉକ୍ତ୍ୱା = କହିଦେଇ; ତୂଷ୍ଣୀମ୍, ବଭୂବ = ଚୁପ୍ ହୋଇଗଲେ ।

**ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କହିଲେ – ହେ ରାଜନ୍ ! ନିଦ୍ରାଜୟୀ ଅର୍ଜୁନ ଅନ୍ତର୍ଯାମୀ ଶ୍ରୀକୃଷ୍ଣଙ୍କୁ ଏପରି କହିଲେ ଓ ଶ୍ରୀ ଗୋବିନ୍ଦ ଭଗବାନଙ୍କୁ 'ଯୁଦ୍ଧ କରିବି ନାହିଁ' ବୋଲି ସ୍ପଷ୍ଟଭାବରେ କହିଦେଇ ଚୁପ୍ ହୋଇଗଲେ ।। ୯ ।।**

**ପ୍ରଶ୍ନ –** ଏହି ଶ୍ଳୋକର ଅଭିପ୍ରାୟ କଣ ?

**ଉତ୍ତର –** ଏହି ଶ୍ଳୋକରେ ସଂଜୟ ଧୃତରାଷ୍ଟ୍ରଙ୍କୁ କହିଲେ ଯେ, ଉପରୋକ୍ତପ୍ରକାରେ ଭଗବାନଙ୍କର ଶରଣାଗତ ହୋଇ ଅର୍ଜୁନ ଶିକ୍ଷା ଲାଭପାଇଁ ପ୍ରାର୍ଥନା କଲେ ଏବଂ ନିଜର ବିଚାର ପ୍ରକଟ କରି ଶେଷରେ କହିଲେ, 'ମୁଁ ଯୁଦ୍ଧ କରିବି ନାହିଁ' ଏବଂ ଏହିପରି କହିଦେଇ ଚୁପ୍ ହୋଇଗଲେ ।

**ପ୍ରଶ୍ନ –** ଗୋବିନ୍ଦ ଶବ୍ଦର ଅର୍ଥ କ'ଣ ?

**ଉତ୍ତର –** ଗୋଭିର୍ବେଦବାକ୍ୟୈର୍ବିଦ୍ୟତେ ଲଭ୍ୟତେ ଇତି ଗୋବିନ୍ଦଃ ଏହି ବ୍ୟୁତ୍ପତ୍ତି ଅନୁସାରେ ବେଦବାଣୀଦ୍ୱାରା ଭଗବାନଙ୍କ ସ୍ୱରୂପର ଉପଲବ୍ଧି ହୁଏ, ତେଣୁ ତାଙ୍କର ନାମ 'ଗୋବିନ୍ଦ' । ଗୀତାରେ ବି କୁହାଯାଇଛି, **'ବେଦୈଶ୍ଚ ସର୍ବୈରହମେବ ବେଦ୍ୟଃ'** (୧୫/୧୫) ''ମୁଁ ହିଁ ସମ୍ପୂର୍ଣ୍ଣ ବେଦମାନଙ୍କ ଦ୍ୱାରା ଜାଣିବାର ଯୋଗ୍ୟ ଅଟେ ।''

*ସମ୍ବନ୍ଧ – ଅର୍ଜୁନ ଏପରି ଚୁପ୍ ହୋଇଯିବା ପରେ ଭଗବାନ୍ ଶ୍ରୀକୃଷ୍ଣ କଣ କଲେ ? ଏହି ପ୍ରଶ୍ନର ଉତ୍ତରରେ ସଂଜୟ କହୁଛନ୍ତି –*

## ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ ।
## ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ ॥ ୧୦ ॥

ଅନ୍ୱୟ – ଭାରତ = ହେ ଭରତବଂଶୀ ଧୃତରାଷ୍ଟ୍ର; **ହୃଷୀକେଶଃ** = ଅନ୍ତର୍ଯାମୀ ଶ୍ରୀକୃଷ୍ଣ ପରମାତ୍ମା; **ଉଭୟୋଃ** = ଦୁଇ; **ସେନୟୋଃ** = ସେନାଙ୍କ; **ମଧ୍ୟେ** = ମଧ୍ୟରେ; **ବିଷୀଦନ୍ତମ୍** = ବିଷାଦ କରୁଥିବା; **ତମ୍** = ସେହି ଅର୍ଜୁନଙ୍କୁ; **ପ୍ରହସନ୍ ଇବ** = ସ୍ମିତହାସ କରିବାଭଳି ହୋଇ; **ଇଦମ୍, ବଚଃ** = ଏହି କଥା; **ଉବାଚ** = କହିଲେ ।

**ହେ ଭରତବଂଶୀ ଧୃତରାଷ୍ଟ୍ର! ଅନ୍ତର୍ଯାମୀ ଶ୍ରୀକୃଷ୍ଣ ପରମାତ୍ମା ଦୁଇ ସେନାଙ୍କ ମଧ୍ୟରେ ଶୋକ କରୁଥିବା ସେହି ଅର୍ଜୁନଙ୍କୁ ସ୍ମିତହାସ କରି କହିଲେ, –॥ ୧୦ ॥**

**ପ୍ରଶ୍ନ –** ଉଭୟୋଃ ସେନୟୋଃ ମଧ୍ୟେ **ବିଷୀଦନ୍ତମ୍** ବିଶେଷଣ ସହିତ **ତମ୍** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ସଂଜୟ ପ୍ରକାଶ କରୁଛନ୍ତି ଯେ, ଯେଉଁ ଅର୍ଜୁନ ପ୍ରଥମେ ବଡ଼ ସାହସର ସହିତ ନିଜ ରଥକୁ ଦୁଇ ସେନାଙ୍କ ମଧ୍ୟରେ ଠିଆ କରିବାକୁ ଭଗବାନଙ୍କୁ କହିଥିଲେ, ବର୍ତ୍ତମାନ ସେ ହିଁ ଦୁଇ ସେନାଙ୍କ ମଧ୍ୟରେ ସ୍ୱଜନସମୁଦାୟଙ୍କୁ ଦେଖିବାମାତ୍ରେ ମୋହଯୋଗୁଁ ବ୍ୟାକୁଳ ହେଉଛନ୍ତି ଦେଖି ଭଗବାନ୍ କହିଲେ ।

**ପ୍ରଶ୍ନ –** 'ସ୍ମିତହାସ କରି କହିଲେ' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଭଗବାନ୍ କ'ଣ କହିଲେ ଓ କିପରିଭାବରେ କହିଲେ, ଏହି ବାକ୍ୟରେ ସଂଜୟ ତାହା ଦର୍ଶାଇଦେଉଛନ୍ତି । କହିବାର ଅଭିପ୍ରାୟ ହେଉଛି : ଅର୍ଜୁନ ଉପରୋକ୍ତପ୍ରକାରେ ଶୂରବୀରତା ପ୍ରକଟ କରିବା ପରିବର୍ତ୍ତେ ବିଷାଦଗ୍ରସ୍ତ ହୋଇପଡ଼ିଛନ୍ତି ଏବଂ ମୋର ଶରଣ ନେଇ ଶିକ୍ଷା ଲାଭପାଇଁ ପ୍ରାର୍ଥନା କରୁଛନ୍ତି, ପୁଣି ମୋର ନିର୍ଣ୍ଣୟ ଶୁଣିବା ପୂର୍ବରୁ ଯୁଦ୍ଧ ନ କରିବାକୁ ଘୋଷଣା ମଧ୍ୟ କରିଦେଇଛନ୍ତି – ଏହା ତାଙ୍କର ବେଢେବଢ଼ ଭୁଲ୍ ନୁହେଁ ! — ଏପରି ଭାବି ଭଗବାନ୍ ମନ୍ଦହାସ କରି କହିଲେ — (କ'ଣ କହିଲେ ତାହା ପରବର୍ତ୍ତୀ ପ୍ରକରଣରେ କୁହାଯାଇଛି ।)

*ସମ୍ବନ୍ଧ – ଏପରିଭାବରେ ଚିନ୍ତାମଗ୍ନ ଅର୍ଜୁନ ଯେତେବେଳେ ଭଗବାନଙ୍କର ଶରଣ ନେଇ ନିଜର ଦାରୁଣ ଶୋକନିବୃତ୍ତିର ଉପାୟ ପଚାରିଲେ ଏବଂ କହିଲେ ଯେ, ଇହଲୋକ ଓ ପରଲୋକର ରାଜ୍ୟସୁଖ ବି ଉକ୍ତ ଶୋକନିବୃତ୍ତିର ଉପାୟ ହୋଇ ପାରେନା, ସେତେବେଳେ ଅର୍ଜୁନଙ୍କୁ ଅଧିକାରୀ ବୋଲି ବୁଝି, ତାଙ୍କର ଶୋକ ଓ ମୋହର ବିନାଶନ ନିମିତ୍ତପାଇଁ ଭଗବାନ୍ ପ୍ରଥମେ ନିତ୍ୟ ଏବଂ ଅନିତ୍ୟ ବସ୍ତୁର ବିବେଚନପୂର୍ବକ ସାଂଖ୍ୟଯୋଗଦୃଷ୍ଟିରୁ ମଧ୍ୟ ଯୁଦ୍ଧ କରିବା ଉଚିତ ବୋଲି ପ୍ରତିପାଦିତ କରି ସାଂଖ୍ୟନିଷ୍ଠା ବର୍ଣ୍ଣନା କରୁଛନ୍ତି –*

*ଶ୍ରୀ ଭଗବାନୁବାଚ*

## ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ।
## ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ ॥ ୧୧ ॥

**ଅନ୍ୱୟ—** ତ୍ୱମ୍ = ତୁମେ; **ଅଶୋଚ୍ୟାନ୍** = ଯେଉଁମାନଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ, ସେମାନଙ୍କ ପାଇଁ; **ଅନ୍ୱଶୋଚଃ** = ଶୋକ କରୁଛ; **ଚ** = ଏବଂ; **ପ୍ରଜ୍ଞାବାଦାନ୍** = ପଣ୍ଡିତଙ୍କ ପରି କଥାମାନ; **ଭାଷସେ** = କହୁଛ; **(କିନ୍ତୁ) ଗତାସୂନ୍** = ଯାହାଙ୍କର ପ୍ରାଣ ଚାଲିଯାଇଛି, ସେମାନଙ୍କ ପାଇଁ; **ଚ** = ଏବଂ; **ଅଗତାସୂନ୍** = ଯାହାଙ୍କର ପ୍ରାଣ ଯାଇ ନାହିଁ, ସେମାନଙ୍କ ପାଇଁ ମଧ୍ୟ; **ପଣ୍ଡିତାଃ** = ପଣ୍ଡିତମାନେ; **ନ, ଅନୁଶୋଚନ୍ତି** = ଶୋକ କରନ୍ତି ନାହିଁ ।

**ଶ୍ରୀଭଗବାନ୍ କହିଲେ — ହେ ଅର୍ଜୁନ! ଯାହାଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ, ସେମାନଙ୍କ ପାଇଁ ଶୋକ କରୁଛ ଏବଂ ପଣ୍ଡିତଙ୍କ ପରି କଥା କହୁଛ! କିନ୍ତୁ ଯାହାଙ୍କର ପ୍ରାଣ ଚାଲିଯାଇଛି, ସେମାନଙ୍କ ପାଇଁ ଏବଂ ଯାହାଙ୍କର ପ୍ରାଣ ଯାଇ ନାହିଁ, ସେମାନଙ୍କ ପାଇଁ ମଧ୍ୟ ପଣ୍ଡିତମାନେ ଶୋକ କରନ୍ତି ନାହିଁ ॥ ୧୧ ॥**

**ପ୍ରଶ୍ନ —** ଅର୍ଜୁନଙ୍କର କେଉଁ କଥାକୁ ଲକ୍ଷ୍ୟ କରି ଭଗବାନ୍ କହିଲେ ଯେ, ଯେଉଁମାନଙ୍କ ପାଇଁ ଶୋକ ନ କରିବା କଥା, ଅର୍ଜୁନ ସେମାନଙ୍କ ପାଇଁ ଶୋକ କରୁଛନ୍ତି ?

**ଉତ୍ତର —** ଦୁଇ ସେନାଙ୍କ ମଧ୍ୟରେ ନିଜର ଖୁଡ଼ୀବାପା, ବଡ଼ବାପା, ବନ୍ଧୁବାନ୍ଧବ ଓ ଆଚାର୍ଯ୍ୟ ଆଦିଙ୍କୁ ଦେଖିଦେବାମାତ୍ରେ ସେମାନଙ୍କର ନାଶ ଆଶଙ୍କାରେ ଅର୍ଜୁନ ପ୍ରଥମ ଅଧ୍ୟାୟର ଅଠେଇଶ, ଅଣତିରିଶ ଓ ତିରିଶ ଶ୍ଳୋକରେ ନିଜ ସ୍ଥିତିର ଯେଉଁ ବର୍ଣ୍ଣନା କରିଛନ୍ତି, ପଇଁଚାଳିଶ ଶ୍ଳୋକରେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଥିବା କ୍ରିୟାରେ ଯେଉଁ ଶୋକ ପ୍ରକଟ କରିଛନ୍ତି, ଏବଂ ସତଚାଳିଶ ଶ୍ଳୋକରେ ସଂଜୟ ତାଙ୍କର ଯେଉଁ ସ୍ଥିତି ବର୍ଣ୍ଣନା କରିଛନ୍ତି, ତାହାକୁ ଲକ୍ଷ୍ୟ କରି ଭଗବାନ୍ କହିଛନ୍ତି, ''ଯେଉଁମାନଙ୍କ ପାଇଁ ଶୋକ ନ କରିବାର କଥା, ତୁମେ ସେମାନଙ୍କ ପାଇଁ ଶୋକ କରୁଛ।' ଏହିଠାରୁ ଭଗବାନଙ୍କ ଉପଦେଶର ଉପକ୍ରମ ହୋଇଛି ଏବଂ ୧୮/୬୬ ଶ୍ଳୋକରେ ତାହାର ଉପସଂହାର ହୋଇଛି।

**ପ୍ରଶ୍ନ —** 'ତୁମେ ବିଜ୍ଞ ପଣ୍ଡିତଙ୍କ ପରି କଥା କହୁଛ।' ଅର୍ଜୁନଙ୍କର କେଉଁ କଥାକୁ ଲକ୍ଷ୍ୟ କରି ଭଗବାନ୍ ଏହା କହିଛନ୍ତି ?

**ଉତ୍ତର —** ପ୍ରଥମ ଅଧ୍ୟାୟର ଏକତିରିଶ ଶ୍ଳୋକଠାରୁ ଚଉରାଳିଶଶ୍ଳୋକପର୍ଯ୍ୟନ୍ତ ଏବଂ ଦ୍ୱିତୀୟ ଅଧ୍ୟାୟର ଚାରିରୁ ଛଅ ଶ୍ଳୋକପର୍ଯ୍ୟନ୍ତ ଅର୍ଜୁନ କୁଳନାଶରୁ ଉତ୍ପନ୍ନ ହେଉଥିବା ଭୀଷଣ ପାପର ବର୍ଣ୍ଣନା କରିଛନ୍ତି ଏବଂ ଅହଙ୍କାରପୂର୍ବକ ଦୁର୍ଯ୍ୟୋଧନାଦିଙ୍କର ନୀଚତା ଓ ନିଜର ଧର୍ମଜ୍ଞତା କଥା କହି ଅନେକପ୍ରକାର ଯୁକ୍ତିଦ୍ୱାରା ଯୁଦ୍ଧର ଅନୌଚିତ୍ୟ ସିଦ୍ଧ କରିଛନ୍ତି। ସେହି ସମସ୍ତ କଥାକୁ ଲକ୍ଷ୍ୟ କରି ଭଗବାନ୍ କହିଛନ୍ତି, ''ତୁମେ ପଣ୍ଡିତଙ୍କ ପରି କଥା କହୁଛ।''

**ପ୍ରଶ୍ନ — ଗତାସୂନ୍ ଏବଂ ଅଗତାସୂନ୍** କେଉଁମାନଙ୍କ ବାଚକ ଏବଂ 'ଏମାନଙ୍କ ପାଇଁ ପଣ୍ଡିତମାନେ ଶୋକ କରନ୍ତି ନାହିଁ।' — ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଯେଉଁମାନଙ୍କର ପ୍ରାଣ ଚାଲିଯାଇଛି, ସେମାନଙ୍କୁ **ଗତାସୁ** ଏବଂ ଯେଉଁମାନଙ୍କର ପ୍ରାଣ ଯାଇ ନାହିଁ, ସେମାନଙ୍କୁ **ଅଗତାସୁ** କହନ୍ତି। 'ଏମାନଙ୍କ ପାଇଁ ପଣ୍ଡିତମାନେ ଶୋକ କରନ୍ତି ନାହିଁ' ବୋଲି କହିବାର ତାତ୍ପର୍ଯ୍ୟ ହେଲା, ''ତୁମେ ନିଜର ପିତା, ପିତାମହ ଆଦି ପରଲୋକଗତ ପିତୃଲୋକଙ୍କ ପାଇଁ ଚିନ୍ତା କରୁଛ ଯେ, ଯୁଦ୍ଧର ପରିଣାମସ୍ୱରୂପ କୁଳନାଶ ହୋଇଯିବା ପରେ ବର୍ଣ୍ଣସଙ୍କର ଜାତ ହୋଇଗଲେ କୁଳର ସେହି ପିତୃଲୋକମାନେ ନରକରେ ପଡ଼ିଯିବେ ଇତ୍ୟାଦି; ତୁମେ ସମ୍ମୁଖରେ ଠିଆ ହୋଇଥିବା ବନ୍ଧୁବାନ୍ଧବଙ୍କ ପାଇଁ ମଧ୍ୟ ଚିନ୍ତା କରୁଛ ଯେ, ସେମାନଙ୍କ ବ୍ୟତୀତ ତୁମେ ରାଜ୍ୟ ଓ ଭୋଗ ଲାଭ କରି କ'ଣ କରିବ; ପୁଣି ଚିନ୍ତା କରୁଛ ଯେ, କୁଳର ନାଶ ହେଲେ, ସ୍ତ୍ରୀମାନେ ଭ୍ରଷ୍ଟା ହୋଇଯିବେ, ଇତ୍ୟାଦି, ଇତ୍ୟାଦି। କିନ୍ତୁ ପଣ୍ଡିତମାନେ ସେପରି ଚିନ୍ତା କରନ୍ତି ନାହିଁ। କାରଣ ପଣ୍ଡିତମାନଙ୍କ ଦୃଷ୍ଟିରେ ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମ ହିଁ ନିତ୍ୟ ଓ ସତ୍ ବସ୍ତୁ ; ତାଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁ ହିଁ ନାହିଁ;

ସେ ସମସ୍ତଙ୍କର ଆତ୍ମା; ତାଙ୍କର କେବେ କୌଣସିପ୍ରକାରେ ନାଶ ହୋଇପାରିବ ନାହିଁ; ଶରୀର ଅନିତ୍ୟ; ତାହା ରହିପାରିବ ନାହିଁ ତଥା ଆତ୍ମା ଓ ଶରୀରର ସଂଯୋଗ-ବିୟୋଗ ବ୍ୟାବହାରିକ ଦୃଷ୍ଟିରୁ ଅନିବାର୍ଯ୍ୟ ହେଲେ ମଧ୍ୟ, ବାସ୍ତବରେ ସ୍ୱପ୍ନପରି କଳ୍ପିତ। ତେଣୁ ସେମାନେ କାହା ପାଇଁ ଶୋକ କରିବେ ଏବଂ କାହିଁକି ବା କରିବେ? କିନ୍ତୁ ତୁମେ ଶୋକ କରୁଛ। ଏଥିରୁ ଜଣା ପଡୁଛି, ତୁମେ ପଣ୍ଡିତ ନୁହଁ କିନ୍ତୁ ପଣ୍ଡିତଙ୍କ ପରି କଥା କହୁଛ।''

*ସମ୍ବନ୍ଧ— ପୂର୍ବଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ କହିଛନ୍ତି, 'ଯେଉଁ ଭୀଷ୍ମାଦି ସ୍ୱଜନଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ, ତୁମେ ସେମାନଙ୍କ ପାଇଁ ଶୋକ କରୁଛ।' ତାହା ଶୁଣି ପ୍ରଥମେ ଜାଣିବାର ଇଚ୍ଛା ହେଉଛି: ସେମାନଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ କାହିଁକି? ତେଣୁ ପ୍ରଥମେ ଭଗବାନ୍ ଆତ୍ମାର ନିତ୍ୟତା ପ୍ରତିପାଦନ କରି ଆତ୍ମଦୃଷ୍ଟିରୁ ସେମାନଙ୍କ ପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରୁଛନ୍ତି—*

## ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ।
## ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃ ପରମ୍॥ ୧୨ ॥

**ଅନ୍ୱୟ—** ନ, ତୁ, (ଏବମ୍), ଏବ = ଏପରି ନୁହେଁ ଯେ; ଅହମ୍ = ମୁଁ; ଜାତୁ = କୌଣସି କାଳରେ; ନ, ଆସମ୍ = ନ ଥିଲି; ତ୍ୱମ୍, ନ (ଆସୀ) = ତୁମେ ନ ଥିଲ; ଇମେ = ଏହି; ଜନାଧିପାଃ = ରାଜାମାନେ; ନ (ଆସନ୍) = ନ ଥିଲେ; ଚ = ଏବଂ; ନ, (ଏବମ୍), ଏବ = ପୁଣି ଏପରି ମଧ୍ୟ (ଘଟିବ) ନାହିଁ ଯେ; ଅତଃ ପରମ୍ = ଭବିଷ୍ୟତରେ; ବୟମ୍ = ଆମେ; ସର୍ବେ = ସମସ୍ତେ; ନ, ଭବିଷ୍ୟାମଃ = ରହିବା ନାହିଁ।

**ଏପରି ନୁହେଁ ଯେ, କୌଣସି କାଳରେ ମୁଁ ନ ଥିଲି, କି ତୁମେ ନ ଥିଲ ଅଥବା ଏହି ରାଜାମାନେ ନ ଥିଲେ। ପୁଣି ଏପରି ମଧ୍ୟ ଘଟିବ ନାହିଁ ଯେ, ଭବିଷ୍ୟତରେ ଆମେ ସମସ୍ତେ ରହିବା ନାହିଁ॥ ୧୨ ॥**

**ପ୍ରଶ୍ନ—** ଏହି ଶ୍ଳୋକରେ ଭଗବାନଙ୍କ ବକ୍ତବ୍ୟର ଅଭିପ୍ରାୟ କଣ?

**ଉତ୍ତର—** ଏହି ଶ୍ଳୋକରେ ଭଗବାନ୍ ଆତ୍ମରୂପରେ ସମସ୍ତଙ୍କର ନିତ୍ୟତା ସିଦ୍ଧ କରି ଜଣାଇଦେଉଛନ୍ତି, ''ତୁମେ ଯେଉଁମାନଙ୍କ ନାଶର ଆଶଙ୍କା କରୁଛ, ସେମାନେ କିମ୍ବା ତୁମେ ଓ ଆମେ ଯେ କୌଣସି କାଳରେ ନ ଥିଲେ, ସେପରି ନୁହେଁ। ବର୍ତ୍ତମାନର ଏହି ଶରୀର ଉତ୍ପନ୍ନ ହେବା ପୂର୍ବରୁ ଆମେ ସମସ୍ତେ ଥିଲେ ଏବଂ ଏହି ଶରୀର ନଷ୍ଟ ହୋଇଯିବା ପରେ ମଧ୍ୟ ଆମେ ସମସ୍ତେ ରହିବା। ଶରୀରର ନାଶରେ ଆତ୍ମାର ନାଶ ହୁଏ ନାହିଁ; ଅତଏବ ନାଶର ଆଶଙ୍କାରେ ଏମାନଙ୍କ ପାଇଁ ଶୋକ କରିବା ଅନୁଚିତ।''

*ସମ୍ବନ୍ଧ— ଏହିପରିଭାବରେ ଆତ୍ମାର ନିତ୍ୟତା ପ୍ରତିପାଦନ କରିସାରି ବର୍ତ୍ତମାନ ଆତ୍ମାର ନିର୍ବିକାରତା ପ୍ରତିପାଦନ କରୁଛନ୍ତି ଓ ଆତ୍ମାପାଇଁ ଶୋକ କରିବା ଅନୁଚିତ ବୋଲି ଭଗବାନ୍ ସିଦ୍ଧ କରୁଛନ୍ତି—*

## ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା।
## ତଥା ଦେହାନ୍ତରପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ॥ ୧୩ ॥

**ଅନ୍ୱୟ—** ଯଥା = ଯେପରି; ଦେହିନଃ = ଜୀବାତ୍ମାର; ଅସ୍ମିନ୍, ଦେହେ = ଏହି ଦେହରେ; କୌମାରମ୍ = ବାଲ୍ୟାବସ୍ଥା; ଯୌବନମ୍ = ଯୌବନାବସ୍ଥା; ଜରା = ବୃଦ୍ଧାବସ୍ଥା (ହୁଏ); ତଥା = ସେପରି; ଦେହାନ୍ତରପ୍ରାପ୍ତିଃ = ଅନ୍ୟ ଶରୀରର ପ୍ରାପ୍ତି (ମଧ୍ୟ ହୁଏ); ତତ୍ର = ସେହି ବିଷୟରେ; ଧୀରଃ = ଧୀର ପୁରୁଷ; ନ, ମୁହ୍ୟତି = ମୋହଗ୍ରସ୍ତ ହୁଅନ୍ତି ନାହିଁ।

**ଯେପରି ଏହି ଦେହରେ ଜୀବାତ୍ମାର ବାଲ୍ୟାବସ୍ଥା, ଯୌବନାବସ୍ଥା ଓ ବୃଦ୍ଧାବସ୍ଥା ହୋଇଥାଏ, ସେପରି ଅନ୍ୟ ଶରୀର ମଧ୍ୟ ପ୍ରାପ୍ତ ହୁଏ; ସେହି ବିଷୟରେ ଧୀର ପୁରୁଷ ମୋହଗ୍ରସ୍ତ ହୁଅନ୍ତି ନାହିଁ॥ ୧୩ ॥**

**ପ୍ରଶ୍ନ**— ଏହି ଶ୍ଲୋକରେ ଭଗବାନଙ୍କ କଥାର ଅଭିପ୍ରାୟ କଣ ?

**ଉତ୍ତର**— ଆତ୍ମାକୁ ବିକାରଶୀଳ ବୋଲି ଭାବି, ଏକ ଶରୀରରୁ ଅନ୍ୟ ଶରୀରକୁ ଯିବା ଆସିବା କରିବା ସମୟରେ ତାଙ୍କୁ କଷ୍ଟ ହେଉଥିବ ବୋଲି ଆଶଙ୍କା କରି ଅଜ୍ଞାନୀମାନେ ଯେଉଁ ଶୋକ କରନ୍ତି, ତାହାକୁ ଭଗବାନ୍ ଏଠାରେ ଅନୁଚିତ ବୋଲି କହିଛନ୍ତି। ଭଗବାନ୍ କହୁଛନ୍ତି, ''ଯେପରି ବାଲ୍ୟ, ଯୌବନ ଓ ବୃଦ୍ଧାବସ୍ଥା ବାସ୍ତବରେ ଆତ୍ମାର ହୁଏ ନାହିଁ, ସ୍ଥୂଳ ଶରୀରର ହିଁ ହୁଏ, ଅଥଚ ଆତ୍ମା ଉପରେ ସେସବୁ ଆରୋପ କରାଯାଏ, ସେହିପରି ଆତ୍ମାର ବାସ୍ତବରେ ଏକ ଶରୀରରୁ ଅନ୍ୟ ଶରୀରକୁ ଯିବା ଆସିବା ମଧ୍ୟ ହୁଏ ନାହିଁ; ସୂକ୍ଷ୍ମ ଶରୀରର ହିଁ ଯିବା ଆସିବା ହୁଏ; ଅଥଚ ତାହାକୁ ଆତ୍ମା ଉପରେ ଆରୋପ କରାଯାଏ। ଅତଏବ ସେହି ତତ୍ତ୍ୱ ନ ଜାଣିଥିବା ଅଜ୍ଞାନୀ ଲୋକେ ହିଁ ଦେହାନ୍ତରପ୍ରାପ୍ତିରେ ଶୋକ କରନ୍ତି। ଧୀର ପୁରୁଷମାନେ ଶୋକ କରନ୍ତି ନାହିଁ; କାରଣ ସେମାନଙ୍କ ଦୃଷ୍ଟିରେ ଶରୀର ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ। ତେଣୁ ତୁମେ ଶୋକ କରିବା ଅନୁଚିତ।''

***ସମ୍ବନ୍ଧ**— ପୂର୍ବଶ୍ଲୋକରେ ଭଗବାନ୍ ଆତ୍ମାର ନିତ୍ୟତା ଏବଂ ନିର୍ବିକାରତା ପ୍ରତିପାଦନ କରି, ତାହାପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ଏହା ଶୁଣି ମନରେ ପ୍ରଶ୍ନ ଉଠେ, ଆତ୍ମା ନିତ୍ୟ ଏବଂ ନିର୍ବିକାର ହୋଇଥିଲେ ମଧ୍ୟ ବନ୍ଧୁବାନ୍ଧବଙ୍କ ସହିତ ହେଉଥିବା ସଂଯୋଗ-ବିୟୋଗ ଆଦିରେ ତ ସୁଖଦୁଃଖ ପ୍ରତ୍ୟକ୍ଷ ଅନୁଭବ ହୁଏ; ତେଣୁ ଶୋକ ନ କରି କିପରି ରହିହେବ ? ପ୍ରଶ୍ନର ଉତ୍ତରରେ ଭଗବାନ୍ ସମସ୍ତପ୍ରକାର ସଂଯୋଗ-ବିୟୋଗ ଆଦିକୁ ଅନିତ୍ୟ ବୋଲି କହି ତାହା ସହିଯିବାକୁ ଆଜ୍ଞା ଦେଉଛନ୍ତି—*

## ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ ।
## ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ ।। ୧୪ ।।

**ଅନ୍ୱୟ**— **ତୁ** = କିନ୍ତୁ; **କୌନ୍ତେୟ** = ହେ କୁନ୍ତୀପୁତ୍ର; **ଶୀତୋଷ୍ଣସୁଖଦୁଃଖଦାଃ** = ଶୀତ-ଉଷ୍ଣ ଏବଂ ସୁଖ-ଦୁଃଖକୁ ଦେଉଥିବା; **ମାତ୍ରାସ୍ପର୍ଶାଃ** = ଇନ୍ଦ୍ରିୟ ଏବଂ ବିଷୟମାନଙ୍କର ସଂଯୋଗମାନ; **ଆଗମାପାୟିନଃ** = ଉତ୍ପତ୍ତି-ବିନାଶଶୀଳ; **ଅନିତ୍ୟାଃ** = ଅନିତ୍ୟ ଅଟେ (ତେଣୁ); **ଭାରତ** = ହେ ଭାରତ !; **ତାନ୍** = ସେଗୁଡ଼ିକୁ; **ତିତିକ୍ଷସ୍ୱ** = ସହିଯାଅ।

**କାରଣ, ହେ କୁନ୍ତୀପୁତ୍ର ! ଶୀତ-ଉଷ୍ଣ ଓ ସୁଖ-ଦୁଃଖ ଦେଉଥିବା ଇନ୍ଦ୍ରିୟ ଓ ବିଷୟମାନଙ୍କର ସଂଯୋଗ ତ ଉତ୍ପତ୍ତି-ବିନାଶଶୀଳ ଓ ଅନିତ୍ୟ; ତେଣୁ ହେ ଭାରତ ! ତୁମେ ସେଗୁଡ଼ିକ ସହିଯାଅ।। ୧୪ ।।**

**ପ୍ରଶ୍ନ**—ଏଠାରେ **ମାତ୍ରାସ୍ପର୍ଶାଃ** ପଦଟି କେଉଁମାନଙ୍କ ବାଚକ ?

**ଉତ୍ତର**— ଯାହାଦ୍ୱାରା କୌଣସି ବସ୍ତୁକୁ ମାପ କରାଯାଏ, ଅର୍ଥାତ୍ ତାହାର ସ୍ୱରୂପର ଜ୍ଞାନ ପ୍ରାପ୍ତ କରାଯାଏ, ତାହାକୁ **ମାତ୍ରା** କହନ୍ତି; ଏଣୁ **ମାତ୍ରା** ଏଠାରେ ଅନ୍ତଃକରଣ ସହିତ ସମସ୍ତ ଇନ୍ଦ୍ରିୟକୁ ସୂଚାଏ। ସମ୍ବନ୍ଧ ବା ସଂଯୋଗକୁ **ସ୍ପର୍ଶ** କହନ୍ତି । ଅନ୍ତଃକରଣ ସମେତ ଇନ୍ଦ୍ରିୟମାନଙ୍କର ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଆଦି ବିଷୟମାନଙ୍କ ସହିତ ଯେଉଁ ସମ୍ବନ୍ଧ ରହିଛି, ତାହାକୁ ଏଠାରେ **ମାତ୍ରାସ୍ପର୍ଶାଃ** ବୋଲି କୁହାଯାଇଛି।

**ପ୍ରଶ୍ନ**— ସେସବୁକୁ **ଶୀତୋଷ୍ଣସୁଖଦୁଃଖଦାଃ** କହିବାର ଅଭିପ୍ରାୟ କଣ ?

**ଉତ୍ତର**— ଶୀତ-ଉଷ୍ଣ ଓ ସୁଖ-ଦୁଃଖ ଶବ୍ଦ ଏଠାରେ ସମସ୍ତ ଦ୍ୱନ୍ଦ୍ୱର ଉପଲକ୍ଷଣ। ଏଣୁ ବିଷୟ ଓ ଇନ୍ଦ୍ରିୟମାନଙ୍କର ସମ୍ବନ୍ଧକୁ **ଶୀତୋଷ୍ଣସୁଖଦୁଃଖଦାଃ** କହି ଭଗବାନ୍ କହୁଛନ୍ତି, ଇନ୍ଦ୍ରିୟମାନଙ୍କ ସହିତ ସଂଯୋଗ ହେଲେ ସମସ୍ତ ବିଷୟ ଶୀତ-ଉଷ୍ଣ, ସୁଖ-ଦୁଃଖ, ରାଗ-ଦ୍ୱେଷ, ହର୍ଷ-ଶୋକ, ଅନୁକୂଳତା-ପ୍ରତିକୂଳତା ଆଦି ବିଭିନ୍ନ ଦ୍ୱନ୍ଦ୍ୱ ଉତ୍ପନ୍ନ କରେ। ସେସବୁକୁ ନିତ୍ୟ ବୋଲି ଭାବୁଥିବାରୁ ହିଁ ନାନାପ୍ରକାର ବିକାର ଉତ୍ପନ୍ନ ହୁଏ। ତେଣୁ ସେସବୁକୁ ଅନିତ୍ୟ ବୋଲି ବୁଝି ବିଷୟସଂଯୋଗହେତୁ ତୁମେ କୌଣସିପ୍ରକାରେ ବିକାରଯୁକ୍ତ ହେବା ଉଚିତ ନୁହେଁ।''

**ପ୍ରଶ୍ନ**— ଇନ୍ଦ୍ରିୟମାନଙ୍କ ସହିତ ବିଷୟମାନଙ୍କର ସଂଯୋଗକୁ ଉତ୍ପତ୍ତିବିନାଶଶୀଳ ଓ ଅନିତ୍ୟ କହି ଅର୍ଜୁନଙ୍କୁ ସେସବୁ ସହିଯିବାକୁ ଆଜ୍ଞା ଦେବାର ଅଭିପ୍ରାୟ କଣ ?

**ଉତ୍ତର**— ଏପରି ଆଜ୍ଞା ଦେଇ ଭଗବାନ୍ ବୁଝାଇଦେଇଛନ୍ତି, ''ବିଷୟ ସହିତ ଇନ୍ଦ୍ରିୟମାନଙ୍କର

ସଂଯୋଗ ହିଁ ସୁଖ-ଦୁଃଖ ପ୍ରଦାନ କରେ; କିନ୍ତୁ ଉକ୍ତ ସଂଯୋଗ କ୍ଷଣଭଙ୍ଗୁର ଓ ଅନିତ୍ୟ; ସେଥିରେ ଲେଶମାତ୍ର ବାସ୍ତବିକ ସୁଖ ନାହିଁ । ଅତଏବ ତୁମେ ଏହା ସହିଯାଅ, ଅର୍ଥାତ୍ ଏସବୁକୁ ଅନିତ୍ୟ ବୋଲି ବୁଝି ଏସବୁର ଯିବା-ଆସିବାରେ ରାଗ-ଦ୍ୱେଷ ବା ହର୍ଷ-ଶୋକ କର ନାହିଁ।'' ବନ୍ଧୁବାନ୍ଧବଙ୍କ ସଂଯୋଗ ମଧ୍ୟ ଏ ଭିତରେ ଆସିଯାଏ। କାରଣ ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ ଅନ୍ୟ ବିଷୟମାନଙ୍କ ପରି ସେମାନଙ୍କ ସହିତ ସଂଯୋଗବିୟୋଗ ଘଟିଥାଏ। ତେଣୁ ଏଠାରେ ଭଗବାନ୍ କହିଛନ୍ତି, ''ସବୁପ୍ରକାର ସଂଯୋଗବିୟୋଗର ପରିଣାମ-ସ୍ୱରୂପ ଯେଉଁ ସୁଖ-ଦୁଃଖ ମିଳେ, ତାହା ସହିଯାଅ।''

**ସମ୍ବନ୍ଧ –** ଏସବୁ ସହିଗଲେ ଲାଭ କ'ଣ ? ଏହି ପ୍ରଶ୍ନ ଉପରେ ଭଗବାନ୍ କହୁଛନ୍ତି –

## ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ।
## ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ।। ୧୫ ।।

**ଅନ୍ୱୟ –** ହି = କାରଣ; **ପୁରୁଷର୍ଷଭ =** ହେ ପୁରୁଷଶ୍ରେଷ୍ଠ; **ସମଦୁଃଖସୁଖମ୍ =** ଦୁଃଖ-ସୁଖକୁ ସମାନ ଦୃଷ୍ଟିରେ ଦେଖୁଥିବା; **ଯମ୍ =** ଯେଉଁ; **ଧୀରମ୍ =** ଧୀର; **ପୁରୁଷମ୍ =** ପୁରୁଷଙ୍କୁ; **ଏତେ =** ଏହି (ଇନ୍ଦ୍ରିୟ ଓ ବିଷୟର ସଂଯୋଗମାନ); **ନ, ବ୍ୟଥୟନ୍ତି =** ବ୍ୟାକୁଳ କରିପାରେ ନାହିଁ; **ସଃ =** ସେ; **ଅମୃତତ୍ୱାୟ =** ମୋକ୍ଷଲାଭନିମନ୍ତେ; **କଳ୍ପତେ =** ଯୋଗ୍ୟ ହୁଅନ୍ତି।

**କାରଣ, ହେ ପୁରୁଷଶ୍ରେଷ୍ଠ ! ସୁଖ-ଦୁଃଖକୁ ସମାନ ଦୃଷ୍ଟିରେ ଦେଖୁଥିବା ଯେଉଁ ଧୀର ପୁରୁଷଙ୍କୁ ଏହି ଇନ୍ଦ୍ରିୟ ଓ ବିଷୟର ସଂଯୋଗ ବ୍ୟାକୁଳ କରିପାରେ ନାହିଁ, ସେ ହିଁ ମୋକ୍ଷପାଇଁ ଯୋଗ୍ୟ ହୁଅନ୍ତି।। ୧୫ ।।**

**ପ୍ରଶ୍ନ –** ଏଠାରେ ହି ର ଅଭିପ୍ରାୟ କଣ ?

**ଉତ୍ତର –** ହି ଏଠାରେ ହେତୁ ଅର୍ଥରେ ବ୍ୟବହୃତ ହୋଇଛି। ଅଭିପ୍ରାୟ ହେଲା, ଇନ୍ଦ୍ରିୟମାନଙ୍କ ସହିତ ବିଷୟମାନଙ୍କର ସଂଯୋଗକୁ କାହିଁକି ସହିଯିବାକୁ ପଡ଼ିବ, ତାହା ଏହି ଶ୍ଲୋକରେ ବୁଝାଇଦିଆଯାଇଛି।

**ପ୍ରଶ୍ନ – ପୁରୁଷର୍ଷଭ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର – ଋଷଭ** ହେଉଛି ଶ୍ରେଷ୍ଠର ବାଚକ। ତେଣୁ ପୁରୁଷମାନଙ୍କ ମଧ୍ୟରେ ଯେ ଅଧିକ ଶୂରବୀର ଏବଂ ବଳବାନ୍, ତାଙ୍କୁ **ପୁରୁଷର୍ଷଭ** କହନ୍ତି। ଏଠାରେ ଅର୍ଜୁନଙ୍କୁ 'ପୁରୁଷର୍ଷଭ' ନାମରେ ସମ୍ବୋଧନ କରି ଭଗବାନ୍ କହିଛନ୍ତି, ''ତୁମେ ବଡ଼ ଶୂରବୀର; ସହନଶୀଳତା ତୁମର ସ୍ୱାଭାବିକ ଗୁଣ। ତେଣୁ ତୁମେ ସହଜରେ ଏସବୁ ସହିଯାଇପାରିବ।''

**ପ୍ରଶ୍ନ – ଧୀରମ୍** ପଦ କାହାର ବାଚକ ?

**ଉତ୍ତର – ଧୀରମ୍** ପଦ ବିଶେଷତଃ ପରମାତ୍ମାଙ୍କୁ ପ୍ରାପ୍ତ କରିଥିବା ପୁରୁଷଙ୍କର ହିଁ ବାଚକ ହୁଏ। ପୁଣି ଯେବେଳେବେଳେ ପରମାତ୍ମପ୍ରାପ୍ତିର ଯୋଗ୍ୟ ପାତ୍ରଙ୍କୁ ବି ଧୀର ବୋଲି କୁହାଯାଏ। ତେଣୁ ଏଠାରେ **ଧୀରମ୍** ପଦଟି ହେଉଛି ସାଂଖ୍ୟଯୋଗ ସାଧନାର ପରିପକ୍ୱ ସ୍ଥିତିରେ ପହଞ୍ଚିଥିବା ସାଧକଙ୍କର ବାଚକ।

**ପ୍ରଶ୍ନ – ସମଦୁଃଖସୁଖମ୍** ବିଶେଷଣର ଅର୍ଥ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଧୀର ପୁରୁଷଙ୍କ ଲକ୍ଷଣ ବୁଝାଇବାକୁ ଯାଇ କହିଛନ୍ତି, ଯେଉଁ ପୁରୁଷଙ୍କ ପାଇଁ ସୁଖ ଓ ଦୁଃଖ ସମାନ ହୋଇଯାଇଛି, ସୁଖଦୁଃଖକୁ ଅନିତ୍ୟ ବୋଲି ବୁଝି ଯାହାଙ୍କର ଏହି ଦ୍ୱନ୍ଦ୍ୱରେ ଆଉ ଭେଦବୁଦ୍ଧି ରହି ନାହିଁ, ସେ ହିଁ ଧୀର ଏବଂ ସେ ହିଁ ଏହା ସହିବାକୁ ସମର୍ଥ।

**ପ୍ରଶ୍ନ – ଏତେ** ପଦ କେଉଁମାନଙ୍କ ବାଚକ ଏବଂ **ନ ବ୍ୟଥୟନ୍ତି**ର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ବିଷୟମାନଙ୍କ ସହିତ ଇନ୍ଦ୍ରିୟମାନଙ୍କର ଯେଉଁ ସଂଯୋଗ ହୁଏ, ଯାହାପାଇଁ ପୂର୍ବଶ୍ଲୋକରେ **ମାତ୍ରାସ୍ପର୍ଶାଃ** ପଦ ପ୍ରୟୋଗ କରାଯାଇଛି, **ଏତେ** ପଦଟି ହେଉଛି ସେହିମାନଙ୍କ ବାଚକ। **ନ ବ୍ୟଥୟନ୍ତି**ଦ୍ୱାରା ଦେଖାଇଦିଆଯାଇଛି ଯେ, ବିଷୟମାନଙ୍କ ସହିତ ସଂଯୋଗ-ବିୟୋଗରେ ରାଗ-ଦ୍ୱେଷ ଏବଂ ହର୍ଷ-ଶୋକ ନ କରିବାର ଅଭ୍ୟାସ କରୁ କରୁ ଯେତେବେଳେ ସାଧକ ଏପରି ସ୍ଥିତିରେ ପହଞ୍ଚନ୍ତି, ଯେଉଁଥିରେ କି କୌଣସି ବି ଇନ୍ଦ୍ରିୟର କୌଣସିପ୍ରକାରେ ଭୋଗ ସହିତ ସଂଯୋଗ ହେଲେ ମଧ୍ୟ, ତାହା ତାଙ୍କୁ କୌଣସିପ୍ରକାର ବ୍ୟାକୁଳ କରିପାରେ ନାହିଁ, ସେତେବେଳେ ବୁଝିବାକୁ ହେବ ଯେ, ସେ 'ଧୀର' ଏବଂ ସେ ସୁଖଦୁଃଖରେ ସମଭାବଯୁକ୍ତ ହୋଇଯାଇଛନ୍ତି।

**ପ୍ରଶ୍ନ –** 'ସେ ମୋକ୍ଷର ଯୋଗ୍ୟ ହୁଅନ୍ତି'— ଏହା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଥିରେ ଭଗବାନ୍ ଦେଖାଇଛନ୍ତି ଯେ, ଉପରୋକ୍ତ ସମଭାବଯୁକ୍ତ ପୁରୁଷ ମୋକ୍ଷର ଅର୍ଥାତ୍ ପରମାତ୍ମ-ପ୍ରାପ୍ତିର ଅଧିକାରୀ ହୋଇଯାଆନ୍ତି ଏବଂ ତାଙ୍କୁ ଶୀଘ୍ର ଅପରୋକ୍ଷଭାବରେ ପରମାତ୍ମପ୍ରାପ୍ତି ହୋଇଯାଏ ।

*__ସମ୍ବନ୍ଧ –__ ବାର ଓ ତେର ଶ୍ଳୋକରେ ଭଗବାନ୍ ଆତ୍ମାର ନିତ୍ୟତା ଏବଂ ନିର୍ବିକାରତା ପ୍ରତିପାଦନ କରିଛନ୍ତି । ଚଉଦ ଶ୍ଳୋକରେ ଇନ୍ଦ୍ରିୟମାନଙ୍କ ସହିତ ବିଷୟମାନଙ୍କର ସଂଯୋଗକୁ ଅନିତ୍ୟ ବୋଲି କହିଛନ୍ତି; କିନ୍ତୁ ଆତ୍ମା କାହିଁକି ନିତ୍ୟ ଏବଂ ଏହି ସଂଯୋଗ କାହିଁକି ଅନିତ୍ୟ, ତାହା ସ୍ପଷ୍ଟ କରିନାହାନ୍ତି । ଅତଏବ ଏହି ଶ୍ଳୋକରେ ଭଗବାନ୍ ନିତ୍ୟ ଓ ଅନିତ୍ୟ ତତ୍ତ୍ୱ ବିବେଚନର ରୀତି ବୁଝାଇଦେବାପାଇଁ ଉଭୟର ଲକ୍ଷଣ କହୁଛନ୍ତି–*

## ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।
## ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ ॥ ୧୬ ॥

**ଅନ୍ୱୟ –** **ଅସତଃ** = ଅସତ୍ ବସ୍ତୁର; **ଭାବଃ** = ଅସ୍ତିତ୍ୱ; **ନ, ବିଦ୍ୟତେ** = ନାହିଁ; **ତୁ** = ଏବଂ; **ସତଃ** = ସତ୍ ବସ୍ତୁର; **ଅଭାବଃ** = ଅଭାବ; **ନ, ବିଦ୍ୟତେ** = ନାହିଁ (ଏପରିଭାବରେ); **ଅନୟୋଃ, ଉଭୟୋଃ, ଅପି** = ସେହି ଉଭୟର ମଧ୍ୟ; **ଅନ୍ତଃ** = ତତ୍ତ୍ୱ; **ତତ୍ତ୍ୱଦର୍ଶିଭିଃ** = ତତ୍ତ୍ୱଜ୍ଞାନୀ ପୁରୁଷଙ୍କ ଦ୍ୱାରା; **ଦୃଷ୍ଟଃ** = ଦେଖାଯାଇଛି ।

**ଅସତ୍ ବସ୍ତୁର ଅସ୍ତିତ୍ୱ ନାହିଁ ଏବଂ ସତ୍‌ବସ୍ତୁର ଅଭାବ ନାହିଁ । ଏପରିଭାବରେ ଉକ୍ତ ଦୁଇଟିଯାକର ତତ୍ତ୍ୱ ତତ୍ତ୍ୱଜ୍ଞାନୀ ପୁରୁଷମାନଙ୍କ ଦ୍ୱାରା ଦେଖାଯାଇଛି ॥ ୧୬ ॥**

**ପ୍ରଶ୍ନ –** **ଅସତଃ** ପଦ ଏଠାରେ କାହାର ବାଚକ ? 'ତାହାର ଅସ୍ତିତ୍ୱ ନାହିଁ' କହିବାର ଅଭିପ୍ରାୟ କଣ ?

**ଉତ୍ତର –** **ଅସତଃ** ପଦଟି ଏଠାରେ ପରିବର୍ତ୍ତନଶୀଳ ଶରୀର, ଇନ୍ଦ୍ରିୟ ଏବଂ ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ସମେତ ସମସ୍ତ ଜଡ଼ବର୍ଗର ବାଚକ । 'ତାହାର ଅସ୍ତିତ୍ୱ ନାହିଁ' କହି ଭଗବାନ୍ ବୁଝାଇଦେଉଛନ୍ତି, ''ତାହା ଯେଉଁ କାଳରେ ପ୍ରତୀତ ହୋଇଥାଏ, ତା'ପୂର୍ବରୁ ନ ଥିଲା, କି ତା'ପରେ ମଧ୍ୟ ରହିବ ନାହିଁ ଏବଂ ଯେଉଁ ସମୟରେ ପ୍ରତୀତ ହେଉଥାଏ, ସେହି ସମୟରେ ମଧ୍ୟ ବାସ୍ତବରେ ନ ଥାଏ । ସୁତରାଂ ତୁମେ ଯଦି ଭୀଷ୍ମାଦି ସ୍ୱଜନଙ୍କ ଶରୀର ନାଶ ହୋଇଯିବ ବୋଲି ବା ଅନ୍ୟ କୌଣସି ଜଡ଼ବସ୍ତୁ ନାଶ ହୋଇଯିବ ବୋଲି ଆଶଙ୍କା କରି ଶୋକ କରୁଥାଅ, ତେବେ ତୁମର ସେପରି ଶୋକ କରିବା ଅନୁଚିତ ।''

**ପ୍ରଶ୍ନ –** **ସତଃ** ପଦଟି ଏଠାରେ କାହାର ବାଚକ ? 'ତାହାର ଅଭାବ ନାହିଁ' କହିବାର ଅଭିପ୍ରାୟ କଣ ?

**ଉତ୍ତର –** **ସତଃ** ପଦଟି ଏଠାରେ ପରମାତ୍ମତତ୍ତ୍ୱର ବାଚକ, ଯାହା କି ସର୍ବବ୍ୟାପୀ ଓ ନିତ୍ୟ । 'ତାହାର ଅଭାବ ନାହିଁ', କହିବାର ଅଭିପ୍ରାୟ ହେଲା, ''ତାହାର କେବେ କୌଣସି ପରିସ୍ଥିତିରେ ପରିବର୍ତ୍ତନ ବା ଅଭାବ ହୁଏ ନାହିଁ । ତାହା ସର୍ବଦା ଏକରସ, ଅଖଣ୍ଡ ଏବଂ ନିର୍ବିକାର ରହେ । ତେଣୁ ତୁମେ ଯଦି ଆତ୍ମରୂପରେ ଭୀଷ୍ମାଦିଙ୍କର ନାଶ ଆଶଙ୍କା କରି ଶୋକ କରୁଥାଅ, ତେବେ ମଧ୍ୟ ତୁମର ଶୋକ କରିବା ଉଚିତ ନୁହେଁ ।''

**ପ୍ରଶ୍ନ –** **ଅନୟୋଃ** ବିଶେଷଣ ସହିତ **ଉଭୟୋଃ** ପଦଟି କାହାର ବାଚକ ? 'ତତ୍ତ୍ୱଦର୍ଶୀ ଜ୍ଞାନୀ ପୁରୁଷଙ୍କ ଦ୍ୱାରା ତାହାର ତତ୍ତ୍ୱ ଦେଖାଯାଏ' କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** **ଅନୟୋଃ** ବିଶେଷଣ ସହିତ **ଉଭୟୋଃ** ପଦଟି ହେଉଛି ଉପରୋକ୍ତ 'ଅସତ୍' ଓ 'ସତ୍' ଦୁହିଁଙ୍କର ବାଚକ । ତତ୍ତ୍ୱଜ୍ଞ ମହାପୁରୁଷମାନେ ଏହି ଦୁଇ ବସ୍ତୁର ବିବେଚନା କରି ନିଶ୍ଚିତଭାବରେ ଜାଣିପାରନ୍ତି ଯେ, ଯେଉଁ ବସ୍ତୁର ପରିବର୍ତ୍ତନ ଓ ନାଶ ହୁଏ, ଯାହା ସବୁବେଳେ ରହେ ନାହିଁ, ତାହା 'ଅସତ୍' । ଅର୍ଥାତ୍ 'ଅସତ୍' ବସ୍ତୁ ବିଦ୍ୟମାନ ରହିବା ସମ୍ଭବ ନୁହେଁ ଏବଂ ଯାହାର କୌଣସି ଅବସ୍ଥାରେ ବି, କୌଣସି କାରଣରୁ ବି ପରିବର୍ତ୍ତନ ଏବଂ ନାଶ ହୁଏ ନାହିଁ, ଯାହା ସଦାସର୍ବଦା ବିଦ୍ୟମାନ ରହେ, ତାହା 'ସତ୍', ଅର୍ଥାତ୍ 'ସତ୍'ର କଦାପି ଅଭାବ ହୁଏ ନାହିଁ । ଏହା ହିଁ 'ତତ୍ତ୍ୱଦର୍ଶୀ ପୁରୁଷମାନଙ୍କ ଦ୍ୱାରା ଏହି ଉଭୟ ତତ୍ତ୍ୱ ଦେଖାଯାଏ' କହିବାର ତାତ୍ପର୍ଯ୍ୟ ।

**ସମ୍ବନ୍ଧ –** ପୂର୍ବଶ୍ଳୋକରେ ଯେଉଁ 'ସତ୍' ତତ୍ତ୍ୱ ବିଷୟରେ 'ତାହାର ଅଭାବ ନାହିଁ' ବୋଲି କୁହାଯାଇଛି, ସେହି 'ସତ୍' ତତ୍ତ୍ୱଟି କ'ଣ ? ଏହି ପ୍ରଶ୍ନ ଉପରେ ଭଗବାନ୍ କହୁଛନ୍ତି –

**ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତମ୍ ।**
**ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତ୍ତୁମର୍ହତି ॥ ୧୭ ॥**

**ଅନ୍ୱୟ –** ତୁ = ଏହି କାରଣରୁ; ଅବିନାଶି = ନାଶରହିତ (ବୋଲି); ତତ୍ = ତାହାକୁ; ବିଦ୍ଧି = ଜାଣ; ଯେନ = ଯାହାଙ୍କ ଦ୍ୱାରା; ଇଦମ୍ = ଏହି; ସର୍ବମ୍ = ସମ୍ପୂର୍ଣ୍ଣ ଦୃଶ୍ୟଜଗତ; ତତମ୍ = ବ୍ୟାପ୍ତ; ଅସ୍ୟ, ଅବ୍ୟୟସ୍ୟ = ଏହି ଅବିନାଶୀଙ୍କ; ବିନାଶମ୍ = ବିନାଶ; କର୍ତ୍ତୁମ୍ = କରିବାକୁ; କଶ୍ଚିତ୍ = କେହି ହେଲେ; ନ, ଅର୍ହତି = ସମର୍ଥ ନୁହେଁ।

**ଏହି ନ୍ୟାୟରେ ଯାହାଙ୍କ ଦ୍ୱାରା ଏହି ସମ୍ପୂର୍ଣ୍ଣ ଦୃଶ୍ୟଜଗତ୍ ବ୍ୟାପ୍ତ ହୋଇଛି, ତାହାଙ୍କୁ ଅବିନାଶୀ ବୋଲି ଜାଣ। ସେହି ଅବିନାଶୀଙ୍କୁ ବିନାଶ କରିବାକୁ କେହି ହେଲେ ସମର୍ଥ ନୁହେଁ॥ ୧୭ ॥**

**ପ୍ରଶ୍ନ –** ସର୍ବମ୍ ସହିତ ଇଦମ୍ ପଦ ଏଠାରେ କାହାର ବାଚକ ଏବଂ ତାହା କାହାଦ୍ୱାରା ବ୍ୟାପ୍ତ ହୋଇ ରହିଛି ତଥା ଯାହାଦ୍ୱାରା ବ୍ୟାପ୍ତ ହୋଇଛି, ତାହାଙ୍କୁ ଅବିନାଶୀ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ 'ସର୍ବମ୍' ସହିତ 'ଇଦମ୍' ପଦଟି ହେଉଛି ଶରୀର, ଇନ୍ଦ୍ରିୟ, ମନ, ଭୋଗସାମଗ୍ରୀ ଏବଂ ଭୋଗସ୍ଥାନ ଆଦି ସମସ୍ତ ଜଡ଼ବର୍ଗର ବାଚକ। ସେହି ସମସ୍ତ ଜଡ଼ବର୍ଗ ଚେତନ ପରମାତ୍ମତତ୍ତ୍ୱଦ୍ୱାରା ବ୍ୟାପ୍ତ। ସେହି ପରମାତ୍ମତତ୍ତ୍ୱକୁ ଅବିନାଶୀ ବୋଲି କହି ଭଗବାନ୍ ଦେଖାଉଛନ୍ତି ଯେ, ପୂର୍ବଶ୍ଳୋକରେ ଯେଉଁ 'ସତ୍' ତତ୍ତ୍ୱର ଲକ୍ଷଣ କୁହାଯାଇଛି ତଥା ତତ୍ତ୍ୱଜ୍ଞାନୀମାନେ ଯାହାକୁ 'ସତ୍' ବୋଲି ନିଶ୍ଚୟ କରିଛନ୍ତି, ସେହି ପରମାତ୍ମା ହିଁ ଅବିନାଶୀ ନାମରେ କଥିତ ହୁଅନ୍ତି।

**ପ୍ରଶ୍ନ –** 'ଏହି ଅବିନାଶୀଙ୍କୁ ବିନାଶ କରିବାକୁ କେହି ବି ସମର୍ଥ ନୁହଁନ୍ତି' – ଏପରି ବକ୍ତବ୍ୟର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଆକାଶ ମେଘମାଳାରେ ବ୍ୟାପ୍ତ ହୋଇଥିବା ପରି ପରମାତ୍ମତତ୍ତ୍ୱଦ୍ୱାରା ସମସ୍ତ ଜଡ଼ବର୍ଗ ବ୍ୟାପ୍ତ ହୋଇଥିବାରୁ ତା'ଭିତରୁ କେହି ବି ଏହି ପରମାତ୍ମତତ୍ତ୍ୱକୁ ନାଶ କରିପାରିବେ ନାହିଁ; ଅତଏବ ସଦାସର୍ବଦା ବିଦ୍ୟମାନ ରହିଥିବାରୁ ଏହା ଏକମାତ୍ର 'ସତ୍' ତତ୍ତ୍ୱ ଅଟେ।

**ସମ୍ବନ୍ଧ –** 'ସତ୍' ତତ୍ତ୍ୱର ବ୍ୟାଖ୍ୟା କରିସାରିବା ପରେ, ବର୍ତ୍ତମାନ 'ଅସତ୍' ବସ୍ତୁ କ'ଣ, ତାହା କହୁଛନ୍ତି –

**ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।**
**ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍‌ଯୁଧ୍ୟସ୍ୱ ଭାରତ ॥ ୧୮ ॥**

**ଅନ୍ୱୟ –** ଅନାଶିନଃ = ନାଶରହିତ; ଅପ୍ରମେୟସ୍ୟ = ଅପ୍ରମେୟ; ନିତ୍ୟସ୍ୟ = ନିତ୍ୟସ୍ୱରୂପ; ଶରୀରିଣଃ = ଜୀବାତ୍ମାର; ଇମେ, ଦେହାଃ = ଏହି ଶରୀରଗୁଡ଼ିକ; ଅନ୍ତବନ୍ତଃ = ନାଶବାନ୍ (ବୋଲି); ଉକ୍ତାଃ = କୁହାଯାଇଛି; ତସ୍ମାତ୍ = ତେଣୁ; ଭାରତ = ହେ ଭରତବଂଶୀ ଅର୍ଜୁନ ! (ତୁମେ); ଯୁଧ୍ୟସ୍ୱ = ଯୁଦ୍ଧ କର।

**ନାଶରହିତ, ଅପ୍ରମେୟ, ନିତ୍ୟସ୍ୱରୂପ ଜୀବାତ୍ମାର ଏହି ଶରୀରଗୁଡ଼ିକ ନାଶବାନ୍ ବୋଲି କୁହାଯାଇଛି। ତେଣୁ ହେ ଭରତବଂଶୀ ଅର୍ଜୁନ! ତୁମେ ଯୁଦ୍ଧ କର॥ ୧୮ ॥**

**ପ୍ରଶ୍ନ –** ଇମେ ସହିତ ଦେହାଃ ପଦ ଏଠାରେ କେଉଁମାନଙ୍କ ବାଚକ ? ଏହିସବୁକୁ ଅନ୍ତବନ୍ତଃ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଇମେ ସହିତ ଦେହାଃ ପଦଟି ଏଠାରେ ଶରୀରମାନଙ୍କ ବାଚକ। ଅସତ୍‌ର ବ୍ୟାଖ୍ୟା କରିବାପାଇଁ ଏମାନଙ୍କୁ ଅନ୍ତବନ୍ତଃ କୁହାଯାଇଛି। ଅଭିପ୍ରାୟ ହେଲା, ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ସହିତ ସକଳ ଶରୀର ନାଶବାନ୍; କିନ୍ତୁ ସ୍ୱପ୍ନର ଶରୀର ଏବଂ ସମସ୍ତ

ଜଗତ ଯେପରି ନ ଥିଲେ ମଧ୍ୟ ଥିଲାପରି ପ୍ରତୀତ ହୁଏ, ସକଳ ଶରୀର ସେହିପରି ନ ଥିଲେ ମଧ୍ୟ ଅଜ୍ଞାନହେତୁ ଥିଲାପରି ପ୍ରତୀତ ହେଉଛି; ବାସ୍ତବରେ ଏମାନଙ୍କର ସତ୍ତା ବୋଲି କିଛି ନାହିଁ। ତେଣୁ ଏମାନଙ୍କର ନାଶ ଅବଶ୍ୟମ୍ଭାବୀ। ଅତଏବ ଏମାନଙ୍କ ପାଇଁ ଶୋକ କରିବା ବୃଥା।

**ପ୍ରଶ୍ନ –** ଏଠାରେ **ଦେହାଃ** ପଦରେ ବହୁବଚନ ଏବଂ **ଶରୀରିଣଃ** ପଦରେ ଏକବଚନ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ଏହି ପ୍ରୟୋଗଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ସକଳ ଶରୀରରେ ଏକ ହିଁ ଆତ୍ମା ବିଦ୍ୟମାନ। ଶରୀରମାନଙ୍କ ଭେଦରେ, ଅଜ୍ଞାନହେତୁ ଆତ୍ମାରେ ମଧ୍ୟ ପ୍ରଭେଦ ପ୍ରତୀତ ହୁଏ; କିନ୍ତୁ ବାସ୍ତବରେ ପ୍ରଭେଦ ନାହିଁ।

**ପ୍ରଶ୍ନ – ଶରୀରିଣଃ** ପଦ ଏଠାରେ କାହାର ବାଚକ ? ଏବଂ ଏହା ସହିତ **ନିତ୍ୟସ୍ୟ, ଅନାଶିନଃ** ଏବଂ **ଅପ୍ରମେୟସ୍ୟ** ବିଶେଷଣ ଦେବାର ତଥା ଶରୀରମାନଙ୍କ ସହିତ ଏହାର ସମ୍ବନ୍ଧ ଦେଖାଇବାର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଯେଉଁ 'ସତ୍' ତତ୍ତ୍ୱଦ୍ୱାରା ସମସ୍ତ ଜଡ଼ବର୍ଗ ବ୍ୟାପ୍ତ ହୋଇଥିବା କଥା କହିଛନ୍ତି, ଏଠାରେ **ଶରୀରିଣଃ** ପଦଟି ହେଉଛି ସେହି ତତ୍ତ୍ୱର ବାଚକ। ଉପରୋକ୍ତ ତିନୋଟି ବିଶେଷଣ ପ୍ରୟୋଗ କରି 'ସତ୍' ତତ୍ତ୍ୱ ସହିତ ଏହାର ଏକତ୍ୱ ପ୍ରତିପାଦନ କରାଯାଇଛି ଏବଂ ଏହାକୁ ଶରୀରୀ କହି ତଥା ଶରୀରମାନଙ୍କ ସହିତ ଏହାର ସମ୍ବନ୍ଧ ଦେଖାଇ ଆତ୍ମା ଏବଂ ପରମାତ୍ମାଙ୍କର ଏକତ୍ୱ ପ୍ରତିପାଦନ କରାଯାଇଛି। ଅଭିପ୍ରାୟ ଏହି ଯେ, ବ୍ୟାବହାରିକ ଦୃଷ୍ଟିରୁ ଭିନ୍ନ ଭିନ୍ନ ଶରୀର ଧାରଣ କରିଥିବା, ସେଥିରେ ସମ୍ବନ୍ଧ ରଖୁଥିବା ଯେଉଁ ଭିନ୍ନ ଭିନ୍ନ ଆତ୍ମା ପ୍ରତୀତ ହୁଅନ୍ତି, ବସ୍ତୁତଃ ସେସବୁ ଭିନ୍ନ ଭିନ୍ନ ନୁହଁନ୍ତି; ସବୁ ଗୋଟିଏମାତ୍ର ଚେତନତତ୍ତ୍ୱ। ନିଦ୍ରା ସମୟରେ ସ୍ୱପ୍ନଜଗତରେ ଯେପରି ଜଣେ ବ୍ୟକ୍ତିକୁ ଛାଡ଼ି ଅନ୍ୟ କୌଣସି ବସ୍ତୁ ନ ଥାଏ; ସ୍ୱପ୍ନରେ ହେଉଥିବା ବିଭିନ୍ନ ଘଟଣା ନିଦ୍ରାହେତୁ ହୁଏ; ଜାଗ୍ରତ ହେବା ପରେ ବ୍ୟକ୍ତି ହିଁ ରହିଥାଏ, ଏଠାରେ ମଧ୍ୟ ସେହିପରି ସମସ୍ତ ନାନାତ୍ୱ ଅଜ୍ଞାନଜନିତ; ଜ୍ଞାନ ଆସିଯିବା ପରେ କୌଣସି ନାନାତ୍ୱ ରହେ ନାହିଁ।

**ପ୍ରଶ୍ନ –** ହେତୁବାଚକ **ତସ୍ମାତ୍** ପଦ ପ୍ରୟୋଗ କରି ଯୁଦ୍ଧପାଇଁ ଆଜ୍ଞା ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ହେତୁବାଚକ **ତସ୍ମାତ୍** ପଦ ସହିତ ଯୁଦ୍ଧପାଇଁ ଆଜ୍ଞା ଦେଇ ଭଗବାନ୍ ଏଠାରେ କହିଛନ୍ତି, "ଯେହେତୁ ଏହା ସିଦ୍ଧ ହୋଇସାରିଛି ଯେ, ଶରୀର ନାଶବାନ୍; ଏହାର ନାଶ ଅନିବାର୍ଯ୍ୟ ଏବଂ ଆତ୍ମା ନିତ୍ୟ; ଏହାର କେବେ ବି ନାଶ ହୁଏ ନାହିଁ, ତେଣୁ ଯୁଦ୍ଧରେ ସାମାନ୍ୟମାତ୍ର ଶୋକର ବି କୌଣସି କାରଣ ନାହିଁ। ଅତଏବ ବର୍ତ୍ତମାନ ତୁମେ ଯୁଦ୍ଧରେ କୌଣସିପ୍ରକାରେ ଦ୍ୱିଧାଗ୍ରସ୍ତ ହେବା ଉଚିତ ନୁହେଁ।"

*ସମ୍ବନ୍ଧ – ପୂର୍ବଶ୍ଳୋକରେ ଭଗବାନ୍ ଆତ୍ମାର ନିତ୍ୟତା ଏବଂ ନିର୍ବିକାରତା ପ୍ରତିପାଦନ କରି ଅର୍ଜୁନଙ୍କୁ ଯୁଦ୍ଧକରିବା ପାଇଁ ଆଜ୍ଞା ଦେଇଛନ୍ତି; କିନ୍ତୁ ଅର୍ଜୁନ ଯାହା କହିଥିଲେ, 'ମୁଁ ଏମାନଙ୍କୁ ମାରିବାକୁ ଚାହେଁ ନାହିଁ; ଏବଂ ଯଦି ସେମାନେ ମୋତେ ମାରିଦିଅନ୍ତି, ତେବେ ତାହା ମୋ ପକ୍ଷରେ ମଙ୍ଗଳକର ହେବ', ତାହାର ସ୍ପଷ୍ଟ ସମାଧାନ କରି ନାହାନ୍ତି। ତେଣୁ ପରବର୍ତ୍ତୀ ଶ୍ଳୋକରେ 'ଆତ୍ମା ମରେ ବା ମାରେ ବୋଲି ମାନିବା ହିଁ ଅଜ୍ଞାନ ବୋଲି କହି ତାହାର ସମାଧାନ କରୁଛନ୍ତି –*

**ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍।**
**ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ॥ ୧୯ ॥★**

**ଅନ୍ୱୟ –** **ଯଃ** = ଯେ; **ଏନମ୍** = ଏହି ଆତ୍ମାକୁ; **ହନ୍ତାରମ୍** = ହତ୍ୟାକାରୀ; **ବେତ୍ତି** = (ବୋଲି) ବୁଝେ; **ଚ** = ତଥା; **ଯଃ** = ଯେ; **ଏନମ୍** = ଏହାକୁ; **ହତମ୍** = ନିହତ; **ମନ୍ୟତେ** = (ବୋଲି) ମନେ କରେ; **ତୌ, ଉଭୌ** = ସେ ଉଭୟେ; **ନ, ବିଜାନୀତଃ** = ଜାଣନ୍ତି ନାହିଁ (କାରଣ); **ଅୟମ୍** = ଏହି ଆତ୍ମା (ବାସ୍ତବରେ); **ନ, ହନ୍ତି** = କାହାରିକୁ ହତ୍ୟା କରେ ନାହିଁ; **ନ, ହନ୍ୟତେ** = କାହାରି ଦ୍ୱାରା ହତ ହୁଏ ନାହିଁ।

---

★ ହନ୍ତା ଚେନ୍ମନ୍ୟତେ ହନ୍ତୁଂ ହତଶ୍ଚେନ୍ମନ୍ୟତେ ହତମ୍। ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ॥

(କଠ. ଉ. ୧/୨/୧୯)

**ଯେ ଏହି ଆତ୍ମା ହତ୍ୟା କରେ ବୋଲି ବୁଝନ୍ତି ତଥା ଯେ ଏହା ନିହତ ହୁଏ ବୋଲି ସ୍ୱୀକାର କରନ୍ତି, ସେ ଉଭୟେ ଆତ୍ମା ବିଷୟରେ କିଛି ଜାଣନ୍ତି ନାହିଁ; କାରଣ ଏହି ଆତ୍ମା ବାସ୍ତବରେ କାହାରିକୁ ହତ୍ୟା କରେ ନାହିଁ, କି କାହାରି ଦ୍ୱାରା ନିହତ ହୁଏ ନାହିଁ ॥ ୧୯ ॥**

**ପ୍ରଶ୍ନ –** ଯଦି ଆତ୍ମା ମରେ ନାହିଁ, କି କାହାରିକୁ ମାରେ ନାହିଁ, ତେବେ ମରେ କିଏ ଓ ମାରେ କିଏ ?

**ଉତ୍ତର –** ସ୍ଥୂଳଶରୀରରୁ ସୂକ୍ଷ୍ମ ଶରୀରର ବିୟୋଗକୁ 'ମରିବା' କହନ୍ତି। ତେଣୁ ସ୍ଥୂଳଶରୀର ହିଁ ମରେ; ଏହି କାରଣରୁ ପୂର୍ବଶ୍ଳୋକରେ **ଅନ୍ତବନ୍ତ ଇମେ ଦେହାଃ** ବୋଲି କୁହାଯାଇଛି। ଠିକ୍ ସେହିପରି ମନବୁଦ୍ଧି ସହିତ ଯେଉଁ ସ୍ଥୂଳଶରୀରର କ୍ରିୟାଦ୍ୱାରା କୌଣସି ଅନ୍ୟ ସ୍ଥୂଳଶରୀରର ପ୍ରାଣବିୟୋଗ ହୁଏ, ତାହା ହତ୍ୟା କରେ ବୋଲି କହନ୍ତି। ତେଣୁ ଯେ ମାରେ, ସେ ବି ଶରୀର; ଆତ୍ମା ନୁହେଁ। କିନ୍ତୁ ଶରୀରର ଧର୍ମକୁ ନିଜ ଉପରେ ଅଧ୍ୟାରୋପିତ କରି ଅଜ୍ଞାନୀ ଲୋକେ ଆତ୍ମା ମାରେ (କର୍ତ୍ତା) ବୋଲି ମନେ କରନ୍ତି (୩/୨୭); ତେଣୁ ସେମାନଙ୍କୁ ସେହି କର୍ମର ଫଳ ଭୋଗିବାକୁ ପଡ଼େ।

*ସମ୍ବନ୍ଧ – ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଆତ୍ମା କାହାରି ଦ୍ୱାରା ମରେ ନାହିଁ। ଏହା ଉପରେ ପ୍ରଶ୍ନ ହୁଏ: କେଉଁ କାରଣରୁ ଆତ୍ମା କାହାରି ଦ୍ୱାରା ମରାଯାଇପାରେ ନାହିଁ? ଏହାର ଉତ୍ତରରେ ଭଗବାନ୍ ଆତ୍ମାରେ ସବୁପ୍ରକାର ବିକାରର ଅଭାବ ଥିବା କଥା କହି ତାହାର ସ୍ୱରୂପ ପ୍ରତିପାଦନ କରୁଛନ୍ତି –*

**ନ ଜାୟତେ ମ୍ରିୟତେ ବା କଦାଚିନ୍ –**
**ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ।**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ**
**ନ ହନ୍ୟତେ ହନ୍ୟମାନେ ଶରୀରେ ॥ ୨୦ ॥**

**ଅନ୍ୱୟ –** **ଅୟମ୍** = ଏହି ଆତ୍ମା; **କଦାଚିତ୍** = କୌଣସି କାଳରେ; **ନ, ଜାୟତେ** = ଜନ୍ମ ହୁଏ ନାହିଁ; **ବା** = ଏବଂ; **ନ, ମ୍ରିୟତେ** = ମରେ ନାହିଁ; **ବା** = ତଥା; **ଭୂତ୍ୱା** = ଉତ୍ପନ୍ନ ହୋଇ; **ଭୂୟଃ** = ପରେ; **ନ, ଭବିତା** = ହୁଏ ନାହିଁ; **ଅୟମ୍** = ଏହା; **ଅଜଃ** = ଅଜନ୍ମା; **ନିତ୍ୟଃ** = ନିତ୍ୟ; **ଶାଶ୍ୱତଃ** = ସନାତନ (ଏବଂ); **ପୁରାଣଃ** = ପୁରାତନ ଅଟେ; **ଶରୀରେ** = ଶରୀରକୁ; **ହନ୍ୟମାନେ** = ହତ୍ୟା କଲେ ମଧ୍ୟ; **ନ, ହନ୍ୟତେ** = ନିହତ ହୁଏ ନାହିଁ

**ଏହି ଆତ୍ମା କୌଣସି କାଳରେ ବି ଜନ୍ମ ହୁଏ ନାହିଁ, କି ମରେ ନାହିଁ ତଥା ଏହା ଉତ୍ପନ୍ନ ହେବା ପରେ ଯେ ହୁଏ, ସେପରି ନୁହେଁ; କାରଣ ଏହା ହେଉଛି ଅଜନ୍ମା, ନିତ୍ୟ, ସନାତନ ଏବଂ ପୁରାତନ। ଶରୀରକୁ ବଧ କରିଦେଲେ ମଧ୍ୟ ଏହା ନିହତ ହୁଏ ନାହିଁ ॥ ୨୦ ॥**

**ପ୍ରଶ୍ନ –** ନ ଜାୟତେ, ମ୍ରିୟତେ – ଏହି ଦୁଇ କ୍ରିୟାପଦର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଆତ୍ମାର ଉତ୍ପତ୍ତି–ବିନାଶରୂପକ ଆଦି-ଅନ୍ତ ଉଭୟପ୍ରକାର ବିକାରର ଅଭାବ ଦର୍ଶାଇ ଉତ୍ପତ୍ତି ଆଦି ଛଅବିକାରର ଅଭାବ ସିଦ୍ଧ କରିଛନ୍ତି ଏବଂ ଏହା ଛଡ଼ା ପ୍ରତ୍ୟେକ ବିକାରର ଅଭାବ ଦେଖାଇବାକୁ ଅଲଗା ଅଲଗା ଶବ୍ଦ ମଧ୍ୟ ପ୍ରୟୋଗ କରିଛନ୍ତି।

**ପ୍ରଶ୍ନ –** ଉତ୍ପତ୍ତି ଆଦି ଷଡ଼ବିକାର କ'ଣ ? ଏହି ଶ୍ଳୋକରେ କେଉଁ କେଉଁ ଶବ୍ଦଦ୍ୱାରା ଆତ୍ମାରେ ତାହାର ଅଭାବ ସିଦ୍ଧ କରିଛନ୍ତି ?

**ଉତ୍ତର –** ୧- ଉତ୍ପତ୍ତି (ଜନ୍ମ ହେବା), ୨- ଅସ୍ତିତ୍ୱ (ଜନ୍ମ ହୋଇ ସତ୍ତାଯୁକ୍ତ ହେବା), ୩- ବୃଦ୍ଧି (ବଢ଼ିବା), ୪-ବିପରିଣାମ (ରୂପାନ୍ତର ପ୍ରାପ୍ତ ହେବା), ୫- ଅପକ୍ଷୟ (କ୍ଷୟ ହେବା), ୬- ବିନାଶ (ମରିଯିବା) — ବିକାର ଏହିପରି ଛଅପ୍ରକାର। ଏଥିମଧ୍ୟରୁ ଆତ୍ମାକୁ **ଅଜଃ**

(ଅଜନ୍ମା) କହି ସେଥିରେ ଉତ୍ପତ୍ତିରୂପୀ ବିକାରର ଅଭାବ ଦେଖାଇଛନ୍ତି। **ଅୟଂ ଭୂତ୍ୱା ଭୂୟଃ ନ ଭବିତା** ଅର୍ଥାତ୍ ଏହା ଜନ୍ମ ହେବା ପରେ ସତ୍ତାଯୁକ୍ତ ହୁଏ ନାହିଁ, ବରଂ ସ୍ୱଭାବତଃ ସତ୍ ଅଟେ – ଏହା କହି ଅସ୍ତିତ୍ୱରୂପୀ ବିକାରର, **ପୁରାଣଃ** (ଚିରସ୍ଥାୟୀ ଏବଂ ସଦା ଏକରସ ରହୁଥିବା) କହି ବୃଦ୍ଧିରୂପୀ ବିକାରର, **ଶାଶ୍ୱତଃ** (ସଦା ଏକରୂପରେ ସ୍ଥିତ) କହି ବିପରିଣାମର, **ନିତ୍ୟଃ** (ଅଖଣ୍ଡ ସତ୍ତାଯୁକ୍ତ) କହି **କ୍ଷୟର** ଏବଂ **ଶରୀରେ ହନ୍ୟମାନେ ନ ହନ୍ୟତେ** (ଶରୀର ନାଶରେ ଏହାର ନାଶ ହୁଏ ନାହିଁ) କହି ବିନାଶର ଅଭାବ ଦର୍ଶାଇଛନ୍ତି।

*ସମ୍ବନ୍ଧ – ଉଣେଇଶ ଶ୍ଳୋକରେ ଭଗବାନ୍ କହିଛନ୍ତି ଯେ, ଆତ୍ମା କାହାକୁ ମାରେ ନାହିଁ, କି କାହାରି ଦ୍ୱାରା ମରାଯାଏ ନାହିଁ। ସେହି ଅନୁସାରେ କୋଡ଼ିଏ ଶ୍ଳୋକରେ ତାହାକୁ ବିକାରରହିତ କହି ତାହା କାହିଁକି ମରାଯାଇପାରେ ନାହିଁ, ତାହା ପ୍ରତିପାଦନ କରିଛନ୍ତି। ସେ କାହିଁକି କାହାକୁ ମାରେ ନାହିଁ, ତାହା ପରବର୍ତ୍ତୀ ଶ୍ଳୋକରେ କହୁଛନ୍ତି –*

## ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟମ୍।
## କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କମ୍॥ ୨୧ ॥

**ଅନ୍ୱୟ –** **ପାର୍ଥ** = ହେ ପୃଥାପୁତ୍ର ଅର୍ଜୁନ; **ଯଃ** = ଯେଉଁ; **ପୁରୁଷଃ** = ପୁରୁଷ; **ଏନମ୍** = ଏହି ଆତ୍ମାକୁ; **ଅବିନାଶିନମ୍** = ନାଶରହିତ; **ନିତ୍ୟମ୍** = ନିତ୍ୟ; **ଅଜମ୍** = ଅଜନ୍ମା; (ଏବଂ) **ଅବ୍ୟୟମ୍** = ଅବ୍ୟୟ; **ବେଦ** = ବୋଲି ଜାଣେ; **ସଃ** = ସେହି ପୁରୁଷ; **କଥମ୍** = କିପରି; **କମ୍** = କାହାକୁ; **ଘାତୟତି** = ବଧ କରାଏ (ଏବଂ); **(କଥମ୍)** = କିପରି; **କମ୍** = କାହାକୁ; **ହନ୍ତି** = ବଧ କରେ।

**ହେ ପୃଥାପୁତ୍ର ଅର୍ଜୁନ! ଯେଉଁ ପୁରୁଷ ଏହି ଆତ୍ମାକୁ ନାଶରହିତ, ନିତ୍ୟ, ଅଜନ୍ମା ଓ ଅବ୍ୟୟ ବୋଲି ଜାଣନ୍ତି, ସେହି ପୁରୁଷ କାହାକୁ କିପରି ବଧ କରିବେ ବା ବଧ କରାଇବେ ?॥ ୨୧ ॥**

**ପ୍ରଶ୍ନ –** ଏହି ଶ୍ଳୋକରେ ଭଗବାନଙ୍କର କେଉଁ ଅଭିପ୍ରାୟ ପ୍ରକାଶ ପାଉଛି ?

**ଉତ୍ତର –** ଏଥିରେ ଭଗବାନ୍ ଦେଖାଉଛନ୍ତି ଯେ, ଯେଉଁ ପୁରୁଷ ଆତ୍ମସ୍ୱରୂପକୁ ଯଥାର୍ଥଭାବରେ ଜାଣିଛନ୍ତି, ଯେଉଁ ପୁରୁଷ ଆତ୍ମା ଅଜନ୍ମା, ଅବିନାଶୀ, ଅବ୍ୟୟ ଏବଂ ନିତ୍ୟ ବୋଲି ଭଲଭାବରେ ଅନୁଭବ କରିଛନ୍ତି, ସେ ପୁଣି କାହାକୁ ବଧ କରିବେ କିପରି, ବା କାହାଦ୍ୱାରା କାହାକୁ ବଧ କରାଇବେ କିପରି ? ଅର୍ଥାତ୍ ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ସହିତ ସ୍ଥୂଳଶରୀରଦ୍ୱାରା ଅନ୍ୟ ଶରୀରକୁ ନାଶ କରାଗଲେ, ସେ କିପରି ସ୍ୱୀକାର କରିବେ ଯେ, ସେ କାହାରିକୁ ବଧ କରୁଛନ୍ତି ବା ଅନ୍ୟଦ୍ୱାରା କାହାରିକୁ ବଧ କରାଉଛନ୍ତି ? କାରଣ ତାଙ୍କ ଦୃଷ୍ଟିରେ ସବୁଠାରେ ଗୋଟିଏମାତ୍ର ଆତ୍ମତତ୍ତ୍ୱ ବିଦ୍ୟମାନ, ଯାହା କି ମରେ ନାହିଁ, ମରାଯାଇପାରେ ନାହିଁ ଏବଂ କାହାକୁ ମାରେ ନାହିଁ, ମରାଏ ନାହିଁ। ଅତଏବ ଏହି ମରିବା, ମରାଇବା ଓ ମାରିବା ଆଦି ସବୁ କିଛି ଅଜ୍ଞାନହେତୁ ହିଁ ଆତ୍ମାରେ ଅଧାରୋପିତ ହୋଇଛି; ବାସ୍ତବରେ ଏସବୁ କିଛି ନାହିଁ। ଏଣୁ କାହାରି ପାଇଁ ବି କୌଣସିପ୍ରକାର ଶୋକ କରିବା ଅନୁଚିତ।

*ସମ୍ବନ୍ଧ – ଏଠାରେ ଶଙ୍କା ହୁଏ : ଆତ୍ମା ନିତ୍ୟ ଏବଂ ଅବିନାଶୀ; ତାହାର ଯେବେ ନାଶ ହୁଏ ନାହିଁ, ଏଣୁ ତାହାପାଇଁ ଶୋକ କରିବା ଅନୁଚିତ ଏବଂ ଶରୀର ନାଶବାନ୍; ତାହାର ନାଶ ଅବଶ୍ୟମ୍ଭାବୀ; ତେଣୁ ଶରୀରପାଇଁ ମଧ୍ୟ ଶୋକ କରିବା ଅନୁଚିତ – ଏସବୁ ଠିକ୍, କିନ୍ତୁ ଆତ୍ମାର ଏକ ଶରୀର ସହିତ ସମ୍ବନ୍ଧ ତୁଟି ଅନ୍ୟ ଶରୀର ସହିତ ସମ୍ବନ୍ଧ ହେବାରେ ଜୀବାତ୍ମାକୁ ଯେଉଁ ଅତ୍ୟନ୍ତ କଷ୍ଟ ହୁଏ, ସେଥିପାଇଁ ଶୋକ କରିବା କିପରି ଅନୁଚିତ ? ଏହି ଶଙ୍କା ଉପରେ କହୁଛନ୍ତି –*

**ବାସାଂସି ଜୀର୍ଣ୍ଣାନି ଯଥା ବିହାୟ**
**ନବାନି ଗୃହ୍ଣାତି ନରୋଽପରାଣି ।**
**ତଥା ଶରୀରାଣି ବିହାୟ ଜୀର୍ଣ୍ଣା–**
**ନ୍ୟନ୍ୟାନି ସଂଯାତି ନବାନି ଦେହୀ ।। ୨୨ ।।**

**ଅନ୍ୱୟ –** **ଯଥା** = ଯେପରି; **ନରଃ** = ମନୁଷ୍ୟ; **ଜୀର୍ଣ୍ଣାନି** = ପୁରାତନ; **ବାସାଂସି** = ବସ୍ତ୍ରଗୁଡ଼ିକୁ; **ବିହାୟ** = ତ୍ୟାଗ କରି; **ଅପରାଣି** = ଅନ୍ୟ; **ନବାନି** = ନୂତନ (ବସ୍ତ୍ର); **ଗୃହ୍ଣାତି** = ଗ୍ରହଣ କରେ; **ତଥା** = ସେପରି; **ଦେହୀ** = ଜୀବାତ୍ମା; **ଜୀର୍ଣ୍ଣାନି** = ପୁରାତନ; **ଶରୀରାଣି** = ଶରୀରଗୁଡ଼ିକୁ; **ବିହାୟ** = ତ୍ୟାଗ କରି; **ଅନ୍ୟାନି** = ଅନ୍ୟ; **ନବାନି** = ନୂତନ (ଶରୀର); **ସଂଯାତି** = ପ୍ରାପ୍ତ ହୁଏ ।

**ମନୁଷ୍ୟ ଯେପରି ପୁରୁଣା ବସ୍ତ୍ରମାନ ତ୍ୟାଗ କରି ଅନ୍ୟ ନୂତନ ବସ୍ତ୍ର ଗ୍ରହଣ କରେ, ଜୀବାତ୍ମା ସେହିପରି ପୁରାତନ ଶରୀରମାନ ତ୍ୟାଗ କରି ଅନ୍ୟ ନୂତନ ଶରୀରମାନ ପ୍ରାପ୍ତ ହୋଇଥାଏ ।। ୨୨ ।।**

**ପ୍ରଶ୍ନ –** ପୁରାତନ ବସ୍ତ୍ର ତ୍ୟାଗ କରି ନୂତନ ବସ୍ତ୍ର ଧାରଣ କଲେ, ମନୁଷ୍ୟ ସୁଖୀ ହୁଏ, କିନ୍ତୁ ପୁରାତନ ଶରୀର ତ୍ୟାଗ କରି ନୂତନ ଶରୀର ଗ୍ରହଣ କଲେ ତ ମନୁଷ୍ୟକୁ କଷ୍ଟ ହୁଏ । ଅତଏବ ଏହି ଉଦାହରଣର ସାର୍ଥକତା ଏଠାରେ ହୋଇପାରିବ କିପରି ?

**ଉତ୍ତର –** ପୁରାତନ ଶରୀର ତ୍ୟାଗ କରି ନୂତନ ଶରୀର ଧାରଣ କଲେ ଅଜ୍ଞାନୀ ଲୋକଙ୍କୁ ହିଁ ଦୁଃଖ ହୁଏ; ବିବେକୀ ଲୋକଙ୍କୁ ହୁଏ ନାହିଁ । ମାତା ବାଳକର ପୁରୁଣା ମଇଳା ଜାମାପଟା ବାହାର କରିଦେଇ ନୂଆ ପିନ୍ଧାଇଦେବାବେଳେ ବାଳକ କାନ୍ଦେ, କିନ୍ତୁ ମାତା ସେହି କାନ୍ଦକୁ ଖାତିର ନ କରି ପିଲାର ମଙ୍ଗଳପାଇଁ ପୋଷାକ ବଦଳାଇଦିଅନ୍ତି । ସେହିପରି ଭଗବାନ୍ ବି ଜୀବର ମଙ୍ଗଳପାଇଁ ତାହାର କନ୍ଦାକଟାକୁ ଖାତିର ନ କରି ତାହାର ଦେହ ବଦଳାଇଦିଅନ୍ତି । ତେଣୁ ଏହି ଉଦାହରଣ ସମ୍ପୂର୍ଣ୍ଣ ଠିକ୍ ।

**ପ୍ରଶ୍ନ –** ଭଗବାନ୍ ଏଠାରେ ଶରୀର ସହିତ **ଜୀର୍ଣ୍ଣାନି** ପଦ ପ୍ରୟୋଗ କରିଛନ୍ତି, କିନ୍ତୁ ଏପରି କୌଣସି ନିୟମ ନାହିଁ ଯେ, ବୃଦ୍ଧ ହୋଇଗଲା ପରେ (ଶରୀର ପୁରାତନ ହେଲେ) ହିଁ ମୃତ୍ୟୁ ହେବ । କମ୍ ବୟସର ଲୋକ, ଏପରିକି ବାଳକ ମଧ୍ୟ ମରିଯାଉଛି । ତେଣୁ ଏହି ଉଦାହରଣ ତ ଯୁକ୍ତିଯୁକ୍ତ ମନେ ହେଉ ନାହିଁ ?

**ଉତ୍ତର –** ଏଠାରେ **ଜୀର୍ଣ୍ଣାନି** ପଦ ସହିତ ଅଶୀ ବା ଶହେ ବର୍ଷ ଆୟୁର ସମ୍ପର୍କ ନାହିଁ । ପ୍ରାରବ୍ଧବଶତଃ କି ଯୁବକ, କି ବାଳକ, ଯେକୌଣସି ଅବସ୍ଥାରେ ବି ପ୍ରାଣୀ ମରେ । ତାହା ହିଁ ତା'ର ଆୟୁ ବୋଲି ବୁଝିବାକୁ ହେବ ଏବଂ ଆୟୁର ସମାପ୍ତିର ନାମ ହିଁ ଜୀର୍ଣ୍ଣାବସ୍ଥା । ଏଣୁ ଉଦାହରଣଟି ସର୍ବଥା ଯୁକ୍ତିଯୁକ୍ତ ।

**ପ୍ରଶ୍ନ –** ଏଠାରେ **ବାସାଂସି** ଏବଂ **ଶରୀରାଣି** ପଦ ଦୁଇଟି ବହୁବଚନାନ୍ତ । ବସ୍ତ୍ର ବଦଳାଉଥିବା ମନୁଷ୍ୟ ଏକ ସଙ୍ଗରେ ତିନି ଚାରୋଟି ପୁରୁଣା ବସ୍ତ୍ର ତ୍ୟାଗ କରି ନୂତନ ବସ୍ତ୍ର ଧାରଣ କରିପାରେ, କିନ୍ତୁ ଦେହୀ ଅର୍ଥାତ୍ ଜୀବାତ୍ମା ତ ଗୋଟିଏମାତ୍ର ପୁରାତନ ଶରୀର ତ୍ୟାଗ କରି ଅନ୍ୟ ଗୋଟିଏମାତ୍ର ନୂତନ ଶରୀର ଧାରଣ କରେ । ଏକାସଙ୍ଗେ ବହୁତ ଶରୀର ତ୍ୟାଗ ବା ଗ୍ରହଣ ଯୁକ୍ତିଦ୍ୱାରା ସିଦ୍ଧ ନୁହେଁ । ଅତଏବ ଏଠାରେ ଶରୀରପାଇଁ ବହୁବଚନ ପ୍ରୟୋଗ ଅନୁଚିତ ବୋଲି ପ୍ରତୀତ ହେଉ ନାହିଁ କି ?

**ଉତ୍ତର –** (କ) ଜୀବାତ୍ମା ଏପର୍ଯ୍ୟନ୍ତ କେତେ ଯେ ଶରୀର ତ୍ୟାଗ କଲାଣି, ତାହା ଜଣା ନାହିଁ ଏବଂ କେତେ ଯେ ନୂତନ ଶରୀର ଗ୍ରହଣ କଲାଣି, ତଥା ଭବିଷ୍ୟତରେ ମଧ୍ୟ ଯେପର୍ଯ୍ୟନ୍ତ ତା'ର ତତ୍ତ୍ୱଜ୍ଞାନ ନ ହୋଇଛି, ସେପର୍ଯ୍ୟନ୍ତ ତାକୁ କେତେ ଯେ ପୁରାତନ ଶରୀର ତ୍ୟାଗ କରି ନୂତନ ଶରୀର ଧାରଣ କରିବାକୁ ପଡ଼ିବ, ତାହା ବି ଜଣା ନାହିଁ । ତେଣୁ ବହୁବଚନ ପ୍ରୟୋଗ କରାଯିବା ଉଚିତ ହୋଇଛି ।

(ଖ) ସ୍ଥୂଳ, ସୂକ୍ଷ୍ମ ଏବଂ କାରଣ ଭେଦରେ ଶରୀର ତିନିପ୍ରକାର । ଯେତେବେଳେ ଜୀବାତ୍ମା ଏହି ଶରୀରକୁ ଛାଡ଼ି ଅନ୍ୟ ଶରୀରକୁ ଯାଏ, ସେତେବେଳେ ଏହି ତିନୋଟିଯାକ ଶରୀର ବଦଳିଯାଏ । ମନୁଷ୍ୟ ଯେପରି

କର୍ମ କରେ, ସେହି ଅନୁସାରେ ହିଁ ତା'ର ସ୍ୱଭାବ (ପ୍ରକୃତି) ବଦଳିଚାଲେ। ସତ୍ତ୍ୱ, ରଜ, ତମ— ଏହି ତ୍ରିଗୁଣମୟୀ ବ୍ୟଷ୍ଟିପ୍ରକୃତି ହିଁ ଏଠାରେ କାରଣଶରୀର। ଏହାକୁ ସ୍ୱଭାବ କହନ୍ତି। ପ୍ରାୟ ସ୍ୱଭାବ ଅନୁସାରେ ହିଁ ଜୀବନର ଶେଷ ସମୟରେ ସଙ୍କଳ୍ପ ହୁଏ ଏବଂ ସଙ୍କଳ୍ପ ଅନୁସାରେ ହିଁ ସୂକ୍ଷ୍ମଶରୀର ହୋଇଥାଏ। କାରଣଶରୀର ଏବଂ ସୂକ୍ଷ୍ମଶରୀର ସହିତ ହିଁ ଜୀବାତ୍ମା ଏହି ଶରୀରରୁ ବାହାରି ସୂକ୍ଷ୍ମଶରୀରର ଅନୁରୂପ ସ୍ଥୂଳଶରୀର ପ୍ରାପ୍ତ ହୁଏ। ତେଣୁ ସ୍ଥୂଳ, ସୂକ୍ଷ୍ମ ଏବଂ କାରଣଭେଦରେ ତିନୋଟିଯାକ ଶରୀରର ପରିବର୍ତ୍ତନ ହେଉଥିବାରୁ ବହୁବଚନ ପ୍ରୟୋଗ ଯୁକ୍ତିଯୁକ୍ତ।

**ପ୍ରଶ୍ନ—** ଆତ୍ମା ତ ଅଚଳ, ତା'ର ଗମନାଗମନ ହୁଏ ନାହିଁ; ପୁଣି ଦେହୀ ଅନ୍ୟ ଶରୀରକୁ ଯିବା କଥା କିପରି କୁହାଯାଇଛି ?

**ଉତ୍ତର—** ପ୍ରକୃତରେ ଆତ୍ମା ଅଚଳ ଏବଂ ଅକ୍ରିୟ ହୋଇଥିବାରୁ ତାହାର କୌଣସି ବି ଅବସ୍ଥାରେ ଗମନାଗମନ ହୁଏ ନାହିଁ। କିନ୍ତୁ ଗୋଟିଏ ଘଟକୁ ଗୋଟିଏ ଘରୁ ଅନ୍ୟ ଗୋଟିଏ ଘରକୁ ନେଇଯିବା ସମୟରେ ଘଟସମ୍ବନ୍ଧହେତୁ ଘଟାକାଶର ଗମନାଗମନ ହେଲାପରି ପ୍ରତୀତ ହୁଏ; ଠିକ୍ ସେହିପରି ସୂକ୍ଷ୍ମଶରୀରର ଗମନାଗମନ ହେବାବେଳେ, ତାହା ସହିତ ସମ୍ବନ୍ଧଥିବାରୁ ଆତ୍ମାର ମଧ୍ୟ ଗମନାଗମନ ହେଲାପରି ପ୍ରତୀତ ହୁଏ। ଅତଏବ ଲୋକମାନଙ୍କୁ ବୁଝାଇବାପାଇଁ ଆତ୍ମାର ଗମନାଗମନର ଔପଚାରିକ କଳ୍ପନା କରାଯାଇଥାଏ। ଏଠାରେ 'ଦେହୀ' ଶବ୍ଦ ହେଉଛି ଦେହାଭିମାନୀ ଚେତନ(ଜୀବ)ର ବାଚକ। ଅତଏବ ଦେହ ସମ୍ବନ୍ଧରେ ସେଥିରେ ବି ଗମନାଗମନ ହେବାପରି ପ୍ରତୀତ ହୁଏ। ତେଣୁ ଦେହୀ ଅନ୍ୟ ଶରୀରକୁ ଯିବା କଥା କୁହାଯାଇଛି।

**ପ୍ରଶ୍ନ—** ବସ୍ତ୍ରପାଇଁ **ଗୃହ୍ଣାତି** ତଥା ଶରୀରପାଇଁ **ସଂଯାତି** କୁହାଯାଇଛି। ଗୋଟିଏ କ୍ରିୟାରେ ତ କାମ ଚଳିଯାଇଥାନ୍ତା, ଏଠାରେ ଦୁଇପ୍ରକାର କ୍ରିୟା ପ୍ରୟୋଗ କରାଯାଇଛି କାହିଁକି ?

**ଉତ୍ତର—** **ଗୃହ୍ଣାତି**ର ମୁଖ୍ୟ ଅର୍ଥ 'ଗ୍ରହଣ କରିବା' ଏବଂ **ସଂଯାତି**ର ମୁଖ୍ୟ ଅର୍ଥ 'ଗମନ କରିବା'। ବସ୍ତ୍ର ଗ୍ରହଣ କରାଯାଏ, ତେଣୁ ଏଠାରେ **ଗୃହ୍ଣାତି** କ୍ରିୟା ଦିଆଯାଇଛି ଏବଂ ଏକ ଶରୀର ଛାଡ଼ି ଅନ୍ୟ ଶରୀରକୁ ଯିବାର ପ୍ରତୀତ ହୁଏ, ତେଣୁ **ସଂଯାତି** କୁହାଯାଇଛି।

**ପ୍ରଶ୍ନ— ନରଃ** ଏବଂ **ଦେହୀ—** ଏପରି ଦୁଇଟି ପଦ କାହିଁକି ପ୍ରୟୋଗ କରାଯାଇଛି? ଗୋଟିକରେ ତ କାମ ଚଳିଯାଇଥାନ୍ତା ?

**ଉତ୍ତର— ନରଃ** ପଦ ମନୁଷ୍ୟମାତ୍ରର ବାଚକ ଏବଂ **ଦେହୀ** ପଦ ସକଳ ଜୀବସମୁଦାୟର ବାଚକ। ଏଣୁ ଉଭୟ ପଦ ସାର୍ଥକ। କାରଣ ବସ୍ତ୍ରର ଗ୍ରହଣ ବା ତ୍ୟାଗ ମନୁଷ୍ୟ ହିଁ କରେ, ଅନ୍ୟ ଜୀବ କରନ୍ତି ନାହିଁ। କିନ୍ତୁ ଗୋଟିଏ ଶରୀରରୁ ଅନ୍ୟ ଶରୀରକୁ ଗମନାଗମନ ସମସ୍ତ ଦେହାଭିମାନୀ ଜୀବଙ୍କର ହୁଏ। ତେଣୁ ବସ୍ତ୍ର ସହିତ **ନରଃ** ଏବଂ ଶରୀର ସହିତ **ଦେହୀ** ପ୍ରୟୋଗ କରାଯାଇଛି।

*__ସମ୍ବନ୍ଧ—__ ଏପରିଭାବରେ ଏକ ଶରୀର ଛାଡ଼ି ଅନ୍ୟ ଶରୀର ପ୍ରାପ୍ତ ହେଲେ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରି ବର୍ତ୍ତମାନ ଭଗବାନ୍ ଆତ୍ମାର ସ୍ୱରୂପ ଦୁର୍ବିଜ୍ଞେୟ ହୋଇଥିବାରୁ ପରବର୍ତ୍ତୀ ତିନୋଟି ଶ୍ଳୋକଦ୍ୱାରା ପ୍ରକାରାନ୍ତରେ ତାହାର ନିତ୍ୟତା, ନିରାକାରତା ଏବଂ ନିର୍ବିକାରତା ପ୍ରତିପାଦନ କରି ତାହାର ବିନାଶ ଆଶଙ୍କାରେ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରୁଛନ୍ତି—*

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ।**
**ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ।। ୨୩ ।।**

**ଅନ୍ୱୟ—** ଏନମ୍ = ଏହି ଆତ୍ମାକୁ; **ଶସ୍ତ୍ରାଣି** = ଶସ୍ତ୍ରମାନେ; ନ, **ଛିନ୍ଦନ୍ତି** = କାଟିପାରନ୍ତି ନାହିଁ; **ଏନମ୍** = ଏହାକୁ; ପାବକଃ = ଅଗ୍ନି; ନ, **ଦହତି** = ଜଳାଏ ନାହିଁ; **ଏନମ୍** = ଏହାକୁ; **ଆପଃ** = ଜଳ; ନ, **କ୍ଳେଦୟନ୍ତି** = ଭିଜାଇପାରେ ନାହିଁ; ଚ = ଏବଂ; **ମାରୁତଃ** = ବାୟୁ; ନ **ଶୋଷୟତି** = ଶୁଖାଇପାରେ ନାହିଁ।

**ଏହି ଆତ୍ମାକୁ କୌଣସି ଶସ୍ତ୍ର ବି କାଟିପାରେ ନାହିଁ; ଅଗ୍ନି ଏହାକୁ ଜଳାଇପାରେ ନାହିଁ; ଜଳ ଏହାକୁ ଭିଜାଇପାରେ ନାହିଁ ଏବଂ ବାୟୁ ଏହାକୁ ଶୁଖାଇପାରେ ନାହିଁ।। ୨୩ ।।**

**ପ୍ରଶ୍ନ –** ଏହି ଶ୍ଲୋକର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନ ଅସ୍ତ୍ରଶସ୍ତ୍ରଦ୍ୱାରା ନିଜର ଗୁରୁଜନ ଏବଂ ଭାଇବନ୍ଧୁମାନଙ୍କର ନାଶ ହେବା ଆଶଙ୍କାରେ ଶୋକ କରୁଥିଲେ; ଅତଏବ ତାଙ୍କର ଶୋକ ଦୂର କରିବାକୁ ଭଗବାନ୍ ଏହି ଶ୍ଲୋକରେ ପୃଥିବୀ ଆଦି ଚାରିଭୂତ ଆତ୍ମାକୁ ନାଶ କରିବାପାଇଁ ଅସମର୍ଥ ବୋଲି କହି ନିର୍ବିକାର ଆତ୍ମାର ନିତ୍ୟତ୍ୱ ଓ ନିରାକାରତ୍ୱ ସିଦ୍ଧ କରିଛନ୍ତି । ଅଭିପ୍ରାୟ ଏହି ଯେ, ଶସ୍ତ୍ରଦ୍ୱାରା ଶରୀରକୁ କାଟିଲେ ମଧ୍ୟ ଆତ୍ମା କଟେ ନାହିଁ; ଆଗ୍ନେୟାସ୍ତ୍ରଦ୍ୱାରା ଶରୀରକୁ ଜଳାଇଦେଲେ ମଧ୍ୟ ଆତ୍ମା ଜଳେ ନାହିଁ; ବରୁଣାସ୍ତ୍ରଦ୍ୱାରା ଶରୀରକୁ ଭିଜାଇଦେଲେ ମଧ୍ୟ ଆତ୍ମା ଭିଜେ ନାହିଁ ଏବଂ ବାୟବ୍ୟାସ୍ତ୍ରଦ୍ୱାରା ଶରୀରକୁ ଶୁଖାଇଦିଆଗଲେ ମଧ୍ୟ ଆତ୍ମା ଶୁଖେ ନାହିଁ। ଶରୀର ଅନିତ୍ୟ ଓ ସାକାର ବସ୍ତୁ; ଆତ୍ମା ନିତ୍ୟ ଓ ନିରାକାର । ଅତଏବ କୌଣସି ବି ଅସ୍ତ୍ର-ଶସ୍ତ୍ରାଦି ପୃଥିବୀତତ୍ତ୍ୱଦ୍ୱାରା ବା ବାୟୁ, ଅଗ୍ନି ଏବଂ ଜଳଦ୍ୱାରା ଏହାକୁ ନାଶ କରାଯାଇପାରିବ ନାହିଁ।

**ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ।**
**ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ ।। ୨୪ ।।**

**ଅନ୍ୱୟ –** **ଅୟମ୍** = ଏହି ଆତ୍ମା; **ଅଚ୍ଛେଦ୍ୟଃ** = ଛେଦଯୋଗ୍ୟ ନୁହେଁ; **ଅୟମ୍** = ଏହି ଆତ୍ମା; **ଅଦାହ୍ୟଃ** = ଦାହଯୋଗ୍ୟ ନୁହେଁ; **ଅକ୍ଲେଦ୍ୟଃ** = କ୍ଲେଦଯୋଗ୍ୟ ନୁହେଁ; **ଚ** = ଏବଂ; **ଏବ** = ନିଃସନ୍ଦେହ; **ଅଶୋଷ୍ୟଃ** = ଶୋଷଣଯୋଗ୍ୟ ନୁହେଁ (ତଥା); **ଅୟମ୍** = ଏହି ଆତ୍ମା; **ନିତ୍ୟଃ** = ନିତ୍ୟ; **ସର୍ବଗତଃ** = ସର୍ବବ୍ୟାପୀ; **ଅଚଳଃ** = ଅଚଳ; **ସ୍ଥାଣୁଃ** = ସ୍ଥିର; **ସନାତନଃ** = ସନାତନ ।

**କାରଣ ଏହି ଆତ୍ମା ଅଚ୍ଛେଦ୍ୟ; ଏହା ଅଦାହ୍ୟ, ଅକ୍ଲେଦ୍ୟ ଓ ନିଃସନ୍ଦେହ ଅଶୋଷ୍ୟ ତଥା ଏହା ହେଉଛି ନିତ୍ୟ, ସର୍ବଗତ, ସ୍ଥିର, ଅଚଳ ଓ ସନାତନ ।। ୨୪ ।।**

**ପ୍ରଶ୍ନ –** ପୂର୍ବଶ୍ଲୋକରେ କହିଦିଆଯାଇଥିଲା ଯେ, ଶସ୍ତ୍ରାଦିଦ୍ୱାରା ଆତ୍ମା ନଷ୍ଟ ହୋଇପାରିବ ନାହିଁ; ପୁଣି ଏହି ଶ୍ଲୋକରେ ତାହାକୁ ଦ୍ୱିତୀୟ ଥର ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଲେଦ୍ୟ ଏବଂ ଅଶୋଷ୍ୟ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଆତ୍ମତତ୍ତ୍ୱକୁ ଶସ୍ତ୍ରାଦିଦ୍ୱାରା ନାଶ ହୋଇ ନ ପାରିବାର କାରଣ ପ୍ରତିପାଦନ କରୁଛନ୍ତି। ଅଭିପ୍ରାୟ ଏହି ଯେ, ଆତ୍ମା କଟିବା ଯୋଗ୍ୟ, ଜଳିବା ଯୋଗ୍ୟ, କ୍ଲେଦନଯୋଗ୍ୟ ବା ଶୁଖିବା ଯୋଗ୍ୟ ବସ୍ତୁ ନୁହେଁ। ତାହା ଅଖଣ୍ଡ, ଅବ୍ୟକ୍ତ, ଏକରସ ଏବଂ ନିର୍ବିକାର। ତେଣୁ ତାହାକୁ ନାଶ କରିବାକୁ କୌଣସି ଶସ୍ତ୍ରାଦି ମଧ୍ୟ ସମର୍ଥ ନୁହେଁ।

**ପ୍ରଶ୍ନ –** ଅଚ୍ଛେଦ୍ୟାଦି ଶବ୍ଦଦ୍ୱାରା ଆତ୍ମାର ନିତ୍ୟତ୍ୱ ପ୍ରତିପାଦନ କରି ପୁଣି ତାହାକୁ ନିତ୍ୟ, ସର୍ବଗତ ଏବଂ ସନାତନ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅଚ୍ଛେଦ୍ୟାଦି ଶବ୍ଦଦ୍ୱାରା ଯେଉଁ ଅବିନାଶିତ୍ୱ ସିଦ୍ଧ ହେଉଅଛି, ତାହା ଆକାଶପାଇଁ ମଧ୍ୟ ସିଦ୍ଧ ହୋଇପାରେ। କାରଣ ଆକାଶ ଅନ୍ୟ ସମସ୍ତ ଭୂତଙ୍କର କାରଣ ଏବଂ ଅନ୍ୟ ସବୁଥିରେ ବ୍ୟାପ୍ତ ହୋଇଥିବାରୁ ପୃଥିବୀ ତତ୍ତ୍ୱକେ ତିଆରି ଶସ୍ତ୍ରାସ୍ତ୍ରଦ୍ୱାରା ଆକାଶକୁ କାଟିହେବ ନାହିଁ; ଅଗ୍ନିଦ୍ୱାରା ଜଳାଇ ହେବ ନାହିଁ; ଜଳଦ୍ୱାରା ଭିଜାଇ ହେବ ନାହିଁ ଏବଂ ବାୟୁଦ୍ୱାରା ଶୁଖାଇ ହେବ ନାହିଁ। ଆତ୍ମାର ଅବିନାଶିତ୍ୱ ଏହାଠାରୁ ଅତ୍ୟନ୍ତ ଭିନ୍ନ। ଏହି କଥା ସିଦ୍ଧ କରିବା ନିମିତ୍ତ ତାହାକୁ ନିତ୍ୟ, ସର୍ବଗତ ଏବଂ ସନାତନ କୁହାଯାଇଛି। ଅଭିପ୍ରାୟ ଏହି ଯେ, ଆକାଶ ନିତ୍ୟ ନୁହେଁ; ମହାପ୍ରଳୟରେ ତାହା ନାଶ ପାଇଯାଏ; କିନ୍ତୁ ଆତ୍ମାର କେବେ ନାଶ ହୁଏ ନାହିଁ; ତେଣୁ ତାହା ନିତ୍ୟ। ଆକାଶ ସର୍ବବ୍ୟାପୀ ନୁହେଁ; ତାହା କେବଳ ନିଜର କାର୍ଯ୍ୟମାତ୍ରରେ ବ୍ୟାପ୍ତ, କିନ୍ତୁ ଆତ୍ମା ସର୍ବବ୍ୟାପୀ। ଆକାଶ ସନାତନ, ନିତ୍ୟ ଓ ଅନାଦି ନୁହେଁ, କିନ୍ତୁ ଆତ୍ମା ସନାତନ — ଅନାଦି। ଏପରିଭାବରେ ଉପରୋକ୍ତ ଶବ୍ଦଗୁଡ଼ିକ ଦ୍ୱାରା ଆକାଶଠାରୁ ଆତ୍ମାର ସମ୍ପୂର୍ଣ୍ଣ ଭିନ୍ନତା ଦେଖାଇଦିଆଯାଇଛି।

**ପ୍ରଶ୍ନ –** ଆତ୍ମାକୁ 'ସ୍ଥାଣୁ' ଓ 'ଅଚଳ' କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ଆତ୍ମାରେ ଚାଲିବା ଓ ହଲିବା କ୍ରିୟା ଦୁଇଟିର ଅଭାବ ଦେଖାଇଦିଆଯାଇଛି। ଗୋଟିଏ

ସ୍ଥାନରେ ରହି କମ୍ପିବାର ନାମ 'ହଲିବା' ଏବଂ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାର ନାମ 'ଚାଲିବା'। ଏହି ଦୁଇଟି କ୍ରିୟା ଆତ୍ମାରେ ନାହିଁ। ଆତ୍ମା ଚାଲେ ନାହିଁ, କି ହଲେ ନାହିଁ; କାରଣ ତାହା ସର୍ବବ୍ୟାପୀ; ଏପରି କୌଣସି ଗୋଟିଏ ବି ସ୍ଥାନ ନାହିଁ, ଯେଉଁଠାରେ କି ଆତ୍ମା ନାହିଁ।

**ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯୋଽୟମୁଚ୍ୟତେ ।**
**ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି ।। ୨୫ ।।**

**ଅନ୍ୱୟ** — **ଅୟମ୍** = ଏହି ଆତ୍ମା; **ଅବ୍ୟକ୍ତଃ** = ଅବ୍ୟକ୍ତ ଅଟେ; **ଅୟମ୍** = ଏହି ଆତ୍ମା; **ଅଚିନ୍ତ୍ୟଃ** = ଅଚିନ୍ତ୍ୟ (ଏବଂ); **ଅୟମ୍** = ଏହି ଆତ୍ମା; **ଅବିକାର୍ଯ୍ୟଃ** = ବିକାରରହିତ; **ଉଚ୍ୟତେ** = କୁହାଯାଏ; **ତସ୍ମାତ୍** = ତେଣୁ (ହେ ଅର୍ଜୁନ); **ଏନମ୍** = ଏହି ଆତ୍ମାକୁ; **ଏବମ୍** = ଏପରି; **ବିଦିତ୍ୱା** = (ବୋଲି) ଜାଣି; **ଅନୁଶୋଚିତୁମ୍** = ଅନୁଶୋଚନା କରିବା; **ନ, ଅର୍ହସି** = ତୁମର ଉଚିତ ନୁହେଁ।

**ଏହି ଆତ୍ମା ଅବ୍ୟକ୍ତ; ଏହା ଅଚିନ୍ତ୍ୟ ଏବଂ ଏହାକୁ ବିକାରରହିତ କୁହାଯାଏ। ଏଣୁ ହେ ଅର୍ଜୁନ! ଏହି ଆତ୍ମା ଏପରି ବୋଲି ଜାଣି ତୁମେ ଶୋକ କରିବା ଉଚିତ ନୁହେଁ।। ୨୫ ।।**

**ପ୍ରଶ୍ନ** — ଆତ୍ମାକୁ **ଅବ୍ୟକ୍ତ** ଓ **ଅଚିନ୍ତ୍ୟ** କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର** — ଆତ୍ମାକୁ କୌଣସି ବି ଇନ୍ଦ୍ରିୟଦ୍ୱାରା ଜାଣିହେବ ନାହିଁ; ତେଣୁ ଏହାକୁ **ଅବ୍ୟକ୍ତ** କୁହାଯାଇଛି ଏବଂ ଆତ୍ମା ମନର ବି ବିଷୟ ନୁହେଁ; ତେଣୁ ଏହାକୁ **ଅଚିନ୍ତ୍ୟ** କୁହାଯାଇଛି।

**ପ୍ରଶ୍ନ** — ଆତ୍ମାକୁ **ଅବିକାର୍ଯ୍ୟ** କହିବାର ଅଭିପ୍ରାୟ କଣ ?

**ଉତ୍ତର** — ଆତ୍ମାକୁ 'ଅବିକାର୍ଯ୍ୟ' କହି ଅବ୍ୟକ୍ତ ପ୍ରକୃତିଠାରୁ ତାହାର ସମ୍ପୂର୍ଣ୍ଣ ଭିନ୍ନତ୍ୱ ପ୍ରତିପାଦନ କରାଯାଇଛି। ଅଭିପ୍ରାୟ ଏହି ଯେ, ଇନ୍ଦ୍ରିୟମାନେ ଏବଂ ଅନ୍ତଃକରଣ ହେଉଛନ୍ତି ପ୍ରକୃତିର କାର୍ଯ୍ୟ; ସେମାନେ ନିଜର କାରଣରୂପା ପ୍ରକୃତିକୁ ବିଷୟ କରିପାରିବେ ନାହିଁ। ତେଣୁ ପ୍ରକୃତି ମଧ ଅବ୍ୟକ୍ତ ଏବଂ ଅଚିନ୍ତ୍ୟ, କିନ୍ତୁ ତାହା ନିର୍ବିକାର ନୁହେଁ; ସେଥିରେ ବିକାର ହୁଏ। ଆତ୍ମାରେ କଦାପି କୌଣସି ଅବସ୍ଥାରେ ବି ବିକାର ହୁଏ ନାହିଁ। ଏଣୁ ପ୍ରକୃତିଠାରୁ ଆତ୍ମା ଅତ୍ୟନ୍ତ ଭିନ୍ନ।

**ପ୍ରଶ୍ନ** — 'ଏହି ଆତ୍ମା ଏପରି ବୋଲି ଜାଣି ତୁମର ଶୋକ କରିବା ଉଚିତ ନୁହେଁ' — ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର** — ଏପରି କହି ଦର୍ଶାଇଦିଆଯାଇଛି ଯେ, ଆତ୍ମାକୁ ଉପରୋକ୍ତପ୍ରକାରେ ନିତ୍ୟ, ସର୍ବଗତ, ଅଚଳ, ସନାତନ, ଅବ୍ୟକ୍ତ, ଅଚିନ୍ତ୍ୟ ଏବଂ ନିର୍ବିକାର ବୋଲି ଜାଣିସାରିବା ପରେ ଶୋକ କରିବାର ପ୍ରଶ୍ନ ଉଠୁ ନାହିଁ।

***ସମ୍ବନ୍ଧ*** — *ଉପରୋକ୍ତ ଶ୍ଳୋକମାନଙ୍କରେ ଭଗବାନ୍ ଆତ୍ମାକୁ ଅଜନ୍ମା ଏବଂ ଅବିନାଶୀ ବୋଲି କହି ତା'ପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଔପଚାରିକରୂପରେ ଆତ୍ମା ଜନ୍ମ ହୁଏ ଓ ମରେ ବୋଲି ମାନିନେଲେ ମଧ ସେଥିପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରୁଛନ୍ତି* —

**ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତମ୍।**
**ତଥାପି ତ୍ୱଂ ମହାବାହୋ ନୈବଂ ଶୋଚିତୁମର୍ହସି।। ୨୬ ।।**

**ଅନ୍ୱୟ** — **ଅଥ, ଚ** = ପକ୍ଷାନ୍ତରେ ଯଦି; **ତ୍ୱମ୍** = ତୁମେ; **ଏନମ୍** = ଏହି ଆତ୍ମାକୁ; **ନିତ୍ୟଜାତମ୍** = ସଦା ଜନ୍ମୁଥିବା; **ବା** = ତଥା; **ନିତ୍ୟମ୍** = ସଦା; **ମୃତମ୍** = ମରୁଥିବା; **ମନ୍ୟସେ** = ମନେ କରୁଥାଅ; **ତଥାପି** = ତଥାପି; **ମହାବାହୋ** = ହେ ମହାବାହୋ (ତୁମେ); **ଏବମ୍** = ଏପରି; **ଶୋଚିତୁମ୍** = ଶୋକ କରିବା; **ନ, ଅର୍ହସି** = ଉଚିତ ନୁହେଁ।

**ପକ୍ଷାନ୍ତରେ, ଯଦି ତୁମେ ଏହି ଆତ୍ମାକୁ ନିତ୍ୟ ଜନ୍ମ ହେଉଛି ଏବଂ ନିତ୍ୟ ମରୁଛି ବୋଲି ସ୍ୱୀକାର କରୁଥାଅ, ତଥାପି ହେ ମହାବାହୁ! ତୁମେ ଏପରି ଶୋକ କରିବା ଉଚିତ ନୁହେଁ।। ୨୬ ।।**

**ପ୍ରଶ୍ନ –** ଅଥ ଏବଂ ଚ ଅବ୍ୟୟଦୁଇଟି ଏଠାରେ କେଉଁ ଅର୍ଥରେ ଦିଆଯାଇଛି? ଏବଂ ଏମାନଙ୍କ ସହିତ 'ଏହା ସର୍ବଦା ଜନ୍ମ ହେଉଛି ଓ ସର୍ବଦା ମରୁଛି ବୋଲି ମନେ କଲେ ମଧ୍ୟ ଶୋକ କରିବା ଉଚିତ ନୁହେଁ'– ଏହି ବାକ୍ୟର ଅଭିପ୍ରାୟ କଣ?

**ଉତ୍ତର –** ଅଥ ଏବଂ ଚ – ଏହି ଦୁଇ ଅବ୍ୟୟ ଏଠାରେ ଔପଚାରିକ ସ୍ୱୀକୃତିର ବୋଧକ। ଏମାନଙ୍କ ସହିତ ଉପରୋକ୍ତ ବାକ୍ୟରେ ଭଗବାନ୍ କହିଛନ୍ତି, 'ଯଦ୍ୟପି ଆତ୍ମା ବାସ୍ତବରେ ଜନ୍ମ ହୁଏ ନାହିଁ, କି ମରେ ନାହିଁ'— ଏହି କଥାଟି ଯଥାର୍ଥ, ତଥାପି ତୁମେ ଯଦି ଏହି ଆତ୍ମାକୁ ସଦା ଜନ୍ମ ହୁଏ ଅର୍ଥାତ୍ ପ୍ରତ୍ୟେକ ଶରୀରର ସଂଯୋଗରେ ପ୍ରବାହରୂପରେ ସଦା ଜନ୍ମେ ଓ ସଦା ମରେ ଅର୍ଥାତ୍ ପ୍ରତ୍ୟେକ ଶରୀରର ବିୟୋଗରେ ପ୍ରବାହରୂପରେ ସଦା ମରେ ବୋଲି ମାନୁଥାଅ, ତେବେ ଏହି ମାନ୍ୟତା ଅନୁସାରେ ମଧ୍ୟ ତୁମେ ଏଥିପାଇଁ ଏପରି ଶୋକ କରିବା (ଯାହାର ବର୍ଣ୍ଣନା ପ୍ରଥମ ଅଧ୍ୟାୟର ଅଠେଇଶ ଶ୍ଳୋକଠାରୁ ସତଚାଳିଶ ଶ୍ଳୋକପର୍ଯ୍ୟନ୍ତ ଦିଆଯାଇଛି) ଉଚିତ ନୁହେଁ।

**ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ।**
**ତସ୍ମାଦପରିହାର୍ଯେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ।। ୨୭ ।।**

**ଅନ୍ୱୟ –** ହି = କାରଣ (ଏହି ମାନ୍ୟତା ଅନୁସାରେ); **ଜାତସ୍ୟ** = ଜନ୍ମ ହୋଇଥିବା ଲୋକର; **ମୃତ୍ୟୁଃ** = ମୃତ୍ୟୁ; **ଧ୍ରୁବଃ** = ନିଶ୍ଚିତ; ଚ = ଏବଂ; **ମୃତସ୍ୟ** = ମରିଥିବା ଲୋକର; **ଜନ୍ମ** = ଜନ୍ମ; **ଧ୍ରୁବମ୍** = ନିଶ୍ଚିତ ଅଟେ; **ତସ୍ମାତ୍** = ତେଣୁ; (ମଧ୍ୟ) **ଅପରିହାର୍ଯେ** = ଯାହା ଅନିବାର୍ଯ୍ୟ; **ଅର୍ଥେ** = (ସେହି) ବିଷୟରେ; **ତ୍ୱମ୍** = ତୁମେ; **ଶୋଚିତୁମ୍** = ଶୋକ କରିବା; ନ, **ଅର୍ହସି** = ଉଚିତ ନୁହେଁ।

**କାରଣ ଏହି ମାନ୍ୟତା ଅନୁସାରେ ଜନ୍ମ ହୋଇଥିବା ଲୋକର ମୃତ୍ୟୁ ନିଶ୍ଚିତ ଏବଂ ମରିଥିବା ଲୋକର ଜନ୍ମ ନିଶ୍ଚିତ। ଏହିହେତୁ ମଧ୍ୟ ଯାହା ଅନିବାର୍ଯ୍ୟ, ସେହି ବିଷୟରେ ତୁମେ ଶୋକ କରିବା ଉଚିତ ନୁହେଁ।। ୨୭ ।।**

**ପ୍ରଶ୍ନ –** ଏଠାରେ ହି ର ଅଭିପ୍ରାୟ କଣ?

**ଉତ୍ତର –** ହେତୁ ଅର୍ଥରେ ହି ବ୍ୟବହାର କରାଯାଇଛି। ପୂର୍ବଶ୍ଳୋକରେ ଯେଉଁ ବିଚାର ଅନୁସାରେ ଭଗବାନ୍ ଶୋକ କରିବା ଅନୁଚିତ ବୋଲି କହିଛନ୍ତି, ସେହି ବିଚାରଟି ଏଠାରେ ଯୁକ୍ତିପୂର୍ବକ ସିଦ୍ଧ କରୁଛନ୍ତି।

**ପ୍ରଶ୍ନ –** ଯାହାର ଜନ୍ମ ହୋଇଛି, ତା'ର ମୃତ୍ୟୁ ନିଶ୍ଚିତ– ଏ କଥା ତ ଠିକ୍; କାରଣ ଜନ୍ମ ହୋଇଥିବା ଲୋକ ସଦାସର୍ବଦା ରହେ ନାହିଁ ବୋଲି ସମସ୍ତେ ଜାଣନ୍ତି। କିନ୍ତୁ ଯେ ମରିଗଲା, ତା'ର ଜନ୍ମ ନିଶ୍ଚିତ ବୋଲି କିପରି କୁହାଯାଇପାରିବ? କାରଣ, ଯେ ମୁକ୍ତ ହୋଇଯାନ୍ତି, ତାଙ୍କର ଯେ ପୁନର୍ଜନ୍ମ ହୁଏ ନାହିଁ; ଏହା ପ୍ରସିଦ୍ଧ। (୪/୯; ୫/୧୭; ୮/୧୫; ୧୬,୨୧ ଇତ୍ୟାଦି।)

**ଉତ୍ତର –** ଏଠାରେ ଭଗବାନ୍ ପ୍ରକୃତ ସିଦ୍ଧାନ୍ତ କଥା କହୁ ନାହାନ୍ତି; ଭଗବାନଙ୍କର ଏହି କଥନ ତ ସେହି ଅଜ୍ଞାନୀମାନଙ୍କ ଦୃଷ୍ଟିକୋଣରୁ କୁହାଯାଇଛି, ଯେଉଁମାନେ କି ଆତ୍ମା ସଦା ମରେ ଓ ଜନ୍ମ ହୁଏ ବୋଲି ମାନନ୍ତି। ସେମାନଙ୍କ ମତ ଅନୁସାରେ, ଯେ ମରଣଧର୍ମୀ, ତା'ର ଜନ୍ମ ହେବା ନିଶ୍ଚିତ; କାରଣ ଏପରି ମତ କାହାରି ମୁକ୍ତି ସ୍ୱୀକାର କରେ ନାହିଁ। ଯେଉଁ ବାସ୍ତବିକ ସିଦ୍ଧାନ୍ତରେ ମୁକ୍ତିକୁ ସ୍ୱୀକାର କରାଯାଇଛି, ସେଥିରେ ଆତ୍ମାକୁ ଜନ୍ମ-ମରଣଶୀଳ ବୋଲି ସ୍ୱୀକାର କରାଯାଇ ନାହିଁ। ଜନ୍ମ ହେବା ଓ ମରିବା ଅଜ୍ଞାନଜନିତ।

**ପ୍ରଶ୍ନ –** **ତସ୍ମାତ୍** ପଦର ଅଭିପ୍ରାୟ କଣ? ତଥା **ଅପରିହାର୍ଯେ ଅର୍ଥେ**ର ଭାବ କଣ? ଏବଂ ଏଥିପାଇଁ ଶୋକ କରିବା ଅନୁଚିତ ବୋଲି କାହିଁକି କୁହାଯାଇଛି?

**ଉତ୍ତର –** **ତସ୍ମାତ୍** ପଦ ହେତୁବାଚକ। ଏହା ପ୍ରୟୋଗ କରି **ଅପରିହାର୍ଯେ ଅର୍ଥେ**ଦ୍ୱାରା ଦେଖାଉଛନ୍ତି, "ଉପରୋକ୍ତ ଅଭିପ୍ରାୟ ଅନୁସାରେ ଆତ୍ମାର ଜନ୍ମ ଓ

ମୃତ୍ୟୁ ନିଶ୍ଚିତ ହେଉଥିବାରୁ ଏହା ଅନିବାର୍ଯ୍ୟ; ଏଥିରେ ଅନ୍ୟଥା ହେବା ଅସମ୍ଭବ। ଏପରି ସ୍ଥିତିରେ ନିରୁପାୟ ବିଷୟପାଇଁ ଶୋକ କରିବା ଅନୁଚିତ। ଅତଏବ ଏହି ଦୃଷ୍ଟିରୁ ବି ତୁମର ଶୋକ କରିବା ସର୍ବଥା ଅନୁଚିତ।''

*ସମ୍ବନ୍ଧ — ପୂର୍ବଶ୍ଳୋକମାନଙ୍କ ଦ୍ୱାରା ଯେଉଁମାନେ ଆତ୍ମାକୁ ନିତ୍ୟ, ଅଜନ୍ମା, ଅବିନାଶୀ ବୋଲି ମାନନ୍ତି ଏବଂ ଯେଉଁମାନେ ସଦା ଜନ୍ମମରଣଶୀଳ ବୋଲି ମାନନ୍ତି, ସେହି ଉଭୟଙ୍କ ମତରେ ଆତ୍ମାପାଇଁ ଶୋକ କରିବା ଉଚିତ ନୁହେଁ ବୋଲି ସିଦ୍ଧ ହେଲା। ବର୍ତ୍ତମାନ ପରବର୍ତ୍ତୀ ଶ୍ଳୋକରେ ପ୍ରାଣୀମାନଙ୍କର ଶରୀରକୁ ନେଇ ବି ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରୁଛନ୍ତି —*

**ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।**
**ଅବ୍ୟକ୍ତ ନିଧନାନ୍ୟେବ ତତ୍ର କା ପରିଦେବନା ।। ୨୮ ।।**

**ଅନ୍ୱୟ —** ଭାରତ = ହେ ଭରତବଂଶଜ ଅର୍ଜୁନ; ଭୂତାନି = ପ୍ରାଣୀମାନେ; **ଅବ୍ୟକ୍ତାଦୀନି** = ଜନ୍ମହେବା ପୂର୍ବରୁ ଅପ୍ରକଟ ଥାଆନ୍ତି; **ଅବ୍ୟକ୍ତନିଧନାନି,** ଏବ = ମରିବା ପରେ ମଧ୍ୟ ଅପ୍ରକଟ ହୋଇଯାଆନ୍ତି; **ବ୍ୟକ୍ତମଧ୍ୟାନି** = (କେବଳ) ମଧ୍ୟରେ ପ୍ରକଟ ହୁଅନ୍ତି; ତତ୍ର = ସେପରି ସ୍ଥିତିରେ; କା, ପରିଦେବନା = ଶୋକ କରିବା କ'ଣ ?

**ହେ ଅର୍ଜୁନ! ସମସ୍ତ ପ୍ରାଣୀ ଜନ୍ମ ହେବା ପୂର୍ବରୁ ଅପ୍ରକଟ ହୋଇ ରହିଥାନ୍ତି ଏବଂ ମୃତ୍ୟୁ ପରେ ମଧ୍ୟ ଅପ୍ରକଟ ହୋଇଯାଆନ୍ତି। ସେମାନେ କେବଳ ଏହି ମଧ୍ୟବର୍ତ୍ତୀ କାଳରେ ହିଁ ପ୍ରକଟ ହୁଅନ୍ତି। ଏପରି ସ୍ଥିତିରେ ଶୋକ କରିବା କ'ଣ? ।। ୨୮ ।।**

**ପ୍ରଶ୍ନ —** ଭୂତାନି ପଦ ଏଠାରେ କେଉଁମାନଙ୍କ ବାଚକ ? ଏବଂ ଏହା ସହିତ **ଅବ୍ୟକ୍ତାଦୀନି, ଅବ୍ୟକ୍ତନିଧନାନି** ଏବଂ **ବ୍ୟକ୍ତମଧ୍ୟାନି** ଏହିସବୁ ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର —** **ଭୂତାନି** ପଦଟି ଏଠାରେ ପ୍ରାଣୀମାତ୍ରର ବାଚକ। ତାହା ସହିତ **ଅବ୍ୟକ୍ତାଦୀନି** ବିଶେଷଣ ଯୋଗ କରି ଦେଖାଇଛନ୍ତି ଯେ, ଆଦିରେ ଅର୍ଥାତ୍ ଜନ୍ମପୂର୍ବରୁ ଏମାନଙ୍କର ବର୍ତ୍ତମାନର ସ୍ଥୂଳଶରୀର ସହିତ କୌଣସି ସମ୍ପର୍କ ନ ଥିଲା, **ଅବ୍ୟକ୍ତନିଧନାନି**ଦ୍ୱାରା ଦେଖାଇଛନ୍ତି ଯେ, ଶେଷରେ ଅର୍ଥାତ୍ ମରିବା ପରେ ମଧ୍ୟ ସ୍ଥୂଳଶରୀର ସହିତ ଏମାନଙ୍କର କୌଣସି ସମ୍ବନ୍ଧ ରହିବ ନାହିଁ ଏବଂ **ବ୍ୟକ୍ତମଧ୍ୟାନି**ଦ୍ୱାରା ଦେଖାଇଛନ୍ତି ଯେ, କେବଳ ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ କାଳରେ ଏମାନେ ବ୍ୟକ୍ତରୂପ ଅଟନ୍ତି ଅର୍ଥାତ୍ ଏମାନଙ୍କର ଶରୀର ସହିତ ସମ୍ବନ୍ଧ ହୁଏ।

**ପ୍ରଶ୍ନ —** ଏପରି ସ୍ଥିତିରେ ଶୋକ କରିବା କ'ଣ ? — ଏହି ବାକ୍ୟର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି, ସ୍ୱପ୍ନର ସୃଷ୍ଟି ଯେପରି ସ୍ୱପ୍ନପୂର୍ବରୁ ବା ସ୍ୱପ୍ନପରେ ନ ଥାଏ, କେବଳ ସ୍ୱପ୍ନସମୟରେ ହିଁ ମନୁଷ୍ୟର ତାହା ସହିତ ସମ୍ବନ୍ଧ ଥିବାପରି ମନେ ହୁଏ, ସେହିପରି ଯେଉଁ ଶରୀର ସହିତ କେବଳ ମଝି ଅବସ୍ଥାରେ ହିଁ ସମ୍ବନ୍ଧ ହୁଏ ଓ ତାହା ପୁଣି ନିତ୍ୟ ସମ୍ବନ୍ଧ ନୁହେଁ, ତାହାପାଇଁ ଶୋକ କରିବା କ'ଣ ? ମହାଭାରତ ସ୍ତ୍ରୀପର୍ବର ଦ୍ୱିତୀୟ ଅଧ୍ୟାୟରେ ବିଦୁର ଏ କଥାଟି ଏପରି କହିଛନ୍ତି —

**ଅଦର୍ଶନାଦାପତିତାଃ ପୁନଶ୍ଚାଦର୍ଶନଂ ଗତାଃ ।**
**ନୈତେ ତବ ନ ତେଷାଂ ତ୍ୱଂ ତତ୍ର କା ପରିଦେବନା ।। ୧୩ ।।**

ଅର୍ଥାତ୍ 'ଯେଉଁମାନଙ୍କୁ ତୁମେ ନିଜର ବୋଲି କହୁଛ, ସେମାନେ ଅଦର୍ଶନରୁ ଆସିଥିଲେ ଅର୍ଥାତ୍ ଜନ୍ମ ପୂର୍ବରୁ ଅପ୍ରକଟ ଥିଲେ ଏବଂ ପୁଣି ଅଦର୍ଶନକୁ ପ୍ରାପ୍ତ ହୋଇଗଲେ। ଏଣୁ ବାସ୍ତବରେ ସେମାନେ ତୁମର ନୁହଁନ୍ତି, କି ତୁମେ ସେମାନଙ୍କର ନୁହଁ। ତେଣୁ ଏ ବିଷୟରେ ଶୋକ କରିବା କି ଆବଶ୍ୟକ ?'

*ସମ୍ବନ୍ଧ — ଆତ୍ମତତ୍ତ୍ୱ ଅତ୍ୟନ୍ତ ଦୁର୍ବୋଧ ହୋଇଥିବାରୁ ତାହା ବୁଝାଇବା ପାଇଁ ଭଗବାନ୍ ଉପରୋକ୍ତ ଶ୍ଳୋକଦ୍ୱାରା ଭିନ୍ନ-ଭିନ୍ନପ୍ରକାରେ ତାହାର ସ୍ୱରୂପ ବର୍ଣ୍ଣନା କଲେ। ବର୍ତ୍ତମାନ ପରବର୍ତ୍ତୀ ଶ୍ଳୋକରେ ସେହି ଆତ୍ମତତ୍ତ୍ୱର ଦର୍ଶନ, ବର୍ଣ୍ଣନ ଏବଂ ଶ୍ରବଣର ଅଲୌକିକତା ଓ ଦୁର୍ଲଭତା ନିରୂପଣ କରୁଛନ୍ତି —*

**ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ–**
**ମାଶ୍ଚର୍ଯ୍ୟବଦ୍ୱଦତି ତଥୈବ ଚାନ୍ୟଃ ।**
**ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି**
**ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍॥ ୨୯ ॥ ★**

**ଅନ୍ୱୟ –** କଶ୍ଚିତ୍ = କେହି ଜଣେ ମହାପୁରୁଷ ହିଁ; ଏନମ୍ = ଏହି ଆତ୍ମାକୁ; ଆଶ୍ଚର୍ଯ୍ୟବତ୍ = ଆଶ୍ଚର୍ଯ୍ୟପରି; ପଶ୍ୟତି = ଦେଖନ୍ତି; ଚ = ଏବଂ; ତଥା, ଏବ = ସେହିପରି; ଅନ୍ୟଃ = ଅନ୍ୟ କେହି (ଏହାର ତତ୍ତ୍ୱକୁ); ଆଶ୍ଚର୍ଯ୍ୟବତ୍ = ଆଶ୍ଚର୍ଯ୍ୟପରି; ବଦତି = ବର୍ଣ୍ଣନା କରନ୍ତି; ଚ = ତଥା; ଅନ୍ୟଃ = ଅନ୍ୟ କେହି; ଏନମ୍ = ଏହି ଆତ୍ମାକୁ; ଆଶ୍ଚର୍ଯ୍ୟବତ୍ = ଆଶ୍ଚର୍ଯ୍ୟପରି; ଶୃଣୋତି = ଶୁଣନ୍ତି; ଚ = ଏବଂ; କଶ୍ଚିତ୍ = କେହି; ଶ୍ରୁତ୍ୱା = ଶୁଣି; ଅପି = ମଧ୍ୟ; ଏନମ୍ = ଏହାକୁ; ନ, ଏବ, ବେଦ = ଜାଣି ପାରନ୍ତି ନାହିଁ।

**କୌଣସି ଜଣେ ମହାପୁରୁଷ ହିଁ ଏହି ଆତ୍ମାକୁ ଆଶ୍ଚର୍ଯ୍ୟପରି ଦେଖନ୍ତି ଏବଂ ସେହିପରି ଅନ୍ୟ କେହି ମହାପୁରୁଷ ଏହାର ତତ୍ତ୍ୱକୁ ଆଶ୍ଚର୍ଯ୍ୟପରି ବର୍ଣ୍ଣନା କରନ୍ତି ତଥା ଅନ୍ୟ କେହି ଅଧିକାରୀ ପୁରୁଷ ଏହାକୁ ଆଶ୍ଚର୍ଯ୍ୟପରି ଶୁଣନ୍ତି ଏବଂ କେହି କେହି ଶୁଣି ମଧ୍ୟ ଏହାକୁ ଜାଣି ପାରନ୍ତି ନାହିଁ॥ ୨୯ ॥**

**ପ୍ରଶ୍ନ –** 'କେହି ଜଣେ ମହାପୁରୁଷ ହିଁ ଆତ୍ମାକୁ ଆଶ୍ଚର୍ଯ୍ୟପରି ଦେଖନ୍ତି' – ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଦେଖାଇଛନ୍ତି ଯେ, ଆତ୍ମା ଆଶ୍ଚର୍ଯ୍ୟମୟ, ତେଣୁ ତାକୁ ଦେଖୁଥିବା ଲୋକ ସଂସାରରେ ବିରଳ; ଏବଂ ସେ ଲୋକ ମଧ୍ୟ ତାହାକୁ ଆଶ୍ଚର୍ଯ୍ୟପରି ଦେଖନ୍ତି। ମନୁଷ୍ୟ ଯେପରି ଲୌକିକ ଦୃଶ୍ୟବସ୍ତୁମାନଙ୍କୁ ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଇଦଂବୁଦ୍ଧିରେ ଦେଖେ, ଆତ୍ମଦର୍ଶନ ସେପରି ହୁଏ ନାହିଁ; ଆତ୍ମଦର୍ଶନ କରିବା ଅଦ୍ଭୁତ ଓ ଅଲୌକିକ। ଯେତେବେଳେ ଏକମାତ୍ର ଚେତନ-ଆତ୍ମାଠାରୁ ଭିନ୍ନ ଅନ୍ୟ କିଛିର ସତ୍ତା ହିଁ ରହେ ନାହିଁ, ସେତେବେଳେ ଆତ୍ମା ସ୍ୱୟଂ ନିଜଦ୍ୱାରା ନିଜକୁ ଦେଖେ। ଉକ୍ତ ଦର୍ଶନରେ ଦ୍ରଷ୍ଟା, ଦୃଶ୍ୟ ଏବଂ ଦର୍ଶନର ତ୍ରିପୁଟୀ ରହେ ନାହିଁ। ତେଣୁ ସେହି ଦେଖିବା ଆଶ୍ଚର୍ଯ୍ୟପରି।

**ପ୍ରଶ୍ନ –** 'ସେପରି ଅନ୍ୟ କେହି ମହାପୁରୁଷ ଏହାକୁ ଆଶ୍ଚର୍ଯ୍ୟପରି ବର୍ଣ୍ଣନା କରନ୍ତି।' – ଏହାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ଆତ୍ମସାକ୍ଷାତ୍କାର କରିସାରିଥିବା ସମସ୍ତ ବ୍ରହ୍ମନିଷ୍ଠ ପୁରୁଷ ଅନ୍ୟକୁ ବୁଝାଇବାପାଇଁ ଆତ୍ମାର ସ୍ୱରୂପକୁ ବର୍ଣ୍ଣନା କରିପାରନ୍ତି ନାହିଁ। ଯେଉଁ ମହାପୁରୁଷମାନେ ପରମାତ୍ମତତ୍ତ୍ୱକୁ ଭଲଭାବରେ ଜାଣିଛନ୍ତି ଏବଂ ବେଦଶାସ୍ତ୍ରର ଜ୍ଞାତା ଅଟନ୍ତି, ସେମାନେ ହିଁ ଆତ୍ମାର ବର୍ଣ୍ଣନା କରିପାରନ୍ତି ଏବଂ ସେମାନଙ୍କର ବର୍ଣ୍ଣନା ମଧ୍ୟ ଆଶ୍ଚର୍ଯ୍ୟପରି ହୁଏ, ଅର୍ଥାତ୍ କାହାରିକୁ ବୁଝାଇବା ନିମନ୍ତେ ଯେପରି ଲୌକିକ ବସ୍ତୁର ସ୍ୱରୂପ ବର୍ଣ୍ଣନା କରାଯାଏ, ଆତ୍ମାକୁ ସେପରି ବର୍ଣ୍ଣନା କରାଯାଇପାରେ ନାହିଁ; ତାହାର ବର୍ଣ୍ଣନା ଅଦ୍ଭୁତ ଓ ଅଲୌକିକ।

ଯେତେସବୁ ଉଦାହରଣ ଦେଇ ଆତ୍ମତତ୍ତ୍ୱ ବୁଝାଇଦିଆଯାଏ, ସେଥିମଧ୍ୟରୁ କୌଣସିଟି ଉଦାହରଣ ବି ପୂର୍ଣ୍ଣରୂପରେ ଆତ୍ମତତ୍ତ୍ୱକୁ ବୁଝାଇପାରେ ନାହିଁ। ତାହାର କୌଣସି ଏକ ଅଂଶକୁ ହିଁ ଉଦାହରଣଦ୍ୱାରା ବୁଝାଇଦିଆଯାଏ; କାରଣ ଆତ୍ମାସଦୃଶ ଅନ୍ୟ କୌଣସି

---

★ ଏହି ଶ୍ଳୋକ ସହିତ ମିଳିଯାଉଥିବା କଠୋପନିଷଦର ମନ୍ତ୍ରଟି ହେଉଛି –

**ଶ୍ରବଣାୟାପି ବହୁଭିର୍ଯୋ ନ ଲଭ୍ୟଃ ଶୃଣ୍ୱନ୍ତୋଽପି ବହବୋ ଯଂ ନ ବିଦ୍ୟୁଃ।**
**ଆଶ୍ଚର୍ଯୋ ବକ୍ତା କୁଶଳୋଽସ୍ୟ ଲବ୍ଧାଽଽଶ୍ଚର୍ଯୋ ଜ୍ଞାତା କୁଶଳାନୁଶିଷ୍ଟଃ॥ (୧/୨/୭)**

'ଯେଉଁ (ଆତ୍ମତତ୍ତ୍ୱ) ବହୁଲୋକଙ୍କୁ ଶୁଣିବାକୁ ମଧ୍ୟ ମିଳେ ନାହିଁ ଏବଂ ବହୁ ଶ୍ରୋତା ମଧ୍ୟ ଯାହାକୁ ଜାଣିପାରନ୍ତି ନାହିଁ, ସେହି ଆତ୍ମାକୁ ବର୍ଣ୍ଣନା କରୁଥିବା ବ୍ୟକ୍ତି କୌଣସି ଜଣେ ଆଶ୍ଚର୍ଯ୍ୟମୟ ପୁରୁଷ ହିଁ ହୋଇଥାନ୍ତି; ତାହାକୁ ପ୍ରାପ୍ତ ହୋଇଥିବା ନିପୁଣ ପୁରୁଷ ବି ବିରଳ ହିଁ ଅଟନ୍ତି ତଥା ତାହାର ଜ୍ଞାତା ମଧ୍ୟ କୌଣସି କୁଶଳ ଆଚାର୍ଯ୍ୟଙ୍କ ଦ୍ୱାରା ଉପଦିଷ୍ଟ ଆଶ୍ଚର୍ଯ୍ୟମୟ ପୁରୁଷ ହିଁ ଅଟନ୍ତି।'

ବସ୍ତୁ ନାହିଁ। ଏପରି ଅବସ୍ଥାରେ କୌଣସି ଉଦାହରଣ କିପରି ପୂର୍ଣ୍ଣରୂପରେ ଉପଯୁକ୍ତ ହୋଇପାରିବ? ତଥାପି ବିଧିମୁଖ ଓ ନିଷେଧମୁଖ ଆଦି ବହୁ ଆଶ୍ଚର୍ଯ୍ୟମୟ ସଙ୍କେତଦ୍ୱାରା ମହାପୁରୁଷମାନେ ତାହାକୁ ଲକ୍ଷ୍ୟ କରାନ୍ତି। ଏହା ହିଁ ସେମାନଙ୍କର ଆଶ୍ଚର୍ଯ୍ୟପରି ବର୍ଣ୍ଣନା କରିବା। ବାସ୍ତବରେ ଆତ୍ମା ବାଣୀର ଅବିଷୟ ହୋଇଥିବାରୁ ସ୍ପଷ୍ଟ ଶବ୍ଦରେ ତାହାର ବର୍ଣ୍ଣନା କରାଯାଇ ପାରିବ ନାହିଁ।

**ପ୍ରଶ୍ନ –** 'ଅନ୍ୟ କେହି ଅଧିକାରୀ ଏହାକୁ ଆଶ୍ଚର୍ଯ୍ୟପରି ଶୁଣନ୍ତି' – ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏପରି କହି ଭଗବାନ୍ ଦେଖାଇଛନ୍ତି ଯେ, ଏହି ଆତ୍ମାର ବର୍ଣ୍ଣନା ଶୁଣୁଥିବା ପୁରୁଷ ବି କୌଣସି ଜଣେ ସଦାଚାରୀ, ଶୁଦ୍ଧଚିତ୍ତ, ଶ୍ରଦ୍ଧାଳୁ ଏବଂ ଆସ୍ତିକ ବିରଳ ପୁରୁଷ ହୋଇଥାନ୍ତି ଏବଂ ତାଙ୍କର ଶୁଣିବା ମଧ ଆଶ୍ଚର୍ଯ୍ୟପରି। ଅର୍ଥାତ୍ ଯେଉଁ ପଦାର୍ଥକୁ ସେ ପ୍ରଥମେ ସତ୍ୟ, ସୁଖରୂପ ଏବଂ ରମଣୀୟ ବୋଲି ବୁଝିଥିଲେ ତଥା ଯେଉଁ ଶରୀରାଦିକୁ ସେ ନିଜର ସ୍ୱରୂପ ବୋଲି ମନେ କରିଥିଲେ, ସେହି ସମସ୍ତକୁ ଅନିତ୍ୟ, ନାଶବାନ୍, ଦୁଃଖରୂପ ଏବଂ ଜଡ଼ ତଥା ଆତ୍ମା ସେସବୁଠାରୁ ସର୍ବଥା ବିଲକ୍ଷଣ ବୋଲି ଶୁଣି ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗେ; କାରଣ ସେହି ତତ୍ତ୍ୱ ପ୍ରଥମରୁ କେବେ ସେ ଶୁଣି ନ ଥିଲେ, କି କେବେ ବୁଝି ନ ଥିଲେ ତଥା କୌଣସି ବି ଲୌକିକ ବସ୍ତୁ ସହିତ ତାହାର କୌଣସିପ୍ରକାର ତୁଳନା ନ ଥାଏ; ଏହିସବୁ କାରଣରୁ ତାହା ତାଙ୍କୁ ବିଶେଷ ଅଦ୍ଭୁତ ବୋଲି ମନେ ହୁଏ। ତେଣୁ ସେ ଉକ୍ତ ତତ୍ତ୍ୱକୁ ଅତ୍ୟନ୍ତ ତନ୍ମୟ ହୋଇ ଶୁଣିବାକୁ ଲାଗନ୍ତି ଏବଂ ଶୁଣି ମୁଗ୍ଧ ହୋଇଯାଆନ୍ତି; ତାଙ୍କର ବୃତ୍ତିମାନେ ଅନ୍ୟ ଆଡ଼କୁ ଯାଆନ୍ତି ନାହିଁ। ଏହା ହିଁ ତାଙ୍କର 'ଆଶ୍ଚର୍ଯ୍ୟପରି ଶୁଣିବା'।

**ପ୍ରଶ୍ନ –** 'କେହି କେହି ଶୁଣି ମଧ ଏହାକୁ ଜାଣି ପାରନ୍ତି ନାହିଁ' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଦେଖାଇଛନ୍ତି ଯେ, ଯାହାଙ୍କର ଅନ୍ତଃକରଣରେ ପୂର୍ଣ୍ଣ ଶ୍ରଦ୍ଧା ଓ ଆସ୍ତିକ ଭାବ ନ ଥାଏ, ଯାହାଙ୍କର ବୁଦ୍ଧି ଶୁଦ୍ଧ ଏବଂ ସୂକ୍ଷ୍ମ ହୋଇ ନ ଥାଏ, ସେପରି ମନୁଷ୍ୟମାନେ ଏହି ଆତ୍ମତତ୍ତ୍ୱକୁ ଶୁଣି ମଧ ସଂଶୟ ଓ ବିପରୀତ ଭାବନାହେତୁ ଏହାର ସ୍ୱରୂପକୁ ଯଥାର୍ଥଭାବରେ ବୁଝିପାରନ୍ତି ନାହିଁ। ଅତଏବ ଅନଧିକାରୀମାନଙ୍କ ପକ୍ଷରେ ଏହି ଆତ୍ମତତ୍ତ୍ୱ ବୁଝିପାରିବା ଅତ୍ୟନ୍ତ ଦୁର୍ଲ୍ଲଭ।

**ପ୍ରଶ୍ନ – ଆଶ୍ଚର୍ଯ୍ୟବତ୍** ପଦଟି ଏଠାରେ ଆତ୍ମାର ବିଶେଷଣ, ନା ତାହାକୁ ଦେଖୁଥିବା, ଶୁଣୁଥିବା ଓ ବର୍ଣ୍ଣନା କରୁଥିବା ଲୋକଙ୍କ ବିଶେଷଣ, ନା ତାହାକୁ ଦେଖିବା, ବର୍ଣ୍ଣନା କରିବା, ଶୁଣିବା-ଆଦି କ୍ରିୟାମାନଙ୍କର ବିଶେଷଣ ?

**ଉତ୍ତର – ଆଶ୍ଚର୍ଯ୍ୟବତ୍** ପଦଟି ଏଠାରେ ଦେଖିବା, ଶୁଣିବା, ଆଦି କ୍ରିୟାମାନଙ୍କର ବିଶେଷଣ। କ୍ରିୟାବିଶେଷଣ ହୋଇଥିବାରୁ ତାହାର ଭାବ କର୍ତ୍ତା ଓ କର୍ମରେ ସ୍ୱତଃ ଆସିଯାଏ।

*ସମ୍ବନ୍ଧ – ଏପରିଭାବରେ ଆତ୍ମତତ୍ତ୍ୱର ଦର୍ଶନ, ବର୍ଣ୍ଣନ ଏବଂ ଶ୍ରବଣର ଅଲୌକିକତା ଏବଂ ଦୁର୍ଲ୍ଲଭତା ପ୍ରତିପାଦନ କଲେ। ବର୍ତ୍ତମାନ 'ଆତ୍ମା ନିତ୍ୟ-ଅବଧ, ଏଣୁ କୌଣସି ବି ପ୍ରାଣୀଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ' – ଏହା କହିବାକୁ ଯାଇ ଭଗବାନ୍ ସାଂଖ୍ୟଯୋଗ ପ୍ରକରଣର ଉପସଂହାର କରୁଛନ୍ତି –*

**ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ।**
**ତସ୍ମାତ୍ ସର୍ବାଣି ଭୂତାନି ନ ତ୍ୱଂ ଶୋଚିତୁମର୍ହସି।। ୩୦ ।।**

**ଅନ୍ୱୟ –** ଭାରତ = ହେ ଭରତବଂଶଜ ଅର୍ଜୁନ; ଅୟମ୍ = ଏହି; ଦେହୀ = ଆତ୍ମା; ସର୍ବସ୍ୟ = ସମସ୍ତଙ୍କର; ଦେହେ = ଶରୀରରେ; ନିତ୍ୟମ୍ = ସର୍ବଦା; ଅବଧ୍ୟଃ = ଅବଧ; ତସ୍ମାତ୍ = ତେଣୁ; ସର୍ବାଣି = ସକଳ; ଭୂତାନି = ପ୍ରାଣୀମାନଙ୍କ ପାଇଁ; ତ୍ୱମ୍ = ତୁମେ; ଶୋଚିତୁମ୍ = ଶୋକ କରିବା; ନ, ଅର୍ହସି = ଉଚିତ ନୁହେଁ।

**ହେ ଅର୍ଜୁନ! ଏହି ଆତ୍ମା ସମସ୍ତଙ୍କ ଶରୀରରେ ସର୍ବଦା ଅବଧ। ତେଣୁ ସକଳ ପ୍ରାଣୀଙ୍କ ପାଇଁ ଅର୍ଥାତ୍ କୌଣସି ବି ପ୍ରାଣୀପାଇଁ ତୁମେ ଶୋକ କରିବା ଉଚିତ ନୁହେଁ।। ୩୦ ।।**

**ପ୍ରଶ୍ନ –** 'ଏହି ଆତ୍ମା ସମସ୍ତଙ୍କ ଶରୀରରେ ସର୍ବଦା ଅବଧ' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ ଦେଖାଇଛନ୍ତି ଯେ, ସମସ୍ତ ପ୍ରାଣୀଙ୍କର ଯେତେ ବି ଶରୀର ରହିଛି,

ସେହି ସମସ୍ତ ଶରୀର ମଧ୍ୟରେ ଥିବା ଆତ୍ମା ଏକ। ଶରୀରଭେଦରେ ଅଜ୍ଞାନହେତୁ ଆତ୍ମାରେ ଭେଦ ପ୍ରତୀତ ହୋଇଥାଏ। ବାସ୍ତବରେ ଭେଦ ନାହିଁ ଏବଂ ସେହି ଆତ୍ମା ସର୍ବଦା ଅବଧ୍ୟ। ତାହାକୁ କେବେ କେହି କୌଣସି ଉପାୟରେ ନାଶ କରିପାରିବେ ନାହିଁ।

**ପ୍ରଶ୍ନ** – "ତେଣୁ କୌଣସି ପ୍ରାଣୀଙ୍କ ପାଇଁ ତୁମେ ଶୋକ କରିବା ଉଚିତ ନୁହେଁ" – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଏହି ବାକ୍ୟରେ ହେତୁବାଚକ **ତସ୍ମାତ୍** ପଦ ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି, ଏହି ପ୍ରକରଣରେ ଭଲଭାବରେ ସିଦ୍ଧ ହୋଇଯାଇଛି ଯେ, ଆତ୍ମା ସର୍ବଦା ଅବିନାଶୀ; ତାହାକୁ କେହି କେବେ ନାଶ କରିପାରିବେ ନାହିଁ। ଏଣୁ ତୁମେ କୌଣସି ବି ପ୍ରାଣୀଙ୍କ ପାଇଁ ଶୋକ କରିବା ଅନୁଚିତ। କାରଣ, ଯେହେତୁ କୌଣସି ଭାବରେ କୌଣସି ଉପାୟରେ ଆତ୍ମାର ନାଶ ହୋଇପାରିବ ନାହିଁ, ତେଣୁ ତାହାପାଇଁ ଶୋକ କରିବାର ଅବକାଶ ଆଉ କେଉଁଠୁ ଆସିଲା ? ଅତଏବ ତୁମେ କାହାରି ନାଶର ଆଶଙ୍କାରେ ଶୋକ ନ କରି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଯାଅ।

*ସମ୍ବନ୍ଧ :– ଏପର୍ଯ୍ୟନ୍ତ ଭଗବାନ୍ ସାଂଖ୍ୟଯୋଗ ଅନୁସାରେ ଅନେକ ଯୁକ୍ତି ଦେଇ ନିତ୍ୟ, ଶୁଦ୍ଧ, ବୁଦ୍ଧ, ସମ, ନିର୍ବିକାର ଓ ଅକର୍ତ୍ତା ଆତ୍ମାର ଏକତ୍ୱ, ନିତ୍ୟତ୍ୱ, ଅବିନାଶିତ୍ୱ ଆଦି ପ୍ରତିପାଦନ କରିଛନ୍ତି ତଥା ଶରୀରକୁ ବିନାଶଶୀଳ ବୋଲି କହି, ଆତ୍ମା ବା ଶରୀରପାଇଁ ଅଥବା ଶରୀର ଏବଂ ଆତ୍ମାର ବିୟୋଗପାଇଁ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରିଛନ୍ତି। ତା' ସହିତ ପ୍ରସଙ୍ଗକ୍ରମେ ଆତ୍ମାକୁ ଜନ୍ମ-ମରଣଶୀଳ ବୋଲି ମାନିନେଲେ ମଧ୍ୟ ଶୋକ କରିବା ଉଚିତ ନୁହେଁ ବୋଲି ପ୍ରତିପାଦନ କରିଛନ୍ତି ଓ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି। ବର୍ତ୍ତମାନ ପରବର୍ତ୍ତୀ ସାତଟି ଶ୍ଲୋକଦ୍ୱାରା କ୍ଷାତ୍ରଧର୍ମ ଅନୁସାରେ ଶୋକ କରିବା ଅନୁଚିତ ବୋଲି ସିଦ୍ଧ କରି ଅର୍ଜୁନଙ୍କୁ ଯୁଦ୍ଧ କରିବାପାଇଁ ଉତ୍ସାହିତ କରୁଛନ୍ତି –*

**ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି।**
**ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ।। ୩୧ ।।**

**ଅନ୍ୱୟ** :– ଚ = ତଥା; **ସ୍ୱଧର୍ମମ୍** = ନିଜର ଧର୍ମକୁ; **ଅବେକ୍ଷ୍ୟ** = ଦେଖି; **ଅପି** = ମଧ୍ୟ (ତୁମେ); **ବିକମ୍ପିତୁମ୍** = ଭୟ କରିବା; **ନ, ଅର୍ହସି** = ଉଚିତ ନୁହଁ, (ଅର୍ଥାତ୍ ତୁମର ଭୟ କରିବା ଉଚିତ ନୁହେଁ); **ହି** = କାରଣ; **କ୍ଷତ୍ରିୟସ୍ୟ** = କ୍ଷତ୍ରିୟର; **ଧର୍ମ୍ୟାତ୍** = ଧର୍ମଯୁକ୍ତ; **ଯୁଦ୍ଧାତ୍** = ଯୁଦ୍ଧରୁ (ବଳି); **ଅନ୍ୟତ୍** = ଅନ୍ୟ (କିଛି); **ଶ୍ରେୟଃ** = କଲ୍ୟାଣକର କର୍ତ୍ତବ୍ୟ; **ନ, ବିଦ୍ୟତେ** = ନାହିଁ।

**ପୁଣି ନିଜର ଧର୍ମଦୃଷ୍ଟିରୁ ବି ତୁମେ ଭୟ କରିବା ଉଚିତ ନୁହେଁ; କାରଣ କ୍ଷତ୍ରିୟନିମନ୍ତେ ଧର୍ମଯୁଦ୍ଧଠାରୁ ବଳି କଲ୍ୟାଣକର କର୍ତ୍ତବ୍ୟ ଆଉ କିଛି ନାହିଁ।। ୩୧ ।।**

**ପ୍ରଶ୍ନ** – ଏଠାରେ ଅପି ପଦ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଏଠାରେ **ଅପି** ପଦ ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି, "ଆତ୍ମା ନିତ୍ୟ ଓ ଶରୀର ଅନିତ୍ୟ ବୋଲି ବୁଝିସାରିବା ପରେ ଶୋକ କରିବା ବା ଯୁଦ୍ଧାଦିରେ ଭୟଭୀତ ହେବା ଯେ ଉଚିତ ନୁହେଁ, ତାହା ତ ମୁଁ ତୁମକୁ ଆଗରୁ ବୁଝାଇଦେଇସାରିଛି। ତାହା ବ୍ୟତୀତ ତୁମେ ଯଦି ନିଜର ବର୍ଣ୍ଣଧର୍ମ ଆଡ଼କୁ ଚାହିଁବ, ତେବେ ମଧ୍ୟ ତୁମେ ଭୟଭୀତ ହେବା ଅନୁଚିତ; କାରଣ ଯୁଦ୍ଧରେ ବିମୁଖ ନ ହେବା ହେଉଛି କ୍ଷତ୍ରିୟର ସ୍ୱାଭାବିକ ଧର୍ମ (୧୮/୪୩)।

**ପ୍ରଶ୍ନ** – ହି ପଦର ଅଭିପ୍ରାୟ କଣ ?

**ଉତ୍ତର** – ଏଠାରେ ହି ପଦ ହେତୁବାଚକ। ଅଭିପ୍ରାୟ ହେଉଛି, କାହିଁକି ଭୟଭୀତ ହେବା ଉଚିତ ନୁହେଁ, ତାହା ଉତ୍ତରାର୍ଦ୍ଧରେ ସ୍ପଷ୍ଟ କରାଯାଇଛି।

**ପ୍ରଶ୍ନ** – 'କ୍ଷତ୍ରିୟନିମନ୍ତେ ଧର୍ମଯୁକ୍ତଯୁଦ୍ଧରୁ ବଳି ଶ୍ରେୟ ଆଉ କିଛି ନାହିଁ' – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର** – 'ଏହି ବାକ୍ୟରେ ଭଗବାନ୍ କହିଛନ୍ତି, ଯେଉଁ ଯୁଦ୍ଧର ଆରମ୍ଭ ଅନୀତି ବା ଲୋଭହେତୁ ହୋଇ ନ ଥାଏ, ଏବଂ ଯେଉଁଥିରେ ଅନ୍ୟାୟ ଆଚରଣ କରାଯାଏ ନାହିଁ, କିନ୍ତୁ ଯାହା ଧର୍ମସମ୍ମତ, କର୍ତ୍ତବ୍ୟରୂପରେ ପ୍ରାପ୍ତ ଏବଂ ନ୍ୟାୟାନୁକୂଳଭାବରେ କରାଯାଏ, ସେପରି ଯୁଦ୍ଧ ହିଁ କ୍ଷତ୍ରିୟମାନଙ୍କ ନିମନ୍ତେ ଅନ୍ୟ ସମସ୍ତ ଧର୍ମ ଅପେକ୍ଷା ଅଧିକ କଲ୍ୟାଣକାରକ। କ୍ଷତ୍ରିୟଙ୍କ

ନିମନ୍ତେ ତା'ଠାରୁ ବଳି କଲ୍ୟାଣକର ଧର୍ମ ଆଉ କିଛି ନାହିଁ; କାରଣ ଧର୍ମମୟ ଯୁଦ୍ଧ କରୁଥିବା କ୍ଷତ୍ରିୟ ଅନାୟାସରେ ଇଚ୍ଛାନୁସାରେ ସ୍ୱର୍ଗ ବା ମୋକ୍ଷ ପ୍ରାପ୍ତି କରିପାରନ୍ତି।

**ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତମ୍।**
**ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶମ୍॥ ୩୨ ॥**

**ଅନ୍ୱୟ :–** **ପାର୍ଥ** = ହେ ପାର୍ଥ; **ଯଦୃଚ୍ଛୟା** = ସ୍ୱତଃ (ବିନା ଇଚ୍ଛାରେ); **ଉପପନ୍ନମ୍** = ପ୍ରାପ୍ତ ହୋଇଥିବା; **ଚ** = ଏବଂ; **ଅପାବୃତମ୍** = ଉନ୍ମୁକ୍ତ; **ସ୍ୱର୍ଗଦ୍ୱାରମ୍** = ସ୍ୱର୍ଗଦ୍ୱାରରୂପକ; **ଈଦୃଶମ୍** = ଏହିପରି; **ଯୁଦ୍ଧମ୍** = ଯୁଦ୍ଧକୁ; **ସୁଖିନଃ** = ଭାଗ୍ୟବାନ୍; **କ୍ଷତ୍ରିୟାଃ** = କ୍ଷତ୍ରିୟମାନେ (ହିଁ); **ଲଭନ୍ତେ** = ଲାଭ କରନ୍ତି।

**ହେ ପାର୍ଥ! ସ୍ୱତଃ ପ୍ରାପ୍ତ ହୋଇଥିବା ଏବଂ ଉନ୍ମୁକ୍ତ ସ୍ୱର୍ଗଦ୍ୱାରରୂପକ ଏହିପରି ଯୁଦ୍ଧ ଭାଗ୍ୟବାନ୍ କ୍ଷତ୍ରିୟମାନେ ହିଁ ଲାଭ କରନ୍ତି॥ ୩୨ ॥**

**ପ୍ରଶ୍ନ – ପାର୍ଥ** ସମ୍ବୋଧନର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଅର୍ଜୁନଙ୍କୁ **ପାର୍ଥ** ବୋଲି ସମ୍ବୋଧନ କରି ଭଗବାନ୍ ତାଙ୍କର ମାତା କୁନ୍ତୀ ଦେବୀ ହସ୍ତିନାପୁରରୁ ଆସିବା ସମୟରେ ଯେଉଁ ସନ୍ଦେଶ କହିଥିଲେ, ତାହା ପୁଣି ଥରେ ମନେ ପକାଇଦେଉଛନ୍ତି। ସେତେବେଳେ କୁନ୍ତୀ ଭଗବାନଙ୍କୁ କହିଥିଲେ –

ଏତଦ୍ଧନଞ୍ଜୟୋ ବାଚ୍ୟୋ ନିତ୍ୟୋଦ୍ୟୁକ୍ତୋ ବୃକୋଦରଃ॥
ଯଦର୍ଥଂ କ୍ଷତ୍ରିୟା ସୂତେ ତସ୍ୟ କାଲୋଽୟମାଗତଃ।

(ମହା. ଉଦ୍ୟୋଗ. ୧୩୭/୯-୧୦)

ଅର୍ଥାତ୍ 'ଧନଞ୍ଜୟ ଅର୍ଜୁନଙ୍କୁ ଏବଂ ସଦାସର୍ବଦା ଯୁଦ୍ଧପାଇଁ ପ୍ରସ୍ତୁତ ଥିବା ଭୀମଙ୍କୁ ଆପଣ କହିଦେବେ ଯେ, ଯେଉଁ କାର୍ଯ୍ୟପାଇଁ କ୍ଷତ୍ରିୟମାତା ପୁତ୍ର ଉତ୍ପନ୍ନ କରେ, ବର୍ତ୍ତମାନ ସେହି କାର୍ଯ୍ୟର ସମୟ ଆସିଗଲା।'

**ପ୍ରଶ୍ନ –** ଏଠାରେ **ଯୁଦ୍ଧମ୍** ସହିତ **ଯଦୃଚ୍ଛୟୋପପନ୍ନମ୍** ବିଶେଷଣ ଦେଇ ତାହାକୁ **ଅପାବୃତମ୍ ସ୍ୱର୍ଗଦ୍ୱାରମ୍** କହିବାର ଭାବ କଣ ?

**ଉତ୍ତର – ଯଦୃଚ୍ଛୟୋପପନ୍ନମ୍** ବିଶେଷଣ ଦେଇ ଦେଖାଉଛନ୍ତି, ''ତୁମେ ଏହି ଯୁଦ୍ଧ ଜାଣିଶୁଣି ସୃଷ୍ଟି କରି ନାହଁ। ତୁମେ ତ ସନ୍ଧି କରିବାକୁ ବହୁ ଚେଷ୍ଟା କରିଥିଲ; କିନ୍ତୁ ଯେତେବେଳେ ତୁମର ବନ୍ଧକସୂତ୍ରରେ ରଖିଥିବା ରାଜ୍ୟ ବିନା-ଯୁଦ୍ଧରେ ଫେରାଇଦେବାକୁ ଦୁର୍ଯ୍ୟୋଧନ କୌଣସିପ୍ରକାରେ ରାଜି ହେଲା ନାହିଁ; ସେ ସ୍ପଷ୍ଟଭାବରେ କହିଦେଲା ଯେ, ଛୁଞ୍ଚିର ଅଗରେ ଯେତେ ଭୂମି ଧରିବ, ସେତିକି ଭୂମି ମଧ୍ୟ ପାଣ୍ଡବମାନଙ୍କୁ ଦେବ ନାହିଁ– (ମହା/ଉଦ୍ୟୋଗ/ ୧୨୭/୨୫)★ ସେତେବେଳେ ଯାଇ ତୁମମାନଙ୍କୁ ବାଧ୍ୟ ହୋଇ ଯୁଦ୍ଧ ଆୟୋଜନ କରିବାକୁ ପଡ଼ିଲା। ତେଣୁ ଏହି ଯୁଦ୍ଧ ତୁମକୁ **ଯଦୃଚ୍ଛୟୋପପନ୍ନମ୍** ଅର୍ଥାତ୍ ବିନା ଇଚ୍ଛାରେ ସ୍ୱତଃ ପ୍ରାପ୍ତ ହୋଇଗଲା। ତଥା **ଅପାବୃତମ୍, ସ୍ୱର୍ଗଦ୍ୱାରମ୍** ବିଶେଷଣ ଦେଇ ଦେଖାଉଛନ୍ତି ଯେ, ଏହା ଉନ୍ମୁକ୍ତ ସ୍ୱର୍ଗଦ୍ୱାରସଦୃଶ; ଏପରି ଧର୍ମଯୁଦ୍ଧରେ ମରୁଥିବା ମନୁଷ୍ୟ ସିଧାସଳଖ ସ୍ୱର୍ଗକୁ ଯାତ୍ରା କରନ୍ତି; ତାଙ୍କ ମାର୍ଗରେ କେହି ବି ବାଧା ସୃଷ୍ଟି କରିପାରନ୍ତି ନାହିଁ।''

**ପ୍ରଶ୍ନ –** 'ଏପରି ଯୁଦ୍ଧର ସୁଯୋଗ ଭାଗ୍ୟବାନ୍ କ୍ଷତ୍ରିୟମାନେ ହିଁ ପାଆନ୍ତି' – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ ଦେଖାଇଛନ୍ତି, ''ଏପରି ଧର୍ମମୟ ଯୁଦ୍ଧ, ଯାହା କି ସ୍ୱତଃ କର୍ତ୍ତବ୍ୟରୂପରେ ପ୍ରାପ୍ତ ହୋଇଛି ଏବଂ ଯାହା କି ଉନ୍ମୁକ୍ତ ସ୍ୱର୍ଗଦ୍ୱାରପରି, ତାହା ସବୁ କ୍ଷତ୍ରିୟଙ୍କୁ ମିଳେ ନାହିଁ। ଏପରି ଯୁଦ୍ଧ ତ କେବଳ ଅତ୍ୟନ୍ତ ଭାଗ୍ୟବାନ୍ କ୍ଷତ୍ରିୟଙ୍କୁ ହିଁ ମିଳେ। ଅତଏବ ତୁମର ଅତ୍ୟନ୍ତ ସୌଭାଗ୍ୟ ଯେ, ତୁମକୁ ଏପରି ଧର୍ମମୟ ଯୁଦ୍ଧ ଅନାୟାସରେ ମିଳିଯାଇଛି। ଅତଏବ ତୁମେ ଏଥିରୁ ଓହରି ଆସିବା ଉଚିତ ନୁହେଁ।''

★ ''ଯାବଦ୍ଧି ତୀକ୍ଷ୍ଣୟା ସୂଚ୍ୟା ବିଧ୍ୟେଦଗ୍ରେଣ କେଶବ। ତାବଦପ୍ୟପରିତ୍ୟାଜ୍ୟଂ ଭୂମେର୍ନଃ ପାଣ୍ଡବାନ୍ ପ୍ରତି॥

**ସମ୍ବନ୍ଧ –** ଏହିପରି ଧର୍ମମୟ ଯୁଦ୍ଧ କରିବାର ଲାଭ ଦର୍ଶାଇବା ପରେ, ବର୍ତ୍ତମାନ ସେହି ଯୁଦ୍ଧ ନ କଲେ କି କ୍ଷତି ହେବ, ସେହି ବିଷୟରେ କହି ଭଗବାନ୍ ଅର୍ଜୁନଙ୍କୁ ଯୁଦ୍ଧ କରିବାପାଇଁ ଉତ୍ସାହିତ କରୁଛନ୍ତି–

**ଅଥ ଚେତ୍ତ୍ୱମିମଂ ଧର୍ମ୍ୟଂ ସଙ୍ଗ୍ରାମଂ ନ କରିଷ୍ୟସି ।**
**ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପମବାପ୍ସ୍ୟସି ।। ୩୩ ।।**

**ଅନ୍ୱୟ –** ଅଥ = କିନ୍ତୁ; ଚେତ୍ = ଯଦି; ତ୍ୱମ୍ = ତୁମେ; ଇମମ୍ = ଏହି; ଧର୍ମ୍ୟମ୍ = ଧର୍ମଯୁକ୍ତ; ସଙ୍ଗ୍ରାମମ୍ = ଯୁଦ୍ଧକୁ; ନ, କରିଷ୍ୟସି = କରିବ ନାହିଁ; ତତଃ = ତେବେ; ସ୍ୱଧର୍ମମ୍ = ସ୍ୱଧର୍ମକୁ; ଚ = ଏବଂ; କୀର୍ତ୍ତିମ୍ = କୀର୍ତ୍ତିକୁ; ହିତ୍ୱା = ଛାଡ଼ି (ହରାଇ); ପାପମ୍ = ପାପକୁ; ଅବାପ୍ସ୍ୟସି = ପ୍ରାପ୍ତ ହେବ।

**କିନ୍ତୁ ଯଦି ତୁମେ ଏହି ଧର୍ମମୟ ଯୁଦ୍ଧ ନ କରିବ, ତେବେ ସ୍ୱଧର୍ମ ଓ ସୁଯଶ ହରାଇ ପାପଭାଗୀ ହେବ।। ୩୩ ।।**

**ପ୍ରଶ୍ନ –** ଅଥ ପଦର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଅଥ ପଦ ପକ୍ଷାନ୍ତରେ ଦିଆଯାଇଛି। ଅଭିପ୍ରାୟ ହେଉଛି, ବର୍ତ୍ତମାନ ପ୍ରକାରାନ୍ତରେ ଯୁଦ୍ଧର ଔଚିତ୍ୟ ସିଦ୍ଧ କରାଯାଉଛି।

**ପ୍ରଶ୍ନ –** ସଙ୍ଗ୍ରାମମ୍ ସହିତ ଇମମ୍ ଏବଂ ଧର୍ମ୍ୟମ୍ – ଏହି ଦୁଇ ବିଶେଷଣ ପ୍ରୟୋଗ କରି 'ଯଦି ତୁମେ ଯୁଦ୍ଧ ନ କରିବ, ତେବେ ସ୍ୱଧର୍ମ ଓ କୀର୍ତ୍ତି ହରାଇ ପାପଭାଗୀ ହେବ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ କହୁଛନ୍ତି, ''ଏହି ଯୁଦ୍ଧ ଧର୍ମମୟ ହୋଇଥିବାରୁ ଅବଶ୍ୟକର୍ତ୍ତବ୍ୟ; ଏହା ତୁମକୁ ଭଲଭାବରେ ବୁଝାଇଦିଆଯାଇଛି, ଏହା ପରେ ମଧ୍ୟ ଯଦି ତୁମେ କୌଣସି କାରଣରୁ ଯୁଦ୍ଧ ନ କରିବ, ତେବେ ତୁମର 'ସ୍ୱଧର୍ମ-ତ୍ୟାଗ' ହେବ ଏବଂ ନିବାତକବଚାଦି ଦାନବମାନଙ୍କ ସହିତ ଯୁଦ୍ଧରେ ବିଜୟ ଲାଭ କରିଥିବାରୁ ଏବଂ ଭଗବାନ୍ ଶଙ୍କରଙ୍କ ସହିତ ଯୁଦ୍ଧ କରିପାରିଥିବାରୁ ସଂସାରରେ ତୁମର ଯେଉଁ ମହାନ୍ କୀର୍ତ୍ତି ପ୍ରସାର ହୋଇଯାଇଛି, ତାହା ବି ନଷ୍ଟ ହୋଇଯିବ। ଏହା ଛଡ଼ା, ତୁମେ କର୍ତ୍ତବ୍ୟ ତ୍ୟାଗ କରିଦେବା ଫଳରେ ନିଶ୍ଚିତଭାବରେ ତୁମର ପାପ ହେବ। ଅତଏବ ତୁମେ ଯେଉଁ ପାପଭୟରେ ଯୁଦ୍ଧ ତ୍ୟାଗ କରୁଛ ଏବଂ ଭୟଭୀତ ହେଉଛ, ତାହା ସର୍ବଥା ଅନୁଚିତ।''

**ଅକୀର୍ତ୍ତିଂ ଚାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍।**
**ସମ୍ଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ।। ୩୪ ।।**

**ଅନ୍ୱୟ –** ଚ = ତଥା; ଭୂତାନି = ଲୋକମାନେ; ତେ = ତୁମର, ଅବ୍ୟୟାମ୍ = ଦୀର୍ଘକାଳ ରହୁଥିବା; ଅକୀର୍ତ୍ତିମ୍ = ଅପକୀର୍ତ୍ତିକୁ; ଅପି = ମଧ୍ୟ; କଥୟିଷ୍ୟନ୍ତି = କହିବେ; ଚ = ଏବଂ; ସମ୍ଭାବିତସ୍ୟ = ମାନନୀୟ ପୁରୁଷନିମିତ୍ତ; ଅକୀର୍ତ୍ତିଃ = ଅପକୀର୍ତ୍ତି; ମରଣାତ୍ = ମରଣରୁ; ଅତିରିଚ୍ୟତେ = (ବଳିଯାଏ) ବଳି ଦୁଃଖଦାୟକ।

**ତଥା ସମସ୍ତେ ଦୀର୍ଘକାଳସ୍ଥାୟୀ ତୁମର ଅପକୀର୍ତ୍ତି ବି ଆଲୋଚନା କରିବେ ଏବଂ ସମ୍ମାନନୀୟ ପୁରୁଷମାନଙ୍କ ନିମନ୍ତେ ଅପକୀର୍ତ୍ତି ହେଉଛି ମରଣରୁ ବଳି ଦୁଃଖଦାୟକ।। ୩୪ ।।**

**ପ୍ରଶ୍ନ –** ଏଠାରେ ଅପି ପଦ ପ୍ରୟୋଗ କରି 'ସମସ୍ତେ ଦୀର୍ଘକାଳ ଧରି ତୁମର ଅପକୀର୍ତ୍ତି ଆଲୋଚନା କରିବେ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅପି ପଦ ପ୍ରୟୋଗ କରି ଏହି ବାକ୍ୟରେ ଭଗବାନ୍ ଦେଖାଇଛନ୍ତି, ''କେବଳ ଯେ ସ୍ୱଧର୍ମ ଓ କୀର୍ତ୍ତି ନାଶ ହେବ ଏବଂ ପାପ ଲାଗିବ, ସେତିକି ନୁହେଁ, ତା' ସଙ୍ଗେ ସଙ୍ଗେ ଦେବତା, ଋଷି ଓ ମନୁଷ୍ୟ ଆଦି ସମସ୍ତେ ତୁମର ବହୁତ ନିନ୍ଦା ବି କରିବେ ଏବଂ ସେହି ଅପକୀର୍ତ୍ତି ସ୍ୱଳ୍ପକାଳସ୍ଥାୟୀ ନ ହୋଇ ଅନନ୍ତକାଳପର୍ଯ୍ୟନ୍ତ ଲାଗିରହିବ। ତେଣୁ ତୁମ ନିମନ୍ତେ ଯୁଦ୍ଧ ତ୍ୟାଗ କରିବା ସର୍ବଥା ଅନୁଚିତ।''

**ପ୍ରଶ୍ନ –** 'ସମ୍ମାନନୀୟ ପୁରୁଷଙ୍କ ପାଇଁ ଅପକୀର୍ତ୍ତି ମରଣଠାରୁ ବଳି ଦୁଃଖଦାୟକ', – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ ଦେଖାଇଛନ୍ତି, "ଯଦି ତୁମେ ଅପକୀର୍ତ୍ତି ହେଲେ ଆମର କଣ କ୍ଷତି ହୋଇଯିବ ବୋଲି କହିବ, ତେବେ ସେପରି କହିବା ଆଦୌ ଠିକ୍ ହେବ ନାହିଁ। ଯେଉଁ ପୁରୁଷ ସଂସାରରେ ପ୍ରସିଦ୍ଧ ହୋଇଯାଆନ୍ତି, ଯାହାଙ୍କୁ ବହୁଲୋକ ଶ୍ରେଷ୍ଠ ବୋଲି ମାନନ୍ତି, ସେପରି ପୁରୁଷଙ୍କ ନିମନ୍ତେ ଅପକୀର୍ତ୍ତି ମରଣଠାରୁ ବି ବଳି ଦୁଃଖଦାୟକ ହୁଏ। ଅତଏବ ଯଦି ସେପରି ଅପକୀର୍ତ୍ତି ହେବ, ତେବେ ତୁମେ ତାହା ସହିପାରିବ ନାହିଁ; କାରଣ ସଂସାରରେ ତୁମେ ବଡ଼ ଶୂରବୀର ଓ ଶ୍ରେଷ୍ଠପୁରୁଷ ବୋଲି ବିଖ୍ୟାତ ହୋଇଛ; ସ୍ୱର୍ଗଠାରୁ ପାତାଳପର୍ଯ୍ୟନ୍ତ ସବୁ ସ୍ଥାନରେ ତୁମର ପ୍ରତିଷ୍ଠା ରହିଛି।"

## ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।
## ଯେଷାଂ ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବମ୍ ।। ୩୫ ।।

**ଅନ୍ୱୟ –** ଚ = ଏବଂ; **ଯେଷାମ୍** = ଯେଉଁମାନଙ୍କ (ଦୃଷ୍ଟିରେ); **ତ୍ୱମ୍** = ତୁମେ (ପ୍ରଥମେ); **ବହୁମତଃ** = ବହୁତ ସମ୍ମାନିତ; **ଭୂତ୍ୱା** = ହୋଇସାରି **ଲାଘବମ୍** = (ବର୍ତ୍ତମାନ) ଲଘୁତାକୁ; **ଯାସ୍ୟସି** = ପ୍ରାପ୍ତ ହେବ; **ମହାରଥାଃ** = (ସେହି) ମହାରଥୀମାନେ; **ତ୍ୱାମ୍** = ତୁମେ; **ଭୟାତ୍** = ଭୟହେତୁ; **ରଣାତ୍** = ଯୁଦ୍ଧରୁ; **ଉପରତମ୍** = ଓହରି ଗଲ; **ମଂସ୍ୟନ୍ତେ** = ବୋଲି ମନେ କରିବେ।

**ଏବଂ ଯେଉଁମାନଙ୍କ ଦୃଷ୍ଟିରେ ତୁମେ ବିଶେଷରୂପେ ସମ୍ମାନିତ ହୋଇସାରିଛ, ସେମାନଙ୍କ ଦୃଷ୍ଟିରେ ବର୍ତ୍ତମାନ ହୀନ ହୋଇଯିବ; ସେହି ମହାରଥୀମାନେ ମନେ କରିବେ ଯେ, ତୁମେ ଭୟଭୀତ ହୋଇ ଯୁଦ୍ଧରୁ ଓହରି ଗଲ।। ୩୫ ।।**

**ପ୍ରଶ୍ନ –** 'ଯେଉଁମାନଙ୍କ ଦୃଷ୍ଟିରେ ତୁମେ ବିଶେଷରୂପେ ସମ୍ମାନିତ ହୋଇସାରିଛ, ସେମାନଙ୍କ ଦୃଷ୍ଟିରେ ବର୍ତ୍ତମାନ ହୀନ ହୋଇଯିବ' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ କହୁଛନ୍ତି, "ଭୀଷ୍ମ, ଦ୍ରୋଣ, ଶଲ୍ୟ ଆଦି ତଥା ବିରାଟ, ଦ୍ରୁପଦ, ସାତ୍ୟକି ଏବଂ ଧୃଷ୍ଟଦ୍ୟୁମ୍ନ ଆଦି ମହାରଥୀଗଣ, ଯେଉଁମାନେ କି ତୁମର ବହୁ ପ୍ରଶଂସା କରି ଆସିଛନ୍ତି, ତୁମକୁ ବଡ଼ ଶୂରବୀର, ମହାନ୍ ଯୋଦ୍ଧା ଏବଂ ଧର୍ମାତ୍ମା ବୋଲି ମାନି ଆସିଛନ୍ତି, ଯୁଦ୍ଧ ତ୍ୟାଗ କରିଦେଲେ ତୁମେ ସେମାନଙ୍କ ଦୃଷ୍ଟିରେ ତଳେ ପଡ଼ିଯିବ; ସେମାନେ ତୁମକୁ କାପୁରୁଷ ବୋଲି ଭାବିବେ।"

**ପ୍ରଶ୍ନ –** 'ମହାରଥୀମାନେ ତୁମେ ଭୟଭୀତ ହୋଇ ଯୁଦ୍ଧ ତ୍ୟାଗ କରୁଛ ବୋଲି ମନେ କରିବେ' – ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ ମହାରଥୀମାନଙ୍କ ଦୃଷ୍ଟିରେ ଅର୍ଜୁନଙ୍କର ପତନ ହେବାର ହିଁ ସ୍ପଷ୍ଟୀକରଣ କରିଛନ୍ତି। ଅଭିପ୍ରାୟ ହେଉଛି, ସେହି ମହାରଥୀମାନେ କେବେହେଲେ ବୁଝିବେ ନାହିଁ ଯେ, ଅର୍ଜୁନ ନିଜର ସ୍ୱଜନସମୁଦାୟଙ୍କ ଉପରେ ଦୟା କରି ବା ଯୁଦ୍ଧକୁ ପାପ ବୋଲି ବିଚାର କରି ଯୁଦ୍ଧ ପରିତ୍ୟାଗ କରିଛନ୍ତି। ସେମାନେ ନିଶ୍ଚୟ ବୁଝିବେ ଯେ, ଅର୍ଜୁନ ଭୟଭୀତ ହୋଇ ହିଁ ନିଜର ଜୀବନ ବଞ୍ଚାଇବାକୁ ଯୁଦ୍ଧ ତ୍ୟାଗ କରୁଛନ୍ତି। ଏହି ପରିସ୍ଥିତିରେ ଯୁଦ୍ଧ ନ କରିବା ଅର୍ଜୁନଙ୍କ ପକ୍ଷରେ କୌଣସି ଦୃଷ୍ଟିରୁ ବି ଉଚିତ ନୁହେଁ।

## ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ ।
## ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିମ୍ ।। ୩୬ ।।

**ଅନ୍ୱୟ –** ତବ = ତୁମର; **ଅହିତାଃ** = ଶତ୍ରୁମାନେ; ତବ = ତୁମର; **ସାମର୍ଥ୍ୟମ୍** = ସାମର୍ଥ୍ୟକୁ; **ନିନ୍ଦନ୍ତଃ** = ନିନ୍ଦା କରି (ତୁମକୁ); **ବହୂନ୍** = ବହୁତ; **ଅବାଚ୍ୟବାଦାନ୍** = ଅକଥ୍ୟ ବଚନମାନ; ଚ = ମଧ; **ବଦିଷ୍ୟନ୍ତି** = କହିବେ; **ତତଃ** = ତାହାଠାରୁ; **ଦୁଃଖତରମ୍** = ଅଧିକ ଦୁଃଖ; **ନୁ, କିମ୍** = ଆଉ କଣ ହେବ ?

**ତୁମର ଶତ୍ରୁମାନେ ତୁମ ସାମର୍ଥ୍ୟକୁ ନିନ୍ଦା କରି କରି ତୁମକୁ ବହୁ ଅକଥ୍ୟ ବଚନ ମଧ୍ୟ କହିବେ। ତା'ଠାରୁ ବଳି ଦୁଃଖର ବିଷୟ ଆଉ କ'ଣ ହୋଇପାରେ!॥ ୩୬ ॥**

**ପ୍ରଶ୍ନ –** ଚଉତିରିଶ ଶ୍ଳୋକରେ ତ କହିଦେଇଥିଲେ, 'ସକଳ ପ୍ରାଣୀ ତୁମର ନିନ୍ଦା କରିବେ।' ପୁଣି ଏଠାରେ 'ତୁମର ଶତ୍ରୁମାନେ ତୁମର ସାମର୍ଥ୍ୟକୁ ନିନ୍ଦା କରି କରି ବହୁ ଅକଥ୍ୟ ବଚନ କହିବେ' – କହିବାର ବିଶେଷତା କ'ଣ ?

**ଉତ୍ତର –** ଚଉତିରିଶ ଶ୍ଳୋକରେ ସର୍ବସାଧାରଣଙ୍କ ଦ୍ୱାରା ସର୍ବଦା କରାଯାଉଥିବା ନିନ୍ଦାର ବର୍ଣ୍ଣନା କରାଯାଇଛି; କିନ୍ତୁ ଏଠାରେ ଦୁର୍ଯ୍ୟୋଧନାଦି ଶତ୍ରୁମାନଙ୍କ ଦ୍ୱାରା ମୁହଁ ଉପରେ କହିଦିଆଯିବା ନିନ୍ଦାଯୁକ୍ତ କୁବାକ୍ୟ କଥା କୁହାଯାଇଛି। ପ୍ରଥମୋକ୍ତ ନିନ୍ଦା ତ କେବଳ ସମ୍ମାନନୀୟ ପୁରୁଷମାନଙ୍କ ପାଇଁ ଅଧିକ ଦୁଃଖଦାୟୀ ହୁଏ; ସମସ୍ତଙ୍କ ପାଇଁ ନୁହେଁ। କିନ୍ତୁ ନିଜ ମୁହଁ ଉପରେ ଶତ୍ରୁମାନଙ୍କର ଦୁର୍ବଚନ ଶୁଣିଲେ ସାଧାରଣ ଲୋକର ମଧ୍ୟ ଭୟଙ୍କର ଦୁଃଖ ହୁଏ। ତେଣୁ ଭଗବାନ୍ କହୁଛନ୍ତି, "କେବଳ ଜଗତରେ ହିଁ ଯେ ତୁମର ନିନ୍ଦା ହେବ ଏବଂ ଯେଉଁମାନେ ତୁମକୁ ଏତେବଡ଼ ଶୂରବୀର ବୋଲି ମାନୁଥିଲେ, କେବଳ ସେମାନେ ହିଁ ଯେ ତୁମକୁ କାପୁରୁଷ ବୋଲି ଭାବିବେ, ତାହା ନୁହେଁ, ତୁମର ଅମଙ୍ଗଳ କାମନା କରୁଥିବା, ତୁମର କ୍ଷତିରେ ଯେଉଁମାନଙ୍କ ମୁଖରେ ହସ ଫୁଟେ, ସେହି ଦୁର୍ଯ୍ୟୋଧନାଦି ଶତ୍ରୁମାନେ ବି ତୁମର ବଳ, ପରାକ୍ରମ ଓ ଯୁଦ୍ଧକୌଶଳ ଆଦିର ନିନ୍ଦା କରି ତୁମ ଉପରେ ନାନାପ୍ରକାର ଅସହ୍ୟ ବାକ୍ୟବାଣ ବର୍ଷା କରିବେ; କହିବେ, 'ଅର୍ଜୁନଟା କେତେ ଦିନର ବୀର ହେ! ସେ ତ ଜନ୍ମରୁ ହିଁ ନପୁଂସକ। ତା'ର ପୌରୁଷକୁ, ତା'ର ଗାଣ୍ଡୀବ ଧନୁକୁ ଧିକ୍!'

**ପ୍ରଶ୍ନ –** 'ତାହାଠାରୁ ବଳି ଅଧିକ ଦୁଃଖ ଆଉ କ'ଣ ହେବ ?' ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଉପରୋକ୍ତ ଘଟଣାର ପରିଣାମକୁ ଅତ୍ୟନ୍ତ ଦୁଃଖମୟ ବୋଲି ସିଦ୍ଧ କରିଛନ୍ତି। ଭଗବାନ୍ ଶ୍ରୀକୃଷ୍ଣ କହୁଛନ୍ତି, "ଏହାଠାରୁ ବଳି ବଡ଼ ଦୁଃଖ ତୁମପାଇଁ ଆଉ କ'ଣ ହୋଇପାରେ! ତେଣୁ ବର୍ତ୍ତମାନ ତୁମେ ଯେଉଁ ଯୁଦ୍ଧତ୍ୟାଗକୁ ସୁଖ ବୋଲି ମନେ କରୁଛ ଏବଂ ଯୁଦ୍ଧ କରିବାକୁ ଦୁଃଖ ବୋଲି ମନେ କରୁଛ, ତାହା ତୁମର ଭୁଲ୍। ଯୁଦ୍ଧତ୍ୟାଗ କରିବା ହିଁ ତୁମ ପକ୍ଷରେ ସବୁଠାରୁ ବଡ଼ ଦୁଃଖ ହେବ।"

*ସମ୍ବନ୍ଧ – ଉପରୋକ୍ତ ବିବିଧ କାରଣ ଦେଖାଇ, ଯୁଦ୍ଧ ନ କଲେ ଅନେକପ୍ରକାର କ୍ଷତି ହେବାର ବର୍ଣ୍ଣନା କରିବା ପରେ, ଭଗବାନ୍ ବର୍ତ୍ତମାନ ଯୁଦ୍ଧ କଲେ ଉଭୟ ଦିଗରୁ ଲାଭ ହେବାର ଦେଖାଇ ଅର୍ଜୁନଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ଆଜ୍ଞା ଦେଉଛନ୍ତି –*

## ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍।
## ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ॥ ୩୭ ॥

**ଅନ୍ୱୟ –** ବା, ହତଃ = କିମ୍ବା ନିହତ ହେଲେ; **ସ୍ୱର୍ଗମ୍** = ସ୍ୱର୍ଗକୁ; **ପ୍ରାପ୍ସ୍ୟସି** = ପ୍ରାପ୍ତ ହେବ; ବା = ବା (ଯୁଦ୍ଧରେ); **ଜିତ୍ୱା** = ଜୟ କରି; **ମହୀମ୍** = ପୃଥିବୀର ରାଜ୍ୟ; **ଭୋକ୍ଷ୍ୟସେ** = ଭୋଗ କରିବ; **ତସ୍ମାତ୍** = ତେଣୁ; **କୌନ୍ତେୟ** = ହେ ଅର୍ଜୁନ (ତୁମେ); **ଯୁଦ୍ଧାୟ** = ଯୁଦ୍ଧପାଇଁ; **କୃତନିଶ୍ଚୟଃ** = ସଂକଳ୍ପବଦ୍ଧ ହୋଇ; **ଉତ୍ତିଷ୍ଠ** = ଦଣ୍ଡାୟମାନ ହୋଇଯାଅ।

**ତୁମେ ଯୁଦ୍ଧରେ ନିହତ ହେଲେ ସ୍ୱର୍ଗ ପାଇବ; ନାହିଁ ତ ଯୁଦ୍ଧରେ ଜୟୀ ହେଲେ ଭୂମଣ୍ଡଳର ରାଜ୍ୟ ଭୋଗ କରିବ। ତେଣୁ ହେ ଅର୍ଜୁନ! ତୁମେ ଯୁଦ୍ଧ କରିବାକୁ ସଂକଳ୍ପବଦ୍ଧ ହୋଇ ଦଣ୍ଡାୟମାନ ହୋଇଯାଅ ॥୩୭ ॥**

**ପ୍ରଶ୍ନ –** ଏହି ଶ୍ଳୋକର ଭାବ କ'ଣ ?

**ଉତ୍ତର –** ଷଷ୍ଠ ଶ୍ଳୋକରେ ଅର୍ଜୁନ କହିଥିଲେ, "ମୋ ପକ୍ଷରେ ଯୁଦ୍ଧ କରିବା ଶ୍ରେଷ୍ଠ ହେବ, ନା ଯୁଦ୍ଧ ନ କରିବା ଶ୍ରେଷ୍ଠ ହେବ; ତଥା ଆମର ବିଜୟ ହେବ, ନା ଆମ ଶତ୍ରୁମାନଙ୍କର ବିଜୟ ହେବ – ମୁଁ ଏହା ନିର୍ଣ୍ଣୟ କରିପାରୁ ନାହିଁ।" ତାହାର ଉତ୍ତର ଦେଇ ଭଗବାନ୍ ଏହି ବାକ୍ୟରେ ଯୁଦ୍ଧରେ ନିହତ ହେଲେ ଅଥବା ବିଜୟ ପ୍ରାପ୍ତ ହେଲେ – ଉଭୟରେ ଲାଭ ହେବା ଦେଖାଇ,

ଅର୍ଜୁନଙ୍କ ପାଇଁ ଯୁଦ୍ଧ କରିବାର ଶ୍ରେଷ୍ଠତ୍ୱ ସିଦ୍ଧ କରିଛନ୍ତି। ସେ କହୁଛନ୍ତି, ''ଯଦି ଯୁଦ୍ଧ କରୁ କରୁ ତୁମର ଶତ୍ରୁମାନଙ୍କର ବିଜୟ ହୋଇଗଲା ଏବଂ ତୁମେ ନିହତ ହେଲ, ତେବେ ବି ଭଲ କଥା ହେବ; କାରଣ ଯୁଦ୍ଧରେ ପ୍ରାଣ ତ୍ୟାଗ କଲେ ତୁମର ସ୍ୱର୍ଗଲାଭ ହେବ ଏବଂ ଯଦି ବିଜୟ ଲାଭ କରିବ, ତେବେ ମଧ୍ୟ ପୃଥିବୀର ରାଜ୍ୟସୁଖ ଭୋଗ କରିବ। ଅତଏବ ଉଭୟ ଦୃଷ୍ଟିରୁ ତୁମର ଯୁଦ୍ଧ କରିବା ହିଁ ସବୁପ୍ରକାରେ ଶ୍ରେଷ୍ଠ। ତେଣୁ ତୁମେ ବଦ୍ଧପରିକର ହୋଇ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଯାଅ।''

**ସମ୍ବନ୍ଧ —** ଉପରୋକ୍ତ ଶ୍ଳୋକରେ ଭଗବାନ୍ ଯୁଦ୍ଧର ଫଳ ରାଜ୍ୟସୁଖ କିମ୍ବା ସ୍ୱର୍ଗପ୍ରାପ୍ତି ବୋଲି କହିଲେ; କିନ୍ତୁ ଅର୍ଜୁନ ତ ପ୍ରଥମରୁ ହିଁ କହିଥିଲେ, ''ଏହି ଲୋକର ରାଜ୍ୟପ୍ରାପ୍ତି କଥା କଣ, ମୁଁ ତ ତ୍ରିଲୋକର ରାଜ୍ୟପ୍ରାପ୍ତି ହେଲେ ମଧ୍ୟ ନିଜ କୁଳର ନାଶ କରିବାକୁ ଚାହେଁ ନାହିଁ।'' ଏଣୁ ଯାହାଙ୍କର ରାଜ୍ୟସୁଖ ଏବଂ ସ୍ୱର୍ଗଲାଭ ଇଚ୍ଛା ନାହିଁ, ସେ କିପରି ଯୁଦ୍ଧ କରିବେ, ତାହା ପରବର୍ତ୍ତୀ ଶ୍ଳୋକରେ କହୁଛନ୍ତି—

## ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ।
## ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି॥ ୩୮ ॥

**ଅନ୍ୱୟ —** **ଜୟାଜୟୌ** = ଜୟ-ପରାଜୟକୁ; **ଲାଭାଲାଭୌ** = ଲାଭ-କ୍ଷତିକୁ; **ସୁଖ-ଦୁଃଖେ** = ସୁଖ-ଦୁଃଖକୁ; **ସମେ** = ସମାନ; **କୃତ୍ୱା** = କରି (ବୁଝି); **ତତଃ** = ତାହା ପରେ; **ଯୁଦ୍ଧାୟ** = ଯୁଦ୍ଧପାଇଁ; **ଯୁଜ୍ୟସ୍ୱ** = ପ୍ରସ୍ତୁତ ହୋଇଯାଅ; **ଏବମ୍** = ଏହିପରି (ଯୁଦ୍ଧ କଲେ ତୁମେ); **ପାପମ୍** = ପାପକୁ; **ନ, ଅବାପ୍ସ୍ୟସି** = ପ୍ରାପ୍ତ ହେବ ନାହିଁ।

**ଜୟ-ପରାଜୟ, ଲାଭ-କ୍ଷତି ଓ ସୁଖ-ଦୁଃଖକୁ ସମାନ ମନେ କରି, ତାହା ପରେ ତୁମେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଯାଅ। ଏହିପରି ଯୁଦ୍ଧ କଲେ ତୁମେ ପାପଭାଗୀ ହେବ ନାହିଁ॥ ୩୮ ॥**

**ପ୍ରଶ୍ନ —** 'ଜୟ-ପରାଜୟ, ଲାଭ-କ୍ଷତି ଏବଂ ସୁଖ-ଦୁଃଖକୁ ସମାନ ମନେ କରିବା' ଅର୍ଥ କଣ ?

**ଉତ୍ତର —** ଯୁଦ୍ଧରେ ହେଉଥିବା ଜୟ-ପରାଜୟ, ଲାଭ-କ୍ଷତି ଓ ସୁଖ-ଦୁଃଖ ଆଦିରେ କୌଣସିପ୍ରକାର ଭେଦବୁଦ୍ଧି ନ ହେବା ଅର୍ଥାତ୍ ଏହିସବୁ କାରଣରୁ ମନରେ ରାଗ-ଦ୍ୱେଷ ବା ହର୍ଷ-ଶୋକ ଆଦି କୌଣସିପ୍ରକାର ବିକାର ଉତ୍ପନ୍ନ ନ ହେବା ହିଁ 'ସେ ସବୁକୁ ସମାନ ମନେ କରିବା'।

**ପ୍ରଶ୍ନ —** ଏଥର ତାହା ପରେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଯାଅ'— ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର —** ଏହି ବାକ୍ୟରେ ଭଗବାନ୍ ଦେଖାଉଛନ୍ତି, ''ଯଦି ତୁମର ରାଜ୍ୟସୁଖ ଓ ସ୍ୱର୍ଗଲାଭ ଇଚ୍ଛା ନାହିଁ, ତେବେ ଯୁଦ୍ଧରେ ହେଉଥିବା ବିଷମଭାବ ସର୍ବଥା ତ୍ୟାଗ କରି, ଉପରୋକ୍ତ ପ୍ରକାରେ ଯୁଦ୍ଧର ପ୍ରତ୍ୟେକ ପରିଣାମରେ ସମ ହୋଇ, ତୁମେ ଯୁଦ୍ଧ କରିବା ଆବଶ୍ୟକ। ଏପରି ଯୁଦ୍ଧ ଚିରସ୍ଥାୟୀ ପରମ-ଶାନ୍ତି ଦାନ କରେ।''

**ପ୍ରଶ୍ନ —** 'ଏହିପରି ଯୁଦ୍ଧ କଲେ ତୁମେ ପାପଭାଗୀ ହେବ ନାହିଁ'— ଏହାର ଭାବ କଣ ?

**ଉତ୍ତର —** ଏହି ବାକ୍ୟଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ସେହି କଥାର ଉତ୍ତର ଦେଇଛନ୍ତି, ଯେଉଁଥିରେ ଅର୍ଜୁନ ଯୁଦ୍ଧରେ ସ୍ୱଜନବଧକୁ ମହାନ୍ ପାପ ବୋଲି କହି ଯୁଦ୍ଧ ନ କରିବା ହିଁ ଉଚିତ ବୋଲି ସିଦ୍ଧ କରିଥିଲେ (୧/୩୬,୩୯,୪୫)। ଅଭିପ୍ରାୟ ହେଲା : 'ତୁମେ ଏପ୍ରକାର ଯୁଦ୍ଧ କଲେ, ତୁମକୁ କୌଣସିପ୍ରକାର ପାପ ଟିକିଏ ହେଲେ ବି ଲାଗିବ ନାହିଁ ଅର୍ଥାତ୍ ତୁମେ ଶୁଭାଶୁଭ କର୍ମବନ୍ଧନରୂପକ ପାପରୁ ମଧ୍ୟ ସର୍ବଥା ମୁକ୍ତ ହୋଇଯିବ।'

**ସମ୍ବନ୍ଧ —** ଏପର୍ଯ୍ୟନ୍ତ ଭଗବାନ୍ ସାଂଖ୍ୟଯୋଗର ସିଦ୍ଧାନ୍ତଦ୍ୱାରା ତଥା କ୍ଷାତ୍ରଧର୍ମଦୃଷ୍ଟିରୁ ଯୁଦ୍ଧର ଔଚିତ୍ୟ ସିଦ୍ଧ କରି ଅର୍ଜୁନଙ୍କୁ ସମଭାବପୂର୍ବକ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି। ବର୍ତ୍ତମାନ କର୍ମଯୋଗ ସିଦ୍ଧାନ୍ତରେ ଯୁଦ୍ଧର ଔଚିତ୍ୟ କହିବାପାଇଁ କର୍ମଯୋଗର ପ୍ରସ୍ତାବନା କରୁଛନ୍ତି—

**ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।**
**ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି ।। ୩୯ ।।**

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ !; **ଏଷା** = ଏହି; **ବୁଦ୍ଧିଃ** = ବୁଦ୍ଧି; **ତେ** = ତୁମକୁ; **ସାଂଖ୍ୟେ** = ଜ୍ଞାନଯୋଗ ଦୃଷ୍ଟିରୁ; **ଅଭିହିତା** = କୁହାଗଲା; **ତୁ** = ଓ (ବର୍ତ୍ତମାନ ତୁମେ); **ଇମାମ୍** = ଏହାକୁ; **ଯୋଗେ** = କର୍ମଯୋଗ ଦୃଷ୍ଟିରୁ; **ଶୃଣୁ** = ଶୁଣ; **ଯୟା** = ଯେଉଁ; **ବୁଦ୍ଧ୍ୟା** = ବୁଦ୍ଧିଦ୍ୱାରା; **ଯୁକ୍ତଃ** = ଯୁକ୍ତ ହୋଇ (ତୁମେ); **କର୍ମବନ୍ଧମ୍** = କର୍ମର ବନ୍ଧନକୁ; **ପ୍ରହାସ୍ୟସି** = ଭଲରୂପେ ତ୍ୟାଗ କରିଦେବ ବା ସର୍ବଥା ମୁକ୍ତ ହୋଇଯିବ ।

**ହେ ପାର୍ଥ ! ଏହି ବୁଦ୍ଧି ତୁମକୁ ଜ୍ଞାନଯୋଗ ଦୃଷ୍ଟିରୁ କୁହାଗଲା । ବର୍ତ୍ତମାନ ତୁମେ ଏହାକୁ କର୍ମଯୋଗ ଦୃଷ୍ଟିରୁ ଶୁଣ; ଏହି ବୁଦ୍ଧିରେ ଯୁକ୍ତ ହେଲେ ତୁମେ କର୍ମବନ୍ଧନକୁ ଭଲରୂପେ ତ୍ୟାଗ କରିଦେଇପାରିବ ଅର୍ଥାତ୍ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବ ।। ୩୯ ।।**

**ପ୍ରଶ୍ନ –** ଏଠାରେ **ଏଷା** ବିଶେଷଣ ସହିତ **ବୁଦ୍ଧିଃ** ପଦଟି କେଉଁ ବୁଦ୍ଧିର ବାଚକ ଏବଂ 'ଏହି ବୁଦ୍ଧି ତୁମକୁ ଜ୍ଞାନଯୋଗ ଦୃଷ୍ଟିରୁ କୁହାଗଲା' – ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ଯେଉଁ ସମଭାବରେ ଯୁକ୍ତ ହୋଇ ଯୁଦ୍ଧ କରିବାକୁ କହିଛନ୍ତି, ଏଠାରେ **ଏଷା** ପଦ ସହିତ **ବୁଦ୍ଧିଃ** ପଦଟି ସେହି ସମଭାବର ବାଚକ, କାରଣ **ଏଷା** ପଦଟି ଅତ୍ୟନ୍ତ ନିକଟବର୍ତ୍ତୀ ବସ୍ତୁକୁ ଦର୍ଶାଇଥାଏ । ଅତଏବ ଭଗବାନ୍ ଏହି ବକ୍ତବ୍ୟଦ୍ୱାରା ଜ୍ଞାନଯୋଗ ସାଧନାରେ ଏହି ସମଭାବ କିପରି ପ୍ରାପ୍ତ ହୁଏ, ତାହା ଏଠାରେ ଦେଖାଇଛନ୍ତି । ଆତ୍ମାର ଯଥାର୍ଥ ସ୍ୱରୂପକୁ ବିବେକଦ୍ୱାରା ବୁଝି ଜ୍ଞାନଯୋଗୀ କିପରି ସମଭାବରେ ଯୁକ୍ତ ହୋଇ ବର୍ଣ୍ଣାଶ୍ରମୋଚିତ ବିହିତ କର୍ମ କରିବା ଉଚିତ, ତାହା ଏଗାର ଶ୍ଳୋକରୁ ଆରମ୍ଭ କରି ତିରିଶ ଶ୍ଳୋକପର୍ଯ୍ୟନ୍ତ କୁହାଯାଇସାରିଛି ।

**ପ୍ରଶ୍ନ –** ଏଗାର ଶ୍ଳୋକରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ପ୍ରକରଣରେ ଏହି ସମଭାବର ବର୍ଣ୍ଣନା କିପରି କରାଯାଇଛି ?

**ଉତ୍ତର –** ଆତ୍ମାର ପ୍ରକୃତ ସ୍ୱରୂପକୁ ନ ଜାଣିଥିବାରୁ ମନୁଷ୍ୟର ସମସ୍ତ ପଦାର୍ଥରେ ବିଷମଭାବ ରହିଥାଏ । ଆତ୍ମାର ଯଥାର୍ଥ ସ୍ୱରୂପ ବୁଝିଗଲା ପରେ ତା'ପାଇଁ ଆତ୍ମା ଓ ପରମାତ୍ମା ମଧ୍ୟରେ ଆଉ କୌଣସି ପ୍ରଭେଦ ରହେ ନାହିଁ, ଏବଂ ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମଠାରୁ ଭିନ୍ନ ଅନ୍ୟ କୌଣସି ସତ୍ତା ରହେ ନାହିଁ । ସେତେବେଳେ ମନୁଷ୍ୟର କୌଣସିଥିରେ କିପରି ଭେଦବୁଦ୍ଧି ହୋଇପାରିବ ? ତେଣୁ ଭଗବାନ୍ ଏକାଦଶ ଶ୍ଳୋକରେ କହିଛନ୍ତି, କେହି ମରିଗଲେ ବା ଜୀବିତ ରହିଲେ ଭ୍ରମମୂଳକ ବିଷମଭାବହେତୁ ହେଉଥିବା ଶୋକ କରିବା ସର୍ବଥା ଅନୁଚିତ । ଏହା କହି ସେ ଶୋକ ନ କରିବା ଉଚିତ ବୋଲି ସଙ୍କେତ ଦେଇଛନ୍ତି । ବାର ଓ ତେର ଶ୍ଳୋକରେ ଆତ୍ମାର ନିତ୍ୟତ୍ୱ ଓ ଅସଙ୍ଗତ୍ୱ ପ୍ରତିପାଦନ କରିଛନ୍ତି । ସେଥିରେ କହିଛନ୍ତି, ପ୍ରାଣୀମାନଙ୍କର ମୃତ୍ୟୁରେ ଓ ଜୀବିତ ରହିବାରେ ଯେଉଁ ପ୍ରଭେଦ ପ୍ରତୀତ ହୁଏ, ତାହା ଅଜ୍ଞାନଜନିତ । ଆତ୍ମଜ୍ଞାନୀ ଧୀରପୁରୁଷମାନଙ୍କ ଠାରେ ଏପରି ଭେଦବୁଦ୍ଧି ରହେ ନାହିଁ; କାରଣ ଆତ୍ମା ସମ, ନିର୍ବିକାର ଓ ନିତ୍ୟ । ତା'ପରେ ଶୀତ-ଉଷ୍ଣ, ସୁଖ-ଦୁଃଖ ଆଦି ଦ୍ୱନ୍ଦ୍ୱହେତୁ ଭେଦବୁଦ୍ଧି ଉତ୍ପନ୍ନ କରୁଥିବା ଶବ୍ଦାଦି ସମସ୍ତ ବିଷୟସଂଯୋଗକୁ ଅନିତ୍ୟ ବୋଲି କହି, ଅର୍ଜୁନଙ୍କୁ ଏସବୁ ସହିଯିବାକୁ କହିଛନ୍ତି — ସେଥିରେ ସମ ହୋଇ ରହିବାକୁ କହିଛନ୍ତି (୨/୧୪) ଏବଂ ସୁଖ-ଦୁଃଖାଦିକୁ ସମଦୃଷ୍ଟିରେ ଦେଖୁଥିବା ବା ବୁଝୁଥିବା ପୁରୁଷଙ୍କୁ ପ୍ରଶଂସା କରି ତାଙ୍କୁ ପରମାତ୍ମପ୍ରାପ୍ତିର ଅଧିକାରୀ ବୋଲି କହିଛନ୍ତି (୨/୧୫) । ତା'ପରେ ସତ୍ୟାସତ୍ୟ ବସ୍ତୁ ନିର୍ଣ୍ଣୟ କରି ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି (୨/୧୬-୧୮) । ତା'ପରବର୍ତ୍ତୀ ଶ୍ଳୋକମାନଙ୍କରେ ଆତ୍ମାକୁ ନିହତ ବା ହତ୍ୟାକାରୀ ବୋଲି ମାନୁଥିବା ଲୋକଙ୍କୁ ଅଜ୍ଞାନୀ କହି, ଆତ୍ମାର ନିର୍ବିକାରତ୍ୱ, ଅକର୍ତ୍ତୃତ୍ୱ ଏବଂ ନିତ୍ୟତ୍ୱ ପ୍ରତିପାଦନ କରି, ସିଦ୍ଧ କରିଦେଇଛନ୍ତି ଯେ, ଶରୀରର ନାଶରେ ଆତ୍ମାର ନାଶ ହୁଏ ନାହିଁ; ତେଣୁ ମରିବା ଓ ଜୀବିତ ରହିବା ମଧ୍ୟରେ ବିଷମଭାବ ରଖି କୌଣସି ବି ପ୍ରାଣୀନିମନ୍ତେ କିଞ୍ଚିନ୍ମାତ୍ର ଶୋକ କରିବା ଉଚିତ ନୁହେଁ (୨/୧୯-୩୦) । ଏପରିଭାବରେ ଉକ୍ତ ପ୍ରକରଣରେ ସତ୍ୟ ଓ ଅସତ୍ୟ ପଦାର୍ଥମାନଙ୍କର ବିବେଚନଦ୍ୱାରା ଆତ୍ମାର ଯଥାର୍ଥ ସ୍ୱରୂପ ଜାଣିବାଦ୍ୱାରା ଉତ୍ପନ୍ନ ହେଉଥିବା ସମତ୍ୱ ପ୍ରତିପାଦନ କରାଯାଇଛି ।

**ପ୍ରଶ୍ନ—** **ଇମାମ୍** ପଦ କେଉଁ ବୁଦ୍ଧିର ବାଚକ? ଏବଂ 'ବର୍ତ୍ତମାନ ତୁମେ ଏହା ଯୋଗଦୃଷ୍ଟିରୁ ଶୁଣ'— ଏହି ବାକ୍ୟର ତାତ୍ପର୍ଯ୍ୟ କଣ?

**ଉତ୍ତର—** **ଇମାମ୍** ପଦ ମଧ୍ୟ ସେହି ପୂର୍ବଶ୍ଳୋକରେ ବର୍ଣ୍ଣିତ ସମଭାବରୂପକ ବୁଦ୍ଧିର ବାଚକ। ଏଣୁ ଉପରୋକ୍ତ ବାକ୍ୟରେ ଭଗବାନ୍ କହୁଛନ୍ତି, ''ସେହି ସମଭାବ କର୍ମଯୋଗ ସାଧନାରେ କିପରି ହୁଏ, କର୍ମଯୋଗୀ କିପରି ସମଭାବ ରଖିବା ଉଚିତ ଏବଂ ସେହି ସମଭାବର ଫଳ କଣ— ଏସବୁ କଥା ମୁଁ ଆଗ ଶ୍ଳୋକରେ ତୁମକୁ କହିବାକୁ ଯାଉଛି। ଏଣୁ ତୁମେ ତାହା ଶୁଣିବାକୁ ସାବଧାନ ହୋଇଯାଅ।''

**ପ୍ରଶ୍ନ—** ଏକଥା ଯଦି ଠିକ୍, ତେବେ ଏକତିରିଶଠାରୁ ସଅଁତିରିଶପର୍ଯ୍ୟନ୍ତ ଶ୍ଳୋକର ପ୍ରକରଣ କେଉଁ ଉଦ୍ଦେଶ୍ୟରେ ଦିଆଯାଇଛି?

**ଉତ୍ତର—** ସେହି ପ୍ରକରଣଟିରେ ଅର୍ଜୁନଙ୍କୁ ବୁଝାଇଦିଆଯାଇଛି : ତୁମେ କ୍ଷତ୍ରିୟ; ଯୁଦ୍ଧ ତୁମର ସ୍ୱଧର୍ମ; ତୁମ ପକ୍ଷରେ ତାହା ତ୍ୟାଗ କରିବା ସର୍ବଥା ଅନୁଚିତ ଏବଂ ଯୁଦ୍ଧ କରିବା ସର୍ବଥା ଲାଭପ୍ରଦ। ଅଠତିରିଶ ଶ୍ଳୋକରେ ବୁଝାଇଦିଆଯାଇଛି ଯେ, ଯେତେବେଳେ ଯୁଦ୍ଧ କରିବାକୁ ହେବ, ତାହା ଏପରିଭାବରେ କରିବାକୁ ହେବ, ଯେପରି କି ତାହା ବନ୍ଧନର କାରଣ ହୋଇ ନ ଯାଏ। ତେଣୁ ଜ୍ଞାନଯୋଗ ଏବଂ କର୍ମଯୋଗ— ଏହି ଉଭୟ ସାଧନାରେ ସମଭାବରେ ଯୁକ୍ତ ହେବା ଆବଶ୍ୟକ ବୋଲି କୁହାଯାଇଛି ଏବଂ ଏହି ଶ୍ଳୋକରେ ଉକ୍ତ ସମଭାବ ଦେହଳୀଦୀପ ନ୍ୟାୟରେ ଜ୍ଞାନଯୋଗ ଓ କର୍ମଯୋଗ— ଉଭୟପ୍ରକାର ସାଧନାକୁ ସମ୍ବନ୍ଧିତ କରିଦେଉଛି, ଅର୍ଥାତ୍ ଉଭୟ ସାଧନାରେ ସମଭାବ ରହିବା ଅତ୍ୟନ୍ତ ଆବଶ୍ୟକ ବୋଲି କୁହାଯାଇଛି।

**ପ୍ରଶ୍ନ—** ଏଠାରେ **କର୍ମବନ୍ଧମ୍** ପଦର ଅର୍ଥ କଣ? ଏବଂ ଉପରୋକ୍ତ ସମବୁଦ୍ଧିରେ ଏହାକୁ ନାଶ କରିଦେଇପାରିବ'— କହିବାର ଅର୍ଥ କଣ?

**ଉତ୍ତର—** ଜନ୍ମଜନ୍ମାନ୍ତରରେ କରାଯାଇଥିବା ଶୁଭାଶୁଭ କର୍ମର ସଂସ୍କାରଦ୍ୱାରା ଏହି ଜୀବ ବନ୍ଧା ହୋଇଛି; ପୁଣି ଏହି ମନୁଷ୍ୟଶରୀରରେ ଅହଂତ୍ୱ, ମମତ୍ୱ, ଆସକ୍ତି ଏବଂ କାମନାହେତୁ ନୂଆ ନୂଆ କର୍ମ କରି ସେ ଆହୁରି ଅଧିକ ବନ୍ଧନରେ ପଡୁଛି। ଏଣୁ ତାହା ଉକ୍ତ ଜୀବାତ୍ମାକୁ ବାରମ୍ବାର ନାନାପ୍ରକାର ଯୋନିରେ ପକାଇ ଜନ୍ମମୃତ୍ୟୁରୂପକ ସଂସାରଚକ୍ରରେ ଘୂରାଉଛି। **କର୍ମବନ୍ଧମ୍** ହେଉଛି ଜନ୍ମମୃତ୍ୟୁଚକ୍ରରେ ଘୂରାଇବାର କାରଣରୂପୀ ସେହିସବୁ ଅଗଣିତ ଜନ୍ମଜନ୍ମାନ୍ତରରେ ସଞ୍ଚିତ ଶୁଭାଶୁଭ ସଂସ୍କାରସମୂହର ବାଚକ। କର୍ମଯୋଗବିଧିରେ ସମସ୍ତ କର୍ମରେ ମମତ୍ୱ, ଆସକ୍ତି ଓ ଫଳଇଚ୍ଛା ତ୍ୟାଗ କରି ସିଦ୍ଧି ଓ ଅସିଦ୍ଧିରେ ସମଭାବ ରଖିଲେ ଅର୍ଥାତ୍ ହର୍ଷଶୋକ, ରାଗଦ୍ୱେଷ ଆଦି ବିକାରରୁ ରହିତ ହୋଇ ଜନ୍ମଜନ୍ମାନ୍ତରରେ କରିଥିବା ଓ ବର୍ତ୍ତମାନ କରାଯାଉଥିବା ସମସ୍ତପ୍ରକାର କର୍ମର ଫଳ-ଉତ୍ପାଦନକାରୀ ଶକ୍ତି ନଷ୍ଟ କରିଦେଲେ— ବୀଜକୁ ଭାଜିଦେଲେ ଯେପରି ତା'ର ଅଙ୍କୁର-ଉତ୍ପନ୍ନକାରୀ ଶକ୍ତି ନଷ୍ଟ ହୋଇଯାଏ, ସମବୁଦ୍ଧିଯୁକ୍ତ ହୋଇ କର୍ମ କଲେ ସେହିପରି ସକଳ କର୍ମର ଫଳ-ଉତ୍ପନ୍ନକାରୀ ଶକ୍ତି ନଷ୍ଟ ହୋଇଯାଏ। ତେଣୁ ଏପରି କରିବା ହିଁ 'ସମବୁଦ୍ଧିଦ୍ୱାରା କର୍ମବନ୍ଧନକୁ ସର୍ବଥା ନଷ୍ଟ କରିଦେବା'।

**ସମ୍ବନ୍ଧ—** ଏପରିଭାବରେ କର୍ମଯୋଗ ବର୍ଣ୍ଣନାର ପ୍ରସ୍ତାବନା କରି ବର୍ତ୍ତମାନ ତାହାର ରହସ୍ୟମୟ ମହତ୍ତ୍ୱ କହୁଛନ୍ତି—

## ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ।
## ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍॥ ୪୦ ॥

**ଅନ୍ୱୟ—** ଇହ = ଏହି କର୍ମଯୋଗରେ; ଅଭିକ୍ରମନାଶଃ = ଆରମ୍ଭର ଅର୍ଥାତ୍ ବୀଜର ନାଶ; ନ ଅସ୍ତି = ହୁଏ ନାହିଁ; ପ୍ରତ୍ୟବାୟଃ = ଓଲଟା ଫଳରୂପକ ଦୋଷ (ମଧ୍ୟ), ନ, ବିଦ୍ୟତେ = ହୁଏ ନାହିଁ (ବରଂ); ଅସ୍ୟ = ଏହି କର୍ମଯୋଗରୂପକ; ଧର୍ମସ୍ୟ = ଧର୍ମର; ସ୍ୱଳ୍ପମ୍ = ସାମାନ୍ୟମାତ୍ର (ସାଧନା); ଅପି = ମଧ୍ୟ; ମହତଃ, ଭୟାତ୍ = ଜନ୍ମମୃତ୍ୟୁରୂପକ ବିରାଟ ଭୟରୁ; ତ୍ରାୟତେ = ରକ୍ଷା କରିଦିଏ।

**ଏହି କର୍ମଯୋଗରେ ଆରମ୍ଭର ଅର୍ଥାତ୍ ବୀଜର ନାଶ ହୁଏ ନାହିଁ ଏବଂ ବିପରୀତ ଫଳରୂପକ ଦୋଷ ମଧ୍ୟ ଏଥିରେ ହୁଏ ନାହିଁ। ବରଂ ଏହି କର୍ମଯୋଗରୂପକ ଧର୍ମର ସାମାନ୍ୟମାତ୍ର ସାଧନା ବି ଜନ୍ମମୃତ୍ୟୁରୂପକ ବିରାଟ ଭୟରୁ ରକ୍ଷା କରିଦିଏ॥ ୪୦ ॥**

**ପ୍ରଶ୍ନ –** 'ଏହି କର୍ମଯୋଗରେ ଆରମ୍ଭର ନାଶ ହୁଏ ନାହିଁ' – ଏ କଥାର ଅର୍ଥ କଣ ?

**ଉତ୍ତର –** ମନୁଷ୍ୟ ଏହି କର୍ମଯୋଗ ସାଧନା ଆରମ୍ଭ କରି ଯଦି ତାହା ପୂର୍ଣ୍ଣ ହେବା ପୂର୍ବରୁ ମଝିରେ ହିଁ ଛାଡ଼ିଦିଏ, ତେବେ ଚାଷୀ ଯେପରି କ୍ଷେତରେ ବୀଜ ବୁଣି ତାହାର ଦେଖାରଖା ନ କଲେ, ସେଥିରେ ପାଣି ନ ଦେଲେ, ବୀଜ ନଷ୍ଟ ହୋଇଯାଏ, କର୍ମଯୋଗରେ ସେହିପରି ଆରମ୍ଭ ଅର୍ଥାତ୍ ବୀଜ ନଷ୍ଟ ହୁଏ ନାହିଁ। କର୍ମଯୋଗର ସଂସ୍କାର ସାଧକଙ୍କ ଅନ୍ତଃକରଣରେ ରହିଯାଏ ଏବଂ ସାଧକଙ୍କୁ ପରବର୍ତ୍ତୀ ଜନ୍ମରେ ତାହା ପୁନର୍ବାର ବଳପୂର୍ବକ ସାଧନାରେ ଲଗାଇଦିଏ (୬/୪୩-୪୪); ତାହାର ବିନାଶ ହୁଏ ନାହିଁ। ତେଣୁ ଭଗବାନ୍ କର୍ମଯୋଗକୁ ସତ୍ ବୋଲି କହିଛନ୍ତି (୧୭/୨୭)।

**ପ୍ରଶ୍ନ –** 'ଏଥିରେ ପ୍ରତ୍ୟବାୟ ଅର୍ଥାତ୍ ବିପରୀତଫଳରୂପକ ଦୋଷ ବି ହୁଏ ନାହିଁ' – ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** କର୍ମ ଯେତେବେଳେ କାମନାଯୁକ୍ତ ହୁଏ, ସେତେବେଳେ ତାହା ଭଲମନ୍ଦ ଫଳ ଦେବାର ସମ୍ଭାବନା ଥାଏ। କିନ୍ତୁ ଏଥିରେ ସର୍ବଦା କାମନାର ଅଭାବ ଥାଏ; ତେଣୁ ଏହାର ପ୍ରତ୍ୟବାୟ ଅର୍ଥାତ୍ ବିପରୀତ ଫଳ ମଧ୍ୟ ହୁଏ ନାହିଁ। ସକାମଭାବରେ କର୍ମ କରିବାବେଳେ ଦେବତା, ପିତୃ, ମନୁଷ୍ୟ ଆଦିଙ୍କ ସେବାରେ କୌଣସି କାରଣରୁ ତ୍ରୁଟି ହୋଇଗଲେ, ସେମାନେ ରୁଷ୍ଟ ହୋଇଯିବାରୁ ସାଧକଙ୍କର ଅନିଷ୍ଟ ମଧ୍ୟ ହୋଇପାରେ; କିନ୍ତୁ ସ୍ୱାର୍ଥରହିତ ଯଜ୍ଞ, ଦାନ, ତପ, ସେବା ଆଦି କର୍ମପାଳନରେ ତ୍ରୁଟି ରହିଗଲେ ମଧ୍ୟ ସେଥିରେ ବିପରୀତ ଫଳରୂପକ ଅନିଷ୍ଟ ହୁଏ ନାହିଁ। ରୋଗ ବିନାଶନପାଇଁ ସେବନ କରାଯାଉଥିବା ଔଷଧ ଅନୁକୂଳ ନ ହେଲେ ଯେପରି ପ୍ରତିକୂଳ ହୋଇଯାଏ, ରୋଗକୁ ବଢ଼ାଇଦିଏ, ଏହି କର୍ମଯୋଗରେ ସେପରି ବିପରୀତ ପରିଣାମ ହୁଏ ନାହିଁ (୬/୪୦)। ଅର୍ଥାତ୍ ଯଦି ତାହା ପୂର୍ଣ୍ଣ ନ ହେବାରୁ ସାଧକଙ୍କୁ ଏହି ଜନ୍ମରେ ହିଁ ପରମପଦପ୍ରାପ୍ତି କରାଇ ନ ପାରିଲା, ତେବେ ବି ତାହା ପାଳନ କରୁଥିବା ସାଧକଙ୍କୁ ପୂର୍ବକୃତ ପାପର ଫଳସ୍ୱରୂପ କିମ୍ବା ଇହଜନ୍ମରେ ହେଉଥିବା ଆନୁଷଙ୍ଗିକ ହିଂସାଦିର ଫଳସ୍ୱରୂପ ତିର୍ଯ୍ୟକ୍ ଯୋନିରେ ବା ନରକରେ ପଡ଼ିବାକୁ ହୁଏ ନାହିଁ ଏବଂ ନିଜର ପୂର୍ବକୃତ ଶୁଭକର୍ମର ଫଳସ୍ୱରୂପ ଇହଲୋକରେ ବା ପରଲୋକରେ ସୁଖଭୋଗରୁ ବଞ୍ଚିତ ହେବାକୁ ପଡ଼େ ନାହିଁ। ସେହି ସାଧକ ପରଜନ୍ମରେ ପୁଣ୍ୟବାନ୍‌ମାନଙ୍କର ଉତ୍ତମ ଲୋକ ହିଁ ପ୍ରାପ୍ତ ହୁଅନ୍ତି ଏବଂ ବହୁ ସମୟପର୍ଯ୍ୟନ୍ତ ସେଠାରେ ରହି ପୁନର୍ବାର ବିଶୁଦ୍ଧ ଲକ୍ଷ୍ମୀବନ୍ତଙ୍କ ଗୃହରେ ଜନ୍ମ ହୁଅନ୍ତି ଅଥବା ଯୋଗୀକୁଳରେ ଜନ୍ମ ହୁଅନ୍ତି ଏବଂ ପୂର୍ବର ଅଭ୍ୟାସହେତୁ ପୁନର୍ବାର ସେହି ସାଧନାରେ ପ୍ରବୃତ୍ତ ହୋଇଯାଆନ୍ତି (୬/୪୧-୪୪)।

**ପ୍ରଶ୍ନ – ପ୍ରତ୍ୟବାୟୋ ନ ବିଦ୍ୟତେର** ଅର୍ଥ 'କର୍ମଯୋଗରେ ବାଧାବିଘ୍ନ ଆଦି କୌଣସି ପ୍ରତିବନ୍ଧକ ଆସେ ନାହିଁ' – ଏପରି ଧରିନିଆଗଲେ କ୍ଷତି କଣ ?

**ଉତ୍ତର –** ପୂର୍ବଜନ୍ମକୃତ ପାପହେତୁ ବିଷୟଭୋଗ ତଥା ପ୍ରମାଦୀ, ବିଷୟୀ ଓ ନାସ୍ତିକ ପୁରୁଷମାନଙ୍କ ସଙ୍ଗଦୋଷରୁ ସାଧନାରେ ବାଧାବିଘ୍ନାଦି ପ୍ରତିବନ୍ଧକ ତ ଆସିପାରେ। କିନ୍ତୁ ନିଷ୍କାମ କର୍ମର ପରିଣାମ ମନ୍ଦ ହୁଏ ନାହିଁ। ତେଣୁ ବିପରୀତ-ଫଳରୂପୀ ଦୋଷ ହୁଏ ନାହିଁ ବୋଲି ଅର୍ଥ କରିନେବା ହିଁ ଉଚିତ।

**ପ୍ରଶ୍ନ –** **ଅସ୍ୟ** ବିଶେଷଣ ସହିତ **ଧର୍ମସ୍ୟ** ପଦ କାହାର ବାଚକ ?

**ଉତ୍ତର –** ପୂର୍ବଶ୍ଳୋକରେ **ଯୋଗ** ନାମରେ ଯାହାର ବର୍ଣ୍ଣନା କରାଯାଇଛି, ଏହା ହେଉଛି ସେହି କର୍ମଯୋଗର ବାଚକ।

**ପ୍ରଶ୍ନ –** କର୍ମଯୋଗ କାହାକୁ କହନ୍ତି ?

**ଉତ୍ତର –** ଶାସ୍ତ୍ରବିହିତ ଉତ୍ତମ କ୍ରିୟାର ନାମ କର୍ମ ଏବଂ ସମଭାବର ନାମ ଯୋଗ (୨/୪୮); ଏଣୁ ମମତ୍ୱ-ଆସକ୍ତି, କାମ-କ୍ରୋଧ ଏବଂ ଲୋଭ-ମୋହ ଆଦିରୁ ରହିତ ହୋଇ ସମତ୍ୱପୂର୍ବକ ନିଜର ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଶାସ୍ତ୍ରବିହିତ ଯେଉଁ କର୍ତ୍ତବ୍ୟକର୍ମ ଆଚରଣ କରାଯାଏ, ତାହା କର୍ମଯୋଗ। ଏହାକୁ ସମତ୍ୱଯୋଗ, ବୁଦ୍ଧିଯୋଗ, ତଦର୍ଥକର୍ମ, ମଦର୍ଥକର୍ମ ଏବଂ ମତ୍‌କର୍ମ ମଧ୍ୟ କହନ୍ତି।

**ପ୍ରଶ୍ନ –** ଏହି 'କର୍ମଯୋଗ'ରୂପକ ଧର୍ମର ସାମାନ୍ୟମାତ୍ର ସାଧନା ମଧ୍ୟ ମହାନ୍ ଭୟରୁ ରକ୍ଷା କରିଦିଏ' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଅଭିପ୍ରାୟ ଏହି ଯେ, ଏହି କର୍ମଯୋଗ ସାଧନା ଯଦି ନିଜର ଶେଷ ସୀମାପର୍ଯ୍ୟନ୍ତ ପହଞ୍ଚିଯାଏ, ତେବେ ତାହା ମନୁଷ୍ୟଙ୍କୁ ସେହିକ୍ଷଣି ହିଁ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ କରାଇଦିଏ। ତେଣୁ ଏହାର ପୂର୍ଣ୍ଣସାଧନାର ମହତ୍ତ୍ୱ କଥା ବା କଣ କହିବା ! କିନ୍ତୁ

ମନୁଷ୍ୟ ଯଦି ଏହାକୁ ଆଂଶିକଭାବରେ ସାଧନା କରିପାରେ, ଅର୍ଥାତ୍ ସମତ୍ୱରେ ଅଟଳରୂପେ ସ୍ଥିତ ନ ହୋଇ ବି ମନୁଷ୍ୟ ଯଦି କିଛି ଅଂଶରେ ସମଭାବରେ କର୍ତ୍ତବ୍ୟକର୍ମ ଆଚରଣ କରିପାରେ ଏବଂ ଯଦି ସେହି ସାମାନ୍ୟ ସମଭାବ ବି ଅନ୍ତକାଳରେ ସ୍ଥିର ହୋଇଯାଏ, ତେବେ ମଧ୍ୟ ତାହା ମନୁଷ୍ୟକୁ ନିର୍ବାଣବ୍ରହ୍ମପ୍ରାପ୍ତି କରାଇଦେଇଥାଏ (୨/୭୨); ତା' ନ ହେଲେ, ତାହା ସାଧକଙ୍କୁ ଜନ୍ମାନ୍ତରରେ ପୁନର୍ବାର ସାଧନାରେ ପ୍ରବୃତ୍ତ କରାଇ ପରମଗତି ପ୍ରାପ୍ତ କରାଇଦିଏ (୬/୪୧-୪୫)। ଏପରିଭାବରେ ତାହା ଯଥାସମୟରେ ତାଙ୍କୁ ଅବଶ୍ୟ ଉଦ୍ଧାର କରିଦିଏ। ସକାମଭାବରେ ହଜାର ହଜାର ବର୍ଷପର୍ଯ୍ୟନ୍ତ କରିଥିବା ବଡ଼ବଡ଼ ଯଜ୍ଞ, ଦାନ, ତପ, ତୀର୍ଥବାସ, ବ୍ରତ, ଉପବାସ ଆଦି କର୍ମ ବି ମନୁଷ୍ୟକୁ ସଂସାରରୁ ଉଦ୍ଧାର କରିପାରେ ନାହିଁ। ଅଥଚ ସମଭାବରେ କରାଯାଇଥିବା ଶାସ୍ତ୍ରବିହିତ ଭିକ୍ଷାବୃତ୍ତି, ଯୁଦ୍ଧ, କୃଷି, ବ୍ୟବସାୟ, ସେବା ଏବଂ ଶିଳ୍ପ ଆଦି କ୍ଷୁଦ୍ରାଦପି କ୍ଷୁଦ୍ର ଜୀବିକାନିର୍ବାହ କର୍ମ ମଧ୍ୟ ଯଦି ଭାବପୂର୍ଣ୍ଣ ହୋଇଥାଏ, ତେବେ ତାହା କ୍ଷଣମାତ୍ରକେ ସଂସାରରୁ ଉଦ୍ଧାର କରିଦିଏ; କାରଣ କଲ୍ୟାଣସାଧନରେ କର୍ମ ଅପେକ୍ଷା ଭାବର ହିଁ ପ୍ରାଧାନ୍ୟ ରହେ।

**ପ୍ରଶ୍ନ –** ଯଦି ଏହି କର୍ମଯୋଗର ସ୍ୱଳ୍ପ ସାଧନା ବୃଦ୍ଧି ପାଇଲେ ହିଁ ମହାନ୍ ଭୟରୁ ରକ୍ଷା କରିଦିଏ, ତେବେ ଏଠାରେ ସ୍ୱଳ୍ପର ମହତ୍ତ୍ୱ କଣ ?

**ଉତ୍ତର –** ନିଷ୍କାମଭାବର ପରିଣାମ ହେଉଛି ସଂସାରରୁ ଉଦ୍ଧାର କରିବା। ତେଣୁ ତାହା ତା'ର ପରିଣାମ ସିଦ୍ଧ ନ କରି ନଷ୍ଟ ହୁଏ ନାହିଁ, କି ତାହାର ଅନ୍ୟ କୌଣସି ଫଳ ହୁଏ ନାହିଁ। ତାହା ପରିଶେଷରେ ସାଧକଙ୍କୁ ପୂର୍ଣ୍ଣ ନିଷ୍କାମ କରାଇଦେଇ ତାଙ୍କୁ ଉଦ୍ଧାର କରିଦିଏ। ଏହା ହିଁ ତାହାର ମହତ୍ତ୍ୱ।

**ପ୍ରଶ୍ନ –** ଯଦି କର୍ମଯୋଗର ସାମାନ୍ୟ କିଛି ସାଧନା ବି ମହାନ୍ ଭୟରୁ ରକ୍ଷା କରିପାରେ, ତେବେ ପୂର୍ଣ୍ଣ ସାଧନା କରିବା ଆବଶ୍ୟକ କଣ ?

**ଉତ୍ତର –** ସାମାନ୍ୟ କିଛି ସାଧନା ବି ରକ୍ଷା କରିପାରେ; ଏଥିରେ କୌଣସି ସନ୍ଦେହ ନାହିଁ; କିନ୍ତୁ ସେଥିରେ ସମୟର କିଛି ନିର୍ଦ୍ଦିଷ୍ଟ ସୀମା ନାହିଁ; ଏହି ଜନ୍ମରେ ଉଦ୍ଧାର କରିବ, କି ଜନ୍ମାନ୍ତରରେ ଉଦ୍ଧାର କରିବ, ତାହାର କୌଣସି ସ୍ଥିରତା ନାହିଁ; କାରଣ ସେହି ସାମାନ୍ୟ ସାଧନା କ୍ରମଶଃ ବୃଦ୍ଧି ପାଇ ପୂର୍ଣ୍ଣ ହେବା ପରେ ହିଁ ଉଦ୍ଧାର କରିବ। ଅତଏବ ଶୀଘ୍ର କଲ୍ୟାଣ ଇଚ୍ଛା କରୁଥିବା ପ୍ରଯତ୍ନଶୀଳ ମନୁଷ୍ୟ ତତ୍ପରତା ଏବଂ ଉତ୍ସାହ ସହକାରେ ପୂର୍ଣ୍ଣରୂପରେ ସମତ୍ୱ ପ୍ରାପ୍ତ କରିବାକୁ ଚେଷ୍ଟା କରିବା ଉଚିତ।

**ପ୍ରଶ୍ନ –** ମହାନ୍ ଭୟ କାହାକୁ କହନ୍ତି ? ଏବଂ ସେଥିରୁ ରକ୍ଷା ପାଇବାର ଅର୍ଥ କଣ ?

**ଉତ୍ତର –** ମୃତ୍ୟୁଭୟ ହେଉଛି ଜୀବର ସବୁଠାରୁ ବଡ଼ ଭୟ। ଏଣୁ ଅନନ୍ତକାଳପର୍ଯ୍ୟନ୍ତ ବାରମ୍ବାର ଜନ୍ମ ହେବା, ମରିବା ହିଁ ସବୁଠାରୁ ବଡ଼ ଭୟ। ଏହି ଜନ୍ମମୃତ୍ୟୁରୂପକ ମହାନ୍ ଭୟକୁ ଭଗବାନ୍ ପରେ ମୃତ୍ୟୁ-ସଂସାର-ସାଗର ବୋଲି କହିଛନ୍ତି। (୧୨/୭)। ସମୁଦ୍ରରେ ଯେପରି ଅନନ୍ତ ଲହରୀ ଉଠେ ଓ ପଡ଼େ, ସଂସାରସାଗରରେ ସେହିପରି ଜନ୍ମମୃତ୍ୟୁରୂପକ ଅନନ୍ତ ଲହରୀ ଉଠେ ଓ ପଡ଼େ। ସମୁଦ୍ରର ଲହରୀକୁ ଇଚ୍ଛା କଲେ ଗଣିଦେଇହେବ; କିନ୍ତୁ ଯେପର୍ଯ୍ୟନ୍ତ ପରମାତ୍ମାଙ୍କ ତତ୍ତ୍ୱର ଯଥାର୍ଥ ଜ୍ଞାନ ନ ହୋଇଛି, ସେପର୍ଯ୍ୟନ୍ତ କେତେ ଥର ଯେ ମରିବାକୁ ପଡ଼ିବ, ତାହାର ଗଣନା କେହି କରିପାରିବେ ନାହିଁ। ଏହି ମୃତ୍ୟୁରୂପ ସଂସାରସାଗରରୁ ପାର କରିଦେବା ହିଁ, ଜନ୍ମମୃତ୍ୟୁଚକ୍ରରୁ ପୂର୍ଣ୍ଣରୂପେ ମୁକ୍ତ କରି ସମସ୍ତ ପ୍ରପଞ୍ଚରୁ ଅତୀତ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ମିଳାଇଦେବା ହିଁ, ମହାନ୍ ଭୟରୁ ରକ୍ଷା କରିଦେବା।

*ସମ୍ବନ୍ଧ – ଏପରିଭାବରେ କର୍ମଯୋଗର ମହତ୍ତ୍ୱ ବର୍ଣ୍ଣନା କଲେ। ବର୍ତ୍ତମାନ ତାହାର ଆଚରଣ ବିଧି ବୁଝାଇଦେବାପାଇଁ ପ୍ରଥମେ ସେହି କର୍ମଯୋଗରେ ପରମ ଆବଶ୍ୟକ ହେଉଥିବା ସିଦ୍ଧକର୍ମଯୋଗୀଙ୍କର ନିଶ୍ଚୟାତ୍ମିକା-ସ୍ଥାୟୀ-ସମବୁଦ୍ଧି ଏବଂ କର୍ମଯୋଗର ପ୍ରତିବନ୍ଧକରୂପୀ ସକାମମନୁଷ୍ୟମାନଙ୍କ ପାଖରେ ଥିବା ନାନାପ୍ରକାର ବୁଦ୍ଧି ମଧ୍ୟରେ କି ପାର୍ଥକ୍ୟ ରହିଛି, ତାହା ବୁଝାଉଛନ୍ତି –*

**ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ।**<br>
**ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ ॥ ୪୧ ॥**

**ଅନ୍ୱୟ** – **କୁରୁନନ୍ଦନ** = ହେ ଅର୍ଜୁନ; **ଇହ** = ଏହି କର୍ମଯୋଗରେ; **ବ୍ୟବସାୟାତ୍ମିକା** = ନିଶ୍ଚୟାତ୍ମିକା; **ବୁଦ୍ଧିଃ** = ବୁଦ୍ଧି; **ଏକା** = ଗୋଟିଏମାତ୍ର; **(ଭବତି)** = ହୁଏ; **(କିନ୍ତୁ)** **ଅବ୍ୟବସାୟିନାମ୍** = ଅସ୍ଥିରବିଚାରଯୁକ୍ତ ବିବେକହୀନ ସକାମ ମନୁଷ୍ୟମାନଙ୍କର; **ବୁଦ୍ଧୟଃ** = ବୁଦ୍ଧିଗୁଡ଼ିକ; **ହି** = ହିଁ; **ବହୁଶାଖାଃ** = ବହୁପ୍ରକାର; **ଚ** = ଏବଂ; **ଅନନ୍ତାଃ** = ଅସଂଖ୍ୟ (ହୁଏ)।

**ହେ ଅର୍ଜୁନ, ଏହି କର୍ମଯୋଗରେ ନିଶ୍ଚୟାତ୍ମିକା ବୁଦ୍ଧି ଗୋଟିଏମାତ୍ର ହୁଏ, କିନ୍ତୁ ଅସ୍ଥିରବିଚାରଯୁକ୍ତ ବିବେକହୀନ ସକାମ ମନୁଷ୍ୟମାନଙ୍କର ବୁଦ୍ଧି ନିଶ୍ଚିତଭାବରେ ବହୁପ୍ରକାର ଓ ଅସଂଖ୍ୟ ହୁଏ।॥ ୪୧ ॥**

**ପ୍ରଶ୍ନ** – **ବ୍ୟବସାୟାତ୍ମିକା** ବିଶେଷଣ ସହିତ **ବୁଦ୍ଧିଃ** ପଦ ଏଠାରେ କେଉଁ ବୁଦ୍ଧିର ବାଚକ ଏବଂ 'ତାହା ଏକ ଅଟେ' – ଏହି କଥନର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ଯେଉଁ ବୁଦ୍ଧିର ସ୍ୱରୂପ ଅଟଳ ଓ ଦୃଢ଼ନିଶ୍ଚୟ, ଅଣଚାଳିଶ ଶ୍ଳୋକରେ ଯେଉଁ ବୁଦ୍ଧିରେ ଯୁକ୍ତ ହେବାର ଫଳ କର୍ମବନ୍ଧନରୁ ମୁକ୍ତି ବୋଲି କହିଛନ୍ତି, **ବ୍ୟବସାୟାତ୍ମିକା** ବିଶେଷଣ ସହିତ **ବୁଦ୍ଧିଃ** ପଦଟି ହେଉଛି, ସେହି ସ୍ଥାୟୀ ସମଭାବରୂପୀ ନିଶ୍ଚୟାତ୍ମିକା ବୁଦ୍ଧିର ବାଚକ। କାରଣ, ଏହି ପ୍ରକରଣରେ ସ୍ଥାନେ ସ୍ଥାନେ ଏହି ଅର୍ଥରେ ବୁଦ୍ଧି ଶବ୍ଦର ପ୍ରୟୋଗ ହୋଇଛି। 'ସେହି ବୁଦ୍ଧି ଏକ ଅଟେ' — ଏହା କହି ଭଗବାନ୍ ବୁଝାଇଦେଇଛନ୍ତି ଯେ, ସେହି ବୁଦ୍ଧିରେ କେବଳ ଏକମାତ୍ର ସଚ୍ଚିଦାନନ୍ଦ ପରମାତ୍ମା ହିଁ ନିଶ୍ଚିତରୂପେ ରହନ୍ତି; ସେହି ବୁଦ୍ଧିରେ ବିଭିନ୍ନ ଭୋଗ ଏବଂ ସେ ସବୁର ପ୍ରାପ୍ତି-ଉପାୟର ସ୍ଥାନ ଆଦୌ ନ ଥାଏ। ଏହାକୁ ସ୍ଥିରବୁଦ୍ଧି ଓ ସମବୁଦ୍ଧି ବି କହନ୍ତି।

**ପ୍ରଶ୍ନ** – **ଅବ୍ୟବସାୟିନାମ୍** ପଦଟି କେଉଁ ମନୁଷ୍ୟଙ୍କୁ ବୁଝାଉଛି ଏବଂ ସେମାନଙ୍କର ବୁଦ୍ଧିକୁ ବିଭିନ୍ନ ଶାଖାଯୁକ୍ତ ଓ ଅନନ୍ତ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର** – ଯେଉଁମାନଙ୍କର ଉପରୋକ୍ତ ନିଶ୍ଚୟାତ୍ମିକା ବୁଦ୍ଧି ନାହିଁ, ଅଜ୍ଞାନଜନିତ ବିଷମଭାବଯୋଗୁ ଯେଉଁମାନଙ୍କର ଅନ୍ତଃକରଣ ମୋହଗ୍ରସ୍ତ ହୋଇଯାଇଛି, **ଅବ୍ୟବସାୟିନାମ୍** ପଦଟି ହେଉଛି ସେହି ବିବେକହୀନ ଭୋଗାସକ୍ତ ମନୁଷ୍ୟମାନଙ୍କର ବାଚକ। ସେମାନଙ୍କର ବୁଦ୍ଧିକୁ ବହୁଶାଖାଯୁକ୍ତ ଓ ଅନନ୍ତ ବୋଲି କହି ଦର୍ଶାଇଦେଇଛନ୍ତି ଯେ, ସକାମଭାବରେ ଯଜ୍ଞାଦି କର୍ମ କରୁଥିବା ମନୁଷ୍ୟମାନଙ୍କର ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ଥାଏ। କେହି ଗୋଟିଏପ୍ରକାର ଫଳପାଇଁ ଗୋଟିଏପ୍ରକାର କର୍ମ କରେ ତ, ଅନ୍ୟ କେହି ଭୋଗପ୍ରାପ୍ତିପାଇଁ ଅନ୍ୟପ୍ରକାର କର୍ମ କରେ। ଏହା ବ୍ୟତୀତ ସେମାନେ ଏକ ଉଦ୍ଦେଶ୍ୟରେ କରୁଥିବା କର୍ମରେ ମଧ୍ୟ ଅନେକପ୍ରକାର ଭୋଗର କାମନା କରନ୍ତି ଏବଂ ସଂସାରର ସମସ୍ତ ପଦାର୍ଥରେ ଓ ଘଟଣାରେ ସେମାନଙ୍କର ବିଷମଭାବ ରହିଥାଏ। ସେମାନେ କାହାକୁ ପ୍ରିୟ ବୋଲି ବୁଝନ୍ତି ତ, କାହାକୁ ଅପ୍ରିୟ ବୋଲି ବୁଝନ୍ତି; ଏକ ହିଁ ପଦାର୍ଥର କିଛି ଅଂଶକୁ ପ୍ରିୟ ତ, କିଛି ଅଂଶକୁ ଅପ୍ରିୟ ବୋଲି ବୁଝନ୍ତି। ଏପରିଭାବରେ ସଂସାରର ସମସ୍ତ ପଦାର୍ଥ, ବ୍ୟକ୍ତି ତଥା ଘଟଣାମାନଙ୍କ ସମ୍ବନ୍ଧରେ ସେମାନଙ୍କର ବିଭିନ୍ନପ୍ରକାର ବିଷମବୁଦ୍ଧି ରହେ ଏବଂ ସେସବୁରେ ମଧ୍ୟ ବହୁ ବିଭିନ୍ନତା ରହେ।

*ସମ୍ବନ୍ଧ – ଏପରିଭାବରେ କର୍ମଯୋଗୀଙ୍କର ଅବଶ୍ୟ ଧାରଣଯୋଗ୍ୟ ନିଶ୍ଚୟାତ୍ମିକା ବୁଦ୍ଧି ଏବଂ ସକାମମନୁଷ୍ୟମାନଙ୍କର ତ୍ୟାଗ-କରିବାର-ଯୋଗ୍ୟ ନାନାପ୍ରକାର ବୁଦ୍ଧିର ସ୍ୱରୂପ ବୁଝାଇଦେଇ ବର୍ତ୍ତମାନ ପରବର୍ତ୍ତୀ ତିନୋଟି ଶ୍ଳୋକରେ ସକାମଭାବକୁ ତ୍ୟାଜ୍ୟ ବୋଲି କହିବା ନିମନ୍ତେ, ସକାମମନୁଷ୍ୟମାନଙ୍କର ସ୍ୱଭାବ, ସିଦ୍ଧାନ୍ତ ଓ ଆଚାରବ୍ୟବହାର ବର୍ଣ୍ଣନା କରୁଛନ୍ତି–*

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତି ବାଦିନଃ ॥ ୪୨ ॥
କାମାତ୍ମାନଃ ସ୍ୱର୍ଗପରା ଜନ୍ମକର୍ମଫଳପ୍ରଦାମ୍ ।
କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯଗତିଂ ପ୍ରତି ॥ ୪୩ ॥
ଭୋଗୈଶ୍ୱର୍ଯପ୍ରସକ୍ତାନାଂ ତୟାପହୃତଚେତସାମ୍ ।
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ ॥ ୪୪ ॥

**ଅନ୍ୱୟ —** **ପାର୍ଥ** = ହେ ଅର୍ଜୁନ; **କାମାତ୍ମାନଃ** = ଯେଉଁମାନେ ଭୋଗରେ ତନ୍ମୟ ହୋଇ ରହିଛନ୍ତି; **ବେଦବାଦରତାଃ** = ଯେଉଁମାନେ କର୍ମଫଳର ପ୍ରଶଂସକ ବେଦବାକ୍ୟରେ ପ୍ରୀତି ରଖନ୍ତି; **ସ୍ୱର୍ଗପରାଃ** = ଯାହାଙ୍କ ବୁଦ୍ଧିରେ ସ୍ୱର୍ଗ ହିଁ ପରମ ପ୍ରାପ୍ୟ ବସ୍ତୁ (ଏବଂ ଯେ ସ୍ୱର୍ଗରୁ ବଳି); **ଅନ୍ୟତ୍** = ଅନ୍ୟ (କୌଣସି ବସ୍ତୁ); **ନ, ଅସ୍ତି** = ନାହିଁ; **ଇତି** = ବୋଲି; **ବାଦିନଃ** = କହନ୍ତି; **ଅବିପଶ୍ଚିତଃ** = ଅବିବେକୀମାନେ; **ଇମାମ୍** = ଏହିପରି; **ଯାମ୍** = ଯେଉଁ; **ପୁଷ୍ପିତାମ୍** = ପୁଷ୍ପିତ ବା ଶୁଣିବାକୁ ମଧୁର-ସୁନ୍ଦର; **ବାଚମ୍** = ବାଣୀକୁ; **ପ୍ରବଦନ୍ତି** = କହନ୍ତି (ଯାହା କି); **ଜନ୍ମକର୍ମଫଳପ୍ରଦାମ୍** = ଜନ୍ମରୂପକ କର୍ମଫଳ ଦିଏ (ଏବଂ); **ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି** = ଭୋଗ ତଥା ଐଶ୍ୱର୍ଯ୍ୟପ୍ରାପ୍ତିପାଇଁ; **କ୍ରିୟାବିଶେଷବହୁଳାମ୍** = ନାନାପ୍ରକାର କ୍ରିୟା ବର୍ଣ୍ଣନା କରେ; **ତୟା** = ସେହି ବାଣୀଦ୍ୱାରା; **ଅପହୃତଚେତସାମ୍** = ଯେଉଁମାନଙ୍କର ଚିତ୍ତ ଅପହୃତ ହୋଇଯାଇଛି, ସେମାନଙ୍କର; **ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାମ୍** = ଯେଉଁମାନେ ଭୋଗ ଓ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ, ସେହିମାନଙ୍କର; **ସମାଧୌ** = ପରମାତ୍ମାଙ୍କ ଠାରେ; **ବ୍ୟବସାୟାତ୍ମିକା** = ନିଶ୍ଚୟାତ୍ମିକା; **ବୁଦ୍ଧିଃ** = ବୁଦ୍ଧି; **ନ, ବିଧୀୟତେ** = ହୁଏ ନାହିଁ।

**ହେ ଅର୍ଜୁନ! ଯେଉଁମାନେ ଭୋଗରେ ବୁଡ଼ିରହିଛନ୍ତି, ଯେଉଁମାନେ କର୍ମଫଳର ପ୍ରଶଂସା କରୁଥିବା ବେଦବାକ୍ୟରେ ପ୍ରୀତି ରଖନ୍ତି, ଯେଉଁମାନଙ୍କର ବୁଦ୍ଧିରେ ସ୍ୱର୍ଗ ହିଁ ପରମ ପ୍ରାପ୍ୟ ବସ୍ତୁ ଏବଂ ଯେଉଁମାନେ ସ୍ୱର୍ଗରୁ ବଳି ଅନ୍ୟ କୌଣସି ବସ୍ତୁ ନାହିଁ ବୋଲି କହନ୍ତି, ସେହି ଅବିବେକୀମାନେ ଭୋଗ-ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ ଜନ୍ମରୂପକ କର୍ମଫଳ ଦେଉଥିବା କ୍ରିୟାବହୁଳ ଶ୍ରୁତିମଧୁର ସୁନ୍ଦର ପୁଷ୍ପିତ ବାଣୀ କହନ୍ତି। ସେପରି ବାଣୀଦ୍ୱାରା ଯେଉଁମାନଙ୍କର ଚିତ୍ତହରଣ ହୋଇଯାଇଛି, ଯେଉଁମାନେ ଭୋଗ ଓ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ, ସେହି ପୁରୁଷମାନଙ୍କର ପରମାତ୍ମାଙ୍କ ଠାରେ ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ॥ ୪୨,୪୩,୪୪ ॥**

**ପ୍ରଶ୍ନ —** **କାମାତ୍ମାନଃ** ପଦର ଅର୍ଥ କଣ?

**ଉତ୍ତର —** ଏଠାରେ **କାମ** ଶବ୍ଦ ଭୋଗର ବାଚକ। ସେହି ଭୋଗରେ ଅତ୍ୟନ୍ତ ଆସକ୍ତ ହୋଇ, ତାହା ଚିନ୍ତନ କରି କରି ଯେଉଁମାନେ ତନ୍ମୟ ହୋଇଯାଆନ୍ତି, ଯେଉଁମାନେ ଭୋଗ ପଛରେ ଧାଇଁ ନିଜର ମନୁଷ୍ୟତ୍ୱ ମଧ୍ୟ ଭୁଲିଯାଆନ୍ତି, ସେପରି ଭୋଗାସକ୍ତ ମନୁଷ୍ୟମାନଙ୍କ ପାଇଁ **କାମାତ୍ମାନଃ** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ —** **ବେଦବାଦରତାଃ**ର ତାତ୍ପର୍ଯ୍ୟ କଣ?

**ଉତ୍ତର —** ଇହଲୋକର ଓ ପରଲୋକର ଭୋଗପ୍ରାପ୍ତିପାଇଁ ବେଦରେ ବହୁପ୍ରକାର ବିଭିନ୍ନ କାମ୍ୟକର୍ମର ବିଧାନ କରାଯାଇଛି ଏବଂ ଉକ୍ତ କର୍ମମାନଙ୍କର ବିଭିନ୍ନ ଫଳ ମଧ୍ୟ ବର୍ଣ୍ଣନା କରାଯାଇଛି। ବେଦର ସେହି ସମସ୍ତ କଥାରେ ଏବଂ ଫଳରୂପକ ଭୋଗରେ ଯେଉଁମାନଙ୍କର ଅତ୍ୟନ୍ତ ଆସକ୍ତି ରହିଛି, ସେହି ମନୁଷ୍ୟମାନଙ୍କ ପାଇଁ **ବେଦବାଦରତାଃ** ପଦ ବ୍ୟବହାର କରାଯାଇଛି। ବେଦରେ ସଂସାର ପ୍ରତି ଯେଉଁ ବୈରାଗ୍ୟ ଉତ୍ପନ୍ନ କରାଉଥିବା ତଥା ପରମାତ୍ମାଙ୍କ ଯଥାର୍ଥ ସ୍ୱରୂପ ପ୍ରତିପାଦନ କରୁଥିବା ବଚନ ରହିଛି, ଏହା ସେଥିରେ ପ୍ରେମ ରଖୁଥିବା ଲୋକଙ୍କର ବାଚକ ନୁହେଁ; କାରଣ ଯେଉଁମାନେ ସେହି କଥାରେ ପ୍ରୀତି ରଖିଥାନ୍ତି ଏବଂ ତାହା ଭଲଭାବରେ ବୁଝନ୍ତି, ସେମାନେ କେବେ କହନ୍ତି ନାହିଁ ଯେ, ସ୍ୱର୍ଗପ୍ରାପ୍ତି ହିଁ ପରମପୁରୁଷାର୍ଥ ଏବଂ ତାହାଠାରୁ ବଳି ଆଉ କିଛି ନାହିଁ। ଅତଏବ ଯେଉଁମାନେ ଜାଣନ୍ତି ନାହିଁ ଯେ, ସମସ୍ତ ବେଦର ବାସ୍ତବିକ ଅଭିପ୍ରାୟ ପରମାତ୍ମାଙ୍କ ସ୍ୱରୂପକୁ ପ୍ରତିପାଦନ କରିବା ଏବଂ ଏକମାତ୍ର ପରମେଶ୍ୱର ହିଁ ବେଦଦ୍ୱାରା ଜାଣିବାଯୋଗ୍ୟ ପ୍ରତିପାଦ୍ୟ ଅଟନ୍ତି (୧୫/୧୫) ଏବଂ ଏହି ରହସ୍ୟ ବୁଝିପାରି ନ ଥିବାରୁ ଯେଉଁମାନେ ବେଦର ସକାମ କର୍ମରେ ଓ ତାହାର ଫଳରେ ଆସକ୍ତ ହୋଇ ରହନ୍ତି, ଏଠାରେ **ବେଦବାଦରତାଃ** ପଦଟି ହେଉଛି ସେହିମାନଙ୍କର ବାଚକ।

**ପ୍ରଶ୍ନ —** **ସ୍ୱର୍ଗପରାଃ** ପଦର ଅର୍ଥ କଣ?

**ଉତ୍ତର —** ଯେଉଁମାନେ ସ୍ୱର୍ଗକୁ ହିଁ ପରମ ପ୍ରାପ୍ୟବସ୍ତୁ ବୋଲି ବୁଝନ୍ତି, ଯେଉଁମାନଙ୍କ ମତରେ ସ୍ୱର୍ଗଠାରୁ ବଳି ପ୍ରାପ୍ତିଯୋଗ୍ୟ ବସ୍ତୁ ଆଉ କିଛି ହିଁ ନାହିଁ ଏବଂ ଏହି କାରଣରୁ ଯେଉଁମାନେ ପରମାତ୍ମପ୍ରାପ୍ତି ସାଧନାରୁ ବିମୁଖ ରହନ୍ତି, ସେମାନଙ୍କୁ **ସ୍ୱର୍ଗପରାଃ** କହନ୍ତି।

**ପ୍ରଶ୍ନ –** ଏଠାରେ **ନାନ୍ୟଦସ୍ତୀତି ବାଦିନଃ** ଏହି ବିଶେଷଣର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ଅବିବେକୀ ଲୋକମାନେ ଭୋଗରେ ବୁଡ଼ିରହନ୍ତି, ଯେଉଁମାନଙ୍କ ଦୃଷ୍ଟିରେ ସ୍ତ୍ରୀ, ପୁତ୍ର, ଧନ, ମାନ, ପ୍ରତିଷ୍ଠା, ବଡ଼ିମା ଆଦି ଇହଲୋକର ସୁଖ ଏବଂ ସ୍ୱର୍ଗାଦି ପରଲୋକର ସୁଖ ବ୍ୟତୀତ ମୋକ୍ଷ ଆଦି କୌଣସି ବି ବସ୍ତୁ ନାହିଁ, ଯାହାକୁ କି ପ୍ରାପ୍ତ ହେବାପାଇଁ ଚେଷ୍ଟା କରିବାକୁ ହେବ, ଯେଉଁମାନେ ସ୍ୱର୍ଗପ୍ରାପ୍ତିକୁ ପରମଧ୍ୟେୟ ବୋଲି ଗ୍ରହଣ କରନ୍ତି ଏବଂ ତାହା ହିଁ ବେଦର ତାତ୍ପର୍ଯ୍ୟ ବୋଲି ବୁଝନ୍ତି ଓ ତେଣୁ ଯେଉଁମାନେ ଏହି ସିଦ୍ଧାନ୍ତର କଥନ ଓ ପ୍ରଚାର ମଧ୍ୟ କରନ୍ତି, ସେହିମାନଙ୍କ ପାଇଁ **ନାନ୍ୟଦସ୍ତୀତି ବାଦିନଃ** ବିଶେଷଣ ପଦଟି ବ୍ୟବହାର କରାଯାଇଛି ।

**ପ୍ରଶ୍ନ –** ଏପରି ମନୁଷ୍ୟମାନଙ୍କୁ **ଅବିପଶ୍ଚିତଃ** ବିବେକହୀନ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସେମାନଙ୍କୁ ବିବେକହୀନ କହି ଭଗବାନ୍ ପ୍ରକାଶ କରୁଛନ୍ତି ଯେ, ଯଦି ସେମାନେ ସତ୍ୟାସତ୍ୟ ବସ୍ତୁର ବିବେଚନ କରି ନିଜର କର୍ତ୍ତବ୍ୟକୁ ନିଶ୍ଚୟ କରନ୍ତେ, ତେବେ ସେମାନେ ଭୋଗରେ ଆବଦ୍ଧ ହୁଅନ୍ତେ ନାହିଁ । ଅତଏବ ମନୁଷ୍ୟମାନେ ବିବେକପୂର୍ବକ ନିଜର କର୍ତ୍ତବ୍ୟ ନିର୍ଦ୍ଧାରଣ କରିବା ଉଚିତ ।

**ପ୍ରଶ୍ନ – ବାଚମ୍** ସହିତ **ଇମାମ୍, ଯାମ୍** ଏବଂ **ପୁଷ୍ପିତାମ୍** ବିଶେଷଣ ଦେଇ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର – ଇମାମ୍** ଓ **ଯାମ୍** ବିଶେଷଣ ଦେଇ ପ୍ରକାଶ କରାଯାଇଛି ଯେ, ନିଜକୁ ପଣ୍ଡିତ ବୋଲି ମାନୁଥିବା ଲୋକେ ଅନ୍ୟମାନଙ୍କୁ ସ୍ୱର୍ଗଭୋଗଠାରୁ ବଳି ଆଉ କିଛି ନାହିଁ ବୋଲି ଯେଉଁ ବାଣୀ କହନ୍ତି ତଥା ଜନ୍ମରୂପ କର୍ମଫଳପ୍ରଦାନକାରୀ ଯେଉଁ ବେଦବାଣୀ ବର୍ଣ୍ଣନା କରନ୍ତି, ସେହି ବାଣୀ ସେମାନଙ୍କର ତଥା ସେମାନଙ୍କ ଉପଦେଶ ଶୁଣୁଥିବା ଲୋକଙ୍କର ଚିତ୍ତକୁ ଅପହରଣ କରେ । ପୁଣି **ପୁଷ୍ପିତାମ୍** ବିଶେଷଣ ଦେଇ ଦର୍ଶାଇଦିଆଯାଇଛି ଯେ, ଉକ୍ତ ଉପଦେଶବାଣୀରେ ଯଦିଓ ବାସ୍ତବିକ କିଛି ବିଶେଷ ମହତ୍ତ୍ୱ ନ ଥାଏ, ତାହା କେବଳ ନାଶବାନ୍ ଭୋଗର ନାମମାତ୍ର **କ୍ଷଣିକସୁଖ** ହିଁ ବର୍ଣ୍ଣନା କରେ, ତଥାପି ତାହା ପଳାଶଫୁଲପରି ଉପରକୁ ଅତ୍ୟନ୍ତ ରମଣୀୟ ଓ ସୁନ୍ଦର ଦେଖାଯାଉଥିବାରୁ ସାଂସାରିକ ମନୁଷ୍ୟମାନେ ତାହାର ପ୍ରଲୋଭନରେ ପଡ଼ିଯାଆନ୍ତି ।

**ପ୍ରଶ୍ନ –** ଏଠାରେ **ବ୍ୟବସାୟାତ୍ମିକା** ବିଶେଷଣ ସହିତ **ବୁଦ୍ଧି** ପଦଟି କାହାର ବାଚକ ଏବଂ ସମାଧିର ଅର୍ଥ ପରମାତ୍ମା ବୋଲି କିପରି କରାଗଲା ତଥା ଯେଉଁମାନଙ୍କର ଚିତ୍ତ ଉପରୋକ୍ତ ପୁଷ୍ପିତାବାଣୀଦ୍ୱାରା ହରଣ କରାଯାଇଛି ଏବଂ ଯେଉଁମାନେ ଭୋଗ ଓ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ, ସେହି ପୁରୁଷମାନଙ୍କର ପରମାତ୍ମାଙ୍କ ଠାରେ ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏକଚାଳିଶ ଶ୍ଲୋକରେ ଯେଉଁ ନିଶ୍ଚୟାତ୍ମିକା ବୁଦ୍ଧିର ଲକ୍ଷଣ କୁହାଯାଇଛି, ଏଠାରେ **ବ୍ୟବସାୟାତ୍ମିକା** ବିଶେଷଣ ସହିତ **ବୁଦ୍ଧି** ପଦଟି ହେଉଛି ତାହାର ବାଚକ । **ସମାଧୀୟତେ ଅସ୍ମିନ୍ ବୁଦ୍ଧିଃ ଇତି ସମାଧିଃ** – ଏହି ବ୍ୟୁତ୍ପତ୍ତି ଅନୁସାରେ ସମାଧିର ଅର୍ଥ ପରମାତ୍ମା କରାଯାଇଛି । ଉପରୋକ୍ତ ବାକ୍ୟଦ୍ୱାରା ଏଠାରେ ଦେଖାଇଦିଆଯାଇଛି ଯେ, ସେହି ଲୋକଙ୍କର ଚିତ୍ତ ଭୋଗ ଏବଂ ଐଶ୍ୱର୍ଯ୍ୟରେ ଆସକ୍ତ ରହିଥିବାରୁ ସଦାସର୍ବଦା ଅତ୍ୟନ୍ତ ଚଞ୍ଚଳ ରହେ ଏବଂ ସେମାନେ ଅତ୍ୟନ୍ତ ସ୍ୱାର୍ଥପରାୟଣ ହୋଇଯାଆନ୍ତି । ଅତଏବ ସେମାନଙ୍କର ପରମାତ୍ମାଙ୍କ ଠାରେ ଅଟଳ ଓ ସ୍ଥିର **ନିଶ୍ଚୟାତ୍ମିକା** ବୁଦ୍ଧି ହୁଏ ନାହିଁ ।

*ସମ୍ବନ୍ଧ – ଭୋଗ ଓ ଐଶ୍ୱର୍ଯ୍ୟରେ ଆସକ୍ତ ସକାମୀ ଲୋକମାନଙ୍କର 'ନିଶ୍ଚୟାତ୍ମିକା' ବୁଦ୍ଧି ନ ହେବା କଥା କହିସାରି ବର୍ତ୍ତମାନ କର୍ମଯୋଗ ଉପଦେଶ ଦେବା ଉଦ୍ଦେଶ୍ୟରେ ଭଗବାନ୍ ଅର୍ଜୁନଙ୍କୁ ପ୍ରଥମେ ଉପରୋକ୍ତ ଭୋଗ ଓ ଐଶ୍ୱର୍ଯ୍ୟର ଆସକ୍ତିରୁ ରହିତ ହୋଇ ସମଭାବସମ୍ପନ୍ନ ହେବାକୁ କହିଛନ୍ତି –*

**ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।**
**ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ୍ ।। ୪୫ ।।**

**ଅନ୍ୱୟ –** ଅର୍ଜୁନ = ହେ ଅର୍ଜୁନ !; ବେଦାଃ = ବେଦମାନେ (ଉପରୋକ୍ତପ୍ରକାରେ); ତ୍ରୈଗୁଣ୍ୟବିଷୟାଃ = ତିନିଗୁଣର କାର୍ଯ୍ୟରୂପ ସମସ୍ତ ଭୋଗ ଏବଂ ସେସବୁର ସାଧନମାନଙ୍କର ପ୍ରତିପାଦକ (ସେଥିପାଇଁ ତୁମେ); ନିସ୍ତ୍ରୈଗୁଣ୍ୟଃ =

ସେହିସବୁ ଭୋଗ ଏବଂ ତାହାର ସାଧନମାନଙ୍କରେ ଆସକ୍ତିହୀନ; **ନିର୍ଦ୍ୱନ୍ଦ୍ୱଃ** = ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ରହିତ; **ନିତ୍ୟସତ୍ତ୍ୱସ୍ଥଃ** = ନିତ୍ୟବସ୍ତୁ ପରମାତ୍ମାରେ ସ୍ଥିତ; **ନିର୍ଯୋଗକ୍ଷେମଃ** = ଯୋଗ ଓ କ୍ଷେମକୁ ନ ଚାହୁଁଥିବା; **ଆତ୍ମବାନ୍**, **ଭବ** = ସ୍ୱାଧୀନ-ଅନ୍ତଃକରଣଯୁକ୍ତ ହୁଅ ।

**ହେ ଅର୍ଜୁନ ! ବେଦମାନେ ଉପରୋକ୍ତପ୍ରକାରେ ତିନିଗୁଣର କାର୍ଯ୍ୟରୂପ ସମସ୍ତ ଭୋଗ ଏବଂ ସେସବୁର ସାଧନମାନଙ୍କର ପ୍ରତିପାଦନ କରନ୍ତି। ତୁମେ ସେସବୁ ଭୋଗ ଏବଂ ସେସବୁର ସାଧନରେ ଆସକ୍ତି ତ୍ୟାଗ କର; ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ରହିତ ହୋଇଯାଅ; ନିତ୍ୟବସ୍ତୁ ପରମାତ୍ମାରେ ସ୍ଥିତ ହୋଇ, ଯୋଗକ୍ଷେମ ନ ଚାହିଁ ସ୍ୱାଧୀନ-ଅନ୍ତଃକରଣଯୁକ୍ତ ହୋଇଯାଅ ।। ୪୫ ।।**

**ପ୍ରଶ୍ନ —** **ତ୍ରୈଗୁଣ୍ୟବିଷୟାଃ** ପଦର ଅର୍ଥ କଣ ? ଏବଂ ବେଦମାନଙ୍କୁ 'ତ୍ରୈଗୁଣ୍ୟବିଷୟାଃ' କହିବାର ଅଭିପ୍ରାୟ କଣ ?

**ଉତ୍ତର —** ସତ୍ତ୍ୱ, ରଜ ଏବଂ ତମ— ଏହି ତିନିଗୁଣର କାର୍ଯ୍ୟକୁ **ତ୍ରୈଗୁଣ୍ୟ** କହନ୍ତି। ଏଣୁ ସମସ୍ତ ଭୋଗ ଓ ଐଶ୍ୱର୍ଯ୍ୟମୟ ପଦାର୍ଥ ଏବଂ ସେସବୁର ପ୍ରାପ୍ତିର ଉପାୟଭୂତ ସମସ୍ତ କର୍ମର ବାଚକ ହେଉଛି **ତ୍ରୈଗୁଣ୍ୟ**। ଯେଉଁ ଶାସ୍ତ୍ରରେ ସେହିସବୁର ଅଙ୍ଗପ୍ରତ୍ୟଙ୍ଗ ସହିତ ପୂର୍ଣ୍ଣ ବର୍ଣ୍ଣନା କରାଯାଇଛି, ସେମାନଙ୍କୁ ହିଁ **ତ୍ରୈଗୁଣ୍ୟବିଷୟାଃ** କୁହାଯାଏ। ବେଦମାନଙ୍କୁ ତ୍ରୈଗୁଣ୍ୟବିଷୟାଃ କହି ବ୍ୟକ୍ତ କରାଯାଇଛି ଯେ, ବେଦମାନଙ୍କରେ କର୍ମକାଣ୍ଡର ଅଧିକ ବର୍ଣ୍ଣନା କରାଯାଇଥିବାରୁ, ସେମାନେ **ତ୍ରୈଗୁଣ୍ୟବିଷୟାଃ** ଅଟନ୍ତି।

**ପ୍ରଶ୍ନ —** **ନିସ୍ତ୍ରୈଗୁଣ୍ୟ** ହୋଇଯିବାର ଅର୍ଥ କଣ ?

**ଉତ୍ତର —** ତିନିଗୁଣର କାର୍ଯ୍ୟରୂପ ଇହଲୋକ ଓ ପରଲୋକର ସମସ୍ତ ଭୋଗରେ ଏବଂ ସେସବୁର ସାଧନଭୂତ ସମସ୍ତ କର୍ମରେ ମମତ୍ୱ, ଆସକ୍ତି ଏବଂ କାମନାରୁ ସର୍ବଥା ରହିତ ହେବା ହିଁ **ନିସ୍ତ୍ରୈଗୁଣ୍ୟ** ହେବା। ଏଠାରେ ସ୍ୱରୂପତଃ ସମସ୍ତ କର୍ମତ୍ୟାଗକୁ **ନିସ୍ତ୍ରୈଗୁଣ୍ୟ** କୁହାଯାଇ ନାହିଁ, କାରଣ ମନୁଷ୍ୟ ସ୍ୱରୂପତଃ ସମସ୍ତ କର୍ମ ଓ ସମସ୍ତ ବିଷୟ ତ୍ୟାଗ କରିପାରିବ ନାହିଁ (୩/୫)। ଶରୀର ମଧ୍ୟ ତିନିଗୁଣର କାର୍ଯ୍ୟ, ଯାହାର ତ୍ୟାଗ ହୋଇ ହିଁ ପାରିବ ନାହିଁ। ତେଣୁ ଶରୀରରେ ଏବଂ ତା'ଦ୍ୱାରା କରାଯାଉଥିବା ସମସ୍ତ କର୍ମରେ ତଥା ତାହାର ଫଳରୂପ ସମସ୍ତ ଭୋଗରେ ଅହଂତ୍ୱ, ମମତ୍ୱ, ଆସକ୍ତି ଓ କାମନାରୁ ରହିତ ହେବା ହିଁ **ନିସ୍ତ୍ରୈଗୁଣ୍ୟ** ହେବା ଅର୍ଥାତ୍ ତିନିଗୁଣର କାର୍ଯ୍ୟରୁ ରହିତ ହେବା।

**ପ୍ରଶ୍ନ —** ଦ୍ୱନ୍ଦ୍ୱ କାହାକୁ କହନ୍ତି ଏବଂ ସେଥିରୁ ରହିତ ହେବା କହିଲେ କଣ ବୁଝାଏ ?

**ଉତ୍ତର —** ସୁଖ-ଦୁଃଖ, ଲାଭ-କ୍ଷତି, କୀର୍ତ୍ତି-ଅକୀର୍ତ୍ତି, ମାନ-ଅପମାନ ଏବଂ ଅନୁକୂଳ-ପ୍ରତିକୂଳ ଆଦି ପରସ୍ପରବିରୋଧୀ ଯୁଗ୍ମ ପଦାର୍ଥର ନାମ ଦ୍ୱନ୍ଦ୍ୱ ଏବଂ ଏହି ସମସ୍ତର ସଂଯୋଗ-ବିୟୋଗରେ ସମ ରହିବା, ଏସବୁଦ୍ୱାରା ବିଚଳିତ ବା ମୋହିତ ନ ହେବା ଅର୍ଥାତ୍ ହର୍ଷଶୋକ, ରାଗଦ୍ୱେଷ ଆଦିରୁ ରହିତ ହେବା ହିଁ ଦ୍ୱନ୍ଦ୍ୱରହିତ ହେବା।

**ପ୍ରଶ୍ନ —** ନିତ୍ୟସତ୍ତ୍ୱ କଣ ଏବଂ ସେଥିରେ ସ୍ଥିତ ହେବାର ଅର୍ଥ କଣ ?

**ଉତ୍ତର —** ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ଏକମାତ୍ର **ନିତ୍ୟସତ୍ତ୍ୱ** ସତ୍ୟବସ୍ତୁ। ଅତଏବ ନିତ୍ୟ ଅବିନାଶୀ ସର୍ବଜ୍ଞ ପରମପୁରୁଷ ପରମେଶ୍ୱରଙ୍କ ସ୍ୱରୂପକୁ ନିତ୍ୟନିରନ୍ତର ଚିନ୍ତନ କରି ସେଥିରେ ଅଟଳଭାବରେ ସ୍ଥିତ ରହିବା ହିଁ **ନିତ୍ୟସତ୍ତ୍ୱ**ରେ ସ୍ଥିତ ହେବା।

**ପ୍ରଶ୍ନ —** 'ନିତ୍ୟସତ୍ତ୍ୱସ୍ଥ'ର ଅର୍ଥ ଯଦି ନିରନ୍ତର ସତ୍ତ୍ୱଗୁଣରେ ସ୍ଥିତ ହେବା ବୋଲି ମାନିନିଆଯାଏ, ତେବେ କ୍ଷତି କଣ ?

**ଉତ୍ତର —** ଏପରି ଅର୍ଥ ବି ହୋଇପାରେ; ଏଥିରେ କିଛି କ୍ଷତି ନାହିଁ; କିନ୍ତୁ ଉପରୋକ୍ତ ଅର୍ଥରେ ଏହାଠାରୁ ଆହୁରି ଶ୍ରେଷ୍ଠତର ଭାବ ରହିଛି; କାରଣ ସମସ୍ତ ଗୁଣରୁ ଅତୀତ ହୋଇ ପରମାତ୍ମାଙ୍କୁ ପ୍ରାପ୍ତ କରିନେବା ହିଁ କର୍ମଯୋଗର ଅନ୍ତିମ ପରିଣାମ ବୋଲି କୁହାଯାଇଛି।

**ପ୍ରଶ୍ନ —** **ଯୋଗକ୍ଷେମ** କାହାକୁ କହନ୍ତି ? ଏବଂ ଅର୍ଜୁନଙ୍କୁ ନିର୍ଯୋଗକ୍ଷେମ ହେବାକୁ କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଅପ୍ରାପ୍ତ ବସ୍ତୁର ପ୍ରାପ୍ତିକୁ **ଯୋଗ** କହନ୍ତି ଏବଂ ପ୍ରାପ୍ତ ବସ୍ତୁର ରକ୍ଷାର ନାମ **କ୍ଷେମ**। ସାଂସାରିକ ଭୋଗକାମନା ତ୍ୟାଗ କରିଦେଲେ ମଧ୍ୟ ଶରୀରନିର୍ବାହପାଇଁ ମନୁଷ୍ୟର **ଯୋଗକ୍ଷେମ** ବାସନା ରହିଥାଏ। ଅତଏବ

ସେହି ବାସନାକୁ ମଧ୍ୟ ତ୍ୟାଗ କରିବା ନିମନ୍ତେ ଅର୍ଜୁନଙ୍କୁ **ନିର୍ଯୋଗକ୍ଷେମ** ହେବାକୁ କୁହାଯାଇଛି । ଭଗବାନ୍ କହୁଛନ୍ତି, ''ତୁମେ ମମତ୍ୱ ଓ ଆସକ୍ତିରୁ ସମ୍ପୂର୍ଣ୍ଣ ରହିତ ହୋଇଯାଅ, କୌଣସି ବସ୍ତୁର ପ୍ରାପ୍ତିପାଇଁ ତଥା ପ୍ରାପ୍ତବସ୍ତୁର ରକ୍ଷାପାଇଁ ଇଚ୍ଛା କର ନାହିଁ।''

**ପ୍ରଶ୍ନ –** ଆତ୍ମବାନ୍ କାହାକୁ କହନ୍ତି ଏବଂ ଅର୍ଜୁନଙ୍କୁ 'ଆତ୍ମବାନ୍' ହୁଅ ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ **ଆତ୍ମା** ପଦଟି ହେଉଛି ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣ ଓ ଶରୀରର ବାଚକ। ମନ, ବୁଦ୍ଧି ଓ ଇନ୍ଦ୍ରିୟମାନେ ଯେପର୍ଯ୍ୟନ୍ତ ମନୁଷ୍ୟର ବଶ ହୋଇ ନାହାନ୍ତି, ତା'ର ନିଜର ହୋଇ ନାହାନ୍ତି, ସେପର୍ଯ୍ୟନ୍ତ ସେମାନେ ମନୁଷ୍ୟର ଶତ୍ରୁ; ସେପର୍ଯ୍ୟନ୍ତ ସେହି ମନୁଷ୍ୟ 'ଆତ୍ମବାନ୍' ହୋଇ ନାହିଁ। ତେଣୁ ନିଜର ମନ, ବୁଦ୍ଧି ଓ ସମସ୍ତ ଇନ୍ଦ୍ରିୟକୁ ପୂର୍ଣ୍ଣରୂପେ ବଶ କରିଦେଇଥିବା ଲୋକକୁ ଆତ୍ମବାନ୍ କହିବା ଉଚିତ। ଯାହାଙ୍କର ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନେ ବଶ ହୋଇ ନାହାନ୍ତି, ତାଙ୍କୁ 'ସମତ୍ୱଯୋଗ' ପ୍ରାପ୍ତ ହେବା ଅତ୍ୟନ୍ତ କଠିନ ଏବଂ ଯାହାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନେ ବଶରେ ଅଛନ୍ତି, ସେ ସାଧନାଦ୍ୱାରା ସହଜରେ 'ସମତ୍ୱଯୋଗ' ପ୍ରାପ୍ତ ହୋଇପାରିବେ। ତେଣୁ ଭଗବାନ୍ ଅର୍ଜୁନଙ୍କୁ ଏଠାରେ ଆତ୍ମବାନ୍ ହେବାକୁ କହିଛନ୍ତି।

*ସମ୍ବନ୍ଧ – ପୂର୍ବଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ କହିଛନ୍ତି, 'ସମସ୍ତ ବେଦ ତିନିଗୁଣର କାର୍ଯ୍ୟକୁ ପ୍ରତିପାଦନ କରନ୍ତି; ତୁମେ ତିନିଗୁଣର କାର୍ଯ୍ୟରୂପକ ସମସ୍ତ ଭୋଗରେ ଏବଂ ତାହାର ପ୍ରାପ୍ତି-ଉପାୟରେ ଆସକ୍ତିଶୂନ୍ୟ ହୋଇଯାଅ।' ବର୍ତ୍ତମାନ ତାହାର ଫଳସ୍ୱରୂପ ମିଳୁଥିବା ବ୍ରହ୍ମଜ୍ଞାନର ମହତ୍ତ୍ୱ ବିଷୟ କହୁଛନ୍ତି–*

**ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ ।**
**ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ।। ୪୬ ।।**

**ଅନ୍ୱୟ –** ସର୍ବତଃ = ସବୁଦିଗରୁ; ସମ୍ପ୍ଲୁତୋଦକେ = ପରିପୂର୍ଣ୍ଣ ଜଳାଶୟ; (ପ୍ରାପ୍ତେ ସତି) = ପ୍ରାପ୍ତ ହୋଇଗଲେ; ଉଦପାନେ = ଛୋଟ ଜଳାଶୟରେ (ମନୁଷ୍ୟର); ଯାବାନ୍ = ଯେତିକି; ଅର୍ଥଃ = ପ୍ରୟୋଜନ; (ଅସ୍ତି) = ରହେ; ବିଜାନତଃ = ବ୍ରହ୍ମର ତତ୍ତ୍ୱକୁ ଜାଣୁଥିବା; ବ୍ରାହ୍ମଣସ୍ୟ = ବ୍ରାହ୍ମଣଙ୍କର; ସର୍ବେଷୁ = ସମସ୍ତ; ବେଦେଷୁ = ବେଦରେ; ତାବାନ୍ = ସେତିକି ପ୍ରୟୋଜନ ରହିଯାଏ।

**ସବୁଦିଗରୁ ପରିପୂର୍ଣ୍ଣ ଜଳାଶୟଟିଏ ପାଇଗଲେ ଛୋଟ ଜଳାଶୟରେ ମନୁଷ୍ୟର ଯେତିକି ପ୍ରୟୋଜନ ରହେ, ବ୍ରହ୍ମଜ୍ଞାନ ଲାଭ କରିଥିବା ବ୍ରାହ୍ମଣଙ୍କର ସମସ୍ତ ବେଦରେ ସେତିକି ପ୍ରୟୋଜନ ରହିଯାଏ।। ୪୬ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଜଳାଶୟର ଦୃଷ୍ଟାନ୍ତ କାହିଁକି ଦିଆଯାଇଛି ?

**ଉତ୍ତର –** ଏହି ଶ୍ଳୋକରେ ଜଳାଶୟର ଦୃଷ୍ଟାନ୍ତ ଦେଇ ଭଗବାନ୍ ଜ୍ଞାନୀ ମହାତ୍ମାଙ୍କର ଆତ୍ୟନ୍ତିକ ତୃପ୍ତିର ବର୍ଣ୍ଣନା କରିଛନ୍ତି। ଅଭିପ୍ରାୟ ଏହି ଯେ, ଯାହାଙ୍କୁ ଅମୃତପରି ସ୍ୱାଦୁ ଓ ଗୁଣଯୁକ୍ତ ଅଗାଧ ଜଳରେ ପରିପୂର୍ଣ୍ଣ ଜଳାଶୟ ମିଳିଯାଏ, ତାଙ୍କୁ ଜଳପାଇଁ ଛୋଟ ଜଳାଶୟର (କୂପ, ପୋଖରୀ ଆଦି) ଆଉ କୌଣସି ପ୍ରୟୋଜନ ରହେ ନାହିଁ; କାରଣ ଜଳବିଷୟକ ସମସ୍ତ ଆବଶ୍ୟକତା ସେଥିରୁ ପୂର୍ଣ୍ଣ ହୋଇଯାଏ। ଠିକ୍ ସେହିପରି ଯେଉଁ ପୁରୁଷ ସମସ୍ତପ୍ରକାର ଭୋଗରେ ମମତା ଓ ଆସକ୍ତି ତ୍ୟାଗ କରି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ଜାଣିନିଅନ୍ତି, ଯାହାଙ୍କୁ ପରମାନନ୍ଦର ସାଗର ପୂର୍ଣ୍ଣବ୍ରହ୍ମ ପରମାତ୍ମା ପ୍ରାପ୍ତ ହୋଇଯାଆନ୍ତି, ତାହାଙ୍କର ଆନନ୍ଦପ୍ରାପ୍ତିପାଇଁ ବେଦୋକ୍ତ କର୍ମର ଫଳରୂପ ଭୋଗରେ କୌଣସି ପ୍ରୟୋଜନ ରହେ ନାହିଁ। ସେ ସର୍ବଦା ପୂର୍ଣ୍ଣକାମ ଓ ନିତ୍ୟତୃପ୍ତ ହୋଇଯାଆନ୍ତି। ଏପରି ସିଦ୍ଧିପ୍ରାପ୍ତିପାଇଁ ମନୁଷ୍ୟ ବେଦୋକ୍ତ କର୍ମର ଫଳରୂପ ଭୋଗରେ ମମତ୍ୱ, ଆସକ୍ତି, ଏବଂ କାମନା ସର୍ବଥା ତ୍ୟାଗ କରି ପୂର୍ଣ୍ଣଭାବରେ **ନିସ୍ତ୍ରୈଗୁଣ୍ୟ** ହୋଇଯିବା ଉଚିତ।

**ପ୍ରଶ୍ନ –** 'ସବୁଦିଗରୁ ପରିପୂର୍ଣ୍ଣ ଜଳାଶୟରୁ ମନୁଷ୍ୟ ଯେପରି ଯେତିକି ଜଳ ଆବଶ୍ୟକ, ସେତିକି ଜଳ ନିଏ,

ସେହିପରି ବ୍ରହ୍ମଦର୍ଶୀ ଜ୍ଞାନୀ ନିଜର ପ୍ରୟୋଜନ ଅନୁସାରେ ବେଦର ଅଂଶକୁ ନିଅନ୍ତି' – ଏପରି ଅର୍ଥ କଲେ କିଛି ଆପତ୍ତି ଅଛି କି ?

**ଉତ୍ତର –** ଆପତ୍ତି ନାହିଁ; ଏପରି ଅର୍ଥ ବି ହୋଇପାରେ; କିନ୍ତୁ ଉପରୋକ୍ତ ଅର୍ଥର ଭାବ ଏହାଠାରୁ ବି ମହତ୍ତର; କାରଣ ବ୍ରହ୍ମଜ୍ଞାନୀ ପୁରୁଷଙ୍କର ସଂସାରରେ କୌଣସି ପ୍ରୟୋଜନ ନ ଥାଏ (୩/୧୮)।

**ସମ୍ବନ୍ଧ –** ଏପରିଭାବରେ ସମବୁଦ୍ଧିରୂପକ କର୍ମଯୋଗର ଏବଂ ତାହାର ଫଳର ମହତ୍ତ୍ୱ କହିସାରିବା ପରେ ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ କର୍ମଯୋଗର ସ୍ୱରୂପ ବର୍ଣ୍ଣନା କରି, ଅର୍ଜୁନଙ୍କୁ କର୍ମଯୋଗରେ ସ୍ଥିତ ହୋଇ କର୍ମ କରିବାକୁ କହୁଛନ୍ତି –

**କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।**
**ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି ।। ୪୭ ।।**

**ଅନ୍ୱୟ –** ତେ = ତୁମର; **କର୍ମଣି** = କର୍ମ କରିବାରେ; **ଏବ** = ହିଁ; **ଅଧିକାରଃ** = ଅଧିକାର ଅଛି; **ଫଳେଷୁ** = ଫଳମାନଙ୍କରେ; **କଦାଚନ** = କଦାପି; **ମା** = ନାହିଁ; **କର୍ମଫଳହେତୁଃ** = କର୍ମମାନଙ୍କରେ ଫଳର ହେତୁ; **ମା, ଭୂଃ** = ହୁଅ ନାହିଁ; (ତଥା) ତେ = ତୁମର; **ଅକର୍ମଣି** = କର୍ମ ନ କରିବାରେ (ମଧ); **ସଙ୍ଗଃ** = ଆସକ୍ତି; **ମା, ଅସ୍ତୁ** = ନ ହେଉ।

**କର୍ମ କରିବାରେ ହିଁ ତୁମର ଅଧିକାର ରହିଛି; କର୍ମର ଫଳ ଉପରେ ତୁମର କଦାପି ଅଧିକାର ନାହିଁ। ତେଣୁ ତୁମେ କର୍ମଫଳର କାରଣ ହୁଅ ନାହିଁ ତଥା ତୁମର କର୍ମ ନ କରିବାରେ ବି ଆସକ୍ତି ନ ହେଉ।।। ୪୭ ।।**

**ପ୍ରଶ୍ନ –** **କର୍ମଣି** ପଦ ଏଠାରେ କେଉଁ କର୍ମର ବାଚକ ଏବଂ 'ତୁମର କର୍ମ କରିବାରେ ହିଁ ଅଧିକାର ଅଛି' – ଏପରି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଯେଉଁ ଲୋକପାଇଁ ଯେଉଁ କର୍ମ ବିହିତ, **କର୍ମଣି** ପଦଟି ହେଉଛି ତାହାର ବାଚକ। **କର୍ମଣି** ପଦଟି ଶାସ୍ତ୍ରନିଷିଦ୍ଧ ପାପକର୍ମର ବାଚକ ନୁହେଁ; କାରଣ ପାପକର୍ମରେ ମନୁଷ୍ୟର ଅଧିକାର ନାହିଁ। ମନୁଷ୍ୟ ତ ରାଗ-ଦ୍ୱେଷର ବଶବର୍ତ୍ତୀ ହୋଇ ପାପକର୍ମରେ ପ୍ରବୃତ୍ତ ହୋଇଯାଏ; ଏହା ତାହାର ଅନଧିକାର ଚେଷ୍ଟା। ତେଣୁ ଏପରି କର୍ମ କରୁଥିବା ଲୋକଙ୍କୁ ନରକଦୁଃଖଭୋଗ ଦଣ୍ଡ ଦିଆଯାଏ। 'ତୁମର କର୍ମ କରିବାରେ ହିଁ ଅଧିକାର ଅଛି' କହି ଭଗବାନ୍ ଯେଉଁ ଭାବ ପ୍ରକାଶ କରିଛନ୍ତି, ତାହା ହେଉଛି :—

(୧) ଏହି ମନୁଷ୍ୟଶରୀରରେ ହିଁ ଜୀବଙ୍କୁ ନୂତନ କର୍ମ କରିବାର ସ୍ୱତନ୍ତ୍ରତା ଦିଆଯାଏ। ଏଣୁ ସେ ଯଦି ନିଜର ଅଧିକାର ଅନୁସାରେ ପରମେଶ୍ୱରଙ୍କ ଆଜ୍ଞା ପାଳନ କରୁଥାଏ ଏବଂ ସେହି କର୍ମରେ ତଥା ତାହାର ଫଳରେ ସର୍ବଥା ଆସକ୍ତି ତ୍ୟାଗ କରି ସେହି କର୍ମକୁ ପରମାତ୍ମାଙ୍କ ପ୍ରାପ୍ତିର ସାଧନ କରିଦିଏ, ତେବେ ସେ ସହଜରେ ପରମାତ୍ମାଙ୍କୁ ପାଇପାରେ। ତୁମକୁ ବର୍ତ୍ତମାନ ମନୁଷ୍ୟଶରୀର ମିଳିଛି; ତେଣୁ ତୁମର କର୍ମରେ ଅଧିକାର ରହିଛି; ତେଣୁ ତୁମେ ଏହି ଅଧିକାରର ସଦୁପଯୋଗ କରିବା ଉଚିତ।

(୨) ମନୁଷ୍ୟର କର୍ମ କରିବାରେ ହିଁ ଅଧିକାର ଅଛି, କିନ୍ତୁ କର୍ମକୁ ସ୍ୱରୂପତଃ ତ୍ୟାଗ କରିବାରେ ସେ ସ୍ୱତନ୍ତ୍ର ନୁହେଁ। ଯଦି ସେ ଅହଙ୍କାର ତଥା ଦୁରାଗ୍ରହପୂର୍ବକ କର୍ମ ତ୍ୟାଗ କରିବାକୁ ଚେଷ୍ଟା କରେ, ତେବେ ମଧ ସେ ସର୍ବଥା କର୍ମ ତ୍ୟାଗ କରିପାରିବ ନାହିଁ (୩/୫), କାରଣ ତା'ର ସ୍ୱଭାବ ତାକୁ ବାଧ କରି କର୍ମରେ ଲଗାଇଦେବ (୩/୩୩; ୧୮/୫୯,୬୦)। ଏପରି କଲେ ସେହି ଅଧିକାରର ଦୁରୁପଯୋଗ ହୁଏ ତଥା ବିହିତ କର୍ମକୁ ତ୍ୟାଗ କରିବାଦ୍ୱାରା ଶାସ୍ତ୍ରାଜ୍ଞା ତ୍ୟାଗ କରୁଥିବାରୁ ମନୁଷ୍ୟକୁ ଦଣ୍ଡ ଭୋଗ କରିବାକୁ ବି ପଡ଼େ। ଅତଏବ ତୁମକୁ କର୍ତ୍ତବ୍ୟ କର୍ମ ଅବଶ୍ୟ କରିବାକୁ ପଡ଼ିବ; ତୁମେ ତାହା କଦାପି ତ୍ୟାଗ କରିପାରିବ ନାହିଁ।

(୩) ସରକାରଙ୍କ ଦ୍ୱାରା ଲୋକମାନଙ୍କୁ ଆତ୍ମରକ୍ଷାପାଇଁ ତା ପ୍ରଜାମାନଙ୍କୁ ରକ୍ଷା କରିବାପାଇଁ ନିଜ ପାଖରେ ଅନେକ ପ୍ରକାର ଶସ୍ତ୍ର ରଖିବାକୁ ତଥା ତାହା ପ୍ରୟୋଗ କରିବାକୁ

ଅନୁମତି ବା ଅଧିକାର ଦିଆଯାଇଥାଏ ଏବଂ ତତ୍ ସଙ୍ଗେ ସଙ୍ଗେ ସେସବୁର ପ୍ରୟୋଗ କରିବାର ନିୟମ ମଧ୍ୟ ସେମାନଙ୍କୁ କହିଦିଆଯାଇଥାଏ; କିନ୍ତୁ କେହି ଯଦି ତା'ର ଅପପ୍ରୟୋଗ କରେ, ତେବେ ତାକୁ ଦଣ୍ଡ ଦିଆଯାଏ ଏବଂ ତା'ଠାରୁ ସେହି ଅଧିକାର କାଢ଼ିନିଆଯାଏ। ଠିକ୍ ସେହିପରି ଜୀବକୁ ଜନ୍ମମୃତ୍ୟୁରୂପକ ସଂସାରରୁ ମୁକ୍ତ ହେବାନିମନ୍ତେ ଏବଂ ଅନ୍ୟର ମଙ୍ଗଳ କରିବାପାଇଁ ମନ, ବୁଦ୍ଧି ଏବଂ ଇନ୍ଦ୍ରିୟ ସହିତ ଏହି ମନୁଷ୍ୟଶରୀର ଦିଆଯାଇଛି; ତାହାଦ୍ୱାରା ନୂଆ ନୂଆ କର୍ମ କରିବାର ଅଧିକାର ଦିଆଯାଇଛି ଏବଂ ଯେଉଁମାନେ ଏହି ଅଧିକାରର ସଦୁପଯୋଗ କରନ୍ତି, ସେମାନେ କର୍ମବନ୍ଧନରୁ ମୁକ୍ତ ହୋଇ ପରମପଦ ପ୍ରାପ୍ତି କରନ୍ତି ଏବଂ ଯେଉଁମାନେ ଏହାର ଦୁରୁପଯୋଗ କରନ୍ତି, ସେମାନେ ଦଣ୍ଡର ଭାଗୀ ହୁଅନ୍ତି ଓ ସେମାନଙ୍କ ଠାରୁ ସେହି ଅଧିକାର ଛଡ଼ାଇନିଆଯାଏ ଅର୍ଥାତ୍ ସେମାନଙ୍କୁ ପୁନର୍ବାର ଘୁଷୁରୀ, କୁକୁର ଆଦି ଯୋନିରେ ପକାଇଦିଆଯାଏ। ଏହି ରହସ୍ୟକୁ ଭଲଭାବରେ ବୁଝି ଅଧିକାରର ସଦୁପଯୋଗ କରିବା ଉଚିତ।

**ପ୍ରଶ୍ନ –** 'ତୁମର କର୍ମଫଳରେ କଦାପି ଅଧିକାର ନାହିଁ' — ଏପରି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ କହୁଛନ୍ତି, ମନୁଷ୍ୟ ନିଜର କର୍ମଫଳ ପ୍ରାପ୍ତ କରିବାରେ କେବେ ବି କୌଣସିପ୍ରକାରେ ସ୍ୱତନ୍ତ୍ର ନୁହେଁ; ତେଣୁ ତାକୁ କେଉଁ କର୍ମର କି ଫଳ ମିଳିବ ଏବଂ ଉକ୍ତ ଫଳ ତାକୁ କେଉଁ ଜନ୍ମରେ ଓ କିପ୍ରକାରେ ମିଳିବ, ସେ ବିଷୟରେ କିଛି ଜଣା ନ ଥାଏ ଏବଂ ସେ ନିଜର ଇଚ୍ଛାନୁସାରେ, ସମୟାନୁସାରେ ତାହା ପାଇପାରେ ନାହିଁ, କି ସେଥିରୁ ରକ୍ଷା ପାଇପାରେ ନାହିଁ। ମନୁଷ୍ୟ ଚାହେଁ ପ୍ରକାରେ; କିନ୍ତୁ ଫଳାଫଳ ହୋଇଯାଏ ଆଉପ୍ରକାରେ। ବହୁଲୋକ ନାନାପ୍ରକାର ବସ୍ତୁ ଭୋଗ କରିବାକୁ ଇଚ୍ଛା କରନ୍ତି; କିନ୍ତୁ ସେଥିପାଇଁ ସୁଯୋଗ ମିଳିବା ସେମାନଙ୍କ ହାତର କଥା ନୁହେଁ। ଲୋକ ଅନେକପ୍ରକାର ସଂଯୋଗ-ବିୟୋଗ ଚାହାଁନ୍ତି ନାହିଁ; ତଥାପି ଭୋଗିବାକୁ ବାଧ୍ୟ ହୁଅନ୍ତି। କର୍ମଫଳ ବିଧାନ ସର୍ବଥା ବିଧାତାଙ୍କ ଅଧୀନ; ସେଥିରେ ମନୁଷ୍ୟର କୌଣସି କର୍ତ୍ତୃତ୍ୱ ଚଳେ ନାହିଁ। ଅବଶ୍ୟ ପୁତ୍ରେଷ୍ଟି ଆଦି ଶାସ୍ତ୍ରୀୟ ଯଜ୍ଞାନୁଷ୍ଠାନରେ ଯଜ୍ଞ ପୂର୍ଣ୍ଣ ହେବା ପରେ ପରେ ତାହାର ଫଳପ୍ରାପ୍ତି ହେବାର ନିଶ୍ଚିତ ବିଧାନ ରହିଛି ଏବଂ ସକାମ ପୁରୁଷ ସେପରି କର୍ମ କରିପାରିବେ; କିନ୍ତୁ ସେସବୁର ବିହିତ ଫଳ ବି କର୍ମକର୍ତ୍ତାଙ୍କର ଅଧୀନ ନୁହେଁ; ତାହା ଦେବତାଙ୍କ ଅଧୀନ। ତେଣୁ ମୋତେ ଅମୁକ ବସ୍ତୁ ପ୍ରାପ୍ତ ହେଉ, ମୋର ଧନ-ଐଶ୍ୱର୍ଯ୍ୟ ବଢ଼ୁ, ମୋତେ ମାନ, ବଡ଼ିମା ବା ପ୍ରତିଷ୍ଠା ତଥା ସ୍ୱର୍ଗଲାଭ ମିଳୁ ଇତ୍ୟାଦି ଇଚ୍ଛା କରିବା, ଏକପ୍ରକାର ଅଜ୍ଞାନ। ତା'ଛଡ଼ା ଏସବୁ ହେଉଛି ଅତ୍ୟନ୍ତ ତୁଚ୍ଛ, ଅନିତ୍ୟ ଏବଂ ଅଳ୍ପକାଳସ୍ଥାୟୀ ପଦାର୍ଥ। ତେଣୁ ତୁମେ କୌଣସି ଫଳ କାମନା କରିବା ଉଚିତ ନୁହେଁ।

**ପ୍ରଶ୍ନ –** ତେବେ କ'ଣ ମୁକ୍ତିକାମନା କରିବା ବି ଲୋଡ଼ା ନାହିଁ ?

**ଉତ୍ତର –** ମୁକ୍ତିକାମନା ଶୁଭେଚ୍ଛା ହୋଇଥିବାରୁ ମୁକ୍ତିରେ ସହାୟକ ହୁଏ। ଏହି ଇଚ୍ଛା ନ କରିବା ମଧ୍ୟ ଉତ୍ତମ; ତଥାପି ଭଗବତ୍‌ତତ୍ତ୍ୱର ମର୍ମ ଭଲଭାବରେ ନ ଜାଣି, ଉପରୋକ୍ତ ଇଚ୍ଛାରୁ ରହିତ ହୋଇ ଏବଂ ଈଶ୍ୱରଙ୍କ ଆଜ୍ଞାପାଳନ ହିଁ କର୍ତ୍ତବ୍ୟ ବୋଲି ବୁଝି ହେତୁରହିତ କର୍ମ ଆଚରଣ କରିବା ଅତି କଠିନ। ଅତଏବ ମୁକ୍ତିକାମନା କରିବା ଅନୁଚିତ ନୁହେଁ। ମୁକ୍ତିପାଇଁ ଇଚ୍ଛା ନ କଲେ ଶୀଘ୍ର ମୁକ୍ତି ହେବ– ଏହିପରି ଭାବ ରଖିବା ବି ଛପି ରହିଥିବା ମୁକ୍ତି-ଇଚ୍ଛା।

**ପ୍ରଶ୍ନ –** 'କର୍ମଫଳର କାରଣ ହେବା'ର ଅର୍ଥ କ'ଣ ? ଏବଂ ଅର୍ଜୁନଙ୍କୁ କର୍ମଫଳର କାରଣ ନ ହେବାକୁ କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା କରାଯାଉଥିବା ଶାସ୍ତ୍ରବିହିତ କର୍ମରେ ଏବଂ ସେହି କର୍ମର ଫଳରେ ମମତ୍ୱ, ଆସକ୍ତି, ବାସନା, ଆଶା, ସ୍ପୃହା ଏବଂ କାମନା କରିବା ହିଁ କର୍ମଫଳର କାରଣ ହେବା; କାରଣ ଯେଉଁ ମନୁଷ୍ୟ ଉପରୋକ୍ତପ୍ରକାରେ ଯେଉଁ କର୍ମରେ ଓ ତାହାର ଫଳରେ ଆସକ୍ତ ହୋଇଯାଏ, ତାହାକୁ ସେହି କର୍ମର ଫଳ ମିଳେ। କର୍ମରେ ଏବଂ ତାହାର ଫଳରେ ମମତ୍ୱ, ଆସକ୍ତି ଏବଂ କାମନା ସର୍ବଥା ତ୍ୟାଗ କରିଥିବା ଲୋକଙ୍କୁ ତାହା ମିଳେ ନାହିଁ (୧୮/୧୨)। ଏଣୁ ଅର୍ଜୁନଙ୍କୁ କର୍ମଫଳର କାରଣ ନ ହେବାକୁ ଉପଦେଶ ଦେଇ ଭଗବାନ୍ କହିଛନ୍ତି, ''ପରମଶାନ୍ତି ପ୍ରାପ୍ତିପାଇଁ ମମତ୍ୱ, କାମନା ଓ ଆସକ୍ତି ତ୍ୟାଗ କରିଦେଇ ତୁମେ ନିଜର କର୍ତ୍ତବ୍ୟକର୍ମ ଅନୁଷ୍ଠାନ କର।''

**ପ୍ରଶ୍ନ –** ଉପରୋକ୍ତପ୍ରକାରେ ମମତ୍ୱ, ଆସକ୍ତି ଏବଂ କାମନା ତ୍ୟାଗ କରି କର୍ମ କରୁଥିବା ମନୁଷ୍ୟ କଣ ପାପକର୍ମରୁ ମିଳୁଥିବା ଫଳର କାରଣ ମଧ୍ୟ ହୁଅନ୍ତି ନାହିଁ ?

**ଉତ୍ତର –** ଉପରୋକ୍ତପ୍ରକାରେ କର୍ମ କରୁଥିବା ମନୁଷ୍ୟ କୌଣସିପ୍ରକାର କର୍ମଫଳର କାରଣ ହୁଅନ୍ତି ନାହିଁ। ସେ କରୁଥିବା କି ଶୁଭ, କି ଅଶୁଭ — କୌଣସି କର୍ମରେ ଫଳ ଦେବାର ଶକ୍ତି ରହେ ନାହିଁ; କାରଣ ଆସକ୍ତି ହିଁ ପାପକର୍ମରେ ପ୍ରବୃତ୍ତ ହେବାର ହେତୁ ହୋଇଥାଏ। ତେଣୁ ସେ ଆସକ୍ତି, କାମନା ଓ ମମତ୍ୱ-ରହିତ ହୋଇଥିବାରୁ ତାଙ୍କ ଦ୍ୱାରା ନୂତନ ପାପ ହୋଇପାରେ ନାହିଁ; ତା'ସହିତ ତାଙ୍କର ପୂର୍ବରୁ କରାଯାଇଥିବା ପାପ ମଧ୍ୟ ମମତ୍ୱ-ଆସକ୍ତିରହିତ କର୍ମର ପ୍ରଭାବରେ ଭସ୍ମ ହୋଇଯାଏ। ତେଣୁ ସେ ପାପକର୍ମଫଳର ହେତୁ ହୁଅନ୍ତି ନାହିଁ ଏବଂ ଶୁଭକର୍ମର ଫଳ ତ୍ୟାଗ କରିଦେଇଥିବାରୁ, ସେହି ଫଳର ହେତୁ ମଧ୍ୟ ହୁଅନ୍ତି ନାହିଁ। ଏହିପରି କର୍ମ କରୁଥିବା ମନୁଷ୍ୟଙ୍କର ସମସ୍ତ କର୍ମ ବିଲୀନ ହୋଇଯାଏ (୪/୨୩) ଏବଂ ସେ ଅନାମୟ ପଦ ପ୍ରାପ୍ତ ହୁଅନ୍ତି (୨/୫୧)।

**ପ୍ରଶ୍ନ –** 'ତୁମର କର୍ମ ନ କରିବାରେ ମଧ୍ୟ ଆସକ୍ତି ନ ହେଉ' – ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହା କହି ଭଗବାନ୍ ଜଣାଇଦେଉଛନ୍ତି ଯେ, ଶାସ୍ତ୍ରବିହିତ କର୍ମର ବିପରୀତ ନିଷିଦ୍ଧକର୍ମ ଆଚରଣ କରିବା ଅର୍ଥ କର୍ମାଧିକାରର ଦୁରୁପଯୋଗ କରିବା। ଠିକ୍ ସେହିପରି ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଯେଉଁ କର୍ମ ଯାହାଙ୍କ ପାଇଁ ଅବଶ୍ୟକରଣୀୟ, ତାହା ନ କରିବା ମଧ୍ୟ ଅଧିକାରର ଦୁରୁପଯୋଗ। ବିହିତକର୍ମର ତ୍ୟାଗ କୌଣସିପ୍ରକାରେ ନ୍ୟାୟସଙ୍ଗତ ନୁହେଁ। ତେଣୁ ମୋହପୂର୍ବକ କର୍ମ ତ୍ୟାଗ କରିବା ତାମସତ୍ୟାଗ ଅଟେ (୧୮/୭) ଏବଂ ଶାରୀରିକ କ୍ଳେଶ ଭୟରେ କର୍ମ ତ୍ୟାଗ କରିବା ରାଜସ ତ୍ୟାଗ ଅଟେ (୧୮/୮)। ବିହିତକର୍ମ ନ କରି ମନୁଷ୍ୟ କର୍ମଯୋଗରେ ସିଦ୍ଧି ମଧ୍ୟ ପାଇପାରିବ ନାହିଁ (୩/୪)। ଏଣୁ ଯେକୌଣସି କାରଣରୁ ହେଉ ନା କାହିଁକି, ବିହିତକର୍ମ ନ କରିବାରେ ଆସକ୍ତି ରହିବା ଉଚିତ ନୁହେଁ।

**ସମ୍ବନ୍ଧ –** ଉପରୋକ୍ତ ଶ୍ଳୋକରେ କୁହାଯାଇଛି, "ତୁମେ କର୍ମଫଳର କାରଣ ହେବା ଉଚିତ ନୁହେଁ, କି କର୍ମ ନ କରିବାରେ ଆସକ୍ତ ହେବା ଉଚିତ ନୁହେଁ ଅର୍ଥାତ୍ କର୍ମ ତ୍ୟାଗ କରିବା ଉଚିତ ନୁହେଁ।" ଏହାରି ଉପରେ ପ୍ରଶ୍ନ ହୁଏ, 'ତେବେ କିପ୍ରକାର କର୍ମ କରିବାକୁ ହେବ ?' ତେଣୁ ଭଗବାନ୍ କହୁଛନ୍ତି –

## ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।
## ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ।। ୪୮ ।।

**ଅନ୍ୱୟ –** **ଧନଞ୍ଜୟ** = ହେ ଧନଞ୍ଜୟ (ଅର୍ଜୁନ); **ସଙ୍ଗମ୍** = ଆସକ୍ତିକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ସିଦ୍ଧ୍ୟସିଦ୍ଧ୍ୟୋଃ** = ସିଦ୍ଧି ଏବଂ ଅସିଦ୍ଧିରେ; **ସମଃ** = ସମାନ ବୁଦ୍ଧିଯୁକ୍ତ; **ଭୂତ୍ୱା** = ହୋଇ; **ଯୋଗସ୍ଥଃ** = ଯୋଗରେ ସ୍ଥିତ ହୋଇ; **କର୍ମାଣି** = କର୍ତ୍ତବ୍ୟକର୍ମଗୁଡ଼ିକୁ; **କୁରୁ** = କର; **ସମତ୍ୱମ୍ (ଏବ)** = ସମତ୍ୱକୁ ହିଁ; **ଯୋଗଃ** = ଯୋଗ; **ଉଚ୍ୟତେ** = କୁହାଯାଏ।

**ହେ ଧନଞ୍ଜୟ! ତୁମେ ଆସକ୍ତି ତ୍ୟାଗ କରି ତଥା ସିଦ୍ଧି ଓ ଅସିଦ୍ଧିରେ ସମାନ ବୁଦ୍ଧି ରଖି ଯୋଗସ୍ଥ ହୋଇ କର୍ତ୍ତବ୍ୟକର୍ମ କର; ସମତ୍ୱକୁ ହିଁ ଯୋଗ କୁହାଯାଏ।।। ୪୮ ।।**

**ପ୍ରଶ୍ନ –** ସିଦ୍ଧି ଓ ଅସିଦ୍ଧିରେ ସମ ହୋଇଗଲେ ତ ତାହାରି ମଧ୍ୟରେ ଆସକ୍ତିତ୍ୟାଗ ଆସିଯାଏ, ପୁଣି ଅର୍ଜୁନଙ୍କୁ ଆସକ୍ତି ତ୍ୟାଗ କର ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ଶ୍ଳୋକରେ ଭଗବାନ୍ କର୍ମଯୋଗ ଆଚରଣର ପ୍ରକ୍ରିୟା ବିଷୟରେ କହିଛନ୍ତି। କର୍ମଯୋଗର ସାଧକ ଯେତେବେଳେ କର୍ମରେ ଓ ତା'ର ଫଳରେ ଆସକ୍ତି ତ୍ୟାଗ କରିଦିଅନ୍ତି, ସେତେବେଳେ ତାଙ୍କର ରାଗ-ଦ୍ୱେଷ ତଥା ସେଥିରୁ ଉତ୍ପନ୍ନ ହର୍ଷ-ଶୋକ ଆଦିର ଅଭାବ ହୋଇଯାଏ। ଏପରି ହେବାରୁ ସେ ସିଦ୍ଧି ଓ ଅସିଦ୍ଧିରେ ସମ ହୋଇଯାଆନ୍ତି; ଉପରଲିଖିତ ଦୋଷ ରହିଥିଲେ ସିଦ୍ଧି ଓ ଅସିଦ୍ଧିରେ ସମ ହୋଇ ପାରନ୍ତି ନାହିଁ। ସିଦ୍ଧି ଓ ଅସିଦ୍ଧିରେ ଅର୍ଥାତ୍ କର୍ମ ପୂର୍ଣ୍ଣ ହେଉ ବା ନ ହେଉ ତଥା ତା'ର ପରିଣାମ ଅନୁକୂଳ ହେଉ ବା ପ୍ରତିକୂଳ ହେଉ, ସବୁ ଅବସ୍ଥାରେ ସମ ରହିବାକୁ ଚେଷ୍ଟା କରିବା ଦ୍ୱାରା ଶେଷରେ ରାଗ-ଦ୍ୱେଷ ରହେ ନାହିଁ। ଏହିପରି ଆସକ୍ତିତ୍ୟାଗ ଓ ସମତ୍ୱ – ଏ ଦୁଇଟି

ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ରହିଛି ଏବଂ ସେଦୁଇଟି ଏକ ଅନ୍ୟର ସହାୟକ ଅଟନ୍ତି। ତେଣୁ ଭଗବାନ୍ ଆସକ୍ତି ତ୍ୟାଗ କରି ସିଦ୍ଧି ଓ ଅସିଦ୍ଧିରେ ସମ ହୋଇ କର୍ମ କରିବାକୁ କହିଛନ୍ତି।

**ପ୍ରଶ୍ନ –** ଯେତେବେଳେ ସମତ୍ୱର ନାମ ହିଁ ଯୋଗ ବୋଲି କୁହାଯାଉଛି, ସେତେବେଳେ ସିଦ୍ଧି ଓ ଅସିଦ୍ଧିରେ ସମ ହୋଇ କର୍ମ କରିବା ଭିତରେ ହିଁ ଯୋଗରେ ସ୍ଥିତ ହେବା କଥା ଆସିଯାଉଛି; ଏପରି ସ୍ଥଳେ ଯୋଗରେ ସ୍ଥିତ ହେବା କଥା ଅଲଗା କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** କର୍ମର ସିଦ୍ଧି ଏବଂ ଅସିଦ୍ଧିରେ ସମତ୍ୱ ରଖି ରଖି ହିଁ ମନୁଷ୍ୟର ସମଭାବରେ ଅଟଳ ସ୍ଥିତି ଆସିଯାଏ ଏବଂ ସମଭାବ ସ୍ଥିର ହୋଇଯିବା ହିଁ କର୍ମଯୋଗର ଅବଧି। ଅତଏବ ଏଠାରେ ଯୋଗରେ ସ୍ଥିତ ହୋଇ କର୍ମ କରିବାକୁ କହି ଭଗବାନ୍ ପ୍ରକାଶ କରିଛନ୍ତି ଯେ, କେବଳ ସିଦ୍ଧି-ଅସିଦ୍ଧିରେ ହିଁ ସମତ୍ୱ ରଖିଲେ ଚଳିବ ନାହିଁ; ପ୍ରତ୍ୟେକ କର୍ମ କରିବା ସମୟରେ ବି ତୁମକୁ ଯେକୌଣସି ପଦାର୍ଥରେ, କର୍ମରେ, କର୍ମଫଳରେ ଅଥବା ପ୍ରାଣୀଠାରେ ବିଷମଭାବ ନ ରଖି ନିତ୍ୟ ସମଭାବରେ ସ୍ଥିତ ରହିବା ଆବଶ୍ୟକ।

**ପ୍ରଶ୍ନ –** 'ସମତ୍ୱକୁ ହିଁ ଯୋଗ କୁହାଯାଏ'– ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଭଗବାନ୍ ଏଠାରେ 'ଯୋଗ' ପଦର ପାରିଭାଷିକ ଅର୍ଥ କହିଛନ୍ତି। ଅଭିପ୍ରାୟ ହେଉଛି, ''ଏଠାରେ 'ଯୋଗ' ସମତ୍ୱର ନାମ ଅଟେ ଏବଂ ସାଧକ ଯେକୌଣସି ସାଧନାଦ୍ୱାରା ସମତ୍ୱ ପ୍ରାପ୍ତ ହୋଇଗଲେ, ଯୋଗୀ ହୋଇଯାଆନ୍ତି। ଅତଏବ ତୁମକୁ କର୍ମଯୋଗୀ ହେବାକୁ ହେଲେ, ସମଭାବରେ ସ୍ଥିତ ହୋଇ କର୍ମ କରିବା ଉଚିତ।''

*ସମ୍ବନ୍ଧ – କର୍ମଯୋଗର ପ୍ରକ୍ରିୟା କହିଦେବା ପରେ ବର୍ତ୍ତମାନ ସକାମ ଭାବର ନିନ୍ଦା ଏବଂ ସମଭାବରୂପକ ବୁଦ୍ଧିଯୋଗର ମହତ୍ତ୍ୱ ବ୍ୟକ୍ତ କରି ଭଗବାନ୍ ଅର୍ଜୁନଙ୍କୁ ତାହାର ଆଶ୍ରୟ ନେବାକୁ ଆଜ୍ଞା ଦେଉଛନ୍ତି –*

## ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାଦ୍ଧନଞ୍ଜୟ ।
## ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣାଃ ଫଳହେତବଃ ।। ୪୯ ।।

**ଅନ୍ୱୟ –** **ବୁଦ୍ଧିଯୋଗାତ୍** = ବୁଦ୍ଧିଯୋଗଠାରୁ; **କର୍ମ** = ସକାମ କର୍ମ; **ଦୂରେଣ** = ଅତ୍ୟନ୍ତ (**ହି**); **ଅବରମ୍** = ନିକୃଷ୍ଟ ଅଟେ; (**ଅତଃ**) = ଏଣୁ; **ଧନଞ୍ଜୟ** = ହେ ଧନଞ୍ଜୟ!; **ବୁଦ୍ଧୌ** = (ତୁମେ) ସମବୁଦ୍ଧିରେ (**ହି**); **ଶରଣମ୍** = ରକ୍ଷାର ଉପାୟ; **ଅନ୍ୱିଚ୍ଛ** = ଖୋଜ ଅର୍ଥାତ୍ ବୁଦ୍ଧିଯୋଗର ହିଁ ଆଶ୍ରୟ ଗ୍ରହଣ କର; **ହି** = କାରଣ; **ଫଳହେତବଃ** = ଫଳର କାରଣ ହେଉଥିବା ଲୋକମାନେ; **କୃପଣାଃ** = ଅତ୍ୟନ୍ତ ଦୀନ।

**ଏହି ସମତ୍ୱରୂପକ ବୁଦ୍ଧିଯୋଗ ଅପେକ୍ଷା ସକାମ କର୍ମ ଅତ୍ୟନ୍ତ ନିମ୍ନଶ୍ରେଣୀର ଅଟେ। ତେଣୁ ହେ ଧନଞ୍ଜୟ! ତୁମେ ସମବୁଦ୍ଧିରେ ହିଁ ରକ୍ଷାର ଉପାୟ ଖୋଜ ଅର୍ଥାତ୍ ବୁଦ୍ଧିଯୋଗର ହିଁ ଆଶ୍ରୟ ଗ୍ରହଣ କର; କାରଣ, ଫଳର କାରଣ ହେଉଥିବା ଲୋକେ ଅତ୍ୟନ୍ତ ଦୀନ।। ୪୯ ।।**

**ପ୍ରଶ୍ନ – ବୁଦ୍ଧିଯୋଗାତ୍** ପଦଟି ଏଠାରେ କେଉଁ ଯୋଗର ବାଚକ – କର୍ମଯୋଗର ନା ଜ୍ଞାନଯୋଗର ?

**ଉତ୍ତର –** ଯେଉଁ ଯୋଗରେ ମମତ୍ୱ, ଆସକ୍ତି ଏବଂ କାମନା ତ୍ୟାଗ କରି ସମବୁଦ୍ଧିପୂର୍ବକ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରାଯାଏ, **ବୁଦ୍ଧିଯୋଗାତ୍** ହେଉଛି ସେହି କର୍ମଯୋଗର ବାଚକ। କାରଣ ଅଣଚାଳିଶ ଶ୍ଳୋକରେ **ଯୋଗେ ତ୍ୱିମାଂ ଶୃଣୁ** ଅର୍ଥାତ୍ ବର୍ତ୍ତମାନ 'ତୁମେ ମୋଠାରୁ ଏହି ବୁଦ୍ଧିକୁ ଯୋଗବିଷୟରେ ଶୁଣ' ବୋଲି କହି ଭଗବାନ୍ କର୍ମଯୋଗର ବର୍ଣ୍ଣନା ଆରମ୍ଭ କରିଦେଇଛନ୍ତି। ତେଣୁ ଏଠାରେ **'ବୁଦ୍ଧିଯୋଗାତ୍'** ପଦର ଅର୍ଥ 'ଜ୍ଞାନଯୋଗ' ବୋଲି କହିବାର କୌଣସି ଅବକାଶ ନାହିଁ। ତାହା ଛଡ଼ା ଏହି ଶ୍ଳୋକରେ ଫଳ ଇଚ୍ଛା କରୁଥିବା ଲୋକଙ୍କୁ କୃପଣ ବୋଲି କହି ପରବର୍ତ୍ତୀ ଶ୍ଳୋକରେ ବୁଦ୍ଧିଯୁକ୍ତ ପୁରୁଷଙ୍କର ପ୍ରଶଂସା କରିଛନ୍ତି ଓ ଅର୍ଜୁନଙ୍କୁ କର୍ମଯୋଗ କରିବାକୁ ଆଜ୍ଞା ଦେଇଛନ୍ତି; ପୁଣି କହିଛନ୍ତି ଯେ, ବୁଦ୍ଧିଯୁକ୍ତ ପୁରୁଷ କର୍ମଫଳ ତ୍ୟାଗ କରି ଅନାମୟ ପଦ ପ୍ରାପ୍ତ ହୋଇଥାନ୍ତି (୨/୫୧)। ତେଣୁ ପ୍ରକରଣ ବିରୁଦ୍ଧରେ ଯାଇ **ବୁଦ୍ଧିଯୋଗାତ୍**ର ଅର୍ଥ ଏଠାରେ ଜ୍ଞାନଯୋଗ କହିବା ସଙ୍ଗତ ହେବ ନାହିଁ।

କାରଣ ଜ୍ଞାନଯୋଗୀ ତ ନିଜକୁ କର୍ତ୍ତା ବୋଲି ହିଁ ମାନନ୍ତି ନାହିଁ; ତେଣୁ ତାଙ୍କ ପକ୍ଷରେ ଫଳତ୍ୟାଗର ପ୍ରଶ୍ନ ହିଁ ଉଠୁ ନାହିଁ। ସୁତରାଂ ସେ କର୍ମଫଳ ତ୍ୟାଗ କରି ଅନାମୟ ପଦ ପ୍ରାପ୍ତ ହେବେ ବୋଲି କିପରି କହିବେ ?

**ପ୍ରଶ୍ନ –** ବୁଦ୍ଧିଯୋଗ ଅପେକ୍ଷା ସକାମ କର୍ମ ଅତ୍ୟନ୍ତ ନିମ୍ନଶ୍ରେଣୀର ବୋଲି କହିବାର ଅଭିପ୍ରାୟ କଣ ? ଏଠାରେ **କର୍ମ** ପଦର ଅର୍ଥ ନିଷିଦ୍ଧକର୍ମ ବୋଲି ଧରିନେଲେ କ୍ଷତି କଣ ?

**ଉତ୍ତର –** ବୁଦ୍ଧିଯୋଗ ଅପେକ୍ଷା ସକାମକର୍ମ ଅତ୍ୟନ୍ତ ନିମ୍ନଶ୍ରେଣୀର କହି ଭଗବାନ୍ ପ୍ରକାଶ କରିଛନ୍ତି ଯେ, ସକାମ କର୍ମର ଫଳ ନାଶବାନ୍ କ୍ଷଣିକସୁଖପ୍ରାପ୍ତି ଏବଂ କର୍ମଯୋଗର ଫଳ ପରମାତ୍ମପ୍ରାପ୍ତି। ଏଣୁ ଏ ଦୁହିଁଙ୍କ ମଧ୍ୟରେ ଦିନ ଓ ରାତି ମଧ୍ୟରେ ରହିଥିବା ପ୍ରଭେଦପରି ବିରାଟ ପ୍ରଭେଦ ରହିଛି। ଏଠାରେ **କର୍ମ** ପଦର ଅର୍ଥ ନିଷିଦ୍ଧକର୍ମ ବୋଲି ଗ୍ରହଣ କରାଯାଇପାରିବ ନାହିଁ; କାରଣ ନିଷିଦ୍ଧକର୍ମ ସର୍ବଥା ତ୍ୟାଜ୍ୟ ଓ ଅତ୍ୟନ୍ତ ଦୁଃଖର କାରଣ। ତେଣୁ ବୁଦ୍ଧିଯୋଗର ମହତ୍ତ୍ୱ ଦର୍ଶାଇବାପାଇଁ ନିଷିଦ୍ଧକର୍ମ ସହିତ ତାହାର ତୁଳନା କରାଯାଇପାରିବ ନାହିଁ।

**ପ୍ରଶ୍ନ –** **ବୁଦ୍ଧୌ** ପଦ କାହାର ବାଚକ ଏବଂ ଅର୍ଜୁନଙ୍କୁ ତାହାର ଆଶ୍ରୟ ନେବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ସମବୁଦ୍ଧିର ପ୍ରକରଣ ଚାଲିଛି, ଏଠାରେ **ବୁଦ୍ଧୌ** ପଦ ହେଉଛି ତାହାରି ବାଚକ। ଅର୍ଜୁନଙ୍କୁ ତାହାରି ଆଶ୍ରୟ ନେବାକୁ କହି ଭଗବାନ୍ ଦର୍ଶାଇଛନ୍ତି ଯେ, ଉଠିବା-ବସିବା, ଚାଲିବା-ବୁଲିବା, ଶୋଇବା-ଚେଇଁବା ଆଦି ସକଳ କର୍ମ କରିବା ଅବସ୍ଥାରେ ନିରନ୍ତର ସମଭାବରେ ସ୍ଥିତ ହୋଇ ରହିବାକୁ ଚେଷ୍ଟା କରିବା ହିଁ କଲ୍ୟାଣପ୍ରାପ୍ତିର ସୁଗମ ଉପାୟ।

**ପ୍ରଶ୍ନ –** 'କର୍ମଫଳର ହେତୁ ହେଉଥିବା ଲୋକ ଅତ୍ୟନ୍ତ କୃପଣ' ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏପରି କହିବାର ତାତ୍ପର୍ଯ୍ୟ ହେଉଛି, "ଯେଉଁ ମନୁଷ୍ୟ କର୍ମରେ ଏବଂ ତାହାର ଫଳରେ ମମତ୍ୱ, ଆସକ୍ତି ଏବଂ କାମନା କରି କରି କର୍ମଫଳ ପ୍ରାପ୍ତିର କାରଣ ହୋଇଯାଏ, ସେ ଅତ୍ୟନ୍ତ କୃପଣ ଅର୍ଥାତ୍ ଦୟାର ପାତ୍ର ହୋଇଥାଏ। ତେଣୁ ତୁମେ ସେପରି ହେବା ଉଚିତ ନୁହେଁ।"

*ସମ୍ବନ୍ଧ – ଅର୍ଜୁନଙ୍କୁ ସମତ୍ୱର ଆଶ୍ରୟ ନେବାକୁ ଆଜ୍ଞା ଦେଇସାରି, ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ସେହି ସମତ୍ୱରୂପକ ବୁଦ୍ଧିରେ ଯୁକ୍ତ ହୋଇଥିବା ମହାପୁରୁଷଙ୍କର ପ୍ରଶଂସା କରିବା ସହିତ ଭଗବାନ୍ ଅର୍ଜୁନଙ୍କୁ କର୍ମଯୋଗ ଅନୁଷ୍ଠାନ କରିବାକୁ ପୁନର୍ବାର ଆଜ୍ଞା ଦେଇ ତାହାର ଫଳ ବର୍ଣ୍ଣନା କରୁଛନ୍ତି–*

**ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତଦୁଷ୍କୃତେ।**
**ତସ୍ମାଦ୍ ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଲମ୍॥ ୫୦ ॥**

**ଅନ୍ୱୟ –** **ବୁଦ୍ଧିଯୁକ୍ତଃ** = ସମବୁଦ୍ଧିଯୁକ୍ତ (ପୁରୁଷ); **ସୁକୃତଦୁଷ୍କୃତେ** = ପୁଣ୍ୟ ଏବଂ ପାପ; **ଉଭେ** = ଉଭୟଙ୍କୁ; **ଇହ** = ଇହଲୋକରେ; **ଜହାତି** = ତ୍ୟାଗ କରିଦିଅନ୍ତି ଅର୍ଥାତ୍ ସେଥିରୁ ମୁକ୍ତ ହୋଇଯାନ୍ତି; **ତସ୍ମାତ୍** = ତେଣୁ; **ଯୋଗାୟ** = ସମତ୍ୱରୂପକ ଯୋଗରେ; **ଯୁଜ୍ୟସ୍ୱ** = ଲାଗିଯାଅ; **ଯୋଗଃ** = ସମତ୍ୱରୂପକ ଯୋଗ (ହିଁ); **କର୍ମସୁ** = କର୍ମମାନଙ୍କରେ; **କୌଶଲମ୍** = କୁଶଳତା ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତି ପାଇବାର ଉପାୟ।

**ସମବୁଦ୍ଧିଯୁକ୍ତ ପୁରୁଷ ପୁଣ୍ୟ ଓ ପାପ ଉଭୟଙ୍କୁ ଇହଲୋକରେ ତ୍ୟାଗ କରିଦିଅନ୍ତି ଅର୍ଥାତ୍ ସେଥିରୁ ମୁକ୍ତ ହୋଇଯାଆନ୍ତି। ତେଣୁ ତୁମେ ସମତ୍ୱରୂପକ ଯୋଗରେ ଲାଗିଯାଅ। ଏହି ସମତ୍ୱରୂପକ ଯୋଗ ହିଁ କର୍ମରେ କୁଶଳତା ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତି ପାଇବାର ଉପାୟ॥ ୫୦ ॥**

**ପ୍ରଶ୍ନ –** 'ସମବୁଦ୍ଧିଯୁକ୍ତ ପୁରୁଷ ପୁଣ୍ୟ ଓ ପାପ ଉଭୟଙ୍କୁ ଇହଲୋକରେ ତ୍ୟାଗ କରିଦିଅନ୍ତି' – ଏପରି ବକ୍ତବ୍ୟର ଭାବ କଣ ?

**ଉତ୍ତର –** ଏ କଥାର ଭାବ ହେଉଛି, ଜନ୍ମଜନ୍ମାନ୍ତରରେ ଏବଂ ଏହି ଜନ୍ମରେ କରାଯାଇଥିବା ଯେତେସବୁ ପୁଣ୍ୟକର୍ମ ବା ପାପକର୍ମ ସଂସ୍କାରରୂପରେ ଅନ୍ତଃକରଣରେ ସଞ୍ଚିତ ହୋଇ ରହେ, ସମବୁଦ୍ଧିରେ ଯୁକ୍ତ ହୋଇଥିବା କର୍ମଯୋଗୀ ପୁରୁଷ ସେହି ସମସ୍ତ କର୍ମକୁ ଇହଲୋକରେ ତ୍ୟାଗ

କରିଦିଅନ୍ତି ଅର୍ଥାତ୍ ଏହି ବର୍ତ୍ତମାନ ଜନ୍ମରେ ହିଁ ସେ ସେହି ସମସ୍ତ କର୍ମରୁ ମୁକ୍ତ ହୋଇଯାଆନ୍ତି। ତାଙ୍କର ସେହି କର୍ମ ସହିତ ଆଉ କୌଣସି ସମ୍ବନ୍ଧ ରହେ ନାହିଁ। ତେଣୁ ତାଙ୍କର କର୍ମ ପୁନର୍ଜନ୍ମରୂପକ ଫଳ ଦେଇପାରେ ନାହିଁ; କାରଣ ନିଃସ୍ୱାର୍ଥଭାବରେ କେବଳ ଲୋକମଙ୍ଗଳପାଇଁ କରାଯାଇଥିବା କର୍ମରେ ତାଙ୍କର ସମସ୍ତ କର୍ମ ବିଲୀନ ହୋଇଯାଏ (୪/୨୩)। ଏପରିଭାବରେ ତାଙ୍କର କ୍ରିୟମାଣ ପୁଣ୍ୟ ତଥା ପାପକର୍ମ ମଧ୍ୟ ତ୍ୟକ୍ତ ହୋଇଯାଏ; କାରଣ ତାଙ୍କ ଦ୍ୱାରା ପାପକର୍ମ ତ ସ୍ୱରୂପତଃ ତ୍ୟକ୍ତ ହୋଇଥାଏ ଏବଂ ଫଳାସକ୍ତି ତ୍ୟକ୍ତ ହୋଇଥିବାରୁ ତାଙ୍କର ସମସ୍ତ ଶାସ୍ତ୍ରବିହିତ ପୁଣ୍ୟକର୍ମ ବି 'ଅକର୍ମ' ହୋଇଯାଏ (୪/୨୦); ଅତଏବ, ସେସବୁ ମଧ୍ୟ ଏକପ୍ରକାର ତ୍ୟକ୍ତ ହୋଇଯାଏ।

**ପ୍ରଶ୍ନ** – 'ତେଣୁ ତୁମେ ସମତ୍ୱରୂପକ ଯୋଗରେ ଲାଗିଯାଅ' — ଏ କଥାର ଭାବ କଣ?

**ଉତ୍ତର** – ଏହାଦ୍ୱାରା କହୁଛନ୍ତି, ''ସମବୁଦ୍ଧିରେ ଯୁକ୍ତ ହୋଇଥିବା ଯୋଗୀ ଜୀବନ୍ମୁକ୍ତ ହୋଇଯାଆନ୍ତି; ତେଣୁ ତୁମେ ବି ସେପରି ହୋଇଯାଅ।''

**ପ୍ରଶ୍ନ** – 'ଏହି ସମତ୍ୱରୂପକ ଯୋଗ ହିଁ କର୍ମରେ କୁଶଳତା' — ଏହି କଥନର ଭାବ କଣ?

**ଉତ୍ତର** – କର୍ମ ସ୍ୱଭାବତଃ ମନୁଷ୍ୟକୁ ବନ୍ଧନରେ ପକାଇଦିଏ ଏବଂ କର୍ମ ନ କରି କୌଣସି ପୁରୁଷ ରହିପାରିବ ନାହିଁ; ତାକୁ କିଛି ନା କିଛି କର୍ମ କରିବାକୁ ହିଁ ପଡ଼ିବ। ଏପରି ସ୍ଥିତିରେ କର୍ମରୁ ରକ୍ଷା ପାଇବାର ସର୍ବୋତ୍ତମ ଉପାୟ ହେଉଛି ସମତ୍ୱଯୋଗ। ସମବୁଦ୍ଧିରେ ଯୁକ୍ତ ହୋଇ କର୍ମ କରୁଥିବା ମନୁଷ୍ୟ ସମବୁଦ୍ଧି ପ୍ରଭାବରେ ବନ୍ଧନରେ ପଡ଼ନ୍ତି ନାହିଁ। ତେଣୁ କର୍ମରେ 'ଯୋଗ' ହିଁ କୁଶଳତା ଅଟେ। ସାଧନାକାଳରେ ସମବୁଦ୍ଧିରେ କର୍ମ କରିବାକୁ ଚେଷ୍ଟା କଲେ ସିଦ୍ଧାବସ୍ଥାରେ ସମତ୍ୱରେ ପୂର୍ଣ୍ଣସ୍ଥିତି ଆସିଯାଏ।

**କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ।**
**ଜନ୍ମବନ୍ଧବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟମ୍॥ ୫୧ ॥**

**ଅନ୍ୱୟ** – **ହି** = କାରଣ; **ବୁଦ୍ଧିଯୁକ୍ତାଃ** = ସମବୁଦ୍ଧିରେ ଯୁକ୍ତ; **ମନୀଷିଣଃ** = ଜ୍ଞାନୀଜନମାନେ; **କର୍ମଜମ୍** = କର୍ମରୁ ଜାତ; **ଫଳମ୍** = ଫଳକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ଜନ୍ମବନ୍ଧବିନିର୍ମୁକ୍ତାଃ** = ଜନ୍ମରୂପକ ବନ୍ଧନରୁ ମୁକ୍ତ ହୋଇ; **ଅନାମୟମ୍** = ଆମୟରହିତ ଅର୍ଥାତ୍ ନିର୍ବିକାର; **ପଦମ୍** = ପରମପଦକୁ; **ଗଚ୍ଛନ୍ତି** = ପ୍ରାପ୍ତ ହୁଅନ୍ତି।

**କାରଣ ସମବୁଦ୍ଧିରେ ଯୁକ୍ତ ଜ୍ଞାନୀଜନମାନେ କର୍ମଦ୍ୱାରା ଉତ୍ପନ୍ନ ହେଉଥିବା ଫଳ ତ୍ୟାଗ କରି, ଜନ୍ମରୂପକ ବନ୍ଧନରୁ ମୁକ୍ତ ହୋଇ ନିର୍ବିକାର ପରମପଦ ପ୍ରାପ୍ତ ହୋଇଯାଆନ୍ତି॥ ୫୧ ॥**

**ପ୍ରଶ୍ନ** – ହି ପଦର ତାତ୍ପର୍ଯ୍ୟ କଣ?

**ଉତ୍ତର** – ହି ପଦ ହେତୁବାଚକ। ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ସମବୁଦ୍ଧିପୂର୍ବକ କର୍ମ କରିବାହିଁ କାହିଁକି କୁଶଳତା ଅଟେ, ତାହା ଏହି ଶ୍ଳୋକରେ କୁହାଯାଇଛି।

**ପ୍ରଶ୍ନ** – **ବୁଦ୍ଧିଯୁକ୍ତାଃ** ପଦଟି କେଉଁମାନଙ୍କ ବାଚକ? ସେମାନଙ୍କୁ **ମନୀଷିଣଃ** କହିବାର ତାତ୍ପର୍ଯ୍ୟ କଣ?

**ଉତ୍ତର** – ଯେଉଁମାନେ ସମବୁଦ୍ଧିଯୁକ୍ତ ଅର୍ଥାତ୍ ଯାହାଙ୍କ ଠାରେ ସମଭାବର ଅଟଳ ସ୍ଥିତି ଆସିଗଲାଣି, **ବୁଦ୍ଧିଯୁକ୍ତାଃ** ହେଉଛି ସେପରି କର୍ମଯୋଗୀମାନଙ୍କ ବାଚକ। ସେମାନଙ୍କୁ **ମନୀଷିଣଃ** କହିବାର କାରଣ ହେଉଛି, ଯେଉଁମାନେ ଏପରି ସମଭାବରେ ଯୁକ୍ତ ହୋଇ ମନୁଷ୍ୟଜୀବନକୁ ସଫଳ କରନ୍ତି, ସେମାନେ ହିଁ ବାସ୍ତବରେ ବୁଦ୍ଧିମାନ୍ ଏବଂ ଜ୍ଞାନୀ। ଯେଉଁମାନେ ସାକ୍ଷାତ୍ ମୁକ୍ତିର ଦ୍ୱାରସ୍ୱରୂପ ଏହି ମନୁଷ୍ୟଜନ୍ମ ପାଇ ମଧ୍ୟ ଭୋଗରେ ବୁଡ଼ିଯାଆନ୍ତି, ସେମାନେ ବୁଦ୍ଧିମାନ୍ ନୁହଁନ୍ତି (୫/୨୨)।

**ପ୍ରଶ୍ନ** – 'ସେହି ସମବୁଦ୍ଧିଯୁକ୍ତ ମନୁଷ୍ୟମାନେ କର୍ମରୁ ଉତ୍ପନ୍ନ ହେଉଥିବା ଫଳ ତ୍ୟାଗ କରି ଜନ୍ମରୂପକ ବନ୍ଧନରୁ ମୁକ୍ତ ହୋଇଯାଆନ୍ତି' କହିବାର ଅର୍ଥ କଣ?

**ଉତ୍ତର** – ସମତ୍ୱରୂପକ ଯୋଗର ପ୍ରଭାବରେ ଜନ୍ମଜନ୍ମାନ୍ତରର ତଥା ଇହଜନ୍ମର କୃତ ସମସ୍ତପ୍ରକାର କର୍ମଫଳରୁ ସେମାନଙ୍କର ସମ୍ବନ୍ଧ ତୁଟିଯାଇ ସେମାନଙ୍କୁ ବାରମ୍ବାର ଜନ୍ମମୃତ୍ୟୁରୂପକ ଚକ୍ରରୁ ଚିରକାଳପାଇଁ ମୁକ୍ତି ମିଳିଯାଏ। ଏହାକୁ ହିଁ 'କର୍ମରୁ ଉତ୍ପନ୍ନ ଫଳ ସମ୍ପୂର୍ଣ୍ଣ

ତ୍ୟାଗ କରି ଜନ୍ମମୃତ୍ୟୁଚକ୍ରରୁ ମୁକ୍ତ ହୋଇଯିବା' କୁହାଯାଏ; କାରଣ ତିନିଗୁଣର କାର୍ଯ୍ୟରୂପୀ ସାଂସାରିକ ପଦାର୍ଥରେ ଆସକ୍ତି ହିଁ ପୁନର୍ଜନ୍ମର ହେତୁ (୧୩/୨୧); ସେମାନଙ୍କର ସେହି ଆସକ୍ତି ସର୍ବଥା ଲୋପ ପାଇଯାଏ; ତେଣୁ ପୁନର୍ଜନ୍ମ ହୁଏ ନାହିଁ।

**ପ୍ରଶ୍ନ –** 'ଏପରି ପୁରୁଷମାନଙ୍କୁ ନିର୍ବିକାର **ଅନାମୟ** ପରମପଦ ପ୍ରାପ୍ତ ହୋଇଯାଏ' କହିଲେ କଣ ବୁଝାଏ ?

**ଉତ୍ତର –** ଯେଉଁଠାରେ ରାଗଦ୍ୱେଷ ଆଦି କ୍ଲେଶ, ଶୁଭାଶୁଭ କର୍ମ, ହର୍ଷଶୋକାଦି ବିକାର ଓ ସକଳ ଦୋଷ ସମ୍ପୂର୍ଣ୍ଣ ଲୋପ ହୋଇଯାଇଥାଏ, ଯାହା ଏହି ପ୍ରକୃତି ଓ ପ୍ରକୃତିର କାର୍ଯ୍ୟର ଅତୀତ, ଯାହା ଭଗବାନଙ୍କ ଠାରୁ ସର୍ବଥା ଅଭିନ୍ନ ଭଗବାନଙ୍କର ପରମଧାମ, ଯେଉଁଠାରେ ପହଞ୍ଚିଲେ ମନୁଷ୍ୟ ଆଉ ଫେରିଆସେ ନାହିଁ, **ଅନାମୟ** ପଦଟି ହେଉଛି ସେହି ପରମଧାମର ବାଚକ। ତେଣୁ ଭଗବାନଙ୍କର ପରମଧାମ ପ୍ରାପ୍ତ ହୋଇଯିବା, ସଚ୍ଚିଦାନନ୍ଦଘନ ନିର୍ଗୁଣ-ନିରାକାର ବା ସଗୁଣ-ସାକାର ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯିବା, ପରମଗତି ପ୍ରାପ୍ତ ହୋଇଯିବା ବା ଅମୃତତ୍ୱ ପ୍ରାପ୍ତ ହୋଇଯିବା — ଏସବୁ ଏକା କଥା। ଏଥିରେ ବାସ୍ତବରେ କୌଣସିପ୍ରକାର ପାର୍ଥକ୍ୟ ନାହିଁ; ସାଧକମାନଙ୍କ ଦୃଷ୍ଟିରେ ହିଁ ପାର୍ଥକ୍ୟ ରହିଛି।

*__ସମ୍ବନ୍ଧ –__ ଭଗବାନ୍ କହିଲେ ଯେ, କର୍ମଯୋଗ ଆଚରଣଦ୍ୱାରା ଅନାମୟପଦ ପ୍ରାପ୍ତ ହୁଏ। ଏହା ଶୁଣି ତାଙ୍କୁ ଅନାମୟ ପରମପଦ କେବେ ଓ କିପରି ପ୍ରାପ୍ତ ହେବ ବୋଲି ଅର୍ଜୁନଙ୍କ ମନରେ ପ୍ରଶ୍ନ ଉଠିପାରେ। ତେଣୁ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ ସେହି ପ୍ରଶ୍ନର ଉତ୍ତର ଦେଉଛନ୍ତି –*

**ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି।**
**ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ॥ ୫୨ ॥**

**ଅନ୍ୱୟ –** ଯଦା = ଯେତେବେଳେ; ତେ = ତୁମର; **ବୁଦ୍ଧିଃ** = ବୁଦ୍ଧି; **ମୋହକଲିଲଂ** = ମୋହରୂପକ ପଙ୍କକୁ; **ବ୍ୟତିତରିଷ୍ୟତି** = ଭଲରୂପେ ଅତିକ୍ରମ କରିଯିବ; **ତଦା** = ସେତେବେଳେ; **ଶ୍ରୁତସ୍ୟ** = ଶୁଣିଥିବା; **ଚ** = ଏବଂ; **ଶ୍ରୋତବ୍ୟସ୍ୟ** = ଶୁଣିବାକୁ ଥିବା (ଐହିକ ଓ ପାରତ୍ରିକ ସମସ୍ତ ଭୋଗ ପ୍ରତି); **ନିର୍ବେଦମ୍** = ବୈରାଗ୍ୟକୁ; **ଗନ୍ତା, ଅସି** = ପ୍ରାପ୍ତ ହେବ।

**ଯେତେବେଳେ ତୁମର ବୁଦ୍ଧି ମୋହରୂପକ ପଙ୍କକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରିଯିବ, ସେତେବେଳେ ତୁମର ଶୁଣିଥିବା ଏବଂ ଶୁଣିବାକୁ ଥିବା ଇହଲୋକ ଏବଂ ପରଲୋକ ସମ୍ବନ୍ଧୀୟ ସମସ୍ତପ୍ରକାର ଭୋଗ ପ୍ରତି ବୈରାଗ୍ୟ ଆସିଯିବ॥ ୫୨ ॥**

**ପ୍ରଶ୍ନ –** 'ମୋହକଲିଳ' କଣ ? 'ବୁଦ୍ଧି ଏହାକୁ ଭଲରୂପେ ଅତିକ୍ରମ କରିଯିବ' କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ସ୍ୱଜନ ଓ ବନ୍ଧୁବାନ୍ଧବମାନଙ୍କର ବଧ ଆଶଙ୍କାରେ ଅର୍ଜୁନଙ୍କ ହୃଦୟରେ ସ୍ନେହବଶତଃ ଯେଉଁ ମୋହ ଉତ୍ପନ୍ନ ହୋଇଥିଲା, ଯାହାକୁ ଏହି ଅଧ୍ୟାୟର ଦ୍ୱିତୀୟ ଶ୍ଳୋକରେ **କଶ୍ମଳ** ବୋଲି କୁହାଯାଇଛି, ଏଠାରେ ତାକୁ ଲକ୍ଷ୍ୟ କରି **ମୋହକଲିଳ** ବୋଲି କୁହାଯାଇଛି। ଏହି 'ମୋହକଲିଳ' କାରଣରୁ ଅର୍ଜୁନ **ଧର୍ମସମ୍ମୂଢଚେତାଃ** ହୋଇ ନିଜର କର୍ତ୍ତବ୍ୟ ସ୍ଥିର କରିବାକୁ ଅସମର୍ଥ ହୋଇଯାଇଥିଲେ। ଏହି **ମୋହକଲିଳ** ହେଉଛି ଏକପ୍ରକାର ଆବରଣଯୁକ୍ତ ମଳଦୋଷ ଯାହା କି ବୁଦ୍ଧିକୁ ନିଶ୍ଚିତ ସ୍ଥାନରେ ପହଞ୍ଚିବାକୁ ନ ଦେଇ ନିଜ ଭିତରେ ହିଁ ବୁଡାଇରଖେ। ସତ୍‌ସଙ୍ଗରୁ ଉତ୍ପନ୍ନ ବିବେକଦ୍ୱାରା ନିତ୍ୟ-ଅନିତ୍ୟ ଏବଂ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ନିଶ୍ଚୟ କରି, ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି, ଭଗବତ୍‌ପରାୟଣ ହୋଇ, ନିଷ୍କାମଭାବରେ କର୍ମ କରିଚାଲିଲେ ଏହି ଆବରଣଯୁକ୍ତ ମଳଦୋଷ ସର୍ବଥା ନାଶ ହୋଇଯାଏ। ଏହାହିଁ 'ମୋହରୂପ କଲିଳକୁ ବୁଦ୍ଧି ଅତିକ୍ରମ କରିଯିବା'।

**ପ୍ରଶ୍ନ – ଶ୍ରୁତ** ଏବଂ **ଶ୍ରୋତବ୍ୟ** – ଏହି ଦୁଇଟି ଶବ୍ଦ କାହାକୁ ଲକ୍ଷ୍ୟ କରି କୁହାଯାଇଛି ? ଏବଂ ତାହାଦ୍ୱାରା ବୈରାଗ୍ୟ ପ୍ରାପ୍ତ ହେବ କହିଲେ କଣ ବୁଝାଏ ?

**ଉତ୍ତର –** ଇହଲୋକ ଓ ପରଲୋକର ଯେତେପ୍ରକାର ଭୋଗ ଏବଂ ଐଶ୍ୱର୍ଯ୍ୟ ଆଜିପର୍ଯ୍ୟନ୍ତ ଦେଖାଯାଉଛି, ଶୁଣାଯାଇଛି ଏବଂ ଅନୁଭବ କରାଯାଉଛି, ସେସବୁ ହେଉଛି **ଶ୍ରୁତ** ଏବଂ ଭବିଷ୍ୟତରେ ଯାହା କିଛି

ଦେଖାଯିବ, ଶୁଣାଯିବ ଏବଂ ଅନୁଭବ କରାଯିବ, ତାହା **ଶ୍ରୋତବ୍ୟ।** ସେସବୁକୁ ଅନିତ୍ୟ ଓ ଦୁଃଖର କାରଣ ବୋଲି ଭଲଭାବରେ ବୁଝି ସେଥିରେ ସର୍ବଥା ଆସକ୍ତି ନ ରଖିବା ହିଁ ସେସବୁରେ ବୈରାଗ୍ୟ ପ୍ରାପ୍ତ ହୋଇଯିବା। ଭଗବାନ୍ କହୁଛନ୍ତି, ''ମୋହ ନାଶ ହୋଇଗଲେ ଯେତେବେଳେ ତୁମର ବୁଦ୍ଧି ନିଶ୍ଚିତଭାବରେ ସ୍ୱାଭାବିକ ସ୍ଥିତିରେ ପହଞ୍ଚିଯିବ, ସେତେବେଳେ ତୁମର ଇହଲୋକ ଓ ପରଲୋକରେ ଥିବା ସମସ୍ତ କ୍ଷଣିକ ପଦାର୍ଥରେ ଯଥାର୍ଥ ବୈରାଗ୍ୟ ଆସିଯିବ।''

**ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା।**
**ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି॥ ୫୩ ॥**

**ଅନ୍ୱୟ – ଶ୍ରୁତିବିପ୍ରତିପନ୍ନା** = ବିଭିନ୍ନପ୍ରକାର କଥା ଶୁଣିବାଦ୍ୱାରା ବିଚଳିତ ହୋଇଯାଇଥିବା; **ତେ** = ତୁମର; **ବୁଦ୍ଧିଃ** = ବୁଦ୍ଧି; **ଯଦା** = ଯେତେବେଳେ; **ସମାଧୌ** = ପରମାତ୍ମାଙ୍କ ଠାରେ; **ନିଶ୍ଚଳା** = ଅଚଳ; **ଅଚଳା** = ସ୍ଥିର; **ସ୍ଥାସ୍ୟତି** = ହୋଇ ରହିଯିବ; **ତଦା** = ସେତେବେଳେ (ତୁମେ); **ଯୋଗମ୍** = ଯୋଗକୁ; **ଅବାପ୍ସ୍ୟସି** = ପ୍ରାପ୍ତ ହେବ।

**ବିଭିନ୍ନପ୍ରକାର କଥା ଶୁଣି ଶୁଣି ବିଚଳିତ ହୋଇଯାଇଥିବା ତୁମର ବୁଦ୍ଧି ଯେତେବେଳେ ପରମାତ୍ମାଙ୍କ ଠାରେ ଅଚଳ ଓ ସ୍ଥିର ହୋଇଯିବ, ସେତେବେଳେ ତୁମେ ଯୋଗପ୍ରାପ୍ତ ହୋଇଯିବ ଅର୍ଥାତ୍ ପରମାତ୍ମାଙ୍କ ସହିତ ତୁମର ନିତ୍ୟସଂଯୋଗ ହୋଇଯିବ॥ ୫୩ ॥**

**ପ୍ରଶ୍ନ – ଶ୍ରୁତିବିପ୍ରତିପନ୍ନା** ବୁଦ୍ଧିର ସ୍ୱରୂପ କଣ ?

**ଉତ୍ତର –** ଇହଲୋକ ଏବଂ ପରଲୋକର ଭୋଗ, ଐଶ୍ୱର୍ଯ୍ୟ ଏବଂ ସେସବୁକୁ ପାଇବାର ଉପାୟ ସମ୍ବନ୍ଧରେ ବିଭିନ୍ନ କଥା ଶୁଣିବାଦ୍ୱାରା ବୁଦ୍ଧିରେ ବିକ୍ଷେପ ଆସିଯାଏ; ତେଣୁ ବୁଦ୍ଧି ଗୋଟିଏ ସଂକଳ୍ପ ଉପରେ ନିଶ୍ଚଳଭାବରେ ସ୍ଥିର ହୋଇ ରହିପାରେ ନାହିଁ; ତାହା ବର୍ତ୍ତମାନ ଗୋଟିଏ କଥାକୁ ଭଲ ବୋଲି ଭାବେ ତ, କିଛି ସମୟ ପରେ ଅନ୍ୟ କଥାକୁ ଭଲ ବୋଲି ଭାବେ। ଏପରି ବିକ୍ଷିପ୍ତ ଏବଂ ଅନିଶ୍ଚୟାତ୍ମିକା ବୁଦ୍ଧିକୁ **ଶ୍ରୁତିବିପ୍ରତିପନ୍ନା** ବୁଦ୍ଧି ବୋଲି କୁହାଯାଇଛି। ଏହା ହେଉଛି ବୁଦ୍ଧିର ବିକ୍ଷେପଦୋଷ।

**ପ୍ରଶ୍ନ –** ବୁଦ୍ଧି 'ପରମାତ୍ମାଙ୍କ ଠାରେ ଅଚଳ ଓ ସ୍ଥିର ହୋଇ ରହିଯିବା' କଣ ?

**ଉତ୍ତର –** ମୋହରୂପକ ପଙ୍କକୁ ଅତିକ୍ରମ କରିପାରିଥିବାରୁ ଇହଲୋକର ଏବଂ ପରଲୋକର ଭୋଗରେ ସର୍ବଥା ବିରକ୍ତ ହୋଇ ବୁଦ୍ଧି ବିକ୍ଷେପଦୋଷରୁ ରହିତ ହୋଇଯାଏ ଏବଂ ତାହା ପରମାତ୍ମାଙ୍କ ଠାରେ ସ୍ଥାୟୀରୂପରେ ନିଶ୍ଚଳ ହୋଇ ରହିଯାଏ। ଏହା ହିଁ ବୁଦ୍ଧି 'ପରମାତ୍ମାଙ୍କ ଠାରେ ସ୍ଥିର ଓ ଅଚଳ ହୋଇଯିବା'।

**ପ୍ରଶ୍ନ –** 'ସେତେବେଳେ ଯୋଗପ୍ରାପ୍ତ ହୋଇଯିବା' ଅର୍ଥ କଣ ?

**ଉତ୍ତର –** ଏଠାରେ 'ଯୋଗ' ଶବ୍ଦ ହେଉଛି ପରମାତ୍ମାଙ୍କ ସହିତ ନିତ୍ୟ ଏବଂ ପୂର୍ଣ୍ଣ ସଂଯୋଗର ବାଚକ। କାରଣ ଏହା ହେଉଛି ମଳ, ବିକ୍ଷେପ ଓ ଆବରଣଦୋଷରୁ ରହିତ ବିବେକବୈରାଗ୍ୟସମ୍ପନ୍ନ ତଥା ପରମାତ୍ମାଙ୍କ ଠାରେ ନିଶ୍ଚଳଭାବରେ ସ୍ଥିତ ବୁଦ୍ଧିର ଫଳ। ଏହାପରେ ହିଁ ଅର୍ଜୁନ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସ୍ଥିତପ୍ରଜ୍ଞ ପୁରୁଷଙ୍କର ଲକ୍ଷଣ ବିଷୟରେ ପଚାରି ବୁଝିଛନ୍ତି। ସେଥିରୁ ମଧ୍ୟ ଏହା ସିଦ୍ଧ ହୋଇଥାଏ।

**ପ୍ରଶ୍ନ –** ଅଠଚାଳିଶତମ ଶ୍ଳୋକରେ ଯୋଗର ଅର୍ଥ ସମତ୍ୱ ବୋଲି କୁହାଯାଇଛି ଏବଂ ଏଠାରେ ତାହାକୁ ପରମାତ୍ମପ୍ରାପ୍ତି ବୋଲି କୁହାଯାଉଛି।— ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ସେଠାରେ ଯୋଗରୂପୀ ସାଧନା କରିବାକୁ ଚେଷ୍ଟା କରିବା କଥା କୁହାଯାଇଛି ଏବଂ ଏଠାରେ ସ୍ଥିରବୁଦ୍ଧି ହୋଇଯିବା ପରେ ଫଳରୂପରେ ପ୍ରାପ୍ତ ହେଉଥିବା ଯୋଗ କଥା କୁହାଯାଇଛି। ତେଣୁ ଏଠାରେ 'ଯୋଗ' ଶବ୍ଦ ପରମାତ୍ମାଙ୍କ ପ୍ରାପ୍ତି ବାଚକ ଅଟେ। ନିମ୍ନଲିଖିତ କେତେକ ଉଦାହରଣ ଅନୁସାରେ ଗୀତାରେ 'ଯୋଗ' ଏବଂ 'ଯୋଗୀ' ଶବ୍ଦ ପ୍ରସଙ୍ଗାନୁକୂଳ ବିଭିନ୍ନ ଅର୍ଥରେ ପ୍ରୟୋଗ କରାଯାଇଛି।

## ଯୋଗ

**(୧) କର୍ମଯୋଗ –** (୬/୩) – ଏଠାରେ ଯୋଗାରୂଢ଼ ହେବାକୁ ଇଚ୍ଛା କରୁଥିବା ଲୋକଙ୍କ ପାଇଁ କର୍ମ କର୍ତ୍ତବ୍ୟ ବୋଲି କୁହାଯାଇଛି। ତେଣୁ ଏଠାରେ 'ଯୋଗ' ଶବ୍ଦ କର୍ମଯୋଗର ବାଚକ।

**(୨) ଧ୍ୟାନଯୋଗ –** (୬/୧୯) – ବାୟୁ ଚଳପ୍ରଚଳ ହେଉ ନ ଥିବା ସ୍ଥାନରେ ସ୍ଥିର ଦୀପଶିଖାପରି ଚିତ୍ତର ଅତ୍ୟନ୍ତ ସ୍ଥିରତାର ବର୍ଣ୍ଣନା ହୋଇଥିବାରୁ ଏଠାରେ 'ଯୋଗ' ଶବ୍ଦ ଧ୍ୟାନଯୋଗର ବାଚକ।

**(୩) ସମତ୍ୱଯୋଗ –** (୨/୪୮) – ଯୋଗରେ ସ୍ଥିତ ହୋଇ, ଆସକ୍ତିରହିତ ହୋଇ ତଥା ସିଦ୍ଧି ଓ ଅସିଦ୍ଧିରେ ସମବୁଦ୍ଧି ହୋଇ କର୍ମ କରିବାକୁ ଆଜ୍ଞା ଦିଆଯାଇଥିବାରୁ ଏଠାରେ 'ଯୋଗ' ଶବ୍ଦ ସମତ୍ୱଯୋଗର ବାଚକ।

**(୪) ଭଗବତ୍-ପ୍ରଭାବରୂପକ ଯୋଗ –** (୯/୫) – ଏଥିରେ ଆଶ୍ଚର୍ଯ୍ୟଜନକ ପ୍ରଭାବ ଦେଖାଇବା କଥାର ବର୍ଣ୍ଣନା ହୋଇଥିବାରୁ 'ଯୋଗ' ହେଉଛି ଶକ୍ତି ବା ପ୍ରଭାବର ବାଚକ।

**(୫) ଭକ୍ତିଯୋଗ –** (୧୪/୨୬) – ନିରନ୍ତର ଅବ୍ୟଭିଚାରରୂପରେ ଭଜନ କରିବାର ଉଲ୍ଲେଖ ହୋଇଥିବାରୁ ଏଠାରେ 'ଯୋଗ' ଶବ୍ଦ ଭକ୍ତିଯୋଗର ବାଚକ। ଏଠାରେ 'ଭକ୍ତିଯୋଗ' ଶବ୍ଦ ସ୍ପଷ୍ଟ ଉଲ୍ଲେଖ କରାଯାଇଛି।

**(୬) ଅଷ୍ଟାଙ୍ଗଯୋଗ –** (୪/୨୮) – ଏଠାରେ 'ଯୋଗ' ଶବ୍ଦକୁ ସାଂଖ୍ୟଯୋଗ କିମ୍ବା କର୍ମଯୋଗ ଅର୍ଥରେ ନିଆଯାଇପାରିବ ନାହିଁ। କାରଣ ଏହି ଦୁଇଟିଯାକ ଶବ୍ଦ ବ୍ୟାପକ ଅଟେ। ଏଠାରେ ଯଜ୍ଞ ନାମରେ ଯେଉଁ ସାଧନାଗୁଡ଼ିକର ବର୍ଣ୍ଣନା କରାଯାଇଛି, ତାହା ଏହି ଦୁଇ ଯୋଗର ଅନ୍ତର୍ଗତ। ତେଣୁ ଏଠାରେ 'ଯୋଗ' ଶବ୍ଦର ଅର୍ଥ କେବଳ ଅଷ୍ଟାଙ୍ଗଯୋଗ ବୋଲି ଧରାଯିବା ଠିକ୍ ହେବ।

**(୭) ସାଂଖ୍ୟଯୋଗ –** (୧୩/୨୪) – ଏଠାରେ ସାଂଖ୍ୟଯୋଗର ବିଶେଷଣରୂପେ ବ୍ୟବହୃତ ହୋଇଥିବାରୁ 'ଯୋଗ' ସାଂଖ୍ୟଯୋଗର ବାଚକ।

ଏପରିଭାବରେ ଅନ୍ୟ ସ୍ଥଳରେ ମଧ୍ୟ ପ୍ରସଙ୍ଗାନୁସାରେ ଯୋଗର ଅର୍ଥ କରିବାକୁ ହେବ।

## ଯୋଗୀ

**(୧) ଈଶ୍ୱର –** (୧୦/୧୭) – ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସମ୍ବୋଧନ କରାଯାଉଥିବାରୁ ଏଠାରେ 'ଯୋଗୀ' ଶବ୍ଦ ଈଶ୍ୱରଙ୍କ ବାଚକ।

**(୨) ଆତ୍ମଜ୍ଞାନୀ –** (୬/୩୨) – ସମସ୍ତଙ୍କୁ ନିଜପରି ଦେଖିବାର ବର୍ଣ୍ଣନା କରାଯାଇଥିବାରୁ ଏଠାରେ 'ଯୋଗୀ' ଶବ୍ଦ ଆତ୍ମଜ୍ଞାନୀଙ୍କ ବାଚକ।

**(୩) ସିଦ୍ଧଭକ୍ତ –** (୧୨/୧୪) – ପରମାତ୍ମାଙ୍କ ଠାରେ ମନ ଓ ବୁଦ୍ଧି ଅର୍ପଣ କରିଦେବାକୁ ନିର୍ଦ୍ଦେଶ ଦିଆଯାଉଥିବାରୁ ତଥା ମଦ୍‌ଭକ୍ତର ବିଶେଷଣ ହୋଇଥିବାରୁ, ଏଠାରେ 'ଯୋଗୀ' ଶବ୍ଦ ସିଦ୍ଧଭକ୍ତଙ୍କ ବାଚକ।

**(୪) କର୍ମଯୋଗୀ –** (୫/୧୧) – ଆସକ୍ତି ତ୍ୟାଗ କରି ଆତ୍ମଶୁଦ୍ଧିପାଇଁ କର୍ମ କରିବାକୁ କୁହାଯାଇଥିବାରୁ ଏଠାରେ 'ଯୋଗୀ' ଶବ୍ଦ କର୍ମଯୋଗୀଙ୍କ ବାଚକ।

**(୫) ସାଂଖ୍ୟଯୋଗୀ –** (୫/୨୪) – ଅଭେଦରୂପରେ ବ୍ରହ୍ମପ୍ରାପ୍ତି ଏହାର ଫଳ ହୋଇଥିବାରୁ, ଏଠାରେ 'ଯୋଗୀ' ଶବ୍ଦ ସାଂଖ୍ୟଯୋଗୀଙ୍କ ବାଚକ।

**(୬) ଭକ୍ତିଯୋଗୀ –** (୮/୧୪) – ଅନନ୍ୟ ଚିତ୍ତରେ ନିତ୍ୟନିରନ୍ତର ଭଗବତ୍ ସ୍ମରଣର ଉଲ୍ଲେଖ ଥିବା କାରଣରୁ ଏଠାରେ 'ଯୋଗୀ' ଶବ୍ଦ ଭକ୍ତିଯୋଗୀଙ୍କ ବାଚକ।

**(୭) ସାଧକଯୋଗୀ –** (୬/୪୫) – ପ୍ରଯତ୍ନରୁ ପରମଗତି ମିଳିବାର ଉଲ୍ଲେଖ ଥିବାରୁ ଏଠାରେ 'ଯୋଗୀ' ଶବ୍ଦ ସାଧକଯୋଗୀଙ୍କ ବାଚକ।

**(୮) ଧ୍ୟାନଯୋଗୀ –** (୬/୧୦) – ଏକାନ୍ତ ସ୍ଥାନରେ ରହି ମନକୁ ଏକାଗ୍ର କରି ଆତ୍ମାକୁ ପରମାତ୍ମାଙ୍କ ଠାରେ ଲଗାଇଦେବାର ପ୍ରେରଣା ଥିବାରୁ ଏଠାରେ 'ଯୋଗୀ' ଶବ୍ଦ ଧ୍ୟାନଯୋଗୀଙ୍କ ବାଚକ।

**(୯) ସକାମକର୍ମୀ –** (୮/୨୫) – ଫେରି ଆସିବାର ଉଲ୍ଲେଖ ଥିବାରୁ ଏଠାରେ 'ଯୋଗୀ' ଶବ୍ଦ ସକାମକର୍ମୀର ବାଚକ।

*ସମ୍ବନ୍ଧ – ପୂର୍ବଶ୍ଲୋକମାନଙ୍କରେ ଭଗବାନ୍ କହିଲେ, ''ଯେତେବେଳେ ତୁମର ବୁଦ୍ଧି ମୋହରୂପୀ ପଙ୍କକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରିଯିବ ଏବଂ ତୁମେ ଇହଲୋକ ଓ ପରଲୋକର ସମସ୍ତ ଭୋଗ ପ୍ରତି ବିରକ୍ତ ହୋଇଯିବ, ତୁମର ବୁଦ୍ଧି ପରମାତ୍ମାଙ୍କ ଠାରେ ନିଶ୍ଚଳ ହୋଇ ଲାଗିଯିବ, ସେତେବେଳେ ତୁମେ ପରମାତ୍ମାଙ୍କୁ ପାଇପାରିବ।'' ଏହା ଶୁଣି ପରମାତ୍ମାଙ୍କୁ ପ୍ରାପ୍ତି କରିଥିବା ସ୍ଥିତପ୍ରଜ୍ଞ ସିଦ୍ଧଯୋଗୀଙ୍କ ଲକ୍ଷଣ ଏବଂ ଆଚରଣ ଜାଣିବା ଇଚ୍ଛାରେ ଅର୍ଜ୍ଜୁନ ପଚାରୁଛନ୍ତି–*

### ଅର୍ଜୁନ ଉବାଚ

## ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
## ସ୍ଥିତଧୀ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍‌ ।। ୫୪ ।।

**ଅନ୍ୱୟ** – **କେଶବ** = ହେ କେଶବ; **ସମାଧିସ୍ଥସ୍ୟ** = ସମାଧିରେ ସ୍ଥିତ; **ସ୍ଥିତପ୍ରଜ୍ଞସ୍ୟ** = (ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା) ସ୍ଥିରବୁଦ୍ଧି ପୁରୁଷଙ୍କର; **କା**, **ଭାଷା** = ଲକ୍ଷଣ କଣ; **ସ୍ଥିତଧୀ** = ସ୍ଥିରବୁଦ୍ଧି ପୁରୁଷ; **କିମ୍‌**, **ପ୍ରଭାଷେତ** = କିପରି ବଚନ କହନ୍ତି; **କିମ୍‌** = କିପରି; **ଆସୀତ** = ବସନ୍ତି; **କିମ୍‌** = କିପରି; **ବ୍ରଜେତ** = ଚଳନ୍ତି ?

**ଅର୍ଜୁନ ପଚାରିଲେ — ହେ କେଶବ! ସମାଧିରେ ସ୍ଥିତ ପରମାତ୍ମପ୍ରାପ୍ତ ସ୍ଥିରବୁଦ୍ଧି ପୁରୁଷଙ୍କ ଲକ୍ଷଣ କ'ଣ? ସେହି ସ୍ଥିରବୁଦ୍ଧି ପୁରୁଷ କିପରି କହନ୍ତି, କିପରି ବସନ୍ତି ଏବଂ କିପରି ଚଳନ୍ତି?।। ୫୪ ।।**

**ପ୍ରଶ୍ନ** – ଏଠାରେ **କେଶବ** ସମ୍ବୋଧନର ଭାବ କଣ ?

**ଉତ୍ତର** – କ, ଅ, ଈଶ ଏବଂ ବ – ଏହି ଚାରିଟି ମିଶିଲେ **କେଶବ** ପଦ ହୁଏ । ଏଣୁ କ=ବ୍ରହ୍ମା, ଅ=ବିଷ୍ଣୁ, ଈଶ=ଶିବ — ଏହି ତିନିଜଣଙ୍କର ବ=ବପୁ ଅର୍ଥାତ୍‌ ସ୍ୱରୂପ ହେଉଛନ୍ତି **କେଶବ** । ଏଠାରେ ଅର୍ଜୁନ ଭଗବାନଙ୍କୁ 'କେଶବ' ନାମରେ ସମ୍ବୋଧନ କରି ଯେଉଁ ଭାବ ବ୍ୟକ୍ତ କରିଛନ୍ତି, ତାହା ହେଲା, ''ଆପଣ ସମସ୍ତ ଜଗତର ସୃଷ୍ଟି, ସ୍ଥିତି ଏବଂ ସଂହାରକର୍ତ୍ତା, ସର୍ବଶକ୍ତିମାନ୍‌ ସାକ୍ଷାତ୍‌ ସର୍ବଜ୍ଞ ଈଶ୍ୱର ଅଟନ୍ତି । ଏଣୁ ଆପଣ ହିଁ ମୋ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇପାରିବେ ।''

**ପ୍ରଶ୍ନ** – **ସ୍ଥିତପ୍ରଜ୍ଞସ୍ୟ** ପଦ ସହିତ **ସମାଧିସ୍ଥସ୍ୟ** ବିଶେଷଣ ପଦ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର** – ପୂର୍ବଶ୍ଳୋକରେ ଭଗବାନ୍‌ ଅର୍ଜୁନଙ୍କୁ କହିଥିଲେ, ''ଯେତେବେଳେ ତୁମର ବୁଦ୍ଧି ସମାଧିରେ ଅର୍ଥାତ୍‌ ପରମାତ୍ମାଙ୍କ ଠାରେ ଅଚଳଭାବରେ ଲାଗିଯିବ, ସେତେବେଳେ ତୁମେ ଯୋଗପ୍ରାପ୍ତ ହୋଇଯିବ ।'' ସେହି ଅନୁସାରେ ଏଠାରେ ଅର୍ଜୁନ ଭଗବାନଙ୍କ ଠାରୁ ସେହି ସିଦ୍ଧପୁରୁଷଙ୍କର ଲକ୍ଷଣ ଜାଣିବାକୁ ଇଚ୍ଛା କରୁଛନ୍ତି, ଯାହାଙ୍କର କି ପରମାତ୍ମପ୍ରାପ୍ତି ହୋଇସାରିଛି ଏବଂ ଯାହାଙ୍କର ବୁଦ୍ଧି ପରମାତ୍ମାଙ୍କ ଠାରେ ଚିରକାଳଲାଗି ଅଚଳ ଓ ସ୍ଥିର ହୋଇଯାଇଛି । ଏହି ଭାବ ସ୍ପଷ୍ଟ କରିବାକୁ **ସ୍ଥିତପ୍ରଜ୍ଞସ୍ୟ** ସହିତ **ସମାଧିସ୍ଥସ୍ୟ** ବିଶେଷଣ ପଦ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ** – ଉପରୋକ୍ତ ଅବସ୍ଥାକୁ ପରମାତ୍ମପ୍ରାପ୍ତ ସିଦ୍ଧପୁରୁଷଙ୍କ ଅକ୍ରିୟ-ଅବସ୍ଥା ନା ସକ୍ରିୟ-ଅବସ୍ଥା ବୋଲି ଗ୍ରହଣ କରିବାକୁ ହେବ ?

**ଉତ୍ତର** – ଉଭୟ ଅବସ୍ଥା ବୋଲି ମାନିବାକୁ ହେବ । ଅର୍ଜୁନ ମଧ୍ୟ ଏଠାରେ ତୁଇଟି କଥା ପଚାରିଛନ୍ତି, **କିଂ ପ୍ରଭାଷେତ** ଏବଂ **କିଂ ବ୍ରଜେତ**ଦ୍ୱାରା ସକ୍ରିୟ ଅବସ୍ଥା ବିଷୟରେ ଏବଂ **କିମାସୀତ**ଦ୍ୱାରା ଅକ୍ରିୟଅବସ୍ଥା ବିଷୟରେ ପ୍ରଶ୍ନ କରିଛନ୍ତି ।

**ପ୍ରଶ୍ନ** – **ଭାଷା** ଶବ୍ଦର ଅର୍ଥ **ବାଣୀ** ନ କରି **ଲକ୍ଷଣ** କିପରି କଲେ ?

**ଉତ୍ତର** – ସ୍ଥିରବୁଦ୍ଧି ପୁରୁଷଙ୍କର **ବାଣୀ** ବିଷୟରେ **କିଂ ପ୍ରଭାଷେତ** ଅର୍ଥାତ୍‌ ସେ କିପରି କହନ୍ତି ବୋଲି ଅଲଗା ପ୍ରଶ୍ନ ପଚରାଯାଇଛି । ତେଣୁ ଏଠାରେ **ଭାଷା** ଶବ୍ଦର ଅର୍ଥ **ବାଣୀ** ନ କରି **ଭାଷ୍ୟତେ କଥ୍ୟତେ ଅନୟା ଇତି ଭାଷା** – ଯାହାଦ୍ୱାରା ବସ୍ତୁର ସ୍ୱରୂପ ନିରୂପଣ କରାଯାଏ, ସେହି ଲକ୍ଷଣର ନାମ ଭାଷା – ଏହି ବ୍ୟୁତ୍ପତ୍ତି ଅନୁସାରେ ଭାଷାର ଅର୍ଥ 'ଲକ୍ଷଣ' କରାଯାଇଛି । ପ୍ରଚଳିତ ଭାଷାରେ ମଧ୍ୟ 'ପରିଭାଷା' ଶବ୍ଦ ଲକ୍ଷଣର ପର୍ଯ୍ୟାୟ ବାଚକ । ସେହି ଅର୍ଥରେ ଏଠାରେ **ଭାଷା** ପଦ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ** – ସ୍ଥିରବୁଦ୍ଧି ପୁରୁଷ କହନ୍ତି କିପରି ? ସେ ବସନ୍ତି କିପରି ? ଚଳନ୍ତି କିପରି ? –ଏହି ସମସ୍ତ ପ୍ରଶ୍ନ କଣ ସାଧାରଣ କହିବା, ବସିବା ଏବଂ ଚଲାବୁଲା କରିବା ଅର୍ଥରେ କରାଯାଇଛି, ନା ଏହାର କିଛି ବିଶେଷତ୍ୱ ରହିଛି ?

**ଉତ୍ତର** – ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସିଦ୍ଧ ପୁରୁଷଙ୍କର ସବୁକଥାରେ କିଛି ନା କିଛି ବିଶେଷତ୍ୱ ରହିଛି; ଅତଏବ ତାହାଙ୍କର କହିବା, ବସିବା, ଚାଲିବା ମଧ୍ୟ ଅସାଧାରଣ; କିନ୍ତୁ ଏଠାରେ ସାଧାରଣ କହିବା, ବସିବା ଏବଂ ଚାଲିବା କଥା ପଡ଼ି ନାହିଁ; ଏଠାରେ 'କିପରି କହନ୍ତି'ର ତାତ୍ପର୍ଯ୍ୟ ହେଲା, ତାଙ୍କର ବଚନ ମନର କେଉଁ ଭାବରେ ଭାବିତ ହୋଇଥାଏ; ବସିବାର ତାତ୍ପର୍ଯ୍ୟ ହେଲା, ବ୍ୟବହାରରହିତ କାଳରେ ତାଙ୍କର ଅବସ୍ଥା କିପରି ଥାଏ ଏବଂ ଚାଲିବାର ତାତ୍ପର୍ଯ୍ୟ ହେଲା, ତାଙ୍କର ଆଚରଣ କିପରି ହୁଏ ?

**ସମ୍ବନ୍ଧ –** ପୂର୍ବଶ୍ଳୋକରେ ଅର୍ଜୁନ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସିଦ୍ଧଯୋଗୀଙ୍କ ବିଷୟରେ ଚାରୋଟି ପ୍ରଶ୍ନ ପଚାରିଛନ୍ତି; ଏହି ଚାରୋଟି ପ୍ରଶ୍ନର ଉତ୍ତର ଭଗବାନ୍ ଅଧ୍ୟାୟର ସମାପ୍ତିପର୍ଯ୍ୟନ୍ତ ଦେଇଛନ୍ତି; ମଝିରେ ମଝିରେ ପ୍ରସଙ୍ଗକ୍ରମେ ଅନ୍ୟ କଥା ମଧ୍ୟ କହିଛନ୍ତି। ପରବର୍ତ୍ତୀ ଶ୍ଳୋକରେ ଅର୍ଜୁନଙ୍କର ପ୍ରଥମ ପ୍ରଶ୍ନର ଉତ୍ତର ଭଗବାନ୍ ସଂକ୍ଷେପରେ ଦେଉଛନ୍ତି–

ଶ୍ରୀଭଗବାନୁବାଚ

**ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍।**
**ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ।। ୫୫ ।।**

**ଅନ୍ୱୟ –** **ପାର୍ଥ** = ହେ ଅର୍ଜୁନ! **ଯଦା** = ଯେତେବେଳେ (ଏହି ପୁରୁଷ); **ମନୋଗତାନ୍** = ମନରେ ଥିବା; **ସର୍ବାନ୍** = ସମସ୍ତ; **କାମାନ୍** = କାମନାମାନଙ୍କୁ; **ପ୍ରଜହାତି** = ଭଲଭାବରେ ତ୍ୟାଗ କରିଦିଅନ୍ତି; **ଆତ୍ମନା** = ଆତ୍ମାଦ୍ୱାରା; **ଆତ୍ମନି** = ଆତ୍ମାରେ; **ଏବ** = ହିଁ; **ତୁଷ୍ଟଃ** = ସନ୍ତୁଷ୍ଟ ରହନ୍ତି; **ତଦା** = ସେହି ସମୟରେ (ତାଙ୍କୁ); **ସ୍ଥିତପ୍ରଜ୍ଞଃ** = ସ୍ଥିତପ୍ରଜ୍ଞ; **ଉଚ୍ୟତେ** = (ବୋଲି) କୁହାଯାଏ।

**ଶ୍ରୀଭଗବାନ୍ କହିଲେ – ହେ ଅର୍ଜୁନ! ଯେତେବେଳେ ଏହି ପୁରୁଷ ମନ ମଧ୍ୟରେ ଥିବା ସମସ୍ତ କାମନା ପୂର୍ଣ୍ଣରୂପେ ତ୍ୟାଗ କରିଦିଅନ୍ତି ଏବଂ ଆତ୍ମାଦ୍ୱାରା ଆତ୍ମାରେ ହିଁ ସନ୍ତୁଷ୍ଟ ହୋଇ ରହନ୍ତି, ସେତେବେଳେ ତାଙ୍କୁ ସ୍ଥିତପ୍ରଜ୍ଞ ବୋଲି କୁହାଯାଏ।। ୫୫ ।।**

**ପ୍ରଶ୍ନ –** **ସର୍ବାନ୍** ବିଶେଷଣ ସହିତ **କାମାନ୍** ପଦଟି କେଉଁମାନଙ୍କ ବାଚକ? ଏବଂ ସେମାନଙ୍କୁ 'ପୂର୍ଣ୍ଣରୂପେ ତ୍ୟାଗ କରିଦେବା' ଅର୍ଥ କଣ?

**ଉତ୍ତର –** ଇହଲୋକ ବା ପରଲୋକର ଯେକୌଣସି ପଦାର୍ଥର ସଂଯୋଗ ବା ବିୟୋଗଜନିତ ଯେକୌଣସି କାରଣରୁ, ଯେକୌଣସିପ୍ରକାରେ ମନୁଷ୍ୟର ଅନ୍ତଃକରଣରେ ଯେଉଁ ମନ୍ଦ ବା ତୀବ୍ର କାମନାମାନ ହୋଇଯାଏ, ସେହି ସମସ୍ତ କାମନାପାଇଁ **ସର୍ବାନ୍** ବିଶେଷଣ ସହିତ **କାମାନ୍** ପଦ ପ୍ରୟୋଗ କରାଯାଇଛି। ଏଥିରେ ବାସନା, ସ୍ପୃହା, ଇଚ୍ଛା ଏବଂ ତୃଷ୍ଣା ଆଦି ବିଭିନ୍ନ କାମନାର ରୂପ ରହିଛି। ଏହି ସମସ୍ତ କାମନାରୁ ସବୁକାଳପାଇଁ ସର୍ବଥା ରହିତ ହୋଇଯିବା ହିଁ ସେସବୁକୁ ପୂର୍ଣ୍ଣରୂପେ ତ୍ୟାଗ କରିଦେବା।

**ପ୍ରଶ୍ନ – ବାସନା, ସ୍ପୃହା, ଇଚ୍ଛା** ଓ **ତୃଷ୍ଣା –** ଏସବୁ ମଧ୍ୟରେ କି ପାର୍ଥକ୍ୟ ରହିଛି?

**ଉତ୍ତର –** ଶରୀର, ସ୍ତ୍ରୀ, ପୁତ୍ର, ଧନ, ମାନ, ପ୍ରତିଷ୍ଠା ଆଦି ଅନୁକୂଳ ପଦାର୍ଥ ରହିଥାଉ ଏବଂ ପ୍ରତିକୂଳ ପଦାର୍ଥ ନଷ୍ଟ ହୋଇଯାଉ ବୋଲି ଯେଉଁ ରାଗଦ୍ୱେଷଜନିତ ସୂକ୍ଷ୍ମ କାମନା ହୁଏ, ଯାହାର ସ୍ୱରୂପ ବିକଶିତ ହୋଇ ନ ଥାଏ, ତାହାକୁ **ବାସନା** କହନ୍ତି। କୌଣସି ଅନୁକୂଳ ପଦାର୍ଥର ଅଭାବ ବୋଧ ହେଲେ ଚିତ୍ତରେ ଏକ ଭାବ ସୃଷ୍ଟି ହୁଏ, 'ମୋର ଅମୁକ ବସ୍ତୁ ଆବଶ୍ୟକ; ତାହା ନ ହେଲେ କାମ ଚଳିବ ନାହିଁ।'— ଏହି ଅପେକ୍ଷାରୂପୀ କାମନାର ନାମ **ସ୍ପୃହା**। ଏହା ହେଉଛି କାମନାର ବାସନା ଅପେକ୍ଷା ଅଧିକ ବିକଶିତ ରୂପ। ଅନୁକୂଳ ବସ୍ତୁର ଅଭାବ ହେଲେ ତାହା ମିଳୁ ବୋଲି ଏବଂ ପ୍ରତିକୂଳ ବସ୍ତୁର ବିନାଶ ହେଉ ବା ତାହା ନ ମିଳୁ ବୋଲି ଯେଉଁ କାମନା ପ୍ରକଟ ହୁଏ, ତାହାର ନାମ **ଇଚ୍ଛା**; ଏହା କାମନାର ପୂର୍ଣ୍ଣ ବିକଶିତ ରୂପ। ସ୍ତ୍ରୀ, ପୁତ୍ର, ଧନ ଆଦି ପଦାର୍ଥ ଯଥେଷ୍ଟ ମିଳିଥିଲେ ମଧ୍ୟ ସେସବୁକୁ ଆହୁରି ଆହୁରି ବଢ଼ାଇବାକୁ ଯେଉଁ ଇଚ୍ଛା ହୁଏ, ତାହାକୁ **ତୃଷ୍ଣା** କହନ୍ତି। ଏହା କାମନାର ଅତ୍ୟନ୍ତ ସ୍ଥୂଳରୂପ ଅଟେ।

**ପ୍ରଶ୍ନ –** ଏଠାରେ **କାମାନ୍** ସହିତ **ମନୋଗତାନ୍** ବିଶେଷଣ ପଦଟି ଦେବାର ଅଭିପ୍ରାୟ କଣ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କାମନାର ବାସସ୍ଥାନ ହେଉଛି ମନ (୩/୪୦); ଅତଏବ ଯେତେବେଳେ ବୁଦ୍ଧି ସହିତ ମନ ମଧ୍ୟ ପରମାତ୍ମାଙ୍କ ଠାରେ ଅଚଳ ଓ ସ୍ଥିର ହୋଇଯାଏ, ସେତେବେଳେ ମନ କାମନାଶୂନ୍ୟ ହୋଇଯାଏ। ଏଥିରୁ ବୁଝିବା ଉଚିତ ଯେ, ଯେପର୍ଯ୍ୟନ୍ତ ସାଧକଙ୍କ ମନରେ ଥିବା କାମନାସବୁ ପୂର୍ଣ୍ଣରୂପେ ନଷ୍ଟ ନ ହୋଇଛି, ସେପର୍ଯ୍ୟନ୍ତ ତାଙ୍କର ବୁଦ୍ଧି ସ୍ଥିର ହୋଇପାରିବ ନାହିଁ।

**ପ୍ରଶ୍ନ –** ଆତ୍ମାଦ୍ୱାରା ଆତ୍ମାରେ ସନ୍ତୁଷ୍ଟ ହୋଇ ରହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଅନ୍ତଃକରଣରେ ଥିବା କାମନାମାନଙ୍କର ସମ୍ପୂର୍ଣ୍ଣ ବିନାଶ ହୋଇଯିବା ପରେ, ସମସ୍ତ ଦୃଶ୍ୟଜଗତରୁ ସର୍ବଥା ଅତୀତ ନିତ୍ୟ, ଶୁଦ୍ଧ, ବୁଦ୍ଧ ପରମାତ୍ମାଙ୍କର ଯଥାର୍ଥ ସ୍ୱରୂପକୁ ପ୍ରତ୍ୟକ୍ଷ କରିନେଇ ସେଥିରେ ଯେ ନିତ୍ୟତୃପ୍ତ ହୋଇଯାଆନ୍ତି, ସେ ଆତ୍ମାଦ୍ୱାରା ଆତ୍ମାରେ ସନ୍ତୁଷ୍ଟ ହୋଇ ରହନ୍ତି । ତୃତୀୟ ଅଧ୍ୟାୟର ସତର ଶ୍ଳୋକରେ ମଧ୍ୟ ମହାପୁରୁଷଙ୍କ ଲକ୍ଷଣରେ ଆତ୍ମାରେ ତୃପ୍ତ ଏବଂ ଆତ୍ମାରେ ସନ୍ତୁଷ୍ଟ ରହିବାର କଥା କୁହାଯାଇଛି ।

**ପ୍ରଶ୍ନ –** 'ସେତେବେଳେ ତାଙ୍କୁ ସ୍ଥିତପ୍ରଜ୍ଞ କୁହାଯାଏ' – ଏପରି କହିବାର ଅର୍ଥ କଣ ?

**ଉତ୍ତର –** ଏପରି କହିବାର ତାତ୍ପର୍ଯ୍ୟ ହେଉଛି, କର୍ମଯୋଗ ସାଧନା କରୁ କରୁ ଯୋଗୀ ଯେତେବେଳେ ଉପରୋକ୍ତ ସ୍ଥିତିରେ ପହଞ୍ଚନ୍ତି, ସେତେବେଳେ ବୁଝିବାକୁ ହେବ ଯେ, ତାଙ୍କର ବୁଦ୍ଧି ପରମାତ୍ମାଙ୍କ ଠାରେ ଅଚଳଭାବରେ ସ୍ଥିର ହୋଇଯାଇଛି ଅର୍ଥାତ୍ ସେହି ଯୋଗୀ ପରମାତ୍ମାଙ୍କୁ ପ୍ରାପ୍ତ ହୋଇ ସାରିଛନ୍ତି ।

*__ସମ୍ବନ୍ଧ –__ ସ୍ଥିତପ୍ରଜ୍ଞଙ୍କ ବିଷୟରେ ଅର୍ଜୁନ ଚାରୋଟି ପ୍ରଶ୍ନ ପଚାରିଥିଲେ । ତାହା ଭିତରୁ ପ୍ରଥମ ପ୍ରଶ୍ନଟି ଏପରି ବ୍ୟାପକ ଯେ, ତା' ଭିତରେ ଅବଶିଷ୍ଟ ତିନୋଟି ପ୍ରଶ୍ନର ଅନ୍ତର୍ଭାବ ଆସିଯାଉଛି । ସେହି ଦୃଷ୍ଟିରୁ ଦେଖିଲେ, ଏହି ଅଧ୍ୟାୟର ଶେଷପର୍ଯ୍ୟନ୍ତ ସେହି ଗୋଟିଏମାତ୍ର ପ୍ରଶ୍ନର ଉତ୍ତର ରହିଛି । କିନ୍ତୁ ଅନ୍ୟ ତିନୋଟି ପ୍ରଶ୍ନର ପ୍ରଭେଦ ଜାଣିବାପାଇଁ ଏତିକି ବୁଝିବା ଉଚିତ ଯେ, ଆସନ୍ତା ଦୁଇଟି ଶ୍ଳୋକରେ ଦ୍ୱିତୀୟ ପ୍ରଶ୍ନଟିର ଅର୍ଥାତ୍ 'ସ୍ଥିତପ୍ରଜ୍ଞ କିପରି କହନ୍ତି ?' ପ୍ରଶ୍ନର ଉତ୍ତର ଦିଆଯାଉଛି—*

**ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ ।**
**ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ ॥ ୫୬ ॥**

**ଅନ୍ୱୟ –** **ଦୁଃଖେଷୁ** = ଦୁଃଖମାନଙ୍କ ପ୍ରାପ୍ତିରେ; **ଅନୁଦ୍ୱିଗ୍ନମନାଃ** = ଯାହାଙ୍କ ମନରେ ଉଦ୍‌ବେଗ ହୁଏ ନାହିଁ; **ସୁଖେଷୁ** = ସୁଖମାନଙ୍କ ପ୍ରାପ୍ତିରେ; **ବିଗତସ୍ପୃହଃ** = ଯେ ସର୍ବଥା ନିଃସ୍ପୃହ ରହନ୍ତି; **ବୀତରାଗଭୟକ୍ରୋଧଃ** = ଯାହାଙ୍କର ରାଗ, ଭୟ ଓ କ୍ରୋଧ ନଷ୍ଟ ହୋଇଯାଇଛି (ସେହି); **ମୁନିଃ** = ମୁନି; **ସ୍ଥିତଧୀଃ** = ସ୍ଥିରବୁଦ୍ଧି; **ଉଚ୍ୟତେ** = କୁହାଯାଆନ୍ତି ।

**ଦୁଃଖ ଆସିଗଲେ ବି ଯାହାଙ୍କ ମନରେ ଉଦ୍‌ବେଗ ଜାତ ହୁଏ ନାହିଁ, ସୁଖ ମିଳିଗଲେ ବି ଯେ ସର୍ବଥା ନିଃସ୍ପୃହ ରହନ୍ତି, ଯାହାଙ୍କର ରାଗ, ଭୟ ଓ କ୍ରୋଧ ନଷ୍ଟ ହୋଇଯାଇଛି, ସେହିପରି ମୁନିଙ୍କୁ ସ୍ଥିରବୁଦ୍ଧି କୁହାଯାଏ ।॥ ୫୬ ॥**

**ପ୍ରଶ୍ନ – ଦୁଃଖେଷୁ ଅନୁଦ୍ୱିଗ୍ନମନାଃ –** ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ସ୍ଥିରବୁଦ୍ଧି ମନୁଷ୍ୟର ଅନ୍ତଃକରଣରେ ସର୍ବଥା ଉଦ୍‌ବେଗର ଅଭାବ ଥାଏ ବୋଲି କୁହାଯାଇଛି । ଅଭିପ୍ରାୟ ଏହି ଯେ, ଯାହାଙ୍କର ବୁଦ୍ଧି ପରମାତ୍ମାଙ୍କ ସ୍ୱରୂପରେ ଅଟଳ ବା ସ୍ଥିର ହୋଇଯାଏ, ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସେହି ମହାପୁରୁଷଙ୍କର ସାଧାରଣ ଦୁଃଖ କଥା କଣ କହିବା, ଘୋର ଦୁଃଖ ମଧ୍ୟ ତାଙ୍କୁ ସେହି ସ୍ଥିତିରୁ ବିଚଳିତ କରିପାରେ ନାହିଁ (୬/୨୨) । ଶସ୍ତ୍ରଦ୍ୱାରା ଶରୀରରେ ଆଘାତ, ଅତ୍ୟନ୍ତ ଦୁଃସହ ଶୀତ, ଉଷ୍ଣ, ବର୍ଷା ଓ ବିଜୁଳି ଆଦିଦ୍ୱାରା ହେଉଥିବା ଶାରୀରିକ ପୀଡ଼ା, ଅତି ଉତ୍କଟ ରୋଗଜନିତ ବ୍ୟଥା, ଅତି ପ୍ରିୟବସ୍ତୁର ଆକସ୍ମିକ ବିୟୋଗ, ଅକାରଣରେ ଘୋର ସାଂସାରିକ ଅପମାନ, ତିରସ୍କାର ଓ ନିନ୍ଦା ଆଦି ପ୍ରାପ୍ତ ହେଲେ ତଥା ଅନ୍ୟାନ୍ୟ ଯେତେ ଦୁଃଖ ଆସି ଏକସଙ୍ଗରେ ଉପସ୍ଥିତ ହେଲେ ମଧ୍ୟ ତାଙ୍କ ମନରେ ସାମାନ୍ୟମାତ୍ର ଉଦ୍‌ବେଗ ସୃଷ୍ଟି ହୁଏ ନାହିଁ । ଏହି କାରଣ ନେଇ ତାଙ୍କ କଥାରେ ମଧ୍ୟ କଦାପି ଉଦ୍‌ବେଗ ପ୍ରକାଶ ପାଏ ନାହିଁ । ଯଦି କେବେ ଲୋକସଂଗ୍ରହପାଇଁ ତାଙ୍କର ବାଣୀ ବା ଶରୀରଦ୍ୱାରା ଉଦ୍‌ବେଗ ପ୍ରକାଶ ପାଏ, ତେବେ ତାହା ବାସ୍ତବରେ ଉଦ୍‌ବେଗ ନୁହେଁ ।

**ପ୍ରଶ୍ନ – ସୁଖେଷୁ ବିଗତସ୍ପୃହଃ**ର ଅର୍ଥ କଣ ?

**ଉତ୍ତର –** ଏହାଦ୍ୱାରା ସ୍ଥିରବୁଦ୍ଧି ମନୁଷ୍ୟଙ୍କ ଅନ୍ତଃକରଣରେ ସ୍ପୃହାରୂପକ ଦୋଷ ଆଦୌ ନ ଥାଏ ବୋଲି ଦର୍ଶାଯାଇଛି । ସେ ସୁଖ ଓ ଦୁଃଖ ଉଭୟ ପରିସ୍ଥିତିରେ ସଦା ସମ ରହନ୍ତି (୧୨/୧୩; ୧୪/୨୪),

ବଡ଼ ବଡ଼ ଦୁଃଖ ଯେପରି ତାଙ୍କୁ ତାଙ୍କ ସ୍ଥିତିରୁ ବିଚଳିତ କରିପାରେ ନା, ବିରାଟ ସୁଖ ମଧ୍ୟ ସେହିପରି ତାଙ୍କ ଅନ୍ତଃକରଣରେ ଟିକିଏ ବି ସ୍ପୃହା ଉତ୍ପନ୍ନ କରିପାରେ ନାହିଁ; କାରଣ ତାଙ୍କ ବାଣୀରେ କଦାପି ସ୍ପୃହା-ଦୋଷ ନ ଥାଏ। ଯଦି ଲୋକସଂଗ୍ରହପାଇଁ ତାଙ୍କ ଶରୀର ଅଥବା ବାଣୀରେ ସ୍ପୃହା ଦେଖାଯାଏ, ତେବେ ମଧ୍ୟ ତାହା ବାସ୍ତବ ସ୍ପୃହା ନୁହେଁ।

**ପ୍ରଶ୍ନ —** ବୀତରାଗଭୟକ୍ରୋଧଃର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ସ୍ଥିରବୁଦ୍ଧି ଯୋଗୀଙ୍କ ଅନ୍ତଃକରଣରେ ଏବଂ ବାଣୀରେ ଆସକ୍ତି, ଭୟ ଏବଂ କ୍ରୋଧର ସର୍ବଥା ଅଭାବ ଥିବା କଥା କୁହାଯାଇଛି। ଅଭିପ୍ରାୟ ଏହି ଯେ, କୌଣସି ବି ପରିସ୍ଥିତିରେ ବା କୌଣସି ବି ଘଟଣାରେ ତାଙ୍କ ଅନ୍ତଃକରଣରେ କୌଣସିପ୍ରକାର ଆସକ୍ତି ଉତ୍ପନ୍ନ ହୁଏ ନାହିଁ, କି କୌଣସିପ୍ରକାର ଭୟ ବା କ୍ରୋଧ ଉତ୍ପନ୍ନ ହୁଏ ନାହିଁ। ତେଣୁ ତାଙ୍କ ବାଣୀ ଆସକ୍ତି, ଭୟ, କ୍ରୋଧ ଇତ୍ୟାଦିରୁ ରହିତ ତଥା ଶାନ୍ତ ଓ ସରଳ ହୋଇଥାଏ। ଲୋକସଂଗ୍ରହପାଇଁ ତାଙ୍କ ଶରୀର ଓ ବାଣୀର କ୍ରିୟାଦ୍ୱାରା ଆସକ୍ତି, ଭୟ ଓ କ୍ରୋଧର ଭାବ ଦେଖାଯାଉଥାଇପାରେ, କିନ୍ତୁ ତାଙ୍କ ବାଣୀରେ ବା ମନରେ ବାସ୍ତବରେ କୌଣସିପ୍ରକାର ବିକାର ନ ଥାଏ। ନିଜ କଥାକୁ ସମସ୍ତପ୍ରକାରେ ବିକାରଶୂନ୍ୟ କରି କହିବା ଯେକୌଣସି ଧୈର୍ଯ୍ୟଶୀଳ ବୁଦ୍ଧିମାନ୍ ପୁରୁଷଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୋଇପାରେ, କିନ୍ତୁ ତାଙ୍କର ଅନ୍ତଃକରଣ ବିକାରଶୂନ୍ୟ ହୋଇ ରହିପାରେ ନାହିଁ। ତେଣୁ ଭଗବାନ୍ ଏଠାରେ 'ସ୍ଥିରବୁଦ୍ଧି ପୁରୁଷ କିପରି କହନ୍ତି ?' —ଏହି ପ୍ରଶ୍ନର ଉତ୍ତରରେ ତାଙ୍କ ବାଣୀର ବାହ୍ୟ ଭାବକୁ ନ ଦେଖି ମନର ଭାବକୁ ବର୍ଣ୍ଣନା କରିଛନ୍ତି। ଏଥିରୁ ଏତିକି ବୁଝିବା ଉଚିତ ଯେ, ସ୍ଥିରବୁଦ୍ଧି ଯୋଗୀଙ୍କର ବାଣୀ ମଧ୍ୟ ବାସ୍ତବରେ ତାଙ୍କ ଅନ୍ତକରଣର ଅନୁରୂପ ସର୍ବଥା ନିର୍ବିକାର ଓ ଶୁଦ୍ଧ ହୋଇଥାଏ।

**ପ୍ରଶ୍ନ —** "ସେପରି ମୁନିଙ୍କୁ ସ୍ଥିରବୁଦ୍ଧି କୁହାଯାଏ"—ଏହି ବକ୍ତବ୍ୟର ଭାବ କଣ ?

**ଉତ୍ତର —** ଉପରୋକ୍ତ ଲକ୍ଷଣରେ ଯୁକ୍ତ ଯୋଗୀ ବାସ୍ତବରେ 'ମୁନି' ଅଟନ୍ତି ଅର୍ଥାତ୍ ତାଙ୍କ କଥାରେ ସଂଯମ ଥାଏ ଏବଂ ସେ ସ୍ଥିରବୁଦ୍ଧି ଅଟନ୍ତି। ଯାହାଙ୍କ ଅନ୍ତଃକରଣ ଓ ଇନ୍ଦ୍ରିୟଗୁଡ଼ିକ ବିକାରପୂର୍ଣ୍ଣ ହୋଇ ରହିଥାଏ, ସେ ବାଣୀରେ ସଂଯତ ହେଲେ ମଧ୍ୟ, ସ୍ଥିରବୁଦ୍ଧି ହୋଇପାରନ୍ତି ନାହିଁ।

**ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍ ।**
**ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୫୭ ॥**

**ଅନ୍ୱୟ —** ଯଃ = ଯେଉଁ ପୁରୁଷ; ସର୍ବତ୍ର = ସବୁଠାରେ; ଅନଭିସ୍ନେହଃ = ସ୍ନେହରହିତ ହୋଇ; ତତ୍ ତତ୍ = ସେହି ସେହି; ଶୁଭାଶୁଭମ୍ = ଶୁଭ ବା ଅଶୁଭ(ବସ୍ତୁ)କୁ; ପ୍ରାପ୍ୟ = ପ୍ରାପ୍ତ ହୋଇ; ନ, ଅଭିନନ୍ଦତି = ପ୍ରସନ୍ନ ହୁଏ ନାହିଁ; ନ, ଦ୍ୱେଷ୍ଟି = (କି) ଦ୍ୱେଷ କରେ ନାହିଁ; ତସ୍ୟ = ତାଙ୍କର; ପ୍ରଜ୍ଞା = ବୁଦ୍ଧି; ପ୍ରତିଷ୍ଠିତା = ସ୍ଥିର ଅଟେ।

**ଯେଉଁ ପୁରୁଷ ସର୍ବତ୍ର ସ୍ନେହରହିତ ହୋଇ ଶୁଭ ବସ୍ତୁ ପାଇଲେ ପ୍ରସନ୍ନ ହୁଅନ୍ତି ନାହିଁ, କି ଅଶୁଭ ବସ୍ତୁ ପାଇଲେ ଦ୍ୱେଷ କରନ୍ତି ନାହିଁ, ତାଙ୍କର ବୁଦ୍ଧି ସ୍ଥିର ଅଟେ॥ ୫୭ ॥**

**ପ୍ରଶ୍ନ —** ସର୍ବତ୍ର ଅନଭିସ୍ନେହର ଭାବ କଣ ?

**ଉତ୍ତର —** ଏହା କହି ଭଗବାନ୍ ଦର୍ଶାଇଛନ୍ତି ଯେ, ସ୍ଥିରବୁଦ୍ଧିଯୋଗୀପୁରୁଷଙ୍କ ଠାରେ ଅଭିସ୍ନେହ ଅର୍ଥାତ୍ ମମତାପୂର୍ବକ ହେଉଥିବା ସାଂସାରିକ ଆସକ୍ତିର ସର୍ବଥା ଅଭାବ ଥାଏ। ଅଭିପ୍ରାୟ ଏହି ଯେ, ସାଂସାରିକ ମନୁଷ୍ୟ ଯେପରି ନିଜର ସ୍ତ୍ରୀ, ପୁତ୍ର, ଭାଇ, ମିତ୍ର ଏବଂ କୁଟୁମ୍ବ ଆଦିରେ ମମତା ଏବଂ ଆସକ୍ତି ରଖେ, ଦିନରାତି ସେମାନଙ୍କ ଠାରେ ମୋହିତ ହୋଇ ରହେ; ତା'ର ପ୍ରତ୍ୟେକ କଥାରେ ଯେପରି ସେହି ମୋହଯୁକ୍ତ ସ୍ନେହର ଭାବ ଭରି ହୋଇ ରହିଥାଏ, ସ୍ଥିରବୁଦ୍ଧିଯୋଗୀଙ୍କ ଠାରେ ସେପରି ଭାବ ନ ଥାଏ। ତାଙ୍କର କୌଣସି ବି ପ୍ରାଣୀଠାରେ ମମତା ଓ ଆସକ୍ତିଯୁକ୍ତ ପ୍ରେମ ନ ଥାଏ। ତେଣୁ ତାଙ୍କର ବଚନ ମମତା ଓ ଆସକ୍ତିଦୋଷରୁ ରହିତ ହୋଇ ସର୍ବଥା ଶୁଦ୍ଧ ଓ ପ୍ରେମମୟ ହୋଇଥାଏ। ଆସକ୍ତି ହେଉଛି କାମ, କ୍ରୋଧ ଆଦି ସମସ୍ତ ବିକାରର ମୂଳ। ତେଣୁ ଆସକ୍ତିଶୂନ୍ୟତାକୁ ଅନ୍ୟ ସମସ୍ତ ବିକାରର ଶୂନ୍ୟତା ବୋଲି ବୁଝିବାକୁ ହେବ।

**ପ୍ରଶ୍ନ – ଶୁଭାଶୁଭମ୍** ପଦଟି କାହାର ବାଚକ ଏବଂ ତାହା ସହିତ **ତତ୍** ପଦ ଦୁଇଥର ପ୍ରୟୋଗ କରିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଯାହାକୁ ପ୍ରିୟ-ଅପ୍ରିୟ ତଥା ଅନୁକୂଳ-ପ୍ରତିକୂଳ କହନ୍ତି, **ଶୁଭାଶୁଭମ୍** ହେଉଛି ତାହାର ବାଚକ। ସ୍ଥିରବୁଦ୍ଧିଯୋଗୀଙ୍କର ବାସ୍ତବରେ ସଂସାରର କୌଣସି ବି ବସ୍ତୁରେ ଅନୁକୂଳ ବା ପ୍ରତିକୂଳ ଭାବ ରହେ ନାହିଁ। କେବଳ ବ୍ୟାବହାରିକ ଦୃଷ୍ଟିରୁ ଯାହା ତାଙ୍କ ମନ, ଇନ୍ଦ୍ରିୟ ଓ ଶରୀରର ଅନୁକୂଳରୂପେ ଦେଖାଯାଏ, ତାହାକୁ ଶୁଭ, ଏବଂ ଯାହା ପ୍ରତିକୂଳରୂପେ ଦେଖାଯାଏ, ତାହାକୁ ଅଶୁଭ ବୋଲି କହିବା ପାଇଁ ଏଠାରେ **ଶୁଭାଶୁଭମ୍** ପଦ ଦିଆଯାଇଛି। ଏହି ସଂସାରରେ ଅନୁକୂଳ ଓ ପ୍ରତିକୂଳ ବସ୍ତୁର ସଂଖ୍ୟା ଅନନ୍ତ; ସେଥିମଧ୍ୟରୁ ଯେଉଁ ଯେଉଁ ବସ୍ତୁ ସହିତ ଯୋଗୀଙ୍କର ସଂଯୋଗ ହୁଏ, ସେହି ସେହି ବସ୍ତୁ ସହିତ ସଂଯୋଗରେ ତାଙ୍କର କିପରି ଭାବ ରହେ, ତାହା କହିବା ଲାଗି **ତତ୍** ପଦଟି ଦୁଇଥର ବ୍ୟବହାର କରାଯାଇଛି।

**ପ୍ରଶ୍ନ – ନାଭିନନ୍ଦତି**ର ଭାବ କଣ ?

**ଉତ୍ତର –** ଉପରୋକ୍ତ ଶୁଭାଶୁଭ ବସ୍ତୁମାନଙ୍କ ମଧ୍ୟରୁ କୌଣସି ଶୁଭ ବା ଅନୁକୂଳ ବସ୍ତୁର ସଂଯୋଗ ହୋଇଗଲେ ସାଧାରଣ ମନୁଷ୍ୟର ଅନ୍ତଃକରଣରେ ଅତ୍ୟନ୍ତ ଆନନ୍ଦ ଜାତ ହୁଏ; ତେଣୁ ସେ ଆନନ୍ଦରେ ବିଭୋର ହୋଇ ତାହା ଭାଷାରେ ପ୍ରକଟ କରେ ଏବଂ ସେହି ବସ୍ତୁର ସ୍ତୁତି ବା ପ୍ରଶଂସା କରେ; କିନ୍ତୁ ସ୍ଥିରବୁଦ୍ଧି ଯୋଗୀଙ୍କର ଅତ୍ୟନ୍ତ ଅନୁକୂଳ ବସ୍ତୁ ସହିତ ସଂଯୋଗ ହେବା ପରେ ମଧ୍ୟ ତାଙ୍କ ଅନ୍ତଃକରଣରେ କୌଣସିପ୍ରକାର ହର୍ଷବିକାର ଉଦୟ ହୁଏ ନାହିଁ (୫/୨୦)। ତେଣୁ ତାଙ୍କର ଭାଷା ସର୍ବଦା ବିକାରଶୂନ୍ୟ ହୁଏ; ସେ କୌଣସି ଅନୁକୂଳ ବସ୍ତୁ ବା ପ୍ରାଣୀକୁ ହର୍ଷରେ ଉତ୍ଫୁଲ୍ଲ ହୋଇ ସ୍ତୁତି କରନ୍ତି ନାହିଁ। ଯଦି ଲୋକସଂଗ୍ରହପାଇଁ ତାଙ୍କର ଶରୀର ବା ବଚନରେ ହର୍ଷଭାବ ବା ପ୍ରଶଂସାଭାବ ପ୍ରକଟ ହୁଏ, ତେବେ ତାହା ହର୍ଷଜନିତ ବିକାର ନୁହେଁ।

**ପ୍ରଶ୍ନ – ନ ଦ୍ୱେଷ୍ଟି**ର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ପ୍ରକାଶ କରାଯାଇଛି ଯେ, ସାଧାରଣ ଲୋକେ ଅନୁକୂଳ ବସ୍ତୁ ପାଇଲେ ଯେପରି ହର୍ଷରେ ବିଭୋର ହୁଅନ୍ତି, ପ୍ରତିକୂଳ ବସ୍ତୁ ପାଇଲେ ସେହିପରି ଦ୍ୱେଷ କରନ୍ତି; ତାଙ୍କ ଅନ୍ତଃକରଣରେ ବିଶେଷ କ୍ଷୋଭ ସୃଷ୍ଟି ହୁଏ ଏବଂ ସେ ଦ୍ୱେଷଭାବ ରଖି ସେହି ବସ୍ତୁକୁ ନିନ୍ଦା କରନ୍ତି; କିନ୍ତୁ ଅତ୍ୟନ୍ତ ପ୍ରତିକୂଳ ବସ୍ତୁ ସହିତ ସଂଯୋଗ ହେଲେ ମଧ୍ୟ ସ୍ଥିରବୁଦ୍ଧି ଯୋଗୀଙ୍କ ଅନ୍ତଃକରଣରେ ସାମାନ୍ୟମାତ୍ର ଦ୍ୱେଷଭାବ ଉତ୍ପନ୍ନ ହୁଏ ନାହିଁ; ତାଙ୍କ ଠାରେ କୌଣସିପ୍ରକାର ଉଦ୍‌ବେଗ ବା ବିକାର ଜାତ ହୁଏ ନାହିଁ। ତାଙ୍କର ଅନ୍ତଃକରଣ ପ୍ରତ୍ୟେକ ବସ୍ତୁପ୍ରାପ୍ତିରେ ପ୍ରତ୍ୟେକ ପରିସ୍ଥିତିରେ ସମ, ଶାନ୍ତ ଓ ନିର୍ବିକାର ହୋଇ ରହେ (୫/୨୦)। ତେଣୁ ସେ ପ୍ରତିକୂଳ ବସ୍ତୁ ବା ପ୍ରାଣୀର ଦ୍ୱେଷପୂର୍ଣ୍ଣ ନିନ୍ଦା କରନ୍ତି ନାହିଁ। ଯଦି ଲୋକସଂଗ୍ରହପାଇଁ ସେ କୌଣସି ବସ୍ତୁ ବା ପ୍ରାଣୀକୁ ମନ୍ଦ ବୋଲି କହନ୍ତି ବା ନିନ୍ଦା କରନ୍ତି, ତେବେ ତାହା ବାସ୍ତବରେ ନିନ୍ଦା ନୁହେଁ; କାରଣ ତାଙ୍କର କୌଣସି ବିଷୟରେ ଦ୍ୱେଷଭାବ ନ ଥାଏ।

**ପ୍ରଶ୍ନ –** 'ତାଙ୍କର ବୁଦ୍ଧି ସ୍ଥିର ଅଟେ' – ଏପରି ବକ୍ତବ୍ୟର ଭାବ କଣ ?

**ଉତ୍ତର –** ଏହାର ଭାବ ହେଉଛି, ଯେଉଁ ମହାପୁରୁଷ ଉପରୋକ୍ତଲକ୍ଷଣସମ୍ପନ୍ନ ହୁଅନ୍ତି, ଯାହାଙ୍କ ଅନ୍ତଃକରଣରେ ବା ଇନ୍ଦ୍ରିୟମାନଙ୍କରେ କୌଣସି ବସ୍ତୁ ବା ପ୍ରାଣୀର ସଂଯୋଗ-ବିୟୋଗରେ କୌଣସିପ୍ରକାର ଘଟଣାଦ୍ୱାରା ଟିକିଏ ବି ବିକାର ଜାତ ହୁଏ ନାହିଁ, ତାଙ୍କୁ ସ୍ଥିରବୁଦ୍ଧି ଯୋଗୀ ବୋଲି ବୁଝିବାକୁ ହେବ।

**ପ୍ରଶ୍ନ –** ଏହି ଦୁଇ ଶ୍ଳୋକରେ 'କିପରି କହନ୍ତି ?' ଏହି ଦ୍ୱିତୀୟ ପ୍ରଶ୍ନ ବିଷୟରେ ସ୍ପଷ୍ଟଭାବରେ କିଛି କୁହାଯାଇ ନାହିଁ। ତେଣୁ କିପରି ବୁଝିବା ଯେ, ଏଠାରେ 'ସେ କିପରି କହନ୍ତି ?' ପ୍ରଶ୍ନର ଉତ୍ତର ଦିଆଯାଇଛି ?

**ଉତ୍ତର –** ଆଗରୁ କୁହାଯାଇଛି ଯେ, ସ୍ଥିରବୁଦ୍ଧି ପୁରୁଷଙ୍କର କହିବା ସାଧାରଣ ଲୋକଙ୍କର କହିବା ପରି ନୁହେଁ। କେବଳ ବଚନର କଥା ବିଚାର କଲେ ତ, ଯେକୌଣସି ଦାମ୍ଭିକ, ପାଷାଣ୍ଡ ଲୋକ ବି ଘୋଷି ଘୋଷି ବଢ଼ିଆ ମଧୁର ବଚନ କହିଦେଇ ପାରିବ। କିନ୍ତୁ ଏଠାରେ ମନର ଭାବ ଉପରେ ପ୍ରାଧାନ୍ୟ ଦିଆଯାଇଛି। ଏହି ଦୁଇ ଶ୍ଳୋକରେ କୁହାଯାଇଥିବା ମାନସିକ ଭାବ ଅନୁସାରେ, ଏହିସବୁ ଭାବରେ ଭାବିତ ହୋଇ ସ୍ଥିରବୁଦ୍ଧି ଯୋଗୀ ଯେଉଁ ବଚନ କହନ୍ତି, ତାହା ହେଉଛି ଭଗବାନଙ୍କର ଅଭିପ୍ରାୟ। ତେଣୁ ଏଥିରେ ତାଙ୍କ ବଚନ ବିଷୟ ସ୍ପଷ୍ଟରୂପେ କୁହା ନ ଯାଇ, ତାଙ୍କ ମାନସିକ ଭାବ କଥା କୁହାଯାଇଛି।

**ସମ୍ବନ୍ଧ—** ସ୍ଥିରବୁଦ୍ଧିସମ୍ପନ୍ନ ଯୋଗୀ କିପରି ବଚନ କହନ୍ତି? —ଏହି ଦ୍ୱିତୀୟ ପ୍ରଶ୍ନର ଉତ୍ତର ସମାପ୍ତ କରିସାରି ଭଗବାନ୍ ବର୍ତ୍ତମାନ 'ସେ କିପରି ବସନ୍ତି?' —ଏହି ତୃତୀୟ ପ୍ରଶ୍ନର ଉତ୍ତର ଦେଉଛନ୍ତି। ସେ କହୁଛନ୍ତି, ସ୍ଥିତପ୍ରଜ୍ଞ ପୁରୁଷ ଇନ୍ଦ୍ରିୟମାନଙ୍କୁ ସର୍ବଥା ନିଜ ବଶରେ ରଖନ୍ତି ଏବଂ ଆସକ୍ତିରହିତ ହୋଇ ଇନ୍ଦ୍ରିୟମାନେ ନିଜ ନିଜ ବିଷୟରୁ ଉପରତ ହୋଇଯାଆନ୍ତି; ତାହା ହିଁ ସ୍ଥିତପ୍ରଜ୍ଞ ପୁରୁଷଙ୍କର ବସିବା।

**ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୫୮ ॥**

**ଅନ୍ୱୟ—** ଚ = ଏବଂ; **କୂର୍ମଃ** = କଇଁଛ; **ସର୍ବଶଃ** = ସବୁଦିଗରୁ; **ଅଙ୍ଗାନି** = ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ; **ଇବ** = ପରି (ଯେପରି ସଙ୍କୁଚିତ କରିନିଏ, ସେପରି); **ଯଦା** = ଯେତେବେଳେ; **ଅୟମ୍** = ଏହି ପୁରୁଷ; **ଇନ୍ଦ୍ରିୟାର୍ଥେଭ୍ୟଃ** = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କରୁ; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ; **ସଂହରତେ** = ସକଳପ୍ରକାରେ ହଟାଇ ଆଣେ (ସେତେବେଳେ); **ତସ୍ୟ** = ତାଙ୍କର; **ପ୍ରଜ୍ଞା** = ବୁଦ୍ଧି; **ପ୍ରତିଷ୍ଠିତା** = ସ୍ଥିର ଅଟେ (ବୋଲି ଜାଣିବା ଉଚିତ)।

**ଏବଂ କଇଁଛ ଯେପରି ନିଜର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ସବୁଦିଗରୁ ସଙ୍କୁଚିତ କରି ଆଣେ, ଏହି ପୁରୁଷ ଯେତେବେଳେ ଠିକ୍ ସେହିପରି ନିଜର ଇନ୍ଦ୍ରିୟମାନଙ୍କୁ ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରୁ ସକଳପ୍ରକାରେ ହଟାଇ ଆଣନ୍ତି, ସେତେବେଳେ ତାଙ୍କର ବୁଦ୍ଧି ସ୍ଥିର ଅଟେ ବୋଲି ଜାଣିବା ଉଚିତ॥ ୫୮ ॥**

**ପ୍ରଶ୍ନ—** 'ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରୁ ଇନ୍ଦ୍ରିୟମାନଙ୍କୁ କଇଁଛପରି ସକଳ ପ୍ରକାରେ ହଟାଇ ଆଣିବା' ଅର୍ଥ କଣ?

**ଉତ୍ତର—** କଇଁଛ ଯେପରି ନିଜର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ସବୁଦିଗରୁ ସଙ୍କୁଚିତ କରି ଆଣି ସ୍ଥିର ହୋଇଯାଏ, ସମାଧିରେ ସ୍ଥିତ ଯୋଗୀଙ୍କ ଦ୍ୱାରା ସେହିପରି ବଶ ହୋଇଥିବା ଇନ୍ଦ୍ରିୟମାନଙ୍କର ବୃତ୍ତିମାନଙ୍କୁ ସକଳ ବିଷୟରୁ ହଟାଇ ଆଣିବା, କୌଣସି ବି ଇନ୍ଦ୍ରିୟକୁ କୌଣସି ବି ଭୋଗ ଆଡ଼କୁ ଆକର୍ଷିତ ହେବାକୁ ନ ଦେବା ଏବଂ ଇନ୍ଦ୍ରିୟମାନଙ୍କରେ ମନ ଓ ବୁଦ୍ଧିକୁ ବିଚଳିତ କରାଇବାର ଶକ୍ତି ରହିବାକୁ ନ ଦେବା ହିଁ କଇଁଛପରି ଇନ୍ଦ୍ରିୟଗ୍ରାହ୍ୟ ବିଷୟରୁ ଇନ୍ଦ୍ରିୟମାନଙ୍କୁ ହଟାଇ ଆଣିବା। ବାହାରପଟୁ ଇନ୍ଦ୍ରିୟମାନଙ୍କର ଦ୍ୱାରପଥ ବନ୍ଦ କରିଦେଇ ଇନ୍ଦ୍ରିୟମାନଙ୍କୁ ସ୍ଥୂଳବିଷୟରୁ ଦୂରେଇ ଆଣିଲେ ବି, ଇନ୍ଦ୍ରିୟମାନଙ୍କର ବୃତ୍ତିମାନେ ବିଷୟ ଆଡ଼କୁ ଦୌଡ଼ନ୍ତି। ତେଣୁ ସାଧାରଣ ମନୁଷ୍ୟ ସ୍ୱପ୍ନରେ ଏବଂ ମନୋରାଜ୍ୟରେ ଇନ୍ଦ୍ରିୟମାନଙ୍କ ଦ୍ୱାରା ସୂକ୍ଷ୍ମ ବିଷୟମାନଙ୍କୁ ଉପଭୋଗ କରିଚାଲିଥାଏ। ଏଠାରେ **ସର୍ବଶଃ** ପଦ ବ୍ୟବହାର କରି ଏହିପରି ବିଷୟୋପଭୋଗରୁ ଇନ୍ଦ୍ରିୟମାନଙ୍କୁ ସର୍ବଥା ହଟାଇ ଆଣିବା କଥା କୁହାଯାଇଛି।

**ପ୍ରଶ୍ନ—** 'ତାଙ୍କର ବୁଦ୍ଧି ସ୍ଥିର ଅଟେ'— ଏହି କଥାର ତାତ୍ପର୍ଯ୍ୟ କଣ?

**ଉତ୍ତର—** ଏପରି କହି ଦେଖାଇଦିଆଯାଇଛି ଯେ, ଯାହାଙ୍କର ଇନ୍ଦ୍ରିୟମାନେ ସବୁପ୍ରକାରେ ଏପରି ତାଙ୍କର ବଶ ହୋଇଯାଇଛନ୍ତି ଯେ, ସେମାନଙ୍କ ଠାରେ ମନ ଓ ବୁଦ୍ଧିକୁ ବିଷୟ ଆଡ଼କୁ ଆକର୍ଷିତ କରିବା ପାଇଁ ସାମାନ୍ୟ ଶକ୍ତି ମଧ୍ୟ ରହି ନାହିଁ ଏବଂ ଏପରିଭାବରେ ବଶ କରିଥିବା ଇନ୍ଦ୍ରିୟମାନଙ୍କୁ ଯେ ସର୍ବଥା ବିଷୟରୁ ଦୂରେଇ ରଖନ୍ତି, ତାଙ୍କର ବୁଦ୍ଧି ସ୍ଥିର। ଯାହାଙ୍କର ଇନ୍ଦ୍ରିୟମାନେ ବଶ ହୋଇ ନାହାନ୍ତି, ତାଙ୍କର ବୁଦ୍ଧି ସ୍ଥିର ହୋଇ ରହିପାରିବ ନାହିଁ; କାରଣ ବଶ ହୋଇ ନ ଥିବା ଇନ୍ଦ୍ରିୟମାନେ ମନ ଓ ବୁଦ୍ଧିକୁ ବଳପୂର୍ବକ ନେଇ ବିଷୟ- ଉପଭୋଗରେ ଲଗାଇଦିଅନ୍ତି।

**ସମ୍ବନ୍ଧ—** ପୂର୍ବଶ୍ଳୋକରେ ତୃତୀୟ ପ୍ରଶ୍ନର ଉତ୍ତର ଦେଇ ଓ ସ୍ଥିତପ୍ରଜ୍ଞ ପୁରୁଷଙ୍କ ବସିବାର ପ୍ରକାର ବୁଝାଇଦେଇ ବର୍ତ୍ତମାନ ସେଥିରେ ଉପୁଜୁଥିବା ଶଙ୍କାମାନଙ୍କର ସମାଧାନ କରିବା ପାଇଁ ଅନ୍ୟପ୍ରକାରେ କରାଯାଉଥିବା ଇନ୍ଦ୍ରିୟ-ସଂଯମ ଅପେକ୍ଷା ସ୍ଥିତପ୍ରଜ୍ଞଙ୍କ ଇନ୍ଦ୍ରିୟ-ସଂଯମର ବୈଶିଷ୍ଟ୍ୟ ଦେଖାଉଛନ୍ତି—

**ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ ।**
**ରସବର୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ ।। ୫୯ ।।**

ଅନ୍ୱୟ— **ନିରାହାରସ୍ୟ** = (ଇନ୍ଦ୍ରିୟମାନଙ୍କ ଦ୍ୱାରା) ବିଷୟମାନଙ୍କୁ ଗ୍ରହଣ କରୁ ନ ଥିବା; **ଦେହିନଃ** = ପୁରୁଷର; **ବିଷୟାଃ** = (କେବଳ) ବିଷୟମାନେ ହିଁ; **ବିନିବର୍ତ୍ତନ୍ତେ** = ନିବୃତ୍ତ ହୋଇଯାଆନ୍ତି ପରନ୍ତୁ ସେମାନଙ୍କ ଠାରେ ରହୁଥିବା; **ରସବର୍ଜମ୍** = ଆସକ୍ତି ନିବୃତ୍ତ ହୁଏ ନାହିଁ; **ଅସ୍ୟ** = (କିନ୍ତୁ) ଏହି ସ୍ଥିତପ୍ରଜ୍ଞ ପୁରୁଷଙ୍କର; **ରସଃ** = ଆସକ୍ତି; **ଅପି** = ମଧ୍ୟ; **ପରମ୍** = ପରମାତ୍ମାଙ୍କୁ; **ଦୃଷ୍ଟ୍ୱା** = ସାକ୍ଷାତ୍କାର କରି; **ନିବର୍ତ୍ତତେ** = ନିବୃତ୍ତ ହୋଇଯାଏ ।

**ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟମାନଙ୍କୁ ଗ୍ରହଣ କରୁ ନ ଥିବା ପୁରୁଷର କେବଳ ବିଷୟମାନେ ନିବୃତ୍ତ ହୋଇଯାଆନ୍ତି; ବିଷୟଭୋଗପ୍ରତି ରହିଥିବା ଆସକ୍ତି ନିବୃତ୍ତ ହୁଏ ନାହିଁ; କିନ୍ତୁ ପରମାତ୍ମାଙ୍କ ସାକ୍ଷାତ୍କାର କରିଥିବାରୁ ଏହି ସ୍ଥିତପ୍ରଜ୍ଞ ପୁରୁଷଙ୍କର ଆସକ୍ତି ବି ନିବୃତ୍ତ ହୋଇଯାଇଥାଏ ।। ୫୯ ।।**

**ପ୍ରଶ୍ନ**— ଏଠାରେ **ନିରାହାରସ୍ୟ** ବିଶେଷଣ ସହିତ **'ଦେହିନଃ'** ପଦଟି କାହାର ବାଚକ ?

**ଉତ୍ତର**— ଯେ ଆହାର ପରିତ୍ୟାଗ କରିଦିଅନ୍ତି, ଲୋକେ ତାଙ୍କୁ **ନିରାହାର** କହନ୍ତି; କିନ୍ତୁ ଏଠାରେ **ନିରାହାରସ୍ୟ** ପଦର ପ୍ରୟୋଗ ସେହି ଅର୍ଥରେ କରାଯାଇ ନାହିଁ । କାରଣ ଏଠାରେ **ବିଷୟାଃ** ପଦରେ ବହୁବଚନ ପ୍ରୟୋଗ କରି ସମସ୍ତପ୍ରକାର ବିଷୟରୁ ନିବୃତ୍ତ ହୋଇଯିବା କଥା କହିଛନ୍ତି । ଭୋଜନତ୍ୟାଗଦ୍ୱାରା କେବଳ ଜିହ୍ୱା-ଇନ୍ଦ୍ରିୟର ବିଷୟନିବୃତ୍ତି ହୋଇଯାଏ; ଶବ୍ଦ, ସ୍ପର୍ଶ, ରୂପ ଏବଂ ଗନ୍ଧର ନିବୃତ୍ତି ହୋଇ ନ ଥାଏ । ଏଣୁ ବୁଝିବାକୁ ହେବ ଯେ, ପ୍ରତ୍ୟେକ ଇନ୍ଦ୍ରିୟର ବିଷୟ ହିଁ ସେହି ଇନ୍ଦ୍ରିୟର ଆହାର; ସେହି ଦୃଷ୍ଟିରୁ ଯେ ସମସ୍ତ ଇନ୍ଦ୍ରିୟଦ୍ୱାରା ସମସ୍ତ ଇନ୍ଦ୍ରିୟର ବିଷୟମାନଙ୍କୁ ଗ୍ରହଣ କରିବା ଛାଡ଼ିଦିଏ, ସେହି ଦେହାଭିମାନୀ ମନୁଷ୍ୟର ବାଚକରୂପେ **ନିରାହାରସ୍ୟ** ବିଶେଷଣ ସହିତ **ଦେହିନଃ** ପଦଟି ଦିଆଯାଇଛି ।

**ପ୍ରଶ୍ନ**— 'ଏପରି ମନୁଷ୍ୟର ବି କେବଳ ବିଷୟମାନେ ନିବୃତ୍ତ ହୋଇଯାଆନ୍ତି; ପରନ୍ତୁ ସେଥି ପ୍ରତି ଥିବା ଆସକ୍ତି ନିବୃତ୍ତ ହୁଏ ନାହିଁ'— ଏହାର ଭାବ କଣ ?

**ଉତ୍ତର**— ଏଠାରେ ଦେଖାଇଦିଆଯାଇଛି ଯେ, ବିଷୟମାନଙ୍କୁ ପରିତ୍ୟାଗ କରିଥିବା ଅଜ୍ଞାନୀମାନେ ମଧ୍ୟ ଉପରୁ କଇଁଛପରି ନିଜର ଇନ୍ଦ୍ରିୟମାନଙ୍କୁ ବିଷୟରୁ ହଟାଇ ଆଣିପାରନ୍ତି, କିନ୍ତୁ ସେମାନଙ୍କର ବିଷୟ ପ୍ରତି ଆସକ୍ତି ରହିଥାଏ; ଆସକ୍ତି ନାଶ ହୁଏ ନାହିଁ । ତେଣୁ ଇନ୍ଦ୍ରିୟମାନଙ୍କର ବୃତ୍ତିମାନେ ବିଷୟ ଆଡ଼କୁ ଦୌଡ଼ୁଥାନ୍ତି ଏବଂ ସେମାନଙ୍କର ଅନ୍ତଃକରଣକୁ ସ୍ଥିର ହେବାକୁ ଦିଅନ୍ତି ନାହିଁ । ନିମ୍ନଲିଖିତ ଉଦାହରଣରୁ ଏହି କଥା ଭଲଭାବରେ ବୁଝିହେବ ।

ରୋଗ ବା ମୃତ୍ୟୁଭୟରୁ ଅଥବା ଅନ୍ୟ କୌଣସି କାରଣରୁ ବିଷୟାସକ୍ତ ଲୋକେ କୌଣସି ଗୋଟିଏ ବିଷୟ ବା ଅଧିକ ବିଷୟ ତ୍ୟାଗ କରିଦେଇଥାନ୍ତି । ସେମାନେ ଯେଉଁ ବିଷୟଟି ତ୍ୟାଗ କରିଦେଇଥାନ୍ତି, ସେହି ବିଷୟରୁ ସେମାନଙ୍କର ନିବୃତ୍ତି ହୋଇଯାଇଥାଏ । ଏହିପରି ସମସ୍ତ ବିଷୟ ତ୍ୟାଗ କରିଦେଲେ, ସମସ୍ତ ବିଷୟରୁ ନିବୃତ୍ତି ହୋଇପାରେ । କିନ୍ତୁ ଏହି ନିବୃତ୍ତି ଜିଦ୍, ଭୟ ବା ଅନ୍ୟ କୌଣସି କାରଣରୁ ଆସକ୍ତି ଥାଉ ଥାଉ ହୋଇଥାଏ; ତେଣୁ ଏପରି ନିବୃତ୍ତିରେ ବସ୍ତୁତଃ ଆସକ୍ତିର ନିବୃତ୍ତି ହୋଇ ନ ପାରେ ।

ଦାମ୍ଭିକ ମନୁଷ୍ୟ ଯେତେବେଳେ ଲୋକଙ୍କୁ ଦେଖାଇବା ପାଇଁ ଦଶ ଇନ୍ଦ୍ରିୟର ଶବ୍ଦାଦି ବିଷୟମାନଙ୍କୁ ପରିତ୍ୟାଗ କରିଦିଏ, ସେତେବେଳେ ଉପରୁ ବିଷୟମାନଙ୍କର ନିବୃତ୍ତି ହୋଇଯାଇଥାଏ, କିନ୍ତୁ ଭିତରେ ବିଷୟ ପ୍ରତି ଆସକ୍ତି ରହିଥିବାରୁ ତା'ର ମନରେ ବିଷୟ- ଚିନ୍ତନ ହେଉଥାଏ (୩/୬); ତେଣୁ ଆସକ୍ତି ପୂର୍ବପରି ରହିଥାଏ ।

ଭୌତିକସୁଖ କାମନା କରୁଥିବା ମନୁଷ୍ୟ ଅଣିମାଦି ସିଦ୍ଧିପ୍ରାପ୍ତିପାଇଁ ବା ଅନ୍ୟ କୌଣସି ବିଷୟସୁଖପ୍ରାପ୍ତିପାଇଁ ଧ୍ୟାନସମୟରେ ବା ସମାଧିସମୟରେ ଦଶ ଇନ୍ଦ୍ରିୟର ବିଷୟମାନଙ୍କୁ ଉପରୁ ଉପରୁ ତ୍ୟାଗ କରିଦେଇଥାଏ । ସେ ସେହି ବିଷୟ ମନରେ ଚିନ୍ତନ ନ କଲେ ମଧ୍ୟ ଭୋଗମାନଙ୍କରେ ତାହାର ଆସକ୍ତି ରହିଥାଏ; ଆସକ୍ତି ନାଶ ହୋଇ ନ ଥାଏ ।

ଏପରିଭାବରେ ସ୍ୱରୂପତଃ ବିଷୟ ତ୍ୟାଗ କରିଦେଲେ ବିଷୟନିବୃତ୍ତି ହୋଇପାରେ, କିନ୍ତୁ ତହିଁରେ ଥିବା ଆସକ୍ତିର ନିବୃତ୍ତି ହୁଏ ନାହିଁ।

**ପ୍ରଶ୍ନ –** ଏଠାରେ 'ରସ'ର ଅର୍ଥ ଆସ୍ୱାଦନ ବା ମନଦ୍ୱାରା ଉପଭୋଗ ବୋଲି ମାନି 'ତାଙ୍କର ରସନିବୃତ୍ତି ହୁଏ ନାହିଁ' ବାକ୍ୟର ଅର୍ଥ 'ଏପରି ପୁରୁଷ ସ୍ୱରୂପତଃ ବିଷୟତ୍ୟାଗୀ ହୋଇ ମଧ୍ୟ ମନରେ ବିଷୟ ଉପଭୋଗ କରି ଆନନ୍ଦ ପାଆନ୍ତି' ବୋଲି ଯଦି ଗ୍ରହଣ କରାଯାଏ, ତେବେ ଆପତ୍ତି କଣ ?

**ଉତ୍ତର –** ଉପରୋକ୍ତ ବାକ୍ୟର ଏପରି ଅର୍ଥ ବି କରାଯାଇପାରିବ, କିନ୍ତୁ ମନଦ୍ୱାରା ବିଷୟର ଏପରି ଆସ୍ୱାଦନ କେବଳ ବିଷୟରେ ଆସକ୍ତି ଯୋଗୁ ହିଁ ହୁଏ; ତେଣୁ 'ରସ' ର ଅର୍ଥ 'ଆସକ୍ତି' ବୋଲି ଗ୍ରହଣ କଲେ ବି ଏହି ବିଷୟଟି ତାହାର ଅନ୍ତର୍ଗତ ହିଁ ହୁଏ। ଦ୍ୱିତୀୟ କଥା ହେଉଛି, ଏପରିଭାବରେ ମନଦ୍ୱାରା ବିଷୟ ଉପଭୋଗକୁ ପରମାତ୍ମସାକ୍ଷାତ୍କାର ପୂର୍ବରୁ ଜିଦି, ବିବେକ ଓ ବିଚାରଦ୍ୱାରା ମଧ୍ୟ ବନ୍ଦ କରାଯାଇପାରେ; କିନ୍ତୁ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ପରେ ତ ତାଙ୍କର ମୂଳ ଆସକ୍ତି ବି ନାଶ ହୋଇଯାଏ ଏବଂ ଏଥିରେ ହିଁ ପରମାତ୍ମାଙ୍କ ସାକ୍ଷାତ୍କାରର ଚରିତାର୍ଥତା ରହିଛି; ମନରୁ ବିଷୟମାନଙ୍କର ଉପଭୋଗ ହଟାଇବାରେ ନାହିଁ। ଏଣୁ ଉପରେ 'ରସ'ର ଯେଉଁ ଅର୍ଥ କରାଯାଇଛି, ତାହା ହିଁ ଠିକ୍।

**ପ୍ରଶ୍ନ –** ଅସ୍ୟ ପଦ କେଉଁ ଅର୍ଥରେ ବ୍ୟବହାର କରାଯାଇଛି ଏବଂ 'ଏହାଙ୍କର ଆସକ୍ତି ମଧ୍ୟ ପରମାତ୍ମାଙ୍କ ସାକ୍ଷାତ୍କାର କରି ନିବୃତ୍ତ ହୋଇଯାଏ'– ଏ କଥାର ଭାବ କଣ ?

**ଉତ୍ତର –** ଏଠାରେ ସ୍ଥିତପ୍ରଜ୍ଞ ଯୋଗୀଙ୍କ ପ୍ରକରଣ ଚାଲିଛି। 'ଅସ୍ୟ' ପଦଟି ହେଉଛି ତାଙ୍କରି ବାଚକ। ପୁଣି ଉପରୋକ୍ତ କଥନରେ ଦେଖାଇଦିଆଯାଇଛି ଯେ, ପରମାନନ୍ଦର ସାଗର ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବାରୁ ସେହି ସ୍ଥିତପ୍ରଜ୍ଞ ଯୋଗୀଙ୍କର କୌଣସି ସାଂସାରିକ ପଦାର୍ଥରେ କୌଣସିପ୍ରକାର ଆସକ୍ତି ରହେ ନାହିଁ। କାରଣ ଆସକ୍ତିର କାରଣ ହେଉଛି ଅବିଦ୍ୟା।★ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଗଲେ ଅବିଦ୍ୟା ନାଶ ହୋଇଯାଏ। ସାଧାରଣ ମନୁଷ୍ୟମାନଙ୍କୁ ମୋହହେତୁ ଇନ୍ଦ୍ରିୟଭୋଗରେ ସୁଖର ପ୍ରତୀତି ହୁଏ। ତେଣୁ ସେମାନଙ୍କର ଭୋଗରେ ଆସକ୍ତି ରହେ, କିନ୍ତୁ ବାସ୍ତବରେ ଭୋଗରେ ଲେଶମାତ୍ର ସୁଖ ନ ଥାଏ। ସେଥିରେ ଯାହା କିଛି ସୁଖ ପ୍ରତୀତ ହୁଏ, ତାହା ପରମ ଆନନ୍ଦରୂପ ପରମାତ୍ମାଙ୍କ ଆନନ୍ଦର କିଛି ଅଂଶର ଆଭାସମାତ୍ର। ଯେପରି ଅନ୍ଧାର ରାତିରେ ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କରେ ଯେଉଁ ଆଲୋକ ପ୍ରତୀତ ହୁଏ, ସେହି ଆଲୋକ ସୂର୍ଯ୍ୟଙ୍କର ଆଲୋକର ଆଭାସମାତ୍ର ଏବଂ ସୂର୍ଯ୍ୟ ଉଦୟ ହେବା ପରେ ସେମାନଙ୍କର ଆଲୋକ ଲୁପ୍ତ ହୋଇଯାଏ, ସେହିପରି ସାଂସାରିକ ପଦାର୍ଥରେ ପ୍ରତୀତ ହେଉଥିବା ସୁଖ ଆନନ୍ଦମୟ ପରମାତ୍ମାଙ୍କ ଆନନ୍ଦର ଆଭାସମାତ୍ର। ତେଣୁ ଯେଉଁ ପୁରୁଷଙ୍କୁ ପରମ ଆନନ୍ଦରୂପୀ ପରମାତ୍ମା ପ୍ରାପ୍ତ ହୋଇଯାନ୍ତି, ତାଙ୍କୁ ଭୋଗରେ ଆଦୌ ସୁଖପ୍ରତୀତି ହୁଏ ନାହିଁ (୨/୬୯) ଏବଂ ତାଙ୍କ ଠାରେ କୌଣସି ବି ଆସକ୍ତି ରହେ ନାହିଁ।

କାରଣ ପରମାତ୍ମା ଏପରି ଏକ ଦିବ୍ୟ, ଅଦ୍ଭୁତ, ଅଲୌକିକ ଆକର୍ଷକ ବସ୍ତୁ ଯେ, ତାଙ୍କୁ ପାଇଯିବା ପରେ ଯେଉଁ ତନ୍ମୟତା, ମୁଗ୍ଧତା, ମଧୁରତା, ତଲ୍ଲୀନତା ସୃଷ୍ଟି ହୁଏ, ତାହାଦ୍ୱାରା ନିଜର ସମସ୍ତ ଅସ୍ତିତ୍ୱ, ଲୋପ ପାଇଯାଏ। ତେଣୁ ଅନ୍ୟ ବସ୍ତୁର ଚିନ୍ତନ ଆଉ କରିବ କିଏ ? ତେଣୁ ପରମାତ୍ମାଙ୍କ ସାକ୍ଷାତ୍କାରଦ୍ୱାରା ଆସକ୍ତି ସର୍ବଥା ଶୂନ୍ୟ ହୋଇଯାଏ ବୋଲି କୁହାଯାଇଛି।

ଏହିପରି ଆସକ୍ତି ନ ରହିବାରୁ ସ୍ଥିତପ୍ରଜ୍ଞଙ୍କ ସଂଯମରେ କେବଳ ବିଷୟର ନିବୃତ୍ତି ହିଁ ହୁଏ ନାହିଁ, ଆସକ୍ତିର ମଧ୍ୟ ସମ୍ପୂର୍ଣ୍ଣରୂପେ ଅଭାବ ହୋଇଯାଏ। ଏହା ହିଁ ତାଙ୍କର ବିଶେଷତ୍ୱ।

---

★ ଅବିଦ୍ୟାସ୍ମିତାରାଗଦ୍ୱେଷାଭିନିବେଶାଃ କ୍ଲେଶାଃ (ଯୋଗ ୨/୩)

ଅବିଦ୍ୟା = ଅଜ୍ଞାନ, ଅସ୍ମିତା = ଚିଦ୍‌ଜଡଗ୍ରନ୍ଥି ଅର୍ଥାତ୍ ଜଡ ଓ ଚେତନ ଏକପରି ପ୍ରତୀତ ହେବା; ରାଗ = ଆସକ୍ତି, ଦ୍ୱେଷ = ଘୃଣାଭାବ ଏବଂ ଅଭିନିବେଶ = ମରଣଭୟ– ଏହି ପାଞ୍ଚଟିର ସଂଜ୍ଞା 'କ୍ଲେଶ'। ଅବିଦ୍ୟା କ୍ଷେତ୍ରମୁତ୍ତରେଷାମ୍ - - - - - (ଯୋଗ ୨/୪)

ଉପରୋକ୍ତ ପାଞ୍ଚଟି ମଧ୍ୟରୁ ଶେଷ ଚାରିଗୋଟିର କାରଣ ଅବିଦ୍ୟା ଅର୍ଥାତ୍ ଅବିଦ୍ୟାରୁ ହିଁ ଅସ୍ମିତା, ରାଗ, ଦ୍ୱେଷ ଆଦି ଉତ୍ପନ୍ନ ହୁଏ।

**ସମ୍ବନ୍ଧ—** ଆସକ୍ତି ନାଶ ନ ହେଲେ ଏବଂ ଇନ୍ଦ୍ରିୟ-ସଂଯମ ନ ହେଲେ କ୍ଷତି କଣ? ଏହାରି ଉପରେ କହୁଛନ୍ତି—

**ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ।**
**ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ॥ ୬୦ ॥**

**ଅନ୍ୱୟ—** **କୌନ୍ତେୟ** = ହେ ଅର୍ଜୁନ; **ହି** = ଆସକ୍ତି ନାଶ ନ ହୋଇଥିବାରୁ; **ପ୍ରମାଥୀନି** = ପ୍ରମଥନ ସ୍ୱଭାବଯୁକ୍ତ; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନେ; **ଯତତଃ** = ଯତ୍ନଶୀଳ; **ବିପଶ୍ଚିତଃ** = ବୁଦ୍ଧିମାନ୍; **ପୁରୁଷସ୍ୟ** = ପୁରୁଷଙ୍କର; **ମନଃ** = ମନକୁ; **ଅପି** = ମଧ୍ୟ; **ପ୍ରସଭମ୍** = ବଳପୂର୍ବକ; **ହରନ୍ତି** = ହରଣ କରିନିଅନ୍ତି;

**ହେ ଅର୍ଜୁନ! ଆସକ୍ତି ନାଶ ହୋଇ ନ ଥିବାରୁ ଏହି ପ୍ରମଥନସ୍ୱଭାବବିଶିଷ୍ଟ ଇନ୍ଦ୍ରିୟମାନେ ଯତ୍ନଶୀଳ ବୁଦ୍ଧିମାନ୍ ପୁରୁଷଙ୍କର ମନକୁ ମଧ୍ୟ ବଳପୂର୍ବକ ହରଣ କରିନିଅନ୍ତି॥ ୬୦ ॥**

**ପ୍ରଶ୍ନ—** ଏଠାରେ ହି ପଦର ଭାବ କଣ?

**ଉତ୍ତର—** ହି ପଦଟି ଏହି ଶ୍ଳୋକର ପୂର୍ବଶ୍ଳୋକ ଓ ପରଶ୍ଳୋକ ମଧ୍ୟରେ ଦେହଳୀଦୀପନ୍ୟାୟରେ ସମ୍ବନ୍ଧ ସ୍ଥାପନ କରୁଛି। ପୂର୍ବଶ୍ଳୋକରେ କୁହାଯାଇଛି ଯେ, ବିଷୟମାନଙ୍କୁ କେବଳ ସ୍ୱରୂପତଃ ତ୍ୟାଗ କରୁଥିବା ପୁରୁଷର ବିଷୟମାନେ ହିଁ ନିବୃତ୍ତ ହୁଅନ୍ତି କିନ୍ତୁ ରାଗ (ଆସକ୍ତି) ନିବୃତ୍ତ ହୁଏ ନାହିଁ। ଏହା ଉପରେ ପ୍ରଶ୍ନ ଉଠିପାରେ, 'ରାଗ ନିବୃତ୍ତ ନ ହେଲେ କ୍ଷତି କଣ?' ତାହାର ଉତ୍ତରରେ ଏହି ଶ୍ଳୋକରେ କୁହାଯାଇଛି ଯେ, ଯେପର୍ଯ୍ୟନ୍ତ ମନୁଷ୍ୟର ବିଷୟରେ ଆସକ୍ତି ରହିଥାଏ, ସେପର୍ଯ୍ୟନ୍ତ ସେହି ଆସକ୍ତିହେତୁ ଇନ୍ଦ୍ରିୟମାନେ ତାକୁ ବଳପୂର୍ବକ ବିଷୟରେ ପ୍ରବୃତ୍ତ କରାଇଦିଅନ୍ତି; ଅତଏବ ତା'ର ମନ ଓ ବୁଦ୍ଧି ପରମାତ୍ମାଙ୍କ ସ୍ୱରୂପରେ ସ୍ଥିର ହୋଇ ରହିପାରେ ନାହିଁ। ଯେହେତୁ ଇନ୍ଦ୍ରିୟମାନେ ମନୁଷ୍ୟର ମନକୁ ବଳପୂର୍ବକ ହରଣ କରିନିଅନ୍ତି, ତେଣୁ ପରବର୍ତ୍ତୀ ଶ୍ଳୋକରେ ଭଗବାନ୍ କହିଛନ୍ତି, ''ଏସବୁ ଇନ୍ଦ୍ରିୟମାନଙ୍କୁ ବଶ କରି, ସମାହିତଚିତ୍ତ ହୋଇ ଏବଂ ମୋର ପରାୟଣ ହୋଇ ମନୁଷ୍ୟ ଧ୍ୟାନରେ ସ୍ଥିତ ହୋଇଯିବା ଉଚିତ।'' **ହି** ପଦଦ୍ୱାରା ଏପରିଭାବରେ ପୂର୍ବ ଓ ପର ଦୁଇଶ୍ଳୋକ ସହିତ ଏହି ଶ୍ଳୋକଟି ସମ୍ବନ୍ଧ ସ୍ଥାପନ କରୁଛି।

**ପ୍ରଶ୍ନ—** **ଇନ୍ଦ୍ରିୟାଣି** ପଦ ସହିତ **ପ୍ରମାଥୀନି** ବିଶେଷଣ ପ୍ରୟୋଗର ଭାବ କଣ?

**ଉତ୍ତର—** **ପ୍ରମାଥୀନି** ବିଶେଷଣ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯେପର୍ଯ୍ୟନ୍ତ ମନୁଷ୍ୟର ଇନ୍ଦ୍ରିୟମାନେ ବଶ ହୋଇ ନ ଥାନ୍ତି, ଯେପର୍ଯ୍ୟନ୍ତ ତା'ର ଇନ୍ଦ୍ରିୟମାନେ ବିଷୟରେ ଆସକ୍ତ ହୋଇ ରହିଥାନ୍ତି, ସେପର୍ଯ୍ୟନ୍ତ ଇନ୍ଦ୍ରିୟମାନେ ମନୁଷ୍ୟର ମନକୁ ବାରମ୍ବାର ବିଷୟସୁଖର ପ୍ରଲୋଭନ ଦେଖାଇ ସ୍ଥିର ହେବାକୁ ଦିଅନ୍ତି ନାହିଁ; ତାକୁ ମନ୍ଥନ କରିଚାଲନ୍ତି।

**ପ୍ରଶ୍ନ—** ଏଠାରେ **ଯତତଃ** ଏବଂ **ବିପଶ୍ଚିତଃ** ଏହି ଦୁଇ ବିଶେଷଣ ସହିତ **ପୁରୁଷସ୍ୟ** ପଦଟି କେଉଁ ପୁରୁଷ ପାଇଁ ବ୍ୟବହୃତ ହୋଇଛି ଏବଂ **ଅପି** ପଦ ପ୍ରୟୋଗର ତାତ୍ପର୍ଯ୍ୟ କଣ?

**ଉତ୍ତର—** ଯେଉଁ ପୁରୁଷ ଶାସ୍ତ୍ର ଶ୍ରବଣ-ମନନଦ୍ୱାରା ଏବଂ ବିବେକ-ବିଚାରଦ୍ୱାରା ବିଷୟମାନଙ୍କର ଦୋଷକୁ ଜାଣିପାରନ୍ତି ଏବଂ ସେଥିରୁ ଇନ୍ଦ୍ରିୟମାନଙ୍କୁ ଦୂରେଇଦେବାକୁ ଯତ୍ନ ମଧ୍ୟ କରିଥାନ୍ତି, ଅଥଚ ଯାହାଙ୍କର ବିଷୟାସକ୍ତିର ନାଶ ହୋଇପାରି ନ ଥାଏ, ଓ ସେହି କାରଣରୁ ଯାହାଙ୍କର ଇନ୍ଦ୍ରିୟମାନେ ବଶ ହୋଇ ନ ଥାନ୍ତି, ସେହି ବୁଦ୍ଧିମାନ୍ ଯତ୍ନଶୀଳ ସାଧକଙ୍କ ପାଇଁ **ଯତତଃ** ଏବଂ **ବିପଶ୍ଚିତଃ** ଦୁଇ ବିଶେଷଣ ସହିତ **ପୁରୁଷସ୍ୟ** ପଦଟି ବ୍ୟବହୃତ ହୋଇଛି; ତା'ସହିତ **ଅପି** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ପ୍ରମଥନଶୀଳ ଇନ୍ଦ୍ରିୟମାନେ ଯେଉଁଠି ବିଷୟାସକ୍ତିହେତୁ ବୁଦ୍ଧିମାନ୍ ବିବେକୀ ଯତ୍ନଶୀଳ ପୁରୁଷଙ୍କର ମନକୁ ମଧ୍ୟ ବଳପୂର୍ବକ ବିଷୟରେ ପ୍ରବୃତ୍ତ କରାଇଦିଅନ୍ତି, ସେଠାରେ ସାଧାରଣ ଲୋକଙ୍କ କଥା ବା କଣ କହିବା! ଅତଏବ ସ୍ଥିତପ୍ରଜ୍ଞ ଅବସ୍ଥା ପ୍ରାପ୍ତ ହେବାକୁ ଇଚ୍ଛା କରୁଥିବା ଲୋକ ସମ୍ପୂର୍ଣ୍ଣରୂପେ ଆସକ୍ତି ତ୍ୟାଗ କରି ଇନ୍ଦ୍ରିୟମାନଙ୍କୁ ନିଜ ବଶରେ ରଖିବାକୁ ବିଶେଷ ପ୍ରଯତ୍ନ କରିବା ଉଚିତ।

**ସମ୍ବନ୍ଧ—** ଏହିପରି ଇନ୍ଦ୍ରିୟସଂଯମର ଆବଶ୍ୟକତା ପ୍ରତିପାଦନ କରିବା ପରେ ବର୍ତ୍ତମାନ ସାଧକଙ୍କ କର୍ତ୍ତବ୍ୟ ବର୍ଣ୍ଣନା କରିବାକୁ ଯାଇ ପୁନର୍ବାର କହୁଛନ୍ତି ଯେ, ଇନ୍ଦ୍ରିୟ-ସଂଯମ ହିଁ ସ୍ଥିତପ୍ରଜ୍ଞ ଅବସ୍ଥାର ହେତୁ—

**ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ ।**
**ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ।। ୬୧ ।।**

**ଅନ୍ୱୟ –** ତାନି = ସେହି; **ସର୍ବାଣି** = ସମସ୍ତ ଇନ୍ଦ୍ରିୟମାନଙ୍କୁ; **ସଂଯମ୍ୟ** = ସଂଯତ କରି; **ଯୁକ୍ତଃ** = ସମାହିତଚିତ୍ତ ହୋଇ; **ମତ୍ପରଃ** = ମୋର ପରାୟଣ ହୋଇ; **ଆସୀତ** = ଧ୍ୟାନରେ ବସିବା ଉଚିତ; **ହି** = କାରଣ; **ଯସ୍ୟ** = ଯେଉଁ ପୁରୁଷଙ୍କର; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନେ; **ବଶେ** = ବଶରେ ରହିଥାନ୍ତି; **ତସ୍ୟ** = ତାହାଙ୍କର; **ପ୍ରଜ୍ଞା** = ବୁଦ୍ଧି; **ପ୍ରତିଷ୍ଠିତା** = ସ୍ଥିର ହୋଇଥାଏ ।

**ତେଣୁ ସାଧକଙ୍କ ପକ୍ଷରେ ଏହା ଆବଶ୍ୟକ ଯେ, ତାଙ୍କୁ ସକଳ ଇନ୍ଦ୍ରିୟ ବଶ କରି, ସମାହିତଚିତ୍ତ ହୋଇ, ମୋର ପରାୟଣ ହୋଇ ଧ୍ୟାନରେ ବସିବାକୁ ପଡ଼ିବ; କାରଣ ଯେଉଁ ପୁରୁଷଙ୍କ ଇନ୍ଦ୍ରିୟମାନେ ବଶୀଭୂତ ହୋଇଥାନ୍ତି, ତାହାଙ୍କର ବୁଦ୍ଧି ସ୍ଥିର ହୋଇଥାଏ ।। ୬୧ ।।**

**ପ୍ରଶ୍ନ –** ଏଠାରେ ଇନ୍ଦ୍ରିୟମାନଙ୍କ ସହିତ **ସର୍ବାଣି** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ସକଳ ଇନ୍ଦ୍ରିୟକୁ ବଶୀଭୂତ କରି ରଖିବାର ଆବଶ୍ୟକତା ଦେଖାଇବା ନିମନ୍ତେ **ସର୍ବାଣି** ବିଶେଷଣ ଦିଆଯାଇଛି; କାରଣ ବଶୀଭୂତ ହୋଇ ନ ଥିବା କୌଣସି ଗୋଟିଏ ଇନ୍ଦ୍ରିୟ ବି ମନୁଷ୍ୟର ମନ-ବୁଦ୍ଧିକୁ ବିଚଳିତ କରି ସାଧନାରେ ବିଘ୍ନ ଘଟାଇପାରେ (୨/୬୭) । ଅତଏବ ପରମାତ୍ମପ୍ରାପ୍ତି ଚାହୁଁଥିବା ପୁରୁଷ ସକଳ ଇନ୍ଦ୍ରିୟକୁ ସମ୍ପୂର୍ଣ୍ଣରୂପେ ବଶୀଭୂତ କରିଦେବା ଆବଶ୍ୟକ ।

**ପ୍ରଶ୍ନ – ସମାହିତଚିତ୍ତ ଓ ଭଗବତ୍ପରାୟଣ** ହୋଇ ଧ୍ୟାନରେ ବସିବାକୁ କହିବାର ଭାବ କଣ ?

**ଉତ୍ତର –** ଇନ୍ଦ୍ରିୟମାନେ ସଂଯତ ହୋଇଯିବା ପରେ ବି, ଯଦି ମନ ବଶରେ ନ ରହେ, ତେବେ ମନଦ୍ୱାରା ବିଷୟଚିନ୍ତନ ହୋଇ ସାଧକଙ୍କର ପତନ ଘଟେ ଏବଂ ପରମାତ୍ମା ହିଁ ମନ-ବୁଦ୍ଧିର ଆଧାର ହୋଇ ନ ରହିଲେ, ସାଧକ ସ୍ଥିର ହୋଇ ରହିପାରନ୍ତି ନାହିଁ । ତେଣୁ ପରମାତ୍ମାଙ୍କ ଧ୍ୟାନ କରିବାନିମନ୍ତେ **ସମାହିତଚିତ୍ତ ଓ ଭଗବତ୍ପରାୟଣ** ହୋଇ ବସିବାକୁ କୁହାଯାଇଛି । ଷଷ୍ଠ ଅଧ୍ୟାୟର ଧ୍ୟାନଯୋଗ ପ୍ରସଙ୍ଗରେ ବି ସେହି କଥା କୁହାଯାଇଛି (୬/୧୪) । ଏପରିଭାବରେ ମନ ଓ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ପରମାତ୍ମାଙ୍କ ଧ୍ୟାନରେ ଲାଗିଗଲେ ବୁଦ୍ଧି ସ୍ଥିର ହୋଇଯାଏ ଏବଂ ଶୀଘ୍ର ପରମାତ୍ମପ୍ରାପ୍ତି ହୋଇଯାଏ ।

**ପ୍ରଶ୍ନ –** 'ଯାହାଙ୍କ ଇନ୍ଦ୍ରିୟମାନେ ବଶୀଭୂତ ହୋଇଥାନ୍ତି, ତାଙ୍କ ବୁଦ୍ଧି ସ୍ଥିର ହୋଇଯାଏ' – ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଶ୍ଳୋକର ପୂର୍ବାର୍ଦ୍ଧରେ ଇନ୍ଦ୍ରିୟମାନଙ୍କୁ ବଶ କରି ସଂଯତଚିତ୍ତ ଓ ଭଗବତ୍ପରାୟଣ ହୋଇ ଧ୍ୟାନରେ ବସିବାକୁ ଯାହା କୁହାଯାଇଛି, ତାହାର ହେତୁରୂପରେ ଏହି ଉତ୍ତରାର୍ଦ୍ଧ ପ୍ରୟୋଗ କରାଯାଇଛି । ତେଣୁ ଏହାର ଭାବ ହେଲା, ସର୍ବଥା ମମତା, ଆସକ୍ତି ଓ କାମନା ତ୍ୟାଗପୂର୍ବକ ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯମିତ କରି, ବୁଦ୍ଧିକୁ ପରମାତ୍ମାଙ୍କ ସ୍ୱରୂପରେ ସ୍ଥିର କରି ରଖିବା ଉଚିତ, କାରଣ ଯାହାଙ୍କର ଇନ୍ଦ୍ରିୟଗଣ ମନସହିତ ବଶ ହୋଇଯାଇଥାନ୍ତି, ସେହି ସାଧକଙ୍କର ବୁଦ୍ଧି ସ୍ଥିର ହୋଇଯାଏ ଏବଂ ଯାହାଙ୍କର ଇନ୍ଦ୍ରିୟଗଣ ମନସହିତ ବଶ ହୋଇ ନ ଥାନ୍ତି, ତାଙ୍କର ବୁଦ୍ଧି ସ୍ଥିର ହୋଇ ରହିପାରେ ନାହିଁ । ତେଣୁ ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରି ରଖିବା ସାଧକଙ୍କ ପକ୍ଷରେ ଏକାନ୍ତ ଆବଶ୍ୟକ ।

**ସମ୍ବନ୍ଧ –** ଉପରୋକ୍ତପ୍ରକାରେ ମନ ସହିତ ଇନ୍ଦ୍ରିୟମାନଙ୍କୁ ବଶ ନ କଲେ ଏବଂ ଭଗବତ୍ପରାୟଣ ନ ହେଲେ କ୍ଷତି କଣ ? ଏହାର ଉତ୍ତର ପରବର୍ତ୍ତୀ ଦୁଇଟି ଶ୍ଳୋକରେ କହୁଛନ୍ତି –

**ଧ୍ୟାୟତୋ ବିଷୟାନ୍ପୁଂସଃ ସଙ୍ଗସ୍ତେଷୂପଜାୟତେ ।**
**ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ।। ୬୨ ।।**

**ଅନ୍ୱୟ –** ବିଷୟାନ୍ = ବିଷୟମାନଙ୍କୁ; ଧ୍ୟାୟତଃ = ଚିନ୍ତନ କରୁଥିବା; ପୁଂସଃ = ପୁରୁଷର; ତେଷୁ = ସେହି ବିଷୟମାନଙ୍କରେ; ସଙ୍ଗଃ = ଆସକ୍ତି; ଉପଜାୟତେ = ହୋଇଯାଏ; ସଙ୍ଗାତ୍ = ଆସକ୍ତିରୁ; କାମଃ = କାମନା; ସଞ୍ଜାୟତେ = ଉତ୍ପନ୍ନ ହୋଇଯାଏ; କାମାତ୍ = କାମନାରେ ବିଘ୍ନ ପଡ଼ିଲେ; କ୍ରୋଧଃ = କ୍ରୋଧ; ଅଭିଜାୟତେ = ଉତ୍ପନ୍ନ ହୋଇଯାଏ ।

**ବିଷୟଚିନ୍ତନ କରୁଥିବା ପୁରୁଷର ସେହି ବିଷୟମାନଙ୍କରେ ଆସକ୍ତି ହୋଇଯାଏ; ଆସକ୍ତିରୁ ସେହି ବିଷୟମାନଙ୍କ ପ୍ରତି କାମନା ଉତ୍ପନ୍ନ ହୋଇଯାଏ ଏବଂ କାମନାରେ ବାଧା ଉପୁଜିଲେ କ୍ରୋଧ ଜାତ ହୋଇଯାଏ ।। ୬୨ ।।**

**ପ୍ରଶ୍ନ –** 'ବିଷୟ ଚିନ୍ତନ କରୁଥିବା ମନୁଷ୍ୟର ସେଥିରେ ଆସକ୍ତି ଜାତ ହୋଇଯାଏ' – ଏହି କଥାର ଭାବ କଣ ?

**ଉତ୍ତର –** ଏ କଥାର ତାତ୍ପର୍ଯ୍ୟ ହେଉଛି, ଯେଉଁମାନଙ୍କର ଭୋଗରେ ସୁଖ ଓ ରମଣୀୟ ବୁଦ୍ଧି ଥାଏ, ଯେଉଁମାନଙ୍କର ମନ ବଶ ହୋଇ ନ ଥାଏ, ଯେଉଁମାନେ ପରମାତ୍ମାଙ୍କ ଚିନ୍ତନ କରନ୍ତି ନାହିଁ, ପରମାତ୍ମାଙ୍କ ଠାରେ ପ୍ରେମ ନ ଥିବାରୁ ଏବଂ ତାଙ୍କର ଶରଣରେ ନ ରହିବାରୁ ସେହି ମନୁଷ୍ୟମାନଙ୍କ ମନରେ ଇନ୍ଦ୍ରିୟଭୋଗ୍ୟ ବିଷୟର ଚିନ୍ତନ ହେଉଥାଏ । ଏପରି ବିଷୟଚିନ୍ତନ କରି କରି ସେହି ବିଷୟମାନଙ୍କରେ ସେମାନଙ୍କର ଅତ୍ୟନ୍ତ ଆସକ୍ତି ଜାତ ହୋଇଯାଏ । ତେଣୁ ସେମାନଙ୍କର ମନ ଆଉ ବଶରେ ନ ରହି ବିଚଳିତ ହୋଇଯାଏ ।

**ପ୍ରଶ୍ନ –** ବିଷୟଚିନ୍ତନଦ୍ୱାରା କଣ ସବୁ ପୁରୁଷଙ୍କ ମନରେ ଆସକ୍ତି ଜାତ ହୋଇଥାଏ ?

**ଉତ୍ତର –** ଯେଉଁ ପୁରୁଷମାନଙ୍କର ପରମାତ୍ମପ୍ରାପ୍ତି ହୋଇଯାଇଛି, ସେମାନଙ୍କ ପାଇଁ ବିଷୟଚିନ୍ତନଦ୍ୱାରା ଆସକ୍ତି ଜାତ ହେବାର କୌଣସି ପ୍ରଶ୍ନ ଉଠୁ ନାହିଁ । ପରଂ ଦୃଷ୍ଟ୍ୱା ନିବର୍ତ୍ତତେଦ୍ୱାରା ଭଗବାନ୍ ସେପରି ପୁରୁଷଙ୍କର ସମ୍ପୂର୍ଣ୍ଣ ଆସକ୍ତିଶୂନ୍ୟତା କଥା ଆଗରୁ କହିସାରିଛନ୍ତି । ସେମାନଙ୍କ ଛଡ଼ା ଅନ୍ୟ ସମସ୍ତଙ୍କ ମନରେ ଅଚ୍ଛେତତୁଟେ ଆସକ୍ତି ଜାତ ହୋଇଯାଏ ।

**ପ୍ରଶ୍ନ –** ଆସକ୍ତିରୁ କାମନା ଉତ୍ପନ୍ନ ହେବା କଣ ? ଏବଂ କାମନାରୁ କ୍ରୋଧ ଉତ୍ପନ୍ନ ହେବା କଣ ?

**ଉତ୍ତର –** ବିଷୟଚିନ୍ତନ କରୁ କରୁ ଲୋକର ଯେତେବେଳେ ସେଥିରେ ଅତ୍ୟନ୍ତ ଆସକ୍ତି ହୋଇଯାଏ, ସେତେବେଳେ ତା'ମନରେ ନାନାପ୍ରକାର ଭୋଗ-ପ୍ରାପ୍ତିପାଇଁ ପ୍ରବଳ ଇଚ୍ଛା ଜାଗ୍ରତ ହୁଏ । ଏହା ହିଁ ଆସକ୍ତିରୁ କାମନା ଜାତ ହେବା । ଏହି କାମନାରେ କୌଣସିପ୍ରକାର ବିଘ୍ନ ଉପସ୍ଥିତ ହେଲେ, ଉକ୍ତ ବିଘ୍ନହେତୁ ଦ୍ୱେଷବୁଦ୍ଧି ହୋଇ କ୍ରୋଧ ଉତ୍ପନ୍ନ ହୋଇଯାଏ । ଏହା ହିଁ କାମନାରୁ କ୍ରୋଧ ଉତ୍ପନ୍ନ ହେବା ।

**କ୍ରୋଧାଦ୍‌ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।**
**ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।। ୬୩ ।।**

**ଅନ୍ୱୟ –** କ୍ରୋଧାତ୍ = କ୍ରୋଧରୁ; ସମ୍ମୋହଃ = ଅତ୍ୟନ୍ତ ମୂଢ଼ଭାବ; ଭବତି = ଉତ୍ପନ୍ନ ହୋଇଯାଏ; ସମ୍ମୋହାତ୍ = ମୂଢ଼ଭାବରୁ; ସ୍ମୃତିବିଭ୍ରମଃ = ସ୍ମୃତିଭ୍ରମ ହୋଇଯାଏ; ସ୍ମୃତିଭ୍ରଂଶାତ୍ = ସ୍ମୃତିଭ୍ରମ ହୋଇଥିବାରୁ; ବୁଦ୍ଧିନାଶଃ = ବୁଦ୍ଧି ଅର୍ଥାତ୍ ଜ୍ଞାନଶକ୍ତିର ନାଶ ହୋଇଯାଏ; ବୁଦ୍ଧିନାଶାତ୍ = ବୁଦ୍ଧିନାଶ ହୋଇଥିବାରୁ ସେହି ପୁରୁଷ; ପ୍ରଣଶ୍ୟତି = ନିଜସ୍ଥିତିରୁ ଖସିପଡ଼େ ।

**କ୍ରୋଧରୁ ଅତ୍ୟନ୍ତ ମୂଢ଼ଭାବ ଉତ୍ପନ୍ନ ହୋଇଯାଏ; ମୂଢ଼ଭାବରୁ ସ୍ମୃତିଭ୍ରମ ହୋଇଯାଏ; ସ୍ମୃତିବିଭ୍ରମ ହେବାରୁ ବୁଦ୍ଧି ଅର୍ଥାତ୍ ଜ୍ଞାନଶକ୍ତି ନାଶ ହୋଇଯାଏ ଏବଂ ବୁଦ୍ଧିନାଶ ହେବାରୁ ସେହି ପୁରୁଷ ନିଜର ସ୍ଥିତିରୁ ଖସିପଡ଼େ ।। ୬୩ ।।**

**ପ୍ରଶ୍ନ –** କ୍ରୋଧରୁ ଉତ୍ପନ୍ନ ହେଉଥିବା ଅତ୍ୟନ୍ତ ମୂଢ଼ଭାବର ସ୍ୱରୂପ କଣ ?

**ଉତ୍ତର –** ଯେତେବେଳେ ମନୁଷ୍ୟର ଅନ୍ତଃକରଣରେ କ୍ରୋଧବୃତ୍ତି ଜାଗ୍ରତ ହୋଇଯାଏ, ସେତେବେଳେ ତା'ର ଅନ୍ତଃକରଣରେ ବିବେକଶକ୍ତି ସମ୍ପୂର୍ଣ୍ଣ ଲୋପ ପାଇଯାଏ । ସେ ଆଗପଛ କିଛି ବିଚାର କରିପାରେ ନାହିଁ । କ୍ରୋଧପରବଶ ହୋଇ ସେ ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ତା'ର ପରିଣାମ ବିଷୟରେ ତାହାର କିଛି ଖିଆଲ

ରହେ ନାହିଁ। ଏହା ହିଁ କ୍ରୋଧରୁ ଉତ୍ପନ୍ନ ସମ୍ମୋହର ଅର୍ଥାତ୍ ଅତ୍ୟନ୍ତ ମୂଢ଼ଭାବର ସ୍ୱରୂପ।

**ପ୍ରଶ୍ନ** — ସମ୍ମୋହରୁ ଉତ୍ପନ୍ନ ହେଉଥିବା 'ସ୍ମୃତିବିଭ୍ରମ'ର ସ୍ୱରୂପ କଣ ?

**ଉତ୍ତର** — ଯେତେବେଳେ କ୍ରୋଧହେତୁ ମନୁଷ୍ୟର ଅନ୍ତଃକରଣରେ ମୂଢ଼ଭାବ ବୃଦ୍ଧି ପାଏ, ସେତେବେଳେ ତା'ର ସ୍ମରଣଶକ୍ତିର ବିଭ୍ରମ ହୋଇଯାଏ; କେଉଁ ମନୁଷ୍ୟ ସହିତ କିପରି ସମ୍ବନ୍ଧ ରହିବା ଉଚିତ, ତା'ର ସେ ବିଷୟରେ ଧ୍ୟାନ ରହେ ନାହିଁ। କଣ କରିବା ଉଚିତ ଓ କ'ଣ କରିବା ଉଚିତ ନୁହେଁ; କାର୍ଯ୍ୟଟି କରିବାକୁ ସେ ପ୍ରଥମେ କି ବିଚାର କରିଥିଲା ଏବଂ ବର୍ତ୍ତମାନ କଣ କରୁଛି ଏବଂ ସେଥିପାଇଁ ପ୍ରଥମେ ବୁଝିବିଚାରି ଠିକ୍ କରିଥିବା କାର୍ଯ୍ୟକୁ ବର୍ତ୍ତମାନ କରିପାରୁ ନାହିଁ— ଏସବୁ ବିଷୟରେ ତା'ର ସ୍ମୃତି ଛିନ୍ନଭିନ୍ନ ହୋଇଯାଏ। ଏହା ହେଉଛି ସମ୍ମୋହରୁ ଉତ୍ପନ୍ନ ସ୍ମୃତିବିଭ୍ରମର ସ୍ୱରୂପ।

**ପ୍ରଶ୍ନ** — 'ସ୍ମୃତିବିଭ୍ରମଦ୍ୱାରା ବୁଦ୍ଧି ନଷ୍ଟ ହୋଇଯାଏ ଏବଂ ଏହି ବୁଦ୍ଧିନାଶଦ୍ୱାରା ମନୁଷ୍ୟ ନିଜର ସ୍ଥିତିରୁ ଖସିପଡ଼େ'— କହିଲେ କଣ ବୁଝାଏ ?

**ଉତ୍ତର** — ଉପରୋକ୍ତପ୍ରକାରେ ସ୍ମୃତିରେ ବିଭ୍ରମ ହୋଇଯିବା ଫଳରେ ଅନ୍ତଃକରଣରେ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ନିଶ୍ଚୟ କରିବାର ଶକ୍ତି ନ ରହିବା ହିଁ ବୁଦ୍ଧି ନଷ୍ଟ ହୋଇଯିବା। ଏପରି ହେବାରୁ ମନୁଷ୍ୟ ନିଜର କର୍ତ୍ତବ୍ୟ ତ୍ୟାଗ କରି ଅକର୍ତ୍ତବ୍ୟରେ ପ୍ରବୃତ୍ତ ହୋଇଯାଏ; ତା'ର ବ୍ୟବହାରରେ କଟୁତା, କଠୋରତା, କାପୁରୁଷତା, ହିଂସା, ପ୍ରତିହିଂସା, ଦୀନତା, ଜଡ଼ତା ଏବଂ ମୂଢ଼ତା ଆଦି ଦୋଷ ଆସିଯାଏ। ଅତଏବ ତା'ର ପତନ ହୋଇଯାଏ। ସେ ଶୀଘ୍ର ନିଜର ପ୍ରଥମ ସ୍ଥିତିରୁ ତଳକୁ ଖସିପଡ଼େ ଏବଂ ମରିବା ପରେ ନାନାପ୍ରକାର ନୀଚଯୋନିରେ ବା ନରକରେ ପଡ଼େ। ଏହା ହିଁ ବୁଦ୍ଧିନାଶହେତୁ ନିଜର ସ୍ଥିତିରୁ ତଳକୁ ଖସିପଡ଼ିବା।

*ସମ୍ବନ୍ଧ — ଏପରିଭାବରେ ମନ ସହିତ ଇନ୍ଦ୍ରିୟମାନଙ୍କୁ ବଶ କରୁ ନ ଥିବା ମନୁଷ୍ୟମାନଙ୍କର ପତନର କ୍ରମ ବୁଝାଇସାରି ବର୍ତ୍ତମାନ ଭଗବାନ୍ 'ସ୍ଥିତପ୍ରଜ୍ଞଯୋଗୀ କିପରି ଚଳନ୍ତି'— ଏହି ଚତୁର୍ଥ ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କରୁଛନ୍ତି। ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ବଶ ହୋଇଥାଆନ୍ତି, ସେପରି ସାଧକ ବିଷୟମାନଙ୍କରେ କିପରି ବିଚରଣ କରନ୍ତି ଓ ତା'ର ଫଳ କଣ, ପ୍ରଥମ ଦୁଇଟି ଶ୍ଳୋକରେ ସେହି ସମ୍ବନ୍ଧରେ କହୁଛନ୍ତି—*

## ରାଗଦ୍ୱେଷବିଯୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍।
## ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି ॥ ୬୪ ॥

**ଅନ୍ୱୟ** — ତୁ = କିନ୍ତୁ; ବିଧେୟାତ୍ମା = ଅନ୍ତଃକରଣକୁ ବଶ କରିଥିବା ସାଧକ; ଆତ୍ମବଶ୍ୟୈଃ = ନିଜର ବଶ କରାଯାଇଥିବା; ରାଗଦ୍ୱେଷବିଯୁକ୍ତୈଃ = ରାଗଦ୍ୱେଷରହିତ; ଇନ୍ଦ୍ରିୟୈଃ = ଇନ୍ଦ୍ରିୟମାନଙ୍କ ଦ୍ୱାରା; ବିଷୟାନ୍ = ବିଷୟମାନଙ୍କରେ; ଚରନ୍ = ବିଚରଣ କରୁଥାଇ (ବି); ପ୍ରସାଦମ୍ = ଅନ୍ତଃକରଣର ପ୍ରସନ୍ନତା; ଅଧିଗଚ୍ଛତି = ପ୍ରାପ୍ତ ହୁଏ।

**କିନ୍ତୁ ଅନ୍ତଃକରଣକୁ ନିଜର ଅଧୀନ କରିଥିବା ସାଧକ ନିଜ ବଶରେ ରଖିଥିବା ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟମାନଙ୍କରେ ବିଚରଣ କରୁଥାଇ ମଧ୍ୟ ଅନ୍ତଃକରଣର ପ୍ରସନ୍ନତା ଲାଭ କରନ୍ତି। ॥ ୬୪ ॥**

**ପ୍ରଶ୍ନ** — ତୁ ପଦର ଭାବ କଣ ?

**ଉତ୍ତର** — ପୂର୍ବଶ୍ଳୋକରେ ଯେଉଁମାନଙ୍କର ମନ ଓ ଇନ୍ଦ୍ରିୟ ବଶରେ ନ ଥାନ୍ତି, ସେପରି ବିଷୟୀ ପୁରୁଷମାନଙ୍କ ଅବନତିର କଥା ବର୍ଣ୍ଣନା କରାଯାଇଛି ଏବଂ ବର୍ତ୍ତମାନର ଦୁଇଟି ଶ୍ଳୋକରେ ଉକ୍ତ ପୁରୁଷମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅର୍ଥାତ୍ ଯେଉଁମାନଙ୍କର ମନ ଓ ଇନ୍ଦ୍ରିୟମାନେ ବଶ ହୋଇଛନ୍ତି, ସେପରି ବିରକ୍ତ ସାଧକଙ୍କ ଉନ୍ନତିର ବର୍ଣ୍ଣନା କରାଯାଇଛି। ସେହି ପାର୍ଥକ୍ୟ ଦର୍ଶାଇବା ପାଇଁ ତୁ ପଦ ବ୍ୟବହାର କରାଯାଇଛି।

**ପ୍ରଶ୍ନ** — ବିଧେୟାତ୍ମା ପଦ କିପରି ସାଧକଙ୍କ ବାଚକ ?

**ଉତ୍ତର** — ଯେଉଁ ସାଧକ ନିଜ ଅନ୍ତଃକରଣକୁ ଭଲଭାବରେ ବଶ କରିଦେଇଛନ୍ତି, **ବିଧେୟାତ୍ମା** ହେଉଛି ସେପରି ସାଧକଙ୍କ ବାଚକ।

**ପ୍ରଶ୍ନ** — ସେପରି ସାଧକ ନିଜ ବଶରେ ରହିଥିବା ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟରେ ବିଚରଣ କରନ୍ତି କହିଲେ କଣ ବୁଝାଏ ?

**ଉତ୍ତର –** ସାଧାରଣ ମନୁଷ୍ୟମାନଙ୍କର ଇନ୍ଦ୍ରିୟମାନେ ସ୍ୱତନ୍ତ୍ର ହୋଇଥାନ୍ତି; ସେମାନଙ୍କର ବଶରେ ନ ଥାନ୍ତି; ଏବଂ ସେହି ଇନ୍ଦ୍ରିୟମାନଙ୍କରେ ରାଗ-ଦ୍ୱେଷ ପୂର୍ଣ୍ଣମାତ୍ରାରେ ଥାଏ । ତେଣୁ ସେହି ଇନ୍ଦ୍ରିୟମାନଙ୍କର ବଶ ହୋଇ ଭୋଗରେ ଲିପ୍ତଥିବା ମନୁଷ୍ୟ ଉଚିତ-ଅନୁଚିତ ବିଚାର କରିପାରେ ନାହିଁ । ସେ ଯେକୌଣସି ଉପାୟରେ ଭୋଗସାମଗ୍ରୀ ସଂଗ୍ରହ କରିବାରେ ଓ ଭୋଗ କରିବାରେ ବ୍ୟସ୍ତ ଥାଏ ଏବଂ ସେହି ଭୋଗରେ ରାଗଦ୍ୱେଷ ରଖି ସୁଖୀ-ଦୁଃଖୀ ହେଉଥାଏ । ସେ ଆଧ୍ୟାତ୍ମିକ ସୁଖ ଅନୁଭବ କରିପାରେ ନାହିଁ । କିନ୍ତୁ ଉପରୋକ୍ତ ସାଧକଙ୍କର ଇନ୍ଦ୍ରିୟମାନେ ତାଙ୍କର ବଶ ହୋଇଥିବାରୁ ସେହି ଇନ୍ଦ୍ରିୟମାନଙ୍କରେ ରାଗଦ୍ୱେଷ ଆଦି ବିକାର ନ ଥାଏ । ତେଣୁ ସେ ନିଜର ବର୍ଣ୍ଣ, ଆଶ୍ରମ ଏବଂ ପରିସ୍ଥିତି ଅନୁସାରେ ଯୋଗ୍ୟତାରୁ ପ୍ରାପ୍ତ ହୋଇଥିବା ଭୋଗରେ ବିନା ରାଗଦ୍ୱେଷରେ ବିଚରଣ କରନ୍ତି । ତାଙ୍କର ଦେଖିବା-ଶୁଣିବା, ଖାଇବା-ପିଇବା, ବସିବା-ଉଠିବା, କହିବା, ଛୁଆଁଇବା, ଚାଲିବା-ବୁଲିବା ଏବଂ ଶୋଇବା-ଉଠିବା ଆଦି ଇନ୍ଦ୍ରିୟମାନଙ୍କର ବ୍ୟବହାର ନିୟମିତ ଏବଂ ଶାସ୍ତ୍ରବିହିତ ହୁଏ । ତାଙ୍କର କୌଣସି ବି କ୍ରିୟାରେ ରାଗ-ଦ୍ୱେଷ, କାମ-କ୍ରୋଧ, ଲୋଭ-ମୋହ ଆଦି ବିକାର ରହେ ନାହିଁ । ଏହା ହିଁ ହେଉଛି 'ନିଜ ବଶରେ ରହିଥିବା ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟରେ ବିଚରଣ କରିବା ।'

**ପ୍ରଶ୍ନ –** ପ୍ରଥମେ ଅଣଷଠି ଶ୍ଳୋକରେ କୁହାଯାଇଛି ଯେ, ପରମାତ୍ମାଙ୍କ ସାକ୍ଷାତ୍କାର ନ ହେଲେ ରାଗର ନାଶ ହୁଏ ନାହିଁ; ଅଥଚ ଏଠାରେ ରାଗଦ୍ୱେଷରହିତ ହୋଇ ବିଷୟରେ ବିଚରଣ କଲେ ପ୍ରସାଦ ପ୍ରାପ୍ତ ହୋଇ ସ୍ଥିରବୁଦ୍ଧି ହୋଇଯିବା କଥା କୁହାଯାଇଛି । ଏହି କଥାରୁ ମନେ ହେଉଛି, ପରମାତ୍ମାଙ୍କ ପ୍ରାପ୍ତିପୂର୍ବରୁ ମଧ୍ୟ ରାଗଦ୍ୱେଷ ନାଶ ହେବା ସମ୍ଭବ । ଅତଏବ ଏହି ଦୁଇ କଥାରେ ଯେଉଁ ବିରୋଧ ପ୍ରତୀତ ହେଉଛି, ତାହାର ସମନ୍ୱୟ ହେବ କିପରି ?

**ଉତ୍ତର –** ଏହି ଦୁଇ କଥାରେ କୌଣସି ବିରୋଧ ନାହିଁ । କାରଣ ଅଣଷଠି ଶ୍ଳୋକରେ ତ ରାଗଦ୍ୱେଷର ଅତ୍ୟନ୍ତ ଅଭାବ କଥା କୁହାଯାଇଛି ଏବଂ ଏଠାରେ ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟସେବନ କଥା କହି ରାଗଦ୍ୱେଷର ସର୍ବଥା ଅଭାବ ହେବାର ସାଧନା କୁହାଯାଇଛି । ତୃତୀୟ ଅଧ୍ୟାୟର ଚାଳିଶ ଶ୍ଳୋକରେ ଇନ୍ଦ୍ରିୟ, ମନ ଓ ବୁଦ୍ଧି – ଏହି ତିନୋଟିକୁ କାମର ନିବାସସ୍ଥାନ ବୋଲି କୁହାଯାଇଛି । ଏଥିରୁ ଏହା ସିଦ୍ଧ ହେଲା ଯେ, ଇନ୍ଦ୍ରିୟମାନଙ୍କରେ ରାଗଦ୍ୱେଷ ନ ରହିଲେ ମଧ୍ୟ ମନ ଓ ବୁଦ୍ଧିରେ ତାହା ସୂକ୍ଷ୍ମରୂପରେ ରହିଥାଇପାରେ । କିନ୍ତୁ ଅଣଷଠି ଶ୍ଳୋକରେ ଅସ୍ୟ ପଦ ପ୍ରୟୋଗ କରି ସ୍ଥିରବୁଦ୍ଧି ପୁରୁଷଙ୍କ ଠାରେ ରାଗଦ୍ୱେଷ ଆଦିର ସର୍ବଥା ଅଭାବ ଥିବା କଥା କୁହାଯାଇଛି । ସେଠାରେ କେବଳ ଇନ୍ଦ୍ରିୟମାନଙ୍କରେ ରାଗଦ୍ୱେଷର ଅଭାବ କଥା କୁହାଯାଇ ନାହିଁ ।

**ପ୍ରଶ୍ନ –** (୧) ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟସଂଯୋଗ ହେବାକୁ ନ ଦେବା ଅର୍ଥାତ୍ ବାହ୍ୟ ବିଷୟମାନଙ୍କର ତ୍ୟାଗ, (୨) ଇନ୍ଦ୍ରିୟମାନଙ୍କର ସଂଯମ ଏବଂ (୩) ଇନ୍ଦ୍ରିୟମାନଙ୍କୁ ରାଗ-ଦ୍ୱେଷରୁ ରହିତ କରିଦେବା – ଏହି ତିନୋଟି ମଧ୍ୟରୁ କେଉଁଟି ଶ୍ରେଷ୍ଠ ଏବଂ ଭଗବତ୍ପ୍ରାପ୍ତିରେ ଅଧିକ ସହାୟକ ?

**ଉତ୍ତର –** ତିନୋଟିଯାକ ଭଗବତ୍ପ୍ରାପ୍ତିରେ ସହାୟକ; କିନ୍ତୁ ସେଥିମଧ୍ୟରୁ ବାହ୍ୟବିଷୟ ତ୍ୟାଗ ଅପେକ୍ଷା ଇନ୍ଦ୍ରିୟସଂଯମ ଏବଂ ଇନ୍ଦ୍ରିୟସଂଯମ ଅପେକ୍ଷା ଇନ୍ଦ୍ରିୟମାନଙ୍କୁ ରାଗଦ୍ୱେଷରହିତ କରିଦେବା ଅଧିକ ଉପଯୋଗୀ ଓ ଶ୍ରେଷ୍ଠ ।

ବାହ୍ୟବିଷୟତ୍ୟାଗ ଭଗବତ୍ପ୍ରାପ୍ତିରେ ସହାୟକ ହୁଏ ସତ, ତଥାପି ଯେପର୍ଯ୍ୟନ୍ତ ଇନ୍ଦ୍ରିୟମାନଙ୍କର ସଂଯମ ଏବଂ ରାଗଦ୍ୱେଷତ୍ୟାଗ ନ ହୋଇଛି, ସେପର୍ଯ୍ୟନ୍ତ କେବଳ ବାହ୍ୟ ବିଷୟତ୍ୟାଗରେ ବିଷୟରୁ ପୂର୍ଣ୍ଣନିବୃତ୍ତି ହୋଇପାରେ ନାହିଁ, କି ସିଦ୍ଧି ମିଳେ ନାହିଁ । ଆହୁରି ମଧ୍ୟ ବାହ୍ୟବିଷୟମାନଙ୍କୁ ତ୍ୟାଗ ନ କଲେ ଯେ, ଇନ୍ଦ୍ରିୟସଂଯମ ହୋଇପାରିବ ନାହିଁ, ସେପରି ମଧ୍ୟ ନୁହେଁ । କାରଣ ଭଗବାନଙ୍କର ପୂଜା, ସେବା, ଜପ ଏବଂ ବିବେକ, ବୈରାଗ୍ୟ ଆଦି ବିଭିନ୍ନ ଉପାୟରେ ସହଜରେ ଇନ୍ଦ୍ରିୟସଂଯମ ହୋଇଯାଏ ଏବଂ ଇନ୍ଦ୍ରିୟସଂଯମ ହୋଇଗଲେ ଅନାୟାସରେ ବିଷୟମାନଙ୍କୁ ତ୍ୟାଗ କରାଯାଇପାରେ । ଇନ୍ଦ୍ରିୟମାନେ ଯାହାଙ୍କର ବଶରେ ଅଛନ୍ତି, ସେ ଯେତେବେଳେ ଚାହିଁବେ, ସେତେବେଳେ ବିଷୟ ତ୍ୟାଗ କରିଦେଇପାରିବେ । ତେଣୁ ବାହ୍ୟ ବିଷୟତ୍ୟାଗ ଅପେକ୍ଷା ଇନ୍ଦ୍ରିୟସଂଯମ ଶ୍ରେଷ୍ଠତର ।

ଏପ୍ରକାର ଇନ୍ଦ୍ରିୟସଂଯମ ମଧ୍ୟ ଭଗବତ୍ପ୍ରାପ୍ତିରେ ସହାୟକ ହୁଏ; କିନ୍ତୁ ଇନ୍ଦ୍ରିୟମାନଙ୍କୁ ରାଗ-ଦ୍ୱେଷରୁ ରହିତ ନ କରାଇ କେବଳ ଇନ୍ଦ୍ରିୟସଂଯମ କରି ବିଷୟମାନଙ୍କରୁ

ପୂର୍ଣ୍ଣଭାବରେ ନିବୃତ୍ତି ହୋଇଗଲେ, ବାସ୍ତବରେ ପରମାତ୍ମପ୍ରାପ୍ତି ହୋଇପାରେ ନାହିଁ ଏବଂ ଏପରି ମଧ୍ୟ ନୁହେଁ ଯେ, ବାହ୍ୟବିଷୟତ୍ୟାଗ ଓ ଇନ୍ଦ୍ରିୟସଂଯମ ବିନା ଇନ୍ଦ୍ରିୟମାନେ ରାଗଦ୍ୱେଷରୁ ରହିତ ହୋଇପାରିବେ ନାହିଁ। ସତ୍‌ସଙ୍ଗ, ସ୍ୱାଧ୍ୟାୟ ଏବଂ ବିଚାରଦ୍ୱାରା ସାଂସାରିକ ଭୋଗରେ ଅନିତ୍ୟତା ଜ୍ଞାନ ହୋଇଯିବା ପରେ, ଈଶ୍ୱରକୃପା ଏବଂ ଭଜନ, ଧ୍ୟାନ ଆଦିଦ୍ୱାରା ରାଗ-ଦ୍ୱେଷ ନାଶ ହୋଇଯାଇପାରେ ଏବଂ ଯାହାଙ୍କ ଇନ୍ଦ୍ରିୟମାନଙ୍କର ରାଗଦ୍ୱେଷ ନାଶ ହୋଇଯାଇଛି, ତାଙ୍କର ବାହ୍ୟବିଷୟତ୍ୟାଗ ଏବଂ ଇନ୍ଦ୍ରିୟସଂଯମ ଅନାୟାସରେ ସ୍ୱତଃ ହୋଇଯାଏ। ଯାହାଙ୍କର ଇନ୍ଦ୍ରିୟମାନଙ୍କରେ ବିଷୟ ପ୍ରତି ରାଗଦ୍ୱେଷ ନାହିଁ, ସେହି ପୁରୁଷ ଯଦି ବାହ୍ୟରୂପରେ ବିଷୟତ୍ୟାଗ କରି ନ ଥାନ୍ତି, ତେବେ ସେ ବିଷୟମାନଙ୍କରେ ବିଚରଣ କରୁଥାଇ ହିଁ ପରମାତ୍ମାଙ୍କୁ ପାଇପାରନ୍ତି। ତେଣୁ ବିଷୟତ୍ୟାଗ ଏବଂ ଇନ୍ଦ୍ରିୟସଂଯମ ଅପେକ୍ଷା ରାଗଦ୍ୱେଷରହିତ ହେବା ଶ୍ରେଷ୍ଠତର।

**ପ୍ରଶ୍ନ –** ପ୍ରସାଦମ୍ ପଦ ଏଠାରେ କାହାର ବାଚକ ?

**ଉତ୍ତର –** ବଶୀକୃତ ଇନ୍ଦ୍ରିୟମାନଙ୍କ ଦ୍ୱାରା ରାଗଦ୍ୱେଷରହିତ ବ୍ୟବହାର ପ୍ରଦର୍ଶନ କଲେ ସାଧକଙ୍କର ଅନ୍ତଃକରଣ ଶୁଦ୍ଧ ଏବଂ ସ୍ୱଚ୍ଛ ହୋଇଯାଏ। ତେଣୁ ସେ ଯେଉଁ ଆଧ୍ୟାତ୍ମିକ ସୁଖ ଏବଂ ଶାନ୍ତି ଅନୁଭବ କରନ୍ତି (୧୮/୩୭), **ପ୍ରସାଦମ୍** ପଦଟି ହେଉଛି ସେହି ସୁଖ ଓ ଶାନ୍ତିର ବାଚକ। ସେହି ସୁଖ ଓ ଶାନ୍ତିର ହେତୁରୂପୀ ଅନ୍ତଃକରଣର ପବିତ୍ରତାକୁ ପ୍ରସାଦ କୁହାଯାଏ ଏବଂ ଯେଣୁ ଭଗବାନଙ୍କୁ ଅର୍ପଣ କରାଯାଇଥିବା ବସ୍ତୁ ଅନ୍ତଃକରଣକୁ ପବିତ୍ର କରିଥାଏ, ତେଣୁ ତାହାକୁ ମଧ୍ୟ **'ପ୍ରସାଦମ୍'** କହନ୍ତି। କିନ୍ତୁ ଆସନ୍ତା ଶ୍ଳୋକରେ ଉପରୋକ୍ତ ପୁରୁଷଙ୍କ ପାଇଁ **ପ୍ରସନ୍ନଚେତସଃ** ପଦ ପ୍ରୟୋଗ କରାଯାଇଛି; ତେଣୁ ଏଠାରେ **ପ୍ରସାଦମ୍** ପଦର ଅର୍ଥ ଅନ୍ତଃକରଣର ଆଧ୍ୟାତ୍ମିକ ପ୍ରସନ୍ନତା ବୋଲି ଗ୍ରହଣ କରିବା ଠିକ୍ ହେବ।

## ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।
## ପ୍ରସନ୍ନଚେତସୋ ହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ।। ୬୫ ।।

**ଅନ୍ୱୟ –** ପ୍ରସାଦେ = ଅନ୍ତଃକରଣର ପ୍ରସନ୍ନତାରେ; **ଅସ୍ୟ** = ଏହାଙ୍କର; **ସର୍ବଦୁଃଖାନାମ୍** = ସବୁ ଦୁଃଖମାନଙ୍କର; **ହାନିଃ** = ଅଭାବ; **ଉପଜାୟତେ** = ହୋଇଯାଏ; **ପ୍ରସନ୍ନଚେତସଃ** = ପ୍ରସନ୍ନଚିତ୍ତଯୁକ୍ତ କର୍ମଯୋଗୀଙ୍କର; **ବୁଦ୍ଧିଃ** = ବୁଦ୍ଧି; **ଆଶୁ ହି** = ଶୀଘ୍ର ହିଁ; **ପର୍ଯ୍ୟବତିଷ୍ଠତେ** = ସବୁଆଡୁ ଅପସରି ଆସି ଏକ ପରମାତ୍ମାଙ୍କ ଠାରେ ଭଲଭାବରେ ସ୍ଥିର ହୋଇଯାଏ।

**ଅନ୍ତଃକରଣର ପ୍ରସନ୍ନତା ଆସିବା ଫଳରେ ତାଙ୍କର ସମସ୍ତ ଦୁଃଖର ବିନାଶ ହୋଇଯାଏ ଏବଂ ସେହି ପ୍ରସନ୍ନଚିତ୍ତ କର୍ମଯୋଗୀଙ୍କର ବୁଦ୍ଧି ଶୀଘ୍ର ହିଁ ସକଳ ଦିଗରୁ ଅପସରି ଆସି ଏକ ପରମାତ୍ମାଙ୍କ ଠାରେ ଭଲଭାବରେ ସ୍ଥିର ହୋଇଯାଏ।। ୬୫ ।।**

**ପ୍ରଶ୍ନ –** ଅନ୍ତଃକରଣର ପ୍ରସନ୍ନତାରେ ସକଳ ଦୁଃଖର କିପରି ଅଭାବ ହୁଏ ?

**ଉତ୍ତର –** ପାପହେତୁ ହିଁ ମନୁଷ୍ୟମାନଙ୍କର ଦୁଃଖ ହୁଏ ଏବଂ କର୍ମଯୋଗସାଧନାଦ୍ୱାରା ପାପ ନାଶ ହୋଇ ଅନ୍ତଃକରଣ ବିଶୁଦ୍ଧ ହୋଇଯାଏ; ଶୁଦ୍ଧ ଅନ୍ତଃକରଣରେ ହିଁ ଉପରୋକ୍ତ ସାତ୍ତ୍ୱିକ ପ୍ରସନ୍ନତା ସମ୍ଭବ ହୁଏ। ତେଣୁ ସାତ୍ତ୍ୱିକ ପ୍ରସନ୍ନତାରେ ସକଳ ଦୁଃଖର ଅଭାବ ହୁଏ ବୋଲି କହିବା ନ୍ୟାୟସଙ୍ଗତ ଅଟେ (୧୮/୩୬,୩୭)।

**ପ୍ରଶ୍ନ – ସର୍ବଦୁଃଖାନାମ୍** ପଦଟି କେଉଁମାନଙ୍କ ବାଚକ ଏବଂ ସେମାନଙ୍କର ଅଭାବ ହୋଇଯିବାର ଅର୍ଥ କଣ ?

**ଉତ୍ତର –** ଅନୁକୂଳ ପଦାର୍ଥର ବିୟୋଗ ଏବଂ ପ୍ରତିକୂଳ ପଦାର୍ଥର ସଂଯୋଗଦ୍ୱାରା ଯେଉଁ ଆଧ୍ୟାତ୍ମିକ, ଆଧିଦୈବିକ ଏବଂ ଆଧିଭୌତିକ ଆଦି ଦୁଃଖ ସାଂସାରିକ ଲୋକମାନଙ୍କୁ ଭୋଗ କରିବାକୁ ହୁଏ, **ଦୁଃଖାନାମ୍** ହେଉଛି ସେହି ସମସ୍ତ ଦୁଃଖର ବାଚକ। ଉପରେ କୁହାଯାଇଥିବା ସାଧକଙ୍କୁ ଆଧ୍ୟାତ୍ମିକ ସାତ୍ତ୍ୱିକ ପ୍ରସନ୍ନତା ଅନୁଭବ ହୋଇଯିବା ପରେ ତାଙ୍କୁ କୌଣସି ବି ବସ୍ତୁର ସଂଯୋଗ-ବିୟୋଗରେ ସାମାନ୍ୟମାତ୍ର ବି ଦୁଃଖ ହୁଏ ନାହିଁ। ସେ ସର୍ବଦା ଆନନ୍ଦରେ ମଗ୍ନ ରହନ୍ତି। ଏହା ହିଁ ସକଳ ଦୁଃଖର ଅଭାବ ହୋଇଯିବା।

**ପ୍ରଶ୍ନ –** 'ପ୍ରସନ୍ନଚିତ୍ତ ଯୋଗୀଙ୍କର ବୁଦ୍ଧି ଶୀଘ୍ର ସକଳଦିଗରୁ ଅପସରି ଆସି ପୂର୍ଣ୍ଣଭାବରେ ପରମାତ୍ମାଙ୍କ ଠାରେ ସ୍ଥିର ହୋଇଯାଏ।' ଏହି କଥନର ତାତ୍ପର୍ଯ୍ୟ କଣ ?

ଉତ୍ତର — ଏହାର ତାତ୍ପର୍ଯ୍ୟ ଏହି ଯେ, ସାଧକଙ୍କର ଅନ୍ତଃକରଣ ପବିତ୍ର ହେଲେ ତାଙ୍କୁ ଆଧ୍ୟାତ୍ମିକ ପ୍ରସନ୍ନତା ପ୍ରାପ୍ତ ହୋଇଯାଏ ଏବଂ ତାଙ୍କର ମନ କ୍ଷଣକପାଇଁ ମଧ୍ୟ ସେହି ସୁଖ ଓ ଶାନ୍ତି ତ୍ୟାଗ କରିପାରେ ନାହିଁ। ତେଣୁ ତାଙ୍କ ଅନ୍ତଃକରଣର ବୃତ୍ତିଗୁଡ଼ିକ ସବୁଦିଗରୁ ଅପସରି ଆସନ୍ତି; ତାଙ୍କର ବୁଦ୍ଧି ଶୀଘ୍ର ପରମାତ୍ମାଙ୍କ ସ୍ୱରୂପରେ ସ୍ଥିର ହୋଇଯାଏ ଏବଂ ତାଙ୍କ ସିଦ୍ଧାନ୍ତରେ ପରମାତ୍ମାଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁ ରହେ ନାହିଁ।

**ପ୍ରଶ୍ନ** — ଅର୍ଜୁନ ସ୍ଥିତପ୍ରଜ୍ଞ ସିଦ୍ଧପୁରୁଷଙ୍କ ବିଷୟରେ ପ୍ରଶ୍ନ କରିଥିଲେ। ଏହି ଶ୍ଳୋକରେ ସାଧକଙ୍କର ବର୍ଣ୍ଣନା କରାଯାଇଛି; କାରଣ ଏହାର ଫଳସ୍ୱରୂପ ପ୍ରସାଦପ୍ରାପ୍ତିଦ୍ୱାରା ବୁଦ୍ଧି ଶୀଘ୍ର ସ୍ଥିର ହୋଇଯାଏ ବୋଲି କୁହାଯାଇଛି। ଅତଏବ ଏହାକୁ ଅର୍ଜୁନଙ୍କ ଚତୁର୍ଥ ପ୍ରଶ୍ନର ଉତ୍ତର ବୋଲି ଜାଣିବା କିପରି ?

**ଉତ୍ତର** — ଅର୍ଜୁନଙ୍କ ପ୍ରଶ୍ନ ସାଧକଙ୍କ ସମ୍ବନ୍ଧରେ ନ ଥିଲେ ବି, ଅର୍ଜୁନ ସାଧକ ଥିଲେ ଏବଂ ଭଗବାନ୍ ତାଙ୍କୁ ସିଦ୍ଧ କରିଦେବାକୁ ଚାହିଁଥିଲେ। ଅତଏବ ତାଙ୍କୁ ସରଳଭାବରେ ବୁଝାଇବାପାଇଁ ଭଗବାନ୍ ପ୍ରଥମେ ସାଧକଙ୍କ କଥା କହି ଶେଷରେ ଏକସ୍ତରି ଶ୍ଳୋକରେ ସିଦ୍ଧଙ୍କ ଠାରେ ତାହାର ଉପସଂହାର କରିଛନ୍ତି। ଅର୍ଜୁନଙ୍କ ପ୍ରଶ୍ନର ସମ୍ପୂର୍ଣ୍ଣ ଉତ୍ତର ତ ସେହି ଉପସଂହାରରେ ହିଁ ରହିଯାଇଛି। ଏହି ଶ୍ଳୋକରେ ତାହାର ଭୂମିକା ଆରମ୍ଭ କରାଯାଇଛି। ତେଣୁ ଅର୍ଜୁନଙ୍କ ଚତୁର୍ଥ ପ୍ରଶ୍ନର ଉତ୍ତର ଏଠାରୁ ଆରମ୍ଭ ହୋଇଛି ବୋଲି ବୁଝିବାକୁ ହେବ।

**ସମ୍ବନ୍ଧ** — *ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରି ଅନାସକ୍ତଭାବରେ ସେମାନଙ୍କ ଦ୍ୱାରା ବ୍ୟବହାର ପ୍ରଦର୍ଶନ କରୁଥିବା ସାଧକ ସୁଖ, ଶାନ୍ତି ଏବଂ ସ୍ଥିତପ୍ରଜ୍ଞ ଅବସ୍ଥା ପ୍ରାପ୍ତ ହୁଅନ୍ତି ବୋଲି କହିଲେ। ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ, ଏହାର ବିପରୀତରେ, ଯେଉଁମାନଙ୍କର ମନ ତଥା ଇନ୍ଦ୍ରିୟମାନେ ବଶ ହୋଇ ନାହାନ୍ତି, ସେହି ବିଷୟାସକ୍ତ ମନୁଷ୍ୟମାନଙ୍କ ଠାରେ ସୁଖଶାନ୍ତିର ଅଭାବ ହେଉଥିବା ଦେଖାଇ ବିଷୟ ସଙ୍ଗରେ ରହିବା ଫଳରେ ସେମାନଙ୍କର ବୁଦ୍ଧି କିପରି ବିଚଳିତ ହୋଇଯାଏ, ତାହା କହୁଛନ୍ତି* —

## ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।
## ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ।। ୬୬ ।।

**ଅନ୍ୱୟ** — **ଅଯୁକ୍ତସ୍ୟ** = ମନ ଓ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିବା ମନୁଷ୍ୟର; **ବୁଦ୍ଧିଃ** = ନିଶ୍ଚୟାତ୍ମିକା ବୁଦ୍ଧି; **ନ, ଅସ୍ତି** = ହୁଏ ନାହିଁ; **ଚ** = ଏବଂ; **ଅଯୁକ୍ତସ୍ୟ** = ଅଯୁକ୍ତ ମନୁଷ୍ୟର (ଅନ୍ତଃକରଣରେ); **ଭାବନା** = ଆସ୍ତିକଭାବନା; **ନ** = (ହୁଏ) ନାହିଁ; **ଚ** = ତଥା; **ଅଭାବୟତଃ** = ଭାବନାହୀନ ମନୁଷ୍ୟର; **ଶାନ୍ତିଃ** = ଶାନ୍ତି; **ନ** = (ମିଳେ) ନାହିଁ; **ଅଶାନ୍ତସ୍ୟ** = ଶାନ୍ତିରହିତ ମନୁଷ୍ୟର; **ସୁଖମ୍, କୁତଃ** = ସୁଖ କିପରି ବା କେଉଁଠୁ ମିଳିବ ?

**ମନ ଓ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିବା ମନୁଷ୍ୟର ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ ଏବଂ ସେପରି ଅଯୁକ୍ତ ମନୁଷ୍ୟର ଅନ୍ତଃକରଣରେ ଆସ୍ତିକଭାବନା ବି ଆସେ ନାହିଁ; ଆସ୍ତିକ ଭାବନାହୀନ ମନୁଷ୍ୟକୁ ଶାନ୍ତି ମିଳେ ନାହିଁ; ଶାନ୍ତିରହିତ ମନୁଷ୍ୟକୁ ସୁଖ ବା କେଉଁଠୁ ମିଳିବ ?।। ୬୬ ।।**

**ପ୍ରଶ୍ନ** — **ଅଯୁକ୍ତସ୍ୟ** ପଦ ଏଠାରେ କେଉଁ ମନୁଷ୍ୟପାଇଁ ବ୍ୟବହାର କରାଯାଇଛି ?

**ଉତ୍ତର** — ଯାହାର ମନ ଓ ଇନ୍ଦ୍ରିୟ ବଶ ହୋଇ ନାହିଁ ଏବଂ ଯାହାର ଇନ୍ଦ୍ରିୟମାନଙ୍କରେ ଅତ୍ୟନ୍ତ ଭୋଗାସକ୍ତି ରହିଛି, ସେପରି ବିଷୟାସକ୍ତ ଅବିବେକୀ ମନୁଷ୍ୟପାଇଁ **ଅଯୁକ୍ତସ୍ୟ** ପଦ ବ୍ୟବହାର କରାଯାଇଛି।

**ପ୍ରଶ୍ନ** — 'ଅଯୁକ୍ତର ବୁଦ୍ଧି ହୁଏ ନାହିଁ' — ଏହି କଥାର ଭାବ କଣ ?

**ଉତ୍ତର** — ଏଥିରେ କୁହାଯାଇଛି ଯେ, ଅଯୁକ୍ତ ଲୋକର ଏକଚାଳିଶ ଶ୍ଳୋକରେ ବର୍ଣ୍ଣିତ ହୋଇଥିବା **ନିଶ୍ଚୟାତ୍ମିକା ବୁଦ୍ଧି** ହୁଏ ନାହିଁ; ନାନାପ୍ରକାର ଭୋଗାସକ୍ତି ଏବଂ କାମନାହେତୁ ତା'ର ମନ ବିକ୍ଷିପ୍ତ ହୋଇଯାଇଥାଏ। ତେଣୁ ସେ ନିଜର କର୍ତ୍ତବ୍ୟ ନିଶ୍ଚୟ କରି ପରମାତ୍ମାଙ୍କ ସ୍ୱରୂପରେ ନିଜ ବୁଦ୍ଧିକୁ ସ୍ଥିର କରି ରଖିପାରେ ନାହିଁ।

**ପ୍ରଶ୍ନ** — 'ଅଯୁକ୍ତର ଅନ୍ତଃକରଣରେ ଆସ୍ତିକଭାବନା ମଧ୍ୟ ହୁଏ ନାହିଁ' — ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଏହାଦ୍ୱାରା କୁହାଯାଇଛି ଯେ, ମନ ଓ ଇନ୍ଦ୍ରିୟମାନଙ୍କର ଅଧୀନ ହୋଇ ରହୁଥିବା ବିଷୟାସକ୍ତ ମନୁଷ୍ୟମାନଙ୍କର ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ; ତେଣୁ ସେମାନଙ୍କର ଯେ ଆସ୍ତିକଭାବନା ମଧ୍ୟ ହୁଏ ନାହିଁ, ତାହା ନ କହିଲେ ଚଳେ। ଅର୍ଥାତ୍ ପରମାତ୍ମାଙ୍କ ସ୍ୱରୂପରେ ବୁଦ୍ଧି ସ୍ଥିର ହେବା ତ ଦୂରର କଥା, ବିଷୟରେ ଆସକ୍ତି ଥିବାରୁ ସେମାନେ ପରମାତ୍ମାଙ୍କ ଚିନ୍ତନ ମଧ୍ୟ କରିପାରନ୍ତି ନାହିଁ; ସେମାନଙ୍କର ମନ ନିରନ୍ତର ବିଷୟରେ ହିଁ ରମଣ କରୁଥାଏ।

**ପ୍ରଶ୍ନ—** 'ଭାବନାହୀନ ମନୁଷ୍ୟକୁ ଶାନ୍ତି ମିଳେ ନାହିଁ'— ଏହାର ଅଭିପ୍ରାୟ କଣ?

**ଉତ୍ତର—** ଏପରି କହି ଦେଖାଇଦିଆଯାଇଛି ଯେ, ପରମ ଆନନ୍ଦ ଏବଂ ଶାନ୍ତିର ସାଗର ପରମାତ୍ମାଙ୍କ ଚିନ୍ତନ ହୋଇ ନ ପାରିବାରୁ ଅଯୁକ୍ତ ମନୁଷ୍ୟର ଚିତ୍ତ ନିରନ୍ତର ବିକ୍ଷିପ୍ତ ରହେ। ସେଥିରେ ରାଗ-ଦ୍ୱେଷ, କାମ-କ୍ରୋଧ ଏବଂ ଲୋଭ-ଈର୍ଷା ଆଦି ହେତୁ ସର୍ବଦା ଜ୍ୱାଳା ଓ ବ୍ୟାକୁଳତା ଲାଗିରହିଥାଏ। ତେଣୁ ତାକୁ ଶାନ୍ତି ମିଳେ ନାହିଁ।

**ପ୍ରଶ୍ନ—** 'ଶାନ୍ତିରହିତ ମନୁଷ୍ୟକୁ ସୁଖ ବା ମିଳିପାରିବ କେଉଁଠୁ?'— ଏହି କଥାର ଅଭିପ୍ରାୟ କଣ?

**ଉତ୍ତର—** ଚିତ୍ତରେ ସର୍ବଦା ଅଶାନ୍ତି ଲାଗିରହିଲେ ମନୁଷ୍ୟକୁ କୌଣସି ଅବସ୍ଥାରେ ଏବଂ କୌଣସି ଉପାୟରେ ପ୍ରକୃତ ସୁଖ ମିଳିପାରିବ ନାହିଁ। ବିଷୟ ଓ ଇନ୍ଦ୍ରିୟମାନଙ୍କ ସଂଯୋଗରେ ତଥା ନିଦ୍ରା, ଆଳସ୍ୟ ଓ ପ୍ରମାଦରେ ଭ୍ରମବଶତଃ ଯେଉଁ ସୁଖର ପ୍ରତୀତି ହୁଏ, ତାହା ବାସ୍ତବରେ ସୁଖ ନୁହେଁ; ତାହା ଦୁଃଖର କାରଣ ହୋଇଥିବାରୁ ଦୁଃଖ ହିଁ ଅଟେ।

**ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁ ବିଧୀୟତେ ।**
**ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି ॥ ୬୭ ॥**

**ଅନ୍ୱୟ—** **ହି** = କାରଣ; **ଇବ** = ଯେପରି; **ଅମ୍ଭସି** = ଜଳରେ (ଚାଲୁଥିବା); **ନାବମ୍** = ନାବକୁ; **ବାୟୁଃ** = ବାୟୁ; **ହରତି** = ହରଣ କରିନିଏ (ସେପରି); **ଚରତାମ୍** = ବିଷୟରେ ବିଚରଣ କରୁଥିବା; **ଇନ୍ଦ୍ରିୟାଣାମ୍** = ଇନ୍ଦ୍ରିୟମାନଙ୍କ ମଧ୍ୟରୁ; **ମନଃ** = ମନ; **ଯତ୍** = ଯେଉଁ (ଇନ୍ଦ୍ରିୟ); **ଅନୁ** = ସହିତ; **ବିଧୀୟତେ** = ରହେ; **ତତ୍** = ସେହି (ଗୋଟିକ ଇନ୍ଦ୍ରିୟ ବି); **ଅସ୍ୟ** = ଏହାର (ଏହି ଅଯୁକ୍ତ ପୁରୁଷର); **ପ୍ରଜ୍ଞାମ୍** = ବୁଦ୍ଧିକୁ (ହରଣ କରିନିଏ)।

**କାରଣ ବାୟୁ ଯେପରି ଜଳରେ ଚାଲୁଥିବା ନୌକାକୁ ହରଣ କରିନିଏ, ବିଷୟରେ ବିଚରଣ କରୁଥିବା ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯେଉଁ ଇନ୍ଦ୍ରିୟଟିର ସହିତ ମନ ରହିଥାଏ, ସେହି ଗୋଟିକ ଇନ୍ଦ୍ରିୟ ବି ସେହିପରି ଉକ୍ତ ଅଯୁକ୍ତ ମନୁଷ୍ୟର ବୁଦ୍ଧିକୁ ହରଣ କରିନିଏ॥ ୬୭ ॥**

**ପ୍ରଶ୍ନ—** ହି ପଦର ଭାବ କଣ?

**ଉତ୍ତର—** ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଅଯୁକ୍ତ ମନୁଷ୍ୟର ନିଶ୍ଚଳବୁଦ୍ଧି, ଭାବନା, ଶାନ୍ତି ଓ ସୁଖ ରହେ ନାହିଁ। ତାହା ସ୍ପଷ୍ଟ କରିଦେବାକୁ ଏହି ଶ୍ଳୋକରେ ସେସବୁ ନ ମିଳିବାର କାରଣ ଦିଆଯାଇଛି। ଏହି ଭାବ ଦେଖାଇବାପାଇଁ ହି ହେତୁବାଚକ ପଦ ବ୍ୟବହାର କରାଯାଇଛି।

**ପ୍ରଶ୍ନ—** ଜଳରେ ଚାଲୁଥିବା ନୌକା ଏବଂ ବାୟୁର ଦୃଷ୍ଟାନ୍ତ ଦେଇ ଏଠାରେ କେଉଁ କଥା କୁହାଯାଇଛି?

**ଉତ୍ତର—** ଦୃଷ୍ଟାନ୍ତରେ ନୌକା ବୁଦ୍ଧିର, ଯେଉଁ ଇନ୍ଦ୍ରିୟ ସହିତ ମନ ରହେ, ବାୟୁ ସେହି ଇନ୍ଦ୍ରିୟର, ଜଳାଶୟ ସଂସାରରୂପକ ସମୁଦ୍ରର ଏବଂ ଜଳ ଶବ୍ଦାଦି ସମସ୍ତ ବିଷୟର ବାଚକ ଅଟେ। ଜଳରେ ନିଜର ଗନ୍ତବ୍ୟସ୍ଥାନକୁ ଯାଉଥିବା ନୌକାକୁ ପ୍ରବଳବାୟୁ ଦୁଇ ପ୍ରକାରରେ ବିଚଳିତ କରେ— ହୁଏତ ତାହାକୁ ପଥଭ୍ରଷ୍ଟ କରି ଜଳର ଭୀଷଣ ତରଙ୍ଗରେ ପକାଇଦିଏ କିମ୍ବା ତାହାକୁ ଅଗାଧଜଳରେ ବୁଡ଼ାଇଦିଏ। କିନ୍ତୁ ଯଦି କୌଣସି ଚତୁର ନାବିକ ସେହି ବାୟୁର କ୍ରିୟାକୁ ନିଜର ଅନୁକୂଳ କରିନିଅନ୍ତି, ତେବେ ବାୟୁ ଆଉ ନୌକାକୁ ପଥଭ୍ରଷ୍ଟ କରିପାରେ ନାହିଁ; ବରଂ ତାହାକୁ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇବାରେ ସାହାଯ୍ୟ କରେ। ସେହିପରି ଯାହାଙ୍କର ମନ-ଇନ୍ଦ୍ରିୟ ନିଜ ବଶରେ ନାହାନ୍ତି, ସେପରି ମନୁଷ୍ୟ ଯଦି ନିଜର ବୁଦ୍ଧିକୁ ପରମାତ୍ମାଙ୍କ ସ୍ୱରୂପରେ ନିଶ୍ଚଳ କରି ରଖିବାକୁ ଇଚ୍ଛା କରନ୍ତି, ତେବେ ତାଙ୍କ ଇନ୍ଦ୍ରିୟମାନେ ମନକୁ ଆକର୍ଷିତ କରି ତାଙ୍କ ବୁଦ୍ଧିକୁ ଦୁଇପ୍ରକାରରେ ବିଚଳିତ କରନ୍ତି। ଇନ୍ଦ୍ରିୟମାନେ ବୁଦ୍ଧିରୂପକ

ନୌକାକୁ ପରମାତ୍ମାଙ୍କ ଠାରୁ ଦୂରେଇନେଇ ନାନାପ୍ରକାର ଭୋଗପ୍ରାପ୍ତିର ଉପାୟ ଚିନ୍ତା କରିବାରେ ଲଗାଇଦେବାଟି ତାହାକୁ ଭୀଷଣ ତରଙ୍ଗରେ ପକାଇଦେବା ସହିତ ସମାନ ଏବଂ ପାପରେ ପ୍ରବୃତ୍ତ କରି ତାଙ୍କର ଅଧୋପତନ ଘଟାଇଦେବା ହେଉଛି ଅଗାଧ ଜଳରେ ବୁଡ଼ାଇଦେବା ସହିତ ସମାନ। କିନ୍ତୁ ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ବଶରେ ଥାଆନ୍ତି, ତାଙ୍କର ବୁଦ୍ଧିକୁ ଇନ୍ଦ୍ରିୟମାନେ ବିଚଳିତ କରିପାରନ୍ତି ନାହିଁ; ବରଂ ସେମାନେ ବୁଦ୍ଧିରୂପକ ନୌକାକୁ ପରମାତ୍ମାଙ୍କ ପାଖରେ ପହଞ୍ଚାଇବାରେ ସହାୟତା କରନ୍ତି। ଚଉଷଠି ଓ ପଞ୍ଚଷଠି ଶ୍ଳୋକରେ ଏହି କଥା କୁହାଯାଇଛି।

**ପ୍ରଶ୍ନ** — ଇନ୍ଦ୍ରିୟମାନଙ୍କ ଦ୍ୱାରା ବୁଦ୍ଧି ବିଚଳିତ ହେବା କଥା ନ କହି, 'ଗୋଟିଏ ଇନ୍ଦ୍ରିୟଦ୍ୱାରା ବି ବୁଦ୍ଧି ବିଚଳିତ ହୋଇଯାଏ' ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର** — ଏଠାରେ ଇନ୍ଦ୍ରିୟମାନଙ୍କର ପ୍ରବଳତା ଦେଖାଇଦିଆଯାଇଛି। ସବୁ ଇନ୍ଦ୍ରିୟ ମିଶିଗଲେ ଯେ ମନୁଷ୍ୟର ବୁଦ୍ଧିକୁ ବିଚଳିତ କରିଦେବେ, ସେଥିରେ କହିବାର କିଛି ନାହିଁ; କିନ୍ତୁ ଲକ୍ଷ୍ୟ କରନ୍ତୁ ଯେ, ଯେଉଁ ଇନ୍ଦ୍ରିୟ ସହିତ ମନ ରହେ, ସେହି ଗୋଟିକ ଇନ୍ଦ୍ରିୟ ବି ବୁଦ୍ଧିକୁ ବିଷୟରେ ପକାଇଦେଇ ବିଚଳିତ କରିଦିଏ। ଦେଖାଯାଏ ଯେ, କର୍ଣ୍ଣେନ୍ଦ୍ରିୟର ବଶ ହୋଇ ମୃଗ, ସ୍ପର୍ଶେନ୍ଦ୍ରିୟର ବଶ ହୋଇ ହାତୀ, ଚକ୍ଷୁ ଇନ୍ଦ୍ରିୟର ବଶ ହୋଇ ପତଙ୍ଗ, ରସନା ଇନ୍ଦ୍ରିୟର ବଶ ହୋଇ ମାଛ ଏବଂ ଘ୍ରାଣେନ୍ଦ୍ରିୟର ବଶ ହୋଇ ଭ୍ରମର— ଏହିପରି ଗୋଟିଏ ଗୋଟିଏ ଇନ୍ଦ୍ରିୟର ବଶ ହୋଇ ରହିଥିବାରୁ ଏମାନେ ନିଜର ପ୍ରାଣ ମଧ୍ୟ ଦେଇଦିଅନ୍ତି। ସେହିପରି ମନୁଷ୍ୟର ବୁଦ୍ଧି ମଧ୍ୟ ଗୋଟିଏ ଗୋଟିଏ ଇନ୍ଦ୍ରିୟଦ୍ୱାରା ବିଚଳିତ ହୋଇଯାଇପାରେ।

**ପ୍ରଶ୍ନ** — ଏଠାରେ **ଯତ୍** ଓ **ତତ୍‌**ର ସମ୍ବନ୍ଧ ମନ ସହିତ କରା ନ ଯିବ କାହିଁକି?

**ଉତ୍ତର** — ଏଠାରେ **ଇନ୍ଦ୍ରିୟାଣାମ୍** ପଦରେ 'ନିର୍ଦ୍ଧାରଣେ ଷଷ୍ଠୀ' ହୋଇଛି; ତେଣୁ ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯେଉଁ ଗୋଟିକ ଇନ୍ଦ୍ରିୟ ସହିତ ମନ ରହେ, ତାହା ସହିତ **ଯତ୍** ପଦର ସମ୍ବନ୍ଧ ରହିଛି ବୋଲି ଧରିବା ଉଚିତ ଏବଂ **ଯତ୍** ଓ **ତତ୍‌**ର ନିତ୍ୟସମ୍ବନ୍ଧ ରହିଥିବାରୁ, **ତତ୍‌**ର ସମ୍ବନ୍ଧ ମଧ୍ୟ ଇନ୍ଦ୍ରିୟ ସହିତ ହିଁ ହେବ। **ଅନୁ** **ବିଧୀୟତେ**ରେ **ଅନୁ** ଉପସର୍ଗ ନୁହେଁ; ତାହା କର୍ମପ୍ରବଚନୀୟ-ସଂଜ୍ଞକ ଅବ୍ୟୟ ଅଟେ। ଏଣୁ ତାହାର ଯୋଗରେ **ଯତ୍‌**ରେ ଦ୍ୱିତୀୟା ବିଭକ୍ତି ହୋଇଛି ଏବଂ କର୍ମକର୍ତ୍ତୃପ୍ରକ୍ରିୟା ଅନୁସାରେ **ବିଧୀୟତେ**ର କର୍ମଭୂତ **ମନଃ** ପଦ ହିଁ କର୍ତ୍ତାରୂପରେ ବ୍ୟବହୃତ ହୋଇଛି। ତା' ବ୍ୟତୀତ ପରବର୍ତ୍ତୀ ଶ୍ଳୋକରେ **ତସ୍ମାତ୍** ପଦ ପ୍ରୟୋଗ କରି ଇନ୍ଦ୍ରିୟମାନଙ୍କୁ ବଶ କରୁଥିବା ବ୍ୟକ୍ତିର ବୁଦ୍ଧି ସ୍ଥିର ବୋଲି କୁହାଯାଇଛି। ସେହି କାରଣରୁ ମଧ୍ୟ ଏଠାରେ **ଯତ୍** ଓ **ତତ୍** ପଦର ଇନ୍ଦ୍ରିୟ ସହିତ ସମ୍ବନ୍ଧ ରହିଛି ବୋଲି ମାନିବା ଅଧିକ ଯୁକ୍ତିସଙ୍ଗତ ମନେ ହେଉଛି।

**ପ୍ରଶ୍ନ** — ଏକାକୀ ମନ କିମ୍ବା ଏକାକୀ ଇନ୍ଦ୍ରିୟ ବୁଦ୍ଧିକୁ ହରଣ କରିବାକୁ ସମର୍ଥ ହୋଇ ପାରିବ, ନା ନାହିଁ?

**ଉତ୍ତର** — ମନର ସାଥୀ ନ ହୋଇ କେବଳ ଇନ୍ଦ୍ରିୟ ହିଁ ବୁଦ୍ଧିକୁ ହରଣ କରିପାରିବ ନାହିଁ, କିନ୍ତୁ ଇନ୍ଦ୍ରିୟର ସହାୟତା ନ ନେଇ ବି ଏକାକୀ ମନ ବୁଦ୍ଧିକୁ ହରଣ କରି ନେଇପାରେ।

*ସମ୍ବନ୍ଧ — ଏପରିଭାବରେ ଅଯୁକ୍ତ ପୁରୁଷର ବୁଦ୍ଧି କିପରି ବିଚଳିତ ହୁଏ, ତାହା ବୁଝାଇସାରିବା ପରେ ବର୍ତ୍ତମାନ ସ୍ଥିତପ୍ରଜ୍ଞ ଅବସ୍ଥା ପ୍ରାପ୍ତିନିମନ୍ତେ ସବୁପ୍ରକାର ଇନ୍ଦ୍ରିୟସଂଯମର ଏକାନ୍ତ ଆବଶ୍ୟକତା ପୁଣି ଥରେ ସିଦ୍ଧ କରି ସ୍ଥିତପ୍ରଜ୍ଞ ପୁରୁଷଙ୍କ ଅବସ୍ଥା ବର୍ଣ୍ଣନା କରୁଛନ୍ତି—*

**ତସ୍ମାଦ୍ୟସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା॥ ୬୮॥**

**ଅନ୍ୱୟ** — **ତସ୍ମାତ୍** = ତେଣୁ; **ମହାବାହୋ** = ହେ ମହାବାହୁ; **ଯସ୍ୟ** = ଯେଉଁ ପୁରୁଷଙ୍କର; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନେ; **ଇନ୍ଦ୍ରିୟାର୍ଥେଭ୍ୟଃ** = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କରୁ; **ସର୍ବଶଃ** = ସକଳପ୍ରକାରେ; **ନିଗୃହୀତାନି** = ନିଗୃହୀତ ହୋଇଛନ୍ତି; **ତସ୍ୟ** = ତାହାଙ୍କର; **ପ୍ରଜ୍ଞା** = ବୁଦ୍ଧି; **ପ୍ରତିଷ୍ଠିତା** = ସ୍ଥିର ଅଟେ।

**ତେଣୁ ହେ ମହାବାହୁ! ଯେଉଁ ପୁରୁଷଙ୍କ ଇନ୍ଦ୍ରିୟମାନେ ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ଠାରୁ ସକଳ ପ୍ରକାରେ ନିଗୃହୀତ ହୋଇଯାଇଥାନ୍ତି, ତାହାଙ୍କର ବୁଦ୍ଧି ସ୍ଥିର ଅଟେ॥ ୬୮ ॥**

**ପ୍ରଶ୍ନ – ତସ୍ମାତ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଯାହାର ମନ ଓ ଇନ୍ଦ୍ରିୟମାନେ ବଶରେ ନାହାନ୍ତି, ସେହି ବିଷୟାସକ୍ତ ମନୁଷ୍ୟର ଇନ୍ଦ୍ରିୟମାନେ ତା'ର ମନକୁ ବିଷୟ ଆଡ଼କୁ ଆକର୍ଷିତ କରିନେଇ ବୁଦ୍ଧିକୁ ବିଚଳିତ କରିଦିଅନ୍ତି; ତାକୁ ସ୍ଥିର ହୋଇ ରହିବାକୁ ଦିଅନ୍ତି ନାହିଁ। ତେଣୁ ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରିବା ଏକାନ୍ତ ଆବଶ୍ୟକ। ଏହି ଭାବ ପ୍ରକାଶ କରିବାକୁ **ତସ୍ମାତ୍** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ – ମହାବାହୁ** ସମ୍ବୋଧନର ଭାବ କଣ ?

**ଉତ୍ତର –** ଯାହାଙ୍କର ବାହୁ ଦୀର୍ଘ, ଦୃଢ଼ ଓ ବଳିଷ୍ଠ, ତାଙ୍କୁ 'ମହାବାହୁ' କହନ୍ତି। ଶୂରବୀରଙ୍କୁ ଏହି ସମ୍ବୋଧନ କରାଯାଏ। ଏଠାରେ ଭଗବାନ୍ ଏହି ସମ୍ବୋଧନ ପ୍ରୟୋଗ କରି ସୂଚାଇଛନ୍ତି, ''ତୁମେ ବଡ଼ ଶୂରବୀର; ତେଣୁ ଇନ୍ଦ୍ରିୟ ଓ ମନକୁ ବଶ କରିନେବା ତୁମ ପକ୍ଷରେ କିଛି ବଡ଼ କଥା ନୁହେଁ।''

**ପ୍ରଶ୍ନ –** ଇନ୍ଦ୍ରିୟଗ୍ରାହ୍ୟ ବିଷୟରୁ ଇନ୍ଦ୍ରିୟମାନଙ୍କୁ ସବୁ ଦୃଷ୍ଟିରୁ **ନିଗୃହୀତ** କରିନେବାର ଅର୍ଥ କଣ ?

**ଉତ୍ତର –** ଶ୍ରୋତ୍ରାଦି ସମସ୍ତ ଇନ୍ଦ୍ରିୟର ଶବ୍ଦାଦି ଯେତେସବୁ ବିଷୟ ରହିଛି, ସେହି ବିଷୟମାନଙ୍କରେ ଅବାଧରେ ପ୍ରବୃତ୍ତ ହୋଇଯିବା ହିଁ ଇନ୍ଦ୍ରିୟମାନଙ୍କର ସ୍ୱଭାବ; କାରଣ, ଅନାଦି କାଳରୁ ଜୀବ ଏହି ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟ ଭୋଗ କରିଆସୁଛି; ତେଣୁ ଇନ୍ଦ୍ରିୟମାନଙ୍କର ସେଥିରେ ଆସକ୍ତି ହୋଇଯାଇଛି। ଇନ୍ଦ୍ରିୟମାନଙ୍କର ଏହି ସ୍ୱାଭାବିକ ପ୍ରବୃତ୍ତିକୁ ରୁଦ୍ଧ କରିଦେବା, ସେମାନଙ୍କର ବିଷୟଲୋଲୁପ ସ୍ୱଭାବକୁ ପରିବର୍ତ୍ତନ କରିଦେବା, ସେଥିରେ ବିଷୟାସକ୍ତିର ଅଭାବ ଘଟିବା ଏବଂ ମନ ଓ ବୁଦ୍ଧିକୁ ବିଚଳିତ କରିବାପାଇଁ ସେମାନଙ୍କୁ ଶକ୍ତି ନ ଦେବା — ଏସବୁ କରିବା ହିଁ ସେମାନଙ୍କୁ ବିଷୟରୁ ସର୍ବଥା **ନିଗୃହୀତ** କରିଦେବା। ଯେ ଇନ୍ଦ୍ରିୟମାନଙ୍କୁ ଏପରିଭାବରେ ବଶ କରିବାରେ ସମର୍ଥ ହୋଇଛନ୍ତି, ସେହି ପୁରୁଷ ଧ୍ୟାନସମୟରେ ଇନ୍ଦ୍ରିୟମାନଙ୍କର କ୍ରିୟା ତ୍ୟାଗ କରିବାବେଳେ ତାଙ୍କର କୌଣସି ଇନ୍ଦ୍ରିୟ କୌଣସି ବିଷୟକୁ ଗ୍ରହଣ କରିପାରେ ନାହିଁ, କି ନିଜର ସୂକ୍ଷ୍ମବୃତ୍ତିମାନଙ୍କ ଦ୍ୱାରା ମନରେ କୌଣସି ବିକ୍ଷେପ ସୃଷ୍ଟି କରିପାରେ ନାହିଁ। ସେତେବେଳେ ଇନ୍ଦ୍ରିୟମାନେ ମନରେ ତଦ୍ରୂପପରି ହୋଇଯାଆନ୍ତି ଏବଂ ବ୍ୟୁତ୍ଥାନକାଳରେ ଅର୍ଥାତ୍ ବ୍ୟବହାରକାଳରେ ଦେଖିବା-ଶୁଣିବା ଆଦି କ୍ରିୟା କରିବାବେଳେ ଇନ୍ଦ୍ରିୟମାନେ କୌଣସି ଆସକ୍ତି ନ ରଖି ଯଥାଯୋଗ୍ୟ ଶବ୍ଦାଦି ବିଷୟ ଗ୍ରହଣ କରନ୍ତି। ଇନ୍ଦ୍ରିୟମାନେ ତାଙ୍କର ମନକୁ କୌଣସି ବିଷୟ ପ୍ରତି ଆକର୍ଷିତ କରିପାରନ୍ତି ନାହିଁ; ବରଂ ସେମାନେ ମନର ଅନୁସରଣ କରନ୍ତି। ସ୍ଥିତପ୍ରଜ୍ଞ ପୁରୁଷ ଲୋକସଂଗ୍ରହପାଇଁ ଯେଉଁ ଇନ୍ଦ୍ରିୟଦ୍ୱାରା ଯେତେ ସମୟପର୍ଯ୍ୟନ୍ତ ଯେଉଁ ଶାସ୍ତ୍ରସମ୍ମତ ବିଷୟ ଗ୍ରହଣ କରିବା ଉଚିତ ବୋଲି ମନେ କରନ୍ତି, ସେହି ଇନ୍ଦ୍ରିୟ ସେତିକି ସମୟପର୍ଯ୍ୟନ୍ତ ସେହି ବିଷୟ ଗ୍ରହଣ କରେ; ଏହା ବ୍ୟତୀତ କୌଣସି ଇନ୍ଦ୍ରିୟ କୌଣସି ବିଷୟ ଗ୍ରହଣ କରେ ନାହିଁ। ଏପରିଭାବରେ ଇନ୍ଦ୍ରିୟମାନଙ୍କ ଉପରେ ପୂର୍ଣ୍ଣ ଆଧିପତ୍ୟ ପ୍ରତିଷ୍ଠା କରିବା, ସବୁପ୍ରକାରେ ସେମାନଙ୍କର ସ୍ୱାତନ୍ତ୍ର୍ୟ ନଷ୍ଟ କରି ସେମାନଙ୍କୁ ନିଜର ଅନୁକୂଳ କରିନେବା ହିଁ ଇନ୍ଦ୍ରିୟମାନଙ୍କୁ ଇନ୍ଦ୍ରିୟଗ୍ରାହ୍ୟ ବିଷୟରୁ ସବୁ ଦୃଷ୍ଟିରୁ ନିଗୃହୀତ କରିଦେବା।

**ପ୍ରଶ୍ନ –** ଅଠାବନ ଶ୍ଳୋକର ଉତ୍ତରାର୍ଦ୍ଧ ଏବଂ ଏହି ଶ୍ଳୋକର ଉତ୍ତରାର୍ଦ୍ଧ ତ ଏକାପରି; ସେଠାରେ ପୂର୍ବାର୍ଦ୍ଧରେ **ସଂହରତେ** ଏବଂ ଏହି ଶ୍ଳୋକରେ **ନିଗୃହୀତାନି** ପଦ ପ୍ରୟୋଗ କରି ସେହି ଦୁଇଟି ମଧ୍ୟରେ କେଉଁ ପାର୍ଥକ୍ୟ ଦେଖାଇଛନ୍ତି ?

**ଉତ୍ତର –** ଅଠାବନ ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ **କିମାସୀତ –** ଅର୍ଥାତ୍ 'କିପରି ବସନ୍ତି ?' — ଏହି ତୃତୀୟ ପ୍ରଶ୍ନର ଉତ୍ତର ଦେଇ 'ସ୍ଥିତପ୍ରଜ୍ଞ' ପୁରୁଷଙ୍କ ଅକ୍ରିୟ ଅବସ୍ଥା ବର୍ଣ୍ଣନା କରିଛନ୍ତି; ତେଣୁ ସେଠାରେ କଚ୍ଛପର ଦୃଷ୍ଟାନ୍ତ ଦେଇ **ସଂହରତେ** ପଦରେ ବିଷୟରୁ ମନକୁ ଅପସାରଣ କରିନେବା କଥା କହିଛନ୍ତି। ବାହ୍ୟରୂପରେ ଇନ୍ଦ୍ରିୟମାନଙ୍କୁ ବିଷୟରୁ ଅପସାରଣ କରିନେବା କଣେ ସାଧାରଣ ମନୁଷ୍ୟଦ୍ୱାରା ମଧ୍ୟ ସମ୍ଭବ ହୋଇପାରେ; କିନ୍ତୁ ସେଠାରେ ଅପସାରଣ କରିବାରେ ଏକ ବିଶେଷତା ରହିଛି; ତାହା ହେଉଛି ସ୍ଥିତପ୍ରଜ୍ଞ ପୁରୁଷଙ୍କ ଲକ୍ଷଣ। ଏଣୁ ଆସକ୍ତିରହିତ ମନ ଏବଂ ଇନ୍ଦ୍ରିୟର ସଂଯମ ମଧ୍ୟ ସେହି ଅପସାରଣର ଅନ୍ତର୍ଗତ। ଏଠାରେ ଭଗବାନ୍ ସ୍ଥିତପ୍ରଜ୍ଞଙ୍କ ସ୍ୱାଭାବିକ ଅବସ୍ଥା ବର୍ଣ୍ଣନା କରିଛନ୍ତି। ତେଣୁ ଏଠାରେ **ନିଗୃହୀତାନି** ପଦ ବ୍ୟବହାର କରାଯାଇଛି। ବିଷୟମାନଙ୍କର ଆସକ୍ତିରୁ ରହିତ ହୋଇଯିବା ପରେ ହିଁ ମନ ଓ ଇନ୍ଦ୍ରିୟମାନଙ୍କର ସବୁଦିଗରୁ ଏପରି ନିଗ୍ରହ

ହୁଏ। ନି ଉପସର୍ଗ ଓ **ସର୍ବଶଃ** ବିଶେଷଣରୁ ମଧ୍ୟ ଏହା ସିଦ୍ଧ ହୁଏ। ତେଣୁ ଏ ଦୁଇଟିର ବାସ୍ତବିକ ସ୍ଥିତିରେ କୌଣସି ପାର୍ଥକ୍ୟ ନ ଥିଲେ ମଧ୍ୟ, ସେଠାରେ ଅକ୍ରିୟ ଅବସ୍ଥାର ବର୍ଣ୍ଣନା କରାଯାଇଛି ଏବଂ ଏଠାରେ ସବୁ ସମୟର ସାଧାରଣ ଅବସ୍ଥା ବର୍ଣ୍ଣନା କରାଯାଇଛି। ଏହା ହିଁ ଏ ଦୁଇଟି ମଧ୍ୟରେ ଥିବା ପାର୍ଥକ୍ୟ।

**ପ୍ରଶ୍ନ –** 'ତାଙ୍କର ବୁଦ୍ଧି ସ୍ଥିର ଅଟେ' – ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର –** କହିବାର ଅଭିପ୍ରାୟ ଏହି ଯେ, ଯାହାଙ୍କର ମନ ସହିତ ସମସ୍ତ ଇନ୍ଦ୍ରିୟ ଉପରୋକ୍ତପ୍ରକାରେ ବଶ ହୋଇଯାଇଛନ୍ତି, ତାଙ୍କର ବୁଦ୍ଧି ସ୍ଥିର ଅଟେ ଏବଂ ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ବଶରେ ନ ଥାନ୍ତି, ତାଙ୍କର ବୁଦ୍ଧି ସ୍ଥିର ହୋଇ ରହିପାରେ ନାହିଁ।

***ସମ୍ବନ୍ଧ –*** *ଏପରିଭାବରେ ମନ ଓ ଇନ୍ଦ୍ରିୟ ସଂଯମ ନ କଲେ କି କ୍ଷତି ହୁଏ ଏବଂ ସଂଯମ କଲେ କି ଲାଭ ହୁଏ, ତାହା ଦେଖାଇଦେଇ ତଥା ସ୍ଥିତପ୍ରଜ୍ଞ ଅବସ୍ଥା ପ୍ରାପ୍ତ କରିବାରେ ରାଗଦ୍ୱେଷ ପରିତ୍ୟାଗପୂର୍ବକ ମନ ସହିତ ଇନ୍ଦ୍ରିୟମାନଙ୍କ ସଂଯମର ବିଶେଷ ଆବଶ୍ୟକତା ପ୍ରତିପାଦନ କରି ସ୍ଥିତପ୍ରଜ୍ଞ ପୁରୁଷଙ୍କ ଅବସ୍ଥା ବର୍ଣ୍ଣନା କରିଛନ୍ତି। ବର୍ତ୍ତମାନ ସାଧାରଣ ବିଷୟାସକ୍ତ ପୁରୁଷ ଏବଂ ମନ-ଇନ୍ଦ୍ରିୟ ସଂଯମପୂର୍ବକ ପରମାତ୍ମାଙ୍କୁ ପ୍ରାପ୍ତ କରିଥିବା ସିଦ୍ଧ, ସ୍ଥିରବୁଦ୍ଧି ଓ ସଂଯମୀ ମହାପୁରୁଷଙ୍କ ମଧ୍ୟରେ ପାର୍ଥକ୍ୟ କଣ, ତାହା ଦିନ ଓ ରାତିର ଦୃଷ୍ଟାନ୍ତଦ୍ୱାରା ବୁଝାଇ ଦେଇ ଦୁହିଁଙ୍କର ସ୍ୱାଭାବିକ ସ୍ଥିତି ବର୍ଣ୍ଣନା କରୁଛନ୍ତି –*

**ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ।**
**ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ॥ ୬୯ ॥**

**ଅନ୍ୱୟ –** **ସର୍ବଭୂତାନାମ୍** = ସକଳ ପ୍ରାଣୀମାନଙ୍କ ନିମନ୍ତେ; **ଯା** = ଯାହା; **ନିଶା** = ରାତ୍ରିସମାନ ଅଟେ; **ତସ୍ୟାମ୍** = ସେହି ନିତ୍ୟଜ୍ଞାନସ୍ୱରୂପ ପରମାନନ୍ଦପ୍ରାପ୍ତିରେ; **ସଂଯମୀ** = ସ୍ଥିତପ୍ରଜ୍ଞ ଯୋଗୀ; **ଜାଗର୍ତ୍ତି** = ଜାଗ୍ରତ ରହନ୍ତି (ଏବଂ); **ଯସ୍ୟାମ୍** = ଯେଉଁ ନାଶବାନ୍ ସାଂସାରିକ ସୁଖପ୍ରାପ୍ତିରେ; **ଭୂତାନି** = ପ୍ରାଣୀମାନେ; **ଜାଗ୍ରତି** = ଜାଗ୍ରତ ରହନ୍ତି; **ପଶ୍ୟତଃ** = ପରମାତ୍ମତତ୍ତ୍ୱ ଜାଣୁଥିବା; **ମୁନେଃ** = ମୁନିଙ୍କ ପାଇଁ; **ସା** = ତାହା; **ନିଶା** = ରାତ୍ରିସମାନ ଅଟେ।

**ଯେଉଁ ପରମାନନ୍ଦପ୍ରାପ୍ତି ସକଳ ପ୍ରାଣୀଙ୍କ ନିମନ୍ତେ ରାତ୍ରିସମାନ, ସେହି ନିତ୍ୟଜ୍ଞାନସ୍ୱରୂପ ପରମାନନ୍ଦପ୍ରାପ୍ତିରେ ସ୍ଥିତପ୍ରଜ୍ଞ ଯୋଗୀ ଜାଗ୍ରତ ରହନ୍ତି ଏବଂ ଯେଉଁ ନାଶବାନ୍ ସାଂସାରିକ ସୁଖ ଲାଭରେ ସକଳପ୍ରାଣୀ ଜାଗ୍ରତ ରହନ୍ତି, ପରମାତ୍ମତତ୍ତ୍ୱ ଜାଣିଥିବା ମୁନିଙ୍କ ନିମନ୍ତେ ତାହା ରାତ୍ରିସମାନ॥ ୬୯ ॥**

**ପ୍ରଶ୍ନ –** ଏଠାରେ **ସଂଯମୀ** ପଦ କାହାର ବାଚକ ?

**ଉତ୍ତର –** ଯେ ମନ ଓ ଇନ୍ଦ୍ରିୟଙ୍କୁ ବଶ କରି ପରମାତ୍ମାଙ୍କୁ ପାଇସାରିଛନ୍ତି, ଯାହାଙ୍କୁ ଏହି ପ୍ରକରଣରେ ସ୍ଥିତପ୍ରଜ୍ଞ ବୋଲି ବର୍ଣ୍ଣନା କରାଯାଇଛି, **ସଂଯମୀ** ହେଉଛି ତାଙ୍କରି ବାଚକ; କାରଣ ଉତ୍ତରାର୍ଦ୍ଧରେ ତାଙ୍କ ପାଇଁ **ପଶ୍ୟତଃ** ପଦ ପ୍ରୟୋଗ କରାଯାଇଛି, ଯାହାର ଅର୍ଥ **ଜ୍ଞାନୀ**।

**ପ୍ରଶ୍ନ –** ଏଠାରେ 'ସକଳ ପ୍ରାଣୀଙ୍କ ପାଇଁ ରାତ୍ରି ସମାନ' କହିଲେ କଣ ବୁଝାଏ ? ଏବଂ ସ୍ଥିତପ୍ରଜ୍ଞ ଯୋଗୀମାନଙ୍କର ସେଥିରେ ଜାଗ୍ରତ ରହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ରାତ୍ରି ଓ ଦିବସ ମଧ୍ୟରେ ଯେପରି ବିରାଟ ପାର୍ଥକ୍ୟ ରହିଛି, ଅଜ୍ଞାନୀ ଓ ଜ୍ଞାନୀଙ୍କ ଅନୁଭବ ମଧ୍ୟରେ ସେହିପରି ବିରାଟ ପାର୍ଥକ୍ୟ ରହିଛି। ଏହି ଭାବ ଦେଖାଇବା ପାଇଁ ରାତ୍ରିର ରୂପକ ଦେଇ ସାଧାରଣ ଅଜ୍ଞାନୀପୁରୁଷର ଓ ଜ୍ଞାନୀଙ୍କର ସ୍ଥିତି ବର୍ଣ୍ଣନା କରୁଛନ୍ତି। ତେଣୁ ଏଠାରେ ରାତ୍ରିର ଅର୍ଥ ସୂର୍ଯ୍ୟାସ୍ତ ପରେ ହେଉଥିବା ରାତ୍ରି ନୁହେଁ। କିନ୍ତୁ ପୂର୍ଣ୍ଣ ଆଲୋକ ଥିବା ଦିବାଲୋକକୁ ପେଚା ଯେପରି ନିଜର ନେତ୍ରଦୋଷରୁ ଅନ୍ଧକାରମୟ ଦେଖେ, ଅନାଦିସିଦ୍ଧ ଅଜ୍ଞାନ-ପରଦାଦ୍ୱାରା ଅନ୍ତଃକରଣରୂପକ ନେତ୍ରର ବିବେକବିଜ୍ଞାନରୂପକ ପ୍ରକାଶନଶକ୍ତି ଆବୃତ ହୋଇ ରହିଥିବାରୁ, ଅବିବେକୀ ମନୁଷ୍ୟ ସେହିପରି ସ୍ୱୟଂପ୍ରକାଶ ନିତ୍ୟବୋଧ ପରମାନନ୍ଦମୟ ପରମାତ୍ମାଙ୍କୁ ଦେଖିପାରେ ନାହିଁ। ସେହି ପରମାତ୍ମପ୍ରାପ୍ତିରୂପକ ସୂର୍ଯ୍ୟ ପ୍ରକାଶିତ ହେଲେ, ଯେଉଁ ପରମ ଶାନ୍ତି ଓ ନିତ୍ୟ ଆନନ୍ଦ ପ୍ରତ୍ୟକ୍ଷ ଅନୁଭବ ହୁଏ, ତାହା ବାସ୍ତବରେ ଦିନପରି ପ୍ରକାଶମୟ ହୋଇଥିଲେ ମଧ୍ୟ ପରମାତ୍ମାଙ୍କ ଗୁଣ, ପ୍ରଭାବ, ରହସ୍ୟ

ଓ ତତ୍ତ୍ୱକୁ ଜାଣି ନ ଥିବା ଅଜ୍ଞାନୀମାନଙ୍କ ପାଇଁ ତାହା ରାତ୍ରି ଅଟେ, ଅର୍ଥାତ୍ ରାତ୍ରିସମାନ ଅଟେ; କାରଣ ସେମାନେ ଏହି ବିଷୟରେ ସର୍ବଦା ଶୋଇଥାନ୍ତି; ସେମାନଙ୍କୁ ସେହି ପରମାନନ୍ଦ ପରମାତ୍ମ-ଅନୁଭୂତି ବିଷୟରେ କିଛି ଜଣା ହିଁ ନ ଥାଏ। ତେଣୁ ପରମାତ୍ମପ୍ରାପ୍ତି ହିଁ ଏଠାରେ ସକଳ ପ୍ରାଣୀଙ୍କ ପାଇଁ ରାତ୍ରି ଅଟେ ବୋଲି କୁହାଯାଇଛି। କିନ୍ତୁ ପରମାତ୍ମପ୍ରାପ୍ତ ସଂଯମୀ ପୁରୁଷଙ୍କ ପାଇଁ ତାହା ଦିନପରି ଅଟେ। ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପକୁ ପ୍ରତ୍ୟକ୍ଷ କରି ସ୍ଥିତପ୍ରଜ୍ଞ ପୁରୁଷ ନିରନ୍ତର ସେଥିରେ ସ୍ଥିତ ରହନ୍ତି। ଏହା ହିଁ ସକଳ ପ୍ରାଣୀଙ୍କ ପାଇଁ ଯାହା ରାତ୍ରି, ସେଥିରେ ତାଙ୍କର ଜାଗ୍ରତ ରହିବା।

**ପ୍ରଶ୍ନ—** ସକଳ ପ୍ରାଣୀଙ୍କର ଜାଗ୍ରତ ରହିବା କଣ ? ଏବଂ ଯେଉଁଥିରେ ସକଳ ପ୍ରାଣୀ ଜାଗ୍ରତ ରହନ୍ତି, ତାହା ପରମାତ୍ମତତ୍ତ୍ୱ ଜାଣିଥିବା ମୁନିଙ୍କ ପାଇଁ ରାତ୍ରିସମାନ କିପରି ?

**ଉତ୍ତର—** ଇହଲୋକରେ ଓ ପରଲୋକରେ ଯେତେପ୍ରକାର ଭୋଗ ରହିଛି, ଯଦିଓ ସେସବୁ ନାଶବାନ୍, କ୍ଷଣସ୍ଥାୟୀ, ଅନିତ୍ୟ ଓ ଦୁଃଖମୟ, ତଥାପି ଅନାଦିସିଦ୍ଧ ଅନ୍ଧକାରମୟ ଅଜ୍ଞାନହେତୁ ବିଷୟାସକ୍ତ ମନୁଷ୍ୟମାନେ ସେସବୁକୁ ନିତ୍ୟ ଓ ସୁଖରୂପ ବୋଲି ମନେ କରନ୍ତି; ସେମାନଙ୍କ ଦୃଷ୍ଟିରେ ବିଷୟଭୋଗଠାରୁ ବଳି ସୁଖ ଆଉ କିଛି ନ ଥାଏ। ଭୋଗରେ ଏହିପରି ଆସକ୍ତ ହୋଇ ତାହା ପାଇବାର ଚେଷ୍ଟାରେ ବିଷୟାସକ୍ତ ଲୋକେ ସର୍ବଦା ଲାଗିରହିବା ଏବଂ ତାହା ପାଇ ସୁଖ ଅନୁଭବ କରିବା ହିଁ ସକଳ ପ୍ରାଣୀଙ୍କର ସେଥିରେ ଜାଗ୍ରତ ରହିବା। ଇନ୍ଦ୍ରିୟ ଓ ବିଷୟମାନଙ୍କ ସଂଯୋଗରୁ ତଥା ପ୍ରମାଦ, ଆଳସ୍ୟ ଏବଂ ନିଦ୍ରାରୁ ଉତ୍ପନ୍ନ ସୁଖ ରାତ୍ରିପରି ଅଜ୍ଞାନରୂପକ ଅନ୍ଧକାରରେ ପୂର୍ଣ୍ଣ ହୋଇଥିବାରୁ ବାସ୍ତବରେ ରାତ୍ରି ହିଁ ଅଟେ। ତଥାପି ଅଜ୍ଞାନୀ ପ୍ରାଣୀମାନେ ତାହାକୁ ଦିନ ବୋଲି ବୁଝି ସେଥିରେ ଜାଗ୍ରତ ରହନ୍ତି। ନିଦରେ ଶୋଇଥିବା ଲୋକ ସ୍ୱପ୍ନର ଦୃଶ୍ୟ ଦେଖୁଥିବାବେଳେ ଯେପରି ମନେ କରେ ଯେ, ସେ ଜାଗ୍ରତ ଅବସ୍ଥାରେ ଅଛି, ଏହା ଠିକ୍ ସେହିପରି କଥା। କିନ୍ତୁ ସ୍ୱପ୍ନ ଦେଖୁଥିବା ଲୋକର ଯେପରି ସ୍ୱପ୍ନଜଗତ ସହିତ କୌଣସି ସମ୍ବନ୍ଧ ନ ଥାଏ, ପରମାତ୍ମତତ୍ତ୍ୱ ଜାଣିଥିବା ଜ୍ଞାନୀଙ୍କ ଅନୁଭବରେ ସେହିପରି କେବଳ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁର ସତ୍ତା ନ ଥାଏ। ସେହି ଜ୍ଞାନୀ ଏହି ଦୃଶ୍ୟଜଗତ ସ୍ଥାନରେ ଏହାର ଅଧିଷ୍ଠାନରୂପୀ ପରମାତ୍ମତତ୍ତ୍ୱକୁ ହିଁ ଦେଖନ୍ତି। ଅତଏବ ତାଙ୍କ ପାଇଁ ସମସ୍ତ ସାଂସାରିକ ଭୋଗ ଓ ବିଷୟାନନ୍ଦ ଠିକ୍ ରାତ୍ରିପରି।

*ସମ୍ବନ୍ଧ— ଏପରିଭାବରେ ରାତ୍ରିର ରୂପକ ସାହାଯ୍ୟରେ ଜ୍ଞାନୀ ଓ ଅଜ୍ଞାନୀଙ୍କ ସ୍ଥିତିର ପାର୍ଥକ୍ୟ ଦେଖାଇସାରି, ବର୍ତ୍ତମାନ ସମୁଦ୍ରର ଉପମା ଦେଇ ଦେଖାଉଛନ୍ତି ଯେ, ଜ୍ଞାନୀ ପରମଶାନ୍ତି ପାଆନ୍ତି ଏବଂ ଭୋଗ କାମନା କରୁଥିବା ଅଜ୍ଞାନୀ ଲୋକ ଶାନ୍ତି ପାଇପାରେ ନାହିଁ—*

**ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ**
**ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍‌ବତ୍।**
**ତଦ୍‌ବତ୍ କାମା ଯଂ ପ୍ରବିଶନ୍ତି ସର୍ବେ**
**ସ ଶାନ୍ତିମାପ୍ନୋତି ନ କାମକାମୀ ।। ୭୦ ।।**

**ଅନ୍ୱୟ—** **ଯଦ୍‌ବତ୍** = ଯେପରି; **ଆପଃ** = ନାନା ନଦୀର ଜଳ; **ଆପୂର୍ଯ୍ୟମାଣମ୍** = ସବୁ ଦିଗରୁ ପରିପୂର୍ଣ୍ଣ ହୋଇଥିବା; **ଅଚଳପ୍ରତିଷ୍ଠମ୍** = ଅଚଳପ୍ରତିଷ୍ଠାଯୁକ୍ତ; **ସମୁଦ୍ରମ୍** = ସମୁଦ୍ରରେ (ତାହାକୁ ବିଚଳିତ ନ କରି); **ପ୍ରବିଶନ୍ତି** = ପ୍ରବେଶ କରନ୍ତି; **ତଦ୍‌ବତ୍** = ସେହିପରି; **ସର୍ବେ** = ସମସ୍ତ; **କାମାଃ** = ଭୋଗମାନେ; **ଯମ୍** = ଯେଉଁ ସ୍ଥିତପ୍ରଜ୍ଞ ପୁରୁଷଙ୍କ ଠାରେ (କୌଣସିପ୍ରକାର ବିକାର ଉତ୍ପନ୍ନ ନ କରି); **ପ୍ରବିଶନ୍ତି** = ପ୍ରବେଶ କରନ୍ତି; **ସଃ** = ସେହି ପୁରୁଷ; **ଶାନ୍ତିମ୍** = ପରମଶାନ୍ତି; **ଆପ୍ନୋତି** = ପ୍ରାପ୍ତ ହୁଅନ୍ତି; **କାମକାମୀ, ନ** = ଭୋଗ ଚାହୁଁଥିବା ଲୋକ ତାହା ପାଏ ନାହିଁ।

**ନାନାନଦୀର ଜଳ ଯେପରି ସକଳ ଦିଗରୁ ପରିପୂର୍ଣ୍ଣ ଅଚଳପ୍ରତିଷ୍ଠାଯୁକ୍ତ ସମୁଦ୍ରକୁ ବିଚଳିତ ନ କରି ତା'ଭିତରେ ପ୍ରବେଶ କରେ, ସକଳ ଭୋଗ ସେହିପରି ଯେଉଁ ସ୍ଥିତପ୍ରଜ୍ଞ ପୁରୁଷଙ୍କ ଠାରେ କୌଣସିପ୍ରକାର ବିକାର ଉତ୍ପନ୍ନ ନ କରି ପ୍ରବେଶ କରନ୍ତି, ସେହି ପୁରୁଷ ପରମ ଶାନ୍ତି ପ୍ରାପ୍ତ ହୁଅନ୍ତି। ଭୋଗ ଚାହୁଁଥିବା ଲୋକ ତାହା ପାଏ ନାହିଁ। ।। ୭୦ ।।**

**ପ୍ରଶ୍ନ –** ସ୍ଥିତପ୍ରଜ୍ଞ ଜ୍ଞାନୀଙ୍କ ସହିତ ସମୁଦ୍ରର ଉପମା ଦେଇ ଏଠାରେ କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** କୌଣସି ବି ଜଡ଼ବସ୍ତୁର ଉପମା ଦେଇ ସ୍ଥିତପ୍ରଜ୍ଞ ପୁରୁଷଙ୍କର ବାସ୍ତବିକ ସ୍ଥିତିକୁ ପୂର୍ଣ୍ଣଭାବରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ; ତଥାପି ଉପମାଦ୍ୱାରା ଏହି ସ୍ଥିତିକୁ କିଛି ଅଂଶରେ ଦେଖାଇଦେଇହେବ। ସମୁଦ୍ର ଉପମାରୁ ବୁଝିବାକୁ ହେବ ଯେ, ସମୁଦ୍ର ଯେପରି **ଆପୂର୍ଯ୍ୟମାଣମ୍** ଅର୍ଥାତ୍ ଅଗାଧଜଳରେ ପରିପୂର୍ଣ୍ଣ ହୋଇ ରହିଥାଏ, ସ୍ଥିତପ୍ରଜ୍ଞ ପୁରୁଷ ସେହିପରି ଅସୀମ ଆନନ୍ଦରେ ପରିପୂର୍ଣ୍ଣ ହୋଇ ରହିଥାନ୍ତି। ସମୁଦ୍ରର ଯେପରି ଜଳ ଆବଶ୍ୟକ ନ ଥାଏ, ସ୍ଥିତପ୍ରଜ୍ଞ ପୁରୁଷଙ୍କର ସେହିପରି କୌଣସି ସାଂସାରିକ ସୁଖଭୋଗ ଟିକିଏ ହେଲେ ଆବଶ୍ୟକ ନ ଥାଏ; ସେ ସର୍ବଥା ଆପ୍ତକାମ। ସମୁଦ୍ରର ସ୍ଥିତି ଯେପରି ଅଚଳ, ବିଭିନ୍ନ ନଦନଦୀର ଯେତେ ଜଳ ଆସି ପ୍ରବେଶ କଲେ ମଧ୍ୟ ସେ ଯେପରି ନିଜର ସ୍ଥିତିରୁ ବିଚଳିତ ହୁଏ ନାହିଁ ବା ମର୍ଯ୍ୟାଦା ଲଂଘନ କରେ ନାହିଁ, ପରମାତ୍ମାଙ୍କ ସ୍ୱରୂପରେ ସ୍ଥିତ ସ୍ଥିତପ୍ରଜ୍ଞ ଯୋଗୀଙ୍କର ସ୍ଥିତି ସେହିପରି ସର୍ବଥା ଅଚଳ; ଯେତେ ବଡ଼ ସାଂସାରିକ ସୁଖ-ଦୁଃଖର ସଂଯୋଗ-ବିୟୋଗ ହେଲେ ବି, ସେଥିରେ ତାଙ୍କ ସ୍ଥିତିରେ ଟିକିଏ ହେଲେ ବ୍ୟତିକ୍ରମ ହୁଏ ନାହିଁ। ସେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ନିତ୍ୟନିରନ୍ତର ଅଚଳ ଓ ଏକରସ ହୋଇ ରହିଥାନ୍ତି।

**ପ୍ରଶ୍ନ –** ସର୍ବେ ବିଶେଷଣ ସହିତ **କାମାଃ** ପଦ ଏଠାରେ କେଉଁମାନଙ୍କର ବାଚକ ଏବଂ ସମୁଦ୍ରରେ ଜଳ ପ୍ରବେଶ କଲାପରି ସ୍ଥିତପ୍ରଜ୍ଞଙ୍କ ଠାରେ ସେମାନେ ପ୍ରବେଶ କରନ୍ତି ବୋଲି କହିବାର ଅର୍ଥ କଣ ?

**ଉତ୍ତର –** ଏଠାରେ **ସର୍ବେ** ବିଶେଷଣ ସହିତ **କାମାଃ** ପଦଟି **କାମ୍ୟନ୍ତ ଇତି କାମାଃ** ଅର୍ଥାତ୍ ଯାହାସବୁ ପାଇଁ କାମନା କରାଯାଏ, ସେସବୁର ନାମ କାମ – ଏହି ବ୍ୟୁତ୍ପତ୍ତି ଅନୁସାରେ ସକଳ ଇନ୍ଦ୍ରିୟର ବିଷୟମାନଙ୍କ ବାଚକ; ଏହା ଇଚ୍ଛାମାନଙ୍କର ବାଚକ ନୁହେଁ; କାରଣ ସ୍ଥିତପ୍ରଜ୍ଞ ପୁରୁଷ ତ ସର୍ବଥା କାମନାଶୂନ୍ୟ ହୋଇଥାଆନ୍ତି; ଏସବୁ ତାଙ୍କ ଠାରେ ପ୍ରବେଶ କିପରି କରିବେ? ଅତଏବ ଯେପରି ସମୁଦ୍ରପାଇଁ ଜଳ ଆବଶ୍ୟକ ନ ଥିଲେ ମଧ୍ୟ ବିଭିନ୍ନ ନଦନଦୀର ଜଳପ୍ରବାହ ସେଥିରେ ପ୍ରବେଶ କରେ, କିନ୍ତୁ ନଦୀ ବା ପୁଷ୍କରିଣୀପରି ସମୁଦ୍ରରେ ବନ୍ୟା ହୁଏ ନାହିଁ, ଅଥବା ସେ ନିଜ ସ୍ଥିତିରୁ ବିଚଳିତ ହୁଏ ନାହିଁ ବା ମର୍ଯ୍ୟାଦା ଲଂଘନ କରେ ନାହିଁ, ସମସ୍ତ ଜଳପ୍ରବାହ ତନ୍ମଧ୍ୟରେ କୌଣସି ବିକୃତି ଉତ୍ପନ୍ନ ନ କରି ହିଁ ବିଲୀନ ହୋଇଯାଏ, ସେହିପରି ସ୍ଥିତପ୍ରଜ୍ଞ ପୁରୁଷଙ୍କର ସାଂସାରିକ ଭୋଗର ଟିକିଏ ହେଲେ ଆବଶ୍ୟକତା ନ ଥିଲେ ମଧ୍ୟ ପ୍ରାରବ୍ଧ ଅନୁସାରେ ତାଙ୍କୁ ବିଭିନ୍ନପ୍ରକାର ଭୋଗ ପ୍ରାପ୍ତ ହେଉଥାଏ ଅର୍ଥାତ୍ ତାଙ୍କର ମନ, ବୁଦ୍ଧି ଏବଂ ଇନ୍ଦ୍ରିୟ ସହିତ ପ୍ରାରବ୍ଧ ଅନୁସାରେ ନାନାପ୍ରକାର ଅନୁକୂଳ ଓ ପ୍ରତିକୂଳ ବିଷୟର ସଂଯୋଗ ହେଉଥାଏ; କିନ୍ତୁ ସେହି ଭୋଗ ତାଙ୍କଠାରେ ହର୍ଷ-ଶୋକ, ରାଗ-ଦ୍ୱେଷ, କାମ-କ୍ରୋଧ, ଲୋଭ-ମୋହ, ଭୟ-ଉଦ୍‌ବେଗ ବା ଅନ୍ୟ କୌଣସିପ୍ରକାର ବିକାର ଉତ୍ପନ୍ନ କରି ତାଙ୍କୁ ତାଙ୍କର ଅଚଳ ସ୍ଥିତିରୁ, କିମ୍ବା ତାଙ୍କର ଶାସ୍ତ୍ରମର୍ଯ୍ୟାଦାରୁ ଟଳାଇପାରେ ନାହିଁ; ଏସବୁର ସଂଯୋଗରେ ତାଙ୍କର ସ୍ଥିତିରେ ଟିକିଏ ହେଲେ ବ୍ୟତିକ୍ରମ ହୁଏ ନାହିଁ। ଏସବୁ କୌଣସିପ୍ରକାର କ୍ଷୋଭ ଉତ୍ପନ୍ନ ନ କରି ତାଙ୍କର ପରମାନନ୍ଦମୟ ସ୍ୱରୂପରେ ତଦ୍ରୂପ ହୋଇ ବିଲୀନ ହୋଇଯାନ୍ତି। ଏହା ହିଁ ବିଭିନ୍ନ ନଦୀର ଜଳ ସମୁଦ୍ରରେ ପ୍ରବେଶ କରିବାପରି ସ୍ଥିତପ୍ରଜ୍ଞଙ୍କ ଠାରେ ବିଭିନ୍ନ ଭୋଗ ପ୍ରବେଶ କରିବା।

**ପ୍ରଶ୍ନ –** 'ସେ ପରମଶାନ୍ତି ପାଆନ୍ତି; ଭୋଗ ଇଚ୍ଛା କରୁଥିବା ଲୋକ ତାହା ପାଏ ନାହିଁ' – ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ଯେ ଆପ୍ତକାମ, ଯାହାଙ୍କର କୌଣସିପ୍ରକାର ଭୋଗରେ ତିଳେମାତ୍ର ଆବଶ୍ୟକତା ନାହିଁ, ଯାହାଙ୍କ ଠାରେ ସମସ୍ତ ଭୋଗ ପ୍ରାରବ୍ଧ ଅନୁସାରେ ସ୍ୱତଃ ଆସି ବିଲୀନ ହୋଇଯାଏ ଏବଂ ଯେ ସ୍ୱୟଂ କୌଣସି ଭୋଗ କାମନା କରନ୍ତି ନାହିଁ, ସେ ପରମଶାନ୍ତି ପ୍ରାପ୍ତ ହୁଅନ୍ତି। ଭୋଗ କାମନା କରୁଥିବା ଲୋକ କେବେ ବି ଶାନ୍ତି ପାଇପାରେ ନାହିଁ। କାରଣ ତା'ର ଚିତ୍ତ ସଦାସର୍ବଦା ବିଭିନ୍ନପ୍ରକାର ଭୋଗକାମନାରେ ବିକ୍ଷିପ୍ତ ହୋଇ ରହିଥାଏ। ଯେଉଁଠାରେ ବିକ୍ଷେପ ଅଛି, ସେଠାକୁ ଶାନ୍ତି ବା କିପରି ଆସିପାରିବ? ସେଠାରେ ପଦେ ପଦେ ଚିନ୍ତା, ଜ୍ୱାଳା ଓ ଶୋକ ହିଁ ନିବାସ କରିଥାଏ।

**ପ୍ରଶ୍ନ –** ଅଠାବନଠାରୁ ଆରମ୍ଭ କରି ଏହି ଶ୍ଳୋକପର୍ଯ୍ୟନ୍ତର କଥନକୁ ଅର୍ଜୁନଙ୍କର ତୃତୀୟ ପ୍ରଶ୍ନର ଉତ୍ତର ବୋଲି ମନେ କରାଗଲେ କିଛି ଆପତ୍ତି ଅଛି କି? କାରଣ ଏହି ଶ୍ଳୋକରେ ସମୁଦ୍ରପରି ଅଚଳ ହେବାର ଉଦାହରଣ ଦିଆଯାଇଛି।

**ଉତ୍ତର**— ଏହାକୁ ତୃତୀୟ ପ୍ରଶ୍ନର ଉତ୍ତର ବୋଲି ମାନି ହେବ ନାହିଁ। ତୃତୀୟ ପ୍ରଶ୍ନର ଉତ୍ତର ଅଠାବନ ଶ୍ଳୋକରୁ ଆରମ୍ଭ କରି ଏକଷଠି ଶ୍ଳୋକରେ ସମାପ୍ତ କରାଯାଇଛି; ତେଣୁ ସେଠାରେ **ଆସୀତ** ପଦ ଆସିଛି। ତା'ପରେ ପ୍ରସଙ୍ଗକ୍ରମେ ବାଷଠି ଓ ତେଷଠିରେ ବିଷୟଚିନ୍ତନହେତୁ ଆସକ୍ତି ଆଦିଦ୍ୱାରା ଅଧଃପତନ ହେବାର ଦେଖାଇ ଚଉଷଠି ଶ୍ଳୋକରୁ ଚତୁର୍ଥ ପ୍ରଶ୍ନର ଉତ୍ତର ଆରମ୍ଭ କରିଛନ୍ତି। **ଚରନ୍** ପଦଦ୍ୱାରା ଦୁହିଁଙ୍କ ପ୍ରଭେଦ ସ୍ପଷ୍ଟ ହୋଇଯାଉଛି। ଏହି କ୍ରମରେ ନୌକାର ଦୃଷ୍ଟାନ୍ତଦ୍ୱାରା ବିଷୟାସକ୍ତ ଅଯୁକ୍ତ ପୁରୁଷର ବିଚରଣଶୀଳ ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ଇନ୍ଦ୍ରିୟଦ୍ୱାରା ବି ବୁଦ୍ଧିକୁ ହରଣ କରାଯାଉଥିବାକଥା କୁହାଯାଇଛି। ଏଥିରେ **ଚରତାମ୍** ପଦ ବି ଆସିଛି। ଏହା ଛଡ଼ା ଏହି ଶ୍ଳୋକରେ **ସର୍ବେ କାମାଃ ପ୍ରବିଶନ୍ତି** ପଦମାନଙ୍କ ଦ୍ୱାରା କୁହାଯାଇଛି ଯେ, ସମସ୍ତ ଭୋଗ ତାଙ୍କ ଠାରେ ପ୍ରବେଶ କରେ। ଅକ୍ରିୟ ଅବସ୍ଥାରେ ପ୍ରବେଶର ସବୁ ଦ୍ୱାର ବନ୍ଦ ଥାଏ; କାରଣ ସେହି ଅବସ୍ଥାରେ ଇନ୍ଦ୍ରିୟମାନେ ବିଷୟ-ସଂସର୍ଗରହିତ ହୋଇ ଥାଆନ୍ତି। ଏଠାରେ ଇନ୍ଦ୍ରିୟମାନଙ୍କର ବ୍ୟବହାର ଅଛି; ତେଣୁ ତାଙ୍କ ଠାରେ ଭୋଗ ପ୍ରବେଶ କରିବା ସମ୍ଭବ ହୁଏ। ତାଙ୍କର ପରମାତ୍ମାଙ୍କ ସ୍ୱରୂପରେ ଅଟଳ ସ୍ଥିତି ରହିଥାଏ, କିନ୍ତୁ ବ୍ୟବହାରରେ ସେ ଅକ୍ରିୟ ନୁହନ୍ତି। ଅତଏବ ଏହାକୁ ଚତୁର୍ଥ ପ୍ରଶ୍ନର ଉତ୍ତର ବୋଲି ମାନିବା ଯୁକ୍ତିଯୁକ୍ତ ହେବ।

***ସମ୍ବନ୍ଧ***— *'ସ୍ଥିତପ୍ରଜ୍ଞ କିପରି ଚଳନ୍ତି'— ଅର୍ଜୁନଙ୍କର ଏହି ଚତୁର୍ଥ ପ୍ରଶ୍ନ ପରମାତ୍ମପ୍ରାପ୍ତ ହୋଇଥିବା ପୁରୁଷଙ୍କ ବିଷୟରେ ହୋଇଥିଲା। କିନ୍ତୁ ଏହି ପ୍ରଶ୍ନ ଆଚରଣବିଷୟକ ହୋଇଥିବାରୁ ଏହାର ଉତ୍ତରରେ ଚଉଷଠି ଶ୍ଳୋକଠାରୁ ଏପର୍ଯ୍ୟନ୍ତ କିପ୍ରକାର ଆଚରଣ କଲେ ମନୁଷ୍ୟ ଶୀଘ୍ର ସ୍ଥିତପ୍ରଜ୍ଞ ହୋଇପାରିବ, କିଏ ହୋଇପାରିବ ନାହିଁ, ଏବଂ ଯେତେବେଳେ ମନୁଷ୍ୟ ସ୍ଥିତପ୍ରଜ୍ଞ ହୋଇଯିବ, ସେତେବେଳେ ତା'ର ସ୍ଥିତି କିପ୍ରକାର ହେବ— ସେସବୁ କଥା କୁହାଯାଇଛି। ବର୍ତ୍ତମାନ ଚତୁର୍ଥ ପ୍ରଶ୍ନର ସ୍ପଷ୍ଟ ଉତ୍ତର ଦେଇ ସ୍ଥିତପ୍ରଜ୍ଞ ପୁରୁଷଙ୍କ ଆଚରଣର ପ୍ରକାର କୁହାଯାଉଛି—*

**ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିଃସ୍ପୃହଃ ।**
**ନିର୍ମମୋ ନିରହଙ୍କାରଃ ସ ଶାନ୍ତିମଧିଗଚ୍ଛତି ॥ ୭୧ ॥**

**ଅନ୍ୱୟ**— **ଯଃ** = ଯେଉଁ; **ପୁମାନ୍** = ପୁରୁଷ; **ସର୍ବାନ୍** = ସମସ୍ତ; **କାମାନ୍** = କାମନାମାନଙ୍କୁ; **ବିହାୟ** = ତ୍ୟାଗ କରି; **ନିର୍ମମଃ** = ମମତାରହିତ; **ନିରହଙ୍କାରଃ** = ଅହଙ୍କାରରହିତ (ଏବଂ); **ନିଃସ୍ପୃହଃ** = ସ୍ପୃହାରହିତ ହୋଇ; **ଚରତି** = ବିଚରଣ କରେ; **ସଃ** = ସେ; **ଶାନ୍ତିମ୍** = ଶାନ୍ତିକୁ; **ଅଧିଗଚ୍ଛତି** = ପ୍ରାପ୍ତ ହୁଏ।

**ଯେଉଁ ପୁରୁଷ ସମସ୍ତ କାମନା ତ୍ୟାଗ କରି ମମତାରହିତ, ଅହଙ୍କାରରହିତ ଏବଂ ସ୍ପୃହାରହିତ ହୋଇ ବିଚରଣ କରନ୍ତି, ସେ ହିଁ ଶାନ୍ତି ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ଶାନ୍ତି ଲାଭ କରିଥାନ୍ତି।॥ ୭୧ ॥**

**ପ୍ରଶ୍ନ**— **ସର୍ବାନ୍** ବିଶେଷଣ ସହିତ **କାମାନ୍** ପଦ କେଉଁମାନଙ୍କର ବାଚକ? ଏବଂ ସେମାନଙ୍କୁ ତ୍ୟାଗ କରିଦେବାର ଅର୍ଥ କଣ?

**ଉତ୍ତର**— **ସର୍ବାନ୍** ବିଶେଷଣ ସହିତ **କାମାନ୍** ପଦଟି ହେଉଛି ଇହଲୋକରେ ଓ ପରଲୋକରେ ପ୍ରାପ୍ତ ସମସ୍ତ ଭୋଗର ସବୁପ୍ରକାର କାମନାର ବାଚକ। ସମସ୍ତପ୍ରକାର ଭୋଗର ସମସ୍ତ କାମନାରୁ ସବୁକାଳପାଇଁ ରହିତ ହୋଇଯିବା ହିଁ ଏ ସବୁକୁ ତ୍ୟାଗ କରିଦେବା।

ଏଠାରେ **କାମାନ୍** ପଦ ଶବ୍ଦାଦି ବିଷୟର ବାଚକ ନୁହେଁ; କାରଣ ଏଥିରେ ଅର୍ଜୁନଙ୍କ ଚତୁର୍ଥ ପ୍ରଶ୍ନର ଉତ୍ତର ଦିଆଯାଇଛି ଏବଂ ସ୍ଥିତପ୍ରଜ୍ଞ ପୁରୁଷ କିପ୍ରକାର ଆଚରଣ କରନ୍ତି, ତାହା କୁହାଯାଇଛି; ତେଣୁ ଯଦି ଏଠାରେ **କାମାନ୍** ପଦର ଅର୍ଥ ଶବ୍ଦାଦି ବିଷୟ ବୋଲି ମାନିନିଆଯାଏ, ତେବେ ଏହାକୁ ସର୍ବଥା ତ୍ୟାଗ କରି ବିଚରଣ କରିବା କଥା ଆସିବ ନାହିଁ।

**ପ୍ରଶ୍ନ**—**ନିରହଂକାରଃ, ନିର୍ମମଃ** ଏବଂ **ନିଃସ୍ପୃହଃ**— ଏହି ତିନୋଟି ପଦର ଅଲଗା ଅଲଗା ଭାବ କ'ଣ? ତଥା ଏହିଭଳି ହୋଇ ବିଚରଣ କରିବା କଣ?

**ଉତ୍ତର**— ସାଧାରଣ ଅଜ୍ଞାନୀ ପୁରୁଷ ମନ, ବୁଦ୍ଧି ଓ ଇନ୍ଦ୍ରିୟ ସହିତ ଦେହରେ ଯେଉଁ ଆତ୍ମାଭିମାନ ରଖେ, ଯାହାହେତୁ ସେ ଦେହକୁ ନିଜର ସ୍ୱରୂପ ବୋଲି ମାନେ; ନିଜକୁ ଦେହଠାରୁ ଭିନ୍ନ ବୋଲି ବୁଝେ ନାହିଁ ଓ ଦେହର ସୁଖ-ଦୁଃଖରେ ମଧ୍ୟ ସୁଖୀ-ଦୁଃଖୀ ହୁଏ, ସେହି

ଦେହାଭିମାନର ନାମ ଅହଙ୍କାର ଏବଂ ସେଥିରୁ ପୂର୍ଣ୍ଣରୂପେ ରହିତ ହୋଇଯିବା ଅର୍ଥ **ନିରହଙ୍କାର** ଅର୍ଥାତ୍ ଅହଙ୍କାରରହିତ ହୋଇଯିବା।

ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରରେ, ଶରୀର ସହିତ ସମ୍ବନ୍ଧ ରଖୁଥିବା ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁବାନ୍ଧବ ତଥା ଗୃହ, ଧନ, ଐଶ୍ୱର୍ଯ୍ୟ ଆଦି ପଦାର୍ଥରେ, ନିଜକୃତ କର୍ମରେ ଏବଂ ସେହି କର୍ମର ଫଳରୂପକ ସମସ୍ତ ଭୋଗରେ ସାଧାରଣ ଲୋକଙ୍କର ମମତ୍ୱ ରହେ ଅର୍ଥାତ୍ ଏସବୁକୁ ସେମାନେ ନିଜର ବୋଲି ବୁଝନ୍ତି। ଏହି 'ମୋର' ଭାବର ନାମ **ମମତ୍ୱ** ଏବଂ ଏଥିରୁ ସର୍ବଥା ରହିତ ହୋଇଯିବା ହିଁ **ନିର୍ମମ** ଅର୍ଥାତ୍ ମମତ୍ୱରହିତ ହୋଇଯିବା।

କୌଣସି ଅନୁକୂଳ ବସ୍ତୁର ଅଭାବ ହେଲେ ମନରେ ଯେଉଁ ଏକ ଆକାଂକ୍ଷା ଜାତ ହୁଏ ଯେ, ଅମୁକ ବସ୍ତୁ ଆବଶ୍ୟକ, ତାହା ନ ମିଳିଲେ କାମ ଚଳିବ ନାହିଁ, ସେହି ଆକାଂକ୍ଷାର ନାମ ସ୍ପୃହା ଏବଂ ଆକାଂକ୍ଷାରୁ ସର୍ବଥା ରହିତ ହୋଇଯିବାର ନାମ **ନିଃସ୍ପୃହ** ଅର୍ଥାତ୍ ସ୍ପୃହାରହିତ ହେବା। ସ୍ପୃହା ହେଉଛି କାମନାର ସୂକ୍ଷ୍ମ ସ୍ୱରୂପ; ତେଣୁ ସକଳ କାମନାତ୍ୟାଗଠାରୁ ଏହି ତ୍ୟାଗକୁ ପୃଥକ୍‌ଭାବରେ କୁହାଯାଇଛି।

ଏପରିଭାବରେ ଅହଙ୍କାର, ମମତ୍ୱ ଓ ସ୍ପୃହା ରହିତ ହୋଇ ନିଜର ବର୍ଣ୍ଣ, ଆଶ୍ରମ, ପ୍ରକୃତି ଓ ପରିସ୍ଥିତି ଅନୁସାରେ କେବଳ ଲୋକସଂଗ୍ରହପାଇଁ ଇନ୍ଦ୍ରିୟଗ୍ରାହ୍ୟ ବିଷୟରେ ବିଚରଣ କରିବା ଅର୍ଥାତ୍ ଦେଖିବା, ଶୁଣିବା, ଖାଇବା, ପିଇବା, ଶୋଇବା, ଉଠିବା ଆଦି ସମସ୍ତ ଶାସ୍ତ୍ରବିହିତ ଚେଷ୍ଟା କରିବା ହିଁ ସମସ୍ତ କାମନା ତ୍ୟାଗ କରି ଅହଙ୍କାର, ମମତ୍ୱ ଏବଂ ସ୍ପୃହାରୁ ରହିତ ହୋଇ ବିଚରଣ କରିବା।

**ପ୍ରଶ୍ନ –** ଏଠାରେ **ନିଃସ୍ପୃହଃ'** ପଦର ଅର୍ଥ ଆସକ୍ତିରହିତ ବୋଲି ମାନିନିଆଗଲେ ଆପତ୍ତି କଣ ?

**ଉତ୍ତର –** ସ୍ପୃହା ଆସକ୍ତିର କାର୍ଯ୍ୟ; ତେଣୁ ସ୍ପୃହାର ଅର୍ଥ ଆସକ୍ତି ବୋଲି ମାନିନେଲେ କିଛି ଦୋଷ ନାହିଁ; କିନ୍ତୁ ସ୍ପୃହା ଶବ୍ଦର ଅର୍ଥ ସୂକ୍ଷ୍ମକାମନା; ଆସକ୍ତି ନୁହେଁ। ଅତଏବ ଆସକ୍ତି ବୋଲି ନ ବୁଝି ଏହାକୁ କାମନାର ସୂକ୍ଷ୍ମରୂପ ବୋଲି ମାନିବା ଉଚିତ।

**ପ୍ରଶ୍ନ –** କାମନା ଓ ସ୍ପୃହାରହିତ ବୋଲି କହିସାରିବା ପରେ **ନିର୍ମମଃ** ଏବଂ **ନିରହଙ୍କାରଃ** ବୋଲି କହିବାର ପ୍ରୟୋଜନ କଣ ?

**ଉତ୍ତର –** ଏଠାରେ ପୂର୍ଣ୍ଣଶାନ୍ତି ପ୍ରାପ୍ତ ହୋଇଥିବା ସିଦ୍ଧ ପୁରୁଷଙ୍କର ବର୍ଣ୍ଣନା ଦିଆଯାଉଛି। ତେଣୁ ତାଙ୍କୁ ନିଷ୍କାମ ଏବଂ ନିଃସ୍ପୃହ କହିବା ସହିତ 'ନିର୍ମମ' ଓ 'ନିରହଙ୍କାର' ବୋଲି ମଧ୍ୟ କୁହାଯାଇଛି; କାରଣ କୌଣସି ପୁରୁଷ ଅଧିକାଂଶତଃ ନିଷ୍କାମ ଏବଂ ନିଃସ୍ପୃହ ହୋଇଗଲେ ବି, ଯଦି ତାଙ୍କ ଠାରେ ମମତ୍ୱ ଏବଂ ଅହଙ୍କାର ରହିଥାଏ, ତେବେ ସେ ସିଦ୍ଧପୁରୁଷ ହୋଇପାରିବେ ନାହିଁ ଏବଂ ଯେଉଁ ପୁରୁଷ ନିଷ୍କାମ, ନିଃସ୍ପୃହ, ନିର୍ମମ ହୋଇ ମଧ୍ୟ ଅହଙ୍କାରରହିତ ନୁହଁନ୍ତି, ସେ ମଧ୍ୟ ସିଦ୍ଧ ହୋଇପାରିବେ ନାହିଁ। ଅହଙ୍କାର ନାଶ ହେଲେ ସବୁ ନାଶ ହୋଇଯାଏ। ଯେପର୍ଯ୍ୟନ୍ତ କାରଣରୂପ ଅହଙ୍କାର ରହିଥାଏ, ସେପର୍ଯ୍ୟନ୍ତ କାମନା, ସ୍ପୃହା ଏବଂ ମମତ୍ୱ କୌଣସି ନା କୌଣସିରୂପରେ ରହିଥାଏ ଏବଂ ଯେପର୍ଯ୍ୟନ୍ତ କିଞ୍ଚିତ୍‌ମାତ୍ର କାମନା, ସ୍ପୃହା, ମମତ୍ୱ ଓ ଅହଙ୍କାର ରହିଥାଏ, ସେପର୍ଯ୍ୟନ୍ତ ପୂର୍ଣ୍ଣଶାନ୍ତି ମିଳିପାରେ ନାହିଁ। ଏଠାରେ **'ଶାନ୍ତିମ୍ ଅଧିଗଚ୍ଛତି'** ବାକ୍ୟ ଅନୁଯାୟୀ ପୂର୍ଣ୍ଣଶାନ୍ତି କଥା ହିଁ ସିଦ୍ଧ ହୁଏ। ମମତ୍ୱ ଓ ଅହଙ୍କାର ରହିଲେ ଏହିପରି ପୂର୍ଣ୍ଣ ଓ ନିତ୍ୟଶାନ୍ତି କେବେ ବି ମିଳିବ ନାହିଁ। ତେଣୁ ନିଷ୍କାମ ଏବଂ ନିଃସ୍ପୃହ କହିବା ପରେ ମଧ୍ୟ ନିର୍ମମ ଏବଂ ନିରହଙ୍କାର କହିବା ଉଚିତ ହୋଇଛି।

**ପ୍ରଶ୍ନ –** ଏପରି ମାନିଲେ କେବଳ ଗୋଟିଏ 'ନିରହଙ୍କାର' ଶବ୍ଦ ତ ପର୍ଯ୍ୟାପ୍ତ ହୋଇଥାନ୍ତା; ନିଷ୍କାମ, ନିଃସ୍ପୃହ ଓ ନିର୍ମମ କହିବାର ଆବଶ୍ୟକତା କଣ ?

**ଉତ୍ତର –** ଏ କଥା ଠିକ୍ ଯେ, ନିରହଙ୍କାର ହେବା ପରେ କାମନା, ସ୍ପୃହା ଓ ମମତ୍ୱ ରହେ ନାହିଁ; କାରଣ ଅହଙ୍କାର ହିଁ ସବୁର ମୂଳ କାରଣ। କାରଣର ଅଭାବରେ କାର୍ଯ୍ୟର ଅଭାବ ହେବା ସ୍ୱତଃସିଦ୍ଧ। ତଥାପି ସ୍ପଷ୍ଟରୂପେ ବୁଝାଇଦେବାକୁ ଏସବୁ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** 'ସେ ଶାନ୍ତି ଲାଭ କରିଥାନ୍ତି' ଏ କଥନର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ଶ୍ଳୋକରେ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ବିଚରଣବିଧି ବର୍ଣ୍ଣନା କରି ଅର୍ଜୁନଙ୍କ ଚତୁର୍ଥ ପ୍ରଶ୍ନର ଉତ୍ତର ଦିଆଯାଇଛି। ଏଣୁ ଉପରୋକ୍ତ କଥନରେ ପ୍ରକାଶ କରାଯାଇଛି ଯେ, ବିଷୟରେ ଏହିପରି ବିଚରଣ କରୁଥିବା ପୁରୁଷ ହିଁ ପରମଶାନ୍ତିସ୍ୱରୂପ ପରବ୍ରହ୍ମପରମାତ୍ମାପ୍ରାପ୍ତ ସ୍ଥିତପ୍ରଜ୍ଞ ଅଟନ୍ତି।

**ସମ୍ବନ୍ଧ—** ଏପରିଭାବରେ ଅର୍ଜୁନଙ୍କ ଚାରୋଟି ପ୍ରଶ୍ନର ଉତ୍ତର ଦେବା ପରେ ବର୍ତ୍ତମାନ ସ୍ଥିତପ୍ରଜ୍ଞ ପୁରୁଷଙ୍କ ସ୍ଥିତିର ମହତ୍ତ୍ୱ ପ୍ରତିପାଦନ କରି ଭଗବାନ୍ ଏହି ଅଧ୍ୟାୟର ଉପସଂହାର କରୁଛନ୍ତି—

**ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି।**
**ସ୍ଥିତ୍ୱାସ୍ୟାମନ୍ତକାଳେଽପି ବ୍ରହ୍ମନିର୍ବାଣମୃଚ୍ଛତି॥ ୭୨ ॥**

**ଅନ୍ୱୟ—** **ପାର୍ଥ** = ହେ ଅର୍ଜୁନ; **ଏଷା** = ଏହା; **ବ୍ରାହ୍ମୀ** = ବ୍ରହ୍ମପ୍ରାପ୍ତ ପୁରୁଷଙ୍କ; **ସ୍ଥିତିଃ** = ସ୍ଥିତି ଅଟେ; **ଏନାମ୍** = ଏହାକୁ; **ପ୍ରାପ୍ୟ** = ପ୍ରାପ୍ତ ହୋଇ (ଯୋଗୀ କେବେହେଲେ); **ନ, ବିମୁହ୍ୟତି** = ମୋହିତ ହୁଅନ୍ତି ନାହିଁ; **ଅନ୍ତକାଳେ** = ଅନ୍ତକାଳରେ; **ଅପି** = ମଧ୍ୟ; **ଅସ୍ୟାମ୍** = ଏହି ବ୍ରାହ୍ମୀସ୍ଥିତିରେ; **ସ୍ଥିତ୍ୱା** = ସ୍ଥିତ ହୋଇ; **ବ୍ରହ୍ମନିର୍ବାଣମ୍** = ବ୍ରହ୍ମାନନ୍ଦକୁ; **ଋଚ୍ଛତି** = ପ୍ରାପ୍ତ ହୁଅନ୍ତି।

**ହେ ଅର୍ଜୁନ! ଏହା ହେଉଛି ବ୍ରହ୍ମକୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ସ୍ଥିତି। ଏହାକୁ ପ୍ରାପ୍ତ ହୋଇ ଯୋଗୀ କେବେହେଲେ ମୋହିତ ହୁଅନ୍ତି ନାହିଁ ଏବଂ ଅନ୍ତକାଳରେ ମଧ୍ୟ ଏହି ବ୍ରାହ୍ମୀ ସ୍ଥିତିରେ ସ୍ଥିତ ହୋଇ ବ୍ରହ୍ମାନନ୍ଦ ପ୍ରାପ୍ତ ହୁଅନ୍ତି॥ ୭୨ ॥**

**ପ୍ରଶ୍ନ—** **ଏଷା** ଏବଂ **ବ୍ରାହ୍ମୀ** ଏହି ଦୁଇ ବିଶେଷଣ ସହିତ **ସ୍ଥିତିଃ** ପଦଟି କେଉଁ ସ୍ଥିତିର ବାଚକ ଏବଂ ତାହା ପ୍ରାପ୍ତ ହେବା କଣ ?

**ଉତ୍ତର—** ବ୍ରହ୍ମବିଷୟକ ସ୍ଥିତିକୁ ବ୍ରାହ୍ମୀ ସ୍ଥିତି କହନ୍ତି ଏବଂ ଯାହାର ପ୍ରକରଣ ଚାଲିଛି, **ଏଷା** ପଦଟି ହେଉଛି ତାହାର ଦ୍ୟୋତକ। ତେଣୁ ଅର୍ଜୁନ ପଚାରିବାରୁ ପଞ୍ଚାବନ ଶ୍ଳୋକଠାରୁ ଏପର୍ଯ୍ୟନ୍ତ ସ୍ଥିତପ୍ରଜ୍ଞ ପୁରୁଷଙ୍କ ସ୍ଥିତିର ବର୍ଣ୍ଣନା ସ୍ଥାନେ ସ୍ଥାନେ କରାଯାଇଛି। **ଏଷା** ଓ **ବ୍ରାହ୍ମୀ** ବିଶେଷଣ ସହିତ **ସ୍ଥିତି** ପଦଟି ହେଉଛି ବ୍ରହ୍ମକୁ ପ୍ରାପ୍ତ କରିଥିବା ମହାପୁରୁଷଙ୍କ ସ୍ଥିତି। ଉପରୋକ୍ତପ୍ରକାରେ ଅହଙ୍କାର, ମମତ୍ୱ, ଆସକ୍ତି, ସ୍ପୃହା ଓ କାମନାରୁ ରହିତ ହୋଇ ସର୍ବଥା ନିର୍ବିକାର ଓ ନିଶ୍ଚଳଭାବରେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ନିତ୍ୟ ନିରନ୍ତର ନିମଗ୍ନ ହେବା ହିଁ ଏହି ବ୍ରାହ୍ମୀ ସ୍ଥିତି ପ୍ରାପ୍ତ ହେବା।

**ପ୍ରଶ୍ନ—** 'ଏହି ସ୍ଥିତିକୁ ପ୍ରାପ୍ତ ହୋଇ ଯୋଗୀ କେବେ ମୋହିତ ହୁଅନ୍ତି ନାହିଁ'— ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଯେଉଁ ଭାବ ପ୍ରକାଶ କରାଯାଇଛି, ତାହା ହେଲା : ବ୍ରହ୍ମ କଣ, ଈଶ୍ୱର କଣ, ସଂସାର କଣ, ମାୟା କଣ, ଏସବୁର ପରସ୍ପର ମଧ୍ୟରେ କି ସମ୍ବନ୍ଧ ରହିଛି, ମୁଁ କିଏ, କେଉଁଠୁ ଆସିଛି, ମୋର କର୍ତ୍ତବ୍ୟ କଣ ଏବଂ ମୁଁ କଣ କରୁଛି, —ଇତ୍ୟାଦି ବିଷୟର ଯଥାର୍ଥ ଜ୍ଞାନ ନ ହେବା ହିଁ ମୋହ। ଏହି ମୋହ ହିଁ ଜୀବକୁ ଅନାଦି କାଳରୁ ଏହି ସଂସାରଚକ୍ରରେ ପକାଇ ଘୂରାଉଛି। କିନ୍ତୁ ଯଦି ଅହଂତ୍ୱ, ମମତ୍ୱ, ଆସକ୍ତି ଓ କାମନାରୁ ରହିତ ହୋଇ ମନୁଷ୍ୟ ଉପରୋକ୍ତ ବ୍ରାହ୍ମୀ ସ୍ଥିତି ପାଇପାରିବ, ତେବେ ତା'ର ଅନାଦିସିଦ୍ଧ ମୋହ ସମୂଳେ ନଷ୍ଟ ହୋଇଯିବ ଅର୍ଥାତ୍ ତା'ର ଆଉ ଉତ୍ପତ୍ତି ହେବ ନାହିଁ।

**ପ୍ରଶ୍ନ—** 'ଅନ୍ତକାଳରେ ମଧ୍ୟ ଏହି ସ୍ଥିତିରେ ସ୍ଥିତ ହୋଇ ଯୋଗୀ ବ୍ରହ୍ମାନନ୍ଦ ପ୍ରାପ୍ତ ହୁଅନ୍ତି'— ଏପରି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଏଥିରେ ପ୍ରକାଶ କରାଯାଇଛି ଯେ, ଯେଉଁ ମନୁଷ୍ୟ ଜୀବିତ ଅବସ୍ଥାରେ ଏହି ସ୍ଥିତି ପ୍ରାପ୍ତି କରିପାରନ୍ତି, ତାଙ୍କ ବିଷୟରେ ଆଉ କହିବାର କଣ ଅଛି? ସେ ବ୍ରହ୍ମାନନ୍ଦ ପ୍ରାପ୍ତ ହୋଇ ଜୀବନ୍ମୁକ୍ତ ହୋଇଥାଆନ୍ତି। କିନ୍ତୁ ଯେ ସାଧନା କରୁ କରୁ ଅକସ୍ମାତ୍ ମରଣକାଳରେ ମଧ୍ୟ ଏହି ବ୍ରାହ୍ମୀ ସ୍ଥିତିରେ ସ୍ଥିତ ହୋଇଯାଆନ୍ତି, ଅର୍ଥାତ୍ ଅହଙ୍କାର, ମମତ୍ୱ, ଆସକ୍ତି, ସ୍ପୃହା ଓ କାମନାରହିତ ହୋଇ ଅଟଳଭାବରେ ପରମାତ୍ମାଙ୍କ ସ୍ୱରୂପରେ ସ୍ଥିତ ହୋଇଯାଆନ୍ତି, ସେ ମଧ୍ୟ ବ୍ରହ୍ମାନନ୍ଦ ପ୍ରାପ୍ତ ହୋଇପାରନ୍ତି।

**ପ୍ରଶ୍ନ—** ଯେଉଁ ସାଧକ କର୍ମଯୋଗରେ ଶ୍ରଦ୍ଧା ରଖିଥାନ୍ତି ଅଥଚ ଯାହାଙ୍କ ମନ କୌଣସି କାରଣରୁ ମୃତ୍ୟୁକାଳରେ ସମଭାବରେ ସ୍ଥିର ହୋଇପାରିଲା ନାହିଁ, ତାଙ୍କର କି ଗତି ହୁଏ ?

**ଉତ୍ତର—** ମୃତ୍ୟୁକାଳରେ ରହୁଥିବା ସମଭାବ ସାଧକଙ୍କୁ ତତ୍କାଳ ଉଦ୍ଧାର କରିଦିଏ; କିନ୍ତୁ ମୃତ୍ୟୁକାଳରେ ମନ ଯଦି ସମତ୍ୱରୁ ବିଚଳିତ ହୋଇଯାଏ, ତେବେ ତାଙ୍କର ସାଧନା ବ୍ୟର୍ଥ ହୁଏ ନାହିଁ। ସେ ଯୋଗଭ୍ରଷ୍ଟଗତି ପ୍ରାପ୍ତ ହୁଅନ୍ତି ଏବଂ ସମଭାବର ସଂସ୍କାର ତାଙ୍କୁ ବଳପୂର୍ବକ ନିଜ ଆଡ଼କୁ ଆକର୍ଷିତ କରିନିଏ (୬/୪୦-୪୪) ଏବଂ ତା'ପରେ ସେ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥାନ୍ତି।

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ସାଂଖ୍ୟଯୋଗୋ*
*ନାମ ଦ୍ୱିତୀୟୋଽଧ୍ୟାୟଃ ॥ ୨ ॥*

— ୦ —

ॐ ଶ୍ରୀପରମାତ୍ମନେ ନମଃ

# ତୃତୀୟୋଽଧ୍ୟାୟଃ

## କର୍ମଯୋଗ

**ଅଧ୍ୟାୟର ନାମ :** ଏହି ଅଧ୍ୟାୟରେ ନାନାପ୍ରକାର କାରଣ ଦେଇ ବିହିତକର୍ମର ଅବଶ୍ୟକର୍ତ୍ତବ୍ୟତା ସିଦ୍ଧ କରାଯାଇଛି ତଥା ପ୍ରତ୍ୟେକ ମନୁଷ୍ୟ ନିଜର ବର୍ଣ୍ଣାଶ୍ରମର ବିହିତକର୍ମ କିପରି କରିବା ଉଚିତ, କ'ଣ କରିବା ଉଚିତ, ତାହା ନ କଲେ କି କ୍ଷତି ହେବ, କଲେ କି ଲାଭ ହେବ, କେଉଁ କର୍ମ ବନ୍ଧନକାରକ ଏବଂ କେଉଁ କର୍ମ ମୁକ୍ତିର ସହାୟକ — ଇତ୍ୟାଦି ସମସ୍ତ ବିଷୟ ଭଲଭାବରେ ବୁଝାଇଦିଆଯାଇଛି। ଏପରିଭାବରେ କର୍ମଯୋଗବିଷୟକ ବର୍ଣ୍ଣନା ଅନ୍ୟାନ୍ୟ ଅଧ୍ୟାୟ ଅପେକ୍ଷା ଏହି ଅଧ୍ୟାୟରେ ଅଧିକ ଓ ବିସ୍ତାରିତଭାବରେ କରାଯାଇଛି ଏବଂ ଅନ୍ୟ ବିଷୟର ସମାବେଶ ଖୁବ୍ କମ ହୋଇଛି; ଯାହା କିଛି ହୋଇଛି, ତାହା ମଧ୍ୟ ଖୁବ୍ ସଂକ୍ଷେପରେ ହୋଇଛି। ତେଣୁ ଏହି ଅଧ୍ୟାୟର ନାମ 'କର୍ମଯୋଗ' ରଖାଯାଇଛି।

**ଅଧ୍ୟାୟର ସାରାଂଶ :** ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଭଗବାନଙ୍କ ଅଭିପ୍ରାୟ ବୁଝି ନ ପାରିବାରୁ ଅର୍ଜୁନ ଭଗବାନଙ୍କୁ ନିଜର ଐକାନ୍ତିକ ଶ୍ରେୟଃ ସାଧନା କ'ଣ, ତାହା କହିବାକୁ ପ୍ରାର୍ଥନା କରିଛନ୍ତି ଏବଂ ତାହାର ଉତ୍ତର ଦେବାକୁ ଯାଇ ଭଗବାନ୍ ତୃତୀୟ ଶ୍ଳୋକରେ ଦୁଇ ନିଷ୍ଠାର ବର୍ଣ୍ଣନା କରିଛନ୍ତି ଓ ଚତୁର୍ଥଶ୍ଳୋକରେ କୌଣସି ନିଷ୍ଠାରେ ମଧ୍ୟ ସ୍ୱରୂପତଃ କର୍ମତ୍ୟାଗ ଆବଶ୍ୟକ ନାହିଁ ବୋଲି ସିଦ୍ଧ କରିଛନ୍ତି। ପଞ୍ଚମଶ୍ଳୋକରେ କ୍ଷଣକପାଇଁ ମଧ୍ୟ କର୍ମମାନଙ୍କର ସର୍ବଥା ତ୍ୟାଗ ଅସମ୍ଭବ ବୋଲି କହିଛନ୍ତି। ଷଷ୍ଠରେ କେବଳ ଉପରୁ ଉପରୁ ଇନ୍ଦ୍ରିୟମାନଙ୍କର କ୍ରିୟା ନ କରି ବିଷୟଚିନ୍ତନ କରୁଥିବା ମନୁଷ୍ୟ ମିଥ୍ୟାଚାରୀ ବୋଲି କହିଛନ୍ତି ଏବଂ ସପ୍ତମ ଶ୍ଳୋକରେ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ସଂଯମ କରି ଇନ୍ଦ୍ରିୟମାନଙ୍କ ଦ୍ୱାରା ଅନାସକ୍ତଭାବରେ କର୍ମ କରୁଥିବା ଲୋକର ପ୍ରଶଂସା କରିଛନ୍ତି। ଅଷ୍ଟମ ଓ ନବମରେ କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେଷ୍ଠ ବୋଲି କହି କର୍ମ ବିନା ଜୀବନନିର୍ବାହ ଅସମ୍ଭବ ବୋଲି କହିଛନ୍ତି ତଥା ନିଃସ୍ୱାର୍ଥ ଓ ଅନାସକ୍ତଭାବରେ ବିହିତକର୍ମ କରିବାକୁ ଆଜ୍ଞା ଦେଇଛନ୍ତି। ଦଶମରୁ ଦ୍ୱାଦଶ ଶ୍ଳୋକପର୍ଯ୍ୟନ୍ତ ପ୍ରଜାପତି ଆଜ୍ଞା ଦେଇଥିବାରୁ କର୍ମ ଅବଶ୍ୟକର୍ତ୍ତବ୍ୟ ବୋଲି ସିଦ୍ଧ କରିଛନ୍ତି। ତେରରେ କହିଛନ୍ତି ଯେ, ଯଜ୍ଞଶିଷ୍ଟ ଅନ୍ନଦ୍ୱାରା ସବୁ ପାପର ବିନାଶ ହୁଏ ଏବଂ ଯଜ୍ଞ କରୁ ନ ଥିବା ଲୋକ ପାପୀ। ଚଉଦ ଓ ପନ୍ଦରରେ ସୃଷ୍ଟିଚକ୍ରର ବର୍ଣ୍ଣନା କରି ସର୍ବବ୍ୟାପୀ ପରମେଶ୍ୱର ଯଜ୍ଞରୂପୀ ସାଧନାରେ ନିତ୍ୟ ପ୍ରତିଷ୍ଠିତ ବୋଲି କହିଛନ୍ତି। ଷୋହଳରେ ସୃଷ୍ଟିଚକ୍ର ଅନୁସାରେ ଚଳୁ ନ ଥିବା ଲୋକର ନିନ୍ଦା କରିଛନ୍ତି। ସତର ଓ ଅଠରରେ ଆତ୍ମନିଷ୍ଠ ଜ୍ଞାନୀ ମହାତ୍ମା ପୁରୁଷଙ୍କର କୌଣସି କର୍ତ୍ତବ୍ୟ ନାହିଁ ବୋଲି ଦର୍ଶାଇଛନ୍ତି ଓ ସେ କର୍ମ କରିବା ଅଥବା ନ କରିବାରେ ତାଙ୍କର କୌଣସି ପ୍ରୟୋଜନ ନାହିଁ ବୋଲି କହିଛନ୍ତି। ଉଣେଇଶରେ ଉପରୋକ୍ତ କାରଣରୁ କର୍ମ କରିବାର ଆବଶ୍ୟକତା ସିଦ୍ଧ କରି ଏବଂ ନିଷ୍କାମକର୍ମର ଫଳ ପରମାତ୍ମପ୍ରାପ୍ତି ବୋଲି କହି ଅର୍ଜୁନଙ୍କୁ ଅନାସକ୍ତଭାବରେ କର୍ମ କରିବାକୁ ଆଜ୍ଞା ଦେଇଛନ୍ତି। ତା'ପରେ କୋଡ଼ିଏରେ ଜନକାଦି ଜ୍ଞାନୀମାନେ କର୍ମରେ ସିଦ୍ଧିପ୍ରାପ୍ତ ହୋଇଥିବାର ପ୍ରମାଣ ଦେଇ ଏବଂ ଲୋକସଂଗ୍ରହପାଇଁ କର୍ମ କରିବାର ଆବଶ୍ୟକତା ବିଷୟରେ କହି ଲୋକସଂଗ୍ରହର ସାର୍ଥକତା ସିଦ୍ଧ କରିଛନ୍ତି। ଏକୋଇଶରେ ଶ୍ରେଷ୍ଠ ପୁରୁଷଙ୍କ ଆଚରଣ ଓ ଉପଦେଶ ଅନୁସାରେ ଲୋକେ ଚଳନ୍ତି ବୋଲି କହି, ବାଇଶଠାରୁ ଚବିଶପର୍ଯ୍ୟନ୍ତ ଭଗବାନ୍ ସ୍ୱୟଂ ନିଜର ଦୃଷ୍ଟାନ୍ତ ଦେଇ କର୍ମ କରିବାରେ ଲାଭ ହୁଏ ଏବଂ ନ କରିବାରେ କ୍ଷତି ହୁଏ ବୋଲି କହିଛନ୍ତି। ପଚିଶ ଓ ଛବିଶରେ ଜ୍ଞାନୀପୁରୁଷ ମଧ୍ୟ ଲୋକସଂଗ୍ରହପାଇଁ ସ୍ୱୟଂ କର୍ମ କରିବା ଓ ଅନ୍ୟଦ୍ୱାରା କରାଇବା ଉଚିତ ବୋଲି କହିଛନ୍ତି। ସତେଇଶ ଓ ଅଠେଇଶରେ କର୍ମାସକ୍ତ ମନୁଷ୍ୟମାନଙ୍କ ଅପେକ୍ଷା ସାଂଖ୍ୟଯୋଗୀମାନଙ୍କର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି। ଅଣତିରିଶରେ ଜ୍ଞାନୀମାନେ ସାଧାରଣ ଲୋକଙ୍କୁ ବିଚଳିତ ନ କରିବା ଉଚିତ ବୋଲି କହିଛନ୍ତି। ତିରିଶରେ ପୂର୍ଣ୍ଣଭାବରେ ଆଶା, ମମତା

ଏବଂ ସନ୍ତାପ ତ୍ୟାଗ କରି ଭଗବତ୍ ଅର୍ପଣ ବୁଦ୍ଧିରେ ଯୁଦ୍ଧ କରିବାକୁ ଅର୍ଜୁନଙ୍କୁ ଆଜ୍ଞା ଦେଇଛନ୍ତି। ଏକତିରିଶରେ ଏହି ସିଦ୍ଧାନ୍ତ ଅନୁସାରେ ଚାଲୁଥିବା ଶ୍ରଦ୍ଧାଳୁପୁରୁଷ ମୁକ୍ତ ହୁଅନ୍ତି ବୋଲି କହି ବତିଶରେ ଉପରୋକ୍ତ ନିୟମ ଅନୁସାରେ ନ ଚାଲୁଥିବା ଦୋଷଦର୍ଶୀମାନଙ୍କର ପତନ ହୁଏ ବୋଲି କହିଛନ୍ତି। ତେତିଶରେ ପ୍ରକୃତିବଶ ହୋଇଥିବାରୁ ସ୍ୱରୂପତଃ କର୍ମ ତ୍ୟାଗ କରିବାକୁ ମନୁଷ୍ୟମାନେ ଅସମର୍ଥ ବୋଲି ସିଦ୍ଧ କରିଛନ୍ତି। ଚଉତିରିଶରେ ରାଗଦ୍ୱେଷର ବଶ ନ ହେବା ନିମନ୍ତେ ପ୍ରେରଣା ଦେଇଛନ୍ତି। ପଇଁତିରିଶରେ ପରଧର୍ମ ଅପେକ୍ଷା ସ୍ୱଧର୍ମ କଲ୍ୟାଣକର ଏବଂ ପରଧର୍ମ ଭୟାବହ ବୋଲି କହିଛନ୍ତି। ଛତିଶରେ ଅର୍ଜୁନ ପଚାରିଛନ୍ତି, ''ମନୁଷ୍ୟକୁ କିଏ ବଳପୂର୍ବକ ପାପକର୍ମରେ ପ୍ରବୃତ୍ତ କରେ ?'' ସଇଁତିରିଶରେ ଭଗବାନ୍ ଉତ୍ତର ଦେଇଛନ୍ତି ଯେ, କାମରୂପକ ଶତ୍ରୁ ହେଉଛି ସମସ୍ତ ପାପାଚରଣର ମୂଳକାରଣ। ଅଠତିରିଶରୁ ଏକଚାଳିଶପର୍ଯ୍ୟନ୍ତ କାମକୁ ଅଗ୍ନିପରି ସଦା ଅତୃପ୍ତ ଏବଂ ଜ୍ଞାନର ଆବରଣକାରୀ ଘୋରଶତ୍ରୁ ବୋଲି କହିଛନ୍ତି ଏବଂ ତାହାର ନିବାସସ୍ଥାନ ବର୍ଣ୍ଣନା କରି ଇନ୍ଦ୍ରିୟସଂଯମପୂର୍ବକ ତାହାକୁ ନାଶ କରିବାକୁ କହିଛନ୍ତି। ବୟାଳିଶରେ ଇନ୍ଦ୍ରିୟ, ମନ ଓ ବୁଦ୍ଧି ଅପେକ୍ଷା ଆତ୍ମାକୁ ଅତିଶୟ ଶ୍ରେଷ୍ଠ ବୋଲି କହିଛନ୍ତି। ତେୟାଳିଶରେ ବୁଦ୍ଧିଦ୍ୱାରା ମନକୁ ସଂଯମ କରି କାମକୁ ମାରିବା ପାଇଁ ଆଜ୍ଞା ଦେବା ସହିତ ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ—** ଦ୍ୱିତୀୟ ଅଧ୍ୟାୟରେ ଭଗବାନ୍ **ଅଶୋଚ୍ୟାନନ୍ୱଶୋଚସ୍ତ୍ୱମ୍** (୨/୧୧)ଠାରୁ **ଦେହୀ ନିତ୍ୟମବଧ୍ୟୋଽୟମ୍** (୨/୩୦)ପର୍ଯ୍ୟନ୍ତ ଆତ୍ମତତ୍ତ୍ୱ ନିରୂପଣ କରି ସାଂଖ୍ୟଯୋଗ ପ୍ରତିପାଦନ କରିଛନ୍ତି ଏବଂ **ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ'** (୨/୩୯)ଠାରୁ **ତଦା ଯୋଗମବାପ୍ସ୍ୟସି** (୨/୫୩)ପର୍ଯ୍ୟନ୍ତ ସମବୁଦ୍ଧିରୂପୀ କର୍ମଯୋଗ ବର୍ଣ୍ଣନା କରିଛନ୍ତି। ଏହା ପରେ ଚଉବନ ଶ୍ଳୋକଠାରୁ ଅଧ୍ୟାୟସମାପ୍ତିପର୍ଯ୍ୟନ୍ତ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ୍ ସମବୁଦ୍ଧିରୂପକ କର୍ମଯୋଗଦ୍ୱାରା ପରମେଶ୍ୱରଙ୍କୁ ପାଇଥିବା ସ୍ଥିତପ୍ରଜ୍ଞ ସିଦ୍ଧପୁରୁଷଙ୍କ ଲକ୍ଷଣ, ଆଚରଣ ଓ ମହତ୍ତ୍ୱ ପ୍ରତିପାଦନ କରିଛନ୍ତି। ସେଥିରେ କର୍ମଯୋଗୀର ମହିମା କହିବା ସହିତ ଭଗବାନ୍ ସତଚାଳିଶ ଓ ଅଠଚାଳିଶ ଶ୍ଳୋକରେ କର୍ମଯୋଗର ସ୍ୱରୂପ ବୁଝାଇଦେଇ ଅର୍ଜୁନଙ୍କୁ କର୍ମ କରିବାକୁ କହିଛନ୍ତି। ଅଣଚାଶରେ ସମବୁଦ୍ଧିରୂପ କର୍ମଯୋଗ ଅପେକ୍ଷା ସକାମକର୍ମକୁ ଅତ୍ୟନ୍ତ ନିମ୍ନଶ୍ରେଣୀର ବୋଲି କହିଛନ୍ତି। ପଚାଶରେ ସମବୁଦ୍ଧିଯୁକ୍ତ ପୁରୁଷଙ୍କୁ ପ୍ରଶଂସା କରି ଅର୍ଜୁନଙ୍କୁ କର୍ମଯୋଗରେ ଲାଗିବାକୁ କହିଛନ୍ତି। ଏକାବନରେ ସମବୁଦ୍ଧିଯୁକ୍ତ ଜ୍ଞାନୀପୁରୁଷ ଅନାମୟ ପଦ ପ୍ରାପ୍ତ କରିପାରନ୍ତି ବୋଲି କହିଛନ୍ତି। ଏହି ପ୍ରସଙ୍ଗ ଶୁଣି ଅର୍ଜୁନ ଏହାର ଯଥାର୍ଥ ଅଭିପ୍ରାୟ ନିଶ୍ଚୟ କରିପାରିଲେ ନାହିଁ; ବୁଦ୍ଧି ଶବ୍ଦର ଅର୍ଥ ଜ୍ଞାନ ବୋଲି ମାନିନେବାରୁ ତାଙ୍କର ଭ୍ରମ ହୋଇଗଲା; ଭଗବାନଙ୍କ ବଚନରେ ତାଙ୍କୁ କର୍ମ ଅପେକ୍ଷା ଜ୍ଞାନର ଅଧିକ ପ୍ରଶଂସା ପ୍ରତୀତ ହେବାକୁ ଲାଗିଲା ଏବଂ ସେହି ବଚନ ସ୍ପଷ୍ଟ ନ ହେବାରୁ ତାଙ୍କୁ ସବୁ ଗୋଳିଆମିଶାପରି ଲାଗିଲା। ଅତଏବ ଭଗବାନଙ୍କ ଠାରୁ ସ୍ପଷ୍ଟୀକରଣ ଶୁଣିବାକୁ ଏବଂ ନିଜର ନିଶ୍ଚିତ ଶ୍ରେୟଃସାଧନା କଣ, ତାହା ଜାଣିବାକୁ ଅର୍ଜୁନ ପଚାରୁଛନ୍ତି—

ଅର୍ଜୁନ ଉବାଚ

**ଜ୍ୟାୟସୀ ଚେତ୍କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦ୍ଦନ।**
**ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ॥ ୧ ॥**

ଅନ୍ୱୟ— **ଜନାର୍ଦ୍ଦନ** = ହେ ଜନାର୍ଦ୍ଦନ; **ଚେତ୍** = ଯଦି; **ତେ** = ଆପଣଙ୍କୁ; **କର୍ମଣଃ** = କର୍ମଠାରୁ; **ବୁଦ୍ଧିଃ** = ଜ୍ଞାନ; **ଜ୍ୟାୟସୀ** = ଶ୍ରେଷ୍ଠ; **ମତା** = ମାନ୍ୟ ଅଟେ; **ତତ୍** = ତେବେ; **କେଶବ** = ହେ କେଶବ; **ମାମ୍** = ମୋତେ; **ଘୋରେ** = ଭୟଙ୍କର; **କର୍ମଣି** = କର୍ମରେ; **କିମ୍** = କାହିଁକି; **ନିୟୋଜୟସି** = ଲଗାଉଛନ୍ତି।

**ଅର୍ଜୁନ ପଚାରିଲେ— ହେ ଜନାର୍ଦ୍ଦନ! ଯଦି ଆପଣଙ୍କ ମତରେ କର୍ମ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ, ତେବେ ହେ କେଶବ! ମୋତେ କାହିଁକି ଭୟଙ୍କର କର୍ମରେ ଲଗାଉଛନ୍ତି ?॥ ୧ ॥**

**ପ୍ରଶ୍ନ –** କର୍ମ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ ବୋଲି ଭଗବାନ୍ ପୂର୍ବରୁ କେଉଁଠି କହିଛନ୍ତି? ଯଦି ନ କହିଛନ୍ତି, ତେବେ ଅର୍ଜୁନ ଏପରି ପ୍ରଶ୍ନ ପଚାରିଲେ କିପରି ?

**ଉତ୍ତର –** ଭଗବାନ୍ ଏକଥା ଆଗରୁ କହି ନାହାନ୍ତି, କିନ୍ତୁ ଅର୍ଜୁନ ଭଗବାନଙ୍କ ବଚନର ମର୍ମ ଓ ତତ୍ତ୍ୱ ବୁଝି ନ ପାରିବାରୁ **ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାଦ୍ ଧନଂଜୟ**ରୁ ଭାବିନେଲେ ଯେ, ଭଗବାନ୍ ବୁଦ୍ଧିଯୋଗଦ୍ୱାରା ଜ୍ଞାନକୁ ଲକ୍ଷ୍ୟ କରୁଛନ୍ତି ଏବଂ ଜ୍ଞାନ ଅପେକ୍ଷା କର୍ମକୁ ଅତ୍ୟନ୍ତ ତୁଚ୍ଛ ବୋଲି କହୁଛନ୍ତି। ବସ୍ତୁତଃ ସେଠାରେ 'ବୁଦ୍ଧିଯୋଗ' ଶବ୍ଦର ଅର୍ଥ 'ଜ୍ଞାନ' ନୁହେଁ; ସମବୁଦ୍ଧିଦ୍ୱାରା ହେଉଥିବା କର୍ମଯୋଗପାଇଁ **ବୁଦ୍ଧିଯୋଗ** ବ୍ୟବହାର କରାଯାଇଛି ଏବଂ **କର୍ମ** ଶବ୍ଦ ସକାମକର୍ମର ବାଚକ। କାରଣ ସେହି ଶ୍ଳୋକରେ ଭଗବାନ୍ ଫଳ ଇଚ୍ଛା କରୁଥିବା ଲୋକଙ୍କୁ **କୃପଣାଃ ଫଳହେତବଃ** ବୋଲି କହି ସେମାନଙ୍କୁ ଅତ୍ୟନ୍ତ କୃପଣ ବୋଲି ଦର୍ଶାଇଛନ୍ତି ଏବଂ ସକାମକର୍ମକୁ ତୁଚ୍ଛ ବୋଲି କହି **ବୁଦ୍ଧୌ ଶରଣମନ୍ୱିଚ୍ଛ**ରେ ସମବୁଦ୍ଧିରୂପୀ କର୍ମଯୋଗର ଆଶ୍ରୟ ନେବାକୁ ଆଦେଶ ଦେଇଛନ୍ତି; କିନ୍ତୁ ଅର୍ଜୁନ ଏହି ତତ୍ତ୍ୱ ବୁଝିପାରିଲେ ନାହିଁ ଓ ତେଣୁ ତାଙ୍କ ମନରେ ଉପରୋକ୍ତ ପ୍ରଶ୍ନର ଅବତାରଣା ହୋଇଛି।

**ପ୍ରଶ୍ନ –** ବୁଦ୍ଧି ଶବ୍ଦର ଅର୍ଥ ଏଠାରେ ମଧ୍ୟ ପୂର୍ବପରି ସମବୁଦ୍ଧିରୂପକ କର୍ମଯୋଗ ବୋଲି କାହିଁକି ନିଆ ନ ଯିବ ?

**ଉତ୍ତର –** ଏହା ତ ଅର୍ଜୁନଙ୍କ ପ୍ରଶ୍ନ; ସେ ଭଗବାନଙ୍କ କଥାର ଯଥାର୍ଥ ତାତ୍ପର୍ଯ୍ୟ ନ ବୁଝି 'ବୁଦ୍ଧି' ଶବ୍ଦର ଅର୍ଥ ଜ୍ଞାନ ବୋଲି ଧରିନେଇଛନ୍ତି ଏବଂ ତେଣୁ ଏପରି ପ୍ରଶ୍ନ କରିଛନ୍ତି। ଯଦି ଅର୍ଜୁନ ବୁଦ୍ଧିର ଅର୍ଥ ସମବୁଦ୍ଧିରୂପକ କର୍ମଯୋଗ ବୋଲି ବୁଝିଥାଆନ୍ତେ, ତେବେ ଏପରି ପ୍ରଶ୍ନ କରି ନ ଥାନ୍ତେ। ଅର୍ଜୁନ 'ବୁଦ୍ଧି'ର ଅର୍ଥ 'ଜ୍ଞାନ' ବୋଲି ଭାବିଛନ୍ତି। ଅତଏବ ଅର୍ଜୁନଙ୍କ ବୁଝିବା ଅନୁସାରେ 'ବୁଦ୍ଧି' ଶବ୍ଦର ଅର୍ଥ 'ଜ୍ଞାନ' ଠିକ୍ ହିଁ କରାଯାଇଛି।

**ପ୍ରଶ୍ନ –** 'ମୋତେ ଘୋର କର୍ମରେ କାହିଁକି ଲଗାଉଛନ୍ତି ?'—ଏହି ବାକ୍ୟର ଭାବ କଣ

**ଉତ୍ତର –** ଭଗବାନଙ୍କ ଅଭିପ୍ରାୟ ନ ଜାଣିପାରିବାରୁ ଅର୍ଜୁନ ବୁଝିଛନ୍ତି ଯେ, ଯେଉଁ କର୍ମକୁ ଭଗବାନ୍ ଅତ୍ୟନ୍ତ ତୁଚ୍ଛ ବୋଲି କହୁଛନ୍ତି, ସେହି କର୍ମରେ (**ତସ୍ମାଦ୍ୟୁଧ୍ୟସ୍ୱ ଭାରତ –** ତେଣୁ ତୁମେ ଯୁଦ୍ଧ କର, **କର୍ମଣ୍ୟେବାଧିକାରସ୍ତେ –** ତୁମର କେବଳ କର୍ମରେ ଅଧିକାର ଅଛି, **ଯୋଗସ୍ଥଃ କୁରୁ କର୍ମାଣି –** ଯୋଗରେ ସ୍ଥିତ ହୋଇ କର୍ମ କର — ଇତ୍ୟାଦି ବିଧିବାକ୍ୟଦ୍ୱାରା) ତାଙ୍କୁ ପ୍ରବୃତ୍ତ କରାଉଛନ୍ତି। ତେଣୁ ସେ ଉପରୋକ୍ତ ବାକ୍ୟଦ୍ୱାରା ଭଗବାନଙ୍କୁ ପଚାରିଛନ୍ତି, 'ମୋତେ ଯୁଦ୍ଧରୂପୀ ଭୟାନକ ହିଂସାତ୍ମକ ପାପକାର୍ଯ୍ୟରେ କାହିଁକି ଲଗାଉଛନ୍ତି ?'

**ପ୍ରଶ୍ନ –** ଏଠାରେ ଅର୍ଜୁନ ଭଗବାନଙ୍କୁ **ଜନାର୍ଦ୍ଦନ** ଏବଂ **କେଶବ** ନାମରେ କାହିଁକି ସମ୍ବୋଧନ କରିଛନ୍ତି ?

**ଉତ୍ତର – ସର୍ବୈର୍ଜନୈରର୍ଦ୍ୟତେ ଯାଚ୍ୟତେ ସ୍ୱାଭିଲଷିତସିଦ୍ଧୟେ ଇତି ଜନାର୍ଦ୍ଦନଃ** ଏହି ବ୍ୟୁତ୍ପତ୍ତି ଅନୁସାରେ ସବୁଲୋକ ଯାହାଙ୍କ ଠାରେ ନିଜର ମନୋରଥ-ସିଦ୍ଧିପାଇଁ ପ୍ରାର୍ଥନା କରନ୍ତି, ତାଙ୍କର ନାମ **ଜନାର୍ଦ୍ଦନ** ହୁଏ; ତଥା **କ** = ବ୍ରହ୍ମା, **ଅ** = ବିଷ୍ଣୁ ଏବଂ **ଈଶ** = ମହେଶ — ଏହି ତିନି ଯାହାଙ୍କର **ବ** = ବପୁ ଅର୍ଥାତ୍ ସ୍ୱରୂପ, ତାହାଙ୍କୁ **କେଶବ** କହନ୍ତି। ଭଗବାନଙ୍କୁ ଏହି ନାମରେ ସମ୍ବୋଧନ କରି ଅର୍ଜୁନ ଜଣାଉଛନ୍ତି, "ମୁଁ ଆପଣଙ୍କର ଶରଣାଗତ; ମୋର କର୍ତ୍ତବ୍ୟ କଣ, ତାହା କହନ୍ତୁ ବୋଲି ମୁଁ ପ୍ରଥମରୁ ପ୍ରାର୍ଥନା କରିସାରିଛି (୨/୭) ଏବଂ ବର୍ତ୍ତମାନ ମଧ୍ୟ କରୁଛି; କାରଣ ଆପଣ ପରମେଶ୍ୱର। ଅତଏବ ପ୍ରାର୍ଥନା କରୁଥିବା ମୋପରି ଶରଣାଗତକୁ ଆପଣ ନିଶ୍ଚିତଭାବରେ ନିଜର ସିଦ୍ଧାନ୍ତ ଅବଶ୍ୟ ବୁଝାଇଦେଇ କୃପା କରନ୍ତୁ।"

## ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ।
## ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାମ୍॥ ୨ ॥

ଅନ୍ୱୟ – **ବ୍ୟାମିଶ୍ରେଣ, ଇବ** = ଗୋଳିଆମିଶାପରି; **ବାକ୍ୟେନ** = କଥାଦ୍ୱାରା; **ମେ** = ମୋର; **ବୁଦ୍ଧିମ୍** = ବୁଦ୍ଧିକୁ; **ମୋହୟସି, ଇବ** = ମୋହିତପରି କରିଦେଉଛନ୍ତି (ତେଣୁ); **ତତ୍** = ସେହି; **ଏକମ୍** = ଗୋଟିଏ କଥା; **ନିଶ୍ଚିତ୍ୟ** = ନିଶ୍ଚୟ କରି; **ବଦ** = କୁହନ୍ତୁ; **ଯେନ** = ଯାହାଦ୍ୱାରା କି; **ଅହମ୍** = ମୁଁ; **ଶ୍ରେୟଃ** = କଲ୍ୟାଣ; **ଆପ୍ନୁୟାମ୍** = ପାଇପାରିବି।

ଆପଣ ଗୋଳିଆମିଶାପରି ଲାଗୁଥିବା କଥାଦ୍ୱାରା ମୋର ବୁଦ୍ଧିକୁ, ଜାଣନ୍ତୁ, ମୋହିତପ୍ରାୟ କରିଦେଉଛନ୍ତି; ତେଣୁ ନିଶ୍ଚୟ କରି ଗୋଟିଏ କଥା କହନ୍ତୁ, ଯାହାଦ୍ୱାରା କି ମୁଁ କଲ୍ୟାଣ ପ୍ରାପ୍ତ ହେବି॥ ୨ ॥

**ପ୍ରଶ୍ନ—** 'ଆପଣ ଗୋଳିଆମିଶା କଥା କହି ମୋର ବୁଦ୍ଧିକୁ, ଜାଣନ୍ତୁ, ମୋହିତପ୍ରାୟ କରିଦେଉଛନ୍ତି', —ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର—** ଯେଉଁ କଥାରେ କୌଣସି ସାଧନା ନିଶ୍ଚୟ କରି ସ୍ପଷ୍ଟରୂପେ ବୁଝାଯାଇ ନାହିଁ, ଯେଉଁଥିରେ ବିଭିନ୍ନପ୍ରକାର କଥାର ସମ୍ମିଶ୍ରଣ ହୋଇଯାଇଛି, ତାହାର ନାମ 'ବ୍ୟାମିଶ୍ର'— ଗୋଳିଆମିଶା। ଏହାଦ୍ୱାରା ଶ୍ରୋତାଙ୍କର ବୁଦ୍ଧି କୌଣସି ଗୋଟିଏ ନିର୍ଣ୍ଣୟରେ ପହଞ୍ଚି ନ ପାରି ମୋହିତ ହୋଇଯାଏ। ଭଗବାନଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟ ବୁଝି ନ ପାରିବାରୁ ଅର୍ଜୁନଙ୍କୁ ମଧ୍ୟ ଭଗବାନଙ୍କ କଥା ଗୋଳିଆମିଶାପରି ପ୍ରତୀତ ହୋଇଥିଲା; କାରଣ 'ବୁଦ୍ଧିଯୋଗ ଅପେକ୍ଷା କର୍ମ ଅତ୍ୟନ୍ତ ନିକୃଷ୍ଟ। ତୁମେ ବୁଦ୍ଧିର ଆଶ୍ରୟ ଗ୍ରହଣ କର (୨/୪୯)',— ଏହି କଥାରୁ ଅର୍ଜୁନ ବୁଝିଥିଲେ ଯେ, ଭଗବାନ୍ ଜ୍ଞାନର ପ୍ରଶଂସା ଓ କର୍ମର ନିନ୍ଦା କରୁଛନ୍ତି ଏବଂ ତାଙ୍କୁ ଜ୍ଞାନର ଆଶ୍ରୟ ନେବାକୁ କହୁଛନ୍ତି, ତଥା 'ବୁଦ୍ଧିଯୁକ୍ତ ପୁରୁଷ ପୁଣ୍ୟ ଓ ପାପକୁ ଇହଲୋକରେ ହିଁ ଛାଡ଼ିଦିଅନ୍ତି' (୨/୫୦)'— ଏହି କଥାରୁ ସେ ବୁଝିଥିଲେ ଯେ, ପୁଣ୍ୟପାପରୂପୀ ସମସ୍ତ କର୍ମକୁ ସ୍ୱରୂପତଃ ତ୍ୟାଗ କରିଦେବା ଲୋକଙ୍କୁ ଭଗବାନ୍ 'ବୁଦ୍ଧିଯୁକ୍ତ' ବୋଲି କହୁଛନ୍ତି। ଏହାର ବିପରୀତ 'ତୁମର କେବଳ କର୍ମରେ ଅଧିକାର ଅଛି' (୨/୪୭), 'ତୁମେ ଯୋଗରେ ଅବସ୍ଥିତ ହୋଇ କର୍ମ କର' (୨/୪୮) —ଏହି ବାକ୍ୟରୁ ଅର୍ଜୁନ ଧରିନେଇଛନ୍ତି ଯେ, ଭଗବାନ୍ ତାଙ୍କୁ କର୍ମରେ ନିଯୁକ୍ତ କରୁଛନ୍ତି; ଏହା ବ୍ୟତୀତ **ନିସ୍ତ୍ରୈଗୁଣ୍ୟୋ ଭବ, ଆତ୍ମବାନ୍ ଭବ** (୨/୪୫) ଆଦି ବାକ୍ୟରେ କର୍ମତ୍ୟାଗ ଏବଂ **ତସ୍ମାଦ୍ ଯୁଧ୍ୟସ୍ୱ ଭାରତ** (୨/୧୮), **ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ** (୨/୩୮), **ତସ୍ମାଦ୍ ଯୋଗାୟ ଯୁଜ୍ୟସ୍ୱ** (୨/୫୦) ଆଦି ବାକ୍ୟକୁ ସେ କର୍ମର ପ୍ରେରଣା ବୋଲି ବୁଝିଛନ୍ତି। ଏପରିଭାବରେ ଉପରୋକ୍ତ କଥା ଶୁଣି ତାଙ୍କ ମନରେ ପରସ୍ପରବିରୋଧ ଭାବ ଦେଖାଦେଇଛି। ତେଣୁ ଉପରୋକ୍ତ ବାକ୍ୟରେ ସେ ଦୁଇଥର **ଇବ** ପଦ ପ୍ରୟୋଗ କରି ଜଣାଇଦେଇଛନ୍ତି, ''ଯଦ୍ୟପି ଆପଣ ମୋତେ ସ୍ପଷ୍ଟଭାବରେ ଅଲଗା ଅଲଗା ସାଧନା ବୁଝାଉଛନ୍ତି, କୌଣସି କଥା ମିଶାଇ ଗୋଳାଇ କହୁ ନାହାନ୍ତି, ଏବଂ ଆପଣ ମୋର ପରମପ୍ରିୟ ଓ ମଙ୍ଗଳାକାଙ୍କ୍ଷୀ ହୋଇଥିବାରୁ ମୋତେ ମୋହିତ ମଧ୍ୟ କରୁ ନାହାନ୍ତି; ବରଂ ମୋର ମୋହ ନାଶ କରିବାକୁ ହିଁ ଉପଦେଶ ଦେଉଛନ୍ତି, ତଥାପି ନିଜର ଅଜ୍ଞତାହେତୁ ମୋତେ ଲାଗୁଛି, ମୋତେ ଆପଣ ପରସ୍ପରବିରୋଧୀ ଏବଂ ମିଶାଗୋଳିଆ କଥା କହି ମୋ ବୁଦ୍ଧିକୁ ମୋହରେ ପକାଇଦେଉଛନ୍ତି।'

**ପ୍ରଶ୍ନ—** ଯଦି ଦ୍ୱିତୀୟ ଅଧ୍ୟାୟର ଅଣଚାଶ ଓ ପଚାଶ ଶ୍ଲୋକ ଶୁଣି ଅର୍ଜୁନଙ୍କର ଏପରି ଭ୍ରମ ସୃଷ୍ଟି ହୋଇଥିଲା, ତେବେ ତେପନ ଶ୍ଲୋକରେ ସେହି ବିଷୟ ସମାପ୍ତ ହେଉ ହେଉ ସେ ନିଜର ଭ୍ରମନିବାରଣପାଇଁ ଭଗବାନଙ୍କୁ କାହିଁକି ପଚାରି ନ ଥିଲେ ? ମଝିରେ ଏତେ ବ୍ୟବଧାନ କାହିଁକି ହେଲା ?

**ଉତ୍ତର—** ଏକଥା ଠିକ୍ ଯେ, ଅର୍ଜୁନଙ୍କର ଏହି ଶଙ୍କା ହୋଇଯାଇଥିଲା; ତେଣୁ ତେପନ ଶ୍ଲୋକରେ ମଧ୍ୟ ଏହି ବିଷୟ ପଚାରିନେବା ଆବଶ୍ୟକ ଥିଲା; କିନ୍ତୁ ତେପନ ଶ୍ଲୋକରେ ଯେତେବେଳେ ଭଗବାନ୍ କହିଦେଲେ, ''ଯେତେବେଳେ ତୁମର ବୁଦ୍ଧି ମୋହରୂପକ ପଙ୍କକୁ ଅତିକ୍ରମ କରିଯିବ ଏବଂ ପରମାତ୍ମାଙ୍କ ସ୍ୱରୂପରେ ସ୍ଥିର ହୋଇଯିବ, ସେତେବେଳ ତୁମେ ପରମାତ୍ମାଙ୍କ ସଂଯୋଗରୂପୀ ଯୋଗ ପ୍ରାପ୍ତ ହୋଇଯିବ'', ତାହା ଶୁଣି ଅର୍ଜୁନଙ୍କ ମନରେ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସ୍ଥିରବୁଦ୍ଧିଯୁକ୍ତ ପୁରୁଷଙ୍କ ଲକ୍ଷଣ ଏବଂ ଆଚରଣ ଜାଣିବାକୁ ପ୍ରବଳ ଇଚ୍ଛା ଜାଗ୍ରତ ହେଲା। ତେଣୁ ସେ ନିଜର ପ୍ରଥମ ଶଙ୍କା ମନରେ ରଖି, ପ୍ରଥମେ ସ୍ଥିତପ୍ରଜ୍ଞଙ୍କ ବିଷୟରେ ପ୍ରଶ୍ନ କରିଦେଲେ ଏବଂ ତା'ର ଉତ୍ତର ମିଳିଯିବା ସଙ୍ଗେ ସଙ୍ଗେ ଏହି ଶଙ୍କାକୁ ଭଗବାନଙ୍କ ଆଗରେ ରଖିଦେଲେ। ଯଦି ସେ ପ୍ରଥମେ ଏ କଥା ପଚାରିଥାନ୍ତେ, ତେବେ ସ୍ଥିତପ୍ରଜ୍ଞସମ୍ବନ୍ଧୀ କଥାଟି ଆସିବାକୁ ଏହାଠାରୁ ବି ଅଧିକ ବ୍ୟବଧାନ ପଡ଼ିଯାଇଥାନ୍ତା।

**ପ୍ରଶ୍ନ—** 'ନିଶ୍ଚିତ କରି ଗୋଟିଏ କଥା କହନ୍ତୁ, ଯାହାଦ୍ୱାରା ମୁଁ କଲ୍ୟାଣ ପ୍ରାପ୍ତ ହେବି'—ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଏପର୍ଯ୍ୟନ୍ତ ଆପଣ ମୋତେ ଯେତେ ଉପଦେଶ ଦେଇଛନ୍ତି, ସେଥିରେ ପରସ୍ପରବିରୋଧୀ ଭାବ ପ୍ରତୀତ ହେବାରୁ ମୁଁ ନିଜର କର୍ତ୍ତବ୍ୟ ନିଶ୍ଚୟ କରିପାରୁ ନାହିଁ; ଆପଣ ମୋତେ ଯୁଦ୍ଧ କରିବାକୁ ଆଜ୍ଞା ଦେଉଛନ୍ତି, ନା ସମସ୍ତ କର୍ମ ତ୍ୟାଗ କରିଦେବାକୁ କହୁଛନ୍ତି, ମୁଁ ବୁଝିପାରୁ ନାହିଁ। ଯଦି ଯୁଦ୍ଧ କରିବାକୁ କହୁଛନ୍ତି, ତେବେ କିପରି ଯୁଦ୍ଧ କରିବାକୁ କହୁଛନ୍ତି ଓ ଯଦି କର୍ମ ତ୍ୟାଗ କରିବାକୁ

କହୁଛନ୍ତି, ତେବେ ତାହା ତ୍ୟାଗ କରିବା ପରେ କଣ କରିବାକୁ ଆଜ୍ଞା ଦେଉଛନ୍ତି ? ତେଣୁ ଆପଣ ସବୁପ୍ରକାରେ ବୁଝିବିଚାରି, ମୋର କର୍ତ୍ତବ୍ୟ ନିଶ୍ଚୟ କରି ଏପରି ଗୋଟିଏ ନିଶ୍ଚିତ କଥା କହିଦିଅନ୍ତୁ, ଯାହା ପାଳନ କଲେ, ମୋର ନିଶ୍ଚିତଭାବରେ କଲ୍ୟାଣ ହେବ।''

**ପ୍ରଶ୍ନ –** ଏଠାରେ **ଶ୍ରେୟଃ** ପଦର ଅର୍ଥ 'କଲ୍ୟାଣ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନ ଏଠାରେ ଶ୍ରେୟଃପ୍ରାପ୍ତିଦ୍ୱାରା ଇହଲୋକ ବା ପରଲୋକର ଭୋଗପ୍ରାପ୍ତି କଥା କହୁ ନାହାନ୍ତି; କାରଣ ସେ ପ୍ରଥମରୁ କହିଦେଇଥିଲେ, ''ଇହଲୋକରେ ନିଷ୍କଣ୍ଟକ ରାଜ୍ୟଭୋଗ ଏବଂ ଦେବତାମାନଙ୍କର ଆଧିପତ୍ୟ ମୋର ଶୋକ ଦୂର କରିପାରିବ ନାହିଁ (୨/୮)''; ତେଣୁ ତାଙ୍କ ଅଭିପ୍ରାୟରେ ଶ୍ରେୟଃପ୍ରାପ୍ତି ହେଉଛି ଶୋକମୋହକୁ ସର୍ବଥା ନାଶ କରି ଶାଶ୍ୱତ ଶାନ୍ତି ଓ ନିତ୍ୟାନନ୍ଦ ପ୍ରଦାନ କରୁଥିବା ନିତ୍ୟବସ୍ତୁର ପ୍ରାପ୍ତି। ତେଣୁ ଏଠାରେ **ଶ୍ରେୟଃ** ପଦର ଅର୍ଥ କଲ୍ୟାଣ କରାଯାଇଛି।

*__ସମ୍ବନ୍ଧ –__ ଅର୍ଜୁନ ଏପରି ପଚାରିବା ପରେ ଭଗବାନ୍ ତାଙ୍କର ନିଶ୍ଚିତ କର୍ତ୍ତବ୍ୟ ଭକ୍ତିପ୍ରଧାନ କର୍ମଯୋଗ ବୋଲି ଆଜ୍ଞା ଦେବା ଉଦ୍ଦେଶ୍ୟରେ ପ୍ରଥମେ ତାଙ୍କ ପ୍ରଶ୍ନର ଉତ୍ତର ଦେଇ କହୁଛନ୍ତି ଯେ, ତାଙ୍କ କଥା 'ବ୍ୟାମିଶ୍ର' ଅର୍ଥାତ୍ ଗୋଳିଆମିଶା ନୁହେଁ; ବରଂ ସର୍ବଥା ସ୍ପଷ୍ଟ ଓ ପ୍ରାଞ୍ଜଳ –*

*ଶ୍ରୀଭଗବାନୁବାଚ*

**ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ।**
**ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାମ୍।। ୩ ।।**

**ଅନ୍ୱୟ –** ଅନଘ = ହେ ନିଷ୍ପାପ; **ଅସ୍ମିନ୍, ଲୋକେ** = ଏହି ଲୋକରେ; **ଦ୍ୱିବିଧା** = ଦୁଇପ୍ରକାର; **ନିଷ୍ଠା** = ନିଷ୍ଠା; **ମୟା** = ମୋ ଦ୍ୱାରା; **ପୁରା** = ଆଗରୁ; **ପ୍ରୋକ୍ତା** = କୁହାଯାଇଛି, (ତନ୍ମଧ୍ୟରୁ); **ସାଂଖ୍ୟାନାମ୍** = ସାଂଖ୍ୟଯୋଗୀମାନଙ୍କର (ନିଷ୍ଠା ତ); **ଜ୍ଞାନଯୋଗେନ** = ଜ୍ଞାନଯୋଗଦ୍ୱାରା; **ଯୋଗିନାମ୍** = ଯୋଗିମାନଙ୍କର (ନିଷ୍ଠା); **କର୍ମଯୋଗେନ** = କର୍ମଯୋଗଦ୍ୱାରା।

**ଶ୍ରୀ ଭଗବାନ୍ କହିଲେ — ହେ ନିଷ୍ପାପ ! ଏହି ଲୋକରେ ଦୁଇପ୍ରକାର ନିଷ୍ଠା ହୁଏ ବୋଲି ମୁଁ ଆଗରୁ କହିସାରିଛି। ତନ୍ମଧ୍ୟରୁ ସାଂଖ୍ୟଯୋଗୀମାନଙ୍କର ନିଷ୍ଠା ଜ୍ଞାନଯୋଗଦ୍ୱାରା ଏବଂ ଯୋଗୀମାନଙ୍କର ନିଷ୍ଠା କର୍ମଯୋଗଦ୍ୱାରା ହୋଇଥାଏ।। ୩ ।।**

**ପ୍ରଶ୍ନ – ଅସ୍ମିନ୍ ଲୋକେ** ପଦ କେଉଁ ଲୋକ ଅର୍ଥରେ ବ୍ୟବହାର କରାଯାଇଛି ?

**ଉତ୍ତର – ଅସ୍ମିନ୍ ଲୋକେ** ପଦ ମନୁଷ୍ୟଲୋକପାଇଁ ବ୍ୟବହାର କରାଯାଇଛି; କାରଣ ଜ୍ଞାନଯୋଗ ଓ କର୍ମଯୋଗ – ଏହି ଦୁଇ ସାଧନାରେ କେବଳ ମନୁଷ୍ୟମାନଙ୍କର ଅଧିକାର ରହିଛି।

**ପ୍ରଶ୍ନ – ନିଷ୍ଠା** ପଦର ଅର୍ଥ କଣ ? ଏବଂ ତାହା ସହିତ **ଦ୍ୱିବିଧା** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –ନିଷ୍ଠା** ପଦର ଅର୍ଥ 'ସ୍ଥିତି'। ତାହା ସହିତ **ଦ୍ୱିବିଧା** ବିଶେଷଣ ଦେଇ ଭଗବାନ୍ ବୁଝାଇଛନ୍ତି ଯେ, ସାଧନାସ୍ଥିତି ମୁଖ୍ୟତଃ ଦୁଇପ୍ରକାର। ଗୋଟିଏ ସ୍ଥିତିରେ ମନୁଷ୍ୟ ଆତ୍ମା ଓ ପରମାତ୍ମାଙ୍କୁ ଅଭେଦ ବୋଲି ମନେ କରି ନିଜକୁ ବ୍ରହ୍ମଠାରୁ ଅଭିନ୍ନ ବୋଲି ବୁଝେ ଓ ଅନ୍ୟ ସ୍ଥିତିରେ ପରମେଶ୍ୱରଙ୍କୁ ସର୍ବଶକ୍ତିମାନ୍, ସମ୍ପୂର୍ଣ୍ଣ ଜଗତର କର୍ତ୍ତା, ହର୍ତ୍ତା, ସ୍ୱାମୀ ତଥା ନିଜକୁ ତାଙ୍କର ଆଜ୍ଞାକାରୀ ସେବକ ବୋଲି ମନେ କରେ।

'ପ୍ରକୃତିରୁ ଉତ୍ପନ୍ନ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି (୩/୨୮); ମୋର ଏହା ସହିତ କୌଣସି ସମ୍ବନ୍ଧ ନାହିଁ' — ଏପରି ବୁଝି ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସମସ୍ତ କ୍ରିୟାମାନଙ୍କରେ କର୍ତ୍ତାପଣ ଅଭିମାନରୁ ପୂର୍ଣ୍ଣଭାବେ ରହିତ ହୋଇଯିବା, କୌଣସି କ୍ରିୟାରେ ବା ତାହାର ଫଳରେ ତିଳେମାତ୍ର ଅହଂତ୍ୱ, ମମତ୍ୱ, ଆସକ୍ତି ଓ କାମନା ନ ରଖିବା ତଥା ସଚ୍ଚିଦାନନ୍ଦଘନ ବ୍ରହ୍ମ ସହିତ ନିଜକୁ ଅଭିନ୍ନ ମନେ କରି ନିରନ୍ତର ପରମାତ୍ମାଙ୍କ ସ୍ୱରୂପରେ ସ୍ଥିତ ହୋଇଯିବା ଅର୍ଥାତ୍ ବ୍ରହ୍ମଭୂତ (ବ୍ରହ୍ମସ୍ୱରୂପ) ହୋଇଯିବା (୫/୨୪;୬/୨୭)– ଏହା ହିଁ ପ୍ରଥମ ନିଷ୍ଠା। ଏହାର ନାମ ଜ୍ଞାନନିଷ୍ଠା। ଏହି ସ୍ଥିତି ପ୍ରାପ୍ତ ହୋଇଗଲା ପରେ ଯୋଗୀ ହର୍ଷ, ଶୋକ

ଓ କାମନାରୁ ଅତୀତ ହୋଇଯାଆନ୍ତି । ତାଙ୍କର ସବୁଠାରେ ସମଦୃଷ୍ଟି ହୋଇଯାଏ (୧୮/୫୪) । ଏହି ସମୟରେ ସେ ସମ୍ପୂର୍ଣ୍ଣ ଜଗତକୁ ଆତ୍ମାରେ ସ୍ୱପ୍ନପରି କଳ୍ପିତ ହୋଇଥିବା ଦେଖନ୍ତି ଏବଂ ଆତ୍ମାକୁ ସମ୍ପୂର୍ଣ୍ଣ ଜଗତରେ ବ୍ୟାପ୍ତ ହୋଇଥିବା ଦେଖନ୍ତି (୬/୨୯) । ଏହି ନିଷ୍ଠା ଓ ସ୍ଥିତିର ଫଳ ହିଁ ପରମାତ୍ମାଙ୍କ ସ୍ୱରୂପର ଯଥାର୍ଥ ଜ୍ଞାନପ୍ରାପ୍ତି ।

ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟଙ୍କ ପାଇଁ ଯେଉଁ କର୍ମ ଶାସ୍ତ୍ରରେ ବିଧାନ କରାଯାଇଛି, ଯାହା ଅନୁଷ୍ଠାନ କରିବା ମନୁଷ୍ୟମାନଙ୍କର ଅବଶ୍ୟ-କର୍ତ୍ତବ୍ୟ ବୋଲି ସ୍ଥିର କରାଯାଇଛି, ସେହି ଶାସ୍ତ୍ରବିହିତ ସ୍ୱାଭାବିକ କର୍ମକୁ ନିଜର କର୍ତ୍ତବ୍ୟ ବୋଲି ବୁଝି ନ୍ୟାୟପୂର୍ବକ ଅନୁଷ୍ଠାନ କରିବା ବିଧେୟ । ସେହି କର୍ମମାନଙ୍କରେ ଓ ସେସବୁର ଫଳରେ ମମତ୍ୱ, ଆସକ୍ତି ଓ କାମନା ସଂପୂର୍ଣ୍ଣରୂପେ ତ୍ୟାଗ କରି ପ୍ରତ୍ୟେକ କର୍ମର ସିଦ୍ଧି ଓ ଅସିଦ୍ଧିରେ ତଥା ତାହାର ଫଳରେ ସର୍ବଦା ସମ ରହିବା (୨/୪୭-୪୮) ଏବଂ ଇନ୍ଦ୍ରିୟମାନଙ୍କର ବିଷୟଭୋଗରେ ତଥା କର୍ମରେ ଆସକ୍ତ ନ ହୋଇ ସମସ୍ତ ସଂକଳ୍ପତ୍ୟାଗପୂର୍ବକ ଯୋଗାରୂଢ଼ ହୋଇଯିବା (୬/୪) ହିଁ କର୍ମଯୋଗ ନିଷ୍ଠା । ପରମେଶ୍ୱରଙ୍କୁ ସର୍ବଶକ୍ତିମାନ୍, ସର୍ବାଧାର, ସର୍ବବ୍ୟାପୀ, ସମସ୍ତଙ୍କ ସୁହୃଦ୍ ଏବଂ ସମସ୍ତଙ୍କ ପ୍ରେରଣାଦାତା ବୋଲି ବୁଝି ଏବଂ ନିଜକୁ ସର୍ବଦା ତାଙ୍କର ଅଧୀନ ବୋଲି ମନେ କରି ସମସ୍ତ କର୍ମ ଓ ତାହାର ଫଳ ଭଗବାନଙ୍କୁ ସମର୍ପଣ କରିଦେବା (୩/୩୦; ୯/୨୭;୨୮), ତାଙ୍କର ଆଜ୍ଞା ଓ ପ୍ରେରଣା ଅନୁସାରେ ସମସ୍ତକର୍ମ ତାଙ୍କର ପୂଜା ବୋଲି ବୁଝି ସେ ଯେପରି କରାନ୍ତି, ସେପରି କରିବା, ସେହି କର୍ମ ବା କର୍ମଫଳରେ ତିଳେମାତ୍ର ମମତ୍ୱ, ଆସକ୍ତି ବା କାମନା ନ ରଖିବା, ଭଗବାନଙ୍କର ପ୍ରତ୍ୟେକ ବିଧାନରେ ସର୍ବଦା ସନ୍ତୁଷ୍ଟ ରହିବା, ତଥା ନିତ୍ୟନିରନ୍ତର ତାଙ୍କର ନାମ, ଗୁଣ, ପ୍ରଭାବ ଓ ସ୍ୱରୂପ ଚିନ୍ତନ କରିବା (୧୦/୯; ୧୨/୬; ୧୮/୫୭)— ଏହା ହେଉଛି ଭକ୍ତିପ୍ରଧାନ କର୍ମଯୋଗ ନିଷ୍ଠା । ଏପରି କର୍ମଯୋଗସ୍ଥିତି ପ୍ରାପ୍ତ ହୋଇଥିବା ପୁରୁଷ ରାଗ-ଦ୍ୱେଷ ଓ କାମ-କ୍ରୋଧାଦି ଅବଗୁଣରୁ ସର୍ବଥା ଶୂନ୍ୟ ହୋଇଯାଆନ୍ତି । ତାଙ୍କର ସବୁଥିରେ ସମତ୍ୱଭାବ ଆସିଯାଏ, କାରଣ ସେ ସମସ୍ତଙ୍କ ହୃଦୟରେ ନିଜର ସ୍ୱାମୀଙ୍କର ଅବସ୍ଥିତି ଦେଖନ୍ତି (୧୫/୧୫; ୧୮/୬୧) ଏବଂ ସମ୍ପୂର୍ଣ୍ଣ ଜଗତକୁ ଭଗବାନଙ୍କ ସ୍ୱରୂପ ବୋଲି ବୁଝନ୍ତି (୭/୭-୧୨; ୯/୧୬-୧୯) । ଏହି ସ୍ଥିତିର ଫଳ ହେଉଛି ଭଗବତ୍‌ପ୍ରାପ୍ତି ।

**ପ୍ରଶ୍ନ –** 'ମୋ ଦ୍ୱାରା ପ୍ରଥମରୁ ହିଁ ଦୁଇପ୍ରକାର ନିଷ୍ଠା କୁହାଯାଇଛି' — ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ କହୁଛନ୍ତି, ''ଏହି ଦୁଇପ୍ରକାର ନିଷ୍ଠା କଥା ମୁଁ ଆଜି ତୁମକୁ ନୂଆ କରି କହୁ ନାହିଁ । ସୃଷ୍ଟିର ଆଦିକାଳରୁ ଏବଂ ତା'ଛଡ଼ା ଭିନ୍ନ ଭିନ୍ନ ଅବତାରରେ ମୁଁ ଏହି ଦୁଇ ନିଷ୍ଠାର ସ୍ୱରୂପ ପୃଥକ୍ ପୃଥକ୍‌ରୂପରେ କହିସାରିଛି; ସେହିପରି ତୁମକୁ ମଧ୍ୟ ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ଅଦ୍ୱିତୀୟ ଆତ୍ମାର ସ୍ୱରୂପ ପ୍ରତିପାଦନ କରି ସାଂଖ୍ୟଯୋଗଦୃଷ୍ଟିରୁ ଯୁଦ୍ଧ କରିବାକୁ କହିଛି (୨/୧୮) ଏବଂ ଅଣଚାଳିଶ ଶ୍ଳୋକରେ ଯୋଗବିଷୟକ ବୁଦ୍ଧି ବର୍ଣ୍ଣନା କରିବାକୁ ପ୍ରସ୍ତାବନା କରିଛି ଓ ଚାଳିଶରୁ ତେପନ ଶ୍ଳୋକପର୍ଯ୍ୟନ୍ତ ଫଳସହିତ କର୍ମଯୋଗ ବର୍ଣ୍ଣନା କରି, ଯୋଗରେ ଅବସ୍ଥିତ ହୋଇ ଯୁଦ୍ଧାଦି କର୍ତ୍ତବ୍ୟ କର୍ମ କରିବାକୁ କହିଛି (୨/୪୭-୫୦) । ଏ ଦୁଇଟିକୁ ପରସ୍ପରଠାରୁ ପୃଥକ୍ କରିବାପାଇଁ ଅଣଚାଳିଶ ଶ୍ଳୋକରେ ମଧ୍ୟ ସ୍ପଷ୍ଟଭାବରେ କହିଦେଇଛି, 'ଏହାପୂର୍ବରୁ ମୁଁ ସାଂଖ୍ୟବିଷୟକ ଉପଦେଶ ଦେଇଥିଲି ଏବଂ ବର୍ତ୍ତମାନ ଯୋଗବିଷୟକ ଉପଦେଶ ଦେଉଛି ।' ତେଣୁ ମୋର ଉପଦେଶ 'ବ୍ୟାମିଶ୍ର' ଅର୍ଥାତ୍ ମିଶାଗୋଳିଆ ନୁହେଁ ।''

**ପ୍ରଶ୍ନ – ଅନଘ ସମ୍ବୋଧନର ଭାବ କଣ ?**

**ଉତ୍ତର –** ପାପରହିତ ଲୋକଙ୍କୁ **ଅନଘ** କୁହାଯାଏ । ଭଗବାନ୍ ଅର୍ଜୁନଙ୍କୁ **ଅନଘ** ନାମରେ ସମ୍ବୋଧନ କରି ସୂଚାଇଦେଇଛନ୍ତି, ''ପାପଯୁକ୍ତ ବା ପାପପରାୟଣ ମନୁଷ୍ୟ ଏଥିରୁ କୌଣସି ନିଷ୍ଠା ପାଇପାରିବ ନାହିଁ; କିନ୍ତୁ ତୁମେ ପାପରହିତ; ତେଣୁ ସହଜରେ ଏହା ପାଇପାରିବ । ତେଣୁ ମୁଁ ତୁମକୁ ଏହା କହିଲି ।''

**ପ୍ରଶ୍ନ –** 'ସାଂଖ୍ୟଯୋଗୀଙ୍କ ନିଷ୍ଠା ଜ୍ଞାନଯୋଗଦ୍ୱାରା ହୁଏ ଏବଂ ଯୋଗୀମାନଙ୍କ ନିଷ୍ଠା କର୍ମଯୋଗଦ୍ୱାରା ହୁଏ' —ଏପରି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ସୂଚାଇଦିଆଯାଇଛି ଯେ, ଏହି ଦୁଇପ୍ରକାର ନିଷ୍ଠା ମଧ୍ୟରୁ ଯାହା ସାଂଖ୍ୟଯୋଗୀଙ୍କର ନିଷ୍ଠା, ତାହା ଜ୍ଞାନଯୋଗ ସାଧନା କରୁ କରୁ ଦେହ-ଅଭିମାନ ପୂର୍ଣ୍ଣଭାବରେ ନାଶ ହୋଇଯିବା ପରେ ସିଦ୍ଧ ହୁଏ । କର୍ମଯୋଗୀଙ୍କର ନିଷ୍ଠା ମଧ୍ୟ କର୍ମଯୋଗ ସାଧନା କରୁ କରୁ କର୍ମରେ ଓ ତାହାର ଫଳରେ ମମତ୍ୱ,

ଆସକ୍ତି ଓ କାମନାର ଅଭାବ ହୋଇ, ସିଦ୍ଧି-ଅସିଦ୍ଧିରେ ସମତ୍ୱ ଭାବ ଆସିଯିବା ପରେ ସିଦ୍ଧ ହୁଏ। ଉପରୋକ୍ତ ଦୁଇ ନିଷ୍ଠାର ଅଧିକାରୀ ପୂର୍ବସଂସ୍କାରଯୋଗୁଁ ଶ୍ରଦ୍ଧା ଓ ରୁଚି ଅନୁସାରେ ଭିନ୍ନ ଭିନ୍ନ ହୋଇଥାନ୍ତି ଏବଂ ଏହି ଦୁଇ ନିଷ୍ଠା ପରସ୍ପରଠାରୁ ଭିନ୍ନ ଓ ସ୍ୱତନ୍ତ୍ର।

**ପ୍ରଶ୍ନ –** ଯଦି କେହି ଲୋକ ଜ୍ଞାନଯୋଗ ଓ କର୍ମଯୋଗ ଉଭୟକୁ ଏକ ସଙ୍ଗରେ ସମ୍ପାଦନ କରନ୍ତି, ତେବେ ତାଙ୍କର କେଉଁ ନିଷ୍ଠା ହୁଏ ?

**ଉତ୍ତର –** ଏହି ଦୁଇ ସାଧନା ପରସ୍ପର ଭିନ୍ନ; ତେଣୁ ଜଣେ ଲୋକ ଏକ ସମୟରେ ଏହି ଦୁଇଟି ନିଷ୍ଠା ସାଧନା କରିପାରିବ ନାହିଁ। କାରଣ ସାଂଖ୍ୟଯୋଗ ସାଧନାରେ ଆତ୍ମା ଓ ପରମାତ୍ମା ଅଭେଦ ବୋଲି ବୁଝି ପରମାତ୍ମାଙ୍କୁ ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନରୂପରେ ଚିନ୍ତନ କରାଯାଏ ଏବଂ କର୍ମଯୋଗରେ ଫଳାସକ୍ତି ତ୍ୟାଗପୂର୍ବକ କର୍ମ କରି ଭଗବାନ୍ ସର୍ବବ୍ୟାପୀ, ସର୍ବଶକ୍ତିମାନ ଏବଂ ସର୍ବେଶ୍ୱର ବୋଲି ବୁଝି ତାଙ୍କର ନାମ, ଗୁଣ, ପ୍ରଭାବ ଏବଂ ସ୍ୱରୂପକୁ ଉପାସ୍ୟ-ଉପାସକଭାବରେ ଚିନ୍ତନ କରାଯାଏ। ତେଣୁ ଦୁହିଁଙ୍କର ଅନୁଷ୍ଠାନ ଏକସଙ୍ଗରେ, ଏକସମୟରେ, ଜଣେ ପୁରୁଷଙ୍କ ଦ୍ୱାରା କେବେହେଲେ କରାଯାଇପାରିବ ନାହିଁ।

***ସମ୍ବନ୍ଧ –*** *ପୂର୍ବଶ୍ଳୋକରେ ଭଗବାନ୍ କହିଛନ୍ତି ଯେ, ସାଂଖ୍ୟନିଷ୍ଠା ଜ୍ଞାନଯୋଗ-ସାଧନାରେ ହୁଏ ଏବଂ ଯୋଗନିଷ୍ଠା କର୍ମଯୋଗ-ସାଧନାରେ ହୁଏ। ତାହା ସିଦ୍ଧ କରିବା ନିମନ୍ତେ ବର୍ତ୍ତମାନ ଦେଖାଉଛନ୍ତି ଯେ, ସ୍ୱରୂପତଃ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବା କୌଣସି ନିଷ୍ଠାର ହେତୁ ନୁହେଁ –*

## ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ।
## ନ ଚ ସଂନ୍ୟସନାଦେବ ସିଦ୍ଧିଂ ସମଧିଗଚ୍ଛତି।। ୪ ।।

**ଅନ୍ୱୟ – ପୁରୁଷଃ** = ମନୁଷ୍ୟ; **କର୍ମଣାମ୍** = କର୍ମମାନଙ୍କର; **ଅନାରମ୍ଭାତ୍** = ଆଚରଣ ନ କରି; **ନୈଷ୍କର୍ମ୍ୟମ୍** = ନିଷ୍କର୍ମତାକୁ ବା ଯୋଗନିଷ୍ଠାକୁ; **ନ, ଅଶ୍ନୁତେ** = ପ୍ରାପ୍ତ ହୁଏ ନାହିଁ (କି); **ଚ** = ଏବଂ; **ସଂନ୍ୟସନାତ୍, ଏବ** = କେବଳ କର୍ମ ତ୍ୟାଗ କଲେ; **ସିଦ୍ଧିମ୍** = ସିଦ୍ଧି ଅର୍ଥାତ୍ ସାଂଖ୍ୟନିଷ୍ଠାକୁ; **ନ, ସମଧିଗଚ୍ଛତି** = ପ୍ରାପ୍ତ ହୁଏ ନାହିଁ।

**ମନୁଷ୍ୟ କର୍ମାଚରଣ ନ କରି ନିଷ୍କର୍ମତା ବା ଯୋଗନିଷ୍ଠା ପାଇପାରେ ନାହିଁ, କି କେବଳ କର୍ମ ତ୍ୟାଗ କରିଦେଇ ସିଦ୍ଧି ଅର୍ଥାତ୍ ସାଂଖ୍ୟନିଷ୍ଠା ପାଇପାରେ ନାହିଁ।। ୪ ।।**

**ପ୍ରଶ୍ନ –** ଏଠାରେ **ନୈଷ୍କର୍ମ୍ୟମ୍** ପଦ କାହାର ବାଚକ? ଏବଂ 'ମନୁଷ୍ୟ କର୍ମ ଆଚରଣ ନ କରି ନିଷ୍କର୍ମତା ପାଇପାରେ ନାହିଁ' – ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର –** କର୍ମଯୋଗର ଯେଉଁ ପରିପକ୍ୱ ସ୍ଥିତି ରହିଛି, ତାହାକୁ ପୂର୍ବଶ୍ଳୋକର ବ୍ୟାଖ୍ୟାରେ ଯୋଗନିଷ୍ଠା ନାମରେ ବର୍ଣ୍ଣନା କରାଯାଇଛି। ସେହି ଅର୍ଥରେ **ନୈଷ୍କର୍ମ୍ୟମ୍** ପଦ ବ୍ୟବହାର କରାଯାଇଛି। ଏହି ସ୍ଥିତି ପାଇଥିବା ପୁରୁଷ ସମସ୍ତ କର୍ମ କରୁଥିଲେ ମଧ୍ୟ ସେଥିରୁ ପୂର୍ଣ୍ଣରୂପେ ମୁକ୍ତ ହୋଇଯାଆନ୍ତି। ତାଙ୍କର କର୍ମ ବନ୍ଧନର କାରଣ ହୁଏ ନାହିଁ (୪/୨୨,୪୧); ତେଣୁ ସେହି ସ୍ଥିତିକୁ **ନୈଷ୍କର୍ମ୍ୟମ୍** ଅର୍ଥାତ୍ ନିଷ୍କର୍ମତା ବୋଲି କହନ୍ତି। ନିଷ୍କାମଭାବରେ କର୍ତ୍ତବ୍ୟକର୍ମ ଆଚରଣ କରିବାଦ୍ୱାରା ମନୁଷ୍ୟମାନଙ୍କୁ ସେହି ସ୍ଥିତି ମିଳିଥାଏ; କର୍ମ ନ କଲେ ତାହା ମିଳିପାରେ ନାହିଁ। ତେଣୁ କର୍ମବନ୍ଧନରୁ ମୁକ୍ତ ହେବାର ଉପାୟ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବା ନୁହେଁ; ବରଂ ନିଷ୍କାମଭାବରେ କର୍ମ ଅନୁଷ୍ଠାନ କରିବା। ଏହି ଭାବ ପ୍ରକାଶ କରିବାପାଇଁ କୁହାଯାଇଛି ଯେ, 'ମନୁଷ୍ୟ କର୍ମ ଅନୁଷ୍ଠାନ (ଆରମ୍ଭ) ନ କରି କେବେହେଲେ ନିଷ୍କର୍ମତା ପାଇପାରେ ନାହିଁ।

**ପ୍ରଶ୍ନ –** କର୍ମଯୋଗର ସ୍ୱରୂପ ତ କର୍ମ କରିବା; ସେଥିରେ କର୍ମାଚରଣ ନ କରିବାର ଶଙ୍କା ନ ଥାଏ; ତେଣୁ କର୍ମାଚରଣ ନ କଲେ ନିଷ୍କର୍ମତା ମିଳେ ନାହିଁ ବୋଲି କହିବାର ଆବଶ୍ୟକତା କଣ ?

**ଉତ୍ତର –** ଭଗବାନ୍ ଅର୍ଜୁନଙ୍କୁ କର୍ମଫଳ ଓ ଆସକ୍ତି ତ୍ୟାଗ କରିବାକୁ କହିଛନ୍ତି ଏବଂ ତାହାର ଫଳସ୍ୱରୂପ କର୍ମବନ୍ଧନରୁ ମୁକ୍ତି ମିଳେ ବୋଲି ମଧ୍ୟ କହିଛନ୍ତି (୨/୫୧); ସେଥିରୁ ସେ ବୁଝିଲେ ଯେ, ଯଦି କର୍ମ ନ କରାଯାଏ,

ତେବେ ସ୍ୱତଃ କର୍ମବନ୍ଧନରୁ ମୁକ୍ତି ମିଳିଯିବ; ତେଣୁ କର୍ମ କରିବା ଆବଶ୍ୟକ କଣ ? ଏହି ଭ୍ରମନିବୃତ୍ତିପାଇଁ ପ୍ରଥମେ କର୍ମଯୋଗ ବିଷୟ ଆରମ୍ଭ କରିବାକୁ ଯାଇ ଭଗବାନ୍ କହିଛନ୍ତି, **'ମା ତେ ସଙ୍ଗୋଽସ୍ତ୍ୱକର୍ମଣି'** ଅର୍ଥାତ୍ 'ତୁମର କର୍ମ ନ କରିବାରେ ମଧ ଆସକ୍ତି ନ ହେଉ।' ଷଷ୍ଠ ଅଧ୍ୟାୟରେ ମଧ କହିଛନ୍ତି, ଯୋଗରେ ଆରୂଢ଼ ହେବାକୁ ଇଚ୍ଛା କରୁଥିବା ମୁନିଙ୍କ ପାଇଁ କର୍ମ କରିବା ହିଁ ଯୋଗାରୂଢ଼ ହେବାର ଉପାୟ (୬/୩), ତେଣୁ ଶାରୀରିକ ପରିଶ୍ରମ ଭୟରେ ଅଥବା ଅନ୍ୟ କୌଣସି ପ୍ରକାର ଆସକ୍ତିଦ୍ୱାରା ମନୁଷ୍ୟମାନଙ୍କ ଭିତରେ ଯେଉଁ ଅପ୍ରବୃତ୍ତି ଦୋଷ ଆସିଯାଏ, ତାହା କର୍ମଯୋଗର ପ୍ରତିବନ୍ଧକ ବୋଲି ଭଗବାନ୍ କହିଛନ୍ତି।

**ପ୍ରଶ୍ନ –** ଏଠାରେ **ସିଦ୍ଧିମ୍** ପଦ କାହାର ବାଚକ ଏବଂ କେବଳ କର୍ମତ୍ୟାଗଦ୍ୱାରା ସିଦ୍ଧି ମିଳେ ନାହିଁ ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଜ୍ଞାନଯୋଗରେ ଯେଉଁ ସିଦ୍ଧି ବା ପରିପକ୍ୱ ସ୍ଥିତି ହୁଏ, ଯାହାର ବର୍ଣ୍ଣନା ପୂର୍ବଶ୍ଳୋକର ବ୍ୟାଖ୍ୟାରେ ଜ୍ଞାନନିଷ୍ଠା ନାମରେ କରାଯାଇଛି, ତଥା ଯାହାର ଫଳ ତତ୍ତ୍ୱଜ୍ଞାନପ୍ରାପ୍ତି, **ସିଦ୍ଧିମ୍** ପଦଟି ହେଉଛି ସେହି ସ୍ଥିତିର ବାଚକ। ସେହି ସ୍ଥିତିରେ ପହଞ୍ଚି ସାଧକ ବ୍ରହ୍ମଭାବ ପ୍ରାପ୍ତ ହୋଇଯାଆନ୍ତି। ତାଙ୍କ ଦୃଷ୍ଟିରେ ଆତ୍ମା ଓ ପରମାତ୍ମା ମଧ୍ୟରେ କୌଣସି ବି ପ୍ରଭେଦ ରହେ ନାହିଁ; ସେ ସ୍ୱୟଂ ବ୍ରହ୍ମରୂପ ହୋଇଯାନ୍ତି; ତେଣୁ ଏହି ସ୍ଥିତିକୁ ସିଦ୍ଧି କହନ୍ତି। ନିଜର ବର୍ଣ୍ଣାଶ୍ରମ ଅନୁସାରେ କର୍ତ୍ତବ୍ୟକର୍ମରେ କର୍ତ୍ତାପଣ ଅଭିମାନ ତ୍ୟାଗ କରି, ତଥା ସମସ୍ତ ଭୋଗରେ ମମତ୍ୱ, ଆସକ୍ତି ଓ କାମନାରୁ ରହିତ ହୋଇ ନିରନ୍ତର ଅଭିନ୍ନଭାବରେ ପରମାତ୍ମାଙ୍କ ସ୍ୱରୂପକୁ ଚିନ୍ତନ କଲେ ହିଁ, ଏହି ଜ୍ଞାନଯୋଗରୂପୀ ସିଦ୍ଧି ମିଳିଥାଏ। କେବଳ ସ୍ୱରୂପତଃ କର୍ମ ତ୍ୟାଗ କରିଦେଲେ ଏହି ସିଦ୍ଧି ମିଳେ ନାହିଁ; କାରଣ ଅହଂତ୍ୱ, ମମତ୍ୱ ଓ ଆସକ୍ତି ନାଶ ନ ହେଲେ, ମନୁଷ୍ୟ ଅଭିନ୍ନଭାବରେ ପରମାତ୍ମାଙ୍କ ଠାରେ ସ୍ଥିର ସ୍ଥିତି ପାଇପାରେ ନାହିଁ। ଆହୁରି ମଧ ମନ, ବୁଦ୍ଧି ଏବଂ ଶରୀରଦ୍ୱାରା ହେଉଥିବା କୌଣସି କର୍ମରେ ନିଜକୁ କର୍ତ୍ତା ବୋଲି ମନେ ନ କରି ତାହାର ଦ୍ରଷ୍ଟା-ସାକ୍ଷୀ ହୋଇ ରହିଲେ (୧୪/୧୯) ହିଁ ଉପରୋକ୍ତ ସ୍ଥିତି ମିଳିଥାଏ। ତେଣୁ ସାଂଖ୍ୟଯୋଗୀ ମଧ ବର୍ଣ୍ଣାଶ୍ରମୋଚିତ କର୍ମ ସ୍ୱରୂପତଃ ତ୍ୟାଗ କରିବାର ଚେଷ୍ଟା ନ କରି, ସେଥିରେ କର୍ତ୍ତାପଣ, ମମତ୍ୱ, ଆସକ୍ତି ଏବଂ କାମନାରୁ ରହିତ ହୋଇଯିବା ଉଚିତ। ତେଣୁ କୁହାଯାଇଛି ଯେ, 'କେବଳ କର୍ମତ୍ୟାଗରେ ସିଦ୍ଧି ମିଳେ ନାହିଁ।'

**ପ୍ରଶ୍ନ – ଅନାରମ୍ଭାତ୍** ଏବଂ **ସଂନ୍ୟସନାତ୍ –** ଏହି ଦୁଇଟି ପଦର ଅଭିପ୍ରାୟ ଏକ, ନା ଭିନ୍ନ ଭିନ୍ନ? ଯଦି ଭିନ୍ନ ଭିନ୍ନ ହୋଇଥାଏ, ତେବେ ଏ ଦୁଇଟିମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଏ ଦୁଇଟି ପଦ ଭିନ୍ନ ଭିନ୍ନ ଅଭିପ୍ରାୟରେ ପ୍ରୟୋଗ କରିଛନ୍ତି; କାରଣ, **ଅନାରମ୍ଭାତ୍** ପଦରେ କର୍ମଯୋଗୀଙ୍କ ପାଇଁ କୁହାଯାଇଛି ଯେ, ବିହିତ କର୍ମ ନ କରିବା ଯୋଗନିଷ୍ଠାପ୍ରାପ୍ତିରେ ବାଧକ; କିନ୍ତୁ **ସଂନ୍ୟସନାତ୍** ପଦରେ ସାଂଖ୍ୟଯୋଗୀଙ୍କ ପାଇଁ କୁହାଯାଇ ନାହିଁ ଯେ, ସ୍ୱରୂପତଃ କର୍ମତ୍ୟାଗ କରିଦେବା ସାଂଖ୍ୟନିଷ୍ଠାପ୍ରାପ୍ତିର ପ୍ରତିବନ୍ଧକ। କେବଳ ଏତିକି କୁହାଯାଇଛି ଯେ, କର୍ମତ୍ୟାଗ କରିଦେଲେ ହିଁ ସେଥିରେ ସିଦ୍ଧି ମିଳିଯାଏ ନାହିଁ; ସିଦ୍ଧିପ୍ରାପ୍ତିପାଇଁ କର୍ତ୍ତାପଣ ତ୍ୟାଗ କରି ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭେଦଭାବରେ ଅବସ୍ଥିତ ହେବା ଆବଶ୍ୟକ। ତେଣୁ ତାଙ୍କ ପାଇଁ ସ୍ୱରୂପତଃ କର୍ମ ତ୍ୟାଗ କରିଦେବା ମୁଖ୍ୟକଥା ନୁହେଁ; ଆନ୍ତରିକ ତ୍ୟାଗର ହିଁ ପ୍ରାଧାନ୍ୟ ରହିଛି ଏବଂ କର୍ମଯୋଗୀଙ୍କ ପାଇଁ ସ୍ୱରୂପତଃ କର୍ମ ତ୍ୟାଗ ନ କରିବା ହିଁ ବିଧେୟ। ଏହା ହିଁ ଏହି ଦୁଇ ପଦର ପାର୍ଥକ୍ୟ।

*ସମ୍ବନ୍ଧ – ଏହିପରିଭାବରେ କର୍ମଯୋଗୀଙ୍କ ପାଇଁ ଯୋଗନିଷ୍ଠାପ୍ରାପ୍ତିରେ କର୍ତ୍ତବ୍ୟକର୍ମ ନ କରିବା ପ୍ରତିବନ୍ଧକ ବୋଲି କୁହାଗଲା ଏବଂ ସାଂଖ୍ୟଯୋଗୀଙ୍କ ସିଦ୍ଧିପ୍ରାପ୍ତିରେ ସ୍ୱରୂପତଃ ବାହ୍ୟ କର୍ମତ୍ୟାଗକୁ ଗୌଣ ବୋଲି କୁହାଗଲା। ବର୍ତ୍ତମାନ ଅର୍ଜୁନଙ୍କୁ କର୍ତ୍ତବ୍ୟକର୍ମରେ ପ୍ରବୃତ୍ତ କରିବା ଉଦ୍ଦେଶ୍ୟରେ ଭିନ୍ନ ଭିନ୍ନ କାରଣରୁ କର୍ମ କରିବାର ଆବଶ୍ୟକତା ସିଦ୍ଧ କରିବାକୁ ପ୍ରଥମେ କର୍ମମାନଙ୍କର ସର୍ବଥା ତ୍ୟାଗ ଅସମ୍ଭବ ବୋଲି କହୁଛନ୍ତି –*

**ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍।**
**କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ ।। ୫ ।।**

**ଅନ୍ୱୟ —** ହି = ନିଃସନ୍ଦେହ; **କଶ୍ଚିତ୍** = କୌଣସି (ମନୁଷ୍ୟ); **ଜାତୁ** = କୌଣସି କାଳରେ; **କ୍ଷଣମ୍** = କ୍ଷଣେମାତ୍ର; **ଅପି** = ମଧ୍ୟ; **ଅକର୍ମକୃତ** = କର୍ମ ନ କରି; **ନ, ତିଷ୍ଠତି** = ରହିପାରେ ନାହିଁ; ହି = କାରଣ; **ସର୍ବଃ** = ସମସ୍ତ ପ୍ରାଣୀ; **ପ୍ରକୃତିଜୈଃ** = ପ୍ରକୃତିଜନିତ; **ଗୁଣୈଃ** = ଗୁଣମାନଙ୍କ ଦ୍ୱାରା; **ଅବଶଃ** = ପରବଶ ହୋଇ; **କର୍ମ** = କର୍ମ କରିବାକୁ; **କାର୍ଯ୍ୟତେ** = ବାଧ୍ୟ ହୁଅନ୍ତି।

**ଏହା ନିଃସନ୍ଦେହ ଯେ, କୌଣସି ମନୁଷ୍ୟ କୌଣସି ସମୟରେ କ୍ଷଣେ ସୁଦ୍ଧା କର୍ମ ନ କରି ରହିପାରିବ ନାହିଁ। କାରଣ ସମସ୍ତ ପ୍ରାଣୀ ପ୍ରକୃତିରୁ ଉତ୍ପନ୍ନ ଗୁଣମାନଙ୍କ ଦ୍ୱାରା ପରବଶ ହୋଇ କର୍ମ କରିବାକୁ ବାଧ୍ୟ ହୁଅନ୍ତି॥ ୫ ॥**

**ପ୍ରଶ୍ନ —** 'କୌଣସି ମନୁଷ୍ୟ କୌଣସି ସମୟରେ କ୍ଷଣେ ମଧ୍ୟ କର୍ମ ନ କରି ରହିପାରେ ନାହିଁ'— ଏହି ବାକ୍ୟର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଉଠିବା, ବସିବା, ଖାଇବା, ପିଇବା, ଶୋଇବା, ଜାଗ୍ରତ ହେବା, ବିଚାର କରିବା, ମନନ କରିବା, ସ୍ୱପ୍ନ ଦେଖିବା, ଧ୍ୟାନ କରିବା ଏବଂ ସମାଧିସ୍ଥ ହେବା — ଏସବୁ କ୍ରିୟା କର୍ମର ଅନ୍ତର୍ଗତ। ତେଣୁ ଯେପର୍ଯ୍ୟନ୍ତ ଶରୀର ରହିଛି, ସେପର୍ଯ୍ୟନ୍ତ ମନୁଷ୍ୟ ନିଜର ପ୍ରକୃତି ଅନୁସାରେ କିଛି ନା କିଛି କର୍ମ କରୁଥାଏ। କୌଣସି ଲୋକ ଗୋଟିଏ କ୍ଷଣ ବି ସ୍ୱରୂପତଃ କର୍ମତ୍ୟାଗ କରି ରହିପାରିବ ନାହିଁ। ତେଣୁ କର୍ମରେ କର୍ତ୍ତାପଣ ତ୍ୟାଗ କରିଦେବା, ବା ମମତ୍ୱ, ଆସକ୍ତି ଓ ଫଳ-ଇଚ୍ଛା ତ୍ୟାଗ କରିଦେବା ହିଁ ସର୍ବଥା କର୍ମ ତ୍ୟାଗ କରିଦେବା।

**ପ୍ରଶ୍ନ —** ଏଠାରେ ଗୁଣାତୀତ ଜ୍ଞାନୀପୁରୁଷ ମଧ୍ୟ **କଶ୍ଚିତ୍**ର ଅନ୍ତର୍ଗତ, ନା ନୁହଁନ୍ତି ?

**ଉତ୍ତର —** ଗୁଣାତୀତ ଜ୍ଞାନୀପୁରୁଷଙ୍କର ଗୁଣମାନଙ୍କରେ ବା ସେମାନଙ୍କ କାର୍ଯ୍ୟରେ କୌଣସି ସମ୍ବନ୍ଧ ରହେ ନାହିଁ। ତେଣୁ ସେ ଗୁଣମାନଙ୍କ ବଶ ହୋଇ କର୍ମ କରନ୍ତି ବୋଲି କୁହାଯାଇ ନ ପାରେ। ତେଣୁ ଗୁଣାତୀତ ଜ୍ଞାନୀପୁରୁଷ **କଶ୍ଚିତ୍** ପଦର ଅନ୍ତର୍ଗତ ହୋଇପାରନ୍ତି ନାହିଁ। ତଥାପି ମନ, ବୁଦ୍ଧି ଓ ଇନ୍ଦ୍ରିୟ ଆଦିର ସଂଘାତରୂପକ ତାଙ୍କର ଯେଉଁ ଶରୀର ଲୋକମାନଙ୍କ ଦୃଷ୍ଟିରେ ଥାଏ, ତାହାଦ୍ୱାରା ତାଙ୍କର ଓ ଅନ୍ୟ ଲୋକମାନଙ୍କର ପ୍ରାରବ୍ଧ ଅନୁସାରେ ନାମମାତ୍ରକ କର୍ମ ହେଉଥାଏ; କିନ୍ତୁ କର୍ତ୍ତାପଣ ନ ଥିବାରୁ ସେହି କର୍ମ ପ୍ରକୃତରେ କର୍ମ ନୁହେଁ। ହଁ, ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟ ଆଦିର ସଂଘାତକୁ ଅର୍ଥାତ୍ ଶରୀରକୁ **କଶ୍ଚିତ୍**ର ଅନ୍ତର୍ଗତ ବୋଲି ମାନିବାରେ କୌଣସି ଆପତ୍ତି ନାହିଁ; କାରଣ ତାହା ଗୁଣର କାର୍ଯ୍ୟ ହୋଇଥିବାରୁ ଗୁଣରୁ ଅତୀତ ନୁହେଁ; ବରଂ ସେହି ଶରୀରରୁ ସର୍ବଥା ଅତୀତ ହୋଇଯିବା ହିଁ ଜ୍ଞାନୀଙ୍କର ଗୁଣାତୀତ ହୋଇଯିବା।

**ପ୍ରଶ୍ନ — ସର୍ବଃ** ପଦ କେଉଁମାନଙ୍କ ବାଚକ ଏବଂ ସେମାନେ ଗୁଣମାନଙ୍କରେ ବଶ ହୋଇ କର୍ମ କରିବା ନିମିତ୍ତ ବାଧ୍ୟ ହେବା କଣ ?

**ଉତ୍ତର — ସର୍ବଃ** ପଦ ସମସ୍ତ ପ୍ରାଣୀଙ୍କର ବାଚକ ହୋଇଥିଲେ ମଧ୍ୟ ଏଠାରେ ତାହା ବିଶେଷରୂପରେ ମନୁଷ୍ୟ-ସମୁଦାୟଙ୍କ ବାଚକ ବୋଲି ବୁଝିବା ଉଚିତ; କାରଣ, କର୍ମରେ ମନୁଷ୍ୟର ହିଁ ଅଧିକାର ରହିଛି। ପୂର୍ବଜନ୍ମକୃତ କର୍ମମାନଙ୍କର ସଂସ୍କାରଜନିତ ସ୍ୱଭାବର ପରବଶ ହୋଇ କର୍ମରେ ପ୍ରବୃତ୍ତ ହେବା ହିଁ ଗୁଣମାନଙ୍କ ବଶ ହୋଇ କର୍ମ କରିବାକୁ ବାଧ୍ୟ ହେବା।

**ପ୍ରଶ୍ନ — ଗୁଣୈଃ** ପଦ ସହିତ **ପ୍ରକୃତିଜୈଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର —** ସାଂଖ୍ୟଶାସ୍ତ୍ରରେ ଗୁଣମାନଙ୍କର ସାମ୍ୟାବସ୍ଥାର ନାମ ପ୍ରକୃତି ବୋଲି କୁହାଯାଇଛି; ପରନ୍ତୁ ଭଗବାନଙ୍କ ମତରେ ତିନିଗୁଣ ହେଉଛି ପ୍ରକୃତିର କାର୍ଯ୍ୟ। ଏହା ସ୍ପଷ୍ଟ କରିଦେବାକୁ ଭଗବାନ୍ ଏଠାରେ **ଗୁଣୈଃ** ପଦ ସହିତ **ପ୍ରକୃତିଜୈଃ** ବିଶେଷଣ ଦେଇଛନ୍ତି। ସେହିପରି କେଉଁଠି **ପ୍ରକୃତିସମ୍ଭବାନ୍** (୧୩/୧୯), କେଉଁଠାରେ **ପ୍ରକୃତିଜାନ୍** (୧୩/୨୧), ପୁଣି କେଉଁଠି **ପ୍ରକୃତିସମ୍ଭବାଃ** (୧୪/୫) ଏବଂ ଆଉ କେଉଁଠି **ପ୍ରକୃତିଜୈଃ** (୧୮/୪୦) ବିଶେଷଣ ଦେଇ ଅନ୍ୟତ୍ର ମଧ୍ୟ ସ୍ଥାନେ ସ୍ଥାନେ ଗୁଣକୁ ପ୍ରକୃତିର କାର୍ଯ୍ୟ ବୋଲି କହିଛନ୍ତି।

**ପ୍ରଶ୍ନ —** ଏଠାରେ **ପ୍ରକୃତି** ଶବ୍ଦ କାହାର ବାଚକ ?

**ଉତ୍ତର —** ସମସ୍ତ ଗୁଣ ଓ ବିକାରର ସମୁଦାୟରୂପକ ଏହି ଜଡ଼ ଦୃଶ୍ୟଜଗତର କାରଣଭୂତା ଭଗବାନଙ୍କର ଯେଉଁ ଅନାଦିସିଦ୍ଧ ମୂଳପ୍ରକୃତି ରହିଛି, ଯାହାକୁ ଅବ୍ୟକ୍ତ, ଅବ୍ୟାକୃତ ଓ ମହଦ୍‌ବ୍ରହ୍ମ ବୋଲି ମଧ୍ୟ କହନ୍ତି, ଏଠାରେ **ପ୍ରକୃତି** ଶବ୍ଦଟି ହେଉଛି ତାହାର ବାଚକ।

*ସମ୍ବନ୍ଧ—* *ପୂର୍ବଶ୍ଳୋକରେ କୁହାଯାଇଛି ଯେ, କୌଣସି ମନୁଷ୍ୟ ଗୋଟିଏ କ୍ଷଣ ମଧ୍ୟ କର୍ମ ନ କରି ରହିପାରିବ ନାହିଁ। ଏହା ଶୁଣି ଶଙ୍କା ହୁଏ, ଇନ୍ଦ୍ରିୟମାନଙ୍କର କ୍ରିୟାକୁ ଜିଦ୍ କରି ବନ୍ଦ କରିଦେଲେ ମନୁଷ୍ୟ କଣ କର୍ମ ତ୍ୟାଗ କରିଦେଇ ନ ପାରେ? ତେଣୁ ଇନ୍ଦ୍ରିୟମାନଙ୍କର ବାହ୍ୟକ୍ରିୟାକଳାପକୁ ତ୍ୟାଗ କରିଦେବାର ଅର୍ଥ କର୍ମତ୍ୟାଗ ନୁହେଁ ବୋଲି ଦେଖାଇବାକୁ ଭଗବାନ୍ କହୁଛନ୍ତି—*

**କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍।**
**ଇନ୍ଦ୍ରିୟାର୍ଥାନ୍ ବିମୂଢାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ॥ ୬ ॥**

**ଅନ୍ୱୟ—** **ଯଃ** = ଯେଉଁ; **ବିମୂଢାତ୍ମା** = ମୂଢବୁଦ୍ଧି ମନୁଷ୍ୟ; **କର୍ମେନ୍ଦ୍ରିୟାଣି** = ସମସ୍ତ ଇନ୍ଦ୍ରିୟଙ୍କୁ; **ସଂଯମ୍ୟ** = ବଳପୂର୍ବକ-ଉପରୁ ଉପରୁ ରୋଧ କରି; **ମନସା** = ମନଦ୍ୱାରା; **ଇନ୍ଦ୍ରିୟାର୍ଥାନ୍** = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କୁ; **ସ୍ମରନ୍** = ଚିନ୍ତନ କରି କରି; **ଆସ୍ତେ** = ରହେ; **ସଃ** = ସେ; **ମିଥ୍ୟାଚାରଃ** = ମିଥ୍ୟାଚାରୀ ଅର୍ଥାତ୍ ଦମ୍ଭୀ; **ଉଚ୍ୟତେ** = (ବୋଲି) କଥିତ ହୁଏ।

**ଯେଉଁ ମୂଢବୁଦ୍ଧି ମନୁଷ୍ୟ ସମସ୍ତ ଇନ୍ଦ୍ରିୟଙ୍କୁ ବଳପୂର୍ବକ ଉପରୁ ଉପରୁ ରୁଦ୍ଧ କରିଦେଇ ମନଦ୍ୱାରା ସେହି ଇନ୍ଦ୍ରିୟମାନଙ୍କର ବିଷୟକୁ ଚିନ୍ତନ କରୁଥାଏ, ସେ ମିଥ୍ୟାଚାରୀ ଅର୍ଥାତ୍ ଦମ୍ଭୀ ବୋଲି କଥିତ ହୁଏ॥ ୬ ॥**

**ପ୍ରଶ୍ନ—** ଏଠାରେ **କର୍ମେନ୍ଦ୍ରିୟାଣି** ପଦ କେଉଁ ଇନ୍ଦ୍ରିୟମାନଙ୍କର ବାଚକ ଏବଂ ସେମାନଙ୍କୁ ବଳପୂର୍ବକ ରୁଦ୍ଧ କରିଦେବାର ଅର୍ଥ କଣ?

**ଉତ୍ତର—** ଏଠାରେ **କର୍ମେନ୍ଦ୍ରିୟାଣି** ପଦର ପାରିଭାଷିକ ଅର୍ଥ ନାହିଁ। ଯେଉଁମାନଙ୍କ ଦ୍ୱାରା ମନୁଷ୍ୟ ବାହାରର କ୍ରିୟା କରେ ଅର୍ଥାତ୍ ଶବ୍ଦାଦି ବିଷୟ ଗ୍ରହଣ କରେ, ସେହି ଶ୍ରୋତ୍ର, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସିକା ତଥା ବାଣୀ, ହସ୍ତ, ପାଦ, ଜନନେନ୍ଦ୍ରିୟ ଓ ମଳଦ୍ୱାର ଆଦି ଯେଉଁ ଦଶ ଇନ୍ଦ୍ରିୟ ରହିଛି, କର୍ମେନ୍ଦ୍ରିୟାଣି ପଦଟି ହେଉଛି ସେହି ଦଶ ଇନ୍ଦ୍ରିୟର ବାଚକ; କାରଣ ଗୀତାରେ ଶ୍ରୋତ୍ରାଦି ପାଞ୍ଚ ଇନ୍ଦ୍ରିୟପାଇଁ କୌଣସିଠାରେ ମଧ୍ୟ 'ଜ୍ଞାନେନ୍ଦ୍ରିୟ' ଶବ୍ଦ ପ୍ରୟୋଗ କରାଯାଇ ନାହିଁ। ଏହା ବ୍ୟତୀତ ଏଠାରେ କର୍ମେନ୍ଦ୍ରିୟମାନଙ୍କର ଅର୍ଥ କେବଳ ବାଣୀ ଆଦି ପାଞ୍ଚ ଇନ୍ଦ୍ରିୟ ବୋଲି ସ୍ୱୀକାର କରିନେଲେ ଶ୍ରୋତ୍ର ଓ ନେତ୍ର ଆଦି ଇନ୍ଦ୍ରିୟମାନଙ୍କୁ ରୁଦ୍ଧ କରିଦେବା କଥା ବାକି ରହିଯାଏ ଏବଂ ତାହା ବାକି ରହିଯିବାରୁ ମିଥ୍ୟାଚାରୀର ଅଭିନୟ ପୂର୍ଣ୍ଣ ହୋଇପାରେ ନାହିଁ ଏବଂ ବାଣୀ ଆଦି ଇନ୍ଦ୍ରିୟମାନଙ୍କୁ ରୁଦ୍ଧ କରି ସେ ଶ୍ରୋତ୍ରାଦି ଇନ୍ଦ୍ରିୟମାନଙ୍କ ଦ୍ୱାରା କଣ କରେ, ତାହା କହିବା ଆବଶ୍ୟକ ହୋଇଯାଏ। କିନ୍ତୁ ଭଗବାନ୍ ସେପରି କିଛି କହି ନାହାନ୍ତି ଏବଂ ପରବର୍ତ୍ତୀ ଶ୍ଳୋକରେ ମଧ୍ୟ କର୍ମେନ୍ଦ୍ରିୟମାନଙ୍କ ଦ୍ୱାରା କର୍ମଯୋଗ ଆଚରଣ କରିବାକୁ କହିଛନ୍ତି। କିନ୍ତୁ କେବଳ ବାଣୀ ଆଦି କର୍ମେନ୍ଦ୍ରିୟମାନଙ୍କ ଦ୍ୱାରା କର୍ମଯୋଗ ଆଚରଣ ହୋଇପାରିବ ନାହିଁ; ସେଥିରେ ସମସ୍ତ ଇନ୍ଦ୍ରିୟଙ୍କର ଆବଶ୍ୟକତା ରହିଛି। ତେଣୁ ଯେଉଁମାନଙ୍କ ଦ୍ୱାରା କର୍ମ କରାଯାଏ, ଏଠାରେ 'କର୍ମେନ୍ଦ୍ରିୟାଣି' ପଦଟି ସେହିସବୁ ଇନ୍ଦ୍ରିୟର ବାଚକ ବୋଲି ମାନିନେବା ଠିକ୍ ହେବ ଏବଂ ବଳପୂର୍ବକ ଶୁଣିବା, ଦେଖିବା ଆଦି କ୍ରିୟାମାନଙ୍କୁ ରୁଦ୍ଧ କରିଦେବା ହିଁ ସେମାନଙ୍କୁ ବଳପୂର୍ବକ ରୁଦ୍ଧ କରିଦେବା।

**ପ୍ରଶ୍ନ—** ଯଦି କୌଣସି ସାଧକ ଭଗବାନଙ୍କୁ ଧ୍ୟାନ କରିବା ନିମିତ୍ତ ବା ଇନ୍ଦ୍ରିୟମାନଙ୍କୁ ବଶ କରିବା ନିମିତ୍ତ ବଳପୂର୍ବକ ସେମାନଙ୍କୁ ବିଷୟମାନଙ୍କ ଠାରୁ ଦୂରେଇ ରଖିବାକୁ ଚେଷ୍ଟା କରନ୍ତି ଏବଂ ସେହି ସମୟରେ ତାଙ୍କର ମନ ବଶ ନ ହୋଇଥିବାରୁ ତା'ଦ୍ୱାରା ବିଷୟମାନଙ୍କର ଚିନ୍ତନ ହେଉଥାଏ, ତେବେ ସେ କଣ ମିଥ୍ୟାଚାରୀ ବୋଲି ଗଣ୍ୟ ହେବେ?

**ଉତ୍ତର—** ସେ ମିଥ୍ୟାଚାରୀ ନୁହଁନ୍ତି; ସେ ତ ସାଧକ; ମିଥ୍ୟାଚାରୀଙ୍କ ପରି ବିଷୟଚିନ୍ତନ କରିବା ତାଙ୍କର ଉଦ୍ଦେଶ୍ୟ ନୁହେଁ। ସେ ତ ମନକୁ ମଧ୍ୟ ବଶ କରିବାକୁ ଇଚ୍ଛା କରନ୍ତି; କିନ୍ତୁ ଅଭ୍ୟାସ, ଆସକ୍ତି ଓ ସଂସ୍କାରବଶରୁ ତାଙ୍କର ମନ ବଳପୂର୍ବକ ବିଷୟ ଆଡ଼କୁ ଚାଲିଯାଏ। ଏଣୁ ତାଙ୍କର କିଛି ଦୋଷ ନାହିଁ। ଅଭ୍ୟାସ ସମୟରେ ଏପରି ହେବା ସ୍ୱାଭାବିକ।

**ପ୍ରଶ୍ନ—** ଏଠାରେ **ସଂଯମ୍ୟ** ପଦର ଅର୍ଥକୁ 'ବଶ କରିନେବା' ବୋଲି ସ୍ୱୀକାର କରିନେଲେ କ୍ଷତି କଣ?

**ଉତ୍ତର—** ଇନ୍ଦ୍ରିୟମାନଙ୍କୁ ବଶ କରିନେଇଥିବା ଲୋକ ମିଥ୍ୟାଚାରୀ ହୁଅନ୍ତି ନାହିଁ; କାରଣ ଇନ୍ଦ୍ରିୟମାନଙ୍କୁ ବଶ କରିନେବା ହେଉଛି ଯୋଗର ଅଙ୍ଗ। ତେଣୁ ଏଠାରେ **ସଂଯମ୍ୟ**ର ଅର୍ଥ ଯାହା କରାଯାଇଛି, ତାହା ଠିକ୍।

**ପ୍ରଶ୍ନ —** **ଇନ୍ଦ୍ରିୟାର୍ଥାନ୍** ପଦଟି କେଉଁମାନଙ୍କ ବାଚକ ?

**ଉତ୍ତର —** ଏଠାରେ **ଇନ୍ଦ୍ରିୟାର୍ଥାନ୍** ପଦଟି ହେଉଛି ଦଶ ଇନ୍ଦ୍ରିୟଙ୍କ ଶବ୍ଦାଦି ସମସ୍ତ ବିଷୟର ବାଚକ। ପଞ୍ଚମ ଅଧ୍ୟାୟ ନବମ ଶ୍ଲୋକରେ ମଧ୍ୟ ଏହି ଅର୍ଥରେ 'ଇନ୍ଦ୍ରିୟାର୍ଥେଷୁ' ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ —** 'ତାହାଙ୍କୁ ମିଥ୍ୟାଚାରୀ ବୋଲି କୁହାଯାଏ', —ଏହି କଥାର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ଇନ୍ଦ୍ରିୟମାନଙ୍କୁ ବଳପୂର୍ବକ ଦମନ କରୁଥିବା ମନୁଷ୍ୟ ମାଛମାନଙ୍କୁ ଠକିବା ପାଇଁ ସ୍ଥିରଭାବରେ ବସିରହିଥିବା କପଟୀ ବଗପରି ବାହାରକୁ ଏକପ୍ରକାର ଭାବ ଦେଖାଇ ମନଭିତରେ ଅନ୍ୟ ଏକପ୍ରକାର ଭାବ ରଖେ। ତେଣୁ ତା'ର ଆଚରଣ ମିଥ୍ୟା ଓ ସେହି କାରଣରୁ ସେ ମିଥ୍ୟାଚାରୀ।

***ସମ୍ବନ୍ଧ —** ଏପରିଭାବରେ କେବଳ ଉପରେ ଉପରେ ଇନ୍ଦ୍ରିୟମାନଙ୍କୁ ବିଷୟରୁ ହଟାଇନେଉଥିବା ଲୋକଙ୍କୁ ମିଥ୍ୟାଚାରୀ ବୋଲି କହି, ବର୍ତ୍ତମାନ ଆସକ୍ତି ତ୍ୟାଗ କରି ଇନ୍ଦ୍ରିୟମାନଙ୍କ ଦ୍ୱାରା ନିଷ୍କାମଭାବରେ କର୍ତ୍ତବ୍ୟ କର୍ମ କରୁଥିବା ଯୋଗୀଙ୍କୁ ଭଗବାନ୍ ପ୍ରଶଂସା କରୁଛନ୍ତି—*

**ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ।**
**କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ॥ ୭ ॥**

**ଅନ୍ୱୟ —** **ତୁ** = କିନ୍ତୁ; **ଅର୍ଜୁନ** = ହେ ଅର୍ଜୁନ; **ଯଃ** = ଯେଉଁ ପୁରୁଷ; **ମନସା** = ମନଦ୍ୱାରା; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ; **ନିୟମ୍ୟ** = ବଶ କରି; **ଅସକ୍ତଃ** = ଅନାସକ୍ତ ହୋଇ; **କର୍ମେନ୍ଦ୍ରିୟୈଃ** = ସମସ୍ତ ଇନ୍ଦ୍ରିୟଦ୍ୱାରା; **କର୍ମଯୋଗମ୍** = କର୍ମଯୋଗକୁ; **ଆରଭତେ** = ଆଚରଣ କରନ୍ତି; **ସଃ** = ସେ; **ବିଶିଷ୍ୟତେ** = ଶ୍ରେଷ୍ଠ ଅଟନ୍ତି।

**କିନ୍ତୁ ହେ ଅର୍ଜୁନ! ଯେଉଁ ପୁରୁଷ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବଶ କରି ଅନାସକ୍ତ ହୋଇ ସମସ୍ତ ଇନ୍ଦ୍ରିୟଦ୍ୱାରା କର୍ମଯୋଗ ଆଚରଣ କରନ୍ତି, ସେ ଶ୍ରେଷ୍ଠ ଅଟନ୍ତି॥ ୭ ॥**

**ପ୍ରଶ୍ନ —** ଏଠାରେ **ତୁ** ପଦର ଭାବ କଣ ?

**ଉତ୍ତର —** ଉପରେ ଉପରେ କର୍ମ ତ୍ୟାଗ କରୁଥିବା ଲୋକ ଅପେକ୍ଷା ସ୍ୱରୂପତଃ କର୍ମ କରୁଥିଲେ ମଧ୍ୟ ଇନ୍ଦ୍ରିୟମାନଙ୍କୁ ବଶରେ ରଖିଥିବା ଯୋଗୀଙ୍କର ବୈଶିଷ୍ଟ୍ୟ କହିବାକୁ ଯାଇ ଏଠାରେ **ତୁ** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ —** ଏଠାରେ **ଇନ୍ଦ୍ରିୟାଣି** ଏବଂ **କର୍ମେନ୍ଦ୍ରିୟୈଃ** — ଏହି ଦୁଇଟି ପଦଦ୍ୱାରା କେଉଁ କେଉଁ ଇନ୍ଦ୍ରିୟମାନଙ୍କୁ ଗ୍ରହଣ କରାଯାଇଛି ?

**ଉତ୍ତର —** ଏଠାରେ ଦୁଇଟିଯାକ ପଦ ସମସ୍ତ ଇନ୍ଦ୍ରିୟର ବାଚକ; କାରଣ କେବଳ ପାଞ୍ଚଗୋଟି ଇନ୍ଦ୍ରିୟଙ୍କୁ ବଶ କରିଦେଲେ ଇନ୍ଦ୍ରିୟମାନଙ୍କୁ ବଶ କରିବା ସିଦ୍ଧ ହୁଏ ନାହିଁ ଏବଂ କେବଳ ପାଞ୍ଚଟି ଇନ୍ଦ୍ରିୟଦ୍ୱାରା କର୍ମଯୋଗ ଅନୁଷ୍ଠାନ ମଧ୍ୟ ହୋଇପାରେ ନାହିଁ; କାରଣ ଦେଖିବା, ଶୁଣିବା ଆଦି ବ୍ୟତୀତ କର୍ମଯୋଗର ଅନୁଷ୍ଠାନ ସମ୍ଭବ ନୁହେଁ। ତେଣୁ ଉପରୋକ୍ତ ପଦଦୁଇଟି ସମସ୍ତ ଇନ୍ଦ୍ରିୟଙ୍କୁ ସୂଚାଏ। ଏହି ଅଧ୍ୟାୟର ଏକଚାଳିଶ ଶ୍ଲୋକରେ ମଧ୍ୟ ଭଗବାନ୍ 'ଇନ୍ଦ୍ରିୟାଣି' ପଦ ସହିତ 'ନିୟମ୍ୟ' ପଦ ପ୍ରୟୋଗ କରି ସମସ୍ତ ଇନ୍ଦ୍ରିୟଙ୍କୁ ବଶ କରିବା କଥା କହିଛନ୍ତି।

**ପ୍ରଶ୍ନ —** ଏଠାରେ **ନିୟମ୍ୟ** ପଦର ଅର୍ଥ ବଶ କରିବା ବୋଲି ନ ନେଇ ଅବରୁଦ୍ଧ କରିବା ବୋଲି ନେଲେ, ଆପତ୍ତି କଣ ?

**ଉତ୍ତର —** ଅବରୁଦ୍ଧ କରିବା ଅର୍ଥକୁ ଏଠାରେ ନେଇ ହେବ ନାହିଁ; କାରଣ ଇନ୍ଦ୍ରିୟମାନଙ୍କୁ ଅବରୁଦ୍ଧ କରିଦେଲେ, ସେମାନଙ୍କ ଦ୍ୱାରା ଆଉ କର୍ମଯୋଗ ଆଚରଣ କରାଯାଇ ପାରିବ ନାହିଁ।

**ପ୍ରଶ୍ନ —** ସମସ୍ତ ଇନ୍ଦ୍ରିୟଙ୍କ ଦ୍ୱାରା କର୍ମଯୋଗ ଆଚରଣ କରିବାର ଅର୍ଥ କଣ ?

**ଉତ୍ତର —** ସମସ୍ତ ବିହିତକର୍ମରେ ତଥା ସେସବୁର ଫଳସ୍ୱରୂପ ଇହଲୋକ ଓ ପରଲୋକର ସମସ୍ତ ଭୋଗରେ ରାଗଦ୍ୱେଷ ତ୍ୟାଗ କରି ଏବଂ ସିଦ୍ଧି ଓ ଅସିଦ୍ଧିରେ ସମ ହୋଇ, ବଶ କରାଯାଇଥିବା ଇନ୍ଦ୍ରିୟମାନଙ୍କ ଦ୍ୱାରା ଶବ୍ଦାଦି ବିଷୟମାନଙ୍କୁ ଗ୍ରହଣ କରି ଯଜ୍ଞ, ଦାନ, ତପ, ଅଧ୍ୟୟନ, ଅଧ୍ୟାପନ, ପ୍ରଜାପାଳନ,

ଦେଣ-ନେଣରୂପକ ବ୍ୟାପାର ଓ ସେବା ଏବଂ ଖାଇବା-ପିଇବା, ଶୋଇବା-ଜାଗ୍ରତ ହେବା, ଚାଲିବା-ବୁଲିବା, ଉଠିବା-ବସିବା ଆଦି ସମସ୍ତ ଇନ୍ଦ୍ରିୟମାନଙ୍କର ଯେଉଁ କର୍ମ ଶାସ୍ତ୍ରବିଧି ଅନୁସାରେ କରାଯାଉଥାଏ, ତାହା ହିଁ ସମସ୍ତ ଇନ୍ଦ୍ରିୟମାନଙ୍କ ଦ୍ୱାରା କର୍ମଯୋଗ ଆଚରଣ କରିବା। ଦ୍ୱିତୀୟ ଅଧ୍ୟାୟର ଚଉଷଠି ଶ୍ଳୋକରେ ଏହାର ଫଳ ପ୍ରସାଦପ୍ରାପ୍ତି ଏବଂ ସମସ୍ତ ଦୁଃଖ ନାଶ ବୋଲି କୁହାଯାଇଛି।

**ପ୍ରଶ୍ନ —** **ସ ବିଶିଷ୍ୟତେ**ର ଭାବ କଣ ? ଏଠାରେ କଣ କର୍ମଯୋଗୀଙ୍କୁ ପୂର୍ବଶ୍ଳୋକରେ ବର୍ଣ୍ଣିତ ମିଥ୍ୟାଚାରୀ ଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି ?

**ଉତ୍ତର —** **ସ ବିଶିଷ୍ୟତେ**ଦ୍ୱାରା ଏଠାରେ କର୍ମଯୋଗୀଙ୍କୁ ସମସ୍ତ ସାଧାରଣ ମନୁଷ୍ୟମାନଙ୍କ ଠାରୁ ଶ୍ରେଷ୍ଠ କହି ତାଙ୍କର ପ୍ରଶଂସା କରିଛନ୍ତି। ଏଠାରେ ଅଭିପ୍ରାୟ ହେଲା, କର୍ମଯୋଗୀଙ୍କୁ ପୂର୍ବବର୍ଣ୍ଣିତ କେବଳ ମିଥ୍ୟାଚାରୀ ଠାରୁ ଶ୍ରେଷ୍ଠ ବୋଲି କୁହାଯାଇ ନାହିଁ; କାରଣ ପୂର୍ବଶ୍ଳୋକରେ ବର୍ଣ୍ଣିତ ମିଥ୍ୟାଚାରୀ ଆସୁରସମ୍ପଦଯୁକ୍ତ ଦମ୍ଭୀ। ତା' ଅପେକ୍ଷା ସକାମଭାବରେ ବିହିତକର୍ମ କରୁଥିବା ମନୁଷ୍ୟ ମଧ ଶ୍ରେଷ୍ଠ। ପୁଣି ଦୈବୀସମ୍ପଦଯୁକ୍ତ କର୍ମଯୋଗୀଙ୍କୁ ମିଥ୍ୟାଚାରୀ ଅପେକ୍ଷା ଶ୍ରେଷ୍ଠ ବୋଲି କହିବା ତ କୌଣସି ବେଶ୍ୟା ଅପେକ୍ଷା ସତୀ ସ୍ତ୍ରୀଙ୍କୁ ଶ୍ରେଷ୍ଠ କହିବାପରି; ଏହା କର୍ମଯୋଗୀଙ୍କୁ ସ୍ତୁତି ମାଧ୍ୟମରେ ନିନ୍ଦା କରିବା ସହିତ ସମାନ। ତେଣୁ ଏଠାରେ ଏହା ମାନିବା ଠିକ୍ ହେବ ଯେ, **ସ ବିଶିଷ୍ୟତେ**ଦ୍ୱାରା କର୍ମଯୋଗୀଙ୍କୁ ସର୍ବଶ୍ରେଷ୍ଠ ବୋଲି କହି ତାଙ୍କର ପ୍ରଶଂସା କରାଯାଇଛି।

**ସମ୍ବନ୍ଧ —** *ଅର୍ଜୁନ ପଚାରିଥିଲେ, 'ଆପଣ କାହିଁକି ମୋତେ ଘୋର କର୍ମରେ ଲଗାଉଛନ୍ତି ?' ତାହାର ଉତ୍ତରରେ ଉପରୁ ଉପରୁ କର୍ମ ତ୍ୟାଗ କରୁଥିବା ମିଥ୍ୟାଚାରୀଙ୍କୁ ଭଗବାନ୍ ନିନ୍ଦା କରିଛନ୍ତି ଏବଂ କର୍ମଯୋଗୀଙ୍କୁ ପ୍ରଶଂସା କରି ବର୍ତ୍ତମାନ ତାଙ୍କୁ କର୍ମ କରିବାକୁ ଆଜ୍ଞା ଦେଉଛନ୍ତି—*

## ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ।
## ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ।। ୮ ।।

**ଅନ୍ୱୟ —** **ତ୍ୱମ୍** = ତୁମେ; **ନିୟତମ୍** = ଶାସ୍ତ୍ରବିହିତ; **କର୍ମ** = କର୍ତ୍ତବ୍ୟ କର୍ମ; **କୁରୁ** = କର; **ହି** = କାରଣ; **ଅକର୍ମଣଃ** = କର୍ମ ନ କରିବାଠାରୁ; **କର୍ମ** = କର୍ମ କରିବା; **ଜ୍ୟାୟଃ** = ଶ୍ରେଷ୍ଠ; **ଚ** = ତଥା; **ଅକର୍ମଣଃ** = କର୍ମ ନ କଲେ; **ତେ** = ତୁମର; **ଶରୀରଯାତ୍ରା** = ଶରୀରନିର୍ବାହ; **ଅପି** = ମଧ; **ନ**, **ପ୍ରସିଦ୍ଧ୍ୟେତ୍** = ସିଦ୍ଧ ହେବ ନାହିଁ।

**ତୁମେ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ କର; କାରଣ କର୍ମ ନ କରିବାଠାରୁ କର୍ମ କରିବା ଶ୍ରେଷ୍ଠ, ତଥା କର୍ମ ନ କଲେ ତୁମର ଶରୀରନିର୍ବାହ ମଧ ସିଦ୍ଧ ହୋଇପାରିବ ନାହିଁ।। ୮ ।।**

**ପ୍ରଶ୍ନ —** ନିୟତମ୍ ବିଶେଷଣ ସହିତ **'କର୍ମ'** ପଦ କେଉଁ କର୍ମର ବାଚକ ଏବଂ ତାହା କରିବାକୁ ଆଜ୍ଞା ଦେବାର ଅଭିପ୍ରାୟ କଣ ?

**ଉତ୍ତର —** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତିକୁ ଧରି ଯେଉଁ ମନୁଷ୍ୟଙ୍କ ପାଇଁ ଯେଉଁ କର୍ମ ଶାସ୍ତ୍ରରେ କର୍ତ୍ତବ୍ୟ ବୋଲି କୁହାଯାଇଛି, ଏଠାରେ **ନିୟତମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ସେହି ସମସ୍ତ ଶାସ୍ତ୍ରବିହିତ ସ୍ୱଧର୍ମରୂପୀ କର୍ତ୍ତବ୍ୟକର୍ମର ବାଚକ। ତାହା କରିବାକୁ ଆଜ୍ଞା ଦେଇ ଭଗବାନ୍ ଅର୍ଜୁନଙ୍କର ସେହି ଭ୍ରମ ଦୂର କରିଦେଇଛନ୍ତି, ଯେଉଁ ଭ୍ରମହେତୁ କି ସେ ଭଗବାନଙ୍କ କଥାକୁ ଗୋଳିଆମିଶା ବୋଲି ଭାବି ନିଜର ନିଶ୍ଚିତ କର୍ତ୍ତବ୍ୟ କଣ, ତାହା କହିଦିଅନ୍ତୁ ବୋଲି ଭଗବାନଙ୍କୁ ଅନୁରୋଧ କରିଥିଲେ।

ଭଗବାନଙ୍କ କହିବାର ଅଭିପ୍ରାୟ ହେଉଛି, "ତୁମ ଜିଜ୍ଞାସା ଅନୁସାରେ ମୁଁ ତୁମକୁ ତୁମର ନିଶ୍ଚିତ କର୍ତ୍ତବ୍ୟ ବିଷୟରେ କହୁଛି। ଉପରୋକ୍ତ କାରଣରୁ ତୁମେ ମଧ ସ୍ୱରୂପତଃ କର୍ମ ତ୍ୟାଗ କରିବା କୌଣସିପ୍ରକାରେ ମଙ୍ଗଳକର ନୁହେଁ; ଏଣୁ ତୁମକୁ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମରୂପକ ସ୍ୱଧର୍ମ ନିଷ୍କିତଭାବରେ ପାଳନ କରିବାକୁ ହେବ। ଯୁଦ୍ଧ କରିବା ତୁମର ସ୍ୱଧର୍ମ; ତେଣୁ ତାହା ଦେଖିବାକୁ ହିଂସାତ୍ମକ ଓ କ୍ରୂରତାପୂର୍ଣ୍ଣ ହୋଇଥିଲେ ବି, ପ୍ରକୃତରେ ତୁମ ପାଇଁ ଘୋର କର୍ମ ନୁହେଁ; ବରଂ ନିଷ୍କାମଭାବରେ କରାଗଲେ ତାହା କଲ୍ୟାଣର ହେତୁ ହୋଇଯିବ। ତେଣୁ ତୁମେ ସଂଶୟ ତ୍ୟାଗ କରି ଯୁଦ୍ଧ କରିବାକୁ ଠିଆ ହୋଇଯାଅ।"

**ପ୍ରଶ୍ନ –** 'କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେଷ୍ଠ'—ଏପରି ବକ୍ତବ୍ୟର ଭାବ କଣ ?

**ଉତ୍ତର –** ଏହି କଥାଦ୍ୱାରା ଭଗବାନ୍ ଅର୍ଜୁନଙ୍କର ସେହି ଭ୍ରମ ନିରାକରଣ କରିଛନ୍ତି, ଯେଉଁ କାରଣରୁ ସେ ବୁଝିଥିଲେ ଯେ, ଭଗବାନଙ୍କ ମତରେ କର୍ମ କରିବା ଅପେକ୍ଷା କର୍ମ ନ କରିବା ଶ୍ରେଷ୍ଠ। ଅଭିପ୍ରାୟ ଏହି ଯେ, କର୍ତ୍ତବ୍ୟକର୍ମ କରିବା ଦ୍ୱାରା ମନୁଷ୍ୟର ଅନ୍ତଃକରଣ ଶୁଦ୍ଧ ହୋଇଯାଏ ଓ ତା'ର ପାପର ପ୍ରାୟଶ୍ଚିତ ହୋଇଯାଏ ଏବଂ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେଲେ ସେ ପାପଭାଗୀ ହୁଏ; ପୁଣି ନିଦ୍ରା, ଆଳସ୍ୟ ଓ ପ୍ରମାଦରେ ପଡ଼ି ତା'ର ଅଧୋଗତି ହୁଏ (୧୪/୧୮)। ଏଣୁ କର୍ମ ନ କରିବା ଅପେକ୍ଷା କର୍ମ କରିବା ସର୍ବଥା ଶ୍ରେଷ୍ଠ। ସକାମଭାବରେ ବା ପ୍ରାୟଶ୍ଚିତରୂପରେ ମଧ୍ୟ କର୍ତ୍ତବ୍ୟକର୍ମ କରିବା କର୍ମ ନ କରିବା ଅପେକ୍ଷା ବହୁତ ଶ୍ରେଷ୍ଠ। ତେଣୁ ତାହା ନିଷ୍କାମଭାବରେ କଲେ ଯେ ଶ୍ରେଷ୍ଠ ହେବ, ସେଥିରେ କହିବାର ଆଉ କଣ ଅଛି !

**ପ୍ରଶ୍ନ –** 'କର୍ମ ନ କଲେ ତୁମର ଶରୀରନିର୍ବାହ ସିଦ୍ଧ ହୋଇପାରିବ ନାହିଁ',— ଏହି କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ସର୍ବଥା ସ୍ୱରୂପତଃ କର୍ମ ତ୍ୟାଗ କରି ମନୁଷ୍ୟ ଜୀବିତ ହୋଇ ମଧ୍ୟ ରହିପାରିବ ନାହିଁ; ଶରୀରରକ୍ଷାପାଇଁ ତାକୁ କିଛି ନା କିଛି କାମ କରିବାକୁ ପଡ଼ିବ। ଏପରି ସ୍ଥିତିରେ ବିହିତକର୍ମ ତ୍ୟାଗ କରିବାଦ୍ୱାରା ତା'ର ପତନ ହେବା ସ୍ୱାଭାବିକ। ତେଣୁ କର୍ମ ନ କରିବା ଅପେକ୍ଷା ସର୍ବଥା କର୍ମ କରିବା ଉତ୍ତମ।''

***ସମ୍ବନ୍ଧ –*** *ଏଠାରେ ପ୍ରଶ୍ନ ଉଠେ, 'ଶାସ୍ତ୍ରବିହିତ ଯଜ୍ଞ, ଦାନ ଓ ତପ ଆଦି ଶୁଭକର୍ମ ମଧ୍ୟ ବନ୍ଧନର କାରଣ ବୋଲି ସ୍ୱୀକାର କରାଯାଉଥିବାବେଳେ କର୍ମ ନ କରିବାଠାରୁ କର୍ମ କରିବାକୁ ଶ୍ରେଷ୍ଠ ବୋଲି କିପରି କୁହାଗଲା ?' ଏହା ଉପରେ କହୁଛନ୍ତି—*

**ଯଜ୍ଞାର୍ଥାତ୍‌କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ।**
**ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର॥ ୯ ॥**

**ଅନ୍ୱୟ –** **ଯଜ୍ଞାର୍ଥାତ୍** = ଯଜ୍ଞନିମିତ୍ତ କରାଯାଉଥିବା; **କର୍ମଣଃ** = କର୍ମରୁ (ଅତିରିକ୍ତ); **ଅନ୍ୟତ୍ର** = ଅନ୍ୟ କର୍ମରେ (ଲାଗି ରହିଥିବା); **ଅୟମ୍** = ଏହି; **ଲୋକଃ** = ମନୁଷ୍ୟସମୁଦାୟ; **କର୍ମବନ୍ଧନଃ** = କର୍ମଦ୍ୱାରା ବାନ୍ଧି ହୁଅନ୍ତି; (ତେଣୁ) **କୌନ୍ତେୟ** = ହେ ଅର୍ଜୁନ ! (ତୁମେ); **ମୁକ୍ତସଙ୍ଗଃ** = ଆସକ୍ତିରହିତ ହୋଇ; **ତଦର୍ଥମ୍** = ସେହି ଯଜ୍ଞନିମିତ୍ତ; **କର୍ମ** = କର୍ତ୍ତବ୍ୟକର୍ମ; **ସମାଚର** = ଭଲଭାବରେ ଆଚରଣ କର।

**ଯଜ୍ଞପାଇଁ କରାଯାଉଥିବା କର୍ମ ଛଡ଼ା ଅନ୍ୟ କର୍ମମାନଙ୍କରେ ଲାଗିରହିବା ଫଳରେ ହିଁ ଏହି ମନୁଷ୍ୟସମୁଦାୟ କର୍ମଦ୍ୱାରା ବାନ୍ଧି ହୁଅନ୍ତି। ତେଣୁ ହେ ଅର୍ଜୁନ ! ତୁମେ ଆସକ୍ତିରହିତ ହୋଇ କେବଳ ଯଜ୍ଞନିମିତ୍ତ ହିଁ ଭଲଭାବରେ କର୍ତ୍ତବ୍ୟକର୍ମ ଆଚରଣ କର॥ ୯ ॥**

**ପ୍ରଶ୍ନ –** 'ଯଜ୍ଞପାଇଁ କରାଯାଉଥିବା କର୍ମ ବ୍ୟତୀତ ଅନ୍ୟ କର୍ମମାନଙ୍କରେ ଲାଗିରହିବା ଫଳରେ ହିଁ ମନୁଷ୍ୟସମୁଦାୟ କର୍ମଦ୍ୱାରା ବାନ୍ଧି ହୁଅନ୍ତି।'— ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହି ବାକ୍ୟଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ମନୁଷ୍ୟର କର୍ତ୍ତବ୍ୟରୂପୀ ଯଜ୍ଞର ପରମ୍ପରା ସୁରକ୍ଷିତ ରଖିବା ପାଇଁ କୌଣସି ଫଳାକାଙ୍କ୍ଷା ନ ରଖି ଅନାସକ୍ତଭାବରେ ଯେଉଁ କର୍ମମାନ କରାଯାଏ, ସେହି ଶାସ୍ତ୍ରବିହିତ କର୍ମଗୁଡ଼ିକ ବନ୍ଧନକାରକ ହୁଅନ୍ତି ନାହିଁ; ବରଂ ସେହି କର୍ମମାନଙ୍କ ଦ୍ୱାରା ମନୁଷ୍ୟର ଅନ୍ତଃକରଣ ଶୁଦ୍ଧ ହୋଇଯାଏ ଏବଂ ସେ ପରମାତ୍ମାଙ୍କୁ ପାଇଯାଏ। କିନ୍ତୁ ଏହି ଲୋକୋପକାରକ କର୍ମ ବ୍ୟତୀତ ଅନ୍ୟ ଯେତେସବୁ ପାପପୁଣ୍ୟରୂପକ କର୍ମ ରହିଛି, ସେସବୁ ପୁନର୍ଜନ୍ମର ହେତୁ ହୋଇଥିବାରୁ ବନ୍ଧନର କାରଣ ଅଟନ୍ତି। ମନୁଷ୍ୟ ସ୍ୱାର୍ଥବୁଦ୍ଧିରେ ଯାହା କିଛି ଶୁଭ ବା ଅଶୁଭ କର୍ମ କରେ, ତାହାର ଫଳ ଭୋଗ କରିବା ପାଇଁ ତାହାକୁ କର୍ମାନୁସାରେ ନାନା ଯୋନିରେ ଜନ୍ମ ନେବାକୁ ପଡ଼େ ଏବଂ ବାରମ୍ବାର ଜନ୍ମମୃତ୍ୟୁ ଲାଭ କରିବା ହିଁ ବନ୍ଧନ। ତେଣୁ ସକାମକର୍ମ ବା ପାପକର୍ମରେ ଲାଗିରହିଥିବା ମନୁଷ୍ୟ ସେହି କର୍ମଦ୍ୱାରା ବାନ୍ଧିହୋଇଯାଏ। ଅତଏବ ମନୁଷ୍ୟକୁ କର୍ମବନ୍ଧନରୁ ମୁକ୍ତ

ହେବାକୁ ହେଲେ, ନିଷ୍କାମଭାବରେ, କେବଳ କର୍ତ୍ତବ୍ୟପାଳନ-ବୁଦ୍ଧିରେ ଶାସ୍ତ୍ରବିହିତ କର୍ମ କରିବା ଉଚିତ।

**ପ୍ରଶ୍ନ —** ଅୟଂ ଲୋକଃର ଅଭିପ୍ରାୟ କଣ?

**ଉତ୍ତର —** ମନୁଷ୍ୟର କର୍ମ କରିବାର ଅଧିକାର ଅଛି ଏବଂ ମନୁଷ୍ୟଯୋନିରେ କରାଯାଉଥିବା କର୍ମର ଫଳ ଭୋଗ କରିବାକୁ ଯେଉଁ ଅନ୍ୟ ଯୋନି ମିଳେ, ସେଥିରେ ପାପପୁଣ୍ୟରୂପକ ନୂତନ କର୍ମ ହୁଏ ନାହିଁ। ତେଣୁ ଅନ୍ୟ ଯୋନିରେ କରାଯାଉଥିବା କର୍ମ ବନ୍ଧନର କାରଣ ହୁଏ ନାହିଁ, କେବଳ ମନୁଷ୍ୟଯୋନିରେ କରାଯାଉଥିବା କର୍ମ ବନ୍ଧନର କାରଣ ହୁଏ — ଏହି ଭାବ ଦେଖାଇବାକୁ ଏଠାରେ **ଅୟଂ ଲୋକଃ** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ —** 'ତୁମେ ଆସକ୍ତିରହିତ ହୋଇ କେବଳ ଯଜ୍ଞନିମିତ୍ତ ଭଲଭାବରେ କର୍ତ୍ତବ୍ୟକର୍ମ କର', — ଏହି କଥନର ଭାବ କଣ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଜଣାଉଛନ୍ତି, "ଅନାସକ୍ତଭାବରେ ଯଜ୍ଞପାଇଁ କରାଯାଉଥିବା କର୍ମ ମନୁଷ୍ୟର ବନ୍ଧନର କାରଣ ହୁଏ ନାହିଁ। ବରଂ ସେପରି କର୍ମ କରୁଥିବା ମନୁଷ୍ୟର ପୂର୍ବସଞ୍ଚିତ ସମସ୍ତ ପାପପୁଣ୍ୟ ମଧ୍ୟ ବିଲୀନ ହୋଇଯାଏ (୪/୨୩)। ତେଣୁ ତୁମେ ସର୍ବଥା ମମତା ଓ ଆସକ୍ତି ତ୍ୟାଗ କରି କେବଳ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମର ପରମ୍ପରା ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ନିଷ୍କାମଭାବରେ ସମସ୍ତ କର୍ମ ଉତ୍ସାହପୂର୍ବକ ଭଲଭାବରେ ଆଚରଣ କର।"

**ପ୍ରଶ୍ନ —** ଉପରୋକ୍ତ ବାକ୍ୟରେ **ମୁକ୍ତସଙ୍ଗଃ** ବିଶେଷଣ ପ୍ରୟୋଗର ଭାବ କଣ?

**ଉତ୍ତର —** **ମୁକ୍ତସଙ୍ଗଃ** ବିଶେଷଣଦ୍ୱାରା କର୍ମରେ ଓ ତାହାର ଫଳରେ ମମତ୍ୱ ଓ ଆସକ୍ତି ତ୍ୟାଗ କରି କର୍ମ କରିବାକୁ କୁହାଯାଇଛି। ଅଭିପ୍ରାୟ ଏହି ଯେ, କର୍ମଫଳ ତ୍ୟାଗ କରିବା ସଙ୍ଗେ ସଙ୍ଗେ କର୍ମରେ ଓ ତାହାର ଫଳରେ ମମତ୍ୱ ଓ ଆସକ୍ତି ମଧ୍ୟ ତ୍ୟାଗ କରିଦେବା ଉଚିତ।

*ସମ୍ବନ୍ଧ — ପୂର୍ବଶ୍ଳୋକରେ ଭଗବାନ୍ କହିଛନ୍ତି ଯେ, ଯଜ୍ଞନିମିତ୍ତ କର୍ମ କରୁଥିବା ମନୁଷ୍ୟ କର୍ମରେ ବାନ୍ଧିହୁଏ ନାହିଁ। ତେଣୁ ଏଠାରେ ପ୍ରଶ୍ନ ହେଉଛି: ଯଜ୍ଞ କାହାକୁ କହନ୍ତି? ତାହା କାହିଁକି କରିବାକୁ ହେବ? ଏବଂ ଯଜ୍ଞପାଇଁ କର୍ମ କରୁଥିବା ମନୁଷ୍ୟ କିପରି ବାନ୍ଧିହୁଏ ନାହିଁ? ଏହା ବୁଝାଇଦେବାକୁ ଭଗବାନ୍ ବ୍ରହ୍ମାଙ୍କର ବଚନକୁ ପ୍ରମାଣ ଦେଇ କହୁଛନ୍ତି—*

**ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ।**
**ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍॥ ୧୦ ॥**

**ଅନ୍ୱୟ —** **ପ୍ରଜାପତିଃ** = ପ୍ରଜାପତି ବ୍ରହ୍ମା; **ପୁରା** = କଳ୍ପର ପ୍ରାରମ୍ଭରେ; **ସହଯଜ୍ଞାଃ** = ଯଜ୍ଞସହିତ; **ପ୍ରଜାଃ** = ପ୍ରଜାମାନଙ୍କୁ; **ସୃଷ୍ଟ୍ୱା** = ରଚନା କରି (ସେମାନଙ୍କୁ); **ଉବାଚ** = କହିଲେ; **(ଯୂୟମ୍)** = ତୁମ୍ଭେମାନେ; **ଅନେନ** = ଏହି ଯଜ୍ଞଦ୍ୱାରା; **ପ୍ରସବିଷ୍ୟଧ୍ୱମ୍** = ବୃଦ୍ଧିପ୍ରାପ୍ତ ହୁଅ (ଏବଂ); **ଏଷଃ** = ଏହି ଯଜ୍ଞ; **ବଃ** = ତୁମ୍ଭମାନଙ୍କର; **ଇଷ୍ଟକାମଧୁକ୍** = ବାଞ୍ଛିତଭୋଗପ୍ରଦାୟକ; **ଅସ୍ତୁ** = ହେଉ।

**ପ୍ରଜାପତି ବ୍ରହ୍ମା କଳ୍ପର ପ୍ରାରମ୍ଭରେ ଯଜ୍ଞସହିତ ପ୍ରଜାମାନଙ୍କୁ ରଚନା କରି ସେମାନଙ୍କୁ କହିଥିଲେ, 'ତୁମ୍ଭେମାନେ ଏହି ଯଜ୍ଞଦ୍ୱାରା ବୃଦ୍ଧିପ୍ରାପ୍ତ ହୁଅ ଏବଂ ଏହି ଯଜ୍ଞ ତୁମ୍ଭମାନଙ୍କର ବାଞ୍ଛିତଭୋଗପ୍ରଦାୟକ ହେଉ'॥ ୧୦ ॥**

**ପ୍ରଶ୍ନ —** **ସହଯଜ୍ଞାଃ** ବିଶେଷଣ ସହିତ **ପ୍ରଜାଃ** ପଦ ଏଠାରେ କେଉଁମାନଙ୍କ ବାଚକ ଏବଂ **ଅନେନ** ପଦ କାହାର ବାଚକ?

**ଉତ୍ତର —** ଯେଉଁମାନଙ୍କର ଯଜ୍ଞରେ ଅର୍ଥାତ୍ ବର୍ଣ୍ଣାଶ୍ରମୋଚିତ ଶାସ୍ତ୍ରବିହିତ ଯଜ୍ଞ, ଦାନ, ତପ ଓ ସେବା ଆଦି କର୍ମଦ୍ୱାରା ସିଦ୍ଧ ହୋଇଥିବା ସ୍ୱଧର୍ମପାଳନ କରିବାରେ ଅଧିକାର ରହିଛି, ପୂର୍ବଶ୍ଳୋକରେ **ଅୟମ୍** ବିଶେଷଣ ସହିତ **ଲୋକଃ** ପଦଦ୍ୱାରା ଯେଉଁମାନଙ୍କର ବର୍ଣ୍ଣନା

କରାଯାଇଛି, ଏଠାରେ **ସହଯଜ୍ଞାଃ** ବିଶେଷଣ ସହିତ **ପ୍ରଜାଃ** ପଦଟି ହେଉଛି ସେହି ମନୁଷ୍ୟମାନଙ୍କର ବାଚକ ଏବଂ ସେମାନଙ୍କ ପାଇଁ ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତିଭେଦରେ ଭିନ୍ନ ଭିନ୍ନ ଯଜ୍ଞ, ଦାନ, ତପ, ପ୍ରାଣାୟାମ, ଇନ୍ଦ୍ରିୟସଂଯମ, ଅଧ୍ୟୟନ, ଅଧ୍ୟାପନ, ପ୍ରଜାପାଳନ, ଯୁଦ୍ଧ, କୃଷି, ବାଣିଜ୍ୟ ଓ ସେବା ଆଦି କର୍ତ୍ତବ୍ୟକର୍ମଦ୍ୱାରା ସିଦ୍ଧ ହୋଇଥିବା ଯେଉଁ ସ୍ୱଧର୍ମରୂପକ ଯଜ୍ଞ ରହିଛି, ତାହାର ବାଚକରୂପେ ଏଠାରେ **ଅନେନ** ପଦଟି ଦିଆଯାଇଛି।

**ପ୍ରଶ୍ନ –** 'ତୁମେ ଏହି ଯଜ୍ଞଦ୍ୱାରା ବୃଦ୍ଧିପ୍ରାପ୍ତ ହୁଅ ଏବଂ ଏହି ଯଜ୍ଞ ତୁମ୍ଭମାନଙ୍କର ବାଞ୍ଛିତଫଳପ୍ରଦାୟକ ହେଉ' — ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ପ୍ରଜାପତି ମନୁଷ୍ୟମାନଙ୍କୁ ଆଶୀର୍ବାଦ ଦେଇଛନ୍ତି। ତାଙ୍କ କହିବାର ଅଭିପ୍ରାୟ ହେଲା, "ତୁମ୍ଭମାନଙ୍କ ପାଇଁ ମୁଁ ଏହି ସ୍ୱଧର୍ମରୂପକ ଯଜ୍ଞ ସୃଷ୍ଟି କରିଦେଇଛି; ଏହା ସାଙ୍ଗୋପାଙ୍ଗ ପାଳନ କରିବାଦ୍ୱାରା ତୁମ୍ଭମାନଙ୍କର ଉନ୍ନତି ହେଉଥିବ; ତୁମର ପତନ ହେବ ନାହିଁ; ତୁମ୍ଭେମାନେ ବର୍ତ୍ତମାନ ସ୍ଥିତିରୁ ଉପରକୁ ଉଠିଯିବ ଏବଂ ଏହି ଯଜ୍ଞ ଇହଲୋକରେ ତୁମର ସମସ୍ତ ଆବଶ୍ୟକତା ପୂରଣ କରିଚାଲିବ।"

## ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ।
## ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ॥ ୧୧ ॥

**ଅନ୍ୱୟ –** **ଅନେନ** = ଏହି ଯଜ୍ଞଦ୍ୱାରା; **ଦେବାନ୍** = ଦେବତାମାନଙ୍କୁ; **ଭାବୟତ** = ଉନ୍ନତ କର (ଏବଂ); **ତେ** = ସେହି; **ଦେବାଃ** = ଦେବତାମାନେ; **ବଃ** = ତୁମ୍ଭମାନଙ୍କୁ; **ଭାବୟନ୍ତୁ** = ଉନ୍ନତ କରନ୍ତୁ; **(ଏବମ୍)** = ଏହିପ୍ରକାରେ (ନିଃସ୍ୱାର୍ଥଭାବରେ); **ପରସ୍ପରମ୍** = ଏକ ଅନ୍ୟକୁ; **ଭାବୟନ୍ତଃ** = ଉନ୍ନତ କରି; **(ଯୂୟମ୍)** = ତୁମ୍ଭେମାନେ; **ପରମ୍** = ପରମ; **ଶ୍ରେୟଃ** = କଲ୍ୟାଣ; **ଅବାପ୍ସ୍ୟଥ** = ପ୍ରାପ୍ତ ହୋଇଯିବ।

**ତୁମ୍ଭେମାନେ ଏହି ଯଜ୍ଞଦ୍ୱାରା ଦେବତାମାନଙ୍କୁ ଉନ୍ନତ କର ଏବଂ ସେହି ଦେବତାମାନେ ତୁମକୁ ଉନ୍ନତ କରନ୍ତୁ। ଏହିଭଳି ନିଃସ୍ୱାର୍ଥଭାବରେ ଏକ ଅନ୍ୟକୁ ଉନ୍ନତ କରିବାଦ୍ୱାରା ତୁମ୍ଭେମାନେ ପରମ କଲ୍ୟାଣ ପ୍ରାପ୍ତ ହୋଇଯିବ॥ ୧୧ ॥**

**ପ୍ରଶ୍ନ –** ଅନେନ ପଦ ଏଠାରେ କାହାର ବାଚକ ଏବଂ ଏହାଦ୍ୱାରା ଦେବତାମାନଙ୍କୁ ଉନ୍ନତ କରିବା କହିଲେ କଣ ବୁଝାଏ ?

**ଉତ୍ତର –** ଅନେନ ପଦ ହେଉଛି ଯେଉଁ ବିଷୟରେ ଏହି ପ୍ରକରଣ ଚାଲିଛି, ସେହି ସ୍ୱଧର୍ମରୂପକ ଯଜ୍ଞର ବାଚକ; କିନ୍ତୁ ଏଠାରେ ଯେଉଁ ଯଜ୍ଞରେ ବେଦମନ୍ତ୍ରଦ୍ୱାରା ଦେବତାମାନଙ୍କୁ ହବିଷ୍ୟ ଦିଆଯାଏ, ତାହାକୁ ଉପଲକ୍ଷଣ କରି ସ୍ୱଧର୍ମପାଳନରୂପକ ଯଜ୍ଞ ନିଶ୍ଚିତଭାବରେ କରିବା ଉଚିତ ବୋଲି ପ୍ରତିପାଦନ କରାଯାଇଛି; ତେଣୁ ଉପଲକ୍ଷଣରୂପରେ ଏହାକୁ ହବନରୂପକ ଯଜ୍ଞର ବାଚକ ବୋଲି ବୁଝିବା ଉଚିତ ଏବଂ ଏହି ହବନରୂପକ ଯଜ୍ଞଦ୍ୱାରା ଦେବତାମାନଙ୍କୁ ହବି ପ୍ରଦାନ କରି ପୁଷ୍ଟ କରିବା ଏବଂ ସେମାନଙ୍କର ଆବଶ୍ୟକତା ପୂର୍ଣ୍ଣ କରିବା ହିଁ ସେମାନଙ୍କୁ ଉନ୍ନତ କରିବା ବୋଲି ବୁଝିବା ଉଚିତ। ଏହି ବର୍ଣ୍ଣନା ଉପଲକ୍ଷଣରୂପକ ହୋଇଥିବାରୁ ଯଜ୍ଞର ଅର୍ଥ ସ୍ୱଧର୍ମ ବୋଲି ବୁଝି ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ କର୍ତ୍ତବ୍ୟପାଳନଦ୍ୱାରା ଋଷି, ପିତୃଲୋକ, ଭୂତ-ପ୍ରେତ, ମନୁଷ୍ୟ, ପଶୁ, ପକ୍ଷୀ ଆଦି ସମସ୍ତ ପ୍ରାଣୀଙ୍କୁ ସୁଖ ପ୍ରଦାନ କରିବା ବି ସେମାନଙ୍କର ଉନ୍ନତି କରିବାର ଅନ୍ତର୍ଗତ ବୋଲି ବୁଝିବା ଉଚିତ।

**ପ୍ରଶ୍ନ –** 'ସେହି ଦେବତାମାନେ ତୁମ୍ଭମାନଙ୍କୁ ଉନ୍ନତ କରନ୍ତୁ' – ଏପରି ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏଥିରୁ ସୂଚିତ ହେଉଛି ଯେ, ଯଜ୍ଞଦ୍ୱାରା ଦେବତାମାନଙ୍କୁ ପୁଷ୍ଟ କରିବା ଯେପରି ଆମର (ମନୁଷ୍ୟମାନଙ୍କର) କର୍ତ୍ତବ୍ୟ, ମନୁଷ୍ୟମାନଙ୍କର ଆବଶ୍ୟକତା ପୂର୍ଣ୍ଣ କରିବା, ସେମାନଙ୍କର ଉନ୍ନତି କରିବା ସେହିପରି ଦେବତାମାନଙ୍କର କର୍ତ୍ତବ୍ୟ। ତେଣୁ ସେମାନଙ୍କୁ ମଧ୍ୟ ପ୍ରଜାପତି ବ୍ରହ୍ମାଙ୍କର ଏହି ଉପଦେଶ ଯେ, ସେମାନେ ନିଜର କର୍ତ୍ତବ୍ୟ ପାଳନ କରିଚାଲନ୍ତୁ।

**ପ୍ରଶ୍ନ –** 'ନିଃସ୍ୱାର୍ଥଭାବରେ ଏକ ଅନ୍ୟକୁ ଉନ୍ନତ କରିବା ଫଳରେ ତୁମ୍ଭେମାନେ ପରମ କଲ୍ୟାଣ ପାଇପାରିବ' — ଏହାର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ପ୍ରଜାପତି ବ୍ରହ୍ମା କହିଛନ୍ତି, ''ନିଜ ନିଜର ସ୍ୱାର୍ଥ ତ୍ୟାଗ କରି ଏପରିଭାବରେ ଏକ ଅନ୍ୟର ଉନ୍ନତିକଳ୍ପେ ନିଜର କର୍ତ୍ତବ୍ୟ ପାଳନ କରିବାଦ୍ୱାରା ତୁମ୍ଭେମାନେ ଏହି ସାଂସାରିକ ଉନ୍ନତି ଲାଭ କରିବା ସଙ୍ଗେ ସଙ୍ଗେ ପରମକଲ୍ୟାଣମୟ ମୋକ୍ଷ ମଧ୍ୟ ପ୍ରାପ୍ତ ହୋଇପାରିବ।'' ଅଭିପ୍ରାୟ ହେଉଛି: ଏଠାରେ ଦେବତାମାନଙ୍କ ପାଇଁ ବ୍ରହ୍ମାଙ୍କର ଏହି ଆଦେଶ ଯେ, ମନୁଷ୍ୟମାନେ ଯଦି ଦେବତାମାନଙ୍କର ସେବା, ପୂଜା, ଯଜ୍ଞାଦି ନ କରନ୍ତି, ତେବେ ମଧ୍ୟ ଦେବତାମାନେ କର୍ତ୍ତବ୍ୟ ବୋଲି ବିଚାରି ମନୁଷ୍ୟମାନଙ୍କର ଉନ୍ନତି କରାନ୍ତୁ ଏବଂ ମନୁଷ୍ୟମାନଙ୍କ ପ୍ରତି ଏହି ଆଦେଶ ଯେ, ସେମାନେ ଦେବତାମାନଙ୍କର ପୁଷ୍ଟି ଓ ଉନ୍ନତିପାଇଁ ସ୍ୱାର୍ଥତ୍ୟାଗପୂର୍ବକ ଦେବତାମାନଙ୍କର ସେବା, ପୂଜା, ଯଜ୍ଞାଦି କର୍ମ କରିବା ଉଚିତ। ଏହା ବ୍ୟତୀତ ଅନ୍ୟ ଋଷି, ପିତୃ, ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଆଦିଙ୍କୁ ମଧ୍ୟ ନିଃସ୍ୱାର୍ଥଭାବରେ ସ୍ୱଧର୍ମପାଳନଦ୍ୱାରା ସୁଖ ପ୍ରଦାନ କରିବା ଆବଶ୍ୟକ।

## ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ।
## ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ॥ ୧୨ ॥

**ଅନ୍ୱୟ—** **ଯଜ୍ଞଭାବିତାଃ** = ଯଜ୍ଞଦ୍ୱାରା ସଂବର୍ଦ୍ଧିତ; **ଦେବାଃ** = ଦେବତାମାନେ; **ବଃ** = ତୁମ୍ଭମାନଙ୍କୁ (ବିନା ପ୍ରାର୍ଥନାରେ); **ଇଷ୍ଟାନ୍** = ବାଞ୍ଛିତ; **ଭୋଗାନ୍** = ଭୋଗଗୁଡ଼ିକ; **ହି** = ନିଶ୍ଚିତଭାବେ; **ଦାସ୍ୟନ୍ତେ** = ପ୍ରଦାନ କରିବେ (ଏପରି); **ତୈଃ** = ସେହି ଦେବତାମାନଙ୍କ ଦ୍ୱାରା; **ଦତ୍ତାନ୍** = ଦିଆଯାଇଥିବା ଭୋଗଗୁଡ଼ିକୁ; **ଯଃ** = ଯେଉଁ ମନୁଷ୍ୟ; **ଏଭ୍ୟଃ** = ଏମାନଙ୍କୁ; **ଅପ୍ରଦାୟ** = = ନ ଦେଇ (ସ୍ୱୟମ୍); **ଭୁଙ୍କ୍ତେ** = ଭୋଗ କରେ, **ସଃ** = ସେ; **ସ୍ତେନଃ** = ଚୋର; **ଏବ** = ହିଁ ଅଟେ।

**ଯଜ୍ଞଦ୍ୱାରା ସଂବର୍ଦ୍ଧିତ ଦେବତାମାନେ ତୁମକୁ ବିନା ପ୍ରାର୍ଥନାରେ ବାଞ୍ଛିତ ଭୋଗ ନିଶ୍ଚୟ ପ୍ରଦାନ କରିଚାଲିବେ। ସେହି ଦେବତାମାନଙ୍କ ଦ୍ୱାରା ଏହିପରି ପ୍ରଦତ୍ତ ଭୋଗପଦାର୍ଥଗୁଡ଼ିକୁ ଯେଉଁ ମନୁଷ୍ୟ ସେମାନଙ୍କୁ ସମର୍ପଣ ନ କରି ସ୍ୱୟଂ ଭୋଗ କରେ, ସେ ଚୋର ହିଁ ଅଟେ॥ ୧୨ ॥**

**ପ୍ରଶ୍ନ—** 'ଯଜ୍ଞଦ୍ୱାରା ସଂବର୍ଦ୍ଧିତ ଦେବତାମାନେ ତୁମ୍ଭମାନଙ୍କୁ ବାଞ୍ଛିତ ଭୋଗ ନିଶ୍ଚୟ ପ୍ରଦାନ କରିବେ'— ଏହି ବାକ୍ୟର ଅଭିପ୍ରାୟ କଣ?

**ଉତ୍ତର—** ଏହାଦ୍ୱାରା ସୂଚନା ଦିଆଯାଉଛି, ''ତୁମ୍ଭେମାନେ ନିଜର କର୍ତ୍ତବ୍ୟ ଅବଶ୍ୟ ପାଳନ କରିବା ଉଚିତ; ପୁଣି ତୁମ୍ଭମାନଙ୍କଦ୍ୱାରା କରାଯାଉଥିବା ଯଜ୍ଞରେ ସଂବର୍ଦ୍ଧିତ ଦେବତାମାନେ ତୁମ୍ଭମାନଙ୍କୁ ସଦାସର୍ବଦା ସୁଖଭୋଗପାଇଁ ତଥା ଜୀବନ ନିର୍ବାହପାଇଁ ଆବଶ୍ୟକ ପଦାର୍ଥ ଯେ ପ୍ରଦାନ କରିଚାଲିବେ, ସେଥିରେ ସନ୍ଦେହର ଅବକାଶ ନାହିଁ; କାରଣ ସେମାନେ ନିଜର କର୍ତ୍ତବ୍ୟ ପାଳନ କରିବାକୁ ବାଧ୍ୟ।''

**ପ୍ରଶ୍ନ—** 'ଯେଉଁ ମନୁଷ୍ୟ ସେମାନଙ୍କ ଦ୍ୱାରା ପ୍ରଦତ୍ତ ଭୋଗପଦାର୍ଥମାନ ସେମାନଙ୍କୁ ସମର୍ପଣ ନ କରି ନିଜେ ଭୋଗ କରେ, ସେ ନିଶ୍ଚୟ ଚୋର'—ଏହି କଥାର ଭାବ କଣ?

**ଉତ୍ତର—** ଏପର୍ଯ୍ୟନ୍ତ ପ୍ରଜାପତିଙ୍କ ବଚନକୁ ଉଦ୍ଧାର କରି ବର୍ତ୍ତମାନ ଭଗବାନ୍ ଉପରୋକ୍ତ ବାକ୍ୟରେ ଦେଖାଉଛନ୍ତି ଯେ, ବ୍ରହ୍ମାଙ୍କର ଉପଦେଶ ଅନୁସାରେ ସେହି ଦେବତାମାନେ ସୃଷ୍ଟିର ଆଦିକାଳରୁ ମନୁଷ୍ୟମାନଙ୍କୁ ସୁଖ ପ୍ରଦାନ କରିବାପାଇଁ, ସେମାନଙ୍କର ଆବଶ୍ୟକତା ପୂର୍ଣ୍ଣ କରିବାପାଇଁ ପଶୁ, ପକ୍ଷୀ, ଓଷଧି, ବୃକ୍ଷ, ତୃଣ ଆଦି ସହିତ ସମସ୍ତଙ୍କର ପୁଷ୍ଟିସାଧନ କରୁଛନ୍ତି ଏବଂ ଅନ୍ନ, ଜଳ, ପୁଷ୍ପ, ଫଳ, ଧାତୁ ଆଦି ସମସ୍ତ ଉପଯୋଗୀ ବସ୍ତୁ ମନୁଷ୍ୟମାନଙ୍କୁ ଦେଉଛନ୍ତି। ଯେଉଁ ମନୁଷ୍ୟମାନେ ସେହି ଦେବତାମାନଙ୍କର ଏହି ଋଣ ପରିଶୋଧ ନ କରି, ସେମାନଙ୍କର ନ୍ୟାୟୋଚିତ ସ୍ୱତ୍ୱ ସେମାନଙ୍କୁ ଅର୍ପଣ ନ କରି ନିଜ କାମରେ ଲଗାଇଦିଅନ୍ତି, ସେମାନେ ପ୍ରକୃତରେ କୃତଘ୍ନ ଓ ଚୋର। ଠିକ୍ ସେହିପରି ସ୍ନେହଶୀଳ ମାତାପିତାଙ୍କ ଦ୍ୱାରା ପାଳିତ-ପୋଷିତ ହୋଇଥିବା ଯେଉଁ ପୁତ୍ର ମାତାପିତାଙ୍କର ସେବା କରେ ନାହିଁ, ଏବଂ ସେମାନଙ୍କର ମୃତ୍ୟୁପରେ ଶ୍ରାଦ୍ଧତର୍ପଣ ଆଦି କରେ ନାହିଁ, ପୁଣି କାହାରି ଠାରୁ ଉପକାର ପାଉଥିବା ଯେଉଁ ମନୁଷ୍ୟ ତା'ର ଯଥାସାଧ ପ୍ରତ୍ୟୁପକାର କରେ ନାହିଁ ଅଥବା ଯେଉଁ ଦତ୍ତପୁତ୍ର ପିତାଙ୍କ ଠାରୁ ପ୍ରାପ୍ତ ସମ୍ପତ୍ତିକୁ କେବଳ

ଉପଭୋଗ କରି, ପିତାମାତାଙ୍କର ସେବା କରେ ନାହିଁ, ସେ ନିଶ୍ଚିତଭାବରେ କୃତଘ୍ନ ଓ ଚୋର ଅଟେ।

**ପ୍ରଶ୍ନ –** ଯଦି ଦେବତାମାନେ ମନୁଷ୍ୟଙ୍କ ଦ୍ୱାରା ସଂବର୍ଦ୍ଧିତ ହେବା ପରେ ସେମାନଙ୍କୁ ଆବଶ୍ୟକୀୟ ଭୋଗପଦାର୍ଥମାନ ପ୍ରଦାନ କରୁଥାନ୍ତି, ତେବେ ସେମାନଙ୍କ ଠାରୁ ପ୍ରାପ୍ତ ଭୋଗ୍ୟବସ୍ତୁ ସେମାନଙ୍କୁ ସମର୍ପଣ ନ କଲେ ମନୁଷ୍ୟ ଚୋର ହେବ କିପରି ?

**ଉତ୍ତର –** ସୃଷ୍ଟିର ଆରମ୍ଭକାଳରୁ ମନୁଷ୍ୟମାନେ ଯଜ୍ଞଦ୍ୱାରା ଦେବତାମାନଙ୍କୁ ସଂବର୍ଦ୍ଧିତ କରି ଆସୁଛନ୍ତି ଓ ଦେବତାମାନେ ମନୁଷ୍ୟମାନଙ୍କୁ ଭୋଗ୍ୟବସ୍ତୁ ପ୍ରଦାନ କରି ଆସୁଛନ୍ତି। ଏହି ପରମ୍ପରା ସୃଷ୍ଟିର ଆରମ୍ଭକାଳରୁ ଚାଲିଆସିଛି। ଏହି ପରମ୍ପରାଗତ ଆଦାନ-ପ୍ରଦାନରେ ଯେଉଁ ମନୁଷ୍ୟମାନେ ପ୍ରଥମେ ଯଜ୍ଞାଦିଦ୍ୱାରା ଦେବତାମାନଙ୍କୁ ସଂବର୍ଦ୍ଧିତ କରିଛନ୍ତି ଏବଂ ଏବେ ବି କରିଆସୁଛନ୍ତି, ସେମାନେ ଚୋର ନୁହଁନ୍ତି। କିନ୍ତୁ ଅନ୍ୟ ମନୁଷ୍ୟମାନଙ୍କ ଦ୍ୱାରା ସଂବର୍ଦ୍ଧିତ ହୋଇଥିବା ଦେବତାମାନଙ୍କ ଠାରୁ ଇଷ୍ଟ ଭୋଗ ପାଇ ଯେଉଁମାନେ ଦେବତାମାନଙ୍କ ପାଇଁ ଯଜ୍ଞାଦି କରନ୍ତି ନାହିଁ, ସେମାନଙ୍କୁ ଚୋର ବୋଲି କୁହାଯିବା ଉଚିତ। ଲୋକେ ଗାଈ ପୋଷିଛନ୍ତି ଓ ପୁଷ୍ଟ ହୋଇଥିବା ଗାଈର ଦୁଧ ଖାଉଛନ୍ତି, କିନ୍ତୁ ଯଦି ଗାଈର ସେବା କରୁ ନ ଥିବା କୌଣସି ଲୋକ ଗାଈର ଦୁଧ ଦୁହିଁନେଇ ଖାଇବାବେଳେ କହିବ, 'ମନୁଷ୍ୟମାନେ ଗାଈର ସେବା କରୁଛନ୍ତି, ମୁଁ ମଧ୍ୟ ମନୁଷ୍ୟ, ତେଣୁ ମୋର ଦୁଧ ଖାଇବାର ଅଧିକାର ଅଛି,' ତେବେ ସେପରି ଲୋକକୁ ଚୋର ବୋଲି ବୁଝିବା ଉଚିତ। ସେହିପରି ଅନ୍ୟ ମନୁଷ୍ୟଙ୍କ ଦ୍ୱାରା ସଂବର୍ଦ୍ଧିତ ହୋଇଥିବା ଦେବତାମାନଙ୍କ ଠାରୁ ଭୋଗ ପାଇ ଯେଉଁ ଲୋକ ସେହି ଦେବତାମାନଙ୍କୁ କିଛି ପ୍ରଦାନ ନ କରି ନିଜେ ଭୋଗ କରେ, ସେପରି ଲୋକକୁ ଚୋର ବୋଲି ଧରିନିଆଯାଏ।

*ସମ୍ବନ୍ଧ – ଏହିପରି ବ୍ରହ୍ମାଙ୍କ ବଚନର ପ୍ରମାଣ ଦେଇ ଭଗବାନ୍ ଯଜ୍ଞାଦି କର୍ମକୁ କର୍ତ୍ତବ୍ୟ ବୋଲି ପ୍ରତିପାଦନ କରିଛନ୍ତି ଏବଂ ତା' ସଙ୍ଗେ ସଙ୍ଗେ କର୍ତ୍ତବ୍ୟ ପାଳନ କରୁ ନ ଥିବା ଲୋକଙ୍କୁ ଚୋର ବୋଲି ନିନ୍ଦା କରିଛନ୍ତି। ବର୍ତ୍ତମାନ ସେହି କର୍ତ୍ତବ୍ୟକର୍ମ ଆଚରଣ କରୁଥିବା ପୁରୁଷମାନଙ୍କୁ ପ୍ରଶଂସା କରି ସେମାନଙ୍କର ବିପରୀତ କର୍ମ କରୁଥିବା ଅର୍ଥାତ୍ କେବଳ ଶରୀରପୋଷଣ ନିମିତ୍ତ ହିଁ କର୍ମ କରୁଥିବା ପାପୀମାନଙ୍କୁ ନିନ୍ଦା କରୁଛନ୍ତି–*

**ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ।**
**ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍॥ ୧୩ ॥**

**ଅନ୍ୱୟ –** **ଯଜ୍ଞଶିଷ୍ଟାଶିନଃ** = ଯଜ୍ଞରୁ ବଳିଥିବା ଅନ୍ନକୁ ଖାଉଥିବା; **ସନ୍ତଃ** = ଶ୍ରେଷ୍ଠ ପୁରୁଷ; **ସର୍ବକିଲ୍ବିଷୈଃ** = ସବୁ ପାପରୁ; **ମୁଚ୍ୟନ୍ତେ** = ମୁକ୍ତ ହୋଇଯାଆନ୍ତି (ଏବଂ); **ଯେ** = ଯେଉଁ; **ପାପାଃ** = ପାପୀଲୋକମାନେ; **ଆତ୍ମକାରଣାତ୍** = ଆପଣା ଶରୀର ପୋଷଣପାଇଁ; **ପଚନ୍ତି** = (ଅନ୍ନ) ରନ୍ଧନ କରନ୍ତି; **ତେ** = ସେମାନେ; **ତୁ** = ତ; **ଅଘମ୍** = ପାପକୁ (ହିଁ); **ଭୁଞ୍ଜତେ** = ଭୋଜନ କରନ୍ତି।

**ଯଜ୍ଞରୁ ବଳିଥିବା ଅନ୍ନକୁ ଭୋଜନ କରୁଥିବା ଶ୍ରେଷ୍ଠ ପୁରୁଷମାନେ ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି ଏବଂ ଯେଉଁ ପାପୀଲୋକମାନେ ନିଜର ଶରୀରପୋଷଣପାଇଁ ଅନ୍ନ ରନ୍ଧନ କରନ୍ତି, ସେମାନେ ପାପ ହିଁ ଭୋଜନ କରନ୍ତି॥ ୧୩ ॥**

**ପ୍ରଶ୍ନ –** **ଯଜ୍ଞଶିଷ୍ଟାଶିନଃ** ପଦ କେଉଁ ମନୁଷ୍ୟମାନଙ୍କ ବାଚକ ?

**ଉତ୍ତର –** ଏଠାରେ 'ଯଜ୍ଞ' ଶବ୍ଦ ପ୍ରୟୋଗଦ୍ୱାରା ଭଗବାନ୍ ପ୍ରଧାନତଃ ପଞ୍ଚମହାଯଜ୍ଞକୁ ଲକ୍ଷ୍ୟ କରିଛନ୍ତି ଏବଂ ଯେଉଁ ସମସ୍ତ ଶାସ୍ତ୍ରୀୟ ସତ୍‌କର୍ମ ବିଭିନ୍ନ କ୍ରିୟାଦ୍ୱାରା ସମ୍ପାଦିତ ହୁଏ, ସେହି ସତ୍‌କର୍ମ ବିଷୟ କହିଛନ୍ତି। ସୃଷ୍ଟିକାର୍ଯ୍ୟ ସୁଚାରୁରୂପେ ସଂଚାଳନ କରିବା ତଥା ସୃଷ୍ଟିର ଜୀବମାନଙ୍କୁ ଉତ୍ତମରୂପେ ପାଳନ-ପୋଷଣ କରିବା କାର୍ଯ୍ୟରେ ଯେଉଁ ପାଞ୍ଚଶ୍ରେଣୀର ପ୍ରାଣୀମାନଙ୍କର ପରସ୍ପର ସମ୍ବନ୍ଧ ରହିଛି, ସେମାନେ ହେଲେ ଦେବତା, ଋଷି, ପିତୃ, ମନୁଷ୍ୟ ଓ ଅନ୍ୟପ୍ରାଣୀ। ଏହି ପାଞ୍ଚପ୍ରକାର ପ୍ରାଣୀଙ୍କର ସହଯୋଗରେ ସମସ୍ତଙ୍କର ପୁଷ୍ଟି ହୁଏ। ଦେବତାମାନେ ସମସ୍ତ ସଂସାରକୁ ଇଷ୍ଟ ଭୋଗ ଦିଅନ୍ତି। ଋଷି ମହର୍ଷିମାନେ ସମସ୍ତଙ୍କୁ ଜ୍ଞାନ ଦାନ କରନ୍ତି। ପିତୃମାନେ ସନ୍ତାନମାନଙ୍କର ଭରଣ-ପୋଷଣ କରନ୍ତି ଏବଂ ମଙ୍ଗଳ କାମନା କରନ୍ତି। ମନୁଷ୍ୟମାନେ କର୍ମଦ୍ୱାରା ସମସ୍ତଙ୍କର ସେବା କରନ୍ତି

ଏବଂ ପଶୁ, ପକ୍ଷୀ, ବୃକ୍ଷାଦି ସମସ୍ତଙ୍କର ସୁଖସାଧନରୂପେ ନିଜକୁ ସମର୍ପିତ କରିଦିଅନ୍ତି। ଏହି ପାଞ୍ଚଟି ମଧ୍ୟରୁ ମନୁଷ୍ୟମାନେ ଯୋଗ୍ୟତା, ଅଧିକାର ଏବଂ ସାଧନସମ୍ପନ୍ନ ହୋଇଥିବାରୁ ସମସ୍ତଙ୍କ ପୁଷ୍ଟିର ଦାୟିତ୍ୱ ସେମାନଙ୍କ ଉପରେ ନିର୍ଭର କରେ। ତେଣୁ ମନୁଷ୍ୟ ଶାସ୍ତ୍ରୀୟ କର୍ମଦ୍ୱାରା ସମସ୍ତଙ୍କର ସେବା କରେ। ପଞ୍ଚମହାଯଜ୍ଞଦ୍ୱାରା ଏଠାରେ ଲୋକସେବାରୂପୀ ଶାସ୍ତ୍ରୀୟ ସତ୍କର୍ମ ହିଁ କୁହାଯାଇଛି।★ ମନୁଷ୍ୟର ଏହା କର୍ତ୍ତବ୍ୟ ଯେ, ସେ ଯାହା କିଛି ଉପାର୍ଜନ କରିବ, ସେଥିରେ ସମସ୍ତଙ୍କର ଭାଗ ଅଛି ବୋଲି ବୁଝିବାକୁ ପଡ଼ିବ; କାରଣ ସେ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗରେ ତାହା ଉପାର୍ଜନ କରେ ଏବଂ ଭୋଗ କରେ। ତେଣୁ ଯେଉଁ ମନୁଷ୍ୟମାନେ ଯଜ୍ଞ କରିବା ପରେ ବଳିଥିବା ଅନ୍ନରୁ ଏହି ସମସ୍ତଙ୍କୁ ସେମାନଙ୍କର ପ୍ରାପ୍ୟଭାଗ ଦେଇସାରିବା ପରେ ଅବଶିଷ୍ଟ ଅନ୍ନ ସେବନ କରନ୍ତି, ଶାସ୍ତ୍ରକାରମାନେ ସେମାନଙ୍କୁ ଅମୃତଭୋଗୀ ବୋଲି କହନ୍ତି। ଯେଉଁ ଲୋକେ ଏପରି କରନ୍ତି ନାହିଁ, ଅନ୍ୟମାନଙ୍କର ସ୍ୱତ୍ୱ ମାରି କେବଳ ନିଜପାଇଁ ଉପାର୍ଜନ କରନ୍ତି ଓ ନିଜେ ଭୋଗ କରନ୍ତି, ସେମାନେ ପାପ ହିଁ ଖାଆନ୍ତି। ବିଭିନ୍ନ କ୍ରିୟାଦ୍ୱାରା ଉପାର୍ଜିତ ଅନ୍ନକୁ ରନ୍ଧନ କରିବା ପରେ ହିଁ ଭୋଜନ କରାଯାଏ। ସେହି ଅନ୍ନର ଅଗ୍ନିରେ ଆହୁତି ନ ଦେଲେ ଦେବଯଜ୍ଞ ଓ ବଳିବୈଶ୍ୱଦେବ ସିଦ୍ଧ ହୁଏ ନାହିଁ। ତେଣୁ ଏଠାରେ ହୋମ ଓ ବଳିବୈଶ୍ୱଦେବକୁ ପ୍ରାଧାନ୍ୟ ଦିଆଯାଇଛି। କିନ୍ତୁ କେବଳ ହୋମ ଓ ବଳିବୈଶ୍ୱଦେବରୂପକ କର୍ମ କରିଦେଲେ ପଞ୍ଚମହାଯଜ୍ଞ ପୂର୍ଣ୍ଣ ହୋଇଯାଏ ନାହିଁ। ଯେଉଁମାନେ ସମସ୍ତଙ୍କୁ ନିଜ ଉପାର୍ଜନର ଯଥାଯୋଗ୍ୟ ଭାଗ ଦେଇସାରିବା ପରେ ବଳିଥିବା ଅନ୍ନ ଭୋଜନ କରନ୍ତି, ସେମାନେ ହିଁ ବାସ୍ତବରେ ଯଜ୍ଞରୁ ବଳିଥିବା ଅନ୍ନ ଗ୍ରହଣ କରିଥାନ୍ତି। ସେପରି ସ୍ୱାର୍ଥତ୍ୟାଗୀ କର୍ମଯୋଗୀମାନଙ୍କର ବାଚକରୂପେ ଏଠାରେ **ଯଜ୍ଞଶିଷ୍ଟାଶିନଃ** ପଦ ବ୍ୟବହାର କରାଯାଇଛି।

**ପ୍ରଶ୍ନ – ସନ୍ତଃ** ପଦ ଏଠାରେ ସାଧକମାନଙ୍କର ନା ସିଦ୍ଧମାନଙ୍କର ବାଚକ ?

**ଉତ୍ତର –** ଏହା ସାଧକମାନଙ୍କର ବାଚକ; କାରଣ ସିଦ୍ଧପୁରୁଷମାନଙ୍କର ପାପ ହୁଏ ନାହିଁ ଏବଂ ଏଠାରେ ପାପରୁ ମୁକ୍ତ ହେବାର କଥା କୁହାଯାଇଛି।

**ପ୍ରଶ୍ନ – ସନ୍ତଃ** ପଦର ପ୍ରୟୋଗ କଣ ସିଦ୍ଧପୁରୁଷମାନଙ୍କ ପାଇଁ ହୋଇପାରିବ ନାହିଁ? ଏବଂ ସିଦ୍ଧପୁରୁଷମାନେ କଣ ଯଜ୍ଞ କରନ୍ତି ନାହିଁ?

**ଉତ୍ତର –** ସିଦ୍ଧପୁରୁଷମାନେ ତ ସନ୍ତ ହିଁ ଅଟନ୍ତି; କିନ୍ତୁ ଏହି ପ୍ରକରଣରେ ସନ୍ତ ପଦର ଅର୍ଥ 'ନିଃସ୍ୱାର୍ଥଭାବରେ କର୍ମ କରୁଥିବା ସାଧକ'। ସିଦ୍ଧପୁରୁଷମାନେ ମଧ୍ୟ ଯଜ୍ଞ କରନ୍ତି; କିନ୍ତୁ ସେମାନେ ପାପରୁ ମୁକ୍ତ ହେବାକୁ କରନ୍ତି ନାହିଁ; ବରଂ ସ୍ୱାଭାବିକଭାବରେ ଲୋକସଂଗ୍ରହପାଇଁ କରନ୍ତି।

**ପ୍ରଶ୍ନ –** ଏଠାରେ 'ସମସ୍ତ ପାପରୁ ମୁକ୍ତ ହେବା' କଥାରୁ କେଉଁ ଭାବ ଗ୍ରହଣ କରିବାକୁ ହେବ ?

**ଉତ୍ତର –** ମନୁଷ୍ୟର ପୂର୍ବଜନ୍ମର ପାପ ସଂଚିତ ଥାଏ ଏବଂ ବର୍ତ୍ତମାନରେ ଜୀବନନିର୍ବାହନିମିତ୍ତ କରାଯାଉଥିବା ବୈଧ ଅର୍ଥୋପାର୍ଜନରେ ମଧ୍ୟ ଆନୁଷଙ୍ଗିକ ପାପ ହୁଏ। **ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ।** (୧୮/୪୮) ନ୍ୟାୟରେ ହୋମ, ପ୍ରଜାପାଳନ, ଯୁଦ୍ଧ, କୃଷି, ବ୍ୟାପାର ଏବଂ ଶିଳ୍ପ ଆଦି ପ୍ରତ୍ୟେକ ଜୀବନଧାରଣ କାର୍ଯ୍ୟରେ କିଛି ନା କିଛି ହିଂସା ହେଉଥାଏ। ଗୃହସ୍ଥଙ୍କ ଘରେ ମଧ୍ୟ ପ୍ରତିଦିନ ଚୁଲି, ଘୋରଣା, ଝାଡୁ, ଢିଙ୍କି ଏବଂ ପାଣିହାଣ୍ଡି ବ୍ୟବହାର ସମୟରେ ହିଂସା ହୁଏ★★। ଏହା ବ୍ୟତୀତ ପ୍ରମାଦ ଆଦି କାରଣରୁ ଅନ୍ୟାନ୍ୟପ୍ରକାରେ ମଧ୍ୟ ଅନେକ ପାପ ହେଉଥାଏ। ଯେଉଁ ପୁରୁଷ ନିଃସ୍ୱାର୍ଥଭାବରେ କେବଳ ଲୋକସେବାକୁ ଆଖି ଆଗରେ ରଖି ସମସ୍ତ ଜୀବଙ୍କୁ ସୁଖ ପ୍ରଦାନ କରିବାକୁ ପଞ୍ଚମହାଯଜ୍ଞାଦି କରନ୍ତି ଏବଂ ଏପରି ଯଜ୍ଞରେ ଜୀବନଧାରଣର ଉପଯୋଗିତା ରହିଛି ବୋଲି ସ୍ୱୀକାର କରି ନିଜର ନ୍ୟାୟୋପାର୍ଜିତ ଧନରେ ଯଥାଶକ୍ତି ଓ ଯଥାଯୋଗ୍ୟ ସମସ୍ତଙ୍କର ସେବାରୂପକ ଯଜ୍ଞ କରନ୍ତି, ଏବଂ କେବଳ ଅନ୍ୟମାନଙ୍କର ସେବାପାଇଁ ଜୀବନଧାରଣ କରିବା ଉଦ୍ଦେଶ୍ୟରେ ସେଥିରୁ ବଳିଥିବା ଅନ୍ନ ପ୍ରସାଦରୂପରେ ଗ୍ରହଣ କରନ୍ତି, ସେହି ସତ୍ପୁରୁଷମାନେ ଅତୀତ ଏବଂ ବର୍ତ୍ତମାନର ସମସ୍ତ ପାପରୁ ମୁକ୍ତ ହୋଇ ସନାତନ ବ୍ରହ୍ମପଦ ପାଇପାରନ୍ତି (୪/୩୧)। ତେଣୁ ଏପରି ସାଧକଙ୍କୁ ସନ୍ତ କୁହାଯାଏ। ଏହା ହିଁ ଏଠାରେ 'ସମସ୍ତ ପାପରୁ ମୁକ୍ତ ହେବା'ର ଭାବ।

---

★ ପାଠୋ ହୋମଶ୍ଚାତିଥୀନାଂ ସପର୍ଯ୍ୟା ତର୍ପଣଂ ବଳିଃ । ଅମୀ ପଞ୍ଚ ମହାଯଜ୍ଞା ବ୍ରହ୍ମଯଜ୍ଞାଦିନାମକାଃ ॥

ଅର୍ଥାତ୍ ବେଦଶାସ୍ତ୍ରପାଠ (ବ୍ରହ୍ମଯଜ୍ଞ ବା ଋଷିଯଜ୍ଞ), ହବନ (ଦେବଯଜ୍ଞ), ଅତିଥିମାନଙ୍କର ସେବା (ନୃଯଜ୍ଞ), ଶ୍ରାଦ୍ଧ ଏବଂ ତର୍ପଣ (ପିତୃଯଜ୍ଞ), ପ୍ରାଣୀମାତ୍ରକେ ସମସ୍ତଙ୍କୁ ଆହାର ଦେଇ ସେବା କରିବା (ଭୂତଯଜ୍ଞ)– ଏହି ପଞ୍ଚମହାଯଜ୍ଞ ବ୍ରହ୍ମଯଜ୍ଞ ଆଦି ନାମରେ ପ୍ରସିଦ୍ଧ।

★★ କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୀ ଚ ମାର୍ଜନୀ। ପଞ୍ଚ ସୂନା ଗୃହସ୍ଥସ୍ୟ ବର୍ତ୍ତନ୍ତେଽହରହଃ ସଦା॥

ଯେ ନିଜର ସୁଖ-ଉପଭୋଗପ୍ରାପ୍ତି ନିମନ୍ତେ ଶାସ୍ତ୍ରବିଧି ଅନୁସାରେ କର୍ମ କରନ୍ତି ଏବଂ ପ୍ରାୟଶ୍ଚିତ୍ତରୂପକ ପ୍ରତିଦିନ ହବନ-ବଳିବୈଶ୍ୱଦେବ ଆଦି କର୍ମ କରି ସମସ୍ତଙ୍କ ସ୍ୱତ୍ୱ ସେମାନଙ୍କୁ ଦେଇଦିଅନ୍ତି, ଘରେ ହେଉଥିବା ପ୍ରତିଦିନର ପଞ୍ଚବିଧ ପାପରୁ ସେହି ସକାମ ପୁରୁଷ ମଧ୍ୟ ମୁକ୍ତ ହୋଇଯାଆନ୍ତି; କିନ୍ତୁ ଏଠାରେ କର୍ତ୍ତାପାଇଁ **ସନ୍ତଃ** ପଦ ଏବଂ **କିଲ୍ବିଷୈଃ** ସହିତ **ସର୍ବ** ବିଶେଷଣ ଆସିଥିବାରୁ ଏହା ବୁଝିବାକୁ ହେବ ଯେ, ଏହିପରି ନିଷ୍କାମଭାବରେ ପଞ୍ଚମହାଯଜ୍ଞ ଅନୁଷ୍ଠାନ କରୁଥିବା ସତ୍ପୁରୁଷ ଭୂତ ଏବଂ ବର୍ତ୍ତମାନର ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି ।

**ପ୍ରଶ୍ନ –** ଯେଉଁମାନେ ନିଜର ଶରୀରପୋଷଣପାଇଁ ହିଁ ଖାଦ୍ୟ ରନ୍ଧନ କରି ଖାଆନ୍ତି, ସେମାନଙ୍କୁ ପାପୀ ଏବଂ ସେମାନଙ୍କ ଭୋଜନକୁ ପାପ ବୋଲି କାହିଁକି କୁହାଯାଇଛି ?

**ଉତ୍ତର –** ଏଠାରେ ରାନ୍ଧିବା-ଖାଇବା ଉପଲକ୍ଷ୍ୟରେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗ କରାଯାଉଥିବା ସମସ୍ତପ୍ରକାର ଭୋଗ କଥା କୁହାଯାଇଛି । ଯେଉଁ ପୁରୁଷ ଏହି ଭୋଗର ଉପାର୍ଜନ ଏବଂ ଏହାର ଯଜ୍ଞାବଶିଷ୍ଟ ଉପଭୋଗ ନିଷ୍କାମଭାବରେ କେବଳ ଲୋକସେବାପାଇଁ କରନ୍ତି, ସେ ଉପରୋକ୍ତ ପ୍ରକାରେ ସକଳ ପାପରୁ ମୁକ୍ତ ହୋଇଯାଆନ୍ତି ଏବଂ ଯେ କେବଳ ସକାମଭାବରେ ସମସ୍ତଙ୍କୁ ନ୍ୟାୟୋଚିତ ଭାଗ ଦେଇ ଉପାର୍ଜିତ ଭୋଗସାମଗ୍ରୀ ଉପଭୋଗ କରନ୍ତି, ସେ ମଧ୍ୟ ପାପୀ ନୁହଁନ୍ତି । କିନ୍ତୁ ଯେଉଁ ଲୋକେ କେବଳ ନିଜର ସୁଖପାଇଁ, ନିଜର ଶରୀର ଓ ଇନ୍ଦ୍ରିୟପୋଷଣପାଇଁ ଉପାର୍ଜନ କରନ୍ତି ଏବଂ ନିଜପାଇଁ ତାହା ଭୋଗ କରନ୍ତି, ସେହି ଲୋକେ ପାପଦ୍ୱାରା ପାପ ଉପାର୍ଜନ କରନ୍ତି ଏବଂ ପାପ ହିଁ ଉପଭୋଗ କରନ୍ତି; କାରଣ ସେମାନଙ୍କର କ୍ରିୟା ଯଜ୍ଞାର୍ଥ ହୁଏ ନାହିଁ, କି ସେମାନେ ନିଜର ଉପାର୍ଜନରୁ ସମସ୍ତଙ୍କୁ ସେମାନଙ୍କର ଯଥାଯୋଗ୍ୟ ନ୍ୟାଯ୍ୟ ଭାଗ ଦିଅନ୍ତି ନାହିଁ । ତେଣୁ ସେମାନଙ୍କର ଉପାର୍ଜନ ଏବଂ ଉପଭୋଗ ଉଭୟ ପାପମୟ ହୋଇଥାଏ ଓ ସେହି କାରଣରୁ ସେମାନଙ୍କୁ ପାପୀ ଓ ସେମାନଙ୍କର ଭୋଗକୁ ପାପଭୋଗ ବୋଲି କୁହାଯାଇଛି । (ମନୁ ୩/୧୧୮)★

*ସମ୍ବନ୍ଧ – ଏଠାରେ ପ୍ରଶ୍ନ ହୁଏ, 'ଯଜ୍ଞ ନ କଲେ କ୍ଷତି କଣ ?' ଏହା ଉପରେ ସୃଷ୍ଟିଚକ୍ରକୁ ସୁରକ୍ଷିତ ରଖିବାପାଇଁ ଭଗବାନ୍ ଯଜ୍ଞର ଆବଶ୍ୟକତା ପ୍ରତିପାଦନ କରୁଛନ୍ତି–*

**ଅନ୍ନାଦ୍‌ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ ।**
**ଯଜ୍ଞାଦ୍‌ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ ।। ୧୪ ।।**
**କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ୍ ।**
**ତସ୍ମାତ୍‌ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ।। ୧୫ ।।**

**ଅନ୍ୱୟ –** ଭୂତାନି = ପ୍ରାଣୀମାନେ; ଅନ୍ନାତ୍ = ଅନ୍ନରୁ; **ଭବନ୍ତି** = ଉତ୍ପନ୍ନ ହୁଅନ୍ତି; **ଅନ୍ନସମ୍ଭବଃ** = ଅନ୍ନର ଉତ୍ପତ୍ତି; **ପର୍ଜନ୍ୟାତ୍** = ବୃଷ୍ଟିରୁ (ହୁଏ); **ପର୍ଜନ୍ୟଃ** = ବୃଷ୍ଟି; **ଯଜ୍ଞାତ୍** = ଯଜ୍ଞରୁ; **ଭବତି** = ହୁଏ (ଏବଂ); **ଯଜ୍ଞଃ** = ଯଜ୍ଞ; **କର୍ମସମୁଦ୍ଭବଃ** = ବିହିତ କର୍ମରୁ ଉତ୍ପନ୍ନ ହୁଏ; **କର୍ମ** = କର୍ମସମୁଦାୟକୁ; **ବ୍ରହ୍ମୋଦ୍ଭବମ୍** = ବେଦରୁ ଉତ୍ପନ୍ନ (ଏବଂ); **ବ୍ରହ୍ମ** = ବେଦକୁ; **ଅକ୍ଷରସମୁଦ୍ଭବମ୍** = ଅବିନାଶୀ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ; **ବିଦ୍ଧି** = (ବୋଲି) ଜାଣ; **ତସ୍ମାତ୍** = ତେଣୁ (ସିଦ୍ଧ ହେଲା ଯେ); **ସର୍ବଗତମ୍** = ସର୍ବବ୍ୟାପୀ; **ବ୍ରହ୍ମ** = ପରମ ଅକ୍ଷର ପରମାତ୍ମା; **ନିତ୍ୟମ୍** = ସର୍ବଦା; **ଯଜ୍ଞେ** = ଯଜ୍ଞରେ; **ପ୍ରତିଷ୍ଠିତମ୍** = ପ୍ରତିଷ୍ଠିତ ।

**ସମସ୍ତ ପ୍ରାଣୀ ଅନ୍ନରୁ ଉତ୍ପନ୍ନ ହୁଅନ୍ତି; ଅନ୍ନର ଉତ୍ପତ୍ତି ବୃଷ୍ଟିରୁ ହୁଏ; ବୃଷ୍ଟି ଯଜ୍ଞରୁ ହୁଏ ଏବଂ ଯଜ୍ଞ ବିହିତ କର୍ମରୁ ଉତ୍ପନ୍ନ ହୁଏ । କର୍ମସମୁଦାୟ ବେଦରୁ ଉତ୍ପନ୍ନ ହୁଏ ଏବଂ ବେଦ ଅବିନାଶୀ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ହୁଅନ୍ତି ବୋଲି ଜାଣ । ତେଣୁ ସିଦ୍ଧ ହେଲା ଯେ, ସର୍ବବ୍ୟାପୀ ପରମ ଅକ୍ଷର ପରମାତ୍ମା ସଦାସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ।। ୧୪-୧୫ ।।**

---

★ ଅଘଂ ସ କେବଳଂ ଭୁଙ୍‌କ୍ତେ ଯଃ ପଚତ୍ୟାତ୍ମକାରଣାତ୍ । ଅର୍ଥାତ୍, ଯେଉଁ ମନୁଷ୍ୟ ନିଜପାଇଁ ଖାଦ୍ୟ ରନ୍ଧନ କରେ, ସେ କେବଳ ପାପ ହିଁ ଭୋଜନ କରେ ।

**ପ୍ରଶ୍ନ—** ଅନ୍ନ ଶବ୍ଦର ଅର୍ଥ କଣ ? ଏବଂ 'ସମସ୍ତ ପ୍ରାଣୀ ଅନ୍ନରୁ ଉତ୍ପନ୍ନ ହୁଅନ୍ତି,' କହିବାର ଭାବ କଣ ?

**ଉତ୍ତର—** ଏଠାରେ ଅନ୍ନ ଶବ୍ଦ ବ୍ୟାପକ ଅର୍ଥରେ କୁହାଯାଇଛି। ସେଥିପାଇଁ ଏହାର ଅର୍ଥ ଗହମ, ଚଣା, ଚାଉଳ ବା ଶସ୍ୟମାତ୍ର ନୁହେଁ; ଯେଉଁ ଭିନ୍ନ ଭିନ୍ନ ଆହାରଯୋଗ୍ୟ ସ୍ଥୂଳ ବା ସୂକ୍ଷ୍ମ ପଦାର୍ଥଦ୍ୱାରା ଭିନ୍ନ ଭିନ୍ନ ପ୍ରାଣୀଙ୍କ ଶରୀର ଆଦି ପୁଷ୍ଟ ହୁଏ, ଏଠାରେ ଅନ୍ନ ହେଉଛି ସେହି ସମସ୍ତ ଖାଦ୍ୟପଦାର୍ଥର ବାଚକ। ଏଣୁ 'ସମସ୍ତ ପ୍ରାଣୀ ଅନ୍ନରୁ ଉତ୍ପନ୍ନ ହୁଅନ୍ତି'— ଏହି ବାକ୍ୟର ଭାବ ଏହି ଯେ, ଖାଦ୍ୟପଦାର୍ଥଦ୍ୱାରା ସମସ୍ତ ପ୍ରାଣୀଙ୍କ ଶରୀରରେ ରଜ ଓ ବୀର୍ଯ୍ୟ ନିର୍ମିତ ହୁଏ, ସେହି ରଜ-ବୀର୍ଯ୍ୟର ସଂଯୋଗରେ ଭିନ୍ନ ଭିନ୍ନ ପ୍ରାଣୀଙ୍କର ଉତ୍ପତ୍ତି ହୁଏ ତଥା ଉତ୍ପତ୍ତି ପରେ ସେମାନଙ୍କର ପୋଷଣ ମଧ୍ୟ ଖାଦ୍ୟପଦାର୍ଥଦ୍ୱାରା ହୁଏ। ତେଣୁ ଅନ୍ନ ହିଁ ସମସ୍ତ ପ୍ରାଣୀଙ୍କର ଉତ୍ପତ୍ତି, ବୃଦ୍ଧି ଓ ପୋଷଣର ହେତୁ। ଶ୍ରୁତିରେ ମଧ୍ୟ କୁହାଯାଇଛି— **ଅନ୍ନାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ, ଅନ୍ନେନ ଜାତାନି ଜୀବନ୍ତି** (ତୈ/ଉ/୩/୨) ଅର୍ଥାତ୍ 'ଏହିସବୁ ପ୍ରାଣୀ ଅନ୍ନରୁ ଉତ୍ପନ୍ନ ହୁଅନ୍ତି ଏବଂ ଉତ୍ପନ୍ନ ହୋଇ ଅନ୍ନଦ୍ୱାରା ଜୀବନ ଧାରଣ କରନ୍ତି।'

**ପ୍ରଶ୍ନ—** ଅନ୍ନର ଉତ୍ପତ୍ତି ବୃଷ୍ଟିଦ୍ୱାରା ହୁଏ ବୋଲି କହିବାର ଅର୍ଥ କଣ ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ସଂସାରରେ ସ୍ଥୂଳ ଓ ସୂକ୍ଷ୍ମ ଯେତେପ୍ରକାର ଖାଦ୍ୟପଦାର୍ଥ ଅଛି, ସେହି ସମସ୍ତର ଉତ୍ପତ୍ତିରେ ଜଳ ହିଁ ପ୍ରଧାନ କାରଣ; କାରଣ ସ୍ଥୂଳ ବା ସୂକ୍ଷ୍ମରୂପରେ ଜଳର ସମ୍ବନ୍ଧ ସବୁସ୍ଥାନରେ ରହେ ଏବଂ ଜଳର ଆଧାର ବୃଷ୍ଟି।

**ପ୍ରଶ୍ନ—** ବୃଷ୍ଟି ଯଜ୍ଞରୁ ହୁଏ ବୋଲି କହିବାର ଅର୍ଥ କଣ ?

**ଉତ୍ତର—** ସୃଷ୍ଟିରେ ଯେତେ ଜୀବ ଅଛନ୍ତି, ସେମାନଙ୍କ ମଧ୍ୟରୁ ମନୁଷ୍ୟ ଉପରେ ହିଁ ସମସ୍ତଙ୍କର ଭରଣପୋଷଣ ଏବଂ ସଂରକ୍ଷଣର ଦାୟିତ୍ୱ ନ୍ୟସ୍ତ। ମନୁଷ୍ୟ ନିଜର ଏହି ଦାୟିତ୍ୱକୁ ବୁଝି ମନ, ବଚନ ଓ ଶରୀରଦ୍ୱାରା ସମସ୍ତ ଜୀବଙ୍କର ଜୀବନଧାରଣାଦି ମଙ୍ଗଳପାଇଁ କାର୍ଯ୍ୟ କରେ। ସେହି କ୍ରିୟାମାନଙ୍କଦ୍ୱାରା ସମ୍ପାଦିତ ହେଉଥିବା ସତ୍କର୍ମକୁ ଯଜ୍ଞ କହନ୍ତି। ଏହି ଯଜ୍ଞରେ ହବନ, ଦାନ, ତପ ଏବଂ ଜୀବିକା ଆଦି ସମସ୍ତ କର୍ତ୍ତବ୍ୟକର୍ମର ସମାବେଶ ହୋଇଯାଏ। ଯଦ୍ୟପି ଏଥିରେ ହୋମର ପ୍ରାଧାନ୍ୟ ଥିବାରୁ ଶାସ୍ତ୍ରରେ କୁହାଯାଇଛି ଯେ, ଅଗ୍ନିରେ ଆହୁତି ଦେବା ପରେ ବୃଷ୍ଟି ହୁଏ ଏବଂ ସେହି ବୃଷ୍ଟିଦ୍ୱାରା ଅନ୍ନ ଉତ୍ପନ୍ନ ହେବା ଫଳରେ ପ୍ରଜାମାନଙ୍କର ଉତ୍ପତ୍ତି ହୁଏ, ତଥାପି 'ଯଜ୍ଞ' ଶବ୍ଦରେ ଏଠାରେ କେବଳ ହୋମ କଥା ହିଁ କୁହାଯାଇ ନାହିଁ; ଲୋକଙ୍କର ମଙ୍ଗଳପାଇଁ କରାଯାଉଥିବା ସମସ୍ତ ସତ୍କର୍ମର ନାମ ହିଁ ଯଜ୍ଞ।

'ବୃଷ୍ଟି ଯଜ୍ଞରୁ ହୁଏ' ଏହି ବାକ୍ୟରୁ ବୁଝିବାକୁ ହେବ ଯେ, ମନୁଷ୍ୟମାନଙ୍କ ଦ୍ୱାରା କରାଯାଉଥିବା କର୍ତ୍ତବ୍ୟପାଳନରୂପକ ଯଜ୍ଞଦ୍ୱାରା ବୃଷ୍ଟି ହୁଏ। ଆମେ କହୁ, 'ଅମୁକ ଦେଶରେ ଯଜ୍ଞ ହେଉ ନାହିଁ; ପୁଣି ବର୍ଷା କିପରି ହେଉଛି ?' ଏହାର ଉତ୍ତର ଏହି ଯେ, ସେଠାରେ ମଧ୍ୟ କୌଣସି ନା କୌଣସିରୂପରେ ଲୋକମଙ୍ଗଳପାଇଁ ସତ୍କର୍ମ କରାଯାଉଛି। ଏହା ଛଡ଼ା ଆଉ ଗୋଟିଏ କଥା ମଧ୍ୟ ଅଛି ଯେ, ସୃଷ୍ଟିର ଆରମ୍ଭରୁ ଯଜ୍ଞ ହୋଇ ଆସୁଛି, ସେହି ଯଜ୍ଞର ଫଳସ୍ୱରୂପ ସେଠାରେ ବୃଷ୍ଟି ହୁଏ ଏବଂ ଯେପର୍ଯ୍ୟନ୍ତ ପୂର୍ବାର୍ଜିତ ଯଜ୍ଞଫଳସମୂହ ସଂଚିତ ରହିବ; ସେହି ଫଳର ସମାପ୍ତି ହେବ ନାହିଁ, ସେପର୍ଯ୍ୟନ୍ତ ବୃଷ୍ଟି ହେଉଥିବ; କିନ୍ତୁ ମନୁଷ୍ୟ ଯଦି ଯଜ୍ଞ କରିବା ବନ୍ଦ କରିଦେବ, ତେବେ ସେହି ସଂଚିତଯଜ୍ଞଫଳ ଧୀରେ ଧୀରେ ସମାପ୍ତ ହୋଇଯିବ ଏବଂ ତା'ପରେ ଆଉ ବୃଷ୍ଟି ହେବ ନାହିଁ ଓ ତା' ଫଳରେ ସୃଷ୍ଟିର ଜୀବମାନଙ୍କର ଶରୀରଧାରଣ ଓ ଭରଣପୋଷଣ କଠିନ ହୋଇଯିବ। ତେଣୁ ମନୁଷ୍ୟ କର୍ତ୍ତବ୍ୟପାଳନରୂପକ ଯଜ୍ଞ ଅବଶ୍ୟ କରିବା ଉଚିତ।

**ପ୍ରଶ୍ନ—** 'ଯଜ୍ଞ ବିହିତକର୍ମରୁ ଉତ୍ପନ୍ନ ହୁଏ'— ଏହି ବକ୍ତବ୍ୟର ଭାବ କଣ ?

**ଉତ୍ତର—** ଏହାଦ୍ୱାରା କୁହାଯାଇଛି ଯେ, ଭିନ୍ନ ଭିନ୍ନ ମନୁଷ୍ୟଙ୍କ ପାଇଁ ସେମାନଙ୍କ ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତିଭେଦରେ ଯେଉଁ ଭିନ୍ନ-ଭିନ୍ନପ୍ରକାର ଯଜ୍ଞ ଶାସ୍ତ୍ରରେ ନିର୍ଦ୍ଦେଶ କରାଯାଇଛି, ତାହା ମନ, ଇନ୍ଦ୍ରିୟ ବା ଶରୀରର କ୍ରିୟାଦ୍ୱାରା ସମ୍ପାଦିତ ହୁଏ। ଶାସ୍ତ୍ରବିହିତ କ୍ରିୟା ବ୍ୟତୀତ କୌଣସି ଯଜ୍ଞ ସିଦ୍ଧ ହୋଇପାରେ ନାହିଁ। ଚତୁର୍ଥ ଅଧ୍ୟାୟର ବତିଶ ଶ୍ଳୋକରେ ଏହି ଭାବକୁ ସ୍ପଷ୍ଟ କରିଦିଆଯାଇଛି।

**ପ୍ରଶ୍ନ—** **ବ୍ରହ୍ମୋଦ୍‌ଭବମ୍** ପଦରେ **ବ୍ରହ୍ମ** ଶବ୍ଦର ଅର୍ଥ କଣ ଏବଂ କର୍ମ ଏହାଠାରୁ ଉତ୍ପନ୍ନ ହୁଏ ବୋଲି କହିବାର ଭାବ କଣ ?

**ଉତ୍ତର –** ଗୀତାରେ 'ବ୍ରହ୍ମ' ଶବ୍ଦ ପ୍ରକରଣ ଅନୁସାରେ 'ପରମାତ୍ମା' (୮/୩,୨୪), 'ପ୍ରକୃତି' (୧୪/୩,୪), 'ବ୍ରହ୍ମା' (୮/୧୭; ୧୧/୩୭), 'ବେଦ' (୪/୩୨; ୧୭/୨୪) ଏବଂ ବ୍ରାହ୍ମଣ (୧୮/୪୨)– ଏପରି ବିଭିନ୍ନ ଅର୍ଥରେ ପ୍ରଯୁକ୍ତ ହୋଇଛି। ଏଠାରେ କର୍ମ-ଉତ୍ପତ୍ତିର ପ୍ରକରଣ ଚାଲିଛି ଏବଂ ବେଦ ବା ବେଦାନୁକୂଳ ଶାସ୍ତ୍ରଦ୍ୱାରା ହିଁ ମନୁଷ୍ୟର ବିହିତକର୍ମବିଷୟକ ଜ୍ଞାନ ହୁଏ। ତେଣୁ ଏଠାରେ ବ୍ରହ୍ମ ଶବ୍ଦର ଅର୍ଥ ବେଦ ବୋଲି ବୁଝିବା ଉଚିତ। ଏହା ବ୍ୟତୀତ ଏହି ବ୍ରହ୍ମକୁ ଅକ୍ଷରରୁ ଉତ୍ପନ୍ନ ବୋଲି କୁହାଯାଇଛି। ତେଣୁ ମଧ୍ୟ ବ୍ରହ୍ମର ଅର୍ଥ ବେଦ ବୋଲି ସ୍ୱୀକାର କରିବା ଠିକ୍; କାରଣ, ପରମାତ୍ମା ସ୍ୱୟଂ ଅକ୍ଷର ଏବଂ ପ୍ରକୃତି ଅନାଦି; ଏଣୁ ସେମାନଙ୍କୁ ଅକ୍ଷରରୁ ଉତ୍ପନ୍ନ ବୋଲି କହିବା ସଙ୍ଗତ ହେବ ନାହିଁ ଏବଂ ବ୍ରହ୍ମା ତଥା ବ୍ରାହ୍ମଣର ପ୍ରକରଣ ଏଠାରେ ନାହିଁ। କର୍ମ ବେଦରୁ ଉତ୍ପନ୍ନ ବୋଲି କହି ଏଠାରେ ଦେଖାଇଦିଆଯାଇଛି ଯେ, କେଉଁ ମନୁଷ୍ୟଙ୍କର କେଉଁ କେଉଁ କର୍ମ କିପରିଭାବରେ କରିବା କର୍ତ୍ତବ୍ୟ, ତାହା ବେଦ ଓ ଶାସ୍ତ୍ରରୁ ବୁଝି ଯେଉଁ ବିଧିବଦ୍ଧ କ୍ରିୟା କରାଯାଏ, ସେଥିରେ ଯଜ୍ଞ ସମ୍ପାଦିତ ହୁଏ ଏବଂ ଏହି କ୍ରିୟା ବେଦରୁ ବା ବେଦାନୁକୂଳ ଶାସ୍ତ୍ରରୁ ଜଣାଯାଏ। ଏଣୁ ଯଜ୍ଞସମ୍ପାଦନ ନିମନ୍ତେ ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟଜ୍ଞାନ ରହିବା ଆବଶ୍ୟକ।

**ପ୍ରଶ୍ନ –** ବେଦକୁ ଅକ୍ଷରରୁ ଉତ୍ପନ୍ନ ବୋଲି କହିବାର ଅଭିପ୍ରାୟ କଣ ? କାରଣ, ବେଦକୁ ଅନାଦି ବୋଲି ସ୍ୱୀକାର କରାଯାଇଛି।

**ଉତ୍ତର –** ପରବ୍ରହ୍ମ ପରମେଶ୍ୱର ନିତ୍ୟ, ତେଣୁ ତାଙ୍କର ବିଧାନରୂପୀ ବେଦ ମଧ୍ୟ ଯେ ନିତ୍ୟ, ସେଥିରେ କୌଣସି ସନ୍ଦେହ ନାହିଁ। ଏଣୁ ଏଠାରେ ବେଦକୁ ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ବୋଲି କହିବାର ଅଭିପ୍ରାୟ ଏହା ନୁହେଁ ଯେ, ବେଦ ପ୍ରଥମେ ନ ଥିଲା, ପରେ ଉତ୍ପନ୍ନ ହୋଇଛି। କହିବାର ଅଭିପ୍ରାୟ ଏହି ଯେ, ସୃଷ୍ଟିର ଆଦିକାଳରେ ପରମେଶ୍ୱରଙ୍କ ଠାରୁ ବେଦ ପ୍ରକଟ ହୁଏ ଏବଂ ପ୍ରଳୟକାଳରେ ତାଙ୍କ ଠାରେ ବିଲୀନ ହୋଇଯାଏ। ବେଦ ଅପୌରୁଷେୟ ଅର୍ଥାତ୍ ଏହା କୌଣସି ପୁରୁଷଙ୍କ ଦ୍ୱାରା ରଚିତ ଶାସ୍ତ୍ର ନୁହେଁ। ଏହି ଭାବ ନିରୂପଣ କରିବାପାଇଁ ଏଠାରେ ବେଦ ଅକ୍ଷରରୁ ବା ଅବିନାଶୀ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ହୋଇଛି ବୋଲି କୁହାଯାଇଛି। ଅତଏବ ଏହି କଥାରୁ ବେଦ ଅନାଦି ବୋଲି ସିଦ୍ଧ କରାଯାଇଛି। ଏହିଭାବରେ ସତର ଅଧ୍ୟାୟର ତେଇଶ ଶ୍ଳୋକରେ ମଧ୍ୟ ବେଦ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ବୋଲି କୁହାଯାଇଛି।

**ପ୍ରଶ୍ନ – ସର୍ବଗତମ୍** ବିଶେଷଣ ସହିତ **ବ୍ରହ୍ମ** ପଦ ଏଠାରେ କାହାର ବାଚକ ଏବଂ ହେତୁବାଚକ **ତସ୍ମାତ୍** ପଦ ପ୍ରୟୋଗ କରି ତାହା ଯଜ୍ଞରେ ନିତ୍ୟ ପ୍ରତିଷ୍ଠିତ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର – ସର୍ବଗତମ୍** ବିଶେଷଣ ସହିତ **ବ୍ରହ୍ମ** ପଦ ଏଠାରେ ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସର୍ବାଧାର ପରମେଶ୍ୱରଙ୍କ ବାଚକ ଏବଂ **ତସ୍ମାତ୍** ପଦ ପ୍ରୟୋଗପୂର୍ବକ ସେହି ପରମେଶ୍ୱରଙ୍କୁ ଯଜ୍ଞରେ ନିତ୍ୟପ୍ରତିଷ୍ଠିତ ବୋଲି କହି ଦର୍ଶାଇଛନ୍ତି ଯେ, ଯେଉଁ ବେଦରେ ସମସ୍ତ ଯଜ୍ଞର ବିଧି ବର୍ଣ୍ଣନା କରାଯାଇଛି, ସେହି ବେଦ ହେଉଛି ଭଗବାନଙ୍କର ମୁଖନିଃସୃତ ବାଣୀ। ଅତଏବ ବେଦନିର୍ଦ୍ଦେଶ ଧରି କରାଯାଉଥିବା ଯଜ୍ଞରେ ସମସ୍ତ ଯଜ୍ଞର ଅଧିଷ୍ଠାତା ସର୍ବବ୍ୟାପୀ ପରମେଶ୍ୱର ସର୍ବଦା ସ୍ୱୟଂ ବିରାଜମାନ, ଅର୍ଥାତ୍ ଯଜ୍ଞ ସାକ୍ଷାତ୍ ପରମେଶ୍ୱରଙ୍କ 'ମୂର୍ତ୍ତି' ଅଟେ। ତେଣୁ ପ୍ରତ୍ୟେକ ମନୁଷ୍ୟ ଭଗବତ୍‌ପ୍ରାପ୍ତିପାଇଁ ଭଗବାନଙ୍କ ଆଜ୍ଞାନୁସାରେ ନିଜ ନିଜର କର୍ତ୍ତବ୍ୟ ପାଳନ କରିବା ଉଚିତ।

*__ସମ୍ବନ୍ଧ –__ ଏପରିଭାବରେ ସୃଷ୍ଟିଚକ୍ରର ସ୍ଥିତି ଯଜ୍ଞ ଉପରେ ନିର୍ଭର କରେ ବୋଲି ବୁଝାଇ ପରମାତ୍ମା ଯଜ୍ଞରେ ପ୍ରତିଷ୍ଠିତ ବୋଲି କହିଲେ। ବର୍ତ୍ତମାନ ସେହି ଯଜ୍ଞରୂପୀ ସ୍ୱଧର୍ମପାଳନକୁ ଅବଶ୍ୟକର୍ତ୍ତବ୍ୟ ବୋଲି ସିଦ୍ଧ କରିବାକୁ ସେହି ସୃଷ୍ଟିଚକ୍ରର ଅନୁକୂଳ ହୋଇ ନ ଚଳୁଥିବା ବା ନିଜର କର୍ତ୍ତବ୍ୟପାଳନ କରୁ ନ ଥିବା ଲୋକଙ୍କୁ ନିନ୍ଦା କରୁଛନ୍ତି–*

**ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ।**
**ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି॥ ୧୬ ॥**

**ଅନ୍ୱୟ —** **ପାର୍ଥ** = ହେ ପାର୍ଥ ! **ଯଃ** = ଯେଉଁ ପୁରୁଷ; **ଇହ** = ଏହି ଲୋକରେ; **ଏବମ୍** = ଏହିପ୍ରକାରେ; **ପ୍ରବର୍ତ୍ତିତମ୍** = ପରମ୍ପରାକ୍ରମେ ପ୍ରଚଳିତ; **ଚକ୍ରମ୍** = ସୃଷ୍ଟିଚକ୍ରକୁ; **ନ, ଅନୁବର୍ତ୍ତୟତି** = ଅନୁସରଣ କରେ ନାହିଁ ଅର୍ଥାତ୍ ନିଜର କର୍ତ୍ତବ୍ୟ ପାଳନ କରେ ନାହିଁ; **ସଃ** = ସେ; **ଇନ୍ଦ୍ରିୟାରାମଃ** = ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗରେ ରମଣ କରୁଥିବା; **ଅଘାୟୁଃ** = ପାପାୟୁ ପୁରୁଷ; **ମୋଘମ୍** = ବୃଥାରେ; **ଜୀବତି** = ଜୀବନ ଧାରଣ କରେ ।

**ହେ ପାର୍ଥ! ଯେଉଁ ପୁରୁଷ ଏହି ଲୋକରେ ଏହିପ୍ରକାରେ ପରମ୍ପରାକ୍ରମେ ପ୍ରଚଳିତ ହୋଇ ଆସିଥିବା ସୃଷ୍ଟିଚକ୍ରର ଅନୁକୂଳ ହୋଇ ଚଳେ ନାହିଁ ଅର୍ଥାତ୍ ନିଜର କର୍ତ୍ତବ୍ୟ ପାଳନ କରେ ନାହିଁ, ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗରେ ରମଣ କରୁଥିବା ସେହି ପାପାୟୁ ପୁରୁଷ ବୃଥାରେ ଜୀବନ ଧାରଣ କରେ ।। ୧୬ ।।**

**ପ୍ରଶ୍ନ —** ଏଠାରେ **ଚକ୍ରମ୍** ପଦ କାହାର ବାଚକ ଏବଂ ତାହା ସହିତ **ଏବଂ ପ୍ରବର୍ତ୍ତିତମ୍** ବିଶେଷଣ ଦେବାର ଭାବ କଣ ତଥା ତାହାର ଅନୁକୂଳ ହୋଇ ଚଳିବା ଅର୍ଥ କଣ ?

**ଉତ୍ତର —** ଚଉଦ ଶ୍ଳୋକର ବର୍ଣ୍ଣନା ଅନୁସାରେ ଏଠାରେ **ଚକ୍ରମ୍** ପଦଟି ହେଉଛି ସୃଷ୍ଟିପରମ୍ପରାର ବାଚକ; କାରଣ, ମନୁଷ୍ୟମାନଙ୍କ ଦ୍ୱାରା କରାଯାଉଥିବା ଶାସ୍ତ୍ରବିହିତ କ୍ରିୟାମାଧ୍ୟମରେ ଯଜ୍ଞ ହୁଏ; ଯଜ୍ଞଦ୍ୱାରା ବୃଷ୍ଟି ହୁଏ, ବୃଷ୍ଟିଦ୍ୱାରା ଅନ୍ନ ହୁଏ, ଅନ୍ନଦ୍ୱାରା ପ୍ରାଣୀ ଉତ୍ପନ୍ନ ହୁଅନ୍ତି; ପୁଣି ସେହି ପ୍ରାଣୀମାନଙ୍କର ଅନ୍ତର୍ଗତ ମନୁଷ୍ୟମାନଙ୍କ ଦ୍ୱାରା କରାଯାଉଥିବା କର୍ମଦ୍ୱାରା ଯଜ୍ଞ ହୁଏ ଏବଂ ଯଜ୍ଞଦ୍ୱାରା ବୃଷ୍ଟି ହୁଏ । ଏପରିଭାବରେ ଏହି ସୃଷ୍ଟିପରମ୍ପରା ଚିରକାଳରୁ ଚକ୍ରପରି ଘୂରିଚାଲିଛି । ଏହିଭାବ ଦେଖାଇବା ପାଇଁ **ଚକ୍ରମ୍** ପଦ ସହିତ **ଏବଂ ପ୍ରବର୍ତ୍ତିତମ୍** ବିଶେଷଣ ଦିଆଯାଇଛି । ନିଜ ନିଜର ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟର ଯାହା ସ୍ୱଧର୍ମ, ତା ଉପରେ ଯାହା ପାଳନ କରିବାର ଦାୟିତ୍ୱ ରହିଛି, ସେହି ଅନୁସାରେ ସାବଧାନ ହୋଇ ନିଜର କର୍ତ୍ତବ୍ୟ ପାଳନ କରିବା ହିଁ ସେହି ଚକ୍ର ଅନୁସାରେ ଚଳିବା । ଅତଏବ ଆସକ୍ତି ଓ କାମନା ତ୍ୟାଗ କରି କେବଳ ଏହି ସୃଷ୍ଟିଚକ୍ରର ସୁବ୍ୟବସ୍ଥା ବଜାୟ ରଖିବାକୁ ଯେଉଁ ଯୋଗୀ ନିଜର କର୍ତ୍ତବ୍ୟ ଅନୁଷ୍ଠାନ କରନ୍ତି, ଯେଉଁଥିରେ କି ସ୍ୱାର୍ଥର ସମ୍ବନ୍ଧ ସାମାନ୍ୟମାତ୍ର ବି ନ ଥାଏ, ସେ ସେହି ସ୍ୱଧର୍ମରୂପକ ଯଜ୍ଞରେ ପ୍ରତିଷ୍ଠିତ ପରମେଶ୍ୱରଙ୍କୁ ପାଇପାରନ୍ତି ।

**ପ୍ରଶ୍ନ —** ଏହି ସୃଷ୍ଟିଚକ୍ରର ଅନୁକୂଳ ହୋଇ ଚଳୁ ନ ଥିବା ମନୁଷ୍ୟକୁ **ଇନ୍ଦ୍ରିୟାରାମ** ଏବଂ **ଅଘାୟୁ** କହିବାର ତଥା ତାହାର ଜୀବନ ବ୍ୟର୍ଥ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ନିଜର କର୍ତ୍ତବ୍ୟ ପାଳନ ନ କରିବା ହିଁ ଉପରୋକ୍ତ ସୃଷ୍ଟିଚକ୍ରର ଅନୁକୂଳ ହୋଇ ନ ଚଳିବା । ନିଜର କର୍ତ୍ତବ୍ୟ ଭୁଲିଯାଇ ଯେଉଁ ମନୁଷ୍ୟ ବିଷୟରେ ଆସକ୍ତ ହୋଇ ନିରନ୍ତର ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗରେ ରମଣ କରୁଥାଏ, କୌଣସି ନା କୌଣସିପ୍ରକାର ଭୋଗଦ୍ୱାରା ଇନ୍ଦ୍ରିୟମାନଙ୍କୁ ସନ୍ତୁଷ୍ଟ କରିବା ହିଁ ଯାହାର ଲକ୍ଷ୍ୟ ହୋଇଯାଇଥାଏ, ତାକୁ **ଇନ୍ଦ୍ରିୟାରାମ** ବୋଲି କୁହାଯାଇଛି ।

ଏପରିଭାବରେ ନିଜର କର୍ତ୍ତବ୍ୟ ତ୍ୟାଗ କରିଦେଉଥିବା ମନୁଷ୍ୟ ଭୋଗକାମନାରେ ପ୍ରେରିତ ହୋଇ ସ୍ୱେଚ୍ଛାଚାରୀ ହୋଇଯାଏ । ନିଜ ସ୍ୱାର୍ଥରେ ଜଡ଼ିତ ରହିଥିବାରୁ ସେ ଅନ୍ୟମାନଙ୍କ ହିତ-ଅହିତ ବିଚାର କରେ ନାହିଁ ଏବଂ ତା'ଫଳରେ ଅନ୍ୟମାନଙ୍କ ଉପରେ ଖରାପ ପ୍ରଭାବ ପଡ଼େ ଓ ସୃଷ୍ଟିବ୍ୟବସ୍ଥାରେ ବିଘ୍ନ ଉପସ୍ଥିତ ହୋଇଯାଏ । ଏହା ଫଳରେ ସମସ୍ତ ପ୍ରଜା ଦୁଃଖୀ ହୁଅନ୍ତି । ଅତଏବ ନିଜର କର୍ତ୍ତବ୍ୟ ପାଳନ ନ କରି ସୃଷ୍ଟିରେ ଦୁର୍ବ୍ୟବସ୍ଥା ଉତ୍ପନ୍ନ କରୁଥିବା ଲୋକ ବିରାଟ ଦୋଷର ଭାଗୀ ହୁଏ ତଥା ସେ ନିଜର ସ୍ୱାର୍ଥସିଦ୍ଧିପାଇଁ ଜୀବନସାରା ଅନ୍ୟାୟପୂର୍ବକ ଧନ ଓ ଐଶ୍ୱର୍ଯ୍ୟ ସଂଗ୍ରହ କରୁଥାଏ; ତେଣୁ ତାକୁ **ଅଘାୟୁ** ବୋଲି କୁହାଯାଇଛି ।

ସେହି ମନୁଷ୍ୟ ଜୀବନର ପ୍ରଧାନ ଲକ୍ଷ୍ୟରୁ ଅର୍ଥାତ୍ ନିଜର କର୍ତ୍ତବ୍ୟ ପାଳନଦ୍ୱାରା ସଂସାରରେ ସମସ୍ତ ଜୀବଙ୍କୁ ସୁଖ ପ୍ରଦାନ କରି ପରମକଲ୍ୟାଣରୂପକ ପରମେଶ୍ୱରଙ୍କୁ ପ୍ରାପ୍ତ କରିବାର ଯେଉଁ ମହତ୍ ଉଦ୍ଦେଶ୍ୟ ରହିଛି, ସେହି ଉଦ୍ଦେଶ୍ୟରୁ ସର୍ବଥା ବଞ୍ଚିତ ହୋଇ ରହିଯାଏ । ତା'ଫଳରେ ସେ ନିଜର ଅମୂଲ୍ୟ ମନୁଷ୍ୟଜୀବନକୁ ବିଷୟଭୋଗରେ ଜଡ଼ିତ କରି ବୃଥା ନଷ୍ଟ କରିଦିଏ; ତେଣୁ ତା'ର ଜୀବନ ବ୍ୟର୍ଥ ବୋଲି କୁହାଯାଇଛି ।

**ସମ୍ବନ୍ଧ –** ଏଠାରେ ପ୍ରଶ୍ନ ହୋଇପାରେ : ଉପର୍ଯ୍ୟୁକ୍ତପ୍ରକାରେ ସୃଷ୍ଟିଚକ୍ର ଅନୁସାରେ ଚଳିବାର ଦାୟିତ୍ୱ କେଉଁ ଶ୍ରେଣୀର ମନୁଷ୍ୟଙ୍କ ଉପରେ ନ୍ୟସ୍ତ ? ଉତ୍ତରରେ ପରମାତ୍ମାଙ୍କୁ ପ୍ରାପ୍ତ ସିଦ୍ଧମହାପୁରୁଷଙ୍କ ବ୍ୟତୀତ ଏହି ସୃଷ୍ଟି ସହିତ ସମ୍ବନ୍ଧ ରଖିଥିବା ସମସ୍ତ ମନୁଷ୍ୟଙ୍କ ଉପରେ ନିଜ ନିଜର କର୍ତ୍ତବ୍ୟପାଳନର ଦାୟିତ୍ୱ ରହିଛି ବୋଲି ଦର୍ଶାଇବାକୁ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ କାରଣ ଦେଇ କହୁଛନ୍ତି ଯେ, ଜ୍ଞାନୀମହାପୁରୁଷଙ୍କ ନିମିତ୍ତ କୌଣସି କର୍ତ୍ତବ୍ୟ ନାହିଁ–

**ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।**
**ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ।। ୧୭ ।।**

**ଅନ୍ୱୟ –** ତୁ = ପରନ୍ତୁ; **ଯଃ** = ଯେଉଁ; ମାନବଃ = ମନୁଷ୍ୟ; **ଆତ୍ମରତିଃ, ଏବ** = ଆତ୍ମାରେ ହିଁ ରମଣ କରୁଥିବା ଲୋକ; ଚ = ଏବଂ; **ଆତ୍ମତୃପ୍ତଃ** = ଆତ୍ମାରେ ହିଁ ତୃପ୍ତ; ଚ = ତଥା; **ଆତ୍ମନି, ଏବ** = ଆତ୍ମାରେ ହିଁ; **ସନ୍ତୁଷ୍ଟଃ** = ସନ୍ତୁଷ୍ଟ; **ସ୍ୟାତ୍** = ହୋଇଥାନ୍ତି; ତସ୍ୟ = ତାହାଙ୍କର; କାର୍ଯ୍ୟମ୍ = କୌଣସି କର୍ତ୍ତବ୍ୟ; ନ, ବିଦ୍ୟତେ = ରହେ ନାହିଁ ।

**କିନ୍ତୁ ଯେଉଁ ପୁରୁଷ ଆତ୍ମାରେ ରମଣ କରୁଥାଆନ୍ତି ଏବଂ ଆତ୍ମାରେ ତୃପ୍ତ ତଥା ଆତ୍ମାରେ ସନ୍ତୁଷ୍ଟ ହୋଇ ରହିଥାନ୍ତି, ତାହାଙ୍କ ପାଇଁ କୌଣସି କର୍ତ୍ତବ୍ୟ ନାହିଁ।। ୧୭ ।।**

**ପ୍ରଶ୍ନ –** ତୁ ପଦର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକମାନଙ୍କରେ ଯେଉଁମାନଙ୍କ ପାଇଁ ସ୍ୱଧର୍ମପାଳନ ଅବଶ୍ୟକର୍ତ୍ତବ୍ୟ ବୋଲି କୁହାଯାଇଛି ଏବଂ ସ୍ୱଧର୍ମପାଳନ କରୁ ନ ଥିବାରୁ 'ଅଘାୟୁ' କହି ଯାହାଙ୍କର ଜୀବନ ବ୍ୟର୍ଥ ବୋଲି କୁହାଯାଇଛି, ସେହିସବୁ ପୁରୁଷଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ତଥା ଶାସ୍ତ୍ରଶାସନର ଊର୍ଦ୍ଧ୍ୱକୁ ଉଠିଯାଇଥିବା ଜ୍ଞାନୀ ମହାପୁରୁଷଙ୍କୁ ପୃଥକ୍ କରି ତାଙ୍କ ସ୍ଥିତିର ବର୍ଣ୍ଣନା କରିବାକୁ ଏଠାରେ **ତୁ** ପଦ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ – ଆତ୍ମରତିଃ, ଆତ୍ମତୃପ୍ତଃ** ଏବଂ **ଆତ୍ମନି ଏବ ସନ୍ତୁଷ୍ଟଃ** ଏହି ତିନୋଟି ବିଶେଷଣ ସହିତ **ଯଃ** ପଦଟି କେଉଁ ମନୁଷ୍ୟଙ୍କ ବାଚକ ତଥା ତାଙ୍କୁ **ମାନବଃ** କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଉପର୍ଯ୍ୟୁକ୍ତ ବିଶେଷଣମାନଙ୍କ ସହିତ **ଯଃ** ପଦଟି ହେଉଛି ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ଜ୍ଞାନୀ ମହାତ୍ମାପୁରୁଷଙ୍କ ବାଚକ ଏବଂ ତାଙ୍କୁ **ମାନବଃ** କହି ଦେଖାଉଛନ୍ତି ଯେ, ଯେକୌଣସି ମନୁଷ୍ୟ ସାଧନା କରି ଏପରି ସ୍ଥିତିରେ ପହଞ୍ଚିପାରିବ; କାରଣ ପରମାତ୍ମାଙ୍କୁ ପ୍ରାପ୍ତ କରିବାର ଅଧିକାର ସମସ୍ତ ମନୁଷ୍ୟଙ୍କର ରହିଛି ।

**ପ୍ରଶ୍ନ – ଏବ** ଅବ୍ୟୟ ସହିତ **ଆତ୍ମରତିଃ** ବିଶେଷଣ ପ୍ରୟୋଗର ଭାବ କଣ ?

**ଉତ୍ତର –** ଏହି ବିଶେଷଣଦ୍ୱାରା ଦର୍ଶାଯାଇଛି ଯେ, ସ୍ୱପ୍ନରୁ ଜାଗ୍ରତ ହୋଇଥିବା ମନୁଷ୍ୟର ଦୃଷ୍ଟିରେ ସ୍ୱପ୍ନର ସୃଷ୍ଟି ଯେପରି ଶୂନ୍ୟ ହୋଇଯାଏ, ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ମନୁଷ୍ୟଙ୍କ ଦୃଷ୍ଟିରେ ଏହି ସମ୍ପୂର୍ଣ୍ଣ ଜଗତ ସେହିପରି ସ୍ୱପ୍ନର ସୃଷ୍ଟିପରି ଶୂନ୍ୟ ହୋଇଯାଏ । ତେଣୁ କୌଣସି ବି ସାଂସାରିକ ବସ୍ତୁରେ ତାଙ୍କର କିଞ୍ଚିତ୍‌ମାତ୍ର ପ୍ରୀତି ହୁଏ ନାହିଁ ଏବଂ ସେ କୌଣସି ବସ୍ତୁରେ ରମଣ କରନ୍ତି ନାହିଁ; ସେ କେବଳମାତ୍ର ଏକ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ଅଚଳ ସ୍ଥିତିରେ ରହିଯାଆନ୍ତି । ତେଣୁ ତାଙ୍କର ମନ-ବୁଦ୍ଧି ସଂସାରରେ ରମଣ କରେ ନାହିଁ । ତାଙ୍କ ନିଶ୍ଚୟରେ କେବଳ ପରମାତ୍ମା ହିଁ ଏକମାତ୍ର ସତ୍ୟବସ୍ତୁ; ତେଣୁ ତାଙ୍କ ଦ୍ୱାରା ପରମାତ୍ମାଙ୍କ ଚିନ୍ତନ ସ୍ୱାଭାବିକରୂପରେ ହେଉଥାଏ । ଏହା ହିଁ ତାଙ୍କର ଆତ୍ମାରେ ରମଣ କରିବା ।

**ପ୍ରଶ୍ନ – ଆତ୍ମତୃପ୍ତଃ** ବିଶେଷଣର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଦର୍ଶାଯାଇଛି ଯେ, ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷ ପୂର୍ଣ୍ଣକାମ ହୋଇଯାଆନ୍ତି; ତାଙ୍କ ପାଇଁ କୌଣସି ବସ୍ତୁ ପାଇବାର ଯୋଗ୍ୟ ହୋଇ ରହେ ନାହିଁ ତଥା କୌଣସି ସାଂସାରିକ ବସ୍ତୁର ଟିକିଏ ହେଲେ ଆବଶ୍ୟକତା ରହେ ନାହିଁ । ସେ ପରମାତ୍ମାଙ୍କ ସ୍ୱରୂପରେ ଅନନ୍ୟଭାବରେ ସ୍ଥିତ ହୋଇ ସଦାସର୍ବଦା ତୃପ୍ତ ରହନ୍ତି ।

**ପ୍ରଶ୍ନ – ଆତ୍ମନି ଏବ ସନ୍ତୁଷ୍ଟଃ** ବିଶେଷଣର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ପରମାତ୍ମାଙ୍କୁ ପ୍ରାପ୍ତ ପୁରୁଷ ନିତ୍ୟନିରନ୍ତର ପରମାତ୍ମାଙ୍କ ଠାରେ ସନ୍ତୁଷ୍ଟ ହୋଇ ରହନ୍ତି; ସଂସାରର କୌଣସି

ବିରାଟ ପ୍ରଲୋଭନ ମଧ୍ୟ ତାଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରିପାରେ ନାହିଁ। କୌଣସି ଘଟଣାରୁ ବା କୌଣସି କାରଣରୁ ସେ ଟିକିଏ ବି ଅସନ୍ତୁଷ୍ଟ ହୁଅନ୍ତି ନାହିଁ। ସଂସାରର କୌଣସି ବସ୍ତୁ ସହିତ ତାଙ୍କର କୌଣସି ସମ୍ବନ୍ଧ ରହେ ନାହିଁ। ସେ ସଦାସର୍ବଦା ହର୍ଷଶୋକାଦି ବିକାରରୁ ସର୍ବଥା ଅତୀତ ହୋଇ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ନିରନ୍ତର ସନ୍ତୁଷ୍ଟ ହୋଇ ରହନ୍ତି।

**ପ୍ରଶ୍ନ** — 'ତାଙ୍କ ପାଇଁ କୌଣସି କର୍ତ୍ତବ୍ୟ ବାକି ରହି ନ ଥାଏ' କହିବାର ଭାବ କଣ ?

**ଉତ୍ତର** — ଏହି ବକ୍ତବ୍ୟର ଭାବ ହେଉଛି : ଉପର୍ଯ୍ୟୁକ୍ତ ବିଶେଷଣଯୁକ୍ତ ମହାପୁରୁଷ ପରମାତ୍ମାଙ୍କୁ ପାଇସାରିଛନ୍ତି; ଅତଏବ ତାଙ୍କର ସମସ୍ତ କର୍ତ୍ତବ୍ୟ ସମାପ୍ତ ହୋଇଯାଇଛି; ସେ କୃତକୃତ୍ୟ ହୋଇଯାଇଛନ୍ତି; କାରଣ ମନୁଷ୍ୟପାଇଁ ଯେତେପ୍ରକାର କର୍ତ୍ତବ୍ୟ ବିଧାନ କରାଯାଇଛି, ସେସବୁର ଉଦ୍ଦେଶ୍ୟ କେବଳମାତ୍ର ଏକ ପରମକଲ୍ୟାଣରୂପ ପରମାତ୍ମାଙ୍କୁ ପ୍ରାପ୍ତି କରିବା। ତେଣୁ ଯାହାଙ୍କର ସେହି ଉଦ୍ଦେଶ୍ୟ ପୂରଣ ହୋଇଯାଇଛି, ତାଙ୍କର କରିବାପାଇଁ ଆଉ କିଛି ବାକି ରହେ ନାହିଁ; ତାଙ୍କ କର୍ତ୍ତବ୍ୟର ସମାପ୍ତି ହୋଇଯାଏ।

**ପ୍ରଶ୍ନ** — ତେବେ କଣ ଜ୍ଞାନୀପୁରୁଷ କୌଣସି କର୍ମ କରନ୍ତି ନାହିଁ ?

**ଉତ୍ତର** — ଜ୍ଞାନୀ ପୁରୁଷଙ୍କ ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରର କୌଣସି ସମ୍ବନ୍ଧ ରହେ ନାହିଁ। ତେଣୁ ସେ ବାସ୍ତବରେ କିଛି କରନ୍ତି ନାହିଁ; ତଥାପି ଲୋକଦୃଷ୍ଟିରୁ ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ପୂର୍ବ ଅଭ୍ୟାସବଶତଃ ପ୍ରାରବ୍ଧ ଅନୁସାରେ ଶାସ୍ତ୍ରାନୁକୂଳ କର୍ମ ହେଉଥାଏ। ଏପରି କର୍ମ ମମତ୍ୱ, ଅଭିମାନ, ଆସକ୍ତି ଓ କାମନାରୁ ସର୍ବଥା ରହିତ ହୋଇଥିବାରୁ ପରମପବିତ୍ର ହୁଏ ଏବଂ ଅନ୍ୟମାନଙ୍କ ପାଇଁ ଆଦର୍ଶସ୍ଥାନୀୟ ହୁଏ। ଏସବୁ ହେଉଥିଲେ ମଧ୍ୟ ମନେ ରଖିବା ଉଚିତ ଯେ, ଏପରି ପୁରୁଷଙ୍କ ଉପରେ ଶାସ୍ତ୍ରର କୌଣସି ଶାସନ ନାହିଁ।

**ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ।**
**ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ॥ ୧୮ ॥**

**ଅନ୍ୱୟ** — **ତସ୍ୟ** = ସେହି ମହାପୁରୁଷଙ୍କର; **ଇହ** = ଏହି ବିଶ୍ୱରେ; **କୃତେନ** = କର୍ମ କରିବାରେ; **କଶ୍ଚନ** = କୌଣସି; **ଅର୍ଥଃ**, **ନ** = ପ୍ରୟୋଜନ (ରହେ) ନାହିଁ (ଏବଂ); **ଅକୃତେନ**, **ଏବ** = କର୍ମ ନ କରିବାରେ ମଧ୍ୟ; **ନ** = (କୌଣସି ପ୍ରୟୋଜନ ରହେ) ନାହିଁ; **ଚ** = ତଥା; **ସର୍ବଭୂତେଷୁ** = ସକଳପ୍ରାଣୀଙ୍କ ସହିତ ମଧ୍ୟ; **ଅସ୍ୟ** = ଏହାଙ୍କର; **କଶ୍ଚିତ୍** = କିଛି ବି; **ଅର୍ଥବ୍ୟପାଶ୍ରୟଃ** = ସ୍ୱାର୍ଥସମ୍ବନ୍ଧ; **ନ** = (ରହେ) ନାହିଁ।

**ସେହି ମହାପୁରୁଷଙ୍କର ଏହି ବିଶ୍ୱରେ କର୍ମ କରିବାରେ କୌଣସି ପ୍ରୟୋଜନ ରହେ ନାହିଁ କିମ୍ବା କର୍ମ ନ କରିବାରେ କୌଣସି ପ୍ରୟୋଜନ ରହେ ନାହିଁ ତଥା କୌଣସି ପ୍ରାଣୀ ସହିତ ମଧ୍ୟ ତାଙ୍କର କିଛି ବି ସ୍ୱାର୍ଥସମ୍ବନ୍ଧ ରହେ ନାହିଁ॥ ୧୮ ॥**

**ପ୍ରଶ୍ନ** — 'ସେହି ମହାପୁରୁଷଙ୍କର କର୍ମ କରିବାରେ ଓ ନ କରିବାରେ କୌଣସି ପ୍ରୟୋଜନ ରହେ ନାହିଁ'— ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର** — ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଜ୍ଞାନୀପୁରୁଷଙ୍କର କୌଣସି କର୍ତ୍ତବ୍ୟ ବାକି ରହି ନ ଥାଏ। ସେହି କଥାକୁ ପୁଷ୍ଟ କରିବା ପାଇଁ ଏହି ବାକ୍ୟରେ ତାଙ୍କ ପାଇଁ କର୍ତ୍ତବ୍ୟ-ଅଭାବର କାରଣ କହିଛନ୍ତି।

ଅଭିପ୍ରାୟ ଏହି ଯେ, ସେହି ମହାପୁରୁଷ ନିରନ୍ତର ପରମାତ୍ମାଙ୍କ ସ୍ୱରୂପରେ ସନ୍ତୁଷ୍ଟ ରହନ୍ତି; ତେଣୁ ତାଙ୍କର କୌଣସି କର୍ମ କରି କୌଣସି ଐହିକ ବା ପାରଲୌକିକ ପ୍ରୟୋଜନ ସିଦ୍ଧ କରିବାକୁ ବାକି ନ ଥାଏ, କି କୌଣସିପ୍ରକାର କର୍ମ ତ୍ୟାଗ କରି କୌଣସି ପ୍ରୟୋଜନ ସିଦ୍ଧ କରିବାକୁ ବାକି ନ ଥାଏ; କାରଣ ତାଙ୍କର ସମସ୍ତ ଆବଶ୍ୟକତା ସମାପ୍ତ ହୋଇ ସାରିଥାଏ। ବର୍ତ୍ତମାନ ତାଙ୍କର ପ୍ରାପ୍ତିପାଇଁ ଆଉ କିଛି ବାକି ରହି ନ ଥାଏ। ଏହି କାରଣରୁ ତାଙ୍କ ପାଇଁ କୌଣସି କର୍ମ କରିବା କିମ୍ବା ନ କରିବା ବିଧେୟ ନୁହେଁ; ସେ ଶାସ୍ତ୍ରର ଶାସନରୁ ସର୍ବଥା ମୁକ୍ତ। ଯଦି ତାଙ୍କ ମନ ଓ ଇନ୍ଦ୍ରିୟମାନଙ୍କର ସଂଘାତରୂପୀ ଶରୀରଦ୍ୱାରା କୌଣସି କର୍ମ କରାଯାଏ, ତେବେ ତାଙ୍କୁ ଉକ୍ତ କର୍ମ ତ୍ୟାଗ

କରିବାକୁ ଶାସ୍ତ୍ର ମଧ୍ୟ ବାଧ୍ୟ କରେ ନାହିଁ ଏବଂ ଯଦି ସେ କୌଣସି କର୍ମ ନ କରନ୍ତି, ତେବେ ମଧ୍ୟ କର୍ମ କରିବାକୁ ଶାସ୍ତ୍ର ତାଙ୍କୁ ବାଧ୍ୟ କରେ ନାହିଁ।

ଅତଏବ ଜ୍ଞାନୀଙ୍କ କ୍ଷେତ୍ରରେ ଏହା ମାନିନେବାର କୌଣସି ଆବଶ୍ୟକତା ନାହିଁ ଯେ, ଜ୍ଞାନ ହୋଇଯିବା ପରେ ଜୀବନ୍ମୁକ୍ତିର ସୁଖଭୋଗ କରିବା ନିମନ୍ତେ ଜ୍ଞାନୀଙ୍କୁ କର୍ମ ତ୍ୟାଗ କରିବାକୁ ପଡ଼ିବ କିମ୍ବା କର୍ମ ଅନୁଷ୍ଠାନ କରିବାକୁ ପଡ଼ିବ; କାରଣ ଜ୍ଞାନ ହେବା ପରେ ମନ ଓ ଇନ୍ଦ୍ରିୟମାନଙ୍କର ଆରାମରୂପକ ତୁଚ୍ଛ ସୁଖ ସହିତ ତାଙ୍କର କୌଣସି ସମ୍ବନ୍ଧ ରହେ ନାହିଁ। ସେ ନିତ୍ୟନିରନ୍ତର ନିତ୍ୟାନନ୍ଦରେ ମଗ୍ନ ହୋଇ ରହନ୍ତି ଏବଂ ସ୍ୱୟଂ ଆନନ୍ଦରୂପ ହୋଇଯା'ନ୍ତି। କିନ୍ତୁ ଯେଉଁମାନେ କୌଣସି ସୁଖପ୍ରାପ୍ତିପାଇଁ ନିଜର 'ଗ୍ରହଣ' ବା 'ତ୍ୟାଗ'-ରୂପକ କର୍ତ୍ତବ୍ୟ ବାକି ରହିଛି ବୋଲି ମନେ କରନ୍ତି, ସେମାନେ ପ୍ରକୃତରେ ଜ୍ଞାନୀ ନୁହନ୍ତି; ସେମାନେ କେବଳ କୌଣସି ସ୍ଥିତିବିଶେଷକୁ ଜ୍ଞାନପ୍ରାପ୍ତି ଭାବି ନିଜକୁ ଜ୍ଞାନୀ ବୋଲି ମନେ କରୁଥାନ୍ତି। ସତର ଶ୍ଳୋକରେ କୁହାଯାଇଥିବା ଲକ୍ଷଣରେ ଯୁକ୍ତ ଜ୍ଞାନୀ ପ୍ରକୃତ ଜ୍ଞାନୀ ହୋଇଥିବାରୁ ଏପରି ଭାବନ୍ତି ନାହିଁ। ଏହା ସିଦ୍ଧ କରିବା ନିମନ୍ତେ ଭଗବାନ୍ ଉତ୍ତରଗୀତାରେ ମଧ୍ୟ କହିଛନ୍ତି—

**ଜ୍ଞାନାମୃତେନ ତୃପ୍ତସ୍ୟ କୃତକୃତ୍ୟସ୍ୟ ଯୋଗିନଃ।**
**ନ ଚାସ୍ତି କିଞ୍ଚିତ୍ କର୍ତ୍ତବ୍ୟମସ୍ତି ଚେନ୍ନ ସ ତତ୍ତ୍ୱବିତ୍॥**
**(୧/୨୨)**

ଅର୍ଥାତ୍, ଯେଉଁ ଯୋଗୀ ଜ୍ଞାନରୂପକ ଅମୃତରେ ତୃପ୍ତ ଏବଂ କୃତକୃତ୍ୟ ହୋଇଯାଇଛନ୍ତି, ତାଙ୍କ ପାଇଁ କର୍ତ୍ତବ୍ୟ ବୋଲି କିଛି ନାହିଁ। ଯଦି ତାଙ୍କର କିଛି କର୍ତ୍ତବ୍ୟ ଥାଏ, ତେବେ ସେ ତତ୍ତ୍ୱଜ୍ଞାନୀ ନୁହନ୍ତି।

**ପ୍ରଶ୍ନ—** 'କୌଣସି ପ୍ରାଣୀଙ୍କ ଠାରେ ମଧ୍ୟ ତାଙ୍କର କିଛି ବି ସ୍ୱାର୍ଥସମ୍ବନ୍ଧ ରହେ ନାହିଁ'— ଏ କଥାର ଭାବ କଣ?

**ଉତ୍ତର—** ଏହା କହି ଭଗବାନ୍ ଦେଖାଉଛନ୍ତି ଯେ, ଜ୍ଞାନୀଙ୍କର କର୍ମ କରିବାରେ ଓ ନ କରିବାରେ ଯେପରି କୌଣସି ପ୍ରୟୋଜନ ରହେ ନାହିଁ, ସ୍ଥାବର-ଜଙ୍ଗମ କୌଣସି ପ୍ରାଣୀଙ୍କ ଠାରେ ମଧ୍ୟ ତାଙ୍କର ସେହିପରି କିଛି ବି ପ୍ରୟୋଜନ ରହେ ନାହିଁ। ଅଭିପ୍ରାୟ ଏହି ଯେ, ଯାହାଙ୍କର ଦେହାଭିମାନ ସର୍ବଥା ନଷ୍ଟ ହୋଇ ନାହିଁ ଏବଂ ଯେ ପରମାତ୍ମପ୍ରାପ୍ତିପାଇଁ ସାଧନା କରୁଛନ୍ତି, ସେପରି ସାଧକ ନିଜର ସୁଖଭୋଗପାଇଁ କିଛି ନ ଚାହୁଁଥିଲେ ମଧ୍ୟ ଶରୀରନିର୍ବାହପାଇଁ କୌଣସି ନା କୌଣସିରୂପରେ ଅନ୍ୟ ପ୍ରାଣୀଙ୍କ ସହ କିଛି ନା କିଛି ସ୍ୱାର୍ଥସମ୍ବନ୍ଧ ରଖିଥାନ୍ତି। ଅତଏବ ଶାସ୍ତ୍ର ଆଜ୍ଞାନୁସାରେ କର୍ମଗ୍ରହଣ ବା କର୍ମତ୍ୟାଗ ହେଉଛି ତାଙ୍କର କର୍ତ୍ତବ୍ୟ। କିନ୍ତୁ ସଚ୍ଚିଦାନନ୍ଦ ପରମାତ୍ମାଙ୍କୁ ପାଇଥିବା ଜ୍ଞାନୀଙ୍କର ଦେହାଭିମାନ ନ ଥିବାରୁ, ସେ ଜୀବନକୁ ମଧ୍ୟ ଲକ୍ଷ୍ୟ କରନ୍ତି ନାହିଁ; ଏପରି ସ୍ଥିତିରେ ତାଙ୍କର ଶରୀରନିର୍ବାହ ପ୍ରାରବ୍ଧ ଅନୁସାରେ ସ୍ୱତଃ ହେଉଥାଏ। ତେଣୁ ତାଙ୍କର କୌଣସି ପ୍ରାଣୀ ସହିତ କୌଣସିପ୍ରକାର ସ୍ୱାର୍ଥସମ୍ବନ୍ଧ ରହେ ନାହିଁ ଏବଂ ତେଣୁ ତାଙ୍କର କୌଣସି କର୍ତ୍ତବ୍ୟ ବାକି ରହି ନ ଥାଏ। ସେ ସର୍ବଥା କୃତକୃତ୍ୟ ହୋଇଯାଇଥାନ୍ତି।

**ପ୍ରଶ୍ନ—** ଏପରି ସ୍ଥିତିରେ ତାଙ୍କ ଦ୍ୱାରା କାହିଁକି କର୍ମ କରାଯାଏ?

**ଉତ୍ତର—** ତାଙ୍କ ଦ୍ୱାରା କର୍ମ କରାଯାଏ ନାହିଁ; ପ୍ରାରବ୍ଧ ଅନୁସାରେ ଲୌକିକ ଦୃଷ୍ଟିରୁ ଲୋକମାନଙ୍କର ମଙ୍ଗଳପାଇଁ କର୍ମ ହେଉଥାଏ, କିନ୍ତୁ ବାସ୍ତବରେ ତାଙ୍କର ସେହି କର୍ମ ସହିତ କୌଣସି ସମ୍ବନ୍ଧ ନ ଥାଏ। ତେଣୁ ସେହି କର୍ମକୁ କର୍ମ ବୋଲି ଗ୍ରହଣ କରାଯାଏ ନାହିଁ।

*ସମ୍ବନ୍ଧ— ଏପର୍ଯ୍ୟନ୍ତ ଭଗବାନ୍ ବହୁ କାରଣ ଦେଇ ସିଦ୍ଧ କରିଛନ୍ତି ଯେ, ଯେପର୍ଯ୍ୟନ୍ତ ମନୁଷ୍ୟର ପରମଶ୍ରେୟରୂପକ ପରମାତ୍ମପ୍ରାପ୍ତି ନ ହୋଇଛି, ସେପର୍ଯ୍ୟନ୍ତ ସ୍ୱଧର୍ମପାଳନ ଅର୍ଥାତ୍ ନିଃସ୍ୱାର୍ଥଭାବରେ ନିଜର ବର୍ଣ୍ଣାଶ୍ରମ ଅନୁସାରେ ବିହିତ କର୍ମ ଅନୁଷ୍ଠାନ ଅବଶ୍ୟକର୍ତ୍ତବ୍ୟ ଏବଂ ପରମାତ୍ମାଙ୍କୁ ପ୍ରାପ୍ତ ପୁରୁଷଙ୍କ ପାଇଁ କୌଣସିପ୍ରକାର କର୍ତ୍ତବ୍ୟ ବାକି ନ ରହିଥିଲେ ମଧ୍ୟ ତାଙ୍କର ମନ-ଇନ୍ଦ୍ରିୟଦ୍ୱାରା ଲୋକସଂଗ୍ରହପାଇଁ ପ୍ରାରବ୍ଧ ଅନୁସାରେ କର୍ମ ହେଉଥାଏ। ବର୍ତ୍ତମାନ ଉପର୍ଯ୍ୟୁକ୍ତ ବର୍ଣ୍ଣନାକୁ ଲକ୍ଷ୍ୟ କରି ଭଗବାନ୍ ଅର୍ଜୁନଙ୍କୁ ଅନାସକ୍ତଭାବରେ କର୍ତ୍ତବ୍ୟକର୍ମ କରିବାକୁ ଆଜ୍ଞା ଦେଉଛନ୍ତି—*

**ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର।**
**ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ॥ ୧୯ ॥**

ଅନ୍ୱୟ— ତସ୍ମାତ୍ = ତେଣୁ (ତୁମେ); ସତତମ୍ = ନିରନ୍ତର; ଅସକ୍ତଃ = ଆସକ୍ତିରହିତ ହୋଇ (ସର୍ବଦା); **କାର୍ଯ୍ୟମ୍,** **କର୍ମ** = କର୍ତ୍ତବ୍ୟକର୍ମ; **ସମାଚର** = ଭଲଭାବରେ କର; **ହି** = କାରଣ; **ଅସକ୍ତଃ** = ଆସକ୍ତିରୁ ରହିତ ହୋଇ; **କର୍ମ** = କର୍ମ; **ଆଚରନ୍** = ଆଚରଣ କରୁ କରୁ; **ପୁରୁଷଃ** = ମନୁଷ୍ୟ; **ପରମ୍** = ପରମାତ୍ମାଙ୍କୁ; **ଆପ୍ନୋତି** = ପ୍ରାପ୍ତ ହୋଇଯାଏ ।

**ତେଣୁ ନିରନ୍ତର ଆସକ୍ତିରହିତ ହୋଇ ନିଷ୍ଠାର ସହିତ କର୍ତ୍ତବ୍ୟକର୍ମ କର; କାରଣ ଆସକ୍ତିରହିତ ହୋଇ କର୍ମ କରୁଥିବା ମନୁଷ୍ୟ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ ।। ୧୯ ।।**

**ପ୍ରଶ୍ନ— ତସ୍ମାତ୍** ପଦର ଭାବ କଣ ?

**ଉତ୍ତର— ତସ୍ମାତ୍** ପଦ ଏଠାରେ ପୂର୍ବଶ୍ଳୋକମାନଙ୍କ ସହିତ ସମ୍ବନ୍ଧ ରକ୍ଷା କରୁଛି। ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି, ''ଏପର୍ଯ୍ୟନ୍ତ ଯେଉଁ ଯେଉଁ କାରଣରୁ ସ୍ୱଧର୍ମ ପାଳନ ପରମ ଆବଶ୍ୟକ ବୋଲି ମୁଁ ସିଦ୍ଧ କରିଛି, ସେହି ସମସ୍ତ କାରଣ ଉପରେ ବିଚାର କଲେ ଏହା ସ୍ପଷ୍ଟ ହୋଇଯାଏ ଯେ, ପୂର୍ଣ୍ଣଭାବରେ ସ୍ୱଧର୍ମପାଳନ କଲେ, ନିଶ୍ଚିତରୂପେ ତୁମର ମଙ୍ଗଳ ହେବ। ତେଣୁ ତୁମେ ନିଜର ବର୍ଣ୍ଣାଶ୍ରମଧର୍ମ ଅନୁସାରେ କର୍ମ କରିବା ଉଚିତ।''

**ପ୍ରଶ୍ନ— ଅସକ୍ତଃ** ପଦର ଭାବ କଣ ?

**ଉତ୍ତର— ଅସକ୍ତଃ** ପଦଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ସମସ୍ତ କର୍ମରେ ଏବଂ ସେସବୁର ଫଳରୂପୀ ସମସ୍ତ ଭୋଗରେ ଆସକ୍ତି ତ୍ୟାଗ କରି କର୍ମ କରିବାକୁ କହିଛନ୍ତି। କାମନାତ୍ୟାଗ ଆସକ୍ତିତ୍ୟାଗର ଅନ୍ତର୍ଗତ; କାରଣ, ଆସକ୍ତିରୁ କାମନାର ଉତ୍ପତ୍ତି ହୁଏ (୨/୬୨)। ତେଣୁ ଏଠାରେ ଫଳ ଇଚ୍ଛା ତ୍ୟାଗ କରିବାକୁ ପୃଥକ୍‌ରୂପେ କୁହାଯାଇ ନାହିଁ।

**ପ୍ରଶ୍ନ— ସତତମ୍** ପଦର ଭାବ କଣ ?

**ଉତ୍ତର—** ଭଗବାନ୍ ପ୍ରଥମରୁ କହି ଆସିଛନ୍ତି ଯେ, କୌଣସି ବି ଲୋକ କର୍ମ ନ କରି କ୍ଷଣେମାତ୍ର ରହିପାରିବ ନାହିଁ (୩/୫); ଏଥିରୁ ସିଦ୍ଧ ହେଲା ଯେ, ମନୁଷ୍ୟ ନିରନ୍ତର କିଛି ନା କିଛି କାମ କରୁଥାଏ। ତେଣୁ ଏଠାରେ **ସତତମ୍** ପଦ ପ୍ରୟୋଗ କରି ଭଗବାନ୍ କହିଛନ୍ତି, ''ତୁମେ ସଦାସର୍ବଦା ଯେତେ କର୍ମ କର ନା କାହିଁକି, ସେହି ସମସ୍ତ କର୍ମରେ ଓ ତାହାର ଫଳରେ ଆସକ୍ତିରହିତ ହୋଇ କର। କୌଣସି କର୍ମ କୌଣସି ସମୟରେ ଆସକ୍ତିପୂର୍ବକ କର ନାହିଁ।''

**ପ୍ରଶ୍ନ— କର୍ମ** ପଦ ସହିତ **କାର୍ଯ୍ୟମ୍** ବିଶେଷଣ ଦେବାର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହିଛନ୍ତି, ''ତୁମପାଇଁ ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଯେଉଁ କର୍ମ କର୍ତ୍ତବ୍ୟ, ତୁମେ ସେହି କର୍ମ କରିବା ଉଚିତ; ପରଧର୍ମର କର୍ମ, ନିଷିଦ୍ଧକର୍ମ ଏବଂ ବ୍ୟର୍ଥ ବା କାମ୍ୟକର୍ମ କରିବା ଉଚିତ ନୁହେଁ।''

**ପ୍ରଶ୍ନ— ସମାଚର** କ୍ରିୟାର ଭାବ କଣ ?

**ଉତ୍ତର— ଆଚର** କ୍ରିୟା ସହିତ **ସମ୍** ଉପସର୍ଗର ପ୍ରୟୋଗ କରି ଭଗବାନ୍ କହୁଛନ୍ତି, ''ସେହି କର୍ମକୁ ତୁମେ ସାବଧାନ ହୋଇ ବିଧିପୂର୍ବକ ଯଥାଯୋଗ୍ୟ ଆଚରଣ କର। ଏପରି ନ କରି ଅସାବଧାନ ହୋଇ କଲେ, କର୍ମରେ ତ୍ରୁଟି ରହିଯାଇପାରେ ଏବଂ ସେହି କାରଣରୁ ତୁମର ପରମ ଶ୍ରେୟପ୍ରାପ୍ତିରେ ବିଳମ୍ବ ହୋଇପାରେ।''

**ପ୍ରଶ୍ନ—** 'ଆସକ୍ତିରହିତ ହୋଇ କର୍ମ କରୁଥିବା ପୁରୁଷ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ'— ଏହାର ଭାବ କଣ ?

**ଉତ୍ତର—** ଏଥିରେ ଭଗବାନ୍ ଉପର୍ଯ୍ୟୁକ୍ତ କର୍ମଯୋଗର ଫଳ କହୁଛନ୍ତି। ଅଭିପ୍ରାୟ ଏହି ଯେ, ଉପର୍ଯ୍ୟୁକ୍ତପ୍ରକାରେ ଆସକ୍ତି ତ୍ୟାଗ କରି କର୍ତ୍ତବ୍ୟ କର୍ମ ଆଚରଣ କରୁଥିବା ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇ ପରମ ପୁରୁଷ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ; ଏହା କର୍ମଯୋଗର ମହତ୍ତ୍ୱ। ତେଣୁ ସମସ୍ତ କର୍ମ ଉପର୍ଯ୍ୟୁକ୍ତପ୍ରକାରେ କରିବା ଉଚିତ।

*ସମ୍ବନ୍ଧ— ପୂର୍ବଶ୍ଳୋକରେ ଭଗବାନ୍ କହିଥିଲେ ଯେ, ଆସକ୍ତିରହିତ ହୋଇ କର୍ମ କରୁଥିବା ମନୁଷ୍ୟ ପରମାତ୍ମାଙ୍କୁ ପାଇଯାଏ। ସେହି କଥାକୁ ପୁଷ୍ଟ କରିବା ପାଇଁ ଜନକାଦିଙ୍କ ପ୍ରମାଣ ଦେଇ ପୁଣି ଥରେ ଅର୍ଜୁନଙ୍କୁ କର୍ମ କରିବା ଉଚିତ ବୋଲି କହୁଛନ୍ତି—*

**କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ ।**
**ଲୋକସଂଗ୍ରହମେବାପି ସଂପଶ୍ୟନ୍ କର୍ତ୍ତୁମର୍ହସି ।। ୨୦ ।।**

**ଅନ୍ୱୟ—** **ଜନକାଦୟଃ** = ଜନକ ଆଦି ଜ୍ଞାନୀମାନେ (ମଧ୍ୟ); **କର୍ମଣା** = (ଆସକ୍ତି ରହିତ) କର୍ମଦ୍ୱାରା; **ଏବ** = ହିଁ; **ସଂସିଦ୍ଧିମ୍** = ପରମସିଦ୍ଧିକୁ; **ଆସ୍ଥିତାଃ** = ପ୍ରାପ୍ତ ହୋଇଥିଲେ; **ହି** = ତେଣୁ, (ତଥା); **ଲୋକସଂଗ୍ରହମ୍** = ଲୋକକଲ୍ୟାଣକୁ; **ସମ୍ପଶ୍ୟନ୍** = ଦେଖି ଦେଖି; **ଅପି** = ମଧ୍ୟ (ତୁମେ); **କର୍ତ୍ତୁମ୍** = (କର୍ମ) କରିବାକୁ; **ଏବ** = ହିଁ; **ଅର୍ହସି** = ଯୋଗ୍ୟ ଅର୍ଥାତ୍ ତୁମର କର୍ମ କରିବା ଉଚିତ।

**ଜନକାଦି ଜ୍ଞାନୀମାନେ ମଧ୍ୟ ଆସକ୍ତିରହିତ କର୍ମଦ୍ୱାରା ହିଁ ପରମସିଦ୍ଧି ପ୍ରାପ୍ତ ହୋଇଥିଲେ। ସେଥିପାଇଁ ତଥା ଲୋକକଲ୍ୟାଣ ଦୃଷ୍ଟିରୁ ତୁମେ କର୍ମ କରିବା ହିଁ ଉଚିତ।। ୨୦ ।।**

**ପ୍ରଶ୍ନ—** **ଜନକାଦୟଃ** ପଦରେ କେଉଁ ଲୋକମାନଙ୍କୁ ସଙ୍କେତ କରାଯାଇଛି ଏବଂ ସେହି ଲୋକେ ମଧ୍ୟ କର୍ମଦ୍ୱାରା ପରମସିଦ୍ଧି ପ୍ରାପ୍ତ ହୋଇଥିଲେ ବୋଲି କହିବାର ଭାବ କଣ ?

**ଉତ୍ତର—** ଭଗବାନଙ୍କର ଏହି ଉପଦେଶକାଳପର୍ଯ୍ୟନ୍ତ ରାଜା ଜନକଙ୍କ ପରି ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି କେବଳ ପରମାତ୍ମପ୍ରାପ୍ତିପାଇଁ କର୍ମ କରିଥିବା ଅଶ୍ୱପତି, ଇକ୍ଷ୍ୱାକୁ, ପ୍ରହ୍ଲାଦ, ଅମ୍ବରୀଷ ଆଦି ଯେତେ ମହାପୁରୁଷ ହୋଇସାରିଥିଲେ, ସେହି ସମସ୍ତଙ୍କର ସଂକେତ **ଜନକାଦୟଃ** ପଦଦ୍ୱାରା କରାଯାଇଛି। ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଆସକ୍ତିରହିତ ମନୁଷ୍ୟ ପରମାତ୍ମାଙ୍କୁ ପାଇଯାଏ; ତାହା ପ୍ରମାଣଦ୍ୱାରା ସିଦ୍ଧ କରିବା ପାଇଁ ଏଠାରେ କୁହାଯାଇଛି ଯେ, ପୂର୍ବକାଳରେ ଜନକାଦି ପ୍ରଧାନ ପ୍ରଧାନ ମହାପୁରୁଷ ମଧ୍ୟ ଆସକ୍ତିରହିତ କର୍ମଦ୍ୱାରା ପରମସିଦ୍ଧି ପାଇଥିଲେ। ଅଭିପ୍ରାୟ ଏହି ଯେ, ଆଜିପର୍ଯ୍ୟନ୍ତ ବହୁ ମହାପୁରୁଷ ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି କର୍ମଯୋଗଦ୍ୱାରା ପରମାତ୍ମାଙ୍କୁ ପାଇସାରିଛନ୍ତି; ଏହା କୌଣସି ନୂଆ କଥା ନୁହେଁ। ଏଣୁ ଏହା ଯେ ପରମାତ୍ମପ୍ରାପ୍ତିର ସ୍ୱତନ୍ତ୍ର ଓ ନିଶ୍ଚିତ ମାର୍ଗ, ଏଥିରେ କୌଣସିପ୍ରକାର ସନ୍ଦେହ ନାହିଁ।

**ପ୍ରଶ୍ନ—** ପରମାତ୍ମପ୍ରାପ୍ତି ତ ତତ୍ତ୍ୱଜ୍ଞାନଦ୍ୱାରା ହୁଏ; ପୁଣି ଏଠାରେ ଆସକ୍ତିରହିତ କର୍ମକୁ ପରମାତ୍ମପ୍ରାପ୍ତିର ଦ୍ୱାର ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଆସକ୍ତିରହିତ କର୍ମଦ୍ୱାରା ଯାହାଙ୍କର ଅନ୍ତଃକରଣ ଶୁଦ୍ଧ ହୋଇଯାଏ, ତାଙ୍କୁ ପରମାତ୍ମାଙ୍କ କୃପାରେ ତତ୍ତ୍ୱଜ୍ଞାନ ସ୍ୱତଃ ମିଳିଯାଏ (୪/୩୮) ତଥା କର୍ମଯୋଗନିଷ୍ଠ ମୁନି ତତ୍କାଳ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଆନ୍ତି (୫/୬)। ତେଣୁ ଏଠାରେ ଆସକ୍ତିରହିତ କର୍ମକୁ ପରମାତ୍ମପ୍ରାପ୍ତିର ଦ୍ୱାର ବୋଲି କୁହାଯାଇଛି।

**ପ୍ରଶ୍ନ—** **ଲୋକସଂଗ୍ରହ** କାହାକୁ କହନ୍ତି ତଥା ଏଠାରେ ଲୋକସଂଗ୍ରହଦୃଷ୍ଟିରୁ କର୍ମ କରିବା ଉଚିତ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ସୃଷ୍ଟିସଂଚାଳନକୁ ସୁରକ୍ଷିତ କରି ରଖିବା ତଥା ତାହାର ବ୍ୟବସ୍ଥାରେ କୌଣସିପ୍ରକାର ବାଧା ସୃଷ୍ଟି ନ କରି ସେଥିରେ ସହାୟକ ହେବାକୁ **ଲୋକସଂଗ୍ରହ** କୁହାଯାଏ। ଅର୍ଥାତ୍ ସମସ୍ତ ପ୍ରାଣୀଙ୍କର ଭରଣପୋଷଣ ଏବଂ ରକ୍ଷଣଦାୟିତ୍ୱ ମନୁଷ୍ୟ ଉପରେ; ତେଣୁ ନିଜର ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ନିଷ୍ପାପରଭାବରେ କର୍ତ୍ତବ୍ୟକର୍ମ ଆଚରଣ କରି ନିଜର ଆଦର୍ଶଦ୍ୱାରା ଅନ୍ୟଲୋକଙ୍କୁ ଦୁର୍ଗୁଣ ଓ ଦୁରାଚାରରୁ ନିବର୍ତ୍ତାଇ ସ୍ୱଧର୍ମରେ ଲଗାଇଦେବାର ନାମ ହିଁ **ଲୋକସଂଗ୍ରହ**।

ଏଠାରେ ଅର୍ଜୁନଙ୍କୁ ଲୋକସଂଗ୍ରହଦୃଷ୍ଟିରୁ କର୍ମ କରିବା ଉଚିତ ବୋଲି କହି ଭଗବାନ୍ ବୁଝାଉଛନ୍ତି, ''କଲ୍ୟାଣ ଇଚ୍ଛା କରୁଥିବା ମନୁଷ୍ୟ ପରମଶ୍ରେୟରୂପକ ପରମାତ୍ମାଙ୍କୁ ପାଇବାପାଇଁ ଆସକ୍ତିରହିତ ହୋଇ କର୍ମ କରିବା ଉଚିତ; ଏହା ଛଡ଼ା ଲୋକକଲ୍ୟାଣପାଇଁ ମଧ୍ୟ ମନୁଷ୍ୟ କର୍ମ କରିବା ଉଚିତ; ତେଣୁ ତୁମେ ଲୋକକଲ୍ୟାଣ ଦୃଷ୍ଟିରୁ ଅର୍ଥାତ୍, 'ଯଦି ମୁଁ କର୍ମ ନ କରିବି; ତେବେ ମୋରି ଆଦର୍ଶରେ ମୋତେ ଅନୁକରଣ କରୁଥିବା ଅନ୍ୟ ଲୋକମାନେ ମଧ୍ୟ ନିଜର କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବେ, ଯାହାଦ୍ୱାରା କି ସୃଷ୍ଟିରେ ବିପ୍ଳବ ହୋଇଯିବ ଏବଂ ସୃଷ୍ଟିର ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇଯିବ; ତେଣୁ ସୃଷ୍ଟିର ସୁବ୍ୟବସ୍ଥା ବଜାୟ ରଖିବାପାଇଁ ମୋତେ ମୋର କର୍ତ୍ତବ୍ୟ ପାଳନ କରିବାକୁ ହେବ,' ଏପରି ବିଚାର କରି କର୍ମ କରିବା ଉଚିତ; କର୍ତ୍ତବ୍ୟକର୍ମ ତ୍ୟାଗ କରିବା ତୁମ ପକ୍ଷରେ କୌଣସିପ୍ରକାରେ ଉଚିତ ନୁହେଁ।''

**ପ୍ରଶ୍ନ—** ଲୋକସଂଗ୍ରହ ପାଇଁ କର୍ମ କେବଳ ପରମାତ୍ମପ୍ରାପ୍ତ ଜ୍ଞାନୀପୁରୁଷଙ୍କ ଦ୍ୱାରା ହୁଏ, ନା ସାଧକ ମଧ୍ୟ କରିପାରିବ ?

**ଉତ୍ତର—** ଜ୍ଞାନୀଙ୍କ ପାଇଁ ତାଙ୍କ ନିଜର ବୋଲି କୌଣସି କର୍ତ୍ତବ୍ୟ ନ ଥାଏ। ତେଣୁ ତାଙ୍କର ସମସ୍ତ

କର୍ମ କେବଳ ଲୋକକଲ୍ୟାଣପାଇଁ ହିଁ ହୁଏ। ସାଧକମାନେ ବି ଜ୍ଞାନୀଙ୍କ ଆଦର୍ଶରେ ଲୋକକଲ୍ୟାଣ କର୍ମ କରିପାରିବେ। ଅବଶ୍ୟ ସେମାନେ ପୂର୍ଣ୍ଣରୂପରେ ଏହା କରିପାରିବେ ନାହିଁ; କାରଣ ଯେପର୍ଯ୍ୟନ୍ତ ପୂର୍ଣ୍ଣଭାବରେ ଅଜ୍ଞାନ ନିବୃତ୍ତ ନ ହୋଇଛି, ସେପର୍ଯ୍ୟନ୍ତ କିଛି ନା କିଛି ଅଂଶରେ ସ୍ୱାର୍ଥ ରହିଥିବ ଏବଂ ଯେପର୍ଯ୍ୟନ୍ତ ସ୍ୱାର୍ଥର ଟିକିଏ ବି ସମ୍ବନ୍ଧ ରହିଛି, ସେପର୍ଯ୍ୟନ୍ତ ପୂର୍ଣ୍ଣଭାବରେ କେବଳ ଲୋକକଲ୍ୟାଣାର୍ଥ କର୍ମ ହୋଇପାରିବ ନାହିଁ।

**ପ୍ରଶ୍ନ —** ଯଦି ଜ୍ଞାନୀଙ୍କ ପାଇଁ କର୍ତ୍ତବ୍ୟ ବୋଲି କିଛି ନାହିଁ ଏବଂ ତାଙ୍କ ଦୃଷ୍ଟିରେ କର୍ମର କୌଣସି ମହତ୍ତ୍ୱ ମଧ୍ୟ ନାହିଁ, ତେବେ ତାଙ୍କର ଲୋକକଲ୍ୟାଣାର୍ଥ କର୍ମ କରିବା ଲୋକଙ୍କୁ ଦେଖାଇ ହେବାପାଇଁ ହେଉଥିବ କି ?

**ଉତ୍ତର —** ଜ୍ଞାନୀଙ୍କ ପାଇଁ କର୍ତ୍ତବ୍ୟ ବୋଲି କିଛି ନ ରହିଥିଲେ ମଧ୍ୟ, ସେ ଯାହା କିଛି କର୍ମ କରନ୍ତି, ତାହା ଲୋକଦେଖାଣିଆ ଭାବେ କରନ୍ତି ନାହିଁ। କାରଣ ମନରେ କର୍ମର କୌଣସି ମହତ୍ତ୍ୱ ନ ରଖି କେବଳ ଉପରକୁ ଲୋକମାନଙ୍କ ଆଗରେ ଦେଖାଇହେବା ପାଇଁ କାମ କରିବା ତ ଏକପ୍ରକାର ଦମ୍ଭ; କିନ୍ତୁ ଜ୍ଞାନୀଙ୍କ ଠାରେ ଦମ୍ଭ ରହିପାରେ ନାହିଁ। ଅତଏବ ସେ ଯାହା କିଛି କରନ୍ତି, ତାହା ଲୋକକଲ୍ୟାଣାର୍ଥେ ଆବଶ୍ୟକ ଏବଂ ମହତ୍ତ୍ୱପୂର୍ଣ୍ଣ ବୋଲି ବୁଝି କରନ୍ତି; ସେଥିରେ ଦେଖାଉହେବା ନ ଥାଏ; ଆସକ୍ତି ନ ଥାଏ; କାମନା ବା ଅହଙ୍କାର ମଧ୍ୟ ନ ଥାଏ। ଜ୍ଞାନୀଙ୍କ କର୍ମ ଯେଉଁଭାବରେ ହୁଏ, ତାହା ଅନ୍ୟ କେହି ଜାଣିପାରିବେ ନାହିଁ। ତେଣୁ ତାଙ୍କର କର୍ମ ଅତ୍ୟନ୍ତ ଅଲୌକିକ ବୋଲି ସ୍ୱୀକାର କରାଯାଏ।

*ସମ୍ବନ୍ଧ — ପୂର୍ବଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ଲୋକସଂଗ୍ରହଦୃଷ୍ଟିରୁ କର୍ମ କରିବା ଉଚିତ ବୋଲି କହିଛନ୍ତି। ଏହା ଉପରେ ପ୍ରଶ୍ନ ହୁଏ: କର୍ମ କରିବାଦ୍ୱାରା କେଉଁପ୍ରକାର ଲୋକସଂଗ୍ରହ ହୁଏ ? ତାହା ବୁଝାଇଦେବାକୁ ଭଗବାନ୍ କହୁଛନ୍ତି—*

**ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ।**
**ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥ ୨୧ ॥**

**ଅନ୍ୱୟ —** **ଶ୍ରେଷ୍ଠଃ** = ଶ୍ରେଷ୍ଠ ପୁରୁଷ; **ଯତ୍, ଯତ୍** = ଯାହା ଯାହା; **ଆଚରତି** = ଆଚରଣ କରେ; **ଇତରଃ** = ଅନ୍ୟ; **ଜନଃ** = ପୁରୁଷ (ମଧ୍ୟ); **ତତ୍, ତତ୍** = ତାହା ତାହା; **ଏବ** = ହିଁ (ଆଚରଣ କରେ); **ସଃ** = ସେ; **ଯତ୍** = ଯାହା କିଛି; **ପ୍ରମାଣମ୍** = ପ୍ରମାଣ; **କୁରୁତେ** = କରିଦିଏ; **ଲୋକଃ** = ସମସ୍ତ ମନୁଷ୍ୟ; **ତତ୍** = ତାହାକୁ; **ଅନୁବର୍ତ୍ତତେ** = ଅନୁକରଣ କରନ୍ତି।

**ଶ୍ରେଷ୍ଠ ପୁରୁଷ ଯେଉଁ ଯେଉଁ ଆଚରଣ କରନ୍ତି, ଅନ୍ୟ ପୁରୁଷମାନେ ମଧ୍ୟ ସେହି ସେହି ଆଚରଣ କରନ୍ତି ଏବଂ ସେ ଯାହା କିଛି ପ୍ରମାଣ କରିଦିଅନ୍ତି, ସମସ୍ତ ମନୁଷ୍ୟ ତାହା ଅନୁକରଣ କରନ୍ତି।। ୨୧ ।।**

**ପ୍ରଶ୍ନ —** ଏଠାରେ **ଶ୍ରେଷ୍ଠ** ପଦ କେଉଁ ମନୁଷ୍ୟଙ୍କ ବାଚକ ?

**ଉତ୍ତର —** ଯେ ନିଜର ଉତ୍ତମ ଗୁଣ ଏବଂ ଆଚରଣ ହେତୁ ସଂସାରରେ ଧର୍ମାତ୍ମା ବୋଲି ବିଖ୍ୟାତ ହୋଇଯାନ୍ତି, ଜଗତର ଅଧିକାଂଶ ଲୋକ ଯାହାଙ୍କ ଉପରେ ଶ୍ରଦ୍ଧା ଓ ବିଶ୍ୱାସ ରଖନ୍ତି, ଏଠାରେ **ଶ୍ରେଷ୍ଠ** ପଦଟି ହେଉଛି ସେହି ପ୍ରସିଦ୍ଧ ମାନନୀୟ ମହାତ୍ମା ଜ୍ଞାନୀଙ୍କ ବାଚକ।

**ପ୍ରଶ୍ନ —** 'ଶ୍ରେଷ୍ଠ ପୁରୁଷ ଯେଉଁ ଯେଉଁ କର୍ମ କରନ୍ତି, ଅନ୍ୟ ଲୋକେ ମଧ୍ୟ ସେହି ସେହି କର୍ମ କରନ୍ତି', — ଏହି ବାକ୍ୟର ଭାବ କଣ ?

**ଉତ୍ତର —** ଏହି ବାକ୍ୟରେ ଭଗବାନ୍ କହୁଛନ୍ତି, ଉପର୍ଯ୍ୟୁକ୍ତ ମହାତ୍ମା ଯଦି ନିଜର ବର୍ଣ୍ଣ-ଆଶ୍ରମର ଧର୍ମକୁ ଭଲଭାବରେ ଅନୁଷ୍ଠାନ କରନ୍ତି, ତେବେ ଅନ୍ୟ ଲୋକେ ମଧ୍ୟ ତାଙ୍କ ଦେଖା-ଦେଖି ନିଜ ନିଜର ବର୍ଣ୍ଣାଶ୍ରମ ଧର୍ମ ପାଳନ କରିବାରେ ଶ୍ରଦ୍ଧାପୂର୍ବକ ଲାଗିରହନ୍ତି; ଏହାଦ୍ୱାରା ସୃଷ୍ଟିର ବ୍ୟବସ୍ଥା ସୁଚାରୁରୂପରେ ଚାଲୁଥାଏ; କୌଣସିପ୍ରକାର ବାଧା ଉତ୍ପନ୍ନ ହୁଏ ନାହିଁ। କିନ୍ତୁ ଯଦି କେହି ଧର୍ମାତ୍ମା ଜ୍ଞାନୀ ମହାତ୍ମାପୁରୁଷ ନିଜର ବର୍ଣ୍ଣାଶ୍ରମ ଧର୍ମ ତ୍ୟାଗ କରିଦିଅନ୍ତି, ତେବେ ଲୋକମାନଙ୍କ ଉପରେ ମଧ୍ୟ ତାହାର ପ୍ରଭାବ ପଡ଼େ। ସେମାନେ ଭାବନ୍ତି ଯେ,

ବାସ୍ତବରେ କର୍ମରେ କିଛି ସାର ନାହିଁ; ଯଦି କର୍ମରେ କିଛି ସାର ଥାଆନ୍ତା, ତେବେ ଅମୁକ ମହାପୁରୁଷ ସେସବୁକୁ କାହିଁକି ଛାଡ଼ିଦେଇଥାନ୍ତେ ? ଏପରି ବୁଝି ସେମାନେ ସେହି ଶ୍ରେଷ୍ଠ ପୁରୁଷଙ୍କ ଦେଖାଦେଖି ନିଜର ବର୍ଣ୍ଣାଶ୍ରମପାଇଁ ଥିବା ବିହିତ ନିୟମ ଓ ଧର୍ମ ତ୍ୟାଗ କରିଦିଅନ୍ତି। ଏପରି ହେଲେ ସଂସାରରେ ବଡ଼ ବିଶୃଙ୍ଖଳା ସୃଷ୍ଟି ହୋଇଯାଏ ଏବଂ ସମସ୍ତ ବ୍ୟବସ୍ଥା ଛିନ୍ନ-ଭିନ୍ନ ହୋଇଯାଏ। ଅତଏବ ମହାତ୍ମା ପୁରୁଷ ଲୋକକଲ୍ୟାଣ ପ୍ରତି ଧ୍ୟାନ ରଖି ନିଜ ନିଜର ବର୍ଣ୍ଣ-ଆଶ୍ରମ ଅନୁସାରେ ସାବଧାନ ହୋଇ ଯଥାଯୋଗ୍ୟ ସମସ୍ତକର୍ମର ଅନୁଷ୍ଠାନ କରିଚାଲିବା ଉଚିତ; କର୍ମରେ କୌଣସିପ୍ରକାର ଅବହେଳା କରିବା ବା କର୍ମ ତ୍ୟାଗ କରିବା ଉଚିତ ନୁହେଁ।

**ପ୍ରଶ୍ନ –** 'ସେ ଯାହା କିଛି ପ୍ରମାଣ କରିଦିଅନ୍ତି, ଲୋକେ ତାହା ଅନୁସରଣ କରନ୍ତି',– ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ବୁଝାଉଛନ୍ତି, ଯଦି ଶ୍ରେଷ୍ଠପୁରୁଷ ସ୍ୱୟଂ ଆଚରଣ କରି ଏବଂ ଲୋକଙ୍କୁ ଶିକ୍ଷା ଦେଇ କୌଣସି କଥା ପ୍ରମାଣିତ କରିଦିଅନ୍ତି ଅର୍ଥାତ୍ ଲୋକଙ୍କର ଅନ୍ତଃକରଣରେ ବିଶ୍ୱାସ ଜନ୍ମାଇଦିଅନ୍ତି ଯେ, ଅମୁକ ଲୋକ ଅମୁକ କର୍ମ ଏହିପରି କରିବା ଉଚିତ ଏବଂ ଅମୁକ କର୍ମ ଏହିପରି କରିବା ଉଚିତ ନୁହେଁ, ତେବେ ତାଙ୍କର କଥା ଅନୁସାରେ ସାଧାରଣ ମନୁଷ୍ୟମାନେ ଚେଷ୍ଟା କରିବାରେ ଲାଗିଯାଆନ୍ତି। ତେଣୁ ସମ୍ମାନନୀୟ ଶ୍ରେଷ୍ଠଜ୍ଞାନୀ ମହାପୁରୁଷ ସୃଷ୍ଟିର ବ୍ୟବସ୍ଥା ଠିକ୍ ରଖିବା ଉଦ୍ଦେଶ୍ୟରେ ଅତ୍ୟନ୍ତ ସାବଧାନତାପୂର୍ବକ ସ୍ୱୟଂ କର୍ମ କରି, ଲୋକଙ୍କୁ ଶିକ୍ଷା ଦେଇ ସେମାନଙ୍କୁ ନିଜ ନିଜ କର୍ତ୍ତବ୍ୟରେ ନିୟୋଜିତ କରିବା ଉଚିତ ଏବଂ ତାଙ୍କର ଉପଦେଶ ବା ଆଚରଣ ସଂସାରର ବ୍ୟବସ୍ଥାକୁ ସୁରକ୍ଷିତ ରଖୁଥିବା ବର୍ଣ୍ଣାଶ୍ରମଧର୍ମରେ ବା ମାନବଧର୍ମର ପରମ୍ପରାରେ ଯେପରି ଟିକିଏ ହେଲେ ଆଘାତ ନ ଲଗାଏ ଅର୍ଥାତ୍ ସେହି କର୍ମରେ ଲୋକଙ୍କର ଶ୍ରଦ୍ଧା ଓ ରୁଚି ଯେପରି କମ୍ ହୋଇ ନ ଯାଏ, ସେଥିପ୍ରତି ସେ ପୂର୍ଣ୍ଣଧ୍ୟାନ ଦେବା ଆବଶ୍ୟକ।

**ପ୍ରଶ୍ନ –** ଯଦି ଶ୍ରେଷ୍ଠ ମହାପୁରୁଷଙ୍କ ଆଚରଣକୁ ସମସ୍ତେ ଅନୁସରଣ କରନ୍ତି, ତେବେ ଏହା କହିବାର କି ଆବଶ୍ୟକତା ଥିଲା ଯେ, ସେ ଯାହା କିଛି ପ୍ରମାଣ କରିଦିଅନ୍ତି, ଲୋକେ ସେହି ଅନୁସାରେ ଆଚରଣ କରନ୍ତି ?

**ଉତ୍ତର –** ସଂସାରର ସମସ୍ତ ଲୋକଙ୍କ କର୍ତ୍ତବ୍ୟ ଏକାପରି ହୁଏ ନାହିଁ। ଦେଶ, ସମାଜ ଓ ନିଜ ନିଜର ବର୍ଣ୍ଣାଶ୍ରମ, ସମୟ ଏବଂ ସ୍ଥିତି ଅନୁସାରେ ଲୋକଙ୍କ କର୍ତ୍ତବ୍ୟ ଭିନ୍ନ ଭିନ୍ନ ହୋଇଥାଏ। ପୃଥକ୍ ପୃଥକ୍‌ଭାବରେ ସମସ୍ତଙ୍କ କର୍ତ୍ତବ୍ୟକର୍ମକୁ ସ୍ୱୟଂ ଆଚରଣ କରି ଦେଖାଇଦେବା କୌଣସି ଶ୍ରେଷ୍ଠ ମହାପୁରୁଷଙ୍କ ପକ୍ଷରେ ସମ୍ଭବ ନୁହେଁ। ତେଣୁ ସେ ଯେଉଁ ଯେଉଁ ବୈଦିକ ଏବଂ ଲୌକିକ କ୍ରିୟାଗୁଡ଼ିକୁ ବଚନଦ୍ୱାରା ହିଁ ପ୍ରମାଣିତ କରିଦିଅନ୍ତି; ଲୋକେ ସେହିଗୁଡ଼ିକୁ ତଦନୁଯାୟୀ ଆଚରଣ କରନ୍ତି।

**ସମ୍ବନ୍ଧ –** ଏପରିଭାବରେ ଶ୍ରେଷ୍ଠ ମହାପୁରୁଷଙ୍କ ଆଚରଣ ଲୋକସଂଗ୍ରହପାଇଁ ଆଦର୍ଶ ବୋଲି କହି ବର୍ତ୍ତମାନ ଭଗବାନ୍ ପରବର୍ତ୍ତୀ ତିନୋଟି ଶ୍ଲୋକରେ ନିଜର ଉଦାହରଣ ଦେଇ ବର୍ଣ୍ଣାଶ୍ରମ ଅନୁସାରେ ବିହିତକର୍ମ ଅବଶ୍ୟକର୍ତ୍ତବ୍ୟ ବୋଲି ପ୍ରତିପାଦନ କରୁଛନ୍ତି–

## ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ।
## ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି॥ ୨୨ ॥

**ଅନ୍ୱୟ –** **ପାର୍ଥ** = ହେ ଅର୍ଜୁନ!; **ମେ** = ମୋର; **ତ୍ରିଷୁ, ଲୋକେଷୁ** = ତିନି ଲୋକରେ; **କିଞ୍ଚନ** = କୌଣସି; **କର୍ତ୍ତବ୍ୟମ୍** = କର୍ତ୍ତବ୍ୟ; **ନ, ଅସ୍ତି** = ନାହିଁ; **ଚ** = ଏବଂ; **ଅବାପ୍ତବ୍ୟମ୍** = ପ୍ରାପ୍ତ କରିବାଯୋଗ୍ୟ ବସ୍ତୁ; **ଅନବାପ୍ତମ୍** = ଅପ୍ରାପ୍ତ; **ନ** = ନାହିଁ (ତଥାପି ମୁଁ); **କର୍ମଣି** = କର୍ମରେ; **ଏବ** = ହିଁ; **ବର୍ତ୍ତେ** = ଲାଗିରହିଛି।

**ହେ ଅର୍ଜୁନ! ତିନି ଲୋକରେ ମୋ ପାଇଁ କୌଣସି କର୍ତ୍ତବ୍ୟ ନାହିଁ, କୌଣସି ପ୍ରାପ୍ତିଯୋଗ୍ୟ ବସ୍ତୁ ମୋତେ ଅପ୍ରାପ୍ତ ନୁହେଁ; ତଥାପି ମୁଁ କର୍ମରେ ହିଁ ଲାଗିରହିଛି॥ ୨୨ ॥**

**ପ୍ରଶ୍ନ –** ଅର୍ଜୁନଙ୍କୁ ପାର୍ଥ ଶବ୍ଦଦ୍ୱାରା ସମ୍ବୋଧନ କରିବାର ଭାବ କଣ ?

**ଉତ୍ତର –** କୁନ୍ତୀଙ୍କର ଦୁଇଟି ନାମ ଥିଲା– ପୃଥା ଓ କୁନ୍ତୀ। ବାଲ୍ୟବସ୍ଥାରେ ସେ ଯେତେବେଳେ ନିଜର

ପିତା ଶୂରସେନଙ୍କ ନିକଟରେ ରହିଥିଲେ, ସେତେବେଳେ ତାଙ୍କ ନାମ ଥିଲା **ପୃଥା** ଏବଂ ଯେତେବେଳେ ସେ ରାଜା କୁନ୍ତିଭୋଜଙ୍କ ଦତ୍ତପୁତ୍ରୀ ହୋଇଗଲେ, ସେତେବେଳେ ତାଙ୍କ ନାମ **କୁନ୍ତୀ** ହୋଇଗଲା । ମାତାଙ୍କ ନାମର ସମ୍ବନ୍ଧ ରହିଥିବାରୁ ଅର୍ଜୁନଙ୍କୁ **ପାର୍ଥ** ଏବଂ **କୌନ୍ତେୟ** ବୋଲି କୁହାଯାଏ । ଏଠାରେ ଭଗବାନ୍ ଅର୍ଜୁନଙ୍କୁ କର୍ମରେ ପ୍ରବୃତ୍ତ କରାଇବାପାଇଁ ପରମ ସ୍ନେହ ଓ ଆତ୍ମୀୟତାସୂଚକ **ପାର୍ଥ** ନାମରେ ସମ୍ବୋଧନ କରି କହୁଛନ୍ତି, "ମୋର ପ୍ରିୟ ଭାଇ ! ମୁଁ ତୁମକୁ ଏପରି କିଛି କଥା କହୁ ନାହିଁ, ଯାହା କୌଣସି ଅଂଶରେ ମଧ୍ୟ ନିମ୍ନଶ୍ରେଣୀର ଅଟେ; ତୁମେ ମୋର ନିଜର ଭାଇ, ମୁଁ ତୁମକୁ ତାହା କହୁଛି, ଯାହା ମୁଁ ସ୍ୱୟଂ କରୁଛି, ଏବଂ ତୁମପାଇଁ ଯାହା ପରମ ଶ୍ରେୟସ୍କର, ତାହା ହିଁ କହୁଛି ।"

**ପ୍ରଶ୍ନ –** 'ତିନିଲୋକରେ ମୋର କୌଣସି କର୍ତ୍ତବ୍ୟ ନାହିଁ ।'– ଏହି କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି, "ମନୁଷ୍ୟର ସମ୍ବନ୍ଧ କେବଳ ଏହି ଲୋକ ସହିତ ଥାଏ । ତେଣୁ ଧର୍ମ, ଅର୍ଥ, କାମ ଓ ମୋକ୍ଷ – ଏହି ଚାରିପୁରୁଷାର୍ଥ-ସିଦ୍ଧିନିମିତ୍ତ ତା'ର କର୍ତ୍ତବ୍ୟବିଧାନ ଏହି ଲୋକରେ ହୁଏ; କିନ୍ତୁ ମୁଁ ସାଧାରଣ ମନୁଷ୍ୟ ନୁହେଁ; ମୁଁ ହେଉଛି ସମସ୍ତଙ୍କ କର୍ତ୍ତବ୍ୟ ବିଧାନ କରୁଥିବା ସାକ୍ଷାତ୍ ପରମେଶ୍ୱର । ତେଣୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—– ଏହି ତିନିଲୋକରେ ମୁଁ ସର୍ବଦା ଅବସ୍ଥିତ । ମୋ ପାଇଁ କୌଣସି ଲୋକରେ କୌଣସି କର୍ତ୍ତବ୍ୟ କରିବାକୁ ବାକି ନାହିଁ ।"

**ପ୍ରଶ୍ନ –** 'ମୋ ପାଇଁ ଏହି ତିନିଲୋକରେ କୌଣସି ପ୍ରାପ୍ତିଯୋଗ୍ୟ ବସ୍ତୁ ଅପ୍ରାପ୍ତ ନୁହେଁ'– ଏହି କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ସ୍ପଷ୍ଟ କରିଦେଉଛନ୍ତି, "ଇହଲୋକ କଥା କଣ କହିବା, ତିନିଲୋକରେ କେଉଁଠାରେ ମଧ୍ୟ ଏପରି କୌଣସି ପ୍ରାପ୍ତିଯୋଗ୍ୟ ବସ୍ତୁ ନାହିଁ, ଯାହା କି ମୋ ଠାରେ ନାହିଁ; କାରଣ ମୁଁ ସର୍ବେଶ୍ୱର, ପୂର୍ଣ୍ଣକାମ ଏବଂ ସମସ୍ତଙ୍କର ସୃଷ୍ଟିକର୍ତ୍ତା ।"

**ପ୍ରଶ୍ନ –** 'ତଥାପି ମୁଁ କର୍ମରେ ହିଁ ଲାଗିରହିଛି'– ଏପରି କହିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି, "ମୋର କୌଣସି ବସ୍ତୁ ଆବଶ୍ୟକ ନୁହେଁ ଏବଂ ମୋ ପାଇଁ କୌଣସି କର୍ତ୍ତବ୍ୟ ବାକି ନାହିଁ; ତଥାପି ଲୋକକଲ୍ୟାଣପାଇଁ ମୁଁ ସମସ୍ତଙ୍କ ଉପରେ ଦୟା କରି କର୍ମରେ ଲାଗିରହିଛି; କର୍ମ ତ୍ୟାଗ କରୁ ନାହିଁ । ତେଣୁ 'ମୋର ଭୋଗରେ ଆସକ୍ତି ନାହିଁ ଏବଂ କର୍ମ କରି ତା'ର ଫଳସ୍ୱରୂପ କୌଣସି ବସ୍ତୁ ପାଇବାର ଆବଶ୍ୟକତା ମଧ୍ୟ ନାହିଁ; ଏପରି ଅବସ୍ଥାରେ ମୁଁ କାହିଁକି କର୍ମ କରିବି ?' କିମ୍ବା 'ମୁଁ ତ ପରମପଦ ପାଇସାରିଛି, ତେଣୁ ମୁଁ କର୍ମ କରିବା ଆବଶ୍ୟକ କଣ ?'– ଏପରି ଭାବି କର୍ମ ତ୍ୟାଗ କରିଦେବା ଉଚିତ ନୁହେଁ; କାରଣ, ଅନ୍ୟ କୌଣସି କାରଣରୁ କର୍ମ କରିବାର ଆବଶ୍ୟକତା ନ ଥିଲେ ମଧ୍ୟ, ଲୋକକଲ୍ୟାଣଦୃଷ୍ଟିରୁ ମନୁଷ୍ୟ କର୍ମ କରିବା ଉଚିତ ।

## ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।
## ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।। ୨୩ ।।

**ଅନ୍ୱୟ –** ହି = କାରଣ; **ପାର୍ଥ** = ହେ ପାର୍ଥ ! **ଯଦି** = ଯଦି; **ଜାତୁ** = କଦାଚିତ୍; **ଅହମ୍** = ମୁଁ; **ଅତନ୍ଦ୍ରିତଃ** = ସାବଧାନ ହୋଇ; **କର୍ମଣି** = କର୍ମରେ; **ନ**, **ବର୍ତ୍ତେୟମ୍** = ଲାଗି ନ ରହେ (ତେବେ ବଡ଼ କ୍ଷତି ହୋଇଯିବ କାରଣ); **ମନୁଷ୍ୟାଃ** = ମନୁଷ୍ୟମାନେ; **ସର୍ବଶଃ** = ସବୁଦିଗରୁ; **ମମ** = ମୋର (ହିଁ); **ବର୍ତ୍ମ** = ମାର୍ଗକୁ; **ଅନୁବର୍ତ୍ତନ୍ତେ** = ଅନୁସରଣ କରନ୍ତି ।

**କାରଣ, ହେ ପାର୍ଥ ! ଯଦି କଦାଚିତ୍ ମୁଁ ସାବଧାନ ହୋଇ କର୍ମରେ ଲାଗି ନ ରହେ, ତେବେ ବଡ଼ କ୍ଷତି ହୋଇଯିବ; କାରଣ ମନୁଷ୍ୟମାନେ ସବୁ ଦିଗରୁ ମୋରି ମାର୍ଗ ଅନୁସରଣ କରନ୍ତି ।। ୨୩ ।।**

**ପ୍ରଶ୍ନ –** ହି ପଦର ଭାବ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଭଗବାନ୍ କହିଛନ୍ତି, 'ମୋ ପାଇଁ କର୍ତ୍ତବ୍ୟ ବୋଲି କିଛି ନ ଥିଲେ ମଧ୍ୟ ମୁଁ କର୍ମ କରୁଛି ।' ଏହା ଉପରେ ପ୍ରଶ୍ନ ହୁଏ, 'ଯଦି ଆପଣଙ୍କର

କର୍ତ୍ତବ୍ୟ ବୋଲି କିଛି ନାହିଁ, ତେବେ ଆପଣ କର୍ମ କରୁଛନ୍ତି କାହିଁକି ?' ଏଣୁ ଏହି ଦୁଇଟି ଶ୍ଳୋକରେ ଭଗବାନ୍ ନିଜର କର୍ମ କରିବାର କାରଣ କହିଦେଇଛନ୍ତି; ଏହା ପ୍ରକାଶ କରିବାକୁ ହିଁ ପଦ ବ୍ୟବହାର କରାଯାଇଛି।

**ପ୍ରଶ୍ନ –** ଯଦି ଓ ଜାତୁ – ଏହି ଦୁଇ ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** ଏହା ପ୍ରୟୋଗ କରି ଭଗବାନ୍ କହିଦେଉଛନ୍ତି, ''ମୁଁ ଧର୍ମସ୍ଥାପନାପାଇଁ ଅବତାର ଗ୍ରହଣ କରେ। ତେଣୁ ମୁଁ ଯେ କେବେ ସାବଧାନତାପୂର୍ବକ ସାଙ୍ଗୋପାଙ୍ଗ ସମସ୍ତ କର୍ମ ଅନୁଷ୍ଠାନ ନ କରିବି ବା ତାହା ପ୍ରତି ଅବହେଳା ପ୍ରଦର୍ଶନ କରିବି, ତାହା ସମ୍ଭବ ନୁହେଁ; ତଥାପି ମୁଁ କର୍ମ କରିବାର କାରଣ ବୁଝାଇଦେବାପାଇଁ ଏତିକି କହିପାରେ ଯେ, ଯଦି ମୁଁ କେବେ ସାବଧାନ ହୋଇ କର୍ମ ନ କରେ, ତେବେ ବହୁ କ୍ଷତି ହୋଇଯିବ; କାରଣ ସମସ୍ତ ଜଗତର କର୍ତ୍ତା, ହର୍ତ୍ତା ଓ ସଂଚାଳକ ଏବଂ ମର୍ଯ୍ୟାଦାପୁରୁଷୋତ୍ତମ ହୋଇ ମଧ୍ୟ ଯଦି ମୁଁ ଅସାବଧାନ ହୋଇଯାଏ, ତେବେ ସୃଷ୍ଟିଚକ୍ରରେ ବିଶୃଙ୍ଖଳା ବ୍ୟାପିଯିବ।''

**ପ୍ରଶ୍ନ –** 'ମନୁଷ୍ୟମାନେ ସବୁଦିଗରୁ ମୋତେ ଅନୁସରଣ କରିଥାନ୍ତି,' – ଏପରି କହିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ସୂଚାଉଛନ୍ତି, ''ବହୁ ଲୋକ ମୋତେ ଅତ୍ୟନ୍ତ ଶକ୍ତିଶାଳୀ ଓ ଶ୍ରେଷ୍ଠ ବୋଲି ବୁଝନ୍ତି ଓ ବହୁ ଲୋକ ମୋତେ ମର୍ଯ୍ୟାଦାପୁରୁଷୋତ୍ତମ ବୋଲି ସ୍ୱୀକାର କରନ୍ତି। ତେଣୁ ଯେଉଁ କାମକୁ ମୁଁ ଯେଉଁପରି କରେ, ଅନ୍ୟ ଲୋକେ ମଧ୍ୟ ମୋ ଦେଖାଦେଖି ତାହା ସେହିପରି କରନ୍ତି, ଅର୍ଥାତ୍ ମୋତେ ଅନୁସରଣ କରନ୍ତି। ଏପରି ସ୍ଥିତିରେ ଯଦି ମୁଁ କର୍ତ୍ତବ୍ୟ କର୍ମରେ ଅବହେଳା କରିବସେ, ତାହା ସାବଧାନ ହୋଇ ବିଧିପୂର୍ବକ ନ କରେ, ତେବେ ଲୋକେ ମଧ୍ୟ ସେହିପରି କରିବାରେ ଲାଗିଯିବେ ଏବଂ ଏପରି କରି ସ୍ୱାର୍ଥ ଓ ପରମାର୍ଥ ଉଭୟରୁ ବଞ୍ଚିତ ହୋଇ ରହିଯିବେ। ଅତଏବ ଲୋକମାନଙ୍କୁ କର୍ମ କରିବାର ରୀତି ଶିଖାଇବାପାଇଁ ମୁଁ ସମସ୍ତ କର୍ମ ଅତ୍ୟନ୍ତ ସାବଧାନ ହୋଇ ବିଧିପୂର୍ବକ ପାଳନ କରୁଛି; କେବେ ବି କୌଣସିଠାରେ ସାମାନ୍ୟମାତ୍ର ଅସାବଧାନ ହେଉ ନାହିଁ।''

## ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହମ୍।
## ସଙ୍କରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ॥ ୨୪ ॥

**ଅନ୍ୱୟ –** ଚେତ୍ = ଯଦି; ଅହମ୍ = ମୁଁ; କର୍ମ = କର୍ମ; ନ = ନ; କୁର୍ଯାମ୍ = କରିବି (ତେବେ); ଇମେ = ଏହି; ଲୋକାଃ = ସମସ୍ତ ମନୁଷ୍ୟ; ଉତ୍ସୀଦେୟୁଃ = ନଷ୍ଟ-ଭ୍ରଷ୍ଟ ହୋଇଯିବେ; ଚ = ଏବଂ (ମୁଁ); ସଙ୍କରସ୍ୟ = ସଙ୍କରତାର; କର୍ତ୍ତା = କର୍ତ୍ତା; ସ୍ୟାମ୍ = ହୋଇଯିବି; (ତଥା); ଇମାଃ = ଏହି; ପ୍ରଜାଃ = ସମସ୍ତ ପ୍ରଜାଙ୍କୁ; ଉପହନ୍ୟାମ୍ = ନଷ୍ଟ କରିବାର କାରଣ ହୋଇଯିବି।

**ତେଣୁ ଯଦି ମୁଁ କର୍ମ ନ କରିବି, ତେବେ ଏ ସମସ୍ତ ମନୁଷ୍ୟ ନଷ୍ଟଭ୍ରଷ୍ଟ ହୋଇଯିବେ ଏବଂ ମୁଁ ସଙ୍କରତାର କର୍ତ୍ତା ହୋଇଯିବି, ତଥା ଏହି ସମସ୍ତ ପ୍ରଜାଙ୍କୁ ନଷ୍ଟ କରିବାର କାରଣ ହୋଇଯିବି।॥ ୨୪ ॥**

**ପ୍ରଶ୍ନ –** ଏଠାରେ 'ଯଦି ମୁଁ କର୍ମ ନ କରେ' – ଏହା କହିବାର ଆବଶ୍ୟକତା କ'ଣ ? କାରଣ ପୂର୍ବଶ୍ଳୋକରେ କହିଦିଆଯାଇଛି, 'ଯଦି ମୁଁ ସାବଧାନ ହୋଇ କର୍ମରେ ନ ଲାଗିବି ----।'' ଏହାଦ୍ୱାରା ପୁନରୁକ୍ତି ଆସିଯାଉ ନାହିଁ କି ?

**ଉତ୍ତର –** ପୂର୍ବଶ୍ଳୋକରେ 'ଯଦି ମୁଁ ସାବଧାନ ହୋଇ କର୍ମରେ ନ ଲାଗିବି' ଏହି ବାକ୍ୟାଂଶରେ ସାବଧାନତା ଓ ବିଧିପୂର୍ବକ କର୍ମ ନ କଲେ ତଦ୍ଦ୍ୱାରା ହେଉଥିବା କ୍ଷତିର ନିରୂପଣ କରାଯାଇଛି ଏବଂ ଏହି ଶ୍ଳୋକରେ 'ଯଦି ମୁଁ କର୍ମ ନ କରେ' ଏହି ବାକ୍ୟାଂଶରେ କର୍ମ ନ କଲେ ବା ତାହା ତ୍ୟାଗ କରିଦେଲେ ତଦ୍ଦ୍ୱାରା ହେଉଥିବା କ୍ଷତି କଥା କୁହାଯାଇଛି। ତେଣୁ ଏହା ପୁନରୁକ୍ତି ନୁହେଁ। ଦୁଇ ଶ୍ଳୋକରେ ଅଲଗା ଅଲଗା କଥା କୁହାଯାଇଛି।

**ପ୍ରଶ୍ନ –** 'ଯଦି ମୁଁ କର୍ମ ନ କରେ, ତେବେ ଏସବୁ ମନୁଷ୍ୟ ନଷ୍ଟଭ୍ରଷ୍ଟ ହୋଇଯିବେ' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଯଦି ମୁଁ କର୍ତ୍ତବ୍ୟକର୍ମ ତ୍ୟାଗ କରିଦିଏ, ତେବେ ସେହି ଶାସ୍ତ୍ରବିହିତ

କର୍ମମାନଙ୍କୁ ବ୍ୟର୍ଥ ବୋଲି ବୁଝି ଅନ୍ୟଲୋକେ ମଧ ମୋ ଦେଖାଦେଖି ସେସବୁ ପରିତ୍ୟାଗ କରିଦେବେ ଏବଂ ରାଗଦ୍ୱେଷର ବଶ ହୋଇ ଓ ପ୍ରକୃତିର ପ୍ରବାହରେ ପଡ଼ି ମନମୁଖି ନୀଚକର୍ମ କରିବାରେ ଲାଗିଯିବେ; ଏକ ଅନ୍ୟର ଅନୁକରଣ କରି ସମସ୍ତେ ସ୍ୱାର୍ଥପରାୟଣ, ଭ୍ରଷ୍ଟାଚାରୀ ଓ ଉଚ୍ଛୃଙ୍ଖଳ ହୋଇଯିବେ। ତା'ଫଳରେ ସାଂସାରିକ ଭୋଗରେ ଆସକ୍ତ ହୋଇ, ନିଜ ନିଜର ସ୍ୱାର୍ଥସିଦ୍ଧିପାଇଁ ଏକ ଅନ୍ୟର କ୍ଷତିକୁ ଲକ୍ଷ୍ୟ ନ କରି ଅନ୍ୟାୟପୂର୍ବକ ଶାସ୍ତ୍ରବିରୁଦ୍ଧ ଲୋକହାନିକାରକ ପାପକର୍ମ କରିବାରେ ଲାଗିଯିବେ। ଏହାର ଫଳସ୍ୱରୂପ ସେମାନଙ୍କ ମନୁଷ୍ୟଜନ୍ମ ନଷ୍ଟଭ୍ରଷ୍ଟ ହୋଇଯିବ ଏବଂ ମରିବା ପରେ ସେମାନଙ୍କୁ ନୀଚଯୋନିରେ ବା ନରକରେ ପଡ଼ିବାକୁ ହେବ।''

**ପ୍ରଶ୍ନ –** 'ମୁଁ **ସଙ୍କରତାର** କର୍ତ୍ତା ହୋଇଯିବି' – ଏହି କଥନର ଭାବ କଣ ?

**ଉତ୍ତର –** ଏଠାରେ **ସଙ୍କରସ୍ୟ** ପଦରେ ସମସ୍ତ-ପ୍ରକାର ସଙ୍କରତା ଅନ୍ତର୍ଭୁକ୍ତ ହୋଇଛି। ବର୍ଣ୍ଣ, ଆଶ୍ରମ, ଜାତି, ସମାଜ, ସ୍ୱଭାବ, ଦେଶ, କାଳ, ରାଷ୍ଟ୍ର ଓ ପରିସ୍ଥିତି ଅନୁସାରେ ସବୁ ମନୁଷ୍ୟଙ୍କର ନିଜ ନିଜର ପୃଥକ୍ ପୃଥକ୍ ପାଳନୀୟ ଧର୍ମ ରହିଛି। ଶାସ୍ତ୍ରବିଧି ତ୍ୟାଗ କରିଦେଲେ, ନିୟମପୂର୍ବକ ନିଜ ନିଜର ଧର୍ମ ପାଳନ ନ କଲେ ସମସ୍ତ ବ୍ୟବସ୍ଥା ବିଶୃଙ୍ଖଳ ହୋଇଯାଏ ଏବଂ ସମସ୍ତଙ୍କ ଧର୍ମରେ ସଙ୍କରତା ଆସିଯାଏ ଅର୍ଥାତ୍ ସବୁଥିରେ ଅପମିଶ୍ରଣ ହୋଇଯାଏ। ତା'ଫଳରେ ଲୋକେ ନିଜ ନିଜର କର୍ତ୍ତବ୍ୟରୁ ଭ୍ରଷ୍ଟ ହୋଇ ନିମ୍ନସ୍ଥିତିରେ ପହଞ୍ଚିଯାଆନ୍ତି, ଯାହାଦ୍ୱାରା କି ସେମାନଙ୍କର ଧର୍ମ, କର୍ମ ଓ ଜାତି ନାଶ ହୋଇ ପ୍ରାୟ ମନୁଷ୍ୟତ୍ୱ ମଧ୍ୟ ନଷ୍ଟ ହୋଇଯାଏ। ଏଣୁ ଭଗବାନ୍ ଏଠାରେ କହୁଛନ୍ତି, ''ଯଦି ମୁଁ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବି, ତେବେ ପରିଣାମତଃ ନିଜର ଆଦର୍ଶଦ୍ୱାରା ଲୋକଙ୍କୁ ଶାସ୍ତ୍ରୀୟକର୍ମ-ତ୍ୟାଗୀ କରାଇଦେଇ ସେମାନଙ୍କ ଭିତରେ ଧର୍ମନାଶକ ସଙ୍କରତା ଉତ୍ପନ୍ନ କରିବାରେ ମୁଁ ହିଁ କାରଣ ହୋଇଯିବି।''

**ପ୍ରଶ୍ନ –** 'ଏହି ସମସ୍ତ ପ୍ରଜାଙ୍କୁ ନଷ୍ଟ କରାଇବାର କାରଣ ହୋଇଯିବି' – ଏପରି କଥାର ଭାବ କଣ ?

**ଉତ୍ତର –** ଯେତେବେଳେ କର୍ତ୍ତବ୍ୟଭ୍ରଷ୍ଟ ହୋଇଯିବାରୁ ଲୋକମାନଙ୍କ ଠାରେ ସବୁପ୍ରକାର ସଙ୍କରତା ବ୍ୟାପିଯାଏ, ସେତେବେଳେ ଲୋକେ ଭୋଗପରାୟଣ ଓ ସ୍ୱାର୍ଥାନ୍ଧ ହୋଇ ଭିନ୍ନ ଭିନ୍ନ ଉପାୟରେ ଏକ ଅନ୍ୟକୁ ବିନାଶ କରିବାରେ ଲାଗିଯାଆନ୍ତି; ନିଜର ଅତ୍ୟନ୍ତ କ୍ଷୁଦ୍ର ଏବଂ କ୍ଷଣିକ ସୁଖ ଉପଭୋଗପାଇଁ ଅନ୍ୟକୁ ବିନାଶ କରିଦେବାକୁ ବି ଟିକିଏ ହେଲେ ସଙ୍କୋଚ କରନ୍ତି ନାହିଁ। ଏହିପରି ଅତ୍ୟାଚାର ବଢ଼ିଯିବା ପରେ ତାହା ସହିତ ନୂଆ ନୂଆ ଦୈବୀ ବିପତ୍ତିମାନ ମଧ୍ୟ ଆସି ପହଞ୍ଚିଯାଏ, ଏବଂ ତା'ଫଳରେ ସମସ୍ତ ପ୍ରାଣୀଙ୍କ ପାଇଁ ଆବଶ୍ୟକ ହେଉଥିବା ଖାଦ୍ୟପେୟ ଏବଂ ଜୀବନଧାରଣବ୍ୟବସ୍ଥା ପ୍ରାୟ ନଷ୍ଟ ହୋଇଯାଏ; ଚତୁର୍ଦ୍ଦିଗରେ ମହାମାରୀ, ଅନାବୃଷ୍ଟି, ଜଳପ୍ରଳୟ, ଅକାଳ, ଅଗ୍ନିକୋପ, ଭୂକମ୍ପ ଏବଂ ଉଲ୍କାପାତ ଆଦି ଉତ୍ପାତ ହେବାକୁ ଲାଗେ। ଏହାଦ୍ୱାରା ପ୍ରଜାମାନେ ବିନାଶ ଲଭନ୍ତି। ତେଣୁ ଭଗବାନ୍ 'ମୁଁ ସମସ୍ତ ପ୍ରଜାଙ୍କୁ ନଷ୍ଟ କରାଇବାର କାରଣ ହୋଇଯିବି' ବୋଲି ଦର୍ଶାଇ କହୁଛନ୍ତି, ''ଯଦି ମୁଁ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବି, ତେବେ ମୁଁ ଉପର୍ଯ୍ୟୁକ୍ତପ୍ରକାରେ ଲୋକମାନଙ୍କୁ ଉଚ୍ଛୃଙ୍ଖଳ କରାଇ ସମସ୍ତ ପ୍ରଜାଙ୍କୁ ନାଶ କରିଦେବାର ନିମିତ୍ତ ହୋଇଯିବି।''

**ସମ୍ବନ୍ଧ –** *ସାବଧାନ ହୋଇ କର୍ମ ନ କଲେ ଏବଂ କର୍ମ ତ୍ୟାଗ କରିଦେଲେ ଯେଉଁ ପରିଣାମ ହୁଏ, ତାହା ନିଜର ଉଦାହରଣଦ୍ୱାରା ତିନୋଟି ଶ୍ଳୋକରେ ବର୍ଣ୍ଣନା କରି ଲୋକକଲ୍ୟାଣଦୃଷ୍ଟିରୁ ସମସ୍ତଙ୍କ ପାଇଁ ବିହିତକର୍ମ ଅବଶ୍ୟକର୍ତ୍ତବ୍ୟ ବୋଲି ପ୍ରତିପାଦନ କଲେ। ବର୍ତ୍ତମାନ ଭଗବାନ୍ ଉପର୍ଯ୍ୟୁକ୍ତ ଲୋକକଲ୍ୟାଣଦୃଷ୍ଟିରୁ କର୍ମ କରିବାନିମନ୍ତେ ଜ୍ଞାନୀମାନଙ୍କୁ ପ୍ରେରଣା ଦେଉଛନ୍ତି–*

**ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ।**
**କୁର୍ଯ୍ୟାଦ୍ ବିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍।। ୨୫ ।।**

**ଅନ୍ୱୟ –** **ଭାରତ** = ହେ ଭାରତ; **କର୍ମଣି** = କର୍ମରେ; **ସକ୍ତାଃ** = ଆସକ୍ତ ହୋଇ; **ଅବିଦ୍ୱାଂସଃ** = ଅଜ୍ଞାନୀମାନେ; **ଯଥା** = ଯେଉଁପରି; **କୁର୍ବନ୍ତି** = କର୍ମ କରନ୍ତି; **ଅସକ୍ତଃ** = ଆସକ୍ତିରହିତ; **ବିଦ୍ୱାନ୍** = ବିଦ୍ୱାନ (ମଧ୍ୟ); **ଲୋକସଙ୍ଗ୍ରହମ୍** = ଲୋକମଙ୍ଗଳ; **ଚିକୀର୍ଷୁଃ** = କରିବାକୁ ଇଚ୍ଛୁକ ହୋଇ; **ତଥା** = ସେହିପରି (କର୍ମ); **କୁର୍ଯ୍ୟାତ୍** = କରିବା ଉଚିତ।

**ହେ ଭାରତ! କର୍ମରେ ଆସକ୍ତ ହୋଇଥିବା ଅଜ୍ଞାନୀମାନେ ଯେଉଁପରି କର୍ମ କରନ୍ତି, ଆସକ୍ତିରହିତ ବିଦ୍ୱାନ୍ ମଧ୍ୟ ଲୋକକଲ୍ୟାଣ କରିବାକୁ ଇଚ୍ଛୁକ ହୋଇ ସେହିପରି କର୍ମ କରିବା ଉଚିତ।॥ ୨୫ ॥**

**ପ୍ରଶ୍ନ –** ଏଠାରେ **କର୍ମଣି** ପଦ କେଉଁ କର୍ମମାନଙ୍କର ବାଚକ ?

**ଉତ୍ତର –** ଏଠାରେ **କର୍ମଣି** ପଦଟି ହେଉଛି ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମମାନଙ୍କର ବାଚକ; କାରଣ ଭଗବାନ୍ ଅଜ୍ଞାନୀମାନଙ୍କୁ ସେହି କର୍ମରେ ଲଗାଇରଖିବାକୁ ଆଦେଶ ଦେଇଛନ୍ତି ଏବଂ ଜ୍ଞାନୀଙ୍କୁ ମଧ୍ୟ ସେମାନଙ୍କ ପରି କର୍ମ କରିବାନିମନ୍ତେ ପ୍ରେରଣା ଦେଇଛନ୍ତି। ଅତଏବ ଏଥିରେ ନିଷିଦ୍ଧକର୍ମ ବା ବ୍ୟର୍ଥକର୍ମ ସମ୍ମିଳିତ ହୋଇ ନାହିଁ।

**ପ୍ରଶ୍ନ – କର୍ମଣି ସକ୍ତାଃ** ବିଶେଷଣ ସହିତ **ଅବିଦ୍ୱାଂସଃ** ପଦ ଏଠାରେ କେଉଁ ଶ୍ରେଣୀର ଅଜ୍ଞାନୀମାନଙ୍କ ବାଚକ ?

**ଉତ୍ତର –** ଉପର୍ଯ୍ୟୁକ୍ତ ବିଶେଷଣ ସହିତ **ଅବିଦ୍ୱାଂସଃ** ପଦଟି ଏଠାରେ ଶାସ୍ତ୍ରରେ, ଶାସ୍ତ୍ରବିହିତ କର୍ମରେ ଏବଂ ତାହାର ଫଳରେ ଶ୍ରଦ୍ଧା, ପ୍ରେମ ଓ ଆସକ୍ତି ରଖୁଥିବା ତଥା ଶାସ୍ତ୍ରବିହିତ କର୍ମକୁ ବିଧିପୂର୍ବକ ନିଜ ନିଜର ଅଧିକାର ଅନୁସାରେ ଅନୁଷ୍ଠାନ କରୁଥିବା ସକାମ କର୍ମଠ ମନୁଷ୍ୟମାନଙ୍କ ବାଚକ। ଏମାନଙ୍କ ଭିତରେ କର୍ମବିଷୟକ ଆସକ୍ତି ରହିଥିବାରୁ, ଏମାନେ କଲ୍ୟାଣ ସାଧନ କରୁଥିବା ଶୁଦ୍ଧ ସାତ୍ତ୍ୱିକ କର୍ମଯୋଗୀ ପୁରୁଷଙ୍କ ଶ୍ରେଣୀରେ ଆସିପାରିବେ ନାହିଁ; ପୁଣି ଏମାନେ ଶ୍ରଦ୍ଧାପୂର୍ବକ ଶାସ୍ତ୍ରବିହିତ କର୍ମ ଆଚରଣ କରୁଥିବାରୁ ଏମାନଙ୍କୁ ଆସୁରୀ, ରାକ୍ଷସୀ ଏବଂ ମୋହିନୀ ପ୍ରକୃତିଯୁକ୍ତ ପାପାଚାରୀ ତାମସ ବୋଲି ମଧ୍ୟ ସ୍ୱୀକାର କରାଯାଇପାରିବ ନାହିଁ। ଅତଏବ ଏହି ଲୋକମାନଙ୍କୁ ସତ୍ତ୍ୱଗୁଣମିଶ୍ରିତ ରାଜସସ୍ୱଭାବଯୁକ୍ତ ମନୁଷ୍ୟଙ୍କ ଶ୍ରେଣୀର ବୋଲି ବୁଝିବା ଉଚିତ। ଏମାନଙ୍କର ବର୍ଣ୍ଣନା ଦ୍ୱିତୀୟ ଅଧ୍ୟାୟର ବୟାଳିଶଠାରୁ ଚଉରାଳିଶ ଶ୍ଳୋକପର୍ଯ୍ୟନ୍ତ **ଅବିପଶ୍ଚିତଃ** ପଦଦ୍ୱାରା, ସପ୍ତମ ଅଧ୍ୟାୟର କୋଡ଼ିଏରୁ ତେଇଶ ଶ୍ଳୋକପର୍ଯ୍ୟନ୍ତ **ଅଳ୍ପମେଧସାମ୍** ପଦଦ୍ୱାରା ଓ ନବମ ଅଧ୍ୟାୟର କୋଡ଼ିଏ, ଏକୋଇଶ, ତେଇଶ ଓ ଚବିଶ ଶ୍ଳୋକରେ **ଅନ୍ୟଦେବତା ଭକ୍ତାଃ** ପଦଦ୍ୱାରା କରାଯାଇଛି।

**ପ୍ରଶ୍ନ –** ଏଠାରେ **ଯଥା** ଏବଂ **ତଥା –** ଏହି ଦୁଇଟି ପଦ ପ୍ରୟୋଗ କରି ଭଗବାନ୍ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ସ୍ୱାଭାବିକ ସ୍ନେହ ଓ ଆସକ୍ତିହେତୁ ତଥା ଭବିଷ୍ୟତରେ ତାହାଦ୍ୱାରା ସୁଖ ମିଳିବାର ଆଶା ଥିବାରୁ ମାତା ଯେପରି ନିଜର ପୁତ୍ରକୁ ବାସ୍ତବ ହାର୍ଦ୍ଦିକ ସ୍ନେହ, ଉତ୍ସାହ ଓ ତତ୍ପରତାର ସହିତ ଲାଳନପାଳନ କରେ, ଅନ୍ୟ କେହି ସେପରି କରିପାରେ ନାହିଁ; ସେହିପରି ଯେଉଁ ମନୁଷ୍ୟର କର୍ମରେ ଏବଂ ସେଥିରୁ ମିଳୁଥିବା ଭୋଗରେ ସ୍ୱାଭାବିକ ଆସକ୍ତି ଥାଏ ଏବଂ ତାହା ବିଧାନ କରୁଥିବା ଶାସ୍ତ୍ରରେ ଯାହାଙ୍କର ବିଶ୍ୱାସ ଥାଏ, ସେ ଯେପରି ପ୍ରକୃତ ମନପ୍ରାଣ ଦେଇ ଶ୍ରଦ୍ଧା ଓ ବିଧିପୂର୍ବକ ଶାସ୍ତ୍ରବିହିତ କର୍ମ ସାଙ୍ଗୋପାଙ୍ଗ କରନ୍ତି, ଯାହାର ଶାସ୍ତ୍ରରେ ଶ୍ରଦ୍ଧା ଓ ଶାସ୍ତ୍ରବିହିତ କର୍ମରେ ପ୍ରବୃତ୍ତି ନ ଥାଏ, ସେହି ମନୁଷ୍ୟ ସେପରି କରିପାରେ ନାହିଁ। ଅତଏବ ଏଠାରେ **ଯଥା** ଓ **ତଥା** ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ଅହଂତ୍ୱ, ମମତ୍ୱ, ଆସକ୍ତି ଓ କାମନା ସର୍ବଥା ଶୂନ୍ୟ ହେଲେ ମଧ୍ୟ ଜ୍ଞାନୀ ମହାତ୍ମାମାନେ କେବଳ ଲୋକକଲ୍ୟାଣନିମନ୍ତେ କର୍ମାସକ୍ତ ମନୁଷ୍ୟଙ୍କ ପରି ଶାସ୍ତ୍ରବିହିତ କର୍ମ ବିଧିପୂର୍ବକ ସାଙ୍ଗୋପାଙ୍ଗ ଅନୁଷ୍ଠାନ କରିବା ଉଚିତ।

**ପ୍ରଶ୍ନ –** ଏଠାରେ **ବିଦ୍ୱାନ୍**ର ଅର୍ଥ ତତ୍ତ୍ୱଜ୍ଞାନୀ ବୋଲି ମାନି ନ ନେଇ, ଶାସ୍ତ୍ରଜ୍ଞାନୀ ବୋଲି ମାନିନେଲେ କ୍ଷତି କଣ ?

**ଉତ୍ତର – ବିଦ୍ୱାନ୍** ସହିତ **ଅସକ୍ତଃ** ବିଶେଷଣ ପ୍ରୟୋଗ ହୋଇଛି; ତେଣୁ ଏହାର ଅର୍ଥ କେବଳ ଶାସ୍ତ୍ରଜ୍ଞାନୀ ବୋଲି ସ୍ୱୀକାର କରିହେବ ନାହିଁ; କାରଣ କେବଳ ଶାସ୍ତ୍ରଜ୍ଞାନ ହୋଇଗଲେ କୌଣସି ମନୁଷ୍ୟ ଆସକ୍ତିରହିତ ହୋଇପାରିବ ନାହିଁ।

**ପ୍ରଶ୍ନ – ଲୋକସଂଗ୍ରହଂ ଚିକୀର୍ଷୁଃ** ପଦଦ୍ୱାରା ଏହା ସିଦ୍ଧ ହେଲା ଯେ, ଜ୍ଞାନୀମାନଙ୍କ ଠାରେ ମଧ୍ୟ ଇଚ୍ଛା ରହେ। ଏହା କ'ଣ ଠିକ୍ ?

**ଉତ୍ତର –** ହଁ ରହେ; କିନ୍ତୁ ଏହା ଅତ୍ୟନ୍ତ ଅଲୌକିକ ହୁଏ। ସର୍ବଥା ଇଚ୍ଛାରହିତ ପୁରୁଷଙ୍କ ଠାରେ ହେଉଥିବା ଇଚ୍ଛାର ସ୍ୱରୂପ ଯେ କଣ, ତାହା ବୁଝାଇଦିଆଯାଇ ନ ପାରେ। ଏତିକିମାତ୍ର ବୁଝାଯାଇପାରେ ଯେ, ତାଙ୍କର ଏହି ଇଚ୍ଛା ସାଧାରଣ ମନୁଷ୍ୟମାନଙ୍କୁ କର୍ମତତ୍ପର କରି ରଖିବାକୁ କଥନମାତ୍ର ହିଁ ହୋଇଥାଏ। ଏପରି ଇଚ୍ଛା

ଭଗବାନଙ୍କ ଠାରେ ମଧ୍ୟ ରହେ। ବାସ୍ତବରେ ଏହି ଇଚ୍ଛା ଇଚ୍ଛା ନୁହେଁ। ଅତଏବ ଏଠାରେ **ଲୋକସଂଗ୍ରହଂ ଚିକୀର୍ଷୁଃ**ଦ୍ୱାରା ଏହି ଭାବ ଗ୍ରହଣ କରିବା ଉଚିତ ଯେ, କେବେ ତାଙ୍କର ଦେଖାଦେଖି ଅନ୍ୟ ଲୋକେ ଯେପରି ନିଜର କର୍ତ୍ତବ୍ୟକର୍ମ ତ୍ୟାଗ କରି ନଷ୍ଟଭ୍ରଷ୍ଟ ନ ହୁଅନ୍ତୁ; ସେହି ଦୃଷ୍ଟିରୁ ଜ୍ଞାନୀଙ୍କ ଦ୍ୱାରା କେବଳ ଲୋକହିତାର୍ଥ ଉଚିତ ଚେଷ୍ଟା ହୋଇଥାଏ; ସିଦ୍ଧାନ୍ତତଃ ତାଙ୍କର କର୍ମରେ ଏହା ଭିନ୍ନ ଅନ୍ୟ କୌଣସି ଉଦ୍ଦେଶ୍ୟ ନ ଥାଏ।

## ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।
## ଜୋଷୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍॥ ୨୬ ॥

**ଅନ୍ୱୟ – ଯୁକ୍ତଃ** = ପରମାତ୍ମାଙ୍କ ସ୍ୱରୂପରେ ଅଟଳଭାବରେ ସ୍ଥିତ; **ବିଦ୍ୱାନ୍** = ଜ୍ଞାନୀ ପୁରୁଷ; **କର୍ମସଙ୍ଗିନାମ୍** = ଶାସ୍ତ୍ରବିହିତ କର୍ମରେ ଆସକ୍ତିଯୁକ୍ତ; **ଅଜ୍ଞାନାମ୍** = ଅଜ୍ଞାନୀମାନଙ୍କ; **ବୁଦ୍ଧିଭେଦମ୍** = ବୁଦ୍ଧିରେ ଭ୍ରମ ଅର୍ଥାତ୍ କର୍ମରେ ଅଶ୍ରଦ୍ଧା; **ନ, ଜନୟେତ୍** = ଉତ୍ପନ୍ନ କରିବା ଉଚିତ ନୁହେଁ (ବରଂ ସ୍ୱୟମ୍); **ସର୍ବକର୍ମାଣି** = ଶାସ୍ତ୍ରବିହିତ ସମସ୍ତ କର୍ମ; **ସମାଚରନ୍** = ଭଲଭାବରେ କରି କରି (ସେମାନଙ୍କୁ ମଧ୍ୟ ସେପରି); **ଜୋଷୟେତ୍** = କରାଇବା ଉଚିତ।

**ପରମାତ୍ମାଙ୍କ ସ୍ୱରୂପରେ ଅଟଳଭାବରେ ସ୍ଥିତ ଜ୍ଞାନୀ ପୁରୁଷ ଶାସ୍ତ୍ରବିହିତ କର୍ମରେ ଆସକ୍ତିଯୁକ୍ତ ଅଜ୍ଞାନୀମାନଙ୍କ ବୁଦ୍ଧିରେ ଭ୍ରମ ଅର୍ଥାତ୍ କର୍ମରେ ଅଶ୍ରଦ୍ଧା ଉତ୍ପନ୍ନ କରାଇବା ଉଚିତ ନୁହେଁ; ବରଂ ସ୍ୱୟଂ ଶାସ୍ତ୍ରବିହିତ ସମସ୍ତ କର୍ମ ଭଲଭାବରେ ଆଚରଣ କରି ସେମାନଙ୍କ ଦ୍ୱାରା ମଧ୍ୟ ସେହିପରି ଆଚରଣ କରାଇବା ଉଚିତ॥ ୨୬ ॥**

**ପ୍ରଶ୍ନ – ଯୁକ୍ତଃ** ବିଶେଷଣ ସହିତ ବିଦ୍ୱାନ୍ ପଦ କାହାର ବାଚକ?

**ଉତ୍ତର – ଯୁକ୍ତଃ** ବିଶେଷଣ ସହିତ ବିଦ୍ୱାନ୍ ପଦଟି ହେଉଛି ପୂର୍ବଶ୍ଲୋକରେ ବର୍ଣ୍ଣିତ ପରମାତ୍ମାଙ୍କ ସ୍ୱରୂପରେ ଅଟଳସ୍ଥିତ ଆସକ୍ତିରହିତ ତତ୍ତ୍ୱଜ୍ଞାନୀଙ୍କର ବାଚକ।

**ପ୍ରଶ୍ନ –** ଆସକ୍ତିପରାୟଣ ହୋଇ ଶାସ୍ତ୍ରବିହିତ କର୍ମ କରୁଥିବା ଅଜ୍ଞାନୀମାନଙ୍କ ବୁଦ୍ଧିରେ ଭ୍ରମ ଉତ୍ପନ୍ନ ନ କରାଇବାକୁ କହିବାର ଅଭିପ୍ରାୟ କଣ? ଏପରି ମନୁଷ୍ୟମାନଙ୍କୁ କଣ ତତ୍ତ୍ୱଜ୍ଞାନ ବା କର୍ମଯୋଗ ବିଷୟକ ଉପଦେଶ ଦେବା ଉଚିତ ନୁହେଁ?

**ଉତ୍ତର –** କାହାରି ବୁଦ୍ଧିରେ ସଂଶୟ ଉତ୍ପନ୍ନ କରିଦେବାକୁ ହିଁ ବୁଦ୍ଧିରେ ଭ୍ରମ ଉତ୍ପନ୍ନ କରିବା ବୋଲି କୁହାଯାଏ। ଅତଏବ କର୍ମରେ, କର୍ମବିଧାୟକ ଶାସ୍ତ୍ରରେ ଏବଂ ଅଦୃଷ୍ଟଭୋଗରେ କର୍ମାସକ୍ତ ମନୁଷ୍ୟମାନଙ୍କର ଯେଉଁ ଆସ୍ତିକବୁଦ୍ଧି ଥାଏ, ସେହି ବୁଦ୍ଧିକୁ ବିଚଳିତ କରି ସେମାନଙ୍କ ମନରେ କର୍ମ ଓ ଶାସ୍ତ୍ର ପ୍ରତି ଅଶ୍ରଦ୍ଧା ଉତ୍ପନ୍ନ କରିଦେବା ହିଁ ସେମାନଙ୍କ ବୁଦ୍ଧିରେ ଭ୍ରମ ଉତ୍ପନ୍ନ କରାଇଦେବା। ତେଣୁ ଏଠାରେ ଭଗବାନ୍ ଜ୍ଞାନୀଙ୍କୁ କର୍ମାସକ୍ତ ଅଜ୍ଞାନୀମାନଙ୍କ ବୁଦ୍ଧିରେ ଭ୍ରମ ଉତ୍ପନ୍ନ ନ କରାଇବାକୁ କହି ଦେଖାଉଛନ୍ତି ଯେ, ସେହି ମନୁଷ୍ୟମାନଙ୍କୁ ନିଷ୍କାମକର୍ମ ଓ ତତ୍ତ୍ୱଜ୍ଞାନ ଉପଦେଶ ଦେବା ସମୟରେ ଜ୍ଞାନୀ ସ୍ମରଣ ରଖିବା ଉଚିତ ଯେ, ତାଙ୍କର କୌଣସି ଆଚାର, ବ୍ୟବହାର ଓ ଉପଦେଶଦ୍ୱାରା ଯେପରି ସେମାନଙ୍କ ଅନ୍ତଃକରଣରେ କର୍ତ୍ତବ୍ୟକର୍ମ ପ୍ରତି ବା ଶାସ୍ତ୍ରାଦି ପ୍ରତି କୌଣସିପ୍ରକାର ଅଶ୍ରଦ୍ଧା ବା ସଂଶୟ ଉତ୍ପନ୍ନ ନ ହୁଏ; କାରଣ ଏପରି ହୋଇଗଲେ, ସେମାନେ ଯାହା କିଛି ଶାସ୍ତ୍ରବିହିତ କର୍ମ ଶ୍ରଦ୍ଧାପୂର୍ବକ ସକାମଭାବରେ ଅନୁଷ୍ଠାନ କରୁଛନ୍ତି, ତାହାକୁ ମଧ୍ୟ ଜ୍ଞାନ ବା ନିଷ୍କାମଭାବ ନାମରେ ପରିତ୍ୟାଗ କରିଦେବେ। ତେଣୁ ସେମାନଙ୍କର ଉନ୍ନତି ହେବା ପରିବର୍ତ୍ତେ ବର୍ତ୍ତମାନ ସ୍ଥିତିରୁ ମଧ୍ୟ ପତନ ହୋଇଯିବ। ଅତଏବ ଭଗବାନଙ୍କ କହିବାର ଅର୍ଥ ଏହା ନୁହେଁ ଯେ, ଅଜ୍ଞାନୀମାନଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଦେବା ଉଚିତ ନୁହେଁ ବା ନିଷ୍କାମଭାବର ତତ୍ତ୍ୱ ବୁଝାଇବା ଉଚିତ ନୁହେଁ; ଭଗବାନ୍ ଏଠାରେ କହୁଛନ୍ତି, ଅଜ୍ଞାନୀମାନଙ୍କ ମନରେ ଏପରି ଭାବ ଉତ୍ପନ୍ନ କରାଇଦେବା ଉଚିତ ନୁହେଁ, ଯାହାଦ୍ୱାରା କି ସେମାନେ ବୁଝିବେ ଯେ, ତତ୍ତ୍ୱଜ୍ଞାନପ୍ରାପ୍ତିପାଇଁ ବା ତତ୍ତ୍ୱଜ୍ଞାନ ପ୍ରାପ୍ତ ହେବା ପରେ କର୍ମ କରିବା ଅନାବଶ୍ୟକ। ଆହୁରି ମଧ୍ୟ ଏପରି ଭାବ ଉତ୍ପନ୍ନ କରାଇବା ଉଚିତ ନୁହେଁ ଯେ, ଫଳର ଇଚ୍ଛା ନ ଥିଲେ କର୍ମ କରିବା ଆବଶ୍ୟକ ନୁହେଁ ଏବଂ ଏପରି ଭ୍ରମ ମଧ୍ୟ ସେମାନଙ୍କ ମନରେ ରହିବାକୁ ଦେବା ଉଚିତ ନୁହେଁ ଯେ, ଫଳାସକ୍ତିପୂର୍ବକ ସକାମଭାବରେ କର୍ମ କରି ସ୍ୱର୍ଗ ପ୍ରାପ୍ତି କରିନେବା ହିଁ ସବୁଠାରୁ

ବଡ଼ ପୁରୁଷାର୍ଥ; ଏହାଠାରୁ ବଡ଼ ହୋଇ ମନୁଷ୍ୟର ଆଉ କୌଣସି କର୍ତ୍ତବ୍ୟ ନାହିଁ। ବରଂ ନିଜର ଆଚରଣ ତଥା ଉପଦେଶଦ୍ୱାରା ସେମାନଙ୍କ ଅନ୍ତଃକରଣରେ ଥିବା ଆସକ୍ତି ଓ କାମନା ଦୂର କରି ସେମାନଙ୍କୁ ପୂର୍ବପରି ଶ୍ରଦ୍ଧାପୂର୍ବକ କର୍ମରେ ଲଗାଇରଖିବା ଉଚିତ।

**ପ୍ରଶ୍ନ –** କର୍ମାସକ୍ତ ଅଜ୍ଞାନୀମାନେ ତ ପ୍ରଥମରୁ କର୍ମରେ ଲାଗିରହିଥାନ୍ତି; ପୁଣି ଏଠାରେ ଏପରି କଥନର ଅଭିପ୍ରାୟ କଣ ଯେ, ବିଦ୍ୱାନ୍ ସ୍ୱୟଂ ଭଲଭାବରେ କର୍ମ ଆଚରଣ କରି ସେମାନଙ୍କ ଦ୍ୱାରା ମଧ୍ୟ ସେପରି କରାଇବେ ?

**ଉତ୍ତର –** ଏକଥା ଠିକ୍ ଯେ, ଅଜ୍ଞାନୀମାନେ ଶ୍ରଦ୍ଧାପୂର୍ବକ କର୍ମରେ ଲାଗିରହନ୍ତି; କିନ୍ତୁ ଯେତେବେଳେ ସେମାନଙ୍କୁ ତତ୍ତ୍ୱଜ୍ଞାନ ବା ଫଳାସକ୍ତିତ୍ୟାଗ କଥା କୁହାଯାଏ, ସେତେବେଳେ ସେହି କଥାର ଭାବ ସଠିକରୂପେ ବୁଝି ନ ପାରି ସେମାନେ ଭୁଲ୍ ବୁଝିବସନ୍ତି ଯେ, ତତ୍ତ୍ୱଜ୍ଞାନପ୍ରାପ୍ତିପାଇଁ କର୍ମ କରିବା ଆବଶ୍ୟକ ନୁହେଁ; ଫଳ ପ୍ରତି ଆସକ୍ତି ନ ଥିଲେ ମଧ୍ୟ କର୍ମ କରିବା ଅନାବଶ୍ୟକ; କର୍ମର ସ୍ତର ନିମ୍ନ। ତେଣୁ ସେମାନଙ୍କର କର୍ମ ତ୍ୟାଗ କରିବାରେ ରୁଚି ବଢ଼ିଯାଏ ଏବଂ ଶେଷରେ ସେମାନେ ମୋହବଶତଃ ବିହିତକର୍ମ ତ୍ୟାଗ କରି ଆଳସ୍ୟ ଓ ପ୍ରମାଦର ବଶ ହୋଇଯାଆନ୍ତି। ତେଣୁ ଭଗବାନ୍ ଉପର୍ଯ୍ୟୁକ୍ତ ବାକ୍ୟରେ ଜ୍ଞାନୀମାନଙ୍କୁ କହିଛନ୍ତି, ସେମାନେ ସ୍ୱୟଂ ଅନାସକ୍ତଭାବରେ ବିଧିବଦ୍ଧ କର୍ମ ଆଚରଣ କରି ସମସ୍ତଙ୍କ ସମ୍ମୁଖରେ ଏପରି ଆଦର୍ଶ ରଖିଦେବା ଉଚିତ, ଯାହାଦ୍ୱାରା କି କାହାରି ବି ବିହିତକର୍ମରେ କେବେହେଲେ ଅଶ୍ରଦ୍ଧା ଓ ଅରୁଚି ଆସିବ ନାହିଁ ଏବଂ ଲୋକେ ନିଷ୍କାମଭାବରେ କର୍ତ୍ତାପଣ ଅଭିମାନରୁ ରହିତ ହୋଇ ବିଧିପୂର୍ବକ କର୍ମ ଆଚରଣ କରି ନିଜର ମନୁଷ୍ୟଜୀବନକୁ ସାର୍ଥକ କରିବେ।

***ସମ୍ବନ୍ଧ –*** *ଏହିପରି ଦୁଇଟି ଶ୍ଳୋକରେ ଲୋକକଲ୍ୟାଣକୁ ଲକ୍ଷ୍ୟରେ ରଖି ଭଗବାନ୍ ଜ୍ଞାନୀମାନଙ୍କୁ ଶାସ୍ତ୍ରବିହିତ କର୍ମ କରିବାର ପ୍ରେରଣା ଦେଲେ। ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ କର୍ମାସକ୍ତଲୋକମାନଙ୍କ ଅପେକ୍ଷା ସାଂଖ୍ୟଯୋଗୀଙ୍କ ବିଶେଷତା ପ୍ରତିପାଦନ କରୁଛନ୍ତି–*

**ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ।**
**ଅହଙ୍କାରବିମୂଢାତ୍ମା କର୍ତ୍ତାହମିତି ମନ୍ୟତେ॥ ୨୭ ॥**

**ଅନ୍ୱୟ –** **କର୍ମାଣି** = ସମସ୍ତ କର୍ମ; **ସର୍ବଶଃ** = ସବୁପ୍ରକାରେ; **ପ୍ରକୃତେଃ** = ପ୍ରକୃତିର; **ଗୁଣୈଃ** = ଗୁଣମାନଙ୍କ ଦ୍ୱାରା; **କ୍ରିୟମାଣାନି** = କରାଯାଉଥାଏ (ତଥାପି); **ଅହଙ୍କାରବିମୂଢାତ୍ମା** = ଯାହାର ଅନ୍ତଃକରଣ ଅହଙ୍କାରଦ୍ୱାରା ମୋହିତ (ସେହି ଅଜ୍ଞାନୀ); **ଅହମ୍ କର୍ତ୍ତା** = 'ମୁଁ କର୍ତ୍ତା ଅଟେ'; **ଇତି** = ଏପରି (ବୋଲି); **ମନ୍ୟତେ** = ମନେ କରେ।

**ବସ୍ତୁତଃ ସମସ୍ତ କର୍ମ ସବୁପ୍ରକାରେ ପ୍ରକୃତିର ଗୁଣମାନଙ୍କ ଦ୍ୱାରା କରାଯାଉଥାଏ; ତଥାପି ଯାହାର ଅନ୍ତଃକରଣ ଅହଙ୍କାରଦ୍ୱାରା ମୋହିତ ହୋଇ ରହିଥାଏ, ସେହି ଅଜ୍ଞାନୀ 'ମୁଁ ହିଁ କର୍ତ୍ତା ଅଟେ' ବୋଲି ମନେ କରେ॥ ୨୭ ॥**

**ପ୍ରଶ୍ନ –** 'ସମସ୍ତ କର୍ମ ସବୁପ୍ରକାରେ ପ୍ରକୃତିର ଗୁଣମାନଙ୍କ ଦ୍ୱାରା କରାଯାଉଥାଏ' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ପ୍ରକୃତିରୁ ଉତ୍ପନ୍ନ ସତ୍ତ୍ୱ, ରଜ ଓ ତମ – ଏହି ତିନି ଗୁଣ ହିଁ ବୁଦ୍ଧି, ଅହଙ୍କାର, ମନ ଏବଂ ଆକାଶାଦି ସୂକ୍ଷ୍ମ ପଞ୍ଚମହାଭୂତ, ଶ୍ରୋତ୍ରାଦି ଦଶ ଇନ୍ଦ୍ରିୟ ଓ ଶବ୍ଦାଦି ପଞ୍ଚବିଷୟ — ଏପରି ତେଇଶି ତତ୍ତ୍ୱରେ ପରିଣତ ହୋଇଛି। ଏ ସମସ୍ତେ ହେଉଛନ୍ତି ପ୍ରକୃତିର ଗୁଣ। ଏଥିମଧ୍ୟରୁ ବିଷୟ ଗ୍ରହଣ କରିବା ଅନ୍ତଃକରଣ ଓ ଇନ୍ଦ୍ରିୟର, କୌଣସି ବିଷୟରେ ସ୍ଥିର ନିଶ୍ଚୟ କରିବା ବୁଦ୍ଧିର, କୌଣସି ବିଷୟ ଚିନ୍ତନ କରିବା ମନର, ଶବ୍ଦ ଶୁଣିବା କାନର, ବସ୍ତୁକୁ ସ୍ପର୍ଶ କରିବା ଚର୍ମର, ରୂପ ଦେଖିବା ଆଖିର, ରସ ଆସ୍ୱାଦନ କରିବା ଜିହ୍ୱାର, ଗନ୍ଧ ଶୁଙ୍ଘିବା ନାସିକାର, ଶବ୍ଦ ଉଚ୍ଚାରଣ କରିବା ବାଣୀର, ବସ୍ତୁକୁ ଗ୍ରହଣ କରିବା ହାତର, ଗମନ କରିବା ପାଦର, ମଳମୂତ୍ର ତ୍ୟାଗ କରିବା ମଳଦ୍ୱାର ଓ ମୂତ୍ରେନ୍ଦ୍ରିୟର କର୍ମ। ତେଣୁ ଉପରୋକ୍ତ ବାକ୍ୟରେ ଭଗବାନ୍ ସୂଚାଇଛନ୍ତି ଯେ, ସଂସାରରେ ଯେଉଁପ୍ରକାରେ ଏବଂ ଯାହା କିଛି

କ୍ରିୟା ହେଉଛି, ସେହି ସମସ୍ତ କ୍ରିୟା ଉପରୋକ୍ତ ଗୁଣମାନଙ୍କ ଦ୍ୱାରା ହିଁ କରାଯାଏ। ନିର୍ଗୁଣନିରାକାର ଆତ୍ମାର ଏମାନଙ୍କ ସହିତ ବସ୍ତୁତଃ କୌଣସି ସମ୍ବନ୍ଧ ନାହିଁ।

**ପ୍ରଶ୍ନ –** **ଅହଙ୍କାରବିମୂଢ଼ାତ୍ମା** କେଉଁ ମନୁଷ୍ୟର ବାଚକ ?

**ଉତ୍ତର –** ପ୍ରକୃତିର କାର୍ଯ୍ୟରୂପକ ଉପରୋକ୍ତ ବୁଦ୍ଧି, ଅହଙ୍କାର, ମନ, ମହାଭୂତ, ଇନ୍ଦ୍ରିୟ ଓ ସେମାନଙ୍କର ବିଷୟ – ଏହି ତେଇଶିଟି ତତ୍ତ୍ୱର ସଂଘାତରୂପୀ ଶରୀରରେ ଯେଉଁ ଅହଂଭାବ ରହିଛି, ସେଥିରେ ଯେଉଁ ଦୃଢ଼ ଆତ୍ମଭାବ ରହିଛି, ତାହାର ନାମ ଅହଂକାର। ଏହି ଅନାଦିସିଦ୍ଧ ଅହଙ୍କାରର ସମ୍ବନ୍ଧଦ୍ୱାରା ଯାହାର ଅନ୍ତଃକରଣ ଅତ୍ୟନ୍ତ ମୋହିତ ହୋଇଯାଉଛି, ଯାହାର ବିବେକଶକ୍ତି ଲୁପ୍ତ ହୋଇଯାଇଛି ଏବଂ ଏହି କାରଣରୁ ଯେ ଆତ୍ମ-ଅନାତ୍ମ ବସ୍ତୁର ଯଥାର୍ଥ ବିବେଚନ କରି ନିଜକୁ ଶରୀରଠାରୁ ଭିନ୍ନ ଏକ ଶୁଦ୍ଧ ଆତ୍ମାର ବା ପରମାତ୍ମାଙ୍କର ସନାତନ ଅଂଶ ବୋଲି ବୁଝେ ନାହିଁ, **ଅହଙ୍କାରବିମୂଢ଼ାତ୍ମା** ପଦ ହେଉଛି ସେପରି ଅଜ୍ଞାନୀ ମନୁଷ୍ୟର ବାଚକ। ତେଣୁ ବୁଝିବା ଉଚିତ ଯେ, **ଅହଙ୍କାରବିମୂଢ଼ାତ୍ମା** ପଦଟି ଆସକ୍ତିରହିତ ବିବେକଶୀଳ କର୍ମଯୋଗ ସାଧନ କରୁଥିବା ସାଧକଙ୍କ ବାଚକ ନୁହେଁ; କାରଣ ତାଙ୍କର ଅନ୍ତଃକରଣ ଅହଙ୍କାରଦ୍ୱାରା ମୋହିତ ହୋଇ ନ ଥାଏ; ବରଂ ସେ ଅହଙ୍କାର ବିନାଶ କରିବା ଚେଷ୍ଟାରେ ଲାଗିରହିଥାନ୍ତି।

**ପ୍ରଶ୍ନ –** ଉପରୋକ୍ତ ଅଜ୍ଞାନୀ ମନୁଷ୍ୟ 'ମୁଁ କର୍ତ୍ତା' ବୋଲି ମନେ କରେ – ଏପରି କଥନର ଭାବ କଣ ?

**ଉତ୍ତର –** ଏହି କଥାଦ୍ୱାରା ଦେଖାଇଦିଆଯାଇଛି ଯେ, ପ୍ରକୃତରେ ଆତ୍ମାର କର୍ମ ସହିତ କୌଣସି ସମ୍ବନ୍ଧ ନ ଥିଲେ ମଧ୍ୟ, ଅଜ୍ଞାନୀ ମନୁଷ୍ୟ ତେଇଶିତତ୍ତ୍ୱର ଏହି ସଂଘାତ ପ୍ରତି ଅର୍ଥାତ୍ ଦେହ ପ୍ରତି ଆତ୍ମାଭିମାନ କରି ତାହାଦ୍ୱାରା କରାଯାଉଥିବା କର୍ମରେ ନିଜର ସମ୍ବନ୍ଧ ସ୍ଥାପନ କରେ ଓ ନିଜକୁ ସେହି କର୍ମର କର୍ତ୍ତା ବୋଲି ମନେ କରେ – ଅର୍ଥାତ୍ 'ମୁଁ ନିଶ୍ଚୟ କରୁଛି, ମୁଁ ସଂକଳ୍ପ କରୁଛି, ମୁଁ ଶୁଣୁଛି, ମୁଁ ଦେଖୁଛି, ମୁଁ ଖାଉଛି, ପିଉଛି, ଶୋଉଛି, ଚାଲୁଛି', ଇତ୍ୟାଦି ଭାବି ସକଳପ୍ରକାର କର୍ମ ନିଜଦ୍ୱାରା କରାଯାଉଛି ବୋଲି ମନେ କରେ। ତେଣୁ ସେ କର୍ମରେ ବାନ୍ଧି ହୋଇଯାଏ ଏବଂ ତାକୁ ସେହି କର୍ମର ଫଳ ଭୋଗ କରିବାକୁ ବାରମ୍ବାର ଜନ୍ମମୃତ୍ୟୁରୂପକ ସଂସାରଚକ୍ରରେ ଘୂରିବାକୁ ପଡ଼େ।

## ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ।
## ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ॥ ୨୮ ॥

ଅନ୍ୱୟ – ତୁ = ପରନ୍ତୁ; ମହାବାହୋ = ହେ ମହାବାହୁ! ; **ଗୁଣକର୍ମବିଭାଗୟୋଃ** = ଗୁଣବିଭାଗ ଓ କର୍ମବିଭାଗର; **ତତ୍ତ୍ୱବିଦ୍** = ତତ୍ତ୍ୱ ଜାଣିଥିବା ଜ୍ଞାନଯୋଗୀ; **ଗୁଣାଃ** = ଗୁଣମାନେ; **ଗୁଣେଷୁ** = ଗୁଣମାନଙ୍କରେ; **ବର୍ତ୍ତନ୍ତେ** = ପ୍ରବୃତ୍ତ ହୁଅନ୍ତି; **ଇତି** = ଏପରି; **ମତ୍ୱା** = ବୁଝି (ସେଥିରେ); **ନ**, **ସଜ୍ଜତେ** = ଆସକ୍ତ ହୁଅନ୍ତି ନାହିଁ।

**କିନ୍ତୁ ହେ ମହାବାହୁ! ଗୁଣବିଭାଗ ଓ କର୍ମବିଭାଗର ତତ୍ତ୍ୱ ଜାଣିଥିବା ଜ୍ଞାନଯୋଗୀ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି ବୋଲି ବୁଝି ସେଥିରେ ଆସକ୍ତ ହୁଅନ୍ତି ନାହିଁ॥ ୨୮ ॥**

**ପ୍ରଶ୍ନ –** ତୁ ପଦ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ସତେଇଶ ଶ୍ଳୋକରେ ବର୍ଣ୍ଣିତ ଅଜ୍ଞାନୀର ସ୍ଥିତିଠାରୁ ଜ୍ଞାନଯୋଗୀଙ୍କ ସ୍ଥିତି ଅତ୍ୟନ୍ତ ଭିନ୍ନ; ଏହା ଦେଖାଇବାପାଇଁ ତୁ ପଦ ପ୍ରୟୋଗ କରାଯାଇଅଛି।

**ପ୍ରଶ୍ନ –** **ଗୁଣବିଭାଗ ଓ କର୍ମବିଭାଗ** କଣ ? ତଥା 'ସେହି ଦୁଇ ବିଭାଗର ତତ୍ତ୍ୱ ଜାଣିବା' କହିଲେ କଣ ବୁଝାଏ ?

**ଉତ୍ତର –** ସତ୍ତ୍ୱ, ରଜ ଓ ତମ – ଏହି ତିନିଗୁଣର କାର୍ଯ୍ୟରୂପୀ ଯେଉଁ ତେଇଶିଟି ତତ୍ତ୍ୱ ରହିଛି, ଯେଉଁମାନଙ୍କ ବର୍ଣ୍ଣନା ପୂର୍ବଶ୍ଳୋକର ବ୍ୟାଖ୍ୟାରେ କରାଯାଇଛି, ସେହି ତେଇଶିତତ୍ତ୍ୱସମୁଦାୟ ହିଁ ଗୁଣବିଭାଗ। ସ୍ମରଣ ରଖିବା ଉଚିତ ଯେ, ଅନ୍ତଃକରଣରେ ଯେଉଁ ସାତ୍ତ୍ୱିକ, ରାଜସ, ଓ ତାମସ ଭାବ ରହିଛି, ଯେଉଁମାନଙ୍କ ସମ୍ବନ୍ଧରୁ କର୍ମ ସାତ୍ତ୍ୱିକ, ରାଜସ ଓ ତାମସ – ଏପରି ତିନିପ୍ରକାର ବୋଲି ସ୍ୱୀକାର କରାଯାଏ ଏବଂ ଯାହାର ସମ୍ବନ୍ଧଦ୍ୱାରା ଅମୁକ ମନୁଷ୍ୟ ସାତ୍ତ୍ୱିକ, ଅମୁକ ରାଜସ ଓ ଅମୁକ

ତାମସ ବୋଲି କୁହାଯାଇଥାଏ, ସେହି ଗୁଣବୃତ୍ତିଗୁଡ଼ିକ ମଧ୍ୟ ଗୁଣବିଭାଗର ଅନ୍ତର୍ଗତ।

ଉକ୍ତ ଗୁଣବିଭାଗରେ ଯେଉଁ ଭିନ୍ନ ଭିନ୍ନ କ୍ରିୟା କରାଯାଏ, ଯେଉଁମାନଙ୍କ ବର୍ଣ୍ଣନା ପୂର୍ବଶ୍ଳୋକର ବ୍ୟାଖ୍ୟାରେ କରାଯାଇସାରିଛି, ଯେଉଁ କ୍ରିୟାମାନଙ୍କରେ କର୍ତ୍ତୃତ୍ୱାଭିମାନ ଏବଂ ଆସକ୍ତି ହେବାରୁ ମନୁଷ୍ୟର ବନ୍ଧନ ହୁଏ, ସେହି କ୍ରିୟାସମୂହ ହିଁ କର୍ମବିଭାଗ। ଏହି ଗୁଣବିଭାଗ ଓ କର୍ମବିଭାଗ ପ୍ରକୃତିର ହିଁ ବିସ୍ତାର ଅଟେ। ତେଣୁ ଏସବୁ ଜଡ଼, କ୍ଷଣିକ, ନାଶବାନ୍ ଓ ବିକାରଶୀଳ; ଏସବୁ ମାୟାମୟ; ପ୍ରକୃତରେ କିଛି ନ ଥିଲେ ମଧ୍ୟ ଏସବୁ ସ୍ୱପ୍ନପରି ପ୍ରତୀତ ହେଉଥାନ୍ତି। ଏହି ଗୁଣବିଭାଗ ଓ କର୍ମବିଭାଗଠାରୁ ଆତ୍ମା ସର୍ବଥା ପୃଥକ୍; ଆତ୍ମାର ଏମାନଙ୍କ ସହିତ କୌଣସି ସମ୍ବନ୍ଧ ନାହିଁ। ଆତ୍ମା ସର୍ବଥା ନିର୍ଗୁଣ, ନିରାକାର, ନିର୍ବିକାର, ନିତ୍ୟ, ଶୁଦ୍ଧ, ମୁକ୍ତ ଓ ଜ୍ଞାନସ୍ୱରୂପ। ଏହି ତତ୍ତ୍ୱକୁ ଭଲରୂପେ ବୁଝିନେବା ହିଁ **ଗୁଣବିଭାଗ** ଓ **କର୍ମବିଭାଗର** ତତ୍ତ୍ୱ ଜାଣିବା।

**ପ୍ରଶ୍ନ –** 'ଗୁଣବିଭାଗ' ଓ 'କର୍ମବିଭାଗ'ର ତତ୍ତ୍ୱ ଜାଣିଥିବା ଜ୍ଞାନଯୋଗୀ 'ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି ବୋଲି ବୁଝି ସେଥିରେ ଆସକ୍ତ ହୁଅନ୍ତି ନାହିଁ' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏଠାରେ ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ଗୁଣବିଭାଗ ଓ କର୍ମବିଭାଗର ତତ୍ତ୍ୱ ଜାଣିଥିବା ସାଂଖ୍ୟଯୋଗୀ ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ପ୍ରତ୍ୟେକ କ୍ରିୟାରୁ ବୁଝନ୍ତି ଯେ, ଗୁଣମାନଙ୍କର କାର୍ଯ୍ୟରୂପକ ମନ, ବୁଦ୍ଧି ଓ ଇନ୍ଦ୍ରିୟ ଆଦି କରଣ ହିଁ ଗୁଣମାନଙ୍କର କାର୍ଯ୍ୟରୂପକ ନିଜ ନିଜ ବିଷୟରେ ପ୍ରବୃତ୍ତ ହେଉଛନ୍ତି, ତାଙ୍କର ସେଥିରେ କିଛି ସମ୍ବନ୍ଧ ନାହିଁ। ତେଣୁ ସେ କୌଣସି କର୍ମରେ ବା କର୍ମଫଳରୂପକ ଭୋଗରେ ଆସକ୍ତ ହୁଅନ୍ତି ନାହିଁ ଅର୍ଥାତ୍ କୌଣସି କର୍ମ ସହିତ ବା ତାହାର ଫଳ ସହିତ ନିଜର କୌଣସିପ୍ରକାର ସମ୍ବନ୍ଧ ସ୍ଥାପନ କରନ୍ତି ନାହିଁ। ସେ ଏସବୁକୁ ଜଡ଼, ଅନିତ୍ୟ, ବିକାରୀ ଓ ନାଶବାନ୍ ବୋଲି ମାନନ୍ତି ତଥା ନିଜକୁ ସଦାସର୍ବଦା ନିତ୍ୟ, ଶୁଦ୍ଧ, ବୁଦ୍ଧ, ନିର୍ବିକାର, ଅକର୍ତ୍ତା ଓ ସର୍ବଥା ଅସଙ୍ଗ ବୋଲି ବୁଝନ୍ତି। ପଞ୍ଚମ ଅଧ୍ୟାୟର ଅଷ୍ଟମ ଓ ନବମ ଶ୍ଳୋକରେ ଏବଂ ଚତୁର୍ଦ୍ଦଶ ଅଧ୍ୟାୟର ଊଣେଇଶ ଶ୍ଳୋକରେ ମଧ୍ୟ ଏହା କୁହାଯାଇଛି।

*ସମ୍ବନ୍ଧ – ଏପରିଭାବରେ କର୍ମାସକ୍ତ ମନୁଷ୍ୟର ସ୍ଥିତି ଓ ସାଂଖ୍ୟଯୋଗୀଙ୍କ ସ୍ଥିତି ମଧ୍ୟରେ ରହିଥିବା ପ୍ରଭେଦ ଦେଖାଇଲେ। ଭଗବାନ୍ ବର୍ତ୍ତମାନ ସମ୍ପୂର୍ଣ୍ଣଭାବରେ ଆତ୍ମତତ୍ତ୍ୱ ବୁଝିଥିବା ମହାପୁରୁଷଙ୍କୁ ପ୍ରେରଣା ଦେଉଛନ୍ତି ଯେ, ସେ କର୍ମାସକ୍ତ ଅଜ୍ଞାନୀ ମନୁଷ୍ୟମାନଙ୍କୁ ବିଚଳିତ କରନ୍ତୁ ନାହିଁ–*

## ପ୍ରକୃତେର୍ଗୁଣସମ୍ମୂଢାଃ ସଜ୍ଜନ୍ତେ ଗୁଣକର୍ମସୁ।
## ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍॥ ୨୯ ॥

**ଅନ୍ୱୟ –** **ପ୍ରକୃତେଃ** = ପ୍ରକୃତିର; **ଗୁଣସମ୍ମୂଢାଃ** = ଗୁଣମାନଙ୍କ ଦ୍ୱାରା ଅତ୍ୟନ୍ତ ମୋହିତ ହୋଇଥିବା ଲୋକେ; **ଗୁଣକର୍ମସୁ** = ଗୁଣମାନଙ୍କରେ ଓ କର୍ମମାନଙ୍କରେ; **ସଜ୍ଜନ୍ତେ** = ଆସକ୍ତ ରହନ୍ତି; **ତାନ୍** = ସେହି; **ଅକୃତ୍ସ୍ନବିଦଃ** = ପୂର୍ଣ୍ଣଭାବରେ ବୁଝୁ ନ ଥିବା; **ମନ୍ଦାନ୍** = ମନ୍ଦବୁଦ୍ଧି ଅଜ୍ଞାନୀମାନଙ୍କୁ; **କୃତ୍ସ୍ନବିତ୍** = ପୂର୍ଣ୍ଣଭାବରେ ଜାଣିଥିବା ଜ୍ଞାନୀ; **ନ, ବିଚାଳୟେତ୍** = ବିଚଳିତ କରିବା ଉଚିତ ନୁହେଁ।

**ପ୍ରକୃତିର ଗୁଣମାନଙ୍କ ଦ୍ୱାରା ଅତ୍ୟନ୍ତ ମୋହିତ ହୋଇଥିବା ମନୁଷ୍ୟମାନେ ଗୁଣମାନଙ୍କରେ ଓ କର୍ମମାନଙ୍କରେ ଆସକ୍ତ ରହନ୍ତି; ପୂର୍ଣ୍ଣଭାବରେ ବୁଝି ନ ଥିବା ସେହି ମନ୍ଦବୁଦ୍ଧି ଅଜ୍ଞାନୀମାନଙ୍କୁ ପୂର୍ଣ୍ଣଭାବରେ ଜାଣିଥିବା ଜ୍ଞାନୀ ବିଚଳିତ କରିବା ଉଚିତ ନୁହେଁ॥ ୨୯ ॥**

**ପ୍ରଶ୍ନ –ପ୍ରକୃତେଃ ଗୁଣସମ୍ମୂଢାଃ —** ଏହି ବିଶେଷଣଦ୍ୱାରା କେଉଁ ଶ୍ରେଣୀର ମନୁଷ୍ୟମାନଙ୍କୁ ଲକ୍ଷ୍ୟ କରାଯାଉଛି ? ପୁଣି 'ସେମାନେ ଗୁଣ ଓ କର୍ମରେ ଆସକ୍ତ ରହନ୍ତି' – ଏହି ବକ୍ତବ୍ୟର ଭାବ କଣ ?

**ଉତ୍ତର –** ପଚିଶ ଓ ଛବିଶ ଶ୍ଳୋକରେ ଯେଉଁ କର୍ମାସକ୍ତ ଅଜ୍ଞାନୀମାନଙ୍କ କଥା କୁହାଯାଇଛି, ଏଠାରେ **ପ୍ରକୃତେଃ ଗୁଣସମ୍ମୂଢାଃ** ପଦଦ୍ୱାରା ସେହି ଇହଲୋକ ଓ ପରଲୋକର ଭୋଗକାମନାରେ ଶ୍ରଦ୍ଧା ଓ ଆସକ୍ତିପୂର୍ବକ

କର୍ମରେ ଲାଗିରହିଥିବା ସତ୍ତ୍ୱମିଶ୍ରିତ ରଜୋଗୁଣୀ ସକାମୀ କର୍ମଠ ମନୁଷ୍ୟମାନଙ୍କୁ ଲକ୍ଷ୍ୟ କରି କୁହାଯାଇଛି; କାରଣ ପରମାତ୍ମପ୍ରାପ୍ତିପାଇଁ ସାଧନା କରୁଥିବା ଯେଉଁ ଶୁଦ୍ଧସାତ୍ତ୍ୱିକ ମନୁଷ୍ୟମାନେ ଅଛନ୍ତି, ସେମାନେ ପ୍ରକୃତିର ଗୁଣମାନଙ୍କ ଦ୍ୱାରା ମୋହିତ ହୋଇ ନ ଥାନ୍ତି ଏବଂ ନିଷିଦ୍ଧକର୍ମ କରୁଥିବା ଯେଉଁ ତାମସ ମନୁଷ୍ୟମାନେ ଅଛନ୍ତି, ଶାସ୍ତ୍ରରେ ଶ୍ରଦ୍ଧା ନ ଥିବାରୁ ସେମାନଙ୍କର ବିହିତକର୍ମରେ ପ୍ରେମ ନ ଥାଏ; ତେଣୁ ସେମାନେ ବିହିତକର୍ମ କରନ୍ତି ନାହିଁ। ଏଣୁ ସେହି ତାମସପୁରୁଷମାନଙ୍କୁ କର୍ମରୁ ବିଚଳିତ ନ କରିବାପାଇଁ କହିବାର ପ୍ରଶ୍ନ ହିଁ ଉଠୁ ନାହିଁ; ବରଂ ଶାସ୍ତ୍ରରେ ସେମାନଙ୍କର ଶ୍ରଦ୍ଧା ଉତ୍ପନ୍ନ କରାଇ ସେମାନଙ୍କ ଦ୍ୱାରା ନିଷିଦ୍ଧକର୍ମ ତ୍ୟାଗ କରାଇବା ଏବଂ ବିହିତକର୍ମ କରାଇବା ଆବଶ୍ୟକ।

'ସେହି ସକାମ ମନୁଷ୍ୟମାନେ ଗୁଣମାନଙ୍କରେ ଓ କର୍ମମାନଙ୍କରେ ଆସକ୍ତ ରହନ୍ତି'– ଏହା କହି ଦେଖାଇଦିଆଯାଇଛି ଯେ, ଗୁଣଦ୍ୱାରା ମୋହିତ ହୋଇ ରହୁଥିବାରୁ ସେହି ଲୋକମାନଙ୍କର ପ୍ରକୃତିର ଅତୀତ ସୁଖ ବିଷୟରେ କିଛି ଜ୍ଞାନ ନ ଥାଏ; ସେମାନେ ସାଂସାରିକ ଭୋଗକୁ ହିଁ ସବୁଠାରୁ ବଳି ସୁଖଦାୟକ ବୋଲି ବୁଝନ୍ତି। ତେଣୁ ସେମାନେ ଗୁଣମାନଙ୍କର କାର୍ଯ୍ୟରୂପୀ ଭୋଗରେ ଏବଂ ସେହି ଭୋଗପ୍ରାପ୍ତିର ଉପାୟଭୂତ କର୍ମମାନଙ୍କରେ ଲାଗିରହନ୍ତି; ସେମାନେ ସେହି ଗୁଣର ବନ୍ଧନରୁ ମୁକ୍ତ ହେବାକୁ ଇଚ୍ଛା ବା ଚେଷ୍ଟା କରନ୍ତି ନାହିଁ।

**ପ୍ରଶ୍ନ –** ତାନ୍ ପଦ ସହିତ ଅକୃତ୍ସ୍ନବିଦଃ ଓ ମନ୍ଦାନ୍ ପଦଦ୍ୱାରା କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** ଏହି ତିନୋଟି ପଦଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତ ଶ୍ରେଣୀର ସକାମ ମନୁଷ୍ୟମାନେ ଯଥାର୍ଥ ତତ୍ତ୍ୱ ବୁଝି ନ ଥିଲେ ମଧ୍ୟ ଶାସ୍ତ୍ରୋକ୍ତ କର୍ମରେ ଓ ସେମାନଙ୍କ ଫଳରେ ଶ୍ରଦ୍ଧା ରଖୁଥିବାରୁ ଅନ୍ତତଃ କେତେକାଂଶରେ ବୁଝନ୍ତି; ତେଣୁ ଅଧର୍ମକୁ ଧର୍ମ ଓ ଧର୍ମକୁ ଅଧର୍ମ ବୋଲି ମାନି ମନଇଚ୍ଛା ଆଚରଣ କରୁଥିବା ତାମସ ପୁରୁଷମାନଙ୍କ ଠାରୁ ସେମାନେ ବହୁଗୁଣରେ ଭଲ। ସେମାନେ ସର୍ବଥା ବୁଦ୍ଧିହୀନ ନୁହନ୍ତି; ଅଳ୍ପବୁଦ୍ଧିଯୁକ୍ତ ଅଟନ୍ତି। ତେଣୁ ସେମାନଙ୍କ କର୍ମର ଫଳ ପରମାତ୍ମପ୍ରାପ୍ତି ନ ହୋଇ ନାଶବାନ୍ ଭୋଗର ପ୍ରାପ୍ତି ହିଁ ହୋଇଥାଏ।

**ପ୍ରଶ୍ନ – କୃତ୍ସ୍ନବିତ୍** ପଦ କାହାର ବାଚକ ଏବଂ 'ସେ ସେହି ଅଜ୍ଞାନୀମାନଙ୍କୁ ବିଚଳିତ ନ କରନ୍ତୁ'– ଏପରି କହିବାର ଭାବ କଣ ?

**ଉତ୍ତର –** ପୂର୍ବୋକ୍ତ ପ୍ରକାରେ ଗୁଣବିଭାଗ ଓ କର୍ମବିଭାଗ ତତ୍ତ୍ୱ ପୂର୍ଣ୍ଣଭାବରେ ବୁଝି ପରମାତ୍ମାଙ୍କ ସ୍ୱରୂପ ବିଷୟରେ ପୂର୍ଣ୍ଣଭାବରେ ଯଥାର୍ଥ ଜ୍ଞାନ ପାଇଥିବା ଜ୍ଞାନୀମହାପୁରୁଷଙ୍କର ବାଚକ ହେଉଛି **କୃତ୍ସ୍ନବିତ୍**। ଏବଂ ସେ ସେହି ଅଜ୍ଞାନୀମାନଙ୍କୁ ବିଚଳିତ ନ କରନ୍ତୁ ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, କର୍ମରେ ଲାଗିରହିଥିବା ଅଧିକାରୀ ସକାମ ମନୁଷ୍ୟମାନଙ୍କୁ 'କର୍ମ ଅତ୍ୟନ୍ତ ପରିଶ୍ରମସାଧ୍ୟ; କର୍ମରେ କଣ ଅଛି? ଏହି ଜଗତ ମିଥ୍ୟା; କର୍ମମାତ୍ରେ ବନ୍ଧନର କାରଣ'– ଏପରି ଉପଦେଶ ଦେଇ ଶାସ୍ତ୍ରବିହିତ କର୍ମରୁ ବିଚ୍ୟୁତ କରିବା ବା ସେଥିରେ ସେମାନଙ୍କର ଶ୍ରଦ୍ଧା ଓ ରୁଚି କମ୍ କରିଦେବା ଉଚିତ ନୁହେଁ। କାରଣ ସେପରି ହେଲେ ସେମାନଙ୍କ ପତନର ସମ୍ଭାବନା ଆସିଯାଏ। ଏଣୁ ଶାସ୍ତ୍ରବିହିତ କର୍ମରେ, କର୍ମକୁ ବିଧାନ କରୁଥିବା ଶାସ୍ତ୍ରରେ ଓ ତାହାର ଫଳରେ ସେହି ଲୋକଙ୍କ ବିଶ୍ୱାସ ସ୍ଥିର ରଖି ସେମାନଙ୍କୁ ଯଥାର୍ଥ ତତ୍ତ୍ୱ ବୁଝାଇଦେବା ଉଚିତ। ତା ସଙ୍ଗେ ସଙ୍ଗେ ସେମାନଙ୍କ ଠାରୁ ମମତ୍ୱ, ଆସକ୍ତି ଓ ଫଳଇଚ୍ଛା ତ୍ୟାଗ କରାଇ ଶ୍ରଦ୍ଧା, ଧୈର୍ଯ୍ୟ, ଓ ଉତ୍ସାହପୂର୍ବକ ସାତ୍ତ୍ୱିକକର୍ମ (୧୮/୨୩) ବା ସାତ୍ତ୍ୱିକତ୍ୟାଗ (୧୮/୯) କରିବାର ରୀତି ବୁଝାଇଦେବା ଉଚିତ, ଯାହାଦ୍ୱାରା କି ସେମାନେ ଅନାୟାସରେ ସେହି ତତ୍ତ୍ୱକୁ ଭଲଭାବରେ ବୁଝିପାରିବେ।

***ସମ୍ବନ୍ଧ –*** *ଅର୍ଜୁନଙ୍କ ପ୍ରାର୍ଥନା ଅନୁସାରେ ଭଗବାନ୍ ତାଙ୍କୁ ଏକ ନିଶ୍ଚିତ କଲ୍ୟାଣକର ସାଧନା ଶିକ୍ଷା ଦେବା ଉଦ୍ଦେଶ୍ୟରେ ଚତୁର୍ଥ ଶ୍ଳୋକରୁ ଆରମ୍ଭ କରି ଏପର୍ଯ୍ୟନ୍ତ ସିଦ୍ଧ କରିଛନ୍ତି ଯେ, ମନୁଷ୍ୟ ଯେକୌଣସି ସ୍ଥିତିରେ ଥାଉ ନା କାହିଁକି, ସେ ନିଜର ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁରୂପ ବିହିତକର୍ମରେ ଲାଗିରହିବା ଉଚିତ। ଏହା ସିଦ୍ଧ କରିବାନିମନ୍ତେ ପୂର୍ବଶ୍ଳୋକଗୁଡ଼ିକରେ ଭଗବାନ୍ କ୍ରମାନ୍ୱୟରେ ନିମ୍ନଲିଖିତ କଥା କହିଛନ୍ତି –*

*୧– କର୍ମ ନ କଲେ କେବେହେଲେ ନୈଷ୍କର୍ମ୍ୟସିଦ୍ଧିରୂପକ କର୍ମନିଷ୍ଠା ମିଳିପାରିବ ନାହିଁ। (୩/୪)*

୨- କର୍ମ ତ୍ୟାଗ କରିଦେଲେ ଜ୍ଞାନନିଷ୍ଠା ସିଦ୍ଧ ହୋଇପାରେ ନାହିଁ (୩/୪)
୩- ଗୋଟିଏ କ୍ଷଣପାଇଁ ମଧ୍ୟ ମନୁଷ୍ୟ ପୂର୍ଣ୍ଣତଃ କର୍ମ ନ କରି ରହିପାରିବ ନାହିଁ (୩/୫)।
୪- ଉପରୁ ଉପରୁ କର୍ମ ତ୍ୟାଗ କରିଦେଇ ମନରେ ବିଷୟଚିନ୍ତନ କରୁଥିବା ଲୋକ ମିଥ୍ୟାଚାରୀ ଅଟେ (୩/୬)।
୫- ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରି ନିଷ୍କାମଭାବରେ କର୍ମ କରୁଥିବା ଲୋକ ଶ୍ରେଷ୍ଠ ଅଟନ୍ତି (୩/୭)।
୬- କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେୟସ୍କର (୩/୮)।
୭- କର୍ମ ନ କଲେ ସେତେବେଳେ ଶରୀରନିର୍ବାହ ହୋଇପାରିବ ନାହିଁ (୩/୮)।
୮- ଯଜ୍ଞପାଇଁ କରାଯାଉଥିବା କର୍ମ ବନ୍ଧନର କାରଣ ନୁହେଁ, ବରଂ ମୁକ୍ତିର କାରଣ (୩/୯)।
୯- କର୍ମ କରିବା ନିମନ୍ତେ ପ୍ରଜାପତି ବ୍ରହ୍ମାଙ୍କର ଆଜ୍ଞା ରହିଛି ଏବଂ ନିଃସ୍ୱାର୍ଥଭାବରେ ତାହା ପାଳନ କଲେ ନିଶ୍ଚିତ ଶ୍ରେୟ ମିଳେ (୩/୧୦,୧୧)।
୧୦- କର୍ତ୍ତବ୍ୟ ପାଳନ ନ କରି ଭୋଗ୍ୟବସ୍ତୁ ଉପଭୋଗ କରୁଥିବା ଲୋକ ଚୋର ଅଟେ (୩/୧୨)।
୧୧- କର୍ତ୍ତବ୍ୟ ପାଳନ କରି ଯଜ୍ଞଶେଷରେ ବଳିଥିବା ଅନ୍ନଦ୍ୱାରା ଶରୀରନିର୍ବାହପାଇଁ ଭୋଜନ କରୁଥିବା ଲୋକ ସବୁ ପାପରୁ ମୁକ୍ତ ହୋଇଯାଏ (୩/୧୩)।
୧୨- ଯେଉଁମାନେ ଯଜ୍ଞାଦି ନ କରି କେବଳ ଶରୀରପୋଷଣପାଇଁ ଭୋଜନ ରନ୍ଧନ କରନ୍ତି, ସେମାନେ ପାପୀ (୩/୧୩)।
୧୩- କର୍ତ୍ତବ୍ୟକର୍ମତ୍ୟାଗଦ୍ୱାରା ସୃଷ୍ଟିଚକ୍ରରେ ବାଧା ଜନ୍ମାଉଥିବା ଲୋକର ଜୀବନ ବ୍ୟର୍ଥ ଓ ପାପମୟ (୩/୧୬)।
୧୪- ଅନାସକ୍ତଭାବରେ କର୍ମ କଲେ ପରମାତ୍ମପ୍ରାପ୍ତି ହୁଏ (୩/୧୯)।
୧୫- ପୂର୍ବକାଳରେ ଜନକାଦି ମଧ୍ୟ କର୍ମଦ୍ୱାରା ସିଦ୍ଧି ପ୍ରାପ୍ତି କରିଥିଲେ (୩/୨୦)।
୧୬- ଅନ୍ୟ ଲୋକମାନେ ଶ୍ରେଷ୍ଠ ମହାପୁରୁଷଙ୍କୁ ଅନୁକରଣ କରନ୍ତି; ତେଣୁ ଶ୍ରେଷ୍ଠ ମହାପୁରୁଷ କର୍ମ କରିବା ଉଚିତ (୩/୨୧)।
୧୭- ଭଗବାନଙ୍କର କର୍ତ୍ତବ୍ୟ ବୋଲି କିଛି ନାହିଁ; ତଥାପି ସେ ଲୋକକଲ୍ୟାଣପାଇଁ କର୍ମ କରନ୍ତି (୩/୨୨)।
୧୮- ଜ୍ଞାନୀଙ୍କ ପାଇଁ କର୍ତ୍ତବ୍ୟ ବୋଲି କିଛି ନାହିଁ; ତଥାପି ଲୋକସଂଗ୍ରହପାଇଁ ସେ କର୍ମ କରିବା ଉଚିତ (୩/୨୫)।
୧୯- ଜ୍ଞାନୀଙ୍କ ପକ୍ଷରେ ସ୍ୱୟଂ ବିହିତକର୍ମ ତ୍ୟାଗ କରି ବା କର୍ମତ୍ୟାଗର ଉପଦେଶ ଦେଇ ଲୋକଙ୍କୁ କର୍ତ୍ତବ୍ୟକର୍ମରୁ କୌଣସିପ୍ରକାରେ ବିଚଳିତ କରିବା ଉଚିତ ନୁହେଁ, ବରଂ ସ୍ୱୟଂ କର୍ମ କରି ଅନ୍ୟମାନଙ୍କୁ କର୍ମ କରିବାକୁ ପ୍ରେରଣା ଦେବା ଉଚିତ (୩/୨୬)।
୨୦- ଜ୍ଞାନୀ ମହାପୁରୁଷ ବିହିତକର୍ମ ସ୍ୱରୂପତଃ ତ୍ୟାଗ କରିବାର ଉପଦେଶ ଦେଇ କର୍ମାସକ୍ତ ମନୁଷ୍ୟମାନଙ୍କୁ ବିଚଳିତ କରିବା ଉଚିତ ନୁହେଁ (୩/୨୯)।

ଏପରିଭାବରେ କର୍ମର ଅବଶ୍ୟକର୍ତ୍ତବ୍ୟତା ପ୍ରତିପାଦନ କରିବା ପରେ ବର୍ତ୍ତମାନ ଭଗବାନ୍ ଦ୍ୱିତୀୟ ଶ୍ଳୋକରେ ଅର୍ଜୁନ କରିଥିବା ପ୍ରାର୍ଥନା ଅନୁସାରେ ତାଙ୍କୁ ପରମକଲ୍ୟାଣପ୍ରାପ୍ତିର ଐକାନ୍ତିକ ଓ ସର୍ବଶ୍ରେଷ୍ଠ ନିଶ୍ଚିତ ସାଧନା ବିଷୟରେ କହି ଯୁଦ୍ଧ କରିବାକୁ ଆଜ୍ଞା ଦେଉଛନ୍ତି—

**ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା ।**
**ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ ॥ ୩୦ ॥**

**ଅନ୍ୱୟ—** **ଅଧ୍ୟାତ୍ମଚେତସା** = ଅନ୍ତର୍ଯାମୀ ପରମାତ୍ମାଙ୍କ ଠାରେ ଲାଗିଥିବା ଚିତ୍ତଦ୍ୱାରା; **ସର୍ବାଣି** = ସକଳ; **କର୍ମାଣି** = କର୍ମମାନଙ୍କୁ; **ମୟି** = ମୋଠାରେ; **ସଂନ୍ୟସ୍ୟ** = ଅର୍ପଣ କରି; **ନିରାଶୀଃ** = ଆଶାରହିତ; **ନିର୍ମମଃ** = ମମତାରହିତ (ଏବଂ); **ବିଗତଜ୍ୱରଃ** = ସନ୍ତାପରହିତ; **ଭୂତ୍ୱା** = ହୋଇ; **ଯୁଧ୍ୟସ୍ୱ** = ଯୁଦ୍ଧ କର।

**ଅନ୍ତର୍ଯାମୀ ପରମାତ୍ମାଙ୍କ ଠାରେ ଲାଗିରହିଥିବା ଚିତ୍ତଦ୍ୱାରା ସମସ୍ତ କର୍ମକୁ ମୋଠାରେ ଅର୍ପଣ କରି ଆଶାରହିତ, ମମତାରହିତ ଓ ସନ୍ତାପରହିତ ହୋଇ ଯୁଦ୍ଧ କର ॥ ୩୦ ॥**

**ପ୍ରଶ୍ନ –** ଅଧ୍ୟାତ୍ମଚେତସା ପଦରେ ଚେତସ୍ ଶବ୍ଦ କେଉଁ ଚିତ୍ତର ବାଚକ ଓ 'ତାହାଦ୍ୱାରା ସମସ୍ତ କର୍ମ ଭଗବାନଙ୍କୁ ଅର୍ପଣ କରିବା'ର ଅର୍ଥ କଣ ?

**ଉତ୍ତର –** ଚେତସ୍ ପଦଟି ହେଉଛି ସର୍ବାନ୍ତର୍ଯାମୀ ପରମେଶ୍ୱରଙ୍କ ଗୁଣ, ପ୍ରଭାବ ଓ ସ୍ୱରୂପକୁ ବୁଝି ତାଙ୍କ ଉପରେ ବିଶ୍ୱାସ କରୁଥିବା ଓ ନିରନ୍ତର ସର୍ବତ୍ର ତାଙ୍କ ଚିନ୍ତନ କରି ରହୁଥିବା ଚିତ୍ତର ବାଚକ। ଏପରି ଚିତ୍ତଦ୍ୱାରା ଭଗବାନଙ୍କୁ ସର୍ବଶକ୍ତିମାନ୍, ସର୍ବାଧାର, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବେଶ୍ୱର ତଥା ପରମପ୍ରାପ୍ୟ, ପରମଗତି, ପରମହିତୈଷୀ, ପରମପ୍ରିୟ, ପରମସୁହୃଦ୍ ଓ ପରମଦୟାଳୁ ବୋଲି ବୁଝି, ନିଜର ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀର ତଥା ତାହାଦ୍ୱାରା କରାଯାଉଥିବା ସମସ୍ତ କର୍ମ ଓ ଜଗତର ସମସ୍ତ ପଦାର୍ଥ ଭଗବାନଙ୍କର ହିଁ ଜାଣି ସେହିସବୁରେ ମମତ୍ୱ, ଆସକ୍ତି ସର୍ବଥା ତ୍ୟାଗ କରିଦେବା ତଥା 'ମୋର କିଛି କରିବାର ଶକ୍ତି ନାହିଁ, ଭଗବାନ୍ ସବୁପ୍ରକାର ଶକ୍ତି ପ୍ରଦାନ କରି ମୋ ଦ୍ୱାରା ନିଜର ଇଚ୍ଛା ଅନୁସାରେ ଯଥାଯୋଗ୍ୟ ସମସ୍ତ କର୍ମ କରାଉଛନ୍ତି, ମୁଁ ତ କେବଳ ନିମିତ୍ତମାତ୍ର' – ଏପରିଭାବରେ ନିଜକୁ ସର୍ବଥା ଭଗବାନଙ୍କର ଅଧୀନ ବୋଲି ବୁଝିବା; ଭଗବାନଙ୍କ ଆଜ୍ଞାନୁସାରେ ତାଙ୍କ ପାଇଁ, ତାଙ୍କରି ପ୍ରେରଣାରେ, ସେ ଯେପରି କରାଉଛନ୍ତି, ସେପରି ସକଳ କର୍ମ କାଠକଣ୍ଢେଇପରି କରିବା; ସେହି କର୍ମରେ ବା ତା'ର ଫଳରେ କୌଣସିପ୍ରକାର ନିଜର ମାନସିକ ସମ୍ବନ୍ଧ ନ ରଖିବା; ସବୁକିଛି ଭଗବାନଙ୍କର ବୋଲି ବୁଝିବା – ଏସବୁ ହିଁ 'ଅଧ୍ୟାତ୍ମ ଚିତ୍ତଦ୍ୱାରା ସମସ୍ତ କର୍ମ ଭଗବାନଙ୍କୁ ସମର୍ପଣ କରିଦେବା'। ଏପରିଭାବରେ ଭଗବାନଙ୍କ ଠାରେ ସମସ୍ତ କର୍ମ ଅର୍ପଣ କରିଦେବାର କଥା ଦ୍ୱାଦଶ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ତଥା ଅଷ୍ଟାଦଶ ଅଧ୍ୟାୟର ସତାବନ ଓ ଛଅଷଠି ଶ୍ଳୋକରେ କୁହାଯାଇଛି।

**ପ୍ରଶ୍ନ –** ଉପରୋକ୍ତପ୍ରକାରେ ସମସ୍ତ କର୍ମ ଭଗବାନଙ୍କ ଠାରେ ଅର୍ପଣ କରିଦେବା ପରେ ତ ଆଶା, ମମତ୍ୱ ଓ ସନ୍ତାପ ସ୍ୱତଃ ବିନାଶ ପାଇଯାଏ; ପୁଣି ଏଠାରେ ଆଶା, ମମତ୍ୱ ଓ ସନ୍ତାପରହିତ ହୋଇ ଯୁଦ୍ଧ କର ବୋଲି କହିବାର ଭାବ କଣ ?

**ଉତ୍ତର –** ଭଗବାନଙ୍କ ଠାରେ ଅଧ୍ୟାତ୍ମଚିତ୍ତଦ୍ୱାରା ସମସ୍ତ କର୍ମ ସମର୍ପଣ କରିଦେବା ପରେ ଆଶା, ମମତ୍ୱ ଓ ସନ୍ତାପ ରହେ ନାହିଁ– ଏହି ଭାବ ସ୍ପଷ୍ଟ କରିବାକୁ ଏଠାରେ ଭଗବାନ୍ ଅର୍ଜୁନଙ୍କୁ ଆଶା, ମମତ୍ୱ ଓ ସନ୍ତାପରହିତ ହୋଇ ଯୁଦ୍ଧ କରିବାକୁ କହିଛନ୍ତି। ଭଗବାନଙ୍କ ଅଭିପ୍ରାୟ ହେଉଛି, ''ତୁମେ ସମସ୍ତ କର୍ମର ଭାର ମୋ ଉପରେ ଛାଡ଼ିଦେଇ ସବୁପ୍ରକାରେ ଆଶା-ମମତା, ରାଗ-ଦ୍ୱେଷ ଓ ହର୍ଷ-ଶୋକ ଆଦି ବିକାରରୁ ରହିତ ହୋଇଯାଅ ଏବଂ ଏପରି ହୋଇ ମୋର ଆଜ୍ଞାନୁସାରେ ଯୁଦ୍ଧ କର।'' ତେଣୁ ବୁଝିବା ଉଚିତ ଯେ, କର୍ମ କରିବା ସମୟରେ ବା ତାହାର ଫଳ ଭୋଗ କରିବା ସମୟରେ ଯେପର୍ଯ୍ୟନ୍ତ ସାଧକଙ୍କର ସେହି କର୍ମରେ ବା ଭୋଗରେ ମମତ୍ୱ, ଆସକ୍ତି ବା କାମନା ରହିଛି, ଅଥବା ତାଙ୍କର ଅନ୍ତଃକରଣରେ ରାଗଦ୍ୱେଷ, ହର୍ଷଶୋକ ଆଦି ବିକାର ରହିଛି, ସେପର୍ଯ୍ୟନ୍ତ ତାଙ୍କର ସମସ୍ତ କର୍ମ ଭଗବାନଙ୍କୁ ସମର୍ପିତ ହୋଇ ନାହିଁ।

*ସମ୍ବନ୍ଧ – ଏପରିଭାବରେ ଅର୍ଜୁନଙ୍କୁ ତାଙ୍କ କଲ୍ୟାଣର ନିଶ୍ଚିତ ସାଧନା ବୁଝାଇଦେବା ସଙ୍ଗେ ସଙ୍ଗେ, ତାଙ୍କୁ ଯୁଦ୍ଧ କରିବାକୁ ଆଜ୍ଞା ଦେଇ ଭଗବାନ୍ ବର୍ତ୍ତମାନ ତାହା ଅନୁଷ୍ଠାନ କରିବାର ଫଳ କଣ, ତାହା ବର୍ଣ୍ଣନା କରୁଛନ୍ତି–*

**ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ।**
**ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ॥ ୩୧ ॥**

ଅନ୍ୱୟ – ଯେ ମାନବାଃ = ଯେଉଁ ମନୁଷ୍ୟମାନେ; ଅନସୂୟନ୍ତଃ = ଦୋଷଦୃଷ୍ଟିରୁ ରହିତ ହୋଇ (ଏବଂ); ଶ୍ରଦ୍ଧାବନ୍ତଃ = ଶ୍ରଦ୍ଧାଯୁକ୍ତ ହୋଇ; ମେ = ମୋର; ଇଦମ୍ = ଏହି; ମତମ୍ = ମତକୁ; ନିତ୍ୟମ୍ = ସର୍ବଦା; ଅନୁତିଷ୍ଠନ୍ତି = ଅନୁସରଣ କରନ୍ତି; ତେ = ସେମାନେ; ଅପି = ମଧ୍ୟ; କର୍ମଭିଃ = ସମସ୍ତ କର୍ମରୁ; ମୁଚ୍ୟନ୍ତେ = ମୁକ୍ତ ହୋଇଯାଆନ୍ତି।

**ଯେଉଁ ମନୁଷ୍ୟମାନେ ଦୋଷଦୃଷ୍ଟିରୁ ରହିତ ହୋଇ ଏବଂ ଶ୍ରଦ୍ଧାଯୁକ୍ତ ହୋଇ ମୋର ଏହି ମତକୁ ସଦାସର୍ବଦା ଅନୁସରଣ କରନ୍ତି, ସେମାନେ ମଧ୍ୟ ସମସ୍ତ କର୍ମରୁ ମୁକ୍ତ ହୋଇଯାଆନ୍ତି॥ ୩୧ ॥**

**ପ୍ରଶ୍ନ –** ଏଠାରେ **ଯେ** ସହିତ **ମାନବାଃ** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** ଏହା ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଏହି ସାଧନା କୌଣସି ଏକ ଜାତିବିଶେଷ ବା ବ୍ୟକ୍ତିବିଶେଷପାଇଁ ସୀମିତ ନୁହେଁ। ଏଥିରେ ପ୍ରତ୍ୟେକ ମନୁଷ୍ୟର ଅଧିକାର ରହିଛି। ପ୍ରତ୍ୟେକ ବର୍ଣ୍ଣ, ଆଶ୍ରମ, ଜାତି ବା ସମାଜର ମନୁଷ୍ୟ ନିଜର କର୍ତ୍ତବ୍ୟକର୍ମ ଉପରୋକ୍ତପ୍ରକାରେ ଭଗବାନଙ୍କ ଠାରେ ସମର୍ପଣ କରି ଏହି ସାଧନା ଅନୁଷ୍ଠାନ କରିପାରନ୍ତି।

**ପ୍ରଶ୍ନ – ଶ୍ରଦ୍ଧାବନ୍ତଃ** ଓ **ଅନସୂୟନ୍ତଃ** ଏହି ଦୁଇ ପଦର ଭାବ କଣ ?

**ଉତ୍ତର –** ଏହି ଦୁଇ ପଦଦ୍ୱାରା ଭଗବାନ୍ କହିଛନ୍ତି, ''ଯେଉଁ ମନୁଷ୍ୟମାନଙ୍କର ମୋ ଠାରେ ଦୋଷଦୃଷ୍ଟି ରହିଛି, ଯେ ମୋତେ ସାକ୍ଷାତ୍ ପରମେଶ୍ୱର ବୋଲି ନ ମାନି ସାଧାରଣ ମନୁଷ୍ୟ ବୋଲି ମନେକରନ୍ତି ଏବଂ ଯେଉଁମାନଙ୍କର ମୋ ଉପରେ ବିଶ୍ୱାସ ନାହିଁ, ସେମାନେ ଏହି ସାଧନାର ଅଧିକାରୀ ନୁହଁନ୍ତି। ଯେଉଁ ମନୁଷ୍ୟମାନେ କେବେ କୌଣସିପ୍ରକାରେ ମୋ ଠାରେ ଦୋଷଦୃଷ୍ଟି କରନ୍ତି ନାହିଁ ଓ ସଦାସର୍ବଦା ଶ୍ରଦ୍ଧା-ଭକ୍ତି ରଖନ୍ତି, ସେହି ମନୁଷ୍ୟମାନେ କେବଳ ଏହି ସାଧନା ଅନୁଷ୍ଠାନ କରିପାରନ୍ତି। ଅତଏବ ଏହି ସାଧନା ଅନୁଷ୍ଠାନ କରିବାକୁ ଇଚ୍ଛା କରୁଥିବା ଲୋକଙ୍କୁ ଉପରୋକ୍ତ ଗୁଣରେ ସମ୍ପନ୍ନ ହେବାକୁ ପଡ଼ିବ। ଏହା ନ ହେଲେ, ସାଧନା ଅନୁଷ୍ଠାନ କରିବା ତ ଦୂରର କଥା, ତାହା ବୁଝିବା ମଧ୍ୟ କଠିନ ହେବ।''

**ପ୍ରଶ୍ନ – ନିତ୍ୟମ୍** ପଦ **ମତମ୍**ର ବିଶେଷଣ ନା **ଅନୁତିଷ୍ଠନ୍ତି**ର ବିଶେଷଣ ?

**ଉତ୍ତର –** ଭଗବାନଙ୍କର ମତ ତ ନିତ୍ୟ, ଏଣୁ **ମତମ୍**ର ବିଶେଷଣ ବୋଲି ମାନିନେଲେ କିଛି କ୍ଷତି ନାହିଁ; କିନ୍ତୁ ଏଠାରେ ତାହାକୁ **ଅନୁତିଷ୍ଠନ୍ତି** କ୍ରିୟାର ବିଶେଷଣ ବୋଲି ମାନିବା ଅଧିକ ଉପଯୋଗୀ ବୋଲି ମନେ ହେଉଛି। ଅଭିପ୍ରାୟ ଏହି ଯେ, ଉପରୋକ୍ତ ସାଧକ ସକଳ କର୍ମ ସବୁଦିନପାଇଁ ଭଗବାନଙ୍କ ଠାରେ ସମର୍ପଣ କରିଦେଇ ନିଜର ସମସ୍ତ କ୍ରିୟା ସେହିଭାବରେ କରିବା ଉଚିତ।

**ପ୍ରଶ୍ନ –** ଏଠାରେ **ଅପି** ପଦ ପ୍ରୟୋଗ କରି 'ସେ ମଧ୍ୟ ସମସ୍ତ କର୍ମରୁ ମୁକ୍ତ ହୋଇଯାଆନ୍ତି'— ଏପରି କହିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଜଣାଇଦେଇଛନ୍ତି ଯେ, ଯେତେବେଳେ ଏହି ସାଧନାଦ୍ୱାରା ଅନ୍ୟ ଲୋକେ ମଧ୍ୟ ସମସ୍ତ କର୍ମରୁ ମୁକ୍ତ ହୋଇଯାଆନ୍ତି ଅର୍ଥାତ୍ ଜନ୍ମମରଣରୂପକ କର୍ମବନ୍ଧନରୁ ଚିରକାଳପାଇଁ ମୁକ୍ତ ହୋଇ ପରମକଲ୍ୟାଣରୂପୀ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ପାଇଯାଆନ୍ତି, ସେତେବେଳେ ତୁମପାଇଁ ଆଉ କହିବାର କଣ ଅଛି !

*ସମ୍ବନ୍ଧ – ଏପରିଭାବରେ ନିଜର ଉପରୋକ୍ତ ମତାନୁସାରେ ଚଳିବାର ଫଳ ବର୍ଣ୍ଣନା କରିସାରି ବର୍ତ୍ତମାନ ସେହି ଅନୁସାରେ ନ ଚଳିଲେ କି କ୍ଷତି ହୁଏ, ତାହା କହୁଛନ୍ତି–*

**ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତମ୍।**
**ସର୍ବଜ୍ଞାନବିମୂଢାଂସ୍ତାନ୍ ବିଦ୍ଧି ନଷ୍ଟାନଚେତସଃ ।। ୩୨ ।।**

**ଅନ୍ୱୟ –** ତୁ = କିନ୍ତୁ; ଯେ = ଯେଉଁ ମନୁଷ୍ୟମାନେ (ମୋଠାରେ); **ଅଭ୍ୟସୂୟନ୍ତଃ** = ଦୋଷାରୋପଣ କରି କରି; ମେ = ମୋର; ଏତତ୍ = ଏହି; ମତମ୍ = ମତକୁ; ନ, **ଅନୁତିଷ୍ଠନ୍ତି** = ଅନୁଷ୍ଠାନ କରନ୍ତି ନାହିଁ ଅର୍ଥାତ୍ ତଦନୁସାରେ ଚଳନ୍ତି ନାହିଁ; ତାନ୍ = ସେହି; **ଅଚେତସଃ** = ମୂର୍ଖମାନଙ୍କୁ (ତୁମେ); **ସର୍ବଜ୍ଞାନବିମୂଢାନ୍** = ସମସ୍ତ ଜ୍ଞାନରେ ମୂଢ଼ (ଏବଂ); **ନଷ୍ଟାନ୍** = ନଷ୍ଟ (ହୋଇଛନ୍ତି); **ବିଦ୍ଧି** = ବୋଲି ଜାଣ।

**କିନ୍ତୁ ଯେଉଁ ମନୁଷ୍ୟମାନେ ମୋଠାରେ ଦୋଷାରୋପଣ କରି ମୋର ଏହି ମତ ଅନୁସାରେ ଚଳନ୍ତି ନାହିଁ, ସେହି ମୂର୍ଖମାନଙ୍କୁ ତୁମେ ସମସ୍ତ ଜ୍ଞାନରେ ମୂଢ଼ ବୋଲି ଓ ନଷ୍ଟ ହୋଇଯାଇଛନ୍ତି ବୋଲି ଜାଣ ।। ୩୨ ।।**

**ପ୍ରଶ୍ନ – ତୁ** ପଦର ଭାବ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ବର୍ଣ୍ଣିତ ସାଧକଙ୍କ ଠାରୁ ଅତ୍ୟନ୍ତ ବିପରୀତଭାବରେ ଚଳୁଥିବା ମନୁଷ୍ୟର ଗତି ଏହି ଶ୍ଳୋକରେ କହିଛନ୍ତି; ଏଠାରେ **ତୁ** ପଦଟି ହେଉଛି ସେହି ଭାବର ଦ୍ୟୋତକ।

**ପ୍ରଶ୍ନ –** 'ଭଗବାନଙ୍କ ଠାରେ ଦୋଷାରୋପଣ କରି

ଭଗବାନଙ୍କର ମତ ଅନୁସାରେ ନ ଚଳିବା' କହିଲେ କଣ ବୁଝାଏ ?

**ଉତ୍ତର –** ''ଏ ନିଜେ ପୂଜା ପାଇବାକୁ ଏପରି ଉପଦେଶ ଦେଉଛନ୍ତି; ସମସ୍ତ କର୍ମ ତାଙ୍କୁ ଅର୍ପଣ କରିଦେଲେ ମନୁଷ୍ୟ ଯେ କର୍ମବନ୍ଧନରୁ ମୁକ୍ତ ହୋଇଯାଏ, ତାହା କଦାପି ନୁହେଁ'' — ଭଗବାନଙ୍କୁ ସାଧାରଣ ମନୁଷ୍ୟ ବୋଲି ଭାବି ତାଙ୍କ ବିଷୟରେ ଏପରିସବୁ ଭାବିବା କିମ୍ବା ଅନ୍ୟମାନଙ୍କ ଆଗରେ ଏପରିସବୁ କହିବା ହିଁ ଭଗବାନଙ୍କ ଠାରେ ଦୋଷାରୋପଣ କରିବା। ଏପରି ବୁଝି ଭଗବାନଙ୍କ କଥା ଅନୁସାରେ ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ ନ କରିବା, ପରମେଶ୍ୱରଙ୍କୁ ସକଳ କର୍ମ ଅର୍ପଣ ନ କରି ନିଜ ଇଚ୍ଛା ଅନୁସାରେ କର୍ମ କରିବା ଏବଂ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବା – ଏହା ହିଁ ଭଗବାନଙ୍କ ଠାରେ ଦୋଷାରୋପଣ କରି ତାଙ୍କ ମତ ଅନୁସାରେ ନ ଚଳିବା।

**ପ୍ରଶ୍ନ – ଅଚେତସଃ** ପଦଟି କେଉଁ ଶ୍ରେଣୀର ମନୁଷ୍ୟମାନଙ୍କ ବାଚକ ଏବଂ 'ସେମାନଙ୍କୁ ସମସ୍ତ ଜ୍ଞାନରେ ମୂଢ଼ ତଥା ନଷ୍ଟ ହୋଇଛନ୍ତି ବୋଲି ଜାଣ'– ଏପରି କହିବାର ଭାବ କଣ ?

**ଉତ୍ତର –** ଯେଉଁମାନଙ୍କ ମନ ଦୋଷରେ ପୂର୍ଣ୍ଣ ହୋଇ ରହିଛି, ଯେଉଁମାନଙ୍କ ଠାରେ ବିବେକ ବୋଲି କିଛି ନାହିଁ ଓ ଯେଉଁମାନଙ୍କର ଚିତ୍ତ ସେମାନଙ୍କ ନିଜ ବଶରେ ନାହିଁ, **ଅଚେତସଃ** ପଦଟି ହେଉଛି ସେହି ମୂର୍ଖ ତାମସ ମନୁଷ୍ୟମାନଙ୍କର ବାଚକ। ସେମାନେ ସମସ୍ତ ଜ୍ଞାନରେ ମୂଢ଼ ଓ ନଷ୍ଟ ହୋଇଛନ୍ତି ବୋଲି କହିବାର ଅର୍ଥ ଏହି ଯେ, ସେପରି ମନୁଷ୍ୟମାନଙ୍କର ବୁଦ୍ଧି ବିପରୀତ ହୋଇଯାଏ; ସେମାନେ ଲୌକିକ ଓ ପାରଲୌକିକ ସବୁପ୍ରକାର ସୁଖସାଧନାକୁ ବିପରୀତ ବୋଲି ବୁଝିବାକୁ ଲାଗନ୍ତି। ତେଣୁ ସେମାନେ ବିପରୀତ ଆଚରଣରେ ପ୍ରବୃତ୍ତ ହୋଇଯାନ୍ତି। ଫଳସ୍ୱରୂପ ସେମାନଙ୍କର ଇହଲୋକରେ ଓ ପରଲୋକରେ ପତନ ହୋଇଯାଏ। ସେମାନେ ନିଜର ବର୍ତ୍ତମାନ ସ୍ଥିତିରୁ ମଧ୍ୟ ଭ୍ରଷ୍ଟ ହୋଇଯାଆନ୍ତି। ମରିବା ପରେ ସେମାନଙ୍କୁ ନିଜର କର୍ମଫଳ ଭୋଗିବାକୁ କୁକୁର, ଘୁଷୁରୀ ଆଦି ନୀଚଯୋନିରେ ଜନ୍ମ ନେବାକୁ ପଡ଼େ; ବା ଘୋର ନରକରେ ପଡ଼ି ଭୟାନକ ଯନ୍ତ୍ରଣା ଭୋଗ କରିବାକୁ ପଡ଼େ।

*__ସମ୍ବନ୍ଧ –__ ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଭଗବାନଙ୍କ ମତ ଅନୁସାରେ ନ ଚଳୁଥିବା ଲୋକ ନଷ୍ଟ ହୋଇଯାଏ; ଏହା ଉପରେ ପ୍ରଶ୍ନ ହୁଏ : ଯଦି କେହି ଭଗବାନଙ୍କ ମତ ଅନୁସାରେ କର୍ମ ନ କରି ଜିଦ୍‌ପୂର୍ବକ ସର୍ବଥା କର୍ମ ତ୍ୟାଗ କରିଦିଏ, ତେବେ କ୍ଷତି କଣ ? ଏହା ଉପରେ କହୁଛନ୍ତି–*

**ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି।**
**ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି।। ୩୩ ।।**

**ଅନ୍ୱୟ –** ଭୂତାନି = ସମସ୍ତପ୍ରାଣୀ; **ପ୍ରକୃତିମ୍** = ପ୍ରକୃତିକୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ନିଜ ସ୍ୱଭାବର ପରବଶ ହୋଇ କର୍ମ କରନ୍ତି; **ଜ୍ଞାନବାନ୍** = ଜ୍ଞାନବାନ୍; **ଅପି** = ମଧ୍ୟ; **ସ୍ୱସ୍ୟାଃ** = ନିଜ; **ପ୍ରକୃତେଃ** = ପ୍ରକୃତିର; **ସଦୃଶମ୍** = ଅନୁସାରେ; **ଚେଷ୍ଟତେ** = ଚେଷ୍ଟା କରନ୍ତି (ତେଣୁ ଏଥିରେ କାହାର); **ନିଗ୍ରହଃ** = ହଠ, ଜିଦ୍; **କିମ୍** = କଣ; **କରିଷ୍ୟତି** = କରିବ।

**ସମସ୍ତ ପ୍ରାଣୀ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ନିଜ ସ୍ୱଭାବର ପରବଶ ହୋଇ କର୍ମ କରନ୍ତି। ଜ୍ଞାନବାନ୍ ବ୍ୟକ୍ତି ମଧ୍ୟ ନିଜ ପ୍ରକୃତି ଅନୁସାରେ ଚେଷ୍ଟା କରନ୍ତି। ତେଣୁ ଏଥିରେ କାହାର ଜିଦ୍ ବା କଣ କରିବ ?।। ୩୩ ।।**

**ପ୍ରଶ୍ନ –** 'ସମସ୍ତ ପ୍ରାଣୀ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି' – ଏହି କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ସମସ୍ତ ନଦୀର ଜଳ ଯେପରି ସ୍ୱାଭାବିକଭାବରେ ସମୁଦ୍ର ଆଡ଼କୁ ବହିଯାଏ, ଏବଂ ତାହାର ପ୍ରବାହକୁ ବଳପୂର୍ବକ ରୋକି ହୁଏ ନାହିଁ, ସମସ୍ତ ପ୍ରାଣୀ ସେହିପରି ନିଜ ନିଜ ପ୍ରକୃତିର ଅଧୀନ ହୋଇ, ପ୍ରକୃତିର ପ୍ରବାହରେ ପଡ଼ି ପ୍ରକୃତି ଆଡ଼କୁ ଯାଆନ୍ତି। ତେଣୁ କୌଣସି ପୁରୁଷ ଜିଦ୍ କରି ସର୍ବଥା କର୍ମ ତ୍ୟାଗ କରିପାରେ ନାହିଁ। ହଁ, ନଦୀର ପ୍ରବାହକୁ ଯେପରି ଏ ପାଖରୁ ଆର ପାଖକୁ ବଦଳାଇ ଦିଆଯାଇପାରେ, ମନୁଷ୍ୟ ନିଜ ଉଦ୍ଦେଶ୍ୟକୁ ସେହିପରି ପରିବର୍ତ୍ତନ କରି ତା'ର ପ୍ରବାହର ପଥ ବଦଳାଇଦେଇପାରେ ଅର୍ଥାତ୍ ରାଗଦ୍ୱେଷ ତ୍ୟାଗ କରି ସେହି କର୍ମକୁ ପରମାତ୍ମପ୍ରାପ୍ତିର ସହାୟକ କରିଦେଇପାରେ।

**ପ୍ରଶ୍ନ –** ଏଠାରେ **ପ୍ରକୃତି** ଶବ୍ଦର ଅର୍ଥ କଣ ?

**ଉତ୍ତର –** ଜନ୍ମଜନ୍ମାନ୍ତରରେ କରାଯାଇଥିବା କର୍ମମାନଙ୍କର ସଂସ୍କାର ସ୍ୱଭାବରୂପରେ ପ୍ରକଟ ହୁଏ; ସେହି ସ୍ୱଭାବକୁ **ପ୍ରକୃତି** କହନ୍ତି ।

**ପ୍ରଶ୍ନ –** ଏଠାରେ **ଜ୍ଞାନବାନ୍** ଶବ୍ଦ କାହାର ବାଚକ ?

**ଉତ୍ତର –** ଏଠାରେ **ଜ୍ଞାନବାନ୍** ପଦଟି ହେଉଛି ପରମାତ୍ମାଙ୍କ ଯଥାର୍ଥ ତତ୍ତ୍ୱ ଜାଣିଥିବା ଭଗବତ୍‌ପ୍ରାପ୍ତ ମହାପୁରୁଷଙ୍କ ବାଚକ ।

**ପ୍ରଶ୍ନ – ଅପି** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର – ଅପି** ପଦ ପ୍ରୟୋଗଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁଠି ସମସ୍ତ ଗୁଣରୁ ଅତୀତ ଜ୍ଞାନୀ ମଧ୍ୟ ନିଜର ପ୍ରକୃତି ଅନୁସାରେ ଚେଷ୍ଟା କରନ୍ତି, ସେଠାରେ ଯେଉଁ ଅଜ୍ଞାନୀ ମନୁଷ୍ୟ ପ୍ରକୃତିର ଅଧୀନ, ସେ କିପରି ପ୍ରକୃତିପ୍ରବାହକୁ ହିତ୍‌ପୂର୍ବକ ବନ୍ଦ କରିପାରିବ ?

**ପ୍ରଶ୍ନ –** ପରମାତ୍ମାଙ୍କୁ ପାଇଥିବା ଜ୍ଞାନୀ ମହାପୁରୁଷମାନଙ୍କ ସ୍ୱଭାବ କଣ ଭିନ୍ନ ଭିନ୍ନ ହୋଇଥାଏ ?

**ଉତ୍ତର –** ହଁ; ସମସ୍ତଙ୍କ ସ୍ୱଭାବ ଭିନ୍ନ ଭିନ୍ନ ହୋଇଥାଏ । ପୂର୍ବସାଧନା ଓ ପ୍ରାରବ୍ଧଭେଦରେ ସ୍ୱଭାବରେ ପାର୍ଥକ୍ୟ ରହିବା ଅନିବାର୍ଯ୍ୟ ।

**ପ୍ରଶ୍ନ –** ପୂର୍ବାର୍ଜିତ କର୍ମର ସଂସ୍କାରରୂପକ ସ୍ୱଭାବ ସହିତ ଜ୍ଞାନୀଙ୍କର କଣ କୌଣସି ସମ୍ବନ୍ଧ ରହିଥାଏ ? ଯଦି ନ ରହିଥାଏ, ତେବେ 'ଜ୍ଞାନୀ ବି ନିଜର ପ୍ରକୃତି ଅନୁସାରେ ଚେଷ୍ଟା କରନ୍ତି' କହିବାର ଅଭିପ୍ରାୟ କଣ ?

**ଉତ୍ତର –** କର୍ମସଂସ୍କାର ସହିତ ଜ୍ଞାନୀଙ୍କର ବସ୍ତୁତଃ କୌଣସିପ୍ରକାର ସମ୍ବନ୍ଧ ରହେ ନାହିଁ, କି ସେ କୌଣସିପ୍ରକାର କ୍ରିୟା ମଧ୍ୟ କରନ୍ତି ନାହିଁ; କିନ୍ତୁ ତାଙ୍କର ଅନ୍ତଃକରଣରେ ପୂର୍ବାର୍ଜିତ ପ୍ରାରବ୍ଧର ସଂସ୍କାର ରହିଥାଏ ଏବଂ ତାହା ଅନୁସାରେ ତାଙ୍କର ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ପ୍ରାରବ୍ଧଭୋଗପାଇଁ ଓ ଲୋକସଂଗ୍ରହପାଇଁ କର୍ତ୍ତାପଣରହିତ କ୍ରିୟାମାନ ହେଉଥାଏ; ସେହି କ୍ରିୟାମାନଙ୍କୁ ଲୋକଦୃଷ୍ଟିରୁ ଜ୍ଞାନୀଙ୍କ ଠାରେ ଅଧ୍ୟାରୋପଣ କରି କୁହାଯାଏ ଯେ, ଜ୍ଞାନୀ ମଧ୍ୟ ନିଜର ପ୍ରକୃତି ଅନୁସାରେ ଚେଷ୍ଟା କରନ୍ତି । ଜ୍ଞାନୀଙ୍କର କ୍ରିୟା କର୍ତ୍ତାପଣରହିତ ହେଉଥିବାରୁ ତାହା ସର୍ବଥା ରାଗ-ଦ୍ୱେଷ ଓ ଅହଂତ୍ୱ-ମମତ୍ୱରୁ ଶୂନ୍ୟ ହୋଇଥାଏ । ଅତଏବ ତାହା କେବଳ ଚେଷ୍ଟାମାତ୍ର; ତାହାର ସଂଜ୍ଞା କର୍ମ ନୁହେଁ । ଏହି ଭାବ ସ୍ପଷ୍ଟ କରିଦେବାକୁ ଏଠାରେ **ଚେଷ୍ଟତେ** କ୍ରିୟା ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ –** ଜ୍ଞାନୀଙ୍କର ଅନ୍ତଃକରଣରେ ରାଗ-ଦ୍ୱେଷ ଓ ହର୍ଷ-ଶୋକାଦି ବିକାରମାନ ଜାତ ହୁଏ ନାହିଁ, ନା ସେମାନଙ୍କ ସହିତ ତାଙ୍କର ସମ୍ବନ୍ଧ ରହେ ନାହିଁ ? ଯଦି ତାଙ୍କର ଅନ୍ତଃକରଣ ସହିତ ସମ୍ବନ୍ଧ ନ ଥିବାରୁ ସେହି ଅନ୍ତଃକରଣରେ ବିକାରମାନ ଜାତ ହୁଏ ନାହିଁ, ତେବେ ଶମ, ଦମ, ତିତିକ୍ଷା, ଦୟା, ସନ୍ତୋଷ ଆଦି ସଦ୍‌ଗୁଣ ମଧ୍ୟ ତ ସେଥିରେ ଜାତ ନ ହେବା ଉଚିତ ?

**ଉତ୍ତର –** ଜ୍ଞାନୀଙ୍କର ଯେତେବେଳେ ଅନ୍ତଃକରଣ ସହିତ ସମ୍ବନ୍ଧ ରହେ ନାହିଁ, ସେତେବେଳେ ସେଥିରେ ହେଉଥିବା ବିକାର ବା ସଦ୍‌ଗୁଣମାନଙ୍କ ସହିତ ସମ୍ବନ୍ଧ ରହିପାରିବ କିପରି ? କିନ୍ତୁ ତାଙ୍କର ଅନ୍ତଃକରଣ ଅତ୍ୟନ୍ତ ପବିତ୍ର ହୋଇଯାଇଥାଏ; ନିରନ୍ତର ପରମାତ୍ମାଙ୍କ ସ୍ୱରୂପ ଚିନ୍ତନ କରି କରି ଯେତେବେଳେ ଅନ୍ତଃକରଣର ମଳ, ବିକ୍ଷେପ ଓ ଆବରଣ ଆଦି ତ୍ରିଦୋଷ ପୂର୍ଣ୍ଣଭାବରେ ଶୂନ୍ୟ ହୋଇଯାଏ, ସେତେବେଳେ ସାଧକଙ୍କୁ ପରମାତ୍ମପ୍ରାପ୍ତି ହୋଇଯାଏ । ତେଣୁ ସେହି ଅନ୍ତଃକରଣରେ ଅବିଦ୍ୟାମୂଳକ ଅହଂତ୍ୱ, ମମତ୍ୱ, ରାଗ-ଦ୍ୱେଷ, ହର୍ଷ-ଶୋକ, ଦମ୍ଭ-କପଟ, କାମ-କ୍ରୋଧ, ଲୋଭ-ମୋହ ଆଦି ବିକାରମାନ ରହିପାରେ ନାହିଁ; ଏସବୁ ସେଥିରୁ ସମ୍ପୂର୍ଣ୍ଣ ଶୂନ୍ୟ ହୋଇଯାଏ । ଅତଏବ ଜ୍ଞାନୀ ମହାତ୍ମାପୁରୁଷଙ୍କର ସେହି ଅତ୍ୟନ୍ତ ନିର୍ମଳ ଓ ପରମ ପବିତ୍ର ଅନ୍ତଃକରଣରେ କେବଳ ସମତା, ସନ୍ତୋଷ, ଦୟା, କ୍ଷମା, ନିଃସ୍ପୃହତା, ଶାନ୍ତି ଆଦି ସଦ୍‌ଗୁଣ ସ୍ୱାଭାବିକରୂପେ ସ୍ଫୁରିତ ହେଉଥାଏ ଏବଂ ସେହି ଅନୁସାରେ ଲୋକକଲ୍ୟାଣପାଇଁ ତାଙ୍କର ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ଶାସ୍ତ୍ରବିହିତ କର୍ମ କରାଯାଉଥାଏ । ଦୁର୍ଗୁଣ ଓ ଦୁରାଚାର ସେଥିରେ ଆଦୌ ନ ଥାଏ ।

**ପ୍ରଶ୍ନ –** ଇତିହାସ ଓ ପୁରାଣର କଥାମାନଙ୍କରେ ଏପରି ବହୁତ ପ୍ରସଙ୍ଗ ଆସେ, ଯହିଁରୁ ଜ୍ଞାନୀ ଓ ସିଦ୍ଧ ମହାପୁରୁଷମାନଙ୍କର ଅନ୍ତଃକରଣରେ ମଧ୍ୟ କାମକ୍ରୋଧାଦି ଦୁର୍ଗୁଣମାନଙ୍କର ପ୍ରାଦୁର୍ଭାବ ହେଉଥିବାର ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ତଦନୁସାରେ କ୍ରିୟା ହେଉଥିବାର ପ୍ରମାଣ ମିଳେ । ଏସବୁଥିରୁ କଣ ଜଣାଯାଏ ?

**ଉତ୍ତର –** ଉଦାହରଣ ଅପେକ୍ଷା ବିଧିବାକ୍ୟ ବଳବାନ୍ ଓ ବିଧିବାକ୍ୟ ଅପେକ୍ଷା ନିଷେଧାତ୍ମକ ବାକ୍ୟ ଆହୁରି ବଳବାନ୍ । ଏହା ବ୍ୟତୀତ ଇତିହାସ ଓ ପୁରାଣର କଥାମାନଙ୍କରେ ଯେଉଁ ଉଦାହରଣ ମିଳେ, ତାହାର ରହସ୍ୟ ଠିକ୍‌ରୂପେ ବୁଝିପାରିବା ମଧ୍ୟ କଠିନ । ତେଣୁ ମାନିନେବା ଉଚିତ ଯେ, ଯଦି କାହାର ଅନ୍ତଃକରଣରେ ବାସ୍ତବିକ କାମ-କ୍ରୋଧାଦି ଦୁର୍ଗୁଣମାନଙ୍କର

ପ୍ରାଦୁର୍ଭାବ ହୋଇଯାଏ ଏବଂ ତାହା ଅନୁସାରେ କ୍ରିୟା ମଧ୍ୟ ହୋଇଯାଏ, ତେବେ ସେ ଭଗବତ୍ପ୍ରାପ୍ତ ଜ୍ଞାନୀ ମହାତ୍ମା ନୁହନ୍ତି; କାରଣ ଶାସ୍ତ୍ରରେ କେବେହେଲେ ଏପରି ବିଧିବାକ୍ୟ ମିଳେ ନାହିଁ, ଯାହା ବଳରେ ଜ୍ଞାନୀମହାତ୍ମାଙ୍କ ଠାରେ କାମ-କ୍ରୋଧାଦି ଅବଗୁଣ ଜାତ ହେବା ସିଦ୍ଧ ହୋଇଛି, ବରଂ ତାହାର ନିଷେଧ କଥା ସ୍ଥାନେ ସ୍ଥାନେ ଆସେ। ଗୀତାରେ ମଧ୍ୟ ଯେଉଁ ଯେଉଁଠାରେ ମହାପୁରୁଷଙ୍କର ଲକ୍ଷଣ ବର୍ଣ୍ଣନା କରାଯାଇଛି, ସେଠାରେ ରାଗ-ଦ୍ୱେଷ ଓ କାମ-କ୍ରୋଧ ଆଦି ଦୁର୍ଗୁଣ ଓ ଦୁରାଚାରର ସର୍ବଥା ଅଭାବ ଦେଖାଇଦିଆଯାଇଛି (୫/୨୬,୨୮; ୧୨/୧୭)। ହଁ, ଯଦି ଲୋକସଂଗ୍ରହପାଇଁ ଆବଶ୍ୟକ ହେବାରୁ ସେ ଅଭିନୟଛଳରେ ସେପରି ଚେଷ୍ଟା କରିଥାଆନ୍ତି, ତେବେ ତାହା ଦୋଷ ବୋଲି ଗଣନା କରାଯିବ ନାହିଁ।

**ପ୍ରଶ୍ନ –** 'ତେଣୁ ଏଥିରେ କାହାର ଜିଦ୍ କଣ କରିବ ?' — ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କୌଣସି ମନୁଷ୍ୟ ନିଜର ଜିଦ୍‌ହେତୁ କ୍ଷଣେମାତ୍ର ମଧ୍ୟ କର୍ମ ନ କରି ରହିପାରିବ ନାହିଁ (୩/୫); ପ୍ରକୃତି ତାକୁ ବଳପୂର୍ବକ କର୍ମରେ ଲଗାଇଦେବ (୧୮/୫୯,୬୦)। ତେଣୁ ମନୁଷ୍ୟମାନେ ବିହିତକର୍ମ ତ୍ୟାଗ କରି କର୍ମବନ୍ଧନରୁ ମୁକ୍ତି ପାଇବାର ଆଗ୍ରହ ନ ରଖି, ସ୍ୱଭାବନିୟତ କର୍ମ କରୁ କରୁ କର୍ମବନ୍ଧନରୁ ମୁକ୍ତ ହେବାର ଉପାୟ କରିବା ଉଚିତ; ଏଥିରେ ମନୁଷ୍ୟ ସଫଳ ହୋଇପାରେ। ବିହିତକର୍ମ ତ୍ୟାଗ କରିବାଦ୍ୱାରା ତ ସେ ସ୍ୱେଚ୍ଛାଚାରୀ ହୋଇ ଓଲଟି ପୂର୍ବ ଅପେକ୍ଷା ଅଧିକ କର୍ମବନ୍ଧନରେ ଛନ୍ଦି ହୋଇଯିବ ଏବଂ ତାହାର ଅଧଃପତନ ହୋଇଯିବ।

**ପ୍ରଶ୍ନ –** ଯଦି ସମସ୍ତଙ୍କୁ ପ୍ରକୃତି ଅନୁସାରେ କର୍ମ କରିବାକୁ ପଡ଼େ, ଏବଂ ମନୁଷ୍ୟର କୌଣସିପ୍ରକାର ସ୍ୱତନ୍ତ୍ରତା ନ ଥାଏ, ତେବେ ବିଧିନିଷେଧାତ୍ମକ ଶାସ୍ତ୍ରର ଉପଯୋଗ କଣ ? ସ୍ୱଭାବ ଅନୁସାରେ ମନୁଷ୍ୟକୁ ଶୁଭାଶୁଭ କର୍ମ କରିବାକୁ ପଡ଼ିବ ଓ ସେହି ଅନୁସାରେ ତା'ର ପ୍ରକୃତି ଗଢ଼ିହୋଇଯିବ; ଏପରି ଅବସ୍ଥାରେ ମନୁଷ୍ୟର ଉତ୍ଥାନ କିପରି ହୋଇପାରିବ ?

**ଉତ୍ତର –** ରାଗଦ୍ୱେଷାଦି କାରଣରୁ ଶାସ୍ତ୍ରବିରୁଦ୍ଧ ଅସତ୍‌କର୍ମ ହୁଏ ଏବଂ ଶାସ୍ତ୍ରବିହିତ ସତ୍‌କର୍ମ ଆଚରଣର ପ୍ରଧାନ କାରଣ ହେଉଛି ଶ୍ରଦ୍ଧା, ଭକ୍ତି ଆଦି ସଦ୍‌ଗୁଣ। ରାଗ-ଦ୍ୱେଷ, କାମ-କ୍ରୋଧାଦି ଦୁର୍ଗୁଣମାନଙ୍କୁ ତ୍ୟାଗ କରିବାରେ ଓ ଶ୍ରଦ୍ଧା, ଭକ୍ତି ଆଦି ସଦ୍‌ଗୁଣମାନଙ୍କୁ ଜାଗ୍ରତ କରି ସେମାନଙ୍କ ବୃଦ୍ଧି କରିବାରେ ମନୁଷ୍ୟର ସ୍ୱାତନ୍ତ୍ର୍ୟ ରହିଛି। ଅତଏବ ଦୁର୍ଗୁଣ ତ୍ୟାଗ କରି ଭଗବାନଙ୍କ ଠାରେ ଓ ଶାସ୍ତ୍ରରେ ଶ୍ରଦ୍ଧା-ଭକ୍ତି ରଖି ଭଗବାନଙ୍କ ପ୍ରସନ୍ନତାପାଇଁ କର୍ମ ଆଚରଣ କରିବା ଉଚିତ। ଆଖି ଆଗରେ ଏହି ଆଦର୍ଶ ରଖି କର୍ମ କରୁଥିବା ମନୁଷ୍ୟମାନଙ୍କ ଦ୍ୱାରା କେବେହେଲେ ନିଷିଦ୍ଧକର୍ମ ହୋଇପାରେ ନାହିଁ; ସର୍ବଦା ଶୁଭକର୍ମ ହିଁ ହେଉଥାଏ; ତାହା ମଧ୍ୟ ମୁକ୍ତିପ୍ରଦ ହୁଏ; ବନ୍ଧନକାରକ ନୁହେଁ। ଅଭିପ୍ରାୟ ଏହି ଯେ, କୌଣସି କର୍ମ ନ କରି ରହିଯିବାରେ ମନୁଷ୍ୟ ସ୍ୱତନ୍ତ୍ର ନୁହେଁ; ତାକୁ କର୍ମ କରିବାକୁ ହିଁ ପଡ଼ିବ; କିନ୍ତୁ ସଦ୍‌ଗୁଣର ଆଶ୍ରୟ ନେଇ ନିଜର ପ୍ରକୃତିକୁ ସୁଧାରିଦେବାରେ ସମସ୍ତଙ୍କର ସ୍ୱାତନ୍ତ୍ର୍ୟ ରହିଛି। ପ୍ରକୃତି ଯେତେ ସୁଧୁରିଯାଉଥିବ, ମନୁଷ୍ୟର କ୍ରିୟାଗୁଡ଼ିକ ସ୍ୱତଃ ସେତେ ବିଶୁଦ୍ଧ ହୋଇଯାଉଥିବ। ଅତଏବ ଭଗବାନଙ୍କ ଶରଣ ନେଇ ସ୍ୱଭାବକୁ ସୁଧାରିନେବା ଉଚିତ। ଏହାଦ୍ୱାରା ନିଶ୍ଚିତରୂପେ ଉତ୍ଥାନ ହୋଇପାରିବ।

***ସମ୍ବନ୍ଧ –*** *ଏପରିଭାବରେ ସମସ୍ତଙ୍କୁ ପ୍ରକୃତି ଅନୁସାରେ କର୍ମ କରିବାକୁ ପଡ଼େ। ତା'ହେଲେ କର୍ମବନ୍ଧନରୁ ମୁକ୍ତି ପାଇବାପାଇଁ ମନୁଷ୍ୟ କଣ କରିବା ଉଚିତ ? ଏହି ପ୍ରଶ୍ନ ଉପରେ ଭଗବାନ୍ କହୁଛନ୍ତି–*

**ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ।**
**ତୟୋର୍ନ ବଶମାଗଚ୍ଛେତ୍ ତୌ ହ୍ୟସ୍ୟ ପରିପନ୍ଥିନୌ॥ ୩୪ ॥**

**ଅନ୍ୱୟ –** **ଇନ୍ଦ୍ରିୟସ୍ୟ, ଇନ୍ଦ୍ରିୟସ୍ୟ** = ଇନ୍ଦ୍ରିୟ ଇନ୍ଦ୍ରିୟର; **ଅର୍ଥେ** = ଅର୍ଥରେ ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟବିଷୟରେ; **ରାଗଦ୍ୱେଷୌ** = ରାଗ ଏବଂ ଦ୍ୱେଷ; **ବ୍ୟବସ୍ଥିତୌ** = ଗୁପ୍ତ ହୋଇ ରହିଛି; **ତୟୋଃ** = ଏହି ଦୁହିଁଙ୍କର; **ବଶମ୍** = ବଶକୁ; **ନ, ଆଗଚ୍ଛେତ୍** = ଆସିବା ଉଚିତ ନୁହେଁ; **ହି** = କାରଣ; **ତୌ** = ସେ ଦୁହେଁ (ହିଁ); **ଅସ୍ୟ** = ଏହାର, (କଲ୍ୟାଣମାର୍ଗରେ); **ପରିପନ୍ଥିନୌ** = ବିଘ୍ନ ସୃଷ୍ଟି କରୁଥିବା ଦୁଇ ମହାନ୍ ଶତ୍ରୁ ଅଟନ୍ତି।

**ଇନ୍ଦ୍ରିୟ-ଇନ୍ଦ୍ରିୟର ଅର୍ଥରେ ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟର ବିଷୟରେ ରାଗ ଓ ଦ୍ୱେଷ ଲୁଚି ରହିଛି। ମନୁଷ୍ୟ ସେହି ଦୁଇଟିର ବଶବର୍ତ୍ତୀ ହେବା ଉଚିତ ନୁହେଁ; କାରଣ ସେ ଦୁହେଁ ତା'ର କଲ୍ୟାଣମାର୍ଗରେ ବିଘ୍ନ ସୃଷ୍ଟି କରୁଥିବା ମହାନ୍ ଶତ୍ରୁ ଅଟନ୍ତି।। ୩୪ ।।**

**ପ୍ରଶ୍ନ –** ଏଠାରେ **ଅର୍ଥେ** ପଦ ସହିତ ସମ୍ବନ୍ଧ ରଖୁଥିବା **ଇନ୍ଦ୍ରିୟସ୍ୟ** ପଦଟି ଦୁଇଥର ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** ଶ୍ରୋତ୍ରାଦି ଜ୍ଞାନେନ୍ଦ୍ରିୟ, ବାଣୀ ଆଦି କର୍ମେନ୍ଦ୍ରିୟ ଓ ଅନ୍ତଃକରଣ — ଏହିସବୁରେ ଏବଂ ଏମାନଙ୍କ ଭିତରୁ ପ୍ରତ୍ୟେକ ଇନ୍ଦ୍ରିୟର ପ୍ରତ୍ୟେକ ବିଷୟରେ ପୃଥକ୍ ପୃଥକ୍ ରାଗ-ଦ୍ୱେଷର ସ୍ଥିତି ଦେଖାଇବା ନିମନ୍ତେ ଏଠାରେ **ଅର୍ଥେ** ପଦ ସହିତ ସମ୍ବନ୍ଧ ରଖୁଥିବା **ଇନ୍ଦ୍ରିୟସ୍ୟ** ପଦଟି ଦୁଇଥର ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଅନ୍ତଃକରଣ ସହିତ ସମସ୍ତ ଇନ୍ଦ୍ରିୟଙ୍କର ଯେଉଁସବୁ ଭିନ୍ନ ଭିନ୍ନ ବିଷୟ ରହିଛି, ଯାହାଙ୍କ ସହିତ ଇନ୍ଦ୍ରିୟମାନଙ୍କର ସଂଯୋଗ ବିୟୋଗ ହେଉଥାଏ, ସେହିସମସ୍ତ ବିଷୟରେ ରାଗ ଓ ଦ୍ୱେଷ ଅଲଗା ଅଲଗା ଛପି ରହିଛି।

**ପ୍ରଶ୍ନ –** ଏଠାରେ ଯଦି 'ଇନ୍ଦ୍ରିୟମାନଙ୍କ ଅର୍ଥରେ ଇନ୍ଦ୍ରିୟମାନଙ୍କ ରାଗ-ଦ୍ୱେଷ ଛପି ରହିଥାଏ' ବୋଲି ଅର୍ଥ କରାଯାଏ, ତେବେ କ୍ଷତି କଣ ?

**ଉତ୍ତର –** ଏପରି କ୍ଲିଷ୍ଟକଳ୍ପନା କରିନେଲେ ମଧ୍ୟ ଏହି ଅର୍ଥର ଭାବ ଠିକ୍‌ରୂପେ ବାହାରିବ ନାହିଁ। କାରଣ ଇନ୍ଦ୍ରିୟ ଅନେକ ଓ ସେମାନଙ୍କର ବିଷୟ ମଧ୍ୟ ଅନେକ; ଏପରି ସ୍ଥଳରେ ଗୋଟିଏ ଇନ୍ଦ୍ରିୟର ବିଷୟରେ ଗୋଟିଏ ଇନ୍ଦ୍ରିୟର ରାଗଦ୍ୱେଷ ରହିଥାଏ ବୋଲି କହିବା କିପରି ସାର୍ଥକ ହୋଇପାରିବ ? ତେଣୁ **ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ** ଅର୍ଥାତ୍ **ସର୍ବେନ୍ଦ୍ରିୟାଣାମ୍ –** ଏହିପରି ପ୍ରୟୋଗ ହୋଇଛି ବୋଲି ମାନିନେଇ ଉପରେ କୁହାଯାଇଥିବା ଅର୍ଥ ଠିକ୍ ବୋଲି ଧରିନେବା ହିଁ ଉଚିତ।

**ପ୍ରଶ୍ନ –** ପ୍ରତ୍ୟେକ ଇନ୍ଦ୍ରିୟଙ୍କ ବିଷୟରେ ରାଗ-ଦ୍ୱେଷ ଦୁହେଁ କିପରି ଛପି ରହିଛନ୍ତି ଓ ସେହି ଦୁଇଟିର ବଶ ନ ହେବାର ଅର୍ଥ କଣ ?

**ଉତ୍ତର –** ଯେଉଁ ବସ୍ତୁ, ପ୍ରାଣୀ ବା ଘଟଣାରେ ମନୁଷ୍ୟଙ୍କୁ ସୁଖର ପ୍ରତୀତି ହୁଏ, ଯାହା ତାହାର ଅନୁକୂଳ ହୁଏ, ସେଥିରେ ତାହାର ଆସକ୍ତି ହୋଇଯାଏ। ଏହାକୁ ରାଗ କହନ୍ତି। ଯେଉଁଥିରେ ତାହାକୁ ଦୁଃଖର ପ୍ରତୀତି ହୁଏ, ଯାହା ତାହାର ପ୍ରତିକୂଳ ହୁଏ, ସେଥିରେ ତାହାର ଦ୍ୱେଷ ହୋଇଯାଏ। ବାସ୍ତବରେ କୌଣସି ବସ୍ତୁରେ ସୁଖ ବା ଦୁଃଖ ନାହିଁ। ମନୁଷ୍ୟର ଭାବନା ଅନୁସାରେ ଗୋଟିଏ ବସ୍ତୁ କାହାକୁ ସୁଖପ୍ରଦ ପ୍ରତୀତ ହୁଏ ତ, କାହାକୁ ଦୁଃଖପ୍ରଦ ପ୍ରତୀତ ହୁଏ। ଜଣେ ଲୋକକୁ ଯେଉଁ ବସ୍ତୁ ଏକ ସମୟରେ ସୁଖପ୍ରଦ ପ୍ରତୀତ ହେଉଛି, ତାହା ଅନ୍ୟ ସମୟରେ ଦୁଃଖପ୍ରଦ ପ୍ରତୀତ ହେବାକୁ ଲାଗେ। ଅତଏବ ପ୍ରତ୍ୟେକ ଇନ୍ଦ୍ରିୟର ବିଷୟରେ ରାଗ-ଦ୍ୱେଷ ଲୁଚି ରହିଥାଏ ବା ସମସ୍ତ ବସ୍ତୁରେ ରାଗ ଓ ଦ୍ୱେଷ ଦୁହେଁଯାକ ରହିଥାନ୍ତି; କାରଣ ସେମାନଙ୍କ ସହିତ ମନୁଷ୍ୟର ଯେତେ ଯେତେ ସଂଯୋଗ-ବିୟୋଗ ହେଉଥାଏ, ସେତେ ସେତେ ରାଗ-ଦ୍ୱେଷର ପ୍ରାଦୁର୍ଭାବ ହେଉଥିବାର ଦେଖାଯାଏ।

ଅତଏବ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଆଚରଣ କରି ମନ ଓ ଇନ୍ଦ୍ରିୟମାନଙ୍କ ସହିତ ବିଷୟର ସଂଯୋଗ-ବିୟୋଗ ଘଟିବା ସମୟରେ କୌଣସି ବସ୍ତୁ, ପ୍ରାଣୀ, କ୍ରିୟା ବା ଘଟଣାରେ ପ୍ରିୟ ବା ଅପ୍ରିୟ ଭାବନା ନ ରଖି, ସିଦ୍ଧି-ଅସିଦ୍ଧି, ଜୟ-ପରାଜୟ ଓ ହାନି-ଲାଭ ଆଦିରେ ସମତାଯୁକ୍ତ ହୋଇ ରହିବା, ଟିକିଏ ହେଲେ ହର୍ଷ-ଶୋକ ନ କରିବା ହିଁ ରାଗ-ଦ୍ୱେଷର ବଶ ନ ହେବା। କାରଣ ରାଗ-ଦ୍ୱେଷର ବଶ ହୋଇଗଲେ ମନୁଷ୍ୟର ସବୁଥିରେ ବିଷମ ବୁଦ୍ଧି ଜାତ ହୋଇ ଅନ୍ତଃକରଣରେ ହର୍ଷ-ଶୋକାଦି ବିକାର ଉତ୍ପନ୍ନ ହୋଇଯାଏ। ତେଣୁ ମନୁଷ୍ୟ ପରମେଶ୍ୱରଙ୍କ ଶରଣ ଗ୍ରହଣ କରି ଏହି ରାଗଦ୍ୱେଷରୁ ସମ୍ପୂର୍ଣ୍ଣ ଅତୀତ ହୋଇଯିବା ଉଚିତ।

**ପ୍ରଶ୍ନ –** ମନୁଷ୍ୟର କଲ୍ୟାଣମାର୍ଗରେ ରାଗ ଓ ଦ୍ୱେଷ ବିଘ୍ନକାରୀ ମହାନ୍ ଶତ୍ରୁ ହୁଅନ୍ତି କିପରି ?

**ଉତ୍ତର –** ମନୁଷ୍ୟ ଅଜ୍ଞାନବଶତଃ ରାଗ-ଦ୍ୱେଷର ବଶ ହୋଇ, ବିନାଶଶୀଳ ଭୋଗକୁ ସୁଖର ହେତୁ ବୋଲି ବୁଝି କଲ୍ୟାଣମାର୍ଗରୁ ଭ୍ରଷ୍ଟ ହୋଇଯାଏ। ରାଗ-ଦ୍ୱେଷ ସାଧକଙ୍କୁ ପ୍ରବଞ୍ଚନା କରି ବିଷୟରେ ପକାଇଦିଅନ୍ତି ଏବଂ ତାଙ୍କ କଲ୍ୟାଣ ମାର୍ଗରେ ବିଘ୍ନ ଘଟାଇ ମନୁଷ୍ୟଜୀବନରୂପକ ଅମୂଲ୍ୟ ଧନକୁ ଲୁଟିନିଅନ୍ତି। ଏହି କାରଣରୁ ସେ ମନୁଷ୍ୟଜନ୍ମର ପରମ ଲାଭରୁ ବଞ୍ଚିତ ହୋଇଯାନ୍ତି, ଏବଂ ରାଗଦ୍ୱେଷର ବଶ ହୋଇ ବିଷୟଭୋଗପାଇଁ ସ୍ୱଧର୍ମ ଛାଡ଼ି ପରଧର୍ମ ଗ୍ରହଣ କରନ୍ତି ବା ନାନାପ୍ରକାର ନିଷିଦ୍ଧ

କର୍ମ ଆଚରଣ କରନ୍ତି। ଏହାର ଫଳସ୍ୱରୂପ ମରିବା ପରେ ମଧ୍ୟ ତାଙ୍କର ଦୁର୍ଗତି ହୁଏ। ତେଣୁ ରାଗଦ୍ୱେଷକୁ ପରିପନ୍ଥୀ ଅର୍ଥାତ୍ ସତ୍‌ମାର୍ଗରେ ବିଘ୍ନ ଘଟାଉଥିବା ଶତ୍ରୁ ବୋଲି କୁହାଯାଇଛି।

**ପ୍ରଶ୍ନ —** ସାଧକଙ୍କ କଲ୍ୟାଣମାର୍ଗରେ ଏହି ରାଗ-ଦ୍ୱେଷ କିପ୍ରକାର ବାଧା ସୃଷ୍ଟି କରନ୍ତି ?

**ଉତ୍ତର —** ନିଜର ଗନ୍ତବ୍ୟ ସ୍ଥାନକୁ ଶଗଡ଼ରେ ଯାଉଥିବା କୌଣସି ଯାତ୍ରୀଙ୍କର ଯେପରି ବାଟରେ ବିଘ୍ନ ଘଟାଉଥିବା ଡକାୟତମାନଙ୍କ ସହିତ ଭେଟ ହୋଇଯାଏ ଏବଂ ଡକାୟତମାନେ ବନ୍ଧୁଭାବ ଦେଖାଇ ଶଗଡ଼ିଆ ସହିତ ମିଶିଯାଆନ୍ତି ଓ ଯାତ୍ରୀଙ୍କର ବିବେକରେ ଭ୍ରମ ଉତ୍ପନ୍ନ କରାଇ, ତାଙ୍କୁ ମିଛସୁଖର ପ୍ରଲୋଭନ ଦେଖାଇ ନିଜର କଥାଚାତୁରୀଦ୍ୱାରା ପାଲରେ ପକାଇଦିଅନ୍ତି ଏବଂ ତାଙ୍କୁ ତାଙ୍କର ଗନ୍ତବ୍ୟ ସ୍ଥାନକୁ ଯିବାକୁ ନ ଦେଇ କୌଣସି ଜଙ୍ଗଲକୁ ନେଇଯାଆନ୍ତି ଓ ସେଠାରେ ତାଙ୍କର ସର୍ବସ୍ୱ ଲୁଟିନେଇ ତାଙ୍କୁ ଗଭୀର ଗାତରେ ପକାଇଦିଅନ୍ତି, ଏହି ରାଗ-ଦ୍ୱେଷ ସେହିପରି କଲ୍ୟାଣମାର୍ଗରେ ଚାଲୁଥିବା ସାଧକଙ୍କୁ ଭେଟି, ମିତ୍ରଭାବ ଦେଖାଇ ତାଙ୍କର ମନ ଓ ଇନ୍ଦ୍ରିୟରେ ପ୍ରବେଶ କରିଯାନ୍ତି ଓ ତାଙ୍କର ବିବେକଶକ୍ତିକୁ ନଷ୍ଟ କରି ତଥା ତାଙ୍କୁ ସାଂସାରିକ ବିଷୟଭୋଗ-ସୁଖର ପ୍ରଲୋଭନ ଦେଖାଇ ପାପାଚାରରେ ପ୍ରବୃତ୍ତ କରାଇଦିଅନ୍ତି। ଏହାଦ୍ୱାରା ତାଙ୍କର ସାଧନାକ୍ରମ ନଷ୍ଟ ହୋଇଯାଏ ଏବଂ ପାପର ଫଳସ୍ୱରୂପ ତାଙ୍କୁ ଘୋର ନରକରେ ପଡ଼ି ଭୟାନକ ଦୁଃଖ ଭୋଗ କରିବାକୁ ହୁଏ।

*ସମ୍ବନ୍ଧ — ଏଠାରେ ଅର୍ଜୁନଙ୍କ ମନରେ ଆସିପାରେ ଯେ, ସେ ଏହି ଯୁଦ୍ଧରୂପକ ଘୋର କର୍ମ ନ କରି ଯଦି ଭିକ୍ଷାବୃତ୍ତିଦ୍ୱାରା ନିଜର ଶରୀରଯାତ୍ରା ନିର୍ବାହପୂର୍ବକ ଶାନ୍ତିମୟ କର୍ମରେ ଲାଗିରହିବେ, ତେବେ ସହଜରେ ରାଗଦ୍ୱେଷରୁ ମୁକ୍ତି ପାଇଯିବେ, ପୁଣି ଭଗବାନ୍ ତାଙ୍କୁ ଯୁଦ୍ଧ କରିବାକୁ କାହିଁକି ଆଜ୍ଞା ଦେଉଛନ୍ତି ? ଏହା ଉପରେ ଭଗବାନ୍ କହୁଛନ୍ତି—*

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍।**
**ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ।। ୩୫ ।।**

**ଅନ୍ୱୟ —** **ସ୍ୱନୁଷ୍ଠିତାତ୍** = ଉତ୍ତମ ଆଚରଣ ସହିତ ପାଳିତ ହେଉଥିବା; **ପରଧର୍ମାତ୍** = ଅନ୍ୟର ଧର୍ମଠାରୁ; **ବିଗୁଣଃ** = ଗୁଣରହିତ (ହେଲେ ମଧ୍ୟ); **ସ୍ୱଧର୍ମଃ** = ସ୍ୱଧର୍ମ; **ଶ୍ରେୟାନ୍** = ଅଧିକ ମଙ୍ଗଳକର; **ସ୍ୱଧର୍ମେ** = ନିଜର ଧର୍ମରେ (ତ); **ନିଧନମ୍** = ମରିବା (ମଧ୍ୟ); **ଶ୍ରେୟଃ** = କଲ୍ୟାଣକର (କିନ୍ତୁ); **ପରଧର୍ମଃ** = ଅନ୍ୟର ଧର୍ମ; **ଭୟାବହଃ** = ଭୟଦାୟକ।

**ଉତ୍ତମ ଆଚରଣ ସହିତ ପାଳିତ ହେଉଥିବା ଅନ୍ୟର ଧର୍ମଠାରୁ ଗୁଣରହିତ ହେଲେ ମଧ୍ୟ ସ୍ୱଧର୍ମ ଅଧିକ ମଙ୍ଗଳକର। ନିଜ ଧର୍ମରେ ମରିବା ବରଂ କଲ୍ୟାଣକାରକ; କିନ୍ତୁ ଅନ୍ୟର ଧର୍ମ ଭୟାବହ ଅଟେ।। ୩୫ ।।**

**ପ୍ରଶ୍ନ — ସୁ-ଅନୁଷ୍ଠିତାତ୍** ବିଶେଷଣ ସହିତ **ପରଧର୍ମାତ୍** ପଦ କେଉଁ ଧର୍ମର ବାଚକ ଏବଂ ତାହା ଅପେକ୍ଷା ଗୁଣରହିତ ସ୍ୱଧର୍ମ ଅଧିକ ଶ୍ରେୟସ୍କର ବୋଲି କହିବାର ଅର୍ଥ କଣ ?

**ଉତ୍ତର —** ଏହି ବାକ୍ୟରେ ପରଧର୍ମ ସହିତ ସ୍ୱଧର୍ମର ତୁଳନା କରାଯାଇ ପରଧର୍ମସହିତ ସୁ-ଅନୁଷ୍ଠିତ ବିଶେଷଣ ଓ ସ୍ୱଧର୍ମସହିତ ବିଗୁଣ ବିଶେଷଣ ଦିଆଯାଇଛି। ଅତଏବ ପ୍ରତ୍ୟେକ ବିଶେଷଣର ବିରୋଧୀଭାବ ସମ୍ପୃକ୍ତ ଧର୍ମ ସହିତ ଅଧିକ ଥିବା ବୁଝିବା ଉଚିତ ଅର୍ଥାତ୍ ପରଧର୍ମକୁ ସଦ୍‌ଗୁଣସମ୍ପନ୍ନ ଓ **ସୁ-ଅନୁଷ୍ଠିତ** ବୋଲି ଏବଂ ସ୍ୱଧର୍ମକୁ **ବିଗୁଣ** ଓ ଅନୁଷ୍ଠାନରେ ତ୍ରୁଟି ରହିଥିବାରୁ ଦୋଷଯୁକ୍ତ ବୋଲି ବୁଝିବା ଉଚିତ। ଏଠାରେ ଆହୁରି ସ୍ମରଣ ରଖିବା ଉଚିତ ଯେ, ବ୍ରାହ୍ମଣଙ୍କ ବିଶେଷ କର୍ତ୍ତବ୍ୟକର୍ମ ବୈଶ୍ୟ ଓ କ୍ଷତ୍ରିୟଙ୍କ କର୍ତ୍ତବ୍ୟକର୍ମ ଅପେକ୍ଷା ଶ୍ରେଷ୍ଠତର, ତଥା ସେଥିରେ ଅହିଂସା ଆଦି ସଦ୍‌ଗୁଣ ଅଧିକ ମାତ୍ରାରେ ଥାଏ। ସେହିପରି ସନ୍ନ୍ୟାସୀଙ୍କ କର୍ତ୍ତବ୍ୟକର୍ମ ଗୃହସ୍ଥଙ୍କ କର୍ତ୍ତବ୍ୟକର୍ମଠାରୁ ଶ୍ରେଷ୍ଠତର ଓ ପବିତ୍ରତର ଏବଂ ବୈଶ୍ୟ ଓ କ୍ଷତ୍ରିୟଙ୍କ କର୍ତ୍ତବ୍ୟକର୍ମ ଶୂଦ୍ରଙ୍କ କର୍ତ୍ତବ୍ୟକର୍ମଠାରୁ ମହତ୍ତର। ଏପରି ବୁଝିଗଲେ ଏଠାରେ ଏହିଭାବ ପ୍ରକାଶିତ ହୁଏ ଯେ, ଯେଉଁ କର୍ମ ଗୁଣଯୁକ୍ତ ଏବଂ ଯାହାର ଅନୁଷ୍ଠାନ

ମଧ୍ୟ ପୂର୍ଣ୍ଣଭାବରେ କରାଯାଇଛି, ଅଥଚ ଯାହା ଅନୁଷ୍ଠାନକାରୀଙ୍କ ପାଇଁ ବିହିତ ନୁହେଁ, ଅନ୍ୟମାନଙ୍କ ପାଇଁ ହିଁ ବିହିତ, ଏଠାରେ **ସ୍ୱନୁଷ୍ଠିତାତ୍** ବିଶେଷଣ ସହିତ **ପରଧର୍ମାତ୍** ପଦଟି ହେଉଛି ସେହିପରି କର୍ମର ବାଚକ। ସେହି ପରଧର୍ମ ଅପେକ୍ଷା ଗୁଣରହିତ ସ୍ୱଧର୍ମ ଅତି ଉତ୍ତମ ବୋଲି କହି ଦେଖାଇଦିଆଯାଇଛି ଯେ, ନିଜର ପତି ଦେଖିବାକୁ କୁରୂପ ଏବଂ ଗୁଣହୀନ ହୋଇଥିଲେ ମଧ୍ୟ ସ୍ତ୍ରୀପାଇଁ ନିଜର ସେହି ପତିଙ୍କ ସେବା ହିଁ ଯେପରି କଲ୍ୟାଣପ୍ରଦ, ଦେଖିବାକୁ ସଦ୍‌ଗୁଣହୀନ ତଥା ଅନୁଷ୍ଠାନରେ ନ୍ୟୂନ ହୋଇଥିଲେ ମଧ୍ୟ ଯାହାଙ୍କ ପାଇଁ ଯେଉଁ କର୍ମ ବିହିତ, ତାହା ହିଁ ତାହାଙ୍କ ପାଇଁ କଲ୍ୟାଣପ୍ରଦ। ସ୍ୱଧର୍ମର ଏପରି ମହତ୍ତ୍ୱ ରହିଥିବାବେଳେ, ଯେଉଁ ସ୍ୱଧର୍ମ ସର୍ବଗୁଣସମ୍ପନ୍ନ ଏବଂ ଯାହାକୁ ବିଧିବଦ୍ଧଭାବରେ ପାଳନ କରାଯାଏ, ସେପରି ସ୍ୱଧର୍ମ ବିଷୟରେ ବା କହିବାର କଣ ଅଛି ?

**ପ୍ରଶ୍ନ –** **ସ୍ୱଧର୍ମଃ** ପଦ କେଉଁ ଧର୍ମର ବାଚକ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତିକୁ ଧରି ଯେଉଁ ମନୁଷ୍ୟଙ୍କ ପାଇଁ ଯେଉଁ କର୍ମ ଶାସ୍ତ୍ରରେ ବିଧାନ କରିଦିଆଯାଇଛି, ସେମାନଙ୍କ ପାଇଁ ତାହା ହିଁ **ସ୍ୱଧର୍ମ**। ଅଭିପ୍ରାୟ ଏହି ଯେ, ମିଥ୍ୟା, କପଟ, ଚୋରି, ହିଂସା, ପ୍ରବଞ୍ଚନା, ବ୍ୟଭିଚାର ଆଦି ନିଷିଦ୍ଧକର୍ମ ତ କାହାରି ପାଇଁ ବି ସ୍ୱଧର୍ମ ନୁହେଁ ଏବଂ କାମ୍ୟକର୍ମ ମଧ୍ୟ କାହାରି ପାଇଁ ବି ଅବଶ୍ୟକର୍ତ୍ତବ୍ୟ ନୁହେଁ। ତେଣୁ ଏଠାରେ କୌଣସି ସ୍ୱଧର୍ମରେ ଏସବୁର ଗଣନା କରାଯାଇ ନାହିଁ। ଏହା ବ୍ୟତୀତ ଯେଉଁ ବର୍ଣ୍ଣ ବା ଆଶ୍ରମପାଇଁ ଯେଉଁ ବିଶେଷଧର୍ମର ବିଧାନ କରାଯାଉଛି, ଯେଉଁଥିରେ ଏକ ବର୍ଣ୍ଣ ବା ଆଶ୍ରମର ଲୋକଙ୍କ ବ୍ୟତୀତ ଅନ୍ୟ ବର୍ଣ୍ଣ ବା ଆଶ୍ରମର ଲୋକଙ୍କ ଅଧିକାର ନାହିଁ, ତାହା ହେଉଛି ସେହି ବର୍ଣ୍ଣ ବା ଆଶ୍ରମର ପୃଥକ୍ ସ୍ୱଧର୍ମ। ଯେଉଁ କର୍ମରେ ଦ୍ୱିଜମାତ୍ରର ଅଧିକାର ରହିଛି ବୋଲି ନିର୍ଣ୍ଣୟ କରିଦିଆଯାଇଛି, ସେହି ବେଦାଧ୍ୟୟନ ଓ ଯଜ୍ଞାଦି କର୍ମ ହେଉଛି ଦ୍ୱିଜମାନଙ୍କର ସ୍ୱଧର୍ମ ଏବଂ ଯେଉଁଥିରେ ସମସ୍ତ ବର୍ଣ୍ଣ-ଆଶ୍ରମର ସ୍ତ୍ରୀ-ପୁରୁଷମାନଙ୍କର ଅଧିକାର ରହିଛି, ସେହି ଈଶ୍ୱରଭକ୍ତି, ସତ୍ୟଭାଷଣ, ମାତୃପିତୃ ସେବା, ମନ-ଇନ୍ଦ୍ରିୟସଂଯମ, ବ୍ରହ୍ମଚର୍ଯ୍ୟପାଳନ, ଅହିଂସା, ଅସ୍ତେୟ, ସନ୍ତୋଷ, ଦୟା, ଦାନ, କ୍ଷମା, ପବିତ୍ରତା ଏବଂ ବିନୟ ଆଦି ସାମାନ୍ୟଧର୍ମ ହେଉଛି ସମସ୍ତଙ୍କର ସ୍ୱଧର୍ମ।

**ପ୍ରଶ୍ନ –** ଯେଉଁ ମନୁଷ୍ୟସମୁଦାୟରେ ବର୍ଣ୍ଣାଶ୍ରମର କୌଣସି ବ୍ୟବସ୍ଥା ନାହିଁ ଏବଂ ଯେଉଁମାନେ ବୈଦିକ ସନାତନଧର୍ମକୁ ମାନନ୍ତି ନାହିଁ, ସେମାନଙ୍କ ପାଇଁ ସ୍ୱଧର୍ମ ଓ ପରଧର୍ମର ବ୍ୟବସ୍ଥା କିପରି ହୋଇପାରିବ ?

**ଉତ୍ତର –** ବର୍ଣ୍ଣାଶ୍ରମବ୍ୟବସ୍ଥା ପ୍ରକୃତରେ ସବୁ ମନୁଷ୍ୟସମୁଦାୟଙ୍କ ପାଇଁ ହେବା ଉଚିତ ଏବଂ ବୈଦିକ ସନାତନ ଧର୍ମ ମଧ୍ୟ ସମସ୍ତ ମନୁଷ୍ୟଙ୍କର ସ୍ୱୀକୃତ ହେବା ଉଚିତ। ତେଣୁ ଯେଉଁ ମନୁଷ୍ୟସମାଜରେ ବର୍ଣ୍ଣାଶ୍ରମର ବ୍ୟବସ୍ଥା ନାହିଁ, ସେଠାରେ ଲୋକଙ୍କ ପାଇଁ ସ୍ୱଧର୍ମ ଓ ପରଧର୍ମ ନିର୍ଣ୍ଣୟ କରିବା କଠିନ; ତଥାପି ବର୍ତ୍ତମାନ ଧର୍ମସଙ୍କଟ ଉପସ୍ଥିତ ହୋଇଛି ଏବଂ ଗୀତାରେ ସମସ୍ତ ମନୁଷ୍ୟଙ୍କ ପାଇଁ ଉଦ୍ଧାରର ମାର୍ଗ ନିର୍ଦ୍ଦେଶ କରିଦିଆଯାଇଛି। ସେହି ନିର୍ଦ୍ଦେଶକୁ ଆଧାର କରି ଏପରି ମାନିନିଆଯାଇ ପାରେ ଯେ, ଯେଉଁ ମନୁଷ୍ୟର ଯେଉଁ ଜାତି ବା ସମୁଦାୟରେ ଜନ୍ମ ହୋଇଥାଏ, ଯେଉଁ ମାତା-ପିତାଙ୍କର ରଜବୀର୍ଯ୍ୟରେ ତା'ର ଶରୀର ଗଢ଼ାଯାଇଥାଏ, ଜନ୍ମରୁ ଆରମ୍ଭ କରି କର୍ତ୍ତବ୍ୟ ବୁଝିପାରିବାର ଯୋଗ୍ୟତା ଆସିବାପର୍ଯ୍ୟନ୍ତ ଯେଉଁ ସଂସ୍କାରଭିତରେ ତା'ର ପାଳନପୋଷଣ ହୋଇଥାଏ, ତଥା ପୂର୍ବଜନ୍ମର ଯେପରି କର୍ମ-ସଂସ୍କାର ଥାଏ, ସେହି ଅନୁଯାୟୀ ତା'ର ସ୍ୱଭାବ ହୁଏ ଏବଂ ସେହି ସ୍ୱଭାବ ଅନୁଯାୟୀ ମଧ୍ୟ ଜୀବିକାର୍ଜନ କର୍ମରେ ତାହାର ସ୍ୱାଭାବିକ ପ୍ରବୃତ୍ତି ହୁଏ। ତେଣୁ ଯେଉଁ ମନୁଷ୍ୟସମୁଦାୟରେ ବର୍ଣ୍ଣାଶ୍ରମର ବ୍ୟବସ୍ଥା ନାହିଁ, ସେଠାରେ ଲୋକଙ୍କର ସ୍ୱଭାବ ଓ ପରିସ୍ଥିତି ଦୃଷ୍ଟିରୁ ଯାହାଙ୍କ ପାଇଁ ଯାହା ବିହିତକର୍ମ, ଅର୍ଥାତ୍ ଇହଲୋକର ଓ ପରଲୋକର ଉନ୍ନତିପାଇଁ କୌଣସି ମହାପୁରୁଷଙ୍କ ଦ୍ୱାରା ଯେଉଁ କର୍ମ ଉପଯୁକ୍ତ ବୋଲି ମାନିନିଆଯାଇଥାଏ, ମଙ୍ଗଳକର ଉଦ୍ଦେଶ୍ୟରେ କର୍ତ୍ତବ୍ୟ ବୋଲି ବୁଝି ଯାହା ଆଚରଣ କରାଯାଉଥାଏ, ଯାହା କୌଣସିପ୍ରକାରେ ଅନ୍ୟର ଧର୍ମ ଏବଂ ମଙ୍ଗଳରେ ବାଧକ ନୁହେଁ ତଥା ସମସ୍ତ ମନୁଷ୍ୟଙ୍କ ପାଇଁ ଯାହା ସାମାନ୍ୟ ଧର୍ମ ବୋଲି ମାନିନିଆଯାଇଛି, ତାହା ହିଁ ତାଙ୍କର ସ୍ୱଧର୍ମ ଏବଂ ବିପରୀତକ୍ରମେ ଯାହା ଅନ୍ୟମାନଙ୍କ ପାଇଁ ବିହିତ ଏବଂ ତାଙ୍କ ପାଇଁ ବିହିତ ନୁହେଁ, ତାହା ପରଧର୍ମ।

**ପ୍ରଶ୍ନ –** **ସ୍ୱଧର୍ମଃ** ପଦ ସହିତ **ବିଗୁଣଃ** ବିଶେଷଣ ପ୍ରୟୋଗର ଭାବ କଣ ?

**ଉତ୍ତର —** **ବିଗୁଣଃ** ପଦ ଗୁଣର ନ୍ୟୂନତାର ସୂଚକ । ଯୁଦ୍ଧ କରିବା, ଦୁଷ୍ଟଙ୍କୁ ଦଣ୍ଡ ଦେବା ଆଦି ହେଉଛି କ୍ଷତ୍ରିୟର ସ୍ୱଧର୍ମ । ତାହାଦ୍ୱାରା କ୍ଷତ୍ରିୟଠାରେ ଅହିଂସା ଓ ଶାନ୍ତି ଆଦି ଗୁଣର ନ୍ୟୂନତା ଜଣାଯାଏ । ସେହିପରି ବୈଶ୍ୟଙ୍କ କୃଷି ଆଦି କର୍ମରେ ହିଂସା ଆଦି ଦୋଷ ଅଧିକ ହୁଏ; ତେଣୁ ବ୍ରାହ୍ମଣମାନଙ୍କ ଶାନ୍ତିମୟ କର୍ମ ଅପେକ୍ଷା ସେହିସବୁ କର୍ମ ବିଗୁଣ ଅର୍ଥାତ୍ ଗୁଣହୀନ ଏବଂ ଶୂଦ୍ରଙ୍କ କର୍ମ ବୈଶ୍ୟ ଓ କ୍ଷତ୍ରିୟଙ୍କ କର୍ମ ଅପେକ୍ଷା ନିମ୍ନଶ୍ରେଣୀର । ଏହା ବ୍ୟତୀତ ସେହି କର୍ମ ପାଳନ କରିବାବେଳେ ଯଦି ତା'ର କୌଣସି ଅଙ୍ଗ ଛାଡ଼ି ହୋଇଯାଏ, ତେବେ ସେହି କର୍ମର ଅନୁଷ୍ଠାନରେ ତ୍ରୁଟି ରହିଯାଏ । ଉପରୋକ୍ତପ୍ରକାରେ ସ୍ୱଧର୍ମରେ ଗୁଣର ଓ ଅନୁଷ୍ଠାନର ନ୍ୟୂନତା ରହିଥିଲେ ମଧ୍ୟ ପରଧର୍ମ ଅପେକ୍ଷା ସ୍ୱଧର୍ମ କଲ୍ୟାଣପ୍ରଦ ଅଟେ । ଏହି ଭାବ ଦେଖାଇବା ପାଇଁ **ସ୍ୱଧର୍ମଃ** ସହିତ **ବିଗୁଣଃ** ବିଶେଷଣ ଦିଆଯାଇଛି ।

**ପ୍ରଶ୍ନ —** 'ନିଜ ଧର୍ମରେ ମୃତ୍ୟୁ ମଧ୍ୟ କଲ୍ୟାଣକର ଅଟେ ।'—ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର —** ଅଭିପ୍ରାୟ ଏହି ଯେ, ଯଦି ସ୍ୱଧର୍ମ ପାଳନରେ କୌଣସିପ୍ରକାର ବାଧା ନ ଆସେ, ତେବେ ମନୁଷ୍ୟ ଜୀବନସାରା ସ୍ୱଧର୍ମ ପାଳନ କଲେ, ତା'ର ଭାବ ଅନୁସାରେ ତାକୁ ଯେ ସ୍ୱର୍ଗ ବା ମୁକ୍ତି ମିଳିଯାଏ, ସେଥିରେ ସନ୍ଦେହ ନାହିଁ । କୌଣସିପ୍ରକାର ବାଧା ଆସିଲେ ବି ସେ ଯଦି ନିଜ ଧର୍ମରୁ ବିଚଳିତ ନ ହୁଏ ଏବଂ ଯଦି ସେହି କାରଣରୁ ତା'ର ମରଣ ମଧ୍ୟ ହୋଇଯାଏ, ତେବେ ତାହା ବି ତା'ପାଇଁ କଲ୍ୟାଣପ୍ରଦ ହୋଇଥାଏ । ଇତିହାସ ଓ ପୁରାଣରେ ଏପରି ବହୁ ଉଦାହରଣ ରହିଛି, ଯେଉଁଥିରେ କି ସ୍ୱଧର୍ମ ପାଳନନିମିତ୍ତ ମରିଥିବା ଏବଂ ମରଣପର୍ଯ୍ୟନ୍ତ କଷ୍ଟ ସ୍ୱୀକାର କରିଥିବା ଲୋକଙ୍କର ମଙ୍ଗଳ ହୋଇଥିବା କଥା କୁହାଯାଇଛି ।

ରାଜା ଦିଲୀପ କ୍ଷତ୍ରିୟଧର୍ମ ପାଳନ କରି ଗୋଟିଏ ଗାଈ ବଦଳରେ ସିଂହକୁ ନିଜର ଶରୀର ସମର୍ପଣ କରିଦେଇଥିଲେ ଓ ଅଭୀଷ୍ଟ ଲାଭ କରିଥିଲେ । ରାଜା ଶିବି ଶରଣାଗତ-ରକ୍ଷାରୂପକ ସ୍ୱଧର୍ମ ପାଳନ କରିବାପାଇଁ ଗୋଟିଏ କପୋତ ବଦଳରେ ନିଜର ଶରୀରର ମାଂସ ଛଞ୍ଚାଣକୁ ଦେଇ ମରଣ ବରଣ କରିଥିଲେ ଏବଂ ତାହାଦ୍ୱାରା ତାଙ୍କର ଅଭୀଷ୍ଟ ସିଦ୍ଧ ହୋଇଥିଲା । ଭଗବଦ୍-ଭକ୍ତିରୂପକ ସ୍ୱଧର୍ମପାଳନ କରିବାକୁ ପ୍ରହ୍ଲାଦ ଅନେକପ୍ରକାର ମରଣାନ୍ତକ ଯନ୍ତ୍ରଣା ଆନନ୍ଦରେ ଗ୍ରହଣ କରିଥିଲେ ଏବଂ ତା'ଦ୍ୱାରା ତାଙ୍କର ପରମକଲ୍ୟାଣ ହୋଇଥିଲା । ଏହିପରି ଆହୁରି ଅନେକ ଉଦାହରଣ ରହିଛି । ମହାଭାରତରେ କୁହାଯାଇଛି—

**ନ ଜାତୁ କାମାନ୍ନ ଭୟାନ୍ନ ଲୋଭାଦ୍**
**ଧର୍ମଂ ତ୍ୟଜେଜ୍ଜୀବିତସ୍ୟାପି ହେତୋଃ ।**
**ନିତ୍ୟୋ ଧର୍ମଃ ସୁଖଦୁଃଖେ ତ୍ୱନିତ୍ୟେ**
**ଜୀବୋ ନିତ୍ୟୋ ହେତୁରସ୍ୟ ତ୍ୱନିତ୍ୟଃ ॥**
(ସ୍ୱର୍ଗାରୋହଣ ୫/୬୩)

ଅର୍ଥାତ୍ 'ମନୁଷ୍ୟକୁ କୌଣସି ବି ସମୟରେ କାମ, ଭୟ, ଲୋଭ ବା ଜୀବନରକ୍ଷାନିମନ୍ତେ ଧର୍ମ ତ୍ୟାଗ କରିବା ଉଚିତ ନୁହେଁ; କାରଣ ଧର୍ମ ନିତ୍ୟ ଓ ସୁଖଦୁଃଖ ଅନିତ୍ୟ ତଥା ଜୀବ ନିତ୍ୟ ଏବଂ ଜୀବନର ହେତୁ ଅନିତ୍ୟ ।'

ତେଣୁ ମରଣସଙ୍କଟ ଉପସ୍ଥିତ ହେଲେ ମଧ୍ୟ ମନୁଷ୍ୟ ହସି ହସି ମରଣକୁ ବରଣ କରିନେବା ଉଚିତ; କିନ୍ତୁ କୌଣସି ପରିସ୍ଥିତିରେ ବି ସ୍ୱଧର୍ମ ତ୍ୟାଗ କରିବା ଉଚିତ ନୁହେଁ । ଏହାଦ୍ୱାରା ତାହାର ସବୁପ୍ରକାରେ କଲ୍ୟାଣ ହେବ ।

**ପ୍ରଶ୍ନ —** 'ଅନ୍ୟର ଧର୍ମ ଭୟାବହ ଅଟେ'— ଏପରି କଥନର ଅଭିପ୍ରାୟ କଣ ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଅନ୍ୟର ଧର୍ମ ସୁଖପୂର୍ବକ ପାଳନ କରାଯାଉଥିଲେ ମଧ୍ୟ ତାହା ଭୟପ୍ରଦ ଅଟେ । ଉଦାହରଣ ସ୍ୱରୂପ: ଶୂଦ୍ର ଓ ବୈଶ୍ୟମାନେ ଯଦି ନିଜଠାରୁ ଉଚ୍ଚବର୍ଣ୍ଣର ଲୋକଙ୍କ ଧର୍ମକୁ ପାଳନ କରିବାରେ ଲାଗିଯାଆନ୍ତି, ତେବେ ଉଚ୍ଚବର୍ଣ୍ଣଦ୍ୱାରା ନିଜର ପୂଜା କରାଇବା କାରଣରୁ ଏବଂ ସେମାନଙ୍କ ବୃତ୍ତିଚ୍ଛେଦ କରିବା ଦୋଷରୁ ସେମାନେ ପାପରେ ଭାଗୀ ହୋଇଯାଆନ୍ତି ଏବଂ ଫଳତଃ ସେମାନଙ୍କୁ ନରକ ଭୋଗ କରିବାକୁ ପଡ଼େ । ସେହିପରି, ଯଦି ବ୍ରାହ୍ମଣ କ୍ଷତ୍ରିୟ ଆଦି ଲୋକେ ନିଜଠାରୁ ନିମ୍ନବର୍ଣ୍ଣର ଲୋକଙ୍କ ଧର୍ମ ଅବଲମ୍ବନ କରିନିଅନ୍ତି, ତେବେ ସେମାନଙ୍କର ସେହି ବର୍ଣ୍ଣରୁ ପତନ ହୋଇଯାଏ ଏବଂ ଆପତ୍କାଳ ପଡ଼ି ନ ଥିଲେ, ଅନ୍ୟର ବୃତ୍ତିଦ୍ୱାରା ଜୀବନ ନିର୍ବାହ କରିଥିବାରୁ ଅନ୍ୟମାନଙ୍କର ବୃତ୍ତିଚ୍ଛେଦନଜନିତ ପାପର ଫଳ ସେମାନଙ୍କୁ ଭୋଗ କରିବାକୁ ପଡ଼େ । ଆଶ୍ରମଧର୍ମ ତଥା ଅନ୍ୟସବୁ ଧର୍ମ ବିଷୟରେ ମଧ୍ୟ ଏହିପରି ବୁଝିନେବାକୁ ହେବ । ଅତଏବ କୌଣସି ମନୁଷ୍ୟ ନିଜର କଲ୍ୟାଣପାଇଁ ପରଧର୍ମ

ଗ୍ରହଣ କରିବା ଉଚିତ ନୁହେଁ। ଅନ୍ୟର ଧର୍ମ ଦେଖିବାକୁ ଯେତେ ଗୁଣସମ୍ପନ୍ନ ହୋଇଥାଉ ନା କାହିଁକି, ତାହା ଯାହାଙ୍କର ଧର୍ମ, ତାହାଙ୍କ ପାଇଁ ଉପଯୁକ୍ତ; ଅନ୍ୟମାନଙ୍କ ପାଇଁ ତାହା ଭୟପ୍ରଦ; କଲ୍ୟାଣକାରକ ନୁହେଁ। ★

**ସମ୍ବନ୍ଧ—** ସ୍ୱଧର୍ମପାଳନ କରିବାଦ୍ୱାରା ମନୁଷ୍ୟର କଲ୍ୟାଣ ହୁଏ। ପରଧର୍ମପାଳନ ଓ ନିଷିଦ୍ଧକର୍ମ ଆଚରଣ କଲେ ସବୁପ୍ରକାର କ୍ଷତି ହୁଏ। ଏହି କଥା ଭଲଭାବରେ ବୁଝିଗଲା ପରେ ମଧ୍ୟ ମନୁଷ୍ୟ ନିଜର ଇଚ୍ଛା, ବିଚାର ଓ ଧର୍ମର ବିରୁଦ୍ଧ ପାପାଚାରରେ କାହିଁକି ପ୍ରବୃତ୍ତ ହୋଇଯାଏ, ତାହା ଜାଣିବା ଇଚ୍ଛାରେ ଅର୍ଜୁନ ପଚାରୁଛନ୍ତି—

ଅର୍ଜୁନ ଉବାଚ

**ଅଥ କେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୂରୁଷଃ।**
**ଅନିଚ୍ଛନ୍ନପି ବାର୍ଷ୍ଣେୟ ବଳାଦିବ ନିୟୋଜିତଃ॥ ୩୬ ॥**

**ଅନ୍ୱୟ—** **ବାର୍ଷ୍ଣେୟ** = ହେ କୃଷ୍ଣ! **ଅଥ** = ପୁଣି; **ଅୟମ୍** = ଏହି; **ପୂରୁଷଃ** = ମନୁଷ୍ୟ (ସ୍ୱୟମ୍); **ଅନିଚ୍ଛନ୍** = ଇଚ୍ଛା ନ କଲେ; **ଅପି** = ମଧ୍ୟ; **ବଳାତ୍** = ବଳପୂର୍ବକ; **ନିୟୋଜିତଃ** = ନିୟୋଜିତ ହେବା; **ଇବ** = ପରି; **କେନ** = କାହା ଦ୍ୱାରା; **ପ୍ରଯୁକ୍ତଃ** = ପ୍ରେରିତ ହୋଇ; **ପାପମ୍** = ପାପ; **ଚରତି** = ଆଚରଣ କରେ।

**ଅର୍ଜୁନ ପଚାରିଲେ— ହେ କୃଷ୍ଣ! ପୁଣି ଏହି ମନୁଷ୍ୟ ସ୍ୱୟଂ ଇଚ୍ଛା ନ କଲେ ମଧ୍ୟ ବଳପୂର୍ବକ ନିୟୋଜିତ ହେଲାପରି କାହା ଦ୍ୱାରା ପ୍ରେରିତ ହୋଇ ପାପ ଆଚରଣ କରେ?॥ ୩୬ ॥**

**ପ୍ରଶ୍ନ—** ଏହି ଶ୍ଳୋକରେ ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ କ'ଣ?

**ଉତ୍ତର—** ଭଗବାନ୍ ପ୍ରଥମେ କହିଥିଲେ ଯେ, ଯତ୍ନ କରୁଥିବା ବୁଦ୍ଧିମାନ୍ ମନୁଷ୍ୟର ମନକୁ ମଧ୍ୟ ଇନ୍ଦ୍ରିୟମାନେ ବଳପୂର୍ବକ ବିଚଳିତ କରିଦିଅନ୍ତି (୨/୬୦)। ବ୍ୟବହାରରେ ମଧ୍ୟ ଦେଖାଯାଏ ଯେ, ବୁଦ୍ଧିମାନ୍, ବିବେକଶୀଳ ମନୁଷ୍ୟ ପ୍ରତ୍ୟକ୍ଷରେ ଏବଂ ଅନୁମାନରେ ପାପର ମନ୍ଦ ପରିଣାମ ଦେଖି ବିଚାର କଲେ, ସେଥିରେ ପ୍ରବୃତ୍ତ ହେବା ଠିକ୍ ନୁହେଁ ବୋଲି ବୁଝେ। ଅର୍ଥାତ୍ ସେ ଇଚ୍ଛାପୂର୍ବକ ପାପକର୍ମ କରେ ନାହିଁ; ରୋଗୀର କୁପଥ୍ୟସେବନପରି ବଳପୂର୍ବକ ତା'ଦ୍ୱାରା ପାପକର୍ମ ହୋଇଯାଏ। ତେଣୁ ମନୁଷ୍ୟକୁ କିଏ ବଳପୂର୍ବକ ପାପରେ ଲଗାଏ, ଅର୍ଜୁନ ତାହା ଉପରୋକ୍ତ ପ୍ରଶ୍ନଦ୍ୱାରା ଭଗବାନଙ୍କ ଠାରୁ ଜାଣିବାକୁ ଚାହୁଁଛନ୍ତି। ଅଭିପ୍ରାୟ ହେଉଛି : କଣ ସ୍ୱୟଂ ପରମେଶ୍ୱର ହିଁ ଲୋକଙ୍କୁ ପାପରେ ନିଯୁକ୍ତ କରାନ୍ତି, ଯେଉଁ କାରଣରୁ କି ସେମାନେ ପାପରୁ ଓହରି ଆସିପାରନ୍ତି ନାହିଁ, ନା ପ୍ରାରବ୍ଧହେତୁ ସେମାନେ ବାଧ୍ୟ ହୋଇ ପାପ କରନ୍ତି, ନା ଏହାର ଅନ୍ୟ କୌଣସି କାରଣ ଅଛି?

**ସମ୍ବନ୍ଧ—** ଅର୍ଜୁନ ଏପରି ପଚାରିବାରୁ ଭଗବାନ୍ କହିବାକୁ ଲାଗିଲେ—

ଶ୍ରୀଭଗବାନୁବାଚ

**କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ।**
**ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍॥ ୩୭ ॥**

---

★ ମନୁସ୍ମୃତିରେ ମଧ୍ୟ ଏହି କଥା କୁହାଯାଇଛି—

ବରଂ ସ୍ୱଧର୍ମୋ ବିଗୁଣୋ ନ ପାରକ୍ୟଃ ସ୍ୱନୁଷ୍ଠିତଃ। ପରଧର୍ମେଣ ଜୀବନ୍ ହି ସଦ୍ୟଃ ପତତି ଜାତିତଃ॥ (୧୦/୯୭)

ଅର୍ଥାତ୍ 'ଗୁଣରହିତ ହେଲେ ମଧ୍ୟ ନିଜଧର୍ମ ଶ୍ରେଷ୍ଠ ଅଟେ, ପରନ୍ତୁ ଭଲଭାବରେ ପାଳନ କରାଯାଉଥିବା ପରଧର୍ମ ଶ୍ରେଷ୍ଠ ନୁହେଁ। କାରଣ ଅନ୍ୟର ଧର୍ମଦ୍ୱାରା ଜୀବନ ଧାରଣ କରୁଥିବା ମନୁଷ୍ୟ ଶୀଘ୍ର ହିଁ ଜାତିରୁ ପତିତ ହୋଇଯାଏ।'

ଅନ୍ୱୟ— ରଜୋଗୁଣସମୁଦ୍ଭବଃ = ରଜୋଗୁଣରୁ ଉତ୍ପନ୍ନ; **ଏଷଃ** = ଏହି; **କାମଃ** = କାମ (ହିଁ); **କ୍ରୋଧଃ** = କ୍ରୋଧ ଅଟେ; **ଏଷଃ** = ଏହା; **ମହାଶନଃ** = ବଡ଼ ଭୋଜନପ୍ରିୟ ଅର୍ଥାତ୍ ଭୋଗରେ କେବେହେଲେ ତୃପ୍ତ ହୁଏ ନାହିଁ (ଓ); **ମହାପାପ୍ମା** = ବଡ଼ ପାପୀ; **ଏନମ୍** = ଏହାକୁ ହିଁ; **ଇହ** = ଏହି ବିଷୟରେ; **ବୈରିଣମ୍** = (ତୁମେ) ଶତ୍ରୁ (ବୋଲି); **ବିଦ୍ଧି** = ଜାଣ।

**ଶ୍ରୀଭଗବାନ୍ କହିଲେ— ରଜୋଗୁଣରୁ ଉତ୍ପନ୍ନ ଏହି କାମ ହିଁ କ୍ରୋଧ ଅଟେ; ଏହି କାମ ବଡ଼ ଭୋଜନିଆ ଅର୍ଥାତ୍ ଭୋଗରେ କେବେ ହେଲେ ତୃପ୍ତ ହୁଏ ନାହିଁ ଓ ସେ ବଡ଼ ପାପୀ ଅଟେ। ଏହି ବିଷୟରେ ଏହାକୁ ହିଁ ତୁମେ ଶତ୍ରୁ ବୋଲି ଜାଣ॥ ୩୭ ॥**

**ପ୍ରଶ୍ନ— କାମଃ** ଏବଂ **କ୍ରୋଧଃ—** ଏହି ଦୁଇଟି ପଦ ସହିତ ଦୁଇଥର **ଏଷଃ** ପଦ ପ୍ରୟୋଗର ଭାବ କଣ? ତଥା **ରଜୋଗୁଣସମୁଦ୍ଭବଃ** ବିଶେଷଣର ସମ୍ବନ୍ଧ କେଉଁ ପଦ ସହିତ ରହିଛି?

**ଉତ୍ତର—** ଚଉତିରିଶ ଶ୍ଳୋକରେ କୁହାଯାଇଥିଲା ଯେ, ପ୍ରତ୍ୟେକ ଇନ୍ଦ୍ରିୟର ବିଷୟମାନଙ୍କରେ ରହୁଥିବା ରାଗ ଓ ଦ୍ୱେଷ ହିଁ ମନୁଷ୍ୟକୁ ଲୁଟି କରୁଥିବା ଡକାୟତ; ସେହି ଦୁହେଁ ହିଁ ସ୍ଥୂଳରୂପରେ କାମ-କ୍ରୋଧ ଅଟନ୍ତି। ଏହା ଦେଖାଇବାକୁ ତଥା ଏହି ଦୁହିଁଙ୍କ ମଧ୍ୟରୁ 'କାମ' ପ୍ରଧାନ ଅଟେ, କାରଣ ଏହା ରାଗର ସ୍ଥୂଳରୂପ ଏବଂ ଏଥିରୁ କ୍ରୋଧର ଉତ୍ପତ୍ତି ହୁଏ (୨/୬୨)— ଏହା ଦେଖାଇବାକୁ **କାମଃ** ଏବଂ **କ୍ରୋଧଃ** ଏହି ଦୁଇଟି ପଦ ସହିତ **ଏଷଃ** ପଦ ଦୁଇଥର ପ୍ରୟୋଗ କରାଯାଇଅଛି। କାମର ଉତ୍ପତ୍ତି ରାଗରୁ ହୁଏ; ତେଣୁ **ରଜୋଗୁଣସମୁଦ୍ଭବଃ** ବିଶେଷଣଟି **କାମଃ** ପଦ ସହିତ ସମ୍ବନ୍ଧ ରଖେ।

**ପ୍ରଶ୍ନ—** ଯଦି 'କାମ' ଓ 'କ୍ରୋଧ' ଉଭୟେ ମନୁଷ୍ୟର ଶତ୍ରୁ ଅଟନ୍ତି, ତେବେ ଭଗବାନ୍ ପ୍ରଥମେ ଦୁହିଁଙ୍କ ନାମ ନେଇ ପରେ ଏକା 'କାମ'କୁ ହିଁ ଶତ୍ରୁ ବୋଲି ବୁଝିବାକୁ କାହିଁକି କହିଛନ୍ତି?

**ଉତ୍ତର—** ପ୍ରଥମରୁ କୁହାଯାଇଛି ଯେ, କାମରୁ କ୍ରୋଧର ଉତ୍ପତ୍ତି ହୋଇଛି। ଏଣୁ କାମନାଶ ହେବା ସଙ୍ଗେ ସଙ୍ଗେ କ୍ରୋଧ ସ୍ୱତଃ ବିନାଶ ପାଇଯାଏ। ତେଣୁ ଭଗବାନ୍ ଏହି ପ୍ରକରଣରେ ଏଥର କେବଳ କାମର ନାମ କହିଛନ୍ତି। କିନ୍ତୁ ଏଥିରୁ କେହି ନ ବୁଝନ୍ତୁ ଯେ, କେବଳ କାମ ହିଁ ପାପର ହେତୁ; କ୍ରୋଧର ତାହା ସହିତ କୌଣସି ସମ୍ବନ୍ଧ ନାହିଁ। ତେଣୁ ପ୍ରକରଣ ଆରମ୍ଭରେ କାମ ସହିତ କ୍ରୋଧକୁ ମଧ୍ୟ ଗଣନା କରାଯାଇଛି।

**ପ୍ରଶ୍ନ—** କାମର ଉତ୍ପତ୍ତି ରଜୋଗୁଣରୁ ହୁଏ, ନା ରାଗରୁ ହୁଏ?

**ଉତ୍ତର—** ରଜୋଗୁଣରୁ ରାଗର ବୃଦ୍ଧି ହୁଏ ଏବଂ ରାଗରୁ ରଜୋଗୁଣର ବୃଦ୍ଧି ହୁଏ। ଏଣୁ ଏ ଦୁହିଁଙ୍କର ଏକ ହିଁ ସ୍ୱରୂପ ବୋଲି ସ୍ୱୀକାର କରାଯାଇଛି (୧୪/୭)। ତେଣୁ କାମର ଉତ୍ପତ୍ତିପାଇଁ ଦୁହେଁ କାରଣ ଅଟନ୍ତି।

**ପ୍ରଶ୍ନ—** କାମକୁ **ମହାଶନଃ** ଅର୍ଥାତ୍ ବଡ଼ ଭୋଜନିଆ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କାମ ଯେତେ ବିଷୟଭୋଗ କଲେ ବି କେବେ ତୃପ୍ତ ହୁଏ ନାହିଁ। ଯେପରି ଘୃତ ଓ ଇନ୍ଧନଦ୍ୱାରା ଅଗ୍ନି ବଢ଼ି ବଢ଼ି ଚାଲେ, ସେହିପରି ମନୁଷ୍ୟ ଯେତେପ୍ରକାର ଅଧିକ ଭୋଗ କରିଚାଲେ, ତାହାର ଭୋଗତୃଷ୍ଣା ସେତେ ଅଧିକ ବଢ଼ିଚାଲେ। ତେଣୁ ମନୁଷ୍ୟ କଦାପି ବୁଝିବା ଉଚିତ ନୁହେଁ ଯେ, ଭୋଗର ପ୍ରଲୋଭନ ଦେଖାଇ ସେ ସାମ ଓ ଦାନ ନୀତିଦ୍ୱାରା କାମରୂପକ ଶତ୍ରୁ ଉପରେ ବିଜୟ ଲାଭ କରିପାରିବ। ତାହା ପ୍ରତି ଦଣ୍ଡନୀତି ହିଁ ପ୍ରୟୋଗ କରିବା ଉଚିତ।

**ପ୍ରଶ୍ନ—** କାମକୁ **ମହାପାପ୍ମା** ଅର୍ଥାତ୍ ବଡ଼ ପାପୀ ବୋଲି କହିବାର ଭାବ କଣ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କାମ ହିଁ ସମସ୍ତ ଅନର୍ଥର କାରଣ। ପ୍ରାରବ୍ଧ କିମ୍ବା ଈଶ୍ୱର ମନୁଷ୍ୟକୁ ତା'ର ବିନା ଇଚ୍ଛାରେ ପାପରେ ନିଯୁକ୍ତ କରନ୍ତି ନାହିଁ। କାମ ହିଁ ମନୁଷ୍ୟକୁ ନାନାପ୍ରକାର ଭୋଗରେ ଆସକ୍ତ କରାଇ ତାକୁ ବଳପୂର୍ବକ ପାପରେ ପ୍ରବୃତ୍ତ କରାଇଦିଏ; ତେଣୁ ତାହା ମହାପାପୀ ଅଟେ।

**ପ୍ରଶ୍ନ—** 'ଏହି ବିଷୟରେ ତୁମେ କାମକୁ ହିଁ ଶତ୍ରୁ ବୋଲି ଜାଣ'— ଏହି କଥନର ଭାବ କଣ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କାମ ଆମକୁ ବଳପୂର୍ବକ ଏପରି ଏକ ସ୍ଥିତିକୁ ନେଇଯାଏ, ଯାହାର ପରିଣାମରେ ଅତ୍ୟନ୍ତ ଦୁଃଖ ବା ମୃତ୍ୟୁ ହୁଏ। ତେଣୁ ତାହାକୁ ନିଜର ଶତ୍ରୁ ବୋଲି ମାନିବା ଉଚିତ

ଏବଂ ଯଥାସମ୍ଭବ ତାହାକୁ ଶୀଘ୍ର ବିନାଶ କରିଦେବା ଉଚିତ। କାମପ୍ରବୃତ୍ତି ମନୁଷ୍ୟଙ୍କୁ ତାହାର ଇଚ୍ଛା ବିରୁଦ୍ଧରେ ବଳପୂର୍ବକ ପାପରେ ଲଗାଇ ତାକୁ ଜନ୍ମମରଣରୂପୀ ତଥା ନରକଭୋଗରୂପୀ ମହାଦୁଃଖରେ ଭାଗୀ କରାଇଦିଏ। ଏଣୁ କଲ୍ୟାଣମାର୍ଗରେ ଏହାକୁ ନିଜର ଘୋର ଶତ୍ରୁ ବୋଲି ବୁଝିବା ଉଚିତ। ଈଶ୍ୱର ତ ପରମଦୟାଳୁ ଓ ପ୍ରାଣୀମାନଙ୍କର ସୁହୃଦ ଅଟନ୍ତି; ସେ କିପରି ତାହାକୁ ପାପରେ ନିଯୁକ୍ତ କରିପାରିବେ ? ପୁଣି ପ୍ରାରବ୍ଧ ପୂର୍ବକୃତ କର୍ମର ଭୋଗ ଅଟେ; ସେଥିରେ କାହାକୁ ପାପରେ ପ୍ରବୃତ୍ତ କରାଇବାର ଶକ୍ତି ନାହିଁ। ତେଣୁ ପାପରେ ପ୍ରବୃତ୍ତ କରାଉଥିବା ଶତ୍ରୁ କାମ ଭିନ୍ନ ଅନ୍ୟ କେହି ନୁହେଁ।

*ସମ୍ବନ୍ଧ – ପୂର୍ବଶ୍ଳୋକରେ କାମ ହିଁ ସମସ୍ତ ଅନର୍ଥର ମୂଳ ଏବଂ କାମ ହିଁ ମନୁଷ୍ୟଙ୍କୁ ତା'ର ବିନାଇଚ୍ଛାରେ ପାପରେ ପ୍ରବୃତ୍ତ କରାଉଥିବା ଶତ୍ରୁ ବୋଲି କହିଛନ୍ତି। ଏହା ଉପରେ ପ୍ରଶ୍ନ ହୁଏ, 'ଏହି କାମ ମନୁଷ୍ୟଙ୍କୁ କିପରିଭାବରେ ପାପରେ ପ୍ରବୃତ୍ତ କରାଏ ?' ଏଣୁ ବର୍ତ୍ତମାନ ତିନୋଟି ଶ୍ଳୋକଦ୍ୱାରା ଭଗବାନ୍ ବୁଝାଉଛନ୍ତି ଯେ, ଏହା ମନୁଷ୍ୟର ଜ୍ଞାନକୁ ଆଚ୍ଛାଦିତ କରି, ତାହାକୁ ଅନ୍ଧ କରିଦେଇ ପାପର ଗର୍ତ୍ତକୁ ଠେଲିଦିଏ–*

**ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଳେନ ଚ ।**
**ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତମ୍ ।। ୩୮ ।।**

**ଅନ୍ୱୟ –** **ଯଥା** = ଯେପରି; **ଧୂମେନ** = ଧୂଆଁଦ୍ୱାରା; **ବହ୍ନିଃ** = ଅଗ୍ନି; **ଚ** = ଏବଂ; **ମଳେନ** = ଧୂଳିଦ୍ୱାରା; **ଆଦର୍ଶଃ** = ଦର୍ପଣ; **ଆବ୍ରିୟତେ** = ଆବୃତ ହୋଇଥାଏ; **ଯଥା** = ଯେପରି; **ଉଲ୍ବେନ** = ଜରାୟୁଦ୍ୱାରା; **ଗର୍ଭଃ** = ଗର୍ଭ; **ଆବୃତଃ** = ଆବୃତ ହୋଇଥାଏ; **ତଥା** = ସେପରି; **ତେନ** = ସେହି କାମଦ୍ୱାରା; **ଇଦମ୍** = ଏହି ଜ୍ଞାନ; **ଆବୃତମ୍** = ଆବୃତ ହୋଇ ରହିଥାଏ।

**ଯେପରି ଧୂଆଁଦ୍ୱାରା ଅଗ୍ନି ଆବୃତ ହୋଇଥାଏ, ଧୂଳିଦ୍ୱାରା ଦର୍ପଣ ଆବୃତ ହୋଇଥାଏ ତଥା ଜରାୟୁଦ୍ୱାରା ଗର୍ଭ ଆବୃତ ହୋଇ ରହିଥାଏ, କାମଦ୍ୱାରା ଏହି ଜ୍ଞାନ ସେହିପରି ଆବୃତ ହୋଇ ରହିଥାଏ ।। ୩୮ ।।**

**ପ୍ରଶ୍ନ –** ଧୂଆଁ, ଧୂଳି ଓ ଜରାୟୁ— ଏହି ତିନି ଦୃଷ୍ଟାନ୍ତ ଦେଇ କାମଦ୍ୱାରା ଜ୍ଞାନ ଆବୃତ ହୋଇଥାଏ ବୋଲି କହି ଏଠାରେ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଏହାଦ୍ୱାରା ଦେଖାଇଛନ୍ତି ଯେ, କାମ ହିଁ ମଳ, ବିକ୍ଷେପ ଓ ଆବରଣ– ଏପରି ତିନି ଦୋଷରୂପରେ ମନୁଷ୍ୟର ଜ୍ଞାନକୁ ଆଚ୍ଛାଦିତ କରି ରହିଥାଏ। ଏଠାରେ ଧୂଆଁ 'ବିକ୍ଷେପ'ର ପ୍ରତୀକ ବୋଲି ବୁଝିବାକୁ ହେବ। ଧୂଆଁ ଯେପରି ନିଜେ ଅସ୍ଥିର ହୋଇଥିଲେ ବି ଅଗ୍ନିକୁ ଢାଙ୍କିପକାଏ, ବିକ୍ଷେପ ସେହିପରି ଅସ୍ଥିର ହୋଇଥିଲେ ବି ଜ୍ଞାନକୁ ଢାଙ୍କିପକାଏ; କାରଣ ଏକାଗ୍ରତା ବିନା ଅନ୍ତଃକରଣରେ ଜ୍ଞାନଶକ୍ତି ପ୍ରକାଶିତ ହୋଇପାରେ ନାହିଁ; ତାହା ଦବିଯାଏ। ଧୂଳି 'ମଳ' ଦୋଷର ପ୍ରତୀକ। ଯେପରି ଦର୍ପଣ ଉପରେ ଧୂଳି ଜମିଗଲେ ସେଥିରେ ପ୍ରତିବିମ୍ବ ପଡ଼େ ନାହିଁ, ସେହିପରି ପାପଦ୍ୱାରା ଅନ୍ତଃକରଣ ଅତ୍ୟନ୍ତ ମଳିନ ହୋଇଗଲେ ସେଥିରେ ବସ୍ତୁର ଅର୍ଥାତ୍ କର୍ତ୍ତବ୍ୟର ଯଥାର୍ଥ ସ୍ୱରୂପ ପ୍ରତିଭାସିତ ହୋଇପାରେ ନାହିଁ। ଏହି କାରଣରୁ ମନୁଷ୍ୟ ତାହାର ଯଥାର୍ଥ ବିବେଚନା କରିପାରେ ନାହିଁ। ଜରାୟୁକୁ ଆବରଣର ପ୍ରତୀକ ବୋଲି ବୁଝିବାକୁ ହେବ। ଯେପରି ଜରାୟୁଦ୍ୱାରା ଗର୍ଭ ସର୍ବଥା ଆଚ୍ଛାଦିତ ହୋଇ ରହିଥାଏ, ତାହାର କୌଣସି ଅଂଶ ମଧ୍ୟ ଦେଖାଯାଏ ନାହିଁ, ସେହିପରି ଆବରଣଦ୍ୱାରା ଜ୍ଞାନ ସର୍ବଥା ଢାଙ୍କି ହୋଇ ରହିଥାଏ। ଯାହାର ଅନ୍ତଃକରଣ ଅଜ୍ଞାନରେ ମୋହିତ ହୋଇ ରହେ, ସେହି ମନୁଷ୍ୟ ନିଦ୍ରା ଓ ଆଳସ୍ୟ ଆଦିର ସୁଖରେ ବୁଡ଼ିରହି କୌଣସିପ୍ରକାର ବିଚାର କରିବାରେ ପ୍ରବୃତ୍ତ ହୋଇପାରେ ନାହିଁ।

କାମ ମନୁଷ୍ୟର ଅନ୍ତଃକରଣରେ ନାନାପ୍ରକାର ଭୋଗର ତୃଷ୍ଣା ବୃଦ୍ଧି କରି ତାହାକୁ ବିକ୍ଷିପ୍ତ କରିଦିଏ; ଏହା ମନୁଷ୍ୟଦ୍ୱାରା ନାନାପ୍ରକାର ପାପ କରାଇ ଅନ୍ତଃକରଣରେ ମଳଦୋଷ ବୃଦ୍ଧି କରିଦିଏ ଏବଂ ତାହା ନିଦ୍ରା, ଆଳସ୍ୟ ଓ ଅକର୍ମଣ୍ୟତାରେ ସୁଖବୁଦ୍ଧି କରାଇ ତାହାକୁ ସର୍ବଥା ବିବେକଶୂନ୍ୟ କରିଦିଏ। ତେଣୁ ଏଠାରେ କାମକୁ ତିନିପ୍ରକାରରେ ଜ୍ଞାନର ଆଚ୍ଛାଦକ ବୋଲି କୁହାଗଲା।

**ପ୍ରଶ୍ନ –** ଏଠାରେ କେଉଁ ଆଧାର ଉପରେ **ତେନ** ପଦର ଅର୍ଥ କାମ ଓ **ଇଦମ୍** ପଦର ଅର୍ଥ ଜ୍ଞାନ କରାଯାଇଛି ?

**ଉତ୍ତର –** ଏହାର ପୂର୍ବଶ୍ଳୋକରେ କାମକୁ ଶତ୍ରୁ ବୋଲି ବୁଝିବାକୁ କୁହାଯାଇଛି ଏବଂ ପରଶ୍ଳୋକରେ ଭଗବାନ୍ ସ୍ୱୟଂ କାମଦ୍ୱାରା ଜ୍ଞାନକୁ ଆବୃତ ବୋଲି କହି ସ୍ପଷ୍ଟ କରିଦେଇଛନ୍ତି ଯେ, ଏହି ଶ୍ଳୋକରେ **ତେନ** ସର୍ବନାମ **କାମ**ର ଏବଂ **ଇଦମ୍** ସର୍ବନାମ **ଜ୍ଞାନ**ର ବାଚକ ଅଟେ। ଏହି ଆଧାର ଉପରେ ପଦଦ୍ୱୟଟିର ଉପରୋକ୍ତ ଅର୍ଥ କରାଯାଇଛି।

*ସମ୍ବନ୍ଧ –* ପୂର୍ବଶ୍ଳୋକରେ 'ତେନ' ପଦ 'କାମ'ର ଏବଂ 'ଇଦମ୍' ପଦ 'ଜ୍ଞାନ'ର ବାଚକ ଅଟେ– ଏହି କଥାକୁ ସ୍ପଷ୍ଟ କରିବାପାଇଁ କାମକୁ ଅଗ୍ନିପରି ସଦା ଅତୃପ୍ତ ବୋଲି କହିଛନ୍ତି–

## ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା।
## କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ ।। ୩୯ ।।

**ଅନ୍ୱୟ –** ଚ = ଏବଂ; **କୌନ୍ତେୟ** = ହେ କୁନ୍ତୀପୁତ୍ର ଅର୍ଜୁନ! **ଏତେନ** = ଏହି; **ଅନଲେନ** = ଅଗ୍ନିପରି; **ଦୁଷ୍ପୂରେଣ** = କେବେ ତୃପ୍ତ ହେଉ ନ ଥିବା; **କାମରୂପେଣ** = କାମରୂପକ; **ଜ୍ଞାନିନଃ** = ଜ୍ଞାନୀମାନଙ୍କର; **ନିତ୍ୟବୈରିଣା** = ନିତ୍ୟଶତ୍ରୁଦ୍ୱାରା; (ମନୁଷ୍ୟର); **ଜ୍ଞାନମ୍** = ଜ୍ଞାନ; **ଆବୃତମ୍** = ଆବୃତ ହୋଇଛି।

**ଏବଂ ହେ ଅର୍ଜୁନ ! ଅଗ୍ନିପରି କେବେ ତୃପ୍ତ ହେଉ ନ ଥିବା ଏହି କାମରୂପକ ଜ୍ଞାନୀମାନଙ୍କର ନିତ୍ୟଶତ୍ରୁଦ୍ୱାରା ମନୁଷ୍ୟର ଜ୍ଞାନ ଆବୃତ ହୋଇ ରହିଅଛି।। ୩୯ ।।**

**ପ୍ରଶ୍ନ –** ଅନଲେନ ଏବଂ **ଦୁଷ୍ପୂରେଣ** ବିଶେଷଣର ଅଭିପ୍ରାୟ କଣ ?

**ଉତ୍ତର –** 'ବାସ୍, ଆଉ କିଛି ଲୋଡ଼ା ନାହିଁ'– **ଅଲମ୍** ଅବ୍ୟୟ ହେଉଛି ଏହିପରି ତୃପ୍ତିଭାବର ବାଚକ; ଯେଉଁଥିରେ ଏପରି ଭାବର ଅଭାବ ହୁଏ, ତାହାକୁ **ଅନଳ** କହନ୍ତି। ଅଗ୍ନିରେ ଯେତେ ଇଚ୍ଛା ସେତେ ଘୃତ ଓ ଇନ୍ଧନ ପକାଇଲେ ବି, ତାହା କଦାପି ତୃପ୍ତ ହୁଏ ନାହିଁ; ତେଣୁ ଅଗ୍ନିର ନାମ **ଅନଳ**। ଯାହା କୌଣସିପ୍ରକାରେ ପୂର୍ଣ୍ଣ ହୁଏ ନାହିଁ, ତାହାକୁ **ଦୁଷ୍ପୂର** କହନ୍ତି। ଏଣୁ ଏଠାରେ ଉପରୋକ୍ତ ବିଶେଷଣମାନ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, କାମ ମଧ୍ୟ ଅଗ୍ନିପରି 'ଅନଳ' ଓ 'ଦୁଷ୍ପୂର' ଅଟେ। ମନୁଷ୍ୟ ଯେତେ ବିଷୟଭୋଗ କରେ, ତାହାର କାମ ଅଗ୍ନିପରି ସେତେ ବଢ଼ିଚାଲେ; କାମ ଆଦୌ ତୃପ୍ତ ହୁଏ ନାହିଁ। ରାଜା ଯଯାତି ବହୁ ଭୋଗ କରିବା ପରେ ଶେଷରେ କହିଥିଲେ–

**ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି।**
**ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ।।**
(ଶ୍ରୀମଦ୍‌ଭାଗବତ ୯/୧୯/୧୪)

ଅର୍ଥାତ୍, ଯେତେ ବି ବିଷୟ ଉପଭୋଗ କଲେ ମଧ୍ୟ, ସେଥିରେ 'କାମ' କେବେ ଶାନ୍ତ ହୁଏ ନାହିଁ, ବରଂ ଘୃତଦ୍ୱାରା ଅଗ୍ନି ବଢ଼ିବାପରି ତାହା ଅଧିକରୁ ଅଧିକ ବଢ଼ିଯାଏ।

**ପ୍ରଶ୍ନ –** ଏଠାରେ **ଜ୍ଞାନିନଃ** ପଦ କେଉଁ ଜ୍ଞାନୀଙ୍କର ବାଚକ ଏବଂ କାମକୁ ତାଙ୍କର **ନିତ୍ୟବୈରୀ** କହିବାର ଭାବ କଣ ?

**ଉତ୍ତର –** ଏଠାରେ **ଜ୍ଞାନିନଃ** ପଦଟି ହେଉଛି ଯଥାର୍ଥ ଜ୍ଞାନପ୍ରାପ୍ତିପାଇଁ ସାଧନା କରୁଥିବା ବିବେକଶୀଳ ସାଧକଙ୍କର ବାଚକ। ଏହି କାମରୂପକ ଶତ୍ରୁ ସେହି ସାଧକମାନଙ୍କର ଅନ୍ତଃକରଣରେ ବିବେକ, ବୈରାଗ୍ୟ ଓ ନିଷ୍କାମଭାବ ସ୍ଥିର ହୋଇ ରହିବାକୁ ଦିଏ ନାହିଁ; ସେମାନଙ୍କ ସାଧନାରେ ବାଧା ଉତ୍ପନ୍ନ କରେ। ଏହି କାରଣରୁ ଏହାକୁ ଜ୍ଞାନୀମାନଙ୍କର **ନିତ୍ୟବୈରୀ** ବୋଲି କୁହାଯାଇଛି। ବାସ୍ତବରେ ଏହି କାମ ସମସ୍ତଙ୍କୁ ଅଧୋଗତି ଆଡ଼କୁ ନେଇଯାଉଥିବାରୁ ସମସ୍ତଙ୍କର ଶତ୍ରୁ ଅଟେ। କିନ୍ତୁ ଅବିବେକୀ ମନୁଷ୍ୟ ବିଷୟଭୋଗ କରିବା ସମୟରେ ଭୋଗରେ ସୁଖବୁଦ୍ଧି ହେଉଥିବାରୁ ଭ୍ରମରେ ଏହାକୁ ମିତ୍ର ବୋଲି ଭାବେ ଏବଂ ଏହାର ତତ୍ତ୍ୱ ଜାଣୁଥିବା ବିବେକୀମାନଙ୍କୁ ଏହା ପ୍ରତ୍ୟକ୍ଷ କ୍ଷତିକାରକ ବୋଲି ଜଣାଯାଏ। ତେଣୁ ଏହାକୁ ଅବିବେକୀମାନଙ୍କର **ନିତ୍ୟବୈରୀ** ନ କହି ଜ୍ଞାନୀମାନଙ୍କର **ନିତ୍ୟବୈରୀ** ବୋଲି କୁହାଯାଇଛି।

**ପ୍ରଶ୍ନ –** ଏଠାରେ **କାମରୂପେଣ** ପଦ କେଉଁ କାମର ବାଚକ ?

**ଉତ୍ତର –** ଯେଉଁ 'କାମକୁ' ଦୁର୍ଗୁଣମାନଙ୍କ ଶ୍ରେଣୀରେ ଗଣାଯାଏ, ଯାହାକୁ ତ୍ୟାଗ କରିବା ପାଇଁ ଗୀତାରେ ସ୍ଥାନେ ସ୍ଥାନେ କୁହାଯାଇଛି, (୨/୭୧; ୬/୨୪), ଷୋଡ଼ଶ ଅଧ୍ୟାୟରେ ଯାହାକୁ ନରକର ଦ୍ୱାର ବୋଲି କୁହାଯାଇଛି (୧୬/୨୧), **'କାମରୂପେଣ'** ହେଉଛି ସେହି ସାଂସାରିକ ବିଷୟଭୋଗର କାମନାରୂପକ କାମର ବାଚକ। ଭଗବାନଙ୍କ ସହିତ ମିଳିତ ହେବାକୁ, ଭଗବାନଙ୍କର ଭଜନଧ୍ୟାନ କରିବାକୁ ଅଥବା ସାତ୍ତ୍ୱିକ କର୍ମ କରିବାକୁ ଯେଉଁ ଶୁଭଇଚ୍ଛା ହୁଏ, ତାହାର ନାମ କାମ ନୁହେଁ; ତାହା ତ ମନୁଷ୍ୟର କଲ୍ୟାଣର ହେତୁ ଏବଂ ବିଷୟଭୋଗ କାମନାରୂପୀ କାମର ବିନାଶକ ଅଟେ; ତାହା କିପରି ସାଧକଙ୍କର ଶତ୍ରୁ ହୋଇପାରିବ ? ତେଣୁ ଗୀତାରେ ଦିଆଯାଇଥିବା କାମ ଶବ୍ଦର ଅର୍ଥ ସାଂସାରିକ ଇଷ୍ଟାନିଷ୍ଟ ଭୋଗର ସଂଯୋଗ-ବିୟୋଗର କାମନା ବା ଭୋଗ୍ୟ ପଦାର୍ଥ ବୋଲି ହିଁ ବୁଝିବା ଉଚିତ। ସେହିପରି ଏହା ମଧ୍ୟ ବୁଝିନେବା ଉଚିତ ଯେ, ଚଉତିରିଶ ଶ୍ଳୋକରେ ବା ଅନ୍ୟତ୍ର କୌଣସିଠାରେ ଯେଉଁ 'ରାଗ' ବା 'ସଙ୍ଗ' ଶବ୍ଦ ଆସେ, ତାହା ମଧ୍ୟ ଭଗବତ୍- ବିଷୟକ ଅନୁରାଗର ବାଚକ ନୁହେଁ; ତାହା କାମୋତ୍ପାଦକ ଭୋଗାସକ୍ତିର ହିଁ ବାଚକ।

**ପ୍ରଶ୍ନ – ଜ୍ଞାନମ୍** ପଦ କେଉଁ ଜ୍ଞାନର ବାଚକ ଏବଂ ଏହା କାମଦ୍ୱାରା ଢାଙ୍କି ହୋଇଯାଏ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ଜ୍ଞାନମ୍** ପଦଟି ହେଉଛି ପରମାତ୍ମତତ୍ତ୍ୱବିଷୟକ ଯଥାର୍ଥ ଜ୍ଞାନର ବାଚକ ଏବଂ ଏହା କାମଦ୍ୱାରା ଢାଙ୍କି ହୋଇଯାଏ ବୋଲି କହି ଦେଖାଇଦିଆଯାଇଛି ଯେ, ଭ୍ରୂଣ ଯେପରି ଜରାୟୁଦ୍ୱାରା ଆବୃତ ରହିବା ପରେ ମଧ୍ୟ ସେହି ଜରାୟୁକୁ ଚିରି ବାହାରକୁ ଚାଲି ଆସିବାକୁ ସମର୍ଥ ହୋଇଯାଏ ଏବଂ ଅଗ୍ନି ଯେପରି ପ୍ରଜ୍ଜ୍ୱଳିତ ହୋଇ ତାକୁ ଆବୃତ କରିଥିବା ଧୂଆଁକୁ ନାଶ କରିଦିଏ, ସେହିପରି ଯେତେବେଳେ କୌଣସି ସନ୍ଥ ମହାପୁରୁଷଙ୍କର ବା ଶାସ୍ତ୍ରର ଉପଦେଶଦ୍ୱାରା ପରମାତ୍ମତତ୍ତ୍ୱର ଜ୍ଞାନ ଜାଗ୍ରତ ହୋଇଯାଏ, ସେତେବେଳେ ସେହି ଜ୍ଞାନ କାମଦ୍ୱାରା ଆବୃତ ହୋଇଥିଲେ ମଧ୍ୟ କାମକୁ ନାଶ କରି ସ୍ୱୟଂ ପ୍ରକାଶିତ ହୋଇଉଠେ। ତେଣୁ କାମ ଜ୍ଞାନକୁ ଆବୃତ କରୁଥିଲେ ମଧ୍ୟ ବସ୍ତୁତଃ ଜ୍ଞାନ ଅପେକ୍ଷା ସର୍ବଥା ଦୁର୍ବଳ ହିଁ ହୋଇଥାଏ।

**ସମ୍ବନ୍ଧ –** ଏହିପରି କାମଦ୍ୱାରା ଜ୍ଞାନ ଆବୃତ ହୋଇଯାଏ ବୋଲି କହି ବର୍ତ୍ତମାନ ତାହାକୁ ନାଶ କରିବାର ଉପାୟ କହିବା ଉଦ୍ଦେଶ୍ୟରେ ଭଗବାନ୍ ତାହାର ବାସସ୍ଥାନ ଓ ତାହାଦ୍ୱାରା ଜୀବାତ୍ମାକୁ ମୋହିତ କରାଯିବାର ପ୍ରକାର କହୁଛନ୍ତି–

## ଇନ୍ଦ୍ରିୟାଣି ମନୋ ବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ।
## ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍।। ୪୦ ।।

**ଅନ୍ୱୟ –** **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନେ; **ମନଃ** = ମନ (ଏବଂ); **ବୁଦ୍ଧିଃ** = ବୁଦ୍ଧି- (ଏସବୁକୁ); **ଅସ୍ୟ** = ଏହାର (କାମର); **ଅଧିଷ୍ଠାନମ୍** = ବାସସ୍ଥାନ (ବୋଲି); **ଉଚ୍ୟତେ** = କୁହାଯାଏ; **ଏଷଃ** = ଏହି କାମ; **ଏତୈଃ** = ଏହି ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ (ମଧ୍ୟ); **ଜ୍ଞାନମ୍** = ଜ୍ଞାନକୁ; **ଆବୃତ୍ୟ** = ଆଚ୍ଛାଦିତ କରି; **ଦେହିନମ୍** = ଜୀବାତ୍ମାକୁ; **ବିମୋହୟତି** = ବିମୋହିତ କରେ।

**ଇନ୍ଦ୍ରିୟଗଣ, ମନ ଓ ବୁଦ୍ଧି– ଏସବୁକୁ କାମର ବାସସ୍ଥାନ ବୋଲି କୁହାଯାଏ। ଏହି କାମ ଏମାନଙ୍କ ଦ୍ୱାରା ଅର୍ଥାତ୍ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ ଜ୍ଞାନକୁ ଆଚ୍ଛାଦିତ କରି ଜୀବାତ୍ମାକୁ ବିମୋହିତ କରେ।। ୪୦ ।।**

**ପ୍ରଶ୍ନ –** 'ଇନ୍ଦ୍ରିୟ, ମନ ଓ ବୁଦ୍ଧି – ଏସବୁକୁ 'କାମ'ର ବାସସ୍ଥାନ ବୋଲି କୁହାଯାଏ,' ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏପରି କହି ଦେଖାଇଦିଆଯାଇଛି ଯେ, ମନ, ବୁଦ୍ଧି ଓ ଇନ୍ଦ୍ରିୟ ମନୁଷ୍ୟର ବଶରେ ନ ରହୁଥିବାରୁ ସେମାନଙ୍କ ଉପରେ 'କାମ' ନିଜର ଆଧିପତ୍ୟ ଜମାଇରଖେ। ଏଣୁ କଲ୍ୟାଣ ଇଚ୍ଛା କରୁଥିବା ମନୁଷ୍ୟ ତା'ର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କରୁ ଏହି କାମରୂପକ ଶତ୍ରୁକୁ ଶୀଘ୍ର ହଟାଇଦେବା କିମ୍ବା ସେଠାରେ ହିଁ ଅବରୁଦ୍ଧ କରି ତାହାକୁ ନଷ୍ଟ କରିଦେବା ଉଚିତ; ନ ହେଲେ

ଘରେ ପଶିଯାଇଥିବା ଶତ୍ରୁପରି ଏହା ମନୁଷ୍ୟଜୀବନରୂପୀ ଅମୂଲ୍ୟ ଧନକୁ ନଷ୍ଟ କରିଦେବ।

**ପ୍ରଶ୍ନ—** 'ଏହି କାମ ମନ, ବୁଦ୍ଧି ଓ ଇନ୍ଦ୍ରିୟଙ୍କ ଦ୍ୱାରା ହିଁ ଜ୍ଞାନକୁ ଆଚ୍ଛାଦିତ କରି ଜୀବାତ୍ମାକୁ ମୋହିତ କରେ'—ଏହି କଥାର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଏହି 'କାମ' ମନୁଷ୍ୟର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କରେ ପ୍ରବେଶ କରି ତାହାର ବିବେକଶକ୍ତି ନଷ୍ଟ କରିଦିଏ ଏବଂ ଭୋଗରେ ସୁଖ ଦେଖାଇ ତାହାକୁ ପାପରେ ପ୍ରବୃତ୍ତ କରିଦିଏ; ତା'ଫଳରେ ମନୁଷ୍ୟର ଅଧଃପତନ ହୋଇଯାଏ। ତେଣୁ ଏ ବିଷୟରେ ଶୀଘ୍ର ହିଁ ଜାଗରୂକ ହୋଇଯିବା ଆବଶ୍ୟକ।

ଏହା ଗୋଟିଏ କାଳ୍ପନିକ ଦୃଷ୍ଟାନ୍ତଦ୍ୱାରା ବୁଝାଇଦିଆଯାଇଛି: ଚେତନ ସିଂହ ନାମରେ ଜଣେ ରାଜା ଥିଲେ। ତାଙ୍କ ପ୍ରଧାନମନ୍ତ୍ରୀଙ୍କ ନାମ ଜ୍ଞାନସାଗର। ପ୍ରଧାନମନ୍ତ୍ରୀଙ୍କ ଅଧୀନରେ ଜଣେ ସହକାରୀ ମନ୍ତ୍ରୀ ଥିଲେ; ତାଙ୍କ ନାମ ଚଞ୍ଚଳ ସିଂହ। ରାଜା ମନ୍ତ୍ରୀ ଓ ସହକାରୀ ମନ୍ତ୍ରୀଙ୍କ ସହିତ ନିଜ ରାଜଧାନୀ ମଧୁପୁରୀରେ ରହୁଥିଲେ। ରାଜ୍ୟ ଦଶୋଟି ଜିଲ୍ଲାରେ ବିଭକ୍ତ ହୋଇଥିଲା ଏବଂ ପ୍ରତ୍ୟେକ ଜିଲ୍ଲାରେ ଜଣେ ଜଣେ ଜିଲ୍ଲାଧିକାରୀ ନିଯୁକ୍ତ ଥିଲେ। ରାଜା ଅତ୍ୟନ୍ତ ବିଚାରଶୀଳ, କର୍ମପ୍ରବଣ ଓ ସୁଶୀଳ ଥିଲେ। ତାଙ୍କ ରାଜ୍ୟରେ ସମସ୍ତେ ସୁଖରେ ଥିଲେ। ରାଜ୍ୟ ଦିନୁଦିନ ଉନ୍ନତ ହେଉଥିଲା। ଥରେ ତାଙ୍କ ରାଜ୍ୟକୁ ଜଗମୋହନ ନାମକ ଜଣେ ଠକସର୍ଦ୍ଦାର ଆସିଲା। ସେ ଥିଲା ବଡ଼ କୁଟକ୍ରୀ ଓ ଦଗାବାଜ୍; ତା'ର ହୃଦୟ କପଟରୂପୀ ଗରଳରେ ପୂର୍ଣ୍ଣ ହୋଇ ରହିଥିଲେ ମଧ୍ୟ ତା'ର କଥା ଥିଲା ବଡ଼ ମଧୁର। ସେ ଯାହା ସହିତ କଥାବାର୍ତ୍ତା କରୁଥିଲା, ତା ମନକୁ ମୋହି ନେଉଥିଲା। ସେ ଜଣେ ବେପାରୀବେଶରେ ଆସିଥିଲା ଏବଂ ଜିଲ୍ଲାଧୀଶମାନଙ୍କ ସହିତ ମିଳାମିଶା କରି ସେହି ରାଜ୍ୟରେ ନିଜର ବେପାର କରିବାକୁ ଅନୁମତି ମାଗିଲା। ଏଥିପାଇଁ ସେ ଜିଲ୍ଲାଧୀଶମାନଙ୍କୁ ଯଥେଷ୍ଟ ପ୍ରଲୋଭନ ଦେଖାଇଲା। ସେମାନେ ତା' ପ୍ରଲୋଭନରେ ପଡ଼ିଗଲେ, କିନ୍ତୁ ଉପର ହାକିମଙ୍କ ଅନୁମତି ବିନା ତ ସେମାନେ କିଛି କରିପାରିବେ ନାହିଁ। ଦଗାବାଜ୍ ବେପାରୀ ଜଗମୋହନର ମନ୍ତ୍ରଣାରେ ସେମାନେ ସମସ୍ତେ ମିଶି ତାକୁ ଉପର ହାକିମ ସହକାରୀ ମନ୍ତ୍ରୀ ଚଞ୍ଚଳ ସିଂହଙ୍କ ପାଖକୁ ନେଇଗଲେ; ଠକ ବେପାରୀ ତାଙ୍କୁ ମଧ୍ୟ ବହୁତ ପ୍ରଲୋଭନ ଦେଖାଇଲା। ଫଳତଃ ଚଞ୍ଚଳ ସିଂହ ମଧ୍ୟ ଜଗମୋହନର ମିଠାକଥାରେ ଭୁଲିଗଲେ। ଚଞ୍ଚଳ ସିଂହ ତାଙ୍କୁ ନିଜର ଉପର ଅଧିକାରୀ ଜ୍ଞାନସାଗରଙ୍କ ପାଖକୁ ନେଇଗଲେ। ଜ୍ଞାନସାଗର ବୁଦ୍ଧିମାନ୍ ଥିଲେ; କିନ୍ତୁ ସେ ଟିକିଏ ଦୁର୍ବଳ ହୃଦୟର ଲୋକ ଥିଲେ; ସେ ଠିକ୍ ମୀମାଂସା କରି କୌଣସି ନିଶ୍ଚୟରେ ପହଞ୍ଚିପାରୁନ ଥିଲେ। ତେଣୁ ସେ ନିଜର ସହକାରୀ ମନ୍ତ୍ରୀ ଚଞ୍ଚଳସିଂହ ଓ ଦଶ ଜିଲ୍ଲାଧୀଶଙ୍କର କଥାରେ ଚଳୁଥିଲେ। ଏହା ଫଳରେ ସେମାନେ ଅନୁଚିତ ଲାଭ ମଧ୍ୟ ଉଠାଉଥିଲେ। ବର୍ତ୍ତମାନ ସେ ଚଞ୍ଚଳ ସିଂହ ଓ ଜିଲ୍ଲାଧୀଶଙ୍କ କଥାରେ ବିଶ୍ୱାସ କରି ଠକବେପାରୀର ଜାଲରେ ପଡ଼ିଗଲେ। ସେ ବେପାରପାଇଁ ଅନୁମତି ଦେବାକୁ ସ୍ୱୀକାର କରିଦେଲେ, କିନ୍ତୁ କହିଲେ, ମହାରାଜ ଚେତନ ସିଂହଙ୍କ ମଂଜୁରୀ ବ୍ୟତୀତ ସାରା ରାଜ୍ୟରେ ବେପାର କରିବାକୁ ଅନୁମତି ଦିଆଯାଇପାରିବ ନାହିଁ। ଶେଷରେ ଠକବେପାରୀଙ୍କ ପ୍ରରୋଚନାରେ ସେମାନେ ତାକୁ ରାଜାଙ୍କ ପାଖକୁ ନେଇଗଲେ। ଠକ ବଡ଼ ଚତୁର ଥିଲା। ସେ ରାଜାଙ୍କୁ ବହୁ ପ୍ରଲୋଭନ ଦେଖାଇଲା। ରାଜା ମଧ୍ୟ ଲୋଭରେ ପଡ଼ିଗଲେ ଏବଂ ସେ ଜଗମୋହନକୁ ନିଜ ରାଜ୍ୟରେ ସର୍ବତ୍ର ଅବାଧ ବାଣିଜ୍ୟ ଚଳାଇବାକୁ ଏବଂ କୋଠିମାନ ଖୋଲିବାକୁ ଅନୁମତି ଦେଇଦେଲେ। ଜଗମୋହନ ଜିଲ୍ଲା ଅଫିସରମାନଙ୍କୁ ତଥା ଦୁଇ ମନ୍ତ୍ରୀଙ୍କୁ କିଛି ଦିଆନିଆ କରି ସନ୍ତୁଷ୍ଟ କରିଦେଲା ଏବଂ ସାରା ରାଜ୍ୟରେ ନିଜର ବେପାରଜାଲ ବିଛାଇଦେଲା। ଯେତେବେଳେ ସବୁଆଡ଼େ ତା'ର ପ୍ରଭାବ ବିସ୍ତୃତ ହୋଇଗଲା, ସେତେବେଳେ ସେ ଅବାଧରେ ପ୍ରଜାଙ୍କୁ ଲୁଟିବାକୁ ଲାଗିଲା। ଜିଲ୍ଲାଧୀଶମାନଙ୍କ ସହିତ ଦୁଇ ମନ୍ତ୍ରୀ ପ୍ରଲୋଭନରେ ପଡ଼ିଯାଇଥିଲେ; ରାଜାଙ୍କୁ ମଧ୍ୟ ଲୁଟିଧନର ଅଂଶ ଦେଇ ସେ ତାଙ୍କୁ ନିଜର ବଶ କରିଦେଲା। ଛଳ-କୌଶଳରେ ଓ ମିଠା-ମିଠା ଚିକ୍କଣ-ଚାକଣ କଥାରେ ରାଜାଙ୍କୁ ତଥା ବିଷୟଲୋଲୁପ ସମସ୍ତ ଅଫିସରଙ୍କୁ କୁମାର୍ଗଗାମୀ କରାଇଦେଇ ସେ ସମସ୍ତଙ୍କୁ ଶକ୍ତିହୀନ, ଅକର୍ମଣ୍ୟ ଓ ଦୁର୍ବ୍ୟସନପ୍ରିୟ କରିଦେଲା ଏବଂ ଗୁପ୍ତଭାବରେ ଖୁବ୍ ଶୀଘ୍ର ନିଜର ବଳ ବଢ଼ାଇ ସେ ସାରା ରାଜ୍ୟରେ ନିଜର ଅଧିକାର ଜମାଇଦେଲା। ଏପରିଭାବରେ ରାଜାଙ୍କର ସର୍ବସ୍ୱ ଲୁଟିନେଇ ଶେଷରେ ତାଙ୍କୁ ବି ନଜରବନ୍ଦୀ କରିଦେଲା।

ଏହି ଉଦାହରଣକୁ ମନୁଷ୍ୟଜୀବନ ସହିତ ତୁଳନା କଲେ ଦେଖିବେ, ରାଜା ଚେତନ ସିଂହ ହେଉଛନ୍ତି 'ଜୀବାତ୍ମା', ପ୍ରଧାନମନ୍ତ୍ରୀ ଜ୍ଞାନସାଗର 'ବୁଦ୍ଧି', ସହକାରୀ ମନ୍ତ୍ରୀ ଚଞ୍ଚଳସିଂହ 'ମନ', ମଧୁପୁରୀ ରାଜଧାନୀ 'ହୃଦୟ', ଦଶଜିଲ୍ଲାଧୀଶ 'ଦଶ ଇନ୍ଦ୍ରିୟ', ଦଶଜିଲ୍ଲା ଇନ୍ଦ୍ରିୟମାନଙ୍କର 'ଦଶ ସ୍ଥାନ' ଏବଂ ଠକସରଦାର୍ ଜଗମୋହନ 'କାମ' ଅଟେ। ବିଷୟଭୋଗ-ସୁଖର ପ୍ରଲୋଭନ ହିଁ ସମସ୍ତଙ୍କୁ ପ୍ରଲୁବ୍ଧ କରାଏ। ବିଷୟଭୋଗରେ ପକାଇ ସେ ଜୀବାତ୍ମାକୁ ବାସ୍ତବ ସୁଖମାର୍ଗରୁ ଭ୍ରଷ୍ଟ କରିଦିଏ ଏବଂ ତାକୁ ଲୁଟିବାକୁ ଲାଗେ ଓ ତା'ର ଜ୍ଞାନକୁ ଆବୃତ କରି ସର୍ବଥା ମୋହିତ କରିଦିଏ। ମନୁଷ୍ୟଜୀବନର ପରମଲାଭରୁ ବଞ୍ଚିତ ହୋଇ ରହିବାକୁ ବାଧ୍ୟ କରିବା ହିଁ 'ନଜରବନ୍ଦୀ' କରିବା।

ଅଭିପ୍ରାୟ ଏହି ଯେ, କଲ୍ୟାଣବିରୋଧୀ ଦୁର୍ଜୟ ଶତ୍ରୁ କାମ ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ବିଷୟଭୋଗରୂପକ ମିଥ୍ୟାସୁଖର ପ୍ରଲୋଭନ ଦେଖାଏ; ସମସ୍ତଙ୍କ ଉପରେ ନିଜର ଅଧିକାର ଜମାଏ; ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟ-ସୁଖରୂପକ ଲୋଭରେ ଜୀବାତ୍ମାର ଜ୍ଞାନକୁ ଆବୃତ କରିଦିଏ ଓ ଜୀବାତ୍ମାକୁ ମୋହମୟ ସଂସାରରୂପକ କଏଦୀଖାନାରେ ପକାଇଦିଏ ତଥା ପରମାତ୍ମପ୍ରାପ୍ତିରୂପକ ପ୍ରକୃତ ଧନରୁ ବଞ୍ଚିତ କରି ତାହାର ଅମୂଲ୍ୟ ମନୁଷ୍ୟଜୀବନକୁ ନଷ୍ଟ କରିଦିଏ।

*ସମ୍ବନ୍ଧ – ଏପରିଭାବରେ କାମରୂପକ ଶତ୍ରୁର ଅତ୍ୟାଚାର ଏବଂ ସେ ଯେଉଁଠାରେ ଛପିରହି ଅତ୍ୟାଚାର କରେ, ସେହି ବାସସ୍ଥାନର ପରିଚୟ ଦେଇସାରି, ବର୍ତ୍ତମାନ ଭଗବାନ୍ ସେହି କାମରୂପକ ଶତ୍ରୁକୁ ମାରିବାର ଉପାୟ କହୁଛନ୍ତି ଓ ତାକୁ ମାରିଦେବାପାଇଁ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି–*

## ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ।
## ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନନାଶନମ୍॥ ୪୧ ॥

**ଅନ୍ୱୟ –** **ତସ୍ମାତ୍** = ତେଣୁ; **ଭରତର୍ଷଭ** = ହେ ଭରତବଂଶର ଶ୍ରେଷ୍ଠ ଅର୍ଜୁନ! **ତ୍ୱମ୍** = ତୁମେ; **ଆଦୌ** = ପ୍ରଥମେ; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ; **ନିୟମ୍ୟ** = ବଶ କରି; **ଏନମ୍** = ଏହି; **ଜ୍ଞାନବିଜ୍ଞାନନାଶନମ୍** = ଜ୍ଞାନ ଏବଂ ବିଜ୍ଞାନର ନାଶକାରୀ; **ପାପ୍ମାନମ୍** = ମହାପାପୀ (କାମକୁ); **ହି** = ଅବଶ୍ୟ; **ପ୍ରଜହି** = ବଳପୂର୍ବକ ମାରିଦିଅ।

**ତେଣୁ ହେ ଭରତବଂଶର ଶ୍ରେଷ୍ଠ ଅର୍ଜୁନ! ତୁମେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ବଶ କରି ଜ୍ଞାନ ଓ ବିଜ୍ଞାନକୁ ନାଶ କରୁଥିବା ଏହି ମହାପାପୀ କାମକୁ ଅବଶ୍ୟ ବଳପୂର୍ବକ ମାରିଦିଅ॥ ୪୧ ॥**

**ପ୍ରଶ୍ନ – ତସ୍ମାତ୍ ଓ ଆଦୌ –** ଏହି ଦୁଇପଦ ପ୍ରୟୋଗ କରି ଇନ୍ଦ୍ରିୟମାନଙ୍କୁ ବଶ କର ବୋଲି କହିବାର ଅର୍ଥ କଣ?

**ଉତ୍ତର – ତସ୍ମାତ୍** ପଦ ହେତୁବାଚକ; ଏହା ସହିତ **ଆଦୌ** ପଦ ପ୍ରୟୋଗ କରି ଇନ୍ଦ୍ରିୟମାନଙ୍କୁ ବଶ କରିବାକୁ କହି ଭଗବାନ୍ ଦେଖାଉଛନ୍ତି ଯେ, 'କାମ' ହିଁ ସମସ୍ତ ଅନର୍ଥର ମୂଳ; ଏହା ପ୍ରଥମେ ଇନ୍ଦ୍ରିୟମାନଙ୍କରେ ପ୍ରବେଶ କରେ ଓ ସେମାନଙ୍କ ଦ୍ୱାରା ମନ-ବୁଦ୍ଧିକୁ ମୋହିତ କରିବା ସହିତ ଜୀବାତ୍ମାକୁ ମୋହିତ କରେ। ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନେ ଏହାର ନିବାସସ୍ଥାନ ଅଟନ୍ତି; ତେଣୁ ପ୍ରଥମେ ଇନ୍ଦ୍ରିୟମାନଙ୍କ ଉପରେ ନିଜର ଅଧିକାର ସାବ୍ୟସ୍ତ କରି ଏହି କାମରୂପୀ ଶତ୍ରୁକୁ ଅବଶ୍ୟ ମାରିଦେବା ଉଚିତ। ଏହାର ବାସସ୍ଥାନକୁ ରୁଦ୍ଧ କରିଦେଲେ ହିଁ ଏହି କାମରୂପକ ଶତ୍ରୁକୁ ମାରିବା ସହଜ ହେବ। ଅତଏବ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ଓ ପରେ ମନକୁ ସଂଯତ କରିବାକୁ ପଡ଼ିବ।

**ପ୍ରଶ୍ନ –** ଇନ୍ଦ୍ରିୟମାନଙ୍କୁ କେଉଁ ଉପାୟରେ ବଶ କରିବା ଉଚିତ?

**ଉତ୍ତର – ଅଭ୍ୟାସ ଓ ବୈରାଗ୍ୟ –** ଏହି ଦୁଇ ଉପାୟରେ ଇନ୍ଦ୍ରିୟମାନେ ବଶ ହୋଇପାରିବେ– ମନକୁ ବଶ କରିବାପାଇଁ ଏହି ଦୁଇ ଉପାୟ କୁହାଯାଇଛି (୬/୩୫)। ବିଷୟ ଓ ଇନ୍ଦ୍ରିୟମାନଙ୍କ ସଂଯୋଗରେ ହେଉଥିବା ରାଜସସୁଖକୁ (୧୮/୩୮) ତଥା ନିଦ୍ରା, ଆଳସ୍ୟ ଓ ପ୍ରମାଦଜନିତ ତାମସସୁଖକୁ (୧୮/୩୯) ବାସ୍ତବରେ କ୍ଷଣିକ, ନାଶବାନ୍ ଓ ଦୁଃଖକର ବୋଲି ବୁଝି ଇହଲୋକ ଓ ପରଲୋକର ସମସ୍ତ ଭୋଗରୁ

ବିରକ୍ତ ରହିବା ହିଁ **ବୈରାଗ୍ୟ** । ଏବଂ ପରମାତ୍ମାଙ୍କ ନାମ, ରୂପ, ଗୁଣ, ଚରିତ୍ର ଆଦି ଶ୍ରବଣ, କୀର୍ତ୍ତନ, ମନନ କରିବା ଓ ଇନ୍ଦ୍ରିୟମାନଙ୍କୁ ନିଃସ୍ୱାର୍ଥଭାବରେ ଲୋକସେବା-କାର୍ଯ୍ୟରେ ଲଗାଇବା, ଧାରଣଶକ୍ତିଦ୍ୱାରା ତାହାର କ୍ରିୟାମାନଙ୍କୁ ଶାସ୍ତ୍ରର ଅନୁକୂଳ କରିବା ତଥା ସେଥିରେ ସ୍ୱେଚ୍ଛାଚାରିତା ଦୋଷ ଉତ୍ପନ୍ନ ହେବାକୁ ନ ଦେବାଲାଗି ଚେଷ୍ଟା କରିବା ହିଁ **ଅଭ୍ୟାସ** । ଏହି ଦୁଇଟି ଉପାୟରେ ଇନ୍ଦ୍ରିୟମାନଙ୍କୁ ଓ ମନକୁ ବଶ କରାଯାଇପାରେ ।

**ପ୍ରଶ୍ନ** — **ଜ୍ଞାନ** ଓ **ବିଜ୍ଞାନ** — ଏଠାରେ ଏହି ଦୁଇ ଶବ୍ଦର ଅର୍ଥ କଣ ଏବଂ କାମ ଏମାନଙ୍କୁ ନାଶ କରେ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର** — ଭଗବାନଙ୍କ ନିର୍ଗୁଣ-ନିରାକାର ତତ୍ତ୍ୱର ପ୍ରଭାବ, ମାହାତ୍ମ୍ୟ ଓ ରହସ୍ୟଯୁକ୍ତ ଯଥାର୍ଥ ଜ୍ଞାନକୁ **ଜ୍ଞାନ** କହନ୍ତି, ତଥା ସଗୁଣ-ନିରାକାର ଓ ଦିବ୍ୟ ସାକାର ତତ୍ତ୍ୱର ଲୀଳା, ରହସ୍ୟ, ଗୁଣ, ମହତ୍ତ୍ୱ ଏବଂ ପ୍ରଭାବରେ ଯୁକ୍ତ ଯଥାର୍ଥ ଜ୍ଞାନକୁ **ବିଜ୍ଞାନ** କହନ୍ତି । ଏହି **ଜ୍ଞାନ** ଓ **ବିଜ୍ଞାନର** ଯଥାର୍ଥ ପ୍ରାପ୍ତିପାଇଁ ହୃଦୟରେ ଯେଉଁ ଆକାଙ୍‌କ୍ଷା ଉତ୍ପନ୍ନ ହୁଏ, ତାହାକୁ ଏହି କାମରୂପକ ମହାଶତ୍ରୁ ନିଜର ମୋହିନୀ ଶକ୍ତିଦ୍ୱାରା ନିତ୍ୟନିରନ୍ତର ଦବାଇରଖେ ଅର୍ଥାତ୍ ଏହି ଆକାଙ୍‌କ୍ଷାର ଜାଗୃତିରୁ ଉତ୍ପନ୍ନ **ଜ୍ଞାନ-ବିଜ୍ଞାନର** ସାଧନାରେ ବାଧା ସୃଷ୍ଟି କରେ; ଏହି କାରଣରୁ **ଜ୍ଞାନ-ବିଜ୍ଞାନ** ପ୍ରକଟ ହୋଇପାରେ ନାହିଁ; ତେଣୁ କାମକୁ ଏହାର ନାଶକାରୀ ବୋଲି କୁହାଯାଇଛି । 'ନାଶ' ଶବ୍ଦର ଦୁଇଟି ଅର୍ଥ ହୁଏ— ଗୋଟିଏ ହେଉଛି ଅପ୍ରକଟ କରିଦେବା ଓ ଦ୍ୱିତୀୟଟି ହେଉଛି ବସ୍ତୁର ଅଭାବ କରିଦେବା । ଏଠାରେ ଅପ୍ରକଟ କରିଦେବା ଅର୍ଥରେ ହିଁ ନାଶ ଶବ୍ଦର ପ୍ରୟୋଗ ହୋଇଅଛି । ପୂର୍ବଶ୍ଳୋକରେ ମଧ୍ୟ ଜ୍ଞାନ କାମଦ୍ୱାରା ଢାଙ୍କି ହୋଇଯାଏ ବୋଲି କୁହାଯାଉଛି । ଜ୍ଞାନ ଓ ବିଜ୍ଞାନକୁ ସମୂଳେ ନଷ୍ଟ କରିଦେବାକୁ କାମର ଶକ୍ତି ନାହିଁ; କାରଣ କାମର ଉତ୍ପତ୍ତି ଅଜ୍ଞାନରୁ ହୋଇଛି । ଏଣୁ **ଜ୍ଞାନ-ବିଜ୍ଞାନ** ପୂର୍ଣ୍ଣଭାବରେ ପ୍ରକଟ ହୋଇଯିବା ପରେ ଅଜ୍ଞାନ ସମୂଳେ ନାଶ ପାଇଯାଏ; ଆଉ ଜ୍ଞାନ-ବିଜ୍ଞାନର ନାଶର କୌଣସି ପ୍ରଶ୍ନ ହିଁ ରହେ ନାହିଁ ।

*ସମ୍ବନ୍ଧ — ପୂର୍ବଶ୍ଳୋକରେ ଇନ୍ଦ୍ରିୟମାନଙ୍କୁ ବଶ କରି କାମରୂପକ ଶତ୍ରୁକୁ ମାରିବାକୁ କୁହାଯାଇଛି । ଏହା ଉପରେ ଶଙ୍କା ହୁଏ, 'ଯଦି ଇନ୍ଦ୍ରିୟ, ମନ ଓ ବୁଦ୍ଧି ଉପରେ କାମର ଅଧିକାର ହୋଇଯାଏ ଓ ତାହାଦ୍ୱାରା କାମ ଜୀବାତ୍ମାକୁ ମୋହିତ କରି ରଖେ, ତେବେ ଏପରି ସ୍ଥିତିରେ ଇନ୍ଦ୍ରିୟମାନଙ୍କୁ ବଶ କରି କାମକୁ କିପରି ମାରିହେବ ?' ଏହି ଶଙ୍କା ଦୂର କରିବା ଉଦ୍ଦେଶ୍ୟରେ ଭଗବାନ୍ ଆତ୍ମାର ଯଥାର୍ଥ ସ୍ୱରୂପକୁ ଲକ୍ଷ୍ୟ କରାଇ ଆତ୍ମବଳ ସ୍ମରଣ କରାଇଦେଉଛନ୍ତି—*

## ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ ।
## ମନସସ୍ତୁ ପରା ବୁଦ୍ଧିର୍ଯୋ ବୁଦ୍ଧେଃ ପରତସ୍ତୁ ସଃ ॥ ୪୨ ॥

**ଅନ୍ୱୟ** — **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ (ସ୍ଥୂଳ ଶରୀରଠାରୁ); **ପରାଣି** = ଶ୍ରେଷ୍ଠ, ବଳବାନ୍ ଏବଂ ସୂକ୍ଷ୍ମ; **ଆହୁଃ** = (ବୋଲି) କହନ୍ତି; **ଇନ୍ଦ୍ରିୟେଭ୍ୟଃ** = ଇନ୍ଦ୍ରିୟମାନଙ୍କ ଠାରୁ; **ମନଃ**, **ପରମ୍** = ମନ ଶ୍ରେଷ୍ଠ; **ମନସଃ** = ମନଠାରୁ; **ତୁ** = ମଧ୍ୟ; **ବୁଦ୍ଧିଃ**, **ପରା** = ବୁଦ୍ଧି ଶ୍ରେଷ୍ଠ; **ତୁ** = ଏବଂ; **ଯଃ** = ଯେ; **ବୁଦ୍ଧେଃ** = ବୁଦ୍ଧିଠାରୁ (ମଧ୍ୟ); **ପରତଃ** = ଅତ୍ୟନ୍ତ ଶ୍ରେଷ୍ଠ; **ସଃ** = ତାହା (ଆତ୍ମା) ।

**ଇନ୍ଦ୍ରିୟମାନଙ୍କୁ ସ୍ଥୂଳଶରୀର ଅପେକ୍ଷା ଶ୍ରେଷ୍ଠ, ବଳବାନ୍ ଓ ସୂକ୍ଷ୍ମ ବୋଲି କହନ୍ତି; ଇନ୍ଦ୍ରିୟମାନଙ୍କ ଠାରୁ ମନ ଶ୍ରେଷ୍ଠ; ମନଠାରୁ ବୁଦ୍ଧି ଶ୍ରେଷ୍ଠ ଓ ଯାହା ବୁଦ୍ଧିଠାରୁ ଅତ୍ୟନ୍ତ ଶ୍ରେଷ୍ଠ, ତାହା ହେଉଛି ଆତ୍ମା ॥ ୪୨ ॥**

**ପ୍ରଶ୍ନ** — ଇନ୍ଦ୍ରିୟମାନଙ୍କୁ ସ୍ଥୂଳଶରୀରଠାରୁ ଶ୍ରେଷ୍ଠ ବୋଲି ଯାହା କୁହାଯାଏ, ତାହାକୁ କେଉଁ ଆଧାର ଉପରେ ସ୍ୱୀକାର କରାଯାଇପାରେ ?

**ଉତ୍ତର** — କଠୋପନିଷଦରେ ଶରୀରକୁ ରଥ ଓ ଇନ୍ଦ୍ରିୟମାନଙ୍କୁ ଘୋଡ଼ା ବୋଲି କୁହାଯାଇଛି (୧/୩/୩-୪); ରଥଠାରୁ ଘୋଡ଼ା ଶ୍ରେଷ୍ଠ ଓ ଚେତନଶୀଳ ଅଟେ ଏବଂ ରଥକୁ ଘୋଡ଼ା ନିଜର ଇଚ୍ଛା ଅନୁସାରେ ନେଇଯାଇପାରେ । ସେହିପରି ଇନ୍ଦ୍ରିୟମାନେ ସ୍ଥୂଳଦେହକୁ ଯେଉଁଠି ଇଚ୍ଛା ସେଠିକି ନେଇଯାଇପାରନ୍ତି, ଏଣୁ ସେମାନେ ସ୍ଥୂଳଦେହଠାରୁ ଅଧିକ ବଳବାନ୍ ଓ ଚେତନଶୀଳ ଅଟନ୍ତି ।

ସ୍ଥୂଳଦେହକୁ ଦେଖିହୁଏ କିନ୍ତୁ ଇନ୍ଦ୍ରିୟମାନଙ୍କୁ ଦେଖିହୁଏ ନାହିଁ; ତେଣୁ ସେମାନେ ସ୍ଥୂଳଦେହଠାରୁ ମଧ୍ୟ ସୂକ୍ଷ୍ମ ଅଟନ୍ତି।

ଏହା ଛଡ଼ା ସ୍ଥୂଳଶରୀରଠାରୁ ଇନ୍ଦ୍ରିୟମାନଙ୍କର ଶ୍ରେଷ୍ଠତା-ସୂକ୍ଷ୍ମତା ଏବଂ ବଳବତ୍ତା ପ୍ରତ୍ୟକ୍ଷ ଦେଖିବାକୁ ମଧ୍ୟ ମିଳେ।

**ପ୍ରଶ୍ନ –** କଠୋପନିଷଦ୍ (୧/୩/୧୦-୧୧) ରେ କୁହାଯାଇଛି ଯେ, ଇନ୍ଦ୍ରିୟମାନଙ୍କ ଠାରୁ ଅର୍ଥ ଶ୍ରେଷ୍ଠ, ଅର୍ଥଠାରୁ ମନ ଶ୍ରେଷ୍ଠ, ମନଠାରୁ ବୁଦ୍ଧି ଶ୍ରେଷ୍ଠ, ବୁଦ୍ଧିଠାରୁ ମହତ୍ତତ୍ତ୍ୱ ଶ୍ରେଷ୍ଠ, (ସମଷ୍ଟିବୁଦ୍ଧିରୂପକ) ମହତ୍ତତ୍ତ୍ୱଠାରୁ ଅବ୍ୟକ୍ତ ଶ୍ରେଷ୍ଠ ଏବଂ ଅବ୍ୟକ୍ତଠାରୁ ପୁରୁଷ ଶ୍ରେଷ୍ଠ। ଏହି ପୁରୁଷଠାରୁ ଶ୍ରେଷ୍ଠ ଓ ସୂକ୍ଷ୍ମ ହୋଇ ଆଉ କିଛି ନାହିଁ। ଏହା ସମସ୍ତଙ୍କର ଅନ୍ତିମ ସୀମା ଓ ଏହା ହିଁ ପରମଗତି। କିନ୍ତୁ ଏଠାରେ ଭଗବାନ୍ ଅର୍ଥ, ମହତ୍ତତ୍ତ୍ୱ ଏବଂ ଅବ୍ୟକ୍ତର ନାମ ବି ନେଇ ନାହାନ୍ତି; ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ଏଠାରେ ଏହି ପ୍ରକରଣର ବର୍ଣ୍ଣନା ସାରାଂଶରୂପରେ କରିଛନ୍ତି; ତେଣୁ ସେହି ତିନୋଟିର ନାମ ନେଇ ନାହାନ୍ତି; କାରଣ, କାମକୁ ମାରିବାପାଇଁ ଅର୍ଥ, ମହତ୍ତତ୍ତ୍ୱ ଓ ଅବ୍ୟକ୍ତର ଶ୍ରେଷ୍ଠତା ପ୍ରତିପାଦନ କରିବାର କୌଣସି ଆବଶ୍ୟକତା ନାହିଁ; କେବଳ ଆତ୍ମାର ମହତ୍ତ୍ୱ ଦେଖାଇଦେବା ଯଥେଷ୍ଟ।

**ପ୍ରଶ୍ନ –** କଠୋପନିଷଦ୍‌ରେ ଇନ୍ଦ୍ରିୟମାନଙ୍କ ଅପେକ୍ଷା ଅର୍ଥମାନଙ୍କୁ ଶ୍ରେଷ୍ଠ ବୋଲି କିପରି କୁହାଯାଇଛି ?

**ଉତ୍ତର –** ସେଠାରେ 'ଅର୍ଥ' ଶବ୍ଦର ଅଭିପ୍ରାୟ ପଞ୍ଚତନ୍ମାତ୍ର। ତନ୍ମାତ୍ରମାନେ ଇନ୍ଦ୍ରିୟମାନଙ୍କ ଅପେକ୍ଷା ସୂକ୍ଷ୍ମ। ତେଣୁ ସେମାନଙ୍କୁ ଶ୍ରେଷ୍ଠ କହିବା ଉଚିତ ହୋଇଛି।

**ପ୍ରଶ୍ନ –** ଏଠାରେ ଭଗବାନ୍ ଇନ୍ଦ୍ରିୟମାନଙ୍କ ଅପେକ୍ଷା ମନକୁ ଓ ମନ ଅପେକ୍ଷା ବୁଦ୍ଧିକୁ ଶ୍ରେଷ୍ଠ, ସୂକ୍ଷ୍ମ ଓ ବଳବାନ୍ ବୋଲି କହିଛନ୍ତି; କିନ୍ତୁ ଦ୍ୱିତୀୟ ଅଧ୍ୟାୟରେ କହିଛନ୍ତି, 'ଯତ୍ନ କରୁଥିବା ବୁଦ୍ଧିମାନ୍ ପୁରୁଷଙ୍କ ମନକୁ ବି ପ୍ରମଥନସ୍ୱଭାବଯୁକ୍ତ ଇନ୍ଦ୍ରିୟମାନେ ବଳପୂର୍ବକ ହରଣ କରିନିଅନ୍ତି (୨/୬୦); ଆହୁରି ମଧ୍ୟ କୁହାଯାଇଛି ଯେ, ବିଷୟମାନଙ୍କରେ ବିଚରଣ କରୁଥିବା ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯାହା ସହିତ ମନ ରହେ, ସେହି ଗୋଟିକ ଇନ୍ଦ୍ରିୟ ବି ମନୁଷ୍ୟର ବୁଦ୍ଧିକୁ ହରଣ କରିନିଏ (୨/୬୭)' ଏହି କଥାଦ୍ୱାରା ମନ ଅପେକ୍ଷା ଇନ୍ଦ୍ରିୟମାନଙ୍କର ପ୍ରବଳତା ସିଦ୍ଧ ହେଉଛି ଏବଂ ବୁଦ୍ଧି ଅପେକ୍ଷା ମନର ସହାୟତାରେ ଇନ୍ଦ୍ରିୟମାନଙ୍କର ପ୍ରବଳତା ମଧ୍ୟ ସିଦ୍ଧ ହେଉଛି। ତେଣୁ ଏଠାରେ ପୂର୍ବାପର ବିରୋଧ ରହିଥିବାପରି ପ୍ରତୀତ ହେଉଛି। ଏହାର ସମାଧାନ କରିବା ଉଚିତ ନୁହେଁ କି ?

**ଉତ୍ତର –** କଠୋପନିଷଦ୍‌ରେ ରଥ ଦୃଷ୍ଟାନ୍ତଦ୍ୱାରା ଏହି ବିଷୟ ଭଲଭାବରେ ବୁଝାଇଦିଆଯାଇଛି। ସେଠାରେ କୁହାଯାଇଛି, ଆତ୍ମା ରଥୀ; ବୁଦ୍ଧି ତାହାର ସାରଥି; ଶରୀର ରଥ; ମନ ହେଉଛି ଲଗାମ; ଇନ୍ଦ୍ରିୟମାନେ ଘୋଡ଼ା ଏବଂ ଶବ୍ଦାଦି ବିଷୟ ହିଁ ମାର୍ଗ। ★ ଯଦ୍ୟପି ବାସ୍ତବରେ ସାରଥି ରଥୀଙ୍କ ଅଧୀନ; ଲଗାମ୍ ସାରଥିଙ୍କ ଅଧୀନ ଏବଂ ଘୋଡ଼ା ଲଗାମର ଅଧୀନ ହେବା ଠିକ୍, ତଥାପି ଯାହାଙ୍କର ବୁଦ୍ଧିରୂପକ ସାରଥି ବିବେକଜ୍ଞାନରେ ସର୍ବଥା ଶୂନ୍ୟ, ଯାହାଙ୍କର ମନରୂପକ ଲଗାମ ନିୟମାନୁସାରେ ଧରାହୋଇ ନାହିଁ, ସେହି ଜୀବାତ୍ମାରୂପକ ରଥୀଙ୍କୁ ଇନ୍ଦ୍ରିୟରୂପକ ଘୋଡ଼ାମାନେ

---

★ ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ। ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ॥
ଇନ୍ଦ୍ରିୟାଣି ହୟାନାହୁର୍ବିଷୟାଂସ୍ତେଷୁ ଗୋଚରାନ୍। ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ॥

(କଠୋପନିଷଦ ୧/୩/ ୩-୪)

ଅର୍ଥାତ୍:– ତୁମେ ଆତ୍ମାକୁ ରଥୀ ଓ ଶରୀରକୁ ରଥ ବୋଲି ଜାଣ, ତଥା ବୁଦ୍ଧିକୁ ସାରଥି ଏବଂ ମନକୁ ଲଗାମ ବୋଲି ବୁଝ। ବିବେକୀ ପୁରୁଷ ଇନ୍ଦ୍ରିୟମାନଙ୍କୁ ଘୋଡ଼ା ବୋଲି କହନ୍ତି ଏବଂ ବିଷୟମାନଙ୍କୁ ସେମାନଙ୍କର ମାର୍ଗ ବୋଲି କହନ୍ତି ତଥା ଶରୀର, ଇନ୍ଦ୍ରିୟ ଏବଂ ମନ ସହିତ ଯୁକ୍ତ ଆତ୍ମାକୁ 'ଭୋକ୍ତା' ବୋଲି କହନ୍ତି।

ଇନ୍ଦ୍ରିୟମାନେ ଦୁଷ୍ଟ ଘୋଡ଼ାଙ୍କ ପରି ବଳପୂର୍ବକ ବିପରୀତ ମାର୍ଗରେ ଟାଣିନେଇ ତାହାକୁ ଗାତରେ ପକାଇଦିଅନ୍ତି। * ଏଥିରୁ ପ୍ରମାଣିତ ହେଲା ଯେ, ଯେପର୍ଯ୍ୟନ୍ତ ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ଉପରେ ଜୀବାତ୍ମାର ଆଧିପତ୍ୟ ପ୍ରତିଷ୍ଠିତ ନ ହୋଇଛି, ସେପର୍ଯ୍ୟନ୍ତ ସେ ନିଜର ସାମର୍ଥ୍ୟକୁ ଭୁଲିଯାଇ ସେମାନଙ୍କ ଅଧୀନ ହୋଇ ରହିଥାଏ; ସେପର୍ଯ୍ୟନ୍ତ ଇନ୍ଦ୍ରିୟମାନେ ମନ ଓ ବୁଦ୍ଧିକୁ ଧୋକା ଦେଇ ସମସ୍ତଙ୍କୁ ବଳପୂର୍ବକ ବିପରୀତ ମାର୍ଗରେ ଟାଣିନିଅନ୍ତି ଅର୍ଥାତ୍ ଇନ୍ଦ୍ରିୟମାନେ ପ୍ରଥମେ ମନକୁ ବିଷୟସୁଖର ପ୍ରଲୋଭନ ଦେଖାଇ ତାକୁ ନିଜର ଅନୁକୂଳ କରାଇନିଅନ୍ତି। ମନ ଓ ଇନ୍ଦ୍ରିୟମାନେ ମିଶି ବୁଦ୍ଧିକୁ ନିଜର ଅନୁକୂଳ କରାଇନିଅନ୍ତି ଓ ଏସମସ୍ତେ ମିଶି ଆତ୍ମାକୁ ମଧ୍ୟ ନିଜର ଅଧୀନ କରାଇନିଅନ୍ତି; କିନ୍ତୁ ବାସ୍ତବିକ ତ ଇନ୍ଦ୍ରିୟମାନଙ୍କ ଅପେକ୍ଷା ମନ, ମନ ଅପେକ୍ଷା ବୁଦ୍ଧି ଓ ସମସ୍ତଙ୍କ ଅପେକ୍ଷା ଆତ୍ମା ବଳବାନ୍ ଅଟେ; ତେଣୁ ସେଠାରେ (କଠୋପନିଷଦରେ) କୁହାଯାଇଛି ଯେ, ଯାହାଙ୍କର ବୁଦ୍ଧିରୂପକ ସାରଥି ବିବେକଶୀଳ, ମନରୂପକ ଲଗାମ ଯାହାଙ୍କର ନିୟମାନୁସାରେ ନିଜର ଅଧୀନ, ତାହାଙ୍କର ଇନ୍ଦ୍ରିୟରୂପକ ଘୋଡ଼ାମାନେ ମଧ୍ୟ ଭଲ ଘୋଡ଼ାଙ୍କ ପରି ବଶ ହୋଇଯାଆନ୍ତି ତଥା ଏପରି ମନ, ବୁଦ୍ଧି ଓ ଇନ୍ଦ୍ରିୟ ଥିବା ପବିତ୍ରାତ୍ମା ମନୁଷ୍ୟ ସେହି ପରମପଦକୁ ପ୍ରାପ୍ତ ହୁଅନ୍ତି, ଯେଉଁଠାକୁ ଚାଲିଗଲେ ଆଉ ଫେରି ଆସିବାକୁ ପଡ଼େ ନାହିଁ। ** ଗୀତାରେ ମଧ୍ୟ କୁହାଯାଇଛି ଯେ, ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ଜୟ କରିଥିବା ନିଜର ଆତ୍ମା ମିତ୍ର ଅଟେ ଏବଂ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିବା ଆତ୍ମା ଶତ୍ରୁ ସମାନ ଅଟେ (୬/୬)। ଏଣୁ ଜୟ କରାଯାଇ ନ ଥିବା ଇନ୍ଦ୍ରିୟମାନେ ମନ ଓ ବୁଦ୍ଧି ଅପେକ୍ଷା ବସ୍ତୁତଃ ଦୁର୍ବଳ ହେଲେ ମଧ୍ୟ ପ୍ରବଳ ହୋଇଯାଆନ୍ତି; ଏହି ଅଭିପ୍ରାୟ ଦ୍ୱିତୀୟ ଅଧ୍ୟାୟରେ ବି କୁହାଯାଇଛି ଏବଂ ଏଠାରେ ତାହାର ବାସ୍ତବିକ ସ୍ଥିତି କଥିତ ହୋଇଛି। ତେଣୁ କୌଣସି ପୂର୍ବାପରବିରୋଧ ନାହିଁ।

**ପ୍ରଶ୍ନ**– ଏଠାରେ **ପରତଃ** ପଦର ଅର୍ଥ 'ଅତ୍ୟନ୍ତ ଶ୍ରେଷ୍ଠ' କରାଯାଇଛି। ଏହାର ଅଭିପ୍ରାୟ କଣ ?

**ଉତ୍ତର**– କଠୋପନିଷଦରେ ଯେଉଁଠାରେ ଏହି ବିଷୟ ଆସିଛି, ସେଠାରେ ମହତ୍ତତ୍ତ୍ୱକୁ ବୁଦ୍ଧିଠାରୁ ଶ୍ରେଷ୍ଠ, ଅବ୍ୟକ୍ତକୁ ତାହାଠାରୁ ଶ୍ରେଷ୍ଠ ଏବଂ ପୁରୁଷକୁ ଅବ୍ୟକ୍ତଠାରୁ ମଧ୍ୟ ଶ୍ରେଷ୍ଠ ବୋଲି କୁହାଯାଇଛି, ତଥା ଏହା ମଧ୍ୟ କୁହାଯାଇଛି ଯେ, ଏହା ହିଁ ପରାକାଷ୍ଠା ଅର୍ଥାତ୍ ଶ୍ରେଷ୍ଠତ୍ୱର ଅନ୍ତିମ ସୀମା; ଏହାଠାରୁ ଶ୍ରେଷ୍ଠ ହୋଇ ଆଉ କିଛି ନାହିଁ। ***

ଶ୍ରୁତିର ଏହି ଭାବକୁ ସ୍ପଷ୍ଟରୂପେ ଦେଖାଇଦେବା ପାଇଁ ଏଠାରେ **ପରତଃ**ର ଅର୍ଥ ଅତ୍ୟନ୍ତ ଶ୍ରେଷ୍ଠ କରାଯାଇଛି। ଆତ୍ମା ସମସ୍ତଙ୍କର ଆଧାର, କାରଣ, ପ୍ରକାଶକ ଓ ପ୍ରେରକ ତଥା ସୂକ୍ଷ୍ମ, ବ୍ୟାପକ, ଶ୍ରେଷ୍ଠ ଏବଂ ବଳବାନ୍ ହୋଇଥିବାରୁ ତାହାକୁ 'ଅତ୍ୟନ୍ତ ଶ୍ରେଷ୍ଠ' କହିବା ଉଚିତ ହୋଇଛି।

---

* **ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟଯୁକ୍ତେନ ମନସା ସଦା। ତସ୍ୟେନ୍ଦ୍ରିୟାଣ୍ୟବଶ୍ୟାନି ଦୁଷ୍ଟାଶ୍ୱା ଇବ ସାରଥେଃ॥**
**ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟମନସ୍କଃ ସଦାଽଶୁଚିଃ। ନ ସ ତତ୍ପଦମାପ୍ନୋତି ସଂସାରଂ ଚାଧିଗଚ୍ଛତି॥**

(କଠୋ. ୧/୩/ ୫, ୭)

ଅର୍ଥାତ୍– 'କିନ୍ତୁ ଯେଉଁ ବୁଦ୍ଧିରୂପକ ସାରଥି ସଦା ଅବିବେକୀ ଏବଂ ଅସଂଯତ-ଚିତ୍ତଯୁକ୍ତ ହୋଇଥାଏ, ସେହି ସାରଥିର ଅଧୀନରେ ଥିବା ଦୁଷ୍ଟ ଘୋଡ଼ାମାନଙ୍କ ପରି ତା'ର ଅଧୀନସ୍ଥ ଇନ୍ଦ୍ରିୟମାନେ ମଧ୍ୟ ସଂଯତ ହୋଇ ରହନ୍ତି ନାହିଁ।' ଏବଂ 'ଯେଉଁ ବୁଦ୍ଧିରୂପକ ସାରଥି ବିଜ୍ଞାନବାନ୍ ନୁହେଁ, ଯାହାର ମନ ନିଗୃହୀତ ନୁହେଁ ଏବଂ ଯେ ସର୍ବଦା ଅପବିତ୍ର, ସେ ଏହି ପଦକୁ ପ୍ରାପ୍ତି କରିପାରେ ନାହିଁ, ବରଂ ସେ ସଂସାରକୁ ହିଁ ପ୍ରାପ୍ତ ହୁଏ।'

** **ଯସ୍ତୁ ବିଜ୍ଞାନବାନ୍ ଭବତି ଯୁକ୍ତେନ ମନସା ସଦା। ତସ୍ୟେନ୍ଦ୍ରିୟାଣି ବଶ୍ୟାନି ସଦଶ୍ୱା ଇବ ସାରଥେଃ॥**
**ଯସ୍ତୁ ବିଜ୍ଞାନବାନ୍ ଭବତି ସମନସ୍କଃ ସଦା ଶୁଚିଃ। ସ ତୁ ତତ୍ପଦମାପ୍ନୋତି ଯସ୍ମାଦ୍ଭୂୟୋ ନ ଜାୟତେ॥**

(କଠୋ. ୧/୩/ ୬,୮)

ଅର୍ଥାତ୍– 'ପରନ୍ତୁ ଯେଉଁ ବୁଦ୍ଧିରୂପୀ ସାରଥି ବିବେକଶୀଳ (କୁଶଳ) ତଥା ସଦାସମାହିତଚିତ୍ତ, ତାଙ୍କ ଅଧୀନରେ ଇନ୍ଦ୍ରିୟମାନେ ସାରଥିର ଅଧୀନରେ ରହିଥିବା ଉତ୍ତମ ଶିକ୍ଷିତ ଅଶ୍ୱପରି ରହନ୍ତି।' ତଥା 'ଯେ ବିଜ୍ଞାନବାନ୍, ନିଗୃହୀତମନଯୁକ୍ତ ଓ ସର୍ବଦା ପବିତ୍ର, ସେ ସେହି ପଦକୁ ପ୍ରାପ୍ତ ହୁଏ, ଯେଉଁଠାରୁ ସେ ପୁଣି ଜାତ ହୁଏ ନାହିଁ ଅର୍ଥାତ୍ ସେ ପୁନର୍ଜନ୍ମ ପ୍ରାପ୍ତ ହୁଏ ନାହିଁ।'

*** **ଇନ୍ଦ୍ରିୟେଭ୍ୟଃ ପରା ହ୍ୟର୍ଥା ଅର୍ଥେଭ୍ୟଶ୍ଚ ପରଂ ମନଃ। ମନସସ୍ତୁ ପରା ବୁଦ୍ଧିର୍ବୁଦ୍ଧେରାତ୍ମା ମହାନ୍ ପରଃ॥**
**ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ପୁରୁଷଃ ପରଃ। ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ॥**

(କଠୋପନିଷଦ୍ ୧/୩/୧୦,୧୧)

ଅର୍ଥାତ୍ ଇନ୍ଦ୍ରିୟମାନଙ୍କ ଅପେକ୍ଷା ସେମାନଙ୍କର ଅର୍ଥଗୁଡ଼ିକ (ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରୂପୀ ତନ୍ମାତ୍ରମାନେ) ପର (ଶ୍ରେଷ୍ଠ, ସୂକ୍ଷ୍ମ ଓ ବଳବାନ୍), ଅର୍ଥମାନଙ୍କ ଅପେକ୍ଷା ମନ ଶ୍ରେଷ୍ଠ, ମନ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠ ଓ ବୁଦ୍ଧି ଅପେକ୍ଷା ଆତ୍ମା (ମହତ୍ତତ୍ତ୍ୱ ସମଷ୍ଟିବୁଦ୍ଧି) ଶ୍ରେଷ୍ଠ ଅଟେ। ମହତ୍ତତ୍ତ୍ୱଠାରୁ ଅବ୍ୟକ୍ତ (ମୂଳ ପ୍ରକୃତି) ଶ୍ରେଷ୍ଠ ଏବଂ ଅବ୍ୟକ୍ତଠାରୁ ପୁରୁଷ ଶ୍ରେଷ୍ଠ। ପୁରୁଷଠାରୁ ଶ୍ରେଷ୍ଠତର ହୋଇ ଆଉ କିଛି ନାହିଁ, ସେ ହିଁ ପରାକାଷ୍ଠା (ଅନ୍ତିମ ଅବଧି) ଏବଂ ସେ ହିଁ ପରମ ଗତି।

**ପ୍ରଶ୍ନ** – ଏଠାରେ ‘କାମ’ର ପ୍ରକରଣ ଚାଲିଛି। ଆଗ ଶ୍ଲୋକରେ ମଧ କାମକୁ ମାରିବା ପାଇଁ ଭଗବାନ୍ କହୁଛନ୍ତି। ଏଣୁ ଏହି ଶ୍ଲୋକରେ ଆସିଥିବା **ସଃ** କୁ କାମର ବାଚକ ବୋଲି ମାନିନେଲେ କ୍ଷତି କଣ ?

**ଉତ୍ତର** – ଏଠାରେ କାମକୁ ମାରିବାର ପ୍ରକରଣ ଅବଶ୍ୟ ଚାଲିଛି। କିନ୍ତୁ କାମକୁ ଶ୍ରେଷ୍ଠ କହିବାର ପ୍ରକରଣ ନାହିଁ। ତାହାକୁ ମାରିବାର ଶକ୍ତି ଆତ୍ମାଠାରେ ରହିଛି। ମନୁଷ୍ୟ ଯଦି ନିଜର ଆତ୍ମବଳକୁ ବୁଝିଯିବ, ତେବେ ସେ ସହଜରେ ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ଉପରେ ନିଜର ପୂର୍ଣ୍ଣ ଅଧିକାର ସ୍ଥାପନ କରି କାମକୁ ମାରିଦେଇପାରିବ — ଏହି କଥା ବୁଝାଇବା ନିମନ୍ତେ ଭଗବାନ୍ ଏହି ଶ୍ଲୋକଟି କହିଛନ୍ତି। ଯଦି ଇନ୍ଦ୍ରିୟ, ମନ ଓ ବୁଦ୍ଧିଠାରୁ କାମକୁ ଅତ୍ୟନ୍ତ ଶ୍ରେଷ୍ଠ ବୋଲି ମନେ କରାଯିବ, ତେବେ ସେମାନଙ୍କ ଦ୍ୱାରା କାମକୁ ମାରିବା କଥା କହିବା ଅସଙ୍ଗତ ହେବ। ଏହା ବ୍ୟତୀତ **ସଃ** ପଦର ଅର୍ଥ କାମ ବୋଲି ମାନିନେଲେ, ତାହା କଠୋପନିଷଦ୍‌ରେ ଦିଆଯାଇଥିବା ବର୍ଣ୍ଣନାର ମଧ ବିରୁଦ୍ଧ ହେବ। ତେଣୁ ଏଠାରେ **ସଃ** ପଦ କାମର ବାଚକ ନୁହେଁ; ଦ୍ୱିତୀୟ ଅଧ୍ୟାୟରେ ଯାହାକୁ ଲକ୍ଷ୍ୟ କରି କୁହାଯାଇଛି ଯେ, **ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ** (୨/୫୯), **ସଃ** ପଦଟି ହେଉଛି ସେହି ପରତତ୍ତ୍ୱର ଅର୍ଥାତ୍ ନିତ୍ୟ-ଶୁଦ୍ଧ-ବୁଦ୍ଧସ୍ୱରୂପ ପରମାତ୍ମାଙ୍କର ବାଚକ।

**ସମ୍ବନ୍ଧ** – *ବର୍ତ୍ତମାନ ଭଗବାନ୍ ପୂର୍ବଶ୍ଲୋକର ବର୍ଣ୍ଣନାନୁସାରେ ଆତ୍ମାକୁ ସର୍ବଶ୍ରେଷ୍ଠ ବୋଲି ଜାଣି କାମରୂପୀ ଶତ୍ରୁକୁ ମାରିବାନିମନ୍ତେ ଆଜ୍ଞା ଦେଉଛନ୍ତି*–

**ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମାନମାତ୍ମନା ।**
**ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍ ।। ୪୩ ।।**

**ଅନ୍ୱୟ** – ଏବମ୍ = ଏପରିଭାବରେ; **ବୁଦ୍ଧେଃ** = ବୁଦ୍ଧିଠାରୁ; **ପରମ୍** = ମହତ୍ ଅର୍ଥାତ୍ ସୂକ୍ଷ୍ମ, ବଳବାନ୍ ଏବଂ ଅତ୍ୟନ୍ତ ଶ୍ରେଷ୍ଠ ଆତ୍ମାକୁ; **ବୁଦ୍ଧ୍ୱା** = ଜାଣି (ଏବଂ); **ଆତ୍ମନା** = ବୁଦ୍ଧିଦ୍ୱାରା; **ଆତ୍ମାନମ୍** = ମନକୁ; **ସଂସ୍ତଭ୍ୟ** = ବଶ କରି; **ମହାବାହୋ** = ହେ ମହାବାହୁ! (ତୁମେ ଏହି); **କାମରୂପମ୍** = କାମରୂପୀ; **ଦୁରାସଦମ୍** = ଦୁର୍ଜୟ; **ଶତ୍ରୁମ୍** = ଶତ୍ରୁକୁ; **ଜହି** = ମାରିଦିଅ।

**ଏପରିଭାବରେ ଆତ୍ମାକୁ ବୁଦ୍ଧିଠାରୁ ମହତ୍ ଅର୍ଥାତ୍ ସୂକ୍ଷ୍ମ, ବଳବାନ୍ ଓ ଅତ୍ୟନ୍ତ ଶ୍ରେଷ୍ଠ ବୋଲି ଜାଣି ଏବଂ ବୁଦ୍ଧିଦ୍ୱାରା ମନକୁ ବଶ କରି, ହେ ମହାବାହୁ! ତୁମେ ଏହି କାମରୂପୀ ଦୁର୍ଜୟ ଶତ୍ରୁକୁ ମାରିଦିଅ ।। ୪୩ ।।**

**ପ୍ରଶ୍ନ** – ଏଠାରେ ଆତ୍ମାକୁ ବୁଦ୍ଧିଠାରୁ ଶ୍ରେଷ୍ଠ ବୋଲି ଜାଣି କାମକୁ ମାରିବାପାଇଁ କହିବାର ଅଭିପ୍ରାୟ କଣ ?

**ଉତ୍ତର** – ମନୁଷ୍ୟର ଜ୍ଞାନ ଅନାଦିକାଳରୁ ଅଜ୍ଞାନଦ୍ୱାରା ଆବୃତ ହୋଇ ରହିଛି; ତେଣୁ ସେ ନିଜର ଆତ୍ମସ୍ୱରୂପକୁ ଭୁଲିଯାଇଛି; ସ୍ୱୟଂ ସବୁଠାରୁ ଶ୍ରେଷ୍ଠ ହୋଇ ମଧ ନିଜର ଶକ୍ତିକୁ ଭୁଲି କାମରୂପକ ଶତ୍ରୁର ବଶ ହୋଇ ରହିଛି। ଲୋକପ୍ରସିଦ୍ଧିରୁ ଏବଂ ଶାସ୍ତ୍ରମାନଙ୍କରୁ ଶୁଣି ମଧ ଲୋକେ ଆତ୍ମାକୁ ସବୁଠାରୁ ଶ୍ରେଷ୍ଠ ବୋଲି ମାନୁନାହାନ୍ତି; ଯଦି ଆତ୍ମସ୍ୱରୂପକୁ ଭଲଭାବରେ ବୁଝିପାରିବେ, ତେବେ ରାଗରୂପକ କାମ ଅତି ସହଜରେ ନାଶ ପାଇଯିବ। ଅତଏବ ଆତ୍ମସ୍ୱରୂପକୁ ଭଲଭାବରେ ଜାଣିବା ହିଁ ଏହାକୁ ମାରିବାର ପ୍ରଧାନ ଉପାୟ। ତେଣୁ ଭଗବାନ୍ ଆତ୍ମାକୁ ବୁଦ୍ଧିଠାରୁ ମଧ ଅତ୍ୟନ୍ତ ଶ୍ରେଷ୍ଠ ବୋଲି ଜାଣି କାମକୁ ମାରିବାପାଇଁ କହିଛନ୍ତି। ଆତ୍ମତତ୍ତ୍ୱ ଅତ୍ୟନ୍ତ ଗୂଢ଼। ମହାପୁରୁଷମାନଙ୍କ ଦ୍ୱାରା ବୁଝାଇଦିଆଗଲେ ମଧ, କେବଳ କୌଣସି ସୂକ୍ଷ୍ମଦର୍ଶୀ ମନୁଷ୍ୟ ଏହାକୁ ବୁଝିବାକୁ ସକ୍ଷମ ହୋଇପାରେ। କଠୋପନିଷଦରେ କୁହାଯାଇଛି, ସମସ୍ତ ଭୂତଙ୍କ ମଧ୍ୟରେ ଛପି ରହିଥିବା ଏହି ଆତ୍ମା ଲୋକମାନଙ୍କୁ ପ୍ରତ୍ୟକ୍ଷ ହୁଏ ନାହିଁ; କେବଳ ସୂକ୍ଷ୍ମଦର୍ଶୀ ପୁରୁଷ ଅତ୍ୟନ୍ତ ତୀକ୍ଷ୍ଣ ଓ ସୂକ୍ଷ୍ମ ବୁଦ୍ଧିଦ୍ୱାରା ଆତ୍ମାକୁ ପ୍ରତ୍ୟକ୍ଷ କରିପାରନ୍ତି। *

* **ଏଷ ସର୍ବେଷୁ ଭୂତେଷୁ ଗୂଢୋତ୍ମା ନ ପ୍ରକାଶତେ। ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ ।।** (କଠୋ.ଉ. ୧/୩/୧୨)

**ପ୍ରଶ୍ନ –** ଏଠାରେ କେଉଁ କାରଣରୁ **ଆତ୍ମାନମ୍‌**ର ଅର୍ଥ ମନ ଓ **ଆତ୍ମନା**ର ଅର୍ଥ ବୁଦ୍ଧି କରାଯାଇଛି ?

**ଉତ୍ତର –** ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଜୀବ – ଏହି ସମସ୍ତଙ୍କର ବାଚକ ହେଉଛି ଆତ୍ମା । ସେମାନଙ୍କ ମଧ୍ୟରୁ ସର୍ବପ୍ରଥମେ ଇନ୍ଦ୍ରିୟମାନଙ୍କୁ ବଶ କରିବାକୁ ଏକଚାଳିଶ ଶ୍ଳୋକରେ କୁହାଯାଇଛି । ଶରୀରକୁ ତ ଇନ୍ଦ୍ରିୟମାନଙ୍କର ଅନ୍ତର୍ଗତ ବୋଲି ଗଣାଯାଏ; ଜୀବାତ୍ମା ତ ସ୍ୱୟଂ ବଶକାରୀ ଅଟେ । ବର୍ତ୍ତମାନ ବାକି ରହିଲା ମନ ଓ ବୁଦ୍ଧି । ବୁଦ୍ଧିକୁ ମନଠାରୁ ବଳବାନ୍ ବୋଲି କୁହାଯାଇଛି; ଏଣୁ ବୁଦ୍ଧିଦ୍ୱାରା ମନକୁ ବଶ କରାଯାଇପାରେ । ତେଣୁ **ଆତ୍ମାନମ୍‌**ର ଅର୍ଥ 'ମନ' ଓ **ଆତ୍ମନା**ର ଅର୍ଥ 'ବୁଦ୍ଧି' କରାଯାଇଛି ।

**ପ୍ରଶ୍ନ –** ବୁଦ୍ଧିଦ୍ୱାରା ମନକୁ ବଶ କରିବାର ରୀତି କଣ ?

**ଉତ୍ତର –** ଭଗବାନ୍ ଷଷ୍ଠ ଅଧ୍ୟାୟରେ ମନକୁ ବଶ କରିବାର ଦୁଇଟି ଉପାୟ କହିଛନ୍ତି ଯଥା, ଅଭ୍ୟାସ ଓ ବୈରାଗ୍ୟ (୬/୩୫) । ପ୍ରତ୍ୟେକ ଇନ୍ଦ୍ରିୟ ବିଷୟରେ ମନୁଷ୍ୟର ସ୍ୱାଭାବିକ ରାଗଦ୍ୱେଷ ରହିଥାଏ । ବିଷୟମାନଙ୍କ ସହିତ ଇନ୍ଦ୍ରିୟମାନଙ୍କର ସମ୍ବନ୍ଧ ହେବା ସମୟରେ ଯେତେବେଳେ ରାଗଦ୍ୱେଷର ଅବସର ଆସେ, ସେତେବେଳେ ସାବଧାନତାପୂର୍ବକ ବୁଦ୍ଧିଦ୍ୱାରା ବିଚାର କରି ରାଗ-ଦ୍ୱେଷର ବଶ ନ ହେବାକୁ ଚେଷ୍ଟା କଲେ ଧୀରେ ଧୀରେ ରାଗ-ଦ୍ୱେଷ କମ୍ ହୋଇ ହୋଇ ଶେଷରେ ନଷ୍ଟ ହୋଇଯାଏ । ଏଠାରେ ବୁଦ୍ଧିଦ୍ୱାରା ବିଚାର କରି, ଇନ୍ଦ୍ରିୟମାନଙ୍କ ଭୋଗରେ ବାରମ୍ବାର ଦୁଃଖ ଓ ଦୋଷ ଦେଖି ମନରେ ସେଥିପ୍ରତି ଅରୁଚି ଜନ୍ମାଇବାର ନାମ **ବୈରାଗ୍ୟ** ଏବଂ ବ୍ୟବହାରକାଳରେ ସ୍ୱାର୍ଥତ୍ୟାଗ କରିବାକୁ ଓ ଧ୍ୟାନସମୟରେ ମନକୁ ପରମେଶ୍ୱରଙ୍କ ଚିନ୍ତନରେ ଲଗାଇବାକୁ ଚେଷ୍ଟା କରିବାର ଓ ମନକୁ ଭୋଗ-ପ୍ରବୃତ୍ତିରୁ ହଟାଇ ପରମେଶ୍ୱରଙ୍କ ଚିନ୍ତନରେ ବାରମ୍ବାର ଲଗାଇ ରଖିବାର ନାମ **ଅଭ୍ୟାସ** ।

**ପ୍ରଶ୍ନ –** ଆତ୍ମା ଯଦି ସ୍ୱୟଂ ସବୁଠାରୁ ଅଧିକ ପ୍ରବଳ, ତେବେ ବୁଦ୍ଧିଦ୍ୱାରା ମନକୁ ବଶ କରି କାମକୁ ମାରିବାପାଇଁ ଭଗବାନ୍ କିପରି କହୁଛନ୍ତି ? ଆତ୍ମା କଣ ନିଜେ କାମରୂପୀ ଘୋର ଶତ୍ରୁକୁ ମାରିଦେଇପାରିବ ନାହିଁ ?

**ଉତ୍ତର –** ଅବଶ୍ୟ ଆତ୍ମାର ବଳ ଅନନ୍ତ । ସେ କାମକୁ ମାରିଦେଇପାରେ । ବସ୍ତୁତଃ ଆତ୍ମାର ବଳ ଲାଭ କରି ହିଁ ସମସ୍ତେ ବଳବାନ୍ ଓ କ୍ରିୟାଶୀଳ ହୁଅନ୍ତି; କିନ୍ତୁ ସେ ନିଜର ଅନନ୍ତ ବଳକୁ ଭୁଲିଯାଇଛି ଓ ଯେପରି ପ୍ରବଳ ଶକ୍ତିଶାଳୀ ସମ୍ରାଟ ଅଜ୍ଞାନବଶତଃ ନିଜର ବଳକୁ ଭୁଲିଯାଇ, ନିଜ ଅପେକ୍ଷା ସର୍ବଥା ବଳହୀନ ସାମାନ୍ୟ ଚାକର-ବାକରଙ୍କ ଅଧୀନ ହୋଇ ସେମାନଙ୍କ ହଁ 'ରେ ହଁ ମିଳାଇଦିଅନ୍ତି, ସେହିପରି ଆତ୍ମା ମଧ୍ୟ ନିଜର ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ଅଧୀନ ହୋଇ କାମପ୍ରେରିତ ଉଚ୍ଛୃଙ୍ଖଳତାପୂର୍ଣ୍ଣ ମନମୁଖୀ କାର୍ଯ୍ୟରେ ସେମାନଙ୍କୁ ମୁକ୍ତ ଅନୁମତି ଦେଇଦିଏ । ଏହାଦ୍ୱାରା ସେହି ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ଠାରେ ଛପି ରହିଥିବା କାମ ଜୀବାତ୍ମାକୁ ବିଷୟମାନଙ୍କର ପ୍ରଲୋଭନ ଦେଖାଇ ସଂସାରରୂପକ ଜାଲରେ ଛନ୍ଦିଦିଏ । ଯଦି ଆତ୍ମା ନିଜର ସ୍ୱରୂପକୁ ବୁଝି, ନିଜର ଶକ୍ତିକୁ ଚିହ୍ନି ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରିଦେବ ଏବଂ ସେମାନଙ୍କୁ ମନଇଚ୍ଛା କାର୍ଯ୍ୟ କରିବାର ଅନୁମତି ନ ଦେଇ ଚୋରଙ୍କ ପରି ଲୁଚି ବସିଥିବା କାମକୁ ବଳପୂର୍ବକ ଦୂର କରିଦେବାକୁ ଆଜ୍ଞା ଦେଇଦେବ, ତେବେ ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କର ଶକ୍ତି ନାହିଁ ଯେ, ସେମାନେ ତାହା ଅମାନ୍ୟ କରିପାରିବେ ଏବଂ କାମର ସାମର୍ଥ୍ୟ ନାହିଁ ଯେ, ସେ କ୍ଷଣକପାଇଁ ମଧ୍ୟ ତିଷ୍ଠି ପାରିବ । ସତରେ ଏହା ଏକ ଆଶ୍ଚର୍ଯ୍ୟର କଥା ଯେ, ଆତ୍ମାଦ୍ୱାରା ସତ୍ତା, ସ୍ଫୂର୍ତ୍ତି ଓ ଶକ୍ତି ପାଇ, ତାହାରି ବଳରେ ବଳୀୟାନ୍ ହୋଇ ଏମାନେ ତାକୁ ଦବାଇରଖି ନିଜ ମନଇଚ୍ଛା କାମ କରୁଛନ୍ତି । ଅତଏବ ଆତ୍ମା ନିଜର ସ୍ୱରୂପ ଓ ଶକ୍ତିକୁ ଚିହ୍ନି ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରିବା ଆବଶ୍ୟକ । କାମ ଏହିମାନଙ୍କୁ ଧରି ରହେ ଓ ଏମାନେ ଉଚ୍ଛୃଙ୍ଖଳ ହୁଅନ୍ତି । ତେଣୁ ଏମାନଙ୍କୁ ବଶ କରିଦେଲେ କାମ ସହଜରେ ମରିଯିବ । କାମକୁ ମାରିବା ନିମନ୍ତେ ଅକ୍ରିୟ ଆତ୍ମାପାଇଁ ବସ୍ତୁତଃ ଏହା ହିଁ ଉପାୟ । ତେଣୁ ବୁଦ୍ଧିଦ୍ୱାରା ମନକୁ ବଶ କରି କାମକୁ ମାରିବାକୁ କୁହାଯାଇଛି ।

**ପ୍ରଶ୍ନ –** କାମରୂପକ ଶତ୍ରୁକୁ ଦୁର୍ଜୟ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** କାମର ବସ୍ତୁତଃ କୌଣସି ବଳ ନାହିଁ । ଆତ୍ମାର ବଳରେ ବଳବାନ୍ ହୋଇଥିବା ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କ ମଧ୍ୟରେ ରହିବାକୁ ସ୍ଥାନ ପାଇଯାଇଥିବାରୁ ହିଁ ସେ ସେମାନଙ୍କ ବଳରେ ବଳବାନ୍ ହୋଇଯାଏ । ପୁଣି ଯେପର୍ଯ୍ୟନ୍ତ ବୁଦ୍ଧି, ମନ ଓ ଇନ୍ଦ୍ରିୟ

ନିଜ ବଶରେ ନାହାନ୍ତି, ସେପର୍ଯ୍ୟନ୍ତ ସେମାନଙ୍କ ଦ୍ୱାରା ଆତ୍ମାର ବଳ କାମକୁ ମିଳୁଥାଏ । ତେଣୁ କାମ ଅତ୍ୟନ୍ତ ପ୍ରବଳ ବୋଲି ମନେହୁଏ ଏବଂ ସେଥିପାଇଁ ତାକୁ 'ଦୁର୍ଜୟ' ବୋଲି କୁହାଯାଇଛି । କିନ୍ତୁ କାମର ଏହି ପ୍ରବଳତା କେବଳ ସେପର୍ଯ୍ୟନ୍ତ ରହେ, ଯେପର୍ଯ୍ୟନ୍ତ ଆତ୍ମା ନିଜର ସ୍ୱରୂପକୁ ଚିହ୍ନି ବୁଦ୍ଧି, ମନ ଓ ଇନ୍ଦ୍ରିୟମାନଙ୍କୁ ନିଜର ବଶ କରି ନ ଥାଏ ।

**ପ୍ରଶ୍ନ –** ଏଠାରେ **ମହାବାହୋ** ସମ୍ବୋଧନ କେଉଁ ଅଭିପ୍ରାୟରେ କରାଯାଇଛି ?

**ଉତ୍ତର – ମହାବାହୁ** ଶବ୍ଦ ବିଶାଳଭୁଜଯୁକ୍ତ ବଳବାନ୍‌ଙ୍କ ବାଚକ ଓ ଏହା ଏକ ଶୌର୍ଯ୍ୟସୂଚକ ଶବ୍ଦ । ଭଗବାନ୍ ଶ୍ରୀକୃଷ୍ଣ କାମକୁ ଦୁର୍ଜୟ ବୋଲି କହି, ତାହାକୁ ମାରିବାର ଆଜ୍ଞା ଦେବାବେଳେ, ଅର୍ଜୁନଙ୍କୁ **ମହାବାହୋ** ବୋଲି ସମ୍ବୋଧନ କରି ତାଙ୍କୁ ଆତ୍ମାର ଅନନ୍ତ ବଳ ବିଷୟରେ ସ୍ମରଣ କରାଇଦେଉଛନ୍ତି ଏବଂ ତା ସଙ୍ଗେ ସଙ୍ଗେ ସୂଚାଇଦେଉଛନ୍ତି, ''ମୁଁ ସମସ୍ତ ଅନନ୍ତ ଅଚିନ୍ତ୍ୟ ଦିବ୍ୟଶକ୍ତିମାନଙ୍କର ଅନନ୍ତ ଭଣ୍ଡାର; ମୋର ଶକ୍ତିର କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶମାତ୍ର ପାଇ ଦେବତା ଓ ଲୋକପାଳମାନେ ସମସ୍ତ ବିଶ୍ୱ ସଂଚାଳନ କରନ୍ତି ଏବଂ ମୋ ଶକ୍ତିର ଅତ୍ୟନ୍ତ କ୍ଷୁଦ୍ର ଅଂଶଟିଏ ପାଇ ମଧ୍ୟ ଜୀବ ଅନନ୍ତଶକ୍ତିଯୁକ୍ତ ହୋଇଯାଇପାରେ । ସେହି ଦିବ୍ୟଶକ୍ତିଭଣ୍ଡାର ସ୍ୱୟଂ ମୁଁ ଯେତେବେଳେ ତୁମକୁ କାମକୁ ମାରିବାରେ ସମର୍ଥ ଓ ଶକ୍ତିସମ୍ପନ୍ନ ଭାବି, ଆଜ୍ଞା ଦେଉଛି, ସେତେବେଳେ କାମ ଯେତେ ବଡ ଦୁର୍ଜୟ ଓ ଦୁର୍ଦ୍ଧର୍ଷ ଶତ୍ରୁ ହୋଇଥାଉ ନା କାହିଁକି, ତୁମେ ଅତି ସହଜରେ ତାକୁ ମାରିଦେଇ ତା' ଉପରେ ବିଜୟ ଲାଭ କରିପାରିବ ।'' ଏହି ଅଭିପ୍ରାୟରେ 'ମହାବାହୋ' ସମ୍ବୋଧନ ଦିଆଯାଇଛି ।

—o—

ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ
ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କର୍ମଯୋଗୋ
ନାମ ତୃତୀୟୋଽଧ୍ୟାୟଃ ॥ ୩ ॥

ଓଁ ଶ୍ରୀପରମାତ୍ମନେ ନମଃ

# ଚତୁର୍ଥୋଽଧ୍ୟାୟଃ

## ଜ୍ଞାନକର୍ମସନ୍ନ୍ୟାସଯୋଗ

**ଅଧ୍ୟାୟର ନାମ:** ଏଠାରେ ଜ୍ଞାନ ଶବ୍ଦ ପରମାର୍ଥଜ୍ଞାନର ଅର୍ଥାତ୍ ତତ୍ତ୍ୱଜ୍ଞାନର, କର୍ମ ଶବ୍ଦ କର୍ମଯୋଗର ଅର୍ଥାତ୍ ଯୋଗମାର୍ଗର ଓ 'ସନ୍ନ୍ୟାସ' ଶବ୍ଦ ସାଂଖ୍ୟଯୋଗର ଅର୍ଥାତ୍ ଜ୍ଞାନମାର୍ଗର ବାଚକ ଅଟେ। ବିବେକଜ୍ଞାନ ଓ ଶାସ୍ତ୍ରଜ୍ଞାନ ମଧ୍ୟ ଜ୍ଞାନ ଶବ୍ଦର ଅନ୍ତର୍ଗତ। ଏହି ଚତୁର୍ଥ ଅଧ୍ୟାୟରେ ଭଗବାନ୍ ନିଜ ଅବତାରର ରହସ୍ୟ ଏବଂ ତତ୍ତ୍ୱ ସହିତ କର୍ମଯୋଗର ତଥା ସନ୍ନ୍ୟାସଯୋଗର ବର୍ଣ୍ଣନା କରିଛନ୍ତି ଏବଂ ଏସବୁର ଫଳସ୍ୱରୂପ ପରମାତ୍ମତତ୍ତ୍ୱର ଯେଉଁ ଯଥାର୍ଥ ଜ୍ଞାନ ହୁଏ, ତାହା ମଧ୍ୟ ବର୍ଣ୍ଣନା କରିଛନ୍ତି। ତେଣୁ ଏହି ଅଧ୍ୟାୟର ନାମ **ଜ୍ଞାନକର୍ମସନ୍ନ୍ୟାସଯୋଗ** ରଖାଯାଇଛି।

**ଅଧ୍ୟାୟର ସାରାଂଶ:** ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ କର୍ମଯୋଗର ପରମ୍ପରା କହି ତୃତୀୟରେ ତାହାର ପ୍ରଶଂସା କରିଛନ୍ତି। ଚତୁର୍ଥରେ ଅର୍ଜୁନ ଭଗବାନଙ୍କୁ ଜନ୍ମବିଷୟକ ପ୍ରଶ୍ନ କରିଛନ୍ତି। ଏହା ଉପରେ ଭଗବାନ୍ ପଞ୍ଚମ ଶ୍ଳୋକରେ ତାଙ୍କ ନିଜର ଓ ଅର୍ଜୁନଙ୍କର ବହୁତ ଜନ୍ମ ହୋଇଥିବା କଥା କହିଛନ୍ତି ଏବଂ 'ସେ ସବୁକୁ ମୁଁ ଜାଣେ; ତୁମେ ଜାଣ ନାହିଁ' ବୋଲି କହି ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ଳୋକରେ ଅବତାରଗ୍ରହଣର ତତ୍ତ୍ୱ, ରହସ୍ୟ, ସମୟ ଏବଂ ଉଦ୍ଦେଶ୍ୟ ବର୍ଣ୍ଣନା କରିଛନ୍ତି। ନବମ ଓ ଦଶମରେ ଭଗବାନଙ୍କର ଜନ୍ମକର୍ମକୁ ଦିବ୍ୟ ବୋଲି ବୁଝିବାର ଓ ଭଗବାନଙ୍କ ଆଶ୍ରିତ ହେବାର ଫଳ ଭଗବତ୍ପ୍ରାପ୍ତି ବୋଲି କହିଛନ୍ତି। ଏଗାରରେ ଭଗବାନ୍ କହିଛନ୍ତି, ''ଯେଉଁମାନେ ମୋତେ ଯେପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ଭଜନ କରେ।'' ବାରରେ ଅନ୍ୟ ଦେବତାମାନଙ୍କ ଉପାସନା କଲେ ଲୌକିକ ଫଳ ଶୀଘ୍ର ମିଳେ ବୋଲି କହିଛନ୍ତି। ତେର ଓ ଚଉଦରେ ସେ ନିଜେ ସମସ୍ତ ଜଗତର କର୍ତ୍ତା ହୋଇଥିଲେ ମଧ୍ୟ ତାଙ୍କୁ ଅକର୍ତ୍ତା ବୋଲି ବୁଝିବାକୁ କହି ଭଗବାନ୍ ତାଙ୍କ କର୍ମର ଦିବ୍ୟତା ଓ ତାହାକୁ ଜାଣିବାର ଫଳ କର୍ମବନ୍ଧନରୁ ମୁକ୍ତି ବୋଲି କହିଛନ୍ତି। ପନ୍ଦରରେ ଅତୀତର ମୁମୁକ୍ଷୁମାନଙ୍କ ଉଦାହରଣ ଦେଇ ଅର୍ଜୁନଙ୍କୁ ନିଷ୍କାମଭାବରେ କର୍ମ କରିବାକୁ ଆଜ୍ଞା ଦେଇଛନ୍ତି। ଷୋହଳଠାରୁ ଅଠରପର୍ଯ୍ୟନ୍ତ କର୍ମର ରହସ୍ୟ କହିବାକୁ ପ୍ରତିଜ୍ଞା କରିଛନ୍ତି ଓ କର୍ମତତ୍ତ୍ୱ ଦୁର୍ବିଜ୍ଞେୟ ଏବଂ ତାହା ଜାଣିବା ଆବଶ୍ୟକ ବୋଲି କହି କର୍ମରେ ଅକର୍ମ ଓ ଅକର୍ମରେ କର୍ମ ଦେଖିପାରୁଥିବା ଲୋକଙ୍କୁ ପ୍ରଶଂସା କରିଛନ୍ତି। ଊଣେଇଶଠାରୁ ତେଇଶପର୍ଯ୍ୟନ୍ତ କର୍ମରେ ଅକର୍ମ ଓ ଅକର୍ମରେ କର୍ମ ଦର୍ଶନ କରୁଥିବା ମହାପୁରୁଷଙ୍କର ଓ ସାଧକଙ୍କର ଭିନ୍ନ ଭିନ୍ନ ଲକ୍ଷଣ ଓ ଆଚରଣ ବର୍ଣ୍ଣନା କରି ସେମାନଙ୍କୁ ପ୍ରଶଂସା କରିଛନ୍ତି। ଚବିଶଠାରୁ ତିରିଶପର୍ଯ୍ୟନ୍ତ ବ୍ରହ୍ମଯଜ୍ଞ, ଦୈବଯଜ୍ଞ ଓ ଅଭେଦଦର୍ଶନରୂପକ ଯଜ୍ଞ ଆଦି ଯଜ୍ଞମାନଙ୍କର ବର୍ଣ୍ଣନା କରି ସମସ୍ତ ଯଜ୍ଞକର୍ତ୍ତାମାନଙ୍କୁ ଯଜ୍ଞବେତ୍ତା ଓ ନିଷ୍ପାପ ବୋଲି କହିଛନ୍ତି। ଏକତିରିଶରେ ସେହିସବୁ ଯଜ୍ଞରୁ ବଳିଥିବା ଅମୃତକୁ ସେବନ କରୁଥିବା ଲୋକଙ୍କୁ ସନାତନବ୍ରହ୍ମ ପ୍ରାପ୍ତ ହୁଏ ଏବଂ ଯଜ୍ଞ ନ କରୁଥିବା ଲୋକଙ୍କୁ ଇହଲୋକ ଓ ପରଲୋକରେ ସୁଖପ୍ରାପ୍ତି ହୁଏ ନାହିଁ ବୋଲି କହିଛନ୍ତି। ବତିଶରେ ଉପରୋକ୍ତପ୍ରକାରେ ସମସ୍ତ ଯଜ୍ଞ କ୍ରିୟାଦ୍ୱାରା ସମ୍ପାଦିତ ହୋଇଥାଏ ବୋଲି କହି ତେତିଶରେ ଦ୍ରବ୍ୟମୟଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞକୁ ଉତ୍ତମ ବୋଲି କହିଛନ୍ତି। ଚଉତିରିଶ ଓ ପଇଁତିରିଶରେ ଅର୍ଜୁନଙ୍କୁ ଜ୍ଞାନୀ ମହାତ୍ମାମାନଙ୍କ ନିକଟକୁ ଯାଇ ତତ୍ତ୍ୱଜ୍ଞାନ ଶିକ୍ଷା କରିବାକୁ କହି ତତ୍ତ୍ୱଜ୍ଞାନର ପ୍ରଶଂସା କରିଛନ୍ତି। ଛତିଶରେ ଜ୍ଞାନନୌକାଦ୍ୱାରା ପାପସାଗରକୁ ପାର ହୋଇପାରିବା କଥା କହିଛନ୍ତି। ସଇଁତିରିଶରେ ଜ୍ଞାନ କର୍ମମାନଙ୍କୁ ସେହିପରି ଭସ୍ମ କରିଦିଏ ବୋଲି କହିଛନ୍ତି ଓ ଅଠତିରିଶରେ ଜ୍ଞାନର ମହାନ୍ ପବିତ୍ରତା ବର୍ଣ୍ଣନା କରି ଶୁଦ୍ଧାନ୍ତଃକରଣବିଶିଷ୍ଟ କର୍ମଯୋଗୀଙ୍କୁ ସ୍ୱତଃ ତତ୍ତ୍ୱଜ୍ଞାନ ମିଳିଯାଏ ବୋଲି କହିଛନ୍ତି। ଅଣତାଳିଶରେ ଶ୍ରଦ୍ଧାଦି ଗୁଣରେ ଯୁକ୍ତ ପୁରୁଷଙ୍କୁ ଜିତେନ୍ଦ୍ରିୟ ଅଧିକାରୀ ବୋଲି ଏବଂ ଜ୍ଞାନର ଫଳ ପରମଶାନ୍ତି ବୋଲି କହି ଚାଳିଶରେ ଅଜ୍ଞ, ଅଶ୍ରଦ୍ଧାଳୁ

ଓ ସଂଶୟାତ୍ମା ପୁରୁଷମାନଙ୍କୁ ନିନ୍ଦା କରିଛନ୍ତି। ଏକଚାଳିଶରେ ସଂଶୟରହିତ କର୍ମଯୋଗୀ କର୍ମବନ୍ଧନରୁ ମୁକ୍ତ ହୁଅନ୍ତି ବୋଲି କହିଛନ୍ତି। ବୟାଳିଶରେ ଅର୍ଜୁନଙ୍କୁ ଜ୍ଞାନଖଡ୍ଗଦ୍ୱାରା ଅଜ୍ଞାନଜନିତ ସଂଶୟକୁ ସର୍ବଥା ନାଶ କରି କର୍ମଯୋଗରେ ଲାଗିରହିବାକୁ ଆଜ୍ଞା ଦେଇଛନ୍ତି ଓ ଯୁଦ୍ଧ କରିବାକୁ ପ୍ରେରଣା ଦେଇ ଅଧ୍ୟାୟ ଉପସଂହାର କରିଛନ୍ତି।

**ସମ୍ବନ୍ଧ —** ତୃତୀୟ ଅଧ୍ୟାୟର ଚତୁର୍ଥ ଶ୍ଲୋକରୁ ଆରମ୍ଭ କରି ଅଣତିରିଶ ଶ୍ଲୋକପର୍ଯ୍ୟନ୍ତ ଭଗବାନ୍ ବିଭିନ୍ନଭାବରେ ବିହିତକର୍ମ ଆଚରଣ କରିବାର ଆବଶ୍ୟକତା ପ୍ରତିପାଦନ କରିଛନ୍ତି ଏବଂ ତିରିଶ ଶ୍ଲୋକରେ ଅର୍ଜୁନଙ୍କୁ ଭକ୍ତିପ୍ରଧାନ କର୍ମଯୋଗର ବିଧି ଅନୁଯାୟୀ ମମତ୍ୱ, ଆସକ୍ତି ଓ କାମନା ସର୍ବଥା ତ୍ୟାଗ କରି ଭଗବଦର୍ପଣ-ବୁଦ୍ଧିରେ କର୍ମ କରିବାକୁ ଆଜ୍ଞା ଦେଇଛନ୍ତି। ତା'ପରେ ଏକତିରିଶଠାରୁ ପଇଁତିରିଶ ଶ୍ଲୋକପର୍ଯ୍ୟନ୍ତ ସେହି ସିଦ୍ଧାନ୍ତ ଅନୁସାରେ କର୍ମ କରୁଥିବା ଲୋକଙ୍କର ପ୍ରଶଂସା କରି ଓ ନ କରୁଥିବା ଲୋକଙ୍କର ନିନ୍ଦା କରି ରାଗ-ଦ୍ୱେଷର ବଶ ନ ହେବାକୁ କହିଛନ୍ତି ଏବଂ ସ୍ୱଧର୍ମପାଳନ ଉପରେ ଗୁରୁତ୍ୱ ଦେଇଛନ୍ତି। ପୁଣି ଛତିଶ ଶ୍ଲୋକରେ ଅର୍ଜୁନ ପଚାରିବା ପରେ ସଇଁତିରିଶଠାରୁ ଅଧ୍ୟାୟସମାପ୍ତିପର୍ଯ୍ୟନ୍ତ କାମକୁ ସମସ୍ତ ଅନର୍ଥମାନଙ୍କର ହେତୁ ବୋଲି କହିଛନ୍ତି ଏବଂ ବୁଦ୍ଧିଦ୍ୱାରା ଇନ୍ଦ୍ରିୟମାନଙ୍କୁ ଓ ମନକୁ ବଶ କରି କାମକୁ ମାରିଦେବାକୁ ଆଜ୍ଞା ଦେଇଛନ୍ତି। କିନ୍ତୁ କର୍ମଯୋଗର ତତ୍ତ୍ୱ ଅତ୍ୟନ୍ତ ଗହନ; ତେଣୁ ବର୍ତ୍ତମାନ ଭଗବାନ୍ ପୁଣି ଥରେ କର୍ମଯୋଗ ସମ୍ବନ୍ଧରେ ବହୁତ କିଛି କହିବା ଉଦ୍ଦେଶ୍ୟରେ ତାହାର ପ୍ରକରଣ ଆରମ୍ଭ କରୁଛନ୍ତି ଓ ପ୍ରଥମ ତିନୋଟି ଶ୍ଲୋକରେ ସେହି କର୍ମଯୋଗର ପରମ୍ପରା ନିର୍ଦ୍ଦେଶ କରୁଛନ୍ତି ତଥା ତାହା ଅନାଦିକାଳରୁ ଚାଲିଆସିଛି ବୋଲି ସିଦ୍ଧ କରି କର୍ମଯୋଗର ପ୍ରଶଂସା କରୁଛନ୍ତି—

ଶ୍ରୀଭଗବାନୁବାଚ

## ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍ ।
## ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ ॥ ୧ ॥

**ଅନ୍ୱୟ —** ଅହମ୍ = ମୁଁ; ଇମମ୍ = ଏହି; ଅବ୍ୟୟମ୍ = ଅବିନାଶୀ; ଯୋଗମ୍ = ଯୋଗକୁ; ବିବସ୍ୱତେ = ସୂର୍ଯ୍ୟଙ୍କୁ; ପ୍ରୋକ୍ତବାନ୍ = କହିଥିଲି; ବିବସ୍ୱାନ୍ = ସୂର୍ଯ୍ୟ; ମନବେ = (ନିଜର ପୁତ୍ର ବୈବସ୍ୱତ) ମନୁଙ୍କୁ; ପ୍ରାହ = (ତାହା) କହିଥିଲେ (ଏବଂ); ମନୁଃ = ମନୁ; ଇକ୍ଷ୍ୱାକବେ = (ନିଜର ପୁତ୍ର) ରାଜା ଇକ୍ଷ୍ୱାକୁଙ୍କୁ; ଅବ୍ରବୀତ୍ = (ତାହା) କହିଥିଲେ।

**ଶ୍ରୀଭଗବାନ୍ କହିଲେ – ମୁଁ ଏହି ଅବିନାଶୀ ଯୋଗ ସୂର୍ଯ୍ୟଙ୍କୁ କହିଥିଲି, ସୂର୍ଯ୍ୟ ନିଜର ପୁତ୍ର ବୈବସ୍ୱତ ମନୁଙ୍କୁ ତାହା କହିଥିଲେ ଏବଂ ମନୁ ନିଜର ପୁତ୍ର ରାଜା ଇକ୍ଷ୍ୱାକୁଙ୍କୁ ତାହା କହିଥିଲେ॥ ୧ ॥**

**ପ୍ରଶ୍ନ –** ଏଠାରେ **ଇମମ୍** ବିଶେଷଣ ସହିତ **ଯୋଗମ୍** ପଦ କେଉଁ ଯୋଗର ବାଚକ — କର୍ମଯୋଗର, ନା ସାଂଖ୍ୟଯୋଗର ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟର ଅଣଚାଳିଶ ଶ୍ଲୋକରେ କର୍ମଯୋଗର ବର୍ଣ୍ଣନା ଆରମ୍ଭ କରିବାକୁ ପ୍ରତିଜ୍ଞା କରି ଭଗବାନ୍ ସେହି ଅଧ୍ୟାୟର ଶେଷପର୍ଯ୍ୟନ୍ତ ଭଲଭାବରେ କର୍ମଯୋଗ ପ୍ରତିପାଦନ କରିଛନ୍ତି। ତା'ପରେ ତୃତୀୟ ଅଧ୍ୟାୟରେ ଅର୍ଜୁନ ପଚାରିବାରୁ କର୍ମ କରିବାର ଆବଶ୍ୟକତା ସମ୍ବନ୍ଧରେ ବହୁ ଯୁକ୍ତି ଦେଇ ତିରିଶ ଶ୍ଲୋକରେ ତାଙ୍କୁ ଭକ୍ତିର ସହିତ କର୍ମଯୋଗ ଅନୁସାରେ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି ଏବଂ କର୍ମଯୋଗରେ ମନକୁ ବଶ କରିବା ବିଶେଷ ଆବଶ୍ୟକ ବୋଲି ବୁଝାଇ ଅଧ୍ୟାୟଶେଷରେ ମଧ୍ୟ ବୁଦ୍ଧିଦ୍ୱାରା ମନକୁ ବଶ କରି କାମରୂପକ ଶତ୍ରୁକୁ ମାରିଦେବାକୁ କହିଛନ୍ତି।

ଏଥିରୁ ଜଣାଯାଉଛି ଯେ, ତୃତୀୟ ଅଧ୍ୟାୟର ଶେଷପର୍ଯ୍ୟନ୍ତ ମୁଖ୍ୟତଃ କର୍ମଯୋଗ ହିଁ ପ୍ରାଞ୍ଜଳଭାବରେ ପ୍ରତିପାଦନ କରାଯାଇଛି ଏବଂ ଯାହାର ପ୍ରକରଣ ଚାଲିଛି, **ଇମମ୍** ପଦଟି ତାହାର ବାଚକ ହେବା ଉଚିତ। ଅତଏବ ଏଠାରେ **ଇମମ୍** ବିଶେଷଣ ସହିତ **ଯୋଗମ୍** ପଦ 'କର୍ମଯୋଗ'ର ହିଁ ବାଚକ।

ଏହା ଛଡ଼ା ଏହି ଯୋଗର ପରମ୍ପରା କହିବାକୁ ଯାଇ ଭଗବାନ୍ ଏଠାରେ 'ସୂର୍ଯ୍ୟ' ଓ 'ମନୁ' ଆଦିଙ୍କ ନାମ ଉଲ୍ଲେଖ କରିଛନ୍ତି। ସେମାନେ ସମସ୍ତେ ଗୃହସ୍ଥ ଓ କର୍ମଯୋଗୀ; ପୁଣି ଆଗରେ ଏହି ଅଧ୍ୟାୟର

ପନ୍ଦର ଶ୍ଳୋକରେ ଅତୀତର ମୁମୁକ୍ଷୁମାନଙ୍କ ଉଦାହରଣ ଦେଇ ମଧ୍ୟ ଭଗବାନ୍ ଅର୍ଜୁନଙ୍କୁ କର୍ମ କରିବା ନିମନ୍ତେ ଆଜ୍ଞା ଦେଇଛନ୍ତି। ଏଥିରୁ ମଧ୍ୟ ଏଠାରେ **ଇମମ୍** ବିଶେଷଣ ସହିତ **ଯୋଗମ୍** ପଦକୁ କର୍ମଯୋଗର ହିଁ ବାଚକ ବୋଲି ମାନିବା ଯଥାର୍ଥ ମନେ ହେଉଛି।

**ପ୍ରଶ୍ନ —** ତୃତୀୟ ଅଧ୍ୟାୟ ଶେଷରେ ଭଗବାନ୍ ଯେଉଁ **ଆତ୍ମାନମ୍ ଆତ୍ମନା ସଂସ୍ତଭ୍ୟ —** 'ଆତ୍ମାଦ୍ୱାରା ଆତ୍ମାକୁ ନିରୁଦ୍ଧ କରି' ବୋଲି କହିଛନ୍ତି, ସେଥିରୁ ମନେ ହୁଏ, ସେ ସମାଧିସ୍ଥ ହେବାକୁ କହିଛନ୍ତି ଏବଂ **ଯୁଜ୍ ସମାଧୌ** ଧାତୁପାଠ ଅନୁସାରେ ଯୋଗ ଶବ୍ଦର ଅର୍ଥ ମଧ୍ୟ ସମାଧି ହେଉଛି। ତେଣୁ ଏଠାରେ ଯୋଗର ଅର୍ଥ ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରି ସମାଧିସ୍ଥ ହୋଇଯିବା ବୋଲି ମାନିନେଲେ କ୍ଷତି କଣ ?

**ଉତ୍ତର —** ସେଠାରେ ଭଗବାନ୍ ଆତ୍ମାଦ୍ୱାରା ଆତ୍ମାକୁ ନିରୁଦ୍ଧ କରି ଅର୍ଥାତ୍ ବୁଦ୍ଧିଦ୍ୱାରା ମନକୁ ବଶ କରି କାମରୂପକ ଦୁର୍ଜୟ ଶତ୍ରୁକୁ ବଧ କରିବାକୁ ଆଜ୍ଞା ଦେଇଛନ୍ତି। କର୍ମଯୋଗରେ ନିଷ୍କାମଭାବର ହିଁ ଗୁରୁତ୍ୱ ରହିଛି; କାମକୁ ବିନାଶ କରିବାଦ୍ୱାରା କର୍ମଯୋଗ ସିଦ୍ଧ ହୋଇପାରେ ତଥା ମନ ଓ ଇନ୍ଦ୍ରିୟମାନଙ୍କୁ ବଶ କରିବା କର୍ମଯୋଗୀଙ୍କ ପାଇଁ ପରମ ଆବଶ୍ୟକ ବୋଲି ସ୍ୱୀକାର କରାଯାଇଛି (୨/୬୪)। ଅତଏବ ବୁଦ୍ଧିଦ୍ୱାରା ମନ-ଇନ୍ଦ୍ରିୟମାନଙ୍କୁ ବଶ କରିବା ଓ କାମକୁ ମାରିବା— ଏସବୁ କର୍ମଯୋଗର ଅଙ୍ଗ ଓ ଉପର୍ଯ୍ୟୁକ୍ତ ପ୍ରଥମ ପ୍ରଶ୍ନର ଉତ୍ତର ଅନୁସାରେ ସେଠାରେ ଭଗବାନ୍ କର୍ମଯୋଗ ସାଧନା କରିବାକୁ ହିଁ ଆଜ୍ଞା ଦେଇଛନ୍ତି; ତେଣୁ ଏଠାରେ ଯୋଗର ଅର୍ଥ ହଠଯୋଗ ବା ସମାଧିଯୋଗ ବୋଲି ନ ଧରି କର୍ମଯୋଗ ବୋଲି ଧରିବା ଉଚିତ ହେବ।

**ପ୍ରଶ୍ନ —** 'ଏହି ଯୋଗ ମୁଁ ସୂର୍ଯ୍ୟଙ୍କୁ କହିଥିଲି, ସୂର୍ଯ୍ୟ ମନୁଙ୍କୁ କହିଥିଲେ ଓ ମନୁ ଇକ୍ଷ୍ୱାକୁଙ୍କୁ କହିଥିଲେ'— ଏଠାରେ ଏହା କହିବାର ଉଦ୍ଦେଶ୍ୟ କଣ ?

**ଉତ୍ତର —** ଏହି ଯୋଗର ପରମ୍ପରା କହିବା ଉଦ୍ଦେଶ୍ୟରେ ଏବଂ ଏହି ଯୋଗ ସର୍ବପ୍ରଥମେ ଇହଲୋକରେ କ୍ଷତ୍ରିୟମାନଙ୍କୁ ମିଳିଥିଲା ବୋଲି ଦେଖାଇବାକୁ ତଥା କର୍ମଯୋଗର ଅନାଦିତା ସିଦ୍ଧ କରିବାକୁ ଭଗବାନ୍ ଏପରି କହିଛନ୍ତି।

## ଏବଂ ପରମ୍ପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ ।
## ସ କାଳେନେହ ମହତା ଯୋଗୋ ନଷ୍ଟଃ ପରନ୍ତପ ।। ୨ ।।

**ଅନ୍ୱୟ —** **ପରନ୍ତପ** = ହେ ଶତ୍ରୁପୀଡ଼କ ଅର୍ଜୁନ !; **ଏବମ୍** = ଏପରିଭାବରେ; **ପରମ୍ପରାପ୍ରାପ୍ତମ୍** = ପରମ୍ପରାରୁ ପ୍ରାପ୍ତ; **ଇମମ୍** = ଏହି (ଯୋଗକୁ); **ରାଜର୍ଷୟଃ** = ରାଜର୍ଷିମାନେ; **ବିଦୁଃ** = ଜାଣିଥିଲେ; **ସଃ** = ସେହି; **ଯୋଗଃ** = ଯୋଗ; **ମହତା** = ବହୁ; **କାଳେନ** = କାଳରୁ; **ଇହ** = ଏହି ପୃଥିବୀଲୋକରେ; **ନଷ୍ଟଃ** = ଲୁପ୍ତପ୍ରାୟ ହୋଇଯାଇଛି।

**ହେ ପରନ୍ତପ ଅର୍ଜୁନ! ଏପରିଭାବରେ ପରମ୍ପରାରୁ ପ୍ରାପ୍ତ ଏହି ଯୋଗ ରାଜର୍ଷିମାନେ ଜାଣିଥିଲେ; କିନ୍ତୁ ତା'ପରେ ସେହି ଯୋଗ ବହୁକାଳରୁ ଏହି ପୃଥିବୀଲୋକରେ ଲୁପ୍ତପ୍ରାୟ ହୋଇଯାଇଛି।। ୨ ।।**

**ପ୍ରଶ୍ନ —** 'ଏପରିଭାବରେ ପରମ୍ପରାରୁ ପ୍ରାପ୍ତ ଏହି ଯୋଗ ରାଜର୍ଷିମାନେ ଜାଣିଥିଲେ,'— ଏହି କଥନର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି ଯେ, ପରମ୍ପରାନୁସାରେ ଜଣେ ଆଉ ଜଣଙ୍କ ଠାରୁ ଶିକ୍ଷା ପାଇ ଅନେକ ପୁରୁଷପର୍ଯ୍ୟନ୍ତ ଶ୍ରେଷ୍ଠ ରାଜାମାନେ ଏହି କର୍ମଯୋଗ ଆଚରଣ କରୁଥିଲେ; ସେତେବେଳେ ଏହାର ରହସ୍ୟ ବୁଝିବା ସହଜ ଥିଲା; କିନ୍ତୁ ବର୍ତ୍ତମାନ ତାହା ଆଉ ନାହିଁ।

**ପ୍ରଶ୍ନ —** ରାଜର୍ଷି କାହାକୁ କହନ୍ତି ?

**ଉତ୍ତର —** ଯେ ରାଜା ଅଟନ୍ତି, ପୁଣି ଋଷି ମଧ୍ୟ ଅଟନ୍ତି ଅର୍ଥାତ୍ ଯେ ରାଜା ହୋଇ ବେଦମନ୍ତ୍ରମାନଙ୍କର ଅର୍ଥ ଓ ତତ୍ତ୍ୱ ଜାଣିଥାଆନ୍ତି, ତାଙ୍କୁ **ରାଜର୍ଷି** କହନ୍ତି।

**ପ୍ରଶ୍ନ —** 'ରାଜର୍ଷିମାନେ ଏହି ଯୋଗ ଜାଣିଥିଲେ'— ଏହାର ଅଭିପ୍ରାୟ କଣ ? କଣ ଅନ୍ୟମାନେ ଏହା ଜାଣି ନ ଥିଲେ ?

**ଉତ୍ତର —** ତାହା ନୁହେଁ; କାରଣ ଏଥିରେ ଅନ୍ୟମାନଙ୍କୁ ଜାଣିବା ପାଇଁ ନିଷେଧ କରାଯାଇ ନାହିଁ; ହଁ, ଏତିକି ଅବଶ୍ୟ ସ୍ପଷ୍ଟ ହେଉଛି ଯେ, କର୍ମଯୋଗର ତତ୍ତ୍ୱ ବୁଝିବାରେ ରାଜର୍ଷିମାନଙ୍କର ପ୍ରଧାନତା ସ୍ୱୀକାର

କରାଯାଇଛି; ତେଣୁ ଇତିହାସରେ ଦେଖିବାକୁ ମିଳେ ଯେ, ଅନ୍ୟ ଲୋକେ ମଧ୍ୟ କର୍ମଯୋଗର ତତ୍ତ୍ୱ ରାଜର୍ଷିମାନଙ୍କ ଠାରୁ ଶିକ୍ଷା କରିଥିଲେ। ଅତଏବ ଏଠାରେ ଭଗବାନଙ୍କ କହିବାର ଅଭିପ୍ରାୟ ହେଉଛି, ''ରାଜାମାନେ ପ୍ରଥମରୁ ଏହି କର୍ମଯୋଗ ଅନୁଷ୍ଠାନ କରି ଆସୁଥିଲେ ଏବଂ ତୁମେ ମଧ୍ୟ ରାଜବଂଶରେ ଉତ୍ପନ୍ନ ହୋଇଛ; ତେଣୁ ତୁମର ମଧ୍ୟ ଏଥିରେ ଅଧିକାର ଅଛି ଓ ଏହା ତୁମପାଇଁ ସୁଗମ ମଧ୍ୟ ହେବ।''

**ପ୍ରଶ୍ନ –** 'ବହୁକାଳରୁ ସେହି ଯୋଗ ଇହଲୋକରେ ପ୍ରାୟ ନଷ୍ଟ ହୋଇଯାଇଛି' – ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି ଯେ, ଯେପର୍ଯ୍ୟନ୍ତ ସେହି ପରମ୍ପରା ଚାଲିଆସୁଥିଲା, ସେପର୍ଯ୍ୟନ୍ତ ଏହି ପୃଥିବୀଲୋକରେ କର୍ମଯୋଗର ପ୍ରଚାର ହେଉଥିଲା। ତାହା ପରେ ଲୋକମାନଙ୍କ ମଧ୍ୟରେ ଯେତେ ଯେତେ ଭୋଗାସକ୍ତି ବଢ଼ିବାକୁ ଲାଗିଲା, କର୍ମଯୋଗର ଅଧିକାରୀମାନଙ୍କ ସଂଖ୍ୟା ସେତେ ସେତେ କମ୍ ହେବାକୁ ଲାଗିଲା; ଏହିପରି କମ୍ ହୋଇ ହୋଇ ଶେଷରେ କର୍ମଯୋଗର ସେହି କଲ୍ୟାଣମୟୀ ପରମ୍ପରା ନଷ୍ଟପ୍ରାୟ ହୋଇଯାଇଛି; ତେଣୁ ଏହାର ତତ୍ତ୍ୱ ବୁଝିବା ଲୋକଙ୍କର ଏବଂ ଏହାକୁ ଧାରଣ କରିବା ଲୋକଙ୍କର ସଂଖ୍ୟା ଇହଲୋକରେ ବହୁକାଳ ଆଗରୁ ହିଁ ଶୂନ୍ୟପ୍ରାୟ ହୋଇଯାଇଛି।

**ପ୍ରଶ୍ନ –** ପ୍ରଥମ ଶ୍ଳୋକରେ ତ **ଯୋଗମ୍** ସହିତ **ଅବ୍ୟୟମ୍** ବିଶେଷଣ ଦେଇ ଏହି ଯୋଗକୁ ଅବିନାଶୀ ବୋଲି କୁହାଯାଇଛି; ପୁଣି ଏଠାରେ କହୁଛନ୍ତି ଯେ, ତାହା ନଷ୍ଟ ହୋଇଯାଇଛି। ଏହି ପରସ୍ପରବିରୋଧୀ କଥାର ଅର୍ଥ କଣ ? ଯଦି ଏହା ଅବିନାଶୀ, ତେବେ ଏହାର ବିନାଶ ହେବା ଉଚିତ ନୁହେଁ ଏବଂ ଯଦି ବିନାଶ ହୋଇପାରେ, ତେବେ ଅବିନାଶୀ ହେବ କିପରି ?

**ଉତ୍ତର –** ପରମାତ୍ମପ୍ରାପ୍ତିର ସାଧନରୂପୀ କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ ଆଦି ଯେତେପ୍ରକାର ଯୋଗ ରହିଛି, ସେସବୁ ନିତ୍ୟ; ସେସବୁର କେବେ ବି ଅଭାବ ହୋଇ ନ ପାରେ। ଯେହେତୁ ପରମେଶ୍ୱର ନିତ୍ୟ, ତେଣୁ ତାଙ୍କର ପ୍ରାପ୍ତିନିମିତ୍ତ ତାଙ୍କ ଦ୍ୱାରା ନିଶ୍ଚିତ ହୋଇଥିବା ଅନାଦି ନିୟମସବୁ ଅନିତ୍ୟ ହୋଇ ନ ପାରେ। ଯେତେବେଳେ ଜଗତର ଉତ୍ପତ୍ତି ହୁଏ, ସେତେବେଳେ ଭଗବାନଙ୍କର ସମସ୍ତ ନିୟମ ମଧ୍ୟ ତା' ସହିତ ପ୍ରକଟ ହୋଇଯାଏ ଏବଂ ଯେତେବେଳେ ଜଗତର ପ୍ରଳୟ ହୁଏ, ସେତେବେଳେ ସେହି ନିୟମଗୁଡ଼ିକର ମଧ୍ୟ ତିରୋଭାବ ହୋଇଯାଏ; କିନ୍ତୁ କେବେ ବି ସେମାନଙ୍କ ଅଭାବ ହୁଏ ନାହିଁ। ଏପରିଭାବରେ ଏହି କର୍ମଯୋଗର ଅନାଦିତା ସିଦ୍ଧ କରିବାକୁ ପୂର୍ବଶ୍ଳୋକରେ ଏହାକୁ ଅବିନାଶୀ ବୋଲି କୁହାଯାଇଛି। ଅତଏବ ଏହି ଶ୍ଳୋକରେ ସେହି ଯୋଗ ବହୁକାଳରୁ ନଷ୍ଟ ହୋଇଯାଇଛି ବୋଲି ଯାହା କୁହାଗଲା, ତାହାର ଅଭିପ୍ରାୟ ହେଉଛି, ବହୁ ସମୟରୁ ଏହି ପୃଥିବୀଲୋକରେ ତାହାର ତତ୍ତ୍ୱ ବୁଝିଥିବା ଶ୍ରେଷ୍ଠ ଲୋକମାନଙ୍କର ପ୍ରାୟ ଅଭାବ ହୋଇଯାଇଛି; ତେଣୁ ତାହା ଅପ୍ରକାଶିତ ହୋଇରହିଛି; ଇହଲୋକରେ ତାହାର ତିରୋଭାବ ଘଟିଯାଇଛି। କିନ୍ତୁ ଏହାର ଅର୍ଥ ନୁହେଁ ଯେ, ତାହାର ଅଭାବ ହୋଇଯାଇଛି, କାରଣ ସତ୍‌ବସ୍ତୁର କଦାପି ଅଭାବ ହୁଏ ନାହିଁ। ସୃଷ୍ଟିର ପ୍ରାରମ୍ଭରୁ, ପୂର୍ବଶ୍ଳୋକର କଥା ଅନୁସାରେ, ଭଗବାନଙ୍କ ଠାରୁ ଏହାର ଉତ୍ପତ୍ତି ହୁଏ; ପୁଣି ମଝିରେ ବିଭିନ୍ନ କାରଣରୁ କେବେ କେବେ ଅପ୍ରକାଶ ହୋଇଯାଏ ତ, କେବେ କେବେ ପ୍ରକାଶ ଓ ବିକାଶ ହୁଏ। ଏପରି ହେଉ ହେଉ ପ୍ରଳୟସମୟରେ ତାହା ଅଖିଳ ଜଗତ୍ ସହିତ ଭଗବାନଙ୍କ ଠାରେ ବିଲୀନ ହୋଇଯାଏ। ଏହାକୁ ନଷ୍ଟ ବା ଅଦୃଶ୍ୟ ହେବା କହନ୍ତି; ବାସ୍ତବିକ ଏହା ଅବିନାଶୀ; ଅତଏବ ଏହାର ଅଭାବ କେବେହେଲେ ହୁଏ ନାହିଁ।

## ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ। ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍॥ ୩ ॥

**ଅନ୍ୱୟ –** (ତ୍ୱମ୍) = ତୁମେ; ମେ = ମୋର; **ଭକ୍ତଃ** = ଭକ୍ତ; ଚ = ଏବଂ; **ସଖା** = ପ୍ରିୟସଖା; **ଅସି** = ଅଟ; **ଇତି** = ଏଣୁ; **ସଃ, ଏବ** = ସେହି; **ଅୟମ୍** = ଏହି; **ପୁରାତନଃ** = ପୁରାତନ; **ଯୋଗଃ** = ଯୋଗ (ହିଁ); **ଅଦ୍ୟ** = ଆଜି; **ମୟା** = ମୋ' ଦ୍ୱାରା; **ତେ** = ତୁମକୁ; **ପ୍ରୋକ୍ତଃ** = କୁହାହେଲା; **ହି** = କାରଣ; **ଏତତ୍** = ଏହା; **ଉତ୍ତମମ୍** = ଉତ୍ତମ; **ରହସ୍ୟମ୍** = ରହସ୍ୟ ଅର୍ଥାତ୍ ଗୁପ୍ତ ରଖିବାର ଯୋଗ୍ୟ ବିଷୟ।

**ତୁମେ ମୋର ଭକ୍ତ ଓ ପ୍ରିୟସଖା; ଏଣୁ ସେହି ପୁରାତନ ଯୋଗ ହିଁ ଆଜି ମୁଁ ତୁମକୁ କହିଦେଲି; କାରଣ ଏହା ହେଉଛି ଅତ୍ୟନ୍ତ ଉତ୍ତମ ରହସ୍ୟ ଅର୍ଥାତ୍ ଗୁପ୍ତ ରଖିବାଯୋଗ୍ୟ ବିଷୟ ।। ୩ ।।**

**ପ୍ରଶ୍ନ –** 'ତୁମେ ମୋର ଭକ୍ତ ଏବଂ ପ୍ରିୟ ସଖା ଅଟ' – ଏହି କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି, ''ତୁମେ ମୋର ଚିରକାଳର ଅନୁଗତ ଭକ୍ତ ଓ ପ୍ରିୟ ସଖା; ଅତଏବ ତୁମ ଆଗରେ ଅତ୍ୟନ୍ତ ରହସ୍ୟମୟ କଥା ପ୍ରକଟ କରିଦିଆଯାଉଛି; ପ୍ରତ୍ୟେକ ମନୁଷ୍ୟ ଆଗରେ ରହସ୍ୟମୟ କଥା ପ୍ରକଟ କରାଯାଏ ନାହିଁ ।''

**ପ୍ରଶ୍ନ –** 'ସେହି ପୁରାତନ ଯୋଗ ଆଜି ମୁଁ ତୁମକୁ କହିଲି' – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏହି ବାକ୍ୟରେ **ସଃ** ଏବ ଏବଂ **ପୁରାତନଃ –** ଏହି ପଦଗୁଡ଼ିକ ପ୍ରୟୋଗ କରି ଏହି ଯୋଗର ଅନାଦିତା ସିଦ୍ଧ କରାଯାଉଛି; ତେ ପଦଦ୍ୱାରା ଅର୍ଜୁନଙ୍କର ଅଧିକାର ନିରୂପଣ କରାଯାଉଛି ଏବଂ ଅଦ୍ୟ ପଦଦ୍ୱାରା ଏହି ଯୋଗ ଉପଦେଶ ଦେବାର ଉପଯୁକ୍ତ ସମୟ ନିର୍ଦ୍ଦେଶ କରାଯାଉଛି । ଭଗବାନ୍ କହୁଛନ୍ତି, ''ଯେଉଁ ଯୋଗ ମୁଁ ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲି ଏବଂ ଯାହାର ପରମ୍ପରା ଅନାଦି କାଳରୁ ଚଳି ଆସିଛି, ସେହି ପୁରାତନ ଯୋଗ ହିଁ ଆଜି ଏହି ଯୁଦ୍ଧକ୍ଷେତ୍ରରେ ତୁମକୁ ଅତ୍ୟନ୍ତ ବ୍ୟାକୁଳ ଓ ଶରଣାଗତ ଜାଣି ଶୋକନିବୃତ୍ତିପୂର୍ବକ କଲ୍ୟାଣପ୍ରାପ୍ତି କରାଇବା ନିମିତ୍ତ ମୁଁ ତୁମକୁ କହିଲି । ଶରଣାଗତି ସଙ୍ଗେ ସଙ୍ଗେ ଅନ୍ତରର ବ୍ୟାକୁଳତାପୂର୍ଣ୍ଣ ଜିଜ୍ଞାସା ଏପରି ଏକ ସାଧନା ଯେ, ତାହା ମନୁଷ୍ୟଙ୍କୁ ପରମ ଅଧିକାରୀ କରାଇଦିଏ । ତୁମେ ଆଜି ସେହି ଅଧିକାର ବାସ୍ତବରେ ସିଦ୍ଧ କରିଦେଲ (୨/୭); ପୂର୍ବରୁ କେବେ ଏପରି କରି ନ ଥିଲ । ତେଣୁ ମୁଁ ବର୍ତ୍ତମାନ ତୁମ ଆଗରେ ଏହି ରହସ୍ୟ ଖୋଲିଦେଲି ।''

**ପ୍ରଶ୍ନ –** 'ଏହା ଅତ୍ୟନ୍ତ ଉତ୍ତମ ରହସ୍ୟ' – ଏପରି କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି, ''ଏହି ଯୋଗ ସବୁପ୍ରକାର ଦୁଃଖ ଓ ବନ୍ଧନରୁ ମୁକ୍ତ କରିଦେଇ ପରମାନନ୍ଦସ୍ୱରୂପ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ଅତି ସହଜରେ ପ୍ରାପ୍ତ କରାଇବାକୁ ସମର୍ଥ । ତେଣୁ ଏହା ଅତ୍ୟନ୍ତ ଉତ୍ତମ ଓ ଗୋପନୀୟ । ଏହା ଛଡ଼ା ସୂର୍ଯ୍ୟାଦିଙ୍କୁ ମୁଁ ଏହି ଯୋଗ ଶିଖାଇଛି ବୋଲି କହି ଏବଂ 'ତୁମେ ମୋର ଭକ୍ତ ବୋଲି ମୁଁ ତୁମକୁ ଏହି ଯୋଗ କହିଲି' – ଏପରି କହି ମୁଁ ନିଜର ଯେଉଁ ଈଶ୍ୱରଭାବ ପ୍ରକଟ କରିଛି, ତାହା ଅତ୍ୟନ୍ତ ରହସ୍ୟମୟ ବିଷୟ; ତେଣୁ ଅନଧିକାରୀଙ୍କ ଆଗରେ ଏହା କଦାପି ପ୍ରକାଶ କରିବା ଉଚିତ ନୁହେଁ ।''

**ସମ୍ବନ୍ଧ –** ଉପରୋକ୍ତ ବର୍ଣ୍ଣନାଦ୍ୱାରା ମନୁଷ୍ୟମାନରେ ସ୍ୱାଭାବିକ ଏହି ଶଙ୍କା ହୋଇପାରେ ଯେ, ଭଗବାନ୍ ଶ୍ରୀକୃଷ୍ଣ ତ ବର୍ତ୍ତମାନ ଦ୍ୱାପରଯୁଗରେ ପ୍ରକଟ ହୋଇଛନ୍ତି ଏବଂ ସୂର୍ଯ୍ୟଦେବ, ମନୁ ଓ ଇକ୍ଷ୍ୱାକୁ ତ ବହୁ ପୂର୍ବରୁ ଜାତ ହୋଇସାରିଥିଲେ; ତେଣୁ ଶ୍ରୀକୃଷ୍ଣ କିପରି ସୂର୍ଯ୍ୟଙ୍କୁ ଏହି ଯୋଗ ଶିକ୍ଷା ଦେଇଥିଲେ ? ଅତଏବ ଏହାର ସମାଧାନ ସହିତ ଭଗବାନଙ୍କର ଅବତାରତତ୍ତ୍ୱ ଭଲଭାବରେ ବୁଝିବାର ଇଚ୍ଛା ନେଇ ଅର୍ଜୁନ ପଚାରୁଛନ୍ତି –

ଅର୍ଜୁନ ଉବାଚ

## ଅପରଂ ଭବତୋ ଜନ୍ମ ପରଂ ଜନ୍ମ ବିବସ୍ୱତଃ ।
## କଥମେତଦ୍ୱିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି ।। ୪ ।।

**ଅନ୍ୱୟ –** ଭବତଃ = ଆପଣଙ୍କର; ଜନ୍ମ = ଜନ୍ମ (ତ); ଅପରମ୍ = ଅର୍ବାଚୀନ ଅର୍ଥାତ୍ ଏବେ ହୋଇଛି (ଏବଂ); ବିବସ୍ୱତଃ = ସୂର୍ଯ୍ୟଙ୍କର; ଜନ୍ମ = ଜନ୍ମ; ପରମ୍ = ବହୁତ ପୁରାତନ ଅର୍ଥାତ୍ କଳ୍ପର ପ୍ରାରମ୍ଭରେ ହୋଇଥିବା (ତେଣୁ ମୁଁ); ଇତି, କଥମ୍ = ଏହା କିପରି; ବିଜାନୀୟାମ୍ = ବୁଝିପାରିବି (ଯେ); ତ୍ୱମ୍ = ଆପଣ; ଆଦୌ = କଳ୍ପର ପ୍ରାରମ୍ଭରେ (ସୂର୍ଯ୍ୟଙ୍କୁ); ଏତଦ୍ = ଏହି ଯୋଗ; ପ୍ରୋକ୍ତବାନ୍ = କହିଥିଲେ ।

**ଅର୍ଜୁନ କହିଲେ– ଆପଣଙ୍କର ଜନ୍ମ ତ ଅର୍ବାଚୀନ– ଏବେ ହୋଇଛି ଏବଂ ସୂର୍ଯ୍ୟଙ୍କର ଜନ୍ମ ବହୁ ପୁରାତନ ଅର୍ଥାତ୍ କଳ୍ପର ଆରମ୍ଭରେ ହୋଇଥିଲା; ତେଣୁ ଆପଣ କଳ୍ପର ଆରମ୍ଭରେ ସୂର୍ଯ୍ୟଙ୍କୁ ଏହି ଯୋଗ କହିଥିଲେ ବୋଲି ମୁଁ କିପରି ବୁଝିପାରିବି ?॥ ୪ ॥**

**ପ୍ରଶ୍ନ–** ଏହି ଶ୍ଲୋକରେ ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ କଣ ?

**ଉତ୍ତର–** ଯଦ୍ୟପି ଅର୍ଜୁନ ଏହି କଥା ପ୍ରଥମରୁ ହିଁ ଜାଣିଥିଲେ ଯେ, ଶ୍ରୀକୃଷ୍ଣ କୌଣସି ସାଧାରଣ ମନୁଷ୍ୟ ନୁହଁନ୍ତି; ବରଂ ଦିବ୍ୟମାନବରୂପରେ ପ୍ରକଟ ହୋଇଥିବା ସର୍ବଶକ୍ତିମାନ୍ ପୂର୍ଣ୍ଣବ୍ରହ୍ମ ପରମାତ୍ମା ହିଁ ଅଟନ୍ତି; କାରଣ ସେ ରାଜସୂୟ ଯଜ୍ଞ ସମୟରେ ଭୀଷ୍ମପିତାମହଙ୍କ ଠାରୁ ଭଗବାନଙ୍କର ମହିମା ଶୁଣିଥିଲେ (ମହା/ସଭା/୩୮/୨୩,୨୯) ଏବଂ ଅନ୍ୟ ଋଷିମାନଙ୍କ ଠାରୁ ମଧ୍ୟ ଏହି ବିଷୟରେ ବହୁ କଥା ଶୁଣିଥିଲେ। ତେଣୁ ବନବାସ କାଳରେ ସେ ସ୍ୱୟଂ ଭଗବାନଙ୍କ ସହିତ ତାଙ୍କ ମହତ୍ତ୍ୱର ଚର୍ଚ୍ଚା କରିଥିଲେ (ମହା/ବନ/୧୨/୧୧-୪୩) ; ଏହା ଛଡ଼ା ଶିଶୁପାଳ ଆଦିଙ୍କୁ ବଧ କରିବାରେ ଏବଂ ଅନ୍ୟାନ୍ୟ ଘଟଣାମାନଙ୍କରେ ଭଗବାନଙ୍କର ଅଦ୍ଭୁତ ପ୍ରଭାବ ମଧ୍ୟ ସେ ପ୍ରତ୍ୟକ୍ଷ ଦେଖିଥିଲେ; ତଥାପି ଭଗବାନଙ୍କ ମୁଖରୁ ତାଙ୍କ ଅବତାରର ରହସ୍ୟ ଶୁଣିବା ଏବଂ ସର୍ବସାଧାରଣଙ୍କ ମନରେ ହେଉଥିବା ଶଙ୍କାମାନଙ୍କୁ ଦୂର କରାଇବା ଇଚ୍ଛାରେ ଏଠାରେ ଅର୍ଜୁନ ପ୍ରଶ୍ନ କରିଛନ୍ତି। ଅର୍ଜୁନଙ୍କ ପଚାରିବାର ଭାବ ହେଲା, "ଆପଣଙ୍କର ଜନ୍ମ ଏବେ କିଛି ବର୍ଷ ପୂର୍ବରୁ ଶ୍ରୀ ବସୁଦେବଙ୍କ ଘରେ ହୋଇଛି; ଏହି କଥା ପ୍ରାୟ ସମସ୍ତେ ଜାଣିଛନ୍ତି ଏବଂ ସୂର୍ଯ୍ୟଙ୍କର ଉତ୍ପତ୍ତି ସୃଷ୍ଟିର ଆରମ୍ଭରେ ଅଦିତିଙ୍କ ଠାରୁ ହୋଇଛି। ଏହାର ରହସ୍ୟ ନ ବୁଝି ଅସମ୍ଭବପରି ଲାଗୁଥିବା ଏକଥା କିପରି ସ୍ୱୀକାର କରାଯାଇ ପାରିବ ଯେ, ଆପଣ ଏହି ଯୋଗ ସୃଷ୍ଟିର ପ୍ରାରମ୍ଭରେ ସୂର୍ଯ୍ୟଙ୍କୁ କହିଥିଲେ, ଯାହା ଫଳରେ କି ସୂର୍ଯ୍ୟଙ୍କ ଠାରୁ ଏହି ପରମ୍ପରା ଚାଲିଆସିଛି। ଅତଏବ କୃପା କରି ମୋତେ ଏହାର ରହସ୍ୟ ବୁଝାଇଦେଇ କୃତାର୍ଥ କରନ୍ତୁ।"

***ସମ୍ବନ୍ଧ–*** *ଅର୍ଜୁନ ଏପରି ପଚାରିବାରୁ ନିଜର ଅବତାର ତତ୍ତ୍ୱର ରହସ୍ୟ ବୁଝାଇଦେବା ଅଭିପ୍ରାୟରେ ଭଗବାନ୍ ନିଜର ସର୍ବଜ୍ଞତା ପ୍ରକଟ କରି କହୁଛନ୍ତି–*

*ଶ୍ରୀଭଗବାନୁବାଚ*

**ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।**
**ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ ॥ ୫ ॥**

**ଅନ୍ୱୟ–** **ପରନ୍ତପ** = ହେ ଶତ୍ରୁପୀଡ଼କ; **ଅର୍ଜୁନ** = ଅର୍ଜୁନ; **ମେ** = ମୋର; **ଚ** = ଏବଂ; **ତବ** = ତୁମର; **ବହୂନି, ଜନ୍ମାନି** = ଅନେକ ଜନ୍ମ; **ବ୍ୟତୀତାନି** = ଅତିବାହିତ ହୋଇସାରିଛି; **ତାନି** = ସେହି; **ସର୍ବାଣି** = ସବୁକୁ; **ତ୍ୱମ୍** = ତୁମେ; **ନ, ବେତ୍ଥ** = ଜାଣ ନାହିଁ; **ଅହମ୍** = ମୁଁ; **ବେଦ** = ଜାଣେ।

**ଶ୍ରୀଭଗବାନ୍ କହିଲେ – ହେ ପରନ୍ତପ ଅର୍ଜୁନ ! ମୋର ଓ ତୁମର ଅନେକ ଜନ୍ମ ଅତିବାହିତ ହୋଇସାରିଛି। ତୁମେ ସେସବୁ ଜାଣ ନାହିଁ; କିନ୍ତୁ ମୁଁ ଜାଣେ॥ ୫ ॥**

**ପ୍ରଶ୍ନ–** 'ମୋର ଓ ତୁମର ଅନେକ ଜନ୍ମ ହୋଇସାରିଛି' — ଏହି କଥାର ଭାବ କଣ ?

**ଉତ୍ତର–** ଏହାଦ୍ୱାରା ଭଗବାନ୍ କହୁଛନ୍ତି "ମୁଁ ଓ ତୁମେ ଯେ ବର୍ତ୍ତମାନ ଜନ୍ମିଅଛୁଁ, ଆଦ୍ୟରୁ ନ ଥିଲେ; ତାହା ନୁହେଁ। ଆମେ ଅନାଦି ଓ ନିତ୍ୟ। ମୋର ନିତ୍ୟସ୍ୱରୂପ ତ ଅଛି; ଏହା ଛଡ଼ା ମୁଁ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ ଓ ବାମନ ଆଦି ଅନେକରୂପରେ ପ୍ରଥମେ ପ୍ରକଟ ହୋଇଛି। ବସୁଦେବଙ୍କ ଘରେ ହୋଇଥିବା ମୋର ଏହି ପ୍ରାକଟ୍ୟ ଅର୍ବାଚୀନ ହୋଇଥିଲେ ମଧ୍ୟ ଏହା ପୂର୍ବରୁ ହୋଇଥିବା ମୋର ବିବିଧ ରୂପରେ ମୁଁ

ଅସଂଖ୍ୟ ପୁରୁଷଙ୍କୁ ଅନେକପ୍ରକାର ଉପଦେଶ ଦେଇଛି। ତେଣୁ ମୁଁ ଏହା ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲି ବୋଲି ଯାହା କହିଲି, ସେଥିରେ ତୁମେ କୌଣସି ଆଶ୍ଚର୍ଯ୍ୟ ଓ ଅସମ୍ଭାବନା ଦେଖିବା ଉଚିତ ନୁହେଁ। ମୋ କଥାର ଅଭିପ୍ରାୟ ଏହି ଯେ, କଳ୍ପର ଆଦିରେ ମୁଁ ନାରାୟଣରୂପରେ ସୂର୍ଯ୍ୟଙ୍କୁ ଏହି ଯୋଗ କହିଥିଲି।

**ପ୍ରଶ୍ନ –** 'ତୁମେ ସେସବୁ ଜାଣି ନାହଁ, କିନ୍ତୁ ମୁଁ ଜାଣେ' – ଏହି କଥାର ଭାବ କଣ ?

**ଉତ୍ତର –** ଏହି କଥନରେ ଭଗବାନ୍ ନିଜର ସର୍ବଜ୍ଞତା ଓ ଜୀବମାନଙ୍କର ଅଳ୍ପଜ୍ଞତା ସୂଚାଇଦେଇଛନ୍ତି। ଭଗବାନଙ୍କ କହିବାର ଭାବ ହେଉଛି, ''ମୁଁ କାହିଁକି କେଉଁ ରୂପରେ ପ୍ରକଟ ହୋଇ କେଉଁ କେଉଁ ସମୟରେ କି କି ଲୀଳା କରିଛି, ତାହା ତୁମେ ସର୍ବଜ୍ଞ ହୋଇ ନ ଥିବାରୁ ଜାଣିପାରୁ ନାହଁ; ତୁମଠାରେ ଯୋଗ ଓ ତୁମ ନିଜର ପୂର୍ବଜନ୍ମର ସ୍ମୃତି ନାହିଁ; ତେଣୁ ତୁମେ ଏପରି ପ୍ରଶ୍ନ କରୁଛ; କିନ୍ତୁ ମୋତେ ଜଗତର କୌଣସି ଘଟଣା ଅଜଣା ନାହିଁ; ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍— ସବୁ ମୋ ପାଇଁ ବର୍ତ୍ତମାନ ହିଁ ଅଟେ। ମୁଁ ସବୁ ଜୀବଙ୍କୁ ଓ ସେମାନଙ୍କର ସମସ୍ତ ବିଷୟ ଭଲଭାବରେ ଜାଣେ (୭/୨୬); କାରଣ ମୁଁ ସର୍ବଜ୍ଞ; ଏଣୁ ମୁଁ କଳ୍ପର ଆରମ୍ଭରେ ଏହି ଯୋଗ ସୂର୍ଯ୍ୟଙ୍କୁ କହିଥିଲି ବୋଲି ଯାହା କହୁଛି, ସେଥିରେ ତୁମେ ଟିକିଏ ବି ସନ୍ଦେହ କରିବା ଉଚିତ ନୁହେଁ।''

*ସମ୍ବନ୍ଧ – ଭଗବାନଙ୍କ ମୁଖରୁ ଏହା ଶୁଣି ଅର୍ଥାତ୍ ତାଙ୍କର ଅନେକ ଜନ୍ମ ହୋଇସାରିଛି ଶୁଣି, ତାଙ୍କ ଜନ୍ମ କିପରି ହୁଏ ଏବଂ ତାଙ୍କ ଜନ୍ମ ଓ ଅନ୍ୟ ଲୋକଙ୍କ ଜନ୍ମ ମଧ୍ୟରେ ପାର୍ଥକ୍ୟ କଣ, ତାହା ଜାଣିବାକୁ ଅର୍ଜୁନଙ୍କର ଇଚ୍ଛା ହୋଇପାରେ। ଏହା ଭାବି ତାହା ବୁଝାଇବାପାଇଁ ଭଗବାନ୍ ନିଜର ଜନ୍ମତତ୍ତ୍ୱ ବର୍ଣ୍ଣନା କରୁଛନ୍ତି–*

**ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍।**
**ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା॥ ୬ ॥**

**ଅନ୍ୱୟ –** (ଅହମ୍) = ମୁଁ; **ଅଜଃ** = ଅଜନ୍ମା (ଏବଂ); **ଅବ୍ୟୟାତ୍ମା** = ଅବିନାଶୀସ୍ୱରୂପ; **ସନ୍** = ହେଲେ; **ଅପି** = ମଧ (ଏବଂ); **ଭୂତାନାମ୍** = ସମସ୍ତ ପ୍ରାଣୀଙ୍କର; **ଈଶ୍ୱରଃ** = ଈଶ୍ୱର; **ସନ୍** = ହୋଇଥିଲେ; **ଅପି** = ମଧ; **ସ୍ୱାମ୍** = ନିଜର; **ପ୍ରକୃତିମ୍** = ପ୍ରକୃତିକୁ; **ଅଧିଷ୍ଠାୟ** = ଅଧୀନ କରି; **ଆତ୍ମମାୟୟା** = ନିଜର ଯୋଗମାୟାଦ୍ୱାରା; **ସମ୍ଭବାମି** = ପ୍ରକଟ ହୁଏ।

**ମୁଁ ଅଜନ୍ମା ଏବଂ ଅବିନାଶୀସ୍ୱରୂପ ହୋଇଥିଲେ ମଧ ଏବଂ ସମସ୍ତ ପ୍ରାଣୀମାନଙ୍କର ଈଶ୍ୱର ହୋଇଥିଲେ ମଧ ନିଜ ପ୍ରକୃତିକୁ ଅଧୀନ କରି ନିଜ ଯୋଗମାୟାବଳରେ ପ୍ରକଟ ହୋଇଥାଏ॥ ୬ ॥**

**ପ୍ରଶ୍ନ – ଅଜଃ, ଅବ୍ୟୟାତ୍ମା ଏବଂ ଭୂତାନାମୀଶ୍ୱରଃ –** ଏହି ପଦଗୁଡ଼ିକ ସହିତ ଅପି ଓ ସନ୍‌ପଦ ଦୁଇଟି ପ୍ରୟୋଗ କରି ଏଠାରେ କେଉଁ ଭାବ ଦର୍ଶାଯାଇଛି ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଯଦ୍ୟପି ମୁଁ ଅଜନ୍ମା ଓ ଅବିନାଶୀ, ଯଦ୍ୟପି ବାସ୍ତବରେ ମୋର କେବେ ବି ଜନ୍ମ, କି ବିନାଶ ହୁଏ ନାହିଁ, ତଥାପି ମୁଁ ସାଧାରଣ ବ୍ୟକ୍ତିପରି ଜନ୍ମ ନିଏ ଏବଂ ବିନଷ୍ଟ ହେବାପରି ପ୍ରତୀତ ହୋଇଥାଏ। ଏହିଭାବରେ ସମସ୍ତ ପ୍ରାଣୀଙ୍କର ଈଶ୍ୱର ହୋଇଥିଲେ ମଧ ମୁଁ ଜଣେ ସାଧାରଣ ବ୍ୟକ୍ତିପରି ପ୍ରତୀତ ହୋଇଥାଏ। ଅଭିପ୍ରାୟ ଏହି ଯେ, ମୋର ଅବତାରତତ୍ତ୍ୱ ବୁଝି ନ ଥିବା ଲୋକେ ମୁଁ ମତ୍ସ୍ୟ, କଚ୍ଛପ, ବରାହ ଓ ମନୁଷ୍ୟାଦିରୂପରେ ପ୍ରକଟ ହେଲେ, ମୋର ଜନ୍ମ ହୁଏ ବୋଲି ଭାବନ୍ତି ଏବଂ ମୁଁ ଅନ୍ତର୍ଦ୍ଧାନ ହୋଇଗଲେ, ମୋର ବିନାଶ ହୋଇଗଲା ବୋଲି ଭାବନ୍ତି, ତଥା ମୁଁ ସେହି ରୂପରେ ଦିବ୍ୟଲୀଳା କରୁଥିବାବେଳେ ମୋତେ ନିଜପରି ସାଧାରଣ ବ୍ୟକ୍ତି ବୋଲି ବୁଝି ମୋର ଅବମାନନା ମଧ କରନ୍ତି (୯/୧୧)। ସେମାନେ ବୁଝିପାରନ୍ତି ନାହିଁ ଯେ, ସର୍ବଶକ୍ତିମାନ୍ ସର୍ବେଶ୍ୱର, ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତସ୍ୱଭାବ ସାକ୍ଷାତ୍ ପୂର୍ଣ୍ଣବ୍ରହ୍ମ

ପରମାତ୍ମା ହିଁ ଜଗତର କଲ୍ୟାଣନିମନ୍ତେ ଏହି ରୂପରେ ପ୍ରକଟ ହୋଇ ଦିବ୍ୟଲୀଳା କରୁଛନ୍ତି। କାରଣ, ମୁଁ ସେହି ସମୟରେ ନିଜର ଯୋଗମାୟାର ପରଦା ପଛରେ ଛପି ରହିଥାଏ (୭/୨୫)।''

**ପ୍ରଶ୍ନ –** ଏଠାରେ **ସ୍ୱାମ୍** ବିଶେଷଣ ସହିତ **ପ୍ରକୃତିମ୍** ପଦ କାହାର ବାଚକ ତଥା **ଆତ୍ମମାୟୟା** କାହାର ବାଚକ ଏବଂ ଏହି ଦୁଇଟି ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ଭଗବାନଙ୍କର ଶକ୍ତିରୂପା ଯେଉଁ ମୂଳପ୍ରକୃତି ରହିଛି, ଯାହାର ବର୍ଣ୍ଣନା ନବମ ଅଧ୍ୟାୟର ସପ୍ତମ ଓ ଅଷ୍ଟମ ଶ୍ଲୋକରେ କରାଯାଇଛି ଏବଂ ଯାହାକୁ ଚତୁର୍ଦ୍ଦଶ ଅଧ୍ୟାୟରେ ମହଦ୍‌ବ୍ରହ୍ମ ବୋଲି କୁହାଯାଇଛି, ଏଠାରେ **ସ୍ୱାମ୍** ବିଶେଷଣ ସହିତ **ପ୍ରକୃତିମ୍** ପଦଟି ହେଉଛି ସେହି ମୂଳପ୍ରକୃତିର ବାଚକ। ପୁଣି ଭଗବାନ୍ ନିଜର ଯେଉଁ ଯୋଗଶକ୍ତିଦ୍ୱାରା ସମସ୍ତ ଜଗତକୁ ଧାରଣ କରିଛନ୍ତି, ଯେଉଁ ଅସାଧାରଣ ଶକ୍ତିଦ୍ୱାରା ସେ ନାନାପ୍ରକାର ରୂପଧାରଣ କରି ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୁଅନ୍ତି ଏବଂ ଯେଉଁଥିରେ ଛପି ରହିଥିବା କାରଣରୁ ଲୋକେ ତାଙ୍କର ପରିଚୟ ପାଇପାରନ୍ତି ନାହିଁ ତଥା ସପ୍ତମ ଅଧ୍ୟାୟର ପଚିଶ ଶ୍ଲୋକରେ ଯାହାକୁ ଯୋଗମାୟା ନାମରେ କୁହାଯାଇଛି, **ଆତ୍ମମାୟୟା** ପଦଟି ହେଉଛି ତାହାର ବାଚକ। 'ମୂଳପ୍ରକୃତି'କୁ ନିଜର ଅଧୀନ କରି ନିଜର ଯୋଗଶକ୍ତିଦ୍ୱାରା ହିଁ ଭଗବାନ୍ ଅବତୀର୍ଣ୍ଣ ହୁଅନ୍ତି।

ମୂଳପ୍ରକୃତି ସଂସାରକୁ ଉତ୍ପନ୍ନ କରେ ଏବଂ ଭଗବାନଙ୍କର ଏହି ଯୋଗମାୟା ହେଉଛି ତାଙ୍କର ଅତ୍ୟନ୍ତ ପ୍ରଭାବଶାଳିନୀ ଐଶ୍ୱର୍ଯ୍ୟମୟୀ ଶକ୍ତି। ଏହା ହିଁ ଏହି ଦୁହିଁଙ୍କ ମଧ୍ୟରେ ଥିବା ପ୍ରଭେଦ।

**ପ୍ରଶ୍ନ –** 'ମୁଁ ନିଜ ପ୍ରକୃତିକୁ ଅଧୀନ କରି ନିଜ ଯୋଗମାୟା ବଳରେ ପ୍ରକଟ ହୋଇଥାଏ'– ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ସାଧାରଣ ଜୀବର ଜନ୍ମଠାରୁ ନିଜ ଜନ୍ମର ବିଲକ୍ଷଣତା ଦେଖାଇ କହୁଛନ୍ତି, ''ଜୀବମାନେ ଯେପରି ପ୍ରକୃତିର ବଶ ହୋଇ ନିଜ ନିଜର କର୍ମାନୁସାରେ ଭଲମନ୍ଦ ଯୋନିରେ ଜନ୍ମ ଗ୍ରହଣ କରନ୍ତି ଓ ସୁଖଦୁଃଖ ଭୋଗ କରନ୍ତି, ମୋର ଜନ୍ମ ସେପରି ହୁଏ ନାହିଁ। ମୁଁ ନିଜ ପ୍ରକୃତିର ଅଧିଷ୍ଠାତା ହୋଇ ସ୍ୱୟଂ ନିଜର ଯୋଗମାୟାବଳରେ ସମୟ ସମୟରେ ଦିବ୍ୟଲୀଳା କରିବା ନିମିତ୍ତ ଯଥୋଚିତ ରୂପ ଧାରଣ କରିଥାଏ; ମୋର ଏହି ଜନ୍ମ ସ୍ୱତନ୍ତ୍ର ଓ ଦିବ୍ୟ ହୋଇଥାଏ; ତାହା ଜୀବମାନଙ୍କ ପରି କର୍ମବଶ ହୁଏ ନାହିଁ।''

**ପ୍ରଶ୍ନ –** ସାଧାରଣ ଜୀବମାନଙ୍କର ଜନ୍ମ-ମୃତ୍ୟୁ ଏବଂ ଭଗବାନଙ୍କର ପ୍ରକଟ-ଅନ୍ତର୍ଦ୍ଧାନ ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ସାଧାରଣ ଜୀବମାନଙ୍କର ଜନ୍ମ-ମୃତ୍ୟୁ ସେମାନଙ୍କ କର୍ମ ଅନୁସାରେ ହୋଇଥାଏ; ସେମାନଙ୍କ ଇଚ୍ଛା ଅନୁସାରେ ହୁଏ ନାହିଁ। ସେମାନଙ୍କୁ ମାତାଙ୍କ ଗର୍ଭରେ ରହି କଷ୍ଟ ଭୋଗ କରିବାକୁ ପଡ଼ିଥାଏ; ଜନ୍ମସମୟରେ ମାତାଙ୍କ ଯୋନିରୁ ଶରୀର ସହିତ ବାହାରିବାକୁ ହୁଏ; ତା'ପରେ ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହୋଇ ସେହି ଶରୀରର ଅବକ୍ଷୟ ହେବା ପରେ ମରିଯିବାକୁ ହୁଏ; କର୍ମ ଅନୁସାରେ ପୁନର୍ବାର ଅନ୍ୟ ଯୋନିରେ ଜନ୍ମ ନେବାକୁ ହୁଏ। କିନ୍ତୁ ଭଗବାନଙ୍କର ପ୍ରକଟ ଓ ଅନ୍ତର୍ଦ୍ଧାନ ଏହାଠାରୁ ଅତ୍ୟନ୍ତ ଅଲୌକିକ ଏବଂ ତାହା ତାଙ୍କ ଇଚ୍ଛା ଉପରେ ନିର୍ଭର କରେ। ସେ ଯେତେବେଳେ ଇଚ୍ଛା କରନ୍ତି, ଯେଉଁଠି ଇଚ୍ଛା କରନ୍ତି ଏବଂ ଯେଉଁରୂପରେ ଇଚ୍ଛା କରନ୍ତି, ସେହିପରି ପ୍ରକଟ ଓ ଅନ୍ତର୍ଦ୍ଧାନ ହୋଇପାରନ୍ତି। କ୍ଷଣକ ଭିତରେ ସେ ଛୋଟରୁ ବଡ଼ ହୋଇଯାଆନ୍ତି; ବଡ଼ରୁ ମଧ୍ୟ ଛୋଟ ହୋଇଯାଆନ୍ତି ଏବଂ ଇଚ୍ଛାନୁସାରେ ରୂପ ପରିବର୍ତ୍ତନ କରିପାରନ୍ତି। ଏହାର କାରଣ ହେଉଛି, ସେ ପ୍ରକୃତିର ନିୟମରେ ବନ୍ଧା ନୁହନ୍ତି; ପ୍ରକୃତି ତାଙ୍କ ଇଚ୍ଛାର ଅନୁଗମନ କରିଥାଏ। ତେଣୁ ଏକାଦଶ ଅଧ୍ୟାୟରେ ଅର୍ଜୁନଙ୍କ ପ୍ରାର୍ଥନା ଅନୁସାରେ ଭଗବାନ୍ ବିଶ୍ୱରୂପ ଧାରଣ କରିନେଲେ; ପୁଣି ତାହା ଉପସଂହାର କରି ଚତୁର୍ଭୁଜରୂପରେ ପ୍ରକଟ ହୋଇଗଲେ, ତାହା ପରେ ମନୁଷ୍ୟରୂପ ହୋଇଗଲେ। ଏପରି ଏକରୂପରେ ପ୍ରକଟ ହେବା ଏବଂ ସେଥିରୁ ଅପ୍ରକଟ ହୋଇ ଅନ୍ୟରୂପ ଧାରଣ କରିବା ଜନ୍ମିବା ବା ମରିବା ନୁହେଁ; ଏହା ଭଗବାନଙ୍କର ଲୀଳାମାତ୍ର।

**ପ୍ରଶ୍ନ –** ଭଗବାନ୍ ଶ୍ରୀକୃଷ୍ଣଙ୍କର ଜନ୍ମ ତ ମାତା ଦେବକୀଙ୍କ ଗର୍ଭରୁ ସାଧାରଣ ମନୁଷ୍ୟମାନଙ୍କ ପରି ହୋଇଥିଲା; ତା'ହେଲେ ଲୋକମାନଙ୍କର ଜନ୍ମ ହେବାରେ ଓ ଭଗବାନଙ୍କ ପ୍ରକଟ ହେବାରେ ପାର୍ଥକ୍ୟ କଣ ?

**ଉତ୍ତର –** ଏହା ଠିକ୍ ନୁହେଁ। ଶ୍ରୀମଦ୍ ଭାଗବତରେ ସେହି ବିଷୟ ଦେଖିଲେ ଏହି ଶଙ୍କା ସ୍ୱତଃ ଦୂର ହୋଇଯିବ। ସେଠାରେ କୁହାଯାଇଛି ଯେ, ସେହି ସମୟରେ

ମାତା ଦେବକୀ ନିଜ ସମ୍ମୁଖରେ ଶଙ୍ଖ, ଚକ୍ର, ଗଦା ଏବଂ ପଦ୍ମ ଧାରଣ କରି ଦିବ୍ୟ ଦେବରୂପରେ ପ୍ରକଟ ହୋଇଥିବା ଚତୁର୍ଭୁଜ ଭଗବାନଙ୍କୁ ଦେଖିଥିଲେ ଏବଂ ତାଙ୍କୁ ସ୍ତୁତି କରିଥିଲେ। ପୁଣି ମାତା ଦେବକୀଙ୍କ ପ୍ରାର୍ଥନାରେ ଭଗବାନ୍ 'ନରବାଳକ'ରୂପ ଧାରଣ କରିଥିଲେ। * ଏଣୁ ତାଙ୍କ ଜନ୍ମ ମାତା ଦେବକୀଙ୍କ ଗର୍ଭରୁ ସାଧାରଣ ମନୁଷ୍ୟଙ୍କ ପରି ହୋଇ ନ ଥିଲା; ସେ ଆପଣା ଛାଏଁ ପ୍ରକଟ ହୋଇଥିଲେ। ଜନ୍ମଧାରଣ ଲୀଳା କରିବାକୁ ଏପରି ଭାବ ଦେଖାଇ ଭଗବାନ୍ ସାଧାରଣ ମନୁଷ୍ୟମାନଙ୍କ ପରି ଦଶମାସପର୍ଯ୍ୟନ୍ତ ମାତା ଦେବକୀଙ୍କ ଗର୍ଭରେ ରହିଥିଲେ ଏବଂ ସମୟାନୁସାରେ ତାଙ୍କର ଜନ୍ମ ହୋଇଥିଲା।

**ସମ୍ବନ୍ଧ –** *ଭଗବାନଙ୍କ ମୁଖରୁ ତାଙ୍କ ଜନ୍ମର ତତ୍ତ୍ୱ ଶୁଣିବା ପରେ ସେ କେଉଁ କେଉଁ ସମୟରେ ଏବଂ କେଉଁ କେଉଁ କାରଣରୁ ଏହିପରି ଅବତାର ଧାରଣ କରନ୍ତି ବୋଲି ମନରେ ପ୍ରଶ୍ନ ଉଠେ। ଉତ୍ତରଛଳରେ ଭଗବାନ୍ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ନିଜର ଅବତାରର ସମୟ, କାରଣ ଓ ଉଦ୍ଦେଶ୍ୟ କହୁଛନ୍ତି—*

## ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ।
## ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍॥ ୭ ॥

**ଅନ୍ୱୟ –** **ଭାରତ** = ହେ ଭାରତ; **ଯଦା, ଯଦା** = ଯେଉଁ ଯେଉଁ ସମୟରେ; **ଧର୍ମସ୍ୟ** = ଧର୍ମର; **ଗ୍ଲାନିଃ** = ଅବକ୍ଷୟ (ଏବଂ); **ଅଧର୍ମସ୍ୟ** = ଅଧର୍ମର; **ଅଭ୍ୟୁତ୍ଥାନମ୍** = ବୃଦ୍ଧି; **ଭବତି** = ହୁଏ; **ତଦା** = ସେତେବେଳେ; **ହି** = ହିଁ; **ଅହମ୍** = ମୁଁ; **ଆତ୍ମାନମ୍** = ନିଜସ୍ୱରୂପକୁ; **ସୃଜାମି** = ସୃଷ୍ଟି କରେ ଅର୍ଥାତ୍ ସାକାରରୂପରେ ଲୋକଙ୍କ ସମ୍ମୁଖରେ ପ୍ରକଟ ହୁଏ।

**ହେ ଭାରତ! ଯେଉଁ ଯେଉଁ ସମୟରେ ଧର୍ମର ଅବକ୍ଷୟ ହୁଏ ଏବଂ ଅଧର୍ମର ବୃଦ୍ଧି ହୁଏ, ସେହି ସେହି ସମୟରେ ମୁଁ ନିଜର ରୂପ ସୃଷ୍ଟି କରିଥାଏ, ଅର୍ଥାତ୍ ସାକାରରୂପରେ ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୁଏ॥ ୭ ॥**

**ପ୍ରଶ୍ନ –** **ଯଦା** ପଦ ଦୁଇଥର ପ୍ରୟୋଗ କରି କେଉଁ ଭାବ ଦର୍ଶାଯାଇଛି ?

**ଉତ୍ତର –** ଅମୁକ ଯୁଗରେ, ଅମୁକ ବର୍ଷରେ, ଅମୁକ ମାସରେ ଏବଂ ଅମୁକ ଦିନରେ ଭଗବାନଙ୍କର ଅବତାର ହେବ ବୋଲି କୌଣସି ନିଶ୍ଚିତ ସମୟ ନ ଥାଏ। ପୁଣି ଗୋଟିଏ ଯୁଗରେ କେତେ ଥର କେଉଁ ରୂପରେ ସେ ପ୍ରକଟ ହେବେ, ତା'ର ମଧ୍ୟ କୌଣସି ଧରାବନ୍ଧା ନିୟମ ନ ଥାଏ। ଏହି କଥା ସ୍ପଷ୍ଟ କରିଦେବା ପାଇଁ ଏଠାରେ **ଯଦା** ପଦ ଦୁଇଥର ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଧର୍ମର କ୍ଷୟ ଓ ଅଧର୍ମର ବୃଦ୍ଧି ହେବା ହେତୁ ଯେତେବେଳେ ଯେଉଁ ସମୟରେ ଭଗବାନ୍ ନିଜକୁ ପ୍ରକଟ କରିବା ଆବଶ୍ୟକ ବୋଲି ମନେ କରନ୍ତି; ସେତେବେଳେ ସେ ପ୍ରକଟ ହୋଇଥାଆନ୍ତି।

**ପ୍ରଶ୍ନ –** ଧର୍ମର କ୍ଷୟ ଓ ପାପର ବୃଦ୍ଧି କିପରି ହୋଇଥାଏ, ଯାହା ହେବା ଫଳରେ ଭଗବାନଙ୍କୁ ଅବତାର ଗ୍ରହଣ କରିବାକୁ ପଡ଼େ ?

**ଉତ୍ତର –** କୌଣସିପ୍ରକାର ଧର୍ମହାନି ଓ ପାପବୃଦ୍ଧି ଘଟିଲେ ଭଗବାନ୍ ଅବତାର ଗ୍ରହଣ କରନ୍ତି; ଧର୍ମହାନି ଓ ପାପବୃଦ୍ଧିର ସ୍ୱରୂପ ବସ୍ତୁତଃ ଭଗବାନ୍ ହିଁ ଜାଣନ୍ତି; ମନୁଷ୍ୟ ତାହା ନିର୍ଣ୍ଣୟ କରିପାରିବ ନାହିଁ।

---

* ଉପସଂହର ବିଶ୍ୱାତ୍ମନଦୋ ରୂପମଲୌକିକମ୍। ଶଙ୍ଖଚକ୍ରଗଦାପଦ୍ମଶ୍ରିୟା ଜୁଷ୍ଟଂ ଚତୁର୍ଭୁଜମ୍॥
ଇତ୍ୟୁକ୍ତ୍ୱାଽସୀଦ୍ଧରିସ୍ତୂଷ୍ଣୀଂ ଭଗବାନାତ୍ମମାୟୟା। ପିତ୍ରୋଃ ସମ୍ପଶ୍ୟତୋଃ ସଦ୍ୟୋ ବଭୂବ ପ୍ରାକୃତଃ ଶିଶୁଃ॥
(ଶ୍ରୀମଦ୍ ଭାଗବତ ୧୦/୩/୩୦ ଓ ୪୬ ଶ୍ଳୋକ)

ଅର୍ଥାତ୍ 'ହେ ବିଶ୍ୱାତ୍ମନ୍! ଶଙ୍ଖ, ଚକ୍ର, ଗଦା ଓ ପଦ୍ମର ଶୋଭାରେ ଯୁକ୍ତ ଆପଣଙ୍କର ଏହି ଅଲୌକିକ ଚତୁର୍ଭୁଜ ଦିବ୍ୟରୂପକୁ ବର୍ତ୍ତମାନ ଲୁଚାଇଦିଅନ୍ତୁ।'

'ଏପରି କହି ଭଗବାନ୍ ଶ୍ରୀହରି ଚୁପ୍ ହୋଇଗଲେ ଏବଂ ମାତାପିତା ଦେଖୁ ଦେଖୁ ନିଜ ମାୟାରେ ସେହିକ୍ଷଣି ସାଧାରଣ ଶିଶୁରୂପ ହୋଇଗଲେ।

କିନ୍ତୁ ଅନୁମାନଦ୍ୱାରା ସ୍ୱୀକାର କରାଯାଇପାରେ ଯେ, ଋଷିକଳ୍ପ, ଧାର୍ମିକ, ଈଶ୍ୱରପ୍ରେମୀ ଓ ସଦାଚାରୀ ପୁରୁଷମାନଙ୍କ ଉପରେ ତଥା ନିରପରାଧ ଓ ଦୁର୍ବଳ ପ୍ରାଣୀମାନଙ୍କ ଉପରେ ବଳବାନ୍ ଓ ଦୁରାଚାରୀ ମନୁଷ୍ୟମାନଙ୍କର ଅତ୍ୟାଚାର ବଢ଼ିଯିବା ତଥା ସେହି କାରଣରୁ ଲୋକମାନଙ୍କ ମଧ୍ୟରେ ସଦ୍‌ଗୁଣ ଓ ସଦାଚାର ଅତ୍ୟନ୍ତ ହ୍ରାସ ପାଇ ଦୁର୍ଗୁଣ ଓ ଦୁରାଚାର ଅଧିକ ବ୍ୟାପିଯିବା ହିଁ ଧର୍ମଗ୍ଲାନି ତଥା ଅଧର୍ମବୃଦ୍ଧିର ସ୍ୱରୂପ। ସତ୍ୟଯୁଗରେ ହିରଣ୍ୟକଶିପୁର ଶାସନରେ ଯେତେବେଳେ ଦୁର୍ଗୁଣ ଓ ଦୁରାଚାର ବୃଦ୍ଧି ପାଇଲା, ନିରପରାଧ ଲୋକମାନଙ୍କ ଉପରେ ଅତ୍ୟାଚାର ହେବାକୁ ଲାଗିଲା, ଲୋକମାନଙ୍କର ଧ୍ୟାନ, ଜପ, ତପ, ପୂଜା, ପାଠ, ଯଜ୍ଞ, ଦାନାଦି ଶୁଭକର୍ମ ଏବଂ ଉପାସନା ବଳପୂର୍ବକ ବନ୍ଦ କରିଦିଆଗଲା, ଦେବତାମାନଙ୍କୁ ମାରିପିଟି ନିଜ ନିଜ ସ୍ଥାନରୁ ତଡ଼ିଦିଆଗଲା, ପ୍ରହ୍ଲାଦଙ୍କ ପରି ଭକ୍ତଙ୍କୁ ବିନା-ଅପରାଧରେ ନାନାପ୍ରକାର କଷ୍ଟ ଦିଆଗଲା, ସେତେବେଳେ ଭଗବାନ୍ ନୃସିଂହରୂପ ଧାରଣ କରିଥିଲେ ଏବଂ ଭକ୍ତ ପ୍ରହ୍ଲାଦଙ୍କୁ ଉଦ୍ଧାର କରି ଧର୍ମ ସ୍ଥାପନା କରିଥିଲେ। ଅନ୍ୟ ଅବତାରମାନଙ୍କରେ ମଧ୍ୟ ଏହିପରି ଘଟଣା ଦେଖାଯାଇଥାଏ।

## ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍।
## ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ॥ ୮ ॥

**ଅନ୍ୱୟ—** **ସାଧୂନାମ୍** = ସାଧୁପୁରୁଷମାନଙ୍କ; **ପରିତ୍ରାଣାୟ** = ଉଦ୍ଧାର କରିବାପାଇଁ; **ଦୁଷ୍କୃତାମ୍** = ପାପୀମାନଙ୍କୁ; **ବିନାଶାୟ** = ବିନାଶନିମିତ୍ତ; **ଚ** = ଏବଂ; **ଧର୍ମସଂସ୍ଥାପନାର୍ଥାୟ** = ଧର୍ମର ଭଲଭାବରେ ସ୍ଥାପନାପାଇଁ (ମୁଁ); **ଯୁଗେ, ଯୁଗେ** = ଯୁଗେ ଯୁଗେ; **ସମ୍ଭବାମି** = ପ୍ରକଟ ହୁଏ।

**ସାଧୁ ପୁରୁଷମାନଙ୍କୁ ଉଦ୍ଧାର କରିବାପାଇଁ, ପାପୀମାନଙ୍କୁ ବିନାଶ କରିବାପାଇଁ ଏବଂ ଧର୍ମ ସଂସ୍ଥାପନା କରିବାପାଇଁ ମୁଁ ଯୁଗେ ଯୁଗେ ପ୍ରକଟ ହୋଇଥାଏ॥ ୮ ॥**

**ପ୍ରଶ୍ନ— ସାଧୁ** ଶବ୍ଦ ଏଠାରେ କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ ସେମାନଙ୍କର ପରିତ୍ରାଣ ବା ଉଦ୍ଧାର କଣ ?

**ଉତ୍ତର—** ଯେଉଁ ପୁରୁଷମାନେ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଆଦି ସମସ୍ତ ସାମାନ୍ୟଧର୍ମ ତଥା ଯଜ୍ଞ, ଦାନ, ତପ ଏବଂ ଅଧ୍ୟାପନ, ପ୍ରଜାପାଳନ ଆଦି ନିଜ ନିଜର ବର୍ଣ୍ଣାଶ୍ରମ ଧର୍ମ ଭଲଭାବରେ ପାଳନ କରନ୍ତି, ଅନ୍ୟର ମଙ୍ଗଳ କରିବା ଯେଉଁମାନଙ୍କର ସ୍ୱଭାବ, ଯେଉଁମାନେ ସଦ୍‌ଗୁଣମାନଙ୍କର ଭଣ୍ଡାର ଓ ସଦାଚାରୀ, ତଥା ଯେଉଁମାନେ ଶ୍ରଦ୍ଧା ଓ ପ୍ରେମପୂର୍ବକ ଭଗବାନଙ୍କର ନାମ, ରୂପ, ଗୁଣ, ପ୍ରଭାବ, ଲୀଳାଦି ଶ୍ରବଣ, କୀର୍ତ୍ତନ, ସ୍ମରଣ ଆଦି କରନ୍ତି, ଏଠାରେ **ସାଧୁ** ଶବ୍ଦଟି ହେଉଛି ସେହିମାନଙ୍କର ବାଚକ। ଏପରି ପୁରୁଷମାନଙ୍କ ଉପରେ ଦୁଷ୍ଟଦୁରାଚାରମାନଙ୍କ ଦ୍ୱାରା ଯେଉଁ ଭୀଷଣ ଅତ୍ୟାଚାର ହୁଏ, ସେହି ଅତ୍ୟାଚାରରୁ ସେମାନଙ୍କୁ ସର୍ବଥା ମୁକ୍ତ କରିଦେବା ଏବଂ ଉତ୍ତମ ଗତି ପ୍ରଦାନ କରିବା, ନିଜର ଦର୍ଶନ ଆଦିଦ୍ୱାରା ସେମାନଙ୍କର ସମସ୍ତ ସଞ୍ଚିତ ପାପ ସମୂଳେ ବିନାଶ କରି ପରମ କଲ୍ୟାଣ ସାଧନ କରିବା, ନିଜ ଦିବ୍ୟଲୀଳା ବିସ୍ତାର କରି ତାହାର ଶ୍ରବଣ, ମନନ, ଚିନ୍ତନ ଏବଂ କୀର୍ତ୍ତନ ଆଦିଦ୍ୱାରା ଅତି ସହଜରେ ଲୋକମାନଙ୍କ ଉଦ୍ଧାରର ମାର୍ଗ ଖୋଲିଦେବା ଆଦି ହେଉଛି ସାଧୁପୁରୁଷମାନଙ୍କୁ ପରିତ୍ରାଣ ଅର୍ଥାତ୍ ଉଦ୍ଧାର କରିବା।

**ପ୍ରଶ୍ନ—** ଏଠାରେ **ଦୁଷ୍କୃତାମ୍** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ ସେମାନଙ୍କୁ ବିନାଶ କରିବା ଅର୍ଥ କଣ ?

**ଉତ୍ତର—** ଯେଉଁ ମନୁଷ୍ୟମାନେ ନିରପରାଧ, ସଦାଚାରୀ ଓ ଭଗବତ୍ ଭକ୍ତମାନଙ୍କ ଉପରେ ଅତ୍ୟାଚାର କରନ୍ତି, ଯେଉଁମାନେ ମିଥ୍ୟା, କପଟ, ଚୋରି, ବ୍ୟଭିଚାର ଆଦି ଦୁର୍ଗୁଣ ଓ ଦୁରାଚାରର ଭଣ୍ଡାର, ଯେଉଁମାନେ ନାନାପ୍ରକାର ଅନ୍ୟାୟ କରି ଧନସଂଗ୍ରହ କରନ୍ତି ତଥା ନାସ୍ତିକ ଅଟନ୍ତି, ଭଗବାନ୍ ଓ ବେଦ-ଶାସ୍ତ୍ରର ବିରୋଧ କରିବା ଯେଉଁମାନଙ୍କର ସ୍ୱଭାବଗତ ହୋଇଗଲାଣି, ଏଠାରେ **ଦୁଷ୍କୃତାମ୍** ପଦଟି ହେଉଛି ସେପରି ଆସୁର-ସ୍ୱଭାବଯୁକ୍ତ ଦୁଷ୍ଟପୁରୁଷମାନଙ୍କର ବାଚକ। ଏପରି ଦୁରାଚାରୀ ମନୁଷ୍ୟମାନଙ୍କର ମନ୍ଦ ଅଭ୍ୟାସ ଛଡ଼ାଇବାପାଇଁ ବା ସେମାନଙ୍କୁ ପାପରୁ ମୁକ୍ତ କରିବାପାଇଁ ସେମାନଙ୍କୁ

କୌଣସିପ୍ରକାର ଦଣ୍ଡ ଦେବା, ଯୁଦ୍ଧଦ୍ୱାରା ବା ଅନ୍ୟ କୌଣସିପ୍ରକାରେ ସେମାନଙ୍କୁ ଏହି ଶରୀରରୁ ସମ୍ବନ୍ଧ ବିଚ୍ଛେଦ କରିବା ବା କରାଇଦେବା ଆଦି ସମସ୍ତ ବିଷୟ ସେମାନଙ୍କୁ ବିନାଶ କରିବାର ଅନ୍ତର୍ଗତ।

**ପ୍ରଶ୍ନ –** ଭଗବାନ୍ ତ ପରମଦୟାଳୁ; ସେ ସେହି ଦୁଷ୍ଟମାନଙ୍କୁ ବୁଝାଇଶୁଝାଇ ସେମାନଙ୍କ ସ୍ୱଭାବକୁ ସୁଧାରି ନ ଦେଇଣ୍ଡ, ସେମାନଙ୍କୁ ଏପରି ଦଣ୍ଡ କାହିଁକି ଦିଅନ୍ତି ?

**ଉତ୍ତର –** ସେମାନଙ୍କୁ ଦଣ୍ଡ ଦେବା ଏବଂ ମାରିଦେବା (ଆସୁରଶରୀରରୁ ସେମାନଙ୍କ ସମ୍ବନ୍ଧ ବିଚ୍ଛେଦ କରାଇବା) ମଧ୍ୟ ଭଗବାନଙ୍କର ପରମଦୟା; କାରଣ ସେହି ଦଣ୍ଡ ଓ ମୃତ୍ୟୁଦ୍ୱାରା ମଧ୍ୟ ଭଗବାନ୍ ସେମାନଙ୍କୁ ପାପମୁକ୍ତ କରିଦିଅନ୍ତି। ଭଗବାନଙ୍କ ଦଣ୍ଡବିଧାନ ସମ୍ବନ୍ଧରେ କଦାପି ଭାବିବା ଉଚିତ ନୁହେଁ ଯେ, ଏସବୁଫଳରେ ତାଙ୍କ ଦୟାଳୁତାରେ ସାମାନ୍ୟମାତ୍ର ବି ତ୍ରୁଟି ରହିଯାଏ। ନିଜ ପିଲାଙ୍କର ହାତ, ପାଦ ଆଦି କୌଣସି ଅଙ୍ଗରେ ଘାଆ ହେଲେ ମାତା-ପିତା ଯେପରି ପ୍ରଥମେ ସେଥିରେ ଔଷଧ ପ୍ରୟୋଗ କରନ୍ତି, କିନ୍ତୁ ଯେତେବେଳେ ଜଣାପଡ଼ିଯାଏ ଯେ, ଔଷଧଦ୍ୱାରା ତାହା ଆଉ ଭଲ ହୋଇପାରିବ ନାହିଁ ଏବଂ ବିଳମ୍ବ କଲେ ତାହାର ବିଷ ଅନ୍ୟ ଅଙ୍ଗକୁ ବ୍ୟାପିଯିବ, ସେତେବେଳେ ସେମାନେ ଯଥାଶୀଘ୍ର ସୁସ୍ଥ ଅଙ୍ଗକୁ ରକ୍ଷା କରିବାପାଇଁ ଯେପରି ଦୂଷିତ ହାତ-ଗୋଡ଼ ଆଦି ଅଙ୍ଗକୁ ଅପରେସନ୍ କରାଇଦିଅନ୍ତି ଏବଂ ଆବଶ୍ୟକ ହେଲେ ତାହାକୁ କଟାଇ ମଧ୍ୟ ଦିଅନ୍ତି, ଭଗବାନ୍ ମଧ୍ୟ ଦୁଷ୍ଟମାନଙ୍କର ଦୁଷ୍ଟତା ଦୂର କରିବାକୁ ପ୍ରଥମେ ସେହିପରି ସେମାନଙ୍କୁ ନୀତି ଅନୁସାରେ ଦୁର୍ଯ୍ୟୋଧନଙ୍କୁ ବୁଝାଇଲାପରି ବୁଝାଇବାକୁ ଚେଷ୍ଟା କରନ୍ତି; ଦଣ୍ଡଭୟ ମଧ୍ୟ ଦେଖାନ୍ତି; କିନ୍ତୁ ଯେତେବେଳେ ସେଥିରେ କାମ ଚଳେ ନାହିଁ, ସେମାନଙ୍କର ଦୁଷ୍ଟାମି ବଢ଼ିଯାଏ, ସେତେବେଳେ ସେମାନଙ୍କୁ ଦଣ୍ଡ ଦେଇ ବା ମରାଇଦେଇ ପାପର ଫଳ ଭୋଗାଇଦିଅନ୍ତି ଅଥବା ଯାହାଙ୍କର ପୂର୍ବସଂଚିତ କର୍ମ ଉତ୍ତମ ହୋଇଥାଏ, କିନ୍ତୁ କୌଣସି ବିଶେଷ କାରଣରୁ ବା କୁସଙ୍ଗଦୋଷରୁ ଯେଉଁମାନେ ଇହଜନ୍ମରେ ଦୁରାଚାରୀ ହୋଇଯାଇଥାନ୍ତି, ସେମାନଙ୍କୁ ଭଗବାନ୍ ନିଜ ହାତରେ ମାରି ମୁକ୍ତ କରିଦିଅନ୍ତି। ଏହିସବୁ କ୍ରିୟାମାନଙ୍କରେ ଭଗବାନଙ୍କର ଦୟା ପୂର୍ଣ୍ଣ ହୋଇ ରହିଥାଏ।

**ପ୍ରଶ୍ନ –** ଧର୍ମସ୍ଥାପନା କହିଲେ କଣ ବୁଝାଏ ?

**ଉତ୍ତର –** ସ୍ୱୟଂ ଶାସ୍ତ୍ରାନୁକୂଳ ଆଚରଣ କରି, ବିଭିନ୍ନପ୍ରକାରେ ଧର୍ମର ମହତ୍ତ୍ୱ ଦେଖାଇ ଏବଂ ଲୋକମାନଙ୍କ ହୃଦୟରେ ପ୍ରବେଶ କରିବାରେ ସମର୍ଥ ଅପ୍ରତିମ ପ୍ରଭାବଶାଳୀ ବାଣୀଦ୍ୱାରା ଉପଦେଶ-ଆଦେଶ ଦେଇ, ସମସ୍ତଙ୍କ ଅନ୍ତଃକରଣରେ ବେଦ, ଶାସ୍ତ୍ର, ପରଲୋକ, ମହାପୁରୁଷ ଓ ଭଗବାନଙ୍କ ପ୍ରତି ଶ୍ରଦ୍ଧା ଉତ୍ପନ୍ନ କରାଇ ଏବଂ ସଦ୍‌ଗୁଣ ଓ ସଦାଚାର ପ୍ରତି ବିଶ୍ୱାସ ତଥା ପ୍ରେମ ଜନ୍ମାଇ ଏହି ସମସ୍ତ ବିଷୟ ଦୃଢ଼ତାପୂର୍ବକ ଲୋକମାନଙ୍କର ହୃଦ୍‌ବୋଧ କରାଇଦେବା ଇତ୍ୟାଦି ସମସ୍ତ କର୍ମ ଧର୍ମସ୍ଥାପନର ଅନ୍ତର୍ଗତ।

**ପ୍ରଶ୍ନ –** ସାଧୁମାନଙ୍କର ପରିତ୍ରାଣ, ଦୁଷ୍ଟମାନଙ୍କର ସଂହାର ଓ ଧର୍ମର ସଂସ୍ଥାପନା – ଏହି ତିନୋଟିଯାକ ଏକସଙ୍ଗରେ ଆବଶ୍ୟକ ହେବା ପରେ ହିଁ ଭଗବାନଙ୍କର ଅବତାର ହୁଏ, ନା କୌଣସି ଗୋଟିଏ ଦୁଇଟି କାରଣରୁ ମଧ୍ୟ ଭଗବାନ୍ ଅବତାର ଗ୍ରହଣ କରନ୍ତି ?

**ଉତ୍ତର –** ତିନୋଟିଯାକ କାରଣ ଏକସଙ୍ଗରେ ଉପସ୍ଥିତ ହେଲେ ହିଁ ଭଗବାନ୍ ଅବତାର ଗ୍ରହଣ କରନ୍ତି ବୋଲି କୌଣସି ନିୟମ ନାହିଁ; କୌଣସି ଗୋଟିଏ ବା ଦୁଇଟି ଉଦ୍ଦେଶ୍ୟ ପୂର୍ଣ୍ଣ କରିବାକୁ ମଧ୍ୟ ଭଗବାନ୍ ଅବତାର ଗ୍ରହଣ କରିପାରନ୍ତି।

**ପ୍ରଶ୍ନ –** ଭଗବାନ୍ ତ ସର୍ବଶକ୍ତିମାନ୍, ସେ ଅବତାର ନ ନେଇ ମଧ୍ୟ ସବୁକାମ କରିଦେଇପାରିବେ; ଅବତାରର ଆବଶ୍ୟକତା କଣ ?

**ଉତ୍ତର –** ଏକଥା ନିଶ୍ଚିତଭାବରେ ଠିକ୍; ତେଣୁ ଭଗବାନ୍ ଅବତାର ନ ନେଇ ମଧ୍ୟ ସବୁ କିଛି ଅନାୟାସରେ କରିଦେଇ ପାରନ୍ତି ଏବଂ କରନ୍ତି ମଧ୍ୟ; କିନ୍ତୁ ଲୋକମାନଙ୍କ ଉପରେ ବିଶେଷ ଦୟା କରି ନିଜର ଦର୍ଶନ, ସ୍ପର୍ଶନ ଓ ଭାଷଣାଦିଦ୍ୱାରା ସହଜରେ ଲୋକମାନଙ୍କୁ ଉଦ୍ଧାରର ସୁଅବସର ଦେବା ନିମନ୍ତେ ଏବଂ ନିଜର ପ୍ରେମୀ ଭକ୍ତମାନଙ୍କୁ ନିଜର ଦିବ୍ୟ ଲୀଳାଦି ଆସ୍ୱାଦନ କରାଇବାନିମନ୍ତେ ଭଗବାନ୍ ସାକାରରୂପରେ ପ୍ରକଟ ହୁଅନ୍ତି। ସେହି ଅବତାରରେ ଧରିଥିବା ରୂପକୁ ସ୍ମରଣ କରି ତଥା ତାଙ୍କର ଗୁଣ, ପ୍ରଭାବ, ନାମ, ମାହାତ୍ମ୍ୟ ଏବଂ ଦିବ୍ୟ କର୍ମମାନଙ୍କୁ ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରି ଲୋକେ ସହଜରେ ସଂସାରସାଗର ପାର ହୋଇଯାଇପାରନ୍ତି। ଏପରି କାର୍ଯ୍ୟ ଅବତାରଗ୍ରହଣ ବ୍ୟତୀତ ହୋଇପାରିବ ନାହିଁ।

**ପ୍ରଶ୍ନ –** 'ମୁଁ ଯୁଗେ ଯୁଗେ ପ୍ରକଟ ହୁଏ' – ଏହାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି ଯେ, ପ୍ରତ୍ୟେକ ଯୁଗରେ ଯେତେବେଳେ ଯୁଗଧର୍ମ ଅପେକ୍ଷା ଧର୍ମର କ୍ଷୟ ଅଧିକ ହୋଇଯାଏ, ସେତେବେଳେ ଆବଶ୍ୟକତା ଅନୁସାରେ ସେ ବାରମ୍ବାର ପ୍ରକଟ ହୋଇଥାନ୍ତି; ଗୋଟିଏ ଯୁଗରେ ଭଗବାନ୍ ଥରେ ଅବତାର ଗ୍ରହଣ କରିବେ ବୋଲି ସେପରି କୌଣସି ନିୟମ ନାହିଁ।

***ସମ୍ବନ୍ଧ –** ଏହିପରି ନିଜ ଦିବ୍ୟଜନ୍ମମାନଙ୍କର ଅବସର, କାରଣ ଓ ଉଦ୍ଦେଶ୍ୟ ବର୍ଣ୍ଣନା କରିସାରି ଭଗବାନ୍ ବର୍ତ୍ତମାନ ସେହି ଜନ୍ମମାନଙ୍କର ଏବଂ ସେହି ଜନ୍ମମାନଙ୍କରେ କରାଯାଉଥିବା କର୍ମମାନଙ୍କର ଦିବ୍ୟତାକୁ ତତ୍ତ୍ୱତଃ ଜାଣିବାର ଫଳ ବର୍ଣ୍ଣନା କରୁଛନ୍ତି–*

## ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ।
## ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ॥ ୯ ॥

**ଅନ୍ୱୟ –** **ଅର୍ଜୁନ** = ହେ ଅର୍ଜୁନ ! **ମେ** = ମୋର; **ଜନ୍ମ** = ଜନ୍ମ; **ଚ** = ଏବଂ; **କର୍ମ** = କର୍ମ; **ଦିବ୍ୟମ୍** = ଦିବ୍ୟ ଅର୍ଥାତ୍ ନିର୍ମଳ ଓ ଅଲୌକିକ; **ଏବମ୍** = ଏହି ପ୍ରକାରେ; **ଯଃ** = ଯେଉଁ ମନୁଷ୍ୟ; **ତତ୍ତ୍ୱତଃ** = ତତ୍ତ୍ୱତଃ; **ବେତ୍ତି** = ଜାଣେ; **ସଃ** = ସେ; **ଦେହମ୍** = ଶରୀରକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ପୁନଃ** = ପୁନର୍ବାର; **ଜନ୍ମ** = ଜନ୍ମକୁ; **ନ, ଏତି** = ପ୍ରାପ୍ତ ହୁଏ ନାହିଁ (ସେ); **ମାମ୍** = ମୋତେ (ହିଁ); **ଏତି** = ପ୍ରାପ୍ତ ହୁଏ।

**ହେ ଅର୍ଜୁନ ! ମୋର ଜନ୍ମ ଏବଂ କର୍ମ ଦିବ୍ୟ ଅର୍ଥାତ୍ ନିର୍ମଳ ଏବଂ ଅଲୌକିକ ବୋଲି ଯେଉଁ ମନୁଷ୍ୟ ତତ୍ତ୍ୱତଃ ଜାଣିପାରେ, ସେ ଶରୀର ତ୍ୟାଗ କରି ପୁନର୍ଜନ୍ମ ପାଏ ନାହିଁ; ସେ ମୋତେ ହିଁ ପାଇଯାଏ॥ ୯ ॥**

**ପ୍ରଶ୍ନ –** 'ଭଗବାନଙ୍କର ଜନ୍ମ ଦିବ୍ୟ,' ଏହା ତତ୍ତ୍ୱତଃ ବୁଝିବା ଅର୍ଥ କଣ ?

**ଉତ୍ତର –** ସର୍ବଶକ୍ତିମାନ୍ ପୂର୍ଣ୍ଣବ୍ରହ୍ମ ପରମେଶ୍ୱର ବାସ୍ତବରେ ସର୍ବଥା ଜନ୍ମ ଓ ମୃତ୍ୟୁର ଅତୀତ। ତାଙ୍କ ଜନ୍ମ ଜୀବମାନଙ୍କର ଜନ୍ମପରି ହୁଏ ନାହିଁ; ସେ ନିଜର ଭକ୍ତମାନଙ୍କ ଉପରେ ଅନୁଗ୍ରହ କରି ନିଜର ଦିବ୍ୟଲୀଳାଦ୍ୱାରା ସେମାନଙ୍କ ମନକୁ ନିଜ ଆଡ଼କୁ ଆକୃଷ୍ଟ କରିବାକୁ ଦର୍ଶନ, ସ୍ପର୍ଶନ ଓ ଭାଷଣାଦିଦ୍ୱାରା ସେମାନଙ୍କୁ ସୁଖ ପ୍ରଦାନ କରିବାକୁ, ସଂସାରରେ ନିଜର ଦିବ୍ୟକୀର୍ତ୍ତି ବିସ୍ତାର କରି ତାହା ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରାଇବା ମାଧ୍ୟମରେ ଲୋକମାନଙ୍କର ପାପରାଶି ନାଶ କରିବାକୁ ତଥା ଜଗତରେ ପାପାଚାରୀମାନଙ୍କୁ ବିନାଶ କରି ଧର୍ମ ସ୍ଥାପନା କରିବାକୁ ଜନ୍ମଧାରଣରୂପକ ଲୀଳାମାତ୍ର କରନ୍ତି। ତାଙ୍କର ସେହି ଜନ୍ମ ନିର୍ଦ୍ଦୋଷ ଓ ଅଲୌକିକ। ଜଗତର କଲ୍ୟାଣପାଇଁ ହିଁ ଭଗବାନ୍ ଏହିପରି ମନୁଷ୍ୟାଦିରୂପରେ ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୁଅନ୍ତି; ତାଙ୍କର ସେହି ବିଗ୍ରହ ପ୍ରାକୃତ ଉପାଦାନରେ ଗଠିତ ହୋଇ ନ ଥାଏ; ତାହା ଦିବ୍ୟ, ଚିନ୍ମୟ, ପ୍ରକାଶମାନ, ଶୁଦ୍ଧ ଓ ଅଲୌକିକ ହୋଇଥାଏ; ତାଙ୍କର ଜନ୍ମ ଗୁଣ ଏବଂ କର୍ମସଂସ୍କାରରୁ ହୁଏ ନାହିଁ। ସେ ମାୟାବଶ ହୋଇ ଜନ୍ମ ଧାରଣ କରନ୍ତି ନାହିଁ; ସେ ନିଜେ ପ୍ରକୃତିର ଅଧିଷ୍ଠାତା ହୋଇ ଯୋଗଶକ୍ତିଦ୍ୱାରା ମନୁଷ୍ୟାଦିରୂପରେ କେବଳ ଲୋକମାନଙ୍କ ଉପରେ ଦୟା କରି ହିଁ ପ୍ରକଟ ହୁଅନ୍ତି। ଏହା ଭଲଭାବରେ ବୁଝିଯିବା ଅର୍ଥାତ୍ ଏଥିରେ ଟିକିଏ ହେଲେ ଅସମ୍ଭାବନା ଓ ବିପରୀତ ଭାବନା ନ ରଖି ପୂର୍ଣ୍ଣବିଶ୍ୱାସ କରିବା ଓ ସାକାରରୂପରେ ପ୍ରକଟ ହୋଇଥିବା ଭଗବାନଙ୍କୁ ସାଧାରଣ ମନୁଷ୍ୟ ବୋଲି ନ ଭାବି ସର୍ବଶକ୍ତିମାନ୍, ସର୍ବେଶ୍ୱର, ସର୍ବାନ୍ତର୍ଯାମୀ ସାକ୍ଷାତ୍ ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମା ବୋଲି ବୁଝିବା ହିଁ ଭଗବାନଙ୍କର ଜନ୍ମ ତତ୍ତ୍ୱତଃ ଦିବ୍ୟ ବୋଲି ମାନିବା। ଏହି ଅଧ୍ୟାୟର ଷଷ୍ଠ ଶ୍ଲୋକରେ ଏହି କଥା ବୁଝାଇଦିଆଯାଇଛି। ସପ୍ତମ ଅଧ୍ୟାୟର ଚବିଶ ଓ ପଚିଶ ଶ୍ଲୋକରେ ଏବଂ ନବମ ଅଧ୍ୟାୟର ଏଗାର ତଥା ବାର ଶ୍ଲୋକରେ ଏହି ତତ୍ତ୍ୱ ନ ବୁଝି ଭଗବାନଙ୍କୁ ସାଧାରଣ ମନୁଷ୍ୟ ବୋଲି ଭାବୁଥିବା ଲୋକଙ୍କର ନିନ୍ଦା କରାଯାଇଛି ଏବଂ ଦଶମ ଅଧ୍ୟାୟର ତୃତୀୟ ଶ୍ଲୋକରେ ଏହି ତତ୍ତ୍ୱ ବୁଝିପାରୁଥିବା ଲୋକଙ୍କର ପ୍ରଶଂସା କରାଯାଇଛି।

ଯେଉଁ ପୁରୁଷମାନେ ଭଗବାନଙ୍କ ଜନ୍ମର ଦିବ୍ୟତାକୁ ଏହିପରି ତତ୍ତ୍ୱତଃ ବୁଝିପାରନ୍ତି, ସେମାନଙ୍କୁ ଭଗବାନଙ୍କର ଏକକ୍ଷଣର ବିୟୋଗ ମଧ୍ୟ ଅସହ୍ୟ ହୋଇଯାଏ।

ଭଗବାନଙ୍କ ଠାରେ ପରମ ଶ୍ରଦ୍ଧା ଓ ଅନନ୍ୟ ପ୍ରେମ ଥିବାରୁ ସେମାନଙ୍କ ଦ୍ୱାରା ଭଗବାନଙ୍କର ଅନନ୍ୟ ଚିନ୍ତନ ହେଉଥାଏ ।

**ପ୍ରଶ୍ନ –** 'ଭଗବାନଙ୍କର କର୍ମ ଦିବ୍ୟ', – ଏହା ତତ୍ତ୍ୱତଃ ବୁଝିବାର ଅର୍ଥ କଣ ?

**ଉତ୍ତର –** ଭଗବାନ୍ ସୃଷ୍ଟିରଚନା ଏବଂ ଅବତାର-ଲୀଳାଦି ଯେତେ ଯେତେ କର୍ମ କରନ୍ତି, ସେଥିରେ ତାଙ୍କର ଟିକିଏ ହେଲେ ସ୍ୱାର୍ଥସମ୍ବନ୍ଧ ନ ଥାଏ; କେବଳ ଲୋକମାନଙ୍କୁ ଅନୁଗ୍ରହ କରିବାକୁ ହିଁ ସେ ମନୁଷ୍ୟାଦି ଅବତାରମାନଙ୍କରେ ନାନାପ୍ରକାର କର୍ମ କରିଥାନ୍ତି (୩/୨୨,୨୩) । ଭଗବାନ୍ ନିଜ ପ୍ରକୃତିଦ୍ୱାରା ସମସ୍ତ କର୍ମ କରି ମଧ୍ୟ ସେହି କର୍ମମାନଙ୍କରେ କର୍ତ୍ତାଭାବ ନ ରଖୁଥିବାରୁ ବାସ୍ତବରେ କିଛି କରନ୍ତି ନାହିଁ ଏବଂ ବନ୍ଧନରେ ମଧ୍ୟ ପଡ଼ନ୍ତି ନାହିଁ। ସେହି କର୍ମମାନଙ୍କର ଫଳରେ ଭଗବାନଙ୍କର ଟିକିଏ ହେଲେ ସ୍ପୃହା ନ ଥାଏ (୪/୧୩,୧୪) । ଭଗବାନଙ୍କ ଦ୍ୱାରା ଯାହା କିଛି ଚେଷ୍ଟା ହୁଏ, ତାହା କେବଳ ଲୋକମଙ୍ଗଳପାଇଁ ହୁଏ (୪/୮); ତାଙ୍କର ପ୍ରତ୍ୟେକ କର୍ମରେ ଲୋକମାନଙ୍କର କଲ୍ୟାଣ ହିଁ ପୂର୍ଣ୍ଣ ହୋଇଥାଏ । ସେ ଅନନ୍ତକୋଟି ବ୍ରହ୍ମାଣ୍ଡର ସ୍ୱାମୀ ହୋଇଥିଲେ ମଧ୍ୟ ସର୍ବସାଧାରଣଙ୍କ ସହିତ ଅଭିମାନରହିତ ଦୟା ଏବଂ ପ୍ରେମପୂର୍ଣ୍ଣ ସମତା ରଖି ବ୍ୟବହାର କରନ୍ତି (୯/୨୯); ମନୁଷ୍ୟମାନେ ତାଙ୍କୁ ଯେଉଁପରି ଭଜନ କରନ୍ତି, ଭଗବାନ୍ ମଧ୍ୟ ସେମାନଙ୍କୁ ସେହିପରି ଭଜନ କରନ୍ତି (୪/୧୧); ନିଜର ଅନନ୍ୟ ଭକ୍ତମାନଙ୍କର ଯୋଗକ୍ଷେମ ଭଗବାନ୍ ସ୍ୱୟଂ ବହନ କରନ୍ତି (୯/୨୨); ସେ ସେମାନଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରନ୍ତି (୧୦/୧୦,୧୧) ଏବଂ ଭକ୍ତିରୂପୀ ନୌକାରେ ବସାଇ ଭକ୍ତମାନଙ୍କୁ ସଂସାରସାଗରରୁ ଶୀଘ୍ର ଉଦ୍ଧାର କରିବାକୁ ସ୍ୱୟଂ ସେମାନଙ୍କର ନାବିକ ହୋଇଯାଆନ୍ତି (୧୨/୭) । ଏପରିଭାବରେ ଭଗବାନଙ୍କର ସମସ୍ତ କର୍ମ ଆସକ୍ତି, ଅହଙ୍କାର ଓ କାମନାଦି ଦୋଷରୁ ସର୍ବଥା ରହିତ, ନିର୍ମଳ ଓ ଶୁଦ୍ଧ ହୋଇଥାଏ । କେବଳ ଲୋକମାନଙ୍କର କଲ୍ୟାଣ କରିବାକୁ ଏବଂ ଜଗତରେ ନୀତି, ଧର୍ମ, ଶୁଦ୍ଧପ୍ରେମ ଓ ଭକ୍ତି ଆଦି ପ୍ରଚାର କରିବାକୁ ଭଗବାନ୍ ସମସ୍ତ କର୍ମ କରନ୍ତି । ଏହି ସମସ୍ତ କର୍ମ କରି ମଧ୍ୟ ଭଗବାନଙ୍କର ବସ୍ତୁତଃ ସେହି କର୍ମମାନଙ୍କରେ କୌଣସିପ୍ରକାର ସମ୍ବନ୍ଧ ନ ଥାଏ; ସେ ସର୍ବଥା କର୍ମରୁ ଅତୀତ ଓ ଅକର୍ତ୍ତା ଅଟନ୍ତି– ଏହା ଭଲଭାବରେ ବୁଝିଯିବା, ଏଥିରେ କୌଣସିପ୍ରକାର ଅସମ୍ଭାବନା ବା ବିପରୀତ ଭାବନା ନ ରଖି ପୂର୍ଣ୍ଣ ବିଶ୍ୱାସ ହୋଇଯିବା ହିଁ ଭଗବାନଙ୍କର କର୍ମମାନଙ୍କୁ ତତ୍ତ୍ୱତଃ ଦିବ୍ୟ ବୋଲି ବୁଝିବା ।

ଏହିପରି ଜାଣିଯିବା ପରେ ସେହି ଜାଣିବା ଲୋକଙ୍କର କର୍ମ ମଧ୍ୟ ଶୁଦ୍ଧ ଓ ଅଲୌକିକ ହୋଇଯାଏ – ଅର୍ଥାତ୍ ସେ ମଧ୍ୟ ସମସ୍ତଙ୍କ ସହିତ ଦୟା, ସମତା, ଧର୍ମ, ନୀତି, ବିନୟ ଏବଂ ନିଷ୍କାମ ପ୍ରେମଭାବ ରଖି ବ୍ୟବହାର କରନ୍ତି ।

**ପ୍ରଶ୍ନ –** ଭଗବାନଙ୍କର ଜନ୍ମ ଓ କର୍ମ ଉଭୟକୁ ଦିବ୍ୟ ବୋଲି ବୁଝିଯିବା ପରେ ଭଗବତ୍ପ୍ରାପ୍ତି ହୁଏ, ନା ଏଥିମଧ୍ୟରୁ କୌଣସି ଗୋଟିକର ଦିବ୍ୟତା ସମ୍ବନ୍ଧରେ ଜ୍ଞାନ ହୋଇଯିବା ପରେ ମଧ୍ୟ ହୁଏ ?

**ଉତ୍ତର –** କୌଣସି ଗୋଟିକର ଦିବ୍ୟତା ଜାଣିଲେ ବି ଭଗବତ୍ପ୍ରାପ୍ତି ହୋଇଯାଏ (୪/୧୪; ୧୦/୩); ତେଣୁ ଉଭୟର ଦିବ୍ୟତା ବୁଝିନେଲେ ଯେ ଭଗବତ୍ପ୍ରାପ୍ତି ହୋଇଯାଏ, ତାହା ଆଉ କହିବା ବା ଆବଶ୍ୟକ କଣ !

**ପ୍ରଶ୍ନ –** 'ଏହା ତତ୍ତ୍ୱତଃ ଜାଣିଯିବା ଲୋକଙ୍କର ପୁନର୍ଜନ୍ମ ହୁଏ ନାହିଁ; ସେ ମୋତେ ହିଁ ପାଇଯାଆନ୍ତି' – ଏପରି କହିବାର ଭାବ କଣ ?

**ଉତ୍ତର –** ସେ ପୁନର୍ଜନ୍ମ ପ୍ରାପ୍ତ ନ ହୋଇ କେଉଁ ଭାବ ପ୍ରାପ୍ତ ହୁଅନ୍ତି ? ତାଙ୍କର କିପ୍ରକାର ସ୍ଥିତି ହୁଏ ? – ଏହି ଜିଜ୍ଞାସାର ପୂର୍ତ୍ତିନିମିତ୍ତ ଭଗବାନ୍ କହିଛନ୍ତି, 'ସେ ମୋତେ (ଭଗବାନଙ୍କୁ) ହିଁ ପ୍ରାପ୍ତ ହୁଅନ୍ତି' ଏବଂ ଯେ ଭଗବାନଙ୍କୁ ପାଇଯାଆନ୍ତି, ତାଙ୍କର ପୁନର୍ଜନ୍ମ ହୁଏ ନାହିଁ। ଏହା ହିଁ ସିଦ୍ଧାନ୍ତ (୮/୧୬) ।

**ପ୍ରଶ୍ନ –** ଏଠାରେ ଜନ୍ମ-କର୍ମର ଦିବ୍ୟତା ଜାଣିଥିବା ଲୋକଙ୍କର ଶରୀରତ୍ୟାଗପରେ ଭଗବତ୍ପ୍ରାପ୍ତି ହେବାର କଥା କୁହାଯାଇଛି; ତେବେ କଣ ତାଙ୍କୁ ଏହି ଜନ୍ମରେ ଭଗବାନ୍ ମିଳିପାରନ୍ତି ନାହିଁ ?

**ଉତ୍ତର –** ଏହି ଜନ୍ମରେ ଯେ ମିଳିପାରନ୍ତି ନାହିଁ, ସେପରି ନୁହେଁ। ସେ ଭଗବାନଙ୍କ ଜନ୍ମ-କର୍ମମାନଙ୍କର ଦିବ୍ୟତାକୁ ଯେଉଁ ସମୟରେ ପୂର୍ଣ୍ଣଭାବରେ ଜାଣିପାରନ୍ତି, ବସ୍ତୁତଃ ସେହି ସମୟରେ ତାଙ୍କୁ ଭଗବାନ୍ ପ୍ରତ୍ୟକ୍ଷ ମିଳିଯାଆନ୍ତି; ମରିବା ପରେ ଆଉ ତାଙ୍କର ପୁନର୍ଜନ୍ମ ହୁଏ ନାହିଁ, ସେ ଭଗବାନଙ୍କର ପରମଧାମକୁ ଚାଲିଯାଆନ୍ତି – ଏହି ବିଶେଷ ଭାବ ଦେଖାଇବା ନିମନ୍ତେ କୁହାଯାଇଛି ଯେ, ସେ ଶରୀରତ୍ୟାଗପରେ ଭଗବାନଙ୍କୁ ହିଁ ପାଇଯାଆନ୍ତି ।

**ସମ୍ବନ୍ଧ –** ଭଗବାନଙ୍କର ଜନ୍ମ ଓ କର୍ମମାନଙ୍କୁ ତତ୍ତ୍ୱତଃ ଦିବ୍ୟ ବୋଲି ବୁଝିପାରିବାର ଯେଉଁ ଫଳ ବର୍ଣ୍ଣନା କରାଗଲା, ତାହା ଯେ ଅନାଦି ପରମ୍ପରାରୁ ଚାଲିଆସିଛି, ସେହି କଥା ସ୍ପଷ୍ଟ କରିବାକୁ ଭଗବାନ୍ କହୁଛନ୍ତି–

**ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ।**
**ବହବୋ ଜ୍ଞାନତପସା ପୂତା ମଦ୍ଭାବମାଗତାଃ ।। ୧୦ ।।**

**ଅନ୍ୱୟ –** **ବୀତରାଗଭୟକ୍ରୋଧାଃ** = ଯେଉଁମାନଙ୍କର ରାଗ, ଭୟ ଏବଂ କ୍ରୋଧ ସର୍ବଥା ନଷ୍ଟ ହୋଇଯାଇଥିଲା; **ମନ୍ମୟାଃ** = ଯେଉଁମାନେ ମୋପ୍ରତି ଅନନ୍ୟ ପ୍ରେମପୂର୍ବକ ତନ୍ମୟ ହୋଇରହିଥିଲେ (ସେପରି); **ମାମ୍** = ମୋତେ; **ଉପାଶ୍ରିତାଃ** = ଆଶ୍ରୟ କରି ରହିଥିବା; **ବହବଃ** = ବହୁ ଭକ୍ତ; **ଜ୍ଞାନତପସା** = ଜ୍ଞାନରୂପକ ତପଦ୍ୱାରା; **ପୂତାଃ** = ପବିତ୍ର ହୋଇ; **ମଦ୍ଭାବମ୍** = ମୋର ସ୍ୱରୂପକୁ; **ଆଗତାଃ** = ପ୍ରାପ୍ତ ହୋଇ ସାରିଛନ୍ତି ।

**ପୂର୍ବକାଳରେ ବି ଯେଉଁମାନଙ୍କର ରାଗ, ଭୟ ଓ କ୍ରୋଧ ସର୍ବଥା ନଷ୍ଟ ହୋଇଯାଇଥିଲା ଏବଂ ଯେଉଁମାନେ ମୋଠାରେ ଅନନ୍ୟ ପ୍ରେମପୂର୍ବକ ତନ୍ମୟ ହୋଇ ରହିଥିଲେ, ମୋତେ ଆଶ୍ରୟ କରି ରହିଥିବା ସେହିସବୁ ଭକ୍ତ ଉପରୋକ୍ତ ଜ୍ଞାନରୂପକ ତପଦ୍ୱାରା ପବିତ୍ର ହୋଇ ମୋର ସ୍ୱରୂପ ପ୍ରାପ୍ତ ହୋଇସାରିଛନ୍ତି ।। ୧୦ ।।**

**ପ୍ରଶ୍ନ – ବୀତରାଗଭୟକ୍ରୋଧାଃ** ପଦ କେଉଁ ପୁରୁଷମାନଙ୍କ ବାଚକ ଏବଂ ଏଠାରେ ଏହି ବିଶେଷଣ ପ୍ରୟୋଗର ଭାବ କଣ ?

**ଉତ୍ତର –** ଆସକ୍ତିର ନାମ **ରାଗ;** କୌଣସିପ୍ରକାର ଦୁଃଖର ସମ୍ଭାବନାରେ ଅନ୍ତଃକରଣରେ ଯେଉଁ ବ୍ୟାକୁଳତା ଜାତ ହୁଏ, ସେହି ବିକାରର ନାମ **ଭୟ** ଏବଂ ନିଜର ଅପକାର କରିଥିବା ଲୋକ ଉପରେ ତଥା ନୀତିବିରୁଦ୍ଧ ବା ନିଜର ମନର ବିରୁଦ୍ଧ କଥା କହୁଥିବା ଲୋକ ପ୍ରତି ଜାତ ହେଉଥିବା ଉତ୍ତେଜନାପୂର୍ଣ୍ଣ ଭାବର ନାମ **କ୍ରୋଧ ।** ଯେଉଁ ପୁରୁଷମାନଙ୍କ ଠାରେ ଏହି ତିନୋଟି ବିକାର ସର୍ବଥା ଲୋପ ହୋଇଯାଇଛି, **ବୀତରାଗଭୟକ୍ରୋଧାଃ** ପଦଟି ହେଉଛି ସେପରି ପୁରୁଷମାନଙ୍କ ବାଚକ । ଭଗବାନଙ୍କର ଦିବ୍ୟ ଜନ୍ମ ଓ କର୍ମମାନଙ୍କର ତତ୍ତ୍ୱ ବୁଝିପାରିଥିବା ମନୁଷ୍ୟମାନଙ୍କର ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହୋଇଯାଏ, ତେଣୁ ଭଗବାନଙ୍କୁ ଛାଡ଼ି ଅନ୍ୟ କୌଣସି ପଦାର୍ଥରେ ସେମାନଙ୍କର ଟିକିଏ ହେଲେ ଆସକ୍ତି ରହେ ନାହିଁ; ଭଗବାନଙ୍କ ତତ୍ତ୍ୱ ବୁଝିପାରିବାଫଳରେ ସେମାନଙ୍କୁ ସର୍ବତ୍ର ଭଗବାନଙ୍କର ପ୍ରତ୍ୟକ୍ଷ ଅନୁଭବ ହେବାକୁ ଲାଗେ ଏବଂ ସର୍ବତ୍ର ଭଗବଦ୍‌ବୁଦ୍ଧି ହୋଇଯିବାରୁ ସେମାନେ ଚିରଦିନପାଇଁ ସର୍ବଥା ନିର୍ଭୟ ହୋଇଯାଆନ୍ତି । ସେମାନଙ୍କୁ ଯେ ଯାହା କହନ୍ତୁ ନା କାହିଁକି, ସେମାନେ ଭଗବାନଙ୍କ ଇଚ୍ଛାରେ ତାହା ହେଲା ବୋଲି ବୁଝନ୍ତି ଏବଂ ସଂସାରର ସମସ୍ତ ଘଟଣାକୁ ଭଗବାନଙ୍କର ଲୀଳା ବୋଲି ବୁଝନ୍ତି । ଅତଏବ କୌଣସି ପରିସ୍ଥିତିରେ ମଧ୍ୟ ସେମାନଙ୍କ ଅନ୍ତଃକରଣରେ କ୍ରୋଧବିକାର ଜାତ ହୁଏ ନାହିଁ । ଭଗବାନଙ୍କ ଜନ୍ମ ଏବଂ କର୍ମମାନଙ୍କର ଏପରି ତତ୍ତ୍ୱ ଜାଣିଥିବା ଭକ୍ତମାନଙ୍କ ଠାରେ ଭଗବାନଙ୍କ ଦୟାରୁ ସକଳପ୍ରକାର ଦୁର୍ଗୁଣ ସର୍ବଥା ନାଶ ହୋଇଯାଏ; ଏହି ଭାବ ଦେଖାଇବାକୁ ଏଠାରେ **ବୀତରାଗଭୟକ୍ରୋଧାଃ** ବିଶେଷଣ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ – ମନ୍ମୟାଃ**ର ଭାବ କଣ ?

**ଉତ୍ତର –** ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହୋଇଯିବାରୁ ଯେଉଁମାନଙ୍କୁ ସର୍ବତ୍ର ଏକମାତ୍ର ଭଗବାନ୍ ହିଁ ଦେଖିବାକୁ ମିଳନ୍ତି, **ମନ୍ମୟାଃ** ପଦଟି ହେଉଛି ସେହିମାନଙ୍କର ବାଚକ । ଏହି ବିଶେଷଣ ପ୍ରୟୋଗ କରି ଏଠାରେ ଦେଖାଇଦିଆଯାଇଛି ଯେ, ଭଗବାନଙ୍କ ଜନ୍ମ ଓ କର୍ମମାନଙ୍କୁ ଦିବ୍ୟ ବୋଲି ବୁଝି ଯେଉଁମାନେ ଭଗବାନଙ୍କୁ ଚିହ୍ନିଯାଆନ୍ତି, ସେହି ଜ୍ଞାନୀ ଭକ୍ତମାନଙ୍କର ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହୋଇଯାଏ; ତେଣୁ ସେମାନେ ନିରନ୍ତର ଭଗବାନଙ୍କ ଠାରେ ତନ୍ମୟ ହୋଇରହନ୍ତି ଏବଂ ସର୍ବତ୍ର ଭଗବାନଙ୍କୁ ହିଁ ଦର୍ଶନ କରନ୍ତି ।

**ପ୍ରଶ୍ନ – ମାମୁପାଶ୍ରିତାଃ**ର ଭାବ କଣ ?

**ଉତ୍ତର –** ଯେଉଁମାନେ ଭଗବାନଙ୍କ ଶରଣ ନିଅନ୍ତି, ସର୍ବଥା ତାଙ୍କ ଉପରେ ନିର୍ଭରଶୀଳ ହୋଇଯାଆନ୍ତି, ସର୍ବଦା

ତାଙ୍କ ଠାରେ ସନ୍ତୁଷ୍ଟ ରହନ୍ତି, ଯେଉଁମାନଙ୍କର ନିଜପାଇଁ କିଛି ମଧ୍ୟ କର୍ତ୍ତବ୍ୟ ନ ଥାଏ ଏବଂ ଯେଉଁମାନେ ସବୁକିଛି ଭଗବାନଙ୍କର ବୋଲି ବୁଝି ତାଙ୍କ ଆଜ୍ଞା ପାଳନ ଉଦ୍ଦେଶ୍ୟରେ **ସମସ୍ତକର୍ମ** ସେବାରୂପରେ କରନ୍ତି, **ମାମୁପାଶ୍ରିତାଃ** ପଦଟି ହେଉଛି ସେପରି ପୁରୁଷମାନଙ୍କର ବାଚକ। ଏହି ବିଶେଷଣ ପ୍ରୟୋଗ କରି ଏଠାରେ ଦେଖାଇଦିଆଯାଇଛି ଯେ, ଭଗବାନଙ୍କର ଜ୍ଞାନୀଭକ୍ତମାନେ ସବୁପ୍ରକାରେ ତାଙ୍କର ଶରଣାପନ୍ନ ହୋଇଯାଆନ୍ତି; ସେମାନେ ସବୁବେଳେ ଭଗବାନଙ୍କ ଉପରେ ନିର୍ଭର କରି ରହନ୍ତି; ସେମାନଙ୍କ ଠାରେ ଶରଣାଗତିର ସମସ୍ତ ଭାବ ପୂର୍ଣ୍ଣବିକଶିତ ହୁଏ।

**ପ୍ରଶ୍ନ –** **ଜ୍ଞାନତପସା** ପଦର ଅର୍ଥ ଆତ୍ମଜ୍ଞାନରୂପକ ତପ ବୋଲି ନ ମାନି ଭଗବାନଙ୍କ ଜନ୍ମକର୍ମର ଜ୍ଞାନ ବୋଲି ମାନିବାର ଅଭିପ୍ରାୟ କଣ ଏବଂ ସେହି ଜ୍ଞାନତପଦ୍ୱାରା ପବିତ୍ର ହୋଇ ଭଗବାନଙ୍କର ସ୍ୱରୂପ ପ୍ରାପ୍ତ ହୋଇଯିବାର ଅର୍ଥ କଣ ?

**ଉତ୍ତର –** ଏଠାରେ ସାଂଖ୍ୟଯୋଗର ପ୍ରସଙ୍ଗ ନାହିଁ; ଭକ୍ତିର ପ୍ରକରଣ ଚାଲିଛି ତଥା ପୂର୍ବଶ୍ଲୋକରେ ଭଗବାନଙ୍କର ଜନ୍ମକର୍ମମାନଙ୍କୁ ଦିବ୍ୟ ବୋଲି ବୁଝିବାର ଫଳ ଭଗବତ୍ପ୍ରାପ୍ତି ବୋଲି କୁହାଯାଇଛି। ତାହା ପ୍ରମାଣ କରିବାକୁ ଏହି ଶ୍ଲୋକ ଦିଆଯାଇଛି। ତେଣୁ ଏଠାରେ **ଜ୍ଞାନତପସା** ପଦରେ ଥିବା ଜ୍ଞାନର ଅର୍ଥ ଆତ୍ମଜ୍ଞାନ ବୋଲି ନ ନେଇ ଭଗବାନଙ୍କର ଜନ୍ମକର୍ମମାନଙ୍କୁ ଦିବ୍ୟ ବୋଲି ବୁଝିନେବାରୂପକ ଜ୍ଞାନ ବୋଲି ଗ୍ରହଣ କରାଯାଇଛି। ଏହି ଜ୍ଞାନରୂପକ ତପର ପ୍ରଭାବରେ ମନୁଷ୍ୟର ଭଗବାନଙ୍କ ଠାରେ ଅନନ୍ୟପ୍ରେମ ହୋଇଯାଏ; ତା'ର ସମସ୍ତ ପାପତାପ ନଷ୍ଟ ହୋଇଯାଏ; ଅନ୍ତଃକରଣରେ ସମସ୍ତପ୍ରକାର ଦୁର୍ଗୁଣ ସର୍ବଥା ନାଶ ପାଇଯାଏ ଏବଂ ସମସ୍ତ କର୍ମ ଭଗବାନଙ୍କର କର୍ମପରି ଦିବ୍ୟ ହୋଇଯାଏ ତଥା ସେ କେବେ ବି ଭଗବାନଙ୍କ ଠାରୁ ଅଲଗା ହୋଇପାରେ ନାହିଁ; ତାହା ସମକ୍ଷରେ ଭଗବାନ୍ ସର୍ବଦା ପ୍ରତ୍ୟକ୍ଷ ହୋଇ ରହିଥାନ୍ତି। ଏହା ହିଁ ଜ୍ଞାନରୂପକ ତପଦ୍ୱାରା ପବିତ୍ର ହୋଇ ଭଗବତ୍ସ୍ୱରୂପ ପ୍ରାପ୍ତ ହୋଇଯିବା।

*__ସମ୍ବନ୍ଧ –__ ପୂର୍ବଶ୍ଲୋକମାନଙ୍କରେ ଭଗବାନ୍ କହିଛନ୍ତି, 'ମୋର ଜନ୍ମ ଓ କର୍ମମାନଙ୍କୁ ଯେଉଁମାନେ ଦିବ୍ୟ ବୋଲି ତତ୍ତ୍ୱତଃ ଜାଣିଯାଆନ୍ତି, ସେହି ଅନନ୍ୟପ୍ରେମୀ ଭକ୍ତମାନଙ୍କୁ ମୋର ପ୍ରାପ୍ତି ହୋଇଯାଏ।' ଏହା ଉପରେ ପ୍ରଶ୍ନ ହୁଏ, 'ସେମାନଙ୍କୁ ଆପଣ କେଉଁପରି ଓ କେଉଁ ରୂପରେ ମିଳନ୍ତି ?' ଏହା ଉପରେ ଭଗବାନ୍ କହୁଛନ୍ତି–*

## ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍।
## ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ॥ ୧୧ ॥

**ଅନ୍ୱୟ –** **ପାର୍ଥ** = ହେ ଅର୍ଜୁନ; **ଯେ** = ଯେଉଁ ଭକ୍ତମାନେ; **ମାମ୍** = ମୋତେ; **ଯଥା** = ଯେଉଁପରି; **ପ୍ରପଦ୍ୟନ୍ତେ** = ଭଜନ କରନ୍ତି; **ଅହମ୍** = ମୁଁ; **ତାନ୍** = ସେମାନଙ୍କୁ; **ତଥା, ଏବ** = ସେହିପରି; **ଭଜାମି** = ଭଜନ କରେ (କାରଣ); **ମନୁଷ୍ୟାଃ** = ମନୁଷ୍ୟମାନେ; **ସର୍ବଶଃ** = ସବୁପ୍ରକାରେ; **ମମ** = ମୋର (ହିଁ); **ବର୍ତ୍ମ** = ମାର୍ଗକୁ; **ଅନୁବର୍ତ୍ତନ୍ତେ** = ଅନୁସରଣ କରନ୍ତି।

**ହେ ଅର୍ଜୁନ! ଯେଉଁ ଭକ୍ତମାନେ ମୋତେ ଯେଉଁପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ଭଜନ କରେ; କାରଣ ମନୁଷ୍ୟମାନେ ସବୁପ୍ରକାରେ ମୋର ହିଁ ମାର୍ଗ ଅନୁସରଣ କରନ୍ତି॥ ୧୧ ॥**

**ପ୍ରଶ୍ନ –** 'ଭକ୍ତମାନେ ମୋତେ ଯେଉଁପରି ଭଜନ୍ତି, ମୁଁ ସେମାନଙ୍କୁ ସେହିପରି ଭଜନ କରେ' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, 'ମୋ' ଭକ୍ତମାନଙ୍କର ଭଜନ ବିଭିନ୍ନପ୍ରକାର ହୋଇଥାଏ। ନିଜ ନିଜର ଭାବନା ଅନୁସାରେ ଭକ୍ତମାନେ ମୋର ପୃଥକ୍ ପୃଥକ୍ ରୂପର ଉପାସନା କରନ୍ତି ଏବଂ ନିଜ ନିଜର ଭାବ ଅନୁସାରେ ମୋତେ ଭଜନ-ସ୍ମରଣ କରନ୍ତି। ଅତଏବ ମୁଁ ମଧ୍ୟ ସେମାନଙ୍କୁ ସେମାନଙ୍କର ଭାବନା ଅନୁସାରେ ସେହି ସେହି ରୂପମାନଙ୍କରେ ହିଁ ଦର୍ଶନ ଦେଇଥାଏ। ଶ୍ରୀ ବିଷ୍ଣୁରୂପର ଉପାସନା କରୁଥିବା ଲୋକଙ୍କୁ ମୁଁ ଶ୍ରୀବିଷ୍ଣୁରୂପରେ, ଶ୍ରୀରାମରୂପର ଉପାସକଙ୍କୁ

ଶ୍ରୀରାମରୂପରେ, ଶ୍ରୀକୃଷ୍ଣରୂପର ଉପାସକଙ୍କୁ ଶ୍ରୀକୃଷ୍ଣରୂପରେ, ଶ୍ରୀଶିବରୂପର ଉପାସକଙ୍କୁ ଶ୍ରୀଶିବରୂପରେ, ଶ୍ରୀଜଗନ୍ନାଥରୂପର ଉପାସକଙ୍କୁ ଶ୍ରୀଜଗନ୍ନାଥରୂପରେ, ଦେବୀରୂପର ଉପାସକଙ୍କୁ ଦେବୀରୂପରେ ଏବଂ ନିରାକାର ସର୍ବବ୍ୟାପୀରୂପର ଉପାସକଙ୍କୁ ନିରାକାର ସର୍ବବ୍ୟାପୀରୂପରେ ମୁଁ ମିଳେ। ସେହିପରି ଯେଉଁମାନେ ମତ୍ସ୍ୟ, କୂର୍ମ, ନୃସିଂହ, ବାମନ ଆଦି ଅନ୍ୟାନ୍ୟ ରୂପର ଉପାସନା କରନ୍ତି, ମୁଁ ସେମାନଙ୍କୁ ସେହି ସେହି ରୂପରେ ଦର୍ଶନ ଦେଇ ଉଦ୍ଧାର କରିଦିଏ। ଏହା ଛଡ଼ା ସେମାନେ ଯେପରି ଓ ଯେଉଁଭାବରେ ମୋର ଉପାସନା କରନ୍ତି, ମୁଁ ସେମାନଙ୍କୁ ସେହିପରି ସେହିଭାବରେ ଅନୁସରଣ କରେ। ଯେଉଁମାନେ ମୋତେ ଚିନ୍ତନ କରନ୍ତି, ସେମାନଙ୍କୁ ମୁଁ ଚିନ୍ତନ କରେ; ଯେଉଁମାନେ ମୋ ପାଇଁ ବ୍ୟାକୁଳ ହୁଅନ୍ତି, ମୁଁ ମଧ ସେମାନଙ୍କ ପାଇଁ ବ୍ୟାକୁଳ ହୋଇଥାଏ; ଯେଉଁମାନେ ମୋର ବିୟୋଗ ସହିପାରନ୍ତି ନାହିଁ, ମୁଁ ମଧ ସେମାନଙ୍କର ବିୟୋଗ ସହିପାରେ ନାହିଁ। ଯେଉଁମାନେ ମୋତେ ନିଜର ସର୍ବସ୍ୱ ଅର୍ପଣ କରିଦିଅନ୍ତି, ସେମାନଙ୍କୁ ମୁଁ ମୋର ସର୍ବସ୍ୱ ଅର୍ପଣ କରିଦିଏ। ଯେଉଁମାନେ ଗୋପାଳବାଳକଙ୍କ ପରି ମୋତେ ନିଜର ସଖା ମନେ କରି ମୋର ଭଜନ କରନ୍ତି, ସେମାନଙ୍କ ସହିତ ମୁଁ ମିତ୍ରଙ୍କ ପରି ବ୍ୟବହାର କରେ। ଯେଉଁମାନେ ନନ୍ଦଯଶୋଦାଙ୍କ ପରି ମୋତେ ପୁତ୍ର ବୋଲି ଧରିନେଇ ଭଜନ କରନ୍ତି, ସେମାନଙ୍କ ସହିତ ମୁଁ ମଧ ପୁତ୍ରପରି ବ୍ୟବହାର କରି ସେମାନଙ୍କର କଲ୍ୟାଣ କରେ। ଠିକ୍ ସେହିପରି ରୁକ୍ମିଣୀଙ୍କ ପରି ମୋତେ ପତି ବୋଲି ବୁଝି ଭଜନ କରୁଥିବା ଲୋକଙ୍କ ସହିତ ପତିପରି, ହନୁମାନଙ୍କ ପରି ମୋତେ ପ୍ରଭୁ ବୋଲି ବୁଝି ଭଜନ କରୁଥିବା ଲୋକଙ୍କ ସହିତ ପ୍ରଭୁଙ୍କ ପରି ଏବଂ ଗୋପୀମାନଙ୍କ ପରି ମାଧୁର୍ଯ୍ୟଭାବରେ ଭଜନ କରୁଥିବା ଲୋକଙ୍କ ସହିତ ପ୍ରିୟତମପରି ବ୍ୟବହାର କରି ମୁଁ ସେମାନଙ୍କର କଲ୍ୟାଣ କରେ ଏବଂ ସେମାନଙ୍କୁ ଦିବ୍ୟଲୀଳାରସ ଆସ୍ୱାଦନ କରାଇଥାଏ।

**ପ୍ରଶ୍ନ** – 'ମନୁଷ୍ୟମାନେ ସବୁପ୍ରକାରେ ମୋର ମାର୍ଗ ହିଁ ଅନୁସରଣ କରନ୍ତି,' —ଏ କଥାର ଭାବ କଣ ?

**ଉତ୍ତର** – ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ଲୋକେ ମୋତେ ଅନୁସରଣ କରନ୍ତି, ତେଣୁ ମୁଁ ଯଦି ପ୍ରେମ ଓ ସୌହାର୍ଦ୍ଦପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବି, ତେବେ ଲୋକେ ମଧ ମୋ ଦେଖାଦେଖି ମୋପରି ନିଃସ୍ୱାର୍ଥଭାବରେ ପରସ୍ପର ଯଥାଯୋଗ୍ୟ ପ୍ରେମ ଓ ସୌହାର୍ଦ୍ଦ ରଖି ବ୍ୟବହାର ପ୍ରଦର୍ଶନ କରିବେ। ଅତଏବ ଜଗତରେ ଏହି ନୀତିର ପ୍ରଚାରନିମିତ୍ତ ମଧ ଏପରି କରିବା ମୋର କର୍ତ୍ତବ୍ୟ, କାରଣ ଜଗତରେ ଧର୍ମସ୍ଥାପନାପାଇଁ ହିଁ ମୁଁ ଅବତାର ଧାରଣ କରିଥାଏ (୪/୮)।

*ସମ୍ବନ୍ଧ* – *ଯଦି ଏପରି ହୋଇଥାଏ, ତେବେ ଲୋକେ ଭଗବାନଙ୍କୁ ଭଜନ ନ କରି ଅନ୍ୟ ଦେବତାମାନଙ୍କୁ ଭଜନ୍ତି କାହିଁକି ? ଏହା ଉପରେ ଭଗବାନ୍ କହୁଛନ୍ତି–*

**କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତ ଇହ ଦେବତାଃ।**
**କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା॥ ୧୨ ॥**

**ଅନ୍ୱୟ** – **ଇହ** = ଏହି; **ମାନୁଷେ** = ମନୁଷ୍ୟ; **ଲୋକେ** = ଲୋକରେ; **କର୍ମଣାମ୍** = କର୍ମମାନଙ୍କର; **ସିଦ୍ଧିମ୍** = ଫଳକୁ; **କାଙ୍କ୍ଷନ୍ତଃ** = ଆକାଙ୍କ୍ଷା କରୁଥିବା, (ଲୋକେ); **ଦେବତାଃ** = ଦେବତାମାନଙ୍କୁ; **ଯଜନ୍ତେ** = ପୂଜା କରନ୍ତି; **ହି** = କାରଣ; **କର୍ମଜା** = କର୍ମରୁ ଉତ୍ପନ୍ନ; **ସିଦ୍ଧିଃ** = ସିଦ୍ଧି; **କ୍ଷିପ୍ରମ୍** = ଶୀଘ୍ର; **ଭବତି** = ମିଳିଯାଏ।

**ଏହି ମନୁଷ୍ୟଲୋକରେ କର୍ମଫଳ ଆକାଙ୍କ୍ଷା କରୁଥିବା ଲୋକେ ଦେବତାମାନଙ୍କୁ ପୂଜା କରନ୍ତି; କାରଣ ସେମାନଙ୍କୁ କର୍ମରୁ ଉତ୍ପନ୍ନ ହେଉଥିବା ସିଦ୍ଧି ଶୀଘ୍ର ମିଳିଯାଏ॥ ୧୨ ॥**

**ପ୍ରଶ୍ନ** – ଇହ ମାନୁଷେ ଲୋକେର ଅଭିପ୍ରାୟ କଣ ?

**ଉତ୍ତର** – ଯଜ୍ଞାଦି କର୍ମଦ୍ୱାରା ଇନ୍ଦ୍ରାଦି ଦେବତାମାନଙ୍କୁ ଉପାସନା କରିବାର ଅଧିକାର କେବଳ ମନୁଷ୍ୟଯୋନିରେ ଅଛି; ଅନ୍ୟ ଯୋନିମାନଙ୍କରେ ନାହିଁ। ଏହି ଭାବ ଦେଖାଇବାକୁ ଏଠାରେ ଇହ ଏବଂ ମାନୁଷେ ସହିତ ଲୋକେ ପଦ ପ୍ରୟୋଗ ହୋଇଛି।

**ପ୍ରଶ୍ନ** – 'କର୍ମଫଳ ଆକାଙ୍କ୍ଷୀ କରୁଥିବା ଲୋକେ ଦେବତାମାନଙ୍କୁ ପୂଜା କରନ୍ତି, କାରଣ ସେମାନଙ୍କୁ କର୍ମରୁ ଉତ୍ପନ୍ନ ହେଉଥିବା ସିଦ୍ଧି ଶୀଘ୍ର ମିଳିଯାଏ' — ଏହି ବାକ୍ୟର ଭାବ କଣ ?

ଉତ୍ତର – ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ଯେଉଁମାନଙ୍କର ସାଂସାରିକ ଭୋଗରେ ଆସକ୍ତି ରହିଛି, ଯେଉଁମାନେ ନିଜକୃତ କର୍ମମାନଙ୍କର ଫଳକୁ ସ୍ତ୍ରୀ, ପୁତ୍ର, ଧନ, ଗୃହ ବା ମାନ-ବଡ଼ିମାରୂପରେ ପାଇବାକୁ ଇଚ୍ଛା କରନ୍ତି, ସେମାନଙ୍କର ବିବେକଜ୍ଞାନ ନାନାପ୍ରକାର ଭୋଗବାସନାରେ ଆବୃତ ହୋଇ ରହିଥିବାରୁ ସେମାନେ ମୋର ଉପାସନା ନ କରି, କାମନା ପୂର୍ଣ୍ଣ କରିବାକୁ ଇନ୍ଦ୍ରାଦି ଦେବତାମାନଙ୍କର ହିଁ ଉପାସନା କରିଥାନ୍ତି (୭/୨୦,୨୧,୨୨; ୯/୨୩,୨୪); କାରଣ ସେହି ଦେବତାମାନଙ୍କୁ ପୂଜା କରୁଥିବା ଲୋକମାନଙ୍କୁ ନିଜ ନିଜ କର୍ମର ଫଳ ଶୀଘ୍ର ମିଳିଯାଏ। ଦେବତାମାନଙ୍କର ସ୍ୱଭାବ ଏହି ଯେ, ଉପାସକମାନଙ୍କୁ ଆକାଙ୍କ୍ଷିତ ବସ୍ତୁ ଦେଇଦେଲେ, ତଦ୍ୱାରା ସେମାନଙ୍କର ବାସ୍ତବିକ ମଙ୍ଗଳ ହେବ କି ନାହିଁ, ତାହା ସେମାନେ ବିଚାର କରନ୍ତି ନାହିଁ। ସେମାନେ କେବଳ କର୍ମାନୁଷ୍ଠାନର ବିଧିବଦ୍ଧ ପୂର୍ଣ୍ଣତାକୁ ହିଁ ଦେଖନ୍ତି। ସାଙ୍ଗୋପାଙ୍ଗ ଅନୁଷ୍ଠାନ ସିଦ୍ଧ ହୋଇଗଲେ, ଯାହା ସେମାନଙ୍କର (ଦେବତାମାନଙ୍କର) ଅଧିକାରଭୁକ୍ତ ହୋଇଥାଏ ଏବଂ ଯାହା ସେହି କର୍ମାନୁଷ୍ଠାନର ଫଳରୂପରେ ପ୍ରାପ୍ୟ ହେବାର ବିହିତ ଅଟେ, ଦେବତାମାନେ ସେହି ଫଳ ଦେଇଦିଅନ୍ତି। କିନ୍ତୁ ମୁଁ ସେପରି କରେ ନାହିଁ; ମୁଁ ନିଜ ଭକ୍ତମାନଙ୍କର ବାସ୍ତବିକ ମଙ୍ଗଳ ଓ ଅମଙ୍ଗଳ ବିଚାର କରି ସେମାନଙ୍କ ଭକ୍ତିର ଫଳ ବ୍ୟବସ୍ଥା କରିଥାଏ। ସକାମଭାବରେ ମୋତେ ଭଜୁଥିବା ଭକ୍ତମାନଙ୍କର ମଧ୍ୟ ମୁଁ କେବଳ ସେହି କାମନାକୁ ପୂର୍ଣ୍ଣ କରିଥାଏ, ଯାହା ପୂର୍ଣ୍ଣ ହୋଇଗଲେ ସେମାନଙ୍କର ସାଂସାରିକ ବିଷୟରେ ବୈରାଗ୍ୟ ଜାତ ହୋଇ ମୋଠାରେ ପ୍ରେମ ଓ ବିଶ୍ୱାସ ବଢ଼ିବାକୁ ଲାଗିବ। ଅତଏବ ମୋର ଭକ୍ତିର ଫଳ ଶୀଘ୍ର ମିଳୁ ନ ଥିବା ଦେଖି ଶୀଘ୍ର କର୍ମଫଳ ପାଇବା ଲୋଭରେ ମନ୍ଦବୁଦ୍ଧି ମନୁଷ୍ୟମାନେ ଅନ୍ୟ ଦେବତାଙ୍କୁ ପୂଜା କରନ୍ତି।

*ସମ୍ବନ୍ଧ – ନବମ ଶ୍ଳୋକରେ ଭଗବାନଙ୍କ ଜନ୍ମ ଓ କର୍ମର ଦିବ୍ୟତା ତତ୍ତ୍ୱତଃ ଜାଣିବାର ଫଳ ଭଗବତ୍ପ୍ରାପ୍ତି ବୋଲି କୁହାଯାଇଛି। ତାହା ପୂର୍ବରୁ ଭଗବାନଙ୍କ ଜନ୍ମର ଦିବ୍ୟତା ବିଷୟ ଭଲଭାବରେ ବୁଝାଇଦିଆଯାଇଛି; କିନ୍ତୁ ଭଗବାନଙ୍କ କର୍ମର ଦିବ୍ୟତା ବିଷୟ ସ୍ପଷ୍ଟ କରାଯାଇ ନାହିଁ। ତେଣୁ ବର୍ତ୍ତମାନ ଦୁଇଟି ଶ୍ଳୋକରେ ଭଗବାନ୍ ସୃଷ୍ଟିରଚନାଦି କର୍ମରେ ନିଜର କର୍ତ୍ତାପଣ, ବିଷମତା ଓ ସ୍ପୃହାର ଅଭାବ ଦେଖାଇ ସେହି କର୍ମର ଦିବ୍ୟତା ବିଷୟ ବୁଝାଉଛନ୍ତି–*

## ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ।
## ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟମ୍॥ ୧୩ ॥

ଅନ୍ୱୟ – **ଚାତୁର୍ବର୍ଣ୍ଣ୍ୟମ୍** = ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର– ଏହି ଚାରି ବର୍ଣ୍ଣର ସମୂହ; **ଗୁଣକର୍ମବିଭାଗଶଃ** = ଗୁଣ ଓ କର୍ମର ବିଭାଗପୂର୍ବକ; **ମୟା** = ମୋ ଦ୍ୱାରା; **ସୃଷ୍ଟମ୍** = ରଚିତ ହୋଇଛି; **ତସ୍ୟ** = ତାହାର, (ସୃଷ୍ଟିରଚନାଦି କର୍ମର); **କର୍ତ୍ତାରମ୍ ଅପି** = କର୍ତ୍ତା ହେଲେ ମଧ୍ୟ; **ମାମ୍** = ମୋତେ; **ଅବ୍ୟୟମ୍** = ଅବିନାଶୀ ପରମେଶ୍ୱରଙ୍କୁ (ତୁମେ ବାସ୍ତବରେ); **ଅକର୍ତ୍ତାରମ୍** = ଅକର୍ତ୍ତା; **ବିଦ୍ଧି** = (ବୋଲି) ଜାଣ।

**ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର– ଏହି ଚାରି ବର୍ଣ୍ଣର ସମୂହ ଗୁଣ ଓ କର୍ମର ବିଭାଗପୂର୍ବକ ମୋ ଦ୍ୱାରା ରଚିତ ହୋଇଛି। ଏପରିଭାବରେ ମୁଁ ସେହି ସୃଷ୍ଟିରଚନାଦି କର୍ମର କର୍ତ୍ତା ହୋଇଥିଲେ ମଧ୍ୟ, ତୁମେ ମୋତେ ଅର୍ଥାତ୍ ଅବିନାଶୀ ପରମେଶ୍ୱରଙ୍କୁ ବସ୍ତୁତଃ ଅକର୍ତ୍ତା ବୋଲି ହିଁ ଜାଣ॥ ୧୩ ॥**

**ପ୍ରଶ୍ନ** – 'ଗୁଣକର୍ମ କଣ ? ଏବଂ ତାହାର ବିଭାଗପୂର୍ବକ ଭଗବାନଙ୍କ ଦ୍ୱାରା ଚାରିବର୍ଣ୍ଣର ସମୂହ ରଚିତ ହୋଇଛି'– ଏହି ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର** – ଅନାଦିକାଳରୁ ଜୀବମାନଙ୍କର ଜନ୍ମଜନ୍ମାନ୍ତରରେ ଯେଉଁସବୁ କର୍ମ କରା ହୋଇ ରହିଛି, ଯେଉଁ କର୍ମମାନଙ୍କର ଫଳ ଭୋଗ ହୋଇ ନାହିଁ, ସେସବୁ ଅନୁସାରେ ସେହି କର୍ମମାନଙ୍କ ଭିତରେ ଯଥାଯୋଗ୍ୟ ସତ୍ତ୍ୱ, ରଜ ଓ ତମୋଗୁଣର ନ୍ୟୂନାଧିକ୍ୟ ହୋଇଥାଏ। ସୃଷ୍ଟିରଚନା ସମୟରେ ମନୁଷ୍ୟମାନଙ୍କୁ ନିର୍ମାଣ କଲାବେଳେ ଭଗବାନ୍ ସେହି ସେହି ଗୁଣ ଓ କର୍ମ ଅନୁସାରେ ସେମାନଙ୍କୁ ବ୍ରାହ୍ମଣାଦି ବର୍ଣ୍ଣରେ ଉତ୍ପନ୍ନ କରନ୍ତି। ଅର୍ଥାତ୍ ଯେଉଁମାନଙ୍କ ଠାରେ ସତ୍ତ୍ୱଗୁଣ ଅଧିକ ଥାଏ, ସେମାନଙ୍କୁ

ବ୍ରାହ୍ମଣ କରି, ଯେଉଁମାନଙ୍କ ଠାରେ ସତ୍ତ୍ୱମିଶ୍ରିତ ରଜୋଗୁଣ ଅଧିକ ଥାଏ, ସେମାନଙ୍କୁ କ୍ଷତ୍ରିୟ କରି, ଯେଉଁମାନଙ୍କ ଠାରେ ତମୋମିଶ୍ରିତ ରଜୋଗୁଣ ଅଧିକ ଥାଏ, ସେମାନଙ୍କୁ ବୈଶ୍ୟ କରି, ଏବଂ ଯେଉଁମାନଙ୍କର ରଜୋମିଶ୍ରିତ ତମଃପ୍ରଧାନ ଗୁଣ ଥାଏ, ସେମାନଙ୍କୁ ଶୂଦ୍ର କରି ଉତ୍ପନ୍ନ କରନ୍ତି। ଏହିପରି ରଚିତ ବର୍ଣ୍ଣମାନଙ୍କ ପାଇଁ ସେମାନଙ୍କର ସ୍ୱଭାବ ଅନୁସାରେ ପୃଥକ୍ ପୃଥକ୍ କର୍ମ ମଧ୍ୟ ଭଗବାନ୍ ବିଧାନ କରିଦିଅନ୍ତି। ଅର୍ଥାତ୍ ବ୍ରାହ୍ମଣ ଶମଦମାଦି କର୍ମମାନଙ୍କରେ ରତ ହୁଅନ୍ତୁ; କ୍ଷତ୍ରିୟଙ୍କ ଠାରେ ଶୌର୍ଯ୍ୟତେଜ ଆଦି ଗୁଣ ରହୁ, ବୈଶ୍ୟ କୃଷିଗୋରକ୍ଷାରେ ଲାଗିରହନ୍ତୁ ଏବଂ ଶୂଦ୍ର ସେବାପରାୟଣ ହୁଅନ୍ତୁ ବୋଲି କୁହାଯାଇଛି (୧୮/୪୧-୪୪)। ଭଗବାନଙ୍କ ଦ୍ୱାରା ଏପରିଭାବରେ ଗୁଣକର୍ମବିଭାଗପୂର୍ବକ ଚତୁର୍ବର୍ଣ୍ଣର ରଚନା ହୋଇଥାଏ। ଏହି ବ୍ୟବସ୍ଥା ଜଗତରେ ଚିରକାଳ ଚାଲି ଆସିଛି। ଯେପର୍ଯ୍ୟନ୍ତ ବର୍ଣ୍ଣଶୁଦ୍ଧି ପ୍ରଚଳିତ ରହିଥାଏ, ଏକାବର୍ଣ୍ଣର ସ୍ତ୍ରୀ-ପୁରୁଷଙ୍କ ସଂଯୋଗରେ ସନ୍ତାନଉତ୍ପତ୍ତି ହେଉଥାନ୍ତି, ଭିନ୍ନ ଭିନ୍ନ ବର୍ଣ୍ଣର ସ୍ତ୍ରୀ-ପୁରୁଷଙ୍କ ସଂଯୋଗ ନ ଘଟି ବର୍ଣ୍ଣସଙ୍କରତା ଆସି ନ ଥାଏ, ସେପର୍ଯ୍ୟନ୍ତ ଏହି ବ୍ୟବସ୍ଥାରେ କୌଣସି ବ୍ୟତିକ୍ରମ ଘଟେ ନାହିଁ; କିଛି ବ୍ୟତିକ୍ରମ ଘଟିଗଲେ ମଧ୍ୟ ବର୍ଣ୍ଣବ୍ୟବସ୍ଥା ନ୍ୟୂନାଧିକରୂପରେ ରହିଥାଏ।

ଏଠାରେ କର୍ମ ଓ ଉପାସନାର ପ୍ରକରଣ ଚାଲିଛି; ଏଥିରେ କେବଳ ମନୁଷ୍ୟମାନଙ୍କର ଅଧିକାର ରହିଛି। ତେଣୁ ଏଠାରେ ମନୁଷ୍ୟମାନଙ୍କୁ ଉପଲକ୍ଷଣ ଦେଇ କୁହାଯାଇଛି। ଏଥିରୁ ବୁଝିନେବା ଉଚିତ ଯେ, ଦେବ, ପିତୃ ଓ ତିର୍ଯ୍ୟକ୍ ଆଦି ଅନ୍ୟାନ୍ୟ ଯୋନିମାନଙ୍କର ରଚନା ମଧ୍ୟ ଭଗବାନ୍ ସେହି ଜୀବମାନଙ୍କର ଗୁଣ ଓ କର୍ମ ଅନୁସାରେ କରନ୍ତି। ତେଣୁ ଏହି ସୃଷ୍ଟିରଚନାଦି କର୍ମମାନଙ୍କରେ ଭଗବାନ୍ କୌଣସିପ୍ରକାର ବିଷମତା ରଖନ୍ତି ନାହିଁ। ଏହି ଭାବ ଦେଖାଇବା ନିମନ୍ତେ ଏଠାରେ କହିଛନ୍ତି ଯେ, ସେ ଗୁଣ ଓ କର୍ମର ବିଭାଗପୂର୍ବକ ଚାରିବର୍ଣ୍ଣ ରଚନା କରିଛନ୍ତି।

**ପ୍ରଶ୍ନ –** ବ୍ରାହ୍ମଣାଦି ବର୍ଣ୍ଣମାନଙ୍କର ବିଭାଗ ଜନ୍ମକୁ ଧରି ମାନିବା ଉଚିତ, ନା କର୍ମକୁ ଧରି ମାନିବା ଉଚିତ?

**ଉତ୍ତର –** ଯଦ୍ୟପି ଜନ୍ମ ଓ କର୍ମ ଉଭୟେ ବର୍ଣ୍ଣର ଅଙ୍ଗ ଅଟନ୍ତି ଏବଂ ବର୍ଣ୍ଣର ପୂର୍ଣ୍ଣତା ଦୁଇଟିଯାକ କାରଣରୁ ହୁଏ, ତଥାପି ସେଥିରେ ଜନ୍ମର ହିଁ ପ୍ରାଧାନ୍ୟ ରହିଛି। ତେଣୁ ଜନ୍ମକୁ ଧରି ହିଁ ବ୍ରାହ୍ମଣାଦି ବର୍ଣ୍ଣମାନଙ୍କର ବିଭାଗ ହୁଏ ବୋଲି ମାନିବା ଉଚିତ। ଯଦି ପିତାମାତା ଏକ ବର୍ଣ୍ଣର ହୁଅନ୍ତି ଏବଂ କୌଣସିପ୍ରକାରେ ମଧ୍ୟ ଜନ୍ମରେ ସଙ୍କରତା ପ୍ରବେଶ ନ କରେ, ତେବେ ସହଜରେ କର୍ମରେ ମଧ୍ୟ ସଙ୍କରତା ପ୍ରାୟ ଆସେ ନାହିଁ। ପରନ୍ତୁ ସଙ୍ଗଦୋଷ, ଆହାରଦୋଷ ଓ ଦୂଷିତ ଶିକ୍ଷାଦୀକ୍ଷାଦିହେତୁ କର୍ମରେ କେଉଁଠି କିଛି ବ୍ୟତିକ୍ରମ ହୋଇଯାଏ। ତେଣୁ ଜନ୍ମକୁ ଧରି ବର୍ଣ୍ଣ ହୁଏ ବୋଲି ମାନିନେଲେ ବର୍ଣ୍ଣରକ୍ଷା ହୋଇପାରେ। ତଥାପି କର୍ମଶୁଦ୍ଧିର ଆବଶ୍ୟକତା ମଧ୍ୟ କମ୍ ନୁହେଁ। ଯଦି କର୍ମ ସର୍ବଥା ନଷ୍ଟ ହୋଇଯାଏ, ତେବେ ବର୍ଣ୍ଣର ରକ୍ଷା ବହୁତ କଠିନ ହୋଇଯାଏ। ତେଣୁ ଜୀବିକା ଓ ବିବାହାଦି ବ୍ୟବହାରରେ ଜନ୍ମର ପ୍ରଧାନତା ତଥା କଲ୍ୟାଣପ୍ରାପ୍ତିରେ କର୍ମର ପ୍ରଧାନତା ରହିଛି ବୋଲି ମାନିବା ଉଚିତ। ଜାତିରେ ବ୍ରାହ୍ମଣ ହେଲେ ମଧ୍ୟ ଯଦି କୌଣସି ବ୍ୟକ୍ତିର କର୍ମ ବ୍ରାହ୍ମଣୋଚିତ ନୁହେଁ, ତେବେ ତା'ର କଲ୍ୟାଣ ହୋଇପାରିବ ନାହିଁ; ପୁଣି ସାମାନ୍ୟଧର୍ମ ଅନୁସାରେ ଶମଦମାଦି ପାଳନ କରୁଥିବା ଲୋକ ଓ ଉତ୍ତମ ଆଚରଣଯୁକ୍ତ ଶୂଦ୍ର ମଧ୍ୟ ଯଦି ବ୍ରାହ୍ମଣୋଚିତ ଯଜ୍ଞାଦି କର୍ମ କରେ ଏବଂ ତାହାଦ୍ୱାରା ନିଜର ଜୀବିକା ନିର୍ବାହ କରେ, ତେବେ ସେ ପାପଭାଗୀ ହୁଏ।

**ପ୍ରଶ୍ନ –** ବର୍ତ୍ତମାନ ଯେହେତୁ ବର୍ଣ୍ଣବ୍ୟବସ୍ଥା ନଷ୍ଟ ହୋଇଯାଇଛି, ତେଣୁ ଜନ୍ମାନୁସାରେ ବର୍ଣ୍ଣ ସ୍ୱୀକାର ନ କରି ଲୋକଙ୍କର ଆଚରଣ ଅନୁସାରେ ସ୍ୱୀକାର କଲେ, କ୍ଷତି କ'ଣ?

**ଉତ୍ତର –** ଏପରି କରିବା ଠିକ୍ ହେବ ନାହିଁ; କାରଣ ପ୍ରଥମତଃ ବର୍ଣ୍ଣବ୍ୟବସ୍ଥାରେ କିଛିଟା ଶିଥିଳତା ଆସିଯାଇଥିଲେ ମଧ୍ୟ, ତାହା ନଷ୍ଟ ହୋଇଯାଇ ନାହିଁ; ଦ୍ୱିତୀୟତଃ ପୂର୍ବଜନ୍ମର କର୍ମଫଳ ଭୋଗ କରାଇବାକୁ ଈଶ୍ୱର ହିଁ ମନୁଷ୍ୟକୁ ତା'ର ପୂର୍ବକର୍ମାନୁସାରେ ବିଭିନ୍ନ ବର୍ଣ୍ଣରେ ଉତ୍ପନ୍ନ କରନ୍ତି; ଈଶ୍ୱରଙ୍କ ବିଧାନକୁ ବଦଳାଇବାର ଅଧିକାର ମନୁଷ୍ୟଠାରେ ନାହିଁ। ତୃତୀୟତଃ ଆଚରଣ ଦେଖି ବର୍ଣ୍ଣର କଳ୍ପନା କରିବା ମଧ୍ୟ ଅସମ୍ଭବ। ଏକା ପିତା-ମାତାଙ୍କ ଠାରୁ ଉତ୍ପନ୍ନ ସନ୍ତାନମାନଙ୍କ ମଧ୍ୟରେ ବି ଆଚରଣରେ ଅତ୍ୟନ୍ତ ପାର୍ଥକ୍ୟ ଦେଖାଯାଏ; ଜଣେ ମନୁଷ୍ୟ ମଧ୍ୟ ଦିନରେ କେବେ ବ୍ରାହ୍ମଣପରି ଆଚରଣ କରେ, ତ କେବେ ଶୂଦ୍ରପରି। ଏପରି ଅବସ୍ଥାରେ ବର୍ଣ୍ଣର ନିର୍ଣ୍ଣୟ କିପରି ହୋଇପାରିବ? ପୁଣି ଏପରି ହେଲେ କିଏ ତଳକୁ ଯିବାକୁ ଇଚ୍ଛା କରିବ? ତା'ଛଡ଼ା ଖାଇବା-ପିଇବା

ଓ ବିବାହାଦିରେ ବିଭ୍ରାଟ ସୃଷ୍ଟି ହୋଇଯିବ। ଫଳତଃ ବର୍ଣ୍ଣବିପ୍ଳବ ହୋଇଯିବ ଏବଂ ବର୍ଣ୍ଣବ୍ୟବସ୍ଥାର ସ୍ଥିତିରେ ବିରାଟ ପ୍ରତିବନ୍ଧକ ଉପସ୍ଥିତ ହୋଇଯିବ। ଅତଏବ କେବଳ କର୍ମଦ୍ୱାରା ବର୍ଣ୍ଣ ସ୍ୱୀକାର କରିବା ଉଚିତ ହେବ ନାହିଁ।

**ପ୍ରଶ୍ନ –** ଚତୁର୍ଦ୍ଦଶ ଅଧ୍ୟାୟରେ ଭଗବାନ୍ ସତ୍ତ୍ୱଗୁଣରେ ସ୍ଥିତ ଅବସ୍ଥାରେ ବା ସତ୍ତ୍ୱଗୁଣର ବୃଦ୍ଧିରେ ମରୁଥିବା ଲୋକଙ୍କୁ ଦେବଲୋକ, ରାଜସସ୍ୱଭାବଯୁକ୍ତ ଅବସ୍ଥାରେ ବା ରଜୋଗୁଣର ବୃଦ୍ଧିରେ ମରୁଥିବା ଲୋକଙ୍କୁ ମନୁଷ୍ୟଯୋନି ଏବଂ ତମୋଗୁଣ ସ୍ୱଭାବଯୁକ୍ତ ହୋଇଥିବା ଅବସ୍ଥାରେ ବା ତମୋଗୁଣର ବୃଦ୍ଧିରେ ମରୁଥିବା ଲୋକଙ୍କୁ ତିର୍ଯ୍ୟକ୍‌ଯୋନି ପ୍ରାପ୍ତ ହେଉଥିବା କଥା କହିଛନ୍ତି; ତେଣୁ ଏଠାରେ ସତ୍ତ୍ୱପ୍ରଧାନ ଲୋକଙ୍କୁ ବ୍ରାହ୍ମଣ, ରଜଃପ୍ରଧାନ ଲୋକଙ୍କୁ କ୍ଷତ୍ରିୟ ଇତ୍ୟାଦି କ୍ରମରେ ବିଭକ୍ତ କରି ନେଲେ ଉକ୍ତ ବକ୍ତବ୍ୟର ବିରୋଧ ହେବ କି ?

**ଉତ୍ତର –** ବାସ୍ତବରେ କୌଣସି ବିରୋଧ ହେବ ନାହିଁ। ରାଜସସ୍ୱଭାବଯୁକ୍ତ ଅବସ୍ଥାରେ ଓ ରଜୋଗୁଣର ବୃଦ୍ଧିରେ ମରୁଥିବା ଲୋକଙ୍କୁ ମନୁଷ୍ୟଯୋନି ଯେ ପ୍ରାପ୍ତ ହୁଏ, ତାହା ସତ୍ୟ। ଏହାଦ୍ୱାରା ମନୁଷ୍ୟଯୋନିରେ ରଜୋଗୁଣର ପ୍ରଧାନତା ସୂଚିତ ହେଉଅଛି; କିନ୍ତୁ ରଜୋଗୁଣପ୍ରଧାନ ମନୁଷ୍ୟଯୋନିରେ ସମସ୍ତ ମନୁଷ୍ୟ ସମାନ ଗୁଣର ହୁଅନ୍ତି ନାହିଁ। ସେମାନଙ୍କ ମଧ୍ୟରେ ଗୁଣମାନଙ୍କର ଅବାନ୍ତରଭେଦ ହୋଇଥାଏ ଏବଂ ସେହି ଅନୁସାରେ ଯେଉଁମାନେ ସତ୍ତ୍ୱଗୁଣପ୍ରଧାନ ହୁଅନ୍ତି, ସେମାନେ ବ୍ରାହ୍ମଣ ବର୍ଣ୍ଣରେ, ସତ୍ତ୍ୱମିଶ୍ରିତ ରଜୋଗୁଣପ୍ରଧାନମାନେ କ୍ଷତ୍ରିୟ ବର୍ଣ୍ଣରେ, ତମୋମିଶ୍ରିତ ରଜୋଗୁଣପ୍ରଧାନମାନେ ବୈଶ୍ୟ ବର୍ଣ୍ଣରେ ଏବଂ ରଜୋମିଶ୍ରିତ ତମୋଗୁଣପ୍ରଧାନମାନେ ଶୂଦ୍ର ବର୍ଣ୍ଣରେ ଜନ୍ମ ହୁଅନ୍ତି। ସତ୍ତ୍ୱରଜର ବିକାଶରୁ ରହିତ କେବଳ ତମଃପ୍ରଧାନମାନେ ତାହାଠାରୁ ବି ନିମ୍ନକୋଟୀର ଯୋନିମାନଙ୍କରେ ଜନ୍ମ ହୁଅନ୍ତି।

**ପ୍ରଶ୍ନ –** ନବମ ଅଧ୍ୟାୟର ଦଶମ ଶ୍ଳୋକରେ ଭଗବାନ୍ ନିଜର ପ୍ରକୃତିକୁ ସମସ୍ତ ଜଗତର ସୃଷ୍ଟିକାରିଣୀ ବୋଲି କହିଛନ୍ତି ଏବଂ ଏଠାରେ ସ୍ୱୟଂ ନିଜକୁ ସୃଷ୍ଟିର ରଚୟିତା ବୋଲି କହୁଛନ୍ତି। ଏଥିରେ ଯେଉଁ ବିରୋଧ ଭାବ ପ୍ରତୀତ ହେଉଅଛି, ତାହାର ସମାଧାନ କଣ ?

**ଉତ୍ତର –** ଏଥିରେ କୌଣସି ବିରୋଧ ଭାବ ନାହିଁ। ସେହି ଶ୍ଳୋକରେ ମଧ୍ୟ ଭଗବାନ୍ କେବଳ ପ୍ରକୃତିକୁ ଜଗତର ରଚୟିତ୍ରୀ ବୋଲି କହି ନାହାନ୍ତି; ବରଂ ଭଗବାନଙ୍କ ଅଧ୍ୟକ୍ଷତାରେ ପ୍ରକୃତି ଜଗତର ରଚନା କରେ ବୋଲି କହିଛନ୍ତି। କାରଣ ପ୍ରକୃତି ଜଡ଼; ତେଣୁ ଭଗବାନଙ୍କର ବିନା ସହାୟତାରେ ଗୁଣକର୍ମମାନଙ୍କର ବିଭାଗ କରିବାର ଏବଂ ସୃଷ୍ଟି ରଚନା କରିବାର ସାମର୍ଥ୍ୟ ପ୍ରକୃତିଠାରେ ନାହିଁ। ଅତଏବ ଗୀତାରେ ଯେଉଁଠି ପ୍ରକୃତିକୁ ସୃଷ୍ଟିକାରିଣୀ ବୋଲି କୁହାଯାଇଛି, ସେଠାରେ ବୁଝିବାକୁ ହେବ ଯେ, ଭଗବାନଙ୍କ ସତ୍ତାଶକ୍ତି ପାଇ ଏବଂ ତାଙ୍କର ଅଧ୍ୟକ୍ଷତାରେ ହିଁ ପ୍ରକୃତି ଜଗତର ରଚନା କରେ; ଏବଂ ଯେଉଁଠାରେ ଭଗବାନଙ୍କୁ ସୃଷ୍ଟିର ରଚୟିତା ବୋଲି କୁହାଯାଇଛି, ସେଠାରେ ବୁଝିବାକୁ ହେବ ଯେ, ଭଗବାନ୍ ସ୍ୱୟଂ ସୃଷ୍ଟି କରନ୍ତି ନାହିଁ; ନିଜର ପ୍ରକୃତିଦ୍ୱାରା ହିଁ ସୃଷ୍ଟି କରନ୍ତି।

**ପ୍ରଶ୍ନ –** ଜଗତର ରଚନାଦି କର୍ମର କର୍ତ୍ତା ହୋଇ ମଧ୍ୟ ଭଗବାନ୍ 'ତୁମେ ମୋତେ ଅକର୍ତ୍ତା ବୋଲି ଜାଣ'— ଏପରି କାହିଁକି କହିଛନ୍ତି ?

**ଉତ୍ତର –** ଏହାଦ୍ୱାରା ଭଗବାନଙ୍କ କର୍ମର ଦିବ୍ୟତା ପ୍ରକାଶିତ ହୋଇଛି। ଅଭିପ୍ରାୟ ଏହି ଯେ, ଭଗବାନଙ୍କର କୌଣସି କର୍ମରେ ରାଗ-ଦ୍ୱେଷ ବା କର୍ତ୍ତାପଣ ହୁଏ ନାହିଁ। ସେ ସର୍ବଦା ସେହି କର୍ମମାନଙ୍କରୁ ଅତୀତ; ତାଙ୍କ ସକାଶେ ଓ ତାଙ୍କର ଶକ୍ତି ପାଇ ପ୍ରକୃତି ସମସ୍ତ କର୍ମ କରେ। ତେଣୁ ଲୋକବ୍ୟବହାରରେ ଭଗବାନଙ୍କୁ ସେହି କର୍ମର କର୍ତ୍ତା ବୋଲି ଧରିନିଆଯାଉଥିଲେ ବି ବାସ୍ତବରେ ଭଗବାନ୍ ସର୍ବଥା ଉଦାସୀନ; କର୍ମ ସହିତ ତାଙ୍କର କୌଣସି ସମ୍ବନ୍ଧ ନ ଥାଏ (୯/୯,୧୦)। ଏହା ଦେଖାଇବାକୁ ଭଗବାନ୍ ଏପରି କହିଛନ୍ତି। ଯେଉଁଠି ଫଳାସକ୍ତି ଓ କର୍ତ୍ତାପଣରୁ ରହିତ ହୋଇ କର୍ମ କରୁଥିବା ଜ୍ଞାନୀମାନେ ମଧ୍ୟ କର୍ମର କର୍ତ୍ତା ବୋଲି ଧରାଯାଆନ୍ତି ନାହିଁ ଏବଂ ସେହି କର୍ମର ଫଳରେ ସେମାନଙ୍କର ସମ୍ବନ୍ଧ ରହେ ନାହିଁ, ସେଠାରେ ଭଗବାନଙ୍କର କଥା କଣ କହିବା ! ତାଙ୍କର କର୍ମ ତ ସର୍ବଥା ଅଲୌକିକ।

**ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା।**
**ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ॥ ୧୪ ॥**

**ଅନ୍ୱୟ –** କର୍ମଫଳେ = କର୍ମଫଳରେ; ମେ = ମୋର; ସ୍ପୃହା = ସ୍ପୃହା; ନ = ନାହିଁ; ମାମ୍ = (ତେଣୁ) ମୋତେ; **କର୍ମାଣି** = କର୍ମମାନେ; **ନ, ଲିମ୍ପନ୍ତି** = ଲିପ୍ତ କରନ୍ତି ନାହିଁ; **ଇତି** = ଏପରି (ବୋଲି); **ଯଃ** = ଯେ; **ମାମ୍** = ମୋତେ; **ଅଭିଜାନାତି** = ତତ୍ତ୍ୱତଃ ଜାଣେ; **ସଃ** = ସେ (ମଧ୍ୟ); **କର୍ମଭିଃ** = କର୍ମମାନଙ୍କ ଦ୍ୱାରା; **ନ, ବଧ୍ୟତେ** = ବାନ୍ଧି ହୁଏ ନାହିଁ।

**କର୍ମଫଳରେ ମୋର ସ୍ପୃହା ନାହିଁ, ତେଣୁ ମୋତେ କର୍ମମାନେ ଲିପ୍ତ କରନ୍ତି ନାହିଁ। ଯେ ମୋତେ ଏହିପରି ତତ୍ତ୍ୱତଃ ଜାଣିପାରନ୍ତି, ସେ ମଧ୍ୟ କର୍ମମାନଙ୍କ ଦ୍ୱାରା ବାନ୍ଧିହୁଅନ୍ତି ନାହିଁ।। ୧୪ ।।**

**ପ୍ରଶ୍ନ –** କର୍ମମାନଙ୍କରେ ଲିପ୍ତ ହେବାର ଅର୍ଥ କଣ ? ତଥା 'କର୍ମଫଳରେ ମୋର ସ୍ପୃହା ନାହିଁ, ତେଣୁ ମୋତେ କର୍ମମାନେ ଲିପ୍ତ କରନ୍ତି ନାହିଁ' – ଏହାଦ୍ୱାରା ଭଗବାନ୍ କି ଭାବ ଦେଖାଉଛନ୍ତି ?

**ଉତ୍ତର –** କର୍ମ କରୁଥିବା ମନୁଷ୍ୟଠାରେ ମମତ୍ୱ, ଆସକ୍ତି, ଫଳେଚ୍ଛା ଏବଂ ଅହଙ୍କାର ରହିଥିବାରୁ ତା'ଦ୍ୱାରା କରାଯାଉଥିବା କର୍ମ ସଂସ୍କାରରୂପରେ ତା'ର ଅନ୍ତଃକରଣରେ ସଞ୍ଚିତ ହୋଇଯାଏ, ତଥା ସେହି ଅନୁସାରେ ତାକୁ ପୁନର୍ଜନ୍ମ ଏବଂ ସୁଖଦୁଃଖ ମିଳିଥାଏ। ଏହାକୁ ହିଁ କର୍ମରେ ଲିପ୍ତ ହେବା ବୋଲି କହନ୍ତି। ଏଠାରେ ଭଗବାନ୍ ଉପରୋକ୍ତ ବାକ୍ୟଦ୍ୱାରା ଦେଖାଉଛନ୍ତି ଯେ, କର୍ମର ଫଳରୂପୀ କୌଣସି ବସ୍ତୁରେ ତାଙ୍କର କୌଣସି ସ୍ପୃହା ନାହିଁ– ଅର୍ଥାତ୍ ସେ କୌଣସି ବସ୍ତୁ ଲୋଡ଼ନ୍ତି ନାହିଁ (୩/୨୨)। ତାଙ୍କ ଦ୍ୱାରା ଯାହା କିଛି କର୍ମ ହୁଏ, ସେସବୁ ମମତ୍ୱ, ଆସକ୍ତି, ଫଳାକାଙ୍କ୍ଷା ଓ କର୍ତ୍ତାପଣରୁ ରହିତ ହୋଇ କେବଳ ଲୋକହିତପାଇଁ ହୁଏ (୪/୮); ତାଙ୍କର ସେହି କର୍ମ ସହିତ କୌଣସି ବି ସମ୍ବନ୍ଧ ନ ଥାଏ। ତେଣୁ ତାଙ୍କର ସମସ୍ତ କର୍ମ ଦିବ୍ୟ ଏବଂ ଏଇଥିପାଇଁ ତାଙ୍କୁ କର୍ମ ଲିପ୍ତ କରେ ନାହିଁ ଅର୍ଥାତ୍ ବନ୍ଧନରେ ପକାଏ ନାହିଁ।

**ପ୍ରଶ୍ନ –** ଭଗବାନଙ୍କୁ ତତ୍ତ୍ୱତଃ ଏପରି ଜାଣିବାର ଅର୍ଥ କଣ ? ଏବଂ ଏହିପରି ଜାଣିଥିବା ଲୋକ କର୍ମଦ୍ୱାରା କାହିଁକି ବାନ୍ଧି ହୁଅନ୍ତି ନାହିଁ ?

**ଉତ୍ତର –** ଉପରୋକ୍ତ ବର୍ଣ୍ଣନା ଅନୁସାରେ ବିଶ୍ୱରଚନାଦି ସମସ୍ତ କର୍ମ କରି ମଧ୍ୟ ଭଗବାନ୍ ବାସ୍ତବିକ ଅକର୍ତ୍ତା ଅଟନ୍ତି; ସେହି କର୍ମମାନଙ୍କ ସହିତ ତାଙ୍କର କିଛି ସମ୍ବନ୍ଧ ନାହିଁ; ତାଙ୍କ କର୍ମରେ ଟିକିଏ ବି ବିଷମତା ନାହିଁ; କର୍ମଫଳରେ ତାଙ୍କର ସାମାନ୍ୟମାତ୍ର ବି ଆସକ୍ତି, ମମତା ବା କାମନା ନାହିଁ। ଅତଏବ କର୍ମ ତାଙ୍କୁ ବନ୍ଧନରେ ପକାଇପାରେ ନାହିଁ–ଏପରି ଜାଣିପାରିବା ହିଁ ଭଗବାନଙ୍କୁ ଉପରୋକ୍ତପ୍ରକାରେ ତତ୍ତ୍ୱତଃ ଜାଣିବା। ଏବଂ ଭଗବାନଙ୍କ କର୍ମର ଏହି ରହସ୍ୟ ଯଥାର୍ଥରୂପେ ବୁଝିପାରୁଥିବା ମହାତ୍ମାମାନଙ୍କ କର୍ମ ଭଗବାନଙ୍କ କର୍ମପରି ମମତା, ଆସକ୍ତି, ଫଳେଚ୍ଛା ଓ ଅହଙ୍କାରରୁ ରହିତ ହୋଇ କେବଳ ଲୋକମଙ୍ଗଳପାଇଁ ହୋଇଥାଏ; ତେଣୁ ସେମାନଙ୍କୁ ମଧ୍ୟ କର୍ମ ବାନ୍ଧିପାରେ ନାହିଁ। ଅତଏବ ଏଥିରୁ ବୁଝିବା ଉଚିତ ଯେ, ଯେଉଁ ମନୁଷ୍ୟମାନଙ୍କର କର୍ମରେ ଓ ତାହାର ଫଳରେ କାମନା, ମମତ୍ୱ ତଥା ଆସକ୍ତି ଥାଏ, ସେମାନେ ବସ୍ତୁତଃ ଭଗବାନଙ୍କ କର୍ମର ଦିବ୍ୟତାକୁ ଜାଣି ନ ଥାନ୍ତି।

**ସମ୍ବନ୍ଧ –** ଏହିପରିଭାବରେ ଭଗବାନ୍ ତାଙ୍କ କର୍ମର ଦିବ୍ୟତା ଏବଂ ତାହାର ତତ୍ତ୍ୱ ଜାଣିବାର ମହତ୍ତ୍ୱ ବର୍ଣ୍ଣନା କରି, ବର୍ତ୍ତମାନ ମୁମୁକ୍ଷୁ ପୁରୁଷମାନଙ୍କ ଉଦାହରଣ ଦେଇ ସେହିପରି ନିଷ୍କାମଭାବରେ କର୍ମ କରିବାକୁ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି–

**ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ।**
**କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍।। ୧୫ ।।**

**ଅନ୍ୱୟ –** ପୂର୍ବୈଃ = ପୂର୍ବକାଳୀନ; ମୁମୁକ୍ଷୁଭିଃ = ମୁମୁକ୍ଷୁମାନଙ୍କ ଦ୍ୱାରା; ଅପି = ମଧ୍ୟ; ଏବମ୍ = ଏପରି; ଜ୍ଞାତ୍ୱା = ଜାଣି; କର୍ମ = କର୍ମ; କୃତମ୍ = କରାଯାଇଛି; ତସ୍ମାତ୍ = ତେଣୁ; ତ୍ୱମ୍ = ତୁମେ (ମଧ୍ୟ); ପୂର୍ବୈଃ = ପୂର୍ବଜମାନଙ୍କ ଦ୍ୱାରା; ପୂର୍ବତରମ୍, କୃତମ୍ = ଆଦିକାଳରୁ କରାଯାଇଥିବା; କର୍ମ, ଏବ = କର୍ମ ହିଁ; କୁରୁ = କର।

**ପୂର୍ବକାଳର ମୁମୁକ୍ଷୁମାନେ ମଧ୍ୟ ଏହା ଜାଣି କର୍ମ କରିଥିଲେ। ତେଣୁ ତୁମେ ମଧ୍ୟ ପୂର୍ବଜମାନଙ୍କ ଦ୍ୱାରା ଆଦିକାଳରୁ କରାଯାଇଥିବା କର୍ମ ହିଁ କର।। ୧୫ ।।**

**ପ୍ରଶ୍ନ –** 'ମୁମୁକ୍ଷୁ' କେଉଁମାନଙ୍କୁ କହନ୍ତି ? ତଥା ପୂର୍ବକାଳର ମୁମୁକ୍ଷୁମାନଙ୍କ ଉଦାହରଣ ଦେଇ ଏହି ଶ୍ଳୋକରେ କ'ଣ ବୁଝାଇଦିଆଯାଇଛି ?

**ଉତ୍ତର –** ଯେଉଁମାନେ ଜନ୍ମମରଣରୂପୀ ସଂସାରବନ୍ଧନରୁ ମୁକ୍ତ ହୋଇ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କୁ ପାଇବାକୁ ଚାହାନ୍ତି, ଯେଉଁମାନେ ସାଂସାରିକ

ଭୋଗକୁ ଦୁଃଖମୟ ଓ କ୍ଷଣଭଙ୍ଗୁର ବୋଲି ବୁଝି ସେଥିରୁ ବିରକ୍ତ ହୋଇଯାଇଛନ୍ତି ଏବଂ ଯେଉଁମାନଙ୍କର ଇହଲୋକର ଏବଂ ପରଲୋକର ଭୋଗରେ ଇଚ୍ଛା ନାହିଁ, ସେମାନଙ୍କୁ **ମୁମୁକ୍ଷୁ** କହନ୍ତି। ଅର୍ଜୁନ ମଧ୍ୟ ମୁମୁକ୍ଷୁ ଥିଲେ; ସେ କର୍ମବନ୍ଧନ ଭୟରେ ସ୍ୱଧର୍ମରୂପକ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେବାକୁ ଚାହୁଁଥିଲେ। ତେଣୁ ଭଗବାନ୍ ଏହି ଶ୍ଲୋକରେ ପୂର୍ବକାଳର ମୁମୁକ୍ଷୁମାନଙ୍କ ଉଦାହରଣ ଦେଇ ବୁଝାଇଦେଇଛନ୍ତି ଯେ, କର୍ମ ତ୍ୟାଗ କରିଦେଲେ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇପାରେ ନା; ତେଣୁ ପୂର୍ବକାଳର ମୁମୁକ୍ଷୁମାନେ ମଧ୍ୟ ଭଗବାନଙ୍କ କର୍ମମାନଙ୍କର ଦିବ୍ୟତାର ତତ୍ତ୍ୱ ବୁଝି ଭଗବାନଙ୍କ ପରି କର୍ମରେ ମମତ୍ୱ, ଆସକ୍ତି, ଫଳାକାଂକ୍ଷା ଏବଂ ଅହଙ୍କାର ତ୍ୟାଗ କରିଦେଇ ନିଷ୍କାମଭାବରେ ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ କର୍ମ ଆଚରଣ କରୁଥିଲେ। ଅତଏବ ଭଗବାନ୍ କହିଲେ, "ହେ ଅର୍ଜୁନ! ତୁମେ ଯଦି କର୍ମବନ୍ଧନରୁ ମୁକ୍ତ ହେବାକୁ ଇଚ୍ଛା କରୁଥାଅ, ତେବେ ତୁମେ ମଧ୍ୟ ପୂର୍ବଜ ମୁମୁକ୍ଷୁମାନଙ୍କ ପରି ନିଷ୍କାମଭାବରେ ସ୍ୱଧର୍ମରୂପକ କର୍ତ୍ତବ୍ୟକର୍ମ ପାଳନ କରିବା ଉଚିତ; କର୍ମ ତ୍ୟାଗ କରିବା ଉଚିତ ନୁହେଁ।"

*ସମ୍ବନ୍ଧ – ଭଗବାନ୍ ଅର୍ଜୁନଙ୍କୁ ନିଷ୍କାମଭାବରେ କର୍ମ କରିବାକୁ ଏପରି ଆଜ୍ଞା ଦେଇଥିଲେ। କିନ୍ତୁ କର୍ମ-ଅକର୍ମର ତତ୍ତ୍ୱ ନ ବୁଝି ମନୁଷ୍ୟ ନିଷ୍କାମଭାବରେ କର୍ମ କରିପାରିବ ନାହିଁ; ତେଣୁ ଭଗବାନ୍ ବର୍ତ୍ତମାନ ମମତ୍ୱ, ଆସକ୍ତି, ଫଳେଚ୍ଛା ଓ ଅହଙ୍କାର ବିନା କରାଯାଉଥିବା ଦିବ୍ୟକର୍ମର ତତ୍ତ୍ୱ ଭଲଭାବରେ ବୁଝାଇଦେବାନିମନ୍ତେ କର୍ମତତ୍ତ୍ୱର ଦୁର୍ବିଜ୍ଞେୟତା ଏବଂ ତାହା ଜାଣିବାର ମହତ୍ତ୍ୱ ପ୍ରକାଶ କରି ତାହା କହିବାକୁ ପ୍ରତିଜ୍ଞା କରୁଛନ୍ତି–*

**କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ।**
**ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍॥ ୧୬ ॥**

ଅନ୍ୱୟ – **କର୍ମ** = କର୍ମ; **କିମ୍** = କଣ; **ଅକର୍ମ** = ଅକର୍ମ; **କିମ୍** = କଣ; **ଇତି** = ଏପରି; **ଅତ୍ର** = ଏହା ନିର୍ଣ୍ଣୟ କରିବାରେ; **କବୟଃ** = ବୁଦ୍ଧିମାନ୍ ପୁରୁଷମାନେ; **ଅପି** = ମଧ୍ୟ; **ମୋହିତାଃ** = ଭ୍ରମରେ ପଡ଼ିଯାଆନ୍ତି (ତେଣୁ); **ତତ୍** = ସେହି; **କର୍ମ** = କର୍ମତତ୍ତ୍ୱ (ମୁଁ); **ତେ** = ତୁମକୁ; **ପ୍ରବକ୍ଷ୍ୟାମି** = ଭଲଭାବରେ ବୁଝାଇ କହିଦେବି; **ଯତ୍** = ଯାହା; **ଜ୍ଞାତ୍ୱା** = ଜାଣି (ତୁମେ); **ଅଶୁଭାତ୍** = ଅଶୁଭରୁ ଅର୍ଥାତ୍ କର୍ମବନ୍ଧନରୁ; **ମୋକ୍ଷ୍ୟସେ** = ମୁକ୍ତ ହୋଇଯିବ।

**କର୍ମ କଣ ଏବଂ ଅକର୍ମ କଣ, ତାହା ନିର୍ଣ୍ଣୟ କରିବାବେଳେ ବୁଦ୍ଧିମାନ୍ ପୁରୁଷମାନେ ମଧ୍ୟ ଭ୍ରମରେ ପଡ଼ିଯାଆନ୍ତି। ତେଣୁ ମୁଁ ତୁମକୁ ସେହି କର୍ମତତ୍ତ୍ୱ ଭଲଭାବରେ ବୁଝାଇ କହିଦେବି, ଯାହା ଜାଣିଲେ ତୁମେ ଅଶୁଭରୁ ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତ ହୋଇଯିବ॥ ୧୬ ॥**

**ପ୍ରଶ୍ନ –** ଏଠାରେ **କବୟଃ** ପଦ କେଉଁ ପୁରୁଷମାନଙ୍କ ବାଚକ ଏବଂ ସେମାନେ କର୍ମ-ଅକର୍ମ ନିର୍ଣ୍ଣୟ କରିବାରେ ଭ୍ରମରେ ପଡ଼ିଯାଆନ୍ତି ବୋଲି କହିବାର ଅର୍ଥ କଣ? ପୁଣି ଏହି ବାକ୍ୟରେ ଅପି ପଦ ପ୍ରୟୋଗର ଅଭିପ୍ରାୟ କଣ?

**ଉତ୍ତର –** ଏଠାରେ **କବୟଃ** ପଦଟି ହେଉଛି ବିଭିନ୍ନ ଶାସ୍ତ୍ର ଜାଣିଥିବା ବୁଦ୍ଧିମାନ୍ ପୁରୁଷମାନଙ୍କର ବାଚକ। ଶାସ୍ତ୍ରମାନଙ୍କରେ ଭିନ୍ନ ଭିନ୍ନ ପ୍ରଣାଳୀରେ କର୍ମର ତତ୍ତ୍ୱ ବୁଝାଇଦିଆଯାଇଛି। ତାହା ଦେଖିଶୁଣି ମଧ୍ୟ ଅମୁକଭାବରେ କରାଯାଉଥିବା କ୍ରିୟା ଅଥବା କ୍ରିୟାତ୍ୟାଗ ହିଁ କର୍ମ ଏବଂ କ୍ରିୟା ଅଥବା କ୍ରିୟାତ୍ୟାଗ ହିଁ ଅକର୍ମ ବୋଲି ବୁଦ୍ଧି ଠିକ୍ ନିର୍ଣ୍ଣୟ କରିପାରେ ନାହିଁ। ଏହା ହିଁ ସେମାନଙ୍କର କର୍ମ-ଅକର୍ମ ନିର୍ଣ୍ଣୟରେ ଭ୍ରମରେ ପଡ଼ିବା। ଏହି ବାକ୍ୟରେ ଅପି ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯେତେବେଳେ ବିଶିଷ୍ଟ ବୁଦ୍ଧିମାନ୍ ଲୋକେ ମଧ୍ୟ ଏ ବିଷୟରେ ଭ୍ରମରେ ପଡ଼ିଯାଆନ୍ତି, ଠିକ୍-ଠିକ୍ ନିର୍ଣ୍ଣୟ କରିପାରନ୍ତି ନାହିଁ, ସେତେବେଳେ ସାଧାରଣ ମନୁଷ୍ୟମାନଙ୍କ କଥା କଣ କହିବା! ଏଣୁ କର୍ମର ତତ୍ତ୍ୱ ଅତ୍ୟନ୍ତ ଦୁର୍ବିଜ୍ଞେୟ।

**ପ୍ରଶ୍ନ –** ଏଠାରେ ଯେଉଁ କର୍ମତତ୍ତ୍ୱ ବର୍ଣ୍ଣନା କରିବା ପାଇଁ ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ଏହି ଅଧ୍ୟାୟରେ ତାହା କେଉଁଠାରେ ବର୍ଣ୍ଣନା କରାଯାଇଛି? ତାହାକୁ ତତ୍ତ୍ୱତଃ ଜାଣିବାର ଅର୍ଥ କଣ ଏବଂ ତାହା ଜାଣିଲେ କିପରି କର୍ମବନ୍ଧନରୁ ମୁକ୍ତି ମିଳିଯାଏ?

**ଉତ୍ତର —** ଉପରୋକ୍ତ କର୍ମତତ୍ତ୍ୱର ବର୍ଣ୍ଣନା ଏହି ଅଧ୍ୟାୟରେ ଅଠରଠାରୁ ବତିଶ ଶ୍ଳୋକପର୍ଯ୍ୟନ୍ତ କରାଯାଇଛି; ସେହି ବର୍ଣ୍ଣନା ଅଧ୍ୟୟନ କରି କିପରିଭାବରେ କରାଯାଉଥିବା କେଉଁ କର୍ମ ବା କର୍ମତ୍ୟାଗ ମନୁଷ୍ୟର ପୁନର୍ଜନ୍ମରୂପକ ବନ୍ଧନର ହେତୁ ହୁଏ ଏବଂ କିପରିଭାବରେ କରାଯାଉଥିବା କେଉଁ କର୍ମ ବା କର୍ମତ୍ୟାଗ ମନୁଷ୍ୟର ପୁନର୍ଜନ୍ମରୂପକ ବନ୍ଧନର ହେତୁ ନ ହୋଇ ତା'ର ମୁକ୍ତିର କାରଣ ହୁଏ, ତାହା ଠିକ୍‌ଭାବରେ ବୁଝିନେବା ଉଚିତ। ଏପରି ବୁଝିପାରିବା ହିଁ ତାହାକୁ ତତ୍ତ୍ୱତଃ ଜାଣିବା। ଏହି ତତ୍ତ୍ୱ ବୁଝିଥିବା ମନୁଷ୍ୟଙ୍କ ଦ୍ୱାରା ବନ୍ଧନର ହେତୁ ହେଉଥିବା ଏପରି କୌଣସି କର୍ମ ବା କର୍ମତ୍ୟାଗ କରନ୍ତି ନାହିଁ। ତାଙ୍କର ସମସ୍ତ କର୍ତ୍ତବ୍ୟକର୍ମ ମମତ୍ୱ, ଆସକ୍ତି, ଫଳେଚ୍ଛା ଓ ଅହଙ୍କାରରୁ ରହିତ ହୋଇ କେବଳ ଭଗବଦର୍ଥ ବା ଲୋକମଙ୍ଗଳପାଇଁ ହୋଇଥାଏ। ତେଣୁ ଉପରୋକ୍ତ କର୍ମତତ୍ତ୍ୱ ଜାଣିପାରିଲେ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇଯାଏ।

*ସମ୍ବନ୍ଧ — ସ୍ୱଭାବତଃ ମନୁଷ୍ୟ ସ୍ୱୀକାର କରିବ ଯେ, ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମମାନଙ୍କର ନାମ କର୍ମ ଏବଂ ସ୍ୱରୂପତଃ କ୍ରିୟାମାନଙ୍କର ତ୍ୟାଗ ହିଁ ଅକର୍ମ। ତେଣୁ ଏଥିରେ ଭ୍ରମରେ ପଡ଼ିଯିବାର କଣ ଅଛି? ଏଥିରେ ଜାଣିବାର ବା କଣ ଅଛି? କିନ୍ତୁ ଏତିକି ଜାଣିଗଲେ ମଧ୍ୟ ବାସ୍ତବିକ କର୍ମ-ଅକର୍ମ ନିର୍ଣ୍ଣୟ କରିହେବ ନାହିଁ, କର୍ମତତ୍ତ୍ୱକୁ ଭଲଭାବରେ ବୁଝିବାର ଆବଶ୍ୟକତା ରହିଛି। ଏହି ଭାବ ସ୍ପଷ୍ଟ କରିବାକୁ ଭଗବାନ୍ କହୁଛନ୍ତି—*

**କର୍ମଣୋ ହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ।**
**ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋ ଗତିଃ॥ ୧୭ ॥**

ଅନ୍ୱୟ — **କର୍ମଣଃ** = କର୍ମର (ସ୍ୱରୂପ); **ଅପି** = ମଧ୍ୟ; **ବୋଦ୍ଧବ୍ୟମ୍** = ଜାଣିବା ଉଚିତ; **ଚ** = ଏବଂ; **ଅକର୍ମଣଃ** = ଅକର୍ମର (ସ୍ୱରୂପ ବି); **ବୋଦ୍ଧବ୍ୟମ୍** = ଜାଣିବା ଉଚିତ; **ଚ** = ତଥା; **ବିକର୍ମଣଃ** = ବିକର୍ମର (ସ୍ୱରୂପ ମଧ୍ୟ); **ବୋଦ୍ଧବ୍ୟମ୍** = ଜାଣିବା ଉଚିତ; **ହି** = କାରଣ; **କର୍ମଣଃ** = କର୍ମର; **ଗତିଃ** = ଗତି; **ଗହନା** = ଗହନ ଅଟେ।

**କର୍ମର ସ୍ୱରୂପ ବି ଜାଣିବା ଉଚିତ ଓ ଅକର୍ମର ସ୍ୱରୂପ ବି ଜାଣିବା ଉଚିତ ତଥା ବିକର୍ମର ସ୍ୱରୂପ ମଧ୍ୟ ଜାଣିବା ଉଚିତ; କାରଣ କର୍ମର ଗତି ବଡ଼ ଗହନ॥ ୧୭ ॥**

**ପ୍ରଶ୍ନ —** 'କର୍ମର ସ୍ୱରୂପ ବି ଜାଣିବା ଉଚିତ'— ଏହାର ଭାବ କଣ?

**ଉତ୍ତର —** ଏଠାରେ ଭଗବାନ୍ କହୁଛନ୍ତି: ସାଧାରଣତଃ ମନୁଷ୍ୟ ଜାଣେ ଯେ, ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମର ନାମ କର୍ମ; କିନ୍ତୁ ଏତିକିମାତ୍ର ଜାଣିଗଲେ କର୍ମର ସ୍ୱରୂପ ଜଣାପଡ଼େ ନାହିଁ; କାରଣ ଆଚରଣରେ ଭାବର ପ୍ରଭେଦ ରହୁଥିବାରୁ ସ୍ୱରୂପରେ ମଧ୍ୟ ପ୍ରଭେଦ ଆସିଯାଏ। ତେଣୁ କେଉଁଭାବରେ, କିପରି କରାଯାଉଥିବା, କେଉଁ କ୍ରିୟାର ନାମ ଯେ କର୍ମ ଏବଂ କେଉଁ ସ୍ଥିତିରେ କେଉଁ ମନୁଷ୍ୟଙ୍କୁ କେଉଁପ୍ରକାର ଶାସ୍ତ୍ରବିହିତ କର୍ମ ଯେ କିପରିଭାବରେ କରିବାକୁ ହେବ, ତାହା ଶାସ୍ତ୍ରର ଜ୍ଞାତା ତତ୍ତ୍ୱଜ୍ଞ ମହାପୁରୁଷମାନେ ହିଁ ସଠିକଭାବରେ ଜାଣନ୍ତି। ଅତଏବ ନିଜର ଅଧିକାର ଅନୁସାରେ ବର୍ଣ୍ଣାଶ୍ରମୋଚିତ କର୍ତ୍ତବ୍ୟକର୍ମକୁ ଆଚରଣରେ ଆଣିବାନିମିତ୍ତ ତତ୍ତ୍ୱବେତ୍ତା ମହାପୁରୁଷଙ୍କ ଠାରୁ ସେହିସବୁ କର୍ମ ବୁଝିବା ଉଚିତ ଏବଂ ସେମାନଙ୍କର ପ୍ରେରଣା ଓ ଆଜ୍ଞାନୁସାରେ ତାହା ଆଚରଣ କରିବା ଉଚିତ।

**ପ୍ରଶ୍ନ —** 'ଅକର୍ମର ସ୍ୱରୂପ ବି ଜାଣିବା ଉଚିତ'— ଏ କଥାର ଅଭିପ୍ରାୟ କଣ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି: ସାଧାରଣତଃ ମନୁଷ୍ୟ ମନ, ବଚନ ଓ ଶରୀରଦ୍ୱାରା କରାଯାଉଥିବା କ୍ରିୟାମାନଙ୍କୁ ସ୍ୱରୂପତଃ ତ୍ୟାଗ କରିଦେବା ହିଁ ଅକର୍ମ ବୋଲି ଅର୍ଥାତ୍ କର୍ମରୁ ରହିତ ହେବା ବୋଲି ବୁଝେ; କିନ୍ତୁ ଏତିକିମାତ୍ର ବୁଝିଗଲେ ଅକର୍ମର ବାସ୍ତବିକ ସ୍ୱରୂପ ଜଣାପଡ଼େ ନାହିଁ; କାରଣ ଭାବଭେଦରେ ଏହି ଅକର୍ମ ମଧ୍ୟ କର୍ମ ବା ବିକର୍ମରୂପରେ ବଦଳିଯାଏ। ପୁଣି ଲୋକେ ଯାହାକୁ କର୍ମ ବୋଲି ବୁଝନ୍ତି, ତାହା ମଧ୍ୟ ଅକର୍ମ ବା ବିକର୍ମ ହୋଇଯାଏ। ତେଣୁ କେଉଁଭାବରେ କିପରି କରାଯାଉଥିବା କ୍ରିୟାର ବା ତାହାର ତ୍ୟାଗର ନାମ ଅକର୍ମ ଏବଂ କେଉଁ ସ୍ଥିତିରେ କେଉଁ ମନୁଷ୍ୟ ତାହା କେଉଁଭାବରେ ଆଚରଣ କରିବା ଉଚିତ, ତାହା ତତ୍ତ୍ୱଜ୍ଞାନୀ ମହାପୁରୁଷମାନେ ହିଁ ଠିକ୍‌ରୂପେ ଜାଣିପାରନ୍ତି। ଅତଏବ କର୍ମବନ୍ଧନରୁ ମୁକ୍ତ ହେବାକୁ ଇଚ୍ଛା କରୁଥିବା

ମନୁଷ୍ୟ ସେହି ମହାପୁରୁଷମାନଙ୍କ ଠାରୁ ଅକର୍ମର ସ୍ୱରୂପ ଭଲଭାବରେ ବୁଝି ସେମାନଙ୍କ କଥାନୁସାରେ ସାଧନା କରିବା ଉଚିତ।

**ପ୍ରଶ୍ନ—** 'ବିକର୍ମର ସ୍ୱରୂପ ମଧ୍ୟ ଜାଣିବା ଉଚିତ'—ଏହାର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି ଯେ, ସାଧାରଣତଃ ମିଥ୍ୟା, କପଟ, ଚୋରି, ବ୍ୟଭିଚାର, ହିଂସା ଆଦି ପାପକର୍ମର ନାମ ଯେ ବିକର୍ମ, ତାହା ସମସ୍ତେ ଜାଣନ୍ତି। କିନ୍ତୁ ଏତିକି ଜାଣିଗଲେ ବିକର୍ମର ଯଥାର୍ଥସ୍ୱରୂପ ଜଣାଯାଇପାରିବ ନାହିଁ; କାରଣ ଶାସ୍ତ୍ରର ତତ୍ତ୍ୱ ଜାଣି ନ ଥିବା ଅଜ୍ଞାନୀମାନେ ପୁଣ୍ୟକୁ ମଧ୍ୟ ପାପ ବୋଲି ଧରିନିଅନ୍ତି ଏବଂ ପାପକୁ ପୁଣ୍ୟ ବୋଲି ଧରିନିଅନ୍ତି। ବର୍ଣ୍ଣ, ଆଶ୍ରମ ଓ ଅଧିକାରଭେଦରେ ଯେଉଁ କର୍ମ ଜଣକପାଇଁ ବିହିତ ହୋଇଥିବାରୁ କର୍ତ୍ତବ୍ୟ ହୁଏ, ତାହା ଅନ୍ୟମାନଙ୍କ ପାଇଁ ନିଷିଦ୍ଧ ହୋଇଥିବାରୁ ପାପ (ବିକର୍ମ) ହୋଇଯାଏ। ଉଦାହରଣସ୍ୱରୂପ ସବୁ ବର୍ଣ୍ଣର ସେବା କରି ଜୀବିକା ନିର୍ବାହ କରିବା ଶୂଦ୍ରଙ୍କର ବିହିତକର୍ମ; କିନ୍ତୁ ତାହା ବ୍ରାହ୍ମଣଙ୍କ ପାଇଁ ନିଷିଦ୍ଧକର୍ମ; ପୁଣି ଦାନ ଗ୍ରହଣ କରି, ବେଦ ପଢାଇ ଓ ଯଜ୍ଞ କରାଇ ଜୀବିକା ନିର୍ବାହ କରିବା ବ୍ରାହ୍ମଣଙ୍କ ପାଇଁ କର୍ତ୍ତବ୍ୟକର୍ମ; କିନ୍ତୁ ଅନ୍ୟ ବର୍ଣ୍ଣଙ୍କ ପାଇଁ ତାହା ପାପ; ଆହୁରି ମଧ୍ୟ ଗୃହସ୍ଥଙ୍କ ପକ୍ଷରେ ନ୍ୟାୟୋପାର୍ଜିତ ଦ୍ରବ୍ୟସଂଗ୍ରହ ଏବଂ ଋତୁକାଳରେ ସ୍ୱପତ୍ନୀଗମନ ଧର୍ମ; କିନ୍ତୁ ସନ୍ନ୍ୟାସୀଙ୍କ ପକ୍ଷରେ କାମିନୀକାଞ୍ଚନର ଦର୍ଶନ-ସ୍ପର୍ଶନ ମଧ୍ୟ ପାପ। ତେଣୁ ମିଥ୍ୟା, କପଟ, ଚୋରି, ବ୍ୟଭିଚାର, ହିଂସା ଆଦି ଯାହା ସର୍ବସାଧାରଣଙ୍କ ପାଇଁ ନିଷିଦ୍ଧ ତଥା ଅଧିକାରଭେଦରେ ଯାହା ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କ ପାଇଁ ନିଷିଦ୍ଧ, ତାହାସବୁ ତ୍ୟାଗ କରିବା ନିମନ୍ତେ ବିକର୍ମର ସ୍ୱରୂପ ଭଲଭାବରେ ବୁଝିବା ଉଚିତ। ଏହାର ସ୍ୱରୂପ ତତ୍ତ୍ୱବେତ୍ତା ମହାପୁରୁଷମାନେ ହିଁ ସଠିକରୂପେ ନିର୍ଣ୍ଣୟ କରିପାରନ୍ତି।

**ପ୍ରଶ୍ନ—** 'କର୍ମର ଗତି ବଡ଼ ଗହନ', ଏପରି ବକ୍ତବ୍ୟର ତଥା ହି ଅବ୍ୟୟ ପ୍ରୟୋଗର ଭାବ କଣ ?

**ଉତ୍ତର—** ହି ଅବ୍ୟୟ ଏଠାରେ ହେତୁବାଚକ। ଏହା ପ୍ରୟୋଗ କରି ଉପରୋକ୍ତ ବାକ୍ୟରେ ଭଗବାନ୍ ଦେଖାଇଛନ୍ତି ଯେ, କର୍ମର ତତ୍ତ୍ୱ ବଡ଼ ଗହନ; କର୍ମ କଣ, ଅକର୍ମ କଣ, ବିକର୍ମ କଣ— ତାହା ପ୍ରତ୍ୟେକ ମନୁଷ୍ୟ ନିର୍ଣ୍ଣୟ କରିପାରିବ ନାହିଁ; ଯେଉଁମାନେ ବିଦ୍ୟା-ବୁଦ୍ଧି ଦୃଷ୍ଟିରୁ ପଣ୍ଡିତ ଏବଂ ବୁଦ୍ଧିମାନ୍, ସେମାନେ ମଧ୍ୟ ବେଳେ ବେଳେ ଏହା ନିର୍ଣ୍ଣୟ କରିବାକୁ ଅସମର୍ଥ ହୋଇଯାଆନ୍ତି। ଏଣୁ କର୍ମର ତତ୍ତ୍ୱ ଭଲଭାବରେ ଜାଣିଥିବା ମହାପୁରୁଷମାନଙ୍କ ଠାରୁ ଏହାର ତତ୍ତ୍ୱ ବୁଝିବା ଆବଶ୍ୟକ।

*ସମ୍ବନ୍ଧ— ଶ୍ରୋତାଙ୍କ ଅନ୍ତଃକରଣରେ ରୁଚି ଓ ଶ୍ରଦ୍ଧା ଉତ୍ପନ୍ନ କରିବାନିମନ୍ତେ କର୍ମତତ୍ତ୍ୱକୁ ଏପରିଭାବରେ ଗହନ ବୋଲି କହି ତଥା ଏହା ଜାଣିବା ଅତ୍ୟନ୍ତ ଆବଶ୍ୟକ ବୋଲି କହି ବର୍ତ୍ତମାନ ନିଜର ପ୍ରତିଜ୍ଞା ଅନୁସାରେ ଭଗବାନ୍ କର୍ମର ତତ୍ତ୍ୱ ବୁଝାଉଛନ୍ତି—*

## କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ।
## ସ ବୁଦ୍ଧିମାନ୍ ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍॥ ୧୮ ॥

**ଅନ୍ୱୟ—** **ଯଃ** = ଯେଉଁ ମନୁଷ୍ୟ; **କର୍ମଣି** = କର୍ମରେ; **ଅକର୍ମ** = ଅକର୍ମକୁ; **ପଶ୍ୟେତ୍** = ଦର୍ଶନ କରେ; **ଚ** = ଏବଂ; **ଯଃ** = ଯେ; **ଅକର୍ମଣି** = ଅକର୍ମରେ; **କର୍ମ** = କର୍ମକୁ (ଦେଖନ୍ତି); **ସଃ** = ସେ; **ମନୁଷ୍ୟେଷୁ** = ମନୁଷ୍ୟମାନଙ୍କ ମଧ୍ୟରେ; **ବୁଦ୍ଧିମାନ୍** = ବୁଦ୍ଧିମାନ୍ (ଏବଂ); **ସଃ** = ସେ; **ଯୁକ୍ତଃ** = ଯୋଗୀ; **କୃତ୍ସ୍ନକର୍ମକୃତ୍** = ସମସ୍ତ କର୍ମ କରିଥାନ୍ତି।

**ଯେ କର୍ମରେ ଅକର୍ମ ଦର୍ଶନ କରନ୍ତି ଏବଂ ଅକର୍ମରେ କର୍ମ ଦର୍ଶନ କରନ୍ତି, ସେ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଏବଂ ସେହି ଯୋଗୀ ସମସ୍ତ କର୍ମ କରିଥାନ୍ତି॥ ୧୮ ॥**

**ପ୍ରଶ୍ନ—** କର୍ମରେ ଅକର୍ମ ଦେଖିବା କ'ଣ ? ତଥା ଏହିପରି ଦେଖିପାରୁଥିବା ମନୁଷ୍ୟ ସମସ୍ତଙ୍କ ମଧ୍ୟରେ ବୁଦ୍ଧିମାନ୍ ଓ ଯୋଗୀ ଅଟନ୍ତି ଏବଂ ସେ ସମସ୍ତ କର୍ମ କରିଥାନ୍ତି ବୋଲି କହିବାର ଯଥାର୍ଥତା କଣ ?

**ଉତ୍ତର—** ଲୋକପ୍ରସିଦ୍ଧିରେ ମନ, ବୁଦ୍ଧି, ଇନ୍ଦ୍ରିୟ ଏବଂ ଶରୀରର ବ୍ୟାପାରମାତ୍ରର ନାମ କର୍ମ। ସେଥି-ମଧ୍ୟରୁ ଯାହା ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ, ତାହାକୁ କର୍ମ କହନ୍ତି ଏବଂ ଶାସ୍ତ୍ରନିଷିଦ୍ଧ ପାପକର୍ମକୁ ବିକର୍ମ କହନ୍ତି।

ଶାସ୍ତ୍ରନିଷିଦ୍ଧ ପାପକର୍ମ ସର୍ବଥା ତ୍ୟାଜ୍ୟ, ତେଣୁ ଏଠାରେ ତାହାର ଚର୍ଚ୍ଚା କରାଯାଉ ନାହିଁ।

ଏଣୁ ଏଠାରେ ଯେଉଁ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ରହିଛି, ସେଥିରେ ଅକର୍ମ ଦେଖିବାର ଅର୍ଥ କଣ, ତାହା ହିଁ ବିଚାର କରିବାକୁ ହେବ। ଯଜ୍ଞ, ଦାନ, ତପ ତଥା ବର୍ଣ୍ଣାଶ୍ରମ ଅନୁସାରେ ଜୀବିକା ଏବଂ ଶରୀରନିର୍ବାହସମ୍ବନ୍ଧୀ ଯେତେପ୍ରକାର ଶାସ୍ତ୍ରବିହିତ କର୍ମ ରହିଛି, ସେହିସବୁରେ ଆସକ୍ତି, ଫଳେଚ୍ଛା, ମମତ୍ୱ ଓ ଅହଙ୍କାର ତ୍ୟାଗ କରିଦେଲେ ତାହା ଇହଲୋକରେ ବା ପରଲୋକରେ ସୁଖଦୁଃଖାଦି ଫଳ ଭୋଗ କରାଇବାର ଏବଂ ପୁନର୍ଜନ୍ମର କାରଣ ହୁଏ ନାହିଁ; ବରଂ ତାହା ମନୁଷ୍ୟର ପୂର୍ବକୃତ ସମସ୍ତ ଶୁଭାଶୁଭକର୍ମ ନାଶ କରିଦେଇ ମନୁଷ୍ୟକୁ ସଂସାରବନ୍ଧନରୁ ମୁକ୍ତ କରିଦିଏ। ଏହି ରହସ୍ୟ ବୁଝିନେବା ହିଁ କର୍ମରେ ଅକର୍ମ ଦର୍ଶନ କରିବା। ଏପରିଭାବରେ କର୍ମରେ ଅକର୍ମ ଦର୍ଶନ କରିପାରୁଥିବା ମନୁଷ୍ୟ ଆସକ୍ତି, ଫଳେଚ୍ଛା ଓ ମମତ୍ୱତ୍ୟାଗପୂର୍ବକ ଯଥାଯୋଗ୍ୟ ବିହିତକର୍ମ ଆଚରଣ କରନ୍ତି। ତେଣୁ ସେ କର୍ମ କରି ମଧ୍ୟ ସେଥିରେ ଲିପ୍ତ ହୁଅନ୍ତି ନାହିଁ; ତେଣୁ ସେ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଅଟନ୍ତି; ସେ ପରମାତ୍ମାଙ୍କୁ ପାଆନ୍ତି; ତେଣୁ ସେ ଯୋଗୀ ଅଟନ୍ତି। ତାଙ୍କର କୌଣସି କର୍ତ୍ତବ୍ୟ ବାକି ରହେ ନାହିଁ; ସେ କୃତକୃତ୍ୟ ହୋଇଯାଆନ୍ତି; ତେଣୁ ସେ ସମସ୍ତ କର୍ମ କରିଥାନ୍ତି।

**ପ୍ରଶ୍ନ** – ଅକର୍ମରେ କର୍ମ ଦର୍ଶନ କରିବା କଣ ? ଏହିପରି ଦର୍ଶନ କରିପାରୁଥିବା ଲୋକ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍, ଯୋଗୀ ଏବଂ ସେ ସମସ୍ତ କର୍ମ କିପରି କରିଥାନ୍ତି ?

**ଉତ୍ତର** – ଲୋକପ୍ରସିଦ୍ଧିରେ ମନ, ବଚନ ଓ ଶରୀରର ବ୍ୟାପାର ତ୍ୟାଗ କରିଦେବାର ନାମ ଅକର୍ମ; ଏହି ତ୍ୟାଗରୂପକ ଅକର୍ମ ମଧ୍ୟ ଯଦି ଆସକ୍ତି, ଫଳେଚ୍ଛା, ମମତ୍ୱ ଓ ଅହଙ୍କାରପୂର୍ବକ କରାଯାଏ, ତେବେ ତାହା ପୁନର୍ଜନ୍ମର କାରଣ ହୋଇଯାଏ; — କେବଳ ସେତିକି ନୁହେଁ; କର୍ତ୍ତବ୍ୟକର୍ମରେ ଅବହେଳନା କଲେ ବା ତାହା ଦମ୍ଭାଚାରପାଇଁ କଲେ, ତାହା ବିକର୍ମ(ପାପ)ରୂପରେ ମଧ୍ୟ ବଦଳିଯାଏ। ଏହି ରହସ୍ୟ ବୁଝିନେବା ହିଁ ଅକର୍ମରେ କର୍ମ ଦର୍ଶନ କରିବା। ଏହି ରହସ୍ୟ ବୁଝିଥିବା ମନୁଷ୍ୟ ଶାରୀରିକକଷ୍ଟଭୟରୁ କୌଣସି ବର୍ଣ୍ଣାଶ୍ରମୋଚିତ କର୍ମ ତ୍ୟାଗ କରନ୍ତି ନାହିଁ, କି ରାଗଦ୍ୱେଷ ଅଥବା ମୋହବଶତଃ ଏବଂ ମାନ, ବଡିମା, ପ୍ରତିଷ୍ଠା ବା ଅନ୍ୟ କୌଣସି ଫଳପ୍ରାପ୍ତି ଇଚ୍ଛାରେ କର୍ମତ୍ୟାଗ କରନ୍ତି ନାହିଁ। ତେଣୁ ସେ କେବେହେଲେ ନିଜ କର୍ତ୍ତବ୍ୟରୁ ତଳକୁ ଖସନ୍ତି ନାହିଁ ଏବଂ କୌଣସିପ୍ରକାର ତ୍ୟାଗରେ ମମତା, ଆସକ୍ତି, ଫଳେଚ୍ଛା ବା ଅହଙ୍କାର ସମ୍ବନ୍ଧ ରଖି ପୁନର୍ଜନ୍ମରେ ଭାଗୀ ହୁଅନ୍ତି ନାହିଁ। ତେଣୁ ସେ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍। ପରମପୁରୁଷ ପରମେଶ୍ୱରଙ୍କ ସହିତ ତାଙ୍କର ସଂଯୋଗ ହୋଇସାରିଥାଏ; ତେଣୁ ସେ ଯୋଗୀ ଅଟନ୍ତି ଏବଂ ତାଙ୍କ ପାଇଁ କୌଣସି କର୍ତ୍ତବ୍ୟ ମଧ୍ୟ ବାକି ରହି ନ ଥାଏ; ତେଣୁ ସେ ସମସ୍ତ କର୍ମ କରିସାରିଥାନ୍ତି।

**ପ୍ରଶ୍ନ** – ଯଦି କର୍ମର ଅର୍ଥ କ୍ରିୟମାଣକର୍ମ, ବିକର୍ମର ଅର୍ଥ ବିବିଧପ୍ରକାର ସଂଚିତ କର୍ମ ଓ ଅକର୍ମର ଅର୍ଥ ପ୍ରାରବ୍ଧ କର୍ମ ବୋଲି ଧରିନେଇ କର୍ମରେ ଅକର୍ମ ଦେଖିବା ଅର୍ଥ କ୍ରିୟମାଣକର୍ମ କରିବା ସମୟରେ ଭବିଷ୍ୟତ୍‌ରେ ତାହା ପ୍ରାରବ୍ଧକର୍ମ (ଅକର୍ମ) ହୋଇ ଫଳଭୋଗରୂପେ ଉପସ୍ଥିତ ହେବ ବୋଲି ବୁଝିବା ଏବଂ ଅକର୍ମରେ କର୍ମ ଦର୍ଶନ କରିବାର ଅର୍ଥ ପ୍ରାରବ୍ଧରୂପକ ଫଳଭୋଗବେଳେ ସେସବୁ ଦୁଃଖାଦି ଭୋଗକୁ ନିଜର ପୂର୍ବକୃତ କ୍ରିୟମାଣ କର୍ମମାନଙ୍କର ହିଁ ଫଳ ବୋଲି ବୁଝିବା ଏବଂ ଏପରି ବୁଝି ପାପକର୍ମ ତ୍ୟାଗ କରି ଶାସ୍ତ୍ରବିହିତ କର୍ମ କରିବା, ତେବେ କିଛି ଆପତ୍ତି ଅଛି କି? କାରଣ କର୍ମମାନଙ୍କର ସଂଚିତ, କ୍ରିୟମାଣ ଓ ପ୍ରାରବ୍ଧ– ଏହି ତିନୋଟି ପ୍ରକାର ହିଁ ପ୍ରସିଦ୍ଧ।

**ଉତ୍ତର** – ଠିକ୍ ଅଛି; ଏପରି ମାନିବା ମଧ୍ୟ ବହୁତ ଲାଭପ୍ରଦ ଏବଂ ଏହା ବଡ଼ ବୁଦ୍ଧିମତ୍ତାର କାର୍ଯ୍ୟ; କିନ୍ତୁ ଏପରି ଅର୍ଥ ମାନିନେଲେ **କବୟୋଽପ୍ୟତ୍ର ମୋହିତାଃ, ଗହନା କର୍ମଣୋ ଗତିଃ, ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍, ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍, ତମାହୁଃ ପଣ୍ଡିତଂ ବୁଧାଃ, ନୈବ କିଞ୍ଚିତ୍ କରୋତି ସଃ** ଆଦି ବଚନର ସଙ୍ଗତି ରହିବ ନାହିଁ। ଅତଏବ ଏହି ଅର୍ଥ କେତେକାଂଶରେ ଲାଭପ୍ରଦ ହେଲେ ମଧ୍ୟ ପ୍ରକରଣବିରୁଦ୍ଧ।

**ପ୍ରଶ୍ନ** – କର୍ମରେ ଅକର୍ମ ଏବଂ ଅକର୍ମରେ କର୍ମ ଦର୍ଶନ କରିପାରୁଥିବା ସାଧକ ମଧ୍ୟ ମୁକ୍ତ ହୋଇଯାଆନ୍ତି, ନା କେବଳ ସିଦ୍ଧପୁରୁଷ ହିଁ ଏହିପରି ଦର୍ଶନ କରିପାରନ୍ତି ?

**ଉତ୍ତର** – ମୁକ୍ତପୁରୁଷଙ୍କର ଯାହା ସ୍ୱାଭାବିକ ଲକ୍ଷଣ, ତାହା ସାଧକଙ୍କ ପାଇଁ ସାଧ୍ୟ ଅଟେ। ଅତଏବ ମୁକ୍ତପୁରୁଷ ସ୍ୱଭାବତଃ ଏହି ତତ୍ତ୍ୱକୁ ଜାଣନ୍ତି ଏବଂ ସାଧକ ତାଙ୍କର

ଉପଦେଶରୁ ତାହା ଜାଣିପାରି ସେହିପରି ସାଧନା କରି ମୁକ୍ତ ହୋଇଯାଆନ୍ତି। ତେଣୁ ଭଗବାନ୍ କହିଛନ୍ତି, 'ମୁଁ ତୁମକୁ ସେହି କର୍ମତତ୍ତ୍ୱ ଉପଦେଶ ଦେବି, ଯାହା ଜାଣି ତୁମେ କର୍ମବନ୍ଧନରୁ ମୁକ୍ତ ହୋଇଯିବ।'

**ସମ୍ବନ୍ଧ –** ଏହିପରିଭାବରେ କର୍ମରେ ଅକର୍ମ ଏବଂ ଅକର୍ମରେ କର୍ମ ଦର୍ଶନର ମହତ୍ତ୍ୱ କହିସାରି ବର୍ତ୍ତମାନ ପାଞ୍ଚଟି ଶ୍ଳୋକରେ ଭିନ୍ନ ଭିନ୍ନ ଶୈଳୀରେ ଉପରୋକ୍ତ କର୍ମରେ ଅକର୍ମ ଏବଂ ଅକର୍ମରେ କର୍ମ ଦର୍ଶନପୂର୍ବକ କର୍ମ କରିପାରୁଥିବା ସିଦ୍ଧ ଓ ସାଧକ ପୁରୁଷମାନଙ୍କର ଅସଙ୍ଗତା (ନିର୍ଲିପ୍ତତା) ବର୍ଣ୍ଣନା କରିବା ମାଧ୍ୟମରେ ଭଗବାନ୍ ସେହି ବିଷୟଟି ସ୍ପଷ୍ଟ କରୁଛନ୍ତି–

**ଯସ୍ୟ ସର୍ବେ ସମାରମ୍ଭାଃ କାମସଙ୍କଳ୍ପବର୍ଜିତାଃ।**
**ଜ୍ଞାନାଗ୍ନିଦଗ୍ଧକର୍ମାଣଂ ତମାହୁଃ ପଣ୍ଡିତଂ ବୁଧାଃ॥ ୧୯ ॥**

**ଅନ୍ୱୟ –** **ଯସ୍ୟ** = ଯାହାଙ୍କର; **ସର୍ବେ** = ସବୁ; **ସମାରମ୍ଭାଃ** = ଶାସ୍ତ୍ରସମ୍ମତ କର୍ମମାନ; **କାମସଂକଳ୍ପବର୍ଜିତାଃ** = କାମନାଶୂନ୍ୟ ଓ ସଂକଳ୍ପଶୂନ୍ୟ (ହୋଇଥାଏ ତଥା); **ଜ୍ଞାନାଗ୍ନିଦଗ୍ଧକର୍ମାଣମ୍** = ଯାହାଙ୍କର ସମସ୍ତକର୍ମ ଜ୍ଞାନରୂପକ ଅଗ୍ନିଦ୍ୱାରା ଭସ୍ମ ହୋଇଯାଇଛି; **ତମ୍** = ସେହି ମହାପୁରୁଷଙ୍କୁ; **ବୁଧାଃ** = ଜ୍ଞାନୀଜନମାନେ (ମଧ୍ୟ); **ପଣ୍ଡିତମ୍** = ପଣ୍ଡିତ (ବୋଲି); **ଆହୁଃ** = କହନ୍ତି।

**ଯାହାଙ୍କର ସମସ୍ତ ଶାସ୍ତ୍ରସମ୍ମତ କର୍ମ କାମନାଶୂନ୍ୟ ଓ ସଙ୍କଳ୍ପଶୂନ୍ୟ ହୋଇଥାଏ, ତଥା ଯାହାଙ୍କର ସମସ୍ତ କର୍ମ ଜ୍ଞାନରୂପକ ଅଗ୍ନିଦ୍ୱାରା ଭସ୍ମ ହୋଇଯାଇଛି, ସେହି ମହାପୁରୁଷଙ୍କୁ ଜ୍ଞାନୀମାନେ ମଧ୍ୟ ପଣ୍ଡିତ ବୋଲି କହନ୍ତି॥ ୧୯ ॥**

**ପ୍ରଶ୍ନ –** **ସମାରମ୍ଭାଃ** ପଦର ଅର୍ଥ କଣ ଏବଂ ଏହା ସହିତ **ସର୍ବେ** ବିଶେଷଣ ଯୋଡ଼ିବାର ଅଭିପ୍ରାୟ କଣ ?

**ଉତ୍ତର –** ନିଜ ନିଜର ବର୍ଣ୍ଣାଶ୍ରମ ଓ ପରିସ୍ଥିତି ଅନୁସାରେ ଯାହାଙ୍କ ପାଇଁ ଯେଉଁ ଯଜ୍ଞ, ଦାନ, ତପ ତଥା ଜୀବିକା ଓ ଶରୀରନିର୍ବାହର ଯୋଗ୍ୟ ଶାସ୍ତ୍ରସମ୍ମତ କର୍ତ୍ତବ୍ୟକର୍ମ ରହିଛି, ଏଠାରେ **ସମାରମ୍ଭାଃ** ପଦଟି ହେଉଛି ସେହିସବୁର ବାଚକ। କ୍ରିୟାମାତ୍ରକୁ **ଆରମ୍ଭ** କହନ୍ତି। ଜ୍ଞାନୀଙ୍କର କର୍ମ ଶାସ୍ତ୍ରନିଷିଦ୍ଧ ବା ବ୍ୟର୍ଥ ହୁଏ ନାହିଁ– ଏହି ଭାବ ଦେଖାଇବାକୁ **ଆରମ୍ଭ** ସହିତ **ସମ୍** ଉପସର୍ଗ ପ୍ରୟୋଗ କରାଯାଇଛି। **ସର୍ବେ** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ସାଧନାକାଳରେ ମନୁଷ୍ୟର ସମସ୍ତ କର୍ମ କାମନା ଓ ସଙ୍କଳ୍ପରୁ ଶୂନ୍ୟ ହୁଏ ନାହିଁ; କୌଣସି କୌଣସି କର୍ମରେ କାମନା ଓ ସଙ୍କଳ୍ପର ସଂଯୋଗ ମଧ୍ୟ ହୋଇଯାଏ। କିନ୍ତୁ ସାଧନା କରି କରି ଯେ ସିଦ୍ଧ ହୋଇଯାଆନ୍ତି, ସେହି ମହାପୁରୁଷଙ୍କର ସମସ୍ତ କର୍ମ କାମନା ଓ ସଙ୍କଳ୍ପରୁ ରହିତ ହୁଏ; ତାଙ୍କର କୌଣସି ବି କର୍ମ କାମନା ଓ ସଙ୍କଳ୍ପରେ ଯୁକ୍ତ ବା ଶାସ୍ତ୍ରବିରୁଦ୍ଧ ହୁଏ ନାହିଁ।

**ପ୍ରଶ୍ନ –** **କାମସଙ୍କଳ୍ପବର୍ଜିତାଃ**— ଏହି ପଦରେ ଆସିଥିବା **କାମ** ଓ **ସଙ୍କଳ୍ପ** ଶବ୍ଦର ଅର୍ଥ କଣ ତଥା ସେଥିରୁ ରହିତ କର୍ମ କଣ ?

**ଉତ୍ତର –** ସ୍ତ୍ରୀ, ପୁତ୍ର, ଧନ, ଗୃହ, ମାନ, ବଡ଼ିମା, ପ୍ରତିଷ୍ଠା ଓ ସ୍ୱର୍ଗସୁଖ ଆଦି ଇହଲୋକ ଓ ପରଲୋକରେ ଯେତେସବୁ ବିଷୟ ରହିଛି, ସେଥିମଧ୍ୟରୁ କୌଣସି ବିଷୟରେ ଟିକିଏ ବି ଇଚ୍ଛା ରଖିବାର ନାମ **କାମ** ତଥା କୌଣସି ବିଷୟରେ ମମତ୍ୱ, ଅହଙ୍କାର, ରାଗଦ୍ୱେଷ ଏବଂ ରମଣୀୟ ବୁଦ୍ଧି ରଖି ତାହା ସ୍ମରଣ କରିବାର ନାମ **ସଙ୍କଳ୍ପ**। କାମନା ସଙ୍କଳ୍ପର କାର୍ଯ୍ୟ ଏବଂ ସଙ୍କଳ୍ପ କାମନାର କାରଣ। ବିଷୟ ସ୍ମରଣ କରିବା ଦ୍ୱାରା ସେଥିରେ ଆସକ୍ତି ଜାତ ହୋଇ କାମନା ଉତ୍ପନ୍ନ ହୋଇଥାଏ (୨/୬୨)। ଯେଉଁ କର୍ମରେ କୌଣସି ବସ୍ତୁର ସଂଯୋଗ-ବିୟୋଗ ନେଇ ଟିକିଏ ବି କାମନା ନ ଥାଏ, ଯେଉଁଥିରେ ମମତ୍ୱ, ଅହଙ୍କାର ଏବଂ ଆସକ୍ତିର ସର୍ବଥା ଅଭାବ ଥାଏ ଏବଂ ଯେଉଁ କର୍ମ ଲୋକସଂଗ୍ରହପାଇଁ ଚେଷ୍ଟାମାତ୍ରରୂପରେ ହେଉଥାଏ, ସେହି ସମସ୍ତ କର୍ମ କାମରହିତ ତଥା **ସଂକଳ୍ପରହିତ**।

**ପ୍ରଶ୍ନ –** ଉପରୋକ୍ତ ପଦଟିରେ ଆସିଥିବା ସଙ୍କଳ୍ପ ଶବ୍ଦର ଅର୍ଥ ଯଦି ସ୍ଫୁରଣାମାତ୍ର ବୋଲି ଧରିନିଆଯାଏ, ତେବେ କ୍ଷତି କଣ ?

**ଉତ୍ତର –** କୌଣସି କର୍ମ ବିନା-ସ୍ଫୁରଣାରେ ହୋଇପାରିବ ନାହିଁ; ପ୍ରଥମେ ସ୍ଫୁରଣା ଜାତ ହୋଇ ମନ, ବଚନ ଓ ଶରୀରଦ୍ୱାରା କର୍ମ କରାଯାଏ। ଅନ୍ୟ

କର୍ମ କଅଣ କହିବା, ବିନା-ସ୍ଫୁରଣାରେ ଖିଆପିଆ, ଚଲାବୁଲା ଆଦି ଶରୀରନିର୍ବାହ କର୍ମ ମଧ୍ୟ ହୋଇପାରେ ନାହିଁ। ତେଣୁ ଏହି ଶ୍ଳୋକରେ **ସମାରମ୍ଭାଃ** ପଦଦ୍ୱାରା କୁହାଯାଇଥିବା ଶାସ୍ତ୍ରବିହିତ କର୍ମ ବା କିପରି ହୋଇପାରିବ ! ତେଣୁ ଏଠାରେ ସଂକଳ୍ପର ଅର୍ଥ ସ୍ଫୁରଣାମାତ୍ର ବୋଲି ମାନିବା ଉଚିତ ମନେ ହେଉ ନାହିଁ।

**ପ୍ରଶ୍ନ – ଜ୍ଞାନାଗ୍ନିଦଗ୍ଧକର୍ମାଣମ୍** ପଦରେ **ଜ୍ଞାନାଗ୍ନି** ଶବ୍ଦ କାହାର ବାଚକ? ଏବଂ ଏହାଦ୍ୱାରା କର୍ମ ଦଗ୍ଧ ହୋଇଯିବାର ଅର୍ଥ କଣ ?

**ଉତ୍ତର –** ଏଠାରେ **ଜ୍ଞାନାଗ୍ନି** ଶବ୍ଦଟି କୌଣସିପ୍ରକାର ସାଧନା –ଅନୁଷ୍ଠାନରୁ ଉତ୍ପନ୍ନ ପରମାତ୍ମାଙ୍କର ଯଥାର୍ଥ ଜ୍ଞାନର ବାଚକ। ଅଗ୍ନି ଯେପରି ଇନ୍ଧନକୁ ଭସ୍ମ କରିଦିଏ, ଜ୍ଞାନ ମଧ୍ୟ ସେହିପରି ସମସ୍ତ କର୍ମକୁ ଭସ୍ମ କରିଦିଏ (୪/୩୭)। ଏହିପରି ଅଗ୍ନିର ଉପମା ଦେବାକୁ ଏଠାରେ **ଜ୍ଞାନାଗ୍ନି** ନାମ ଦିଆଯାଇଛି। ଅଗ୍ନିଦ୍ୱାରା ଭଜା ହୋଇଥିବା ବୀଜ ଯେପରି କେବଳ ନାମମାତ୍ର ବୀଜ ହୋଇ ରହିଥାଏ; ସେଥିରେ ଗଜା ବାହାରିବାର ଶକ୍ତି ରହେ ନାହିଁ, ସେହିପରି ଜ୍ଞାନରୂପକ ଅଗ୍ନିଦ୍ୱାରା ସମସ୍ତ କର୍ମର ଫଳ ଉତ୍ପନ୍ନ କରିବାର ଶକ୍ତି ସର୍ବଥା ନଷ୍ଟ ହୋଇଯାଏ। ଏହା ହିଁ ଜ୍ଞାନରୂପକ ଅଗ୍ନିଦ୍ୱାରା କର୍ମ ଭସ୍ମ ହୋଇଯିବା।

**ପ୍ରଶ୍ନ –** ଏଠାରେ **ବୁଧାଃ** ପଦ କେଉଁମାନଙ୍କର ବାଚକ ଏବଂ ଉପରୋକ୍ତପ୍ରକାରେ 'ଯେ **ଜ୍ଞାନାଗ୍ନିଦଗ୍ଧକର୍ମା** ହୋଇଯାଇଛନ୍ତି, ତାଙ୍କୁ ସେମାନେ ପଣ୍ଡିତ ବୋଲି କହନ୍ତି' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –ବୁଧାଃ** ପଦଟି ଏଠାରେ ତତ୍ତ୍ୱଜ୍ଞାନୀ ମହାତ୍ମାମାନଙ୍କର ବାଚକ। ଉପରୋକ୍ତ 'ପୁରୁଷଙ୍କୁ ସେମାନେ ପଣ୍ଡିତ ବୋଲି କହନ୍ତି' – ଏହି ବକ୍ତବ୍ୟଦ୍ୱାରା ଉପରୋକ୍ତ ସିଦ୍ଧଯୋଗୀଙ୍କର ବିଶେଷ ପ୍ରଶଂସା କରାଯାଇଛି। ଅଭିପ୍ରାୟ ଏହି ଯେ, କର୍ମରେ ମମତ୍ୱ, ଆସକ୍ତି, ଅହଙ୍କାର ନ ଥିଲେ ମଧ୍ୟ ଏବଂ ସେଥିରେ ନିଜର କୌଣସିପ୍ରକାର ପ୍ରୟୋଜନ ନ ଥିଲେ ମଧ୍ୟ ସ୍ୱରୂପତଃ କର୍ମ ତ୍ୟାଗ ନ କରି ଲୋକସଂଗ୍ରହପାଇଁ ସେହି ସମସ୍ତ ଶାସ୍ତ୍ରବିହିତ କର୍ମ ବିଧିପୂର୍ବକ ଭଲଭାବରେ କରିଚାଲିବା ହିଁ ଅତ୍ୟନ୍ତ ଧୀରତା, ବୀରତା, ଗମ୍ଭୀରତା ଏବଂ ବୁଦ୍ଧିମତ୍ତାର କାମ। ତେଣୁ ଜ୍ଞାନୀମାନେ ମଧ୍ୟ ତାହାଙ୍କୁ ପଣ୍ଡିତ (ତତ୍ତ୍ୱଜ୍ଞାନୀ ମହାତ୍ମା) ବୋଲି କହନ୍ତି।

## ତ୍ୟକ୍ତ୍ୱା କର୍ମଫଳାସଂଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ।
## କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଞ୍ଚିତ୍କରୋତି ସଃ॥ ୨୦ ॥

ଅନ୍ୱୟ – **କର୍ମଫଳାସଙ୍ଗମ୍** = ସମସ୍ତ କର୍ମରେ ଏବଂ ତାହାର ଫଳରେ ଆସକ୍ତିକୁ; **ତ୍ୟକ୍ତ୍ୱା** = ସର୍ବଥା ତ୍ୟାଗ କରି; **ନିରାଶ୍ରୟଃ** = ସଂସାରର ଆଶ୍ରୟରୁ ରହିତ ହୋଇଥିବା (ଏବଂ); **ନିତ୍ୟତୃପ୍ତଃ** = ପରମାତ୍ମାଙ୍କ ଠାରେ ନିତ୍ୟତୃପ୍ତ ହୋଇରହିଥିବା; **ସଃ** = ସେ; **କର୍ମଣି** = କର୍ମରେ; **ଅଭିପ୍ରବୃତ୍ତଃ** = ଭଲଭାବରେ ପ୍ରବୃତ୍ତ ହୋଇ; **ଅପି** = ମଧ୍ୟ; **ନ, ଏବ, କିଞ୍ଚିତ୍, କରୋତି** = ବାସ୍ତବରେ କିଛି ବି କରେ ନାହିଁ।

**ଯେଉଁ ପୁରୁଷ ସମସ୍ତ କର୍ମରେ ଏବଂ ତାହାର ଫଳରେ ସର୍ବଥା ଆସକ୍ତି ତ୍ୟାଗ କରି ସଂସାରର ଆଶ୍ରୟରୁ ରହିତ ହୋଇଯାଇଛନ୍ତି ଏବଂ ପରମାତ୍ମାଙ୍କ ଠାରେ ନିତ୍ୟତୃପ୍ତ ହୋଇ ରହିଛନ୍ତି, ସେ କର୍ମରେ ଭଲଭାବରେ ପ୍ରବୃତ୍ତ ହୋଇ ମଧ୍ୟ ବସ୍ତୁତଃ କିଛି ବି କରନ୍ତି ନାହିଁ।॥ ୨୦ ॥**

**ପ୍ରଶ୍ନ –** ସମସ୍ତ କର୍ମରେ ଏବଂ ତାହାର ଫଳରେ ସର୍ବଥା ଆସକ୍ତି ତ୍ୟାଗ କରିବାର ଅର୍ଥ କଣ ?

**ଉତ୍ତର –** ଯଜ୍ଞ, ଦାନ ଏବଂ ତପ ତଥା ଜୀବିକା ଏବଂ ଶରୀର ନିର୍ବାହ କରିବାରେ ଯେତେସବୁ ଶାସ୍ତ୍ରବିହିତ କର୍ମ ରହିଛି, ସେଥିରେ ମନୁଷ୍ୟର ସ୍ୱଭାବତଃ ଆସକ୍ତି ହୋଇଯାଏ, ଯାହା ଫଳରେ କି ସେ କର୍ମ ନ କରି ରହିପାରେ ନାହିଁ ଏବଂ କର୍ମ କରିବା ସମୟରେ ସେ ସେଥିରେ ଏପରି ଲିପ୍ତ ହୋଇଯାଏ ଯେ, ତାଠାରେ ଈଶ୍ୱରଙ୍କ ସ୍ମୃତି ବା ଅନ୍ୟ କୌଣସିପ୍ରକାର ଜ୍ଞାନ ରହେ ନାହିଁ। ଏପରି ଆସକ୍ତିରୁ ସର୍ବଥା ରହିତ ହୋଇଯିବା, କୌଣସି ବି କର୍ମରେ କୌଣସିପ୍ରକାରେ ମଧ୍ୟ ଆସକ୍ତ ନ ହେବାକୁ 'କର୍ମରେ ସର୍ବଥା ଆସକ୍ତି ତ୍ୟାଗ

କରିଦେବା' ଏବଂ ସେହି କର୍ମଦ୍ୱାରା ମିଳୁଥିବା ଇହଲୋକ ବା ପରଲୋକର ଯେତେସବୁ ଭୋଗ ରହିଛି, ସେସବୁରେ ସାମାନ୍ୟମାତ୍ର ମମତ୍ୱ, ଆସକ୍ତି ଓ କାମନା ନ ରଖିବା ହିଁ କର୍ମଫଳରୁ ଆସକ୍ତି ତ୍ୟାଗ କରିଦେବା।

**ପ୍ରଶ୍ନ** – ଏପରି ଆସକ୍ତି ତ୍ୟାଗ କରି **ନିରାଶ୍ରୟ** ଓ **ନିତ୍ୟତୃପ୍ତ** ହୋଇଯିବାର ଅର୍ଥ କଣ ?

**ଉତ୍ତର** – ସର୍ବଥା ଆସକ୍ତି ତ୍ୟାଗ କରି ଶରୀରରେ ସର୍ବଥା ଅହଙ୍କାର ଏବଂ ମମତ୍ୱରୁ ରହିତ ହୋଇଯିବା ଏବଂ କୌଣସି ସାଂସାରିକ ବସ୍ତୁର ବା ମନୁଷ୍ୟର ଆଶ୍ରିତ ନ ହେବା ଅର୍ଥାତ୍ 'ଅମୁକ ବସ୍ତୁ ବା ମନୁଷ୍ୟଦ୍ୱାରା ମୋର ଜୀବିକା ନିର୍ବାହ ହେଉଛି, ସେ ମୋର ଆଧାର, ତାଙ୍କୁ ଛାଡ଼ିଦେଲେ କାମ ଚଳିବ ନାହିଁ' – ଏପରି ଭାବମାନଙ୍କର ସର୍ବଥା ଅଭାବ ହୋଇଯିବା ହିଁ ନିରାଶ୍ରୟ ହୋଇଯିବା। ଏପରି ହୋଇଗଲେ ସାଧକଙ୍କର କୌଣସି ସାଂସାରିକ ପଦାର୍ଥରେ ତିଳେମାତ୍ରେ ଆବଶ୍ୟକତା ରହେ ନାହିଁ; ସେ ପୂର୍ଣ୍ଣକାମ ହୋଇଯା'ନ୍ତି; ସେ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯିବାରୁ ନିରନ୍ତର ଆନନ୍ଦରେ ମଗ୍ନ ରହନ୍ତି; କୌଣସି ବି ଘଟଣାରେ କେବେହେଲେ ତାଙ୍କର ସ୍ଥିତି ଟିକିଏ ବି ବଦଳେ ନାହିଁ। ତାହା ହିଁ ତାଙ୍କର **ନିତ୍ୟତୃପ୍ତ** ହୋଇଯିବା।

**ପ୍ରଶ୍ନ** – **କର୍ମଣି ଅଭିପ୍ରବୃତ୍ତଃ ଅପି ନ ଏବ କିଞ୍ଚିତ୍କରୋତି ସଃ** — ଏହି ବାକ୍ୟରେ **ଅଭି** ଉପସର୍ଗ ତଥା **ଅପି** ଏବଂ **ଏବ** ଅବ୍ୟୟ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର** – **ଅଭି** ଉପସର୍ଗଦ୍ୱାରା ଦେଖାଇଦିଆଯାଇଛି ଯେ, ଏପରି ମନୁଷ୍ୟ ମଧ୍ୟ ନିଜର ବର୍ଣ୍ଣାଶ୍ରମ ଅନୁସାରେ ସବୁପ୍ରକାର ଶାସ୍ତ୍ରବିହିତ କର୍ମ ସାବଧାନତାପୂର୍ବକ ଓ ବିବେକସହିତ ଭଲରୂପେ ବିସ୍ତାରିତଭାବରେ କରିପାରନ୍ତି। **ଅପି** ଅବ୍ୟୟଦ୍ୱାରା ଦେଖାଇଦିଆଯାଇଛି ଯେ, ମମତ୍ୱ, ଅହଙ୍କାର ଏବଂ ଫଳାସକ୍ତିଯୁକ୍ତ ମନୁଷ୍ୟ ସ୍ୱରୂପତଃ କର୍ମ ତ୍ୟାଗ କରିଦେଲ ମଧ୍ୟ କର୍ମବନ୍ଧନରୁ ମୁକ୍ତ ହୋଇପାରେ ନାହିଁ ଅଥଚ ଏହି ନିତ୍ୟତୃପ୍ତ ପୁରୁଷ ସମସ୍ତ କର୍ମ କରି ମଧ୍ୟ କର୍ମବନ୍ଧନରେ ପଡ଼ନ୍ତି ନାହିଁ। **ଏବ** ଅବ୍ୟୟଦ୍ୱାରା ଦେଖାଇଦିଆଯାଇଛି ଯେ, ସେହି କର୍ମସହିତ ତାଙ୍କର କୌଣସି ସମ୍ବନ୍ଧ ରହେ ନାହିଁ। ଏଣୁ ସେ ସମସ୍ତ କର୍ମ କରି ମଧ୍ୟ ବାସ୍ତବରେ ଅକର୍ତ୍ତା ହିଁ ହୋଇଯାଇଥାନ୍ତି।

ଏପରିଭାବରେ ସ୍ପଷ୍ଟ କରିଦିଆଯାଇଛି ଯେ, କର୍ମରେ ଅକର୍ମ ଏବଂ ଅକର୍ମରେ କର୍ମ ଦେଖୁଥିବା ମୁକ୍ତ ପୁରୁଷ ପୂର୍ଣ୍ଣକାମ ହୋଇଯାଇଥିବା ହେତୁ ତାଙ୍କର କୌଣସି କର୍ତ୍ତବ୍ୟ ବାକି ରହିଯାଏ ନାହିଁ (୩/୧୭); କୌଣସି ବି ବସ୍ତୁରେ ତାଙ୍କର କୌଣସିପ୍ରକାର ଆବଶ୍ୟକତା ରହେ ନାହିଁ। ଅତଏବ ସେ ଯାହା କିଛି କର୍ମ କରନ୍ତି ବା ଯେଉଁ କ୍ରିୟାରୁ ଉପରତ ହୋଇଯାଆନ୍ତି, ତାହା କେବଳ ଲୋକସଂଗ୍ରହପାଇଁ ଶାସ୍ତ୍ରସମ୍ମତ ରୀତିରେ ଏବଂ ବିନା ଆସକ୍ତିରେ କରନ୍ତି; ତେଣୁ ତାଙ୍କର କର୍ମ ବାସ୍ତବରେ 'କର୍ମ' ହୁଏ ନାହିଁ।

**ସମ୍ବନ୍ଧ** – ଉପରୋକ୍ତ ଶ୍ଳୋକମାନଙ୍କରେ କୁହାଯାଇଛି ଯେ, ମମତ୍ୱ, ଆସକ୍ତି, ଫଳେଚ୍ଛା ଓ ଅହଙ୍କାର ଛାଡ଼ିଦେଇ କେବଳ ଲୋକସଂଗ୍ରହପାଇଁ ଶାସ୍ତ୍ରସମ୍ମତ ଯଜ୍ଞ, ଦାନ ଏବଂ ତପ ଆଦି ସମସ୍ତ କର୍ମ କରିଚାଲିଥିବା ଜ୍ଞାନୀପୁରୁଷ କର୍ମ କରି ମଧ୍ୟ ବାସ୍ତବରେ କିଛି କରନ୍ତି ନାହିଁ। ତେଣୁ ସେ କର୍ମବନ୍ଧନରେ ପଡ଼ନ୍ତି ନାହିଁ। ଏହା ଉପରେ ପ୍ରଶ୍ନ ଉଠେ: ଜ୍ଞାନୀଙ୍କୁ ଆଦର୍ଶ କରି ଉପରୋକ୍ତପ୍ରକାରେ କର୍ମ କରୁଥିବା ସାଧକ ଯିଏ ନିତ୍ୟ-ନୈମିତ୍ତିକ ଆଦି କର୍ମ ତ୍ୟାଗ କରନ୍ତି ନାହିଁ ବୋଲି ଏବଂ ନିଷ୍କାମଭାବରେ ସବୁପ୍ରକାର ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରନ୍ତି ବୋଲି କୌଣସି ପାପର ଭାଗୀ ହୁଅନ୍ତି ନାହିଁ; କିନ୍ତୁ ଯେଉଁ ସାଧକ ଶାସ୍ତ୍ରବିହିତ ଯଜ୍ଞଦାନାଦି କର୍ମ ଅନୁଷ୍ଠାନ ନ କରି କେବଳ ଶରୀରନିର୍ବାହପାଇଁ ଆବଶ୍ୟକ ଶୌଚ-ସ୍ନାନ ଏବଂ ପାନ-ଭୋଜନ ଆଦି କର୍ମ ହିଁ କରନ୍ତି, ସେ ତ ପାପର ଭାଗୀ ହେଉଥିବେ ? ଏହି ଶଙ୍କାର ନିବୃତ୍ତିପାଇଁ ଭଗବାନ୍ କହୁଛନ୍ତି—

**ନିରାଶୀର୍ଯତଚିତ୍ତାତ୍ମା ତ୍ୟକ୍ତସର୍ବପରିଗ୍ରହଃ ।**
**ଶାରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ ॥ ୨୧ ॥**

ଅନ୍ୱୟ – ଯତଚିତ୍ତାତ୍ମା = ଯେ ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ଜୟ କରିନେଇଛନ୍ତି; ତ୍ୟକ୍ତସର୍ବପରିଗ୍ରହଃ = ଯେ ସମସ୍ତ ଭୋଗସାମଗ୍ରୀ ପରିତ୍ୟାଗ କରିଦେଇଛନ୍ତି (ସେହି); ନିରାଶୀଃ = ଆଶାରହିତ ପୁରୁଷ;

**କେବଳମ୍** = କେବଳ; **ଶାରୀରମ୍** = ଶରୀରସମ୍ବନ୍ଧୀ; **କର୍ମ** = କର୍ମ; **କୁର୍ବନ୍** = କରୁଥିଲେ (ମଧ୍ୟ); **କିଲ୍ବିଷମ୍** = ପାପକୁ; **ନ, ଆପ୍ନୋତି** = ପ୍ରାପ୍ତ ହୁଅନ୍ତି ନାହିଁ।

**ଯେ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ଜୟ କରିନେଇଛନ୍ତି, ଯେ ସମସ୍ତ ଭୋଗସାମଗ୍ରୀ ପରିତ୍ୟାଗ କରିଦେଇଛନ୍ତି, ସେହି ଆଶାରହିତ ପୁରୁଷ କେବଳ ଶରୀରସମ୍ବନ୍ଧୀ କର୍ମ କରୁଥିଲେ ମଧ୍ୟ ପାପଭାଗୀ ହୁଅନ୍ତି ନାହିଁ।। ୨୧ ।।**

**ପ୍ରଶ୍ନ –** **ନିରାଶୀଃ, ଯତଚିତ୍ତାତ୍ମା** ଏବଂ **ତ୍ୟକ୍ତସର୍ବପରିଗ୍ରହଃ –** ଏହି ତିନୋଟି ବିଶେଷଣ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ମନୁଷ୍ୟଙ୍କର କୌଣସି ସାଂସାରିକ ବସ୍ତୁର କିଛି ବି ଆବଶ୍ୟକତା ନାହିଁ, ଯେ କୌଣସି ବି କର୍ମରୁ ବା କୌଣସି ବି ମନୁଷ୍ୟଠାରୁ କିଛି ବି ପାଇବାକୁ ଟିକିଏ ହେଲେ ଆଶା ବା ଇଚ୍ଛା ରଖନ୍ତି ନାହିଁ; ଯେ ସମସ୍ତପ୍ରକାର ଇଚ୍ଛା, କାମନା, ବାସନା ଆଦି ସର୍ବଥା ତ୍ୟାଗ କରିଦେଇଛନ୍ତି, ତାଙ୍କୁ **ନିରାଶୀଃ** କହନ୍ତି। ଯେ ଅନ୍ତଃକରଣ ଏବଂ ସମସ୍ତ ଇନ୍ଦ୍ରିୟସହିତ ଶରୀରକୁ ଜୟ କରିସାରିଛନ୍ତି, ଅର୍ଥାତ୍ ଯାହାଙ୍କର ମନ ଓ ଇନ୍ଦ୍ରିୟ ରାଗଦ୍ୱେଷରୁ ରହିତ ହୋଇଯାଇଥିବାରୁ ତାଙ୍କ ଉପରେ ଶବ୍ଦାଦି ବିଷୟମାନଙ୍କର ସଙ୍ଗ କିଛି ବି ପ୍ରଭାବ ପକାଇପାରେ ନାହିଁ ଏବଂ ଯାହାଙ୍କର ଶରୀର ମଧ୍ୟ ସେ ଯେପରି ରଖିବାକୁ ଚାହାଁନ୍ତି, ସେପରି ରହେ, ସେ ଗୃହସ୍ଥ ହୋଇଥାନ୍ତୁ, କି ସନ୍ନ୍ୟାସୀ ହୋଇଥାନ୍ତୁ, ସେ **ଯତଚିତ୍ତାତ୍ମା** ଅଟନ୍ତି ଏବଂ ଯାହାଙ୍କର କୌଣସି ବିଷୟରେ ମମତ୍ୱ ନାହିଁ ତଥା ଯେ ସମସ୍ତ ଭୋଗସାମଗ୍ରୀସଂଗ୍ରହ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିଦେଇଛନ୍ତି, ସେହି ସନ୍ନ୍ୟାସୀ ତ ସର୍ବଥା **ତ୍ୟକ୍ତସର୍ବପରିଗ୍ରହ** ହିଁ ଅଟନ୍ତି। ଏହା ବ୍ୟତୀତ ଅନ୍ୟ ଆଶ୍ରମର ଯେ କେହି ଲୋକ ଉପରୋକ୍ତପ୍ରକାରେ ପରିଗ୍ରହ ତ୍ୟାଗ କରିଦିଅନ୍ତି, ସେ ମଧ୍ୟ **ତ୍ୟକ୍ତସର୍ବପରିଗ୍ରହ** ଅଟନ୍ତି।

ଏହି ଶ୍ଳୋକରେ ଏହି ତିନୋଟି ବିଶେଷଣ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏପରି ବାହ୍ୟ ବସ୍ତୁମାନଙ୍କରେ ସମ୍ବନ୍ଧ ନ ରଖି ଯେ ନିରନ୍ତର ଅନ୍ତରାତ୍ମାରେ ସନ୍ତୁଷ୍ଟ ରହନ୍ତି, ସେହି ସାଂଖ୍ୟଯୋଗୀ ଯଦି ଯଜ୍ଞଦାନାଦି କର୍ମ ଅନୁଷ୍ଠାନ ନ କରି କେବଳ ଶରୀରସମ୍ବନ୍ଧୀ ଖାଇବା-ପିଇବା ଆଦି କର୍ମ ହିଁ କରନ୍ତି, ତେବେ ମଧ୍ୟ ସେ ପାପଭାଗୀ ହୁଅନ୍ତି ନାହିଁ; କାରଣ ତାଙ୍କର ସେହି ତ୍ୟାଗ ଆସକ୍ତି ବା ଫଳ-ଇଚ୍ଛାରେ ଅଥବା ଅହଙ୍କାରପୂର୍ବକ ମୋହଦ୍ୱାରା କରାଯାଇ ନ ଥାଏ; ତାହା ତ ଆସକ୍ତି, ଫଳେଚ୍ଛା ଓ ଅହଙ୍କାରରୁ ରହିତ ହୋଇଥିବା ସର୍ବଥା ଶାସ୍ତ୍ରସମ୍ମତ ତ୍ୟାଗ ଅଟେ; ଅତଏବ ତାହା ସବୁଦୃଷ୍ଟିରୁ ସଂସାରର ମଙ୍ଗଳକାରୀ।

**ପ୍ରଶ୍ନ –** ଏଠାରେ **ଶାରୀରମ୍** ଏବଂ **କେବଳମ୍** ବିଶେଷଣ ସହିତ **କର୍ମ** ପଦ କେଉଁ କର୍ମର ବାଚକ ଏବଂ **କିଲ୍ବିଷମ୍** ପଦ କାହାର ବାଚକ ତଥା ଏହା ପ୍ରାପ୍ତ ନ ହେବାର ଅର୍ଥ କଣ ?

**ଉତ୍ତର –** **ଶାରୀରମ୍** ଏବଂ **କେବଳମ୍** ବିଶେଷଣ ସହିତ **କର୍ମ** ପଦଟି ଏଠାରେ ଶୌଚ-ସ୍ନାନ, ପାନ-ଭୋଜନ ଏବଂ ଶୟନ ଆଦି କେବଳ ଶରୀରନିର୍ବାହସହ ସମ୍ବନ୍ଧ ରଖୁଥିବା କ୍ରିୟାମାନଙ୍କର ବାଚକ ତଥା **କିଲ୍ବିଷମ୍** ପଦଟି ଏଠାରେ ଯଜ୍ଞଦାନାଦି ବିହିତକର୍ମର ତ୍ୟାଗଜନିତ ପ୍ରତ୍ୟବାୟରୂପକ ପାପର ତଥା ଶରୀରନିର୍ବାହପାଇଁ କରାଯାଉଥିବା କ୍ରିୟାଜନିତ ଅନିବାର୍ଯ୍ୟ ହିଂସା ଆଦି ପାପମାନଙ୍କର ବାଚକ। ଉପରୋକ୍ତ ପୁରୁଷଙ୍କୁ ଯଜ୍ଞାଦି କର୍ମାନୁଷ୍ଠାନର ଅକରଣଜନିତ ପ୍ରତ୍ୟବାୟରୂପକ ପାପ ଲାଗେ ନାହିଁ ଏବଂ ଶରୀରନିର୍ବାହପାଇଁ କରାଯାଉଥିବା କ୍ରିୟାଜନିତ ପାପସହିତ ତାଙ୍କର ସମ୍ବନ୍ଧ ରହେ ନାହିଁ। ଏହା ହିଁ ତାଙ୍କର କିଲ୍ବିଷ ପ୍ରାପ୍ତ ନ ହେବା।

**ସମ୍ବନ୍ଧ –** ଉପରୋକ୍ତ ଶ୍ଳୋକରେ ସିଦ୍ଧ କରିଦିଆଯାଇଛି ଯେ, ପରମାତ୍ମାଙ୍କୁ ପାଇଥିବା ସିଦ୍ଧ ମହାପୁରୁଷଙ୍କର କର୍ମ କରିବାରେ ବା ନ କରିବାରେ କିଛି ପ୍ରୟୋଜନ ରହେ ନାହିଁ, ତଥା ଜ୍ଞାନଯୋଗସାଧକଙ୍କର ଗ୍ରହଣ ଏବଂ ତ୍ୟାଗ ଶାସ୍ତ୍ରସମ୍ମତ, ଆସକ୍ତିରହିତ ଏବଂ ମମତ୍ୱରହିତ ହୁଏ; ଏଣୁ ସେ କର୍ମ କରନ୍ତୁ ବା ନ କରନ୍ତୁ, ସବୁ ଅବସ୍ଥାରେ ସର୍ବଥା କର୍ମବନ୍ଧନରୁ ମୁକ୍ତ ଥାଆନ୍ତି। ବର୍ତ୍ତମାନ ଭଗବାନ୍ ଦେଖାଉଛନ୍ତି ଯେ, କର୍ମରେ ଅକର୍ମଦର୍ଶନପୂର୍ବକ କର୍ମ କରୁଥିବା କର୍ମଯୋଗୀ ମଧ୍ୟ କର୍ମବନ୍ଧନରେ ପଡ଼ନ୍ତି ନାହିଁ–

**ଯଦୃଚ୍ଛାଲାଭସନ୍ତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ ।**
**ସମଃ ସିଦ୍ଧାବସିଦ୍ଧୌ ଚ କୃତ୍ୱାପି ନ ନିବଧ୍ୟତେ ।। ୨୨ ।।**

**ଅନ୍ୱୟ –** **ଯଦୃଚ୍ଛାଲାଭସନ୍ତୁଷ୍ଟଃ** = ଯେ ବିନା-ଇଚ୍ଛାରେ ସ୍ୱତଃ ମିଳୁଥିବା ପଦାର୍ଥରେ ସର୍ବଦା ସନ୍ତୁଷ୍ଟ ରହେ; **ବିମତ୍ସରଃ** = ଯେ ସର୍ବଥା ଈର୍ଷାରହିତ; **ଦ୍ୱନ୍ଦ୍ୱାତୀତଃ** = ଯେ ହର୍ଷ-ଶୋକ ଆଦି ଦ୍ୱନ୍ଦ୍ୱରୁ ସର୍ବଥା ଅତୀତ (ସେପରି); **ସିଦ୍ଧୌ** = ସିଦ୍ଧିରେ; **ଚ** = ଏବଂ; **ଅସିଦ୍ଧୌ** = ଅସିଦ୍ଧିରେ; **ସମଃ** = ସମ ରହୁଥିବା କର୍ମଯୋଗୀ; **କୃତ୍ୱା, ଅପି** = କର୍ମ କରି ମଧ୍ୟ; **ନ, ନିବଧ୍ୟତେ** = କର୍ମରେ ବାନ୍ଧିହୁଏ ନାହିଁ ।

**ଯେ ବିନା-ଇଚ୍ଛାରେ ସ୍ୱତଃ ମିଳୁଥିବା ପଦାର୍ଥରେ ସଦା ସନ୍ତୁଷ୍ଟ ରହନ୍ତି, ଯେ ସର୍ବଥା ଈର୍ଷାଶୂନ୍ୟ ହୋଇଯାଇଛନ୍ତି, ଯେ ହର୍ଷଶୋକ ଆଦି ଦ୍ୱନ୍ଦ୍ୱରୁ ସର୍ବଥା ଅତୀତ ହୋଇଯାଇଛନ୍ତି, ସିଦ୍ଧି ଓ ଅସିଦ୍ଧିରେ ସମ ରହୁଥିବା ସେହି କର୍ମଯୋଗୀ କର୍ମ କରି ମଧ୍ୟ ସେଥିରେ ବାନ୍ଧିହୁଅନ୍ତି ନାହିଁ, ଅର୍ଥାତ୍ ସେ କର୍ମବନ୍ଧନରେ ପଡ଼ନ୍ତି ନାହିଁ ।। ୨୨ ।।**

**ପ୍ରଶ୍ନ –** **ଯଦୃଚ୍ଛାଲାଭ** କଣ ଏବଂ ସେଥିରେ ସନ୍ତୁଷ୍ଟ ରହିବାର ଅର୍ଥ କଣ ?

**ଉତ୍ତର –** ଅନିଚ୍ଛାରେ ବା ଅନ୍ୟର ଇଚ୍ଛାରେ ପ୍ରାରବ୍ଧ ଅନୁସାରେ ଯେଉଁ ଅନୁକୂଳ ବା ପ୍ରତିକୂଳ ପଦାର୍ଥ ପ୍ରାପ୍ତ ହୁଏ, ତାହା ହିଁ **ଯଦୃଚ୍ଛାଲାଭ** । ଏହି ଯଦୃଚ୍ଛାଲାଭରେ ସଦା ଆନନ୍ଦିତ ହେବା, ସେଥିରେ ଅନୁରାଗ ନ କରିବା, ତାହା ସାଇତି ରଖିବାକୁ ବା ବଢ଼ାଇବାକୁ ଇଚ୍ଛା ନ କରିବା ଏବଂ ପ୍ରତିକୂଳ ପଦାର୍ଥର ପ୍ରାପ୍ତିରେ ଦ୍ୱେଷ ନ କରିବା, ତାହା ନଷ୍ଟ ହେଉ ବୋଲି ଇଚ୍ଛା ନ କରିବା, ଉଭୟକୁ ପ୍ରାରବ୍ଧ ବା ଭଗବାନଙ୍କର ବିଧାନ ବୋଲି ବୁଝି ନିରନ୍ତର ଶାନ୍ତ ଓ ପ୍ରସନ୍ନଚିତ୍ତ ହୋଇ ରହିବା ହିଁ **ଯଦୃଚ୍ଛାଲାଭରେ** ସନ୍ତୁଷ୍ଟ ହୋଇ ରହିବା ।

**ପ୍ରଶ୍ନ –** **ବିମତ୍ସରଃ**ର ଭାବ କଣ ? ଏହା ଏଠାରେ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ବିଦ୍ୟା, ବୁଦ୍ଧି, ଧନ, ମାନ, ବଡ଼ିମା ବା ଅନ୍ୟ କୌଣସି ବସ୍ତୁ ବା ଗୁଣହେତୁ ଅନ୍ୟର ଉନ୍ନତି ଦେଖି ଯେଉଁ ଈର୍ଷା ଜାତ ହୁଏ, ସେହି ବିକାରର ନାମ **ମତ୍ସରତା** । ଯାହାଙ୍କ ଠାରେ ତାହାର ସର୍ବଥା ଅଭାବ ହୁଏ, ସେ **ବିମତ୍ସର** । ନିଜକୁ ବିଦ୍ୱାନ୍ ଓ ବୁଦ୍ଧିମାନ୍ ବୋଲି ଭାବୁଥିବା ଲୋକଙ୍କ ଭିତରେ ଈର୍ଷାଦୋଷ ଛପି ରହିଥାଏ । ଯେଉଁମାନଙ୍କ ଠାରେ ମନୁଷ୍ୟର ପ୍ରେମ ଥାଏ, ସେପରି ମିତ୍ର ଓ କୁଟୁମ୍ବମାନଙ୍କ ପ୍ରତି ମଧ୍ୟ ଈର୍ଷାଜାତ ହୋଇଥାଏ । ତେଣୁ **ବିମତ୍ସର** ବିଶେଷଣ ପ୍ରୟୋଗ କରି ଏଠାରେ କର୍ମଯୋଗୀଙ୍କ ଠାରେ ହର୍ଷ-ଶୋକାଦି ବିକାରରୁ ଭିନ୍ନ ଈର୍ଷାଦୋଷର ମଧ୍ୟ ଅଭାବ ବର୍ଣ୍ଣନା କରାଯାଇଛି ।

**ପ୍ରଶ୍ନ –** ଦ୍ୱନ୍ଦ୍ୱରୁ ଅତୀତ ହେବାର ଅର୍ଥ କଣ ?

**ଉତ୍ତର –** ହର୍ଷ-ଶୋକ ଏବଂ ରାଗ-ଦ୍ୱେଷ ଆଦି ଯୁଗ୍ମ ବିକାରମାନଙ୍କର ନାମ **ଦ୍ୱନ୍ଦ୍ୱ** । ସେଥିରେ ସମ୍ବନ୍ଧ ନ ରଖିବା ଅର୍ଥାତ୍ ଅନ୍ତଃକରଣରେ ଏହିପରି ବିକାର ନ ରହିବା ହିଁ ସେଥିରୁ ଅତୀତ ହେବା ।

**ପ୍ରଶ୍ନ –** ଏଠାରେ **ସିଦ୍ଧି** ଏବଂ **ଅସିଦ୍ଧିର** ଅର୍ଥ କଣ ? ଏବଂ ଏଥିରେ ସମ ରହିବାର ଅର୍ଥ କଣ ?

**ଉତ୍ତର –** ଯଜ୍ଞ, ଦାନ, ଏବଂ ତପ ଆଦି କୌଣସି କର୍ତ୍ତବ୍ୟକର୍ମ ନିର୍ବିଘ୍ନରେ ପୂର୍ଣ୍ଣ ହୋଇଯିବାର ନାମ **ସିଦ୍ଧି**; ଏବଂ କୌଣସିପ୍ରକାର ବାଧାବିଘ୍ନହେତୁ ତାହା ପୂର୍ଣ୍ଣ ନ ହେବା ହିଁ **ଅସିଦ୍ଧି** । ଏହିପରି ଯେଉଁ ଉଦ୍ଦେଶ୍ୟରେ କର୍ମ କରାଯାଏ, ସେହି ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇଯିବା ସିଦ୍ଧି ଏବଂ ପୂର୍ଣ୍ଣ ନ ହେବା ଅସିଦ୍ଧି । ସିଦ୍ଧି ଓ ଅସିଦ୍ଧିରେ ଭେଦବୁଦ୍ଧି ନ ହେବା ଅର୍ଥାତ୍ ସିଦ୍ଧିରେ ହର୍ଷ ଏବଂ ଆସକ୍ତି ଆଦି ତଥା ଅସିଦ୍ଧିରେ ଦ୍ୱେଷ ଓ ଶୋକ ଆଦି ବିକାର ନ ହେବା, ତଥା ଉଭୟ ଅବସ୍ଥାରେ ଏକାପରି ରହିବା ହିଁ ସିଦ୍ଧି ଓ ଅସିଦ୍ଧିରେ ସମ ରହିବା ।

**ପ୍ରଶ୍ନ –** 'ଏପରି ପୁରୁଷ କର୍ମ କରି ମଧ୍ୟ କର୍ମବନ୍ଧନରେ ପଡନ୍ତି ନାହିଁ,' – ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** କର୍ମ କରିବାରେ ମନୁଷ୍ୟର ଅଧିକାର ରହିଛି (୨/୪୭); କାରଣ ଯଜ୍ଞ (କର୍ମ) ସହିତ ପ୍ରଜାମାନଙ୍କୁ ରଚନା କରି ପ୍ରଜାପତି ମନୁଷ୍ୟମାନଙ୍କୁ କର୍ମ କରିବାକୁ ଆଜ୍ଞା ଦେଇଛନ୍ତି (୩/୧୦) । ଅତଏବ ସେହି ଅନୁସାରେ କର୍ମ ନ କଲେ ମନୁଷ୍ୟ ପାପଭାଗୀ

ହୁଏ (୩/୧୬)। ଏହା ଛଡ଼ା ମନୁଷ୍ୟ କର୍ମ ନ କରି ମଧ୍ୟ ରହିପାରିବ ନାହିଁ (୩/୫)। ତେଣୁ ନିଜର ପ୍ରକୃତି ଅନୁସାରେ ସମସ୍ତଙ୍କୁ କିଛି ନା କିଛି କର୍ମ କରିବାକୁ ପଡ଼େ। ଅତଏବ ଏଥିରୁ ବୁଝିବାକୁ ହେବ ଯେ, କେବଳ ଶରୀରସମ୍ବନ୍ଧୀ କର୍ମ କରୁଥିବା ପରିଗ୍ରହରହିତ ସାଂଖ୍ୟଯୋଗୀ ଯେପରି ଅନ୍ୟ କର୍ମ ଆଚରଣ ନ କଲେ ମଧ୍ୟ କର୍ମ ନ କରିବା ପାପରେ ଲିପ୍ତ ହୁଅନ୍ତି ନାହିଁ, ସେହିପରି କର୍ମଯୋଗୀ ବିହିତକର୍ମ ଅନୁଷ୍ଠାନ କରି ମଧ୍ୟ କର୍ମବନ୍ଧନରେ ବାନ୍ଧିହୁଅନ୍ତି ନାହିଁ।

**ସମ୍ବନ୍ଧ**— ଏଠାରେ ପ୍ରଶ୍ନ ଉଠେ: ଉପରୋକ୍ତପ୍ରକାରେ କରାଯାଉଥିବା କର୍ମ କେବଳ ବନ୍ଧନର କାରଣ ହୁଏ ନାହିଁ, ନା ସେଥିରେ ଆଉ କିଛି ମହତ୍ତ୍ୱ ରହିଛି? ଏହା ଉପରେ ଭଗବାନ୍ କହୁଛନ୍ତି—

**ଗତସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ ।**
**ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ ।। ୨୩ ।।**

**ଅନ୍ୱୟ**— **ଗତସଙ୍ଗସ୍ୟ** = ଯାହାଙ୍କର ଆସକ୍ତି ସର୍ବଥା ନଷ୍ଟ ହୋଇଯାଇଛି; **ମୁକ୍ତସ୍ୟ** = ଯେ ଦେହାଭିମାନ ଏବଂ ମମତ୍ୱରୁ ରହିତ ହୋଇଯାଇଛନ୍ତି; **ଜ୍ଞାନାବସ୍ଥିତଚେତସଃ** = ଯାହାଙ୍କର ଚିତ୍ତ ନିରନ୍ତର ପରମାତ୍ମାଙ୍କ ଜ୍ଞାନରେ ଲାଗିରହିଥାଏ; **ଯଜ୍ଞାୟ** = (କେବଳ) ଯଜ୍ଞସମ୍ପାଦନନିମିତ୍ତ; **ଆଚରତଃ** = (କର୍ମ) କରୁଥିବା (ସେହି) ମନୁଷ୍ୟଙ୍କର; **ସମଗ୍ରମ୍** = ସକଳ; **କର୍ମ** = କର୍ମ; **ପ୍ରବିଲୀୟତେ** = ଭଲଭାବରେ ବିଲୀନ ହୋଇଯାଏ।

**ଯାହାଙ୍କର ଆସକ୍ତି ସର୍ବଥା ନଷ୍ଟ ହୋଇଯାଇଛି, ଯେ ଦେହାଭିମାନ ଓ ମମତ୍ୱରୁ ରହିତ ହୋଇଯାଇଛନ୍ତି, ଯାହାଙ୍କ ଚିତ୍ତ ନିରନ୍ତର ପରମାତ୍ମାଙ୍କ ଜ୍ଞାନରେ ଲାଗିରହିଛି, କେବଳ ଯଜ୍ଞସମ୍ପାଦନନିମିତ୍ତ କର୍ମ କରୁଥିବା ସେହି ମନୁଷ୍ୟଙ୍କର ସକଳ କର୍ମ ଭଲଭାବରେ ବିଲୀନ ହୋଇଯାଏ ।। ୨୩ ।।**

**ପ୍ରଶ୍ନ**— ସର୍ବଥା ଆସକ୍ତି ନଷ୍ଟ ହୋଇଯିବା ଅର୍ଥ କଣ? ଏବଂ **ଗତସଙ୍ଗସ୍ୟ** ପଦ କାହାର ବାଚକ?

**ଉତ୍ତର**— କର୍ମମାନଙ୍କରେ ଏବଂ ତାହାର ଫଳରୂପକ ସମସ୍ତ ଭୋଗମାନଙ୍କରେ ସାମାନ୍ୟମାତ୍ର ଆସକ୍ତି ବା କାମନା ନ ରହିବା ହିଁ ସର୍ବଥା ଆସକ୍ତି ନଷ୍ଟ ହୋଇଯିବା। ଯାହାଙ୍କର ଆସକ୍ତି ଏପରିଭାବରେ ସମ୍ପୂର୍ଣ୍ଣ ଲୋପ ପାଇଯାଇଛି, **ଗତସଙ୍ଗସ୍ୟ** ପଦଟି ହେଉଛି ସେହି କର୍ମଯୋଗୀଙ୍କ ବାଚକ। କର୍ମରେ ଏବଂ ଫଳରେ ଆସକ୍ତିତ୍ୟାଗଦ୍ୱାରା ତଥା ସିଦ୍ଧି ଓ ଅସିଦ୍ଧିରେ ସମତ୍ୱଦ୍ୱାରା ପୂର୍ବଶ୍ଳୋକରେ ଏହି ଭାବ ଦେଖାଇଦିଆଯାଇଛି।

**ପ୍ରଶ୍ନ**— **ମୁକ୍ତସ୍ୟ** ପଦର ଭାବ କଣ?

**ଉତ୍ତର**— ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କର ସଂଘାତରୂପକ ଏହି ଶରୀରରେ ଯାହାଙ୍କର କିଞ୍ଚିମାତ୍ର ଆତ୍ମାଭିମାନ ବା ମମତ୍ୱ ନାହିଁ, ଯେ ଦେହାଭିମାନରୁ ସର୍ବଥା ମୁକ୍ତ ହୋଇଯାଇଛନ୍ତି, ଏଠାରେ **ମୁକ୍ତସ୍ୟ** ପଦଟି ହେଉଛି ସେହି ଜ୍ଞାନଯୋଗୀଙ୍କ ବାଚକ।

**ପ୍ରଶ୍ନ**— **ଜ୍ଞାନାବସ୍ଥିତଚେତସଃ** ପଦର ଭାବ କଣ?

**ଉତ୍ତର**— ସର୍ବତ୍ର ବ୍ରହ୍ମବୁଦ୍ଧି ହୋଇଯିବାରୁ ପ୍ରତ୍ୟେକ କ୍ରିୟା କରିବା ସମୟରେ ଯାହାଙ୍କର ଚିତ୍ତ ନିରନ୍ତର ପରମାତ୍ମାଙ୍କ ଜ୍ଞାନରେ ଲାଗିରହିଥାଏ, **ଜ୍ଞାନାବସ୍ଥିତଚେତସଃ** ପଦଟି ହେଉଛି ସେହି ଜ୍ଞାନଯୋଗୀଙ୍କ ବାଚକ।

**ପ୍ରଶ୍ନ**— **ଯଜ୍ଞାୟ ଆଚରତଃ**— ଏହି ପଦରେ **ଯଜ୍ଞ** ଶବ୍ଦ କାହାର ବାଚକ? ଏବଂ ଯଜ୍ଞପାଇଁ କର୍ମ ଆଚରଣ କରିବାର ଅର୍ଥ କଣ?

**ଉତ୍ତର**— ନିଜର ବର୍ଣ୍ଣ, ଆଶ୍ରମ ଏବଂ ପରିସ୍ଥିତି ଅନୁସାରେ ଶାସ୍ତ୍ରଦୃଷ୍ଟିରୁ ଯେଉଁ ମନୁଷ୍ୟଙ୍କ ପାଇଁ ଯାହା ବିହିତକର୍ତ୍ତବ୍ୟ, ତାହା ତାଙ୍କ ପାଇଁ ଯଜ୍ଞ। ସେହି ଶାସ୍ତ୍ରବିହିତ ଯଜ୍ଞ ସମ୍ପାଦନ କରିବା ଉଦ୍ଦେଶ୍ୟରେ ଯେଉଁ କର୍ମମାନ କରିବାକୁ ହୁଏ, ଅର୍ଥାତ୍ କୌଣସିପ୍ରକାର ସ୍ୱାର୍ଥସମ୍ବନ୍ଧ ନ ରଖି କେବଳ ଲୋକସଂଗ୍ରହରୂପକ ଯଜ୍ଞର ପରମ୍ପରା ସୁରକ୍ଷିତ ରଖିବାକୁ ଯେଉଁ କର୍ମମାନ ଆଚରଣ କରାଯାଏ, ତାହା ହିଁ ଯଜ୍ଞପାଇଁ କର୍ମ ଆଚରଣ କରିବା। ତୃତୀୟ ଅଧ୍ୟାୟର ନବମ ଶ୍ଳୋକରେ ଆସିଥିବା **ଯଜ୍ଞାର୍ଥାତ୍** ବିଶେଷଣ ସହିତ **କର୍ମଣଃ** ପଦଟି ମଧ୍ୟ ଏହିପରି କର୍ମର ବାଚକ।

**ପ୍ରଶ୍ନ –** **ସମଗ୍ରମ୍** ବିଶେଷଣ ସହିତ **କର୍ମ** ପଦ ଏଠାରେ କେଉଁ କର୍ମର ବାଚକ ଏବଂ ତାହା ବିଲୀନ ହୋଇଯିବାର ଅର୍ଥ କଣ ?

**ଉତ୍ତର –** ଇହଜନ୍ମ ଏବଂ ଜନ୍ମାନ୍ତରରେ କରାଯାଇଥିବା ଯେତେ ଯେତେ କର୍ମ ସଂସ୍କାରରୂପରେ ମନୁଷ୍ୟର ଅନ୍ତଃକରଣରେ ସଞ୍ଚିତ ହୋଇ ରହିଥାଏ ଏବଂ ତାହାଦ୍ୱାରା ଉପରୋକ୍ତପ୍ରକାରେ ଯେଉଁ ନୂଆ ନୂଆ କର୍ମ କରାଯାଇଥାଏ, ଏଠାରେ **ସମଗ୍ରମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ସେହି ସମସ୍ତ କର୍ମର ବାଚକ। ଏହି ସମସ୍ତ କର୍ମର ଅଭାବ ହୋଇଯିବା ଅର୍ଥାତ୍ ଏଥିରେ କୌଣସିପ୍ରକାର ବନ୍ଧନ କରିବାର ଶକ୍ତି ନ ରହିବା ହିଁ ଏସବୁର ବିଲୀନ ହୋଇଯିବା। ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ଉପରୋକ୍ତପ୍ରକାରେ କର୍ମ କରୁଥିବା ପୁରୁଷଙ୍କର କର୍ମ ଯେ କେବଳ ତାଙ୍କର ବନ୍ଧନର କାରଣ ହୁଏ ନା, ସେତିକି ନୁହେଁ, ଅଗ୍ନିରେ ଜଳାଇ କୁଟାଗଦାରେ ପକାଯାଇଥିବା କୁଟାଟାଏ ଯେପରି ନିଜେ ଜଳିପୋଡ଼ିଯିବା ସଙ୍ଗେ ସଙ୍ଗେ ସମଗ୍ର କୁଟାଗଦାକୁ ଜାଳିପୋଡ଼ି ଭସ୍ମ କରିଦିଏ, ସେହିପରି ଆସକ୍ତି, ଫଳେଚ୍ଛା, ମମତ୍ୱ ଏବଂ ଅଭିମାନ ତ୍ୟାଗରୂପକ ଅଗ୍ନିରେ ଜଳାଇ କରାଯାଇଥିବା କର୍ମ ପୂର୍ବସଞ୍ଚିତ ସମସ୍ତ କର୍ମ ସହିତ ବିଲୀନ ହୋଇଯାଏ; ପୁଣି ତାଙ୍କର କୌଣସି ବି କର୍ମରେ ଆଉ କୌଣସିପ୍ରକାର ଫଳ ଦେବାର ଶକ୍ତି ରହେ ନାହିଁ।

*ସମ୍ବନ୍ଧ – ପୂର୍ବଶ୍ଳୋକରେ କୁହାଯାଇଛି ଯେ, ଯଜ୍ଞପାଇଁ କର୍ମ କରୁଥିବା ପୁରୁଷଙ୍କର ସମସ୍ତ କର୍ମ ବିଲୀନ ହୋଇଯାଏ। ଏଠାରେ କେବଳ ଅଗ୍ନିରେ ହୋମଯୋଗ୍ୟ ପଦାର୍ଥଦ୍ୱାରା ହୋମ କରିବା ଯେ ଯଜ୍ଞ ଏବଂ କେବଳ ତାହା ସମ୍ପାଦନ କରିବାକୁ କରାଯାଉଥିବା କ୍ରିୟା ଯେ ଯଜ୍ଞନିମିତ୍ତ କର୍ମ, କେବଳ ତାହା ନୁହେଁ; ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଯାହାଙ୍କର ଯାହା କର୍ତ୍ତବ୍ୟ, ତାହା ତାଙ୍କ ପାଇଁ ଯଜ୍ଞ ଏବଂ ତାହା ପାଳନ କରିବା ନିମିତ୍ତ ଆବଶ୍ୟକ କ୍ରିୟାମାନଙ୍କୁ ନିଃସ୍ୱାର୍ଥ ବୁଦ୍ଧିରେ ଲୋକସଂଗ୍ରହପାଇଁ କରିବା ହିଁ ସେହି ଯଜ୍ଞନିମିତ୍ତ କର୍ମ କରିବା। ଏହି ଭାବକୁ ସୁସ୍ପଷ୍ଟ କରିବାପାଇଁ ବର୍ତ୍ତମାନ ଭଗବାନ୍ ସାତଟି ଶ୍ଳୋକରେ ଭିନ୍ନ ଭିନ୍ନ ଯୋଗୀମାନଙ୍କ ଦ୍ୱାରା କରାଯାଉଥିବା ପରମାତ୍ମପ୍ରାପ୍ତିର ସାଧନରୂପକ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମକୁ ବିଭିନ୍ନ ଯଜ୍ଞନାମରେ ବର୍ଣ୍ଣନା କରୁଛନ୍ତି–*

**ବ୍ରହ୍ମାର୍ପଣଂ ବ୍ରହ୍ମ ହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।**
**ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମସମାଧିନା ।। ୨୪ ।।**

**ଅନ୍ୱୟ –** **ଅର୍ପଣମ୍** = (ଯେଉଁ ଯଜ୍ଞରେ) ଅର୍ପଣ ଅର୍ଥାତ୍ ସ୍ରୁବ ଆଦି ଉପକରଣ (ମଧ୍ୟ); **ବ୍ରହ୍ମ** = ବ୍ରହ୍ମ (ଏବଂ); **ହବିଃ** = ହବନଯୋଗ୍ୟ ଦ୍ରବ୍ୟ; **ବ୍ରହ୍ମ** = ବ୍ରହ୍ମ (ମଧ୍ୟ); **ବ୍ରହ୍ମଣା** = ବ୍ରହ୍ମରୂପକ କର୍ତ୍ତାଙ୍କ ଦ୍ୱାରା; **ବ୍ରହ୍ମାଗ୍ନୌ** = ବ୍ରହ୍ମରୂପକ ଅଗ୍ନିରେ; **ହୁତମ୍** = ଆହୁତି-ଦେବା-ରୂପକ କ୍ରିୟା (ମଧ୍ୟ ବ୍ରହ୍ମ); **ତେନ** = ସେହି; **ବ୍ରହ୍ମକର୍ମସମାଧିନା** = ବ୍ରହ୍ମକର୍ମରେ ସ୍ଥିତ ରହୁଥିବା ଯୋଗୀଙ୍କ ଦ୍ୱାରା; **ଗନ୍ତବ୍ୟମ୍** = ପାଇବାଯୋଗ୍ୟ (ଫଳ ମଧ୍ୟ); **ବ୍ରହ୍ମ**, **ଏବ** = ବ୍ରହ୍ମ ହିଁ।

**ଯେଉଁ ଯଜ୍ଞରେ ଅର୍ପଣ ଅର୍ଥାତ୍ ସ୍ରୁବ ଆଦି ଉପକରଣ ମଧ୍ୟ ବ୍ରହ୍ମ ଏବଂ ହବନଯୋଗ୍ୟ ଦ୍ରବ୍ୟ ମଧ୍ୟ ବ୍ରହ୍ମ ତଥା ବ୍ରହ୍ମରୂପକ କର୍ତ୍ତାଙ୍କ ଦ୍ୱାରା ବ୍ରହ୍ମରୂପକ ଅଗ୍ନିରେ ଆହୁତିଦାନରୂପକ କ୍ରିୟା ମଧ୍ୟ ବ୍ରହ୍ମ, ସେହି ବ୍ରହ୍ମକର୍ମରେ ସ୍ଥିତ ରହୁଥିବା ଯୋଗୀଙ୍କ ଦ୍ୱାରା ପାଇବାଯୋଗ୍ୟ ଫଳ ମଧ୍ୟ ବ୍ରହ୍ମ ହିଁ ଅଟେ।। ୨୪ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଯଜ୍ଞର ରୂପକରେ କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** ଏହି ଶ୍ଳୋକରେ **ସର୍ବଂ ଖଳ୍ୱିଦଂ ବ୍ରହ୍ମ** (ଛାନ୍ଦୋଗ୍ୟ ୩/୩/୧୪/୧) ଅନୁସାରେ ସର୍ବତ୍ର ବ୍ରହ୍ମଦର୍ଶନରୂପକ ସାଧନାକୁ ଯଜ୍ଞର ରୂପ ଦିଆଯାଇଛି। ଅଭିପ୍ରାୟ ଏହି ଯେ, କର୍ତ୍ତା, କର୍ମ ଏବଂ କରଣ ଆଦି ବିଭିନ୍ନ ପଦାର୍ଥ ଭିନ୍ନ ଭିନ୍ନରୂପରେ ପ୍ରତୀତ ହେଉଥିଲେ ବି ସେସବୁକୁ ବ୍ରହ୍ମରୂପରେ ଦେଖିବାର ଯେଉଁ ଅଭ୍ୟାସ, ସେହି ଅଭ୍ୟାସରୂପକ କର୍ମ ହେଉଛି ପରମାତ୍ମପ୍ରାପ୍ତିର ସାଧନ; ତେଣୁ ତାହା ଯଜ୍ଞ ହିଁ ଅଟେ।

ଏହି ଯଜ୍ଞରେ ସ୍ରୁବ, ହବି, ହବନକର୍ତ୍ତା ଏବଂ ହୋମରୂପକ କ୍ରିୟା ଆଦି ବସ୍ତୁ ଭିନ୍ନ ଭିନ୍ନ ନୁହଁନ୍ତି;

ତାଙ୍କ ଦୃଷ୍ଟିରେ ସବୁ କିଛି ବ୍ରହ୍ମ; କାରଣ ଏପରି ଯଜ୍ଞ କରୁଥିବା ଯୋଗୀ ଯେଉଁ ମନ, ବୁଦ୍ଧି ଆଦିଦ୍ୱାରା ସମସ୍ତ ଜଗତକୁ ବ୍ରହ୍ମ ବୋଲି ବୁଝିବାର ଅଭ୍ୟାସ କରନ୍ତି, ସେ ସେଗୁଡ଼ିକୁ, ନିଜକୁ, ଏହି ଅଭ୍ୟାସରୂପକ କ୍ରିୟାକୁ ତଥା ଅନ୍ୟ କୌଣସି ବି ବସ୍ତୁକୁ ବ୍ରହ୍ମଠାରୁ ଭିନ୍ନ ବୋଲି ବୁଝନ୍ତି ନାହିଁ; ସେ ସବୁ ବସ୍ତୁକୁ ବ୍ରହ୍ମରୂପରେ ଦେଖନ୍ତି। ତେଣୁ ତାଙ୍କର ସେସବୁରେ କୌଣସିପ୍ରକାର ଭେଦବୁଦ୍ଧି ରହେ ନାହିଁ।

**ପ୍ରଶ୍ନ –** ଏହି ରୂପକରେ **ଅର୍ପଣମ୍** ପଦର ଅର୍ଥ ଯଦି ହବନ କରିବା କ୍ରିୟା ବୋଲି ମାନିନିଆଯାଏ, ତେବେ ଆପତ୍ତି କଣ ?

**ଉତ୍ତର –** **ହୁତମ୍** ପଦଟି ହେଉଛି ହବନ କ୍ରିୟାର ବାଚକ। ଏଣୁ **ଅର୍ପଣମ୍** ପଦର ଅର୍ଥକୁ ମଧ୍ୟ କ୍ରିୟା ବୋଲି ମାନିନେଲେ ପୁନରୁକ୍ତି ଦୋଷ ଆସିଯିବ। ନବମ ଅଧ୍ୟାୟର ଷୋଡ଼ଶ ଶ୍ଳୋକରେ ମଧ୍ୟ **ହୁତମ୍** ପଦର ଅର୍ଥ ହବନକ୍ରିୟା ବୋଲି ମାନିନିଆଯାଇଛି। ତେଣୁ ଯାହାଦ୍ୱାରା କିଛି ବସ୍ତୁ ଅର୍ପଣ କରାଯାଏ, ଅର୍ଯ୍ୟତେ **ଅନେନ –** ଏହି ବ୍ୟୁତ୍ପତ୍ତି ଅନୁସାରେ ଅର୍ପଣମ୍ ପଦର ଅର୍ଥ ଯାହାଦ୍ୱାରା ଘୃତ ଆଦି ଦ୍ରବ୍ୟ ଅଗ୍ନିରେ ପକାଯାଏ, ସେହି ସ୍ରୁବ ଆଦି ଉପକରଣ ବୋଲି ମାନିବା ଉଚିତ।

**ପ୍ରଶ୍ନ –** ବ୍ରହ୍ମକର୍ମରେ ସ୍ଥିତ ହେବା କଣ ଏବଂ 'ତାହାଦ୍ୱାରା ପ୍ରାପ୍ତ ହେଉଥିବା ଫଳ ମଧ୍ୟ ବ୍ରହ୍ମ ହିଁ ଅଟେ' — ଏ କଥାର ଭାବ କଣ ?

**ଉତ୍ତର –** ନିରନ୍ତର ସର୍ବତ୍ର ବ୍ରହ୍ମବୁଦ୍ଧି ରଖି ରହିବା, କାହାରିକୁ ବ୍ରହ୍ମଠାରୁ ଭିନ୍ନ ବୋଲି ନ ବୁଝିବା ହିଁ ବ୍ରହ୍ମକର୍ମରେ ସ୍ଥିତ ହେବା। ଏହିପ୍ରକାର ସାଧନା ଫଳରେ ନିଃସନ୍ଦେହ ପରବ୍ରହ୍ମ ପରମାତ୍ମାଙ୍କ ପ୍ରାପ୍ତି ହୁଏ; ଉପରୋକ୍ତ ସାଧନା କରୁଥିବା ଯୋଗୀ ଅନ୍ୟ ଫଳର ଭାଗୀ ହୁଅନ୍ତି ନାହିଁ— ଏହି ଭାବ ଦେଖାଇବାକୁ ଯାଇ କୁହାଯାଇଛି ଯେ, ତାହାଦ୍ୱାରା ପ୍ରାପ୍ତ ହେଉଥିବା ଫଳ ମଧ୍ୟ ବ୍ରହ୍ମ ହିଁ ଅଟେ।

**ସମ୍ବନ୍ଧ –** *ଏପରିଭାବରେ ବ୍ରହ୍ମକର୍ମରୂପକ ଯଜ୍ଞର ବର୍ଣ୍ଣନା କରିସାରି ପରବର୍ତ୍ତୀ ଶ୍ଳୋକରେ ଭଗବାନ୍ ଦେବପୂଜନରୂପକ ଯଜ୍ଞର ଏବଂ ଆତ୍ମା-ପରମାତ୍ମାଙ୍କ ଅଭେଦଦର୍ଶନରୂପକ ଯଜ୍ଞର ବର୍ଣ୍ଣନା କରୁଛନ୍ତି—*

**ଦୈବମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ।**
**ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି॥ ୨୫ ॥**

**ଅନ୍ୱୟ –** **ଅପରେ** = ଅନ୍ୟ; **ଯୋଗିନଃ** = ଯୋଗୀମାନେ; **ଦୈବମ୍** = ଦେବତାମାନଙ୍କ ପୂଜନରୂପକ; **ଯଜ୍ଞମ୍** = ଯଜ୍ଞକୁ; **ଏବ** = ହିଁ; **ପର୍ଯ୍ୟୁପାସତେ** = ଭଲଭାବରେ ଅନୁଷ୍ଠାନ କରନ୍ତି; **ଅପରେ** = (ଏବଂ) ଅନ୍ୟ ଯୋଗୀମାନେ; **ବ୍ରହ୍ମାଗ୍ନୌ** = ପରବ୍ରହ୍ମ-ପରମାତ୍ମାରୂପକ ଅଗ୍ନିରେ; **ଯଜ୍ଞେନ** = ଅଭେଦଦର୍ଶନରୂପକ ଯଜ୍ଞଦ୍ୱାରା; **ଏବ** = ହିଁ; **ଯଜ୍ଞମ୍** = ଆତ୍ମରୂପ ଯଜ୍ଞକୁ; **ଉପଜୁହ୍ୱତି** = ହବନ କରନ୍ତି।

**ଅନ୍ୟ କେତେକ ଯୋଗୀ ଦେବତାମାନଙ୍କର ପୂଜନରୂପକ ଯଜ୍ଞକୁ ହିଁ ଭଲଭାବରେ ଅନୁଷ୍ଠାନ କରନ୍ତି ଏବଂ ଅନ୍ୟ କେତେକ ଯୋଗୀ ପରବ୍ରହ୍ମ-ପରମାତ୍ମାରୂପକ ଅଗ୍ନିରେ ଅଭେଦଦର୍ଶନରୂପକ ଯଜ୍ଞଦ୍ୱାରା ହିଁ ଆତ୍ମରୂପକ ଯଜ୍ଞକୁ ହବନ କରନ୍ତି॥ ୨୫ ॥**

**ପ୍ରଶ୍ନ –** ଏଠାରେ **ଯୋଗିନଃ** ପଦ କେଉଁ ଯୋଗୀମାନଙ୍କର ବାଚକ ଏବଂ ତାହା ସହିତ **ଅପରେ** ବିଶେଷଣ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ଏଠାରେ **ଯୋଗିନଃ** ପଦଟି ହେଉଛି ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି ଶାସ୍ତ୍ରବିହିତ ଯଜ୍ଞାଦି କର୍ମ କରୁଥିବା ସାଧକମାନଙ୍କର ବାଚକ। ଏହି ସାଧକମାନଙ୍କୁ ପୂର୍ବଶ୍ଳୋକରେ ବର୍ଣ୍ଣିତ ବ୍ରହ୍ମକର୍ମୀ କରୁଥିବା ଲୋକଙ୍କ ଠାରୁ ପୃଥକ୍ ବୋଲି ଦର୍ଶାଇବାକୁ ଅର୍ଥାତ୍ ଏମାନଙ୍କର ସାଧନା ପୂର୍ବୋକ୍ତ ସାଧନାଠାରୁ ଭିନ୍ନ ଏବଂ ଦୁଇ ସାଧନାର ଅଧିକାରୀ ଭିନ୍ନ ଭିନ୍ନ ଯୋଗୀ ଅଟନ୍ତି ବୋଲି ସ୍ପଷ୍ଟ କରିଦେବାକୁ ଏଠାରେ **ଯୋଗିନଃ** ପଦ ସହିତ **ଅପରେ** ବିଶେଷଣ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **ଦୈବମ୍** ବିଶେଷଣ ସହିତ **ଯଜ୍ଞମ୍** ପଦଟି କେଉଁ କର୍ମର ବାଚକ ଏବଂ ତାହା ଭଲଭାବରେ ଅନୁଷ୍ଠାନ କରିବା କହିଲେ କଣ ବୁଝାଏ ? ଏହି ଶ୍ଳୋକର ପୂର୍ବାର୍ଦ୍ଧରେ ଭଗବାନଙ୍କ ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର —** ବ୍ରହ୍ମା, ଶିବ, ଶକ୍ତି, ଗଣେଶ, ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ଏବଂ ବରୁଣାଦି ଯେଉଁ ଶାସ୍ତ୍ରସମ୍ମତ ଦେବତା ଅଛନ୍ତି, ସେମାନଙ୍କ ପାଇଁ ହବନ କରିବା, ସେମାନଙ୍କ ପୂଜା କରିବା, ସେମାନଙ୍କ ମନ୍ତ୍ର ଜପ କରିବା, ସେମାନଙ୍କ ନିମିତ୍ତ ଦାନ ଦେବା ଏବଂ ବ୍ରାହ୍ମଣଭୋଜନ କରାଇବା ଆଦି ସମସ୍ତ କର୍ମର ବାଚକରୂପେ ଏଠାରେ **ଦୈବମ୍** ବିଶେଷଣ ସହିତ **ଯଜ୍ଞମ୍** ପଦ ଆସିଛି। ନିଜର କର୍ତ୍ତବ୍ୟ ବୋଲି ବୁଝି ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି କେବଳ ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ଏହିସମସ୍ତ କର୍ମ ଶ୍ରଦ୍ଧାଭକ୍ତିପୂର୍ବକ ଶାସ୍ତ୍ରବିଧି ଅନୁସାରେ ପୂର୍ଣ୍ଣଭାବରେ କରିବା ହିଁ ଭଲଭାବରେ ଦୈବଯଜ୍ଞ ଅନୁଷ୍ଠାନ କରିବା। ଏହି ଶ୍ଳୋକର ପୂର୍ବାର୍ଦ୍ଧରେ ଭଗବାନ୍ ଦେଖାଇଛନ୍ତି ଯେ, ଯେଉଁମାନେ ଏହିପରି ଦେବ ଉପାସନା କରନ୍ତି, ସେମାନଙ୍କର କ୍ରିୟା ମଧ୍ୟ ଯଜ୍ଞନିମିତ୍ତ କରାଯାଉଥିବା କର୍ମର ଅନ୍ତର୍ଗତ।

**ପ୍ରଶ୍ନ —** ବ୍ରହ୍ମରୂପକ ଅଗ୍ନିରେ ଯଜ୍ଞଦ୍ୱାରା ହିଁ ଯଜ୍ଞର ହବନ କରିବା କଣ ?

**ଉତ୍ତର —** ଅନାଦିସିଦ୍ଧ ଅଜ୍ଞାନହେତୁ ଶରୀର ଉପାଧିଦ୍ୱାରା ଆତ୍ମା ଓ ପରମାତ୍ମାର ଭେଦ ଅନାଦିକାଳରୁ ପ୍ରତୀତ ହୋଇ ଆସୁଛି; ଏହି ଅଜ୍ଞାନଜନିତ ଭେଦପ୍ରତୀତିକୁ ଜ୍ଞାନାଭ୍ୟାସଦ୍ୱାରା ଲୋପ କରିଦେବା ଅର୍ଥାତ୍ ଶାସ୍ତ୍ର ଏବଂ ଆଚାର୍ଯ୍ୟଙ୍କ ଉପଦେଶରୁ ଶୁଣିଥିବା ତତ୍ତ୍ୱଜ୍ଞାନକୁ ନିରନ୍ତର ମନନ ଏବଂ ନିଦିଧ୍ୟାସନ କରି କରି ନିତ୍ୟ ବିଜ୍ଞାନାନନ୍ଦଘନ, ଗୁଣାତୀତ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଅଭେଦଭାବରେ ଆତ୍ମାକୁ ଏକ କରିଦେବା— ବିଲୀନ କରିଦେବା ହିଁ ବ୍ରହ୍ମରୂପ ଅଗ୍ନିରେ ଯଜ୍ଞଦ୍ୱାରା ଯଜ୍ଞର ହବନ କରିବା। ଏହିପରି ଯଜ୍ଞ କରୁଥିବା ଜ୍ଞାନଯୋଗୀଙ୍କ ଦୃଷ୍ଟିରେ ଏକ ନିର୍ଗୁଣ-ନିରାକାର-ସଚ୍ଚିଦାନନ୍ଦଘନ-ବ୍ରହ୍ମଙ୍କ ବ୍ୟତୀତ ନିଜର ବା ଅନ୍ୟ କାହାର କୌଣସି ବି ପୃଥକ୍ ସତ୍ତା ରହେ ନାହିଁ; ଏହି ତ୍ରିଗୁଣମୟ ସଂସାର ସହିତ ତାଙ୍କର କୌଣସି ବି ସମ୍ବନ୍ଧ ରହେ ନାହିଁ। ତାଙ୍କ ପାଇଁ ସଂସାରର ଅତ୍ୟନ୍ତାଭାବ ହୋଇଯାଏ।

**ପ୍ରଶ୍ନ —** ପୂର୍ବଶ୍ଳୋକରେ ବର୍ଣ୍ଣିତ ବ୍ରହ୍ମକର୍ମଠାରୁ ଅଭେଦଦର୍ଶନରୂପକ ଯଜ୍ଞର ପ୍ରଭେଦ କଣ ?

**ଉତ୍ତର —** ସାଂଖ୍ୟଯୋଗୀଙ୍କ ଦ୍ୱାରା ଏହି ଦୁଇଟିଯାକ ସାଧନା କରାଯାଏ ଏବଂ ଦୁଇଟିଯାକରେ ପରବ୍ରହ୍ମ ପରମାତ୍ମା ହିଁ ଅଗ୍ନିସ୍ଥାନୀୟ ଅଟନ୍ତି। ତେଣୁ ଦୁଇଟିରେ ଏକତା ପ୍ରତୀତ ହୁଏ ତଥା ଦୁହିଁଙ୍କର ଫଳ ଅଭିନ୍ନଭାବରେ ସଚ୍ଚିଦାନନ୍ଦଘନ ବ୍ରହ୍ମପ୍ରାପ୍ତି ହୋଇଥିବାରୁ ପ୍ରକୃତରେ ପ୍ରଭେଦ ବୋଲି କିଛି ନାହିଁ; କେବଳ ସାଧନାପ୍ରଣାଳୀରେ ହିଁ ପାର୍ଥକ୍ୟ ରହିଛି; ତାହା ସ୍ପଷ୍ଟ କରିଦେବାକୁ ସାଧନା ଦୁଇଟିର ବର୍ଣ୍ଣନା ଅଲଗା ଅଲଗା କରାଯାଇଛି। ପୂର୍ବଶ୍ଳୋକରେ ବର୍ଣ୍ଣିତ ସାଧନାରେ ତ **ସର୍ବଂ ଖଲ୍ୱିଦଂ ବ୍ରହ୍ମ** (ଛାନ୍ଦୋଗ୍ୟ ଉ. ୩/୧୪/୧) — ଏହି ଶ୍ରୁତିବାକ୍ୟ ଅନୁସାରେ ସର୍ବତ୍ର ବ୍ରହ୍ମବୁଦ୍ଧି କରିବାର ବର୍ଣ୍ଣନା ରହିଛି ଏବଂ ଉପରୋକ୍ତ ସାଧନାରେ ସମସ୍ତ ଜଗତର ସମ୍ବନ୍ଧର ଅଭାବ କରିଦେଇ ଆତ୍ମା ଏବଂ ପରମାତ୍ମାଙ୍କ ଠାରେ ଅଭେଦଦର୍ଶନର କଥା କୁହାଯାଇଛି।

**ସମ୍ବନ୍ଧ —** ଦୈବଯଜ୍ଞ ଏବଂ ଅଭେଦଦର୍ଶନରୂପକ ଯଜ୍ଞ ବର୍ଣ୍ଣନା କରିବା ପରେ ଭଗବାନ୍ ବର୍ତ୍ତମାନ ଇନ୍ଦ୍ରିୟସଂଯମରୂପକ ଯଜ୍ଞ ଏବଂ ବିଷୟହବନରୂପକ ଯଜ୍ଞ ବର୍ଣ୍ଣନା କରୁଛନ୍ତି—

## ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି।
## ଶବ୍ଦାଦୀନ୍ ବିଷୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି॥ ୨୬ ॥

**ଅନ୍ୱୟ —** **ଅନ୍ୟେ** = ଅନ୍ୟ ଯୋଗୀମାନେ; **ଶ୍ରୋତ୍ରାଦୀନି** = ଶ୍ରୋତ୍ର ଆଦି; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ; **ସଂଯମାଗ୍ନିଷୁ** = ସଂଯମରୂପକ ଅଗ୍ନିମାନଙ୍କରେ; **ଜୁହ୍ୱତି** = ହୋମ କରନ୍ତି; (ଏବଂ) **ଅନ୍ୟେ** = ଅନ୍ୟ ଯୋଗୀମାନେ; **ଶବ୍ଦାଦୀନ୍** = ଶବ୍ଦାଦି; **ବିଷୟାନ୍** = ବିଷୟମାନଙ୍କୁ; **ଇନ୍ଦ୍ରିୟାଗ୍ନିଷୁ** = ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ; **ଜୁହ୍ୱତି** = ହୋମ କରନ୍ତି।

**ଅନ୍ୟ ଯୋଗୀମାନେ ଶ୍ରୋତ୍ର ଆଦି ଇନ୍ଦ୍ରିୟମାନଙ୍କୁ ସଂଯମରୂପକ ଅଗ୍ନିମାନଙ୍କରେ ହୋମ କରନ୍ତି ଏବଂ ଆଉ କେତେକ ଯୋଗୀ ଶବ୍ଦାଦି ବିଷୟମାନଙ୍କୁ ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ ହୋମ କରନ୍ତି॥ ୨୬ ॥**

**ପ୍ରଶ୍ନ —** ସଂଯମକୁ ଅଗ୍ନି ବୋଲି କହିବାର ଭାବ କଣ ଏବଂ ସେଥିରେ ବହୁବଚନ ପ୍ରୟୋଗ କାହିଁକି କରାଯାଇଛି ?

**ଉତ୍ତର —** ଇନ୍ଦ୍ରିୟସଂଯମରୂପକ ସାଧନାକୁ ଯଜ୍ଞର ରୂପ ଦେବାପାଇଁ ସଂଯମକୁ ଅଗ୍ନି ବୋଲି କୁହାଯାଇଛି ଏବଂ ପ୍ରତ୍ୟେକ ଇନ୍ଦ୍ରିୟର ସଂଯମ ଅଲଗା ଅଲଗା

ହୁଏ; ଏହି କଥାଟି ସ୍ପଷ୍ଟ କରିଦେବାକୁ ସେଥିରେ ବହୁବଚନ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ –** ସଂଯମରୂପକ ଅଗ୍ନିମାନଙ୍କରେ ଶ୍ରୋତ୍ର ଆଦି ଇନ୍ଦ୍ରିୟମାନଙ୍କୁ ହୋମ କରିବାର ଅର୍ଥ କଣ ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟରେ କୁହାଯାଇଛି ଯେ, ଇନ୍ଦ୍ରିୟମାନେ ଅତ୍ୟନ୍ତ ପ୍ରମଥନଶୀଳ; ସେମାନେ ବଳପୂର୍ବକ ସାଧକଙ୍କ ମନକୁ ଟଳେ ପକାଇଦିଅନ୍ତି (୨/୬୦); ତେଣୁ ଇନ୍ଦ୍ରିୟମାନଙ୍କୁ ନିଜର ବଶ କରିନେବା, ସେମାନଙ୍କର ସ୍ୱତନ୍ତ୍ରତା ଲୋପ କରିଦେବା, ସେମାନଙ୍କଠାରେ ମନକୁ ବିଚଳିତ କରିବାର ଶକ୍ତି ରହିବାକୁ ନ ଦେବା ତଥା ସେମାନଙ୍କୁ ସାଂସାରିକ ଭୋଗମାନଙ୍କରେ ପ୍ରବୃତ୍ତ ହେବାକୁ ନ ଦେବା ହିଁ ଇନ୍ଦ୍ରିୟମାନଙ୍କୁ ସଂଯମରୂପକ ଅଗ୍ନିମାନଙ୍କରେ ହୋମ କରିବା । ତାତ୍ପର୍ଯ୍ୟ ଏହି ଯେ, ଶ୍ରୋତ୍ର, ଚର୍ମ, ନେତ୍ର, ଜିହ୍ୱା ଏବଂ ନାସିକାକୁ ବଶ କରି ପ୍ରତ୍ୟାହାର କରିବା — ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଆଦି ବାହାର-ଭିତର ସମସ୍ତ ବିଷୟରୁ ଇନ୍ଦ୍ରିୟମାନଙ୍କୁ ବିବେକପୂର୍ବକ ଦୂରେଇ ଦେଇ ଉପରତ ହୋଇଯିବା ହିଁ ଶ୍ରୋତ୍ର ଆଦି ଇନ୍ଦ୍ରିୟମାନଙ୍କୁ ସଂଯମରୂପକ ଅଗ୍ନିମାନଙ୍କରେ ହୋମ କରିବା । ଏହାର ସୁସ୍ପଷ୍ଟଭାବ ଦ୍ୱିତୀୟ ଅଧ୍ୟାୟର ଅଠାବନ ଶ୍ଳୋକରେ କଇଁଛ ଦୃଷ୍ଟାନ୍ତ ଦେଇ କୁହାଯାଇଛି ।

**ପ୍ରଶ୍ନ –** ତୃତୀୟ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଯେଉଁ ଇନ୍ଦ୍ରିୟସଂଯମକୁ ମିଥ୍ୟାଚାର ବୋଲି କୁହାଯାଇଛି, ସେହି ଓ ଏହି ଇନ୍ଦ୍ରିୟସଂଯମ ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ସେଠାରେ କେବଳ ଇନ୍ଦ୍ରିୟମାନଙ୍କୁ ଦେଖିବା-ଶୁଣିବା ତଥା ଖାଇବା-ପିଇବା ଆଦି ବାହ୍ୟ ବିଷୟମାନଙ୍କରୁ ରୋଧ କରିଦେବାକୁ ହିଁ ସଂଯମ ବୋଲି କୁହାଯାଇଛି; ଇନ୍ଦ୍ରିୟମାନଙ୍କୁ ବଶ କରିବା କଥା ସେଠାରେ ନାହିଁ; କାରଣ ସେଠାରେ ମନଦ୍ୱାରା ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କୁ ଚିନ୍ତନ କରୁଥିବା କଥା ସ୍ପଷ୍ଟ ହୋଇଯାଇଛି । କିନ୍ତୁ ଏଠାରେ ସେପରି କଥା ନାହିଁ; ଏଠାରେ ଇନ୍ଦ୍ରିୟମାନଙ୍କୁ ବଶ କରିନେବାର ନାମ 'ସଂଯମ' । ବଶ କରାଯାଇଥିବା ଇନ୍ଦ୍ରିୟମାନଙ୍କ ଠାରେ ମନକୁ ବିଷୟମାନଙ୍କରେ ପ୍ରବୃତ୍ତ କରିବାର ଶକ୍ତି ରହେ ନାହିଁ । ତେଣୁ ଯେଉଁ ବ୍ୟକ୍ତି ଇନ୍ଦ୍ରିୟମାନଙ୍କୁ ବଶ ନ କରି କେବଳ ଦମ୍ଭାଚାରଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କଠାରୁ ରୁଦ୍ଧ କରି ରଖେ ଅଥଚ ମନଦ୍ୱାରା ବିଷୟମାନଙ୍କୁ ଚିନ୍ତା କରେ ଏବଂ ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ ପାଇବାପାଇଁ ଇନ୍ଦ୍ରିୟମାନଙ୍କୁ ବଶ କରିନିଏ, ତାହାଙ୍କ ମନରେ ବିଷୟଚିନ୍ତନ ହୁଏ ନାହିଁ; ନିରନ୍ତର ପରମାତ୍ମାଙ୍କ ଚିନ୍ତନ ହିଁ ହେଉଥାଏ । ଏହା ହିଁ ମିଥ୍ୟାଚାରୀର ସଂଯମ ଏବଂ ଯଥାର୍ଥ ସଂଯମ ମଧ୍ୟରେ ପାର୍ଥକ୍ୟ ।

**ପ୍ରଶ୍ନ –** ଶ୍ଳୋକର ଉତ୍ତରାର୍ଦ୍ଧରେ 'ଇନ୍ଦ୍ରିୟ' ଶବ୍ଦ ସହିତ 'ଅଗ୍ନି' ଶବ୍ଦର ସମାସ କାହିଁକି କରାଯାଇଛି ? **ଇନ୍ଦ୍ରିୟାଗ୍ନିଷୁ** ପଦରେ ବହୁବଚନ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଆସକ୍ତିରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ନିଷ୍କାମଭାବରେ ବିଷୟସେବନରୂପକ ସାଧନାକୁ ଯଜ୍ଞର ରୂପ ଦେବାକୁ ଏଠାରେ 'ଇନ୍ଦ୍ରିୟ' ଶବ୍ଦ ସହିତ 'ଅଗ୍ନି' ଶବ୍ଦର ସମାସ କରାଯାଇଛି ଏବଂ ପ୍ରତ୍ୟେକ ଇନ୍ଦ୍ରିୟଦ୍ୱାରା ଅନାସକ୍ତଭାବରେ ଅଲଗା ଅଲଗା ବିଷୟମାନଙ୍କୁ ସେବନ କରାଯାଏ; ଏହି କଥା ସ୍ପଷ୍ଟ କରିବାକୁ ଏଥିରେ ବହୁବଚନ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ –** ଶବ୍ଦାଦି ବିଷୟମାନଙ୍କୁ ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ ହୋମ କରିବାର ଅର୍ଥ କଣ ?

**ଉତ୍ତର –** ବଶ କରାଯାଇଥିବା ଏବଂ ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା ବର୍ଣ୍ଣ, ଆଶ୍ରମ ଏବଂ ପରିସ୍ଥିତି ଅନୁସାରେ ଯୋଗ୍ୟତାରୁ ପ୍ରାପ୍ତ ବିଷୟମାନଙ୍କୁ ଗ୍ରହଣ କରି ସେସବୁକୁ ଇନ୍ଦ୍ରିୟମାନଙ୍କରେ ବିଲୀନ କରିଦେବା (୨/୬୪) ଅର୍ଥାତ୍ ସେସବୁ ସେବନ କରିବା ସମୟରେ ବା ଅନ୍ୟ ସମୟରେ ଅନ୍ତଃକରଣରେ ବା ଇନ୍ଦ୍ରିୟମାନଙ୍କରେ କୌଣସିପ୍ରକାର ବିକାର ଉତ୍ପନ୍ନ କରିବା ଶକ୍ତି ରହିବାକୁ ନ ଦେବା ହିଁ ଶବ୍ଦାଦି ବିଷୟମାନଙ୍କୁ ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ ହୋମ କରିଦେବା । ଅଭିପ୍ରାୟ ଏହି ଯେ, କାନରେ ନିନ୍ଦା ବା ସ୍ତୁତି କିମ୍ବା ଅନ୍ୟ କୌଣସିପ୍ରକାର ଅନୁକୂଳ ବା ପ୍ରତିକୂଳ ଶବ୍ଦ ଶୁଣି, ନେତ୍ରରେ ଭଲ-ମନ୍ଦ ଦୃଶ୍ୟ ଦେଖି, ଜିହ୍ୱାଦ୍ୱାରା ଅନୁକୂଳ ବା ପ୍ରତିକୂଳ ରସ ଗ୍ରହଣ କରି, ଏହିପରି ଅନ୍ୟ ସମସ୍ତ ଇନ୍ଦ୍ରିୟମାନଙ୍କ ଦ୍ୱାରା ମଧ୍ୟ ପ୍ରାରବ୍ଧ ଅନୁସାରେ ଯୋଗ୍ୟତାରୁ ପ୍ରାପ୍ତ ସମସ୍ତ ବିଷୟ ଅନାସକ୍ତଭାବରେ ସେବନ କରି ଅନ୍ତଃକରଣରେ ସମଭାବ ରଖିବା, ଭେଦବୁଦ୍ଧିଜନିତ ରାଗ-ଦ୍ୱେଷ ଏବଂ ହର୍ଷ-ଶୋକାଦି ବିକାର ଜାତ ହେବାକୁ ନ ଦେବା, ଅର୍ଥାତ୍ ସେହି ବିଷୟମାନଙ୍କରେ ମନକୁ ଏବଂ ଇନ୍ଦ୍ରିୟମାନଙ୍କୁ ବିଚଳିତ କରିବାର ଯେଉଁ ଶକ୍ତି ରହିଛି, ତାହା ନାଶ କରିଦେଇ ତାହାକୁ ଇନ୍ଦ୍ରିୟମାନଙ୍କରେ ବିଲୀନ କରିଦେବା ହିଁ ଶବ୍ଦାଦି ବିଷୟମାନଙ୍କୁ ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ ହବନ କରିବା ; କାରଣ ବିଷୟମାନଙ୍କରେ ଆସକ୍ତି, ସୁଖ ଏବଂ ରମଣୀୟ ବୁଦ୍ଧି ନ ରହିବାରୁ ସେହି ବିଷୟଭୋଗ ସାଧକଙ୍କ ଉପରେ ନିଜର ପ୍ରଭାବ ପକାଇପାରେ ନାହିଁ; ତାହା ସ୍ୱୟଂ ଅଗ୍ନିରେ ତୃଣପରି ଭସ୍ମ ହୋଇଯାଏ ।

**ସମ୍ବନ୍ଧ –** *ବର୍ତ୍ତମାନ ଭଗବାନ୍ ଆତ୍ମସଂଯମ ଯୋଗରୂପକ ଯଜ୍ଞ ବର୍ଣ୍ଣନା କରୁଛନ୍ତି–*

**ସର୍ବାଣୀନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚାପରେ ।**
**ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି ଜ୍ଞାନଦୀପିତେ ।। ୨୭ ।।**

**ଅନ୍ୱୟ –** ଅପରେ = ଅନ୍ୟ ଯୋଗୀମାନେ; **ସର୍ବାଣି, ଇନ୍ଦ୍ରିୟକର୍ମାଣି** = ଇନ୍ଦ୍ରିୟମାନଙ୍କର ସକଳ କ୍ରିୟାକୁ; ଚ = ଏବଂ; **ପ୍ରାଣକର୍ମାଣି** = ପ୍ରାଣମାନଙ୍କର ସମସ୍ତ କ୍ରିୟା; **ଜ୍ଞାନଦୀପିତେ** = ଜ୍ଞାନଦ୍ୱାରା ପ୍ରକାଶିତ; **ଆତ୍ମସଂଯମ-ଯୋଗାଗ୍ନୌ** = ଆତ୍ମସଂଯମଯୋଗରୂପକ ଅଗ୍ନିରେ; **ଜୁହ୍ୱତି** = ହୋମ କରନ୍ତି ।

**ଅନ୍ୟ ଯୋଗୀମାନେ ଇନ୍ଦ୍ରିୟମାନଙ୍କର ସମସ୍ତ କ୍ରିୟା ଏବଂ ପ୍ରାଣମାନଙ୍କର ସମସ୍ତ କ୍ରିୟା ଜ୍ଞାନଦ୍ୱାରା ପ୍ରକାଶିତ ଆତ୍ମସଂଯମଯୋଗରୂପକ ଅଗ୍ନିରେ ହୋମ କରିଦିଅନ୍ତି ।। ୨୭ ।।**

**ପ୍ରଶ୍ନ –** ଏଠାରେ **ଆତ୍ମସଂଯମଯୋଗ** କେଉଁ ଯୋଗର ବାଚକ ? ତାହା ସହିତ 'ଅଗ୍ନି' ଶବ୍ଦର ସମାସ କାହିଁକି କରାଯାଇଛି ତଥା **ଜ୍ଞାନଦୀପିତେ** ବିଶେଷଣର ଭାବ କଣ ?

**ଉତ୍ତର –** ଏଠାରେ **ଆତ୍ମସଂଯମଯୋଗ** ହେଉଛି ସମାଧିଯୋଗର ବାଚକ । ସେହି ସମାଧିଯୋଗକୁ ଯଜ୍ଞର ରୂପ ଦେବାନିମନ୍ତେ ତାହା ସହିତ 'ଅଗ୍ନି' ଶବ୍ଦର ସମାସ କରାଯାଇଛି । ସମାଧିର ଅବସ୍ଥା ସୁଷୁପ୍ତିଠାରୁ ଭିନ୍ନ; ସମାଧି ସୁଷୁପ୍ତିପରି ଶୂନ୍ୟାବସ୍ଥା ନୁହେଁ; ସମାଧି ଅବସ୍ଥାରେ ବିବେକ-ବିଜ୍ଞାନର ଜାଗୃତି ରହିଥାଏ । ଯଜ୍ଞର ରୂପକଦ୍ୱାରା ସମାଧିଯୋଗକୁ ପ୍ରଜ୍ୱଳିତ ଅଗ୍ନିପରି ଜ୍ଞାନଦ୍ୱାରା ପ୍ରକାଶିତ ବୋଲି ଦର୍ଶାଇବାକୁ ଏଠାରେ **ଜ୍ଞାନଦୀପିତେ** ବିଶେଷଣ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ –** ଉପରୋକ୍ତ ସମାଧିଯୋଗର ସ୍ୱରୂପ କଣ ତଥା ସେଥିରେ ଇନ୍ଦ୍ରିୟମାନଙ୍କର ସମସ୍ତ କ୍ରିୟାମାନଙ୍କୁ ଏବଂ ପ୍ରାଣମାନଙ୍କର ସମସ୍ତ କ୍ରିୟାମାନଙ୍କୁ ହୋମ କରିବାର ଅର୍ଥ କଣ ?

**ଉତ୍ତର –** ଧ୍ୟାନଯୋଗ ଅର୍ଥାତ୍ ଧ୍ୟେୟରେ ମନର ନିରୋଧ ଦୁଇପ୍ରକାରରେ ହୁଏ । ପ୍ରଥମ ପ୍ରକାରରେ ପ୍ରାଣମାନଙ୍କୁ ଏବଂ ଇନ୍ଦ୍ରିୟମାନଙ୍କୁ ନିରୋଧ କରି ତାହାପରେ ମନକୁ ଧ୍ୟେୟବସ୍ତୁରେ ନିରୋଧ କରାଯାଏ ଏବଂ ଦ୍ୱିତୀୟ ପ୍ରକାରରେ, ପ୍ରଥମେ ମନଦ୍ୱାରା ଧ୍ୟେୟର ଚିନ୍ତନ କରୁ କରୁ ଧ୍ୟେୟରେ ମନର ଏକାଗ୍ରତାରୂପକ ଧ୍ୟାନାବସ୍ଥା ଆସିଥାଏ । ତାହାପରେ ଧ୍ୟାନର ଗାଢ଼ ସ୍ଥିତି ଆସିଯାଇ ଧ୍ୟେୟରେ ମନର ନିରୋଧ ହୋଇଯାଏ; ଏହା ସମାଧି ଅବସ୍ଥା । ସେହି ସମୟରେ ପ୍ରାଣମାନଙ୍କର ଏବଂ ଇନ୍ଦ୍ରିୟମାନଙ୍କର ସକଳ କ୍ରିୟା ସ୍ୱତଃ ନିରୁଦ୍ଧ ହୋଇଯାଏ । ଏହା ଦ୍ୱିତୀୟ ପ୍ରକାରରେ କରାଯାଉଥିବା ଧ୍ୟାନଯୋଗର ବର୍ଣ୍ଣନା । ତେଣୁ ପରମାତ୍ମାଙ୍କର ସଗୁଣ-ସାକାର ବା ନିର୍ଗୁଣ-ନିରାକାର କୌଣସି ବି ରୂପରେ ନିଜ-ନିଜର ନିଷ୍ଠା ଓ ଭାବନା ଅନୁସାରେ ବିଧିପୂର୍ବକ ମନକୁ ନିରୋଧ କରିଦେବା ହିଁ ସମାଧିଯୋଗର ସ୍ୱରୂପ ।

ଏପରିଭାବରେ ଧ୍ୟାନଯୋଗରେ ମନୋନିଗ୍ରହପୂର୍ବକ ଇନ୍ଦ୍ରିୟମାନଙ୍କର ଦେଖିବା, ଶୁଣିବା, ସୁଙ୍ଘିବା, ଛୁଇଁବା, ଚାଖିବା ଓ ଘେନିବା, ଛାଡ଼ିବା, କହିବା ଏବଂ ଚାଲିବା-ବୁଲିବା ଆଦି କ୍ରିୟା ତଥା ପ୍ରାଣମାନଙ୍କର ଶ୍ୱାସ-ପ୍ରଶ୍ୱାସ ନେବା ଏବଂ ହଲିବା-ଝୁଲିବା ଆଦି ସମସ୍ତ କ୍ରିୟା ବିଲୀନ କରିଦେଇ ସମାଧିସ୍ଥ ହୋଇଯିବା ହିଁ ଏହି ଆତ୍ମସଂଯମଯୋଗରୂପକ ଅଗ୍ନିରେ ଇନ୍ଦ୍ରିୟମାନଙ୍କର ଏବଂ ପ୍ରାଣମାନଙ୍କର ସମସ୍ତ କ୍ରିୟାକୁ ହୋମ କରିଦେବା ।

**ସମ୍ବନ୍ଧ –** *ସମାଧିଯୋଗ ସାଧନାକୁ ଯଜ୍ଞର ରୂପ ଦେଇ ବର୍ତ୍ତମାନ ଭଗବାନ୍ ପରବର୍ତ୍ତୀ ଶ୍ଳୋକରେ ଦ୍ରବ୍ୟଯଜ୍ଞ, ତପୋଯଜ୍ଞ, ଯୋଗଯଜ୍ଞ ଏବଂ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞ ବିଷୟ ସଂକ୍ଷେପରେ ବର୍ଣ୍ଣନା କରୁଛନ୍ତି–*

**ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା ଯୋଗଯଜ୍ଞାସ୍ତଥାପରେ ।**
**ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ ଯତୟଃ ସଂଶିତବ୍ରତାଃ ।। ୨୮ ।।**

**ଅନ୍ୱୟ —** ଅପରେ = ଅନ୍ୟ କେତେକ; **ଦ୍ରବ୍ୟଯଜ୍ଞାଃ** = ଦ୍ରବ୍ୟସମ୍ବନ୍ଧୀ ଯଜ୍ଞକାରୀ; **ତପୋଯଜ୍ଞାଃ** = ତପସ୍ୟାରୂପକ ଯଜ୍ଞକାରୀ; ତଥା = ତଥା, (ଅନ୍ୟ କେତେକ); **ଯୋଗଯଜ୍ଞାଃ** = ଯୋଗରୂପକ ଯଜ୍ଞକାରୀ; ଚ = ଏବଂ (କେତେକ); **ସଂଶିତବ୍ରତାଃ** = ଅହିଂସାଦି ତୀକ୍ଷ୍ଣବ୍ରତଯୁକ୍ତ; **ଯତୟଃ** = ପ୍ରଯତ୍ନଶୀଳ ପୁରୁଷମାନେ; **ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ** = ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞକାରୀ (ଅଟନ୍ତି)।

**କେତେକ ପୁରୁଷ ଦ୍ରବ୍ୟସମ୍ବନ୍ଧୀ ଯଜ୍ଞ କରନ୍ତି; କେତେକ ତପସ୍ୟାରୂପକ ଯଜ୍ଞ କରନ୍ତି; ତଥା ଆଉ କେତେକ ଯୋଗରୂପକ ଯଜ୍ଞ କରନ୍ତି; ପୁଣି ଆଉ କେତେକ ଅହିଂସାଦି ତୀକ୍ଷ୍ଣବ୍ରତରେ ଯୁକ୍ତ ପ୍ରଯତ୍ନଶୀଳ ପୁରୁଷ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞ କରନ୍ତି।। ୨୮ ।।**

**ପ୍ରଶ୍ନ —** ଦ୍ରବ୍ୟସମ୍ବନ୍ଧୀ ଯଜ୍ଞ କେଉଁ କ୍ରିୟାର ବାଚକ? ଏହା କରିବାର ଅଧିକାର କେଉଁମାନଙ୍କର ଅଛି ତଥା ଏଠାରେ **ଦ୍ରବ୍ୟଯଜ୍ଞାଃ** ପଦ ପ୍ରୟୋଗର ତାତ୍ପର୍ଯ୍ୟ କଣ?

**ଉତ୍ତର —** ନିଜ-ନିଜର ବର୍ଣ୍ଣଧର୍ମ ଅନୁସାରେ ନ୍ୟାୟରେ ପ୍ରାପ୍ତ ଦ୍ରବ୍ୟକୁ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି ଯଥାଯୋଗ୍ୟ ଲୋକସେବାରେ ଲଗାଇବା ଅର୍ଥାତ୍ ଉପରୋକ୍ତଭାବରେ ଜଳଛତ୍ର, କୂପ, ପୋଖରୀ, ମନ୍ଦିର, ଧର୍ମଶାଳା ଆଦି ନିର୍ମାଣ କରିବା, କ୍ଷୁଧାର୍ତ୍ତ, ଅନାଥ, ରୋଗୀ, ଦୁଃଖୀ, ଅସମର୍ଥ, ଭିକ୍ଷୁକ ଆଦି ଲୋକଙ୍କୁ ଯଥାବଶ୍ୟକ ଅନ୍ନ, ବସ୍ତ୍ର, ଜଳ, ଔଷଧ, ପୁସ୍ତକ ଆଦି ବସ୍ତୁ ପ୍ରଦାନପୂର୍ବକ ସେବା କରିବା, ବିଦ୍ୱାନ୍, ତପସ୍ୱୀ, ବେଦପାଠୀ, ସଦାଚାରୀ ବ୍ରାହ୍ମଣଙ୍କୁ ଗୋ, ଭୂମି, ବସ୍ତ୍ର, ଆଭୂଷଣ ଆଦି ପଦାର୍ଥ ଯଥାଯୋଗ୍ୟ ନିଜର ଶକ୍ତି ଅନୁସାରେ ଦାନ କରିବା ଏବଂ ଏହିପରି ଅନ୍ୟସବୁ ପ୍ରାଣୀଙ୍କୁ ସୁଖ ଦେବା ଉଦ୍ଦେଶ୍ୟରେ ଯଥାଶକ୍ତି ଦ୍ରବ୍ୟ ବ୍ୟୟ କରିବା ହିଁ **ଦ୍ରବ୍ୟଯଜ୍ଞ**। ଏହି ଯଜ୍ଞ କରିବାର ଅଧିକାର କେବଳ ଗୃହସ୍ଥମାନଙ୍କର ରହିଛି; କାରଣ ଦ୍ରବ୍ୟ ସଂଗ୍ରହ କରି ତାହା ପରୋପକାରରେ ବ୍ୟୟ କରିବାର ଅଧିକାର ସନ୍ନ୍ୟାସ ଆଦି ଅନ୍ୟ ଆଶ୍ରମରେ ନାହିଁ। ଏଠାରେ ଭଗବାନ୍ **ଦ୍ରବ୍ୟଯଜ୍ଞ** ଶବ୍ଦ ପ୍ରୟୋଗ କରି ଦେଖାଇଛନ୍ତି ଯେ, ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ଲୋକସେବାରେ ଦ୍ରବ୍ୟ ଲଗାଇବାପାଇଁ ନିଃସ୍ୱାର୍ଥଭାବରେ କର୍ମ କରିବା ମଧ୍ୟ ଯଜ୍ଞାର୍ଥ କର୍ମ କରିବାର ଅନ୍ତର୍ଗତ।

**ପ୍ରଶ୍ନ — ତପୋଯଜ୍ଞ** କେଉଁ କର୍ମକୁ କହନ୍ତି? ଏବଂ ଏଥିରେ କାହାର ଅଧିକାର ରହିଛି?

**ଉତ୍ତର —** ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କୁ ପବିତ୍ର କରିବାନିମିତ୍ତ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗପୂର୍ବକ ବ୍ରତ-ଉପବାସାଦି କରିବା, ଧର୍ମପାଳନପାଇଁ କଷ୍ଟ ସହିବା, ମୌନ ଧାରଣ କରିବା, ଅଗ୍ନି ଓ ସୂର୍ଯ୍ୟଙ୍କର ତେଜ ତଥା ବାୟୁକୁ ସହିବା, ଖଣ୍ଡିଏ ବା ଦୁଇଖଣ୍ଡ ବସ୍ତ୍ର ରଖି ଅବଶିଷ୍ଟ ବସ୍ତ୍ର ତ୍ୟାଗ କରିଦେବା, ଅନ୍ନ ତ୍ୟାଗ କରିଦେବା, କେବଳ ଫଳ ବା ଦୁଧ ଖାଇ ଶରୀର ନିର୍ବାହ କରିବା, ବନବାସ କରିବା ଆଦି ଶାସ୍ତ୍ରବିଧି ଅନୁସାରେ ଯେଉଁ ତିତିକ୍ଷାସମ୍ବନ୍ଧୀ ବିଭିନ୍ନ କ୍ରିୟା ରହିଛି, ଏଠାରେ **ତପୋଯଜ୍ଞ** ପଦଟି ହେଉଛି ସେହିସବୁର ବାଚକ। ଏଥିରେ ବାନପ୍ରସ୍ଥ ଆଶ୍ରମବାସୀଙ୍କର ପୂର୍ଣ୍ଣ ଅଧିକାର ରହିଛି; ଅନ୍ୟ ଆଶ୍ରମର ମନୁଷ୍ୟ ମଧ୍ୟ ଶାସ୍ତ୍ରବିଧି ଅନୁସାରେ ଏହା ପାଳନ କରିପାରିବେ। ନିଜ-ନିଜର ଯୋଗ୍ୟତା ଅନୁସାରେ ସବୁ ଆଶ୍ରମର ଲୋକେ ଏହାର ଅଧିକାରୀ।

**ପ୍ରଶ୍ନ —** ଏଠାରେ **ଯୋଗଯଜ୍ଞ** ଶବ୍ଦ କେଉଁ କର୍ମର ବାଚକ ତଥା **ଯୋଗଯଜ୍ଞାଃ** ପଦ ପ୍ରୟୋଗର ଅଭିପ୍ରାୟ କଣ?

**ଉତ୍ତର —** ଏଠାରେ ବସ୍ତୁତଃ **ଯୋଗଯଜ୍ଞ** କେଉଁ କର୍ମର ବାଚକ, ତାହା ଭଗବାନ୍ ହିଁ ଜାଣନ୍ତି; କାରଣ ଏହାର ବିଶେଷ ଲକ୍ଷଣ ଏଠାରେ କୁହାଯାଇ ନାହିଁ। କିନ୍ତୁ ଅନୁମାନରୁ ପ୍ରତୀତ ହୁଏ ଯେ, ଚିତ୍ତବୃତ୍ତି-ନିରୋଧରୂପକ ଯେଉଁ ଅଷ୍ଟାଙ୍ଗଯୋଗ ରହିଛି, ଏଠାରେ **ଯୋଗଯଜ୍ଞ** ଶବ୍ଦଟି ସମ୍ଭବତଃ ତାହାର ବାଚକ। ଅତଏବ ଏଠାରେ **ଯୋଗଯଜ୍ଞାଃ** ପଦ ପ୍ରୟୋଗରୁ ବୁଝିବା ଉଚିତ ଯେ, ବହୁ ସାଧକ ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ଆସକ୍ତି, ଫଳେଚ୍ଛା ଏବଂ ମମତ୍ୱ ତ୍ୟାଗ କରି ଏହି ଅଷ୍ଟାଙ୍ଗଯୋଗରୂପକ ଯଜ୍ଞ ହିଁ ଅନୁଷ୍ଠାନ କରନ୍ତି। ସେମାନଙ୍କର ସେହି ଯୋଗସାଧନାରୂପକ କର୍ମ ମଧ୍ୟ ଯଜ୍ଞାର୍ଥ କର୍ମର ଅନ୍ତର୍ଗତ; ଅତଏବ ସେହି ଲୋକଙ୍କର ସମସ୍ତ କର୍ମ ବିଲୀନ ହୋଇ ସେମାନଙ୍କୁ ସନାତନ ବ୍ରହ୍ମ ପ୍ରାପ୍ତ ହୋଇଯାଏ।

**ପ୍ରଶ୍ନ —** ଉପରୋକ୍ତ ଅଷ୍ଟାଙ୍ଗଯୋଗର ଆଠଟି ଅଙ୍ଗ କଣ?

ଉତ୍ତର — 'ପାତଞ୍ଜଳ ଯୋଗଦର୍ଶନ'ରେ ଏହାର ବର୍ଣ୍ଣନା ଏହିପରି ହୋଇଛି —

**'ଯମନିୟମାସନପ୍ରାଣାୟାମପ୍ରତ୍ୟାହାରଧାରଣା — ଧ୍ୟାନସମାଧୟୋଽଷ୍ଟାବଙ୍ଗାନି।' (୨/୨୯)**

ଅର୍ଥାତ୍ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଏବଂ ସମାଧି— ଏହି ଆଠଟି ହେଉଛି ଯୋଗର ଅଙ୍ଗ।

ଏଥିରୁ ଯମ, ନିୟମ, ଆସନ, ପ୍ରାଣାୟାମ ଓ ପ୍ରତ୍ୟାହାର — ଏହି ପାଞ୍ଚଟି ହେଉଛି ବହିରଙ୍ଗ ସାଧନା ଏବଂ ଧାରଣା, ଧ୍ୟାନ ଓ ସମାଧି— ଏହି ତିନୋଟି ହେଉଛି ଅନ୍ତରଙ୍ଗ ସାଧନା।

**'ତ୍ରୟମେକତ୍ର ସଂଯମଃ।'** (ଯୋଗ/୩/୪)

ଅର୍ଥାତ୍:— ଏହି ତିନୋଟିର ସମୁଦାୟକୁ 'ସଂଯମ' କହନ୍ତି।

**'ଅହିଂସାସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ।'** (ଯୋଗ/୨/୩୦)

କୌଣସି ପ୍ରାଣୀକୁ କୌଣସିପ୍ରକାରେ ସାମାନ୍ୟମାତ୍ର କଷ୍ଟ ନ ଦେବା (ଅହିଂସା); ମଙ୍ଗଳ ଭାବନା ରଖି କପଟରହିତ ହୋଇ ପ୍ରିୟ ଶବ୍ଦରେ ଯଥାର୍ଥ ବାକ୍ୟପ୍ରୟୋଗ (ସତ୍ୟ); କୌଣସିପ୍ରକାରେ କାହାରି ସ୍ୱତ୍ୱ ଚୋରାଇ ନ ନେବା ବା ଛଡ଼ାଇ ନ ନେବା (ଅସ୍ତେୟ); ମନ, ବଚନ ଏବଂ ଶରୀରଦ୍ୱାରା ସମସ୍ତ ଅବସ୍ଥାରେ ସଦାସର୍ବଦା ସବୁପ୍ରକାର ମୈଥୁନ ତ୍ୟାଗ କରିବା (ବ୍ରହ୍ମଚର୍ଯ୍ୟ); ଏବଂ ଶରୀର ନିର୍ବାହର ଅତିରିକ୍ତ ଭୋଗ୍ୟସାମଗ୍ରୀ କଦାପି ସଂଗ୍ରହ ନ କରିବା (ଅପରିଗ୍ରହ)— ଏହି ପାଞ୍ଚଟିର ନାମ **ଯମ**।

**'ଶୌଚସନ୍ତୋଷତପଃସ୍ୱାଧ୍ୟାୟେଶ୍ୱରପ୍ରଣିଧାନାନି ନିୟମାଃ'** (ଯୋଗ/୨/୩୨)

ଅର୍ଥାତ୍ ସକଳପ୍ରକାର ବାହାର ଓ ଭିତର ପବିତ୍ରତା (ଶୌଚ); ପ୍ରିୟ-ଅପ୍ରିୟ, ଦୁଃଖ-ସୁଖ ଆଦି ପ୍ରାପ୍ତ ହେଲେ ମଧ୍ୟ ସଦାସର୍ବଦା ସନ୍ତୁଷ୍ଟ ରହିବା (ସନ୍ତୋଷ); ଏକାଦଶୀ ଆଦି ବ୍ରତ-ଉପବାସ କରିବା (ତପ); କଲ୍ୟାଣପ୍ରଦ ଶାସ୍ତ୍ରମାନ ଅଧ୍ୟୟନ କରିବା ତଥା ଈଶ୍ୱରଙ୍କର ନାମ ଓ ଗୁଣ କୀର୍ତ୍ତନ କରିବା (ସ୍ୱାଧ୍ୟାୟ); ଈଶ୍ୱରଙ୍କୁ ସର୍ବସ୍ୱ ଅର୍ପଣ କରିଦେଇ ତାଙ୍କର ଆଜ୍ଞା ପାଳନ କରିବା (ଈଶ୍ୱରପ୍ରଣିଧାନ)— ଏହି ପାଞ୍ଚୋଟିର ନାମ **ନିୟମ**।

**'ସ୍ଥିରସୁଖମାସନମ୍'** (ଯୋଗ/୨/୪୬)

ସୁଖପୂର୍ବକ ସ୍ଥିରଭାବରେ ବସିବାର ନାମ **ଆସନ**।★

**'ତସ୍ମିନ୍ ସତି ଶ୍ୱାସପ୍ରଶ୍ୱାସୟୋର୍ଗତିବିଚ୍ଛେଦଃ ପ୍ରାଣାୟାମଃ।'** (ଯୋଗ/୨/୪୯)

ଆସନ ସିଦ୍ଧ ହୋଇଯିବା ପରେ ଶ୍ୱାସ ଓ ପ୍ରଶ୍ୱାସର ଗତିରୋଧ କରିବାର ନାମ **ପ୍ରାଣାୟାମ**। ବାହାରର ବାୟୁକୁ ଭିତରେ ପ୍ରବେଶ କରାଇବାର ନାମ **ଶ୍ୱାସ** ଏବଂ ଭିତରର ବାୟୁକୁ ବାହାରେ ଛାଡ଼ିବାର ନାମ **ପ୍ରଶ୍ୱାସ**। ଏହି ଦୁହିଁଙ୍କୁ ରୋଧ କରିବାର ନାମ **ପ୍ରାଣାୟାମ**।

**'ବାହ୍ୟାଭ୍ୟନ୍ତରସ୍ତମ୍ଭବୃତ୍ତିର୍ଦେଶକାଳସଂଖ୍ୟାଭିଃ ପରିଦୃଷ୍ଟୋ ଦୀର୍ଘସୂକ୍ଷ୍ମଃ।'** (ଯୋଗ/୨/୫୦)

ଅର୍ଥାତ୍:- ଦେଶ, କାଳ ଏବଂ ସଂଖ୍ୟା (ମାତ୍ରା) ସମ୍ବନ୍ଧକୁ ନେଇ ବାହ୍ୟବୃତ୍ତି, ଆଭ୍ୟନ୍ତରବୃତ୍ତି ଏବଂ ସ୍ତମ୍ଭବୃତ୍ତି— ଏହି ତିନୋଟି ପ୍ରାଣାୟାମ ଦୀର୍ଘ ଓ ସୂକ୍ଷ୍ମ ହୁଏ।

ଭିତର ଶ୍ୱାସକୁ ବାହାରକୁ ଛାଡ଼ିଦେଇ ବାହାରେ ରଖିବାର ନାମ **ବାହ୍ୟକୁମ୍ଭକ**। ଏହାର ବିଧି ହେଲା — ଆଠଥର ପ୍ରଣବ (ଓଁ) ଜପି ଜପି ରେଚକ କରି ଷୋହଳ ଥର ପ୍ରଣବ ଜପି ଜପି ବାହ୍ୟକୁମ୍ଭକ କରିବା ଏବଂ ପୁଣି ଚାରିଥର ପ୍ରଣବ ଜପି ଜପି ପୂରକ କରିବା। ଏହିପରି ରେଚକ-ପୂରକ ସହିତ ବାହାରକୁମ୍ଭକ କରିବାର ନାମ ବାହ୍ୟବୃତ୍ତି **ପ୍ରାଣାୟାମ**।

ବାହାରର ଶ୍ୱାସକୁ ଭିତରକୁ ଟାଣିନେଇ ଭିତରେ ରଖିବାକୁ **ଆଭ୍ୟନ୍ତର କୁମ୍ଭକ** କହନ୍ତି। ଏହାର ବିଧି ହେଲା ଚାରିଥର ପ୍ରଣବ ସହିତ ପୂରକ କରି, ଷୋହଳଥର ପ୍ରଣବରେ ଆଭ୍ୟନ୍ତର କୁମ୍ଭକ କରି, ପୁଣି ଆଠଥର ପ୍ରଣବରେ ରେଚକ କରିବା। ଏହିପରି ପୂରକ-ରେଚକ ସହିତ ଭିତର କୁମ୍ଭକ କରିବାର ନାମ **ଆଭ୍ୟନ୍ତରବୃତ୍ତି ପ୍ରାଣାୟାମ**।

★ ଆସନ ଅନେକପ୍ରକାର ରହିଛି। ସେଥିମଧ୍ୟରୁ ଆତ୍ମସଂଯମ ଚାହୁଁବା ପୁରୁଷଙ୍କ ପାଇଁ ସିଦ୍ଧାସନ, ପଦ୍ମାସନ, ଏବଂ ସ୍ୱସ୍ତିକାସନ— ଏହି ତିନୋଟି ବିଶେଷ ଉପଯୋଗୀ ବୋଲି ସ୍ୱୀକୃତ ହୋଇଛି। ସେଥିମଧ୍ୟରୁ ଯେକୌଣସି ଆସନ ହେଉ ପଛକେ, ଆସନରେ ବସିବାବେଳେ ମେରୁଦଣ୍ଡ, ମସ୍ତକ ଏବଂ ବେକ ଅବଶ୍ୟ ସିଧା ରଖିବା ଉଚିତ ଏବଂ ଦୃଷ୍ଟି ନାସିକାର ଅଗ୍ରଭାଗରେ ବା ଭ୍ରୂଯୁଗଳର ମଧ୍ୟଭାଗରେ ରଖିବା ଉଚିତ। ଯଦି ଆବଶ୍ୟ ନ ହୁଏ, ଆଖି ବନ୍ଦ କରି ମଧ୍ୟ ବସିପାରନ୍ତି; ଯେଉଁ ଲୋକ ଯେଉଁ ଆସନରେ ଦୀର୍ଘକାଳ ଧରି ସୁଖପୂର୍ବକ ବସିପାରିବେ, ତାଙ୍କପାଇଁ ସେହି ଆସନ ଉତ୍ତମ।

ବାହାର ଭିତର ଯେକୌଣସିଠାରେ ମଧ୍ୟ ସୁଖପୂର୍ବକ ପ୍ରାଣମାନଙ୍କୁ ରୋଧ କରିବାର ନାମ **ସ୍ତମ୍ଭବୃତ୍ତି ପ୍ରାଣାୟାମ**। ଚାରି ପ୍ରଣବରେ ପୂରକ କରି; ଆଠ ପ୍ରଣବରେ ରେଚକ କରିବ; ଏହିପରି ପୂରକ-ରେଚକ କରି କରି ସୁଖପୂର୍ବକ ଯେକୌଣସିଠାରେ ପ୍ରାଣକୁ ରୋଧ କରିବାର ନାମ **ସ୍ତମ୍ଭବୃତ୍ତି ପ୍ରାଣାୟାମ**।

ଆହୁରି ବହୁତପ୍ରକାର ପ୍ରାଣାୟାମ ରହିଛି। ପୂରକରେ ଯେତିକି ସଂଖ୍ୟା ଏବଂ ଯେତେ କାଳ ଲଗାଯାଏ, ରେଚକ ଓ କୁମ୍ଭକରେ ସେତିକି ସଂଖ୍ୟା ଏବଂ ସେତିକି କାଳ ଲଗାଯାଇପାରେ।

ପ୍ରାଣବାୟୁନିମିତ୍ତ ନାଭି, ହୃଦୟ, କଣ୍ଠ ବା ନାସିକାର ଭିତରଭାଗର ନାମ **ଆଭ୍ୟନ୍ତର ଦେଶ** ଏବଂ ନାସାପୁଟର ବାହାର ଷୋହଳ ଅଙ୍ଗୁଳିପର୍ଯ୍ୟନ୍ତ **ବାହ୍ୟ ଦେଶ**। ଯେଉଁ ସାଧକ ପୂରକ ପ୍ରାଣାୟାମ କରିବା ସମୟରେ ଶ୍ୱାସକୁ ନାଭିପର୍ଯ୍ୟନ୍ତ ଭିତରକୁ ନିଅନ୍ତି, ସେ ପ୍ରଶ୍ୱାସକୁ ଷୋହଳ ଅଙ୍ଗୁଳିପର୍ଯ୍ୟନ୍ତ ବାହାରକୁ ଛାଡ଼ିବେ; ଯେ ହୃଦୟପର୍ଯ୍ୟନ୍ତ ଶ୍ୱାସ ଭିତରକୁ ନିଅନ୍ତି; ସେ ବାର ଅଙ୍ଗୁଳିପର୍ଯ୍ୟନ୍ତ ପ୍ରଶ୍ୱାସ ବାହାରକୁ ଛାଡ଼ିବେ, ଯେ କଣ୍ଠପର୍ଯ୍ୟନ୍ତ ଶ୍ୱାସ ଭିତରକୁ ନିଅନ୍ତି, ସେ ଆଠ ଅଙ୍ଗୁଳିପର୍ଯ୍ୟନ୍ତ ପ୍ରଶ୍ୱାସ ବାହାରକୁ ଛାଡ଼ିବେ ଏବଂ ଯେ ନାସିକାଭିତରେ ଉପର-ଅନ୍ତିମଭାଗପର୍ଯ୍ୟନ୍ତ ଶ୍ୱାସ ଭିତରକୁ ନିଅନ୍ତି, ସେ ଚାରି ଅଙ୍ଗୁଳିପର୍ଯ୍ୟନ୍ତ ପ୍ରଶ୍ୱାସ ବାହାରକୁ ଛାଡ଼ିବେ। ଏଥିମଧ୍ୟରୁ ପୂର୍ବ-ପୂର୍ବରୁ ଉତ୍ତର-ଉତ୍ତରକୁ କରାଯାଉଥିବା ପ୍ରାଣାୟାମକୁ **ସୂକ୍ଷ୍ମ** ଏବଂ ସେହିପରି ଉତ୍ତର-ଉତ୍ତରରୁ ପୂର୍ବ-ପୂର୍ବକୁ କରାଯାଉଥିବା ପ୍ରାଣାୟାମକୁ ଦୀର୍ଘ ବୋଲି ବୁଝିବା ଉଚିତ। ଅର୍ଥାତ୍ ଶ୍ୱାସକ୍ରିୟାର ଦୀର୍ଘତା ତଥା ହ୍ରସ୍ୱତା ଅନୁଯାୟୀ ପ୍ରାଣାୟାମକୁ ଦୀର୍ଘ ବା ସୂକ୍ଷ୍ମ ବୋଲାଯାଏ।

ପ୍ରାଣାୟାମରେ ସଂଖ୍ୟା ଏବଂ ସମୟର ଘନିଷ୍ଠ ସମ୍ବନ୍ଧ ରହୁଥିବାରୁ, ଏହି ନିୟମରେ ବ୍ୟତିକ୍ରମ ହେବା ଉଚିତ ନୁହେଁ।

ଉଦାହରଣସ୍ୱରୂପ ଚାରିଥର ପ୍ରଣବ ଜପି ପୂରକ କରିବାକୁ ଯଦି ଏକ ସେକେଣ୍ଡ ସମୟ ଲାଗେ, ତେବେ ଷୋହଳଥର ପ୍ରଣବ ଜପି କୁମ୍ଭକ କରିବାକୁ ଚାରି ସେକେଣ୍ଡ ଏବଂ ଆଠଥର ପ୍ରଣବ ଜପି ରେଚକ କରିବାକୁ ଦୁଇ ସେକେଣ୍ଡ ସମୟ ଲାଗିବା ଉଚିତ। ମନ୍ତ୍ରକୁ ଗଣିବାର ନାମ **ସଂଖ୍ୟା ବା ମାତ୍ରା**; ସେଥିରେ ଲାଗୁଥିବା ସମୟର ନାମ **କାଳ**। ଯଦି ସୁଖପୂର୍ବକ ହୋଇପାରେ, ତେବେ ଉପରେ କୁହାଯାଇଥିବା କାଳ ଏବଂ ମାତ୍ରାକୁ ସାଧକ ଦୁଇଗୁଣ, ତିନିଗୁଣ, ଚାରିଗୁଣ ବା ଯେତେ ଚାହିଁବେ ଯଥାସାଧ୍ୟ ସେତେଗୁଣ ବଢ଼ାଇପାରିବେ। କାଳ ଏବଂ ମାତ୍ରାର ଅଧିକତା ଏବଂ ନ୍ୟୂନତାରେ ମଧ୍ୟ ପ୍ରାଣାୟାମ ଦୀର୍ଘ ଏବଂ ସୂକ୍ଷ୍ମ ହୁଏ।

**'ବାହ୍ୟାଭ୍ୟନ୍ତରବିଷୟାକ୍ଷେପୀ ଚତୁର୍ଥଃ।'** (ଯୋଗ/୨/୫୧)

ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଏବଂ ଗନ୍ଧ ଆଦି ଇନ୍ଦ୍ରିୟମାନଙ୍କର ବାହ୍ୟ ବିଷୟ ଏବଂ ସଙ୍କଳ୍ପ-ବିକଳ୍ପାଦି ଅନ୍ତଃକରଣର ବିଷୟ ତ୍ୟାଗ କରି, ତାହାକୁ ଉପେକ୍ଷା କରି ଅର୍ଥାତ୍ ବିଷୟଚିନ୍ତନ ନ କରି ପ୍ରାଣମାନଙ୍କ ଗତିର ଯେଉଁ ସ୍ୱତଃ ଅବରୋଧ ହୁଏ, ତାହାର ନାମ **ଚତୁର୍ଥ ପ୍ରାଣାୟାମ**।

ପୂର୍ବସୂତ୍ରରେ କୁହାଯାଇଥିବା ପ୍ରାଣାୟାମଦ୍ୱାରା ପ୍ରାଣମାନଙ୍କୁ ନିରୋଧ କଲେ ମନର ସଂଯମ ହୁଏ ଏବଂ ମନ ଓ ଇନ୍ଦ୍ରିୟମାନଙ୍କର ସଂଯମଦ୍ୱାରା ପ୍ରାଣମାନଙ୍କର ସଂଯମ ହୁଏ। ଏଠାରେ ପ୍ରାଣମାନଙ୍କୁ ରୋଧ କରିବାର କିଛି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ; ଯେକୌଣସିଠାରେ ରୋଧ କରିପାରିବେ; ଏଥିପାଇଁ କାଳ ଏବଂ ସଂଖ୍ୟାର ମଧ୍ୟ ବିଧାନ ନାହିଁ।

**'ସ୍ୱବିଷୟାସମ୍ପ୍ରଯୋଗେ ଚିତ୍ତସ୍ୱରୂପାନୁକାର ଇବ ଇନ୍ଦ୍ରିୟାଣାଂ ପ୍ରତ୍ୟାହାରଃ।'** (ଯୋଗ/୨/୫୪)

ଅର୍ଥାତ୍ ନିଜ-ନିଜର ବିଷୟମାନଙ୍କ ସଂଯୋଗରୁ ରହିତ ହୋଇଯାଇ ଇନ୍ଦ୍ରିୟମାନେ ଚିତ୍ତରୂପରେ ତଦାକାରପରି ରହିଯିବାର ନାମ **'ପ୍ରତ୍ୟାହାର'**।

**'ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା।'** (ଯୋଗ/୩/୧)

ଅର୍ଥାତ୍ ଚିତ୍ତକୁ କୌଣସି ଏକ ଦେଶବିଶେଷରେ ସ୍ଥିର କରିବାର ନାମ **ଧାରଣା**। ଅର୍ଥାତ୍ ସ୍ଥୂଳ-ସୂକ୍ଷ୍ମ ବା ବାହ୍ୟ-ଆଭ୍ୟନ୍ତର – ଯେକୌଣସି ଏକ ଧ୍ୟେୟ ସ୍ଥାନରେ ଚିତ୍ତକୁ ବାନ୍ଧିଦେବା, ସ୍ଥିର କରିଦେବା ବା ଲଗାଇଦେବାକୁ **ଧାରଣା** କୁହାଯାଏ। ଏଠାରେ ପରମେଶ୍ୱର ହିଁ ଧ୍ୟେୟ ବସ୍ତୁ ଅଟନ୍ତି; ତେଣୁ ଧାରଣା, ଧ୍ୟାନ ଏବଂ ସମାଧି ପରମେଶ୍ୱରଙ୍କ ଠାରେ କରିବା ଉଚିତ।

**'ତତ୍ର ପ୍ରତ୍ୟୟୈକତାନତା ଧ୍ୟାନମ୍।'** (ଯୋଗ/୩/୨)

ଅର୍ଥାତ୍ ସେହି ପୂର୍ବୋକ୍ତ ଧ୍ୟେୟବସ୍ତୁରେ ଚିତ୍ତବୃତ୍ତିର

ଏକତାନତାର ନାମ **ଧ୍ୟାନ**। ଅର୍ଥାତ୍ ଚିତ୍ତବୃତ୍ତିକୁ ଗଙ୍ଗାର ପ୍ରବାହପରି ବା ତୈଳଧାରାପରି ଅବିଚ୍ଛିନ୍ନରୂପରେ ଧ୍ୟେୟ ବସ୍ତୁରେ ଲଗାଇରଖିବାକୁ **ଧ୍ୟାନ** କୁହାଯାଏ।

**'ତଦେବାର୍ଥମାତ୍ରନିର୍ଭାସଂ ସ୍ୱରୂପଶୂନ୍ୟମିବ ସମାଧିଃ।'** (ଯୋଗ/୩/୩)

ଯେତେବେଳେ କେବଳ ଧ୍ୟେୟ ସ୍ୱରୂପର ହିଁ ଜ୍ଞାନ ରହେ ଏବଂ ନିଜର ସ୍ୱତନ୍ତ୍ର ସତ୍ତା ଶୂନ୍ୟପରି ହୋଇଯାଏ, ସେତେବେଳେ ସେହି ଧ୍ୟାନ ହିଁ ସମାଧି ହୋଇଯାଏ। ଧ୍ୟାନ କରୁ କରୁ ଯେଉଁ ସ୍ଥିତିରେ ଯୋଗୀଙ୍କର ଚିତ୍ତ ଧ୍ୟେୟାକାରକୁ ପ୍ରାପ୍ତ ହୋଇଯାଏ, ସେ ସ୍ୱୟଂ ଧ୍ୟେୟରେ ତନ୍ମୟପରି ହୋଇଯାଆନ୍ତି ଏବଂ ଧ୍ୟେୟଙ୍କ ଭିନ୍ନ ତାଙ୍କଠାରେ ନିଜ ସତ୍ତାର ଜ୍ଞାନ ମଧ୍ୟ ନ ରହିଲାପରି ହୋଇଯାଏ, ସେହି ସ୍ଥିତିର ନାମ ସମାଧି।

ଧ୍ୟାନରେ ଧ୍ୟାତା, ଧ୍ୟାନ, ଧ୍ୟେୟ – ଏହି ତ୍ରିପୁଟୀ ରହେ। ସମାଧିରେ କେବଳ ଅର୍ଥମାତ୍ର ବସ୍ତୁ — ଧ୍ୟେୟବସ୍ତୁ ହିଁ ରହେ, ଅର୍ଥାତ୍ ଧ୍ୟାତା, ଧ୍ୟାନ, ଧ୍ୟେୟ ତିନିହେଁ ଏକ ହୋଇଯାନ୍ତି।

**ପ୍ରଶ୍ନ –** ସତେଇଶ ଶ୍ଳୋକରେ କୁହାଯାଇଥିବା ଆତ୍ମସଂଯମଯୋଗରୂପକ ଯଜ୍ଞ ଏବଂ ଏହି ଯୋଗରୂପକ ଯଜ୍ଞ ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ସେଠାରେ ଧାରଣା-ଧ୍ୟାନ-ସମାଧିରୂପ ଅନ୍ତରଙ୍ଗ ସାଧନାର ପ୍ରଧାନତା ରହିଛି; ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାରର ପ୍ରଧାନତା ନାହିଁ। ଏସବୁ ସେଥିରେ ସ୍ୱତଃ ଆସିଯାଆନ୍ତି; କିନ୍ତୁ ଏଠାରେ ସାଧକଙ୍କୁ ଏସବୁ କ୍ରମାନ୍ୱୟରେ କରିବାକୁ କୁହାଯାଇଛି।

**ପ୍ରଶ୍ନ –** ଏଠାରେ 'ଯୋଗ' ଶବ୍ଦକୁ କର୍ମଯୋଗ ଏବଂ ଜ୍ଞାନଯୋଗ ବୋଲି ନ ନେଇ, ଅଷ୍ଟାଙ୍ଗଯୋଗ ବୋଲି କାହିଁକି ନିଆଗଲା ?

**ଉତ୍ତର –** ଭଗବତ୍‌ପ୍ରାପ୍ତିରେ ସାଧନ ହୋଇଥିବାରୁ ଏଠାରେ ସମସ୍ତ ଯଜ୍ଞ କର୍ମଯୋଗ ଏବଂ ଜ୍ଞାନଯୋଗ — ଏହି ଦୁଇ ନିଷ୍ଠାର ଅନ୍ତର୍ଗତ ହୋଇଯାଏ। ତେଣୁ ଏଠାରେ 'ଯୋଗ' ଶବ୍ଦକୁ ମୁଖ୍ୟଭାବରେ କେବଳ ଜ୍ଞାନଯୋଗ ବା କର୍ମଯୋଗ ବୋଲି ନିଆଯାଇପାରିବ ନାହିଁ।

**ପ୍ରଶ୍ନ – ଯତୟଃ**ର ଅର୍ଥ ଚତୁର୍ଥାଶ୍ରମୀ ସନ୍ନ୍ୟାସୀ ନ କରି ପ୍ରଯତ୍ନଶୀଳ 'ପୁରୁଷମାନେ' କରିବାର ଅଭିପ୍ରାୟ କଣ ?

**ଉତ୍ତର –** ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞର ଅନୁଷ୍ଠାନ ସବୁ ଆଶ୍ରମର ଲୋକେ କରିପାରିବେ; ତେଣୁ ଏଠାରେ 'ଯତୟଃ' ପଦର ଅର୍ଥ 'ପ୍ରଯତ୍ନଶୀଳ ପୁରୁଷମାନେ' କରାଯାଇଛି। ଅବଶ୍ୟ ଏକଥା ସତ ଯେ, ସନ୍ନ୍ୟାସ ଆଶ୍ରମରେ ଗୃହସ୍ଥଙ୍କ ପରି ନିତ୍ୟନୈମିତ୍ତିକ ଏବଂ ଜୀବିକାର୍ଜନ ଆଦି କର୍ମ କର୍ତ୍ତବ୍ୟ ନୁହେଁ; ତେଣୁ ସନ୍ନ୍ୟାସୀମାନେ ଅଧିକ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞ କରିପାରିବେ। କିନ୍ତୁ ସେହି ଆଶ୍ରମରେ ମଧ୍ୟ ଯେଉଁମାନେ ଯତ୍ନଶୀଳ, ସେ ହିଁ ଏପରି କରିପାରିବେ; ତେଣୁ **ଯତୟଃ ପଦର** ଅର୍ଥ ଏଠାରେ 'ପ୍ରଯତ୍ନଶୀଳ ପୁରୁଷମାନେ' ବୋଲି ନେବା ଠିକ୍ ମନେ ହେଉଛି। ଏହା ଛଡ଼ା ବ୍ରହ୍ମଚର୍ଯ୍ୟ ଆଶ୍ରମରେ ମଧ୍ୟ ସ୍ୱାଧ୍ୟାୟର ପ୍ରାଧାନ୍ୟ ରହିଛି ଏବଂ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞ କରୁଥିବା ଲୋକମାନଙ୍କ ପାଇଁ **ଯତୟଃ** ପଦର ପ୍ରୟୋଗ ହୋଇଛି। ଏହିସବୁ କାରଣରୁ ମଧ୍ୟ **ଯତୟଃ**ର ଅର୍ଥ ଏଠାରେ ସନ୍ନ୍ୟାସୀ କରାଯାଇ ନାହିଁ।

**ପ୍ରଶ୍ନ – ସଂଶିତବ୍ରତାଃ** ପଦର ଅର୍ଥ କଣ ? ଏହାକୁ **ଯତୟଃ** ପଦର ବିଶେଷଣ ବୋଲି ନ ଧରି ଶ୍ଳୋକର ପୂର୍ବାର୍ଦ୍ଧରେ ଉଲ୍ଲିଖିତ ତପୋଯଜ୍ଞ କରୁଥିବା ଲୋକଙ୍କ ଠାରୁ ଭିନ୍ନପ୍ରକାର ବ୍ରତ କରୁଥିବା ପୁରୁଷମାନଙ୍କର ବାଚକ ବୋଲି ଧରିନେଲେ ଆପତ୍ତି କଣ ?

**ଉତ୍ତର –** ଯେଉଁମାନେ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଏବଂ ଅପରିଗ୍ରହ ଆଦି ସଦାଚାରର ନିୟମଗୁଡ଼ିକ ଭଲଭାବରେ ପାଳନ କରନ୍ତି, ତଥା ଯେଉଁମାନେ ରାଗ-ଦ୍ୱେଷ ଏବଂ ଅଭିମାନାଦି ଦୋଷରୁ ରହିତ, ସେପରି ପୁରୁଷମାନଙ୍କୁ **ସଂଶିତବ୍ରତାଃ** କହନ୍ତି। **ସଂଶିତବ୍ରତାଃ** ପଦରେ ଯଜ୍ଞ ଶବ୍ଦ ନାହିଁ, ତେଣୁ ତାହାକୁ ଭିନ୍ନପ୍ରକାର ବ୍ରତଯଜ୍ଞ କରୁଥିବା ଲୋକମାନଙ୍କର ବାଚକ ବୋଲି ନ ଧରି, **ଯତୟଃ**ର ବିଶେଷଣ ବୋଲି ମାନିବା ହିଁ ଉଚିତ ମନେ ହେଉଛି।

**ପ୍ରଶ୍ନ – ସ୍ୱାଧ୍ୟାୟଜ୍ଞାନଯଜ୍ଞ** କେଉଁ କର୍ମର ବାଚକ ଏବଂ ତାକୁ ସ୍ୱାଧ୍ୟାୟଯଜ୍ଞ ନ କହି ସ୍ୱାଧ୍ୟାୟଜ୍ଞାନଯଜ୍ଞ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ଶାସ୍ତ୍ରରେ ଭଗବାନଙ୍କ ତତ୍ତ୍ୱର, ତାଙ୍କ ଗୁଣ, ପ୍ରଭାବ ଏବଂ ଚରିତ୍ରମାନଙ୍କର ତଥା ତାଙ୍କ ସାକାର-ନିରାକାର, ସଗୁଣ-ନିର୍ଗୁଣ ସ୍ୱରୂପର ବର୍ଣ୍ଣନା ହୋଇଛି, ସେପରି ଶାସ୍ତ୍ର ଅଧ୍ୟୟନ କରିବା, ଭଗବାନଙ୍କର ସ୍ତୁତିପାଠ କରିବା, ତାଙ୍କ ନାମ ଓ ଗୁଣକୀର୍ତ୍ତନ କରିବା ତଥା ବେଦ ଏବଂ ବେଦାଙ୍ଗ ଅଧ୍ୟୟନ କରିବାର ନାମ **ସ୍ୱାଧ୍ୟାୟ**। ଏପରି ସ୍ୱାଧ୍ୟାୟ ଅର୍ଥଜ୍ଞାନ ସହିତ ହେଲେ

ତଥା ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ନ ରଖି କରାଗଲେ ତାହାକୁ **ସ୍ୱାଧ୍ୟାୟଜ୍ଞାନଯଜ୍ଞ** ବୋଲି କୁହାଯାଏ। ଏହି ପଦରେ ସ୍ୱାଧ୍ୟାୟ ସହିତ 'ଜ୍ଞାନ' ଶବ୍ଦର ସମାସ କରି ଦେଖାଇଦିଆଯାଇଛି ଯେ, ସ୍ୱାଧ୍ୟାୟରୂପକ କର୍ମ ମଧ୍ୟ ଜ୍ଞାନଯଜ୍ଞ; ତେଣୁ ଗୀତା-ଅଧ୍ୟୟନକୁ ମଧ୍ୟ ଭଗବାନ୍ 'ଜ୍ଞାନଯଜ୍ଞ' ନାମ ଦେଇଛନ୍ତି (୧୮/୭୦)।

**ସମ୍ବନ୍ଧ –** ଦ୍ରବ୍ୟଯଜ୍ଞାଦି ଚାରିପ୍ରକାର ଯଜ୍ଞ ସଂକ୍ଷେପରେ ବର୍ଣ୍ଣନା କରିସାରି, ଭଗବାନ୍ ବର୍ତ୍ତମାନ ଦୁଇଟି ଶ୍ଲୋକରେ ପ୍ରାଣାୟାମରୂପକ ଯଜ୍ଞର ବର୍ଣ୍ଣନା କରିବା ସହିତ ସବୁପ୍ରକାର ଯଜ୍ଞ କରୁଥିବା ସାଧକମାନଙ୍କୁ ପ୍ରଶଂସା କରୁଛନ୍ତି—

**ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ।**
**ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ॥ ୨୯ ॥**
**ଅପରେ ନିୟତାହାରାଃ ପ୍ରାଣାନ୍ପ୍ରାଣେଷୁ ଜୁହ୍ୱତି।**
**ସର୍ବେଽପ୍ୟେତେ ଯଜ୍ଞବିଦୋ ଯଜ୍ଞକ୍ଷପିତକଲ୍ମଷାଃ॥ ୩୦ ॥**

**ଅନ୍ୱୟ –** **ଅପରେ** = ଅନ୍ୟ (କେତେକ ଯୋଗୀ); **ଅପାନେ** = ଅପାନବାୟୁରେ; **ପ୍ରାଣମ୍** = ପ୍ରାଣବାୟୁକୁ; **ଜୁହ୍ୱତି** = ହବନ କରନ୍ତି; **ତଥା** = ସେହିପରି (ଅନ୍ୟ ଯୋଗୀମାନେ); **ପ୍ରାଣେ** = ପ୍ରାଣବାୟୁରେ; **ଅପାନମ୍** = ଅପାନବାୟୁକୁ (ହବନ କରନ୍ତି ତଥା); **ଅପରେ** = ଅନ୍ୟ କେତେକ; **ନିୟତାହାରାଃ** = ନିୟମିତ ଆହାର କରୁଥିବା; **ପ୍ରାଣାୟାମପରାୟଣାଃ** = ପ୍ରାଣାୟାମପରାୟଣ ପୁରୁଷମାନେ; **ପ୍ରାଣାପାନଗତୀ** = ପ୍ରାଣ ଓ ଅପାନର ଗତିକୁ; **ରୁଦ୍ଧ୍ୱା** = ରୋଧ କରି; **ପ୍ରାଣାନ୍** = ପ୍ରାଣମାନଙ୍କୁ; **ପ୍ରାଣେଷୁ** = ପ୍ରାଣମାନଙ୍କରେ (ହିଁ); **ଜୁହ୍ୱତି** = ହବନ କରନ୍ତି; **ଏତେ** = ଏମାନେ; **ସର୍ବେ, ଅପି** = ସମସ୍ତ ସାଧକ ମଧ୍ୟ; **ଯଜ୍ଞକ୍ଷପିତକଲ୍ମଷାଃ** = ଯଜ୍ଞଦ୍ୱାରା ପାପକୁ ନାଶ କରାଇ; **ଯଜ୍ଞବିଦଃ** = (ଏମାନେ) ଯଜ୍ଞର ଜ୍ଞାତା ଅଟନ୍ତି।

**ଅନ୍ୟ କେତେକ ଯୋଗୀ ଅପାନବାୟୁରେ ପ୍ରାଣବାୟୁକୁ ହବନ କରନ୍ତି; ସେହିପରି ଅନ୍ୟ ଯୋଗୀମାନେ ପ୍ରାଣବାୟୁରେ ଅପାନବାୟୁକୁ ହବନ କରନ୍ତି ତଥା ଅନ୍ୟ କେତେକ ନିୟମିତ ଆହାର କରୁଥିବା ପ୍ରାଣାୟାମପରାୟଣ ପୁରୁଷ ପ୍ରାଣ ଓ ଅପାନର ଗତିକୁ ରୋଧ କରି ପ୍ରାଣମାନଙ୍କୁ ପ୍ରାଣମାନଙ୍କରେ ହିଁ ହବନ କରନ୍ତି। ଏହି ସମସ୍ତ ସାଧକ ଯଜ୍ଞଦ୍ୱାରା ପାପ ନାଶ କରାଇଦିଅନ୍ତି; ଏମାନେ ଯଜ୍ଞର ଜ୍ଞାତା ଅଟନ୍ତି॥ ୨୯,୩୦ ॥**

**ପ୍ରଶ୍ନ –** ଏଠାରେ **ଜୁହ୍ୱତି** କ୍ରିୟା ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ପ୍ରାଣାୟାମ ସାଧନାକୁ ଯଜ୍ଞରୂପ ଦେବାପାଇଁ **ଜୁହ୍ୱତି** କ୍ରିୟା ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ପ୍ରାଣାୟାମରୂପକ ସାଧନା ମଧ୍ୟ ଯଜ୍ଞ ଅଟେ। ଅତଏବ ମମତ୍ୱ, ଆସକ୍ତି ଓ ଫଳେଚ୍ଛା ତ୍ୟାଗପୂର୍ବକ, ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ପ୍ରାଣାୟାମ ସାଧନା ମଧ୍ୟ ଯଜ୍ଞାର୍ଥ କର୍ମ ହୋଇଥିବାରୁ, ଏହା ମନୁଷ୍ୟକୁ କର୍ମବନ୍ଧନରୁ ମୁକ୍ତ କରିଦିଏ ଏବଂ ପରମାତ୍ମାଙ୍କୁ ପ୍ରାପ୍ତ କରାଏ।

**ପ୍ରଶ୍ନ –** ଅପାନ ବାୟୁରେ ପ୍ରାଣବାୟୁକୁ ହବନ କରିବାର ଅର୍ଥ କଣ ?

**ଉତ୍ତର –** ଯୋଗର ବିଷୟ ଅତ୍ୟନ୍ତ ଦୁର୍ବିଜ୍ଞେୟ ଏବଂ ଗହନ। ଏହା ଅନୁଭବୀ ଯୋଗୀମାନେ ହିଁ ଜାଣନ୍ତି ଏବଂ ସେମାନେ ହିଁ ଭଲଭାବରେ ବୁଝାଇଦେଇପାରନ୍ତି। ଅତଏବ ଏ ବିଷୟରେ ଯାହା କିଛି ନିବେଦନ କରାଯାଉଛି, ତାହା ଶାସ୍ତ୍ରଦୃଷ୍ଟିରୁ ଯୁକ୍ତିଦ୍ୱାରା ବୁଝାଯାଇଥିବା କଥା ହିଁ ଲେଖାଯାଉଛି। ଶାସ୍ତ୍ରରେ ବହୁପ୍ରକାର ପ୍ରାଣାୟାମ କଥା କୁହାଯାଇଛି; ତା' ଭିତରୁ କାହାକୁ ଲକ୍ଷ୍ୟ କରି ଭଗବାନ୍ ଏହା କହିଛନ୍ତି, ତାହା ବସ୍ତୁତଃ ଭଗବାନ୍ ହିଁ ଜାଣନ୍ତି। ଧ୍ୟାନ ରଖିବା ଉଚିତ ଯେ, ଶାସ୍ତ୍ରରେ ଅପାନର ସ୍ଥାନ ମଳଦ୍ୱାର ଏବଂ ପ୍ରାଣର ସ୍ଥାନ ହୃଦୟ ବୋଲି କୁହାଯାଇଛି। ବାହାରର ବାୟୁକୁ ଭିତରେ ପ୍ରବେଶ କରାଇବାକୁ ଶ୍ୱାସ କହନ୍ତି, ଏହାକୁ ଅପାନର ଗତି ବୋଲି କହନ୍ତି; କାରଣ ଅପାନର ସ୍ଥାନ ଶରୀରର ଅଧୋଦେଶରେ ଥାଏ ଏବଂ ବାହାରର ବାୟୁ ଭିତରେ ପ୍ରବେଶ କରିବା ସମୟରେ ତାହାର ଗତି ଶରୀରର ଅଧୋଦିଗରେ ରହେ। ଏହିପରି

ଭିତରର ବାୟୁକୁ ବାହାର କରିବାକୁ ପ୍ରଶ୍ୱାସ କହନ୍ତି; ଏହାକୁ ପ୍ରାଣବାୟୁର ଗତି ବୋଲି କହନ୍ତି; କାରଣ ପ୍ରାଣବାୟୁର ସ୍ଥାନ ଶରୀରର ଊର୍ଦ୍ଧ୍ୱଦେଶରେ ଏବଂ ଭିତରର ବାୟୁକୁ ନାସିକାଦ୍ୱାରା ବାହାରକୁ ଛାଡ଼ିବା ସମୟରେ ତାହାର ଗତି ଶରୀରର ଊର୍ଦ୍ଧ୍ୱଦିଗରେ ହୋଇଥାଏ।

ଉପରୋକ୍ତ ପ୍ରାଣାୟାମରୂପକ ଯଜ୍ଞରେ ଅପାନବାୟୁ ଅଗ୍ନିସ୍ଥାନୀୟ ଏବଂ ପ୍ରାଣବାୟୁ ହବିସ୍ଥାନୀୟ। ଅତଏବ ବୁଝିବା ଉଚିତ ଯେ, ଯାହାକୁ ପୂରକ ପ୍ରାଣାୟାମ କହନ୍ତି, ଏଠାରେ ତାହା ହେଉଛି ଅପାନବାୟୁରେ ପ୍ରାଣବାୟୁର ହବନ। କାରଣ ସାଧକ ପୂରକ ପ୍ରାଣାୟାମ କଲାବେଳେ ବାହାରର ବାୟୁକୁ ନାସିକାଦ୍ୱାରା ଶରୀରଭିତରକୁ ନେଇଯାଆନ୍ତି ଏବଂ ସେହି ବାହାରର ବାୟୁ ହୃଦୟରେ ସ୍ଥିତ ପ୍ରାଣବାୟୁକୁ ସଙ୍ଗରେ ନେଇ ନାଭିମଣ୍ଡଳ ଦେଇ ଅପାନରେ ବିଲୀନ ହୋଇଯାଏ। ଏହି ସାଧନାରେ ବାରମ୍ବାର ବାହାରର ବାୟୁକୁ ଭିତରକୁ ନେଇ ସେଠାରେ ରୋଧ କରିଦିଆଯାଏ; ତେଣୁ ତାହାକୁ **ଆଭ୍ୟନ୍ତର କୁମ୍ଭକ** ମଧ କହନ୍ତି।

**ପ୍ରଶ୍ନ –** ପ୍ରାଣବାୟୁରେ ଅପାନବାୟୁକୁ ହବନ କରିବାର ଅର୍ଥ କଣ ?

**ଉତ୍ତର –** ଏହି ଦ୍ୱିତୀୟପ୍ରକାର ପ୍ରାଣାୟାମରୂପକ ଯଜ୍ଞରେ ପ୍ରାଣବାୟୁ ଅଗ୍ନିସ୍ଥାନୀୟ ଏବଂ ଅପାନବାୟୁ ହବିସ୍ଥାନୀୟ ଅଟେ। ଏଣୁ ବୁଝିବାକୁ ହେବ ଯେ, ଯାହାକୁ ରେଚକ ପ୍ରାଣାୟାମ କହନ୍ତି, ଏଠାରେ ତାହା ହେଉଛି ପ୍ରାଣବାୟୁରେ ଅପାନ ବାୟୁର ହବନ। କାରଣ ସାଧକ ରେଚକ ପ୍ରାଣାୟାମ କଲାବେଳେ, ଭିତରର ବାୟୁକୁ ନାସିକାଦ୍ୱାରା ଶରୀରରୁ ବାହାରକୁ ବାହାର କରି ରୋଧ କରନ୍ତି; ସେହି ସମୟରେ ପ୍ରଥମେ ହୃଦୟରେ ଥିବା ପ୍ରାଣବାୟୁ ବାହାରକୁ ଆସି ରହିଯାଏ ଏବଂ ପରେ ଅପାନବାୟୁ ଆସି ସେଥିରେ ବିଲୀନ ହୋଇଯାଏ। ଏହି ସାଧନାରେ ବାରମ୍ବାର ଭିତରର ବାୟୁକୁ ବାହାରକୁ ବାହାର କରି ସେଠାରେ ରୋଧ କରାଯାଏ, ଏଣୁ ଏହାକୁ **ବାହ୍ୟ କୁମ୍ଭକ** ମଧ କହନ୍ତି।

**ପ୍ରଶ୍ନ – ନିୟତାହାରାଃ** ବିଶେଷଣର ଅର୍ଥ କଣ ?

**ଉତ୍ତର –** ଯେଉଁମାନେ ଯୋଗଶାସ୍ତ୍ରରେ କୁହାଯାଇଥିବା ନିୟମ ଅନୁସାରେ ପ୍ରାଣାୟାମ କରିବା ପାଇଁ ଉପଯୁକ୍ତ ସାତ୍ତ୍ୱିକ (୧୭/୮) ଓ ପରିମିତ ଭୋଜନ କରନ୍ତି, ଅର୍ଥାତ୍ ଯୋଗଶାସ୍ତ୍ରର ନିୟମ ଅନୁସାରେ ଅଧିକ ଖାଆନ୍ତି ନାହିଁ, କି ଉପବାସ ମଧ କରନ୍ତି ନାହିଁ, ସେପରି ପୁରୁଷମାନଙ୍କୁ **ନିୟତାହାରାଃ** କହନ୍ତି; କାରଣ ଉପଯୁକ୍ତ ଆହାର କରୁଥିବା ଲୋକର ହିଁ ଯୋଗ ସିଦ୍ଧ ହୁଏ (୬/୧୭); ଅଧିକ ଭୋଜନ କରୁଥିବା ଏବଂ ସର୍ବଥା ଭୋଜନ ତ୍ୟାଗ କରୁଥିବା ଲୋକର ଯୋଗ ସିଦ୍ଧ ହୁଏ ନାହିଁ (୬/୧୬)।

**ପ୍ରଶ୍ନ – ପ୍ରାଣାୟାମପରାୟଣାଃ** ବିଶେଷଣର ଅର୍ଥ କଣ ?

**ଉତ୍ତର –** ଯେଉଁମାନେ ପ୍ରାଣମାନଙ୍କୁ ନିୟମିତ କରିବାରେ ଅର୍ଥାତ୍ ବାରମ୍ବାର ପ୍ରାଣମାନଙ୍କୁ ରୋଧ କରିବା ଅଭ୍ୟାସରେ ତତ୍ପର ରହନ୍ତି ଏବଂ ଏହାକୁ ହିଁ ପରମାତ୍ମପ୍ରାପ୍ତିର ପ୍ରଧାନ ସାଧନା ବୋଲି ମାନନ୍ତି, ସେପରି ପୁରୁଷମାନଙ୍କୁ **ପ୍ରାଣାୟାମପରାୟଣାଃ** କହନ୍ତି।

**ପ୍ରଶ୍ନ –** ଏଠାରେ **ନିୟତାହାରାଃ** ଏବଂ **ପ୍ରାଣାୟାମ- ପରାୟଣାଃ —** ଏହି ଦୁଇ ବିଶେଷଣର ସମ୍ବନ୍ଧ ତିନିପ୍ରକାର ପ୍ରାଣାୟାମ କରୁଥିବା ଲୋକଙ୍କ ସହିତ ଅଛି ବୋଲି ନ କହି, କେବଳ ପ୍ରାଣମାନଙ୍କରେ ପ୍ରାଣମାନଙ୍କୁ ହବନ କରୁଥିବା ଲୋକଙ୍କ ସହିତ ଅଛି ବୋଲି ମାନିବାର ଅଭିପ୍ରାୟ କଣ ? କଣ ଅନ୍ୟ ଦୁଇପ୍ରକାର ସାଧକ ନିୟତାହାରୀ ଏବଂ ପ୍ରାଣାୟାମପରାୟଣ ନୁହନ୍ତି ?

**ଉତ୍ତର –** ଉପରୋକ୍ତ ପ୍ରାଣାୟାମରୂପକ ଯଜ୍ଞ କରୁଥିବା ସମସ୍ତ ଯୋଗୀଙ୍କୁ ନିୟତାହାରୀ ଏବଂ ପ୍ରାଣାୟାମପରାୟଣ କୁହାଯାଇପାରିବ। ଅତଏବ ଏହି ଦୁଇ ବିଶେଷଣର ସମ୍ବନ୍ଧ ସମସ୍ତଙ୍କ ସହିତ ଅଛି ବୋଲି ମାନିବାରେ ଭାବତଃ କୌଣସି ଆପତ୍ତି ନାହିଁ; ତଥାପି ଉପର୍ଯୁକ୍ତ ଶ୍ଳୋକରେ ଦିଆଯାଇଥିବା ବିଶେଷଣଦୁଇଟି ତୃତୀୟ ସାଧକଙ୍କର ନିକଟବର୍ତ୍ତୀ ଅଟେ। ତେଣୁ ବ୍ୟାଖ୍ୟାରେ ଏହି ବିଶେଷଣର ସମ୍ବନ୍ଧ କେବଳ **କୁମ୍ଭକ** କରୁଥିବା ଲୋକମାନଙ୍କ ସହିତ ହିଁ ଦର୍ଶାଯାଇଛି। କିନ୍ତୁ ଭାବତଃ ପ୍ରାଣରେ ଅପାନକୁ ହବନ କରୁଥିବା ଏବଂ ଅପାନରେ ପ୍ରାଣକୁ ହବନ କରୁଥିବା ସାଧକଙ୍କ ସହିତ ମଧ ଏହି ବିଶେଷଣର ସମ୍ବନ୍ଧ କରାଯାଇପାରେ।

**ପ୍ରଶ୍ନ –** ତିରିଶ ଶ୍ଳୋକରେ 'ପ୍ରାଣ' ଶବ୍ଦରେ କାହିଁକି ବହୁବଚନ ପ୍ରୟୋଗ କରାଯାଇଛି? ତଥା ପ୍ରାଣ ଓ ଅପାନର ଗତିକୁ ରୋଧ କରି ପ୍ରାଣମାନଙ୍କୁ ପ୍ରାଣମାନଙ୍କରେ ହବନ କରିବାର ଅର୍ଥ କଣ ?

**ଉତ୍ତର –** ଶରୀରଭିତରେ ରହୁଥିବା ବାୟୁ ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ— ଏପରି

ପାଞ୍ଚପ୍ରକାର । ଏଥିମଧ୍ୟରୁ ପ୍ରାଣର ସ୍ଥାନ ହୃଦୟ, ଅପାନର ସ୍ଥାନ ମଳଦ୍ୱାର, ସମାନର ସ୍ଥାନ ନାଭି, ଉଦାନର ସ୍ଥାନ କଣ୍ଠ ଏବଂ ବ୍ୟାନର ସ୍ଥାନ ସମସ୍ତ ଶରୀର ବୋଲି ଗ୍ରହଣ କରାଯାଇଛି । ଏହି ପାଞ୍ଚପ୍ରକାର ବାୟୁକୁ ପଞ୍ଚପ୍ରାଣ ମଧ୍ୟ କହନ୍ତି । ଅତଏବ ଏହି ପାଞ୍ଚ ବାୟୁକୁ ଜୟ କରି ଏସବୁକୁ ନିରୋଧ କରିବାର ସାଧନାକୁ ଯଜ୍ଞର ରୂପ ଦେବାକୁ 'ପ୍ରାଣ' ଶବ୍ଦରେ ବହୁବଚନ ପ୍ରୟୋଗ କରାଯାଇଛି । ଏହି ସାଧନାରେ ଅଗ୍ନି ଓ ହବନଯୋଗ୍ୟ ଦ୍ରବ୍ୟ ଉଭୟ ସ୍ଥାନରେ ପ୍ରାଣକୁ ରଖାଯାଇଛି । ତେଣୁ ବୁଝିବା ଉଚିତ ଯେ, ଯେଉଁ ପ୍ରାଣାୟାମରେ ପ୍ରାଣ ଏବଂ ଅପାନ — ଏହି ଦୁହିଁଙ୍କର ଗତି ରୋଧ କରିଦିଆଯାଏ ଅର୍ଥାତ୍ ପୂରକ ପ୍ରାଣାୟାମ କିମ୍ବା ରେଚକ ପ୍ରାଣାୟାମ କରା ନ ଯାଇ ଶ୍ୱାସ ଓ ପ୍ରଶ୍ୱାସ ବନ୍ଦ କରି ପ୍ରାଣ-ଅପାନ ଆଦି ସମସ୍ତ ବାୟୁକୁ ନିଜ ନିଜ ସ୍ଥାନରେ ରୋଧ କରିଦିଆଯାଏ, ତାହା ହିଁ ଏଠାରେ ପ୍ରାଣ ଓ ଅପାନର ଗତିକୁ ରୋଧ କରି ପ୍ରାଣମାନଙ୍କୁ ପ୍ରାଣମାନଙ୍କରେ ହବନ କରିବା । ଏହି ସାଧନାରେ ବାହାରର ବାୟୁକୁ ଭିତରକୁ ନେଇ କିମ୍ବା ଭିତରର ବାୟୁକୁ ବାହାରକୁ ନେଇ ରୋଧ କରାଯାଏ ନାହିଁ; ଏଥିରେ ପଞ୍ଚବାୟୁଙ୍କୁ ସେମାନଙ୍କ ନିଜ-ନିଜ ସ୍ଥାନରେ ରୋଧ କରିଦିଆଯାଏ । ତେଣୁ ଏହାକୁ **କେବଳ କୁମ୍ଭକ** କହନ୍ତି ।

**ପ୍ରଶ୍ନ –** ଉପରୋକ୍ତ ତ୍ରିବିଧ ପ୍ରାଣାୟାମରୂପକ ଯଜ୍ଞରେ ମନ୍ତ୍ରଜପ କରିବା ଆବଶ୍ୟକ, ନା ନାହିଁ? ଯଦି ଆବଶ୍ୟକ, ତେବେ ପ୍ରଣବ (ଓଁ) ଜପ କରିବା ଉଚିତ, ନା ଅନ୍ୟ କୌଣସି ମନ୍ତ୍ର ଜପ କରାଯାଇପାରେ ?

**ଉତ୍ତର –** ପ୍ରଣବ (ଓଁ) ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କର ବାଚକ (୧୭/୨୩); କୌଣସି ଉତ୍ତମ କ୍ରିୟା ଆରମ୍ଭ କରିବାବେଳେ ଓଁ ଉଚ୍ଚାରଣ କରିବା ଉଚିତ ବୋଲି ସ୍ୱୀକାର କରାଯାଇଛି (୧୭/୨୪)। ତେଣୁ ଏହି ପ୍ରକରଣରେ ଯେତେପ୍ରକାର ଯଜ୍ଞର ବର୍ଣ୍ଣନା କରାଯାଇଛି, ସେସବୁରେ ଭଗବାନଙ୍କ ନାମର ସମ୍ବନ୍ଧ ଅବଶ୍ୟ ଯୋଡିଦେବା ଉଚିତ । ହଁ, ଏକଥା ଅବଶ୍ୟ ଉଚିତ ଯେ, ପ୍ରଣବ ସ୍ଥାନରେ ଶ୍ରୀରାମ, ଶ୍ରୀକୃଷ୍ଣ, ଶ୍ରୀଶିବ ଆଦି ଯେଉଁ ନାମରେ ଯାହାଙ୍କର ରୁଚି ବା ଶ୍ରଦ୍ଧା ଥିବ, ସେହି ନାମ ପ୍ରୟୋଗ କରାଯାଇପାରେ । କାରଣ ପରବ୍ରହ୍ମ ପରମାତ୍ମାଙ୍କର ସମସ୍ତ ନାମର ଫଳ ଶ୍ରଦ୍ଧା ଅନୁସାରେ ଲାଭପ୍ରଦ ହୁଏ । ଏଠାରେ ସମସ୍ତ ସାଧନାକୁ ଯଜ୍ଞର ରୂପ ଦିଆଯାଇଛି ଏବଂ ବିନା-ମନ୍ତ୍ରରେ କରାଯାଉଥିବା ଯଜ୍ଞକୁ ତାମସ ବୋଲି କୁହାଯାଏ (୧୭/୧୩)। ତେଣୁ ଏଥିରେ ମନ୍ତ୍ରସ୍ଥାନୀୟ ଭଗବନ୍ନାମ ପ୍ରୟୋଗ କରିବା ପରମାବଶ୍ୟକ । ଏହି ପ୍ରାଣାୟାମରୂପକ ଯଜ୍ଞରେ ଏକ, ଦୁଇ, ତିନି ଆଦି ସଂଖ୍ୟା ଗଣି ଗଣି ବା ଚୁଟକି ମାରି ମାରି ମାତ୍ରା ଆଦିର ଜ୍ଞାନ ରଖାଗଲେ ମନ୍ତ୍ରର ନ୍ୟୂନତା ହୋଇଯାଏ; ତେଣୁ ତାହା ସାତ୍ତ୍ୱିକ ଯଜ୍ଞ ହୋଇ ରହେ ନାହିଁ । ଏଣୁ ପ୍ରାଣାୟାମରୂପକ ଯଜ୍ଞରେ ନାମଜପ ପରମାବଶ୍ୟକ ବୋଲି ବୁଝିବା ଉଚିତ । ତା ସଙ୍ଗେ-ସଙ୍ଗେ ଇଷ୍ଟଦେବତାଙ୍କର ଧ୍ୟାନ ମଧ୍ୟ ଆବଶ୍ୟକ ।

**ପ୍ରଶ୍ନ –** 'ଉଲ୍ଲିଖିତ ସାଧକମାନେ ବିଭିନ୍ନ ଯଜ୍ଞଦ୍ୱାରା ପାପ ନାଶ କରିଦିଅନ୍ତି ଏବଂ ସେମାନେ ବିଭିନ୍ନ ଯଜ୍ଞ ଜାଣନ୍ତି', ଏହାର ଅର୍ଥ କଣ ?

**ଉତ୍ତର –** ତେଇଶ ଶ୍ଲୋକରେ କୁହାଯାଇଥିଲା ଯେ, ଯଜ୍ଞନିମିତ୍ତ କର୍ମ ଅନୁଷ୍ଠାନ କରୁଥିବା ପୁରୁଷମାନଙ୍କର ସମଗ୍ର କର୍ମ ବିଲୀନ ହୋଇଯାଏ; ସେହି କଥାଟି ଏଠାରେ ସ୍ପଷ୍ଟ କରିଦିଆଯାଇଛି । ଅଭିପ୍ରାୟ ଏହି ଯେ, ଚବିଶ ଶ୍ଲୋକଠାରୁ ଏପର୍ଯ୍ୟନ୍ତ ଯେଉଁ ଯଜ୍ଞ କରୁଥିବା ସାଧକପୁରୁଷମାନଙ୍କର ବର୍ଣ୍ଣନା ହୋଇଛି, ସେମାନେ ସମସ୍ତେ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛାରୁ ରହିତ ହୋଇ ଯଜ୍ଞପାଇଁ ଉପର୍ଯ୍ୟୁକ୍ତ ସାଧନା ଅନୁଷ୍ଠାନ କରି ତାହାଦ୍ୱାରା ପୂର୍ବସଞ୍ଚିତ କର୍ମସଂସ୍କାରରୂପକ ସମସ୍ତ ଶୁଭାଶୁଭ କର୍ମ ନାଶ କରିଦିଅନ୍ତି; ତେଣୁ ସେମାନେ ଯଜ୍ଞତତ୍ତ୍ୱର ଜ୍ଞାତା ଅଟନ୍ତି । ଯେଉଁମାନେ ଏହିସବୁ ସାଧନାମଧ୍ୟରୁ କେତେକ ସାଧନା ସକାମଭାବରେ କୌଣସି ସାଂସାରିକ ଫଳପ୍ରାପ୍ତିପାଇଁ କରନ୍ତି, ସେମାନେ ଯଦିଓ ଆଦୌ ସାଧନା କରୁ ନ ଥିବା ଲୋକଙ୍କ ଠାରୁ ଯଥେଷ୍ଟ ଭଲ, ତଥାପି ଯଜ୍ଞତତ୍ତ୍ୱକୁ ବୁଝି ଯଜ୍ଞାର୍ଥ କର୍ମ କରୁଥିବା ଲୋକ ହୋଇ ନ ଥିବାରୁ, ସେମାନେ କର୍ମବନ୍ଧନରୁ ମୁକ୍ତ ହୋଇପାରନ୍ତି ନାହିଁ ।

***ସମ୍ବନ୍ଧ –*** *ଯଜ୍ଞ କରୁଥିବା ସାଧକମାନଙ୍କର ଏପରି ପ୍ରଶଂସା କରିସାରି ଭଗବାନ୍ ବର୍ତ୍ତମାନ ସେହି ଯଜ୍ଞାନୁଷ୍ଠାନରୁ ହେଉଥିବା ଲାଭ ଏବଂ ଯଜ୍ଞ ନ କରିବା ଫଳରେ ହେଉଥିବା କ୍ଷତି ଦର୍ଶାଉଛନ୍ତି ଏବଂ ଉଲ୍ଲିଖିତପ୍ରକାରେ ଯଜ୍ଞ କରିବାର ଆବଶ୍ୟକତା ପ୍ରତିପାଦନ କରୁଛନ୍ତି—*

**ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍।**
**ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃ କୁରୁସତ୍ତମ ॥ ୩୧ ॥**

ଅନ୍ୱୟ — **କୁରୁସତ୍ତମ** = ହେ କୁରୁଶ୍ରେଷ୍ଠ ଅର୍ଜୁନ !; **ଯଜ୍ଞଶିଷ୍ଟାମୃତଭୁଜଃ** = ଯଜ୍ଞରୁ ବଳିଥିବା ଅମୃତ ସେବନ କରୁଥିବା (ଯୋଗୀମାନେ); **ସନାତନମ୍** = ସନାତନ; **ବ୍ରହ୍ମ** = ପରବ୍ରହ୍ମ (ପରମାତ୍ମା)ଙ୍କୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି (ଏବଂ); **ଅଯଜ୍ଞସ୍ୟ** = ଯଜ୍ଞ କରୁ ନ ଥିବା ପୁରୁଷପାଇଁ; **ଅୟମ୍** = ଏହି; **ଲୋକଃ** = ମନୁଷ୍ୟଲୋକ; **ନ, ଅସ୍ତି** = ମଧ୍ୟ ସୁଖଦାୟକ ନୁହେଁ (ପୁଣି); **ଅନ୍ୟଃ** = ପରଲୋକ; **କୁତଃ** = କିପରି ସୁଖଦାୟକ ହୋଇପାରିବ ?

**ହେ କୁରୁଶ୍ରେଷ୍ଠ ଅର୍ଜୁନ ! ଯଜ୍ଞରୁ ବଳିଥିବା ଅମୃତକୁ ସେବନ କରୁଥିବା ଯୋଗୀମାନେ ସନାତନ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି, ଏବଂ ଯଜ୍ଞ କରୁ ନ ଥିବା ପୁରୁଷପାଇଁ ତ ଏହି ମନୁଷ୍ୟଲୋକ ମଧ୍ୟ ସୁଖଦାୟକ ନୁହେଁ; ପୁଣି ପରଲୋକ ବା କିପରି ସୁଖଦାୟକ ହୋଇପାରିବ ! ॥ ୩୧ ॥**

**ପ୍ରଶ୍ନ** — ଏଠାରେ ଯଜ୍ଞରୁ ବଳିଥିବା ଅମୃତ କଣ ? ଏବଂ ତାହା ସେବନ କରିବାର ଅର୍ଥ କଣ ?

**ଉତ୍ତର** — ଲୋକପ୍ରସିଦ୍ଧି ଅନୁସାରେ ଦେବତାମାନଙ୍କ ପାଇଁ ଅଗ୍ନିରେ ଘୃତାଦି ପଦାର୍ଥ ହୋମ କରିବା ହିଁ ଯଜ୍ଞ ଏବଂ ସେଥିରୁ ବଳିଥିବା ହବିଷ୍ୟାନ୍ନ ହେଉଛି **ଯଜ୍ଞଶିଷ୍ଟ** ଅମୃତ। ସ୍ମୃତିକାରମାନେ ଯେଉଁ ପଞ୍ଚମହାଯଜ୍ଞ ବର୍ଣ୍ଣନା କରିଛନ୍ତି, ସେଥିରେ ଦେବତା, ଋଷି, ପିତୃ, ମନୁଷ୍ୟ ଏବଂ ଅନ୍ୟ ପ୍ରାଣୀମାନଙ୍କ ପାଇଁ ଯଥାଶକ୍ତି ବିଧିପୂର୍ବକ ଅନ୍ନ ବିଭାଜନ କରିଦେବା ପରେ ଯେଉଁ ଅନ୍ନ ବଳିଥାଏ, ତାକୁ ମଧ୍ୟ **ଯଜ୍ଞଶିଷ୍ଟ ଅମୃତ** କୁହାଯାଏ। କିନ୍ତୁ ଏଠାରେ ଭଗବାନ୍ ଏହି ଯଜ୍ଞରୂପକରେ ପରମାତ୍ମପ୍ରାପ୍ତିର ଜ୍ଞାନ, ସଂଯମ, ତପ, ଯୋଗ, ସ୍ୱାଧ୍ୟାୟ, ପ୍ରାଣାୟାମ ଆଦି ସାଧନା ମଧ୍ୟ ବର୍ଣ୍ଣନା କରିଛନ୍ତି, ଯେଉଁଥିରେ କି ଅନ୍ନର କୌଣସି ସମ୍ବନ୍ଧ ନାହିଁ। ତେଣୁ ଏଠାରେ ଉପର୍ଯ୍ୟୁକ୍ତ ସାଧନା ଅନୁଷ୍ଠାନ କଲେ ସାଧକଙ୍କର ଅନ୍ତଃକରଣ ଶୁଦ୍ଧ ହୋଇ ସେଥିରେ ପ୍ରସାଦରୂପକ ଯେଉଁ ପ୍ରସନ୍ନତା ଉପଲବ୍ଧ ହୁଏ (୨/୬୪,୬୫; ୧୮/୩୬,୩୭), ତାହା ହିଁ ଯଜ୍ଞରୁ ବଳିଥିବା ଅମୃତ; କାରଣ ତାହା ଅମୃତସ୍ୱରୂପ ପରମାତ୍ମପ୍ରାପ୍ତିର ହେତୁ ଅଟେ ଏବଂ ବିଶୁଦ୍ଧଭାବରେ ଉତ୍ପନ୍ନ ହୋଇଥିବା ସେହି ସୁଖରେ ନିତ୍ୟତୃପ୍ତ ହୋଇ ରହିବା ହିଁ ଏଠାରେ ସେହି ଅମୃତ ସେବନ କରିବା।

**ପ୍ରଶ୍ନ** — ଉପର୍ଯ୍ୟୁକ୍ତ ପରମାତ୍ମପ୍ରାପ୍ତିର ସାଧନାରୂପକ ଯଜ୍ଞ ଅନୁଷ୍ଠାନ କରୁଥିବା ପୁରୁଷଙ୍କୁ ଏହି ଜନ୍ମରେ ସନାତନ ପରବ୍ରହ୍ମପ୍ରାପ୍ତି ହୁଏ, ନା ଜନ୍ମାନ୍ତରରେ ?

**ଉତ୍ତର** — ତାହା ତାଙ୍କର ସାଧନାର ସ୍ଥିତି ଉପରେ ନିର୍ଭର କରେ। ଯାହାଙ୍କର ସାଧନାରେ ଓ ଭାବରେ ନ୍ୟୂନତା ନ ଥାଏ, ତାଙ୍କୁ ଏହି ଜନ୍ମରେ ହିଁ ବହୁତ ଶୀଘ୍ର ସନାତନ ପରବ୍ରହ୍ମ ପ୍ରାପ୍ତିହୁଏ; ଯାହାଙ୍କର ସାଧନାରେ କୌଣସିପ୍ରକାର ତ୍ରୁଟି ରହିଯାଏ, ତାଙ୍କୁ ସେହି ତ୍ରୁଟି ସୁଧୁରିବା ପରେ ପରବ୍ରହ୍ମପ୍ରାପ୍ତି ହୁଏ; ଯାହା ହେଉ ଏହି ସାଧନା କେବେହେଲେ ବ୍ୟର୍ଥ ହୁଏ ନାହିଁ; ଏହାର ସାଧକଙ୍କୁ ପରମାତ୍ମପ୍ରାପ୍ତିରୂପକ ଫଳ ଅବଶ୍ୟ ମିଳେ (୬/୪୦)। ଏହି ଭାବ ଦେଖାଇବାକୁ ଏଠାରେ ସାମାନ୍ୟଭାବରେ କହିଦିଆଯାଇଛି ଯେ, ସେହି ପୁରୁଷ ସନାତନ ପରବ୍ରହ୍ମ ପ୍ରାପ୍ତ ହୁଅନ୍ତି।

**ପ୍ରଶ୍ନ** — 'ସନାତନପରବ୍ରହ୍ମପ୍ରାପ୍ତି'ରୁ ସଗୁଣ ବ୍ରହ୍ମ ପ୍ରାପ୍ତି ହୁଏ, ନା ନିର୍ଗୁଣ ବ୍ରହ୍ମ ?

**ଉତ୍ତର** — ସଗୁଣ ବ୍ରହ୍ମ ଓ ନିର୍ଗୁଣ ବ୍ରହ୍ମ ଦୁଇଟି ତତ୍ତ୍ୱ ନୁହେଁ; ସଚ୍ଚିଦାନନ୍ଦଘନ ପରମେଶ୍ୱର ହେଉଛନ୍ତି ସଗୁଣ ବ୍ରହ୍ମ ଏବଂ ସେ ହିଁ ନିର୍ଗୁଣ ବ୍ରହ୍ମ। ନିଜର ଭାବନା ଏବଂ ମାନ୍ୟତା ଅନୁସାରେ ସାଧକଙ୍କ ଦୃଷ୍ଟିରେ ସଗୁଣ ଓ ନିର୍ଗୁଣ ପ୍ରଭେଦ ରହିଛି; କିନ୍ତୁ ପ୍ରକୃତରେ ସେପରି କିଛି ନାହିଁ। ସନାତନ ପରବ୍ରହ୍ମପ୍ରାପ୍ତି ହୋଇଯିବା ପରେ ଆଉ କୌଣସି ପ୍ରଭେଦ ରହେ ନାହିଁ।

**ପ୍ରଶ୍ନ** — ଏଠାରେ **ଅଯଜ୍ଞସ୍ୟ** ପଦ କେଉଁ ମନୁଷ୍ୟର ବାଚକ ଏବଂ 'ତାକୁ ତ ଇହଲୋକ ସୁଖଦାୟକ ହୁଏ ନାହିଁ; ପୁଣି ପରଲୋକ କିପରି ସୁଖଦାୟକ ହୋଇପାରିବ !'— ଏହି ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର** — ଯେଉଁ ମନୁଷ୍ୟ ଉପର୍ଯ୍ୟୁକ୍ତ ଯଜ୍ଞମାନଙ୍କ ମଧ୍ୟରୁ ଅଥବା ଏମାନଙ୍କ ଛଡ଼ା ଅନ୍ୟ ଯେଉଁ ଅନେକପ୍ରକାର ସାଧନରୂପକ ଯଜ୍ଞମାନ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଛି— ସେମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବି ଯଜ୍ଞ

କୌଣସିପ୍ରକାରେ କରେ ନାହିଁ, ଏଠାରେ **ଅଯଜ୍ଞସ୍ୟ** ପଦଟି ହେଉଛି ମନୁଷ୍ୟଜୀବନର କର୍ତ୍ତବ୍ୟ ପାଳନ କରୁ ନ ଥିବା ସେହି ପୁରୁଷର ବାଚକ। 'ତାକୁ ତ ଏହି ଲୋକ ସୁଖଦାୟକ ହୁଏ ନାହିଁ; ପୁଣି ପରଲୋକ କିପରି ସୁଖଦାୟକ ହୋଇପାରିବ!'— ଏହି କଥନଦ୍ୱାରା ଦେଖାଇଦିଆଯାଇଛି ଯେ, ଉପର୍ଯ୍ୟୁକ୍ତ ସାଧନା କରିବାକୁ ଅଧିକାର ପାଇ ମଧ୍ୟ ସେ ସେଥିରେ ନ ଲାଗିବାରୁ ତାକୁ ମୁକ୍ତି ମିଳେ ନାହିଁ; ସ୍ୱର୍ଗ ମଧ୍ୟ ମିଳେ ନାହିଁ ଏବଂ ମୁକ୍ତିର ଦ୍ୱାରସ୍ୱରୂପ ଏହି ମନୁଷ୍ୟଶରୀରରେ ମଧ୍ୟ କେବେହେଲେ ଶାନ୍ତି ମିଳେ ନାହିଁ। ପରମାର୍ଥସାଧନାହୀନ ପୁରୁଷ ନିତ୍ୟନିରନ୍ତର ନାନାପ୍ରକାର ଚିନ୍ତାର ଜ୍ୱାଳାରେ ଜଳୁଥାଏ; ପୁଣି ତାକୁ ଅନ୍ୟ ଯୋନିମାନଙ୍କୁ ଯିବାକୁ ହୁଏ, ଯେଉଁମାନେ କି କେବଳ ଭୋଗଯୋନି ଅଟନ୍ତି ଏବଂ; ଯେଉଁଥିରେ ବାସ୍ତବ ସୁଖପ୍ରାପ୍ତିର କୌଣସି ବି ସାଧନ ନ ଥାଏ; ସେଥିରେ ଶାନ୍ତି ଆଉ କେଉଁଠୁ ମିଳିବ ? ମନୁଷ୍ୟ ଶରୀରରେ କରାଯାଉଥିବା ଶୁଭାଶୁଭ କର୍ମର ଫଳ ଅନ୍ୟ ଯୋନିମାନଙ୍କରେ ଭୋଗିବାକୁ ହୁଏ। ଅତଏବ ଯେ ଏହି ମନୁଷ୍ୟଶରୀରରେ ନିଜର କର୍ତ୍ତବ୍ୟକର୍ମ ପାଳନ ନ କରେ, ତାକୁ କୌଣସି ଯୋନିରେ ମଧ୍ୟ ସୁଖ ମିଳେ ନାହିଁ।

**ପ୍ରଶ୍ନ —** ଦେଖାଯାଏ ଯେ, ଏହି ଲୋକରେ ଶାସ୍ତ୍ରବିହିତ ଉତ୍ତମ କର୍ମ କରୁ ନ ଥିବା ଲୋକଙ୍କୁ ଏବଂ ଶାସ୍ତ୍ରର ବିପରୀତ କର୍ମ କରୁଥିବା ଲୋକଙ୍କୁ ମଧ୍ୟ ସ୍ତ୍ରୀ, ପୁତ୍ର, ଧନ, ମାନ, ବଡ଼ିମା, ପ୍ରତିଷ୍ଠା ଆଦି ଇଷ୍ଟବସ୍ତୁପ୍ରାପ୍ତିରୂପକ ସୁଖ ମିଳୁଛି। ଏପରି ଅବସ୍ଥାରେ ଯଜ୍ଞ କରୁ ନ ଥିବା ଲୋକଙ୍କ ପାଇଁ ଏହି ମନୁଷ୍ୟଲୋକ ମଧ୍ୟ ସୁଖଦାୟକ ହୁଏ ନାହିଁ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ସେହି ଇଷ୍ଟବସ୍ତୁପ୍ରାପ୍ତିରୂପକ ସୁଖ ମିଳିବା ମଧ୍ୟ ପୂର୍ବକୃତ ଶାସ୍ତ୍ରବିହିତ ଶୁଭକର୍ମର ଫଳ; ପାପକର୍ମର ଫଳ ନୁହେଁ। ସେହି ସୁଖକୁ ବର୍ତ୍ତମାନ ଜନ୍ମରେ କରାଯାଉଥିବା ପାପକର୍ମର ବା ଶୁଭକର୍ମତ୍ୟାଗର ଫଳ ବୋଲି ବୁଝିବା ଉଚିତ ନୁହେଁ। ତାହା ଛଡ଼ା ଉକ୍ତ ସୁଖ ବସ୍ତୁତଃ ସୁଖ ମଧ୍ୟ ନୁହେଁ। ଅତଏବ ଭଗବାନଙ୍କ କହିବାର ଅଭିପ୍ରାୟ ଏହି ଯେ, ସାଧନାରହିତ ମନୁଷ୍ୟକୁ ପରମାନନ୍ଦରୂପକ ପରମାତ୍ମପ୍ରାପ୍ତିର ଦ୍ୱାରସଦୃଶ ହୋଇଥିବା ଏହି ମନୁଷ୍ୟଶରୀରରେ ତାହାର ମୂର୍ଖତାହେତୁ ସାତ୍ତ୍ୱିକ ସୁଖ ବା ବାସ୍ତବ ସୁଖ ମିଳେ ନାହିଁ; ବରଂ ତାକୁ ନାନାପ୍ରକାର ଭୋଗବାସନାହେତୁ ନିରନ୍ତର ଶୋକ ଏବଂ ଚିନ୍ତାସାଗରରେ ବୁଡ଼ିରହିବାକୁ ପଡ଼େ।

**ପ୍ରଶ୍ନ —** ପୁତ୍ରର ପିତୃମାତୃସେବା, ସ୍ତ୍ରୀର ପତିସେବା, ଶିଷ୍ୟର ଗୁରୁସେବା ଏବଂ ଏହିପରି ଶାସ୍ତ୍ରବିହିତ ଅନ୍ୟାନ୍ୟ ଶୁଭକର୍ମ କରିବା ଯଜ୍ଞାର୍ଥ କର୍ମର ଅନ୍ତର୍ଗତ, ନା ନୁହେଁ? ତାହା କରୁଥିବା ଲୋକମାନେ ସନାତନ ବ୍ରହ୍ମକୁ ପାଆନ୍ତି, ନା ନାହିଁ?

**ଉତ୍ତର —** ଉପର୍ଯ୍ୟୁକ୍ତ ସମସ୍ତ କର୍ମ ସ୍ୱଧର୍ମପାଳନର ଅନ୍ତର୍ଗତ। ଅତଏବ ଯେତେବେଳେ ସ୍ୱଧର୍ମ-ପାଳନରୂପକ ଯଜ୍ଞର ପରମ୍ପରା ସୁରକ୍ଷିତ ରଖିବାକୁ ପରମେଶ୍ୱରଙ୍କ ଆଜ୍ଞା ମାନି ନିଃସ୍ୱାର୍ଥଭାବରେ କରାଯାଉଥିବା ଯୁଦ୍ଧ ଏବଂ କୃଷିବାଣିଜ୍ୟରୂପକ କର୍ମ ମଧ୍ୟ ଯଜ୍ଞର ଅନ୍ତର୍ଗତ ଏବଂ ତାହା କରୁଥିବା ମନୁଷ୍ୟ ମଧ୍ୟ ସନାତନ ବ୍ରହ୍ମକୁ ପାଇଯାନ୍ତି, ସେତେବେଳେ ମାତା-ପିତାଦି ଗୁରୁଜନମାନଙ୍କୁ, ଗୁରୁଙ୍କୁ ଏବଂ ପତିଙ୍କୁ ପରମେଶ୍ୱରଙ୍କ ମୂର୍ତ୍ତି ବୋଲି ମାନି ବା ତାଙ୍କଠାରେ ପରମାତ୍ମା ବ୍ୟାପ୍ତ ହୋଇଛନ୍ତି ବୋଲି ବୁଝି ଅଥବା ତାଙ୍କର ସେବା ହିଁ ନିଜର କର୍ତ୍ତବ୍ୟ ବୋଲି ବୁଝି ତାଙ୍କୁ ସୁଖ ଦେବାକୁ ଯେ ନିଃସ୍ୱାର୍ଥଭାବରେ ତାଙ୍କର ସେବା କରନ୍ତି, ସେ ଯେ ଯଜ୍ଞପାଇଁ ହିଁ କର୍ମ କରନ୍ତି, ସେଥିରେ ସନ୍ଦେହ ନାହିଁ। ତେଣୁ ଏହାଦ୍ୱାରା ସେହି ଲୋକଙ୍କୁ ନିଶ୍ଚୟ ସନାତନ ବ୍ରହ୍ମ ପ୍ରାପ୍ତ ହୋଇଯାଏ।

**ପ୍ରଶ୍ନ —** ଏହି ପ୍ରକରଣରେ ଭିନ୍ନ ଭିନ୍ନ ଯଜ୍ଞନାମରେ ଭିନ୍ନ ଭିନ୍ନପ୍ରକାର ଯେଉଁ ସାଧନା କୁହାଯାଇଛି, ତାହା ଜ୍ଞାନଯୋଗୀଙ୍କ କରଣୀୟ, ନା କର୍ମଯୋଗୀଙ୍କ ?

**ଉତ୍ତର —** ଚବିଶ ଶ୍ଲୋକରେ ଯେଉଁ 'ବ୍ରହ୍ମଯଜ୍ଞ' ଏବଂ ପଚିଶ ଶ୍ଲୋକର ଉତ୍ତରାର୍ଦ୍ଧରେ ଯେଉଁ ଆତ୍ମା-ପରମାତ୍ମାଙ୍କ ଅଭେଦଦର୍ଶନରୂପକ ଯଜ୍ଞ କଥା କୁହାଯାଇଛି, ସେହି ଦୁଇଟିର ଅନୁଷ୍ଠାନ ତ ଜ୍ଞାନଯୋଗୀ ହିଁ କରିପାରନ୍ତି। କର୍ମଯୋଗୀ ତାହା କରିପାରିବେ ନାହିଁ; କାରଣ ସେଥିରେ ସାଧକ ପରମାତ୍ମାଙ୍କ ଠାରୁ ଭିନ୍ନ ହୋଇ ରହେ ନାହିଁ। ସେହି ଦୁଇଟି ଛଡ଼ା ଅନ୍ୟ ସମସ୍ତ ଯଜ୍ଞ ଜ୍ଞାନଯୋଗୀ ଓ କର୍ମଯୋଗୀ ଉଭୟେ କରିପାରିବେ; ସେଥିରେ ଉଭୟଙ୍କ ପାଇଁ କୌଣସିପ୍ରକାର ବାଧା ନାହିଁ।

**ସମ୍ବନ୍ଧ—** ଷୋଡଶ ଶ୍ଳୋକରେ ଭଗବାନ୍ କହିଥିଲେ, "ମୁଁ ତୁମକୁ ସେହି କର୍ମତତ୍ତ୍ୱ କଥା କହିବି, ଯାହା ଜାଣି ତୁମେ ଅଶୁଭରୁ ମୁକ୍ତ ହୋଇଯିବ।" ସେହି ପ୍ରତିଜ୍ଞା ଅନୁସାରେ ଅଠର ଶ୍ଳୋକରୁ ଏପର୍ଯ୍ୟନ୍ତ ସେହି କର୍ମତତ୍ତ୍ୱ ବର୍ଣ୍ଣନା କରିସାରି ବର୍ତ୍ତମାନ ଭଗବାନ୍ ତାହାର ଉପସଂହାର କରୁଛନ୍ତି—

**ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋ ମୁଖେ ।**
**କର୍ମଜାନ୍ ବିଦ୍ଧି ତାନ୍ ସର୍ବାନେବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ ।। ୩୨ ।।**

**ଅନ୍ୱୟ—** **ଏବମ୍** = ଏହିପରି (ଆହୁରି ମଧ୍ୟ); **ବହୁବିଧାଃ** = ବହୁତପ୍ରକାର; **ଯଜ୍ଞାଃ** = ଯଜ୍ଞମାନ; **ବ୍ରହ୍ମଣଃ** = ବେଦର; **ମୁଖେ** = ବାଣୀରେ; **ବିତତାଃ** = ବିସ୍ତାରପୂର୍ବକ କୁହାଯାଇଛି; **ତାନ୍** = ସେହି; **ସର୍ବାନ୍** = ସେସବୁ (ତୁମେ); **କର୍ମଜାନ୍** = ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ସମ୍ପନ୍ନ ହେଉଥିବା; **ବିଦ୍ଧି** = ଜାଣ; **ଏବମ୍** = ଏହିପରି; **ଜ୍ଞାତ୍ୱା** = ତତ୍ତ୍ୱତଃ ଜାଣି (ତାହା ଅନୁଷ୍ଠାନ କଲେ ତୁମେ କର୍ମବନ୍ଧନରୁ ସର୍ବଥା); **ବିମୋକ୍ଷ୍ୟସେ** = ମୁକ୍ତ ହୋଇଯିବ।

**ଏହିପରି ଆହୁରି ବହୁପ୍ରକାର ଯଜ୍ଞ ବେଦବାଣୀଦ୍ୱାରା ବିସ୍ତାରିତଭାବରେ କୁହାଯାଇଛି। ସେସବୁ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ସମ୍ପନ୍ନ ହୁଏ ବୋଲି ଜାଣ। ଏହିପରି ତତ୍ତ୍ୱତଃ ଜାଣି ଯଜ୍ଞନିମିତ୍ତ କର୍ମାନୁଷ୍ଠାନ କଲେ ତୁମେ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବ।। ୩୨ ।।**

**ପ୍ରଶ୍ନ—** 'ଏହିପରି ଆହୁରି ବହୁପ୍ରକାର ଯଜ୍ଞ ବେଦବାଣୀରେ ବିସ୍ତାରିତଭାବରେ କୁହାଯାଇଛି'— ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ମୁଁ ତୁମକୁ ଏହି ସାଧନାରୂପକ ଯେଉଁ ଯଜ୍ଞ ବିଷୟ କହିଲି, ଯଜ୍ଞ କେବଳ ସେତିକି ନୁହେଁ; ଏହା ଛଡ଼ା ଆହୁରି ମଧ୍ୟ ପ୍ରତୀକ-ଉପାସନାଦି ବହୁପ୍ରକାର ଯଜ୍ଞ ତଥା ପରମାତ୍ମପ୍ରାପ୍ତିର ସାଧନା ବେଦରେ ବିସ୍ତାରିତଭାବରେ କୁହାଯାଇଛି। ଅଭିମାନ, ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗପୂର୍ବକ ଏସବୁ ଅନୁଷ୍ଠାନ କରୁଥିବା ସମସ୍ତ ସାଧକ ଯଜ୍ଞପାଇଁ କର୍ମ କରନ୍ତି। ଅତଏବ ଏପର୍ଯ୍ୟନ୍ତ କଥିତ ଯଜ୍ଞ କରୁଥିବା ପୁରୁଷମାନଙ୍କ ପରି ସେମାନେ ମଧ୍ୟ କର୍ମବନ୍ଧନରେ ନ ପଡ଼ି ସନାତନ ପରବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି।

**ପ୍ରଶ୍ନ—** ଏଠାରେ 'ବ୍ରହ୍ମ' ଶବ୍ଦର ଅର୍ଥ ଯଦି ବ୍ରହ୍ମା ବା ପରମେଶ୍ୱର ବୋଲି ମାନିନିଆଯାଏ ଏବଂ ସେହି ଅନୁସାରେ ଯଜ୍ଞକୁ ବେଦବାଣୀରେ ବିସ୍ତୃତ ବୋଲି ନ ମାନି ବ୍ରହ୍ମାଙ୍କ ମୁଖରେ ବା ପରମେଶ୍ୱରଙ୍କ ମୁଖରେ ବିସ୍ତୃତ ବୋଲି ମାନିନିଆଯାଏ, ତେବେ ଆପତ୍ତି କଣ ? କାରଣ 'ପ୍ରଜାପତି ବ୍ରହ୍ମା ଯଜ୍ଞସହିତ ପ୍ରଜାମାନଙ୍କୁ ଉତ୍ପନ୍ନ କରିଛନ୍ତି'— ଏହି କଥା ତୃତୀୟ ଅଧ୍ୟାୟର ଦଶମ ଶ୍ଳୋକରେ ଆସିଛି ଏବଂ 'ପରମେଶ୍ୱରଙ୍କ ଦ୍ୱାରା ବ୍ରାହ୍ମଣ, ବେଦ ଏବଂ ଯଜ୍ଞର ରଚନା କରାଯାଇଛି' —ଏହି କଥା ସପ୍ତଦଶ ଅଧ୍ୟାୟର ତେଇଶ ଶ୍ଳୋକରେ କୁହାଯାଇଛି।

**ଉତ୍ତର—** ପ୍ରଜାପତି ବ୍ରହ୍ମାଙ୍କର ଉତ୍ପତ୍ତି ମଧ୍ୟ ପରମେଶ୍ୱରଙ୍କ ଠାରୁ ହୋଇଛି; ତେଣୁ ବେଦ, ବ୍ରାହ୍ମଣ ଏବଂ ଯଜ୍ଞାଦି ବ୍ରହ୍ମାଙ୍କ ଠାରୁ ଉତ୍ପନ୍ନ ବୋଲି କହିବା ଯାହା, ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ବୋଲି କହିବା ତାହା। ସେହିପରି ଭିନ୍ନ ଭିନ୍ନ ଯଜ୍ଞର ବିସ୍ତାରିତ ବର୍ଣ୍ଣନା ବେଦରେ ରହିଛି ଏବଂ ବେଦର ପ୍ରକଟନ ବ୍ରହ୍ମାଙ୍କ ଠାରୁ ହୋଇଛି ତଥା ବ୍ରହ୍ମାଙ୍କ ଉତ୍ପତ୍ତି ପରମେଶ୍ୱରଙ୍କ ଠାରୁ ହୋଇଛି। ତେଣୁ ଯଜ୍ଞକୁ ପରମେଶ୍ୱରଙ୍କ ଠାରୁ ବା ବ୍ରହ୍ମାଙ୍କ ଠାରୁ ଉତ୍ପନ୍ନ କହିବା ଯାହା, ବେଦରୁ ଉତ୍ପନ୍ନ ବୋଲି କହିବା ତାହା। କିନ୍ତୁ ଅନ୍ୟତ୍ର ଯଜ୍ଞକୁ ବେଦରୁ ଉତ୍ପନ୍ନ ବୋଲି କୁହାଯାଇଛି (୩/୧୫) ଏବଂ ଏହାର ବିସ୍ତାରପୂର୍ବକ ବର୍ଣ୍ଣନା ମଧ୍ୟ ବେଦରେ ଅଛି; ତେଣୁ 'ବ୍ରହ୍ମ' ଶବ୍ଦର ଅର୍ଥ ବେଦ ବୋଲି ମାନି ଯେପରି ଅର୍ଥ କରାଯାଇଛି, ତାହା ଠିକ୍ ବୋଲି ଜଣାପଡୁଛି।

**ପ୍ରଶ୍ନ—** 'ସେସବୁ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ସମ୍ପନ୍ନ ହୁଏ ବୋଲି ଜାଣ'— ଏହାର ଅର୍ଥ କଣ ?

**ଉତ୍ତର—** ଏହି ବକ୍ତବ୍ୟରେ ଭଗବାନ୍ କର୍ମ ସମ୍ବନ୍ଧରେ ତିନିଗୋଟି ଜ୍ଞାତବ୍ୟ ବିଷୟ କହିଛନ୍ତି, ଯଥା —

(୧) ଏଠାରେ ଯେଉଁ ସାଧନାରୂପକ ଯଜ୍ଞ ବର୍ଣ୍ଣନା କରାଯାଇଛି ଏବଂ ଏହା ବ୍ୟତୀତ ଆହୁରି ମଧ୍ୟ ଯେତେପ୍ରକାର କର୍ତ୍ତବ୍ୟକର୍ମରୂପକ ଯଜ୍ଞ ଶାସ୍ତ୍ରରେ କୁହାଯାଇଛି, ସେସବୁ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ହିଁ ହୁଏ। ସେଥିମଧ୍ୟରୁ କାହାର ସମ୍ବନ୍ଧ କେବଳ ମନ ସହିତ ରହିଛି, କାହାର ସମ୍ବନ୍ଧ ମନ ଓ ଇନ୍ଦ୍ରିୟସହିତ ରହିଛି ଏବଂ କାହାରି କାହାରି ସମ୍ବନ୍ଧ ମନ, ଇନ୍ଦ୍ରିୟ ଓ ଶରୀର — ଏହି ସମସ୍ତଙ୍କ ସହିତ ରହିଛି। ଏପରି କୌଣସି ଯଜ୍ଞ ନାହିଁ, ଯାହାର ସମ୍ବନ୍ଧ ଏହି ତିନିଟି ମଧ୍ୟରୁ କୌଣସିଟି ସହିତ ନାହିଁ। ତେଣୁ ସାଧକଙ୍କର ଉଚିତ ଯେ, ଯେଉଁ ସାଧନାରେ ଶରୀର, ଇନ୍ଦ୍ରିୟ ଏବଂ ପ୍ରାଣମାନଙ୍କର କ୍ରିୟା ବା ସଙ୍କଳ୍ପ-ବିକଳ୍ପ ଆଦି ମନର କ୍ରିୟା ତ୍ୟାଗ କରିଦିଆଯାଏ, ସେହି ତ୍ୟାଗରୂପକ ସାଧନାକୁ ମଧ୍ୟ କର୍ମ ବୋଲି ବୁଝିବାକୁ ହେବ ଏବଂ ତାହା ଫଳକାମନା, ଆସକ୍ତି ତଥା ମମତ୍ୱରୁ ରହିତ ହୋଇ କରିବାକୁ ହେବ; ନ ହେଲେ ତାହା ମଧ୍ୟ ବନ୍ଧନର କାରଣ ହୋଇଯିବ।

(୨) 'ଯଜ୍ଞ' ବୋଲି କୁହାଯାଉଥିବା ଯେତେ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଏବଂ ପରମାତ୍ମପ୍ରାପ୍ତିରୂପକ ଭିନ୍ନ ଭିନ୍ନ ସାଧନା ରହିଛି, ସେଗୁଡ଼ିକ ପ୍ରକୃତିର କାର୍ଯ୍ୟରୂପକ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ହିଁ ସମ୍ପନ୍ନ ହୁଏ; ଆତ୍ମାର ସେଥିରେ କୌଣସି ସମ୍ବନ୍ଧ ନାହିଁ। ତେଣୁ କୌଣସି କର୍ମ ବା ସାଧନାରେ ଜ୍ଞାନଯୋଗୀ କର୍ତ୍ତାପଣର ଅଭିମାନ କରିବା ଉଚିତ ନୁହେଁ।

(୩) ମନ, ଇନ୍ଦ୍ରିୟ ଏବଂ ଶରୀରର ଚେଷ୍ଟାରୂପକ କର୍ମ ବିନା ପରମାତ୍ମପ୍ରାପ୍ତି ବା କର୍ମବନ୍ଧନରୁ ମୁକ୍ତି ହୋଇ ନ ପାରେ (୩/୪); କର୍ମବନ୍ଧନରୁ ମୁକ୍ତ ହେବାର ଯେତେପ୍ରକାର ଉପାୟ କୁହାଯାଇଛି, ସେସବୁ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ହିଁ ସିଦ୍ଧ ହୁଏ। ଏଣୁ ପରମାତ୍ମାଙ୍କୁ ପାଇବାକୁ ଏବଂ କର୍ମବନ୍ଧନରୁ ମୁକ୍ତ ହେବାକୁ ଇଚ୍ଛା କରୁଥିବା ମନୁଷ୍ୟ ମମତ୍ୱ, ଅଭିମାନ, ଫଳେଚ୍ଛା ଏବଂ ଆସକ୍ତି ତ୍ୟାଗପୂର୍ବକ କିଛି ନା କିଛି ସାଧନାରେ ଅବଶ୍ୟ ତତ୍ପର ହୋଇଯିବା ଉଚିତ।

**ପ୍ରଶ୍ନ** — 'ଏହିପରି ତତ୍ତ୍ୱତଃ ଜାଣି ଯଜ୍ଞ ନିମନ୍ତେ କର୍ମ ଅନୁଷ୍ଠାନ କଲେ, ତୁମେ କର୍ମବନ୍ଧନରୁ ମୁକ୍ତ ହୋଇଯିବ' — ଏହି ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର** — ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଅଠର ଶ୍ଲୋକରୁ ଏପର୍ଯ୍ୟନ୍ତ ମୁଁ ତୁମକୁ ଯେଉଁ କର୍ମତତ୍ତ୍ୱ କହିଛି, ସେହି ଅନୁସାରେ ସମସ୍ତ ଯଜ୍ଞ ଉପରୋକ୍ତପ୍ରକାରେ ଭଲଭାବରେ ତତ୍ତ୍ୱତଃ ଜାଣି ଅନୁଷ୍ଠାନ କଲେ ତୁମେ କର୍ମବନ୍ଧନରୁ ମୁକ୍ତ ହୋଇଯିବ; କାରଣ ଏହି ତତ୍ତ୍ୱ ବୁଝି କର୍ମ କରୁଥିବା ପୁରୁଷମାନଙ୍କର କର୍ମ ବନ୍ଧନକାରକ ହୁଏ ନାହିଁ, ବରଂ ଏହା ପୂର୍ବସଞ୍ଚିତ କର୍ମକୁ ମଧ୍ୟ ନାଶ କରିଦେଇ ମୁକ୍ତିଦାୟକ ହୋଇଯାଏ।''

*ସମ୍ବନ୍ଧ — ଉପରୋକ୍ତ ପ୍ରକରଣରେ ଭଗବାନ୍ କେତେକପ୍ରକାର ଯଜ୍ଞର ବର୍ଣ୍ଣନା କରିଛନ୍ତି ଏବଂ ଏହା ମଧ୍ୟ କହିଛନ୍ତି ଯେ, ଏହା ବ୍ୟତୀତ ଆହୁରି ବହୁପ୍ରକାର ଯଜ୍ଞ ବେଦଶାସ୍ତ୍ରରେ କୁହାଯାଇଛି; ତେଣୁ ଏଠାରେ ଜିଜ୍ଞାସା ହୁଏ, ''ଏସବୁ ଯଜ୍ଞମାନଙ୍କ ମଧ୍ୟରୁ କେଉଁ ଯଜ୍ଞ ଶ୍ରେଷ୍ଠ ?'' ଏହା ଉପରେ ଭଗବାନ୍ କହୁଛନ୍ତି—*

## ଶ୍ରେୟାନ୍ ଦ୍ରବ୍ୟମୟାଦ୍‌ଯଜ୍ଞାଜ୍ ଜ୍ଞାନଯଜ୍ଞଃ ପରନ୍ତପ।
## ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ॥ ୩୩ ॥

**ଅନ୍ୱୟ** — **ପରନ୍ତପ ପାର୍ଥ** = ହେ ପରନ୍ତପ ଅର୍ଜୁନ !; **ଦ୍ରବ୍ୟମୟାତ୍** = ଦ୍ରବ୍ୟମୟ; **ଯଜ୍ଞାତ୍** = ଯଜ୍ଞ ଅପେକ୍ଷା; **ଜ୍ଞାନଯଜ୍ଞଃ** = ଜ୍ଞାନଯଜ୍ଞ; **ଶ୍ରେୟାନ୍** = ଅତ୍ୟନ୍ତ ଶ୍ରେଷ୍ଠ (ତଥା); **ଅଖିଳମ୍** = ସମ୍ପୂର୍ଣ୍ଣ; **ସର୍ବମ୍** = ଯକଳପ୍ରକାର; **କର୍ମ** = କର୍ମ; **ଜ୍ଞାନେ** = ଜ୍ଞାନରେ; **ପରିସମାପ୍ୟତେ** = ପରିସମାପ୍ତ ହୋଇଯାଏ।

**ହେ ପରନ୍ତପ ଅର୍ଜୁନ! ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞ ଅତ୍ୟନ୍ତ ଶ୍ରେଷ୍ଠ; କାରଣ ଯେକୌଣସିପ୍ରକାର କର୍ମ ହେଉ ନା କାହିଁକି, ସକଳ କର୍ମର ପରିସମାପ୍ତି ଜ୍ଞାନରେ ହୋଇଯାଏ॥ ୩୩ ॥**

**ପ୍ରଶ୍ନ** — ଏଠାରେ **ଦ୍ରବ୍ୟମୟ ଯଜ୍ଞ** କେଉଁ ଯଜ୍ଞର ବାଚକ ଏବଂ **ଜ୍ଞାନଯଜ୍ଞ** କେଉଁ ଯଜ୍ଞର ? ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞକୁ ଶ୍ରେଷ୍ଠ କହିବାର ଅଭିପ୍ରାୟ କଣ ?

**ଉତ୍ତର** — ଯେଉଁ ଯଜ୍ଞରେ ଦ୍ରବ୍ୟର ଅର୍ଥାତ୍ ସାଂସାରିକ ବସ୍ତୁର ପ୍ରଧାନତା ଥାଏ, ତାହାକୁ **ଦ୍ରବ୍ୟମୟଯଜ୍ଞ** କହନ୍ତି । ଏଣୁ ଅଗ୍ନିରେ ଘିଅ, ଚିନି, ଦହି, ଦୁଧ, ତିଳ, ଯବ, ଚାଉଳ, ଫଳ, ଚନ୍ଦନ, କର୍ପୂର, ଧୂପ ଏବଂ ସୁଗନ୍ଧିଯୁକ୍ତ ଔଷଧି ଆଦି ହବି ବିଧିପୂର୍ବକ ହୋମ କରିବା, ଦାନ ଦେବା, ପରୋପକାରପାଇଁ କୂପ, ବାପୀ, ପୁଷ୍କରିଣୀ, ଧର୍ମଶାଳା ଆଦି ତିଆରି କରିବା, ବଳିବୈଶ୍ୱଦେବ କରିବା ଆଦି ଯେତେସବୁ ସାଂସାରିକ ପଦାର୍ଥ ସହିତ ସମ୍ପୃକ୍ତ ଶାସ୍ତ୍ରବିହିତ ଶୁଭକର୍ମ ରହିଛି, ସେସବୁ **ଦ୍ରବ୍ୟମୟ ଯଜ୍ଞର** ଅନ୍ତର୍ଗତ । ଉପରୋକ୍ତ ସାଧନାରେ ଦୈବଯଜ୍ଞ, ବିଷୟହବନରୂପକ ଯଜ୍ଞ ଏବଂ **ଦ୍ରବ୍ୟଯଜ୍ଞ** ନାମରେ ଏହାର ବର୍ଣ୍ଣନା ହୋଇଛି । ଏହାଠାରୁ ଭିନ୍ନ ବିବେକ, ବିଚାର ଏବଂ ଆଧ୍ୟାତ୍ମିକ ଜ୍ଞାନ ସହିତ ସମ୍ପୃକ୍ତ ଯେଉଁ ସାଧନା ରହିଛି, ସେସବୁ **ଜ୍ଞାନଯଜ୍ଞର** ଅନ୍ତର୍ଗତ । ଏଠାରେ ଦ୍ରବ୍ୟମୟ ଯଜ୍ଞଠାରୁ ଜ୍ଞାନଯଜ୍ଞ ଶ୍ରେଷ୍ଠ ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ଯଦି କୌଣସି ସାଧକ ନିଜର ଅଧିକାର ଅନୁସାରେ ଶାସ୍ତ୍ରବିହିତ ଅଗ୍ନିହୋତ୍ର, ବ୍ରାହ୍ମଣଭୋଜନ, ଦାନ ଆଦି ଶୁଭକର୍ମ ଅନୁଷ୍ଠାନ ନ କରି କେବଳ ଆତ୍ମସଂଯମ, ଶାସ୍ତ୍ରାଧ୍ୟୟନ, ତତ୍ତ୍ୱବିଚାର ଏବଂ ଯୋଗସାଧନା ଆଦି ବିବେକ-ବିଜ୍ଞାନସମ୍ବନ୍ଧୀ ଶୁଭକର୍ମମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବି ଅନୁଷ୍ଠାନ କରନ୍ତି, ତେବେ ଏହା ବୁଝିବା ଉଚିତ୍ ନୁହେଁ ଯେ, ସେ ଶୁଭକର୍ମର ତ୍ୟାଗୀ; ବରଂ ବୁଝିବାକୁ ହେବ ଯେ, ସେ ତାହା ଅପେକ୍ଷା ଶ୍ରେଷ୍ଠ କାର୍ଯ୍ୟ କରୁଛନ୍ତି; କାରଣ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି ଜ୍ଞାନପୂର୍ବକ କରାଯାଉଥିବା ଦ୍ରବ୍ୟଯଜ୍ଞ ହିଁ ମୁକ୍ତିର କାରଣ ହୁଏ; ସେପରି ଅନୁଷ୍ଠିତ ନ ହେଲେ ତାହା ଓଲଟି ବନ୍ଧନର କାରଣ ହୋଇଯାଏ । ଉପର୍ଯ୍ୟୁକ୍ତ ସାଧନାମାନଙ୍କରେ ଲାଗିଥିବା ଲୋକେ ତ ବିଷୟମାନଙ୍କୁ ସ୍ୱରୂପତଃ ତ୍ୟାଗ କରିଦିଅନ୍ତି, ସେମାନଙ୍କ କାର୍ଯ୍ୟରେ ହିଂସାଦି ଦୋଷ ସ୍ୱରୂପତଃ ମଧ୍ୟ ନ ଥାଏ; ଏହିହେତୁ ମଧ୍ୟ ସେମାନେ ଉତ୍ତମ । ଯଥାର୍ଥଜ୍ଞାନ (ତତ୍ତ୍ୱଜ୍ଞାନ) ପ୍ରାପ୍ତିରେ ଭାବର ପ୍ରାଧାନ୍ୟ ରହେ; ସାଂସାରିକ ବସ୍ତୁମାନଙ୍କ ବିସ୍ତାରରେ ନୁହେଁ । ତେଣୁ ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞକୁ ଶ୍ରେଷ୍ଠ ବୋଲି କୁହାଯାଇଛି ।

**ପ୍ରଶ୍ନ** — ଏଠାରେ **ଅଖିଳମ୍** ଏବଂ **ସର୍ବମ୍** ବିଶେଷଣ ସହିତ **କର୍ମ** ପଦ କାହାର ବାଚକ ଏବଂ 'ଯେକୌଣସିପ୍ରକାର କର୍ମ ହେଉ ନା କାହିଁକି , ତାହା ଜ୍ଞାନରେ ପରିସମାପ୍ତ ହୋଇଯାଏ' କହିବାର ଅଭିପ୍ରାୟ କଣ ?

**ଉତ୍ତର** — ଉପରୋକ୍ତ ପ୍ରକରଣରେ ଯେତେସବୁ ସାଧନାରୂପକ କର୍ମ କୁହାଯାଇଛି, ତଥା ଯେତେସବୁ ଶୁଭକର୍ମରୂପକ ଯଜ୍ଞ ବେଦଶାସ୍ତ୍ରରେ ବର୍ଣ୍ଣିତ ହୋଇଛି (୪/୩୨), ଏଠାରେ **ଅଖିଳମ୍** ଏବଂ **ସର୍ବମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ସେସବୁର ବାଚକ । ଏଣୁ ସକଳପ୍ରକାର କର୍ମ ଜ୍ଞାନରେ ପରିସମାପ୍ତ ହୋଇଯାଏ ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ସମସ୍ତ ସାଧନାର ଚରମଫଳ ହେଉଛି ପରମାତ୍ମଜ୍ଞାନପ୍ରାପ୍ତି; ଯଥାର୍ଥ ଜ୍ଞାନଦ୍ୱାରା ଯାହାଙ୍କର ପରମାତ୍ମପ୍ରାପ୍ତି ହୋଇଯାଏ, ତାଙ୍କର ଆଉ କିଛି ପାଇବାକୁ ବାକି ରହେ ନାହିଁ ।

**ପ୍ରଶ୍ନ** — ଏହି ଶ୍ଳୋକରେ ଆସିଥିବା **ଜ୍ଞାନଯଜ୍ଞ** ଏବଂ ଜ୍ଞାନର ଅର୍ଥ ଏକା, ନା ଭିନ୍ନ ଭିନ୍ନ ?

**ଉତ୍ତର** — ଦୁହିଁଙ୍କର ଅର୍ଥ ଏକ ନୁହେଁ; **ଜ୍ଞାନଯଜ୍ଞ** ଶବ୍ଦ ତ ଯଥାର୍ଥ ଜ୍ଞାନପ୍ରାପ୍ତିପାଇଁ କରାଯାଉଥିବା ବିବେକ, ବିଚାର ଏବଂ ସଂଯମ-ପ୍ରଧାନ ସାଧନାର ବାଚକ ଏବଂ **ଜ୍ଞାନ** ଶବ୍ଦ ହେଉଛି ସମସ୍ତ ସାଧନାର ଫଳରୂପ ପରମାତ୍ମାଙ୍କ ଯଥାର୍ଥ ଜ୍ଞାନ (ତତ୍ତ୍ୱଜ୍ଞାନ)ର ବାଚକ । ଦୁହିଁଙ୍କର ଅର୍ଥରେ ଏହିପରି ପ୍ରଭେଦ ରହିଛି ।

**ସମ୍ବନ୍ଧ** — ଏପରିଭାବରେ ଜ୍ଞାନଯଜ୍ଞର ଏବଂ ତାହାର ଫଳରୂପକ ଜ୍ଞାନର ପ୍ରଶଂସା କରିସାରି ଭଗବାନ୍ ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଜ୍ଞାନ ପାଇବାନିମନ୍ତେ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି ଏବଂ ଜ୍ଞାନପ୍ରାପ୍ତିର ମାର୍ଗ ଓ ତାହାର ଫଳ କହୁଛନ୍ତି—

**ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।**
**ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ ।। ୩୪ ।।**

**ଅନ୍ୱୟ** — **ତତ୍** = ସେହି ଜ୍ଞାନକୁ (ତୁମେ ତତ୍ତ୍ୱଦର୍ଶୀ ଜ୍ଞାନୀଙ୍କ ପାଖକୁ ଯାଇ); **ବିଦ୍ଧି** = ବୁଝ; **ପ୍ରଣିପାତେନ** = (ତାଙ୍କୁ) ଭଲଭାବେ ଦଣ୍ଡବତ୍ ପ୍ରଣାମଦ୍ୱାରା; **ସେବୟା** = ସେବାଦ୍ୱାରା; **ପରିପ୍ରଶ୍ନେନ** = (କପଟ ତ୍ୟାଗ କରି)

ସରଳତାପୂର୍ବକ ପ୍ରଶ୍ନ କଲେ; **ତେ** = ସେହି; **ତତ୍ତ୍ୱଦର୍ଶିନଃ** = ଭଲଭାବରେ ପରମାତ୍ମତତ୍ତ୍ୱ ଜାଣିଥିବା; **ଜ୍ଞାନିନଃ** = ଜ୍ଞାନୀ ମହାତ୍ମାମାନେ; **ଜ୍ଞାନମ୍** = ତତ୍ତ୍ୱଜ୍ଞାନ; **ଉପଦେକ୍ଷ୍ୟନ୍ତି** = ଉପଦେଶ ଦେବେ।

**ସେହି ଜ୍ଞାନକୁ ତୁମେ ତତ୍ତ୍ୱଦର୍ଶୀ ଜ୍ଞାନୀମାନଙ୍କ ନିକଟକୁ ଯାଇ ବୁଝ। ତାଙ୍କୁ ଭଲଭାବେ ଦଣ୍ଡବତ୍ ପ୍ରଣାମ କରି, ସେବା କରି ଏବଂ କପଟ ତ୍ୟାଗ କରି ସରଳତାପୂର୍ବକ ପ୍ରଶ୍ନ କଲେ, ଭଲଭାବରେ ପରମାତ୍ମତତ୍ତ୍ୱ ଜାଣିଥିବା ସେହି ଜ୍ଞାନୀ ମହାତ୍ମାମାନେ ତୁମକୁ ତତ୍ତ୍ୱଜ୍ଞାନ ଉପଦେଶ ଦେବେ, - - -॥ ୩୪ ॥**

**ପ୍ରଶ୍ନ –** ଏଠାରେ ତତ୍ ପଦ କାହାର ବାଚକ?

**ଉତ୍ତର –** ପୂର୍ବଶ୍ଳୋକରେ ସମସ୍ତ ସାଧନାର ଫଳରୂପ ଯେଉଁ ତତ୍ତ୍ୱଜ୍ଞାନର ପ୍ରଶଂସା କରାଯାଇଛି ଏବଂ ଯାହା ପରମାତ୍ମାଙ୍କ ସ୍ୱରୂପର ଯଥାର୍ଥ ଜ୍ଞାନ, ଏଠାରେ ତତ୍ ପଦଟି ହେଉଛି ତାହାର ବାଚକ।

**ପ୍ରଶ୍ନ –** ସେହି ଜ୍ଞାନ ବୁଝ ବୋଲି କହିବାର ତାତ୍ପର୍ଯ୍ୟ କଣ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ପରମାତ୍ମାଙ୍କର ଯଥାର୍ଥ ତତ୍ତ୍ୱ ନ ଜାଣିଲେ ମନୁଷ୍ୟ ଜନ୍ମମରଣରୂପକ କର୍ମବନ୍ଧନରୁ ମୁକ୍ତି ପାଇପାରିବ ନାହିଁ; ଏଣୁ ତାହା ଅବଶ୍ୟ ବୁଝିବା ଉଚିତ।

**ପ୍ରଶ୍ନ –** ଏଠାରେ ତତ୍ତ୍ୱଦର୍ଶୀ ଜ୍ଞାନୀମାନଙ୍କ ଠାରୁ ଜ୍ଞାନ ଶିଖ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର –** ଭଗବାନ୍ ବାରମ୍ବାର ପରମାତ୍ମତତ୍ତ୍ୱ କଥା କହୁଥିଲେ ମଧ୍ୟ ଅର୍ଜୁନ ତାହା ବୁଝି ନ ପାରିବାରୁ ତାଙ୍କ ଠାରେ କେତେକାଂଶରେ ଶ୍ରଦ୍ଧାର ଅଭାବ ଥିବା ସିଦ୍ଧ ହେଉଛି। ଏଣୁ ତାଙ୍କର ଶ୍ରଦ୍ଧା ବଢ଼ାଇବାପାଇଁ ତାଙ୍କୁ ଜ୍ଞାନୀମାନଙ୍କ ପାଖକୁ ଯାଇ ଜ୍ଞାନ ଶିକ୍ଷା କର ବୋଲି କହି ଚେତାବନୀ ଦେଇଛନ୍ତି।

**ପ୍ରଶ୍ନ –** **ପ୍ରଣିପାତ** କାହାକୁ କହନ୍ତି?

**ଉତ୍ତର –** ଶ୍ରଦ୍ଧାଭକ୍ତିପୂର୍ବକ ସରଳଭାବରେ ଦଣ୍ଡବତ୍ ପ୍ରଣାମ କରିବାକୁ **ପ୍ରଣିପାତ** କହନ୍ତି।

**ପ୍ରଶ୍ନ – ସେବା** କାହାକୁ କହନ୍ତି?

**ଉତ୍ତର –** ଶ୍ରଦ୍ଧାଭକ୍ତିପୂର୍ବକ ମହାପୁରୁଷଙ୍କ ନିକଟରେ ରହିବା, ତାଙ୍କ ଆଜ୍ଞା ପାଳନ କରିବା, ତାଙ୍କ ମାନସିକ ଭାବକୁ ବୁଝି ସବୁପ୍ରକାରେ ତାଙ୍କୁ ସୁଖ ଦେବାକୁ ଚେଷ୍ଟା କରିବା — ଏସବୁ **ସେବାର** ଅନ୍ତର୍ଗତ।

**ପ୍ରଶ୍ନ – ପରିପ୍ରଶ୍ନ** କାହାକୁ କହନ୍ତି?

**ଉତ୍ତର –** ପରମାତ୍ମାଙ୍କ ତତ୍ତ୍ୱ ଜାଣିବା ଇଚ୍ଛାରେ ଶ୍ରଦ୍ଧା ଓ ଭକ୍ତିର ସହିତ କୌଣସି କଥା ପଚାରିବାକୁ **ପରିପ୍ରଶ୍ନ** କହନ୍ତି। ଅର୍ଥାତ୍ 'ମୁଁ କିଏ? ମାୟା କଣ? ପରମାତ୍ମାଙ୍କ ସ୍ୱରୂପ କଣ? ପରମାତ୍ମାଙ୍କ ସହିତ ମୋର କି ସମ୍ବନ୍ଧ? ବନ୍ଧନ କଣ? ମୁକ୍ତି କଣ? କିପରି ସାଧନା କଲେ ପରମାତ୍ମାଙ୍କୁ ପାଇହେବ?'— ଇତ୍ୟାଦି ଅଧ୍ୟାତ୍ମବିଷୟକ ପ୍ରଶ୍ନ ଶ୍ରଦ୍ଧା, ଭକ୍ତି ଏବଂ ସରଳତାପୂର୍ବକ ପଚାରିବା ହିଁ **ପରିପ୍ରଶ୍ନ**; ତର୍କ ଓ ବିତଣ୍ଡା ମନୋଭାବ ନେଇ ପ୍ରଶ୍ନ କରିବା 'ପରିପ୍ରଶ୍ନ' ନୁହେଁ।

**ପ୍ରଶ୍ନ –** 'ପ୍ରଣାମ କରି, ସେବା କରି ସରଳତାପୂର୍ବକ ପ୍ରଶ୍ନ କଲେ, ତତ୍ତ୍ୱଜ୍ଞାନୀମାନେ ତୁମକୁ ଜ୍ଞାନ ଉପଦେଶ ଦେବେ'– ଏହି କଥାର ଅଭିପ୍ରାୟ କଣ? ଏସବୁ ନ କଲେ କଣ ଜ୍ଞାନୀମାନେ ଉପଦେଶ ଦେବେ ନାହିଁ?

**ଉତ୍ତର –** ଉପରୋକ୍ତ କଥନରେ ଭଗବାନ୍ ଜ୍ଞାନପ୍ରାପ୍ତିନିମନ୍ତେ ଶ୍ରଦ୍ଧା, ଭକ୍ତି ଏବଂ ସରଳଭାବ ଯେ ଆବଶ୍ୟକ, ତାହା ପ୍ରତିପାଦନ କରିଛନ୍ତି। ଅଭିପ୍ରାୟ ଏହି ଯେ, ଶ୍ରଦ୍ଧାଭକ୍ତିରହିତ ମନୁଷ୍ୟକୁ ଦିଆଯାଉଥିବା ଉପଦେଶ ତା'ଦ୍ୱାରା ଗ୍ରହଣ କରାଯାଏ ନାହିଁ; ତେଣୁ ମହାପୁରୁଷମାନଙ୍କର ପ୍ରଣାମ, ସେବା ଏବଂ ଆଦରସତ୍କାରର କୌଣସି ଆବଶ୍ୟକତା ନ ଥିଲେ ମଧ୍ୟ ଅଭିମାନପୂର୍ବକ, ଉଦ୍ଦଣ୍ଡଭାବରେ, ପରୀକ୍ଷାବୁଦ୍ଧିରେ ବା କପଟଭାବରେ ପ୍ରଶ୍ନ କରୁଥିବା ଲୋକଙ୍କ ଆଗରେ ତତ୍ତ୍ୱଜ୍ଞାନ କହିବାକୁ ସେମାନଙ୍କର ପ୍ରବୃତ୍ତି ହୁଏ ନାହିଁ। ଏଣୁ ତତ୍ତ୍ୱଜ୍ଞାନ ପାଇବାକୁ ଇଚ୍ଛୁକ ଲୋକ ଶ୍ରଦ୍ଧାଭକ୍ତିପୂର୍ବକ ମହାପୁରୁଷଙ୍କ ନିକଟକୁ ଯାଇ ସେମାନଙ୍କ ପାଖରେ ଆତ୍ମସମର୍ପଣ କରି, ଭଲଭାବରେ ସେମାନଙ୍କୁ ସେବା କରି ଏବଂ ଅବକାଶ ଦେଖି ତାଙ୍କୁ ତତ୍ତ୍ୱଜ୍ଞାନ କଥା ପଚାରିବା ଉଚିତ। ଏପରି କଲେ, ବାଛୁରୀ ଦେଖିଲେ ବାତ୍ସଲ୍ୟହେତୁ ଯେପରି ଗାଈପହ୍ନାରୁ କ୍ଷୀର ଝରେ ଏବଂ ଶିଶୁକୁ ଦେଖିଲେ ଯେପରି ମାତାଙ୍କ ସ୍ତନରୁ ଦୁଗ୍ଧସ୍ରୋତ ବହିବାକୁ ଲାଗେ, ଜ୍ଞାନୀ ପୁରୁଷମାନଙ୍କ ଅନ୍ତଃକରଣରେ ସେହିପରି ସେହି ଅଧିକାରୀକୁ ଉପଦେଶ ଦେବାକୁ ଜ୍ଞାନସମୁଦ୍ର ଉଛୁଳି ଉଠେ। ତେଣୁ ଶ୍ରୁତିରେ କୁହାଯାଇଛି –

'ତଦ୍‌ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠମ୍।' (ମୁଣ୍ଡକୋପନିଷଦ ୧/୨/୧୨)

ଅର୍ଥାତ୍ 'ସେହି ତତ୍ତ୍ୱଜ୍ଞାନ ଜାଣିବାପାଇଁ ସେ (ଜିଜ୍ଞାସୁ ସାଧକ) ହାତରେ ସମିଧ — ଯଥାଶକ୍ତି ଭେଟି ନେଇ ନିରଭିମାନ ହୋଇ ବେଦଶାସ୍ତ୍ରର ତତ୍ତ୍ୱଜ୍ଞାତା ବ୍ରହ୍ମନିଷ୍ଠ ମହାତ୍ମା ପୁରୁଷଙ୍କ ନିକଟକୁ ଯିବା ଉଚିତ।

**ପ୍ରଶ୍ନ –** ଏଠାରେ **ଜ୍ଞାନିନଃ** ସହିତ **ତତ୍ତ୍ୱଦର୍ଶିନଃ** ବିଶେଷଣ ଦେବାର ଏବଂ ସେଥିରେ ବହୁବଚନ ପ୍ରୟୋଗ କରିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** **ଜ୍ଞାନିନଃ** ସହିତ **ତତ୍ତ୍ୱଦର୍ଶିନଃ** ବିଶେଷଣ ଦେଇ ଭଗବାନ୍ ଦେଖାଇଛନ୍ତି ଯେ, ଭଲଭାବରେ ପରମାତ୍ମତତ୍ତ୍ୱ ଜାଣିଥିବା ବେଦବେତ୍ତା ଜ୍ଞାନୀ ମହାପୁରୁଷ ହିଁ ସେହି ତତ୍ତ୍ୱଜ୍ଞାନ ଉପଦେଶ ଦେଇପାରନ୍ତି; କେବଳ ଶାସ୍ତ୍ରଜ୍ଞାତା ବା ସାଧାରଣ ମନୁଷ୍ୟ ତାହା ଦେଇପାରିବେ ନାହିଁ। ଜ୍ଞାନୀ ମହାପୁରୁଷଙ୍କୁ ସମ୍ମାନ ଦେବାପାଇଁ ବହୁବଚନ ପ୍ରୟୋଗ କରାଯାଇଛି; 'ବହୁ ତତ୍ତ୍ୱଜ୍ଞାନୀ ମିଳି ତୁମକୁ ଜ୍ଞାନୋପଦେଶ ଦେବେ' ବୋଲି କହିବାପାଇଁ ବହୁବଚନ ପ୍ରୟୋଗ ହୋଇ ନାହିଁ।

## ଯଜ୍ ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ। ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି।। ୩୫ ।।

**ଅନ୍ୱୟ –** **ଯତ୍** = ଯାହା; **ଜ୍ଞାତ୍ୱା** = ଜାଣି; **ପୁନଃ** = (ତୁମେ) ଆଉ; **ଏବମ୍** = ଏହିପରି; **ମୋହମ୍** = ମୋହକୁ; **ନ ଯାସ୍ୟସି** = ପ୍ରାପ୍ତ ହେବ ନାହିଁ (ତଥା); **ପାଣ୍ଡବ** = ହେ ଅର୍ଜୁନ !; **ଯେନ** = ଯେଉଁ ଜ୍ଞାନଦ୍ୱାରା (ତୁମେ); **ଭୂତାନି** = ସକଳ ଭୂତକୁ; **ଅଶେଷେଣ** = ନିଃଶେଷଭାବରେ; **ଆତ୍ମନି** = (ପ୍ରଥମେ) ନିଜଠାରେ; **ଅଥୋ** = (ଏବଂ) ପରେ; **ମୟି** = ମୋଠାରେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ; **ଦ୍ରକ୍ଷ୍ୟସି** = ଦେଖିବ।

**ଯାହା ଜାଣି ତୁମେ ଆଉ ଏହିପରି ମୋହପ୍ରାପ୍ତ ହେବ ନାହିଁ; ତଥା ହେ ଅର୍ଜୁନ ! ସେହି ଜ୍ଞାନଦ୍ୱାରା ତୁମେ ସକଳଭୂତଙ୍କୁ ସମ୍ପୂର୍ଣ୍ଣଭାବରେ ପ୍ରଥମେ ନିଜଠାରେ ଏବଂ ପରେ ମୋଠାରେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଦେଖିବ।। ୩୫ ।।**

**ପ୍ରଶ୍ନ –** ଏଠାରେ **ଯତ୍** ପଦ କାହାର ବାଚକ? ତାହା ଜାଣିବା ଅର୍ଥ କଣ? ତଥା 'ଆଉ ଏପରି ମୋହପ୍ରାପ୍ତ ହେବ ନାହିଁ'ର ଅର୍ଥ କଣ ?

**ଉତ୍ତର –** ଏଠାରେ **ଯତ୍** ପଦ ପୂର୍ବଶ୍ଳୋକରେ ବର୍ଣ୍ଣିତ ଜ୍ଞାନୀ ମହାପୁରୁଷଙ୍କ ଦ୍ୱାରା ଉପଦିଷ୍ଟ ତତ୍ତ୍ୱଜ୍ଞାନର ବାଚକ ଏବଂ ଏହି ଉପଦେଶ ଅନୁସାରେ ପରମାତ୍ମାଙ୍କ ସ୍ୱରୂପକୁ ଭଲଭାବରେ ପ୍ରତ୍ୟକ୍ଷ କରିନେବା ହିଁ ସେହି ଜ୍ଞାନକୁ ଜାଣିବା। 'ଏପରି ମୋହପ୍ରାପ୍ତ ହେବ ନାହିଁ' କହି ଭଗବାନ୍ କହୁଛନ୍ତି, ''ବର୍ତ୍ତମାନ ତୁମେ ଯେଉଁପରି ମୋହବଶ ହୋଇ ଶୋକରେ ନିମଗ୍ନ ହୋଇଛ (୧/୨୮-୪୭; ୨/୬,୮) ମହାପୁରୁଷଙ୍କ ଦ୍ୱାରା ଉପଦିଷ୍ଟ ଜ୍ଞାନ ଅନୁସାରେ ପରମାତ୍ମାଙ୍କୁ ସାକ୍ଷାତ୍ କରିବା ପରେ, ତୁମେ ଆଉ ସେପରି ମୋହବଶ ହେବ ନାହିଁ। କାରଣ ସୂର୍ଯ୍ୟୋଦୟ ହେବା ପରେ ଯେପରି ରାତ୍ରିର ଘନ ଅନ୍ଧକାର ରହେ ନାହିଁ, ଯଥାର୍ଥ ପରମାତ୍ମଜ୍ଞାନ ହୋଇଯିବା ପରେ ସେହିପରି 'ମୁଁ କିଏ ? ସଂସାର କଣ ? ମାୟା କଣ ? ବ୍ରହ୍ମ କଣ ?' ଇତ୍ୟାଦି କୌଣସି ବି ବିଷୟ ଜାଣିବାକୁ ବାକି ରହେ ନାହିଁ। ଫଳତଃ ଶରୀରକୁ ଆତ୍ମା ବୋଲି ଭାବି ସେଥିରେ ସମ୍ବନ୍ଧ ରଖିଥିବା ପ୍ରାଣୀମାନଙ୍କ ଠାରେ ଏବଂ ବିଭିନ୍ନ ପଦାର୍ଥରେ ମମତ୍ୱ ରଖିବା, ଶରୀରର ଉତ୍ପତ୍ତି-ବିନାଶରେ ଆତ୍ମାର ଜନ୍ମ-ମରଣ ହୁଏ ବୋଲି ବୁଝି ସଂଯୋଗ-ବିୟୋଗରେ ସୁଖୀ-ଦୁଃଖୀ ହେବା, ତଥା ଅନ୍ୟ କୌଣସି କାରଣରୁ ରାଗ-ଦ୍ୱେଷ ଏବଂ ହର୍ଷ-ଶୋକ କରିବା ଆଦି ମୋହଜନିତ ବିକାର ଟିକିଏ ହେଲେ ରହିବ ନାହିଁ। ଲୌକିକ ସୂର୍ଯ୍ୟ ତ ଉଦିତ ହୋଇ ଅସ୍ତ ମଧ୍ୟ ହୁଅନ୍ତି; ଅସ୍ତ ହେଲେ ଅନ୍ଧକାର ମଧ୍ୟ ହୋଇଯାଏ; କିନ୍ତୁ ଏହି ଜ୍ଞାନରୂପକ ସୂର୍ଯ୍ୟ ଥରେ ଉଦିତ ହେଲେ, ଆଉ କେବେ ଅସ୍ତ ହୁଏ ନାହିଁ। ପରମାତ୍ମାଙ୍କର ଏହି ତତ୍ତ୍ୱଜ୍ଞାନ ନିତ୍ୟ ଓ ଅଚଳ; ଏହାର କେବେହେଲେ ଅଭାବ ହୁଏ ନାହିଁ; ତେଣୁ ପରମାତ୍ମାଙ୍କ ତତ୍ତ୍ୱଜ୍ଞାନ ଉଦିତ ହେବା ପରେ ମୋହର ଉତ୍ପତ୍ତି ହୋଇପାରେ ନାହିଁ। ଶ୍ରୁତି କହନ୍ତି –

**ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂଦ୍‌ବିଜାନତଃ।**
**ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ।।**
(ଈଶାବାସ୍ୟୋପନିଷଦ୍-୭)

ଅର୍ଥାତ୍ 'ଯେତେବେଳେ ତତ୍ତ୍ୱଜ୍ଞାନପ୍ରାପ୍ତ ପୁରୁଷଙ୍କ ପାଇଁ ସମସ୍ତ ପ୍ରାଣୀ ଆତ୍ମସ୍ୱରୂପ ହୋଇଯାଆନ୍ତି, ସେତେବେଳେ ସେହି ଏକତ୍ୱଦର୍ଶୀ ପୁରୁଷଙ୍କର ଆଉ କେଉଁ ଶୋକ ଓ କେଉଁ ମୋହ ହୋଇପାରିବ? ଅର୍ଥାତ୍, ତାଙ୍କର ଶୋକ ବା ମୋହ କିଛି ରହିବ ନାହିଁ।'

**ପ୍ରଶ୍ନ –** ଜ୍ଞାନଦ୍ୱାରା ସକଳଭୂତଙ୍କୁ ସମ୍ପୂର୍ଣ୍ଣଭାବରେ ଆତ୍ମାର ଅନ୍ତର୍ଗତ ଦେଖିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ମହାପୁରୁଷଙ୍କ ଠାରୁ ପରମାତ୍ମାଙ୍କ ତତ୍ତ୍ୱଜ୍ଞାନ ଉପଦେଶ ପାଇ ଆତ୍ମାକୁ ସର୍ବବ୍ୟାପୀ, ଅନନ୍ତସ୍ୱରୂପ ବୋଲି ବୁଝିବା ତଥା ସମସ୍ତ ପ୍ରାଣୀଙ୍କ ଠାରେ ଭେଦବୁଦ୍ଧିଶୂନ୍ୟ ହୋଇ ସର୍ବତ୍ର ଆତ୍ମଭାବ ହୋଇଯିବା ହିଁ ଜ୍ଞାନଦ୍ୱାରା ସକଳଭୂତଙ୍କୁ ସମ୍ପୂର୍ଣ୍ଣଭାବରେ ଆତ୍ମାର ଅନ୍ତର୍ଗତ ଦେଖିବା, ଅର୍ଥାତ୍ ସ୍ୱପ୍ନରୁ ଜାଗ୍ରତ ହୋଇଥିବା ପୁରୁଷ ଯେପରି ସ୍ୱପ୍ନଜଗତକୁ ନିଜର ଅନ୍ତର୍ଗତ ସ୍ମୃତିମାତ୍ର ବୋଲି ଦେଖେ, ବସ୍ତୁତଃ ନିଜଠାରୁ ଭିନ୍ନ ଅନ୍ୟ କୌଣସି ସତ୍ତା ଦେଖେ ନାହିଁ, ସମସ୍ତ ଜଗତକୁ ସେହିପରି ନିଜଠାରୁ ଅଭିନ୍ନ ଏବଂ ନିଜର ଅନ୍ତର୍ଗତ ବୋଲି ବୁଝି ସକଳ ଭୂତଙ୍କୁ ସମ୍ପୂର୍ଣ୍ଣରୂପେ ଆତ୍ମାର ଅନ୍ତର୍ଗତ ଦେଖିବା (୬/୨୯)। ଏହିପରି ଆତ୍ମଜ୍ଞାନ ହୋଇଯିବା ସଙ୍ଗେ ସଙ୍ଗେ ମନୁଷ୍ୟର ଶୋକ ଓ ମୋହ ସମୂଳେ ନଷ୍ଟ ହୋଇଯାଏ।

**ପ୍ରଶ୍ନ –** ଏହିପରି ଆତ୍ମଦର୍ଶନ ହୋଇଯିବା ପରେ ସମସ୍ତ ଭୂତଙ୍କୁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଦେଖିବାର ଅର୍ଥ କଣ ?

**ଉତ୍ତର –** ସମସ୍ତ ଭୂତଙ୍କୁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଦେଖିବା ହେଉଛି ପୂର୍ବୋକ୍ତ ଆତ୍ମଦର୍ଶନରୂପକ ସ୍ଥିତିର ଫଳ। ଏହାକୁ ପରମପଦପ୍ରାପ୍ତି, ନିର୍ବାଣବ୍ରହ୍ମପ୍ରାପ୍ତି ଏବଂ ପରମାତ୍ମାଙ୍କ ଠାରେ ପ୍ରବିଷ୍ଟ ହୋଇଯିବା ମଧ୍ୟ କହନ୍ତି। ଏହି ସ୍ଥିତି ପ୍ରାପ୍ତ ହୋଇଥିବା ପୁରୁଷଙ୍କର ଅହଂଭାବ ସର୍ବଥା ନଷ୍ଟ ହୋଇଯାଏ; ସେତେବେଳେ ସେହି ଯୋଗୀଙ୍କର ଆଉ ପରମାତ୍ମାଙ୍କ ଠାରୁ ପୃଥକ୍ ସତ୍ତା ରହେ ନାହିଁ, କେବଳ ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମ ହିଁ ରହିଯାନ୍ତି। ସେ ସମସ୍ତ ଭୂତଙ୍କୁ ପରମାତ୍ମାଙ୍କ ଠାରେ ରହିଥିବାର ଦେଖନ୍ତି ବୋଲି ଯାହା କୁହାଯାଏ, ତାହା କେବଳ ଔପଚାରିକ ଉକ୍ତିମାତ୍ର; କାରଣ ତାଙ୍କ ପାଇଁ ଦୃଶ୍ୟ ଓ ଦ୍ରଷ୍ଟାଙ୍କ ମଧ୍ୟରେ କୌଣସି ବି ପ୍ରଭେଦ ରହେ ନାହିଁ; ତେଣୁ କିଏ ଆଉ ଦେଖିବ ଏବଂ କାହାକୁ ବା ଦେଖିବ? ଏପରି ସ୍ଥିତି ବାଣୀର ଅତୀତ; ତେଣୁ ବାଣୀଦ୍ୱାରା ଏହାର ସଙ୍କେତମାତ୍ର କରାଯାଏ; ଲୋକଦୃଷ୍ଟିରେ ସେହି ଜ୍ଞାନୀଙ୍କର ଯେଉଁ ମନ, ବୁଦ୍ଧି ଏବଂ ଶରୀର ଆଦି ରହିଥାଏ, ସେସବୁର ଭାବକୁ ନେଇ ହିଁ କୁହାଯାଏ ଯେ, ସେ ସମସ୍ତ ପ୍ରାଣୀଙ୍କୁ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଦେଖନ୍ତି; କାରଣ ବସ୍ତୁତଃ ତାଙ୍କ ବୁଦ୍ଧିରେ ଜଳରେ ବରଫ, ଆକାଶରେ ମେଘ ଏବଂ ସ୍ୱର୍ଣ୍ଣରେ ଆଭୂଷଣପରି ସମଗ୍ର ଜଗତ ବ୍ରହ୍ମରୂପ ହିଁ ହୋଇଯାଏ, କୌଣସି ପଦାର୍ଥ ବା ପ୍ରାଣୀ ବ୍ରହ୍ମଠାରୁ ଭିନ୍ନ ହୋଇ ରହେ ନାହିଁ। ଷଷ୍ଠ ଅଧ୍ୟାୟର ସତେଇଶ ଶ୍ଳୋକରେ ଯୋଗୀଙ୍କୁ ବ୍ରହ୍ମଭୂତ ହୋଇଯିବା କଥା ଯାହା କୁହାଯାଇଛି ତଥା ଅଣତିରିଶ ଶ୍ଳୋକରେ ଯୋଗଯୁକ୍ତାତ୍ମା ଏବଂ ସର୍ବତ୍ର ସମଦର୍ଶୀ ଯୋଗୀ ସମସ୍ତ ଭୂତଙ୍କୁ ଆତ୍ମାରେ ରହିଥିବାର ଦେଖନ୍ତି ଏବଂ ସମସ୍ତ ଭୂତରେ ଆତ୍ମା ରହିଥିବାର ଦେଖନ୍ତି ବୋଲି କୁହାଯାଇଛି, ଏଠାରେ ତାହା ହେଉଛି **ଦ୍ରକ୍ଷ୍ୟସି ଆତ୍ମନି**ଦ୍ୱାରା କୁହାଯାଇଥିବା ପ୍ରଥମ ସ୍ଥିତି ଏବଂ ସେହି ଅଧ୍ୟାୟର ଅଠେଇଶ ଶ୍ଳୋକରେ ଯେଉଁ ବ୍ରହ୍ମସଂସ୍ପର୍ଶରୂପକ ଅତ୍ୟନ୍ତ ସୁଖପ୍ରାପ୍ତି କଥା ଯାହା କୁହାଯାଇଛି, ଏଠାରେ ତାହା ହେଉଛି **ଅଥୋ ମୟି**ଦ୍ୱାରା କୁହାଯାଇଥିବା ପ୍ରଥମ ସ୍ଥିତିର ଫଳରୂପକ ଦ୍ୱିତୀୟ ସ୍ଥିତି। ଅଠର ଅଧ୍ୟାୟରେ ମଧ୍ୟ ଭଗବାନ୍ ଜ୍ଞାନଯୋଗର ବର୍ଣ୍ଣନାକ୍ରମେ ଚଉବନ ଶ୍ଳୋକରେ ଯୋଗୀ ବ୍ରହ୍ମଭୂତ ହୋଇଯିବା କଥା କହିଛନ୍ତି ଏବଂ ପଞ୍ଚାବନରେ ଜ୍ଞାନରୂପକ ପରାଭକ୍ତିଦ୍ୱାରା ତାଙ୍କର ପରମାତ୍ମାଙ୍କ ଠାରେ ପ୍ରବିଷ୍ଟ ହେବା କଥା କହିଛନ୍ତି। ଏଠାରେ ସେହି କଥା ଦେଖାଇଦିଆଯାଇଛି।

*ସମ୍ବନ୍ଧ –* *ଏପରିଭାବରେ ଗୁରୁଜନଙ୍କ ଠାରୁ ତତ୍ତ୍ୱଜ୍ଞାନ ଶିଖିବାର ବିଧି ଏବଂ ତାହାର ଫଳ କଥା କହି ବର୍ତ୍ତମାନ ତତ୍ତ୍ୱଜ୍ଞାନର ମାହାତ୍ମ୍ୟ କହୁଛନ୍ତି–*

**ଅପି ଚେଦସି ପାପେଭ୍ୟଃ ସର୍ବେଭ୍ୟଃ ପାପକୃତ୍ତମଃ ।**
**ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି ।। ୩୬ ।।**

**ଅନ୍ୱୟ—** **ଚେତ୍** = ଯଦି (ତୁମେ); **ସର୍ବେଭ୍ୟଃ** = (ଅନ୍ୟ) ସମସ୍ତ; **ପାପେଭ୍ୟଃ** = ପାପୀମାନଙ୍କ ଠାରୁ; **ଅପି** = ମଧ୍ୟ; **ପାପକୃତ୍ତମଃ** = ଅଧିକ ପାପ କରିଥିବା ଲୋକ; **ଅସି** = ହୋଇଥାଅ (ତେବେ ମଧ୍ୟ ତୁମେ); **ଜ୍ଞାନପ୍ଲବେନ** = ଜ୍ଞାନରୂପକ ନୌକାଦ୍ୱାରା; **ଏବ** = ନିଃସନ୍ଦେହ; **ସର୍ବମ୍** = ସମ୍ପୂର୍ଣ୍ଣ; **ବୃଜିନମ୍** = ପାପସମୁଦ୍ରକୁ; **ସଂତରିଷ୍ୟସି** = ଭଲଭାବରେ ପାର ହୋଇଯିବ ।

**ଯଦି ତୁମେ ସମସ୍ତ ପାପୀଙ୍କ ଠାରୁ ମଧ୍ୟ ଅଧିକ ପାପୀ ହୋଇଥାଅ, ତେବେ ମଧ୍ୟ ତୁମେ ଜ୍ଞାନରୂପକ ନୌକାଦ୍ୱାରା ନିଃସନ୍ଦେହ ସମ୍ପୂର୍ଣ୍ଣ ପାପସମୁଦ୍ରକୁ ଭଲଭାବରେ ପାର ହୋଇଯିବ ।। ୩୬ ।।**

**ପ୍ରଶ୍ନ—** ଏହି ଶ୍ଳୋକରେ **ଚେତ୍** ଏବଂ **ଅପି** ପଦ ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର—** ଏହି ପଦ ଦୁଇଟି ପ୍ରୟୋଗ କରି ଭଗବାନ୍ ଅର୍ଜୁନଙ୍କୁ କହିଛନ୍ତି, ''ବାସ୍ତବିକ ତୁମେ ପାପୀ ନୁହଁ, ତୁମେ ତ ଦୈବୀସମ୍ପଦର ଲକ୍ଷଣମାନଙ୍କରେ ଯୁକ୍ତ (୧୬/୫) ତଥା ମୋର ପ୍ରିୟ ଭକ୍ତ ଓ ସଖା ଅଟ (୪/୩); ତୁମ ଭିତରେ ପାପ କିପରି ରହିପାରିବ ? କିନ୍ତୁ ଏହି ଜ୍ଞାନର ଏତେ ପ୍ରଭାବ ଏବଂ ମାହାତ୍ମ୍ୟ ଯେ, ଯଦି ତୁମେ ମହାପାପୀ ହୋଇଥିବ, ତେବେ ମଧ୍ୟ ତୁମେ ଏହି ଜ୍ଞାନରୂପକ ନୌକାଦ୍ୱାରା ଅତ୍ୟନ୍ତ ଗଭୀର ପାପସମୁଦ୍ରକୁ ଅନାୟାସରେ ପାର ହୋଇଯାଇପାରିବ। ମହାପାପ ମଧ୍ୟ ତୁମର ମୁକ୍ତିପଥକୁ ରୋଧ କରିପାରିବ ନାହିଁ।

**ପ୍ରଶ୍ନ—** ଯାହାର ଅନ୍ତଃକରଣ ଶୁଦ୍ଧ ହୋଇ ନାହିଁ, ସେହି ପାପାତ୍ମା ମନୁଷ୍ୟ ତ ଜ୍ଞାନର ଅଧିକାରୀ ମଧ୍ୟ ହୋଇପାରେ ନାହିଁ; ତେବେ ଜ୍ଞାନନୌକାଦ୍ୱାରା ସେ କିପରି ପାପରୁ ମୁକ୍ତ ହୋଇପାରିବ ?

**ଉତ୍ତର— ଚେତ୍** ଏବଂ **ଅପି** ପଦ ପ୍ରୟୋଗ ହୋଇଥିବାରୁ ଏଠାରେ ଏହି ଶଙ୍କାର ଅବକାଶ ନାହିଁ; କାରଣ ଭଗବାନଙ୍କ କହିବାର ଭାବ ହେଉଛି, ''ପାପୀ ଯେତେବେଳେ ଜ୍ଞାନର ଅଧିକାରୀ ହୋଇପାରେ ନାହିଁ, ତେଣୁ ତାକୁ ଜ୍ଞାନରୂପକ ନୌକା ମିଳିବା କଠିନ; କିନ୍ତୁ ମୋର କୃପାଦ୍ୱାରା ବା ମହାପୁରୁଷଙ୍କର ଦୟାଦ୍ୱାରା କୌଣସି କାରଣରୁ ଯଦି ସେ ଜ୍ଞାନପ୍ରାପ୍ତ ହୋଇଯାଏ, ତେବେ ସେ ଯେତେ ବଡ଼ ପାପୀ ହୋଇଥାଉ ନା କାହିଁକି, ସେ ଅତି ଶୀଘ୍ର ସେହି ପାପରୁ ମୁକ୍ତ ହୋଇଯିବ।''

**ପ୍ରଶ୍ନ—** ଏଠାରେ ପାପରୁ ମୁକ୍ତ ହେବା କଥା କହିବାର ତାତ୍ପର୍ଯ୍ୟ କଣ ? କାରଣ, ସକାମଭାବରେ କରାଯାଉଥିବା ପୁଣ୍ୟକର୍ମ ମଧ୍ୟ ମନୁଷ୍ୟର ବନ୍ଧନର ହେତୁ ହୁଏ ।

**ଉତ୍ତର—** ସକାମଭାବରେ କରାଗଲେ ପୁଣ୍ୟକର୍ମ ମଧ୍ୟ ବନ୍ଧନର ହେତୁ ହୁଏ; ତେଣୁ ସମସ୍ତ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବା ପରେ ହିଁ ସମସ୍ତ ପାପରୁ ଯେ ମୁକ୍ତି ମିଳେ, ତାହା ଠିକ୍। ତଥାପି ପୁଣ୍ୟକର୍ମ ତ୍ୟାଗ କରିବାରେ ତ ମନୁଷ୍ୟ ସ୍ୱତନ୍ତ୍ର; ସେ ଯେତେବେଳେ ଇଚ୍ଛା ସେତେବେଳେ ତାହାର ଫଳ ତ୍ୟାଗ କରିପାରେ; କିନ୍ତୁ ଜ୍ଞାନ ବିନା ପାପରୁ ମୁକ୍ତ ହେବା ତାହାର ହାତର କଥା ନୁହେଁ। ଏଣୁ ପାପରୁ ମୁକ୍ତ ହେବା କଥା କହିଦେଲେ, ପୁଣ୍ୟକର୍ମର ବନ୍ଧନରୁ ମୁକ୍ତ ହେବା କଥା ତାହାର ଅନ୍ତର୍ଗତ ହୋଇଯାଏ ।

**ପ୍ରଶ୍ନ—** ଜ୍ଞାନରୂପକ ନୌକାଦ୍ୱାରା ସମସ୍ତ ପାପସମୁଦ୍ରକୁ ଭଲଭାବରେ ପାର ହୋଇଯିବାର ଅର୍ଥ କଣ ?

**ଉତ୍ତର—** ଯେପରି ନୌକାରେ ବସି ମନୁଷ୍ୟ ସମୁଦ୍ରର ଅଗାଧ ଜଳରାଶିକୁ ସହଜରେ ପାର ହୋଇଯାଏ, ସେହିପରି ଜ୍ଞାନରେ ଅବସ୍ଥିତ ହୋଇ (ଜ୍ଞାନନୌକାଦ୍ୱାରା) ନିଜକୁ ସର୍ବଥା ସଂସାରରୁ ଅସଙ୍ଗ, ନିର୍ବିକାର, ନିତ୍ୟ ଏବଂ ଅନନ୍ତ ବୋଲି ବୁଝି ବହୁ ପୂର୍ବଜନ୍ମରେ ତଥା ଇହଜନ୍ମରେ କରିଥିବା ପାପସମୁଦାୟକୁ ଅତିକ୍ରମ କରିଯିବା— ଅର୍ଥାତ୍ ସମସ୍ତ କର୍ମବନ୍ଧନରୁ ଚିରଦିନପାଇଁ ସର୍ବଥା ମୁକ୍ତ ହୋଇଯିବା ହିଁ ଜ୍ଞାନରୂପକ ନୌକାଦ୍ୱାରା ସମ୍ପୂର୍ଣ୍ଣ ପାପରାଶିକୁ ଭଲଭାବରେ ପାର ହୋଇଯିବା ।

**ପ୍ରଶ୍ନ—** ଏଠାରେ **ଏବ** ପଦର ଭାବ କଣ ?

**ଉତ୍ତର— ଏବ** ପଦ ଏଠାରେ ନିଶ୍ଚୟ ଅର୍ଥରେ ବ୍ୟବହାର କରାଯାଇଛି। ଏହାର ଭାବ ହେଲା : ଯଦି ନୌକା ଭାଙ୍ଗିଯାଏ ବା ସେଥିରେ ଛିଦ୍ର ହୋଇଯାଏ ଅଥବା ତୋଫାନ ହୁଏ, ତେବେ କାଠନୌକାରେ ବସି ଜଳରାଶିକୁ ପାର ହେଉଥିବା ମନୁଷ୍ୟ ସେହି ନୌକା ସହିତ ନିଜେ ମଧ୍ୟ ଜଳରେ ବୁଡ଼ିଯାଇପାରେ। କିନ୍ତୁ ଏହି ଜ୍ଞାନରୂପକ ନୌକା ହେଉଛି ନିତ୍ୟ; ଏହାକୁ ଅବଲମ୍ବନ କରୁଥିବା ମନୁଷ୍ୟ ନିଃସନ୍ଦେହ ପାପରୁ ମୁକ୍ତ ହୋଇଯାଆନ୍ତି, ତାଙ୍କର ପତନ ହେବାର କୌଣସି ବି ଆଶଙ୍କା ନାହିଁ।

**ସମ୍ବନ୍ଧ—** ଯେକୌଣସି ଦୃଷ୍ଟାନ୍ତ ଦିଆଯାଉ ନା କାହିଁକି, ତାହା ପରମାର୍ଥ ବିଷୟକୁ ପୂର୍ଣ୍ଣଭାବରେ ବୁଝାଇପାରିବ ନାହିଁ; ତାହା କେବଳ ଗୋଟିଏ ଅଂଶ ବୁଝାଇବାକୁ ସକ୍ଷମ। ଅତଏବ ପୂର୍ବଶ୍ଳୋକରେ କୁହାଯାଇଥିବା ଜ୍ଞାନର ମହତ୍ତ୍ୱକୁ ଅଗ୍ନିର ଦୃଷ୍ଟାନ୍ତ ଦେଇ ଭଗବାନ୍ ପୁଣି ଥରେ ସ୍ପଷ୍ଟ କରୁଛନ୍ତି—

**ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ।**
**ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା॥ ୩୭ ॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ; **ଯଥା** = ଯେପରି; **ସମିଦ୍ଧଃ** = ପ୍ରଜ୍ୱଳିତ; **ଅଗ୍ନିଃ** = ଅଗ୍ନି; **ଏଧାଂସି** = ଇନ୍ଧନସବୁ; **ଭସ୍ମସାତ୍** = ଭସ୍ମୀଭୂତ; **କୁରୁତେ** = କରିଦିଏ; **ତଥା** = ସେହିପରି; **ଜ୍ଞାନାଗ୍ନିଃ** = ଜ୍ଞାନରୂପକ ଅଗ୍ନି; **ସର୍ବକର୍ମାଣି** = ସମସ୍ତ କର୍ମକୁ; **ଭସ୍ମସାତ୍** = ଭସ୍ମୀଭୂତ; **କୁରୁତେ** = କରିଦିଏ।

**କାରଣ ହେ ଅର୍ଜୁନ! ପ୍ରଜ୍ୱଳିତ ଅଗ୍ନି ଯେପରି ଇନ୍ଧନସବୁ ଭସ୍ମୀଭୂତ କରିଦିଏ, ଜ୍ଞାନରୂପକ ଅଗ୍ନି ସେହିପରି ସମସ୍ତ କର୍ମ ଭସ୍ମୀଭୂତ କରିଦିଏ॥ ୩୭ ॥**

**ପ୍ରଶ୍ନ—** ଏହି ଶ୍ଳୋକରେ ଅଗ୍ନିର ଉପମା ଦେଇ ଜ୍ଞାନରୂପକ ଅଗ୍ନିଦ୍ୱାରା ସମସ୍ତ କର୍ମକୁ ଭସ୍ମୀଭୂତ କରିଦେବା କଥା କହିବାର ତାତ୍ପର୍ଯ୍ୟ କଣ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ବୁଝାଇଛନ୍ତି ଯେ, ପ୍ରଜ୍ୱଳିତ ଅଗ୍ନି ଯେପରି କାଷ୍ଠାଦି ସମସ୍ତ ଇନ୍ଧନକୁ ଭସ୍ମ କରି ତାହାକୁ ନଷ୍ଟ କରିଦିଏ, ତତ୍ତ୍ୱଜ୍ଞାନରୂପକ ଅଗ୍ନି ସେହିପରି ଯେତେ ଶୁଭାଶୁଭ କର୍ମ ଅଛି, ସେସବୁକୁ ଅର୍ଥାତ୍ ତାହାର ଫଳରୂପକ ସୁଖ-ଦୁଃଖଭୋଗମାନଙ୍କୁ ତଥା ସେମାନଙ୍କ କାରଣରୂପକ ଅବିଦ୍ୟା ଏବଂ ଅହଂତ୍ୱ-ମମତ୍ୱ, ରାଗ-ଦ୍ୱେଷ ଆଦି ସମସ୍ତ ବିକାରସହିତ ସମସ୍ତ କର୍ମକୁ ନଷ୍ଟ କରିଦିଏ। ଶ୍ରୁତିରେ ମଧ୍ୟ କୁହାଯାଇଛି —

**ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ।**
**କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ଦୃଷ୍ଟେ ପରାବରେ॥**
(ମୁଣ୍ଡକୋପନିଷଦ ୨/୨/୮)

ଅର୍ଥାତ୍, 'ସେହି କାର୍ଯ୍ୟକାରଣରୂପୀ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ପରେ ଜ୍ଞାନୀଙ୍କର ଜଡ଼-ଚେତନର ଏକତାରୂପକ ହୃଦୟଗ୍ରନ୍ଥି ଫିଟିଯାଏ; ଜଡ଼ ଦେହାଦିରେ ଅଜ୍ଞାନହେତୁ ଯେଉଁ ଆତ୍ମାଭିମାନ ରହିଥାଏ, ତାହା ତଥା ସମସ୍ତ ସଂଶୟ ନାଶ ହୋଇଯାଏ। ପୁଣି ପରମାତ୍ମାଙ୍କ ସ୍ୱରୂପଜ୍ଞାନ ବିଷୟରେ କୌଣସିପ୍ରକାର ସାମାନ୍ୟମାତ୍ର ସଂଶୟ ବା ଭ୍ରମ ମଧ୍ୟ ରହେ ନାହିଁ; ସମସ୍ତ କର୍ମ ଫଳସହିତ ସମୂଳେ ନଷ୍ଟ ହୋଇଯାଏ।

ଏହି ଅଧ୍ୟାୟର ଉଣେଇଶ ଶ୍ଳୋକରେ **ଜ୍ଞାନାଗ୍ନିଦଗ୍ଧକର୍ମାଣମ୍** ବିଶେଷଣଦ୍ୱାରା ବି ଏହି କଥା କୁହାଯାଇଛି।

ଇହଜନ୍ମରେ ଏବଂ ଜନ୍ମାନ୍ତରରେ କରାଯାଇଥିବା ସମସ୍ତ କର୍ମ ସଂସ୍କାରରୂପରେ ମନୁଷ୍ୟର ଅନ୍ତଃକରଣରେ ସଞ୍ଚିତ ହୋଇ ରହେ; ସେହିସବୁ କର୍ମର ନାମ **ସଞ୍ଚିତ** କର୍ମ। ସେଥିମଧ୍ୟରୁ ଯେଉଁ କର୍ମ ବର୍ତ୍ତମାନ ଜନ୍ମରେ ଫଳ ଦେବାପାଇଁ ପ୍ରସ୍ତୁତ ହୋଇଯାଏ, ତାହାର ନାମ **ପ୍ରାରବ୍ଧ** କର୍ମ ଏବଂ ବର୍ତ୍ତମାନ କରାଯାଉଥିବା କର୍ମକୁ **କ୍ରିୟମାଣ** କର୍ମ କହନ୍ତି। ଉପରେ କୁହାଯାଇଥିବା ତତ୍ତ୍ୱଜ୍ଞାନରୂପକ ଅଗ୍ନି ପ୍ରକଟ ହେବାମାତ୍ରେ ସମସ୍ତ ପୂର୍ବସଞ୍ଚିତ ସଂସ୍କାର ଲୋପ ହୋଇଯାଏ। ମନ, ବୁଦ୍ଧି ଏବଂ ଶରୀରରୁ ଆତ୍ମାକୁ ଅସଙ୍ଗ ବୋଲି ବୁଝିଯିବାରୁ ମନ, ଇନ୍ଦ୍ରିୟ ଏବଂ ଶରୀରାଦି ସହିତ ପ୍ରାରବ୍ଧ ଭୋଗର ସମ୍ବନ୍ଧ ରହିଥିଲେ ମଧ୍ୟ ସେହି ଭୋଗ ସାଧକଙ୍କର ବା ଯୋଗୀଙ୍କର ଅନ୍ତଃକରଣରେ ହର୍ଷଶୋକ ଆଦି ବିକାର ଜାତ କରିପାରେ ନାହିଁ। ତେଣୁ ସେସବୁ ମଧ୍ୟ ନଷ୍ଟ ହୋଇଯାଏ ଏବଂ କ୍ରିୟମାଣ କର୍ମରେ ସେହି ଯୋଗୀ ବା ସାଧକଙ୍କର କର୍ତ୍ତୃତ୍ୱାଭିମାନ ତଥା ମମତ୍ୱ, ଆସକ୍ତି ଏବଂ ବାସନା ନ ଥିବାରୁ ସେଗୁଡ଼ିକର ସଂସ୍କାର ବି ରହେ ନାହିଁ। ତେଣୁ ସେହି କର୍ମ ପ୍ରକୃତରେ କର୍ମ ହୁଏ ନାହିଁ।

ଏପରିଭାବରେ ତାଙ୍କର ସମସ୍ତ କର୍ମ ନଷ୍ଟ ହୋଇଯାଏ ଏବଂ କର୍ମ ନଷ୍ଟ ହୋଇଗଲେ, ତାହାର ଫଳ ଆଉ ଫଳିବ କିପରି? ପୁଣି ସଞ୍ଚିତ ସଂସ୍କାର ବିନା ତାଙ୍କଠାରେ ରାଗ-ଦ୍ୱେଷ ତଥା ହର୍ଷ-ଶୋକ ଆଦି ବିକାରବୃତ୍ତିଗୁଡ଼ିକ ମଧ୍ୟ କିପରି ବା ଜାତ ହୋଇପାରିବ? ଅତଏବ କର୍ମ ସହିତ ତାଙ୍କର ସମସ୍ତ ବିକାର ଏବଂ ସମସ୍ତ କର୍ମଫଳ ମଧ୍ୟ ନଷ୍ଟ ହୋଇଯାଏ।

**ସମ୍ବନ୍ଧ –** ଚଉତିରିଶ ଶ୍ଳୋକଠାରୁ ଏପର୍ଯ୍ୟନ୍ତ ତତ୍ତ୍ୱଜ୍ଞାନୀ ମହାପୁରୁଷମାନଙ୍କର ସେବା ଆଦି କରି ତତ୍ତ୍ୱଜ୍ଞାନ ପାଇବାକୁ କହିଲେ ଏବଂ ତାହାର ଫଳ ବର୍ଣ୍ଣନା କରିବା ସହିତ ତାହାର ମାହାତ୍ମ୍ୟ ମଧ୍ୟ କହିଲେ । ଏହା ଉପରେ ପ୍ରଶ୍ନ ହୁଏ, 'ଜ୍ଞାନୀ ମହାପୁରୁଷମାନଙ୍କ ଠାରୁ ଶ୍ରବଣ କରି ବିଧିପୂର୍ବକ ମନନ ଏବଂ ନିଦିଧ୍ୟାସନାଦି ଜ୍ଞାନଯୋଗସାଧନାଦ୍ୱାରା ଏହି ତତ୍ତ୍ୱଜ୍ଞାନ ପ୍ରାପ୍ତ କରାଯାଇପାରେ, ନା ତତ୍ତ୍ୱଜ୍ଞାନପ୍ରାପ୍ତିର ଅନ୍ୟ କିଛି ଉପାୟ ଅଛି ?' ଏହା ଉପରେ ପରବର୍ତ୍ତୀ ଶ୍ଳୋକରେ ପୁଣି ଥରେ ସେହି ଜ୍ଞାନର ମହିମା ବର୍ଣ୍ଣନା କରି ଭଗବାନ୍ କର୍ମଯୋଗଦ୍ୱାରା ମଧ୍ୟ ସେହି ଜ୍ଞାନ ସ୍ୱତଃ ପ୍ରାପ୍ତ ହୁଏ ବୋଲି କହୁଛନ୍ତି—

## ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ ।
## ତତ୍ ସ୍ୱୟଂ ଯୋଗସଂସିଦ୍ଧଃ କାଳେନାତ୍ମନି ବିନ୍ଦତି ।। ୩୮ ।।

**ଅନ୍ୱୟ –** **ଇହ** = ଏହି ସଂସାରରେ; **ଜ୍ଞାନେନ** = ଜ୍ଞାନସହ; **ସଦୃଶମ୍** = ସମାନ; **ପବିତ୍ରମ୍** = ପବିତ୍ରକାରକ ବସ୍ତୁ; **ହି** = ନିଃସନ୍ଦେହ; **ନ, ବିଦ୍ୟତେ** = ଆଉ କିଛି ନାହିଁ; **ତତ୍** = ସେହି ଜ୍ଞାନକୁ; **କାଳେନ** = ଦୀର୍ଘକାଳ ଧରି; **ଯୋଗସଂସିଦ୍ଧଃ** = କର୍ମଯୋଗସାଧନାଦ୍ୱାରା ଅନ୍ତଃକରଣକୁ ଶୁଦ୍ଧ କରିଥିବା ମନୁଷ୍ୟ; **ସ୍ୱୟମ୍** = ନିଜେ; **ଆତ୍ମନି** = (ନିଜ) ଆତ୍ମାରେ; **ବିନ୍ଦତି** = ପାଇପାରେ ।

**ଏହି ସଂସାରରେ ଜ୍ଞାନସମାନ ପବିତ୍ରକାରକ ବସ୍ତୁ ନିଃସନ୍ଦେହ ଆଉ କିଛି ନାହିଁ । ଦୀର୍ଘକାଳ ଧରି କର୍ମଯୋଗସାଧନାଦ୍ୱାରା ଶୁଦ୍ଧାନ୍ତଃକରଣ ହୋଇଥିବା ମନୁଷ୍ୟ ଏହି ଜ୍ଞାନ ସ୍ୱତଃ ନିଜ ଆତ୍ମାରେ ପାଇପାରନ୍ତି ।। ୩୮ ।।**

**ପ୍ରଶ୍ନ –** 'ଏହି ସଂସାରରେ ଜ୍ଞାନସମାନ ପବିତ୍ରକାରକ ବସ୍ତୁ ନିଃସନ୍ଦେହ ଆଉ କିଛି ନାହିଁ ।' ଏହି ବାକ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ବାକ୍ୟରେ ପ୍ରକାଶ କରାଯାଇଛି ଯେ, ଜଗତରେ ଯଜ୍ଞ, ଦାନ, ତପ, ସେବା-ପୂଜା, ବ୍ରତ-ଉପବାସ, ପ୍ରାଣାୟାମ, ଶମ-ଦମ, ସଂଯମ ଏବଂ ଜପ-ଧ୍ୟାନ ଆଦି ଯେତେସବୁ ସାଧନା ତଥା ଗଙ୍ଗା, ଯମୁନା, ତ୍ରିବେଣୀ ଆଦି ଯେତେସବୁ ତୀର୍ଥ ମନୁଷ୍ୟର ପାପ ନାଶ କରି ତାକୁ ପବିତ୍ର କରନ୍ତି, ସେଥିମଧ୍ୟରୁ କେହି ହେଲେ ଏହି ଯଥାର୍ଥ ଜ୍ଞାନର ସମକକ୍ଷ ହୋଇପାରିବେ ନାହିଁ; କାରଣ ସେସବୁ ହେଉଛି ଏହି ତତ୍ତ୍ୱଜ୍ଞାନର ସାଧନା ଏବଂ ଏହି ଜ୍ଞାନ ହେଉଛି ସେସବୁର ଫଳ (ସାଧ୍ୟ); ସେଗୁଡ଼ିକ ଏହି ଜ୍ଞାନର ଉତ୍ପତ୍ତିରେ ସହାୟକ ହୋଇଥିବାରୁ ପବିତ୍ର ବୋଲି ଗଣ୍ୟ ହୁଅନ୍ତି । ଏହି ଜ୍ଞାନଦ୍ୱାରା ସାଧକ ପରମାତ୍ମାଙ୍କର ଯଥାର୍ଥ ସ୍ୱରୂପକୁ ଭଲଭାବରେ ଜାଣିପାରନ୍ତି, ତାଙ୍କ ଠାରେ ମିଥ୍ୟା, କପଟ, ଚୋରି, ବ୍ୟଭିଚାର ଆଦି ପାପ, ରାଗ-ଦ୍ୱେଷ, ହର୍ଷ-ଶୋକ, ଅହଂତ୍ୱ-ମମତ୍ୱ ଆଦି ସମସ୍ତ ବିକାର ଏବଂ ଅଜ୍ଞାନ ସର୍ବଥା ଅଭାବ ହୋଇଯିବାରୁ ସେ ପରମପବିତ୍ର ହୋଇଯାଆନ୍ତି । ତାଙ୍କର ମନ, ଇନ୍ଦ୍ରିୟ ଏବଂ ଶରୀର ମଧ୍ୟ ଅତ୍ୟନ୍ତ ପବିତ୍ର ହୋଇଯାଏ । ତେଣୁ ସେହି ମହାପୁରୁଷଙ୍କୁ ଶ୍ରଦ୍ଧାର ସହିତ ଦର୍ଶନ, ସ୍ପର୍ଶନ, ବନ୍ଦନ, ଚିନ୍ତନ ଆଦି କରୁଥିବା ତଥା ତାଙ୍କ ସହିତ ବାର୍ତ୍ତାଳାପ କରୁଥିବା ଅନ୍ୟ ମନୁଷ୍ୟମାନେ ମଧ୍ୟ ପବିତ୍ର ହୋଇଯାନ୍ତି । ତେଣୁ ସଂସାରରେ ପରମାତ୍ମାଙ୍କ ତତ୍ତ୍ୱଜ୍ଞାନପରି ପବିତ୍ର ବସ୍ତୁ ଅନ୍ୟ କିଛି ନାହିଁ ।

**ପ୍ରଶ୍ନ –** ଇହ ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** **ଇହ** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ପ୍ରକୃତିର କାର୍ଯ୍ୟରୂପକ ଏହି ଜଗତରେ ଜ୍ଞାନପରି ସମକକ୍ଷ ହୋଇ ଆଉ କିଛି ନାହିଁ; ଜ୍ଞାନ ହିଁ ସବୁଠାରୁ ଶ୍ରେଷ୍ଠ ପବିତ୍ରକାରୀ । କିନ୍ତୁ ଏହି ପ୍ରକୃତିଠାରୁ ସର୍ବଥା ଅତୀତ ହୋଇ, ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସର୍ବଲୋକ-ମହେଶ୍ୱର, ସର୍ବଗୁଣର ସାଗର, ସଗୁଣ-ନିର୍ଗୁଣ, ସାକାର-ନିରାକାରସ୍ୱରୂପ ଯେଉଁ ପରମେଶ୍ୱର ଏହି ପ୍ରକୃତିର ଅଧ୍ୟକ୍ଷ ହୋଇ ରହିଛନ୍ତି, ତାଙ୍କ ସ୍ୱରୂପକୁ ସାକ୍ଷାତ କରାଇପାରିବାରେ ହିଁ ଜ୍ଞାନର ପବିତ୍ରତା ନିହିତ । ସେହି ସର୍ବଜନ-ସୁହୃଦ୍, ସର୍ବାଧାର ପରମାତ୍ମା ପରମ ପବିତ୍ର; ଏଠାରେ ଜ୍ଞାନକୁ ତାଙ୍କ ଠାରୁ ଅଧିକ ପବିତ୍ର ବୋଲି କୁହାଯାଇ ନାହିଁ । କାରଣ ପରମାତ୍ମାଙ୍କ ଭଳି ତ ଆଉ କେହି ନାହିଁ; ସୁତରାଂ ତାଙ୍କ ଠାରୁ ବଳି ଆଉ କିଏ କିପରି ହୋଇପାରିବ ?

ତେଣୁ ଅର୍ଜୁନ କହି ବି ଦେଇଛନ୍ତି— **'ପରଂ ବ୍ରହ୍ମ ପରଂ ଧାମ ପବିତ୍ରଂ ପରମଂ ଭବାନ୍'।** (୧୦/୧୨) ଅର୍ଥାତ୍, ଆପଣ ପରବ୍ରହ୍ମ, ପରମ ଧାମ ଏବଂ ପରମପବିତ୍ର ଅଟନ୍ତି। ପୁଣି ଭୀଷ୍ମଦେବ ମଧ୍ୟ କହିଛନ୍ତି— **'ପବିତ୍ରାଣାଂ ପବିତ୍ରଂ ଯୋ ମଙ୍ଗଳାନାଂ ଚ ମଙ୍ଗଳମ୍'** ଅର୍ଥାତ୍, ସେହି ପରମେଶ୍ୱର ପବିତ୍ରକାରୀମାନଙ୍କ ମଧ୍ୟରେ ଅତିଶୟ ପବିତ୍ର ଏବଂ କଲ୍ୟାଣକାରୀଙ୍କ ମଧ୍ୟରେ ବି ପରମକଲ୍ୟାଣସ୍ୱରୂପ ଅଟନ୍ତି (ମହା, ଅନୁ ୧୪୯/୧୦)।

**ପ୍ରଶ୍ନ—** **ଯୋଗସଂସିଦ୍ଧଃ** ପଦ କାହାର ବାଚକ ଏବଂ 'ସେ ସେହି ଜ୍ଞାନକୁ ସ୍ୱୟଂ ଆତ୍ମାରେ ପାଇପାରନ୍ତି'— ଏହାର ଅଭିପ୍ରାୟ କଣ ?

**ଉତ୍ତର—** ଦୀର୍ଘକାଳ ଧରି କର୍ମଯୋଗ ଆଚରଣ କରି କରି ରାଗଦ୍ୱେଷ ନଷ୍ଟ ହୋଇଯିବାରୁ ଯାହାଙ୍କର ଅନ୍ତଃକରଣ ସ୍ୱଚ୍ଛ ହୋଇଯାଇଥାଏ, ଯେ କର୍ମଯୋଗରେ ଭଲଭାବରେ ସିଦ୍ଧ ହୋଇଯାଇଛନ୍ତି, ଯାହାଙ୍କର ସମସ୍ତ କର୍ମ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛାଶୂନ୍ୟ ହୋଇ ଭଗବାନଙ୍କର ଆଜ୍ଞା ଅନୁସାରେ ଭଗବାନଙ୍କ ପାଇଁ ହୁଏ, ଏଠାରେ **ଯୋଗସଂସିଦ୍ଧଃ** ପଦଟି ହେଉଛି ତାଙ୍କର ବାଚକ। ଅତଏବ 'ଏହିପରି ଯୋଗସଂସିଦ୍ଧ ପୁରୁଷ ସେହି ଜ୍ଞାନକୁ ସ୍ୱତଃ ଆତ୍ମାରେ ପାଇପାରନ୍ତି'— ଏହି ବାକ୍ୟରୁ ବୁଝିବାକୁ ହେବ ଯେ, ଯେଉଁକ୍ଷଣି ତାହାଙ୍କର ସାଧନା ଶେଷସୀମାରେ ପହଞ୍ଚିଯାଏ, ସେହିକ୍ଷଣି ପରମେଶ୍ୱରଙ୍କ ଅନୁଗ୍ରହରୁ ତାଙ୍କର ଅନ୍ତଃକରଣରେ ସ୍ୱତଃ ସେହି ଜ୍ଞାନ ପ୍ରକାଶିତ ହୋଇଯାଏ। ଅଭିପ୍ରାୟ ଏହି ଯେ, ସେହି ଜ୍ଞାନପ୍ରାପ୍ତିନିମିତ୍ତ ତାଙ୍କୁ ଅନ୍ୟ କୌଣସି ସାଧନା କରିବାକୁ ପଡ଼େ ନାହିଁ, କି ଜ୍ଞାନୀମାନଙ୍କ ନିକଟରେ ରହିବାକୁ ପଡ଼େ ନାହିଁ; ଅନ୍ୟ କୌଣସିପ୍ରକାର ସାଧନ ବା ସହାୟତା ବିନା କେବଳ କର୍ମଯୋଗସାଧନାରେ ହିଁ ତାଙ୍କୁ ସେହି ଜ୍ଞାନ ଭଗବାନଙ୍କ କୃପାରୁ ଆପଣାଛାଏଁ ମିଳିଯାଏ।

*ସମ୍ବନ୍ଧ— ଏହିପରିଭାବରେ ତତ୍ତ୍ୱଜ୍ଞାନର ମହିମା କହି ତାହାକୁ ପାଇବାର ସାଂଖ୍ୟଯୋଗ ଏବଂ କର୍ମଯୋଗରୂପକ ଦୁଇଟି ଉପାୟ କହିଦେଲେ। ବର୍ତ୍ତମାନ ଭଗବାନ୍ ସେହି ଜ୍ଞାନପ୍ରାପ୍ତିର ପାତ୍ର ନିରୂପଣ କରିବାକୁ ଯାଇ ସେହି ଜ୍ଞାନର ଫଳ ପରମଶାନ୍ତିପ୍ରାପ୍ତି ବୋଲି କହୁଛନ୍ତି—*

## ଶ୍ରଦ୍ଧାବାଁଲ୍ଲଭତେ ଜ୍ଞାନଂ ତତ୍ପରଃ ସଂଯତେନ୍ଦ୍ରିୟଃ।
## ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି।। ୩୯ ।।

**ଅନ୍ୱୟ—** **ସଂଯତେନ୍ଦ୍ରିୟଃ** = ଜିତେନ୍ଦ୍ରିୟ; **ତତ୍ପରଃ** = ସାଧନପରାୟଣ (ଏବଂ); **ଶ୍ରଦ୍ଧାବାନ୍** = ଶ୍ରଦ୍ଧାବାନ୍ ପୁରୁଷ; **ଜ୍ଞାନମ୍** = ଜ୍ଞାନକୁ; **ଲଭତେ** = ପ୍ରାପ୍ତ ହୁଏ (ତଥା); **ଜ୍ଞାନମ୍** = ଜ୍ଞାନକୁ; **ଲବ୍ଧ୍ୱା** = ପ୍ରାପ୍ତ ହୋଇ (ସେ); **ଅଚିରେଣ** = ଅବିଳମ୍ବେ, ତତ୍କାଳ; **ପରାମ୍** = (ଭଗବତ୍ପ୍ରାପ୍ତିରୂପକ) ପରମ; **ଶାନ୍ତିମ୍** = ଶାନ୍ତିକୁ; **ଅଧିଗଚ୍ଛତି** = ପ୍ରାପ୍ତ ହୋଇଯାଏ।

**ଜିତେନ୍ଦ୍ରିୟ, ସାଧନପରାୟଣ ଏବଂ ଶ୍ରଦ୍ଧାବାନ୍ ପୁରୁଷ ଜ୍ଞାନପ୍ରାପ୍ତ ହୁଅନ୍ତି ତଥା ଜ୍ଞାନପ୍ରାପ୍ତ ହୋଇ ସେ ଅବିଳମ୍ବେ ତତ୍କାଳ ହିଁ ଭଗବତ୍ପ୍ରାପ୍ତିରୂପକ ପରମ ଶାନ୍ତି ପ୍ରାପ୍ତ ହୋଇଯାଆନ୍ତି।। ୩୯ ।।**

**ପ୍ରଶ୍ନ—** **ଶ୍ରଦ୍ଧାବାନ୍** ପଦ କେଉଁ ମନୁଷ୍ୟଙ୍କର ବାଚକ ଏବଂ ସେ 'ଜ୍ଞାନପ୍ରାପ୍ତ ହୁଅନ୍ତି', ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ବେଦ, ଶାସ୍ତ୍ର, ଈଶ୍ୱର ଏବଂ ମହାପୁରୁଷଙ୍କ ବଚନରେ ବିଶ୍ୱାସ ରଖିବା ତଥା ପରଲୋକକୁ ପ୍ରତ୍ୟକ୍ଷପରି ବିଶ୍ୱାସ କରିବା ଏବଂ ସେସବୁକୁ ପରମପୂଜ୍ୟ ଏବଂ ଉତ୍ତମ ବୋଲି ଭାବିବାକୁ **ଶ୍ରଦ୍ଧା** କୁହାଯାଏ। ଯାହାଙ୍କ ଠାରେ ଏପରି ଶ୍ରଦ୍ଧା ଥାଏ, **ଶ୍ରଦ୍ଧାବାନ୍** ହେଉଛି ତାଙ୍କର ବାଚକ। ଏଣୁ ଉପରୋକ୍ତ କଥନର ଭାବ ଏହି ଯେ, ଏପରି ଶ୍ରଦ୍ଧାବାନ୍ ପୁରୁଷ ଜ୍ଞାନୀ ମହାତ୍ମାମାନଙ୍କ ପାଖକୁ ଯାଇ ପ୍ରଣାମ, ସେବା ଏବଂ ବିନୟଯୁକ୍ତ ପ୍ରଶ୍ନ ଆଦି କରି ତାଙ୍କ ଠାରୁ ଉପଦେଶଗ୍ରହଣପୂର୍ବକ ଜ୍ଞାନଯୋଗ-ସାଧନାଦ୍ୱାରା ବା କର୍ମଯୋଗ ସାଧନାଦ୍ୱାରା ସେହି ତତ୍ତ୍ୱଜ୍ଞାନ ପାଇପାରନ୍ତି; ଶ୍ରଦ୍ଧାରହିତ ମନୁଷ୍ୟ ସେହି ଜ୍ଞାନପ୍ରାପ୍ତିର ପାତ୍ର ହୋଇପାରେ ନାହିଁ।

**ପ୍ରଶ୍ନ—** ବିନା ଶ୍ରଦ୍ଧାରେ ମଧ୍ୟ ମନୁଷ୍ୟ ମହାପୁରୁଷଙ୍କ ପାଖକୁ ଯାଇ ପ୍ରଣାମ, ସେବା ଏବଂ ପ୍ରଶ୍ନ କରିପାରିବ; ତେଣୁ ଜ୍ଞାନପ୍ରାପ୍ତିରେ ଶ୍ରଦ୍ଧାକୁ ପ୍ରାଧାନ୍ୟ ଦେବାର ଅଭିପ୍ରାୟ କଣ ?

**ଉତ୍ତର —** ବିନା ଶ୍ରଦ୍ଧାରେ ତାଙ୍କୁ ପରୀକ୍ଷା କରିବାକୁ, ନିଜର ପାଣ୍ଡିତ୍ୟ ଦେଖାଇବାକୁ ଏବଂ ମାନ-ପ୍ରତିଷ୍ଠା-ଉଦ୍ଦେଶ୍ୟରେ ବା ଦମ୍ଭାଚରଣହେତୁ ମଧ୍ୟ ମନୁଷ୍ୟ ମହାତ୍ମାଙ୍କ ନିକଟକୁ ଯାଇ ପ୍ରଣାମ, ସେବା ଓ ପ୍ରଶ୍ନ ଯେ କରିପାରିବ, ତାହା ସତ; କିନ୍ତୁ ତଦ୍ଦ୍ୱାରା ତାର ଜ୍ଞାନପ୍ରାପ୍ତି ହେବ ନାହିଁ; କାରଣ ବିନା-ଶ୍ରଦ୍ଧାରେ କରାଯାଇଥିବା ଯଜ୍ଞ, ଦାନ, ତପ ଆଦି ସମସ୍ତ ସାଧନା ବ୍ୟର୍ଥ ହୁଏ ବୋଲି କୁହାଯାଇଛି (୧୭/୨୮)। ତେଣୁ ଜ୍ଞାନପ୍ରାପ୍ତିନିମିତ୍ତ ଶ୍ରଦ୍ଧା ହିଁ ପ୍ରଧାନ କାରଣ। ଯେତେ ଅଧିକ ଶ୍ରଦ୍ଧାରେ ଜ୍ଞାନସାଧନା ଅନୁଷ୍ଠାନ କରାଯିବ, ସେତେ ଶୀଘ୍ର ସେହି ସାଧନା ଜ୍ଞାନ ପ୍ରକଟ କରିବାକୁ ସମର୍ଥ ହୋଇପାରିବ।

**ପ୍ରଶ୍ନ —** ଜ୍ଞାନପ୍ରାପ୍ତିରେ ଯଦି ଶ୍ରଦ୍ଧାର ପ୍ରଧାନତା ରହିଛି, ତେବେ ଏଠାରେ **ଶ୍ରଦ୍ଧାବାନ୍** ସହିତ **ତତ୍ପରଃ** ବିଶେଷଣ ଦେବାର କଣ ଆବଶ୍ୟକତା ଥିଲା ?

**ଉତ୍ତର —** ସାଧନାର ତତ୍ପରତାରେ ଶ୍ରଦ୍ଧା ହିଁ କାରଣ ଏବଂ ତତ୍ପରତା ହେଉଛି ଶ୍ରଦ୍ଧାର କଷଟିପଥର। ଶ୍ରଦ୍ଧାର ଅଭାବ ହେଲେ ସାଧନାରେ ଅକର୍ମଣ୍ୟତା ଓ ଆଳସ୍ୟ ଆଦି ଦୋଷ ଆସିଯାଏ; ସାଧନା-ଅଭ୍ୟାସ ତତ୍ପରତାର ସହିତ ହୋଇପାରେ ନାହିଁ। ଶ୍ରଦ୍ଧାର ତତ୍ତ୍ୱ ଜାଣି ନ ଥିବା ସାଧକ ନିଜର ସାମାନ୍ୟମାତ୍ର ଶ୍ରଦ୍ଧାକୁ ବହୁତ ବେଶୀ ମନେ କରେ, କିନ୍ତୁ ତଦ୍ଦ୍ୱାରା କାର୍ଯ୍ୟସିଦ୍ଧି ହୁଏ ନାହିଁ; ତେଣୁ ସେ ନିଜର ସାଧନାରେ ତତ୍ପରତାର ଅଭାବ ଥିବା ଲକ୍ଷ୍ୟ କରି ନ ପାରି ଭାବେ ଯେ, ଶ୍ରଦ୍ଧା ଥିଲେ ମଧ୍ୟ ଭଗବତ୍ପ୍ରାପ୍ତି ହୁଏ ନାହିଁ। କିନ୍ତୁ ସେପରି ଭାବିବା ତା'ର ଭୁଲ୍। ବାସ୍ତବ କଥା ଏହି ଯେ, ସାଧନାରେ ଯେତିକି ଶ୍ରଦ୍ଧା ହୁଏ, ସେତିକି ତତ୍ପରତା ମଧ୍ୟ ହୁଏ। ମନୁଷ୍ୟର ଧନରେ ପ୍ରେମ ଥିବାରୁ, ସେ ବେପାର କରେ। ଯଦି ତାହାର ବିଶ୍ୱାସ ହୋଇଯାଏ ଯେ, ସେହି ବେପାରରେ ତାକୁ ଧନ ମିଳିବ, ତେବେ ସେ ସେହି ବେପାରରେ ଏପରି ତତ୍ପର ହୋଇଯିବ ଯେ, ଖାଇବା-ପିଇବା, ଶୋଇବା, ଆରାମ କରିବା ଆଦିରେ ବ୍ୟତିକ୍ରମ ହେଲେ ମଧ୍ୟ, ଶାରୀରିକ କ୍ଳେଶ ହେଲେ ମଧ୍ୟ, ସେ ତାକୁ କଷ୍ଟ ବୋଲି ଭାବିବ ନାହିଁ; ବରଂ ଧନ-ବୃଦ୍ଧିରେ ତା'ର ଚିତ୍ତରେ ଉତ୍ତରୋତ୍ତର ପ୍ରସନ୍ନତା ହିଁ ଜାଗ୍ରତ ହେବ। ଏହିପରି ପ୍ରତ୍ୟେକ କାର୍ଯ୍ୟରେ ବିଶ୍ୱାସ ହିଁ ତତ୍ପରତା ଆଣିଦିଏ। ତେଣୁ ପରମାତ୍ମାଙ୍କର ଯେଉଁ ତତ୍ତ୍ୱଜ୍ଞାନ ପରମଶାନ୍ତି ଏବଂ ପରମ ଆନନ୍ଦଦାୟକ ଅଟେ, ନିତ୍ୟ ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ପ୍ରାପ୍ତିର ସାକ୍ଷାତ୍ ଦ୍ୱାର ଅଟେ, ସେଥିରେ ଏବଂ ତାହାର ସାଧନାରେ ଶ୍ରଦ୍ଧା ହେବା ପରେ ତହିଁରେ ଅତିଶୟ ତତ୍ପରତା ଆସିବା ସ୍ୱାଭାବିକ ହୋଇଯାଏ। ଯଦି ତତ୍ପରତାର ଅଭାବ ହୁଏ, ତେବେ ବୁଝିବାକୁ ହେବ ଯେ, ଶ୍ରଦ୍ଧାରେ ଅବଶ୍ୟ ଅଭାବ ରହିଛି। ଏହା ଜଣାଇଦେବାକୁ **ଶ୍ରଦ୍ଧାବାନ୍** ସହିତ **ତତ୍ପରଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ —** ଶ୍ରଦ୍ଧା ଏବଂ ତତ୍ପରତା ଉଭୟ ହେବା ପରେ ତ ଜ୍ଞାନପ୍ରାପ୍ତିରେ କୌଣସି ଶଙ୍କା ରହିବା କଥା ନୁହେଁ, ତା'ହେଲେ ଶ୍ରଦ୍ଧାବାନ୍ ସହିତ ଦ୍ୱିତୀୟ ବିଶେଷଣ **ସଂଯତେନ୍ଦ୍ରିୟଃ** ଦେବାର ଆବଶ୍ୟକତା କଣ ?

**ଉତ୍ତର —** ଶ୍ରଦ୍ଧାପୂର୍ବକ ତୀବ୍ର ଅଭ୍ୟାସ କଲେ ପାପ ନଷ୍ଟ ହୁଏ ଏବଂ ସଂସାରର ବିଷୟଭୋଗରେ ବୈରାଗ୍ୟ ଜାତ ହୋଇ ମନ ସହିତ ଇନ୍ଦ୍ରିୟମାନଙ୍କର ସଂଯମ ଯେ ହୋଇଯାଏ, ଏଥିରେ କୌଣସି ସନ୍ଦେହ ନାହିଁ; ତା'ସହିତ ପରମାତ୍ମାଙ୍କ ସ୍ୱରୂପର ଯଥାର୍ଥ ଜ୍ଞାନ ମଧ୍ୟ ହୋଇଯାଏ। କିନ୍ତୁ ଏହାର ରହସ୍ୟ ଜାଣି ନ ଥିବା ସାଧକ ସାମାନ୍ୟ ଟିକିଏ ଅଭ୍ୟାସ କରିଦେଇ ଯଥେଷ୍ଟ ଅଭ୍ୟାସ ହୋଇଗଲା ବୋଲି ଧରିନିଏ। ତଦ୍ଦ୍ୱାରା କାର୍ଯ୍ୟ ସିଦ୍ଧ ହୁଏ ନାହିଁ; ତେଣୁ ସେ ନିରାଶ ହୋଇ ତାହା ଛାଡିଦେଇ ବସିଯାଏ। ଅତଏବ ସାଧକଙ୍କୁ ସାବଧାନ କରିବାପାଇଁ **ସଂଯତେନ୍ଦ୍ରିୟଃ** ବିଶେଷଣ ଦେଇ କୁହାଯାଇଛି, ଯେପର୍ଯ୍ୟନ୍ତ ଇନ୍ଦ୍ରିୟ ଏବଂ ମନ ନିଜର ବଶରେ ଆସି ନ ଥାନ୍ତି, ସେପର୍ଯ୍ୟନ୍ତ ଶ୍ରଦ୍ଧାପୂର୍ବକ କଟିବଦ୍ଧ ହୋଇ ଉତ୍ତରୋତ୍ତର ତୀବ୍ର ଅଭ୍ୟାସ କରିଚାଲିବା ଆବଶ୍ୟକ; କାରଣ ଇନ୍ଦ୍ରିୟସଂଯମ ହିଁ ଶ୍ରଦ୍ଧାପୂର୍ବକ ତୀବ୍ର ଅଭ୍ୟାସର କଷଟିପଥର। ଶ୍ରଦ୍ଧାପୂର୍ଣ୍ଣଭାବରେ ଯେତିକି ତୀବ୍ର ଅଭ୍ୟାସ କରାଯିବ, ସେତିକି ଉତ୍ତରୋତ୍ତର ଇନ୍ଦ୍ରିୟସଂଯମ ହୋଇପାରିବ। ଏଣୁ ଇନ୍ଦ୍ରିୟସଂଯମ ଯେତିକି କମ୍ ହେବ, ସାଧନା ସେତିକି କମ୍ ହୋଇଛି ବୋଲି ବୁଝିବାକୁ ହେବ ଏବଂ ସାଧନା ଯେତେ କମ୍ ହେବ, ଶ୍ରଦ୍ଧାରେ ସେତେ ତ୍ରୁଟି ଅଛି ବୋଲି ବୁଝିବାକୁ ହେବ। ଏହି କଥା ଜାଣିବାପାଇଁ **ସଂଯତେନ୍ଦ୍ରିୟଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ —** 'ଜ୍ଞାନ ପାଇ ସେ ଅଚିରମେ ତତ୍କାଳ ହିଁ ଭଗବତ୍ପ୍ରାପ୍ତିରୂପକ ପରମ ଶାନ୍ତି ପାଇଯା'ନ୍ତି'— ଏପରି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେପରି ସୂର୍ଯ୍ୟୋଦୟ ହେବା ସଙ୍ଗେ ସଙ୍ଗେ ଅନ୍ଧକାର ଦୂର ହୋଇଯାଏ ଏବଂ ସବୁ ପଦାର୍ଥ ପ୍ରତ୍ୟକ୍ଷ ଦେଖାଯାଏ, ସେହିପରି ପରମାତ୍ମତତ୍ତ୍ୱର ଜ୍ଞାନ ହୋଇଯିବାକ୍ଷଣି ଅଜ୍ଞାନ-ନାଶ ହୋଇ ପରମାତ୍ମାଙ୍କ ସ୍ୱରୂପ ପ୍ରାପ୍ତ ହୋଇଯାଏ (୫/୧୬)। ଅଭିପ୍ରାୟ ଏହି ଯେ, ଅଜ୍ଞାନ ଏବଂ ତାହାର କାର୍ଯ୍ୟରୂପକ ବାସନାମାନଙ୍କ ସହିତ ରାଗ-ଦ୍ୱେଷ, ହର୍ଷ-ଶୋକ ଆଦି ବିକାରମାନଙ୍କର ତଥା ଶୁଭାଶୁଭ କର୍ମ ସମ୍ପୂର୍ଣ୍ଣ ଲୋପ ହେବା ସଙ୍ଗେ ସଙ୍ଗେ ପରମାତ୍ମାଙ୍କ ତତ୍ତ୍ୱଜ୍ଞାନ ଏବଂ ପରମାତ୍ମାଙ୍କ ସ୍ୱରୂପପ୍ରାପ୍ତି ଏକ ସମୟରେ ହୋଇଯାଏ। ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କର ସାକ୍ଷାତ୍‌ପ୍ରାପ୍ତିକୁ ହିଁ ଏଠାରେ 'ପରମ ଶାନ୍ତି' କୁହାଯାଇଛି।

**ସମ୍ବନ୍ଧ –** ଶ୍ରଦ୍ଧାବାନ୍‌ଙ୍କୁ ଜ୍ଞାନପ୍ରାପ୍ତି ହୁଏ ଏବଂ ଜ୍ଞାନଦ୍ୱାରା ପରମ ଶାନ୍ତି ପ୍ରାପ୍ତ ହୁଏ ବୋଲି କହି ଭଗବାନ୍ ବର୍ତ୍ତମାନ ଶ୍ରଦ୍ଧାହୀନ ଓ ବିବେକହୀନ ସଂଶୟାତ୍ମାମାନଙ୍କର ନିନ୍ଦା କରୁଛନ୍ତି–

**ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମା ବିନଶ୍ୟତି ।**
**ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ ।। ୪୦ ।।**

**ଅନ୍ୱୟ –** **ଅଜ୍ଞଃ** = ବିବେକହୀନ; **ଚ** = ଏବଂ; **ଅଶ୍ରଦ୍ଦଧାନଃ** = ଶ୍ରଦ୍ଧାରହିତ; **ସଂଶୟାତ୍ମା** = ସଂଶୟଯୁକ୍ତ ମନୁଷ୍ୟ; **ବିନଶ୍ୟତି** = ପରମାର୍ଥରୁ ଅବଶ୍ୟ ଭ୍ରଷ୍ଟ ହୋଇଯାଏ; **ସଂଶୟାତ୍ମନଃ** = (ଏପରି) ସଂଶୟଯୁକ୍ତ ମନୁଷ୍ୟପାଇଁ; **ନ** = ନା; **ଅୟମ୍** = ଏହି; **ଲୋକଃ** = ଲୋକ; **ଅସ୍ତି** = ଅଛି; **ନ** = ନା; **ପରଃ** = ପରଲୋକ ଅଛି; **ଚ** = ଏବଂ; **ନ**, **ସୁଖମ୍** = ନା ସୁଖ।

**ବିବେକହୀନ, ଶ୍ରଦ୍ଧାରହିତ ଏବଂ ସଂଶୟଯୁକ୍ତ ମନୁଷ୍ୟ ପରମାର୍ଥରୁ ଅବଶ୍ୟ ଭ୍ରଷ୍ଟ ହୋଇଯାଏ। ଏପରି ସଂଶୟଯୁକ୍ତ ମନୁଷ୍ୟପାଇଁ ଇହଲୋକ ନାହିଁ, କି ପରଲୋକ ନାହିଁ, କି ସୁଖ ମଧ ନାହିଁ।। ୪୦ ।।**

**ପ୍ରଶ୍ନ –** **ଅଜ୍ଞଃ** ଏବଂ **ଅଶ୍ରଦ୍ଦଧାନଃ** ଏହି ଦୁଇ ବିଶେଷଣ ସହିତ **ସଂଶୟାତ୍ମା** ପଦ କେଉଁ ମନୁଷ୍ୟର ବାଚକ ଏବଂ 'ସେ ପରମାର୍ଥରୁ ନିଶ୍ଚୟ ଭ୍ରଷ୍ଟ ହୋଇଯାଏ' – ଏହି ବକ୍ତବ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଠାରେ ସତ୍ୟ-ଅସତ୍ୟ ଏବଂ ଆତ୍ମ-ଅନାତ୍ମ ପଦାର୍ଥକୁ ବିବେଚନା କରିବାର ଶକ୍ତି ନାହିଁ, ପୁଣି ସେହି କାରଣରୁ ଯେ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଆଦି ନିର୍ଣ୍ଣୟ କରିପାରେ ନାହିଁ, ଏଠାରେ **ଅଜ୍ଞଃ** ପଦଟି ହେଉଛି ସେପରି ବିବେକଜ୍ଞାନରହିତ ମନୁଷ୍ୟର ବାଚକ। ଯାହାର ଈଶ୍ୱରଙ୍କ ଠାରେ ଓ ପରଲୋକରେ, ଉଭୟଙ୍କ ପ୍ରାପ୍ତିର ଉପାୟ ନିର୍ଦ୍ଦେଶ କରୁଥିବା ଶାସ୍ତ୍ରରେ, ମହାପୁରୁଷମାନଙ୍କ ଠାରେ ଏବଂ ସେମାନଙ୍କ ଦ୍ୱାରା କୁହାଯାଇଥିବା ସାଧନାରେ ଓ ତାହାର ଫଳରେ ଶ୍ରଦ୍ଧା ନ ଥାଏ, **ଅଶ୍ରଦ୍ଦଧାନଃ** ପଦଟି ହେଉଛି ତାହାର ବାଚକ। ଈଶ୍ୱର ଓ ପରଲୋକ ବିଷୟରେ ବା ଅନ୍ୟ ବିଷୟରେ ଯେ କିଛି ବି ନିଶ୍ଚିତ କରିପାରେ ନାହିଁ, ଯେ ପ୍ରତ୍ୟେକ ବିଷୟରେ ସଂଶୟଯୁକ୍ତ ହୋଇ ରହେ, **ସଂଶୟାତ୍ମା** ହେଉଛି ତାହାର ବାଚକ। ଯେଉଁ ସଂଶୟାତ୍ମା ମନୁଷ୍ୟଠାରେ ଉପରୋକ୍ତ ଅଜ୍ଞତା ଏବଂ ଅଶ୍ରଦ୍ଧା ଉଭୟ ଦୋଷ ଥାଏ, **ଅଜ୍ଞଃ** ଓ **ଅଶ୍ରଦ୍ଦଧାନଃ** ଦୁଇ ବିଶେଷଣ ସହିତ **ସଂଶୟାତ୍ମା** ପଦଟି ହେଉଛି ତାହାର ବାଚକ। 'ସେ ପରମାର୍ଥରୁ ନିଶ୍ଚୟ ଭ୍ରଷ୍ଟ ହୋଇଯାଏ'– ଏହି କଥନଦ୍ୱାରା ଦେଖାଇଦିଆଯାଇଛି ଯେ, ବେଦ-ଶାସ୍ତ୍ର ଏବଂ ମହାପୁରୁଷମାନଙ୍କ ବଚନକୁ ତଥା ସେମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ସାଧନାକୁ ଠିକ୍ ଠିକ୍ ବୁଝି ନ ପାରିବାରୁ ତଥା ଯାହା କିଛି ବୁଝେ, ତାହା ଉପରେ ମଧ ବିଶ୍ୱାସ ନ ହେବାରୁ ଯାହାର ବିଭିନ୍ନ ବିଷୟରେ ସଂଶୟ ରହିଥାଏ ଏବଂ ଯେ କୌଣସିପ୍ରକାରେ ନିଜର କର୍ତ୍ତବ୍ୟ ନିଶ୍ଚୟ କରିପାରେ ନାହିଁ, ସବୁ ଅବସ୍ଥାରେ ସଂଶୟଯୁକ୍ତ ହୋଇ ରହେ, ସେହି ମନୁଷ୍ୟ ନିଜର ମନୁଷ୍ୟଜୀବନକୁ ବ୍ୟର୍ଥ କରିଦିଏ ତଥା ଏହି ଜନ୍ମରେ ହୋଇପାରୁଥିବା ପରମଲାଭରୁ ବଞ୍ଚିତ ହୋଇ ରହିଯାଏ। କିନ୍ତୁ ଯାହାଙ୍କ ଠାରେ ବିଭିନ୍ନ ବିଷୟରେ ସ୍ୱୟଂ ବିବେଚନା କରିବାର ଶକ୍ତି ଥାଏ ଏବଂ ଯାହାଙ୍କର ବେଦ-ଶାସ୍ତ୍ର ଏବଂ ମହାପୁରୁଷମାନଙ୍କ ବଚନରେ ଶ୍ରଦ୍ଧା ଥାଏ, ସେ ଏହିପରି ନଷ୍ଟ ହୁଅନ୍ତି ନାହିଁ; ସେ ସେମାନଙ୍କ ସହାୟତାରେ ଅର୍ଜୁନଙ୍କ ପରି ସର୍ବଥା ନିଜର ସଂଶୟ

ନାଶ କରି କର୍ତ୍ତବ୍ୟପରାୟଣ ହୋଇପାରନ୍ତି ଏବଂ କୃତକୃତ୍ୟ ହୋଇ ମନୁଷ୍ୟଜୀବନକୁ ସଫଳ କରିପାରନ୍ତି । ଯାହାଠାରେ ସ୍ୱୟଂ ବିବେଚନା କରିବାର ଶକ୍ତି ନାହିଁ, ସେପରି ଅଜ୍ଞ ପୁରୁଷ ମଧ୍ୟ ଯଦି ଶ୍ରଦ୍ଧାଳୁ ହୋଇ ଏବଂ ସେହି ଶ୍ରଦ୍ଧାହେତୁ ମହାପୁରୁଷମାନଙ୍କ କଥାନୁସାରେ ସଂଶୟରହିତ ହୋଇ ସାଧନାପରାୟଣ ହୋଇପାରେ, ତେବେ ସେମାନଙ୍କ କୃପାରୁ ତାହାର ମଧ୍ୟ କଲ୍ୟାଣ ହୋଇପାରେ (୧୩/୨୫) । କିନ୍ତୁ ଯେଉଁ ସଂଶୟଯୁକ୍ତ ପୁରୁଷଠାରେ ଶ୍ରଦ୍ଧା ନ ଥାଏ, କି ବିବେକଶକ୍ତି ନ ଥାଏ, ତାହାର ସଂଶୟର ବିନାଶ କୌଣସିପ୍ରକାରେ ହୋଇପାରେ ନାହିଁ । ତେଣୁ ଯଦି ତା'ଠାରେ ଶ୍ରଦ୍ଧା ବା ବିବେକ ନ ଆସେ, ତା'ର ନିଶ୍ଚୟ ପତନ ହୁଏ ।

**ପ୍ରଶ୍ନ**— 'ସଂଶୟଯୁକ୍ତ ମନୁଷ୍ୟପାଇଁ ଇହଲୋକ ନାହିଁ, କି ପରଲୋକ ନାହିଁ, କି ସୁଖ ମଧ୍ୟ ନାହିଁ—ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର**— ଏଠାରେ ଅଭିପ୍ରାୟ ଏହି ଯେ, ସଂଶୟଯୁକ୍ତ ମନୁଷ୍ୟ ଯେ କେବଳ ପରମାର୍ଥରୁ ଭ୍ରଷ୍ଟ ହୋଇଯାଏ, ତାହା ନୁହେଁ, ଯେପର୍ଯ୍ୟନ୍ତ ମନୁଷ୍ୟଠାରେ ସଂଶୟ ବିଦ୍ୟମାନ ରହେ, ଯେପର୍ଯ୍ୟନ୍ତ ସେ ତାହା ନାଶ ନ କରେ, ସେପର୍ଯ୍ୟନ୍ତ ସେ ଏହି ଲୋକରେ ବି ମଧ୍ୟ ଧନ, ଐଶ୍ୱର୍ଯ୍ୟ ବା ଯଶ ପାଇପାରେ ନାହିଁ; ପରଲୋକରେ ବା ମରିବା ପରେ ମଧ୍ୟ ସ୍ୱର୍ଗାଦି ପାଇପାରେ ନାହିଁ ଏବଂ କୌଣସିପ୍ରକାର ସାଂସାରିକ ସୁଖ ମଧ୍ୟ ଭୋଗ କରିପାରେ ନାହିଁ; କାରଣ ଯେପର୍ଯ୍ୟନ୍ତ ମନୁଷ୍ୟ କୌଣସି ବିଷୟରେ ସଂଶୟଯୁକ୍ତ ହୋଇ ରହେ, କିଛି ନିଶ୍ଚୟ କରିପାରେ ନାହିଁ, ସେପର୍ଯ୍ୟନ୍ତ ସେ ସେହି ବିଷୟରେ ସଫଳତା ପାଇପାରେ ନାହିଁ । ତେଣୁ ମନୁଷ୍ୟ ନିଜର ଶ୍ରଦ୍ଧା ଓ ବିବେକଦ୍ୱାରା ଏହି ସଂଶୟକୁ ଅବଶ୍ୟ ନାଶ କରିଦେବା ଉଚିତ ।

**ସମ୍ବନ୍ଧ**— *ଅବିବେକ ଓ ଅଶ୍ରଦ୍ଧା ସହିତ ସଂଶୟକୁ ଜ୍ଞାନପ୍ରାପ୍ତିରେ ବାଧକ ବୋଲି କହିଲେ । ବର୍ତ୍ତମାନ ବିବେକଦ୍ୱାରା ସଂଶୟନାଶପୂର୍ବକ କର୍ମଯୋଗ ଅନୁଷ୍ଠାନ କରିବାରେ ଅର୍ଜୁନଙ୍କର ଉତ୍ସାହ ଉତ୍ପନ୍ନ କରିବା ନିମନ୍ତେ ସଂଶୟରହିତ ତଥା ବଶୀକୃତ-ଅନ୍ତଃକରଣସମ୍ପନ୍ନ କର୍ମଯୋଗୀଙ୍କର ପ୍ରଶଂସା କରୁଛନ୍ତି—*

**ଯୋଗସଂନ୍ୟସ୍ତକର୍ମାଣଂ ଜ୍ଞାନସଂଛିନ୍ନସଂଶୟମ୍ ।**
**ଆତ୍ମବନ୍ତଂ ନ କର୍ମାଣି ନିବଧ୍ନନ୍ତି ଧନଞ୍ଜୟ ॥ ୪୧ ॥**

**ଅନ୍ୱୟ**— **ଧନଞ୍ଜୟ** = ହେ ଧନଞ୍ଜୟ ! **ଯୋଗସଂନ୍ୟସ୍ତକର୍ମାଣମ୍** = ଯେ କର୍ମଯୋଗବିଧିରେ ସମସ୍ତ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରିଦେଇଛନ୍ତି, ତାଙ୍କୁ (ଏବଂ); **ଜ୍ଞାନସଂଛିନ୍ନସଂଶୟମ୍** = ଯେ ବିବେକଦ୍ୱାରା ସମସ୍ତ ସଂଶୟ ନାଶ କରିଦେଇଛନ୍ତି, ତାଙ୍କୁ (ସେପରି); **ଆତ୍ମବନ୍ତମ୍** = ଯାହାଙ୍କର ଅନ୍ତଃକରଣ ବଶୀକୃତ, ତାଙ୍କୁ; **କର୍ମାଣି** = କର୍ମମାନେ; **ନ, ନିବଧ୍ନନ୍ତି** = ବାନ୍ଧିପାରନ୍ତି ନାହିଁ ।

**ହେ ଧନଞ୍ଜୟ ! ଯେ କର୍ମଯୋଗବିଧିରେ ସମସ୍ତ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରିଦେଇଛନ୍ତି ଏବଂ ଯେ ବିବେକଦ୍ୱାରା ସମସ୍ତ ସଂଶୟ ନାଶ କରିଦେଇଛନ୍ତି, ସେପରି ବଶୀକୃତ ଅନ୍ତଃକରଣଯୁକ୍ତ ପୁରୁଷଙ୍କୁ କର୍ମମାନେ ବାନ୍ଧିପାରନ୍ତି ନାହିଁ ॥ ୪୧ ॥**

**ପ୍ରଶ୍ନ**— **ଯୋଗସଂନ୍ୟସ୍ତକର୍ମାଣମ୍** ପଦରେ 'ଯୋଗ' ଶବ୍ଦର ଅର୍ଥ ଜ୍ଞାନଯୋଗ ବୋଲି ଧରି ଏହି ପଦର ଅର୍ଥ 'ଜ୍ଞାନଯୋଗଦ୍ୱାରା ଶାସ୍ତ୍ରବିହିତ ସମସ୍ତ କର୍ମ ସ୍ୱରୂପତଃ ତ୍ୟାଗ କରିଥିବା ଲୋକ' ବୋଲି ଧରିନେଲେ ଆପତ୍ତି କଣ ?

**ଉତ୍ତର**— ଏଠାରେ ସ୍ୱରୂପତଃ କର୍ମତ୍ୟାଗର ପ୍ରକରଣ ନାହିଁ । ଏହି ଶ୍ଳୋକରେ 'ଯୋଗଦ୍ୱାରା କର୍ମମାନଙ୍କୁ ଅର୍ପଣ କରିଥିବା ମନୁଷ୍ୟଙ୍କୁ କର୍ମ ବାନ୍ଧିପାରେ ନାହିଁ,' ବୋଲି ଯାହା କୁହାଯାଇଛି, ତାହାକୁ ଲକ୍ଷ୍ୟ କରି ପରବର୍ତ୍ତୀ ଶ୍ଳୋକରେ **ତସ୍ମାତ୍** ପଦଦ୍ୱାରା ଅର୍ଜୁନଙ୍କୁ ଯୋଗରେ ଅବସ୍ଥିତ ହୋଇ ଯୁଦ୍ଧ କରିବାକୁ ଭଗବାନ୍ ଆଜ୍ଞା ଦେଇଛନ୍ତି । ଯଦି ଏହି ଶ୍ଳୋକର **ଯୋଗସଂନ୍ୟସ୍ତକର୍ମାଣମ୍** ପଦରେ ଭଗବାନ୍ ସ୍ୱରୂପତଃ କର୍ମତ୍ୟାଗର ଅଭିପ୍ରାୟ ରଖିଥାନ୍ତେ, ତେବେ ଅର୍ଜୁନଙ୍କୁ ସେପରି କହି ନ ଥାନ୍ତେ । ତେଣୁ ଏଠାରେ **ଯୋଗସଂନ୍ୟସ୍ତକର୍ମାଣମ୍**ର ଅର୍ଥ 'ସ୍ୱରୂପତଃ କର୍ମ ତ୍ୟାଗ କରିଦେଇଥିବା ଲୋକ' ବୋଲି ନ ଧରି

କର୍ମଯୋଗଦ୍ୱାରା ସମସ୍ତ କର୍ମରେ ଏବଂ ତାହାର ଫଳରେ ମମତ୍ୱ, ଆସକ୍ତି ଏବଂ କାମନା ସର୍ବଥା ତ୍ୟାଗ କରି ସେସବୁକୁ ପରମାତ୍ମାଙ୍କ ଠାରେ ଅର୍ପଣ କରିଦେଇଥିବା ତ୍ୟାଗୀ (୩/୩୦,୫/୧୦) ବୋଲି ଧରିବା ହିଁ ଉଚିତ। ପ୍ରକରଣ ଅନୁସାରେ ଉକ୍ତ ପଦର ଅର୍ଥ ଏହା ବୋଲି ହିଁ ଜଣାପଡ଼େ।

**ପ୍ରଶ୍ନ – ଜ୍ଞାନସଂଛିନ୍ନସଂଶୟମ୍** ପଦରେ **ଜ୍ଞାନ** ଶବ୍ଦର ଅର୍ଥ କଣ? ଗୀତାରେ 'ଜ୍ଞାନ' ଶବ୍ଦ କେଉଁ କେଉଁ ଶ୍ଳୋକରେ କେଉଁ କେଉଁ ଅର୍ଥରେ ବ୍ୟବହାର କରାଯାଇଛି?

**ଉତ୍ତର –** ଉପରୋକ୍ତ **ଜ୍ଞାନ** ଶବ୍ଦ ହେଉଛି ଯେକୌଣସି ବସ୍ତୁର ମଧ୍ୟ ସ୍ୱରୂପ ବିବେଚନ କରି ତଦ୍‌ବିଷୟକ ସଂଶୟ ନାଶ କରିଦେଉଥିବା ବିବେକଶକ୍ତିର ବାଚକ। **ଜ୍ଞା ଅବବୋଧନେ —** ଏହି ଧାତ୍ୱର୍ଥ ଅନୁସାରେ ଜ୍ଞାନର ଅର୍ଥ 'ଜାଣିବା'। ତେଣୁ ଗୀତାର ପ୍ରକରଣ ଅନୁସାରେ **ଜ୍ଞାନ** ଶବ୍ଦ ନିମ୍ନଲିଖିତ ପ୍ରକାରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି।

(କ) ଦ୍ୱାଦଶ ଅଧ୍ୟାୟର ବାର ଶ୍ଳୋକରେ ଜ୍ଞାନ ଅପେକ୍ଷା ଧ୍ୟାନ ଏବଂ ଧ୍ୟାନ ଅପେକ୍ଷା କର୍ମଫଳତ୍ୟାଗକୁ ଶ୍ରେଷ୍ଠ ବୋଲି କୁହାଯାଇଛି। ତେଣୁ ସେଠାରେ ଜ୍ଞାନର ଅର୍ଥ ଶାସ୍ତ୍ର ଏବଂ ଶ୍ରେଷ୍ଠ ପୁରୁଷମାନଙ୍କ ଠାରୁ ମିଳୁଥିବା ବିବେକଜ୍ଞାନ।

(ଖ) ତ୍ରୟୋଦଶ ଅଧ୍ୟାୟର ସତର ଶ୍ଳୋକରେ ଜ୍ଞେୟର ବର୍ଣ୍ଣନାରେ ବିଶେଷଣରୂପରେ 'ଜ୍ଞାନ' ଶବ୍ଦ ଆସେ। ଏଣୁ ସେଠାରେ ଜ୍ଞାନର ଅର୍ଥ ହେଉଛି ପରମେଶ୍ୱରଙ୍କ ନିତ୍ୟବିଜ୍ଞାନାନନ୍ଦଘନ ସ୍ୱରୂପ।

(ଗ) ଅଷ୍ଟାଦଶ ଅଧ୍ୟାୟର ବୟାଳିଶ ଶ୍ଳୋକରେ ବ୍ରାହ୍ମଣଙ୍କ ସ୍ୱାଭାବିକ କର୍ମର ଗଣନାରେ 'ଜ୍ଞାନ' ଶବ୍ଦ ଆସିଛି; ସେଠାରେ ଜ୍ଞାନର ଅର୍ଥ ଶାସ୍ତ୍ର-ଅଧ୍ୟୟନ-ଅଧ୍ୟାପନ ବୋଲି ମାନି ନିଆଯାଇଛି।

(ଘ) ଏହି ଅଧ୍ୟାୟର ଛତିଶଠାରୁ ଅଣଚାଳିଶ ଶ୍ଳୋକପର୍ଯ୍ୟନ୍ତ ଆସିଥିବା ସମସ୍ତ 'ଜ୍ଞାନ' ଶବ୍ଦର ଅର୍ଥ ହେଉଛି ପରମାତ୍ମାଙ୍କର ତତ୍ତ୍ୱଜ୍ଞାନ; କାରଣ ଜ୍ଞାନ ସମସ୍ତ କର୍ମ ଭସ୍ମ କରିଦେବାକୁ ସମର୍ଥ, ସମସ୍ତ ପାପରୁ ମୁକ୍ତ କରିଦେବାକୁ ସମର୍ଥ, ସବୁଠାରୁ ବଳି ପବିତ୍ର, ଯୋଗସିଦ୍ଧିର ଫଳ ଏବଂ ପରମଶାନ୍ତିର କାରଣ ବୋଲି କୁହାଯାଇଛି। ଏହିପରି ପଞ୍ଚମ ଅଧ୍ୟାୟର ଷୋହଳ ଶ୍ଳୋକରେ ପରମାତ୍ମାଙ୍କ ସ୍ୱରୂପକୁ ସାକ୍ଷାତ୍କାର କରାଉଥିବା ଏବଂ ଚତୁର୍ଦ୍ଦଶ ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଶ୍ରେଷ୍ଠତମ ଜ୍ଞାନ ବୋଲି କୁହାଯାଉଥିବାରୁ ଜ୍ଞାନର ଅର୍ଥ ତତ୍ତ୍ୱଜ୍ଞାନ। ଅନ୍ୟ ସ୍ଥାନରେ ମଧ୍ୟ ପ୍ରସଙ୍ଗାନୁସାରେ ଏପରି ଅର୍ଥ ବୁଝିବା ଉଚିତ।

(ଙ) ଅଷ୍ଟାଦଶ ଅଧ୍ୟାୟର ଏକୋଇଶ ଶ୍ଳୋକରେ ଜ୍ଞାନ ନାନା ବସ୍ତୁ ତଥା ଜୀବମାନଙ୍କୁ ଭିନ୍ନ ଭିନ୍ନ ବୁଝିବାର ଦ୍ୱାର ହୋଇଥିବାରୁ, ସେଠାରେ ଜ୍ଞାନ ଶବ୍ଦର ଅର୍ଥ ହେଉଛି ରାଜସ ଜ୍ଞାନ।

(ଚ) ତ୍ରୟୋଦଶ ଅଧ୍ୟାୟର ଏଗାର ଶ୍ଳୋକରେ ତତ୍ତ୍ୱଜ୍ଞାନର ସାଧନାସମୁଦାୟର ନାମ 'ଜ୍ଞାନ'।

(ଛ) ତୃତୀୟ ଅଧ୍ୟାୟର ତୃତୀୟ ଶ୍ଳୋକରେ 'ଯୋଗ' ଶବ୍ଦ ସହିତ ରହିଥିବାରୁ 'ଜ୍ଞାନ' ଶବ୍ଦର ଅର୍ଥ ଜ୍ଞାନଯୋଗ ଅର୍ଥାତ୍ ସାଂଖ୍ୟଯୋଗ।

ଏହିପରି ଅନ୍ୟ ସ୍ଥାନରେ ମଧ୍ୟ ପ୍ରସଙ୍ଗାନୁସାରେ **ଜ୍ଞାନ** ଶବ୍ଦ ସାଂଖ୍ୟଯୋଗର ଅର୍ଥରେ ଆସେ। ଆହୁରି ମଧ୍ୟ ବହୁ ସ୍ଥାନରେ ପ୍ରସଙ୍ଗାନୁସାରେ **ଜ୍ଞାନ** ଶବ୍ଦର ପ୍ରୟୋଗ ବିଭିନ୍ନ ଅର୍ଥରେ ହୋଇଛି; ତାହା ସେଠାରେ ଦେଖିବା ଉଚିତ।

**ପ୍ରଶ୍ନ – ଜ୍ଞାନସଂଛିନ୍ନସଂଶୟମ୍** ପଦରେ **ଜ୍ଞାନ** ଶବ୍ଦର ଅର୍ଥ ଯଦି **ତତ୍ତ୍ୱଜ୍ଞାନ** ବୋଲି ମାନିନିଆଯାଏ, ତେବେ କ୍ଷତି କଣ?

**ଉତ୍ତର –** ତତ୍ତ୍ୱଜ୍ଞାନ ପାଇବା ପରେ ସମସ୍ତ ସଂଶୟ ସମୂଳେ ନାଶ ହୋଇ ତତ୍କାଳ ହିଁ ପରମାତ୍ମପ୍ରାପ୍ତି ହୋଇଯାଏ; ପରମାତ୍ମପ୍ରାପ୍ତିନିମିତ୍ତ ଅନ୍ୟ କୌଣସି ସାଧନାର ଆବଶ୍ୟକତା ରହେ ନାହିଁ। ତେଣୁ ଏଠାରେ ଜ୍ଞାନର ଅର୍ଥ ତତ୍ତ୍ୱଜ୍ଞାନ ବୋଲି ମାନିବା ଠିକ୍ ନୁହେଁ; କାରଣ ତତ୍ତ୍ୱଜ୍ଞାନ କର୍ମଯୋଗର ଫଳ ଏବଂ ଏହାର ପର ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ଜ୍ଞାନଦ୍ୱାରା ଅଜ୍ଞାନଜନିତ ସଂଶୟ ନାଶ କରି କର୍ମଯୋଗରେ ଅବସ୍ଥିତ ହେବାକୁ କହିଛନ୍ତି। ତେଣୁ ଏଠାରେ ଯେପରି ଅର୍ଥ କରାଯାଇଛି, ତାହା ଠିକ୍ ଜଣାଯାଉଛି।

**ପ୍ରଶ୍ନ –** ବିବେକଜ୍ଞାନଦ୍ୱାରା ସମସ୍ତ ସଂଶୟ ନାଶ କରିଦେବାର ଅର୍ଥ କଣ?

**ଉତ୍ତର –** ଈଶ୍ୱର ଅଛନ୍ତି କି ନାହିଁ? ଯଦି ଅଛନ୍ତି, ତେବେ କିପରି ଅଛନ୍ତି? ପରଲୋକ ଅଛି, ନା ନାହିଁ? ଯଦି ଅଛି, ତେବେ ତାହା କିପରି ଓ କେଉଁଠାରେ ଅଛି? ଶରୀର, ଇନ୍ଦ୍ରିୟ, ମନ ଏବଂ ବୁଦ୍ଧି ଏସବୁ

ଆତ୍ମା, ନା ଆତ୍ମାଠାରୁ ଭିନ୍ନ? ଜଡ଼, ନା ଚେତନ? ବ୍ୟାପକ, ନା ଏକଦେଶୀୟ? କର୍ତ୍ତା ଓ ଭୋକ୍ତା ଜୀବାତ୍ମା ନା ପ୍ରକୃତି? ଆତ୍ମା ଏକ, ନା ଅନେକ? ଯଦି ଏକ, ତେବେ କିପରି? ଏବଂ ଯଦି ଅନେକ, ତେବେ ମଧ୍ୟ କିପରି? ଜୀବ ସ୍ୱତନ୍ତ୍ର, ନା ପରତନ୍ତ୍ର? ଯଦି ପରତନ୍ତ୍ର, ତେବେ କିପରି? ଏବଂ କାହାର ପରତନ୍ତ୍ର? କର୍ମବନ୍ଧନରୁ ମୁକ୍ତ ହେବାପାଇଁ କର୍ମକୁ ସ୍ୱରୂପତଃ ଛାଡ଼ିଦେବା ଠିକ୍, ନା କର୍ମଯୋଗ ଅନୁସାରେ ତାହା କରିବା ଠିକ୍? ନା ସାଂଖ୍ୟଯୋଗ ଅନୁସାରେ ସାଧନା କରିବା ଠିକ୍? ଇତ୍ୟାଦି ଇତ୍ୟାଦି ଯେଉଁ ବିଭିନ୍ନପ୍ରକାର ଶଙ୍କା ତର୍କଶୀଳ ମନୁଷ୍ୟମାନଙ୍କ ଅନ୍ତଃକରଣରେ ଉଠେ, ତାହାର ନାମ **ସଂଶୟ**।

ଏହିସବୁ ଶଙ୍କାମାନଙ୍କୁ ବିବେକଜ୍ଞାନଦ୍ୱାରା ବିବେଚନା କରି ଏକ ନିଶ୍ଚୟ କରିନେବା ଅର୍ଥାତ୍ କୌଣସି ବିଷୟରେ ମଧ୍ୟ ସଂଶୟଯୁକ୍ତ ନ ରହିବା ଏବଂ ନିଜର କର୍ତ୍ତବ୍ୟ ନିର୍ଦ୍ଧାରଣ କରିନେବା ହିଁ ବିବେକଜ୍ଞାନଦ୍ୱାରା ସମସ୍ତ ଶଙ୍କା ନାଶ କରିଦେବା।

**ପ୍ରଶ୍ନ —** ଏଠାରେ **ଆତ୍ମବନ୍ତମ୍** ପଦର ଭାବ କଣ?

**ଉତ୍ତର —** ଆତ୍ମଶବ୍ଦବାଚ୍ୟ ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣ ଉପରେ ଯାହାଙ୍କର ପୂର୍ଣ୍ଣ ଅଧିକାର ରହିଛି, ଅର୍ଥାତ୍ ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ନିଜ ବଶରେ ଅଛନ୍ତି, ସେହି ମନୁଷ୍ୟଙ୍କ ପାଇଁ ଏଠାରେ **'ଆତ୍ମବନ୍ତମ୍'** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ —** ଉପର୍ଯ୍ୟୁକ୍ତ ବିଶେଷଣଯୁକ୍ତ ପୁରୁଷଙ୍କୁ କର୍ମ ବାନ୍ଧିପାରେ ନାହିଁ — ଏପରି କହିବାର ଭାବ କଣ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପର୍ଯ୍ୟୁକ୍ତ ପୁରୁଷଙ୍କର ଶାସ୍ତ୍ରବିହିତ କର୍ମମାନ ମମତ୍ୱ, ଆସକ୍ତି ଏବଂ କାମନାରୁ ସର୍ବଥା ରହିତ ହୁଏ; ତେଣୁ ସେହି କର୍ମମାନଙ୍କରେ ବନ୍ଧନ କରିବାର ଶକ୍ତି ରହେ ନାହିଁ।

*ସମ୍ବନ୍ଧ — ଏପରିଭାବରେ କର୍ମଯୋଗୀଙ୍କର ପ୍ରଶଂସା କଲେ। ବର୍ତ୍ତମାନ ଅର୍ଜୁନଙ୍କୁ କର୍ମଯୋଗରେ ଅବସ୍ଥିତ ହୋଇ ଯୁଦ୍ଧ କରିବାକୁ ଆଜ୍ଞା ଦେବା ସହିତ ଭଗବାନ୍ ଏହି ଅଧ୍ୟାୟର ଉପସଂହାର କରୁଛନ୍ତି—*

## ତସ୍ମାଦଜ୍ଞାନସଂଭୂତଂ ହୃତ୍ସ୍ଥଂ ଜ୍ଞାନାସିନାତ୍ମନଃ।
## ଛିତ୍ତ୍ୱୈନଂ ସଂଶୟଂ ଯୋଗମାତିଷ୍ଠୋତ୍ତିଷ୍ଠ ଭାରତ।। ୪୨ ।।

**ଅନ୍ୱୟ —** **ତସ୍ମାତ୍** = ତେଣୁ; **ଭାରତ** = ହେ ଭରତବଂଶୀୟ ଅର୍ଜୁନ! (ତୁମେ); **ହୃତ୍ସ୍ଥମ୍** = ହୃଦୟରେ ସ୍ଥିତ; **ଏନମ୍** = ଏହି; **ଅଜ୍ଞାନସମ୍ଭୂତମ୍** = ଅଜ୍ଞାନଜନିତ; **ଆତ୍ମନଃ** = ନିଜର; **ସଂଶୟମ୍** = ସଂଶୟକୁ; **ଜ୍ଞାନାସିନା** = ବିବେକଜ୍ଞାନରୂପକ ତରବାରିଦ୍ୱାରା; **ଛିତ୍ତ୍ୱା** = ଛେଦନ କରି; **ଯୋଗମ୍** = ସମତ୍ୱରୂପକ କର୍ମଯୋଗରେ; **ଆତିଷ୍ଠ** = ସ୍ଥିତ ହୋଇଯାଅ; **ଉତ୍ତିଷ୍ଠ** = (ଓ ଯୁଦ୍ଧପାଇଁ) ଠିଆ ହୋଇଯାଅ।

**ତେଣୁ ହେ ଭରତବଂଶୀୟ ଅର୍ଜୁନ! ତୁମେ ବିବେକଜ୍ଞାନରୂପକ ତରବାରିଦ୍ୱାରା ହୃଦୟରେ ରହିଥିବା ନିଜର ଅଜ୍ଞାନଜନିତ ସଂଶୟ ଛେଦନ କରି ସମତ୍ୱରୂପକ କର୍ମଯୋଗରେ ସ୍ଥିତ ହୁଅ ଏବଂ ଯୁଦ୍ଧପାଇଁ ଠିଆ ହୋଇଯାଅ।। ୪୨ ।।**

**ପ୍ରଶ୍ନ —** ଏଠାରେ **ତସ୍ମାତ୍** ପଦର ଭାବ କଣ?

**ଉତ୍ତର —** ହେତୁବାଚକ **ତସ୍ମାତ୍** ପଦ ପ୍ରୟୋଗ କରି ଭଗବାନ୍ ଅର୍ଜୁନଙ୍କୁ କର୍ମଯୋଗରେ ଅବସ୍ଥିତ ହେବାକୁ ଉତ୍ସାହିତ କରିଛନ୍ତି। ଅଭିପ୍ରାୟ ଏହି ଯେ, ପୂର୍ବଶ୍ଳୋକରେ ବର୍ଣ୍ଣିତ କର୍ମଯୋଗରେ ଅବସ୍ଥିତ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇଯାନ୍ତି। ତେଣୁ ଅର୍ଜୁନ ମଧ୍ୟ ସେପରି ହୋଇଯିବା ଉଚିତ।

**ପ୍ରଶ୍ନ —** **ଭାରତ** ସମ୍ବୋଧନର ତାତ୍ପର୍ଯ୍ୟ କଣ?

**ଉତ୍ତର —** **ଭାରତ** ସମ୍ବୋଧନଦ୍ୱାରା ଭଗବାନ୍ ରାଜର୍ଷି ଭରତଙ୍କ ଚରିତ୍ର ସ୍ମରଣ କରାଇଦେଇ ଦେଖାଇଛନ୍ତି, "ରାଜର୍ଷି ଭରତ ଅତ୍ୟନ୍ତ କର୍ମଠ, ସାଧନାପରାୟଣ ଓ ଉତ୍ସାହୀ ପୁରୁଷ ଥିଲେ। ତୁମେ ମଧ୍ୟ ତାହାଙ୍କ କୁଳରେ ଉତ୍ପନ୍ନ ହୋଇଛ; ଏଣୁ ତୁମେ ମଧ୍ୟ ତାହାଙ୍କ ପରି ବୀରତା, ଧୀରତା ଏବଂ ଗମ୍ଭୀରତାପୂର୍ବକ ନିଜର କର୍ତ୍ତବ୍ୟ ପାଳନ କରିବାକୁ ତତ୍ପର ହେବା ଉଚିତ।"

**ପ୍ରଶ୍ନ –** **ଏନମ୍** ପଦ ସହିତ **ସଂଶୟମ୍** ପଦ ଏଠାରେ କେଉଁ ସଂଶୟର ବାଚକ ଏବଂ ତାହା ସହିତ **ଅଜ୍ଞାନସମ୍ଭୂତମ୍** ଏବଂ **ହୃତ୍ସ୍ଥମ୍** ଏହି ଦୁଇ ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏକଚାଳିଶ ଶ୍ଳୋକରେ **ଜ୍ଞାନସଂଛିନ୍ନସଂଶୟଂ** ପଦରେ ଯେଉଁ ସଂଶୟର ଉଲ୍ଲେଖ ହୋଇଛି ତଥା ଯାହାର ସ୍ୱରୂପ ସେହି ଶ୍ଳୋକର ବ୍ୟାଖ୍ୟାରେ ବିସ୍ତାରିତଭାବରେ କରାଯାଇଛି, ଏଠାରେ **ଏନମ୍** ପଦ ସହିତ **ସଂଶୟମ୍** ପଦ ହେଉଛି ତାହାର ବାଚକ। ତାହା ସହିତ **ଅଜ୍ଞାନସମ୍ଭୂତମ୍** ବିଶେଷଣ ଦେଇ ଭଗବାନ୍ ଦେଖାଉଛନ୍ତି ଯେ, ଅବିବେକ ହିଁ ଏହି ସଂଶୟର କାରଣ। ତେଣୁ ବିବେକଦ୍ୱାରା ଅବିବେକର ନାଶ ହୋଇଯିବାମାତ୍ରେ ସଂଶୟ ମଧ୍ୟ ନାଶ ହୋଇଯିବ। **ହୃତ୍ସ୍ଥମ୍** ବିଶେଷଣ ଦେଇ ଦେଖାଉଛନ୍ତି ଯେ, ଏହାର ସ୍ଥାନ ହେଉଛି ହୃଦୟ ବା ଅନ୍ତଃକରଣ; ଏଣୁ ଯାହାଙ୍କର ଅନ୍ତଃକରଣ ନିଜ ବଶରେ ଅଛି, ତାଙ୍କ ପକ୍ଷରେ ଏହା ନାଶ କରିବା ସହଜ।

**ପ୍ରଶ୍ନ –** ଅର୍ଜୁନଙ୍କୁ ଏହି ସଂଶୟଛେଦନ କର ବୋଲି କହିବାର ଅଭିପ୍ରାୟ କଣ ? ଅର୍ଜୁନଙ୍କ ଅନ୍ତଃକରଣରେ କଣ ଏପରି ସଂଶୟ ଥିଲା ?

**ଉତ୍ତର –** ପ୍ରଥମେ ଯୁଦ୍ଧକୁ ଉଚିତ ବୋଲି ବୁଝି ହିଁ ଅର୍ଜୁନ ଲଢ଼ିବାପାଇଁ ପ୍ରସ୍ତୁତ ହୋଇ ରଣଭୂମିକୁ ଆସିଥିଲେ ଏବଂ ସେ ଭଗବାନଙ୍କୁ ଦୁଇସେନାଙ୍କ ମଧ୍ୟରେ ରଥ ସ୍ଥାପନ କରିବାକୁ କହିଥିଲେ। ପୁଣି ଯେତେବେଳେ ସେ ଦୁଇସେନାଙ୍କ ମଧ୍ୟରେ ଥିବା ନିଜର ବନ୍ଧୁବାନ୍ଧବମାନଙ୍କୁ ମରିବାପାଇଁ ପ୍ରସ୍ତୁତ ହୋଇଥିବାର ଦେଖିଲେ, ସେତେବେଳେ ସେ ମୋହହେତୁ ଚିନ୍ତାମଗ୍ନ ହୋଇଗଲେ ଏବଂ ଯୁଦ୍ଧକୁ ପାପକର୍ମ ବୋଲି ଭାବିବାକୁ ଲାଗିଲେ (୧/୨୮-୪୭)। ତା'ପରେ ଭଗବାନଙ୍କ ଦ୍ୱାରା ଯୁଦ୍ଧ କରିବାକୁ କୁହାଗଲେ ମଧ୍ୟ (୨/୩) ସେ ନିଜର କର୍ତ୍ତବ୍ୟ ନିଶ୍ଚୟ କରିପାରିଲେ ନାହିଁ ଏବଂ କିଂକର୍ତ୍ତବ୍ୟବିମୂଢ଼ ହୋଇ କହିବାକୁ ଲାଗିଲେ, "ମୁଁ ଗୁରୁଜନଙ୍କ ସହ କିପରି ଯୁଦ୍ଧ କରିବି (୨/୪)? ମୋ ପକ୍ଷରେ କଣ କରିବା ଶ୍ରେଷ୍ଠ ଏବଂ ଏହି ଯୁଦ୍ଧରେ କାହାର ବିଜୟ ହେବ, ତାହାର କିଛି ନିଶ୍ଚିତତା ନାହିଁ (୨/୬); ତେଣୁ ମୋ ପାଇଁ ଯାହା କଲ୍ୟାଣକର ହେବ, ତାହା ଆପଣ କହିଦିଅନ୍ତୁ; ମୋର ଚିତ୍ତ ମୋହିତ ହୋଇଯାଇଛି (୨/୭)।" ଏହାଦ୍ୱାରା ସ୍ପଷ୍ଟ ହୋଇଯାଉଛି ଯେ, ଅର୍ଜୁନଙ୍କର ଅନ୍ତଃକରଣରେ ସଂଶୟ ବିଦ୍ୟମାନ ଥିଲା; ତାଙ୍କର ବିବେକଶକ୍ତି ମୋହହେତୁ ଟିକିଏ ଦବି ଯାଇଥିଲା; ତେଣୁ ସେ ନିଜର କର୍ତ୍ତବ୍ୟ ନିଶ୍ଚୟ କରିପାରି ନ ଥିଲେ। ଏହା ଛଡ଼ା ଷଷ୍ଠ ଅଧ୍ୟାୟରେ ଅର୍ଜୁନ କହିଥିଲେ, "ମୋର ସଂଶୟ ଛେଦନ କରିବାକୁ ଆପଣ ହିଁ ସମର୍ଥ (୬/୩୯)" ଏବଂ ଗୀତାର ଉପଦେଶ ଶୁଣିସାରିଲା ପରେ ଅର୍ଜୁନ କହିଥିଲେ, "ମୁଁ ସନ୍ଦେହରହିତ ହୋଇଗଲି (୧୮/୭୩)" ଏବଂ ଭଗବାନ୍ ମଧ୍ୟ ସ୍ଥାନେ-ସ୍ଥାନେ (୮/୭; ୧୨/୮) ଅର୍ଜୁନଙ୍କୁ କହିଥିଲେ, "ମୁଁ ତୁମକୁ ଯାହାକିଛି କହୁଛି, ସେଥିରେ କୌଣସି ସଂଶୟ ନାହିଁ; ତୁମେ ଶଙ୍କା କର ନାହିଁ।" ଏହାଦ୍ୱାରା ମଧ୍ୟ ସିଦ୍ଧ ହୁଏ ଯେ, ଅର୍ଜୁନଙ୍କ ଅନ୍ତଃକରଣରେ ସଂଶୟ ଥିଲା ଏବଂ ତେଣୁ ସେ ନିଜର ସ୍ୱଧର୍ମରୂପକ ଯୁଦ୍ଧ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଯାଇଥିଲେ। ତେଣୁ ଭଗବାନ୍ ଏଠାରେ ତାଙ୍କୁ ତାଙ୍କ ହୃଦୟରେ ଥିବା ସଂଶୟ ଛେଦନ କରିବାକୁ କହି ଜଣାଉଦେଇଛନ୍ତି, "ମୁଁ ତୁମକୁ ଯେଉଁ ଆଜ୍ଞା ଦେଉଛି, ସେଥିରେ କୌଣସି ଶଙ୍କା ନ କରି ତାହା ପାଳନ କରିବାକୁ ତୁମେ ପ୍ରସ୍ତୁତ ହୋଇଯିବା ଉଚିତ।"

**ପ୍ରଶ୍ନ –** ଏଠାରେ ଅର୍ଜୁନଙ୍କୁ ନିଜର ଆତ୍ମାର ସଂଶୟ ଛେଦନ କରିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଜଣାଉଦେଇଛନ୍ତି, "ତୁମେ ମୋର ଭକ୍ତ ଏବଂ ସଖା; ଏଣୁ ଅନ୍ୟମାନଙ୍କର ଅନ୍ତଃକରଣରେ ମଧ୍ୟ ଯଦି କିଛି ଶଙ୍କା ଥାଏ, ତେବେ ସେମାନଙ୍କୁ ବୁଝାଇ ତାହା ଛେଦନ କର। ତୁମେ ଯଦି ସେପରି କରି ନ ପାରୁଛ, ଅତିକମ୍‌ରେ ନିଜର ସଂଶୟ ଛେଦନ କରିଦେବା ତ ଉଚିତ।"

**ପ୍ରଶ୍ନ –** 'ଯୋଗରେ ଅବସ୍ଥିତ ହୋଇଯାଅ ଏବଂ ଯୁଦ୍ଧପାଇଁ ଠିଆ ହୋଇଯାଅ' ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅଧ୍ୟାୟର ଉପସଂହାର କରି କହିଛନ୍ତି, "ମୁଁ ତୁମକୁ ଯାହା କିଛି କହୁଛି, ତାହା ତୁମର ମଙ୍ଗଳପାଇଁ କହୁଛି; ଏଣୁ ଏଥିରେ ଶଙ୍କାରହିତ ହୋଇ ତୁମେ ମୋର କହିବା ଅନୁସାରେ କର୍ମଯୋଗରେ ଅବସ୍ଥିତ ହୋଇଯାଅ ଓ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଯାଅ। ଏପରି କଲେ ତୁମର ସବୁପ୍ରକାର ମଙ୍ଗଳ ହେବ।"

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଜ୍ଞାନକର୍ମସନ୍ୟାସଯୋଗୋ*
*ନାମ ଚତୁର୍ଥୋଽଧ୍ୟାୟଃ ॥ ୪ ॥*

— ○ —

ଓଁ ଶ୍ରୀପରମାତ୍ମନେ ନମଃ

# ପଞ୍ଚମୋଽଧ୍ୟାୟଃ

## କର୍ମ-ସଂନ୍ୟାସଯୋଗ

***ଅଧ୍ୟାୟର ନାମ :*** ଏହି ପଞ୍ଚମ ଅଧ୍ୟାୟରେ କର୍ମଯୋଗ-ନିଷ୍ଠା ଏବଂ ସାଂଖ୍ୟଯୋଗ-ନିଷ୍ଠା ବର୍ଣ୍ଣନା କରାଯାଇଛି। ସନ୍ନ୍ୟାସ ଶବ୍ଦଟି ହେଉଛି ସାଂଖ୍ୟଯୋଗର ପର୍ଯ୍ୟାୟବାଚକ; ତେଣୁ ଏହି ଅଧ୍ୟାୟର ନାମ 'କର୍ମ-ସନ୍ନ୍ୟାସଯୋଗ' ରଖାଯାଇଛି।

***ଅଧ୍ୟାୟର ସାରାଂଶ :*** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ସାଂଖ୍ୟଯୋଗ ଓ କର୍ମଯୋଗ ମଧ୍ୟରୁ କେଉଁ ଯୋଗଟି ଶ୍ରେଷ୍ଠତର ବୋଲି ଅର୍ଜୁନ ପ୍ରଶ୍ନ କରିଛନ୍ତି। ଦ୍ୱିତୀୟ ଶ୍ଳୋକରେ ପ୍ରଶ୍ନର ଉତ୍ତର ଦେଇ ସାଂଖ୍ୟଯୋଗ ଓ କର୍ମଯୋଗ ଉଭୟେ କଲ୍ୟାଣକାରକ ବୋଲି ବୁଝାଇଦେଇ ଭଗବାନ୍ କହିଛନ୍ତି ଯେ, କର୍ମସଂନ୍ୟାସ ଅପେକ୍ଷା କର୍ମଯୋଗ ଶ୍ରେଷ୍ଠତର। ତୃତୀୟ ଶ୍ଳୋକରେ କର୍ମଯୋଗୀଙ୍କ ମହତ୍ତ୍ୱ ବର୍ଣ୍ଣନା କରି ଚତୁର୍ଥ ଓ ପଞ୍ଚମରେ ସାଂଖ୍ୟଯୋଗ ଓ କର୍ମଯୋଗର ଫଳ ଏକ ହୋଇଥିବାରୁ ଭଗବାନ୍ ସେହି ଦୁଇଯୋଗର ଐକ୍ୟ ପ୍ରତିପାଦନ କରିଛନ୍ତି। ଷଷ୍ଠରେ କହିଛନ୍ତି, କର୍ମଯୋଗ ବିନା ସାଂଖ୍ୟଯୋଗ ସମ୍ପାଦନ କଠିନ ଏବଂ କର୍ମଯୋଗର ଫଳ ହେଉଛି ଅବିଳମ୍ବେ ବ୍ରହ୍ମପ୍ରାପ୍ତି। ସପ୍ତମରେ କର୍ମଯୋଗୀଙ୍କ ନିର୍ଲିପ୍ତତା ପ୍ରତିପାଦନ କରି ଅଷ୍ଟମ ଓ ନବମରେ ସାଂଖ୍ୟଯୋଗୀଙ୍କ ଅକର୍ତ୍ତାପଣ ନିର୍ଦ୍ଦେଶ କରିଛନ୍ତି। ତା'ପରେ ଦଶ ଓ ଏଗାର ଶ୍ଳୋକରେ ଭଗବଦର୍ପଣ-ବୁଦ୍ଧିରେ କର୍ମ କରୁଥିବା ଲୋକଙ୍କର ତଥା କର୍ମପ୍ରଧାନ କର୍ମଯୋଗୀଙ୍କର ପ୍ରଶଂସା କରି କହିଛନ୍ତି, କର୍ମଯୋଗୀମାନଙ୍କର କର୍ମ ଆତ୍ମଶୁଦ୍ଧିର ହେତୁ ହୋଇଥାଏ। ବାର ଶ୍ଳୋକରେ କହିଛନ୍ତି, କର୍ମଯୋଗୀମାନଙ୍କୁ ନୈଷ୍ଠିକୀ ଶାନ୍ତି ମିଳିଥାଏ କିନ୍ତୁ ସକାମଭାବରେ କର୍ମ କରୁଥିବା ଲୋକେ ବନ୍ଧନରେ ପଡ଼ନ୍ତି। ତେରରେ ସାଂଖ୍ୟଯୋଗୀଙ୍କ ସ୍ଥିତି ବର୍ଣ୍ଣନା କରିଛନ୍ତି ଏବଂ ଚଉଦ ଓ ପନ୍ଦର ଶ୍ଳୋକରେ କହିଛନ୍ତି ଯେ, ପରମେଶ୍ୱର କର୍ମ, କର୍ତ୍ତାପଣ ଓ କର୍ମଫଳସଂଯୋଗର ରଚନା କରନ୍ତି ନାହିଁ, କି କାହାର ପାପ-ପୁଣ୍ୟ ଗ୍ରହଣ କରନ୍ତି ନାହିଁ; ଏହା ସହିତ ଭଗବାନ୍ କହିଦେଇଛନ୍ତି ଯେ, ଜ୍ଞାନକୁ ଅଜ୍ଞାନ ଢାଙ୍କି ରଖିଥିବାରୁ ହିଁ ସକଳ ଜୀବ ମୋହଗ୍ରସ୍ତ ହୋଇଯାଉଛନ୍ତି। ଷୋହଳରେ ଜ୍ଞାନର ମହତ୍ତ୍ୱ ବର୍ଣ୍ଣନା କରି ସତରରେ ଜ୍ଞାନଯୋଗର ଏକାନ୍ତ ସାଧନା ବିଷୟ ବର୍ଣ୍ଣନା କରିଛନ୍ତି ଏବଂ ଅଠରରୁ କୋଡ଼ିଏ ଶ୍ଳୋକପର୍ଯ୍ୟନ୍ତ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ନିରନ୍ତର ଅଭିନ୍ନଭାବରେ ଲାଗିରହୁଥିବା ମହାପୁରୁଷଙ୍କ ସମଦୃଷ୍ଟି ଓ ସ୍ଥିତି ବର୍ଣ୍ଣନା କରି କହିଛନ୍ତି ଯେ, ସେପରି ପୁରୁଷଙ୍କୁ ପରମଗତି ପ୍ରାପ୍ତ ହୁଏ। ଏକୋଇଶରେ ଅକ୍ଷୟ ଆନନ୍ଦପ୍ରାପ୍ତିର ସାଧନା ଓ ତାହାର ପ୍ରାପ୍ତିବିଷୟ କହିଛନ୍ତି। ବାଇଶରେ ଭୋଗକୁ ଦୁଃଖର କାରଣ ଓ ବିନାଶଶୀଳ ବୋଲି କହି ବିବେକୀ ମନୁଷ୍ୟ ଭୋଗରେ ଆସକ୍ତ ହୁଅନ୍ତି ନାହିଁ ବୋଲି କହିଛନ୍ତି। ତେଇଶରେ କହିଛନ୍ତି ଯେ, କାମକ୍ରୋଧର ବେଗକୁ ସହିପାରୁଥିବା ପୁରୁଷ ଯୋଗୀ ଓ ସୁଖୀ ଅଟନ୍ତି। ଚବିଶରୁ ଛବିଶପର୍ଯ୍ୟନ୍ତ ସାଂଖ୍ୟଯୋଗୀଙ୍କ ଅନ୍ତିମସ୍ଥିତି ଓ ନିର୍ବାଣବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥିବା ଜ୍ଞାନୀମହାପୁରୁଷଙ୍କ ଲକ୍ଷଣ ବର୍ଣ୍ଣନା କରି ସତେଇଶ ଓ ଅଠେଇଶ ଶ୍ଳୋକରେ ଫଳସହିତ ଧ୍ୟାନଯୋଗର ସଂକ୍ଷିପ୍ତ ବର୍ଣ୍ଣନା କରିଛନ୍ତି। ଶେଷରେ ଅଣତିରିଶ ଶ୍ଳୋକରେ ଭଗବାନଙ୍କୁ ସମସ୍ତ ଯଜ୍ଞର ଭୋକ୍ତା, ସର୍ବଲୋକମହେଶ୍ୱର ଓ ପ୍ରାଣୀମାତ୍ରକେ ସମସ୍ତଙ୍କର ପରମସୁହୃଦ ବୋଲି ଜାଣିଗଲେ, ତା'ର ଫଳସ୍ୱରୂପ ପରମଶାନ୍ତି ମିଳେ ବୋଲି କହି ଅଧ୍ୟାୟର ଉପସଂହାର କରିଛନ୍ତି।

ସମ୍ବନ୍ଧ— ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ଅର୍ଜୁନ ଭଗବାନଙ୍କ ଶ୍ରୀମୁଖରୁ କର୍ମଯୋଗର ବହୁ ପ୍ରଶଂସା ଶୁଣିଲେ ଓ ତାହା ଆଚରଣ କରିବାକୁ ପ୍ରେରଣା ତଥା ଆଜ୍ଞା ପାଇଲେ। ତା' ସହିତ ଏକଥା ବି ଶୁଣିଲେ ଯେ, କର୍ମଯୋଗଦ୍ୱାରା ଭଗବତସ୍ୱରୂପର ତତ୍ତ୍ୱଜ୍ଞାନ ସ୍ୱତଃ ହୋଇଯାଏ (୪/୩୮)। ଚତୁର୍ଥ ଅଧ୍ୟାୟର ଶେଷରେ

ବି କର୍ମଯୋଗ ସମ୍ପାଦନ କରିବାନିମନ୍ତେ ତାଙ୍କୁ ଭଗବାନଙ୍କ ଠାରୁ ଆଜ୍ଞା ମିଳିଲା। କିନ୍ତୁ ମଝି ମଝିରେ ସେ ଭଗବାନଙ୍କ ଶ୍ରୀମୁଖରୁ ହିଁ **'ବ୍ରହ୍ମାର୍ପଣଂ ବ୍ରହ୍ମ ହବିଃ'**, **'ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି'**, **'ତଦ୍‌ବିଦ୍ଧି ପ୍ରଣିପାତେନ'** ଆଦି ବଚନଦ୍ୱାରା ଜ୍ଞାନଯୋଗର ଅର୍ଥାତ୍ କର୍ମସନ୍ନ୍ୟାସର ବି ପ୍ରଶଂସା ଶୁଣିବାକୁ ପାଇଲେ। ଏହା ଫଳରେ ସେହି ଦୁଇଟି ଯୋଗସାଧନା ମଧ୍ୟରୁ କେଉଁଟି ତାଙ୍କ ପାଇଁ ଶ୍ରେଷ୍ଠ, ଅର୍ଜୁନ ତାହା ନିର୍ଣ୍ଣୟ କରିପାରିଲେ ନାହିଁ। ଅତଏବ ଭଗବାନଙ୍କ ଶ୍ରୀମୁଖରୁ ହିଁ ସେହି ନିର୍ଣ୍ଣୟଟି ଶୁଣିବାକୁ ଅର୍ଜୁନ ଭଗବାନଙ୍କୁ ପ୍ରଶ୍ନ କରୁଛନ୍ତି–

ଅର୍ଜୁନ ଉବାଚ

## ସଂନ୍ୟାସଂ କର୍ମଣାଂ କୃଷ୍ଣ ପୁନର୍ଯୋଗଂ ଚ ଶଂସସି ।
## ଯଚ୍ଛ୍ରେୟ ଏତୟୋରେକଂ ତନ୍ମେ ବ୍ରୂହି ସୁନିଶ୍ଚିତମ୍ ॥ ୧ ॥

**ଅନ୍ୱୟ–** **କୃଷ୍ଣ** = ହେ କୃଷ୍ଣ (ଆପଣ); **କର୍ମଣାମ୍,** **ସଂନ୍ୟାସମ୍** = କର୍ମମାନଙ୍କର ସଂନ୍ୟାସକୁ; **ଚ** = ଏବଂ; **ପୁନଃ** = ପୁଣି; **ଯୋଗମ୍** = କର୍ମଯୋଗକୁ; **ଶଂସସି** = ପ୍ରଶଂସା କରୁଛନ୍ତି; **ଏତୟୋଃ** = (ତେଣୁ) ଏହି ଦୁଇଟିମଧ୍ୟରୁ; **ଏକମ୍** = କୌଣସି; **ଯତ୍** = ଯାହା କି; **ମେ** = ମୋପାଇଁ; **ସୁନିଶ୍ଚିତମ୍** = ଭଲଭାବେ ନିଶ୍ଚିତ; **ଶ୍ରେୟଃ** = କଲ୍ୟାଣକାରୀ ସାଧନା (ଅଟେ); **ତତ୍** = ତାହା; **ବ୍ରୂହି** = କହନ୍ତୁ।

**ଅର୍ଜୁନ କହିଲେ — ହେ କୃଷ୍ଣ ! ଆପଣ କର୍ମମାନଙ୍କର-ସଂନ୍ୟାସକୁ ପ୍ରଶଂସା କରୁଛନ୍ତି, ପୁଣି କର୍ମଯୋଗର ମଧ୍ୟ ପ୍ରଶଂସା କରୁଛନ୍ତି। ତେଣୁ ଏହି ଦୁଇଟି ମଧ୍ୟରୁ ଯେଉଁଟି ମୋପାଇଁ ଭଲଭାବରେ ନିଶ୍ଚିତ କଲ୍ୟାଣକାରକ ସାଧନା ହେବ, ତାହା ମୋତେ କହନ୍ତୁ॥ ୧ ॥**

**ପ୍ରଶ୍ନ–** ଏଠାରେ **କୃଷ୍ଣ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର–** **କୃଷ୍** ଧାତୁର ଅର୍ଥ ଆକର୍ଷଣ କରିବା, ଟାଣିବା ଏବଂ **ଣ** ଆନନ୍ଦର ବାଚକ। ଭଗବାନ୍ ହେଉଛନ୍ତି ନିତ୍ୟାନନ୍ଦସ୍ୱରୂପ; ସେ ସମସ୍ତଙ୍କୁ ନିଜ ଆଡ଼କୁ ଆକର୍ଷଣ କରନ୍ତି। ତେଣୁ ତାଙ୍କର ନାମ କୃଷ୍ଣ। ଏଠାରେ ଭଗବାନଙ୍କୁ **କୃଷ୍ଣ** ନାମରେ ସମ୍ବୋଧନ କରି ଅର୍ଜୁନ ନିଜର ଭାବ ପ୍ରକାଶ କରୁଛନ୍ତି, "ଆପଣ ସର୍ବଶକ୍ତିମାନ୍, ସର୍ବଜ୍ଞ ପରମେଶ୍ୱର; ତେଣୁ ମୋର ଏହି ପ୍ରଶ୍ନର ଉତ୍ତର ଦେବାକୁ ଆପଣ ହିଁ ପୂର୍ଣ୍ଣସମର୍ଥ।'

**ପ୍ରଶ୍ନ–** ଏଠାରେ 'କର୍ମ-ସନ୍ନ୍ୟାସର' ଅର୍ଥ କଣ କର୍ମର ସ୍ୱରୂପତଃ ତ୍ୟାଗ ହେବ ?

**ଉତ୍ତର–** ଚତୁର୍ଥ ଅଧ୍ୟାୟରେ ଭଗବାନ୍ କୌଣସିଠାରେ ବି ସ୍ୱରୂପତଃ କର୍ମତ୍ୟାଗକୁ ପ୍ରଶଂସା କରି ନାହାନ୍ତି, କି ସେପରି କରିବାକୁ ଅର୍ଜୁନଙ୍କୁ ଆଜ୍ଞା ଦେଇ ନାହାନ୍ତି; ବରଂ ସ୍ଥାନେ ସ୍ଥାନେ ସେ ନିଷ୍କାମଭାବରେ କର୍ମ କରିବାକୁ କହିଛନ୍ତି (୪/୧୫,୪୨)। ଅତଏବ ଏଠାରେ କର୍ମସନ୍ନ୍ୟାସର ଅର୍ଥ 'ସ୍ୱରୂପତଃ କର୍ମତ୍ୟାଗ' ନୁହେଁ। କର୍ମ-ସନ୍ନ୍ୟାସର ଅର୍ଥ ହେଉଛି 'ସକଳ କର୍ମରେ କର୍ତ୍ତୃତ୍ୱ ଅଭିମାନରୁ ରହିତ ହୋଇ, ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହେଉଛନ୍ତି, (୩/୨୮) ବୋଲି ବୁଝିବା ତଥା ନିରନ୍ତର ପରମାତ୍ମାଙ୍କ ସ୍ୱରୂପରେ ଏକୀଭାବରେ ଅବସ୍ଥିତ ରହିବା ଓ ସର୍ବଦା ସର୍ବତ୍ର ବ୍ରହ୍ମଦୃଷ୍ଟି ରଖିବା (୪/୨୪)'– ଏଠାରେ ଏହା ହିଁ ଜ୍ଞାନଯୋଗ, ଏହା ହିଁ କର୍ମସନ୍ନ୍ୟାସ। ଚତୁର୍ଥ ଅଧ୍ୟାୟରେ ଏହିପରି ଜ୍ଞାନଯୋଗର ପ୍ରଶଂସା କରାଯାଇଛି ଏବଂ ତାହାକୁ ଆଧାର କରି ଅର୍ଜୁନ ଏହି ପ୍ରଶ୍ନ କରିଛନ୍ତି।

ଏଠାରେ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ୍ 'ସନ୍ନ୍ୟାସ' ଓ 'କର୍ମଯୋଗ' ଉଭୟକୁ କଲ୍ୟାଣକର ବୋଲି କହିଛନ୍ତି ଏବଂ ଚତୁର୍ଥ ତଥା ପଞ୍ଚମ ଶ୍ଳୋକରେ ଏହି 'ସନ୍ନ୍ୟାସ'କୁ 'ସାଂଖ୍ୟ' ଏବଂ ଷଷ୍ଠ ଶ୍ଳୋକରେ ଏହାକୁ 'ସନ୍ନ୍ୟାସ' ବୋଲି କହି ସ୍ପଷ୍ଟ କରିଦେଇଛନ୍ତି ଯେ, ଏଠାରେ 'କର୍ମ-ସନ୍ନ୍ୟାସ'ର ଅର୍ଥ ସାଂଖ୍ୟଯୋଗ ଅର୍ଥାତ୍ ଜ୍ଞାନଯୋଗ; ଏଥିରେ ସ୍ୱରୂପତଃ କର୍ମତ୍ୟାଗ କଥା ନାହିଁ। ଏହା ଛଡ଼ା ଭଗବାନଙ୍କ ମତରେ କେବଳ ସ୍ୱରୂପତଃ କର୍ମତ୍ୟାଗଦ୍ୱାରା କଲ୍ୟାଣ ମଧ୍ୟ ହେବ ନାହିଁ (୩/୪) ଏବଂ କର୍ମକୁ ସ୍ୱରୂପତଃ ତ୍ୟାଗ କରିବା ସମ୍ଭବ ବି ନୁହେଁ (୩/୫; ୧୮/୧୧)। ତେଣୁ ଏଠାରେ କର୍ମସନ୍ନ୍ୟାସର

ଅର୍ଥ ଜ୍ଞାନଯୋଗ ବୋଲି ହିଁ ମାନିବା ଉଚିତ; କର୍ମମାନଙ୍କର ସ୍ୱରୂପତଃ ତ୍ୟାଗ ନୁହେଁ।

**ପ୍ରଶ୍ନ**— ଅର୍ଜ୍ଜୁନ ତ ତୃତୀୟ ଅଧ୍ୟାୟର ଆରମ୍ଭରେ ପଚାରିଥିଲେ, 'ଜ୍ଞାନଯୋଗ' ଓ 'କର୍ମଯୋଗ'— ଏ ଦୁଇଟିମଧ୍ୟରୁ ଯେଉଁଥିରୁ ମୁଁ କଲ୍ୟାଣ ପାଇପାରିବି, ମୋତେ ସେହି ଗୋଟିକ ସାଧନା କହିଦିଅନ୍ତୁ।' ଏଠାରେ ପୁଣି ଥରେ ସେହି ପ୍ରଶ୍ନ ପଚାରିବାର ଅଭିପ୍ରାୟ କଣ ?

**ଉତ୍ତର**— ସେଠାରେ ଅର୍ଜ୍ଜୁନ 'ଜ୍ଞାନଯୋଗ' ଓ 'କର୍ମଯୋଗ' ବିଷୟରେ ପଚାରି ନ ଥିଲେ; ସେଠାରେ ଅର୍ଜ୍ଜୁନଙ୍କ ପ୍ରଶ୍ନର ଭାବ ଥିଲା, ''ଯଦି ଆପଣଙ୍କ ମତରେ କର୍ମ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ, ତେବେ ମୋତେ ଘୋର କର୍ମ କରିବାରେ ଲଗାଉଛନ୍ତି କାହିଁକି ? ଆପଣଙ୍କ କଥା ମୁଁ ସ୍ପଷ୍ଟରୂପେ ବୁଝିପାରୁ ନାହିଁ; ମୋତେ ସେସବୁ ଗୋଳିଆମିଶାପରି ଲାଗୁଛି; ତେଣୁ ମୋତେ ସ୍ପଷ୍ଟ କରି ଗୋଟିଏ କଥା କହନ୍ତୁ।'' କିନ୍ତୁ ଏଠାରେ ତ ଅର୍ଜ୍ଜୁନଙ୍କ ପ୍ରଶ୍ନ ହିଁ ଭିନ୍ନ; ଅର୍ଜ୍ଜୁନ ଏଠାରେ ଜ୍ଞାନକୁ କର୍ମ ଅପେକ୍ଷା ଶ୍ରେଷ୍ଠ ବୋଲି ବୁଝୁ ନାହାନ୍ତି, କି ଭଗବାନଙ୍କ କଥାକୁ ଗୋଳିଆମିଶା ବୋଲି ମଣୁ ନାହାନ୍ତି। ବରଂ ସେ ସ୍ୱୟଂ ଏହା ସ୍ୱୀକାର କରିସାରି ପଚାରୁଛନ୍ତି, ''ଆପଣ 'ଜ୍ଞାନଯୋଗ' ଓ 'କର୍ମଯୋଗ' ଉଭୟର ପ୍ରଶଂସା କରୁଛନ୍ତି ଏବଂ ସେହି ଦୁଇଟି ପରସ୍ପରଠାରୁ ଭିନ୍ନ ବୋଲି କହୁଛନ୍ତି (୩/୩)। ବର୍ତ୍ତମାନ ସେହି ଦୁଇଟିମଧ୍ୟରୁ ମୋ ପକ୍ଷରେ କେଉଁ ସାଧନାଟି ଶ୍ରେୟସ୍କର, ତାହା କହନ୍ତୁ।'' ଏଥିରୁ ସିଦ୍ଧ ହୋଇଯାଉଛି ଯେ, ଅର୍ଜ୍ଜୁନ ଏଠାରେ ତୃତୀୟ ଅଧ୍ୟାୟର ସେହି ପ୍ରଶ୍ନଟି ଦୋହରାଇ ନାହାନ୍ତି।

**ପ୍ରଶ୍ନ**— ଭଗବାନ୍ ତ ତୃତୀୟ ଅଧ୍ୟାୟର ଉଣେଇଶ ଓ ତିରିଶ ଶ୍ଳୋକରେ ତଥା ଚତୁର୍ଥ ଅଧ୍ୟାୟର ପନ୍ଦର ଓ ବୟାଳିଶ ଶ୍ଳୋକରେ ଅର୍ଜ୍ଜୁନଙ୍କୁ କର୍ମଯୋଗ ଅନୁଷ୍ଠାନ କରିବାକୁ ସ୍ପଷ୍ଟରୂପେ ଆଜ୍ଞା ଦେଇସାରିଛନ୍ତି; ଏପରି ଅବସ୍ଥାରେ ସେ ସେହି ବିଷୟ ପୁଣି ଥରେ ପଚାରିବାର ପ୍ରୟୋଜନ କଣ ?

**ଉତ୍ତର**— ହଁ; ଠିକ୍ କଥା। କିନ୍ତୁ ଭଗବାନ୍ ଚତୁର୍ଥ ଅଧ୍ୟାୟର ଚବିଶଠାରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ କର୍ମଯୋଗ ଓ ଜ୍ଞାନଯୋଗ — ଉଭୟ ନିଷ୍ଠା ଅନୁସାରେ ବିଭିନ୍ନପ୍ରକାର ସାଧନାକୁ ଯଜ୍ଞ-ନାମରେ ବର୍ଣ୍ଣନା କରିଛନ୍ତି ଏବଂ ସେଠାରେ ଦ୍ରବ୍ୟମୟଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞ ଶ୍ରେଷ୍ଠ ବୋଲି କହି ତା'ର ପ୍ରଶଂସା କରିଛନ୍ତି (୪/୩୩) ଏବଂ ତତ୍ତ୍ୱଦର୍ଶୀ ଜ୍ଞାନୀମାନଙ୍କ ଠାରୁ ଜ୍ଞାନ ଉପଦେଶ ଗ୍ରହଣ କରିବାକୁ ପ୍ରେରଣା ଦେଇଛନ୍ତି ଓ ଜ୍ଞାନଯଜ୍ଞର ପ୍ରଶଂସା ବି କରିଛନ୍ତି (୪/୩୪,୩୫)। ପୁଣି ଏକଥା ବି ସ୍ପଷ୍ଟରୂପେ କହିଛନ୍ତି ଯେ, କର୍ମଯୋଗରେ ପୂର୍ଣ୍ଣରୂପେ ସିଦ୍ଧ ହୋଇଥିବା ମନୁଷ୍ୟ ସ୍ୱୟଂ ତତ୍ତ୍ୱଜ୍ଞାନ ଲାଭ କରିପାରନ୍ତି (୪/୩୮)। ଏପରିଭାବରେ ଦୁଇପ୍ରକାର ସାଧନାର ପ୍ରଶଂସା ଶୁଣି ଅର୍ଜ୍ଜୁନ ନିଜନିମନ୍ତେ କୌଣସି କର୍ତ୍ତବ୍ୟ ସ୍ଥିର କରିପାରି ନାହାନ୍ତି। ତେଣୁ ଏଠାରେ ସେ ଯଦି ଭଗବାନଙ୍କର ନିଶ୍ଚିତ ମତ ଜାଣିବାକୁ ପ୍ରଶ୍ନ କରୁଛନ୍ତି, ତେବେ ଠିକ୍ ହିଁ କରିଛନ୍ତି। ଏଠାରେ ଅର୍ଜ୍ଜୁନ ଭଗବାନଙ୍କୁ ସ୍ପଷ୍ଟରୂପେ ପଚାରୁଛନ୍ତି, ''ହେ ଆନନ୍ଦକନ୍ଦ ଶ୍ରୀକୃଷ୍ଣ ! ମୁଁ ଶ୍ରବଣ, ମନନ ଆଦି ସାଧନା କରି ଜ୍ଞାନଯୋଗବିଧିରେ ତତ୍ତ୍ୱଜ୍ଞାନୀମାନଙ୍କ ଠାରୁ ଯଥାର୍ଥ ତତ୍ତ୍ୱଜ୍ଞାନ ଲାଭ କରିବି, ନା ଆସକ୍ତିରହିତ ହୋଇ ନିଷ୍କାମଭାବରେ ଭଗବଦର୍ପିତ କର୍ମ ସମ୍ପାଦନ କରି କର୍ମଯୋଗବିଧିରେ ତତ୍ତ୍ୱଜ୍ଞାନ ପ୍ରାପ୍ତ ହେବି ? ତାହା ମୋତେ ଆପଣ କହିଦିଅନ୍ତୁ।''

**ସମ୍ବନ୍ଧ**— ବର୍ତ୍ତମାନ ଭଗବାନ୍ ଅର୍ଜ୍ଜୁନଙ୍କୁ ଏହି ପ୍ରଶ୍ନର ଉତ୍ତର ଦେଉଛନ୍ତି—

ଶ୍ରୀଭଗବାନୁବାଚ

**ସଂନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ।**
**ତୟୋସ୍ତୁ କର୍ମସଂନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତେ॥ ୨ ॥**

**ଅନ୍ୱୟ**— ସଂନ୍ୟାସଃ = କର୍ମସଂନ୍ୟାସ; ଚ = ଓ; କର୍ମଯୋଗଃ = କର୍ମଯୋଗ; ଉଭୌ = ଉଭୟ; ନିଃଶ୍ରେୟସକରୌ = ପରମ କଲ୍ୟାଣକାରକ (ଅଟନ୍ତି); ତୁ = କିନ୍ତୁ; ତୟୋଃ = ସେହି ଦୁଇଟି ମଧ୍ୟରୁ; କର୍ମ-ସଂନ୍ୟାସାତ୍ = କର୍ମସଂନ୍ୟାସ ଅପେକ୍ଷା; କର୍ମଯୋଗଃ = (ସାଧନାରେ ସୁଗମ ହୋଇଥିବାରୁ) କର୍ମଯୋଗ; ବିଶିଷ୍ୟତେ = ଶ୍ରେଷ୍ଠ ଅଟେ।

**ଶ୍ରୀ ଭଗବାନ୍ କହିଲେ — କର୍ମସନ୍ୟାସ ଓ କର୍ମଯୋଗ – ଏ ଉଭୟେ ପରମ କଲ୍ୟାଣକାରକ ଅଟନ୍ତି, କିନ୍ତୁ ଏହି ଦୁଇଟିମଧ୍ୟରୁ କର୍ମସଂନ୍ୟାସ ଅପେକ୍ଷା ସାଧନାରେ ସୁଗମ ହୋଇଥିବାରୁ କର୍ମଯୋଗ ଶ୍ରେଷ୍ଠ ଅଟେ।। ୨ ।।**

**ପ୍ରଶ୍ନ –** ଏଠାରେ **ସନ୍ୟାସ** ପଦର ଅର୍ଥ କଣ ?

**ଉତ୍ତର – ସମ୍** ଉପସର୍ଗର ଅର୍ଥ ହେଉଛି 'ସମ୍ୟକ୍ ପ୍ରକାରେ' ଏବଂ ନ୍ୟାସର ଅର୍ଥ 'ତ୍ୟାଗ'। ଏପରି ପୂର୍ଣ୍ଣ ତ୍ୟାଗ ହିଁ ସନ୍ୟାସ। ଏଠାରେ ସନ୍ୟାସ ଶବ୍ଦର ଅର୍ଥ ହେଉଛି ମନ, ବଚନ ଓ ଶରୀରଦ୍ୱାରା ହେଉଥିବା ସକଳ କ୍ରିୟାରେ କର୍ତ୍ତାପଣ ତଥା ଶରୀର ଓ ସମଗ୍ର ସଂସାର ପ୍ରତି ରହିଥିବା ଅହଂତ୍ୱ-ମମତ୍ୱ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିଦେବା। ଗୀତାରେ **ସନ୍ୟାସ** ଓ **ସନ୍ୟାସୀ** ଦୁଇଟି ଶବ୍ଦକୁ ପ୍ରସଙ୍ଗ ଅନୁସାରେ ବିଭିନ୍ନ ଅର୍ଥରେ ପ୍ରୟୋଗ କରାଯାଇଛି। କେଉଁଠି ସକଳ କର୍ମର ଭଗବଦର୍ପଣକୁ ସନ୍ୟାସ ବୋଲି କୁହାଯାଇଛି (୩/୩୦; ୧୨/୬; ୧୮/୫୭); କେଉଁଠି କାମ୍ୟକର୍ମତ୍ୟାଗକୁ ସନ୍ୟାସ ବୋଲାଯାଇଛି (୧୮/୨); କେଉଁଠି ମନରୁ କର୍ମତ୍ୟାଗକୁ (୫/୧୩) ତ, କେଉଁଠି କର୍ମଯୋଗକୁ (୬/୨); କେଉଁଠି କର୍ମମାନଙ୍କର ସ୍ୱରୂପତଃ ତ୍ୟାଗକୁ (୩/୪; ୧୮/୭) ତ, କେଉଁଠି ସାଂଖ୍ୟଯୋଗକୁ ଅର୍ଥାତ୍ ଜ୍ଞାନନିଷ୍ଠାକୁ (୫/୬; ୧୮/୪୯) 'ସନ୍ୟାସ' କୁହାଯାଇଛି। ଏହିପରି କେଉଁଠି କର୍ମଯୋଗୀଙ୍କୁ **ସନ୍ୟାସୀ** (୬/୧; ୧୮/୧୨) ଏବଂ **ସନ୍ୟାସଯୋଗଯୁକ୍ତାତ୍ମା** (୯/୨୮) କୁହାଯାଇଛି। ଏଥିରୁ ଏକଥା ସିଦ୍ଧ ହୋଇଯାଏ ଯେ, ସନ୍ୟାସ ଶବ୍ଦ ସବୁଠାରେ ଗୋଟିଏ ଅର୍ଥରେ ବ୍ୟବହୃତ ହୋଇ ନାହିଁ; ପ୍ରକରଣ ଅନୁସାରେ ଏହାର ଭିନ୍ନ ଭିନ୍ନ ଅର୍ଥ ହୁଏ। ଏଠାରେ ସାଂଖ୍ୟଯୋଗ ଓ କର୍ମଯୋଗର ତୁଳନାତ୍ମକ ବିବେଚନ କରାଯାଉଛି। ଭଗବାନ୍ ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ସନ୍ୟାସକୁ ହିଁ ସାଂଖ୍ୟ କହି ଭଲଭାବରେ ସ୍ପଷ୍ଟୀକରଣ ମଧ୍ୟ କରିଦେଇଛନ୍ତି। ଅତଏବ ଏଠାରେ **ସନ୍ୟାସ** ଶବ୍ଦର ଅର୍ଥ ସାଂଖ୍ୟଯୋଗ ବୋଲି ମାନିନେବା ଯୁକ୍ତିଯୁକ୍ତ।

**ପ୍ରଶ୍ନ –** ଭଗବାନଙ୍କ ଦ୍ୱାରା 'ସନ୍ୟାସ' (ସାଂଖ୍ୟଯୋଗ) ଓ କର୍ମଯୋଗ — ଉଭୟେ କଲ୍ୟାଣକାରକ ବୋଲି ଯାହା କୁହାଗଲା, ତା'ର ଅଭିପ୍ରାୟ 'ଏହି ଉଭୟେ ସମ୍ମିଳିତ ହୋଇ ହିଁ କଲ୍ୟାଣକର ଫଳ ପ୍ରଦାନ କରନ୍ତି' ବୋଲି ମନେ କଲେ ଆପତ୍ତି କଣ ?

**ଉତ୍ତର –** ଜଣେ ଲୋକ ସାଂଖ୍ୟଯୋଗ ଓ କର୍ମଯୋଗ – ଏହି ଉଭୟ ସାଧନା ଏକ ସମୟରେ ସମ୍ପାଦନ କରିପାରିବ ନାହିଁ। କାରଣ, କର୍ମଯୋଗୀ ତାଙ୍କର ସାଧନାକାଳରେ କର୍ମକୁ, କର୍ମଫଳକୁ, ପରମାତ୍ମାଙ୍କୁ ଓ ନିଜକୁ ପୃଥକ୍ ପୃଥକ୍ ଗ୍ରହଣ କରି ଏବଂ କର୍ମଫଳ ଓ ଆସକ୍ତି ତ୍ୟାଗ କରି ଈଶ୍ୱରାର୍ପଣବୁଦ୍ଧିରେ ସମସ୍ତ କର୍ମ କରନ୍ତି (୩/୩୦; ୫/୧୦; ୯/୨୭-୨୮; ୧୨/୧୦ ଓ ୧୮/୫୬-୫୭) ଏବଂ ସାଂଖ୍ୟଯୋଗୀ ମାୟାରୁ ଉତ୍ପନ୍ନ ସମସ୍ତ ଗୁଣ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି (୩/୨୮); ଇନ୍ଦ୍ରିୟମାନେ ହିଁ ଇନ୍ଦ୍ରିୟମାନଙ୍କ ଅର୍ଥରେ ପ୍ରବୃତ୍ତ ହୁଅନ୍ତି (୫/୮-୯) – ଏପରି ବୁଝି ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କ୍ରିୟାରେ କର୍ତ୍ତାପଣ-ଅଭିମାନରୁ ରହିତ ହୋଇ କେବଳ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଅଭିନ୍ନଭାବରେ ସ୍ଥିତ ରହନ୍ତି। କର୍ମଯୋଗୀ ନିଜକୁ କର୍ମର କର୍ତ୍ତା ବୋଲି ମନେ କରନ୍ତି (୫/୧୧); ସାଂଖ୍ୟଯୋଗୀ ନିଜକୁ କର୍ତ୍ତା ବୋଲି ମାନନ୍ତି ନାହିଁ (୫/୮-୯)। କର୍ମଯୋଗୀ ନିଜର କର୍ମମାନଙ୍କୁ ଭଗବାନଙ୍କୁ ଅର୍ପଣ କରିଦିଅନ୍ତି (୯/୨୭-୨୮) ଏବଂ ସାଂଖ୍ୟଯୋଗୀ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ହେଉଥିବା ଅହଂକାରରହିତ କ୍ରିୟାମାନଙ୍କୁ କର୍ମ ବୋଲି ମାନନ୍ତି ନାହିଁ (୧୮/୧୭)। କର୍ମଯୋଗୀ ନିଜକୁ ପରମାତ୍ମାଙ୍କ ଠାରୁ ପୃଥକ୍ ବୋଲି ମାନନ୍ତି (୧୨/୬-୭); ସାଂଖ୍ୟଯୋଗୀ ସଦା ଅଭେଦ ମାନନ୍ତି (୧୮/୨୦)। କର୍ମଯୋଗୀ ପ୍ରକୃତି ଓ ପ୍ରକୃତିର ପଦାର୍ଥମାନଙ୍କର ସତ୍ତା ସ୍ୱୀକାର କରନ୍ତି (୧୮/୬୧); ସାଂଖ୍ୟଯୋଗୀ ଏକମାତ୍ର ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କାହାର ସତ୍ତା ମାନନ୍ତି ନାହିଁ (୧୩/୩୦)। କର୍ମଯୋଗୀ କର୍ମଫଳ ଓ କର୍ମର ସତ୍ତା ସ୍ୱୀକାର କରନ୍ତି; ସାଂଖ୍ୟଯୋଗୀ ବ୍ରହ୍ମଠାରୁ ଭିନ୍ନ କର୍ମର ଓ ତା'ର ଫଳର ସତ୍ତାକୁ ମାନନ୍ତି ନାହିଁ, କି ସେମାନଙ୍କ ସହିତ ତାଙ୍କର କୌଣସି ସମ୍ବନ୍ଧ ଥିବା କଥା ମାନନ୍ତି ନାହିଁ। ଏପରିଭାବରେ ଦେଖିବାକୁ ଗଲେ ଦୁହିଁଙ୍କର ସାଧନାପ୍ରଣାଳୀ ଓ ମାନ୍ୟତା ମଧ୍ୟରେ ପୂର୍ବ ଓ ପଶ୍ଚିମପରି ମହାନ୍ ଅନ୍ତର ରହିଛି। ଏପରି ଅବସ୍ଥାରେ

ସେହି ଦୁଇ ନିଷ୍ଠାର ସାଧନା ଜଣେ ଲୋକ ଏକା ସମୟରେ କଦାପି କରି ନ ପାରେ। ତା'ଛଡ଼ା ଯଦି ଉକ୍ତ ଦୁଇ ସାଧନା ମିଳିତ ହେଲେ ହିଁ କଲ୍ୟାଣକର ହେଉଥାନ୍ତେ, ତେବେ ''ସେହି ଦୁଇଟି ଭିତରୁ କେଉଁଟି ମୋ ପାଇଁ କଲ୍ୟାଣକର ହେବ, ତାହା କହିଦିଅନ୍ତୁ' ବୋଲି ଅର୍ଜୁନଙ୍କୁ ପଚାରିବାକୁ ପଡ଼ନ୍ତା ନାହିଁ, କି ''କର୍ମସନ୍ୟାସ ଅପେକ୍ଷା କର୍ମଯୋଗ ଶ୍ରେଷ୍ଠ'' ବୋଲି ଭଗବାନଙ୍କୁ କହିବାକୁ ପଡ଼ନ୍ତା ନାହିଁ। ପୁଣି ସାଂଖ୍ୟଯୋଗୀଙ୍କୁ ଯେଉଁ ସ୍ଥାନ ମିଳୁଛି, କର୍ମଯୋଗୀଙ୍କୁ ସେହି ସ୍ଥାନ ହିଁ ମିଳୁଛି। ଅତଏବ ସ୍ୱୀକାର କରିବା ଉଚିତ ଯେ, ଏହି ନିଷ୍ଠାଦୁଇଟି ସ୍ୱତନ୍ତ୍ର। ଯଦିଓ ଉଭୟ ନିଷ୍ଠାର ଫଳ ଏକ ଅର୍ଥାତ୍ 'ତତ୍ତ୍ୱଜ୍ଞାନଦ୍ୱାରା ପରମ କଲ୍ୟାଣସ୍ୱରୂପ ପରମେଶ୍ୱରଙ୍କୁ ପ୍ରାପ୍ତ ହେବା' ଅଟେ, ତଥାପି ଅଧିକାରୀଭେଦରେ ସାଧନାର ସୁଗମତା ହେତୁ ଅର୍ଜୁନଙ୍କ ନିମନ୍ତେ ସାଂଖ୍ୟଯୋଗ ଅପେକ୍ଷା କର୍ମଯୋଗ ହିଁ ଶ୍ରେଷ୍ଠ।

**ପ୍ରଶ୍ନ –** ଯଦି ସନ୍ୟାସ (ଜ୍ଞାନଯୋଗ) ଓ କର୍ମଯୋଗ – ଉଭୟେ ପୃଥକ୍ ପୃଥକ୍ ସ୍ୱତନ୍ତ୍ରରୂପରେ ପରମ କଲ୍ୟାଣକର ଅଟନ୍ତି, ତେବେ ଭଗବାନ୍ ଏଠାରେ ସାଂଖ୍ୟଯୋଗ ଅପେକ୍ଷା କର୍ମଯୋଗକୁ ଶ୍ରେଷ୍ଠ ବୋଲି କହିଲେ କାହିଁକି ?

**ଉତ୍ତର –** କର୍ମଯୋଗୀ କର୍ମ କରୁଥିଲେ ମଧ୍ୟ ସଦା ସନ୍ୟାସୀ ହିଁ ଅଟନ୍ତି; ସେ ଅନାୟାସରେ ସୁଖପୂର୍ବକ ସଂସାରବନ୍ଧନରୁ ମୁକୁଳିଯାଆନ୍ତି (୫/୩)। ଏହାଦ୍ୱାରା ଶୀଘ୍ର ପରମାତ୍ମପ୍ରାପ୍ତି ହୋଇଯାଏ (୫/୬)। ଭଗବାନ୍ ପ୍ରତ୍ୟେକ ଅବସ୍ଥାରେ କର୍ମଯୋଗୀଙ୍କୁ ରକ୍ଷା କରନ୍ତି (୯/୨୨) ଏବଂ ସାମାନ୍ୟମାତ୍ର କର୍ମଯୋଗ ସାଧନା ବି ଜନ୍ମମରଣରୂପକ ଭୀଷଣ ଭୟରୁ ଉଦ୍ଧାର କରିଦିଏ (୨/୪୦)। କିନ୍ତୁ ଜ୍ଞାନଯୋଗ ସାଧନା ଅତ୍ୟନ୍ତ କ୍ଳେଶକର (୧୨/୫)। ପ୍ରଥମେ କର୍ମଯୋଗ ସାଧନା ନ କରି ଜ୍ଞାନଯୋଗ ସାଧନା କରିବା ବି କଷ୍ଟକର (୫/୬)। ଏହିସବୁ କାରଣରୁ ଜ୍ଞାନଯୋଗ ଅପେକ୍ଷା କର୍ମଯୋଗକୁ ଶ୍ରେଷ୍ଠ ବୋଲି କୁହାଯାଉଛି।

*ସମ୍ବନ୍ଧ – ସାଂଖ୍ୟଯୋଗ ଅପେକ୍ଷା କର୍ମଯୋଗକୁ ଶ୍ରେଷ୍ଠ ବୋଲି କହି ବର୍ତ୍ତମାନ ସେହି କଥାକୁ ସିଦ୍ଧ କରିବାନିମନ୍ତେ ପରବର୍ତ୍ତୀ ଶ୍ଳୋକରେ କର୍ମଯୋଗୀଙ୍କର ପ୍ରଶଂସା କରୁଛନ୍ତି–*

**ଜ୍ଞେୟଃ ସ ନିତ୍ୟସଂନ୍ୟାସୀ ଯୋ ନ ଦ୍ୱେଷ୍ଟି ନ କାଙ୍‌କ୍ଷତି।**
**ନିର୍ଦ୍ୱନ୍ଦ୍ୱୋ ହି ମହାବାହୋ ସୁଖଂ ବନ୍ଧାତ୍‌ପ୍ରମୁଚ୍ୟତେ।। ୩ ।।**

**ଅନ୍ୱୟ –** ମହାବାହୋ = ହେ ଅର୍ଜୁନ; **ଯଃ** = ଯେଉଁ ପୁରୁଷ; ନ **ଦ୍ୱେଷ୍ଟି** = ଦ୍ୱେଷ କରେ ନାହିଁ; ନ, **କାଙ୍‌କ୍ଷତି** = (କିଛି) ଆକାଙ୍‌କ୍ଷା କରେ ନାହିଁ; **ସଃ** = ସେହି (କର୍ମଯୋଗୀ); **ନିତ୍ୟସଂନ୍ୟାସୀ** = ସଦା ସନ୍ୟାସୀ; **ଜ୍ଞେୟଃ** = ବୋଲାଯିବାର ଯୋଗ୍ୟ; **ହି** = କାରଣ; **ନିର୍ଦ୍ୱନ୍ଦ୍ୱଃ** = ରାଗଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ (ପୁରୁଷ); **ସୁଖମ୍** = ସୁଖପୂର୍ବକ; **ବନ୍ଧାତ୍** = ସଂସାରବନ୍ଧନରୁ; **ପ୍ରମୁଚ୍ୟତେ** = ମୁକ୍ତ ହୋଇଯାଏ।

**ହେ ଅର୍ଜୁନ! ଯେଉଁ ପୁରୁଷ କାହାସହିତ ଦ୍ୱେଷ କରନ୍ତି ନାହିଁ କି, କିଛି ଆକାଙ୍‌କ୍ଷା କରନ୍ତି ନାହିଁ, ସେହି କର୍ମଯୋଗୀ ସଦା ସନ୍ୟାସୀ ବୋଲାଯିବାର ଯୋଗ୍ୟ ଅଟନ୍ତି, କାରଣ ରାଗଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ ପୁରୁଷ ସୁଖପୂର୍ବକ ସଂସାରବନ୍ଧନରୁ ମୁକ୍ତ ହୋଇଯାଆନ୍ତି।। ୩ ।।**

**ପ୍ରଶ୍ନ –** ଏଠାରେ କର୍ମଯୋଗୀଙ୍କୁ ନିତ୍ୟ ସନ୍ୟାସୀ କହିବାର ଅଭିପ୍ରାୟ କଣ ?

**ଉତ୍ତର –** କର୍ମଯୋଗୀ କାହାକୁ ଦ୍ୱେଷ କରନ୍ତି ନାହିଁ, କି କୌଣସି ବସ୍ତୁ ଆକାଙ୍‌କ୍ଷା କରନ୍ତି ନାହିଁ। ସେ ସର୍ବଥା ଦ୍ୱନ୍ଦ୍ୱରୁ ଅତୀତ ହୋଇ ରହିଥାନ୍ତି। ବସ୍ତୁତଃ ସନ୍ୟାସ ବି ଏହି ସ୍ଥିତିର ନାମ। ଯେ ରାଗଦ୍ୱେଷରୁ ରହିତ, ସେ ପ୍ରକୃତ ସନ୍ୟାସୀ। କାହିଁକି ନା, ତାଙ୍କୁ ସନ୍ୟାସ ଆଶ୍ରମ ଗ୍ରହଣ କରିବା ଆବଶ୍ୟକ ନୁହେଁ, କି ସାଂଖ୍ୟଯୋଗ ଗ୍ରହଣ କରିବା ଆବଶ୍ୟକ ନୁହେଁ। ଅତଏବ ଏଠାରେ କର୍ମଯୋଗୀଙ୍କୁ 'ନିତ୍ୟସନ୍ୟାସୀ' କହି ଭଗବାନ୍ ତାଙ୍କର ମହତ୍ତ୍ୱ ପ୍ରକଟ କରି କହିଛନ୍ତି, ସକଳ କର୍ମ କରୁଥିଲେ ମଧ୍ୟ ସେ ନିତ୍ୟସନ୍ୟାସୀ ହିଁ ଅଟନ୍ତି

ଏବଂ ସେ ଅନାୟାସରେ ସୁଖପୂର୍ବକ କର୍ମବନ୍ଧନରୁ ମୁକ୍ତ ହୋଇଯାଆନ୍ତି ।

**ପ୍ରଶ୍ନ –** କର୍ମଯୋଗୀ କିପରିଭାବରେ କର୍ମବନ୍ଧନରୁ ସୁଖପୂର୍ବକ ମୁକ୍ତ ହୋଇଯାଆନ୍ତି ?

**ଉତ୍ତର –** ରାଗ-ଦ୍ୱେଷ ହିଁ ମନୁଷ୍ୟର କଲ୍ୟାଣମାର୍ଗରେ ବିଘ୍ନ ସୃଷ୍ଟି କରୁଥିବା ପ୍ରବଳ ଶତ୍ରୁ; ସେହି ଦୁଇଟି ହେତୁ ହିଁ ମନୁଷ୍ୟ କର୍ମବନ୍ଧନରେ ପଡ଼ିଥାଏ । କିନ୍ତୁ କର୍ମଯୋଗୀ ଏଥିରୁ ରହିତ ହୋଇ ଭଗବଦର୍ଥ କର୍ମ କରନ୍ତି; ଅତଏବ ଭଗବାନଙ୍କ ଦୟାର ପ୍ରଭାବରୁ ଅନାୟାସରେ କର୍ମବନ୍ଧନରୁ ମୁକ୍ତ ହୋଇଯାଆନ୍ତି ।

**ପ୍ରଶ୍ନ –** ବନ୍ଧନରୁ ମୁକ୍ତ ହେବା ଅର୍ଥ କଣ ?

**ଉତ୍ତର –** ଅଜ୍ଞାନମୂଳକ ଶୁଭାଶୁଭ କର୍ମ ଏବଂ ସେମାନଙ୍କ ଫଳ ହିଁ ବନ୍ଧନ । ସେଥିରେ ବନ୍ଧା ହୋଇଥିବାରୁ ଜୀବ ଅନବରତ ଜନ୍ମମୃତ୍ୟୁଚକ୍ରରେ ଘୂରୁଥାଏ । ଏହି ଜନ୍ମମରଣରୂପକ ସଂସାରରୁ ଚିରକାଳଲାଗି ସମ୍ବନ୍ଧ ତୁଟିଯିବା ହିଁ ବନ୍ଧନରୁ ମୁକ୍ତ ହେବା ।

***ସମ୍ବନ୍ଧ –*** *– ସାଧନାରେ ସୁଗମ ହୋଇଥିବାରୁ କର୍ମଯୋଗକୁ ସାଂଖ୍ୟଯୋଗଠାରୁ ଶ୍ରେଷ୍ଠ ବୋଲି ସିଦ୍ଧ କରିସାରି ଭଗବାନ୍ ବର୍ତ୍ତମାନ ଦ୍ୱିତୀୟ ଶ୍ଳୋକରେ ଉଭୟ ନିଷ୍ଠାର ଏକ ହିଁ ଫଳ ନିଃଶ୍ରେୟସ — ପରମକଲ୍ୟାଣ ବୋଲି ଯାହା କହିଲେ, ତଦନୁସାରେ ଦୁଇ ନିଷ୍ଠାର ଫଳର ଏକତ୍ୱକୁ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ପ୍ରତିପାଦନ କରୁଛନ୍ତି –*

**ସାଂଖ୍ୟଯୋଗୌ ପୃଥଗ୍‌ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ ।**
**ଏକମପ୍ୟାସ୍ଥିତଃ ସମ୍ୟକ୍ ଉଭୟୋର୍ବିନ୍ଦତେ ଫଳମ୍ ।। ୪ ।।**

**ଅନ୍ୱୟ –** **ସାଂଖ୍ୟଯୋଗୌ** = (ଉପରୋକ୍ତ) ସନ୍ୟାସ ଓ କର୍ମଯୋଗକୁ; **ବାଳାଃ** = ମୂର୍ଖଲୋକେ; **ପୃଥକ୍** = ପୃଥକ୍ ପୃଥକ୍ (ଫଳପ୍ରଦ); **ପ୍ରବଦନ୍ତି** = (ବୋଲି) କହନ୍ତି; **ପଣ୍ଡିତାଃ, ନ** = ପଣ୍ଡିତମାନେ କହନ୍ତି ନାହିଁ; (ହି) **ଏକମ୍** = (କାରଣ ଏ ଦୁଇଟି ମଧ୍ୟରୁ କୌଣସି) ଗୋଟିକୁ; **ଅପି** = ବି; **ସମ୍ୟକ୍** = ସମ୍ୟକ୍‌ଭାବରେ; **ଆସ୍ଥିତଃ** = ସ୍ଥିତ ହୋଇଥିବା (ପୁରୁଷ); **ଉଭୟୋଃ** = ଉଭୟର; **ଫଳମ୍** = ଫଳରୂପକ ପରମାତ୍ମାଙ୍କୁ; **ବିନ୍ଦତେ** = ପାଇଯାଏ ।

**ଉପରୋକ୍ତ ସନ୍ୟାସ ଓ କର୍ମଯୋଗକୁ ମୂର୍ଖଲୋକେ ପୃଥକ୍ ପୃଥକ୍ ଫଳଦାତା ବୋଲି କହନ୍ତି, କିନ୍ତୁ ପଣ୍ଡିତମାନେ ତାହା କହନ୍ତି ନାହିଁ; କାରଣ ସେହି ଦୁଇଟିମଧ୍ୟରୁ କୌଣସି ଗୋଟିକରେ ବି ସମ୍ୟକ୍‌ଭାବରେ ସ୍ଥିତ ହୋଇଥିବା ପୁରୁଷ ଉଭୟର ଫଳରୂପକ ପରମାତ୍ମାଙ୍କୁ ପାଇଯାଆନ୍ତି ।। ୪ ।।**

**ପ୍ରଶ୍ନ –** 'ସାଂଖ୍ୟଯୋଗ ଓ କର୍ମଯୋଗକୁ ପରସ୍ପରଠାରୁ ଭିନ୍ନ ବୋଲି କହୁଥିବା ଲୋକେ ବାଳକ ଅର୍ଥାତ୍ ମୂର୍ଖ ଅଟନ୍ତି' — ଏହି କଥନଦ୍ୱାରା ଭଗବାନଙ୍କର କେଉଁ ଅଭିପ୍ରାୟ ପ୍ରକାଶ ପାଉଛି ?

**ଉତ୍ତର –** ପରମାର୍ଥତତ୍ତ୍ୱର ଜ୍ଞାନଦ୍ୱାରା ପରମପଦରୂପକ କଲ୍ୟାଣପ୍ରାପ୍ତିରେ ସାଂଖ୍ୟଯୋଗ ଓ କର୍ମଯୋଗ ଉଭୟେ ହିଁ ହେତୁ ଅଟନ୍ତି । ତେଣୁ ଏପରିଭାବରେ ଉଭୟର ଫଳ ଏକ ହୋଇଥିବା ସତ୍ତ୍ୱେ, ଯେଉଁମାନେ କର୍ମଯୋଗର ଫଳ ଓ ସାଂଖ୍ୟଯୋଗର ଫଳ ଭିନ୍ନ ଭିନ୍ନ ବୋଲି ଭାବନ୍ତି, ସେମାନେ ଫଳଭେଦ କଳ୍ପନା କରି ଦୁଇ ସାଧନାକୁ ଭିନ୍ନ ବୋଲି ଭାବୁଥିବାରୁ ବାଳକ ହିଁ ଅଟନ୍ତି । କାରଣ ଏହି ଦୁଇ ଯୋଗର ସାଧନାପ୍ରଣାଳୀରେ ଭେଦ ରହିଥିଲେ ବି ଫଳରେ ଏକତ୍ୱ ରହିଥିବାରୁ ବସ୍ତୁତଃ ଦୁଇଟିମଧ୍ୟରେ ଏକତ୍ୱ ହିଁ ରହିଛି ।

**ପ୍ରଶ୍ନ –** କର୍ମଯୋଗର ଫଳସ୍ୱରୂପ ପରମାର୍ଥ-ଜ୍ଞାନଦ୍ୱାରା ପରମପଦ ମିଳେ ବୋଲି କହିବା ଉଚିତ ହୋଇଛି ; କାରଣ "ମୁଁ ତାଙ୍କୁ ସେହି ବୁଦ୍ଧିଯୋଗ ଦିଏ, ଯାହାଦ୍ୱାରା ସେ ମୋତେ ପ୍ରାପ୍ତ ହୁଅନ୍ତି (୧୦/୧୦); ତାଙ୍କ ଉପରେ ଦୟା କରି ହିଁ ମୁଁ ଜ୍ଞାନରୂପକ ଦୀପଦ୍ୱାରା ତାଙ୍କର ଅଜ୍ଞାନ-ଅନ୍ଧକାର ଦୂର କରିଦିଏ (୧୦/୧୧); କର୍ମଯୋଗବଳରେ ଶୁଦ୍ଧାନ୍ତଃକରଣ ହୋଇ ସେ ସ୍ୱତଃ ସେହି ଜ୍ଞାନ ପାଇଯାଆନ୍ତି (୪/୩୮)" ଇତ୍ୟାଦି ଇତ୍ୟାଦି ଯେଉଁ କଥା ଭଗବାନ୍ କହିଛନ୍ତି, ସେଥିରୁ ତାହା ସିଦ୍ଧ ହୋଇଯାଏ । କିନ୍ତୁ ସାଂଖ୍ୟଯୋଗ ତ ସ୍ୱୟଂ ତତ୍ତ୍ୱଜ୍ଞାନ;

ତାଙ୍କର ଫଳରୂପକ ତତ୍ତ୍ୱଜ୍ଞାନଦ୍ୱାରା ମୋକ୍ଷପ୍ରାପ୍ତି ହୁଏ ବୋଲି ମାନିନେବା କିପରି ?

**ଉତ୍ତର —** ପରମାର୍ଥତତ୍ତ୍ୱଜ୍ଞାନର ନାମ 'ସାଂଖ୍ୟଯୋଗ' ନୁହେଁ; 'ସାଂଖ୍ୟଯୋଗ' ହେଉଛି ତତ୍ତ୍ୱଜ୍ଞାନୀମାନଙ୍କ ଠାରୁ ଶୁଣିଥିବା ଉପଦେଶ ଅନୁଯାୟୀ ଯେଉଁ ସାଧନା କରାଯାଏ, ସେହି ସାଧନାର ନାମ। କାରଣ ତେର ଅଧ୍ୟାୟର ଚବିଶ ଶ୍ଳୋକରେ ଧ୍ୟାନଯୋଗ, ସାଂଖ୍ୟଯୋଗ ଓ କର୍ମଯୋଗ — ଏହି ତିନି ଯୋଗକୁ ଆତ୍ମଦର୍ଶନର ଭିନ୍ନ ଭିନ୍ନ ସ୍ୱତନ୍ତ୍ର ସାଧନା ବୋଲି କୁହାଯାଇଛି। ତେଣୁ ସାଂଖ୍ୟଯୋଗର ଫଳରୂପକ ପରମାର୍ଥଜ୍ଞାନଦ୍ୱାରା ମୋକ୍ଷପ୍ରାପ୍ତି ହୁଏ ବୋଲି କହିବା ଉଚିତ ହୋଇଛି। ଭଗବାନ୍ ଅଠର ଅଧ୍ୟାୟର ଅଣଚାଶ ଶ୍ଳୋକଠାରୁ ପଞ୍ଚାବନ ଶ୍ଳୋକପର୍ଯ୍ୟନ୍ତ ଜ୍ଞାନନିଷ୍ଠା ବର୍ଣ୍ଣନା କରି କହିଛନ୍ତି ଯେ, ବ୍ରହ୍ମଭୂତ ହୋଇଯିବା ଅର୍ଥାତ୍ 'ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥିତ ହେବା'ରୂପକ ସାଂଖ୍ୟଯୋଗ ପାଇଯିବା ଫଳରେ ଯୋଗୀ ତତ୍ତ୍ୱଜ୍ଞାନରୂପକ ପରାଭକ୍ତି ଲାଭ କରନ୍ତି ଓ ତଦ୍ଦ୍ୱାରା ପରମାତ୍ମାଙ୍କ ସ୍ୱରୂପକୁ ଯଥାର୍ଥରୂପେ ଜାଣିପାରି ସେଥିରେ ପ୍ରବେଶ କରନ୍ତି। ଏଥିରୁ ଏହା ସ୍ପଷ୍ଟ ହୋଇଯାଏ ଯେ, ସାଂଖ୍ୟଯୋଗସାଧନାରୁ ଯଥାର୍ଥ ତତ୍ତ୍ୱଜ୍ଞାନ ମିଳେ ଓ ସେଥିରୁ ମୋକ୍ଷପ୍ରାପ୍ତି ହୁଏ।

**ପ୍ରଶ୍ନ — ପଣ୍ଡିତ** ଶବ୍ଦର ଅର୍ଥ କଣ ?

**ଉତ୍ତର —** ପରମାର୍ଥ-ତତ୍ତ୍ୱଜ୍ଞାନରୂପକ ବୁଦ୍ଧିର ନାମ **ପଣ୍ଡା** ଏବଂ ସେହି ବୁଦ୍ଧି ଯାହାଙ୍କ ଠାରେ ଥାଏ, ତାଙ୍କୁ **ପଣ୍ଡିତ** କୁହାଯାଏ। ଅତଏବ ଯଥାର୍ଥ ତତ୍ତ୍ୱଜ୍ଞାନୀ ସିଦ୍ଧମହାପୁରୁଷଙ୍କୁ ପଣ୍ଡିତ କୁହାଯାଏ।

**ପ୍ରଶ୍ନ —** ଗୋଟିଏ ହିଁ ନିଷ୍ଠାରେ ପୂର୍ଣ୍ଣରୂପେ ଅବସ୍ଥିତ ପୁରୁଷ ଦୁଇଟି ନିଷ୍ଠାର ଫଳ କିପରି ପାଇଯାଆନ୍ତି ?

**ଉତ୍ତର —** ଉଭୟ ନିଷ୍ଠାର ଫଳ ଏକ ଏବଂ ସେହି ଫଳଟି ହେଉଛି ପରମାର୍ଥଜ୍ଞାନଦ୍ୱାରା ପରମାତ୍ମପ୍ରାପ୍ତି। ଅତଏବ କହିବା ଠିକ୍ ଯେ, କୌଣସିଏମାତ୍ର ନିଷ୍ଠାରେ ପୂର୍ଣ୍ଣରୂପେ ଅବସ୍ଥିତ ପୁରୁଷ ଦୁଇଟିଯାକ ନିଷ୍ଠାର ଫଳ ପାଇଯାଆନ୍ତି। ଯଦି କର୍ମଯୋଗର ଫଳ ସାଂଖ୍ୟଯୋଗ ହୋଇଥାନ୍ତା ଏବଂ ସାଂଖ୍ୟଯୋଗର ଫଳ ପରମାତ୍ମ-ସାକ୍ଷାତ୍କାରରୂପକ ମୋକ୍ଷପ୍ରାପ୍ତି ହୋଇଥାନ୍ତା, ତେବେ ଦୁଇଟିରେ ଫଳଭେଦ ରହିଥିବାରୁ, ଏପରି କହିବା ଉଚିତ ହୋଇ ନ ଥାନ୍ତା। କାରଣ ଏପରି ମାନିଲେ, ସାଂଖ୍ୟଯୋଗରେ ପୂର୍ଣ୍ଣରୂପେ ଅବସ୍ଥିତ ପୁରୁଷ କର୍ମଯୋଗର ଫଳସ୍ୱରୂପ ସାଂଖ୍ୟଯୋଗରେ ତ ପୂର୍ବରୁ ହିଁ ଅବସ୍ଥିତ ଅଛନ୍ତି, ସେ ପୁଣି କର୍ମଯୋଗର ଫଳ ଆଉ ପାଆନ୍ତେ କଣ ? ଏବଂ କର୍ମଯୋଗରେ ପୂର୍ଣ୍ଣରୂପେ ଅବସ୍ଥିତ ପୁରୁଷ ଯଦି ସାଂଖ୍ୟଯୋଗରେ ଅବସ୍ଥିତ ହୋଇ ହିଁ ପରମାତ୍ମାଙ୍କୁ ପାଇଯାଆନ୍ତି, ତେବେ ତ ସେ ସାଂଖ୍ୟଯୋଗର ଫଳ ସାଂଖ୍ୟଯୋଗଦ୍ୱାରା ହିଁ ପାଆନ୍ତେ, ପୁଣି ଗୋଟିଏ ହିଁ ନିଷ୍ଠାରେ ପୂର୍ଣ୍ଣରୂପେ ଅବସ୍ଥିତ ପୁରୁଷ ଉଭୟ ନିଷ୍ଠାର ଫଳ ପାଇଯାଆନ୍ତି ବୋଲି କହିବାର ସାର୍ଥକତା କଣ ? ତେଣୁ ଏଥିରୁ ପ୍ରତୀତ ହୁଏ ଯେ, ଏହି ନିଷ୍ଠାଦୁଇଟି ସ୍ୱତନ୍ତ୍ର। କିନ୍ତୁ ଦୁହିଁଙ୍କର ଫଳ ଏକ। ଏପରି ମାନିନେଲେ ହିଁ ଭଗବାନଙ୍କର କହିବା ସାର୍ଥକ ହୋଇଯାଏ ଯେ, ଦୁଇଟିମଧ୍ୟରୁ ଯେକୌଣସି ଗୋଟିଏ ନିଷ୍ଠାରେ ଭଲଭାବେ ଅବସ୍ଥିତ ପୁରୁଷ ଉଭୟ ନିଷ୍ଠାର ଫଳ ପ୍ରାପ୍ତ ହୁଅନ୍ତି। ତେର ଅଧ୍ୟାୟର ଚବିଶ ଶ୍ଳୋକରେ ବି ଭଗବାନ୍ ଏହି ନିଷ୍ଠାଦୁଇଟିକୁ ଆତ୍ମସାକ୍ଷାତ୍କାରର ଭିନ୍ନ ଭିନ୍ନ ଦୁଇଟି ସାଧନା ବୋଲି କହିଛନ୍ତି।

**ପ୍ରଶ୍ନ —** ପ୍ରଥମ ଶ୍ଳୋକରେ ଅର୍ଜୁନ କର୍ମସନ୍ନ୍ୟାସ ଓ କର୍ମଯୋଗ ବୋଲି ଦୁଇଟି ନାମ କହି ପ୍ରଶ୍ନ କରିଥିଲେ, ପୁଣି ଦ୍ୱିତୀୟ ଶ୍ଳୋକରେ ଭଗବାନ୍ ବି ସେହି ଦୁଇଟି ଶବ୍ଦଦ୍ୱାରା ଉଭୟେ କଲ୍ୟାଣକର ବୋଲି ଉତ୍ତର ଦେଇଛନ୍ତି। ଏଠାରେ ସେହି ପ୍ରକରଣରେ 'ସାଂଖ୍ୟ' ଓ 'ଯୋଗ' ବୋଲି ଦୁଇଟି ନାମ କହି ସେହି ଉଭୟର ଫଳମଧ୍ୟରେ ଏକତ୍ୱ ରହିଛି ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** କର୍ମସନ୍ନ୍ୟାସର ଅର୍ଥ 'କର୍ମମାନଙ୍କୁ ସ୍ୱରୂପତଃ ତ୍ୟାଗ କରିଦେବା' ବୋଲି ଓ କର୍ମଯୋଗର ଅର୍ଥ 'ଯଥା ତଥା କର୍ମ କରିଚାଲିବା' ବୋଲି ଭୁଲ ବୁଝି ଲୋକେ ଯେପରି ଭ୍ରମରେ ପଡ଼ି ନ ଯାଆନ୍ତି, ସେଥିପାଇଁ ସେହି ଦୁଇଟିକୁ ଦୁଇଟି ଭିନ୍ନ ଶବ୍ଦରେ ବର୍ଣ୍ଣନା କରି ଭଗବାନ୍ ସ୍ପଷ୍ଟ କରିଦେଇଛନ୍ତି ଯେ, କର୍ମସନ୍ନ୍ୟାସର ଅର୍ଥ ହେଉଛି 'ସାଂଖ୍ୟ' ଏବଂ କର୍ମଯୋଗର ଅର୍ଥ ହେଉଛି ସିଦ୍ଧି ଓ ଅସିଦ୍ଧିରେ ସମତ୍ୱରୂପକ 'ଯୋଗ' (୨/୪୮)। ଅତଏବ ଦ୍ୱିତୀୟୋକ୍ତ ଶବ୍ଦଦୁଇଟି ପ୍ରୟୋଗ କରି ଭଗବାନ୍ କୌଣସି ନୂଆ କଥା କହି ନାହାନ୍ତି।

**ପ୍ରଶ୍ନ —** ଏଠାରେ ଅପିରୁ କେଉଁ ଭାବ ମିଳୁଛି ?

**ଉତ୍ତର — ଅପି** ସ୍ପଷ୍ଟ କରିଦେଉଛି ଯେ, ଭଲଭାବରେ କଲେ, ଉଭୟ ସାଧନା ନିଜ ନିଜର ଫଳଦାନରେ ସର୍ବଥା ସ୍ୱତନ୍ତ୍ର ଓ ସମର୍ଥ ହୁଅନ୍ତି।

**ଯତ୍‌ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍ୟୋଗୈରପି ଗମ୍ୟତେ ।**
**ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି ॥ ୫ ॥**

**ଅନ୍ୱୟ –** **ସାଂଖ୍ୟୈଃ** = ଜ୍ଞାନଯୋଗୀମାନଙ୍କ ଦ୍ୱାରା; **ଯତ୍** = ଯେଉଁ; **ସ୍ଥାନମ୍** = ପରମଧାମ; **ପ୍ରାପ୍ୟତେ** = ପ୍ରାପ୍ତ କରାଯାଏ; **ଯୋଗୈଃ** = କର୍ମଯୋଗୀମାନଙ୍କ ଦ୍ୱାରା; **ଅପି** = ମଧ୍ୟ; **ତତ୍** = ସେହି (ପରମଧାମ); **ଗମ୍ୟତେ** = ପ୍ରାପ୍ତ କରାଯାଏ; **ଯଃ** = (ଏଣୁ) ଯେଉଁ ପୁରୁଷ; **ସାଂଖ୍ୟମ୍** = ଜ୍ଞାନଯୋଗକୁ; **ଚ** = ଏବଂ; **ଯୋଗମ୍** = କର୍ମଯୋଗକୁ; **ଏକମ୍** = (ଫଳରୂପରେ) ଏକ (ବୋଲି); **ପଶ୍ୟତି** = ଦେଖେ; **ସଃ** = ସେ; **ଚ** = ହିଁ; **ପଶ୍ୟତି** = (ଯଥାର୍ଥ) ଦେଖେ ।

**ଜ୍ଞାନଯୋଗୀମାନଙ୍କ ଦ୍ୱାରା ଯେଉଁ ପରମଧାମ ପ୍ରାପ୍ତ କରାଯାଏ, କର୍ମଯୋଗୀମାନଙ୍କ ଦ୍ୱାରା ମଧ୍ୟ ସେହି ପରମଧାମ ପ୍ରାପ୍ତ କରାଯାଏ । ତେଣୁ ଯେଉଁ ପୁରୁଷ ଜ୍ଞାନଯୋଗ ଓ କର୍ମଯୋଗକୁ ଫଳରୂପରେ ଏକ ବୋଲି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି ॥ ୫ ॥**

**ପ୍ରଶ୍ନ –** ଯଦି ସାଂଖ୍ୟଯୋଗ ଓ କର୍ମଯୋଗ ଦୁଇଟି ସର୍ବଥା ସ୍ୱତନ୍ତ୍ର ମାର୍ଗ ଓ ସେହି ଦୁଇଟିର ସାଧନାପ୍ରଣାଳୀରେ ପୂର୍ବକୁ ଯାଇଥିବା ମାର୍ଗ ଓ ପଶ୍ଚିମକୁ ଯାଇଥିବା ମାର୍ଗପରି ପରସ୍ପରଭେଦ (ଯେପରି ଦ୍ୱିତୀୟ ଶ୍ଳୋକର ବ୍ୟାଖ୍ୟାରେ କୁହାଯାଇଛି) ଥାଏ, ତେବେ ଉଭୟପ୍ରକାର ସାଧନାରୁ ଏକା ଫଳ ମିଳେ କିପରି ?

**ଉତ୍ତର –** ଭାରତରୁ ଆମେରିକା ଯିବାକୁ ଚାହୁଁଥିବା ଲୋକ ଯେପରି ଏକମୁହାଁ ହୋଇ ଠିକ୍ ରାସ୍ତା ଧରି କେବଳ ପୂର୍ବଦିଗକୁ ଚାଲିଲେ ଆମେରିକାରେ ପହଞ୍ଚିବ ଏବଂ ଏକମୁହାଁ ହୋଇ ଠିକ୍ ରାସ୍ତାରେ କେବଳ ପଶ୍ଚିମ ଦିଗକୁ ଚାଲିଲେ ବି ଆମେରିକାରେ ପହଞ୍ଚିବ, ଠିକ୍ ସେହିପରି ସାଂଖ୍ୟଯୋଗ ଓ କର୍ମଯୋଗର ସାଧନାପ୍ରଣାଳୀରେ ପରସ୍ପର ଭେଦ ଥିଲେ ବି, ଯେଉଁ ମନୁଷ୍ୟ ତନ୍ମଧ୍ୟରୁ ଯେକୌଣସି ଗୋଟିଏ ସାଧନାରେ ଦୃଢ଼ବ୍ରତ ହୋଇ ଲାଗିରହେ, ସେ ଉଭୟଯୋଗର ଏକମାତ୍ର ପରମଲକ୍ଷ୍ୟ ପରମାତ୍ମାଙ୍କ ଠାରେ ପହଞ୍ଚିଯାଏ ।

***ସମ୍ବନ୍ଧ –*** *ସାଂଖ୍ୟଯୋଗ ଓ କର୍ମଯୋଗର ଫଳ ଏକ ବୋଲି କହିସାରି ବର୍ତ୍ତମାନ କର୍ମଯୋଗର ସାଧନାବିଷୟକ ବିଶେଷତ୍ୱଟି ଭଗବାନ୍ ସ୍ପଷ୍ଟ କରିଦେଉଛନ୍ତି –*

**ସଂନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ ।**
**ଯୋଗଯୁକ୍ତୋ ମୁନିର୍ବ୍ରହ୍ମ ନଚିରେଣାଧିଗଚ୍ଛତି ॥ ୬ ॥**

**ଅନ୍ୱୟ –** **ତୁ** = କିନ୍ତୁ; **ମହାବାହୋ** = ହେ ଅର୍ଜୁନ; **ଅଯୋଗତଃ** = କର୍ମଯୋଗ ବିନା; **ସଂନ୍ୟାସଃ** = ସନ୍ନ୍ୟାସ ଅର୍ଥାତ୍ ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣତ୍ୟାଗ; **ଆପ୍ତୁମ୍** = ପ୍ରାପ୍ତ ହେବା; **ଦୁଃଖମ୍** = କଠିନ ଅଟେ (ଓ); **ମୁନିଃ** = ଭଗବତ୍ ସ୍ୱରୂପକୁ ମନନ କରୁଥିବା; **ଯୋଗଯୁକ୍ତଃ** = କର୍ମଯୋଗୀ; **ବ୍ରହ୍ମ** = ପରବ୍ରହ୍ମ ପରମାତ୍ମାଙ୍କୁ; **ନଚିରେଣ** = ଶୀଘ୍ର ହିଁ; **ଅଧିଗଚ୍ଛତି** = ପ୍ରାପ୍ତ ହୋଇଯାଏ ।

**କିନ୍ତୁ ହେ ଅର୍ଜୁନ! କର୍ମଯୋଗ ବିନା ସଂନ୍ୟାସ ଅର୍ଥାତ୍ ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣତ୍ୟାଗ ପାଇପାରିବା କଠିନ ଏବଂ ଭଗବଦ୍‌ସ୍ୱରୂପକୁ ମନନ କରୁଥିବା କର୍ମଯୋଗୀ ପରବ୍ରହ୍ମ ପରମାତ୍ମାଙ୍କୁ ଶୀଘ୍ର ହିଁ ପାଇଯାଆନ୍ତି ।॥ ୬ ॥**

**ପ୍ରଶ୍ନ –** ଏଠାରେ ତୁ ର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ତୁ ଏହି ବିଲକ୍ଷଣତାକୁ ସ୍ପଷ୍ଟ କରିଦେଉଛି ଯେ, ସନ୍ନ୍ୟାସ (ସାଂଖ୍ୟଯୋଗ) ଓ କର୍ମଯୋଗ ଉଭୟର ଫଳ ଏକ ହୋଇଥିଲେ ବି କର୍ମଯୋଗସାଧନାଠାରୁ ସାଂଖ୍ୟଯୋଗସାଧନା କଷ୍ଟକର ।

**ପ୍ରଶ୍ନ –** ଏଠାରେ ଅର୍ଜୁନଙ୍କୁ ମହାବାହୋ ବୋଲି ସମ୍ବୋଧନ କରି ଭଗବାନ୍ କେଉଁ ଭାବ ବ୍ୟକ୍ତ କରୁଛନ୍ତି ?

**ଉତ୍ତର –** ଯାହାଙ୍କର 'ବାହୁ' ମହାନ୍, ତାଙ୍କୁ 'ମହାବାହୁ' କହନ୍ତି । ଭାଇ ଓ ମିତ୍ରଙ୍କୁ ମଧ୍ୟ 'ବାହୁ' କୁହାଯାଏ । ଅତଏବ ଏପରି ସମ୍ବୋଧନଦ୍ୱାରା ଭଗବାନ୍

ଯେଉଁ ଭାବ ବ୍ୟକ୍ତ କରି ଅର୍ଜୁନଙ୍କୁ ଉତ୍ସାହିତ କରୁଛନ୍ତି, ତାହା ହେଲା, ''ତୁମର ଭାଇ ଯୁଧିଷ୍ଠିର ମହାନ୍ ଧର୍ମାତ୍ମା ଏବଂ ତୁମର ମିତ୍ର ସାକ୍ଷାତ୍ ମୁଁ— ପରମେଶ୍ୱର। ତେଣୁ ତୁମର ଆଉ ଚିନ୍ତା କ'ଣ? ତୁମ ପାଇଁ ତ ସକଳପ୍ରକାର ସୁବିଧା ପ୍ରଚୁରମାତ୍ରାରେ ରହିଛି।''

**ପ୍ରଶ୍ନ —** ଯଦି ସାଂଖ୍ୟଯୋଗ ଓ କର୍ମଯୋଗ ଦୁଇଟି ଭିନ୍ନ ଭିନ୍ନ ମାର୍ଗ, ତେବେ ଏଠାରେ କିପରି କୁହାଯାଇଛି ଯେ, କର୍ମଯୋଗ ବିନା ସନ୍ନ୍ୟାସ ପାଇବା କଠିନ?

**ଉତ୍ତର —** ଭିନ୍ନ ଭିନ୍ନ ସାଧନା ହୋଇଥିଲେ ମଧ୍ୟ ଏ ଦୁଇଟିମଧ୍ୟରେ ସରଳତା ଓ କଠିନତା ନେଇ ଯେଉଁ ପ୍ରଭେଦ ରହିଛି, ତାହା ସ୍ପଷ୍ଟ କରିଦେବା ନିମନ୍ତେ ଭଗବାନ୍ ଏପରି କହିଛନ୍ତି। ଧରନ୍ତୁ, ଜଣେ ମୁମୁକ୍ଷୁ ପୁରୁଷ ଅଛନ୍ତି ଏବଂ ସେ ମାନନ୍ତି ଯେ, 'ସମସ୍ତ ଦୃଶ୍ୟଜଗତ୍ ହେଉଛି ସ୍ୱପ୍ନପରି ମିଥ୍ୟା; ଏକମାତ୍ର ବ୍ରହ୍ମ ହିଁ ସତ୍ୟ। ଏହି ସମସ୍ତ ପ୍ରପଞ୍ଚ ମାୟାଦ୍ୱାରା ସେହି ବ୍ରହ୍ମ ଠାରେ ଅଧ୍ୟାରୋପିତ ହୋଇଛି; ବସ୍ତୁତଃ ବ୍ରହ୍ମ ଭିନ୍ନ ଅନ୍ୟ କୌଣସି ସତ୍ତା ହିଁ ନାହିଁ।' କିନ୍ତୁ ଏପରି ମାନୁଥିଲେ ବି ତାଙ୍କର ଅନ୍ତଃକରଣ ଶୁଦ୍ଧ ନୁହେଁ; ତାଙ୍କ ଭିତରେ ରାଗ-ଦ୍ୱେଷ ତଥା କାମକ୍ରୋଧାଦି ଦୋଷ ରହିଯାଇଛି। ସେ ଯଦି ନିଜର ଅନ୍ତଃକରଣର ଶୁଦ୍ଧିପାଇଁ କୌଣସି ଚେଷ୍ଟା ନ କରି କେବଳ ନିଜ ମାନ୍ୟତାର ଭରସା ଉପରେ ସାଂଖ୍ୟଯୋଗସାଧନାରେ ଲାଗିରହନ୍ତି, ତେବେ ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ତିରିଶ ଶ୍ଳୋକ ମଧ୍ୟରେ ତଥା ଅଠର ଅଧ୍ୟାୟର ଅଣଚାଶ ଶ୍ଳୋକଠାରୁ ପଞ୍ଚାବନ ଶ୍ଳୋକ ମଧ୍ୟରେ କୁହାଯାଇଥିବା ସାଂଖ୍ୟନିଷ୍ଠା ତାଙ୍କୁ ସହଜରେ ମିଳିପାରିବ ନାହିଁ। କାରଣ ଯେପର୍ଯ୍ୟନ୍ତ ଶରୀର ପ୍ରତି ଅହଂଭାବ ରହିଛି, ଭୋଗରେ ମମତ୍ୱ ରହିଛି ଏବଂ ଅନୁକୂଳତା ଓ ପ୍ରତିକୂଳତାରେ ରାଗ-ଦ୍ୱେଷ ରହିଛି, ସେପର୍ଯ୍ୟନ୍ତ ତାଙ୍କ ଦ୍ୱାରା ଜ୍ଞାନନିଷ୍ଠାର ସାଧନା ହୋଇପାରିବା, ଅର୍ଥାତ୍ ସକଳ କର୍ମରେ କର୍ତ୍ତୃତ୍ୱାଭିମାନତ୍ୟାଗପୂର୍ବକ ନିରନ୍ତର ସଚ୍ଚିଦାନନ୍ଦଘନ ନିର୍ଗୁଣ ନିରାକାର ବ୍ରହ୍ମଙ୍କ ସ୍ୱରୂପରେ ଅଭିନ୍ନଭାବରେ ରହିପାରିବା ତ ଦୂରର କଥା, ଜ୍ଞାନନିଷ୍ଠାର ଅର୍ଥ ବି ବୁଝିପାରିବା କଠିନ ହେବ। ଏହା ଛଡ଼ା ଅନ୍ତଃକରଣ ଅଶୁଦ୍ଧ ହୋଇ ରହିଥିବାରୁ ମୋହବଶତଃ ଜଗତର ନିୟନ୍ତ୍ରଣକର୍ତ୍ତା ତଥା କର୍ମଫଳଦାତା ଭଗବାନଙ୍କ ଠାରେ ଏବଂ ସ୍ୱର୍ଗନରକାଦି କର୍ମଫଳରେ ତାଙ୍କର ବିଶ୍ୱାସ ରହିବ ନାହିଁ; ଫଳତଃ ସେ ପରିଶ୍ରମସାଧ୍ୟ ଶୁଭକର୍ମ ତ୍ୟାଗ କରିଦେବା ସହିତ ବିଷୟାସକ୍ତି ଆଦି ଦୋଷହେତୁ ପାପମୟ ଭୋଗରେ ଲିପ୍ତ ହୋଇ କଲ୍ୟାଣମାର୍ଗରୁ ଖସିପଡ଼ିବାର ମଧ୍ୟ ବହୁ ସମ୍ଭାବନା ରହିଛି। ଅତଏବ ଏହିପରି ଧାରଣା ରଖିଥିବା ଲୋକଙ୍କ ନିମନ୍ତେ, ଅର୍ଥାତ୍ ସାଂଖ୍ୟଯୋଗ ହିଁ ପରମାତ୍ମସାକ୍ଷାତ୍କାରର ଏକମାତ୍ର ଉପାୟ ବୋଲି ମାନୁଥିବା ଲୋକଙ୍କ ନିମନ୍ତେ ଏହା ଏକାନ୍ତ ଆବଶ୍ୟକ ଯେ, ସାଂଖ୍ୟଯୋଗ ସାଧନାରେ ଲାଗିବା ପୂର୍ବରୁ ସେମାନଙ୍କୁ ନିଷ୍କାମଭାବରେ ଯଜ୍ଞ, ଦାନ, ତପ ଆଦି ଶୁଭକର୍ମ ଆଚରଣପୂର୍ବକ ନିଜ ନିଜର ଅନ୍ତଃକରଣକୁ ରାଗ-ଦ୍ୱେଷାଦି ଦୋଷରୁ ମୁକ୍ତ କରି ପରିଶୁଦ୍ଧ ହେବାକୁ ପଡ଼ିବ; ତେବେ ଯାଇଁ ସେମାନଙ୍କର ସାଂଖ୍ୟଯୋଗ ସାଧନା ନିର୍ବିଘ୍ନରେ ସମ୍ପନ୍ନ ହୋଇପାରିବ; ସେତେବେଳେ ଯାଇଁ ସେମାନଙ୍କୁ ସହଜରେ ସଫଳତା ମିଳିପାରିବ। ତେଣୁ ସେହି ଅଭିପ୍ରାୟ ରଖି ଏଠାରେ କୁହାଗଲା ଯେ, କର୍ମଯୋଗ ବିନା ସନ୍ନ୍ୟାସପ୍ରାପ୍ତି କଠିନ।

**ପ୍ରଶ୍ନ —** ଏଠାରେ କାହାପାଇଁ **ମୁନିଃ** ବିଶେଷଣ ସହିତ **ଯୋଗଯୁକ୍ତଃ** ପ୍ରୟୋଗ କରାଯାଇଛି ଏବଂ ସେ କିପରି ପରବ୍ରହ୍ମ ପରମାତ୍ମାଙ୍କୁ ଶୀଘ୍ର ପ୍ରାପ୍ତ ହୁଅନ୍ତି?

**ଉତ୍ତର —** ଯେଉଁ ମନୁଷ୍ୟ ସବୁକିଛି ଭଗବାନଙ୍କର ବୋଲି ବୁଝି ସିଦ୍ଧି-ଅସିଦ୍ଧିରେ ସମଭାବ ରଖନ୍ତି, ଆସକ୍ତି ଓ ଫଳ ଇଚ୍ଛା ତ୍ୟାଗ କରି ଭଗବଦାଜ୍ଞାନୁସାରେ ସମସ୍ତ କର୍ତ୍ତବ୍ୟକର୍ମ ଆଚରଣ କରନ୍ତି ଏବଂ ଶ୍ରଦ୍ଧା-ଭକ୍ତିପୂର୍ବକ ନାମ, ଗୁଣ ଓ ପ୍ରଭାବ ସହିତ ଶ୍ରୀଭଗବାନଙ୍କ ସ୍ୱରୂପ ଚିନ୍ତନ କରନ୍ତି, ସେହି ଭକ୍ତିଯୁକ୍ତ କର୍ମଯୋଗୀଙ୍କ ପାଇଁ **ମୁନିଃ** ବିଶେଷଣ ସହିତ **ଯୋଗଯୁକ୍ତଃ** ପ୍ରୟୋଗ କରାଯାଇଛି। ଏପରି କର୍ମଯୋଗୀ ଭଗବାନଙ୍କ ଦୟାରୁ ପରମାର୍ଥଜ୍ଞାନଦ୍ୱାରା ଶୀଘ୍ର ହିଁ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଆନ୍ତି।

**ପ୍ରଶ୍ନ —** ଏଠାରେ **ମୁନିଃ** ପଦର ଅର୍ଥ ବାକ୍‌ସଂଯମୀ ବା ଜିତେନ୍ଦ୍ରିୟ ସାଧକ ବୋଲି ଗ୍ରହଣ କଲେ ଆପତ୍ତି କଣ?

**ଉତ୍ତର —** ଭଗବାନଙ୍କ ସ୍ୱରୂପକୁ ଚିନ୍ତନ କରୁଥିବା କର୍ମଯୋଗୀ ତ ବାକ୍‌ସଂଯମୀ ଓ ଜିତେନ୍ଦ୍ରିୟ ହୋଇ ହିଁ ଥାଆନ୍ତି; ଏଥିରେ ଆପତ୍ତି କାହିଁକି କରାଯିବ?

**ପ୍ରଶ୍ନ —** ବ୍ରହ୍ମ ଶବ୍ଦର ଅର୍ଥ ସଗୁଣ ପରମେଶ୍ୱର, ନା ନିର୍ଗୁଣ ପରମାତ୍ମା?

**ଉତ୍ତର —** ସଗୁଣ ଓ ନିର୍ଗୁଣ ପରମାତ୍ମା ବସ୍ତୁତଃ ବିଭିନ୍ନ ବସ୍ତୁ ନୁହନ୍ତି। ଏ ଦୁହେଁ ହେଉଛନ୍ତି ଏକ ହିଁ ପରମପୁରୁଷଙ୍କର ଦୁଇ ସ୍ୱରୂପ। ଅତଏବ ବୁଝିବା ଆବଶ୍ୟକ ଯେ, 'ବ୍ରହ୍ମ' ଶବ୍ଦର ଅର୍ଥ ସଗୁଣ ପରମେଶ୍ୱର ହୋଇପାରିବ; ନିର୍ଗୁଣ ପରମାତ୍ମା ବି ହୋଇପାରିବ।

*ସମ୍ବନ୍ଧ – ବର୍ତ୍ତମାନ ଉପରୋକ୍ତ କର୍ମଯୋଗୀଙ୍କ ଲକ୍ଷଣ ବର୍ଣ୍ଣନା କରି ସେ କର୍ମରେ ଲିପ୍ତ ହୁଅନ୍ତି ନାହିଁ ବୋଲି କହୁଛନ୍ତି –*

**ଯୋଗଯୁକ୍ତୋ ବିଶୁଦ୍ଧାତ୍ମା ବିଜିତାତ୍ମା ଜିତେନ୍ଦ୍ରିୟଃ ।**
**ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ନପି ନ ଲିପ୍ୟତେ । ୭ ।।**

**ଅନ୍ୱୟ –** **ବିଜିତାତ୍ମା** = ଯାହାଙ୍କର ମନ ନିଜ ବଶରେ ଥାଏ; **ଜିତେ[ନ୍ଦ୍ରିୟଃ]** = ଯେ ଜିତେନ୍ଦ୍ରିୟ ଅଟନ୍ତି; **ବିଶୁଦ୍ଧାତ୍ମା** = (ଓ) ଯାହାଙ୍କର ଅନ୍ତଃକରଣ ବିଶୁଦ୍ଧ; **ସର୍ବଭୂତାତ୍ମଭୂତାତ୍ମା** = (ଏବଂ) ସ[କଳ] ପ୍ରାଣୀଙ୍କର ଆତ୍ମରୂପ ପରମାତ୍ମା ହିଁ ଯାହାଙ୍କର ଆତ୍ମା; **ଯୋଗଯୁକ୍ତଃ** = ସେହି କର୍ମଯୋଗୀ; **କୁର୍ବନ୍, ଅପି** = କର୍ମ [କରୁ]ଥିଲେ ମଧ୍ୟ; **ନ, ଲିପ୍ୟତେ** = ଲିପ୍ତ ହୁଅନ୍ତି ନାହିଁ ।

**ଯାହାଙ୍କର ମନ ନିଜ ବଶରେ ଥାଏ, ଯେ ଜିତେନ୍ଦ୍ରିୟ ଓ ଯାହାଙ୍କର ଅନ୍ତଃକରଣ ବିଶୁଦ୍ଧ ଏବଂ ସକଳ ପ୍ରାଣୀଙ୍କର ଆତ୍ମରୂପ ପରମାତ୍ମା ହିଁ ଯାହାଙ୍କର ଆତ୍ମା, ସେହି କର୍ମଯୋଗୀ କର୍ମ କରୁଥିଲେ ମଧ୍ୟ କର୍ମରେ ଲିପ୍ତ ହୁଅନ୍ତି ନାହିଁ ।। ୭ ।।**

**ପ୍ରଶ୍ନ – ଯୋଗଯୁକ୍ତଃ** ସହିତ **ବିଜିତାତ୍ମା, ଜିତେନ୍ଦ୍ରିୟଃ** ଓ **ବିଶୁଦ୍ଧାତ୍ମା** ବିଶେଷଣଗୁଡ଼ିକ କେଉଁ ଅଭିପ୍ରାୟରେ ଦିଆଯାଇଛି ?

**ଉତ୍ତର –** ମନ ଓ ଇନ୍ଦ୍ରିୟମାନେ ଯଦି ସାଧକର ବଶରେ ନ ରହନ୍ତି, ତେବେ ସ୍ୱଭାବତଃ ତା'ର ବିଷୟମାନଙ୍କରେ ପ୍ରବୃତ୍ତି ଆସିଯାଏ ଏବଂ ଯେପର୍ଯ୍ୟନ୍ତ ଅନ୍ତଃକରଣରେ ରାଗଦ୍ୱେଷାଦି ମଳ ରହିଥାଏ, ସେପର୍ଯ୍ୟନ୍ତ ସିଦ୍ଧି ଓ ଅସିଦ୍ଧିରେ ସମଭାବ ରହିପାରିବା କଠିନ । ଏଣୁ ମନ ଓ ଇନ୍ଦ୍ରିୟମାନେ ପୂର୍ଣ୍ଣରୂପେ ବଶ ନ ହେବାଯାଏ ଓ ଅନ୍ତଃକରଣ ପୂର୍ଣ୍ଣରୂପେ ପରିଶୁଦ୍ଧ ନ ହେବାଯାଏ, ସାଧକକୁ ବାସ୍ତବ କର୍ମଯୋଗୀ କୁହାଯାଇପାରିବ ନାହିଁ । ତେଣୁ ଏଠାରେ ଉପରୋକ୍ତ ବିଶେଷଣଗୁଡ଼ିକ ଦେଇ ବୁଝାଇଦିଆଯାଇଛି ଯେ, ଯାହାଙ୍କ ଠାରେ ଏସବୁ ଲକ୍ଷଣ ରହିଛି, ସେ ହିଁ ପୂର୍ଣ୍ଣ କର୍ମଯୋଗୀ; ତାଙ୍କୁ ଶୀଘ୍ର ବ୍ରହ୍ମପ୍ରାପ୍ତି ହୋଇଯାଏ ।

**ପ୍ରଶ୍ନ – ସର୍ବଭୂତାତ୍ମଭୂତାତ୍ମା** ପଦଟିର ଅଭିପ୍ରାୟ କଣ ?

**ଉତ୍ତର –** ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ସାମାନ୍ୟ ତୃଣପର୍ଯ୍ୟନ୍ତ ସକଳ ପ୍ରାଣୀଙ୍କ ଆତ୍ମରୂପ ପରମେଶ୍ୱର ହିଁ ଯାହାଙ୍କର ଆତ୍ମା ଅର୍ଥାତ୍ ଅନ୍ତର୍ଯାମୀ, ଯେ ତାଙ୍କରି ପ୍ରେରଣା ଅନୁସାରେ ସମସ୍ତ କର୍ମ କରନ୍ତି, ତଥା ଭଗବାନଙ୍କୁ ଛାଡ଼ି ଶରୀର, ମନ, ବୁଦ୍ଧି ତଥା ଅନ୍ୟ କୌଣସି ବି ବସ୍ତୁରେ ଯାହାଙ୍କର ମମତ୍ୱ ନାହିଁ, ସେ **ସର୍ବଭୂତାତ୍ମଭୂତାତ୍ମା** ।

**ପ୍ରଶ୍ନ –** ଏଠାରେ **ଅପି** ପ୍ରୟୋଗ କାହିଁକି କରାଯାଇଛି ?

**ଉତ୍ତର –** ସାଂଖ୍ୟଯୋଗୀ ନିଜକୁ କୌଣସି ବି କର୍ମର କର୍ତ୍ତା ବୋଲି ମାନନ୍ତି ନାହିଁ । ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ସକଳ କ୍ରିୟା ହୋଇ ଚାଲିଥିଲେ ବି, ସେ ଭାବନ୍ତି, ''ମୁଁ କିଛି ବି କରୁ ନାହିଁ; ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହେଉଛନ୍ତି; ମୋର ଏସବୁ ସହିତ କୌଣସି ସମ୍ବନ୍ଧ ନାହିଁ ।'' ତେଣୁ ସେ ଯେ କର୍ମରେ ଲିପ୍ତ ହୁଅନ୍ତି ନାହିଁ, ତାହା ଠିକ୍ । କିନ୍ତୁ ନିଜକୁ କର୍ତ୍ତା ବୋଲି ଭାବୁଥିବା କର୍ମଯୋଗୀ ମଧ୍ୟ ଭଗବାନଙ୍କ ଆଜ୍ଞାନୁସାରେ ତଥା ଭଗବାନଙ୍କ ନିମନ୍ତେ ସକଳ କର୍ମ କରୁଥିଲେ ବି କର୍ମଫଳରେ ଇଚ୍ଛା ବା ଆସକ୍ତି ନ ରଖୁଥିବାରୁ କର୍ମରେ ବାନ୍ଧିହୁଅନ୍ତି ନାହିଁ । ଏହା ତାଙ୍କର ବିଶେଷତ୍ୱ । ଏହି ଅଭିପ୍ରାୟରେ **ଅପି** ଶବ୍ଦ ପ୍ରୟୋଗ କରାଯାଇଛି ।

*ସମ୍ବନ୍ଧ – ଦ୍ୱିତୀୟ ଶ୍ଳୋକରେ ଭଗବାନ୍ କହିଲେ ଯେ, ସାଂଖ୍ୟଯୋଗର ଓ କର୍ମଯୋଗର ଫଳରେ ଏକତା ରହିଥିଲେ ବି ସୁଗମତାଦୃଷ୍ଟିରୁ କର୍ମଯୋଗ ସାଂଖ୍ୟଯୋଗ ଅପେକ୍ଷା ଶ୍ରେଷ୍ଠ । ପୁଣି ତୃତୀୟ ଶ୍ଳୋକରେ କର୍ମଯୋଗୀଙ୍କ ପ୍ରଶଂସା କରି ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଉଭୟ ସାଧନାର ଫଳରେ ଏକତ୍ୱ ଅଛି ବୋଲି ଏବଂ ସେ ଦୁଇଟି ସ୍ୱତନ୍ତ୍ର ସାଧନା ବୋଲି ଭଲରୂପେ ପ୍ରତିପାଦନ କରିଦେଲେ । ତା'ପରେ ଷଷ୍ଠ ଶ୍ଳୋକର ପୂର୍ବାର୍ଦ୍ଧରେ*

କର୍ମଯୋଗ ବିନା ସାଂଖ୍ୟଯୋଗ ସମ୍ପାଦନ କରିବା କଠିନ ବୋଲି କହି ଉତ୍ତରାର୍ଦ୍ଧରେ କର୍ମଯୋଗର ସୁଗମତା ପ୍ରତିପାଦନ କଲେ ଓ ସପ୍ତମ ଶ୍ଳୋକରେ କର୍ମଯୋଗୀଙ୍କ ଲକ୍ଷଣ କହିଦେଲେ। ଏଥିରୁ ବର୍ତ୍ତମାନ ଏହି ସିଦ୍ଧାନ୍ତ ମିଳିଲା ଯେ, ଉଭୟ ସାଧନାର ଫଳ ଏକା ହୋଇଥିଲେ ବି ସେ ଦୁଇଟି ପରସ୍ପର ଭିନ୍ନ। ଏହି ଦୁଇ ସାଧନାର ସ୍ୱରୂପ ଜାଣିବାକୁ ଇଚ୍ଛା ହୋଇପାରେ; ତେଣୁ ଭଗବାନ୍ ପ୍ରଥମେ ଅଷ୍ଟମ ଓ ନବମ ଶ୍ଳୋକରେ ସାଂଖ୍ୟଯୋଗୀଙ୍କ ବ୍ୟବହାରକାଳୀନ ସାଧନାର ସ୍ୱରୂପ କଣ, ତାହା କହୁଛନ୍ତି—

**ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍।**
**ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ ଅଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍॥ ୮ ॥**
**ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ ଉନ୍ମିଷନ୍ ନିମିଷନ୍ନପି।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍॥ ୯ ॥**

**ଅନ୍ୱୟ—** **ତତ୍ତ୍ୱବିତ୍** = ତତ୍ତ୍ୱଜ୍ଞ; **ଯୁକ୍ତଃ** = ସାଂଖ୍ୟଯୋଗୀ; **ପଶ୍ୟନ୍** = ଦେଖୁଥିଲେ; **ଶୃଣ୍ୱନ୍** = ଶୁଣୁଥିଲେ; **ସ୍ପୃଶନ୍** = ଛୁଉଁଥିଲେ; **ଜିଘ୍ରନ୍** = ଶୁଙ୍ଘୁଥିଲେ; **ଅଶ୍ନନ୍** = ଖାଉଥିଲେ; **ଗଚ୍ଛନ୍** = ଯାଉଥିଲେ; **ସ୍ୱପନ୍** = ଶୋଉଥିଲେ; **ଶ୍ୱସନ୍** = ଶ୍ୱାସକ୍ରିୟା କରୁଥିଲେ; **ପ୍ରଲପନ୍** = କଥା କହୁଥିଲେ; **ବିସୃଜନ୍** = ତ୍ୟାଗ କରୁଥିଲେ; **ଗୃହ୍ଣନ୍** = ଗ୍ରହଣ କରୁଥିଲେ; **ଉନ୍ମିଷନ୍** = ଆଖି ଖୋଲୁଥିଲେ; **ନିମିଷନ୍** = ଆଖି ବୁଜୁଥିଲେ; **ଅପି** = ମଧ୍ୟ; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନେ; **ଇନ୍ଦ୍ରିୟାର୍ଥେଷୁ** = ନିଜ ନିଜ ଅର୍ଥରେ; **ବର୍ତ୍ତନ୍ତେ** = ପ୍ରବୃତ୍ତ ହେଉଛନ୍ତି; **ଇତି** = ଏପରି ବୋଲି; **ଧାରୟନ୍** = ଜାଣି; **ଇତି, ମନ୍ୟେତ** = ଏପରି ଭାବିବା ଉଚିତ ଯେ; **ନ, ଏବ, କିଞ୍ଚିତ୍, କରୋମି** = ମୁଁ କିଛି ହିଁ କରୁ ନାହିଁ।

**ତତ୍ତ୍ୱଜ୍ଞ ସାଂଖ୍ୟଯୋଗୀ ଦେଖୁଥିଲେ, ଶୁଣୁଥିଲେ, ଛୁଉଁଥିଲେ, ଶୁଙ୍ଘୁଥିଲେ, ଖାଉଥିଲେ, ଯାଉଥିଲେ, ଶୋଉଥିଲେ, ଶ୍ୱାସକ୍ରିୟା କରୁଥିଲେ, କଥା କହୁଥିଲେ, ତ୍ୟାଗ କରୁଥିଲେ, ଗ୍ରହଣ କରୁଥିଲେ ତଥା ଆଖି ଖୋଲୁଥିଲେ, ବୁଜୁଥିଲେ ଇତ୍ୟାଦି ସବୁ କରୁଥିଲେ ବି ଇନ୍ଦ୍ରିୟମାନେ ହିଁ ନିଜ ନିଜ ଅର୍ଥରେ ପ୍ରବୃତ୍ତ ହେଉଛନ୍ତି ବୋଲି ଜାଣି 'ମୁଁ କିଛି ବି କରୁ ନାହିଁ' ବୋଲି ଭାବିବା ଉଚିତ।॥ ୮,୯ ॥**

**ପ୍ରଶ୍ନ—** ଏଠାରେ **ତତ୍ତ୍ୱବିତ୍** ଓ **ଯୁକ୍ତଃ** ଏହି ଦୁଇଟି ବିଶେଷଣ ପଦ ପ୍ରୟୋଗର ଅଭିପ୍ରାୟ କଣ?

**ଉତ୍ତର—** 'ସମଗ୍ର ଦୃଶ୍ୟପ୍ରପଞ୍ଚ କ୍ଷଣଭଙ୍ଗୁର ଓ ଅନିତ୍ୟ ହୋଇଥିବାରୁ ମୃଗତୃଷ୍ଣାର ଜଳପରି ବା ସ୍ୱପ୍ନର ସଂସାରପରି ମାୟାମୟ ଅଟେ। ଏକମାତ୍ର ସଚ୍ଚିଦାନନ୍ଦଘନ ବ୍ରହ୍ମ ହିଁ ସତ୍ୟ। ମାୟାଦ୍ୱାରା ଏହି ସମଗ୍ର ସଂସାର ତାଙ୍କରି ଠାରେ ଅଧ୍ୟାରୋପିତ ହୋଇଛି।' ଏହିପରି ନିତ୍ୟ-ଅନିତ୍ୟ ବସ୍ତୁର ତତ୍ତ୍ୱ ବିବେଚନା କରି ଯେଉଁ ପୁରୁଷ ନିତ୍ୟ ନିରନ୍ତର ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ରହନ୍ତି, ସେ ହିଁ **ତତ୍ତ୍ୱବିତ୍** ଓ **ଯୁକ୍ତ**। ସାଂଖ୍ୟଯୋଗର ସାଧକ ଏହିପରି ହେବା ଆବଶ୍ୟକ। ଏକଥା ବୁଝାଇଦେବାକୁ ଉକ୍ତ ବିଶେଷଣ ଦୁଇଟି ଦିଆଯାଇଛି।

**ପ୍ରଶ୍ନ—** ଏଠାରେ 'ଦେଖିବା, ଶୁଣିବା ଆଦି ସକଳ କ୍ରିୟା କରୁଥିଲେ ବି ମୁଁ କିଛି କରୁ ନାହିଁ'—ଏହାର ଭାବ କଣ?

**ଉତ୍ତର—** ସ୍ୱପ୍ନରୁ ଉଠିଥିବା ମନୁଷ୍ୟ ଯେପରି ବୁଝିପାରେ ଯେ, ସ୍ୱପ୍ନକାଳରେ ସ୍ୱପ୍ନର ଶରୀର, ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେଉଁସବୁ କ୍ରିୟାର ପ୍ରତୀତି ହେଉଥିଲା, ବାସ୍ତବରେ ସେସବୁ କିଛି ହେଉ ନ ଥିଲା, କି ତା'ର ସେସବୁ ସହିତ କୌଣସି ସମ୍ବନ୍ଧ ନ ଥିଲା, ଠିକ୍ ସେହିପରି ତତ୍ତ୍ୱ ବୁଝିପାରି ନିର୍ବିକାର ଓ ଅକ୍ରିୟ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ସ୍ଥିତ ସାଂଖ୍ୟଯୋଗୀ ମଧ୍ୟ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ, ପ୍ରାଣ ଓ ମନ ଆଦିଙ୍କ ଦ୍ୱାରା ଲୋକଦୃଷ୍ଟିରୁ କରାଯାଉଥିବା ଦେଖିବା, ଶୁଣିବା ଆଦି ସକଳ କ୍ରିୟା କରୁଥିବା ସମୟରେ ବୁଝିବା ଉଚିତ ଯେ, ମାୟାମୟ ମନ, ପ୍ରାଣ ଓ ଇନ୍ଦ୍ରିୟମାନେ ହିଁ ନିଜ ନିଜର ମାୟାମୟ ବିଷୟରେ ବିଚରଣ କରୁଛନ୍ତି;

ବସ୍ତୁତଃ କିଛି ହେଉ ନାହିଁ, କି ତାଙ୍କର ଏସବୁ ସହିତ କୌଣସି ସମ୍ବନ୍ଧ ନାହିଁ।

**ପ୍ରଶ୍ନ —** ତା'ହେଲେ ତ ଯେଉଁ ଲୋକ ରାଗ-ଦ୍ୱେଷ ଓ କାମକ୍ରୋଧାଦି ଦୋଷରେ ବୁଡ଼ିରହି ମଧ୍ୟ ନିଜ ମାନ୍ୟତା ଅନୁଯାୟୀ ନିଜକୁ ସାଂଖ୍ୟଯୋଗୀ ବୋଲି କହେ, ସେ ବି କହିପାରିବ, 'ମୋର ମନ-ଇନ୍ଦ୍ରିୟଦ୍ୱାରା ଭଲ କଣ, ମନ୍ଦ କଣ, ଯାହା କିଛି କର୍ମ ହେଉଛି, ସେଥିରେ ମୋର କୌଣସି ସମ୍ବନ୍ଧ ନାହିଁ।'' ଏପରି ଅବସ୍ଥାରେ ଯଥାର୍ଥ ସାଂଖ୍ୟଯୋଗୀଙ୍କୁ ଚିହ୍ନିବା କିପରି ?

**ଉତ୍ତର —** ଖାଲି କଥାରେ କହିଦେଲେ ତ କେହି ସାଂଖ୍ୟଯୋଗୀ ହୋଇପାରିବ ନାହିଁ, କି କର୍ମ ସହିତ ତାର ସମ୍ପର୍କ ତୁଟିଯାଇପାରିବ ନାହିଁ। ପ୍ରକୃତ ଏବଂ ବାସ୍ତବିକ ସାଂଖ୍ୟଯୋଗୀଙ୍କ ଜ୍ଞାନରେ ଏହି ସମସ୍ତ ପ୍ରପଞ୍ଚ ହେଉଛି ସ୍ୱପ୍ନପରି ମାୟାମୟ; କୌଣସି ବସ୍ତୁରେ ତାଙ୍କର ଲେଶମାତ୍ର ଆସକ୍ତି ନ ଥାଏ। ସେ ସର୍ବଥା ରାଗଦ୍ୱେଷଶୂନ୍ୟ ହୋଇ ରହନ୍ତି ଏବଂ ତାଙ୍କ ଠାରେ କାମ, କ୍ରୋଧ, ଲୋଭ, ମୋହ, ଅହଙ୍କାର ଆଦି ଦୋଷ ଟିକିଏ ବି ରହେ ନାହିଁ। ଏପରି ଅବସ୍ଥାରେ ନିଷିଦ୍ଧାଚରଣର କୌଣସି ବି କାରଣ ନ ଥାଏ। ନିଜର ବିଶୁଦ୍ଧ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ତାଙ୍କର ଯାହାକିଛି ଚେଷ୍ଟା ହୁଏ, ସେସବୁ ଶାସ୍ତ୍ରାନୁକୂଳ ଓ ଲୋକହିତକର ହିଁ ହୋଇଥାଏ। ଏହା ହିଁ ପ୍ରକୃତ ସାଂଖ୍ୟଯୋଗୀଙ୍କ ପରିଚୟ। ଯେପର୍ଯ୍ୟନ୍ତ ନିଜ ଭିତରେ ରାଗ-ଦ୍ୱେଷ ଓ କାମକ୍ରୋଧାଦିର ଲେଶମାତ୍ର ବି ଅସ୍ତିତ୍ୱ ଥିବା ଜଣାପଡୁଥାଏ, ସେପର୍ଯ୍ୟନ୍ତ ସାଂଖ୍ୟଯୋଗ ସାଧକ, ନିଜ ସାଧନାରେ ଥିବା ତ୍ରୁଟି ରହିଛି ବୋଲି ବୁଝିବା ଉଚିତ।

**ପ୍ରଶ୍ନ —** ସାଂଖ୍ୟଯୋଗୀ କେବଳ ଶରୀରନିର୍ବାହପାଇଁ ଖିଆପିଆ ଆଦି ଆବଶ୍ୟକ କର୍ମ କରନ୍ତି, ନା ବର୍ଣ୍ଣାଶ୍ରମାନୁସାରେ ଶାସ୍ତ୍ରାନୁକୂଳ ସମସ୍ତ କର୍ମ କରନ୍ତି ?

**ଉତ୍ତର —** ସେପରି କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ। ବର୍ଣ୍ଣ, ଆଶ୍ରମ, ପ୍ରକୃତି, ପ୍ରାରବ୍ଧ, ସଙ୍ଗ ଓ ଅଭ୍ୟାସରେ ପ୍ରଭେଦ ଥିବାରୁ ସବୁ ସାଂଖ୍ୟଯୋଗୀଙ୍କ କର୍ମ ଏକାପରି ହୋଇ ନ ଥାଏ। ଏଠାରେ **ପଶ୍ୟନ୍, ଶୃଣ୍ୱନ୍, ସ୍ପୃଶନ୍, ଜିଘ୍ରନ୍** ଓ **ଅଶ୍ନନ୍** — ଏହି ପାଞ୍ଚଟି ପଦଦ୍ୱାରା ଚକ୍ଷୁ, କର୍ଣ୍ଣ, ଚର୍ମ, ଘ୍ରାଣ ଓ ରସନା — ଏହି ପଞ୍ଚ ଜ୍ଞାନେନ୍ଦ୍ରିୟଙ୍କର ସମସ୍ତ କ୍ରିୟା କ୍ରମାନ୍ୱୟରେ କହିଦିଆଯାଇଛି। **ଗଚ୍ଛନ୍, ଗୃହ୍ଣନ୍** ଓ **ପ୍ରଳପନ୍**ଦ୍ୱାରା ପାଦ, ହସ୍ତ ଓ ବାଣୀର ଏବଂ **ବିସୃଜନ୍**ଦ୍ୱାରା ଗୁଦଗୁହ୍ୟଦ୍ୱାରର — ଏହିପରି ପଞ୍ଚକର୍ମେନ୍ଦ୍ରିୟର କ୍ରିୟା କଥା କହିଦିଆଯାଇଛି। **ଶ୍ୱସନ୍** ପଦ ପ୍ରାଣ-ଅପାନାଦି ପଞ୍ଚପ୍ରାଣର କ୍ରିୟାମାନଙ୍କର ବୋଧକ। ସେହିପରି **ଉନ୍ମିଷନ୍, ନିମିଷନ୍** ପଦ କୂର୍ମ ଆଦି ପଞ୍ଚବାୟୁଭେଦର କ୍ରିୟାମାନଙ୍କର ବୋଧକ ଓ **ସ୍ୱପନ୍** ପଦ ଅନ୍ତଃକରଣର କ୍ରିୟାମାନଙ୍କର ବୋଧକ। ଏପରିଭାବରେ ସମସ୍ତ ଇନ୍ଦ୍ରିୟ, ପ୍ରାଣ ଓ ଅନ୍ତଃକରଣର କ୍ରିୟାମାନଙ୍କର ଉଲ୍ଲେଖ ରହିଥିବାରୁ ସାଂଖ୍ୟଯୋଗୀଙ୍କ ଦ୍ୱାରା ତାଙ୍କ ବର୍ଣ୍ଣ, ଆଶ୍ରମ, ପ୍ରକୃତି, ପ୍ରାରବ୍ଧ ଓ ସଙ୍ଗ ଅନୁସାରେ ଶରୀରନିର୍ବାହ ତଥା ଲୋକୋପକାରାର୍ଥ, ଶାସ୍ତ୍ରାନୁକୂଳ ପାନଭୋଜନ, ବ୍ୟାପାର, ଉପଦେଶ, ଲିଖନ, ପଠନ, ଶ୍ରବଣ, ଚିନ୍ତନ ଆଦି ସକଳପ୍ରକାର କ୍ରିୟା ହୋଇପାରେ।

**ପ୍ରଶ୍ନ —** ତୃତୀୟ ଅଧ୍ୟାୟର ଅଠେଇଶ ଶ୍ଳୋକରେ କୁହାଯାଇଛି ଯେ, 'ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି' ଏବଂ ତେର ଅଧ୍ୟାୟର ଅଣତିରିଶ ଶ୍ଳୋକରେ 'ସମସ୍ତ କର୍ମ ପ୍ରକୃତିଦ୍ୱାରା କରାଯାଏ' ବୋଲି କୁହାଯାଇଛି। ଅଥଚ ଏଠାରେ କୁହାଯାଉଛି ଯେ, 'ଇନ୍ଦ୍ରିୟମାନେ ହିଁ ଇନ୍ଦ୍ରିୟମାନଙ୍କ ଅର୍ଥରେ ପ୍ରବୃତ୍ତ ହୁଅନ୍ତି' — ଏପରି ତିନିପ୍ରକାର ବର୍ଣ୍ଣନାର ଅଭିପ୍ରାୟ କଣ ?

**ଉତ୍ତର —** ଇନ୍ଦ୍ରିୟ ଏବଂ ସେମାନଙ୍କର ସମସ୍ତ ବିଷୟ ସତ୍ତ୍ୱାଦି ତିନିଗୁଣର କାର୍ଯ୍ୟ ଓ ତିନିଗୁଣ ହେଉଛନ୍ତି ପ୍ରକୃତିର କାର୍ଯ୍ୟ। ଅତଏବ ସକଳ କର୍ମ ପ୍ରକୃତିଦ୍ୱାରା ହୁଏ ବୋଲି କହନ୍ତୁ ବା ଗୁଣମାନେ ଗୁଣମାନଙ୍କରେ ଅଥବା ଇନ୍ଦ୍ରିୟମାନେ ଇନ୍ଦ୍ରିୟମାନଙ୍କ ଅର୍ଥରେ ପ୍ରବୃତ୍ତ ହୁଅନ୍ତି ବୋଲି କହନ୍ତୁ, ସେସବୁ ଗୋଟିଏ କଥା। ସିଦ୍ଧାନ୍ତର ପୁଷ୍ଟିନିମନ୍ତେ ପ୍ରସଙ୍ଗାନୁସାରେ ଏକାକଥାକୁ ତିନିପ୍ରକାରେ କୁହାଯାଇଛି।

**ପ୍ରଶ୍ନ —** ଇନ୍ଦ୍ରିୟମାନଙ୍କ ସହିତ ପ୍ରାଣ ଓ ମନସମ୍ବନ୍ଧୀୟ କ୍ରିୟାମାନଙ୍କୁ ବର୍ଣ୍ଣନା କରି ମଧ୍ୟ କେବଳ 'ଇନ୍ଦ୍ରିୟମାନେ ଇନ୍ଦ୍ରିୟମାନଙ୍କ ଅର୍ଥରେ ପ୍ରବୃତ୍ତ ହୁଅନ୍ତି' — ଏହି କଥାଟି ଗ୍ରହଣ କରିବାକୁ କାହିଁକି କୁହାଗଲା ?

**ଉତ୍ତର —** ବିଭିନ୍ନ କ୍ରିୟାରେ ଇନ୍ଦ୍ରିୟମାନଙ୍କର ହିଁ ପ୍ରାଧାନ୍ୟ ଥାଏ। ପ୍ରାଣକୁ ବି ଇନ୍ଦ୍ରିୟ ନାମରେ ବର୍ଣ୍ଣନା କରାଯାଇଛି ଏବଂ ମନ ମଧ୍ୟ ଆଭ୍ୟନ୍ତର କରଣ ହୋଇଥିବାରୁ ଇନ୍ଦ୍ରିୟ ଅଟେ। ଏପରିଭାବରେ 'ଇନ୍ଦ୍ରିୟ' ଶବ୍ଦରେ ସମସ୍ତଙ୍କର ସମାବେଶ ହୋଇଯାଇଛି। ତେଣୁ ଏପରି କହିବା ଆପତ୍ତିଜନକ ନୁହେଁ।

**ପ୍ରଶ୍ନ —** ଏଠାରେ କେଉଁ ଉଦ୍ଦେଶ୍ୟରେ ଏବ ପ୍ରୟୋଗ କରାଯାଇଛି ?

**ଉତ୍ତର –** କର୍ମରେ ସର୍ବଥା କର୍ତ୍ତାପଣର ଅଭାବ ଦର୍ଶାଇବା ନିମନ୍ତେ ଏଠାରେ ଏବ ପଦ ପ୍ରୟୋଗ କରାଯାଇଛି। ସାଂଖ୍ୟଯୋଗୀ କୌଣସି ବି ଅଂଶରେ କେବେ ବି ଯେପରି ନିଜକୁ କର୍ମର କର୍ତ୍ତା ବୋଲି ନ ଭାବନ୍ତି, ସେହି ଅଭିପ୍ରାୟରେ ଏହା ପ୍ରୟୋଗ କରାଯାଇଛି।

*ସମ୍ବନ୍ଧ –* ଏପରିଭାବରେ ସାଂଖ୍ୟଯୋଗୀଙ୍କ ସାଧନାର ସ୍ୱରୂପ ବୁଝାଇଦେଇ ବର୍ତ୍ତମାନ ଦଶ ଓ ଏଗାର ଶ୍ଳୋକରେ କର୍ମଯୋଗୀମାନଙ୍କ ସାଧନାର ସ୍ୱରୂପ ଫଳସହିତ ବୁଝାଇଦେଉଛନ୍ତି –

**ବ୍ରହ୍ମଣ୍ୟାଧାୟ କର୍ମାଣି ସଂଗଂ ତ୍ୟକ୍ତ୍ୱା କରୋତି ଯଃ।**
**ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା॥ ୧୦ ॥**

**ଅନ୍ୱୟ –** **ଯଃ** = ଯେଉଁ ପୁରୁଷ; **କର୍ମାଣି** = କର୍ମମାନଙ୍କୁ; **ବ୍ରହ୍ମଣି** = ପରମାତ୍ମାଙ୍କ ଠାରେ; **ଆଧାୟ** = ଅର୍ପଣ କରି; **ସଙ୍ଗମ୍** = (ଓ) ଆସକ୍ତିକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **କରୋତି** = କର୍ମ କରେ; **ସଃ** = ସେହି ପୁରୁଷ; **ଅମ୍ଭସା** = ଜଳଦ୍ୱାରା; **ପଦ୍ମପତ୍ରମ୍** = ପଦ୍ମପତ୍ର; **ଇବ** = ପରି; **ପାପେନ** = ପାପଦ୍ୱାରା; **ନ, ଲିପ୍ୟତେ** = ଲିପ୍ତ ହୁଏ ନାହିଁ।

**ଯେଉଁ ପୁରୁଷ ସକଳ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରି ଓ ଆସକ୍ତି ତ୍ୟାଗ କରି କର୍ମ କରନ୍ତି, ପଦ୍ମପତ୍ର ଯେପରି ଜଳଦ୍ୱାରା ଲିପ୍ତ ହୁଏ ନାହିଁ, ସେହି ପୁରୁଷ ସେପରି ପାପଦ୍ୱାରା ଲିପ୍ତ ହୁଅନ୍ତି ନାହିଁ॥ ୧୦ ॥**

**ପ୍ରଶ୍ନ –** ସକଳ କର୍ମ ପରମାତ୍ମାଙ୍କୁ ଅର୍ପଣ କରିବାର ଅର୍ଥ କଣ ?

**ଉତ୍ତର –** ଈଶ୍ୱରଭକ୍ତି, ଦେବପୂଜନ, ମାତା-ପିତାଦି ଗୁରୁଜନମାନଙ୍କର ସେବା, ଯଜ୍ଞ, ଦାନ ଓ ତପ ତଥା ବର୍ଣ୍ଣାଶ୍ରମାନୁକୂଳ ଅର୍ଥୋପାର୍ଜନସମ୍ବନ୍ଧୀ ଓ ପାନ-ଭୋଜନାଦି ଶରୀରନିର୍ବାହସମ୍ବନ୍ଧୀ ଯେତେସବୁ ଶାସ୍ତ୍ରବିହିତ କର୍ମ ଅଛି, ସେସବୁକୁ ମମତ୍ୱ ତ୍ୟାଗ କରି, ସବୁକିଛି ଭଗବାନଙ୍କର ବୋଲି ହୃଦୟଙ୍ଗମ କରି, ତାଙ୍କରି ପାଇଁ, ତାଙ୍କରି ଆଜ୍ଞା ଓ ଇଚ୍ଛାନୁସାରେ, ସେ ଯେପରି କରାଇବେ ଠିକ୍ ସେହିପରି କାଠକଣ୍ଢେଇଭଳି କରିବାକୁ 'ପରମାତ୍ମାଙ୍କ ଠାରେ ସକଳ କର୍ମ ଅର୍ପଣ କରିବା' ବୋଲାଯାଏ।

**ପ୍ରଶ୍ନ –** ଆସକ୍ତି ତ୍ୟାଗ କରି କର୍ମ କରିବା କହିଲେ କଣ ବୁଝାଏ ?

**ଉତ୍ତର –** ସ୍ତ୍ରୀ, ପୁତ୍ର, ଧନ, ଗୃହ ଆଦି ସକଳ ଭୋଗ୍ୟବସ୍ତୁରେ, ସ୍ୱର୍ଗାଦି ଲୋକରେ, ଶରୀରରେ, ସକଳ କ୍ରିୟାରେ ଏବଂ ମାନ, ବଡ଼େଇ ଓ ପ୍ରତିଷ୍ଠା ଆଦିରେ ସକଳପ୍ରକାର ଆସକ୍ତି ତ୍ୟାଗ କରି ଉପରୋକ୍ତପ୍ରକାରେ କର୍ମ କରିବା ହିଁ 'ଆସକ୍ତି ତ୍ୟାଗ କରି କର୍ମ କରିବା'।

**ପ୍ରଶ୍ନ –** କର୍ମଯୋଗୀ ତ ଶାସ୍ତ୍ରବିହିତ ସତ୍‌କର୍ମ ହିଁ କରନ୍ତି; ସେ ତ ପାପକର୍ମ ଆଦୌ କରନ୍ତି ନାହିଁ ଏବଂ ପାପକର୍ମ ନ କଲେ ପାପରେ ଲିପ୍ତ ହେବାର ଆଶଙ୍କା ଉପୁଜିବ ନାହିଁ। ଏପରିସ୍ଥଳେ ସେ ପାପରେ ଲିପ୍ତ ହୁଅନ୍ତି ନାହିଁ ବୋଲି କିପରି କହିଲେ ?

**ଉତ୍ତର –** ବିହିତ କର୍ମ ବି ସର୍ବଥା ନିର୍ଦୋଷ ହୁଏ ନାହିଁ; ହିଂସାଦି ସମ୍ବନ୍ଧହେତୁ କ୍ରିୟାମାତ୍ରକେ କିଛି ନା କିଛି ପାପ ହୋଇଯାଏ। ତେଣୁ ଭଗବାନ୍ **ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ'** (୧୮/୪୮) କହି କର୍ମାଚରଣମାତ୍ରକୁ ଦୋଷଯୁକ୍ତ ବୋଲି କହିଛନ୍ତି। ଅତଏବ ଯେଉଁ ମନୁଷ୍ୟ ଫଳକାମନା ରଖି ଓ ଆସକ୍ତିପରବଶ ହୋଇ ଭୋଗ ଓ ବିଳାସନିମନ୍ତେ କର୍ମ କରନ୍ତି, ସେ କଦାପି ପାପରୁ ରକ୍ଷା ପାଆନ୍ତି ନାହିଁ। କାମନା ଓ ଆସକ୍ତି ହିଁ ମନୁଷ୍ୟର ବନ୍ଧନର କାରଣ। ତେଣୁ ଯାହାଙ୍କ ଠାରେ କାମନା ଓ ଆସକ୍ତିର ସର୍ବଥା ଅଭାବ ହୋଇଯାଇଥାଏ, ସେହି ମନୁଷ୍ୟ କର୍ମ କରି ମଧ୍ୟ ପାପରେ ଲିପ୍ତ ହୁଅନ୍ତି ନାହିଁ ବୋଲି କହିବା ଠିକ୍।

**କାୟେନ ମନସା ବୁଦ୍ଧ୍ୟା କେବଳୈରିନ୍ଦ୍ରିୟୈରପି।**
**ଯୋଗିନଃ କର୍ମ କୁର୍ବନ୍ତି ସଂଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ॥ ୧୧ ॥**

**ଅନ୍ୱୟ –** **ଯୋଗିନଃ** = କର୍ମଯୋଗୀମାନେ (ମମତ୍ୱବୁଦ୍ଧିରହିତ ହୋଇ); **କେବଲୈଃ** = କେବଳ; **ଇନ୍ଦ୍ରିୟୈଃ** = ଇନ୍ଦ୍ରିୟମାନଙ୍କ ଦ୍ୱାରା; **ମନସା** = ମନଦ୍ୱାରା; **ବୁଦ୍ଧ୍ୟା** = ବୁଦ୍ଧିଦ୍ୱାରା; **କାୟେନ** = (ଓ) ଶରୀରଦ୍ୱାରା; **ଅପି** = ବି; **ସଙ୍ଗମ୍** = ଆସକ୍ତିକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ଆତ୍ମଶୁଦ୍ଧୟେ** = ଅନ୍ତଃକରଣର ଶୁଦ୍ଧି ନିମନ୍ତେ; **କର୍ମ** = କର୍ମ; **କୁର୍ବନ୍ତି** = କରନ୍ତି ।

**କର୍ମଯୋଗୀମାନେ ମମତ୍ୱବୁଦ୍ଧିରହିତ ହୋଇ କେବଳ ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଶରୀରଦ୍ୱାରା ମଧ୍ୟ ସକଳ ଆସକ୍ତି ତ୍ୟାଗ କରି ଅନ୍ତଃକରଣର ଶୁଦ୍ଧିନିମନ୍ତେ କର୍ମ କରନ୍ତି ।। ୧୧ ।।**

**ପ୍ରଶ୍ନ –** ଏଠାରେ **କେବଲୈଃ** ବିଶେଷଣଟିର ଅଭିପ୍ରାୟ କଣ ? ତାହା କଣ ଖାଲି ଇନ୍ଦ୍ରିୟମାନଙ୍କ ସହିତ ସମ୍ପୃକ୍ତ, ନା ମନ, ବୁଦ୍ଧି ଓ ଶରୀର ସହିତ ବି ?

**ଉତ୍ତର –** ଏଠାରେ **କେବଲୈଃ** ବିଶେଷଣଟି ମମତ୍ୱ ଅଭାବର ଦ୍ୟୋତକ ଏବଂ ଏହାକୁ ଇନ୍ଦ୍ରିୟମାନଙ୍କର ବିଶେଷଣରୂପେ ଦିଆଯାଇଛି । କିନ୍ତୁ ମନ, ବୁଦ୍ଧି ଓ ଶରୀର ସହିତ ମଧ୍ୟ ଏହାକୁ ସମ୍ପୃକ୍ତ କରିଦେବା ଉଚିତ। ଅଭିପ୍ରାୟ ଏହି ଯେ, କର୍ମଯୋଗୀ ମନ, ବୁଦ୍ଧି, ଶରୀର ଓ ଇନ୍ଦ୍ରିୟମାନଙ୍କ ଠାରେ ମମତ୍ୱ ରଖନ୍ତି ନାହିଁ । ଏମାନଙ୍କୁ ସେ ଭଗବାନଙ୍କର ବସ୍ତୁ ବୋଲି ହିଁ ଗ୍ରହଣ କରନ୍ତି ଏବଂ ସର୍ବଥା ଲୌକିକସ୍ୱାର୍ଥରହିତ ହୋଇ ନିଷ୍କାମଭାବରେ ଭଗବାନଙ୍କ ପ୍ରେରଣା ଅନୁସାରେ ସେ ଯେପରି କରାନ୍ତି, ସେପରି ହିଁ ସକଳ କର୍ତ୍ତବ୍ୟ କର୍ମ କରୁଥାନ୍ତି ।

**ପ୍ରଶ୍ନ –** ସକଳ କର୍ମ ବ୍ରହ୍ମଙ୍କୁ ଅର୍ପଣ କରିଦେଇ ଅନାସକ୍ତ ହୋଇ ଆଚରଣ କରିବା ବିଷୟ ଦଶମ ଶ୍ଲୋକରେ ଭଗବାନ୍ କହିସାରିଛନ୍ତି । ଏଠାରେ ଆସକ୍ତି ତ୍ୟାଗ କରିବା କଥା ପୁଣି ଥରେ କାହିଁକି କହିଲେ ?

**ଉତ୍ତର –** ସକଳ କର୍ମ ବ୍ରହ୍ମଙ୍କୁ ଅର୍ପଣ କରିଦେବା ଓ ଆସକ୍ତି ତ୍ୟାଗ କରିବା କଥା ତ ଭଗବାନ୍ ନିଶ୍ଚୟ କହିସାରିଛନ୍ତି; କିନ୍ତୁ ତାହା ବର୍ଣ୍ଣନା କରିଛନ୍ତି ଭକ୍ତିପ୍ରଧାନ କର୍ମଯୋଗକୁ ଲକ୍ଷ୍ୟ କରି । ଏହି ଅଧ୍ୟାୟର ଅଷ୍ଟମ ଓ ନବମ ଶ୍ଲୋକରେ ସାଂଖ୍ୟଯୋଗୀଙ୍କ ମନ, ବୁଦ୍ଧି, ଇନ୍ଦ୍ରିୟ, ପ୍ରାଣ ଓ ଶରୀରଦ୍ୱାରା ହେଉଥିବା ସକଳ କ୍ରିୟା କିପରିଭାବରେ ଓ କେଉଁପ୍ରକାରେ ହୁଏ, ତାହା ବୁଝାଇଦେଇଛନ୍ତି; ଠିକ୍ ସେହିପରି କର୍ମପ୍ରଧାନ କର୍ମଯୋଗୀଙ୍କର କ୍ରିୟାମାନ କିପରିଭାବରେ ଓ କେଉଁପ୍ରକାରେ ହୁଏ, ତାହା ବୁଝାଇଦେବାକୁ ଭଗବାନ୍ ଏଠାରେ କହୁଛନ୍ତି ଯେ, କର୍ମଯୋଗୀ ମନ, ବୁଦ୍ଧି ଇନ୍ଦ୍ରିୟ ଓ ଶରୀରାଦିରେ ତଥା ସେମାନଙ୍କଦ୍ୱାରା ହେଉଥିବା କୌଣସି ବି କ୍ରିୟାରେ ମମତ୍ୱ ଓ ଆସକ୍ତି ନ ରଖି ଅନ୍ତଃକରଣର ଶୁଦ୍ଧିନିମନ୍ତେ ହିଁ କର୍ମ କରନ୍ତି । ତେଣୁ କର୍ମପ୍ରଧାନ କର୍ମଯୋଗୀଙ୍କ କର୍ମର ଭାବ ଓ ପ୍ରକାର ବୁଝାଇଦେବା ନିମନ୍ତେ ହିଁ ଏଠାରେ ପୁନର୍ବାର ଆସକ୍ତିତ୍ୟାଗ କଥା କହିଛନ୍ତି ।

***ସମ୍ବନ୍ଧ –*** *ଏପରିଭାବରେ କର୍ମ କରୁଥିବା ଭକ୍ତିପ୍ରଧାନ କର୍ମଯୋଗୀ ପାପରେ ଲିପ୍ତ ହୁଅନ୍ତି ନାହିଁ ଏବଂ କର୍ମପ୍ରଧାନ କର୍ମଯୋଗୀଙ୍କ ଅନ୍ତଃକରଣ ଶୁଦ୍ଧ ହୋଇଯାଏ ବୋଲି ଶୁଣିବା ପରେ, ଜିଜ୍ଞାସା ଜାଗ୍ରତ ହୁଏ, ''କର୍ମଯୋଗର ଫଳ କେବଳ ଏହି ଅନ୍ତଃକରଣ ଶୁଦ୍ଧିମାତ୍ର, ନା ଏହାଠାରୁ ଆଉ କିଛି ଅଧିକ? ପୁଣି ଏପରି କର୍ମ ନ କରି ସକାମଭାବରେ ଶୁଭକର୍ମ କଲେ କ୍ଷତି କଣ ?'' ତେଣୁ ଏସବୁ ବିଷୟ ସ୍ପଷ୍ଟରୂପେ ବୁଝାଇଦେବାନିମନ୍ତେ ଭଗବାନ୍ କହୁଛନ୍ତି —*

**ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ଶାନ୍ତିମାପ୍ନୋତି ନୈଷ୍ଠିକୀମ୍ ।**
**ଅଯୁକ୍ତଃ କାମକାରେଣ ଫଳେ ସକ୍ତୋ ନିବଧ୍ୟତେ ।। ୧୨ ।।**

**ଅନ୍ୱୟ –** **ଯୁକ୍ତଃ** = କର୍ମଯୋଗୀ; **କର୍ମଫଳମ୍** = କର୍ମଫଳକୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ନୈଷ୍ଠିକୀମ୍** = ଭଗବତ୍ପ୍ରାପ୍ତିରୂପକ; **ଶାନ୍ତିମ୍** = ଶାନ୍ତିକୁ; **ଆପ୍ନୋତି** = ପ୍ରାପ୍ତ ହୁଏ; **ଅଯୁକ୍ତଃ** = (ଓ) ସକାମ ପୁରୁଷ; **କାମକାରେଣ** = କାମନାର ପ୍ରେରଣାଦ୍ୱାରା; **ଫଳେ** = ଫଳରେ; **ସକ୍ତଃ** = ଆସକ୍ତ ହୋଇ; **ନିବଧ୍ୟତେ** = ବନ୍ଧନରେ ପଡ଼େ ।

**କର୍ମଯୋଗୀ କର୍ମଫଳ ତ୍ୟାଗ କରି ଭଗବଦ୍ପ୍ରାପ୍ତିରୂପକ ଶାନ୍ତି ଲାଭ କରନ୍ତି ଏବଂ ସକାମପୁରୁଷ କାମନାର ପ୍ରେରଣାଦ୍ୱାରା ଫଳାସକ୍ତ ହୋଇ ବନ୍ଧନରେ ପଡ଼େ ।। ୧୨ ।।**

**ପ୍ରଶ୍ନ—** ଅଷ୍ଟମ ଶ୍ଳୋକରେ **ଯୁକ୍ତ** ଶବ୍ଦର ଅର୍ଥ ସାଂଖ୍ୟଯୋଗୀ କରାଯାଇଛି। ଏଠାରେ **ଯୁକ୍ତ** ଶବ୍ଦର ଅର୍ଥ କର୍ମଯୋଗୀ କରାଗଲା କିପରି ?

**ଉତ୍ତର—** ଶବ୍ଦର ଅର୍ଥ ପ୍ରକରଣ ଅନୁଯାୟୀ କରାଯାଇଥାଏ। ଏହି ନ୍ୟାୟରେ ଗୀତାରେ ମଧ୍ୟ **ଯୁକ୍ତ** ଶବ୍ଦର ପ୍ରୟୋଗ ପ୍ରସଙ୍ଗାନୁସାରେ ଭିନ୍ନ ଭିନ୍ନ ଅର୍ଥରେ କରାଯାଇଛି। **ଯୁକ୍ତ** ଶବ୍ଦ **ଯୁଜ୍** ଧାତୁରୁ ନିଷ୍ପନ୍ନ; ଯୁଜ୍‌ର ଅର୍ଥ ଯୋଡ଼ିବା। ଦ୍ୱିତୀୟ ଅଧ୍ୟାୟର ଏକଷଠି ଶ୍ଳୋକରେ 'ଯୁକ୍ତ' ଶବ୍ଦ 'ସଂଯମୀ' ଅର୍ଥରେ ବ୍ୟବହୃତ ହୋଇଛି; ଷଷ୍ଠ ଅଧ୍ୟାୟର ଅଷ୍ଟମ ଶ୍ଳୋକରେ ଭଗବତ୍‌ପ୍ରାପ୍ତ 'ତତ୍ତ୍ୱଜ୍ଞାନୀ'ଙ୍କ ଅର୍ଥରେ, ସତର ଶ୍ଳୋକରେ ଆହାର-ବିହାରରେ ହେଉଥିବା 'ଔଚିତ୍ୟ' ଅର୍ଥରେ, ଏବଂ ଅଠର ଶ୍ଳୋକରେ 'ଧ୍ୟାନଯୋଗୀ' ଅର୍ଥରେ ପ୍ରଯୁକ୍ତ ହୋଇଛି, ତଥା ସପ୍ତମ ଅଧ୍ୟାୟର ବାଇଶ ଶ୍ଳୋକରେ ତାହା ଶ୍ରଦ୍ଧାସହିତ ହେଉଥିବାରୁ ତାହାକୁ ସଂଯୋଗର ବାଚକ ବୋଲି ଧରାଯାଇଛି। ଠିକ୍ ସେହିପରି ଏହି ଅଧ୍ୟାୟର ଅଷ୍ଟମ ଶ୍ଳୋକରେ 'ଯୁକ୍ତ' ସାଂଖ୍ୟଯୋଗୀ ଅର୍ଥରେ ଆସିଛି। ସେଠାରେ ସକଳ ଇନ୍ଦ୍ରିୟ ନିଜ ନିଜ ଅର୍ଥରେ ପ୍ରବର୍ତ୍ତୁଛନ୍ତି ଜାଣି ନିଜକୁ କର୍ତ୍ତାପଣରୁ ରହିତ ବୋଲି ମାନୁଥିବା ତତ୍ତ୍ୱଜ୍ଞ ପୁରୁଷଙ୍କୁ 'ଯୁକ୍ତ' କୁହାଯାଇଛି; ତେଣୁ ସେଠାରେ 'ଯୁକ୍ତ'ର ଅର୍ଥ ସାଂଖ୍ୟଯୋଗୀ ବୋଲି ମାନିବା ଠିକ୍ ହୋଇଛି। କିନ୍ତୁ ଏଠାରେ 'ଯୁକ୍ତ' ଶବ୍ଦଟି ସକଳ କର୍ମଫଳ ତ୍ୟାଗ କରୁଥିବା ଲୋକପାଇଁ ଆସିଛି। ଏଣୁ ଏଠାରେ ତାହାର ଅର୍ଥ 'କର୍ମଯୋଗୀ' ବୋଲି ହିଁ ମାନିବାକୁ ପଡ଼ିବ।

**ପ୍ରଶ୍ନ—** ଏଠାରେ **ନୈଷ୍ଠିକୀ ଶାନ୍ତିର** ଅର୍ଥ 'ଭଗବତ୍- ପ୍ରାପ୍ତିରୂପକ ଶାନ୍ତି' କିପରି କରାଗଲା ?

**ଉତ୍ତର— ନୈଷ୍ଠିକୀ** ଶବ୍ଦର ଅର୍ଥ 'ନିଷ୍ଠାରୁ ଉତ୍ପନ୍ନ ହେଉଥିବା'। ଏହା ଅନୁସାରେ କର୍ମଯୋଗନିଷ୍ଠାଦ୍ୱାରା ସିଦ୍ଧ ହେଉଥିବା ଭଗବତ୍‌ପ୍ରାପ୍ତିରୂପକ ଶାନ୍ତିକୁ **ନୈଷ୍ଠିକୀ ଶାନ୍ତି** କହିବା ଉଚିତ।

**ପ୍ରଶ୍ନ—** ଏଠାରେ **ଅଯୁକ୍ତ** ଶବ୍ଦର ଅର୍ଥ ପ୍ରମାଦୀ, ଆଳସ୍ୟପରାୟଣ ବା କର୍ମ ନ କରୁଥିବା ପୁରୁଷ ବୋଲି ନ କରି **ସକାମପୁରୁଷ** କରାଗଲା କିପରି ?

**ଉତ୍ତର—** କାମନାହେତୁ ଫଳରେ ଆସକ୍ତ ହେଉଥିବା ପୁରୁଷର ବାଚକ ହୋଇଥିବାରୁ ଏଠାରେ **ଅଯୁକ୍ତ** ଶବ୍ଦର ଅର୍ଥ ସକାମପୁରୁଷ କରିବା ଠିକ୍ ହୋଇଛି।

**ପ୍ରଶ୍ନ—** ଏଠାରେ **ବନ୍ଧନର** ଅଭିପ୍ରାୟ କଣ ?

**ଉତ୍ତର—** ସକାମଭାବରେ କରାଯାଇଥିବା କର୍ମମାନଙ୍କର ଫଳସ୍ୱରୂପ ବାରମ୍ବାର ଦେବମନୁଷ୍ୟାଦି ଯୋନିରେ ପଡ଼ିବା ହିଁ ବନ୍ଧନ।

*ସମ୍ବନ୍ଧ— ଏଠାରେ କୁହାଗଲା ଯେ, କର୍ମଯୋଗୀ କର୍ମଫଳର ବନ୍ଧନରେ ନ ପଡ଼ି ପରମାତ୍ମପ୍ରାପ୍ତିରୂପକ ଶାନ୍ତି ପ୍ରାପ୍ତ ହୁଅନ୍ତି ଏବଂ ସକାମପୁରୁଷ ଫଳରେ ଆସକ୍ତ ହୋଇ ଜନ୍ମମରଣରୂପକ ବନ୍ଧନରେ ପଡ଼େ; କିନ୍ତୁ ସାଂଖ୍ୟଯୋଗୀଙ୍କର କଣ ହୁଏ, ତାହା କହି ନାହାନ୍ତି। ଏଣୁ ବର୍ତ୍ତମାନ ସାଂଖ୍ୟଯୋଗୀଙ୍କ ସ୍ଥିତି କହୁଛନ୍ତି—*

## ସର୍ବକର୍ମାଣି ମନସା ସଂନ୍ୟସ୍ୟାସ୍ତେ ସୁଖଂ ବଶୀ।
## ନବଦ୍ୱାରେ ପୁରେ ଦେହୀ ନୈବ କୁର୍ବନ୍ନ କାରୟନ୍॥ ୧୩ ॥

**ଅନ୍ୱୟ—** **ବଶୀ** = ବଶୀଭୂତ-ଅନ୍ତଃକରଣଯୁକ୍ତ ସାଂଖ୍ୟଯୋଗୀ; **ଦେହୀ** = ପୁରୁଷ; **ନ, କୁର୍ବନ୍** = କିଛି ନ କରି; **ନ, କାରୟନ୍** = (ଓ) ନ କରାଇ; **ଏବ** = ହିଁ; **ନବଦ୍ୱାରେ** = ନବଦ୍ୱାରବିଶିଷ୍ଟ; **ପୁରେ** = ଶରୀରରୂପକ ପୁରରେ; **ସର୍ବକର୍ମାଣି** = ସକଳ କର୍ମକୁ; **ମନସା** = ମନଦ୍ୱାରା; **ସଂନ୍ୟସ୍ୟ** = ତ୍ୟାଗ କରିଦେଇ; **ସୁଖମ୍** = ଆନନ୍ଦପୂର୍ବକ; **ଆସ୍ତେ** = (ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ) ଅବସ୍ଥିତ ରହେ।

**ଅନ୍ତଃକରଣକୁ ବଶୀଭୂତ କରି ସାଂଖ୍ୟଯୋଗ ଆଚରଣ କରୁଥିବା ପୁରୁଷ କିଛି ନ କରି ଓ ନ କରାଇ ହିଁ ନବଦ୍ୱାରବିଶିଷ୍ଟ ଶରୀରରୂପକ ପୁରରେ ମନଦ୍ୱାରା ସକଳ କର୍ମ ତ୍ୟାଗ କରିଦେଇ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଆନନ୍ଦପୂର୍ବକ ଅବସ୍ଥାନ କରନ୍ତି॥ ୧୩ ॥**

**ପ୍ରଶ୍ନ –** ସାଂଖ୍ୟଯୋଗୀ ତ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣକୁ ମାୟାମୟ ବୋଲି ବୁଝିଥାଆନ୍ତି; ସେସବୁ ସହିତ ତାଙ୍କର କୌଣସି ସମ୍ବନ୍ଧ ହିଁ ନ ଥାଏ; ଏପରି ଅବସ୍ଥାରେ ତାଙ୍କୁ **ଦେହୀ** ଓ **ବଶୀ** କାହିଁକି କୁହାଗଲା ?

**ଉତ୍ତର –** ପ୍ରକୃତରେ ସାଂଖ୍ୟଯୋଗୀଙ୍କର ତାଙ୍କ ନିଜ ଦୃଷ୍ଟିରୁ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣ ସହିତ କୌଣସି ସମ୍ବନ୍ଧ ରହେ ନାହିଁ; ସେ ସର୍ବଦା ସଚ୍ଚିଦାନନ୍ଦଘନ ପରମାତ୍ମାରେ ହିଁ ଅଭିନ୍ନଭାବରେ ସ୍ଥିତ ରହନ୍ତି; ତଥାପି ଲୋକଦୃଷ୍ଟିରୁ ତ ସେ ଶରୀରଧାରୀ ରୂପେ ଦିଶନ୍ତି। ତେଣୁ ତାଙ୍କୁ **ଦେହୀ** କୁହାଗଲା। ଠିକ୍ ଏହିପରି ଚଉଦ ଅଧ୍ୟାୟର କୋଡ଼ିଏ ଶ୍ଳୋକରେ ଗୁଣାତୀତଙ୍କ ବର୍ଣ୍ଣନାରେ ବି **ଦେହୀ** ଶବ୍ଦ ଆସିଛି। ପୁଣି ଲୋକଦୃଷ୍ଟିରୁ ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କର ଚେଷ୍ଟା ନିୟମିତରୂପେ ଶାସ୍ତ୍ରାନୁକୂଳ ଓ ଲୋକସଂଗ୍ରହର ଉପଯୁକ୍ତ ହୋଇଥାଏ। ଏଣୁ ତାଙ୍କୁ **ବଶୀ** କୁହାଯାଇଛି।

**ପ୍ରଶ୍ନ –** ଏଠାରେ ଏବ କେଉଁ ଭାବର ଦ୍ୟୋତକ ?

**ଉତ୍ତର –** ସାଂଖ୍ୟଯୋଗୀଙ୍କ ଶରୀର ଓ ଇନ୍ଦ୍ରିୟମାନଙ୍କରେ ଅହଂଭାବ ରହୁ ନ ଥିବାରୁ ସେ ସେମାନଙ୍କ ଦ୍ୱାରା ହେଉଥିବା କର୍ମର କର୍ତ୍ତା ହୁଅନ୍ତି ନାହିଁ ଏବଂ ମମତ୍ୱ ରହୁ ନ ଥିବାରୁ ସେ କାରୟିତା (କର୍ମ କରାଇବା ଲୋକ) ମଧ୍ୟ ହୁଅନ୍ତି ନାହିଁ। ତେଣୁ **ନ କୁର୍ବନ୍** ଓ **ନ କାରୟନ୍** ସହିତ ଏବ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ସାଂଖ୍ୟଯୋଗୀଙ୍କ ଠାରେ ସର୍ବଥା ଅହଂତ୍ୱ-ମମତ୍ୱର ଅଭାବ ଥାଏ ଓ ତେଣୁ ସେ କେବେ ବି ଶରୀର, ଇନ୍ଦ୍ରିୟ ଓ ମନ ଆଦିଦ୍ୱାରା ହେଉଥିବା କୌଣସିପ୍ରକାର କର୍ମର କର୍ତ୍ତା ହୁଅନ୍ତି ନାହିଁ, କି କାରୟିତା ହୁଅନ୍ତି ନାହିଁ।

**ପ୍ରଶ୍ନ –** ଏଠାରେ **ନବଦ୍ୱାରେ ପୁରେ ଆସ୍ତେ** ଅର୍ଥାତ୍ "ନଅଟି ଦ୍ୱାରବିଶିଷ୍ଟ ଶରୀରରୂପକ ପୁରରେ ରହେ" ବୋଲି ଅନ୍ୱୟ ନ କରି, **ନବଦ୍ୱାରେ ପୁରେ ସର୍ବକର୍ମାଣି ମନସା ସଂନ୍ୟସ୍ୟ** ଅର୍ଥାତ୍ ନବଦ୍ୱାରବିଶିଷ୍ଟ ଶରୀରରୂପୀ ପୁରରେ ମନଦ୍ୱାରା ସକଳ କର୍ମ ତ୍ୟାଗ କରିଦେଇ' ବୋଲି କାହିଁକି ଅନ୍ୱୟ କରାଯାଇଛି ?

**ଉତ୍ତର –** ନବଦ୍ୱାରବିଶିଷ୍ଟ ଶରୀରରୂପୀ ପୁରରେ ରହିବାର ପ୍ରତିପାଦନ ସାଂଖ୍ୟଯୋଗୀଙ୍କ ନିମନ୍ତେ କୌଣସି ମହତ୍ତ୍ୱର କଥା ନୁହେଁ; ବରଂ ଏହା ତାଙ୍କ ସ୍ଥିତିର ବିରୁଦ୍ଧ। ଶରୀରରୂପୀ ପୁରରେ ତ ସାଧାରଣ ମନୁଷ୍ୟର ମଧ୍ୟ ସ୍ଥିତି ରହିଛି; ଏଥିରେ ଆଉ ମହତ୍ତ୍ୱ ରହିଲା କ'ଣ ? ବରଂ ଶରୀରରୂପୀ ପୁରରେ ଅର୍ଥାତ୍ ଇନ୍ଦ୍ରିୟାଦି ପ୍ରାକୃତିକ ବସ୍ତୁମାନଙ୍କରେ କର୍ମତ୍ୟାଗପ୍ରତିପାଦନଦ୍ୱାରା ସାଂଖ୍ୟଯୋଗୀଙ୍କର ବିଶେଷ ମହତ୍ତ୍ୱ ପ୍ରକାଶିତ ହୁଏ; କାରଣ କେବଳ ସାଂଖ୍ୟଯୋଗୀ ହିଁ ଏପରି କରିପାରନ୍ତି; ସାଧାରଣ ମନୁଷ୍ୟ ଏପରି କରିପାରିବ ନାହିଁ। ତେଣୁ ଯାହା ଅନ୍ୱୟ କରାଯାଇଛି, ତାହା ଠିକ୍।

**ପ୍ରଶ୍ନ –** ଏଠାରେ ଇନ୍ଦ୍ରିୟାଦିଙ୍କ କର୍ମକୁ ଇନ୍ଦ୍ରିୟାଦିଙ୍କ ଠାରେ ଛାଡ଼ିବାକୁ ନ କହି ନବଦ୍ୱାରବିଶିଷ୍ଟ ଶରୀରରେ ଛାଡ଼ିବାକୁ କାହିଁକି କହିଛନ୍ତି ?

**ଉତ୍ତର –** ଦୁଇ ଆଖି, ଦୁଇ କାନ, ଦୁଇ ନାକ ଓ ଏକ ମୁଖ— ଏହି ସାତଟି ହେଲେ ଉପର ଦ୍ୱାର ଏବଂ ଉପସ୍ଥ ଓ ମଳଦ୍ୱାର– ଏହି ଦୁଇଟି ତଳଦ୍ୱାର। ଏହି ନବଦ୍ୱାରକୁ ଇନ୍ଦ୍ରିୟମାନଙ୍କର ଗୋଲକରୂପୀ ନବଦ୍ୱାର ବୋଲି ସଂକେତ କରାଯାଇଥିବାରୁ ଏଠାରେ ବସ୍ତୁତଃ ସକଳ ଇନ୍ଦ୍ରିୟର କର୍ମକୁ ଇନ୍ଦ୍ରିୟମାନଙ୍କ ଠାରେ ହିଁ ଛାଡ଼ିଦେବାକୁ କୁହାଯାଇଛି; କାରଣ ଶରୀର ହିଁ ଇନ୍ଦ୍ରିୟାଦି ସକଳ କର୍ମକାରକମାନଙ୍କର ଆଧାର। ଏଣୁ ଶରୀରରେ ଛାଡ଼ିବାକୁ କହିବା, କୌଣସି ଭିନ୍ନ କଥା ନୁହେଁ। ଅଷ୍ଟମ ଓ ନବମ ଶ୍ଳୋକରେ ଯାହା କୁହାଯାଇଥିଲା, ଏଠାରେ ସେହି କଥା ହିଁ କୁହାଯାଇଛି। କେବଳ ଶବ୍ଦରେ ହିଁ ପ୍ରଭେଦ ରହିଛି। ସେଠାରେ ଇନ୍ଦ୍ରିୟମାନଙ୍କ କ୍ରିୟାଗୁଡ଼ିକର ନାମ କହିଥିଲେ, ଏଠାରେ ସେମାନଙ୍କ ସ୍ଥାନ ପ୍ରତି ସଙ୍କେତ କରି କହିଲେ। ଏତିକିମାତ୍ର ପ୍ରଭେଦ; ଭାବରେ କୌଣସି ପ୍ରଭେଦ ନାହିଁ।

**ପ୍ରଶ୍ନ –** ଏଠାରେ ମନଦ୍ୱାରା କର୍ମତ୍ୟାଗ କଥା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସ୍ୱରୂପତଃ ସକଳ କର୍ମ ତ୍ୟାଗ କରିଦେଲେ, ମନୁଷ୍ୟର ଶରୀରଯାତ୍ରା ବି ଚଳିପାରିବ ନାହିଁ। ତେଣୁ ମନଦ୍ୱାରା ଅର୍ଥାତ୍ ବିବେକବୁଦ୍ଧିଦ୍ୱାରା କର୍ତ୍ତୃତ୍ୱ-କାରୟିତୃତ୍ୱ ତ୍ୟାଗ କରିଦେବା ହିଁ ସାଂଖ୍ୟଯୋଗୀଙ୍କର ତ୍ୟାଗ। ଏହି ଭାବଟି ସ୍ପଷ୍ଟ କରିଦେବା ନିମନ୍ତେ ମନଦ୍ୱାରା କର୍ମତ୍ୟାଗ କରିବାକୁ କୁହାଯାଇଛି।

**ପ୍ରଶ୍ନ –** ଶ୍ଳୋକାର୍ଥରେ କୁହାଗଲା, ସେ ସେହି 'ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଅବସ୍ଥିତ ରହନ୍ତି।' କିନ୍ତୁ ମୂଳ ଶ୍ଳୋକରେ ତ ସେପରି କୌଣସି କଥା ନାହିଁ। ତେଣୁ ଅର୍ଥରେ ଏହି ବାକ୍ୟଟି ଯୋଡ଼ାଗଲା କାହିଁକି ?

**ଉତ୍ତର –** **ଆସ୍ତେ** ଅର୍ଥାତ୍ ସ୍ଥିତ ରହେ—— ଏହି କ୍ରିୟାଟି ପାଇଁ ଏକ ଆଧାରର ଆବଶ୍ୟକତା ରହିଛି। ମୂଳ ଶ୍ଲୋକରେ ଏହାର କୌଣସି ଉପଯୁକ୍ତ ଶବ୍ଦ ନ ଥିବାରୁ, ଭାବଦ୍ୱାରା ଅଧ୍ୟାହାର କରିନେବା ଉଚିତ। ବର୍ତ୍ତମାନ ତ ଏଠାରେ ସାଂଖ୍ୟଯୋଗୀଙ୍କ ପ୍ରକରଣ ଚାଲିଛି ଏବଂ ସାଂଖ୍ୟଯୋଗୀ ବସ୍ତୁତଃ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ହିଁ ସୁଖପୂର୍ବକ ରହିପାରନ୍ତି; ଅନ୍ୟତ୍ର ରହିପାରିବେ ନାହିଁ। ଏଣୁ ଏହି ବାକ୍ୟଟି ଯୋଡ଼ିଦିଆଯାଇଛି।

*ସମ୍ବନ୍ଧ – ଯଦି ଆତ୍ମା ପ୍ରକୃତରେ କୌଣସି କର୍ମ କରେ ନାହିଁ, କି ଇନ୍ଦ୍ରିୟାଦିଦ୍ୱାରା କରାଏ ବି ନାହିଁ, ତେବେ ଲୋକେ ନିଜକୁ କର୍ମର କର୍ତ୍ତା ବୋଲି କାହିଁକି ମାନୁଛନ୍ତି ଏବଂ କାହିଁକି କର୍ମଫଳରେ ଭାଗୀ ହେଉଛନ୍ତି? ଭଗବାନ୍ କହୁଛନ୍ତି –*

**ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ।**
**ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ॥ ୧୪ ॥**

**ଅନ୍ୱୟ –** **ପ୍ରଭୁଃ** = ପରମେଶ୍ୱର; **ଲୋକସ୍ୟ** = ମନୁଷ୍ୟମାନଙ୍କର; **ନ, କର୍ତ୍ତୃତ୍ୱମ୍ (ସୃଜତି)** = କର୍ତ୍ତାପଣକୁ ରଚନ୍ତି ନାହିଁ; **ନ, କର୍ମାଣି (ସୃଜତି)** = କର୍ମମାନଙ୍କୁ ରଚନ୍ତି ନାହିଁ; **ନ, କର୍ମଫଳସଂଯୋଗମ୍** = କର୍ମଫଳର ସଂଯୋଗକୁ ବି ରଚନା କରନ୍ତି ନାହିଁ; **ତୁ** = କିନ୍ତୁ; **ସ୍ୱଭାବଃ** = ପ୍ରକୃତି ହିଁ; **ପ୍ରବର୍ତ୍ତତେ** = ପ୍ରବୃତ୍ତ ହୁଏ।

**ପରମେଶ୍ୱର ମନୁଷ୍ୟମାନଙ୍କର କର୍ତ୍ତାପଣକୁ, କର୍ମମାନଙ୍କୁ କିମ୍ବା କର୍ମଫଳର ସଂଯୋଗକୁ ରଚନା କରନ୍ତି ନାହିଁ; କିନ୍ତୁ ସ୍ୱଭାବ ଅର୍ଥାତ୍ ପ୍ରକୃତି ହିଁ ପ୍ରବୃତ୍ତ ହୁଏ॥ ୧୪ ॥**

**ପ୍ରଶ୍ନ –** ଏଠାରେ **ପ୍ରଭୁ** ପଦଟି କାହାର ବାଚକ? ପୁଣି 'ମନୁଷ୍ୟମାନଙ୍କର କର୍ତ୍ତାପଣ, କର୍ମ ଓ କର୍ମଫଳର ସଂଯୋଗ ପରମେଶ୍ୱର ରଚନା କରନ୍ତି ନାହିଁ' ବୋଲି କହିବାର ଭାବ କଣ?

**ଉତ୍ତର –** ଏଠାରେ **ପ୍ରଭୁ** ପଦଟି ହେଉଛି ସମସ୍ତ ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାର କରୁଥିବା ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ବାଚକ; କାରଣ ଶାସ୍ତ୍ରରେ ଯେଉଁ ଯେଉଁ ସ୍ଥାନରେ ପରମେଶ୍ୱରଙ୍କୁ ସୃଷ୍ଟି-ରଚନାଦି କର୍ମର କର୍ତ୍ତା ବୋଲି କୁହାଯାଉଛି, ସେଠାରେ ସଗୁଣ ପରମେଶ୍ୱରଙ୍କ ପ୍ରସଙ୍ଗରେ ହିଁ କୁହାଯାଉଛି।

ପରମେଶ୍ୱର ମନୁଷ୍ୟମାନଙ୍କ କର୍ତ୍ତାପଣ ରଚନା କରନ୍ତି ନାହିଁ ବୋଲି କହିବାର ଭାବ ଏହି ଯେ, ମନୁଷ୍ୟମାନଙ୍କ କର୍ମରେ ଯେଉଁ କର୍ତ୍ତାପଣ ରହିଛି, ତାହା ଭଗବାନଙ୍କ ଦ୍ୱାରା ସୃଷ୍ଟ ନୁହେଁ। ଅଜ୍ଞାନୀ ମନୁଷ୍ୟ ଅହଂକାରପରବଶ ହୋଇ ନିଜକୁ କର୍ମର କର୍ତ୍ତା ବୋଲି ଭାବିଥାଏ (୩/୨୭)। ଭଗବାନ୍ ମନୁଷ୍ୟମାନଙ୍କ କର୍ମର ରଚନା କରନ୍ତି ନାହିଁ ବୋଲି କହିବାର ଭାବ ଏହି ଯେ, ଅମୁକ ମନୁଷ୍ୟକୁ ଅମୁକ ଶୁଭ ବା ଅଶୁଭ କର୍ମ କରିବାକୁ ପଡ଼ିବ ବୋଲି ଭଗବାନ୍ କୌଣସି ବିଧି ରଚି ନାହାନ୍ତି। କାରଣ ଭଗବାନ୍ ଯଦି ଏପରି ରଚନା କରିଦେବେ, ତେବେ ବିଧି-ନିଷେଧଶାସ୍ତ୍ର ହିଁ ବ୍ୟର୍ଥ ହୋଇଯିବ ଏବଂ ତାହାର କୌଣସି ସାର୍ଥକତା ରହିବ ନାହିଁ। କର୍ମଫଳର ସଂଯୋଗକୁ ବି ଭଗବାନ୍ ରଚନା କରନ୍ତି ନାହିଁ ବୋଲି କହିବାର ଭାବ ଏହି ଯେ, ମନୁଷ୍ୟର ଅଜ୍ଞାନହେତୁ ହିଁ କର୍ମ ସହିତ ତା'ର ସମ୍ବନ୍ଧ ଯୋଡ଼ା ହୋଇଛି। କେହି ଆସକ୍ତିବଶତଃ କର୍ମର କର୍ତ୍ତା ହୋଇ ଏବଂ କେହି ବା କର୍ମଫଳରେ ଆସକ୍ତ ହୋଇ କର୍ମ ସହିତ ନିଜର ସମ୍ବନ୍ଧ ଯୋଡ଼ିଥାନ୍ତି।

ଯଦି ଏହି ତିନୋଟି ଭଗବାନଙ୍କର ରଚନା ହୋଇଥାନ୍ତା, ତେବେ ତ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତି ହିଁ ପାଇପାରନ୍ତା ନାହିଁ; ତା'ର ଉଦ୍ଧାରର କୌଣସି ଉପାୟ ହିଁ ନ ଥାନ୍ତା। ତେଣୁ ସାଧକ ପୁରୁଷ କର୍ମର କର୍ତ୍ତାପଣକୁ ପୂର୍ବୋକ୍ତ ପ୍ରକାରେ ପ୍ରକୃତିକୁ ଅର୍ପଣ କରିଦେଇ (୫/୮-୯) ବା ଭଗବାନଙ୍କୁ ଅର୍ପଣ କରିଦେଇ (୫/୧୦) ଅଥବା ସର୍ବଥା କର୍ମଫଳ ଓ ଆସକ୍ତିକୁ ତ୍ୟାଗ କରିଦେଇ (୫/୧୨) କର୍ମରୁ ନିଜର ସମ୍ବନ୍ଧ ତୁଟାଇଦେବା ଉଚିତ (୪/୨୦)। ଏହିସବୁ ଭାବ ଦେଖାଇବାକୁ କହିଛନ୍ତି ଯେ, ପରମେଶ୍ୱର ମନୁଷ୍ୟମାନଙ୍କର କର୍ତ୍ତାପଣ, କର୍ମ ଓ କର୍ମଫଳ ରଚନା କରନ୍ତି ନାହିଁ।

**ପ୍ରଶ୍ନ –** ଏଠାରେ ସ୍ୱଭାବ ହିଁ ପ୍ରବୃତ୍ତ ହୁଏ ବୋଲି କହିବାର ପ୍ରୟୋଜନ କଣ?

**ଉତ୍ତର –** ଯଦି ଆତ୍ମାର କର୍ତ୍ତାପଣ, କର୍ମ ଓ

କର୍ମଫଳ ସହିତ ବାସ୍ତବିକ କୌଣସି ସମ୍ବନ୍ଧ ନାହିଁ ଏବଂ ପରମେଶ୍ୱର ବି କାହାର କର୍ତ୍ତୃତ୍ୱ ଆଦି ରଚନା କରନ୍ତି ନାହିଁ, ତେବେ ଏସବୁ ଦେଖିବାକୁ କିପରି ମିଳୁଛି ? — ଏହି ଜିଜ୍ଞାସା ଉପରେ କୁହାଯାଇଛି ଯେ, ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣ, ରାଗ-ଦ୍ୱେଷ ଆଦି ସମସ୍ତ ବିକାର, ଶୁଭାଶୁଭ କର୍ମ ଓ ସେସବୁର ସଂସ୍କାର — ଏହିସବୁରୂପରେ ପରିଣତ ହୋଇଥିବା ପ୍ରକୃତି ଅର୍ଥାତ୍ ସ୍ୱଭାବ ହିଁ ସବୁକିଛି କରୁଛି । ପ୍ରାକୃତ ଜୀବଗଣଙ୍କ ସହିତ ପ୍ରକୃତିର ଅନାଦିସିଦ୍ଧ ସଂଯୋଗ ରହିଛି । ତେଣୁ ସେମାନଙ୍କ ଠାରେ କର୍ତ୍ତୃତ୍ୱଭାବ ଉତ୍ପନ୍ନ ହୁଏ ଅର୍ଥାତ୍ ଅହଂକାରରେ ମୋହିତ ହୋଇ ସେମାନେ ନିଜକୁ ସେହି କର୍ମମାନଙ୍କର କର୍ତ୍ତା ବୋଲି ଭାବନ୍ତି (୩/୨୭) ତଥା ଏହାରି ହେତୁ କର୍ମ ଓ କର୍ମଫଳ ସହିତ ବି ସେମାନଙ୍କର ସମ୍ବନ୍ଧ ହୋଇଯାଏ ଏବଂ ସେମାନେ ସେସବୁର ବନ୍ଧନରେ ପଡ଼ିଯାଆନ୍ତି । ପ୍ରକୃତରେ ଏମାନଙ୍କ ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ । ଏହା ହିଁ ଏହାର ଅଭିପ୍ରାୟ ।

**ସମ୍ବନ୍ଧ —** *ଯେଉଁ ସାଧକମାନେ ସକଳ କର୍ମ ତଥା କର୍ମଫଳ ଭଗବାନଙ୍କୁ ଅର୍ପଣ କରିଦେଇ କର୍ମଫଳରୁ ନିଜର ସମ୍ବନ୍ଧ ତୁଟାଇଦିଅନ୍ତି, ସେମାନଙ୍କ ଶୁଭାଶୁଭ କର୍ମର ଫଳଭାଗୀ କଣ ଭଗବାନ୍ ହୁଅନ୍ତି ? ଏହି ଜିଜ୍ଞାସାର ଉତ୍ତରରେ କହୁଛନ୍ତି —*

## ନାଦତ୍ତେ କସ୍ୟଚିତ୍ପାପଂ ନ ଚୈବ ସୁକୃତଂ ବିଭୁଃ ।
## ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ ।। ୧୫ ।।

**ଅନ୍ୱୟ —** **ବିଭୁଃ** = ସର୍ବବ୍ୟାପୀ ପରମେଶ୍ୱର; **କସ୍ୟଚିତ୍** = କାହାରି ହେଲେ; **ପାପମ୍** = ପାପକର୍ମକୁ; **ନ, ଆଦତ୍ତେ** = ଗ୍ରହଣ କରନ୍ତି ନାହିଁ; **ଚ** = ଓ; **ସୁକୃତମ୍** = ଶୁଭକର୍ମକୁ; **ଏବ** = ହିଁ; **(ନ, ଆଦତ୍ତେ)** = ଗ୍ରହଣ କରନ୍ତି ନାହିଁ; **ଅଜ୍ଞାନେନ** = (କିନ୍ତୁ) ଅଜ୍ଞାନଦ୍ୱାରା; **ଜ୍ଞାନମ୍** = ଜ୍ଞାନ; **ଆବୃତମ୍** = ଢାଙ୍କି ହୋଇ ରହିଛି; **ତେନ** = ତେଣୁ; **ଜନ୍ତବଃ** = ସକଳ ଅଜ୍ଞାନୀ ମନୁଷ୍ୟ; **ମୁହ୍ୟନ୍ତି** = ମୋହିତ ହେଉଛନ୍ତି ।

**ସର୍ବବ୍ୟାପୀ ପରମେଶ୍ୱର କାହାରି ପାପକର୍ମ କି କାହାରି ଶୁଭକର୍ମକୁ ଗ୍ରହଣ କରନ୍ତି ନାହିଁ; କିନ୍ତୁ ଅଜ୍ଞାନଦ୍ୱାରା ଜ୍ଞାନ ଢ଼ାଙ୍କି ହୋଇ ରହିଛି; ତେଣୁ ଅଜ୍ଞାନୀ ମନୁଷ୍ୟମାନେ ମୋହିତ ହେଉଛନ୍ତି ।। ୧୫ ।।**

**ପ୍ରଶ୍ନ —** ଏଠାରେ **ବିଭୁଃ** ପଦଟି କାହାର ବାଚକ ? ଏବଂ 'ସେ କାହାର ପାପ-ପୁଣ୍ୟ ଗ୍ରହଣ କରନ୍ତି ନାହିଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ବିଭୁ ପଦଟି ହେଉଛି ସମସ୍ତଙ୍କ ହୃଦୟନିବାସୀ (୧୩/୧୭; ୧୫/୧୫; ୧୮/୬୧), ଏବଂ ନିଜର ସଂକଳ୍ପଦ୍ୱାରା ସକଳ ଜଗତର ସଂଚାଳକ ସର୍ବଶକ୍ତିମାନ୍ ସଗୁଣ ନିରାକାର ପରମେଶ୍ୱରଙ୍କ ବାଚକ । 'ସେ କାହାରି ପାପ-ପୁଣ୍ୟ ଗ୍ରହଣ କରନ୍ତି ନାହିଁ' ବୋଲି କହିବାର ଅଭିପ୍ରାୟ ହେଉଛି: ଯଦିଓ ତାଙ୍କରି ଶକ୍ତିବଳରେ ମନୁଷ୍ୟ ସକଳକର୍ମ କରୁଛି, ଯଦିଓ ସେ ହିଁ ସମସ୍ତଙ୍କୁ ସେମାନଙ୍କ କର୍ମାନୁସାରେ ଶକ୍ତି, ବୁଦ୍ଧି ଓ ଇନ୍ଦ୍ରିୟ ପ୍ରଦାନ କରନ୍ତି, ତଥାପି ସେ ଜୀବମାନଙ୍କ ଦ୍ୱାରା କୃତ କର୍ମମାନ ଗ୍ରହଣ କରନ୍ତି ନାହିଁ, ଅର୍ଥାତ୍ ସେ ନିଜେ କର୍ମମାନଙ୍କର ଫଳରେ ଭାଗୀ ହୁଅନ୍ତି ନାହିଁ ।

**ପ୍ରଶ୍ନ —** ଏହି ଅଧ୍ୟାୟର ଶେଷ ଶ୍ଳୋକରେ ଏବଂ ନବମ ଅଧ୍ୟାୟର ଚବିଶ ଶ୍ଳୋକରେ ଭଗବାନ୍ ତ ସ୍ୱୟଂ କହିଛନ୍ତି, ''ମୁଁ ହିଁ ସମସ୍ତ ଯଜ୍ଞ ଓ ତପର ଭୋକ୍ତା', ଏଠାରେ ପୁଣି କିପରି କହିଲେ ଯେ, ଭଗବାନ୍ କାହାର ଶୁଭକର୍ମ ବି ଗ୍ରହଣ କରନ୍ତି ନାହିଁ ?

**ଉତ୍ତର —** ସମଗ୍ର ବିଶ୍ୱ ହେଉଛି ସଗୁଣ ପରମେଶ୍ୱରଙ୍କ ସ୍ୱରୂପ । ତେଣୁ ଦେବତାଦିରୂପରେ ଭଗବାନ୍ ହିଁ ସମସ୍ତ ଯଜ୍ଞର ଭୋକ୍ତା । କିନ୍ତୁ ଏପରି ହୋଇଥିଲେ ବି ପ୍ରକୃତରେ ଭଗବାନ୍ କର୍ମ ଓ କର୍ମଫଳ ସହିତ ସର୍ବଥା ସମ୍ବନ୍ଧରହିତ; ଏହି କଥାଟି ସ୍ପଷ୍ଟ କରିଦେବାକୁ ହିଁ ଏଠାରେ କୁହାଯାଇଛି ଯେ, ଭଗବାନ୍ କାହାରି ପାପ-ପୁଣ୍ୟ ଗ୍ରହଣ କରନ୍ତି ନାହିଁ । କହିବାର ଅଭିପ୍ରାୟ ଏହି ଯେ, ଦେବ, ମନୁଷ୍ୟ ଆଦିରୂପରେ ଭଗବାନ୍ ସକଳ ଯଜ୍ଞର ଭୋକ୍ତା ହେଲେ ବି ଏବଂ ଭକ୍ତମାନଙ୍କ ଦ୍ୱାରା ଅର୍ପିତ ବିଭିନ୍ନ ବସ୍ତୁ ଓ କ୍ରିୟା ଗ୍ରହଣ କରୁଥିଲେ ବି, ପ୍ରକୃତରେ ସେସବୁ ସହିତ ତାଙ୍କର କୌଣସି

ସମ୍ବନ୍ଧ ନ ଥାଏ; ସେ ଜନ୍ମ ହୋଇ ମଧ୍ୟ ଅଜ (୪/୬) ଓ ସୃଷ୍ଟି ରଚନାଦି କର୍ମ କରୁଥିଲେ ମଧ୍ୟ ଅକର୍ତ୍ତା ହୋଇ ରହନ୍ତି (୪/୧୩)। ତେଣୁ ଏଠାରେ କହିବା ଉଚିତ ହୋଇଛି ଯେ, ଭଗବାନ୍ କାହାରି ଶୁଭକର୍ମ କି ଗ୍ରହଣ କରନ୍ତି ନାହିଁ।

**ପ୍ରଶ୍ନ—** 'ଅଜ୍ଞାନଦ୍ୱାରା ଜ୍ଞାନ ଢାଙ୍କି ହୋଇ ରହିଛି; ତେଣୁ ସକଳ ଜୀବ ମୋହିତ ହେଉଛନ୍ତି'— ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏଠାରେ ଶଙ୍କା ଉଠୁଛି, ଯଦି ପ୍ରକୃତରେ ସତରେ ମନୁଷ୍ୟମାନଙ୍କର ବା ପରମେଶ୍ୱରଙ୍କର କର୍ମସହିତ ଓ ତାହାର ଫଳସହିତ ସମ୍ବନ୍ଧ ନାହିଁ, ତେବେ ସଂସାରରେ ଯେଉଁମାନେ 'ମୁଁ ଅମୁକ କର୍ମ କରିଛି', 'ଏଇଟା ମୋ କାମ', 'ମୋତେ ଏ କାମର ଫଳ ମିଳିବ' ବୋଲି ଭାବୁଛନ୍ତି, ତାହା କଣ ? ଏହି ଶଙ୍କାର ନିରାକରଣ-ନିମନ୍ତେ କହୁଛନ୍ତି ଯେ, ଅନାଦିସିଦ୍ଧ ଅଜ୍ଞାନଦ୍ୱାରା ସକଳ ଜୀବଙ୍କର ଯଥାର୍ଥ ଜ୍ଞାନ ଢାଙ୍କି ହୋଇ ରହିଛି; ତେଣୁ ସେମାନେ ନିଜର ଏବଂ ପରମେଶ୍ୱରଙ୍କର ସ୍ୱରୂପ ତଥା କର୍ମର ତତ୍ତ୍ୱ ବୁଝି ନ ପାରି, ନିଜଠାରେ ଓ ଈଶ୍ୱରଙ୍କ ଠାରେ କର୍ତ୍ତା, କର୍ମ ଓ କର୍ମଫଳର ସମ୍ବନ୍ଧ କଳ୍ପନା କରି ମୋହିତ ହେଉଛନ୍ତି।

## ଜ୍ଞାନେନ ତୁ ତଦଜ୍ଞାନଂ ଯେଷାଂ ନାଶିତମାତ୍ମନଃ।
## ତେଷାମାଦିତ୍ୟବଜ୍ଜ୍ଞାନଂ ପ୍ରକାଶୟତି ତତ୍ପରମ୍।। ୧୬ ।।

**ଅନ୍ୱୟ—** ତୁ = କିନ୍ତୁ; ଯେଷାମ୍ = ଯେଉଁମାନଙ୍କର; ତତ୍ = ସେହି; **ଅଜ୍ଞାନମ୍** = ଅଜ୍ଞାନ; **ଆତ୍ମନଃ** = ପରମାତ୍ମାଙ୍କର; **ଜ୍ଞାନେନ** = ତତ୍ତ୍ୱଜ୍ଞାନଦ୍ୱାରା; **ନାଶିତମ୍** = ନଷ୍ଟ କରାଯାଇଛି; **ତେଷାମ୍** = ସେମାନଙ୍କର; **ଜ୍ଞାନମ୍** = ଜ୍ଞାନ; **ଆଦିତ୍ୟବତ୍** = ସୂର୍ଯ୍ୟସଦୃଶ; **ତତ୍ପରମ୍** = ସେହି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ; **ପ୍ରକାଶୟତି** = ପ୍ରକାଶିତ କରିଦିଏ।

**କିନ୍ତୁ ଯେଉଁମାନଙ୍କର ସେହି ଅଜ୍ଞାନ ପରମାତ୍ମାଙ୍କର ତତ୍ତ୍ୱଜ୍ଞାନଦ୍ୱାରା ନଷ୍ଟ କରାଯାଇଛି, ସେମାନଙ୍କର ଜ୍ଞାନ ସୂର୍ଯ୍ୟସଦୃଶ ସେହି ସଚିଦାନନ୍ଦଘନ ପରମାତ୍ମାଙ୍କୁ ପ୍ରକାଶିତ କରିଦିଏ।। ୧୬ ।।**

**ପ୍ରଶ୍ନ—** ଏଠାରେ ତୁ ର ଅଭିପ୍ରାୟ କଣ ?

**ଉତ୍ତର—** ପନ୍ଦର ଶ୍ଳୋକରେ କୁହାଗଲା ଯେ, ଅଜ୍ଞାନଦ୍ୱାରା ଜ୍ଞାନ ଢାଙ୍କି ହୋଇ ରହିଥିବାରୁ ସକଳ ମନୁଷ୍ୟ ମୋହିତ ହେଉଛନ୍ତି। ବର୍ତ୍ତମାନ ସେହି ସାଧାରଣ ମନୁଷ୍ୟମାନଙ୍କ ଠାରୁ ଆତ୍ମତତ୍ତ୍ୱବିତ୍ ଜ୍ଞାନୀମାନଙ୍କୁ ପୃଥକ୍ କରିଦେବା ନିମନ୍ତେ ତୁ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** ଏଠାରେ **ଅଜ୍ଞାନମ୍** ସହିତ **ତତ୍** ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର—** ପନ୍ଦର ଶ୍ଳୋକରେ ଯେଉଁ ଅଜ୍ଞାନର ବର୍ଣ୍ଣନା କରାଯାଇଛି, ଯେଉଁ ଅଜ୍ଞାନଦ୍ୱାରା ଅନାଦିକାଳରୁ ସକଳ ଜୀବଙ୍କର ଜ୍ଞାନ ଆବୃତ ହୋଇ ରହିଛି, ଯାହାଦ୍ୱାରା ମୋହିତ ହୋଇ ସକଳ ମନୁଷ୍ୟ ଆତ୍ମା ଓ ପରମାତ୍ମାଙ୍କ ଯଥାର୍ଥ ସ୍ୱରୂପ ଜାଣିପାରୁ ନାହାନ୍ତି, ଏଠାରେ ସେହି ଅଜ୍ଞାନ କଥା କୁହାଯାଇଛି। ଏହା ସ୍ପଷ୍ଟ କରିଦେବାକୁ ଅଜ୍ଞାନ ସହିତ ତତ୍ ବିଶେଷଣ ଦିଆଯାଇଛି। କହିବାର ଅଭିପ୍ରାୟ ହେଉଛି, ଯେଉଁମାନଙ୍କର ଏହି ଅନାଦିସିଦ୍ଧ ଅଜ୍ଞାନ ପରମାତ୍ମାଙ୍କ ଯଥାର୍ଥ ଜ୍ଞାନଦ୍ୱାରା ନଷ୍ଟ କରାଯାଇଛି, ସେମାନେ ମୋହିତ ହୁଅନ୍ତି ନାହିଁ।

**ପ୍ରଶ୍ନ—** ଏଠାରେ ସୂର୍ଯ୍ୟଙ୍କ ଦୃଷ୍ଟାନ୍ତ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ସୂର୍ଯ୍ୟ ଯେପରି ଅନ୍ଧକାରକୁ ସର୍ବଥା ନାଶ କରି ସକଳଦୃଶ୍ୟବର୍ଗଙ୍କୁ ପ୍ରକାଶିତ କରିଦିଅନ୍ତି, ଯଥାର୍ଥ ଜ୍ଞାନ ବି ଠିକ୍ ସେହିପରି ଅଜ୍ଞାନକୁ ସର୍ବଥା ନାଶ କରିଦେଇ ପରମାତ୍ମାଙ୍କ ସ୍ୱରୂପକୁ ଭଲଭାବରେ ପ୍ରକାଶିତ କରିଦିଏ। ଯାହାଙ୍କୁ ଯଥାର୍ଥ ଜ୍ଞାନ ପ୍ରାପ୍ତ ହୋଇଯାଏ, ସେ କଦାପି କୌଣସି ବି ପରିସ୍ଥିତିରେ ମୋହିତ ହୁଅନ୍ତି ନାହିଁ।

*ସମ୍ବନ୍ଧ— ଯଥାର୍ଥ ଜ୍ଞାନଦ୍ୱାରା ପରମାତ୍ମପ୍ରାପ୍ତି ହୁଏ— ଏ ବିଷୟଟି ସଂକ୍ଷେପରେ କହିଦେଲେ। ବର୍ତ୍ତମାନ ତିନି ଶ୍ଳୋକପର୍ଯ୍ୟନ୍ତ ଜ୍ଞାନଯୋଗଦ୍ୱାରା ପରମାତ୍ମପ୍ରାପ୍ତିର ସାଧନା ତଥା ପରମାତ୍ମପ୍ରାପ୍ତ ସିଦ୍ଧପୁରୁଷଙ୍କ ଲକ୍ଷଣ,*

ଆଚରଣ, ମହତ୍ତ୍ୱ ଓ ସ୍ଥିତି ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ପ୍ରଥମେ ଏଠାରେ ଜ୍ଞାନଯୋଗର ଏକାନ୍ତ ସାଧନଦ୍ୱାରା ପରମାତ୍ମପ୍ରାପ୍ତି ହୁଏ ବୋଲି କହୁଛନ୍ତି –

**ତଦ୍‌ବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ ।**
**ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଧୂତକଲ୍ମଷାଃ ।। ୧୭ ।।**

**ଅନ୍ୱୟ –** **ତଦ୍‌ବୁଦ୍ଧୟଃ** = ଯେଉଁମାନଙ୍କର ବୁଦ୍ଧି ତଦ୍ରୂପ ହୋଇଯାଇଛି; **ତଦାତ୍ମାନଃ** = ଯେଉଁମାନଙ୍କର ମନ ତଦ୍ରୂପ ହୋଇଯାଇଛି; **ତନ୍ନିଷ୍ଠାଃ** = (ଓ) ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଯେଉଁମାନେ ନିରନ୍ତର ଏକୀଭାବରେ ସ୍ଥିତ ଅଟନ୍ତି; **ତତ୍ପରାୟଣାଃ** = (ଏତାଦୃଶ) ତତ୍ପରାୟଣ ପୁରୁଷମାନେ; **ଜ୍ଞାନନିର୍ଧୂତକଲ୍ମଷାଃ** = ଜ୍ଞାନଦ୍ୱାରା ଯେଉଁମାନେ ପାପରହିତ ହୋଇଛନ୍ତି, ସେମାନେ; **ଅପୁନରାବୃତ୍ତିମ୍** = ଅପୁନରାବୃତ୍ତିକୁ ଅର୍ଥାତ୍ ପରମଗତିକୁ; **ଗଚ୍ଛନ୍ତି** = ପ୍ରାପ୍ତ ହୁଅନ୍ତି ।

**ଯେଉଁମାନଙ୍କର ମନ ତଦ୍ରୂପ ହୋଇଯାଇଛି, ଯେଉଁମାନଙ୍କର ବୁଦ୍ଧି ତଦ୍ରୂପ ହୋଇଯାଇଛି ଓ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଯେଉଁମାନେ ନିରନ୍ତର ଏକୀଭାବରେ ସ୍ଥିତ ଅଟନ୍ତି, ଏତାଦୃଶ ତତ୍ପରାୟଣ ପୁରୁଷମାନେ ଜ୍ଞାନଦ୍ୱାରା ପାପରହିତ ହୋଇ ଅପୁନରାବୃତ୍ତି ଅର୍ଥାତ୍ ପରମଗତି ପ୍ରାପ୍ତ ହୁଅନ୍ତି ।। ୧୭ ।।**

**ପ୍ରଶ୍ନ –** ମନ ତଦ୍ରୂପ ହୋଇଯିବା କହିଲେ କଣ ଏବଂ ସାଂଖ୍ୟଯୋଗ ଅନୁସାରେ କିପରି ଅଭ୍ୟାସ କଲେ ମନ ତଦ୍ରୂପ ହୋଇଯାଏ ?

**ଉତ୍ତର –** ସାଂଖ୍ୟଯୋଗ (ଜ୍ଞାନଯୋଗ) ଅଭ୍ୟାସ କରୁଥିବା ସାଧକ ଆଚାର୍ଯ୍ୟଙ୍କର ଓ ଶାସ୍ତ୍ରର ଉପଦେଶ ଗ୍ରହଣ କରି ସମସ୍ତ ଜଗତ ମାୟାମୟ ଏବଂ ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ସତ୍ୟ ବସ୍ତୁ ବୋଲି ଜାଣି ଓ ସକଳ ଅନାତ୍ମବସ୍ତୁର ଚିନ୍ତନ ସର୍ବଥା ତ୍ୟାଗ କରିଦେଇ ମନକୁ ପରମାତ୍ମାଙ୍କ ସ୍ୱରୂପରେ ନିଶ୍ଚଳ ରଖିବା ନିମନ୍ତେ ତାଙ୍କ ଆନନ୍ଦମୟ ସ୍ୱରୂପ ଚିନ୍ତନ କରିବା ଉଚିତ । ବାରମ୍ବାର ଆନନ୍ଦର ଆବୃତ୍ତି କରି କରି ଏପରି ଧାରଣା ଆଣିବା ଉଚିତ ଯେ, ପୂର୍ଣ୍ଣ ଆନନ୍ଦ, ଅପାର ଆନନ୍ଦ, ଶାନ୍ତ ଆନନ୍ଦ, ଘନ ଆନନ୍ଦ, ଅଚଳ ଆନନ୍ଦ, ଧ୍ରୁବ ଆନନ୍ଦ, ନିତ୍ୟ ଆନନ୍ଦ, ବୋଧସ୍ୱରୂପ ଆନନ୍ଦ, ଜ୍ଞାନସ୍ୱରୂପ ଆନନ୍ଦ, ପରମ ଆନନ୍ଦ, ମହାନ୍ ଆନନ୍ଦ, ଅନନ୍ତ ଆନନ୍ଦ, ସମ ଆନନ୍ଦ, ଅଚିନ୍ତ୍ୟ ଆନନ୍ଦ, ଚିନ୍ମୟ ଆନନ୍ଦ, ଏକମାତ୍ର ଆନନ୍ଦ ହିଁ ଆନନ୍ଦ ପରିପୂର୍ଣ୍ଣ ହୋଇ ରହିଛି; ଆନନ୍ଦ ଭିନ୍ନ ଅନ୍ୟ କୌଣସି ବସ୍ତୁ ହିଁ ନାହିଁ । ଏପରିଭାବରେ ନିରନ୍ତର ମନନ କରି କରି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ମନ ନିଶ୍ଚଳ ହୋଇଯିବାକୁ ମନ ତଦ୍ରୂପ ହୋଇଯିବା ବୋଲାଯାଏ ।

**ପ୍ରଶ୍ନ –** ବୁଦ୍ଧି ତଦ୍ରୂପ ହୋଇଯିବା କଣ ଏବଂ ମନ ତଦ୍ରୂପ ହୋଇଯିବା ପରେ କିପରି ଅଭ୍ୟାସ କଲେ ବୁଦ୍ଧି ତଦ୍ରୂପ ହୋଇଯାଏ ?

**ଉତ୍ତର –** ଉପରୋକ୍ତପ୍ରକାରେ ମନ ତଦ୍ରୂପ ହୋଇଗଲେ, ବୁଦ୍ଧିରେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପ ପ୍ରତ୍ୟକ୍ଷପରି ନିଶ୍ଚିତ ହୋଇଯାଏ । ସେହି ନିଶ୍ଚିତ ସ୍ୱରୂପକୁ ନିଦିଧ୍ୟାସନ (ଧ୍ୟାନ) କରୁ କରୁ ବୁଦ୍ଧିର ଆଉ ଭିନ୍ନ ସତ୍ତା ନ ରହି ତାହା ସଚ୍ଚିଦାନନ୍ଦଘନ ପରମାତ୍ମାରେ ଏକାକାର ହୋଇଯିବା ଯାହା, ବୁଦ୍ଧି ତଦ୍ରୂପ ହୋଇଯିବା ତାହା ।

**ପ୍ରଶ୍ନ – ତନ୍ନିଷ୍ଠା** ଅର୍ଥାତ୍ 'ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକୀଭାବରେ ସ୍ଥିତି' କେଉଁ ଅବସ୍ଥାର ନାମ ଏବଂ ମନ ଓ ବୁଦ୍ଧି ତଦ୍ରୂପ ହୋଇଯିବା ପରେ ସେହି ସ୍ଥିତି କିପରି ହୁଏ ?

**ଉତ୍ତର –** ଉପରୋକ୍ତପ୍ରକାରେ ମନ ଓ ବୁଦ୍ଧି ପରମାତ୍ମାରେ ଏକାକାର ନ ହୋଇଯିବାପର୍ଯ୍ୟନ୍ତ, ସାଂଖ୍ୟଯୋଗୀ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ରହିପାରନ୍ତି ନାହିଁ । କାରଣ ମନ ଓ ବୁଦ୍ଧି ହିଁ ଆତ୍ମା ଓ ପରମାତ୍ମାଙ୍କ ଭେଦଭ୍ରମର ମୁଖ୍ୟ କାରଣ । ଏଣୁ ଉପରୋକ୍ତପ୍ରକାରେ ମନ ଓ ବୁଦ୍ଧି ପରମାତ୍ମାଙ୍କ ଠାରେ ଏକାକାର ହୋଇଯିବା ପରେ, ସାଧକଙ୍କ ଦୃଷ୍ଟିରେ ଆତ୍ମା ଓ ପରମାତ୍ମାଙ୍କ ଭେଦଭ୍ରମ ନାଶ ହୋଇଯାଏ ଏବଂ ଧାତା, ଧ୍ୟାନ ଓ ଧ୍ୟେୟର ତ୍ରିପୁଟୀର ଅଭାବ ହୋଇ କେବଳମାତ୍ର ଏକ ବସ୍ତୁ ସଚ୍ଚିଦାନନ୍ଦଘନ ପରମାତ୍ମା ରହିଯାଆନ୍ତି । ଏହା ହିଁ ସାଂଖ୍ୟଯୋଗୀଙ୍କର ତନ୍ନିଷ୍ଠା ଅର୍ଥାତ୍ ପରମାତ୍ମାଙ୍କ ଠାରେ ଏକୀଭାବରେ ସ୍ଥିତ ହେବା ।

**ପ୍ରଶ୍ନ –** **ତତ୍ପରାୟଣାଃ** ପଦଟି କେଉଁମାନଙ୍କ ବାଚକ ?

**ଉତ୍ତର –** ଉପରୋକ୍ତପ୍ରକାରେ ଆତ୍ମା ଓ ପରମାତ୍ମାଙ୍କ ଭେଦଭ୍ରମ ନାଶ ହୋଇଗଲେ ସାଂଖ୍ୟଯୋଗୀଙ୍କର ଯେତେବେଳେ ସଚ୍ଚିଦାନନ୍ଦଘନ ପରମାତ୍ମାରେ ଅଭିନ୍ନଭାବରେ ନିଶ୍ଚଳ ସ୍ଥିତି ହୋଇଯାଏ, ସେତେବେଳେ ବସ୍ତୁତଃ ପରମାତ୍ମାଙ୍କ ଭିନ୍ନ ଅନ୍ୟ କାହାରି ସତ୍ତା ରହେ ନାହିଁ। ତାଙ୍କର ମନ, ବୁଦ୍ଧି, ପ୍ରାଣ ଆଦି ସବୁକିଛି ପରମାତ୍ମରୂପ ହିଁ ହୋଇଯାଏ। **ତତ୍ପରାୟଣାଃ** ହେଉଛି ଏପରିଭାବରେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କର ସାକ୍ଷାତ୍ ଅପରୋକ୍ଷ ଜ୍ଞାନଦ୍ୱାରା ପରମାତ୍ମାଙ୍କ ଠାରେ ଏକତ୍ୱ ପ୍ରାପ୍ତ ହେଉଥିବା ପୁରୁଷମାନଙ୍କର ବାଚକ।

**ପ୍ରଶ୍ନ –** ଏଠାରେ **ତତ୍** ଶବ୍ଦର ଅର୍ଥ **ସଚ୍ଚିଦାନନ୍ଦଘନ ପରମାତ୍ମା** କିପରି କରାଗଲା ?

**ଉତ୍ତର –** ପୂର୍ବଶ୍ଳୋକରେ **ପରମ୍** ସହିତ **ତତ୍** ବିଶେଷଣ ରହିଛି। ସେଠାରେ ଯଥାର୍ଥ ଜ୍ଞାନଦ୍ୱାରା ଯେଉଁ ପରମତତ୍ତ୍ୱର ସାକ୍ଷାତ୍କାର ହୁଏ ବୋଲି କୁହାଯାଇଛି, ତାହା ସହିତ ଏହି ଶ୍ଳୋକର **ତତ୍** ଶବ୍ଦର ସମ୍ବନ୍ଧ ରହିଛି। ଅତଏବ ପ୍ରକରଣ ଅନୁସାରେ ତାହାର ଅର୍ଥ **ସଚ୍ଚିଦାନନ୍ଦଘନ ପରମାତ୍ମା** କରିବା ହିଁ ଉଚିତ।

**ପ୍ରଶ୍ନ –** ଏଠାରେ **ଜ୍ଞାନନିର୍ଧୂତକଲ୍ମଷାଃ** ପଦଟିରେ ଥିବା **ଜ୍ଞାନ** ଶବ୍ଦଟି କେଉଁ ଜ୍ଞାନର ବାଚକ ? **କଲ୍ମଷ** ଓ **ନିର୍ଧୂତ** ଶବ୍ଦର ଅର୍ଥ କଣ ?

**ଉତ୍ତର –** ଷୋଡ଼ଶ ଶ୍ଳୋକରେ ଯେଉଁ ଜ୍ଞାନକୁ ଅଜ୍ଞାନର ନାଶକ ଏବଂ ପରମାତ୍ମାଙ୍କ ପ୍ରକାଶକ ବୋଲି କୁହାଗଲା, ଏଠାରେ **ଜ୍ଞାନ** ଶବ୍ଦଟି ହେଉଛି ସେହି ଯଥାର୍ଥ ତତ୍ତ୍ୱଜ୍ଞାନର ବାଚକ। **କଲ୍ମଷ** ଶବ୍ଦଟି ହେଉଛି ଶୁଭାଶୁଭ କର୍ମ ତଥା ରାଗଦ୍ୱେଷାଦି ଅବଗୁଣ ଏବଂ ବିକ୍ଷେପ ଓ ଆବରଣ — ଏହି ସମସ୍ତଙ୍କର ବାଚକ; କାରଣ ଏସବୁ ଆତ୍ମାର ବନ୍ଧନର କାରଣ ହୋଇଥିବାରୁ କଲ୍ମଷ ଅର୍ଥାତ୍ ପାପ ହିଁ ଅଟନ୍ତି। **ନିର୍ଧୂତ** ହେବାର ଅର୍ଥ ହେଉଛି ଏସବୁ ଭଲରୂପେ ନଷ୍ଟ ହୋଇଯିବା। ଅଭିପ୍ରାୟ ଏହି ଯେ, ଉପରୋକ୍ତପ୍ରକାର ସାଧନାରୁ ପ୍ରାପ୍ତ ଯଥାର୍ଥ ଜ୍ଞାନଦ୍ୱାରା ଯେଉଁମାନଙ୍କର ମଳ, ବିକ୍ଷେପ ଓ ଆବରଣରୂପକ ସମସ୍ତ ପାପ ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି, ଯେଉଁମାନେ ସର୍ବଥା ପାପରହିତ ହୋଇଯାଇଛନ୍ତି, ସେମାନେ **ଜ୍ଞାନନିର୍ଧୂତକଲ୍ମଷ** ଅଟନ୍ତି।

**ପ୍ରଶ୍ନ –** ଏଠାରେ 'ଅପୁନରାବୃତ୍ତି ପ୍ରାପ୍ତ ହେବା' କହିଲେ କଣ ବୁଝାଏ ?

**ଉତ୍ତର –** ଯେଉଁ ପଦ ପ୍ରାପ୍ତ ହୋଇଗଲେ ଯୋଗୀଙ୍କର ପୁନର୍ଜନ୍ମ ହୁଏ ନାହିଁ, ଯାହାକୁ ଷୋଳ ଶ୍ଳୋକରେ **ତତ୍ପରମ୍** ବୋଲି କୁହାଯାଇଛି, ଯାହାର ବର୍ଣ୍ଣନା କେଉଁଠି 'ଅକ୍ଷୟ ସୁଖ' ତ, କେଉଁଠି 'ନିର୍ବାଣ ବ୍ରହ୍ମ', କେଉଁଠି 'ଉତ୍ତମ ସୁଖ', ପୁଣି କେଉଁଠି 'ପରମଗତି', କେଉଁଠି 'ପରମଧାମ', କେଉଁଠି 'ଅବ୍ୟୟପଦ' ଓ କେଉଁଠି 'ଦିବ୍ୟପରମ ପୁରୁଷ' ନାମରେ ଆସିଛି, ସେହି ଯଥାର୍ଥ ଜ୍ଞାନର ଫଳରୂପୀ ପରମାତ୍ମାଙ୍କୁ ପ୍ରାପ୍ତ ହେବା ହିଁ ଅପୁନରାବୃତ୍ତି ପ୍ରାପ୍ତ ହେବା।

*ସମ୍ବନ୍ଧ – ପରମାତ୍ମାଙ୍କୁ ପ୍ରାପ୍ତ କରିବାର ସାଧନା କହିସାରି ବର୍ତ୍ତମାନ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ସିଦ୍ଧପୁରୁଷମାନଙ୍କ ସମଭାବର ବର୍ଣ୍ଣନା କରୁଛନ୍ତି–*

**ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ॥ ୧୮ ॥**

**ଅନ୍ୱୟ –** **ପଣ୍ଡିତାଃ** = (ସେହି) ଜ୍ଞାନୀମାନେ; **ବିଦ୍ୟାବିନୟସମ୍ପନ୍ନେ** = ବିଦ୍ୟା ଓ ବିନୟଯୁକ୍ତ; **ବ୍ରାହ୍ମଣେ** = ବ୍ରାହ୍ମଣଙ୍କ ଠାରେ; **ଚ** = ତଥା; **ଗବି** = ଗାଈଠାରେ; **ହସ୍ତିନି** = ହାତୀଠାରେ; **ଶୁନି** = କୁକୁରଠାରେ; **ଶ୍ୱପାକେ** = ଚାଣ୍ଡାଳଠାରେ; **ଚ** = ବି; **ସମଦର୍ଶିନଃ** = ସମଦର୍ଶୀ; **ଏବ** = ହିଁ (ହୋଇଥାନ୍ତି)

**ସେହି ଜ୍ଞାନୀମାନେ ବିଦ୍ୟା ଓ ବିନୟଯୁକ୍ତ ବ୍ରାହ୍ମଣଙ୍କ ଠାରେ ତଥା ଗୋ, ହସ୍ତୀ, କୁକୁର ଏବଂ ଚାଣ୍ଡାଳଠାରେ ମଧ୍ୟ ସମଦର୍ଶୀ ହୋଇଥାନ୍ତି॥ ୧୮ ॥**

**ପ୍ରଶ୍ନ –** ଏଠାରେ **ପଣ୍ଡିତାଃ** ପଦଟି କେଉଁ ପୁରୁଷମାନଙ୍କ ବାଚକ ?

**ଉତ୍ତର –** **ପଣ୍ଡିତାଃ** ପଦଟି ତତ୍ତ୍ୱଜ୍ଞାନୀ ମହାତ୍ମା ସିଦ୍ଧ ପୁରୁଷମାନଙ୍କ ବାଚକ।

**ପ୍ରଶ୍ନ** – 'ବିଦ୍ୟାବିନୟସମ୍ପନ୍ନ ବ୍ରାହ୍ମଣଙ୍କ ଠାରେ ତଥା ଗୋ, ହସ୍ତୀ, କୁକୁର ଓ ଚାଣ୍ଡାଳଠାରେ ସମଦର୍ଶନ'ର ଭାବ କଣ ?

**ଉତ୍ତର** – ତତ୍ତ୍ୱଜ୍ଞାନୀ ସିଦ୍ଧ ପୁରୁଷମାନଙ୍କର ବିଷମଭାବ ସର୍ବଥା ନଷ୍ଟ ହୋଇଯାଏ । ସେମାନଙ୍କ ଦୃଷ୍ଟିରେ ଏକ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ଠାରୁ ଭିନ୍ନ ଅନ୍ୟ କୌଣସି ସତ୍ତା ରହେ ନାହିଁ । ତେଣୁ ତାଙ୍କର ସର୍ବତ୍ର ସମଭାବ ହୋଇଯାଏ । ଏହି କଥାଟି ବୁଝାଇଦେବା ଉଦ୍ଦେଶ୍ୟରେ ମନୁଷ୍ୟମାନଙ୍କ ମଧ୍ୟରେ ସର୍ବୋତ୍ତମ ଶ୍ରେଷ୍ଠ ବ୍ରାହ୍ମଣ, ନୀଚତମ ଚାଣ୍ଡାଳ ଏବଂ ପଶୁମାନଙ୍କ ମଧ୍ୟରେ ସର୍ବୋତ୍ତମ ଗୋମାତା, ମଧ୍ୟମ ହସ୍ତୀ ଏବଂ ନୀଚତମ କୁକୁରର ଉଦାହରଣ ଦେଇ ସମତ୍ୱର ଦିଗ୍‌ଦର୍ଶନ କରାଯାଇଛି । ଏହି ପାଞ୍ଚପ୍ରକାର ପ୍ରାଣୀଙ୍କ ପ୍ରତି ବ୍ୟବହାରରେ ସମସ୍ତଙ୍କୁ ବିଷମତା ରଖିବାକୁ ହିଁ ପଡ଼ିଥାଏ । ଉଦାହରଣସ୍ୱରୂପ ସମସ୍ତେ ଗୋଦୁଗ୍ଧ ପିଅନ୍ତି, କିନ୍ତୁ କୁକୁରଦୁଧ ତ କୌଣସି ମନୁଷ୍ୟ ପିଏ ନାହିଁ; ସେହିପରି ହାତୀ ଉପରେ ଚଢ଼ାଯାଇଥାଏ; କୁକୁର ଉପରେ ଚଢ଼ିବା ଚଳେ ନାହିଁ । ଶରୀରନିର୍ବାହପାଇଁ ପଶୁମାନଙ୍କର ଯେଉଁ ବସ୍ତୁ ଉପଯୋଗୀ, ମନୁଷ୍ୟମାନଙ୍କର ତାହା ହୋଇ ନ ପାରେ । ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ପୂଜାସତ୍କାର କରିବାନିମନ୍ତେ ଶାସ୍ତ୍ରର ଆଜ୍ଞା ରହିଛି; ଚାଣ୍ଡାଳପାଇଁ ନାହିଁ । ତେଣୁ ଏସବୁ ଉଦାହରଣ ଦେଇ ଭଗବାନ୍ ବୁଝାଇଦେଇଛନ୍ତି ଯେ, ଯେଉଁମାନଙ୍କ କ୍ଷେତ୍ରରେ ବ୍ୟାବହାରିକ ବିଷମତା ଅନିବାର୍ଯ୍ୟ, ସେମାନଙ୍କ କ୍ଷେତ୍ରରେ ବି ଜ୍ଞାନୀପୁରୁଷମାନେ ସମଭାବ ହିଁ ରଖନ୍ତି । କେବେ କୌଣସି ବି କାରଣରୁ କେଉଁଠି ମଧ୍ୟ ସେମାନଙ୍କ ଠାରେ ବିଷମଭାବ ରହେ ନାହିଁ ।

**ପ୍ରଶ୍ନ** – କଣ ସର୍ବତ୍ର ସମଭାବ ରଖୁଥିବାରୁ ଜ୍ଞାନୀ ପୁରୁଷମାନେ ସମସ୍ତଙ୍କ ସହିତ ଏକାପରି ବ୍ୟବହାର କରନ୍ତି ?

**ଉତ୍ତର** – ନା; ସେପରି ନୁହେଁ; କେହି ହେଲେ ସମସ୍ତଙ୍କ ସହିତ ଏକାପରି ବ୍ୟବହାର କରିପାରିବ ନାହିଁ । ଶାସ୍ତ୍ରରେ କୁହାଯାଇଥିବା ନ୍ୟାୟଯୁକ୍ତ ବ୍ୟବହାରର ପ୍ରଭେଦ ତ ସମସ୍ତଙ୍କ କ୍ଷେତ୍ରରେ ରଖିବାକୁ ହିଁ ପଡ଼ିବ । ଜ୍ଞାନୀ ପୁରୁଷମାନଙ୍କର ବିଶେଷତ୍ୱ ଏହି ଯେ, ସେମାନେ ଲୋକଦୃଷ୍ଟିରୁ ବ୍ୟବହାରରେ ଯଥାଯୋଗ୍ୟ ଆବଶ୍ୟକ ପ୍ରଭେଦ ରଖନ୍ତି — ବ୍ରାହ୍ମଣଙ୍କ ସହିତ ବ୍ରାହ୍ମଣୋଚିତ, ଚାଣ୍ଡାଳ ସହିତ ଚାଣ୍ଡାଳୋଚିତ, ଠିକ୍ ସେହିପରି ଗାଈ, ହାତୀ ଓ କୁକୁର ପ୍ରଭୃତିଙ୍କ ସହିତ ଯଥାଯୋଗ୍ୟ ସଦ୍‌ବ୍ୟବହାର କରନ୍ତି, କିନ୍ତୁ ଏପରି କରି ମଧ୍ୟ ସେମାନଙ୍କର ପ୍ରେମ ଓ ପରମାତ୍ମଭାବ ସମସ୍ତଙ୍କ ଠାରେ ସମାନରୂପରେ ଥାଏ ।

ଯେପରି ମନୁଷ୍ୟ ନିଜର ମସ୍ତକ, ହସ୍ତ ଓ ପାଦ ଆଦି ଅଙ୍ଗମାନଙ୍କ ସହିତ ମଧ୍ୟ ବ୍ୟବହାରରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କ ଭଳି ପ୍ରଭେଦ ରଖେ; ସେ ତା'ର ମସ୍ତକ ଓ ମୁଖରେ ଯେଉଁ କାର୍ଯ୍ୟ କରେ, ହାତପାଦରେ ତାହା କରେ ନାହିଁ; ହାତପାଦର କାର୍ଯ୍ୟ ମସ୍ତକ-ମୁଖଦ୍ୱାରା ବି କରେ ନାହିଁ । ପୁଣି ସବୁ ଅଙ୍ଗ ପ୍ରତି ଥିବା ସମ୍ମାନ, ଆଦର ଓ ଶୌଚାଦିରେ ମଧ୍ୟ ପ୍ରଭେଦ ରଖେ, ଅଥଚ ସକଳ ଅଙ୍ଗ ପ୍ରତି ଏକ ଆତ୍ମଭାବ ରଖୁଥିବାରୁ, ସବୁ ଅଙ୍ଗକୁ ଆପଣାର ଅଙ୍ଗ ବୋଲି ଭାବୁଥିବାରୁ, ସେ ଯେପରି ସକଳ ଅଙ୍ଗର ସୁଖଦୁଃଖକୁ ସମାନଭାବରେ ଅନୁଭବ କରେ ଏବଂ ସମସ୍ତ ଶରୀର ପ୍ରତି ତା'ହିତରେ ଏକାପ୍ରକାର ପ୍ରେମ ରହିଥାଏ, ପ୍ରେମ ଓ ଆତ୍ମଭାବ ଦୃଷ୍ଟିରୁ କୌଣସି ବିଷମତା ନ ଥାଏ, ତତ୍ତ୍ୱଜ୍ଞାନୀ ମହାପୁରୁଷମାନଙ୍କର ସେହିପରି ସର୍ବତ୍ର ବ୍ରହ୍ମଦୃଷ୍ଟି ହୋଇଯିବା ଫଳରେ, ସେମାନେ ଲୌକିକ ଦୃଷ୍ଟିରୁ ବ୍ୟବହାରରେ ଯଥାଯୋଗ୍ୟ ପ୍ରଭେଦ ରଖୁଥିଲେ ବି, ସେମାନଙ୍କର ଆତ୍ମଭାବ ଓ ପ୍ରେମ ସର୍ବତ୍ର ସମାନ ରହିଥାଏ । ତେଣୁ କୌଣସି ଅଙ୍ଗରେ ଆଘାତ ଲାଗିଲେ ବା ଆଘାତ ଲାଗିବାର ସମ୍ଭାବନା ଦେଖାଦେଲେ, ମନୁଷ୍ୟ ଯେପରି ତା'ର ପ୍ରତିକାରର ଚେଷ୍ଟା କରିଥାଏ, ବ୍ୟବହାରକାଳରେ କୌଣସି ଜୀବ ବା ଜୀବସମୁଦାୟ ଉପରେ ବିପତ୍ତି ପଡୁଥିବାର ଦେଖାଗଲେ, ତତ୍ତ୍ୱଜ୍ଞାନୀ ପୁରୁଷମାନେ ବି ସେହିପରି କୌଣସି ଭେଦଭାବ ନ ରଖି ତାହାର ପ୍ରତିକାର ନିମନ୍ତେ ଯଥାଯୋଗ୍ୟ ଚେଷ୍ଟା କରନ୍ତି ।

*ସମ୍ବନ୍ଧ – ଏପରିଭାବରେ ତତ୍ତ୍ୱଜ୍ଞାନୀମାନଙ୍କ ସମଭାବର ବର୍ଣ୍ଣନା କରିସାରି ବର୍ତ୍ତମାନ ସମଭାବକୁ ବ୍ରହ୍ମଙ୍କର ସ୍ୱରୂପ ବୋଲି କହି ସେଥିରେ ସ୍ଥିତ ମହାପୁରୁଷମାନଙ୍କ ମହିମା ବର୍ଣ୍ଣନା କରୁଛନ୍ତି –*

**ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।**
**ନିର୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ ।। ୧୯ ।।**

**ଅନ୍ୱୟ —** **ଯେଷାମ୍** = ଯେଉଁମାନଙ୍କର; **ମନଃ** = ମନ; **ସାମ୍ୟେ** = ସମଭାବରେ; **ସ୍ଥିତମ୍** = ଅବସ୍ଥିତ; **ତୈଃ** = ସେମାନଙ୍କ ଦ୍ୱାରା; **ଇହ** = ଏହି ଜୀବିତ ଅବସ୍ଥାରେ; **ଏବ** = ହିଁ; **ସର୍ଗଃ** = ସମଗ୍ରସଂସାର; **ଜିତଃ** = ବିଜିତ ହୋଇଥାଏ; **ହି** = ଯାହିଁକି ନା; **ବ୍ରହ୍ମ** = ସଚ୍ଚିଦାନନ୍ଦଘନ ପରମାତ୍ମା; **ନିର୍ଦୋଷମ୍** = ନିର୍ଦୋଷ; **ସମମ୍** = (ଓ) ସମ; **ତସ୍ମାତ୍** = ତେଣୁ; **ତେ** = ସେମାନେ; **ବ୍ରହ୍ମଣି** = ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ; **ସ୍ଥିତାଃ** = ଅବସ୍ଥିତ ।

**ଯେଉଁମାନଙ୍କର ମନ ସମଭାବରେ ଅବସ୍ଥିତ, ସେମାନଙ୍କ ଦ୍ୱାରା ଏହି ଜୀବିତ ଅବସ୍ଥାରେ ହିଁ ସମଗ୍ର ସଂସାର ବିଜିତ ହୋଇଥାଏ; ଯେହେତୁ ସଚ୍ଚିଦାନନ୍ଦଘନ ପରମାତ୍ମା ନିର୍ଦୋଷ ଓ ସମ, ତେଣୁ ସେମାନେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଅବସ୍ଥାନ କରିଥାନ୍ତି ।। ୧୯ ।।**

**ପ୍ରଶ୍ନ —** 'ଯେଉଁମାନଙ୍କର ମନ ସମତ୍ୱରେ ଅବସ୍ଥିତ, ସେମାନେ ଏହି ସଂସାରକୁ ଜିଣିଯାଇଥାନ୍ତି' —ଏ କଥାର ଅଭିପ୍ରାୟ କଣ ?

**ଉତ୍ତର —** ଏହା କହି ଭଗବାନ୍ ଦେଖାଉଛନ୍ତି ଯେ, ଯେଉଁମାନଙ୍କ ମନ ଉପରୋକ୍ତପ୍ରକାରେ ସମତ୍ୱରେ ସ୍ଥିର ହୋଇଯାଇଛି, ଅର୍ଥାତ୍ ଯେଉଁମାନଙ୍କର ସର୍ବତ୍ର ସମବୁଦ୍ଧି ହୋଇଯାଇଛି, ସେମାନେ ଏହି ବର୍ତ୍ତମାନ ଜୀବନରେ ସଂସାରକୁ ଜିଣିଯାଇଛନ୍ତି; ସେମାନେ ଚିରକାଳପାଇଁ ଜନ୍ମ-ମରଣରୁ ଉଦ୍ଧାର ପାଇଯାଇ ଜୀବନ୍ମୁକ୍ତ ହୋଇଯାଇଛନ୍ତି । ଲୋକଦୃଷ୍ଟିରୁ ସେମାନଙ୍କର ଶରୀର ରହିଥିଲେ ବି, ବସ୍ତୁତଃ ସେହି ଶରୀର ସହିତ ସେମାନଙ୍କର କୌଣସି ସମ୍ବନ୍ଧ ନ ଥାଏ ।

**ପ୍ରଶ୍ନ —** ବ୍ରହ୍ମଙ୍କୁ 'ନିର୍ଦୋଷ' ଏବଂ 'ସମ' କହିବାର ଅଭିପ୍ରାୟ କଣ ? ପୁଣି **ହି** ଓ **ତସ୍ମାତ୍** କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର —** ସତ୍ତ୍ୱ, ରଜ ଓ ତମ — ଏହି ତିନି ଗୁଣରେ ସକଳପ୍ରକାର ଦୋଷ ପୂର୍ଣ୍ଣ ହୋଇ ରହିଛି ଏବଂ ସମସ୍ତ ସଂସାର ତିନି ଗୁଣର କାର୍ଯ୍ୟ ହୋଇଥିବାରୁ ଦୋଷମୟ ଅଟେ । ଏହିସବୁ ଗୁଣମାନଙ୍କ ସମ୍ବନ୍ଧରୁ ହିଁ ବିଷମଭାବର ତଥା ରାଗ, ଦ୍ୱେଷ, ମୋହ ଆଦି ସକଳ ଅବଗୁଣର ପ୍ରାଦୁର୍ଭାବ ହୁଏ । ବ୍ରହ୍ମ ନାମରେ କଥିତ ହେଉଥିବା ସଚ୍ଚିଦାନନ୍ଦଘନ ପରମାତ୍ମା ଏହି ତ୍ରିଗୁଣରୁ ସର୍ବଥା ଅତୀତ । ତେଣୁ ସେ **ନିର୍ଦୋଷ** ଓ **ସମ** । ତତ୍ତ୍ୱଜ୍ଞାନୀ ମଧ୍ୟ ତ୍ରିଗୁଣରୁ ଅତୀତ ହୋଇଯାଇଥାନ୍ତି । ତେଣୁ ତାଙ୍କର ରାଗ, ଦ୍ୱେଷ, ମୋହ, ମମତ୍ୱ, ଅହଂକାର ଆଦି ସମସ୍ତ ଅବଗୁଣ ଏବଂ ବିଷମଭାବ ସର୍ବଥା ନାଶ ପାଇ ତାଙ୍କ ସ୍ଥିତି ସମଭାବରେ ହୋଇଯାଏ । **ହି** ଏବଂ **ତସ୍ମାତ୍** ଏହି ଦୁଇ ହେତୁବାଚକ ଶବ୍ଦ ପ୍ରୟୋଗର ଅଭିପ୍ରାୟ ଏହି ଯେ, ସମଭାବ ବ୍ରହ୍ମଙ୍କର ହିଁ ସ୍ୱରୂପ । ଏଣୁ ଯେଉଁମାନଙ୍କର ମନ ସମଭାବରେ ଅବସ୍ଥିତ, ସେମାନେ ବ୍ରହ୍ମରେ ହିଁ ଅବସ୍ଥିତ ଅଟନ୍ତି । ଲୋକଙ୍କୁ ସେମାନେ ଏହି ତ୍ରିଗୁଣମୟ ସଂସାରରେ ଏବଂ ଶରୀରରେ ରହିଥିବାର ଦିଶୁଥିଲେ ବି, ସେମାନେ ସମଭାବରେ ଅବସ୍ଥିତ ହୋଇଥିବାରୁ ଏହି ସଂସାର ଓ ଶରୀର ସହିତ ସେମାନଙ୍କର କୌଣସି ସମ୍ବନ୍ଧ ନ ଥାଏ; ସେମାନଙ୍କ ସ୍ଥିତି ତ ବ୍ରହ୍ମରେ ହିଁ ଥାଏ ।

**ପ୍ରଶ୍ନ —** ତମୋଗୁଣ ଓ ରଜୋଗୁଣକୁ ସକଳ ଦୋଷର ଭଣ୍ଡାର ବୋଲି କହିବା ଉଚିତ, କାରଣ ଗୀତାର ସ୍ଥାନେ ସ୍ଥାନେ ଭଗବାନ୍ ସେହି ଗୁଣଦୁଇଟିକୁ ସକଳ ଅନର୍ଥର ମୂଳ ବୋଲି କହି ତାହା ତ୍ୟାଗ କରିଦେବାକୁ ଉପଦେଶ ଦେଇଛନ୍ତି; କିନ୍ତୁ ସତ୍ତ୍ୱଗୁଣ ତ ଭଗବତ୍‌ପ୍ରାପ୍ତିରେ ସହାୟକ; ତମୋଗୁଣ ଓ ରଜୋଗୁଣ ସହିତ ସତ୍ତ୍ୱଗୁଣକୁ ବି ସକଳ ଦୋଷର ଭଣ୍ଡାର ବୋଲି କହିଲେ କିପରି ?

**ଉତ୍ତର —** ରଜ ଓ ତମ ଅପେକ୍ଷା ସତ୍ତ୍ୱଗୁଣ ଶ୍ରେଷ୍ଠ ଏବଂ ମନୁଷ୍ୟର ଉନ୍ନତିରେ ସହାୟକ ହେଲେ ମଧ୍ୟ ଅହଂକାରଯୁକ୍ତ ସୁଖ ଏବଂ ଜ୍ଞାନର ସମ୍ବନ୍ଧ ରହିଥିବାରୁ ଭଗବାନ୍ ସତ୍ତ୍ୱକୁ ବି ବନ୍ଧନର କାରଣ ବୋଲି କହିଛନ୍ତି (୧୪/୬) । ବସ୍ତୁତଃ ତ୍ରିଗୁଣର ସମ୍ବନ୍ଧ କଟି ନ ଯିବାପର୍ଯ୍ୟନ୍ତ ସାଧକ ସର୍ବଥା ନିର୍ଦୋଷ ହୋଇପାରନ୍ତି ନାହିଁ ଏବଂ ତାଙ୍କର ସ୍ଥିତି ସମ୍ପୂର୍ଣ୍ଣରୂପେ ସମଭାବରେ ରହେ ନାହିଁ । ଏଣୁ ଏଠାରେ ଗୁଣାତୀତଙ୍କ ପ୍ରସଙ୍ଗରେ ସତ୍ତ୍ୱଗୁଣରେ ବି ଦୋଷ ରହିଛି ବୋଲି କହିବା ଅନୁଚିତ ନୁହେଁ ।

**ସମ୍ବନ୍ଧ —** ବର୍ତ୍ତମାନ ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥିବା ସମଦର୍ଶୀ ସିଦ୍ଧ ପୁରୁଷଙ୍କ ଲକ୍ଷଣ କହୁଛନ୍ତି —

**ନ ପ୍ରହୃଷ୍ୟେତ୍ପ୍ରିୟଂ ପ୍ରାପ୍ୟ ନୋଦ୍ୱିଜେତ୍ ପ୍ରାପ୍ୟ ଚାପ୍ରିୟମ୍ ।**
**ସ୍ଥିରବୁଦ୍ଧିରସଂମୂଢୋ ବ୍ରହ୍ମବିଦ୍ ବ୍ରହ୍ମଣି ସ୍ଥିତଃ ।। ୨୦ ।।**

**ଅନ୍ୱୟ—** ପ୍ରିୟମ୍ = (ଯେଉଁ ପୁରୁଷ) ପ୍ରିୟ ବସ୍ତୁକୁ; ପ୍ରାପ୍ୟ = ପ୍ରାପ୍ତ ହୋଇ; ନ, ପ୍ରହୃଷ୍ୟେତ୍ = ହର୍ଷିତ ହୁଏ ନାହିଁ; ଚ = ଏବଂ; ଅପ୍ରିୟମ୍ = ଅପ୍ରିୟ ବସ୍ତୁକୁ; ପ୍ରାପ୍ୟ = ପ୍ରାପ୍ତ ହୋଇ; ନ, ଉଦ୍‌ବିଜେତ୍ = ଉଦ୍‌ବିଗ୍ନ ହୁଏ ନାହିଁ; ସ୍ଥିରବୁଦ୍ଧିଃ = ସେହି ସ୍ଥିରବୁଦ୍ଧି; ଅସଂମୂଢଃ = ସଂଶୟରହିତ; ବ୍ରହ୍ମବିତ୍ = ବ୍ରହ୍ମବେତ୍ତା ପୁରୁଷ; ବ୍ରହ୍ମଣି = ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାରେ; ସ୍ଥିତଃ = ଏକୀଭାବରେ ନିତ୍ୟସ୍ଥିତ ।

**ଯେଉଁ ପୁରୁଷ ପ୍ରିୟବସ୍ତୁ ପ୍ରାପ୍ତ ହୋଇ ହର୍ଷିତ ହୁଅନ୍ତି ନାହିଁ, କି ଅପ୍ରିୟ ବସ୍ତୁ ପ୍ରାପ୍ତ ହୋଇ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ସେହି ସ୍ଥିରବୁଦ୍ଧି ସଂଶୟରହିତ ବ୍ରହ୍ମବେତ୍ତା ପୁରୁଷ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାରେ ଏକୀଭାବରେ ନିତ୍ୟସ୍ଥିତ ଅଟନ୍ତି ।। ୨୦ ।।**

**ପ୍ରଶ୍ନ—** ପ୍ରିୟ ଓ ଅପ୍ରିୟବସ୍ତୁ ପ୍ରାପ୍ତିରେ ହର୍ଷିତ ନ ହେବା ଓ ଉଦ୍‌ବିଗ୍ନ ନ ହେବାର ଅଭିପ୍ରାୟ କଣ ?

**ଉତ୍ତର—** ଯେଉଁ ବସ୍ତୁ ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀରର ଅନୁକୂଳ, ଲୋକେ ତାକୁ ପ୍ରିୟବସ୍ତୁ କହନ୍ତି । ଅଜ୍ଞାନୀ ଲୋକେ ଏପରି ଅନୁକୂଳ ବସ୍ତୁରେ ଆସକ୍ତି ରଖନ୍ତି; ତେଣୁ ତାହା ପ୍ରାପ୍ତ ହେବାକ୍ଷଣି ହର୍ଷିତ ହୁଅନ୍ତି । କିନ୍ତୁ ତତ୍ତ୍ୱଜ୍ଞାନୀଙ୍କ ସ୍ଥିତି ସମଭାବରେ ହୋଇଥିବାରୁ କୌଣସି ବି ବସ୍ତୁରେ ତାଙ୍କର ଲେଶମାତ୍ର ଆସକ୍ତି ନ ଥାଏ । ତେଣୁ ପ୍ରାରବ୍ଧବଶତଃ ଯଦି ତାଙ୍କୁ କେବେ କିଛି ଅନୁକୂଳ ବସ୍ତୁ ମିଳିଯାଏ, ଅର୍ଥାତ୍ ତାଙ୍କର ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀର ସହିତ କୌଣସି ପ୍ରିୟପଦାର୍ଥର ସଂଯୋଗ ହୋଇଯାଏ, ତେବେ ସେ ସେଥିପାଇଁ ହର୍ଷିତ ହୁଅନ୍ତି ନାହିଁ । କାରଣ ମନ, ଇନ୍ଦ୍ରିୟ ଏବଂ ଶରୀର ଆଦିରେ ତାଙ୍କର ଅହଂତ୍ୱ, ମମତ୍ୱ ଓ ଆସକ୍ତିର ସର୍ବଥା ଅଭାବ ହୋଇଯାଇଥାଏ । ଠିକ୍ ସେହିପରି ଯେଉଁ ବସ୍ତୁ ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀରର ପ୍ରତିକୂଳ ହୁଏ, ତାହାକୁ ଲୋକେ 'ଅପ୍ରିୟ' ବୋଲି କହନ୍ତି । ଅଜ୍ଞାନୀ ପୁରୁଷମାନଙ୍କର ଏପରି ବସ୍ତୁରେ ଦ୍ୱେଷ ହୁଏ; ତେଣୁ ଏପରି ବସ୍ତୁ ଆସି ପହଞ୍ଚିଗଲେ ସେମାନେ ବିଚଳିତ ହୋଇଯାଆନ୍ତି; ସେମାନଙ୍କ ମନରେ ବଡ଼ ଦୁଃଖ ହୁଏ । କିନ୍ତୁ ଜ୍ଞାନୀ ପୁରୁଷମାନଙ୍କ ଠାରେ କୌଣସି ଅବସ୍ଥାରେ ବି ଦ୍ୱେଷ ନ ଥାଏ; ତେଣୁ ସେମାନଙ୍କର ମନ, ଇନ୍ଦ୍ରିୟ ଓ ଶରୀର ସହିତ ଅତ୍ୟନ୍ତ ପ୍ରତିକୂଳ ବସ୍ତୁର ସଂଯୋଗ ହୋଇଗଲେ ବି, ସେମାନେ ଉଦ୍‌ବିଗ୍ନ ବା ଦୁଃଖୀ ହୁଅନ୍ତି ନାହିଁ ।

**ପ୍ରଶ୍ନ—** ଏଠାରେ **ସ୍ଥିରବୁଦ୍ଧିଃ** ବିଶେଷଣ ପଦଟିର ଅଭିପ୍ରାୟ କଣ ?

**ଉତ୍ତର—** ଅଭିପ୍ରାୟ ଏହି ଯେ, ତତ୍ତ୍ୱଜ୍ଞାନୀ ସିଦ୍ଧ ପୁରୁଷଙ୍କ ଦୃଷ୍ଟିରେ ଏକବ୍ରହ୍ମଙ୍କ ବ୍ୟତୀତ ସଂସାରରେ ଅନ୍ୟ କାହାର ସତ୍ତା ହିଁ ନାହିଁ । ତେଣୁ ତାଙ୍କର ବୁଦ୍ଧି ସଦା ସ୍ଥିର ରହେ । ଲୋକଦୃଷ୍ଟିରୁ ନାନାପ୍ରକାର ମାନ-ଅପମାନ, ସୁଖ-ଦୁଃଖ ଆଦି ପ୍ରାପ୍ତ ହେଉଥିଲେ ବି, କୌଣସି ବି କାରଣରୁ ତାଙ୍କର ବୁଦ୍ଧି ବ୍ରହ୍ମସ୍ଥିତିରୁ କଦାପି ବିଚଳିତ ହୁଏ ନାହିଁ; ତାହା ପ୍ରତ୍ୟେକ ଅବସ୍ଥାରେ ସଦାସର୍ବଦା ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ହିଁ ଅଟଳଭାବରେ ସ୍ଥିତ ରହେ ।

**ପ୍ରଶ୍ନ—** ଅସମ୍ମୂଢଃ କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଜ୍ଞାନୀପୁରୁଷଙ୍କ ଅନ୍ତଃକରଣରେ ସଂଶୟ, ଭ୍ରମ ଓ ମୋହ ଲେଶମାତ୍ର ବି ନ ଥାଏ । ତାଙ୍କର ଅଜ୍ଞାନସହିତ ସକଳ ସଂଶୟ ନଷ୍ଟ ହୋଇଯାଏ ।

**ପ୍ରଶ୍ନ—** 'ବ୍ରହ୍ମବିଦ୍'ର ଅଭିପ୍ରାୟ କଣ ?

**ଉତ୍ତର—** ସଚ୍ଚିଦାନନ୍ଦଘନ ବ୍ରହ୍ମତତ୍ତ୍ୱକୁ ସେ ପୂର୍ଣ୍ଣରୂପେ ଜାଣିପାରନ୍ତି । ବ୍ରହ୍ମ କଣ, ଜଗତ କଣ, ବ୍ରହ୍ମ ଓ ଜଗତର ସମ୍ବନ୍ଧ କଣ, ଆତ୍ମା ଓ ପରମାତ୍ମା କଣ, ଜୀବ ଓ ଈଶ୍ୱରଙ୍କ ମଧ୍ୟରେ କି ପ୍ରଭେଦ ରହିଛି, ଇତ୍ୟାଦି ବ୍ରହ୍ମସମ୍ବନ୍ଧୀ କୌଣସି ବି ବିଷୟ ତାଙ୍କୁ ଅଜଣା ନ ଥାଏ । ତାଙ୍କ ସମ୍ମୁଖରେ ବ୍ରହ୍ମଙ୍କ ସ୍ୱରୂପ ପ୍ରତ୍ୟକ୍ଷ ହୋଇଯାଏ । ତେଣୁ ତାଙ୍କୁ **ବ୍ରହ୍ମବିତ୍** କୁହାଯାଏ ।

**ପ୍ରଶ୍ନ—** 'ବ୍ରହ୍ମଣି ସ୍ଥିତଃ' କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏପରି ପୁରୁଷ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି— ତିନିଟିଯାକ ଅବସ୍ଥାରେ ସଦା ବ୍ରହ୍ମରେ ହିଁ ସ୍ଥିତ ରହନ୍ତି । ଅଭିପ୍ରାୟ ଏହି ଯେ, କେବେ କୌଣସି ଅବସ୍ଥାରେ ବି ତାଙ୍କର ସ୍ଥିତି ଶରୀରରେ ନ ଥାଏ । ତାଙ୍କର ବ୍ରହ୍ମଙ୍କ ସହିତ ଏକତ୍ୱ ପ୍ରତିଷ୍ଠା ହୋଇଯାଇଥିବାରୁ, କେବେ କୌଣସି କାରଣରୁ ବି ତାଙ୍କର ବ୍ରହ୍ମରୁ ବିୟୋଗ ହୁଏ ନାହିଁ । ସର୍ବଦା ସେ ଗୋଟିଏ ହିଁ ସ୍ଥିତିରେ ରହନ୍ତି । ଏଣୁ ତାଙ୍କୁ **ବ୍ରହ୍ମଣି ସ୍ଥିତଃ** କୁହାଯାଏ ।

**ସମ୍ବନ୍ଧ—** ଏହିପ୍ରକାରେ ବ୍ରହ୍ମରେ ସ୍ଥିତ ପୁରୁଷଙ୍କ ଲକ୍ଷଣ କୁହାଗଲା। ବର୍ତ୍ତମାନ ଏପରି ସ୍ଥିତିପ୍ରାପ୍ତିର ସାଧନା କଣ ତଥା ତା'ର ଫଳ କଣ, ତାହା କହୁଛନ୍ତି—

**ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍‌ସୁଖମ୍।**
**ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ॥ ୨୧ ॥**

**ଅନ୍ୱୟ—** **ବାହ୍ୟସ୍ପର୍ଶେଷୁ** = ବାହ୍ୟ ବିଷୟମାନଙ୍କରେ; **ଅସକ୍ତାତ୍ମା** = ଆସକ୍ତିଶୂନ୍ୟ ଅନ୍ତଃକରଣବିଶିଷ୍ଟ ସାଧକ; **ଆତ୍ମନି** = ଆତ୍ମାରେ (ସ୍ଥିତ); **ଯତ୍** = ଯେଉଁ; **ସୁଖମ୍** = (ଧ୍ୟାନଜନିତ ସାତ୍ତ୍ୱିକ) ଆନନ୍ଦ (ରହିଛି); **(ତତ୍) ବିନ୍ଦତି** = ତାହା ପ୍ରାପ୍ତ ହୁଏ (ତା'ପରେ); **ସଃ** = ସେହି; **ବ୍ରହ୍ମଯୋଗଯୁକ୍ତାତ୍ମା** = ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କର ଧ୍ୟାନରୂପକ ଯୋଗରେ ଅଭିନ୍ନଭାବରେ ସ୍ଥିତ ହୋଇଥିବା ପୁରୁଷ; **ଅକ୍ଷୟମ୍** = ଅକ୍ଷୟ; **ସୁଖମ୍** = ଆନନ୍ଦକୁ; **ଅଶ୍ନୁତେ** = ଅନୁଭବ କରେ।

**ବାହ୍ୟ ବିଷୟରେ ଆସକ୍ତିରହିତ ଅନ୍ତଃକରଣବିଶିଷ୍ଟ ସାଧକ ଆତ୍ମାରେ ଯେଉଁ ଧ୍ୟାନଜନିତ ସାତ୍ତ୍ୱିକ ଆନନ୍ଦ ରହିଛି, ତାହା ପ୍ରାପ୍ତ ହୁଅନ୍ତି; ତା'ପରେ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କର ଧ୍ୟାନରୂପକ ଯୋଗରେ ଅଭିନ୍ନଭାବରେ ଅବସ୍ଥିତ ହୋଇଥିବା ସେହି ପୁରୁଷ ଅକ୍ଷୟ ଆନନ୍ଦ ଅନୁଭବ କରନ୍ତି॥ ୨୧ ॥**

**ପ୍ରଶ୍ନ—** **ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା** କେଉଁ ପୁରୁଷଙ୍କ ନିମନ୍ତେ କୁହାଯାଇଛି?

**ଉତ୍ତର—** ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଆଦି ଇନ୍ଦ୍ରିୟଭୋଗ୍ୟ ବିଷୟକୁ **ବାହ୍ୟସ୍ପର୍ଶ** କୁହାଯାଏ। ଯେଉଁ ପୁରୁଷ ବିବେକଦ୍ୱାରା ନିଜ ମନରୁ ସେସବୁ ବିଷୟ ପ୍ରତି ଥିବା ଆସକ୍ତି ସମ୍ପୂର୍ଣ୍ଣରୂପେ ନଷ୍ଟ କରିଦେଇଛନ୍ତି, ଯାହାଙ୍କର ସକଳପ୍ରକାର ଭୋଗରେ ପୂର୍ଣ୍ଣ ବୈରାଗ୍ୟ ଆସିଯାଇଛି ଏବଂ ଯାହାଙ୍କର ସେସବୁରେ ଉପରତି ହୋଇଯାଇଛି, ସେହି ପୁରୁଷ ହେଉଛନ୍ତି **ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା** ଅର୍ଥାତ୍ ତାଙ୍କର ଅନ୍ତଃକରଣ ବାହ୍ୟ ବିଷୟରେ ଆସକ୍ତିରହିତ ଅଟେ।

**ପ୍ରଶ୍ନ—** 'ଆତ୍ମାରେ ସ୍ଥିତ ଆନନ୍ଦ ପ୍ରାପ୍ତ ହେବା'ର ଅଭିପ୍ରାୟ କଣ?

**ଉତ୍ତର—** ଏଠାରେ 'ଆତ୍ମା' ଶବ୍ଦ ଅନ୍ତଃକରଣର ବାଚକ। ସେହି ଅନ୍ତଃକରଣ ମଧ୍ୟରେ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ନିତ୍ୟ ଓ ସତତ ଧ୍ୟାନ କଲେ ଯେଉଁ ସାତ୍ତ୍ୱିକ ଆନନ୍ଦ ଅନୁଭବ ହୁଏ, ତାହା ଅନୁଭବ କରି ରହିବା ହିଁ ଉକ୍ତ ଆନନ୍ଦ ପ୍ରାପ୍ତ ହେବା।

ଇନ୍ଦ୍ରିୟମାନଙ୍କ ଭୋଗକୁ ହିଁ ସୁଖ ବୋଲି ଭାବୁଥିବା ଲୋକଙ୍କୁ ଏହି ଧ୍ୟାନଜନିତ ସୁଖ ମିଳିପାରେ ନାହିଁ। ବିଷୟଭୋଗରେ ପ୍ରକୃତରେ କୌଣସି ସୁଖ ନାହିଁ; କେବଳ ସୁଖର ଆଭାସମାତ୍ର ହିଁ ରହିଛି। ତା'ତୁଳନାରେ ବୈରାଗ୍ୟର ସୁଖ ବହୁପରିମାଣରେ ଶ୍ରେଷ୍ଠ ଏବଂ ବୈରାଗ୍ୟସୁଖଠାରୁ ଉପରତିର ସୁଖ ତ ବହୁତ ଉଚ୍ଚ। କିନ୍ତୁ ପରମାତ୍ମାଙ୍କ ଧ୍ୟାନରେ ଅଟଳସ୍ଥିତି ଲାଭ କଲେ ଯେଉଁ ସୁଖ ମିଳେ, ତାହା ଏସବୁ ସୁଖଠାରୁ ମଧ୍ୟ ଆହୁରି ଶ୍ରେଷ୍ଠ। ସେହି ସୁଖ ପ୍ରାପ୍ତ ହେବା ହିଁ ଆତ୍ମାରେ ସ୍ଥିତ ଆନନ୍ଦ ପ୍ରାପ୍ତ ହେବା।

**ପ୍ରଶ୍ନ—** ଏଠାରେ **ବ୍ରହ୍ମଯୋଗଯୁକ୍ତାତ୍ମା** କାହାକୁ କୁହାଯାଇଛି ଏବଂ **ସଃ** ପ୍ରୟୋଗ କରି କାହାକୁ ସଂକେତ କରାଯାଇଛି?

**ଉତ୍ତର—** ଯେଉଁ ପୁରୁଷ ଉପରୋକ୍ତପ୍ରକାରେ ସକଳ ଇନ୍ଦ୍ରିୟଭୋଗ୍ୟ ବିଷୟରୁ ଆସକ୍ତିରହିତ ହୋଇ ଉପରତି ପ୍ରାପ୍ତ ହୋଇଯାଇଥାନ୍ତି, ତଥା ପରମାତ୍ମାଙ୍କ ଧ୍ୟାନର ଅଟଳ ସ୍ଥିତିରୁ ଉତ୍ପନ୍ନ ହେଉଥିବା ମହାନ୍ ସୁଖ ଅନୁଭବ କରନ୍ତି, ତାଙ୍କୁ **ବ୍ରହ୍ମଯୋଗଯୁକ୍ତାତ୍ମା** ଅର୍ଥାତ୍ ପରବ୍ରହ୍ମ ପରମାତ୍ମାଙ୍କ ଧ୍ୟାନରୂପକ ଯୋଗରେ ଅଭେଦଭାବରେ ଅବସ୍ଥିତ ବୋଲି କୁହାଯାଇଛି। ପୂର୍ବରୁ କୁହାଯାଇଥିବା ଦୁଇଟି ଲକ୍ଷଣ ସହିତ ଏହି **ବ୍ରହ୍ମଯୋଗଯୁକ୍ତାତ୍ମା**ର ଏକତ୍ୱ ଦର୍ଶାଇବାଲାଗି **ସଃ** ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** ଅକ୍ଷୟ ସୁଖ କଣ ଏବଂ ତାହା ଅନୁଭବ କରିବାର ଭାବ କଣ?

**ଉତ୍ତର—** ସଦା ଏକରସ ହୋଇ ରହୁଥିବା ପରମାନନ୍ଦସ୍ୱରୂପ ଅବିନାଶୀ ପରମାତ୍ମା ହିଁ 'ଅକ୍ଷୟ ସୁଖ' ଏବଂ ନିତ୍ୟନିରନ୍ତର ଧ୍ୟାନ କରି କରି ସେହି ପରମାତ୍ମାଙ୍କୁ ଅଭିନ୍ନଭାବରେ ପ୍ରତ୍ୟକ୍ଷ କରିବା ହିଁ ତାହା ଅନୁଭବ କରିବା।

ଏହି ସୁଖ ସହିତ ଅନ୍ୟ କୌଣସି ବି ସୁଖ ତୁଳନୀୟ ନୁହେଁ। ସାଂସାରିକ ଭୋଗରେ ଯେଉଁ ସୁଖର ପ୍ରତୀତି ହୁଏ, ତାହା ତ ଅତ୍ୟନ୍ତ ନଗଣ୍ୟ ଓ କ୍ଷଣିକ। ତା' ଅପେକ୍ଷା ଧ୍ୟାନଜନିତ ସୁଖରେ ହେତୁ ହୋଇଥିବାରୁ ବୈରାଗ୍ୟ ଓ ଉପରତିଜନିତ ସୁଖ ଅଧିକ ସ୍ଥାୟୀ ଏବଂ ଧ୍ୟାନଜନିତ ସୁଖ ପରମାତ୍ମାଙ୍କ ସାକ୍ଷାତ୍‌ପ୍ରାପ୍ତିର କାରଣ ହୋଇଥିବାରୁ ସେହି ଦୁଇ ସୁଖଠାରୁ ବି ଅଧିକ ସ୍ଥାୟୀ। ପରନ୍ତୁ, ସାଧନାକାଳର ଏହି ସୁଖମାନଙ୍କ ମଧ୍ୟରୁ କୌଣସି ସୁଖକୁ ବି ଅକ୍ଷୟ କୁହାଯାଇପାରିବ ନାହିଁ। ଅକ୍ଷୟ ଆନନ୍ଦ ତ ପରମାତ୍ମାଙ୍କ ସ୍ୱରୂପ।

**ସମ୍ବନ୍ଧ –** ଏପରିଭାବରେ ଇନ୍ଦ୍ରିୟ ବିଷୟରେ ଆସକ୍ତିତ୍ୟାଗକୁ ପରମାତ୍ମପ୍ରାପ୍ତିର ହେତୁ ବୋଲି କହି ବର୍ତ୍ତମାନ ଏହି ଶ୍ଳୋକରେ ଇନ୍ଦ୍ରିୟଭୋଗକୁ ଦୁଃଖର କାରଣ ଏବଂ ଅନିତ୍ୟ ବୋଲି ଦର୍ଶାଇ ସେଥିରେ ଆସକ୍ତିରହିତ ହେବାକୁ ଭଗବାନ୍ ସଂକେତ ଦେଉଛନ୍ତି –

**ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ।**
**ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ।। ୨୨ ।।**

**ଅନ୍ୱୟ –** **ଯେ** = ଯେଉଁ; **ସଂସ୍ପର୍ଶଜାଃ** = ଇନ୍ଦ୍ରିୟ ତଥା ବିଷୟମାନଙ୍କ ସଂଯୋଗରୁ ଉତ୍ପନ୍ନ ହେଉଥିବା; **ଭୋଗାଃ** = ଭୋଗମାନ (ରହିଛି); **ତେ** = ସେଗୁଡ଼ିକ (ବିଷୟୀ ପୁରୁଷକୁ ସୁଖରୂପ ପ୍ରତୀତ ହେଉଥିଲେ ବି); **ହି** = ନିଃସନ୍ଦେହ; **ଦୁଃଖଯୋନୟଃ ଏବ** = ଦୁଃଖର ହିଁ କାରଣ ଅଟନ୍ତି; **ଆଦ୍ୟନ୍ତବନ୍ତଃ** = ଆଦି-ଅନ୍ତବିଶିଷ୍ଟ ଅର୍ଥାତ୍ ଅନିତ୍ୟ ଅଟନ୍ତି; (ତେଣୁ) **କୌନ୍ତେୟ** = ହେ ଅର୍ଜୁନ; **ବୁଧଃ** = ବୁଦ୍ଧିମାନ୍ ବିବେକୀ ପୁରୁଷ; **ତେଷୁ** = ସେଗୁଡ଼ିକରେ; **ନ ରମତେ** = ରମଣ କରେ ନାହିଁ।

**ଇନ୍ଦ୍ରିୟ ତଥା ବିଷୟମାନଙ୍କ ସଂଯୋଗରୁ ଉତ୍ପନ୍ନ ହେଉଥିବା ଯେଉଁ ଭୋଗଗୁଡ଼ିକ ରହିଛି, ସେଗୁଡ଼ିକ ବିଷୟୀ ପୁରୁଷମାନଙ୍କୁ ସୁଖରୂପ ପ୍ରତୀତ ହେଉଥିଲେ ବି, ନିଃସନ୍ଦେହ ଦୁଃଖର ହିଁ କାରଣ ଅଟନ୍ତି ଏବଂ ଆଦି-ଅନ୍ତବିଶିଷ୍ଟ ଅର୍ଥାତ୍ ଅନିତ୍ୟ ଅଟନ୍ତି। ହେ ଅର୍ଜୁନ! ତେଣୁ ବୁଦ୍ଧିମାନ୍ ବିବେକୀ ପୁରୁଷ ସେଥିରେ ରମଣ କରନ୍ତି ନାହିଁ।। ୨୨ ।।**

**ପ୍ରଶ୍ନ –** 'ଇନ୍ଦ୍ରିୟ ଓ ବିଷୟମାନଙ୍କ ସଂଯୋଗରୁ ପ୍ରାପ୍ତ ହେଉଥିବା ଭୋଗ କେବଳ ଦୁଃଖର ହେତୁ ଅଟେ' — ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ପତଙ୍ଗ ଯେପରି ଅଜ୍ଞାନବଶତଃ ପରିଣାମ ନ ବୁଝି, ଦୀପଶିଖାକୁ ସୁଖର କାରଣ ବୋଲି ଭାବି ତାକୁ ପାଇବାକୁ ତା'ରି ଆଡ଼କୁ ଉଡ଼ି ଉଡ଼ିଯାଏ ଏବଂ ତା' ଭିତରେ ପଡ଼ି, ଭୟାନକ ଉତ୍ତାପରେ ପୋଡ଼ିହୋଇ ମରେ, ଅଜ୍ଞାନୀ ମନୁଷ୍ୟ ସେହିପରି ଭୋଗକୁ ସୁଖର କାରଣ ଭାବି, ସେଥି ପ୍ରତି ଆସକ୍ତ ହୋଇ ତାହା ଭୋଗ କରିବାକୁ ଚେଷ୍ଟା କରେ ଏବଂ ପରିଣାମରେ ଭୀଷଣ ଦୁଃଖ ପାଏ। ବିଷୟମାନଙ୍କୁ ସୁଖର ହେତୁ ବୋଲି ଭାବି ସେମାନଙ୍କୁ ଭୋଗ କଲେ, ମନୁଷ୍ୟର ସେମାନଙ୍କ ପ୍ରତି ଆସକ୍ତି ବଢ଼ିଯାଏ, ଆସକ୍ତିରୁ କାମ କ୍ରୋଧାଦି ଅନର୍ଥର ଉତ୍ପତ୍ତି ହୁଏ ଏବଂ ତା'ଫଳରେ ନାନାପ୍ରକାର ଦୁର୍ଗୁଣ ଓ ଦୁରାଚାର ଆସି ତାକୁ ଘେରିଯାଏ। ପରିଣାମରେ ତା'ର ଜୀବନ ପାପମୟ ହୋଇଯାଏ ଏବଂ ତା'ଫଳରେ ତାକୁ ଇହଲୋକରେ ଓ ପରଲୋକରେ ବିବିଧପ୍ରକାର ଭୟାନକ ତାପ ଓ ଯାତନା ଭୋଗିବାକୁ ପଡ଼େ।

ବିଷୟଭୋଗ ସମୟରେ ମନୁଷ୍ୟ ଭ୍ରମବଶତଃ ଯେଉଁ ସ୍ତ୍ରୀପ୍ରସଙ୍ଗାଦି ଭୋଗକୁ ସୁଖର କାରଣ ବୋଲି ବୁଝିଥାଏ, ସେଗୁଡ଼ିକ ହିଁ ପରିଣାମରେ ତା'ର ବଳ, ବୀର୍ଯ୍ୟ, ଆୟୁ ତଥା ମନ, ବୁଦ୍ଧି, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର ଶକ୍ତି କ୍ଷୟ କରନ୍ତି ଏବଂ ଶାସ୍ତ୍ରବିରୁଦ୍ଧ ହୋଇଥିବାରୁ, ତାକୁ ପରଲୋକରେ ଭୀଷଣ ନରକଯନ୍ତ୍ରଣାଦିରେ ପକାଇ ଘୋର ଦୁଃଖର କାରଣ ହୋଇଯାଆନ୍ତି।

ଏହା ବ୍ୟତୀତ ଆହୁରି ଗୋଟିଏ କଥା ରହିଛି। ଅଜ୍ଞାନୀ ମନୁଷ୍ୟ, ଯେତେବେଳେ ଅନ୍ୟପାଖରେ ନିଜ ଅପେକ୍ଷା ଅଧିକ ଭୋଗସାମଗ୍ରୀ ଦେଖିବାକୁ ପାଏ, ସେତେବେଳେ ତା' ମନରେ ଈର୍ଷାର ଅଗ୍ନି ଜଳିଉଠେ ଏବଂ ସେ ନିଜେ ସେଥିରେ ଜଳିବାକୁ ଲାଗେ।

ସୁଖ ବୋଲି ଭାବି ଭୋଗ କରୁଥିବା ବିଷୟ ଯଦି କେବେ ପ୍ରାରବ୍ଧବଶତଃ ନଷ୍ଟ ହୋଇଯାଏ, ତେବେ ମନୁଷ୍ୟର ସଂସ୍କାର ତାକୁ ସେହି ବିଷୟମାନଙ୍କର ବାରମ୍ବାର ସ୍ମରଣ କରାଉଥାଏ ଏବଂ ତାହା ମନେ ପକାଇ ପକାଇ ମନୁଷ୍ୟ ଶୋକମଗ୍ନ ହୁଏ; କନ୍ଦାକଟା କରି ପଶ୍ଚାତ୍ତାପ କରେ। ଏସବୁ ବିଷୟ ବିଚାର କଲେ ଏହା ସିଦ୍ଧ ହୁଏ ଯେ, ବିଷୟସଂଯୋଗରୁ ମିଳୁଥିବା ଭୋଗ ପ୍ରକୃତରେ ସର୍ବଥା ଦୁଃଖର ହିଁ କାରଣ ଅଟେ; ସେଥିରେ ଲେଶମାତ୍ର ସୁଖ ନାହିଁ। ଅଜ୍ଞାନବଶତଃ ଭ୍ରମହେତୁ ସେସବୁ ସୁଖପରି ଲାଗେ। ତେଣୁ ଭଗବାନ୍ ସେସବୁକୁ 'କେବଳ ଦୁଃଖର କାରଣ' ବୋଲି କହିଛନ୍ତି।

**ପ୍ରଶ୍ନ –** ଭୋଗକୁ ଆଦି-ଅନ୍ତବିଶିଷ୍ଟ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଇନ୍ଦ୍ରିୟଭୋଗକୁ ସ୍ୱପ୍ନପରି ବା ବିଜୁଳୀର ଚମକପରି ଅନିତ୍ୟ ତଥା କ୍ଷଣଭଙ୍ଗୁର ବୋଲି ବୁଝାଇଦେବାକୁ ହିଁ ତାହା 'ଆଦି-ଅନ୍ତବିଶିଷ୍ଟ' ବୋଲି କୁହାଯାଇଛି। ବସ୍ତୁତଃ ସେସବୁରେ ସୁଖ ନାହିଁ; କିନ୍ତୁ ଯଦି ଅଜ୍ଞାନବଶତଃ ସୁଖରୂପେ ପ୍ରତୀତ ହେଉଥିବାରୁ କେହି ସେସବୁକୁ କେତେକାଂଶରେ ସୁଖର କାରଣ ବୋଲି ଧରିନିଏ, ତେବେ ସେହି ସୁଖ ବି ନିତ୍ୟ ନୁହେଁ; ତାହା କ୍ଷଣିକ। କାରଣ ଯେଉଁ ବସ୍ତୁ ସ୍ୱୟଂ ଅନିତ୍ୟ, ସେଥିରୁ ପୁଣି ନିତ୍ୟସୁଖ ମିଳିବ କିପରି ? ଦ୍ୱିତୀୟ ଅଧ୍ୟାୟ ଚଉଦ ଶ୍ଳୋକରେ ବି ଇନ୍ଦ୍ରିୟମାନଙ୍କ ବିଷୟକୁ ଭଗବାନ୍ ଉତ୍ପତ୍ତିବିନାଶଶୀଳ କହି ଅନିତ୍ୟ ବୋଲି ବୁଝାଇଦେଇଛନ୍ତି।

**ପ୍ରଶ୍ନ –** ଏଠାରେ ଭଗବାନ୍ ଅର୍ଜୁନଙ୍କୁ କୌନ୍ତେୟ ବୋଲି ସମ୍ବୋଧନ କରି କଣ ସୂଚିତ କରୁଛନ୍ତି ?

**ଉତ୍ତର –** ଅର୍ଜୁନଙ୍କ ମାତା କୁନ୍ତୀଦେବୀ ଅତ୍ୟନ୍ତ ବୁଦ୍ଧିମତୀ, ବିବେକବତୀ, ସଂଯମଶୀଳା ଓ ବିଷୟଭୋଗରେ ବିରକ୍ତ ଥିଲେ; ନାରୀ ହୋଇ ମଧ୍ୟ ସେ ନିଜର ସମସ୍ତ ଜୀବନ ବୈରାଗ୍ୟଯୁକ୍ତ ଧର୍ମାଚରଣ ଓ ଭଗବଦ୍‌ଭକ୍ତିରେ ଲଗାଇଥିଲେ। ଅତଏବ ଏହି ସମ୍ବୋଧନଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ମାତା କୁନ୍ତୀଙ୍କର ମହତ୍ତ୍ୱ ସ୍ମରଣ କରାଇଦେଇ ସୂଚିତ କରୁଛନ୍ତି, ''ଅର୍ଜୁନ ! ତୁମେ ସେହି ଧର୍ମଶୀଳା କୁନ୍ତୀଦେବୀଙ୍କ ପୁତ୍ର; ତୁମେ ତ ବିଷୟାସକ୍ତ ହେବାର କୌଣସି ସମ୍ଭାବନା ହିଁ ନାହିଁ।''

**ପ୍ରଶ୍ନ –** ଅଜ୍ଞାନୀ ମନୁଷ୍ୟ ବିଷୟଭୋଗରେ ରମଣ କରେ ଏବଂ ବିବେକୀ ପୁରୁଷ ସେଥିରେ ରମଣ କରେ ନାହିଁ—ଏହାର କାରଣ କଣ ?

**ଉତ୍ତର –** ସକଳ ବିଷୟଭୋଗ ବାସ୍ତବରେ ଅନିତ୍ୟ, କ୍ଷଣଭଙ୍ଗୁର ଏବଂ ଦୁଃଖମୟ ହିଁ ଅଟେ; କିନ୍ତୁ ବିବେକହୀନ ଅଜ୍ଞାନୀ ପୁରୁଷ ଏହା ନ ଜାଣି, ନ ମାନି ସେସବୁରେ ରମଣ କରେ ଏବଂ ନାନାପ୍ରକାର କ୍ଳେଶ ଭୋଗ କରେ। ଅଥଚ ବୁଦ୍ଧିମାନ୍ ବିବେକୀ ପୁରୁଷ ସେସବୁର ଅନିତ୍ୟତା ଓ କ୍ଷଣଭଙ୍ଗୁରତା ନେଇ ବିଚାର କରନ୍ତି ଏବଂ ସେସବୁକୁ କାମ-କ୍ରୋଧ, ପାପ-ତାପ ଆଦି ଅନର୍ଥର ହେତୁ ବୋଲି ବୁଝନ୍ତି ଏବଂ ସେସବୁ ଭୋଗପ୍ରତି ଆସକ୍ତିତ୍ୟାଗକୁ ଅକ୍ଷୟ ସୁଖପ୍ରାପ୍ତିର କାରଣ ବୋଲି ଜାଣି ସେ ସେଥିରେ ରମଣ କରନ୍ତି ନାହିଁ।

***ସମ୍ବନ୍ଧ –*** *ବିଷୟଭୋଗରୁ କାମ-କ୍ରୋଧାଦି ଉତ୍ପନ୍ନ ହୁଏ ଓ ତାହା ଦୁଃଖର କାରଣ ହୁଏ ବୋଲି କହିଲେ। ବର୍ତ୍ତମାନ ମନୁଷ୍ୟଶରୀରର ମହତ୍ତ୍ୱ ଦର୍ଶାଇ ଭଗବାନ୍ କାମକ୍ରୋଧାଦି ଦୁର୍ଜୟ ଶତ୍ରୁମାନଙ୍କୁ ଜୟ କରିଥିବା ପୁରୁଷଙ୍କର ପ୍ରଶଂସା କରୁଛନ୍ତି –*

**ଶକ୍ନୋତୀହୈବ ଯଃ ସୋଢୁଂ ପ୍ରାକ୍‌ଶରୀରବିମୋକ୍ଷଣାତ୍।**
**କାମକ୍ରୋଧୋଦ୍‌ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ॥ ୨୩ ॥**

**ଅନ୍ୱୟ –** **ଯଃ** = ଯେଉଁ ସାଧକ; **ଇହ** = ଏହି ମନୁଷ୍ୟଶରୀରରେ; **ପ୍ରାକ୍‌ଶରୀରବିମୋକ୍ଷଣାତ୍** = ଶରୀର ନାଶ ହୋଇଯିବା ପୂର୍ବରୁ; **ଏବ** = ହିଁ; **କାମକ୍ରୋଧୋଦ୍‌ଭବମ୍** = କାମକ୍ରୋଧରୁ ଉତ୍ପନ୍ନ ହେଉଥିବା; **ବେଗମ୍** = ବେଗକୁ; **ସୋଢୁଂ** = ସହିଯିବାକୁ; **ଶକ୍ନୋତି** = ସମର୍ଥ ହୋଇଯାଏ; **ସଃ** = ସେହି; **ନରଃ** = ପୁରୁଷ; **ଯୁକ୍ତଃ** = ଯୋଗୀ; **ସଃ** = ସେ; **ସୁଖୀ** = ସୁଖୀ।

**ଯେଉଁ ସାଧକ ଏହି ମନୁଷ୍ୟଶରୀରରେ ଶରୀର ନାଶ ହୋଇଯିବା ପୂର୍ବରୁ ହିଁ କାମ-କ୍ରୋଧରୁ ଉତ୍ପନ୍ନ ହେଉଥିବା ବେଗ ସହିଯିବାକୁ ସମର୍ଥ ହୋଇଯାଆନ୍ତି, ସେହି ପୁରୁଷ ଯୋଗୀ; ସେ ସୁଖୀ॥ ୨୩ ॥**

**ପ୍ରଶ୍ନ –** ଏଠାରେ କେଉଁ ଅଭିପ୍ରାୟରେ **ଇହ** ଓ ଏବ ଅବ୍ୟୟ ଦୁଇଟି ବ୍ୟବହାର କରାଯାଇଛି ?

**ଉତ୍ତର –** ମନୁଷ୍ୟଶରୀରର ମହତ୍ତ୍ୱ ପ୍ରକାଶ କରିବାନିମନ୍ତେ ଏହି ଦୁଇଟି ପ୍ରୟୋଗ କରାଯାଇଛି। ଦେବାଦି ଯୋନିରେ ବିଳାସ ଓ ଭୋଗର ପ୍ରବଳତା ଏବଂ ତିର୍ଯ୍ୟଗାଦି ଯୋନିରେ ଜଡ଼ତାର ବିଶେଷତା ରହିଛି। ତେଣୁ ସେସବୁ ଯୋନିରେ କାମ-କ୍ରୋଧ ଉପରେ ବିଜୟପ୍ରାପ୍ତିପାଇଁ ସାଧନା କରାଯାଇପାରେ ନାହିଁ। **ଇହ** ଏବଂ ଏବ ପ୍ରୟୋଗ କରି ଭଗବାନ୍ ସାବଧାନ କରିଦେବାକୁ କହିଛନ୍ତି ଯେ, ଶରୀରନାଶ ହୋଇଯିବା ପୂର୍ବରୁ ହିଁ ଏହି ମନୁଷ୍ୟଶରୀରରେ ସାଧନାତତ୍ପର ହୋଇ କାମକ୍ରୋଧର ବେଗକୁ ଶାନ୍ତଚିତ୍ତରେ ସହିଯିବାର ଶକ୍ତି ପାଇଯିବା ଉଚିତ। ଅସାବଧାନତା ଓ ଦାୟିତ୍ୱହୀନତାଦ୍ୱାରା ଯଦି ଏହି ଦୁର୍ଲଭ ମନୁଷ୍ୟଜୀବନ ବିଷୟସଂଗ୍ରହ ଓ ବିଷୟଭୋଗରେ ବିତିଯିବ, ତେବେ ତ ହାୟ! ହାୟ! ହୋଇ ପଶ୍ଚାତ୍ତାପ କରିବାକୁ ପଡ଼ିବ।

କେନୋପନିଷଦ୍‌ରେ କୁହାଯାଇଛି —

**ଇହ ଚେଦବେଦୀଦଥ ସତ୍ୟମସ୍ତି**
**ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ। (୨/୫)**

ଅର୍ଥାତ୍ "ଯଦି ଏହି ମନୁଷ୍ୟଶରୀରରେ ହିଁ ଭଗବାନଙ୍କୁ ଜାଣିଗଲ, ତେବେ ତ ଭଲ; ଯଦି ଏହି ଶରୀରରେ ଜାଣି ନ ପାରିଲ, ତେବେ ତ ଘୋର କ୍ଷତି।"

**ପ୍ରଶ୍ନ –** '**ପ୍ରାକ୍‌ଶରୀରବିମୋକ୍ଷଣାତ୍**'ର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା କୁହାଯାଇଛି ଯେ, ଶରୀର ନାଶବାନ୍; ଏହାର ବିୟୋଗ ହେବା ନିଶ୍ଚିତ ଏବଂ ଏହି ଶରୀର ଯେ କେତେବେଳେ ନଷ୍ଟ ହୋଇଯିବ, ତା'ର ବି ଠିକ୍‌ଠିକଣା ନାହିଁ। ତେଣୁ ମୃତ୍ୟୁକାଳ ଉପସ୍ଥିତ ହେବାର ଯଥେଷ୍ଟ ପୂର୍ବରୁ ହିଁ କାମ-କ୍ରୋଧ ଉପରେ ବିଜୟ ଲଭିବା ଆବଶ୍ୟକ; ତା' ସହିତ ସାଧନା କରି ଏପରି ଶକ୍ତି ପାଇବା ଆବଶ୍ୟକ, ଯାହା ରହିଥିଲେ ବାରମ୍ବାର ଘୋର ଆକ୍ରମଣ କରୁଥିବା ଏହି କାମ-କ୍ରୋଧରୂପୀ ଭୀଷଣ ଶତ୍ରୁମାନେ ନିଜର ବେଗ ଉତ୍ପନ୍ନ କରି ସାଧକକୁ କେବେ ବି ବିଚଳିତ କରିପାରିବେ ନାହିଁ। ନିଜ ନିଜର ବେଗ ସହିତ ପ୍ରବାହିତ ହେଉଥିବା ବିଭିନ୍ନ ନଦୀ ଯେପରି ସମୁଦ୍ରରେ ପଡ଼ି ବିଲୀନ ହୋଇଯାଆନ୍ତି, ସାଧକକୁ ଏପରି ପ୍ରଯତ୍ନ କରିବାକୁ ହେବ ଯେ, କାମ-କ୍ରୋଧାଦି ଶତ୍ରୁମାନେ ନିଜ ନିଜର ବେଗ ସହିତ ସେହିପରି ବିଲୀନ ହୋଇଯିବେ।

**ପ୍ରଶ୍ନ –** କାମକ୍ରୋଧରୁ ଉତ୍ପନ୍ନ ହେଉଥିବା ବେଗ କଣ ଏବଂ ସେସବୁ ସହ୍ୟ କରିବାରେ ସମର୍ଥ ହେବା କଣ ?

**ଉତ୍ତର –** (ପୁରୁଷ ନିମନ୍ତେ) ସ୍ତ୍ରୀ, (ସ୍ତ୍ରୀ ନିମନ୍ତେ) ପୁରୁଷ, (ଉଭୟଙ୍କ ନିମନ୍ତେ) ପୁତ୍ର, ଧନ, ଗୃହ, ବା ସ୍ୱର୍ଗାଦି ଯେତେସବୁ ଦୃଷ୍ଟ-ଶ୍ରୁତ ଇନ୍ଦ୍ରିୟଭୋଗ୍ୟ ବିଷୟ ରହିଛି, ସେଥିରେ ଆସକ୍ତି ହୋଇଯିବାରୁ ସେସବୁ ପାଇବାକୁ ଯେଉଁ ଇଚ୍ଛା ହୁଏ, ତାହାରି ନାମ **କାମ** ଏବଂ କାମହେତୁ ଅନ୍ତଃକରଣରେ ଯେଉଁ ନାନାପ୍ରକାର ସଂକଳ୍ପ-ବିକଳ୍ପର ପ୍ରବାହ ଦେଖାଦିଏ; ତାହାକୁ କାମରୁ ଉତ୍ପନ୍ନ ହେଉଥିବା 'ବେଗ' ବୋଲାଯାଏ। ସେହିପରି ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କର ପ୍ରତିକୂଳ ବିଷୟ ପ୍ରାପ୍ତ ହେଲେ କିମ୍ବା ଇଷ୍ଟପ୍ରାପ୍ତିର ଇଚ୍ଛାପୂରଣରେ ବାଧା ଉପସ୍ଥିତ ହେଲେ, ତାହାର କାରଣଭୂତ ପଦାର୍ଥ ପ୍ରତି ବା ଜୀବ ପ୍ରତି ଦ୍ୱେଷଭାବ ଉତ୍ପନ୍ନ ହୋଇ ଅନ୍ତଃକରଣରେ ଯେଉଁ ଉତ୍ତେଜନା ଉଠେ, ତାହାର ନାମ **କ୍ରୋଧ;** ସେହି କ୍ରୋଧହେତୁ ଆସୁଥିବା ନାନାପ୍ରକାର ସଂକଳ୍ପ-ବିକଳ୍ପର ପ୍ରବାହ ହିଁ କ୍ରୋଧରୁ ଉତ୍ପନ୍ନ ହେଉଥିବା ବେଗ। ଏହି ବେଗମାନଙ୍କୁ ଶାନ୍ତିପୂର୍ବକ ସହିଯିବା ଅର୍ଥାତ୍ ଏମାନଙ୍କୁ କାର୍ଯ୍ୟକାରୀ କରାଇ ନ ଦେବାର ଶକ୍ତି ପାଇଯିବା ହିଁ ଏମାନଙ୍କୁ ସହନ କରିବାରେ ସମର୍ଥ ହେବା।

**ପ୍ରଶ୍ନ –** ଏଠାରେ **ଯୁକ୍ତଃ** ବିଶେଷଣ କାହାପାଇଁ ଦିଆଯାଇଛି ?

**ଉତ୍ତର –** ବାରମ୍ବାର ଆକ୍ରମଣ କରି ମଧ କାମକ୍ରୋଧାଦି ଶତ୍ରୁମାନେ ଯାହାକୁ ବିଚଳିତ କରିପାରନ୍ତି ନାହିଁ, କାମକ୍ରୋଧର ବେଗକୁ ସହ୍ୟ କରିବାକୁ ଯେ ସମର୍ଥ, ମନ ଓ ଇନ୍ଦ୍ରିୟମାନଙ୍କୁ ବଶରେ ରଖିପାରିଥିବା ସାଂଖ୍ୟଯୋଗର ସେହି ସାଧକପୁରୁଷଙ୍କ ନିମନ୍ତେ **ଯୁକ୍ତଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ –** ଏପରି ପୁରୁଷଙ୍କୁ 'ସୁଖୀ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସଂସାରର ସମସ୍ତେ ସୁଖ ଚାହାଁନ୍ତି; କିନ୍ତୁ ପ୍ରକୃତ ସୁଖ କଣ ଓ ତାହା କିପରି ମିଳେ, ତାହା ଜାଣି ନ ଥିବାରୁ ସେମାନେ ଭୁଲରେ ଭୋଗରେ ହିଁ ସୁଖ ମିଳେ ବୋଲି ଭାବନ୍ତି ଏବଂ ତେଣୁ ଭୋଗ

କାମନା କରି ଭୋଗପ୍ରାପ୍ତିପାଇଁ ଚେଷ୍ଟା କରନ୍ତି। ଭୋଗପ୍ରାପ୍ତିରେ ବାଧା ଉପୁଜିଲେ, ସେମାନେ କ୍ରୋଧାବିଷ୍ଟ ହୋଇଯାଆନ୍ତି। କିନ୍ତୁ ନିୟମ ରହିଛି ଯେ, କାମକ୍ରୋଧର ବଶୀଭୂତ ମନୁଷ୍ୟମାନେ କଦାପି ସୁଖୀ ହୋଇପାରନ୍ତି ନାହିଁ। କାମବଶ ଲୋକେ ସ୍ତ୍ରୀ-ପୁତ୍ର, ଧନ-ମାନ ପାଇବାକୁ ଏବଂ କ୍ରୋଧବଶ ଲୋକେ ଅନ୍ୟର ଅନିଷ୍ଟ କରିବାକୁ ନାନାପ୍ରକାର ଅନର୍ଥ ତଥା ପାପରେ ପ୍ରବୃତ୍ତ ହୁଅନ୍ତି; ପରିଣାମରେ ସେମାନେ ଇହଲୋକରେ ରୋଗ, ଶୋକ, ଅପମାନ, ଅପଯଶ, ଆକୁଳତା, ଭୟ, ଅଶାନ୍ତି, ଉଦ୍‌ବେଗ ଓ ନାନାପ୍ରକାର ତାପରେ ପଡ଼ି ତଥା ପରଲୋକରେ ନରକରେ ଓ ପଶୁ-ପକ୍ଷୀ, କୃମି-କୀଟାଦି ଯୋନିରେ ପଡ଼ି ନାନାପ୍ରକାର କ୍ଲେଶ ପାଆନ୍ତି। (୧୬/୧୮, ୧୯,୨୦)। ଏପରିଭାବରେ ସେମାନେ ସୁଖ ନ ପାଇ ସର୍ବଦା ଦୁଃଖ ହିଁ ପାଆନ୍ତି। କିନ୍ତୁ ଯେଉଁମାନେ ଭୋଗକୁ ଦୁଃଖର କାରଣ ଓ କ୍ଷଣଭଙ୍ଗୁର ବୋଲି ବୁଝି କାମକ୍ରୋଧାଦି ଶତ୍ରୁମାନଙ୍କ ଉପରେ ପୂର୍ଣ୍ଣରୂପେ ବିଜୟଲାଭ କରନ୍ତି ଏବଂ ସେମାନଙ୍କ କବଳରୁ ପୂର୍ଣ୍ଣରୂପେ ମୁକ୍ତି ପାଇଯାଆନ୍ତି, ସେମାନେ ସଦାସୁଖୀ ହୋଇ ରହନ୍ତି। ଏହି ଅଭିପ୍ରାୟରେ 'ଏପରି ପୁରୁଷ ସୁଖୀ' ବୋଲି କୁହାଯାଇଛି।

**ପ୍ରଶ୍ନ –** ଏଠାରେ **ନରଃ** ପଦ ପ୍ରୟୋଗ କରିବାର ଉଦ୍ଦେଶ୍ୟ କଣ ?

**ଉତ୍ତର –** ଯେ କାମ-କ୍ରୋଧାଦିର ଦୁର୍ଗୁଣମାନଙ୍କୁ ଜୟ କରି ଭୋଗରେ ବୈରାଗ୍ୟବାନ୍ ଓ ଉପରତ ହୋଇ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ପାଇପାରିଛନ୍ତି, ସେ ହିଁ ପ୍ରକୃତରେ ନର, ଆକାର ବା ରୂପରେ ସେ ପୁରୁଷ ହୋଇଥାନ୍ତୁ, କି ସ୍ତ୍ରୀ ହୋଇଥାନ୍ତୁ, ଏପରି ମନୁଷ୍ୟଙ୍କୁ ହିଁ ନର ବୋଲାଯାଏ। ଅଜ୍ଞାନବିମୋହିତ ମନୁଷ୍ୟ ଆସକ୍ତିବଶତଃ ଆପାତରମଣୀୟ ବିଷୟମାନଙ୍କର ପ୍ରଲୋଭନରେ ଛନ୍ଦି ହୋଇ ପରମାତ୍ମାଙ୍କୁ ଭୁଲିଯାଏ ଏବଂ କାମକ୍ରୋଧାଦିର ବଶ ହୋଇ ନୀଚ ପଶୁ ତଥା ପିଶାଚମାନଙ୍କ ପରି ଆହାର, ନିଦ୍ରା, ମୈଥୁନ ଓ କଳହରେ ହିଁ ପ୍ରବୃତ୍ତ ରହେ। ସେ ନର ନୁହେଁ; ସେ ହେଉଛି ପଶୁଠାରୁ ମଧ୍ୟ ହୀନ, ଶୃଙ୍ଗ-ପୁଚ୍ଛହୀନ ଅସୁନ୍ଦର, ଅକର୍ମା ତଥା ଜଗତକୁ ଦୁଃଖ ଦେଉଥିବା ଜନ୍ତୁବିଶେଷ। ପରମାତ୍ମପ୍ରାପ୍ତ ପ୍ରକୃତ 'ନର'ର ଗୁଣ ଓ ଆଚରଣକୁ ଲକ୍ଷ୍ୟ କରି ଯେଉଁ ସାଧକମାନେ କାମକ୍ରୋଧାଦି ଶତ୍ରୁମାନଙ୍କୁ ଜୟ କରିପାରନ୍ତି, ସେମାନେ ବି 'ନର' ହିଁ ଅଟନ୍ତି —— ଏହି ଭାବ ରଖି ଏଠାରେ ନର ଶବ୍ଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ଯେ କାମକ୍ରୋଧକୁ ଜୟ କରିସାରିଛନ୍ତି ତଥା ଯାହାଙ୍କୁ 'ମୁକ୍ତ' ଓ 'ସୁଖୀ' କୁହାଯାଇଛି, ସେହି ପୁରୁଷଙ୍କୁ ସାଧକ ନ କହି, ସିଦ୍ଧ କହିଲେ କ୍ଷତି କଣ ?

**ଉତ୍ତର –** କେବଳ କାମକ୍ରୋଧକୁ ଜୟ କରି ହିଁ କେହି ସିଦ୍ଧ ହୋଇଯାଆନ୍ତି ନାହିଁ (୧୬/୨୨)। ସିଦ୍ଧଙ୍କ ଠାରେ ତ କାମକ୍ରୋଧର ଗନ୍ଧ ବି ନ ଥାଏ; ଏହି ଅଧ୍ୟାୟର ଛବିଶ ଶ୍ଳୋକରେ ଭଗବାନ୍ ଏହା କହିଦେଇଛନ୍ତି। ପୁଣି ଏଠାରେ ଉକ୍ତ ପୁରୁଷଙ୍କୁ କେବଳ 'ସୁଖୀ' ବୋଲି କୁହାଯାଉଛି; ସେ ଯଦି ଅକ୍ଷୟ ସୁଖ ପାଇଥିବା ସିଦ୍ଧପୁରୁଷ ହୋଇଥାନ୍ତେ, ତେବେ ତ ତାଙ୍କ ପାଇଁ 'ପରମ ସୁଖୀ' ବା ସେପରି କୌଣସି ବିଲକ୍ଷଣ ବିଶେଷଣ ଦିଆଯାଇଥାନ୍ତା। ଏଠାରେ ସେ ସେହି 'ସାତ୍ତ୍ୱିକ' ସୁଖ ଅନୁଭବ କରୁଥିବା ପୁରୁଷ ଅଟନ୍ତି, ଯାହା ଏକୋଇଶ ଶ୍ଳୋକର ପୂର୍ବାର୍ଦ୍ଧ ଅନୁସାରେ ପରମାତ୍ମାଙ୍କ ଧ୍ୟାନରୁ ପ୍ରାପ୍ତ ହୁଏ। ଏଣୁ ଏହି ଶ୍ଳୋକରେ ବର୍ଣ୍ଣିତ ପୁରୁଷଙ୍କୁ ସାଧକ କହିବା ହିଁ ଠିକ୍।

**ସମ୍ବନ୍ଧ –** ଉପରୋକ୍ତପ୍ରକାରେ ବାହ୍ୟ ବିଷୟଭୋଗକୁ କ୍ଷଣିକ ଓ ଦୁଃଖର କାରଣ ବୋଲି ଜାଣି ତଥା ଆସକ୍ତି ତ୍ୟାଗ କରି ଯେ କାମ-କ୍ରୋଧକୁ ଜୟ କରିପାରିଛନ୍ତି, ବର୍ତ୍ତମାନ ସେହି ସାଂଖ୍ୟଯୋଗୀଙ୍କ ଅନ୍ତିମସ୍ଥିତି ଫଳସହିତ ବର୍ଣ୍ଣନା କରାଯାଉଛି –

**ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ।**
**ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି॥ ୨୪ ॥**

**ଅନ୍ୱୟ –** **ଯଃ** = ଯେଉଁ ପୁରୁଷ; **ଏବ** = ନିଶ୍ଚୟ କରି; **ଅନ୍ତଃସୁଖଃ** = ସମଷ୍ଟି ଅନ୍ତରାତ୍ମାରେ ହିଁ ସୁଖଯୁକ୍ତ; **ଅନ୍ତରାରାମଃ** = ଆତ୍ମାରେ ହିଁ ରମଣକାରୀ; **ତଥା** = ତଥା; **ଯଃ** = ଯେ; **ଅନ୍ତର୍ଜ୍ୟୋତିଃ** = ଆତ୍ମାରେ ହିଁ ଜ୍ଞାନଯୁକ୍ତ; **ସଃ** = ସେହି; **ବ୍ରହ୍ମଭୂତଃ** = ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ସହିତ ଏକୀଭାବପ୍ରାପ୍ତ; **ଯୋଗୀ** = ସାଂଖ୍ୟଯୋଗୀ; **ବ୍ରହ୍ମନିର୍ବାଣମ୍** = ଶାନ୍ତ ବ୍ରହ୍ମଙ୍କୁ; **ଅଧିଗଚ୍ଛତି** = ପ୍ରାପ୍ତ ହୁଏ।

**ଯେଉଁ ପୁରୁଷ ବ୍ରହ୍ମଭିନ୍ନ ଅନ୍ୟ କିଛି ନାହିଁ ବୋଲି ନିଶ୍ଚୟ କରି ସମଷ୍ଟି ଅନ୍ତରାତ୍ମାରେ ହିଁ ସୁଖଯୁକ୍ତ, ଆତ୍ମାରେ ରମଣକାରୀ ତଥା ଆତ୍ମାରେ ହିଁ ଜ୍ଞାନଯୁକ୍ତ ଅଟନ୍ତି, ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ସହିତ ଏକୀଭାବପ୍ରାପ୍ତ ସେହି ସାଂଖ୍ୟଯୋଗୀ ଶାନ୍ତ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାନ୍ତି।। ୨୪ ।।**

**ପ୍ରଶ୍ନ –** **ଅନ୍ତଃସୁଖଃ**ର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ **ଅନ୍ତଃ** ଶବ୍ଦଟି ହେଉଛି ସମସ୍ତ ଜଗତରେ ଅନ୍ତଃସ୍ଥିତ ପରମାତ୍ମାଙ୍କ ବାଚକ; ଏହା ଅନ୍ତଃକରଣର ବାଚକ ନୁହେଁ। ଅଭିପ୍ରାୟ ହେଉଛି, ଯେ ବାହ୍ୟ ବିଷୟଭୋଗରୂପକ ସାଂସାରିକ ସୁଖଗୁଡ଼ିକୁ ସ୍ୱପ୍ନପରି ଅନିତ୍ୟ ବୋଲି ବୁଝି ସେଗୁଡ଼ିକୁ ସୁଖ ବୋଲି ବିଶ୍ୱାସ କରନ୍ତି ନାହିଁ କିନ୍ତୁ ସେସବୁର ଅନ୍ତଃସ୍ଥିତ ପରମ ଆନନ୍ଦସ୍ୱରୂପ ପରମାତ୍ମାରେ ହିଁ ସୁଖ ରହିଛି ବୋଲି ବିଶ୍ୱାସ କରନ୍ତି, ସେ ହିଁ **ଅନ୍ତଃସୁଖଃ** ଅର୍ଥାତ୍ ପରମାତ୍ମାରେ ହିଁ ସୁଖ ଲାଭ କରନ୍ତି।

**ପ୍ରଶ୍ନ –** **ଅନ୍ତରାରାମଃ**ର ଅର୍ଥ କଣ ?

**ଉତ୍ତର –** ଯେ ବାହ୍ୟ ବିଷୟଭୋଗର ସତ୍ତାରେ ବିଶ୍ୱାସ କରନ୍ତି ନାହିଁ ତଥା ସେଥିରେ ସୁଖବୁଦ୍ଧି ନ ଥିବାରୁ ସେଥିରେ ରମଣ କରନ୍ତି ନାହିଁ, ସେଥିରେ ଆସକ୍ତିରହିତ ହୋଇ କେବଳ ପରମାତ୍ମାରେ ହିଁ ରମଣ କରନ୍ତି, ଅର୍ଥାତ୍ ନିରନ୍ତର ଅଭିନ୍ନଭାବରେ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କର ହିଁ ଚିନ୍ତନ କରୁଥାନ୍ତି, ତାଙ୍କୁ **ଅନ୍ତରାରାମ** ବୋଲାଯାଏ।

**ପ୍ରଶ୍ନ –** **ଅନ୍ତର୍ଜ୍ୟୋତିଃ**ର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ପରମାତ୍ମା ହେଉଛନ୍ତି ସମସ୍ତ ଜ୍ୟୋତିର ପରମ ଜ୍ୟୋତି (୧୩/୧୭); ସକଳ ଜଗତ ତାଙ୍କରି ଆଲୋକରେ ଆଲୋକିତ ହୁଏ। ଯେଉଁ ପୁରୁଷ ନିରନ୍ତର ଅଭିନ୍ନଭାବରେ ସେହି ପରମ ଜ୍ଞାନସ୍ୱରୂପ ପରମାତ୍ମାଙ୍କୁ ଅନୁଭବ କରି ତାଙ୍କରି ଠାରେ ସ୍ଥିତ ରହନ୍ତି, ଯାହାଙ୍କ ଦୃଷ୍ଟିରେ ଏକ ବିଜ୍ଞାନାନନ୍ଦସ୍ୱରୂପ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବି ବାହ୍ୟ ଦୃଶ୍ୟବସ୍ତୁର ଭିନ୍ନସତ୍ତା ନାହିଁ, ସେ **ଅନ୍ତର୍ଜ୍ୟୋତି**।

ଯାହାର ଦୃଷ୍ଟିରେ ଏ ସମସ୍ତ ଜଗତ ସତ୍ୟପରି ପ୍ରତୀତ ହୁଏ, ନିଦ୍ରାବଶ ହୋଇ ସ୍ୱପ୍ନ ଦେଖୁଥିବା ଲୋକପରି ଯେ ଅଜ୍ଞାନବଶତଃ ଦୃଶ୍ୟଜଗତକୁ ହିଁ ଚିନ୍ତା କରିଚାଲିଥାଏ, ସେ **ଅନ୍ତର୍ଜ୍ୟୋତି** ନୁହେଁ, କାରଣ ପରମ ଜ୍ଞାନସ୍ୱରୂପ ପରମାତ୍ମା ତାଙ୍କୁ ଅଦୃଶ୍ୟ ହୋଇ ରହିଥାନ୍ତି।

**ପ୍ରଶ୍ନ –** ଏଠାରେ **ଏବ** ର ଅର୍ଥ କଣ ? ଏବଂ ତା'ର କେଉଁ ପଦ ସହିତ ସମ୍ବନ୍ଧ ରହିଛି ?

**ଉତ୍ତର –** ଏଠାରେ **ଏବ** ପଦଟି ଅନ୍ୟମାନଙ୍କୁ ନିଷେଧ କରିବା ଅର୍ଥରେ ବ୍ୟବହୃତ ହୋଇଛି ଏବଂ ଏହା **ଅନ୍ତଃସୁଖଃ, ଅନ୍ତରାରାମଃ** ଓ **ଅନ୍ତର୍ଜ୍ୟୋତିଃ** —ଏହି ତିନୋଟିଯାକ ପଦ ସହିତ ସମ୍ପୃକ୍ତ। ଅଭିପ୍ରାୟ ଏହି ଯେ, ବାହ୍ୟ ଦୃଶ୍ୟପ୍ରପଞ୍ଚ ସହିତ ସେହି ଯୋଗୀଙ୍କର କୌଣସି ସମ୍ବନ୍ଧ ନ ଥାଏ; କାରଣ ସେ ପରମାତ୍ମାଙ୍କ ଠାରେ ହିଁ ସୁଖ, ରତି ଏବଂ ଜ୍ଞାନ ଅନୁଭବ କରନ୍ତି।

**ପ୍ରଶ୍ନ –** **ବ୍ରହ୍ମଭୂତଃ**ର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ବ୍ରହ୍ମଭୂତଃ** ପଦଟି ସାଂଖ୍ୟଯୋଗୀଙ୍କ ବିଶେଷଣ। ସାଂଖ୍ୟଯୋଗ ସାଧନା କରୁଥିବା ଯୋଗୀ ଅହଂକାର, ମମତ୍ୱ ଓ କାମକ୍ରୋଧାଦି ସମସ୍ତ ଅବଗୁଣ ତ୍ୟାଗପୂର୍ବକ ନିରନ୍ତର ଅଭିନ୍ନଭାବରେ ପରମାତ୍ମାଙ୍କ ଚିନ୍ତନ କରୁ କରୁ ବ୍ରହ୍ମରୂପ ହୋଇଯାନ୍ତି ଓ ତାଙ୍କର ବ୍ରହ୍ମଙ୍କ ଠାରୁ କିଞ୍ଚିତ୍‌ମାତ୍ର ବି ପ୍ରଭେଦ ରହେ ନାହିଁ। ସେପରି ଅନ୍ତିମସ୍ଥିତିରେ ପହଞ୍ଚିଥିବା ସାଂଖ୍ୟଯୋଗୀଙ୍କୁ **ବ୍ରହ୍ମଭୂତ** କୁହାଯାଏ।

**ପ୍ରଶ୍ନ –** **ବ୍ରହ୍ମନିର୍ବାଣମ୍** ପଦ କାହାର ବାଚକ ଓ ତାହାର ପ୍ରାପ୍ତି କହିଲେ କଣ ବୁଝାଏ ?

**ଉତ୍ତର –** **ବ୍ରହ୍ମନିର୍ବାଣମ୍** ପଦଟି ହେଉଛି ସଚ୍ଚିଦାନନ୍ଦଘନ, ନିର୍ଗୁଣ, ନିରାକାର, ନିର୍ବିକଳ୍ପ ଏବଂ ଶାନ୍ତ ପରମାତ୍ମାଙ୍କ ବାଚକ ଏବଂ ସେ ଅଭିନ୍ନଭାବରେ ପ୍ରତ୍ୟକ୍ଷ ହୋଇଯିବା ହିଁ, ତାଙ୍କର ପ୍ରାପ୍ତି। ସାଂଖ୍ୟଯୋଗୀଙ୍କ ଅନ୍ତିମ ଅବସ୍ଥାକୁ ବ୍ରହ୍ମଭୂତ ବୋଲି ଯାହା କୁହାଗଲା, ବ୍ରହ୍ମନିର୍ବାଣ ହେଉଛି ସେହି ଅବସ୍ଥାର ଫଳ। ଶ୍ରୁତି ବି କହିଛନ୍ତି, **'ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି'**, (ବୃହଦାରଣ୍ୟକ ଉ. ୪/୪/୬) ଅର୍ଥାତ୍ 'ସେ ବ୍ରହ୍ମ ହୋଇ ହିଁ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି।' ଏହାକୁ ପରମଶାନ୍ତିପ୍ରାପ୍ତି, ଅକ୍ଷୟସୁଖପ୍ରାପ୍ତି, ବ୍ରହ୍ମପ୍ରାପ୍ତି, ମୋକ୍ଷପ୍ରାପ୍ତି ଓ ପରମଗତିପ୍ରାପ୍ତି ବୋଲି ମଧ୍ୟ କହନ୍ତି।

**ସମ୍ବନ୍ଧ –** ଯେ ଏପରିଭାବରେ ପରବ୍ରହ୍ମ ପରମାତ୍ମାଙ୍କୁ ପାଇଯାଇଥାଆନ୍ତି, ସେହି ପୁରୁଷଙ୍କ ଲକ୍ଷଣ ପରବର୍ତ୍ତୀ ଦୁଇଟି ଶ୍ଳୋକରେ କହୁଛନ୍ତି –

**ଲଭନ୍ତେ ବ୍ରହ୍ମନିର୍ବାଣମୃଷୟଃ କ୍ଷୀଣକଲ୍ମଷାଃ ।**
**ଛିନ୍ନଦ୍ୱୈଧା ଯତାତ୍ମାନଃ ସର୍ବଭୂତହିତେ ରତାଃ ।। ୨୫ ।।**

**ଅନ୍ୱୟ –** **କ୍ଷୀଣକଲ୍ମଷାଃ** = ଯେଉଁମାନଙ୍କର ସକଳ ପାପ ନଷ୍ଟ ହୋଇଯାଇଛି; **ଛିନ୍ନଦ୍ୱୈଧାଃ** = ଯେଉଁମାନଙ୍କର ସକଳ ସଂଶୟ ଜ୍ଞାନଦ୍ୱାରା ନିବୃତ୍ତ ହୋଇଯାଇଛି; **ସର୍ବଭୂତହିତେ, ରତାଃ** = ଯେଉଁମାନେ ସକଳପ୍ରାଣୀଙ୍କର ହିତରେ ରତ ଅଟନ୍ତି; **ଯତାତ୍ମାନଃ** = ଯେଉଁମାନଙ୍କର ବିଜିତ ମନ ନିଶ୍ଚଳଭାବରେ ପରମାତ୍ମାଙ୍କ ଠାରେ ସ୍ଥିତ; **ଋଷୟଃ** = (ସେହି) ବ୍ରହ୍ମବେତ୍ତା ପୁରୁଷମାନେ; **ବ୍ରହ୍ମନିର୍ବାଣମ୍** = ଶାନ୍ତ ବ୍ରହ୍ମଙ୍କୁ; **ଲଭନ୍ତେ** = ପ୍ରାପ୍ତ ହୁଅନ୍ତି ।

**ଯେଉଁମାନଙ୍କର ସକଳ ପାପ ନଷ୍ଟ ହୋଇଯାଇଛି, ଯେଉଁମାନଙ୍କର ସକଳ ସଂଶୟ ଜ୍ଞାନଦ୍ୱାରା ନିବୃତ୍ତ ହୋଇଯାଇଛି, ଯେଉଁମାନେ ସକଳ ପ୍ରାଣୀଙ୍କ ହିତରେ ରତ ଏବଂ ଯେଉଁମାନଙ୍କର ବିଜିତ ମନ ନିଶ୍ଚଳଭାବରେ ପରମାତ୍ମାଙ୍କ ଠାରେ ସ୍ଥିତ, ସେହି ବ୍ରହ୍ମବେତ୍ତା ପୁରୁଷମାନେ ଶାନ୍ତ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ।। ୨୫ ।।**

**ପ୍ରଶ୍ନ –** ଏଠାରେ **କ୍ଷୀଣକଲ୍ମଷାଃ** ବିଶେଷଣଟି ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଇହଜନ୍ମ ଏବଂ ଜନ୍ମାନ୍ତରରେ କୃତ କର୍ମମାନଙ୍କର ସଂସ୍କାର, ରାଗଦ୍ୱେଷାଦି ଦୋଷ ତଥା ଅନ୍ତଃକରଣରେ ସଞ୍ଚିତ ହୋଇ ରହିଥିବା ସେସବୁ ବୃତ୍ତିମାନଙ୍କ ପୁଞ୍ଜ ହିଁ ବନ୍ଧନର କାରଣ; ତେଣୁ ତାହା କଲ୍ମଷ ବା ପାପ ଅଟେ । ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଗଲେ, ସେସବୁର ନାଶ ହୋଇଯାଏ । ତା'ଫଳରେ ସମ୍ପୃକ୍ତ ପୁରୁଷଙ୍କ ଅନ୍ତଃକରଣରେ ଆଉ ଲେଶମାତ୍ର ଦୋଷ ରହେ ନାହିଁ । ଏହିପରି 'ମଳ'ଦୋଷର ଅଭାବ ଦେଖାଇବାନିମନ୍ତେ **କ୍ଷୀଣକଲ୍ମଷାଃ** ବିଶେଷଣ ଦିଆଯାଇଛି ।

**ପ୍ରଶ୍ନ – ଛିନ୍ନଦ୍ୱୈଧାଃ** ବିଶେଷଣଟିର ଅଭିପ୍ରାୟ କଣ ?

**ଉତ୍ତର –** 'ଦ୍ୱୈଧ' ଶବ୍ଦ ସଂଶୟର ବାଚକ; ଅଜ୍ଞାନ ହିଁ ଏହାର କାରଣ । ପରମାତ୍ମାଙ୍କ ସ୍ୱରୂପର ଯଥାର୍ଥ ଜ୍ଞାନ ହୋଇଗଲେ ସକଳ ସଂଶୟ ସେମାନଙ୍କ କାରଣରୂପୀ ଅଜ୍ଞାନ ସହିତ ନଷ୍ଟ ହୋଇଯାଏ । ପରମାତ୍ମାଙ୍କୁ ପାଇଥିବା ଏପରି ପୁରୁଷଙ୍କ ନିର୍ମଳ ଅନ୍ତଃକରଣରେ ଲେଶମାତ୍ର ବିକ୍ଷେପ ଏବଂ ଆବରଣରୂପକ ଦୋଷ ରହେ ନାହିଁ । ଏହି ଭାବ ବ୍ୟକ୍ତ କରିବାନିମନ୍ତେ **ଛିନ୍ନଦ୍ୱୈଧାଃ** ବିଶେଷଣ ଦିଆଯାଇଛି ।

**ପ୍ରଶ୍ନ – ଯତାତ୍ମାନଃ** ପଦଟିର ଅର୍ଥ କଣ ?

**ଉତ୍ତର –** ଯାହାର ବଶୀଭୂତ ମନ ଚଞ୍ଚଳତା ଆଦି ଦୋଷରୁ ସର୍ବଥା ଶୂନ୍ୟ ହୋଇ ପରମାତ୍ମାଙ୍କ ସ୍ୱରୂପରେ ତଦ୍ରୂପ ହୋଇଯାଏ, ତାହାଙ୍କୁ **ଯତାତ୍ମା** କହନ୍ତି ।

**ପ୍ରଶ୍ନ – ସର୍ବଭୂତହିତେ ରତାଃ** ବିଶେଷଣଟି ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ପରମାତ୍ମାଙ୍କ ସ୍ୱରୂପର ଅପରୋକ୍ଷ ଜ୍ଞାନ ହୋଇଗଲେ ସକଳ ପ୍ରାଣୀଙ୍କ ଠାରେ ଆତ୍ମବୁଦ୍ଧି ଉତ୍ପନ୍ନ ହୋଇଯିବାରୁ ଆଉ ନିଜ-ପର ଭାବ ରହେ ନାହିଁ । ଅଜ୍ଞାନୀ ମନୁଷ୍ୟ ଯେପରି ନିଜ ଶରୀରକୁ ଆତ୍ମା ମନେ କରି ତା'ରି ହିତରେ ଲାଗିରହେ, ଠିକ୍ ସେହିପରି ସକଳ ପ୍ରାଣୀଙ୍କ ଠାରେ ସମଭାବପୂର୍ବକ ଆତ୍ମବୁଦ୍ଧି ହୋଇଯିବା ଫଳରେ ଜ୍ଞାନୀ ମହାପୁରୁଷ ସ୍ୱାଭାବିକଭାବରେ ସମସ୍ତଙ୍କ ହିତରେ ଲାଗିରହନ୍ତି । ଏହି ଭାବ ଦେଖାଇବାନିମନ୍ତେ **ସର୍ବଭୂତହିତେ ରତାଃ** ବିଶେଷଣ ଦିଆଯାଇଛି ।

ଏହି କଥନଟି ବି ଲୋକଦୃଷ୍ଟିରୁ କେବଳ ଜ୍ଞାନୀଙ୍କ ଆଦର୍ଶ ବ୍ୟବହାର ଦର୍ଶାଇବାନିମନ୍ତେ ଦିଆଯାଇଛି । ବସ୍ତୁତଃ ଜ୍ଞାନୀଙ୍କ ନିଶ୍ଚୟରେ ଏକବ୍ରହ୍ମ ଛଡ଼ା ପ୍ରାଣୀମାନଙ୍କର ପୃଥକ୍ ସତ୍ତା ହିଁ ନାହିଁ, କି ସେ ନିଜକୁ ସର୍ବହିତରେ ରତ ହୋଇଥିବା ବ୍ୟକ୍ତି ବୋଲି ଭାବନ୍ତି ନାହିଁ ।

**ପ୍ରଶ୍ନ –** ଏଠାରେ **ଋଷୟଃ** ପଦର ଅର୍ଥ 'ବ୍ରହ୍ମବେତ୍ତା' କିପରି କରାଗଲା ?

**ଉତ୍ତର –** ଗତ୍ୟର୍ଥକ **ଋଷ୍** ଧାତୁର ଭାବାର୍ଥ ହେଉଛି ଜ୍ଞାନ ବା ତତ୍ତ୍ୱାର୍ଥଦର୍ଶନ । ତଦନୁଯାୟୀ ଯଥାର୍ଥ ତତ୍ତ୍ୱକୁ ଭଲଭାବରେ ଜାଣିଥିବା ବ୍ୟକ୍ତିଙ୍କର ନାମ 'ଋଷି'

ହୋଇଯାଏ। ତେଣୁ ଏଠାରେ 'ଋଷି'ର ଅର୍ଥ ବ୍ରହ୍ମବେତ୍ତା ହେବା ହିଁ ଠିକ୍। **କ୍ଷୀଣକଳ୍ମଷାଃ, ଛିନ୍ନଦ୍ୱୈଧାଃ** ଓ **ଯତାତ୍ମାନଃ** ବିଶେଷଣଗୁଡ଼ିକ ବି ଏହି ଅର୍ଥକୁ ସମର୍ଥନ କରେ।

ଶ୍ରୁତି କହନ୍ତି—

**ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ।**
**କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ଦୃଷ୍ଟେ ପରାବରେ॥**
(ମୁଣ୍ଡକ ଉ. ୨/୨/୮)

ଅର୍ଥାତ୍ 'ପରାବରସ୍ୱରୂପ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ଫଳରେ, ଏହି ଜ୍ଞାନୀପୁରୁଷଙ୍କ ହୃଦୟର ଗ୍ରନ୍ଥି ଖୋଲିଯାଏ, ସକଳ ସଂଶୟ ନଷ୍ଟ ହୋଇଯାଏ ଏବଂ ସମସ୍ତ କର୍ମ କ୍ଷୟ ହୋଇଯାଏ'।

## କାମକ୍ରୋଧବିଯୁକ୍ତାନାଂ ଯତୀନାଂ ଯତଚେତସାମ୍।
## ଅଭିତୋ ବ୍ରହ୍ମନିର୍ବାଣଂ ବର୍ତ୍ତତେ ବିଦିତାତ୍ମନାମ୍॥ ୨୬ ॥

**ଅନ୍ୱୟ—** **କାମକ୍ରୋଧବିଯୁକ୍ତାନାମ୍** = କାମକ୍ରୋଧରହିତ; **ଯତଚେତସାମ୍** = ବିଜିତଚିତ୍ତ; **ବିଦିତାତ୍ମନାମ୍** = ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍କାର କରିଥିବା; **ଯତୀନାମ୍** = ଜ୍ଞାନୀପୁରୁଷମାନଙ୍କ ପାଇଁ; **ଅଭିତଃ** = ସକଳ ଦିଗରେ; **ବ୍ରହ୍ମନିର୍ବାଣମ୍** = ଶାନ୍ତ ପରବ୍ରହ୍ମ ପରମାତ୍ମା ହିଁ; **ବର୍ତ୍ତତେ** = (ପରିପୂର୍ଣ୍ଣ) ହୋଇଥାନ୍ତି।

**କାମକ୍ରୋଧରହିତ, ବିଜିତଚିତ୍ତ ଏବଂ ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍କାର କରିଥିବା ଜ୍ଞାନୀ ପୁରୁଷମାନଙ୍କ ପାଇଁ ସକଳ ଦିଗରେ ଶାନ୍ତ ପରବ୍ରହ୍ମ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଥାନ୍ତି॥ ୨୬ ॥**

**ପ୍ରଶ୍ନ—** **କାମକ୍ରୋଧରହିତ** କହିବାର ଅଭିପ୍ରାୟ କଣ? କଣ ଜ୍ଞାନୀ ମହାତ୍ମାଙ୍କ ମନ-ଇନ୍ଦ୍ରିୟଦ୍ୱାରା କାମକ୍ରୋଧାଦିର କୌଣସି କ୍ରିୟା ହୁଏ ନାହିଁ?

**ଉତ୍ତର—** ଜ୍ଞାନୀ ମହାପୁରୁଷମାନଙ୍କ ଅନ୍ତଃକରଣ ସର୍ବଥା ପରିଶୁଦ୍ଧ ହୋଇଯାଇଥାଏ, ତେଣୁ ସେଥିରେ ଲେଶମାତ୍ର କାମକ୍ରୋଧାଦିର ବିକାର ରହେ ନାହିଁ। ଏପରି ମହାତ୍ମାମାନଙ୍କ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି କ୍ରିୟା ହୁଏ, ତାହା ସ୍ୱଭାବତଃ ଅନ୍ୟମାନଙ୍କ ହିତସାଧନପାଇଁ ହିଁ ହୁଏ। ବ୍ୟବହାରକାଳରେ ଆବଶ୍ୟକତାନୁସାରେ ସେମାନଙ୍କ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯଦି ଶାସ୍ତ୍ରାନୁକୂଳ କାମକ୍ରୋଧର ଭାଷା ପ୍ରକାଶିତ ହୋଇଯାଏ, ତେବେ ନାଟକରେ ଅଭିନେତାମାନଙ୍କର ଆଳାପପରି ତାହା କେବଳ ଲୋକସଂଗ୍ରହପାଇଁ ଲୀଳାମାତ୍ର ବୋଲି ବୁଝିବା ଉଚିତ।

**ପ୍ରଶ୍ନ—** ଏଠାରେ **ଯତି** ଶବ୍ଦର ଅର୍ଥ କଣ?

**ଉତ୍ତର—** ମଳ, ବିକ୍ଷେପ ଓ ଆବରଣ— ଏହି ତିନୋଟି ଦୋଷ ହେଉଛି ଜ୍ଞାନର ମହାନ୍ ପ୍ରତିବନ୍ଧକ। ଜ୍ଞାନୀଙ୍କ ଠାରେ ହିଁ ଏହି ତିନିଦୋଷ ଲେଶମାତ୍ର ରହେ ନାହିଁ। ଏଠାରେ **କାମକ୍ରୋଧବିଯୁକ୍ତାନାମ୍**ଦ୍ୱାରା ମଳଦୋଷର, **ଯତଚେତସାମ୍**ଦ୍ୱାରା ବିକ୍ଷେପଦୋଷର ଏବଂ **ବିଦିତାତ୍ମନାମ୍**ଦ୍ୱାରା ଆବରଣଦୋଷର ସର୍ବଥା ଅଭାବ ଦେଖାଇ ଜ୍ଞାନୀଙ୍କ ଦ୍ୱାରା ପରମାତ୍ମାଙ୍କ ପୂର୍ଣ୍ଣଜ୍ଞାନ ପ୍ରାପ୍ତି ହୁଏ ବୋଲି କୁହାଯାଉଛି। ତେଣୁ ଏଠାରେ **ଯତି** ଶବ୍ଦର ଅର୍ଥ ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କୁ ପାଇଥିବା ଆତ୍ମସଂଯମୀ ତତ୍ତ୍ୱଜ୍ଞାନୀ ବୋଲି ଗ୍ରହଣ କରିବା ଉଚିତ।

**ପ୍ରଶ୍ନ—** ଜ୍ଞାନୀ ପୁରୁଷମାନଙ୍କ ପାଇଁ ସକଳ ଦିଗରେ ଶାନ୍ତ ପରବ୍ରହ୍ମ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଥାନ୍ତି ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର—** ପରମାତ୍ମପ୍ରାପ୍ତ ଜ୍ଞାନୀ ମହାପୁରୁଷମାନଙ୍କ ଅନୁଭବରେ ଊର୍ଦ୍ଧ୍ୱ-ଅଧଃ, ବାହ୍ୟ-ଅଭ୍ୟନ୍ତର, ଯତ୍ର-ତତ୍ର ସର୍ବତ୍ର ନିତ୍ୟନିରନ୍ତର ଏକ ବିଜ୍ଞାନାନନ୍ଦଘନ ପରବ୍ରହ୍ମ ପରମାତ୍ମା ହିଁ ବିଦ୍ୟମାନ ଥାଆନ୍ତି; ଏକ ଅଦ୍ୱିତୀୟ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବି ପଦାର୍ଥର ସତ୍ତା ନ ଥାଏ। ଏହି ଅଭିପ୍ରାୟରେ କୁହାଯାଇଛି ଯେ, ସେମାନଙ୍କ ପାଇଁ ସକଳ ଦିଗରେ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଥାନ୍ତି।

**ସମ୍ବନ୍ଧ—** କର୍ମଯୋଗ ଏବଂ ସାଂଖ୍ୟଯୋଗ— ଉଭୟ ସାଧନାଦ୍ୱାରା ପରମାତ୍ମପ୍ରାପ୍ତି ହୋଇଥାଏ କହି ପରମାତ୍ମପ୍ରାପ୍ତ ମହାପୁରୁଷମାନଙ୍କ ଲକ୍ଷଣ ମଧ୍ୟ କୁହାଗଲା। ସେହି ଉଭୟପ୍ରକାର ସାଧକଙ୍କ ପକ୍ଷରେ ବୈରାଗ୍ୟପୂର୍ବକ

*ମନ-ଇନ୍ଦ୍ରିୟମାନଙ୍କୁ ବଶ କରି ଧ୍ୟାନଯୋଗ ସାଧନା କରିବା ଅତ୍ୟନ୍ତ ଉପଯୋଗୀ। ତେଣୁ ବର୍ତ୍ତମାନ ସଂକ୍ଷେପରେ ଫଳସହିତ ଧ୍ୟାନଯୋଗ ବର୍ଣ୍ଣନା କରୁଛନ୍ତି–*

**ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ ।**
**ପ୍ରାଣାପାନୌ ସମୌ କୃତ୍ୱା ନାସାଭ୍ୟନ୍ତରଚାରିଣୌ ।। ୨୭ ।।**
**ଯତେନ୍ଦ୍ରିୟମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ ।**
**ବିଗତେଚ୍ଛାଭୟକ୍ରୋଧୋ ଯଃ ସଦା ମୁକ୍ତ ଏବ ସଃ ।। ୨୮ ।।**

**ଅନ୍ୱୟ –** **ବାହ୍ୟାନ୍** = ବାହ୍ୟ; **ସ୍ପର୍ଶାନ୍** = ବିଷୟଭୋଗମାନଙ୍କୁ; **ବହିଃ** = ବାହାରେ; **ଏବ** = ହିଁ; **କୃତ୍ୱା** = ତ୍ୟାଗ କରିଦେଇ ଅର୍ଥାତ୍ ସେମାନଙ୍କୁ ଚିନ୍ତନ ନ କରି; **ଚ** = ଏବଂ; **ଚକ୍ଷୁଃ** = ଦୃଷ୍ଟିକୁ; **ଭ୍ରୁବୋଃ** = ଭ୍ରୁଦ୍ୱୟଟିର; **ଅନ୍ତରେ** = ମଧ୍ୟବର୍ତ୍ତୀସ୍ଥାନରେ (ସ୍ଥିତ କରି); **ନାସାଭ୍ୟନ୍ତରଚାରିଣୌ** = ନାସିକାର ଅଭ୍ୟନ୍ତରରେ ବିଚରଣ କରୁଥିବା; **ପ୍ରାଣାପାନୌ** = ପ୍ରାଣ ଓ ଅପାନ ବାୟୁକୁ; **ସମୌ** = ସମ; **କୃତ୍ୱା** = କରି; **ଯତେନ୍ଦ୍ରିୟମନୋବୁଦ୍ଧିଃ** = ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରିଥିବା; **ଯଃ** = ଯେଉଁ; **ମୋକ୍ଷପରାୟଣଃ** = ମୋକ୍ଷପରାୟଣ; **ମୁନିଃ** = ମୁନି; **ବିଗତେଚ୍ଛାଭୟକ୍ରୋଧଃ** = ଇଚ୍ଛା, ଭୟ ଓ କ୍ରୋଧରୁ ରହିତ ହୋଇଯାଇଥାନ୍ତି; **ସଃ** = ସେ; **ସଦା** = ସର୍ବଦା; **ମୁକ୍ତଃ** = ମୁକ୍ତ; **ଏବ** = ହିଁ ଅଟନ୍ତି।

**ବାହ୍ୟ ବିଷୟଭୋଗମାନଙ୍କୁ ଚିନ୍ତନ ନ କରି, ସେସବୁକୁ ବାହାରେ ହିଁ ତ୍ୟାଗ କରିଦେଇ ଏବଂ ନେତ୍ରର ଦୃଷ୍ଟିକୁ ଭ୍ରୁଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନରେ ନିବଦ୍ଧ କରି, ନାସିକାଦ୍ୱୟର ଅଭ୍ୟନ୍ତରରେ ବିଚରଣ କରୁଥିବା ପ୍ରାଣ ଓ ଅପାନ ବାୟୁକୁ ସମଗତି କରି, ଯେଉଁ ମୋକ୍ଷପରାୟଣ ମୁନି ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରିଥାନ୍ତି, ଇଚ୍ଛା, ଭୟ ଓ କ୍ରୋଧରୁ ରହିତ ହୋଇଥିବା ସେହି ମୁନି ସର୍ବଦା ମୁକ୍ତ ହିଁ ଅଟନ୍ତି।। ୨୭-୨୮ ।।**

**ପ୍ରଶ୍ନ –** ବାହ୍ୟ ବିଷୟମାନଙ୍କୁ ବାହାରେ ହିଁ ତ୍ୟାଗ କରିଦେବାର ଅଭିପ୍ରାୟ କଣ ?

**ଉତ୍ତର –** ବାହ୍ୟ ବିଷୟମାନଙ୍କ ସହିତ ଜୀବର ସମ୍ବନ୍ଧ ଅନାଦି କାଳରୁ ରହି ଆସିଛି ଏବଂ ତା'ର ଅନ୍ତଃକରଣରେ ସେମାନଙ୍କର ଅସଂଖ୍ୟ ଚିତ୍ର ପରିପୂର୍ଣ୍ଣ ହୋଇ ରହିଛି। ବିଷୟମାନଙ୍କୁ ସୁଖକର ଏବଂ ରମଣୀୟ ବୋଲି ଭାବିବା ଫଳରେ ମନୁଷ୍ୟ ଅନବରତ ବିଷୟଚିନ୍ତନ କରିଚାଲେ ଏବଂ ପୂର୍ବସଞ୍ଚିତ ସଂସ୍କାର ବାରମ୍ବାର ଜାଗିଉଠି ତା' ମନରେ ଆସକ୍ତି ଓ କାମନାର ଅଗ୍ନି ପ୍ରଜ୍ୱଳିତ କରେ। ତେଣୁ କୌଣସି ବି ସମୟରେ ତା'ର ଚିତ୍ତ ଶାନ୍ତ ହୋଇ ରହିପାରେ ନାହିଁ। ଏପରି କି, ସେ ଯଦି ଉପରୁ ଉପରୁ ବିଷୟ ତ୍ୟାଗ କରି କେବେ ଧ୍ୟାନ କରିବାକୁ ଏକାନ୍ତ ସ୍ଥାନରେ ବସିପଡ଼େ, ତେବେ ବି ବିଷୟମାନଙ୍କ ସଂସ୍କାର ତାକୁ ଛାଡ଼େ ନାହିଁ; ତେଣୁ ସେ ପରମାତ୍ମାଙ୍କୁ ଧ୍ୟାନ କରିପାରେ ନାହିଁ। ନିରନ୍ତର ବିଷୟଚିନ୍ତନ ହିଁ ଏହାର ପ୍ରଧାନ କାରଣ। ବିଷୟରେ ସୁଖବୁଦ୍ଧି ରହିଥିବାପର୍ଯ୍ୟନ୍ତ ତା'ର ବିଷୟଚିନ୍ତନ ବନ୍ଦ ହୁଏ ନାହିଁ। ତେଣୁ ଭଗବାନ୍ ଏଠାରେ କହୁଛନ୍ତି ଯେ, ବିବେକ ଓ ବୈରାଗ୍ୟ ବଳରେ ସକଳ ବାହ୍ୟ ବିଷୟକୁ କ୍ଷଣଭଙ୍ଗୁର, ଅନିତ୍ୟ, ଦୁଃଖମୟ ଓ ଦୁଃଖର କାରଣ ବୋଲି ଜାଣି ସେସବୁର ସଂସ୍କାରରୂପକ ସମସ୍ତ ଚିତ୍ରକୁ ଅନ୍ତଃକରଣରୁ ବାହାର କରିଦେବା ଆବଶ୍ୟକ— ସେସବୁର ସ୍ମୃତିକୁ ସର୍ବଥା ନଷ୍ଟ କରିଦେବା ଆବଶ୍ୟକ; ତେବେ ଯାଇ ଚିତ୍ତ ସୁସ୍ଥିର ଓ ପ୍ରଶାନ୍ତ ହୋଇପାରିବ।

**ପ୍ରଶ୍ନ –** ନେତ୍ରର ଦୃଷ୍ଟିକୁ ଭ୍ରୁଦ୍ୱୟଟିର ମଝିରେ ନିବଦ୍ଧ କରିବାକୁ କାହିଁକି କହିଛନ୍ତି ?

**ଉତ୍ତର –** ଆଖି ଖୋଲି ଏଣେ ତେଣେ ଚାହିଁଲେ ତ ଧ୍ୟାନରେ ବିଘ୍ନ-ବିକ୍ଷେପ ହେବା ସ୍ୱାଭାବିକ। ପୁଣି ଆଖି ବନ୍ଦ କରି ରଖିଲେ ଆଳସ୍ୟ ଓ ନିଦ୍ରା ଆସିଯିବାର ଭୟ ବି ରହିଛି। ତେଣୁ ଏପରି କରିବାକୁ କୁହାଯାଇଛି।

ଏହା ବ୍ୟତୀତ ଯୋଗଶାସ୍ତ୍ରସମ୍ବନ୍ଧୀୟ କାରଣ ବି ରହିଛି। ଯୋଗଶାସ୍ତ୍ର କହନ୍ତି ଯେ, ଭ୍ରୁଦ୍ୱୟମଧ୍ୟରେ ଦ୍ୱିଦଳ ଆଜ୍ଞାଚକ୍ର ରହିଛି। ତା'ନିକଟରେ ସପ୍ତକୋଣ ରହିଛି; ତା' ଭିତରୁ ଅନ୍ତିମ କୋଣଟିର ନାମ ହେଉଛି

ଜନ୍ମନ୍ତି; ସେଠାରେ ପହଞ୍ଚିଯିବା ପରେ ଜୀବର ପୁନରାବୃତ୍ତି ହୁଏ ନାହିଁ। ତେଣୁ ଯୋଗୀମାନେ ଆଜ୍ଞାଚକ୍ରରେ ଦୃଷ୍ଟି ନିବଦ୍ଧ କରନ୍ତି।

**ପ୍ରଶ୍ନ –** ଏଠାରେ **ପ୍ରାଣାପାନୌ** –ପ୍ରାଣ ଓ ଅପାନବାୟୁ ସହିତ **ନାସାଭ୍ୟନ୍ତରଚାରିଣୌ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ପ୍ରାଣ ଓ ଅପାନର ଗତିକୁ ସମ କରିବାକୁ କୁହାଯାଇଛି; ସେମାନଙ୍କର ଗତିରୋଧ କରିବାକୁ କୁହାଯାଇ ନାହିଁ। ଏହି କାରଣରୁ **ନାସାଭ୍ୟନ୍ତରଚାରିଣୌ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ –** ପ୍ରାଣ ଓ ଅପାନକୁ ସମ କରିବା ଅର୍ଥ କଣ ଏବଂ କିପରି ସମ କରାଯାଏ ?

**ଉତ୍ତର –** ପ୍ରାଣ ଓ ଅପାନର ସ୍ୱାଭାବିକ ଗତି ବିଷମ। ସେଥିପାଇଁ କେତେବେଳେ ବାମ ନାସିକାରେ ଚାଲନ୍ତି ତ, କେତେବେଳେ ଦକ୍ଷିଣ ନାସିକାରେ। ବାଆଁରେ ଚାଲିବାକୁ ଇଡ଼ା ନାଡ଼ୀରେ ଚାଲିବା ଏବଂ ଡାହାଣରେ ଚାଲିବାକୁ ପିଙ୍ଗଳାରେ ଚାଲିବା କହନ୍ତି। ଏପରି ଅବସ୍ଥାରେ ମନୁଷ୍ୟର ଚିତ୍ତ ଚଞ୍ଚଳ ହୋଇଥାଏ। ଏପରି ବିଷମଭାବରେ ଚାଲୁଥିବା ପ୍ରାଣ ଓ ଅପାନର ଗତିକୁ ଦୁଇ ନାସିକାରେ ସମାନଭାବରେ ଚଳାଇବାର ନାମ ସେଦୁହିଁଙ୍କୁ ସମ କରିବା। ଏହାକୁ ହିଁ ସେଦୁହିଁଙ୍କୁ ସୁଷୁମ୍ନାରେ ଚଳାଇବା କହନ୍ତି। ସୁଷୁମ୍ନା ନାଡ଼ୀରେ ଚାଲିବା ସମୟରେ ପ୍ରାଣ ଓ ଅପାନର ଗତି ଅତି ସୂକ୍ଷ୍ମ ଓ ଶାନ୍ତଭାବରେ ହୁଏ। ସେତେବେଳେ ମନର ଚଞ୍ଚଳତା ଓ ଅଶାନ୍ତି ସ୍ୱତଃ ନଷ୍ଟ ହୋଇଯାଏ ଏବଂ ତାହା ସହଜରେ ପରମାତ୍ମାଙ୍କ ଧ୍ୟାନରେ ଲାଗିଯାଏ।

ପ୍ରାଣ ଓ ଅପାନକୁ ସମ କରିବାକୁ ହେଲେ, ପ୍ରଥମେ ବାମ ନାସିକା ଦେଇ ଅପାନବାୟୁକୁ ଭିତରକୁ ନେଇ ଦକ୍ଷିଣ ନାସିକା ଦେଇ ପ୍ରାଣ ବାୟୁକୁ ବାହାର କରିଦେବାକୁ ପଡ଼ିବ। ତା'ପରେ ଅପାନ ବାୟୁକୁ ଦକ୍ଷିଣ ନାସିକା ଦେଇ ଭିତରକୁ ନେଇ ପ୍ରାଣ ବାୟୁକୁ ବାମ ନାସିକା ଦେଇ ବାହାର କରିଦେବାକୁ ପଡ଼ିବ। ଏପରିଭାବରେ ପ୍ରାଣ ଓ ଅପାନ ବାୟୁକୁ ସମ କରିବାକୁ ଅଭ୍ୟାସ କଲାବେଳେ ପରମାତ୍ମାଙ୍କ ନାମ ଜପ କରିଚାଲିବାକୁ ତଥା ବାୟୁକୁ ବାହାର କରିବା ଓ ଭିତରକୁ ନେବାର ସମୟକୁ ସମାନ ସମାନ କରିବାକୁ ଚେଷ୍ଟା ହେବା ଆବଶ୍ୟକ; ପୁଣି ବାୟୁର ଗତିକୁ ସମ ଓ ସୂକ୍ଷ୍ମ କରିବାକୁ ବି ଚେଷ୍ଟା ହେବା ଆବଶ୍ୟକ। ଏପରି କ୍ରମାନ୍ୱୟ ଅଭ୍ୟାସ କରୁ କରୁ ଯେତେବେଳେ ଉଭୟ ବାୟୁର ଗତି ସମ, ଶାନ୍ତ ଓ ସୂକ୍ଷ୍ମ ହୋଇଯିବ, ନାସିକାର ବାହାରେ ଓ ଭିତରେ ତଥା କଣ୍ଠାଦିଦେଶରେ ଯେତେବେଳେ ଉଭୟଙ୍କ ସ୍ପର୍ଶ ଜଣାପଡ଼ିବ ନାହିଁ, ସେତେବେଳେ ଜାଣିବ ଯେ, ପ୍ରାଣ ଓ ଅପାନ ସମ ଓ ସୂକ୍ଷ୍ମ ହୋଇଗଲେଣି।

**ପ୍ରଶ୍ନ –** ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ଜୟ କରିବାର ସ୍ୱରୂପ କଣ ? ସେମାନଙ୍କୁ କିପରି ଓ କାହିଁକି ଜୟ କରାଯିବା ଉଚିତ ?

**ଉତ୍ତର –** ଇନ୍ଦ୍ରିୟମାନେ ଯେତେବେଳେ ଇଚ୍ଛା, ଯେଉଁ ବିଷୟକୁ ଇଚ୍ଛା, ସେତେବେଳେ ସେଠାକୁ ସ୍ୱଚ୍ଛନ୍ଦରେ ଚାଲିଯାଆନ୍ତି। ମନ ସଦା ଚଞ୍ଚଳ ହୋଇ ରହେ; ନିଜ ସ୍ୱଭାବ ଛାଡ଼େ ନାହିଁ ଏବଂ ବୁଦ୍ଧି କୌଣସି ପରମ ନିଶ୍ଚୟରେ ଦୃଢ଼ ହୋଇ ରହେ ନାହିଁ। ଏସବୁ ହେଉଛି ସେମାନଙ୍କର ଉଚ୍ଛୃଙ୍ଖଳତା। ବିବେକ ଓ ବୈରାଗ୍ୟପୂର୍ବକ ଅଭ୍ୟାସଦ୍ୱାରା ସେମାନଙ୍କୁ ଶୃଙ୍ଖଳିତ, ଆଜ୍ଞାବହ ଓ ଅନ୍ତର୍ମୁଖୀ ବା ଭଗବନ୍ନିଷ୍ଠ କରିଦେବା ହିଁ ସେମାନଙ୍କୁ ଜୟ କରିବା। ଏପରି ଜୟ କରିଗଲେ ଇନ୍ଦ୍ରିୟମାନେ ସ୍ୱଚ୍ଛନ୍ଦରେ ବିଷୟଭୋଗରେ ରମଣ ନ କରି ଆମର ଇଚ୍ଛାନୁସାରେ ଚାଲିବେ ଏବଂ ଆମେ ଯେଉଁଠି କହିବା, ସେଇଠି ଲାଗିରହିବେ; ମନ ଆମର ଇଚ୍ଛାନୁସାରେ ଏକାଗ୍ର ହୋଇଯିବ ଏବଂ ବୁଦ୍ଧି ଏକ ଇଷ୍ଟ ନିଶ୍ଚୟ ଉପରେ ଅଟଳ ଓ ଅଚଳ ହୋଇ ରହିପାରିବ। ଇନ୍ଦ୍ରିୟମାନଙ୍କ ଉପରେ ବିଜୟ ଲାଭ କଲେ **ପ୍ରତ୍ୟାହାର** (ଇନ୍ଦ୍ରିୟବୃତ୍ତିମାନଙ୍କର ସଂଯତ ହେବା), ମନକୁ ବଶ କରିପାରିଲେ **ଧାରଣା** (ଚିତ୍ତକୁ ଏକ ସ୍ଥାନରେ ସ୍ଥିର ରଖିବା) ଏବଂ ବୁଦ୍ଧିକୁ ନିଜର ଅଧୀନ କରିନେଲେ **ଧ୍ୟାନ** (ବୁଦ୍ଧିକୁ ଏକ ହିଁ ନିଶ୍ଚିତ ବସ୍ତୁରେ ଦୃଢ଼ କରି ରଖିବା) ସହଜ ହୋଇଯାଏ। ତେଣୁ ଧ୍ୟାନଯୋଗରେ ଏହି ତିନୋଟିକୁ ବଶ କରିବା ଏକାନ୍ତ ଆବଶ୍ୟକ।

**ପ୍ରଶ୍ନ – ମୋକ୍ଷପରାୟଣଃ** ପଦ କାହାର ବାଚକ ?

**ଉତ୍ତର –** ଯାହାକୁ ପରମାତ୍ମପ୍ରାପ୍ତି, ପରମଗତି ଓ ପରମପଦପ୍ରାପ୍ତି ବା ମୁକ୍ତି ବୋଲାଯାଏ, ତାହାରି ନାମ ମୋକ୍ଷ। ଏହି ଅବସ୍ଥାଟି ମନ ଓ ବଚନର ଅତୀତ — ଅବର୍ଣ୍ଣନୀୟ। ଏ ବିଷୟରେ କେବଳ ଏତିକି କୁହାଯାଇପାରେ ଯେ, ଏହି ସ୍ଥିତିରେ ମନୁଷ୍ୟ ଚିରଦିନପାଇଁ ସମସ୍ତ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯାଇ ଅନନ୍ତ ଓ ଅଦ୍ୱିତୀୟ ପରମ କଲ୍ୟାଣସ୍ୱରୂପ ଓ ପରମାନନ୍ଦସ୍ୱରୂପ ହୋଇଯାଏ।

ଏହି ମୋକ୍ଷ ବା ପରମାତ୍ମପ୍ରାପ୍ତିନିମନ୍ତେ ଯେଉଁ ମନୁଷ୍ୟ ନିଜର ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ସକଳ ପ୍ରକାରେ ତନ୍ମୟ କରିଦିଅନ୍ତି, ଯେ ନିତ୍ୟନିରନ୍ତର ପରମାତ୍ମପ୍ରାପ୍ତିପାଇଁ ପ୍ରଯତ୍ନଶୀଳ ଥାଆନ୍ତି, ଯାହାଙ୍କର ଏକମାତ୍ର ଉଦ୍ଦେଶ୍ୟ କେବଳ ପରମାତ୍ମପ୍ରାପ୍ତି ଏବଂ ଯେ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁକୁ ପ୍ରାପ୍ତି କରିବା ଯୋଗ୍ୟ ମଣନ୍ତି ନାହିଁ, ସେ **ମୋକ୍ଷପରାୟଣ** ଅଟନ୍ତି ।

**ପ୍ରଶ୍ନ —** ଏଠାରେ **ମୁନିଃ** କାହାକୁ କହନ୍ତି ?

**ଉତ୍ତର —** ମନନଶୀଳଙ୍କୁ 'ମୁନି' କହନ୍ତି । ଯେଉଁ ପୁରୁଷ ଧ୍ୟାନକାଳଭଳି, ବ୍ୟବହାରକାଳରେ ମଧ ପରମାତ୍ମାଙ୍କ ସର୍ବବ୍ୟାପକତାରେ ଦୃଢନିଶ୍ଚୟ ହୋଇଯାଇଥିବାରୁ ସର୍ବଦା ପରମାତ୍ମାଙ୍କର ହିଁ ମନନ କରିଚାଲିଥାନ୍ତି, ସେ **'ମୁନି'** ।

**ପ୍ରଶ୍ନ — ବିଗତେଚ୍ଛାଭୟକ୍ରୋଧଃ** — ବିଶେଷଣର ଅଭିପ୍ରାୟ କଣ ?

**ଉତ୍ତର —**କୌଣସି ଅଭାବର ଅନୁଭବ ହେଲେ, ଇଚ୍ଛା ଜାଗ୍ରତ ହୁଏ; ଅନିଷ୍ଟର ଆଶଙ୍କା ଦେଖାଦେଲେ ଭୟ ଉତ୍ପନ୍ନ ହୁଏ ଏବଂ କାମନାରେ ବିଘ୍ନ ଘଟିଲେ ଅଥବା ମନର ଅନୁକୂଳ କାର୍ଯ୍ୟ ନ ହେଲେ, କ୍ରୋଧ ଜାତ ହୁଏ । କିନ୍ତୁ ଧ୍ୟାନଯୋଗ ସାଧନା କରି କରି ଯେଉଁ ପୁରୁଷ ସିଦ୍ଧ ହୋଇଯାନ୍ତି, ତାଙ୍କୁ ସର୍ବତ୍ର, ସର୍ବଦା ଓ ସର୍ବଥା ପରମାତ୍ମାଙ୍କ ଅନୁଭବ ହୁଏ; ସେ କୌଣସି ସ୍ଥାନରେ ତାଙ୍କ ଅଭାବ ଦେଖନ୍ତି ନାହିଁ । ତାଙ୍କର ଆଉ ଇଚ୍ଛା ବା ହେବ କ'ଣ ? ଯାହାଙ୍କ ପାଇଁ ଏକ ପରମାତ୍ମାଙ୍କ ଭିନ୍ନ ଅନ୍ୟ କେହି ବି ନାହାନ୍ତି, ଏବଂ ନିତ୍ୟ ସତ୍ୟ ସନାତନ ଅନନ୍ତ ଅବିନାଶୀ ପରମାତ୍ମାଙ୍କ ସ୍ୱରୂପରୁ ଯେ କେବେ ଚ୍ୟୁତ ହୁଅନ୍ତି ନାହିଁ, ତାଙ୍କର ଅନିଷ୍ଟର ଆଶଙ୍କା ବି ନ ଥାଏ । ଆଉ ଭୟ ବା କାହିଁକି ହେବ ? ଏବଂ ନିତ୍ୟ ପୂର୍ଣ୍ଣରୂପେ ପରମାତ୍ମା ପ୍ରାପ୍ତ ହୋଇଯିବାରୁ ଯେତେବେଳେ ଆଉ କୌଣସି କାମନା ବା ମନୋରଥ ରହିଲା ନାହିଁ, ସେତେବେଳେ କ୍ରୋଧ ବା କାହା ଉପରେ କେଉଁଥି ପାଇଁ ଆସିବ ? ଅତଏବ ଏପରି ସ୍ଥିତିରେ ସିଦ୍ଧ ପୁରୁଷଙ୍କ ଅନ୍ତଃକରଣରେ ବ୍ୟବହାରକାଳରେ, ସ୍ୱପ୍ନରେ ଅଥବା — କୌଣସି ଅବସ୍ଥାରେ କେବେ କୌଣସିପ୍ରକାର ଇଚ୍ଛା ଜାଗ୍ରତ ହୁଏ ନାହିଁ, କି କୌଣସି ଘଟଣାରେ କୌଣସିପ୍ରକାର ଭୟ ଉତ୍ପନ୍ନ ହୁଏ ନାହିଁ, କିମ୍ବା କୌଣସି ବି ଅବସ୍ଥାରେ କ୍ରୋଧ ଉତ୍ପନ୍ନ ହୁଏ ନାହିଁ । ତେଣୁ ସେ **ବିଗତେଚ୍ଛାଭୟକ୍ରୋଧ** ଅଟନ୍ତି ।

**ପ୍ରଶ୍ନ —** ଏଠାରେ ଏବର ପ୍ରୟୋଗ କେଉଁ ଅର୍ଥରେ କରାଯାଇଛି ଏବଂ ଏପରି ପୁରୁଷ 'ସଦା ମୁକ୍ତ ହିଁ ଅଟନ୍ତି' କହିବାର ଅଭିପ୍ରାୟ କଣ ?

**ଉତ୍ତର —**ଏବ ଅବ୍ୟୟଟି ନିଶ୍ଚୟବୋଧକ । ଯେଉଁ ମହାପୁରୁଷ ଉପରୋକ୍ତ ସାଧନାମାନଙ୍କ ଦ୍ୱାରା ଇଚ୍ଛା, ଭୟ ଓ କ୍ରୋଧରୁ ସର୍ବଥା ରହିତ ହୋଇଯାଇଥାନ୍ତି, ସେ ଧ୍ୟାନକାଳରେ ଅଥବା ବ୍ୟବହାରକାଳରେ, ଶରୀର ଥିବାବେଳେ ବା ଶରୀର ଛାଡ଼ିଯିବା ପରେ — ସକଳ ଅବସ୍ଥାରେ ସଦାମୁକ୍ତ ହିଁ ଅଟନ୍ତି — ସେ ଯେ ସଂସାରବନ୍ଧନରୁ ଚିରଦିନପାଇଁ ମୁକ୍ତି ପାଇ ପରମାତ୍ମାଙ୍କୁ ପ୍ରାପ୍ତ ହୋଇସାରିଥାନ୍ତି, ସେଥିରେ କୌଣସି ସନ୍ଦେହ ନାହିଁ ।

*ସମ୍ବନ୍ଧ — ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେବା ବେଳେ ଭଗବାନ୍ କର୍ମଯୋଗ ଓ ସାଂଖ୍ୟଯୋଗର ସ୍ୱରୂପ ପ୍ରତିପାଦନ କରି ଉଭୟ ସାଧନାଦ୍ୱାରା ପରମାତ୍ମପ୍ରାପ୍ତି ହୁଏ ବୋଲି କହି ସିଦ୍ଧ ପୁରୁଷଙ୍କ ଲକ୍ଷଣ କହିଦେଲେ । ପୁଣି ଉଭୟନିଷ୍ଠାର ଉପଯୋଗୀ ହୋଇଥିବାରୁ ଧ୍ୟାନଯୋଗର ବର୍ଣ୍ଣନା ବି ସଂକ୍ଷେପରେ କରିଦେଲେ । ବର୍ତ୍ତମାନ ଯେଉଁ ମନୁଷ୍ୟ ଏପରିଭାବରେ ମନ, ଓ ଇନ୍ଦ୍ରିୟମାନଙ୍କ ଉପରେ ବିଜୟ ଲାଭ କରି କର୍ମଯୋଗ, ସାଂଖ୍ୟଯୋଗ ବା ଧ୍ୟାନଯୋଗ ସାଧନା କରିବାରେ ନିଜକୁ ଅସମର୍ଥ ବୋଲି ଭାବନ୍ତି, ସେପରି ସାଧକଙ୍କ ନିମନ୍ତେ ସହଜରେ ପରମପଦ ପ୍ରାପ୍ତ କରାଉଥିବା ଭକ୍ତିଯୋଗର ବର୍ଣ୍ଣନା ଭଗବାନ୍ ସଂକ୍ଷେପରେ କରୁଛନ୍ତି —*

## ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକମହେଶ୍ୱରମ୍ ।
## ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି ।। ୨୯ ।।

ଅନ୍ୱୟ — ମାମ୍ = (ମୋର ଭକ୍ତ) ମୋତେ; **ଯଜ୍ଞତପସାମ୍** = ଯଜ୍ଞ ଓ ତପମାନଙ୍କର; **ଭୋକ୍ତାରମ୍** = ଭୋକ୍ତା; ସର୍ବଲୋକମହେଶ୍ୱରମ୍ = ସମସ୍ତ ଲୋକର ଈଶ୍ୱରମାନଙ୍କର ବି ଈଶ୍ୱର; **ସର୍ବଭୂତାନାମ୍** = ସକଳ ପ୍ରାଣୀମାନଙ୍କର;

**ସୁହୃଦମ୍** = ସୁହୃଦ ଅର୍ଥାତ୍ ସ୍ୱାର୍ଥରହିତ ଦୟାଳୁ ଓ ପ୍ରେମୀ; **ଜ୍ଞାତ୍ୱା** = (ବୋଲି) ତତ୍ତ୍ୱତଃ ଜାଣି; ଶାନ୍ତିମ୍ = ଶାନ୍ତିକୁ; **ଋଚ୍ଛତି** = ପ୍ରାପ୍ତ ହୁଅନ୍ତି ।

**ମୋର ଭକ୍ତ ମୋତେ ସକଳ ଯଜ୍ଞର ଓ ତପର ଭୋକ୍ତା, ସମସ୍ତ ଲୋକର ଈଶ୍ୱରମାନଙ୍କର ବି ଈଶ୍ୱର ତଥା ସକଳ ପ୍ରାଣୀମାନଙ୍କର ସୁହୃଦ ଅର୍ଥାତ୍ ସ୍ୱାର୍ଥରହିତ ଦୟାଳୁ ଓ ପ୍ରେମୀ ବୋଲି ତତ୍ତ୍ୱତଃ ଜାଣିପାରି ଶାନ୍ତି ପ୍ରାପ୍ତ ହୁଅନ୍ତି ॥ ୨୯ ॥**

**ପ୍ରଶ୍ନ** – ଯଜ୍ଞ ଓ ତପର ଅର୍ଥ କଣ ଏବଂ ଭଗବାନ୍ କିପରି ସେସବୁର ଭୋକ୍ତା ଓ ତାଙ୍କୁ ଭୋକ୍ତା ବୋଲି ଜାଣିଗଲେ ମନୁଷ୍ୟ ଶାନ୍ତି ପାଏ କିପରି ?

**ଉତ୍ତର** – ଅହିଂସା, ସତ୍ୟ ଆଦି ଧର୍ମପାଳନ, ଦେବତା, ବ୍ରାହ୍ମଣ, ମାତା-ପିତା ଆଦି ଗୁରୁଜନଙ୍କର ସେବନ-ପୂଜନ, ଦୀନ-ଦୁଃଖୀ, ଗରିବ ଓ ରୁଗ୍ଣ ଜୀବମାନଙ୍କର ସ୍ନେହପୂର୍ଣ୍ଣ ଓ ଆଦରଯୁକ୍ତ ସେବା ଏବଂ ସେମାନଙ୍କର ଦୁଃଖନାଶ ନିମନ୍ତେ କରାଯାଉଥିବା ଉପଯୁକ୍ତ ସାଧନା ଏବଂ ଯଜ୍ଞ, ଦାନ ଆଦି ଯେତେ ଶୁଭକର୍ମ ଅଛି — ସେସବୁର ସମାବେଶକୁ **ଯଜ୍ଞ** ଓ **ତପ** ଶବ୍ଦଦ୍ୱାରା ପ୍ରକାଶ କରାଯାଇଛି । ଭଗବାନ୍ ହେଉଛନ୍ତି ସମସ୍ତଙ୍କର ଆତ୍ମା (୧୦/୨୦); ଅତଏବ ଦେବତା, ବ୍ରାହ୍ମଣ, ଦୀନ-ଦୁଃଖୀ ଆଦିରୂପରେ ରହି ଭଗବାନ୍ ହିଁ ସମସ୍ତ ସେବାପୂଜାଦି ଗ୍ରହଣ କରନ୍ତି । ତେଣୁ ସେ ହିଁ ସମସ୍ତ ଯଜ୍ଞ ଓ ତପର ଭୋକ୍ତା (୯/୨୪) । ଭଗବାନଙ୍କ ତତ୍ତ୍ୱ ଓ ପ୍ରଭାବ ନ ଜାଣିଥିବାରୁ ଲୋକେ ଯେଉଁମାନଙ୍କର ସେବାପୂଜା କରନ୍ତି, ସେହି ଦେବ-ମନୁଷ୍ୟମାନଙ୍କୁ ହିଁ ଯଜ୍ଞ ଓ ସେବା ଆଦିର ଭୋକ୍ତା ବୋଲି ଭାବନ୍ତି; ଏହିହେତୁ ସେମାନେ ଅଳ୍ପ ଓ କ୍ଷଣସ୍ଥାୟୀ ଫଳର ଭାଗୀ ହୁଅନ୍ତି (୭/୨୩) । ତେଣୁ ସେମାନଙ୍କୁ ଯଥାର୍ଥ ଶାନ୍ତି ମିଳେ ନାହିଁ । କିନ୍ତୁ ଯେଉଁ ପୁରୁଷ ଭଗବାନଙ୍କର ତତ୍ତ୍ୱ ଓ ପ୍ରଭାବ ଜାଣନ୍ତି, ସେ ସମସ୍ତଙ୍କ ଭିତରେ ଆତ୍ମସ୍ୱରୂପରେ ବିରାଜିତ ଭଗବାନଙ୍କୁ ହିଁ ଦେଖନ୍ତି । ଏହିପରି ପ୍ରତ୍ୟେକ ପ୍ରାଣୀ ମଧ୍ୟରେ ଭଗବାନ୍ ଅଛନ୍ତି– ଏହି ବୁଦ୍ଧି ହୋଇଯାଇଥିବାରୁ, ସେ ଯେତେବେଳେ ସେହି ପ୍ରାଣୀମାନଙ୍କର ସେବା କରନ୍ତି, ସେତେବେଳେ ସେ ଅନୁଭବ କରନ୍ତି ଯେ, ମୁଁ ଦେବ-ବ୍ରାହ୍ମଣ ବା ଦୀନ-ଦୁଃଖୀ ଆଦିରୂପରେ ନିଜର ପରମପୂଜନୀୟ, ପରମପ୍ରେମାସ୍ପଦ ସର୍ବବ୍ୟାପୀ ଶ୍ରୀଭଗବାନଙ୍କୁ ହିଁ ସେବା କରୁଛି ।

ମନୁଷ୍ୟ ଯାହାଙ୍କୁ ଶ୍ରେଷ୍ଠ ବା ସମ୍ମାନନୀୟ ବୋଲି ଭାବେ, ଯାହାଙ୍କ ଠାରେ ତା'ର କିଛି ବି ଶ୍ରଦ୍ଧା-ଭକ୍ତି ଥାଏ, ଯାହାଙ୍କ ପ୍ରତି ଟିକିଏ ବି ଆନ୍ତରିକ ପ୍ରେମ ଥାଏ, ତାଙ୍କରି ସେବା କଲେ ହିଁ ସେ ବିଶେଷ ଆନନ୍ଦ ଓ ଅପାର ଶାନ୍ତି ଅନୁଭବ କରେ । ପିତୃଭକ୍ତ ପୁତ୍ର ନିଜ ପିତାଙ୍କର ସେବା କଲେ, ସ୍ନେହମୟୀ ମାତା ପୁତ୍ରର ସେବା କଲେ, ପ୍ରେମପ୍ରତିମା ପତ୍ନୀ ନିଜ ପତିଙ୍କର ସେବା କଲେ, କଣ କେବେ ବି କ୍ଳାନ୍ତି ଅନୁଭବ କରନ୍ତି ? ଯେ ପ୍ରକୃତ ଶିଷ୍ୟ, ଯେ ଅନୁଗାମୀ ମନୁଷ୍ୟ, ସେ କଣ ନିଜର ପୂଜ୍ୟଗୁରୁ ବା ପଥପ୍ରଦର୍ଶକ ମହାତ୍ମାଙ୍କ ସେବାରୁ କୌଣସି ବି କାରଣରୁ ଓହରିଯିବାକୁ ଇଚ୍ଛା କରେ ? ଯେଉଁ ପୁରୁଷ ବା ସ୍ତ୍ରୀ ଯେଉଁମାନଙ୍କ ଦୃଷ୍ଟିରେ ଗୌରବମୟ, ପ୍ରଭାବଶାଳୀ ବା ପ୍ରେମର ପାତ୍ର ଅଟନ୍ତି, ସେମାନଙ୍କର ସେବା କରିବାକୁ ସେମାନଙ୍କ ଭିତରେ ପ୍ରତିମୁହୂର୍ତ୍ତରେ ନବ ନବ ଉତ୍ସାହର ଲହରୀ ଉତ୍ପନ୍ନ ହୁଏ; ସେମାନଙ୍କର ମନ କହୁଥାଏ, ଏମାନଙ୍କର ଯେତେ ସେବା କଲେ ବି, ତାହା ଯଥେଷ୍ଟ ହେବ ନାହିଁ । ଉକ୍ତ ସେବାଦ୍ୱାରା ସେମାନେ କଦାପି ଭାବନ୍ତି ନାହିଁ ଯେ, ଆମ୍ଭେମାନେ ଏମାନଙ୍କର ଉପକାର କରୁଛୁ; ସେମାନଙ୍କ ମନରେ ଉକ୍ତ ସେବାଲାଗି କୌଣସିପ୍ରକାର ଅଭିମାନ ଜାତ ହୁଏ ନାହିଁ, ବରଂ ଏପରି ସେବା କରିବାର ଅବସର ମିଳିବା ହିଁ ଏକ ସୌଭାଗ୍ୟ ବୋଲି ସେମାନେ ଭାବନ୍ତି । ଏପରି ସେବା କରିବାକୁ ଯେତେ ସୁଯୋଗ ମିଳେ, ସେମାନଙ୍କ ଭିତରେ ବିନୟଶୀଳତା ଓ ପ୍ରକୃତ ନମ୍ରତା ସେତେ ବଢ଼ିଯାଏ । ସେମାନେ କୃତଜ୍ଞତା ଦାବି କରିବେ କଣ, ଓଲଟି ସେମାନଙ୍କ ଭିତରେ ପଦେ ପଦେ ଭୟ ରହେ ଯେ, 'ଏପରି ସୌଭାଗ୍ୟରୁ କାଳେ ଆମ୍ଭମାନଙ୍କୁ ବଞ୍ଚିତ ହେବାକୁ ପଡ଼ିବ !' ସେବାଦ୍ୱାରା ଚିତ୍ତରେ ଅପୂର୍ବ ଶାନ୍ତି ଉପଲବ୍ଧ କରନ୍ତି ବୋଲି ସେମାନେ ସେବା କରନ୍ତି । କିନ୍ତୁ ସେହି ଶାନ୍ତି ସେମାନଙ୍କୁ ସେବାରୁ ନିବୃତ୍ତ କରିପାରେ ନାହିଁ; କାରଣ ସେମାନଙ୍କର ଚିତ୍ତ ନିରନ୍ତର ଆନନ୍ଦାତିଶଯ୍ୟରେ ଉଚ୍ଛୁଳୁଥାଏ ଏବଂ ସେମାନେ ଉକ୍ତ ଆନନ୍ଦରେ ତୃପ୍ତ ନ ହୋଇ ଅଧିକରୁ ଅଧିକ ସେବା କରିବାକୁ ଇଚ୍ଛା କରନ୍ତି ।

ଯଦି ସାଂସାରିକ ଗୌରବ, ପ୍ରଭାବ ଓ ପ୍ରେମକ୍ଷେତ୍ରରେ ସେବା ଏତେ ଶୁଦ୍ଧ, ଏତେ ସୁନ୍ଦର ଓ ଏତେ ଶାନ୍ତିପ୍ରଦ ହୋଇପାରେ, ତେବେ ଭଗବାନଙ୍କର ଯେଉଁ ଭକ୍ତ ସକଳରୂପରେ ଅଖିଳ ଜଗତର ପରମପୂଜ୍ୟ, ଦେବାଧିଦେବ, ସର୍ବଶକ୍ତିମାନ୍, ପରମଗୌରବ ତଥା ଅଚିନ୍ତ୍ୟ ପ୍ରଭାବର ନିତ୍ୟଧାମ ଓ ନିଜର ପରମପ୍ରିୟତମ ଭଗବାନଙ୍କୁ ଦର୍ଶନ କରି, ନିଜର ବିଶୁଦ୍ଧ ସେବାବୃତ୍ତିକୁ ହୃଦୟର ଅକୃତ୍ରିମ ବିଶ୍ୱାସରେ ଓ ତାଙ୍କ ଆଡ଼କୁ ନିରନ୍ତର ପ୍ରବାହିତ ହେଉଥିବା ପବିତ୍ର ଓ ଅବିରଳ ପ୍ରେମର ସୁଧାମୟୀ ମଧୁରଧାରାରେ ସମ୍ପୂର୍ଣ୍ଣଭାବରେ ନିମଜ୍ଜିତ କରି ପ୍ରଭୁଙ୍କର ପୂଜା କରନ୍ତି, ତାଙ୍କୁ କେତେ ଓ କିପରି ଅଲୌକିକ ଆନନ୍ଦ ତଥା କେତେ ଓ କିପରି ଅପୂର୍ବ ଶାନ୍ତି ଯେ ମିଳୁଥିବ, ତାହା ଅକଳନୀୟ ତଥା ଅବର୍ଣ୍ଣନୀୟ। ଭଗବତ୍ କୃପାରୁ ଯାହାଙ୍କୁ ଏପରି ସୌଭାଗ୍ୟ ମିଳୁଥିବ, ସେ ହିଁ ବସ୍ତୁତଃ ତାହା ଅନୁଭବ କରିପାରିବେ।

**ପ୍ରଶ୍ନ –** 'ଭଗବାନଙ୍କୁ **ସର୍ବଲୋକମହେଶ୍ୱର** ବୋଲି ବୁଝିବା' କଣ ଏବଂ ଏପରି ବୁଝିପାରିଥିବା ଲୋକଙ୍କୁ ଶାନ୍ତି କିପରି ମିଳେ ?

**ଉତ୍ତର –** ଇନ୍ଦ୍ର, ବରୁଣ, କୁବେର, ଯମରାଜ ଆଦି ଯେତେସବୁ ଲୋକପାଳ ଅଛନ୍ତି ତଥା ବିଭିନ୍ନ ବ୍ରହ୍ମାଣ୍ଡରେ ନିଜ ନିଜର ବ୍ରହ୍ମାଣ୍ଡକୁ ନିୟନ୍ତ୍ରଣ କରୁଥିବା ଯେତେସବୁ ଈଶ୍ୱର ଅଛନ୍ତି, ଭଗବାନ ହେଉଛନ୍ତି ସେହି ସମସ୍ତଙ୍କର ସ୍ୱାମୀ ଓ ମହାନ୍ ଈଶ୍ୱର। ତେଣୁ ଶ୍ରୁତି କହନ୍ତି **ତମୀଶ୍ୱରାଣାଂ ପରମଂ ମହେଶ୍ୱରମ୍** ଅର୍ଥାତ୍ 'ସେହି ଈଶ୍ୱରମାନଙ୍କର ପରମ ମହେଶ୍ୱରଙ୍କୁ---।' (ଶ୍ୱେତାଶ୍ୱତର ଉ.୬/୭)। ନିଜର ଅନିର୍ବଚନୀୟ ମାୟାଶକ୍ତିଦ୍ୱାରା ଭଗବାନ୍ ଅବଲୀଳାକ୍ରମେ ହିଁ ଅନନ୍ତକୋଟି ବ୍ରହ୍ମାଣ୍ଡର ଉତ୍ପତ୍ତି, ସ୍ଥିତି ଓ ସଂହାର କରି ସମସ୍ତଙ୍କୁ ଯଥାଯୋଗ୍ୟ ନିୟନ୍ତ୍ରଣରେ ରଖନ୍ତି ଏବଂ ଏପରି କରୁଥିଲେ ମଧ୍ୟ ସେ ସମସ୍ତଙ୍କର ଊର୍ଦ୍ଧ୍ୱରେ ରହନ୍ତି। ଏପରିଭାବରେ ଭଗବାନଙ୍କୁ ସର୍ବଶକ୍ତିମାନ୍, ସର୍ବନିୟନ୍ତା, ସର୍ବାଧ୍ୟକ୍ଷ ଓ ସର୍ବେଶ୍ୱର ବୋଲି ବୁଝିବା ହିଁ ତାଙ୍କୁ ସର୍ବଲୋକମହେଶ୍ୱର ବୋଲି ବୁଝିବା।

ଏପରି ବୁଝିପାରିଥିବା ଭକ୍ତ ଭଗବାନଙ୍କର ମହାନ୍ ପ୍ରଭାବ ଓ ରହସ୍ୟ ବିଷୟରେ ଅଭିଜ୍ଞ ହୋଇଥିବାରୁ ପ୍ରଭୁଙ୍କୁ କ୍ଷଣକପାଇଁ ବି ଭୁଲିପାରନ୍ତି ନାହିଁ। ସେ ସର୍ବଥା ନିର୍ଭୟ ଓ ନିଶ୍ଚିନ୍ତ ହୋଇ ତାଙ୍କର ଅନନ୍ୟ ଚିନ୍ତନ କରନ୍ତି। ଶାନ୍ତିରେ ବିଘ୍ନ ଘଟାଉଥିବା କାମକ୍ରୋଧାଦି ଶତ୍ରୁ ବି ତାଙ୍କ ପାଖରେ ପଶିପାରନ୍ତି ନାହିଁ। ତାଙ୍କ ଦୃଷ୍ଟିରେ ଭଗବାନଙ୍କ ଠାରୁ ବଡ଼ ହୋଇ ଆଉ କେହି ନାହାନ୍ତି। ତେଣୁ ସେ ତାଙ୍କର ଚିନ୍ତନରେ ମଗ୍ନ ହୋଇ ନିତ୍ୟନିରନ୍ତର ପରମଶାନ୍ତି ଓ ଆନନ୍ଦର ସାଗର ଭଗବାନଙ୍କ ଧ୍ୟାନରେ ହିଁ ବୁଡ଼ିରହନ୍ତି।

**ପ୍ରଶ୍ନ –** ଭଗବାନ୍ ସକଳ ପ୍ରାଣୀଙ୍କ ସୁହୃଦ କିପରି ଏବଂ ତାଙ୍କୁ ସୁହୃଦ ବୋଲି ଜାଣିଲେ ଶାନ୍ତି ମିଳେ କିପରି ?

**ଉତ୍ତର –** ସମଗ୍ର ଜଗତରେ ଏପରି କୌଣସି ବି ବସ୍ତୁ ନାହିଁ, ଯାହା କି ଭଗବାନଙ୍କୁ ପ୍ରାପ୍ତ ହୁଏ ନା ବା ଯାହା ସହିତ ଭଗବାନଙ୍କର କେଉଁଠି କିଛି ସ୍ୱାର୍ଥସମ୍ବନ୍ଧ ରହିଛି। ଭଗବାନ୍ ତ ସଦାସର୍ବଦା ସକଳଭାବରେ ପୂର୍ଣ୍ଣକାମ (୩/୨୨); ତଥାପି ଦୟାମୟସ୍ୱରୂପ ହୋଇଥିବାରୁ ସେ ସ୍ୱଭାବତଃ ସମସ୍ତଙ୍କୁ ଅନୁଗ୍ରହ କରି ସମସ୍ତଙ୍କ ହିତପାଇଁ ବ୍ୟବସ୍ଥା କରନ୍ତି। ଜଗତରେ ବାରମ୍ବାର ଅବତୀର୍ଣ୍ଣ ହୋଇ ସେ ଏପରି ବିବିଧ ବିଚିତ୍ର ଲୀଳା କରନ୍ତି ଯେ, ତାହା ଗାଇ ଗାଇ ହିଁ ଲୋକେ ତରିଯାଆନ୍ତି। ତାଙ୍କର ପ୍ରତ୍ୟେକ କ୍ରିୟା ଜଗତର ମଙ୍ଗଳନିମନ୍ତେ ହୁଏ। ଭଗବାନ୍ ଯାହାଙ୍କୁ ମାରନ୍ତି ବା ଦଣ୍ଡ ଦିଅନ୍ତି, ସେମାନଙ୍କୁ ବି ଦୟା ହିଁ କରନ୍ତି; ତାଙ୍କର କୌଣସି ବିଧାନ ଦୟାରହିତ ଓ ପ୍ରେମରହିତ ନୁହେଁ। ତେଣୁ ଭଗବାନ୍ ସମସ୍ତଙ୍କର ସୁହୃଦ ଅଟନ୍ତି।

ଲୋକେ ଏହି ରହସ୍ୟଟି ବୁଝିପାରନ୍ତି ନାହିଁ; ତେଣୁ ସେମାନେ ଲୌକିକଦୃଷ୍ଟିରୁ ଇଷ୍ଟ-ଅନିଷ୍ଟପ୍ରାପ୍ତିରେ ସୁଖୀ-ଦୁଃଖୀ ହୁଅନ୍ତି ଏବଂ ପରିଣାମରେ ଶାନ୍ତି ପାଆନ୍ତି ନାହିଁ। 'ଭଗବାନ୍ ମୋର ଅହୈତୁକ ବନ୍ଧୁ ଅଟନ୍ତି; ସେ ଯାହା କିଛି କରନ୍ତି, ମୋର ମଙ୍ଗଳନିମନ୍ତେ ହିଁ କରନ୍ତି।' —ଯେଉଁ ଲୋକେ ଏହା ବୁଝିପାରନ୍ତି ଏବଂ ବିଶ୍ୱାସ ବି କରନ୍ତି, ସେମାନେ ଯେତେବେଳେ ଯାହା କିଛି ବି ହୁଏ, ତାହାକୁ ଦୟାମୟ ପରମେଶ୍ୱରଙ୍କ ପ୍ରେମ ଓ ଦୟାରେ ଓତପ୍ରୋତ ମଙ୍ଗଳବିଧାନ ବୋଲି ବୁଝି ସଦା ପ୍ରସନ୍ନ ରହନ୍ତି। ତେଣୁ ସେମାନଙ୍କୁ ଅଟଳ ଶାନ୍ତି ମିଳିଯାଏ। ସେମାନଙ୍କ ଶାନ୍ତିରେ କୌଣସିପ୍ରକାର ବାଧା ଉପୁଜିବାର କୌଣସି ବି କାରଣ ରହେ ନାହିଁ।

ସଂସାରରେ ଯଦି କୌଣସି ସାଧାରଣ ମନୁଷ୍ୟ ପ୍ରତି କୌଣସି ପ୍ରଭାବଶାଳୀ ଉଚ୍ଚପଦସ୍ଥ ଅଧିକାରୀଙ୍କର ବା ରାଜା-ମହାରାଜାଙ୍କର ସୁହୃଦ୍‌ଭାବ ହୋଇଯାଏ ଏବଂ ସେହି ମନୁଷ୍ୟ ଯଦି ଏକଥା ଜାଣିଯାଏ ଯେ, ଅମୁକ ପ୍ରଭାବଶାଳୀ ଅଧିକାରୀ ବା ରାଜା-ମହାରାଜ ତା'ର

ଯଥାର୍ଥ ହିତ ଚାହାଁନ୍ତି ଏବଂ ତାଙ୍କୁ ରକ୍ଷା କରିବାକୁ ପ୍ରସ୍ତୁତ, ତେବେ ଉକ୍ତ ପ୍ରଭାବଶାଳୀ ଅଧିକାରୀ ବା ରାଜା-ମହାରାଜ ସର୍ବଥା ନିଃସ୍ୱାର୍ଥ ନ ହୋଇଥିଲେ ବି, ସର୍ବଶକ୍ତିମାନ୍ ନ ହୋଇଥିଲେ ବି ଏବଂ ସମସ୍ତଙ୍କର ସ୍ୱାମୀ ନ ହୋଇଥିଲେ ବି ସେହି ମନୁଷ୍ୟ ଏକପ୍ରକାରେ ନିଶ୍ଚିତ ନିର୍ଭୀକ ହୋଇ ନିଜକୁ ଅତ୍ୟନ୍ତ ଭାଗ୍ୟବାନ୍ ବୋଲି ବୁଝି ଆନନ୍ଦରେ ମଗ୍ନ ହୋଇଯାଏ। ପୁଣି ସର୍ବଶକ୍ତିମାନ୍, ସର୍ବଲୋକମହେଶ୍ୱର, ସର୍ବନିୟନ୍ତା, ସର୍ବାନ୍ତର୍ଯାମୀ, ସର୍ବଦର୍ଶୀ, ଅନନ୍ତ ଅଚିନ୍ତ୍ୟ ଗୁଣର ସାଗର ପରମପ୍ରେମୀ ପରମେଶ୍ୱର ଯଦି ନିଜକୁ ଆମର ସୁହୃଦ୍ ବୋଲି କହିଦେବେ ଏବଂ ଆମେ ତାହା ବିଶ୍ୱାସ କରି ନିଜକୁ ପ୍ରଭୁଙ୍କର ସୁହୃଦ୍ ବୋଲି ମାନିନେବା, ତେବେ ଆମକୁ କେତେ ଯେ ଅଲୌକିକ ଆନନ୍ଦ ଓ କେତେ ଯେ ଅପୂର୍ବ ଶାନ୍ତି ମିଳିବ, ତାହା କଳନା କରିବ କିଏ ? ଏହା ଅନୁମାନ କରିବା ବି କଠିନ।

**ପ୍ରଶ୍ନ —** ଏପରିଭାବରେ ଯେ ଭଗବାନଙ୍କୁ ସକଳ ଯଜ୍ଞ-ତପର ଭୋକ୍ତା, ସମସ୍ତ ଲୋକର ମହେଶ୍ୱର ଏବଂ ସକଳ ପ୍ରାଣୀଙ୍କର ସୁହୃଦ୍ — ଏହି ତିନୋଟିଯାକ ଲକ୍ଷଣରେ ଯୁକ୍ତ ବୋଲି ଜାଣନ୍ତି, ସେ ହିଁ ଶାନ୍ତି ପାଆନ୍ତି, ନା ଏ ଭିତରୁ ଯେକୌଣସି ଗୋଟିଏ ଲକ୍ଷଣରେ ଯୁକ୍ତ ବୋଲି ଜାଣିଥିବା ଲୋକ ବି ଶାନ୍ତି ପାଆନ୍ତି ?

**ଉତ୍ତର —** ଭଗବାନଙ୍କୁ ଏହି ତିନୋଟି ମଧ୍ୟରୁ ଯେ କୌଣସି ଗୋଟିଏ ଲକ୍ଷଣରେ ଯୁକ୍ତ ବୋଲି ଜାଣିଗଲେ ବି ଶାନ୍ତି ମିଳେ; ତିନୋଟିଯାକ ଲକ୍ଷଣରେ ଯୁକ୍ତ ବୋଲି ବୁଝିବା ଲୋକ କଥା ଆଉ କଣ କହିବା! କାରଣ, ଯେ ପ୍ରଭୁଙ୍କୁ ଏଥିରୁ କୌଣସି ଗୋଟିଏ ଲକ୍ଷଣରେ ଯୁକ୍ତ ବୋଲି ଜାଣିପାରନ୍ତି, ସେ ଅନନ୍ୟଭାବରେ ପ୍ରଭୁଙ୍କୁ ଭଜନ ନ କରି ରହିପାରନ୍ତି ନାହିଁ। ଭଜନପ୍ରଭାବରୁ ତାଙ୍କ ଉପରେ ଭଗବତ୍‌କୃପା ବୃଷ୍ଟି ହୁଏ ଏବଂ ଭଗବତ୍-କୃପାରୁ ସେ ଅତି ଶୀଘ୍ର ଭଗବାନଙ୍କର ସ୍ୱରୂପ, ପ୍ରଭାବ, ତତ୍ତ୍ୱ ତଥା ଗୁଣମାନ ବୁଝି ପୂର୍ଣ୍ଣଶାନ୍ତି ପ୍ରାପ୍ତ ହୁଅନ୍ତି।

ଆହା ! ମନୁଷ୍ୟ ଯେତେବେଳେ ଉପଲବ୍ଧି କରିପାରିବ ଯେ, ସକଳ ଦେବତା ଓ ମହର୍ଷିମାନଙ୍କର ପୂଜିତ ଭଗବାନ୍, ସମସ୍ତ ଯଜ୍ଞ-ତପର ଏକମାତ୍ର ଭୋକ୍ତା ଏବଂ ସକଳ ଈଶ୍ୱରଙ୍କର ତଥା ଅଖିଳ ବ୍ରହ୍ମାଣ୍ଡର ପରମ ମହେଶ୍ୱର ତା'ର ପରମପ୍ରେମୀ ବନ୍ଧୁ, ସେତେବେଳେ ସେ କେତେ ଆନନ୍ଦ, କେତେ ଶାନ୍ତି ନ ପାଇବ ! ସେ ନିଶ୍ଚୟ ଅନୁଭବ କରିବ, "କାହିଁ ମୋପରି ଜଣେ କ୍ଷୁଦ୍ରତମ ନଗଣ୍ୟ ମନୁଷ୍ୟ ଏବଂ କାହାନ୍ତି ନିଜର ଅନନ୍ତ ଅଚିନ୍ତ୍ୟ ମହିମାରେ ନିତ୍ୟସ୍ଥିତ ମହାନ୍ ମହେଶ୍ୱର ଭଗବାନ୍ ! ଆହା ! ମୋଠାରୁ ବଳି ଭାଗ୍ୟବାନ୍ ଆଉ କିଏ ବା ଥିବ !" ଏବଂ ସେତେବେଳେ ସେ ହୃଦୟର କେତେ କୃତଜ୍ଞତା ନେଇ, କେତେ ପବିତ୍ର ଭାବନାରେ ସିକ୍ତ ହୋଇ କେଉଁ ଆନନ୍ଦାର୍ଣ୍ଣବରେ ନିମଜ୍ଜିତ ହୋଇ ଭଗବାନଙ୍କର ପାବନ ଚରଣରେ ଚିରକାଳପାଇଁ ଲୋଟି ନ ଯିବ ! !

**ପ୍ରଶ୍ନ —** 'ଭଗବାନ୍ ସକଳ ଯଜ୍ଞ ଓ ତପର ଭୋକ୍ତା, ସର୍ବଲୋକର ମହେଶ୍ୱର ଏବଂ ସକଳ ପ୍ରାଣୀଙ୍କର ପରମ ସୁହୃଦ୍' — ଏହା ଉପଲବ୍ଧି କରିପାରିବାର ଉପାୟ କଣ ? କେଉଁ ସାଧନା କଲେ ମନୁଷ୍ୟ ଭଗବାନଙ୍କର ସ୍ୱରୂପ, ପ୍ରଭାବ, ତତ୍ତ୍ୱ ଓ ଗୁଣମାନଙ୍କୁ ଭଲରୂପେ ବୁଝିପାରି ତାଙ୍କର ଅନନ୍ୟ ଭକ୍ତ ହୋଇପାରିବ ?

**ଉତ୍ତର —** ଶ୍ରଦ୍ଧା ଓ ପ୍ରେମର ସହିତ ମହାପୁରୁଷମାନଙ୍କର ସତ୍‌ସଙ୍ଗ କଲେ, ସତ୍‌ଶାସ୍ତ୍ର ଶ୍ରବଣ-ମନନ କଲେ ଏବଂ ଭଗବାନଙ୍କର ଶରଣାପନ୍ନ ହୋଇ ଅତ୍ୟନ୍ତ ଉତ୍ସୁକତାର ସହିତ ତାଙ୍କୁ ପ୍ରାର୍ଥନା କଲେ, ତାଙ୍କରି ଦୟାରୁ ମନୁଷ୍ୟ ଭଗବାନଙ୍କର ସ୍ୱରୂପ, ପ୍ରଭାବ, ତତ୍ତ୍ୱ ଏବଂ ଗୁଣମାନ ବୁଝିପାରି ତାଙ୍କର ଅନନ୍ୟ ଭକ୍ତ ହୋଇପାରେ।

**ପ୍ରଶ୍ନ —** ଏଠାରେ **ମାମ୍** ପଦଦ୍ୱାରା ଭଗବାନ୍ ନିଜର କେଉଁ ସ୍ୱରୂପକୁ ଦର୍ଶାଉଛନ୍ତି ?

**ଉତ୍ତର —** ଯେଉଁ ପରମେଶ୍ୱର ଅଜ, ଅବିନାଶୀ ଓ ସକଳ ପ୍ରାଣୀଙ୍କର ମହାନ୍ ଈଶ୍ୱର ହୋଇ ମଧ୍ୟ ଯେତେବେଳେ ନିଜର ପ୍ରକୃତିକୁ ସ୍ୱୀକାର କରି ଲୀଳା କରିବା ନିମନ୍ତେ ଯୋଗମାୟାଦ୍ୱାରା ସଂସାରରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ଯେ ଶ୍ରୀକୃଷ୍ଣରୂପରେ ଅବତୀର୍ଣ୍ଣ ହୋଇ ଅର୍ଜୁନଙ୍କୁ ଉପଦେଶ ଦେଉଛନ୍ତି, ସେହି ନିର୍ଗୁଣ, ସଗୁଣ, ନିରାକାର ସାକାର ଓ ବ୍ୟକ୍ତ-ଅବ୍ୟକ୍ତସ୍ୱରୂପ, ସର୍ବରୂପ ପରବ୍ରହ୍ମ ପରମାତ୍ମା, ସର୍ବଶକ୍ତିମାନ୍, ସର୍ବବ୍ୟାପୀ, ସର୍ବାଧାର ଓ ସର୍ବଲୋକମହେଶ୍ୱର ସମଗ୍ର ପରମେଶ୍ୱରଙ୍କୁ ଲକ୍ଷ୍ୟ କରି ଭଗବାନ୍ ଏଠାରେ **ମାମ୍** ପଦ ପ୍ରୟୋଗ କରିଛନ୍ତି।

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କର୍ମସନ୍ନ୍ୟାସଯୋଗୋ*
*ନାମ ପଞ୍ଚମୋଽଧ୍ୟାୟଃ ॥ ୫ ॥*

ଓଁ ଶ୍ରୀପରମାତ୍ମନେ ନମଃ

# ଷଷ୍ଠୋଽଧ୍ୟାୟଃ

## ଆତ୍ମସଂଯମଯୋଗ

**ଅଧ୍ୟାୟର ନାମ :** କର୍ମଯୋଗ ଓ ସାଂଖ୍ୟଯୋଗ ଏହି ଉଭୟ ସାଧନାରେ ଧ୍ୟାନଯୋଗ ଉପଯୋଗୀ ହେଉଥିବାରୁ ଏହି ଷଷ୍ଠ ଅଧ୍ୟାୟରେ ଧ୍ୟାନଯୋଗ ବିଷୟ ଭଲଭାବରେ ବର୍ଣ୍ଣନା କରାଯାଇଛି। ଧ୍ୟାନଯୋଗରେ ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧି— ଏସବୁର ସଂଯମ ଏକାନ୍ତ ଆବଶ୍ୟକ। ଏ ସବୁକୁ 'ଆତ୍ମା' କୁହାଯାଏ ଓ ଏହି ଅଧ୍ୟାୟରେ ଏମାନଙ୍କ ସଂଯମ ବିଷୟରେ ବିଶେଷରୂପେ ବର୍ଣ୍ଣନା ହୋଇଛି। ତେଣୁ ଏହି ଅଧ୍ୟାୟର ନାମ 'ଆତ୍ମସଂଯମଯୋଗ' ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ କର୍ମଯୋଗୀଙ୍କୁ ପ୍ରଶଂସା କରାଯାଇଛି। ଦ୍ୱିତୀୟରେ ସନ୍ନ୍ୟାସ ଓ କର୍ମଯୋଗର ଏକତ୍ୱ ପ୍ରତିପାଦନ କରି, ତୃତୀୟରେ କର୍ମଯୋଗସାଧନା ବର୍ଣ୍ଣିତ ହୋଇଛି। ଚତୁର୍ଥରେ ଯୋଗାରୂଢ଼ ପୁରୁଷଙ୍କ ଲକ୍ଷଣ କୁହାଯାଇଛି। ପଞ୍ଚମରେ ମନୁଷ୍ୟକୁ ଯୋଗାରୂଢ଼ ଅବସ୍ଥା ପ୍ରାପ୍ତି କରିବାକୁ ଉତ୍ସାହିତ କରି ତା'ର କର୍ତ୍ତବ୍ୟ ନିରୂପଣ କରାଯାଇଛି। ଷଷ୍ଠରେ 'ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ'— ଏହି ପୂର୍ବୋକ୍ତ କଥାର ରହସ୍ୟ ବୁଝାଇ, ସପ୍ତମରେ ଶରୀର, ମନ, ଇନ୍ଦ୍ରିୟାଦିକୁ ଜୟ କରିବାର ଫଳ କୁହାଯାଇଛି। ଅଷ୍ଟମ ଓ ନବମରେ ପରମାତ୍ମାଙ୍କୁ ପାଇଥିବା ପୁରୁଷଙ୍କ ଲକ୍ଷଣ ଓ ମହତ୍ତ୍ୱ ବର୍ଣ୍ଣିତ ହୋଇଛି। ଦଶମରେ ଧ୍ୟାନଯୋଗପାଇଁ ପ୍ରେରଣା ଦେଇ ପୁଣି ଏଗାରଠାରୁ ଚଉଦଯାଏ କ୍ରମଶଃ ସ୍ଥାନ, ଆସନ ତଥା ଧ୍ୟାନଯୋଗର ବିଧି କୁହାଯାଇଛି। ପନ୍ଦରରେ ଧ୍ୟାନଯୋଗର ଫଳ କୁହାଯାଇଛି। ଷୋହଳ ଓ ସତରରେ ଧ୍ୟାନଯୋଗପାଇଁ ଉପଯୁକ୍ତ ଆହାର-ବିହାରର ତଥା ଶୟନାଦିର ନିୟମ ଓ ସେସବୁର ଫଳ କୁହାଯାଇଛି। ଅଠରରେ ଧ୍ୟାନଯୋଗର ଅନ୍ତିମ ସ୍ଥିତି ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଲକ୍ଷଣ କହି ଉଣେଇଶରେ ଦୀପକର ଦୃଷ୍ଟାନ୍ତ ଦେଇ ଯୋଗୀଙ୍କ ଚିତ୍ତର ସ୍ଥିତି ବର୍ଣ୍ଣନା କରାଯାଇଛି। ତା'ପରେ କୋଡ଼ିଏରୁ ବାଇଶଯାଏ ଧ୍ୟାନଯୋଗଦ୍ୱାରା ପରମାତ୍ମପ୍ରାପ୍ତ ପୁରୁଷଙ୍କ ସ୍ଥିତି ବର୍ଣ୍ଣନା କରି, ତେଇଶରେ ସେହି ସ୍ଥିତିର ନାମ 'ଯୋଗ' ବୋଲି କହିଛନ୍ତି ଏବଂ ତାହା ପାଇବାକୁ ପ୍ରେରଣା ଦେଇଛନ୍ତି। ଚବିଶ ଓ ପଚିଶରେ ଅଭେଦରୂପରେ ପରମାତ୍ମାଙ୍କ ଧ୍ୟାନଯୋଗସାଧନାର ପ୍ରଣାଳୀ ବୁଝାଇ ଛବିଶରେ ବିଷୟଭୋଗରେ ବିଚରଣ କରୁଥିବା ମନକୁ ବାରମ୍ବାର ଟାଣିଆଣି ପରମାତ୍ମାଙ୍କ ଠାରେ ଲଗାଇବାକୁ ପ୍ରେରଣା ଦିଆଯାଇଛି। ସତେଇଶ ଓ ଅଠେଇଶରେ ଧ୍ୟାନଯୋଗର ଫଳସ୍ୱରୂପ ଆତ୍ୟନ୍ତିକ ସୁଖ ମିଳେ ବୋଲି କୁହାଯାଇଛି। ଅଣତିରିଶରେ ସାଂଖ୍ୟଯୋଗୀଙ୍କ ବ୍ୟବହାରକାଳର ସ୍ଥିତି ବୁଝାଇ, ତିରିଶରେ ଭକ୍ତିଯୋଗ ସାଧନା କରୁଥିବା ଯୋଗୀଙ୍କର ଅନ୍ତିମ ସ୍ଥିତି ଓ ତାଙ୍କର ସର୍ବତ୍ର ଭଗବତ୍‌ଦର୍ଶନ ବିଷୟ ବର୍ଣ୍ଣନା କରାଯାଇଛି। ଏକତିରିଶରେ ଭକ୍ତିଦ୍ୱାରା ଭଗବାନଙ୍କୁ ପାଇଥିବା ତଥା ବତିଶରେ ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କୁ ପାଇଥିବା ପୁରୁଷମାନଙ୍କର ଲକ୍ଷଣ ଓ ମହତ୍ତ୍ୱ ନିରୂପଣ କରାଯାଇଛି। ତେତିଶରେ ଅର୍ଜୁନ ମନର ଚଞ୍ଚଳତାଯୋଗୁଁ ସମତ୍ୱଯୋଗରେ ସ୍ଥିରତା ରଖିପାରିବା କଠିନ ବୋଲି କହି ଚଉତିରିଶରେ ମନନିଗ୍ରହ ମଧ୍ୟ ଅତ୍ୟନ୍ତ କଠିନ ବୋଲି କହିଛନ୍ତି। ପଞ୍ଚତିରିଶରେ ଭଗବାନ୍ ଅର୍ଜୁନଙ୍କ ମନ୍ତବ୍ୟକୁ ସ୍ୱୀକାର କରି ମନନିଗ୍ରହର ଉପାୟ କହିଛନ୍ତି। ଛତିଶରେ ମନକୁ ବଶ ନ କଲେ ଯୋଗ ଦୁଷ୍ପ୍ରାପ୍ୟ ହୁଏ ବୋଲି ବୁଝାଇଛନ୍ତି ଓ ମନକୁ ବଶ କଲେ ଯୋଗ ପ୍ରାପ୍ତ ହୁଏ ବୋଲି କହିଛନ୍ତି। ଏହା ପରେ ସଇଁତିରିଶ ଓ ଅଠତିରିଶ ଶ୍ଳୋକରେ ଯୋଗଭ୍ରଷ୍ଟର ଗତି ସମ୍ବନ୍ଧରେ ଅର୍ଜୁନ ପ୍ରଶ୍ନ କରିଛନ୍ତି ଓ ଅଣଚାଳିଶରେ ସଂଶୟନିବାରଣ କରନ୍ତୁ ବୋଲି ଅର୍ଜୁନ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି। ତା'ପରେ ଚାଳିଶଠାରୁ ପଞ୍ଚଚାଳିଶଯାଏ ଅର୍ଜୁନଙ୍କ ପ୍ରଶ୍ନମାନଙ୍କର ଉତ୍ତରରେ ଭଗବାନ୍ କହିଛନ୍ତି, ଯୋଗଭ୍ରଷ୍ଟ ପୁରୁଷମାନଙ୍କର ଦୁର୍ଗତି ହୁଏ ନାହିଁ; ସେମାନେ ସ୍ୱର୍ଗାଦି ଲୋକକୁ ଯାଆନ୍ତି ତଥା ପବିତ୍ର ଧନବାନଙ୍କ ଗୃହରେ ଜନ୍ମ ହୁଅନ୍ତି ଏବଂ ବୈରାଗ୍ୟବାନ୍ ଯୋଗଭ୍ରଷ୍ଟମାନେ ଜ୍ଞାନବାନ୍

ଯୋଗୀମାନଙ୍କ ଗୃହରେ ଜନ୍ମ ହୁଅନ୍ତି ଓ ଅନାୟାସରେ ପୂର୍ବଦେହର ବୁଦ୍ଧିସଂଯୋଗ ପ୍ରାପ୍ତ ହୁଅନ୍ତି। ସେହିପରି ଶୁଚିମନ୍ତ ଧନିକମାନଙ୍କ ଗୃହରେ ଜନ୍ମ ଲଭିଥିବା ଯୋଗଭ୍ରଷ୍ଟମାନେ ମଧ୍ୟ ପୂର୍ବାଭ୍ୟାସବଳରେ ଭଗବାନଙ୍କ ପ୍ରତି ଆକର୍ଷିତ ହୁଅନ୍ତି ବୋଲି କହିଛନ୍ତି। ପୁଣି ଯୋଗସମ୍ବନ୍ଧୀୟ ଜିଜ୍ଞାସାର ମହତ୍ତ୍ୱ ଓ ଶେଷରେ ଯୋଗୀମାନଙ୍କ କୁଳରେ ଜନ୍ମିଥିବା ଯୋଗଭ୍ରଷ୍ଟଙ୍କ ପରମଗତିପ୍ରାପ୍ତି ବିଷୟ ବର୍ଣ୍ଣନା କରିଛନ୍ତି। ଏହା ପରେ ଛୟାଳିଶରେ ଯୋଗୀଙ୍କ ମହିମା ବର୍ଣ୍ଣନା କରି ଅର୍ଜୁନଙ୍କୁ ଯୋଗୀ ହେବାକୁ ଭଗବାନ୍ ଆଜ୍ଞା ଦେଇଛନ୍ତି ଓ ସତଚାଳିଶରେ ସକଳ ଯୋଗୀଙ୍କ ମଧ୍ୟରୁ ଅନନ୍ୟ ପ୍ରେମରେ ଶ୍ରଦ୍ଧାପୂର୍ବକ ଭଗବାନଙ୍କୁ ଭଜୁଥିବା ଯୋଗୀଙ୍କ ପ୍ରଶଂସା କରି ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ —** ପଞ୍ଚମ ଅଧ୍ୟାୟର ଆରମ୍ଭରେ ଅର୍ଜୁନ କର୍ମସନ୍ୟାସ (ସାଂଖ୍ୟଯୋଗ) ଓ କର୍ମଯୋଗ — ଏହି ଦୁଇଟି ମଧ୍ୟରୁ କେଉଁ ସାଧନାଟି ତାଙ୍କ ପାଇଁ ସୁନିଶ୍ଚିତ କଲ୍ୟାଣପ୍ରଦ, ତାହା ବୁଝାଇଦେବାକୁ ଭଗବାନଙ୍କୁ ପ୍ରାର୍ଥନା କରିଥିଲେ। ଏ ବିଷୟରେ ଭଗବାନ୍ ଉଭୟ ସାଧନା କଲ୍ୟାଣପ୍ରଦ ବୋଲି କହିଲେ ଓ ଉଭୟ ସମାନ ଫଳଦାୟୀ ହୋଇଥିଲେ ମଧ୍ୟ ସାଧନାରେ ସୁଗମତାଦୃଷ୍ଟିରୁ କର୍ମସନ୍ୟାସ ଅପେକ୍ଷା କର୍ମଯୋଗର ଶ୍ରେଷ୍ଠତା ପ୍ରତିପାଦନ କଲେ। ତା'ପରେ ଉଭୟ ସାଧନାର ସ୍ୱରୂପ, ବିଧି ଓ ଫଳ ଭଲରୂପେ ନିରୂପଣ କରି ଧ୍ୟାନଯୋଗକୁ ଉଭୟ ଯୋଗପାଇଁ ଅତ୍ୟନ୍ତ ଉପଯୋଗୀ ଏବଂ ପରମାତ୍ମାଙ୍କ ପ୍ରାପ୍ତିର ପ୍ରଧାନ ଉପାୟ ବୋଲି ବୁଝାଇ ସଂକ୍ଷେପରେ ଧ୍ୟାନଯୋଗ ମଧ୍ୟ ବର୍ଣ୍ଣନା କଲେ। କିନ୍ତୁ ଏ ଦୁଇଟି ମଧ୍ୟରୁ କେଉଁ ସାଧନାଟି କରିବା ଉଚିତ, ତାହା ଅର୍ଜୁନଙ୍କୁ ସ୍ପଷ୍ଟଭାବରେ ଆଜ୍ଞା ଦେଇ ନାହାନ୍ତି ଓ ଅଙ୍ଗ-ପ୍ରତ୍ୟଙ୍ଗସହ ଧ୍ୟାନଯୋଗର ବିସ୍ତୃତ ବର୍ଣ୍ଣନା କରି ନାହାନ୍ତି। ତେଣୁ ବର୍ତ୍ତମାନ ଅଙ୍ଗସହିତ ଧ୍ୟାନଯୋଗର ବିସ୍ତୃତ ବର୍ଣ୍ଣନା କରିବାକୁ ଷଷ୍ଠ ଅଧ୍ୟାୟ ଆରମ୍ଭ କରୁଛନ୍ତି ଓ ସର୍ବପ୍ରଥମେ ଅର୍ଜୁନଙ୍କୁ ଭକ୍ତିଯୁକ୍ତ କର୍ମଯୋଗରେ ପ୍ରବୃତ୍ତ କରାଇବାପାଇଁ କର୍ମଯୋଗର ପ୍ରଶଂସା କରି ପ୍ରକରଣ ଆରମ୍ଭ କରୁଛନ୍ତି —

ଶ୍ରୀଭଗବାନୁବାଚ

## ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ ।
## ସ ସଂନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନ ଚାକ୍ରିୟଃ ।। ୧ ।।

**ଅନ୍ୱୟ —** **ଯଃ** = ଯେଉଁ ପୁରୁଷ; **କର୍ମଫଳମ୍** = କର୍ମଫଳକୁ; **ଅନାଶ୍ରିତଃ** = ଆଶ୍ରୟ ନ କରି; **କାର୍ଯ୍ୟମ୍** = କରିବାଯୋଗ୍ୟ; **କର୍ମ** = କର୍ମ; **କରୋତି** = କରେ; **ସଃ** = ସେ; **ସଂନ୍ୟାସୀ** = ସନ୍ୟାସୀ; **ଚ** = ତଥା; **ଯୋଗୀ** = ଯୋଗୀ; **ଚ** = ଓ; **ନିରଗ୍ନିଃ** = କେବଳ ଅଗ୍ନି ତ୍ୟାଗ କରିଥିବା ଲୋକ; **ନ** = (ସନ୍ୟାସୀ) ନୁହେଁ; **ଚ** = ତଥା; **ଅକ୍ରିୟଃ** = କେବଳ କ୍ରିୟା ତ୍ୟାଗ କରିଥିବା; **ନ** = (ଯୋଗୀ) ନୁହେଁ।

**ଶ୍ରୀଭଗବାନ୍ କହିଲେ — ଯେଉଁ ପୁରୁଷ କର୍ମଫଳକୁ ଆଶ୍ରୟ ନ କରି କର୍ତ୍ତବ୍ୟ କର୍ମ କରନ୍ତି, ସେ ସନ୍ୟାସୀ ତଥା ଯୋଗୀ ଅଟନ୍ତି। କେବଳ ଅଗ୍ନି ତ୍ୟାଗ କରିଥିବା ମନୁଷ୍ୟ ସନ୍ୟାସୀ ନୁହେଁ, କି କେବଳ କ୍ରିୟା ତ୍ୟାଗ କରିଥିବା ମନୁଷ୍ୟ ଯୋଗୀ ନୁହେଁ।। ୧ ।।**

**ପ୍ରଶ୍ନ —** ଏଠାରେ କର୍ମଫଳର ଆଶ୍ରୟ ତ୍ୟାଗ କରିବା କଥା କୁହାଗଲା; କିନ୍ତୁ ଆସକ୍ତି ତ୍ୟାଗର କୌଣସି କଥା ଏଥିରେ ଆସି ନାହିଁ। ଏହାର କାରଣ କଣ ?

**ଉତ୍ତର —** ଯେଉଁ ପୁରୁଷର ଭୋଗରେ ବା କର୍ମରେ ଆସକ୍ତି ଥାଏ, ସେ ସର୍ବଥା କର୍ମଫଳର ଆଶ୍ରୟ ତ୍ୟାଗ କରିପାରେ ନାହିଁ। ଆସକ୍ତି ଥିବାରୁ ସ୍ୱଭାବତଃ କର୍ମଫଳପାଇଁ କାମନା ହୁଏ। ଅତଏବ ଯେ କର୍ମଫଳର ଆଶ୍ରୟ ତ୍ୟାଗ କରିଛନ୍ତି, ସେ ଆସକ୍ତି ମଧ୍ୟ ତ୍ୟାଗ କରିଛନ୍ତି ବୋଲି ବୁଝିବା ଉଚିତ। ପ୍ରତ୍ୟେକ ସ୍ଥାନରେ ସବୁ ଶବ୍ଦର ପ୍ରୟୋଗ କରାଯାଏ ନାହିଁ। ଏପରି ସ୍ଥଳରେ ସେହି ବିଷୟରେ ଅନ୍ୟତ୍ର କୁହାଯାଇଥିବା କଥା ଅଧ୍ୟାହାର କରିନେବା ଉଚିତ। ଯେଉଁଠି ଫଳତ୍ୟାଗ କଥା କୁହାଯାଇଛି ଅଥଚ

ଅଥଚ ଆସକ୍ତିତ୍ୟାଗର ଚର୍ଚ୍ଚା ହୋଇ ନାହିଁ (୨/୫୧, ୧୮/୧୧), ସେଠାରେ ଆସକ୍ତିତ୍ୟାଗ କଥା ମଧ୍ୟ ରହିଛି ବୋଲି ବୁଝିବା ଉଚିତ। ଏପରିଭାବରେ ଯେଉଁଠି ଆସକ୍ତିତ୍ୟାଗ କଥା କୁହାଯାଇଛି; କିନ୍ତୁ ଫଳତ୍ୟାଗ କଥା କୁହାଯାଇ ନାହିଁ (୩/୧୯, ୬/୪), ସେଠାରେ ଫଳତ୍ୟାଗ କଥା ମଧ୍ୟ ରହିଛି ବୋଲି ବୁଝିବା ଉଚିତ।

**ପ୍ରଶ୍ନ —** କର୍ମଫଳର ଆଶ୍ରୟ ତ୍ୟାଗ କରିବା ଅର୍ଥ କଣ ?

**ଉତ୍ତର —** ଇହଲୋକର ସ୍ତ୍ରୀ, ପୁତ୍ର, ଧନ ମାନ ଓ ବଡ଼ିମା ଆଦି ଏବଂ ପରଲୋକର ସ୍ୱର୍ଗସୁଖାଦି ଯେତେ ବି ଭୋଗ ରହିଛି, ସେସବୁକୁ 'କର୍ମଫଳ' ବୋଲି ଧରିନେବା ଉଚିତ। ସାଧାରଣ ମନୁଷ୍ୟ ଯାହା କିଛି ବି କର୍ମ କରେ, କୌଣସି ନା କୌଣସି ଫଳକୁ ଆଶ୍ରୟ କରି ହିଁ କରେ। ତେଣୁ ତା'ର କର୍ମ ତାହାକୁ ବାରମ୍ବାର ଜନ୍ମମରଣର ଚକ୍ରରେ ପକାଏ। ଅତଏବ ଇହଲୋକ ଓ ପରଲୋକର ସମସ୍ତ ଭୋଗ ଅନିତ୍ୟ, କ୍ଷଣଭଙ୍ଗୁର ଓ ଦୁଃଖର କାରଣ ବୋଲି ବୁଝି, ସମସ୍ତ କର୍ମରେ ମମତ୍ୱ, ଆସକ୍ତି ଓ ଫଳେଚ୍ଛା ସଂପୂର୍ଣ୍ଣରୂପେ ତ୍ୟାଗ କରିଦେବା ହିଁ କର୍ମଫଳର ଆଶ୍ରୟ ତ୍ୟାଗ କରିବା।

**ପ୍ରଶ୍ନ —** କରିବାଯୋଗ୍ୟ କର୍ମ କଣ ଓ ତାହା କିପରି କରିବା ଉଚିତ ?

**ଉତ୍ତର —** ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ ଯେତେ ବି ଶାସ୍ତ୍ରବିହିତ ନିତ୍ୟ-ନୈମିତ୍ତିକ ଯଜ୍ଞ, ଦାନ, ତପ, ଶରୀରନିର୍ବାହସମ୍ବନ୍ଧୀ ତଥା ଲୋକସେବା ଆଦିପାଇଁ କରାଯାଉଥିବା ଶୁଭକର୍ମ ରହିଛି, ସେସବୁ ହେଉଛି କରିବାଯୋଗ୍ୟ କର୍ମ। ଆଳସ୍ୟ ତ୍ୟାଗ କରି ଯଥାବିଧି ତଥା ଯଥାଯୋଗ୍ୟ ନିଜର ଶକ୍ତି ଅନୁସାରେ କର୍ତ୍ତବ୍ୟ ବୋଲି ଭାବି ଉତ୍ସାହପୂର୍ବକ ସେସବୁ ସର୍ବଦା କରିବା ଉଚିତ।

**ପ୍ରଶ୍ନ —** ଉପରୋକ୍ତ ପୁରୁଷ ସନ୍ନ୍ୟାସୀ ମଧ୍ୟ ଅଟନ୍ତି ଓ ଯୋଗୀ ମଧ୍ୟ ଅଟନ୍ତି— ଏ କଥାର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଏପରି କର୍ମଯୋଗୀ-ପୁରୁଷ ସମସ୍ତ ସଂକଳ୍ପ ତ୍ୟାଗ କରିଥାନ୍ତି ଓ ସେହି ଯଥାର୍ଥ ଜ୍ଞାନ ପାଉଥା'ନ୍ତି, ଯାହା କି ସାଂଖ୍ୟଯୋଗ ଓ କର୍ମଯୋଗ ଉଭୟ ନିଷ୍ଠାର ଚରମଫଳ ଅଟେ। ଏଣୁ ସେ 'ସନ୍ନ୍ୟାସିତ୍ୱ' ଓ 'ଯୋଗିତ୍ୱ' ଉଭୟଗୁଣଯୁକ୍ତ ବୋଲି ସ୍ୱୀକାର କରାଯାଏ।

**ପ୍ରଶ୍ନ —** ନ ନିରଗ୍ନିଃର ଭାବ କଣ ?

**ଉତ୍ତର —** ଅଗ୍ନି ତ୍ୟାଗ କରି ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିଥିବା ପୁରୁଷଙ୍କୁ ନିରଗ୍ନି କହନ୍ତି। ଏଠାରେ ନ ନିରଗ୍ନିଃ କହି ଭଗବାନ୍ ଦେଖାଉଛନ୍ତି ଯେ, ଯେ ଅଗ୍ନି ତ୍ୟାଗ କରି ସନ୍ନ୍ୟାସ-ଆଶ୍ରମ ଗ୍ରହଣ କରିଛନ୍ତି ଅଥଚ ଜ୍ଞାନଯୋଗ (ସାଂଖ୍ୟଯୋଗ)ର ଲକ୍ଷଣଯୁକ୍ତ ନୁହନ୍ତି, ସେ ପ୍ରକୃତରେ ସନ୍ନ୍ୟାସୀ ନୁହନ୍ତି, କାରଣ ସେ କେବଳ ଅଗ୍ନିକୁ ତ୍ୟାଗ କରିଛନ୍ତି, କିନ୍ତୁ ସମସ୍ତ କ୍ରିୟାରେ କର୍ତ୍ତାପଣର ଅଭିମାନ ତଥା ମମତ୍ୱ, ଆସକ୍ତି ଓ ଦେହାଭିମାନ ତ୍ୟାଗ କରି ନାହାନ୍ତି।

**ପ୍ରଶ୍ନ —** ନ ଚ ଅକ୍ରିୟଃର ଭାବ କଣ ?

**ଉତ୍ତର —** ସମସ୍ତ କ୍ରିୟା ସର୍ବଥା ତ୍ୟାଗ କରି 'ଧ୍ୟାନସ୍ଥ' ହୋଇଯିବା ପୁରୁଷଙ୍କୁ ଅକ୍ରିୟ କହନ୍ତି। ଏଠାରେ ନ ଚ ଅକ୍ରିୟଃଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଯେ ସମସ୍ତ କ୍ରିୟା ତ୍ୟାଗ କରି ଧ୍ୟାନ ଲଗାଇ ବସିଛି ଅଥଚ ଅନ୍ତଃକରଣରେ ଅହଂତ୍ୱ, ମମତ୍ୱ, ରାଗ, ଦ୍ୱେଷ, କାମନା ଆଦି ଦୋଷ ରଖିଛି, ସେ ପ୍ରକୃତରେ ଯୋଗୀ ନୁହେଁ, କାରଣ ସେ କେବଳ ବାହାରର କ୍ରିୟା ତ୍ୟାଗ କରିଛି; ମମତ୍ୱ, ଅଭିମାନ, ଆସକ୍ତି, କାମନା ଓ କ୍ରୋଧ ଆଦି ତ୍ୟାଗ କରି ନାହିଁ।

**ପ୍ରଶ୍ନ —** ଯେଉଁ ପୁରୁଷ ସର୍ବଥା ଅଗ୍ନି ତ୍ୟାଗ କରି ସନ୍ନ୍ୟାସ-ଆଶ୍ରମ ଗ୍ରହଣ କରିନେଇଛନ୍ତି ଓ ଯାହାଙ୍କ ଠାରେ ଜ୍ଞାନଯୋଗ (ସାଂଖ୍ୟଯୋଗ)ର ସମସ୍ତ ଲକ୍ଷଣ (୫/୮,୯,୧୩,୨୪,୨୫,୨୬) ଭଲଭାବେ ପ୍ରକଟ ହୋଇଛି, ସେ କଣ ସନ୍ନ୍ୟାସୀ ନୁହନ୍ତି ?

**ଉତ୍ତର —** କାହିଁକି ନୁହନ୍ତି ? ଏପରି ମହାପୁରୁଷ ତ ଆଦର୍ଶ ସନ୍ନ୍ୟାସୀ। ଏହିପରି ସନ୍ନ୍ୟାସୀ ମହାତ୍ମାମାନଙ୍କର ମହତ୍ତ୍ୱ ପ୍ରକଟ କରିବାକୁ ହିଁ ଜ୍ଞାନଯୋଗର ଲକ୍ଷଣମାନ ଯେଉଁମାନଙ୍କ ଠାରେ ବିକଶିତ ହୁଏ, ଅନ୍ୟ ଆଶ୍ରମର ସେହିସବୁ ଲୋକଙ୍କୁ ମଧ୍ୟ ସନ୍ନ୍ୟାସୀ କହି ସେମାନଙ୍କର ପ୍ରଶଂସା କରାଯାଇଛି। ଏହାଛଡ଼ା ସେମାନଙ୍କୁ ସନ୍ନ୍ୟାସୀ କହିବାର ମହତ୍ତ୍ୱ ଆଉ କଣ ହୋଇପାରେ ?

**ପ୍ରଶ୍ନ —** ଏହିପରି ସମସ୍ତ କ୍ରିୟା ତ୍ୟାଗ କରି ଯେଉଁ ପୁରୁଷ ନିରନ୍ତର ଧ୍ୟାନସ୍ଥ ରହନ୍ତି ତଥା ଯାହାଙ୍କର ଅନ୍ତଃକରଣରୁ ମମତ୍ୱ, ରାଗ, ଦ୍ୱେଷ ଓ କାମ-କ୍ରୋଧାଦିର ସର୍ବଥା ଅଭାବ ହୋଇଯାଇଥାଏ, ସେହି ସର୍ବସଂକଳ୍ପତ୍ୟାଗୀ ସନ୍ନ୍ୟାସୀ ମଧ୍ୟ କଣ ଯୋଗୀ ନୁହନ୍ତି ?

**ଉତ୍ତର —** ଏପରି ସର୍ବସଂକଳ୍ପ-ତ୍ୟାଗୀ ମହାତ୍ମା ହିଁ ତ ଆଦର୍ଶ ଯୋଗୀ।

**ସମ୍ବନ୍ଧ—** ପ୍ରଥମ ଶ୍ଳୋକରେ ଭଗବାନ୍ କର୍ମଫଳର ଆଶ୍ରୟ ନ ନେଇ କର୍ମ କରୁଥିବା ମନୁଷ୍ୟଙ୍କୁ ସନ୍ନ୍ୟାସୀ ଓ ଯୋଗୀ ବୋଲି କହିଲେ। ତା'ଉପରେ ଶଙ୍କା ହୋଇପାରେ : ଯଦି ସନ୍ନ୍ୟାସ ଓ ଯୋଗ ଦୁଇଟି ଭିନ୍ନ ଭିନ୍ନ ସ୍ଥିତି, ତେବେ ଉପରୋକ୍ତ ସାଧକ କିପରି ଉଭୟରେ ସମ୍ପନ୍ନ ହୋଇପାରନ୍ତି ? ଏଣୁ ଏହି ଶଙ୍କା ସମାଧାନ କରିବାକୁ ଦ୍ୱିତୀୟ ଶ୍ଳୋକରେ ସନ୍ନ୍ୟାସ ଓ ଯୋଗର ଏକତ୍ୱ ପ୍ରତିପାଦନ କରୁଛନ୍ତି—

**ଯଂ ସଂନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବ।**
**ନ ହ୍ୟସଂନ୍ୟସ୍ତସଂକଳ୍ପୋ ଯୋଗୀ ଭବତି କଶ୍ଚନ॥ ୨ ॥**

**ଅନ୍ୱୟ—** **ପାଣ୍ଡବ** = ହେ ଅର୍ଜୁନ; **ଯମ୍** = ଯାହାକୁ; **ସଂନ୍ୟାସମ୍** = ସନ୍ନ୍ୟାସ; **ଇତି** = ବୋଲି; **ପ୍ରାହୁଃ** = କହନ୍ତି; **ତମ୍** = ତାହାକୁ (ତୁମେ); **ଯୋଗମ୍** = ଯୋଗ; **ବିଦ୍ଧି** = ବୋଲି ଜାଣ; **ହି** = କାରଣ; **ଅସଂନ୍ୟସ୍ତସଂକଳ୍ପଃ** = ସଂକଳ୍ପ ତ୍ୟାଗ କରି ନ ଥିବା; **କଶ୍ଚନ** = କୌଣସି ବି ପୁରୁଷ; **ଯୋଗୀ** = ଯୋଗୀ; **ନ ଭବତି** = ହୁଏ ନାହିଁ।

**ହେ ଅର୍ଜୁନ! ଯାହାକୁ ସନ୍ନ୍ୟାସ ବୋଲି କହନ୍ତି, ତାହାକୁ ହିଁ ତୁମେ ଯୋଗ ବୋଲି ଜାଣ, କାରଣ ସଂକଳ୍ପ ତ୍ୟାଗ କରି ନ ଥିବା କୌଣସି ବି ପୁରୁଷ ଯୋଗୀ ହୁଏ ନାହିଁ॥ ୨ ॥**

**ପ୍ରଶ୍ନ—** 'ଯାହାକୁ ସନ୍ନ୍ୟାସ କହନ୍ତି, ତାହାକୁ ହିଁ ତୁମେ ଯୋଗ ବୋଲି ଜାଣ'— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର—** ଏଠାରେ 'ସନ୍ନ୍ୟାସ' ଶବ୍ଦର ଅର୍ଥ ହେଉଛି ଶରୀର, ଇନ୍ଦ୍ରିୟ ଓ ମନଦ୍ୱାରା ହେଉଥିବା ସମସ୍ତ କ୍ରିୟାରେ କର୍ତ୍ତାପଣ ତ୍ୟାଗ କରି କେବଳ ପରମାତ୍ମାଙ୍କ ଠାରେ ହିଁ ଅଭିନ୍ନଭାବରେ ସ୍ଥିତ ହୋଇଯିବା। ଏହା ହେଉଛି ସାଂଖ୍ୟଯୋଗର ପରାକାଷ୍ଠା। ତଥା 'ଯୋଗ' ଶବ୍ଦର ଅର୍ଥ ହେଉଛି ମମତ୍ୱ, ଆସକ୍ତି ଓ କାମନା-ତ୍ୟାଗଦ୍ୱାରା ହେଉଥିବା 'କର୍ମଯୋଗ'ର ପରାକାଷ୍ଠାରୂପୀ ନୈଷ୍କର୍ମ୍ୟସିଦ୍ଧି। ଉଭୟରେ ସଂକଳ୍ପମାନଙ୍କର ସର୍ବଥା ଅଭାବ ହୋଇଯାଏ ଏବଂ ସାଂଖ୍ୟଯୋଗୀ ଯେଉଁ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି, କର୍ମଯୋଗୀ ମଧ୍ୟ ତାହାଙ୍କୁ ପ୍ରାପ୍ତ ହୁଅନ୍ତି। ଏହିପ୍ରକାରେ ଉଭୟରେ ସମସ୍ତ ସଂକଳ୍ପର ତ୍ୟାଗ ରହିଛି ଓ ଉଭୟର ଫଳ ଗୋଟିଏ। ଏଥିପାଇଁ ଏପରି କୁହାଯାଇଛି।

**ପ୍ରଶ୍ନ—** ଏଠାରେ **ସଂକଳ୍ପ** ଅର୍ଥ କଣ ଓ ତା'ର 'ସନ୍ନ୍ୟାସ' କଣ ?

**ଉତ୍ତର—** ମମତ୍ୱ ଓ ରାଗ-ଦ୍ୱେଷଯୁକ୍ତ ସାଂସାରିକ ବସ୍ତୁର ଚିନ୍ତନ କରୁଥିବା ଯେଉଁ ଅନ୍ତଃକରଣବୃତ୍ତି ରହିଛି, ତାହାକୁ **ସଂକଳ୍ପ** କହନ୍ତି। ଏହି ସଂକଳ୍ପବୃତ୍ତିର ସର୍ବଥା ତ୍ୟାଗ କରିଦେବା ହିଁ ତାହାର **ସନ୍ନ୍ୟାସ**।

**ପ୍ରଶ୍ନ—** 'ସଂକଳ୍ପ ତ୍ୟାଗ କରି ନ ଥିବା କୌଣସି ପୁରୁଷ ଯୋଗୀ ହୁଏ ନାହିଁ'— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର—** ସଂକଳ୍ପକୁ ସଂପୂର୍ଣ୍ଣରୂପେ ତ୍ୟାଗ ନ କଲେ ପରମାତ୍ମାଙ୍କ ସହିତ ଚିତ୍ତର ପୂର୍ଣ୍ଣ ସଂଯୋଗ ହୁଏ ନାହିଁ। ଏଣୁ ସଂକଳ୍ପତ୍ୟାଗ ସମସ୍ତଙ୍କ ପାଇଁ ଆବଶ୍ୟକ। କେହି କେହି ସାଧକ ଏକାନ୍ତରେ ଆସନ-ପ୍ରାଣାୟାମ ଆଦିଦ୍ୱାରା ପରମାତ୍ମାଙ୍କ ଧ୍ୟାନ ଅଭ୍ୟାସ କରନ୍ତି, ଅନ୍ୟ କେହି କେହି ସାଧକ ନିଷ୍କାମଭାବରେ ସଦାସର୍ବଦା କେବଳ ଭଗବାନଙ୍କ ପାଇଁ ହିଁ ଭଗବଦାଜ୍ଞାନୁସାରେ କର୍ମ କରିବାକୁ ଚେଷ୍ଟା କରନ୍ତି ଏବଂ ତୃତୀୟପ୍ରକାର କେହି କେହି ସାଧକ ସମୟେ ସମୟେ ଧ୍ୟାନ ବି ଅଭ୍ୟାସ କରନ୍ତି ଓ ନିଷ୍କାମଭାବରେ କର୍ମ ମଧ୍ୟ କରନ୍ତି। ଏମାନଙ୍କ ମଧ୍ୟରୁ ଯେକୌଣସିପ୍ରକାର ସାଧକ ହୁଅନ୍ତୁ ନା କାହିଁକି, ଯେପର୍ଯ୍ୟନ୍ତ ସର୍ବଥା ସଂକଳ୍ପତ୍ୟାଗ କରି ନାହାନ୍ତି, ସେପର୍ଯ୍ୟନ୍ତ ତାହାଙ୍କୁ ଯୋଗାରୂଢ଼ ବା ଯୋଗୀ କୁହାଯାଇପାରିବ ନାହିଁ। ସମସ୍ତ କର୍ମରେ ଓ ବିଷୟରେ ଆସକ୍ତିଶୂନ୍ୟ ହୋଇ ସମସ୍ତ ସଂକଳ୍ପ ତ୍ୟାଗ କରିସାରିଲେ ସାଧକ ଯୋଗାରୂଢ଼ ହୁଅନ୍ତି।

ସାଂଖ୍ୟଯୋଗୀ ମଧ୍ୟ ସେତେବେଳେ ପ୍ରକୃତ ସନ୍ନ୍ୟାସୀ ହେବେ, ଯେତେବେଳେ ତାଙ୍କର ଚିତ୍ତରେ କିଛି ବି ସଂକଳ୍ପ ରହିବ ନାହିଁ। ଏଣୁ ଶ୍ଳୋକର ପୂର୍ବାର୍ଦ୍ଧରେ ଉଭୟଙ୍କୁ ଏକ ବୋଲି ବୁଝିବାକୁ କୁହାଯାଇଛି।

**ସମ୍ବନ୍ଧ—** କର୍ମଯୋଗର ପ୍ରଶଂସା କରି ବର୍ତ୍ତମାନ ତା'ର ସାଧନାବିଷୟ କହୁଛନ୍ତି—

## ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣମୁଚ୍ୟତେ ।
## ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ ।। ୩ ।।

**ଅନ୍ୱୟ –** **ଯୋଗମ୍** = ଯୋଗରେ; **ଆରୁରୁକ୍ଷୋଃ** = ଆରୂଢ଼ ହେବାକୁ ଇଚ୍ଛୁକ; **ମୁନେଃ** = ମନନଶୀଳ ପୁରୁଷଙ୍କ ନିମନ୍ତେ; **କର୍ମ** = ନିଷ୍କାମଭାବରେ କର୍ମ କରିବା ହିଁ; **କାରଣମ୍** = ଯୋଗପ୍ରାପ୍ତିର ହେତୁ; **ଉଚ୍ୟତେ** = ବୋଲି କୁହାଯାଏ; **ତସ୍ୟ**, **ଯୋଗାରୂଢ଼ସ୍ୟ** = (ଯୋଗାରୂଢ଼ ହୋଇଯିବା ପରେ) ସେହି ଯୋଗାରୂଢ଼ ପୁରୁଷଙ୍କର; **ଶମଃ** = ସର୍ବସଂକଳ୍ପ-ଶୂନ୍ୟତା; **ଏବ** = ହିଁ; **କାରଣମ୍** = (ତାଙ୍କ କଲ୍ୟାଣର) କାରଣ; **ଉଚ୍ୟତେ** = ବୋଲି କୁହାଯାଏ ।

**ଯୋଗାରୂଢ଼ ହେବାକୁ ଇଚ୍ଛୁକ ମନନଶୀଳ ପୁରୁଷଙ୍କ ନିମନ୍ତେ ନିଷ୍କାମଭାବରେ କର୍ମ କରିବା ହିଁ ଯୋଗପ୍ରାପ୍ତିର ହେତୁ ବୋଲି କୁହାଯାଏ ଏବଂ ଯୋଗାରୂଢ଼ ହୋଇଯିବା ପରେ ସେହି ଯୋଗାରୂଢ଼ ପୁରୁଷଙ୍କର ସର୍ବସଂକଳ୍ପଶୂନ୍ୟତା ହିଁ ତାଙ୍କ କଲ୍ୟାଣର କାରଣ ବୋଲି କୁହାଯାଏ ।। ୩ ।।**

**ପ୍ରଶ୍ନ –** ଏଠାରେ **ମୁନେଃ** ପଦରେ କେଉଁ ପୁରୁଷଙ୍କୁ ଗ୍ରହଣ କରିବା ଉଚିତ ?

**ଉତ୍ତର – ମୁନେଃ** ପଦ ଏଠାରେ ସେହି ପୁରୁଷଙ୍କ ପାଇଁ ବିଶେଷଣରୂପରେ ଆସିଛି, ଯେ କି ପରମାତ୍ମପ୍ରାପ୍ତିରେ କାରଣରୂପୀ ଯୋଗାରୂଢ଼-ଅବସ୍ଥା ପ୍ରାପ୍ତ ହେବାକୁ ଚାହାଁନ୍ତି । ଅତଏବ **ମୁନେଃ**ର ଅର୍ଥ ସ୍ୱଭାବତଃ ପରମାତ୍ମାଙ୍କ ସ୍ୱରୂପକୁ ଚିନ୍ତନ କରୁଥିବା ମନନଶୀଳ ସାଧକ ବୋଲି ଗ୍ରହଣ କରିବା ଉଚିତ ।

**ପ୍ରଶ୍ନ –** ଯୋଗାରୂଢ଼-ଅବସ୍ଥାପ୍ରାପ୍ତିରେ କେଉଁ କର୍ମ ହେତୁ ଅଟେ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ ଓ ନିଜର ସ୍ଥିତିର ଅନୁକୂଳ ହୋଇ ଯେତେ ବି ଶାସ୍ତ୍ରବିହିତ କର୍ମ ରହିଛି, ଫଳ ଓ ଆସକ୍ତି ତ୍ୟାଗ କରି ତାହା କରିବାଦ୍ୱାରା ସେସବୁ ଯୋଗାରୂଢ଼ ଅବସ୍ଥା ପ୍ରାପ୍ତିରେ ହେତୁ ହୋଇପାରନ୍ତି ।

**ପ୍ରଶ୍ନ –** ଯୋଗାରୂଢ଼-ଅବସ୍ଥାପ୍ରାପ୍ତିରେ କର୍ମକୁ କାରଣ ବୋଲି କାହିଁକି କହିଲେ ? କର୍ମ ତ୍ୟାଗ କରି ଏକାନ୍ତରେ ଧ୍ୟାନ ଅଭ୍ୟାସ କରିବାଦ୍ୱାରା ମଧ୍ୟ ଯୋଗାରୂଢ଼ାବସ୍ଥା ପ୍ରାପ୍ତ ହୋଇପାରେ କି ?

**ଉତ୍ତର –** ଏକାନ୍ତରେ ପରମାତ୍ମାଙ୍କ ଧ୍ୟାନ ଅଭ୍ୟାସ କରିବା ମଧ୍ୟ ତ ଏକପ୍ରକାର କର୍ମ ହିଁ ଅଟେ ଓ ଏହିପ୍ରକାରେ ଧ୍ୟାନ ଅଭ୍ୟାସ କରୁଥିବା ସାଧକଙ୍କୁ ମଧ୍ୟ ଶୌଚ, ସ୍ନାନ ତଥା ଖାଇବାପିଇବା ଆଦି ଶରୀରନିର୍ବାହଯୋଗ୍ୟ କ୍ରିୟା କରିବାକୁ ହିଁ ପଡ଼େ । ତେଣୁ ନିଜର ବର୍ଣ୍ଣ, ଆଶ୍ରମ, ଅଧିକାର ଓ ସ୍ଥିତିର ଅନୁକୂଳ ଯେଉଁ ସମୟରେ ଯେଉଁ କର୍ତ୍ତବ୍ୟ କର୍ମ କରିବା କଥା, ଫଳ ଓ ଆସକ୍ତି ତ୍ୟାଗ କରି ତାହା ଆଚରଣ କରିବା ଯୋଗାରୂଢ଼ଅବସ୍ଥାପ୍ରାପ୍ତିର କାରଣ ହୋଇଥାଏ । ତେଣୁ ତୃତୀୟ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ମଧ୍ୟ କୁହାଯାଇଛି ଯେ, କର୍ମାଚରଣ ନ କଲେ, ମନୁଷ୍ୟ ନୈଷ୍କର୍ମ୍ୟ ଅର୍ଥାତ୍ ଯୋଗାରୂଢ଼ ଅବସ୍ଥା ପ୍ରାପ୍ତ ହୋଇ ନ ପାରେ ।

**ପ୍ରଶ୍ନ –** ଏଠାରେ **ଶମଃ** ପଦର ଅର୍ଥ 'ସ୍ୱରୂପତଃ ସକଳ କ୍ରିୟାତ୍ୟାଗ' ବୋଲି ନ ଧରି ସର୍ବସଂକଳ୍ପର ଅଭାବ ବୋଲି କାହିଁକି ଧରାଗଲା ?

**ଉତ୍ତର –** ଦ୍ୱିତୀୟ ଓ ଚତୁର୍ଥ ଶ୍ଳୋକରେ ସଂକଳ୍ପତ୍ୟାଗର ପ୍ରକରଣ ରହିଛି । **ଶମଃ** ପଦର ଅର୍ଥ ମଧ୍ୟ ମନକୁ ବଶ କରି ଶାନ୍ତ କରିବା । ଅଷ୍ଟାଦଶ ଅଧ୍ୟାୟର ବୟାଳିଶ ଶ୍ଳୋକରେ ମଧ୍ୟ **ଶମ** ଶବ୍ଦର ପ୍ରୟୋଗ ଏହି ଅର୍ଥରେ ହୋଇଛି ଓ ମନ ବଶ ହୋଇ ଶାନ୍ତ ହୋଇଯିବା ପରେ ହିଁ ସଂକଳ୍ପମାନଙ୍କର ସର୍ବଥା ଅଭାବ ହୁଏ । ଏହା ଛଡ଼ା, ସ୍ୱରୂପତଃ ସମସ୍ତ କର୍ମ ତ୍ୟାଗ କରିବା ମଧ୍ୟ ହୋଇପାରିବ ନାହିଁ । ଅତଏବ ଏଠାରେ **ଶମଃ**ର ଅର୍ଥ ସର୍ବସଂକଳ୍ପତ୍ୟାଗ ବୋଲି ଧରିବା ହିଁ ଠିକ୍ ।

**ପ୍ରଶ୍ନ –** ଯୋଗାରୂଢ଼ ପୁରୁଷଙ୍କ **ଶମ**କୁ କର୍ମର କାରଣ ବୋଲି ଧରିନେଲେ କ୍ଷତି କଣ ?

**ଉତ୍ତର – ଶମ** ଶବ୍ଦ ସର୍ବସଂକଳ୍ପର ଅଭାବରୂପୀ ଶାନ୍ତିର ବାଚକ । ତେଣୁ ତାହା କର୍ମର କାରଣ ହୋଇ ନ ପାରେ । ଯୋଗାରୂଢ଼ ପୁରୁଷଙ୍କ ଦ୍ୱାରା ଯାହା କିଛି ଚେଷ୍ଟା ହୁଏ, ସେସବୁରେ ତ ତାଙ୍କର ଓ ଲୋକମାନଙ୍କର ପ୍ରାରବ୍ଧ ହିଁ କାରଣ ଅଟେ । ଏଣୁ **ଶମ**କୁ କର୍ମର କାରଣ ବୋଲି ଧରିବା ଯୁକ୍ତିସଂଗତ ନୁହେଁ । ତାହାକୁ ପରମାତ୍ମପ୍ରାପ୍ତିର କାରଣ ବୋଲି ଧରିବା ହିଁ ଠିକ୍ ।

**ସମ୍ବନ୍ଧ –** ପୂର୍ବଶ୍ଳୋକରେ ଯୋଗାରୂଢ଼ ଶବ୍ଦ ଆସିଛି। ତା'ର ଲକ୍ଷଣ ଜାଣିବାର ଆକାଂକ୍ଷା ହୋଇପାରେ; ତେଣୁ ବର୍ତ୍ତମାନ ଯୋଗାରୂଢ଼ ପୁରୁଷଙ୍କ ଲକ୍ଷଣ କହୁଛନ୍ତି —

**ଯଦା ହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ ।**
**ସର୍ବସଂକଳ୍ପସଂନ୍ୟାସୀ ଯୋଗାରୂଢ଼ସ୍ତଦୋଚ୍ୟତେ ॥ ୪ ॥**

**ଅନ୍ୱୟ –** **ଯଦା** = ଯେତେବେଳେ; **ନ, ଇନ୍ଦ୍ରିୟାର୍ଥେଷୁ** (**ଅନୁଷଜ୍ଜତେ**) = ଇନ୍ଦ୍ରିୟଭୋଗମାନଙ୍କରେ ଆସକ୍ତ ହୁଏ ନାହିଁ କି; **ନ, କର୍ମସୁ, ହି, ଅନୁସଜ୍ଜତେ** = କର୍ମମାନଙ୍କରେ ମଧ୍ୟ ଆସକ୍ତ ହୁଏ ନାହିଁ; **ତଦା** = ସେତେବେଳେ; **ସର୍ବସଂକଳ୍ପସଂନ୍ୟାସୀ** = ସକଳ ସଂକଳ୍ପ ତ୍ୟାଗ କରିଥିବା ପୁରୁଷ; **ଯୋଗାରୂଢ଼ଃ** = ଯୋଗାରୂଢ଼; **ଉଚ୍ୟତେ** = (ବୋଲି) କଥିତ ହୁଏ।

**ପୁରୁଷ ଯେତେବେଳେ ଇନ୍ଦ୍ରିୟମାନଙ୍କର ଭୋଗରେ ଓ କର୍ମମାନଙ୍କରେ ମଧ୍ୟ ଆସକ୍ତ ହୁଅନ୍ତି ନାହିଁ, ସେତେବେଳେ ସେହି ସର୍ବସଂକଳ୍ପତ୍ୟାଗୀ ଯୋଗାରୂଢ଼ ବୋଲି କଥିତ ହୁଅନ୍ତି ॥ ୪ ॥**

**ପ୍ରଶ୍ନ –** ଏଠାରେ ଇନ୍ଦ୍ରିୟମାନଙ୍କ ବିଷୟରେ ଓ କର୍ମରେ କେବଳ ଆସକ୍ତିତ୍ୟାଗ କଥା କୁହାଗଲା; କାମନାତ୍ୟାଗ କଥା କୁହାଗଲା ନାହିଁ। ଏହାର କାରଣ କଣ ?

**ଉତ୍ତର –** ଆସକ୍ତିରୁ ହିଁ କାମନା ଉତ୍ପନ୍ନ ହୁଏ (୨/୬୨)। ଯଦି ବିଷୟଭୋଗରେ ଓ କର୍ମରେ ଆସକ୍ତି ନ ରହେ, ତେବେ କାମନା ସ୍ୱତଃ ଚାଲିଯିବ; କାରଣ ବିନା କାର୍ଯ୍ୟ ହୋଇପାରିବ ନାହିଁ। ଅତଏବ ଆସକ୍ତି ନ ଥିଲେ କାମନା ମଧ୍ୟ ରହିବ ନାହିଁ ବୋଲି ବୁଝିବା ଉଚିତ।

**ପ୍ରଶ୍ନ – ସର୍ବସଂକଳ୍ପସନ୍ୟାସର** ଅର୍ଥ କଣ ଓ ସମସ୍ତ ସଂକଳ୍ପତ୍ୟାଗ ହୋଇଯିବା ପରେ କୌଣସି ବିଷୟଗ୍ରହଣ ବା କର୍ମସମ୍ପାଦନ କିପରି ସମ୍ଭବ ହେବ ?

**ଉତ୍ତର –** ଏଠାରେ **ସଂକଳ୍ପତ୍ୟାଗର** ଅର୍ଥ ସ୍ଫୁରଣମାତ୍ରର ସର୍ବଥା ତ୍ୟାଗ ନୁହେଁ। ଯଦି ଏପରି ସ୍ୱୀକାର କରାଯାଏ, ତେବେ ଯୋଗାରୂଢ଼ ଅବସ୍ଥାର ବର୍ଣ୍ଣନା ହିଁ ଅସମ୍ଭବ ହୋଇଯିବ। ଯାହାକୁ ସେହି ଅବସ୍ଥା ପ୍ରାପ୍ତ ହୋଇ ନାହିଁ, ସେ ତ ତା'ର ତତ୍ତ୍ୱ ଜାଣେ ନାହିଁ ଓ ଯାହାଙ୍କୁ ପ୍ରାପ୍ତ ହୋଇଛି, ସେ ତାକୁ ଭାଷାରେ ପ୍ରକାଶ କରିପାରିବେ ନାହିଁ। ତେଣୁ ତା'ର ବର୍ଣ୍ଣନା କିଏ କରିବ ? ଏହା ଛଡ଼ା, ଚତୁର୍ଥ ଅଧ୍ୟାୟର ଉଣେଇଶ ଶ୍ଳୋକରେ ଭଗବାନ୍ ସ୍ପଷ୍ଟ କହିଛନ୍ତି, 'ଯେଉଁ ମହାପୁରୁଷଙ୍କର ସମସ୍ତ କର୍ମ କାମନା ଓ ସଂକଳ୍ପ ବିନା ଭଲଭାବରେ ହୁଏ, ତାହାଙ୍କୁ ପଣ୍ଡିତ କହନ୍ତି।' ସେଠାରେ ଯେଉଁ ମହାପୁରୁଷଙ୍କୁ ଏପରି ପ୍ରଶଂସା କରାଯାଇଛି, ସେ ଯେ ଯୋଗାରୂଢ଼ ନୁହନ୍ତି, ତାହା କୁହାଯାଇପାରିବ ନାହିଁ। ଏପରି ଅବସ୍ଥାରେ ଏହା ମାନିହେବ ନାହିଁ ଯେ, ସଂକଳ୍ପରହିତ ପୁରୁଷଙ୍କ ଦ୍ୱାରା କର୍ମ ହୁଏ ନାହିଁ। ଏଥିରୁ ଏହା ସିଦ୍ଧ ହେଉଛି ଯେ, ସଂକଳ୍ପତ୍ୟାଗର ଅର୍ଥ ସ୍ଫୁରଣା ବା ବୃତ୍ତିମାତ୍ରର ତ୍ୟାଗ ନୁହେଁ। ମମତ୍ୱ, ଆସକ୍ତି ଓ ଦ୍ୱେଷପୂର୍ବକ ଯେଉଁ ସାଂସାରିକ ବିଷୟର ଚିନ୍ତନ କରାଯାଏ, ତାହାକୁ **ସଂକଳ୍ପ** କହନ୍ତି। ଏପରି ସଂକଳ୍ପର ସଂପୂର୍ଣ୍ଣ ତ୍ୟାଗ ହିଁ **ସର୍ବସଂକଳ୍ପ-ସନ୍ୟାସ**। ଏପରି ତ୍ୟାଗ ସୁଚାରୁରୂପେ କର୍ମସଂପାଦନ ହେବାରେ କୌଣସି ବାଧା ଦିଏ ନାହିଁ। ଯେଉଁମାନଙ୍କ ବୁଦ୍ଧିରେ ଭଗବାନଙ୍କ ଛଡ଼ା ଅନ୍ୟ କାହାର ସ୍ଥିତି ନାହିଁ, ସେମାନଙ୍କ ଦ୍ୱାରା ଭଗବଦ୍‌ବୁଦ୍ଧିରେ ଯେଉଁ ବିଷୟର ଗ୍ରହଣ ବା ତ୍ୟାଗ ହୁଏ, ତାହା ସଂକଳ୍ପଜନିତ ହୁଏ ବୋଲି କୁହାଯାଇ ନ ପାରେ। ଏପରି ତ୍ୟାଗ ଓ ଗ୍ରହଣରୂପକ କର୍ମ ତ ଜ୍ଞାନୀ ମହାତ୍ମାମାନଙ୍କ ଦ୍ୱାରା ମଧ୍ୟ ହୋଇପାରେ। ଏପରି ମହାତ୍ମାମାନଙ୍କ ପାଇଁ ଭଗବାନ୍ କହିଛନ୍ତି, 'ସେ ସବୁପ୍ରକାର କ୍ରିୟାକଳାପ କରୁଥିଲେ ମଧ୍ୟ ତାଙ୍କର ସମସ୍ତ କ୍ରିୟା ମୋ ସହିତ ହିଁ ହୁଏ।' (୬/୩୧)।

**ପ୍ରଶ୍ନ –** ମନୁଷ୍ୟ ଭୋଗପ୍ରାପ୍ତିପାଇଁ ହିଁ କର୍ମ କରେ ଓ ସେଥିରେ ଆସକ୍ତ ହୁଏ। ଅତଏବ ଶବ୍ଦାଦି ବିଷୟରେ ଆସକ୍ତିର ଅଭାବ ବୁଝାଇଦେବା ହିଁ ଯଥେଷ୍ଟ ହୋଇଥାନ୍ତା; କର୍ମରେ ଆସକ୍ତିର ଅଭାବ କଥା କହିବା କଣ ଆବଶ୍ୟକ ଥିଲା ?

**ଉତ୍ତର –** ଭୋଗରେ ଆସକ୍ତିତ୍ୟାଗ ହେଲେ ମଧ୍ୟ କର୍ମରେ ଆସକ୍ତି ରହିବା ସମ୍ଭବ; କାରଣ ଯେଉଁ କର୍ମରେ କୌଣସି ଫଳ ନାହିଁ, ସେପରି ବ୍ୟର୍ଥ କର୍ମରେ ମଧ୍ୟ ପ୍ରମାଦୀ ମନୁଷ୍ୟଙ୍କର ଆସକ୍ତି ଦେଖାଯାଏ। ଅତଏବ ଆସକ୍ତିର ସଂପୂର୍ଣ୍ଣ ଅଭାବ ଦେଖାଇବାପାଇଁ ଏପରି କହିବା ଉଚିତ ହୋଇଛି।

**ସମ୍ବନ୍ଧ –** ପରମପଦପ୍ରାପ୍ତିରେ କାରଣରୂପୀ ଯୋଗାରୂଢ଼ ଅବସ୍ଥା ବର୍ଣ୍ଣନା କରିବା ପରେ, ବର୍ତ୍ତମାନ ତାହା ପାଇବାକୁ ଉତ୍ସାହିତ କରି ଭଗବାନ୍ ମନୁଷ୍ୟର କର୍ତ୍ତବ୍ୟ ବର୍ଣ୍ଣନା କରୁଛନ୍ତି–

**ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।**
**ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ।। ୫ ।।**

**ଅନ୍ୱୟ –** **ଆତ୍ମନା** = ନିଜଦ୍ୱାରା; **ଆତ୍ମାନମ୍** = ନିଜକୁ; **ଉଦ୍ଧରେତ୍** = (ସଂସାରସାଗରରୁ) ଉଦ୍ଧାର କରିବା ଉଚିତ; **ଆତ୍ମାନମ୍** = ନିଜକୁ; **ନ ଅବସାଦୟେତ୍** = ଅଧୋଗତିରେ ପକାଇବା ଉଚିତ ନୁହେଁ; **ହି** = କାରଣ; **ଆତ୍ମା** = (ମନୁଷ୍ୟ) ନିଜେ; **ଏବ** = ହିଁ; **ଆତ୍ମନଃ** = ନିଜର; **ବନ୍ଧୁଃ** = ମିତ୍ର; **ଆତ୍ମା** = ନିଜେ; **ଏବ** = ହିଁ; **ଆତ୍ମନଃ** = ନିଜର; **ରିପୁଃ** = ଶତ୍ରୁ ।

**ନିଜଦ୍ୱାରା ନିଜକୁ ସଂସାରସାଗରରୁ ଉଦ୍ଧାର କରିବା ଉଚିତ; ନିଜକୁ ଅଧୋଗତିରେ ପକାଇବା ଉଚିତ ନୁହେଁ; କାରଣ ମନୁଷ୍ୟ ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ ।। ୫ ।।**

**ପ୍ରଶ୍ନ –** ନିଜଦ୍ୱାରା ନିଜର ଉଦ୍ଧାର କରିବା କଣ ଓ ନିଜକୁ ଅଧୋଗତିରେ ପକାଇବା କଣ ?

**ଉତ୍ତର –** ଜୀବ ଅଜ୍ଞାନର ବଶ ହୋଇ ଅନାଦିକାଳରୁ ଏହି ଦୁଃଖମୟ ସଂସାରସାଗରରେ ବୁଡୁଛି ଓ ଉଠୁଛି; ନାନାପ୍ରକାର ଭଲ-ମନ୍ଦ ଯୋନିରେ ଭ୍ରମଣ କରି ବିଭିନ୍ନପ୍ରକାର ଭୟାନକ କଷ୍ଟ ଭୋଗ କରୁଛି । ଜୀବର ଏହି ଦୀନଦଶା ଦେଖି ଦୟାମୟ ଭଗବାନ୍ ତାକୁ ସାଧନା-ଉପଯୋଗୀ ଦେବଦୁର୍ଲଭ ମନୁଷ୍ୟଶରୀର ଦେଇ ଏକ ଅତି ସୁନ୍ଦର ସୁଯୋଗ ଦିଅନ୍ତି, ଯେଉଁଥିରେ କି ସେ ଚାହିଁଲେ ସାଧନାଦ୍ୱାରା ଏହି ଗୋଟିଏ ଜନ୍ମରେ ହିଁ ସଂସାରସାଗରରୁ ବାହାରି ଆସି ସହଜରେ ହିଁ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କୁ ପାଇପାରିବ । ତେଣୁ ମନୁଷ୍ୟର କର୍ତ୍ତବ୍ୟ ହେଉଛି ସେ ମାନବଜୀବନର ଦୁର୍ଲଭ ସୁଯୋଗ ଯେପରି ବ୍ୟର୍ଥ ନ କରେ ଏବଂ କର୍ମଯୋଗ, ସାଂଖ୍ୟଯୋଗ ତଥା ଭକ୍ତିଯୋଗ ଆଦି ଯେକୌଣସି ସାଧନାରେ ଲାଗିରହି ନିଜ ଜନ୍ମକୁ ସାର୍ଥକ କରେ । ଏହା ହିଁ ନିଜଦ୍ୱାରା ନିଜକୁ ଉଦ୍ଧାର କରିବା ।

ଏହାର ବିପରୀତ ହେଲା, ରାଗ-ଦ୍ୱେଷ, କାମ-କ୍ରୋଧ ଓ ଲୋଭ-ମୋହ ଆଦି ଦୋଷରେ ଫନ୍ଦିହୋଇ ମନୁଷ୍ୟ ଯେଉଁ ଭିନ୍ନ ଭିନ୍ନପ୍ରକାର ଦୁଷ୍କର୍ମ କରେ ଓ ତା'ର ଫଳସ୍ୱରୂପ ମନୁଷ୍ୟଶରୀରର ପରମ ଲକ୍ଷ୍ୟ ଭଗବତ୍‌ପ୍ରାପ୍ତିରୁ ବଞ୍ଚିତ ହୋଇ ପୁଣି ଥରେ ଘୁଷୁରୀକୁକୁରାଦି ଯୋନିରେ ଜନ୍ମିବାର କାରଣ ହୋଇଯାଏ, ତାହା ହିଁ ନିଜକୁ ଅଧୋଗତିରେ ପକାଇବା । ନିଜକୁ ଏପରି ଅଧୋଗତିରେ ପକାଉଥିବା ମନୁଷ୍ୟମାନଙ୍କୁ ଉପନିଷଦରେ ଆତ୍ମଘାତୀ ବୋଲି କହି ସେମାନଙ୍କର ଦୁର୍ଗତି ବର୍ଣ୍ଣନା କରାଯାଇଛି । ★

ଏଠାରେ ଭଗବାନ୍ ନିଜଦ୍ୱାରା ହିଁ ନିଜର ଉଦ୍ଧାର କରିବା କଥା କହି ଜୀବକୁ ଆଶ୍ୱାସନା ଦେଉଛନ୍ତି, "ତୁମେ ଭାବ ନାହିଁ ଯେ, ପ୍ରାରବ୍ଧ ମନ୍ଦ; ଏଣୁ ତୁମର ଆଦୌ ଉନ୍ନତି ହେବ ନାହିଁ । ତୁମର ଉତ୍‌ଥାନପତନ ପ୍ରାରବ୍ଧର ଅଧୀନ ନୁହେଁ; ତାହା ତୁମ ନିଜ ହାତରେ ରହିଛି । ସାଧନା କର ଓ ଅବନତିର ଗହ୍ୱରରୁ ନିଜକୁ ଉଦ୍ଧାର କରି ଉନ୍ନତିର ଶିଖରରେ ଆରୋହଣ କର ।" ଅତଏବ ମନୁଷ୍ୟ ଅତ୍ୟନ୍ତ ସାବଧାନ ହୋଇ ତଥା ତତ୍ପରତାର ସହିତ ସଦାସର୍ବଦା ନିଜର ଉତ୍‌ଥାନପାଇଁ, ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛି, ତା'ଠାରୁ ଉପରକୁ ଉଠିବାପାଇଁ, ରାଗ-ଦ୍ୱେଷ, କାମ-କ୍ରୋଧ, ଲୋଭ, ଆଳସ୍ୟ, ପ୍ରମାଦ ଓ ପାପାଚାର ସର୍ବଥା ତ୍ୟାଗ କରି ଶମ, ଦମ, ତିତିକ୍ଷା, ବିବେକ ଓ ବୈରାଗ୍ୟାଦି ସଦ୍‌ଗୁଣ

---

★ **ଅସୁର୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ । ତାଁ ସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ।। (ଈଶୋପନିଷଦ ୩)**

ସେହିତକୁ କୁକୁର-ଘୁଷୁରୀ ଆଦି ଯୋନି ତଥା ନରକରୂପୀ ଅସୁରସମ୍ବନ୍ଧୀ ଲୋକ ଅଜ୍ଞାନରୂପ ଅନ୍ଧକାରରେ ଆବୃତ ହୋଇଛି । ଯେଉଁମାନେ ଆତ୍ମାକୁ ବିନାଶ କରନ୍ତି, ସେମାନେ ମୃତ୍ୟୁପରେ ସେହିତକୁ ଅସୁର-ଲୋକ ପ୍ରାପ୍ତ ହୁଅନ୍ତି ।

ବିକାଶ କରିବାପାଇଁ, ବିଷୟଚିନ୍ତା ଛାଡ଼ି ଶ୍ରଦ୍ଧା ଓ ପ୍ରେମରେ ଭଗବତ୍ ଚିନ୍ତନ କରିବାପାଇଁ ଓ ଭଜନ, ଧ୍ୟାନ ତଥା ସେବା-ସତ୍ସଙ୍ଗାଦିଦ୍ୱାରା ଭଗବାନଙ୍କୁ ପାଇବାପାଇଁ ସାଧନା କରିବା ଉଚିତ ଓ ଯେପର୍ଯ୍ୟନ୍ତ ଭଗବତ୍ପ୍ରାପ୍ତି ନ ହୋଇଛି, ସେପର୍ଯ୍ୟନ୍ତ ଏକକ୍ଷଣପାଇଁ ମଧ୍ୟ ତିଳେ ବି ପଛକୁ ଫେରିବା, ତଥା ଅଟକି ଯିବା ଉଚିତ ନୁହେଁ। ଭଗବତ୍କୃପାବଳରେ ଧୀରତା, ବୀରତା ଓ ଦୃଢ଼ନିଶ୍ଚୟ ସହିତ ନିଜକୁ ଆଦୌ ଶିଥିଳ ନ କରି ଉତ୍ତରୋତ୍ତର ଉନ୍ନତିପଥରେ ହିଁ ଅଗ୍ରସର ହେବା ଉଚିତ।

ମନୁଷ୍ୟ ନିଜର ସ୍ୱଭାବ ଓ କର୍ମକୁ ଯେତେ ଅଧିକ ସୁଧାରିନେବ, ସେ ସେତିକି ଉନ୍ନତ ହେବ। ସ୍ୱଭାବ ଓ କର୍ମର ସଂଶୋଧନ ହିଁ ଉନ୍ନତି ଓ ଉତ୍ଥାନ; ଏହାର ବିପରୀତ ଘଟିବା ଅର୍ଥାତ୍ ସ୍ୱଭାବ ଓ କର୍ମରେ ଦୋଷ ବଢ଼ିବା ହିଁ ଅବନତି ବା ପତନ।

**ପ୍ରଶ୍ନ—** ଏହି ମନୁଷ୍ୟ ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ— ଏ କଥାର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ମନୁଷ୍ୟ ସାଂସାରିକ ସମ୍ବନ୍ଧଯୋଗୁଁ ଆସକ୍ତିବଶତଃ ଯେଉଁ ଲୋକମାନଙ୍କୁ ନିଜର ମିତ୍ର ବୋଲି ଭାବେ, ସେହିମାନେ ହିଁ ବନ୍ଧନର କାରଣ ହୋଇଥିବାରୁ ପ୍ରକୃତରେ ମିତ୍ର ନୁହନ୍ତି। ସନ୍ତ, ମହାତ୍ମା ଓ ନିଃସ୍ୱାର୍ଥ ସାଧକ, ଯେଉଁମାନେ କି ବନ୍ଧନରୁ ମୁକ୍ତ କରିବାରେ ସହାୟକ ହୁଅନ୍ତି, ସେମାନେ ହିଁ ପ୍ରକୃତ ମିତ୍ର; କିନ୍ତୁ ସେମାନଙ୍କର ଏହି ମୈତ୍ରୀ ମଧ୍ୟ ମନୁଷ୍ୟକୁ ସେତେବେଳେ ମିଳେ, ଯେତେବେଳେ ସେ ନିଜେ ପ୍ରଥମେ ନିଜ ମନରେ ସେମାନଙ୍କୁ ଶ୍ରଦ୍ଧା ଓ ପ୍ରେମ କରେ ତଥା ପ୍ରକୃତ ମିତ୍ର ବୋଲି ଗ୍ରହଣ କରେ ଏବଂ ସେମାନେ ଦେଖାଇଥିବା ମାର୍ଗରେ ଚାଲେ। ଏହି ଦୃଷ୍ଟିରୁ ବିଚାର କଲେ ସିଦ୍ଧ ହୁଏ ଯେ, ମନୁଷ୍ୟ ନିଜେ ହିଁ ନିଜର ମିତ୍ର। ଏହିପ୍ରକାରେ ଏହା ମଧ୍ୟ ନିଶ୍ଚିତ ଯେ, ମନୁଷ୍ୟ ନିଜ ମନରେ ଯଦି କାହାକୁ ଶତ୍ରୁ ବୋଲି ଭାବେ, ତେବେ ତା'ର କ୍ଷତି ହୁଏ। ଅନ୍ୟଥା କୌଣସି ମନୁଷ୍ୟ କାହାର କିଛି ବି ପାରମାର୍ଥିକ କ୍ଷତି କରିପାରେ ନାହିଁ। ତେଣୁ ବସ୍ତୁତଃ ସେ ନିଜେ ହିଁ ତା'ର ଶତ୍ରୁ ମଧ୍ୟ ଅଟେ। ପ୍ରକୃତରେ ଯେ ନିଜର ଉଦ୍ଧାରପାଇଁ ଚେଷ୍ଟା କରେ, ସେ ନିଜେ ନିଜର ମିତ୍ର ହୁଏ; ଯେ ଏହାର ବିପରୀତ କରେ, ସେ ନିଜେ ନିଜର ଶତ୍ରୁ ହୁଏ। ତେଣୁ ନିଜ ବ୍ୟତୀତ ଅନ୍ୟ କେହି ନିଜର ମିତ୍ର ବା ଶତ୍ରୁ ନାହିଁ।

*ସମ୍ବନ୍ଧ— କୁହାଗଲା ଯେ, ମନୁଷ୍ୟ ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ। ବର୍ତ୍ତମାନ ଏହା ସ୍ପଷ୍ଟ କରିବାପାଇଁ ଯେଉଁ ଲକ୍ଷଣଯୁକ୍ତ ମନୁଷ୍ୟ ନିଜେ ନିଜର ମିତ୍ର ଓ ଯେଉଁ ଲକ୍ଷଣଯୁକ୍ତ ମନୁଷ୍ୟ ନିଜେ ନିଜର ଶତ୍ରୁ, ଭଗବାନ୍ ତାହା କହୁଛନ୍ତି—*

**ବନ୍ଧୁରାତ୍ମାତ୍ମନସ୍ତସ୍ୟ ଯେନାତ୍ମୈବାତ୍ମନା ଜିତଃ।**
**ଅନାତ୍ମନସ୍ତୁ ଶତ୍ରୁତ୍ୱେ ବର୍ତ୍ତେତାତ୍ମୈବ ଶତ୍ରୁବତ୍॥ ୬ ॥**

**ଅନ୍ୱୟ—** ଯେନ = ଯେଉଁ; ଆତ୍ମନା = ଜୀବାତ୍ମାଦ୍ୱାରା; ଆତ୍ମା = ମନ ଓ ଇନ୍ଦ୍ରିୟ ସହିତ ଶରୀର; **ଜିତଃ** = ଜୟ କରାଯାଇଛି; **ତସ୍ୟ, ଆତ୍ମନଃ** = ସେହି ଜୀବାତ୍ମାର; **ଆତ୍ମା** = (ସେ) ନିଜେ; **ଏବ** = ହିଁ; **ବନ୍ଧୁଃ** = ମିତ୍ର; **ତୁ** = ଏବଂ; **ଅନାତ୍ମନଃ** = ଯାହାଦ୍ୱାରା ମନ ତଥା ଇନ୍ଦ୍ରିୟ ସହିତ ଶରୀର ଜୟ କରାଯାଇ ନାହିଁ, ତା' ପାଇଁ; **ଆତ୍ମା** = (ସେ) ନିଜେ; **ଏବ** = ହିଁ; **ଶତ୍ରୁବତ୍** = ଶତ୍ରୁପରି; **ଶତ୍ରୁତ୍ୱେ** = ଶତ୍ରୁତାରେ; **ବର୍ତ୍ତେତ** = ଆଚରଣ କରେ।

**ଯେଉଁ ଜୀବାତ୍ମାଦ୍ୱାରା ମନ ଓ ଇନ୍ଦ୍ରିୟସହିତ ଶରୀରକୁ ଜୟ କରାଯାଇଛି, ସେହି ଜୀବାତ୍ମା ନିଜେ ହିଁ ନିଜର ମିତ୍ର ଏବଂ ଯାହାଦ୍ୱାରା ମନ, ଇନ୍ଦ୍ରିୟ ଓ ଶରୀରକୁ ଜୟ କରାଯାଇ ନାହିଁ, ସେ ନିଜେ ହିଁ ନିଜର ଶତ୍ରୁପରି ଆଚରଣ କରେ॥ ୬ ॥**

**ପ୍ରଶ୍ନ—** ମନ ଓ ଇନ୍ଦ୍ରିୟ ସହିତ ଶରୀରକୁ ଜୟ କରିବା କଣ ? ଏସବୁକୁ କିପରି ଜୟ କରାଯାଏ ? ବଶୀଭୂତ ଶରୀର, ଇନ୍ଦ୍ରିୟ ଓ ମନର ଲକ୍ଷଣ କଣ ? ଏବଂ ଏସବୁକୁ ଜୟ କରିଥିବା ମନୁଷ୍ୟ ନିଜେ ନିଜର ମିତ୍ର କିପରି ?

**ଉତ୍ତର—** ଶରୀର, ଇନ୍ଦ୍ରିୟ ଓ ମନକୁ ଭଲଭାବେ ନିଜର ବଶ କରିନେବା ହିଁ ଏମାନଙ୍କୁ ଜୟ କରିବା। ବିବେକପୂର୍ବକ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଏସବୁ ବଶ ହୋଇପାରନ୍ତି। ପରମାତ୍ମପ୍ରାପ୍ତିପାଇଁ ମନୁଷ୍ୟ ଯେଉଁସବୁ ସାଧନାରେ ନିଜ ଶରୀର, ଇନ୍ଦ୍ରିୟ ଓ ମନକୁ ଲଗାଇବାକୁ

ଚାହେଁ, ଯଦି ସେ ସେଥିରେ ଅନାୟାସରେ ଲାଗିଯାଏ ଓ ଲକ୍ଷ୍ୟର ବିପରୀତ ଦିଗକୁ ଚାହେଁ ବି ନାହିଁ, ତେବେ ବୁଝିବା ଉଚିତ ଯେ, ତା'ର ଶରୀର, ମନ ଓ ଇନ୍ଦ୍ରିୟାଦି ବଶ ହୋଇଗଲେଣି । ଯେଉଁ ମନୁଷ୍ୟଙ୍କ ଶରୀର, ଇନ୍ଦ୍ରିୟ ଓ ମନ ବଶ ହୋଇଯାଇଥାନ୍ତି, ସେ ଅନାୟାସରେ ସଂସାର-ସାଗରରୁ ଉଦ୍ଧାର ପାଇଯାଆନ୍ତି ଏବଂ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କୁ ପାଇ କୃତାର୍ଥ ହୋଇଯାଆନ୍ତି । ତେଣୁ ସେ ସ୍ୱୟଂ ନିଜର ମିତ୍ର ।

**ପ୍ରଶ୍ନ—** ଯାହାଦ୍ୱାରା ଶରୀର, ଇନ୍ଦ୍ରିୟ ଓ ମନକୁ ଜୟ କରାଯାଇ ନାହିଁ, ତାହାକୁ **ଅନାତ୍ମା** କହିବାର ଅଭିପ୍ରାୟ କଣ ଏବଂ ସେ ନିଜର ଶତ୍ରୁପରି ଆଚରଣ କରେ କହିଲେ କଣ ବୁଝାଏ ?

**ଉତ୍ତର—** ଶରୀର, ଇନ୍ଦ୍ରିୟ ଓ ମନ— ଏସବୁର ନାମ ଆତ୍ମା । ଏସବୁ ଯାହାର ବଶରେ ନାହାନ୍ତି, ଉଚ୍ଛୃଙ୍ଖଳ ହେଉଛନ୍ତି ଓ ସ୍ୱେଚ୍ଛାଚାରୀ ହୋଇ ବିଷୟଭୋଗରେ ଲାଗିରହିଛନ୍ତି, ଯେ ଏସବୁକୁ ନିଜ ଲକ୍ଷ୍ୟର ଅନୁକୂଳ ଇଚ୍ଛାନୁସାରେ କଲ୍ୟାଣସାଧନରେ ଲଗାଇ ପାରେ ନାହିଁ, ସେ **ଅନାତ୍ମା**; ଆତ୍ମବାନ୍ ନୁହେଁ ।

ଏପରି ମନୁଷ୍ୟ ସ୍ୱୟଂ ମନ, ଇନ୍ଦ୍ରିୟାଦିର ବଶ ହୋଇ କୁପଥ୍ୟ କରୁଥିବା ରୋଗୀପରି ନିଜର ହିଁ କଲ୍ୟାଣସାଧନାର ବିପରୀତ ଆଚରଣ କରେ । ସେ ଅହଂତ୍ୱ, ମମତ୍ୱ, ରାଗ-ଦ୍ୱେଷ, କାମ, କ୍ରୋଧ, ଲୋଭ, ମୋହ ଆଦିର କାରଣ ପ୍ରମାଦ, ଆଳସ୍ୟ ଓ ବିଷୟଭୋଗରେ ମଜ୍ଜି ପାପକର୍ମମାନଙ୍କର କଠିନ ବନ୍ଧନରେ ପଡ଼ିଯାଏ । ଶତ୍ରୁ ଯେପରି ମନୁଷ୍ୟକୁ ସୁଖ-ସାଧନରୁ ବଞ୍ଚିତ କରି ଦୁଃଖଭୋଗ କରିବାକୁ ବାଧ୍ୟ କରେ, ସେ ସେହିପରି ନିଜର ଶରୀର, ଇନ୍ଦ୍ରିୟ ଓ ମନକୁ କଲ୍ୟାଣସାଧନାରେ ନ ଲଗାଇ ଭୋଗରେ ଲଗାଏ ତଥା ନିଜେ ନିଜକୁ ବାରମ୍ବାର ନରକାଦିରେ ପକାଇ ଓ ନାନାପ୍ରକାର ଯୋନିରେ ଘୂରାଇ ଅନନ୍ତ କାଳଯାଏ ଭୀଷଣ ଦୁଃଖ ଭୋଗ କରିବାକୁ ବାଧ୍ୟ କରେ । ଯଦ୍ୟପି ନିଜକୁ ନିଜେ ଦ୍ୱେଷ ନ କରୁଥିବାରୁ ପ୍ରକୃତରେ କେହି ବି ନିଜର ମନ୍ଦ ଚାହେଁ ନାହିଁ, ତଥାପି ଅଜ୍ଞାନବିମୋହିତ ମନୁଷ୍ୟ ଆସକ୍ତିର ବଶ ହୋଇ ଦୁଃଖକୁ ସୁଖ ଓ ଅହିତକୁ ହିତ ବୋଲି ଭାବି ନିଜର ଯଥାର୍ଥ କଲ୍ୟାଣର ବିପରୀତ ଆଚରଣ କରିବାକୁ ଲାଗେ । ଏହି କଥା ଦେଖାଇବାକୁ କୁହାଗଲା ଯେ, ସେ ଶତ୍ରୁପରି ଆଚରଣ କରେ ।

**ସମ୍ବନ୍ଧ—** *ଯେ ମନ ଓ ଇନ୍ଦ୍ରିୟ ସହିତ ଶରୀରକୁ ଜୟ କରିପାରିଛନ୍ତି, ସେ କାହିଁକି ନିଜେ ହିଁ ନିଜର ମିତ୍ର, ତାହା ସ୍ପଷ୍ଟ କରିବାପାଇଁ ବର୍ତ୍ତମାନ ଭଗବାନ୍ ଶରୀର, ଇନ୍ଦ୍ରିୟ ଓ ମନରୂପୀ ଆତ୍ମାକୁ ବଶ କରିବାର ଫଳ କହୁଛନ୍ତି—*

## ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ସମାହିତଃ ।
## ଶୀତୋଷ୍ଣସୁଖଦୁଃଖେଷୁ ତଥା ମାନାପମାନୟୋଃ ॥ ୭ ॥

**ଅନ୍ୱୟ—** **ଶୀତୋଷ୍ଣସୁଖଦୁଃଖେଷୁ** = ଶୀତ-ଉଷ୍ଣ ଓ ସୁଖ-ଦୁଃଖାଦିରେ; **ତଥା** = ତଥା; **ମାନାପମାନୟୋଃ** = ମାନ ଓ ଅପମାନରେ; **ପ୍ରଶାନ୍ତସ୍ୟ** = ଯାହାଙ୍କ ଅନ୍ତଃକରଣର ବୃତ୍ତିସବୁ ଭଲରୂପେ ଶାନ୍ତ ରହନ୍ତି (ଏପରି); **ଜିତାତ୍ମନଃ** = ସ୍ୱାଧୀନ ଆତ୍ମାବିଶିଷ୍ଟ ପୁରୁଷଙ୍କ (ଜ୍ଞାନରେ); **ପରମାତ୍ମା** = ସଚ୍ଚିଦାନନ୍ଦଘନ ପରମାତ୍ମା; **ସମାହିତଃ** = ସମ୍ୟକ୍ ପ୍ରକାରରେ ସ୍ଥିତ ଅଟନ୍ତି ଅର୍ଥାତ୍ ତାଙ୍କ ଜ୍ଞାନରେ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ହିଁ ନାହିଁ ।

**ଶୀତ-ଉଷ୍ଣ ଓ ସୁଖ-ଦୁଃଖରେ ତଥା ମାନ-ଅପମାନରେ ଯାହାଙ୍କ ଅନ୍ତଃକରଣର ବୃତ୍ତିଗୁଡ଼ିକ ଭଲରୂପେ ଶାନ୍ତ ରହନ୍ତି, ସେପରି ସ୍ୱାଧୀନ-ଆତ୍ମାବିଶିଷ୍ଟ ପୁରୁଷଙ୍କ ଜ୍ଞାନରେ ସଚ୍ଚିଦାନନ୍ଦଘନ ପରମାତ୍ମା ସମ୍ୟକ୍‌ପ୍ରକାରେ ସ୍ଥିତ ଅଟନ୍ତି ଅର୍ଥାତ୍ ତାଙ୍କ ଜ୍ଞାନରେ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ହିଁ ନାହିଁ ॥ ୭ ॥**

**ପ୍ରଶ୍ନ—** ଶୀତ-ଉଷ୍ଣ, ସୁଖ-ଦୁଃଖ ଓ ମାନ-ଅପମାନରେ ଚିତ୍ତବୃତ୍ତିଗୁଡ଼ିକ ଶାନ୍ତ ରହିବା କହିଲେ, କଣ ବୁଝାଏ ?

**ଉତ୍ତର—** ଏଠାରେ ଶୀତ-ଉଷ୍ଣ, ସୁଖ-ଦୁଃଖ ଓ ମାନ-ଅପମାନ ଶବ୍ଦ ଉପଲକ୍ଷଣରୂପରେ ଦିଆଯାଇଛି । ଅତଏବ ଏହି ପ୍ରସଙ୍ଗରେ ଏଗୁଡ଼ିକୁ ଶରୀର, ଇନ୍ଦ୍ରିୟ

ଓ ମନ ସହିତ ସମ୍ବନ୍ଧ ରଖିଥିବା ସମସ୍ତ ସାଂସାରିକ ପଦାର୍ଥର, ଭାବର ଓ ଘଟଣାମାନଙ୍କର ସମାବେଶ ବୋଲି ବୁଝିବାକୁ ହେବ। କୌଣସି ବି ଅନୁକୂଳ ବା ପ୍ରତିକୂଳ ପଦାର୍ଥ, ଭାବ, ବ୍ୟକ୍ତି ବା ଘଟଣାର ସଂଯୋଗ ବା ବିୟୋଗ ହେବାରେ ଅନ୍ତଃକରଣରେ ରାଗ, ଦ୍ୱେଷ, ହର୍ଷ, ଶୋକ, ଇଚ୍ଛା, ଭୟ, ଈର୍ଷା, ଅସୂୟା, କାମ, କ୍ରୋଧ ଓ ବିକ୍ଷେପାଦି କୌଣସିପ୍ରକାର ବିକାର ନ ହେବାକୁ, ଏବଂ ପ୍ରତ୍ୟେକ ପରିସ୍ଥିତିରେ ଚିତ୍ତ ସର୍ବଥା ସମ ଓ ଶାନ୍ତ ହୋଇ ରହିବାକୁ 'ଶୀତୋଷ୍ଣ, ସୁଖ-ଦୁଃଖ ଓ ମାନ-ଅପମାନରେ ଚିତ୍ତବୃତ୍ତିଗୁଡ଼ିକ ସମ୍ପୂର୍ଣ୍ଣ ଶାନ୍ତ ରହିବା' ବୋଲି କୁହାଯାଏ।

**ପ୍ରଶ୍ନ –** **ଜିତାତ୍ମନଃ** ପଦର ଅର୍ଥ କଣ ଓ ଏହା କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ଯେ ଶରୀର, ଇନ୍ଦ୍ରିୟ ଓ ମନକୁ ପୂର୍ଣ୍ଣଭାବରେ ନିଜର ବଶ କରି ନେଇଛନ୍ତି, ସେ **ଜିତାତ୍ମା**। ଏପରି ପୁରୁଷ ସର୍ବଦା ସବୁ ଅବସ୍ଥାରେ ପ୍ରଶାନ୍ତ ବା ନିର୍ବିକାର ରହିପାରନ୍ତି ଓ ସଂସାରସାଗରରୁ ନିଜକୁ ଉଦ୍ଧାର କରି ପରମାତ୍ମାଙ୍କୁ ପାଇପାରନ୍ତି। ତେଣୁ ସେ ସ୍ୱୟଂ ନିଜର ମିତ୍ର ଅଟନ୍ତି। ଏହି ଭାବ ଦେଖାଇବାପାଇଁ ଏଠାରେ **ଜିତାତ୍ମନଃ** ପଦଟି ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ଏଠାରେ **ପରମାତ୍ମା** ପଦ କାହାର ବାଚକ ଓ **ସମାହିତଃ**ର ଅଭିପ୍ରାୟ କଣ ?

**ଉତ୍ତର –** **ପରମାତ୍ମା** ପଦଟି ସଚ୍ଚିଦାନନ୍ଦଘନ ପରବ୍ରହ୍ମଙ୍କ ବାଚକ ଓ **ସମାହିତଃ** ପଦରେ ଦେଖାଇଦିଆଯାଇଛି ଯେ, ଉପରୋକ୍ତ ଲକ୍ଷଣ ଥିବା ପୁରୁଷଙ୍କ ପାଇଁ ପରମାତ୍ମା ସର୍ବଦା ଓ ସର୍ବତ୍ର ପ୍ରତ୍ୟକ୍ଷଭାବରେ ପରିପୂର୍ଣ୍ଣ ହୋଇ ରହିଛନ୍ତି।

***ସମ୍ବନ୍ଧ –*** *ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରିବାର ଫଳ ପରମାତ୍ମପ୍ରାପ୍ତି ବୋଲି କୁହାଗଲା। ଏଣୁ ପରମାତ୍ମପ୍ରାପ୍ତ ହୋଇଥିବା ପୁରୁଷଙ୍କ ଲକ୍ଷଣ ଜାଣିବାକୁ ଇଚ୍ଛା ହେବାରୁ ବର୍ତ୍ତମାନ ଦୁଇଟି ଶ୍ଲୋକରେ ତାଙ୍କ ଲକ୍ଷଣଗୁଡ଼ିକ ବର୍ଣ୍ଣନା କରି ଭଗବାନ୍ ତାଙ୍କୁ ପ୍ରଶଂସା କରୁଛନ୍ତି–*

**ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ ।**
**ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟାଶ୍ମକାଞ୍ଚନଃ ।। ୮ ।।**

**ଅନ୍ୱୟ –** **ଜ୍ଞାନବିଜ୍ଞାନତୃପ୍ତାତ୍ମା** = ଯାହାଙ୍କ ଅନ୍ତଃକରଣ ଜ୍ଞାନବିଜ୍ଞାନଦ୍ୱାରା ତୃପ୍ତ; **କୂଟସ୍ଥଃ** = ଯାହାଙ୍କର ସ୍ଥିତି ବିକାରରହିତ; **ବିଜିତେନ୍ଦ୍ରିୟଃ** = ଯାହାଙ୍କର ଇନ୍ଦ୍ରିୟମାନେ ବିଜିତ ବା ଭଲଭାବରେ ବଶୀଭୂତ; **ସମଲୋଷ୍ଟାଶ୍ମକାଞ୍ଚନଃ** = ଯାହାଙ୍କ ପାଇଁ ମାଟି, ପଥର ଓ ସୁବର୍ଣ୍ଣ ସମାନ; **ଯୋଗୀ** = (ସେହି) ଯୋଗୀ; **ଯୁକ୍ତଃ** = ଯୁକ୍ତ ଅର୍ଥାତ୍ ଭଗବତ୍‌ପ୍ରାପ୍ତ; **ଇତି** = ବୋଲି; **ଉଚ୍ୟତେ** = କୁହାଯାନ୍ତି।

**ଯାହାଙ୍କର ଅନ୍ତଃକରଣ ଜ୍ଞାନବିଜ୍ଞାନରେ ତୃପ୍ତ, ଯାହାଙ୍କର ସ୍ଥିତି ବିକାରଶୂନ୍ୟ, ଯାହାଙ୍କର ଇନ୍ଦ୍ରିୟମାନେ ଭଲଭାବରେ ବଶୀଭୂତ ହୋଇଛନ୍ତି ଏବଂ ଯାହାଙ୍କ ପାଇଁ ମାଟି, ପଥର ଓ ସୁନା ସମାନ, ସେହି ଯୋଗୀ ଯୁକ୍ତ ଅର୍ଥାତ୍ ଭଗବତ୍‌ପ୍ରାପ୍ତ ବୋଲି କୁହାଯାନ୍ତି।। ୮ ।।**

**ପ୍ରଶ୍ନ –** ଏଠାରେ **ଜ୍ଞାନବିଜ୍ଞାନତୃପ୍ତାତ୍ମା** ପଦଦ୍ୱାରା କେଉଁ ପୁରୁଷଙ୍କୁ ଲକ୍ଷ୍ୟ କରାଯାଇଛି ?

**ଉତ୍ତର –** ପରମାତ୍ମାଙ୍କ ନିର୍ଗୁଣ-ନିରାକାର ତତ୍ତ୍ୱର ପ୍ରଭାବ ତଥା ମାହାତ୍ମ୍ୟ ପ୍ରଭୃତିର ରହସ୍ୟସହିତ ଯଥାର୍ଥ ଜ୍ଞାନକୁ **ଜ୍ଞାନ** କହନ୍ତି ଏବଂ ସଗୁଣ ନିରାକାର ଓ ସାକାର ତତ୍ତ୍ୱର ଲୀଳା, ରହସ୍ୟ, ମହତ୍ତ୍ୱ, ଗୁଣ ଓ ପ୍ରଭାବ ଆଦିର ଯଥାର୍ଥ ଜ୍ଞାନକୁ **ବିଜ୍ଞାନ** କହନ୍ତି। ଯେଉଁ ପୁରୁଷ ପରମାତ୍ମାଙ୍କ ନିର୍ଗୁଣ-ସଗୁଣ, ନିରାକାର-ସାକାର ତତ୍ତ୍ୱର ପୂର୍ଣ୍ଣ ଜ୍ଞାନ ଲାଭ କରିଛନ୍ତି, ଯାହାଙ୍କ ଅନ୍ତଃକରଣ ଉପରୋକ୍ତ ଦୁଇ ତତ୍ତ୍ୱର ଯଥାର୍ଥ ଜ୍ଞାନଦ୍ୱାରା ଭଲଭାବରେ ତୃପ୍ତ ହୋଇଗଲାଣି, ଯାହାଙ୍କର ଆଉ କିଛି ଜାଣିବାକୁ ବାକି ନାହିଁ, ସେ **ଜ୍ଞାନବିଜ୍ଞାନତୃପ୍ତାତ୍ମା** ଅଟନ୍ତି।

**ପ୍ରଶ୍ନ –** ଏଠାରେ **କୂଟସ୍ଥଃ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ସୁନାରିମାନଙ୍କର ବା କମାରମାନଙ୍କର ଲୁହାର ନେହିକୁ **'କୂଟ'** କହନ୍ତି। ତା' ଉପରେ ସୁନା,

ରୁପା, ଲୁହା ଆଦି ରଖି ହାତୁଡ଼ିରେ କୁଟାଯାଏ ଅର୍ଥାତ୍– ବାଡ଼େଇ ବାଡ଼େଇ ବିଭିନ୍ନ ରୂପ ଦିଆଯାଏ। କୁଟିବା ସମୟରେ କୂଟ ଉପରେ ବିଶେଷ ଜୋର ବା ଚାପ ପଡ଼େ। ତଥାପି ତାହା ହଲଚଲ ହୁଏ ନାହିଁ; ସର୍ବଦା ଅଚଳ ରହେ। ଏହିପ୍ରକାରେ ଯେଉଁ ପୁରୁଷ ଯେତେ ବଡ଼ ଦୁଃଖ ପଡ଼ିଲେ ମଧ୍ୟ ନିଜର ସ୍ଥିତିରୁ ଟିକିଏ ବି ବିଚଳିତ ହୁଅନ୍ତି ନାହିଁ, ଯାହାଙ୍କ ଅନ୍ତରରେ ତିଳେ ହେଲେ ବିକାର ଉତ୍ପନ୍ନ ହୁଏ ନାହିଁ ଓ ଯେ ସର୍ବଦା ଅଚଳଭାବରେ ପରମାତ୍ମାଙ୍କ ସ୍ୱରୂପରେ ମଜ୍ଜି ରହନ୍ତି, ତାହାଙ୍କୁ **କୂଟସ୍ଥ** କହନ୍ତି।

**ପ୍ରଶ୍ନ –** **ବିଜିତେନ୍ଦ୍ରିୟଃ**ର ଭାବ କଣ ?

**ଉତ୍ତର –** ସଂସାରର ସମସ୍ତ ବିଷୟ ମାୟାମୟ ଓ କ୍ଷଣିକ ବୋଲି ଜାଣିପାରିବାହେତୁ ଯାହାଙ୍କର କୌଣସି ବିଷୟରେ ବି ତିଳେମାତ୍ର ଆସକ୍ତି ରହି ନାହିଁ ଏବଂ ଯାହାଙ୍କ ଇନ୍ଦ୍ରିୟମାନେ ବିଷୟଭୋଗରୁ କୌଣସି ରସ ନ ପାଇ ସେଥିରୁ ନିବୃତ୍ତ ହୋଇଯାଇଛନ୍ତି ତଥା ଲୋକସଂଗ୍ରହପାଇଁ ଯେ ନିଜର ଇଚ୍ଛାନୁସାରେ ସେମାନଙ୍କୁ ଯଥାଯୋଗ୍ୟ ଯେଉଁଠି ଲଗାଇଥାନ୍ତି, ସେଠାରେ ଲାଗିଥାଆନ୍ତି, ଯାହାଙ୍କ ଇନ୍ଦ୍ରିୟମାନେ ସ୍ୱେଚ୍ଛାରେ କେଉଁଠିକି ଯାଆନ୍ତି ନାହିଁ ଓ ତାଙ୍କ ମନରେ କୌଣସିପ୍ରକାର କ୍ଷୋଭ ଜନ୍ମାନ୍ତି ନାହିଁ, ଯାହାଙ୍କ ଇନ୍ଦ୍ରିୟଗଣ ଏହିପ୍ରକାରେ ତାଙ୍କ ନିଜ ଅଧୀନରେ ରହିଛନ୍ତି, ସେ **ବିଜିତେନ୍ଦ୍ରିୟ** ଅଟନ୍ତି।

**ପ୍ରଶ୍ନ –** **ସମଲୋଷ୍ଟାଶ୍ମକାଞ୍ଚନଃ**ର ଭାବ କଣ ?

**ଉତ୍ତର –** ମାଟି, ପଥର ଓ ସୁନା ଆଦି ସମସ୍ତ ପଦାର୍ଥରେ ପରମାତ୍ମବୁଦ୍ଧି ହୋଇଯିବାରୁ ଯାହାଙ୍କ ପାଇଁ ଏହି ତିନୋଟିଯାକ ସମାନ, ଯେ ଅଜ୍ଞାନୀମାନଙ୍କ ପରି ସୁନାରେ ଆସକ୍ତ ନୁହନ୍ତି କି ମାଟି, ପଥର ଆଦିରେ ଦ୍ୱେଷ କରନ୍ତି ନାହିଁ, ସବୁକୁ ଏକ ବୋଲି ଭାବନ୍ତି, ସେ **ସମଲୋଷ୍ଟାଶ୍ମକାଞ୍ଚନ** ଅଟନ୍ତି।

## ସୁହୃନ୍ମିତ୍ରାର୍ଯୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।
## ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ ।। ୯ ।।

**ଅନ୍ୱୟ –** **ସୁହୃନ୍ମିତ୍ରାର୍ଯୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ** = ସୁହୃଦ୍, ମିତ୍ର, ବୈରୀ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ ଓ ବନ୍ଧୁଗଣଙ୍କ ଠାରେ; **ସାଧୁଷୁ** = ଧର୍ମାତ୍ମାମାନଙ୍କ ଠାରେ; **ଚ** = ଓ; **ପାପେଷୁ** = ପାପୀମାନଙ୍କ ଠାରେ; **ଅପି** = ମଧ୍ୟ; **ସମବୁଦ୍ଧିଃ** = ସମାନ ଭାବ ରଖୁଥିବା ପୁରୁଷ; **ବିଶିଷ୍ୟତେ** = ଅତ୍ୟନ୍ତ ଶ୍ରେଷ୍ଠ ଅଟନ୍ତି।

**ସୁହୃଦ୍, ମିତ୍ର, ବୈରୀ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ ଓ ବନ୍ଧୁଗଣଙ୍କ ଠାରେ, ଧର୍ମାତ୍ମାମାନଙ୍କ ଠାରେ ଓ ପାପୀମାନଙ୍କ ଠାରେ ମଧ୍ୟ ସମାନ ଭାବ ରଖୁଥିବା ପୁରୁଷ ଅତ୍ୟନ୍ତ ଶ୍ରେଷ୍ଠ ଅଟନ୍ତି।।। ୯ ।।**

**ପ୍ରଶ୍ନ –** **ସୁହୃଦ୍** ଓ **ମିତ୍ର** ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ସମ୍ବନ୍ଧ ଓ ଉପକାର ଆଦିର ଅପେକ୍ଷା ନ କରି ବିନା କାରଣରେ ହିଁ ସ୍ୱଭାବତଃ ପ୍ରେମ ଓ ହିତ କରୁଥିବା ଲୋକଙ୍କୁ **ସୁହୃଦ୍** କହନ୍ତି ଏବଂ ପରସ୍ପର ପ୍ରେମ ଓ ହିତ କରୁଥିବା ଲୋକଙ୍କୁ **ମିତ୍ର** କହନ୍ତି।

**ପ୍ରଶ୍ନ –** **ଅରି** (ବୈରୀ) ଓ **ଦ୍ୱେଷ୍ୟ** (ଦ୍ୱେଷର ପାତ୍ର) ମଧ୍ୟରେ ପ୍ରଭେଦ କଣ ?

**ଉତ୍ତର –** କୌଣସି କାରଣରୁ କ୍ଷତି କରିବାର ଇଚ୍ଛା ବା ଚେଷ୍ଟା କରୁଥିବା ଲୋକଙ୍କୁ **ବୈରୀ** କୁହାଯାଏ ଓ ସ୍ୱଭାବତଃ ହିଁ ପ୍ରତିକୂଳ ଆଚରଣ କରୁଥିବାରୁ ଯେ ଦ୍ୱେଷର ପାତ୍ର ହୁଏ, ତାଙ୍କୁ **ଦ୍ୱେଷ୍ୟ** କୁହାଯାଏ।

**ପ୍ରଶ୍ନ –** **ମଧ୍ୟସ୍ଥ** ଓ **ଉଦାସୀନ** ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ପରସ୍ପର ଝଗଡ଼ା କରୁଥିବା ଲୋକମାନଙ୍କୁ ମିଳାଇବାପାଇଁ ଚେଷ୍ଟା କରୁଥିବା ଲୋକଙ୍କୁ ଓ ପକ୍ଷପାତ ଛାଡ଼ି ସେମାନଙ୍କର ହିତପାଇଁ ନ୍ୟାୟ ଦେଉଥିବା ଲୋକଙ୍କୁ **ମଧ୍ୟସ୍ଥ** କହନ୍ତି ଏବଂ ଦୁଇପକ୍ଷ ସହିତ କୌଣସିପ୍ରକାର ସମ୍ବନ୍ଧ ନ ରଖୁଥିବା ଲୋକଙ୍କୁ **ଉଦାସୀନ** କହନ୍ତି।

**ପ୍ରଶ୍ନ –** ଏଠାରେ ଅପିର ଅଭିପ୍ରାୟ କଣ ?

**ଉତ୍ତର –** ସୁହୃଦ୍, ମିତ୍ର, ଉଦାସୀନ, ମଧ୍ୟସ୍ଥ ଓ ସାଧୁ-ସଦାଚାରୀ ପୁରୁଷମାନଙ୍କ ପ୍ରତି ଏବଂ ନିଜ କୁଟୁମ୍ବର ଲୋକମାନଙ୍କ ପ୍ରତି ପ୍ରେମ ହେବା ସ୍ୱାଭାବିକ। ସେହିପରି

ବୈରୀ, ଦ୍ୱେଷ୍ୟ ଓ ପାପୀମାନଙ୍କ ପ୍ରତି ଦ୍ୱେଷ ଓ ଘୃଣା ହେବା ସ୍ୱାଭାବିକ। ବିବେକଶୀଳ ପୁରୁଷମାନଙ୍କ ମଧ୍ୟରେ ବି ଏହି ଲୋକମାନଙ୍କ ପ୍ରତି ସ୍ୱାଭାବିକ ରାଗ-ଦ୍ୱେଷପରି ଭାବ ଦେଖାଯାଏ। ଏହିପରି ପରସ୍ପର ଅତ୍ୟନ୍ତ ବିରୁଦ୍ଧ ସ୍ୱଭାବର ମନୁଷ୍ୟମାନଙ୍କ ପ୍ରତି ରାଗ-ଦ୍ୱେଷ ଓ ଭେଦବୁଦ୍ଧି ନ ହେବା ବଡ଼ କଠିନ। କିନ୍ତୁ ସେମାନଙ୍କ ପ୍ରତି ବି ଯାହାଙ୍କର ସମଭାବ ରହେ, ତାଙ୍କର ଯେ ଅନ୍ୟତ୍ର ସମଭାବ ରହେ, ସେଥିରେ କହିବାର କଣ ଅଛି! ଏହି ଭାବ ଦେଖାଇବାପାଇଁ **ଅପି** ପ୍ରୟୋଗ କରାଯାଇଛି।

**ପ୍ରଶ୍ନ – ସମବୁଦ୍ଧିର** ଅଭିପ୍ରାୟ କଣ ?

**ଉତ୍ତର –** ସର୍ବତ୍ର ପରମାତ୍ମବୁଦ୍ଧି ହୋଇଯିବାରୁ ଯାହାଙ୍କ ଉପରେ ଉପରୋକ୍ତ ଅତ୍ୟନ୍ତ ବିଲକ୍ଷଣ ସ୍ୱଭାବଯୁକ୍ତ ମିତ୍ର, ବୈରୀ, ସାଧୁ ଓ ପାପୀ ଆଦିଙ୍କ ଆଚରଣ, ସ୍ୱଭାବ ଓ ବ୍ୟବହାରଗତ ପ୍ରଭେଦ କିଛି ବି ପ୍ରଭାବ ପଡ଼େ ନାହିଁ, ଯାହାଙ୍କର ବୁଦ୍ଧିରେ କୌଣସି ସମୟରେ, କୌଣସି ବି ପରିସ୍ଥିତିରେ ଏବଂ କୌଣସି କାରଣରୁ ଭେଦଭାବ ଆସେ ନାହିଁ, ତାହାଙ୍କୁ **ସମବୁଦ୍ଧି** ବୋଲି ବୁଝିବା ଉଚିତ।

*__ସମ୍ବନ୍ଧ –__ ଷଷ୍ଠ ଶ୍ଳୋକରେ କୁହାଯାଇଛି ଯେ, ଯେ ଶରୀର, ଇନ୍ଦ୍ରିୟ ଓ ମନରୂପୀ ଆତ୍ମାକୁ ଜୟ କରିନେଇଛନ୍ତି, ସେ ନିଜେ ନିଜର ମିତ୍ର। ପୁଣି ସପ୍ତମ ଶ୍ଳୋକରେ ସେହି 'ଜିତାତ୍ମା' ପୁରୁଷ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି ବୋଲି କହି ତଥା ଅଷ୍ଟମ ଓ ନବମ ଶ୍ଳୋକରେ ପରମାତ୍ମପ୍ରାପ୍ତ ପୁରୁଷଙ୍କ ଲକ୍ଷଣ କହି ତାଙ୍କୁ ପ୍ରଶଂସା କରାଯାଇଛି। ଏହା ଉପରେ ପ୍ରଶ୍ନ ଉଠେ: ପରମାତ୍ମପ୍ରାପ୍ତିପାଇଁ ଜିତାତ୍ମା ପୁରୁଷଙ୍କୁ କଣ କରିବା ଉଚିତ? ସେ କେଉଁ ସାଧନାଦ୍ୱାରା ପରମାତ୍ମାଙ୍କୁ ଶୀଘ୍ର ପାଇପାରିବେ? ତାହା କହିବାକୁ ଭଗବାନ୍ ଧ୍ୟାନଯୋଗ ପ୍ରକରଣ ଆରମ୍ଭ କରୁଛନ୍ତି–*

## ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ।
## ଏକାକୀ ଯତଚିତ୍ତାତ୍ମା ନିରାଶୀରପରିଗ୍ରହଃ॥ ୧୦ ॥

**ଅନ୍ୱୟ –** **ଯତଚିତ୍ତାତ୍ମା** = ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥିବା; **ନିରାଶୀଃ** = ଆଶାରହିତ; **ଅପରିଗ୍ରହଃ** = (ଓ) ସଂଗ୍ରହ କରୁ ନ ଥିବା; **ଯୋଗୀ** = ଯୋଗୀ; **ଏକାକୀ** = ଏକାକୀ ହିଁ; **ରହସି** = ଏକାନ୍ତ ସ୍ଥାନରେ; **ସ୍ଥିତଃ** = ଅବସ୍ଥିତ ହୋଇ; **ଆତ୍ମାନମ୍** = ଆତ୍ମାକୁ; **ସତତମ୍** = ନିରନ୍ତର; **ଯୁଞ୍ଜୀତ** = (ପରମାତ୍ମାରେ) ଲଗାଇବା ଉଚିତ।

**ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥିବା, ଆଶାରହିତ ଓ ସଂଗ୍ରହରହିତ ଯୋଗୀ ଏକାକୀ ହିଁ ଏକାନ୍ତ ସ୍ଥାନରେ ଅବସ୍ଥିତ ହୋଇ ଆତ୍ମାକୁ ନିରନ୍ତର ପରମାତ୍ମାରେ ଲଗାଇବା ଉଚିତ॥ ୧୦ ॥**

**ପ୍ରଶ୍ନ – ନିରାଶୀ** ର ଭାବ କଣ ?

**ଉତ୍ତର –** ଇହଲୋକ ଓ ପରଲୋକର ଭୋଗ୍ୟ ବସ୍ତୁକୁ ପାଇବାନିମନ୍ତେ ଯେ କୌଣସି ଅବସ୍ଥାରେ, କୌଣସିପ୍ରକାରେ ମଧ୍ୟ କିଞ୍ଚିନ୍ମାତ୍ର ବି ଇଚ୍ଛା ବା ଆଶା କରନ୍ତି ନାହିଁ, ସେ **ନିରାଶୀ** ।

**ପ୍ରଶ୍ନ – ଅପରିଗ୍ରହଃ**ର ଅଭିପ୍ରାୟ କଣ ?

**ଉତ୍ତର –** ଭୋଗସାମଗ୍ରୀ ସଂଗ୍ରହର ନାମ **ପରିଗ୍ରହ**। ଯେ ସେଥିରୁ ନିବୃତ୍ତ, ତାହାଙ୍କୁ **ଅପରିଗ୍ରହ** କହନ୍ତି। ସେ ଯଦି ଗୃହସ୍ଥ ହୋଇଥାନ୍ତି, ତେବେ କୌଣସି ବସ୍ତୁ ମମତ୍ୱପୂର୍ବକ ସଂଗ୍ରହ କରନ୍ତି ନାହିଁ ଓ ଯଦି ବ୍ରହ୍ମଚାରୀ, ବାନପ୍ରସ୍ଥ ବା ସନ୍ନ୍ୟାସୀ ହୋଇଥାନ୍ତି, ତେବେ ସ୍ୱରୂପତଃ କୌଣସିପ୍ରକାର ଶାସ୍ତ୍ରପ୍ରତିକୂଳ ସଂଗ୍ରହ କରନ୍ତି ନାହିଁ। ଏପରି ମନୁଷ୍ୟ ଯେକୌଣସି ଆଶ୍ରମର ହୋଇଥିଲେ ମଧ୍ୟ **ଅପରିଗ୍ରହ** ହିଁ ଅଟନ୍ତି।

**ପ୍ରଶ୍ନ –** ଏଠାରେ **ଯୋଗୀ** ପଦ କାହାର ବାଚକ ?

**ଉତ୍ତର –** ଏଠାରେ ଭଗବାନ୍ ଧ୍ୟାନଯୋଗରେ ରତ ହେବାକୁ କହୁଛନ୍ତି; ଏଣୁ **ଯୋଗୀ** ଧ୍ୟାନଯୋଗର ଅଧିକାରୀଙ୍କ ବାଚକ; ସିଦ୍ଧ ଯୋଗୀଙ୍କ ବାଚକ ନୁହେଁ।

**ପ୍ରଶ୍ନ –** ଏଠାରେ **ଏକାକୀ** ବିଶେଷଣ କାହିଁକି ଦିଆଯାଇଛି ?

**ଉତ୍ତର—** ବହୁ ଲୋକଙ୍କ ମଧ୍ୟରେ ରହି ଧ୍ୟାନ ଅଭ୍ୟାସ କରିବା ଅତ୍ୟନ୍ତ କଠିନ। ଅନ୍ୟ ଜଣେ କେହି ସାଥୀରେ ରହିଲେ, କଥାବାର୍ତ୍ତା କରନ୍ତି; ତେଣୁ ଧ୍ୟାନରେ ବିଘ୍ନ ଆସେ। ଅତଏବ ଏକାକୀ ରହି ଧ୍ୟାନ ଅଭ୍ୟାସ କରିବା ଉଚିତ। ଏଥିପାଇଁ **ଏକାକୀ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ—** ଏକାନ୍ତ ସ୍ଥାନରେ ରହିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର—** ବନ, ପର୍ବତ, ଗୁମ୍ଫା ଆଦି ଏକାନ୍ତ ସ୍ଥାନ ହିଁ ଧ୍ୟାନପାଇଁ ଉପଯୁକ୍ତ। ଯେଉଁଠି ବହୁ ଲୋକଙ୍କର ଗମନାଗମନ ହୁଏ, ସେଠାରେ ଧ୍ୟାନଯୋଗ ସାଧନା ହୋଇପାରେ ନାହିଁ। ତେଣୁ ଏପରି କୁହାଯାଇଛି।

**ପ୍ରଶ୍ନ—** ଏଠାରେ **ଆତ୍ମା** ଶବ୍ଦ କାହାର ବାଚକ ଓ ତାହାକୁ ପରମାତ୍ମାଙ୍କ ଠାରେ ଲଗାଇବା କହିଲେ କଣ ବୁଝାଏ ?

**ଉତ୍ତର—** ଏଠାରେ **ଆତ୍ମା** ଶବ୍ଦ ମନ-ବୁଦ୍ଧିରୂପୀ ଅନ୍ତଃକରଣର ବାଚକ ଓ ମନ-ବୁଦ୍ଧିକୁ ପରମାତ୍ମାରେ ତନ୍ମୟ କରିଦେବା ହିଁ ତାହାକୁ ପରମାତ୍ମାରେ ଲଗାଇବା।

**ପ୍ରଶ୍ନ— ସତତମ୍‌**ର ଅଭିପ୍ରାୟ କଣ ?

**ଉତ୍ତର— ସତତମ୍‌** ପଦ **ଯୁଞ୍ଜୀତ** କ୍ରିୟାର ବିଶେଷଣ ଓ ନିରନ୍ତରତାର ବାଚକ। ଅଭିପ୍ରାୟ ଏହି ଯେ, ଧ୍ୟାନ କରିବା ସମୟରେ କୌଣସି ବି ଅନ୍ତରାୟ ଆସିବା ଉଚିତ ନୁହେଁ। ନିରନ୍ତର ପରମାତ୍ମାଙ୍କ ଧ୍ୟାନରେ ଏପରି ରତ ହେବା ଉଚିତ, ଯେପରି କି ଧ୍ୟାନ ଭାଙ୍ଗିବ ନାହିଁ।

*ସମ୍ବନ୍ଧ— ଜିତାତ୍ମା ପୁରୁଷଙ୍କୁ ଧ୍ୟାନଯୋଗ ସାଧନା କରିବାକୁ କୁହାଗଲା। ବର୍ତ୍ତମାନ ସେହି ଧ୍ୟାନଯୋଗର ବିସ୍ତୃତ ବର୍ଣ୍ଣନା କରିବାକୁ ଯାଇ ଭଗବାନ୍ ପ୍ରଥମେ ଧ୍ୟାନପାଇଁ ସ୍ଥାନ ଓ ଆସନ ବର୍ଣ୍ଣନା କରୁଛନ୍ତି—*

## ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ ସ୍ଥିରମାସନମାତ୍ମନଃ।
## ନାତ୍ୟୁଚ୍ଛ୍ରିତଂ ନାତିନୀଚଂ ଚୈଲାଜିନକୁଶୋତ୍ତରମ୍॥ ୧୧ ॥

**ଅନ୍ୱୟ— ଶୁଚୌ** = ଶୁଦ୍ଧ; **ଦେଶେ** = ଭୂମିରେ (ଯାହା ଉପରେ କ୍ରମଶଃ); **ଚୈଲାଜିନକୁଶୋତ୍ତରମ୍‌** = କୁଶ (ଉପରେ) ମୃଗଚର୍ମ ଓ (ତା'ଉପରେ) ବସ୍ତ୍ର ବିଛାଇ; **ନ, ଅତ୍ୟୁଚ୍ଛ୍ରିତମ୍‌** = (ଯାହା) ଅତି ଉଚ୍ଚା ନୁହେଁ କି; **ନ, ଅତିନୀଚମ୍‌** = ଅତି ନୀଚା ନୁହେଁ (ସେପରି); **ଆତ୍ମନଃ** = ନିଜର; **ଆସନମ୍‌** = ଆସନକୁ; **ସ୍ଥିରମ୍‌** = ସ୍ଥିରଭାବେ; **ପ୍ରତିଷ୍ଠାପ୍ୟ** = ପକାଇ।

**ଶୁଦ୍ଧ ଭୂମି ଉପରେ କ୍ରମଶଃ କୁଶ, ତା' ଉପରେ ମୃଗଚର୍ମ ଓ ତା'ଉପରେ ବସ୍ତ୍ର ବିଛାଇ ଅତି ଉଚ୍ଚା କିମ୍ବା ଅତି ନୀଚା ନ କରି ନିଜର ଆସନ ସ୍ଥିର କରି ପକାଇ,- - -॥ ୧୧ ॥**

**ପ୍ରଶ୍ନ— ଶୁଚୌ ଦେଶେ**ର ଭାବ କଣ ?

**ଉତ୍ତର—** ଧ୍ୟାନ-ଯୋଗ ସାଧନା କରିବାପାଇଁ ଏପରି ସ୍ଥାନ ବାଛିବା ଉଚିତ, ଯାହା କି ସ୍ୱଭାବତଃ ଶୁଦ୍ଧ ହୋଇଥିବ ଓ ଝାଡ଼ିଝୁଡ଼ି, ଲିପି-ପୋଛି ଅଥବା ଧୋଇଧାଇ ସ୍ୱଚ୍ଛ ଓ ନିର୍ମଳ କରାଯାଇଥିବ। ଗଙ୍ଗା, ଯମୁନା, ବା ଅନ୍ୟ କୌଣସି ପବିତ୍ର ନଦୀ-ତଟ, ପର୍ବତଗୁମ୍ଫା, ଦେବାଳୟ, ତୀର୍ଥସ୍ଥାନ ଅଥବା ଉଦ୍ୟାନ ଆଦି ପବିତ୍ର ବାୟୁମଣ୍ଡଳ ଥିବା ସ୍ଥାନମାନଙ୍କ ମଧ୍ୟରୁ ଯାହା ସୁବିଧାରେ ମିଳିବ ଓ ଯାହା ସ୍ୱଚ୍ଛ, ପବିତ୍ର ତଥା ଏକାନ୍ତ ହୋଇଥିବ, ଧ୍ୟାନଯୋଗପାଇଁ ସାଧକ ସେପରି କୌଣସି ଏକ ସ୍ଥାନ ବାଛିନେବା ଉଚିତ।

**ପ୍ରଶ୍ନ—** ଏଠାରେ **ଆସନମ୍‌** ପଦ କାହାର ବାଚକ ଓ ତା' ସହିତ **ନାତ୍ୟୁଚ୍ଛ୍ରିତମ୍, ନାତିନୀଚମ୍‌** ଓ **ଚୈଲାଜିନ-କୁଶୋତ୍ତରମ୍‌**— ଏହିପରି ତିନୋଟି ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** କାଠ ବା ପଥର ତିଆରି ପିଢ଼ା ବା ଚୌକି, ଯାହା ଉପରେ ମନୁଷ୍ୟ ସ୍ଥିରଭାବରେ ବସିପାରିବ, ତାହାକୁ ଏଠାରେ ଆସନ କୁହାଯାଇଛି। ସେହି ଆସନ ଯଦି ବେଶୀ ଉଚ୍ଚା ହେବ, ତେବେ ଧ୍ୟାନସମୟରେ ବିଘ୍ନରୂପରେ ଆଳସ୍ୟ ବା ନିଦ୍ରା ଆସିଗଲେ ତା'ଉପରୁ ଖସିପଡ଼ି ଆଘାତ ଲାଗିବାର ଭୟ ରହିବ ଓ ଯଦି ଅତ୍ୟନ୍ତ ନୀଚା ହେବ, ତେବେ ଭୂମିର ଶୀତଳତା— ଉଷ୍ଣତାଦ୍ୱାରା ଏବଂ ପିମ୍ପୁଡ଼ି ଆଦି କୀଟମାନଙ୍କ ଦ୍ୱାରା ବିଘ୍ନ ହେବାର ଭୟ ରହିବ। ତେଣୁ **ନାତ୍ୟୁଚ୍ଛ୍ରିତମ୍‌** ଓ

**ନାତିନୀଚମ୍** ବିଶେଷଣ ଦେଇ କୁହାଯାଇଛି ଯେ, ଆସନ ବେଶୀ ଉଚ୍ଚା କିମ୍ବା ବେଶୀ ନୀଚା ହେବା ଉଚିତ ନୁହେଁ। କାଠ ବା ପଥର ଆସନ କଠିନ ଲାଗେ। ତା' ଉପରେ ବସିଲେ ପାଦରେ ପୀଡ଼ା ହେବାର ସମ୍ଭାବନା ରହିଛି। ତେଣୁ **ଚୈଲାଜିନକୁଶୋତ୍ତରମ୍** ବିଶେଷଣ ଦେଇ ବୁଝାଇଦିଆଯାଇଛି ଯେ, ଆସନରେ ପ୍ରଥମେ କୁଶ, ତା' ଉପରେ ମୃଗଚର୍ମ ଓ ତା'ଉପରେ ବସ୍ତ୍ର ବିଛାଇ ତାହାକୁ କୋମଳ କରିଦେବା ଉଚିତ। (ମୃଗଚର୍ମ ସ୍ୱତଃ ମରିଥିବା ମୃଗର ହେବା ଉଚିତ। ଜାଣି ଜାଣି ମାରିଥିବା ମୃଗର ଚର୍ମ ହେବା ଉଚିତ ନୁହେଁ; ହିଂସାଦ୍ୱାରା ପ୍ରାପ୍ତ ଚର୍ମ ସାଧନାରେ ସହାୟକ ହୋଇପାରେ ନାହିଁ। ମୃଗଚର୍ମ-ଅଭାବରେ କମ୍ବଳ ଆସନ ରଖାଯାଇପାରେ।) ମୃଗଚର୍ମତଳେ କୁଶ ରହିଲେ ତାହା ଶୀଘ୍ର ଖରାପ ହେବ ନାହିଁ ଓ ତା'ଉପରେ ବସ୍ତ୍ର ରହିଲେ ତା'ର ଲୋମ ଶରୀରରେ ଲାଗିବ ନାହିଁ। ତେଣୁ ଏପରି ତିନୋଟି ପରସ୍ତ ବିଛାଇବାର ବ୍ୟବସ୍ଥା ଦିଆଯାଇଛି।

**ପ୍ରଶ୍ନ – ଆତ୍ମନଃ**ର ଅଭିପ୍ରାୟ କଣ ?

**ଉତ୍ତର –** ଉପରୋକ୍ତ ଆସନ ନିଜର ହେବା ଉଚିତ। ଧ୍ୟାନ କରିବାବେଳେ ଅନ୍ୟ କାହାର ଆସନ ଉପରେ ବସିବା ଉଚିତ ନୁହେଁ।

**ପ୍ରଶ୍ନ – ସ୍ଥିରଂ ପ୍ରତିଷ୍ଠାପ୍ୟ**ର ଅଭିପ୍ରାୟ କଣ ?

**ଉତ୍ତର –** କାଠ ବା ପଥର ତିଆରି ଉପରୋକ୍ତ ଆସନକୁ ଭୂମି ଉପରେ ଭଲଭାବେ ସ୍ଥାପନ କରିବା ଉଚିତ, ଯେପରି କି ତାହା ଟଳମଳ ହେବ ନାହିଁ; କାରଣ ଆସନ ଟଳମଳ ହେଲେ ବା ଓଲଟି ପଡ଼ିଲେ ସାଧନାରେ ବିଘ୍ନ ଆସିବ।

*ସମ୍ବନ୍ଧ – ପବିତ୍ର ସ୍ଥାନରେ ଆସନ ସ୍ଥାପନା କରିବା ପରେ ଧ୍ୟାନଯୋଗସାଧକଙ୍କୁ କଣ କରିବା ଉଚିତ, ବର୍ତ୍ତମାନ ତାହା କହୁଛନ୍ତି–*

## ତତ୍ରୈକାଗ୍ରଂ ମନଃ କୃତ୍ୱା ଯତଚିତ୍ତେନ୍ଦ୍ରିୟକ୍ରିୟଃ।
## ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍ ଯୋଗମାତ୍ମବିଶୁଦ୍ଧୟେ ॥ ୧୨ ॥

**ଅନ୍ୱୟ –** **ତତ୍ର** = ସେହି; **ଆସନେ** = ଆସନରେ; **ଉପବିଶ୍ୟ** = ବସି; **ଯତଚିତ୍ତେନ୍ଦ୍ରିୟକ୍ରିୟଃ** = ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ବଶରେ ରଖି; **ମନଃ** = ମନକୁ; **ଏକାଗ୍ରମ୍** = ଏକାଗ୍ର; **କୃତ୍ୱା** = କରି; **ଆତ୍ମବିଶୁଦ୍ଧୟେ** = ଅନ୍ତଃକରଣଶୁଦ୍ଧିପାଇଁ; **ଯୋଗମ୍** = ଯୋଗର; **ଯୁଞ୍ଜ୍ୟାତ୍** = ଅଭ୍ୟାସ କରିବା ଉଚିତ।

**ସେହି ଆସନରେ ବସି ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ବଶରେ ରଖି ମନ ଏକାଗ୍ର କରି ଅନ୍ତଃକରଣଶୁଦ୍ଧିପାଇଁ ଯୋଗ ଅଭ୍ୟାସ କରିବା ଉଚିତ।। ୧୨ ।।**

**ପ୍ରଶ୍ନ –** ଏଠାରେ ଆସନ ଉପରେ କିପରି ବସିବ, ତାହା ନିର୍ଦ୍ଦିଷ୍ଟରୂପେ ନ କହି ସାମାନ୍ୟଭାବରେ ହିଁ ବସିବା ପାଇଁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** 'ଧ୍ୟାନଯୋଗ'-ସାଧନାପାଇଁ ବସିବାରେ ଯେଉଁ ନିୟମ ଆବଶ୍ୟକ, ତା'ର ସ୍ପଷ୍ଟୀକରଣ ଆଗ ଶ୍ଳୋକରେ କରାଯାଇଛି। ତାହା ପାଳନ କରି ଯେଉଁ ସାଧକ ସ୍ୱସ୍ତିକ, ସିଦ୍ଧ ବା ପଦ୍ମ ଆଦି ଆସନମାନଙ୍କ ମଧ୍ୟରୁ ଯେଉଁ ଆସନରେ ସୁଖପୂର୍ବକ ଅଧିକ ସମୟଯାଏ ସ୍ଥିରଭାବେ ବସିପାରିବେ, ତାଙ୍କ ପାଇଁ ତାହା ଉପଯୁକ୍ତ। ତେଣୁ ଏଠାରେ କୌଣସି ଆସନବିଶେଷର ବର୍ଣ୍ଣନା ନ କରି ସାମାନ୍ୟଭାବରେ ବସିବାକୁ କୁହାଯାଇଛି।

**ପ୍ରଶ୍ନ – ଯତଚିତ୍ତେନ୍ଦ୍ରିୟକ୍ରିୟଃ**ର ଅଭିପ୍ରାୟ କଣ ?

**ଉତ୍ତର –** 'ଚିତ୍ତ' ଶବ୍ଦ ଅନ୍ତଃକରଣରବୋଧକ। ମନ ଓ ବୁଦ୍ଧିରେ ଯେଉଁ ସାଂସାରିକ ବିଷୟମାନଙ୍କର ଚିନ୍ତନ ଓ ନିଶ୍ଚୟ କରାଯାଏ, ତାହାର ସର୍ବଥା ତ୍ୟାଗ କରି ସେଥିରୁ ଉପରତ ହୋଇଯିବା ହିଁ ଅନ୍ତଃକରଣର କ୍ରିୟାକୁ ବଶ କରିବା। 'ଇନ୍ଦ୍ରିୟ' ଶ୍ରବଣ ଆଦି ଦଶ ଇନ୍ଦ୍ରିୟର ବୋଧକ। ଶୁଣିବା, ଦେଖିବା ଆଦିରୁ ସେମାନଙ୍କୁ ରୋଧ କରିବା ହିଁ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ବଶ କରିବା।

**ପ୍ରଶ୍ନ –** ମନକୁ ଏକାଗ୍ର କରିବା କହିଲେ କଣ ବୁଝାଏ ?

**ଉତ୍ତର –** ଧ୍ୟେୟ ବସ୍ତୁରେ ମନର ବୃତ୍ତିମାନଙ୍କୁ ଭଲଭାବେ ଲଗାଇଦେବା ହିଁ ମନକୁ ଏକାଗ୍ର କରିବା। ଏଠାରେ ପ୍ରକରଣ ଅନୁସାରେ ପରମାତ୍ମା ହିଁ ଧ୍ୟେୟ ବସ୍ତୁ। ଅତଏବ ତାଙ୍କ ଠାରେ ମନ ଲଗାଇବାକୁ କୁହାଯାଇଛି। ତେଣୁ ଚଉଦ ଶ୍ଳୋକରେ **ମଚ୍ଚିତ୍ତଃ** ବିଶେଷଣ ଦେଇ ଭଗବାନ୍ ଏହା ସ୍ପଷ୍ଟ କରିଛନ୍ତି।

**ପ୍ରଶ୍ନ –** 'ଅନ୍ତଃକରଣର ଶୁଦ୍ଧିପାଇଁ ଧ୍ୟାନଯୋଗ ଅଭ୍ୟାସ କରିବା ଉଚିତ' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଅଭିପ୍ରାୟ ଏହି ଯେ, ଧ୍ୟାନଯୋଗ-ଅଭ୍ୟାସର ଉଦ୍ଦେଶ୍ୟ କୌଣସିପ୍ରକାର ସାଂସାରିକ ସିଦ୍ଧି ବା ଐଶ୍ୱର୍ଯ୍ୟପ୍ରାପ୍ତି ନୁହେଁ। ଏକମାତ୍ର ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ହିଁ ଅନ୍ତଃକରଣରେ ସ୍ଥିତ, ରାଗ, ଦ୍ୱେଷ ଆଦି ଅବଗୁଣ ଓ ବିଭିନ୍ନ ପାପ ତଥା ବିକ୍ଷେପ ଓ ଅଜ୍ଞାନ ନାଶ କରିବାପାଇଁ ଧ୍ୟାନଯୋଗ ଅଭ୍ୟାସ କରିବା ଉଚିତ।

**ପ୍ରଶ୍ନ –** ଯୋଗ ଅଭ୍ୟାସ କରିବା କଣ ?

**ଉତ୍ତର –** ଉପରୋକ୍ତପ୍ରକାରେ ଆସନରେ ବସି ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାଗୁଡ଼ିକୁ ବଶ କରି ଓ ମନକୁ ପରମେଶ୍ୱରଙ୍କ ଠାରେ ଲଗାଇ ନିରନ୍ତର ଅବିଚ୍ଛିନ୍ନଭାବରେ ପରମାତ୍ମାଙ୍କ ଚିନ୍ତନରେ ହିଁ ଲାଗିରହିବାକୁ 'ଯୋଗ' ଅଭ୍ୟାସ କରିବା କୁହାଯାଏ।

*ସମ୍ବନ୍ଧ –* *ଉପରୋକ୍ତ ଶ୍ଳୋକରେ ଆସନ ଉପରେ ବସି ଧ୍ୟାନଯୋଗ ସାଧନା କରିବାକୁ କୁହାଗଲା। ବର୍ତ୍ତମାନ ତା'ର ସ୍ପଷ୍ଟୀକରଣ ଦେବାପାଇଁ ଆସନ ଉପରେ କିପରି ବସିବା ଉଚିତ, ସାଧକର ଭାବ କିପରି ହେବା ଉଚିତ, ସେ କେଉଁ କେଉଁ ନିୟମ ପାଳନ କରିବା ଆବଶ୍ୟକ ଓ କିପ୍ରକାରେ କାହାର ଧ୍ୟାନ କରିବା ଉଚିତ ଇତ୍ୟାଦି କଥା ଦୁଇଟି ଶ୍ଳୋକରେ କୁହାଯାଉଛି–*

**ସମଂ କାୟଶିରୋଗ୍ରୀବଂ ଧାରୟନ୍ନଚଳଂ ସ୍ଥିରଃ।**
**ସଂପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ୍॥ ୧୩ ॥**

**ଅନ୍ୱୟ –** **କାୟଶିରୋଗ୍ରୀବମ୍** = କାୟା, ଶିର ଓ ଗ୍ରୀବାକୁ; **ସମମ୍** = ସଳଖ; **ଅଚଳମ୍** = ଅଚଳ; **ଧାରୟନ୍** = ଧାରଣ କରି; **ଚ** = ଓ; **ସ୍ଥିରଃ** = ସ୍ଥିର ହୋଇ; **ସ୍ୱମ୍** = ନିଜର; **ନାସିକାଗ୍ରମ୍** = ନାସିକାର ଅଗ୍ରଭାଗରେ; **ସମ୍ପ୍ରେକ୍ଷ୍ୟ** = ଦୃଷ୍ଟି ରଖି; **ଦିଶଃ** = (ଅନ୍ୟ) ଦିଗମାନଙ୍କୁ; **ଅନବଲୋକୟନ୍** = ନ ଚାହିଁ।

**ଶରୀର, ଶିର ଏବଂ ଗ୍ରୀବା (ବେକ) ସଳଖ ଓ ଅଚଳ ରଖି ଏବଂ ସ୍ଥିର * ହୋଇ ନିଜ ନାସିକାର ଅଗ୍ରଭାଗରେ ଦୃଷ୍ଟି ନିବଦ୍ଧ କରି ଅନ୍ୟ ଆଡ଼େ ନ ଚାହିଁ—॥ ୧୩ ॥**

**ପ୍ରଶ୍ନ –** କାୟା, ଶିର ଓ ଗ୍ରୀବାକୁ 'ସମ' ଓ 'ଅଚଳ' ରଖିବା କଣ ?

**ଉତ୍ତର –** ଏଠାରେ ଦେହର ମଧ୍ୟଭାଗ ଅର୍ଥାତ୍ କଟିରୁ ଉପରକୁ ଓ ବେକରୁ ତଳକୁ ଥିବା ସ୍ଥାନର ନାମ କାୟା ଓ ବେକର ନାମ 'ଗ୍ରୀବା' ଓ ତା' ଉପର ଅଙ୍ଗର ନାମ 'ଶିର' (ମୁଣ୍ଡ)। ଅଣ୍ଟା ବା ପେଟକୁ ଆଗ-ପଛ ବା ବାଆଁ-ଡାହାଣ କୌଣସିପଟକୁ ନ ଢଳାଇ ଅର୍ଥାତ୍ ମେରୁଦଣ୍ଡକୁ ସଳଖ ରଖି, ବେକ କୌଣସି ପଟେ ନ ଝୁକାଇ ଓ ଶିର ଏପଟ ସେପଟ ନ କରି ତିନୋଟିଯାକ ଅଙ୍ଗକୁ ସଳଖ ରଖି ଟିକିଏ ହେଲେ ନ ହଲାଇବା ହିଁ 'ସମ' ଓ 'ଅଚଳ' ରଖିବା।

**ପ୍ରଶ୍ନ –** କାୟା ଆଦି ଅଚଳ ରଖିବାକୁ କହିବା ପରେ ପୁଣି ସ୍ଥିର ହେବାକୁ କାହିଁକି କୁହାଗଲା ? କଣ ଏଥିରେ କିଛି ନୂଆ କଥା ଅଛି ?

**ଉତ୍ତର –** କାୟା, ଶିର ଓ ଗ୍ରୀବାକୁ ସମ ଓ ଅଚଳ ରଖିବା ପରେ ମଧ୍ୟ ହାତ-ପାଦ ଆଦି ଅନ୍ୟାନ୍ୟ ଅଙ୍ଗ ହଲଚଲ ହୋଇପାରେ। ତେଣୁ ପୁଣି ଥରେ ସ୍ଥିର ହେବାକୁ କୁହାଗଲା। ଅଭିପ୍ରାୟ ଏହି ଯେ, ଧ୍ୟାନସମୟରେ ହାତପାଦଗୁଡ଼ିକୁ କୌଣସି ଆସନର ନିୟମାନୁସାରେ ରଖାଯାଇପାରିବ, କିନ୍ତୁ ସେସବୁକୁ ଅବଶ୍ୟ 'ସ୍ଥିର' ରଖିବାକୁ ପଡ଼ିବ। କୌଣସି ବି ଅଙ୍ଗ ହଲିବା ଧ୍ୟାନପାଇଁ ଉପଯୁକ୍ତ ନୁହେଁ। ତେଣୁ ସବୁ ଅଙ୍ଗକୁ ଅଚଳ ରଖି ସକଳପ୍ରକାରେ ସ୍ଥିର ରହିବା ଉଚିତ।

**ପ୍ରଶ୍ନ –** 'ନାସିକାର ଅଗ୍ରଭାଗ ଉପରେ ଦୃଷ୍ଟି ନିବଦ୍ଧ କରି ଅନ୍ୟ ଦିଗକୁ ନ ଚାହିଁ' – ଏ କଥାର ଅଭିପ୍ରାୟ କଣ ?

---

* 'ସ୍ଥିରସୁଖମାସନମ୍' (ଯୋଗ-୨/୪୬) ଅର୍ଥାତ୍ ଅଧିକ ସମୟପର୍ଯ୍ୟନ୍ତ ସୁଖପୂର୍ବକ ସ୍ଥିର ହୋଇ ବସିବାର ନାମ ଆସନ।

**ଉତ୍ତର –** ଦୃଷ୍ଟିକୁ ନିଜର ନାକ-ଅଗରେ ଏକାଗ୍ର କରି ରଖିବା ଆବଶ୍ୟକ। ଆଖି ବନ୍ଦ କରିବା ଉଚିତ ନୁହେଁ, କି ଏପଟେ ସେପଟେ ଅନ୍ୟ ଅଙ୍ଗକୁ ଓ ବସ୍ତୁକୁ ଚାହିଁବା ଉଚିତ ନୁହେଁ। ନାସିକାର ଅଗ୍ରଭାଗକୁ ମଧ୍ୟ ମନ ଲଗାଇ 'ଦେଖିବା' ବିଧେୟ ନୁହେଁ। ବିକ୍ଷେପ ଓ ନିଦ୍ରା ନ ହେବାପାଇଁ କେବଳ ଦୃଷ୍ଟିକୁ ହିଁ ସେଠାରେ ଲଗାଇବାକୁ ହେବ। ମନକୁ ତ ପରମେଶ୍ୱରଙ୍କ ଠାରେ ଲଗାଇବାକୁ ହେବ, ନାକ ଅଗରେ ନୁହେଁ।

**ପ୍ରଶ୍ନ –** ଏହିପରି ଆସନ ଲଗାଇ ବସିବାକୁ ଭଗବାନ୍ କାହିଁକି କହିଲେ ?

**ଉତ୍ତର –** ଧ୍ୟାନଯୋଗସାଧନାରେ ନିଦ୍ରା, ଆଳସ୍ୟ, ବିକ୍ଷେପ ଏବଂ ଶୀତୋଷ୍ଣାଦି ଦ୍ୱନ୍ଦ୍ୱକୁ ବିଘ୍ନ ବୋଲି ମନେ କରାଯାଏ। ଏସବୁ ଦୋଷରୁ ମୁକ୍ତ ହେବାର ଏହା ଏକ ଭଲ ଉପାୟ। କାୟା, ଶିର ଓ ଗ୍ରୀବା ସଳଖ ରଖିଲେ ତଥା ଆଖିକୁ ଖୋଲା ରଖିଲେ ଆଳସ୍ୟ ଓ ନିଦ୍ରା ଆକ୍ରମଣ କରିପାରେ ନାହିଁ। ନାସାଗ୍ରରେ ଦୃଷ୍ଟି ନିବଦ୍ଧ କରି ଏପଟେ ସେପଟେ ଥିବା ଅନ୍ୟ ବସ୍ତୁକୁ ନ ଚାହିଁଲେ ବାହ୍ୟ ବିକ୍ଷେପର ସମ୍ଭାବନା ରହେ ନାହିଁ ଓ ଆସନ ଦୃଢ଼ ହୋଇଗଲେ ଶୀତୋଷ୍ଣାଦି ଦ୍ୱନ୍ଦ୍ୱରୁ ମଧ୍ୟ ବାଧା ପଡ଼ିବାର ଭୟ ରହେ ନାହିଁ। ଏଣୁ ଧ୍ୟାନଯୋଗ ସାଧନା କରିବା ସମୟରେ ଏପରି ଆସନରେ ବସିବା ବିଶେଷ ଉପଯୋଗୀ। ତେଣୁ ଭଗବାନ୍ ଏପରି କହିଛନ୍ତି।

**ପ୍ରଶ୍ନ –** ଏହି ତିନୋଟି ଶ୍ଳୋକରେ ଆସନର ଯେଉଁ ବିଧି କୁହାଯାଇଛି, ତାହା ସଗୁଣ ପରମେଶ୍ୱରଙ୍କ ଧ୍ୟାନପାଇଁ, ନା ନିର୍ଗୁଣ ବ୍ରହ୍ମଙ୍କର ?

**ଉତ୍ତର –** ଧ୍ୟାନ ସଗୁଣଙ୍କର ହେବ, କି ନିର୍ଗୁଣ ବ୍ରହ୍ମଙ୍କର ହେବ, ତାହା ତ ରୁଚି ଓ ଅଧିକାରଭେଦର କଥା। ଆସନର ଏହି ବିଧି ସମସ୍ତଙ୍କ ପାଇଁ ଆବଶ୍ୟକ।

**ପ୍ରଶାନ୍ତାତ୍ମା ବିଗତଭୀର୍ବ୍ରହ୍ମଚାରିବ୍ରତେ ସ୍ଥିତଃ।**
**ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍ପରଃ॥ ୧୪ ॥**

**ଅନ୍ୱୟ –** **ବ୍ରହ୍ମଚାରିବ୍ରତେ** = ବ୍ରହ୍ମଚାରିବ୍ରତରେ; **ସ୍ଥିତଃ** = ସ୍ଥିତ, **ବିଗତଭୀଃ** = ଭୟଶୂନ୍ୟ; **ପ୍ରଶାନ୍ତାତ୍ମା** = ପ୍ରଶାନ୍ତ ଅନ୍ତଃକରଣବିଶିଷ୍ଟ; **ଯୁକ୍ତଃ** = ସାବଧାନ ଯୋଗୀ; **ମନଃ** = ମନକୁ; **ସଂଯମ୍ୟ** = ସଂଯତ କରି; **ମଚ୍ଚିତ୍ତଃ** = ମୋଠାରେ ଯୁକ୍ତଚିତ୍ତ ହୋଇ; **ମତ୍ପରଃ** = ମୋର ପରାୟଣ ହୋଇ; **ଆସୀତ** = ବସିବା ଉଚିତ।

**ବ୍ରହ୍ମଚାରିବ୍ରତରେ ସ୍ଥିତ ଭୟଶୂନ୍ୟ ପ୍ରଶାନ୍ତ ଅନ୍ତଃକରଣବିଶିଷ୍ଟ ତଥା ସାବଧାନ ଯୋଗୀ ମନକୁ ସଂଯତ କରି, ମୋଠାରେ ଯୁକ୍ତଚିତ୍ତ ହୋଇ ଏବଂ ମୋର ପରାୟଣ ହୋଇ ବସିବା ଉଚିତ॥ ୧୪ ॥**

**ପ୍ରଶ୍ନ –** ଏଠାରେ ବ୍ରହ୍ମଚାରୀବ୍ରତରେ ସ୍ଥିତ ହେବା କଣ ?

**ଉତ୍ତର –** ବ୍ରହ୍ମଚର୍ଯ୍ୟର ତାତ୍ତ୍ୱିକ ଅର୍ଥ ଅନ୍ୟ କିଛି ହେଲେ ମଧ୍ୟ ବୀର୍ଯ୍ୟଧାରଣ ହିଁ ଏହାର ପ୍ରଧାନ ଅର୍ଥ ଓ ଏଠାରେ ବୀର୍ଯ୍ୟଧାରଣ ହିଁ ପ୍ରସଙ୍ଗାନୁକୂଳ ମଧ୍ୟ। ମନୁଷ୍ୟର ଶରୀରରେ ବୀର୍ଯ୍ୟ ହିଁ ଏପରି ଏକ ଅମୂଲ୍ୟ ବସ୍ତୁ, ଯାହାକୁ ଭଲଭାବେ ସଂରକ୍ଷଣ ନ କଲେ ଶାରୀରିକ, ମାନସିକ ଅଥବା ଆଧ୍ୟାତ୍ମିକ— କୌଣସିପ୍ରକାର ବଳ ମିଳେ ନାହିଁ, କି ବଳସଞ୍ଚୟ ହୁଏ ନାହିଁ। ତେଣୁ ଆର୍ଯ୍ୟସଂସ୍କୃତିର ଚାରି ଆଶ୍ରମ ମଧ୍ୟରୁ ବ୍ରହ୍ମଚର୍ଯ୍ୟ ପ୍ରଥମ ଆଶ୍ରମ। ଏହା ଅନ୍ୟ ତିନୋଟି ଆଶ୍ରମର ମୂଳଦୁଆ। ବ୍ରହ୍ମଚର୍ଯ୍ୟ-ଆଶ୍ରମରେ ବ୍ରହ୍ମଚାରୀଙ୍କ ପାଇଁ ବହୁତ ନିୟମ ରହିଛି। ସେହି ନିୟମଗୁଡ଼ିକ ପାଳନ କଲେ ବୀର୍ଯ୍ୟ-ଧାରଣରେ ବିଶେଷ ସହାୟତା ମିଳେ। ବ୍ରହ୍ମଚର୍ଯ୍ୟପାଳନଦ୍ୱାରା ଯଦି ପ୍ରକୃତରେ ଭଲଭାବେ ବୀର୍ଯ୍ୟଧାରଣ ହୋଇଯାଏ, ତେବେ ସେହି ବୀର୍ଯ୍ୟଦ୍ୱାରା ଶରୀରଭିତରେ ଏକ ଅଦ୍ଭୁତ ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ ହୁଏ ଓ ତା'ର ତେଜ ଏତେ ଶକ୍ତିଶାଳୀ ହୁଏ ଯେ, ସେହି ତେଜପ୍ରଭାବରେ ପ୍ରାଣ ଓ ମନର ଗତି ସ୍ୱତଃ ସ୍ଥିର ହୋଇଯାଏ ଓ ଚିତ୍ତର ଅବିଚ୍ଛିନ୍ନ ପ୍ରବାହ ଧ୍ୟେୟବସ୍ତୁ ପ୍ରତି ସ୍ୱାଭାବିକ ହେବାକୁ ଲାଗେ। ଏହି ଅନନ୍ୟବୃତ୍ତି ଏକତାନତାର ନାମ ହିଁ ଧ୍ୟାନ।

ଆଜିକାଲି ଚେଷ୍ଟା କଲେ ମଧ୍ୟ ଲୋକମାନେ ଧ୍ୟାନ କରିପାରୁ ନାହାନ୍ତି; ସେମାନଙ୍କର ଚିତ୍ତ ଧ୍ୟେୟବସ୍ତୁରେ

ପାରୁ ନାହିଁ। ଏହାର ଏକ ମୁଖ୍ୟତମ କାରଣ ଏହି ଯେ, ସେମାନେ ବୀର୍ଯ୍ୟଧାରଣ କରୁ ନାହାନ୍ତି। ଯଦ୍ୟପି ବିବାହ ହେବା ପରେ ନିଜର ପତ୍ନୀ ସହିତ ସଂଯମପୂର୍ଣ୍ଣ ନିୟମିତ ଜୀବନଯାପନ କରିବା ମଧ୍ୟ ବ୍ରହ୍ମଚର୍ଯ୍ୟ ହିଁ ଅଟେ ଓ ତଦ୍ଦ୍ୱାରା ମଧ୍ୟ ଧ୍ୟାନରେ ବିଶେଷ ସହାୟତା ମିଳେ, ପରନ୍ତୁ ଯେ ପ୍ରଥମରୁ ହିଁ ବ୍ରହ୍ମଚର୍ଯ୍ୟର ନିୟମଗୁଡ଼ିକ ସୁଚାରୁରୂପେ ପାଳନ କରିଛନ୍ତି ଓ ଯାହାଙ୍କର ଧ୍ୟାନଯୋଗସାଧନାପର୍ଯ୍ୟନ୍ତ ଶୁକ୍ରର କୌଣସିପ୍ରକାର ବାହ୍ୟ କ୍ଷରଣ ହୋଇ ନାହିଁ, ତାହାଙ୍କୁ ଧ୍ୟାନଯୋଗରେ ବହୁତ ଶୀଘ୍ର ଓ ବଡ଼ ସହଜରେ ସଫଳତା ମିଳିଥାଏ।

ମନୁସ୍ମୃତି ଆଦି ଗ୍ରନ୍ଥରେ ତଥା ଅନ୍ୟାନ୍ୟ ଶାସ୍ତ୍ରରେ ବ୍ରହ୍ମଚାରୀଙ୍କ ପାଇଁ ପାଳନୀୟ ବ୍ରତର ବଡ଼ ସୁନ୍ଦର ବିଧାନ କରାଯାଇଛି। ସେଗୁଡ଼ିକ ମଧ୍ୟରେ ପ୍ରଧାନ ବିଧାନ ହେଉଛି:—'ବ୍ରହ୍ମଚାରୀ ନିତ୍ୟ ସ୍ନାନ କରିବେ; କୌଣସି ପ୍ରସାଧନସାମଗ୍ରୀ ଲଗାଇବେ ନାହିଁ; ଆଖିରେ ସୁରମା ଲଗାଇବେ ନାହିଁ; ତେଲ ଲଗାଇବେ ନାହିଁ; ସୁଗନ୍ଧିତ-ଅର୍କ, ଅତର ଆଦି ବସ୍ତୁ ବ୍ୟବହାର କରିବେ ନାହିଁ; ଫୁଲମାଳ ଓ ଗହଣା ପିନ୍ଧିବେ ନାହିଁ; ନାଚିବା, ଗାଇବା, ବାଜା ବଜାଇବା କରିବେ ନାହିଁ; ଜୋତା ପିନ୍ଧିବେ ନାହିଁ; ଛତା ଧରିବେ ନାହିଁ; ପଲଙ୍କରେ ଶୋଇବେ ନାହିଁ; ଜୁଆ ଖେଳିବେ ନାହିଁ; ସ୍ତ୍ରୀମାନଙ୍କୁ ଚାହିଁବେ ନାହିଁ; ସ୍ତ୍ରୀ-ସମ୍ବନ୍ଧୀୟ ଚର୍ଚ୍ଚା ମଧ୍ୟ କରିବେ ନାହିଁ; ନିୟମିତ ସାଦା ଭୋଜନ କରିବେ; କୋମଳ ବସ୍ତ୍ର ପିନ୍ଧିବେ ନାହିଁ; ଦେବତା, ଋଷି ଓ ଗୁରୁଙ୍କ ପୂଜାସେବା କରିବେ, କାହା ସହିତ ବିବାଦ କରିବେ ନାହିଁ; କାହାର ନିନ୍ଦା କରିବେ ନାହିଁ; ସତ୍ୟ କହିବେ; କାହାକୁ ତିରସ୍କାର କରିବେ ନାହିଁ; ଅହିଂସାବ୍ରତ ପୂର୍ଣ୍ଣଭାବରେ ପାଳନ କରିବେ; କାମ, କ୍ରୋଧ ଓ ଲୋଭ ସର୍ବଦା ତ୍ୟାଗ କରିବେ; ଏକାକୀ ଶୋଇବେ; କଦାପି ବୀର୍ଯ୍ୟପାତ ହେବାକୁ ଦେବେ ନାହିଁ ଏବଂ ଏସମସ୍ତ ବ୍ରତ ଭଲଭାବରେ ପାଳନ କରିବେ। ଏସବୁ ହେଉଛି ବ୍ରହ୍ମଚାରୀଙ୍କର ବ୍ରତ। ଭଗବାନ୍ ଏଠାରେ 'ବ୍ରହ୍ମଚାରିବ୍ରତ' କଥା କହି ଆଶ୍ରମଧର୍ମ ପ୍ରତି ମଧ୍ୟ ସଙ୍କେତ କରିଛନ୍ତି। ଅନ୍ୟ ଆଶ୍ରମର ଯେଉଁ ଲୋକେ ଧ୍ୟାନଯୋଗ ସାଧନା କରୁଛନ୍ତି, ସେମାନଙ୍କ ପାଇଁ ମଧ୍ୟ ବୀର୍ଯ୍ୟଧାରଣ ବା ବୀର୍ଯ୍ୟସଂରକ୍ଷଣ ଅତ୍ୟନ୍ତ ଆବଶ୍ୟକ ଓ ବୀର୍ଯ୍ୟଧାରଣରେ ଉପରୋକ୍ତ ନିୟମଗୁଡ଼ିକ ବିଶେଷ ସହାୟକ। ଏହା ବ୍ରହ୍ମଚାରୀର ବ୍ରତ ଓ ଦୃଢ଼ତାପୂର୍ବକ ଏହା ପାଳନ କରିବା ହିଁ ସେଥିରେ ସ୍ଥିତ ହେବା।

**ପ୍ରଶ୍ନ — ବିଗତଭୀଃ** ର ଅଭିପ୍ରାୟ କଣ ?

**ଉତ୍ତର —** ପରମାତ୍ମା ସବୁଠାରେ ଅଛନ୍ତି ଓ ଧ୍ୟାନଯୋଗୀ ପରମାତ୍ମାଙ୍କୁ ଧ୍ୟାନ କରି ତାଙ୍କୁ ଦେଖିବାକୁ ଚାହାନ୍ତି। ତେଣୁ ସେ ଡରିବେ କାହିଁକି? ଅତଏବ ଧ୍ୟାନ କରିବା ସମୟରେ ସାଧକ ନିର୍ଭୟ ହୋଇ ରହିବା ଉଚିତ। ମନରେ ତିଳେମାତ୍ର ଭୟ ରହିଗଲେ ଏକାନ୍ତ ଓ ନିର୍ଜନ ସ୍ଥାନରେ ସ୍ୱଭାବତଃ ଚିତ୍ତବିକ୍ଷେପ ହେବ। ଏଣୁ ସାଧକ ସେହି ସମୟରେ ଏହି ଦୃଢ଼ ବିଶ୍ୱାସ ରଖିବା ଉଚିତ ଯେ, ପରମାତ୍ମା ସର୍ବଶକ୍ତିମାନ୍ ଓ ସର୍ବବ୍ୟାପୀ ହୋଇଥିବାରୁ ଏଠାରେ ମଧ୍ୟ ସଦାସର୍ବଦା ନିଶ୍ଚିତଭାବରେ ଅଛନ୍ତି ଏବଂ ସେ ରହିଥିବାରୁ ଏଠାରେ କୌଣସି ଭୟ ନାହିଁ; ଯଦି କଦାଚିତ୍ ପ୍ରାରବ୍ଧବଶତଃ ଧ୍ୟାନ କରୁ କରୁ ମୃତ୍ୟୁ ହୋଇଯାଏ, ତେବେ ତା'ର ପରିଣାମ ମଧ୍ୟ ପରମ କଲ୍ୟାଣ ହିଁ ହେବ। ପ୍ରକୃତ ଧ୍ୟାନଯୋଗୀ ଏହି ବିଚାରରେ ଦୃଢ଼ ରହନ୍ତି। ତେଣୁ ତାଙ୍କୁ **ବିଗତଭୀଃ** କୁହାଯାଇଛି।

**ପ୍ରଶ୍ନ — ପ୍ରଶାନ୍ତାତ୍ମା**ର ଅଭିପ୍ରାୟ କଣ ?

**ଉତ୍ତର —** ଧ୍ୟାନ କରିବା ସମୟରେ ରାଗ-ଦ୍ୱେଷ, ହର୍ଷ-ଶୋକ ଓ କାମ-କ୍ରୋଧ ଆଦି ଦୂଷିତ ବୃତ୍ତିଗୁଡ଼ିକୁ ତଥା ସାଂସାରିକ ସଂକଳ୍ପ-ବିକଳ୍ପକୁ ମନରୁ ସର୍ବଥା ଦୂର କରିଦେବା ଉଚିତ। ବୈରାଗ୍ୟଦ୍ୱାରା ମନକୁ ସର୍ବଥା ନିର୍ମଳ ଓ ଶାନ୍ତ କରି ଧ୍ୟାନଯୋଗ ସାଧନା କରିବା ଉଚିତ। ଏହି ଭାବ ଦେଖାଇବାକୁ **ପ୍ରଶାନ୍ତାତ୍ମା** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ — ଯୁକ୍ତଃ** ବିଶେଷଣର ଅଭିପ୍ରାୟ କଣ ?

**ଉତ୍ତର —** ଧ୍ୟାନ କରିବା ସମୟରେ ସାଧକଙ୍କୁ ନିଦ୍ରା, ଆଳସ୍ୟ ଓ ପ୍ରମାଦ ଆଦି ବିଘ୍ନରୁ ରକ୍ଷା ପାଇବା ନିମନ୍ତେ ବିଶେଷ ସାବଧାନ ରହିବା ଉଚିତ। ଏପରି ନ କଲେ ମନ ଓ ଇନ୍ଦ୍ରିୟମାନେ ତାଙ୍କୁ ଧୋକା ଦେଇ ଧ୍ୟାନରେ ଅନେକପ୍ରକାର ବିଘ୍ନ ଘଟାଇବେ। ଏହା ଦେଖାଇବାକୁ **ଯୁକ୍ତଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ —** ମନକୁ ସଂଯତ କରିବା କଣ ?

**ଉତ୍ତର —** ଗୋଟିଏ ସ୍ଥାନରେ ନ ରହିବା ଓ ସଂଯତ ହୋଇ ରହୁ ରହୁ ବି ବଳାତ୍କାରପୂର୍ବକ ବିଷୟଭୋଗ ପ୍ରତି ଚାଲିଯିବା ହିଁ ମନର ସ୍ୱଭାବ। ମନକୁ ଭଲଭାବରେ ସଂଯତ ନ କଲେ ଧ୍ୟାନଯୋଗସାଧନା କରିହେବ ନାହିଁ। ତେଣୁ ଧ୍ୟାନ କରିବା ସମୟରେ ମନକୁ ବାହ୍ୟ ବିଷୟଭୋଗରୁ ଭଲଭାବେ ହଟାଇଆଣି ତାହାକୁ ନିଜ ଲକ୍ଷ୍ୟସ୍ଥଳରେ ପୂର୍ଣ୍ଣରୂପରେ ନିରୁଦ୍ଧ କରିଦେବା ଅର୍ଥାତ୍

ଭଗବାନଙ୍କ ଠାରେ ତନ୍ମୟ କରିଦେବା ଉଚିତ। ଏହା ହିଁ ମନକୁ ସଂଯତ କରିବା।

**ପ୍ରଶ୍ନ –** **ମଚ୍ଚିତ୍ତଃ**ର ଭାବ କଣ ?

**ଉତ୍ତର –** ଧ୍ୟେୟବସ୍ତୁରେ ଚିତ୍ତକୁ ଏକାଗ୍ର କରି ଲଗାଇବାର ନାମ ଧ୍ୟାନ। ସେହି ଧ୍ୟେୟବସ୍ତୁ କଣ ହେବା ଉଚିତ, ସେହି ବିଷୟରେ ଭଗବାନ୍ କହୁଛନ୍ତି, "ତୁମେ ତୁମର ଚିତ୍ତକୁ ମୋଠାରେ ଲଗାଅ।" ଯେଉଁଥିରେ ଯଥାର୍ଥ ପ୍ରେମ ହୁଏ, ସେହି ବସ୍ତୁରେ ଚିତ୍ତ ସହଜରେ ଲାଗିରହେ। ଅତଏବ ଧ୍ୟାନଯୋଗୀଙ୍କର ଆବଶ୍ୟକ ଯେ, ସେ ପରମ ହିତୈଷୀ, ପରମ ସୁହୃଦ୍, ପରମ ପ୍ରେମାସ୍ପଦ ପରମେଶ୍ୱରଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟକୁ ବୁଝି, ସମସ୍ତ ଜଗତରୁ ପ୍ରେମ ହଟାଇ ଆଣି ଏକମାତ୍ର ପ୍ରଭୁଙ୍କୁ ନିଜର ଧ୍ୟେୟ କରିବେ ଓ ଅନନ୍ୟଭାବରେ ତାଙ୍କରି ଠାରେ ଚିତ୍ତ ଲଗାଇବାକୁ ଅଭ୍ୟାସ କରିବେ।

**ପ୍ରଶ୍ନ –** ଭଗବତ୍ ପରାୟଣ ହେବା କଣ ?

**ଉତ୍ତର –** ଯେଉଁମାନେ ପରମେଶ୍ୱରଙ୍କୁ ନିଜର ଧ୍ୟେୟ କରି, ତାଙ୍କ ଧ୍ୟାନରେ ଚିତ୍ତ ସଂଲଗ୍ନ କରିବାକୁ ଚାହାନ୍ତି, ସେମାନେ ତାଙ୍କରି ପରାୟଣ ହେବେ। ଅତଏବ **ମତ୍ପରଃ** ପଦଦ୍ୱାରା ଭଗବାନ୍ କହିଛନ୍ତି, "ଧ୍ୟାନଯୋଗର ସାଧକ ମୋତେ ହିଁ ପରମଗତି, ପରମଧ୍ୟେୟ, ପରମ-ଆଶ୍ରୟ ଓ ପରମ ମହେଶ୍ୱର ତଥା ସମସ୍ତଙ୍କ ଠାରୁ ଅଧିକ ପ୍ରେମାସ୍ପଦ ମନେ କରି ନିରନ୍ତର ମୋର ହିଁ ଆଶ୍ରିତ ହୋଇ ଓ ମୋତେ ହିଁ ନିଜର ଏକମାତ୍ର ପରମରକ୍ଷକ, ସହାୟକ, ସ୍ୱାମୀ ତଥା ଜୀବନ, ପ୍ରାଣ ଓ ସର୍ବସ୍ୱ ମନେ କରି ମୋର ପ୍ରତ୍ୟେକ ବିଧାନରେ ପରମ ସନ୍ତୁଷ୍ଟ ରହିବା ଉଚିତ।" ଏହା ହିଁ 'ଭଗବାନଙ୍କର ପରାୟଣ ହେବା।'

**ପ୍ରଶ୍ନ –** ଏହି ଶ୍ଳୋକରେ କୁହାଯାଇଥିବା ଧ୍ୟାନ ସଗୁଣ ପରମେଶ୍ୱରଙ୍କର, ନା ନିର୍ଗୁଣ ବ୍ରହ୍ମଙ୍କର ? ଏବଂ ସେହି ଧ୍ୟାନକୁ ଭେଦଭାବରେ କରିବାକୁ କୁହାଯାଉଛି, ନା ଅଭେଦଭାବରେ ?

**ଉତ୍ତର –** ଏହି ଶ୍ଳୋକରେ **ମଚ୍ଚିତ୍ତଃ** ଓ **ମତ୍ପରଃ** ପଦର ପ୍ରୟୋଗ ହୋଇଛି। ଅତଏବ ଏଠାରେ ନିର୍ଗୁଣ ବ୍ରହ୍ମଙ୍କ ଧ୍ୟାନ ଅଭେଦଭାବରେ କରାଯିବା କଥା କୁହାଯାଇ ନାହିଁ। ଏଥିରୁ ବୁଝିବା ଉଚିତ ଯେ, ଏଠାରେ ଉପାସ୍ୟ ଓ ଉପାସକ ଭେଦ ରଖି ସଗୁଣ ପରମେଶ୍ୱରଙ୍କ ଧ୍ୟାନର ରୀତି ହିଁ କୁହାଯାଇଛି।

**ପ୍ରଶ୍ନ –** ଏଠାରେ ଯେ ସଗୁଣ ଧ୍ୟାନର ରୀତି କୁହାଯାଇଛି, ଏହା ତ ବୁଝିହେଲା; କିନ୍ତୁ ଏହି ସଗୁଣ ଧ୍ୟାନ ସର୍ବଶକ୍ତିମାନ୍ ସର୍ବାଧାର ପରମେଶ୍ୱରଙ୍କ ନିରାକାର ରୂପର, ନା ଭଗବାନ୍ ଶ୍ରୀଶଙ୍କର, ଶ୍ରୀବିଷ୍ଣୁ, ଶ୍ରୀରାମ, ଶ୍ରୀକୃଷ୍ଣ ପ୍ରଭୃତି ସାକାର ରୂପମାନଙ୍କ ମଧ୍ୟରୁ କୌଣସି ଗୋଟିକର ?

**ଉତ୍ତର –** ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟକୁ ★ ବୁଝି ମନୁଷ୍ୟ ନିଜର ରୁଚି, ସ୍ୱଭାବ ଓ ଅଧିକାର ଅନୁସାରେ ଯେଉଁ ରୂପରେ ସହଜରେ ମନ ଲଗାଇପାରିବ, ସେହି ରୂପର ଧ୍ୟାନ କରିପାରିବ; କାରଣ ଭଗବାନ୍ ଏକ, କିନ୍ତୁ ରୂପ ଅନେକ। ଅତଏବ ଏଠାରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ରୂପବିଶେଷର ଧ୍ୟାନପାଇଁ କୁହାଯାଇଛି ବୋଲି ଭାବିବା ଉଚିତ ନୁହେଁ।

ବର୍ତ୍ତମାନ ଏଠାରେ ସାଧକମାନଙ୍କ ଜାଣିବା ନିମନ୍ତେ ଧ୍ୟାନର କେତୋଟି ସ୍ୱରୂପର ବର୍ଣ୍ଣନ କରାଯାଉଛି। —

---

★ ପ୍ରକୃତରେ ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟ ଯେ କେତେକ ଏତିକି ବା ସେତିକି, ତାହା କୁହାଯାଇ ପାରିବ ନାହିଁ। ଏ ସମ୍ପର୍କରେ ଯାହା କିଛି କୁହାଯାଉଛି, ସବୁ ସୂର୍ଯ୍ୟଙ୍କୁ ଦୀପ ଦେଖାଇବା ପରି। ତଥାପି ଭଗବାନଙ୍କ ଗୁଣାଦିର କିଞ୍ଚିନ୍ମାତ୍ର ସ୍ମରଣ, ଶ୍ରବଣ ଓ କୀର୍ତ୍ତନ ମନୁଷ୍ୟକୁ ପବିତ୍ରତମ କରିଦିଏ। ତେଣୁ ତାଙ୍କ ଗୁଣାଦିର ବର୍ଣ୍ଣନା ଶାସ୍ତ୍ରକାରମାନେ କରନ୍ତି। ସେହି ଶାସ୍ତ୍ରମାନଙ୍କୁ ଆଧାର କରି ତାଙ୍କର ଗୁଣାଦିକୁ ଏହିପରି ଭାବରେ ବୁଝିବା ଉଚିତ –

ଅନନ୍ତ ଓ ଅସୀମ ତଥା ଅତ୍ୟନ୍ତ ବିଲକ୍ଷଣ ସମତ୍ୱ, ଶାନ୍ତି, ଦୟା, ପ୍ରେମ, କ୍ଷମା, ମାଧୁର୍ଯ୍ୟ, ବାତ୍ସଲ୍ୟ, ଗମ୍ଭୀରତା, ଉଦାରତା, ସୁହୃଦତା ଆଦି ହେଉଛି ଭଗବାନଙ୍କର 'ଗୁଣ'। ସକଳ ବଳ, ଐଶ୍ୱର୍ଯ୍ୟ, ତେଜ, ଶକ୍ତି, ସାମର୍ଥ୍ୟ ଓ ଅସମ୍ଭବକୁ ମଧ୍ୟ ସମ୍ଭବ କରିଦେବା ହେଉଛି ଭଗବାନଙ୍କର 'ପ୍ରଭାବ'। ଯେପରି ପରମାଣୁ, ବାଷ୍ପ, ମେଘ, ଜଳର ଓ କୁଆପଥର ସବୁ ଜଳ ହିଁ ଅଟେ, ସେପରି ହିଁ ସଗୁଣ-ନିର୍ଗୁଣ, ସାକାର-ନିରାକାର, ବ୍ୟକ୍ତ-ଅବ୍ୟକ୍ତ, ଜଡ଼-ଚେତନ, ସ୍ଥାବର-ଜଙ୍ଗମ, ସତ୍-ଅସତ୍ ଆଦି ଯାହା କିଛି ବି ଅଛି ତଥା ଯାହା ଏସବୁର ଉପରେ ମଧ୍ୟ ଅଛି, ସେସବୁ କେବଳ ଭଗବାନ୍ ହିଁ ଅଟନ୍ତି। ଏହା ତତ୍ତ୍ୱ। ଭଗବାନଙ୍କ ଦର୍ଶନ, ଭାଷଣ, ସ୍ପର୍ଶନ, ଚିନ୍ତନ, କୀର୍ତ୍ତନ, ଅର୍ଚ୍ଚନ, ବନ୍ଦନ ଓ ସ୍ତବନ ଆଦିଦ୍ୱାରା ପାପୀମାନେ ମଧ୍ୟ ପରମପବିତ୍ର ହୋଇଯାଆନ୍ତି। ଅଜ, ଅବିନାଶୀ, ସର୍ବଲୋକମହେଶ୍ୱର, ସର୍ବଜ୍ଞ, ସର୍ବଶକ୍ତିମାନ୍, ସର୍ବତ୍ର ସମଭାବରେ ସ୍ଥିତ ଭଗବାନ୍ ହିଁ ଦିବ୍ୟ ଅବତାର ଧାରଣ କରି ପ୍ରକଟ ହୁଅନ୍ତି ଓ ତାଙ୍କର ଦିବ୍ୟଗୁଣ, ପ୍ରଭାବ, ତତ୍ତ୍ୱ ଆଦି ବସ୍ତୁତଃ ଏତେ ଅଚିନ୍ତ୍ୟ, ଅସୀମ ଓ ଦିବ୍ୟ ଯେ, ତାଙ୍କ ନିଜ ବ୍ୟତୀତ ତାଙ୍କୁ ଅନ୍ୟ କେହି ଜାଣି ହିଁ ପାରିବ ନାହିଁ। ଏହା ତାଙ୍କର ରହସ୍ୟ।

## ଧ୍ୟାନସ୍ଥ ଭଗବାନ୍ ଶଙ୍କରଙ୍କ ଧ୍ୟାନ

ହିମାଳୟର ଗୌରୀଶଙ୍କର-ଶିଖର ଉପରେ ଏକ ସଂପୂର୍ଣ୍ଣ ଏକାନ୍ତ ସ୍ଥାନରେ ଭଗବାନ୍ ଶିବ ଧ୍ୟାନମଗ୍ନ ହୋଇ ପଦ୍ମାସନରେ ବିରାଜମାନ ଅଛନ୍ତି। ତାଙ୍କର ଶରୀର ଅତ୍ୟନ୍ତ ଗୌରବର୍ଣ୍ଣ; ତା'ଉପରେ ଈଷତ୍ କାଳିମା ବିସ୍ତାରିତ ହୋଇଛି। ତାଙ୍କର ଶରୀରର ଉପରିଭାଗ ନିଶ୍ଚଳ, ସରଳ ଓ ସମୁନ୍ନତ। ବିଶାଳ ଭାଳରେ ଭସ୍ମର ସୁନ୍ଦର ତ୍ରିପୁଣ୍ଡ୍ର ଶୋଭିତ। ପିଙ୍ଗଳବର୍ଣ୍ଣ ଜଟାମୁକୁଟ ସର୍ପଦ୍ୱାରା ବନ୍ଧା ହୋଇଛି। ଦୁଇ କର୍ଣ୍ଣରେ ରୁଦ୍ରାକ୍ଷମାଳା। ଅଙ୍ଗରେ ପରିହିତ ମୃଗଚର୍ମର ଶ୍ୟାମତା ନୀଳକଣ୍ଠର ପ୍ରଭାରେ ଆହୁରି ଘନୀଭୂତ ହେଉଛି। ତାଙ୍କ ତିନିନେତ୍ରର ଦୃଷ୍ଟି ନାସିକାର ଅଗ୍ରଭାଗରେ ନିବଦ୍ଧ ହୋଇ ରହିଛି। ତଳ ଆଡ଼କୁ ଢଳିପଡ଼ିଥିବା ସ୍ଥିର ଓ ନିସ୍ପନ୍ଦ ନୟନରୁ ଉଜ୍ଜ୍ୱଳ ଜ୍ୟୋତି ଝରି ଇତସ୍ତତଃ ବିଚ୍ଛୁରିତ ହେଉଛି। ଦୁଇ ହସ୍ତ କୋଳ ଉପରେ ରହିଛି, ଦେଖିଲେ ମନେ ହେଉଛି ଯତେ ଯେପରି କମଳ ପୁଷ୍ପ ପ୍ରସ୍ଫୁଟିତ ହୋଇଅଛି। ସେ ସମାଧି ଅବସ୍ଥାରେ ଦେହମଧ୍ୟରେ ଥିବା ବାୟୁସମୂହକୁ ନିରୁଦ୍ଧ କରି ରଖିଛନ୍ତି, ଯାହାକୁ ଦେଖିଲେ ଜଣା ପଡୁଛି, ଯତେ ଯେପରି ସେ ଏକ ଜଳପୂର୍ଣ୍ଣ ଓ ଆଡମ୍ବରରହିତ ବର୍ଷଣୋନ୍ମୁଖୀ ମେଘ ଅଥବା ତରଙ୍ଗହୀନ ପ୍ରଶାନ୍ତ ମହାସାଗର ବା ନିର୍ବାତ ସ୍ଥାନରେ ଅବସ୍ଥିତ ଏକ ନିଶ୍ଚଳ ଜ୍ୟୋତିର୍ମୟ ଦୀପକ।

## ଭଗବାନ୍ ଶ୍ରୀବିଷ୍ଣୁଙ୍କ ଧ୍ୟାନ

ନିଜର ହୃଦୟକମଳରେ ବା ନିଜ ଆଗରେ ଭୂମିଠାରୁ ସାମାନ୍ୟ ଉଚ୍ଚରେ ଏକ ରକ୍ତବର୍ଣ୍ଣର ସହସ୍ରଦଳ କମଳ ଉପରେ ଭଗବାନ୍ ଶ୍ରୀବିଷ୍ଣୁ ସୁଶୋଭିତ ହୋଇଛନ୍ତି। ନୀଳମେଘସମାନ ମନୋହର ନୀଳବର୍ଣ୍ଣ। ସକଳ ଅଙ୍ଗ ପରମ ସୁନ୍ଦର ଓ ନାନାବିଧ ଆଭୂଷଣରେ ବିଭୂଷିତ। ଶ୍ରୀଅଙ୍ଗରୁ ଦିବ୍ୟଗନ୍ଧ ନିର୍ଗତ ହେଉଛି। ଅତି ଶାନ୍ତ ଓ ସୁନ୍ଦର ମୁଖାରବିନ୍ଦ। ବିଶାଳ ଓ ମନୋହର ଦୀର୍ଘ ଚତୁର୍ଭୁଜ। ଅତ୍ୟନ୍ତ ସୁନ୍ଦର ଓ ରମଣୀୟ ଗ୍ରୀବା। ପରମ ସୁନ୍ଦର ଗୋଲ କପୋଳ। ମୁଖମଣ୍ଡଳ ମନୋହର ମନ୍ଦ ସ୍ମିତହାସ୍ୟରେ ସୁଶୋଭିତ। ରକ୍ତିମ ଅଧର ଓ ଅତିସୁନ୍ଦର ନାସିକା। ଉଭୟ କର୍ଣ୍ଣରେ ମକରାକୃତି କୁଣ୍ଡଳ ଝଲମଲ ହେଉଛି। ମନୋହର ଚିବୁକ। କମଳସମାନ ବିଶାଳ ଓ ପ୍ରଫୁଲ୍ଲିତ ନୟନରୁ ସ୍ୱାଭାବିକ ଦୟା, ପ୍ରେମ, ଶାନ୍ତି, ସମତା, ଜ୍ଞାନ, ଆନନ୍ଦ ଓ ଆଲୋକର ଅଜସ୍ର ଧାରା ଝରିପଡୁଛି। ଉନ୍ନତ ସ୍କନ୍ଧ। ମେଘଶ୍ୟାମ ନୀଳପଦ୍ମବର୍ଣ୍ଣ ଶରୀରରେ ସୁବର୍ଣ୍ଣବର୍ଣ୍ଣର ପୀତାମ୍ବର ଶୋଭାୟମାନ। ଲକ୍ଷ୍ମୀଙ୍କର ନିବାସସ୍ଥାନ ବକ୍ଷଃସ୍ଥଳରେ ଶ୍ରୀବତ୍ସଚିହ୍ନ। ଉପରପଟର ଦକ୍ଷିଣ କରରେ ଅତ୍ୟନ୍ତ ସୁନ୍ଦର ଉଜ୍ଜ୍ୱଳକିରଣଯୁକ୍ତ ଚକ୍ର। ତଳପଟର ଦକ୍ଷିଣ କରରେ କୌମୋଦକୀ ଗଦା। ଉପରପଟର ବାମ କରରେ ସୁନ୍ଦର, ଶ୍ୱେତ, ବିଶାଳ ଓ ବିଜୟୀ ପାଞ୍ଚଜନ୍ୟ ଶଙ୍ଖ ଓ ତଳପଟ କରରେ ସୁନ୍ଦର ରକ୍ତବର୍ଣ୍ଣର କମଳପୁଷ୍ପ ସୁଶୋଭିତ। ଗଳାରେ ରତ୍ନହାର; ବକ୍ଷସ୍ଥଳରେ ତୁଳସୀଯୁକ୍ତ ବନମାଳା, ବୈଜୟନ୍ତୀ ମାଳା ଓ କୌସ୍ତୁଭମଣି ବିଭୂଷିତ। ଚରଣରେ ରତ୍ନଜଡିତ ନୂପୁର ଓ ମସ୍ତକରେ ଦେଦୀପ୍ୟମାନ କିରୀଟ। ବିଶାଳ, ଉନ୍ନତ ଓ ତେଜୀୟାନ୍ ଲଲାଟରେ ମନୋହର ଊର୍ଦ୍ଧ୍ୱପୁଣ୍ଡ୍ର ତିଳକ। ହସ୍ତରେ ରତ୍ନକଙ୍କଣ। କଟିରେ ରତ୍ନଜଡିତ ମେଖଳା। ବାହୁମାନଙ୍କରେ ବାହୁବନ୍ଧ ଓ ହାତର ଅଙ୍ଗୁଳିମାନଙ୍କରେ ରତ୍ନମୁଦି ସୁଶୋଭିତ। କୃଷ୍ଣକୁଞ୍ଚିତକେଶ ବଡ଼ ମନୋହର। ଚତୁର୍ଦ୍ଦିଗରେ କୋଟିସୂର୍ଯ୍ୟର ଶୀତଳ ଆଲୋକ ବିଚ୍ଛୁରିତ; ତନ୍ମଧ୍ୟରୁ ପ୍ରେମ ଓ ଆନନ୍ଦର ଅପାର ସାଗର ଉଦ୍‌ବେଳିତ ହେଉଛି।

## ଭଗବାନ୍ ଶ୍ରୀରାମଙ୍କ ଧ୍ୟାନ

ଅତ୍ୟନ୍ତ ସୁନ୍ଦର ମଣିରତ୍ନମୟ ରାଜସିଂହାସନ; ତା' ଉପରେ ଭଗବାନ୍ ଶ୍ରୀରାମଚନ୍ଦ୍ର ଦେବୀ ସୀତାଙ୍କ ସହିତ ବିରାଜିତ। ନବୀନ ଦୂର୍ବାଦଳସମ ଶ୍ୟାମବର୍ଣ୍ଣ। କମଳଦଳସମ ବିଶାଳ ନେତ୍ର। ଅତି ସୁନ୍ଦର ମୁଖମଣ୍ଡଳ। ବିଶାଳ ଭାଲରେ ଊର୍ଦ୍ଧ୍ୱପୁଣ୍ଡ୍ର ତିଳକ। କୃଷ୍ଣକୁଞ୍ଚିତକେଶ। ମସ୍ତକରେ ସୂର୍ଯ୍ୟସମ ଉଜ୍ଜ୍ୱଳ ମୁକୁଟ ସୁଶୋଭିତ। ମୁନିମନମୋହନ, ଅତ୍ୟନ୍ତ ଲାବଣ୍ୟମୟ, ଦିବ୍ୟ ଅଙ୍ଗରେ ପୀତାମ୍ବର ବିରାଜିତ। ଗଳାରେ ରତ୍ନହାର, ଦିବ୍ୟ ପୁଷ୍ପମାଳା ଓ ଅଙ୍ଗରେ ଚନ୍ଦନ ବିଲେପିତ। ହସ୍ତରେ ଧନୁର୍ବାଣ। ରଙ୍ଗ ଅଧର। ସେଥିରେ ମୃଦୁମଧୁର ମନ୍ଦହାସ ପ୍ରକାଶ ପାଉଛି। ବାମପଟେ ଦେବୀ ସୀତା ବିରାଜିତା। ତାଙ୍କର ଶରୀର ଉଜ୍ଜ୍ୱଳ ସ୍ୱର୍ଣ୍ଣବର୍ଣ୍ଣ। ନୀଳଶାଢ଼ୀ ପରିଧାନ

କରିଛନ୍ତି । କରକମଳରେ ରକ୍ତକମଳ ଧାରଣ କରିଛନ୍ତି । ଦିବ୍ୟ ଆଭୂଷଣରେ ସର୍ବାଙ୍ଗ ବିଭୂଷିତ । ବଡ଼ ଅପୂର୍ବ ମନୋହର ଦୃଶ୍ୟ ।

## ଭଗବାନ୍ ଶ୍ରୀକୃଷ୍ଣଙ୍କ ଧ୍ୟାନ (୧)

ବୃନ୍ଦାବନରେ ଶ୍ରୀଯମୁନାତଟ । ଅଶୋକବୃକ୍ଷର ନବପଲ୍ଲବରେ ସୁଶୋଭିତ କାଳିନ୍ଦୀକୁଞ୍ଜରେ ଭଗବାନ୍ ଶ୍ରୀକୃଷ୍ଣ ନିଜ ସଖାମାନଙ୍କ ସହିତ ବିରାଜମାନ । ନବୀନ ମେଘସମାନ ଶ୍ୟାମଳ ଆଭାଯୁକ୍ତ ନୀଳବର୍ଣ୍ଣ । ଶ୍ୟାମଶରୀରରେ ସୁବର୍ଣ୍ଣବର୍ଣ୍ଣର ପୀତବସ୍ତ୍ର । ଦେଖିଲେ ମନେ ହେଉଛି, ସତେ ଯେପରି କଳାମେଘରେ ଇନ୍ଦ୍ରଧନୁ ଶୋଭା ପାଉଛି । ଗଳାରେ ସୁନ୍ଦର ବନମାଳା । ମାଳାରୁ ସୁନ୍ଦର ଫୁଲମାନଙ୍କର ଓ ତୁଳସୀର ସୁଗନ୍ଧ ମହକୁଛି । ବକ୍ଷରେ ବୈଜୟନ୍ତୀ ମାଳା ସୁଶୋଭିତ । ସୁନ୍ଦର କୃଷ୍ଣକୁଞ୍ଚିତକେଶ କପୋଳପର୍ଯ୍ୟନ୍ତ ଝୁଲୁଛି । ଅତ୍ୟନ୍ତ ରମଣୀୟ ତ୍ରିଭୁବନମୋହନ ମୁଖାରବିନ୍ଦ । ବଡ଼ ସୁନ୍ଦର ମୃଦୁମଧୁର ମନ୍ଦ ହସ । ମସ୍ତକରେ ମୟୂରଚନ୍ଦ୍ରିକାର ମୁକୁଟ । କର୍ଣ୍ଣରେ କୁଣ୍ଡଳ ଝଲମଲ କରୁଛି । ସୁନ୍ଦର ଗୋଲ କପୋଳ କୁଣ୍ଡଳର ତେଜରେ ଚମକୁଛି । ଅଙ୍ଗେ ଅଙ୍ଗେ ସୌନ୍ଦର୍ଯ୍ୟ ଫୁଟିଉଠୁଛି । କର୍ଣ୍ଣରେ କନିଅର ଫୁଲ ଧାରଣ କରିଛନ୍ତି । ଅଦ୍ଭୁତ ରଙ୍ଗ ଓ ଚିତ୍ର-ବିଚିତ୍ର ନବୀନ ପଲ୍ଲବରେ ଶରୀର ସୁସଜ୍ଜିତ । ବକ୍ଷସ୍ଥଳରେ ଶ୍ରୀବତ୍ସଚିହ୍ନ । ଗଳାରେ କୌସ୍ତୁଭମଣି । ଚିତ୍ତାକର୍ଷକ ଭ୍ରୂଲତା । ରକ୍ତିମ ଅଧର ବଡ଼ ହିଁ କୋମଳ ଓ ସୁନ୍ଦର । ବକ୍ରବିଶାଳ କମଳନୟନରୁ ଆନନ୍ଦ ଓ ପ୍ରେମର ବିଦ୍ୟୁତ୍‌ଧାରା ଛୁଟିଆସି ସମସ୍ତଙ୍କୁ ଆକର୍ଷିତ କରୁଛି ଓ ସେହି କାରଣରୁ ସମସ୍ତଙ୍କ ହୃଦୟରେ ଆନନ୍ଦ ଓ ପ୍ରେମର ସମୁଦ୍ର ଉଚ୍ଛୁଳୁଛି । ମନୋହର ତ୍ରିଭଙ୍ଗଠାଣିରେ ଦଣ୍ଡାୟମାନ ହୋଇଛନ୍ତି ଏବଂ ନିଜର ଚଞ୍ଚଳ ଓ କୋମଳ ଅଙ୍ଗୁଳିମାନଙ୍କୁ ବଂଶୀର ରନ୍ଧ୍ରମାନଙ୍କ ଉପରେ ଖେଳାଇ ବଡ଼ ମଧୁର ସ୍ୱରରେ ବଂଶୀ ବଜାଉଛନ୍ତି ।

## ଭଗବାନ୍ ଶ୍ରୀକୃଷ୍ଣଙ୍କ ଧ୍ୟାନ (୨)

କୁରୁକ୍ଷେତ୍ର ରଣାଙ୍ଗନ । ଚତୁର୍ଦ୍ଦିଗରେ ବୀରସମୂହ ଯୁଦ୍ଧପାଇଁ ଯଥାସ୍ଥାନ ଦଣ୍ଡାୟମାନ । ସେଠାରେ ଅର୍ଜୁନଙ୍କର ପରମ ତେଜୋମୟ ବିଶାଳ ରଥ । ରଥର ବିଶାଳ ଧ୍ୱଜାରେ ଚନ୍ଦ୍ରମା ଓ ତାରା ଚମକୁଛନ୍ତି । ଧ୍ୱଜାରେ ମହାବୀର ଶ୍ରୀହନୁମାନ ବିରାଜମାନ । ଅନେକ ପତାକା ଉଡୁଛି । ରଥର ଅଗ୍ରଭାଗରେ ଭଗବାନ୍ ଶ୍ରୀକୃଷ୍ଣ ବିରାଜମାନ । ଦେଖିବାକୁ ନୀଳଶ୍ୟାମବର୍ଣ୍ଣ । ସୌନ୍ଦର୍ଯ୍ୟର ପ୍ରତିମୂର୍ତ୍ତି । ବୀରବେଶ । କବଚ ପିନ୍ଧିଛନ୍ତି । ଦେହରେ ପୀତାମ୍ବର ଶୋଭା ପାଉଛି । ମୁଖମଣ୍ଡଳ ଅତ୍ୟନ୍ତ ଶାନ୍ତ । ଜ୍ଞାନର ପରମ ଦୀପ୍ତିରେ ସମସ୍ତ ଅଙ୍ଗ ଝଟକୁଛି । ବିଶାଳ ରକ୍ତାଭ ନୟନରୁ ଜ୍ଞାନର ଜ୍ୟୋତି ଝରିପଡୁଛି । ଏକ ହାତରେ ଘୋଡ଼ାର ଲଗାମ ଓ ଅନ୍ୟ ହାତଟି ଜ୍ଞାନମୁଦ୍ରାରେ ସୁଶୋଭିତ । ଅତ୍ୟନ୍ତ ଶାନ୍ତି ଓ ଧୀରତାସହିତ ଅର୍ଜୁନଙ୍କୁ ଗୀତାର ମହାନ୍ ଉପଦେଶ ଦେଉଛନ୍ତି । ଅଧରରେ ମଧୁର ମୃଦୁହାସ ଶୋଭା ପାଉଛି । ନେତ୍ରରେ ସଙ୍କେତ କରି କରି ଅର୍ଜୁନଙ୍କ ସନ୍ଦେହ ସବୁ ସମାଧାନ କରୁଛନ୍ତି ।

*ସମ୍ବନ୍ଧ — ବର୍ତ୍ତମାନ ଉପରୋକ୍ତପ୍ରକାରେ କରାଯାଉଥିବା ଧ୍ୟାନଯୋଗ ସାଧନାର ଫଳ କହୁଛନ୍ତି—*

**ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଃ ।**
**ଶାନ୍ତିଂ ନିର୍ବାଣପରମାଂ ମତ୍‌ସଂସ୍ଥାମଧିଗଚ୍ଛତି ।। ୧୫ ।।**

**ଅନ୍ୱୟ —** **ନିୟତମାନସଃ** = ମନକୁ ବଶ କରି ରଖିଥିବା; **ଯୋଗୀ** = ଯୋଗୀ; **ଏବମ୍** = ଏପରିଭାବରେ; **ଆତ୍ମାନମ୍** = ଆତ୍ମାକୁ; **ସଦା** = ନିରନ୍ତର; **ଯୁଞ୍ଜନ୍** = (ମୋର ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପରେ) ଲଗାଇ; **ମତ୍‌ସଂସ୍ଥାମ୍** = ମୋଠାରେ ରହିଥିବା; **ନିର୍ବାଣପରମାମ୍** = ପରମାନନ୍ଦର ପରାକାଷ୍ଠାରୂପକ; **ଶାନ୍ତିମ୍** = ଶାନ୍ତିକୁ; **ଅଧିଗଚ୍ଛତି** = ପ୍ରାପ୍ତ ହୁଅନ୍ତି ।

**ମନକୁ ବଶ କରିଥିବା ଯୋଗୀ ଏପରିଭାବରେ ଆତ୍ମାକୁ ନିରନ୍ତର ମୋର ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପରେ ଲଗାଇ ମୋଠାରେ ଥିବା ପରମାନନ୍ଦର ପରାକାଷ୍ଠାରୂପକ ଶାନ୍ତି ପ୍ରାପ୍ତ ହୁଅନ୍ତି।। ୧୫ ।।**

**ପ୍ରଶ୍ନ—** ଏଠାରେ **ଯୋଗୀ** ସହିତ **ନିୟତମାନସଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଯାହାଙ୍କର ମନ—ଅନ୍ତଃକରଣ ଭଲଭାବରେ ବଶୀଭୂତ ହୋଇଯାଇଛି, ତାହାଙ୍କୁ ନିୟତମାନସ କହନ୍ତି। ଏପରି ସାଧକ ହିଁ ଉପରୋକ୍ତପ୍ରକାରେ ଧ୍ୟାନଯୋଗ ସାଧନା କରିପାରନ୍ତି। ଏହି କଥା ଦେଖାଇବାପାଇଁ **ଯୋଗୀ** ସହିତ **ନିୟତମାନସଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ—** 'ଏପରିଭାବରେ ଆତ୍ମାକୁ ନିରନ୍ତର ପରମେଶ୍ୱରଙ୍କ ସ୍ୱରୂପରେ ଲଗାଇବା' ଅର୍ଥ କଣ ?

**ଉତ୍ତର—** ଉପରୋକ୍ତପ୍ରକାରେ ମନ-ବୁଦ୍ଧିଦ୍ୱାରା ନିରନ୍ତର ତୈଳଧାରାପରି ଅବିଚ୍ଛିନ୍ନଭାବରେ ଭଗବାନଙ୍କ ସ୍ୱରୂପ ଚିନ୍ତନ କରିବା ଓ ସେଥିରେ ଅଟଳଭାବରେ ତନ୍ମୟ ହୋଇଯିବା ହିଁ ଆତ୍ମାକୁ ପରମେଶ୍ୱରଙ୍କ ସ୍ୱରୂପରେ ଲଗାଇଦେବା।

**ପ୍ରଶ୍ନ—** 'ମୋଠାରେ ରହିଥିବା ପରମାନନ୍ଦର ପରାକାଷ୍ଠାରୂପୀ ଶାନ୍ତି ପ୍ରାପ୍ତ ହୁଅନ୍ତି'— ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର—** ଏହା ହେଉଛି ସେହି ଶାନ୍ତିର ବର୍ଣ୍ଣନା, ଯାହାକୁ ନୈଷ୍ଠିକୀ ଶାନ୍ତି (୫/୧୨), ଶାଶ୍ୱତୀ ଶାନ୍ତି (୯/୩୧) ଓ ପରା ଶାନ୍ତି (୧୮/୬୨) କହନ୍ତି ଓ ଯାହାକୁ ପରମେଶ୍ୱରପ୍ରାପ୍ତି, ପରମଦିବ୍ୟପୁରୁଷପ୍ରାପ୍ତି, ପରମଗତିପ୍ରାପ୍ତି ଆଦି ନାମରେ ବର୍ଣ୍ଣନା କରାଯାଏ। ଏହି ଶାନ୍ତି ହେଉଛି ଅଦ୍ୱିତୀୟ ଅନନ୍ତ ଆନନ୍ଦର ସୀମା ଏବଂ ଏହା ପରମଦୟାଳୁ, ପରମସୁହୃଦ୍, ଆନନ୍ଦନିଧି, ଆନନ୍ଦସ୍ୱରୂପ ଭଗବାନଙ୍କ ଠାରେ ନିତ୍ୟ ନିରନ୍ତର ଅଚଳ ଓ ଅଟଳଭାବରେ ନିବାସ କରେ। ଧ୍ୟାନଯୋଗର ସାଧକ ଏହି ଶାନ୍ତି ପାଆନ୍ତି।

*ସମ୍ବନ୍ଧ— ଧ୍ୟାନଯୋଗର ପ୍ରକାର ଓ ଫଳ କୁହାଗଲା। ବର୍ତ୍ତମାନ ଧ୍ୟାନଯୋଗପାଇଁ ଉପଯୋଗୀ ଆହାର, ବିହାର ଓ ଶୟନାଦିର ନିୟମ କିପରି ହେବା ଉଚିତ, ତାହା ଜାଣିବାର ଆକାଂକ୍ଷାପୂରଣ ନିମନ୍ତେ ଭଗବାନ୍ ତାହା ଦୁଇଟି ଶ୍ଳୋକରେ କହୁଛନ୍ତି—*

**ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତମନଶ୍ନତଃ।**
**ନ ଚାତିସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବ ଚାର୍ଜୁନ॥ ୧୬ ॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ; **ଯୋଗଃ** = ଏହି ଯୋଗ; **ନ, ତୁ, ଅତି, ଅଶ୍ନତଃ** = ନା ବହୁତ ଭୋଜନ କରିବା ଲୋକର; **ଚ** = କିମ୍ବା; **ନ, ଏକାନ୍ତମ୍, ଅନଶ୍ନତଃ** = ନା ଆଦୌ ଭୋଜନ ନ କରିବା ଲୋକର; **ଚ** = ତଥା; **ନ, ଅତି, ସ୍ୱପ୍ନଶୀଳସ୍ୟ** = ନା ବହୁତ ଶୋଇବା ଲୋକର; **ଚ** = ଏବଂ; **ନ, ଜାଗ୍ରତଃ, ଏବ** = ନା ସର୍ବଦା ଜାଗ୍ରତ ରହିବା ଲୋକର; **ଅସ୍ତି** = ସିଦ୍ଧ ହୁଏ।

**ହେ ଅର୍ଜୁନ! ଯେ ବହୁତ ଭୋଜନ କରେ କିୟା ଯେ ଆଦୌ ଭୋଜନ କରେ ନାହିଁ, ଯେ ବହୁତ ଶୁଏ କିୟା ଯେ ଆଦୌ ଶୁଏ ନାହିଁ, ତା'ଦ୍ୱାରା ଏହି ଯୋଗ ସିଦ୍ଧ ହୁଏ ନାହିଁ॥ ୧୬ ॥**

**ପ୍ରଶ୍ନ—** ଏଠାରେ **ଯୋଗ** ଶବ୍ଦ କାହାର ବାଚକ ?

**ଉତ୍ତର—** ପରମାତ୍ମପ୍ରାପ୍ତିର ଯେତେ ବି ଉପାୟ ରହିଛି, ସେସବୁର ନାମ 'ଯୋଗ'। କିନ୍ତୁ ଏଠାରେ 'ଧ୍ୟାନଯୋଗ' ପ୍ରସଙ୍ଗ ଚାଲିଛି। ଏଣୁ ଏଠାରେ **'ଯୋଗ'** ଶବ୍ଦକୁ ସେହି **ଧ୍ୟାନଯୋଗର** ବାଚକ ବୋଲି ବୁଝିବା ଉଚିତ। ଏହି ଯୋଗ ସକଳ ଦୁଃଖର ଆତ୍ୟନ୍ତିକ ବିନାଶ କରି ପରମାନନ୍ଦ ଓ ପରମଶାନ୍ତିର ସାଗର ପରମେଶ୍ୱରଙ୍କ ପ୍ରାପ୍ତି କରାଇଦିଏ।

**ପ୍ରଶ୍ନ—** ବହୁତ ଖାଇବା ଲୋକ ଓ ଆଦୌ ନ ଖାଇବା ଲୋକର ଧ୍ୟାନଯୋଗ କାହିଁକି ସିଦ୍ଧ ହୁଏ ନାହିଁ?

**ଉତ୍ତର—** ପେଟ ପୂରାଇ ଖାଇଲେ ନିଦ ଓ ଆଳସ୍ୟ ବଢ଼ିଯାଏ। ତା' ସଙ୍ଗେ ସଙ୍ଗେ ପେଟର ଖାଦ୍ୟ ଜୀର୍ଣ୍ଣ କରିବା ଶକ୍ତିଠାରୁ ଅଧିକ ଖାଇଲେ ପେଟରେ ଥିବା ଖାଦ୍ୟ ନାନାଦି ରୋଗ ସୃଷ୍ଟି କରେ। ସେହିପରି ଯେ ସର୍ବଥା ଅନ୍ନ ତ୍ୟାଗ କରି ପୂରା ଉପବାସ କରେ, ତା'ର ଇନ୍ଦ୍ରିୟ, ପ୍ରାଣ ଓ ମନର ଶକ୍ତି ଅତ୍ୟନ୍ତ କମିଯାଏ।

ଏପରି ହେଲେ ଆସନରେ ସ୍ଥିରଭାବେ ବସିହୁଏ ନାହିଁ, କି ପରମେଶ୍ୱରଙ୍କ ସ୍ୱରୂପରେ ମନକୁ ଲଗାଇହୁଏ ନାହିଁ। ଏହାଦ୍ୱାରା ଧ୍ୟାନସାଧନାରେ ବିଘ୍ନ ଉପସ୍ଥିତ ହୋଇଯାଏ। ତେଣୁ ଧ୍ୟାନଯୋଗୀ ଆବଶ୍ୟକତାଠାରୁ ଅଧିକ ଓ ଜୀର୍ଣ୍ଣ କରିପାରିବା ଶକ୍ତିଠାରୁ ଅଧିକ ଖାଇବା ଉଚିତ ନୁହେଁ, କି କାଷ୍ଠା ଉପବାସ କରିବା ମଧ୍ୟ ଉଚିତ ନୁହେଁ।

**ପ୍ରଶ୍ନ –** 'ବହୁତ ଶୋଇବା ଲୋକର ଓ କେବେ ନ ଶୋଇବା ଲୋକର ଧ୍ୟାନଯୋଗ ସିଦ୍ଧ ହୁଏ ନାହିଁ'– ଏହାର କାରଣ କଣ ?

**ଉତ୍ତର –** ଉଚିତ ପରିମାଣର ନିଦ୍ରା ହେଲେ ତା'ଦ୍ୱାରା କ୍ଲାନ୍ତି ଦୂର ହୋଇ ଶରୀରରେ ସ୍ଫୂର୍ତ୍ତି ଆସେ। ପରନ୍ତୁ ଆବଶ୍ୟକତାଠାରୁ ଅଧିକ ଶୋଇଲେ ତମୋଗୁଣ ବଢ଼ିଯାଏ, ଯାହାଦ୍ୱାରା ଅନବରତ ଆଳସ୍ୟ ଘୋଟିରହେ ଓ ସ୍ଥିର ହୋଇ ବସିବାରେ କଷ୍ଟ ବୋଧ ହୁଏ। ଏହା ଛଡ଼ା ଅଧିକ ଶୋଇଲେ ଜୀବନର ଅମୂଲ୍ୟ ସମୟ ନଷ୍ଟ ହୋଇଥାଏ। ସେହିପରି କେବେ ନ ଶୋଉଥିବା ଲୋକର କ୍ଲାନ୍ତି ଲାଗିରହିଥାଏ; କେବେ ସ୍ଫୂର୍ତ୍ତି ଆସେ ନାହିଁ; ଶରୀର, ଇନ୍ଦ୍ରିୟ ଓ ପ୍ରାଣ ଶିଥିଳ ହୋଇଯାଏ; ଶରୀରରେ ଅନେକପ୍ରକାର ରୋଗ ଉତ୍ପନ୍ନ ହୁଏ ଏବଂ ସବୁ ସମୟରେ ନିଦ ଓ ଆଳସ୍ୟ କ୍ଳେଶ ଦିଏ। ଏପରିଭାବରେ ବହୁତ ଶୋଇଲେ ଓ ସଦା ଜାଗ୍ରତ ରହିଲେ ଧ୍ୟାନଯୋଗ ସାଧନାରେ ବିଘ୍ନ ଘଟେ। ଅତଏବ ଧ୍ୟାନଯୋଗୀଙ୍କ ପକ୍ଷରେ ଶରୀର ସୁସ୍ଥ ରହୁ ଓ ସାଧନାରେ ବିଘ୍ନ ଉପସ୍ଥିତ ନ ହେଉ– ଏହି ଉଦ୍ଦେଶ୍ୟରେ ନିଜ ଶରୀରର ସ୍ଥିତି, ପ୍ରକୃତି, ସ୍ୱାସ୍ଥ୍ୟ ଓ ଅବସ୍ଥା ପ୍ରତି ଦୃଷ୍ଟି ରଖି ଆବଶ୍ୟକତାଠାରୁ ଅଧିକ ଶୋଇବା ଉଚିତ ନୁହେଁ, କି ଆଦୌ ନ ଶୋଇବା ଉଚିତ ନୁହେଁ।

**ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ।**
**ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା॥ ୧୭ ॥**

**ଅନ୍ୱୟ –** **ଦୁଃଖହା** = (ଏହି) ଦୁଃଖନାଶକାରୀ; **ଯୋଗଃ** = ଯୋଗ (ତ); **ଯୁକ୍ତାହାରବିହାରସ୍ୟ** = ଯଥାଯୋଗ୍ୟ ଆହାର-ବିହାର କରୁଥିବା ଲୋକର; **କର୍ମସୁ** = କର୍ମମାନଙ୍କରେ; **ଯୁକ୍ତଚେଷ୍ଟସ୍ୟ** = ଯଥାଯୋଗ୍ୟ ଚେଷ୍ଟା କରୁଥିବା ଲୋକର (ଓ); **ଯୁକ୍ତସ୍ୱପ୍ନାବବୋଧସ୍ୟ** = ଯଥାଯୋଗ୍ୟ ଶୋଉଥିବା ଓ ଚେଇଁଥିବା ଲୋକର ହିଁ; **ଭବତି** = ସିଦ୍ଧ ହୁଏ।

**ଏହି ଦୁଃଖନାଶକାରୀ ଯୋଗ ତ ଯଥାଯୋଗ୍ୟ ଆହାର-ବିହାର କରୁଥିବା ଲୋକର, କର୍ମ କରିବାକୁ ଯଥାଯୋଗ୍ୟ ଚେଷ୍ଟା କରୁଥିବା ଲୋକର ତଥା ଯଥାଯୋଗ୍ୟ ଶୋଉଥିବା ଓ ଚେଇଁଥିବା ଲୋକର ହିଁ ସିଦ୍ଧ ହୁଏ॥ ୧୭ ॥**

**ପ୍ରଶ୍ନ –** **ଯୁକ୍ତ** ଆହାର-ବିହାର କରୁଥିବା ଲୋକ କାହାକୁ କହନ୍ତି ?

**ଉତ୍ତର –** ଖାଇବା-ପିଇବା ବସ୍ତୁର ନାମ **ଆହାର** ଓ ଚଲା-ବୁଲା କରିବା କ୍ରିୟାର ନାମ **ବିହାର**। ଏ ଉଭୟ ଯାହାଙ୍କର ଉଚିତରୂପରେ ଓ ଉଚିତ ପରିମାଣରେ ହୁଏ, ତାହାଙ୍କୁ **ଯୁକ୍ତ ଆହାର-ବିହାର** କରୁଥିବା ଲୋକ ବୋଲି କହନ୍ତି। ଖାଇବାପିଇବା ବସ୍ତୁ ନିଜର ବର୍ଣ୍ଣ ଓ ଆଶ୍ରମଧର୍ମ ଅନୁସାରେ ସତ୍ୟ ଓ ନ୍ୟାୟ ମାର୍ଗରେ ପ୍ରାପ୍ତ ହେବା ଆବଶ୍ୟକ; ଶାସ୍ତ୍ରାନୁକୂଳ ଓ ସାତ୍ତ୍ୱିକ (୧୭/୮) ହେବା ଉଚିତ ଏବଂ ରଜୋଗୁଣ ଓ ତମୋଗୁଣ-ବର୍ଦ୍ଧକ ନ ହେବା ଆବଶ୍ୟକ; ପବିତ୍ର ହେବା ଆବଶ୍ୟକ, ନିଜର ପ୍ରକୃତି, ସ୍ଥିତି ଓ ରୁଚିର ପ୍ରତିକୂଳ ନ ହେବା ତଥା ଯୋଗସାଧନାରେ ସହାୟକ ହେବା ଆବଶ୍ୟକ। ନିଜର ଶକ୍ତି, ସ୍ୱାସ୍ଥ୍ୟ ଓ ସାଧନାଦୃଷ୍ଟିରୁ ଯେତିକି ହିତକର ଏବଂ ଆବଶ୍ୟକ, ଖାଦ୍ୟର ପରିମାଣ ମଧ୍ୟ ସେତିକି ହେବା ଉଚିତ। ସେହିପରି ନିଜପାଇଁ ଚଲାବୁଲା ଯେତିକି ଆବଶ୍ୟକ ଓ ହିତକର, ସେତିକି ହେବା ଉଚିତ। ଏପରି ନିୟମିତ ଓ ଉଚିତ ଆହାର-ବିହାରଦ୍ୱାରା ଶରୀର, ଇନ୍ଦ୍ରିୟ ଓ ମନରେ ସତ୍ତ୍ୱଗୁଣ ବଢ଼େ ତଥା ସେସବୁରେ ନିର୍ମଳତା, ପ୍ରସନ୍ନତା ଓ ଚେତନତାର ବୃଦ୍ଧି ହୋଇଯାଏ; ତଦ୍ଦ୍ୱାରା ଧ୍ୟାନଯୋଗ ସହଜରେ ସିଦ୍ଧ ହୁଏ।

**ପ୍ରଶ୍ନ –** କର୍ମମାନଙ୍କରେ **ଯୁକ୍ତଚେଷ୍ଟା** କରିବା କଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ଅବସ୍ଥା, ସ୍ଥିତି ଓ ବାତାବରଣ ଆଦି ଅନୁସାରେ ଶାସ୍ତ୍ରରେ ଯାହାପାଇଁ ଯାହା କର୍ତ୍ତବ୍ୟକର୍ମ କୁହାଯାଇଛି, ତାହାରି ନାମ କର୍ମ। ସମୁଚିତରୂପରେ ଓ ସମୁଚିତ ପରିମାଣରେ ସେହିସବୁ

କର୍ମ ଯଥାଯୋଗ୍ୟ କରିବା ହିଁ କର୍ମମାନଙ୍କରେ **ଯୁକ୍ତଚେଷ୍ଟା** କରିବା । ଈଶ୍ୱର-ଭକ୍ତି, ଦେବ-ପୂଜନ, ଦୀନ-ଦରିଦ୍ର-ଦୁଃଖୀଙ୍କର ସେବା; ମାତା, ପିତା, ଆଚାର୍ଯ୍ୟ ଆଦି ଗୁରୁଜନଙ୍କ ପୂଜନ; ଯଜ୍ଞ, ଦାନ, ତପ ତଥା ଜୀବିକା-ସମ୍ବନ୍ଧୀୟ କର୍ମ ଅର୍ଥାତ୍ ଶିକ୍ଷା, ପଠନପାଠନ, ବ୍ୟାପାର ଆଦି କର୍ମ ଓ ଶୌଚ-ସ୍ନାନାଦି କ୍ରିୟା — ଏହିପରି ସବୁ କର୍ମ କରିବା ଉଚିତ, ଯାହା କି ଶାସ୍ତ୍ରବିହିତ, ସାଧୁସମ୍ମତ ଅଥଚ କାହାର ଅହିତକର ନୁହେଁ; ପୁଣି ଯାହା ସ୍ୱାବଲମ୍ବନରେ ସହାୟକ ଅଟେ ଓ ଅନ୍ୟର କ୍ଷତିକାରକ ନୁହେଁ କିମ୍ବା କାହା ଉପରେ ବୋଝ ନୁହେଁ ତଥା ଧ୍ୟାନଯୋଗର ସହାୟକ ହୁଏ । ଯାହାପାଇଁ ଯେତିକି ଆବଶ୍ୟକ, ଏସବୁ କର୍ମର ପରିମାଣ ମଧ୍ୟ ସେତିକି ହିଁ ହେବା ଉଚିତ । ଏହା ଫଳରେ ନ୍ୟାୟପୂର୍ବକ ଶରୀରନିର୍ବାହ ହୁଏ ଓ ଧ୍ୟାନଯୋଗପାଇଁ ମଧ୍ୟ ଆବଶ୍ୟକତାନୁସାରେ ପର୍ଯ୍ୟାପ୍ତ ସମୟ ମିଳେ । ଏପରି କଲେ ଶରୀର, ଇନ୍ଦ୍ରିୟ ଓ ମନ ସୁସ୍ଥ ରହେ ଓ ଧ୍ୟାନଯୋଗ ସହଜରେ ସିଦ୍ଧ ହୁଏ ।

**ପ୍ରଶ୍ନ —** ଯଥାଯୋଗ୍ୟ ଶୟନ ଓ ଜାଗରଣ କଣ ?

**ଉତ୍ତର —** ଦିନରେ ନ ଶୋଇବା ଏବଂ ରାତିରେ ପ୍ରଥମ ତଥା ଶେଷ ପ୍ରହରରେ ଚେଇଁ ମଝି ଦୁଇ ପ୍ରହରରେ ଶୋଇବା — ସାଧାରଣତଃ ଏହାକୁ ହିଁ ଯଥାଯୋଗ୍ୟ ଶୟନ ଓ ଜାଗରଣ ବୋଲି ମନେ କରାଯାଏ । ତଥାପି ଏହା ନିୟମ ନୁହେଁ ଯେ, ସମସ୍ତଙ୍କୁ ଛଅ ଘଣ୍ଟା ହିଁ ଶୋଇବାକୁ ପଡ଼ିବ । ଧ୍ୟାନଯୋଗୀଙ୍କୁ ନିଜର ପ୍ରକୃତି ଓ ଶାରୀରିକ ସ୍ଥିତିର ଅନୁକୂଳ ବ୍ୟବସ୍ଥା କରିବା ଉଚିତ । ଯଦି ରାତିରେ ଚାରି-ପାଞ୍ଚ ଘଣ୍ଟା ଶୋଇଲେ ଚଳିଯିବ, ଧ୍ୟାନସମୟରେ ନିଦ ବା ଆଳସ୍ୟ ଆସିବ ନାହିଁ ଓ ସ୍ୱାସ୍ଥ୍ୟହାନି ହେବ ନାହିଁ, ତେବେ ଛଅ ଘଣ୍ଟା ନ ଶୋଇ ଚାରି-ପାଞ୍ଚ ଘଣ୍ଟା ହିଁ ଶୋଇବା ଉଚିତ ।

**ଯୁକ୍ତ** ଶବ୍ଦରୁ ବୁଝିବା ଉଚିତ ଯେ, ଆହାର, ବିହାର, କର୍ମ, ନିଦ୍ରା ଓ ଜାଗରଣ ଶାସ୍ତ୍ରପ୍ରତିକୂଳ ହେବ ନାହିଁ ଏବଂ ସାଧକର ପ୍ରକୃତି, ସ୍ୱାସ୍ଥ୍ୟ ଓ ରୁଚି ଅନୁସାରେ ଯେତିକି ଉପଯୁକ୍ତ ଓ ଆବଶ୍ୟକ, ସେସବୁର ମାତ୍ରା ମଧ୍ୟ ସେତିକି ହେବା ଉଚିତ ।

**ପ୍ରଶ୍ନ — ଯୋଗ** ସହିତ **ଦୁଃଖହା** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର —** ଧ୍ୟାନଯୋଗ ସିଦ୍ଧ ହୋଇଗଲେ ଧ୍ୟାନଯୋଗୀଙ୍କୁ ପରମାନନ୍ଦ ଓ ପରମଶାନ୍ତିର ଅନନ୍ତସାଗର ପରମେଶ୍ୱର ପ୍ରାପ୍ତ ହୋଇଯାଆନ୍ତି, ଯାହା ଫଳରେ କି, ତାଙ୍କର ସମସ୍ତ ଦୁଃଖ ମୂଳକାରଣସହିତ ସବୁଦିନପାଇଁ ନଷ୍ଟ ହୋଇଯାଏ । ପୁଣି ତାଙ୍କୁ କେବେ ଭୁଲରେ ମଧ୍ୟ ଜନ୍ମମରଣରୂପକ ସଂସାରଦୁଃଖ ଭୋଗିବାକୁ ପଡ଼େ ନାହିଁ, କି କେବେ ସ୍ୱପ୍ନରେ ମଧ୍ୟ ଚିନ୍ତା, ଶୋକ, ଭୟ ଓ ଉଦ୍‌ବେଗ ଆଦି ହୁଏ ନାହିଁ । ସେ ସର୍ବଦା ଓ ସର୍ବଥା ଆନନ୍ଦର ମହାନ୍ ପ୍ରଶାନ୍ତ ସାଗରରେ ନିମଗ୍ନ ହୋଇ ରହନ୍ତି । ଦୁଃଖର ଆତ୍ୟନ୍ତିକ ବିନାଶ କରୁଥିବା ଏହି ଫଳର ସୂଚନା ଦେବାପାଇଁ ହିଁ **ଯୋଗ** ସହିତ **ଦୁଃଖହା** ବିଶେଷଣ ଦିଆଯାଇଛି ।

*__ସମ୍ବନ୍ଧ —__ ଧ୍ୟାନଯୋଗର ଉପଯୋଗୀ ଆହାର-ବିହାର ଆଦି ନିୟମ ବର୍ଣ୍ଣନା କରିବା ପରେ ନିର୍ଗୁଣନିରାକାରଙ୍କୁ ଧ୍ୟାନ କରୁଥିବା ଯୋଗୀଙ୍କ ଅନ୍ତିମ ସ୍ଥିତିର ଲକ୍ଷଣ କହୁଛନ୍ତି—*

## ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ ।
## ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତ ଇତ୍ୟୁଚ୍ୟତେ ତଦା ॥ ୧୮ ॥

**ଅନ୍ୱୟ —** **ବିନିୟତମ୍** = ଅତ୍ୟନ୍ତ ବଶୀଭୂତ ହୋଇଥିବା; **ଚିତ୍ତମ୍** = ଚିତ୍ତ; **ଯଦା** = ଯେତେବେଳେ; **ଆତ୍ମନି** = ପରମାତ୍ମାଙ୍କ ଠାରେ; **ଏବ** = ହିଁ; **ଅବତିଷ୍ଠତେ** = ଭଲଭାବେ ଅବସ୍ଥାନ କରେ; **ତଦା** = ସେତେବେଳେ; **ସର୍ବକାମେଭ୍ୟଃ** = ସକଳ ଭୋଗରୁ; **ନିଃସ୍ପୃହଃ** = ସ୍ପୃହାରହିତ ପୁରୁଷ; **ଯୁକ୍ତଃ** = ଯୋଗଯୁକ୍ତ; **ଇତି** = ବୋଲି; **ଉଚ୍ୟତେ** = କୁହାଯାଏ ।

**ଅତ୍ୟନ୍ତ ବଶୀଭୂତ ହୋଇଥିବା ଚିତ୍ତ ଯେତେବେଳେ ପରମାତ୍ମାଙ୍କ ଠାରେ ହିଁ ଭଲଭାବରେ ଅବସ୍ଥାନ କରେ, ସେତେବେଳେ ସକଳ ଭୋଗରୁ ନିଃସ୍ପୃହ ପୁରୁଷ ଯୋଗଯୁକ୍ତ ହୁଅନ୍ତି ବୋଲି କୁହାଯାଏ ॥ ୧୮ ॥**

**ପ୍ରଶ୍ନ –** ଚିତ୍ତମ୍ ସହ **ବିନିୟତମ୍** ବିଶେଷଣ ଦେବାର ପ୍ରୟୋଜନ କଣ ଓ ତାହା ପରମାତ୍ମାଙ୍କ ଠାରେ ହିଁ ଭଲଭାବରେ ଲାଗିଯାଏ କହିଲେ କଣ ବୁଝାଏ ?

**ଉତ୍ତର –** ଭଲଭାବରେ ବଶୀଭୂତ ଚିତ୍ତ ହିଁ ପରମାତ୍ମାଙ୍କ ଠାରେ ଅଚଳରୂପରେ ଲାଗିଯାଇପାରେ। ଏହି କଥା ଦେଖାଇବାପାଇଁ **ବିନିୟତମ୍** ବିଶେଷଣ ଦିଆଯାଇଛି। ପ୍ରମାଦ, ଆଳସ୍ୟ ଓ ବିକ୍ଷେପରୁ ସର୍ବଥା ରହିତ ହୋଇ ଏକମାତ୍ର ପରମାତ୍ମାଙ୍କ ଠାରେ ଚିତ୍ତ ଏହିପରି ହିଁ ନିଶ୍ଚଳଭାବରେ ଲାଗିଯିବା, ଅର୍ଥାତ୍ ଏକ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବି ବସ୍ତୁର ସାମାନ୍ୟମାତ୍ର ସ୍ମୃତି ନ ରହିବା ହିଁ ତା'ର ପରମାତ୍ମାଙ୍କ ଠାରେ ଭଲଭାବରେ ଲାଗିଯିବା।

**ପ୍ରଶ୍ନ –** ସକଳ ଭୋଗରୁ ସ୍ପୃହାରହିତ ହେବା ଅର୍ଥ କଣ ?

**ଉତ୍ତର –** ପରମଶାନ୍ତି ଓ ପରମାନନ୍ଦର ମହାନ୍ ସାଗର ଏକମାତ୍ର ପରମାତ୍ମାଙ୍କ ଠାରେ ହିଁ ଅନନ୍ୟ ସ୍ଥିତି ହୋଇଯିବାରୁ ଏବଂ ଇହଲୋକ ଓ ପରଲୋକର ଅନିତ୍ୟ, କ୍ଷଣିକ ଓ ନାଶବାନ୍ ସକଳ ଭୋଗରେ ସର୍ବଥା ବୈରାଗ୍ୟ ଆସିଯିବାରୁ କୌଣସି ବି ସାଂସାରିକ ବସ୍ତୁର କିଞ୍ଚିନ୍ମାତ୍ର ଆବଶ୍ୟକତା ବା ଆକାଂକ୍ଷା ନ ରହିବା ହିଁ ସକଳ ଭୋଗରୁ ନିଃସ୍ପୃହ ହୋଇଯିବା।

**ପ୍ରଶ୍ନ –** **ଯୁକ୍ତଃ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ଯୁକ୍ତଃ** ପଦ ଧ୍ୟାନଯୋଗର ପୂର୍ଣ୍ଣସ୍ଥିତିର ବୋଧକ। ଅଭିପ୍ରାୟ ଏହି ଯେ, ସାଧନା କରୁ କରୁ ଯେତେବେଳେ ଯୋଗୀଙ୍କ ଠାରେ ଉପରୋକ୍ତ ଦୁଇଟି ଲକ୍ଷଣ ଭଲଭାବରେ ପ୍ରକଟ ହୋଇଯାଏ, ସେତେବେଳେ ବୁଝିବା ଉଚିତ ଯେ, ସେ ଧ୍ୟାନଯୋଗର ଅନ୍ତିମସ୍ଥିତି ପାଇସାରିଛନ୍ତି।

**ସମ୍ବନ୍ଧ –** *ବଶୀଭୂତ ଚିତ୍ତ ଧ୍ୟାନକାଳରେ ଯେତେବେଳେ ଏକମାତ୍ର ପରମାତ୍ମାରେ ହିଁ ଅଚଳଭାବରେ ଲାଗିଯାଏ, ସେତେବେଳେ ସେହି ଚିତ୍ତର ଅବସ୍ଥା କିପରି ହୋଇଯାଏ, ତାହା ଜଣାଇଦେବାକୁ ଭଗବାନ୍ କହୁଛନ୍ତି–*

## ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ ସୋପମା ସ୍ମୃତା।
## ଯୋଗିନୋ ଯତଚିତ୍ତସ୍ୟ ଯୁଞ୍ଜତୋ ଯୋଗମାତ୍ମନଃ॥ ୧୯ ॥

**ଅନ୍ୱୟ –** **ଯଥା** = ଯେପରି; **ନିବାତସ୍ଥଃ** = ପବନ ନ ଥିବା ସ୍ଥାନରେ ଥିବା; **ଦୀପଃ** = ଦୀପର ଶିଖା; **ନ, ଇଙ୍ଗତେ** = ଚଞ୍ଚଳ ହୁଏ ନାହିଁ; **ସା, ଉପମା** = ସେହି ଉପମା; **ଆତ୍ମନଃ** = ପରମାତ୍ମାଙ୍କର; **ଯୋଗମ୍** = ଧ୍ୟାନରେ; **ଯୁଞ୍ଜତଃ** = ଲାଗିରହିଥିବା; **ଯୋଗିନଃ** = ଯୋଗୀଙ୍କର; **ଯତଚିତ୍ତସ୍ୟ** = ବଶୀଭୂତ ଚିତ୍ତ (ସ୍ଥିର ରହେ ବୋଲି); **ସ୍ମୃତା** = କୁହାଯାଇଛି।

**ପବନ ନ ଥିବା ସ୍ଥାନରେ ରହିଥିବା ଦୀପର ଶିଖା ଯେପରି ଚଞ୍ଚଳ ହୁଏ ନାହିଁ, ପରମାତ୍ମଙ୍କ ଧ୍ୟାନରେ ଲାଗିରହିଥିବା ଯୋଗୀଙ୍କର ବଶୀଭୂତ ଚିତ୍ତ ସେହିପରି ସ୍ଥିର ରହେ ବୋଲି କୁହାଯାଏ॥ ୧୯ ॥**

**ପ୍ରଶ୍ନ –** ଏଠାରେ **ଦୀପ** ଶବ୍ଦ କାହାର ବାଚକ ଓ ନିଶ୍ଚଳତା ଭାବ ଦେଖାଇବାକୁ ପର୍ବତ ଆଦି ଅଚଳ ପଦାର୍ଥର ଉପମା ନ ଦେଇ, ବଶୀଭୂତ ଚିତ୍ତ ସହିତ ଦୀପର ଉପମା ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ଦୀପ** ଶବ୍ଦ ପ୍ରକାଶମାନ ଦୀପଶିଖାର ବାଚକ। ପର୍ବତ ଆଦି ପଦାର୍ଥ ଜ୍ୟୋତିହୀନ ଏବଂ ସ୍ୱଭାବତଃ ଅଚଳ। ତେଣୁ ସେସବୁ ଚିତ୍ତସହିତ ତୁଳନୀୟ ନୁହନ୍ତି। କିନ୍ତୁ ଦୀପଶିଖା ଚିତ୍ତପରି ପ୍ରକାଶମାନ ଓ ଚଞ୍ଚଳ। ତେଣୁ ତା' ସହିତ ମନର ସମାନତା ରହିଛି। ଯେପରି ପବନ ନ ହେଲେ ଦୀପଶିଖା ହଲଚଲ ହୁଏ ନାହିଁ, ସେହିପରି ବଶୀଭୂତ ଚିତ୍ତ ମଧ୍ୟ ଧ୍ୟାନସମୟରେ ସବୁପ୍ରକାରେ ସୁରକ୍ଷିତ ହୋଇଥିବାରୁ ହଲଚଲ ହୁଏ ନାହିଁ; ତାହା ଅବିଚଳ ଦୀପଶିଖାପରି ସମଭାବରେ ଉଜ୍ଜ୍ୱଳ ହୋଇ ରହେ। ତେଣୁ ପର୍ବତ ଆଦି ପ୍ରକାଶରହିତ ଅଚଳ ପଦାର୍ଥମାନଙ୍କର ଉପମା ନ ଦେଇ ଦୀପର ଉପମା ଦିଆଯାଇଛି।

**ପ୍ରଶ୍ନ –** ଚିତ୍ତ ସହିତ **ଯତ** ଶବ୍ଦ ନ ଯୋଡ଼ି କେବଳ **ଚିତ୍ତସ୍ୟ** କହିଥିଲେ ମଧ୍ୟ ସେହି ଅର୍ଥ ହୋଇଥାନ୍ତା, ପୁଣି **ଯତଚିତ୍ତସ୍ୟ** ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର –** ଜିତା ଯାଇଥିବା ବା ସଂଯତ ହୋଇଥିବା ଚିତ୍ତ ହିଁ ଏହିପ୍ରକାରେ ପରମାତ୍ମାଙ୍କ ସ୍ୱରୂପରେ ଅଚଳ ରହିପାରେ– ଏହା ଦେଖାଇବାପାଇଁ 'ଯତ' ଶବ୍ଦ ଦିଆଯାଇଛି।

*ସମ୍ବନ୍ଧ* — ଏହିପ୍ରକାରେ ଧ୍ୟାନଯୋଗର ଅନ୍ତିମ ସ୍ଥିତି ପ୍ରାପ୍ତ ହୋଇଥିବା ପୁରୁଷଙ୍କର ଓ ସେ ଜୟ କରିଥିବା ଚିତ୍ତର ଲକ୍ଷଣ କହିସାରିବା ପରେ ବର୍ତ୍ତମାନ ପରବର୍ତ୍ତୀ ତିନୋଟି ଶ୍ଳୋକରେ ଧ୍ୟାନଯୋଗଦ୍ୱାରା ସଚ୍ଚିଦାନନ୍ଦ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ସ୍ଥିତି ବର୍ଣ୍ଣନା କରୁଛନ୍ତି–

**ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା ।**
**ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି ॥ ୨୦ ॥**

**ଅନ୍ୱୟ** — **ଯୋଗସେବୟା** = ଯୋଗାଭ୍ୟାସଦ୍ୱାରା; **ନିରୁଦ୍ଧମ୍** = ନିରୁଦ୍ଧ ହୋଇଥିବା; **ଚିତ୍ତମ୍** = ଚିତ୍ତ; **ଯତ୍ର** = ଯେଉଁ ଅବସ୍ଥାରେ; **ଉପରମତେ** = ଉପରତପ୍ରାପ୍ତ ହୋଇଯାଏ; **ଚ** = ଏବଂ; **ଯତ୍ର** = ଯେଉଁ ଅବସ୍ଥାରେ; **ଆତ୍ମନା** = ପରମାତ୍ମାଙ୍କ ଧ୍ୟାନରେ ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିଦ୍ୱାରା; **ଆତ୍ମାନମ୍** = ପରମାତ୍ମାଙ୍କୁ; **ପଶ୍ୟନ୍** = ସାକ୍ଷାତ କରି; **ଆତ୍ମନି** = ସଚ୍ଚିଦାନନ୍ଦଘନ ପରମାତ୍ମାରେ; **ଏବ** = ହିଁ; **ତୁଷ୍ୟତି** = ସନ୍ତୁଷ୍ଟ ହୋଇ ରହେ ।

**ଯୋଗାଭ୍ୟାସଦ୍ୱାରା ନିରୁଦ୍ଧ ହୋଇଥିବା ଚିତ୍ତ ଯେଉଁ ଅବସ୍ଥାରେ ଉପରତି ପ୍ରାପ୍ତ ହୋଇଯାଏ ଓ ଯେଉଁ ଅବସ୍ଥାରେ ପରମାତ୍ମାଙ୍କ ଧ୍ୟାନରେ ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିଦ୍ୱାରା ପରମାତ୍ମାଙ୍କୁ ସାକ୍ଷାତ କରି ସଚ୍ଚିଦାନନ୍ଦଘନ ପରମାତ୍ମାରେ ହିଁ ସନ୍ତୁଷ୍ଟ ହୋଇ ରହେ, - - - ॥ ୨୦ ॥**

**ପ୍ରଶ୍ନ** — **ଯୋଗସେବା** ଶବ୍ଦ କାହାର ବାଚକ ଓ **ଯୋଗସେବାଦ୍ୱାରା** 'ନିରୁଦ୍ଧ' ହୋଇଥିବା ଚିତ୍ତର ଅଭିପ୍ରାୟ କଣ ?

**ଉତ୍ତର** — ଧ୍ୟାନଯୋଗ ଅଭ୍ୟାସର ନାମ ଯୋଗସେବା । ସେହି ଧ୍ୟାନଯୋଗ ଅଭ୍ୟାସ କରୁ କରୁ ଚିତ୍ତ ଯେତେବେଳେ ଏକମାତ୍ର ପରମାତ୍ମାରେ ହିଁ ଭଲଭାବରେ ସ୍ଥିତ ହୋଇଯାଏ, ସେତେବେଳେ ତାହାକୁ **ନିରୁଦ୍ଧ ଚିତ୍ତ** କହନ୍ତି ।

**ପ୍ରଶ୍ନ** — ଏପରିଭାବରେ 'ପରମାତ୍ମାଙ୍କ ସ୍ୱରୂପରେ ନିରୁଦ୍ଧ ହୋଇଥିବା ଚିତ୍ତ ଉପରତ ହେବା' କହିଲେ କଣ ବୁଝାଏ ?

**ଉତ୍ତର** — ଯେଉଁ ସମୟରେ ଯୋଗୀଙ୍କର ଚିତ୍ତ ପରମାତ୍ମାଙ୍କ ସ୍ୱରୂପରେ ସବୁଦୃଷ୍ଟିରୁ ନିରୁଦ୍ଧ ହୋଇଯାଏ, ସେହି ସମୟରେ ତାଙ୍କର ଚିତ୍ତ ସଂସାରରୁ ସର୍ବଥା ନିବୃତ୍ତ (ଉପରତ) ହୋଇଯାଏ । ପୁଣି ତାଙ୍କର ଅନ୍ତଃକରଣରେ ସଂସାରପାଇଁ କୌଣସି ସ୍ଥାନ ରହେ ନାହିଁ । ଯଦ୍ୟପି ଲୋକଦୃଷ୍ଟିରେ ତାଙ୍କର ଚିତ୍ତ ସମାଧିସମୟରେ ସଂସାରରୁ ଉପରତ ଥିବାପରି ଓ ବ୍ୟବହାରକାଳରେ ସଂସାରଚିନ୍ତନରେ ଲାଗିଥିବାପରି ପ୍ରତୀତ ହୁଏ, ତଥାପି ପ୍ରକୃତରେ ତାଙ୍କର ସଂସାର ସହିତ କୌଣସି ସମ୍ବନ୍ଧ ନ ଥାଏ । ଏହା ହିଁ ତାଙ୍କର ଚିତ୍ତ ସବୁଦିନପାଇଁ ସଂସାରରୁ ଉପରତ ବା ନିବୃତ୍ତ ହୋଇଯିବା ।

**ପ୍ରଶ୍ନ** — ଏଠାରେ **ଯତ୍ର** କାହାର ବାଚକ ?

**ଉତ୍ତର** — ଯେଉଁ ଅବସ୍ଥାରେ ଧ୍ୟାନଯୋଗ-ସାଧକଙ୍କର ପରମାତ୍ମାଙ୍କ ସହିତ ସଂଯୋଗ ହୋଇଯାଏ ଅର୍ଥାତ୍ ତାଙ୍କୁ ପରମାତ୍ମାଙ୍କ ପ୍ରତ୍ୟକ୍ଷ ଅନୁଭବ ହୋଇଯାଏ ଓ ସଂସାର ସହିତ ତାଙ୍କର ସମ୍ବନ୍ଧ ସବୁଦିନପାଇଁ ତୁଟିଯାଏ, ତଥା ତେଇଶ ଶ୍ଳୋକରେ ଭଗବାନ୍ ଯାହାର ନାମ 'ଯୋଗ' ବୋଲି କହିଛନ୍ତି, ଏଠାରେ **ଯତ୍ର** ଶବ୍ଦଟି ହେଉଛି ସେହି ଅବସ୍ଥାବିଶେଷର ବାଚକ ।

**ପ୍ରଶ୍ନ** — ଏଠାରେ ଏବର ଅଭିପ୍ରାୟ କଣ ?

**ଉତ୍ତର** — ଏବ ପ୍ରୟୋଗ ଏଠାରେ ପରମାତ୍ମାଙ୍କ ଦର୍ଶନଜନିତ ଆନନ୍ଦ ଛଡ଼ା ଅନ୍ୟ ସାଂସାରିକ ସନ୍ତୋଷର କାରଣ ନିରାକରଣ କରିଦେବାକୁ କରାଯାଇଛି । ଅଭିପ୍ରାୟ ଏହି କି, ପରମାନନ୍ଦ ଓ ପରମଶାନ୍ତିର ସାଗର ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ପରେ ଯୋଗୀ ସଦା-ସର୍ବଦା ସେହି ଆନନ୍ଦରେ ସନ୍ତୁଷ୍ଟ ହୋଇ ରହନ୍ତି । ତାଙ୍କ ନିମନ୍ତେ କୌଣସିପ୍ରକାର ସାଂସାରିକ ସୁଖର କିଞ୍ଚିନ୍ମାତ୍ର ଆବଶ୍ୟକତା ରହେ ନାହିଁ ।

**ପ୍ରଶ୍ନ** — ଯେଉଁ ଧ୍ୟାନରେ ପରମାତ୍ମାଙ୍କର ସାକ୍ଷାତ୍କାର ହୋଇଥାଏ, ସେହି ଧ୍ୟାନ କିପରି ଅଭ୍ୟାସ କରିବା ଉଚିତ ?

**ଉତ୍ତର** — ଏକାନ୍ତ ସ୍ଥାନରେ ପ୍ରଥମେ କୁହାଯାଇଥିବାପ୍ରକାରେ ଆସନରେ ବସି ମନର ସମସ୍ତ ସଂକଳ୍ପ ତ୍ୟାଗ କରି ନିମ୍ନଲିଖିତ ଧାରଣା କରିବା ଉଚିତ :—

ଏକ ବିଜ୍ଞାନ-ଆନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମା ହିଁ

ଅଛନ୍ତି। ତାଙ୍କ ବିନା ପ୍ରକୃତରେ ଅନ୍ୟ କୌଣସି ବସ୍ତୁ ନାହିଁ। କେବଳ ଏକମାତ୍ର ସେ ହିଁ ପରିପୂର୍ଣ୍ଣ ହୋଇ ରହିଛନ୍ତି। ଏହି ଜ୍ଞାନ ମଧ୍ୟ ତାଙ୍କରି। କାରଣ ସେ ହିଁ ଜ୍ଞାନସ୍ୱରୂପ। ସେ ସନାତନ, ନିର୍ବିକାର, ଅସୀମ, ଅପାର, ଅନନ୍ତ, ଅକଳ ଓ ଅନବଦ୍ୟ। ମନ, ବୁଦ୍ଧି, ଅହଂକାର, ଦ୍ରଷ୍ଟା, ଦର୍ଶନ, ଦୃଶ୍ୟ, ଆଦି ଯାହା କିଛି ଅଛି, ସବୁ ସେହି ବ୍ରହ୍ମରେ ହିଁ ଆରୋପିତ ଓ ବସ୍ତୁତଃ ବ୍ରହ୍ମସ୍ୱରୂପ ହିଁ ଅଟେ। ସେ ଆନନ୍ଦମୟ ଓ ଅବର୍ଣ୍ଣନୀୟ। ତାଙ୍କର ସେହି ଆନନ୍ଦମୟ ସ୍ୱରୂପ ମଧ୍ୟ ଆନନ୍ଦମୟ। ସେ ହିଁ ଆନନ୍ଦସ୍ୱରୂପ, ପୂର୍ଣ୍ଣ, ନିତ୍ୟ, ସନାତନ, ଅଜ, ଅବିନାଶୀ, ପରମ, ଚରମ, ସତ୍, ଚେତନ, ବିଜ୍ଞାନମୟ, କୂଟସ୍ଥ, ଅଚଳ, ଧ୍ରୁବ, ଅନାମୟ, ବୋଧମୟ, ଅନନ୍ତ ଓ ଶାନ୍ତ ଅଟନ୍ତି। ଏହିପ୍ରକାରେ ତାଙ୍କର ଆନନ୍ଦସ୍ୱରୂପର ଚିନ୍ତନ କରି କରି ବାରମ୍ବାର ଏପରି ଦୃଢ଼ ଧାରଣା କରିବା ଉଚିତ ଯେ, ସେହି ଆନନ୍ଦସ୍ୱରୂପଙ୍କ ବ୍ୟତୀତ ଆଉ କିଛି ହିଁ ନାହିଁ। ଯଦି କୌଣସି ସଂକଳ୍ପ ଜାଗ୍ରତ ହୁଏ, ତେବେ ତାହା ମଧ୍ୟ ସେହି ଆନନ୍ଦମୟଙ୍କ ଠାରୁ ଉତ୍ପନ୍ନ ହୋଇଛି। ତେଣୁ ତାହା ଆନନ୍ଦମୟ ବୋଲି ବୁଝି ଆନନ୍ଦମୟରେ ହିଁ ତାହା ବିଲୀନ କରିଦେବା ଉଚିତ। ଏହିପରି ଧାରଣା କରି କରି ଯେତେବେଳେ ସମସ୍ତ ସଂକଳ୍ପ ଆନନ୍ଦମୟ ବୋଧସ୍ୱରୂପ ପରମାତ୍ମାରେ ବିଲୀନ ହୋଇଯାଏ ଏବଂ ଏକ ଆନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବି ସଂକଳ୍ପର ଅସ୍ତିତ୍ୱ ରହେ ନାହିଁ, ସେତେବେଳେ ସାଧକଙ୍କର ଆନନ୍ଦମୟ ପରମାତ୍ମାରେ ଅଚଳ ସ୍ଥିତି ଆସିଯାଏ। ଏହିପରି ନିତ୍ୟ-ନିୟମିତ ଧ୍ୟାନ କରୁ କରୁ ନିଜର ଓ ସଂସାରର ସମସ୍ତ ସତ୍ତା ଯେତେବେଳେ ବ୍ରହ୍ମଠାରୁ ଅଭିନ୍ନ ହୋଇଯାଏ, ଯେତେବେଳେ ସବୁ କିଛି ପରମାନନ୍ଦ ଓ ପରମଶାନ୍ତିସ୍ୱରୂପ ବ୍ରହ୍ମ ହୋଇଯାଏ, ସେତେବେଳେ ସାଧକଙ୍କୁ ପରମାତ୍ମାଙ୍କର ପ୍ରକୃତ ସାକ୍ଷାତ୍କାର ସହଜ ହୋଇଯାଏ।

**ସୁଖମାତ୍ୟନ୍ତିକଂ ଯତ୍ତଦ୍ ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍।**
**ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ॥ ୨୧ ॥**

**ଅନ୍ୱୟ –** **ଅତୀନ୍ଦ୍ରିୟମ୍** = ଇନ୍ଦ୍ରିୟାତୀତ (ହୋଇ); **ବୁଦ୍ଧିଗ୍ରାହ୍ୟମ୍** = କେବଳ ବିଶୁଦ୍ଧ ସୂକ୍ଷ୍ମବୁଦ୍ଧିଦ୍ୱାରା ଗ୍ରହଣଯୋଗ୍ୟ; **ଯତ୍** = ଯେଉଁ; **ଆତ୍ୟନ୍ତିକମ୍** = ଅନନ୍ତ; **ସୁଖମ୍** = ଆନନ୍ଦ; **ତତ୍** = (ଯୋଗୀ) ତାହାକୁ; **ଯତ୍ର** = ଯେଉଁ ଅବସ୍ଥାରେ; **ବେତ୍ତି** = ଅନୁଭବ କରେ; **ଚ** = ଓ; **(ଯତ୍ର)** = ଯେଉଁ ଅବସ୍ଥାରେ; **ସ୍ଥିତଃ** = ସ୍ଥିତ (ହେଲେ); **ଅୟମ୍** = ଏହି ଯୋଗୀ; **ତତ୍ତ୍ୱତଃ** = ପରମାତ୍ମାଙ୍କ ସ୍ୱରୂପରୁ; **ନ, ଏବ, ଚଳତି** = କଦାପି ବିଚଳିତ ହୁଏ ନାହିଁ।

**କେବଳ ବିଶୁଦ୍ଧ ଓ ସୂକ୍ଷ୍ମ ବୁଦ୍ଧିଦ୍ୱାରା ଗ୍ରହଣଯୋଗ୍ୟ ଯେଉଁ ଇନ୍ଦ୍ରିୟାତୀତ ଅନନ୍ତ ଆନନ୍ଦ ରହିଛି, ଯୋଗୀ ତାହାକୁ ଯେଉଁ ଅବସ୍ଥାରେ ଅନୁଭବ କରନ୍ତି ଓ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଏହି ଯୋଗୀ ପରମାତ୍ମାଙ୍କ ସ୍ୱରୂପରୁ କଦାପି ବିଚଳିତ ହୁଅନ୍ତି ନାହିଁ, – –॥ ୨୧ ॥**

**ପ୍ରଶ୍ନ –** ଏଠାରେ ସୁଖ ସହିତ **ଆତ୍ୟନ୍ତିକମ୍, ଅତୀନ୍ଦ୍ରିୟମ୍** ଓ **ବୁଦ୍ଧିଗ୍ରାହ୍ୟମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଅଠର ଅଧ୍ୟାୟର ଛତିଶଠାରୁ ଅଣଚାଳିଶ ଶ୍ଳୋକଯାଏ ଯେଉଁ ସାତ୍ତ୍ୱିକ, ରାଜସ ଓ ତାମସ – ଏପରି ତିନିପ୍ରକାର ସୁଖ ବର୍ଣ୍ଣିତ ହୋଇଛି, ତା'ଠାରୁ ଏହି ପରମାତ୍ମସ୍ୱରୂପ ସୁଖର ଅତ୍ୟନ୍ତ ବିଲକ୍ଷଣତା ଦେଖାଇବାପାଇଁ ହିଁ ଉପରୋକ୍ତ ବିଶେଷଣ ଦିଆଯାଇଛି। ପରମାତ୍ମସ୍ୱରୂପ ସୁଖ ସାଂସାରିକ ସୁଖପରି କ୍ଷଣିକ, ନାଶବାନ୍, ଦୁଃଖର କାରଣ ଓ ଦୁଃଖମିଶ୍ରିତ ହୁଏ ନାହିଁ। ତାହା ସାତ୍ତ୍ୱିକ ସୁଖ ଅପେକ୍ଷା ମଧ୍ୟ ମହାନ୍ ଓ ବିଲକ୍ଷଣ, ଏକରସ ଓ ନିତ୍ୟ, କାରଣ ତାହା ପରମାତ୍ମାଙ୍କର ହିଁ ସ୍ୱରୂପ; ତା'ଛଡ଼ା ଅନ୍ୟ କୌଣସି ପଦାର୍ଥ ନାହିଁ। ଏହିଭାବ ଦେଖାଇବାକୁ **ଆତ୍ୟନ୍ତିକମ୍** ବିଶେଷଣ ଦିଆଯାଇଛି। ସେହି ସୁଖ ବିଷୟଜନିତ ରାଜସ ସୁଖପରି ଇନ୍ଦ୍ରିୟଭୋଗ୍ୟ ନୁହେଁ; ସେହି ଇନ୍ଦ୍ରିୟାତୀତ ପରବ୍ରହ୍ମ ପରମାତ୍ମା ହିଁ ଯେ ଏଠାରେ ସୁଖ ନାମରେ କଥିତ ହୋଇଛନ୍ତି, ସେହି ଭାବ ଦେଖାଇବାକୁ **ଅତୀନ୍ଦ୍ରିୟମ୍** ବିଶେଷଣ ଦିଆଯାଇଛି। ସେହି ସୁଖ ସ୍ୱୟଂ ନିତ୍ୟ ଜ୍ଞାନସ୍ୱରୂପ। ତାହା ମାୟାର ସୀମାରୁ ସର୍ବଥା

ଅତୀତ ହୋଇଥିବାରୁ ବୁଦ୍ଧି ସେଠାରେ ପହଞ୍ଚିପାରେ ନାହିଁ; ତଥାପି ଧୂଳି ଲାଗି ନ ଥିବା ସ୍ୱଚ୍ଛ ଦର୍ପଣରେ ଯେପରି ଆକାଶର ପ୍ରତିବିମ୍ବ ପଡ଼େ, ଭଜନ-ଧ୍ୟାନ ଓ ବିବେକ-ବୈରାଗ୍ୟାଦି ଅଭ୍ୟାସଦ୍ୱାରା ଅଚଳ, ସୂକ୍ଷ୍ମ ଓ ଶୁଦ୍ଧ ହୋଇଥିବା ବୁଦ୍ଧିରେ ସେହିପରି ସେହି ସୁଖର ପ୍ରତିବିମ୍ବ ପଡ଼େ। ତେଣୁ ତାହାକୁ **ବୁଦ୍ଧିଗ୍ରାହ୍ୟ** ବୋଲି କୁହାଯାଇଛି।

ପରମାତ୍ମାଙ୍କ ଧ୍ୟାନରୁ ମିଳୁଥିବା ସାତ୍ତ୍ୱିକ ସୁଖ ମଧ୍ୟ ଇନ୍ଦ୍ରିୟାତୀତ, ବୁଦ୍ଧିଗ୍ରାହ୍ୟ ଓ ଅକ୍ଷୟ ସୁଖର ହେତୁ ହୋଇଥିବାରୁ ଅନ୍ୟ ସାଂସାରିକ ସୁଖ ଅପେକ୍ଷା ଅତ୍ୟନ୍ତ ବିଲକ୍ଷଣ ଅଟେ। କିନ୍ତୁ ତାହା କେବଳ ଧ୍ୟାନକାଳରେ ହିଁ ମିଳେ, ତାହା ସଦା ଏକରସ ହୋଇ ରହେ ନାହିଁ ଓ ତାହା ଚିତ୍ତର ହିଁ ଏକ ଅବସ୍ଥାବିଶେଷ ହୋଇଥାଏ। ତେଣୁ ତାହାକୁ **ଆତ୍ୟନ୍ତିକ** ବା **ଅକ୍ଷୟ** ସୁଖ ବୋଲି କୁହାଯାଇପାରିବ ନାହିଁ। ପରମାତ୍ମାଙ୍କ ସ୍ୱରୂପଭୂତ ଏହି ସୁଖ ତ ସେହି ଧ୍ୟାନଜନିତ ସୁଖର ଫଳ। ଅତଏବ ଏହା ତାହା ଅପେକ୍ଷା ଅତ୍ୟନ୍ତ ବିଲକ୍ଷଣ। ଏହିପ୍ରକାରେ ତିନୋଟି ବିଶେଷଣ ଦେଇ ଏଠାରେ ସ୍ପଷ୍ଟ କରିଦେଇଛନ୍ତି ଯେ, ସାତ୍ତ୍ୱିକ ସୁଖପରି ଏହି ସୁଖ ଅନୁଭବରେ ଲବ୍ଧ ନୁହେଁ। ଏହା ତ ଧ୍ୟାତା, ଧ୍ୟାନ ଓ ଧ୍ୟେୟ– ଏହି ତିନୋଟି ଏକ ହୋଇଯିବା ପରେ ସ୍ୱତଃ ପ୍ରକଟ ହେଉଥିବା ପରମାତ୍ମାଙ୍କ ସ୍ୱରୂପ ହିଁ ଅଟେ।

**ପ୍ରଶ୍ନ–** 'ତତ୍ତ୍ୱରୁ ବିଚଳିତ ନ ହେବା'ର ତାତ୍ପର୍ଯ୍ୟ କଣ ଓ ଏଠାରେ ଏବ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର–** ତତ୍ତ୍ୱ ଶବ୍ଦ ପରମାତ୍ମାଙ୍କ ସ୍ୱରୂପର ବାଚକ ଓ ତାଙ୍କ ଠାରୁ କେବେ ଅଲଗା ନ ହେବା ହିଁ ତାଙ୍କ ଠାରୁ ବିଚଳିତ ନ ହେବା। ଏବଦ୍ୱାରା ପ୍ରକାଶ ପାଉଛି ଯେ, ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ଫଳରେ ଯୋଗୀଙ୍କର ସେଥିରେ ସବୁଦିନପାଇଁ ଅଟଳ ସ୍ଥିତି ହୋଇଯାଏ; ସେ କେବେ କୌଣସି ଅବସ୍ଥାରେ କୌଣସି କାରଣରୁ ବି ପରମାତ୍ମାଙ୍କ ଠାରୁ ଅଲଗା ହୁଅନ୍ତି ନାହିଁ।

## ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ।
## ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ॥ ୨୨ ॥

**ଅନ୍ୱୟ– ଯମ୍** = ଯେଉଁ; **ଲାଭମ୍** = (ପରମାତ୍ମପ୍ରାପ୍ତିରୂପକ) ଲାଭକୁ; **ଲବ୍ଧ୍ୱା** = ପ୍ରାପ୍ତ ହୋଇ; **ତତଃ** = ତା'ଠାରୁ; **ଅଧିକମ୍** = ଅଧିକ; **ଅପରମ୍** = ଅନ୍ୟ କିଛି (ଲାଭ) ଥିବା; **ନ, ମନ୍ୟତେ** = ମଣେ ନାହିଁ; **ଚ** = ଓ; **ଯସ୍ମିନ୍** = ଯେଉଁ ପରମାତ୍ମପ୍ରାପ୍ତିରୂପକ ଅବସ୍ଥାରେ; **ସ୍ଥିତଃ** = ସ୍ଥିତ (ଯୋଗୀ); **ଗୁରୁଣା** = ଅତିଶୟ; **ଦୁଃଖେନ** = ଦୁଃଖରେ; **ଅପି** = ମଧ୍ୟ; **ନ, ବିଚାଲ୍ୟତେ** = ବିଚଳିତ ହୁଏ ନାହିଁ।

**ପରମାତ୍ମପ୍ରାପ୍ତିରୂପକ ଯେଉଁ ଲାଭ ପ୍ରାପ୍ତ ହେଲେ, ତା'ଠାରୁ ଅଧିକ ଅନ୍ୟ କିଛି ଲାଭ ଅଛି ବୋଲି ଯୋଗୀ ମାନନ୍ତି ନାହିଁ ଓ ପରମାତ୍ମପ୍ରାପ୍ତିରୂପକ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଯୋଗୀ ଅତିଶୟ ଦୁଃଖରେ ମଧ୍ୟ ବିଚାଳିତ ହୁଅନ୍ତି ନାହିଁ, - - -॥ ୨୨ ॥**

**ପ୍ରଶ୍ନ–** ଏଠାରେ **ଯମ୍** ପଦ କାହାର ବାଚକ? ଏବଂ 'ତାହା ପ୍ରାପ୍ତ ହୋଇଗଲେ ଯୋଗୀ ଅନ୍ୟ କୌଣସି ଲାଭକୁ ତାଠାରୁ ଅଧିକ ବୋଲି ମାନନ୍ତି ନାହିଁ'– ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର–** ପରବର୍ତ୍ତୀ ଶ୍ଳୋକରେ ଯାହାକୁ ଦୁଃଖ-ସଂଯୋଗର ବିୟୋଗ ବୋଲି କୁହାଯାଇଛି, **ଯମ୍** ପଦଟି ହେଉଛି ସେହି ଯୋଗ ନାମରେ କଥିତ ପରମାତ୍ମସାକ୍ଷାତ୍କାରରୂପକ ଅବସ୍ଥାବିଶେଷର ବାଚକ। ଏହି ସ୍ଥିତିରେ ଯୋଗୀଙ୍କୁ ପରମାନନ୍ଦ ଓ ପରମଶାନ୍ତିର ନିଧାନ ପରମାତ୍ମପ୍ରାପ୍ତି ହୋଇଯିବାରୁ ସେ ପୂର୍ଣ୍ଣକାମ ହୋଇଯାଆନ୍ତି। ତାଙ୍କ ଦୃଷ୍ଟିରେ ଇହଲୋକ ତଥା ପରଲୋକର ସକଳ ଭୋଗ, ତ୍ରିଲୋକର ସମସ୍ତ ରାଜ୍ୟ ଓ ଐଶ୍ୱର୍ଯ୍ୟ, ବିଶ୍ୱବ୍ୟାପୀ ମାନ ଓ ବଡ଼ିମା ଆଦି ସାଂସାରିକ ସୁଖର ଯେତେ ସାଧନ ରହିଛି, ସବୁ କ୍ଷଣଭଙ୍ଗୁର, ଅନିତ୍ୟ, ରସହୀନ, ହେୟ, ତୁଚ୍ଛ ଓ ନଗଣ୍ୟ ହୋଇଯାଏ। ତା'ଫଳରେ ସେ କୌଣସି ବି ସାଂସାରିକ ବସ୍ତୁକୁ ପ୍ରାପ୍ତିଯୋଗ୍ୟ ବୋଲି ମଣନ୍ତି ନାହିଁ; ତେଣୁ ଅଧିକ ବୋଲି ମାନିବାର ପ୍ରଶ୍ନ କେଉଁଠି ?

**ପ୍ରଶ୍ନ–** 'ଅତିଶୟ ଦୁଃଖରେ ବି ବିଚଳିତ ହୁଅନ୍ତି ନାହିଁ'– ଏ କଥାର ଅର୍ଥ କଣ ?

**ଉତ୍ତର–** ପରମାତ୍ମପ୍ରାପ୍ତ ଯୋଗୀଙ୍କୁ ବିଶାଳ ଭୋଗ ଓ ଐଶ୍ୱର୍ଯ୍ୟ ଯେପରି ରସହୀନ ଓ ତୁଚ୍ଛ ପ୍ରତୀତ ହୁଏ

ଏବଂ ସେ ଯେପରି ସେସବୁର ପ୍ରାପ୍ତି-ଇଚ୍ଛା କରନ୍ତି ନାହିଁ, ସେସବୁ ପ୍ରାପ୍ତ ନ ହେଲେ ବା ନଷ୍ଟ ହୋଇଗଲେ ବି ସେ ଯେପରି ଖାତିରି କରନ୍ତି ନାହିଁ, ନିଜ ସ୍ଥିତିରୁ ଟିକିଏ ବି ବିଚଳିତ ହୁଅନ୍ତି ନାହିଁ, ସେହିପରି ଅତିଶୟ ଦୁଃଖ ଆସିଗଲେ ବି ସେ ସେହିପରି ଅବିଚଳିତ ରହନ୍ତି। ଏଠାରେ **ଦୁଃଖେନ** ସହିତ **ଗୁରୁଣା** ବିଶେଷଣ ଦେଇ ତଥା **ଅପି** ପ୍ରୟୋଗ କରି ଭଗବାନ୍ ଦେଖାଇଦେଇଛନ୍ତି ଯେ, ସାଧାରଣ ଦୁଃଖର ତ କୌଣସି କଥା ହିଁ ନାହିଁ— ସାଧାରଣ ଦୁଃଖକୁ ଧୈର୍ଯ୍ୟଶୀଳ ଓ ତିତିକ୍ଷୁ ପୁରୁଷ ବି ସହିଯାଇପାରନ୍ତି; କିନ୍ତୁ ଏହି ସ୍ଥିତି ପ୍ରାପ୍ତ ହୋଇଥିବା ଯୋଗୀ ତ ଅତ୍ୟନ୍ତ ଭୟାନକ, ଅସହନୀୟ ଦୁଃଖରେ ବି ନିଜର ସ୍ଥିତିରେ ସର୍ବଥା ଅଟଳ ଅଚଳ ରହନ୍ତି। ଅସ୍ତ୍ରରେ ମୁଣ୍ଡ କଟିଯାଉ, କି ଦୁଃସହ ଉଷ୍ଣ-ଶୈତ୍ୟ-ବର୍ଷା-ବିଜୁଳୀ ଆଦିଦ୍ୱାରା ଶାରୀରିକ ପୀଡ଼ା ହେଉ, କି ଦୁଷ୍ଟ ରୋଗର ବେଦନା ହେଉ, କି ଅତ୍ୟନ୍ତ ପ୍ରିୟବସ୍ତୁର ହଠାତ୍ ବିୟୋଗ ହୋଇଯାଉ, କି ସଂସାରରେ କୌଣସି କାରଣ ନ ଥାଉଣୁ ହିଁ ଘୋର ଅପମାନ, ତିରସ୍କାର ବା ନିନ୍ଦା ଆଦି ଯାବତୀୟ ଦୁଃଖର କାରଣ ଏକାଥରକେ ଆସି ପହଞ୍ଚିଯାଉ — ସେହି ଯୋଗୀ ନିଜର ସ୍ଥିତିରୁ ସାମାନ୍ୟମାତ୍ର ବିଚଳିତ ହୁଅନ୍ତି ନାହିଁ; କାରଣ, ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯିବା ପରେ ସେହି ଯୋଗୀଙ୍କର ଏହି ଶରୀର ସହିତ ପ୍ରକୃତରେ କୌଣସି ସମ୍ବନ୍ଧ ରହେ ନାହିଁ; ଶରୀରଟି କେବଳ ଲୋକଦୃଷ୍ଟିରେ ତାଙ୍କର ହୋଇ ରହିଥାଏ। ପ୍ରାରବ୍ଧ ଅନୁସାରେ ତାଙ୍କର ଶରୀର, ଇନ୍ଦ୍ରିୟ ଓ ମନ ସହିତ ସାଂସାରିକ ବସ୍ତୁମାନଙ୍କର ସଂଯୋଗ-ବିୟୋଗ ହୋଇପାରେ, ଶୀତ-ଉଷ୍ଣ, ମାନ-ଅପମାନ, ସ୍ତୁତି-ନିନ୍ଦା ଆଦି ଅନୁକୂଳ ଓ ପ୍ରତିକୂଳ ଭୋଗପଦାର୍ଥମାନଙ୍କର ପ୍ରାପ୍ତି ଓ ବିନାଶ ହୋଇପାରେ, କିନ୍ତୁ ସୁଖ-ଦୁଃଖର କୌଣସି ଭୋକ୍ତା ତାଙ୍କ ଭିତରେ ନ ଥିବାରୁ ତାଙ୍କ ଅନ୍ତଃକରଣରେ କେବେ, କୌଣସି ଅବସ୍ଥାରେ, କୌଣସି ବି କାରଣରୁ, କୌଣସିପ୍ରକାର କିଞ୍ଚିତ୍‌ମାତ୍ର ବି ବିକାର ଜାତ ହୁଏ ନାହିଁ; ତାଙ୍କର ସ୍ଥିତି ପରମାତ୍ମାରେ ନିତ୍ୟ ଅଟଳ ଅଚଳ ହୋଇ ଏକାପରି ରହିଥାଏ।

***ସମ୍ବନ୍ଧ —*** *କୋଡ଼ିଏ, ଏକୋଇଶ ଓ ବାଇଶ ଶ୍ଳୋକରେ ପରମାତ୍ମପ୍ରାପ୍ତିରୂପକ ଯେଉଁ ସ୍ଥିତିର ମହତ୍ତ୍ୱ ଓ ଲକ୍ଷଣ ବର୍ଣ୍ଣନା କରାଗଲା, ବର୍ତ୍ତମାନ ସେହି ସ୍ଥିତିର ନାମ କହି ଭଗବାନ୍ ତାହା ପ୍ରାପ୍ତ କରିବାକୁ ପ୍ରେରଣା ପ୍ରଦାନ କରୁଛନ୍ତି—*

## ତଂ ବିଦ୍ୟାଦ୍‌ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍ ।
## ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା ।। ୨୩ ।।

**ଅନ୍ୱୟ —** **ଦୁଃଖସଂଯୋଗବିୟୋଗମ୍** = (ଯାହା) ଦୁଃଖରୂପକ ସଂସାରର ସଂଯୋଗରୁ ରହିତ; **ଯୋଗସଂଜ୍ଞିତମ୍** = (ଓ) ଯାହାର ନାମ 'ଯୋଗ'; **ତମ୍** = ତାହାକୁ; **ବିଦ୍ୟାତ୍** = ଜାଣିବା ଉଚିତ; **ସଃ** = ସେହି; **ଯୋଗଃ** = ଯୋଗ (ସାଧନା); **ଅନିର୍ବିଣ୍ଣଚେତସା** = କ୍ଷୁବ୍ଧ ନ ହୋଇଥିବା ଅର୍ଥାତ୍ ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ଚିତ୍ତଦ୍ୱାରା; **ନିଶ୍ଚୟେନ** = ନିଶ୍ଚୟପୂର୍ବକ; **ଯୋକ୍ତବ୍ୟଃ** = କରିବା କର୍ତ୍ତବ୍ୟ।

**ଯାହା ଦୁଃଖରୂପକ ସଂସାରର ସଂଯୋଗରୁ ରହିତ ତଥା ଯାହାର ନାମ ଯୋଗ, ତାହା ଜାଣିବା ଆବଶ୍ୟକ। କ୍ଷୁବ୍ଧ ନ ହୋଇ ଅର୍ଥାତ୍ ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ଚିତ୍ତରେ ନିଶ୍ଚୟପୂର୍ବକ ସେହି ଯୋଗସାଧନା କରିବା କର୍ତ୍ତବ୍ୟ।। ୨୩ ।।**

***ପ୍ରଶ୍ନ —*** ଦୁଃଖରୂପକ ସଂସାରର ସଂଯୋଗରୁ ରହିତ ସ୍ଥିତି କଣ? ସେହି ସ୍ଥିତି ଲାଭ କରିଥିବା ଯୋଗୀ କଣ ସର୍ବଦା ଧ୍ୟାନାବସ୍ଥାରେ ହିଁ ରହନ୍ତି? ତାଙ୍କର ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣଦ୍ୱାରା କଣ ସଂସାରର କାର୍ଯ୍ୟ ହୁଏ ନାହିଁ?

***ଉତ୍ତର —*** ଦୁଃଖରୂପ ସଂସାରରୁ ସବୁଦିନପାଇଁ ସମ୍ବନ୍ଧ ତୁଟିଯିବା ହିଁ ତା'ର ସଂଯୋଗରୁ ରହିତ ହୋଇଯିବା। ସେହି ସ୍ଥିତିରେ ଯୋଗୀଙ୍କର ଶରୀର, ଇନ୍ଦ୍ରିୟ ଓ ମନଦ୍ୱାରା ଚାଲିବା, ବୁଲିବା, ଦେଖିବା, ଶୁଣିବା ବା ମନନ କରିବା ଓ ନିଶ୍ଚୟ କରିବା ଆଦି କାର୍ଯ୍ୟ ଯେ ହୋଇପାରିବ ନାହିଁ, ସେପରି ନୁହେଁ। ତାଙ୍କର ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧି ଆଦିଦ୍ୱାରା ପ୍ରାରବ୍ଧାନୁସାରେ ସମସ୍ତ କର୍ମ ହୁଏ; କିନ୍ତୁ ତାଙ୍କ ଜ୍ଞାନରେ ଏକମାତ୍ର ପରମାତ୍ମାଙ୍କ ଛଡ଼ା ଅନ୍ୟ କିଛି ବି ନ ଥିବାରୁ ତାଙ୍କର ସେସବୁ କର୍ମରେ ବସ୍ତୁତଃ

କୌଣସି ବି ସମ୍ବନ୍ଧ ରହେ ନାହିଁ। ତାଙ୍କର ଏହି ସ୍ଥିତି ଧ୍ୟାନସମୟରେ ଓ ବ୍ୟୁତ୍ଥାନ★କାଳରେ ସଦା ଏକାପରି ରହେ।

**ପ୍ରଶ୍ନ—** ଏଠାରେ କେବଳ **ଦୁଃଖବିୟୋଗମ୍** କହିଥିଲେ କାମ ଚଳିଥାଆନ୍ତା, **ଦୁଃଖ-ସଂଯୋଗବିୟୋଗମ୍** କହି **'ସଂଯୋଗ'** ଶବ୍ଦ ଯୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର—** ଦ୍ରଷ୍ଟା ଓ ଦୃଶ୍ୟର **ସଂଯୋଗ** ଅର୍ଥାତ୍ ଦୃଶ୍ୟପ୍ରପଞ୍ଚ ସହିତ ଆତ୍ମାର ଯେଉଁ ଅଜ୍ଞାନଜନିତ ଅନାଦି ସମ୍ବନ୍ଧ ରହିଛି, ତାହା ହେଉଛି ବାରମ୍ବାର ଜନ୍ମମରଣରୂପୀ ଦୁଃଖପ୍ରାପ୍ତିର ମୂଳକାରଣ। ତାହାର ଅଭାବ ହେଲେ ହିଁ ଦୁଃଖ ଚିରଦିନପାଇଁ ଚାଲିଯାଏ— ଏହା ବୁଝାଇବାକୁ **'ସଂଯୋଗ'** ଶବ୍ଦ ପ୍ରୟୋଗ କରାଯାଇଛି।

ପାତଞ୍ଜଳଯୋଗଦର୍ଶନରେ ମଧ୍ୟ କୁହାଯାଇଛି, **ହେୟଂ ଦୁଃଖମନାଗତମ୍** (୨/୧୬) ଭବିଷ୍ୟତରେ ମିଳିବାକୁ ଥିବା ଜନ୍ମମରଣରୂପ ମହାଦୁଃଖର ନାମ **ହେୟ। ଦ୍ରଷ୍ଟୃଦୃଶ୍ୟୟୋଃ ସଂଯୋଗୋ ହେୟହେତୁଃ** (୨/୧୭)। ଦ୍ରଷ୍ଟା ଓ ଦୃଶ୍ୟର ସଂଯୋଗ ହିଁ ହେୟର କାରଣ। **ତସ୍ୟ ହେତୁରବିଦ୍ୟା** (୨/୨୪)। 'ସେହି ସଂଯୋଗର କାରଣ ହେଉଛି ଅଜ୍ଞାନ।' **ତଦଭାବାତ୍‌ସଂଯୋଗାଭାବୋ ହାନଂ ତଦ୍ ଦୃଶେଃ କୈବଲ୍ୟମ୍** (୨/୨୫) 'ସେହି ଅବିଦ୍ୟା ଅଭାବ ଦ୍ରଷ୍ଟା ଓ ଦୃଶ୍ୟର ସଂଯୋଗର ମଧ୍ୟ ଅଭାବ ହୋଇଯାଏ। ତା'ର ନାମ **ହାନ** (ହେୟତ୍ୟାଗ) ଏବଂ ତାହା ହେଉଛି ଦ୍ରଷ୍ଟାଙ୍କର କୈବଲ୍ୟରୂପକ ସ୍ଥିତି।'

**ପ୍ରଶ୍ନ—** ଏଠାରେ **ତମ୍** ସହିତ **ଯୋଗସଂଜ୍ଞିତମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଉପରୋକ୍ତ ତିନୋଟି ଶ୍ଳୋକରେ ପରମାତ୍ମପ୍ରାପ୍ତିରୂପକ ଯେଉଁ ଅବସ୍ଥାର ମହତ୍ତ୍ୱ ଓ ଲକ୍ଷଣସବୁ ବର୍ଣ୍ଣନା କରାଯାଇଛି, ତାହାର ନାମ 'ଯୋଗ'। ଏହି ଭାବ ଦେଖାଇବାପାଇଁ **ତମ୍** ସହିତ **ଯୋଗସଂଜ୍ଞିତମ୍** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ—** ଏଠାରେ **ବିଦ୍ୟାତ୍**ର ଅଭିପ୍ରାୟ କଣ ?

**ଉତ୍ତର—** ବିଦ୍ୟାତ୍‌ର ଅଭିପ୍ରାୟ ଏହି ଯେ, **ଯତ୍ରୋପରମତେ ଚିତ୍ତମ୍** (୬/୨୦)ଠାରୁ ଏଯାଏ ଯେଉଁ ସ୍ଥିତି ବର୍ଣ୍ଣନା କରାଯାଇଛି, ତାହା ପାଇବାପାଇଁ ସିଦ୍ଧ ମହାତ୍ମାମାନଙ୍କ ପାଖକୁ ଯାଇ ଏବଂ ଶାସ୍ତ୍ର ଅଭ୍ୟାସ କରି ତାହାର ସ୍ୱରୂପ, ମହତ୍ତ୍ୱ ଓ ସାଧନା ବିଧି ଭଲଭାବେ ଜାଣିବା ଉଚିତ।

**ପ୍ରଶ୍ନ— ଅନିର୍ବିଣ୍ଣଚେତସା**ର ଭାବ କଣ ?

**ଉତ୍ତର—** ଅଳ୍ପ କିଛି ସାଧନା କରିବା ପରେ ମନରେ 'ଏ କାମ କେବେ ପୂର୍ଣ୍ଣ ହେବ, ଜାଣେ ନା; ମୋ ଦ୍ୱାରା ହୋଇପାରିବ କି ନାହିଁ, କିଏ କହିବ!' ବୋଲି ଯେଉଁ ଭାବ ଆସିଯାଏ, ତାହାରି ନାମ **ନିର୍ବିଣ୍ଣତା** ଅର୍ଥାତ୍ ସାଧନାରୁ ଓହରି ଆସିବା। ଏପରି ଭାବରୁ ରହିତ ହୋଇ ଯେ ଧୈର୍ଯ୍ୟ ଓ ଉତ୍ସାହପୂର୍ଣ୍ଣ ଚିତ୍ତରେ ସାଧନା କରିଚାଲନ୍ତି, ତାହାଙ୍କୁ **ଅନିର୍ବିଣ୍ଣଚିତ୍ତ** କୁହାଯାଏ। ତେଣୁ ଭାବ ଏହି ଯେ, ସାଧକ ନିଜ ଚିତ୍ତରୁ ନିର୍ବିଣ୍ଣତା ଦୋଷ ସର୍ବଥା ଦୂର କରିଦେବା ଉଚିତ। ଯୋଗସାଧନାରେ ଅରୁଚି ଉତ୍ପନ୍ନ କରୁଥିବା ଓ ଧୈର୍ଯ୍ୟ ତଥା ଉତ୍ସାହ କ୍ଷୁଣ୍ଣ କରୁଥିବା ଭାବକୁ ନିଜ ଚିତ୍ତରେ ଉତ୍ପନ୍ନ ହେବାକୁ ନ ଦେବା ଉଚିତ ଏବଂ ଏପରି ଅନିର୍ବିଣ୍ଣ ଚିତ୍ତରେ ଯୋଗ ସାଧନା କରିବା ଉଚିତ।

**ପ୍ରଶ୍ନ—** ଏଠାରେ **'ନିଶ୍ଚୟପୂର୍ବକ** ଯୋଗସାଧନା କରିବା କର୍ତ୍ତବ୍ୟ'— ଏହି କଥାର ଭାବ କଣ ?

**ଉତ୍ତର— ନିଶ୍ଚୟ** ଏଠାରେ ବିଶ୍ୱାସ ଓ ଶ୍ରଦ୍ଧାର ବାଚକ। ଅଭିପ୍ରାୟ ଏହି ଯେ, ଯୋଗୀ ଯୋଗସାଧନାରେ, ତାହାକୁ ବିଧାନ କରିଥିବା ଶାସ୍ତ୍ରରେ, ଆଚାର୍ଯ୍ୟମାନଙ୍କ ଠାରେ ଓ ଯୋଗସାଧନାର ଫଳରେ ପୂର୍ଣ୍ଣରୂପେ ଶ୍ରଦ୍ଧା ଓ ବିଶ୍ୱାସ ରଖିବା ଉଚିତ ଏବଂ ଯୋଗସାଧନାକୁ ହିଁ ନିଜ ଜୀବନର ମୁଖ୍ୟ କର୍ତ୍ତବ୍ୟ ମନେ କରି ଓ ପରମାତ୍ମପ୍ରାପ୍ତିରୂପକ ଯୋଗସିଦ୍ଧିକୁ ହିଁ ଧ୍ୟେୟ କରି ସେ ଦୃଢ଼ତାପୂର୍ବକ ତତ୍ପରତାର ସହିତ ଯୋଗ ସାଧନାରେ ଲାଗିଯିବା ଉଚିତ।

*ସମ୍ବନ୍ଧ— ପରମାତ୍ମପ୍ରାପ୍ତ ପୁରୁଷଙ୍କ ସ୍ଥିତିର ନାମ 'ଯୋଗ' ଏବଂ ତାହା ପ୍ରାପ୍ତ କରିବା ନିଶ୍ଚିତ କର୍ତ୍ତବ୍ୟ ବୋଲି କୁହାଗଲା। ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ ସେହି ସ୍ଥିତିପ୍ରାପ୍ତିପାଇଁ ଅଭେଦରୂପରେ ପରମାତ୍ମାଙ୍କ ଧ୍ୟାନଯୋଗ ସାଧନା କରିବାର ରୀତି କହୁଛନ୍ତି—*

★ ପରମାତ୍ମପ୍ରାପ୍ତ ମହାପୁରୁଷ ବ୍ୟବହାରକାଳରେ ବି ପରମାତ୍ମାଙ୍କ ସହିତ ଅବିଚ୍ଛିନ୍ନଭାବରେ ସମ୍ବନ୍ଧ ରଖନ୍ତି। ତାଙ୍କର ଏହି ସ୍ଥିତିକୁ ବ୍ୟୁତ୍ଥାନକାଳର ସ୍ଥିତି କୁହାଯାଏ।

## ସଂକଳ୍ପପ୍ରଭବାନ୍‌କାମାଂସ୍ତ୍ୟକ୍ତ୍ୱା ସର୍ବାନଶେଷତଃ ।
## ମନସୈବେନ୍ଦ୍ରିୟଗ୍ରାମଂ ବିନିୟମ୍ୟ ସମନ୍ତତଃ ।। ୨୪ ।।

**ଅନ୍ୱୟ –** **ସଂକଳ୍ପପ୍ରଭବାନ୍** = ସଂକଳ୍ପରୁ ଉତ୍ପନ୍ନ ହେଉଥିବା; **ସର୍ବାନ୍** = ସକଳ; **କାମାନ୍** = କାମନାମାନଙ୍କୁ; **ଅଶେଷତଃ** = ନିଃଶେଷରୂପେ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ମନସା** = ମନଦ୍ୱାରା; **ଇନ୍ଦ୍ରିୟଗ୍ରାମମ୍** = ସମସ୍ତ ଇନ୍ଦ୍ରିୟଙ୍କୁ; **ସମନ୍ତତଃ, ଏବ** = ସକଳ ଦିଗରୁ ହିଁ; **ବିନିୟମ୍ୟ** = ଭଲରୂପେ ନିରୋଧ କରି।

**ସଂକଳ୍ପରୁ ଉତ୍ପନ୍ନ ହେଉଥିବା ସକଳ କାମନା ନିଃଶେଷରୂପେ ତ୍ୟାଗ କରି, ସମସ୍ତ ଇନ୍ଦ୍ରିୟଙ୍କୁ ସବୁ ଦିଗରୁ ଭଲଭାବେ ମନଦ୍ୱାରା ନିରୋଧ କରି- - -।। ୨୪ ।।**

**ପ୍ରଶ୍ନ –** ଏଠାରେ କାମନାସବୁ ସଂକଳ୍ପରୁ ଉତ୍ପନ୍ନ ବୋଲି କୁହାଯାଇଛି ଓ ଦ୍ୱିତୀୟ ଅଧ୍ୟାୟର ବାଷଠି ଶ୍ଳୋକରେ କାମନାର ଉତ୍ପତ୍ତି ଆସକ୍ତିରୁ ହୁଏ ବୋଲି କହିଛନ୍ତି। ଏପରି ଦୁଇପ୍ରକାର କହିବାର କାରଣ କଣ ?

**ଉତ୍ତର –** ସେଠାରେ ସଂକଳ୍ପରୁ ଆସକ୍ତିର ଓ ଆସକ୍ତିରୁ କାମନାର ଉତ୍ପତ୍ତି ହୁଏ ବୋଲି କୁହାଯାଇଛି। ତେଣୁ ସେଠାରେ ମଧ୍ୟ ସଂକଳ୍ପ ହିଁ ମୂଳ କାରଣ। ଅତଏବ ଏହି ଦୁଇଟି କଥାରେ କୌଣସି ପ୍ରଭେଦ ନାହିଁ।

**ପ୍ରଶ୍ନ –** 'ସବୁ କାମନା' କେଉଁ କାମନାକୁ ବୁଝାଏ ଓ ସେସବୁକୁ ନିଃଶେଷରୂପେ ତ୍ୟାଗ କରିବା କଣ ?

**ଉତ୍ତର –** ଇହଲୋକ ଓ ପରଲୋକର ଭୋଗପାଇଁ ଯେତେପ୍ରକାର ଓ ଯେତେସବୁ ତୀବ୍ର, ମଧ୍ୟ ବା ମନ୍ଦ କାମନା ରହିଛି, ଏଠାରେ **ସର୍ବାନ୍ କାମାନ୍** ବାକ୍ୟଟି ସେସବୁର ବୋଧକ। ଏଥିରେ ସ୍ପୃହା, ଇଚ୍ଛା, ତୃଷ୍ଣା, ଆଶା ଓ ବାସନା ଆଦି ସମସ୍ତପ୍ରକାର କାମନା ଆସିଯାଉଛି ଓ ଏସବୁ କାମନାର ଉତ୍ପତ୍ତି ସଂକଳ୍ପରୁ ହୁଏ ବୋଲି କୁହାଯାଇଛି; ଏଣୁ 'ଆସକ୍ତି' ମଧ୍ୟ ଏହାର ଅନ୍ତର୍ଗତ।

ସକଳ କାମନା ନିଃଶେଷରୂପେ ତ୍ୟାଗ କରିବାର ଅର୍ଥ ହେଉଛି କୌଣସି ବି ଭୋଗରେ କୌଣସିପ୍ରକାର ସାମାନ୍ୟମାତ୍ର ବାସନା, ଆସକ୍ତି, ସ୍ପୃହା, ଇଚ୍ଛା, ଲାଳସା, ଆଶା ବା ତୃଷ୍ଣା ରହିବାକୁ ନ ଦେବା। ପାତ୍ରରୁ ଘିଅ ନିଗାଡ଼ିନେଲେ ମଧ୍ୟ ଯେପରି ଘିଅର ସ୍ନିଗ୍ଧତା ପାତ୍ରରେ ରହିଯାଏ ଅଥବା ଡିବାରୁ କର୍ପୂର, କେଶର ବା କସ୍ତୁରୀ ବାହାର କରିନେବା ପରେ ମଧ୍ୟ ଯେପରି ସେଥିରେ ସୁଗନ୍ଧ ରହିଯାଏ, ସେହିପରି ସେମାନଙ୍କ କାମନା ତ୍ୟାଗ କରିଦେବା ପରେ ମଧ୍ୟ କାମନାର ସୂକ୍ଷ୍ମ ଅଂଶ କିଛି ରହିଯାଇଥାଏ। ଶେଷକୁ ରହିଯାଇଥିବା ସେହି ସୂକ୍ଷ୍ମ ଅଂଶକୁ ମଧ୍ୟ ତ୍ୟାଗ କରିଦେବାକୁ କାମନାର ନିଃଶେଷ ତ୍ୟାଗ କୁହାଯାଏ।

**ପ୍ରଶ୍ନ –** ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ଭଲଭାବେ ନିରୋଧ କରିବାର ଅର୍ଥ କଣ ?

**ଉତ୍ତର –** ବିଷୟଭୋଗରେ ବିଚରଣ କରିବା ହିଁ ଇନ୍ଦ୍ରିୟମାନଙ୍କର ସ୍ୱଭାବ। କିନ୍ତୁ ଏମାନଙ୍କ ସହିତ ମନ ରହିଥିବାବେଳେ ହିଁ ଏମାନେ କୌଣସି ବିଷୟ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି। ମନ ଯଦି ଦୁର୍ବଳ ହୁଏ, ତେବେ ଏମାନେ ମନକୁ ବଳପୂର୍ବକ ଟାଣିନଅନ୍ତି। କିନ୍ତୁ ନିର୍ମଳ ଓ ନିଶ୍ଚୟାତ୍ମିକା ବୁଦ୍ଧି ସାହାଯ୍ୟରେ ଯଦି ମନକୁ ଏକାଗ୍ର କରିଦିଆଯାଏ, ତେବେ ମନର ସହଯୋଗ ନ ମିଳିବାରୁ ଏମାନେ ବିଷୟରେ ବିଚରଣ କରିବାକୁ ଅସମର୍ଥ ହୋଇଯାଆନ୍ତି। ତେଣୁ ଏଗାରଠାରୁ ତେର ଶ୍ଳୋକର ବର୍ଣ୍ଣନା ଅନୁସାରେ ଧ୍ୟାନଯୋଗ ସାଧନାପାଇଁ ଆସନରେ ବସି ଯୋଗୀଙ୍କୁ ବିବେକ ଓ ବୈରାଗ୍ୟର ସହାୟତାରେ ମନଦ୍ୱାରା ସମସ୍ତ ଇନ୍ଦ୍ରିୟଙ୍କୁ ସମସ୍ତ ବାହ୍ୟବିଷୟଭୋଗରୁ ସବୁପ୍ରକାରେ ସଂପୂର୍ଣ୍ଣରୂପେ ହଟାଇଆଣିବା ଉଚିତ ଓ କୌଣସି ବି ଇନ୍ଦ୍ରିୟକୁ କୌଣସି ବି ବିଷୟରେ ଟିକିଏ ବି ନ ଲଗାଇ ସେମାନଙ୍କୁ ସର୍ବଥା ଅନ୍ତର୍ମୁଖୀ କରିଦେବା ଉଚିତ। ଏହା ହିଁ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ଭଲରୂପେ ନିରୋଧ କରିବା।

## ଶନୈଃ ଶନୈରୁପରମେଦ୍ ବୁଦ୍ଧ୍ୟା ଧୃତିଗୃହୀତୟା।
## ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଂଚିଦପି ଚିନ୍ତୟେତ୍।। ୨୫ ।।

**ଅନ୍ୱୟ –** **ଶନୈଃ, ଶନୈଃ** = କ୍ରମେ କ୍ରମେ (ଅଭ୍ୟାସ କରି କରି); **ଉପରମେତ୍** = ଉପରତିପ୍ରାପ୍ତ ହେବା ଉଚିତ (ତଥା); **ଧୃତିଗୃହୀତୟା** = ଧୈର୍ଯ୍ୟଯୁକ୍ତ; **ବୁଦ୍ଧ୍ୟା** = ବୁଦ୍ଧିଦ୍ୱାରା; **ମନଃ** = ମନକୁ; **ଆତ୍ମସଂସ୍ଥମ୍** = ପରମାତ୍ମାରେ

କୃତ୍ୱା = ଲଗାଇ; କିଞ୍ଚିତ୍ = ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି; ଅପି = ବି; ନ, ଚିନ୍ତୟେତ୍ = ଚିନ୍ତନ କରିବା ଉଚିତ ନୁହେଁ।

**କ୍ରମଶଃ ଅଭ୍ୟାସ କରି କରି ଉପରତି ପ୍ରାପ୍ତ ହେବା ଉଚିତ ତଥା ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ପରମାତ୍ମାରେ ଲଗାଇ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ବି ଚିନ୍ତନ କରିବା ଉଚିତ ନୁହେଁ॥ ୨୫ ॥**

**ପ୍ରଶ୍ନ –** କ୍ରମେ କ୍ରମେ ଅଭ୍ୟାସ କରି କରି ଉପରତି ପ୍ରାପ୍ତ ହେବା ତଥା ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ପରମାତ୍ମାରେ ଲଗାଇବା କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବାହ୍ୟ ବିଷୟରୁ ସର୍ବଥା ହଟାଇଆଣିବା କଥା କୁହାଯାଇଛି; କିନ୍ତୁ ଯେତେବେଳଯାଏ ମନ ବିଷୟମାନଙ୍କୁ ଚିନ୍ତା କରୁଥାଏ, ସେତେବେଳଯାଏ ତାହା ପରମାତ୍ମାରେ ଭଲଭାବରେ ଏକାଗ୍ର ହୋଇପାରେ ନାହିଁ, କି ଇନ୍ଦ୍ରିୟମାନଙ୍କୁ ଭଲଭାବରେ ବିଷୟରୁ ଟାଣି ଆଣିପାରେ ନାହିଁ। ମନ ଅନାଦିକାଳରୁ ବିଷୟଚିନ୍ତନ ଅଭ୍ୟାସ କରିଆସିଛି। ତାକୁ ଚିର-ଅଭ୍ୟସ୍ତ ବିଷୟଚିନ୍ତନରୁ ହଟାଇ ଆଣି ପରମାତ୍ମାରେ ଲଗାଇବାକୁ ହେବ। ମନର ଏହା ଏକ ସ୍ୱଭାବ ଯେ, ତା'ର ଯେଉଁ ବସ୍ତୁରେ ଲାଗିବା ଅଭ୍ୟାସ ହୋଇଯାଏ, ସେ ସେଥିରେ ତଦାକାର ହୋଇଯାଏ ଓ ସେଥିରୁ ସହଜରେ ହଟି ଆସିବାକୁ ଚାହେଁ ନାହିଁ। ପୂର୍ବ ଅଭ୍ୟାସ ବିରୁଦ୍ଧରେ ନୂଆ ତୀବ୍ର ଅଭ୍ୟାସ କରିବା ଓ ସେଥିରୁ କଦାପି ଓହରି ନ ଆସି ଦୃଢ଼ତାର ସହିତ ଲକ୍ଷ୍ୟବସ୍ତୁରେ ମନ ଲଗାଇ ଧୈର୍ଯ୍ୟ ଧରି ବୁଦ୍ଧିମତ୍ତାର ସହିତ ମନକୁ ପ୍ରସୁଲାଇ, ଡରାଇ, ନିରୋଧ କରି ଓ ବୁଝାଇ ନୂଆ ଅଭ୍ୟାସରେ ଲଗାଇବା ହିଁ ତାହାକୁ ସେଥିରୁ ହଟାଇ ଆଣିବାର ଏକମାତ୍ର ଉପାୟ। ଧୈର୍ଯ୍ୟ ଛାଡ଼ିଦେଲେ ବା ତରବର ହେଲେ, କାମ ଚଳିବ ନାହିଁ। ଯଦି ବୁଦ୍ଧି ଦୃଢ଼ ହୋଇ ରହିବ ଓ ଅଭ୍ୟାସ ଲାଗିରହିବ, ତେବେ କିଛି ସମୟ ପରେ ମନ ପୂର୍ବବିଷୟରୁ ସର୍ବଥା ହଟି ଆସି ନୂତନ ବିଷୟରେ ତଦାକାର ହୋଇଯିବ ଏବଂ ବର୍ତ୍ତମାନ ଯେପରି ପୂର୍ବ ଅଭ୍ୟାସରୁ ହଟୁ ନାହିଁ, ସେଥିରୁ ବି ସେପରି ହଟି ଆସିବ ନାହିଁ। ତେଣୁ ଭଗବାନ୍ କ୍ରମେ କ୍ରମେ ଉପରତ ହେବାକୁ ତଥା ଧୈର୍ଯ୍ୟଯୁକ୍ତ ବୁଦ୍ଧିରେ ମନକୁ ପରମାତ୍ମାରେ ଲଗାଇବାକୁ କହି ବୁଝାଇଛନ୍ତି ଯେ, ଛୋଟପିଲା କଇଁଚି ବା ଛୁରୀ ଧରିଥିଲେ, ମାଆ ଯେପରି ତାକୁ ବୁଝାଇବୁଝାଇ ଓ ଆବଶ୍ୟକ ହେଲେ ଡରାଇଅରାଇ ମଧ୍ୟ ଧୀରେ ଧୀରେ ତା' ହାତରୁ ଛୁରୀ ବା କଇଁଚିଟି କାଢ଼ିନିଅନ୍ତି, ସେହିପରି ବିବେକ ଓ ବୈରାଗ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ସାଂସାରିକ ଭୋଗମାନଙ୍କର ଅନିତ୍ୟତା ଓ କ୍ଷଣଭଙ୍ଗୁରତା ବୁଝାଇ ଓ ଭୋଗରେ ଲିପ୍ତ ରହିବା ଫଳରେ ମିଳୁଥିବା ବନ୍ଧନ ଓ ନରକାଦି ଯାତନାର ଭୟ ଦେଖାଇ ତାହାକୁ ବିଷୟଚିନ୍ତନରୁ ସଂପୂର୍ଣ୍ଣରୂପେ ରହିତ କରିଦେବା ଉଚିତ। ଏହା ହିଁ କ୍ରମେ କ୍ରମେ ଉପରତି ପ୍ରାପ୍ତ ହେବା।

ଯେତେବେଳଯାଏ ମନ ସମ୍ପୂର୍ଣ୍ଣରୂପେ ବିଷୟ ଚିନ୍ତନ ତ୍ୟାଗ ନ କରିଛି, ସେତେବେଳଯାଏ ସାଧକଙ୍କୁ ପ୍ରତିଦିନ ଆସନରେ ବସି, ପ୍ରଥମେ ଇନ୍ଦ୍ରିୟମାନଙ୍କୁ ବାହ୍ୟ ବିଷୟରୁ ରୋଧ କରି, ପରେ ବୁଦ୍ଧିଦ୍ୱାରା ମନକୁ କ୍ରମେ କ୍ରମେ ବିଷୟଚିନ୍ତନରୁ ରହିତ କରିବାପାଇଁ ଚେଷ୍ଟା କରିବା ଉଚିତ ଓ ତା' ସଙ୍ଗେ ସଙ୍ଗେ ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ପରମାତ୍ମାଙ୍କ ଠାରେ ଲଗାଇବା ଉଚିତ। ପରମାତ୍ମାଙ୍କ ତତ୍ତ୍ୱ ଓ ରହସ୍ୟ ନ ଜାଣିଥିବାରୁ ଯେଉଁ ବୁଦ୍ଧିରେ ସ୍ୱଭାବତଃ ଆସକ୍ତି, ସଂଶୟ ଓ ଭ୍ରମ ରହେ, ସେହି ବୁଦ୍ଧି ସ୍ଥିର ହୁଏ ନାହିଁ, କି ଧୈର୍ଯ୍ୟଯୁକ୍ତ ହୁଏ ନାହିଁ ଏବଂ ସେପରି ବୁଦ୍ଧି ନିଜର ପ୍ରଭାବ ପକାଇ ମନକୁ ପରମାତ୍ମାଙ୍କ ଧ୍ୟାନରେ ମଧ୍ୟ ସ୍ଥିର କରି ରଖିପାରେ ନାହିଁ। କିନ୍ତୁ ସତ୍‌ସଙ୍ଗଦ୍ୱାରା ପରମାତ୍ମାଙ୍କ ତତ୍ତ୍ୱ ଓ ରହସ୍ୟ ବୁଝି ଯେତେବେଳେ ବୁଦ୍ଧି ସ୍ଥିର ହୋଇଯାଏ, ସେତେବେଳେ ତାହା ଦୃଶ୍ୟବର୍ଗକୁ ଗ୍ରହଣ ନ କରି ପରମାତ୍ମାରେ ହିଁ ରମଣ କରେ। ସେହି ସମୟରେ ତା' ଦୃଷ୍ଟିରେ ପରମାତ୍ମାଙ୍କ ଛଡ଼ା ଆଉ କିଛି ରହେ ନାହିଁ। ତା'ଫଳରେ ବୁଦ୍ଧି ମନକୁ ଭଲଭାବରେ ବିଷୟରୁ ହଟାଇ ଆଣି ତାକୁ ପରମାତ୍ମଚିନ୍ତନରେ ନିଯୁକ୍ତ କରିଦିଏ ଓ କ୍ରମଶଃ ତାହାକୁ ତଦାକାର କରିଦିଏ। ଏହା ହିଁ ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ପରମାତ୍ମାରେ ଲଗାଇଦେବା।

**ପ୍ରଶ୍ନ –** 'ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ବି ଚିନ୍ତନ କରନ୍ତୁ ନାହିଁ' – ଏହାର ଭାବ କଣ ?

**ଉତ୍ତର –** ମନ ଯେତେବେଳଯାଏ ପରମାତ୍ମାରେ ନିରୁଦ୍ଧ ହୋଇ, ସର୍ବଥା ତଦ୍ରୂପ ହୋଇ ନାହିଁ ଅର୍ଥାତ୍ ଯେତେବେଳଯାଏ ପରମାତ୍ମପ୍ରାପ୍ତି ହୋଇ ନାହିଁ, ସେତେବେଳଯାଏ ସେ ଯେ ଧ୍ୟେୟ ବସ୍ତୁରେ (ପରମାତ୍ମାରେ) ହିଁ ନିରନ୍ତର ଲାଗିରହିବ, ତାହା ନିଶ୍ଚିତ ନୁହେଁ। ଏଣୁ ତୀବ୍ର ଅଭ୍ୟାସ ଆବଶ୍ୟକ। ଅତଏବ ଭଗବାନଙ୍କର ଏଠାରେ ଏହି ଭାବ ପ୍ରତୀତ ହେଉଛି ଯେ, ସାଧକ ଯେତେବେଳେ ଧ୍ୟାନ କରିବାକୁ ବସିବେ ଓ ଅଭ୍ୟାସଦ୍ୱାରା ଯେତେବେଳେ ତାଙ୍କର ମନ ପରମାତ୍ମାରେ ସ୍ଥିର ହୋଇଯିବ, ସେତେବେଳେ ବି ତାଙ୍କୁ ଏପରି ସାବଧାନ ରହିବାକୁ ହେବ, ଯେପରି କି ମନ କ୍ଷଣକପାଇଁ ମଧ୍ୟ ପରମାତ୍ମାଙ୍କ ଠାରୁ ଫେରି ଆସି ଅନ୍ୟ ବିଷୟ ପଛରେ ଯାଇପାରିବ ନାହିଁ। ସାଧକଙ୍କର ଏହି ସଜାଗତା ଅଭ୍ୟାସକୁ ଦୃଢ଼ କରିବାରେ ବିଶେଷ ସହାୟକ ହୁଏ। ପ୍ରତିଦିନ ଧ୍ୟାନ କରୁ କରୁ ଅଭ୍ୟାସ ଯେତିକି ଯେତିକି ବଢ଼ିବ, ମନକୁ ସେତିକି ସେତିକି ସାବଧାନତାପୂର୍ବକ ଅନ୍ୟ କେଉଁଆଡ଼େ ଯିବାକୁ ନ ଦେଇ ବିଶେଷରୂପରେ ବହୁ ସମୟପର୍ଯ୍ୟନ୍ତ ପରମାତ୍ମାଙ୍କ ଠାରେ ସ୍ଥିର ରଖିବାକୁ ପଡ଼ିବ।

**ପ୍ରଶ୍ନ –** ଧ୍ୟାନ ସମୟରେ ମନକୁ ପରମାତ୍ମାଙ୍କ ସ୍ୱରୂପରେ କିପରିଭାବରେ ଲଗାଇବା ଉଚିତ ?

**ଉତ୍ତର –** ପ୍ରଥମେ କୁହାଯାଇଥିବାପ୍ରକାରେ ଅଭ୍ୟାସ କରି, ସାଧକ ଏକାନ୍ତରେ ବସି, ଧ୍ୟାନସମୟରେ ମନକୁ ସର୍ବଥା ନିର୍ବିଷୟ କରି ଏକମାତ୍ର ପରମାତ୍ମାଙ୍କ ସ୍ୱରୂପରେ ଲଗାଇବାକୁ ଚେଷ୍ଟା କରିବା ଆବଶ୍ୟକ। ମନରେ ଯେକୌଣସି ବସ୍ତୁ ଦେଖାଦେଲେ ବି, ତାହା କଳ୍ପନାମାତ୍ର ଜାଣି ତୁରନ୍ତ ତ୍ୟାଗ କରିଦେବାକୁ ପଡ଼ିବ। ଏହିପରିଭାବରେ ଚିତ୍ତରେ ସ୍ଫୁରିତ ବସ୍ତୁକୁ ତ୍ୟାଗ କରି କ୍ରମଶଃ ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧିର ସତ୍ତାକୁ ମଧ୍ୟ ତ୍ୟାଗ କରିଦେବାକୁ ପଡ଼ିବ। ସବୁର ଅଭାବ କରୁ କରୁ ଯେତେବେଳେ ସମସ୍ତ ଦୃଶ୍ୟପ୍ରପଞ୍ଚ ଚିତ୍ତରୁ ଶୂନ୍ୟ ହୋଇଯିବ, ସେତେବେଳେ ସବୁର ଅଭାବ ନିଶ୍ଚୟ କରୁଥିବା ଏକମାତ୍ର ବୃତ୍ତିଟି ରହିଯିବ। ଏହି ବୃତ୍ତିଟି ହେଉଛି ଶୁଭ ଓ ଶୁଦ୍ଧ, ତଥାପି ଦୃଢ଼ ଧାରଣାଦ୍ୱାରା ଏହାକୁ ମଧ୍ୟ ଦୂର କରିଦେବା ଉଚିତ କିମ୍ବା ସମସ୍ତ ଦୃଶ୍ୟପ୍ରପଞ୍ଚର ଅଭାବ ହୋଇଯିବା ପରେ ତାହା ସ୍ୱତଃ ଶାନ୍ତ ହୋଇଯିବ। ତା' ପରେ ଯାହା କିଛି ରହିବ, ତାହା ହେଉଛି ଅଚିନ୍ତ୍ୟ ତତ୍ତ୍ୱ। ସେହି ତତ୍ତ୍ୱଟି ହେଉଛି 'କେବଳ' (ନିରଞ୍ଜନ) ଓ ସମସ୍ତ ଉପାଧିରୁ ରହିତ। ଏକମାତ୍ର ତାହା ହିଁ ପରିପୂର୍ଣ୍ଣ। କେହି ତା'ର ବର୍ଣ୍ଣନା କରିପାରିବ ନାହିଁ, କି ଚିନ୍ତନ କରିପାରିବ ନାହିଁ। ଅତଏବ ଏହିପ୍ରକାରେ ଦୃଶ୍ୟପ୍ରପଞ୍ଚ ଓ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଅହଙ୍କାରର ଅଭାବ କରିଦେଉଥିବା ବୃତ୍ତିକୁ ମଧ୍ୟ ନିରାସ କରିଦେଇ ଅଚିନ୍ତ୍ୟ ତତ୍ତ୍ୱରେ ସ୍ଥିତ ହେବାକୁ ଚେଷ୍ଟା କରିବା ଉଚିତ।

*__ସମ୍ବନ୍ଧ –__ ମନକୁ ପରମାତ୍ମାଙ୍କ ଠାରେ ସ୍ଥିର କରି ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ବି ଚିନ୍ତନ ନ କରିବା କଥା କୁହାଗଲା; କିନ୍ତୁ ଯଦି କୌଣସି ସାଧକଙ୍କ ଚିତ୍ତ ପୂର୍ବାଭ୍ୟାସବଶତଃ ବଳପୂର୍ବକ ବିଷୟ ଆଡ଼କୁ ଚାଲିଯାଏ, ତେବେ ସେ କଣ କରିବା ଉଚିତ ? ଏହି ଜିଜ୍ଞାସାର ଉତ୍ତରରେ ଭଗବାନ୍ କହୁଛନ୍ତି–*

### ଯତୋ ଯତୋ ନିଶ୍ଚରତି ମନଶ୍ଚଞ୍ଚଳମସ୍ଥିରମ୍।
### ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍॥ ୨୬ ॥

**ଅନ୍ୱୟ –** ଏତତ୍ = ଏହି; **ଅସ୍ଥିରମ୍** = ଅସ୍ଥିର; **ଚଞ୍ଚଳମ୍** = ଚଞ୍ଚଳ; **ମନଃ** = ମନ; **ଯତଃ, ଯତଃ** = ଯେଉଁ ଯେଉଁ (ଶବ୍ଦାଦି ବିଷୟନିମିତ୍ତ ସଂସାରରେ); **ନିଶ୍ଚରତି** = ବିଚରଣ କରେ; **ତତଃ, ତତଃ** = ସେହି ସେହି (ବିଷୟରୁ); **ନିୟମ୍ୟ** = ରୋଧ କରି (ମନକୁ ବାରମ୍ବାର); **ଆତ୍ମନି** = ପରମାତ୍ମାରେ; **ଏବ** = ହିଁ; **ବଶମ୍** = ନିରୁଦ୍ଧ; **ନୟେତ୍** = କରିବା ଉଚିତ।

**ଏହି ଅସ୍ଥିର ଚଞ୍ଚଳ ମନ ଯେଉଁ ଯେଉଁ ଶବ୍ଦାଦି ବିଷୟନିମନ୍ତେ ସଂସାରରେ ବିଚରଣ କରେ, ତାହାକୁ ସେହି ସେହି ବିଷୟରୁ ରୋଧ କରି ଅର୍ଥାତ୍ ହଟାଇ ଆଣି ବାରମ୍ବାର ପରମାତ୍ମାଙ୍କ ଠାରେ ହିଁ ନିରୁଦ୍ଧ କରିବା ଉଚିତ॥ ୨୬ ॥**

**ପ୍ରଶ୍ନ –** ଏହି ଶ୍ଲୋକର ଅଭିପ୍ରାୟ କଣ ?

**ଉତ୍ତର –** ମନ ବଡ଼ ହିଁ ଅସ୍ଥିର ଓ ଚଞ୍ଚଳ। ଏହା ସହଜରେ କେଉଁଠି ବି ସ୍ଥିର ହୋଇ ରହିବାକୁ ଚାହେଁ ନାହିଁ। ତେଣୁ ନୂତନ ଅଭ୍ୟାସ କରିବା ସମୟରେ ଏହା ବାରମ୍ବାର ଦୌଡ଼ିପଳାଏ। ସାଧକ ଅତ୍ୟନ୍ତ ଯତ୍ନସହକାରେ ମନକୁ ପରମାତ୍ମାଙ୍କ ଠାରେ ଲଗାଏ। ସେ ଭାବୁଥାଏ, ମନ ପରମାତ୍ମାଙ୍କ ଠାରେ ଲାଗିଛି; କିନ୍ତୁ କ୍ଷଣକପରେ ଦେଖିଲାବେଳକୁ ତାହା କୁଆଡ଼େ କେତେ ଦୂର ଚାଲିଗଲାଣି। ତେଣୁ ପୂର୍ବଶ୍ଲୋକରେ କୁହାଯାଇଛି ଯେ, ସାଧକ ସାବଧାନ ରହିବେ ଓ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ଚିନ୍ତନ କରିବେ ନାହିଁ। କିନ୍ତୁ ସାବଧାନ ରହୁ ରହୁ ମଧ ଟିକିଏ ସୁଯୋଗ ପାଇଗଲେ ମନ ଚଟ୍ କରି ଖସିଚାଲିଯିବ ଓ ଏପରି ଚାଲିଯିବ ଯେ, କେତେବେଳେ ଓ କେଉଁଠିକି ଚାଲିଗଲା, କିଛି ସମୟଯାଏ ଜଣାପଡ଼ିବ ନାହିଁ। ପରମାତ୍ମାଙ୍କୁ ଛାଡ଼ି ବିଷୟ ପଛରେ ଦୌଡ଼ିଯିବାରେ ଅଜ୍ଞାନ ହିଁ ପ୍ରକୃତ କାରଣ। ଅଜ୍ଞାନଦ୍ୱାରା ମୋହିତ ହୋଇ ମନ ଆନନ୍ଦ ଓ ଶାନ୍ତିର ଅନନ୍ତ ସମୁଦ୍ର, ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ଛାଡ଼ି ଅନିତ୍ୟ, କ୍ଷଣଭଙ୍ଗୁର ଓ ଦୁଃଖଜନକ ବିଷୟ ପଛରେ ଦୌଡ଼ିପଳାଏ ଓ ସେଥିରେ ରମଣ କରେ। କିନ୍ତୁ ତା' ଅପେକ୍ଷା ଅତ୍ୟନ୍ତ ଗୌଣ ହେଲେ ମଧ, ସାଧନାଦୃଷ୍ଟିରୁ ମନବିକ୍ଷେପର ପ୍ରଧାନ କାରଣଟି ହେଉଛି– 'ବିଷୟଚିନ୍ତନର ଚିରକାଳୀନ ଅଭ୍ୟାସ'। ତେଣୁ ଭଗବାନ୍ କହୁଛନ୍ତି, ଧ୍ୟାନସମୟରେ ସାଧକଙ୍କୁ ଯେତେବେଳେ ଜଣାପଡ଼ିବ ଯେ, ମନ ଅନ୍ୟ ବିଷୟ ଆଡ଼େ ଚାଲିଗଲାଣି, ସେହିକ୍ଷଣି ହିଁ ସେ ସାବଧାନତା ଓ ଦୃଢ଼ତାପୂର୍ବକ କୌଣସିପ୍ରକାର ଦୟା ନ ଦେଖାଇ ତୁରନ୍ତ ତାକୁ ଧରି ଆଣି ପରମାତ୍ମାଙ୍କ ଠାରେ ଲଗାଇଦେବା ଉଚିତ। ଏପରି ବାରମ୍ବାର ବିଷୟରୁ ହଟାଇ ଆଣି ମନକୁ ପରମାତ୍ମାଙ୍କ ଠାରେ ଲଗାଇବା ଅଭ୍ୟାସ କରିବା ଉଚିତ। ମନ ହଜାରେ ଥର ଅନୁନୟ-ବିନୟ କରୁ, ଯେପରି ଖୋସାମତ କରିବାର କରୁ ଓ ଯେତେ ପ୍ରଲୋଭନ, ପ୍ରେମ ବା ଭୟ ଦେଖାଉ ନା କାହିଁକି, ତାହା ଟିକିଏ ବି ଶୁଣିବା ଉଚିତ ନୁହେଁ। ତାକୁ ଟିକିଏ ସୁବିଧା ମିଳିଗଲେ, ତା'ର ଉଚ୍ଛୃଙ୍ଖଳତା ବଢ଼ିଯିବ। ଏହି ଅବସ୍ଥାରେ ମନର କଥା ଶୁଣି ତାହାକୁ ଟିକିଏ କେଉଁଠି ରହିବାର ସୁଯୋଗ ଦେଇଦେବା ଅର୍ଥ, ରୋଗୀକୁ ମୋହବଶତଃ କୁପଥ୍ୟ ଦେଇଦେବାପରି ବା ପିଲାକୁ ଦାଢୁଆ ଛୁରୀ ଧରାଇଦେଇ ନିଜ ହାତରୁ ଛାଡ଼ିଦେବାପରି ହେବ। ସାବଧାନତା ହିଁ ସାଧନା। ସାଧକ ଯଦି ଏହି ଅବସ୍ଥାରେ ଅସାବଧାନ ଓ ଦୁର୍ବଳ ହୋଇଯିବେ, ତାଙ୍କର ଧ୍ୟାନଯୋଗ ସଫଳ ହେବ ନାହିଁ। ଅତଏବ ସେ ଖୁବ୍ ସାବଧାନ ରହିବା ଉଚିତ ଓ ମନକୁ ବାରମ୍ବାର ବିଷୟରୁ ହଟାଇ ଆଣି ପରମାତ୍ମାଙ୍କ ଠାରେ ଲଗାଇବା ଉଚିତ।

**ପ୍ରଶ୍ନ –** ଗତଶ୍ଲୋକରେ ଓ ଏହି ଶ୍ଲୋକରେ 'ଆତ୍ମା' ଶବ୍ଦର ଅର୍ଥ 'ପରମାତ୍ମା' କରାଯାଇଛି। ଏହାର କାରଣ କଣ ?

**ଉତ୍ତର –** ଏହା ଆତ୍ମା ଓ ପରମାତ୍ମାଙ୍କର ଅଭେଦ ପ୍ରକରଣ। ଏହି କଥାଟି ସ୍ପଷ୍ଟ କରିଦେବାକୁ 'ଆତ୍ମା' ଶବ୍ଦର ଅର୍ଥ ପରମାତ୍ମା କରାଯାଇଅଛି।

*ସମ୍ବନ୍ଧ – ଚିତ୍ତକୁ ସବୁ ଦିଗରୁ ହଟାଇ ଆଣି ଏକ ପରମାତ୍ମାଙ୍କ ଠାରେ ହିଁ ସ୍ଥିର କଲେ କଣ ହେବ, ସେହି ବିଷୟରେ କହୁଛନ୍ତି–*

## ପ୍ରଶାନ୍ତମନସଂ ହ୍ୟେନଂ ଯୋଗିନଂ ସୁଖମୁତ୍ତମମ୍।
## ଉପୈତି ଶାନ୍ତରଜସଂ ବ୍ରହ୍ମଭୂତମକଲ୍ମଷମ୍॥ ୨୭ ॥

**ଅନ୍ୱୟ –** ହି = କାରଣ; **ପ୍ରଶାନ୍ତମନସମ୍** = ଯାହାଙ୍କର ମନ ଭଲଭାବରେ ଶାନ୍ତ; **ଅକଲ୍ମଷମ୍** = ଯେ ପାପରୁ ରହିତ; **ଶାନ୍ତରଜସମ୍** = ଯାହାଙ୍କର ରଜୋଗୁଣ ଶାନ୍ତ ହୋଇଗଲାଣି; **ବ୍ରହ୍ମଭୂତମ୍** = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଏକତ୍ୱଭାବ ପ୍ରାପ୍ତ ହୋଇଥିବା; **ଏନମ୍** = ସେହି; **ଯୋଗିନମ୍** = ଯୋଗୀଙ୍କୁ; **ଉତ୍ତମମ୍, ସୁଖମ୍** = ଉତ୍ତମ ଆନନ୍ଦ; **ଉପୈତି** = ପ୍ରାପ୍ତ ହୁଏ।

**ଯାହାଙ୍କର ମନ ଭଲଭାବରେ ଶାନ୍ତ ଅଟେ, ଯେ ପାପରୁ ରହିତ ଓ ଯାହାଙ୍କର ରଜୋଗୁଣ ଶାନ୍ତ ହୋଇଗଲାଣି, ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଏକତ୍ୱଭାବ ପ୍ରାପ୍ତ ହୋଇଥିବା ସେହି ଯୋଗୀଙ୍କୁ ଉତ୍ତମ ଆନନ୍ଦ ପ୍ରାପ୍ତ ହୁଏ॥ ୨୭ ॥**

**ପ୍ରଶ୍ନ – ପ୍ରଶାନ୍ତମନସମ୍** ପଦ କାହାର ବାଚକ ?

**ଉତ୍ତର –** ବିବେକ ଓ ବୈରାଗ୍ୟ ପ୍ରଭାବରେ ବିଷୟଚିନ୍ତା ଛାଡ଼ି ଓ ଚଞ୍ଚଳତାରୁ ତଥା ବିକ୍ଷେପରୁ ରହିତ ହୋଇ ଯାହାଙ୍କର ଚିତ୍ତ ସର୍ବଥା ସ୍ଥିର ଓ ସୁପ୍ରସନ୍ନ ହୋଇଗଲାଣି ଏବଂ ଫଳସ୍ୱରୂପ ଯାହାଙ୍କର ପରମାତ୍ମାଙ୍କ ସ୍ୱରୂପରେ ଅଟଳ ସ୍ଥିତି ହୋଇଯାଇଛି, ସେହି ଯୋଗୀଙ୍କୁ **ପ୍ରଶାନ୍ତମନାଃ** କହନ୍ତି ।

**ପ୍ରଶ୍ନ – ଅକଲ୍ମଷମ୍**ର ଅର୍ଥ କଣ ?

**ଉତ୍ତର –** ମନୁଷ୍ୟକୁ ଅଧୋଗତିରେ ନେଇଯାଉଥିବା ତମୋଗୁଣ ଏବଂ ତମୋଗୁଣର କାର୍ଯ୍ୟରୂପୀ ପ୍ରମାଦ, ଆଳସ୍ୟ, ଅତିନିଦ୍ରା, ମୋହ, ଦୁର୍ଗୁଣ, ଦୁରାଚାର ଆଦି ଯେତେସବୁ ମଳରୂପୀ ଦୋଷ ରହିଛି, ସେସବୁର ସମାବେଶ 'କଲ୍ମଷ' ଶବ୍ଦର ଅନ୍ତର୍ଗତ ବୋଲି ବୁଝିବାକୁ ହେବ । ଏହି କଲ୍ମଷ ଅର୍ଥାତ୍ ପାପରୁ ଯେ ସଂପୂର୍ଣ୍ଣ ରହିତ, ସେ **ଅକଲ୍ମଷ** ।

**ପ୍ରଶ୍ନ –** ଏଠାରେ **ଅକଲ୍ମଷମ୍** ପଦର ଅର୍ଥ ଯଦି ପାପକର୍ମ ଓ ସକାମ ପୁଣ୍ୟକର୍ମ – ଏହି ଉଭୟର ଅଭାବ ବୋଲି ମାନିନେବା, ତେବେ କ୍ଷତି କଣ ?

**ଉତ୍ତର –** ସକାମ ପୁଣ୍ୟକର୍ମର ଅଭାବ **ଶାନ୍ତରଜସମ୍** ପଦରେ ଆସିଯାଇଛି । ଏଣୁ **ଅକଲ୍ମଷମ୍** ପଦର ଅର୍ଥ କେବଳ ପାପକର୍ମର ଅଭାବ ବୋଲି ମାନିବା ଉଚିତ ।

**ପ୍ରଶ୍ନ – ଶାନ୍ତରଜସମ୍** ପଦ କାହାର ବାଚକ ?

**ଉତ୍ତର –** ଆସକ୍ତି, ସ୍ପୃହା, କାମନା, ଲୋଭ, ତୃଷ୍ଣା ଓ ସକାମକର୍ମ – ଏସବୁ ରଜୋଗୁଣରୁ ହିଁ ଉତ୍ପନ୍ନ ହୁଅନ୍ତି (୧୪/୭,୧୨), ଓ ଏସବୁ ରଜୋଗୁଣକୁ ବଢ଼ାନ୍ତି ମଧ୍ୟ । ଅତଏବ ଯେଉଁ ପୁରୁଷ ଏସବୁରୁ ରହିତ, **ଶାନ୍ତରଜସମ୍** ହେଉଛି ତାଙ୍କର ବାଚକ । ଚଞ୍ଚଳତାରୂପୀ ବିକ୍ଷେପ ମଧ୍ୟ ରଜୋଗୁଣର ହିଁ କାର୍ଯ୍ୟ । କିନ୍ତୁ ତା'ର ବର୍ଣ୍ଣନା **ପ୍ରଶାନ୍ତମନସମ୍** ମଧ୍ୟରେ ଆସିଯାଇଛି; ତେଣୁ ଏଠାରେ ପୁନର୍ବାର କୁହାଗଲା ନାହିଁ ।

**ପ୍ରଶ୍ନ – ବ୍ରହ୍ମଭୂତମ୍**ର ଅର୍ଥ କଣ ?

**ଉତ୍ତର –** ମୁଁ ଦେହ ନୁହେଁ; ସଚ୍ଚିଦାନନ୍ଦଘନ ବ୍ରହ୍ମ ଅଟେ – ଏହି ପ୍ରକାର ଅଭ୍ୟାସ କରୁ କରୁ ସାଧକଙ୍କର ସଚ୍ଚିଦାନନ୍ଦଘନ ପରମାତ୍ମାରେ ଦୃଢ଼ ସ୍ଥିତି ହୋଇଯାଏ । ଏହିପରି ଅଭିନ୍ନଭାବରେ ବ୍ରହ୍ମରେ ସ୍ଥିତ ପୁରୁଷଙ୍କୁ **ବ୍ରହ୍ମଭୂତ** କହନ୍ତି ।

**ପ୍ରଶ୍ନ –** ଏଠାରେ **ବ୍ରହ୍ମଭୂତମ୍** ପଦ ସାଧକଙ୍କ ବାଚକ, ନା ସିଦ୍ଧ ପୁରୁଷଙ୍କର ?

**ଉତ୍ତର – ବ୍ରହ୍ମଭୂତମ୍** ପଦଟି ହେଉଛି ଉଚ୍ଚ ଶ୍ରେଣୀର ଅଭେଦମାର୍ଗୀୟ ସାଧକଙ୍କ ବାଚକ । ଏପରି ସାଧକଙ୍କର ରଜୋଗୁଣ ଓ ତମୋଗୁଣ ଶାନ୍ତ ହୋଇଯାଇଥାଏ; ପରନ୍ତୁ ସେ ଗୁଣମାନଙ୍କ ଠାରୁ ସର୍ବଥା ଅତୀତ ହୋଇ ନ ଥାନ୍ତି । ସେ ତାଙ୍କ ନିଜ ଦୃଷ୍ଟିରୁ ବ୍ରହ୍ମର ସ୍ୱରୂପରେ ହିଁ ସ୍ଥିତ ଅଟନ୍ତି; କିନ୍ତୁ ପ୍ରକୃତରେ ବ୍ରହ୍ମଙ୍କୁ ପାଇ ନ ଥାନ୍ତି । ଏହିପରି ବ୍ରହ୍ମଙ୍କ ସ୍ୱରୂପରେ ଦୃଢ଼ସ୍ଥିତି ହୋଇଯିବା ପରେ ଶୀଘ୍ର ହିଁ ତତ୍ତ୍ୱଜ୍ଞାନଦ୍ୱାରା ବ୍ରହ୍ମପ୍ରାପ୍ତି ହୋଇଯାଏ । ତେଣୁ ଆଗ ଶ୍ଳୋକରେ ଏହି ସ୍ଥିତିର ଫଳ 'ଆତ୍ୟନ୍ତିକ ସୁଖପ୍ରାପ୍ତି' ବୋଲି କହିଦିଆଯାଇଛି । ଏହି 'ଆତ୍ୟନ୍ତିକ ସୁଖପ୍ରାପ୍ତି' ହିଁ ବ୍ରହ୍ମପ୍ରାପ୍ତି । ପଞ୍ଚମ ଅଧ୍ୟାୟର ଚବିଶ ଶ୍ଳୋକରେ ମଧ୍ୟ ଏହି ଅର୍ଥରେ **ବ୍ରହ୍ମଭୂତଃ** ପଦ ଆସିଛି ଓ ସେଠାରେ ତା'ର ଫଳ 'ନିର୍ବାଣବ୍ରହ୍ମଙ୍କ ପ୍ରାପ୍ତି' ବୋଲି କୁହାଯାଇଛି । ଅଷ୍ଟାଦଶ ଅଧ୍ୟାୟର ଚଉବନ ଶ୍ଳୋକରେ ମଧ୍ୟ 'ବ୍ରହ୍ମଭୂତ' ପୁରୁଷଙ୍କୁ ପରାଭକ୍ତି(ତତ୍ତ୍ୱଜ୍ଞାନ)ର ପ୍ରାପ୍ତି ହୁଏ ବୋଲି କହି ତଦ୍ୱାରା ପରମାତ୍ମପ୍ରାପ୍ତି ହୁଏ ବୋଲି କୁହାଯାଇଛି (୧୮/୫୫) । ଅତଏବ ଏଠାରେ **ବ୍ରହ୍ମଭୂତମ୍** ପଦଟି ସିଦ୍ଧପୁରୁଷଙ୍କ ବାଚକ ନୁହେଁ ।

**ପ୍ରଶ୍ନ – ଉତ୍ତମ ସୁଖପ୍ରାପ୍ତି**ର ଅଭିପ୍ରାୟ କଣ ?

**ଉତ୍ତର –** ତମୋଗୁଣ ଓ ରଜୋଗୁଣରୁ ଅତୀତ ଶୁଦ୍ଧସତ୍ତ୍ୱରେ ସ୍ଥିତ ସାଧକ ନିତ୍ୟ ବିଜ୍ଞାନାନନ୍ଦଘନ ପରମାତ୍ମାଙ୍କ ଧ୍ୟାନରେ ଅଭିନ୍ନଭାବରେ ସ୍ଥିତ ହୋଇଯିବା ପରେ ତାହାଙ୍କୁ ଧ୍ୟାନଜନିତ ଯେଉଁ ସାତ୍ତ୍ୱିକ ଆନନ୍ଦ ମିଳେ, ତାହାକୁ ଏଠାରେ **ଉତ୍ତମ ସୁଖ** ବୋଲି କୁହାଯାଇଛି । ପଞ୍ଚମ ଅଧ୍ୟାୟର ଏକୋଇଶ ଶ୍ଳୋକର ପୂର୍ବାର୍ଦ୍ଧରେ ଯାହାକୁ 'ସୁଖ' ବୋଲି କୁହାଯାଇଛି ତଥା ଚବିଶ ଶ୍ଳୋକରେ ଯାହାକୁ 'ଅନ୍ତଃସୁଖ' ବୋଲି କୁହାଯାଇଛି, ତାହାର ପର୍ଯ୍ୟାୟବାଚୀ ଶବ୍ଦ ହେଉଛି **'ଉତ୍ତମ ସୁଖ'** ।

***ସମ୍ବନ୍ଧ –*** *ପରମାତ୍ମାଙ୍କୁ ଅଭେଦରୂପରେ ଧ୍ୟାନ କରୁଥିବା ବ୍ରହ୍ମଭୂତ ଯୋଗୀଙ୍କ ସ୍ଥିତି କହିସାରି ବର୍ତ୍ତମାନ ତା'ର ଫଳ କହୁଛନ୍ତି –*

**ଯୁଞ୍ଜନ୍ନେବଂ ସଦାଽଽତ୍ମାନଂ ଯୋଗୀ ବିଗତକଲ୍ମଷଃ ।**
**ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ ॥ ୨୮ ॥**

**ଅନ୍ୱୟ –** **ବିଗତକଲ୍ମଷଃ** = ନିଷ୍ପାପ; **ଯୋଗୀ** = ଯୋଗୀ; **ଏବମ୍** = ଏପରିଭାବରେ; **ସଦା** = ନିରନ୍ତର; **ଆତ୍ମାନମ୍** = ଆତ୍ମାକୁ; **ଯୁଞ୍ଜନ୍** = ପରମାତ୍ମାରେ ଲଗାଇରଖି; **ସୁଖେନ** = ସୁଖପୂର୍ବକ; **ବ୍ରହ୍ମସଂସ୍ପର୍ଶମ୍** = ପରବ୍ରହ୍ମ ପରମାତ୍ମାଙ୍କ ପ୍ରାପ୍ତିରୂପକ; **ଅତ୍ୟନ୍ତମ୍** = ଅନନ୍ତ; **ସୁଖମ୍** = ଆନନ୍ଦକୁ; **ଅଶ୍ନୁତେ** = ଅନୁଭବ କରେ।

**ସେହି ନିଷ୍ପାପ ଯୋଗୀ ଏହିପରିଭାବରେ ନିରନ୍ତର ଆତ୍ମାକୁ ପରମାତ୍ମାରେ ଲଗାଇରଖି ସୁଖପୂର୍ବକ ପରବ୍ରହ୍ମ ପରମାତ୍ମପ୍ରାପ୍ତିରୂପକ ଅନନ୍ତ ଆନନ୍ଦ ଅନୁଭବ କରନ୍ତି।। ୨୮ ।।**

**ପ୍ରଶ୍ନ –** **ବିଗତକଲ୍ମଷଃ** ବିଶେଷଣ ସହିତ ଏଠାରେ ଯୋଗୀ ଶବ୍ଦ କାହାର ବାଚକ ?

**ଉତ୍ତର –** ଗତଶ୍ଳୋକରେ **ଅକଲ୍ମଷମ୍**ର ଯେଉଁ ଅର୍ଥ କରାଯାଇଛି, **ବିଗତକଲ୍ମଷଃ**ର ଅର୍ଥ ମଧ ତାହା। ଏପରି ପାପରହିତ ଉତ୍ତମଶ୍ରେଣୀର ଯେଉଁ ସାଧକ ଅଭେଦଭାବରେ ପରମାତ୍ମାଙ୍କ ସ୍ୱରୂପକୁ ଧ୍ୟାନ କରନ୍ତି, ତାହାଙ୍କୁ ଏଠାରେ **ଯୋଗୀ** ବୋଲି କୁହାଯାଇଛି।

**ପ୍ରଶ୍ନ –** ଏପରିଭାବରେ ଆତ୍ମାକୁ ନିରନ୍ତର ପରମାତ୍ମାରେ ଲଗାଇବାର ଭାବ କଣ ?

**ଉତ୍ତର –** ପଚିଶ ଶ୍ଳୋକରେ କୁହାଯାଇଥିବା ରୀତିରେ ଦୃଶ୍ୟପ୍ରପଞ୍ଚର ଚିନ୍ତନରୁ ରହିତ ହୋଇ ଦୃଢ଼ନିଶ୍ଚୟପୂର୍ବକ ସାଧକ ନିରନ୍ତର ଅଭେଦରୂପରେ ପରମାତ୍ମାରେ ସ୍ଥିତ ହୋଇଯିବା ଅର୍ଥାତ୍ ବ୍ରହ୍ମରୂପ ହୋଇଯିବା ହିଁ ଉପରୋକ୍ତପ୍ରକାରେ ଆତ୍ମାକୁ ପରମାତ୍ମାରେ ଲଗାଇବା।

**ପ୍ରଶ୍ନ –** ଦ୍ୱାଦଶ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ତ ପରମାତ୍ମପ୍ରାପ୍ତିରୂପକ ନିର୍ଗୁଣବିଷୟକ ଗତି ଦୁଃଖପୂର୍ବକ ପ୍ରାପ୍ତ ହୁଏ ବୋଲି କୁହାଯାଇଛି, କିନ୍ତୁ ଏଠାରେ କୁହାଯାଇଛି ଯେ, 'ଅବ୍ୟକ୍ତ ପରବ୍ରହ୍ମଙ୍କ ପ୍ରାପ୍ତି ସୁଖପୂର୍ବକ ହୋଇଯାଏ' – ଏପରି ଦୁଇପ୍ରକାର କଥାର କାରଣ କଣ ?

**ଉତ୍ତର –** ଯାହାର 'ମୁଁ ଦେହ' ବୋଲି ଦେହାଭିମାନ ରହିଛି, ତାହାକୁ ଅବ୍ୟକ୍ତବିଷୟକ ଗତି ମିଳିବା ପ୍ରକୃତରେ ଅତ୍ୟନ୍ତ କଠିନ। ଦ୍ୱାଦଶ ଅଧ୍ୟାୟରେ **ଦେହବଦ୍ଭିଃ** ଶବ୍ଦଦ୍ୱାରା ଦେହାଭିମାନୀମାନଙ୍କୁ ଲକ୍ଷ୍ୟ କରି ସେପରି କୁହାଯାଇଛି। କିନ୍ତୁ ପୂର୍ବଶ୍ଳୋକରେ ସମ୍ପୃକ୍ତ ସାଧକ 'ବ୍ରହ୍ମଭୂତ' ହୋଇଯିବା କଥା କହି ଭଗବାନ୍ ସ୍ପଷ୍ଟ କରିଦେଇଛନ୍ତି ଯେ, ଯଦି ସାଂଖ୍ୟଯୋଗର ସାଧକ ଦେହାଭିମାନରୁ ରହିତ ହୋଇ ବ୍ରହ୍ମରେ ସ୍ଥିତ ହୋଇଯାନ୍ତି, ଯଦି ସାଧକଙ୍କର ଦେହାଭିମାନ ରହେ ନାହିଁ, ବ୍ରହ୍ମଙ୍କ ସ୍ୱରୂପରେ ସେ ଅଭେଦରୂପରେ ସ୍ଥିତ ହୋଇଯାନ୍ତି, ତେବେ ତାହାଙ୍କୁ ସୁଖପୂର୍ବକ ବ୍ରହ୍ମପ୍ରାପ୍ତି ହୋଇଯାଏ। ଅତଏବ ଅଧିକାରୀଭେଦରେ ଉଭୟ ସ୍ଥାନର କଥନ ସର୍ବଥା ଉଚିତ ହୋଇଛି।

**ପ୍ରଶ୍ନ –** 'ପରବ୍ରହ୍ମ ପରମାତ୍ମପ୍ରାପ୍ତିରୂପକ ଅନନ୍ତ ଆନନ୍ଦ ଅନୁଭବ କରେ' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଜଗତରେ ଯେତେସବୁ ସୁଖକୁ ବଡ଼ ସୁଖ ବୋଲି ମାନିନିଆଯାଇଛି, ପ୍ରକୃତରେ ତା'ଭିତରୁ କୌଣସିଟି ବି ପ୍ରକୃତ ସେପରି ନୁହେଁ; କାରଣ ସେଭିତରୁ ଗୋଟିଏ ମଧ ସୁଖ ନାହିଁ, ଯାହା କି ସବୁଠାରୁ ବଡ଼ ଓ ଚିରଦିନ ଏକାପରି ରହେ। ତେଣୁ ଶ୍ରୁତି କହନ୍ତି –

**ଯୋ ବୈ ଭୂମା ତତ୍ସୁଖଂ ନାଲ୍ପେ ସୁଖମସ୍ତି,**
**ଭୂମୈବ ସୁଖଂ ଭୂମା ତ୍ୱେବ ବିଜିଜ୍ଞାସିତବ୍ୟଃ।**

(ଛାନ୍ଦୋଗ୍ୟ ଉ. ୭/୨୩/୧)

ଅର୍ଥାତ୍ 'ଯାହା ଭୂମା (ମହାନ ନିରତିଶୟ), ତାହା ସୁଖ; ଅଳ୍ପରେ ସୁଖ ନାହିଁ। ଭୂମା ହିଁ ସୁଖ ଓ ଭୂମାକୁ ହିଁ ବିଶେଷରୂପରେ ଜାଣିବାକୁ ଚେଷ୍ଟା କରିବା ଉଚିତ।'

ଅଳ୍ପ ଓ ଭୂମା କଣ ଏହା ବୁଝାଇଦେବାକୁ ଯାଇ ଶ୍ରୁତି ପୁଣି କହୁଛନ୍ତି –

**ଯତ୍ର ନ ଅନ୍ୟତ୍ପଶ୍ୟତି, ନ ଅନ୍ୟଚ୍ଛୃଣୋତି, ନ ଅନ୍ୟଦ୍ ବିଜାନାତି, ସ ଭୂମା; ଅଥ ଯତ୍ର ଅନ୍ୟଦ୍ ପଶ୍ୟତି, ଅନ୍ୟଦ୍ ଶୃଣୋତି, ଅନ୍ୟଦ୍ ବିଜାନାତି, ତଦ୍ ଅଳ୍ପମ୍; ଯୋ ବୈ ଭୂମା ତଦ୍ ଅମୃତମ୍ ଅଥ ଯଦ୍ ଅଳ୍ପମ୍ ତନ୍ମର୍ତ୍ତ୍ୟମ୍।।**

(ଛାନ୍ଦୋଗ୍ୟ ଉ. ୭/୨୪/୧)

ଅର୍ଥାତ୍ 'ଯେଉଁଠି ଅନ୍ୟକିଛି ଦିଶେ ନାହିଁ, ଅନ୍ୟକିଛି ଶୁଭେ ନାହିଁ, ଅନ୍ୟକିଛି ଜାଣିହୁଏ ନାହିଁ, ତାହା ଭୂମା ଓ ଯେଉଁଠି ଅନ୍ୟକିଛି ଦେଖିହୁଏ, ଅନ୍ୟକୁ ଶୁଣି ହୁଏ ଓ ଅନ୍ୟକୁ ଜାଣି ହୁଏ, ତାହା ଅଳ୍ପ। ଯାହା ଭୂମା, ତାହା ଅମୃତ; ଯାହା ଅଳ୍ପ, ତାହା ମରଣଶୀଳ (ନଶ୍ୱର)'।

ଯାହା ଆଜି ଅଛି ଓ କାଲି ନଷ୍ଟ ହୋଇଯିବ, ତାହା ଯଥାର୍ଥରେ ସୁଖ ନୁହେଁ। କିନ୍ତୁ ଯଦି ତାହାକୁ କେତେକାଂଶରେ ସୁଖ ବୋଲି ମାନିନିଆଯାଏ, ତେବେ ତାହା ଅତ୍ୟନ୍ତ ତୁଚ୍ଛ ଓ ନଗଣ୍ୟ ହିଁ ଅଟେ। ମହର୍ଷି ଯାଜ୍ଞବଲ୍କ୍ୟ ସୁଖର ତୁଳନାତ୍ମକ ବିବେଚନା କରି

କହୁଛନ୍ତି, ସମସ୍ତ ଭୂମଣ୍ଡଳର ସାମ୍ରାଜ୍ୟ, ମନୁଷ୍ୟଲୋକର ପୂର୍ଣ୍ଣ ଐଶ୍ୱର୍ଯ୍ୟ ଓ ସ୍ତ୍ରୀ, ପୁତ୍ର, ଧନ, ଭୂସମ୍ପଦ, ସ୍ୱାସ୍ଥ୍ୟ, ସମ୍ମାନ, କୀର୍ତ୍ତି ଆଦି ସମସ୍ତ ଭୋଗ୍ୟ ପଦାର୍ଥ ଯାହାକୁ ପ୍ରାପ୍ତ ହୋଇଛି, ସେ ମନୁଷ୍ୟମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ସୁଖୀ; କାରଣ ମନୁଷ୍ୟମାନଙ୍କର ଏହା ହିଁ ପରମ ଆନନ୍ଦ। ପିତୃଲୋକର ଆନନ୍ଦ ଏହାର ଶହେଗୁଣ। ଗନ୍ଧର୍ବ ଲୋକର ଆନନ୍ଦ ପିତୃଲୋକର ଆନନ୍ଦର ଶହେଗୁଣ ଓ ତାହାର ଶହେଗୁଣ ହେଉଛି ନିଜ କର୍ମଫଳରୁ ଦେବତା ହୋଇଥିବା ଲୋକଙ୍କ ଆନନ୍ଦ ଏବଂ ତାହାର ଶହେ ଗୁଣ ହେଉଛି ସ୍ୱୟଂ ଦେବତାଗଣଙ୍କ ଆନନ୍ଦ; ତାହାର ଶହେଗୁଣ ହେଉଛି ପ୍ରଜାପତି ଲୋକର ଆନନ୍ଦ ଓ ପ୍ରଜାପତି ଲୋକର ଆନନ୍ଦର ଶହେ ଗୁଣ ହେଉଛି ବ୍ରହ୍ମଲୋକର ଆନନ୍ଦ। ତାହା ହିଁ ପାପରହିତ, କାମନାରହିତ ଶ୍ରୋତ୍ରିୟର ପରମ ଆନନ୍ଦ; କାରଣ ତୃଷ୍ଣାରହିତ ଶ୍ରୋତ୍ରିୟ ହେଉଛି ପ୍ରତ୍ୟକ୍ଷ-ବ୍ରହ୍ମଲୋକ। (ବୃହଦାରଣ୍ୟକ ଉ. ୪/୩/୩୩)। ଯେ ବ୍ରହ୍ମଙ୍କ ସାକ୍ଷାତ୍ ପାଇଛନ୍ତି, ତାହାଙ୍କୁ ତ ଅନନ୍ତ, ଅସୀମ, ଅଚିନ୍ତ୍ୟ ଆନନ୍ଦ ପ୍ରାପ୍ତ ହୋଇଛି; ସେହି ଆନନ୍ଦର ତୁଳନା କାହା ସହିତ ବି ହୋଇପାରିବ ନାହିଁ। ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ନିଜ ସ୍ୱରୂପ ହିଁ ସେହି ନିରତିଶୟ ଆନନ୍ଦ। ଏହା ହିଁ ଏହି କଥନର ଅଭିପ୍ରାୟ।

ଏହି ଅନନ୍ତ ଆନନ୍ଦମୟ ଆନନ୍ଦକୁ ଏକୋଇଶ ଶ୍ଳୋକରେ 'ଆତ୍ୟନ୍ତିକ ସୁଖ' ଓ ପଞ୍ଚମ ଅଧ୍ୟାୟର ଏକୋଇଶ ଶ୍ଳୋକରେ 'ଅକ୍ଷୟ ସୁଖ' ବୋଲି କୁହାଯାଇଛି।

*ସମ୍ବନ୍ଧ — ଅଭେଦଭାବରେ ସାଧନା କରୁଥିବା ସାଂଖ୍ୟଯୋଗୀଙ୍କ ଧ୍ୟାନ ଓ ତା'ର ଫଳ ଏପରି ବର୍ଣ୍ଣନା କରିସାରି ବର୍ତ୍ତମାନ ଭଗବାନ୍ ସେହି ସାଧକଙ୍କ ବ୍ୟବହାରକାଳୀନ ସ୍ଥିତି ବର୍ଣ୍ଣନା କରୁଛନ୍ତି—*

**ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।**
**ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ।। ୨୯ ।।**

**ଅନ୍ୱୟ —** **ଯୋଗଯୁକ୍ତାତ୍ମା** = ସର୍ବବ୍ୟାପୀ ଅନନ୍ତଚେତନରେ ଏକୀଭାବରେ ସ୍ଥିତିରୂପ ଯୋଗଦ୍ୱାରା ଯୁକ୍ତ ଆତ୍ମବାନ୍ (ତଥା); **ସର୍ବତ୍ର** = ସର୍ବତ୍ର; **ସମଦର୍ଶନଃ** = ସମଭାବ ଦେଖୁଥିବା ଯୋଗୀ; **ଆତ୍ମାନମ୍** = ଆତ୍ମାକୁ; **ସର୍ବଭୂତସ୍ଥମ୍** = ସକଳଭୂତଙ୍କ ଭିତରେ ଥିବା; **ଚ** = ଓ; **ସର୍ବଭୂତାନି** = ସକଳଭୂତଙ୍କୁ; **ଆତ୍ମନି** = ଆତ୍ମାରେ (କଳ୍ପିତ); **ଈକ୍ଷତେ** = ଦେଖନ୍ତି।

**ସର୍ବବ୍ୟାପୀ ଅନନ୍ତଚେତନରେ ଅର୍ଥାତ୍ ପରବ୍ରହ୍ମ ପରମାତ୍ମାରେ ଏକୀଭାବରେ ସ୍ଥିତିରୂପ ଯୋଗଦ୍ୱାରା ଯୁକ୍ତ ଆତ୍ମବାନ୍ ତଥା ସର୍ବତ୍ର ସମଭାବ ଦର୍ଶନ କରୁଥିବା ଯୋଗୀ ଆତ୍ମାକୁ ସକଳ ଭୂତରେ ଅବସ୍ଥିତ ଓ ସକଳ ଭୂତଙ୍କୁ ଆତ୍ମାରେ କଳ୍ପିତ ହୋଇଥିବା ଦେଖନ୍ତି।* ।। ୨୯ ।।**

**ପ୍ରଶ୍ନ —** **ଯୋଗଯୁକ୍ତାତ୍ମା** ପଦଟି କାହାର ବାଚକ?

**ଉତ୍ତର —** ସଚ୍ଚିଦାନନ୍ଦ, ନିର୍ଗୁଣ, ନିରାକାର ବ୍ରହ୍ମରେ ଯେ ଅଭିନ୍ନଭାବରେ ଅବସ୍ଥିତ ହୋଇଗଲେଣି, **ଯୋଗଯୁକ୍ତାତ୍ମା** ପଦଟି ହେଉଛି ସେହି ବ୍ରହ୍ମଭୂତ ଯୋଗୀଙ୍କ ବାଚକ। ଏହାଙ୍କ ବର୍ଣ୍ଣନା ପଞ୍ଚମ ଅଧ୍ୟାୟର ଏକୋଇଶ ଶ୍ଳୋକରେ **ବ୍ରହ୍ମଯୋଗଯୁକ୍ତାତ୍ମା** ନାମରେ ତଥା ପଞ୍ଚମ ଅଧ୍ୟାୟର ଚବିଶ, ଷଷ୍ଠଅଧ୍ୟାୟର ସତେଇଶ ଓ ଅଷ୍ଟାଦଶ ଅଧ୍ୟାୟର ଚଉବନ ଶ୍ଳୋକରେ **ବ୍ରହ୍ମଭୂତ** ନାମରେ ହୋଇଛି।

**ପ୍ରଶ୍ନ —** 'ଏପରି ଯୋଗୀ ସର୍ବତ୍ର ସମଭାବ ଦର୍ଶନ କରନ୍ତି' କହିଲେ କଣ ବୁଝାଏ?

**ଉତ୍ତର —** ପଞ୍ଚମ ଅଧ୍ୟାୟର ଅଠର ଓ ଏହି ଅଧ୍ୟାୟର ବତିଶ ଶ୍ଳୋକରେ ଜ୍ଞାନୀ ମହାତ୍ମାଙ୍କ ସମଦର୍ଶନ ବର୍ଣ୍ଣନା କରାଯାଇଛି। ସେହିପରି ଏହି ଯୋଗୀ ମଧ୍ୟ ସମସ୍ତଙ୍କ ସହିତ ଶାସ୍ତ୍ରାନୁକୂଳ ଯଥାଯୋଗ୍ୟ ସଦ୍‌ବ୍ୟବହାର କରି ନିତ୍ୟନିରନ୍ତର ସମସ୍ତଙ୍କ ଠାରେ ନିଜର ସ୍ୱରୂପଭୂତ ଏକ ହିଁ ଅଖଣ୍ଡ ଚେତନ ଆତ୍ମାଙ୍କୁ ଦେଖନ୍ତି। ଏହା ହିଁ ତାଙ୍କର ସମସ୍ତଙ୍କୁ ସମଭାବରେ ଦେଖିବା।

---

★ ଈଶୋପନିଷଦର ନିମ୍ନଲିଖିତ ମନ୍ତ୍ର ସହିତ ଏହାର ସମ୍ବନ୍ଧ ରହିଛି :—

**'ଯସ୍ତୁ ସର୍ବାଣି ଭୂତାନି ଆତ୍ମନ୍ୟେବାନୁପଶ୍ୟତି। ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ।। (ମନ୍ତ୍ର-୬)**

ଅର୍ଥାତ୍ 'ପରନ୍ତୁ ଯେ ସବୁ ପ୍ରାଣୀଙ୍କୁ ଆତ୍ମାରେ ଓ ସବୁ ପ୍ରାଣୀଙ୍କ ମଧ୍ୟରେ ଆତ୍ମାଙ୍କୁ ହିଁ ଦେଖନ୍ତି, ସେ କାହାକୁ ଘୃଣା କରନ୍ତି ନାହିଁ।'

**ପ୍ରଶ୍ନ—** ଆତ୍ମାଙ୍କୁ ସକଳ ଭୂତରେ ସ୍ଥିତ ଓ ସକଳଭୂତଙ୍କୁ ଆତ୍ମାରେ କଳ୍ପିତ ଦେଖିବା କଣ ?

**ଉତ୍ତର—** ଏକ ଅଦ୍ୱିତୀୟ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମା ହିଁ ସତ୍ୟତତ୍ତ୍ୱ; ତାଙ୍କ ଠାରୁ ଭିନ୍ନ ଏହି ସମସ୍ତ ଜଗତ କିଛି ବି ନୁହେଁ। ଏହି ରହସ୍ୟକୁ ଭଲରୂପେ ବୁଝି, ସେଥିରେ ଅଭିନ୍ନଭାବରେ ଅବସ୍ଥିତ ହୋଇ ସ୍ୱପ୍ନର ଦୃଶ୍ୟବର୍ଗରେ ସ୍ୱପ୍ନଦ୍ରଷ୍ଟା ପୁରୁଷପରି ଚରାଚର ପ୍ରାଣୀମାନଙ୍କ ମଧ୍ୟରେ ଏକ ଅଦ୍ୱିତୀୟ ଆତ୍ମା ହିଁ ଅଧିଷ୍ଠାନରୂପରେ ପରିପୂର୍ଣ୍ଣ ହୋଇଛନ୍ତି ବୋଲି ଦର୍ଶନ କରିବା ହିଁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଆତ୍ମାଙ୍କୁ ଦେଖିବା; ଅର୍ଥାତ୍ ଏକ ଅଦ୍ୱିତୀୟ ଆତ୍ମା ହିଁ ଏହି ସବୁରୂପରେ ଦେଖାଯାଉଛନ୍ତି; ପ୍ରକୃତରେ ତାଙ୍କ ବ୍ୟତୀତ ଅନ୍ୟ କିଛି ହିଁ ନାହିଁ ବୋଲି ଭଲଭାବରେ ଅନୁଭବ କରିବା ହିଁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଆତ୍ମାଙ୍କୁ ଦେଖିବା। ସେହିପରି ସମସ୍ତ ଚରାଚର ପ୍ରାଣୀଙ୍କୁ ଆତ୍ମାରେ କଳ୍ପିତ ଦେଖିବା ଅର୍ଥାତ୍ ସ୍ୱପ୍ନରୁ ଚେଇଁଥିବା ବ୍ୟକ୍ତି ଯେପରି ସ୍ୱପ୍ନଜଗତଙ୍କୁ, ବା ନାନାପ୍ରକାର କଳ୍ପନା କରୁଥିବା ମନୁଷ୍ୟ ଯେପରି କଳ୍ପିତଦୃଶ୍ୟକୁ ନିଜ ସଂକଳ୍ପର ଆଧାର ଉପରେ ହିଁ ନିଜ ମଧ୍ୟରେ ଦେଖେ, ସେପରି ଦେଖିବା ହିଁ ସମସ୍ତ ପ୍ରାଣୀଙ୍କୁ ଆତ୍ମାରେ କଳ୍ପିତ ଦେଖିବା। ଏହିଭାବ ସ୍ପଷ୍ଟ କରିବାପାଇଁ ଭଗବାନ୍ ଆତ୍ମା ସହିତ **ସର୍ବଭୂତସ୍ଥମ୍** ବିଶେଷଣ ଦେଇ ଆତ୍ମାଙ୍କୁ ପ୍ରାଣୀମାନଙ୍କ ଠାରେ ସ୍ଥିତ ବୋଲି ଦେଖିବା କଥା କହିଛନ୍ତି; କିନ୍ତୁ ପ୍ରାଣୀମାନଙ୍କୁ ଆତ୍ମାରେ ସ୍ଥିତ ବୋଲି ଦେଖିବା କଥା ନ କହି କେବଳ ଦେଖିବାକୁ ହିଁ କହିଲେ।

*ସମ୍ବନ୍ଧ— ଏପରିଭାବରେ ସାଂଖ୍ୟଯୋଗ ସାଧନା କରୁଥିବା ଯୋଗୀଙ୍କର ଓ ତାଙ୍କର ସର୍ବତ୍ର ସମଦର୍ଶନରୂପକ ଅନ୍ତିମ ସ୍ଥିତି ବର୍ଣ୍ଣନା କରିବା ପରେ ବର୍ତ୍ତମାନ ଭକ୍ତିଯୋଗ ସାଧନା କରୁଥିବା ଯୋଗୀଙ୍କର ଅନ୍ତିମ ସ୍ଥିତି ଓ ତାଙ୍କର ସର୍ବତ୍ର ଭଗବଦ୍ଦର୍ଶନ ବିଷୟ ବର୍ଣ୍ଣନା କରୁଛନ୍ତି—*

**ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି ।**
**ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି॥ ୩୦ ॥**

**ଅନ୍ୱୟ—** **ଯଃ** = ଯେଉଁ ପୁରୁଷ; **ସର୍ବତ୍ର** = ସକଳ ପ୍ରାଣୀଙ୍କ ଠାରେ; **ମାମ୍** = ସକଳଙ୍କର ଆତ୍ମାରୂପକ ମୋତେ ଅର୍ଥାତ୍ ବାସୁଦେବଙ୍କୁ ହିଁ (ବ୍ୟାପି ରହିଥିବା); **ପଶ୍ୟତି** = ଦେଖେ; **ଚ** = ଓ; **ସର୍ବମ୍** = ସକଳ ପ୍ରାଣୀଙ୍କୁ; **ମୟି** = ମୋ'ଠାରେ ଅର୍ଥାତ୍ ବାସୁଦେବଙ୍କର ଅନ୍ତର୍ଗତ; **ପଶ୍ୟତି** = ଦେଖେ; **ତସ୍ୟ** = ତାଙ୍କ ପାଇଁ; **ଅହମ୍** = ମୁଁ; **ନ ପ୍ରଣଶ୍ୟାମି** = ଅଦୃଶ୍ୟ ହୁଏ ନାହିଁ; **ଚ** = ଓ (କି); **ସଃ** = ସେ; **ମେ** = ମୋ ପାଇଁ; **ନ ପ୍ରଣଶ୍ୟତି** = ଅଦୃଶ୍ୟ ହୁଏ ନାହିଁ।

**ଯେଉଁ ପୁରୁଷ ସକଳ ପ୍ରାଣୀଙ୍କ ଠାରେ ସକଳଙ୍କର ଆତ୍ମାରୂପେ ମୋତେ ଅର୍ଥାତ୍ ବାସୁଦେବଙ୍କୁ ହିଁ ବ୍ୟାପି ରହିଥିବା ଦେଖନ୍ତି ଓ ସକଳ ପ୍ରାଣୀଙ୍କୁ ମୋର ଅର୍ଥାତ୍ ବାସୁଦେବଙ୍କର ଅନ୍ତର୍ଗତ ଥିବା ଦେଖନ୍ତି, ତାଙ୍କ ପାଇଁ ମୁଁ ଅଦୃଶ୍ୟ ହୁଏ ନାହିଁ, କି ସେ ମୋ ପାଇଁ ଅଦୃଶ୍ୟ ହୁଅନ୍ତି ନାହିଁ॥ ୩୦ ॥**

**ପ୍ରଶ୍ନ—** ସକଳ ପ୍ରାଣୀଙ୍କ ଠାରେ ବାସୁଦେବଙ୍କୁ ଓ ବାସୁଦେବଙ୍କ ଠାରେ ସକଳ ପ୍ରାଣୀଙ୍କୁ ଦେଖିବା କହିଲେ କଣ ବୁଝାଏ ?

**ଉତ୍ତର—** ଯେପରି ମେଘରେ ଆକାଶ ଥାଏ ଓ ଆକାଶରେ ମେଘ ଥାଏ, ସେହିପରି ସକଳ ପ୍ରାଣୀଙ୍କ ମଧ୍ୟରେ ଭଗବାନ୍ ବାସୁଦେବ ଅଛନ୍ତି ଓ ବାସୁଦେବଙ୍କ ମଧ୍ୟରେ ସକଳ ପ୍ରାଣୀ ଅଛନ୍ତି ବୋଲି ଅନୁଭବ କରିବା ହିଁ ଏପରି ଦେଖିବା।

**ପ୍ରଶ୍ନ—** କାର୍ଯ୍ୟ-କାରଣ ଦୃଷ୍ଟିରୁ ନା ବ୍ୟାପ୍ୟ-ବ୍ୟାପକ ଦୃଷ୍ଟିରୁ, ନା ଆଧେୟ-ଆଧାର ଦୃଷ୍ଟିରୁ ଏପରି ଦେଖିବା ?

**ଉତ୍ତର—** ସବୁ ଦୃଷ୍ଟିରୁ ଏପରି ଦେଖାଯାଇପାରେ; କାରଣ ମେଘରେ ଆକାଶଥିବା ପରି ଭଗବାନ୍ ବାସୁଦେବ ହିଁ ଏହି ସଂପୂର୍ଣ୍ଣ ଚରାଚର ସଂସାରର ମହାକାରଣ ଅଟନ୍ତି; ସେ ହିଁ ସମସ୍ତଙ୍କ ମଧ୍ୟରେ ବ୍ୟାପ୍ତ ହୋଇଛନ୍ତି ଓ ସେ ହିଁ ସମସ୍ତଙ୍କର ଏକମାତ୍ର ଆଧାର।

**ପ୍ରଶ୍ନ—** ସେହି ପରମେଶ୍ୱର ଆକାଶପରି ସମସ୍ତ ଚରାଚର ସଂସାରର ମହାକାରଣ କିପରି ଓ ସର୍ବବ୍ୟାପୀ ତଥା ସର୍ବାଧାର କିପରି ?

**ଉତ୍ତର— ଆକାଶାଦ୍‌ବାୟୁଃ, ବାୟୋରଗ୍ନିଃ,** ଅଗ୍ନେରାପଃ (ତୈତ୍ତିରୀୟ. ଉ.୨/୧) ଏହି ଶ୍ରୁତିବାକ୍ୟ

ଅନୁସାରେ ଆକାଶରୁ ବାୟୁ, ବାୟୁରୁ ତେଜ (ଅଗ୍ନି) ଓ ତେଜରୁ (ଅଗ୍ନିରୁ) ଜଳରୂପକ ମେଘର ଉତ୍ପତ୍ତି ହେଲା। ଆକାଶ ପଞ୍ଚମହାଭୂତ ମଧ୍ୟରେ ପ୍ରଥମ ଓ ଅନ୍ୟସବୁର କାରଣ। ପରମ୍ପରା ଅନୁଯାୟୀ ଏହାର ଉତ୍ପତ୍ତିର ମୂଳକାରଣ ହେଉଛି ପ୍ରକୃତି। ପ୍ରକୃତି ହିଁ ପରମେଶ୍ୱରଙ୍କ ଅଧ୍ୟକ୍ଷତାରେ ସମସ୍ତଙ୍କୁ ରଚନା କରେ ଓ ସେହି ପ୍ରକୃତି ହେଉଛି ପରମେଶ୍ୱରଙ୍କର ଏକ ଶକ୍ତିବିଶେଷ। ତେଣୁ ପ୍ରକୃତି ପରମେଶ୍ୱରଙ୍କ ଠାରୁ ଭିନ୍ନ ନୁହେଁ। ଏହି ଦୃଷ୍ଟିରୁ ସଂପୂର୍ଣ୍ଣ ଚରାଚର ଜଗତ ତାଙ୍କ ଠାରୁ ଉତ୍ପନ୍ନ ହୁଏ। ଅତଏବ ସେ ହିଁ ଏହାର ମହାକାରଣ। ଭଗବାନ୍ ମଧ୍ୟ ସ୍ୱୟଂ କହିଛନ୍ତି –

**ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ।** (୧୦/୮)

ଅର୍ଥାତ୍ 'ମୁଁ ସମସ୍ତଙ୍କର ସୃଷ୍ଟିକର୍ତ୍ତା ଓ ମୋ ଯୋଗୁଁ ହିଁ ସମସ୍ତେ ଚେଷ୍ଟା କରନ୍ତି।'

ଏପରିଭାବରେ ଆକାଶ ଯେପରି ମେଘର ସବୁ ଅଂଶରେ ସଂପୂର୍ଣ୍ଣରୂପେ ପରିପୂର୍ଣ୍ଣ, ଅର୍ଥାତ୍ ବ୍ୟାପ୍ତ, ସେହିପରି ପରମେଶ୍ୱର ସମସ୍ତ ଚରାଚର ସଂସାରରେ ବ୍ୟାପ୍ତ। **ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା** (୯/୪) 'ମୋର ଅବ୍ୟକ୍ତମୂର୍ତ୍ତି ପରମାତ୍ମାଦ୍ୱାରା ଏହି ସାରା ସଂସାର (ଜଗତ) ବ୍ୟାପ୍ତ।'

ପୁଣି ମେଘର ଆଧାର ଆକାଶ; ଆକାଶ ବିନା ମେଘ ରହିବ କେଉଁଠି ? କେବଳ ମେଘ କାହିଁକି – ବାୟୁ, ତେଜ (ଅଗ୍ନି), ଜଳ ଆଦି କୌଣସି ବି ଭୂତ ଆକାଶର ଆଶ୍ରୟ ବିନା ରହିପାରିବ ନାହିଁ। ସେହିପରି ପରମେଶ୍ୱର ହିଁ ଏହି ସମସ୍ତ ଚରାଚର ଜଗତର ଏକମାତ୍ର ପରମାଧାର ଅଟନ୍ତି (୧୦/୪୨)।

**ପ୍ରଶ୍ନ –** ସମସ୍ତ ଜଗତରେ ଭଗବାନଙ୍କର ସାକାର ରୂପକୁ ଓ ଭଗବାନଙ୍କ ସାକାର ରୂପରେ ସମସ୍ତ ଜଗତକୁ କିପରି ଦେଖାଯାଇପାରିବ ?

**ଉତ୍ତର –** କୌଣସି ଚତୁର ବହୁରୂପୀ ନାନାପ୍ରକାର ବେଶ ଧରି ଆସିଲେ ବି, ଯେ ତା' ସହିତ ଓ ତା'ର କଥାବାର୍ତ୍ତା ଆଦି ସହିତ ପରିଚିତ, ସେ ଯେପରି ତା'ର ସବୁ ରୂପରେ ତାକୁ ଚିହ୍ନିପାରେ, ସେହିପରି ସମସ୍ତ ଜଗତରେ ଯେତେ ବି ରୂପ ଅଛି, ସବୁ ଶ୍ରୀଭଗବାନଙ୍କର ହିଁ ରୂପ ବୋଲି ଭକ୍ତ ଜାଣିପାରନ୍ତି; କିନ୍ତୁ ଆମେ ତାଙ୍କୁ ଚିହ୍ନୁ ନା, ତେଣୁ ତାହାସବୁ ଭଗବାନଙ୍କ ଠାରୁ ଭିନ୍ନ ବୋଲି ଭାବି ସେସବୁକୁ ଭୟ କରୁ ଓ ସଂକୋଚ କରୁ ଏବଂ ସେମାନଙ୍କର ସେବା କରିବାକୁ ଚାହୁଁ ନା; କିନ୍ତୁ ଯେ ସମସ୍ତ ଜଗତର ସବୁ ପ୍ରାଣୀଙ୍କ ମଧ୍ୟରେ ତାଙ୍କୁ ଚିହ୍ନିପାରନ୍ତି, ଭିନ୍ନ ରୂପ ହୋଇଥିବାରୁ ହୁଏତ ସେ ବାହ୍ୟ ବ୍ୟବହାରରେ ତାଙ୍କ ପ୍ରତି ପ୍ରଭେଦ ରଖିପାରନ୍ତି; କିନ୍ତୁ ହୃଦୟରେ ତାଙ୍କର ପୂଜା ହିଁ କରନ୍ତି। ଆମର ପିତା ବା ପ୍ରିୟତମ ବନ୍ଧୁ ଅନ୍ୟକୌଣସି ରୂପରେ ଆସିଲେ ମଧ୍ୟ, ଯଦି ଆମେ ତାଙ୍କୁ ଚିହ୍ନିପାରୁ, ତେବେ ତାଙ୍କର ସେବା-ସତ୍କାରରେ କିଛି ତ୍ରୁଟି ରଖୁ କି ? ତେଣୁ ଗୋସ୍ୱାମୀ ତୁଳସୀ ଦାସ କହିଛନ୍ତି –

**'ସୀୟ ରାମମୟ ସବ ଜଗ ଜାନୀ।**
**କରଉଁ ପ୍ରନାମ ଜୋରି ଜୁଗ ପାନୀ।।**

'ସକଳ ଜଗତ ସୀତାରାମମୟ ଜାଣି ମୁଁ ସମସ୍ତଙ୍କୁ ଦୁଇହାତ ଯୋଡ଼ି ପ୍ରଣାମ କରୁଛି।' ବଳରାମ ଯେପରି ବ୍ରଜରେ ବାଛୁରୀ, ଗୋପବାଳକ ଓ ସେମାନଙ୍କର ସବୁ ସାମଗ୍ରୀରେ ଶ୍ରୀକୃଷ୍ଣଙ୍କୁ ହିଁ ଦର୍ଶନ କରିଥିଲେ ★ ଏବଂ ବ୍ରଜଗୋପୀମାନେ ଯେପରି ନିଜର ପ୍ରେମପୂର୍ଣ୍ଣ ନୟନରେ

★ ବ୍ରଜର ଏକ ଘଟଣା। ଗୋପବାଳକମାନଙ୍କ ସହିତ ଗାଈ ଚରାଇ ଚରାଇ ଦିନେ ଭଗବାନ୍ କୃଷ୍ଣ ସମସ୍ତଙ୍କୁ ନେଇ ଯମୁନାକୂଳରେ ଖାଇବାକୁ ବସିଲେ। ଖାଇ ଖାଇ ବାଳକେଳି କରିବାକୁ ଲାଗିଲେ। ତା' ଭିତରେ କୃଷ୍ଣ ଅଣ୍ଟାରେ ବଂଶୀଟି ଖୋସିଦେଇ ବାଆଁ କାଖରେ ଶିଙ୍ଗା ଓ ବାଡ଼ିଟି ଚାପିଦେଲେ ଏବଂ ବାଆଁ ହାତରେ ଦହିଭାତ-ପୁଡ଼ିଆ ଓ ଡାହାଣ ହାତରେ ଖଣ୍ଡିଏ ଆଚାର ଧରି ଚାଟ୍ଟୁ ଚାଟ୍ଟୁ ଠିଆହୋଇପଡ଼ି, ମିଛାଗପ କହି ସାଙ୍ଗମାନଙ୍କୁ ହସାଇବାକୁ ଲାଗିଲେ। ସେ ଏପରି ହସି ହସାଉଥିବାବେଳେ, ସେପଟେ ବାଛୁରୀଗୁଡ଼ାକ ଦୂରକୁ ଚାଲିଗଲେ। ବାଛୁରୀଙ୍କୁ ଫେରାଇ ଆଣିବାକୁ କୃଷ୍ଣ ଆଚାର ଚାଟି ଚାଟି ଧାଇଁଲେ। ସେହି ଦୃଶ୍ୟ ଦେଖିଦେଇ ବ୍ରହ୍ମା ମୋହିତ ହୋଇଗଲେ। କୃଷ୍ଣ ଦୂରକୁ ଚାଲିଯିବାକ୍ଷଣି ବ୍ରହ୍ମା ସେପଟର ବାଛୁରୀ ଓ ଏପଟର ଗୋପାଳବାଳକମାନଙ୍କୁ ହରଣ କରି ନେଇଗଲେ। କିନ୍ତୁ ବ୍ରହ୍ମାଙ୍କ ମାୟାକୁ ଭଗବାନଙ୍କ ମାୟା ବଳିଗଲା। ଭଗବାନ୍ ନିଜେ ଗୋପବାଳକ ଓ ବାଛୁରୀ ହୋଇଗଲେ। ଠିକ୍ ପୂର୍ବର ବାଛୁରୀମାନଙ୍କ ପରି ଆକାର-ପ୍ରକାର ଧରି ଗାଈଙ୍କ ପାଖକୁ ଧାଇଁଆସିଲେ ଓ ଠିକ୍ ଗୋପବାଳକମାନଙ୍କ ରୂପ ଧରି, ଯେପରି ନାମ, ଆକାର, ପ୍ରକାର, ବେଶଭୂଷା, ବଂଶୀ, ବାଡ଼ି, ଶିଙ୍ଗା ଓ ଶିକା ଠିକ୍ ସେହିପରି ସବୁ ଧରି ଲୁହାଟ ମାରିଲେ। ଏ ଘଟଣା ଦେଖି ବଳରାମ ପ୍ରଥମେ କିଛି ବୁଝିପାରିଲେ ନାହିଁ; କିନ୍ତୁ ସେ ଯେତେବେଳେ ଦେଖିଲେ ଯେ, ଗାଈଗୁଡ଼ାକ ବାଛୁରୀଙ୍କୁ ଆଗ ଅପେକ୍ଷା ଅଧିକ ସ୍ନେହ କରି କ୍ଷୀର ପିଆଉଛନ୍ତି, ଏପରିକି ଛାଡ଼ରା ଗାଈମାନେ ବି ଛୁଆ ବାଛୁରୀଙ୍କୁ କ୍ଷୀର ପିଆଉଛନ୍ତି, ସେତେବେଳେ ସେ ଭାବିଲେ, ଏ ଭିତରେ କିଛି ରହସ୍ୟ ରହିଛି। ତେଣୁ ସେ ଟିକିଏ ଦିବ୍ୟ ନୟନରେ ଚାହିଁଦେଲେ। ସେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଯେ, କି ଗୋପବାଳକ, କି ବାଛୁରୀ ସମସ୍ତେ କୃଷ୍ଣମୟ ହୋଇଯାଇଛନ୍ତି। ପରେ ବ୍ରହ୍ମା ବି ଦେଖିଲେ ଯେ, ସମସ୍ତେ କୃଷ୍ଣମୟ ହୋଇ ତାଙ୍କ ମାୟାକୁ ଭଣ୍ଡୁର କରିଦେଇଛନ୍ତି। ତେଣୁ ସେ ନିଜର ଦୋଷ ସ୍ୱୀକାର କରି କୃଷ୍ଣଙ୍କୁ ସ୍ତୁତି କଲେ ଓ କ୍ଷମା ମାଗିଲେ। (ଶ୍ରୀମଦ୍‌ଭାଗବତ ୧୦ମ ସ୍କନ୍ଧ/୧୩ଶ ଅଧ୍ୟାୟ)

ସର୍ବଦା ଓ ସର୍ବତ୍ର ଶ୍ରୀକୃଷ୍ଣଙ୍କୁ ହିଁ ଦର୍ଶନ କରୁଥିଲେ[୧], ଭକ୍ତମାନେ ସେହିପରି ଯାହାର ଯେଉଁ ସ୍ୱରୂପ ଇଷ୍ଟ, ସର୍ବତ୍ର ଭଗବାନଙ୍କର ସେହି ସ୍ୱରୂପର (ଭଗବାନ ଶ୍ରୀକୃଷ୍ଣ, ଶ୍ରୀରାମ, ବିଷ୍ଣୁ, ଶଙ୍କର, ଶକ୍ତି ଆଦିଙ୍କର) ରୂପ ଦର୍ଶନ କରିବା ଉଚିତ। ଏହା ହିଁ ଭଗବାନଙ୍କର ସାକାର ରୂପକୁ ଜଗତରେ ସର୍ବତ୍ର ଦେଖିବା।

ଅର୍ଜୁନ ଯେପରି ଭଗବାନ୍ କୃଷ୍ଣଙ୍କର ଦିବ୍ୟ ଶରୀରରେ[୨] ମାତା ଯଶୋଦା ଯେପରି ପୁତ୍ରରୂପୀ ଶ୍ରୀକୃଷ୍ଣଙ୍କର ମୁଖଗହ୍ୱରରେ[୩] ଏବଂ ଭକ୍ତ କାକଭୁଶୁଣ୍ଡି ଯେପରି ଭଗବାନ୍ ଶ୍ରୀରାମଙ୍କ ଉଦରରେ ସମସ୍ତ ବିଶ୍ୱ ଦର୍ଶନ କରିଥିଲେ,[୪]

---

୧. ଉଦ୍ଧବଙ୍କ ଠାରୁ କୃଷ୍ଣଙ୍କ ସନ୍ଦେଶ ପାଇବା ପରେ ଶ୍ୟାମ-ପ୍ରେମ-ପାଗଳୀ ଜଣେ ଗୋପୀଙ୍କର ଉକ୍ତି :

ଜିତ ଦେଖୌ ତିତ ସ୍ୟାମମଈ ହୈ।
ସ୍ୟାମ କୁଞ୍ଜବନ ଜମୁନା ସ୍ୟାମା, ସ୍ୟାମ ଗଗନ ଘନ ଘଟା ଛଈ ହୈ॥
ସବ ରଂଗନମେ ସ୍ୟାମ ଭରୋ ହୈ, ଲୋଗ କହତ ୟହ ବାତ ନଈ ହୈ।
ହୌଁ ବୌରୀ, କୈ ଲୋଗନ ହୀ କୀ, ସ୍ୟାମ ପୁତରିୟା ବଦଲ ଗଈ ହୈ॥
ଚନ୍ଦ୍ରସାର ରବିସାର ସ୍ୟାମ ହୈ, ମୃଗମଦ ସ୍ୟାମ କାମ ବିଜଈ ହୈ।
ନୀଲକଣ୍ଠକୋ କଣ୍ଠ ସ୍ୟାମ ହୈ, ମନହୁଁ ସ୍ୟାମତା ବେଲ ବଈ ହୈ॥
ଶ୍ରୁତିକୋ ଅକ୍ଷର ସ୍ୟାମ ଦେଖିୟତ, ଦୀପ ସିଖା ପର ସ୍ୟାମତଈ ହୈ।
ନର ଦେବନକୀ କୌନ କଥା ହୈ? ଅଲଖ ବ୍ରହ୍ମଛବି ସ୍ୟାମମଈ ହୈ॥

**ଅର୍ଥାତ୍ –**

ଯହିଁ ଦେଖ ଶ୍ୟାମ ବିରାଜେ ତହିଁ ଗୋ ! ଯହିଁ ଦେଖ ଶ୍ୟାମ ବିରାଜେ ତହିଁ।
କୁଞ୍ଜବନେ ଶ୍ୟାମ, ଯମୁନାରେ ଶ୍ୟାମ, ଶ୍ୟାମ ଘନଘଟା ନଭେ ଦିଶଇ॥ ୧ ॥
ଅଣୁପରମାଣୁ ସବୁ ଶ୍ୟାମମୟ ! ଲୋକେ କହନ୍ତି ଏ ନୂଆ ଅଟଇ।
ଲୋକଙ୍କ ଆଖିର ପିତୁଳାରେ ଶ୍ୟାମ, ନା, ମୁଁ ହୋଇଗଲି ପାଗଳୀ ସହି ! ! ୨ ॥
ରବିସାର ଚନ୍ଦ୍ରସାର ଶ୍ୟାମ ଦିଶେ, ଶ୍ୟାମ ମୃଗମଦ କାମବିଜୟୀ।
ନୀଳକଣ୍ଠ କଣ୍ଠେ ଶ୍ୟାମକୁ ଦେଖ ଗୋ ! ଶ୍ୟାମ ତରୁ-ଲତା ପତ୍ରେ ଶୋଭଇ॥ ୩॥
ବେଦର ଅକ୍ଷର ଶ୍ୟାମ ହୋଇଛି ଗୋ ! ଶ୍ୟାମ ଦିସେ ଦୀପଶିଖାରେ ରହି।
ସୁରନର କଥା ଛାଡ଼; ଆଜି ମୋତେ ଅରୂପ ବ୍ରହ୍ମ ବି ଶ୍ୟାମ ଦିଶଇ॥ ୪ ॥

୨. ଗୀତାର ଏକାଦଶ ଅଧ୍ୟାୟ ଦେଖନ୍ତୁ।

୩. ଭଗବାନ୍ ନିଜର ବିଚିତ୍ର ବାଳଲୀଳାଦ୍ୱାରା ମାତା ଯଶୋଦାଙ୍କୁ ଓ ବ୍ରଜବାସୀମାନଙ୍କୁ ଅନୁପମ ସୁଖ ପ୍ରଦାନ କରୁଥିଲେ। ଦିନକର କଥା। ସେ ମାଟି ଖାଇଦେଲେ। ତାହା ଦେଖି ମାଆ ଯଶୋଦା ପାଟିକରିଉଠିଲେ, ''କି ରେ ପେଟୁ! ଲୁଚେଇ ଲୁଚେଇ ମାଟି ଖାଇଦେଲୁ କି?'' ଭଗବାନ୍ କହିଲେ, ''ନାହିଁ ମାଆ, ମୁଁ ମାଟି ଖାଇ ନାହିଁ।'' ଯଶୋଦା ଆଖି ଦେଖାଇ କହିଲେ, ''ମିଛ କହୁଛୁ!!'' ପ୍ରଭୁ କହିଲେ, ''ନାହିଁ ମାଆ। ମୋ କଥାକୁ ବିଶ୍ୱାସ କରୁନୁ ତ, ମୋ ପାଟି ଖୋଲି ଦେଖ।'' ଯଶୋଦା କୃଷ୍ଣଙ୍କ ପାଟି ଖୋଲି ଭିତରକୁ ଚାହିଁଦିଅନ୍ତି ତ, ବିସ୍ମିତ ହୋଇଗଲେ। ଭଗବାନଙ୍କର ସେହି ମୁହଁଟି ଭିତରେ ଯଶୋଦା ଦେଖିଲେ, ରହିଛି ସମସ୍ତ ଜଗତ, ସକଳ ଚରାଚର ଜୀବଗଣ, ଆକାଶ, ଦଶଦିଗ, ପର୍ବତ, ଦ୍ୱୀପ, ସମୁଦ୍ର, ପୃଥିବୀ, ବାୟୁ, ଅଗ୍ନି, ଚନ୍ଦ୍ରମା, ତାରା, ଇନ୍ଦ୍ରିୟମାନଙ୍କର ଦେବତା, ଇନ୍ଦ୍ରିୟଗଣ, ମନ, ଶବ୍ଦାଦି ସକଳ ବିଷୟ, ମାୟାର ତିନିଗୁଣ, ନାନା ଜୀବ, ସେମାନଙ୍କର ବିଚିତ୍ର ଶରୀର ଓ ସମସ୍ତ ବ୍ରହ୍ମାଣ୍ଡ। ସେ ଭାବିଲେ, 'ମୁଁ ସ୍ୱପ୍ନ ଦେଖୁ ନାହିଁ ତ!' ଶେଷରେ ଭୟରେ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି ସେ ତାଙ୍କର ଶରଣାଗତ ହୋଇଗଲେ। ଶ୍ରୀ କୃଷ୍ଣଚନ୍ଦ୍ର ପୁଣି ଥରେ ନିଜର ମୋହିନୀ ମାୟା ବିଛାଇଦେଲେ। ଯଶୋଦାଙ୍କର ମାତୃସ୍ନେହ ଉଛୁଳିପଡ଼ିଲା; ଶ୍ୟାମଲାଲାଙ୍କୁ ସେ କୋଳକୁ ଟାଣିନେଇ ଗେଲ କରିବାକୁ ଲାଗିଲେ। (ଭାଗବତ ୧୦ମ ସ୍କନ୍ଧ, ୮ମ ଅଧ୍ୟାୟ)

୪. କାକଭୁଶୁଣ୍ଡି ଭଗବାନ୍ ଶ୍ରୀରାମଙ୍କ ବାଲ୍ୟଲୀଳାର ଆନନ୍ଦ ଉପଭୋଗ କରିବାରେ ଲାଗିଥିଲେ। ଦିନେ ବାଳକ ଶ୍ରୀରାମ କାକଭୁଶୁଣ୍ଡିଙ୍କୁ ଧରିବାପାଇଁ ତାଙ୍କ ଆଡ଼କୁ ଦୌଡ଼ିଗଲେ। ତାହା ଦେଖି କାକଭୁଶୁଣ୍ଡି ଉଡ଼ିପଳାଇଗଲେ; କିନ୍ତୁ ଭଗବାନ୍ ତାଙ୍କ ଆଡ଼କୁ ହାତ ବଢ଼ାଇଲାଗିଲେ।

| | |
|---|---|
| ଭକ୍ତ ସେହିପରି ସମଗ୍ର ବିଶ୍ୱକୁ ନିଜର ଇଷ୍ଟଦେବ ଭଗବାନଙ୍କର ଯେକୌଣସି ରୂପରେ ଦେଖିବା ଉଚିତ। | ଏହା ହିଁ ଭଗବାନଙ୍କର ସଗୁଣ ରୂପରେ ସମସ୍ତ ଜଗତକୁ ଦେଖିବା। |

କାକଭୁଶୁଣ୍ଡି ଯେତେଦୂର ଉଡ଼ିଲେ, ଶ୍ରୀରାମଙ୍କ ହାତ ତାଙ୍କ ପଛେ ପଛେ ସେତେଦୂର ଲମ୍ବିଚାଲିଲା। ଉଡ଼ି ଉଡ଼ି ସେ ବ୍ରହ୍ମଲୋକପର୍ଯ୍ୟନ୍ତ ଚାଲିଗଲେ; ଭଗବାନଙ୍କ ହାତ ବି ବ୍ରହ୍ମଲୋକପର୍ଯ୍ୟନ୍ତ ଚାଲିଗଲା। କାକଭୁଶୁଣ୍ଡି ଧରାପଡ଼ିବାକୁ ଆଉ ମାତ୍ର ଦୁଇ ଅଙ୍ଗୁଳି ବାକି ଥାଏ, ସେ ଆଉ ଅଧିକ ଦୂର ଉଡ଼ି ନ ପାରି ଆଖି ବୁଜିଦେଲେ। କିଛି ସମୟ ପରେ ସେ ଆଖି ଖୋଲି ଦିଅନ୍ତି ତ ଦେଖିଲେ, ସେ ଆସି ଅଯୋଧ୍ୟାପୁରୀରେ। ତାଙ୍କୁ ଦେଖି ଶ୍ରୀରାମ ହସିଉଠିଲେ। ପ୍ରଭୁ ହସୁଥିବା ଅବସ୍ଥାରେ କାକଭୁଶୁଣ୍ଡି ତାଙ୍କ ପାଟିଭିତରେ ପଶି ପେଟ ଭିତରକୁ ଚାଲିଗଲେ। ପ୍ରଭୁଙ୍କ ପେଟ ଭିତରେ ସେ ଯାହାସବୁ ଦେଖିଥିଲେ, ତାହା ସେ ପକ୍ଷିରାଜ ଗରୁଡ଼ଙ୍କୁ କହିଥିଲେ। ଗୋସ୍ୱାମୀ ତୁଳସୀ ଦାସଙ୍କ 'ରାମ ଚରିତମାନସ'ରେ ତାହା ଅତିସୁନ୍ଦରଭାବରେ ବର୍ଣ୍ଣିତ ହୋଇଛି। କାକଭୁଶୁଣ୍ଡି ଗରୁଡ଼ଙ୍କୁ ଶୁଣାଉଛନ୍ତି–

ଉଦର ମଧ୍ୟରେ ଶୁଣ ହେ ପକ୍ଷିରାଜନ। ଅନେକ ବ୍ରହ୍ମାଣ୍ଡ ବୁଲି କଲି ବିଲୋକନ॥
ତହଁ ହିଁ ବିଚିତ୍ର କଥା ଲୋକ ବି ଅନେକ। ରଚନା ଅତି ସୁନ୍ଦର ଏକୁ ବଳି ଏକ॥
କୋଟି କୋଟି ବ୍ରହ୍ମା କୋଟି କୋଟି ଗଉରୀଶ। ଅଗଣିତ ନକ୍ଷତ୍ର ଓ ରବି ରଜନୀଶ॥
ଅଗଣିତ କାଳ ଯମ, ପୁଣି ଲୋକପାଳ। ଅସୁମାରି ପର୍ବତ ଅବନି ବିଶାଳ॥
ସାଗର, ସରିତ, ବନରାଜି ଯେ ଅପାର। ଅନେକ ପ୍ରକାର ସୃଷ୍ଟି ହୋଇଛି ବିସ୍ତାର॥
ସୁର, ନର, ନାଗ, ମୁନି, ସିଦ୍ଧ ଓ କିନ୍ନର। ଚରାଚର ପ୍ରାଣୀଏ ଚାରି ପରକାର॥
ଯାହା କେବେ ଦେଖି କିମ୍ବା ଭାବି ମୁଁ ନ ଥିଲି। ସେପରି ଅଦ୍ଭୁତ ଦୃଶ୍ୟ ସେଠାରେ ଦେଖିଲି॥
ପ୍ରତି ବ୍ରହ୍ମାଣ୍ଡେ ରହିଲି ବରଷ ଶତେକ। ଏହାବେ ଭ୍ରମିଲି ତହିଁ ବ୍ରହ୍ମାଣ୍ଡ ଅନେକ॥
ପ୍ରତି ଲୋକରେ ଅଲଗା ଅଲଗା ବିଧାତା। ଅଲଗା ବିଷ୍ଣୁ, ମହେଶ, ମନୁ, ଦିଗ-ତ୍ରାତା॥
ମନୁଷ୍ୟ, ଗନ୍ଧର୍ବ, ଭୂତ ଆଉର ବେତାଳ। କିନ୍ନର ଓ ନିଶାଚର, ପଶୁ, ପକ୍ଷୀ ବ୍ୟାଳ॥
ନାନା ବର୍ଣ୍ଣର ସେଠାରେ ଦନୁଜ ଦେବତା। କେତେ ଯେ ଦେଖିଲି କିସ କହିବି ସେ କଥା॥
ଭୂଭାଗ, ସିନ୍ଧୁ, ସରିତ, ସର, ଗିରିମାନ। ସକଳ ପ୍ରପଞ୍ଚ ତହିଁ ଦିଶେ ଆନ ଆନ॥
ପ୍ରତିଟି ବ୍ରହ୍ମାଣ୍ଡ କୋଷ ଦିଶେ ନିଜ ସମ। ଦେଖିଲି ସବୁ ସେଠାରେ ଅଟେ ଅନୁପମ॥
ଦେଖିଲି ଅଯୋଧ୍ୟାପୁରୀ ପ୍ରତି ଭୁବନରେ। ରହିଛି ସରଯୂ ନଦୀ; 'ଛନ୍ତି ଭିନ୍ନ ନରେ॥
ଦଶରଥ, କୌଶଲ୍ୟାଦି ଯେତେସବୁ ମାତା। ନାନାବିଧରୂପେ 'ଛନ୍ତି ଭରତାଦି ଭ୍ରାତା॥
ପ୍ରତି ବ୍ରହ୍ମାଣ୍ଡେ ଦେଖିଲି ରାମ ଅବତାର। ଚାଲିଅଛି ବାଲ୍ୟଲୀଳା-ବିନୋଦ ଅପାର॥
ସବୁ ସିନା ଭିନ୍ନରୂପ ଥିଲା ଖଗପତି! ରାମ କିନ୍ତୁ ସବୁଠାରେ ଏକାପରି 'ଛନ୍ତି॥
ସେହି ଶିଶୁ ଶୋଭାମୟ କୃପାଳୁ ଶ୍ରୀରାମ। ସକଳ ଭୁବନେ ଧରିଛନ୍ତି ଏକା ନାମ॥
ଭ୍ରମଣ କଲି ମୁଁ ସେହି ବ୍ରହ୍ମାଣ୍ଡେ ଅନେକ। ଲାଗିଗଲା ଜାଣ ମୋତେ କଳପ ଶତେକ॥
ବୁଲିବୁଲି ତହୁଁ ନିଜ ଆଶ୍ରମେ ଫେରିଲି। ଆଶ୍ରମରେ ରହି କିଛି କାଳ କଟାଇଲି॥
ଅଯୋଧ୍ୟାରେ ପ୍ରଭୁ ମୋର ଜନ୍ମିଲେ ଶୁଣିଲି। ପ୍ରେମଭରେ ଧାଇଁଯାଇ ତହିଁ ପହଞ୍ଚିଲି॥
ଦେଖିଲି ଜନ୍ମ ଉତ୍ସବ ସେଠାରେ ମୁଁ ଥାଇ। କହିଥିଲି ଯେଉଁପରି ପ୍ରଥମେ ବୁଝାଇ॥
ରାମ ଉଦରେ ଦେଖିଲି ବିବିଧ ଜଗତ। ଆଖିରେ ଦେଖିଲି ସିନା, କହି ନୁହଇ ତ॥
ସବୁଠାରେ ଦେଖି ପ୍ରଭୁ ପ୍ରବୀଣ ଶ୍ରୀରାମ। ମାୟାପତି ଭଗବାନ ଦିବ୍ୟ କୃପାଧାମ॥
ବାରମ୍ବାର ମନରେ ମୋ ଉଠିଲା ସଂଶୟ। ତେଣୁ ମୋ ଚିତ୍ତକୁ ଘେରିନେଲା ମୋହ ଭୟ॥
ଦୁଇ ଘଡ଼ି ଭିତରେ ମୁଁ ଏସବୁ ଦେଖିଲି। ସତ ନା ମିଛ ବୋଲିଣ ଭ୍ରମେ ପଡ଼ିଗଲି॥
ମୋ ବିକଳ ଦେଖି କୃପାବଶେ ଦଣ୍ଡଧାରୀ। ହସିବାରୁ ମୁଖରୁ ମୁଁ ପଡ଼ିଲି ବାହାରି॥

— ଅନୂଦିତ —

(ରାମଚରିତମାନସ/ଉତ୍ତରକାଣ୍ଡ/୭୯-୮୨ ଦୋ)

**ପ୍ରଶ୍ନ —** 'ତାଙ୍କୁ ମୁଁ ଅଦୃଶ୍ୟ ନୁହେଁ ଓ ସେ ମୋତେ ଅଦୃଶ୍ୟ ନୁହନ୍ତି।' — ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର —** ପ୍ରଥମ ପ୍ରଶ୍ନର ଉତ୍ତର ଅନୁସାରେ ଯେ ସମଗ୍ର ଜଗତରେ ଭଗବାନଙ୍କୁ ଓ ଭଗବାନଙ୍କ ଠାରେ ସମଗ୍ର ଜଗତକୁ ଦେଖନ୍ତି, ତାଙ୍କ ଦୃଷ୍ଟିରେ ଭଗବାନ୍ କେବେ ଅଦୃଶ୍ୟ ହୁଅନ୍ତି ନାହିଁ ଓ ସେ ମଧ୍ୟ ଭଗବାନଙ୍କ ଦୃଷ୍ଟିରେ ଅଦୃଶ୍ୟ ନୁହନ୍ତି। ଅଭିପ୍ରାୟ ଏହି ଯେ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ଐଶ୍ୱର୍ଯ୍ୟ, ଔଦାର୍ଯ୍ୟ ଆଦିର ଅନନ୍ତ ସାଗର, ରସମୟ ଓ ଆନନ୍ଦମୟ ଭଗବାନଙ୍କର ଦେବଦୁର୍ଲଭ ସଚ୍ଚିଦାନନ୍ଦ ସ୍ୱରୂପ ସାକ୍ଷାତ୍ ଦର୍ଶନ ହୋଇଯିବା ପରେ ଭକ୍ତ ଓ ଭଗବାନଙ୍କର ସଂଯୋଗ ସବୁଦିନପାଇଁ ଅତୁଟ ହୋଇଯାଏ।

**ପ୍ରଶ୍ନ —** ଭଗବାନଙ୍କର ସଗୁଣ ସାକାର ସ୍ୱରୂପର ଦର୍ଶନପାଇଁ ଆରମ୍ଭରେ କିପରି ସାଧନା କରିବା ଉଚିତ ଓ ସେହି ସାଧନାର ଅନ୍ତିମସ୍ଥିତି କିପରି ହୋଇଥାଏ ?

**ଉତ୍ତର —** ପ୍ରଥମ କଥା ହେଲା, ସଗୁଣ ସାକାର ସ୍ୱରୂପରେ ଶ୍ରଦ୍ଧା। ସଗୁଣ ସାକାର ସ୍ୱରୂପର ଉପାସକଙ୍କୁ ଦୃଢ଼ନିଶ୍ଚୟ କରିବାକୁ ହେବ ଯେ, ତାଙ୍କର ଇଷ୍ଟଦେବ ସର୍ବଶକ୍ତିମାନ୍ ଓ ସର୍ବୋଚ୍ଚ; ସେ ହିଁ ନିର୍ଗୁଣ-ସଗୁଣ ସବୁକିଛି। ଯଦି ସାଧକ ନିଜ ଇଷ୍ଟଙ୍କ ଅପେକ୍ଷା ଅନ୍ୟ କୌଣସି ସ୍ୱରୂପକୁ ଶ୍ରେଷ୍ଠ ବୋଲି ମନେ କରିବେ, ତେବେ ତାଙ୍କୁ ନିଜ ଇଷ୍ଟଙ୍କ ଉପାସନାରୁ ସର୍ବୋଚ୍ଚ ଫଳ ମିଳିପାରିବ ନାହିଁ। ତା'ଛଡ଼ା ଭଗବାନଙ୍କର ଯେଉଁ ସ୍ୱରୂପରେ ଭକ୍ତଙ୍କର ଇଷ୍ଟବୁଦ୍ଧି ଦୃଢ଼ ହୋଇଥିବ, ସେହି ସ୍ୱରୂପର କୌଣସି ଏକ ମନ-ଅନୁକୂଳ ମୂର୍ତ୍ତି ବା ଚିତ୍ରପଟ ସମ୍ମୁଖରେ ରଖି, ତାହା ଜଡ଼ ବୋଲି ନ ଭାବି, ସେଥିରେ ପ୍ରଭୁ ପ୍ରତ୍ୟକ୍ଷଭାବରେ ତଥା ଜୀବନ୍ତ ହୋଇ ଅଛନ୍ତି ବୋଲି ଅନୁଭବ କରି ଅତ୍ୟନ୍ତ ଶ୍ରଦ୍ଧା ଓ ପ୍ରେମର ସହିତ ବିଧିପୂର୍ବକ ତାଙ୍କର ପୂଜା କରିବା ଉଚିତ ଏବଂ ପ୍ରାର୍ଥନା, ସ୍ତୁତି ତଥା ଧ୍ୟାନ ଆଦିଦ୍ୱାରା ତାଙ୍କ ପ୍ରତି ଉତ୍ତରୋତ୍ତର ପ୍ରେମ ବଢ଼ାଇଚାଲିବା ଉଚିତ। ପୂଜାସମୟରେ ଗଭୀର ଶ୍ରଦ୍ଧାର ସହିତ ସାଧକଙ୍କୁ ଧାରଣା କରିବାକୁ ହେବ ଯେ, ଭଗବାନଙ୍କର ସେହି ମୂର୍ତ୍ତି ଜଡ଼ମୂର୍ତ୍ତି ନୁହେଁ, ବରଂ ସେହି ମୂର୍ତ୍ତି ସାକ୍ଷାତ୍ ଚଲାବୁଲା, ହସଖେଳ, କଥାଭାଷା ଓ ଖିଆପିଆ କରୁଥିବା ଜୀବନ୍ତ ଭଗବାନ୍। ଯଦି ସାଧକଙ୍କ ଶ୍ରଦ୍ଧା ପ୍ରକୃତ ହୋଇଥିବ, ତେବେ ସେହି ବିଗ୍ରହରେ ହିଁ ଭଗବାନ୍ ତାଙ୍କ ପାଇଁ ଚେତନ ଅର୍ଚ୍ଚାବତାର ହୋଇଯିବେ ଓ ବିଭିନ୍ନଭାବରେ ନିଜର ଭକ୍ତବତ୍ସଳତାର ପ୍ରତ୍ୟକ୍ଷ ପରିଚୟ ଦେଇ ସାଧକଙ୍କ ଜୀବନକୁ ସଫଳ ଓ ଆନନ୍ଦମୟ କରିଦେବେ। ମୀରାବାଈ ଆଦି ମଧ୍ୟଯୁଗୀୟ ଭକ୍ତଙ୍କର ଜୀବନରେ ଏପରି ଅର୍ଚ୍ଚାବତାର ପ୍ରକଟ ହୋଇଛନ୍ତି। ତା'ପରେ ଭଗବତ୍କୃପାରୁ ତାହାଙ୍କୁ ନିଜ ଇଷ୍ଟଙ୍କର ପ୍ରତ୍ୟକ୍ଷ ଦର୍ଶନ ମଧ୍ୟ ହୋଇପାରିବ। ଦର୍ଶନପାଇଁ କୌଣସି ନିଶ୍ଚିତ ସମୟସୀମା ନାହିଁ; ସାଧକଙ୍କ ଉତ୍କଣ୍ଠା ଓ ଭଗବତ୍କୃପା ଉପରେ ନିର୍ଭରଶୀଳତା ଯେପରି ଓ ଯେତେ ପରିମାଣରେ ହୁଏ, ତା'ରି ଅନୁସାରେ ପ୍ରଭୁ ତାଙ୍କୁ ସେତେ ଶୀଘ୍ର ବା ବିଳମ୍ବରେ ଦର୍ଶନ ଦେଇପାରିବେ। ପ୍ରତ୍ୟକ୍ଷ ଦର୍ଶନ ହେବା ପରେ, ଭଗବତ୍କୃପାରୁ ସେ ଯେତେବେଳେ ଓ ଯେଉଁଠି ଚାହିଁବେ, ସର୍ବଦା ଓ ସର୍ବତ୍ର ଭଗବାନଙ୍କ ଦର୍ଶନ ମଧ୍ୟ କରିପାରିବେ। ସାକ୍ଷାତ୍ ଭଗବଦ୍ଦର୍ଶନ ହେବା ପରେ ସାଧକଙ୍କର ସ୍ଥିତି କିପରି ହୁଏ, ତାହା ଯେ ଦର୍ଶନ କରିଛନ୍ତି, ସେ ହିଁ ଜାଣନ୍ତି। ଅନ୍ୟ କେହି ସେ ବିଷୟରେ କିଛି କହିପାରିବେ ନାହିଁ।

ସାକାର ଭଗବାନଙ୍କର ଦର୍ଶନ ସବୁଠି ଲାଭ କରିବାକୁ ଯେଉଁ ସାଧନା କରାଯାଏ, ତାହାର ଏକ ପ୍ରଣାଳୀ ହେଉଛି : ଯେଉଁ ସ୍ୱରୂପରେ ନିଜର ଇଷ୍ଟଭାବ ହେବ, ସେହି ସ୍ୱରୂପର ବିଗ୍ରହ ବା ଚିତ୍ରପଟର ପୂଜା ତ ଉପରୋକ୍ତ ପ୍ରକାରେ କରିବାକୁ ପଡ଼ିବ; ତା' ସଙ୍ଗେ ସଙ୍ଗେ ଏକାନ୍ତରେ ବସି ପ୍ରତିଦିନ ନିୟମପୂର୍ବକ ତାଙ୍କର ଧ୍ୟାନ ଅଭ୍ୟାସ କରି ଚିତ୍ତରେ ସେହି ସ୍ୱରୂପର ଦୃଢ଼ ଧାରଣା ଆଣିବାକୁ ପଡ଼ିବ। କିଛି ଧାରଣା ହେବା ପରେ ଏକାନ୍ତସ୍ଥାନରେ ବସି, ଆଖି ଖୋଲି, ଆକାଶରେ ମାନସିକ ମୂର୍ତ୍ତି ରଚନା କରି ତାହା ଦେଖିବାକୁ ଅଭ୍ୟାସ କରିବା ଉଚିତ। ଭଗବତ୍-କୃପା ଉପରେ ଆଶ୍ରୟ କରି ବିଶ୍ୱାସ, ଶ୍ରଦ୍ଧା ଓ ନିଶ୍ଚୟର ସହିତ ବାରମ୍ବାର ଏପରି ଅଭ୍ୟାସ କରିଚାଲିଲେ କିଛି ସମୟ ପରେ ଆକାଶରେ ଇଷ୍ଟଙ୍କର ସର୍ବାଙ୍ଗସୁନ୍ଦର ହସୁଥିବା, କଥା-କହୁଥିବା ମୂର୍ତ୍ତି ଦେଖାଯିବ। ଏହା ଅଭ୍ୟାସସାଧ୍ୟ କଥା। ଚିତ୍ତବୃତ୍ତିମାନଙ୍କୁ ଇଷ୍ଟସ୍ୱରୂପଙ୍କ ଆକାର ରଚନା କରିବାରେ ଅଭ୍ୟାସସିଦ୍ଧ କରିସାରିବା ପରେ, ଯେଉଁକ୍ଷଣି ବି ଉକ୍ତ ସ୍ୱରୂପର ଅନନ୍ୟ ଚିନ୍ତନ ହେବ, ସେହିକ୍ଷଣି ସାଧକ ଯେଉଁଠି ଚାହିଁବେ, ସେଇଠି ଆଖି ଆଗରେ ଇଷ୍ଟଙ୍କ ସ୍ୱରୂପ ଦେଖିପାରିବେ। ଏହି ଅଭ୍ୟାସ ଦୃଢ଼ ହୋଇଯିବା ପରେ ଚଲାବୁଲା କରିବା ସମୟରେ ବୃକ୍ଷ, ଲତା, ମନୁଷ୍ୟ, ପଶୁ, ପକ୍ଷୀ ଆଦି ଯାହା

କିଛି ପଦାର୍ଥ ଦିଶିବ, ମନଦ୍ୱାରା ସେସବୁର ଆକାର ଓ ରୂପ ହଟାଇଦେଇ ସେସବୁ ସ୍ଥାନରେ ଇଷ୍ଟମୂର୍ତ୍ତିଙ୍କର ଦୃଢ଼ ଧାରଣା ଆଣିବା ଉଚିତ। ଏପରି କରିଚାଲିଲେ ସାଧକ ସହଜରେ ପ୍ରତ୍ୟେକ ବସ୍ତୁରେ ନିଜ ଇଷ୍ଟଙ୍କ ମାନସିକ ମୂର୍ତ୍ତିକୁ ହିଁ ଦର୍ଶନ କରିବାକୁ ସକ୍ଷମ ହୋଇଯିବେ। ଏହାପରେ ଭଗବତ୍‌କୃପାରୁ ତାହାଙ୍କୁ ଭଗବାନଙ୍କର ବାସ୍ତବିକ ଦର୍ଶନ ମଧ୍ୟ ମିଳିଯାଇପାରିବ ଓ ସେ ପ୍ରତ୍ୟକ୍ଷ ଓ ଯଥାର୍ଥ ରୂପରେ ସର୍ବତ୍ର ଭଗବାନଙ୍କୁ ଦେଖିପାରିବେ।

**ସମ୍ବନ୍ଧ –** ସର୍ବତ୍ର ଭଗବତ୍ ଦର୍ଶନଦ୍ୱାରା ଭଗବାନଙ୍କ ସାକ୍ଷାତ୍କାର ପାଇବା କଥା କହିସାରି ବର୍ତ୍ତମାନ ଭଗବତ୍‌ପ୍ରାପ୍ତ ପୁରୁଷଙ୍କ ଲକ୍ଷଣ ଓ ମହତ୍ତ୍ୱ ନିରୂପଣ କରୁଛନ୍ତି–

## ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ।
## ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ॥ ୩୧ ॥

**ଅନ୍ୱୟ –** **ଯଃ** = ଯେଉଁ ପୁରୁଷ; **ଏକତ୍ୱମ୍** = ଏକୀଭାବରେ; **ଆସ୍ଥିତଃ** = ସ୍ଥିତ ହୋଇ; **ସର୍ବଭୂତସ୍ଥିତମ୍** = ସମସ୍ତ ପ୍ରାଣୀଙ୍କ ଠାରେ ଆତ୍ମରୂପରେ ସ୍ଥିତ; **ମାମ୍** = ମୋତେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ବାସୁଦେବଙ୍କୁ; **ଭଜତି** = ଭଜନ୍ତି; **ସଃ** = ସେହି; **ଯୋଗୀ** = ଯୋଗୀ; **ସର୍ବଥା** = ସକଳପ୍ରକାରେ; **ବର୍ତ୍ତମାନଃ** = କ୍ରିୟାକଳାପ କରୁଥିଲେ; **ଅପି** = ମଧ୍ୟ; **ମୟି, ବର୍ତ୍ତତେ** = ମୋସହିତ ହିଁ କରୁଥାଏ।

**ଯେଉଁ ପୁରୁଷ ଏକୀଭାବରେ ସ୍ଥିତ ହୋଇ ସମସ୍ତ ପ୍ରାଣୀଙ୍କ ଠାରେ ଆତ୍ମରୂପରେ ସ୍ଥିତ ମୋତେ (ସଚ୍ଚିଦାନନ୍ଦଘନ ବାସୁଦେବଙ୍କୁ) ଭଜନ୍ତି, ସେହି ଯୋଗୀ ସକଳପ୍ରକାରେ କ୍ରିୟାକଳାପ କରୁଥିଲେ ମଧ୍ୟ ମୋ ସହିତ ହିଁ ସକଳ କ୍ରିୟା କରୁଥାନ୍ତି।॥ ୩୧ ॥**

**ପ୍ରଶ୍ନ –** ଏକୀଭାବରେ ସ୍ଥିତ ହେବା କଣ ?

**ଉତ୍ତର –** ସର୍ବଦା ଓ ସର୍ବତ୍ର ନିଜର ଏକମାତ୍ର ଇଷ୍ଟଦେବ ଭଗବାନଙ୍କ ଧ୍ୟାନ କରୁ କରୁ ସାଧକ ନିଜର ଭିନ୍ନସ୍ଥିତିକୁ ସଂପୂର୍ଣ୍ଣରୂପେ ଭୁଲିଯାଇ ଏତେ ତନ୍ମୟ ହୋଇଯାନ୍ତି ଯେ, ତାଙ୍କ ଜ୍ଞାନରେ ଭଗବାନଙ୍କ ଛଡ଼ା ଆଉ କିଛି ରହେ ନାହିଁ। ଭଗବତ୍‌ପ୍ରାପ୍ତିରୂପକ ଏପରି ସ୍ଥିତିକୁ ଭଗବାନଙ୍କ ଠାରେ ଏକୀଭାବରେ ସ୍ଥିତ ହେବା କହନ୍ତି।

**ପ୍ରଶ୍ନ –** ସବୁ ପ୍ରାଣୀଙ୍କ ଠାରେ ଅବସ୍ଥିତ ଭଗବାନଙ୍କୁ ଭଜିବା କହିଲେ କଣ ବୁଝାଏ ?

**ଉତ୍ତର –** ଯେପରି ବାଷ୍ପ, ମେଘ, କୁହୁଡ଼ି, ଜଳବିନ୍ଦୁ ଓ ତୁଷାର ଆଦି ସବୁରେ ଜଳ ହିଁ ଭରି ହୋଇ ରହିଛି, ସେହିପରି ସକଳ ଚରାଚର ବିଶ୍ୱରେ ଏକ ଭଗବାନ୍ ହିଁ ପରିପୂର୍ଣ୍ଣ ହୋଇ ରହିଛନ୍ତି – ଏପରି ଜାଣିବା ଓ ପ୍ରତ୍ୟକ୍ଷ ଦେଖିବା ହିଁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଅବସ୍ଥିତ ଭଗବାନଙ୍କୁ ଭଜିବା। ଏପରି ଭଜନ କରୁଥିବା ପୁରୁଷଙ୍କୁ ଭଗବାନ୍ ସର୍ବୋତ୍ତମ ମହାତ୍ମା ବୋଲି କହିଛନ୍ତି (୭/୧୯)।

**ପ୍ରଶ୍ନ –** 'ସେହି ଯୋଗୀ ସକଳପ୍ରକାରେ କ୍ରିୟାକଳାପ କରୁଥିଲେ ମଧ୍ୟ ମୋ ସହିତ ହିଁ ସବୁକିଛି କରୁଥାନ୍ତି'– ଏହାର ଭାବ କଣ ?

**ଉତ୍ତର –** ଯେଉଁ ପୁରୁଷଙ୍କୁ ଭଗବାନ୍ ଶ୍ରୀବାସୁଦେବ ପ୍ରାପ୍ତ ହୋଇଗଲେଣି, ତାହାଙ୍କୁ ପ୍ରତ୍ୟକ୍ଷରୂପରେ ସବୁ କିଛି ବାସୁଦେବ ବୋଲି ହିଁ ଦେଖାଯାଏ। ଏପରି ଅବସ୍ଥାରେ ସେହି ଭକ୍ତଙ୍କର ଶରୀର, ବଚନ ଓ ମନରେ ଯାହା କିଛି ବି କ୍ରିୟା ହୁଏ, ତାଙ୍କ ଦୃଷ୍ଟିରେ ସେସବୁ କେବଳ ଭଗବାନଙ୍କ ସଙ୍ଗେ ହିଁ ହୁଏ। ସେ ଯଦି ହାତରେ କାହାର ସେବା କରୁଥାନ୍ତି, ତେବେ ତାହା ଭଗବାନଙ୍କର ହିଁ ସେବା ହୁଏ; କାହାକୁ ମିଠାକଥା କହି ସୁଖ ଦେଉଥାନ୍ତି ତ, ସେହି ସୁଖ ଭଗବାନଙ୍କୁ ହିଁ ଦେଉଥାନ୍ତି; କାହାକୁ ଦେଖୁଥାନ୍ତି ତ, ଭଗବାନଙ୍କୁ ହିଁ ଦେଖୁଥାନ୍ତି; ତାହା ସହିତ କେଉଁଠିକି ଯାଉଥାନ୍ତି ତ, ସେ ଭଗବାନଙ୍କ ସହିତ ଭଗବାନଙ୍କ ନିକଟକୁ ହିଁ ଯାଉଥାନ୍ତି। ଏପରିଭାବରେ ସେ ଯାହା କିଛି ବି କରୁଥାନ୍ତି, ସବୁ ଭଗବାନଙ୍କ ପାଇଁ ଏବଂ ଭଗବାନଙ୍କ ସହିତ ହିଁ କରୁଥାନ୍ତି। ଅତଏବ କୁହାଯାଇଛି ଯେ, 'ସେ ସକଳପ୍ରକାରେ କ୍ରିୟାକଳାପ କରୁଥିଲେ ମଧ୍ୟ ମୋସହିତ ହିଁ ସବୁ କରୁଥାନ୍ତି।'

**ପ୍ରଶ୍ନ –** 'ସବୁ କିଛି ଭଗବାନ୍ ହିଁ ଅଟନ୍ତି' – ଏପରି ଅନୁଭବ ହୋଇଯିବା ପରେ ତାଙ୍କ ଦ୍ୱାରା ଲୋକୋଚିତ ଯଥାଯୋଗ୍ୟ ବ୍ୟବହାର କିପରି ହୋଇପାରେ ?

ଉତ୍ତର— ଛୁରୀ, କଇଁଚି, କଡ଼ାଇ, ତାର, ଚିମୁଟା, ହାତୁଡ଼ି, ତରବାରି ଓ ଶର ଆଦିରେ ଏକମାତ୍ର ଲୁହାଥିବା ହିଁ ପ୍ରତ୍ୟକ୍ଷ ଅନୁଭବ ହେଉଥିଲେ ମଧ୍ୟ, ଯେପରି ସେସବୁର ଯଥାଯୋଗ୍ୟ ଭିନ୍ନ ଭିନ୍ନ ବ୍ୟବହାର କରାଯାଏ, ସେହିପରି ଭଗବତ୍‌ପ୍ରାପ୍ତ ଭକ୍ତ ସର୍ବତ୍ର ଓ ସବୁକିଛିରେ ଭଗବାନଙ୍କୁ ହିଁ ଦେଖୁଥିଲେ ବି, ସମସ୍ତଙ୍କ ସହିତ ସେ ଶାସ୍ତ୍ରାନୁକୂଳ ଯଥାଯୋଗ୍ୟ ବ୍ୟବହାର କରିପାରନ୍ତି। ଅବଶ୍ୟ ସାଧାରଣ ମନୁଷ୍ୟର ବ୍ୟବହାର ଓ ଭକ୍ତଙ୍କର ବ୍ୟବହାର ମଧ୍ୟରେ ବହୁତ ପାର୍ଥକ୍ୟ ଥାଏ। ସାଧାରଣ ମନୁଷ୍ୟ ଅନ୍ୟ ସହିତ ବଡ଼ ସାବଧାନ ହୋଇ ବହୁତ ଭଲ ବ୍ୟବହାର କରୁଥିଲେ ମଧ୍ୟ, ତା'ଠାରେ ଭଗବଦ୍‌ବୁଦ୍ଧି ନ ଥାଇ ପରବୁଦ୍ଧି ରହିଥିବାରୁ ତଥା ତା'ର ଅଳ୍ପ ହେଉ, ବେଶି ହେଉ, କିଛି ନା କିଛି ସ୍ୱାର୍ଥ ରହିଥିବାରୁ ତା'ଦ୍ୱାରା ଅନ୍ୟର ଅହିତ ହେବାପରି ବ୍ୟବହାରର ମଧ୍ୟ ସମ୍ଭାବନା ଥାଏ। କିନ୍ତୁ ସର୍ବତ୍ର ସମସ୍ତଙ୍କ ଠାରେ ଭଗବତ୍‌ଦର୍ଶନ କରୁଥିବାଯୋଗୁଁ ଭକ୍ତଙ୍କ ଦ୍ୱାରା ସ୍ୱଭାବତଃ ସମସ୍ତଙ୍କର ହିତ ହିଁ ହୁଏ। ତାଙ୍କ ଦ୍ୱାରା ଏପରି କିଛି ବି କାର୍ଯ୍ୟ କୌଣସି ବି ଅବସ୍ଥାରେ ହୋଇପାରେ ନାହିଁ, ଯାହାଦ୍ୱାରା କି ପ୍ରକୃତରେ କାହାର କୌଣସିପ୍ରକାରେ ସାମାନ୍ୟ କ୍ଷତି ବା ଅହିତ ହୋଇଯାଇପାରେ। ଏହି କଥା ବୁଝାଇ ତୁଳସୀ ଦାସଙ୍କ 'ରାମଚରିତ ମାନସ'ରେ ଭଗବାନ ଶଙ୍କର ପାର୍ବତୀଙ୍କୁ କହିଛନ୍ତି—

**ଉମା କେ ରାମଚରନରତ ବିଗତକାମମଦକ୍ରୋଧ।**
**ନିଜ ପ୍ରଭୁମୟ ଦେଖହିଂ ଜଗତ କେହି ସନ କରହିଂ ବିରୋଧ॥**

ଅର୍ଥାତ୍ ଉମା ! ଯେ ରାମଚରଣେ ହୋଇଥାନ୍ତି ରତ।
କାମ, କ୍ରୋଧ, ମଦଠାରୁ ହୋଇଣ ବିରତ॥
ସେ ତ ନିଜ ପ୍ରଭୁମୟ ଦେଖନ୍ତି ଜଗତ।
ସେ କିମ୍ପା ହୋଇବେ କାହାଠୁଲେ କଳିରତ ?॥

**ପ୍ରଶ୍ନ—** ଏଠାରେ 'ସକଳ ପ୍ରକାରେ କ୍ରିୟା କରୁଥିଲେ ମଧ୍ୟ ----' ଆଦି ବାକ୍ୟର ଅର୍ଥ ଯଦି 'ସେ ଭଲ-ମନ୍ଦ, ପାପ-ପୁଣ୍ୟ ସବୁ କିଛି କରି ମଧ୍ୟ ମୋସହିତ ହିଁ କରୁଥାନ୍ତି ବୋଲି ଧରାଯାଏ, ତେବେ ଆପତ୍ତି କଣ ?

**ଉତ୍ତର—** ଏପରି ଅର୍ଥକୁ ସ୍ୱୀକାର କରିହେବ ନାହିଁ; କାରଣ ଏପରି ଭଗବତ୍‌ପ୍ରାପ୍ତ ମହାତ୍ମା ପୁରୁଷଙ୍କ ଦ୍ୱାରା ପାପକର୍ମ ହୋଇ ହିଁ ନ ପାରେ। ଭଗବାନ୍ ସ୍ପଷ୍ଟ କହିଛନ୍ତି ଯେ, 'ମହାପାପୀ କାମ ହିଁ ସମସ୍ତ ଅନର୍ଥର ମୂଳ କାରଣ।' (୩/୩୭) ଓ 'ଏହି କାମନାର ଉତ୍ପତ୍ତି ଆସକ୍ତିରୁ ହୁଏ (୨/୬୨) ଏବଂ ପରମାତ୍ମାଙ୍କ ସାକ୍ଷାତ୍‌କାର ହୋଇଯିବା ପରେ ଏହି ରସରୂପୀ ଆସକ୍ତି ସର୍ବଥା ଲୋପ ପାଇଯାଏ (୨/୫୯)। ଏପରି ଅବସ୍ଥାରେ ଭଗବତ୍‌ପ୍ରାପ୍ତ ପୁରୁଷଙ୍କ ଦ୍ୱାରା ନିଷିଦ୍ଧକର୍ମ ହେବା କଦାପି ସମ୍ଭବ ନୁହେଁ। ଏହା ଛଡ଼ା ଭଗବାନଙ୍କର ଏ ଯେଉଁ ବଚନ, ଯଥା, 'ଶ୍ରେଷ୍ଠପୁରୁଷ (ଜ୍ଞାନୀ) ଯେପରି ଆଚରଣ କରନ୍ତି, ଅନ୍ୟାନ୍ୟ ଲୋକମାନେ ମଧ୍ୟ ତାହା ଅନୁସରଣ କରନ୍ତି' (୩/୨୧); —ଏହାଦ୍ୱାରା ଜ୍ଞାନୀଙ୍କ ଉପରେ ସ୍ୱାଭାବିକ ହିଁ ଏକ ଦାୟିତ୍ୱ ଆସିଯାଏ। ଏହି କାରଣରୁ ମଧ୍ୟ ତାଙ୍କ ଦ୍ୱାରା ପାପକର୍ମ ହେବା ସମ୍ଭବ ନୁହେଁ।

**ସମ୍ବନ୍ଧ—** ଏପରିଭାବରେ ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ପୁରୁଷଙ୍କ ମହତ୍ତ୍ୱ ପ୍ରତିପାଦନ କରିସାରି ବର୍ତ୍ତମାନ ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କୁ ପାଇଥିବା ପୁରୁଷଙ୍କ ସମତ୍ୱଦର୍ଶନ ଓ ମହତ୍ତ୍ୱର ପ୍ରତିପାଦନ କରୁଛନ୍ତି—

## ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।
## ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ॥ ୩୨ ॥

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ; **ଯଃ** = ଯେଉଁ ଯୋଗୀ; **ଆତ୍ମୌପମ୍ୟେନ** = ନିଜପରି; **ସର୍ବତ୍ର** = ସମସ୍ତ ଭୂତଙ୍କ ଠାରେ; **ସମମ**= ସମ; **ପଶ୍ୟତି** = ଦେଖନ୍ତି; **ବା** = ଓ; **ସୁଖମ୍** = ସୁଖ; **ଯଦି**, **ବା** = ଅଥବା; **ଦୁଃଖମ୍** = ଦୁଃଖକୁ (ମଧ୍ୟ ସମସ୍ତଙ୍କଠାରେ ସମ ଦେଖେ); **ସଃ** = ସେହି; **ଯୋଗୀ** = ଯୋଗୀ; **ପରମଃ** = ଶ୍ରେଷ୍ଠତମ (ବୋଲି); **ମତଃ** = ସ୍ୱୀକାର କରାଯାଏ।

**ହେ ଅର୍ଜୁନ ! ସକଳଭୂତରେ ଆତ୍ମଭାବ ହୋଇଯିବାରୁ ଯେଉଁ ଯୋଗୀ ସମସ୍ତଙ୍କୁ ନିଜପରି ସମଭାବରେ ଦେଖନ୍ତି ଏବଂ ସମସ୍ତଙ୍କର ସୁଖଦୁଃଖକୁ ବି ନିଜର ସୁଖଦୁଃଖସମାନ ଦେଖନ୍ତି, ତାଙ୍କୁ ପରମ ଶ୍ରେଷ୍ଠ ବୋଲି ସ୍ୱୀକାର କରାଯାଏ॥ ୩୨ ॥**

**ପ୍ରଶ୍ନ –** ସମସ୍ତ ଭୂତଙ୍କୁ ନିଜପରି ସମଭାବରେ ଦେଖିବା କଣ ?

**ଉତ୍ତର –** ମନୁଷ୍ୟ ଯେପରି ନିଜର ସମସ୍ତ ଅଙ୍ଗରେ ନିଜ ଆତ୍ମାକୁ ସମାନଭାବରେ ଦେଖେ, ସେହିପରି ହିଁ ସମସ୍ତ ଚରାଚର ସଂସାରରେ ଆତ୍ମଭାବ ରଖି ସମସ୍ତ ପ୍ରାଣୀଙ୍କୁ ନିଜପରି ଦେଖିବା ହିଁ ସମସ୍ତଭୂତଙ୍କୁ ସମଭାବରେ ଦେଖିବା ।

**ପ୍ରଶ୍ନ –** ଚରାଚର ସମସ୍ତ ଜଗତରେ ସମସ୍ତଙ୍କ ସୁଖଦୁଃଖକୁ ନିଜ ସୁଖଦୁଃଖ ସମାନ ଦେଖିବା କଣ ?

**ଉତ୍ତର –** ନିଜର ସମସ୍ତ ଅଙ୍ଗମାନଙ୍କରେ ଆତ୍ମଭାବ ସମାନ ରହିଥିବାରୁ ମନୁଷ୍ୟ ଯେପରି ସେଥିରେ ହେଉଥିବା ସୁଖ-ଦୁଃଖକୁ ସମାନଭାବରେ ଦେଖେ, ସମସ୍ତ ଚରାଚର ସଂସାର ପ୍ରତି ସମାନ ଆତ୍ମଭାବ ହୋଇଯିବାରୁ ସେହିପରି ସେମାନଙ୍କ ଠାରେ ପ୍ରତୀତ ହେଉଥିବା ସୁଖ-ଦୁଃଖକୁ ନିଜର ସୁଖଦୁଃଖ ସମାନ ଦେଖିବା ହିଁ ସମସ୍ତଙ୍କ ସୁଖ-ଦୁଃଖକୁ ନିଜ ସୁଖଦୁଃଖପରି ଦେଖିବା । ଅଭିପ୍ରାୟ ଏହି ଯେ, ସର୍ବତ୍ର ଆତ୍ମଦୃଷ୍ଟି ହୋଇଯିବାରୁ, ସମସ୍ତ ବିରାଟ ବିଶ୍ୱ ସେହି ଯୋଗୀଙ୍କର ସ୍ୱରୂପ ହୋଇଯାଏ; ଜଗତରେ ତାଙ୍କ ପାଇଁ ପର ବୋଲି କିଛି ରହେ ନାହିଁ । ମନୁଷ୍ୟ ନିଜେ ନିଜକୁ କେବେ କିଛି ବି ଦୁଃଖ ଦେବାକୁ ଚାହେଁ ନାହିଁ ତଥା ସ୍ୱଭାବତଃ ନିରନ୍ତର ସୁଖ ପାଇବା ପାଇଁ ହିଁ ଅକ୍ଳାନ୍ତ ଚେଷ୍ଟା କରେ । ଏପରି କରି ସେ କେବେ ବି ନିଜେ ନିଜ ପ୍ରତି କୃପା କରିଛି ଭାବି ତା' ବଦଳରେ କୃତଜ୍ଞତା ଆଶା କରେ ନାହିଁ, କି କୌଣସି ସହାନୁଭୂତି ଦେଖାଏ ନାହିଁ, କି ନିଜକୁ 'କର୍ତ୍ତବ୍ୟପରାୟଣ' ବୋଲି ମନେ କରି ଅଭିମାନ କରେ ନାହିଁ । ସେ ନିଜର ସୁଖପାଇଁ ଚେଷ୍ଟା ନ କରି ରହିପାରେ ନାହିଁ ବୋଲି ସେପରି ଚେଷ୍ଟା କରେ; ତାହା ହିଁ ତାହାର ସହଜସ୍ୱଭାବ । ଠିକ୍ ସେହିପରି ସେହି ଯୋଗୀ ସମସ୍ତ ବିଶ୍ୱକୁ କେବେ କୌଣସିପ୍ରକାର ବି ଦୁଃଖ ନ ଦେଇ ସଦା ବିଶ୍ୱର ସୁଖପାଇଁ ସହଜ-ସ୍ୱଭାବବଶତଃ ହିଁ ଚେଷ୍ଟା କରନ୍ତି ।

(ପାଶ୍ଚାତ୍ୟ ଜଗତରେ 'ସଂସାରର ସମସ୍ତ ଲୋକ ନିଜକୁ ପରସ୍ପର ଭାଇ ଭାଇ ବୋଲି ମନେ କରନ୍ତୁ' ବୋଲି ଯେଉଁ 'ବିଶ୍ୱ-ବନ୍ଧୁତ୍ୱ'ର ସିଦ୍ଧାନ୍ତ ରହିଛି, ତାହାକୁ ବହୁତ ଶ୍ରେଷ୍ଠ ମନେ କରାଯାଏ ଓ ପ୍ରକୃତରେ ଏହା ଶ୍ରେଷ୍ଠ । ତଥାପି ଭାଇ-ଭାଇ ମଧ୍ୟରେ ସ୍ୱାର୍ଥର ଭିନ୍ନତା-ଯୋଗୁଁ କୌଣସି ନା କୌଣସିରୂପରେ କଳହ ହେବାର ସମ୍ଭାବନା ଥାଏ । କିନ୍ତୁ ଯେଉଁଠି ଆତ୍ମଭାବ ରହିଛି, ଅର୍ଥାତ୍ ଭାବ ରହିଛି ଯେ, 'ସେ ହିଁ ମୁଁ ଅଟେ', ସେଠାରେ ସ୍ୱାର୍ଥଭେଦ ରହି ନ ପାରେ ଓ ସ୍ୱାର୍ଥଭେଦ ନ ଥିବାରୁ ପରସ୍ପର କଳହର କୌଣସି ଆଶଙ୍କା ବି ରହି ନ ପାରେ । ଏହିସବୁ ସିଦ୍ଧାନ୍ତଯୋଗୁଁ ଗୀତାର ଶିକ୍ଷାକୁ ଆଜି ପାଶ୍ଚାତ୍ୟ ଜଗତର ବିଦ୍ୱାନମାନେ ମଧ୍ୟ ସବୁଠାରୁ ଶ୍ରେଷ୍ଠ ବୋଲି ମାନିଲେଣି ।')

**ପ୍ରଶ୍ନ –** ଏପରି ପରମାତ୍ମପ୍ରାପ୍ତ ଯୋଗୀ ମହାପୁରୁଷଙ୍କୁ ସମସ୍ତ ଚରାଚର ଜଗତର ସୁଖଦୁଃଖର ଅନୁଭବ ହୁଏ, ନା କେବଳ ପ୍ରତୀତିମାତ୍ର ହୁଏ ?

**ଉତ୍ତର –** ଅନୁଭବ ହୁଏ ବୋଲି କହିହେବ ନାହିଁ, କି ପ୍ରତୀତି ହୁଏ ବୋଲି କହିହେବ ନାହିଁ । ଯଦି ତାହାଙ୍କ ଦୃଷ୍ଟିରେ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁର ଅସ୍ତିତ୍ୱ ହିଁ ନାହିଁ, ତେବେ ଅନ୍ୟ ଅନୁଭବର କଥା ଆସିବ କିପରି ? ଓ ଯଦି କେବଳ ପ୍ରତୀତି ହିଁ ହୁଅନ୍ତା, ତା'ହେଲେ ଦୁଃଖ ନ ଦେବା ଓ ସୁଖ ଦେବାକୁ ତାଙ୍କ ଦ୍ୱାରା ଚେଷ୍ଟା ବା ହୁଅନ୍ତା କିପରି ? ଅତଏବ ସେହି ସମୟରେ ତାଙ୍କର ପ୍ରକୃତରେ କି ଭାବ ଓ କିପରି ଦୃଷ୍ଟି ହୁଏ, ତାହା କେବଳ ସେ ହିଁ ଜାଣନ୍ତି । ତାଙ୍କର ଭାବ ଓ ଦୃଷ୍ଟିକୋଣକୁ ଭାଷାରେ ବ୍ୟକ୍ତ କରାଯାଇପାରେ ନା । ତଥାପି ବୁଝିବାପାଇଁ କୁହାଯାଇପାରେ ଯେ, ତାଙ୍କୁ ପରମାତ୍ମାଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁର କେବେ ବି ଅନୁଭବ ହୁଏ ନାହିଁ । ଲୋକଦୃଷ୍ଟିରୁ କେବଳ ପ୍ରତୀତିମାତ୍ର ହୁଏ; ତଥାପି ତାଙ୍କ କାର୍ଯ୍ୟ ଅତ୍ୟନ୍ତ ଉତ୍ତମ, ସୁଶୃଙ୍ଖଳ ଓ ସୁବ୍ୟବସ୍ଥିତ ହୁଏ ।

**ପ୍ରଶ୍ନ –** ଯଦି ବାସ୍ତବରେ ଅନୁଭବ ହୁଏ ନାହିଁ, ତେବେ ଲୋକଦୃଷ୍ଟିରେ ପ୍ରତୀତ ହେଉଥିବା ଦୁଃଖର ନିବୃତ୍ତିପାଇଁ ତାଙ୍କ ଦ୍ୱାରା ଚେଷ୍ଟା କିପରି ହୁଏ ?

**ଉତ୍ତର –** ଏହା ତ ତାଙ୍କର ବିଶେଷତ୍ୱ । କାର୍ଯ୍ୟର ସମ୍ପାଦନ ଅତି ଉତ୍ତମରୂପରେ ହୁଏ, କିନ୍ତୁ ତାଙ୍କ ପାଇଁ ଯଥାର୍ଥରେ ସେସବୁ କାର୍ଯ୍ୟର ସତ୍ତା ହିଁ ନ ଥାଏ, କି ତାଙ୍କର ସେସବୁରେ କିଛି ପ୍ରୟୋଜନ ନ ଥାଏ । ତଥାପି ସ୍ଥୂଳରୂପରେ ବୁଝିବାପାଇଁ କୁହାଯାଇପାରେ ଯେ, ଛୋଟ ପିଲାମାନେ ଖେଳୁ ଖେଳୁ ତୁଚ୍ଛ ଓ ନଗଣ୍ୟ ଗୋଡ଼ି, ପଥର ଢେଲା ଅଥବା ପାଳକୁଟା ଖଣ୍ଡିଏପାଇଁ ପରସ୍ପର ଯେପରି ଝଗଡ଼ା କରନ୍ତି ଓ ଅଜ୍ଞାନବଶତଃ

ଏକ ଆରେକକୁ ଆଘାତ କରି ଦୁଃଖୀ ହୁଅନ୍ତି ତଥା ସେମାନଙ୍କର ସେହି କଳହ ସର୍ବଥା ବ୍ୟର୍ଥ ଓ ତୁଚ୍ଛ ବୋଲି ଜାଣିଥିଲେ ମଧ୍ୟ ବୁଦ୍ଧିମାନ୍ ପୁରୁଷମାନେ ଯେପରି ମଧ୍ୟସ୍ଥତା କରି ସେମାନଙ୍କୁ ବୁଝାଇସୁଝାଇ, ସେମାନଙ୍କ ଭିତରୁ ପ୍ରତ୍ୟେକର କଥା ଶୁଣି ସମସ୍ତଙ୍କ ଦୁଃଖନିବୃତ୍ତିପାଇଁ ବିଶେଷ ବୁଦ୍ଧିମତ୍ତାର ସହିତ ଚେଷ୍ଟା କରନ୍ତି, ପରମାତ୍ମପ୍ରାପ୍ତ ଯୋଗୀପୁରୁଷ ସେହିପରି ଦୁଃଖରେ ପଡ଼ିଥିବା ବିଶ୍ୱର ଦୁଃଖନିବୃତ୍ତିପାଇଁ ଚେଷ୍ଟା କରନ୍ତି। ଯେଉଁ ମହାପୁରୁଷମାନଙ୍କର ଜଗତର ଧନ, ମାନ, ପ୍ରତିଷ୍ଠା, କୀର୍ତ୍ତି ଆଦି କୌଣସି ବି ବସ୍ତୁରେ କିଛି ବି ପ୍ରୟୋଜନ ନାହିଁ, ଯାହାଙ୍କ ଦୃଷ୍ଟିରେ ଆଉ କିଛି ବି ପାଇବାକୁ ବାକି ନାହିଁ, ସେମାନଙ୍କର ଭାଷାତୀତ ସ୍ଥିତିକୁ କୌଣସି ବି ଦୃଷ୍ଟାନ୍ତଦ୍ୱାରା ବୁଝାଇଦେବା ସମ୍ଭବ ନୁହେଁ। ସେମାନଙ୍କ ପାଇଁ କୌଣସି ବି ଲୌକିକ ଦୃଷ୍ଟାନ୍ତ ପୂର୍ଣ୍ଣତଃ ପ୍ରଯୁକ୍ତ ହେବ ନାହିଁ। ଦୃଷ୍ଟାନ୍ତ ତ କୌଣସି ଏକ ଅଂଶବିଶେଷକୁ ଲକ୍ଷ୍ୟ କରାଇବାପାଇଁ ହିଁ ଦିଆଯାଇଥାଏ।

**ପ୍ରଶ୍ନ—** **ଯୋଗୀ** ସହିତ **ପରମଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** **ପରମଃ** ବିଶେଷଣ ଦେଇ ଭଗବାନ୍ ସୂଚିତ କରୁଛନ୍ତି ଯେ, ଯେଉଁ **ଯୋଗୀଙ୍କର** ବର୍ଣ୍ଣନା ହୋଇଛି, ସେ ସାଧକ ନୁହନ୍ତି, ସେ ସିଦ୍ଧଯୋଗୀ। ସ୍ମରଣ ରଖିବା ଉଚିତ ଯେ, ପରମାତ୍ମପ୍ରାପ୍ତ ପୁରୁଷଙ୍କ ଠାରେ— ସେ ଯେକୌଣସି ମାର୍ଗରେ ତାହା ପ୍ରାପ୍ତ ହୋଇଥାନ୍ତୁ ନା କାହିଁକି— 'ସମତ୍ୱଭାବ' ଅତ୍ୟନ୍ତ ଆବଶ୍ୟକ। ଭଗବାନ୍ ଯେଉଁଠି ପରମାତ୍ମାଙ୍କୁ ପାଇଥିବା ପୁରୁଷଙ୍କ ସଦ୍‌ଗୁଣ ବର୍ଣ୍ଣନା କରିଛନ୍ତି, ସେଠାରେ 'ସମତ୍ୱଭାବ'କୁ ହିଁ ପ୍ରାଧାନ୍ୟ ଦେଇଛନ୍ତି। କୌଣସି ପୁରୁଷଠାରେ ଅନ୍ୟ ସଦ୍‌ଗୁଣ ବହୁତ ଥାଇପାରେ; କିନ୍ତୁ ଯଦି 'ସମତ୍ୱଭାବ' ନ ଥାଏ, ତେବେ ବୁଝିବାକୁ ହେବ ଯେ, ତାଙ୍କୁ ଏବେ ବି ପରମାତ୍ମପ୍ରାପ୍ତି ହୋଇ ନାହିଁ; କାରଣ ସମତ୍ୱଭାବ ବିନା ରାଗଦ୍ୱେଷର ଆତ୍ୟନ୍ତିକ ଅଭାବ ହେବା ଓ ସମସ୍ତ ପ୍ରାଣୀଙ୍କ ଠାରେ ସହଜ-ସହୃଦୟତାର ଭାବ ହେବା ସମ୍ଭବ ନୁହେଁ। ଯେଉଁମାନଙ୍କୁ 'ସମତ୍ୱଭାବ' ପ୍ରାପ୍ତ ହୋଇଛି, ସେମାନେ ହିଁ ପରମାତ୍ମପ୍ରାପ୍ତ ଶ୍ରେଷ୍ଠ ଯୋଗୀ।

*ସମ୍ବନ୍ଧ— ଭଗବାନଙ୍କର ସମତ୍ୱଭାବସମ୍ବନ୍ଧୀୟ ଉପଦେଶ ଶୁଣି, ମନର ଚଞ୍ଚଳତାହେତୁ ସମତ୍ୱଭାବରେ ନିଜର ଅଟଳ ସ୍ଥିତି ଆସିବା ବହୁତ କଠିନ ବୋଲି ଭାବି ଅର୍ଜୁନ କହୁଛନ୍ତି—*

**ଅର୍ଜୁନ ଉବାଚ**

## ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ ସାମ୍ୟେନ ମଧୁସୂଦନ।
## ଏତସ୍ୟାହଂ ନ ପଶ୍ୟାମି ଚଞ୍ଚଳତ୍ୱାତ୍ ସ୍ଥିତିଂ ସ୍ଥିରାମ୍ ।। ୩୩ ।।

**ଅନ୍ୱୟ—** **ମଧୁସୂଦନ** = ହେ ମଧୁସୂଦନ; **ଯଃ** = ଯେଉଁ; **ଅୟମ୍** = ଏହି; **ଯୋଗଃ** = ଯୋଗ; **ତ୍ୱୟା** = ଆପଣଙ୍କ ଦ୍ୱାରା; **ସାମ୍ୟେନ** = ସମଭାବରେ; **ପ୍ରୋକ୍ତଃ** = କୁହାଗଲା; **ଚଞ୍ଚଳତ୍ୱାତ୍** = (ମନର) ଚଞ୍ଚଳତା ହେତୁ; **ଅହମ୍** = ମୁଁ; **ଏତସ୍ୟ** = ଏହାର; **ସ୍ଥିରାମ୍** = ନିତ୍ୟ; **ସ୍ଥିତିମ୍** = ସ୍ଥିତି; **ନ ପଶ୍ୟାମି** = ଦେଖିପାରୁ ନାହିଁ।

**ଅର୍ଜୁନ କହିଲେ — ହେ ମଧୁସୂଦନ ! ଆପଣଙ୍କ ଦ୍ୱାରା ଏହି ଯେଉଁ ସମତ୍ୱରୂପକ ଯୋଗ କୁହାଗଲା, ମନର ଚଞ୍ଚଳତାହେତୁ ମୁଁ ତାହାର ନିତ୍ୟସ୍ଥିତି ଦେଖିପାରୁ ନାହିଁ ।। ୩୩ ।।**

**ପ୍ରଶ୍ନ—** ଅୟଂ **ଯୋଗଃ**ଦ୍ୱାରା କେଉଁ 'ଯୋଗ' କୁହାଯାଇଛି ?

**ଉତ୍ତର—** କର୍ମଯୋଗ, ଭକ୍ତିଯୋଗ, ଧ୍ୟାନଯୋଗ ବା ଜ୍ଞାନଯୋଗ ଆଦି ସାଧନାର ପରାକାଷ୍ଠାରୂପକ ସମତ୍ୱଭାବକୁ ହିଁ ଏଠାରେ 'ଯୋଗ' ବୋଲି କୁହାଯାଇଛି।

**ପ୍ରଶ୍ନ—** ଏହି 'ଯୋଗ'କୁ ଏଠାରେ 'ଧ୍ୟାନଯୋଗ' ବୋଲି କାହିଁକି ମାନିନେବ ନାହିଁ? କାରଣ ମନର ଚଞ୍ଚଳତା ଧ୍ୟାନଯୋଗର ହିଁ ବାଧକ।

**ଉତ୍ତର—** ଅତେଇଶ ଶ୍ଳୋକଯାଏ ପ୍ରକରଣକୁ ଦେଖିଲେ ଏହି ଯୋଗକୁ ଧ୍ୟାନଯୋଗ ବୋଲି କହିବା ହିଁ ଠିକ୍; କିନ୍ତୁ ଏକତିରିଶ ଓ ବତିଶ ଶ୍ଳୋକରେ ଭଗବତ୍‌ପ୍ରାପ୍ତ ପୁରୁଷମାନଙ୍କର ବ୍ୟବହାରସ୍ଥିତି ହିଁ ବର୍ଣ୍ଣନା କରାଯାଇଛି ଏବଂ ଅର୍ଜୁନଙ୍କ ପ୍ରଶ୍ନ 'ସମତ୍ୱ' ଲକ୍ଷ୍ୟରେ କରାଯାଇଛି। ଏଥିରୁ ଏଠାରେ ଯୋଗର ଅର୍ଥ 'ସମତ୍ୱଯୋଗ' ବୋଲି ହିଁ ମାନିନିଆଗଲା।

**ପ୍ରଶ୍ନ –** ଏହି 'ସମତ୍ୱଭାବ'ର ସ୍ଥିରସ୍ଥିତିରେ ମନର ଚଞ୍ଚଳତାକୁ ବାଧକ ବୋଲି କାହିଁକି ମନେ କରାଯାଏ ?

**ଉତ୍ତର –** ଚିତ୍ତର ବିକ୍ଷେପକୁ 'ଚଞ୍ଚଳତା' କହନ୍ତି। ବିକ୍ଷେପର ପ୍ରଧାନ କାରଣ ହେଉଛି ରାଗ-ଦ୍ୱେଷ; ଏବଂ ଯେଉଁଠି ରାଗ-ଦ୍ୱେଷ ଅଛି, ସେଠାରେ ସମତ୍ୱ ରହିପାରିବ ନାହିଁ। କାରଣ 'ରାଗ-ଦ୍ୱେଷ' ଓ 'ସମତ୍ୱ' ପରସ୍ପର ଅତ୍ୟନ୍ତ ବିରୋଧୀ। ଏଣୁ 'ସମତ୍ୱ'ର ସ୍ଥିର ସ୍ଥିତିରେ ମନର ଚଞ୍ଚଳତାକୁ ବାଧକ ବୋଲି ମନେ କରାଯାଏ।

*ସମ୍ବନ୍ଧ –* *ସମତ୍ୱଯୋଗରେ ମନର ଚଞ୍ଚଳତାକୁ ବାଧକ ବୋଲି କହି ବର୍ତ୍ତମାନ ଅର୍ଜୁନ ମନନିଗ୍ରହ ଅତ୍ୟନ୍ତ କଠିନ ବୋଲି କହୁଛନ୍ତି–*

**ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍‌ଦୃଢ଼ମ୍।**
**ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍।। ୩୪ ।।**

**ଅନ୍ୱୟ –** **ହି** = କାରଣ; **କୃଷ୍ଣ** = ହେ ଶ୍ରୀକୃଷ୍ଣ; **ମନଃ** = (ଏହି) ମନ; **ଚଞ୍ଚଳମ୍** = ବଡ଼ ଚଞ୍ଚଳ; **ପ୍ରମାଥି** = ଇନ୍ଦ୍ରିୟକ୍ଷୋଭକାରୀ; **ଦୃଢ଼ମ୍** = ଦୃଢ଼; **ବଳବତ୍** = ବଳବାନ୍; **(ଅତଃ)** = ଏଣୁ; **ତସ୍ୟ** = ତାହାକୁ; **ନିଗ୍ରହମ୍** = ବଶ କରିବା; **ଅହମ୍** = ମୁଁ; **ବାୟୋଃ** = ବାୟୁକୁ ରୋକିବା; **ଇବ** = ପରି; **ସୁଦୁଷ୍କରମ୍** = ଅତ୍ୟନ୍ତ ଦୁଷ୍କର; **ମନ୍ୟେ** = ମନେ କରୁଛି।

**କାରଣ ହେ ଶ୍ରୀକୃଷ୍ଣ! ଏହି ମନ ବଡ଼ ଚଞ୍ଚଳ, ଇନ୍ଦ୍ରିୟବିକ୍ଷୋଭକାରୀ, ବଡ଼ ଦୃଢ଼ ଓ ବଳବାନ୍ ଅଟେ। ତେଣୁ ମୁଁ ଭାବୁଛି, ତାହାକୁ ବଶ କରିବା ବାୟୁକୁ ବଶ କରିବା ପରି ଅତ୍ୟନ୍ତ ଦୁଷ୍କର।। ୩୪ ।।**

**ପ୍ରଶ୍ନ –** ଚଞ୍ଚଳତା କଥା ତ ଅର୍ଜୁନ ଗତ ଶ୍ଳୋକରେ କହିସାରିଛନ୍ତି; ଏଠାରେ ଆଉଥରେ ତାହା କହିବାର କାରଣ କଣ ?

**ଉତ୍ତର –** ସେଠାରେ ଅର୍ଜୁନ 'ସମତ୍ୱ' ଯୋଗର ସ୍ଥିରସ୍ଥିତିରେ ମନର ଚଞ୍ଚଳତା ବାଧକ ବୋଲି କହିଥିଲେ, ତେଣୁ ତାଙ୍କୁ ସ୍ୱାଭାବିକ ରୀତିରେ କୁହାଯାଇ ପାରିଥାନ୍ତା, 'ମନକୁ ବଶ କରିନିଅ; ଚଞ୍ଚଳତା ଦୂର ହୋଇଯିବ।' କିନ୍ତୁ ମନକୁ ବଶ କରିବା ଅତ୍ୟନ୍ତ କଠିନ ବୋଲି ଅର୍ଜୁନ ଭାବୁଛନ୍ତି। ତେଣୁ ସେ ଏଠାରେ ପୁଣିଥରେ ମନକୁ ଚଞ୍ଚଳ ବୋଲି କହୁଛନ୍ତି।

**ପ୍ରଶ୍ନ –** 'ମନ' ସହିତ **ପ୍ରମାଥି** ବିଶେଷଣ ଦେବାର କାରଣ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି ଯେ, ମନ ତ ଦୀପଶିଖାପରି ଚଞ୍ଚଳ; ପୁଣି ଖୁଆପରି ପ୍ରମଥନଶୀଳ (ମନ୍ଥନଶୀଳ) ମଧ୍ୟ। ଖୁଆ ଯେପରି ଦୁଧ-ଦହି ମନ୍ଥେ, ମନ ସେହିପରି ଶରୀର ଓ ଇନ୍ଦ୍ରିୟମାନଙ୍କୁ ଅତ୍ୟନ୍ତ କ୍ଷୁବ୍ଧ କରିଦିଏ। ତେଣୁ ମନ ସହିତ **ପ୍ରମାଥି** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ –** ଦ୍ୱିତୀୟ ଅଧ୍ୟାୟର ଷାଠିଏ ଶ୍ଳୋକରେ ଇନ୍ଦ୍ରିୟମାନଙ୍କୁ ବା ମନ୍ଥନଶୀଳ କୁହାଯାଇଛି, ଏଠାରେ ମନକୁ ମନ୍ଥନଶୀଳ କହୁଛନ୍ତି। ଏହାର କାରଣ କଣ ?

**ଉତ୍ତର –** ବିଷୟସଙ୍ଗଦ୍ୱାରା ଉଭୟେ ଏକ ଅନ୍ୟକୁ କ୍ଷୁବ୍ଧ କରନ୍ତି ଏବଂ ଉଭୟେ ମିଳିଗଲେ ବୁଦ୍ଧିକୁ ମଧ୍ୟ କ୍ଷୁବ୍ଧ କରିଦିଅନ୍ତି (୨/୬୭)। ତେଣୁ ଉଭୟଙ୍କୁ **ପ୍ରମାଥି** କୁହାଯାଇଛି।

**ପ୍ରଶ୍ନ –** ମନକୁ ବଳବତ୍ କାହିଁକି କହିଛନ୍ତି ?

**ଉତ୍ତର –** କାରଣ ଏହା ସ୍ଥିର ନ ରହି ସଦା ବୁଲୁଥାଏ ଓ ଶରୀର ତଥା ଇନ୍ଦ୍ରିୟମାନଙ୍କୁ ମନ୍ଥନ କରେ; ପୁଣି ମନ ଉନ୍ମତ୍ତ ଗଜପରି ଅତ୍ୟନ୍ତ ବଳବାନ୍ ମଧ୍ୟ। ଯେପରି ବାରମ୍ବାର ଅଙ୍କୁଶ-ପ୍ରହାର ହେଲେ ମଧ୍ୟ ଅତ୍ୟନ୍ତ ପରାକ୍ରମୀ ହାତୀ ଉପରେ ତା'ର କିଛି ବି ପ୍ରଭାବ ପଡ଼େ ନାହିଁ, ସେ ଯାହା ଇଚ୍ଛା, ତାହା କରେ, ସେହିପରି ବିବେକରୂପୀ ଅଙ୍କୁଶଦ୍ୱାରା ବାରମ୍ବାର ପ୍ରହାର କଲେ ମଧ୍ୟ ଏହି ବଳବାନ୍ ମନ ବିଷୟର ଗହନ ବନରୁ ବାହାରି ଆସିବାକୁ ଚାହେଁ ନାହିଁ।

**ପ୍ରଶ୍ନ –** ମନକୁ ଦୃଢ଼ ବୋଲି କହିବାର ଭାବ କଣ ?

**ଉତ୍ତର –** ଏହି ଚଞ୍ଚଳ, ପ୍ରମାଥି ଓ ବଳବାନ୍ ମନ ଗୋଧିପରି ଅତ୍ୟନ୍ତ ଦୃଢ଼ ମଧ୍ୟ। ଏହା ଯେଉଁ ବିଷୟରେ ରମଣ କରେ, ତାହାକୁ ଏତେ ଜୋରରେ

ଧରିନିଏ ଯେ, ତା'ସହିତ ତଦାକାର ହୋଇଯାଏ। ତେଣୁ ମନକୁ 'ଦୃଢ଼' କୁହାଯାଏ।

**ପ୍ରଶ୍ନ –** 'ମୁଁ ଭାବୁଛି, ମନକୁ ବଶ କରିବା ବାୟୁକୁ ବଶ କରିବାପରି ଅତ୍ୟନ୍ତ ଦୁଷ୍କର'– ଅର୍ଜୁନଙ୍କ ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଯାହା ଏତେ ଚଞ୍ଚଳ ଓ ଦୁର୍ଦ୍ଧର୍ଷ, ସେହି ମନକୁ ବଶ କରିବା ମୋ ପକ୍ଷରେ ଅତ୍ୟନ୍ତ କଠିନ।'' ଏହି କଠିନତାକୁ ପ୍ରମାଣ କରିବାପାଇଁ ସେ ବାୟୁର ଉଦାହରଣ ଦେଇ କହୁଛନ୍ତି, ''ଶରୀରର ନିରନ୍ତର ଶ୍ୱାସପ୍ରଶ୍ୱାସରୂପୀ ବାୟୁପ୍ରବାହକୁ ଯେପରି ହଠ, ବିଚାର, ବିବେକ, ଓ ବଳ ଆଦି ସାଧନଦ୍ୱାରା ବଶ କରିବା ଅତ୍ୟନ୍ତ କଠିନ, ବିଷୟରେ ନିରନ୍ତର ବିଚରଣ କରୁଥିବା ଚଞ୍ଚଳ, ପ୍ରମଥନଶୀଳ, ବଳବାନ୍ ଓ ଦୃଢ଼ ମନକୁ ବଶ କରିବା ସେହିପରି ଦୁଷ୍କର ବୋଲି ମୁଁ ମନେ କରୁଛି।''

**ପ୍ରଶ୍ନ –** **କୃଷ୍ଣ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ଭକ୍ତଙ୍କର ଚିତ୍ତକୁ ନିଜ ଆଡ଼କୁ ଆକର୍ଷିତ କରୁଥିବାରୁ ମଧ୍ୟ ଭଗବାନଙ୍କର ନାମ **କୃଷ୍ଣ** ହୋଇଛି। ଏହି ସମ୍ବୋଧନଦ୍ୱାରା ଅର୍ଜୁନ ପ୍ରାର୍ଥନା କରୁଛନ୍ତି, ''ହେ ଭଗବନ୍! ମୋର ଏହି ମନ ବଡ଼ ହିଁ ଚଞ୍ଚଳ, ମୁଁ ଭାବୁଛି, ମୋ ଶକ୍ତିରେ ଏହାକୁ ବଶ କରିବା ଅତ୍ୟନ୍ତ କଠିନ। କିନ୍ତୁ ମନକୁ ବଳପୂର୍ବକ ନିଜ ଆଡ଼କୁ ଆକର୍ଷଣ କରିନେବା ହେଉଛି ଆପଣଙ୍କର ସ୍ୱାଭାବିକ ଗୁଣ। ତେଣୁ ଆପଣଙ୍କ ପାଇଁ ଏହା ଅତି ସହଜ। ଅତଏବ କୃପା କରି ମୋର ମନକୁ ମଧ୍ୟ ଆପଣ ଆପଣଙ୍କ ପ୍ରତି ଆକୃଷ୍ଟ କରିନିଅନ୍ତୁ।''

**ସମ୍ବନ୍ଧ –** ମନୋନିଗ୍ରହ ସମ୍ବନ୍ଧରେ ଅର୍ଜୁନଙ୍କ ଉକ୍ତିକୁ ସ୍ୱୀକାର କରି ଭଗବାନ୍ ମନକୁ ବଶ କରିବାର ଉପାୟ କହୁଛନ୍ତି –

ଶ୍ରୀଭଗବାନୁବାଚ

**ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳମ୍ ।**
**ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ* ।। ୩୫ ।।**

**ଅନ୍ୱୟ –** **ମହାବାହୋ** = ହେ ମହାବାହୁ; **ଅସଂଶୟମ୍** = ନିଃସନ୍ଦେହ; **ମନଃ** = ମନ; **ଚଳମ୍** = ଚଞ୍ଚଳ; **ଦୁର୍ନିଗ୍ରହମ୍** = (ଓ) କଷ୍ଟରେ ବଶୀଭୂତ ହୁଏ; **ତୁ** = କିନ୍ତୁ; **କୌନ୍ତେୟ** = ହେ କୁନ୍ତୀପୁତ୍ର ଅର୍ଜୁନ; **ଅଭ୍ୟାସେନ** = (ଏହା) ଅଭ୍ୟାସଦ୍ୱାରା; **ଚ** = ଓ; **ବୈରାଗ୍ୟେଣ** = ବୈରାଗ୍ୟଦ୍ୱାରା; **ଗୃହ୍ୟତେ** = ସଂଯତ ହୋଇଥାଏ।

**ଶ୍ରୀଭଗବାନ୍ କହିଲେ – ହେ ମହାବାହୁ! ମନ ଯେ ଚଞ୍ଚଳ ଓ ବଡ଼ କଷ୍ଟରେ ବଶୀଭୂତ ହୁଏ, ତାହା ନିଃସନ୍ଦେହ। କିନ୍ତୁ ହେ କୁନ୍ତୀପୁତ୍ର ଅର୍ଜୁନ! ଏହା ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ବଶୀଭୂତ ହୋଇଥାଏ ।। ୩୫ ।।**

**ପ୍ରଶ୍ନ –** ''(ନିଃସନ୍ଦେହ) ମନ ଚଞ୍ଚଳ ଓ କଷ୍ଟରେ ବଶ ହୋଇଥାଏ'' – ଭଗବାନଙ୍କର ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅର୍ଜୁନଙ୍କ ଉକ୍ତିକୁ ସମର୍ଥନ କରି ମନ ଚଞ୍ଚଳ ଓ ତା'ର ନିଗ୍ରହ କଠିନ ବୋଲି ସ୍ୱୀକାର କରୁଛନ୍ତି।

**ପ୍ରଶ୍ନ –** ଏଠାରେ **ତୁ** ର ଭାବ କଣ ?

**ଉତ୍ତର –** ଯଦ୍ୟପି ମନ ବଶ ହେବା ବଡ଼ କଠିନ, ତଥାପି ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଏହା ସହଜରେ ବଶୀଭୂତ ହୋଇପାରେ। ଏହା ଦେଖାଇବାକୁ ଓ ଆଶ୍ୱାସନା ଦେବାକୁ **ତୁ** ପ୍ରୟୋଗ କରାଯାଇଛି।

---

* ଠିକ୍ ଏହି ଆଶୟର ସୂତ୍ର ପାତଞ୍ଜଳଯୋଗଦର୍ଶନରେ ରହିଛି –
'ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ' (୧/୧୨) – 'ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଚିତ୍ତବୃତ୍ତିମାନଙ୍କୁ ନିରୋଧ କରାଯାଏ।'

**ପ୍ରଶ୍ନ –** ଅଭ୍ୟାସ କଣ ?

**ଉତ୍ତର –** ମନକୁ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ତଦାକାର କରିବାପାଇଁ, ଅନ୍ୟ ବିଷୟରୁ ଟାଣିଆଣି ବାରମ୍ବାର ସେହି ବିଷୟରେ ଲଗାଇବାର ପ୍ରଯତ୍ନକୁ ଅଭ୍ୟାସ କୁହାଯାଏ । ଏହା ପରମାତ୍ମାଙ୍କ ଠାରେ ମନ ଲଗାଇବା ପ୍ରସଙ୍ଗ । ଅତଏବ ପରମାତ୍ମାଙ୍କୁ ନିଜର ଲକ୍ଷ୍ୟ କରି ଚିତ୍ତବୃତ୍ତିର ପ୍ରବାହକୁ ବାରମ୍ବାର ତାଙ୍କ ଠାରେ ଲଗାଇବାର ପ୍ରଯତ୍ନକୁ ଏଠାରେ **ଅଭ୍ୟାସ** ବୋଲି କୁହାଯାଇଛି ।[1]

**ପ୍ରଶ୍ନ –** ଚିତ୍ତବୃତ୍ତିମାନଙ୍କୁ ପରମାତ୍ମାଙ୍କ ଠାରେ ଲଗାଇବାକୁ କିପରି ଅଭ୍ୟାସ କରିବା ଉଚିତ ?

**ଉତ୍ତର –** ପରମାତ୍ମା ହିଁ ସର୍ବୋପରି ସର୍ବଶକ୍ତିମାନ୍, ସର୍ବେଶ୍ୱର ଓ ସବୁଠାରୁ ବଡ଼ ଏକମାତ୍ର ପରମତତ୍ତ୍ୱ ଏବଂ ତାହାଙ୍କୁ ପାଇବା ହିଁ ଜୀବନର ପରମ ଲକ୍ଷ୍ୟ — ଏପରି ଦୃଢ଼ଧାରଣା ରଖି ଅଭ୍ୟାସ କରିବା ଉଚିତ । ଶାସ୍ତ୍ରରେ ଅଭ୍ୟାସ କରିବାର ବିଭିନ୍ନ ଉପାୟ କୁହାଯାଇଛି । ସେଥିମଧ୍ୟରୁ ଏଠାରେ କେତୋଟି ଉପାୟ ଦିଆଗଲା —

(୧) ଶ୍ରଦ୍ଧା ଓ ଭକ୍ତିର ସହିତ ଧୈର୍ଯ୍ୟଯୁକ୍ତ ବୁଦ୍ଧି ସାହାଯ୍ୟରେ ମନକୁ ବାରମ୍ବାର ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଲଗାଇବାକୁ ଯତ୍ନ କରିବା (୬/୨୬) ।

(୨) ମନ ଯେଉଁଠିକି ଯିବ, ସେଠାରେ ନିଜର ସର୍ବଶକ୍ତିମାନ୍ ଇଷ୍ଟଦେବଙ୍କ ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପ ଚିନ୍ତନ କରିବା ।

(୩) ଭଗବାନଙ୍କର ମାନସପୂଜା ଅଭ୍ୟାସ କରିବା ।

(୪) ବାଣୀ, ଶ୍ୱାସ, ନାଡ଼ୀ, କଣ୍ଠ ଓ ମନ ଆଦି ମଧ୍ୟରୁ ଯେକୌଣସିଟି ଦ୍ୱାରା ଶ୍ରୀରାମ, ଶ୍ରୀକୃଷ୍ଣ, ଶିବ, ବିଷ୍ଣୁ, ସୂର୍ଯ୍ୟ, ଶକ୍ତି ଆଦିଙ୍କ ମଧ୍ୟରୁ ନିଜର ପରମ ଇଷ୍ଟଦେବଙ୍କ ନାମକୁ ପରମ ପ୍ରେମ ଓ ଶ୍ରଦ୍ଧାର ସହିତ ପରବ୍ରହ୍ମ ପରମାତ୍ମାଙ୍କର ହିଁ ନାମ ବୋଲି ବୁଝି ନିଷ୍କାମଭାବରେ ନିରନ୍ତର ଜପ କରିବା ।

(୫) ଶାସ୍ତ୍ରମାନଙ୍କରେ ଦିଆଯାଇଥିବା ଭଗବତ୍‌ସମ୍ବନ୍ଧୀ ଉପଦେଶାବଳୀ ଶ୍ରଦ୍ଧା ଓ ଭକ୍ତିର ସହିତ ବାରମ୍ବାର ମନନ କରିବା ଓ ସେହି ଅନୁସାରେ ପ୍ରଯତ୍ନ କରିବା ।

(୬) ଭଗବତ୍‌ପ୍ରାପ୍ତ ମହାତ୍ମା ପୁରୁଷମାନଙ୍କ ସଙ୍ଗ ଲାଭ କରି ସେମାନଙ୍କର ଅମୃତମୟ ବଚନକୁ ଶ୍ରଦ୍ଧା-ଭକ୍ତିପୂର୍ବକ ଶୁଣିବା ଓ ତଦନୁସାରେ ଚଳିବାକୁ ଚେଷ୍ଟା କରିବା (୧୩/୨୫) ।

(୭) ମନର ଚଞ୍ଚଳତା ନଷ୍ଟ ହୋଇ ତାହା ଭଗବାନଙ୍କ ଠାରେ ହିଁ ଲାଗିଯାଉ ବୋଲି ହୃଦୟରେ ପ୍ରକୃତ କାତରଭାବରେ ବାରମ୍ବାର ଭଗବାନଙ୍କୁ ପ୍ରାର୍ଥନା କରିବା ।

ଏସବୁ ବ୍ୟତୀତ ଆହୁରି ବି ଅନେକ ଉପାୟ ରହିଛି, କିନ୍ତୁ ଏତିକି ସ୍ମରଣ ରଖିବା ଉଚିତ ଯେ, ଅଭ୍ୟାସ ଯାଇ ସେତେବେଳେ ସଫଳ ହେବ,[2] ଯେତେବେଳେ ତାହା ଅତ୍ୟନ୍ତ ପ୍ରେମର ସହିତ ଶ୍ରଦ୍ଧା ଓ ବିଶ୍ୱାସପୂର୍ବକ ଅବିରାମଭାବରେ ଦୀର୍ଘ ସମୟପର୍ଯ୍ୟନ୍ତ ଅଭ୍ୟାସ କରାଯିବ । ଆଜି ଗୋଟିଏ ସାଧନାରେ ମନ ଲଗାଇବାକୁ ଚେଷ୍ଟା କରି କାଲି ଅନ୍ୟପ୍ରକାର ସାଧନାରେ, ପୁଣି କିଛି ଦିନ ପରେ ଆଉ କିଛି କରିବାରେ ଲାଗିଗଲେ, କୌଣସିଥିରେ ହେଲେ ବିଶ୍ୱାସ ନ ରଖି ଆଜି କଲେ, କାଲି ନାହିଁ; ଦୁଇ ଚାରି ଦିନ ପରେ ପୁଣି କରି ପୁଣି ଛାଡ଼ିଦେଲେ, ଅଥବା କିଛି ସମୟ କରିବା ପରେ ମନ ଡାଙ୍ଗିଗଲା ଏବଂ ଧୈର୍ଯ୍ୟଚ୍ୟୁତି ଘଟିଲା ବୋଲି ତାହା ଛାଡ଼ିଦେଲେ — ଏପରି ଅଭ୍ୟାସଦ୍ୱାରା କୌଣସି ସଫଳତା ମିଳେ ନାହିଁ ।

**ପ୍ରଶ୍ନ –** ବୈରାଗ୍ୟର ସ୍ୱରୂପ କଣ ?

**ଉତ୍ତର –** ଇହଲୋକ ଓ ପରଲୋକର ସମସ୍ତ ପଦାର୍ଥରେ ଯେତେବେଳେ ଆସକ୍ତି ଓ ସମସ୍ତ କାମନାର ସର୍ବଥା ଅଭାବ ହୋଇଯାଏ, ସେତେବେଳେ ତାହାକୁ ବୈରାଗ୍ୟ କହନ୍ତି ।[3] ବୈରାଗ୍ୟବାନ୍ ପୁରୁଷଙ୍କ

---

୧ **ତତ୍ର ସ୍ଥିତୌ ଯତ୍ନୋଽଭ୍ୟାସଃ** (ପା. ଯୋଗଦର୍ଶନ ୧/୧୩) । ଅର୍ଥାତ୍ 'ସେହି ସ୍ଥିତିରେ ଚିତ୍ତକୁ ସ୍ଥିର କରିବା ନିମନ୍ତେ ପ୍ରଯତ୍ନ କରିବା ଉପାୟର ନାମ ଅଭ୍ୟାସ ।'

୨ **'ସ ତୁ ଦୀର୍ଘକାଳନୈରନ୍ତର୍ଯସତ୍କାରାସେବିତୋ ଦୃଢ଼ଭୂମିଃ ।'** (ଯୋଗଦର୍ଶନ ୧/୧୪)

ଅର୍ଥାତ୍ 'କିନ୍ତୁ ଦୀର୍ଘକାଳ ଧରି ନିରନ୍ତର ତଥା ନିଷ୍ଠାପୂର୍ବକ ଅଭ୍ୟାସ କଲେ ହିଁ ଅଭ୍ୟାସର ମୂଳଦୁଆ ଦୃଢ଼ ହୁଏ ।'

୩ ବୈରାଗ୍ୟର ଏହା ସହିତ ପ୍ରାୟ ଏକ ସମାନ ବ୍ୟାଖ୍ୟା ମହର୍ଷି ପତଞ୍ଜଳିଙ୍କ ଯୋଗଦର୍ଶନରେ ରହିଛି –

**''ଦୃଷ୍ଟାନୁଶ୍ରବିକବିଷୟବିତୃଷ୍ଣସ୍ୟ ବଶୀକାରସଂଜ୍ଞା ବୈରାଗ୍ୟମ୍''** (୧/୧୫)

ଅର୍ଥାତ୍ 'ସ୍ତ୍ରୀ, ଧନ, ଭବନ, ମାନ, ବଡ଼ିମା ଆଦି ଇହଲୋକର ଓ ସ୍ୱର୍ଗାଦି ପରଲୋକର ସକଳ ବିଷୟରେ ତୃଷ୍ଣାରହିତ ହୋଇଥିବା ଚିତ୍ତର ଯେଉଁ ବଶୀକାର ଅବସ୍ଥା ଆସେ, ତାହାର ନାମ 'ବୈରାଗ୍ୟ' ।

**''ତତ୍ପରଂ ପୁରୁଷଖ୍ୟାତେର୍ଗୁଣବୈତୃଷ୍ଣ୍ୟମ୍ ।''** (୧/୧୬)

ପ୍ରକୃତିଠାରୁ ଅତ୍ୟନ୍ତ ବିଲକ୍ଷଣ ହୋଇ ଯେଉଁ ପୁରୁଷ ଅଛନ୍ତି, ତାଙ୍କ ବିଷୟରେ ଜ୍ଞାନ ହୋଇଗଲେ ତିନିଗୁଣ ପ୍ରତି ତୃଷ୍ଣାର ଯେଉଁ ଅଭାବ ହୁଏ, ସେହି ଅଭାବକୁ ପରବୈରାଗ୍ୟ ବା ସର୍ବୋତ୍ତମ ବୈରାଗ୍ୟ କୁହାଯାଏ ।

ଚିତ୍ତରେ କି ସୁଖ, କି ଦୁଃଖ, କାହାରି ଦ୍ୱାରା ବି କୌଣସି ବିଶେଷ ବିକାର ଜାତ ହୁଏ ନାହିଁ। ସେ ସେହି ଅଚଳ ଓ ଅଟଳ ଆତ୍ୟନ୍ତିକ ଅନାସକ୍ତି ବା ପୂର୍ଣ୍ଣ ବୈରାଗ୍ୟ ପ୍ରାପ୍ତ ହୁଅନ୍ତି, ଯାହା କି କୌଣସି ବି ଅବସ୍ଥାରେ ତାଙ୍କର ଚିତ୍ତକୁ କୌଣସି ଆଡ଼କୁ ଆକର୍ଷିତ ହେବାକୁ ଦିଏ ନାହିଁ।

**ପ୍ରଶ୍ନ—** ବୈରାଗ୍ୟ କିପରି ହୋଇପାରେ ?

**ଉତ୍ତର—** ବୈରାଗ୍ୟର ଅନେକ ସାଧନା ରହିଛି; ତନ୍ମଧ୍ୟରୁ ଅଳ୍ପ କେତୋଟି ଦେଖନ୍ତୁ—

(୧) ସାଂସାରିକ ପଦାର୍ଥରେ ବିଚାରଦ୍ୱାରା ରମଣୀୟତା, ପ୍ରେମ ଓ ସୁଖର ଅଭାବ ଦେଖିବା।

(୨) ସେସବୁକୁ ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି ଆଦି ଦୁଃଖ ଓ ଦୋଷରେ ଯୁକ୍ତ, ଅନିତ୍ୟ ଓ ଭୟଦାୟକ— ବୋଲି ସ୍ୱୀକାର କରିବା।

(୩) ସଂସାରର ଓ ଭଗବାନଙ୍କର ଯଥାର୍ଥ ତତ୍ତ୍ୱ ନିରୂପଣ କରୁଥିବା ସତ୍‌ଶାସ୍ତ୍ର ଅଧ୍ୟୟନ କରିବା।

(୪) ପରମ ବୈରାଗ୍ୟବାନ୍ ପୁରୁଷମାନଙ୍କ ସଙ୍ଗ ଲାଭ କରିବା ଏବଂ ସଙ୍ଗ-ଅଭାବରେ ସେମାନଙ୍କର ବୈରାଗ୍ୟପୂର୍ଣ୍ଣ ଚିତ୍ର ଓ ଚରିତ୍ର ସ୍ମରଣ ଓ ମନନ କରିବା।

(୫) ଭାଙ୍ଗିଯାଇଥିବା ବିଶାଳ ଭବନ, ପରିତ୍ୟକ୍ତ ନଗର ଓ ଗ୍ରାମମାନଙ୍କର ଦୁରବସ୍ଥା ଦେଖି ଜଗତକୁ କ୍ଷଣଭଙ୍ଗୁର ବୋଲି ବୁଝିବା।

(୬) ଏକମାତ୍ର ବ୍ରହ୍ମଙ୍କର ଅଖଣ୍ଡ, ଅଦ୍ୱିତୀୟ ସତ୍ତା ବୋଧ କରି ଅନ୍ୟସବୁ ସତ୍ତାର ଅଭାବ ବୁଝିବା।

(୭) ଅଧିକାରୀ ପୁରୁଷଙ୍କ ଠାରୁ ଭଗବାନଙ୍କର ଅକଥନୀୟ ଗୁଣ, ପ୍ରଭାବ, ତତ୍ତ୍ୱ, ପ୍ରେମ, ରହସ୍ୟ ତଥା ତାଙ୍କ ଲୀଳା-ଚରିତର କଥା ଏବଂ ଦିବ୍ୟ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟର କଥା ବାରମ୍ବାର ଶ୍ରବଣ କରିବା, ସେସବୁକୁ ଜାଣିବା ଓ ସେଥିରେ ଶ୍ରଦ୍ଧା ରଖି ମୁଗ୍ଧ ହେବା।

ଏହିପରି ଆହୁରି ଅନେକ ସାଧନା ରହିଛି।

**ପ୍ରଶ୍ନ—** ମନକୁ ବଶ କରିବାପାଇଁ ଅଭ୍ୟାସ ଓ ବୈରାଗ୍ୟ — ଉଭୟ ସାଧନା ଆବଶ୍ୟକ, ନା ଗୋଟିଏ ସାଧନାଦ୍ୱାରା ମଧ୍ୟ ମନ ବଶ ହୋଇପାରିବ ?

**ଉତ୍ତର—** ଉଭୟର ଆବଶ୍ୟକତା ରହିଛି। 'ଅଭ୍ୟାସ' ହେଉଛି ଚିତ୍ତନଦୀର ଧାରାକୁ ଭଗବାନଙ୍କ ଆଡ଼କୁ ନେଇଯିବାର ଏକ ସୁନ୍ଦର ମାର୍ଗ ଏବଂ ବୈରାଗ୍ୟ ହେଉଛି ତା'ର ବିଷୟାଭିମୁଖୀ ଗତିକୁ ରୋଧ କରିବାର ବନ୍ଧ।

କିନ୍ତୁ ସ୍ମରଣ ରଖିବା ଉଚିତ ଯେ, ଏ ଦୁହେଁ ହେଉଛନ୍ତି ପରସ୍ପର ସହାୟକ। ଅଭ୍ୟାସଦ୍ୱାରା ବୈରାଗ୍ୟ ବୃଦ୍ଧି ପାଏ ଓ ବୈରାଗ୍ୟଦ୍ୱାରା ଅଭ୍ୟାସ ବୃଦ୍ଧି ପାଏ। ଅତଏବ ଏହି ଦୁଇଟି ମଧ୍ୟରୁ କୌଣସି ଗୋଟିକର ଆଶ୍ରୟ ବି ଭଲରୂପେ ନେଲେ ମନ ବଶ ହୋଇଯାଇପାରେ।

**ପ୍ରଶ୍ନ—** ଏଠାରେ ଅର୍ଜୁନଙ୍କୁ 'ମହାବାହୋ' ସମ୍ବୋଧନ କାହିଁକି କରାଗଲା ?

**ଉତ୍ତର—** ଅର୍ଜୁନ ଥିଲେ ବିଶ୍ୱବିଖ୍ୟାତ ବୀର। ଦେବ, ଦାନବ ଓ ମନୁଷ୍ୟ— ସବୁ ଶ୍ରେଣୀର ମହାନ୍ ଯୋଦ୍ଧାଙ୍କୁ ଅର୍ଜୁନ ନିଜର ବାହୁବଳରେ ପରାସ୍ତ କରିଥିଲେ। ଏଠାରେ ଭଗବାନ୍ ତାଙ୍କୁ ସେହି ବୀରତ୍ୱ ବିଷୟ ସ୍ମରଣ କରାଇଦେଇ ସତେ ଯେପରି ଉତ୍ସାହିତ କରୁଛନ୍ତି, "ତୁମପରି ଅତୁଳନୀୟ ପରାକ୍ରମୀ ବୀରଙ୍କ ପକ୍ଷରେ ମନକୁ ଏତେ ବଳବାନ୍ ମନେ କରି ଭୟ କରିବା ଓ ଉତ୍ସାହ ଛାଡ଼ିଦେବା ଉଚିତ ନୁହେଁ। ସାହସ ଧର; ତୁମେ ମନକୁ ଜୟ କରିପାରିବ।"

*ସମ୍ବନ୍ଧ— ଭଗବାନ୍ ମନକୁ ବଶ କରିବାର ଉପାୟ କହିଲେ; ଏଠାରେ ଜିଜ୍ଞାସା ହେଉଛି, 'ମନକୁ ଯଦି ବଶ କରା ନ ଯାଏ, ତେବେ କ୍ଷତି କଣ ?' ଏ ସମ୍ପର୍କରେ ଭଗବାନ୍ କହୁଛନ୍ତି—*

## ଅସଂଯତାତ୍ମନା ଯୋଗୋ ଦୁଷ୍ପ୍ରାପ ଇତି ମେ ମତିଃ।
## ବଶ୍ୟାତ୍ମନା ତୁ ଯତତା ଶକ୍ୟୋଽବାପ୍ତୁମୁପାୟତଃ॥ ୩୬ ॥

**ଅନ୍ୱୟ—** **ଅସଂଯତାତ୍ମନା** = ଯାହାର ମନ ସଂଯତ ହୋଇ ନାହିଁ, ତା'ଦ୍ୱାରା; **ଯୋଗଃ** = ଯୋଗ; **ଦୁଷ୍ପ୍ରାପଃ** = ଦୁଷ୍ପ୍ରାପ୍ୟ; **ତୁ** = ଏବଂ; **ବଶ୍ୟାତ୍ମନା** = ମନକୁ ବଶ କରିଥିବା; **ଯତତା** = ପ୍ରଯତ୍ନଶୀଳ ପୁରୁଷଙ୍କ ଦ୍ୱାରା; **ଉପାୟତଃ** = ସାଧନାବଳରେ; **ଅବାପ୍ତୁମ୍** = (ତାହା) ପ୍ରାପ୍ତ ହେବା; **ଶକ୍ୟଃ** = ସହଜ ଅଟେ; **ଇତି** = ବୋଲି; **ମେ** = ମୋର; **ମତିଃ** = ମତ।

**ଯାହାର ମନ ସଂଯତ ହୋଇ ନାହିଁ, ତା'ଦ୍ୱାରା ଯୋଗ ଦୁଷ୍ପ୍ରାପ୍ୟ ଓ ମନକୁ ବଶ କରିଥିବା ପ୍ରଯତ୍ନଶୀଳ ପୁରୁଷଙ୍କ ଦ୍ୱାରା ସାଧନା ବଳରେ ତାହା ପ୍ରାପ୍ତ ହେବା ସହଜ— ଏହା ମୋର ମତ ।। ୩୬ ।।**

**ପ୍ରଶ୍ନ—** ମନକୁ ସଂଯତ ନ କରିଥିବା ପୁରୁଷ ଏହି ସମତ୍ୱଯୋଗ ପ୍ରାପ୍ତ ହେବା ଅତ୍ୟନ୍ତ କଠିନ କାହିଁକି ?

**ଉତ୍ତର—** ଯେ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ନିଜ ମନକୁ ସଂଯତ କରେ ନାହିଁ, ତା'ର ମନ ଉପରେ ରାଗ-ଦ୍ୱେଷର ପ୍ରଭାବ ରହେ ଏବଂ ରାଗ-ଦ୍ୱେଷର ପ୍ରେରଣାରେ ସେ ମାଙ୍କଡ଼ପରି ସଂସାରରେ ଏଣେତେଣେ ଡେଇଁବୁଲେ। ମନ ଯଦି ଭୋଗରେ ଏତେ ଆସକ୍ତ ହେବ, ତେବେ ତା'ର ବୁଦ୍ଧି ମଧ୍ୟ ବହୁଦିଗକୁ ଧାଇଁବ ଓ ଅସ୍ଥିର ହେବ, (୨/୪୧-୪୪)। ଏପରି ଅବସ୍ଥାରେ ତାକୁ 'ସମତ୍ୱଯୋଗ' କିପରି ମିଳିବ ? ତେଣୁ ଏପରି କୁହାଯାଇଛି।

**ପ୍ରଶ୍ନ—** ବଶ ହେଲା ପରେ ମନର ଲକ୍ଷଣ କିପରି ହୁଏ ?

**ଉତ୍ତର—** ବଶ ହୋଇଯିବା ପରେ ମନର ଚଞ୍ଚଳତା, ପ୍ରମଥନଶୀଳତା, ବଳବତ୍ତା ଓ ଅତ୍ୟାଗ୍ରହକାରିତା ଦୂର ହୋଇଯାଏ। ସରଳ, ଶାନ୍ତ ଓ ନିଷ୍କପଟ ଅନୁଗତ ଶିଷ୍ୟପରି ତାହା ଏଡ଼େ ଆଜ୍ଞାକାରୀ ହୋଇଯାଏ ଯେ, ଯେତେବେଳେ ଯେଉଁଠି, ଯେତେ ସମୟଯାଏ ତାକୁ ଲଗାଯାଏ, ସେ ଚୁପ୍‌ଚାପ୍ ସେଥିରେ ଲାଗିଯାଏ ଓ ସେପରି ଲାଗିରହିବାରେ ତିଳେ ବି ଅମାନ୍ୟ କରେ ନାହିଁ, କି ଇନ୍ଦ୍ରିୟମାନଙ୍କର କଥା ଶୁଣି କେଉଁଠିକି ଯିବାକୁ ଇଚ୍ଛା କରେ ନାହିଁ, କି ସ୍ୱେଚ୍ଛାଚାରୀ ହୁଏ ନାହିଁ, କି କ୍ଲାନ୍ତ ହୁଏ ନାହିଁ; ଉପଦ୍ରବ ମଧ୍ୟ କରେ ନାହିଁ। ଅତ୍ୟନ୍ତ ଶାନ୍ତିପୂର୍ବକ ଇଷ୍ଟ ବସ୍ତୁରେ ସେ ଏତେ ମଜ୍ଜିଯାଏ ଯେ, ତା'ର ସ୍ୱତନ୍ତ୍ର ଅସ୍ତିତ୍ୱ ଅଛି କି ନାହିଁ, ସେ ଜାଣିପାରେ ନାହିଁ। ଏହା ହିଁ ପ୍ରକୃତରେ ମନ ବଶ ହେବାର ଲକ୍ଷଣ।

**ପ୍ରଶ୍ନ—** ତୁ ପ୍ରୟୋଗର ଭାବ କଣ ?

**ଉତ୍ତର—** ମନକୁ ବଶ ନ କରିଥିବା ପୁରୁଷଠାରୁ, ବଶ କରିଥିବା ପୁରୁଷର ବିଶେଷତା ଦେଖାଇବାକୁ ହିଁ ତୁ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** ମନକୁ ବଶ କରିସାରିଥିବା ପୁରୁଷଙ୍କୁ **ପ୍ରଯତ୍ନଶୀଳ** ହେବାପାଇଁ କହିବାର ଭାବ କଣ ?

**ଉତ୍ତର—** ମନ ବଶ ହୋଇଯିବା ପରେ ମଧ୍ୟ ଯଦି ପ୍ରଯତ୍ନ କରା ନ ଯାଏ ସେହି ମନକୁ ପରମାତ୍ମାଙ୍କ ଠାରେ ପୂରାପୂରି ଲଗାଇବାକୁ ତୀବ୍ର ସାଧନା କରା ନ ଯାଏ, ତେବେ ତା'ଦ୍ୱାରା ଆପେ ଆପେ ସମତ୍ୱଯୋଗ-ପ୍ରାପ୍ତି ହୁଏ ନାହିଁ। ଏଣୁ ପ୍ରଯତ୍ନର ଆବଶ୍ୟକତା ସିଦ୍ଧ କରିବାକୁ ହିଁ ଏପରି କୁହାଯାଇଛି।

**ପ୍ରଶ୍ନ—** ମନ ବଶ ହୋଇଯିବା ପରେ ସମତ୍ୱଯୋଗ-ପ୍ରାପ୍ତିର ସାଧନା କ'ଣ ?

**ଉତ୍ତର—** ଅନେକପ୍ରକାର ସାଧନା ଅଛି। ତନ୍ମଧ୍ୟରୁ କେତୋଟି ହେଲା —

(୧) କାମନା ଓ ସକଳ ବିଷୟ ତ୍ୟାଗ କରି ବିବେକ ଓ ବୈରାଗ୍ୟସମ୍ପନ୍ନ ହୋଇ, ପବିତ୍ର, ସ୍ଥିର ଓ ପରମାତ୍ମମୁଖୀ ବୁଦ୍ଧିଦ୍ୱାରା ମନକୁ ନିତ୍ୟ ନିରନ୍ତର ଚିଦ୍ଘନାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଲଗାଇ ପରମାତ୍ମାଙ୍କ ଛଡ଼ା ଅନ୍ୟ କାହାରି ଚିନ୍ତନ ନ କରିବା (୬/୨୫)।

(୨) ସକଳ ଚରାଚର ଜଗତର ବାହାର-ଭିତର, ତଳ-ଉପର, ସର୍ବତ୍ର ଏକମାତ୍ର ସର୍ବବ୍ୟାପକ ନିତ୍ୟ ଚିଦ୍ଘନାନନ୍ଦଘନ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଛନ୍ତି ବୋଲି ଦେଖିବା; ନିଜ ସହିତ ସମସ୍ତ ଦୃଶ୍ୟପ୍ରପଞ୍ଚକୁ ମଧ୍ୟ ପରମାତ୍ମାଙ୍କର ହିଁ ସ୍ୱରୂପ ବୋଲି ବୁଝିବା ଓ ଆକାଶରେ ଥିବା ମେଘର ଉପର, ତଳ, ବାହାର, ଭିତର ସର୍ବତ୍ର ଯେପରି ଏକମାତ୍ର ଆକାଶ ହିଁ ପରିପୂର୍ଣ୍ଣ ହୋଇ ରହିଥାଏ ଓ ତା'ର ଉପାଦାନକାରଣ ମଧ୍ୟ ଆକାଶ ହିଁ ଅଟେ, ନିଜ ସହିତ ଏହି ସମସ୍ତ ବ୍ରହ୍ମାଣ୍ଡ ସେହିପରି ସବୁଦିଗରୁ ପରମାତ୍ମାଙ୍କ ଦ୍ୱାରା ହିଁ ଓତପ୍ରୋତ ହୋଇ ରହିଛି ଓ ସବୁ ପରମାତ୍ମାଙ୍କର ହିଁ ସ୍ୱରୂପ ବୋଲି ବୁଝିବା (୧୩/୧୫)।

(୩) ଶରୀର, ଇନ୍ଦ୍ରିୟ ଓ ମନଦ୍ୱାରା ସଂସାରରେ ଯାହାକିଛି ବି କ୍ରିୟା ହେଉଛି, ସେସବୁ କେବଳ ଗୁଣମାନଙ୍କ ଦ୍ୱାରା ହିଁ ହେଉଛି ଅର୍ଥାତ୍ ଇନ୍ଦ୍ରିୟମାନେ ନିଜ ନିଜ ବିଷୟରେ ପ୍ରବୃତ୍ତ ହୋଇ ରହିଛନ୍ତି — ଏପରି ଜାଣି ନିଜକୁ ସେସବୁ କ୍ରିୟାଠାରୁ ସର୍ବଥା ପୃଥକ୍ ଏବଂ ଦ୍ରଷ୍ଟା-ସାକ୍ଷୀ ବୋଲି ବୁଝିବା ଓ ନିତ୍ୟ ଚିଦ୍ଘନାନନ୍ଦଘନ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ସ୍ଥିତ ହୋଇ ସମଷ୍ଟିବୁଦ୍ଧିଦ୍ୱାରା ନିଜର ସେହି ନିରାକାର ଅନନ୍ତ ଚେତନସ୍ୱରୂପର ଅନ୍ତର୍ଗତ ସଂକଳ୍ପର ଆଧାର ଉପରେ ରହିଥିବା ଦୃଶ୍ୟବର୍ଗକୁ କ୍ଷଣଭଙ୍ଗୁର ବୋଲି ଦେଖିବା (୫/୮-୯; ୧୪/୧୯)।

(୪) ଭଗବାନଙ୍କର ଶ୍ରୀରାମ, ଶ୍ରୀକୃଷ୍ଣ, ଶିବ,

ବିଷ୍ଣୁ, ସୂର୍ଯ୍ୟ, ଶକ୍ତି ବା ବିଶ୍ୱରୂପ ଆଦି ଯେକୌଣସି ବି ସ୍ୱରୂପକୁ ସର୍ବୋପରି ସର୍ବାନ୍ତର୍ଯ୍ୟାମୀ, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ୍ ଏବଂ ପରମଦୟାଳୁ, ପ୍ରେମାସ୍ପଦ ପରମାତ୍ମାଙ୍କର ହିଁ ସ୍ୱରୂପ ବୋଲି ବୁଝି, ନିଜର ରୁଚି ଅନୁସାରେ ତାଙ୍କର ଚିତ୍ରପଟ ବା ପ୍ରତିମା ସ୍ଥାପନ କରି, ଅଥବା ମନଦ୍ୱାରା ନିଜ ହୃଦୟରେ ବା ବାହାରେ ଭଗବାନଙ୍କୁ ପ୍ରତ୍ୟକ୍ଷସଦୃଶ ନିଶ୍ଚୟ କରି, ଅତିଶୟ ଶ୍ରଦ୍ଧା ଓ ଭକ୍ତିର ସହିତ ନିରନ୍ତର ତାଙ୍କଠାରେ ମନ ଲଗାଇବା ତଥା ପତ୍ର-ପୁଷ୍ପ-ଫଳାଦିଦ୍ୱାରା ଅଥବା ଅନ୍ୟାନ୍ୟ ଉଚିତ ପ୍ରଣାଳୀରେ ତାଙ୍କର ସେବାପୂଜା କରିବା ଏବଂ ତାଙ୍କର ନାମ ଜପ କରିବା।

(୫) ସିଦ୍ଧି ଓ ଅସିଦ୍ଧିରେ ସମଭାବ ରଖି, ଆସକ୍ତି ଏବଂ ଫଳ ଇଚ୍ଛା ତ୍ୟାଗ କରି ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଆଚରଣ କରିବା (୨/୪୮)।

(୬) ଶ୍ରଦ୍ଧାଭକ୍ତିପୂର୍ବକ ସବୁକିଛି ଭଗବାନଙ୍କର ବୋଲି ବୁଝି କେବଳ ଭଗବାନଙ୍କ ପାଇଁ ହିଁ ଯଜ୍ଞ, ଦାନ, ତପ ଓ ସେବା ଆଦି ଶାସ୍ତ୍ରୋକ୍ତ କର୍ମ ଆଚରଣ କରିବା (୧୨/୧୦)।

(୭) ସକଳ କର୍ମକୁ ଏବଂ ନିଜେ-ନିଜକୁ ଭଗବାନଙ୍କ ଠାରେ ଅର୍ପଣ କରିଦେଇ, ମମତ୍ୱଶୂନ୍ୟ ଓ ଆସକ୍ତିରହିତ ହୋଇ, ନିରନ୍ତର ଭଗବାନଙ୍କୁ ସ୍ମରଣ କରି, କାଠକଣ୍ଢେଇପରି ଭଗବାନ୍ ଯେପରି ଯାହା କରାଇବେ, ପ୍ରସନ୍ନତାପୂର୍ବକ ତାହା କରିଚାଲିବା (୧୮/୫୭)।

ଏସବୁ ବ୍ୟତୀତ ଆହୁରି ଅନେକ ସାଧନା ରହିଛି। ଏହି ମନକୁ ବଶ କରିବାପାଇଁ ଯେଉଁସବୁ ସାଧନା କୁହାଯାଇଛି, ମନ ବଶ ହେବା ପରେ, ଶ୍ରଦ୍ଧା ଓ ପ୍ରେମର ସହିତ ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ ସେହିସବୁ ସାଧନା କରିଚାଲିଲେ, ସେସବୁଦ୍ୱାରା ମଧ୍ୟ ସମତ୍ୱଯୋଗ ପ୍ରାପ୍ତ ହୋଇପାରେ।

*__ସମ୍ବନ୍ଧ—__ ଯୋଗସିଦ୍ଧିପାଇଁ ମନକୁ ବଶ କରିବା ପରମ ଆବଶ୍ୟକ ବୋଲି କୁହାଗଲା। ଏହା ଉପରେ ପ୍ରଶ୍ନ ହେଉଛି, 'ଯାହାଙ୍କର ମନ ବଶରେ ନାହିଁ, ଅଥଚ ଯୋଗରେ ଶ୍ରଦ୍ଧା ରହିଥିବାରୁ ଯେ ଭଗବତ୍‌ପ୍ରାପ୍ତିପାଇଁ ସାଧନା କରୁଛନ୍ତି, ମରିଯିବା ପରେ ତାଙ୍କର କେଉଁ ଗତି ହୁଏ ?' ତେଣୁ ଅର୍ଜୁନ ପଚାରୁଛନ୍ତି—*

*ଅର୍ଜୁନ ଉବାଚ*

**ଅଯତିଃ ଶ୍ରଦ୍ଧୟୋପେତୋ ଯୋଗାଚ୍ଚଳିତମାନସଃ ।**
**ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତି ।। ୩୭ ।।**

**ଅନ୍ୱୟ—** **କୃଷ୍ଣ** = ହେ ଶ୍ରୀକୃଷ୍ଣ; **ଶ୍ରଦ୍ଧୟା, ଉପେତଃ** = ଯେ ଯୋଗରେ ଶ୍ରଦ୍ଧା ରଖେ; **ଅଯତିଃ** = (କିନ୍ତୁ) ସଂଯମୀ ନୁହେଁ (ଓ ସେହି କାରଣରୁ); **ଯୋଗାତ୍‌ଚଳିତମାନସଃ** = ଅନ୍ତକାଳରେ ଯାହାଙ୍କର ମନ ଯୋଗରୁ ବିଚଳିତ ହୋଇଯାଏ (ସେପରି ସାଧକ ଯୋଗୀ); **ଯୋଗସଂସିଦ୍ଧିମ୍** = ଯୋଗ-ସିଦ୍ଧିକୁ ଅର୍ଥାତ୍ ଭଗବତ୍ ସାକ୍ଷାତ୍‌କାରକୁ; **ଅପ୍ରାପ୍ୟ** = ପ୍ରାପ୍ତ ନ ହୋଇ; **କାମ୍** = କେଉଁ; **ଗତିମ୍** = ଗତି; **ଗଚ୍ଛତି** = ପ୍ରାପ୍ତ ହୁଏ ?

**ଅର୍ଜୁନ ପଚାରିଲେ— ହେ ଶ୍ରୀକୃଷ୍ଣ! ଯେ ଯୋଗରେ ଶ୍ରଦ୍ଧା ରଖନ୍ତି କିନ୍ତୁ ସଂଯମୀ ନୁହନ୍ତି ଏବଂ ସେହି କାରଣରୁ ଯାହାଙ୍କ ମନ ଅନ୍ତକାଳରେ ଯୋଗରୁ ବିଚଳିତ ହୋଇଯାଏ, ସେପରି ସାଧକ ଯୋଗସିଦ୍ଧି ଅର୍ଥାତ୍ ଭଗବତ୍‌ସାକ୍ଷାତ୍‌କାର ପ୍ରାପ୍ତି କରି ନ ପାରି କେଉଁ ଗତି ପ୍ରାପ୍ତ ହୁଅନ୍ତି ?।। ୩୭ ।।**

**ପ୍ରଶ୍ନ—** ଏଠାରେ **ଅଯତିଃ**ର ଅର୍ଥ 'ପ୍ରଯତ୍ନରହିତ' ନ କରି 'ଅସଂଯମୀ' କାହିଁକି କରାଗଲା ?

**ଉତ୍ତର—** ଗତ ଶ୍ଳୋକରେ ଯାହାର ମନ ବଶ ହୋଇ ନାହିଁ, ସେହି 'ଅସଂଯତାତ୍ମା' ପକ୍ଷରେ ଯୋଗ ପ୍ରାପ୍ତ ହେବା କଠିନ ବୋଲି କୁହାଯାଇଛି। ସେହି କଥାଟି ହେଉଛି ଅର୍ଜୁନଙ୍କ ଏହି ପ୍ରଶ୍ନର ବୀଜ। ତା'ଛଡ଼ା ଶ୍ରଦ୍ଧାଳୁ ପୁରୁଷଙ୍କ ଦ୍ୱାରା ପ୍ରଯତ୍ନ ନ ହେବାର ଶଙ୍କା ମଧ୍ୟ ନାହିଁ। ଏପରିଭାବରେ ବଶ କରାଯାଉଥିବା ମନ ଯେ ବିଚଳିତ ହେବ, ତାହା ମଧ୍ୟ ଶଙ୍କା କରାଯାଇ ନ ପାରେ। ଏହିସବୁ କାରଣରୁ **ଅଯତିଃ**ର ଅର୍ଥ 'ପ୍ରଯତ୍ନ ନ କରୁଥିବା

ଲୋକ' ବୋଲି ନ କରି 'ଯେ ମନକୁ ଜୟ କରିପାରି ନାହିଁ' ବୋଲି ଧରାଗଲା। ତେଣୁ ଏପରି ସାଧକଙ୍କୁ ଲକ୍ଷ୍ୟ କରି 'ଅସଂଯମୀ' ଅର୍ଥ କରାଯାଇଅଛି।

**ପ୍ରଶ୍ନ –** ଏଠାରେ **ଯୋଗ** ଶବ୍ଦ କାହାର ବାଚକ? ତଦ୍ୱାରା ମନ ବିଚଳିତ ହୋଇଯିବା କଣ ଏବଂ ଶ୍ରଦ୍ଧାଯୁକ୍ତ ମନୁଷ୍ୟଙ୍କ ମନ ସେହି ଯୋଗରୁ ବିଚଳିତ ହୋଇଯାଉଥିବାର କାରଣ କଣ ?

**ଉତ୍ତର –** ଏଠାରେ **ଯୋଗ** ଶବ୍ଦ ହେଉଛି ପରମାତ୍ମପ୍ରାପ୍ତି ଉଦ୍ଦେଶ୍ୟରେ କରାଯାଉଥିବା ସାଂଖ୍ୟଯୋଗ, ଭକ୍ତିଯୋଗ, ଧ୍ୟାନଯୋଗ, କର୍ମଯୋଗ ଆଦି ସବୁ ସାଧନାରୁ ଲାଭ କରାଯାଉଥିବା ସମତ୍ୱଭାବର ବାଚକ। ଶରୀରରୁ ପ୍ରାଣ ଚାଲିଯିବା ସମୟରେ ସମତ୍ୱଭାବରୁ ବା ପରମାତ୍ମାଙ୍କ ସ୍ୱରୂପରୁ ମନ ବିଚଳିତ ହୋଇଯିବା ହିଁ ଯୋଗରୁ ମନ ବିଚଳିତ ହୋଇଯିବା। ମନର ଚଞ୍ଚଳତା, ଆସକ୍ତି, କାମନା, ଶାରୀରିକ ପୀଡ଼ା ଓ ମୂର୍ଚ୍ଛା ଆଦି ବିଭିନ୍ନ କାରଣରୁ ମନ ଏପରି ବିଚଳିତ ହୋଇଥାଏ।

**ପ୍ରଶ୍ନ – ଯୋଗସଂସିଦ୍ଧିମ୍** ପଦ କେଉଁ ସିଦ୍ଧିର ବାଚକ ଓ 'ତାହା ପ୍ରାପ୍ତ ନ ହେବା' କହିଲେ କଣ ବୁଝାଏ ?

**ଉତ୍ତର –** ପରମାତ୍ମପ୍ରାପ୍ତି ହିଁ ସବୁପ୍ରକାର ଯୋଗର ପରିଣାମରୂପକ ସମତ୍ୱଭାବର ଫଳ; ଏଠାରେ **ଯୋଗସଂସିଦ୍ଧିମ୍** ପଦଟି ହେଉଛି ସେହି ଫଳର ବାଚକ। ମରଣକାଳରେ ସମତ୍ୱଭାବରୂପକ ଯୋଗରୁ ବା ଭଗବାନଙ୍କ ସ୍ୱରୂପରୁ ମନ ବିଚଳିତ ହୋଇଯିବା ଫଳରେ ପରମାତ୍ମାଙ୍କର ସାକ୍ଷାତ୍ ନ ହେବା ହିଁ ତାଙ୍କୁ ପ୍ରାପ୍ତ ନ ହେବା।

**ପ୍ରଶ୍ନ –** ଏଠାରେ 'ଯୋଗରୁ ବିଚଳିତ ହୋଇଯିବା'ର ଅର୍ଥ 'ମୃତ୍ୟୁସମୟରେ ସମତ୍ୱରୁ ବିଚଳିତ ହୋଇଯିବା' ବୋଲି ନ ଧରି ଯଦି ଧରିନେବା ଯେ, ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ ହେଉଛି, ''ଯେଉଁ ସାଧକ କର୍ମଯୋଗ, ଧ୍ୟାନଯୋଗ ଆଦି ସାଧନା କରୁ କରୁ ସେହି ସାଧନାକୁ ଛାଡ଼ି ବିଷୟଭୋଗରେ ଲାଗିଯାଏ, ତା'ର କି ଗତି ହୁଏ?'', ତେବେ କ୍ଷତି କଣ ?

**ଉତ୍ତର –** ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେବା ସମୟରେ ଭଗବାନ୍ ମୃତ୍ୟୁର ପରବର୍ତ୍ତୀ ଗତି ବର୍ଣ୍ଣନା କରିଛନ୍ତି ଓ ସେହି ସାଧକର ଅନ୍ୟ ଜନ୍ମର କଥା କହିଛନ୍ତି। ଏଥିରୁ ଏହା ସ୍ପଷ୍ଟ ହୋଇଯାଉଛି ଯେ, ଏଠାରେ ଅର୍ଜୁନଙ୍କ ପ୍ରଶ୍ନ ମୃତ୍ୟୁକାଳୀନ ଅବସ୍ଥାସମ୍ବନ୍ଧୀୟ ହିଁ ଅଟେ। ଏହା ବ୍ୟତୀତ 'ଗତି' ଶବ୍ଦ ମଧ୍ୟ ପ୍ରାୟ ମରିବା ପରେ ହେଉଥିବା ପରିଣାମର ହିଁ ସୂଚକ। ଏହାଦ୍ୱାରା ମଧ୍ୟ ଏଠାରେ ଅନ୍ତକାଳର ପ୍ରକରଣ ଆସିଛି ବୋଲି ମାନିବା ଉଚିତ।

## କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି।
## ଅପ୍ରତିଷ୍ଠୋ ମହାବାହୋ ବିମୂଢୋ ବ୍ରହ୍ମଣଃ ପଥି।। ୩୮ ।।

ଅନ୍ୱୟ– ମହାବାହୋ = ହେ ମହାବାହୁ; କଚ୍ଚିତ୍ = କଣ (ସେହି); **ବ୍ରହ୍ମଣଃ, ପଥି** = ଭଗବତ୍‌ପ୍ରାପ୍ତି ମାର୍ଗରେ; **ବିମୂଢଃ** = ମୋହିତ (ଓ); **ଅପ୍ରତିଷ୍ଠଃ** = ଆଶ୍ରୟରହିତ ହୋଇଯାଇଥିବା ପୁରୁଷ; **ଛିନ୍ନାଭ୍ରମ୍** = ଛିନ୍ନଭିନ୍ନ ମେଘ; **ଇବ** = ପରି; **ଉଭୟବିଭ୍ରଷ୍ଟଃ** = ଉଭୟ ଦିଗରୁ ଭ୍ରଷ୍ଟ ହୋଇ; **ନ, ନଶ୍ୟତି** = ନଷ୍ଟ ହୋଇଯାଏ ନାହିଁ କି?

**ହେ ମହାବାହୋ! କ'ଣ ସେହି ଭଗବତପ୍ରାପ୍ତି-ମାର୍ଗରେ ମୋହିତ ଓ ଆଶ୍ରୟରହିତ ହୋଇଯାଇଥିବା ପୁରୁଷ ଛିନ୍ନଭିନ୍ନ ମେଘପରି ଉଭୟ ଦିଗରୁ ଭ୍ରଷ୍ଟ ହୋଇ ନଷ୍ଟ ହୋଇଯାନ୍ତି ନାହିଁ କି?।। ୩୮ ।।**

**ପ୍ରଶ୍ନ –** ଭଗବତ୍‌ପ୍ରାପ୍ତି-ମାର୍ଗରେ ମୋହିତ ହୋଇଯିବା ଏବଂ ଆଶ୍ରୟରହିତ ହୋଇଯିବା କଣ ?

**ଉତ୍ତର –** ମନର ଚଞ୍ଚଳତା ତଥା ବିବେକ ଓ ବୈରାଗ୍ୟର ଅଭାବହେତୁ ଭଗବତ୍‌ପ୍ରାପ୍ତିସାଧନାରୁ ମନ ବିଚଳିତ ହୋଇଯାଏ ଏବଂ ଫଳତଃ ପରମାତ୍ମପ୍ରାପ୍ତି ହୁଏ ନାହିଁ ତଥା ଫଳକାମନା ତ୍ୟାଗ କରିଦେବାରୁ ଶୁଭକର୍ମର ଫଳରୂପ ସ୍ୱର୍ଗାଦିଲୋକ ମିଳେ ନାହିଁ। ଏସବୁ ହିଁ ପୁରୁଷର ଭଗବତ୍‌ପ୍ରାପ୍ତି-ମାର୍ଗରେ ମୋହିତ ଏବଂ ଆଶ୍ରୟରହିତ ହୋଇଯିବା।

**ପ୍ରଶ୍ନ –** 'ଛିନ୍ନଭିନ୍ନ ମେଘପରି ଉଭୟ ଦିଗରୁ ଭ୍ରଷ୍ଟ ହୋଇ ନଷ୍ଟ ହୋଇଯିବା' କହିଲେ କଣ ବୁଝାଏ ?

**ଉତ୍ତର –** ଏଠାରେ ଅର୍ଜୁନଙ୍କ ଅଭିପ୍ରାୟ ଏହି ଯେ, ଜୀବନସାରା ଫଳଇଚ୍ଛା ତ୍ୟାଗ କରି କର୍ମ କରିବାଦ୍ୱାରା ସ୍ୱର୍ଗାଦି ଭୋଗ ତ ତା'କୁ ମିଳେ ନାହିଁ ଏବଂ ଅନ୍ତସମୟରେ

ପରମାତ୍ମପ୍ରାପ୍ତି-ସାଧନାରୁ ମନ ବିଚଳିତ ହୋଇଯିବାରୁ ଭଗବତ୍‌ପ୍ରାପ୍ତି ମଧ୍ୟ ହୁଏ ନାହିଁ। ଅତଏବ ମେଘର ଖଣ୍ଡେ ଅଂଶ ଅଲଗା ହୋଇଯିବା ପରେ ତାହା ଯେପରି ଆଉ ଅନ୍ୟ ମେଘ ସହିତ ସଂଯୁକ୍ତ ନ ହୋଇ ନଷ୍ଟଭ୍ରଷ୍ଟ ହୋଇଯାଏ, ସେହି ସାଧକ ସେହିପରି ସ୍ୱର୍ଗାଦିଲୋକ ଓ ପରମାତ୍ମା ଉଭୟର ପ୍ରାପ୍ତିରୁ ବଞ୍ଚିତ ହୋଇ ନଷ୍ଟ ହୋଇଯାଏ ନାହିଁ କି ଅର୍ଥାତ୍ ତା'ର ଅଧୋଗତି ହୁଏ ନାହିଁ କି ବୋଲି ଅର୍ଜୁନ ପ୍ରଶ୍ନ କରୁଛନ୍ତି।

*ସମ୍ବନ୍ଧ – ଏହିପରି ଶଙ୍କା ପ୍ରକାଶ କରି, ବର୍ତ୍ତମାନ ଅର୍ଜୁନ ସେଥିରୁ ନିବୃତ୍ତିପାଇଁ ଭଗବାନଙ୍କ ଠାରେ ପ୍ରାର୍ଥନା କରୁଛନ୍ତି–*

**ଏତନ୍ମେ ସଂଶୟଂ କୃଷ୍ଣ ଛେତ୍ତୁମର୍ହସ୍ୟଶେଷତଃ।**
**ତ୍ୱଦନ୍ୟଃ ସଂଶୟସ୍ୟାସ୍ୟ ଛେତ୍ତା ନ ହ୍ୟୁପପଦ୍ୟତେ॥ ୩୯ ॥**

**ଅନ୍ୱୟ –** **କୃଷ୍ଣ** = ହେ ଶ୍ରୀକୃଷ୍ଣ; **ମେ** = ମୋର; **ଏତତ୍** = ଏହି; **ସଂଶୟମ୍** = ସଂଶୟକୁ; **ଅଶେଷତଃ** = ସମ୍ପୂର୍ଣ୍ଣରୂପେ; **ଛେତ୍ତୁମ୍** = ଛେଦନ କରିବାକୁ; **ଅର୍ହସି** = ଆପଣ ହିଁ ସମର୍ଥ ଅଟନ୍ତି; **ହି** = କାରଣ; **ତ୍ୱଦନ୍ୟ** = ଆପଣଙ୍କୁ ଛାଡ଼ିଦେଲେ ଅନ୍ୟ କେହି; **ଅସ୍ୟ** = ଏହି; **ସଂଶୟସ୍ୟ** = ସଂଶୟର; **ଛେତ୍ତା** = ଛେଦନକାରୀ; **ନ, ଉପପଦ୍ୟତେ** = ମିଳିବା ସମ୍ଭବ ନୁହେଁ।

**ହେ ଶ୍ରୀକୃଷ୍ଣ ! ମୋର ଏହି ସଂଶୟ ସଂପୂର୍ଣ୍ଣରୂପେ ଛେଦନ କରିବାକୁ ଆପଣ ହିଁ ସମର୍ଥ ଅଟନ୍ତି; କାରଣ ଆପଣଙ୍କ ବ୍ୟତୀତ ଅନ୍ୟ କେହି ଏହି ସଂଶୟର ଛେଦନକାରୀ ମିଳିବା ସମ୍ଭବ ନୁହେଁ॥ ୩୯ ॥**

**ପ୍ରଶ୍ନ –** ଅର୍ଜୁନଙ୍କ ଏହି କଥାର ସ୍ପଷ୍ଟୀକରଣ କରନ୍ତୁ ?

**ଉତ୍ତର –** ଏଠାରେ ଅର୍ଜୁନ ମୃତ୍ୟୁପରବର୍ତ୍ତୀ ଗତି ବିଷୟ ଜାଣିବାକୁ ଚାହୁଁଛନ୍ତି। ଏହା ଏପରି ଏକ ରହସ୍ୟ ଯେ, ଏହାର ଉଦ୍‌ଘାଟନ କେହି ବୁଦ୍ଧି ଓ ତର୍କବଳରେ କରିପାରିବ ନାହିଁ। ଏହି ରହସ୍ୟ କେବଳ ସେହି ଜାଣିପାରିବେ, ଯେ କର୍ମର ସମସ୍ତ ଫଳ, ସୃଷ୍ଟିର ସମସ୍ତ ନିୟମ ଓ ସକଳ ଲୋକର ରହସ୍ୟ ସହିତ ପୂର୍ଣ୍ଣରୂପେ ପରିଚିତ। ଲୋକ-ଲୋକାନ୍ତରର ଦେବତା, ସର୍ବତ୍ର ବିଚରଣ କରିବାକୁ ସମର୍ଥ ଋଷି-ମୁନି ଓ ତପସ୍ୱୀ ତଥା ବିଭିନ୍ନ ଲୋକର ଘଟଣାବଳୀ ଦେଖିବା ଓ ଜାଣିବାର ସାମର୍ଥ୍ୟ ଥିବା ଯୋଗୀ ଏସବୁ କଥା କେତେକାଂଶରେ ଜାଣନ୍ତି। ପରନ୍ତୁ ସେମାନଙ୍କର ଜ୍ଞାନ ମଧ୍ୟ ସୀମିତ ହିଁ ଅଟେ। ଏହାର ପୂର୍ଣ୍ଣ ରହସ୍ୟ ତ ସମସ୍ତଙ୍କର ଏକମାତ୍ର ସ୍ୱାମୀ ସ୍ୱୟଂ ଶ୍ରୀଭଗବାନ୍ ହିଁ ଜାଣନ୍ତି। ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରଭାବ ତ ଅର୍ଜୁନ ଆଗରୁ ଜାଣିଥିଲେ। ପୁଣି ଭଗବାନ୍ ଏବେ ଏବେ ଚତୁର୍ଥ ଅଧ୍ୟାୟରେ ନିଜକୁ 'ଜନ୍ମଜନ୍ମାନ୍ତରବୃତ୍ତାନ୍ତ ଜାଣିଥିବା' (୪/୫), ଅଜନ୍ମା, ଅବିନାଶୀ ତଥା ସବୁ ପ୍ରାଣୀଙ୍କର ଈଶ୍ୱର (୪/୬), 'ଗୁଣକର୍ମାନୁସାରେ ସମସ୍ତଙ୍କର ସୃଷ୍ଟିକର୍ତ୍ତା (୪/୧୩) ଓ ପଞ୍ଚମ ଅଧ୍ୟାୟର ଶେଷରେ 'ସବୁଲୋକର ମହାନ୍ ଈଶ୍ୱର' ବୋଲି ଯାହା କହିଛନ୍ତି, ତାହା ଦ୍ୱାରା ଭଗବାନ୍ ଶ୍ରୀକୃଷ୍ଣଙ୍କର ପରମେଶ୍ୱରତ୍ୱରେ ଅର୍ଜୁନଙ୍କର ବିଶ୍ୱାସ ଆହୁରି ବଢ଼ିଯାଇଛି। ତେଣୁ ସେ କହୁଛନ୍ତି, ''ଆପଣଙ୍କ ବ୍ୟତୀତ ମୋତେ ଅନ୍ୟ କେହି ମିଳିପାରିବେ ନାହିଁ, ଯେ କି ମୋର ଏହି ସଂଶୟକୁ ପୂର୍ଣ୍ଣରୂପେ ଛେଦନ କରିପାରିବେ। ଏହି ସଂଶୟ ସମୂଳେ ନାଶ କରିଦେବାକୁ ତ ଏକମାତ୍ର ଆପଣ ହିଁ ସମର୍ଥ।'' ତେଣୁ ସେ ଭଗବାନଙ୍କ ଠାରେ ନିଜର ବିଶ୍ୱାସ ପ୍ରକଟ କରି ପ୍ରାର୍ଥନା କରୁଛନ୍ତି, ''ଆପଣ ସର୍ବାନ୍ତର୍ଯାମୀ, ସର୍ବଜ୍ଞ, ସର୍ବଶକ୍ତିମାନ୍, ସକଳ ମର୍ଯ୍ୟାଦାର ନିର୍ମାତା ଓ ନିୟନ୍ତ୍ରଣକର୍ତ୍ତା ସାକ୍ଷାତ୍ ପରମେଶ୍ୱର। ଅନନ୍ତ କୋଟି ବ୍ରହ୍ମାଣ୍ଡର ଅନନ୍ତ ଜୀବଙ୍କର ସମସ୍ତ ଗତିର ରହସ୍ୟ ଆପଣଙ୍କୁ ଜଣା ଓ ସମସ୍ତ ଲୋକ-ଲୋକାନ୍ତରର ତ୍ରିକାଳରେ ହେବାକୁ ଥିବା ସମସ୍ତ ଘଟଣା ଆପଣଙ୍କ ପାଇଁ ସଦା ହିଁ ପ୍ରତ୍ୟକ୍ଷ। ଏପରି ଅବସ୍ଥାରେ ଯୋଗଭ୍ରଷ୍ଟ ପୁରୁଷମାନଙ୍କ ଗତିର ବର୍ଣ୍ଣନା କରିବା ଆପଣଙ୍କ ପକ୍ଷରେ ଅତି ସହଜ। ଯେତେବେଳେ ଆପଣ ସ୍ୱୟଂ ଏଠାରେ ଉପସ୍ଥିତ ଅଛନ୍ତି, ମୁଁ ଆଉ କାହାକୁ କାହିଁକି ପଚାରିବି ଓ ପ୍ରକୃତରେ ଆପଣଙ୍କ ବ୍ୟତୀତ ଏହି ରହସ୍ୟ ଅନ୍ୟ କିଏ ବା କିପରି କହିପାରିବ ? ଅତଏବ କୃପା କରି ଆପଣ ହିଁ ଏହି ରହସ୍ୟ ଖୋଲିଦେଇ ମୋର ସଂଶୟଜାଲକୁ ଛେଦନ କରନ୍ତୁ।''

**ସମ୍ବନ୍ଧ** – ଅର୍ଜୁନ ପଚାରିଥିଲେ, 'ଯୋଗରୁ ବିଚଳିତ ହୋଇଥିବା ସାଧକ ଉଭୟ ଦିଗରୁ ଭ୍ରଷ୍ଟ ହୋଇ ନଷ୍ଟ ହୋଇଯା'ନ୍ତି ନାହିଁ ତ ?'' ଭଗବାନ୍ ତା'ର ଉତ୍ତର ଦେଉଛନ୍ତି –

ଶ୍ରୀଭଗବାନୁବାଚ

**ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ ।**
**ନ ହି କଲ୍ୟାଣକୃଦ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି ।। ୪୦ ।।**

**ଅନ୍ୱୟ** – **ପାର୍ଥ** = ହେ ପାର୍ଥ; **ତସ୍ୟ** = ସେହି ପୁରୁଷର; **ନ** = ନା; **ଇହ** = ଏହି ଲୋକରେ; **ବିନାଶଃ** = ବିନାଶ; **ବିଦ୍ୟତେ** = ହୁଏ; **ନ** = ନା; **ଅମୁତ୍ର** = ପରଲୋକରେ; **ଏବ** = ହିଁ; **ହି** = କାରଣ; **ତାତ** = ହେ ପ୍ରିୟ; **କଲ୍ୟାଣକୃତ୍** = ଆତ୍ମୋଦ୍ଧାରପାଇଁ ଅର୍ଥାତ୍ ଭଗବତ୍ପ୍ରାପ୍ତିପାଇଁ କର୍ମ କରୁଥିବା; **କଶ୍ଚିତ**= କୌଣସି ବି ପୁରୁଷ; **ଦୁର୍ଗତିମ୍** = ଦୁର୍ଗତିକୁ; **ନ, ଗଚ୍ଛତି** = ପ୍ରାପ୍ତ ହୁଏ ନାହିଁ।

**ଶ୍ରୀଭଗବାନ୍ କହିଲେ – ହେ ପାର୍ଥ ! ସେହି ପୁରୁଷଙ୍କର ଇହଲୋକରେ ବିନାଶ ହୁଏ ନାହିଁ, କି ପରଲୋକରେ ବିନାଶ ହୁଏ ନାହିଁ; କାରଣ ହେ ପ୍ରିୟ ! ଆତ୍ମୋଦ୍ଧାରପାଇଁ ଅର୍ଥାତ୍ ଭଗବତ୍ପ୍ରାପ୍ତିପାଇଁ କର୍ମ କରୁଥିବା କୌଣସି ବି ପୁରୁଷ ଦୁର୍ଗତି ପ୍ରାପ୍ତ ହୁଅନ୍ତି ନାହିଁ।। ୪୦ ।।**

**ପ୍ରଶ୍ନ** – 'ଯୋଗରୁ ବିଚଳିତ ହୋଇଥିବା ସାଧକଙ୍କର ଇହଲୋକ କି ପରଲୋକରେ ନାଶ ହୁଏ ନାହିଁ' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର** – ବର୍ତ୍ତମାନ ସ୍ଥିତିରୁ ପତନ ହୋଇଯିବାକୁ ହିଁ ନଷ୍ଟ ହୋଇଯିବା କହନ୍ତି। ଏଣୁ ମୃତ୍ୟୁପରେ ଯୋଗଭ୍ରଷ୍ଟଙ୍କର ଯଦି ଏହି ମନୁଷ୍ୟଲୋକରେ ହିଁ ଜନ୍ମ ହୁଏ, ତେବେ ଏଠାରେ ମଧ୍ୟ ପ୍ରଥମସ୍ଥିତିରୁ ପତନ ହୁଏ ନାହିଁ; ଉତ୍ଥାନ ହିଁ ହୁଏ ଓ ଯଦି ସ୍ୱର୍ଗାଦି ଅନ୍ୟ ଲୋକରେ ଜନ୍ମ ହୁଏ, ତେବେ ସେଠାରେ ମଧ୍ୟ ପତନ ହୁଏ ନାହିଁ; ଉତ୍ଥାନ ହିଁ ହୁଏ। ଏହି କାରଣରୁ ତାଙ୍କର ଏହି ଲୋକରେ ନୁହେଁ, କି ପରଲୋକରେ ନୁହେଁ, କେଉଁଠି ବି ବିନାଶ ହୁଏ ନାହିଁ। ସେ ଯେଉଁଠି ରହନ୍ତି, ପରମାତ୍ମାଙ୍କ ମାର୍ଗରେ ଅଗ୍ରସର ହିଁ ହୁଅନ୍ତି। ଭଗବାନ୍ ଏପରିଭାବରେ ଅର୍ଜୁନଙ୍କ ଉଭୟଭ୍ରଷ୍ଟ-ବିଷୟକ ଶଙ୍କାର ଉତ୍ତର ସଂକ୍ଷେପରେ ଦେଉଛନ୍ତି। ଅଭିପ୍ରାୟ ଏହି ଯେ, ସେ ଇହଲୋକର ବା ପରଲୋକର ଭୋଗରୁ ବଞ୍ଚିତ ହୁଅନ୍ତି ନାହିଁ, କି ଯୋଗସିଦ୍ଧିରୂପକ ପରମାତ୍ମପ୍ରାପ୍ତିରୁ ବଞ୍ଚିତ ହୁଅନ୍ତି ନାହିଁ।

**ପ୍ରଶ୍ନ** – ଏଠାରେ ହି ଅବ୍ୟୟ କେଉଁ ଅର୍ଥରେ ଦିଆଯାଇଛି ? ଓ ତା ସହିତ 'କଲ୍ୟାଣପାଇଁ ସାଧନା କରୁଥିବା କୌଣସି ବି ମନୁଷ୍ୟଙ୍କର ଦୁର୍ଗତି ହୁଏ ନାହିଁ' – କହିବାର ଅଭିପ୍ରାୟ କଣ ?

**ଉତ୍ତର** – ଏଠାରେ ହି ଅବ୍ୟୟ ହେତୁବାଚକ ଓ ଏହା ସହିତ ଉପରୋକ୍ତ କଥନଦ୍ୱାରା ଭଗବାନ୍ ସାଧକଙ୍କୁ ଆଶ୍ୱାସନା ଦେଉଛନ୍ତି ଯେ, ଯେଉଁ ସାଧକ ନିଜ ଶକ୍ତି ଅନୁସାରେ ଶ୍ରଦ୍ଧାପୂର୍ବକ କଲ୍ୟାଣପାଇଁ ସାଧନା କରିବେ, ତାଙ୍କର କୌଣସି ବି କାରଣରୁ କେବେ ବି ଶୂକର, କୁକୁର, କୀଟ, ପତଙ୍ଗ ଆଦି ନୀଚଯୋନିରେ ଜନ୍ମିବାପରି ବା କୁମ୍ଭୀପାକ ଆଦି ନର୍କରେ ପଡ଼ିବାପରି ଦୁର୍ଗତି ହୋଇପାରିବ ନାହିଁ।

**ପ୍ରଶ୍ନ** – ଭଗବତ୍ପ୍ରାପ୍ତିପାଇଁ କର୍ମ କରୁଥିବା କୌଣସି ବି ପୁରୁଷ ଦୁର୍ଗତି ପ୍ରାପ୍ତ ହୁଅନ୍ତି ନାହିଁ ବୋଲି ଯାହା କୁହାଯାଇଛି, ତାହା କିପରି ସମ୍ଭବ ? କାରଣ ମନୁଷ୍ୟର ଯେଉଁ ପୂର୍ବକୃତ ପାପ ରହିଥାଏ, ତା'ର ଫଳସ୍ୱରୂପ ମୃତ୍ୟୁପରେ ତ ତା'ର ଦୁର୍ଗତି ମଧ୍ୟ ହୋଇପାରେ ?

**ଉତ୍ତର** – ପୂର୍ବକୃତ ପାପ ଥିଲେ ମଧ୍ୟ ଭଗବତ୍ପ୍ରାପ୍ତିପାଇଁ ଅର୍ଥାତ୍ ଆତ୍ମୋଦ୍ଧାରପାଇଁ କର୍ମ କରୁଥିବା କୌଣସି ବି ଲୋକର ଦୁର୍ଗତି ଯେ ହୁଏ ନାହିଁ, ତାହା ଠିକ୍। ମନେ କରନ୍ତୁ, ଜଣେ କିଛି ଋଣ କରିଛନ୍ତି; ତାଙ୍କୁ ସେହି ଟଙ୍କା ଫେରାଇବାକୁ ପଡ଼ିବ। କିନ୍ତୁ ସେ ବେଇମାନ୍ ନୁହନ୍ତି; ତାଙ୍କ ପାଖରେ ଯାହା କିଛି ଥିଲା, ତାହା ପୂରାପୂରି ମହାଜନଙ୍କୁ ଦେଇଦେଲେ; ଯାହା କିଛି ଉପାର୍ଜନ କରୁଛନ୍ତି, ତାହା ମଧ୍ୟ ସତ୍ ଉଦ୍ଦେଶ୍ୟ ରଖି ଦେଇଆସୁଛନ୍ତି ଓ ଦେବାକୁ ଚାହାନ୍ତି। ଏପରି ଅବସ୍ଥାରେ

ଦୟାଳୁ ମହାଜନ ତାଙ୍କୁ ଜବରଦି କରାନ୍ତି ନାହିଁ; ଯେତେଦିନ ତାଙ୍କର ଉଦ୍ଦେଶ୍ୟ ଠିକ୍ ରହେ, ସେ ତାଙ୍କୁ ଅବକାଶ ଦେଇଚାଲନ୍ତି । ଠିକ୍ ସେହିପରି ଭଗବାନ୍ ମଧ୍ୟ ଭଗବତ୍‌ପ୍ରାପ୍ତିପାଇଁ ସାଧନା କରୁଥିବା ପୁରୁଷଙ୍କ ଶୁଦ୍ଧ ଭାବନା ଦେଖି, ତାଙ୍କ ପାପର ଫଳ ରୋକିଦେଇ, ତାଙ୍କୁ ସାଧନା କରି ସମସ୍ତ ବନ୍ଧନରୁ ମୁକ୍ତ ହୋଇଯିବାକୁ ସୁଯୋଗ ଦିଅନ୍ତି । ଯେଉଁଠି ସାଧାରଣ ମହାଜନ ବି ଋଣୀକୁ ଋଣ ସୁଝିବାପାଇଁ ଅବସର ଦିଅନ୍ତି, ସେଠାରେ ପରମ ଦୟାଳୁ ଭଗବାନ୍ ଯେ ସାଧକଙ୍କୁ ଏପରି ଅବସର ଦେବେ, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

**ପ୍ରଶ୍ନ –** ରାଜା ଭରତ ତ ଆତ୍ମୋଦ୍ଧାରପାଇଁ ହିଁ ସାଧନା କରୁଥିଲେ, ତଥାପି ସେ ମୃତ୍ୟୁପରେ ହରିଣଯୋନିରେ ଜନ୍ମ ନେଲେ ବୋଲି ପୁରାଣରେ କୁହାଯାଇଛି । ଯଦି କଲ୍ୟାଣପାଇଁ ସାଧନା କରୁଥିବା ଲୋକଙ୍କର ମୃତ୍ୟୁପରେ ମଧ୍ୟ ଦୁର୍ଗତି ହୁଏ ନାହିଁ ବୋଲି ନିୟମ ରହିଛି, ତେବେ ଭରତଙ୍କର ଏପରି ଦଶା ହେଲା କିପରି ?

**ଉତ୍ତର –** ଭରତ ଯେ ଜଣେ ମହାନ୍ ସାଧକ ଥିଲେ, ସେଥିରେ ସନ୍ଦେହ ନାହିଁ । ପରନ୍ତୁ ଦୟାଯୋଗୁଁ ମୋହବଶ ହୋଇ ଗୋଟିଏ ହରିଣଛୁଆ ପ୍ରତି ତାଙ୍କର ଆସକ୍ତି ଓ ମମତା ହୋଇଗଲା । ତେଣୁ ଅନ୍ତକାଳରେ ସେ ଲକ୍ଷ୍ୟଭ୍ରଷ୍ଟ ହୋଇଗଲେ ଓ ତାଙ୍କ ଠାରେ ହରିଣଛୁଆର ଚିନ୍ତା ଲାଗିରହିଲା । ତେଣୁ ତାଙ୍କୁ ହରିଣଜନ୍ମ ମିଳିଲା, କାରଣ ଅନ୍ତକାଳରେ ଯେପରି ଚିନ୍ତନ ହୁଏ, ମନୁଷ୍ୟ ଅବଶ୍ୟ ସେହିପରି ଜନ୍ମ ପାଏ । ଏହି ନିୟମ ଅକାଟ୍ୟ (୮/୬) । ତାହା ଅବଶ୍ୟ ଫଳିବ । କିନ୍ତୁ ଭରତଙ୍କୁ ପଶୁଜନ୍ମ ମିଳିଲେ ମଧ୍ୟ ତାହାକୁ ଦୁର୍ଗତି ବୋଲି ମନେ କରାଯାଏ ନାହିଁ, କାରଣ ପଶୁଜନ୍ମରେ ମଧ୍ୟ ତାଙ୍କ ଭିତରେ ପୂର୍ବଜନ୍ମର ସ୍ମୃତି ଲାଗିରହିଲା ଓ ସେ ମୋହ, ଆସକ୍ତି ଛାଡ଼ି ଉତ୍ତମ ସାଧକମାନଙ୍କ ପରି ପରମ ବିବେକସମ୍ପନ୍ନ ହୋଇ ରହିଲେ ଓ ଶୁଖିଲା ପତ୍ର ଖାଇ, ସଂଯମପୂର୍ଣ୍ଣ ପବିତ୍ର ଜୀବନ ଯାପନ କରି, ପରଜନ୍ମରେ ବ୍ରାହ୍ମଣଶରୀର ଧାରଣ କଲେ ଏବଂ ପୂର୍ବାଭ୍ୟାସବଳରେ (୬/୪୪) ଅତିଶୀଘ୍ର ପରମଗତି ପ୍ରାପ୍ତ ହୋଇଗଲେ । ତେଣୁ ଉପରୋକ୍ତ ସିଦ୍ଧାନ୍ତରେ କୌଣସି ବାଧା ଆସୁ ନାହିଁ । ଏହି ଉପାଖ୍ୟାନରୁ ତ ଶିକ୍ଷା ଗ୍ରହଣ କରିବା ଉଚିତ ଯେ, ଭଗବତ୍‌ପ୍ରାପ୍ତିର ଲକ୍ଷ୍ୟ କେବେ ଛାଡ଼ିବାର ନୁହେଁ ।

**ପ୍ରଶ୍ନ –** ସଂସାରରେ ଏପରି ବହୁ ଲୋକ ଦେଖାଯା'ନ୍ତି, ଯେଉଁମାନେ କି କଲ୍ୟାଣପାଇଁ ସତ୍‌ସଙ୍ଗ ଓ ଭଜନଧ୍ୟାନାଦି ସାଧନ କରନ୍ତି ଏବଂ ତା' ସହିତ ତାଙ୍କ ଦ୍ୱାରା ପାପକର୍ମ ମଧ୍ୟ ହୋଇଯାଏ । ସେମାନଙ୍କର ଗତି କଣ ହୁଏ ?

**ଉତ୍ତର –** ସେମାନଙ୍କର ମଧ୍ୟ ଦୁର୍ଗତି ହୁଏ ନାହିଁ; କାରଣ ଯେଉଁମାନଙ୍କର ଶାସ୍ତ୍ରରେ ଓ ମହାପୁରୁଷମାନଙ୍କ ଠାରେ ଶ୍ରଦ୍ଧା ଥାଏ, ସେମାନଙ୍କ ଠାରେ ପୂର୍ଣ୍ଣ ବିଶ୍ୱାସ ହୋଇଯାଏ ଯେ, ପାପର ଫଳସ୍ୱରୂପ ଦାରୁଣ ଦୁଃଖ ଓ ଘୋର ନରକଯନ୍ତ୍ରଣା ମିଳିବ । ତେଣୁ ସେମାନେ ସ୍ୱଭାବଦୋଷରୁ ହେଉଥିବା ପାପରୁ ମଧ୍ୟ ମୁକ୍ତ ହେବାକୁ ଚେଷ୍ଟା କରନ୍ତି । ତା' ସଙ୍ଗେ ସଙ୍ଗେ ଭଜନଧ୍ୟାନର ଅଭ୍ୟାସ ଚାଲୁରଖିବାଦ୍ୱାରା ସେମାନଙ୍କର ଅନ୍ତଃକରଣ ମଧ୍ୟ ଶୁଦ୍ଧ ହୋଇଯାଏ । ଏପରି ଅବସ୍ଥାରେ ସେମାନଙ୍କ ଦ୍ୱାରା ଜାଣିଶୁଣି ପାପ କରାଯିବାର କୌଣସି କାରଣ ରହେ ନାହିଁ । ଅତଏବ ସ୍ୱଭାବବଶତଃ ଯଦି କେହି ପାପାଚାରୀ ହୋଇଥାନ୍ତି, ତେବେ ସତ୍‌ସଙ୍ଗ ଓ ଭଜନଧ୍ୟାନର ପ୍ରଭାବରେ ସେ ମଧ୍ୟ ପାପାଚରଣରୁ ମୁକ୍ତ ହୋଇ ଶୀଘ୍ର ହିଁ ଧର୍ମାତ୍ମା ହୋଇଯାଆନ୍ତି । ତାଙ୍କର କ୍ରମଶଃ ଉତ୍ଥାନ ହିଁ ହୁଏ; ପତନ ହୋଇପାରେ ନାହିଁ (୯/୩୦-୩୧) ।

**ପ୍ରଶ୍ନ –** ଏଠାରେ ତାତ ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ତାତ ସମ୍ବୋଧନ କରି ଭଗବାନ୍ ଏଠାରେ ଅର୍ଜୁନଙ୍କୁ ଏହି ଆଶ୍ୱାସନା ଦେଇଛନ୍ତି, 'ତୁମେ ମୋର ପରମ ପ୍ରିୟ ସଖା ଓ ଭକ୍ତ ଅଛ; ତୁମର କେଉଁ କଥାକୁ ଡର ! ଯେଉଁଠି ମୋର ପ୍ରାପ୍ତିପାଇଁ ସାଧନା କରୁଥିବା ଲୋକଙ୍କର କୌଣସିପ୍ରକାରେ ଦୁର୍ଗତି ହୁଏ ନାହିଁ; ଉତ୍ତମ ଗତି ହିଁ ପ୍ରାପ୍ତ ହୁଏ, ସେଠାରେ ତୁମପାଇଁ ବା କହିବାର କଣ ଅଛି !'

**ସମ୍ବନ୍ଧ –** ଯୋଗଭ୍ରଷ୍ଟ ପୁରୁଷଙ୍କର ଦୁର୍ଗତି ତ ହୁଏ ନାହିଁ, ପୁଣି ତାଙ୍କର କି ଗତି ହୁଏ, ତାହା ଜାଣିବାକୁ ଇଚ୍ଛା ହେବାରୁ ଭଗବାନ୍ କହୁଛନ୍ତି–

**ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ ।**
**ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ ॥ ୪୧ ॥**

**ଅନ୍ୱୟ –** **ଯୋଗଭ୍ରଷ୍ଟଃ** = ଯୋଗଭ୍ରଷ୍ଟ ପୁରୁଷ; **ପୁଣ୍ୟକୃତାମ୍** = ପୁଣ୍ୟବାନ୍‌ମାନଙ୍କର; **ଲୋକାନ୍** = ଲୋକମାନଙ୍କୁ ଅର୍ଥାତ୍ ସ୍ୱର୍ଗାଦି ଉତ୍ତମ ଲୋକକୁ; **ପ୍ରାପ୍ୟ** = ପ୍ରାପ୍ତ ହୋଇ (ସେଠାରେ); **ଶାଶ୍ୱତୀଃ** = ବହୁତ; **ସମାଃ** = ବର୍ଷପର୍ଯ୍ୟନ୍ତ; **ଉଷିତ୍ୱା** = ନିବାସ କରି; **ଶୁଚୀନାମ୍** = ଶୁଦ୍ଧ ଆଚରଣବାନ୍; **ଶ୍ରୀମତାମ୍** = ଲକ୍ଷ୍ମୀମନ୍ତ ପୁରୁଷମାନଙ୍କ; **ଗେହେ** = ଘରେ; **ଅଭିଜାୟତେ** = ଜନ୍ମ ହୁଅନ୍ତି।

**ଯୋଗଭ୍ରଷ୍ଟ ପୁରୁଷ ପୁଣ୍ୟବାନ୍‌ମାନଙ୍କର ଲୋକ ଅର୍ଥାତ୍ ସ୍ୱର୍ଗାଦି ଉତ୍ତମ ଲୋକ ପ୍ରାପ୍ତ ହୋଇ, ବହୁ ବର୍ଷଯାଏ ସେଠାରେ ନିବାସ କରି ଶୁଦ୍ଧ ଆଚରଣବିଶିଷ୍ଟ ଶ୍ରୀମନ୍ତ (ଲକ୍ଷ୍ମୀମନ୍ତ) ପୁରୁଷମାନଙ୍କ ଗୃହରେ ଜନ୍ମ ନିଅନ୍ତି॥ ୪୧ ॥**

**ପ୍ରଶ୍ନ –** **ଯୋଗଭ୍ରଷ୍ଟ** କାହାକୁ କହନ୍ତି ?

**ଉତ୍ତର –** ଜ୍ଞାନଯୋଗ, ଭକ୍ତିଯୋଗ, ଧ୍ୟାନଯୋଗ ଓ କର୍ମଯୋଗ ଆଦି ସାଧନା କରୁଥିବା ଯେଉଁ ପୁରୁଷଙ୍କ ମନ ବିକ୍ଷେପ ଆଦି ଦୋଷରୁ କିମ୍ବା ବିଷୟାସକ୍ତି ଅଥବା ରୋଗାଦିକାରଣରୁ ଅନ୍ତକାଳରେ ଲକ୍ଷ୍ୟରୁ ବିଚଳିତ ହୋଇଯାଏ, ତାହାଙ୍କୁ **ଯୋଗଭ୍ରଷ୍ଟ** କହନ୍ତି।

**ପ୍ରଶ୍ନ –** ଏଠାରେ କୁହାଯାଇଛି ଯେ, ଯୋଗଭ୍ରଷ୍ଟ ପୁରୁଷ ପୁଣ୍ୟବାନ୍‌ମାନଙ୍କ ଲୋକକୁ ପ୍ରାପ୍ତ ହୁଅନ୍ତି ଓ ଶ୍ରୀମନ୍ତ ପୁରୁଷଙ୍କ ଘରେ (ଲକ୍ଷ୍ମୀବାନ୍ ଲୋକଙ୍କ ଘରେ) ଜନ୍ମ ନିଅନ୍ତି। ଏଥିରୁ ଏହା ସ୍ପଷ୍ଟ ହୋଇଗଲା ଯେ, ସେ ନରକାଦି ଲୋକରେ ପଡ଼ନ୍ତି ନାହିଁ, କି ନୀଚଯୋନିମାନଙ୍କରେ ଜନ୍ମ ହୁଅନ୍ତି ନାହିଁ; ବରଂ ପୁଣ୍ୟବନ୍ତମାନଙ୍କର ସ୍ୱର୍ଗାଦି ଲୋକରେ ତଥା ଧନୀମାନଙ୍କ ଘରେ ଯେଉଁଠି ଭୋଗର ଆଧିକ୍ୟ ଥାଏ, ସେଠାରେ ଜନ୍ମ ହୁଅନ୍ତି। ଏହା ପରରେ ସେ ଭୋଗରେ ଆସକ୍ତ ହୋଇ ଭୋଗପ୍ରାପ୍ତିପାଇଁ ଆବେଇଯାଇ ପାପକର୍ମରେ ପ୍ରବୃତ୍ତ ହେବା ତ ସମ୍ଭବ, ଓ ଯଦି ଏପରି ହୁଏ, ତେବେ ଏହି ଦୁଇ ଗତି ପରିଣାମରେ ତାଙ୍କ ପତନର ହିଁ କାରଣ ହୁଏ। ଅତଏବ ପ୍ରକାରାନ୍ତରେ ଏହା ବି ଦୁର୍ଗତି ନୁହେଁ କି ?

**ଉତ୍ତର –** ମୃତ୍ୟୁଲୋକର ଉପରକୁ ବ୍ରହ୍ମଲୋକଯାଏ ଯେତେ ବି ଲୋକ ଅଛି, ସବୁ ପୁଣ୍ୟବନ୍ତମାନଙ୍କର ଲୋକ। ସେଥିମଧ୍ୟରୁ ଯୋଗଭ୍ରଷ୍ଟ ପୁରୁଷ ଯୋଗରୂପୀ ମହାନ୍ ପୁଣ୍ୟର ପ୍ରଭାବରେ ଏପରି ଲୋକକୁ ଯାଆନ୍ତି ନାହିଁ, ଯେଉଁଠି ଭୋଗରେ ଲିପ୍ତ ହୋଇ ଦୁର୍ଗତିପ୍ରାପ୍ତି ହେବ ଓ ଏପରି ଅପବିତ୍ର (ହୀନଗୁଣ ଓ ହୀନ-ଆଚରଣଯୁକ୍ତ) ଧନୀଙ୍କ ଘରେ ଜନ୍ମ ନିଅନ୍ତି ନାହିଁ, ଯେ କି ତାଙ୍କ ଦୁର୍ଗତିର କାରଣ ହେବେ। ତେଣୁ **ଶ୍ରୀମତାମ୍** ସହିତ **ଶୁଚୀନାମ୍** ବିଶେଷଣ ଲଗାଇ ସେ ପବିତ୍ର, ଶୁଦ୍ଧ, ଶ୍ରେଷ୍ଠଗୁଣସମ୍ପନ୍ନ ଓ ବିଶୁଦ୍ଧ ଆଚରଣଯୁକ୍ତ ଧନୀଙ୍କ ଘରେ ଜନ୍ମ ହୁଅନ୍ତି ବୋଲି କୁହାଯାଇଛି। ଏଣୁ ଏହା ପ୍ରକାରାନ୍ତରେ ବି ଦୁର୍ଗତି ନୁହେଁ।

**ପ୍ରଶ୍ନ –** ପୁଣ୍ୟବାନ୍‌ମାନଙ୍କର ଲୋକରେ ସେମାନେ ବହୁବର୍ଷ ରହିବାର କାରଣ କଣ ?

**ଉତ୍ତର –** ଭୋଗରେ ଆସକ୍ତି ହିଁ ସେହି ଲୋକମାନଙ୍କରେ ବହୁବର୍ଷ ରହିବାର କାରଣ। କର୍ମ ଓ ତା'ର ଫଳରେ ମମତ୍ୱ ଓ ଆସକ୍ତି ରଖିବା ହିଁ କର୍ମଫଳର ହେତୁ ହୁଏ (୨/୪୭)। ଏଣୁ ଯେଉଁ ସାଧକଙ୍କର ଅନ୍ତଃକରଣରେ ଯେତିକି ଆସକ୍ତି ଛପି ରହିଥାଏ, ସେତିକି ସମୟଯାଏ ତାହାଙ୍କୁ ନିଜ ଶୁଭକର୍ମର ଫଳ ଭୋଗିବାପାଇଁ ସେଠାରେ ରହିବାକୁ ପଡ଼େ। ଯେଉଁମାନଙ୍କ ଠାରେ ଆସକ୍ତି ଅଧିକ ଥାଏ, ସେମାନେ ଅପେକ୍ଷାକୃତ ଅଧିକ ସମୟ ସେଠାରେ ରହନ୍ତି ଓ ଯେଉଁମାନଙ୍କ ଠାରେ କମ୍ ଆସକ୍ତି ଥାଏ, ସେମାନେ କମ୍ ସମୟ ରହନ୍ତି। ଯେଉଁମାନଙ୍କ ଠାରେ ଭୋଗାସକ୍ତି ନ ଥାଏ, ସେହି ବୈରାଗ୍ୟବାନ୍ ଯୋଗଭ୍ରଷ୍ଟମାନେ ସେସବୁ ଲୋକକୁ ନ ଯାଇ ସିଧା ଯୋଗୀମାନଙ୍କ କୁଳରେ ଜନ୍ମ ହୁଅନ୍ତି।

*ସମ୍ବନ୍ଧ –* *ସାଧାରଣ ଯୋଗଭ୍ରଷ୍ଟ ପୁରୁଷଙ୍କ ଗତି କହି ଭଗବାନ୍ ବର୍ତ୍ତମାନ ଆସକ୍ତିରହିତ ଉଚ୍ଚଶ୍ରେଣୀର ଯୋଗଭ୍ରଷ୍ଟ ପୁରୁଷଙ୍କ ବିଶେଷ ଗତି ବର୍ଣ୍ଣନା କରୁଛନ୍ତି–*

**ଅଥବା ଯୋଗିନାମେବ କୁଳେ ଭବତି ଧୀମତାମ୍।**
**ଏତଦ୍ଧି ଦୁର୍ଲ୍ଲଭତରଂ ଲୋକେ ଜନ୍ମ ଯଦୀଦୃଶମ୍॥ ୪୨ ॥**

**ଅନ୍ୱୟ—** ଅଥବା = ଅଥବା (ବୈରାଗ୍ୟବାନ୍ ପୁରୁଷ ସେସବୁ ଲୋକକୁ ନ ଯାଇ); **ଧୀମତାମ୍** = ଜ୍ଞାନବାନ୍; **ଯୋଗିନାମ୍** = ଯୋଗୀମାନଙ୍କର; **ଏବ** = ହିଁ; **କୁଲେ** = କୁଳରେ; **ଭବତି** = ଜନ୍ମ ହୁଏ; **ଈଦୃଶମ୍** = (କିନ୍ତୁ) ଏପରି; **ଯତ୍**, **ଏତତ୍** = ଏହି ଯେଉଁ; **ଜନ୍ମ** = ଜନ୍ମ; **ଲୋକେ** = ସଂସାରରେ; **ହି** = ନିଃସନ୍ଦେହ; **ଦୁର୍ଲଭତରମ୍** = ଅତ୍ୟନ୍ତ ଦୁର୍ଲଭ।

**ଅଥବା ବୈରାଗ୍ୟବାନ୍ ପୁରୁଷ ସେସବୁ ଲୋକକୁ ନ ଯାଇ ଜ୍ଞାନବାନ୍ ଯୋଗୀମାନଙ୍କର କୁଳରେ ହିଁ ଜନ୍ମନ୍ତି ; କିନ୍ତୁ ଏପରି ଜନ୍ମ ସଂସାରରେ ନିଃସନ୍ଦେହ ଅତ୍ୟନ୍ତ ଦୁର୍ଲଭ ।। ୪୨ ।।**

**ପ୍ରଶ୍ନ—** ଅଥବା ପ୍ରୟୋଗ କାହିଁକି କରାଯାଇଛି ?

**ଉତ୍ତର—** ଯୋଗଭ୍ରଷ୍ଟ ପୁରୁଷମାନଙ୍କ ମଧ୍ୟରେ ଯେଉଁମାନଙ୍କ ମନରେ ବିଷୟାସକ୍ତି ରହେ, ସେମାନେ ତ ସ୍ୱର୍ଗାଦି ଲୋକରେ ଓ ପବିତ୍ର ଧନୀମାନଙ୍କ ଘରେ ଜନ୍ମ ହୁଅନ୍ତି; କିନ୍ତୁ ଯେଉଁମାନେ ବୈରାଗ୍ୟବାନ୍ ପୁରୁଷ, ସେମାନେ ଅନ୍ୟକୌଣସି ଲୋକକୁ ଯାଆନ୍ତି ନାହିଁ, କି ସେମାନଙ୍କୁ ଧନୀଘରେ ଜନ୍ମ ହେବାକୁ ପଡ଼େ ନାହିଁ। ସେମାନେ ସିଧା ଯାଇ ଜ୍ଞାନବାନ୍ ସିଦ୍ଧ ଯୋଗୀମାନଙ୍କ ଘରେ ହିଁ ଜନ୍ମ ହୁଅନ୍ତି। ପୂର୍ବବର୍ଣ୍ଣିତ ଯୋଗଭ୍ରଷ୍ଟମାନଙ୍କ ଠାରୁ ଏମାନଙ୍କୁ ପୃଥକ୍ କରିବାପାଇଁ **ଅଥବା** ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** 'ସ୍ୱର୍ଗାଦି ପୁଣ୍ୟଲୋକପ୍ରାପ୍ତି ତ ସବୁ ଯୋଗଭ୍ରଷ୍ଟଙ୍କର ହେବା ଉଚିତ। ସେଠାରେ ସୁଖ ଭୋଗ କରିବା ପରେ ସେମାନଙ୍କ ମଧ୍ୟରୁ କେତେକ ପବିତ୍ର ଧନୀଲୋକଙ୍କ ଘରେ ଜନ୍ମ ହୁଅନ୍ତି ଓ କେତେକ ଯୋଗୀମାନଙ୍କ ଘରେ ଜନ୍ମ ହୁଅନ୍ତି।'— ଅଥବାଦ୍ୱାରା ଯଦି ଏହି ଭାବ ଧରି ନିଆଯାଏ, ତେବେ ଆପତ୍ତି କଣ ?

**ଉତ୍ତର—** ଏପରି ଅର୍ଥ କରିବା ଉଚିତ ନୁହେଁ; କାରଣ ଯେଉଁ ପୁରୁଷମାନଙ୍କର ଭୋଗପ୍ରତି ଯଥାର୍ଥ ବୈରାଗ୍ୟ ଅଛି, ସେମାନଙ୍କ ପାଇଁ ସ୍ୱର୍ଗାଦି ଲୋକକୁ ଯାଇ ବହୁ ବର୍ଷଯାଏ ସେଠାରେ ନିବାସ କରିବା ଓ ଭୋଗ କରିବା ତ ଦଣ୍ଡସଦୃଶ। ଭଗବତ୍ପ୍ରାପ୍ତିରେ ଏପରି ବିଳମ୍ବ ହେବା ତ ବୈରାଗ୍ୟର ଫଳ ହୋଇ ନ ପାରେ। ଅତଏବ ଉପରୋକ୍ତ ଅର୍ଥ ମାନିବା ହିଁ ଠିକ୍।

**ପ୍ରଶ୍ନ—** ଯୋଗୀମାନଙ୍କ କୁଳରେ ଏପରି ବୈରାଗ୍ୟବାନ୍ ପୁରୁଷ ଜନ୍ମ ହୁଅନ୍ତି; ଏଥିରୁ ସିଦ୍ଧ ହେଉଛି ଯେ, ସେହି ଯୋଗୀମାନେ ଅବଶ୍ୟ ଗୃହସ୍ଥ ହିଁ ହୋଇଥାନ୍ତି; କାରଣ ଜନ୍ମ ଗୃହସ୍ଥାଶ୍ରମରେ ହିଁ ହୋଇପାରେ ଓ ଧୀମତାମ୍‌ର ଅର୍ଥ କରିବାକୁ ଯାଇ ଏପରି ଯୋଗୀମାନଙ୍କୁ ହିଁ ଜ୍ଞାନୀ କୁହାଯାଇଛି। ତା'ହେଲେ କଣ ଗୃହସ୍ଥ ମଧ୍ୟ ଜ୍ଞାନୀ ହୋଇପାରନ୍ତି ?

**ଉତ୍ତର—** ଭଗବତ୍ତତ୍ତ୍ୱର ଯଥାର୍ଥ ଜ୍ଞାନ ସବୁ ଆଶ୍ରମରେ ହୋଇପାରେ। ଗୀତାରେ ଏହି କଥା ଭଲଭାବେ ପ୍ରମାଣିତ ହୋଇଛି (୩/୨୦; ୪/୧୯; ୧୮/୫୬)। ଅନ୍ୟାନ୍ୟ ଶାସ୍ତ୍ରରେ ମଧ୍ୟ ଏହାର ଅନେକ ଉଦାହରଣ ମିଳିପାରେ। ମହର୍ଷି ବସିଷ୍ଠ, ଯାଜ୍ଞବଲ୍କ୍ୟ, ବ୍ୟାସ, ଜନକ, ଅଶ୍ୱପତି ଓ ରୈକ୍ୱ ଆଦି ମହାପୁରୁଷମାନେ ଗୃହସ୍ଥାଶ୍ରମରେ ରହି ଜ୍ଞାନ ପ୍ରାପ୍ତି କରିଥିଲେ।

**ପ୍ରଶ୍ନ—** **ଯୋଗିନାମ୍** ପଦରେ ଆସିଥିବା ଯୋଗୀ ଶବ୍ଦର ଅର୍ଥ 'ଜ୍ଞାନବାନ୍ ଯୋଗୀ' ବୋଲି ନ ଧରି 'ସାଧକ ଯୋଗୀ' ବୋଲି ଧରାଗଲେ ଆପତ୍ତି କଣ ?

**ଉତ୍ତର—** ଏପରି ଧରିବାଦ୍ୱାରା 'ଧୀମତାମ୍' ଶବ୍ଦ ବ୍ୟର୍ଥ ହୋଇଯିବ। ଏହା ଛଡ଼ା ଭଗବାନ୍ 'ଦୁର୍ଲଭତରମ୍' ପଦଦ୍ୱାରା ମଧ୍ୟ ଏହା ସୂଚାଇଛନ୍ତି ଯେ, ଏପରି ଜନ୍ମ ପବିତ୍ର ଶ୍ରୀମନ୍ତମାନଙ୍କ ଘରେ ଜନ୍ମ ଅପେକ୍ଷା ମଧ୍ୟ ଅତ୍ୟନ୍ତ ଦୁର୍ଲଭ। ଅତଏବ ଏଠାରେ 'ଧୀମତାମ୍' ବିଶେଷଣଯୁକ୍ତ **'ଯୋଗିନାମ୍'** ପଦରେ ଆସିଥିବା 'ଯୋଗୀ' ଶବ୍ଦର ଅର୍ଥ 'ଜ୍ଞାନବାନ୍ ସିଦ୍ଧ ଯୋଗୀ' ବୋଲି ଧରିବା ହିଁ ଠିକ୍।

**ପ୍ରଶ୍ନ—** ଯୋଗୀମାନଙ୍କ କୁଳରେ ମିଳୁଥିବା ଜନ୍ମକୁ ଅତ୍ୟନ୍ତ ଦୁର୍ଲଭ ବୋଲି କାହିଁକି କହିଲେ ?

**ଉତ୍ତର—** ଯୋଗୀମାନଙ୍କ କୁଳରେ ଜନ୍ମ ହେଲେ ପରମାର୍ଥସାଧନା (ଯୋଗସାଧନା)ର ଯେତେ ସୁବିଧା ମିଳିପାରେ, ସେତିକି ସୁବିଧା ସ୍ୱର୍ଗରେ, ଶ୍ରୀମନ୍ତମାନଙ୍କ (ଧନିକଙ୍କ) ଘରେ ଅଥବା ଅନ୍ୟତ୍ର କେଉଁଠି ମିଳିପାରେ ନାହିଁ। ଯୋଗୀମାନଙ୍କ କୁଳରେ ଜନ୍ମ ହେଲେ ତଦନୁକୂଳ ବାତାବରଣର ପ୍ରଭାବରେ ମନୁଷ୍ୟ ପ୍ରାରମ୍ଭିକ ଜୀବନରେ ହିଁ ଯୋଗସାଧନାରେ ଲାଗିଯାଇପାରେ। ଆହୁରି ମଧ୍ୟ ଜ୍ଞାନୀଙ୍କ କୁଳରେ ଜନ୍ମ ହେଉଥିବା ପୁରୁଷ ଅଜ୍ଞାନୀ

ହୋଇ ରହେ ନାହିଁ। ଏହି ସିଦ୍ଧାନ୍ତ ଶ୍ରୁତିମାନଙ୍କ ଦ୍ୱାରା ମଧ୍ୟ ପ୍ରମାଣିତ ହୋଇଛି। * ଯଦି ମହାତ୍ମା ପୁରୁଷମାନଙ୍କର ମହିମା ଓ ପ୍ରଭାବ ଦୃଷ୍ଟିରୁ ଦେଖାଯାଏ, ତେବେ ମହାତ୍ମାମାନଙ୍କର କୁଳରେ ଜନ୍ମ ହେବାର ସୌଭାଗ୍ୟ କଣ ବା କହିବା, ମହାତ୍ମାମାନଙ୍କର ସଙ୍ଗ ହିଁ ଦୁର୍ଲଭ, ଅଗମ୍ୟ ଏବଂ ଅମୋଘ ବୋଲି ମାନିନିଆଯାଇଛି। ** ତେଣୁ ଏପରି ଜନ୍ମକୁ ଅତ୍ୟନ୍ତ ଦୁର୍ଲଭ କହିବା ଉଚିତ ହୋଇଛି।

***ସମ୍ବନ୍ଧ –*** *ଯୋଗିକୁଳରେ ଜନ୍ମ ହେଉଥିବା ଯୋଗଭ୍ରଷ୍ଟ ପୁରୁଷଙ୍କର ସେହି ଜନ୍ମରେ ଯେପରି ପରିସ୍ଥିତି ହୋଇଥାଏ, ବର୍ତ୍ତମାନ ତାହା କହୁଛନ୍ତି–*

## ତତ୍ର ତଂ ବୁଦ୍ଧିସଂଯୋଗଂ ଲଭତେ ପୌର୍ବଦେହିକମ୍।
## ଯତତେ ଚ ତତୋ ଭୂୟଃ ସଂସିଦ୍ଧୌ କୁରୁନନ୍ଦନ॥ ୪୩ ॥

**ଅନ୍ୱୟ –** **ତତ୍ର** = ସେଠାରେ; **ତମ୍** = ସେହି; **ପୌର୍ବଦେହିକମ୍** = ପୂର୍ବଜନ୍ମର ଶରୀରରେ ସଂଗ୍ରହ କରିଥିବା; **ବୁଦ୍ଧିସଂଯୋଗମ୍** = ବୁଦ୍ଧିର ସଂଯୋଗକୁ ଅର୍ଥାତ୍ ସମବୁଦ୍ଧିରୂପକ ଯୋଗସଂସ୍କାରକୁ; **ଲଭତେ** = ସହଜରେ ପାଇଯାଏ; **ଚ** = ଏବଂ; **କୁରୁନନ୍ଦନ** = ହେ କୁରୁନନ୍ଦନ; **ତତଃ** = ତାହା ପ୍ରଭାବରୁ; **ସଂସିଦ୍ଧୌ** = ପରମାତ୍ମପ୍ରାପ୍ତିରୂପକ ସିଦ୍ଧିପାଇଁ; **ଭୂୟଃ** = ପୂର୍ବ ଅପେକ୍ଷା ଅଧିକ; **ଯତତେ** = ପ୍ରଯତ୍ନ କରେ।

**ସେଠାରେ ପୂର୍ବଜନ୍ମର ଶରୀରରେ ସଂଗ୍ରହ କରିଥିବା ବୁଦ୍ଧିର ସେହି ସଂଯୋଗକୁ ଅର୍ଥାତ୍ ସମବୁଦ୍ଧିରୂପକ ଯୋଗସଂସ୍କାରମାନଙ୍କୁ ସେ ସହଜରେ ପ୍ରାପ୍ତ ହୋଇଯାନ୍ତି ଏବଂ ହେ କୁରୁନନ୍ଦନ! ତାହାର ପ୍ରଭାବରେ ସେ ପୁଣିଥରେ ପରମାତ୍ମପ୍ରାପ୍ତିରୂପକ ସିଦ୍ଧିପାଇଁ ପୂର୍ବ ଅପେକ୍ଷା ଅଧିକ ପ୍ରଯତ୍ନ କରନ୍ତି॥ ୪୩ ॥**

**ପ୍ରଶ୍ନ –** ଏଠାରେ **ତତ୍ର** ପଦ କେବଳ ଯୋଗୀମାନଙ୍କ କୁଳରେ ଜନ୍ମ ହେବାକୁ ନିର୍ଦ୍ଦେଶ କରୁଛି, ନା ପବିତ୍ର ଶ୍ରୀମାନ୍ ଏବଂ ଜ୍ଞାନବାନ୍ ଯୋଗୀ— ଦୁହିଁଙ୍କ ଘରେ ଜନ୍ମ ହେବାକୁ ?

**ଉତ୍ତର –** ପୂର୍ବ ଶ୍ଲୋକରେ ହିଁ ଯୋଗୀକୁଳର ବର୍ଣ୍ଣନା ଆସିଯାଇଛି ତଥା ସେହି କୁଳରେ ଜନ୍ମ ହେଲେ ଦେବାଦି ଶରୀରରେ ଜନ୍ମ ହେବାର ବ୍ୟବଧାନ ରହେ ନାହିଁ। ଅତଏବ ଏଠାରେ **ତତ୍ର**ଦ୍ୱାରା ଯୋଗୀକୁଳକୁ ନିର୍ଦ୍ଦେଶ କରାଯାଇଛି ବୋଲି ମାନିବା ହିଁ ଉଚିତ ମନେ ହେଉଛି।

**ପ୍ରଶ୍ନ –** ତେବେ କଣ ପବିତ୍ର ଶ୍ରୀମାନ୍‌ଙ୍କ ଘରେ ଜନ୍ମ ହେବା ସାଧକମାନେ 'ବୁଦ୍ଧିସଂଯୋଗ' ପାଆନ୍ତି ନାହିଁ ?

**ଉତ୍ତର –** ସେମାନେ ମଧ୍ୟ ପୂର୍ବାଭ୍ୟାସର ପ୍ରଭାବଦ୍ୱାରା ବିଷୟଭୋଗରୁ ଓହରି ଯାଇ ଭଗବାନଙ୍କ ପ୍ରତି ଆକର୍ଷିତ ହୁଅନ୍ତି। ଏହା ପରବର୍ତ୍ତୀ ଶ୍ଲୋକରେ ସ୍ପଷ୍ଟ କରାଯାଇଛି।

**ପ୍ରଶ୍ନ –** 'ପୂର୍ବଜନ୍ମର ଶରୀରରେ ସଂଗ୍ରହ କରାଯାଇଥିବା ବୁଦ୍ଧିର ସଂଯୋଗକୁ ପାଇବା' କହିଲେ କଣ ବୁଝାଏ ?

**ଉତ୍ତର –** କର୍ମଯୋଗ, ଭକ୍ତିଯୋଗ, ଧ୍ୟାନଯୋଗ ଓ ଜ୍ଞାନଯୋଗ ଆଦି ସାଧନାମାନଙ୍କ ମଧ୍ୟରୁ କୌଣସି ସାଧନାଦ୍ୱାରା ଯେତିକି ସମତ୍ୱଭାବ ପୂର୍ବଜନ୍ମରେ ପ୍ରାପ୍ତ ହୋଇ ସାରିଥାଏ, ତାହା ଇହଜନ୍ମରେ ଅନାୟାସରେ ଜାଗ୍ରତ ହୋଇଯିବା ହିଁ ବୁଦ୍ଧିସଂଯୋଗକୁ ପ୍ରାପ୍ତ ହେବା।

**ପ୍ରଶ୍ନ –** ଏଠାରେ **ତତଃ** ପଦର ଅଭିପ୍ରାୟ କଣ ?

**ଉତ୍ତର –** **ତତଃ** ପଦ ପ୍ରୟୋଗ କରି ଏଠାରେ ଦେଖାଇଦିଆଯାଇଛି ଯେ, ଯୋଗିକୁଳରେ ଜନ୍ମ ହେବାରୁ ଓ ସେଠାରେ ପୂର୍ବସଂସ୍କାରମାନଙ୍କ ସହିତ ସମ୍ବନ୍ଧ ହୋଇଯିବାରୁ ସେହି ଯୋଗଭ୍ରଷ୍ଟ ପୁରୁଷ, ପୁନର୍ବାର ଅନାୟାସରେ ହିଁ ଯୋଗସାଧନାରେ ଲାଗିଯାନ୍ତି।

---

★ **ନାସ୍ୟାବ୍ରହ୍ମବିତ୍କୁଳେ ଭବତି। ତରତି ଶୋକଂ ତରତି ପାପ୍ମାନଂ ଗୁହାଗ୍ରନ୍ଥିଭ୍ୟୋ ବିମୁକ୍ତୋଽମୃତୋ ଭବତି॥** (ମୁଣ୍ଡକ.ଉ. ୩/୨/୯)

ଅର୍ଥାତ୍ ଏହାଙ୍କ (ବ୍ରହ୍ମଜ୍ଞାନୀଙ୍କ) କୁଳରେ କେହି ଅବ୍ରହ୍ମବିତ୍ ହୁଏ ନାହିଁ। ସେ ଶୋକ ଏବଂ ପାପକୁ ତରିଯାଆନ୍ତି। ହୃଦୟଗ୍ରନ୍ଥିମାନଙ୍କରୁ ବିମୁକ୍ତ ହୋଇ ସେ ଅମର ହୋଇଯାଆନ୍ତି। ଅର୍ଥାତ୍ ସବୁଦିନପାଇଁ ସେ ଜନ୍ମମୃତ୍ୟୁଚକ୍ରରୁ ମୁକ୍ତି ପାଇଯାଆନ୍ତି।

★★ **'ମହତ୍ସଙ୍ଗସ୍ତୁ ଦୁର୍ଲଭୋଽଗମ୍ୟୋଽମୋଘଶ୍ଚ।'** (ନାରଦଭକ୍ତିସୂତ୍ର ୩୯)– 'ପରନ୍ତୁ ମହାତ୍ମାମାନଙ୍କ ସଙ୍ଗ ଦୁର୍ଲଭ, ଅଗମ୍ୟ ଓ ଅମୋଘ।'

**ସମ୍ବନ୍ଧ** – ବର୍ତ୍ତମାନ ପବିତ୍ର ଶ୍ରୀମନ୍ତମାନଙ୍କ ଘରେ ଜନ୍ମ ହେଉଥିବା ଯୋଗଭ୍ରଷ୍ଟ ପୁରୁଷଙ୍କ ପରିସ୍ଥିତି ବର୍ଣ୍ଣନା କରି ଯୋଗକୁ ଜାଣିବା ଇଚ୍ଛାର ମହତ୍ତ୍ୱ କହୁଛନ୍ତି–

**ପୂର୍ବାଭ୍ୟାସେନ ତେନୈବ ହ୍ରିୟତେ ହ୍ୟବଶୋଽପି ସଃ ।**
**ଜିଜ୍ଞାସୁରପି ଯୋଗସ୍ୟ ଶବ୍ଦବ୍ରହ୍ମାତିବର୍ତ୍ତତେ ।। ୪୪ ।।**

**ଅନ୍ୱୟ** – **ସଃ** = ସେହି (ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ଗ୍ରହଣ କରିଥିବା ଯୋଗଭ୍ରଷ୍ଟ ପୁରୁଷ); **ଅବଶଃ** = ପରାଧୀନ ହୋଇ; **ଅପି** = ମଧ୍ୟ; **ତେନ, ପୂର୍ବାଭ୍ୟାସେନ** = ସେହି ପୂର୍ବାଭ୍ୟାସ ପ୍ରଭାବରେ; **ଏବ** = ହିଁ; **ହି** = ନିଃସନ୍ଦେହ; **ହ୍ରିୟତେ** = (ଭଗବାନଙ୍କ ପ୍ରତି) ଆକର୍ଷିତ ହୁଏ; **ଯୋଗସ୍ୟ** = (ତଥା) ସମବୁଦ୍ଧିରୂପକ ଯୋଗର; **ଜିଜ୍ଞାସୁଃ** = ଜିଜ୍ଞାସୁ; **ଅପି** = ମଧ୍ୟ; **ଶବ୍ଦବ୍ରହ୍ମ** = ବେଦକଥିତ ସକାମ କର୍ମର ଫଳକୁ; **ଅତିବର୍ତ୍ତତେ** = ଉଲ୍ଲଙ୍ଘନ କରିଯାଏ ।

**ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ହୋଇଥିବା ସେହି ଯୋଗଭ୍ରଷ୍ଟ ପୁରୁଷ ପରାଧୀନ ହୋଇ ମଧ୍ୟ ପୂର୍ବାଭ୍ୟାସପ୍ରଭାବରେ ହିଁ ନିଃସନ୍ଦେହ ଭଗବାନଙ୍କ ପ୍ରତି ଆକର୍ଷିତ ହୁଅନ୍ତି ତଥା ସମବୁଦ୍ଧିରୂପକ ଯୋଗର ଜିଜ୍ଞାସୁ ମଧ୍ୟ ବେଦରେ କଥିତ ସକାମକର୍ମର ଫଳକୁ ଉଲ୍ଲଙ୍ଘନ କରିଯା'ନ୍ତି ।। ୪୪ ।।**

**ପ୍ରଶ୍ନ** – ଏଠାରେ **ସଃ** ପଦଟି ଧନୀ ବା ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ହୋଇଥିବା ଯୋଗଭ୍ରଷ୍ଟଙ୍କ ପାଇଁ ଉଦ୍ଦିଷ୍ଟ ବୋଲି କାହିଁକି ମନେ କରାଯାଉଛି ?

**ଉତ୍ତର** – ଯୋଗିକୁଳରେ ଜନ୍ମ ହୋଇଥିବା ବୈରାଗ୍ୟବାନ୍ ପୁରୁଷ ଯେ ଭୋଗର ବଶ ହୋଇଯିବେ, ସେ ଆଶଙ୍କା ନାହିଁ । ଅତଏବ ତାଙ୍କ ପାଇଁ **ଅବଶଃ ଅପି** ପଦ ପ୍ରୟୋଗ ଅନୁକୂଳ ଜଣାପଡୁ ନାହିଁ । ତା'ଛଡ଼ା ଯୋଗିକୁଳରେ ଅନାୟାସରେ ସତ୍‌ସଙ୍ଗ ଲାଭ ହେଉଥିବାରୁ, ତାଙ୍କ ପାଇଁ ଏକମାତ୍ର ପୂର୍ବାଭ୍ୟାସକୁ ହିଁ ଭଗବାନଙ୍କ ଆଡ଼କୁ ଆକର୍ଷିତ ହେବାର କାରଣ ବୋଲି କହିବା ମଧ୍ୟ ଠିକ୍ ନୁହେଁ । ଅତଏବ ଏହି ବର୍ଣ୍ଣନା ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟ ପୁରୁଷଙ୍କ ସମ୍ବନ୍ଧରେ ହିଁ ଆସିଛି ବୋଲି ମନେ ହେଉଛି ।

**ପ୍ରଶ୍ନ** – ଏଠାରେ **ଅବଶଃ** ସହିତ **ଅପି** ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର** – ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯଦ୍ୟପି ପବିତ୍ର ସଦାଚାରୀ ଧନବାନ୍‌ଙ୍କ ଘର ସାଧାରଣ ଧନୀଙ୍କ ଘରପରି ଭୋଗରେ ଲିପ୍ତ କରାଏ ନାହିଁ, ତଥାପି ସେଠାରେ ବି ଯଦି କୌଣସି କାରଣରୁ ଯୋଗଭ୍ରଷ୍ଟ ପୁରୁଷ ସ୍ତ୍ରୀ, ପୁତ୍ର, ଧନ ଓ ମାନ-ସମ୍ମାନ ଆଦି ଭୋଗମାନଙ୍କରେ ବଶ ହୋଇଯାଆନ୍ତି, ତେବେ ବି ପୂର୍ବଜନ୍ମର ଅଭ୍ୟାସବଳରେ ସେ ଭଗବତ୍‌ପ୍ରାପ୍ତିର ସାଧନାରେ ଲାଗିଯା'ନ୍ତି ।

**ପ୍ରଶ୍ନ** – **ପୂର୍ବାଭ୍ୟାସେନ** ପଦ ସହିତ **ଏବ** ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର** – ଭୋଗର ବଶ ହୋଇଥିବା ପୁରୁଷଙ୍କୁ ବିଷୟଜାଲରୁ ମୁକ୍ତ କରି ଭଗବାନଙ୍କ ପ୍ରତି ଆକର୍ଷିତ କରିବାରେ ପୂର୍ବଜନ୍ମର ଅଭ୍ୟାସଲବ୍ଧ ସଂସ୍କାର ହିଁ ପ୍ରଧାନ କାରଣ । ଏହି ଅଭିପ୍ରାୟରେ **ପୂର୍ବାଭ୍ୟାସେନ** ପଦ ସହିତ **ଏବ** ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ** – **ଜିଜ୍ଞାସୁଃ** ସହିତ **ଅପି** ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର** – ସମବୁଦ୍ଧିରୂପକ ଯୋଗର ପ୍ରଶଂସା କରିବାକୁ ଏଠାରେ **ଅପି** ପ୍ରୟୋଗ କରାଯାଇଛି । ଅଭିପ୍ରାୟ ଏହି ଯେ, ଯେ ଯୋଗର ଜିଜ୍ଞାସୁ ଅଟନ୍ତି, ଯୋଗରେ ଶ୍ରଦ୍ଧା ରଖନ୍ତି ଓ ତାହା ପାଇବାକୁ ଚେଷ୍ଟା କରନ୍ତି, ସେହି ପୁରୁଷ ମଧ୍ୟ ଯେଉଁଠି ବେଦୋକ୍ତ ସକାମକର୍ମର ଫଳସ୍ୱରୂପ ଇହଲୋକ ଓ ପରଲୋକର ଭୋଗଜନିତ ସୁଖକୁ ଅତିକ୍ରମ କରିଯାନ୍ତି, ସେଠାରେ ଜନ୍ମଜନ୍ମାନ୍ତରରୁ ଯୋଗ ଅଭ୍ୟାସ କରିଥିବା ଯୋଗଭ୍ରଷ୍ଟ ପୁରୁଷଙ୍କ ବିଷୟରେ ଆଉ କହିବାର ବା କଣ ଅଛି !

**ସମ୍ବନ୍ଧ** – ଏପରିଭାବରେ ଧନବାନଙ୍କ ଘରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟ ପୁରୁଷଙ୍କର ଗତି ବର୍ଣ୍ଣନା କରି ତଥା ଯୋଗ-ଜିଜ୍ଞାସୁଙ୍କର ମହିମା କହି ବର୍ତ୍ତମାନ ଯୋଗିକୁଳରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟଙ୍କ ଗତି ପୁନଃ ପ୍ରତିପାଦନ କରୁଛନ୍ତି–

**ପ୍ରଯତ୍ନାଦ୍ୟତମାନସ୍ତୁ ଯୋଗୀ ସଂଶୁଦ୍ଧକିଲ୍‌ବିଷଃ ।**
**ଅନେକଜନ୍ମସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍ ।। ୪୫ ।।**

**ଅନ୍ୱୟ –** ତୁ = କିନ୍ତୁ; **ପ୍ରଯତ୍ନାତ୍** = ପ୍ରଯତ୍ନପୂର୍ବକ; **ଯତମାନଃ** = ଅଭ୍ୟାସ କରୁଥିବା; **ଯୋଗୀ** = ଯୋଗୀ (ତ); **ଅନେକଜନ୍ମସଂସିଦ୍ଧଃ** = ପୂର୍ବର ଅନେକ ଜନ୍ମର ସଂସ୍କାରବଳରେ ଇହଜନ୍ମରେ ସଂସିଦ୍ଧ ହୋଇ; **ସଂଶୁଦ୍ଧକିଲ୍‌ବିଷଃ** = ସମସ୍ତ ପାପରୁ ରହିତ ହୋଇ; **ତତଃ** = ତତ୍‌କାଳ; **ପରାମ୍, ଗତିମ୍** = ପରମଗତିକୁ; **ଯାତି** = ପ୍ରାପ୍ତ ହୋଇଯାଏ ।

**ପରନ୍ତୁ ପ୍ରଯତ୍ନପୂର୍ବକ ଅଭ୍ୟାସ କରୁଥିବା ଯୋଗୀ ତ ପୂର୍ବର ଅନେକ ଜନ୍ମର ସଂସ୍କାର-ବଳରେ ଇହଜନ୍ମରେ ସଂସିଦ୍ଧ ହୋଇ, ସମସ୍ତ ପାପରୁ ରହିତ ହୋଇ, ତତ୍‌କାଳ ହିଁ ପରମଗତି ପ୍ରାପ୍ତ ହୋଇଯାନ୍ତି ।। ୪୫ ।।**

**ପ୍ରଶ୍ନ –** ଏଠାରେ ତୁର ଅଭିପ୍ରାୟ କଣ ?

**ଉତ୍ତର –** ଧନବାନ୍‌ଙ୍କ ଘରେ ଜନ୍ମ ନେଇଥିବା ଲୋକମାନଙ୍କର ଓ ଯୋଗଜିଜ୍ଞାସୁଙ୍କ ଅପେକ୍ଷା ଯୋଗିକୁଳରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟ ପୁରୁଷଙ୍କ ଗତିର ବିଲକ୍ଷଣତା ଦେଖାଇବା ପାଇଁ ହିଁ ତୁ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ – ଯୋଗୀ** ସହିତ **ପ୍ରଯତ୍ନାତ୍ ଯତମାନଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ତେୟାଳିଶ ଶ୍ଳୋକରେ କୁହାଗଲା ଯେ, ଯୋଗୀମାନଙ୍କ କୁଳରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟ ପୁରୁଷ ଏହି ଜନ୍ମରେ ଯୋଗସିଦ୍ଧିପ୍ରାପ୍ତିପାଇଁ ଅଧିକ ପ୍ରଯତ୍ନ କରନ୍ତି । ଏହି ଶ୍ଳୋକରେ ସେହି ଯୋଗୀଙ୍କର ପରମଗତିପ୍ରାପ୍ତି କଥା କୁହାଯାଇଛି । ଏହା ସ୍ପଷ୍ଟ କରିବାପାଇଁ ଏଠାରେ **ଯୋଗୀ** ସହିତ **ପ୍ରଯତ୍ନାତ୍ ଯତମାନଃ** ବିଶେଷଣ ଦିଆଯାଇଛି । ତାଙ୍କ ପ୍ରଯତ୍ନର ଫଳ ସେଠାରେ ସେହି ଶ୍ଳୋକରେ କୁହାଯାଇ ନ ଥିଲା, ତେଣୁ ତାହା ଏଠାରେ କୁହାଗଲା ।

**ପ୍ରଶ୍ନ – ଅନେକଜନ୍ମସଂସିଦ୍ଧଃ**ର ଅଭିପ୍ରାୟ କଣ ?

**ଉତ୍ତର –** ତେୟାଳିଶ ଶ୍ଳୋକରେ କୁହାଯାଇଛି ଯେ, ଯୋଗିକୁଳରେ ଜନ୍ମ ହୋଇଥିବା ଯୋଗଭ୍ରଷ୍ଟ ପୁରୁଷ ପୂର୍ବଜନ୍ମରେ କରିଥିବା ଯୋଗାଭ୍ୟାସର ସଂସ୍କାରମାନଙ୍କୁ ପ୍ରାପ୍ତ ହୋଇଯାନ୍ତି । ଏଠାରେ ସେହି କଥାକୁ ସ୍ପଷ୍ଟ କରିବାପାଇଁ **ଅନେକଜନ୍ମସଂସିଦ୍ଧଃ** ବିଶେଷଣ ଦିଆଯାଇଛି । ଅଭିପ୍ରାୟ ଏହି ଯେ, ପୂର୍ବରୁ ଅନେକ ଜନ୍ମରେ କରିଥିବା ଓ ଇହଜନ୍ମରେ କରୁଥିବା ଉଭୟ ଅଭ୍ୟାସ ତାହାଙ୍କୁ ଯୋଗସିଦ୍ଧିପ୍ରାପ୍ତିରେ ଅର୍ଥାତ୍ ସାଧନାର ପରାକାଷ୍ଠାଯାଏ ପହଞ୍ଚାଇବାରେ କାରଣ ଅଟେ; କାହିଁକି ନା, ପୂର୍ବସଂସ୍କାରବଳରେ ହିଁ ସେ ବିଶେଷ ପ୍ରଯତ୍ନର ସହିତ ଏହି ଜନ୍ମରେ ସାଧନା ଅଭ୍ୟାସ କରି ସାଧନାର ପରାକାଷ୍ଠା ପ୍ରାପ୍ତି କରନ୍ତି ।

**ପ୍ରଶ୍ନ – ସଂଶୁଦ୍ଧକିଲ୍‌ବିଷଃ**ର ଭାବ କଣ ?

**ଉତ୍ତର –** ଯାହାଙ୍କର ସମସ୍ତ ପାପ ସର୍ବଥା ଧୋଇ ହୋଇଗଲାଣି, ତାହାଙ୍କୁ **ସଂଶୁଦ୍ଧକିଲ୍‌ବିଷ** କହନ୍ତି । ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଏପ୍ରକାର ଅଭ୍ୟାସ କରିଥିବା ଯୋଗୀଙ୍କ ଠାରେ ଲେଶମାତ୍ର ବି ପାପ ରହେ ନାହିଁ ।

**ପ୍ରଶ୍ନ – ତତଃ**ର ଭାବ କଣ ?

**ଉତ୍ତର – ତତଃ** ପଦ ଏଠାରେ 'ତତ୍‌ପଶ୍ଚାତ୍' ଅର୍ଥରେ ଆସିଛି । ଏହା ପ୍ରୟୋଗ କରି ଦେଖାଇଛନ୍ତି ଯେ, ସାଧନାର ପରାକାଷ୍ଠାରୂପୀ ସଂସିଦ୍ଧି ପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ହିଁ ପରମଗତି ପ୍ରାପ୍ତ ହୋଇଯାଏ; ଏଥିରେ ଟିକିଏ ବି ବିଳମ୍ବ ହୁଏ ନାହିଁ ।

**ପ୍ରଶ୍ନ – ପରମଗତିପ୍ରାପ୍ତି** କଣ ?

**ଉତ୍ତର –** ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହେବା ହିଁ **ପରମଗତିପ୍ରାପ୍ତି** । ଏହାକୁ ପରମପଦପ୍ରାପ୍ତି, ପରମଧାମପ୍ରାପ୍ତି ଓ ନୈଷ୍ଠିକୀ ଶାନ୍ତିପ୍ରାପ୍ତି ମଧ୍ୟ କହନ୍ତି ।

*ସମ୍ବନ୍ଧ – ଯୋଗଭ୍ରଷ୍ଟଙ୍କ ଗତି ବିଷୟ ସମାପ୍ତ କରି ଭଗବାନ୍ ବର୍ତ୍ତମାନ ଯୋଗୀଙ୍କର ମହିମା କହି ଅର୍ଜୁନଙ୍କୁ ଯୋଗୀ ହେବାକୁ ଆଜ୍ଞା ଦେଉଛନ୍ତି —*

**ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ ।**
**କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍‌ଯୋଗୀ ଭବାର୍ଜୁନ ।। ୪୬ ।।**

**ଅନ୍ୱୟ —** **ଯୋଗୀ** = ଯୋଗୀ; **ତପସ୍ୱିଭ୍ୟଃ** = ତପସ୍ୱୀମାନଙ୍କ ଠାରୁ; **ଅଧିକଃ** = ଶ୍ରେଷ୍ଠ; **ଜ୍ଞାନିଭ୍ୟଃ** = ଶାସ୍ତ୍ରଜ୍ଞାନିମାନଙ୍କ ଅପେକ୍ଷା; **ଅପି** = ମଧ; **ଅଧିକଃ** = ଶ୍ରେଷ୍ଠ (ବୋଲି); **ମତଃ** = ଗଣ୍ୟ; **ଚ** = ଓ; **କର୍ମିଭ୍ୟଃ** = ସକାମକର୍ମ କରୁଥିବା ଲୋକଙ୍କ ଅପେକ୍ଷା ମଧ; **ଯୋଗୀ** = ଯୋଗୀ; **ଅଧିକଃ** = ଶ୍ରେଷ୍ଠ; **ତସ୍ମାତ୍** = ତେଣୁ; **ଅର୍ଜୁନ** = ହେ ଅର୍ଜୁନ; **ଯୋଗୀ** = (ତୁମେ) ଯୋଗୀ; **ଭବ** = ହୋଇଯାଅ।

**ଯୋଗୀ ତପସ୍ୱିମାନଙ୍କ ଠାରୁ ଶ୍ରେଷ୍ଠ; ଶାସ୍ତ୍ରଜ୍ଞାନୀମାନଙ୍କ ଠାରୁ ମଧ ଶ୍ରେଷ୍ଠ ବୋଲି ଗଣ୍ୟ ଏବଂ ସକାମକର୍ମ କରୁଥିବା ଲୋକଙ୍କ ଠାରୁ ମଧ ଯୋଗୀ ଶ୍ରେଷ୍ଠ; ତେଣୁ ହେ ଅର୍ଜୁନ! ତୁମେ ଯୋଗୀ ହୋଇଯାଅ ॥ ୪୬ ॥**

**ପ୍ରଶ୍ନ —** ଏଠାରେ **ତପସ୍ୱୀ** ଶବ୍ଦ କାହାର ବାଚକ?

**ଉତ୍ତର —** ସକାମଭାବରେ ଧର୍ମପାଳନପାଇଁ ଇନ୍ଦ୍ରିୟସଂଯମପୂର୍ବକ ସକଳ କ୍ରିୟା ବା ବିଷୟଭୋଗ ତ୍ୟାଗ କରି ମନ, ଇନ୍ଦ୍ରିୟ ଓ ଶରୀରସମ୍ବନ୍ଧୀ ସମସ୍ତ କଷ୍ଟକୁ ଯାହା ସହିଯିବାର ନାମ **ତପ** ଓ ତାହା କରିବା ଲୋକଙ୍କୁ **ତପସ୍ୱୀ** ବୋଲି କୁହାଯାଇଛି।

**ପ୍ରଶ୍ନ —** ଏଠାରେ **ଜ୍ଞାନୀ**ର ଅଭିପ୍ରାୟ କଣ?

**ଉତ୍ତର —** ଏଠାରେ **ଜ୍ଞାନୀ** ଭଗବତ୍‌ପ୍ରାପ୍ତ ତତ୍ତ୍ୱଜ୍ଞାନୀ ପୁରୁଷଙ୍କ ବାଚକ ନୁହେଁ, କି ପରମାତ୍ମାଙ୍କୁ ପାଇବାପାଇଁ ଜ୍ଞାନଯୋଗ ସାଧନା କରୁଥିବା ଜ୍ଞାନଯୋଗୀଙ୍କର ବାଚକ ନୁହେଁ। ଏଠାରେ 'ଜ୍ଞାନୀ' ହେଉଛି କେବଳ ଶାସ୍ତ୍ର ଓ ଆଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ବିବେକ-ବୁଦ୍ଧିଦ୍ୱାରା ସମସ୍ତ ବିଷୟ ବୁଝୁଥିବା ଶାସ୍ତ୍ରଜ୍ଞ ପୁରୁଷଙ୍କ ବାଚକ।

**ପ୍ରଶ୍ନ —** ଏଠାରେ **କର୍ମୀ**ର ଅଭିପ୍ରାୟ କଣ?

**ଉତ୍ତର —** ସ୍ତ୍ରୀ, ପୁତ୍ର, ଧନ ଓ ସ୍ୱର୍ଗାଦି ପ୍ରାପ୍ତିପାଇଁ ଯଜ୍ଞ, ଦାନ, ପୂଜା, ସେବା ଆଦି ଶାସ୍ତ୍ରବିହିତ ଶୁଭକର୍ମ ସକାମଭାବରେ କରୁଥିବା ଲୋକର ନାମ **କର୍ମୀ**।

**ପ୍ରଶ୍ନ —** ଯେହେତୁ ତପସ୍ୟା କରୁଥିବା ଓ ଶାସ୍ତ୍ରଜ୍ଞାନ ସମ୍ପାଦନ କରୁଥିବା ଲୋକେ ମଧ ସକାମଭାବରେ ଯୁକ୍ତ, ତେଣୁ ସେମାନଙ୍କୁ ମଧ କର୍ମୀ ବୋଲି ମାନିବା ଉଚିତ ଥିଲା। କିନ୍ତୁ ସେପରି ନ ମାନି ସେମାନଙ୍କୁ ଅଲଗା ବୋଲି କାହିଁକି କୁହାଗଲା?

**ଉତ୍ତର —** ଏଠାରେ 'କର୍ମୀ'ର ପ୍ରୟୋଗ ଏତେ ବ୍ୟାପକ ଅର୍ଥରେ ହୋଇ ନାହିଁ। ସକାମଭାବରେ ଯଜ୍ଞଦାନାଦି ଶାସ୍ତ୍ରବିହିତ କ୍ରିୟା କରୁଥିବା ଲୋକର ନାମ ହିଁ କର୍ମୀ। ଏଥିରେ କ୍ରିୟାର ବହୁଳତା ରହିଛି। ତପସ୍ୱୀଙ୍କ ଠାରେ କ୍ରିୟାର ପ୍ରାଧାନ୍ୟ ନାହିଁ; ତାଙ୍କ ଠାରେ ମନ ଓ ଇନ୍ଦ୍ରିୟସଂଯମର ପ୍ରାଧାନ୍ୟ ରହିଥାଏ ଓ ଶାସ୍ତ୍ରଜ୍ଞାନୀଙ୍କ ଠାରେ ଶାସ୍ତ୍ରୀୟ ବୌଦ୍ଧିକ ଆଲୋଚନାର ପ୍ରାଧାନ୍ୟ ରହିଥାଏ। ଭଗବାନ୍ ଏହି ପ୍ରଭେଦକୁ ଧ୍ୟାନରେ ରଖି ହିଁ କର୍ମୀଙ୍କ ମଧରେ ତପସ୍ୱୀ ଓ ଶାସ୍ତ୍ରଜ୍ଞାନୀମାନଙ୍କୁ ଅନ୍ତର୍ଭୁକ୍ତ ନ କରି, ସେମାନଙ୍କୁ ପୃଥକ୍‌ଭାବରେ ନିର୍ଦ୍ଦେଶ କରିଛନ୍ତି।

**ପ୍ରଶ୍ନ —** ଏହି ଶ୍ଳୋକରେ 'ଯୋଗୀ' ଶବ୍ଦର ଅଭିପ୍ରାୟ କଣ?

**ଉତ୍ତର —** ଏଠାରେ ଜ୍ଞାନଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ ଓ କର୍ମଯୋଗ ଆଦି ଯେକୌଣସି ସାଧନାରେ ସାଧନାର ପରାକାଷ୍ଠାରୂପକ 'ସମତ୍ୱଯୋଗ'-ପ୍ରାପ୍ତ ପୁରୁଷଙ୍କର ନାମ 'ଯୋଗୀ'।

**ପ୍ରଶ୍ନ —** ଜ୍ଞାନଯୋଗ ଓ କର୍ମଯୋଗ — ଏହି ଦୁଇଟି ନିଷ୍ଠା ହିଁ ସ୍ୱୀକାର କରାଯାଇଛି। ତା'ହେଲେ ଭକ୍ତିଯୋଗ ଓ ଧ୍ୟାନଯୋଗ କଣ ଏ ଦୁଇଟିଠାରୁ ଭିନ୍ନ?

**ଉତ୍ତର —** ଭକ୍ତିଯୋଗ ତ କର୍ମଯୋଗର ହିଁ ଅନ୍ତର୍ଗତ। ଯେଉଁଠି ଭକ୍ତିପ୍ରଧାନ କର୍ମ ହୁଏ, ସେଠାରେ ତା'ର ନାମ ଭକ୍ତିଯୋଗ ଓ ଯେଉଁଠି କର୍ମପ୍ରଧାନ କର୍ମ ହୁଏ, ସେଠାରେ ତାହାକୁ କର୍ମଯୋଗ କହନ୍ତି। ଧ୍ୟାନଯୋଗ ଉଭୟ ନିଷ୍ଠାରେ ସହାୟକ ସାଧନ। ଅଭେଦବୁଦ୍ଧିରେ କରାଗଲେ ତାହା ଜ୍ଞାନଯୋଗରେ ଓ ଭେଦବୁଦ୍ଧିରେ କରାଗଲେ ତାହା କର୍ମଯୋଗରେ ସହାୟକ ହୁଏ।

*ସମ୍ବନ୍ଧ — ପୂର୍ବଶ୍ଳୋକରେ ଯୋଗୀଙ୍କୁ ସର୍ବଶ୍ରେଷ୍ଠ ବୋଲି କହି ଭଗବାନ୍ ଅର୍ଜୁନଙ୍କୁ ଯୋଗୀ ହେବାକୁ ଉପଦେଶ ଦେଲେ। କିନ୍ତୁ ଜ୍ଞାନଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ ଓ କର୍ମଯୋଗ ଆଦି ସାଧନା ମଧରୁ ଅର୍ଜୁନ କେଉଁ ସାଧନା କରିବା ଉଚିତ, ତାହାର ସ୍ପଷ୍ଟୀକରଣ କରି ନାହାନ୍ତି। ତେଣୁ ବର୍ତ୍ତମାନ ଭଗବାନ୍ ତାଙ୍କୁ ଅନନ୍ୟପ୍ରେମ କରୁଥିବା ଭକ୍ତଯୋଗୀଙ୍କୁ ପ୍ରଶଂସା କରି ଅର୍ଜୁନଙ୍କୁ ନିଜ ଆଡ଼କୁ ଆକର୍ଷଣ କରୁଛନ୍ତି—*

**ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା ।**
**ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ ।। ୪୭ ।।**

ଅନ୍ୱୟ — **ସର୍ବେଷାମ୍** = ସମସ୍ତ; **ଯୋଗିନାମ୍** = ଯୋଗିମାନଙ୍କ ମଧ୍ୟରେ; **ଅପି** = ବି; **ଯଃ** = ଯେଉଁ; **ଶ୍ରଦ୍ଧାବାନ୍** = ଶ୍ରଦ୍ଧାବାନ୍ ଯୋଗୀ; **ମଦ୍‌ଗତେନ** = ମୋଠାରେ ଲାଗିରହିଥିବା; **ଅନ୍ତରାତ୍ମନା** = ଅନ୍ତରାତ୍ମାଦ୍ୱାରା; **ମାମ୍** = ମୋତେ; **ଭଜତେ** = ନିରନ୍ତର ଭଜେ; **ସଃ** = ସେହି ଯୋଗୀ; **ମେ** = ମୋ ପକ୍ଷରେ; **ଯୁକ୍ତତମଃ** = ପରମଶ୍ରେଷ୍ଠ (ବୋଲି); **ମତଃ** = ମାନ୍ୟ ଅଟେ ।

**ସମସ୍ତ ଯୋଗୀମାନଙ୍କ ମଧ୍ୟରେ ବି ଯେଉଁ ଶ୍ରଦ୍ଧାବାନ୍ ଯୋଗୀ ମୋଠାରେ ଲାଗିରହିଥିବା ଅନ୍ତରାତ୍ମାଦ୍ୱାରା ମୋତେ ନିରନ୍ତର ଭଜୁଥାନ୍ତି, ସେହି ଯୋଗୀ ମୋ ପକ୍ଷରେ ପରମ ଶ୍ରେଷ୍ଠ ବୋଲି ମାନ୍ୟ ଅଟନ୍ତି ।। ୪୭ ।।**

**ପ୍ରଶ୍ନ —** ଏଠାରେ **ଯୋଗିନାମ୍** ପଦ ସହିତ 'ଅପି' ପ୍ରୟୋଗ କରି **ସର୍ବେଷାମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର —** ଚତୁର୍ଥ ଅଧ୍ୟାୟର ଚବିଶଠାରୁ ତିରିଶ ଶ୍ଳୋକଯାଏ ଭଗବତ୍‌ପ୍ରାପ୍ତିର ଯେତେସବୁ ସାଧନା ଯଜ୍ଞ ନାମରେ କୁହାଯାଇଛି, ସେସବୁ ଛଡ଼ା ଭଗବତ୍‌ପ୍ରାପ୍ତିର ଆହୁରି ଯେଉଁ ଯେଉଁ ସାଧନା ଏପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇଛି, ସେସବୁର ପରାକାଷ୍ଠାର ନାମ 'ଯୋଗ'। ତେଣୁ ବିଭିନ୍ନ ସାଧନା କରୁଥିବା ବିଭିନ୍ନପ୍ରକାର 'ଯୋଗୀ' ଥାଇପାରନ୍ତି। ସେହିସବୁ ଯୋଗୀମାନଙ୍କୁ ଲକ୍ଷ୍ୟ କରି ଏଠାରେ **ଯୋଗିନାମ୍** ପଦ ସହିତ **ଅପି** ପଦ ପ୍ରୟୋଗ କରାଯାଇଛି ଓ **ସର୍ବେଷାମ୍** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ — ଶ୍ରଦ୍ଧାବାନ୍** ପୁରୁଷଙ୍କ ଲକ୍ଷଣ କଣ ?

**ଉତ୍ତର —** ଯେ ଭଗବାନଙ୍କ ସତ୍ତାରେ, ତାଙ୍କ ଅବତାରମାନଙ୍କରେ, ତାଙ୍କ ବଚନରେ, ତାଙ୍କ ଅଚିନ୍ତ୍ୟ ଅନନ୍ତ ଦିବ୍ୟଗୁଣମାନଙ୍କରେ ତଥା ତାଙ୍କ ନାମ ଓ ଲୀଳାରେ ଏବଂ ତାଙ୍କ ମହିମା, ଶକ୍ତି ପ୍ରଭାବ ଓ ଐଶ୍ୱର୍ଯ୍ୟ ଆଦିରେ ପ୍ରତ୍ୟକ୍ଷସଦୃଶ ପୂର୍ଣ୍ଣ ଓ ଅଟଳ ବିଶ୍ୱାସ ରଖନ୍ତି, ତାହାଙ୍କୁ ଶ୍ରଦ୍ଧାବାନ୍ କୁହାଯାଏ।

**ପ୍ରଶ୍ନ — ମଦ୍‌ଗତେନ** ବିଶେଷଣ ସହିତ **ଅନ୍ତରାତ୍ମା** ପଦ କାହାର ବାଚକ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଇଦେଉଛନ୍ତି, ''ମୋତେ ହିଁ ସର୍ବଶ୍ରେଷ୍ଠ, ସର୍ବଗୁଣାଧାର, ସର୍ବଶକ୍ତିମାନ୍ ଓ ମହାନ୍ ପ୍ରିୟତମ ବୋଲି ଜାଣିବା ଫଳରେ ଯାହାଙ୍କର ମୋଠାରେ ଅନନ୍ୟ ପ୍ରେମ ହୋଇଯାଇଛି ଏବଂ ସେହିହେତୁ ଯାହାଙ୍କର ମନ-ବୁଦ୍ଧିରୂପକ ଅନ୍ତଃକରଣ ଅଚଳ, ଅଟଳ ଓ ଅନନ୍ୟଭାବରେ ମୋଠାରେ ହିଁ ଲାଗିଯାଇଛି, ତାହାଙ୍କର ସେହି ଅନ୍ତଃକରଣକୁ **ମଦ୍‌ଗତ ଅନ୍ତରାତ୍ମା** ବା ମୋଠାରେ ଲାଗିରହିଥିବା ଅନ୍ତରାତ୍ମା ବୋଲି କହନ୍ତି।''

**ପ୍ରଶ୍ନ —** ଏଠାରେ ଅନନ୍ୟ ପ୍ରେମରେ ଭଗବାନଙ୍କ ଠାରେ ସ୍ଥିତ ରହୁଥିବା ମନବୁଦ୍ଧିକୁ ହିଁ 'ମଦ୍‌ଗତ ଅନ୍ତରାତ୍ମା' କାହିଁକି କୁହାଯାଇଛି ? ଭୟ ଓ ଦ୍ୱେଷ ଆଦି କାରଣରୁ ମଧ୍ୟ ମନ ଓ ବୁଦ୍ଧି ଭଗବାନଙ୍କ ଠାରେ ଲାଗିପାରେ କି ?

**ଉତ୍ତର —** ଲାଗିପାରେ, ଓ ଯେକୌଣସି ବି କାରଣରୁ ମନବୁଦ୍ଧି ପରମାତ୍ମାରେ ଲାଗିଯିବାର ଫଳ ପରମ କଲ୍ୟାଣକର ହିଁ ଅଟେ। କିନ୍ତୁ ଏଠାରେ ପ୍ରେମପୂର୍ବକ ଭଗବାନଙ୍କ ଠାରେ ମନବୁଦ୍ଧି ଲଗାଇବାର ପ୍ରସଙ୍ଗ ଚାଲିଛି। ଭୟ ଓ ଦ୍ୱେଷପୂର୍ବକ ଲାଗିଥିବା ମନବୁଦ୍ଧିର ପ୍ରସଙ୍ଗ ପଡ଼ି ନାହିଁ। କାରଣ ଭୟ ଓ ଦ୍ୱେଷରୁ ଯାହାର ମନବୁଦ୍ଧି ଭଗବାନଙ୍କ ଠାରେ ଲାଗିଯାଏ, ତାହାକୁ ଶ୍ରଦ୍ଧାବାନ୍ କୁହାଯାଇପାରିବ ନାହିଁ, କି ପରମଯୋଗୀ ବୋଲି ମାନିହେବ ନାହିଁ। ଏହା ଛଡ଼ା ସପ୍ତମ ଅଧ୍ୟାୟର ଆରମ୍ଭରେ ହିଁ ଭଗବାନ୍ **'ମୟ୍ୟାସକ୍ତମନାଃ'** କହି ଅନନ୍ୟ ପ୍ରେମର ହିଁ ସଙ୍କେତ କରିଛନ୍ତି। ଏହା ଛଡ଼ା, ଗୀତାରେ ସ୍ଥାନେ ସ୍ଥାନେ (୭/୧୭, ୯/୧୪, ୧୦/୧୦) ପ୍ରେମପୂର୍ବକ ଭଗବାନଙ୍କ ଠାରେ ମନବୁଦ୍ଧି ଲଗାଇବାର ହିଁ ପ୍ରଶଂସା କରିଛନ୍ତି। ଅତଏବ ଏଠାରେ ଏପରି ହିଁ ମାନିବା ଉଚିତ।

**ପ୍ରଶ୍ନ —** ଏଠାରେ **ମାମ୍** ପଦ ଭଗବାନଙ୍କ ସଗୁଣରୂପର ବାଚକ ନା ନିର୍ଗୁଣର ?

**ଉତ୍ତର —** ଏଠାରେ **ମାମ୍** ପଦଟି ହେଉଛି ନିରତିଶୟ ଜ୍ଞାନ, ଶକ୍ତି, ଐଶ୍ୱର୍ଯ୍ୟ, ବୀର୍ଯ୍ୟ ଓ ତେଜ ଆଦିର ପରମ ଆଶ୍ରୟ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଔଦାର୍ଯ୍ୟର

ଅନନ୍ତସାଗର, ପରମଦୟାଳୁ, ପରମସୁହୃଦ୍, ପରମପ୍ରେମୀ, ଦିବ୍ୟ ଅଚିନ୍ତ୍ୟାନନ୍ଦସ୍ୱରୂପ, ନିତ୍ୟ, ସତ୍ୟ, ଅଜ ଓ ଅବିନାଶୀ, ସର୍ବାନ୍ତର୍ଯାମୀ, ସର୍ବଜ୍ଞ, ସର୍ବଶକ୍ତିମାନ୍, ସର୍ବଦିବ୍ୟଗୁଣାଳଙ୍କୃତ, ସର୍ବାତ୍ମା, ଅଚିନ୍ତ୍ୟମହତ୍ତ୍ୱରେ ମହିମାନ୍ୱିତ, ଚିତ୍ର-ବିଚିତ୍ରଲୀଳାକାରୀ, ଲୀଳାମାତ୍ରକେ ପ୍ରକୃତିଦ୍ୱାରା ସାରା ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାରକାରୀ ତଥା ରସସାଗର, ରସମୟ, ଆନନ୍ଦକନ୍ଦ, ସଗୁଣ-ନିର୍ଗୁଣରୂପ ସମଗ୍ର ବ୍ରହ୍ମ ପୁରୁଷୋତ୍ତମଙ୍କର ବାଚକ।

**ପ୍ରଶ୍ନ –** ଏଠାରେ **ଭଜତେ** କ୍ରିୟା ପଦର ଭାବ କଣ ?

**ଉତ୍ତର –** ସବୁପ୍ରକାରେ ଓ ସବୁ ଦିଗରୁ ନିଜର ମନବୁଦ୍ଧି ଭଗବାନଙ୍କ ଠାରେ ଲଗାଇ ପରମଶ୍ରଦ୍ଧା ଓ ପ୍ରେମର ସହିତ, ଚାଲିବା-ବୁଲିବା, ଉଠିବା-ବସିବା, ଖାଇବା-ପିଇବା, ଶୋଇବା-ଜାଗିବା ଆଦି ପ୍ରତ୍ୟେକ କ୍ରିୟା କରିବାବେଳେ ଅଥବା ଏକାନ୍ତରେ ରହିଥିବାବେଳେ ନିରନ୍ତର ଶ୍ରୀଭଗବାନଙ୍କ ଭଜନ ଧ୍ୟାନ କରିବା ହିଁ **ଭଜତେ**ର ଅର୍ଥ।

**ପ୍ରଶ୍ନ –** 'ସେ ମୋ ପକ୍ଷରେ ପରମଶ୍ରେଷ୍ଠ ବୋଲି ମାନ୍ୟ ଅଟନ୍ତି' — ଭଗବାନଙ୍କର ଏହି କଥାର ଭାବ କଣ ?

**ଉତ୍ତର –** ଶ୍ରୀଭଗବାନ୍ ଏଠାରେ ନିଜର ପ୍ରେମୀ ଭକ୍ତମାନଙ୍କର ମହିମା ବର୍ଣ୍ଣନା କରି ସତେ ଯେପରି କହୁଛନ୍ତି, ''ଯଦ୍ୟପି ତପସ୍ୱୀ, ଜ୍ଞାନୀ ଓ କର୍ମୀ ଆଦି ସମସ୍ତେ ମୋର ପ୍ରିୟ ଏବଂ ଏହି ସମସ୍ତଙ୍କ ଠାରୁ ମଧ୍ୟ ସେହି ଯୋଗୀ ମୋର ଅଧିକ ପ୍ରିୟ, ଯେ କି ମୋର ପ୍ରାପ୍ତିପାଇଁ ହିଁ ସାଧନା କରନ୍ତି, କିନ୍ତୁ ଯେ ମୋର ସମଗ୍ରରୂପକୁ ଜାଣି ମୋତେ ଅନନ୍ୟ ପ୍ରେମ କରନ୍ତି, କେବଳ ମୋତେ ହିଁ ନିଜର ପରମ ପ୍ରେମାସ୍ପଦ ଭାବି, କୌଣସି କଥାକୁ ଅପେକ୍ଷା, ଆକାଂକ୍ଷା ଓ ଭ୍ରୂକ୍ଷେପ ନ କରି ଦିନରାତି ମୋଠାରେ ହିଁ ନିଜର ଅନ୍ତରାତ୍ମା ଲଗାଇରଖନ୍ତି, ମାତୃପରାୟଣ ଶିଶୁପରି ଯେ ମୋ ଛଡ଼ା ଆଉ କିଛି ଜାଣନ୍ତି ନାହିଁ, ସେ ତ ମୋ ହୃଦୟର ପରମଧନ ଅଟନ୍ତି। ଅପତ୍ୟସ୍ନେହରେ ଯାହାଙ୍କର ହୃଦୟ ପରିପୂର୍ଣ୍ଣ, ଯାହାଙ୍କୁ ଦିନରାତି ନିଜର ପ୍ରିୟ ଶିଶୁକୁ ଦେଖିବାରେ ନିତ୍ୟନୂତନ ଆନନ୍ଦ ମିଳେ, ସେପରି ବାତ୍ସଲ୍ୟସ୍ନେହମୟୀ ଅସଂଖ୍ୟ ମାତାଙ୍କ ହୃଦୟ ଏକତ୍ର ହୋଇଗଲେ ମୋର ଅଚିନ୍ତ୍ୟାନନ୍ତ ପ୍ରେମମୟ ହୃଦୟସାଗରର ଗୋଟିଏ ବିନ୍ଦୁ ସହିତ ବି ସମାନ ହେବ ନାହିଁ। ମୋର ସେହି ବିରାଟ ହୃଦୟରେ ମୁଁ ତାଙ୍କୁ ଦେଖୁଥାଏ ଓ ତାଙ୍କର ପ୍ରତ୍ୟେକ କ୍ରିୟା ମୋତେ ଅପାର ସୁଖ ଦେଉଥାଏ। ସାରା ଜଗତକୁ ଅନାଦିକାଳରୁ ଯେତେପ୍ରକାର ଯେଉଁ ଯେଉଁ ଆନନ୍ଦ ପ୍ରାପ୍ତ ହୋଇ ଆସୁଛି, ସେସବୁ ତ ମୋ ଆନନ୍ଦସାଗରର ଗୋଟିଏ ବିନ୍ଦୁ ସହିତ ତୁଳନୀୟ ନୁହେଁ। ଏପରି ଅନନ୍ତ ଆନନ୍ଦର ଅପାର ସାଗର ହୋଇ ମଧ୍ୟ ମୁଁ ମୋର ସେହି **ମଦ୍‌ଗତାନ୍ତରାତ୍ମା** ଭକ୍ତଙ୍କର ଚେଷ୍ଟା ଦେଖି ଦେଖି ପରମ ଆନନ୍ଦ ଉପଭୋଗ କରେ। ତାଙ୍କର କି ପ୍ରଶଂସା କରିବି ! ସେ ତ ମୋ ନିଜର; ମୋର ହିଁ ଅଟନ୍ତି; ତାଙ୍କ ଠାରୁ ପ୍ରିୟତମ ହୋଇ ମୋର ଆଉ କିଏ ବା ଅଛି ! ଯେ ମୋର ପ୍ରିୟତମ, ସେ ତ ଶ୍ରେଷ୍ଠତମ। ତେଣୁ ମୋ ମତରେ ସେ ହିଁ ସର୍ବୋତ୍ତମ ଭକ୍ତ ଓ ସେ ହିଁ ସର୍ବୋତ୍ତମ ଯୋଗୀ।

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଆତ୍ମସଂଯମଯୋଗୋ*
*ନାମ ଷଷ୍ଠୋଽଧ୍ୟାୟଃ ॥୬॥*

—— ୦ ——

ଓଁ ଶ୍ରୀପରମାତ୍ମନେ ନମଃ

# ସପ୍ତମୋଽଧ୍ୟାୟଃ

## ଜ୍ଞାନବିଜ୍ଞାନ ଯୋଗ

**ଷଟ୍କ ସ୍ପଷ୍ଟୀକରଣ :** ଶ୍ରୀମଦ୍ଭଗବଦ୍ଗୀତାର ଅଠର ଅଧ୍ୟାୟକୁ ଯଦିଓ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ କ୍ରମରେ ଛଅ ଛଅ ଅଧ୍ୟାୟବିଶିଷ୍ଟ ତିନୋଟି ଷଟ୍କ ବୋଲି ଧରାଯାଏ, ତଥାପି ଏହାର ଅର୍ଥ ନୁହେଁ ଯେ, ଏହି ଷଟ୍କମାନଙ୍କରେ କେବଳ ଗୋଟିଏ ଯୋଗର ହିଁ ବର୍ଣ୍ଣନା ହୋଇଛି ଏବଂ ଅନ୍ୟ ଯୋଗର ଚର୍ଚ୍ଚା ଆଦୌ ହୋଇ ନାହିଁ। ଯେଉଁ ଷଟ୍କରେ ଯେଉଁ ଯୋଗର ବର୍ଣ୍ଣନାକୁ ପ୍ରାଧାନ୍ୟ ଦିଆଯାଇଛି, ସେହି ଅନୁସାରେ ତାହାର ନାମ ରଖାଯାଇଛି।

ପ୍ରଥମ ଷଟ୍କର ପ୍ରଥମ ଅଧ୍ୟାୟଟି କେବଳ ଉପକ୍ରମ। ଏଥିରେ ଉପରୋକ୍ତ ତିନି ଯୋଗ ମଧ୍ୟରୁ କୌଣସି ବି ଯୋଗର ବିଷୟ ନାହିଁ। ଦ୍ୱିତୀୟ ଅଧ୍ୟାୟର ଏଗାରରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ସାଂଖ୍ୟଯୋଗ (ଜ୍ଞାନଯୋଗ)ର ବିଷୟ ଏବଂ ଅଣଚାଳିଶ ଶ୍ଳୋକଠାରୁ ଆରମ୍ଭ କରି ତୃତୀୟ ଅଧ୍ୟାୟର ଶେଷପର୍ଯ୍ୟନ୍ତ ମୁଖ୍ୟତଃ କର୍ମଯୋଗର ବିସ୍ତୃତ ବର୍ଣ୍ଣନା ହୋଇଛି। ଚତୁର୍ଥ ଓ ପଞ୍ଚମ ଅଧ୍ୟାୟରେ କର୍ମଯୋଗ ଓ ଜ୍ଞାନଯୋଗର ମିଶ୍ରିତ ବର୍ଣ୍ଣନା ହୋଇଛି, ତଥା ଷଷ୍ଠ ଅଧ୍ୟାୟରେ ମୁଖ୍ୟତଃ ଧ୍ୟାନଯୋଗର ବର୍ଣ୍ଣନା ହୋଇଛି। ତା' ସହିତ ପ୍ରସଙ୍ଗାନୁସାରେ କର୍ମଯୋଗ ଆଦିର ମଧ୍ୟ ବର୍ଣ୍ଣନା କରାଯାଇଛି। ଏପରିଭାବରେ ଏହି ଷଟ୍କରେ ସବୁ ବିଷୟର ମିଶ୍ରଣ ହୋଇଛି, ତଥାପି ଅନ୍ୟ ଦୁଇଟି ଷଟ୍କ ତୁଳନାରେ ଏଥିରେ କର୍ମଯୋଗର ବର୍ଣ୍ଣନା ଅଧିକ। ଏହି ଦୃଷ୍ଟିରୁ ଏହାକୁ କର୍ମଯୋଗପ୍ରଧାନ ଷଟ୍କ ବୋଲି ଧରିନିଆଯାଏ।

ସପ୍ତମ ଅଧ୍ୟାୟଠାରୁ ଦ୍ୱାଦଶ ଅଧ୍ୟାୟଯାଏ ଦ୍ୱିତୀୟ ଷଟ୍କ। ଏଥିରେ ପ୍ରସଙ୍ଗକ୍ରମେ କେଉଁଠି କେଉଁଠି ଅନ୍ୟାନ୍ୟ ବିଷୟର ଚର୍ଚ୍ଚା ହୋଇଥିଲେ ମଧ୍ୟ ଏହି ଅଧ୍ୟାୟଗୁଡ଼ିକରେ ପ୍ରଧାନତଃ ଭକ୍ତିଯୋଗର ହିଁ ବିଶଦ ବର୍ଣ୍ଣନା ହୋଇଛି; ଅତଏବ ଏହି ଷଟ୍କକୁ ଭକ୍ତିପ୍ରଧାନ ବୋଲି ମାନିବା ଉଚିତ।

ଅନ୍ତିମ ଷଟ୍କରେ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଅଧ୍ୟାୟ ସ୍ପଷ୍ଟତଃ ଜ୍ଞାନଯୋଗ-ପ୍ରକରଣ। ପଞ୍ଚଦଶ ଅଧ୍ୟାୟରେ ଭକ୍ତିଯୋଗର ବର୍ଣ୍ଣନା ହୋଇଛି। ଷୋଡ଼ଶ ଅଧ୍ୟାୟରେ ଦୈବୀ ଓ ଆସୁରୀ ସମ୍ପଦର ବ୍ୟାଖ୍ୟା କରାଯାଇଛି। ସପ୍ତଦଶରେ ଶ୍ରଦ୍ଧା, ଆହାର ଓ ଯଜ୍ଞ, ଦାନ, ତପ ଆଦି ନିରୂପଣ କରାଯାଇଛି ଏବଂ ଅଷ୍ଟାଦଶ ଅଧ୍ୟାୟଟି ଗୀତାର ଉପସଂହାର ହୋଇଥିବାରୁ ସେଥିରେ କର୍ମ, ଭକ୍ତି ଓ ଜ୍ଞାନ ତିନୋଟିଯାକ ଯୋଗର ବର୍ଣ୍ଣନା ହୋଇଛି, ତଥା ଶେଷରେ ଶରଣାଗତିପ୍ରଧାନ ଭକ୍ତିଯୋଗରେ ଗୀତା-ଉପଦେଶର ଉପସଂହାର କରାଯାଇଛି। ଏସବୁ ସତ୍ତ୍ୱେ ମାନିବାକୁ ହିଁ ପଡ଼ିବ ଯେ, ଏହି ଅନ୍ତିମ ଷଟ୍କରେ ଜ୍ଞାନଯୋଗର ଯେତିକି ବର୍ଣ୍ଣନା କରାଯାଇଛି, ପ୍ରଥମ ଓ ଦ୍ୱିତୀୟ ଷଟ୍କରେ ସେତିକି କରାଯାଇ ନାହିଁ। ଏଣୁ ଏହାକୁ ଜ୍ଞାନଯୋଗପ୍ରଧାନ କୁହାଯାଇପାରେ।

**ଅଧ୍ୟାୟର ନାମ :** ପରମାତ୍ମାଙ୍କ ନିର୍ଗୁଣ ନିରାକାର ତତ୍ତ୍ୱର ପ୍ରଭାବ, ମାହାତ୍ମ୍ୟ ଆଦି ରହସ୍ୟ ସହିତ ସଂପୂର୍ଣ୍ଣରୂପେ ଜାଣିନେବାର ନାମ 'ଜ୍ଞାନ' ଏବଂ ସଗୁଣ ନିରାକାର ଓ ସାକାର ତତ୍ତ୍ୱର ଲୀଳା, ରହସ୍ୟ, ମହତ୍ତ୍ୱ, ଗୁଣ ଓ ପ୍ରଭାବ ଆଦିର ପୂର୍ଣ୍ଣଜ୍ଞାନ ହିଁ 'ବିଜ୍ଞାନ'। ଏହି ଜ୍ଞାନ ଓ ବିଜ୍ଞାନ ସହିତ ଭଗବାନଙ୍କ ସ୍ୱରୂପକୁ ଜାଣିବା ହିଁ ସମଗ୍ର ଭଗବାନଙ୍କୁ ଜାଣିବା। ଏହି ଅଧ୍ୟାୟରେ 'ସମଗ୍ର' ଭଗବାନଙ୍କ ସ୍ୱରୂପର, ତାହା ଜାଣିବାକୁ ଯେଉଁମାନେ ଯୋଗ୍ୟ ସେହି ଅଧିକାରୀମାନଙ୍କର ତଥା ବିଭିନ୍ନ ସାଧନାର ବର୍ଣ୍ଣନା ରହିଛି। ଅତଏବ ଏହି ଅଧ୍ୟାୟର ନାମ 'ଜ୍ଞାନବିଜ୍ଞାନ-ଯୋଗ' ରଖାଯାଇଛି।

**ଅଧ୍ୟାୟର ସାରାଂଶ :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ତାଙ୍କର ସମଗ୍ର ରୂପର ବର୍ଣ୍ଣନା ଶୁଣିବାକୁ ଆଦେଶ ଦେଇଛନ୍ତି ତଥା ଦ୍ୱିତୀୟ ଶ୍ଳୋକରେ ବିଜ୍ଞାନ ସହିତ ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରି ତା'ର ପ୍ରଶଂସା କରିଛନ୍ତି। ତୃତୀୟ ଶ୍ଳୋକରେ ଭଗବତ୍ସ୍ୱରୂପକୁ ତତ୍ତ୍ୱତଃ ଜାଣିବାର ଦୁର୍ଲ୍ଲଭତା ପ୍ରତିପାଦନ କରିଛନ୍ତି। ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ନିଜର ଅପରା ଓ ପରା ପ୍ରକୃତିର ସ୍ୱରୂପ ବୁଝାଇ, ଷଷ୍ଠରେ ଉକ୍ତ ଦୁଇ ପ୍ରକୃତିକୁ ସକଳ ପ୍ରାଣୀଙ୍କର କାରଣ ଓ ନିଜକୁ ସମସ୍ତଙ୍କର ମହାକାରଣ ବୋଲି ବୁଝାଇଛନ୍ତି। ସପ୍ତମ ଶ୍ଳୋକରେ ସାରା ଜଗତକୁ ନିଜର ସ୍ୱରୂପ ବୋଲି କହି, ମାଳାର ଦୃଷ୍ଟାନ୍ତ ଦେଇ ସାରରୂପରେ ନିଜର ବ୍ୟାପକତା ପ୍ରକାଶ କରିଛନ୍ତି। ଆଠରୁ ବାର ଶ୍ଳୋକଯାଏ ବିସ୍ତାରପୂର୍ବକ ନିଜର ସର୍ବବ୍ୟାପକତା ବର୍ଣ୍ଣନା କରିଛନ୍ତି। ତେର ଶ୍ଳୋକରେ ନିଜକୁ (ଭଗବାନଙ୍କୁ) ତତ୍ତ୍ୱତଃ ଜାଣି ନ ପାରିବାର କାରଣ ନିରୂପଣ କରି ଚଉଦ ଶ୍ଳୋକରେ ନିଜ ମାୟା କିପରି ଅତ୍ୟନ୍ତ ଦୁସ୍ତର, ତାହା ବର୍ଣ୍ଣନା କରିଛନ୍ତି ଓ ସେଥିରୁ ପାର ହେବାର ଉପାୟ କହିଛନ୍ତି। ପନ୍ଦରରେ ପାପାତ୍ମା ମୂଢ଼ ମନୁଷ୍ୟମାନଙ୍କ ଦ୍ୱାରା ଭଜନ ହୋଇ ପାରେ ନାହିଁ ବୋଲି କହି ଷୋହଳରେ ନିଜର ଚାରିପ୍ରକାର ପୁଣ୍ୟାତ୍ମାଭକ୍ତଙ୍କ କଥା କହିଛନ୍ତି। ସତରରେ ଜ୍ଞାନୀଭକ୍ତଙ୍କ ଶ୍ରେଷ୍ଠତା ନିରୂପଣ କରି, ଅଠରରେ ସମସ୍ତ ଭକ୍ତଙ୍କୁ ଉଦାର ବୋଲି ଓ ଜ୍ଞାନୀଙ୍କୁ ନିଜର ଆତ୍ମା ବୋଲି କହିଛନ୍ତି। ଉଣେଇଶରେ ଜ୍ଞାନୀଭକ୍ତଙ୍କର ବିରଳତା ବର୍ଣ୍ଣନା କରିଛନ୍ତି। କୋଡ଼ିଏରେ ଅନ୍ୟ ଦେବୋପାସକମାନଙ୍କ କଥା କହି ଏକୋଇଶରେ ଅନ୍ୟ ଦେବତାମାନଙ୍କ ଠାରେ ଶ୍ରଦ୍ଧା ସ୍ଥିର କରିବାର ଫଳ ଏବଂ ବାଇଶରେ ସେମାନଙ୍କ ଉପାସନାର ଫଳ ନିରୂପଣ କରିଛନ୍ତି। ତେଇଶରେ ଅନ୍ୟ ଦେବତାମାନଙ୍କ ଉପାସନାର ଫଳ ନାଶବାନ୍ ବୋଲି କହି ତାଙ୍କ (ଭଗବାନଙ୍କ) ଉପାସନାର ମହାନ୍ ଫଳ ଭଗବତ୍ପ୍ରାପ୍ତି ବୋଲି କହିଛନ୍ତି। ଚବିଶ ଓ ପଚିଶରେ ନିଜର ଗୁଣ, ପ୍ରଭାବ ଓ ସ୍ୱରୂପକୁ ଲୋକେ ଜାଣି ନ ପାରିବାର କାରଣ ବର୍ଣ୍ଣନା କରି ଛବିଶରେ କହିଛନ୍ତି, "ମୁଁ ସମସ୍ତଙ୍କୁ ଜାଣେ, କିନ୍ତୁ ମୋତେ କେହି ଜାଣନ୍ତି ନାହିଁ।" ସତେଇଶରେ ତାଙ୍କୁ ଜାଣି ନ ପାରିବାର କାରଣ ବୁଝାଇ ଅଠେଇଶରେ ତାଙ୍କୁ ଭଜନ କରୁଥିବା ଦୃଢ଼ବ୍ରତ ଶ୍ରେଷ୍ଠ ଭକ୍ତମାନଙ୍କର ଲକ୍ଷଣ ବର୍ଣ୍ଣନା କରିଛନ୍ତି। ତା'ପରେ ଅଣତିରିଶରେ ତାଙ୍କର ଆଶ୍ରୟ ନେଇ ଯତ୍ନ କରୁଥିବା ଲୋକର ବ୍ରହ୍ମପ୍ରାପ୍ତି ହୁଏ ବୋଲି କହି ତିରିଶ ଶ୍ଳୋକରେ ତାଙ୍କର ସମଗ୍ର ସ୍ୱରୂପକୁ ଜାଣିବାର ମହିମା ନିରୂପଣ କରିବା ସହିତ ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ—** ଷଷ୍ଠ ଅଧ୍ୟାୟର ଶେଷ ଶ୍ଳୋକରେ ଭଗବାନ୍ କହିଛନ୍ତି, 'ଅନ୍ତରାତ୍ମାକୁ ମୋ'ଠାରେ ଲଗାଇ ଯେ ଶ୍ରଦ୍ଧା ଓ ପ୍ରେମର ସହିତ ମୋତେ ଭଜନ କରନ୍ତି, ସେ ସକଳ ଯୋଗୀମାନଙ୍କ ମଧ୍ୟରେ ଉତ୍ତମ ଯୋଗୀ ଅଟନ୍ତି।' ଏଣୁ ଭଗବାନଙ୍କ ସ୍ୱରୂପ, ଗୁଣ ଓ ପ୍ରଭାବକୁ ମନୁଷ୍ୟ ଯେପର୍ଯ୍ୟନ୍ତ ଜାଣି ନ ପାରିଛି, ସେପର୍ଯ୍ୟନ୍ତ ତା'ଦ୍ୱାରା ଅନ୍ତରାତ୍ମାରେ ନିରନ୍ତର ଭଜନ ହୋଇପାରିବା ଅତ୍ୟନ୍ତ କଠିନ। ତା' ସଙ୍ଗେ ସଙ୍ଗେ ଭଜନର ପ୍ରକାର ଜାଣିବା ମଧ୍ୟ ଆବଶ୍ୟକ। ଅତଏବ ବର୍ତ୍ତମାନ ଭଗବାନ୍ ନିଜର ଗୁଣ, ପ୍ରଭାବ ସହିତ ସମଗ୍ର ସ୍ୱରୂପର ତଥା ବିବିଧପ୍ରକାରରେ ଯୁକ୍ତ ଭକ୍ତିଯୋଗର ବର୍ଣ୍ଣନା କରିବାକୁ ସପ୍ତମ ଅଧ୍ୟାୟ ଆରମ୍ଭ କରୁଛନ୍ତି ଏବଂ ସର୍ବପ୍ରଥମ ଦୁଇଟି ଶ୍ଳୋକରେ ସେ ଅର୍ଜୁନଙ୍କୁ ସାବଧାନ ହୋଇ ଶୁଣିବାକୁ ପ୍ରେରଣା ଦେଇ ଜ୍ଞାନ-ବିଜ୍ଞାନ ତତ୍ତ୍ୱ କହିବାକୁ ପ୍ରତିଜ୍ଞା କରୁଛନ୍ତି—

ଶ୍ରୀଭଗବାନୁବାଚ

**ମୟ୍ୟାସକ୍ତମନାଃ ପାର୍ଥ ଯୋଗଂ ଯୁଞ୍ଜନ୍ମଦାଶ୍ରୟଃ ।**
**ଅସଂଶୟଂ ସମଗ୍ରଂ ମାଂ ଯଥା ଜ୍ଞାସ୍ୟସି ତଚ୍ଛୃଣୁ ॥ ୧ ॥**

**ଅନ୍ୱୟ—** **ପାର୍ଥ** = ହେ ପାର୍ଥ; **ମୟି, ଆସକ୍ତମନାଃ** = ଅନନ୍ୟ ପ୍ରେମରେ ମୋଠାରେ ଆସକ୍ତଚିତ୍ତ ହୋଇ; **ମଦାଶ୍ରୟଃ** = (ତଥା) ଅନନ୍ୟଭାବରେ ମୋର ପରାୟଣ ହୋଇ; **ଯୋଗଂ ଯୁଞ୍ଜନ୍** = ଯୋଗରତ ହେଲେ; **ଯଥା** = ଯେପରିଭାବରେ (ତୁମେ); **ସମଗ୍ରମ୍** = ସକଳ ବିଭୂତି, ବଳ, ଐଶ୍ୱର୍ଯ୍ୟାଦି ଗୁଣଯୁକ୍ତ ସମସ୍ତଙ୍କର ଆତ୍ମରୂପ; **ମାମ୍** = ମୋତେ; **ଅସଂଶୟମ୍** = ନିଃସଂଶୟଭାବରେ; **ଜ୍ଞାସ୍ୟସି** = ଜାଣିବ; **ତତ୍** = ତାହା; **ଶୃଣୁ** = ଶୁଣ।

**ଶ୍ରୀଭଗବାନ୍ କହିଲେ— ହେ ପାର୍ଥ! ଅନନ୍ୟପ୍ରେମରେ ମୋଠାରେ ଆସକ୍ତଚିତ୍ତ ହୋଇ ତଥା ଅନନ୍ୟଭାବରେ ମୋର ପରାୟଣ ହୋଇ ଯୋଗରତ ହେଲେ ତୁମେ ଯେପରି ସକଳ ବିଭୂତି, ବଳ, ଐଶ୍ୱର୍ଯ୍ୟାଦି ଗୁଣଯୁକ୍ତ ଓ ସମସ୍ତଙ୍କର ଆତ୍ମରୂପ ମୋତେ ନିଃସଂଶୟଭାବରେ ଜାଣିପାରିବ, ତାହା ଶୁଣ ।। ୧ ।।**

**ପ୍ରଶ୍ନ—** **ମୟ୍ୟାସକ୍ତମନାଃ** କାହାକୁ କହନ୍ତି ?

**ଉତ୍ତର—** ଇହଲୋକ ଓ ପରଲୋକର କୌଣସି ବି ଭୋଗରେ ଯାହାର ମନରେ ତିଳେମାତ୍ର ଆସକ୍ତି ନାହିଁ, ତଥା ଯାହାର ମନ ସବୁଦିଗରୁ ନିବୃତ୍ତ ହୋଇ ଏକମାତ୍ର ପରମପ୍ରେମାସ୍ପଦ ସର୍ବଗୁଣସମ୍ପନ୍ନ ପରମେଶ୍ୱରଙ୍କ ଠାରେ ଏତେଦୂର ଆସକ୍ତ ହୋଇଗଲାଣି ଯେ, ଜଳରୁ ଟିକିଏ ଦୂର ହେବାମାତ୍ରେ ମାଛ ଯେପରି ଅତ୍ୟନ୍ତ ବ୍ୟାକୁଳ ହୁଏ, ଭଗବାନଙ୍କ ବିୟୋଗ ଓ ବିସ୍ମରଣକୁ ଯେ ସେହିପରି କ୍ଷଣେମାତ୍ର ସହିପାରନ୍ତି ନାହିଁ, ତାଙ୍କୁ ଭଗବାନ୍ **ମୟ୍ୟାସକ୍ତମନାଃ** ବୋଲି କହନ୍ତି ।

**ପ୍ରଶ୍ନ—** **'ମଦାଶ୍ରୟଃ'** କାହାକୁ କହନ୍ତି ?

**ଉତ୍ତର—** ଯେଉଁ ବ୍ୟକ୍ତି ସଂସାରର ସମସ୍ତ ଆଶ୍ରୟ ତ୍ୟାଗ କରି, ସମସ୍ତ ଆଶା ଓ ଭରସା ଆଡ଼େଇଦେଇ ଏକମାତ୍ର ଭଗବାନଙ୍କ ଉପରେ ନିର୍ଭର କରନ୍ତି ଓ ସର୍ବଶକ୍ତିମାନ୍ ଭଗବାନଙ୍କୁ ହିଁ ପରମ ଆଶ୍ରୟ ତଥା ପରମଗତି ବୋଲି ଜାଣି ଏକମାତ୍ର ତାଙ୍କରି ଭରସାରେ ଚିରଦିନପାଇଁ ନିଶ୍ଚିନ୍ତ ହୋଇଗଲେଣି, ତାଙ୍କୁ ଭଗବାନ୍ **'ମଦାଶ୍ରୟଃ'** ବୋଲି କହନ୍ତି ।

**ପ୍ରଶ୍ନ—** **'ଯୋଗଂ ଯୁଞ୍ଜନ୍'** ର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହା ଭକ୍ତିଯୋଗର ପ୍ରକରଣ । ଅତଏବ ମନ ଓ ବୁଦ୍ଧିକୁ ଅଚଳଭାବରେ ଭଗବାନଙ୍କ ଠାରେ ଲଗାଇ ନିତ୍ୟନିରନ୍ତର ଶ୍ରଦ୍ଧାପ୍ରେମପୂର୍ବକ ତାଙ୍କ ଚିନ୍ତନ କରିବା ହିଁ **ଯୋଗଂ ଯୁଞ୍ଜନ୍**ର ଅଭିପ୍ରାୟ ।

**ପ୍ରଶ୍ନ—** ସମଗ୍ର ଭଗବାନଙ୍କୁ ନିଃସଂଶୟଭାବରେ ଜାଣିପାରିବା' କଣ ?

**ଉତ୍ତର—** ଭଗବାନ୍ ଏତିକି ବା ସେତିକି ହିଁ ନୁହନ୍ତି; ସମସ୍ତ ଅନନ୍ତକୋଟି ବ୍ରହ୍ମାଣ୍ଡ ତାଙ୍କ ଠାରେ ଓତପ୍ରୋତ ହୋଇ ରହିଛି; ସବୁ ତାଙ୍କର ହିଁ ସ୍ୱରୂପ । ଏହି ବ୍ରହ୍ମାଣ୍ଡ ଏବଂ ଏହା ବାହାରେ ଯାହା କିଛି ବି ଅଛି, ସେସବୁ ତାଙ୍କ ମଧ୍ୟରେ ଅଛି । ସେ ନିତ୍ୟ, ସେ ସତ୍ୟ, ସେ ସନାତନ, ସେ ସର୍ବଗୁଣସମ୍ପନ୍ନ, ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବାଧାର ଓ ସର୍ବରୂପ ତଥା ସେ ନିଜେ ହିଁ ନିଜର ଯୋଗମାୟାଦ୍ୱାରା ଜଗତରୂପରେ ପ୍ରକଟ ହୁଅନ୍ତି । ବାସ୍ତବରେ ତାଙ୍କ ଛଡ଼ା ଅନ୍ୟ କିଛି ନାହିଁ । ବ୍ୟକ୍ତ-ଅବ୍ୟକ୍ତ ଏବଂ ସଗୁଣ-ନିର୍ଗୁଣ ସବୁ ସେ । ଏପରିଭାବରେ ଭଗବାନଙ୍କ ସ୍ୱରୂପକୁ ଅଭ୍ରାନ୍ତ ଓ ଅସନ୍ଦିଗ୍ଧରୂପରେ ବୁଝିଯିବା ହିଁ ସମଗ୍ର ଭଗବାନଙ୍କୁ ସଂଶୟରହିତଭାବରେ ଜାଣିବା ।

**ଜ୍ଞାନଂ ତେଽହଂ ସବିଜ୍ଞାନମିଦଂ ବକ୍ଷ୍ୟାମ୍ୟଶେଷତଃ ।**
**ଯଜ୍ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍ ଜ୍ଞାତବ୍ୟମବଶିଷ୍ୟତେ ।। ୨ ।।**

**ଅନ୍ୱୟ—** ଅହମ୍ = ମୁଁ; ତେ = ତୁମକୁ; ଇଦମ୍ = ଏହି; ସବିଜ୍ଞାନମ୍ = ବିଜ୍ଞାନସହିତ; **ଜ୍ଞାନମ୍** = ତତ୍ତ୍ୱଜ୍ଞାନକୁ; **ଅଶେଷତଃ** = ସମ୍ପୂର୍ଣ୍ଣଭାବରେ; ବକ୍ଷ୍ୟାମି = କହିବି; ଯତ୍ = ଯାହାକୁ; **ଜ୍ଞାତ୍ୱା** = ଜାଣିଗଲେ; ଇହ = ଏହି ସଂସାରରେ; ଭୂୟଃ = ଆଉ; ଅନ୍ୟତ୍ = ଅନ୍ୟ କିଛି ବି; **ଜ୍ଞାତବ୍ୟମ୍** = ଜାଣିବାଯୋଗ୍ୟ; ନ, ଅବଶିଷ୍ୟତେ = ବାକି ରହିଯାଏ ନାହିଁ ।

**ମୁଁ ତୁମକୁ ବିଜ୍ଞାନ ସହିତ ଏହି ତତ୍ତ୍ୱଜ୍ଞାନ ସଂପୂର୍ଣ୍ଣଭାବରେ କହିଦେବି; ଏହା ଜାଣିଗଲେ ସଂସାରରେ ଆଉ କିଛି ଜାଣିବାର ଯୋଗ୍ୟ ବସ୍ତୁ ବାକି ରହିଯାଏ ନାହିଁ ।। ୨ ।।**

**ପ୍ରଶ୍ନ—** ଏଠାରେ **ଜ୍ଞାନ** ଓ **ବିଜ୍ଞାନ** କାହାର ବାଚକ ?

**ଉତ୍ତର—** ଭଗବାନଙ୍କର ନିର୍ଗୁଣ ନିରାକାର ତତ୍ତ୍ୱର ପ୍ରଭାବ, ମାହାତ୍ମ୍ୟ ଓ ରହସ୍ୟ ସହିତ ଯଥାର୍ଥ ଜ୍ଞାନକୁ 'ଜ୍ଞାନ' କହନ୍ତି । ତାଙ୍କର ସଗୁଣ ନିରାକାର ତଥା ଦିବ୍ୟ ସାକାର ତତ୍ତ୍ୱର ଲୀଳା, ରହସ୍ୟ, ଗୁଣ, ମହତ୍ତ୍ୱ ଓ ପ୍ରଭାବ ସହିତ ଯଥାର୍ଥ ଜ୍ଞାନ ହିଁ **ବିଜ୍ଞାନ** ।

**ପ୍ରଶ୍ନ—** ଏହି ଜ୍ଞାନ-ବିଜ୍ଞାନର ବର୍ଣ୍ଣନା ଏହି ଅଧ୍ୟାୟରେ କେଉଁଠି କରାଯାଇଛି ?

**ଉତ୍ତର—** ଏହି ଅଧ୍ୟାୟରେ ଯାହା କିଛି ଉପଦେଶ

ଦିଆଯାଇଛି, ତାହା ପୁରାପୁରି ଜ୍ଞାନ-ବିଜ୍ଞାନପ୍ରାପ୍ତିର ସାଧନରୂପେ ଦିଆଯାଇଛି । ଏଣୁ ତେର ଅଧ୍ୟାୟର ସପ୍ତମ ଶ୍ଳୋକଠାରୁ ଏଗାର ଶ୍ଳୋକଯାଏ ଜ୍ଞାନର ସାଧନମାନଙ୍କୁ ଯେପରି 'ଜ୍ଞାନ' ବୋଲି କୁହାଯାଇଛି, ଏହି ସମସ୍ତ ଅଧ୍ୟାୟଟି ଜ୍ଞାନ-ବିଜ୍ଞାନସମ୍ପର୍କୀୟ ଉପଦେଶରେ ପୂର୍ଣ୍ଣ ହୋଇଥିବାରୁ ଏହି ଅଧ୍ୟାୟଟିକୁ ସେହିପରି ଜ୍ଞାନ-ବିଜ୍ଞାନରୂପ ବୋଲି ବୁଝିବା ଉଚିତ ।

**ପ୍ରଶ୍ନ –** ଯେଉଁ ବିଜ୍ଞାନ ସହିତ ଜ୍ଞାନ କହିବାକୁ ଯାଉଛନ୍ତି, ତାହା ଜାଣିବା ପରେ ସଂସାରରେ ଜାଣିବାକୁ ଆଉ କିଛି ବାକି ରହେ ନାହିଁ ବୋଲି କିପରି କହିଲେ ?

**ଉତ୍ତର –** ଜ୍ଞାନ ଓ ବିଜ୍ଞାନଦ୍ୱାରା ଭଗବାନଙ୍କର ସମଗ୍ର ସ୍ୱରୂପକୁ ଭଲଭାବରେ ଉପଲବ୍ଧି କରିହୁଏ । ଏହି ବିଶ୍ୱବ୍ରହ୍ମାଣ୍ଡ ତ ଭଗବାନଙ୍କର ସମଗ୍ର ରୂପର ଏକ ସାମାନ୍ୟ ଅଂଶମାତ୍ର । ଯେତେବେଳେ ମନୁଷ୍ୟ ଭଗବାନଙ୍କର ସମଗ୍ର ରୂପକୁ ଜାଣିପାରେ, ସେତେବେଳେ ସ୍ୱତଃ ତା'ପାଇଁ ଆଉ କିଛି ବି ଜାଣିବାକୁ ବାକି ରହେ ନାହିଁ । ଭଗବାନ୍ ଦଶମ ଅଧ୍ୟାୟ ଶେଷରେ ସ୍ୱୟଂ କହିଛନ୍ତି, ''ହେ ଅର୍ଜୁନ ! ତୁମର ବହୁତ ଜାଣିବା କି ପ୍ରୟୋଜନ ? ଜାଣ ଯେ, ମୁଁ ମୋର ଶକ୍ତିର ଏକ ଅଂଶଦ୍ୱାରା ଏହି ସଂପୂର୍ଣ୍ଣ ଜଗତକୁ ଧାରଣ କରି ରହିଛି ।'' ଅତଏବ ଏଠାରେ ଏହା କହିବା ଉଚିତ ହୋଇଛି ।

**ସମ୍ବନ୍ଧ –** *ନିଜର ସମଗ୍ରରୂପର ଜ୍ଞାନ-ବିଜ୍ଞାନ କହିବାକୁ ପ୍ରତିଜ୍ଞା କରି ଭଗବାନ୍ ବର୍ତ୍ତମାନ ସେହି ସ୍ୱରୂପକୁ ତତ୍ତ୍ୱତଃ ଜାଣିବାର ଦୁର୍ଲଭତା ପ୍ରତିପାଦନ କରୁଛନ୍ତି –*

**ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ୟତତି ସିଦ୍ଧୟେ ।**
**ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ ।। ୩ ।।**

**ଅନ୍ୱୟ –** **ସହସ୍ରେଷୁ** = ହଜାର ହଜାର; **ମନୁଷ୍ୟାଣାମ୍** = ମନୁଷ୍ୟମାନଙ୍କ ମଧ୍ୟରୁ; **କଶ୍ଚିତ୍** = (କ୍ୱଚିତ୍) କେହି ଜଣେ; **ସିଦ୍ଧୟେ** = ମୋର ପ୍ରାପ୍ତିପାଇଁ; **ଯତତି** = ଯତ୍ନ କରିଥାଏ; **ଯତତାମ୍** = (ଓ ସେହି) ଯତ୍ନ କରୁଥିବା; **ସିଦ୍ଧାନାମ୍** = ଯୋଗୀମାନଙ୍କ ମଧ୍ୟରୁ; **ଅପି** = ବି; **କଶ୍ଚିତ୍** = କ୍ୱଚିତ୍ କେହି ଜଣେ (ମୋର ପରାୟଣ ହୋଇ); **ମାମ୍** = ମୋତେ; **ତତ୍ତ୍ୱତଃ** = ତତ୍ତ୍ୱତଃ ଅର୍ଥାତ୍ ଯଥାର୍ଥରୂପେ; **ବେତ୍ତି** = ଜାଣେ ।

**ସହସ୍ର ସହସ୍ର ମନୁଷ୍ୟଙ୍କ ମଧ୍ୟରୁ କ୍ୱଚିତ୍ କେହି ଜଣେ ମୋର ପ୍ରାପ୍ତିପାଇଁ ଯତ୍ନ କରିଥାନ୍ତି ଏବଂ ସେହି ଯତ୍ନ କରୁଥିବା ଯୋଗୀମାନଙ୍କ ମଧ୍ୟରୁ ବି କ୍ୱଚିତ୍ କେହି ଜଣେ ମୋର ପରାୟଣ ହୋଇ ମୋତେ ତତ୍ତ୍ୱତଃ ଯଥାର୍ଥରୂପରେ ଜାଣନ୍ତି ।। ୩ ।।**

**ପ୍ରଶ୍ନ –** ଏଠାରେ 'ମନୁଷ୍ୟ' ଶବ୍ଦ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର –** 'ମନୁଷ୍ୟ' ଶବ୍ଦ ପ୍ରୟୋଗଦ୍ୱାରା ପ୍ରଥମତଃ ପ୍ରକାଶ କରାଯାଇଛି ଯେ, ମନୁଷ୍ୟଜନ୍ମ ବଡ଼ ଦୁର୍ଲଭ; ଭଗବାନଙ୍କର ବିଶେଷ କୃପାରୁ ଏହି ଜନ୍ମ ପ୍ରାପ୍ତି ହୁଏ; କାରଣ ଏହି ଜନ୍ମରେ ହିଁ ସମସ୍ତଙ୍କୁ ଭଗବତ୍‌ପ୍ରାପ୍ତିପାଇଁ ସାଧନା କରିବାର ଜନ୍ମଗତ ଅଧିକାର ମିଳିଥାଏ । ସେହି ସାଧନା କରିବାରେ ଜାତି, ବର୍ଣ୍ଣ, ଆଶ୍ରମ ଓ ଦେଶ-ଗତ ବିଭିନ୍ନତାର କୌଣସିପ୍ରକାର ପ୍ରତିବନ୍ଧ ନାହିଁ । ଏହା ବ୍ୟତୀତ ଅନ୍ୟ ଏକ ଭାବ ମଧ୍ୟ ପ୍ରକାଶିତ ହେଉଛି ଯେ, ମନୁଷ୍ୟ ବ୍ୟତୀତ ଅନ୍ୟ ଯେତେ ବି ଯୋନି ଅଛି, ସେଥିରେ ନୂତନ କର୍ମ କରିବାର ଅଧିକାର ନାହିଁ; ଅତଏବ ସେହି ଯୋନିରେ ପ୍ରାଣୀ ଭଗବତ୍‌ପ୍ରାପ୍ତିପାଇଁ ସାଧନା କରିପାରେ ନାହିଁ । ପଶୁ, ପକ୍ଷୀ, କୀଟ-ପତଙ୍ଗାଦି ତିର୍ଯ୍ୟକ୍ ଯୋନିମାନଙ୍କରେ ତ ସାଧନା କରିବାର ଶକ୍ତି ଓ ଯୋଗ୍ୟତା ଆଦୌ ନାହିଁ । ଦେବାଦି ଯୋନିରେ ଏଥିପାଇଁ ଶକ୍ତି ଥିଲେ ବି, ଭୋଗର ଆଧିକ୍ୟ ଥିବାରୁ ଏବଂ ମୁଖ୍ୟତଃ ଅଧିକାର ନ ଥିବାରୁ ଦେବତାମାନେ ସାଧନା କରିପାରନ୍ତି ନାହିଁ । ତିର୍ଯ୍ୟକ୍ ବା ଦେବାଦି ଯୋନିରେ କାହାର ଯଦି ପରମାତ୍ମଜ୍ଞାନ ହୋଇଯାଏ, ତେବେ ତାହା ଭଗବାନଙ୍କର ବା ମହାପୁରୁଷମାନଙ୍କର ବିଶେଷ ଦୟାର ପ୍ରଭାବ ଓ ମହତ୍ତ୍ୱ ହେତୁ ହୁଏ ବୋଲି ବୁଝିବାକୁ ହେବ ।

**ପ୍ରଶ୍ନ –** 'ସହସ୍ର ସହସ୍ର ମନୁଷ୍ୟଙ୍କ ମଧ୍ୟରେ କ୍ୱଚିତ୍ କେହି ଜଣେ ଭଗବତ୍‌ପ୍ରାପ୍ତିପାଇଁ ସାଧନା କରିଥାନ୍ତି ।' – ଏହାର କାରଣ କଣ ?

**ଉତ୍ତର —** ଭଗବତ୍କୃପାର ଫଳସ୍ୱରୂପ ମନୁଷ୍ୟଶରୀର ପ୍ରାପ୍ତ ହେବା ପରେ ମଧ୍ୟ ଜନ୍ମଜନ୍ମାନ୍ତରର ସଂସ୍କାରଯୋଗୁଁ ଭୋଗରେ ଅତ୍ୟନ୍ତ ଆସକ୍ତି ଆସିଯାଏ ଓ ଭଗବାନଙ୍କ ଠାରେ ଶ୍ରଦ୍ଧା-ପ୍ରେମର ଅଭାବ ରହିଯାଏ। ତେଣୁ ଅଧିକାଂଶ ମନୁଷ୍ୟ ଏହି ମାର୍ଗ ପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ। ଯାହାର ପୂର୍ବସଂସ୍କାର ଶୁଭ ହୋଇଥାଏ, ଭଗବାନଙ୍କ ପ୍ରତି, ମହାପୁରୁଷମାନଙ୍କ ପ୍ରତି ଓ ଶାସ୍ତ୍ର ପ୍ରତି ତାହାର କିଛି ଶ୍ରଦ୍ଧାଭକ୍ତି ହୁଏ। ପୁଣି ପୁଞ୍ଜୀଭୂତ ପୂର୍ବପୁଣ୍ୟ ବଳରେ ଓ ଭଗବତ୍କୃପା ବଳରେ କ୍ୱଚିତ୍ କାହାକୁ ସତ୍ପୁରୁଷମାନଙ୍କର ସତ୍ସଙ୍ଗ ମିଳିଥାଏ। ତେଣୁ ସହସ୍ର ସହସ୍ର ମନୁଷ୍ୟଙ୍କ ମଧ୍ୟରେ କୌଣସି ଜଣେ ବିରଳ ବ୍ୟକ୍ତି ହିଁ ଏହି ମାର୍ଗରେ ପ୍ରବୃତ୍ତ ହୋଇ ସାଧନା କରିବାକୁ ଯତ୍ନ କରିଥାନ୍ତି।

**ପ୍ରଶ୍ନ —** 'ଭଗବାନଙ୍କୁ ପାଇବାକୁ ଯତ୍ନ କରୁଥିବା ମନୁଷ୍ୟମାନଙ୍କ ମଧ୍ୟରୁ କ୍ୱଚିତ୍ କେହି ଜଣେ ହିଁ ଭଗବାନଙ୍କୁ ତତ୍ତ୍ୱତଃ ଜାଣିପାରନ୍ତି।' ସମସ୍ତେ କାହିଁକି ଜାଣନ୍ତି ନାହିଁ? —ଏହାର କାରଣ କଣ?

**ଉତ୍ତର —** ଏହାର କାରଣ ଏହି ଯେ, ପୂର୍ବସଂସ୍କାର, ଶ୍ରଦ୍ଧା, ପ୍ରୀତି, ସତ୍ସଙ୍ଗ ଓ ଚେଷ୍ଟାର ତାରତମ୍ୟଯୋଗୁଁ ସମସ୍ତଙ୍କର ସାଧନା ଏକାପରି ହୁଏ ନାହିଁ। ଅହଂକାର, ମମତ୍ୱ, କାମନା, ଆସକ୍ତି ଓ ସଙ୍ଗଦୋଷ ଆଦି କାରଣରୁ ନାନାଦି ବାଧାବିଘ୍ନ ମଧ୍ୟ ଆସିଥାଏ। ଅତଏବ ବହୁତ କମ୍ ଲୋକ ବାହାରନ୍ତି, ଯେଉଁମାନଙ୍କର ଶ୍ରଦ୍ଧା, ଭକ୍ତି ଓ ସାଧନା ପୂର୍ଣ୍ଣ ହୁଏ ଓ ତା'ର ଫଳସ୍ୱରୂପ ଏହି ଜନ୍ମରେ ହିଁ ସେମାନେ ଭଗବାନଙ୍କ ସାକ୍ଷାତ୍କାର ଲାଭ କରିପାରନ୍ତି।

**ପ୍ରଶ୍ନ —** ଯତ୍ନ କରୁଥିବା ଲୋକଙ୍କ ସହିତ **ସିଦ୍ଧ** ବିଶେଷଣଟି କେଉଁ ଅଭିପ୍ରାୟରେ ଦିଆଯାଇଛି?

**ଉତ୍ତର —** ଏହାର ଅଭିପ୍ରାୟ ଏହି ଯେ, ଭୋଗରେ ଲିପ୍ତ ହୋଇ, ବିଷୟାସକ୍ତ ହୋଇ ରହିଥିବା ମନୁଷ୍ୟମାନଙ୍କ ତୁଳନାରେ ପରମାତ୍ମପ୍ରାପ୍ତିରୂପ ପରମସିଦ୍ଧିପାଇଁ ଯେଉଁମାନେ ପ୍ରଯତ୍ନ କରନ୍ତି ସେମାନେ ସିଦ୍ଧ ହିଁ ଅଟନ୍ତି।

*__ସମ୍ବନ୍ଧ —__ ଏପର୍ଯ୍ୟନ୍ତ ଭଗବାନ୍ ନିଜ ସମଗ୍ର ସ୍ୱରୂପର ଜ୍ଞାନ-ବିଜ୍ଞାନ କହିବାକୁ ପ୍ରତିଜ୍ଞା କରି ତା'ର ପ୍ରଶଂସା କଲେ। ବର୍ତ୍ତମାନ ଜ୍ଞାନ-ବିଜ୍ଞାନ ପ୍ରକରଣ ଆରମ୍ଭ କରି ପ୍ରଥମେ ନିଜର 'ଅପରା' ଓ 'ପରା' ପ୍ରକୃତିର ସ୍ୱରୂପ ବୁଝାଇଦେଉଛନ୍ତି।*

**ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ।**
**ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ।। ୪ ।।**
**ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍।**
**ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍ ।। ୫ ।।**

**ଅନ୍ୱୟ —** ଭୂମିଃ = ଭୂମି; ଆପଃ = ଜଳ; ଅନଳଃ = ଅଗ୍ନି; ବାୟୁଃ = ବାୟୁ; ଖମ୍ = ଆକାଶ; ମନଃ = ମନ; ବୁଦ୍ଧିଃ = ବୁଦ୍ଧି; ଚ = ଏବଂ; ଅହଂକାରଃ = ଅହଂକାର; ଏବ = ବି; ଇତି, ଇୟମ୍ = ଏପରି, ଏହି; ଅଷ୍ଟଧା = ଆଠପ୍ରକାରରେ; ଭିନ୍ନା = ବିଭକ୍ତ; ମେ = ମୋର; ପ୍ରକୃତିଃ = ପ୍ରକୃତି; ଇୟମ୍ = ଏହି (ଏହି ଆଠପ୍ରକାରରେ ବିଭକ୍ତ); ତୁ = ତ; ଅପରା = ଅପରା ଅର୍ଥାତ୍ ମୋର ଜଡ ପ୍ରକୃତି (ଏବଂ); ମହାବାହୋ = ହେ ମହାବାହୁ; ଇତଃ = ଏହାଠାରୁ; ଅନ୍ୟାମ୍ = ଅନ୍ୟ ପ୍ରକୃତିକୁ; ଯୟା = ଯାହାଦ୍ୱାରା; ଇଦମ୍ = ଏହି (ସମସ୍ତ); ଜଗତ୍ = ଜଗତ; ଧାର୍ଯ୍ୟତେ = ଧାରଣ କରାଯାଇଛି; ମେ = (ତାହା) ମୋର; ଜୀବଭୂତାମ୍ = ଜୀବରୂପା; ପରାମ୍ = ପରା ଅର୍ଥାତ୍ ଚେତନ; ପ୍ରକୃତିମ୍, ବିଦ୍ଧି = ପ୍ରକୃତି(ବୋଲି) ଜାଣ।

**ଭୂମି, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର— ଏପରି ଆଠ ପ୍ରକାରରେ ବିଭକ୍ତ ପ୍ରକୃତି ମୋର ହିଁ ପ୍ରକୃତି ଅଟେ। ଏହି ଆଠପ୍ରକାରରେ ବିଭକ୍ତ ପ୍ରକୃତି ତ ମୋର ଅପରା ଅର୍ଥାତ୍ ଜଡପ୍ରକୃତି। ହେ ମହାବାହୁ! ଏହାଠାରୁ ଭିନ୍ନ ଅନ୍ୟ ପ୍ରକୃତି, ଯାହା କି ସମସ୍ତ ଜଗତକୁ ଧରିରଖିଛି, ତାହା ମୋର ଜୀବରୂପା ପରା ଅର୍ଥାତ୍ ଚେତନପ୍ରକୃତି ବୋଲି ଜାଣ।। ୪-୫ ।।**

**ପ୍ରଶ୍ନ** — ଏଠାରେ **ଭୂମି**, **ଜଳ**, **ଅଗ୍ନି**, **ବାୟୁ** ଓ **ଆକାଶ** କହିଲେ କଣ ବୁଝିବା ଉଚିତ ?

**ଉତ୍ତର** — ସ୍ଥୂଳ ପଞ୍ଚମହାଭୂତ ଓ ଶବ୍ଦାଦି ପାଞ୍ଚ ବିଷୟର କାରଣରୂପକ ଯେଉଁ ସୂକ୍ଷ୍ମ ପଞ୍ଚମହାଭୂତ ଅଛନ୍ତି, ସାଂଖ୍ୟ ଓ ଯୋଗଶାସ୍ତ୍ରରେ ଯାହାକୁ ପଞ୍ଚତନ୍ମାତ୍ର ବୋଲି କୁହାଯାଇଛି, ସେହି ପାଞ୍ଚଟିକୁ ଏଠାରେ **ଭୂମି** ଆଦି ନାମରେ ବର୍ଣ୍ଣନା କରାଯାଇଛି ।

**ପ୍ରଶ୍ନ** — ଏଠାରେ ମନ, ବୁଦ୍ଧି ଓ ଅହଂକାର କହିଲେ କଣ ବୁଝିବା ଉଚିତ ?

**ଉତ୍ତର** — ମନ, ବୁଦ୍ଧି ଓ ଅହଂକାର — ଏହି ତିନୋଟି ହେଉଛି ଅନ୍ତଃକରଣର ବିଭିନ୍ନ ରୂପ । ଅତଏବ ଏହାକୁ ସମଷ୍ଟି-ଅନ୍ତଃକରଣ ବୋଲି ବୁଝିବା ଉଚିତ ।

**ପ୍ରଶ୍ନ** — ତ୍ରୟୋଦଶ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଅବ୍ୟକ୍ତ ପ୍ରକୃତି ତେଇଶଭାଗରେ ବିଭକ୍ତ ବୋଲି କୁହାଯାଇଛି । ସେହି ଅନୁସାରେ ପ୍ରକୃତିକୁ ତେଇଶ ଭାଗରେ ବିଭକ୍ତ ବୋଲି କହିବା ଉଚିତ ଥିଲା; କିନ୍ତୁ ଏଠାରେ ତାହା ଆଠ ଭାଗରେ ବିଭକ୍ତ ବୋଲି କିପରି କହିଲେ ?

**ଉତ୍ତର** — ଶବ୍ଦାଦି ପାଞ୍ଚ ବିଷୟ ସୂକ୍ଷ୍ମ ପଞ୍ଚମହାଭୂତର କାର୍ଯ୍ୟ ଏବଂ ଦଶ ଇନ୍ଦ୍ରିୟ ଅନ୍ତଃକରଣର କାର୍ଯ୍ୟ । ଏଣୁ ଏହି ପନ୍ଦରଟି ଉକ୍ତ ଆଠଟି ମଧ୍ୟରେ ହିଁ ଅନ୍ତର୍ଭୁକ୍ତ ହୋଇଛି । ସେଠାରେ ଯାହାକୁ ତେଇଶ ଭାଗରେ ବିଭକ୍ତ ବୋଲି କୁହାଯାଇଛି, ଏଠାରେ ତାହାକୁ ଆଠ ଭାଗରେ ବିଭକ୍ତ ବୋଲି କୁହାଯାଇଛି ।

**ପ୍ରଶ୍ନ** — ଏହି ପ୍ରକୃତିର ନାମ **ଅପରା** କାହିଁକି ରଖାଗଲା ?

**ଉତ୍ତର** — ତ୍ରୟୋଦଶ ଅଧ୍ୟାୟରେ ଭଗବାନ୍ ଯେଉଁ ଅବ୍ୟକ୍ତ ମୂଳପ୍ରକୃତିର ତେଇଶଟି କାର୍ଯ୍ୟ କହିଛନ୍ତି, ତାହାକୁ ଏଠାରେ ଆଠ ଭାଗରେ ବିଭକ୍ତ ବୋଲି ବୁଝାଇଛନ୍ତି । ଏହି 'ଅପରା ପ୍ରକୃତି' ଜ୍ଞେୟ ତଥା ଜଡ଼ ହୋଇଥିବାରୁ ଏହା ଜ୍ଞାତା ଚେତନ ଜୀବରୂପା 'ପରା ପ୍ରକୃତି'ଠାରୁ ସର୍ବଥା ଭିନ୍ନ ଓ ନିକୃଷ୍ଟ । ଏହା ସଂସାରର କାରଣରୂପା ଅଟେ ଏବଂ ଏହାଦ୍ୱାରା ଜୀବର ବନ୍ଧନ ହୁଏ । ତେଣୁ ଏହାର ନାମ **ଅପରା** ।

**ପ୍ରଶ୍ନ** — ଜୀବରୂପ ଚେତନତତ୍ତ୍ୱ ତ ପୁଂଲିଙ୍ଗ; ଏଠାରେ 'ପ୍ରକୃତି' ନାମ ଦେଇ ଏହାକୁ ସ୍ତ୍ରୀଲିଙ୍ଗ କାହିଁକି କରାଯାଇଛି ?

**ଉତ୍ତର** — ଜୀବାତ୍ମାରେ ବସ୍ତୁତଃ ସ୍ତ୍ରୀତ୍ୱ, ପୁରୁଷତ୍ୱ ବା ନପୁଂସକତ୍ୱ ବୋଲି କିଛି ଲିଙ୍ଗଭେଦ ନାହିଁ— ଏହା ଦର୍ଶାଇବାପାଇଁ ସେହି ଏକା ଚେତନତତ୍ତ୍ୱକୁ କେଉଁଠି ପୁଂଲିଙ୍ଗ 'ପୁରୁଷ' (୧୫/୧୬) ଓ 'କ୍ଷେତ୍ରଜ୍ଞ' (୧୩/୧) ତଥା କେଉଁଠି ନପୁଂସକ 'ଅଧ୍ୟାତ୍ମ' (୭/୨୯; ୮/୩) ବୋଲି କୁହାଯାଇଛି । ତାକୁ ହିଁ ଏଠାରେ ସ୍ତ୍ରୀଲିଙ୍ଗ 'ପରା ପ୍ରକୃତି' ବୋଲି କୁହାଯାଇଛି ।

**ପ୍ରଶ୍ନ** — ଏଠାରେ **ଜଗତ୍** ଶବ୍ଦ କାହାର ବାଚକ ? ଏବଂ ତାହା ଜୀବରୂପା ପରା ପ୍ରକୃତିଦ୍ୱାରା ଧାରଣ କରାଯାଏ ବୋଲି କାହିଁକି କୁହାଗଲା ?

**ଉତ୍ତର** — ସକଳ ଜୀବଙ୍କର ଶରୀର, ଇନ୍ଦ୍ରିୟଗଣ, ପ୍ରାଣ ତଥା ବିଭିନ୍ନ ଭୋଗ୍ୟ ବସ୍ତୁ ଓ ଭୋଗସ୍ଥାନମୟ ଏହି ସଂପୂର୍ଣ୍ଣ ବ୍ୟକ୍ତପ୍ରକୃତିକୁ **ଜଗତ୍** ବୋଲାଯାଏ । ଏତାଦୃଶ ଏହି ଜଗଦ୍ରୂପକ ଜଡ଼ତତ୍ତ୍ୱ ଚେତନତତ୍ତ୍ୱଦ୍ୱାରା ପରିବ୍ୟାପ୍ତ ହୋଇଛି; ଏଣୁ ତାହା ଏହାକୁ ଧାରଣ କରି ରଖିଛି, କାରଣ ଚେତନତତ୍ତ୍ୱ ଜଡ଼ପ୍ରକୃତି ଅପେକ୍ଷା ସବୁପ୍ରକାରେ ଶ୍ରେଷ୍ଠ ଓ ସୂକ୍ଷ୍ମ । ଚେତନର ସଂଯୋଗ ବିନା ଏହି ଜଗତର ଉତ୍ପତ୍ତି, ବିକାଶ ଓ ଧାରଣ ହେବା ସମ୍ଭବ ନୁହେଁ । ତେଣୁ ଏପରି କୁହାଯାଇଛି ।

*ସମ୍ବନ୍ଧ — ପରା ଓ ଅପରା ପ୍ରକୃତିର ସ୍ୱରୂପ ବୁଝାଇସାରି ବର୍ତ୍ତମାନ ଭଗବାନ୍ କହୁଛନ୍ତି, ''ଏହି ଦୁଇ ପ୍ରକୃତି ହିଁ ସକଳ ଚରାଚର ପ୍ରାଣୀମାନଙ୍କର କାରଣ ଏବଂ ମୁଁ ହେଉଛି ଏହି ଉଭୟ ପ୍ରକୃତି ସହିତ ସାରା ଜଗତର ମହାକାରଣ ।''*

**ଏତଦ୍‌ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।**
**ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା ॥ ୬ ॥**

**ଅନ୍ୱୟ** — ଇତି = ଏପରି; ଉପଧାରୟ = ଜାଣ ଯେ; ସର୍ବାଣି = ସକଳ; ଭୂତାନି = ଭୂତମାନେ; ଏତଦ୍‌ଯୋନୀନି = ଏହି ଦୁଇ ପ୍ରକୃତିରୁ ହିଁ ଜାତ ହୋଇଥାନ୍ତି (ଏବଂ); ଅହମ୍ = ମୁଁ; କୃତ୍ସ୍ନସ୍ୟ = ସମସ୍ତ; ଜଗତଃ = ଜଗତର; ପ୍ରଭବଃ = ଉତ୍ପତ୍ତି; ତଥା = ତଥା; ପ୍ରଳୟଃ = ପ୍ରଳୟ ଅଟେ, ଅର୍ଥାତ୍ ମୁଁ ସମସ୍ତ ଜଗତର ମୂଳ କାରଣ ।

**ହେ ଅର୍ଜୁନ! ତୁମେ ଜାଣ ଯେ, ସକଳ ଭୂତ ଏହି ଦୁଇ ପ୍ରକୃତିରୁ ହିଁ ଜାତ ହୋଇଛନ୍ତି ଏବଂ ମୁଁ ହେଉଛି ସମଗ୍ର ଜଗତର ଉତ୍ପତ୍ତି ତଥା ପ୍ରଳୟର ହେତୁ; ଅର୍ଥାତ୍ ମୁଁ ସମ୍ପୂର୍ଣ୍ଣ ଜଗତର ମୂଳକାରଣ ।। ୬ ।।**

**ପ୍ରଶ୍ନ –** ଏଠାରେ ସର୍ବାଣି ବିଶେଷଣ ସହିତ ଭୂତାନି ପଦଟି କାହାର ବାଚକ? ତଥା ଅପରା ଓ ପରା – ଏହି ଦୁଇ ପ୍ରକୃତି ତା'ର ଯୋନି କିପରି ହେଲେ?

**ଉତ୍ତର –** ସ୍ଥାବର ଓ ଜଙ୍ଗମ ଅର୍ଥାତ୍ ଅଚର ଓ ଚର ହୋଇ ଯେତେ ବି ଛୋଟବଡ଼ ପ୍ରାଣୀ ଅଛନ୍ତି, **ଭୂତାନି** ପଦଟି ହେଉଛି ସେହି ସମସ୍ତଙ୍କର ବାଚକ। ସକଳ ପ୍ରାଣୀଙ୍କ ଉତ୍ପତ୍ତି, ସ୍ଥିତି ଓ ବୃଦ୍ଧି — ଏହି 'ଅପରା' (ଜଡ଼) ଓ ପରା (ଚେତନ) ପ୍ରକୃତିଦ୍ୱୟର ସଂଯୋଗରେ ଘଟେ। ଅତଏବ ଏହି ଦୁଇ ପ୍ରକୃତି ସେମାନଙ୍କ ଉତ୍ପତ୍ତିର କାରଣ। ଏହି ଦୁଇ ପ୍ରକୃତିକୁ ତ୍ରୟୋଦଶ ଅଧ୍ୟାୟ ଛବିଶ ଶ୍ଳୋକରେ କ୍ଷେତ୍ର-କ୍ଷେତ୍ରଜ୍ଞ ନାମ ଦିଆଯାଇଛି।

**ପ୍ରଶ୍ନ – ସମଗ୍ର ଜଗତ** କାହାର ବାଚକ? ତଥା ଭଗବାନ୍ ନିଜକୁ ତା'ର ଉତ୍ପତ୍ତି ଓ ପ୍ରଳୟ ବୋଲି କହିବାର ତାତ୍ପର୍ଯ୍ୟ କଣ?

**ଉତ୍ତର – ଜଗତ** ଶବ୍ଦଟି ହେଉଛି ଏହି ଜଡ଼, ଚେତନ ଓ ଚରାଚର ଆଦି ସକଳ ବିଶ୍ୱର ବାଚକ। ଏହାର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କେବଳ ଭଗବାନଙ୍କ ଦ୍ୱାରା ହିଁ ଏବଂ ତାଙ୍କ ମଧ୍ୟରେ ହିଁ ହୁଏ। ମେଘ ଯେପରି ଆକାଶରୁ ସୃଷ୍ଟି ହୁଏ, ଆକାଶରେ ରହେ ଏବଂ ଆକାଶରେ ହିଁ ବିଲୀନ ହୋଇଯାଏ ତଥା କେବଳ ଆକାଶ ହିଁ ତା'ର ଏକମାତ୍ର କାରଣ ଓ ଆଧାର, ଏହି ଜଗତ ସେହିପରି ଭଗବାନଙ୍କ ଠାରୁ ଉତ୍ପନ୍ନ ହୁଏ, ଭଗବାନଙ୍କ ଠାରେ ହିଁ ଏହାର ସ୍ଥିତି ଏବଂ ଭଗବାନଙ୍କ ଠାରେ ହିଁ ଏହା ବିଲୀନ ହୋଇଯାଏ। ଭଗବାନ୍ ହିଁ ଏହାର ଏକମାତ୍ର ମହାନ୍ କାରଣ ଓ ପରମ ଆଧାର ଅଟନ୍ତି। ଏହାକୁ ନବମ ଅଧ୍ୟାୟର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ମଧ୍ୟ ସ୍ପଷ୍ଟ କରିଦିଆଯାଇଛି। ଏଠାରେ ସ୍ମରଣ ରଖିବା ଉଚିତ ଯେ, ଭଗବାନ୍ ଆକାଶପରି ଜଡ ବା ବିକାରୀ ନୁହନ୍ତି। 'ଦୃଷ୍ଟାନ୍ତ କେବଳ ବୁଝାଇବାକୁ ଦିଆଯାଇଥାଏ; ଭଗବାନ୍ ଏହି ଜଗଦ୍‌ରୂପରେ ପ୍ରକଟ ହେବା ତାଙ୍କର ଲୀଳାମାତ୍ର।

**ସମ୍ବନ୍ଧ –** ଏପରିଭାବରେ ଭଗବାନ୍ ହିଁ ସମଗ୍ର ବିଶ୍ୱର ପରମକାରଣ ଓ ପରମାଧାର ଅଟନ୍ତି; ତେଣୁ ସ୍ୱଭାବତଃ ଏହା ଭଗବାନଙ୍କର ସ୍ୱରୂପ ଏବଂ ଏଥିରେ ସେ ବ୍ୟାପ୍ତ ହୋଇ ରହିଛନ୍ତି। ଏହି କଥାଟି ସ୍ପଷ୍ଟ କରିଦେବାକୁ ଭଗବାନ୍ କହୁଛନ୍ତି –

**ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।**
**ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ।। ୭ ।।**

**ଅନ୍ୱୟ –** **ଧନଞ୍ଜୟ** = ହେ ଧନଞ୍ଜୟ; **ମତ୍ତଃ** = ମୋଠାରୁ; **ଅନ୍ୟତ୍** = ଭିନ୍ନ ଅନ୍ୟ; **କିଞ୍ଚିତ୍** = କିଛି ବି; **ପରତରମ୍** = ପରମ (କାରଣ); **ନ ଅସ୍ତି** = ନାହିଁ; **ଇଦମ୍** = ଏହି; **ସର୍ବମ୍** = ସମସ୍ତ (ଜଗତ); **ସୂତ୍ରେ** = ସୂତାରେ; **ମଣିଗଣାଃ** = (ସୂତାର) ମଣିଗୁଡ଼ିଏ; **ଇବ** = (ଗୁନ୍ଥା ହୋଇଥିବା) ପରି; **ମୟି** = ମୋଠାରେ; **ପ୍ରୋତମ୍** = ଗୁନ୍ଥା ହୋଇ ରହିଛି।

**ହେ ଧନଞ୍ଜୟ! ମୋଠାରୁ ଭିନ୍ନ ଅନ୍ୟ କୌଣସି ପରମକାରଣ ନାହିଁ। ସୂତାରେ ସୂତାର ମଣିଗୁଡ଼ିଏ ଗୁନ୍ଥି ହୋଇଥିବା ପରି ଏହି ସମସ୍ତ ଜଗତ ମୋଠାରେ ଗୁନ୍ଥା ହୋଇ ରହିଛି, ଅର୍ଥାତ୍ ଏହି ସମସ୍ତ ଜଗତରେ ମୁଁ ଓତପ୍ରୋତ ହୋଇ ରହିଛି ।। ୭ ।।**

**ପ୍ରଶ୍ନ –** 'ମୋଠାରୁ ଭିନ୍ନ ଅନ୍ୟ କୌଣସି ପରମ କାରଣ ନାହିଁ' — ଏହାର ଭାବ କଣ?

**ଉତ୍ତର –** ଏହାର ଭାବ ଏହି ଯେ, ଯେପରି ମହାକାଶ ମେଘର କାରଣ ଓ ଆଧାର ଏବଂ ତା'ର କାର୍ଯ୍ୟ ମେଘ ସେହି ମହାକାଶର ସ୍ୱରୂପ ଅଟେ ଏବଂ ପ୍ରକୃତରେ ମେଘ ତା'ର ନିଜକାରଣଠାରୁ କିଛି ଭିନ୍ନ

ବସ୍ତୁ ନୁହେଁ, ସେହିପରି ପରମାତ୍ମା ଏହି ଜଗତର କାରଣ ଓ ଆଧାର ହୋଇଥିବାରୁ ଏହି ଜଗତ ମଧ୍ୟ ତାଙ୍କରି ସ୍ୱରୂପ ଅଟେ ଓ ତାଙ୍କ ଠାରୁ ଭିନ୍ନ ଅନ୍ୟ କୌଣସି ବସ୍ତୁ ନୁହେଁ। ଅତଏବ ପରା ଓ ଅପରା ପ୍ରକୃତି ସକଳ ପ୍ରାଣୀଙ୍କ କାରଣ ହୋଇଥିଲେ ମଧ୍ୟ, କେବଳ ପରମାତ୍ମା ହିଁ ସବୁର ପରମ କାରଣ ଅଟନ୍ତି; ଅନ୍ୟ କେହି ନୁହେଁ।

**ପ୍ରଶ୍ନ —** ସୂତାରେ ସୂତାର ମଣିଗୁଡ଼ିଏ ଗୁନ୍ଥି ହୋଇଥିବାପରି ଏହି ଜଗତ ଭଗବାନଙ୍କ ଠାରେ କିପରି ଗୁନ୍ଥା ହୋଇଛି ?

**ଉତ୍ତର —** ଯେପରି ସୂତାର ଡୋରିରେ ସେହି ସୂତାର ଗଣ୍ଠି ପକାଇ ଗଣ୍ଠିକୁ ମଣି ମନେ କରି ମାଳା ତିଆରି କରାଯାଏ ଏବଂ ଯେପରି ସେହି ଡୋରି ଓ ଗଣ୍ଠିମାନଙ୍କରେ ସବୁଠି କେବଳ ସୂତା ହିଁ ବ୍ୟାପ୍ତ ହୋଇ ରହିଥାଏ, ସେହିପରି ଏ ସମସ୍ତ ସଂସାର ଭଗବାନଙ୍କ ଠାରେ ଗୁନ୍ଥା ହୋଇଛି। କହିବାର ତାତ୍ପର୍ଯ୍ୟ ଏହି ଯେ, ଭଗବାନ୍ ହିଁ ସମସ୍ତଙ୍କ ମଧ୍ୟରେ ବ୍ୟାପି ରହିଛନ୍ତି।

*ସମ୍ବନ୍ଧ — ସୂତା ଏବଂ ସୂତାମଣିର ଦୃଷ୍ଟାନ୍ତଦ୍ୱାରା ଭଗବାନ୍ ନିଜର ସର୍ବରୂପତା ଓ ସର୍ବବ୍ୟାପକତା ସିଦ୍ଧ କରିଛନ୍ତି। ବର୍ତ୍ତମାନ ଭଗବାନ୍ ପରବର୍ତ୍ତୀ ଚାରିଟି ଶ୍ଳୋକଦ୍ୱାରା ଏହି କଥାକୁ ଭଲଭାବରେ ସ୍ପଷ୍ଟ କରିବାପାଇଁ ସେହି ପ୍ରଧାନ ପ୍ରଧାନ ସମସ୍ତ ବସ୍ତୁର ନାମ ଉଲ୍ଲେଖ କରିଛନ୍ତି, ଯେଉଁଥିରେ କି ଏହି ବିଶ୍ୱର ସ୍ଥିତି ରହିଛି। ସାରତଃ ଏହିସବୁ ଭିତରେ ସେ ହିଁ ଯେ ଓତପ୍ରୋତଭାବରେ ବ୍ୟାପ୍ତ ହୋଇ ରହିଛନ୍ତି, ତାହା ଏଠାରେ କହୁଛନ୍ତି —*

**ରସୋଽହମପ୍ସୁ କୌନ୍ତେୟ ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ।**
**ପ୍ରଣବଃ ସର୍ବବେଦେଷୁ ଶବ୍ଦଃ ଖେ ପୌରୁଷଂ ନୃଷୁ ॥ ୮ ॥**

**ଅନ୍ୱୟ —** **କୌନ୍ତେୟ** = ହେ ଅର୍ଜୁନ; **ଅହମ୍** = ମୁଁ; **ଅପ୍ସୁ** = ଜଳରେ; **ରସଃ** = ରସ ଅଟେ; **ଶଶିସୂର୍ଯ୍ୟୟୋଃ** = ଚନ୍ଦ୍ର ଓ ସୂର୍ଯ୍ୟରେ; **ପ୍ରଭା** = ଆଲୋକ; **ଅସ୍ମି** = ଅଟେ; **ସର୍ବବେଦେଷୁ** = ସକଳ ବେଦରେ; **ପ୍ରଣବଃ** = ଓଁକାର (ଅଟେ); **ଖେ** = ଆକାଶରେ; **ଶବ୍ଦଃ** = ଶବ୍ଦ (ଓ); **ନୃଷୁ** = ପୁରୁଷମାନଙ୍କ ଠାରେ; **ପୌରୁଷମ୍** = ପୁରୁଷତ୍ୱ।

**ହେ ଅର୍ଜୁନ! ମୁଁ ହେଉଛି ଜଳରେ ରସ, ଚନ୍ଦ୍ର ଓ ସୂର୍ଯ୍ୟରେ ଆଲୋକ, ସକଳ ବେଦରେ ଓଁକାର, ଆକାଶରେ ଶବ୍ଦ ଏବଂ ପୁରୁଷମାନଙ୍କ ଠାରେ ପୁରୁଷତ୍ୱ ॥ ୮ ॥**

**ପ୍ରଶ୍ନ —** ଏହି ଶ୍ଳୋକର ସ୍ପଷ୍ଟୀକରଣ କରନ୍ତୁ।

**ଉତ୍ତର —** ଯେଉଁ ତତ୍ତ୍ୱ ଯାହାର ଆଧାର ଏବଂ ଯେଉଁଥିରେ ବ୍ୟାପ୍ତ, ତାହା ହିଁ ତା'ର ଜୀବନ ଓ ସ୍ୱରୂପ ଏବଂ ତାହାକୁ ତାହାର ସାର କହନ୍ତି। ଏହି ଅନୁସାରେ ଭଗବାନ୍ କହୁଛନ୍ତି, 'ହେ ଅର୍ଜୁନ! ଜଳର ସାର ରସତତ୍ତ୍ୱ ମୁଁ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ସାର ଆଲୋକତତ୍ତ୍ୱ ମୁଁ, ସମସ୍ତ ବେଦର ସାର ପ୍ରଣବତତ୍ତ୍ୱ 'ଓଁ' ମୁଁ, ଆକାଶର ସାର ଶବ୍ଦତତ୍ତ୍ୱ ମୁଁ ଓ ପୁରୁଷମାନଙ୍କର ସାର ପୌରୁଷତତ୍ତ୍ୱ ମଧ୍ୟ ମୁଁ।'

**ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ ତେଜଶ୍ଚାସ୍ମି ବିଭାବସୌ।**
**ଜୀବନଂ ସର୍ବଭୂତେଷୁ ତପଶ୍ଚାସ୍ମି ତପସ୍ୱିଷୁ ॥ ୯ ॥**

**ଅନ୍ୱୟ —** **ପୃଥିବ୍ୟାମ୍** = (ମୁଁ) ପୃଥିବୀରେ; **ପୁଣ୍ୟଃ** = ପବିତ୍ର; **ଗନ୍ଧଃ** = ଗନ୍ଧ; **ଚ** = ଓ; **ବିଭାବସୌ** = ଅଗ୍ନିରେ; **ତେଜଃ** = ତେଜ; **ଅସ୍ମି** = ଅଟେ; **ଚ** = ତଥା; **ସର୍ବଭୂତେଷୁ** = ସକଳ ଜୀବଗଣଙ୍କ ମଧ୍ୟରେ; **ଜୀବନମ୍** = (ସେମାନଙ୍କର) ଜୀବନ (ଅଟେ); **ଚ** = ଓ; **ତପସ୍ୱିଷୁ** = ତପସ୍ୱୀମାନଙ୍କ ଠାରେ; **ତପଃ** **ଅସ୍ମି** = ତପ ଅଟେ;

**ମୁଁ ପୃଥିବୀରେ ପବିତ୍ର ଗନ୍ଧ, ଅଗ୍ନିରେ ତେଜ ତଥା ସକଳ ଜୀବଙ୍କ ଠାରେ ଜୀବନ ଓ ତପସ୍ୱୀମାନଙ୍କ ଠାରେ ତପ ଅଟେ ॥ ୯ ॥**

**ପ୍ରଶ୍ନ –** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ପୂର୍ବଶ୍ଳୋକ ଅନୁସାରେ ଏଠାରେ ବି ଭଗବାନ୍ ପ୍ରତ୍ୟେକ ବସ୍ତୁରେ ସାରରୂପରେ ନିଜର ବ୍ୟାପକତା ଓ ଆଧାରତ୍ୱ ଦର୍ଶାଇ କହୁଛନ୍ତି, 'ମୁଁ ହିଁ ପୃଥିବୀର ସାର ଗନ୍ଧତତ୍ତ୍ୱ, ଅଗ୍ନିର ସାର ତେଜତତ୍ତ୍ୱ, ସକଳ ଜୀବର ସାର ଜୀବନତତ୍ତ୍ୱ ଓ ତପସ୍ୱୀମାନଙ୍କର ସାର ତପତତ୍ତ୍ୱ ଅଟେ ।'

**ପ୍ରଶ୍ନ –** ଏଠାରେ **ଗନ୍ଧଃ** ସହିତ **ପୁଣ୍ୟଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ଗନ୍ଧ** ଶବ୍ଦ ବିଷୟରୂପ ଗନ୍ଧକୁ ସୂଚାଉ ନାହିଁ; ଏହା ପୃଥିବୀର କାରଣରୂପା ଗନ୍ଧତନ୍ମାତ୍ରକୁ ସୂଚାଉଛି । ରସ ଓ ଶବ୍ଦକୁ ମଧ୍ୟ ଠିକ୍ ଏହିପ୍ରକାରେ ତନ୍ମାତ୍ର ବୋଲି ବୁଝିବାକୁ ପଡ଼ିବ ।

**ପ୍ରଶ୍ନ – ସର୍ବଭୂତ** ଶବ୍ଦ କାହାକୁ ବୁଝାଏ ଓ 'ଜୀବନ' ଶବ୍ଦର ତାତ୍ପର୍ଯ୍ୟ କଣ ?

**ଉତ୍ତର – ସର୍ବଭୂତ** ଶବ୍ଦ ସକଳ ଚରାଚର ସଜୀବ ପ୍ରାଣୀମାନଙ୍କୁ ବୁଝାଏ ଓ ଜୀବନତତ୍ତ୍ୱ ହେଉଛି ସେହି ପ୍ରାଣଶକ୍ତିର ନାମ, ଯଦ୍ଦ୍ୱାରା ସକଳ ସଜୀବ ପ୍ରାଣୀ ଅନୁପ୍ରାଣିତ ହେଉଛନ୍ତି ତଥା ଯାହାର ପ୍ରଭାବରେ ସେମାନେ ନିର୍ଜୀବ ବସ୍ତୁମାନଙ୍କ ଠାରୁ ବିଲକ୍ଷଣ ଅଟନ୍ତି ।

## ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍ ।
## ବୁଦ୍ଧିର୍ବୁଦ୍ଧିମତାମସ୍ମି ତେଜସ୍ତେଜସ୍ୱିନାମହମ୍ ।। ୧୦ ।।

**ଅନ୍ୱୟ – ପାର୍ଥ** = ହେ ଅର୍ଜୁନ (ତୁମେ); **ସର୍ବଭୂତାନାମ୍** = ସକଳ ଭୂତଙ୍କର; **ସନାତନମ୍** = ସନାତନ; **ବୀଜମ୍** = ବୀଜ; **ମାମ୍** = ମୋତେ (ହିଁ); **ବିଦ୍ଧି** = ବୋଲି ଜାଣ; **ଅହମ୍** = ମୁଁ; **ବୁଦ୍ଧିମତାମ୍** = ବୁଦ୍ଧିମାନ୍‌ମାନଙ୍କର; **ବୁଦ୍ଧିଃ** = ବୁଦ୍ଧି (ଓ); **ତେଜସ୍ୱିନାମ୍** = ତେଜସ୍ୱୀମାନଙ୍କର; **ତେଜଃ** = ତେଜ; **ଅସ୍ମି** = ଅଟେ ।

**ହେ ଅର୍ଜୁନ! ତୁମେ ମୋତେ ହିଁ ସକଳ ଭୂତଙ୍କର ସନାତନ ବୀଜ ବୋଲି ଜାଣ । ମୁଁ ହିଁ ବୁଦ୍ଧିମାନ୍‌ମାନଙ୍କର ବୁଦ୍ଧି ଓ ତେଜସ୍ୱୀମାନଙ୍କର ତେଜ ଅଟେ ।। ୧୦ ।।**

**ପ୍ରଶ୍ନ –** ଏଠାରେ 'ସନାତନ ବୀଜ' କାହାକୁ କୁହାଯାଇଛି ? ଭଗବାନ୍ ତାହାକୁ ନିଜର ସ୍ୱରୂପ ବୋଲି କେଉଁ କାରଣରୁ କହିଛନ୍ତି ?

**ଉତ୍ତର –** ଯେ ସବୁବେଳେ ରହି ଆସିଛନ୍ତି ଏବଂ କେବେ ନଷ୍ଟ ହୁଅନ୍ତି ନାହିଁ, ତାଙ୍କୁ 'ସନାତନ' କହନ୍ତି । ଭଗବାନ୍ ହିଁ ସକଳ ଚରାଚର ଜୀବଙ୍କର ପରମ ଆଧାର ଏବଂ ତାଙ୍କ ଠାରୁ ସମସ୍ତଙ୍କର ଉତ୍ପତ୍ତି ହୁଏ । ଅତଏବ ସେ ହିଁ ସମସ୍ତଙ୍କର 'ସନାତନ ବୀଜ' । ତେଣୁ ଏପରି କୁହାଯାଇଛି । ନବମ ଅଧ୍ୟାୟର ଅଠର ଶ୍ଳୋକରେ ସନାତନ ବୀଜକୁ ହିଁ 'ଅବିନାଶୀ ବୀଜ' ଓ ଦଶମ ଅଧ୍ୟାୟର ଅଣଚାଳିଶ ଶ୍ଳୋକରେ 'ସକଳ ଭୂତଙ୍କର ବୀଜ' ବୋଲି କୁହାଯାଇଛି ।

**ପ୍ରଶ୍ନ –** 'ମୁଁ ବୁଦ୍ଧିମାନ୍‌ମାନଙ୍କର ବୁଦ୍ଧି ଓ ତେଜସ୍ୱୀମାନଙ୍କର ତେଜ' – ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସକଳ ପଦାର୍ଥକୁ ନିଶ୍ଚୟ କରୁଥିବା ଓ ମନ-ଇନ୍ଦ୍ରିୟମାନଙ୍କୁ ନିଜ ବଶରେ ରଖି ସେମାନଙ୍କୁ ସଞ୍ଚାଳନ କରୁଥିବା ଅନ୍ତଃକରଣର ପରିଶୁଦ୍ଧ ବୋଧମୟୀ ଶକ୍ତିକୁ 'ବୁଦ୍ଧି' କହନ୍ତି । ଯାହାଙ୍କ ଠାରେ ବୁଦ୍ଧି ଅଧିକ ଥାଏ, ତାହାଙ୍କୁ ବୁଦ୍ଧିମାନ୍ କୁହାଯାଏ । ଏହି ବୁଦ୍ଧିଶକ୍ତି ଭଗବାନଙ୍କ ଅପରା ପ୍ରକୃତିର ହିଁ ଅଂଶ ଅଟେ । ଅତଏବ ଭଗବାନ୍ କହୁଛନ୍ତି, 'ମୁଁ ହିଁ ବୁଦ୍ଧିମାନ୍‌ମାନଙ୍କର ସାର ବୁଦ୍ଧିତତ୍ତ୍ୱ ।' ଏପରିଭାବରେ ସବୁ ଲୋକଙ୍କ ଉପରେ ପ୍ରଭାବ ପକାଉଥିବା ଶକ୍ତିବିଶେଷର ନାମ 'ତେଜସ୍' । ଏହି ତେଜସ୍‌ତତ୍ତ୍ୱ ଯାହାଙ୍କ ଠାରେ ଅଧିକ ଥାଏ, ତାଙ୍କୁ 'ତେଜସ୍ୱୀ' ବୋଲି କହନ୍ତି । ଏହି ତେଜ ମଧ୍ୟ ଭଗବାନଙ୍କ ଅପରା ପ୍ରକୃତିର ହିଁ ଏକ ଅଂଶ । ଅତଏବ ଭଗବାନ୍ ଏହି ଦୁଇଟିକୁ (ବୁଦ୍ଧି ଓ ତେଜକୁ) ନିଜର ସ୍ୱରୂପ ବୋଲି କହିଛନ୍ତି ।

## ବଲଂ ବଲବତାଂ ଚାହଂ କାମରାଗବିବର୍ଜିତମ୍ ।
## ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ ।। ୧୧ ।।

**ଅନ୍ୱୟ –** **ଭରତର୍ଷଭ** = ହେ ଭରତଶ୍ରେଷ୍ଠ; **ଅହମ୍** = ମୁଁ; **ବଲବତାମ୍** = ବଳବାନ୍‌ମାନଙ୍କର; **କାମରାଗବିବର୍ଜିତମ୍** = ଆସକ୍ତି ଓ କାମନାରହିତ; **ବଲମ୍** = ବଳ ଅର୍ଥାତ୍ ସାମର୍ଥ୍ୟ ଅଟେ; **ଚ** = ଓ; **ଭୂତେଷୁ** = ପ୍ରାଣୀମାନଙ୍କ ମଧ୍ୟରେ; **ଧର୍ମାବିରୁଦ୍ଧଃ** = ଧର୍ମର ଅବିରୁଦ୍ଧ ଅର୍ଥାତ୍ ଶାସ୍ତ୍ରାନୁକୂଳ; **କାମଃ** = କାମ; **ଅସ୍ମି** = ଅଟେ ।

**ହେ ଭରତଶ୍ରେଷ୍ଠ ! ମୁଁ ବଳବାନ୍‌ମାନଙ୍କର ଆସକ୍ତିରହିତ ଓ କାମନାରହିତ ବଳ ଅର୍ଥାତ୍ ସାମର୍ଥ୍ୟ ଏବଂ ସକଳ ପ୍ରାଣୀମାନଙ୍କ ମଧ୍ୟରେ ଧର୍ମର ଅବିରୁଦ୍ଧ ଅର୍ଥାତ୍ ଶାସ୍ତ୍ରର ଅନୁକୂଳ କାମ ଅଟେ ॥ ୧୧ ॥**

**ପ୍ରଶ୍ନ –** ଏହି ଶ୍ଳୋକର ସ୍ପଷ୍ଟୀକରଣ କରନ୍ତୁ ।

**ଉତ୍ତର –** ଯେଉଁ ବଳ କାମନା, ଆସକ୍ତି, ଅହଂକାର ତଥା କ୍ରୋଧାଦିରେ ଯୁକ୍ତ, ତାହା ତ ଆସୁରବଳ। ସେହିପ୍ରକାର ବଳର ବର୍ଣ୍ଣନା ଆସୁରୀ ସମ୍ପତ୍ତିରେ କରାଯାଇଛି (୧୬/୧୮) ଏବଂ ତାହାକୁ ତ୍ୟାଗ କରିବାକୁ କୁହାଯାଇଛି (୧୮/୫୩)। ସେହିପରି ଧର୍ମବିରୁଦ୍ଧ କାମ ମଧ୍ୟ ଆସୁରୀ ସମ୍ପତ୍ତିର ପ୍ରଧାନ ଲକ୍ଷଣ ହୋଇଥିବାରୁ ତାହା ସକଳ ଅନର୍ଥର ମୂଳ (୩/୩୭), ନରକର ଦ୍ୱାର ଓ ତ୍ୟାଜ୍ୟ ଅଟେ (୧୬/୨୧)। କାମ-ରାଗଯୁକ୍ତ 'ବଳ'ରୁ ଓ ଧର୍ମବିରୁଦ୍ଧ 'କାମ'ରୁ ରହିତ ବିଶୁଦ୍ଧ ବଳ ଓ ବିଶୁଦ୍ଧ 'କାମ'' ହିଁ ଉପାଦେୟ ଅଟେ। ଭଗବାନ୍ 'ଭରତର୍ଷଭ' ସମ୍ବୋଧନ କରି ସୂଚାଇଦେଉଛନ୍ତି, ''ତୁମେ ଭରତବଂଶରେ ଶ୍ରେଷ୍ଠ। ତୁମ ଅନ୍ତରରେ ଏହି ଆସୁର ବଳ ନାହିଁ, କି ସେହି ଅଧର୍ମମୂଳକ ଦୂଷିତ 'କାମ' ନାହିଁ। ତୁମ ଅନ୍ତରରେ ତ କାମନା-ଓ-ଆସକ୍ତିରହିତ ଶୁଦ୍ଧ 'ବଳ' ଓ ଧର୍ମ-ଅବିରୁଦ୍ଧ ବିଶୁଦ୍ଧ 'କାମ' ରହିଛି। ମୁଁ ହିଁ ବଳବାନ୍‌ମାନଙ୍କର ସେହି ଶୁଦ୍ଧ ବଳତତ୍ତ୍ୱ ଓ ସକଳ ଜୀବମାନଙ୍କର ସେହି ଶୁଦ୍ଧ କାମତତ୍ତ୍ୱ ଅଟେ।''

*ସମ୍ବନ୍ଧ – ଏପରିଭାବରେ ପ୍ରଧାନ ପ୍ରଧାନ ବସ୍ତୁମାନଙ୍କରେ ସାରରୂପେ ନିଜର ବ୍ୟାପକତା ବୁଝାଇ ଭଗବାନ୍ ପ୍ରକାରାନ୍ତରେ ସମସ୍ତ ବିଶ୍ୱରେ ନିଜର ସର୍ବବ୍ୟାପକତା ଓ ସର୍ବସ୍ୱରୂପତା ସିଦ୍ଧ କରିଛନ୍ତି। ବର୍ତ୍ତମାନ ନିଜକୁ ହିଁ ତ୍ରିଗୁଣମୟ ଜଗତର ମୂଳକାରଣ ବୋଲି କହି ଏହି ପ୍ରସଙ୍ଗର ଉପସଂହାର କରୁଛନ୍ତି –*

**ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ।**
**ମତ୍ତ ଏବେତି ତାନ୍ ବିଦ୍ଧି ନ ତ୍ୱହଂ ତେଷୁ ତେ ମୟି ॥ ୧୨ ॥**

**ଅନ୍ୱୟ –** ଚ, ଏବ = ଆହୁରି ମଧ୍ୟ; **ଯେ** = ଯେଉଁସବୁ; **ସାତ୍ତ୍ୱିକାଃ** = ସତ୍ତ୍ୱଗୁଣରୁ ଜାତ; **ଭାବାଃ** = ଭାବମାନ ରହିଛି; **ଯେ** = ଯେଉଁସବୁ; **ରାଜସାଃ** = ରଜୋଗୁଣରୁ; **ଚ** = ତଥା; **ତାମସାଃ** = ତମୋଗୁଣରୁ ଜାତ ଭାବମାନ ରହିଛି; **ତାନ୍** = ସେସବୁକୁ; **ମତ୍ତଃ, ଏବ** = ମୋଠାରୁ ହିଁ (ଉତ୍ପନ୍ନ); **ଇତି** = ବୋଲି; **ବିଦ୍ଧି** = ଜାଣ; **ତୁ** = କିନ୍ତୁ (ପ୍ରକୃତରେ); **ତେଷୁ** = ସେସବୁରେ; **ଅହମ୍** = ମୁଁ (ନାହିଁ କି); **ତେ** = ସେସବୁ; **ମୟି** = ମୋ ମଧ୍ୟରେ; **ନ** = ନାହାନ୍ତି।

**ଆହୁରି ମଧ୍ୟ ସତ୍ତ୍ୱଗୁଣରୁ ଜାତ ଯେଉଁସବୁ ଭାବ ରହିଛି ଏବଂ ରଜୋଗୁଣରୁ ତଥା ତମୋଗୁଣରୁ ଜାତ ଯେଉଁସବୁ ଭାବ ରହିଛି, ସେସବୁ ମୋଠାରୁ ଉତ୍ପନ୍ନ ବୋଲି ଜାଣ; କିନ୍ତୁ ପ୍ରକୃତରେ ମୁଁ ସେସବୁରେ ନାହିଁ, କି ସେସବୁ ମୋଠାରେ ନାହାନ୍ତି ॥ ୧୨ ॥**

**ପ୍ରଶ୍ନ –** ସାତ୍ତ୍ୱିକ, ରାଜସ ଓ ତାମସ ଭାବ କେଉଁମାନଙ୍କ ବାଚକ ଏବଂ ସେସବୁ 'ଭଗବାନଙ୍କ ଠାରୁ ଉତ୍ପନ୍ନ' ବୋଲି ବୁଝିବା ଅର୍ଥ କଣ ?

**ଉତ୍ତର –** ମନ, ବୁଦ୍ଧି, ଅହଂକାର, ଇନ୍ଦ୍ରିୟ, ଇନ୍ଦ୍ରିୟମାନଙ୍କର ବିଷୟ, ତନ୍ମାତ୍ର, ମହାଭୂତ ଓ ସମସ୍ତ ଗୁଣ, ଅବଗୁଣ ତଥା କର୍ମ ଆଦି ଯେତେ ଭାବ ରହିଛି, ସେସବୁ ସାତ୍ତ୍ୱିକ, ରାଜସ ଓ ତାମସ ଭାବର ଅନ୍ତର୍ଗତ। ସେହିସବୁ ପଦାର୍ଥର ବିକାଶ ଓ ବିସ୍ତାର ଭଗବାନଙ୍କର 'ଅପରା ପ୍ରକୃତି'ଠାରୁ ହୁଏ ଏବଂ ସେହି ପ୍ରକୃତି ଭଗବାନଙ୍କର ହିଁ ପ୍ରକୃତି। ତେଣୁ ତାହା ଭଗବାନଙ୍କ ଠାରୁ ଭିନ୍ନ ନୁହେଁ। ଭଗବାନଙ୍କର ଲୀଳାସଙ୍କେତ ପାଇ ପ୍ରକୃତିଦ୍ୱାରା ସବୁର ସୃଷ୍ଟି, ବିସ୍ତାର ଓ ଉପସଂହାର ହେଉଥାଏ – ଏପରି ଜାଣିପାରିବା ହିଁ, ସେସବୁ 'ଭଗବାନଙ୍କ ଠାରୁ ଉତ୍ପନ୍ନ' ବୋଲି ବୁଝିବା।

**ପ୍ରଶ୍ନ –** ଯଦି ଉପରୋକ୍ତ ସମସ୍ତ ତ୍ରିଗୁଣମୟ ଭାବ ଭଗବାନଙ୍କ ଠାରୁ ହିଁ ଜାତ ହୁଏ, ତେବେ 'ସେସବୁ ମୋଠାରେ ନାହାନ୍ତି, କି ମୁଁ ସେସବୁରେ ନାହିଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଆକାଶରୁ ଉତ୍ପନ୍ନ ମେଘର କାରଣ ଓ ଆଧାର ଆକାଶ ହେଲେ ମଧ୍ୟ ଆକାଶ ମେଘଠାରୁ

ସର୍ବଥା ନିର୍ଲିପ୍ତ। ମେଘ ସବୁବେଳେ ଆକାଶରେ ନ ଥାଏ ଓ ଅନିତ୍ୟ ହୋଇଥିବାରୁ ପ୍ରକୃତରେ ତା'ର ସ୍ଥିର ସତ୍ତା ମଧ୍ୟ ନାହିଁ; କିନ୍ତୁ ମେଘ ନ ଥିଲେ ମଧ୍ୟ ଆକାଶ ସର୍ବଦା ରହେ। ଯେଉଁଠି ମେଘ ନାହିଁ, ସେଠାରେ ଆକାଶ ମଧ୍ୟ ଅଛି; ଆକାଶ ମେଘର ଆଶ୍ରିତ ନୁହେଁ। ପ୍ରକୃତରେ ମେଘ ମଧ୍ୟ ଆକାଶଠାରୁ ଭିନ୍ନ ନୁହେଁ; କାରଣ ମେଘ ଆକାଶରୁ ହିଁ ଉତ୍ପନ୍ନ ହୋଇଥାଏ। ଅତଏବ ଯଥାର୍ଥରେ ମେଘର ଭିନ୍ନସତ୍ତା ନ ଥିବାରୁ ଆକାଶ କେବେହେଲେ ମେଘରେ ନ ଥାଏ। ସେ ତ ସବୁବେଳେ କେବଳ ନିଜ ସତ୍ତାରେ ହିଁ ଥାଏ। ଠିକ୍ ସେହିପରି ଯଦ୍ୟପି ଭଗବାନ୍ ସମସ୍ତ ତ୍ରିଗୁଣମୟ ଭାବର କାରଣ ଓ ଆଧାର, ତଥାପି ପ୍ରକୃତରେ ସେସବୁ ଗୁଣ ଭଗବାନଙ୍କ ଠାରେ ନାହିଁ, କି ଭଗବାନ୍ ସେସବୁରେ ନାହାନ୍ତି। ଭଗବାନ୍ ତ ସର୍ବଥା ଓ ସର୍ବଦା ଗୁଣାତୀତ, ତଥା ନିତ୍ୟ ନିଜଠାରେ ହିଁ ରହିଛନ୍ତି। ତେଣୁ ସେ କହୁଛନ୍ତି, 'ସେମାନଙ୍କ ଠାରେ ମୁଁ ଓ ମୋ ଠାରେ ସେମାନେ ନାହାନ୍ତି'। ଏହାର ସ୍ପଷ୍ଟୀକରଣ ନବମ ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଦେଖିବା ଆବଶ୍ୟକ।

*ସମ୍ବନ୍ଧ — ଭଗବାନ୍ ଦେଖାଇଛନ୍ତି ଯେ, ସମଗ୍ର ଜଗତ ତାଙ୍କର ହିଁ ସ୍ୱରୂପ ଓ ସେ ସମଗ୍ର ଜଗତରେ ବ୍ୟାପ୍ତ। ଏଠାରେ ପ୍ରଶ୍ନ ହୋଇପାରେ, 'ଭଗବାନ୍ ଏପରି ସର୍ବତ୍ର ପରିପୂର୍ଣ୍ଣ ଓ ଅତି ନିକଟରେ ଥିଲେ ମଧ୍ୟ, ଲୋକମାନେ ତାଙ୍କୁ କାହିଁକି ଚିହ୍ନିପାରୁ ନାହାନ୍ତି ?' ଏ ସମ୍ପର୍କରେ ଭଗବାନ୍ କହୁଛନ୍ତି —*

**ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।**
**ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍ ।। ୧୩ ।।**

**ଅନ୍ୱୟ —** **ଗୁଣମୟୈଃ** = ଗୁଣମାନଙ୍କର କାର୍ଯ୍ୟରୂପ ସାତ୍ତ୍ୱିକ, ରାଜସ ଓ ତାମସ; **ଏଭିଃ** = ଏହି; **ତ୍ରିଭିଃ** = ତିନି ପ୍ରକାର; **ଭାବୈଃ** = ଭାବମାନଙ୍କ ଦ୍ୱାରା; **ଇଦମ୍** = ଏହି; **ସର୍ବମ୍** = ସମସ୍ତ; **ଜଗତ୍** = ସଂସାର ଅର୍ଥାତ୍ ପ୍ରାଣୀସମୁଦାୟ; **ମୋହିତମ୍** = ମୋହିତ ହେଉଛି (ତେଣୁ); **ଏଭ୍ୟଃ** = ଏହି ତିନି ଗୁଣରୁ; **ପରମ୍** = ଅତୀତ ହୋଇଥିବା; **ମାମ୍** = ମୋତେ; **ଅବ୍ୟୟମ୍** = ଅବିନାଶୀକୁ (ବୋଲି); **ନ, ଅଭିଜାନାତି** = ଚିହ୍ନୁନାହିଁ।

**ଗୁଣମାନଙ୍କର କାର୍ଯ୍ୟରୂପ ସାତ୍ତ୍ୱିକ, ରାଜସ ଓ ତାମସ — ଏହି ତିନିପ୍ରକାର ଭାବଦ୍ୱାରା ଏହି ସାରା ସଂସାର ଅର୍ଥାତ୍ ପ୍ରାଣୀସମୁଦାୟ ମୋହିତ ହେଉଛି, ଏଣୁ ଏହି ତିନିଗୁଣରୁ ଅତୀତ ହୋଇ ରହିଥିବା ଅବିନାଶୀସ୍ୱରୂପ ମୋତେ ଚିହ୍ନୁ ନାହିଁ।। ୧୩ ।।**

**ପ୍ରଶ୍ନ —** 'ଗୁଣମାନଙ୍କର କାର୍ଯ୍ୟରୂପ ଏହି ତିନିପ୍ରକାର ଭାବଦ୍ୱାରା ସକଳ ସଂସାର ମୋହିତ ହେଉଛି — ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ପୂର୍ବଶ୍ଳୋକରେ ଯେଉଁସବୁ ଭାବର ବର୍ଣ୍ଣନା କରାଗଲା, ଏଠାରେ ସେହି ତ୍ରିବିଧ ଭାବଦ୍ୱାରା ଜଗତର ମୋହିତ ହେଉଥିବା କଥା କୁହାଯାଇଛି। 'ତ୍ରିଭିଃ' ଓ 'ଗୁଣମୟୈଃ' ବିଶେଷଣଦ୍ୱାରା ଦେଖାଇଦିଆଯାଇଛି ଯେ, ସେସବୁ ଭାବ (ପଦାର୍ଥ) ତିନିଗୁଣ ଅନୁସାରେ ତିନି ଭାଗରେ ବିଭକ୍ତ ଏବଂ ସବୁ ପଦାର୍ଥ ଗୁଣମାନଙ୍କର ହିଁ ବିକାର। 'ଜଗତ୍' ଶବ୍ଦଦ୍ୱାରା ସକଳ ସଜୀବ ପ୍ରାଣୀଙ୍କୁ ଲକ୍ଷ୍ୟ କରାଯାଇଛି; କାରଣ ନିର୍ଜୀବ ବସ୍ତୁର ମୋହିତ ହେବା ପ୍ରଶ୍ନ ହିଁ ଉଠୁ ନାହିଁ। ଅତଏବ ଭଗବାନଙ୍କ କଥାର ଅଭିପ୍ରାୟ ହେଉଛି : ଜଗତର ସମସ୍ତ ଦେହାଭିମାନୀ ପ୍ରାଣୀ — ଏପରି କି ମନୁଷ୍ୟମାନେ ମଧ୍ୟ — ନିଜ ନିଜର ସ୍ୱଭାବ, ପ୍ରକୃତି ଓ ବିଚାର ଅନୁସାରେ ଅନିତ୍ୟ ଓ ଦୁଃଖପୂର୍ଣ୍ଣ ଏହି ତ୍ରିଗୁଣମୟ ଭାବକୁ ହିଁ ନିତ୍ୟ ଓ ସୁଖର କାରଣ ବୋଲି ଭାବନ୍ତି ଏବଂ ଏହାର କଳ୍ପିତ ରମଣୀୟତା ଓ ସୁଖରୂପତାର କେବଳ ବାହ୍ୟ ଚାକଚକ୍ୟ ଦେଖି ଜୀବନର ପରମଲକ୍ଷ୍ୟକୁ ଭୁଲିଯାଆନ୍ତି; ତେଣୁ ସେମାନେ ମୋର ଗୁଣ, ପ୍ରଭାବ, ତତ୍ତ୍ୱ, ସ୍ୱରୂପ ଓ ରହସ୍ୟର ଚିନ୍ତନ ଓ ଜ୍ଞାନ ପ୍ରତି ବିମୁଖ ହୋଇଥାନ୍ତି ଏବଂ ଅସଦ୍‌ଭାବ ଓ ଅସମ୍ମାନ ଦେଖାଇ ମୋତେ ଅଶ୍ରଦ୍ଧା କରନ୍ତି। ତିନି ଗୁଣର ବିକାରରେ ଲିପ୍ତ ରହିବା ଫଳରେ ସେମାନଙ୍କର ବିବେକଦୃଷ୍ଟି ଏପରି ସ୍ଥୂଳ ହୋଇଯାଏ ଯେ, ସେମାନେ ବିଷୟଭୋଗ ସଂଗ୍ରହ କରିବା ତଥା ତାହା ଭୋଗ କରିବା ବ୍ୟତୀତ ଜୀବନର ଯେ ଅନ୍ୟ କିଛି କର୍ତ୍ତବ୍ୟ ଓ ଲକ୍ଷ୍ୟ ରହିଛି, ତାହା ଜାଣିପାରନ୍ତି ନାହିଁ।

**ପ୍ରଶ୍ନ —** ତିନି ଗୁଣରୁ ଅତୀତ

ଅବିନାଶୀସ୍ୱରୂପ ମୋତେ– ଜାଣନ୍ତି ନାହିଁ’ – କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଦେବାକୁ ଚାହାଁନ୍ତି ଯେ, ସେହି ବିଷୟଭୋଗ-ବିମୋହିତ ମନୁଷ୍ୟମାନଙ୍କ ବିବେକଦୃଷ୍ଟି ତିନିଗୁଣର ବିନାଶଶୀଳ ରାଜ୍ୟର ଊର୍ଦ୍ଧ୍ୱକୁ ଯାଏ ନାହିଁ; ଅତଏବ ସେମାନେ ଏସବୁଠାରୁ ସର୍ବଥା ଅତୀତ ଅବିନାଶୀସ୍ୱରୂପ ମୋତେ ଜାଣିପାରନ୍ତି ନାହିଁ।

ପଞ୍ଚଦଶ ଅଧ୍ୟାୟର ଅଠର ଶ୍ଳୋକରେ ମଧ୍ୟ ଭଗବାନ୍ ନିଜକୁ କ୍ଷରପୁରୁଷଠାରୁ ସର୍ବଥା ଅତୀତ ବୋଲି ବୁଝାଇଛନ୍ତି। ସେଠାରେ ‘କ୍ଷର’ ପୁରୁଷ ନାମରେ ଯେଉଁ ତତ୍ତ୍ୱ ବର୍ଣ୍ଣନା କରାଯାଇଛି, ତାହାକୁ ଏହି ପ୍ରକରଣରେ ‘ଅପରା ପ୍ରକୃତି’ ଓ ‘ତ୍ରିଗୁଣମୟଭାବ’ ବୋଲି କହିଛନ୍ତି। ସେଠାରେ ଯାହାକୁ ‘ଅକ୍ଷର ପୁରୁଷ’ ବୋଲି କହିଛନ୍ତି, ଏଠାରେ ସେହି ତତ୍ତ୍ୱକୁ ‘ପରା ପ୍ରକୃତି’ ଓ ମୋହିତ ହୋଇଥିବା ପ୍ରାଣୀସମୁଦାୟ ବୋଲି କହିଛନ୍ତି ଏବଂ ସେଠାରେ ଯାହାକୁ ‘ପୁରୁଷୋତ୍ତମ’ ବୋଲି କହିଛନ୍ତି, ତାଙ୍କୁ ହିଁ ଏଠାରେ ‘ମାମ୍’ ପଦଦ୍ୱାରା ବର୍ଣ୍ଣନା କରାଯାଇଛି। ଏହିପରି ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ନ ଜାଣିବା ହିଁ ଗୁଣାତୀତ ଓ ଅବିନାଶୀଙ୍କୁ ନ ଜାଣିବା।

***ସମ୍ବନ୍ଧ –** ଭଗବାନ୍ ସମସ୍ତ ଜଗତକୁ ତ୍ରିଗୁଣମୟ ଭାବଦ୍ୱାରା ମୋହିତ ବୋଲି କହିଛନ୍ତି। ତାହା ଶୁଣି ଅର୍ଜୁନଙ୍କର ଜାଣିବାକୁ ଇଚ୍ଛା ହେଲା, ‘ଏଥିରୁ ମୁକ୍ତ ହେବାର କିଛି ଉପାୟ ଅଛି, ନା ନାହିଁ?’ ଅନ୍ତର୍ଯାମୀ ଦୟାମୟ ଭଗବାନ୍ ଅର୍ଜୁନଙ୍କର ଏହି ମନକଥା ବୁଝିପାରି ନିଜ ମାୟା ଦୁସ୍ତର ବୋଲି କହି ତାହାକୁ ପାରିହେବାର ଉପାୟ ସୂଚାଉଛନ୍ତି–*

## ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା।
## ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ।। ୧୪ ।।

**ଅନ୍ୱୟ –** ହି = କାରଣ; **ଏଷା** = ଏହି; **ଦୈବୀ** = ଅଲୌକିକ ଅର୍ଥାତ୍ ଅତ୍ୟନ୍ତ ଅଦ୍ଭୁତ; **ଗୁଣମୟୀ** = ତ୍ରିଗୁଣମୟୀ; **ମମ** = ମୋର; **ମାୟା** = ମାୟା; **ଦୁରତ୍ୟୟା** = ବଡ଼ ଦୁସ୍ତର (କିନ୍ତୁ); **ଯେ** = ଯେଉଁମାନେ; **ମାମ୍**, **ଏବ** = କେବଳ ମୋତେ ହିଁ; **ପ୍ରପଦ୍ୟନ୍ତେ** = ନିରନ୍ତର ଭଜନ କରନ୍ତି; **ତେ** = ସେମାନେ; **ଏତାମ୍** = ଏହି; **ମାୟାମ୍** = ମାୟାକୁ; **ତରନ୍ତି** = ଉଲ୍ଲଙ୍ଘନ କରିଯାଆନ୍ତି ଅର୍ଥାତ୍ ସଂସାରରୁ ତରିଯାଆନ୍ତି।

**କାରଣ ମୋର ଏହି ମାୟା ଅଲୌକିକ ଅର୍ଥାତ୍ ଅତ୍ୟନ୍ତ ଅଦ୍ଭୁତ ଓ ତ୍ରିଗୁଣମୟୀ ହୋଇଥିବାରୁ ବଡ଼ ଦୁସ୍ତର। ପରନ୍ତୁ ଯେଉଁମାନେ କେବଳ ମୋତେ ହିଁ ନିରନ୍ତର ଭଜନ କରନ୍ତି, ସେମାନେ ଏହି ମାୟାକୁ ଉଲ୍ଲଙ୍ଘନ କରିଯାଆନ୍ତି ଅର୍ଥାତ୍ ସଂସାରରୁ ତରିଯାଆନ୍ତି।। ୧୪ ।।**

**ପ୍ରଶ୍ନ –** ମାୟା ସହିତ **ଏଷା**, **ଦୈବୀ**, **ଗୁଣମୟୀ** ଓ **ଦୁରତ୍ୟୟା** ବିଶେଷଣ ଦେବାର ଏବଂ ଏହାକୁ **ମମ**(ମୋର) କହିବାର ଅଭିପ୍ରାୟ କଣ ?

**ଉତ୍ତର –** **ଏଷା** ପଦଟି ପ୍ରତ୍ୟକ୍ଷ ବସ୍ତୁର ନିର୍ଦ୍ଦେଶକ ଏବଂ ପ୍ରକୃତି କାର୍ଯ୍ୟରୂପରେ ଦୃଶ୍ୟମାନ। ଏଥିରୁ ବୁଝିବା ଉଚିତ ଯେ, ଯେଉଁ ପ୍ରକୃତିକୁ ପୂର୍ବଶ୍ଳୋକରେ ତ୍ରିଗୁଣମୟ ଭାବମାନଙ୍କ ନାମ ଦେଇ କାର୍ଯ୍ୟରୂପରେ ବର୍ଣ୍ଣନା କରାଗଲା, ତାକୁ ହିଁ ଏଠାରେ ‘ମାୟା’ ନାମ ଦିଆଯାଇଛି। ଗୁଣ ଓ ଗୁଣମାନଙ୍କର କାର୍ଯ୍ୟରୂପ ସମସ୍ତ ଜଡ଼ ଦୃଶ୍ୟପ୍ରପଞ୍ଚ ଏହି ମାୟାର ଅନ୍ତର୍ଭୁକ୍ତ। ତେଣୁ ଏହାକୁ **ଗୁଣମୟୀ** କୁହାଗଲା। ଏହି ମାୟା ଐନ୍ଦ୍ରଜାଲିକ ବା ଅସୁରମାନଙ୍କ ମାୟାପରି ସାଧାରଣ ମାୟା ନୁହେଁ, ଏହା ହେଉଛି ଭଗବାନଙ୍କର ନିଜର ଅନନ୍ୟସାଧାରଣ ଅତ୍ୟନ୍ତ ବିଚିତ୍ର ଶକ୍ତି; ତେଣୁ ଏହାକୁ **ଦୈବୀ** କୁହାଗଲା। ଏବଂ ଶେଷରେ ଭଗବାନ୍ ଏହି ଦୈବୀ ମାୟାକୁ ମୋର **(ମମ)** କହି ତଥା ଏହାକୁ ଦୁସ୍ତର (ଦୁରତ୍ୟୟା) ବୋଲି କହି ସୂଚନା ଦେଉଛନ୍ତି, ‘‘ମୁଁ ଏହାର ସ୍ୱାମୀ; ମୋର ଶରଣ ନ ନେଲେ, ମନୁଷ୍ୟ ଏହି ମାୟାରୁ ଆଦୌ ପାରି ହୋଇପାରିବ ନାହିଁ। ତେଣୁ ଏହା ଅତ୍ୟନ୍ତ ଦୁସ୍ତର।’’

**ପ୍ରଶ୍ନ –** ‘ଯେ କେବଳ ମୋତେ ହିଁ ନିରନ୍ତର ଭଜନ କରନ୍ତି’ ବୋଲି କହିବାର ଭାବ କଣ ?

**ଉତ୍ତର –** ଯେ ଏକମାତ୍ର ଭଗବାନଙ୍କୁ ହିଁ ନିଜର ପରମ ଆଶ୍ରୟ, ପରମ ଗତି, ପରମ ପ୍ରିୟ ଓ ପରମ ପ୍ରାପ୍ୟ ମନେ କରନ୍ତି ତଥା ସବୁ କିଛି ଭଗବାନଙ୍କର ବା ଭଗବାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ବୁଝି ଯେ ଶରୀର, ସ୍ତ୍ରୀ, ପୁତ୍ର, ଧନ, ଗୃହ, କୀର୍ତ୍ତି ଆଦିରେ ମମତ୍ୱ ଓ ଆସକ୍ତି ତ୍ୟାଗ କରିଦିଅନ୍ତି ଏବଂ ସେସବୁକୁ ଭଗବାନଙ୍କର ହିଁ ପୂଜାସାମଗ୍ରୀରେ ପରିଣତ କରିଦେଇଥାନ୍ତି ତଥା ଭଗବାନଙ୍କ ଦ୍ୱାରା ରଚିତ ବିଧାନରେ ସର୍ବଦା ସନ୍ତୁଷ୍ଟ ରହି, ଭଗବାନଙ୍କର ଆଜ୍ଞାପାଳନରେ ତତ୍ପର ରହି ଓ ଭଗବାନଙ୍କର ସ୍ମରଣପରାୟଣ ହୋଇ ନିଜକୁ ସବୁପ୍ରକାରେ ନିରନ୍ତର ଭଗବାନଙ୍କ ଠାରେ ଲଗାଇରଖିଥାନ୍ତି, ସେହି ପୁରୁଷ ହେଉଛନ୍ତି ନିରନ୍ତର ଭଗବାନଙ୍କର ଭଜନ କରୁଥିବା ଲୋକ। ଏପରି ଭକ୍ତିବାର ନାମ ଅନନ୍ୟ ଶରଣାଗତି। ଏପରି ଶରଣାଗତ ଭକ୍ତ ହିଁ ମାୟାକୁ ଅତିକ୍ରମ କରିପାରନ୍ତି।

**ପ୍ରଶ୍ନ –** ମାୟାକୁ ଅତିକ୍ରମ କରିବା ଅର୍ଥ କଣ ?

**ଉତ୍ତର –** କାର୍ଯ୍ୟ ଓ କାରଣରୂପା ଅପରା ପ୍ରକୃତିର ନାମ ମାୟା। ମାୟାପତି ପରମେଶ୍ୱରଙ୍କ ଶରଣାଗତ ହୋଇ ତାଙ୍କର କୃପାରେ ଏହି ମାୟାର ରହସ୍ୟକୁ ପୂର୍ଣ୍ଣରୂପେ ଜାଣି ଏହାଠାରୁ ସବୁଦିନପାଇଁ ମୁକ୍ତ ହୋଇଯିବା ତଥା ମାୟାପତି ପରମେଶ୍ୱରଙ୍କୁ ପାଇବା ହିଁ ମାୟାରୁ ତରିଯିବା ବା ମାୟାକୁ ଅତିକ୍ରମ କରିଯିବା।

*ସମ୍ବନ୍ଧ – ଭଗବାନ୍ ମାୟାର ଦୁସ୍ତରତା ଦର୍ଶାଇ ନିଜର ଭଜନକୁ ମାୟାରୁ ପାରିହେବାର ଉପାୟ ବୋଲି ବୁଝାଇଦେଲେ। ଏ ସମ୍ପର୍କରେ ପ୍ରଶ୍ନ ଉଠେ, 'ଯଦି ଏହା ହୋଇଥାଏ, ତେବେ ସବୁ ଲୋକ କାହିଁକି ନିରନ୍ତର ଭଗବାନଙ୍କର ଭଜନ କରୁନାହାନ୍ତି ?' ଉତ୍ତରରେ ଭଗବାନ୍ କହୁଛନ୍ତି –*

## ନ ମାଂ ଦୁଷ୍କୃତିନୋ ମୂଢ଼ାଃ ପ୍ରପଦ୍ୟନ୍ତେ ନରାଧମାଃ।
## ମାୟୟାପହୃତଜ୍ଞାନା ଆସୁରଂ ଭାବମାଶ୍ରିତାଃ॥ ୧୫ ॥

**ଅନ୍ୱୟ –** **ମାୟୟା** = ମାୟାଦ୍ୱାରା; **ଅପହୃତଜ୍ଞାନାଃ** = ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି; **ଆସୁରମ୍, ଭାବମ୍** = ଆସୁର ସ୍ୱଭାବକୁ; **ଆଶ୍ରିତାଃ** = ଧରିଥିବା ଲୋକେ; **ନରାଧମାଃ** = ମନୁଷ୍ୟମାନଙ୍କ ମଧ୍ୟରେ ନୀଚ; **ଦୁଷ୍କୃତିନଃ** = ଦୂଷିତକର୍ମା; **ମୂଢ଼ାଃ** = ମୂଢ଼ ଲୋକେ; **ମାମ୍** = ମୋତେ; **ନ, ପ୍ରପଦ୍ୟନ୍ତେ** = ଭଜନ କରନ୍ତି ନାହିଁ।

**ଯେଉଁମାନଙ୍କର ଜ୍ଞାନ ମାୟାଦ୍ୱାରା ଅପହୃତ ହୋଇଯାଇଛି, ସେପରି ଆସୁରସ୍ୱଭାବ ଧରିଥିବା ଲୋକମାନେ ତଥା ମନୁଷ୍ୟମାନଙ୍କ ମଧ୍ୟରେ ନୀଚ, ଦୂଷିତକର୍ମା ମୂଢ଼ମାନେ ମୋତେ ଭଜନ କରନ୍ତି ନାହିଁ॥ ୧୫ ॥**

**ପ୍ରଶ୍ନ –** ଏହି ଶ୍ଳୋକଟିର ସ୍ପଷ୍ଟୀକରଣ କରନ୍ତୁ।

**ଉତ୍ତର –** ଭଗବାନ୍ କହୁଛନ୍ତି, (୧) "ଯେଉଁମାନେ ଜନ୍ମଜନ୍ମାନ୍ତରରୁ ପାପ କରି ଆସୁଛନ୍ତି ଏବଂ ଏହି ଜନ୍ମରେ ମଧ୍ୟ ଜାଣିଶୁଣି ପାପ କରିବାରେ ହିଁ ପ୍ରବୃତ୍ତ ଅଛନ୍ତି, ସେପରି ଦୁଷ୍କର୍ମ କରୁଥିବା ପାପାତ୍ମାମାନେ; (୨) 'ପ୍ରକୃତି କଣ ? ପୁରୁଷ କଣ ? ଭଗବାନ୍ କଣ ? ଭଗବାନଙ୍କ ସହିତ ଜୀବର ଓ ଜୀବ ସହିତ ଭଗବାନଙ୍କର ସମ୍ବନ୍ଧ କଣ ?' –ଏସବୁ ଜାଣିବା ତ ଦୂରର କଥା, ଯେଉଁମାନେ ଏହା ବି ଜାଣନ୍ତି ନାହିଁ ବା ଜାଣିବାକୁ ଚାହାନ୍ତି ନାହିଁ ଯେ, ମନୁଷ୍ୟଜନ୍ମର ଉଦ୍ଦେଶ୍ୟ ଭଗବତ୍ପ୍ରାପ୍ତି ଏବଂ ଭଜନ କରିବା ହିଁ ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ, ସେପରି ବିବେକହୀନ ମୂଢ଼ ମନୁଷ୍ୟମାନେ; (୩) ଯେଉଁମାନଙ୍କର ବିଚାର ଓ କର୍ମ ନୀଚ; ବିଷୟାସକ୍ତି, ପ୍ରମାଦ ତଥା ଆଳସ୍ୟର ଆଧିକ୍ୟଯୋଗୁ ଯେଉଁମାନେ କେବଳ ବିଷୟଭୋଗରେ ଜୀବନ ନଷ୍ଟ କରନ୍ତି, ତାହା ପାଇବା ପାଇଁ ନିରନ୍ତର ନୀଚନିନ୍ଦିତ କର୍ମରେ ହିଁ ଲାଗିରହନ୍ତି, ସେପରି 'ନରାଧମ' ନୀଚ ବ୍ୟକ୍ତିମାନେ; (୪) ମାୟାଦ୍ୱାରା ଯେଉଁମାନଙ୍କର ଜ୍ଞାନ ନଷ୍ଟ ହୋଇଯାଇଛି; ବିପରୀତ ଭାବନା ଓ ଅଶ୍ରଦ୍ଧାର ଆଧିକ୍ୟଯୋଗୁଁ ଯେଉଁମାନଙ୍କର ବିବେକ ନଷ୍ଟଭ୍ରଷ୍ଟ ହୋଇଯାଇଛି ଏବଂ ସେଥିଯୋଗୁଁ ଯେଉଁମାନେ ବେଦରେ, ଶାସ୍ତ୍ରରେ, ଗୁରୁପରମ୍ପରାରୁ ମିଳିଥିବା ସଦୁପଦେଶରେ, ଈଶ୍ୱରଙ୍କ ଠାରେ, କର୍ମଫଳରେ ଓ ପୁନର୍ଜନ୍ମରେ ବିଶ୍ୱାସ ନ କରି ମିଥ୍ୟା କୁତର୍କ ଏବଂ ନାସ୍ତିକବାଦରେ ହିଁ ବୁଡ଼ିରହନ୍ତି ଏବଂ ଅନ୍ୟର ଅନିଷ୍ଟ କରନ୍ତି, ସେପରି ଅଜ୍ଞାନୀଜନ ତଥା (୫) ଏହିସବୁ ଦୁର୍ଗୁଣ ସହିତ ଯେଉଁମାନେ ଦମ୍ଭ, ଦର୍ପ, ଅଭିମାନ, କର୍କଶତା, କାମ, କ୍ରୋଧ, ଲୋଭ, ମୋହ ଆଦି ଆସୁରଭାବର ଆଶ୍ରୟ ନେଇଥାନ୍ତି, ସେପରି ଆସୁରୀ ପ୍ରକୃତିର ମୂଢ଼ଲୋକମାନେ ମୋତେ କେବେ ହେଲେ ଭଜନ କରନ୍ତି ନାହିଁ।"

**ସମ୍ବନ୍ଧ –** ପୂର୍ବଶ୍ଳୋକରେ ଭଗବାନ୍ କହିଛନ୍ତି ଯେ, ପାପାତ୍ମା ଆସୁରୀ ପ୍ରକୃତିର ମୂଢ଼ଲୋକମାନେ ତାଙ୍କୁ ଭଜନ କରନ୍ତି ନାହିଁ। ଅତଏବ ପ୍ରଶ୍ନ ଉଠୁଛି, 'କେଉଁ ମନୁଷ୍ୟମାନେ ତାଙ୍କୁ ଭଜନ କରନ୍ତି ?' ଏ ବିଷୟରେ ଭଗବାନ୍ କହୁଛନ୍ତି –

## ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ।
## ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ।। ୧୬ ।।

**ଅନ୍ୱୟ –** ଭରତର୍ଷଭ, **ଅର୍ଜୁନ** = ହେ ଭରତବଂଶୀଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ; **ସୁକୃତିନଃ** = ଉତ୍ତମକର୍ମ କରୁଥିବା; **ଅର୍ଥାର୍ଥୀ** = ଅର୍ଥାର୍ଥୀ; **ଆର୍ତ୍ତଃ** = ଆର୍ତ୍ତ; **ଜିଜ୍ଞାସୁଃ** = ଜିଜ୍ଞାସୁ; **ଚ** = ଓ; **ଜ୍ଞାନୀ** = ଜ୍ଞାନୀ; **ଚତୁର୍ବିଧାଃ** = (ଏପରି) ଚାରିପ୍ରକାର; **ଜନାଃ** = ଭକ୍ତଜନ; **ମାମ୍** = ମୋତେ; **ଭଜନ୍ତେ** = ଭଜନ କରନ୍ତି।

**ହେ ଭରତବଂଶୀଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ! ଉତ୍ତମକର୍ମ କରୁଥିବା ଅର୍ଥାର୍ଥୀ, ଆର୍ତ୍ତ, ଜିଜ୍ଞାସୁ ଓ ଜ୍ଞାନୀ – ଏପରି ଚାରିପ୍ରକାର ଭକ୍ତଜନ ମୋତେ ଭଜନ କରନ୍ତି।। ୧୬ ।।**

**ପ୍ରଶ୍ନ – ସୁକୃତିନଃ** ପଦର ଅର୍ଥ କଣ ଓ ଏହା କେଉଁମାନଙ୍କ ବିଶେଷଣ ?

**ଉତ୍ତର –** ଜନ୍ମଜନ୍ମାନ୍ତରରୁ ଶୁଭକର୍ମ କରି କରି ଯେଉଁମାନଙ୍କର ସ୍ୱଭାବ ଶୁଦ୍ଧ ହୋଇ ଶୁଭକର୍ମଶୀଳ ହୋଇଗଲାଣି ଏବଂ ପୂର୍ବସଂସ୍କାରବଳରେ ଅଥବା ମହତ୍‌ସଙ୍ଗର ପ୍ରଭାବରୁ ଯେଉଁମାନେ ଇହଜନ୍ମରେ ମଧ୍ୟ ଭଗବଦ୍ ଆଜ୍ଞାନୁସାରେ ଶୁଭକର୍ମ ହିଁ କରୁଛନ୍ତି – ସେହି ଶୁଭକର୍ମ କରୁଥିବା ଲୋକମାନଙ୍କୁ **ସୁକୃତୀ** କହନ୍ତି। ଶୁଭକର୍ମଦ୍ୱାରା ଭଗବାନଙ୍କ ପ୍ରଭାବ ଓ ମହତ୍ତ୍ୱ ବିଷୟରେ ଜ୍ଞାନ ହୋଇ ଭଗବାନଙ୍କ ଠାରେ ବିଶ୍ୱାସ ବଢ଼େ ଏବଂ ବିଶ୍ୱାସ ବୃଦ୍ଧି ହେବାରୁ ଭଜନ ହୁଏ। ଏଥିରୁ ଏହା ସୂଚିତ ହେଉଛି ଯେ, ଚାରିପ୍ରକାର ଭକ୍ତଙ୍କ ସହିତ **ସୁକୃତିନଃ** ବିଶେଷଣର ସମ୍ବନ୍ଧ ରହିଛି। ଅର୍ଥାତ୍ ଭଗବାନଙ୍କୁ ଯେକୌଣସି କାରଣରୁ ହେଉନା କାହିଁକି, ବିଶ୍ୱାସପୂର୍ବକ ଭଜନ କରୁଥିବା ସବୁପ୍ରକାର ଭକ୍ତ ସୁକୃତୀ ହିଁ ଅଟନ୍ତି।

**ପ୍ରଶ୍ନ – ଅର୍ଥାର୍ଥୀ** ଭକ୍ତଙ୍କର ଲକ୍ଷଣ କଣ ?

**ଉତ୍ତର –** ସ୍ତ୍ରୀ, ପୁତ୍ର, ଧନ, ମାନ, ବଡ଼ପଣିଆ, ପ୍ରତିଷ୍ଠା ଓ ସ୍ୱର୍ଗସୁଖ ଆଦି ଇହଲୋକର ଓ ପରଲୋକର ସୁଖଭୋଗରେ ଯାହାଙ୍କ ମନରେ କିଛି ଆସକ୍ତି ରହିଛି ଏବଂ କାମନାପୂର୍ତ୍ତିପାଇଁ ଯେ କେବଳ ଭଗବାନଙ୍କ ଉପରେ ହିଁ ନିର୍ଭର କରନ୍ତି ଏବଂ ଏଥିପାଇଁ ଶ୍ରଦ୍ଧା ଓ ବିଶ୍ୱାସର ସହିତ ଭଗବାନଙ୍କର ଭଜନ କରନ୍ତି, ସେ ହେଉଛନ୍ତି **ଅର୍ଥାର୍ଥୀ** ଭକ୍ତ।

ସୁଗ୍ରୀବ, ବିଭୀଷଣାଦି ଭକ୍ତ ଅର୍ଥାର୍ଥୀରୂପେ ଗଣ୍ୟ ହୁଅନ୍ତି। ଅର୍ଥାର୍ଥୀ ଭକ୍ତମାନଙ୍କ ମଧ୍ୟରୁ ଧ୍ରୁବଙ୍କ ଚରିତଟି ହେଉଛି ଏହିପରି :

ସ୍ୱାୟଂଭୁବ ମନୁଙ୍କ ପୁତ୍ର ଉତ୍ତାନପାଦଙ୍କର ସୁନୀତି ଓ ସୁରୁଚି ନାମକ ଦୁଇ ରାଣୀ ଥିଲେ। ସୁନୀତିଙ୍କ ଠାରୁ ଧ୍ରୁବ ଓ ସୁରୁଚିଙ୍କ ଠାରୁ ଉତ୍ତମ ଜନ୍ମ ହେଲେ। ରାଜା ଉତ୍ତାନପାଦ ସୁରୁଚିଙ୍କୁ ଅଧିକ ଭଲ ପାଉଥିଲେ। ଦିନେ ବାଳକ ଧ୍ରୁବ ପିତାଙ୍କ କୋଳରେ ବସିବାକୁ ଗଲେ। ସୁରୁଚି ତାଙ୍କୁ ଭର୍ତ୍ସନା କରି କୋଳରୁ ବାହାର କରିଦେଲେ ଓ କହିଲେ, "ତୁ ଅଭାଗା; କାରଣ ତୋର ଜନ୍ମ ସୁନୀତି ଗର୍ଭରୁ ହୋଇଛି; ରାଜସିଂହାସନରେ ବସିବାର ଥିଲେ ମୋ ଗର୍ଭରୁ ଜନ୍ମ ହୋଇଥାନ୍ତୁ। ଯାଆ, ଶ୍ରୀହରିଙ୍କ ଆରାଧନା କର; ତେବେ ତୋର ମନୋରଥ ସଫଳ ହେବ।" ବିମାତାଙ୍କ ଭର୍ତ୍ସନାପୂର୍ଣ୍ଣ ବ୍ୟବହାର ଧ୍ରୁବଙ୍କୁ ବଡ଼ ବାଧିଲା। ସେ କାନ୍ଦି କାନ୍ଦି ନିଜ ମାଆ ସୁନୀତିଙ୍କ ନିକଟକୁ ଗଲେ ଏବଂ ତାଙ୍କୁ ସବୁ କଥା ଶୁଣାଇଲେ। ସୁନୀତି କହିଲେ, "ବାପ, ମାଆ ସୁରୁଚି ଠିକ୍ କହିଛି। ଭଗବାନଙ୍କ ଆରାଧନା ବିନା ତୋର ମନୋରଥ ପୂର୍ଣ୍ଣ ହେବ ନାହିଁ।" ମାତାଙ୍କ କଥା ଶୁଣି ରାଜ୍ୟପ୍ରାପ୍ତି ଉଦ୍ଦେଶ୍ୟରେ ବାଳକ ଧ୍ରୁବ ଭଗବାନଙ୍କୁ ଭଜନ କରିବେ ବୋଲି ଘରୁ ବାହାରିପଡ଼ିଲେ। ପଥରେ ନାରଦଙ୍କ ସହିତ ତାଙ୍କର ସାକ୍ଷାତ ହେଲା। ଧ୍ରୁବଙ୍କୁ ଘରକୁ ଫେରାଇନେବାପାଇଁ ନାରଦ ଚେଷ୍ଟା କଲେ। 'ରାଜ୍ୟ ମିଳିବା ବ୍ୟବସ୍ଥା କରାଇଦେବି' ବୋଲି କହିଲେ; କିନ୍ତୁ ଧ୍ରୁବ ନିଜ ନିଶ୍ଚୟରେ ଅଟଳ ରହିଲେ। ତେଣୁ ନାରଦ ଧ୍ରୁବଙ୍କୁ **ଓଁ ନମୋ ଭଗବତେ ବାସୁଦେବାୟ** ଏହି ଦ୍ୱାଦଶାକ୍ଷର ମନ୍ତ୍ର ଜପ କର ଓ ଚତୁର୍ଭୁଜ ଭଗବାନ୍ ବିଷ୍ଣୁଙ୍କୁ ଧ୍ୟାନ କର' ବୋଲି ଉପଦେଶ ଦେଇ ଆଶୀର୍ବାଦ କଲେ।

ଧ୍ରୁବ ଯମୁନାତଟରେ ଥିବା ମଧୁବନକୁ ଯାଇ ସେଠାରେ ତପସ୍ୟା କରିବାକୁ ଲାଗିଲେ । ତାଙ୍କ ତପ ଭାଙ୍ଗିବାକୁ ନାନାପ୍ରକାର ଭୟ ଓ ପ୍ରଲୋଭନ ଆସି ଦେଖାଦେଲା । ତଥାପି ସେ ନିଜ ବ୍ରତରେ ଅଟଳ ରହିଲେ । ତେଣୁ ଭଗବାନ୍ ତାଙ୍କର ଏକନିଷ୍ଠ ଭକ୍ତିରେ ପ୍ରସନ୍ନ ହୋଇ ତାଙ୍କୁ ଦର୍ଶନ ଦେଲେ । ଦେବର୍ଷି ନାରଦଙ୍କ ଠାରୁ ସମ୍ବାଦ ପାଇ ରାଜା ଉତ୍ତାନପାଦ ନିଜ ପୁତ୍ର ଉତ୍ତମକୁ ତଥା ଦୁଇ ରାଣୀଙ୍କୁ ଧରି ଧ୍ରୁବଙ୍କୁ ଆଣିବାପାଇଁ ସେଠାକୁ ଗଲେ । ତପୋମୂର୍ତ୍ତି ଧ୍ରୁବ ସେମାନଙ୍କୁ ଆସୁଥିବାର ଦେଖିଲେ । ରାଜା ହାତୀରୁ ଓହ୍ଲାଇ ଆସି ତାଙ୍କୁ ଆଲିଙ୍ଗନ କଲେ । ତା'ପରେ ବିରାଟ ଉତ୍ସବ ଓ ସମାରୋହ ସହକାରେ ଧ୍ରୁବଙ୍କୁ ହାତୀରେ ବସାଇ ନଗରକୁ ନେଲେ । ଶେଷରେ ଧ୍ରୁବଙ୍କୁ ରାଜ୍ୟ ସମର୍ପଣ କରି ସେ ନିଜେ ବାନପ୍ରସ୍ଥ ଗ୍ରହଣ କଲେ ।

**ପ୍ରଶ୍ନ –** ଆର୍ତ୍ତ ଭକ୍ତଙ୍କ ଲକ୍ଷଣ କଣ ?

**ଉତ୍ତର –** ଯେ ଶାରୀରିକ ବା ମାନସିକ ସନ୍ତାପ, ବିପତ୍ତି, ଶତ୍ରୁଭୟ, ରୋଗ, ଅପମାନ, ଚୋର, ଡାକୁ ଓ ଆତତାୟୀମାନଙ୍କର ଅଥବା ହିଂସ୍ରଜନ୍ତୁମାନଙ୍କର ଆକ୍ରମଣରେ ବିବ୍ରତ ହୋଇ ସେମାନଙ୍କ କବଳରୁ ମୁକ୍ତ ହେବାପାଇଁ ପୂର୍ଣ୍ଣବିଶ୍ୱାସର ସହିତ ଆବେଗଭରା ହୃଦୟରେ ଶ୍ରଦ୍ଧା ରଖି ଭଗବାନଙ୍କୁ ଭଜନ କରନ୍ତି, ସେ ହେଉଛନ୍ତି ଆର୍ତ୍ତ ଭକ୍ତ ।

ଗଜେନ୍ଦ୍ର, ଜରାସନ୍ଧଦ୍ୱାରା ବନ୍ଦୀ ହୋଇଥିବା ରାଜାଗଣ ଆଦି ସମସ୍ତେ ଆର୍ତ୍ତ ଭକ୍ତ ଥିଲେ । ଏଠାରେ ଆର୍ତ୍ତ ଭକ୍ତମାନଙ୍କ ମଧ୍ୟରୁ ସତୀ ଦ୍ରୌପଦୀଙ୍କ ଚରିତଟି ହେଉଛି :—

ଦ୍ରୌପଦୀ ଥିଲେ ରାଜା ଦ୍ରୁପଦଙ୍କ ପୁତ୍ରୀ । ସେ ଯଜ୍ଞକୁଣ୍ଡରୁ ବାହାରିଥିଲେ । ତାଙ୍କ ଶରୀରର ବର୍ଣ୍ଣ ଅତ୍ୟନ୍ତ ସୁନ୍ଦର ଶ୍ୟାମଳ ଥିଲା । ତେଣୁ ତାଙ୍କୁ 'କୃଷ୍ଣା' ବୋଲି କହୁଥିଲେ । ଦ୍ରୌପଦୀ ଅନନ୍ତ ଗୁଣବତୀ, ଅତ୍ୟନ୍ତ ପତିବ୍ରତା, ଆଦର୍ଶ ଗୃହିଣୀ ଓ ଭଗବାନଙ୍କର ପ୍ରକୃତ ଭକ୍ତ ଥିଲେ । ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ପୂର୍ଣ୍ଣବ୍ରହ୍ମ ସଚ୍ଚିଦାନନ୍ଦଘନ ପରମେଶ୍ୱର ବୋଲି ଜାଣିଥିଲେ ଓ ଭଗବାନ୍ ମଧ୍ୟ ତାଙ୍କ ଆଗରେ ନିଜର ଅନ୍ତରଙ୍ଗ ଲୀଳା ଲୁଚାଇରଖି ନ ଥିଲେ । ବୃନ୍ଦାବନର ପବିତ୍ର ଗୋପୀପ୍ରେମର ଦିବ୍ୟକଥା ଗୋପରମଣୀମାନଙ୍କର ପତିପୁତ୍ରଙ୍କୁ ମଧ୍ୟ ଜଣା ନ ଥିଲା; ସେସବୁ ଲୀଳା ଦ୍ରୌପଦୀଙ୍କୁ ଜଣାଥିଲା । ଅତଏବ ବସ୍ତ୍ରହରଣବେଳେ ଦ୍ରୌପଦୀ ଭଗବାନଙ୍କୁ 'ଗୋପୀଜନପ୍ରିୟ' ବୋଲି ଡାକିଥିଲେ ।

ଯେତେବେଳେ ଦୁଷ୍ଟ ଦୁଃଶାସନ ଦୁର୍ଯ୍ୟୋଧନର ଆଦେଶରେ ଏକବସ୍ତ୍ରା ଦ୍ରୌପଦୀଙ୍କୁ ସଭାକୁ ଆଣି ବଳପୂର୍ବକ ତାଙ୍କର ଶାଢ଼ୀ ଟାଣିବାକୁ ଲାଗିଲା ଏବଂ ଆଉ କାହାଠାରୁ ରକ୍ଷା ପାଇବାର କୌଣସି ଲକ୍ଷଣ ନ ଦେଖି ଦ୍ରୌପଦୀ ନିଜକୁ ସମ୍ପୂର୍ଣ୍ଣ ଅସହାୟ ମନେ କଲେ, ସେତେବେଳେ ସେ ନିଜର ପରମ ସହାୟକ, ପରମବନ୍ଧୁ ପରମାତ୍ମା ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ, ସେ ସ୍ମରଣ କରିବାମାତ୍ରେ ଭଗବାନ୍ ନିଶ୍ଚୟ ଆସିବେ; ତାଙ୍କର କାତର ଡାକ ଶୁଣି ଭଗବାନ୍ କଦାପି ଚୁପ୍ ରହିପାରିବେ ନାହିଁ । ଦ୍ରୌପଦୀ ଭଗବାନଙ୍କୁ ସ୍ମରଣ କରି କହିଥିଲେ –

**ଗୋବିନ୍ଦ ଦ୍ୱାରକାବାସିନ୍ କୃଷ୍ଣ ଗୋପୀଜନପ୍ରିୟ ।**
**କୌରବୈଃ ପରିଭୂତାଂ ମାଂ କିଂ ନ ଜାନାସି କେଶବ ॥**
**ହେ ନାଥ ହେ ରମାନାଥ ବ୍ରଜନାଥାର୍ତ୍ତିନାଶନ ।**
**କୌରବାର୍ଣ୍ଣବମଗ୍ନାଂ ମାମୁଦ୍ଧରସ୍ୱ ଜନାର୍ଦ୍ଦନ ॥**
**କୃଷ୍ଣ କୃଷ୍ଣ ମହାଯୋଗିନ୍ ବିଶ୍ୱାତ୍ମନ୍ ବିଶ୍ୱଭାବନ ।**
**ପନ୍ନାଂ ପାହି ଗୋବିନ୍ଦ କୁରୁମଧ୍ୟେଽବସୀଦତୀମ୍ ॥**
**(ମହା.ସଭା. ୬୭)**

ଅର୍ଥାତ୍ 'ହେ ଗୋବିନ୍ଦ ! ହେ ଦ୍ୱାରକାବାସିନ୍ ! ହେ ଶ୍ରୀକୃଷ୍ଣ ! ହେ ଗୋପୀଜନପ୍ରିୟ ! ହେ କେଶବ ! କୌରବମାନେ ମୋତେ କିପରି ତିରସ୍କାର କରୁଛନ୍ତି, ତାହା କଣ ତୁମକୁ ଜଣା ନାହିଁ କି ? ହେ ନାଥ ! ହେ ଲକ୍ଷ୍ମୀନାଥ ! ହେ ବ୍ରଜନାଥ ! ହେ ଦୁଃଖନାଶନ ! ହେ ଜନାର୍ଦ୍ଦନ ! କୌରବ-ସମୁଦ୍ରରେ ମୁଁ ବୁଡ଼ିଯାଉଛି, ମୋତେ ବଞ୍ଚାଅ । ହେ କୃଷ୍ଣ ! ହେ କୃଷ୍ଣ ! ହେ ମହାଯୋଗୀ ! ହେ ବିଶ୍ୱାତ୍ମା, ହେ ବିଶ୍ୱଭାବନ ! ହେ ଗୋବିନ୍ଦ ! ମୁଁ କୌରବମାନଙ୍କ ହାତରେ ପଡ଼ିଯାଇଛି । ମୁଁ ଦୁଃଖିନୀ ତୁମର ଶରଣାଗତା । ମୋତେ ରକ୍ଷା କର ।'

ଦ୍ରୌପଦୀଙ୍କ ଡାକ ଶୁଣିବାମାତ୍ରେ ଜଗଦୀଶ୍ୱର ଭଗବାନଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା ଏବଂ

**ତ୍ୟକ୍ତ୍ୱା ଶଯ୍ୟାସନଂ ପଦ୍‌ଭ୍ୟାଂ କୃପାଳୁଃ କୃପୟାଭ୍ୟଗାତ୍ ।**

—'କୃପାଳୁ ଭଗବାନ୍ କୃପାପରବଶ ହୋଇ ଶଯ୍ୟା ଛାଡ଼ି ଖାଲିପାଦରେ ଧାଇଁ ଆସିଲେ ।' କୌରବଙ୍କ ଦାନବୀ ସଭାରେ ଭଗବାନ୍ ବସ୍ତ୍ରାବତାର ହୋଇଗଲେ । ଦ୍ରୌପଦୀଙ୍କର ଗୋଟିଏ ବସ୍ତ୍ରରୁ ଦ୍ୱିତୀୟ ବସ୍ତ୍ର ଏବଂ

ଦ୍ୱିତୀୟରୁ ତୃତୀୟ– ଏହିପ୍ରକାରେ ଭିନ୍ନ ଭିନ୍ନ ରଙ୍ଗର ଅସଂଖ୍ୟ ବସ୍ତ୍ର ବାହାରିବାକୁ ଲାଗିଲା । ବସ୍ତ୍ର ଗଦା ହୋଇଗଲା । ଠିକ୍ ସମୟରେ ପ୍ରିୟବନ୍ଧୁ ପହଞ୍ଚିଯାଇ ଦ୍ରୌପଦୀଙ୍କର ଲଜ୍ଜା ନିବାରଣ କଲେ । ଦୁଃଶାସନ କ୍ଳାନ୍ତ ହୋଇ ଭୂମିରେ ବସିପଡ଼ିଲା ।

**ପ୍ରଶ୍ନ–** ଜିଜ୍ଞାସୁ ଭକ୍ତଙ୍କର ଲକ୍ଷଣ କଣ ?

**ଉତ୍ତର–** ଧନ, ସ୍ତ୍ରୀ, ପୁତ୍ର, ଗୃହ ଆଦି ବସ୍ତୁମାନଙ୍କୁ ତୁଚ୍ଛ ମନେ କରି ରୋଗ-ସଙ୍କଟ ଆଦିକୁ ଭ୍ରୂକ୍ଷେପ ନ କରି ଏକମାତ୍ର ପରମାତ୍ମାଙ୍କୁ ତତ୍ତ୍ୱତଃ ଜାଣିବା ଇଚ୍ଛାରେ ହିଁ ଯେ ଏକନିଷ୍ଠ ହୋଇ ଭଗବାନଙ୍କୁ ଭକ୍ତି କରନ୍ତି (୧୪/୨୬), ସେହି କଲ୍ୟାଣକାମୀ ଭକ୍ତଙ୍କୁ ଜିଜ୍ଞାସୁ ଭକ୍ତ କହନ୍ତି ।

ଜିଜ୍ଞାସୁ ଭକ୍ତମାନଙ୍କ ମଧ୍ୟରେ ପରୀକ୍ଷିତ ଆଦି ଅନେକଙ୍କର ନାମ ଅନ୍ତର୍ଭୁକ୍ତ । କିନ୍ତୁ ସେମାନଙ୍କ ମଧ୍ୟରେ ଉଦ୍ଧବଙ୍କ ନାମ ବିଶେଷ ପ୍ରସିଦ୍ଧ । ଶ୍ରୀମଦ୍‌ଭାଗବତର ଏକାଦଶ ସ୍କନ୍ଧର ସପ୍ତମ ଅଧ୍ୟାୟରୁ ତିରିଶ ଅଧ୍ୟାୟପର୍ଯ୍ୟନ୍ତ ଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ମହାନ୍ ଦିବ୍ୟଜ୍ଞାନ ଉପଦେଶ ପ୍ରଦାନ କରିଛନ୍ତି, ଯାହା କି ଉଦ୍ଧବଗୀତା ନାମରେ ପ୍ରସିଦ୍ଧ ।

**ପ୍ରଶ୍ନ–** ଜ୍ଞାନୀ ଭକ୍ତଙ୍କ ଲକ୍ଷଣ କଣ ?

**ଉତ୍ତର–** ଯେ ପରମାତ୍ମାଙ୍କୁ ପାଇସାରିଲେଣି, ଯାହାଙ୍କ ଦୃଷ୍ଟିରେ ଏକମାତ୍ର ପରମାତ୍ମା ହିଁ ଅଛନ୍ତି– ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ, ଏବଂ ଏହିଭାବରେ ପରମାତ୍ମପ୍ରାପ୍ତ ହୋଇ ଯାହାଙ୍କର ସମସ୍ତ କାମନା ସଂପୂର୍ଣ୍ଣ ସମାପ୍ତ ହୋଇଗଲାଣି ଏବଂ ଏପରି ସ୍ଥିତିରେ ଯେ ସ୍ୱଭାବତଃ ସହଜରେ ପରମାତ୍ମକୁ ଭଜନ କରନ୍ତି, ସେ ଜ୍ଞାନୀ (୧୨/୧୩-୧୯) ଭକ୍ତ । ନବମ ଅଧ୍ୟାୟର ତେର ଓ ଚଉଦ ଶ୍ଲୋକରେ ତଥା ଦଶମ ଅଧ୍ୟାୟର ତୃତୀୟ ଓ ପଞ୍ଚଦଶ ଅଧ୍ୟାୟର ଊଣେଇଶ ଶ୍ଲୋକରେ ଯାହାଙ୍କର ବର୍ଣ୍ଣନା ହୋଇଛି, ସେହି ନିଷ୍କାମ ଅନନ୍ୟପ୍ରେମୀ ସାଧକଭକ୍ତ ମଧ୍ୟ ଜ୍ଞାନୀଭକ୍ତଙ୍କର ଅନ୍ତର୍ଗତ ।

ଜ୍ଞାନୀମାନଙ୍କ ମଧ୍ୟରେ ଶୁକଦେବ, ସନକାଦି, ନାରଦ ଓ ଭୀଷ୍ମ ଆଦି ପ୍ରସିଦ୍ଧ । ବାଳକ ପ୍ରହ୍ଲାଦ ମଧ୍ୟ ଜ୍ଞାନୀଭକ୍ତ ବୋଲି ଗଣ୍ୟ ହୁଅନ୍ତି । ସେ ତାଙ୍କ ମାତୃଗର୍ଭରେ ହିଁ ଦେବର୍ଷି ନାରଦଙ୍କ ଦ୍ୱାରା ଉପଦେଶ ପାଇଥିଲେ । ସେ ଦୈତ୍ୟରାଜ ହିରଣ୍ୟକଶିପୁର ପୁତ୍ର ଥିଲେ । ହିରଣ୍ୟକଶିପୁ ଭଗବାନଙ୍କ ଠାରେ ଦ୍ୱେଷ ରଖିଥିଲା, ଅଥଚ ପ୍ରହ୍ଲାଦ ଭଗବାନଙ୍କର ଭକ୍ତ ଥିଲେ । ତେଣୁ ହିରଣ୍ୟକଶିପୁ ପ୍ରହ୍ଲାଦଙ୍କୁ ବହୁ କଷ୍ଟ ଦେଇଥିଲା– ସର୍ପଦ୍ୱାରା ଦଂଶନ କରାଇଥିଲା, ହାତୀଦ୍ୱାରା ଦଳାଚକଟା କରାଇଥିଲା, କୋଠା ଉପରୁ ତଳକୁ କଚାଡ଼ିଦେଇଥିଲା, ସମୁଦ୍ରରେ ପୋପାଡ଼ିଦେଇଥିଲା, ଅଗ୍ନିରେ ପକାଇଦେଇଥିଲା ଏବଂ ଗୁରୁମାନେ ତାଙ୍କୁ ମାରିଦେବାକୁ ଚେଷ୍ଟା କରିଥିଲେ; କିନ୍ତୁ ଭଗବାନ୍ ତାଙ୍କୁ ସମସ୍ତ ବିପଦରୁ ଉଦ୍ଧାର କରିଥିଲେ । ତାଙ୍କ ପାଇଁ ଭଗବାନ୍ ଶ୍ରୀନୃସିଂହଦେବରୂପରେ ପ୍ରକଟ ହୋଇ ହିରଣ୍ୟକଶିପୁକୁ ବଧ କରିଥିଲେ । କୌଣସି ପରିସ୍ଥିତିରେ ବି ନ ଡରିବା ଥିଲା ପ୍ରହ୍ଲାଦଙ୍କ ଜ୍ଞାନସ୍ଥିତିର ସୂଚକ । ପୁଣି ଗୁରୁଗୃହରେ ସେ ବାଳକ ଅବସ୍ଥାରେ ହିଁ ନିଜର ସହପାଠୀମାନଙ୍କୁ ଯେଉଁ ଦିବ୍ୟ ଉପଦେଶ ଦେଇଛନ୍ତି, ସେଥିରୁ ଏହା ପ୍ରମାଣିତ ହେଉଛି ଯେ, ସେ ଜ୍ଞାନୀ ଥିଲେ । ଭାଗବତ ଓ ବିଷ୍ଣୁପୁରାଣରେ ତାଙ୍କର କଥା ସୁନ୍ଦରରୂପେ ବର୍ଣ୍ଣନା କରାଯାଇଛି; ତାହା ପଢ଼ିବା ଉଚିତ ।

**ପ୍ରଶ୍ନ–** ଏଠାରେ ଚ ପ୍ରୟୋଗ କରି କଣ ସୂଚାଯାଇଛି ?

**ଉତ୍ତର–** ଚ ପ୍ରୟୋଗ କରି ଭଗବାନ୍ ଅର୍ଥାର୍ଥୀ, ଆର୍ତ୍ତ ଓ ଜିଜ୍ଞାସୁ ଭକ୍ତଙ୍କ ଅପେକ୍ଷା ଜ୍ଞାନୀଭକ୍ତଙ୍କର ବୈଶିଷ୍ଟ୍ୟ ଏବଂ ଶ୍ରେଷ୍ଠତା ସୂଚାଇଛନ୍ତି । ସତର, ଅଠର ଓ ଊଣେଇଶ ଶ୍ଲୋକରେ ଜ୍ଞାନୀଙ୍କର ଯେଉଁ ମହିମା କୁହାଯାଇଛି, ଚ ସଙ୍କେତଦ୍ୱାରା ତାହା ଏଠାରେ ସୂତ୍ରରୂପରେ ପ୍ରକାଶ କରାଯାଇଛି ।

**ପ୍ରଶ୍ନ–** ଚାରିପ୍ରକାର ଭକ୍ତମାନଙ୍କ ମଧ୍ୟରେ କାହା ଅପେକ୍ଷା କିଏ ଶ୍ରେଷ୍ଠତର ଓ କାହିଁକି ?

**ଉତ୍ତର–** ଭଗବାନଙ୍କୁ ଦୃଢ଼ ବିଶ୍ୱାସ କରି, ଯେକୌଣସି ରୀତିରେ ଭଗବାନଙ୍କୁ ଭଜନ କରୁଥିବା ଭକ୍ତମାନେ ସମସ୍ତେ ଉତ୍ତମ । ଅତଏବ ଭଗବାନ୍ ଚାରିପ୍ରକାର ଭକ୍ତଙ୍କୁ ଏହି ଶ୍ଲୋକରେ 'ସୁକୃତୀ' ଓ ଅଠର ଶ୍ଲୋକରେ 'ଉଦାର' ବୋଲି କହିଛନ୍ତି । ତଥାପି ଏଠାରେ କରାଯାଇଥିବା ବର୍ଣ୍ଣନାନୁସାରେ ତୁଳନାତ୍ମକ ଭେଦଦୃଷ୍ଟିରୁ ଦେଖିଲେ ମନେ ହେଉଛି ଯେ, 'ଅର୍ଥାର୍ଥୀ'ଙ୍କ ଅପେକ୍ଷା 'ଆର୍ତ୍ତ' ଶ୍ରେଷ୍ଠତର; ଆର୍ତ୍ତଙ୍କ ଅପେକ୍ଷା 'ଜିଜ୍ଞାସୁ' ଓ 'ଜିଜ୍ଞାସୁ'ଙ୍କ ଅପେକ୍ଷା 'ଜ୍ଞାନୀ' ଶ୍ରେଷ୍ଠତର । କାରଣ 'ଅର୍ଥାର୍ଥୀ' ଭକ୍ତ ସାଂସାରିକ ଭୋଗକୁ ସୁଖର କାରଣ ବୋଲି ଭାବି, ସେଥିରେ କାମନା ରଖି ଭଗବାନଙ୍କୁ ଭଜନ କରନ୍ତି; ଅର୍ଥାର୍ଥୀମାନେ ଭଗବାନଙ୍କ ପ୍ରଭାବକୁ

ପୂର୍ଣ୍ଣତଃ ଜାଣନ୍ତି ନାହିଁ; ତେଣୁ ଭଗବାନଙ୍କ ଠାରେ ସେମାନଙ୍କର ପୂର୍ଣ୍ଣ ପ୍ରେମ ହୁଏ ନାହିଁ। ସେହି କାରଣରୁ ହିଁ ସେମାନେ ଭୋଗଇଚ୍ଛା କରିଥାନ୍ତି। ଆର୍ତ୍ତ ଭକ୍ତ ତ ସୁଖଭୋଗପାଇଁ ଭଗବାନଙ୍କୁ କେବେ କିଛି ମାଗନ୍ତି ନାହିଁ। ତେଣୁ ଯଦ୍ୟପି ସିଦ୍ଧ ହୁଏ ଯେ, ଅର୍ଥାର୍ଥୀଙ୍କ ଅପେକ୍ଷା ଆର୍ତ୍ତ ଭକ୍ତଙ୍କର ଭଗବାନଙ୍କ ପ୍ରତି ଅଧିକ ପ୍ରେମ ଥାଏ, ତଥାପି ତାଙ୍କର ପ୍ରେମ ଶରୀର-ସୁଖ, ମାନ, ବଡ଼ିମା ଆଦିରେ କିଛି ପରିମାଣରେ ବାନ୍ଧିହୋଇ ରହିଥାଏ। ତେଣୁ ଘୋର ସଙ୍କଟ ପଡ଼ିଲେ ବା ଅପମାନିତ ହେଲେ, ସେଥିରୁ ଉଦ୍ଧାର ପାଇବାକୁ ସେ ଭଗବାନଙ୍କୁ ଡାକନ୍ତି। ଜିଜ୍ଞାସୁ ଭକ୍ତ ଭୋଗ-ସୁଖ ଚାହାଁନ୍ତି ନାହିଁ, କି ଲୌକିକ ବିପତ୍ତିରେ ବିବ୍ରତ ହୁଅନ୍ତି ନାହିଁ, ସେ କେବଳ ଭଗବାନଙ୍କ ତତ୍ତ୍ୱକୁ ହିଁ ଜାଣିବାକୁ ଚାହାଁନ୍ତି। ଏଥିରୁ ପ୍ରମାଣିତ ହେଉଛି ଯେ, ସାଂସାରିକ ଭୋଗରେ ସେ ଆସକ୍ତ ନୁହନ୍ତି। ତାଙ୍କ ଠାରେ କେବଳ ମୁକ୍ତିର କାମନା ହିଁ ଥାଏ; ଅତଏବ ତାଙ୍କର ପ୍ରେମ 'ଅର୍ଥାର୍ଥୀ' ଓ 'ଆର୍ତ୍ତ'ର ପ୍ରେମ ଅପେକ୍ଷା ଶ୍ରେଷ୍ଠ; କିନ୍ତୁ ତାହା 'ଜ୍ଞାନୀ'ଙ୍କ ପ୍ରେମଠାରୁ ନ୍ୟୁନ; କାରଣ ସମଗ୍ର ଭଗବାନଙ୍କର ସ୍ୱରୂପତତ୍ତ୍ୱକୁ ଜାଣିପାରିଥିବା ଜ୍ଞାନୀ ଭକ୍ତ ତ ଭଗବାନଙ୍କୁ ସ୍ୱାଭାବିକରୂପରେ କୌଣସିପ୍ରକାର ଆଶା ନ ରଖି ନିଷ୍କାମପ୍ରେମରେ ନିତ୍ୟ-ନିରନ୍ତର ଭଜନ କରନ୍ତି। ଅତଏବ ସେ ସର୍ବୋତ୍ତମ।

**ପ୍ରଶ୍ନ –** ଏଠାରେ ଭଗବାନ୍ ଅର୍ଜୁନଙ୍କୁ କାହିଁକି ଭରତର୍ଷଭ ବୋଲି ସମ୍ବୋଧନ କରିଛନ୍ତି ?

**ଉତ୍ତର –** ଅର୍ଜୁନଙ୍କୁ ଭରତବଂଶୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି କହି ଭଗବାନ୍ ସୂଚନା ଦେଉଛନ୍ତି ଯେ, ସେ ସୁକୃତୀ; ତେଣୁ ସେ ତାଙ୍କୁ ଭଜନ କରୁଛନ୍ତି।

*ସମ୍ବନ୍ଧ – ଚାରିପ୍ରକାର ଭକ୍ତଙ୍କ କଥା କହିବା ପରେ, ବର୍ତ୍ତମାନ ସେମାନଙ୍କ ମଧ୍ୟରୁ ଜ୍ଞାନୀଭକ୍ତଙ୍କ ପ୍ରେମର ପ୍ରଶଂସା କରି ଅନ୍ୟାନ୍ୟ ଭକ୍ତଙ୍କ ଅପେକ୍ଷା ଜ୍ଞାନୀଙ୍କର ଶ୍ରେଷ୍ଠତା ନିରୂପଣ କରୁଛନ୍ତି –*

**ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ।**
**ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ॥ ୧୭ ॥**

**ଅନ୍ୱୟ –** **ତେଷାମ୍** = ସେମାନଙ୍କ ମଧ୍ୟରେ; **ନିତ୍ୟଯୁକ୍ତଃ** = ମୋ ଠାରେ ନିତ୍ୟ ନିବିଷ୍ଟଚିତ୍ତ; **ଏକଭକ୍ତିଃ** = ଅନନ୍ୟ ପ୍ରେମଭକ୍ତି ରଖିଥିବା; **ଜ୍ଞାନୀ** = ଜ୍ଞାନୀଭକ୍ତ; **ବିଶିଷ୍ୟତେ** = ଅତ୍ୟନ୍ତ ଉତ୍ତମ; **ହି** = କାରଣ; **ଜ୍ଞାନିନଃ** = ମୋତେ ତତ୍ତ୍ୱତଃ ଜାଣିଥିବା ଜ୍ଞାନୀଙ୍କର; **ଅହମ୍** = ମୁଁ; **ଅତ୍ୟର୍ଥମ୍** = ଅତ୍ୟନ୍ତ; **ପ୍ରିୟଃ** = ପ୍ରିୟ; **ଚ** = ଏବଂ; **ସଃ** = ସେହି ଜ୍ଞାନୀ; **ମମ** = ମୋର; **ପ୍ରିୟଃ** = (ଅତ୍ୟନ୍ତ) ପ୍ରିୟ।

**ସେମାନଙ୍କ ମଧ୍ୟରେ ମୋ ଠାରେ ନିତ୍ୟ ଏକୀଭାବରେ ସ୍ଥିତ ଏବଂ ଅନନ୍ୟ ପ୍ରେମଭକ୍ତି ରଖିଥିବା ଜ୍ଞାନୀଭକ୍ତ ଅତ୍ୟନ୍ତ ଉତ୍ତମ ଅଟନ୍ତି; କାରଣ ମୋତେ ତତ୍ତ୍ୱତଃ ଜାଣିଥିବା ଜ୍ଞାନୀଙ୍କର ମୁଁ ଅତ୍ୟନ୍ତ ପ୍ରିୟ ଏବଂ ସେହି ଜ୍ଞାନୀ ମୋର ଅତ୍ୟନ୍ତ ପ୍ରିୟ।॥ ୧୭ ॥**

**ପ୍ରଶ୍ନ –** ଜ୍ଞାନୀ ସହିତ **ନିତ୍ୟଯୁକ୍ତଃ** ଓ **ଏକଭକ୍ତିଃ** ବିଶେଷଣ କାହିଁକି ଦିଆଯାଇଛି ?

**ଉତ୍ତର –** ସଂସାର, ଶରୀର ଓ ନିଜକୁ ପୂରାପୂରି ଭୁଲିଯାଇ ଯେ ଅନନ୍ୟଭାବରେ ନିତ୍ୟନିରନ୍ତର କେବଳ ଭଗବାନଙ୍କ ଠାରେ ହିଁ ମଗ୍ନ ରହନ୍ତି, ତାଙ୍କୁ **ନିତ୍ୟଯୁକ୍ତ** କହନ୍ତି ଓ ଯେ ଭଗବାନଙ୍କ ଠାରେ କିଛି କାମନା ନ ଥାଇ ପ୍ରଗାଢ଼ ପ୍ରେମ କରନ୍ତି, ତାଙ୍କୁ **ଏକଭକ୍ତି** କହନ୍ତି; ଭଗବାନଙ୍କର ତତ୍ତ୍ୱ ଜାଣିଥିବା ଜ୍ଞାନୀଭକ୍ତଙ୍କ ଠାରେ ଏହି ଦୁଇଟି ଲକ୍ଷଣ ପୂର୍ଣ୍ଣରୂପେ ଥାଏ; ଅତଏବ ଏହି ବିଶେଷଣ ଦିଆଯାଇଛି।

**ପ୍ରଶ୍ନ –** 'ଜ୍ଞାନୀଙ୍କର ମୁଁ ଅତ୍ୟନ୍ତ ପ୍ରିୟ ଓ ଜ୍ଞାନୀ ମୋର ଅତ୍ୟନ୍ତ ପ୍ରିୟ'– ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କୁ ଭଗବାନଙ୍କ ଯଥାର୍ଥ ତତ୍ତ୍ୱ ଓ ରହସ୍ୟର ସମ୍ୟକ୍ ଉପଲବ୍ଧି ହୋଇସାରିଛି, ଯାହାଙ୍କୁ ସର୍ବତ୍ର, ସର୍ବଦା ସବୁ କିଛି ଭଗବତ୍ସ୍ୱରୂପ ହିଁ ଦେଖାଯାଏ, ଯାହାଙ୍କର ଦୃଷ୍ଟି ଏକ ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ଦେଖେ ନାହିଁ, ତଥା ଭଗବାନଙ୍କୁ ହିଁ ଏକମାତ୍ର ପରମଶ୍ରେଷ୍ଠ ଓ ପରମପ୍ରିୟତମ ବୋଲି ଜାଣିଥିବାରୁ ଯାହାଙ୍କର ମନ ଓ ବୁଦ୍ଧି ଆସକ୍ତି ଓ କାମନାରୁ ସର୍ବଥା ରହିତ ହୋଇ ଏକମାତ୍ର ଭଗବାନଙ୍କ ଠାରେ ହିଁ ତଲ୍ଲୀନ ହୋଇଯାଇଛି

ଏବଂ ଯେ ଏପରି ଅନନ୍ୟ ପ୍ରେମରେ ଭଗବାନଙ୍କୁ ଭକ୍ତି କରନ୍ତି, ତାଙ୍କୁ ଭଗବାନ୍ ଯେ କେଡ଼େ ପ୍ରିୟ, ତାହା କିଏ କହିପାରିବ? ଯେ ଇହଲୋକ ଓ ପରଲୋକର ଅତ୍ୟନ୍ତ ପ୍ରିୟ, ସୁଖପ୍ରଦ ତଥା ସାଂସାରିକ ମନୁଷ୍ୟଦୃଷ୍ଟିରେ ଦୁର୍ଲଭରୁ ଦୁର୍ଲଭତର ବୋଲି ମନେ ହେଉଥିବା ସମସ୍ତ ଭୋଗ, ସୁଖ ଓ ସମସ୍ତ ଅଭିଳାଷ ଭଗବାନଙ୍କ ପାଇଁ ତ୍ୟାଗ କରିଦେଇଛନ୍ତି, ତାଙ୍କ ଦୃଷ୍ଟିରେ ଭଗବାନଙ୍କର ମହତ୍ତ୍ୱ ଯେ କେତେ ଏବଂ ତାଙ୍କ ଦୃଷ୍ଟିରେ ଭଗବାନ୍ ଯେ କେତେ ପ୍ରିୟ, ଅନ୍ୟ କେହି ତାହା କଳ୍ପନା କରିପାରିବେ ନାହିଁ। ଅତଏବ ଭଗବାନ୍ କହୁଛନ୍ତି, "ତାଙ୍କର ମୁଁ ଅତ୍ୟନ୍ତ ପ୍ରିୟ।" ଏବଂ ଯାହାଙ୍କୁ ଭଗବାନ୍ ଅତ୍ୟନ୍ତ ପ୍ରିୟ, ଭଗବାନଙ୍କ ନିମନ୍ତେ ସେ ନିଶ୍ଚୟ ଅତିଶୟ ପ୍ରିୟ ହେବେ; କାରଣ ପ୍ରଥମତଃ ଭଗବାନ୍ ସ୍ୱଭାବତଃ ପ୍ରେମସ୍ୱରୂପ— ଏପରି କି ସେହି ପ୍ରେମରସସାଗରର ଟୋପାଏ ପ୍ରେମ ପାଇ ଜଗତର ସବୁଲୋକ ସୁଖୀ ହୁଅନ୍ତି★; ଦ୍ୱିତୀୟତଃ ଭଗବାନ୍ ଘୋଷଣା ବି କରିଛନ୍ତି, "ଯେ ମୋତେ ଯେପରି ଭଜନ କରେ, ମୁଁ ତାକୁ ସେପରି ଭଜେ।" ତେଣୁ ଭଗବାନ୍ ଯେ ତାଙ୍କୁ ଅତ୍ୟନ୍ତ ପ୍ରେମ କରନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି? ଅତଏବ ଭଗବାନ୍ କହୁଛନ୍ତି, "ସେହି ଜ୍ଞାନୀ ଭକ୍ତ ମୋର ଅତ୍ୟନ୍ତ ପ୍ରିୟ।"

ଭଗବାନଙ୍କର ଗୁଣ, ପ୍ରଭାବ, ରହସ୍ୟ ଓ ତତ୍ତ୍ୱକୁ ଭଲଭାବରେ ଜାଣିପାରିଥିବା ଭଗବଦ୍‌ପ୍ରେମୀ ଭକ୍ତମାନଙ୍କ ପ୍ରେମର ତଥା ଉଚ୍ଚକୋଟିର ସାଧକ ଓ ଅନନ୍ୟପ୍ରେମୀ ଭକ୍ତମାନଙ୍କ ପ୍ରେମର ପରାକାଷ୍ଠା ଦର୍ଶାଇ ଏହି ଶ୍ଳୋକରେ ସେମାନଙ୍କର ପ୍ରଶଂସା କରାଯାଇଛି।

*ସମ୍ବନ୍ଧ— ଭଗବାନ୍ ଜ୍ଞାନୀ ଭକ୍ତଙ୍କୁ ଶ୍ରେଷ୍ଠତମ ଓ ଅତ୍ୟନ୍ତ ପ୍ରିୟ ବୋଲି କହିଲେ। ତେଣୁ ଶଙ୍କା ହୋଇପାରେ, 'ଅନ୍ୟ ଭକ୍ତମାନେ ଶ୍ରେଷ୍ଠ ଓ ପ୍ରିୟ ନୁହନ୍ତି କି?' ସେହି ସମ୍ପର୍କରେ କହୁଛନ୍ତି—*

**ଉଦାରାଃ ସର୍ବ ଏବୈତେ ଜ୍ଞାନୀ ତ୍ୱାତ୍ମୈବ ମେ ମତମ୍।**
**ଆସ୍ଥିତଃ ସ ହି ଯୁକ୍ତାତ୍ମା ମାମେବାନୁତ୍ତମାଂ ଗତିମ୍॥ ୧୮ ॥**

ଅନ୍ୱୟ— ଏତେ = ଏମାନେ; ସର୍ବେ, ଏବ = ସମସ୍ତେ ହିଁ; ଉଦାରାଃ = ଉଦାର ଅଟନ୍ତି; ତୁ = କିନ୍ତୁ; ଜ୍ଞାନୀ = ଜ୍ଞାନୀ (ତ); ଆତ୍ମା = ସାକ୍ଷାତ୍ ମୋର ସ୍ୱରୂପ; ଏବ = ହିଁ (ଅଟନ୍ତି); ମେ = ମୋର; ମତମ୍ = (ଏହା) ମତ ଅଟେ; ହି = କାରଣ; ସଃ = ସେହି; ଯୁକ୍ତାତ୍ମା = ମଦ୍‌ଗତ ମନବୁଦ୍ଧିସମ୍ପନ୍ନ (ଜ୍ଞାନୀ ଭକ୍ତ); ଅନୁତ୍ତମାମ୍ = ଅତି ଉତ୍ତମ; ଗତିମ୍ = ଗତିସ୍ୱରୂପ; ମାମ୍ = ମୋଠାରେ; ଏବ = ହିଁ; ଆସ୍ଥିତଃ = ଭଲରୂପେ ସ୍ଥିତ ହୋଇଥାନ୍ତି।

**ଏମାନେ ସମସ୍ତେ ହିଁ ଉଦାର ଅଟନ୍ତି; କିନ୍ତୁ ମୋ ମତରେ ଜ୍ଞାନୀ ତ ସାକ୍ଷାତ୍ ମୋର ହିଁ ସ୍ୱରୂପ ଅଟନ୍ତି; କାରଣ ସେହି ମଦ୍‌ଗତ ମନ-ବୁଦ୍ଧିସମ୍ପନ୍ନ ଜ୍ଞାନୀଭକ୍ତ ଅତି ଉତ୍ତମ ଗତିସ୍ୱରୂପ ମୋଠାରେ ହିଁ ଭଲରୂପେ ଅବସ୍ଥିତ ହୋଇଥାନ୍ତି॥ ୧୮ ॥**

**ପ୍ରଶ୍ନ— ଏମାନେ ସମସ୍ତେ ଉଦାର—** ଏହି କଥାର ଅଭିପ୍ରାୟ କଣ?

**ଉତ୍ତର—** ଏଠାରେ ଯେଉଁ ଚାରିପ୍ରକାର ଭକ୍ତଙ୍କ ପ୍ରସଙ୍ଗ ଆସିଛି, ସେଥିରେ ଜ୍ଞାନୀଙ୍କ ବିଷୟରେ ତ କୌଣସି ପ୍ରଶ୍ନ ହିଁ ନାହିଁ; ଅର୍ଥାର୍ଥୀ, ଆର୍ତ୍ତ ଓ ଜିଜ୍ଞାସୁ ଭକ୍ତ ମଧ୍ୟ ସର୍ବଥା ଏକନିଷ୍ଠ ଥାଆନ୍ତି। ଭଗବାନଙ୍କ ଠାରେ ସେମାନଙ୍କର ଦୃଢ଼ ଓ ପ୍ରଗାଢ଼ ବିଶ୍ୱାସ ଥାଏ। ସେମାନେ ଭଲଭାବରେ ନିଶ୍ଚୟ କରିସାରିଥାନ୍ତି ଯେ, ଭଗବାନ୍ ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବେଶ୍ୱର, ପରମଦୟାଳୁ ଓ ପରମସୁହୃଦ ଅଟନ୍ତି; ସେମାନେ ବିଶ୍ୱାସ କରିସାରିଥାନ୍ତି ଯେ, ସେମାନଙ୍କର ଆଶା-ଆକାଂକ୍ଷାର ପୂର୍ତ୍ତି ଏକମାତ୍ର ଭଗବାନଙ୍କ ଦ୍ୱାରା ହିଁ ସମ୍ଭବ। ଏପରି ମାନି ଓ ଜାଣି ସେମାନେ ଅନ୍ୟ ସମସ୍ତପ୍ରକାର ଆଶ୍ରୟ ତ୍ୟାଗ କରି ନିଜ ଜୀବନକୁ ଭଗବାନଙ୍କ ଭଜନ, ସ୍ମରଣ, ପୂଜନ ଓ ସେବା ଆଦିରେ ହିଁ ଲଗାଇରଖନ୍ତି। ସେମାନେ ଏପରି କୌଣସି ଚେଷ୍ଟା କରନ୍ତି ନାହିଁ, ଯାହାଦ୍ୱାରା

---

★ ରସୋ ବୈ ସଃ। ରସଁ ହ୍ୟେବାୟଂ ଲବ୍‌ଧ୍ୱାନନ୍ଦୀ ଭବତି (ତୈତ୍ତିରୀୟୋପନିଷଦ ୨/୭) ଅର୍ଥାତ୍ ସେ ରସ ହିଁ ଅଟନ୍ତି। ଅର୍ଥାତ୍ ଏହି ପୁରୁଷ ସେହି ରସକୁ ପାଇ ଆନନ୍ଦିତ ହୁଏ।




चार अवस्थाएँ

**Four stages**



अनन्य शरणागति

Surrender unreserved

କି ଭଗବତ୍-ବିଶ୍ୱାସରେ ତିଳେମାତ୍ର ତ୍ରୁଟି ହେବ। ସେମାନଙ୍କର କାମନା ପୁରାପୁରି ମେଣ୍ଟି ନ ଥାଏ, କିନ୍ତୁ କେବଳ ଭଗବାନଙ୍କ ଦ୍ୱାରା ହିଁ ସେମାନେ ସେସବୁ ପୂର୍ଣ୍ଣ କରିବାକୁ ଚାହାଁନ୍ତି। ପତିବ୍ରତା ନାରୀ ବି ନିଜପାଇଁ କିଛି ଚାହାଁନ୍ତି, କିନ୍ତୁ ଯାହା ଚାହାଁନ୍ତି, ଏକମାତ୍ର ନିଜର ପ୍ରିୟତମ ସ୍ୱାମୀଙ୍କ ଠାରୁ ହିଁ ଚାହାଁନ୍ତି; ସେ ଅନ୍ୟ କାହା ଆଡ଼କୁ ଚାହାଁନ୍ତି ନାହିଁ କାହାକୁ ବିଶ୍ୱାସ କରନ୍ତି ନାହିଁ, କି ଜାଣନ୍ତି ନାହିଁ। ଭକ୍ତ ସେହିପରି ଏକମାତ୍ର ଭଗବାନଙ୍କୁ ଭରସା କରିଥାନ୍ତି। ତେଣୁ ଭଗବାନ୍ କହନ୍ତି, ସେ ସମସ୍ତେ ଉଦାର। ଅତଏବ ୨୩ତମ ଶ୍ଳୋକରେ ଭଗବାନ୍ କହିଛନ୍ତି, 'ମୋ ଭକ୍ତମାନେ ମୋତେ ଯେପରିଭାବରେ ଭଜନ କରନ୍ତୁ ନା କାହିଁକି, ଶେଷରେ ସେମାନେ ମୋତେ ହିଁ ପାଆନ୍ତି।' ନବମ ଅଧ୍ୟାୟରେ ମଧ୍ୟ ଭଗବଦ୍‌ଭକ୍ତିର ଫଳ ଏପରି ବୋଲି କୁହାଯାଇଛି। (୯/୨୫)।

**ପ୍ରଶ୍ନ** – ଏଠାରେ ତୁ ପ୍ରୟୋଗର ଅଭିପ୍ରାୟ କଣ?

**ଉତ୍ତର** – ଚାରିପ୍ରକାରଯାକ ଭକ୍ତ ଉତ୍ତମ ଓ ଭଗବାନଙ୍କର ପ୍ରିୟ। ସେମାନଙ୍କ ମଧ୍ୟରୁ ପ୍ରଥମ ତିନି ପ୍ରକାରଙ୍କ ତୁଳନାରେ ଜ୍ଞାନୀଙ୍କ ଠାରେ ଯେଉଁ ଶ୍ରେଷ୍ଠତା ରହିଛି, ତାହା ବ୍ୟକ୍ତ କରିବା ପାଇଁ ହିଁ ତୁ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ** – 'ଜ୍ଞାନୀ ତ ମୋର ହିଁ ସ୍ୱରୂପ; ଏହା ମୋର ମତ।' – ଏହା କହିବାର ଅଭିପ୍ରାୟ କଣ?

**ଉତ୍ତର** – ଏଠାରେ ଭଗବାନ୍ ଦେଖାଉଛନ୍ତି ଯେ, ଜ୍ଞାନୀଭକ୍ତ ଓ ଭଗବାନଙ୍କ ମଧ୍ୟରେ କିଛି ବି ପ୍ରଭେଦ ନାହିଁ। ତେଣୁ ସେ କହିଛନ୍ତି, "ସେ ଯାହା, ମୁଁ ତାହା ଏବଂ ମୁଁ ଯାହା, ସେ ତାହା।"

**ପ୍ରଶ୍ନ** – **ଯୁକ୍ତାତ୍ମା** ଶବ୍ଦର ଅର୍ଥ କଣ ଏବଂ ସେ ତାଙ୍କର 'ଅତି ଉତ୍ତମ ଗତିସ୍ୱରୂପ ଭଗବାନଙ୍କ ଠାରେ ଭଲଭାବରେ ସ୍ଥିତ ହୁଅନ୍ତି' କହିଲେ କଣ ବୁଝାଏ?

**ଉତ୍ତର** – ଯାହାଙ୍କ ମନ, ବୁଦ୍ଧି ଭଲଭାବରେ ଭଗବାନଙ୍କ ଠାରେ ତନ୍ମୟ ହୋଇଗଲାଣି, ତାଙ୍କୁ **ଯୁକ୍ତାତ୍ମା** କହନ୍ତି। ଏବଂ ଏପରି ପୁରୁଷ ଏକମାତ୍ର ଭଗବାନଙ୍କୁ ହିଁ ସର୍ବୋତ୍ତମ ଓ ପରମ ଗତି ବୋଲି ଅର୍ଥାତ୍ ତାଙ୍କୁ ପ୍ରାପ୍ତ ହେବା ହିଁ ଅତି ଉତ୍ତମ ଗତି ବୋଲି ବୁଝି ନିତ୍ୟ-ନିରନ୍ତର ପ୍ରଭୁଙ୍କ ଠାରେ ଅଟଳ ହୋଇ ଏକନିଷ୍ଠ ହୋଇଯାଆନ୍ତି। ତାହା ହିଁ ତାଙ୍କର ଭଗବାନଙ୍କ ଠାରେ ଭଲଭାବରେ ଅବସ୍ଥିତ ହୋଇଯିବା।

**ସମ୍ବନ୍ଧ** – ବର୍ତ୍ତମାନ ସେପରି ଜ୍ଞାନୀଭକ୍ତ ଦୁର୍ଲଭ ବୋଲି ବୁଝାଇବାକୁ ଭଗବାନ୍ କହୁଛନ୍ତି –

## ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ।
## ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲ୍ଲଭଃ।। ୧୯ ।।

**ଅନ୍ୱୟ** – ବହୂନାମ୍ = ବହୁ; ଜନ୍ମନାମ୍ = ଜନ୍ମମାନଙ୍କ (ପରେ); ଅନ୍ତେ = ଶେଷ ଜନ୍ମରେ; **ଜ୍ଞାନବାନ୍** = ତତ୍ତ୍ୱଜ୍ଞାନପ୍ରାପ୍ତ ପୁରୁଷ; **ସର୍ବମ୍** = ସବୁକିଛି; **ବାସୁଦେବଃ** = ବାସୁଦେବ ହିଁ (ଅଟେ); **ଇତି** = ଏହିଭାବରେ; **ମାମ୍** = ମୋତେ; **ପ୍ରପଦ୍ୟତେ** = ଭଜନ୍ତି; **ସଃ** = ସେ; **ମହାତ୍ମା** = ମହାତ୍ମା; **ସୁଦୁର୍ଲ୍ଲଭଃ** = ଅତ୍ୟନ୍ତ ଦୁର୍ଲ୍ଲଭ।

**ବହୁଜନ୍ମର ଶେଷ ଜନ୍ମରେ ତତ୍ତ୍ୱଜ୍ଞାନପ୍ରାପ୍ତ ପୁରୁଷ 'ସବୁ କିଛି କେବଳ ବାସୁଦେବ ହିଁ ଅଟେ' – ଏହି ଭାବ ରଖି ମୋତେ ଭଜନ୍ତି। ସେପରି ମହାତ୍ମା ଅତ୍ୟନ୍ତ ଦୁର୍ଲଭ।।। ୧୯ ।।**

**ପ୍ରଶ୍ନ** – ଏଠାରେ 'ବହୂନା" ଜନ୍ମନାମନ୍ତେ'ର ଅଭିପ୍ରାୟ କଣ?

**ଉତ୍ତର** – ଯେଉଁ ଜନ୍ମରେ ମନୁଷ୍ୟ ଭଗବାନଙ୍କର ଜ୍ଞାନୀଭକ୍ତ ହୋଇଯାଏ, ତାହା ହେଉଛି ତା'ର ବହୁତ ଜନ୍ମ ପରର ଶେଷ ଜନ୍ମ; କାରଣ ଭଗବାନଙ୍କର ଏହିପ୍ରକାର ତତ୍ତ୍ୱ ଜାଣିବା ପରେ ତା'ର ଆଉ ଜନ୍ମ ହୁଏ ନାହିଁ; ତାହା ତା'ର ଅନ୍ତିମ ଜନ୍ମ ହୁଏ।

**ପ୍ରଶ୍ନ** – ଯଦି ଅର୍ଥ କରାଯାଏ ଯେ, ଅନେକ ଜନ୍ମ ଧରି ସକାମଭାବରେ ଭଗବାନଙ୍କୁ ଭକ୍ତି କରିବା ପରେ ଶେଷରେ ମନୁଷ୍ୟ ଭଗବାନଙ୍କର ଏକନିଷ୍ଠ ଜ୍ଞାନୀଭକ୍ତ ହୁଏ, ତେବେ ସେଥିରେ କ୍ଷତି କଣ?

**ଉତ୍ତର** – ଏପରି ମାନିନେଲେ ଭଗବାନଙ୍କର ଅର୍ଥାର୍ଥୀ, ଆର୍ତ୍ତ ଓ ଜିଜ୍ଞାସୁ ଭକ୍ତମାନଙ୍କର ବହୁ ଜନ୍ମ ହେବା ଅନିବାର୍ଯ୍ୟ ହୋଇଯାଏ। ପରନ୍ତୁ ଭଗବାନ୍ ସ୍ଥାନେ ସ୍ଥାନେ କହିଛନ୍ତି, ତାଙ୍କର ସବୁପ୍ରକାର ଭକ୍ତଙ୍କୁ ସେ ପ୍ରାପ୍ତ ହୁଅନ୍ତି (୭/୨୩, ୯/୨୫) ଏବଂ ତା'ଭିତରୁ କୌଣସି ବି ସ୍ଥାନରେ ସେ ବହୁ ଜନ୍ମର ସର୍ତ୍ତ ରଖି ନାହାନ୍ତି। ଅବଶ୍ୟ ଶ୍ରଦ୍ଧା ଓ ପ୍ରେମ କମ୍ ହେବାରୁ ସାଧନା ଶିଥିଳ ହେଲେ

ଅନେକ ଜନ୍ମ ଲାଗିଯାଇପାରେ, କିନ୍ତୁ ଯଦି ଶ୍ରଦ୍ଧା ଓ ପ୍ରେମର ମାତ୍ରା ବଢ଼େ ଓ ସାଧନା ତୀବ୍ର ହୁଏ, ତେବେ ଏକଜନ୍ମରେ ମଧ୍ୟ ଭଗବତ୍‌ପ୍ରାପ୍ତି ହୋଇପାରେ। ଏଥିରେ କାଳର କୌଣସି ନିୟମ ନାହିଁ।

**ପ୍ରଶ୍ନ –** ଏଠାରେ **ଜ୍ଞାନବାନ୍** ଶବ୍ଦର ପ୍ରୟୋଗ କାହା ପାଇଁ ହୋଇଛି ?

**ଉତ୍ତର –** ଭଗବାନ୍ ଏହି ଅଧ୍ୟାୟର ଦ୍ୱିତୀୟ ଶ୍ଳୋକରେ ଯେଉଁ 'ବିଜ୍ଞାନ-ସହିତ ଜ୍ଞାନ ଜାଣିବା'ର ପ୍ରଶଂସା କରିଥିଲେ, ଯେଉଁ ପ୍ରେମୀଭକ୍ତ ସେହି ବିଜ୍ଞାନ-ସହିତ ଜ୍ଞାନକୁ ପାଇଯାଇଛନ୍ତି ତଥା ତୃତୀୟ ଶ୍ଳୋକରେ ଯାହାଙ୍କ ପାଇଁ ସେ କହିଛନ୍ତି, 'କ୍ୱଚିତ୍ କେହି ଜଣେ ହିଁ ମୋତେ ତତ୍ତ୍ୱତଃ ଜାଣିପାରନ୍ତି,' ସେହି ପୁରୁଷଙ୍କ ପାଇଁ ଏଠାରେ **ଜ୍ଞାନବାନ୍** ଶବ୍ଦ ପ୍ରୟୋଗ ହୋଇଛି। ତେଣୁ ଅଠର ଶ୍ଳୋକରେ ଭଗବାନ୍ ତାହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ସବୁ କିଛି କେବଳ ବାସୁଦେବ ଅଟେ'— ଏହିଭାବରେ ଭଗବାନଙ୍କୁ ଭଜନ କରିବା କହିଲେ କଣ ବୁଝାଏ ?

**ଉତ୍ତର –** 'ସମଗ୍ର ଜଗତ ଭଗବାନ୍ ବାସୁଦେବଙ୍କର ହିଁ ସ୍ୱରୂପ ଅଟେ; ବାସୁଦେବଙ୍କ ଭିନ୍ନ ଆଉ କିଛି ହିଁ ନାହିଁ'— ଏହି ତତ୍ତ୍ୱର ପ୍ରତ୍ୟକ୍ଷ ଓ ଅଟଳ ଅନୁଭବ ହୋଇଯିବା ଏବଂ ସେଥିରେ ନିତ୍ୟସ୍ଥିତ ରହିବା ହିଁ 'ସବୁକିଛି ବାସୁଦେବ ଅଟେ'— ଏହିଭାବରେ ଭଗବାନ୍‌ଙ୍କୁ ଭଜନ କରିବା।

**ପ୍ରଶ୍ନ –** ସେପରି ମହାତ୍ମା ଅତ୍ୟନ୍ତ ଦୁର୍ଲଭ— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାର ଅଭିପ୍ରାୟ ଏହି ଯେ, ସଂସାରରେ ଲୋକମାନଙ୍କର ପ୍ରଥମେ ଭଜନ ପ୍ରତି ରୁଚି ହୁଏ ନାହିଁ। ହଜାରେ ଲୋକଙ୍କ ମଧ୍ୟରୁ କାହାର ଜଣଙ୍କର ରୁଚି ହେଲେ ବି ନିଜ ସ୍ୱଭାବର ପ୍ରଭାବରୁ ତାଙ୍କ ପ୍ରଯତ୍ନ ଶିଥିଳ ହୋଇଯାଏ ଏବଂ ସେ ଭଜନ କରିବା ଛାଡ଼ିଦିଅନ୍ତି। କେହି ଜଣେ ବିଶେଷ ପ୍ରଯତ୍ନ କଲେ ମଧ୍ୟ, ଶ୍ରଦ୍ଧା, ଭକ୍ତି କମିଯିବାରୁ କାମନାର ପ୍ରବାହରେ ସେ ବି ଭାସିଯାଆନ୍ତି; ତେଣୁ ସେମାନେ ଭଗବତ୍‌ତତ୍ତ୍ୱ ଜାଣିପାରନ୍ତି ନାହିଁ। ଏଥିରୁ ଏହା ସିଦ୍ଧ ହେଉଛି ଯେ, ସଂସାରରେ ଭଗବତ୍‌ତତ୍ତ୍ୱ ଜାଣିଥିବା ମହାପୁରୁଷ ପ୍ରକୃତରେ ବିରଳ। ଅତଏବ ବୁଝିବା ଉଚିତ ଯେ; ଏପରି ମହାତ୍ମା ଅତ୍ୟନ୍ତ ଦୁର୍ଲଭ।

ଯଦି କାହାକୁ ଏପରି ଜଣେ ମହାତ୍ମା ମିଳିଯା'ନ୍ତି, ତେବେ ତାହା ତାଙ୍କର ବିଶେଷ ସୌଭାଗ୍ୟ ବୋଲି ମନେ କରିବାକୁ ହେବ। ଦେବର୍ଷି ନାରଦ କହିଛନ୍ତି—

'ମହତ୍‌ସଙ୍ଗସ୍ତୁ ଦୁର୍ଲଭୋଽଗମ୍ୟୋଽମୋଘଶ୍ଚ।'

(ଭକ୍ତିସୂତ୍ର – ୩୯)

ଅର୍ଥାତ୍, ମହାପୁରୁଷଙ୍କ ସଙ୍ଗ ଦୁର୍ଲଭ, ଅଗମ୍ୟ ଓ ଅମୋଘ।

*ସମ୍ବନ୍ଧ – ପନ୍ଦର ଶ୍ଳୋକରେ ଆସୁରୀ ପ୍ରକୃତିର ଦୁଷ୍କୃତୀସମ୍ପନ୍ନ ଲୋକ ଭଗବାନଙ୍କର ଭଜନ ନ କରିବା ଏବଂ ଷୋଳ ଶ୍ଳୋକରୁ ଉଣେଇଶ ଶ୍ଳୋକପର୍ଯ୍ୟନ୍ତ ସୁକୃତୀ ପୁରୁଷଙ୍କ ଦ୍ୱାରା ଭଗବାନଙ୍କର ଭଜନ ହେବା କଥା କୁହାଯାଇଛି। କିନ୍ତୁ ସୁକୃତୀ ହୋଇ ମଧ୍ୟ ଯେଉଁମାନେ କାମନାବଶତଃ ନିଜ ନିଜର ପ୍ରକୃତି ଅନୁସାରେ ଅନ୍ୟାନ୍ୟ ଦେବତାଙ୍କର ଉପାସନା କରନ୍ତି, ଭଗବାନ୍ ବର୍ତ୍ତମାନ ସେମାନଙ୍କ କଥା କହୁଛନ୍ତି—*

## କାମୈସ୍ତୈସ୍ତୈର୍ହୃତଜ୍ଞାନାଃ ପ୍ରପଦ୍ୟନ୍ତେଽନ୍ୟଦେବତାଃ।
## ତଂ ତଂ ନିୟମମାସ୍ଥାୟ ପ୍ରକୃତ୍ୟା ନିୟତାଃ ସ୍ୱୟା॥ ୨୦ ॥

**ଅନ୍ୱୟ –** **ତୈଃ, ତୈଃ** = ସେହି ସେହି (ନାନାପ୍ରକାର); **କାମୈଃ** = ଭୋଗମାନଙ୍କ କାମନାଦ୍ୱାରା; **ହୃତଜ୍ଞାନାଃ** = ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି (ସେମାନେ); **ସ୍ୱୟା** = ନିଜର; **ପ୍ରକୃତ୍ୟା** = ସ୍ୱଭାବଦ୍ୱାରା; **ନିୟତାଃ** = ପ୍ରେରିତ ହୋଇ; **ତମ୍, ତମ୍** = ସେହି ସେହି; **ନିୟମମ୍** = ନିୟମକୁ; **ଆସ୍ଥାୟ** = ଧରି; **ଅନ୍ୟଦେବତାଃ** = ଅନ୍ୟ ଦେବତାମାନଙ୍କୁ; **ପ୍ରପଦ୍ୟନ୍ତେ** = ଭଜନ୍ତି ଅର୍ଥାତ୍ ପୂଜା କରନ୍ତି।

**ଭୋଗକାମନାଦ୍ୱାରା ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି, ସେମାନେ ନିଜ ନିଜର ସ୍ୱଭାବଦ୍ୱାରା ପ୍ରେରିତ ହୋଇ ସେହି ସେହି ନିୟମ ଧରି ଅନ୍ୟ ଦେବତାମାନଙ୍କୁ ଭଜନ୍ତି ଅର୍ଥାତ୍ ପୂଜା କରନ୍ତି॥ ୨୦ ॥**

**ପ୍ରଶ୍ନ –** ଏଠାରେ **ତୈଃ ତୈଃ** ଶବ୍ଦ ଦୁଇଥର ପ୍ରୟୋଗ କରିବାର ଅଭିପ୍ରାୟ କଣ ଓ କାମନାଦ୍ୱାରା ଜ୍ଞାନ ଅପହୃତ ହେବାର ଅର୍ଥ କଣ ?

**ଉତ୍ତର –** ଏଠାରେ **ତୈଃ** ଶବ୍ଦ ଦୁଇ ଥର ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ସମସ୍ତଙ୍କର କାମନା ଏକାପରି ନୁହେଁ। ସେହି ଭୋଗକାମନାଦିର ମୋହରେ ମନୁଷ୍ୟ 'ମୁଁ କିଏ ? ମୋର କର୍ତ୍ତବ୍ୟ କଣ ? ଈଶ୍ୱର ଓ ଜୀବର ସମ୍ବନ୍ଧ କଣ ? ମନୁଷ୍ୟଜନ୍ମ କାହିଁକି ମିଳିଛି ? ଅନ୍ୟ ଜନ୍ମ ଅପେକ୍ଷା ମନୁଷ୍ୟଜନ୍ମର ବିଶେଷତା କଣ ?' ଇତ୍ୟାଦି ବିଚାର କରେ ନାହିଁ ଏବଂ 'ଭୋଗରେ ଭଗବାନଙ୍କୁ ଭୁଲି ନ ଯାଇ ଭଜନରେ ଅର୍ଥାତ୍ ପୂଜା ଉପାସନା କରିବାରେ ହିଁ ନିଜର କଲ୍ୟାଣ ରହିଛି' ବୋଲି ତା'ର ବିବେକବିଚାର ରହେ ନାହିଁ। ଏପରି ବିବେକଶକ୍ତି ବିମୋହିତ ହୋଇଯିବା ହିଁ କାମନାମାନଙ୍କ ଦ୍ୱାରା ଜ୍ଞାନ ଅପହୃତ ହୋଇଯିବା।

**ପ୍ରଶ୍ନ –** ପନ୍ଦର ଶ୍ଳୋକରେ ଯେଉଁମାନଙ୍କୁ **ମାୟୟାପହୃତଜ୍ଞାନାଃ** କୁହାଯାଇଛି, ଏବଂ ଏଠାରେ ଯେଉଁମାନଙ୍କୁ **ତୈଃ ତୈଃ କାମୈଃ ହୃତଜ୍ଞାନାଃ** କୁହାଯାଇଛି', ସେହି ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ପନ୍ଦର ଶ୍ଳୋକରେ ଯେଉଁମାନଙ୍କର ବର୍ଣ୍ଣନା ହୋଇଛି, ସେମାନଙ୍କୁ ଭଗବାନ୍ ପାପାତ୍ମା, ମୂଢ଼, ନରାଧମ ଓ ଅସୁରସ୍ୱଭାବଯୁକ୍ତ ବୋଲି କହିଛନ୍ତି; ସେମାନେ ଆସୁରୀ ପ୍ରକୃତିର ହୋଇଥିବାରୁ ତମଃପ୍ରଧାନ ଅଟନ୍ତି ଓ ନରକଗାମୀ ହୁଅନ୍ତି (୧୬/୧୬,୧୯)। ଏଠାରେ ନାନାବିଧ କାମନାଦ୍ୱାରା ଯେଉଁମାନଙ୍କର ଜ୍ଞାନ ଅପହୃତ ହେବା କଥା କୁହାଯାଉଛି, ସେମାନେ ବିଭିନ୍ନ ଦେବତାଙ୍କୁ ପୂଜା କରୁଥିବା ଭକ୍ତ, ଶ୍ରଦ୍ଧାଳୁ ଏବଂ ଦେବଲୋକଭାଗୀ (୭/୨୩, ୯/୨୫) ରଜୋମିଶ୍ରିତ ସାତ୍ତ୍ୱିକ ବୋଲି ଗଣ୍ୟ ହୁଅନ୍ତି। ଅତଏବ ସେହି ଦୁହିଁଙ୍କ ମଧ୍ୟରେ ବଡ଼ ପାର୍ଥକ୍ୟ ରହିଛି।

**ପ୍ରଶ୍ନ –** 'ନିଜର ସ୍ୱଭାବ' କାହାର ବାଚକ ଓ ତା'ଦ୍ୱାରା ପ୍ରେରିତ ହେବା କଣ ?

**ଉତ୍ତର –** ଜନ୍ମଜନ୍ମାନ୍ତରରେ କରିଥିବା କର୍ମର ସଂସ୍କାର ସଞ୍ଚିତ ହୁଏ ଓ ସେହି ସଂସ୍କାରସମୂହଦ୍ୱାରା ଯେଉଁ ପ୍ରକୃତି ଗଢ଼ିହୁଏ, ତାହାକୁ 'ସ୍ୱଭାବ' କୁହାଯାଏ। ଜୀବମାନଙ୍କର ସ୍ୱଭାବ ଭିନ୍ନ ଭିନ୍ନ ହୋଇଥାଏ। ସେହି ସ୍ୱଭାବ ଅନୁସାରେ ଅନ୍ତଃକରଣରେ ଭିନ୍ନ ଭିନ୍ନ ଦେବତାଙ୍କ ପୂଜା କରିବାପାଇଁ ଭିନ୍ନ ଭିନ୍ନ ଇଚ୍ଛା ଉତ୍ପନ୍ନ ହୁଏ; ଏହାକୁ 'ସ୍ୱଭାବଦ୍ୱାରା ପ୍ରେରିତ ହେବା' କୁହାଯାଏ।

**ପ୍ରଶ୍ନ –** ସେହି ସେହି ନିୟମ ଧରି ଅନ୍ୟ ଦେବତାଙ୍କ ଭଜନ କରିବା କଣ ?

**ଉତ୍ତର –** ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଇନ୍ଦ୍ର, ମରୁତ, ଯମ ଓ ବରୁଣ ଆଦି ଶାସ୍ତ୍ରୋକ୍ତ ଦେବତାମାନଙ୍କୁ ଭଗବାନଙ୍କ ଠାରୁ ଭିନ୍ନ ବୋଲି ବୁଝି ଯେଉଁ ଦେବତାଙ୍କୁ ଯେଉଁ ଉଦ୍ଦେଶ୍ୟରେ କରାଯାଉଥିବା ଉପାସନାରେ ଯେଉଁ ଜପ, ଧ୍ୟାନ, ପୂଜନ, ନମସ୍କାର, ନ୍ୟାସ, ହବନ, ବ୍ରତ, ଉପବାସ ଆଦିର ଭିନ୍ନ ଭିନ୍ନ ନିୟମ ରହିଛି, ସେହି ସେହି ନିୟମମାନ ପାଳନ କରି ଅତ୍ୟନ୍ତ ସାବଧାନତାପୂର୍ବକ ସେହି ଦେବତାମାନଙ୍କର ଆରାଧନା କରିବା ହିଁ ସେହି ସେହି ନିୟମ ଧରି ଅନ୍ୟ ଦେବତାଙ୍କ ପୂଜା କରିବା। କାମନା ଓ ଇଷ୍ଟଦେବଙ୍କ ଭିନ୍ନତାନୁସାରେ ପୂଜାଦି ନିୟମର ଭିନ୍ନତା ରହେ। ତେଣୁ **ତମ୍** ଶବ୍ଦର ପ୍ରୟୋଗ ଦୁଇ ଥର କରାଯାଇଛି।

ଏହାଛଡ଼ା ଅନ୍ୟ ଗୋଟିଏ କଥା ମଧ୍ୟ ରହିଛି; ଭଗବାନଙ୍କ ଠାରୁ ଭିନ୍ନ ମନେ କରି ଅନ୍ୟ ଦେବତାଙ୍କୁ ପୂଜା କରିବାରେ ହିଁ ତାହା ଅନ୍ୟ ଦେବତାଙ୍କର ପୂଜା ହୁଏ। ଯଦି ଦେବତାମାନଙ୍କୁ ଭଗବାନଙ୍କର ହିଁ ସ୍ୱରୂପ ଭାବି ଭଗବାନଙ୍କ ଆଜ୍ଞାନୁସାରେ ନିଷ୍କାମଭାବରେ ବା ଭଗବତ୍‌ପ୍ରୀତ୍ୟର୍ଥେ ସେମାନଙ୍କର ପୂଜା କରାଯାଏ, ତେବେ ତାହା ଅନ୍ୟ ଦେବତାଙ୍କର ପୂଜା ନ ହୋଇ ଭଗବାନଙ୍କର ହିଁ ପୂଜା ହୋଇଯାଏ ଏବଂ ତା'ର ଫଳ ମଧ୍ୟ ଭଗବତ୍‌ପ୍ରାପ୍ତି ହୁଏ।

*ସମ୍ବନ୍ଧ – ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଦେବ-ଉପାସକମାନଙ୍କୁ ସେମାନଙ୍କ ଉପାସନାର କିପରି ଓ କେଉଁ ଫଳ ମିଳେ, ତାହା ବର୍ଣ୍ଣନା କରୁଛନ୍ତି –*

**ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି।**
**ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍।। ୨୧ ।।**

**ଅନ୍ୱୟ—** **ଯଃ, ଯଃ** = ଯେଉଁ ଯେଉଁ; **ଭକ୍ତଃ** = ସକାମ ଭକ୍ତ; **ଯାମ୍, ଯାମ୍** = ଯେଉଁ ଯେଉଁ; **ତନୁମ୍** = ଦେବତାଙ୍କର ସ୍ୱରୂପକୁ; **ଶ୍ରଦ୍ଧୟା** = ଶ୍ରଦ୍ଧାରେ; **ଅର୍ଚ୍ଚିତୁମ୍** = ପୂଜା କରିବାକୁ; **ଇଚ୍ଛତି** = ଇଚ୍ଛା କରେ; **ତସ୍ୟ, ତସ୍ୟ** = ସେହି ସେହି ଭକ୍ତଙ୍କ; **ଶ୍ରଦ୍ଧାମ୍** = ଶ୍ରଦ୍ଧାକୁ; **ଅହମ୍** = ମୁଁ; **ତାମ୍, ଏବ** = ସେହି ଦେବତାଙ୍କ ଠାରେ; **ଅଚଳାମ୍** = ସ୍ଥିର; **ବିଦଧାମି** = କରେ ।

**ଯେଉଁ ଯେଉଁ ସକାମ ଭକ୍ତ ଯେଉଁ ଯେଉଁ ଦେବତାଙ୍କ ସ୍ୱରୂପକୁ ଶ୍ରଦ୍ଧାରେ ପୂଜା କରିବାକୁ ଇଚ୍ଛା କରନ୍ତି, ସେହି ସେହି ଭକ୍ତଙ୍କ ଶ୍ରଦ୍ଧାକୁ ମୁଁ ସେହି ଦେବତାଙ୍କ ଠାରେ ସ୍ଥିର କରେ ।। ୨୧ ।।**

**ପ୍ରଶ୍ନ—** **ଭକ୍ତଃ** ପଦ ସହିତ **ଯଃ** ଶବ୍ଦ ଏବଂ **ତନୁମ୍** ସହ **ଯାମ୍** ଶବ୍ଦର ଦୁଇଥର ପ୍ରୟୋଗ କାହିଁକି କରାଯାଇଛି ?

**ଉତ୍ତର—** **ଯଃ** ଦୁଇଥର ପ୍ରୟୋଗ କରି ଭକ୍ତମାନଙ୍କର ଓ **ଯାମ୍** ଦୁଇଥର ପ୍ରୟୋଗ କରି ଦେବତାମାନଙ୍କର ଅନେକତା ପ୍ରଦର୍ଶନ କରାଯାଇଛି । ଅଭିପ୍ରାୟ ଏହି କି, ସକାମ ଭକ୍ତ ମଧ୍ୟ ଅନେକପ୍ରକାର ହୁଅନ୍ତି ଏବଂ ସେମାନଙ୍କ ନିଜ ନିଜ କାମନା ଓ ପ୍ରକୃତିଭେଦରେ ସେମାନଙ୍କ ଇଷ୍ଟଦେବତାମାନେ ମଧ୍ୟ ପୃଥକ୍ ପୃଥକ୍ ହୋଇଥାନ୍ତି ।

**ପ୍ରଶ୍ନ—** 'ଦେବତାଙ୍କ ସ୍ୱରୂପକୁ ଶ୍ରଦ୍ଧାରେ ପୂଜା କରିବା'ର ଭାବ କଣ ?

**ଉତ୍ତର—** ଦେବତାମାନଙ୍କ ସତ୍ତାରେ, ସେମାନଙ୍କ ପ୍ରଭାବ ଓ ଗୁଣରେ ତଥା ପୂଜନ-ବିଧିରେ ଓ ତାହାର ଫଳରେ ପୂର୍ଣ୍ଣ ବିଶ୍ୱାସ ରଖି, ଶ୍ରଦ୍ଧାପୂର୍ବକ ଯେଉଁ ଦେବତାଙ୍କର ଯେପରି ମୂର୍ତ୍ତିର ପୂଜା କରିବା ବିଧାନ ରହିଛି, ସେପରି ଧାତୁ, କାଷ୍ଠ, ମୃତ୍ତିକା, ପାଷାଣ ଆଦିର ମୂର୍ତ୍ତି ବା ଚିତ୍ରପଟ ବିଧିପୂର୍ବକ ସ୍ଥାପନ କରି ଅଥବା ମାନସିକ ମୂର୍ତ୍ତି ନିର୍ମାଣ କରି, ଯେଉଁ ମନ୍ତ୍ର ଯେତେ ଥର ଜପ କରିବାର, ଯେଉଁ ସାମଗ୍ରୀମାନଙ୍କ ଦ୍ୱାରା ଯେପରି ପୂଜା କରିବାର ବିଧାନ ରହିଛି, ସେହି ମନ୍ତ୍ରର ସେତିକି ସଂଖ୍ୟା ଜପ କରି ସେହି ସାମଗ୍ରୀମାନଙ୍କ ଦ୍ୱାରା ସେପରି ବିଧାନରେ ପୂଜା କରିବା, ଦେବତାମାନଙ୍କ ପାଇଁ ଅଗ୍ନିରେ ଆହୁତି ଦେଇ ଯଜ୍ଞାଦି କରିବା, ସେମାନଙ୍କୁ ଧ୍ୟାନ କରିବା, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ଆଦି ପ୍ରତ୍ୟକ୍ଷ ଦେବତାମାନଙ୍କୁ ପୂଜା କରିବା ଓ ସେସମସ୍ତଙ୍କୁ ଯଥାବିଧି ନମସ୍କାର ଆଦି କରିବା — ଏହା ହେଉଛି 'ଦେବତାମାନଙ୍କ ସ୍ୱରୂପକୁ ଶ୍ରଦ୍ଧାରେ ପୂଜା କରିବା' ।

**ପ୍ରଶ୍ନ—** **ତାମ୍** ପଦକୁ **ଶ୍ରଦ୍ଧାମ୍** ସହିତ ସମ୍ବନ୍ଧିତ ନ କରି **ତନୁମ୍** (ଦେବତାଙ୍କ ସ୍ୱରୂପ)ର ବୋଧକ କାହିଁକି କରାଗଲା ?

**ଉତ୍ତର—** ପୂର୍ବାର୍ଦ୍ଧରେ ଯେଉଁ **ଯାମ୍ ଯାମ୍** ପଦ ଦୁଇଟିର **ତନୁମ୍** (ଦେବତାଙ୍କ ସ୍ୱରୂପ) ସହିତ ସମ୍ବନ୍ଧ ରହିଛି, ତାଙ୍କ ସହିତ ଏକାନ୍ୱୟ କରିବାପାଇଁ **ତାମ୍**କୁ ମଧ୍ୟ **ତନୁମ୍**ର ହିଁ ବୋଧକ ବୋଲି ଭାବିବା ଉଚିତ ମନେ ହେଉଛି । ଶ୍ରଦ୍ଧା ସହିତ ତାକୁ ସମ୍ବନ୍ଧିତ କରିଦେଲେ ମଧ୍ୟ ଭାବରେ କୌଣସି ପ୍ରଭେଦ ଆସୁ ନାହିଁ; କାରଣ ସେପରି ଧରିନେଲେ ମଧ୍ୟ ସେହି ଶ୍ରଦ୍ଧାକୁ ଦେବତାବିଷୟକ ବୋଲି ମାନିବାକୁ ପଡ଼ିବ ।

**ପ୍ରଶ୍ନ—** ଏଠାରେ ଏବର ଅଭିପ୍ରାୟ କ'ଣ ?

**ଉତ୍ତର—** ଏବ ପ୍ରୟୋଗ କରି ଭଗବାନ୍ କହିବାକୁ ଚାହୁଁଛନ୍ତି ଯେ, ଯେଉଁ ଭକ୍ତ ଯେଉଁ ଦେବତାଙ୍କୁ ପୂଜା କରିବାକୁ ଚାହୁଁଛି, ତା'ର ଶ୍ରଦ୍ଧାକୁ ସେ ସେହି ଦେବତାଙ୍କ ଠାରେ ଦୃଢ଼ କରିଦିଅନ୍ତି ।

**ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ ।**
**ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ହି ତାନ୍ ।। ୨୨ ।।**

**ଅନ୍ୱୟ—** **ସଃ** = ସେହି ଭକ୍ତ; **ତୟା** = ସେହି; **ଶ୍ରଦ୍ଧୟା** = ଶ୍ରଦ୍ଧାଦ୍ୱାରା; **ଯୁକ୍ତଃ** = ଯୁକ୍ତ ହୋଇ; **ତସ୍ୟ** = ସେହି ଦେବତାଙ୍କ; **ଆରାଧନମ୍** = ଆରାଧନା; **ଈହତେ** = କରେ; **ଚ** = ଓ; **ତତଃ** = ସେହି ଦେବତାଙ୍କ ଠାରୁ; **ମୟା** = ମୋ ଦ୍ୱାରା; **ଏବ** = ହିଁ; **ବିହିତାନ୍** = ବିଧାନ କରାଯାଇଥିବା; **ତାନ୍** = ସେହି; **କାମାନ୍** = ଇଚ୍ଛିତ ଭୋଗମାନ; **ହି** = ନିଃସନ୍ଦେହ; **ଲଭତେ** = ଲାଭ କରେ ।

**ସେହି ଭକ୍ତପୁରୁଷ ସେହି ଶ୍ରଦ୍ଧାରେ ଯୁକ୍ତ ହୋଇ ସେହି ଦେବତାଙ୍କୁ ଆରାଧନା କରନ୍ତି ଓ ମୋରି ଦ୍ୱାରା ବିଧାନ କରାଯାଇଥିବା ତାଙ୍କର ସେହି ଇଚ୍ଛିତ ଭୋଗମାନଙ୍କୁ ସେହି ଦେବତାଙ୍କ ଠାରୁ ନିଃସନ୍ଦେହ ଲାଭ କରନ୍ତି।। ୨୨ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଭଗବାନଙ୍କ କଥନର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଦେଖାଉଛନ୍ତି, "ମୋ ଦ୍ୱାରା ସ୍ଥାପିତ ସେହି ଶ୍ରଦ୍ଧାରେ ଯୁକ୍ତ ହୋଇ ସେହି ପୁରୁଷ ସେହି ଦେବତାଙ୍କର ଯଥାବିଧି ପୂଜନ କରନ୍ତି, ସେହି ଉପାସନାର ଫଳସ୍ୱରୂପ ଉକ୍ତ ଦେବତାଙ୍କ ଦ୍ୱାରା ତାଙ୍କୁ ତାଙ୍କର ସେହି ଇଚ୍ଛିତ ଭୋଗ ମିଳେ, ଯାହା କି ମୋ ଦ୍ୱାରା ପୂର୍ବରୁ ନିର୍ଦ୍ଧାରିତ ହୋଇଥାଏ। ମୁଁ ବିଧାନ କରିଥିବା ଭୋଗଠାରୁ ଅଧିକ ବା କମ୍ ଭୋଗ ପ୍ରଦାନ କରିବାର ସାମର୍ଥ୍ୟ ଦେବତାମାନଙ୍କର ନାହିଁ।" ଅଭିପ୍ରାୟ ହେଉଛି, ଦେବତାମାନେ କୌଣସି ବଡ଼ ରାଜ୍ୟର ବିଭିନ୍ନ ଅଫିସରମାନଙ୍କ ସ୍ଥିତିରେ ରହି କାର୍ଯ୍ୟ କରନ୍ତି ବୋଲି ଧରିବାକୁ ପଡ଼ିବ। ଅଫିସରମାନେ ରାଜ୍ୟର ଆଇନ୍ ଅନୁସାରେ କାର୍ଯ୍ୟ କରନ୍ତି। କୌଣସି ଲୋକଙ୍କୁ ତା'ର କୌଣସି କାର୍ଯ୍ୟପାଇଁ କିଛି ଦେବାକୁ ହେଲେ, ଅଫିସରମାନେ ଆଇନ ଅନୁସାରେ ଯେତିକି ଦେବାର ଅଧିକାର ପାଇଥାନ୍ତି ଓ ସେ ଲୋକ ଯେତିକି ପାଇବାକୁ ଆଇନ୍ ଅନୁସାରେ ଯୋଗ୍ୟ, ତା'ଠାରୁ ବେଶୀ ବା କମ୍ ଦେଇପାରନ୍ତି ନାହିଁ। ଈଶ୍ୱରଙ୍କ ବିଧାନ ଅନୁସାରେ ସେ ଯେତିକି ପାଇବା କଥା, ଦେବତାମାନେ ମଧ୍ୟ ତାଠାରୁ କମ୍ ବା ବେଶୀ ଦେଇପାରନ୍ତି ନାହିଁ।

**ପ୍ରଶ୍ନ –** ଏହି ଶ୍ଳୋକରେ ହିତାନ୍ ପଦକୁ **କାମାନ୍**ର ବିଶେଷଣ ମନେ କରି ଯଦି ଅର୍ଥ କରାଯାଏ ଯେ, ସେ 'ହିତକର ଭୋଗମାନ ଦିଅନ୍ତି,' ତେବେ କ୍ଷତି କଣ ?

**ଉତ୍ତର –** ଏପରି ଅର୍ଥ କରିବା ଉଚିତ ନୁହେଁ; କାରଣ **କାମଶବ୍ଦବାଚ୍ୟ** ଭୋଗପଦାର୍ଥ କାହାରି ପାଇଁ ଯଥାର୍ଥରେ ହିତକର ହୁଏ ନାହିଁ।

*ସମ୍ବନ୍ଧ –* ବର୍ତ୍ତମାନ ଉପରୋକ୍ତ ଅନ୍ୟଦେବତାମାନଙ୍କ ଉପାସନାର ଫଳକୁ ବିନାଶଶୀଳ କହି ଭଗବତ୍-ଉପାସନାର ଫଳର ମହିମା ପ୍ରତିପାଦନ କରୁଛନ୍ତି –

**ଅନ୍ତବତ୍ତୁ ଫଳଂ ତେଷାଂ ତଦ୍ଭବତ୍ୟଲ୍ପମେଧସାମ୍।**
**ଦେବାନ୍ ଦେବଯଜୋ ଯାନ୍ତି ମଦ୍ଭକ୍ତା ଯାନ୍ତି ମାମପି।। ୨୩ ।।**

ଅନ୍ୱୟ – ତୁ = ପରନ୍ତୁ; ତେଷାମ୍ = ସେହି; **ଅଲ୍ପମେଧସାମ୍** = ଅଳ୍ପବୁଦ୍ଧିମାନଙ୍କର; ତତ୍ = ସେହି; **ଫଳମ୍** = ଫଳ; **ଅନ୍ତବତ୍** = ନାଶବାନ୍; ଭବତି = ହୁଏ; ଦେବଯଜଃ = (ତଥା ସେହି) ଦେବୋପାସକମାନେ; ଦେବାନ୍ = ଦେବତାଙ୍କୁ; ଯାନ୍ତି = ପ୍ରାପ୍ତ ହୁଅନ୍ତି; ମଦ୍ଭକ୍ତାଃ = କିନ୍ତୁ ମୋର ଭକ୍ତମାନେ (ଯେକୌଣସିରୂପରେ ଭଜନ କଲେ ବି ଶେଷରେ); ମାମ୍ = ମୋତେ; ଅପି = ହିଁ; ଯାନ୍ତି = ପାଆନ୍ତି।

**ପରନ୍ତୁ ସେହି ଅଳ୍ପବୁଦ୍ଧିମାନଙ୍କର ସେହି ଫଳ ନାଶବାନ୍ ହୁଏ ତଥା ସେହି ଦେବପୂଜକମାନେ ଦେବତାଙ୍କୁ ପାଆନ୍ତି; କିନ୍ତୁ ମୋର ଭକ୍ତମାନେ ମୋତେ ଯେକୌଣସିରୂପରେ ଭଜନ କଲେ ମଧ୍ୟ ଶେଷରେ ମୋତେ ହିଁ ପାଆନ୍ତି।। ୨୩ ।।**

**ପ୍ରଶ୍ନ –** ପନ୍ଦର ଶ୍ଳୋକରେ କୁହାଯାଇଥିବା ମୂଢ଼ ଓ ଏହି ଦେବୋପାସକ ଅଳ୍ପବୁଦ୍ଧି ଲୋକମାନଙ୍କ ମଧ୍ୟରେ ପ୍ରଭେଦ କଣ ? ଏମାନଙ୍କୁ ଅଳ୍ପବୁଦ୍ଧି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ପନ୍ଦର ଶ୍ଳୋକରେ ଭଗବାନଙ୍କୁ ଭକ୍ତି ନ କରି ପାପାଚରଣ କରୁଥିବା ନରାଧମମାନଙ୍କୁ ଅସୁରସ୍ୱଭାବଯୁକ୍ତ ଓ ମୂଢ଼ ବୋଲି କୁହାଗଲା। ଏଠାରେ କୁହାଯାଇଥିବାପ୍ରକାରେ ପାପାଚରଣରହିତ ହୋଇ ଶାସ୍ତ୍ରବିଧିରେ ଦେବତାମାନଙ୍କର ଉପାସନା କରୁଥିବା ଲୋକେ ସେହି ମୂଢ଼ ଲୋକଙ୍କ ଅପେକ୍ଷା ଶ୍ରେଷ୍ଠ ହିଁ ଅଟନ୍ତି ଏବଂ ସେମାନେ ଆସୁରଭାବପ୍ରାପ୍ତ ତଥା ସର୍ବଥା ମୂଢ଼ ବି ନୁହନ୍ତି କିନ୍ତୁ କାମନାବଶ ହୋଇ ଅନ୍ୟ ଦେବତାମାନଙ୍କୁ ଭଗବାନଙ୍କ ଠାରୁ ଭିନ୍ନ ଭାବି, ଭୋଗ୍ୟବସ୍ତୁପ୍ରାପ୍ତିପାଇଁ ସେମାନଙ୍କୁ ଉପାସନା କରୁଥିବାରୁ ଭଗବଦ୍ଭକ୍ତମାନଙ୍କ ଅପେକ୍ଷା ନିମ୍ନଶ୍ରେଣୀର ଓ **ଅଳ୍ପବୁଦ୍ଧି** ହିଁ ଅଟନ୍ତି। ଯଦି ସେମାନଙ୍କର ବୁଦ୍ଧି ଅଳ୍ପ ହୋଇ

ନ ଥାନ୍ତା, ସେମାନେ ନିଶ୍ଚୟ ଜାଣିପାରିଥାନ୍ତେ ଯେ, ସକଳ ଦେବତାରୂପରେ ପରମେଶ୍ୱର ହିଁ ସମସ୍ତ ପୂଜା ଓ ଆହୁତି ଗ୍ରହଣ କରନ୍ତି ତଥା ଭଗବାନ୍ ହିଁ ସମସ୍ତଙ୍କର ଏକମାତ୍ର ପରମ ଅଧୀଶ୍ୱର ଅଟନ୍ତି (୫/୨୯,୯/୨୪)। ବୁଦ୍ଧିର ଏହି ଅଳ୍ପତାହେତୁ ହିଁ ଏତେ ବଡ଼ ପରିଶ୍ରମରେ କରାଯାଉଥିବା ଯଜ୍ଞାଦି ବିଶାଳ କର୍ମର ସେମାନଙ୍କୁ ସ୍ୱଳ୍ପ ଓ ବିନାଶଶୀଳ ଫଳ ମିଳିଥାଏ। ଯଦି ସେମାନେ ବୁଦ୍ଧିମାନ୍ ହୋଇଥାନ୍ତେ, ତେବେ ଭଗବାନଙ୍କ ପ୍ରଭାବ ବୁଝିପାରି ଭଗବାନଙ୍କ ଉପାସନାପାଇଁ ଏତିକି ପରିଶ୍ରମ କରୁଥାନ୍ତେ, ଅଥବା ସକଳ ଦେବତା ଭଗବାନଙ୍କ ଠାରୁ ଅଭିନ୍ନ ବୋଲି ଜାଣି ଭଗବତ୍‌ପ୍ରୀତିପାଇଁ ସେମାନଙ୍କର ଉପାସନା କରୁଥାନ୍ତେ, ଏବଂ ସେହି ପରିଶ୍ରମରୁ ସେହି ମହାନ୍ ଓ ଦୁର୍ଲଭ ଫଳ ପାଇ କୃତକୃତ୍ୟ ହୋଇଥାନ୍ତେ। ଏହି ଭାବ ପ୍ରକାଶ କରିବାପାଇଁ ସେମାନଙ୍କୁ **ଅଳ୍ପବୁଦ୍ଧି** ବୋଲି କୁହାଯାଇଛି।

**ପ୍ରଶ୍ନ –** 'ଦେବତାମାନଙ୍କୁ ପାଇବା' କଣ? ଦେବତାମାନଙ୍କୁ ପୂଜା କରୁଥିବା ସବୁ ଭକ୍ତ ଦେବତାଙ୍କୁ ପାଆନ୍ତି କି? ଦେବୋପାସନାର ଫଳ **ଅନ୍ତବତ୍** ବୋଲି କାହିଁକି କୁହାଗଲା ?

**ଉତ୍ତର –** ଯେଉଁ ଦେବତାମାନଙ୍କର ଉପାସନା କରାଯାଏ, ସେହିମାନଙ୍କ ଲୋକରେ ପହଞ୍ଚି ସେମାନଙ୍କର ସାମୀପ୍ୟ, ସାରୂପ୍ୟ ତଥା ସେଠାର ଭୋଗବସ୍ତୁ ପାଇଯିବା ଅର୍ଥ ହିଁ 'ଦେବତାମାନଙ୍କୁ ପାଇବା'। ଏହା ହେଉଛି ଦେବ-ଉପାସନାର ସବୁଠାରୁ ବଡ଼ ଫଳ। କିନ୍ତୁ ସବୁ ଦେବ-ଉପାସକଙ୍କୁ ଏହି ଫଳ ମିଳେ ନାହିଁ। ବହୁତ ଲୋକ ତ ସ୍ତ୍ରୀ, ପୁତ୍ର, ଧନ ଓ ମାନ-ପ୍ରତିଷ୍ଠା ଆଦି ତୁଚ୍ଛ ଓ କ୍ଷଣିକ ଭୋଗପ୍ରାପ୍ତିପାଇଁ ଉପାସନା କରନ୍ତି। ସେମାନେ ନିଜ ନିଜର କାମନା ଅନୁସାରେ ସେହି ସେହି ଭୋଗ ପାଇ ରହିଯାଆନ୍ତି। କିନ୍ତୁ କେତେକ ଲୋକଙ୍କର ଦେବତାମାନଙ୍କ ପ୍ରତି ବିଶେଷ ଶ୍ରଦ୍ଧା ବଢ଼ିଯାଏ; ସେମାନେ ଭୋଗ ଅପେକ୍ଷା ଦେବତାଙ୍କୁ ଅଧିକ ପ୍ରୀତି କରି ଉପାସନା କରନ୍ତି; ମୃତ୍ୟୁକାଳରେ ଯେଉଁମାନଙ୍କୁ ସେହି ଦେବତାମାନଙ୍କ ସ୍ମୃତି ହୁଏ, ସେମାନେ ଦେବଲୋକକୁ ଯାଆନ୍ତି। କିନ୍ତୁ ଏହା ମନେ ରଖିବା ଆବଶ୍ୟକ ଯେ, ସେହି ଦେବତାମାନଙ୍କ ଦ୍ୱାରା ମିଳୁଥିବା ଭୋଗ ଓ ସେମାନଙ୍କର ଲୋକସବୁ ବିନାଶଶୀଳ। ଅତଏବ ସେହି ଫଳ **'ଅନ୍ତବତ୍'** ବୋଲି କୁହାଯାଇଛି।

**ପ୍ରଶ୍ନ –** ଭଗବାନଙ୍କୁ ପାଇବା କହିଲେ କଣ ବୁଝାଏ? ଭଗବାନଙ୍କର ଆର୍ତ୍ତ ଆଦି ସମସ୍ତ ଭକ୍ତ ଭଗବାନଙ୍କୁ କିପରି ପାଆନ୍ତି? ଏବଂ ଏହି ବାକ୍ୟରେ **ଅପି** ପ୍ରୟୋଗର ଭାବ କଣ ?

**ଉତ୍ତର –** ଭଗବାନଙ୍କର ନିତ୍ୟ ଦିବ୍ୟ ପରମଧାମରେ ନିରନ୍ତର ଭଗବାନଙ୍କ ନିକଟରେ ନିବାସ କରିବା ଅଥବା ଅଭେଦଭାବରେ ଭଗବାନଙ୍କ ସହିତ ଏକତ୍ୱ ପ୍ରାପ୍ତ ହେବା — ଏହି ଉଭୟର ନାମ 'ଭଗବତ୍‌ପ୍ରାପ୍ତି'। ଭଗବାନଙ୍କର ଜ୍ଞାନୀଭକ୍ତଙ୍କ ଦୃଷ୍ଟିରେ ତ ସମଗ୍ର ଜଗତ ଭଗବାନଙ୍କର ହିଁ ସ୍ୱରୂପ; ଅତଏବ ତାଙ୍କୁ ତ ଭଗବାନ୍ ନିତ୍ୟପ୍ରାପ୍ତ ହୋଇଥାନ୍ତି; ସେମାନଙ୍କ ବିଷୟରେ କିଛି କହିବାର ନାହିଁ। ଜିଜ୍ଞାସୁ ଭକ୍ତମାନେ ଭଗବାନଙ୍କୁ ତତ୍ତ୍ୱତଃ ଜାଣିବାକୁ ଚାହାଁନ୍ତି; ତେଣୁ ଭଗବାନଙ୍କର ତତ୍ତ୍ୱଜ୍ଞାନ ମିଳିଯିବାକ୍ଷଣି ସେମାନଙ୍କର ମଧ୍ୟ ଭଗବତ୍‌ପ୍ରାପ୍ତି ହୋଇଯାଏ। ବାକି ରହିଲେ ଅର୍ଥାର୍ଥୀ ଓ ଆର୍ତ୍ତ। ସେମାନେ ମଧ୍ୟ ଭଗବାନଙ୍କ ଦୟାରୁ ଭଗବାନଙ୍କୁ ହିଁ ପାଆନ୍ତି। ଭଗବାନ୍ ପରମ ଦୟାଳୁ ଓ ପରମ ସୁହୃଦ୍। ଭକ୍ତର ଯେପରି କଲ୍ୟାଣ ହେବ ଓ ଭକ୍ତ ଯେପରି ଶୀଘ୍ର ତାଙ୍କ ପାଖରେ ପହଞ୍ଚିବ, ସେ ସେହିପରି କାମ କରନ୍ତି। ଯେଉଁ କାମନାପୂର୍ତ୍ତିଦ୍ୱାରା ବା ଯେଉଁ ସଙ୍କଟ-ନିବାରଣଦ୍ୱାରା ଭକ୍ତର ଅନିଷ୍ଟ ହୁଏ, ମୋହବଶ ହୋଇ ଭକ୍ତ ତାହା ମାଗିଲେ ମଧ୍ୟ, ଭଗବାନ୍ ସେହି କାମନାର ପୂର୍ତ୍ତି ଅଥବା ସଙ୍କଟର ନିବାରଣ କରନ୍ତି ନାହିଁ ଏବଂ ଯାହା ପୂର୍ଣ୍ଣ କଲେ ଭକ୍ତର ବିଶ୍ୱାସ ଓ ପ୍ରେମ ବଢ଼େ, ଭଗବାନ୍ ତାହା ପୂର୍ଣ୍ଣ କରନ୍ତି। ଅତଏବ ଭଗବାନଙ୍କର ଭକ୍ତମାନେ କାମନାର ପୂର୍ତ୍ତି ସଙ୍ଗେ ସଙ୍ଗେ ଭକ୍ତିର ଉତ୍ତରୋତ୍ତର ବିକାଶ କରି ଭଗବାନଙ୍କୁ ମଧ୍ୟ ପାଇଯାଆନ୍ତି। ଏପରି ଭାବ ବ୍ୟକ୍ତ କରିବାକୁ ଏହି ଶ୍ଳୋକରେ **'ଅପି'** ପ୍ରୟୋଗ କରାଯାଇଛି।

ଭଗବାନଙ୍କ ସ୍ୱଭାବ ହିଁ ଏପରି ଯେ, ଯେ ଥରଟିଏ ଯେକୌଣସି ଉଦ୍ଦେଶ୍ୟରେ ଭକ୍ତିଦ୍ୱାରା ତାଙ୍କ ସହିତ ସମ୍ବନ୍ଧ ସ୍ଥାପନ କରେ, ସେ ତା'ର ସେହି ସମ୍ବନ୍ଧ ତୁଟାଇବାକୁ ଚାହିଁଲେ ମଧ୍ୟ ଭଗବାନ୍ ସେହି ସମ୍ବନ୍ଧକୁ ତୁଟାଇଦିଅନ୍ତି ନାହିଁ। ଭଗବଦ୍‌ଭକ୍ତିର ମହିମା ଏପରି ଯେ, ଭଗବାନ୍ ଭକ୍ତକୁ ତାଙ୍କର ବାଞ୍ଛିତ ବସ୍ତୁ ପ୍ରଦାନ କରିଦେଲେ ମଧ୍ୟ ଭକ୍ତଙ୍କର ଭକ୍ତି ନଷ୍ଟ ହୁଏ ନାହିଁ କିମ୍ବା ଯଦି ସେହି ବସ୍ତୁପ୍ରାପ୍ତିର ପରିଣାମ ହାନିକାରକ ହୁଏ, ତେବେ ତାହା ପ୍ରଦାନ ନ କଲେ ମଧ୍ୟ ସେହି ଭକ୍ତି ନଷ୍ଟ

ହୁଏ ନାହିଁ। ଭକ୍ତି ଭକ୍ତଙ୍କ ହୃଦୟମଧ୍ୟରେ ଛପି ରହିଥାଏ ଏବଂ ଅବସର ପାଇବାମାତ୍ରେ ଭକ୍ତଙ୍କୁ ଭଗବାନଙ୍କ ନିକଟକୁ ଟାଣିନିଏ। କୌଣସି କାରଣରୁ ଥରଟିଏ ମିଳିଯାଇଥିବା ଭକ୍ତି ଅନେକ ଜନ୍ମ ବିତିଯିବା ପରେ ମଧ୍ୟ ଭକ୍ତଙ୍କୁ ଭଗବତ୍‌ପ୍ରାପ୍ତି ନ କରାଇ ଛାଡ଼େ ନାହିଁ ଏବଂ ଭଗବତ୍‌ପ୍ରାପ୍ତି ହେବା ପରେ ତ ଭକ୍ତି ଚାଲିଯିବାର ପ୍ରଶ୍ନ ହିଁ ଉଠୁ ନାହିଁ; କାରଣ ତା'ପରେ ଭକ୍ତି, ଭକ୍ତ ଓ ଭଗବାନ୍ ମିଳିତ ହୋଇ ଏକ ହୋଇଯାନ୍ତି।

*ସମ୍ବନ୍ଧ— ଯଦି ଭଗବାନ୍ ଏପରି ପ୍ରେମୀ ଓ ଦୟାର ସାଗର ଯେ, ଯେକୌଣସିପ୍ରକାରେ ଭଜନ କରୁଥିବା ଲୋକଙ୍କୁ ବି ନିଜର ସ୍ୱରୂପପ୍ରାପ୍ତି କରାଇଦିଅନ୍ତି, ତେବେ ସବୁଲୋକ ତାଙ୍କର ଭଜନ କରନ୍ତି ନାହିଁ କାହିଁକି? ଏହି ଜିଜ୍ଞାସା ଉପରେ କହୁଛନ୍ତି—*

**ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ।**
**ପରଂ ଭାବମଜାନନ୍ତୋ ମମାବ୍ୟୟମନୁତ୍ତମମ୍ ॥ ୨୪ ॥**

**ଅନ୍ୱୟ—** **ଅବୁଦ୍ଧୟଃ** = ବୁଦ୍ଧିହୀନ ମନୁଷ୍ୟମାନେ; **ମମ** = ମୋର; **ଅନୁତ୍ତମମ୍** = ଅନୁତ୍ତମ; **ଅବ୍ୟୟମ୍** = ଅବିନାଶୀ; **ପରମ୍** = ପରମ; **ଭାବମ୍** = ଭାବକୁ; **ଅଜାନନ୍ତଃ** = ନ ଜାଣି; **ଅବ୍ୟକ୍ତମ୍** = ମନ-ଇନ୍ଦ୍ରିୟର ଅତୀତ; **ମାମ୍** = ମୋତେ— ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ (ସାଧାରଣ ମନୁଷ୍ୟପରି ଜନ୍ମ ହୋଇ); **ବ୍ୟକ୍ତିମ୍** = ବ୍ୟକ୍ତିଭାବକୁ; **ଆପନ୍ନମ୍** = ପ୍ରାପ୍ତ ହୋଇଥିବା; **ମନ୍ୟନ୍ତେ** = ମନେ କରନ୍ତି।

**ବୁଦ୍ଧିହୀନ ମନୁଷ୍ୟମାନେ ମୋର ଅନୁତ୍ତମ ଅବିନାଶୀ ପରମ ଭାବକୁ ନ ଜାଣି, ମନ-ଇନ୍ଦ୍ରିୟର ଅତୀତ ମୋତେ— ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ସାଧାରଣ ମନୁଷ୍ୟପରି ଜନ୍ମ ହୋଇ ବ୍ୟକ୍ତିଭାବ ପ୍ରାପ୍ତ ହୋଇଛି ବୋଲି ମନେ କରନ୍ତି ॥ ୨୪ ॥**

**ପ୍ରଶ୍ନ—** ଏଠାରେ **ଅବୁଦ୍ଧୟଃ** ପଦଟି କେଉଁ ମନୁଷ୍ୟମାନଙ୍କର ବାଚକ ଓ ଭଗବାନଙ୍କର 'ଅନୁତ୍ତମ ଅବିନାଶୀ ପରମଭାବକୁ ନ ଜାଣିବା' କହିଲେ କଣ ବୁଝାଏ?

**ଉତ୍ତର—** ଭଗବାନଙ୍କର ଗୁଣ, ପ୍ରଭାବ, ନାମ, ସ୍ୱରୂପ ଓ ଲୀଳାଦିରେ ଯେଉଁମାନଙ୍କର ବିଶ୍ୱାସ ନାହିଁ ତଥା ଯାହାଙ୍କର ମୋହାଚ୍ଛନ୍ନ ଓ ବିଷୟବିମୋହିତ ବୁଦ୍ଧି ତର୍କଜାଲରେ ଆବଦ୍ଧ, ସେହି ମନୁଷ୍ୟମାନେ 'ବୁଦ୍ଧିହୀନ'। ସେମାନଙ୍କ ପାଇଁ **'ଅବୁଦ୍ଧୟଃ'** (ବୁଦ୍ଧିହୀନ) ପ୍ରୟୋଗ କରାଯାଇଛି। ଏପରି ଲୋକଙ୍କ ବୁଦ୍ଧିରେ ଧାରଣା ଜନ୍ମେ ନାହିଁ ଯେ, ସମଗ୍ର ଜଗତ ଭଗବାନଙ୍କର ହିଁ ଦ୍ୱିବିଧ ପ୍ରକୃତିର ବିସ୍ତାର ବା ବ୍ୟକ୍ତରୂପ ଏବଂ ସେହି ଦୁଇ ପ୍ରକୃତିର ପରମ ଆଧାର ହୋଇଥିବାରୁ କେବଳ ଭଗବାନ୍ ହିଁ ସର୍ବୋତ୍ତମ; ତାଙ୍କଠାରୁ ଶ୍ରେଷ୍ଠ ଆଉ କିଛି ହିଁ ନାହିଁ। ତାଙ୍କର ଅଚିନ୍ତ୍ୟ ଓ ଅକଥନୀୟ ସ୍ୱରୂପ, ସ୍ୱଭାବ, ମହତ୍ତ୍ୱ ତଥା ଅପ୍ରତିମ ଗୁଣ ମନ ଓ ବାଣୀଦ୍ୱାରା ଯଥାର୍ଥଭାବେ ବୁଝିପାରିବା ଓ କହିପାରିବା ସମ୍ଭବ ନୁହେଁ। ତାଙ୍କର ଅନନ୍ତ ଦୟାଳୁତା ଓ ଶରଣାଗତବତ୍ସଳତାହେତୁ ଜଗତର ପ୍ରାଣୀମାନଙ୍କୁ ତାଙ୍କ ଶରଣାଗତିର ଆଶ୍ରୟ ଦେବାପାଇଁ ହିଁ ଭଗବାନ୍ ନିଜର ଅଜନ୍ମା, ଅବିନାଶୀ ଓ ମହେଶ୍ୱର ସ୍ୱଭାବ ତଥା ସାମର୍ଥ୍ୟ ସହିତ ନାନା ସ୍ୱରୂପରେ ପ୍ରକଟ ହୁଅନ୍ତି ଓ ନିଜର ଅଲୌକିକ ଲୀଳାଦ୍ୱାରା ଜଗତର ପ୍ରାଣୀମାନଙ୍କୁ ପରମାନନ୍ଦର ମହାନ୍ ପ୍ରଶାନ୍ତ ମହାସାଗରରେ ବୁଡ଼ାଇଦିଅନ୍ତି। ଏହା ହେଉଛି ଭଗବାନଙ୍କର ନିତ୍ୟ, ସର୍ବଶ୍ରେଷ୍ଠ ଓ ପରମ ଭାବ; ଏହାକୁ ବୁଝି ନ ପାରିବା ହିଁ ତାଙ୍କର ଅନୁତ୍ତମ ଅବିନାଶୀ ପରମଭାବକୁ ବୁଝି ନ ପାରିବା।

**ପ୍ରଶ୍ନ—** 'ମୋତେ ଅବ୍ୟକ୍ତରୁ ବ୍ୟକ୍ତ ହୋଇଛି' ବୋଲି ଭାବନ୍ତି— ଏହି ବାକ୍ୟର ତାତ୍ପର୍ଯ୍ୟ କଣ?

**ଉତ୍ତର—** ଭଗବାନଙ୍କର ନିର୍ଗୁଣ ଓ ସଗୁଣ ଉଭୟ ରୂପ ନିତ୍ୟ ଓ ଦିବ୍ୟ। ସେ ନିଜର ଅଚିନ୍ତ୍ୟ ଓ ଅଲୌକିକ ଦିବ୍ୟ ସ୍ୱରୂପ, ସ୍ୱଭାବ, ପ୍ରଭାବ ଓ ଗୁଣ ଧରି ହିଁ ମନୁଷ୍ୟ ଆଦି ରୂପରେ ଅବତାର ଗ୍ରହଣ କରନ୍ତି। ମନୁଷ୍ୟ ଆଦି ରୂପରେ ତାଙ୍କର ଆବିର୍ଭାବ ହିଁ ତାଙ୍କର ଜନ୍ମ ଏବଂ ଅନ୍ତର୍ଦ୍ଧାନ ହିଁ ତାଙ୍କର ପରମଧାମଗମନ। ଭଗବାନଙ୍କର ଅନ୍ୟ ପ୍ରାଣୀମାନଙ୍କ ପରି ଶରୀର-ସଂଯୋଗ-ବିୟୋଗରୂପକ ଜନ୍ମ-ମରଣ ହୁଏ ନାହିଁ। ଏହି ରହସ୍ୟ ଜାଣି ନ ପାରି ବୁଦ୍ଧିହୀନ

ମନୁଷ୍ୟ ଭାବେ, 'ଅନ୍ୟ ସମସ୍ତ ପ୍ରାଣୀ ଯେପରି ଜନ୍ମ ହେବା ପୂର୍ବରୁ ଅବ୍ୟକ୍ତ ଥିଲେ ଅର୍ଥାତ୍ ସେମାନଙ୍କର କୌଣସି ସତ୍ତା ନ ଥିଲା; ଏବେ ଜନ୍ମ ହୋଇ ବ୍ୟକ୍ତ ହେଲେ; ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ସେହିପରି ଜନ୍ମ ପୂର୍ବରୁ ନ ଥିଲେ; ବସୁଦେବଙ୍କ ଘରେ ଜନ୍ମ ହୋଇ ବ୍ୟକ୍ତ ହୋଇଛନ୍ତି। ତେଣୁ ଅନ୍ୟ ମନୁଷ୍ୟମାନଙ୍କ ଠାରୁ ଭଗବାନଙ୍କର ପ୍ରଭେଦ କଣ? କୌଣସି ପ୍ରଭେଦ ନାହିଁ।' ଏହି ଭାବ ଦେଖାଇବାପାଇଁ କହିଛନ୍ତି, ''ବୁଦ୍ଧିହୀନ ମନୁଷ୍ୟମାନେ ମୋତେ ଅବ୍ୟକ୍ତରୁ ବ୍ୟକ୍ତ ହୋଇଥିବା ଭାବନ୍ତି।''

**ପ୍ରଶ୍ନ—** ଯଦି ଏହାର ଏହି ଅର୍ଥ କରାଯାଏ ଯେ, 'ବୁଦ୍ଧିହୀନ ଲୋକେ ମୋତେ (ଅବ୍ୟକ୍ତକୁ) ଅର୍ଥାତ୍ ନିର୍ଗୁଣ-ନିରାକାର ପରମେଶ୍ୱରଙ୍କୁ ସଗୁଣ-ସାକାର ମନୁଷ୍ୟରୂପରେ ପ୍ରକଟ ହୋଇଛି ବୋଲି ମାନନ୍ତି,' ତେବେ କ୍ଷତି କଣ?

**ଉତ୍ତର—** ଏଠାରେ ଏପରି ଅର୍ଥ ଗ୍ରହଣ କରିବା ଉପଯୁକ୍ତ ହେବ ନାହିଁ। କାରଣ ଭଗବାନଙ୍କର ନିର୍ଗୁଣ-ସଗୁଣ, ନିରାକାର-ସାକାର ସମସ୍ତ ସ୍ୱରୂପ ଶାସ୍ତ୍ରସମ୍ମତ ଅଟେ। ସ୍ୱୟଂ ଭଗବାନ୍ କହିଛନ୍ତି, ''ମୁଁ ଅଜନ୍ମା ଅବିନାଶୀ ପରମେଶ୍ୱର ହିଁ ମୋର ପ୍ରକୃତିକୁ ସ୍ୱୀକାର କରି ସାଧୁମାନଙ୍କର ପରିତ୍ରାଣ, ଦୁଷ୍ଟମାନଙ୍କର ବିନାଶ ଓ ଧର୍ମସଂସ୍ଥାପନ ଆଦିପାଇଁ ସମୟେ ସମୟେ ପ୍ରକଟ ହୁଏ (୪/୬,୭,୮)।'' ତେଣୁ ସେପରି ମାନୁଥିବା ଲୋକଙ୍କୁ ବୁଦ୍ଧିହୀନ ବୋଲି କହିଦେଲେ ଭଗବାନଙ୍କ ଉକ୍ତିର ବିରୋଧ ହୋଇଯିବ ଏବଂ ଅବତାରବାଦର ଖଣ୍ଡନ ହୋଇଯିବ, ଯାହା କି **ଗୀତା** ପକ୍ଷରେ କୌଣସିପ୍ରକାରେ ଗ୍ରହଣୀୟ ନୁହେଁ।

**ପ୍ରଶ୍ନ—** ଯଦି ଏଠାରେ ଏହି ଅର୍ଥକୁ ମାନି ନେବା ଯେ, 'ବୁଦ୍ଧିହୀନ ମନୁଷ୍ୟମାନେ ମୋତେ **ବ୍ୟକ୍ତିମାପନ୍ନମ୍** ଅର୍ଥାତ୍ ମନୁଷ୍ୟରୂପରେ ପ୍ରତ୍ୟକ୍ଷ ପ୍ରକଟ ହୋଇଥିବା ସଗୁଣ-ସାକାର ପରମେଶ୍ୱରଙ୍କୁ ଅବ୍ୟକ୍ତ ଅର୍ଥାତ୍ ନିର୍ଗୁଣ-ନିରାକାର ବୋଲି ବୁଝନ୍ତି,' ତେବେ କ୍ଷତି କଣ?

**ଉତ୍ତର—** ଏହି ଅର୍ଥ ମଧ୍ୟ ଗ୍ରହଣୀୟ ନୁହେଁ; କାରଣ ଯେଉଁ ପରମେଶ୍ୱର ସଗୁଣ-ସାକାରରୂପରେ ପ୍ରକଟ ହୋଇଛନ୍ତି, ସେ ନିର୍ଗୁଣ-ନିରାକାର ମଧ୍ୟ ଅଟନ୍ତି। ଅତଏବ ଏହି ଯଥାର୍ଥ ତତ୍ତ୍ୱକୁ ବୁଝିପାରୁଥିବା ପୁରୁଷଙ୍କୁ କିପରି ବୁଦ୍ଧିହୀନ ବୋଲି କୁହାଯାଇପାରିବ? ଭଗବାନ୍ ସ୍ୱୟଂ କହିଛନ୍ତି, ''ମୋର ଅବ୍ୟକ୍ତ (ନିରାକାର)-ସ୍ୱରୂପରେ ଏ ସମସ୍ତ ଜଗତ ବ୍ୟାପ୍ତ ହୋଇଛି (୯/୪)।'' ଅତଏବ ଯେଉଁ ଅର୍ଥ କରାଯାଇଛି, ତାହା ହିଁ ଠିକ୍ ବୋଲି ବୋଧ ହେଉଛି।

*ସମ୍ବନ୍ଧ—* *ମନୁଷ୍ୟରୂପରେ ପ୍ରକଟ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କୁ ଲୋକମାନେ ସାଧାରଣ ମନୁଷ୍ୟ ବୋଲି କାହିଁକି ଭାବୁଛନ୍ତି, ସେହି ବିଷୟରେ ଭଗବାନ୍ କହୁଛନ୍ତି—*

**ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।**
**ମୂଢୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ ।। ୨୫ ।।**

**ଅନ୍ୱୟ—** **ଯୋଗମାୟାସମାବୃତଃ** = ନିଜ ଯୋଗମାୟାରେ ଲୁଚି ରହିଥିବା; **ଅହମ୍** = ମୁଁ; **ସର୍ବସ୍ୟ** = ସମସ୍ତଙ୍କର; **ପ୍ରକାଶଃ** = ପ୍ରତ୍ୟକ୍ଷ; **ନ** = ହୁଏ ନାହିଁ (ତେଣୁ); **ଅୟମ୍** = ଏହି; **ମୂଢଃ** = ଅଜ୍ଞାନୀ; **ଲୋକଃ** = ଲୋକେ; **ମାମ୍** = ମୋତେ; **ଅଜମ୍** = ଅଜନ୍ମା; **ଅବ୍ୟୟମ୍** = ଅବିନାଶୀ ପରମେଶ୍ୱରଙ୍କୁ; **ନ, ଅଭିଜାନାତି** = ଜାଣେ ନାହିଁ ଅର୍ଥାତ୍ ମୋତେ ଜନ୍ମମରଣଶୀଳ ବୋଲି ଭାବେ।

**ନିଜ ଯୋଗମାୟାରେ ଲୁଚିରହିଥିବାରୁ ମୁଁ ସମସ୍ତଙ୍କୁ ପ୍ରତ୍ୟକ୍ଷ ହୁଏ ନାହିଁ; ତେଣୁ ଏହି ଅଜ୍ଞାନୀ ଲୋକେ ମୋତେ ଅଜନ୍ମା ଓ ଅବିନାଶୀ ପରମେଶ୍ୱର ବୋଲି ଜାଣନ୍ତି ନାହିଁ ଅର୍ଥାତ୍ ମୋତେ ଜନ୍ମମରଣଶୀଳ ବୋଲି ଭାବନ୍ତି।। ୨୫ ।।**

**ପ୍ରଶ୍ନ—** **ଯୋଗମାୟା** ଶବ୍ଦ କାହାର ବାଚକ? ଏବଂ ଭଗବାନ୍ ତା'ଦ୍ୱାରା **ସମାବୃତ** ହେବାର ଅର୍ଥ କଣ?

**ଉତ୍ତର—** ଚତୁର୍ଥ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଭଗବାନ୍ ଯାହାକୁ 'ଆତ୍ମମାୟା' ବୋଲି କହିଛନ୍ତି, ଯେଉଁ ଯୋଗଶକ୍ତିଦ୍ୱାରା ଭଗବାନ୍ ଦିବ୍ୟଗୁଣ ଧରି ସ୍ୱୟଂ ମନୁଷ୍ୟ ଆଦି ରୂପରେ ପ୍ରକଟ ହେଲେ ମଧ୍ୟ ଲୋକଦୃଷ୍ଟିରେ ଜନ୍ମଧାରଣ କରିଥିବା ସାଧାରଣ ମନୁଷ୍ୟପରି ପ୍ରତୀତ ହୁଅନ୍ତି, ସେହି ମାୟାଶକ୍ତିର ନାମ **'ଯୋଗମାୟା'**। ବହୁରୂପୀ ଐନ୍ଦ୍ରଜାଲିକ ଯେପରି ଅନ୍ୟ କାହାରି ରୂପରେ

ଲୋକଙ୍କ ଆଗରେ ଦେଖାଦିଏ ଓ ନିଜର ପ୍ରକୃତ ରୂପ ଲୁଚାଇରଖିଥାଏ, ମନୁଷ୍ୟ ଆଦି ରୂପରେ ଅବତୀର୍ଣ୍ଣ ହେଲେ, ଭଗବାନ୍ ସେପରି ଚତୁର୍ଦ୍ଦିଗରେ ନିଜର ଯୋଗମାୟା ବିସ୍ତାର କରି ସ୍ୱୟଂ ସେଥିରେ ଲୁଚିରହନ୍ତି। ତାଙ୍କର ଯୋଗମାୟାଦ୍ୱାରା ସମାବୃତ ହେବା କହିଲେ ଏହା ହିଁ ବୁଝାଏ।

**ପ୍ରଶ୍ନ —** 'ମୁଁ ସମସ୍ତଙ୍କୁ ପ୍ରତ୍ୟକ୍ଷ ଦେଖାଯାଏ ନାହିଁ' — ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର —** ଏଥିରେ ଦେଖାଇଦିଆଯାଇଛି ଯେ, ଭଗବାନ୍ ତାଙ୍କ ଯୋଗମାୟାରେ ନିଜକୁ ଲୁଚାଇରଖନ୍ତି; ସାଧାରଣ ମନୁଷ୍ୟର ଦୃଷ୍ଟି ସେହି ମାୟାର ପରଦାକୁ ଭେଦ କରିପାରେ ନାହିଁ। ଏହି କାରଣରୁ ଅଧିକାଂଶ ମନୁଷ୍ୟ ଭଗବାନଙ୍କୁ ନିଜପରି ଜଣେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି। ଅତଏବ ଭଗବାନ୍ ସମସ୍ତଙ୍କୁ ପ୍ରତ୍ୟକ୍ଷ ଦେଖାଯାନ୍ତି ନାହିଁ। ଯେଉଁମାନେ ଭଗବାନଙ୍କର ପ୍ରେମୀଭକ୍ତ ଅଟନ୍ତି ତଥା ତାଙ୍କ ଗୁଣ, ପ୍ରଭାବ, ସ୍ୱରୂପ ଓ ଲୀଳାରେ ପୂର୍ଣ୍ଣ ଶ୍ରଦ୍ଧା ଓ ବିଶ୍ୱାସ ରଖନ୍ତି, ଯାହାଙ୍କୁ ଭଗବାନ୍ ନିଜେ ଦେଖାଦେବାକୁ ଚାହାଁନ୍ତି, କେବଳ ସେହିମାନଙ୍କ ଆଗରେ ସେ ନିଜକୁ ପ୍ରକାଶ କରନ୍ତି।

**ପ୍ରଶ୍ନ —** ଜୀବ ତ ମାୟାଚ୍ଛନ୍ନ ହେବା ଠିକ୍, କିନ୍ତୁ ଭଗବାନ୍ ମାୟାଦ୍ୱାରା ଆବୃତ ହେବା କଥାଟି କିପରି ମାନିବା ?

**ଉତ୍ତର —** ସୂର୍ଯ୍ୟ ଯେପରି ମେଘଦ୍ୱାରା ଘୋଡ଼ାଇ ହୋଇଯାଆନ୍ତି ବୋଲି କୁହାଯାଏ; କିନ୍ତୁ ପ୍ରକୃତରେ ଘୋଡ଼ାଇ ହୋଇ ନ ଥାନ୍ତି, ଲୋକଙ୍କ ଦୃଷ୍ଟିରେ ହିଁ ମେଘର ଆବରଣ ପଡ଼ିଥାଏ — ଯଦି ସୂର୍ଯ୍ୟ ପ୍ରକୃତରେ ଘୋଡ଼ାଇ ହୋଇଥାନ୍ତେ, ତେବେ ସାରାବ୍ରହ୍ମାଣ୍ଡରେ କେଉଁଠି ହେଲେ ତାଙ୍କର ପ୍ରକାଶ ଦେଖାଯାଇ ନ ଥାନ୍ତା — ସେହିପରି ପ୍ରକୃତରେ ଭଗବାନ୍ ମାୟାଦ୍ୱାରା ଆବୃତ ହୁଅନ୍ତି ନାହିଁ। ଯଦି ପ୍ରକୃତରେ ଆବୃତ ହୋଇଥାନ୍ତେ, ତେବେ ତ କୌଣସି ଭକ୍ତଙ୍କୁ ତାଙ୍କର ପ୍ରକୃତ ଦର୍ଶନ ହୁଅନ୍ତା ନାହିଁ; କେବଳ ମୂଢ଼ମାନଙ୍କ ପାଇଁ ହିଁ ସେ ଆବୃତ ବୋଲି କାହିଁକି କୁହାଯା'ନ୍ତା ? ଯଥାର୍ଥରେ ସୂର୍ଯ୍ୟଙ୍କ ଉଦାହରଣ ମଧ୍ୟ ଭଗବାନଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ; କାରଣ ଅନନ୍ତ ସହିତ କୌଣସି ସୀମିତ ବସ୍ତୁର ତୁଳନା ହୋଇ ନ ପାରେ। ଲୋକଙ୍କୁ ବୁଝାଇବାପାଇଁ ହିଁ ଏପରି କୁହାଯାଇଥାଏ।

**ପ୍ରଶ୍ନ —** ଏଠାରେ **ଅୟମ୍** ଓ **ମୂଢ଼ଃ** ବିଶେଷଣ ସହିତ ଯେଉଁ **ଲୋକଃ** ପଦ ଆସିଛି, ତାହା କାହାକୁ ବୁଝାଉଛି ? ପନ୍ଦର ଶ୍ଳୋକରେ ଯେଉଁ ଆସୁରୀ ପ୍ରକୃତିର ମୂଢ଼ ଲୋକଙ୍କ ବର୍ଣ୍ଣନା କରାଯାଇଛି, ତାଙ୍କୁ ବୁଝାଉଛି, ନା କୋଡ଼ିଏ ଶ୍ଳୋକରେ ଯାହାଙ୍କର କାମନାଦ୍ୱାରା ଜ୍ଞାନ ଅପହୃତ ହେବା କଥା କୁହାଯାଇଛି, ସେହି ଅନ୍ୟ ଦେବତାଙ୍କ ଉପାସକମାନଙ୍କୁ ବୁଝାଉଛି ?

**ଉତ୍ତର —** ଏଠାରେ **ଅୟମ୍** ବିଶେଷଣ ହୋଇଥିବାରୁ ଏହା ପ୍ରତୀତ ହେଉଛି ଯେ, **ଲୋକଃ** ପଦର ପ୍ରୟୋଗ କେବଳ ଭଗବାନଙ୍କ ଭକ୍ତଙ୍କୁ ଛାଡ଼ି ଅବଶିଷ୍ଟ ପାପୀ, ପୁଣ୍ୟାତ୍ମା — ସବୁ ଶ୍ରେଣୀର ସାଧାରଣ ଅଜ୍ଞାନୀ ମନୁଷ୍ୟମାନଙ୍କ ପାଇଁ କରାଯାଇଛି; କୌଣସି ଏକ ଶ୍ରେଣୀବିଶେଷର ଅଭିପ୍ରାୟରେ କରାଯାଇ ନାହିଁ।

**ପ୍ରଶ୍ନ —** 'ଅଜ୍ଞାନୀ ଜନସମୁଦାୟ ମୋତେ ଜନ୍ମରହିତ ଅବିନାଶୀ ପରମେଶ୍ୱର ବୋଲି ଜାଣେ ନାହିଁ' — ଏପରି କହିବାର ଉଦ୍ଦେଶ୍ୟ କଣ ?

**ଉତ୍ତର —** ଏଠାରେ ଏହି ଭାବ ବ୍ୟକ୍ତ କରାଯାଇଛି ଯେ, ଶ୍ରଦ୍ଧା ଓ ପ୍ରେମର ଅଭାବ ହେତୁ ସାଧାରଣ ଅଜ୍ଞାନୀ ମନୁଷ୍ୟ ଭଗବାନଙ୍କ ଗୁଣ, ପ୍ରଭାବ, ସ୍ୱରୂପ, ଲୀଳା, ରହସ୍ୟ ଓ ମହିମା ନ ଜାଣି ଏହି ଭ୍ରମରେ ରହନ୍ତି ଯେ, ଶ୍ରୀକୃଷ୍ଣ ମଧ୍ୟ ଆମପରି ଜଣେ ମନୁଷ୍ୟ ତଥା ଆମପରି ଜନ୍ମ ନିଅନ୍ତି ଓ ମରନ୍ତି। ସେମାନେ ବୁଝିପାରନ୍ତି ନାହିଁ ଯେ, ସେ ଜନ୍ମ-ମୃତ୍ୟୁର ଅତୀତ, ନିତ୍ୟ, ସତ୍ୟ, ବିଜ୍ଞାନାନନ୍ଦଘନ ସାକ୍ଷାତ୍ ପରମେଶ୍ୱର ହିଁ ଅଟନ୍ତି।

*__ସମ୍ବନ୍ଧ —__ ଭଗବାନ୍ ନିଜକୁ ଯୋଗମାୟାଦ୍ୱାରା ଆବୃତ ବୋଲି କହିଲେ। ଏଥିରୁ କେହି ଏହା ନ ବୁଝନ୍ତୁ ଯେ, ଯେପରି ମୋଟାପରଦା ଭିତରେ ଥିବା ଲୋକଙ୍କୁ ବାହାରଲୋକ ଦେଖିପାରନ୍ତି ନାହିଁ ଏବଂ ସେ ବାହାର ଲୋକଙ୍କୁ ଦେଖିପାରେ ନାହିଁ, ସେହିପରି ଯଦି ଲୋକେ ଭଗବାନଙ୍କୁ ଜାଣିପାରୁ ନାହାନ୍ତି, ତେବେ ଭଗବାନ୍ ବି ଲୋକଙ୍କୁ ଜାଣିପାରୁ ନ ଥିବେ। ଏହା ଦର୍ଶାଇବାନିମନ୍ତେ ତଥା ଯୋଗମାୟା ତାଙ୍କର ହିଁ ଅଧୀନ, ତାଙ୍କର ଶକ୍ତିବିଶେଷ ହୋଇଥିବାରୁ ତାଙ୍କର ଦିବ୍ୟଜ୍ଞାନକୁ ଆବୃତ କରିପାରିବ ନାହିଁ ବୋଲି ଦେଖାଇବାନିମନ୍ତେ ଭଗବାନ୍ କହୁଛନ୍ତି —*

**ବେଦାହଂ ସମତୀତାନି ବର୍ତ୍ତମାନାନି ଚାର୍ଜୁନ ।**
**ଭବିଷ୍ୟାଣି ଚ ଭୂତାନି ମାଂ ତୁ ବେଦ ନ କଶ୍ଚନ ।। ୨୬ ।।**

**ଅନ୍ୱୟ –** **ଅର୍ଜୁନ** = ହେ ଅର୍ଜୁନ; **ସମତୀତାନି** = ଅତୀତରେ ଯେଉଁମାନେ ଥିଲେ; **ଚ** = ଓ; **ବର୍ତ୍ତମାନାନି** = ବର୍ତ୍ତମାନ ଯେଉଁମାନେ ଅଛନ୍ତି; **ଚ** = ତଥା; **ଭବିଷ୍ୟାଣି** = ଭବିଷ୍ୟତରେ ଯେଉଁମାନେ ଜାତ ହେବେ ସେହି; **ଭୂତାନି** = ଭୂତମାନଙ୍କୁ; **ଅହମ୍** = ମୁଁ; **ବେଦ** = ଜାଣେ; **ତୁ** = କିନ୍ତୁ; **ମାମ୍** = ମୋତେ; **କଶ୍ଚନ** = କେହି ବି (ଶ୍ରଦ୍ଧାଭକ୍ତିହୀନ ଲୋକ); **ନ**, **ବେଦ** = ଜାଣେ ନାହିଁ।

**ହେ ଅର୍ଜୁନ! ଅତୀତରେ ଯେଉଁମାନେ ଥିଲେ, ବର୍ତ୍ତମାନ ଯେଉଁମାନେ ଅଛନ୍ତି, ତଥା ଭବିଷ୍ୟତରେ ଯେଉଁମାନେ ଜାତ ହେବେ, ସେହି ସକଳ ଭୂତପ୍ରାଣୀଙ୍କୁ ମୁଁ ଜାଣେ, କିନ୍ତୁ ଶ୍ରଦ୍ଧାଭକ୍ତିହୀନ କୌଣସି ପୁରୁଷ ମୋତେ ଜାଣେ ନାହିଁ।। ୨୬ ।।**

**ପ୍ରଶ୍ନ –** ଏଠାରେ **ଭୂତାନି** ପଦ କେଉଁମାନଙ୍କୁ ବୁଝାଉଛି ତଥା 'ଅତୀତରେ ଯେଉଁମାନେ ଥିଲେ, ବର୍ତ୍ତମାନ ଯେଉଁମାନେ ଅଛନ୍ତି ଓ ଭବିଷ୍ୟତରେ ଯେଉଁମାନେ ହେବେ, ସେହି ସକଳ ଭୂତଙ୍କୁ ମୁଁ ଜାଣେ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଦେବତା, ମନୁଷ୍ୟ, ପଶୁ ଓ କୀଟ-ପତଙ୍ଗାଦି ଯେତେ ବି ଚରାଚର ପ୍ରାଣୀ ଅଛନ୍ତି, **ଭୂତାନି** ପଦ ସେ ସମସ୍ତଙ୍କୁ ବୁଝାଉଛି। ଭଗବାନ୍ କହୁଛନ୍ତି, ଅତୀତରେ ଅର୍ଥାତ୍ କଳ୍ପ-କଳ୍ପାନ୍ତରରେ କେଉଁମାନେ କେବେ, କେଉଁ କେଉଁ ଯୋନିରେ, କି ପ୍ରକାରେ ଉତ୍ପନ୍ନ ହୋଇ କିପରି ରହିଥିଲେ ଓ ସେମାନେ କଣ କଣ କରିଥିଲେ ତଥା ବର୍ତ୍ତମାନ କଳ୍ପରେ କିଏ, କେଉଁଠି, କେଉଁ ଯୋନିରେ, କିପ୍ରକାରେ ଜନ୍ମ ହୋଇ କଣ କରୁଛନ୍ତି ଓ ଭବିଷ୍ୟକଳ୍ପମାନଙ୍କରେ କିଏ, କେଉଁଠି, କିପ୍ରକାରେ ରହିବେ, ସେସବୁ କଥା ସେ ଜାଣନ୍ତି।

ଏପରି କଥା ଲୋକଦୃଷ୍ଟିରୁ ହିଁ କୁହାଯାଇଛି, କାରଣ ଭଗବାନଙ୍କ ପାଇଁ ଭୂତ, ଭବିଷ୍ୟ ଓ ବର୍ତ୍ତମାନ କାଳର ପ୍ରଭେଦ ନାହିଁ। ତାଙ୍କର ଅଖଣ୍ଡ ଜ୍ଞାନସ୍ୱରୂପରେ ସବୁ କିଛି ସଦାସର୍ବଦା ପ୍ରତ୍ୟକ୍ଷ। ତାଙ୍କ ପାଇଁ ସବୁକିଛି ସଦା ବର୍ତ୍ତମାନ। ପ୍ରକୃତରେ ସମସ୍ତ କାଳର ଆଶ୍ରୟ ମହାକାଳ ହେଉଛନ୍ତି ସେ ନିଜେ। ଅତଏବ ତାଙ୍କ ପାଇଁ କିଛି ବି ଛପି ରହି ନାହିଁ।

**ପ୍ରଶ୍ନ –** ଏଠାରେ **ତୁ** ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଜୀବମାନଙ୍କ ଠାରୁ ଭଗବାନଙ୍କର ଅତ୍ୟନ୍ତ ବିଶେଷତା ଦେଖାଇବା ପାଇଁ **ତୁ** ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **କଶ୍ଚନ** ପଦ କାହାର ବାଚକ? ଏବଂ ତାହାର ଅର୍ଥ ସହିତ '**ଶ୍ରଦ୍ଧା-ଭକ୍ତିରହିତ ପୁରୁଷ**' ବିଶେଷଣଟି ଯୋଡ଼ିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହି ଅଧ୍ୟାୟର ତୃତୀୟ ଶ୍ଳୋକରେ ଭଗବାନ୍ କହିସାରିଛନ୍ତି, 'କ୍ୱଚିତ୍ କେହି ଜଣେ ମୋତେ ତତ୍ତ୍ୱତଃ ଜାଣନ୍ତି' ଓ ଏହି ଅଧ୍ୟାୟର ତିରିଶ ଶ୍ଳୋକରେ ମଧ୍ୟ କହିଛନ୍ତି, 'ଅଧିଭୂତ, ଅଧିଦୈବ, ଓ ଅଧିଯଜ୍ଞ ସହିତ ମୋତେ ଜାଣନ୍ତି।' ଏହା ବ୍ୟତୀତ ଏକାଦଶ ଅଧ୍ୟାୟର ଚୌବନ ଶ୍ଳୋକରେ ମଧ୍ୟ ଭଗବାନ୍ କହିଛନ୍ତି, 'ଅନନ୍ୟ ଭକ୍ତିଦ୍ୱାରା ମନୁଷ୍ୟ ମୋତେ ତତ୍ତ୍ୱତଃ ଜାଣିପାରେ, ମୋତେ ଦେଖିପାରେ ଏବଂ ମୋଠାରେ ପ୍ରବେଶ ମଧ୍ୟ କରିପାରେ।' ଅତଏବ ଏଠାରେ ବୁଝିବା ଉଚିତ ଯେ, ଭଗବାନଙ୍କର ଭକ୍ତମାନଙ୍କୁ ଛାଡ଼ି ଅନ୍ୟ ଯେଉଁ ସାଧାରଣ ମୂଢ଼ ମନୁଷ୍ୟ ଅଛନ୍ତି, ସେମାନଙ୍କ ମଧ୍ୟରୁ କେହି ବି ଭଗବାନଙ୍କୁ ଜାଣିପାରେ ନାହିଁ। **କଶ୍ଚନ** ପଦ ଏପରି ମନୁଷ୍ୟଙ୍କୁ ଲକ୍ଷ୍ୟ କରେ ଏବଂ ଏହି ଭାବ ସ୍ପଷ୍ଟ କରିବାପାଇଁ ଶ୍ଳୋକର ଅର୍ଥରେ '**ଶ୍ରଦ୍ଧା-ଭକ୍ତିରହିତ ପୁରୁଷ**' ବିଶେଷଣ ଯୋଗ କରାଯାଇଛି। ଆଗ ଶ୍ଳୋକରେ ରାଗଦ୍ୱେଷଜନିତ ଦ୍ୱନ୍ଦ୍ୱମୋହକୁ ହିଁ ଭଗବାନଙ୍କୁ ଜାଣି ନ ପାରିବାର କାରଣ କୁହାଯାଇଛି। ଏଥିରୁ ସିଦ୍ଧ ହେଉଛି ଯେ, ରାଗ-ଦ୍ୱେଷ-ରହିତ ଭକ୍ତଗଣ ଭଗବାନଙ୍କୁ ଜାଣି ପାରନ୍ତି।

**ସମ୍ବନ୍ଧ –** ଶ୍ରଦ୍ଧା-ଭକ୍ତିହୀନ ମୂଢ଼ ମନୁଷ୍ୟମାନଙ୍କ ମଧ୍ୟରୁ କେହି ବି ଭଗବାନଙ୍କୁ ଜାଣନ୍ତି ନାହିଁ କାହିଁକି? ଏହା ବୁଝାଇଦେବାକୁ ଭଗବାନ୍ କହୁଛନ୍ତି –

**ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ।**
**ସର୍ବଭୂତାନି ସଂମୋହଂ ସର୍ଗେ ଯାନ୍ତି ପରନ୍ତପ॥ ୨୭ ॥**

**ଅନ୍ୱୟ—** ଭାରତ = ହେ ଭରତବଂଶୀ; **ପରନ୍ତପ** = ଶତ୍ରୁତାପନ ଅର୍ଜୁନ; **ସର୍ଗେ** = ସଂସାରରେ; **ଇଚ୍ଛାଦ୍ୱେଷସମୁତ୍ଥେନ** = ଇଚ୍ଛା ଓ ଦ୍ୱେଷରୁ ଉତ୍ପନ୍ନ; **ଦ୍ୱନ୍ଦ୍ୱମୋହେନ** = ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରୂପକ ମୋହଦ୍ୱାରା; **ସର୍ବଭୂତାନି** = ସମସ୍ତ ପ୍ରାଣୀ; **ସମ୍ମୋହମ୍** = ଅତ୍ୟନ୍ତ ଅଜ୍ଞତା; **ଯାନ୍ତି** = ପ୍ରାପ୍ତ ହେଉଛନ୍ତି।

**ହେ ଭରତବଂଶୀ ଅର୍ଜୁନ! ସଂସାରରେ ଇଚ୍ଛା ଓ ଦ୍ୱେଷରୁ ଉତ୍ପନ୍ନ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରୂପକ ମୋହଯୋଗୁଁ ସମସ୍ତ ପ୍ରାଣୀ ଅତ୍ୟନ୍ତ ଅଜ୍ଞତା ପ୍ରାପ୍ତ ହେଉଛନ୍ତି।॥ ୨୭ ॥**

**ପ୍ରଶ୍ନ—** **ଇଚ୍ଛାଦ୍ୱେଷ** ଶବ୍ଦ କାହାର ବାଚକ ଓ ତହିଁରୁ ଉତ୍ପନ୍ନ ହେଉଥିବା **ଦ୍ୱନ୍ଦ୍ୱରୂପ ମୋହ** କଣ ?

**ଉତ୍ତର—** ଭଗବାନ୍ ଯାହାକୁ ମନୁଷ୍ୟର କଲ୍ୟାଣମାର୍ଗରେ ବିଘ୍ନ ଘଟାଉଥିବା ଶତ୍ରୁ ବୋଲି କହିଛନ୍ତି (୩/୩୪) ଏବଂ କାମକ୍ରୋଧ ନାମରେ (୩/୩୭) ଯାହାକୁ ପାପର କାରଣ ଓ ମନୁଷ୍ୟର ଶତ୍ରୁ ବୋଲି କହିଛନ୍ତି, ସେହି ରାଗ-ଦ୍ୱେଷକୁ ଏଠାରେ **ଇଚ୍ଛା** ଓ **ଦ୍ୱେଷ** ନାମରେ ବର୍ଣ୍ଣନା କରିଛନ୍ତି। ସେହି ଇଚ୍ଛା-ଦ୍ୱେଷରୁ ଯେଉଁ ହର୍ଷ-ଶୋକ ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱ ଉତ୍ପନ୍ନ ହୁଏ, ସେସବୁ ଏହି ଜୀବର ଅଜ୍ଞାନକୁ ଦୃଢ଼ କରିବାର କାରଣ ହୋଇଥାନ୍ତି। ଅତଏବ ସେସବୁର ନାମ **ଦ୍ୱନ୍ଦ୍ୱରୂପ ମୋହ**।

**ପ୍ରଶ୍ନ—** **ସର୍ବଭୂତାନି** ପଦ କେଉଁମାନଙ୍କର ବାଚକ ଓ ସେମାନେ ମୋହିତ ହେବା ଅର୍ଥ କଣ ?

**ଉତ୍ତର—** ପ୍ରକୃତ ଶ୍ରଦ୍ଧା-ଭକ୍ତିର ସହ ଭଗବାନଙ୍କୁ ଭଜନ କରୁଥିବା ଭକ୍ତମାନଙ୍କୁ ଛାଡ଼ି ଅବଶିଷ୍ଟ ସମସ୍ତ ଜନସମୁଦାୟକୁ ଏଠାରେ **ସର୍ବଭୂତାନି** ପଦଦ୍ୱାରା କୁହାଯାଇଛି। ଇଚ୍ଛା-ଦ୍ୱେଷଜନିତ ହର୍ଷ-ଶୋକ ଓ ସୁଖ-ଦୁଃଖାଦିରୂପକ ମୋହର ବଶ ହୋଇ, ସେମାନେ ନିଜ ଜୀବନର ପରମ ଉଦ୍ଦେଶ୍ୟ ଭୁଲି ଭଗବାନଙ୍କର ଭଜନ-ସ୍ମରଣକୁ ଟିକିଏମାତ୍ର ଲକ୍ଷ୍ୟ କରନ୍ତି ନାହିଁ ଏବଂ ଦୁଃଖ ଓ ଭୟ ଜାତ କରୁଥିବା ନାଶବାନ୍ କ୍ଷଣଭଙ୍ଗୁର ଭୋଗକୁ ହିଁ ସୁଖର ହେତୁ ଭାବି ତାହା ସଂଗ୍ରହ ଓ ଭୋଗ କରିବା ଚେଷ୍ଟାରେ ନିଜର ଅମୂଲ୍ୟ ଜୀବନ ନଷ୍ଟ କରିଦିଅନ୍ତି; ଏହା ହିଁ ସେମାନଙ୍କର ମୋହିତ ହେବା।

*ସମ୍ବନ୍ଧ— 'ଭୂତାନି' ସହ 'ସର୍ବ' ଶବ୍ଦର ପ୍ରୟୋଗ ହେବାରୁ ଭ୍ରମ ହୋଇପାରେ ଯେ, ସବୁ ପ୍ରାଣୀ ଦ୍ୱନ୍ଦ୍ୱମୋହରେ ମୋହିତ ହେଉଛନ୍ତି; କେହି ବି ସେଥିରୁ ମୁକ୍ତ ନୁହନ୍ତି। ଏହି ଭ୍ରମ ଦୂର କରିବାକୁ ଭଗବାନ୍ କହୁଛନ୍ତି—*

**ଯେଷାଂ ତ୍ୱନ୍ତଗତଂ ପାପଂ ଜନାନାଂ ପୁଣ୍ୟକର୍ମଣାମ୍।**
**ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା ଭଜନ୍ତେ ମାଂ ଦୃଢ଼ବ୍ରତାଃ॥ ୨୮ ॥**

**ଅନ୍ୱୟ—** ତୁ = କିନ୍ତୁ; **ପୁଣ୍ୟକର୍ମଣାମ୍** = (ନିଷ୍କାମଭାବରେ) ଶ୍ରେଷ୍ଠ କର୍ମ କରୁଥିବା; **ଯେଷାମ୍** = ଯେଉଁ; **ଜନାନାମ୍** = ପୁରୁଷମାନଙ୍କର; **ପାପମ୍** = ପାପ; **ଅନ୍ତଗତମ୍** = ନଷ୍ଟ ହୋଇଗଲାଣି; **ତେ** = ସେହି(ମାନେ); **ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ** = ରାଗଦ୍ୱେଷଜନିତ ଦ୍ୱନ୍ଦ୍ୱରୂପକ ମୋହରୁ ମୁକ୍ତ ହୋଇଥିବା; **ଦୃଢ଼ବ୍ରତାଃ** = ଦୃଢ଼ନିଶ୍ଚୟୀ ଭକ୍ତମାନେ; **ମାମ୍** = ମୋତେ; **ଭଜନ୍ତେ** = ସକଳପ୍ରକାରେ ଭଜନ୍ତି।

**କିନ୍ତୁ ନିଷ୍କାମଭାବରେ ଶ୍ରେଷ୍ଠକର୍ମ କରୁଥିବା ଯେଉଁ ପୁରୁଷମାନଙ୍କର ପାପ ନଷ୍ଟ ହୋଇଗଲାଣି, ସେହି ରାଗ-ଦ୍ୱେଷଜନିତ ଦ୍ୱନ୍ଦ୍ୱରୂପକ ମୋହରୁ ମୁକ୍ତ ହୋଇଥିବା ଦୃଢ଼ନିଶ୍ଚୟୀ ଭକ୍ତମାନେ ମୋତେ ସକଳପ୍ରକାରେ ଭଜନ କରନ୍ତି।॥ ୨୮ ॥**

**ପ୍ରଶ୍ନ—** ଏଠାରେ ତୁ ପ୍ରୟୋଗର ଅର୍ଥ କଣ ?

**ଉତ୍ତର—** ସାଧାରଣ ଜନସମୁଦାୟଠାରୁ ଭଗବାନଙ୍କ ଶ୍ରେଷ୍ଠ ଭକ୍ତମାନଙ୍କର ଯେଉଁ ବିଶେଷତା ରହିଛି, ତାହା ଦେଖାଇବାପାଇଁ ତୁ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** 'ନିଷ୍କାମଭାବରେ ଶ୍ରେଷ୍ଠ କର୍ମ କରୁଥିବା ଯେଉଁ ପୁରୁଷମାନଙ୍କର ପାପ ନଷ୍ଟ ହୋଇଗଲାଣି'– ଏହା କେଉଁ ପୁରୁଷମାନଙ୍କ ପାଇଁ କୁହାଯାଇଛି ?

**ଉତ୍ତର –** ଯେଉଁ ଲୋକମାନେ ଜନ୍ମଜନ୍ମାନ୍ତରରୁ ଶାସ୍ତ୍ରବିହିତ ଯଜ୍ଞ, ଦାନ ଓ ତପ ଆଦି ଶ୍ରେଷ୍ଠ କର୍ମ ତଥା ଭଗବାନଙ୍କୁ ଭକ୍ତି କରି ଆସୁଛନ୍ତି ଏବଂ ପୂର୍ବସଂସ୍କାର ଓ ଉତ୍ତମସଙ୍ଗପ୍ରଭାବରୁ ଯେଉଁମାନେ ଇହଜନ୍ମରେ ମଧ୍ୟ ନିଷ୍କାମଭାବରେ ଶ୍ରେଷ୍ଠକର୍ମ କରୁଛନ୍ତି ତଥା ଭଗବାନଙ୍କ ଭଜନ କରୁଛନ୍ତି ଏବଂ ତା'ଦ୍ୱାରା ଦୁର୍ଗୁଣ-ଦୁରାଚାରାଦି ସମସ୍ତ ଦୋଷ ନିଶ୍ଚିତଭାବରେ ନାଶ ହୋଇଯିବାରୁ ଯେଉଁମାନଙ୍କର ଅନ୍ତଃକରଣ ପବିତ୍ର ହୋଇଗଲାଣି, ସେହି ଲୋକମାନଙ୍କ ପାଇଁ ଏହା କୁହାଯାଇଛି ।

**ପ୍ରଶ୍ନ –** ଦ୍ୱନ୍ଦ୍ୱମୋହରୁ ମୁକ୍ତ ହେବା କଣ ?

**ଉତ୍ତର –** ରାଗ-ଦ୍ୱେଷରୁ ଜାତ ସୁଖ-ଦୁଃଖ ଓ ହର୍ଷ-ଶୋକ ଆଦି ସମସ୍ତ ଦ୍ୱନ୍ଦ୍ୱମୋହରୁ ସର୍ବଥା ରହିତ ହୋଇଯିବା ଅର୍ଥାତ୍ ସାଂସାରିକ ସୁଖ-ଦୁଃଖାଦି ସହ ସଂଯୋଗ-ବିୟୋଗ ହେଲେ ମଧ୍ୟ କଦାପି କୌଣସି ଅବସ୍ଥାରେ ଚିତ୍ତ ମଧ୍ୟରେ କୌଣସିପ୍ରକାର ବିକାର ଜାତ ନ ହେବାକୁ 'ଦ୍ୱନ୍ଦ୍ୱ ମୋହରୁ ମୁକ୍ତ ହେବା' ବୋଲାଯାଏ ।

**ପ୍ରଶ୍ନ –** ଦୃଢବ୍ରତାଃର ଅର୍ଥ କଣ ?

**ଉତ୍ତର –** ଯେଉଁମାନେ ଯେତେବଡ଼ ପ୍ରଲୋଭନ ଓ ବାଧାବିଘ୍ନ ଆସିଲେ ମଧ୍ୟ କିଛି ଭ୍ରୂକ୍ଷେପ ନ କରି, ଭଜନବଳରେ ସବୁକୁ ପଦଦଳିତ କରିବା ସଙ୍ଗେ ସଙ୍ଗେ ନିଜର ଶ୍ରଦ୍ଧା-ଭକ୍ତିପୂର୍ଣ୍ଣ ବିଚାର ଓ ନିୟମରେ ଅତ୍ୟନ୍ତ ଦୃଢ଼ ଓ ଅଟଳ ରହନ୍ତି, ତିଳେମାତ୍ର ବିଚଳିତ ହୁଅନ୍ତି ନାହିଁ, ସେହି ଦୃଢ଼ନିଶ୍ଚୟୀ ଭକ୍ତମାନଙ୍କୁ **ଦୃଢବ୍ରତ** କହନ୍ତି ।

**ପ୍ରଶ୍ନ –** ଭଗବାନଙ୍କୁ ସବୁପ୍ରକାରେ ଭଜନ କରିବା କଣ ?

**ଉତ୍ତର –** ଭଗବାନଙ୍କୁ ହିଁ ସର୍ବବ୍ୟାପୀ, ସର୍ବାଧାର, ସର୍ବଶକ୍ତିମାନ୍, ସମସ୍ତଙ୍କର ଆତ୍ମା ଓ ପରମ ପୁରୁଷୋତ୍ତମ ବୋଲି ବୁଝି ନିଜର ବାହାର ଓ ଭିତରର ସମସ୍ତ ମନ, ପ୍ରାଣ, ଶରୀର, ଇନ୍ଦ୍ରିୟାଦିକୁ ଶ୍ରଦ୍ଧା-ଭକ୍ତିପୂର୍ବକ ତାଙ୍କରି ସେବାରେ ଲଗାଇଦେବା ଅର୍ଥାତ୍ ବୁଦ୍ଧିଦ୍ୱାରା ତାଙ୍କ ତତ୍ତ୍ୱକୁ ନିଶ୍ଚୟ କରିବା, ମନରେ ତାଙ୍କ ଗୁଣ, ପ୍ରଭାବ, ସ୍ୱରୂପ ଓ ଲୀଳା-ରହସ୍ୟ ଚିନ୍ତନ କରିବା, ବାଣୀରେ ତାଙ୍କ ନାମ ଓ ଗୁଣ କୀର୍ତ୍ତନ କରିବା, ମସ୍ତକଦ୍ୱାରା ନମସ୍କାର କରିବା, ହାତରେ ତାଙ୍କୁ ପୂଜା କରିବା ଓ ଦୀନ-ଦୁଃଖୀ ଆଦିରୂପରେ ତାଙ୍କୁ ସେବା କରିବା, ଚକ୍ଷୁଦ୍ୱାରା ତାଙ୍କ ବିଗ୍ରହ ଦର୍ଶନ କରିବା, ପାଦରେ ତାଙ୍କ ମନ୍ଦିର ଓ ତୀର୍ଥାଦିକୁ ଯିବା ତଥା ନିଜର ସକଳ ବସ୍ତୁ ସଂପୂର୍ଣ୍ଣରୂପେ କେବଳ ତାଙ୍କୁ ହିଁ ଅର୍ପଣ କରି ସବୁପ୍ରକାରେ କେବଳ ତାଙ୍କର ହୋଇ ରହିବା — ଏହା ହିଁ 'ସବୁପ୍ରକାରେ ତାଙ୍କୁ ଭଜନ କରିବା' ।

**ସମ୍ବନ୍ଧ –** ବର୍ତ୍ତମାନ ଭଗବାନଙ୍କୁ ଭଜନ କରୁଥିବା ଲୋକଙ୍କର ଭଜନପ୍ରକାର ଓ ତା'ର ଫଳ କହୁଛନ୍ତି –

**ଜରାମରଣମୋକ୍ଷାୟ ମାମାଶ୍ରିତ୍ୟ ଯତନ୍ତି ଯେ ।**
**ତେ ବ୍ରହ୍ମ ତଦ୍ୱିଦୁଃ କୃତ୍ସ୍ନମଧ୍ୟାତ୍ମଂ କର୍ମ ଚାଖିଳମ୍ ॥ ୨୯ ॥**

**ଅନ୍ୱୟ –** ଯେ = ଯେଉଁମାନେ; ମାମ୍ = ମୋତେ; ଆଶ୍ରିତ୍ୟ = ଆଶ୍ରା କରି; ଜରାମରଣମୋକ୍ଷାୟ = ଜରା ଓ ମରଣରୁ ମୁକ୍ତି ପାଇବାପାଇଁ; ଯତନ୍ତି = ଯତ୍ନ କରନ୍ତି; ତେ = ସେମାନେ; ତତ୍ = ସେହି; ବ୍ରହ୍ମ = ବ୍ରହ୍ମକୁ; କୃତ୍ସ୍ନମ୍ = ସମ୍ପୂର୍ଣ୍ଣ; ଅଧ୍ୟାତ୍ମମ୍ = ଅଧ୍ୟାତ୍ମକୁ; ଚ = ତଥା; ଅଖିଳମ୍ = ସମସ୍ତ; କର୍ମ = କର୍ମକୁ; ବିଦୁଃ = ଜାଣନ୍ତି ।

**ଯେଉଁମାନେ ମୋର ଶରଣ ନେଇ ଜରା ଓ ମରଣରୁ ମୁକ୍ତି ପାଇବାପାଇଁ ଯତ୍ନ କରନ୍ତି, ସେମାନେ ସେହି ବ୍ରହ୍ମକୁ, ସଂପୂର୍ଣ୍ଣ ଅଧ୍ୟାତ୍ମକୁ ଓ ସମସ୍ତ କର୍ମକୁ ଜାଣନ୍ତି ॥ ୨୯ ॥**

**ପ୍ରଶ୍ନ –** ଜରା-ମରଣରୁ ମୁକ୍ତି ପାଇବାପାଇଁ ଭଗବାନଙ୍କର ଶରଣ ନେଇ 'ଯତ୍ନ କରିବା' କଣ ?

**ଉତ୍ତର –** ଯେତେବେଳଯାଏ ଜନ୍ମରୁ ମୁକ୍ତି ମିଳି ନାହିଁ, ସେତେବେଳଯାଏ ତ ବାର୍ଦ୍ଧକ୍ୟ ଓ ମୃତ୍ୟୁରୁ ମୁକ୍ତି ମିଳିବା ଅସମ୍ଭବ । ଜନ୍ମରୁ ମୁକ୍ତି ସେତେବେଳେ ମିଳେ, ଯେତେବେଳେ ଜୀବ ଅଜ୍ଞାନଜନିତ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇ ଭଗବାନଙ୍କୁ ପାଇଯାଏ । ସକଳ କାମନା ତ୍ୟାଗପୂର୍ବକ ଦୃଢ଼ ନିଶ୍ଚୟ କରି ଭଗବାନଙ୍କୁ ନିତ୍ୟନିରନ୍ତର ଭଜନ କରିବାଦ୍ୱାରା ହିଁ ଭଗବତ୍ପ୍ରାପ୍ତି ହୁଏ ଏବଂ ଏପରି ଭଜନ ମନୁଷ୍ୟ ସେତେବେଳେ କରିପାରେ,

ଯେତେବେଳେ କି ସେ ସତ୍‌ସଙ୍ଗର ଆଶ୍ରୟ ନେଇ ପାପରୁ ମୁକ୍ତ ହୋଇଯାଏ ତଥା ସର୍ବଥା ଆସୁରଭାବ ତ୍ୟାଗ କରିଦିଏ। ଭଗବାନ୍ ଏହି ଅଧ୍ୟାୟରେ କହିଛନ୍ତି– 'ଆସୁରସ୍ୱଭାବଯୁକ୍ତ ନୀଚ ଓ ପାପୀ ମୂଢ଼ ମନୁଷ୍ୟମାନେ ମୋତେ ଭଜନ୍ତି ନାହିଁ (୭।୧୫)।' ତେଣୁ ସତେଇଶ ଶ୍ଳୋକରେ ମଧ ଭଗବାନଙ୍କୁ ଜାଣି ନ ପାରିବାର କାରଣ ବୁଝାଇ କହିଛନ୍ତି, 'ରାଗ-ଦ୍ୱେଷଜନିତ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱର ମୋହରେ ପଡ଼ିଥିବା ଜୀବ ସର୍ବଥା ଅଜ୍ଞାନରେ ବୁଡ଼ିରହେ।' ଏପରି ଲୋକଙ୍କ ମନ ନାନାପ୍ରକାର ଭୋଗ-କାମନାରେ ପୂର୍ଣ୍ଣ ହୋଇ ରହିଥାଏ। ତେଣୁ ସେମାନଙ୍କ ମନରେ ଅନ୍ୟାନ୍ୟ କାମନା ନଷ୍ଟ କରି ଜନ୍ମମରଣରୁ ମୁକ୍ତି ପାଇବାର ଇଚ୍ଛା ବି ଜାଗ୍ରତ ହୁଏ ନାହିଁ। ଅତଏବ ଅଠେଇଶ ଶ୍ଳୋକରେ ପୂର୍ଣ୍ଣରୂପେ ଜାଣିବାର ଅଧିକାରୀଙ୍କୁ ନିର୍ଣ୍ଣୟ କରିବାକୁ ଯାଇ ଭଗବାନ ତାଙ୍କୁ 'ପାପରହିତ, ପୁଣ୍ୟକର୍ମା, ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରୁ ମୁକ୍ତ ଓ ଦୃଢ଼ନିଶ୍ଚୟୀ ହୋଇ ଭଗବାନଙ୍କୁ ଭଜନ କରୁଥିବା ଲୋକ' ବୋଲି କୁହାଯାଇଛି। ଏପରି ନିଷ୍ପାପହୃଦୟ ଲୋକଙ୍କ ମନରେ ହିଁ 'ମୁଁ ଜନ୍ମ-ମୃତ୍ୟୁ ଚକ୍ରରୁ କିପରି ମୁକ୍ତି ପାଇ ଶୀଘ୍ରାତିଶୀଘ୍ର ପରବ୍ରହ୍ମ ପରମାତ୍ମାଙ୍କୁ ଜାଣିପାରିବି ଓ ପାଇପାରିବି' ବୋଲି ଶୁଭକାମନା ଜାଗ୍ରତ ହୋଇଥାଏ। ଭଗବାନ୍ କହୁଛନ୍ତି, ''ଯେଉଁମାନେ ସଂସାରର ସବୁ ବିଷୟର ଆଶ୍ରୟ ଛାଡ଼ି ଦୃଢ଼ବିଶ୍ୱାସର ସହ ଏକମାତ୍ର ମୋର ଆଶ୍ରୟ ନେଇ ନିରନ୍ତର ମୋଠାରେ ମନ-ବୁଦ୍ଧି ନିବେଶ କରନ୍ତି, ସେମାନେ ହିଁ 'ମୋର ଶରଣ ନେଇ ଯତ୍ନ କରୁଥିବା ଲୋକ'।''

**ପ୍ରଶ୍ନ –** ତତ୍ ବିଶେଷଣ ସହିତ **ବ୍ରହ୍ମ** ପଦ କାହାକୁ ବୁଝାଉଛି? **କୃତ୍ସ୍ନ** ବିଶେଷଣ ସହିତ **ଅଧ୍ୟାତ୍ମ** ପଦ କାହାର ବାଚକ, **ଅଖିଳ** ବିଶେଷଣ ସହିତ **କର୍ମ** ପଦ କାହାର ବାଚକ ଏବଂ 'ଏସବୁକୁ ଜାଣିବା' କହିଲେ କଣ ବୁଝାଏ ?

**ଉତ୍ତର –** ତତ୍ ବିଶେଷଣ ସହିତ **ବ୍ରହ୍ମ** ପଦଟି ନିର୍ଗୁଣ, ନିରାକାର ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କୁ ବୁଝାଉଛି। ଉକ୍ତ ପରବ୍ରହ୍ମ ପରମାତ୍ମାଙ୍କ ତତ୍ତ୍ୱ ଭଲଭାବେ ଅନୁଭବ କରି ତାଙ୍କୁ ସାକ୍ଷାତ୍ କରିବା ହିଁ ତାଙ୍କୁ ଜାଣିବା। ଏହି ଅଧ୍ୟାୟରେ ଯେଉଁ ତତ୍ତ୍ୱ ଭଗବାନ୍ **ପରା ପ୍ରକୃତି** ନାମରେ ବର୍ଣ୍ଣନା କଲେ ଏବଂ ପଞ୍ଚଦଶ ଅଧ୍ୟାୟରେ ଯାହାକୁ **ଅକ୍ଷର** କୁହାଯାଇଛି, କୃତ୍ସ୍ନ ବିଶେଷଣ ସହିତ **ଅଧ୍ୟାତ୍ମ** ପଦଟି ହେଉଛି ସେହି ସମସ୍ତ 'ଜୀବସମୁଦାୟ'ର ବାଚକ। ଏକ ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ବିଭିନ୍ନ ଜୀବରୂପରେ ଅନେକାକାର ଦେଖାଯାଉଛନ୍ତି। ପ୍ରକୃତରେ ଜୀବସମୁଦାୟରୂପକ ସମ୍ପୂର୍ଣ୍ଣ ଅଧ୍ୟାତ୍ମ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରୁ ଭିନ୍ନ ନୁହେଁ। ଏହି ତତ୍ତ୍ୱ ଜାଣିପାରିବା ହିଁ ତାଙ୍କୁ ଜାଣିବା। ଯେଉଁଠାରୁ ସମସ୍ତ ଜୀବ ଓ ସମସ୍ତ ଚେଷ୍ଟାର ଉତ୍ପତ୍ତି ହୁଏ, ଭଗବାନଙ୍କର ସେହି ଆଦି ସଂକଳ୍ପରୂପକ 'ବିସର୍ଗ'ର ନାମ **କର୍ମ**। ଏହାର ବିଶେଷ ବିବେଚନା ଅଷ୍ଟମ ଅଧ୍ୟାୟର ତୃତୀୟ ଶ୍ଳୋକର ବ୍ୟାଖ୍ୟାରେ କରାଯାଇଛି। ଭଗବାନଙ୍କର ସଂକଳ୍ପ ହୋଇଥିବାରୁ ଏହି କର୍ମ ଭଗବାନଙ୍କ ଠାରୁ ଅଭିନ୍ନ। ଏହା ଜାଣିବା ହିଁ 'ସମସ୍ତ କର୍ମ'କୁ ଜାଣିବା।

## ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଂ ଚ ଯେ ବିଦୁଃ।
## ପ୍ରୟାଣକାଲେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ।। ୩୦ ।।

**ଅନ୍ୱୟ –** **ଯେ** = ଯେଉଁମାନେ; **ସାଧିଭୂତାଧିଦୈବମ୍** = ଅଧିଭୂତ ଓ ଅଧିଦୈବ ସହିତ; **ଚ** = ତଥା; **ସାଧିଯଜ୍ଞମ୍** = ଅଧିଯଜ୍ଞ ସହିତ; **ମାମ୍** = (ସମସ୍ତଙ୍କର ଆତ୍ମରୂପ) ମୋତେ; **ପ୍ରୟାଣକାଲେ** = ଅନ୍ତକାଳରେ; **ଅପି** = ମଧ; (ହେଲେ) **ବିଦୁଃ** = ଜାଣନ୍ତି; **ତେ** = ସେହି; **ଯୁକ୍ତଚେତସଃ** = ଯୁକ୍ତଚିତ୍ତ ମନୁଷ୍ୟମାନେ; **ମାମ୍** = ମୋତେ; **ଚ** = ହିଁ; **ବିଦୁଃ** = ଜାଣନ୍ତି ଅର୍ଥାତ୍ ପାଇଯାଆନ୍ତି।

**ଯେଉଁମାନେ ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ ସହିତ ସମସ୍ତଙ୍କର ଆତ୍ମରୂପ ମୋତେ ଅନ୍ତକାଳରେ ହେଲେ ମଧ ଜାଣନ୍ତି, ସେହି ଯୁକ୍ତଚିତ୍ତ ମନୁଷ୍ୟମାନେ ମୋତେ ଜାଣନ୍ତି ଅର୍ଥାତ୍ ମୋତେ ପ୍ରାପ୍ତ ହୁଅନ୍ତି।। ୩୦ ।।**

**ପ୍ରଶ୍ନ— ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ** ଶବ୍ଦ କେଉଁ କେଉଁ ତତ୍ତ୍ୱର ବାଚକ ଏବଂ ଏସବୁ ସହିତ **ସମଗ୍ର** ବା ଭଗବାନଙ୍କୁ ଜାଣିବା କହିଲେ କଣ ବୁଝାଏ ?

**ଉତ୍ତର—** ଏହି ଅଧ୍ୟାୟରେ ଭଗବାନ୍ ଯାହାକୁ 'ଅପରା ପ୍ରକୃତି' ଓ ପଞ୍ଚଦଶ ଅଧ୍ୟାୟରେ ଯାହାକୁ 'କ୍ଷର ପୁରୁଷ' ବୋଲି କହିଛନ୍ତି, ସେହି ବିନାଶଶୀଳ ସମସ୍ତ ଜଡ଼ବର୍ଗର ନାମ **ଅଧିଭୂତ।** ଅଷ୍ଟମ ଅଧ୍ୟାୟରେ ଯାହାକୁ 'ବ୍ରହ୍ମା' କୁହାଯାଉଛି, ସେହି ସୂତ୍ରାତ୍ମା ହିରଣ୍ୟଗର୍ଭଙ୍କ ନାମ **ଅଧିଦୈବ** ଏବଂ ନବମ ଅଧ୍ୟାୟର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ଯାହାଙ୍କର ବର୍ଣ୍ଣନା କରାଯାଇଛି, ସମସ୍ତ ପ୍ରାଣୀଙ୍କର ଅନ୍ତଃକରଣରେ ଅନ୍ତର୍ଯାମୀରୂପରେ ବ୍ୟାପ୍ତ ରହିଥିବା ଭଗବାନଙ୍କର ସେହି ଅବ୍ୟକ୍ତ ରୂପର ନାମ **ଅଧିଯଜ୍ଞ।**

ଅଣତିରିଶ ଶ୍ଳୋକରେ ବର୍ଣ୍ଣିତ 'ବ୍ରହ୍ମ', ଜୀବସମୁଦାୟରୂପକ **ଅଧ୍ୟାତ୍ମ,** ଭଗବାନଙ୍କର ଆଦି ସଂକଳ୍ପରୂପକ **କର୍ମ** ତଥା ଉପରୋକ୍ତ ଜଡବର୍ଗରୂପକ **ଅଧିଭୂତ,** ହିରଣ୍ୟଗର୍ଭରୂପକ **ଅଧିଦୈବ** ଓ ଅନ୍ତର୍ଯାମୀରୂପକ **ଅଧିଯଜ୍ଞ—** ଏସବୁ ଏକ ଭଗବାନଙ୍କର ହିଁ ସ୍ୱରୂପ। ଏହା ହିଁ ଭଗବାନଙ୍କର ସମଗ୍ରରୂପ। ଏହି ଅଧ୍ୟାୟର ଆରମ୍ଭରେ ଭଗବାନ୍ ଏହି ସମଗ୍ରରୂପ ବୁଝାଇବା ପାଇଁ ପ୍ରତିଜ୍ଞା କରିଥିଲେ। ପୁଣି ସପ୍ତମ ଶ୍ଳୋକରେ 'ମୋଠାରୁ ଭିନ୍ନ ଅନ୍ୟ କିଛି ପରମ କାରଣ ନାହିଁ', ବାର ଶ୍ଳୋକରେ 'ସାତ୍ତ୍ୱିକ, ରାଜସ ଓ ତାମସ ଭାବସବୁ ମୋଠାରୁ ଜାତ' ଓ ଉଣେଇଶ ଶ୍ଳୋକରେ 'ସବୁ କିଛି ବାସୁଦେବ' କହି ଏହି ସମଗ୍ରରୂପର ବର୍ଣ୍ଣନା କରିଛନ୍ତି ତଥା ଏଠାରେ ମଧ୍ୟ ଉପରୋକ୍ତ ଶବ୍ଦରେ ଏହାର ବର୍ଣ୍ଣନା କରି ଅଧ୍ୟାୟର ଉପସଂହାର କରିଛନ୍ତି। ଏହି ସମଗ୍ରରୂପକୁ ଜାଣିଯିବା ଅର୍ଥାତ୍ ଯେପରି ପରମାଣୁ, ବାଷ୍ପ, ମେଘ, ଧୂମ, ଜଳ ଓ ବରଫ— ସବୁ ଜଳର ହିଁ ସ୍ୱରୂପ, ସେହିପରି ବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ— ସବୁ କେବଳ ବାସୁଦେବ ହିଁ ଅଟନ୍ତି— ଏହିପରି ଯଥାର୍ଥରୂପରେ ଅନୁଭବ କରିବା ହିଁ, ସମଗ୍ର ବ୍ରହ୍ମଙ୍କୁ ବା ଭଗବାନଙ୍କୁ ଜାଣିବା।

**ପ୍ରଶ୍ନ— ପ୍ରୟାଣକାଳେ** ସହିତ **ଅପି** ପ୍ରୟୋଗର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ପ୍ରକାଶ କରିଛନ୍ତି ଯେ, ''ଯେଉଁମାନେ **ବାସୁଦେବଃ ସର୍ବମିତି** ଅନୁସାରେ ଉପରୋକ୍ତଭାବରେ ମୋର ସମଗ୍ରରୂପକୁ ପ୍ରଥମରୁ ହିଁ ଜାଣିନିଅନ୍ତି, ସେମାନଙ୍କ ବିଷୟରେ ତ କହିବାର କିଛି ନାହିଁ; ଯେଉଁମାନେ ମରଣକାଳରେ ହେଲେ ମୋତେ ସମଗ୍ରରୂପରେ ଜାଣିନିଅନ୍ତି, ସେମାନେ ମଧ୍ୟ ଯଥାର୍ଥରୂପରେ ହିଁ ଜାଣନ୍ତି ଅର୍ଥାତ୍ ପ୍ରାପ୍ତ ହୋଇଯାଆନ୍ତି।'' ଦ୍ୱିତୀୟ ଅଧ୍ୟାୟର ଶେଷରେ ବ୍ରାହ୍ମୀ ସ୍ଥିତିର ମହିମା କହିବାକୁ ଯାଇ ମଧ୍ୟ ଏହିପ୍ରକାର **ଅପି** ପ୍ରୟୋଗ କରାଯାଇଛି।

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଜ୍ଞାନବିଜ୍ଞାନଯୋଗୋ*
*ନାମ ସପ୍ତମୋଽଧ୍ୟାୟଃ ॥ ୭ ॥*

——o——

ଓଁ ଶ୍ରୀପରମାତ୍ମନେ ନମଃ

# ଅଷ୍ଟମୋଽଧ୍ୟାୟଃ

## ଅକ୍ଷରବ୍ରହ୍ମଯୋଗ

***ଅଧ୍ୟାୟର ନାମ :*** *'ଅକ୍ଷର' ଓ 'ବ୍ରହ୍ମ' ଶବ୍ଦ ଦୁଇଟି ଭଗବାନଙ୍କ ସଗୁଣ ଓ ନିର୍ଗୁଣ ଉଭୟ ସ୍ୱରୂପର ବାଚକ (୮/୩, ୧୧,୨୧,୨୪)। ପୁଣି ଭଗବାନଙ୍କର ନାମ 'ଓଁ'; ତାହାକୁ ମଧ୍ୟ ଅକ୍ଷର ଓ ବ୍ରହ୍ମ କହନ୍ତି (୮/୧୩)। ଏହି ଅଧ୍ୟାୟରେ ଭଗବାନଙ୍କର ସଗୁଣ-ନିର୍ଗୁଣ ରୂପର ଏବଂ ଓଁକାରର ବର୍ଣ୍ଣନା ହୋଇଛି। ଏଣୁ ଏହି ଅଧ୍ୟାୟର ନାମ 'ଅକ୍ଷରବ୍ରହ୍ମଯୋଗ' ରଖାଯାଇଛି।*

***ଅଧ୍ୟାୟର ସାରାଂଶ :*** *ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ବ୍ରହ୍ମ, ଅଧ୍ୟାତ୍ମ ଆଦି ବିଷୟକ ଅର୍ଜୁନଙ୍କର ସାତୋଟି ପ୍ରଶ୍ନ ରହିଛି। ପୁଣି ତୃତୀୟରୁ ପଞ୍ଚମ ଶ୍ଳୋକଯାଏ ଭଗବାନ୍ ସେହି ସାତୋଟି ପ୍ରଶ୍ନର ଉତ୍ତର ସଂକ୍ଷେପରେ ଦେବା ପରେ ଷଷ୍ଠରେ ଅନ୍ତକାଳର ଚିନ୍ତନର ମହତ୍ତ୍ୱ ଦର୍ଶାଇ ସପ୍ତମରେ ଅର୍ଜୁନଙ୍କୁ ନିରନ୍ତର ତାଙ୍କ (ଭଗବାନଙ୍କ) ଚିନ୍ତନ କରିବାକୁ ଆଜ୍ଞା ଦେଇଛନ୍ତି। ଅଷ୍ଟମରୁ ଦଶମ ଶ୍ଳୋକଯାଏ ଯୋଗବିଧିରେ ଭକ୍ତିପୂର୍ବକ ଭଗବାନଙ୍କର ସଗୁଣ-ନିରାକାର ସ୍ୱରୂପ ଚିନ୍ତନ କରି କରି ପ୍ରାଣତ୍ୟାଗ କରିବାର ପ୍ରକାର ଓ ତା'ର ଫଳ ବର୍ଣ୍ଣନା କରିଛନ୍ତି। ଏଗାରରୁ ତେରପର୍ଯ୍ୟନ୍ତ ଶ୍ଳୋକରେ ପରମାତ୍ମାଙ୍କର ନିର୍ଗୁଣ ସ୍ୱରୂପକୁ ପ୍ରଶଂସା କରି ଅନ୍ତକାଳରେ ଯୋଗଧାରଣାବିଧିରେ ନିର୍ଗୁଣ ବ୍ରହ୍ମଙ୍କ ଜପ-ଧ୍ୟାନର ପ୍ରକାର ଓ ତା'ର ଫଳ ବର୍ଣ୍ଣନା କରିଛନ୍ତି। ଚଉଦରେ ଭଗବାନ୍ କହିଛନ୍ତି ଯେ, ତାଙ୍କୁ ପାଇବାର ସୁଗମ ଉପାୟ ହେଉଛି ଅନନ୍ୟପ୍ରେମପୂର୍ବକ ନିରନ୍ତର ତାଙ୍କର ଚିନ୍ତନ। ପନ୍ଦର ଓ ଷୋହଳ ଶ୍ଳୋକରେ କହିଛନ୍ତି ଯେ, ଭଗବତ୍‌ପ୍ରାପ୍ତି ହେଲେ ପୁନର୍ଜନ୍ମ ହୁଏ ନାହିଁ ଏବଂ ଅନ୍ୟସବୁ ଲୋକ ପୁନରାବୃତ୍ତିଶୀଳ। ସତରରୁ ଉଣେଇଶ ଶ୍ଳୋକପର୍ଯ୍ୟନ୍ତ ବ୍ରହ୍ମାଙ୍କର ଦିନ-ରାତିର ପରିମାଣ କହି ସମସ୍ତ ପ୍ରାଣୀଙ୍କର ଉତ୍ପତ୍ତି ଓ ପ୍ରଳୟ ହେବାର ବର୍ଣ୍ଣନା କରିଛନ୍ତି। କୋଡ଼ିଏ ଶ୍ଳୋକରେ ଏକ ଅବ୍ୟକ୍ତଠାରୁ ପୃଥକ୍ ଓ ଶ୍ରେଷ୍ଠ ହୋଇ ରହିଥିବା ଅନ୍ୟ ଏକ ସନାତନ ଅବ୍ୟକ୍ତ ପ୍ରତିପାଦନ କରି, ଏକୋଇଶ ଓ ବାଇଶରେ ତାହାକୁ 'ଅକ୍ଷର', 'ପରମଗତି', 'ପରମଧାମ' ଏବଂ 'ପରମପୁରୁଷ' ନାମରେ ପ୍ରତିପାଦନ କରିଛନ୍ତି ଏବଂ ଅନନ୍ୟଭକ୍ତିକୁ ସେହି ପରମପୁରୁଷଙ୍କ ପ୍ରାପ୍ତିର ଉପାୟ ବୋଲି କହିଛନ୍ତି। ତା'ପରେ ତେଇଶରୁ ଛବିଶପର୍ଯ୍ୟନ୍ତ ଫଳସହିତ ଶୁକ୍ଳ ଓ କୃଷ୍ଣ ଗତି ବର୍ଣ୍ଣନା କରିଛନ୍ତି ଓ ସତେଇଶରେ ସେହି ଉଭୟ ଗତିକୁ ଜାଣିଥିବା ଯୋଗୀଙ୍କୁ ପ୍ରଶଂସା କରି ଅର୍ଜୁନଙ୍କୁ ଯୋଗୀ ହେବାକୁ ଆଜ୍ଞା ଦେଇଛନ୍ତି ଏବଂ ଅଠେଇଶ ଶ୍ଳୋକରେ ଏହି ଅଧ୍ୟାୟରେ ବର୍ଣ୍ଣିତ ତତ୍ତ୍ୱକୁ ଜାଣିବାର ଫଳ କହି ଅଧ୍ୟାୟର ଉପସଂହାର କରିଛନ୍ତି।*

***ସମ୍ବନ୍ଧ—*** *ସପ୍ତମ ଅଧ୍ୟାୟର ପ୍ରଥମରୁ ତୃତୀୟ ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ତାଙ୍କ ସମଗ୍ରରୂପର ତତ୍ତ୍ୱ ଶୁଣିବାକୁ ଅର୍ଜୁନଙ୍କୁ ସାବଧାନ କରାଇ ସେହି ବିଷୟ କହିବାକୁ ପ୍ରତିଜ୍ଞା କରିଥିଲେ ଓ ତାହା ଜାଣିଥିବା ଲୋକଙ୍କର ପ୍ରଶଂସା କରିଥିଲେ। ପୁଣି ସତେଇଶ ଶ୍ଳୋକପର୍ଯ୍ୟନ୍ତ ସେହି ତତ୍ତ୍ୱକୁ ଅନେକପ୍ରକାରେ ବୁଝାଇ, ତାହା ଜାଣି ନ ପାରିବାର କାରଣ ମଧ୍ୟ ଭଲଭାବରେ ବୁଝାଇଥିଲେ ଓ ଶେଷରେ ବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ ଭଗବାନଙ୍କର ସମଗ୍ର ରୂପକୁ ଜାଣିଥିବା ଭକ୍ତଙ୍କର ମହିମା ବର୍ଣ୍ଣନା କରି ସେହି ଅଧ୍ୟାୟର ଉପସଂହାର କରିଥିଲେ। ଅଣତିରିଶ ଓ ତିରିଶ ଶ୍ଳୋକରେ ବର୍ଣ୍ଣିତ ବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ— ଏହି ଛଅଟି ତଥା ପ୍ରୟାଣକାଳରେ ଭଗବାନଙ୍କୁ ଜାଣିବାର ରହସ୍ୟ ଭଲରୂପେ ବୁଝି ନ ପାରିବାରୁ ଏହି ଅଷ୍ଟମ ଅଧ୍ୟାୟର ପ୍ରଥମ ଦୁଇଟି ଶ୍ଳୋକରେ ଅର୍ଜୁନ ଉପରୋକ୍ତ ସାତୋଟି ବିଷୟ ଭଲରୂପେ ବୁଝିବାନିମନ୍ତେ ଭଗବାନଙ୍କୁ ସାତୋଟି ପ୍ରଶ୍ନ ପଚାରିଛନ୍ତି—*

ଅର୍ଜୁନ ଉବାଚ

**କିଂ ତଦ୍‌ବ୍ରହ୍ମ କିମଧ୍ୟାତ୍ମଂ କିଂ କର୍ମ ପୁରୁଷୋତ୍ତମ ।**
**ଅଧିଭୂତଂ ଚ କିଂ ପ୍ରୋକ୍ତମଧିଦୈବଂ କିମୁଚ୍ୟତେ ॥ ୧ ॥**

**ଅନ୍ୱୟ—** **ପୁରୁଷୋତ୍ତମ** = ହେ ପୁରୁଷୋତ୍ତମ; **ତତ୍** = ସେହି; **ବ୍ରହ୍ମ** = ବ୍ରହ୍ମ; **କିମ୍** = କଣ; **ଅଧ୍ୟାତ୍ମମ୍** = ଅଧ୍ୟାତ୍ମ; **କିମ୍** = କଣ; **କର୍ମ, କିମ୍** = କର୍ମ କଣ; **ଅଧିଭୂତମ୍, କିମ୍** = ଅଧିଭୂତ କଣ ବୋଲି; **ପ୍ରୋକ୍ତମ୍** = କୁହାଯାଇଛି; **ଚ** = ଏବଂ; **ଅଧିଦୈବମ୍** = ଅଧିଦୈବ; **କିମ** = କାହାକୁ; **ଉଚ୍ୟତେ** = କୁହାଯାଏ ।

**ଅର୍ଜୁନ ପଚାରିଲେ— ହେ ପୁରୁଷୋତ୍ତମ! ସେହି ବ୍ରହ୍ମ କଣ? ଅଧ୍ୟାତ୍ମ କଣ? କର୍ମ କଣ? ଅଧିଭୂତ କାହାକୁ କୁହାଯାଇଛି ଏବଂ ଅଧିଦୈବ କାହାକୁ କହନ୍ତି? ॥ ୧ ॥**

**ପ୍ରଶ୍ନ—** 'ସେହି ବ୍ରହ୍ମ କଣ?'— ଅର୍ଜୁନଙ୍କର ଏହି ପ୍ରଶ୍ନର ଅଭିପ୍ରାୟ କଣ?

**ଉତ୍ତର— ବ୍ରହ୍ମ** ଶବ୍ଦ ବେଦ, ବ୍ରହ୍ମା, ନିର୍ଗୁଣ ପରମାତ୍ମା, ପ୍ରକୃତି ଓ ଓଁକାର ଆଦି ଅନେକ ତତ୍ତ୍ୱନିମନ୍ତେ ବ୍ୟବହୃତ ହୁଏ । ତେଣୁ ସେଗୁଡ଼ିକ ମଧ୍ୟରୁ ଏଠାରେ 'ବ୍ରହ୍ମ' ଶବ୍ଦଟି କେଉଁ ତତ୍ତ୍ୱ ଲକ୍ଷ୍ୟରେ କୁହାଯାଇଛି, ତାହା ଜାଣିବାକୁ ଅର୍ଜୁନ ଏହି ପ୍ରଶ୍ନ କରିଛନ୍ତି ।

**ପ୍ରଶ୍ନ— ଅଧ୍ୟାତ୍ମ** କଣ?— ଏହି ପ୍ରଶ୍ନର ଅଭିପ୍ରାୟ କଣ?

**ଉତ୍ତର—** ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ଜୀବ ଓ ପରମାତ୍ମା ଆଦି ଅନେକ ତତ୍ତ୍ୱକୁ **ଅଧ୍ୟାତ୍ମ** କହନ୍ତି । ସେସବୁ ମଧ୍ୟରୁ ଏଠାରେ 'ଅଧ୍ୟାତ୍ମ' ନାମ ଦେଇ ଭଗବାନ୍ କେଉଁ ତତ୍ତ୍ୱ କଥା କହୁଛନ୍ତି, ତାହା ଜାଣିବାକୁ ଅର୍ଜୁନ ଏହି ପ୍ରଶ୍ନ କରିଛନ୍ତି ।

**ପ୍ରଶ୍ନ— 'କର୍ମ** କଣ?'— ଏହି ପ୍ରଶ୍ନର ଅଭିପ୍ରାୟ କଣ?

**ଉତ୍ତର— କର୍ମ** ଶବ୍ଦ ଏଠାରେ ଯଜ୍ଞଦାନାଦି ଶୁଭକର୍ମର ବାଚକ, ନା ଯେକୌଣସି କ୍ରିୟାର ବାଚକ, ନା ପ୍ରାରବ୍ଧ ଆଦି କର୍ମର, ନା ଈଶ୍ୱରଙ୍କ ସୃଷ୍ଟି-ରଚନାରୂପକ କର୍ମର ବାଚକ, ତାହା ସ୍ପଷ୍ଟରୂପେ ଜାଣିବାପାଇଁ ଏହି ପ୍ରଶ୍ନ କରାଯାଇଛି ।

**ପ୍ରଶ୍ନ—** 'ଅଧିଭୂତ କାହାକୁ କୁହାଯାଇଛି?'— ଏହି ପ୍ରଶ୍ନର ଅଭିପ୍ରାୟ କଣ?

**ଉତ୍ତର— ଅଧିଭୂତ** ଶବ୍ଦର ଅର୍ଥ ଏଠାରେ ପଞ୍ଚମହାଭୂତ, ନା ସମସ୍ତ ପ୍ରାଣୀମାତ୍ର, ନା ସମସ୍ତ ଦୃଶ୍ୟବର୍ଗ, ନା ଏହା ଅନ୍ୟ କୌଣସି ତତ୍ତ୍ୱର ବାଚକ, ତାହା ଜାଣିବାକୁ ଏହି ପ୍ରଶ୍ନ କରାଯାଇଛି ।

**ପ୍ରଶ୍ନ—** 'ଅଧିଦୈବ କାହାକୁ କହନ୍ତି?'— ଏ ପ୍ରଶ୍ନର ଅଭିପ୍ରାୟ କଣ?

**ଉତ୍ତର— ଅଧିଦୈବ** ଶବ୍ଦଦ୍ୱାରା ଏଠାରେ କୌଣସି ଅଧିଷ୍ଠାତୃ ଦେବତାବିଶେଷଙ୍କୁ ଲକ୍ଷ୍ୟ କରାଯାଇଛି, ନା ଅଦୃଷ୍ଟ, ହିରଣ୍ୟଗର୍ଭ, ଜୀବ ଅଥବା ଅନ୍ୟ କାହାକୁ?— ଏହା ଜାଣିବାକୁ ଏହି ପ୍ରଶ୍ନ କରାଯାଇଛି ।

**ପ୍ରଶ୍ନ—** ଏଠାରେ କେଉଁ ଅଭିପ୍ରାୟରେ **ପୁରୁଷୋତ୍ତମ** ବୋଲି ସମ୍ବୋଧନ କରାଯାଇଛି?

**ଉତ୍ତର— ପୁରୁଷୋତ୍ତମ** ସମ୍ବୋଧନଦ୍ୱାରା ଅର୍ଜୁନ ସୂଚିତ କରୁଛନ୍ତି, 'ଆପଣ ସମସ୍ତ ପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ, ସର୍ବଜ୍ଞ, ସର୍ବଶକ୍ତିମାନ୍, ସମସ୍ତଙ୍କର ଅଧିଷ୍ଠାତା ଓ ସର୍ବାଧାର । ଅତଏବ ମୋର ଏସବୁ ପ୍ରଶ୍ନର ଯଥାର୍ଥ ଉତ୍ତର କେବଳ ଆପଣ ଦେଇପାରିବେ; ଅନ୍ୟ କେହି ପାରିବେ ନାହିଁ ।'

**ଅଧିଯଜ୍ଞଃ କଥଂ କୋଽତ୍ର ଦେହେଽସ୍ମିନ୍ ମଧୁସୂଦନ ।**
**ପ୍ରୟାଣକାଲେ ଚ କଥଂ ଜ୍ଞେୟୋଽସି ନିୟତାତ୍ମଭିଃ ॥ ୨ ॥**

**ଅନ୍ୱୟ—** **ମଧୁସୂଦନ** = ହେ ମଧୁସୂଦନ; **ଅତ୍ର** = ଏଠାରେ; **ଅଧିଯଜ୍ଞଃ** = ଅଧିଯଜ୍ଞ; **କଃ** = କିଏ; **ଅସ୍ମିନ୍** = ଏହି; **ଦେହେ** = ଦେହରେ; **କଥମ୍** = କିପରି ଅଛନ୍ତି; **ଚ** = ତଥା; **ନିୟତାତ୍ମଭିଃ** = ଯୁକ୍ତଚିତ୍ତ ପୁରୁଷମାନଙ୍କ ଦ୍ୱାରା; **ପ୍ରୟାଣକାଲେ** = ମରଣକାଳରେ; **କଥମ୍** = (ଆପଣ) କିପରି; **ଜ୍ଞେୟଃ, ଅସି** = ଜାଣିହୁଅନ୍ତି ।

**ଏବଂ ହେ ମଧୁସୂଦନ! ଏଠାରେ ଅଧିଯଜ୍ଞ କିଏ ଓ ସେ ଏହି ଶରୀରରେ କିପରି ଅଛନ୍ତି, ତଥା ଯୁକ୍ତଚିତ୍ତ ପୁରୁଷମାନଙ୍କ ଦ୍ୱାରା ମରଣକାଳରେ ଆପଣ କିପରି ଜାଣିହୁଅନ୍ତି ?।। ୨ ।।**

**ପ୍ରଶ୍ନ –** ଏଠାରେ **ଅଧିଯଜ୍ଞ** ବିଷୟରେ ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ କଣ ?

**ଉତ୍ତର – ଅଧିଯଜ୍ଞ** ଶବ୍ଦ ଯଜ୍ଞର କୌଣସି ଅଧିଷ୍ଠାତୃଦେବତାଙ୍କର ନା ଅନ୍ତର୍ଯାମୀ ପରମେଶ୍ୱରଙ୍କର, ନା ଅନ୍ୟ କାହାର ବାଚକ? ଏବଂ ସେହି ଅଧିଯଜ୍ଞ ନାମକ ତତ୍ତ୍ୱ ମନୁଷ୍ୟାଦି ସମସ୍ତ ପ୍ରାଣୀମାନଙ୍କ ଶରୀରରେ କିପରି ରହେ ଏବଂ ତା'ର ନାମ ଅଧିଯଜ୍ଞ କାହିଁକି ହୋଇଛି ?– ଏସବୁ କଥା ଜାଣିବାପାଇଁ ଅର୍ଜୁନ ଏହି ପ୍ରଶ୍ନ କରୁଛନ୍ତି।

**ପ୍ରଶ୍ନ – ନିୟତାତ୍ମଭିଃ**ର ତାତ୍ପର୍ଯ୍ୟ କଣ ତଥା 'ଅନ୍ତକାଳରେ ଆପଣ କିପରି ଜାଣିହୁଅନ୍ତି ?'– ଏହି ପ୍ରଶ୍ନର ଭାବ କଣ ?

**ଉତ୍ତର –** ଭଗବାନ୍ ସପ୍ତମ ଅଧ୍ୟାୟର ତିରିଶ ଶ୍ଳୋକରେ **ଯୁକ୍ତଚେତସଃ** ପଦ ପ୍ରୟୋଗ କରି ଯେଉଁ ପୁରୁଷମାନଙ୍କୁ ଲକ୍ଷ୍ୟ କରିଥିଲେ, ସେମାନଙ୍କ ପାଇଁ ଏଠାରେ **ନିୟତାତ୍ମଭିଃ** ପଦ ପ୍ରୟୋଗ କରି ଅର୍ଜୁନ ପଚାରୁଛନ୍ତି, "**ଯୁକ୍ତଚେତସଃ** ପଦରେ ଆପଣ ଯେଉଁ ପୁରୁଷମାନଙ୍କ ବିଷୟରେ କହୁଛନ୍ତି, ସେମାନେ ଅନ୍ତକାଳରେ ନିଜ ଚିତ୍ତକୁ ଆପଣଙ୍କ ଠାରେ କିପରି ଲଗାଇ ଆପଣଙ୍କୁ ଜାଣିପାରନ୍ତି ? ଅର୍ଥାତ୍ ପ୍ରାଣାୟାମ, ଜପ, ଚିନ୍ତନ, ଧ୍ୟାନ, ସମାଧି ଆଦି ମଧ୍ୟରୁ କେଉଁ ସାଧନାଦ୍ୱାରା ସେମାନେ ଆପଣଙ୍କର ଯଥାର୍ଥ ଜ୍ଞାନ ପାଆନ୍ତି ?"

*ସମ୍ବନ୍ଧ – ଅର୍ଜୁନଙ୍କ ସାତୋଟି ପ୍ରଶ୍ନ ମଧ୍ୟରୁ ଭଗବାନ୍ ବର୍ତ୍ତମାନ ପ୍ରଥମେ ବ୍ରହ୍ମ, ଅଧ୍ୟାତ୍ମ, ଓ କର୍ମ ବିଷୟକ ତିନୋଟି ପ୍ରଶ୍ନର ଉତ୍ତର ଆଗାମୀ ଶ୍ଳୋକରେ କ୍ରମଶଃ ସଂକ୍ଷେପରେ ଦେଉଛନ୍ତି –*

ଶ୍ରୀଭଗବାନୁବାଚ

**ଅକ୍ଷରଂ ବ୍ରହ୍ମ ପରମଂ ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ।**
**ଭୂତଭାବୋଦ୍ଭବକରୋ ବିସର୍ଗଃ କର୍ମସଂଜ୍ଞିତଃ ।। ୩ ।।**

**ଅନ୍ୱୟ –** ପରମମ୍ = ପରମ; **ଅକ୍ଷରମ୍** = ଅକ୍ଷର; **ବ୍ରହ୍ମ** = ବ୍ରହ୍ମ (ଅଟେ); **ସ୍ୱଭାବଃ** = ନିଜସ୍ୱରୂପ ଅର୍ଥାତ୍ ଜୀବାତ୍ମା; **ଅଧ୍ୟାତ୍ମମ୍** = ଅଧ୍ୟାତ୍ମ ନାମରେ; **ଉଚ୍ୟତେ** = କଥିତ ହୁଏ; **ଭୂତଭାବୋଦ୍ଭବକରଃ** = (ତଥା) ପ୍ରାଣୀମାନଙ୍କର ଉତ୍ପତ୍ତି ଓ ଅଭ୍ୟୁଦୟ କରୁଥିବା; **ବିସର୍ଗଃ** = ତ୍ୟାଗ; **କର୍ମସଂଜ୍ଞିତଃ** = କର୍ମ ନାମରେ କଥିତ ହୁଏ।

**ଶ୍ରୀଭଗବାନ୍ କହିଲେ— ପରମ ଅକ୍ଷର ବ୍ରହ୍ମ ଅଟେ। ନିଜସ୍ୱରୂପ ଅର୍ଥାତ୍ ଜୀବାତ୍ମା ଅଧ୍ୟାତ୍ମ ନାମରେ କଥିତ ହୁଏ ତଥା ପ୍ରାଣୀମାନଙ୍କର ଉତ୍ପତ୍ତି ଓ ଅଭ୍ୟୁଦୟ କରୁଥିବା ବିସର୍ଗ ଅର୍ଥାତ୍ ତ୍ୟାଗକୁ କର୍ମ କୁହାଯାଏ।। ୩ ।।**

**ପ୍ରଶ୍ନ – 'ପରମ ଅକ୍ଷର ବ୍ରହ୍ମ ଅଟେ'** – କହିବାର ଅଭିପ୍ରାୟ କଣ ?

**ଉତ୍ତର – ଅକ୍ଷର** ସହିତ **ପରମ** ବିଶେଷଣ ଦେଇ ଭଗବାନ୍ କହୁଛନ୍ତି ଯେ, ସପ୍ତମ ଅଧ୍ୟାୟର ଅଣତିରିଶ ଶ୍ଳୋକରେ ପ୍ରଯୁକ୍ତ **ବ୍ରହ୍ମ** ଶବ୍ଦ ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବାଚକ; ତାହା ବେଦ, ବ୍ରହ୍ମା ଓ ପ୍ରକୃତି ଆଦିର ବାଚକ ନୁହେଁ। ଯାହା ସବୁଠାରୁ ଶ୍ରେଷ୍ଠ ଓ ସୂକ୍ଷ୍ମ, ତାହାକୁ **ପରମ** କୁହାଯାଏ। 'ବ୍ରହ୍ମ' ଓ 'ଅକ୍ଷର' ନାମରେ ଯେଉଁସବୁ ତତ୍ତ୍ୱକୁ ନିର୍ଦ୍ଦେଶ କରାଯାଏ, ସେସବୁ ମଧ୍ୟରେ ଏକମାତ୍ର ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମା ହିଁ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠ ଓ ପରମ ଅଟନ୍ତି। ଅତଏବ 'ପରମ ଅକ୍ଷର'ଦ୍ୱାରା ଏଠାରେ ସେହି ପରବ୍ରହ୍ମ ପରମାତ୍ମାଙ୍କୁ ହିଁ ଲକ୍ଷ୍ୟ କରାଯାଇଛି। ଏହି ପରବ୍ରହ୍ମ ପରମାତ୍ମା ଓ ଭଗବାନ୍ ବସ୍ତୁତଃ ଏକ ହିଁ ତତ୍ତ୍ୱ।

**ପ୍ରଶ୍ନ** — 'ସ୍ୱଭାବକୁ **ଅଧ୍ୟାତ୍ମ** କୁହାଯାଏ' — ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର** — 'ସ୍ୱୋ ଭାବଃ=ସ୍ୱଭାବଃ' ଏହି ବ୍ୟୁତ୍ପତ୍ତି ଅନୁସାରେ ନିଜ ଭାବର ଅର୍ଥାତ୍ ସ୍ୱ-ସ୍ୱରୂପର ନାମ ସ୍ୱଭାବ। ଜୀବରୂପା ଭଗବାନଙ୍କର ଚେତନ ପରାପ୍ରକୃତିରୂପକ ଆତ୍ମତତ୍ତ୍ୱ ହିଁ ଯେତେବେଳେ ଆତ୍ମଶବ୍ଦବାଚ୍ୟ ଶରୀର, ଇନ୍ଦ୍ରିୟ, ମନ-ବୁଦ୍ଧି ଆଦିରୂପକ ଅପରା ପ୍ରକୃତିର ଅଧିଷ୍ଠାତା ହୋଇଯାଏ, ସେତେବେଳେ ତାହାକୁ **ଅଧ୍ୟାତ୍ମ** କୁହାଯାଏ। ଅତଏବ ସପ୍ତମ ଅଧ୍ୟାୟର ଅଣତିରିଶ ଶ୍ଳୋକରେ ଭଗବାନ୍ **କୃତ୍ସ୍ନ** ବିଶେଷଣ ସହିତ ଯେଉଁ ଅଧ୍ୟାତ୍ମ ଶବ୍ଦ ପ୍ରୟୋଗ କରିଛନ୍ତି, ତାହାର ଅର୍ଥ 'ଚେତନ ଜୀବସମୁଦାୟ' ବୋଲି ବୁଝିବା ଉଚିତ। ଭଗବାନଙ୍କ ଅଂଶରୂପା ଚେତନ ପରାପ୍ରକୃତି ବସ୍ତୁତଃ ଭଗବାନଙ୍କ ଠାରୁ ଅଭିନ୍ନ। ତେଣୁ ସେହି 'ଅଧ୍ୟାତ୍ମ' ନାମକ **ସମ୍ପୂର୍ଣ୍ଣ** ଜୀବସମୁଦାୟ ମଧ୍ୟ ଯଥାର୍ଥରେ ଭଗବାନଙ୍କ ଠାରୁ ଅଭିନ୍ନ ଓ ତାଙ୍କର ସ୍ୱରୂପ ଅଟେ।

**ପ୍ରଶ୍ନ** — 'ଭୂତମାନଙ୍କର ଭାବକୁ ଉତ୍ପନ୍ନ କରୁଥିବା **ବିସର୍ଗକୁ** ଅର୍ଥାତ୍ ତ୍ୟାଗକୁ ହିଁ **କର୍ମ** ବୋଲାଯାଏ' — ଏହାର ତାତ୍ପର୍ଯ୍ୟ କଣ ?

**ଉତ୍ତର** — **ଭୂତ** ଶବ୍ଦ ହେଉଛି ଚରାଚର ପ୍ରାଣୀମାନଙ୍କର ବାଚକ। ଯେଉଁ ତ୍ୟାଗଦ୍ୱାରା ସେହି ଭୂତମାନଙ୍କ ଭାବର ଉଦ୍ଭବ ଓ ଅଭ୍ୟୁଦୟ ହୁଏ, ଯାହା ସୃଷ୍ଟି-ସ୍ଥିତିର ଆଧାର, ସେହି 'ତ୍ୟାଗ'ର ନାମ ହିଁ **କର୍ମ**। ମହାପ୍ରଳୟରେ ବିଶ୍ୱର ସମସ୍ତ ପ୍ରାଣୀ ନିଜ ନିଜର କର୍ମସଂସ୍କାର ସହିତ ଭଗବାନଙ୍କ ଠାରେ ବିଲୀନ ହୋଇଯାନ୍ତି। ପୁଣି ସୃଷ୍ଟିର ଆରମ୍ଭରେ, ଯେତେବେଳେ ଭଗବାନ୍ 'ମୁଁ ଏକରୁ ଅନେକ ହୋଇଯିବି' ବୋଲି ସଂକଳ୍ପ କରନ୍ତି, ସେତେବେଳେ ପୁନର୍ବାର ସେମାନଙ୍କର ଉତ୍ପତ୍ତି ହୁଏ। ଭଗବାନଙ୍କର ଏହି 'ଆଦିସଂକଳ୍ପ' ହିଁ ଅଚେତନ ପ୍ରକୃତିରୂପକ ଯୋନିରେ ଚେତନରୂପକ ବୀଜ ସ୍ଥାପନ କରେ। ଏହା ହିଁ ଜଡ଼ ଓ ଚେତନର ସଂଯୋଗ। ଏହା ହିଁ ମହାନ୍ ବିସର୍ଜନ ଏବଂ ଏହି ବିସର୍ଜନ ବା ତ୍ୟାଗର ନାମ **ବିସର୍ଗ**। ଏହାଦ୍ୱାରା ପ୍ରାଣୀମାନଙ୍କର ବିଭିନ୍ନ ଭାବର ଉଦ୍ଭବ ହୁଏ। ତେଣୁ ଭଗବାନ୍ କହିଛନ୍ତି, **ସଂଭବଃ ସର୍ବଭୂତାନାଂ ତତୋ ଭବତି ଭାରତ।** (୧୪/୩) ଅର୍ଥାତ୍ 'ସେହି ଜଡ଼-ଚେତନର ସଂଯୋଗରୁ ସବୁପ୍ରାଣୀଙ୍କର ଉତ୍ପତ୍ତି ହୁଏ।' ଏହା ହିଁ ପ୍ରାଣୀମାନଙ୍କ ଭାବର ଉଦ୍ଭବ। ଅତଏବ ଏଠାରେ ବୁଝିବା ଉଚିତ ଯେ, ଭଗବାନଙ୍କର ଯେଉଁ ଆଦିସଂକଳ୍ପରୁ ସମସ୍ତ ପ୍ରାଣୀଙ୍କର ଉଦ୍ଭବ ଓ ଅଭ୍ୟୁଦୟ ହୁଏ, ତାହାରି ନାମ **ବିସର୍ଗ** ଏବଂ ଭଗବାନଙ୍କର ଏହି ବିସର୍ଗରୂପକ ମହାନ୍ କର୍ମଦ୍ୱାରା ହିଁ ଜଡ଼-ଅକ୍ରିୟ ପ୍ରକୃତି ସ୍ପନ୍ଦିତ ହୋଇ କ୍ରିୟାଶୀଳ ହୁଏ ତଥା ତାହାଦ୍ୱାରା ମହାପ୍ରଳୟପର୍ଯ୍ୟନ୍ତ ବିଶ୍ୱରେ ଅନନ୍ତ କର୍ମର ଅଖଣ୍ଡ ଧାରା ପ୍ରବାହିତ ହୋଇଚାଲେ। ଅତଏବ ଏହି ବିସର୍ଗର ନାମ ହିଁ **କର୍ମ**। ସପ୍ତମ ଅଧ୍ୟାୟର ଅଣତିରିଶ ଶ୍ଳୋକରେ ଭଗବାନ୍ ଏହାକୁ 'ଅଖିଳ-କର୍ମ' ବୋଲି କହିଛନ୍ତି। ଭଗବାନଙ୍କର ଏହି ଭୂତମାନଙ୍କ ଭାବକୁ ଉତ୍ପନ୍ନ କରୁଥିବା ମହାନ୍ 'ବିସର୍ଜନ' ହିଁ ଏକ ମହାନ୍ ସମଷ୍ଟି-ଯଜ୍ଞ। ଏହି ମହାନ୍ ଯଜ୍ଞରୁ ବିବିଧ ଲୌକିକ ଯଜ୍ଞର ଉଦ୍ଭାବନ ହେଲା। ସେହିସବୁ ଯଜ୍ଞରେ ଯେଉଁ ହବି ଆଦି ଉତ୍ସର୍ଗ କରାଯାଏ, ତାହାର ନାମ ମଧ୍ୟ 'ବିସର୍ଗ' ରଖାଯାଇଛି। ସେସବୁ ଯଜ୍ଞରୁ ମଧ୍ୟ ପ୍ରଜାମାନଙ୍କର ଉତ୍ପତ୍ତି ହୁଏ। ମନୁସ୍ମୃତିରେ କୁହାଯାଇଛି —

**ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ।**
**ଆଦିତ୍ୟାଜ୍ଜାୟତେ ବୃଷ୍ଟିର୍ବୃଷ୍ଟେରନ୍ନଂ ତତଃ ପ୍ରଜାଃ॥**
**(୩/୭୬)**

ଅର୍ଥାତ୍ 'ବେଦୋକ୍ତ ବିଧିରେ ଅଗ୍ନିରେ ଦିଆଯାଇଥିବା ଆହୁତି ସୂର୍ଯ୍ୟଙ୍କ ଠାରେ ସ୍ଥିତ ହୁଏ। ସୂର୍ଯ୍ୟଙ୍କ ଠାରୁ ବୃଷ୍ଟି ହୁଏ; ବୃଷ୍ଟିରୁ ଅନ୍ନ ହୁଏ ଏବଂ ଅନ୍ନରୁ ପ୍ରଜା ହୁଅନ୍ତି। ଏହି କର୍ମନାମକ ବିସର୍ଗ ବସ୍ତୁତଃ ଭଗବାନଙ୍କର ହିଁ ଆଦିସଂକଳ୍ପ; ତେଣୁ ଏହା ମଧ୍ୟ ଭଗବାନଙ୍କ ଠାରୁ ଅଭିନ୍ନ।'

*ସମ୍ବନ୍ଧ — ବର୍ତ୍ତମାନ ଭଗବାନ୍ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ବିଷୟକ ପ୍ରଶ୍ନମାନଙ୍କର ଉତ୍ତର କ୍ରମାନୁସାରେ ଦେଉଛନ୍ତି —*

## ଅଧିଭୂତଂ କ୍ଷରୋ ଭାବଃ ପୁରୁଷଶ୍ଚାଧିଦୈବତମ୍ ।
## ଅଧିଯଜ୍ଞୋଽହମେବାତ୍ର ଦେହେ ଦେହଭୃତାଂ ବର॥ ୪ ॥

**ଅନ୍ୱୟ – କ୍ଷରଃ, ଭାବଃ** = ଉତ୍ପତ୍ତି-ବିନାଶଶୀଳ ସମସ୍ତ ପଦାର୍ଥ; **ଅଧିଭୂତମ୍** = ଅଧିଭୂତ; **ପୁରୁଷଃ** = ହିରଣ୍ୟମୟ ପୁରୁଷ; **ଅଧିଦୈବତମ୍** = ଅଧିଦୈବ; **ଚ** = ଓ; **ଦେହଭୃତାମ୍, ବର** = ହେ ଦେହଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ; **ଅତ୍ର** = ଏହି; **ଦେହେ** = ଶରୀରରେ; **ଅହମ୍** = ମୁଁ ବାସୁଦେବ; **ଏବ** = ହିଁ; **ଅଧିଯଜ୍ଞଃ** = ଅନ୍ତର୍ଯାମୀରୂପରେ ଅଧିଯଜ୍ଞ ଅଟେ।

**ଉତ୍ପତ୍ତି-ବିନାଶଶୀଳ ସମସ୍ତ ପଦାର୍ଥ ହେଉଛି ଅଧିଭୂତ। ହିରଣ୍ୟମୟ ପୁରୁଷ ହିଁ ଅଧିଦୈବ। ହେ ଦେହଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ! ଏହି ଶରୀରରେ ମୁଁ ବାସୁଦେବ ହିଁ ଅନ୍ତର୍ଯାମୀରୂପରେ ଅଧିଯଜ୍ଞ ଅଟେ।। ୪ ।।**

**ପ୍ରଶ୍ନ – 'କ୍ଷରଭାବ** ଅଧିଭୂତ ଅଟେ।'— ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଅପରା ପ୍ରକୃତି ଓ ତା'ର ପରିଣାମରୁ ଉତ୍ପନ୍ନ ଯେଉଁ ବିନାଶଶୀଳ ତତ୍ତ୍ୱ ରହିଛି, ପ୍ରତିକ୍ଷଣ ଯାହାର କ୍ଷୟ ହୋଇ ଚାଲିଛି, ତାହାର ନାମ **କ୍ଷରଭାବ**। ଏହାକୁ ତ୍ରୟୋଦଶ ଅଧ୍ୟାୟରେ 'କ୍ଷେତ୍ର' (ଶରୀର) ନାମରେ ଓ ପଞ୍ଚଦଶ ଅଧ୍ୟାୟରେ 'କ୍ଷର ପୁରୁଷ' ନାମରେ କୁହାଯାଇଛି। ଏହି **କ୍ଷରଭାବ** ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ଅହଂକାର, ଭୂତ ତଥା ବିଷୟରୂପରେ ପ୍ରତ୍ୟକ୍ଷ ହେଉଅଛି ଓ ଏହା ଜୀବର ଆଶ୍ରିତ ଅର୍ଥାତ୍ ଜୀବରୂପକ ଚେତନ ପରାପ୍ରକୃତି ଏହାକୁ ଧାରଣ କରି ରଖିଛି। ସେହି କ୍ଷରଭାବର ନାମ **ଅଧିଭୂତ**। ସପ୍ତମ ଅଧ୍ୟାୟରେ ଭଗବାନ୍ ଅପରା ପ୍ରକୃତିକୁ ମଧ୍ୟ ନିଜର ହିଁ ପ୍ରକୃତି ବୋଲି କହିସାରିଛନ୍ତି। ଅତଏବ ଏହି 'କ୍ଷରଭାବ' ମଧ୍ୟ ଭଗବାନଙ୍କର ହିଁ ଅଟେ। ଅତଏବ ଏହା ମଧ୍ୟ ତାଙ୍କଠାରୁ ଅଭିନ୍ନ। ଭଗବାନ୍ ସ୍ୱୟଂ କହିଛନ୍ତି, ''ସତ୍-ଅସତ୍ ସବୁ କିଛି ମୁଁ ହିଁ ଅଟେ'' (୯/୧୯)।

**ପ୍ରଶ୍ନ – ହିରଣ୍ୟମୟ ପୁରୁଷ** କାହାକୁ କୁହାଯାଇଛି ଏବଂ ସେ **ଅଧିଦୈବ** କିପରି ?

**ଉତ୍ତର –** 'ପୁରୁଷ' ଶବ୍ଦ ଏଠାରେ ପ୍ରଥମ ପୁରୁଷଙ୍କର ବାଚକ; ଏହାଙ୍କୁ ସୂତ୍ରାତ୍ମା, ହିରଣ୍ୟଗର୍ଭ, ପ୍ରଜାପତି ବା ବ୍ରହ୍ମା କହନ୍ତି। ଏ ହିଁ ଜଡ-ଚେତନାତ୍ମକ ସକଳ ବିଶ୍ୱର ପ୍ରାଣ-ପୁରୁଷ। ସକଳ ଦେବତା ଏହାଙ୍କର ଅଙ୍ଗ। ଏ ସମସ୍ତଙ୍କର ଅଧିଷ୍ଠାତା, ଅଧିପତି ଓ ଜନ୍ମଦାତା; ଏଣୁ ଏହାଙ୍କ ନାମ **ଅଧିଦୈବ**। ସ୍ୱୟଂ ଭଗବାନ୍ ହିଁ ଅଧିଦୈବରୂପରେ ପ୍ରକଟ ହୁଅନ୍ତି। ଅତଏବ ଏ ମଧ୍ୟ ତାଙ୍କ ଠାରୁ ଅଭିନ୍ନ।

**ପ୍ରଶ୍ନ –** 'ଏହି ଶରୀରରେ ମୁଁ ହିଁ **ଅଧିଯଜ୍ଞ**।'— ଏହାର ଭାବ କଣ ?

**ଉତ୍ତର –** ଅର୍ଜୁନ ଦୁଇଟି କଥା ପଚାରିଥିଲେ, ଯଥା – **ଅଧିଯଜ୍ଞ** କିଏ ? ଏବଂ ସେ ଏହି ଶରୀରରେ କିପରି ଅଛନ୍ତି ? ସେହି ଦୁଇ ପ୍ରଶ୍ନର ଉତ୍ତର ଭଗବାନ୍ ଏକସଙ୍ଗେ ଦେଇଛନ୍ତି। ଭଗବାନ୍ ହିଁ ସମସ୍ତ ଯଜ୍ଞର ଭୋକ୍ତା ଓ ପ୍ରଭୁ (୫/୨୯, ୯/୨୪) ଓ ସେ ହିଁ ସମସ୍ତ ଫଳ ବିଧାନ କରନ୍ତି। (୭/୨୨)। ଅତଏବ ସେ କହୁଛନ୍ତି, ''ମୁଁ ସ୍ୱୟଂ ଅଧିଯଜ୍ଞ।'' ଏଠାରେ ଏବ ପ୍ରୟୋଗରୁ ବୁଝିବା ଉଚିତ ଯେ, **ଅଧିଭୂତ** ଓ **ଅଧିଦୈବ** ମଧ୍ୟ ମୋ ଠାରୁ ଭିନ୍ନ ନୁହେଁ।' ଭଗବାନ୍ ତ 'ମୁଁ ହିଁ ଅଧିଯଜ୍ଞ' ବୋଲି ସ୍ପଷ୍ଟରୂପେ କହିଦେଲେ; କିନ୍ତୁ ଏହି ଅଧିଯଜ୍ଞ ଶରୀରରେ କିପରି ଅଛନ୍ତି, ଏହି ପ୍ରଶ୍ନର ଉତ୍ତରରେ ଭଗବାନ୍ 'ଅତ୍ର ଦେହେ'– 'ଏହି ଶରୀରରେ' – ଏତିକିମାତ୍ର ସଙ୍କେତ ଦେଇଛନ୍ତି। ଅନ୍ତର୍ଯାମୀ ବ୍ୟାପକସ୍ୱରୂପ ହିଁ ଶରୀରରେ ରହନ୍ତି; ତେଣୁ ଶ୍ଳୋକର ଅର୍ଥରେ 'ଅନ୍ତର୍ଯାମୀ' ଶବ୍ଦ ଯୋଗ କରି ସ୍ପଷ୍ଟୀକରଣ କରିଦିଆଯାଇଛି। ଭଗବାନ୍ ବ୍ୟାପକ– ସେ ଅନ୍ତର୍ଯାମୀରୂପରେ ସମସ୍ତଙ୍କ ଭିତରେ ଅଛନ୍ତି, ଅତଏବ ଭଗବାନ୍ ଏହି ଅଧ୍ୟାୟର ଅଷ୍ଟମ ଓ ଦଶମ ଶ୍ଳୋକରେ 'ଦିବ୍ୟ ପୁରୁଷ' ତଥା କୋଡ଼ିଏ ଶ୍ଳୋକରେ 'ସନାତନ ଅବ୍ୟକ୍ତ' କହି ବାଇଶ ଶ୍ଳୋକରେ ତାଙ୍କ ବ୍ୟାପକତା ଓ ସର୍ବାଧାରତା ବର୍ଣ୍ଣନା କରିଛନ୍ତି। ନବମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ବି ଅବ୍ୟକ୍ତ ରୂପର ବ୍ୟାପକତା ଦେଖାଇଛନ୍ତି। ଏଠାରେ ଭଗବାନ୍ ନିଜର ସେହି ଅବ୍ୟକ୍ତ, ସୂକ୍ଷ୍ମ ଓ ବ୍ୟାପକ ସ୍ୱରୂପକୁ **ଅଧିଯଜ୍ଞ** ବୋଲି କହିଛନ୍ତି ଏବଂ ତା'ସହିତ ନିଜର ଅଭିନ୍ନତା ପ୍ରକଟ କରିବାକୁ 'ମୁଁ ହିଁ ଅଧିଯଜ୍ଞ' ବୋଲି ସ୍ପଷ୍ଟ ଘୋଷଣା କରିଛନ୍ତି।

**ପ୍ରଶ୍ନ – ଦେହଭୃତାଂ ବର –** ଏହି ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଅର୍ଜୁନଙ୍କୁ ଦେହଭୃତାଂ

ବର (ଦେହଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ) କହି ସୂଚିତ କରିଛନ୍ତି, ''ତୁମେ ମୋର ଭକ୍ତ; ଅତଏବ ମୋ କଥା ସଙ୍କେତମାତ୍ରଦ୍ୱାରା ବୁଝିପାରିବ; ଅତଏବ 'ମୁଁ ହିଁ ଅଧିଯଜ୍ଞ।' —ଏତିକିମାତ୍ର ସଙ୍କେତରୁ ତୁମେ ଜାଣିଯିବା ଉଚିତ ଯେ, ସବୁକିଛି ମୁଁ ହିଁ ଅଟେ। ତୁମ ପାଇଁ ଏହା ବୁଝିବା କିଛି ବଡ଼ କଥା ନୁହେଁ।''

*ସମ୍ବନ୍ଧ— ଏପରିଭାବରେ ଅର୍ଜୁନଙ୍କ ଛଅଟି ପ୍ରଶ୍ନର ଉତ୍ତର ଦେଇସାରି ଭଗବାନ୍ ବର୍ତ୍ତମାନ ଅନ୍ତକାଳ-ସମ୍ପର୍କରେ ଥିବା ସପ୍ତମ ପ୍ରଶ୍ନଟିର ଉତ୍ତର ଦେବାକୁ ଆରମ୍ଭ କରୁଛନ୍ତି—*

## ଅନ୍ତକାଳେ ଚ ମାମେବ ସ୍ମରନ୍ମୁକ୍ତ୍ୱା କଳେବରମ୍।
## ଯଃ ପ୍ରୟାତି ସ ମଦ୍ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ।। ୫ ।।

**ଅନ୍ୱୟ—** **ଯଃ** = ଯେଉଁ ପୁରୁଷ; **ଅନ୍ତକାଳେ, ଚ** = ମରଣକାଳରେ ମଧ୍ୟ; **ମାମ୍** = ମୋତେ; **ଏବ** = ହିଁ; **ସ୍ମରନ୍** = ସ୍ମରଣ କରି କରି; **କଳେବରମ୍** = ଦେହକୁ; **ମୁକ୍ତ୍ୱା** = ତ୍ୟାଗ କରି; **ପ୍ରୟାତି** = ଯାଏ; **ସଃ** = ସେ; **ମଦ୍ଭାବମ୍** = ମୋର ସାକ୍ଷାତ୍ ସ୍ୱରୂପକୁ; **ଯାତି** = ପ୍ରାପ୍ତ ହୁଏ; **ଅତ୍ର** = ଏଥିରେ; **ସଂଶୟଃ** = (କିଛି ବି) ସନ୍ଦେହ; **ନ, ଅସ୍ତି** = ନାହିଁ।

**ଯେଉଁ ପୁରୁଷ ଅନ୍ତକାଳରେ ହେଲେ ବି ମୋତେ ହିଁ ସ୍ମରଣ କରି କରି ଦେହ ତ୍ୟାଗ କରନ୍ତି, ସେ ମୋର ସାକ୍ଷାତ୍ ସ୍ୱରୂପ ପ୍ରାପ୍ତ ହୁଅନ୍ତି; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।। ୫ ।।**

**ପ୍ରଶ୍ନ—** ଏଠାରେ **ଅନ୍ତକାଳେ** ସହିତ **ଚ** ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର—** ଏଠାରେ **ଚ** ଅବ୍ୟୟ **ଅପି** ଅର୍ଥରେ ପ୍ରଯୁକ୍ତ ହୋଇଛି। ଏହାଦ୍ୱାରା **ଅନ୍ତକାଳର** ବିଶେଷ ମହତ୍ତ୍ୱ ପ୍ରକାଶ କରାଯାଉଛି। ଅତଏବ ଭଗବାନଙ୍କ କହିବାର ଭାବ ହେଉଛି, 'ଯେଉଁମାନେ ସଦାସର୍ବଦା ମୋର ଅନନ୍ୟ ଚିନ୍ତନ କରନ୍ତି, ସେମାନଙ୍କ କଥା ବା କଣ କହିବା, ଯେଉଁମାନେ ଏହି ମନୁଷ୍ୟଜନ୍ମର ଅନ୍ତିମକ୍ଷଣରେ ବି ମୋତେ ଚିନ୍ତନ କରି କରି ଶରୀର ତ୍ୟାଗ କରନ୍ତି, ସେମାନେ ମଧ୍ୟ ମୋତେ ପାଇଯାଆନ୍ତି।'

**ପ୍ରଶ୍ନ—** **ମାମ୍** ପଦ କାହାର ବାଚକ ?

**ଉତ୍ତର—** ଯେଉଁ ସମଗ୍ର ରୂପର ବର୍ଣ୍ଣନା କରିବାକୁ ଭଗବାନ୍ ସପ୍ତମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ପ୍ରତିଜ୍ଞା କରିଥିଲେ, ଯାହାର ବର୍ଣ୍ଣନା ସପ୍ତମ ଅଧ୍ୟାୟର ତିରିଶ ଶ୍ଳୋକରେ କଲେ, **ମାମ୍** ପଦଟି ହେଉଛି ସେହି **ସମଗ୍ରର** ବାଚକ। **ସମଗ୍ରରେ** ଭଗବାନଙ୍କର ସମସ୍ତ ସ୍ୱରୂପ ଆସିଯାଏ। ତେଣୁ ଯଦି କେହି କୌଣସି ସ୍ୱରୂପବିଶେଷକୁ ଭଗବଦ୍‌ବୁଦ୍ଧିରେ ସ୍ମରଣ କରନ୍ତି, ତେବେ ସେ ମଧ୍ୟ ଭଗବାନଙ୍କୁ ହିଁ ସ୍ମରଣ କରନ୍ତି। ସେହିପରି ଭଗବାନଙ୍କର ଭିନ୍ନ ଭିନ୍ନ ଅବତାରସମ୍ବନ୍ଧୀୟ ନାମ, ଗୁଣ, ପ୍ରଭାବ ଓ ଲୀଳା-ଚରିତ୍ର ଆଦି ମଧ୍ୟ ଭଗବାନଙ୍କୁ ସ୍ମରଣ କରିବାର ହେତୁ ଅଟନ୍ତି। ଅତଏବ ସେସବୁକୁ ସ୍ମରଣ କରିବାଦ୍ୱାରା ସଙ୍ଗେ ସଙ୍ଗେ ଭଗବାନଙ୍କ ସ୍ମୃତି ଆପଣା ଛାଏଁ ଆସିଯାଏ। ତେଣୁ ଭଗବାନଙ୍କର ନାମ, ଗୁଣ, ପ୍ରଭାବ ଓ ଲୀଳା-ଚରିତ୍ର ଆଦି ସ୍ମରଣ କରିବା ମଧ୍ୟ ଭଗବାନଙ୍କୁ ସ୍ମରଣ କରିବା।

**ପ୍ରଶ୍ନ—** **ଏବ** ର ଅଭିପ୍ରାୟ କଣ ?

**ଉତ୍ତର—** ଏଠାରେ **ମାମ୍** ଓ **ସ୍ମରନ୍** ମଧ୍ୟରେ **ଏବ** ପଦ ଦେଇ ଭଗବାନ୍ କହିଛନ୍ତି, 'ସେ ମାତା-ପିତା, ଭାଇ-ବନ୍ଧୁ, ସ୍ତ୍ରୀ-ପୁତ୍ର, ଧନ-ଐଶ୍ୱର୍ଯ୍ୟ, ମାନ-ପ୍ରତିଷ୍ଠା ଓ ସ୍ୱର୍ଗ ଆଦି କୌଣସି ବି ବସ୍ତୁକୁ ସ୍ମରଣ ନ କରି କେବଳ ମୋତେ ହିଁ ସ୍ମରଣ କରନ୍ତି।'

ସ୍ମରଣ କିଭଳି ହୁଏ ଓ **ଏବ** ପଦ ଅନ୍ୟ ଚିନ୍ତନର ପୂର୍ଣ୍ଣ ଅଭାବ ଦେଖାଇ ସୂଚିତ କରେ ଯେ, ତାଙ୍କର ଚିତ୍ତ କେବଳ ଏକମାତ୍ର ଭଗବାନଙ୍କ ଠାରେ ହିଁ ଲାଗିରହିଥାଏ।

**ପ୍ରଶ୍ନ—** ଏଠାରେ **ମଦ୍ଭାବପ୍ରାପ୍ତିର** ଅଭିପ୍ରାୟ କଣ ? ସାଯୁଜ୍ୟାଦି ମୁକ୍ତିମାନଙ୍କ ମଧ୍ୟରୁ କୌଣସି ଏକ ମୁକ୍ତି ପ୍ରାପ୍ତ ହେବା, ନା ନିର୍ଗୁଣ ବ୍ରହ୍ମକୁ ପ୍ରାପ୍ତ ହେବା ?

**ଉତ୍ତର—** ଏହା ସାଧକଙ୍କ ଇଚ୍ଛା ଉପରେ ନିର୍ଭର କରେ। ତାଙ୍କର ଯେପରି ଇଚ୍ଛା ହୁଏ, ସେ ସେହି ଅନୁସାରେ ଭଗବଦ୍‌ଭାବ ପ୍ରାପ୍ତ ହୁଅନ୍ତି। ପ୍ରଶ୍ନର ସବୁ ବିଷୟ ଭଗବଦ୍‌ଭାବର ଅନ୍ତର୍ଗତ।

**ପ୍ରଶ୍ନ –** 'ଏଥିରେ ତିଳେମାତ୍ର ସନ୍ଦେହ ନାହିଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହି ବାକ୍ୟଦ୍ୱାରା ପ୍ରକାଶ କରାଯାଉଛି ଯେ, ଅନ୍ତକାଳରେ ଭଗବାନଙ୍କୁ ସ୍ମରଣ କରୁଥିବା ମନୁଷ୍ୟ ଯେକୌଣସି ଦେଶରେ ଓ ଯେକୌଣସି ସମୟରେ ମରନ୍ତୁ ନା କାହିଁକି ଏବଂ ପୂର୍ବରୁ ତାଙ୍କର ଆଚରଣ ଯେପରି ହୋଇଥାଉ ନା କାହିଁକି, ତାଙ୍କର ଭଗବତ୍ପ୍ରାପ୍ତି ନିଶ୍ଚୟ ହୋଇଯାଏ; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

*ସମ୍ବନ୍ଧ – ଏଠାରେ କୁହାଗଲା ଯେ, ଭଗବାନଙ୍କୁ ସ୍ମରଣ କରି କରି ମରୁଥିବା ଲୋକ ଭଗବାନଙ୍କୁ ପାଇଯାଡି । ଏହା ଉପରେ ଜିଜ୍ଞାସା ହୁଏ; କେବଳ ଭଗବତ୍ଚିନ୍ତନ ସମ୍ବନ୍ଧରେ ଏହି ନିୟମ ରହିଛି, ନା ବହୁପ୍ରକାର ଚିନ୍ତା ସମ୍ବନ୍ଧରେ ? ଉତ୍ତର ଦେଇ ଭଗବାନ୍ କହୁଛନ୍ତି –*

## ଯଂ ଯଂ ବାପି ସ୍ମରନ୍ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।
## ତଂ ତମେବୈତି କୌନ୍ତେୟ ସଦା ତଦ୍ଭାବଭାବିତଃ ।। ୬ ।।

**ଅନ୍ୱୟ –** **କୌନ୍ତେୟ** = ହେ କୁନ୍ତୀପୁତ୍ର ଅର୍ଜୁନ (ଏହି ମନୁଷ୍ୟ); **ଅନ୍ତେ** = ଅନ୍ତକାଳରେ; **ଯମ୍, ଯମ୍** = ଯେଉଁ ଯେଉଁ; **ବା, ଅପି** = ବି; **ଭାବମ୍** = ଭାବକୁ; **ସ୍ମରନ୍** = ସ୍ମରଣ କରି କରି; **କଳେବରମ୍** = ଦେହକୁ; **ତ୍ୟଜତି** = ତ୍ୟାଗ କରେ; **ତମ୍, ତମ୍** = ତାହାକୁ; **ଏବ** = ହିଁ; **ଏତି** = ପ୍ରାପ୍ତ ହୁଏ (କାରଣ ସେ); **ସଦା** = ସବୁବେଳେ; **ତଦ୍ଭାବଭାବିତଃ** = ସେହି ଭାବରେ ଭାବିତ ହୋଇ ରହିଥାଏ ।

**ହେ କୁନ୍ତୀପୁତ୍ର ଅର୍ଜୁନ! ଏହି ମନୁଷ୍ୟ ଅନ୍ତକାଳରେ ଯେଉଁ ଯେଉଁ ଭାବ ସ୍ମରଣ କରି କରି ଶରୀର ତ୍ୟାଗ କରେ, ସେ ତାହା ହିଁ ପ୍ରାପ୍ତ ହୁଏ; କାରଣ ସେ ସବୁବେଳେ ସେହି ଭାବରେ ଭାବିତ ହୋଇ ରହିଥାଏ ।। ୬ ।।**

**ପ୍ରଶ୍ନ –** ଏଠାରେ ଭାବ ଶବ୍ଦ କାହାର ବାଚକ? ଏବଂ ତାହା ସ୍ମରଣ କରିବା କଣ ?

**ଉତ୍ତର –** ଈଶ୍ୱର, ଦେବତା, ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ଗୃହ, ଭୂମି ଆଦି ଯେତେ ବି ଚେତନ ଓ ଜଡ଼ ପଦାର୍ଥ ଅଛି, ସେସବୁର ନାମ ଭାବ । ଅନ୍ତକାଳରେ ଯେକୌଣସି ପଦାର୍ଥ ଚିନ୍ତା କରିବା ଅର୍ଥ ତାହା ସ୍ମରଣ କରିବା ।

**ପ୍ରଶ୍ନ – ଅନ୍ତକାଳ** କେଉଁ ସମୟର ବାଚକ ?

**ଉତ୍ତର –** ଯେଉଁ ଅନ୍ତିମକ୍ଷଣରେ ଏହି ସ୍ଥୂଳଦେହରୁ ପ୍ରାଣ, ଇନ୍ଦ୍ରିୟ, ମନ ଓ ବୁଦ୍ଧି ସହିତ ଜୀବାତ୍ମାର ବିୟୋଗ ହୁଏ, ସେହି କ୍ଷଣକୁ **ଅନ୍ତକାଳ** କହନ୍ତି ।

**ପ୍ରଶ୍ନ –** ତ୍ରୟୋଦଶ ଅଧ୍ୟାୟର ଏକୋଇଶ ଶ୍ଳୋକରେ ତଥା ଚତୁର୍ଦ୍ଦଶ ଅଧ୍ୟାୟର ଚଉଦ, ପନ୍ଦର ଓ ଅଠର ଶ୍ଳୋକରେ ଭଗବାନ୍ ସତ୍ତ୍ୱ, ରଜ, ତମ – ଏହି ତିନି ଗୁଣକୁ ଭଲ ଓ ମନ୍ଦ ଯୋନି ପ୍ରାପ୍ତିର କାରଣ ବୋଲି କହିଛନ୍ତି ଓ ଏଠାରେ ଅନ୍ତକାଳର ସ୍ମରଣକୁ ପରବର୍ତ୍ତୀ ଜନ୍ମର କାରଣ ବୋଲି କହୁଛନ୍ତି । – ଏହା କିପରି କଥା ?

**ଉତ୍ତର –** ମନୁଷ୍ୟ ଯାହା କିଛି ବି କର୍ମ କରେ, ତାହା ସଂସ୍କାରରୂପରେ ତା'ର ଅନ୍ତଃକରଣରେ ଅଙ୍କିତ ହୋଇଯାଏ । ଏପରି ଅସଂଖ୍ୟ କର୍ମ-ସଂସ୍କାର ଅନ୍ତଃକରଣରେ ପୂର୍ଣ୍ଣ ହୋଇ ରହିଥାଏ । ଏସବୁ ସଂସ୍କାର ଅନୁସାରେ ହିଁ ଯେଉଁ ସମୟରେ ଯେଉଁପରି ସହାୟକ ନିମିତ୍ତ ମିଳିଯାଏ, ସେହିପରି ବୃତ୍ତି ଓ ସ୍ମୃତି ହୁଏ । ଯେତେବେଳେ ସାତ୍ତ୍ୱିକ କର୍ମର ଆଧିକ୍ୟଯୋଗୁଁ ସାତ୍ତ୍ୱିକ ସଂସ୍କାର ବଢ଼ିଯାଏ, ସେତେବେଳେ ମନୁଷ୍ୟ ସତ୍ତ୍ୱଗୁଣପ୍ରଧାନ ହୋଇଯାଏ ଏବଂ ସେହି ଅନୁସାରେ ତା'ର ସ୍ମୃତି ମଧ୍ୟ ସାତ୍ତ୍ୱିକ ହୋଇଯାଏ । ଠିକ୍ ସେହିପରି ରାଜସ-ତାମସ କର୍ମର ଆଧିକ୍ୟଯୋଗୁଁ ରାଜସ-ତାମସ ସଂସ୍କାର ବୃଦ୍ଧି ପାଇଲେ ମନୁଷ୍ୟ ରଜୋଗୁଣ ବା ତମୋଗୁଣ-ପ୍ରଧାନ ହୋଇଯାଏ ଓ ସେହି ଅନୁସାରେ ସ୍ମୃତି ହୁଏ । ଏହିପରି କର୍ମ, ଗୁଣ ଓ ସ୍ମୃତି — ଏହି ତିନୋଟିଯାକ ମିଶିଯାଉଥିବାରୁ ଏମାନଙ୍କ ମଧ୍ୟରୁ ଯେକୌଣସିଟିକୁ ବି ପରଜନ୍ମପ୍ରାପ୍ତିର ହେତୁ ବୋଲି କୁହାଗଲେ, କିଛି ଭୁଲ ହେବ ନାହିଁ; କାରଣ ବସ୍ତୁତଃ ତାହା ଏକା କଥା ।

**ପ୍ରଶ୍ନ –** ଅନ୍ତକାଳରେ ଦେବ, ମନୁଷ୍ୟ, ପଶୁ, ବୃକ୍ଷ

ଆଦି ସଜୀବ ପଦାର୍ଥକୁ ସ୍ମରଣ କରି କରି ମରିବା ଲୋକ ସେହି ସେହି ଯୋନି ପ୍ରାପ୍ତ ହୁଏ— ଏ କଥା ତ ଠିକ୍; କିନ୍ତୁ ଭୂମି, କୋଠାବାଡ଼ି ଆଦି ନିର୍ଜୀବ ଜଡ଼ପଦାର୍ଥକୁ ଚିନ୍ତା କରି କରି ମରିବା ଲୋକକୁ କେଉଁ ଯୋନି ପ୍ରାପ୍ତ ହୁଏ ?

**ଉତ୍ତର —** ଭୂମି, କୋଠାବାଡ଼ି ଆଦି ଚିନ୍ତା କରି କରି ମରିବା ଲୋକଙ୍କୁ ନିଜର ଗୁଣ ଓ କର୍ମାନୁସାରେ ଭଲ-ମନ୍ଦ ଯୋନିରେ ଜନ୍ମ ମିଳେ ଏବଂ ସେହି ଯୋନିରେ ସେ ଶେଷକାଳର ବାସନାନୁସାରେ ଭୂମି, କୋଠାବାଡ଼ି ଆଦି ଜଡ଼ ପଦାର୍ଥ ପ୍ରାପ୍ତ ହୁଏ। ଅଭିପ୍ରାୟ ହେଉଛି, ମନୁଷ୍ୟ ଯେଉଁ ଯୋନିରେ ଜନ୍ମ ନେବ, ସେହି ଯୋନିରେ ସେ ସ୍ମରଣ କରିଥିବା ଭୂମି, କୋଠାବାଡ଼ି ସହିତ ତା'ର ସମ୍ବନ୍ଧ ସ୍ଥାପିତ ହେବ। ଘରମାଲିକ ଯେପରି ଘରକୁ ନିଜର ବୋଲି ଭାବେ, ସେହି ଘରେ ବସା ବାନ୍ଧି ରହିଥିବା ପକ୍ଷୀ ଓ ଗାତ କରି ରହିଥିବା ମୂଷା, ପିମ୍ପୁଡ଼ି ଆଦି ଜୀବ ମଧ୍ୟ ସେହି ଘରକୁ ନିଜର ବୋଲି ମନେକରନ୍ତି। ଅତଏବ ବୁଝିବା ଉଚିତ ଯେ, ପ୍ରତ୍ୟେକ ଯୋନିରେ ପ୍ରତ୍ୟେକ ଜଡ ବସ୍ତୁର ପ୍ରାପ୍ତି ପ୍ରକାରାନ୍ତରେ ହୋଇଥାଏ।

**ପ୍ରଶ୍ନ — ସଦା ତଦ୍ଭାବଭାବିତଃର ଅଭିପ୍ରାୟ କଣ ?**

**ଉତ୍ତର —** ମନୁଷ୍ୟ ଅନ୍ତକାଳରେ ଯେଉଁ ଭାବ ଚିନ୍ତା କରି କରି ଶରୀର ତ୍ୟାଗ କରେ, ସେ ସେହି ଭାବକୁ ପାଏ।— ଏହି ସିଦ୍ଧାନ୍ତ ଠିକ୍; କିନ୍ତୁ ଅନ୍ତକାଳରେ କେଉଁ ଭାବର ସ୍ମରଣ କାହିଁକି ହୁଏ, ତାହା ବୁଝାଇବାପାଇଁ ହିଁ ଭଗବାନ୍ **ସଦା ତଦ୍ଭାବଭାବିତଃ** ବୋଲି କହୁଛନ୍ତି। ଅର୍ଥାତ୍ ଅନ୍ତକାଳରେ ପ୍ରାୟତଃ ସେହି ଭାବ ସ୍ମରଣ ହୁଏ, ଯେଉଁ ଭାବରେ ଚିତ୍ତ ସଦା ନିମଗ୍ନ ହୋଇ ରହିଥାଏ। ବୈଦ୍ୟମାନେ ଯେପରି କୌଣସି ଔଷଧରେ ବାରମ୍ବାର କୌଣସି ରସର ଭାବନା ଦେଇ ଦେଇ ତାହାକୁ ସେହି ରସରେ ଭାବିତ କରିଦିଅନ୍ତି, ସେହିପରି ପୂର୍ବସଂସ୍କାର, ସଙ୍ଗ, ବାତାବରଣ, ଆସକ୍ତି, କାମନା, ଭୟ ଓ ଅଧ୍ୟୟନ ଆଦିର ପ୍ରଭାବରେ ମନୁଷ୍ୟ ଯେଉଁ ଭାବକୁ ବାରମ୍ବାର ଚିନ୍ତନ କରୁଥାଏ, ସେ ସେହି ଭାବରେ ଭାବିତ ହୋଇଯାଏ। **ସଦା** ଶବ୍ଦଦ୍ୱାରା ଭଗବାନ୍ ନିରନ୍ତରତାକୁ ନିର୍ଦ୍ଦେଶ କରୁଛନ୍ତି। ଅଭିପ୍ରାୟ ଏହି ଯେ, ଜୀବନରେ ସଦାସର୍ବଦା ବାରମ୍ବାର ଦୀର୍ଘକାଳଯାଏ ଯେଉଁ ଭାବକୁ ଅଧିକ ଚିନ୍ତନ କରାଯାଏ, ତାହାର ଦୃଢ଼ ଅଭ୍ୟାସ ହୋଇଯାଏ। ଏହି ଦୃଢ଼ ଅଭ୍ୟାସ ହିଁ 'ସଦା ତଦ୍ଭାବରେ ଭାବିତ' ହେବା ଏବଂ ନିୟମ ହେଉଛି, ଯେଉଁ ଭାବର ଦୃଢ଼ ଅଭ୍ୟାସ ହୁଏ, ସେହି ଭାବର ପ୍ରାୟ ଅନାୟାସରେ ହିଁ ଅନ୍ତକାଳରେ ସ୍ମରଣ ହୋଇଥାଏ।

**ପ୍ରଶ୍ନ —** କଣ ସମସ୍ତଙ୍କର ଅନ୍ତକାଳରେ ଜୀବନସାରା ଅଧିକ ଚିନ୍ତନ କରାଯାଇଥିବା ଭାବର ହିଁ ସ୍ମରଣ ହୁଏ ?

**ଉତ୍ତର —** ଅଧିକାଂଶଙ୍କର ତ ଏପରି ହିଁ ହୋଇଥାଏ। ପରନ୍ତୁ ବେଳେବେଳେ ଜଡଭରତଙ୍କ ଚିତ୍ତରେ ମୃଗଶିଶୁର ଭାବନାପରି ମୃତ୍ୟୁର ଅଳ୍ପ ସମୟ ପୂର୍ବରୁ ହୋଇଥିବା ଅଳ୍ପକାଳର ଚିନ୍ତନ ମଧ୍ୟ ପୁରୁଣା ଅଭ୍ୟାସକୁ ଚାପିଦେଇ ଦୃଢ଼ରୂପେ ପ୍ରକଟ ହୋଇଯାଏ ଏବଂ ତାହାରି ସ୍ମରଣ କରାଇଦିଏ।

**ପ୍ରଶ୍ନ —** 'ତଦ୍‌ଭାବଭାବିତଃ' ପଦର ଅନ୍ୱୟ ଅନ୍ୟ ପ୍ରକାରେ କରି ଯଦି ଅର୍ଥ କରାଯାଏ ଯେ, 'ମନୁଷ୍ୟ ଅନ୍ତକାଳରେ ଯେଉଁ ଯେଉଁ ଭାବ ସ୍ମରଣ କରି କରି ଶରୀର ଛାଡ଼ିଯାଏ, ନିରନ୍ତର ସେହି ସେହି ଭାବ ଭାବି ଭାବି ତାହା ପ୍ରାପ୍ତ ହୋଇଯାଏ', ତେବେ କ୍ଷତି କଣ ?

**ଉତ୍ତର —** ଏଥିରେ କ୍ଷତିର ପ୍ରଶ୍ନ ନାହିଁ। ଏଥିରୁ ଏହା ବି ସ୍ପଷ୍ଟ ହୋଇଯାଏ ଯେ, ମନୁଷ୍ୟର ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ସେ ଅନ୍ତକାଳରେ ସ୍ମରଣ କରିଥିବା ଭାବକୁ ପୂର୍ଣ୍ଣରୂପେ ପାଇଯାଏ ନାହିଁ। ମୃତ୍ୟୁପରେ ସୂକ୍ଷ୍ମରୂପରେ ଅନ୍ତଃକରଣରେ ଅଙ୍କିତ ହୋଇଥିବା ସେହି ଭାବରେ ଭାବିତ ହୋଇ ହୋଇ ନିଶ୍ଚିତ ସମୟ ପରେ ହିଁ ସେ ସେହି ଭାବକୁ ପୂର୍ଣ୍ଣରୂପେ ପ୍ରାପ୍ତ ହୁଏ। କୌଣସି ଲୋକର ଛାୟାଚିତ୍ର (ଫୋଟୋ) ନେଲାବେଳେ, ସେହି ମୁହୂର୍ତ୍ତରେ ସେ ଲୋକ ଯେଉଁ ଅବସ୍ଥାରେ ଥାଏ, ତା'ର ଠିକ୍ ସେହିପରି ଚିତ୍ର ଉଠିଯାଏ; ଠିକ୍ ସେହିପରି ଅନ୍ତକାଳରେ ମନୁଷ୍ୟ ଯେପରି ଚିନ୍ତନ କରେ, ସେହିପରି ଚିତ୍ର ହିଁ ତା'ର ଅନ୍ତଃକରଣରେ ଅଙ୍କିତ ହୋଇଯାଏ। ତା'ପରେ ଫୋଟଭଳି ଅନ୍ୟ ସହକାରୀ ପଦାର୍ଥମାନଙ୍କର ସାହାଯ୍ୟ ପାଇ ସେହି ଭାବରେ ଭାବିତ ହୋଇ ହୋଇ ସେ ସମୟକ୍ରମେ ସ୍ଥୂଳରୂପ ପ୍ରାପ୍ତ ହୁଏ।

ଏଠାରେ ଅନ୍ତଃକରଣ ହିଁ କ୍ୟାମେରାର ପ୍ଲେଟସଦୃଶ; ସେଥିରେ ହେଉଥିବା ସ୍ମରଣ ହିଁ ପ୍ରତିବିମ୍ବ ଏବଂ ଅନ୍ୟ ସୂକ୍ଷ୍ମଶରୀରପ୍ରାପ୍ତି ହିଁ ଫୋଟୋ ନେବାସଦୃଶ। ଅତଏବ, ଫୋଟୋଗ୍ରାଫର ଯେପରି ଫୋଟୋ ନେଲାବେଳେ ସମସ୍ତଙ୍କୁ ସାବଧାନ କରାଏ ଏବଂ ତା' କଥା ନ ମାନି ହଲଚଲ ହେଲେ ଯେପରି ଚିତ୍ର ଖରାପ ହୋଇଯାଏ, ଠିକ୍ ସେହିପରି

ସକଳ ପ୍ରାଣୀଙ୍କର ଫୋଟୋଚିତ୍ର ଉଠାଉଥିବା ଭଗବାନ୍ ମନୁଷ୍ୟକୁ ସାବଧାନ କରାଉଛନ୍ତି, "ତୁମର ଫୋଟୋ ଉଠାଇବା ସମୟ ଅତି ନିକଟ ହୋଇଗଲାଣି, ସେହି ଅନ୍ତିମକ୍ଷଣ କେତେବେଳେ ଆସିଯିବ, ତା'ର ଠିକଣା ନାହିଁ; ତେଣୁ ତୁମେ ସାବଧାନ ହୋଇଯାଅ, ନଚେତ୍ ଫୋଟୋ ଖରାପ ହୋଇଯିବ।" ଏଠାରେ, ନିରନ୍ତର ଭଗବାନଙ୍କର ସ୍ୱରୂପ ଚିନ୍ତନ କରିବା ହିଁ ସାବଧାନ ହେବା ଏବଂ ପରମାତ୍ମାଙ୍କୁ ଛାଡ଼ି ଅନ୍ୟ କାହାକୁ ଚିନ୍ତନ କରିବା ହିଁ ନିଜର ଚିତ୍ରକୁ ବିଗାଡ଼ିଦେବା।

**ସମ୍ବନ୍ଧ –** *ମନୁଷ୍ୟ ଅନ୍ତକାଳରେ ଯାହା ସ୍ମରଣ କରି କରି ମରେ, ତାହା ହିଁ ପ୍ରାପ୍ତ ହୁଏ ଏବଂ ଯାହା ଜୀବନରେ ଅଧିକ ସ୍ମରଣ କରାଯାଇଥାଏ, ଅନ୍ତକାଳରେ ସେହିଭାବର ସ୍ମରଣ ହୋଇଥାଏ। ଏହି ସିଦ୍ଧାନ୍ତରେ ନିଶ୍ଚିତ ହୋଇଯିବା ପରେ, ଭଗବତ୍ପ୍ରାପ୍ତି ଚାହୁଁଥିବା ଲୋକର ଅନ୍ତକାଳରେ ଭଗବାନଙ୍କୁ ସ୍ମରଣ କରିବା ଅତ୍ୟନ୍ତ ଆବଶ୍ୟକ ହୋଇଯାଏ ଏବଂ ଅନ୍ତକାଳ ଅଚାନକ କେତେବେଳେ ଯେ ଆସିଯିବ, ତାହାର କିଛି ଠିକଣା ନାହିଁ। ଅତଏବ ନିରନ୍ତର ଭଜନ କରି କରି ହିଁ ଯୁଦ୍ଧ କରିବାପାଇଁ ଭଗବାନ୍ ବର୍ତ୍ତମାନ ଅର୍ଜୁନଙ୍କୁ ଆଦେଶ ଦେଉଛନ୍ତି –*

## ତସ୍ମାତ୍ ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ ଚ।
## ମୟ୍ୟର୍ପିତମନୋବୁଦ୍ଧିର୍ମାମେବୈଷ୍ୟସ୍ୟସଂଶୟମ୍ ।। ୭ ।।

**ଅନ୍ୱୟ –** **ତସ୍ମାତ୍** = ତେଣୁ (ହେ ଅର୍ଜୁନ, ତୁମେ); **ସର୍ବେଷୁ, କାଳେଷୁ** = ସର୍ବଦା ନିରନ୍ତର; **ମାମ୍** = ମୋତେ; **ଅନୁସ୍ମର** = ସ୍ମରଣ କର; **ଚ** = ଓ; **ଯୁଧ୍ୟ** = ଯୁଦ୍ଧ ବି କର; **ମୟି** = (ଏପରିଭାବରେ) ମୋଠାରେ; **ଅର୍ପିତମନୋବୁଦ୍ଧିଃ** = ଅର୍ପଣ କରାଯାଇଥିବା ମନ-ବୁଦ୍ଧିରେ ଯୁକ୍ତ ହୋଇ (ତୁମେ); **ଅସଂଶୟମ୍** = ନିଃସନ୍ଦେହ; **ମାମ୍** = ମୋତେ; **ଏବ** = ହିଁ; **ଏଷ୍ୟସି** = ପ୍ରାପ୍ତ ହେବ।

**ଅତଏବ ହେ ଅର୍ଜୁନ! ତୁମେ ସବୁ ସମୟରେ ନିରନ୍ତର ମୋତେ ସ୍ମରଣ କର ଓ ଯୁଦ୍ଧ ମଧ କର। ଏହିପ୍ରକାରେ ମୋଠାରେ ଅର୍ପଣ କରାଯାଇଥିବା ମନ-ବୁଦ୍ଧିରେ ଯୁକ୍ତ ହୋଇ ତୁମେ ନିଃସନ୍ଦେହ ମୋତେ ହିଁ ପ୍ରାପ୍ତ ହେବ।। ୭ ।।**

**ପ୍ରଶ୍ନ –**ଏଠାରେ **ତସ୍ମାତ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଉପରୋକ୍ତ ଦୁଇ ଶ୍ଳୋକରେ କୁହାଯାଇଥିବା ବିଷୟ ସହିତ ଏହି ଶ୍ଳୋକର ସମ୍ବନ୍ଧ ଦେଖାଇବାକୁ ନିମନ୍ତେ ଏଠାରେ **ତସ୍ମାତ୍** ପଦ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଏହି ମନୁଷ୍ୟଶରୀର କ୍ଷଣଭଙ୍ଗୁର; କାଳ ଉପରେ କୌଣସି ଭରସା ନାହିଁ; ପୁଣି ଯାହାର ଅଧିକ ଚିନ୍ତନ ହୁଏ, ସେହି ଭାବର ଅନ୍ତକାଳରେ ସ୍ମରଣ ହୁଏ। ଯଦି ଭଗବାନଙ୍କର ସ୍ମରଣ ନିରନ୍ତର ହେବ ନାହିଁ, ଏବଂ ବିଷୟ-ଭୋଗ ସ୍ମରଣ କରି କରି ହିଁ ଦେହପାତ (ମୃତ୍ୟୁ) ହୋଇଯିବ, ତେବେ ଭଗବତ୍ପ୍ରାପ୍ତିର ଦ୍ୱାରସ୍ୱରୂପ ଏହି ମନୁଷ୍ୟଜୀବନ ବ୍ୟର୍ଥ ହୋଇଯିବ। ଅତଏବ ନିରନ୍ତର ଭଗବାନଙ୍କୁ ସ୍ମରଣ କରିବା ଉଚିତ।

**ପ୍ରଶ୍ନ –**ଏଠାରେ ଭଗବାନ୍ ଅର୍ଜୁନଙ୍କୁ ସବୁ ସମୟରେ ତାଙ୍କୁ ସ୍ମରଣ କରିବାକୁ ଯାହା କହିଲେ, ତାହା ତ ଠିକ୍; କିନ୍ତୁ ଯୁଦ୍ଧ କରିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନ କ୍ଷତ୍ରିୟ ଥିଲେ; ଧର୍ମାନୁସାରେ ତାଙ୍କୁ ଯୁଦ୍ଧର ଅବସର ପ୍ରାପ୍ତ ହୋଇଯାଇଥିଲା। ଧର୍ମଯୁଦ୍ଧ କ୍ଷତ୍ରିୟଙ୍କର ବର୍ଣ୍ଣଧର୍ମ। ଅତଏବ ଏଠାରେ 'ଯୁଦ୍ଧ' ଶବ୍ଦକୁ ବର୍ଣ୍ଣାଶ୍ରମଧର୍ମ ପାଳନ କରିବା ଉଦ୍ଦେଶ୍ୟରେ କରାଯାଉଥିବା ସକଳ କ୍ରିୟାର ଉପଲକ୍ଷଣ ବୋଲି ବୁଝିବା ଉଚିତ। ଭଗବାନଙ୍କ ଆଜ୍ଞା ବୋଲି ବୁଝି ନିଷ୍କାମଭାବରେ ବର୍ଣ୍ଣାଶ୍ରମ ଧର୍ମ ପାଳନ କରିବାକୁ ଯେଉଁ କର୍ମ କରାଯାଏ, ତଦ୍ଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୁଏ। ଏହା ଛଡ଼ା କର୍ତ୍ତବ୍ୟକର୍ମ ଆଚରଣର ଆବଶ୍ୟକତା ପ୍ରତିପାଦନ କରୁଥିବା କାରଣ ସହିତ ଆହୁରି ବହୁ ମହତ୍ତ୍ୱପୂର୍ଣ୍ଣ କାରଣ ତୃତୀୟ ଅଧ୍ୟାୟର ଚତୁର୍ଥରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ଦର୍ଶାଇଦିଆଯାଇଛି। ସେସବୁ ବିଚାର କଲେ ମଧ ସିଦ୍ଧ ହେଉଛି ଯେ, ମନୁଷ୍ୟ ବର୍ଣ୍ଣାଶ୍ରମ

ଧର୍ମ ଅନୁସାରେ କର୍ତ୍ତବ୍ୟକର୍ମ ଅବଶ୍ୟ କରିବା ଉଚିତ। ଏହିଭାବ ଦେଖାଇବା ପାଇଁ ଏଠାରେ ଯୁଦ୍ଧ କରିବାକୁ କୁହାଯାଇଛି।

**ପ୍ରଶ୍ନ –** ଏଠାରେ ଚ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଚ ପ୍ରୟୋଗ କରି ଭଗବାନ୍ ଯୁଦ୍ଧକୁ ଗୌଣ କରି ଭଗବତ୍ସ୍ମରଣକୁ ପ୍ରାଧାନ୍ୟ ଦେଇଛନ୍ତି। ଭାବ ଏହି ଯେ, ଯୁଦ୍ଧ ଆଦି ବର୍ଣ୍ଣଧର୍ମର କର୍ମ ତ ପ୍ରୟୋଜନ ଓ ବିଧାନ ଅନୁସାରେ ନିର୍ଦ୍ଦିଷ୍ଟ ସମୟରେ କରାଯିବା ଆବଶ୍ୟକ ଏବଂ ସେପରି କରିବା ମଧ୍ୟ ଉଚିତ। କିନ୍ତୁ ଭଗବାନଙ୍କ ସ୍ମରଣ ତ ମନୁଷ୍ୟ ପ୍ରତ୍ୟେକ କ୍ଷଣରେ ପ୍ରତ୍ୟେକ ପରିସ୍ଥିତିରେ ଅବଶ୍ୟ କରିବା ଉଚିତ।

**ପ୍ରଶ୍ନ –** ନିରନ୍ତର ଭଗବଦ୍ ଚିନ୍ତନ ଓ ଯୁଦ୍ଧ ଆଦି ବର୍ଣ୍ଣଧର୍ମର କର୍ମ – ଏହି ଦୁଇଟି ଏକା ସଙ୍ଗେ କିପରି କରାଯାଇପାରିବ ?

**ଉତ୍ତର –** ହଁ କରାଯାଇପାରେ; ସାଧକମାନଙ୍କ ଭାବନା, ରୁଚି ଓ ଅଧିକାର ଅନୁସାରେ ଏହାର ଭିନ୍ନ ଭିନ୍ନ ଉପାୟ ରହିଛି। ଭଗବାନଙ୍କ ଗୁଣ ଓ ପ୍ରଭାବକୁ ଭଲଭାବେ ଜାଣିଥିବା ଅନନ୍ୟପ୍ରେମୀ ଭକ୍ତ ସଂପୂର୍ଣ୍ଣ ଜଗତକୁ ଭଗବାନଙ୍କ ଦ୍ୱାରା ହିଁ ରଚିତ ଓ ପ୍ରକୃତରେ ଭଗବାନଙ୍କ ଠାରୁ ଅଭିନ୍ନ ତଥା ଭଗବାନଙ୍କର କ୍ରୀଡ଼ାସ୍ଥଳୀ ବୋଲି ଜାଣନ୍ତି; ପ୍ରହ୍ଲାଦ ଓ ଗୋପୀମାନଙ୍କ ପରି ସେ ପ୍ରତ୍ୟେକ ପରମାଣୁରେ ଭଗବାନଙ୍କୁ ପ୍ରତ୍ୟକ୍ଷଭଳି ଦର୍ଶନ କରନ୍ତି। ଅତଏବ ସେପରି ଭକ୍ତଙ୍କ ପକ୍ଷରେ ତ ନିରନ୍ତର ଭଗବତ୍ସ୍ମରଣ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ କର୍ମ କରିପାରିବା ଅତ୍ୟନ୍ତ ସହଜ। ପୁଣି ଯାହାଙ୍କର ବିଷୟଭୋଗରେ ବୈରାଗ୍ୟ ଜାତ ହୋଇ ଭଗବାନଙ୍କ ଠାରେ ପ୍ରଗାଢ଼ ପ୍ରେମ ହୋଇଗଲାଣି, ଯେ ନିଷ୍କାମଭାବରେ କେବଳ ଭଗବାନଙ୍କର ଆଜ୍ଞା ବୋଲି ଜାଣି ଭଗବାନଙ୍କ ନିମନ୍ତେ ହିଁ ବର୍ଣ୍ଣଧର୍ମ ଅନୁସାରେ ସକଳ କର୍ମ କରନ୍ତି, ସେ ମଧ୍ୟ ନିରନ୍ତର ଭଗବାନଙ୍କୁ ସ୍ମରଣ କରିବା ସହିତ ଅନ୍ୟାନ୍ୟ କର୍ମ କରିପାରିବେ। ଯେପରି ନିଜ ପାଦରେ ଧ୍ୟାନ ରଖି ବାଉଁଶରାଣୀ ବାଉଁଶ ଉପରେ ଚଢ଼ି ଅନେକ ପ୍ରକାର ଖେଳ ଦେଖାଏ, ଅଥବା ଯେପରି ହ୍ୟାଣ୍ଡଲ୍ ଉପରେ ପୂରା ଧ୍ୟାନ ରଖି ମୋଟରଚାଳକ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରୁଥାଏ ଏବଂ ବିପତ୍ତିରୁ ରକ୍ଷା ପାଇବାପାଇଁ ରାସ୍ତା ଉପରେ ମଧ୍ୟ ଦୃଷ୍ଟି ରଖିଥାଏ, ସେହିପରି ନିରନ୍ତର ଭଗବାନଙ୍କୁ ସ୍ମରଣ କରି କରି ବର୍ଣ୍ଣାଶ୍ରମର ସମସ୍ତ କର୍ମ ସୁଚାରୁରୂପେ କରିହେବ।

**ପ୍ରଶ୍ନ –** ମନ, ବୁଦ୍ଧିକୁ ଭଗବାନଙ୍କ ଠାରେ ସମର୍ପଣ କରିଦେବା କହିଲେ, କଣ ବୁଝାଏ ?

**ଉତ୍ତର –** ବୁଦ୍ଧିଦ୍ୱାରା ଭଗବାନଙ୍କ ଗୁଣ, ପ୍ରଭାବ, ସ୍ୱରୂପ, ରହସ୍ୟ ଓ ତତ୍ତ୍ୱ ବୁଝି ପରମଶ୍ରଦ୍ଧାର ସହିତ ଅଟଳ ନିଶ୍ଚୟ କରିନେବା ଓ ମନରେ ଅନନ୍ୟ ଶ୍ରଦ୍ଧା-ପ୍ରେମପୂର୍ବକ ଗୁଣ, ପ୍ରଭାବ ସହିତ ଭଗବାନଙ୍କୁ ନିରନ୍ତର ଚିନ୍ତନ କରିବା ହିଁ ମନ-ବୁଦ୍ଧିକୁ ଭଗବାନଙ୍କ ଠାରେ ସମର୍ପିତ କରିଦେବା। ଷଷ୍ଠ ଅଧ୍ୟାୟର ଶେଷ ଶ୍ଳୋକରେ ମଧ୍ୟ **ମଦ୍ଗତେନାନ୍ତରାତ୍ମନା** ପଦଦ୍ୱାରା ଏହି କଥା କୁହାଯାଇଛି।

*ସମ୍ବନ୍ଧ –* ପଞ୍ଚମ ଶ୍ଳୋକରେ ଭଗବାନଙ୍କୁ ଚିନ୍ତନ କରି କରି ମରୁଥିବା ମନୁଷ୍ୟମାନଙ୍କ ଗତି ବର୍ଣ୍ଣନା କରି ଭଗବାନ୍ ଅର୍ଜୁନଙ୍କ ସପ୍ତମ ପ୍ରଶ୍ନର ଉତ୍ତର ସଂକ୍ଷେପରେ ଦେଇଥିଲେ। ବର୍ତ୍ତମାନ ସେହି ପ୍ରଶ୍ନର ବିସ୍ତୃତ ଉତ୍ତର ଦେବାପାଇଁ ଅଭ୍ୟାସଯୋଗଦ୍ୱାରା ମନକୁ ବଶ କରି ଭଗବାନଙ୍କର 'ଅଧିଯଜ୍ଞ' ରୂପକୁ ଅର୍ଥାତ୍ ସଗୁଣ-ନିରାକାର-ଦିବ୍ୟ-ଅବ୍ୟକ୍ତ ରୂପକୁ ଚିନ୍ତନ କରୁଥିବା ଯୋଗୀମାନଙ୍କର ଅନ୍ତକାଳୀନ ଗତି ପରବର୍ତ୍ତୀ ତିନୋଟି ଶ୍ଳୋକରେ ବର୍ଣ୍ଣନା କରୁଛନ୍ତି–

**ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା।**
**ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ ॥ ୮ ॥**

**ଅନ୍ୱୟ –** ପାର୍ଥ = ହେ ପାର୍ଥ; **ଅଭ୍ୟାସଯୋଗଯୁକ୍ତେନ** = ପରମେଶ୍ୱରଙ୍କ ଧ୍ୟାନର ଅଭ୍ୟାସରୂପକ ଯୋଗରେ ଯୁକ୍ତ; ନାନ୍ୟଗାମିନା = ଅନ୍ୟ ଆଡ଼େ ଯାଉ ନ ଥିବା; **ଚେତସା** = ଚିତ୍ତଦ୍ୱାରା; **ଅନୁଚିନ୍ତୟନ୍** = ନିରନ୍ତର ଚିନ୍ତନ କରୁଥିବା (ମନୁଷ୍ୟ); **ପରମମ୍** = ପରମ (ପ୍ରକାଶରୂପ); **ଦିବ୍ୟମ୍** = ଦିବ୍ୟ; **ପୁରୁଷମ୍** = ପୁରୁଷଙ୍କୁ ଅର୍ଥାତ୍ ପରମେଶ୍ୱରଙ୍କୁ (ହିଁ); ଯାତି = ପ୍ରାପ୍ତ ହୁଏ।

**ହେ ପାର୍ଥ ! ପରମେଶ୍ୱରଙ୍କ ଧ୍ୟାନର ଅଭ୍ୟାସରୂପକ ଯୋଗରେ ଯୁକ୍ତ ହୋଇ ଅନ୍ୟ ଆଡ଼େ ଯାଉ ନ ଥିବା ଚିତ୍ତଦ୍ୱାରା ନିରନ୍ତର ଚିନ୍ତନ କରୁଥିବା ମନୁଷ୍ୟ ପରମପ୍ରକାଶରୂପ ଦିବ୍ୟ ପୁରୁଷଙ୍କୁ ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ପ୍ରାପ୍ତ ହୁଅନ୍ତି। ॥ ୮ ॥**

**ପ୍ରଶ୍ନ** – ଏଠାରେ **ଅଭ୍ୟାସଯୋଗ** ଶବ୍ଦ କାହାର ବାଚକ ଓ ଚିତ୍ତ ସେହି ଅଭ୍ୟାସଯୋଗରେ ଯୁକ୍ତ ହେବା ଅର୍ଥ କଣ ?

**ଉତ୍ତର** – ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଓ ଧ୍ୟାନ ଅଭ୍ୟାସ କରିବାର ନାମ **ଅଭ୍ୟାସଯୋଗ**। ଏପରି ଅଭ୍ୟାସଯୋଗଦ୍ୱାରା ଯାହାଙ୍କର ଚିତ୍ତ ଭଲରୂପେ ବଶୀଭୂତ ହୋଇ ନିରନ୍ତର ଅଭ୍ୟାସରେ ହିଁ ଲାଗିରହେ, ତାହାକୁ **ଅଭ୍ୟାସଯୋଗଯୁକ୍ତ** କହନ୍ତି।

**ପ୍ରଶ୍ନ** – କିପରି ଚିତ୍ତକୁ **ନାନ୍ୟଗାମୀ** ଚିତ୍ତ ବୋଲି ବୁଝିବା ?

**ଉତ୍ତର** – ଯେଉଁ ଚିତ୍ତକୁ କୌଣସି ନିର୍ଦ୍ଦିଷ୍ଟ ପଦାର୍ଥର ଚିନ୍ତାରେ ଲଗାଇଦେବା ପରେ ତାହା କ୍ଷଣକପାଇଁ ମଧ୍ୟ ସେହି ନିର୍ଦ୍ଦିଷ୍ଟ ଚିନ୍ତନକୁ ଛାଡ଼ି ଅନ୍ୟ ପଦାର୍ଥ ଚିନ୍ତନ କରେ ନାହିଁ, ଯେଉଁଥିରେ ଲାଗିଛି, ସେଥିରେ ହିଁ ଏକନିଷ୍ଠ ହୋଇ ଲାଗିରହେ, ସେହି ଚିତ୍ତକୁ **ନାନ୍ୟଗାମୀ** ଅର୍ଥାତ୍ ଅନ୍ୟ ଆଡ଼େ ଯାଉ ନ ଥିବା ଚିତ୍ତ ବୋଲି କହନ୍ତି। ଏଠାରେ ପରମେଶ୍ୱରଙ୍କ ବିଷୟ ପଡ଼ିଥିବାରୁ ସେହି ଚିତ୍ତ କେବଳ ପରମେଶ୍ୱରଙ୍କ ଠାରେ ହିଁ ଲାଗିରହେ ବୋଲି ବୁଝିବା ଉଚିତ।

**ପ୍ରଶ୍ନ** – **ଅନୁଚିନ୍ତନ** କାହାକୁ କହନ୍ତି ?

**ଉତ୍ତର** – ଅଭ୍ୟାସରେ ଲାଗିଥିବା ଓ ଅନ୍ୟ ଆଡ଼େ ଯାଉ ନ ଥିବା ଚିତ୍ତଦ୍ୱାରା ପରମେଶ୍ୱରଙ୍କ ନିରାକାର ସ୍ୱରୂପକୁ ନିରନ୍ତର ଧ୍ୟାନ କରିବାକୁ **ଅନୁଚିନ୍ତନ** କହନ୍ତି।

**ପ୍ରଶ୍ନ** – ଏଠାରେ **ପରମମ୍** ଓ **ଦିବ୍ୟମ୍** ଏହି ବିଶେଷଣ ସହିତ **ପୁରୁଷମ୍** ପଦ ପ୍ରୟୋଗ କାହିଁକି କରାଗଲା ଓ 'ତାହା ପ୍ରାପ୍ତ ହେବା' କଣ ?

**ଉତ୍ତର** – ଏହି ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ଯାହାଙ୍କୁ 'ଅଧିଯଜ୍ଞ' କୁହାହୋଇଛି ଓ ବାଇଶ ଶ୍ଳୋକରେ ଯାହାଙ୍କୁ 'ପରମ ପୁରୁଷ' କୁହାଯାଇଛି, ଭଗବାନଙ୍କର ସେହି ସୃଷ୍ଟି, ସ୍ଥିତି ଓ ସଂହାର କରୁଥିବା ସଗୁଣ ନିରାକାର ସର୍ବବ୍ୟାପୀ ଅବ୍ୟକ୍ତ ଜ୍ଞାନସ୍ୱରୂପକୁ ଏଠାରେ **ଦିବ୍ୟ ପରମ ପୁରୁଷ** ବୋଲି କୁହାଯାଇଛି। ତାଙ୍କର ଚିନ୍ତନ କରି କରି, ତାଙ୍କୁ ଯଥାର୍ଥରୂପେ ଜାଣି ତାଙ୍କ ସହିତ ତଦ୍ରୂପ ହୋଇଯିବା ହିଁ ତାଙ୍କୁ ପ୍ରାପ୍ତ ହେବା।

**ସମ୍ବନ୍ଧ** – ଦିବ୍ୟପୁରୁଷଙ୍କ ପ୍ରାପ୍ତି ବିଷୟ ବୁଝାଇବାପାଇଁ ବର୍ତ୍ତମାନ ତାଙ୍କର ସ୍ୱରୂପ କହୁଛନ୍ତି––

**କବିଂ ପୁରାଣମନୁଶାସିତାର -**
**ମଣୋରଣୀୟାଂସମନୁସ୍ମରେଦ୍ ଯଃ ।**
**ସର୍ବସ୍ୟ ଧାତାରମଚିନ୍ତ୍ୟରୂପ -**
**ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ॥ ୯ ॥**

**ଅନ୍ୱୟ** – **ଯଃ** = ଯେଉଁ ପୁରୁଷ; **କବିମ୍** = ସର୍ବଜ୍ଞ; **ପୁରାଣମ୍** = ଅନାଦି; **ଅନୁଶାସିତାରମ୍** = ସର୍ବନିୟନ୍ତା; **ଅଣୋଃ, ଅଣୀୟାଂସମ୍** = ସୂକ୍ଷ୍ମାତିସୂକ୍ଷ୍ମ; **ସର୍ବସ୍ୟ** = ସମସ୍ତଙ୍କର; **ଧାତାରମ୍** = ଧାରଣ-ପୋଷଣକାରୀ; **ଅଚିନ୍ତ୍ୟରୂପମ୍** = ଅଚିନ୍ତ୍ୟସ୍ୱରୂପ; **ଆଦିତ୍ୟବର୍ଣ୍ଣମ୍** = ସୂର୍ଯ୍ୟସଦୃଶ ନିତ୍ୟଚେତନ ପ୍ରକାଶରୂପ; **ତମସଃ** = (ଓ) ଅବିଦ୍ୟାରୁ; **ପରସ୍ତାତ୍** = ସମ୍ପୂର୍ଣ୍ଣ ଅତୀତ ଶୁଦ୍ଧ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କୁ; **ଅନୁସ୍ମରେତ୍** = ସ୍ମରଣ କରେ।

**ଯେଉଁ ପୁରୁଷ ସର୍ବଜ୍ଞ, ଅନାଦି, ସର୍ବନିୟନ୍ତା, ସୂକ୍ଷ୍ମାତିସୂକ୍ଷ୍ମ, ସମସ୍ତଙ୍କର ଧାରଣ-ପୋଷଣକାରୀ, ଅଚିନ୍ତ୍ୟସ୍ୱରୂପ, ସୂର୍ଯ୍ୟସଦୃଶ ନିତ୍ୟ, ଚେତନ, ପ୍ରକାଶରୂପ ଓ ଅବିଦ୍ୟାରୁ ସମ୍ପୂର୍ଣ୍ଣ ଅତୀତ, ଶୁଦ୍ଧ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କୁ ସ୍ମରଣ କରନ୍ତି, ---॥ ୯ ॥**

**ପ୍ରଶ୍ନ** – ଏହି ଶ୍ଳୋକର ଭାବ କଣ ?

**ଉତ୍ତର** – ପରମ ଦିବ୍ୟ ପୁରୁଷଙ୍କ ସ୍ୱରୂପର ମହତ୍ତ୍ୱ ପ୍ରତିପାଦନ କରି ଶ୍ରୀଭଗବାନ୍ କହୁଛନ୍ତି ଯେ, ସେହି ପରମାତ୍ମା ସଦା ସବୁକିଛି ଜାଣନ୍ତି; ଭୂତ, ବର୍ତ୍ତମାନ ଓ ଭବିଷ୍ୟତର ସ୍ଥୂଳ, ସୂକ୍ଷ୍ମ ଓ କାରଣ– କୌଣସି ବି ଜଗତର ଏପରି କୌଣସି ବି ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ବିଷୟ ନାହିଁ, ଯାହାକୁ ସେ ଯଥାର୍ଥରୂପରେ ଜାଣନ୍ତି ନାହିଁ। ତେଣୁ ସେ ସର୍ବଜ୍ଞ (କବିମ୍)। ସେ ସମସ୍ତଙ୍କର

ଆଦି। ତାଙ୍କ ପୂର୍ବରୁ କେହି ନ ଥିଲେ, କି ହୋଇ ନାହାନ୍ତି ଓ ତାଙ୍କର କିଛି କାରଣ ମଧ୍ୟ ନାହିଁ। ସେ ସମସ୍ତଙ୍କର କାରଣ ଓ ସମସ୍ତଙ୍କ ଠାରୁ ପୁରାତନ। ଅତଏବ ସେ ସନାତନ **(ପୁରାଣମ୍)**। ସେ ସମସ୍ତଙ୍କର ସ୍ୱାମୀ, ସର୍ବଶକ୍ତିମାନ୍ ଓ ସର୍ବାନ୍ତର୍ଯାମୀ, ସର୍ବନିୟନ୍ତା ଓ ସେ ହିଁ ସମସ୍ତଙ୍କର ଶୁଭାଶୁଭ କର୍ମଫଳକୁ ଯଥାଯୋଗ୍ୟ ବିଭାଗ କରନ୍ତି। ତେଣୁ ସେ ସମସ୍ତଙ୍କର ନିୟନ୍ତା **(ଅନୁଶାସିତାରମ୍)**। ଏତେ ବଡ଼ ଶକ୍ତିମାନ୍ ହେଲେ ବି ସେ ଅତ୍ୟନ୍ତ ସୂକ୍ଷ୍ମ– ଯେତେସବୁ ସୂକ୍ଷ୍ମାତିସୂକ୍ଷ୍ମ ତତ୍ତ୍ୱ ରହିଛି, ସେ ସେସବୁଠାରୁ ମଧ୍ୟ ଆହୁରି ସୂକ୍ଷ୍ମ ଓ ସେ ସମସ୍ତଙ୍କ ଠାରେ ସଦା ବ୍ୟାପ୍ତ। ତେଣୁ ସୂକ୍ଷ୍ମଦର୍ଶୀ ପୁରୁଷଙ୍କର ସୂକ୍ଷ୍ମାତିସୂକ୍ଷ୍ମ ବୁଦ୍ଧି ହିଁ ତାଙ୍କୁ ଅନୁଭବ କରିପାରେ। ତେଣୁ ସେ ସୂକ୍ଷ୍ମତମ **(ଅଣୋରଣୀୟାଂସମ୍)**। ଏତେ ସୂକ୍ଷ୍ମ ହେଲେ ମଧ୍ୟ କେବଳ ସେ ହିଁ ସମସ୍ତ ବିଶ୍ୱ-ବ୍ରହ୍ମାଣ୍ଡର ଆଧାର ଅଟନ୍ତି। ସେ ହିଁ ସମସ୍ତଙ୍କୁ ଧାରଣ, ପୋଷଣ ଓ ପାଳନ କରନ୍ତି। ତେଣୁ ସେ ଧାତା **(ସର୍ବସ୍ୟ ଧାତାରମ୍)**। ସଦା ସବୁଥିରେ ବ୍ୟାପ୍ତ ଓ ସମସ୍ତଙ୍କର ଧାରଣପୋଷଣରେ ଲାଗିରହିଥିଲେ ମଧ୍ୟ ସେ ସମସ୍ତଙ୍କ ଠାରୁ ଏତେ ଶ୍ରେଷ୍ଠ ଓ ଏତେ ଅତୀନ୍ଦ୍ରିୟ ଯେ, ମନଦ୍ୱାରା ତାଙ୍କ ଯଥାର୍ଥ ସ୍ୱରୂପର ଚିନ୍ତନ ହିଁ କରାଯାଇପାରିବ ନାହିଁ; ମନ ଓ ବୁଦ୍ଧିରେ ଯେଉଁ ଚିନ୍ତନ ଓ ବିଚାର କରିବା ଶକ୍ତି ଆସେ, ସେ ହିଁ ତା'ର ମୂଳସ୍ରୋତ ଅଟନ୍ତି। ଜୀବଗଣ ତାଙ୍କରି ଜୀବନଧାରାକୁ ନେଇ ଜୀବିତ ଓ କାର୍ଯ୍ୟଶୀଳ ରହନ୍ତି। ସେ ନିରନ୍ତର ସମସ୍ତଙ୍କୁ ଦେଖନ୍ତି ତଥା ସମସ୍ତଙ୍କ ଠାରେ ଶକ୍ତିସଞ୍ଚାର କରିଚାଲନ୍ତି, କିନ୍ତୁ ଜୀବମାନେ ତାଙ୍କୁ ଦେଖିପାରନ୍ତି ନାହିଁ। ତେଣୁ ସେ ଅଚିନ୍ତ୍ୟସ୍ୱରୂପ **(ଅଚିନ୍ତ୍ୟରୂପମ୍)**। ଅଚିନ୍ତ୍ୟ ହେଲେ ମଧ୍ୟ ସେ ପ୍ରକାଶମୟ ଓ ସଦାସର୍ବଦା ସମସ୍ତଙ୍କୁ ଆଲୋକ ପ୍ରଦାନ କରନ୍ତି। ସୂର୍ଯ୍ୟ ଯେପରି ସ୍ୱୟଂପ୍ରକାଶସ୍ୱରୂପ ଓ ନିଜର ଆଲୋକରେ ସମସ୍ତ ଜଗତକୁ ଆଲୋକିତ କରନ୍ତି, ସେହି ସ୍ୱୟଂପ୍ରକାଶ ପରମପୁରୁଷ ସେହିପରି ନିଜର ଅଖଣ୍ଡ ଜ୍ଞାନମୟୀ ଦିବ୍ୟଜ୍ୟୋତିଦ୍ୱାରା ସଦାସର୍ବଦା ସମସ୍ତଙ୍କୁ ଆଲୋକିତ କରନ୍ତି। ତେଣୁ ସେ ସୂର୍ଯ୍ୟସଦୃଶ ନିତ୍ୟ, ଚେତନ, ପ୍ରକାଶରୂପ **(ଆଦିତ୍ୟବର୍ଣ୍ଣମ୍)** ଅଟନ୍ତି। ଏବଂ ଏପରି ଦିବ୍ୟ, ନିତ୍ୟ ଓ ଅନନ୍ତ ଜ୍ଞାନମୟ ପ୍ରକାଶ ହିଁ ଯାହାଙ୍କର ସ୍ୱରୂପ, ତାଙ୍କ ଠାରେ ଅବିଦ୍ୟା ବା ଅଜ୍ଞାନରୂପକ ଅନ୍ଧକାରର କଳ୍ପନା ହିଁ କରାଯାଇ ନ ପାରେ। ସୂର୍ଯ୍ୟ ଯେପରି କେବେ ଅନ୍ଧକାର ଦେଖି ହିଁ ନାହାନ୍ତି, ତାଙ୍କର ସ୍ୱରୂପ ମଧ୍ୟ ସେପରି ସଦାସର୍ବଦା ଅଜ୍ଞାନ-ଅନ୍ଧକାରରୁ ସଂପୂର୍ଣ୍ଣ ରହିତ। ବରଂ ଘୋର ରାତ୍ରିର ଘନ ଅନ୍ଧକାରକୁ ମଧ୍ୟ ସୂର୍ଯ୍ୟଙ୍କର ପୂର୍ବାଭାସ ଯେପରି ନଷ୍ଟ କରିଦିଏ, ଘୋର ବିଷୟୀ ପୁରୁଷର ଅଜ୍ଞାନ ମଧ୍ୟ ସେହିପରି ତାଙ୍କର ବିଜ୍ଞାନମୟ ଆଲୋକର ଉଜ୍ଜ୍ୱଳ କିରଣ ପାଇ ନଷ୍ଟ ହୋଇଯାଏ। ତେଣୁ ସେ ଅବିଦ୍ୟାରୁ ସମ୍ପୂର୍ଣ୍ଣ ଅତୀତ **(ତମସଃ ପରସ୍ତାତ୍)**, ଅତ୍ୟନ୍ତ ଦୂରରେ। ଏପରି ଶୁଦ୍ଧ ସଚ୍ଚିଦାନନ୍ଦଘନ ପରମେଶ୍ୱର ପୁରୁଷଙ୍କୁ ସଦା ସ୍ମରଣ କରିବା ଉଚିତ। ★

**ପ୍ରଶ୍ନ –** ଯେଉଁଠି ଭଗବାନଙ୍କର ଉପରୋକ୍ତ ସ୍ୱରୂପ ଅଚିନ୍ତ୍ୟ ଅର୍ଥାତ୍ ମନ-ବୁଦ୍ଧିଦ୍ୱାରା ଚିନ୍ତନ ହିଁ କରାଯାଇ ପାରେ ନା, ସେଠି ତାଙ୍କୁ ସ୍ମରଣ କରିବା କଥା କିପରି କୁହାଗଲା ?

**ଉତ୍ତର –** ଏକଥା ସତ ଯେ, ଅଚିନ୍ତ୍ୟରୂପର ଯଥାର୍ଥ ଉପଲବ୍ଧି ମନ-ବୁଦ୍ଧିଦ୍ୱାରା ହୋଇପାରେ ନା; କିନ୍ତୁ ତାଙ୍କର ଯେଉଁ ଲକ୍ଷଣମାନ ଏଠାରେ କୁହାଗଲା, ତାଙ୍କୁ ସେସବୁ ଲକ୍ଷଣରେ ଯୁକ୍ତ ବୋଲି ବୁଝି, ତାଙ୍କର ବାରମ୍ବାର ସ୍ମରଣ ଓ ମନନ ତ ନିଶ୍ଚୟ ହୋଇ ପାରିବ ଏବଂ ସେପରି ସ୍ମରଣ-ମନନ ହିଁ ସ୍ୱରୂପର ଯଥାର୍ଥ ଉପଲବ୍ଧିରେ ହେତୁ ହୋଇଥାଏ। ଅତଏବ ତାଙ୍କୁ ସ୍ମରଣ କରିବା କଥା କୁହାଗଲା ଏବଂ ଏପରି କହିବା ମଧ୍ୟ ଉଚିତ।

**ସମ୍ବନ୍ଧ –** ପରମ ଦିବ୍ୟ ପୁରୁଷଙ୍କ ସ୍ୱରୂପ କହି, ଭଗବାନ୍ ବର୍ତ୍ତମାନ ସାଧନାର ବିଧି ଓ ତା'ର ଫଳ କହୁଛନ୍ତି–

---

★ ଶ୍ୱେତାଶ୍ୱତରୋପନିଷଦରେ ଏହା ସହିତ ମିଶିଯାଉଥିବା ମନ୍ତ୍ରଟି ହେଉଛି –

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍।
ତମେବ ବିଦିତ୍ୱାଽତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ।। (୩/୮)

ଅର୍ଥାତ୍ "ସେ ସୂର୍ଯ୍ୟଙ୍କ ସଦୃଶ ପ୍ରକାଶସ୍ୱରୂପ, ମହାନ୍ ଓ ଅଜ୍ଞାନାନ୍ଧକାରଠାରୁ ସମ୍ପୂର୍ଣ୍ଣ ଅତୀତ, ସେହି ପରମପୁରୁଷଙ୍କୁ ମୁଁ ଜାଣେ। ତାଙ୍କୁ ହିଁ ଜାଣି ଅଧିକାରୀ ପୁରୁଷ ମୃତ୍ୟୁକୁ ଲଙ୍ଘନ କରିଯାନ୍ତି। ପରମାତ୍ମାଙ୍କ ପ୍ରାପ୍ତିପାଇଁ ଅନ୍ୟ ମାର୍ଗ ନାହିଁ।"

**ପ୍ରୟାଣକାଳେ ମନସାଚଳେନ**
**ଭକ୍ତ୍ୟା ଯୁକ୍ତୋ ଯୋଗବଳେନ ଚୈବ।**
**ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍**
**ସ ତଂ ପରଂ ପୁରୁଷମୁପୈତି ଦିବ୍ୟମ୍॥ ୧୦ ॥**

**ଅନ୍ୱୟ –** **ସଃ** = ସେହି; **ଭକ୍ତ୍ୟା, ଯୁକ୍ତଃ** = ଭକ୍ତିଯୁକ୍ତ ପୁରୁଷ; **ପ୍ରୟାଣକାଳେ** = ମରଣକାଳରେ (ବି); **ଯୋଗବଳେନ** = ଯୋଗବଳରେ; **ଭ୍ରୁବୋଃ** = ଦୁଇ ଭ୍ରୂଲତାର; **ମଧ୍ୟେ** = ମଧ୍ୟବର୍ତ୍ତୀ ସ୍ଥାନରେ; **ପ୍ରାଣମ୍** = ପ୍ରାଣକୁ; **ସମ୍ୟକ୍** = ଭଲରୂପେ; **ଆବେଶ୍ୟ** = ସ୍ଥାପିତ କରି; **ଚ** = ଓ; **ଅଚଳେନ** = ନିଶ୍ଚଳ; **ମନସା** = ମନଦ୍ୱାରା; **(ସ୍ମରନ୍)** = ସ୍ମରଣ କରି କରି; **ତମ୍** = ସେହି; **ଦିବ୍ୟମ୍** = ଦିବ୍ୟରୂପ; **ପରମ୍** = ପରମ; **ପୁରୁଷମ୍** = ପୁରୁଷ ପରମାତ୍ମାଙ୍କୁ; **ଏବ** = ହିଁ; **ଉପୈତି** = ପ୍ରାପ୍ତ ହୁଏ।

**ସେହି ଭକ୍ତିଯୁକ୍ତ ପୁରୁଷ ଅନ୍ତକାଳରେ ମଧ୍ୟ ଯୋଗବଳରେ ଦୁଇ ଭ୍ରୂଲତାର ମଧ୍ୟବର୍ତ୍ତୀ ସ୍ଥାନରେ ପ୍ରାଣକୁ ଭଲରୂପେ ସ୍ଥାପନ କରି ଏବଂ ନିଶ୍ଚଳ ମନଦ୍ୱାରା ସ୍ମରଣ କରି କରି ସେହି ଦିବ୍ୟରୂପ ପରମ ପୁରୁଷ ପରମାତ୍ମାଙ୍କୁ ହିଁ ପ୍ରାପ୍ତ ହୁଅନ୍ତି॥ ୧୦ ॥**

**ପ୍ରଶ୍ନ –** ଏଠାରେ **ଭକ୍ତ୍ୟା ଯୁକ୍ତଃ**ର ଅଭିପ୍ରାୟ କଣ ?

**ଉତ୍ତର – ଭକ୍ତ୍ୟା ଯୁକ୍ତଃ**ର ଅର୍ଥ ଭକ୍ତିରେ ଯୁକ୍ତ। ଭଗବଦ୍‌ବିଷୟକ ଅନୁରାଗର ନାମ ଭକ୍ତି। ଯାହାଙ୍କ ଠାରେ ଭକ୍ତି ହୁଏ, ସେ ଭକ୍ତିରେ ଯୁକ୍ତ ହୁଅନ୍ତି। ଅନୁରାଗ ବା ପ୍ରେମ କୌଣସି ନା କୌଣସି ପ୍ରେମାସ୍ପଦଙ୍କ ଠାରେ ହୁଏ। ଏଥିରୁ ବୁଝିବା ଉଚିତ ଯେ, ଏଠାରେ ନିର୍ଗୁଣ-ନିରାକାର ବ୍ରହ୍ମଙ୍କ ଅହଂଗ୍ରହ ଉପାସନା ଅର୍ଥାତ୍ ଜ୍ଞାନଯୋଗପ୍ରସଙ୍ଗ ନାହିଁ; ଉପାସ୍ୟ-ଉପାସକଭାବରେ କରାଯାଉଥିବା ଭକ୍ତିପ୍ରସଙ୍ଗ ଚାଲିଛି।

**ପ୍ରଶ୍ନ – ଯୋଗବଳ** କଣ ? ଦୁଇ ଭ୍ରୂଲତାର ମଧ୍ୟସ୍ଥାନ କେଉଁଠି ? ଏବଂ ସେଠାରେ 'ପ୍ରାଣକୁ ଭଲରୂପେ ସ୍ଥାପନ କରିବା' କହିଲେ କଣ ବୁଝାଏ ତଥା ତାହା କିପରି କରାଯାଏ ?

**ଉତ୍ତର –** ଅଷ୍ଟମ ଶ୍ଳୋକରେ କୁହାଯାଇଥିବା ଅଭ୍ୟାସଯୋଗ (ଅଷ୍ଟାଙ୍ଗଯୋଗ) ହିଁ ଯୋଗ। ଯୋଗାଭ୍ୟାସରୁ ଉତ୍ପନ୍ନ ଯଥାଯୋଗ୍ୟ ପ୍ରାଣସଞ୍ଚାଳନ ଓ ପ୍ରାଣନିରୋଧର ସାମର୍ଥ୍ୟକୁ **ଯୋଗବଳ** କୁହାଯାଏ। ଦୁଇ ଭ୍ରୂଲତାର ମଝିରେ, ଯେଉଁଠି ଆଜ୍ଞାଚକ୍ର ଅଛି ବୋଲି ଯୋଗଶାସ୍ତ୍ରଜ୍ଞମାନେ କହନ୍ତି, ତାହା ହିଁ ଦୁଇ ଭ୍ରୂଲତାର ମଧ୍ୟସ୍ଥାନ। କୁହାଯାଏ ଯେ, ଏହି ଆଜ୍ଞାଚକ୍ର ଦ୍ୱିଦଳ। ଏଥିରେ ତ୍ରିକୋଣ ଯୋନି ଅବସ୍ଥିତ। ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ର ଏହି ତ୍ରିକୋଣରେ ଏକତ୍ର ହୁଅନ୍ତି। ଏହା ଜାଣିଥିବା ଯୋଗୀପୁରୁଷ ମହାପ୍ରୟାଣ-କାଳରେ ଯୋଗବଳରେ ପ୍ରାଣକୁ ଆଣି ଏଠାରେ ସ୍ଥିରଭାବରେ ନିରୁଦ୍ଧ କରିଦିଅନ୍ତି। ଏହା ହିଁ 'ଭଲରୂପେ ପ୍ରାଣକୁ ସ୍ଥାପନ କରିବା'। ଏପରିଭାବରେ ଆଜ୍ଞାଚକ୍ରରେ ପ୍ରାଣକୁ ନିରୋଧ କରିବା ସାଧନାସାପେକ୍ଷ। ଏହି ଆଜ୍ଞାଚକ୍ର ନିକଟରେ ସପ୍ତକୋଷ, ଯଥା – ଇନ୍ଦୁ, ବୋଧିନୀ, ନାଦ, ଅର୍ଦ୍ଧଚନ୍ଦ୍ରିକା, ମହାନାଦ, (ସୋମସୂର୍ଯ୍ୟାଗ୍ନିରୂପିଣୀ) କଳା ଓ ଉନ୍ମନୀ ରହିଛି। ପ୍ରାଣମାନଙ୍କ ଦେହ ଉନ୍ମନୀ କୋଷରେ ପହଞ୍ଚିଗଲେ, ଜୀବ ପରମପୁରୁଷଙ୍କୁ ପ୍ରାପ୍ତ ହୋଇଯାଏ। ତା'ପରେ ତାହାର ପରାଧୀନ ହୋଇ ଜନ୍ମ ହେବା ବନ୍ଦ ହୋଇଯାଏ। ତା'ର ଆଉ ପୁନର୍ଜନ୍ମ ହୁଏ ନାହିଁ; ଯଦି ସେ ଜନ୍ମ ନିଏ, ତେବେ ଲୋକକଲ୍ୟାଣନିମନ୍ତେ ହୁଏତ ସ୍ୱେଚ୍ଛାରେ ବା ଭଗବଦ୍‌ଇଚ୍ଛାରେ ହୁଏ।

ଏହି ସାଧନାପ୍ରଣାଳୀ କୌଣସି ଅନୁଭବୀ ଯୋଗୀ ମହାତ୍ମାଙ୍କ ଠାରୁ ହିଁ ଶିକ୍ଷା କରାଯାଇପାରେ। କେବଳ ପୁସ୍ତକ ପଢ଼ି କେହି ଯୋଗସାଧନା କରିବା ଉଚିତ ନୁହେଁ। ସେପରି କଲେ, ଲାଭ ଅପେକ୍ଷା କ୍ଷତିର ସମ୍ଭାବନା ଅଧିକ।

**ପ୍ରଶ୍ନ –** 'ନିଶ୍ଚଳ ମନ'ର ଲକ୍ଷଣ କଣ ?

**ଉତ୍ତର –** ଅଷ୍ଟମ ଶ୍ଳୋକରେ ଯେଉଁ ଅର୍ଥରେ ମନକୁ 'ନାନ୍ୟଗାମୀ' କୁହାଯାଇଛି, ଏଠାରେ ସେହି ଅର୍ଥରେ ନିଶ୍ଚଳ ବୋଲି କୁହାଯାଇଛି। ଏହାର ଭାବ ହେଲା, ଯେଉଁ ମନ ଧ୍ୟେୟ ବସ୍ତୁରେ ସ୍ଥିତ ହୋଇ ସେଠାରୁ ଟିକିଏ ବି ଘୁଞ୍ଚେ ନାହିଁ, ତାହାକୁ ନିଶ୍ଚଳ ମନ କହନ୍ତି (୬/୧୯)।

**ପ୍ରଶ୍ନ –** 'ପରମ ଦିବ୍ୟ ପୁରୁଷ'ଙ୍କ ଲକ୍ଷଣ କଣ ?

**ଉତ୍ତର –** ପରମ ଦିବ୍ୟ ପୁରୁଷଙ୍କ ଲକ୍ଷଣର ବର୍ଣ୍ଣନା ଅଷ୍ଟମ ଓ ନବମ ଶ୍ଳୋକରେ ଦେଖନ୍ତୁ।

**ସମ୍ବନ୍ଧ—** ପଞ୍ଚମ ଶ୍ଳୋକରେ ଭଗବାନଙ୍କୁ ଚିନ୍ତନ କରି କରି ମରୁଥିବା ସାଧାରଣ ମନୁଷ୍ୟର ଗତି ସଂକ୍ଷେପରେ ବର୍ଣ୍ଣନା କରାଗଲା । ପୁଣି ଅଷ୍ଟମଠାରୁ ଦଶମ ଶ୍ଳୋକଯାଏ ଭଗବାନଙ୍କର 'ଅଧିଯଜ୍ଞ' ନାମକ ସଗୁଣ ନିରାକାର ଦିବ୍ୟ ଅବ୍ୟକ୍ତ ସ୍ୱରୂପର ଚିନ୍ତନ କରୁଥିବା ଯୋଗୀମାନଙ୍କ ଅନ୍ତକାଳୀନ ଗତି ସମ୍ବନ୍ଧରେ କହିଲେ । ବର୍ତ୍ତମାନ ଏଗାର ଶ୍ଳୋକରୁ ତେରପର୍ଯ୍ୟନ୍ତ ପରମ, ଅକ୍ଷର, ନିର୍ଗୁଣ, ନିରାକାର ପରବ୍ରହ୍ମଙ୍କୁ ଉପାସନା କରୁଥିବା ଯୋଗୀମାନଙ୍କର ଅନ୍ତକାଳୀନ ଗତି ବର୍ଣ୍ଣନା କରିବାନିମନ୍ତେ, ଭଗବାନ୍ ପ୍ରଥମେ ସେହି ଅକ୍ଷର ବ୍ରହ୍ମଙ୍କର ପ୍ରଶଂସା କରି ତାହା କହିବାକୁ ପ୍ରତିଜ୍ଞା କରୁଛନ୍ତି—

**ଯଦକ୍ଷରଂ ବେଦବିଦୋ ବଦନ୍ତି**
**ବିଶନ୍ତି ଯଦ୍‌ଯତୟୋ ବୀତରାଗାଃ ।**
**ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି**
**ତତ୍ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ ॥ ୧୧ ॥**

**ଅନ୍ୱୟ—** **ବେଦବିଦଃ** = ବେଦଜ୍ଞ ବିଦ୍ୱାନ୍‌ମାନେ; **ଯତ୍** = ଯେଉଁ ସଚ୍ଚିଦାନନ୍ଦଘନରୂପକ ପରମପଦକୁ; **ଅକ୍ଷରମ୍** = ଅବିନାଶୀ; **ବଦନ୍ତି** = କହନ୍ତି; **ବୀତରାଗାଃ** = ଆସକ୍ତିଶୂନ୍ୟ; **ଯତୟଃ** = ଯତ୍ନଶୀଳ ସନ୍ନ୍ୟାସୀ ମହାତ୍ମାମାନେ; **ଯତ୍** = ଯାହାଠାରେ; **ବିଶନ୍ତି** = ପ୍ରବେଶ କରନ୍ତି; **ଯତ୍** = ଯେଉଁ ପରମପଦକୁ; **ଇଚ୍ଛନ୍ତଃ** = ଇଚ୍ଛା କରୁଥିବା (ବ୍ରହ୍ମଚାରୀମାନେ); **ବ୍ରହ୍ମଚର୍ଯ୍ୟମ୍** = ବ୍ରହ୍ମଚର୍ଯ୍ୟକୁ; **ଚରନ୍ତି** = ଆଚରଣ କରନ୍ତି; **ତତ୍** = ସେହି; **ପଦମ୍** = ପରମପଦକୁ (ମୁଁ); **ତେ** = ତୁମକୁ; **ସଂଗ୍ରହେଣ** = ସଂକ୍ଷେପରେ; **ପ୍ରବକ୍ଷ୍ୟେ** = କହିବି ।

**ଏବଂ ହେ ଅର୍ଜୁନ! ବେଦଜ୍ଞ ବିଦ୍ୱାନ୍‌ମାନେ ଯେଉଁ ସଚ୍ଚିଦାନନ୍ଦଘନରୂପକ ପରମପଦକୁ ଅବିନାଶୀ ବୋଲି କହନ୍ତି, ଆସକ୍ତିଶୂନ୍ୟ ଯତ୍ନଶୀଳ ସନ୍ନ୍ୟାସୀ ମହାତ୍ମାମାନେ ଯାହାଠାରେ ପ୍ରବେଶ କରନ୍ତି ଏବଂ ଯେଉଁ ପରମପଦ ଚାହୁଁଥିବା ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି, ସେହି ପରମପଦକୁ ମୁଁ ତୁମକୁ ସଂକ୍ଷେପରେ କହିବି ॥ ୧୧ ॥**

**ପ୍ରଶ୍ନ—** **ବେଦବିଦଃ** ପଦର ଅର୍ଥ କଣ ?

**ଉତ୍ତର—** ଯାହାଦ୍ୱାରା ପରମାତ୍ମାଙ୍କ ଜ୍ଞାନ ହୁଏ, ତାହାକୁ ବେଦ କହନ୍ତି; ସେହି ବେଦ ଆଜିକାଲି ଚାରି ସଂହିତାରୂପରେ ଓ ଐତରେୟାଦି ବ୍ରାହ୍ମଣଭାଗରୂପରେ ମିଳୁଛି । ବେଦର ପ୍ରାଣ ଓ ବେଦର ଆଧାର ହେଉଛନ୍ତି ପରବ୍ରହ୍ମ ପରମାତ୍ମା । ସେ ହିଁ ବେଦର ତାତ୍ପର୍ଯ୍ୟ (୧୫/୧୫) । ସେହି ତାତ୍ପର୍ଯ୍ୟକୁ ଯେଉଁମାନେ ଜାଣନ୍ତି ଏବଂ ଜାଣିସାରି ତାହାକୁ ପାଇବାପାଇଁ ଅବିରତ ସାଧନା କରନ୍ତି ତଥା ପରିଶେଷରେ ପାଆନ୍ତି, ସେହି ଜ୍ଞାନୀ ମହାତ୍ମା ପୁରୁଷମାନେ ହିଁ **ବେଦବିତ୍** (ବେଦଜ୍ଞ)—ବେଦର ଯଥାର୍ଥ ଜ୍ଞାତା ।

**ପ୍ରଶ୍ନ—** 'ବେଦଜ୍ଞମାନେ ଯାହାକୁ ଅବିନାଶୀ କହନ୍ତି'—ଏହି ବାକ୍ୟାଂଶର ଭାବ କଣ ?

**ଉତ୍ତର—** **ଯତ୍** ପଦ ସଚ୍ଚିଦାନନ୍ଦଘନ ପରବ୍ରହ୍ମଙ୍କୁ ନିର୍ଦ୍ଦେଶ କରୁଛି । ଏଠାରେ ଦର୍ଶାଇଦିଆଯାଇଛି ଯେ, ବେଦଜ୍ଞ ଜ୍ଞାନୀ ମହାତ୍ମା ପୁରୁଷମାନେ ହିଁ ସେହି ବ୍ରହ୍ମଙ୍କ ବିଷୟରେ କିଛି କହିପାରିବେ; ଏଥିରେ ଅନ୍ୟ ଲୋକଙ୍କର କୌଣସି ଅଧିକାର ନାହିଁ । ସେହି ମହାତ୍ମାମାନେ କହନ୍ତି, ସେ 'ଅକ୍ଷର', ଅର୍ଥାତ୍ ସେ ଏପରି ଏକ ମହାନ୍ ତତ୍ତ୍ୱ ଯେ, ତାହାଙ୍କର କୌଣସି ଅବସ୍ଥାରେ ବି, କେବେ ବି, କୌଣସିପ୍ରକାରେ ବି କ୍ଷୟ ହୁଏ ନାହିଁ । ସେ ସଦା ଅବିନଶ୍ୱର, ଏକରସ ଓ ଏକରୂପ ହୋଇ ରହନ୍ତି ।' ଦ୍ୱାଦଶ ଅଧ୍ୟାୟର ତୃତୀୟ ଶ୍ଳୋକରେ ଯେଉଁ ଅବ୍ୟକ୍ତ ଅକ୍ଷରଙ୍କ ଉପାସନା ବର୍ଣ୍ଣନା କରାଯାଇଛି, ଏଠାରେ ମଧ୍ୟ ତାଙ୍କରି ପ୍ରସଙ୍ଗ ଆସିଛି ।

**ପ୍ରଶ୍ନ—** **ବୀତରାଗାଃ** ବିଶେଷଣ ସହିତ **ଯତୟଃ** ପଦଟି କେଉଁମାନଙ୍କ ବାଚକ ?

**ଉତ୍ତର—** ଯେଉଁମାନଙ୍କ ଠାରେ ସର୍ବଥା ଆସକ୍ତି ଅଭାବ ହୋଇଯାଇଛି, ସେମାନେ **ବୀତରାଗ** । ଯତୟଃ ପଦଟି ହେଉଛି ଏହିପରି ବୀତରାଗ, ତୀବ୍ର ବୈରାଗ୍ୟବାନ୍,

ପରମାତ୍ମପ୍ରାପ୍ତିର ପାତ୍ର, ବ୍ରହ୍ମରେ ସ୍ଥିତ ଏବଂ ଉଚ୍ଚଶ୍ରେଣୀର ସାଧନାରେ ସମ୍ପନ୍ନ ସନ୍ୟାସୀ ମହାତ୍ମାମାନଙ୍କ ବାଚକ ।

**ପ୍ରଶ୍ନ – ଯତ୍ ବିଶନ୍ତିର** ଅଭିପ୍ରାୟ କଣ ?

**ଉତ୍ତର – ଯତ୍ ବିଶନ୍ତିର** ଶବ୍ଦାର୍ଥ ହେଉଛି, 'ଯେଉଁଥିରେ ପ୍ରବେଶ କରନ୍ତି' । ଅଭିପ୍ରାୟ ହେଉଛି, ଏଠାରେ **ଯତ୍** ପଦଟି ସେହି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ଲକ୍ଷ୍ୟ କରି କୁହାଯାଇଛି, ଯାହାଙ୍କ ଠାରେ ଉପରୋକ୍ତ ସାଧନା କରି କରି, ସାଧନାର ଶେଷସୀମାରେ ପହଞ୍ଚି ଯତିମାନେ ଅଭେଦଭାବରେ ପ୍ରବେଶ କରନ୍ତି । ଏଠାରେ ସ୍ମରଣ ରଖିବା ଉଚିତ ଯେ, ଏହି ପ୍ରବେଶର ଅର୍ଥ 'କୌଣସି ବ୍ୟକ୍ତି ବାହାରୁ ଆସି ଘରେ ପଶିବା'ପରି ନୁହେଁ । ପରମାତ୍ମା ଆମ ନିଜସ୍ୱରୂପ ହୋଇଥିବାରୁ ନିତ୍ୟପ୍ରାପ୍ତ ହିଁ ଅଟନ୍ତି; ଏହି ନିତ୍ୟପ୍ରାପ୍ତ ତତ୍ତ୍ୱରେ ଯେଉଁ ଅପ୍ରାପ୍ତି ଭ୍ରମ ହେଉଛି, ସେହି ଅବିଦ୍ୟାରୂପକ ଭ୍ରମ ଦୂର କରିଦେବା ହିଁ ସେଥିରେ ପ୍ରବେଶ କରିବା ।

**ପ୍ରଶ୍ନ –** 'ଯାହାଙ୍କୁ ପାଇବାକୁ ଇଚ୍ଛା କରି ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କ ସମ୍ବନ୍ଧରେ ବେଦଜ୍ଞମାନେ ଉପଦେଶ ଦିଅନ୍ତି ଏବଂ ବୀତରାଗ ଯତିମାନେ ଯାହାଙ୍କ ଠାରେ ଅଭେଦଭାବରେ ପ୍ରବେଶ କରନ୍ତି 'ଯତ୍' ପଦଟି ହେଉଛି ସେହି ବ୍ରହ୍ମଙ୍କର ବାଚକ । ଏଥିରୁ ବୁଝିବା ଉଚିତ ଯେ, ସେହି ବ୍ରହ୍ମଙ୍କୁ ପାଇବାପାଇଁ ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରନ୍ତି । 'ବ୍ରହ୍ମଚର୍ଯ୍ୟ'ର ବାସ୍ତବିକ ଅର୍ଥ ହେଉଛି, ବ୍ରହ୍ମରେ ଅଥବା ବ୍ରହ୍ମମାର୍ଗରେ ସଂଚରଣ କରିବା — ଯେଉଁ ସାଧନାମାନଙ୍କ ଦ୍ୱାରା ବ୍ରହ୍ମପ୍ରାପ୍ତି ମାର୍ଗରେ ଅଗ୍ରଗତି କରିହୁଏ, ତାହା ଆଚରଣ କରିବା । ବ୍ରହ୍ମଚର୍ଯ୍ୟ ଆଶ୍ରମରେ ଆଶ୍ରମଧର୍ମରୂପରେ ଯାହା ଅବଶ୍ୟ ପାଳନୀୟ ଏବଂ ସାଧାରଣତଃ ଅବସ୍ଥାଭେଦରେ ସବୁ ସାଧକ ଯାହା ଯଥାଶକ୍ତି ଅବଶ୍ୟ ପାଳନ କରିବା ଉଚିତ, ସେହି ସାଧନାକୁ ହିଁ ବ୍ରହ୍ମଚାରୀର ବ୍ରତ କୁହାଯାଏ । (ଷଷ୍ଠ ଅଧ୍ୟାୟର ଚଉଦ ଶ୍ଲୋକର ବ୍ୟାଖ୍ୟା ଦେଖନ୍ତୁ ।)

ବ୍ରହ୍ମଚର୍ଯ୍ୟର ପ୍ରଧାନ ତତ୍ତ୍ୱ ହେଉଛି, ବିନ୍ଦୁସଂରକ୍ଷଣ ଓ ସଂଶୋଧନ । ଏହା ଫଳରେ ବାସନାନାଶଦ୍ୱାରା ବ୍ରହ୍ମପ୍ରାପ୍ତିରେ ବିଶେଷ ସହାୟତା ମିଳେ । ଊର୍ଦ୍ଧ୍ୱରେତା ନୈଷ୍ଠିକ ବ୍ରହ୍ମଚାରୀମାନଙ୍କର ବୀର୍ଯ୍ୟ କୌଣସି ଅବସ୍ଥାରେ ବି ଅଧୋମୁଖୀ ହୁଏ ନାହିଁ । ଅତଏବ ସେମାନେ ବ୍ରହ୍ମମାର୍ଗରେ ଅନାୟାସରେ ଅଗ୍ରସର ହୁଅନ୍ତି । ଏମାନଙ୍କ ମଧ୍ୟରୁ ଯେଉଁମାନେ ଟିକିଏ ନିମ୍ନସ୍ତରର, ସେମାନଙ୍କର ବିନ୍ଦୁ ଅଧୋଗାମୀ ହୁଏ; ତଥାପି ସେମାନେ ମନ, ବଚନ ଓ ଶରୀରଦ୍ୱାରା ସର୍ବଥା ମୈଥୁନ ତ୍ୟାଗ କରି ବିନ୍ଦୁସଂରକ୍ଷଣ କରନ୍ତି । ଏହା ମଧ୍ୟ ଏକପ୍ରକାର ବ୍ରହ୍ମଚର୍ଯ୍ୟ । ଗରୁଡ଼ ପୁରାଣରେ କୁହାଯାଇଛି—

**କର୍ମଣା ମନସା ବାଚା ସର୍ବାବସ୍ଥାସୁ ସର୍ବଦା ।**
**ସର୍ବତ୍ର ମୈଥୁନତ୍ୟାଗୋ ବ୍ରହ୍ମଚର୍ଯ୍ୟଂ ପ୍ରଚକ୍ଷତେ ॥**

(ପୂ.ଖଂ. ଆଦି. କାଣ୍ଡ. ଅ. ୨୩୮/୬)

ଅର୍ଥାତ୍ 'ସବୁ ସ୍ଥାନରେ, ସବୁ ପରିସ୍ଥିତିରେ, ସର୍ବଦା ମନ, ବାଣୀ ଓ କର୍ମରେ ମୈଥୁନତ୍ୟାଗକୁ ବ୍ରହ୍ମଚର୍ଯ୍ୟ କୁହାଯାଏ ।'

ବ୍ରହ୍ମପ୍ରାପ୍ତି ହିଁ ଆଶ୍ରମବ୍ୟବସ୍ଥାର ଲକ୍ଷ୍ୟ । ବ୍ରହ୍ମଚର୍ଯ୍ୟ ସର୍ବପ୍ରଥମ ଆଶ୍ରମ । ସେଥିରେ ବିଶେଷ ସାବଧାନ ହୋଇ ବ୍ରହ୍ମଚର୍ଯ୍ୟର ନିୟମଗୁଡ଼ିକ ପାଳନ କରିବା ଆବଶ୍ୟକ । ତେଣୁ କୁହାଯାଇଛି ଯେ, ବ୍ରହ୍ମପ୍ରାପ୍ତି ଇଚ୍ଛା କରୁଥିବା ବ୍ରହ୍ମଚାରୀ ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି ।

**ପ୍ରଶ୍ନ –** 'ସେହି ପଦକୁ ମୁଁ ତୁମକୁ ସଂକ୍ଷେପରେ କହିଦେବି' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏହି ବାକ୍ୟ କହି ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ''ଉପରୋକ୍ତ ବାକ୍ୟମାନଙ୍କରେ ଯେଉଁ ପରବ୍ରହ୍ମ ପରମାତ୍ମାଙ୍କୁ ନିର୍ଦ୍ଦେଶ କରାଯାଇଛି, ସେହି ବ୍ରହ୍ମ କିଏ ଏବଂ ଅନ୍ତକାଳରେ କିପରି ସାଧନା କରୁଥିବା ମନୁଷ୍ୟ ତାଙ୍କୁ ପାଆନ୍ତି—, ମୁଁ ତୁମକୁ ସେହି ବିଷୟ ସଂକ୍ଷେପରେ କହିବି ।''★

---

★ କଠୋପନିଷଦରେ ମଧ୍ୟ ଏହି ଶ୍ଲୋକର ଅନୁରୂପ ମନ୍ତ୍ର ରହିଛି, ଯଥା –

ସର୍ବେ ବେଦା ଯତ୍ପଦମାମନନ୍ତି ତପାଂସି ସର୍ବାଣି ଚ ଯଦ୍‌ବଦନ୍ତି ।
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି ତତ୍ତେ ପଦଂସଂଗ୍ରହେଣ ବ୍ରବୀମ୍ୟୋମିତ୍ୟେତତ୍ ॥ (୧/୨/୧୫)

ଅର୍ଥାତ୍ 'ସକଳ ବେଦ ଯେଉଁ ପଦର ବର୍ଣ୍ଣନା କରନ୍ତି, ସମସ୍ତ ତପକୁ ଯାହାଙ୍କ ପ୍ରାପ୍ତିର ସାଧନା ବୋଲି କୁହାଯାଏ, ତଥା ଯାହାଙ୍କୁ ପାଇବାକୁ ଇଚ୍ଛା କରୁଥିବା ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ସେହି ପଦକୁ ମୁଁ ସଂକ୍ଷେପରେ ତୁମକୁ କହୁଛି – ସେହି ପଦଟି ହେଉଛି ଓଁ ।'

**ସମ୍ବନ୍ଧ—** ପୂର୍ବଶ୍ଳୋକରେ ଭଗବାନ୍ ଯେଉଁ ବିଷୟ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଥିଲେ, ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ତାହା ବର୍ଣ୍ଣନା କରୁଛନ୍ତି——

**ସର୍ବଦ୍ୱାରାଣି ସଂଯମ୍ୟ ମନୋ ହୃଦି ନିରୁଧ୍ୟ ଚ ।**
**ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣମାସ୍ଥିତୋ ଯୋଗଧାରଣାମ୍ ॥ ୧୨ ॥**
**ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ ମାମନୁସ୍ମରନ୍ ।**
**ଯଃ ପ୍ରୟାତି ତ୍ୟଜନ୍ ଦେହଂ ସ ଯାତି ପରମାଂ ଗତିମ୍ ॥ ୧୩ ॥**

**ଅନ୍ୱୟ—** **ସର୍ବଦ୍ୱାରାଣି** = ସମସ୍ତ ଇନ୍ଦ୍ରିୟଙ୍କ ଦ୍ୱାରଗୁଡ଼ିକୁ; **ସଂଯମ୍ୟ** = ରୁଦ୍ଧ କରି; **ଚ** = ତଥା; **ମନଃ** = ମନକୁ; **ହୃଦି** = ହୃଦ୍‌ଦେଶରେ; **ନିରୁଧ୍ୟ** = ସ୍ଥିର କରି (ପୁଣି ସେହି ବିଜିତ ହୋଇଥିବା ମନଦ୍ୱାରା); **ପ୍ରାଣମ୍** = ପ୍ରାଣକୁ; **ମୂର୍ଦ୍ଧ୍ନି** = ମସ୍ତକରେ; **ଆଧାୟ** = ସ୍ଥାପନ କରି; **ଆତ୍ମନଃ** = ପରମାତ୍ମସମ୍ବନ୍ଧୀ; **ଯୋଗଧାରଣାମ୍** = ଯୋଗଧାରଣାରେ; **ଆସ୍ଥିତଃ** = ସ୍ଥିତ ହୋଇ; **ଯଃ** = ଯେଉଁ ପୁରୁଷ; **ଓମ୍** = ଓଁ; **ଇତି** = ଏହି; **ଏକାକ୍ଷରମ୍** = ଏକ ଅକ୍ଷରରୂପ; **ବ୍ରହ୍ମ** = ବ୍ରହ୍ମକୁ; **ବ୍ୟାହରନ୍** = ଉଚ୍ଚାରଣ କରି କରି; (ଏବଂ ତା'ର ଅର୍ଥସ୍ୱରୂପ) **ମାମ୍** = ମୋତେ, ନିର୍ଗୁଣ ବ୍ରହ୍ମକୁ; **ଅନୁସ୍ମରନ୍** = ଚିନ୍ତନ କରି କରି; **ଦେହମ୍** = ଶରୀରକୁ; **ତ୍ୟଜନ୍** = ତ୍ୟାଗ କରି; **ପ୍ରୟାତି** = ପ୍ରୟାଣ କରେ; **ସଃ** = ସେହି ପୁରୁଷ; **ପରମାମ୍, ଗତିମ୍** = ପରମଗତି; **ଯାତି** = ପ୍ରାପ୍ତ ହୁଏ ।

**ସକଳ ଇନ୍ଦ୍ରିୟର ଦ୍ୱାର ରୁଦ୍ଧ କରି ତଥା ମନକୁ ହୃଦୟରେ ସ୍ଥିର କରି, ପୁଣି ସେହି ବିଜିତ ମନଦ୍ୱାରା ପ୍ରାଣକୁ ମସ୍ତକରେ ସ୍ଥାପନ କରି, ପରମାତ୍ମସମ୍ବନ୍ଧୀ ଯୋଗଧାରଣାରେ ସ୍ଥିତ ହୋଇ, ଯେଉଁ ପୁରୁଷ 'ଓଁ'— ଏହି ଏକ ଅକ୍ଷରରୂପକ ବ୍ରହ୍ମକୁ ଉଚ୍ଚାରଣ କରି କରି ଏବଂ ତାହାର ଅର୍ଥସ୍ୱରୂପ ମୋତେ ଅର୍ଥାତ୍ ନିର୍ଗୁଣ ବ୍ରହ୍ମକୁ ଚିନ୍ତନ କରି କରି ଶରୀର ଛାଡ଼ି ପ୍ରୟାଣ କରନ୍ତି, ସେହି ପୁରୁଷ ପରମଗତି ପ୍ରାପ୍ତ ହୁଅନ୍ତି ॥ ୧୨-୧୩ ॥**

**ପ୍ରଶ୍ନ—** ଏଠାରେ 'ସର୍ବଦ୍ୱାରକୁ ରୁଦ୍ଧ କରିବା' କହିଲେ କଣ ବୁଝାଏ ?

**ଉତ୍ତର—** ଶ୍ରୋତ୍ରାଦି ପଞ୍ଚଜ୍ଞାନେନ୍ଦ୍ରିୟ ଓ ବାଣୀ ଆଦି ପଞ୍ଚକର୍ମେନ୍ଦ୍ରିୟ— ଏହି ଦଶ ଇନ୍ଦ୍ରିୟଦ୍ୱାରା ବିଷୟମାନଙ୍କୁ ଗ୍ରହଣ କରାଯାଏ । ତେଣୁ ଏମାନଙ୍କୁ ଦ୍ୱାର କୁହାଯାଏ । ଏହା ବ୍ୟତୀତ ଏମାନଙ୍କ ରହିବା ସ୍ଥାନ(ଗୋଲକ)କୁ ମଧ୍ୟ ଦ୍ୱାର କହନ୍ତି । ଏହି ଇନ୍ଦ୍ରିୟମାନଙ୍କୁ ବାହ୍ୟ ବିଷୟମାନଙ୍କରୁ ବୁଲେଇ ଅର୍ଥାତ୍ ଦେଖିବା, ଶୁଣିବା ଆଦି ସମସ୍ତ କ୍ରିୟା ବନ୍ଦ କରି, ତା' ସହିତ ଇନ୍ଦ୍ରିୟମାନଙ୍କର ଗୋଲକମାନଙ୍କୁ ବି ରୁଦ୍ଧ କରି ଇନ୍ଦ୍ରିୟମାନଙ୍କର ବୃତ୍ତିକୁ ଅନ୍ତର୍ମୁଖ କରିନେବା ହିଁ 'ସର୍ବଦ୍ୱାରକୁ ସଂଯମ (ରୁଦ୍ଧ) କରିବା' । ଏହାକୁ ଯୋଗଶାସ୍ତ୍ରରେ 'ପ୍ରତ୍ୟାହାର' କହନ୍ତି ।

**ପ୍ରଶ୍ନ—** ଏଠାରେ **ହୃଦ୍ଦେଶ** କେଉଁ ସ୍ଥାନର ନାମ ଏବଂ ମନକୁ ହୃଦ୍ଦେଶରେ ସ୍ଥିର କରିବା କଣ ?

**ଉତ୍ତର—** ନାଭି ଓ କଣ୍ଠ— ଏହି ଦୁଇ ସ୍ଥାନର ମଧ୍ୟବର୍ତ୍ତୀସ୍ଥାନ, ଯାହାକୁ ହୃଦୟକମଳ ମଧ୍ୟ କହନ୍ତି ଓ ଯାହାକୁ ମନ ତଥା ପ୍ରାଣମାନଙ୍କର ନିବାସସ୍ଥାନ ବୋଲି ଗ୍ରହଣ କରାଯାଇଛି, ତାହା **ହୃଦ୍ଦେଶ** । ଏଣେ ତେଣେ ବିକ୍ଷିପ୍ତ ହେଉଥିବା ମନକୁ ସଂକଳ୍ପ-ବିକଳ୍ପରୁ ରହିତ କରି ହୃଦୟରେ ନିରୁଦ୍ଧ କରିଦେବା ହିଁ ତାହାକୁ 'ହୃଦ୍ଦେଶରେ ସ୍ଥିର କରିବା' ।

**ପ୍ରଶ୍ନ—** ପ୍ରାଣମାନଙ୍କୁ ମସ୍ତକରେ ସ୍ଥାପନ କରିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର—** ମନକୁ ହୃଦୟରେ ରୁଦ୍ଧ କରିବା ପରେ ପ୍ରାଣମାନଙ୍କୁ ଊର୍ଦ୍ଧ୍ୱଗାମୀ ନାଡ଼ୀଦ୍ୱାରା ହୃଦୟରୁ ଉପରକୁ ଉଠାଇ ମସ୍ତକରେ ସ୍ଥାପନ କରିବାକୁ କୁହାଯାଇଛି । ଏପରି କରିବାଦ୍ୱାରା ପ୍ରାଣମାନଙ୍କ ସହିତ ମନ ମଧ୍ୟ ସେଠାକୁ ଯାଇ ସ୍ଥିତ ହୋଇଯାଏ ।

**ପ୍ରଶ୍ନ—** 'ଯୋଗଧାରଣାରେ ସ୍ଥିତ ହେବା' କଣ ଏବଂ **ଯୋଗଧାରଣାମ୍** ସହିତ **ଆତ୍ମନଃ** ପଦ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଉପରୋକ୍ତପ୍ରକାରେ ଇନ୍ଦ୍ରିୟମାନଙ୍କର ସଂଯମ ଏବଂ ମନ ତଥା ପ୍ରାଣ ମସ୍ତକରେ ଭଲଭାବରେ ନିଶ୍ଚଳ ହୋଇଯିବା ହିଁ **ଯୋଗଧାରଣା**ରେ ଅବସ୍ଥିତ ହେବା । **ଆତ୍ମନଃ** ପଦଦ୍ୱାରା ଦେଖାଇଦିଆଯାଇଛି ଯେ, ଏଠାରେ ପରମାତ୍ମାଙ୍କ ସହିତ ସମ୍ବନ୍ଧ ରଖୁଥିବା ଯୋଗଧାରଣା ବିଷୟ କୁହାଯାଉଛି; ଅନ୍ୟ ଦେବତାଦିବିଷୟକ ଚିନ୍ତନ ସହିତ ବା ପ୍ରକୃତିଚିନ୍ତନ ସହିତ ସମ୍ବନ୍ଧ ରଖୁଥିବା ଧାରଣା ବିଷୟ ନୁହେଁ ।

**ପ୍ରଶ୍ନ –** ଏଠାରେ ଓଁକାରକୁ 'ଏକାକ୍ଷର' ବୋଲି କିପରି କହିଲେ ଏବଂ ଏହାକୁ ବ୍ରହ୍ମ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଦଶମ ଅଧ୍ୟାୟର ପଚିଶ ଶ୍ଳୋକରେ ମଧ୍ୟ ଓଁକାରକୁ 'ଏକ ଅକ୍ଷର' ବୋଲି କୁହାଯାଇଛି **(ଗିରାମସ୍ମ୍ୟେକମକ୍ଷରମ୍)** । ଏହା ବ୍ୟତୀତ ଓଁ ହେଉଛି ଅଦ୍ୱିତୀୟ ଅବିନାଶୀ ପରବ୍ରହ୍ମ ପରମାତ୍ମାଙ୍କ ନାମ, ଏବଂ ନାମ ଓ ନାମୀ ପ୍ରକୃତରେ ଅଭିନ୍ନ ବୋଲି ଗ୍ରହଣ କରାଯାଇଛି । ସେହି କାରଣରୁ ମଧ୍ୟ ଓଁକାରକୁ 'ଏକ ଅକ୍ଷର' ଓ 'ବ୍ରହ୍ମ' କହିବା ଉଚିତ ହୋଇଛି । କଠୋପନିଷଦରେ ମଧ୍ୟ କୁହାଯାଇଛି –

**ଏତଦ୍ଧ୍ୟେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେବାକ୍ଷରଂ ପରମ୍ ।**
**ଏତଦ୍ଧ୍ୟେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ॥**

(୧/୨/୧୬)

ଅର୍ଥାତ୍ — ଏହି ଅକ୍ଷର ହିଁ ବ୍ରହ୍ମ, ଏହି ଅକ୍ଷର ହିଁ ପରମ । ଏହି ଅକ୍ଷରକୁ ଜାଣି ହିଁ ଯେ ଯାହା ଇଚ୍ଛା କରେ, ତାକୁ ତାହା ପ୍ରାପ୍ତ ହୋଇଯାଏ ।'

**ପ୍ରଶ୍ନ –** ବାଣୀ ଆଦି ଇନ୍ଦ୍ରିୟମାନେ ଓ ମନ ରୁଦ୍ଧ ହୋଇଯିବା ପରେ ତଥା ପ୍ରାଣମାନେ ମସ୍ତକରେ ସ୍ଥାପିତ ହୋଇଯିବା ପରେ ଓଁକାର ଉଚ୍ଚାରଣ କିପରି ହୋଇପାରିବ ?

**ଉତ୍ତର –** ଏଠାରେ ବାଣୀରେ ଉଚ୍ଚାରଣ କରିବାକୁ କୁହାଯାଇ ନାହିଁ; ଉଚ୍ଚାରଣ କରିବା ଅର୍ଥ ମନରେ ଉଚ୍ଚାରଣ କରିବା ।

**ପ୍ରଶ୍ନ –** ଏଠାରେ **'ମାମ୍'** ପଦ କାହାର ବାଚକ ଏବଂ ତାହା ସ୍ମରଣ କରିବା କହିଲେ କଣ ବୁଝାଏ ? ?

**ଉତ୍ତର –** ଏଠାରେ ଜ୍ଞାନଯୋଗୀଙ୍କର ଅନ୍ତକାଳର ପ୍ରସଙ୍ଗ ପଡ଼ିଥିବାରୁ **ମାମ୍** ପଦ ସଚ୍ଚିଦାନନ୍ଦଘନ ନିର୍ଗୁଣ-ନିରାକାର ବ୍ରହ୍ମର ବାଚକ । ଚତୁର୍ଥ ଶ୍ଳୋକରେ 'ଏହି ଶରୀରରେ ଅଧିଯଜ୍ଞ ମୁଁ ହିଁ ଅଟେ' ବୋଲି କହି ଭଗବାନ୍ ଯେପରି ଅଧିଯଜ୍ଞ ସହିତ ନିଜର ଏକତ୍ୱ ଦେଖାଇଛନ୍ତି, ସେହିପରି ଏଠାରେ ବ୍ରହ୍ମଙ୍କ ସହିତ ନିଜର ଏକତ୍ୱ ଦେଖାଇବାକୁ 'ମାମ୍' ପଦ ପ୍ରୟୋଗ କରିଛନ୍ତି ।

**ପ୍ରଶ୍ନ –** ମନରେ ଓଁକାର ଉଚ୍ଚାରଣ ଓ ତା'ର ଅର୍ଥସ୍ୱରୂପ ବ୍ରହ୍ମର ଚିନ୍ତନ — ଏହି ଦୁଇ କାମ ଏକସଙ୍ଗେ କିପରି ହୁଏ ?

**ଉତ୍ତର –** ମନଦ୍ୱାରା ଉଭୟ କାମ ଏକସଙ୍ଗେ ଅବଶ୍ୟ କରିହେବ । ପରମାତ୍ମାଙ୍କ ନାମ 'ଓଁ'କୁ ମନରେ ଉଚ୍ଚାରଣ କରି କରି ତା' ସହିତ ବ୍ରହ୍ମଚିନ୍ତନ କରିବାରେ କୌଣସି ଆପତ୍ତି ନାହିଁ । ମନରେ ନାମର ଉଚ୍ଚାରଣ ତ ନାମୀଙ୍କ ଚିନ୍ତନରେ ବରଂ ସହାୟକ ହୋଇଥାଏ । ମହର୍ଷି ପତଞ୍ଜଳି ମଧ୍ୟ କହିଛନ୍ତି, ''ଧ୍ୟାନ-କାଳରେ ସବିତର୍କ (ସବିକଳ୍ପ) ସମାଧିପର୍ଯ୍ୟନ୍ତ ଶବ୍ଦ, ଅର୍ଥ ଓ ତଦ୍‌ବିଷୟକ ଜ୍ଞାନର ବିକଳ୍ପ ମନରେ ରହେ (ଯୋଗଦର୍ଶନ ୧/୪୧) ।'' ଅତଏବ ଯାହାଙ୍କର ଚିନ୍ତନ କରାଯାଏ, ତାଙ୍କର ବାଚକ ନାମ ମନର ସଂକଳ୍ପରେ ରହିବା ତ ସ୍ୱାଭାବିକ । ପୁଣି ସେ ଏହା ମଧ୍ୟ କହିଛନ୍ତି କି –

**ତସ୍ୟ ବାଚକଃ ପ୍ରଣବଃ । ତଜ୍ଜପସ୍ତଦର୍ଥଭାବନମ୍ ।**

(ଯୋଗଦର୍ଶନ ୧/୨୭-୨୮)

ଅର୍ଥାତ୍ 'ତାଙ୍କର ନାମ ପ୍ରଣବ (ଓଁ) । ସେହି ଓଁ ଜପ କରି କରି ତା'ର ଅର୍ଥ (ପ୍ରତିପାଦ୍ୟ) ପରମାତ୍ମାଙ୍କୁ ଚିନ୍ତନ କରିବା ଆବଶ୍ୟକ ।'

**ପ୍ରଶ୍ନ –** ଏଠାରେ 'ପରମଗତି ପ୍ରାପ୍ତ ହେବା'ର ଅର୍ଥ କଣ ?

**ଉତ୍ତର –** ନିର୍ଗୁଣ ନିରାକାର ବ୍ରହ୍ମକୁ ଅଭେଦଭାବରେ ପ୍ରାପ୍ତ ହେବାର ଅର୍ଥ ପରମଗତି ପ୍ରାପ୍ତ ହେବା । ଏହାକୁ ହିଁ ଚିରକାଳପାଇଁ ଗମନାଗମନରୁ ମୁକ୍ତ ହେବା, ମୁକ୍ତି ଲାଭ କରିବା, ମୋକ୍ଷପ୍ରାପ୍ତ ହେବା ଅଥବା 'ନିର୍ବାଣ ବ୍ରହ୍ମକୁ ପ୍ରାପ୍ତ ହେବା' କହନ୍ତି ।

**ପ୍ରଶ୍ନ –** ଅଷ୍ଟମଠାରୁ ଦଶମ ଶ୍ଳୋକଯାଏ ସଗୁଣ-ନିରାକାର ଈଶ୍ୱରଙ୍କ ଉପାସନାର ପ୍ରକରଣ ରହିଛି ଏବଂ ଏଗାରରୁ ତେରଯାଏ ନିର୍ଗୁଣ-ନିରାକାର ବ୍ରହ୍ମଙ୍କ ଉପାସନାର ପ୍ରକରଣ ରହିଛି । ଏପରିଭାବରେ ଏଠାରେ ଦୁଇଟି ଭିନ୍ନ ଭିନ୍ନ ପ୍ରକରଣ କାହିଁକି ଗ୍ରହଣ କରାଯାଇଛି ? ଯଦି ଛଅଟିଯାକ ଶ୍ଳୋକକୁ ଗୋଟିଏ ପ୍ରକରଣ ବୋଲି ଗ୍ରହଣ କରାଯାଏ, ତେବେ କ୍ଷତି କଣ ?

**ଉତ୍ତର —** ଅଷ୍ଟମରୁ ଦଶମ ଶ୍ଳୋକଯାଏ କରାଯାଇଥିବା ବର୍ଣ୍ଣନାରେ ଉପାସ୍ୟ ପରମପୁରୁଷଙ୍କୁ ସର୍ବଜ୍ଞ, ସର୍ବନିୟନ୍ତା, ସମସ୍ତଙ୍କର ଧାରଣ—ପୋଷଣକାରୀ ଓ ସୂର୍ଯ୍ୟସଦୃଶ ସ୍ୱୟଂପ୍ରକାଶରୂପ ବୋଲି କୁହାଯାଇଛି। ଏସବୁ ହେଉଛି ସର୍ବବ୍ୟାପୀ ଭଗବାନଙ୍କର ଦିବ୍ୟଗୁଣ। କିନ୍ତୁ ଏଗାରଠାରୁ ତେର ଶ୍ଳୋକପର୍ଯ୍ୟନ୍ତ ପ୍ରସଙ୍ଗକୁ ନିର୍ଗୁଣ ନିରାକାରଙ୍କ ପ୍ରସଙ୍ଗ ବୋଲି ମାନିବାକୁ ଆପତ୍ତି ହୋଇପାରିବାଭଳି ଏଠାରେ ଗୋଟିଏ ହେଲେ ବିଶେଷଣ ଦିଆଯାଇ ନାହିଁ। ଏହା ବ୍ୟତୀତ ଉକ୍ତ ପ୍ରସଙ୍ଗରେ ଉପାସକଙ୍କୁ 'ଭକ୍ତିଯୁକ୍ତ' କୁହାଯାଇଛି, ଯାହା କି ଭେଦଉପାସନାର ଦ୍ୟୋତକ ହୋଇଛି ତଥା ତା'ର ଫଳ ଦିବ୍ୟ ପରମପୁରୁଷ (ସଗୁଣ ପରମେଶ୍ୱର)ଙ୍କର ପ୍ରାପ୍ତି ବୋଲି କୁହାଯାଇଛି। କିନ୍ତୁ ଏଠାରେ ଅଭେଦ ଉପାସନାର ବର୍ଣ୍ଣନା କରାଯାଇଥିବାରୁ ଉପାସକଙ୍କ ପାଇଁ କୌଣସି ବିଶେଷଣ ଦିଆଯାଇ ନାହିଁ ଏବଂ ଏହାର ଫଳ ମଧ୍ୟ ପରମଗତି (ନିର୍ଗୁଣ ବ୍ରହ୍ମ) ପ୍ରାପ୍ତି ବୋଲି କୁହାଯାଇଛି। ଏହା ବ୍ୟତୀତ, ଏଗାର ଶ୍ଳୋକରେ ନୂତନ ପ୍ରକରଣ ଆରମ୍ଭ କରିବାକୁ ପ୍ରତିଜ୍ଞା ମଧ୍ୟ କରାଯାଇଛି। ପୁଣି ଦୁଇଟିଯାକ ପ୍ରକରଣକୁ ଏକ ବୋଲି ମାନିନେଲେ ଯୋଗବିଷୟକ ବର୍ଣ୍ଣନାର ପୁନରୁକ୍ତି ଦୋଷ ଆସିଯିବ। ଏହିସବୁ କାରଣରୁ ପ୍ରତୀତ ହେଉଛି ଯେ, ଏହି ଛଅଟିଯାକ ଶ୍ଳୋକରେ ଗୋଟିଏ ପ୍ରକରଣ ନାହିଁ; ଦୁଇଟି ଭିନ୍ନ ଭିନ୍ନ ପ୍ରକରଣ ରହିଛି।

***ସମ୍ବନ୍ଧ —*** *ଏପରିଭାବରେ ନିରାକାର-ସଗୁଣ ପରମେଶ୍ୱରଙ୍କର ଏବଂ ନିର୍ଗୁଣ-ନିରାକାର ବ୍ରହ୍ମର ଉପାସକ ଯୋଗୀମାନଙ୍କ ଅନ୍ତକାଳୀନ ଗତିର ପ୍ରକାର ଓ ଫଳ କହିଦିଆଗଲା। କିନ୍ତୁ ଯେଉଁମାନେ ପ୍ରଥମରୁ ହିଁ ଯୋଗ ଅଭ୍ୟାସ କରି ମନକୁ ନିଜର ବଶ କରିନେଇଛନ୍ତି, ଅନ୍ତକାଳରେ କେବଳ ସେହିମାନେ ହିଁ ଏପରି ସାଧନା କରିପାରିବେ; ସାଧାରଣ ମନୁଷ୍ୟମାନଙ୍କ ପକ୍ଷରେ ଅନ୍ତକାଳରେ ଏପରି ସଗୁଣ-ନିରାକାରଙ୍କ ଓ ନିର୍ଗୁଣ-ନିରାକାରଙ୍କ ସାଧନା କରିପାରିବା ଅତ୍ୟନ୍ତ କଠିନ। ଅତଏବ ପରମେଶ୍ୱରଙ୍କ ପ୍ରାପ୍ତିର ସହଜ ଉପାୟ ଜାଣିବାକୁ ଇଚ୍ଛା ହେବା ସ୍ୱାଭାବିକ। ତେଣୁ ଭଗବାନ୍ ବର୍ତ୍ତମାନ ତାଙ୍କ ନିତ୍ୟ ନିରନ୍ତର ସ୍ମରଣକୁ ହିଁ ତାଙ୍କୁ ପାଇବାର ସୁଗମ ଉପାୟ ବୋଲି କହୁଛନ୍ତି—*

## ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ।
## ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ।। ୧୪ ।।

**ଅନ୍ୱୟ —** **ପାର୍ଥ** = ହେ ଅର୍ଜୁନ! **ଯଃ** = ଯେଉଁ ପୁରୁଷ; **(ମୟି)** = ମୋଠାରେ; **ଅନନ୍ୟଚେତାଃ** = ଅନନ୍ୟଚିତ୍ତ ହୋଇ; **ନିତ୍ୟଶଃ** = ସଦାସର୍ବଦା; **ସତତମ୍** = ନିରନ୍ତର; **ମାମ୍** = ମୋତେ ଅର୍ଥାତ୍ ପୁରୁଷୋତ୍ତମଙ୍କୁ; **ସ୍ମରତି** = ସ୍ମରଣ କରେ; **ତସ୍ୟ** = ସେହି; **ନିତ୍ୟଯୁକ୍ତସ୍ୟ** = ନିତ୍ୟନିରନ୍ତର ମୋଠାରେ ଯୁକ୍ତ ହୋଇଥିବା; **ଯୋଗିନଃ** = ଯୋଗୀପାଇଁ; **ଅହମ୍** = ମୁଁ; **ସୁଲଭଃ** = ସୁଲଭ ଅଟେ; ଅର୍ଥାତ୍ ତାକୁ ସହଜରେ ପ୍ରାପ୍ତ ହୋଇଯାଏ।

**ହେ ଅର୍ଜୁନ! ଯେଉଁ ପୁରୁଷ ମୋ ଠାରେ ଅନନ୍ୟଚିତ୍ତ ହୋଇ ସଦାସର୍ବଦା ନିରନ୍ତର ମୋତେ ଅର୍ଥାତ୍ ପୁରୁଷୋତ୍ତମଙ୍କୁ ସ୍ମରଣ କରନ୍ତି, ମୋ ଠାରେ ନିତ୍ୟନିରନ୍ତର ଯୁକ୍ତ ହୋଇଥିବା ସେହି ଯୋଗୀଙ୍କ ପାଇଁ ମୁଁ ସୁଲଭ ଅର୍ଥାତ୍ ମୁଁ ତାଙ୍କୁ ସହଜରେ ପ୍ରାପ୍ତ ହୋଇଯାଏ।। ୧୪ ।।**

**ପ୍ରଶ୍ନ —** ଏଠାରେ **ଅନନ୍ୟଚେତାଃ**ର ଅଭିପ୍ରାୟ କଣ ?

**ଉତ୍ତର —** ଯାହାଙ୍କର ଚିତ୍ତ ଅନ୍ୟ କୌଣସି ବସ୍ତୁରେ ନ ଲାଗି ନିରନ୍ତର ଅନନ୍ୟ ପ୍ରେମର ସହିତ କେବଳ ପରମପ୍ରେମୀ ପରମେଶ୍ୱରଙ୍କ ଠାରେ ହିଁ ଲାଗିରହେ, ତାହାଙ୍କୁ **ଅନନ୍ୟଚେତାଃ** କହନ୍ତି।

**ପ୍ରଶ୍ନ —** ଏଠାରେ **ସତତମ୍** ଓ **ନିତ୍ୟଶଃ** ଏହି ଦୁଇଟି ପଦ ପ୍ରୟୋଗର ଭାବ କଣ ?

**ଉତ୍ତର —** **ସତତମ୍** ପଦଦ୍ୱାରା ଦର୍ଶାଇଛନ୍ତି ଯେ, ଏକକ୍ଷଣ ମଧ୍ୟ ବ୍ୟବଧାନ ନ ରଖି ନିରବଚ୍ଛିନ୍ନଭାବରେ ସ୍ମରଣ କରିବା ଓ **ନିତ୍ୟଶଃ** ପଦଦ୍ୱାରା ସୂଚିତ କରିଛନ୍ତି ଯେ, ଏପରି ନିରନ୍ତର ସ୍ମରଣ ଆଜୀବନ ସଦାସର୍ବଦା

ହେବା ଉଚିତ; ସେଥିରେ ଗୋଟିଏ ଦିନର ମଧ୍ୟ ବ୍ୟତିକ୍ରମ ହେବା ଉଚିତ ନୁହେଁ। ଏପରିଭାବରେ ଏହି ଦୁଇଟି ପଦ ପ୍ରୟୋଗ କରି ଭଗବାନ୍ ଜୀବନସାରା ନିତ୍ୟନିରନ୍ତର ତାଙ୍କୁ ସ୍ମରଣ କରିବାକୁ କହିଛନ୍ତି।

**ପ୍ରଶ୍ନ –** ଏଠାରେ **ମାମ୍** ପଦ କାହାର ବାଚକ? 'ତାଙ୍କୁ ସ୍ମରଣ କରିବା' କହିଲେ କଣ ବୁଝାଏ?

**ଉତ୍ତର –** ଏହା ନିତ୍ୟ ପ୍ରେମପୂର୍ବକ ସ୍ମରଣ କରିବା ପ୍ରସଙ୍ଗ ଏବଂ ଏଥିରେ **ତସ୍ୟ, ଅହମ୍,** ଆଦି ଭେଦୋପାସନାସୂଚକ ପଦମାନଙ୍କର ପ୍ରୟୋଗ ହୋଇଛି। ଅତଏବ ଏଠାରେ **ମାମ୍** ପଦଟି ସଗୁଣ ସାକାର ପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣଙ୍କର ବାଚକ। କିନ୍ତୁ ଯେଉଁମାନେ ଶ୍ରୀବିଷ୍ଣୁ, ଶ୍ରୀରାମ ବା ଭଗବାନଙ୍କର ଅନ୍ୟ ରୂପକୁ ଇଷ୍ଟ ବୋଲି ମାନନ୍ତି, ସେମାନଙ୍କ ପାଇଁ ସେହିରୂପଟି ମଧ୍ୟ **ମାମ୍‌ର** ହିଁ ବାଚ୍ୟ ଅଟେ। ତଥା ପରମ ପ୍ରେମ ଓ ଶ୍ରଦ୍ଧା ସହିତ ନିରନ୍ତର ଭଗବାନଙ୍କ ସ୍ୱରୂପ ଅଥବା ତାଙ୍କ ନାମ, ଗୁଣ, ପ୍ରଭାବ ଓ ଲୀଳା ଆଦି ଚିନ୍ତନ କରିବା ହିଁ ତାଙ୍କୁ ସ୍ମରଣ କରିବା।

**ପ୍ରଶ୍ନ –** ଏପରି ଭକ୍ତଙ୍କ ପାଇଁ ଭଗବାନ୍ କାହିଁକି ସୁଲଭ ଅଟନ୍ତି?

**ଉତ୍ତର –** ଅନନ୍ୟଭାବରେ ଭଗବାନଙ୍କର ଚିନ୍ତନ କରୁଥିବା ଅନନ୍ୟପ୍ରେମୀ ଭକ୍ତ ଯେତେବେଳେ ଭଗବାନଙ୍କର ବିରହ ସହିପାରନ୍ତି ନାହିଁ, ସେତେବେଳେ, **'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍'** (୪/୧୧) ଅନୁସାରେ ଭଗବାନଙ୍କୁ ମଧ୍ୟ ଭକ୍ତଙ୍କର ବିୟୋଗ ଅସହ୍ୟ ହୋଇଯାଏ। ଏବଂ ଯେତେବେଳେ ଭଗବାନ୍ ସ୍ୱୟଂ ଭକ୍ତଙ୍କ ସହିତ ମିଳିତ ହେବାକୁ ଇଚ୍ଛା କରନ୍ତି, ସେତେବେଳେ ଦୁର୍ଲଭତାର କୌଣସି ସ୍ଥାନ ହିଁ ରହେ ନାହିଁ। ତେଣୁ ଏପରି ଭକ୍ତଙ୍କ ନିମନ୍ତେ ଭଗବାନ୍ ସୁଲଭ ଅଟନ୍ତି।

**ପ୍ରଶ୍ନ –** ନିତ୍ୟନିରନ୍ତର ସ୍ମରଣ କରୁଥିବା ଭକ୍ତଙ୍କ ନିମନ୍ତେ ଭଗବାନ୍ ସୁଲଭ, ଏହା ତ ମାନିନିଆଗଲା; କିନ୍ତୁ ଭଗବାନଙ୍କୁ ନିତ୍ୟନିରନ୍ତର ସ୍ମରଣ କରିବା କଣ ସହଜ?

**ଉତ୍ତର –** ଯେଉଁମାନଙ୍କର ଭଗବାନ୍ ଓ ଭଗବତ୍‌ପ୍ରାପ୍ତ ମହାପୁରୁଷଙ୍କ ଠାରେ ପରମଶ୍ରଦ୍ଧା ଓ ପ୍ରେମ ରହିଛି, ଯାହାଙ୍କର ଦୃଢ଼ ବିଶ୍ୱାସ ହୋଇଯାଇଛି ଯେ, ନିତ୍ୟନିରନ୍ତର ଚିନ୍ତନଦ୍ୱାରା ଭଗବାନ୍ ମିଳିବା ସୁଲଭ, ସେମାନଙ୍କ ପକ୍ଷରେ ତ ଭଗବତ୍‌କୃପାରୁ, ନିତ୍ୟନିରନ୍ତର ଭଗବତ୍‌ସ୍ମରଣ ହେବା ସହଜ। କିନ୍ତୁ ଯେଉଁମାନଙ୍କ ଠାରେ ଭଗବତ୍‌ଶ୍ରଦ୍ଧା ଓ ପ୍ରେମର ଅଭାବ ରହିଛି, ଯେଉଁମାନେ ଭଗବାନଙ୍କର ଗୁଣ-ପ୍ରଭାବ ଜାଣନ୍ତି ନାହିଁ ଓ ଯେଉଁମାନଙ୍କୁ ସତ୍‌ସଙ୍ଗର ସୌଭାଗ୍ୟ ମିଳି ନାହିଁ, ସେମାନଙ୍କର ନିତ୍ୟନିରନ୍ତର ଭଗବତ୍‌ଚିନ୍ତନ ହେବା କଠିନ।

**ସମ୍ବନ୍ଧ –** ଭଗବାନଙ୍କର ନିତ୍ୟନିରନ୍ତର ଚିନ୍ତନଦ୍ୱାରା ଭଗବତ୍‌ପ୍ରାପ୍ତିର ସୁଲଭତା ପ୍ରତିପାଦନ କରାଗଲା। ବର୍ତ୍ତମାନ ସେମାନଙ୍କର ପୁନର୍ଜନ୍ମ ନ ହେବା କଥା କହି ଭଗବାନ୍ ଦର୍ଶାଉଛନ୍ତି ଯେ, ଭଗବତ୍‌ପ୍ରାପ୍ତ ମହାପୁରୁଷଙ୍କର ଭଗବାନଙ୍କ ଠାରୁ କେବେ ବିଚ୍ଛେଦ ହୁଏ ନାହିଁ–

**ମାମୁପେତ୍ୟ ପୁନର୍ଜନ୍ମ ଦୁଃଖାଳୟମଶାଶ୍ୱତମ୍ ।**
**ନାପ୍ନୁବନ୍ତି ମହାତ୍ମାନଃ ସଂସିଦ୍ଧିଂ ପରମାଂ ଗତାଃ ।। ୧୫ ।।**

**ଅନ୍ୱୟ –** ପରମାମ୍ = ପରମ; ସଂସିଦ୍ଧିମ୍ = ସିଦ୍ଧିକୁ; ଗତାଃ = ପ୍ରାପ୍ତ; ମହାତ୍ମାନଃ = ମହାତ୍ମାମାନେ; ମାମ୍ = ମୋତେ; ଉପେତ୍ୟ = ପ୍ରାପ୍ତ ହୋଇ; ଦୁଃଖାଳୟମ୍ = ଦୁଃଖର ଗୃହ(ରୂପକ); ଅଶାଶ୍ୱତମ୍ = କ୍ଷଣଭଙ୍ଗୁର; ପୁନର୍ଜନ୍ମ = ପୁନର୍ଜନ୍ମ; ନ, ଆପ୍ନୁବନ୍ତି = ପ୍ରାପ୍ତ ହୁଅନ୍ତି ନାହିଁ।

**ପରମସିଦ୍ଧିପ୍ରାପ୍ତ ମହାତ୍ମାମାନେ ମୋତେ ପ୍ରାପ୍ତ ହୋଇ ଦୁଃଖର ଗୃହରୂପକ କ୍ଷଣଭଙ୍ଗୁର ପୁନର୍ଜନ୍ମ ପାଆନ୍ତି ନାହିଁ।। ୧୫ ।।**

**ପ୍ରଶ୍ନ –** ପରମସିଦ୍ଧି କଣ ଓ **ମହାତ୍ମା** ଶବ୍ଦର ପ୍ରୟୋଗ କାହା ପାଇଁ କରାଯାଇଛି?

**ଉତ୍ତର –** ଅତିଶୟ ଶ୍ରଦ୍ଧା ଓ ପ୍ରେମର ସହିତ ନିତ୍ୟନିରନ୍ତର ଭଜନଧ୍ୟାନରୂପୀ ସାଧନା କରି କରି ଯେତେବେଳେ ସାଧନାର ସେହି ପରାକାଷ୍ଠାରୂପକ ସ୍ଥିତି ପ୍ରାପ୍ତ ହୋଇଯାଏ, ଯାହା ପ୍ରାପ୍ତ ହେବା ପରେ ଆଉ କୌଣସି ସାଧନା ଅବଶିଷ୍ଟ ରହେ ନାହିଁ ଏବଂ ସେହି ମୁହୂର୍ତ୍ତରେ ହିଁ ଭଗବାନଙ୍କର ପ୍ରତ୍ୟକ୍ଷ

ସାକ୍ଷାତ୍କାର ହୋଇଯାଏ, ସେହି ପରାକାଷ୍ଠା-ସ୍ଥିତିକୁ **ପରମସିଦ୍ଧି** କହନ୍ତି। ଭଗବାନଙ୍କର ଯେଉଁ ଭକ୍ତ ଏହି **ପରମସିଦ୍ଧି** ପ୍ରାପ୍ତ ହୋଇଥାନ୍ତି, ସେହି ଜ୍ଞାନୀଭକ୍ତଙ୍କ ପାଇଁ ମହାତ୍ମା ଶବ୍ଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ପୁନର୍ଜନ୍ମକୁ ଜଣ ଏବଂ ତାହାକୁ ଦୁଃଖର ଘର ତଥା **ଅଶାଶ୍ୱତ (କ୍ଷଣଭଙ୍ଗୁର)** ବୋଲି କାହିଁକି କୁହାଯାଇଛି ?

**ଉତ୍ତର –** ଜୀବ ଯେପର୍ଯ୍ୟନ୍ତ ଭଗବାନଙ୍କୁ ପାଇ ନ ଥାଏ, ସେପର୍ଯ୍ୟନ୍ତ କର୍ମବଶତଃ ତା'ର ଗୋଟିଏ ଯୋନି ଛାଡ଼ି ଅନ୍ୟ ଗୋଟିଏ ଯୋନିରେ ଜନ୍ମ ହେବା ବନ୍ଦ ହୁଏ ନାହିଁ। ଏଣୁ ମୃତ୍ୟୁପରେ କର୍ମପରବଶ ହୋଇ ଦେବତା, ମନୁଷ୍ୟ, ପଶୁ, ପକ୍ଷୀ ଆଦି ଯେକୌଣସି ଯୋନିରେ ଜନ୍ମ ହେବାକୁ ବି ପୁନର୍ଜନ୍ମ କୁହାଯାଏ। ଏପରି କୌଣସି ବି ଯୋନି ନାହିଁ, ଯାହା କି ଦୁଃଖପୂର୍ଣ୍ଣ ଓ ଅନିତ୍ୟ ନୁହେଁ। ମୃତ୍ୟୁ ହିଁ ଜୀବନର ଅନିତ୍ୟତାର ପ୍ରମାଣ। ପୁଣି ଜୀବନରେ ଯେଉଁ ଯେଉଁ ବସ୍ତୁ ସହିତ ସଂଯୋଗ ହୁଏ, ସେସବୁ ମଧ୍ୟରେ ଏପରି କୌଣସି ବସ୍ତୁ ନାହିଁ, ଯାହା କି ଚିରକାଳ ଏକାପରି ରହେ ଏବଂ ଯାହା ସହିତ ଚିରଦିନ ସଂଯୋଗ ରହିଥିବ। ଯେଉଁ ବସ୍ତୁ ଆଜି ସୁଖଦାୟୀ ବୋଲି ମନେହୁଏ, କାଲି ତା'ର ରୂପାନ୍ତର ହୋଇଯିବ ଅଥବା ତା'ସହିତ ନିଜର ଭାବ ବଦଳିଯିବା ଫଳରେ ତାହା ଦୁଃଖପ୍ରଦ ହୋଇଯିବ। ମନୁଷ୍ୟ ଯାହାକୁ ଜୀବନରେ ସୁଖପ୍ରଦ ବୋଲି ଭାବେ, ତାହା ନାଶ ହୋଇଗଲେ କିମ୍ବା ତାକୁ ଛାଡ଼ି ମରିଯିବାକୁ ପଡ଼ିଲେ, ତାହା ବି ଦୁଃଖଦାୟୀ ହୋଇଥାଏ। ଏହା ସହିତ ପ୍ରତ୍ୟେକ ବସ୍ତୁ ବା ସ୍ଥିତିରେ ଅଭାବବୋଧ ତଥା ତାହାର ବିନାଶର ଆଶଙ୍କା ବି ସର୍ବଦା ଦୁଃଖଦାୟକ ହୋଇଥାଏ। ସୁଖଦାୟୀ ବୋଲି ମନେ ହେଉଥିବା ବସ୍ତୁର ସଂଗ୍ରହ ଓ ଭୋଗଦ୍ୱାରା ଆସକ୍ତିବଶତଃ ଯେଉଁ ପାପ କରାଯାଏ, ତା'ର ପରିଣାମରେ ମଧ୍ୟ ନାନାପ୍ରକାର କଷ୍ଟ ଓ ନରକଯନ୍ତ୍ରଣା ପ୍ରାପ୍ତ ହୋଇଥାଏ। ଏପରିଭାବରେ ପୁନର୍ଜନ୍ମରେ ଗର୍ଭଠାରୁ ମୃତ୍ୟୁପର୍ଯ୍ୟନ୍ତ କେବଳ ଦୁଃଖ ହିଁ ମିଳୁଥିବାରୁ ତାହାକୁ ଦୁଃଖର ଘର ବୋଲି କୁହାଯାଇଛି ଏବଂ କୌଣସି ବି ଯୋନିର ତଥା ସେହି ଯୋନିରୁ ପ୍ରାପ୍ତ ଭୋଗର ସଂଯୋଗ ସର୍ବଦା ଚିରସ୍ଥାୟୀ ହେଉ ନ ଥିବାରୁ, ତାହାକୁ **ଅଶାଶ୍ୱତ (କ୍ଷଣଭଙ୍ଗୁର)** ବୋଲି କୁହାଯାଇଛି।

**ପ୍ରଶ୍ନ –** ଉପରୋକ୍ତ ମହାତ୍ମା ପୁରୁଷମାନଙ୍କର ପୁନର୍ଜନ୍ମ ହୁଏ ନାହିଁ କାହିଁକି ?

**ଉତ୍ତର –** ସେମାନଙ୍କର ପୁନର୍ଜନ୍ମ ନ ହେବାର କାରଣ ହେଉଛି, ସେହି ଅନନ୍ୟପ୍ରେମୀ ଭକ୍ତମାନଙ୍କର ଭଗବତ୍ପ୍ରାପ୍ତି ହୋଇଯାଏ। ଥରେ ଯାହାଙ୍କୁ ସମସ୍ତ ସୁଖର ଅନନ୍ତସାଗର, ସମସ୍ତଙ୍କର ପରମ ଆଧାର, ପରମ ଆଶ୍ରୟ, ପରମାତ୍ମା, ପରମପୁରୁଷ ଭଗବାନ୍ ପ୍ରାପ୍ତ ହୋଇଯାଆନ୍ତି, ତାଙ୍କର କେବେ ବି, କୌଣସି ବି ପରିସ୍ଥିତିରେ ଭଗବାନଙ୍କ ଠାରୁ ବିୟୋଗ ହୁଏ ନାହିଁ– ଏହା ହିଁ ନିୟମ। ଅତଏବ ଭଗବତ୍ପ୍ରାପ୍ତି ହୋଇଯିବା ପରେ ସଂସାରରେ ପୁନର୍ବାର ଜନ୍ମ ନେବାକୁ ପଡ଼େ ନାହିଁ ବୋଲି କୁହାଯାଇଛି।

***ସମ୍ବନ୍ଧ –*** *ଭଗବତ୍ପ୍ରାପ୍ତ ମହାତ୍ମା ପୁରୁଷମାନଙ୍କର ପୁନର୍ଜନ୍ମ ହୁଏ ନାହିଁ। ଏଥିରୁ ସ୍ପଷ୍ଟ ହୋଇଯାଉଛି ଯେ, ଅନ୍ୟାନ୍ୟ ଜୀବମାନଙ୍କର ପୁନର୍ଜନ୍ମ ହୁଏ। ତେଣୁ ଏଠାରେ କେଉଁ ଲୋକଯାଏ ପହଞ୍ଚିଥିବା ଜୀବମାନଙ୍କୁ ପୁଣି ଥରେ ଫେରିବାକୁ ପଡ଼େ ବୋଲି ଜାଣିବାକୁ ଇଚ୍ଛା ହେଉଛି। ଏହି ସମ୍ପର୍କରେ ଭଗବାନ୍ କହୁଛନ୍ତି–*

**ଆବ୍ରହ୍ମଭୁବନାଲ୍ଲୋକାଃ ପୁନରାବର୍ତ୍ତିନୋଽର୍ଜୁନ।**
**ମାମୁପେତ୍ୟ ତୁ କୌନ୍ତେୟ ପୁନର୍ଜନ୍ମ ନ ବିଦ୍ୟତେ॥ ୧୬ ॥**

**ଅନ୍ୱୟ –** **ଅର୍ଜୁନ** = ହେ ଅର୍ଜୁନ; **ଆବ୍ରହ୍ମଭୁବନାତ୍** = ବ୍ରହ୍ମଲୋକପର୍ଯ୍ୟନ୍ତ; **ଲୋକାଃ** = ସମସ୍ତଲୋକ; **ପୁନରାବର୍ତ୍ତିନଃ** = ପୁନରାବର୍ତ୍ତୀ (ଅର୍ଥାତ୍ ଯାହାକୁ ପ୍ରାପ୍ତ ହୋଇ ପୁଣି ସଂସାରକୁ ଆସିବାକୁ ପଡ଼େ); **ତୁ** = ପରନ୍ତୁ; **କୌନ୍ତେୟ** = ହେ କୁନ୍ତୀପୁତ୍ର; **ମାମ୍** = ମୋତେ; **ଉପେତ୍ୟ** = ପ୍ରାପ୍ତ ହୋଇ; **ପୁନର୍ଜନ୍ମ** = ପୁନର୍ଜନ୍ମ; **ନ, ବିଦ୍ୟତେ** = ହୁଏ ନାହିଁ।

**ହେ ଅର୍ଜୁନ! ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତ ଲୋକ ପୁନରାବର୍ତ୍ତୀ ; କିନ୍ତୁ ହେ କୁନ୍ତୀପୁତ୍ର! ମୋତେ ପ୍ରାପ୍ତ ହେଲେ ପୁନର୍ଜନ୍ମ ହୁଏ ନାହିଁ; କାରଣ ମୁଁ କାଳାତୀତ ଅଟେ ଏବଂ ସେସବୁ ବ୍ରହ୍ମାଦି ଲୋକ କାଳଦ୍ୱାରା ସୀମିତ ହୋଇଥିବାରୁ ଅନିତ୍ୟ ଅଟନ୍ତି।॥ ୧୬ ॥**

**ପ୍ରଶ୍ନ –** ଏଠାରେ **ବ୍ରହ୍ମଲୋକ** ଶବ୍ଦ କେଉଁ ଲୋକକୁ ବୁଝାଉଛି? **ଆ** ଅବ୍ୟୟ ପ୍ରୟୋଗର ଅଭିପ୍ରାୟ କଣ ଏବଂ **ଲୋକାଃ** ପଦ କେଉଁ କେଉଁ ଲୋକକୁ ନିର୍ଦ୍ଦେଶ କରୁଛି?

**ଉତ୍ତର –** ଯେଉଁ ଚତୁର୍ମୁଖ ବ୍ରହ୍ମା ସୃଷ୍ଟିର ଆରମ୍ଭରେ ଭଗବାନଙ୍କର ନାଭିକମଳରୁ ଉତ୍ପନ୍ନ ହୋଇ ସମଗ୍ର ସୃଷ୍ଟି ରଚନା କରନ୍ତି, ଯାହାଙ୍କୁ ପ୍ରଜାପତି, ହିରଣ୍ୟଗର୍ଭ ଓ ସୂତ୍ରାତ୍ମା ବୋଲି ମଧ୍ୟ କୁହାଯାଏ, ତଥା ଏହି ଅଧ୍ୟାୟରେ ଯାହାଙ୍କୁ **ଅଧିଦୈବ** କୁହାଯାଇଛି (୮/୪), ସେ ଯେଉଁ ଉର୍ଦ୍ଧ୍ୱଲୋକରେ ନିବାସ କରନ୍ତି, ସେହି ଲୋକବିଶେଷର ନାମ **ବ୍ରହ୍ମଲୋକ**। **ଲୋକାଃ** ପଦଦ୍ୱାରା ଭିନ୍ନ ଭିନ୍ନ ଲୋକପାଳଙ୍କର ସ୍ଥାନବିଶେଷ **ଭୂଃ, ଭୁବଃ, ସ୍ୱଃ** ଆଦି ସମସ୍ତ ଲୋକକୁ ଲକ୍ଷ୍ୟ କରାଯାଇଛି। **ଆ** ଅବ୍ୟୟ ପ୍ରୟୋଗଦ୍ୱାରା ଉପରୋକ୍ତ ବ୍ରହ୍ମଲୋକ ସହିତ ତା'ଠାରୁ ତଳେ ରହିଥିବା ଯେତେସବୁ ଲୋକ ଅଛି, ସେସବୁକୁ ଅନ୍ତର୍ଭୁକ୍ତ କରାଯାଇଛି।

**ପ୍ରଶ୍ନ – ପୁନରାବର୍ତ୍ତୀ** କେଉଁ ଲୋକମାନଙ୍କୁ କହନ୍ତି?

**ଉତ୍ତର –** ବାରମ୍ବାର ନଷ୍ଟ ହେବା ଏବଂ ପୁଣି ଉତ୍ପନ୍ନ ହେବା ଯେଉଁସବୁ ଲୋକର ସ୍ୱଭାବ ଓ ସ୍ୱରୂପ ଏବଂ ଯେଉଁଠି ନିବାସ କରିଥିବା ପ୍ରାଣୀମାନଙ୍କର ମୁକ୍ତି ଅନିଶ୍ଚିତ, ସେସବୁ ଲୋକକୁ **ପୁନରାବର୍ତ୍ତୀ** କହନ୍ତି।

*ସମ୍ବନ୍ଧ – ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତ ଲୋକକୁ ପୁନରାବର୍ତ୍ତୀ ବୋଲି କୁହାଗଲା। 'ସେସବୁ ଲୋକ କାହିଁକି ପୁନରାବର୍ତ୍ତୀ?'— ଏହି ଜିଜ୍ଞାସା ଉପରେ ଭଗବାନ୍ ବର୍ତ୍ତମାନ ବ୍ରହ୍ମାଙ୍କ ଦିନ-ରାତିର ଅବଧି ବର୍ଣ୍ଣନା କରି ସକଳ ଲୋକର ଅନିତ୍ୟତା ସିଦ୍ଧ କରୁଛନ୍ତି–*

**ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍ ବ୍ରହ୍ମଣୋ ବିଦୁଃ।**
**ରାତ୍ରିଂ ଯୁଗସହସ୍ରାନ୍ତାଂ ତେଽହୋରାତ୍ରବିଦୋ ଜନାଃ॥ ୧୭ ॥**

**ଅନ୍ୱୟ –** ବ୍ରହ୍ମଣଃ = ବ୍ରହ୍ମାଙ୍କର; ଯତ୍ = ଯାହା; ଅହଃ = ଏକଦିନ (ତାହାକୁ); ସହସ୍ରଯୁଗପର୍ଯ୍ୟନ୍ତମ୍ = ଏକହଜାର ଚତୁର୍ଯୁଗୀ ଅବଧିବିଶିଷ୍ଟ (ଏବଂ); ରାତ୍ରିମ୍ = ରାତ୍ରିକୁ (ମଧ୍ୟ); ଯୁଗସହସ୍ରାନ୍ତାମ୍ = ଏକହଜାର ଚତୁର୍ଯୁଗୀ ଅବଧିବିଶିଷ୍ଟ (ବୋଲି); (ଯେ) = ଯେଉଁପୁରୁଷମାନେ; ବିଦୁଃ = ତତ୍ତ୍ୱତଃ ଜାଣନ୍ତି; ତେ = ସେହି; ଜନାଃ = ଯୋଗୀଜନମାନେ; ଅହୋରାତ୍ରବିଦଃ = କାଳର ତତ୍ତ୍ୱକୁ ଜାଣନ୍ତି।

**ବ୍ରହ୍ମାଙ୍କର ଗୋଟିଏ ଦିନ ଏକସହସ୍ର ଚତୁର୍ଯୁଗୀ ଅବଧିବିଶିଷ୍ଟ ଏବଂ ଗୋଟିଏ ରାତ୍ରି ମଧ୍ୟ ଏକସହସ୍ର ଚତୁର୍ଯୁଗୀ ଅବଧିବିଶିଷ୍ଟ ବୋଲି ଯେଉଁ ପୁରୁଷମାନେ ତତ୍ତ୍ୱତଃ ଜାଣନ୍ତି, ସେହି ଯୋଗୀଜନମାନେ କାଳର ତତ୍ତ୍ୱ ଜାଣନ୍ତି॥ ୧୭ ॥**

**ପ୍ରଶ୍ନ – ସହସ୍ର ଯୁଗ** ଶବ୍ଦ କେତେ ସମୟକୁ ବୁଝାଉଛି ଏବଂ ସେତିକି ସମୟକୁ ବ୍ରହ୍ମାଙ୍କର ଗୋଟିଏ ଦିନ ଓ ଗୋଟିଏ ରାତିର ପରିମାଣ ବୋଲି ଯାହା କୁହାଗଲା, ତାହାର ଅଭିପ୍ରାୟ କଣ?

**ଉତ୍ତର –** ଏଠାରେ **ଯୁଗ** ଶବ୍ଦ **ଦିବ୍ୟଯୁଗକୁ** ବୁଝାଉଛି। ସତ୍ୟ, ତ୍ରେତା, ଦ୍ୱାପର ଓ କଳି– ଏହି ଚାରିଯୁଗର ସମୟ ମିଶିଲେ ଯାହା ହେବ, ତାହା ଗୋଟିଏ ଦିବ୍ୟଯୁଗ। ଏହା ଦେବତାମାନଙ୍କର ଯୁଗ। ତେଣୁ ଏହାକୁ **ଦିବ୍ୟଯୁଗ** କୁହାଯାଏ। ଦେବତାମାନଙ୍କ ସମୟର ପରିମାଣ ଆମ ସମୟପରିମାଣର ତିନିଶହଷାଠିଏଗୁଣ ଅର୍ଥାତ୍ ଆମର ଗୋଟିଏ ବର୍ଷ ଦେବତାମାନଙ୍କର ଚବିଶ ଘଣ୍ଟା ବା ଏକ ଦିନରାତି। ଆମର ତିରିଶ ବର୍ଷ ଦେବତାମାନଙ୍କର ଏକ ମାସ ଏବଂ ଆମର ତିନିଶହ ଷାଠିଏ ବର୍ଷ ଦେବତାମାନଙ୍କର ଗୋଟିଏ ଦିବ୍ୟବର୍ଷ ସହିତ ସମାନ। ଏହିପରି ବାରହଜାର ଦିବ୍ୟବର୍ଷରେ ଗୋଟିଏ **ଦିବ୍ୟଯୁଗ** ହୁଏ। ଏହାକୁ **ମହାଯୁଗ** ବା **ଚତୁର୍ଯୁଗୀ** ମଧ୍ୟ କହନ୍ତି। ଏହି ସଂଖ୍ୟାକୁ ଧରି ହିସାବ କଲେ ତାହା ଆମର ୪୩,୨୦,୦୦୦ ବର୍ଷ ହୁଏ। ଦିବ୍ୟବର୍ଷ ଅନୁସାରେ ବାରଶହ ଦିବ୍ୟବର୍ଷରେ ଗୋଟିଏ କଳି, ଚବିଶଶହ ଦିବ୍ୟବର୍ଷରେ ଗୋଟିଏ ଦ୍ୱାପର, ଛତିଶଶହ ଦିବ୍ୟବର୍ଷରେ ଗୋଟିଏ ତ୍ରେତା ଓ ଅଠଚାଳିଶଶହ ଦିବ୍ୟବର୍ଷରେ ଗୋଟିଏ ସତ୍ୟଯୁଗ ହୁଏ। ଏସବୁ ମିଶି ସର୍ବମୋଟ ୧୨,୦୦୦ ବର୍ଷ ହୁଏ, ଯାହା କି ଏକ ଦିବ୍ୟଯୁଗ ସହିତ ସମାନ। ଏହିପରି ହଜାରେ ଦିବ୍ୟଯୁଗରେ ବ୍ରହ୍ମାଙ୍କର

ଗୋଟିଏ ଦିନ ହୁଏ ଏବଂ ଆଉ ହଜାରେ ଦିବ୍ୟଯୁଗରେ ବ୍ରହ୍ମାଙ୍କର ଗୋଟିଏ ରାତି ହୁଏ। ଏହାକୁ ଅନ୍ୟରୂପରେ ମଧ୍ୟ ବୁଝନ୍ତୁ, ଯଥା :— ଆମର ଯୁଗମାନଙ୍କର ସମୟର ପରିମାଣ ଏହିପରି —

| | | |
|---|---|---|
| କଳିଯୁଗ | ୪,୩୨,୦୦୦ | ବର୍ଷ |
| ଦ୍ୱାପର | ୮,୬୪,୦୦୦ | ବର୍ଷ (କଳିଯୁଗର ଦୁଇଗୁଣ) |
| ତ୍ରେତା | ୧୨,୯୬,୦୦୦ | ବର୍ଷ (କଳିଯୁଗର ତିନିଗୁଣ) |
| ସତ୍ୟଯୁଗ | ୧୭,୨୮,୦୦୦ | ବର୍ଷ (କଳିଯୁଗର ଚାରିଗୁଣ) |

ସର୍ବମୋଟ ୪୩,୨୦,୦୦୦ ବର୍ଷ

ଏବଂ ଏହା ଗୋଟିଏ ଦିବ୍ୟଯୁଗ ହେଲା। ଏହିପରି ଏକ ହଜାର ଦିବ୍ୟଯୁଗରେ ଅର୍ଥାତ୍ ଆମର ୪,୩୨,୦୦,୦୦,୦୦୦ (୪୩୨ କୋଟି) ବର୍ଷରେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ ଏବଂ ଆଉ ସେତିକି ବର୍ଷରେ ବ୍ରହ୍ମାଙ୍କର ଗୋଟିଏ ରାତି ହୁଏ।

ମନୁସ୍ମୃତିର ପ୍ରଥମ ଅଧ୍ୟାୟରେ ଚଉଷଠିରୁ ତେସ୍ତରି ଶ୍ଳୋକପର୍ଯ୍ୟନ୍ତ ଏହି ବିଷୟର ବିଶଦ ବର୍ଣ୍ଣନା ରହିଛି। ବ୍ରହ୍ମାଙ୍କର ଦିନକୁ 'କଳ୍ପ' ବା 'ସର୍ଗ' ଓ ରାତିକୁ 'ପ୍ରଳୟ' କହନ୍ତି। ଏପରି ତିରିଶ ଦିନରାତିରେ ବ୍ରହ୍ମାଙ୍କର ଏକ ମାସ, ଏପରି ବାର ମାସରେ ଗୋଟିଏ ବର୍ଷ ଓ ଏପରି ଶହେ ବର୍ଷରେ ବ୍ରହ୍ମାଙ୍କର ଆୟୁ ପୂର୍ଣ୍ଣ ହୁଏ। ବ୍ରହ୍ମାଙ୍କର ଦିନ-ରାତିର ପରିମାଣ କହି ଭଗବାନ୍ ଦର୍ଶାଉଦେଇଛନ୍ତି ଯେ, ବ୍ରହ୍ମାଙ୍କର ଜୀବନ ଓ ତାଙ୍କ ବ୍ରହ୍ମଲୋକ ମଧ୍ୟ ଏପରିଭାବରେ ସୀମିତ ଓ ନିର୍ଦ୍ଦିଷ୍ଟକାଳର ଅବଧିବିଶିଷ୍ଟ। ଅତଏବ ସେ ମଧ୍ୟ ଅନିତ୍ୟ ଏବଂ ସେ ଯେତେବେଳେ ଅନିତ୍ୟ, ତାଙ୍କ ତଳଲୋକର ଓ ସେଥିରେ ବାସକରୁଥିବା ପ୍ରାଣୀମାନଙ୍କର ଶରୀର ଯେ ଅନିତ୍ୟ, ତାହା କହିବା ଅନାବଶ୍ୟକ।

**ପ୍ରଶ୍ନ —** 'ଯେଉଁ ଲୋକେ ବ୍ରହ୍ମାଙ୍କ ଦିନ-ରାତିର ପରିମାଣ ଜାଣନ୍ତି, ସେମାନେ କାଳତତ୍ତ୍ୱ ଜାଣନ୍ତି, —ଏହାର ଅଭିପ୍ରାୟ କଣ ?

**ଉତ୍ତର —** ବ୍ରହ୍ମାଙ୍କ ଦିନ-ରାତିର ଅବଧି ଜାଣିପାରିଲେ ମନୁଷ୍ୟକୁ ବ୍ରହ୍ମଲୋକ ଏବଂ ତା'ର ଅନ୍ତର୍ବର୍ତ୍ତୀ ସମସ୍ତ ଲୋକର ଅନିତ୍ୟତା ବିଷୟରେ ଜ୍ଞାନ ହୋଇଯାଏ। ସେତେବେଳେ ସେ ଭଲଭାବରେ ବୁଝିପାରେ : ଯେଉଁଠି ଲୋକ ହିଁ ଅନିତ୍ୟ, ସେଠାର ଭୋଗ-ଭାଗ୍ୟ ବି ନିଶ୍ଚୟ ଅନିତ୍ୟ ଓ ବିନାଶଶୀଳ ହୋଇଥିବ ଏବଂ ଯେଉଁ ବସ୍ତୁ ଅନିତ୍ୟ ଓ ବିନାଶଶୀଳ, ତାହା ସ୍ଥାୟୀ ସୁଖ ଦେଇ ନ ପାରେ; ଅତଏବ ଇହଲୋକ ଓ ପରଲୋକର ଭୋଗରେ ଆସକ୍ତ ହୋଇ ତାହା ପାଇବାକୁ ଚେଷ୍ଟା କରିବା ତଥା ମନୁଷ୍ୟଜୀବନକୁ ପ୍ରମାଦରେ ଲଗାଇ ତାହାକୁ ବ୍ୟର୍ଥ କରିଦେବା ଏକ ବିରାଟ ମୂର୍ଖତା; ମନୁଷ୍ୟଜୀବନର ଅବଧି ଅତ୍ୟନ୍ତ ସ୍ୱଳ୍ପ (୯/୩୩); ଏଣୁ ଭଗବାନଙ୍କୁ ପ୍ରେମପୂର୍ବକ ନିରନ୍ତର ଚିନ୍ତନ କରି ଶୀଘ୍ରାତିଶୀଘ୍ର ତାଙ୍କୁ ପାଇଯିବା ହିଁ ବୁଦ୍ଧିମତାର କାର୍ଯ୍ୟ ଏବଂ ଏଥିରେ ହିଁ ମନୁଷ୍ୟଜୀବନର ସଫଳତା ନିହିତ। ଯେ ଏପରି ବୁଝିପାରନ୍ତି, ସେ ହିଁ ଦିନରାତିରୂପକ କାଳତତ୍ତ୍ୱ ଜାଣି ନିଜ ଅମୂଲ୍ୟ ସମୟର ସଫଳ ବିନିଯୋଗ କରିପାରନ୍ତି।

*ସମ୍ବନ୍ଧ —* ବ୍ରହ୍ମାଙ୍କ ଦିନରାତିର ପରିମାଣ କହିସାରି ବର୍ତ୍ତମାନ ସେହି ଦିନ ଓ ରାତିର ଆରମ୍ଭରେ ବାରମ୍ବାର ହେଉଥିବା ସମସ୍ତ ପ୍ରାଣୀଙ୍କର ଉତ୍ପତ୍ତି ଓ ପ୍ରଳୟର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେହି ସମସ୍ତଙ୍କ ଅନିତ୍ୟତା ବିଷୟ କହୁଛନ୍ତି—

## ଅବ୍ୟକ୍ତାଦ୍ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।
## ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ ।। ୧୮ ।।

**ଅନ୍ୱୟ —** **ସର୍ବାଃ** = ସକଳ; **ବ୍ୟକ୍ତୟଃ** = ଚରାଚର ଭୂତଗଣ; **ଅହରାଗମେ** = ବ୍ରହ୍ମାଙ୍କ ଦିନର ପ୍ରବେଶକାଳରେ; **ଅବ୍ୟକ୍ତାତ୍** = ଅବ୍ୟକ୍ତରୁ ଅର୍ଥାତ୍ ବ୍ରହ୍ମାଙ୍କ ସୂକ୍ଷ୍ମଶରୀରରୁ; **ପ୍ରଭବନ୍ତି** = ଉତ୍ପନ୍ନ ହୁଅନ୍ତି; **ରାତ୍ର୍ୟାଗମେ** = (ଏବଂ) ବ୍ରହ୍ମାଙ୍କ ରାତ୍ରିର ପ୍ରବେଶକାଳରେ; **ତତ୍ର** = ସେହି; **ଅବ୍ୟକ୍ତସଂଜ୍ଞକେ** = ଅବ୍ୟକ୍ତ ନାମକ ବ୍ରହ୍ମାଙ୍କ ସୂକ୍ଷ୍ମ ଶରୀରରେ; **ଏବ** = ହିଁ; **ପ୍ରଲୀୟନ୍ତେ** = ଲୀନ ହୋଇଯାଆନ୍ତି।

**ସକଳ ଚରାଚର ଜୀବମାନେ ବ୍ରହ୍ମାଙ୍କ ଦିନର ଆରମ୍ଭରେ ଅବ୍ୟକ୍ତରୁ ଅର୍ଥାତ୍ ବ୍ରହ୍ମାଙ୍କ ସୂକ୍ଷ୍ମଶରୀରରୁ ଉତ୍ପନ୍ନ ହୁଅନ୍ତି, ଏବଂ ବ୍ରହ୍ମାଙ୍କ ରାତ୍ରିର ଆରମ୍ଭରେ ବ୍ରହ୍ମାଙ୍କର ଅବ୍ୟକ୍ତ ନାମକ ସେହି ସୂକ୍ଷ୍ମଶରୀରରେ ହିଁ ଲୀନ ହୋଇଯାନ୍ତି।। ୧୮ ।।**

**ପ୍ରଶ୍ନ –** ଏଠାରେ **ସର୍ବାଃ** ବିଶେଷଣ ସହିତ **ବ୍ୟକ୍ତୟଃ** ପଦ କେଉଁମାନଙ୍କ ବାଚକ ?

**ଉତ୍ତର –** ଯେଉଁ ବସ୍ତୁ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜାଣି ହୁଏ, ତା'ର ନାମ 'ବ୍ୟକ୍ତି'। ସକଳ ଭୂତପ୍ରାଣୀଙ୍କୁ ଜାଣି ହୁଏ। ଅତଏବ ଦେବ, ମନୁଷ୍ୟ, ପିତୃ, ପଶୁ, ପକ୍ଷୀ, ଆଦି ଯୋନିମାନଙ୍କର ବ୍ୟକ୍ତରୂପରେ ସ୍ଥିତ ଯେତେସବୁ ଦେହଧାରୀ ପ୍ରାଣୀ ଅଛନ୍ତି, **ସର୍ବାଃ** ବିଶେଷଣ ସହିତ **ବ୍ୟକ୍ତୟଃ** ପଦଟି ହେଉଛି ସେ ସମସ୍ତଙ୍କର ବାଚକ।

**ପ୍ରଶ୍ନ – ଅବ୍ୟକ୍ତ** ଶବ୍ଦ କାହାକୁ ଲକ୍ଷ୍ୟ କରି କୁହାଯାଇଛି ଏବଂ 'ବ୍ରହ୍ମାଙ୍କ ଦିନର ଆଗମନରେ ସେହି ଅବ୍ୟକ୍ତରୁ ବ୍ୟକ୍ତିମାନଙ୍କର ଉତ୍ପନ୍ନ ହେବା' କହିଲେ କଣ ବୁଝାଏ ?

**ଉତ୍ତର –** ପ୍ରକୃତିର ଯେଉଁ ସୂକ୍ଷ୍ମ ପରିଣାମ ରହିଛି, ଯାହାକୁ ବ୍ରହ୍ମାଙ୍କର ସୂକ୍ଷ୍ମଶରୀର ମଧ୍ୟ କହନ୍ତି, ସ୍ଥୂଳପଞ୍ଚମହାଭୂତ ଉତ୍ପନ୍ନ ହେବା ପୂର୍ବରୁ ଯେଉଁ ସ୍ଥିତି ଥାଏ, ସେହି ସୂକ୍ଷ୍ମ ଅପରାପ୍ରକୃତିର ନାମ ଏଠାରେ **ଅବ୍ୟକ୍ତ**।

ବ୍ରହ୍ମାଙ୍କ ଦିନର ଆଗମନରେ ଅର୍ଥାତ୍ ଯେତେବେଳେ ବ୍ରହ୍ମା ନିଜର ସୁଷୁପ୍ତି ଅବସ୍ଥା ତ୍ୟାଗ କରି ଜାଗ୍ରତ୍ ଅବସ୍ଥା ସ୍ୱୀକାର କରନ୍ତି, ସେତେବେଳେ ସେହି ସୂକ୍ଷ୍ମ ପ୍ରକୃତିରେ ବିକାର ଉତ୍ପନ୍ନ ହୁଏ ଏବଂ ତାହା ସ୍ଥୂଳରୂପରେ ପରିଣତ ହୋଇଯାଏ ଏବଂ ସ୍ଥୂଳରୂପରେ ପରିଣତ ହୋଇଥିବା ସେହି ପ୍ରକୃତି ସହିତ ସମସ୍ତ ପ୍ରାଣୀ ନିଜ ନିଜର କର୍ମାନୁସାରେ ବିଭିନ୍ନରୂପରେ ସଂଯୁକ୍ତ ହୋଇଯାଆନ୍ତି। ଏହା ହିଁ ଅବ୍ୟକ୍ତରୁ ବ୍ୟକ୍ତିମାନଙ୍କର ଉତ୍ପନ୍ନ ହେବା।

**ପ୍ରଶ୍ନ –** ରାତ୍ରିର ଆଗମନ ଅର୍ଥ କଣ ଏବଂ ସେହି ସମୟରେ ଅବ୍ୟକ୍ତରୁ ଉତ୍ପନ୍ନ ସମସ୍ତ ବ୍ୟକ୍ତି ପୁନଃ ସେଥିରେ ଲୀନ ହୋଇଯାନ୍ତି କହିଲେ କଣ ବୁଝାଏ ?

**ଉତ୍ତର –** ଏକହଜାର ଦିବ୍ୟଯୁଗ ବିତିଯିବା ପରେ ଯେଉଁ ମୁହୂର୍ତ୍ତରେ ବ୍ରହ୍ମା ଜାଗ୍ରତ୍ ଅବସ୍ଥା ତ୍ୟାଗ କରି ସୁଷୁପ୍ତି ଅବସ୍ଥା ଗ୍ରହଣ କରନ୍ତି, ସେହି ପ୍ରଥମ କ୍ଷଣକୁ ବ୍ରହ୍ମାଙ୍କ ରାତ୍ରିର ଆଗମନ କହନ୍ତି।

ସେହି ସମୟରେ ସ୍ଥୂଳରୂପରେ ପରିଣତ ହୋଇଥିବା ପ୍ରକୃତି ସୂକ୍ଷ୍ମ ଅବସ୍ଥା ପ୍ରାପ୍ତ ହୁଏ ଏବଂ ସମସ୍ତ ଦେହଧାରୀ ପ୍ରାଣୀ ଭିନ୍ନ ଭିନ୍ନ ସ୍ଥୂଳଶରୀରରୁ ରହିତ ହୋଇ ପ୍ରକୃତିର ସୂକ୍ଷ୍ମ ଅବସ୍ଥାରେ ସ୍ଥିତ ହୋଇଯାଆନ୍ତି। ଏହା ହିଁ ସକଳ ବ୍ୟକ୍ତିଙ୍କର ସେହି ଅବ୍ୟକ୍ତରେ ଲୟ ହୋଇଯିବା। ଆତ୍ମା ଅଜନ୍ମା ଓ ଅବିନାଶୀ। ତେଣୁ ପ୍ରକୃତରେ ତା'ର ଉତ୍ପତ୍ତି ନାହିଁ, କି ଲୟ ନାହିଁ। ଅତଏବ ଏଠାରେ ବୁଝିବା ଉଚିତ ଯେ, ପ୍ରକୃତିରେ ସ୍ଥିତ ପ୍ରାଣୀମାନଙ୍କ ସହିତ ସମ୍ବନ୍ଧ ରଖିଥିବା ପ୍ରକୃତିର ସୂକ୍ଷ୍ମ ଅଂଶ ସ୍ଥୂଳରୂପରେ ପରିଣତ ହୋଇଯିବା ହିଁ ସେମାନଙ୍କର ଉତ୍ପତ୍ତି ଏବଂ ସେହି ସ୍ଥୂଳରୂପର ପୁନଃ ସୂକ୍ଷ୍ମରୂପରେ ଲୟ ହୋଇଯିବା ହିଁ ସେହି 'ପ୍ରାଣୀମାନଙ୍କର ଲୟ ହେବା'।

**ପ୍ରଶ୍ନ –** ଏଠାରେ ଯେଉଁ 'ଅବ୍ୟକ୍ତ'କୁ 'ସୂକ୍ଷ୍ମ ପ୍ରକୃତି' କୁହାଗଲା, ଏଥିରେ ଏବଂ ନବମ ଅଧ୍ୟାୟର ସପ୍ତମ ତଥା ଅଷ୍ଟମ ଶ୍ଳୋକରେ ଯେଉଁ ପ୍ରକୃତିର ବର୍ଣ୍ଣନା ହୋଇଛି, ସେହି ଦୁଇଟି ପ୍ରକୃତି ମଧ୍ୟରେ କି ପାର୍ଥକ୍ୟ ରହିଛି ?

**ଉତ୍ତର –** ସ୍ୱରୂପତଃ କୌଣସି ପାର୍ଥକ୍ୟ ନାହିଁ। ଏହା ଗୋଟିଏ ହିଁ ପ୍ରକୃତିର ଅବସ୍ଥାଭେଦରେ ଦୁଇପ୍ରକାର ବର୍ଣ୍ଣନା। ଅଭିପ୍ରାୟ ଏହି ଯେ, ଏହି ଶ୍ଳୋକରେ **ଅବ୍ୟକ୍ତ** ନାମରେ ସେହି ଅପରା ପ୍ରକୃତିର ବର୍ଣ୍ଣନା ହୋଇଛି, ଯାହାକୁ ସପ୍ତମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ଆଠପ୍ରକାରରେ ବିଭକ୍ତ ବୋଲି କୁହାଯାଇଛି ଏବଂ ନବମ ଅଧ୍ୟାୟର ସପ୍ତମ ଓ ଅଷ୍ଟମ ଶ୍ଳୋକରେ ସେହି ମୂଳ ପ୍ରକୃତିର ବର୍ଣ୍ଣନା କରାଯାଇଛି, ଯାହା କି ନିଜର ଅନିର୍ବଚନୀୟ ରୂପରେ ସ୍ଥିତ ଓ ଯାହା ଆଠପ୍ରକାରେ ବିଭକ୍ତ ହୋଇ ନାହିଁ। ଏହି ମୂଳପ୍ରକୃତି ଯେତେବେଳେ କାରଣ ଅବସ୍ଥାରୁ ସୂକ୍ଷ୍ମ ଅବସ୍ଥାରେ ପରିଣତ ହୁଏ, ସେତେବେଳେ ତାହାକୁ ହିଁ ଏହିପରି ଆଠ ଭାଗରେ ବିଭକ୍ତ ଅପରା ପ୍ରକୃତି ବୋଲି କୁହାଯାଏ।

*ସମ୍ବନ୍ଧ – ଯଦ୍ୟପି ବ୍ରହ୍ମାଙ୍କ ରାତ୍ରିର ଆରମ୍ଭରେ ସମସ୍ତ ପ୍ରାଣୀ ଅବ୍ୟକ୍ତରେ ଲୀନ ହୋଇଯା'ନ୍ତି, ତଥାପି ଯେତେବେଳଯାଏ ସେମାନେ ପରମପୁରୁଷ ପରମେଶ୍ୱରଙ୍କୁ ପ୍ରାପ୍ତ ହୋଇ ନ ଥାନ୍ତି ସେତେବେଳଯାଏ ସେମାନଙ୍କର ପୁନର୍ଜନ୍ମରୁ ମୁକ୍ତି ହୋଇ ନ ଥାଏ; ସେମାନେ ଜନ୍ମମରଣ ଚକ୍ରରେ ଘୂରୁଥାନ୍ତି। ଏହି ଭାବ ଦର୍ଶାଇବା-ନିମନ୍ତେ ଭଗବାନ୍ କହୁଛନ୍ତି–*

**ଭୂତଗ୍ରାମଃ ସ ଏବାୟଂ ଭୂତ୍ୱା ଭୂତ୍ୱା ପ୍ରଲୀୟତେ।**
**ରାତ୍ର୍ୟାଗମେଽବଶଃ ପାର୍ଥ ପ୍ରଭବତ୍ୟହରାଗମେ ॥ ୧୯ ॥**

**ଅନ୍ୱୟ—** **ପାର୍ଥ** = ହେ ପାର୍ଥ; **ସଃ, ଏବ; ଅୟମ୍ ଭୂତଗ୍ରାମଃ** = ଏହି ଭୂତସମୁଦାୟ; **ଭୂତ୍ୱା, ଭୂତ୍ୱା** = ବାରମ୍ବାର ଉତ୍ପନ୍ନ ହୋଇ; **ଅବଶଃ** = ପ୍ରକୃତିର ପରବଶ ହୋଇ; **ରାତ୍ର୍ୟାଗମେ** = ରାତ୍ରିର ପ୍ରବେଶକାଳରେ; **ପ୍ରଲୀୟତେ** = ଲୀନ ହୋଇଯାଏ (ଏବଂ); **ଅହରାଗମେ** = ଦିନର ପ୍ରବେଶକାଳରେ (ପୁଣି); **ପ୍ରଭବତି** = ଉତ୍ପନ୍ନ ହୁଏ।

**ହେ ପାର୍ଥ! ସେହି ଭୂତସମୁଦାୟ ବାରମ୍ବାର ଉତ୍ପନ୍ନ ହୋଇ ପ୍ରକୃତିର ପରବଶ ହେବାରୁ ରାତ୍ରିର ପ୍ରବେଶକାଳରେ ଲୀନ ହୋଇଯାଏ ଏବଂ ଦିନର ପ୍ରବେଶକାଳରେ ପୁନର୍ବାର ଉତ୍ପନ୍ନ ହୁଏ।। ୧୯ ।।**

**ପ୍ରଶ୍ନ—** ଏଠାରେ **ଭୂତଗ୍ରାମଃ** ପଦ କାହାର ବାଚକ ତଥା ତା'ସହିତ **ସଃ, ଏବ, ଅୟମ୍** ଏହି ପଦମାନ ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର—** **ଭୂତଗ୍ରାମଃ** ପଦ ଏଠାରେ ଚରାଚର ସକଳ ପ୍ରାଣୀଙ୍କର ବାଚକ। ତା'ସହିତ **ସଃ, ଏବ** ଏବଂ **ଅୟମ୍** ପଦମାନ ପ୍ରୟୋଗ କରି କହୁଛନ୍ତି ଯେ, ସକଳ ଚରାଚର ପ୍ରାଣୀ ବ୍ରହ୍ମାଙ୍କ ରାତ୍ରିର ଆରମ୍ଭରେ ଅବ୍ୟକ୍ତରେ ଲୀନ ହୁଅନ୍ତି। ଯେଉଁମାନଙ୍କୁ ପୂର୍ବଶ୍ଳୋକରେ 'ସର୍ବାଃ ବ୍ୟକ୍ତୟଃ' ନାମରେ କୁହାଗଲା, ସେମାନେ ହିଁ ବ୍ରହ୍ମାଙ୍କ ଦିନର ଆରମ୍ଭରେ ପୁନର୍ବାର ଉତ୍ପନ୍ନ ହୁଅନ୍ତି। ଅବ୍ୟକ୍ତରେ ଲୀନ ହେବା ଫଳରେ ସେମାନେ ମୁକ୍ତ ହୁଅନ୍ତି ନାହିଁ, କି ସେମାନଙ୍କର ଭିନ୍ନସତ୍ତା ଲୋପ ପାଏ ନାହିଁ। ତେଣୁ ବ୍ରହ୍ମାଙ୍କ ରାତ୍ରି ସମାପ୍ତ ହେବା ପରେ ପରେ ସେମାନେ ସମସ୍ତେ ପୁଣି ଥରେ ନିଜ ନିଜର ଗୁଣ ଓ କର୍ମ ଅନୁସାରେ ଯଥାଯୋଗ୍ୟ ସ୍ଥୂଳଶରୀର ପ୍ରାପ୍ତ ହୋଇ ପ୍ରକଟ ହୋଇଯାଆନ୍ତି। ଭଗବାନ୍ କହୁଛନ୍ତି, 'କଳ୍ପକଳ୍ପାନ୍ତରରୁ ଯେଉଁମାନେ ଏପରି ଅବ୍ୟକ୍ତରେ ଲୀନ ଓ ସେଥିରୁ ପ୍ରକଟ ହୋଇଚାଲନ୍ତି, ସେମାନେ ତୁମକୁ ପ୍ରତ୍ୟକ୍ଷ ଦିଶୁଥିବା ସ୍ଥାବରଜଙ୍ଗମ ହିଁ ଅଟନ୍ତି; କେହି ନୂତନ ଉତ୍ପନ୍ନ ହୋଇ ନାହାନ୍ତି।'

**ପ୍ରଶ୍ନ—** **ଭୂତ୍ୱା** ପଦ ଦୁଇଥର ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦର୍ଶାଉଛନ୍ତି ଯେ, ଏପରିଭାବରେ ଏହି ପ୍ରାଣୀସକଳ ଅନାଦିକାଳରୁ ଉତ୍ପନ୍ନ ହୋଇ ହୋଇ ପୁଣି ଲୀନ ହୋଇ ଆସୁଛନ୍ତି। ବ୍ରହ୍ମାଙ୍କ ଆୟୁ ଶହେ ବର୍ଷ ପୂର୍ଣ୍ଣ ହେବା ପରେ ଯେତେବେଳେ ବ୍ରହ୍ମାଙ୍କର ଶରୀର ମଧ୍ୟ ମୂଳପ୍ରକୃତିରେ ଲୀନ ହୋଇଯାଏ, ଏବଂ ତା'ସହିତ ସକଳ ପ୍ରାଣୀ ମଧ୍ୟ ସେଥିରେ ଲୀନ ହୋଇଯାଆନ୍ତି (୯/୭), ସେତେବେଳେ ମଧ୍ୟ ଏମାନଙ୍କର ଜନ୍ମମୃତ୍ୟୁର ଚକ୍ର ଶେଷ ହୁଏ ନାହିଁ। ତା' ପରେ ମଧ୍ୟ ଏମାନେ ବାରମ୍ବାର ଉତ୍ପନ୍ନ ହୋଇଚାଲନ୍ତି (୯/୮)। ଯେତେବେଳଯାଏ ପ୍ରାଣୀଙ୍କୁ ଭଗବତ୍ପ୍ରାପ୍ତି ହୋଇ ନାହିଁ, ସେତେବେଳଯାଏ ପ୍ରାଣୀ ଏପରି ଉତ୍ପନ୍ନ ହୋଇ ପ୍ରକୃତିରେ ଲୀନ ହୋଇଚାଲିଥିବେ।

**ପ୍ରଶ୍ନ—** **ଅବଶଃ** ପଦର ଅଭିପ୍ରାୟ କଣ ?

**ଉତ୍ତର—** **ଅବଶଃ** ପଦଟି **ଭୂତଗ୍ରାମଃ**ର ବିଶେଷଣ। ଯେଉଁମାନେ ଅନ୍ୟ କାହାର ଅଧୀନ, ଯେଉଁମାନେ ସ୍ୱତନ୍ତ୍ର ନୁହନ୍ତି, ସେମାନଙ୍କୁ **ଅବଶ** ବା ପରବଶ କହନ୍ତି। ଅବ୍ୟକ୍ତରୁ ଉତ୍ପନ୍ନ ହୋଇ ପୁଣି ଅବ୍ୟକ୍ତରେ ହିଁ ଲୀନ ହେଉଥିବା ଏହି ସମସ୍ତ ପ୍ରାଣୀ ନିଜ ନିଜ ସ୍ୱଭାବର ବଶ ଅଟନ୍ତି, ଅର୍ଥାତ୍ ଅନାଦିସିଦ୍ଧ ଭିନ୍ନ ଭିନ୍ନ ଗୁଣ ଓ କର୍ମ ଅନୁସାରେ ଏମାନଙ୍କର ଯେଉଁସବୁ ଭିନ୍ନ ଭିନ୍ନ ପ୍ରକୃତି ରହିଛି, ସେହି ପ୍ରକୃତି ବା ସ୍ୱଭାବର ବଶ ହୋଇଥିବାଯୋଗୁଁ ହିଁ ଏମାନଙ୍କର ବାରମ୍ବାର ଜନ୍ମ ଓ ମରଣ ହୁଏ। ତେଣୁ ତେର ଅଧ୍ୟାୟର ଏକୋଇଶ ଶ୍ଳୋକରେ ଭଗବାନ୍ କହିଛନ୍ତି, 'ପ୍ରକୃତିରେ ସ୍ଥିତ ପୁରୁଷ ହିଁ ପ୍ରକୃତିଜାତ ଗୁଣ ଅର୍ଥାତ୍ ସୁଖ-ଦୁଃଖ ଭୋଗ କରେ ଏବଂ ପ୍ରକୃତିର ସଙ୍ଗ ହିଁ ଏହାର ଭଲ-ମନ୍ଦ ଯୋନିରେ ଜନ୍ମ ହେବାର କାରଣ।' ଏଥିରୁ ଏହା ସ୍ପଷ୍ଟ ହୋଇଯାଉଛି ଯେ, ଯେଉଁ ଜୀବ ପ୍ରକୃତିକୁ ଅତିକ୍ରମ କରି ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ, ତାହାର ପୁନର୍ଜନ୍ମ ହୁଏ ନାହିଁ।

**ପ୍ରଶ୍ନ—** ସ୍ୱଭାବର ଅଧୀନ ସମସ୍ତ ପ୍ରାଣୀ ଏପରି ଯେଉଁ ବାରମ୍ବାର ଉତ୍ପନ୍ନ ହୁଅନ୍ତି, ସେମାନଙ୍କୁ ସେମାନଙ୍କ ନିଜ ନିଜ ଗୁଣ ଓ କର୍ମ ଅନୁସାରେ ଠିକ୍ ଠିକ୍ ବ୍ୟବସ୍ଥା ସହ କିଏ ଉତ୍ପନ୍ନ କରନ୍ତି ? —ପ୍ରକୃତି, ପରମେଶ୍ୱର, ବ୍ରହ୍ମା, ବା ଅନ୍ୟ କେହି ?

**ଉତ୍ତର—** ଏଠାରେ ବ୍ରହ୍ମାଙ୍କ ଦିନ-ରାତିର ପ୍ରସଙ୍ଗ ଚାଲିଥିବାରୁ ଏହା ବୁଝିବା ଉଚିତ ଯେ, ବ୍ରହ୍ମା ହିଁ ସମସ୍ତ ପ୍ରାଣୀମାନଙ୍କୁ ସେମାନଙ୍କ ଗୁଣକର୍ମାନୁସାରେ ଶରୀର ସହିତ ସମ୍ବନ୍ଧିତ କରାଇ ବାରମ୍ବାର ଉତ୍ପନ୍ନ କରାନ୍ତି। ମହାପ୍ରଳୟ ପରେ, ଯେତେବେଳେ ବ୍ରହ୍ମାଙ୍କର ଉତ୍ପତ୍ତି ହୋଇ ନ ଥାଏ, ସେତେବେଳେ ସୃଷ୍ଟିର ରଚନା ସ୍ୱୟଂ

ଭଗବାନ୍ କରନ୍ତି। କିନ୍ତୁ ବ୍ରହ୍ମାଙ୍କ ଉତ୍ପନ୍ନ ହେବା ପରେ ସମସ୍ତଙ୍କର ସୃଷ୍ଟି ବ୍ରହ୍ମା ହିଁ କରନ୍ତି।

ନବମ ଅଧ୍ୟାୟରେ (ଶ୍ଳୋକ ୭ରୁ ୧୦) ଓ ଚଉଦ ଅଧ୍ୟାୟରେ (ଶ୍ଳୋକ ୩,୪) ଯେଉଁ ସୃଷ୍ଟିରଚନା ପ୍ରସଙ୍ଗ ରହିଛି, ତାହା ମହାପ୍ରଳୟପରେ ମହାସର୍ଗର ଆଦିକାଳର ପ୍ରସଙ୍ଗ ଏବଂ ଏଠାରେ କରାଯାଇଥିବା ବର୍ଣ୍ଣନା ବ୍ରହ୍ମାଙ୍କ ରାତି (ପ୍ରଳୟ) ପରେ, ଏବଂ ବ୍ରହ୍ମାଙ୍କ ଦିନ (ସର୍ଗ) ଆରମ୍ଭ ସମୟର।

***ସମ୍ବନ୍ଧ –*** *ବ୍ରହ୍ମାଙ୍କ ରାତିର ଆରମ୍ଭରେ ଯେଉଁ ଅବ୍ୟକ୍ତରେ ସମସ୍ତ ପ୍ରାଣୀ ଲୀନ ହୁଅନ୍ତି ଏବଂ ଦିନର ଆରମ୍ଭ ହେବାମାତ୍ରେ ଯାହାଠାରୁ ପୁଣି ଉତ୍ପନ୍ନ ହୁଅନ୍ତି, ସେହି ଅବ୍ୟକ୍ତ ସର୍ବଶ୍ରେଷ୍ଠ, ନା ତା'ଠାରୁ ମଧ୍ୟ ବଡ଼ ହୋଇ ଅନ୍ୟ କିଛି ଅଛି? ଏହି ପ୍ରଶ୍ନର ଉତ୍ତରରେ ଭଗବାନ୍ କହୁଛନ୍ତି–*

**ପରସ୍ତସ୍ମାତ୍ତୁ ଭାବୋଽନ୍ୟୋଽବ୍ୟକ୍ତୋଽବ୍ୟକ୍ତାତ୍ ସନାତନଃ।**
**ଯଃ ସ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି॥ ୨୦ ॥**

**ଅନ୍ୱୟ –** **ତୁ** = ପରନ୍ତୁ; **ତସ୍ମାତ୍** = ସେହି; **ଅବ୍ୟକ୍ତାତ୍** = ଅବ୍ୟକ୍ତଠାରୁ (ମଧ୍ୟ); **ପରଃ** = ଅତି ଶ୍ରେଷ୍ଠ; **ଅନ୍ୟଃ** = ଅନ୍ୟ ଅର୍ଥାତ୍ ଭିନ୍ନ; **ଯଃ** = ଯେଉଁ; **ସନାତନଃ** = ସନାତନ; **ଅବ୍ୟକ୍ତଃ** = ଅବ୍ୟକ୍ତ; **ଭାବଃ** = ଭାବ; **ସଃ** = ସେହି ପରମ ଦିବ୍ୟପୁରୁଷ; **ସର୍ବେଷୁ** = ସମସ୍ତ; **ଭୂତେଷୁ** = ଭୂତ; **ନଶ୍ୟତ୍ସୁ, ନ, ବିନଶ୍ୟତି** = ନଷ୍ଟ ହେଲା ପରେ ମଧ୍ୟ ନଷ୍ଟ ହୁଅନ୍ତି ନାହିଁ।

**ଉକ୍ତ ଅବ୍ୟକ୍ତଠାରୁ ମଧ୍ୟ ଯେଉଁ ଅତିଶ୍ରେଷ୍ଠ ଅର୍ଥାତ୍ ଯେଉଁ ବିଲକ୍ଷଣ ସନାତନ ଅବ୍ୟକ୍ତ ଭାବ ରହିଛି, ସେହି ପରମ ଦିବ୍ୟ ପୁରୁଷ, ସକଳ ଚରାଚର ପ୍ରାଣୀ ନଷ୍ଟ ହୋଇଗଲେ ମଧ୍ୟ ବିନାଶପ୍ରାପ୍ତ ହୁଅନ୍ତି ନାହିଁ। ॥ ୨୦ ॥**

**ପ୍ରଶ୍ନ –** ଏଠାରେ **ତସ୍ମାତ୍** ବିଶେଷଣ ସହିତ **ଅବ୍ୟକ୍ତାତ୍** ପଦ କେଉଁ 'ଅବ୍ୟକ୍ତ'ର ବାଚକ? ତା'ଠାରୁ ଭିନ୍ନ ଦ୍ୱିତୀୟ 'ଅବ୍ୟକ୍ତଭାବ' କଣ? ତଥା ତାହାକୁ **ପରଃ, ଅନ୍ୟଃ** ଓ **ସନାତନଃ** କହିବାର ଅଭିପ୍ରାୟ କଣ?

**ଉତ୍ତର –** ଅଠର ଶ୍ଳୋକରେ ଯେଉଁ 'ଅବ୍ୟକ୍ତ'ରେ ସମସ୍ତଙ୍କର (ଚରାଚର ପ୍ରାଣୀଙ୍କର) ଲୟ ହେବା କଥା କୁହାଯାଉଛି, ଏଠାରେ **ତସ୍ମାତ୍** ବିଶେଷଣ ସହିତ **ଅବ୍ୟକ୍ତାତ୍** ପଦଟି ହେଉଛି ସେହି ତତ୍ତ୍ୱର ବାଚକ। ତା'ଠାରୁ ଭିନ୍ନ ଦ୍ୱିତୀୟ 'ଅବ୍ୟକ୍ତଭାବ' (ତତ୍ତ୍ୱ) ହେଉଛନ୍ତି ସେ, ଯାହାଙ୍କୁ ଏହି ଅଧ୍ୟାୟର ଚତୁର୍ଥ ଶ୍ଳୋକରେ 'ଅଧିଯଜ୍ଞ' ନାମରେ, ନବମ ଶ୍ଳୋକରେ 'କବି', 'ପୁରାଣ' ଆଦି ନାମରେ, ଅଷ୍ଟମ ଓ ଦଶମ ଶ୍ଳୋକରେ 'ପରମ ଦିବ୍ୟ ପୁରୁଷ' ନାମରେ, ବାଉଶ ଶ୍ଳୋକରେ 'ପରମ ପୁରୁଷ' ନାମରେ ଏବଂ ନବମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ 'ଅବ୍ୟକ୍ତମୂର୍ତ୍ତି' ନାମରେ ବର୍ଣ୍ଣନା କରାଯାଇଛି। ପୂର୍ବୋକ୍ତ 'ଅବ୍ୟକ୍ତ'ଠାରୁ ଏହି ଅବ୍ୟକ୍ତକୁ **ପର** ଓ **ଅନ୍ୟ** ବୋଲି କହି ଭଗବାନ୍ ଏହାକୁ ତା'ଠାରୁ ଅତ୍ୟନ୍ତ ଶ୍ରେଷ୍ଠ ଓ ବିଲକ୍ଷଣ ବୋଲି ସିଦ୍ଧ କରିଛନ୍ତି। ଅଭିପ୍ରାୟ ଏହି ଯେ, ଦୁଇଟିଯାକ ତତ୍ତ୍ୱର ସ୍ୱରୂପ 'ଅବ୍ୟକ୍ତ' ହେଲେ ମଧ୍ୟ, ଦୁହେଁ ଏକ ଜାତିର ବସ୍ତୁ ନୁହନ୍ତି। ସେହି ପ୍ରଥମ 'ଅବ୍ୟକ୍ତ' ଜଡ଼, ନାଶବାନ୍ ଓ ଜ୍ଞେୟ; କିନ୍ତୁ ଏହି ଦ୍ୱିତୀୟ 'ଅବ୍ୟକ୍ତ' ଚେତନ, ଅବିନାଶୀ ଓ ଜ୍ଞାତା ଅଟେ। ତା' ଛଡ଼ା ଏହା ହେଉଛି ତା'ର ସ୍ୱାମୀ, ସଞ୍ଚାଳକ ଓ ଅଧିଷ୍ଠାତା। ଅତଏବ ଏହା ତା'ଠାରୁ ଅତ୍ୟନ୍ତ ଶ୍ରେଷ୍ଠ ଓ ବିଲକ୍ଷଣ। ଅନାଦି ଓ ଅନନ୍ତ ହୋଇଥିବାରୁ ଏହାକୁ **ସନାତନ** ବୋଲି କୁହାଯାଇଛି।

**ପ୍ରଶ୍ନ –** 'ସକଳ ପ୍ରାଣୀ ନଷ୍ଟ ହୋଇଗଲେ ମଧ୍ୟ ସେହି ସନାତନ ଅବ୍ୟକ୍ତ ବିନାଶପ୍ରାପ୍ତ ହୁଅନ୍ତି ନାହିଁ' — ଏହି ବାକ୍ୟରେ 'ସକଳ ପ୍ରାଣୀ' ଦ୍ୱାରା କେଉଁମାନଙ୍କୁ ଲକ୍ଷ୍ୟ କରାଯାଇଛି? 'ସେମାନଙ୍କର ନାଶ ହେବା ଏବଂ ସେହି ସମୟରେ ସେହି ସନାତନ ଅବ୍ୟକ୍ତ ନଷ୍ଟ ନ ହେବା' ବାସ୍ତବରେ କଣ?

**ଉତ୍ତର –** ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ବ୍ରହ୍ମାଙ୍କର ଦିନ-ରାତିରେ ଉତ୍ପନ୍ନ ଓ ବିଲୀନ ହେଉଥିବା ନିଜ ନିଜର ମନ, ଇନ୍ଦ୍ରିୟ, ଶରୀର, ଭୋଗ୍ୟବସ୍ତୁ ଓ ବାସସ୍ଥାନ ସହିତ ଯେତେସବୁ ଚରାଚର ପ୍ରାଣୀ ଅଛନ୍ତି, ସେମାନଙ୍କୁ ଲକ୍ଷ୍ୟ କରି 'ସକଳ ପ୍ରାଣୀ' ବୋଲି କୁହାଯାଇଛି।

ମହାପ୍ରଳୟ ସମୟରେ ସ୍ଥୂଳ ଓ ସୂକ୍ଷ୍ମ ଶରୀରରୁ ରହିତ ହୋଇ ଏମାନେ ଯେଉଁ ଅବ୍ୟାକୃତମାୟା ନାମକ ମୂଳପ୍ରକୃତିରେ ଲୀନ ହୋଇଯାଆନ୍ତି, ତାହା ହିଁ ଏମାନଙ୍କର 'ନାଶ'। ସେତେବେଳେ ବି ସେହି ପ୍ରକୃତିର ଅଧିଷ୍ଠାତା ସନାତନ ଅବ୍ୟକ୍ତ ପରମ ଦିବ୍ୟପୁରୁଷ ପରମେଶ୍ୱର ପ୍ରକୃତି ସହିତ ସେହି ସମସ୍ତ ଜୀବଗଣଙ୍କୁ ନିଜ ଭିତରେ ଲୀନ କରି ନିଜର ମହିମାରେ ହିଁ ସ୍ଥିତ ରହନ୍ତି। ଏହା ହିଁ ସବୁ ଜୀବ ନଷ୍ଟ ହୋଇଗଲେ ବି 'ତାଙ୍କର ବିନାଶପ୍ରାପ୍ତ ନ ହେବା'।

*ସମ୍ବନ୍ଧ — ଅଷ୍ଟମ ଓ ଦଶମ ଶ୍ଳୋକରେ ଅଧିଯଜ୍ଞଙ୍କ ଉପାସନାର ଫଳ ପରମଦିବ୍ୟ ପୁରୁଷଙ୍କର ପ୍ରାପ୍ତି ବୋଲି, ତେର ଶ୍ଳୋକରେ ପରମ ଅକ୍ଷର ନିର୍ଗୁଣ ବ୍ରହ୍ମଙ୍କ ଉପାସନାର ଫଳ ପରମଗତିପ୍ରାପ୍ତି ବୋଲି ଏବଂ ଚଉଦଶ୍ଳୋକରେ ସଗୁଣ ସାକାର ଭଗବାନ୍ ଶ୍ରୀକୃଷ୍ଣଙ୍କ ଉପାସନାର ଫଳ ଭଗବତ୍ପ୍ରାପ୍ତି ବୋଲି କୁହାଗଲା। ଏହାଦ୍ୱାରା ଏହି ତିନିପ୍ରକାର ଫଳମଧ୍ୟରେ ଯେପରି କୌଣସି ଭ୍ରମ ଜାତ ହୋଇ ନ ଯାଏ, ସେହି ଉଦ୍ଦେଶ୍ୟରେ ବର୍ତ୍ତମାନ ଏସବୁର ଏକତ୍ୱ ପ୍ରତିପାଦନ କରି ସେମାନଙ୍କ ପ୍ରାପ୍ତିପରେ ପୁନର୍ଜନ୍ମ ହୁଏ ନାହିଁ ବୋଲି କହୁଛନ୍ତି—*

**ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍।**
**ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ ୨୧ ॥**

ଅନ୍ୱୟ — **ଅବ୍ୟକ୍ତଃ** = ଯେଉଁ ଅବ୍ୟକ୍ତ; **ଅକ୍ଷରଃ** = ଅକ୍ଷର; **ଇତି** = ବୋଲି; **ଉକ୍ତଃ** = କୁହାଯାଇଛି; **ତମ୍** = ସେହି ଅକ୍ଷର ନାମକ ଅବ୍ୟକ୍ତ ଭାବକୁ; **ପରମାମ୍, ଗତିମ୍** = ପରମ ଗତି; **ଆହୁଃ** = କହନ୍ତି (ତଥା); **ଯମ୍** = ଯେଉଁ ସନାତନ ଅବ୍ୟକ୍ତ ଭାବକୁ; **ପ୍ରାପ୍ୟ** = ପ୍ରାପ୍ତ ହୋଇ (ମନୁଷ୍ୟମାନେ); **ନ, ନିବର୍ତ୍ତନ୍ତେ** = ଫେରି ଆସନ୍ତି ନାହିଁ; **ତତ୍** = ତାହା; **ମମ** = ମୋର; **ପରମମ୍** = ପରମ; **ଧାମ** = ଧାମ ଅଟେ।

**ଯେଉଁ ଅବ୍ୟକ୍ତକୁ ଅକ୍ଷର ବୋଲି କୁହାଯାଇଛି, ସେହି ଅକ୍ଷର ନାମକ ଅବ୍ୟକ୍ତଭାବକୁ ପରମଗତି କହନ୍ତି ତଥା ଯେଉଁ ସନାତନ ଅବ୍ୟକ୍ତଭାବ ପ୍ରାପ୍ତ ହେଲେ ମନୁଷ୍ୟମାନେ ଆଉ ଫେରି ଆସନ୍ତି ନାହିଁ, ତାହା ମୋର ପରମଧାମ ଅଟେ।॥ ୨୧ ॥**

**ପ୍ରଶ୍ନ** — ଏଠାରେ **ଅବ୍ୟକ୍ତଃ** ଓ **ଅକ୍ଷରଃ** ପଦ କାହାର ବାଚକ ?

**ଉତ୍ତର** — ଯାହାକୁ ପୂର୍ବଶ୍ଳୋକରେ 'ସନାତନ ଅବ୍ୟକ୍ତ ଭାବ' ବୋଲି, ଅଷ୍ଟମ ଓ ଦଶମ ଶ୍ଳୋକରେ 'ପରମ ଦିବ୍ୟ ପୁରୁଷ' ବୋଲି କୁହାଗଲା, **ଅବ୍ୟକ୍ତଃ** ଓ **ଅକ୍ଷରଃ** ହେଉଛି ସେହି ଅଧିଯଜ୍ଞ ପୁରୁଷଙ୍କର ବାଚକ'।

**ପ୍ରଶ୍ନ** — **ପରମଗତି** ଶବ୍ଦ କାହାର ବାଚକ ?

**ଉତ୍ତର** — ଏଠାରେ **ପରମ** ବିଶେଷଣ ହୋଇଥିବାରୁ ଏହି ଭାବ ପ୍ରକାଶିତ ହେଉଛି ଯେ, ଯେଉଁ ମୁକ୍ତି ସର୍ବୋତ୍ତମ ପ୍ରାପ୍ୟ ବସ୍ତୁ, ଯାହା ପାଇବା ପରେ ଆଉ କିଛି ପାଇବାକୁ ବାକି ରହେ ନାହିଁ ଏବଂ ଯାହା ପ୍ରାପ୍ତ ହେବାମାତ୍ରେ ସମସ୍ତ ଦୁଃଖର ଚିରଦିନପାଇଁ ଅତ୍ୟନ୍ତ ଅଭାବ ହୋଇଯାଏ, ତାହାର ନାମ **ପରମଗତି**। ତେଣୁ ଯେଉଁ ନିର୍ଗୁଣନିରାକାର ପରମାତ୍ମାଙ୍କୁ 'ପରମ ଅକ୍ଷର' ଓ ବ୍ରହ୍ମ ବୋଲି କହନ୍ତି, **ପରମଗତି** ହେଉଛି ସେହି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ବାଚକ (୮/୧୩)।

**ପ୍ରଶ୍ନ** — ଏଠାରେ **ପରମଧାମ** ଶବ୍ଦ କାହାର ବାଚକ ଏବଂ ତା'ସହିତ ଅବ୍ୟକ୍ତ, ଅକ୍ଷର ତଥା ପରମଗତିର ଏକତ୍ୱ ଦର୍ଶାଇବାର ଏବଂ 'ଯାହାକୁ ପ୍ରାପ୍ତ ହେବାମାତ୍ରେ ଆଉ ଫେରିବାକୁ ହୁଏ ନାହିଁ' — ଏହାର ଅଭିପ୍ରାୟ କଣ ?

**ଉତ୍ତର** — ଭଗବାନଙ୍କର ଯେଉଁ ନିତ୍ୟଧାମ ଅଛି, ତାହା ମଧ୍ୟ ସଚ୍ଚିଦାନନ୍ଦମୟ, ଦିବ୍ୟ, ଚେତନ ଓ ଭଗବାନଙ୍କର ହିଁ ସ୍ୱରୂପ; ତେଣୁ ପ୍ରକୃତରେ ତାହା ଭଗବାନଙ୍କ ଠାରୁ ଅଭିନ୍ନ। ଏଣୁ ଏଠାରେ **ପରମଧାମ** ଶବ୍ଦଟି ହେଉଛି ଭଗବାନଙ୍କର ନିତ୍ୟଧାମ, ତାଙ୍କର ସ୍ୱରୂପ ଏବଂ ଭଗବତ୍ଭାବ — ଏହି ସବୁର ବାଚକ। ଅଭିପ୍ରାୟ ଏହି ଯେ, ଭଗବାନଙ୍କର ନିତ୍ୟଧାମପ୍ରାପ୍ତି, ଭଗବଦ୍ଭାବପ୍ରାପ୍ତି ଓ ଭଗବାନଙ୍କର ସ୍ୱରୂପପ୍ରାପ୍ତି ମଧ୍ୟରେ ପ୍ରକୃତରେ କୌଣସି ପାର୍ଥକ୍ୟ ନାହିଁ। ଠିକ୍ ସେହିପରି 'ଅବ୍ୟକ୍ତ ଅକ୍ଷରପ୍ରାପ୍ତି' ତଥା 'ପରମଗତିପ୍ରାପ୍ତି' ଏବଂ 'ଭଗବତ୍ପ୍ରାପ୍ତି' ମଧ୍ୟରେ ବସ୍ତୁତଃ କୌଣସି ପ୍ରଭେଦ ନାହିଁ। ଏହା ବୁଝାଇଦେବାକୁ କୁହାଯାଇଛି ଯେ, 'ଯାହାକୁ ପ୍ରାପ୍ତ ହୋଇ ମନୁଷ୍ୟମାନେ ଆଉ ଫେରି ଆସନ୍ତି ନାହିଁ, ତାହା ମୋର ପରମ ଧାମ।' ତାକୁ ହିଁ ଅବ୍ୟକ୍ତ, ଅକ୍ଷର ତଥା ପରମଗତି ବୋଲି କହନ୍ତି। ସାଧନାଭେଦରେ

ସାଧକମାନଙ୍କ ଦୃଷ୍ଟିରେ ଫଳଭେଦ ରହେ। ତେଣୁ ତାକୁ ଭିନ୍ନ ଭିନ୍ନ ନାମରେ ବର୍ଣ୍ଣନା କରାଯାଇଛି। କିନ୍ତୁ ଯଥାର୍ଥରେ ଏସବୁ ମଧ୍ୟରେ ବସ୍ତୁତଃ କୌଣସି ପ୍ରଭେଦ ନ ଥିବାରୁ ଏଠାରେ ସେସବୁର ଏକତ୍ୱ ଦର୍ଶାଯାଇଛି।

**ସମ୍ବନ୍ଧ—** ଏପରିଭାବରେ ସନାତନ ଅବ୍ୟକ୍ତପୁରୁଷ, ପରମଗତି ଓ ପରମଧାମର ଏକତ୍ୱ ବା ଅଭେଦ ଭାବ ପ୍ରଦର୍ଶନ କରି ବର୍ତ୍ତମାନ ଭଗବାନ୍ ସେହି ସନାତନ ଅବ୍ୟକ୍ତପୁରୁଷଙ୍କ ପ୍ରାପ୍ତିର ଉପାୟ କହୁଛନ୍ତି—

**ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା।**
**ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍ ॥ ୨୨ ॥**

**ଅନ୍ୱୟ—** ତୁ = ଏବଂ; ପାର୍ଥ = ହେ ପାର୍ଥ; ଯସ୍ୟ = ଯେଉଁ ପରମାତ୍ମାଙ୍କର; ଅନ୍ତଃସ୍ଥାନି = ଅନ୍ତର୍ଗତ (ହୋଇ); ଭୂତାନି = ସର୍ବଭୂତ ଅଛନ୍ତି; (ଏବଂ) ଯେନ = ଯେଉଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା; ଇଦମ୍ = ଏହି; ସର୍ବମ୍ = ସମଗ୍ର ଜଗତ୍; ତତମ୍ = ପରିପୂର୍ଣ୍ଣ; ସଃ = ସେହି ସନାତନ ଅବ୍ୟକ୍ତ; ପରଃ = ପରମ; ପୁରୁଷଃ = ପୁରୁଷ; ଅନନ୍ୟୟା = ଅନନ୍ୟ; ଭକ୍ତ୍ୟା = ଭକ୍ତିଦ୍ୱାରା (ହିଁ); ଲଭ୍ୟଃ = ପ୍ରାପ୍ତ ହେବା ଯୋଗ୍ୟ।

**ହେ ପାର୍ଥ! ଯେଉଁ ପରମାତ୍ମାଙ୍କ ଅନ୍ତର୍ଗତ ହୋଇ ସକଳ ଭୂତ ଅଛନ୍ତି ଏବଂ ଯେଉଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା ଏହି ସମଗ୍ର ଜଗତ ପରିପୂର୍ଣ୍ଣ ହୋଇଛି, ସେହି ସନାତନ ଅବ୍ୟକ୍ତ ପରମ ପୁରୁଷ ଅନନ୍ୟ ଭକ୍ତିଦ୍ୱାରା ହିଁ ପ୍ରାପ୍ତ ହେବା ଯୋଗ୍ୟ॥ ୨୨ ॥**

**ପ୍ରଶ୍ନ—** 'ଯେଉଁ ପରମାତ୍ମାଙ୍କ ଅନ୍ତର୍ଗତ ହୋଇ ସକଳ ଭୂତ ଅଛନ୍ତି' ଏବଂ 'ଯେଉଁ ପରମାତ୍ମାଙ୍କ ଦ୍ୱାରା ସମଗ୍ର ଜଗତ ପରିପୂର୍ଣ୍ଣ'—ଏହି ଦୁଇ ବାକ୍ୟର ଅଭିପ୍ରାୟ କଣ?

**ଉତ୍ତର—** ପ୍ରଥମ ବାକ୍ୟରୁ ବୁଝିବା ଉଚିତ ଯେ, ଯେପରି ବାୟୁ, ତେଜ, ଜଳ ଏବଂ ପୃଥିବୀ— ଏହି ଚାରି ଭୂତ ଆକାଶର ଅନ୍ତର୍ଗତ, ଆକାଶ ହିଁ ଏମାନଙ୍କର ଏକମାତ୍ର କାରଣ ଓ ଆଧାର, ସେହିପରି ସକଳ ଚରାଚର ପ୍ରାଣୀ ଅର୍ଥାତ୍ ସମଗ୍ର ବିଶ୍ୱ ପରମେଶ୍ୱରଙ୍କର ହିଁ ଅନ୍ତର୍ଗତ— ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ଏବଂ ପରମେଶ୍ୱରଙ୍କ ଆଧାର ଉପରେ ହିଁ ଅବସ୍ଥିତ। ଦ୍ୱିତୀୟ ବାକ୍ୟରୁ ବୁଝିବା ଉଚିତ ଯେ, ବାୟୁ, ତେଜ, ଜଳ, ପୃଥିବୀ— ଏ ସବୁଥିରେ ଯେପରି ଆକାଶ ବ୍ୟାପ୍ତ, ଏହି ସମଗ୍ର ଜଗତ ସେହିପରି ଅବ୍ୟକ୍ତ ପରମେଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ। ଏହି କଥାଟି ନବମ ଅଧ୍ୟାୟର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ବିସ୍ତାରପୂର୍ବକ ଦର୍ଶାଇଦିଆଯାଇଛି।

**ପ୍ରଶ୍ନ—** ଏଠାରେ **ପରଃ ପୁରୁଷଃ** କାହାର ବାଚକ?

**ଉତ୍ତର—** ଏଠାରେ **ପରଃ ପୁରୁଷଃ** ସର୍ବବ୍ୟାପୀ ଅଧିଯଜ୍ଞଙ୍କର ବାଚକ। ଏହି ଅଧ୍ୟାୟର ଅଷ୍ଟମ, ନବମ ଓ ଦଶମ ଶ୍ଳୋକରେ ଯେଉଁ ସଗୁଣ-ନିରାକାରଙ୍କ ଉପାସନାର ପ୍ରକରଣ ଦିଆଯାଇଛି ତଥା କୋଡ଼ିଏ ଶ୍ଳୋକରେ ଯେଉଁ ଅବ୍ୟକ୍ତ ପୁରୁଷଙ୍କ କଥା କୁହାଯାଇଛି, ଏହି ପ୍ରକରଣଟି ମଧ ତାଙ୍କରି ଉପାସନାର ପ୍ରକରଣ। କହିଦିଆଯାଉଛି ଯେ, ସେହି ପରମେଶ୍ୱରଙ୍କ ମଧ୍ୟରେ ସକଳ ଚରାଚର ପ୍ରାଣୀ ସ୍ଥିତ ଓ ପରମେଶ୍ୱର ସମସ୍ତଙ୍କ ମଧ୍ୟରେ ପରିବ୍ୟାପ୍ତ।

**ପ୍ରଶ୍ନ—** ଅଷ୍ଟମଠାରୁ ଦଶମ ଶ୍ଳୋକଯାଏ ଏହି ଅବ୍ୟକ୍ତ ପୁରୁଷଙ୍କର ଉପାସନାର ପ୍ରକରଣ ଆସିସାରିଛି। ପୁଣି ତାହାକୁ ଏଠାରେ ଦ୍ୱିତୀୟ ଥର ଦେବାର ଅଭିପ୍ରାୟ କଣ?

**ଉତ୍ତର—** ଉଭୟ ସ୍ଥାନରେ ଅବ୍ୟକ୍ତ ପୁରୁଷଙ୍କ ଉପାସନାର ବର୍ଣ୍ଣନା ହିଁ ଯେ ରହିଛି, ସେଥିରେ କୌଣସି ସନ୍ଦେହ ନାହିଁ। ଦୁଇଟି ମଧ୍ୟରେ ପାର୍ଥକ୍ୟ ଏହି ଯେ, ସେଠାରେ ଅଷ୍ଟମ, ନବମ ଓ ଦଶମ ଶ୍ଳୋକରେ ଯୋଗୀପୁରୁଷମାନଙ୍କ ଦ୍ୱାରା ପ୍ରାପ୍ତ କରାଯାଉଥିବା କେବଳ ଅନ୍ତକାଳୀନ ସାଧନା ଫଳ ସହିତ ବର୍ଣ୍ଣିତ ହୋଇଛି ଏବଂ ଏଠାରେ ସର୍ବସାଧାରଣଙ୍କ ନିମନ୍ତେ ସଦାସର୍ବଦା କରାଯାଉଥିବା ଅନନ୍ୟ ଭକ୍ତିର ଓ ତା'ଦ୍ୱାରା ସେହି ପରମାତ୍ମାଙ୍କ ପ୍ରାପ୍ତିର ବର୍ଣ୍ଣନା ହୋଇଛି। ଏହି ଅଭିପ୍ରାୟରେ ସେହି ଉପାସନାପ୍ରକରଣକୁ ଏଠାରେ ପୁନର୍ବାର ଦିଆଯାଇଛି।

**ପ୍ରଶ୍ନ—** ଅନନ୍ୟଭକ୍ତି କାହାକୁ କୁହାଯାଏ ଏବଂ ତା'ଦ୍ୱାରା ପରମ ପୁରୁଷ ପ୍ରାପ୍ତ ହେବା କଣ?

**ଉତ୍ତର—** ସର୍ବାଧାର, ସର୍ବାନ୍ତର୍ଯାମୀ, ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଠାରେ ହିଁ ସବୁ କିଛି ସମର୍ପଣ କରିଦେଇ ତାଙ୍କର ବିଧାନରେ ସର୍ବଦା ପରମ ସନ୍ତୁଷ୍ଟ ରହିବା ଏବଂ ସବୁପ୍ରକାରେ ଅନନ୍ୟ ପ୍ରେମପୂର୍ବକ ନିତ୍ୟ ନିରନ୍ତର ତାଙ୍କୁ ସ୍ମରଣ କରିବା ହିଁ ଅନନ୍ୟଭକ୍ତି। ଏହି ଅନନ୍ୟ ଭକ୍ତିଦ୍ୱାରା ସାଧକ ନିଜର ଉପାସ୍ୟଦେବ ପରମେଶ୍ୱରଙ୍କ ଗୁଣ, ସ୍ୱଭାବ ଓ ତତ୍ତ୍ୱକୁ ଭଲଭାବରେ ଜାଣି ତାଙ୍କ ଠାରେ ତନ୍ମୟ ହୋଇଯାଆନ୍ତି ଏବଂ ଶୀଘ୍ର ହିଁ ତାଙ୍କର ସାକ୍ଷାତ୍କାର କରି କୃତକୃତ୍ୟ ହୋଇଯାଆନ୍ତି। ଏହା ହିଁ ସାଧକଙ୍କର 'ସେହି ପରମାତ୍ମାଙ୍କୁ ପ୍ରାପ୍ତି କରିବା'।

***ସମ୍ବନ୍ଧ—*** *ଅର୍ଜୁନଙ୍କର ସପ୍ତମ ପ୍ରଶ୍ନର ଉତ୍ତର ଦେଇ ଅନ୍ତକାଳରେ ମନୁଷ୍ୟ କିପରିଭାବରେ ପରମାତ୍ମାଙ୍କୁ ପାଏ, ଭଗବାନ୍ ତାହା ଭଲରୂପେ ବୁଝାଇଛନ୍ତି। ପ୍ରସଙ୍ଗାନୁସାରେ ଏହା ମଧ୍ୟ କହିଛନ୍ତି ଯେ, ଭଗବତ୍ପ୍ରାପ୍ତି ନ ହେଲେ, ବ୍ରହ୍ମଲୋକପର୍ଯ୍ୟନ୍ତ ପହଞ୍ଚିଗଲେ ମଧ୍ୟ ଜୀବ ଜନ୍ମମରଣଚକ୍ରରୁ ମୁକ୍ତି ପାଏ ନାହିଁ। କିନ୍ତୁ ଯେଉଁମାନେ ସେହି ଫେରି-ନ-ଆସିବାର ସ୍ଥାନକୁ ଚାଲିଯାଆନ୍ତି, ସେମାନେ କେଉଁ ପଥରେ ଓ କିପରି ସେଠାକୁ ଯାଆନ୍ତି ଏବଂ ସେହିପରି ଯେଉଁମାନେ ଫେରିଆସିବାକୁ-ପଡୁଥିବା ସ୍ଥାନକୁ ଯାଆନ୍ତି, ସେମାନେ କେଉଁ ପଥରେ ଓ କିପରି ସେଠାକୁ ଯାଆନ୍ତି, ତାହା ସେଠାରେ କୁହାଯାଇ ନାହିଁ। ଅତଏବ ସେହି ଦୁଇ ପଥର ବର୍ଣ୍ଣନା କରିବାକୁ ଭଗବାନ୍ ଏଠାରେ ପ୍ରସ୍ତାବନା କରୁଛନ୍ତି—*

**ଯତ୍ର କାଲେ ତ୍ୱନାବୃତ୍ତିମାବୃତ୍ତିଂ ଚୈବ ଯୋଗିନଃ।**
**ପ୍ରୟାତା ଯାନ୍ତି ତଂ କାଲଂ ବକ୍ଷ୍ୟାମି ଭରତର୍ଷଭ॥ ୨୩ ॥**

**ଅନ୍ୱୟ—** **ଭରତର୍ଷଭ** = ହେ ଅର୍ଜୁନ; **ଯତ୍ର** = ଯେଉଁ; **କାଲେ** = କାଳରେ (ମାର୍ଗରେ); **ପ୍ରୟାତାଃ** = ଶରୀର ତ୍ୟାଗ କରି ଯାଇଥିବା; **ଯୋଗିନଃ** = ଯୋଗୀମାନେ; **ତୁ** = ତ; **ଅନାବୃତ୍ତିମ୍** = ଫେରି ଆସୁ ନ ଥିବା ଗତିକୁ; **ଚ** = ଏବଂ (ଯେଉଁକାଳରେ ଗଲେ); **ଆବୃତ୍ତିମ୍** = ପୁଣି ଫେରି ଆସିବା ଗତିକୁ; **ଏବ** = ହିଁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି; **ତମ୍** = ସେହି; **କାଳମ୍** = କାଳକୁ ଅର୍ଥାତ ଦୁଇ ମାର୍ଗକୁ; **ବକ୍ଷ୍ୟାମି** = କହିବି।

**ହେ ଅର୍ଜୁନ! ଯେଉଁ କାଳରେ ଶରୀର ଛାଡ଼ି ଯାଉଥିବା ଯୋଗୀମାନେ ପୁନର୍ଜନ୍ମ ହେଉ ନ ଥିବା ଗତି ପ୍ରାପ୍ତ ହୁଅନ୍ତି ଏବଂ ଯେଉଁ କାଳରେ ଶରୀର ଛାଡ଼ି ଯାଉଥିବା ଯୋଗୀମାନେ ପୁନର୍ଜନ୍ମ ହେଉଥିବା ଗତି ହିଁ ପ୍ରାପ୍ତ ହୁଅନ୍ତି, ମୁଁ ସେହି ଦୁଇ କାଳର ଅର୍ଥାତ୍ ଦୁଇ ମାର୍ଗର କଥା କହିବି॥ ୨୩ ॥**

**ପ୍ରଶ୍ନ—** ଏଠାରେ କାଳ ଶବ୍ଦ କାହାର ବାଚକ?

**ଉତ୍ତର—** ଏଠାରେ କାଳ ଶବ୍ଦ ହେଉଛି ସେହି ମାର୍ଗର ବାଚକ, ଯେଉଁଥିରେ କାଳାଭିମାନୀ ଭିନ୍ନ ଭିନ୍ନ ଦେବତାଙ୍କର ନିଜ ନିଜ ସୀମାପର୍ଯ୍ୟନ୍ତ ଅଧିକାର ରହିଛି।

**ପ୍ରଶ୍ନ—** ଏଠାରେ 'କାଳ' ଶବ୍ଦର ଅର୍ଥ 'ସମୟ' ବୋଲି ଧରିନେଲେ କ୍ଷତି କଣ?

**ଉତ୍ତର—** ଛବିଶ ଶ୍ଳୋକରେ ଏହାକୁ 'ଶୁକ୍ଳ' ଓ 'କୃଷ୍ଣ' ଦୁଇପ୍ରକାର 'ଗତି' ନାମରେ ଓ ସତେଇଶ ଶ୍ଳୋକରେ 'ସୃତି' ନାମରେ କୁହାଯାଇଛି। ଏହି ଉଭୟ ଶବ୍ଦ ମାର୍ଗବାଚକ। 'ଅର୍ଚ୍ଚିଃ', 'ଜ୍ୟୋତିଃ' ଓ 'ଧୂମଃ' ପଦ ସମୟବାଚକ ନୁହେଁ। ତେଣୁ ଚବିଶ ଓ ପଚିଶ ଶ୍ଳୋକରେ ଆସିଥିବା 'ତତ୍ର' ପଦର ଅର୍ଥ 'ସମୟ' ବୋଲି ଧରିବା ଉଚିତ ହେବ ନାହିଁ। ଅତଏବ ଏଠାରେ 'କାଳ' ଶବ୍ଦର ଅର୍ଥ କାଳାଭିମାନୀ ଦେବତାମାନଙ୍କ ସହିତ ସମ୍ବନ୍ଧ ଥିବା 'ମାର୍ଗ' ବୋଲି ମାନିନେବା ଠିକ୍।

**ପ୍ରଶ୍ନ—** କଥା ଯଦି ଏପରି, ତେବେ ସଂସାରରେ ଲୋକମାନେ ଦିନ, ଶୁକ୍ଳପକ୍ଷ ଓ ଉତ୍ତରାୟଣ ସମୟରେ ମରିବାକୁ ଭଲ ବୋଲି କାହିଁକି ଭାବନ୍ତି?

**ଉତ୍ତର—** ଲୋକମାନଙ୍କର ଏପରି ବୁଝିବା ମଧ୍ୟ ଗୋଟିଏ ଦୃଷ୍ଟିରୁ ଠିକ୍। କାରଣ ସେହି ସମୟରେ ସେହି ସେହି କାଳାଭିମାନୀ ଦେବତାମାନଙ୍କ ସହିତ ତତ୍କାଳ ସମ୍ବନ୍ଧ ହୋଇଯାଏ। ତେଣୁ ସେହି ସମୟରେ ମରିବା ଯୋଗୀ ଗନ୍ତବ୍ୟ ସ୍ଥାନରେ ଶୀଘ୍ର ଓ ସହଜରେ ପହଞ୍ଚିଯାନ୍ତି। କିନ୍ତୁ ଏଥିରୁ ବୁଝିବା ଉଚିତ ନୁହେଁ ଯେ, ରାତିରେ ମରିବା ଲୋକ ତଥା କୃଷ୍ଣପକ୍ଷ ଓ ଦକ୍ଷିଣାୟନ ଛଅମାସ ମଧ୍ୟରେ ମରିବା ଲୋକ ଅର୍ଚ୍ଚିମାର୍ଗରେ ଯାଆନ୍ତି ନାହିଁ;

ବରଂ ଏହା ବୁଝିବା ଉଚିତ ଯେ, ମୃତ୍ୟୁ ଯେକୌଣସି ସମୟରେ ହେଉ ନା କାହିଁକି, ମନୁଷ୍ୟ ଯେଉଁ ମାର୍ଗରେ ଯିବାର ଅଧିକାରୀ ହୋଇଥିବ, ସେହି ମାର୍ଗରେ ଯିବ। ଅବଶ୍ୟ ଏ କଥା ସତ ଯେ, ଯଦି ଅର୍ଚ୍ଚିମାର୍ଗର (ଜ୍ୟୋତିପଥର) ଅଧିକାରୀ ଲୋକ ରାତିରେ ମରିବେ, ତେବେ ଦିନର ଉଦୟ ହେଲେ ହିଁ ତାଙ୍କର ଦିନ-ଅଭିମାନୀ ଦେବତାଙ୍କ ସହିତ ସମ୍ବନ୍ଧ ହେବ ଏବଂ ସେହି ସମୟପର୍ଯ୍ୟନ୍ତ ସେ 'ଅଗ୍ନିଃ' ଅଭିମାନୀ ଦେବତାଙ୍କ ଅଧିକାରରେ ରହିବେ। ଯଦି କୃଷ୍ଣପକ୍ଷରେ ତାଙ୍କର ମୃତ୍ୟୁ ହେବ, ତେବେ ଶୁକ୍ଳପକ୍ଷ ଆସିଲେ ହିଁ ତାଙ୍କର ଶୁକ୍ଳପକ୍ଷାଭିମାନୀ ଦେବତାଙ୍କ ସହିତ ସମ୍ବନ୍ଧ ହେବ; ସେହି ସମୟପର୍ଯ୍ୟନ୍ତ ତାଙ୍କୁ ଦିନର ଅଭିମାନୀ ଦେବତାଙ୍କ ଅଧିକାରରେ ରହିବାକୁ ପଡ଼ିବ। ଠିକ୍ ସେହିପରି ଯଦି ଦକ୍ଷିଣାୟନରେ ମରିବେ, ତେବେ ତାଙ୍କର ଉତ୍ତରାୟଣ ସମୟ ଆସିବା ପରେ ଉତ୍ତରାୟଣର ଅଭିମାନୀ ଦେବତାଙ୍କ ସହିତ ସମ୍ବନ୍ଧ ହେବ; ସେପର୍ଯ୍ୟନ୍ତ ସେ ଶୁକ୍ଳପକ୍ଷର ଅଭିମାନୀ ଦେବତାଙ୍କ ଅଧୀନରେ ରହିବେ। ଦକ୍ଷିଣାୟନ ମାର୍ଗର ଅଧିକାରୀଙ୍କ ବିଷୟରେ ମଧ୍ୟ ଏପରି ବୁଝିବା ଉଚିତ।

**ପ୍ରଶ୍ନ –** ଏଠାରେ **ଯୋଗିନଃ** ପଦ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** **ଯୋଗିନଃ** ପଦର ପ୍ରୟୋଗରୁ ବୁଝିବା ଉଚିତ ଯେ, ଯେଉଁ ସାଧାରଣ ମନୁଷ୍ୟମାନେ ଏହି ଲୋକରେ ହିଁ ଗୋଟିଏ ଯୋନିରୁ ଯାଇ ଅନ୍ୟ ଯୋନିରେ ଜନ୍ମ ହେବେ ଅଥବା ଯେଉଁମାନେ ନରକାଦିକୁ ଯିବେ, ସେମାନଙ୍କ ଗତିର ବର୍ଣ୍ଣନା ଏଠାରେ ନାହିଁ। ଏଠାରେ ଯେଉଁ 'ଶୁକ୍ଳ' ଓ 'କୃଷ୍ଣ' — ଏହି ଦୁଇମାର୍ଗ ବର୍ଣ୍ଣନାର ପ୍ରକରଣ ଅଛି, ତାହା ଯଜ୍ଞ, ଦାନ, ତପ ଆଦି ଶୁଭକର୍ମ ଓ ଉପାସନା କରୁଥିବା ଶ୍ରେଷ୍ଠ ପୁରୁଷଙ୍କ ଗତିର ହିଁ ବର୍ଣ୍ଣନା।

**ପ୍ରଶ୍ନ – ପ୍ରୟାତାଃ** ପଦର ଅଭିପ୍ରାୟ କଣ ଏବଂ ଭଗବାନ୍ ଏଠାରେ **ବକ୍ଷ୍ୟାମି** ପଦ କହି କଣ କହିବାକୁ ପ୍ରତିଜ୍ଞା କରିଛନ୍ତି ?

**ଉତ୍ତର – ପ୍ରୟାତାଃ** ପଦଟି ହେଉଛି ଯିବା ଲୋକମାନଙ୍କର ବାଚକ। ଯେଉଁ ମନୁଷ୍ୟମାନେ ଅନ୍ତକାଳରେ ଶରୀର ଛାଡ଼ି ଉର୍ଦ୍ଧ୍ୱଲୋକମାନଙ୍କୁ ଯିବେ, ସେମାନଙ୍କର ବର୍ଣ୍ଣନା ଉଦ୍ଦେଶ୍ୟରେ ଏହାର ପ୍ରୟୋଗ ହୋଇଛି। ଯେଉଁ ମାର୍ଗରେ ଯାଇଥିବା ମନୁଷ୍ୟ ଫେରିଆସେ ନାହିଁ ଏବଂ ଯେଉଁ ମାର୍ଗରେ ଯାଇଥିଲେ ଫେରିଆସେ, ସେହି ଦୁଇମାର୍ଗମଧ୍ୟରେ କି ପାର୍ଥକ୍ୟ ରହିଛି, ସେହି ଦୁଇଟି ମାର୍ଗ କେଉଁ କେଉଁ ମାର୍ଗ ତଥା ସେହି ଦୁଇ ମାର୍ଗର ଅଧିକାରୀ କେଉଁମାନେ — **ବକ୍ଷ୍ୟାମି** ପଦଦ୍ୱାରା ଭଗବାନ୍ ସେହିସବୁ କଥା କହିବାକୁ ପ୍ରତିଜ୍ଞା କରିଛନ୍ତି।

*ସମ୍ବନ୍ଧ – ପୂର୍ବଶ୍ଳୋକରେ ଯେଉଁ ଦୁଇ ମାର୍ଗର ବର୍ଣ୍ଣନା କରିବାକୁ ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ସେଥିମଧ୍ୟରୁ ଯେଉଁ ମାର୍ଗରେ ଯାଇଥିବା ସାଧକମାନେ ଆଉ ଫେରିଆସନ୍ତି ନାହିଁ, ତାହାର ବର୍ଣ୍ଣନା ପ୍ରଥମେ କରୁଛନ୍ତି–*

**ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ ଷଣ୍ମାସା ଉତ୍ତରାୟଣମ୍ ।**
**ତତ୍ର ପ୍ରୟାତା ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ ।। ୨୪ ।।**

**ଅନ୍ୱୟ –** **ଜ୍ୟୋତିଃ, ଅଗ୍ନିଃ** = (ଯେଉଁ ମାର୍ଗରେ) ଜ୍ୟୋତିର୍ମୟ ଅଗ୍ନି-ଅଭିମାନୀ ଦେବତା (ଅଛନ୍ତି); **ଅହଃ** = ଦିନର ଅଭିମାନୀ ଦେବତା ଅଛନ୍ତି; **ଶୁକ୍ଳଃ** = ଶୁକ୍ଳପକ୍ଷର ଅଭିମାନୀ ଦେବତା (ଏବଂ); **ଉତ୍ତରାୟଣମ୍** = ଉତ୍ତରାୟଣର; **ଷଣ୍ମାସାଃ** = ଛ ମାସର ଅଭିମାନୀ ଦେବତା (ଅଛନ୍ତି); **ତତ୍ର** = ସେହି ମାର୍ଗରେ; **ପ୍ରୟାତାଃ** = ମରିଯାଇଥିବା; **ବ୍ରହ୍ମବିଦଃ, ଜନାଃ** = ବ୍ରହ୍ମବେତ୍ତା ଯୋଗୀମାନେ (ଉପରୋକ୍ତ ଦେବତାଙ୍କ ଦ୍ୱାରା କ୍ରମାନୁସାରେ ନିଆଯାଇ); **ବ୍ରହ୍ମ** = ବ୍ରହ୍ମଙ୍କୁ; **ଗଚ୍ଛନ୍ତି** = ପ୍ରାପ୍ତ ହୁଅନ୍ତି।

**ଯେଉଁ ମାର୍ଗରେ ଜ୍ୟୋତିର୍ମୟ ଅଗ୍ନି–ଅଭିମାନୀ ଦେବତା, ଦିନର ଅଭିମାନୀ ଦେବତା, ଶୁକ୍ଳପକ୍ଷର ଅଭିମାନୀ ଦେବତା ଓ ଉତ୍ତରାୟଣର ଛଅମାସର ଅଭିମାନୀ ଦେବତା ଅଛନ୍ତି, ମୃତ୍ୟୁପରେ ସେହି ମାର୍ଗରେ ଯାଇଥିବା ବ୍ରହ୍ମବେତ୍ତା ଯୋଗୀମାନେ ସେହି ଦେବତାମାନଙ୍କ ଦ୍ୱାରା କ୍ରମାନ୍ୱୟରେ ନିଆଯାଇ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି।। ୨୪ ।।**

**ପ୍ରଶ୍ନ—** **ଜ୍ୟୋତିଃ** ଓ **ଅଗ୍ନିଃ** — ଏ ଦୁଇପଦ କେଉଁ ଦେବତାଙ୍କର ବାଚକ ତଥା ସେହି ଦେବତାଙ୍କର ସ୍ୱରୂପ କଣ ? ଉକ୍ତ ମାର୍ଗରେ ସେହି ଦେବତାମାନଙ୍କର କେତେ ଅଧିକାର ଥାଏ ଏବଂ ସେମାନେ ଏ ବିଷୟରେ କଣ କରନ୍ତି ?

**ଉତ୍ତର—** ଏଠାରେ **ଜ୍ୟୋତିଃ** ପଦ **ଅଗ୍ନିଃ**ଙ୍କ ବିଶେଷଣ ଏବଂ **ଅଗ୍ନିଃ** ପଦ ଅଗ୍ନିର ଅଭିମାନୀ ଦେବତାଙ୍କର ବାଚକ। ଉପନିଷଦରେ ଏହି ଦେବତାଙ୍କୁ **ଅର୍ଚ୍ଚିଃ** କୁହାଯାଇଛି। ଏହାଙ୍କ ସ୍ୱରୂପ ଦିବ୍ୟ ପ୍ରକାଶମୟ। ପୃଥିବୀ ଉପରେ ସମୁଦ୍ରସମେତ ସକଳ ଦେଶରେ ଏହାଙ୍କର ଅଧିକାର ରହିଛି ତଥା ଉତ୍ତରାୟଣ ମାର୍ଗରେ ଯାଉଥିବା ଅଧିକାରୀମାନଙ୍କୁ ଦିନର ଅଭିମାନୀ ଦେବତାଙ୍କ ସହିତ ସମ୍ବନ୍ଧ କରାଇଦେବା ହିଁ ଏହାଙ୍କର କାର୍ଯ୍ୟ। ଉତ୍ତରାୟଣ ମାର୍ଗରେ ଯାଉଥିବା ଯେଉଁ ଉପାସକ ରାତିରେ ଦେହତ୍ୟାଗ କରନ୍ତି, ତାଙ୍କୁ ସେ ରାତିସାରା ନିଜ ଅଧିକାରରେ ରଖି ଦିନର ଉଦୟ ହେଲେ ଦିନର ଅଭିମାନୀ ଦେବତାଙ୍କୁ ସମର୍ପଣ କରିଦିଅନ୍ତି ଏବଂ ଯେ ଦିନରେ ମରନ୍ତି, ତାଙ୍କୁ ତୁରନ୍ତ ଦିନର ଅଭିମାନୀ ଦେବତାଙ୍କୁ ସମର୍ପଣ କରିଦିଅନ୍ତି ।।

**ପ୍ରଶ୍ନ—** **ଅହଃ** ଶବ୍ଦ କେଉଁ ଦେବତାଙ୍କ ବାଚକ; ତାଙ୍କ ସ୍ୱରୂପ କଣ, ତାଙ୍କ ଅଧିକାର କେତେ ଦୂର ଏବଂ ସେ ଏ ବିଷୟରେ କଣ କରନ୍ତି ?

**ଉତ୍ତର—** **ଅହଃ** ପଦଟି ଦିନର ଅଭିମାନୀ ଦେବତାଙ୍କର ବାଚକ। ଏହାଙ୍କ ସ୍ୱରୂପ ଅଗ୍ନି-ଅଭିମାନୀ ଦେବତାଙ୍କ ଅପେକ୍ଷା ଅଧିକ ଦିବ୍ୟ ପ୍ରକାଶମୟ। ଯେତେ ଦୂରପର୍ଯ୍ୟନ୍ତ ପୃଥିବୀଲୋକର ସୀମା ଅଛି ଅର୍ଥାତ୍ ଯେତେ ଦୂରପର୍ଯ୍ୟନ୍ତ ଆକାଶରେ ପୃଥିବୀର ବାୟୁମଣ୍ଡଳର ସମ୍ବନ୍ଧ ଅଛି, ସେତେ ଦୂରପର୍ଯ୍ୟନ୍ତ ଏହାଙ୍କର ଅଧିକାର ରହିଛି ଏବଂ ଉତ୍ତରାୟଣ ମାର୍ଗରେ ଯାଉଥିବା ଉପାସକଙ୍କୁ ଶୁକ୍ଳପକ୍ଷର ଅଭିମାନୀ ଦେବତାଙ୍କ ସହିତ ସମ୍ବନ୍ଧ କରାଇଦେବା ହିଁ ଏହାଙ୍କର କାର୍ଯ୍ୟ। ଅଭିପ୍ରାୟ ଏହି ଯେ, ଉପାସକ ଯଦି କୃଷ୍ଣପକ୍ଷରେ ମରନ୍ତି, ତେବେ ଶୁକ୍ଳପକ୍ଷ ଆସିବାପର୍ଯ୍ୟନ୍ତ ତାଙ୍କୁ ଏ ନିଜ ଅଧିକାରରେ ରଖି ଏବଂ ଯଦି ଶୁକ୍ଳପକ୍ଷରେ ମରନ୍ତି, ତେବେ ତୁରନ୍ତ ନିଜର ସୀମାପର୍ଯ୍ୟନ୍ତ ନେଇଯାଇ ତାଙ୍କୁ ଶୁକ୍ଳପକ୍ଷର ଅଭିମାନୀ ଦେବତାଙ୍କ ଅଧୀନ କରିଦିଅନ୍ତି।

**ପ୍ରଶ୍ନ—** ଏଠାରେ **ଶୁକ୍ଳ** ପଦ କେଉଁ ଦେବତାଙ୍କ ବାଚକ? ତାଙ୍କ ସ୍ୱରୂପ କିପରି? ତାଙ୍କର ଅଧିକାର କେତେ ଦୂର ଏବଂ ତାଙ୍କର କାର୍ଯ୍ୟ କଣ ?

**ଉତ୍ତର—** ପୂର୍ବପରି **ଶୁକ୍ଳଃ** ପଦଟି ମଧ୍ୟ ଶୁକ୍ଳପକ୍ଷାଭିମାନୀ ଦେବତାଙ୍କ ବାଚକ। ଏହାଙ୍କ ସ୍ୱରୂପ ଦିନର ଅଭିମାନୀ ଦେବତାଙ୍କ ଠାରୁ ମଧ୍ୟ ଅଧିକ ଦିବ୍ୟ ପ୍ରକାଶମୟ। ଭୂଲୋକର ସୀମା ବାହାରେ ଅନ୍ତରିକ୍ଷଲୋକରେ— ଯେଉଁଠି ପନ୍ଦର ଦିନଯାଏ ଦିନ ହୁଏ ଏବଂ ସେତିକି ସମୟ ରାତି ହୁଏ, ସେହି ଲୋକପର୍ଯ୍ୟନ୍ତ ଏହାଙ୍କର ଅଧିକାର ରହିଛି ଏବଂ ଉତ୍ତରାୟଣ ମାର୍ଗରେ ଯାଉଥିବା ଅଧିକାରୀଙ୍କୁ ନିଜ ସୀମା ପାର କରାଇ ଉତ୍ତରାୟଣ ଅଭିମାନୀ ଦେବତାଙ୍କ ଅଧୀନ କରିଦେବା ହେଉଛି ଏହାଙ୍କ କାର୍ଯ୍ୟ। ସାଧକ ଯଦି ଦକ୍ଷିଣାୟନରେ ଏହାଙ୍କର ଅଧିକାରକୁ ଆସନ୍ତି, ତେବେ ଉତ୍ତରାୟଣ ଆସିବାପର୍ଯ୍ୟନ୍ତ ତାଙ୍କୁ ନିଜ ଅଧିକାରରେ ରଖି ଏବଂ ଯଦି ଉତ୍ତରାୟଣରେ ଆସନ୍ତି, ତେବେ ତାଙ୍କୁ ତୁରନ୍ତ ନିଜ ସୀମା ପାର କରାଇ ଏ ମଧ୍ୟ ଉତ୍ତରାୟଣ ଅଭିମାନୀ ଦେବତାଙ୍କୁ ସମର୍ପି ଦିଅନ୍ତି।

**ପ୍ରଶ୍ନ—** **ଷଣ୍ମାସା ଉତ୍ତରାୟଣମ୍** ପଦ କେଉଁ ଦେବତାଙ୍କ ବାଚକ? ତାଙ୍କ ସ୍ୱରୂପ କିପରି, ଅଧିକାର କେତେ ଦୂର ଓ କାମ କଣ ?

**ଉତ୍ତର—** ଯେଉଁ ଛଅମାସରେ ସୂର୍ଯ୍ୟ ଉତ୍ତର ଦିଗକୁ ଗତି କରନ୍ତି, ସେହି ଛଅମାସକୁ ଉତ୍ତରାୟଣ କହନ୍ତି। **ଷଣ୍ମାସା ଉତ୍ତରାୟଣମ୍** ହେଉଛି ସେହି ଉତ୍ତରାୟଣ କାଳାଭିମାନୀ ଦେବତାଙ୍କର ବାଚକ। ଏହାଙ୍କର ସ୍ୱରୂପ ଶୁକ୍ଳପକ୍ଷାଭିମାନୀ ଦେବତାଙ୍କ ଅପେକ୍ଷା ଆହୁରି ଅଧିକ ଦିବ୍ୟ ପ୍ରକାଶମାନ। ଅନ୍ତରିକ୍ଷଲୋକ ଉପରେ ଯେଉଁଠି ଛଅମାସଯାଏ ଦିନ ଓ ସେତିକି ସମୟଯାଏ ରାତି ହୁଏ, ସେପର୍ଯ୍ୟନ୍ତ ଏହାଙ୍କର ଅଧିକାର ଥାଏ ଏବଂ ଉତ୍ତରାୟଣମାର୍ଗରେ ପରମଧାମକୁ ଯାଉଥିବା ଅଧିକାରୀଙ୍କୁ ନିଜ ସୀମା ପାର କରାଇ, ଉପନିଷଦରେ ବର୍ଣ୍ଣିତ (ଛାନ୍ଦୋଗ୍ୟ ଉ.୪/୧୫/୫; ତଥା ୫/୧୦/୧,୨; ବୃହଦାରଣ୍ୟକ ଉ. ୬/୨/୧୫) ସଂବତ୍ସରର ଅଭିମାନୀ ଦେବତାଙ୍କ ନିକଟରେ ପହଞ୍ଚାଇଦେବା ହେଉଛି ଏହାଙ୍କ କାର୍ଯ୍ୟ। ତା'ପରେ ସଂବତ୍ସରର ଅଭିମାନୀ ଦେବତା ତାଙ୍କୁ ସୂର୍ଯ୍ୟଲୋକରେ ପହଞ୍ଚାଇଦିଅନ୍ତି। ସେଠାରୁ ତାଙ୍କୁ କ୍ରମଶଃ ଆଦିତ୍ୟାଭିମାନୀ ଦେବତା ଚନ୍ଦ୍ରାଭିମାନୀ ଦେବତାଙ୍କ ଅଧିକାରରେ ଏବଂ ଚନ୍ଦ୍ରାଭିମାନୀ ଦେବତା ବିଦ୍ୟୁତ୍-ଅଭିମାନୀ ଦେବତାଙ୍କ ଅଧିକାରରେ ପହଞ୍ଚାଇ ଦିଅନ୍ତି। ଭଗବାନଙ୍କର ପାର୍ଷଦମାନେ ଭଗବାନଙ୍କ ପରମଧାମରୁ ଆସି ତାଙ୍କୁ ସେଠାରୁ ପରମଧାମକୁ ନେଇଯାଆନ୍ତି ଏବଂ ସେତେବେଳେ ତାଙ୍କର ଭଗବାନଙ୍କ ସହିତ ମିଳନ ହୋଇଯାଏ।

ଧ୍ୟାନ ରଖିବା ଉଚିତ ଯେ, ଏହି ବର୍ଣ୍ଣନାରେ ଆସିଥିବା 'ଚନ୍ଦ୍ର' ଶବ୍ଦ ଆମକୁ ଦେଖାଯାଉଥିବା ଚନ୍ଦ୍ରଲୋକର ଏବଂ ତା'ର ଅଭିମାନୀ ଦେବତାଙ୍କର ବାଚକ ନୁହେଁ।

**ପ୍ରଶ୍ନ –** ଏଠାରେ **ବ୍ରହ୍ମବିଦଃ** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ?

**ଉତ୍ତର –** ଏଠାରେ **ବ୍ରହ୍ମବିଦଃ** ପଦଟି ହେଉଛି ନିର୍ଗୁଣ ବ୍ରହ୍ମତତ୍ତ୍ୱ ଜାଣିଥିବା ଅଥବା ସଗୁଣ ପରମେଶ୍ୱରଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ସ୍ୱରୂପକୁ ଶାସ୍ତ୍ର ଓ ଆଚାର୍ଯ୍ୟମାନଙ୍କ ଉପଦେଶ ଅନୁସାରେ ଶ୍ରଦ୍ଧାପୂର୍ବକ ପରୋକ୍ଷଭାବରେ ଜାଣିଥିବା ଉପାସକମାନଙ୍କର, ତଥା ନିଷ୍କାମଭାବରେ କର୍ମ କରୁଥିବା କର୍ମଯୋଗୀମାନଙ୍କର ବାଚକ। ଏଠାରେ **ବ୍ରହ୍ମବିଦଃ** ପଦଟି ପରବ୍ରହ୍ମ ପରମାତ୍ମାଙ୍କୁ ପାଇସାରିଥିବା ଜ୍ଞାନୀ ମହାତ୍ମାମାନଙ୍କର ବାଚକ ନୁହେଁ; କାରଣ ସେମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି ବୋଲି କହିବା ଠିକ୍ ହେବ ନାହିଁ। ଶ୍ରୁତିରେ ମଧ୍ୟ କୁହାଯାଇଛି – **ନ ତସ୍ୟ ପ୍ରାଣା ହ୍ୟୁତ୍କ୍ରାମନ୍ତି** (ବୃହଦାରଣ୍ୟକ ଉ. ୪/୪/୬) **ଅତ୍ରୈବ ସମବଲୀୟନ୍ତେ** (ବୃହଦାରଣ୍ୟକ ଉ. ୩/୨/୧୧), **ବ୍ରହ୍ମୈବ ସନ୍ ବ୍ରହ୍ମାପ୍ୟେତି** (ବୃହଦାରଣ୍ୟକ ଉ ୪/୪/୬) ଅର୍ଥାତ୍ 'ତାଙ୍କର ପ୍ରାଣ ଉତ୍କ୍ରାନ୍ତିକୁ ପ୍ରାପ୍ତ ହୁଏ ନାହିଁ', 'ଶରୀରରୁ ବାହାରି ଅନ୍ୟତ୍ର ଯାଏ ନାହିଁ', 'ଏଠାରେ ହିଁ ଲୀନ ହୋଇଯାଆନ୍ତି, 'ସେ ବ୍ରହ୍ମ ହୋଇ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି।' ଯାହାଙ୍କୁ ସଗୁଣ ପରମାତ୍ମାଙ୍କ ସାକ୍ଷାତ୍କାର ହୋଇଯାଇଥାଏ, ସେପରି ଭକ୍ତ ଉପରୋକ୍ତ ମାର୍ଗରେ ଭଗବାନଙ୍କ ପରମଧାମକୁ ମଧ୍ୟ ଯାଇପାରନ୍ତି ଅଥବା ଭଗବାନଙ୍କର ସ୍ୱରୂପରେ ଲୀନ ମଧ୍ୟ ହୋଇପାରନ୍ତି। ଏହା ତାଙ୍କ ରୁଚି ଉପରେ ନିର୍ଭର କରେ।

**ପ୍ରଶ୍ନ –** ଏଠାରେ **ବ୍ରହ୍ମ** ଶବ୍ଦ କାହାର ବାଚକ ଏବଂ ତାଙ୍କୁ ପ୍ରାପ୍ତ ହେବା କଣ ?

**ଉତ୍ତର –** ଏଠାରେ **ବ୍ରହ୍ମ** ଶବ୍ଦଟି ହେଉଛି ସଗୁଣ ପରମେଶ୍ୱରଙ୍କ ବାଚକ। ତାଙ୍କର କେବେ ନାଶ ନ ହେଉଥିବା ନିତ୍ୟଧାମରେ (ଯାହାକୁ ସତ୍ୟଲୋକ, ପରମଧାମ, ସାକେତଲୋକ, ଗୋଲୋକ, ବୈକୁଣ୍ଠଲୋକ ଏବଂ ବ୍ରହ୍ମଲୋକ ମଧ୍ୟ କହନ୍ତି) ପହଞ୍ଚି ଭଗବାନଙ୍କୁ ପ୍ରତ୍ୟକ୍ଷ କରିନେବା ହିଁ ତାଙ୍କୁ ପ୍ରାପ୍ତ ହେବା। ଏଠାରେ ସ୍ମରଣ ରଖିବା ଉଚିତ ଯେ, ଏହି ବ୍ରହ୍ମଲୋକ ଏହି ଅଧ୍ୟାୟର ଷୋଡ଼ଶ ଶ୍ଳୋକରେ ବର୍ଣ୍ଣିତ ପୁନରାବର୍ତ୍ତୀ ବ୍ରହ୍ମଲୋକ ନୁହେଁ।

*ସମ୍ବନ୍ଧ – ଏହିପରି ଫେରି ନ ଆସିବା ମାର୍ଗର ବର୍ଣ୍ଣନା କରିସାରି ଯେଉଁ ମାର୍ଗରେ ଗଲେ ସାଧକମାନେ ପୁଣି ଫେରି ଆସନ୍ତି, ବର୍ତ୍ତମାନ ସେହି ମାର୍ଗର ବର୍ଣ୍ଣନା କରୁଛନ୍ତି–*

## ଧୂମୋ ରାତ୍ରିସ୍ତଥା କୃଷ୍ଣଃ ଷଣ୍ମାସା ଦକ୍ଷିଣାୟନମ୍।
## ତତ୍ର ଚାନ୍ଦ୍ରମସଂ ଜ୍ୟୋତିର୍ଯୋଗୀ ପ୍ରାପ୍ୟ ନିବର୍ତ୍ତତେ॥ ୨୫ ॥

**ଅନ୍ୱୟ –** **ଧୂମଃ** = (ଯେଉଁ ମାର୍ଗରେ) ଧୂମାଭିମାନୀ ଦେବତା; **ରାତ୍ରିଃ** = ରାତ୍ରି-ଅଭିମାନୀ ଦେବତା; **ତଥା** = ତଥା; **କୃଷ୍ଣଃ** = କୃଷ୍ଣପକ୍ଷର ଅଭିମାନୀ ଦେବତା (ଏବଂ); **ଦକ୍ଷିଣାୟନମ୍, ଷଣ୍ମାସାଃ** = ଦକ୍ଷିଣାୟନ ଛଅମାସର ଅଭିମାନୀ ଦେବତା (ଅଛନ୍ତି); **ତତ୍ର** = ସେହି ମାର୍ଗରେ (ମୃତ୍ୟୁପରେ ଯାଇଥିବା); **ଯୋଗୀ** = ସକାମ କର୍ମ କରିଥିବା ଯୋଗୀ (ଉପର୍ଯୁକ୍ତ ଦେବତାମାନଙ୍କ ଦ୍ୱାରା କ୍ରମରେ ନିଆଯାଇ); **ଚାନ୍ଦ୍ରମସମ୍** = ଚନ୍ଦ୍ରମାସମ୍ବନ୍ଧୀ; **ଜ୍ୟୋତିଃ** = ଜ୍ୟୋତିକୁ; **ପ୍ରାପ୍ୟ** = ପ୍ରାପ୍ତ ହୋଇ (ସ୍ୱର୍ଗରେ ନିଜର ଶୁଭକର୍ମର ଫଳ ଭୋଗ କରିସାରି); **ନିବର୍ତ୍ତତେ** = ଫେରି ଆସେ।

**ଯେଉଁ ମାର୍ଗରେ ଧୂମାଭିମାନୀ ଦେବତା, ରାତ୍ରି-ଅଭିମାନୀ ଦେବତା, କୃଷ୍ଣପକ୍ଷର ଅଭିମାନୀ ଦେବତା ଏବଂ ଦକ୍ଷିଣାୟନ ଛଅମାସର ଅଭିମାନୀ ଦେବତା ଅଛନ୍ତି, ମୃତ୍ୟୁପରେ ସେହି ମାର୍ଗରେ ଯାଇଥିବା ସକାମ କର୍ମ କରିଥିବା ଯୋଗୀ ଉପରୋକ୍ତ ଦେବତାମାନଙ୍କ ଦ୍ୱାରା କ୍ରମଶଃ ଉର୍ଦ୍ଧ୍ୱଲୋକକୁ ନିଆଯାଇ, ଚନ୍ଦ୍ରମାଙ୍କ ଜ୍ୟୋତି ପ୍ରାପ୍ତ ହୋଇ, ସ୍ୱର୍ଗରେ ନିଜ ଶୁଭକର୍ମର ଫଳ ଭୋଗ କରିସାରି ଫେରି ଆସେ॥ ୨୫ ॥**

**ପ୍ରଶ୍ନ —** **ଧୂମଃ** ପଦ କେଉଁ ଦେବତାଙ୍କର ବାଚକ ? ତାଙ୍କର ସ୍ୱରୂପ କିପରି ହୋଇଥାଏ ? ତାଙ୍କର ଅଧିକାର କେତେ ଦୂର ଏବଂ ତାଙ୍କର କାର୍ଯ୍ୟ କଣ ?

**ଉତ୍ତର —** ଏଠାରେ **ଧୂମଃ** ପଦଟି ହେଉଛି ଧୂମାଭିମାନୀ ଦେବତାଙ୍କର ଅର୍ଥାତ୍ ଅନ୍ଧକାରର ଅଭିମାନୀ ଦେବତାଙ୍କ ବାଚକ। ତାଙ୍କ ସ୍ୱରୂପ ଅନ୍ଧକାରମୟ ହୋଇଥାଏ। ଅଗ୍ନି-ଅଭିମାନୀ ଦେବତାଙ୍କ ପରି ପୃଥିବୀ ଉପରେ ସମୁଦ୍ର ସହିତ ସକଳ ଦେଶରେ ଏହାଙ୍କର ମଧ୍ୟ ଅଧିକାର ରହିଛି ତଥା ଦକ୍ଷିଣାୟନମାର୍ଗରେ ଯାଉଥିବା ସାଧକଙ୍କୁ ରାତ୍ରି-ଅଭିମାନୀ ଦେବତାଙ୍କ ନିକଟରେ ପହଞ୍ଚାଇଦେବା ହେଉଛି ଏହାଙ୍କ କାର୍ଯ୍ୟ। ଦକ୍ଷିଣାୟନ-ମାର୍ଗରେ ଯାଉଥିବା ଯେଉଁ ସାଧକ ଦିନରେ ମରିଥାନ୍ତି, ତାଙ୍କୁ ଦିନସାରା ନିଜ ଅଧୀନରେ ରଖି ରାତ୍ରି ଆରମ୍ଭ ହେବାମାତ୍ରେ ଏହି ଦେବତା ରାତ୍ରି-ଅଭିମାନୀ ଦେବତାଙ୍କୁ ସମର୍ପି ଦିଅନ୍ତି ଏବଂ ଯେ ରାତିରେ ମରନ୍ତି, ତାଙ୍କୁ ତୁରନ୍ତ ରାତ୍ରି-ଅଭିମାନୀ ଦେବତାଙ୍କୁ ସମର୍ପିଦିଅନ୍ତି।

**ପ୍ରଶ୍ନ —** **ରାତ୍ରି** ପଦ କାହାର ବାଚକ ? ତାଙ୍କର ସ୍ୱରୂପ କଣ ? ଅଧିକାର କେତେ ? ଏବଂ କାର୍ଯ୍ୟ କଣ ?

**ଉତ୍ତର —** ଏଠାରେ **ରାତ୍ରି** ପଦଟି ହେଉଛି ରାତ୍ରି-ଅଭିମାନୀ ଦେବତାଙ୍କ ବାଚକ। ଏହାଙ୍କ ସ୍ୱରୂପ ଅନ୍ଧକାରମୟ ହୋଇଥାଏ। ଦିନର ଅଭିମାନୀ ଦେବତାଙ୍କ ପରି ଏହାଙ୍କ ଅଧିକାର ମଧ୍ୟ ପୃଥିବୀଲୋକର ସୀମାପର୍ଯ୍ୟନ୍ତ ଥାଏ ; ପାର୍ଥକ୍ୟ କେବଳ ଏତିକି ଯେ, ପୃଥିବୀଲୋକରେ ଯେତେବେଳେ ଯେଉଁଠାରେ ଦିନ ହୋଇଥାଏ, ସେତେବେଳେ ସେଠାରେ ଦିନର ଅଭିମାନୀ ଦେବତାଙ୍କ ଅଧିକାର ରହେ ଏବଂ ଯେଉଁ ସମୟରେ ଯେଉଁଠି ରାତ୍ରି ହୋଇଥାଏ, ସେଠାରେ ରାତ୍ରି-ଅଭିମାନୀ ଦେବତାଙ୍କ ଅଧିକାର ରହେ। ଦକ୍ଷିଣାୟନ ମାର୍ଗରେ ଯାଉଥିବା ସାଧକଙ୍କୁ ପୃଥିବୀଲୋକର ସୀମା ପାର କରାଇ ତାଙ୍କୁ ଅନ୍ତରିକ୍ଷରେ କୃଷ୍ଣପକ୍ଷର ଅଭିମାନୀ ଦେବତାଙ୍କର ଅଧୀନ କରିଦେବା ହେଉଛି ଏହାଙ୍କର କାର୍ଯ୍ୟ। ଯଦି ସେହି ସାଧକ ଶୁକ୍ଳପକ୍ଷରେ ମରନ୍ତି, ତେବେ ଏହି ଦେବତା ତାଙ୍କୁ କୃଷ୍ଣପକ୍ଷ ଆସିବାପର୍ଯ୍ୟନ୍ତ ନିଜ ଅଧିକାରରେ ରଖନ୍ତି ଏବଂ ଯଦି କୃଷ୍ଣପକ୍ଷରେ ମରନ୍ତି, ତେବେ ତୁରନ୍ତ ନିଜ ଅଧିକାରରୁ ଛାଡ଼ି କୃଷ୍ଣପକ୍ଷର ଅଭିମାନୀ ଦେବତାଙ୍କ ଅଧୀନ କରିଦିଅନ୍ତି।

**ପ୍ରଶ୍ନ —** ଏଠାରେ **କୃଷ୍ଣଃ** ପଦ କାହାର ବାଚକ ? ତାଙ୍କର ସ୍ୱରୂପ କିପରି ? ଏବଂ ଅଧିକାର କେତେଦୂର ? କାର୍ଯ୍ୟ କଣ ?

**ଉତ୍ତର —** ଏଠାରେ **କୃଷ୍ଣଃ** ପଦଟି ହେଉଛି କୃଷ୍ଣପକ୍ଷାଭିମାନୀ ଦେବତାଙ୍କ ବାଚକ। ଏହାଙ୍କ ସ୍ୱରୂପ ମଧ୍ୟ ଅନ୍ଧକାରମୟ ହୋଇଥାଏ। ପୃଥିବୀମଣ୍ଡଳର ସୀମା ବାହାରେ ଅନ୍ତରିକ୍ଷଲୋକରେ ଯେଉଁଠି ପନ୍ଦରଦିନଯାଏ ଦିନ ଏବଂ ସେତିକି ସମୟ ରାତି ହୋଇଥାଏ, ସେହି ସ୍ଥାନପର୍ଯ୍ୟନ୍ତ ଏହାଙ୍କ ଅଧିକାର ; କେବଳ ପାର୍ଥକ୍ୟ ଏତିକି ଯେ, ଯେଉଁ ସମୟରେ ସେହି ଲୋକରେ ଯେଉଁଠି **ଶୁକ୍ଳପକ୍ଷ** ରହେ, ସେଠାରେ ଶୁକ୍ଳପକ୍ଷାଭିମାନୀ ଦେବତାଙ୍କ ଅଧିକାର ରହେ ଏବଂ ଯେଉଁଠି କୃଷ୍ଣପକ୍ଷ ରହେ, ସେଠାରେ କୃଷ୍ଣପକ୍ଷାଭିମାନୀ ଦେବତାଙ୍କ ଅଧିକାର ରହେ। ଦକ୍ଷିଣାୟନମାର୍ଗରେ ସ୍ୱର୍ଗକୁ ଯାଉଥିବା ସାଧକଙ୍କୁ ଦକ୍ଷିଣାୟନ-ଅଭିମାନୀ ଦେବତାଙ୍କ ଅଧୀନ କରାଇଦେବା ହେଉଛି ଏହାଙ୍କ କାର୍ଯ୍ୟ। ଯେଉଁ ଦକ୍ଷିଣାୟନମାର୍ଗର ଅଧିକାରୀ ସାଧକ ଉତ୍ତରାୟଣ ସମୟରେ ତାଙ୍କର ଅଧିକାରରେ ଆସନ୍ତି, ତାଙ୍କୁ ଦକ୍ଷିଣାୟନ ସମୟ ଆସିବାପର୍ଯ୍ୟନ୍ତ ନିଜ ଅଧୀନରେ ରଖି ଏବଂ ଯେ ଦକ୍ଷିଣାୟନ ସମୟରେ ଆସନ୍ତି, ତାଙ୍କୁ ତୁରନ୍ତ ନିଜ ଅଧିକାରରୁ ପାର କରାଇ ଦକ୍ଷିଣାୟନ-ଅଭିମାନୀ ଦେବତାଙ୍କ ପାଖରେ ସେ ପହଞ୍ଚାଇଦିଅନ୍ତି।

**ପ୍ରଶ୍ନ —** ଏଠାରେ **ଷଣ୍ମାସା ଦକ୍ଷିଣାୟନମ୍** ପଦ କାହାର ବାଚକ ? ତାଙ୍କର ସ୍ୱରୂପ କିପରି ? ଅଧିକାର କେତେ ? କାର୍ଯ୍ୟ କଣ ?

**ଉତ୍ତର —** ଯେଉଁ ଛଅମାସ ସୂର୍ଯ୍ୟ ଦକ୍ଷିଣ ଦିଗରେ ଗତି କରନ୍ତି, ସେହି ଛଅମାସକୁ ଦକ୍ଷିଣାୟନ କହନ୍ତି। ତାହାର ଅଭିମାନୀ ଦେବତାଙ୍କ ବାଚକ **ଦକ୍ଷିଣାୟନମ୍**। ଏହାଙ୍କ ସ୍ୱରୂପ ମଧ୍ୟ ଅନ୍ଧକାରମୟ। ଅନ୍ତରିକ୍ଷଲୋକର ଊର୍ଦ୍ଧ୍ୱରେ ଥିବା ଯେଉଁ ଲୋକରେ ଛଅମାସ ଦିନ ଓ ଛଅମାସ ରାତ୍ରି ହୁଏ, ସେହିଲୋକଯାଏ ଏହାଙ୍କ ଅଧିକାର ଥାଏ। ପାର୍ଥକ୍ୟ ଏତିକି ଯେ, ଉତ୍ତରାୟଣର ଛଅ ମାସରେ ସେଠାରେ ତାହାର ଅଭିମାନୀ ଦେବତାଙ୍କ ଅଧିକାର ରହେ ଏବଂ ଦକ୍ଷିଣାୟନର ଛଅ ମାସରେ ଏହାଙ୍କ ଅଧିକାର ରହେ। ଦକ୍ଷିଣାୟନମାର୍ଗରେ ସ୍ୱର୍ଗକୁ ଯାଉଥିବା ସାଧକମାନଙ୍କୁ ନିଜର ଅଧିକାରରୁ ପାର କରାଇ, ଉପନିଷଦରେ ବର୍ଣ୍ଣିତ ପିତୃଲୋକର ଅଭିମାନୀ ଦେବତାଙ୍କ ଅଧିକାରରେ ପହଞ୍ଚାଇଦେବା ହେଉଛି ଏହାଙ୍କ କାର୍ଯ୍ୟ। ସେଠାରୁ ପିତୃଲୋକର ଅଭିମାନୀ ଦେବତା ସାଧକଙ୍କୁ ଆକାଶ-ଅଭିମାନୀ ଦେବତାଙ୍କ ପାଖରେ ପହଞ୍ଚାନ୍ତି ଏବଂ ସେହି ଆକାଶ-ଅଭିମାନୀ ଦେବତା ତାଙ୍କୁ ଚନ୍ଦ୍ରଲୋକରେ ପହଞ୍ଚାଇଦିଅନ୍ତି ( ଛାନ୍ଦୋଗ୍ୟ ଉ.୫/୧୦/୪; ବୃହଦାରଣ୍ୟକ

ଉ. ୬/୨/୧୬)। ଏଠାରେ ଚନ୍ଦ୍ରଲୋକ ଏକ ଉପଲକ୍ଷଣମାତ୍ର; ଏଣୁ ଚନ୍ଦ୍ରଲୋକ, ବ୍ରହ୍ମାଙ୍କ ଲୋକପର୍ଯ୍ୟନ୍ତ ଯେତେସବୁ ଲୋକ ଅଛି, ସେସବୁ ଲୋକକୁ ବୁଝାଏ ଓ ସେସବୁ ପୁନରାଗମନଶୀଳ ଲୋକ ଅଟେ।

ମନେ ରଖିବା ଉଚିତ ଯେ, ଉପନିଷଦରେ ବର୍ଣ୍ଣିତ ପିତୃଲୋକ, ଯାହା କି ଅନ୍ତରିକ୍ଷର ଅନ୍ତର୍ଗତ ଏବଂ ଯେଉଁଠି ପନ୍ଦରଦିନଯାଏ ଦିନ ଏବଂ ସେତିକି ସମୟ ରାତ୍ରି ହୁଏ, ତାହା ଏହି ପିତୃଲୋକ ନୁହେଁ।

**ପ୍ରଶ୍ନ –** ଦକ୍ଷିଣାୟନମାର୍ଗରେ ଯାଉଥିବା ଲୋକକୁ 'ଯୋଗୀ' ବୋଲି କାହିଁକି କୁହାଗଲା ?

**ଉତ୍ତର –** ସ୍ୱର୍ଗାଦିପ୍ରାପ୍ତି ଉଦ୍ଦେଶ୍ୟରେ ପୁଣ୍ୟକର୍ମ କରୁଥିବା ପୁରୁଷ ମଧ୍ୟ ନିଜର ଇହଲୋକର ଭୋଗପ୍ରବୃତ୍ତିକୁ ନିରୋଧ କରନ୍ତି। ଏହି ଦୃଷ୍ଟିରୁ ତାଙ୍କୁ ମଧ୍ୟ ଯୋଗୀ କହିବା ଉଚିତ। ଏହା ବ୍ୟତୀତ ଯୋଗଭ୍ରଷ୍ଟ ପୁରୁଷ ମଧ୍ୟ ଏହି ମାର୍ଗରେ ସ୍ୱର୍ଗକୁ ଯାଇ, ସେଠାରେ କେତେକାଳ ନିବାସ କରି ପୁଣି ସଂସାରକୁ ଫେରି ଆସନ୍ତି। ସେ ମଧ୍ୟ ଏହି ମାର୍ଗରେ ଯାଉଥିବା ଲୋକ। ଏଣୁ ତାଙ୍କୁ ଯୋଗୀ କହିବା ଉଚିତ। ଏଠାରେ 'ଯୋଗୀ' ଶବ୍ଦ ପ୍ରୟୋଗ କରି ଏହା ବି ଦର୍ଶାଇଦିଆଯାଇଛି ଯେ, ଏହି ମାର୍ଗ ପାପକର୍ମ କରୁଥିବା ତାମସ ମନୁଷ୍ୟମାନଙ୍କ ପାଇଁ ନୁହେଁ। ଏହା କେବଳ ଊର୍ଦ୍ଧ୍ୱଲୋକପ୍ରାପ୍ତିର ଅଧିକାରୀ ଶାସ୍ତ୍ରୀୟକର୍ମ କରୁଥିବା ପୁରୁଷମାନଙ୍କ ନିମନ୍ତେ ରହିଛି (୨/୪୨,୪୩,୪୪ ତଥା ୯/୨୦,୨୧ ଆଦି)।

**ପ୍ରଶ୍ନ –** ଦକ୍ଷିଣାୟନମାର୍ଗରେ ଯାଉଥିବା ସାଧକମାନଙ୍କୁ ପ୍ରାପ୍ତ ହେଉଥିବା ଚନ୍ଦ୍ରମାଙ୍କର ଜ୍ୟୋତି କଣ ଏବଂ ତାହା ପ୍ରାପ୍ତ ହେବା ଅର୍ଥ କଣ ?

**ଉତ୍ତର –** ଚନ୍ଦ୍ରମାଲୋକରେ ତାହାର ଅଭିମାନୀ ଦେବତାଙ୍କ ସ୍ୱରୂପ ଶୀତଳ ପ୍ରକାଶମୟ। ସେହି ପ୍ରକାଶମୟ ସ୍ୱରୂପର ନାମ 'ଜ୍ୟୋତି' ଏବଂ ସେହିପରି ସ୍ୱରୂପ ପ୍ରାପ୍ତ ହେବା ଅର୍ଥ ଚନ୍ଦ୍ରମାଙ୍କ ଜ୍ୟୋତି ପ୍ରାପ୍ତ ହେବା। ସେଠାକୁ ଯାଉଥିବା ସାଧକ ସେହି ଲୋକରେ ଶୀତଳ ପ୍ରକାଶମୟ ଦିବ୍ୟ ଦେହଶରୀର ପାଇ ନିଜ ପୁଣ୍ୟକର୍ମମାନଙ୍କର ଫଳସ୍ୱରୂପ ଦିବ୍ୟସୁଖ ଭୋଗ କରନ୍ତି।

**ପ୍ରଶ୍ନ –** ସେହି ଚନ୍ଦ୍ରମାଙ୍କ ଜ୍ୟୋତି ପ୍ରାପ୍ତ ହୋଇ ଫେରି ଆସିବାର ଅର୍ଥ କଣ? ଏବଂ ସେହି ସାଧକ ସେଠାରୁ କେଉଁ ମାର୍ଗରେ ଓ କିପରି ଫେରି ଆସନ୍ତି ?

**ଉତ୍ତର –** ସେଠାରେ ରହିବାର ନିର୍ଦ୍ଦିଷ୍ଟ ସମୟ ଶେଷ ହୋଇଯିବା ପରେ ଏହି ମୃତ୍ୟୁଲୋକକୁ ଫେରିଆସିବାକୁ ହିଁ ସେଠାରୁ ଫେରିଆସିବା କୁହାଯାଏ। ଯେଉଁ କର୍ମର ଫଳସ୍ୱରୂପ ସ୍ୱର୍ଗ ଓ ସେଠାର ସୁଖ ପ୍ରାପ୍ତ ହୁଏ, ସେହି କର୍ମଫଳ ସମାପ୍ତ ହେବା ପରେ ତାହା କ୍ଷୀଣ ହୋଇଯାଏ; ସେତେବେଳେ ପ୍ରାଣୀକୁ ବାଧ୍ୟ ହୋଇ ସେଠାରୁ ଫେରିବାକୁ ପଡ଼େ। ସେ ଚନ୍ଦ୍ରଲୋକରୁ ଆକାଶକୁ ଆସେ; ସେଠାରେ ବାୟୁରୂପ ହୋଇଯାଏ; ବାୟୁରୁ ଧୂମରେ ପରିଣତ ହୁଏ। ଧୂମରୁ ବାଷ୍ପ ହୁଏ; ବାଷ୍ପରୁ ମେଘ ହୁଏ। ତା'ପରେ ଜଳରୂପରେ ପୃଥିବୀ ଉପରେ ବର୍ଷା ହୁଏ। ସେଥିରୁ ଗହମ, ଯବ, ଧାନ, ରାଶି, ବିରି ଆଦି ବୀଜ ବା ବୃକ୍ଷଲତାରେ ପ୍ରବେଶ କରେ। ସେସବୁ ଦ୍ୱାରା ପୁରୁଷଙ୍କ ବୀର୍ଯ୍ୟରେ ପ୍ରବେଶ କରି ସ୍ତ୍ରୀଯୋନିରେ ନିକ୍ଷିପ୍ତ ହୁଏ ଏବଂ ନିଜର କର୍ମାନୁଯାୟୀ ଯୋନି ପାଇ ଜନ୍ମ ଗ୍ରହଣ କରେ। (ଛାନ୍ଦୋଗ୍ୟ ଉ. ୫/୧୦/୫,୬,୭; ବୃହଦାରଣ୍ୟକ ଉ. ୬/୨/୧୬)।

**ସମ୍ବନ୍ଧ –** ଏପରିଭାବରେ ଉତ୍ତରାୟଣ ଓ ଦକ୍ଷିଣାୟନ ଦୁଇ ମାର୍ଗର ବର୍ଣ୍ଣନା କରିସାରି ବର୍ତ୍ତମାନ ସେହି ଦୁଇମାର୍ଗକୁ ସନାତନ ମାର୍ଗ ବୋଲି କହି ଭଗବାନ୍ ଏହି ବିଷୟର ଉପସଂହାର କରୁଛନ୍ତି–

## ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ ଜଗତଃ ଶାଶ୍ୱତେ ମତେ।
## ଏକୟା ଯାତ୍ୟନାବୃତ୍ତିମନ୍ୟୟାବର୍ତ୍ତତେ ପୁନଃ॥ ୨୬ ॥

**ଅନ୍ୱୟ –** **ହି** = କାରଣ; **ଜଗତଃ** = ଚରାଚର; **ଏତେ** = ଏହି ଦୁଇ; **ଶୁକ୍ଳକୃଷ୍ଣେ** = ଶୁକ୍ଳ ଓ କୃଷ୍ଣ ଅର୍ଥାତ୍ ଦେବଯାନ ଓ ପିତୃଯାନ; **ଗତୀ** = ମାର୍ଗ; **ଶାଶ୍ୱତେ** = ସନାତନ; **ମତେ** = ବୋଲି ମାନି ନିଆଯାଇଛି; **ଏକୟା** = ତା' ଭିତରୁ ଗୋଟିକଦ୍ୱାରା (ଯାଇଥିବା ଯୋଗୀ); **ଅନାବୃତ୍ତିମ୍** = ଯେଉଁଠାରୁ ଫେରିବାକୁ ହୁଏ ନାହିଁ, ସେହି ପରମଗତିକୁ; **ଯାତି** = ପାଏ; **ଅନ୍ୟୟା** = ଅନ୍ୟଟି ଦ୍ୱାରା (ଯାଇଥିବା ସକାମ କର୍ମୀ); **ପୁନଃ** = ପୁଣି; **ଆବର୍ତ୍ତତେ** = ଫେରି ଆସେ (ଅର୍ଥାତ୍ ଜନ୍ମମୃତ୍ୟୁକୁ ପ୍ରାପ୍ତ ହୁଏ)।

**କାରଣ ଜଗତରେ ଶୁକ୍ଳ ଓ କୃଷ୍ଣ– ଏହି ଦୁଇ ମାର୍ଗକୁ ଅର୍ଥାତ୍ ଦେବଯାନ ଓ ପିତୃଯାନ ମାର୍ଗକୁ ସନାତନ ବୋଲି ଗ୍ରହଣ କରାଯାଏ। ଏ ଦୁଇଟି ମଧ୍ୟରୁ ପ୍ରଥମଟି ଧରି ଗମନ କଲେ ଆଉ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼େ ନାହିଁ; ପରମଗତି ମିଳେ ଏବଂ ଅନ୍ୟଟି ଧରି ଗମନ କଲେ ପୁଣି ଫେରି ଆସିବାକୁ ହୁଏ ଅର୍ଥାତ୍ ଜନ୍ମ-ମୃତ୍ୟୁ ପ୍ରାପ୍ତ ହୁଏ॥ ୨୬ ॥**

**ପ୍ରଶ୍ନ–** ଏଠାରେ **ଜଗତଃ** ପଦ କାହାର ବାଚକ ଏବଂ ଏହି ଦୁଇ ଗତି ସହିତ ତା'ର ସମ୍ବନ୍ଧ କଣ ଏବଂ ଏହି ଦୁଇ ମାର୍ଗକୁ 'ଶାଶ୍ୱତ' କହିବାର ଅଭିପ୍ରାୟ କଣ ?

**ଉତ୍ତର–** ଏଠାରେ **ଜଗତଃ** ଶବ୍ଦଟି ହେଉଛି ଅଧଃଊର୍ଦ୍ଧ୍ୱ ଲୋକରେ ବିଚରଣ କରୁଥିବା ସମସ୍ତ ଚରାଚର ପ୍ରାଣୀମାନଙ୍କ ବାଚକ; କାରଣ ଅଧିକାର ପ୍ରାପ୍ତ ହେଲେ ସମସ୍ତ ପ୍ରାଣୀ ଏହି ଉଭୟ ମାର୍ଗରେ ଗମନ କରିପାରିବେ। ଚୌରାଶୀଲକ୍ଷ ଯୋନିରେ ଭ୍ରମଣ କରୁଥିବା ପ୍ରତ୍ୟେକ ଜୀବକୁ କେବେ ନା କେବେ ଭଗବାନ୍ ଦୟା କରି ମନୁଷ୍ୟଶରୀର ଦିଅନ୍ତି ଏବଂ ନିଜର ତଥା ଦେବତାମାନଙ୍କର ଲୋକକୁ ଯିବାର ସୁଯୋଗ ପ୍ରଦାନ କରନ୍ତି। ସେହି ସମୟରେ ଜୀବ ଯଦି ଜୀବନର ସଦୁପଯୋଗ କରେ, ତେବେ ଏହି ଦୁଇମାର୍ଗ ମଧ୍ୟରୁ କୌଣସି ଗୋଟିକୁ ଧରି ଗନ୍ତବ୍ୟ ସ୍ଥାନକୁ ଅବଶ୍ୟ ଯାଇପାରିବ। ଅତଏବ ପ୍ରକାରାନ୍ତରେ ପ୍ରତ୍ୟେକ ପ୍ରାଣୀ ସହିତ ଏହି ଉଭୟ ମାର୍ଗର ସମ୍ବନ୍ଧ ରହିଛି। ଏହି ଦୁଇମାର୍ଗ ଚିରକାଳ ସବୁ ପ୍ରାଣୀଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ସବୁଦିନ ପାଇଁ ରହିବ। ଅତଏବ ଏ ଦୁଇଟିକୁ ଶାଶ୍ୱତ କୁହାଯାଏ। ଯଦ୍ୟପି ମହାପ୍ରଳୟରେ, ସମସ୍ତ ଲୋକ ଭଗବାନଙ୍କ ଠାରେ ଲୀନ ହେବାବେଳେ ଏହି ଦୁଇ ମାର୍ଗ ଓ ଏ ଦୁଇଟିର ଦେବତାମାନେ ମଧ୍ୟ ଲୀନ ହୋଇଯାଆନ୍ତି, ତଥାପି ଯେତେବେଳେ ପୁନର୍ବାର ସୃଷ୍ଟି ହୁଏ, ସେତେବେଳେ ଏମାନଙ୍କର ପୁନଃ ପୂର୍ବପରି ନିର୍ମାଣ ହୋଇଯାଏ। ଏଣୁ ଏମାନଙ୍କୁ 'ଶାଶ୍ୱତ' କହିବାରେ କୌଣସି ଆପତ୍ତି ନାହିଁ।

**ପ୍ରଶ୍ନ–** ଏହି ଦୁଇ ମାର୍ଗକୁ **ଶୁକ୍ଳ** ଓ **କୃଷ୍ଣ** ନାମ ଦେବାର ଅଭିପ୍ରାୟ କଣ ?

**ଉତ୍ତର–** ପରମେଶ୍ୱରଙ୍କ ପରମଧାମକୁ ଯିବାର ଯେଉଁ ମାର୍ଗ ରହିଛି, ତାହା ଦିବ୍ୟ ଓ ପ୍ରକାଶମୟ। ତାହାର ଅଧିଷ୍ଠାତୃଦେବତା ମଧ୍ୟ ପ୍ରକାଶମୟ ଏବଂ ସେହି ମାର୍ଗରେ ଗମନ କରୁଥିବା ଲୋକଙ୍କର ଅନ୍ତଃକରଣରେ ମଧ୍ୟ ସର୍ବଦା ଜ୍ଞାନର ଆଲୋକ ରହିଥାଏ। ତେଣୁ ସେହି ମାର୍ଗର ନାମ **ଶୁକ୍ଳ** ରଖାଯାଇଛି। ବ୍ରହ୍ମାଙ୍କ ଲୋକପର୍ଯ୍ୟନ୍ତ ସମସ୍ତ ଦେବଲୋକକୁ ଯିବାର ଯେଉଁ ମାର୍ଗଟି ରହିଛି, ତାହା 'ଶୁକ୍ଳ' ମାର୍ଗ ଅପେକ୍ଷା ଅନ୍ଧକାରଯୁକ୍ତ। ତା'ର ଅଧିଷ୍ଠାତୃଦେବତା ମଧ୍ୟ ଅନ୍ଧକାରସ୍ୱରୂପ ତଥା ସେହି ମାର୍ଗରେ ଗମନ କରୁଥିବା ଲୋକେ ମଧ୍ୟ ଅଜ୍ଞାନରେ ମୋହିତ ହୋଇ ରହିଥାନ୍ତି। ତେଣୁ ସେହି ମାର୍ଗର ନାମ **କୃଷ୍ଣ** ରଖାଯାଇଛି।

**ପ୍ରଶ୍ନ–** **ଅନାବୃତ୍ତି** ଶବ୍ଦ କାହାର ବାଚକ ଏବଂ ଏଠାରେ ତାହା ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର–** ଯେଉଁଠିକି ଗଲେ ସାଧକ ଆଉ ଫେରିଆସେ ନାହିଁ, ଯାହା ଭଗବାନଙ୍କର ପରମଧାମ, ଏଠାରେ **ଅନାବୃତ୍ତି** ଶବ୍ଦଟି ହେଉଛି ତାହାରି ବାଚକ। ଚବିଶ ଶ୍ଳୋକରେ ଶୁକ୍ଳ ମାର୍ଗରେ ଯାଉଥିବା ଲୋକଙ୍କୁ ବ୍ରହ୍ମପ୍ରାପ୍ତି ହୁଏ ବୋଲି କୁହାଯାଇଛି; ସେଠାକୁ ଯିବା ପରେ ମନୁଷ୍ୟର ପୁନର୍ଜନ୍ମ ହୁଏ ନାହିଁ। ଅତଏବ ତାହାକୁ 'ଅନାବୃତ୍ତି' ମଧ୍ୟ କୁହାଯାଏ। ଏହି କଥାଟି ସ୍ପଷ୍ଟ କରିବାନିମନ୍ତେ ଏଠାରେ ପୁନର୍ବାର **ଅନାବୃତ୍ତି** ଶବ୍ଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ– ପୁନଃ ଆବର୍ତ୍ତତେ** କହିବାର ଭାବ କଣ ?

**ଉତ୍ତର–** ଏହା କହି ଭଗବାନ୍ କୃଷ୍ଣମାର୍ଗଦ୍ୱାରା ପ୍ରାପ୍ତ ହେଉଥିବା ସମସ୍ତ ଲୋକକୁ ପୁନରାବୃତ୍ତିଶୀଳ ବୋଲି ସୂଚାଇଛନ୍ତି। ଭାବ ଏହି ଯେ, କୃଷ୍ଣମାର୍ଗରେ ଯାଇଥିବା ମନୁଷ୍ୟ ଯେଉଁ ଯେଉଁ ଲୋକ ପ୍ରାପ୍ତ ହୁଏ, ସେହି ସମସ୍ତ ଲୋକ ବିନାଶଶୀଳ। ତେଣୁ ସେହି ମାର୍ଗରେ ଯାଇଥିବା ମନୁଷ୍ୟକୁ ମୃତ୍ୟୁଲୋକକୁ ଫେରିଆସିବାକୁ ପଡ଼େ।

**ସମ୍ବନ୍ଧ–** ବର୍ତ୍ତମାନ ସେହି ଦୁଇ ମାର୍ଗକୁ ଜାଣିଥିବା ଯୋଗୀଙ୍କର ପ୍ରଶଂସା କରି ଭଗବାନ୍ ଅର୍ଜୁନଙ୍କୁ ଯୋଗୀ ହେବାକୁ କହୁଛନ୍ତି–

**ନୈତେ ସୃତୀ ପାର୍ଥ ଜାନନ୍ ଯୋଗୀ ମୁହ୍ୟତି କଶ୍ଚନ।**
**ତସ୍ମାତ୍ ସର୍ବେଷୁ କାଲେଷୁ ଯୋଗଯୁକ୍ତୋ ଭବାର୍ଜୁନ॥ ୨୭ ॥**

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ ! (ଏହିପ୍ରକାରେ); **ଏତେ** = ଏହି ଦୁଇ; **ସୃତୀ** = ମାର୍ଗକୁ; **ଜାନନ୍** = ତତ୍ତ୍ୱତଃ ଜାଣିଗଲେ; **କଶ୍ଚନ** = କୌଣସି ବି; **ଯୋଗୀ** = ଯୋଗୀ; **ନ, ମୁହ୍ୟତି** = ମୋହିତ ହୁଏ ନାହିଁ; **ତସ୍ମାତ୍** = ତେଣୁ; **ଅର୍ଜୁନ** = ହେ ଅର୍ଜୁନ (ତୁମେ); **ସର୍ବେଷୁ** = ସର୍ବ; **କାଲେଷୁ** = କାଳରେ; **ଯୋଗଯୁକ୍ତଃ** = ସମବୁଦ୍ଧିରୂପକ ଯୋଗରେ ଯୁକ୍ତ; **ଭବ** = ହୁଅ ଅର୍ଥାତ୍ ନିରନ୍ତର ମୋର ପ୍ରାପ୍ତିପାଇଁ ସାଧନାରତ ହୁଅ।

**ହେ ପାର୍ଥ ! ଏପରିଭାବରେ ଏହି ମାର୍ଗଦୁଇଟିକୁ ତତ୍ତ୍ୱତଃ ଜାଣିଗଲେ କୌଣସି ଯୋଗୀ ଆଉ ମୋହଗ୍ରସ୍ତ ହୁଅନ୍ତି ନାହିଁ। ତେଣୁ ହେ ଅର୍ଜୁନ ! ତୁମେ ସର୍ବଦା ସମବୁଦ୍ଧିରୂପକ ଯୋଗଦ୍ୱାରା ଯୁକ୍ତ ହୁଅ ଅର୍ଥାତ୍ ନିରନ୍ତର ମୋର ପ୍ରାପ୍ତିପାଇଁ ସାଧନାରତ ହୁଅ।॥ ୨୭ ॥**

**ପ୍ରଶ୍ନ –** ଏଠାରେ **ଏତେ** ବିଶେଷଣ ସହିତ **ସୃତୀ** ପଦ କାହାର ବାଚକ ଏବଂ ତାହା ଜାଣିବାର ଅର୍ଥ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଯେଉଁ ଦୁଇ ମାର୍ଗର ବର୍ଣ୍ଣନା ହୋଇଛି, **ଏତେ** ବିଶେଷଣ ସହ **ସୃତୀ** ପଦଟି ସେହି ଦୁଇ ମାର୍ଗକୁ ବୁଝାଉଛି। ସକାମଭାବରେ ଶୁଭ କର୍ମ ଆଚରଣ ତଥା ଦେବୋପାସନା କରୁଥିବା ପୁଣ୍ୟାତ୍ମା ପୁରୁଷ କୃଷ୍ଣମାର୍ଗରେ ଯାଇ ନିଜର କର୍ମାନୁସାରେ ଦେବଲୋକ ପ୍ରାପ୍ତ ହୁଅନ୍ତି ଏବଂ ପୁଣ୍ୟ କ୍ଷୟ ହୋଇଯିବା ପରେ, ସେଠାରୁ ଫେରିଆସନ୍ତି (୯/୨୦,୨୧)। ନିଷ୍କାମଭାବରେ କର୍ମୋପାସନା କରୁଥିବା କର୍ମଯୋଗୀ ଏବଂ କର୍ତ୍ତୃତ୍ୱାଭିମାନ ତ୍ୟାଗ କରିଥିବା ସାଂଖ୍ୟଯୋଗୀ – ଉଭୟେ ଶୁକ୍ଳମାର୍ଗରେ ଯାଇ ଭଗବାନଙ୍କର ପରମଧାମକୁ ପ୍ରାପ୍ତ ହୋଇଯାଆନ୍ତି। ସେମାନଙ୍କୁ ସେଠାରୁ ଆଉ କେବେ ଫେରିଆସିବାକୁ ପଡ଼େ ନାହିଁ। —ଏହି ବିଷୟଟି ଶ୍ରଦ୍ଧାପୂର୍ବକ ଭଲରୂପେ ବୁଝିନେବାକୁ 'ଏହି ଦୁଇ ମାର୍ଗକୁ ତତ୍ତ୍ୱତଃ ଜାଣିବା' ବୋଲି କୁହାଯାଏ।

**ପ୍ରଶ୍ନ –** ଏଠାରେ **ଯୋଗୀ** ଶବ୍ଦର ଅଭିପ୍ରାୟ କଣ ଏବଂ **କଶ୍ଚନ** ବିଶେଷଣ ଦେଇ କେଉଁ ଭାବ ଦର୍ଶାଇଦିଆଯାଇଛି ? ସେ ମୋହିତ ନ ହେବା କହିଲେ କଣ ବୁଝାଏ ?

**ଉତ୍ତର –** କର୍ମଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ ଆଦି ଯେତେପ୍ରକାର ଯୋଗକୁ ପରମେଶ୍ୱରପ୍ରାପ୍ତିର ଉପାୟ ବୋଲି କୁହାଯାଇଛି, ତଦନୁସାରେ ଚେଷ୍ଟା କରୁଥିବା ସବୁ ସାଧକ **ଯୋଗୀ** ଅଟନ୍ତି। ସେମାନଙ୍କ ମଧ୍ୟରୁ ଯେକେହି ଉପରୋକ୍ତ ଦୁଇ ମାର୍ଗକୁ ତତ୍ତ୍ୱତଃ ଜାଣିଯାଆନ୍ତି, ସେ ମୋହିତ ହୁଅନ୍ତି ନାହିଁ — ଏହା ବୁଝାଇଦେବାକୁ **କଶ୍ଚନ** ପ୍ରୟୋଗ କରାଯାଇଛି। ଉପରୋକ୍ତ ଯୋଗସାଧନାରେ ଲାଗିଥିବା ମନୁଷ୍ୟ ବି ଏହି ମାର୍ଗର ତତ୍ତ୍ୱ ନ ଜାଣିପାରିବାରୁ ସ୍ୱଭାବବଶତଃ ଇହଲୋକ ବା ପରଲୋକର ଭୋଗରେ ଆସକ୍ତ ହୋଇ ସାଧନାରୁ ଭ୍ରଷ୍ଟ ହୋଇଯାଏ; ଏହା ହିଁ ତାହାର ମୋହିତ ହେବା। କିନ୍ତୁ ଯେ ଏହି ଦୁଇ ମାର୍ଗକୁ ତତ୍ତ୍ୱତଃ ଜାଣନ୍ତି, ସେ ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତ ଲୋକର ଭୋଗ ନାଶବାନ୍ ଓ ତୁଚ୍ଛ ବୋଲି ବୁଝିପାରୁଥିବାରୁ କୌଣସିପ୍ରକାର ଭୋଗରେ ଆସକ୍ତ ହୁଅନ୍ତି ନାହିଁ ଏବଂ ନିରନ୍ତର ପରମେଶ୍ୱରଙ୍କ ପ୍ରାପ୍ତିସାଧନାରେ ହିଁ ଲାଗିରହନ୍ତି। ଏହା ହିଁ ତାଙ୍କର 'ମୋହିତ ନ ହେବା'।

**ପ୍ରଶ୍ନ –** ଏଠାରେ **ତସ୍ମାତ୍** ପଦର ଭାବ କଣ ଏବଂ ଅର୍ଜୁନଙ୍କୁ ସର୍ବଦା ଯୋଗଯୁକ୍ତ ହେବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ତସ୍ମାତ୍** ପଦଦ୍ୱାରା ଭଗବାନ୍ କହୁଛନ୍ତି, ''ଭଗବତ୍‌ପ୍ରାପ୍ତିର ସାଧନାରୂପକ ଯୋଗର ମହତ୍ତ୍ୱ ଏତେ ଯେ, ସେଥିରେ ଯୁକ୍ତ ରହୁଥିବା ଯୋଗୀ ଦୁଇଟିଯାକ ମାର୍ଗର ତତ୍ତ୍ୱ ଭଲରୂପେ ବୁଝିପାରିଥିବାରୁ କୌଣସିପ୍ରକାର ଭୋଗରେ ଆସକ୍ତ ହୋଇ ମୋହିତ ହୁଅନ୍ତି ନାହିଁ। ତେଣୁ ତୁମେ ମଧ୍ୟ ସଦାସର୍ବଦା ଯୋଗଯୁକ୍ତ ହୋଇଯାଅ; କେବଳ ମୋର ପ୍ରୀତିପାଇଁ ନିରନ୍ତର ଭକ୍ତିପ୍ରଧାନ କର୍ମଯୋଗରେ ଶ୍ରଦ୍ଧାପୂର୍ବକ ତତ୍ପର ରୁହ।'' ଏହି ଅଧ୍ୟାୟର ସପ୍ତମ ଶ୍ଳୋକରେ ମଧ୍ୟ ଭଗବାନ୍ ଏହିପରି ଆଜ୍ଞା ଦେଇଛନ୍ତି; କାରଣ ଅର୍ଜୁନ ତାହାର ଅଧିକାରୀ ଥିଲେ।

ଏଠାରେ ଭଗବାନ୍ ଅର୍ଜୁନଙ୍କୁ ସବୁକାଳରେ ଯୋଗଯୁକ୍ତ ହେବାକୁ ଯାହା କହିଲେ, ତାହାର ଭାବ ଏହି ଯେ, ମନୁଷ୍ୟଜୀବନ ଅଳ୍ପକାଳସ୍ଥାୟୀ; ମୃତ୍ୟୁ କେତେବେଳେ ଆସି

ପହଞ୍ଚିଯିବ, ତା'ର ଠିକଣା ନାହିଁ। ଯଦି ନିଜ ଜୀବନର ପ୍ରତିକ୍ଷଣକୁ ସାଧନାରେ ଲଗାଇରଖିବାକୁ ଚେଷ୍ଟା କରା ନ ଯାଏ, ତେବେ ମଝି ମଝିରେ ସାଧନା ଛାଡ଼ିଯାଉଥିବ ଏବଂ ଯଦି କେବେ ସାଧନାହୀନ ଅବସ୍ଥାରେ ମୃତ୍ୟୁ ହୋଇଯିବ, ତେବେ ଯୋଗଭ୍ରଷ୍ଟ ହୋଇ ପୁନଃ ଜନ୍ମ ନେବାକୁ ପଡ଼ିବ। ଅତଏବ ମନୁଷ୍ୟକୁ ଭଗବତ୍‌ପ୍ରାପ୍ତି-ସାଧନାରେ ନିତ୍ୟନିରନ୍ତର ଲାଗିରହିବା ଆବଶ୍ୟକ।

*ସମ୍ବନ୍ଧ— ଭଗବାନ୍ ଅର୍ଜୁନଙ୍କୁ ଯୋଗଯୁକ୍ତ ହେବାକୁ କହିଲେ। ବର୍ତ୍ତମାନ ଯୋଗଯୁକ୍ତ ପୁରୁଷଙ୍କ ମହିମା କହି ଏବଂ ଏହି ଅଧ୍ୟାୟରେ ବର୍ଣ୍ଣିତ ରହସ୍ୟ ବୁଝି ତଦନୁସାରେ ସାଧନା କରିବାର ଫଳ କହିବା ସହିତ ଏହି ଅଧ୍ୟାୟର ଉପସଂହାର କରୁଛନ୍ତି—*

**ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ**
**ଦାନେଷୁ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟମ୍।**
**ଅତ୍ୟେତି ତତ୍ ସର୍ବମିଦଂ ବିଦିତ୍ୱା**
**ଯୋଗୀ ପରଂ ସ୍ଥାନମୁପୈତି ଚାଦ୍ୟମ୍॥ ୨୮ ॥**

**ଅନ୍ୱୟ—** **ଯୋଗୀ** = ଯୋଗୀପୁରୁଷ; **ଇଦମ୍** = ଏହି ରହସ୍ୟକୁ; **ବିଦିତ୍ୱା** = ତତ୍ତ୍ୱତଃ ଜାଣି; **ବେଦେଷୁ** = ବେଦ ପଢ଼ିବାରେ; **ଚ** = ତଥା; **ଯଜ୍ଞେଷୁ, ତପଃସୁ, ଦାନେଷୁ** = ଯଜ୍ଞ, ତପ ଓ ଦାନାଦି କର୍ମମାନଙ୍କରେ; **ଯତ୍** = ଯେଉଁ; **ପୁଣ୍ୟଫଳମ୍** = ପୁଣ୍ୟଫଳ; **ପ୍ରଦିଷ୍ଟମ୍** = କୁହାଯାଇଛି; **ତତ୍** = ସେହି; **ସର୍ବମ୍** = ସବୁକୁ; **ଏବ** = ନିଃସନ୍ଦେହ; **ଅତ୍ୟେତି** = ଉଲ୍ଲଂଘନ କରିଯାଏ; **ଚ** = ଏବଂ; **ଆଦ୍ୟମ୍** = ସନାତନ; **ପରମ୍, ସ୍ଥାନମ୍** = ପରମ ପଦକୁ; **ଉପୈତି** = ପ୍ରାପ୍ତ ହୁଏ।

**ଯୋଗୀ ପୁରୁଷ ଏହି ରହସ୍ୟ ତତ୍ତ୍ୱତଃ ଜାଣିଯାଇ ବେଦ ପଢ଼ିବାରେ ତଥା ଯଜ୍ଞ, ତପ ଓ ଦାନାଦି କର୍ମମାନଙ୍କରେ ଯେଉଁ ପୁଣ୍ୟଫଳ ମିଳେ ବୋଲି କୁହାଯାଇଛି, ସେସବୁକୁ ନିଃସନ୍ଦେହ ଉଲ୍ଲଂଘନ କରିଯାନ୍ତି ଏବଂ ସନାତନ ପରମପଦ ପ୍ରାପ୍ତ ହୁଅନ୍ତି।॥ ୨୮ ॥**

**ପ୍ରଶ୍ନ—** ଏଠାରେ **ଯୋଗୀ** କାହାର ବାଚକ?

**ଉତ୍ତର—** **ଯୋଗୀ** ପଦଟି ହେଉଛି ଭଗବତ୍‌ପ୍ରାପ୍ତିପାଇଁ ଯେତେପ୍ରକାର ସାଧନା କୁହାଯାଇଛି, ତନ୍ମଧ୍ୟରୁ ଯେକୌଣସି ସାଧନାରେ ଶ୍ରଦ୍ଧାଭକ୍ତିପୂର୍ବକ ନିରନ୍ତର ଲାଗିରହିଥିବା ପୁରୁଷଙ୍କ ବାଚକ।

**ପ୍ରଶ୍ନ—** **ଇଦମ୍** ପଦ କାହାର ବାଚକ? ଏବଂ ତାହା 'ତତ୍ତ୍ୱତଃ ଜାଣିବା' କଣ?

**ଉତ୍ତର—** ଏଠାରେ **ଇଦମ୍** ପଦଟି ହେଉଛି ଏହି ଅଧ୍ୟାୟରେ ବର୍ଣ୍ଣିତ ସମସ୍ତ ଉପଦେଶର ବାଚକ। ଏଥିରେ ଦିଆଯାଇଥିବା ଶିକ୍ଷାକୁ ଅର୍ଥାତ୍ ଭଗବାନଙ୍କ ସଗୁଣ-ନିର୍ଗୁଣ ଓ ସାକାର-ନିରାକାର ସ୍ୱରୂପର ଉପାସନାକୁ, ଭଗବାନଙ୍କ ଗୁଣ, ପ୍ରଭାବ ଓ ମାହାତ୍ମ୍ୟକୁ ଏବଂ କିପ୍ରକାର ସାଧନା କଲେ ମନୁଷ୍ୟ ପରମାତ୍ମାଙ୍କୁ ପାଇପାରିବ, କେଉଁଠିକି ଗଲେ ମନୁଷ୍ୟକୁ ପୁଣି ଫେରିବାକୁ ପଡ଼େ ଏବଂ କେଉଁଠି ପହଞ୍ଚଗଲେ ଆଉ ପୁନର୍ଜନ୍ମ ହୁଏ ନାହିଁ ଇତ୍ୟାଦି ଯେତେ ବିଷୟ ଏହି ଅଧ୍ୟାୟରେ କହିଦିଆଗଲା, ସେସବୁକୁ ଭଲଭାବରେ ବୁଝିବା ହିଁ ତାହା 'ତତ୍ତ୍ୱତଃ ଜାଣିବା'।

**ପ୍ରଶ୍ନ—** ଏଠାରେ **ବେଦ, ଯଜ୍ଞ,** ତପ ଓ **ଦାନ** କାହାର ବାଚକ? ସେସବୁର ପୁଣ୍ୟଫଳ କଣ ଏବଂ ତାହାକୁ ଉଲ୍ଲଂଘନ କରିବା କଣ?

**ଉତ୍ତର—** ଏଠାରେ **ବେଦ** ଶବ୍ଦ ଅଙ୍ଗ ସହିତ ଚାରିବେଦର ଏବଂ ତଦନୁକୂଳ ସମସ୍ତ ଶାସ୍ତ୍ରର, **ଯଜ୍ଞ**ଶବ୍ଦ ଶାସ୍ତ୍ରବିହିତ ପୂଜନ, ହୋମ ଆଦି ସବୁପ୍ରକାର ଯଜ୍ଞର, ତପ ଶବ୍ଦ ବ୍ରତ, ଉପବାସ, ଇନ୍ଦ୍ରିୟ-ସଂଯମ, ସ୍ୱଧର୍ମପାଳନ ଆଦି ସମସ୍ତପ୍ରକାର ଶାସ୍ତ୍ରବିହିତ ତପର ଓ **ଦାନ** ଶବ୍ଦ ଅନ୍ନଦାନ, ବିଦ୍ୟାଦାନ, କ୍ଷେତ୍ରଦାନ ଆଦି ସର୍ବପ୍ରକାର ଶାସ୍ତ୍ରବିହିତ ଦାନର ଏବଂ ପରୋପକାରର ବାଚକ। ଶ୍ରଦ୍ଧା-ଭକ୍ତିପୂର୍ବକ ସକାମଭାବରେ ବେଦଶାସ୍ତ୍ରମାନଙ୍କର ସ୍ୱାଧ୍ୟାୟ ତଥା ଯଜ୍ଞ, ଦାନ ଓ ତପ ଆଦି ଶୁଭକର୍ମମାନଙ୍କ

ଅନୁଷ୍ଠାନଦ୍ୱାରା ଯେଉଁ ପୁଣ୍ୟସଞ୍ଚୟ ହୁଏ, ଏବଂ ବେଦଶାସ୍ତ୍ରରେ କୁହାଯାଇଥିବାପରି ସେହି ପୁଣ୍ୟର ଫଳସ୍ୱରୂପ ବ୍ରହ୍ମଲୋକପର୍ଯ୍ୟନ୍ତ ଯେଉଁ ଭିନ୍ନ ଭିନ୍ନ ଦେବଲୋକପ୍ରାପ୍ତି ଓ ଭୋଗପ୍ରାପ୍ତି ହୁଏ, ତାହା ହିଁ ସେସବୁର ପୁଣ୍ୟଫଳ। ସେସମସ୍ତ ଲୋକକୁ ଓ ସେଠାକାର ସମସ୍ତ ଭୋଗକୁ କ୍ଷଣଭଙ୍ଗୁର ତଥା ଅନିତ୍ୟ ବୋଲି ମନେ କରି ସେଥିରେ ଆସକ୍ତ ନ ହେବା ଏବଂ ସେଥିରୁ ଚିରଦିନପାଇଁ ଉପରତ ହେବା ହିଁ ସେସବୁକୁ ଉଲ୍ଲଙ୍ଘନ କରିବା।

**ପ୍ରଶ୍ନ –** **ଆଦ୍ୟମ୍** ଓ **ପରମ୍** ବିଶେଷଣ ସହିତ **ସ୍ଥାନମ୍** ପଦ କାହାର ବାଚକ ଏବଂ ତାହା ପ୍ରାପ୍ତ ହେବା କଣ ?

**ଉତ୍ତର –** ଏହି ଅଧ୍ୟାୟରେ ଯାହାକୁ ଭଗବାନଙ୍କର ପରମଧାମ ବୋଲି କୁହାଗଲା, ଯେଉଁଠିକି ଗଲେ ମନୁଷ୍ୟ ଆଉ ଏହି ସଂସାରଚକ୍ରରେ ପଡ଼େ ନାହିଁ, ଯାହା ସମସ୍ତଙ୍କର ଆଦି, ସମସ୍ତଙ୍କ ଊର୍ଦ୍ଧ୍ୱରେ ଓ ଶ୍ରେଷ୍ଠ, ଏଠାରେ **ପରମ୍** ଓ **ଆଦ୍ୟମ୍** ବିଶେଷଣ ସହିତ **ସ୍ଥାନମ୍** ପଦଟି ହେଉଛି ତାହାର ବାଚକ। ତାହା ତତ୍ତ୍ୱତଃ ଜାଣି ସେଠାକୁ ଯିବା ହିଁ ତାକୁ ପ୍ରାପ୍ତ ହୋଇଯିବା। ତାହାକୁ ପରମଗତିପ୍ରାପ୍ତି, ଦିବ୍ୟପୁରୁଷଙ୍କ ପ୍ରାପ୍ତି, ପରମପଦପ୍ରାପ୍ତି ଏବଂ ଭଗବଦ୍‌ଭାବପ୍ରାପ୍ତି ମଧ୍ୟ କହନ୍ତି।

— ୦ —

*ଓଁ ତତ୍‌ସତ୍ ଇତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଅକ୍ଷରବ୍ରହ୍ମଯୋଗୋ*
*ନାମ ଅଷ୍ଟମୋଽଧ୍ୟାୟଃ ॥୮॥*

ଓଁ ଶ୍ରୀପରମାତ୍ମନେ ନମଃ

# ନବମୋଽଧ୍ୟାୟଃ

## ରାଜବିଦ୍ୟାରାଜଗୁହ୍ୟଯୋଗ

**ଅଧ୍ୟାୟର ନାମ :** *ଏହି ଅଧ୍ୟାୟରେ ଭଗବାନ୍ ଯେଉଁ ଉପଦେଶ ଦେଇଛନ୍ତି, ତାହାକୁ ସେ ସକଳ ବିଦ୍ୟାର ଓ ସମସ୍ତ ଗୁପ୍ତ-ରଖିବାଯୋଗ୍ୟ ଭାବର ରାଜା ବୋଲି କହିଛନ୍ତି। ଅତଏବ ଏହି ଅଧ୍ୟାୟର ନାମ 'ରାଜବିଦ୍ୟାରାଜଗୁହ୍ୟଯୋଗ' ରଖାଯାଇଛି।*

**ଅଧ୍ୟାୟର ସଂକ୍ଷିପ୍ତ ସାର :** *ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଅର୍ଜୁନଙ୍କୁ ପୁନର୍ବାର ବିଜ୍ଞାନ ସହିତ ଜ୍ଞାନ ଉପଦେଶ ଦେବାକୁ ପ୍ରତିଜ୍ଞା କରି ଭଗବାନ୍ ତାହାର ମାହାତ୍ମ୍ୟ କହିଛନ୍ତି; ତୃତୀୟରେ ସେହି ଉପଦେଶରେ ଶ୍ରଦ୍ଧା ରଖୁ ନ ଥିବା ଲୋକେ ଜନ୍ମ-ମରଣରୂପକ ସଂସାରଚକ୍ରରେ ପଡନ୍ତି ବୋଲି କହିଛନ୍ତି। ଚତୁର୍ଥରୁ ଷଷ୍ଠପର୍ଯ୍ୟନ୍ତ ଭଗବାନଙ୍କର ନିରାକାରରୂପର ବ୍ୟାପକତା ଓ ନିର୍ଲେପତାର ବର୍ଣ୍ଣନା କରିଛନ୍ତି ଏବଂ ଭଗବାନଙ୍କର ଈଶ୍ୱରୀୟ ଯୋଗଶକ୍ତିର ଦିଗ୍‌ଦର୍ଶନ କରାଇ ସେହି ସ୍ୱରୂପରେ ସକଳ ପ୍ରାଣୀଙ୍କର ସ୍ଥିତି ବାୟୁ ଓ ଆକାଶର ଦୃଷ୍ଟାନ୍ତ ଦେଇ ବୁଝାଇଦେଇଛନ୍ତି। ତା'ପରେ ସପ୍ତମରୁ ଦଶମଯାଏ ମହାପ୍ରଳୟ ସମୟରେ ସକଳ ପ୍ରାଣୀଙ୍କର ଭଗବାନଙ୍କ ପ୍ରକୃତିରେ ଲୟ ହେବା ଏବଂ କଳ୍ପ ଆରମ୍ଭରେ ପୁଣି ଭଗବାନଙ୍କ ଅଧ୍ୟକ୍ଷତାରେ ପ୍ରକୃତିଦ୍ୱାରା ସେମାନଙ୍କୁ ସୃଷ୍ଟି କରାଯିବା ଏବଂ ଏସବୁ କର୍ମ କରି ମଧ୍ୟ ଭଗବାନ୍ ସେଥିରେ ନିର୍ଲିପ୍ତ ରହିବା ବିଷୟ କୁହାଯାଇଛି। ଏଗାର ଓ ବାର ଶ୍ଳୋକରେ ଭଗବାନଙ୍କ ପ୍ରଭାବ ଜାଣି ନ ଥିବାରୁ ତାଙ୍କୁ ତିରସ୍କାର କରୁଥିବା ଲୋକଙ୍କ ନିନ୍ଦା କରିଛନ୍ତି ଏବଂ ତେର ଓ ଚଉଦରେ ଭଗବାନଙ୍କ ପ୍ରଭାବକୁ ଜାଣିଥିବା ଅନନ୍ୟ ଭକ୍ତମାନଙ୍କ ଭଜନର ପ୍ରକାର କୁହାଯାଇଛି। ପନ୍ଦର ଶ୍ଳୋକରେ ଏକତ୍ୱଭାବରେ ଜ୍ଞାନଯଜ୍ଞଦ୍ୱାରା ବ୍ରହ୍ମଙ୍କୁ ଉପାସନା କରୁଥିବା ଜ୍ଞାନଯୋଗୀମାନଙ୍କର ଏବଂ ବିଶ୍ୱରୂପ ପରମେଶ୍ୱରଙ୍କୁ ଉପାସନା କରୁଥିବା ଲୋକମାନଙ୍କର ବର୍ଣ୍ଣନା କରାଯାଇଛି। ତା'ପରେ ଷୋହଳରୁ ଉଣେଇଶପର୍ଯ୍ୟନ୍ତ ଭଗବାନ୍ ଗୁଣ, ପ୍ରଭାବ ଓ ବିଭୂତିସମେତ ନିଜର ସ୍ୱରୂପ ବର୍ଣ୍ଣନା କରି କାର୍ଯ୍ୟକାରଣରୂପ ସମସ୍ତ ଜଗତକୁ ମଧ୍ୟ ନିଜର ସ୍ୱରୂପ ବୋଲି କହିଛନ୍ତି। କୋଡ଼ିଏ ଓ ଏକୋଇଶରେ ସ୍ୱର୍ଗଭୋଗପାଇଁ ଯଜ୍ଞାଦି କର୍ମ କରୁଥିବା ଲୋକଙ୍କର ଜନ୍ମମରଣରୂପୀ ଗମନାଗମନ ବର୍ଣ୍ଣନା କରିଛନ୍ତି। ବାଇଶରେ ନିଷ୍କାମଭାବରେ ନିତ୍ୟ-ନିରନ୍ତର ଚିନ୍ତନ କରୁଥିବା ନିଜ ଭକ୍ତମାନଙ୍କର ଯୋଗକ୍ଷେମ ସ୍ୱୟଂ ବହନ କରୁଥିବାର ପ୍ରତିଜ୍ଞା କରିଛନ୍ତି। ତେଇଶଠାରୁ ପଚିଶପର୍ଯ୍ୟନ୍ତ ଅନ୍ୟ ଦେବତାମାନଙ୍କ ଉପାସନାକୁ ମଧ୍ୟ ପ୍ରକାରାନ୍ତରେ ଅବିଧିପୂର୍ବକ ନିଜର ଉପାସନା ବୋଲି କହିଛନ୍ତି, ତଥା ଭଗବାନଙ୍କୁ ତତ୍ତ୍ୱତଃ ନ ଜାଣିଥିବା କଥା ବୋଲି କହି ତା'ର ଫଳ ସେହି ସେହି ଦେବତାଙ୍କର ପ୍ରାପ୍ତି ଓ ଭଗବତ୍ ଉପାସନାର ଫଳ ଭଗବତ୍‌ପ୍ରାପ୍ତି ବୋଲି କହିଛନ୍ତି। ଛବିଶରେ ଭଗବତ୍ ଭକ୍ତିର ସୁଗମତା ଦେଖାଇ ସତେଇଶରେ ସକଳ କର୍ମ ଭଗବାନଙ୍କୁ ଅର୍ପଣ କର ବୋଲି ଅର୍ଜୁନଙ୍କୁ କହିଛନ୍ତି। ଅଠେଇଶରେ ତା'ର ଫଳ ଭଗବତ୍‌ପ୍ରାପ୍ତି ବୋଲି କହିଛନ୍ତି। ଅଣତିରିଶରେ ସେ (ଭଗବାନ୍) ସବୁ ପ୍ରାଣୀଙ୍କ ଠାରେ ସମଭାବରେ ଅଛନ୍ତି ବୋଲି ବର୍ଣ୍ଣନା କରି ତିରିଶ ଓ ଏକତିରିଶରେ ଦୁରାଚାରୀ ହେଲେ ମଧ୍ୟ ଅନନ୍ୟ ଭକ୍ତିପୂର୍ବକ ଭଗବାନଙ୍କ ଭଜନ କରୁଥିବା ଭକ୍ତଙ୍କର ମହତ୍ତ୍ୱ ବର୍ଣ୍ଣାଇଛନ୍ତି। ବତିଶରେ ଭଗବତ୍‌ଶରଣାଗତିଦ୍ୱାରା ସ୍ତ୍ରୀ, ବୈଶ୍ୟ, ଶୂଦ୍ର ଓ ଚାଣ୍ଡାଳ ଆଦିଙ୍କୁ ମଧ୍ୟ ପରମଗତିରୂପକ ଫଳପ୍ରାପ୍ତି ହୁଏ ବୋଲି କହିଛନ୍ତି। ତେତିଶରେ ଓ ଚଉତିରିଶରେ ପୁଣ୍ୟଶୀଳ ବ୍ରାହ୍ମଣ ଓ ରାଜର୍ଷି ଭକ୍ତମାନଙ୍କୁ ପ୍ରଶଂସା କରି ଶରୀର ଅନିତ୍ୟ ବୋଲି କହିବା ସଙ୍ଗେ ସଙ୍ଗେ ଅର୍ଜୁନଙ୍କୁ ତାଙ୍କର ଶରଣ ନେବାକୁ କହିଛନ୍ତି ଏବଂ ଅଙ୍ଗମାନଙ୍କ ସହିତ ଶରଣାଗତିର ସ୍ୱରୂପ ନିରୂପଣ କରି ଅଧ୍ୟାୟର ଉପସଂହାର କରିଛନ୍ତି।*

**ସମ୍ବନ୍ଧ** — ସପ୍ତମ ଅଧ୍ୟାୟର ଆରମ୍ଭରେ ଭଗବାନ୍ ବିଜ୍ଞାନସହିତ ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଥିଲେ। ସେହି ଅନୁସାରେ ସେହି ବିଷୟ ବର୍ଣ୍ଣନା କରି ଶେଷରେ ବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ ଭଗବାନଙ୍କୁ ଜାଣିବାର ଏବଂ ଅନ୍ତକାଳରେ ଭଗବଦ୍‌ଚିନ୍ତନର କଥା କହିଲେ। ଏହା ଉପରେ ଅଷ୍ଟମ ଅଧ୍ୟାୟରେ ଅର୍ଜୁନ ସେହି ତତ୍ତ୍ୱ ଏବଂ ଅନ୍ତକାଳରେ ଉପାସନା ବିଷୟ ବୁଝିବାକୁ ସାତୋଟି ପ୍ରଶ୍ନ କରିଥିଲେ। ସେଥିରୁ ଛଅଟି ପ୍ରଶ୍ନର ଉତ୍ତର ତ ଭଗବାନ୍ ସଂକ୍ଷେପରେ ତୃତୀୟ ଓ ଚତୁର୍ଥ ଶ୍ଳୋକରେ ଦେଇଦେଲେ, କିନ୍ତୁ ସପ୍ତମ ପ୍ରଶ୍ନର ଉତ୍ତରରେ ସେ ଯେଉଁ ଉପଦେଶ ଆରମ୍ଭ କଲେ, ସେଥିରେ ଅଷ୍ଟମ ଅଧ୍ୟାୟଟି ପୂର୍ଣ୍ଣ ହୋଇଗଲା। ଏପରିଭାବରେ ସପ୍ତମ ଅଧ୍ୟାୟରେ ଆରମ୍ଭ କରିଥିବା ବିଜ୍ଞାନସହିତ ଜ୍ଞାନର ସାଙ୍ଗୋପାଙ୍ଗ ବର୍ଣ୍ଣନା ନ ହେବାରୁ ସେହି ବିଷୟଟି ଭଲଭାବରେ ବୁଝାଇଦେବା ଉଦ୍ଦେଶ୍ୟରେ ଭଗବାନ୍ ଏହି ନବମ ଅଧ୍ୟାୟ ଆରମ୍ଭ କରୁଛନ୍ତି। ସପ୍ତମ ଅଧ୍ୟାୟରେ ବର୍ଣ୍ଣିତ ଉପଦେଶ ସହିତ ଏହାର ଘନିଷ୍ଠ ସମ୍ବନ୍ଧ ଦେଖାଇବାପାଇଁ ପ୍ରଥମ ଶ୍ଳୋକରେ ପୁଣି ଥରେ ସେହି ବିଜ୍ଞାନସହିତ ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି—

ଶ୍ରୀଭଗବାନୁବାଚ

**ଇଦଂ ତୁ ତେ ଗୁହ୍ୟତମଂ ପ୍ରବକ୍ଷ୍ୟାମ୍ୟନସୂୟବେ ।**
**ଜ୍ଞାନଂ ବିଜ୍ଞାନସହିତଂ ଯଜ୍‌ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ॥ ୧ ॥**

**ଅନ୍ୱୟ** — **ତେ** = ତୁମପରି; **ଅନସୂୟବେ** = ଦୋଷଦୃଷ୍ଟିଶୂନ୍ୟ ଭକ୍ତଙ୍କୁ; **ଇଦମ୍** = ଏହି; **ଗୁହ୍ୟତମମ୍** = ପରମ ଗୋପନୀୟ; **ବିଜ୍ଞାନସହିତମ୍** = ବିଜ୍ଞାନସହିତ; **ଜ୍ଞାନମ୍** = ଜ୍ଞାନକୁ; **ପ୍ରବକ୍ଷ୍ୟାମି** = ପୁନର୍ବାର ଭଲରୂପେ ବୁଝାଇ କହିଦେବି; **ତୁ** = ଯେ; **ଯତ୍**, **ଜ୍ଞାତ୍ୱା** = ଯାହା ଜାଣି; **ଅଶୁଭାତ୍** = (ତୁମେ) ଦୁଃଖରୂପୀ ସଂସାରରୁ; **ମୋକ୍ଷ୍ୟସେ** = ମୁକ୍ତ ହୋଇଯିବ।

**ଶ୍ରୀଭଗବାନ୍ କହିଲେ— ତୁମପରି ଦୋଷଦୃଷ୍ଟିଶୂନ୍ୟ ଭକ୍ତଙ୍କୁ ଏହି ପରମ ଗୋପନୀୟ ବିଜ୍ଞାନସହିତ ଜ୍ଞାନ ମୁଁ ପୁନର୍ବାର ଭଲଭାବରେ ବୁଝାଇ କହିଦେବି ଯେ, ତାହା ଜାଣି ତୁମେ ଦୁଃଖରୂପୀ ସଂସାରରୁ ମୁକ୍ତ ହୋଇଯିବ॥ ୧ ॥**

**ପ୍ରଶ୍ନ**— ଅନସୂୟବେ ପଦର ଅର୍ଥ କଣ? ଏବଂ ଏଠାରେ ଅର୍ଜୁନଙ୍କୁ ଅନସୂୟୁ କହିବାର ଅଭିପ୍ରାୟ କଣ ?

**ଉତ୍ତର**— ଗୁଣବାନ୍‌ମାନଙ୍କର ଗୁଣ ଗ୍ରହଣ ନ କରିବା, ସେମାନଙ୍କ ଗୁଣମାନଙ୍କରେ ଦୋଷ ଦେଖିବା, ସେମାନଙ୍କର ନିନ୍ଦା କରିବା ଏବଂ ସେମାନଙ୍କ ଉପରେ ମିଥ୍ୟାଦୋଷ ଆରୋପ କରିବାର ନାମ **ଅସୂୟା**। ଯାହାଙ୍କ ଠାରେ ସ୍ୱଭାବତଃ ଏହି 'ଅସୂୟା' ଦୋଷ ତିଳେମାତ୍ର ବି ନାହିଁ, ତାଙ୍କୁ **ଅନସୂୟୁ** କହନ୍ତି। ★ ଏଠାରେ ଭଗବାନ୍ ଅର୍ଜୁନଙ୍କୁ 'ଅନସୂୟୁ' କହି ଦେଖାଉଛନ୍ତି, ''ଯେ ମୋ ଠାରେ ଶ୍ରଦ୍ଧା ରଖନ୍ତି ଏବଂ ଅସୂୟା ଦୋଷରୁ ମୁକ୍ତ, ସେ ହେଉଛନ୍ତି ଏହି ଅଧ୍ୟାୟରେ ଦିଆଯାଇଥିବା ଉପଦେଶର ଅଧିକାରୀ। ବିପରୀତ ପକ୍ଷରେ ମୋ ଠାରେ ଦୋଷଦୃଷ୍ଟି ରଖୁଥିବା ଅଶ୍ରଦ୍ଧାଳୁ ମନୁଷ୍ୟ ଏହି ଉପଦେଶର ପାତ୍ର ନୁହେଁ।'' ଅଷ୍ଟାଦଶ ଅଧ୍ୟାୟର ସତଷଠି ଶ୍ଳୋକରେ ଭଗବାନ୍ ସ୍ପଷ୍ଟ ଶବ୍ଦରେ କହିଛନ୍ତି, ''ଯେଉଁ ବ୍ୟକ୍ତି ମୋ ଠାରେ ଦୋଷଦୃଷ୍ଟି ରଖେ, ତାକୁ ଗୀତାଶାସ୍ତ୍ରର ଉପଦେଶ ଶୁଣାଇବା ଉଚିତ ନୁହେଁ।''

---

★ ନ ଗୁଣାନ୍ ଗୁଣିନୋ ହନ୍ତି ସ୍ତୌତି ମନ୍ଦଗୁଣାନପି।
ନାନ୍ୟଦୋଷେଷୁ ରମତେ ସାନସୂୟା ପ୍ରକୀର୍ତ୍ତିତା॥ (ଅତ୍ରିସ୍ମୃତି ୩୪)

ଯିଏ ଗୁଣବାନଙ୍କ ଗୁଣକୁ ଖଣ୍ଡନ କରେ ନାହିଁ, ଅଳ୍ପ ଗୁଣ ଥିବା ଲୋକଙ୍କୁ ମଧ୍ୟ ପ୍ରଶଂସା କରେ ଏବଂ ଅନ୍ୟର ଦୋଷମାନଙ୍କରେ ରମଣ କରେ ନାହିଁ, ତାହାର ସେହି ଭାବକୁ ଅନସୂୟା କୁହାଯାଏ।

**ପ୍ରଶ୍ନ –** ଏଠାରେ **ଇଦମ୍** ପଦ କାହାକୁ ବୁଝାଉଛି ଏବଂ ଯାହା କହିବାକୁ ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ସେହି ବିଜ୍ଞାନସହିତ ଜ୍ଞାନ କଣ ?

**ଉତ୍ତର –** ସପ୍ତମ, ଅଷ୍ଟମ ଓ ଏହି ନବମ ଅଧ୍ୟାୟରେ ପ୍ରଭାବ ଓ ମହତ୍ତ୍ୱ ଆଦି ରହସ୍ୟ ସହିତ ଯେଉଁ ନିର୍ଗୁଣ-ନିରାକାର ତତ୍ତ୍ୱର, ତଥା ଲୀଳା, ରହସ୍ୟ, ମହତ୍ତ୍ୱ ଓ ପ୍ରଭାବ ଆଦି ସହିତ ସଗୁଣ-ନିରାକାର ଓ ସଗୁଣସାକାର ତତ୍ତ୍ୱର ଏବଂ ସେଗୁଡ଼ିକୁ ଉପଲବ୍ଧି କରାଉଥିବା ଉପଦେଶମାନଙ୍କର ବର୍ଣ୍ଣନା ହୋଇଛି, ଏଠାରେ **ଇଦମ୍** ପଦ ସେସବୁକୁ ବୁଝାଉଛି ଏବଂ ତାହା ହିଁ ବିଜ୍ଞାନସହିତ ଜ୍ଞାନ।

**ପ୍ରଶ୍ନ –** ଏହାକୁ **ଗୁହ୍ୟତମମ୍** କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସଂସାରରେ ଏବଂ ଶାସ୍ତ୍ରମାନଙ୍କରେ ଯେତେ ବି ଗୋପନୀୟ ରହସ୍ୟ ରହିଛି, ସେସବୁ ମଧ୍ୟରେ ସମଗ୍ରରୂପୀ ଭଗବାନ୍ ପୁରୁଷୋତ୍ତମଙ୍କ ତତ୍ତ୍ୱ, ପ୍ରେମ, ଗୁଣ, ପ୍ରଭାବ, ବିଭୂତି ଓ ମହତ୍ତ୍ୱ ଆଦି ସହିତ ତାଙ୍କ ଶରଣାଗତିର ସ୍ୱରୂପ ହେଉଛି ସବୁଠାରୁ ବଳି ଗୋପ୍ୟ। ଏହି ଭାବ ଦେଖାଇବାକୁ ଏହାକୁ **ଗୁହ୍ୟତମ** କୁହାଯାଇଛି। ପଞ୍ଚଦଶ ଅଧ୍ୟାୟର କୋଡ଼ିଏ ଶ୍ଳୋକରେ ଏବଂ ଅଷ୍ଟାଦଶ ଅଧ୍ୟାୟର ତଉଷଠି ଶ୍ଳୋକରେ ମଧ୍ୟ ଏପରି ବର୍ଣ୍ଣନାକୁ ଭଗବାନ୍ **ଗୁହ୍ୟତମ** ବୋଲି କହିଛନ୍ତି।

**ପ୍ରଶ୍ନ –** ଏଠାରେ **ଅଶୁଭ** ଶବ୍ଦ କାହାର ବାଚକ ଏବଂ ତା'ଠାରୁ ମୁକ୍ତ ହେବା କଣ ?

**ଉତ୍ତର –** ଏଠାରେ **ଅଶୁଭ** ଶବ୍ଦଟି ହେଉଛି ସମସ୍ତ ଦୁଃଖର, ସେସବୁର ହେତୁଭୂତ କର୍ମମାନଙ୍କର, ଦୁର୍ଗୁଣମାନଙ୍କର, ଜନ୍ମମରଣରୂପକ ସଂସାରବନ୍ଧନର ଏବଂ ଏସବୁର କାରଣରୂପକ ଅଜ୍ଞାନର ବାଚକ। ଏସବୁରୁ ଚିରଦିନପାଇଁ ସଂପୂର୍ଣ୍ଣରୂପେ ମୁକ୍ତ ହୋଇଯିବା ଓ ପରମାନନ୍ଦସ୍ୱରୂପ ପରମେଶ୍ୱରଙ୍କୁ ପ୍ରାପ୍ତ ହୋଇଯିବା ହିଁ 'ଅଶୁଭରୁ ମୁକ୍ତ' ହେବା।

*__ସମ୍ବନ୍ଧ –__ ଭଗବାନ୍ ଯେଉଁ ବିଜ୍ଞାନ-ସହିତ-ଜ୍ଞାନ ଉପଦେଶ ଦେବାକୁ ପ୍ରତିଜ୍ଞା କରିଛନ୍ତି, ତା'ପ୍ରତି ଶ୍ରଦ୍ଧା, ପ୍ରେମ, ଶୁଣିବାର ଇଚ୍ଛା ଓ ସେହି ଉପଦେଶ ଅନୁସାରେ ଆଚରଣ କରିବାରେ ଅତ୍ୟଧିକ ଉତ୍ସାହ ଉତ୍ପନ୍ନ କରାଇବାନିମନ୍ତେ ଭଗବାନ୍ ବର୍ତ୍ତମାନ ତାହାର ଯଥାର୍ଥ ମାହାତ୍ମ୍ୟ ଶୁଣାଉଛନ୍ତି–*

## ରାଜବିଦ୍ୟା ରାଜଗୁହ୍ୟଂ ପବିତ୍ରମିଦମୁତ୍ତମମ୍।
## ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ ସୁସୁଖଂ କର୍ତ୍ତୁମବ୍ୟୟମ୍।। ୨ ।।

**ଅନ୍ୱୟ –** **ଇଦମ୍** = ଏହି ବିଜ୍ଞାନସହିତ ଜ୍ଞାନ (ହେଉଛି); **ରାଜବିଦ୍ୟା** = ସକଳ ବିଦ୍ୟାର ରାଜା; **ରାଜଗୁହ୍ୟମ୍** = ସକଳ ଗୋପନୀୟ ରହସ୍ୟମାନଙ୍କର ରାଜା; **ପବିତ୍ରମ୍** = ଅତ୍ୟନ୍ତ ପବିତ୍ର; **ଉତ୍ତମମ୍** = ଅତ୍ୟନ୍ତ ଉତ୍ତମ; **ପ୍ରତ୍ୟକ୍ଷାବଗମମ୍** = ପ୍ରତ୍ୟକ୍ଷଫଳଦାୟୀ; **ଧର୍ମ୍ୟମ୍** = (ଓ) ଧର୍ମଯୁକ୍ତ; **କର୍ତ୍ତୁମ୍** = ସାଧନା କରିବାରେ; **ସୁସୁଖମ୍** = ଅତ୍ୟନ୍ତ ସୁଗମ; **ଅବ୍ୟୟମ୍** = (ଓ) ଅବିନାଶୀ।

**ଏହି ବିଜ୍ଞାନସହିତ ଜ୍ଞାନ ହେଉଛି ସକଳ ବିଦ୍ୟାର ରାଜା, ସମସ୍ତ ଗୋପନୀୟ ରହସ୍ୟମାନଙ୍କର ରାଜା, ଅତ୍ୟନ୍ତ ପବିତ୍ର, ଅତି ଉତ୍ତମ, ପ୍ରତ୍ୟକ୍ଷଫଳଦାୟୀ, ଧର୍ମଯୁକ୍ତ, ସାଧନା କରିବାରେ ଅତ୍ୟନ୍ତ ସୁଗମ ଓ ଅବିନାଶୀ।। ୨ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଆସିଥିବା **ଇଦମ୍** ପଦଟି କାହାର ବାଚକ ଏବଂ ତାହାକୁ **ରାଜବିଦ୍ୟା** ତଥା ରାଜଗୁହ୍ୟ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ବିଜ୍ଞାନସହିତ ଯେଉଁ ଜ୍ଞାନ କହିବାକୁ ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ଏଠାରେ **ଇଦମ୍** ପଦଟି ହେଉଛି ତାହାର ବାଚକ। ସଂସାରରେ ଯେତେସବୁ ଜ୍ଞାତ ଓ ଅଜ୍ଞାତ ବିଦ୍ୟା ରହିଛି, ଏହା ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ। ଯେ ଏହି ବିଦ୍ୟାକୁ ଯଥାର୍ଥ ଅନୁଭବ କରିସାରିଛନ୍ତି, ତାଙ୍କ ପାଇଁ ଆଉ କିଛି ଜାଣିବାକୁ ବାକି ରହେ ନାହିଁ। ଅତଏବ ଏହାକୁ ରାଜବିଦ୍ୟା ଅର୍ଥାତ୍ ସବୁ ବିଦ୍ୟାର ରାଜା ବୋଲି କୁହାଯାଇଛି। ଏଥିରେ ଭଗବାନଙ୍କ ସଗୁଣ-ନିର୍ଗୁଣ ଓ ସାକାର-ନିରାକାର ସ୍ୱରୂପର

ତତ୍ତ୍ୱ, ତାଙ୍କର ଗୁଣ, ପ୍ରଭାବ ଓ ମହତ୍ତ୍ୱ, ତାଙ୍କ ଉପାସନାବିଧି ଓ ତା'ର ଫଳ ଭଲଭାବରେ ବୁଝାଇଦିଆଯାଇଛି। ଏହା ଛଡ଼ା ଏଥିରେ ଭଗବାନ୍ ନିଜର ସମସ୍ତ ରହସ୍ୟ ଖୋଲିଦେଇ ବୁଝାଇଦେଇଛନ୍ତି, ''ତୁମ ସମ୍ମୁଖରେ ଶ୍ରୀକୃଷ୍ଣରୂପରେ ବିରାଜମାନ ହୋଇଥିବା ମୁଁ ହେଉଛି, ଏହି ସମଗ୍ର ବିଶ୍ୱର କର୍ତ୍ତା, ହର୍ତ୍ତା, ସର୍ବାଧାର, ସର୍ବଶକ୍ତିମାନ୍, ପରବ୍ରହ୍ମ, ପରମେଶ୍ୱର ଓ ସାକ୍ଷାତ୍ ପୁରୁଷୋତ୍ତମ। ତୁମେ ସବୁପ୍ରକାରେ ମୋର ଶରଣ ନେଇଯାଅ।'' ଏପ୍ରକାର ପରମ ଗୋପନୀୟ ରହସ୍ୟ ବିଷୟ ଅର୍ଜୁନଙ୍କ ପରି ଦୋଷଦୃଷ୍ଟିହୀନ ପରମ ଶ୍ରଦ୍ଧାବାନ୍ ଭକ୍ତଙ୍କ ଆଗରେ ହିଁ କୁହାଯାଇପାରେ; ସମସ୍ତଙ୍କ ଆଗରେ ନୁହେଁ। ଅତଏବ ଏହାକୁ ରାଜଗୁହ୍ୟ ଅର୍ଥାତ୍ ସକଳ ଗୋପନୀୟ ରହସ୍ୟର ରାଜା ବୋଲି କୁହାଯାଇଛି।

**ପ୍ରଶ୍ନ –** ଏହାକୁ **ପବିତ୍ର** ଓ **ଉତ୍ତମ** କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହି ଉପଦେଶ ଏପରି ପବିତ୍ରକାରକ ଯେ, ଏହା ଶ୍ରଦ୍ଧାପୂର୍ବକ ଶ୍ରବଣ-ମନନ କଲେ ଓ ଏହା ଅନୁସାରେ ଆଚରଣ କଲେ, ଏହା ମନୁଷ୍ୟର ସମସ୍ତ ପାପ ଓ ଅବଗୁଣ ସମୂଳେ ନାଶ କରିଦେଇ ତାକୁ ଚିରକାଳପାଇଁ ପରମ ପବିତ୍ର କରିଦିଏ। ଅତଏବ ଏହାକୁ **ପବିତ୍ର** କୁହାଯାଇଛି। ସଂସାରରେ ଯେତେ ବି ଉତ୍ତମ ବସ୍ତୁ ରହିଛି, ଏହା ସେସବୁ ଅପେକ୍ଷା ଅତ୍ୟନ୍ତ ଶ୍ରେଷ୍ଠ। ଅତଏବ ଏହାକୁ **ଉତ୍ତମ** କୁହାଯାଇଛି।

**ପ୍ରଶ୍ନ –** ଏହାପାଇଁ **ପ୍ରତ୍ୟକ୍ଷାବଗମମ୍** ଓ **ଧର୍ମ୍ୟମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ବିଜ୍ଞାନସହିତ ଏହି ଜ୍ଞାନର ଫଳ ଶ୍ରାଦ୍ଧାଦି କର୍ମପରି ଅଦୃଷ୍ଟ ନୁହେଁ। ସାଧକ ଏହି ଜ୍ଞାନ ଆଡ଼କୁ ଯେତିକି ଅଗ୍ରସର ହେବେ, ତାଙ୍କର ଦୁର୍ଗୁଣ, ଦୁରାଚାର ଓ ଦୁଃଖ ସେତିକି ନାଶ ପାଇ ତାଙ୍କୁ ସେତିକି ପରମଶାନ୍ତି ଓ ପରମସୁଖ ପ୍ରତ୍ୟକ୍ଷ ଅନୁଭବ ହେବାକୁ ଲାଗିବ। ଯାହାଙ୍କୁ ଏହାର ପୂର୍ଣ୍ଣ ଉପଲବ୍ଧି ହୋଇଯିବ, ସେ ତ ଅଚିରେ ପରମସୁଖ ଓ ପରମଶାନ୍ତିର ସାଗର, ପରମପ୍ରେମୀ, ପରମଦୟାଳୁ ଏବଂ ସମସ୍ତଙ୍କର ସୁହୃଦ୍, ସାକ୍ଷାତ୍ ଭଗବାନଙ୍କୁ ହିଁ ପାଇଯିବେ। ଅତଏବ ଏହା **ପ୍ରତ୍ୟକ୍ଷାବଗମମ୍**। ବର୍ଣ୍ଣ ଓ ଆଶ୍ରମ ଆଦି ଯେତେପ୍ରକାର ବିଭିନ୍ନ ଧର୍ମ କଥା କୁହାଯାଇଛି, ଏହା ସେସବୁର ଅବିରୋଧୀ ଏବଂ ସ୍ୱଭାବତଃ ପରମ ଧର୍ମମୟ ହୋଇଥିବାରୁ ଏହା ସେସବୁ ଅପେକ୍ଷା ଶ୍ରେଷ୍ଠ। ଅତଏବ ଏହା **ଧର୍ମ୍ୟ**।

**ପ୍ରଶ୍ନ –** ଏହାକୁ **ଅବ୍ୟୟମ୍** ଓ **କର୍ତ୍ତୁଂ ସୁସୁଖମ୍** କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସକାମ କର୍ମ ଯେପରି ନିଜର ଫଳ ପ୍ରଦାନ କରି ସମାପ୍ତ ହୋଇଯାଏ ଏବଂ ସାଂସାରିକ ବିଦ୍ୟା ଯେପରି ଥରେ ଶିଖିବା ପରେ ବାରମ୍ବାର ଅଭ୍ୟାସ ନ କଲେ ନଷ୍ଟ ହୋଇଯାଏ, ଭଗବାନଙ୍କର ଏହି ଜ୍ଞାନ-ବିଜ୍ଞାନ ସେପରି ନଷ୍ଟ ହୋଇଯାଏ ନାହିଁ। ଯେଉଁ ମନୁଷ୍ୟ ଏହା ଥରେ ଭଲଭାବରେ ପ୍ରାପ୍ତି କରିନିଅନ୍ତି, ସେ କେବେ କୌଣସି ଅବସ୍ଥାରେ ବି ଏହା ଭୁଲନ୍ତି ନାହିଁ। ତା'ଛଡ଼ା, ଏହାର ଫଳ ମଧ୍ୟ ଅବିନାଶୀ। ଅତଏବ ଏହାକୁ 'ଅବ୍ୟୟ' କୁହାଯାଇଛି ଏବଂ କେହି ଯେପରି ନ ବୁଝନ୍ତୁ ଯେ, ଏତେ ବଡ଼ ମହତ୍ତ୍ୱପୂର୍ଣ୍ଣ ବିଷୟ ହୋଇଥିବାରୁ ଏହି ଅନୁସାରେ ଆଚରଣ କରି ଏହାକୁ ପାଇବା କଠିନ; ସେହି ଦୃଷ୍ଟିରୁ ଭଗବାନ୍ ଏଠାରେ **କର୍ତ୍ତୁଂ ସୁସୁଖମ୍** ପଦ ପ୍ରୟୋଗ କରି କହୁଛନ୍ତି ଯେ, ଏହା ସାଧନା କରିବା ଅତ୍ୟନ୍ତ ସୁଗମ। ଅଭିପ୍ରାୟ ଏହି ଯେ, ଏହି ଅଧ୍ୟାୟରେ ଦେଇଥିବା ଉପଦେଶ ଅନୁସାରେ ଭଗବାନଙ୍କର ଶରଣାଗତି ପ୍ରାପ୍ତି କରିବା ଅତ୍ୟନ୍ତ ସୁଗମ; କାରଣ ଏଥିରେ କୌଣସିପ୍ରକାର ବାହ୍ୟ ଆୟୋଜନର ଆବଶ୍ୟକତା ନାହିଁ, କି ବିଶେଷ ପରିଶ୍ରମ କରିବାକୁ ପଡ଼େ ନାହିଁ। ସିଦ୍ଧିଲାଭ କରିବାର ପରବର୍ତ୍ତୀ ସମୟର କଥା ଛାଡ଼ନ୍ତୁ, ସାଧନାର ଆରମ୍ଭରୁ ହିଁ ଏଥିରେ ସାଧକଙ୍କୁ ଶାନ୍ତି ଓ ସୁଖ ଅନୁଭବ ହେବାକୁ ଲାଗେ।

***ସମ୍ବନ୍ଧ –** ଯଦି ବିଜ୍ଞାନସହିତ ଜ୍ଞାନର ଏତେ ମହିମା ରହିଛି ଓ ଏହାର ସାଧନା ମଧ୍ୟ ଏତେ ସୁଗମ, ତେବେ ସବୁ ମନୁଷ୍ୟ ଏହି ସାଧନା କରୁ ନାହାନ୍ତି କାହିଁକି? ଏହି ପ୍ରଶ୍ନର ଉତ୍ତର ହେଉଛି, ଅଶ୍ରଦ୍ଧା ହିଁ ଏହାର ପ୍ରଧାନ କାରଣ। ଏହା ବୁଝାଇବାପାଇଁ, ଭଗବାନ୍ ବର୍ତ୍ତମାନ ଶ୍ରଦ୍ଧା କରୁ ନ ଥିବା ମନୁଷ୍ୟମାନଙ୍କୁ ନିନ୍ଦା କରୁଛନ୍ତି–*

**ଅଶ୍ରଦ୍ଦଧାନାଃ ପୁରୁଷା ଧର୍ମସ୍ୟାସ୍ୟ ପରଂତପ ।**
**ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି ।। ୩ ।।**

**ଅନ୍ୱୟ –** **ପରନ୍ତପ** = ହେ ପରନ୍ତପ ଅର୍ଜୁନ; **ଅସ୍ୟ** = ଏହି (ଉପରୋକ୍ତ); **ଧର୍ମସ୍ୟ** = ଧର୍ମରେ; **ଅଶ୍ରଦ୍ଦଧାନାଃ** = ଶ୍ରଦ୍ଧାହୀନ; **ପୁରୁଷାଃ** = ପୁରୁଷମାନେ; **ମାମ୍** = ମୋତେ; **ଅପ୍ରାପ୍ୟ** = ପ୍ରାପ୍ତ ନ ହୋଇ; **ମୃତ୍ୟୁସଂସାରବର୍ତ୍ମନି** = ମୃତ୍ୟୁରୂପକ ସଂସାରଚକ୍ରରେ; **ନିବର୍ତ୍ତନ୍ତେ** = ଘୂରିଚାଲନ୍ତି ।

**ହେ ପରନ୍ତପ ! ଉପରୋକ୍ତ ଧର୍ମରେ ଶ୍ରଦ୍ଧା ରଖୁ ନ ଥିବା ପୁରୁଷମାନେ ମୋତେ ପ୍ରାପ୍ତ ନ ହୋଇ ମୃତ୍ୟୁରୂପକ ସଂସାରଚକ୍ରରେ ଘୂରିଚାଲନ୍ତି ।। ୩ ।।**

**ପ୍ରଶ୍ନ –** ଅସ୍ୟ ବିଶେଷଣ ସହିତ **ଧର୍ମସ୍ୟ** ପଦ କେଉଁ ଧର୍ମର ବାଚକ ଏବଂ ସେଥିରେ ଶ୍ରଦ୍ଧା ନ କରିବା କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଯେଉଁ ବିଜ୍ଞାନସହିତ ଜ୍ଞାନର ମାହାତ୍ମ୍ୟ କୁହାଗଲା ଏବଂ ଆଗକୁ ଏହି ଅଧ୍ୟାୟରେ ଯାହାର ବର୍ଣ୍ଣନା କରାଯାଉଛି, ଏଠାରେ **ଅସ୍ୟ** ବିଶେଷଣ-ସହିତ **ଧର୍ମସ୍ୟ** ପଦଟି ହେଉଛି ତାହାର ବାଚକ । ଏହି ପ୍ରସଙ୍ଗରେ ବର୍ଣ୍ଣନା କରାଯାଇଥିବା ଭଗବାନଙ୍କର ସ୍ୱରୂପ, ପ୍ରଭାବ, ଗୁଣ ଓ ମହତ୍ତ୍ୱ ତଥା ତାଙ୍କ ପ୍ରାପ୍ତିର ଉପାୟକୁ ଏବଂ ତା'ର ଫଳକୁ ସତ୍ୟ ବୋଲି ନ ମାନି ଅସମ୍ମାନ କରିବା ଓ ବିପରୀତ ଭାବନା କରିବା ଏବଂ ତାହା କେବଳ ଚାଟୁବାଣୀ ବୋଲି ବୁଝିବା ଆଦି ଯେଉଁ ବିଶ୍ୱାସବିରୋଧୀ ଭାବନାସବୁ ରହିଛି, ତାହା ହିଁ 'ସେଥିରେ ଶ୍ରଦ୍ଧା ନ କରିବା' ।

**ପ୍ରଶ୍ନ – ଅଶ୍ରଦ୍ଦଧାନାଃ** ପଦ କେଉଁ ଶ୍ରେଣୀର ମନୁଷ୍ୟମାନଙ୍କର ବାଚକ ?

**ଉତ୍ତର –** ଯେଉଁ ମନୁଷ୍ୟମାନେ ଭଗବାନଙ୍କର ସ୍ୱରୂପ, ଗୁଣ, ପ୍ରଭାବ ଓ ମହତ୍ତ୍ୱ ଆଦିରେ ବିଶ୍ୱାସ ନ ଥିବାରୁ ଉପରୋକ୍ତ ଭଗବଦ୍ ଭକ୍ତିପାଇଁ କୌଣସି ସାଧନା କରନ୍ତି ନାହିଁ ଏବଂ ନିଜର ଦୁର୍ଲ୍ଲଭ ମନୁଷ୍ୟ ଜୀବନକୁ ବିଷୟସୁଖଭୋଗରେ ଏବଂ ତାହା ପାଇବାର ବିବିଧ ଉପାୟରେ ବୃଥା ନଷ୍ଟ କରିଦିଅନ୍ତି, ଏଠାରେ **ଅଶ୍ରଦ୍ଦଧାନାଃ** ପଦଟି ହେଉଛି ସେହିମାନଙ୍କର ବାଚକ ।

**ପ୍ରଶ୍ନ –** ଶ୍ରଦ୍ଧାହୀନ ପୁରୁଷମାନେ ମୋତେ ପ୍ରାପ୍ତ ନ ହୋଇ ମୃତ୍ୟୁରୂପକ ସଂସାରଚକ୍ରରେ ଘୂରିଚାଲନ୍ତି – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଅଭିପ୍ରାୟ ଏହି ଯେ, ଚୌରାଅଶୀ ଲକ୍ଷ ଯୋନିରେ ଘୂରୁ ଘୂରୁ କେତେବେଳେ ଥରେ ଭଗବାନଙ୍କ ଦୟାରୁ ଜୀବକୁ ଏହି ସଂସାରଚକ୍ରରୁ ମୁକ୍ତ ହୋଇ ପରମେଶ୍ୱରଙ୍କ ପ୍ରାପ୍ତିପାଇଁ ମନୁଷ୍ୟଶରୀର ମିଳେ; ଏପରି ଭଗବତ୍ପ୍ରାପ୍ତିର ଅଧିକାରୀ ତଥା ଦୁର୍ଲଭ ମନୁଷ୍ୟଶରୀର ପାଇ ମଧ୍ୟ ଯେଉଁମାନେ ଭଗବାନଙ୍କ କଥାରେ ଶ୍ରଦ୍ଧା ନ ରଖି ଭଜନ, ଧ୍ୟାନ ଆଦି ସାଧନା କରନ୍ତି ନାହିଁ, ସେମାନେ ଭଗବାନଙ୍କୁ ନ ପାଇ ପୁଣି ସେହି ଜନ୍ମ-ମୃତ୍ୟୁରୂପକ ସଂସାରଚକ୍ରରେ ପଡ଼ି ପୂର୍ବପରି ଘୂରିଚାଲନ୍ତି ।

*ସମ୍ବନ୍ଧ – ପୂର୍ବଶ୍ଳୋକରେ ଭଗବାନ୍ ଯେଉଁ ବିଜ୍ଞାନସହିତ ଜ୍ଞାନ ଉପଦେଶ ଦେବାପାଇଁ ପ୍ରତିଜ୍ଞା କରିଥିଲେ, ତଥା ଯାହାର ମାହାତ୍ମ୍ୟ ବର୍ଣ୍ଣନା କରିଥିଲେ, ବର୍ତ୍ତମାନ ତାହା ଆରମ୍ଭ କରି ସେ ସର୍ବପ୍ରଥମେ ଦୁଇଟି ଶ୍ଳୋକରେ ପ୍ରଭାବସହିତ ନିଜର ଅବ୍ୟକ୍ତ ସ୍ୱରୂପ ବର୍ଣ୍ଣନା କରୁଛନ୍ତି–*

**ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା ।**
**ମତ୍ସ୍ଥାନି ସର୍ବଭୂତାନି ନ ଚାହଂ ତେଷ୍ୱବସ୍ଥିତଃ ।। ୪ ।।**

**ଅନ୍ୱୟ –** **ମୟା** = ମୋ ଦ୍ୱାରା (ଅର୍ଥାତ୍); **ଅବ୍ୟକ୍ତମୂର୍ତ୍ତିନା** = ନିରାକାର ପରମାତ୍ମାଙ୍କ ଦ୍ୱାରା; **ଇଦମ୍** = ଏହି; **ସର୍ବମ୍** = ସମସ୍ତ; **ଜଗତ୍** = ଜଗତ (ଜଳଦ୍ୱାରା ବରଫପରି); **ତତମ୍** = ପରିପୂର୍ଣ୍ଣ; **ଚ** = ଏବଂ; **ସର୍ବଭୂତାନି** = ସକଳ ଭୂତ; **ମତ୍ସ୍ଥାନି** = ମୋର ଅନ୍ତର୍ଗତ ସଂକଳ୍ପର ଆଧାରରେ ଅବସ୍ଥିତ (କିନ୍ତୁ ପ୍ରକୃତରେ); **ଅହମ୍** = ମୁଁ; **ତେଷୁ** = ସେମାନଙ୍କ ମଧ୍ୟରେ; **ନ, ଅବସ୍ଥିତଃ** = ଅବସ୍ଥିତ ନୁହେଁ ।

**ମୋ ଦ୍ୱାରା, ଅର୍ଥାତ୍ ନିରାକାର ପରମାତ୍ମାଙ୍କ ଦ୍ୱାରା ଏହି ସମସ୍ତ ବିଶ୍ୱ ଜଳଦ୍ୱାରା ବରଫପରି ପରିପୂର୍ଣ୍ଣ ହୋଇ ରହିଛି ଏବଂ ସକଳଭୂତ ମୋ ଅନ୍ତର୍ଗତ ସଂକଳ୍ପର ଆଧାରରେ ଅବସ୍ଥିତ। କିନ୍ତୁ ପ୍ରକୃତରେ ମୁଁ ସେମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ।। ୪ ।।**

**ପ୍ରଶ୍ନ –** **ଅବ୍ୟକ୍ତମୂର୍ତ୍ତିନା** ପଦଦ୍ୱାରା ଭଗବାନଙ୍କର କେଉଁ ସ୍ୱରୂପକୁ ଲକ୍ଷ୍ୟ କରାଯାଇଛି ?

**ଉତ୍ତର –** ଅଷ୍ଟମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ଯାହାକୁ 'ଅଧିଯଜ୍ଞ', ଅଷ୍ଟମ ଓ ଦଶମ ଶ୍ଳୋକରେ 'ପରମ ଦିବ୍ୟ ପୁରୁଷ', ନବମ ଶ୍ଳୋକରେ 'କବି', 'ପୁରାଣ' ଆଦି, କୋଡ଼ିଏ ଓ ଏକୋଇଶ ଶ୍ଳୋକରେ 'ଅବ୍ୟକ୍ତ ଅକ୍ଷର' ଏବଂ ବାଇଶ ଶ୍ଳୋକରେ ଭକ୍ତିଦ୍ୱାରା ପ୍ରାପ୍ତ ହେବା ଯୋଗ୍ୟ 'ପରମ ପୁରୁଷ' ବୋଲି କୁହାଯାଇଛି, ସେହି ସର୍ବବ୍ୟାପୀ ସଗୁଣ-ନିରାକାର ସ୍ୱରୂପକୁ ଲକ୍ଷ୍ୟ କରି ଏଠାରେ **ଅବ୍ୟକ୍ତମୂର୍ତ୍ତିନା** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **ଇଦମ୍** ଓ **ସର୍ବମ୍** ବିଶେଷଣ ସହିତ **ଜଗତ୍** ପଦଟି କାହାର ବାଚକ ?

**ଉତ୍ତର –** ଏହି ଦୁଇଟି ବିଶେଷଣ ସହିତ **ଜଗତ୍** ପଦଟି ହେଉଛି ସକଳ ଜଡ଼-ଚେତନ ପଦାର୍ଥ ସହିତ ଏହି ସମଗ୍ର ବ୍ରହ୍ମାଣ୍ଡର ବାଚକ।

**ପ୍ରଶ୍ନ –** ଅବ୍ୟକ୍ତମୂର୍ତ୍ତି ଭଗବାନଙ୍କ ଦ୍ୱାରା ସମଗ୍ର ଜଗତ କିପରି ବ୍ୟାପ୍ତ ହୋଇଛି ?

**ଉତ୍ତର –** ବାୟୁ, ତେଜ, ଜଳ ଓ ପୃଥିବୀ ଯେପରି ଆକାଶଦ୍ୱାରା, ସୁନାଗହଣା ଯେପରି ସୁନାଦ୍ୱାରା ଓ ମାଟିରେ ତିଆରି ପାତ୍ର ଯେପରି ମାଟିଦ୍ୱାରା ବ୍ୟାପ୍ତ ହୋଇ ରହିଥାଏ, ଏହି ସମଗ୍ର ବିଶ୍ୱ ଠିକ୍ ସେହିପରି ଏହାର ରଚୟିତା ସଗୁଣ ପରମେଶ୍ୱରଙ୍କ ନିରାକାର ରୂପଦ୍ୱାରା ବ୍ୟାପ୍ତ ହୋଇଛି। ଶ୍ରୁତି କହନ୍ତି –

**''ଈଶା ବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍।''** (ଈଶୋପନିଷଦ-୧)

ଅର୍ଥାତ୍ 'ଏହି ସଂସାରରେ ଯାହା କିଛି ଜଡ଼-ଚେତନ ପଦାର୍ଥ ରହିଛି, ସେସବୁ ଈଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ।'

**ପ୍ରଶ୍ନ –** **ସର୍ବଭୂତାନି** ପଦ କେଉଁମାନଙ୍କ ବାଚକ ଏବଂ ଏସବୁ ଭୂତ ଭଗବାନଙ୍କ ଠାରେ ଅବସ୍ଥିତ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ସର୍ବ ଭୂତାନି** ପଦଟି ହେଉଛି ସମସ୍ତ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ତଥା ସେମାନଙ୍କ ବିଷୟ ଏବଂ ବାସସ୍ଥାନସହିତ ସମସ୍ତ ଚରାଚର ପ୍ରାଣୀମାନଙ୍କର ବାଚକ। ଭଗବାନ୍ ହିଁ ନିଜ ପ୍ରକୃତିଦ୍ୱାରା ସମସ୍ତ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କରନ୍ତି; ସେ ହିଁ ଏହି ସମସ୍ତ ଜଗତକୁ ନିଜର କୌଣସି ଏକ ଅଂଶରେ ଧାରଣ କରି ରଖିଛନ୍ତି (୧୦/୪୨) ଏବଂ ଏକମାତ୍ର ସେ ହିଁ ସମସ୍ତଙ୍କର ଗତି, ଭର୍ତ୍ତା, ନିବାସସ୍ଥାନ, ଆଶ୍ରୟ, ପ୍ରଭବ, ପ୍ରଳୟ, ସ୍ଥାନ ଓ ନିଧାନ (୯/୧୮)। ଏପରିଭାବରେ ସମସ୍ତଙ୍କର ସ୍ଥିତି ଭଗବାନଙ୍କର ଅଧୀନ। ଅତଏବ ସକଳ ଭୂତ ଭଗବାନଙ୍କ ଠାରେ ଅବସ୍ଥିତ ବୋଲି କୁହାଯାଇଛି।

**ପ୍ରଶ୍ନ –** ଯଦି ଏହି ସମସ୍ତ ଜଗତ୍ ଭଗବାନଙ୍କ ଦ୍ୱାରା ପରିପୂର୍ଣ୍ଣ, ତେବେ 'ମୁଁ ସେସବୁ ଭୂତଙ୍କ ମଧ୍ୟରେ ଅବସ୍ଥିତ ନୁହେଁ,' ବୋଲି କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ମେଘରେ ଆକାଶ ଥିଲା ଭଳି, ସମସ୍ତ ଜଗତ ମଧ୍ୟରେ ଭଗବାନ୍ ଅଣୁ ଅଣୁରେ ବ୍ୟାପ୍ତ ହୋଇ ରହିଥିଲେ ମଧ୍ୟ ସେ ସବୁଠାରୁ ସର୍ବଥା ଅତୀତ ଓ ସମ୍ବନ୍ଧରହିତ। ମେଘ ଛାଡ଼ିଯିବା ପରେ ବି ଯେପରି ଆକାଶ ରହେ, ସମସ୍ତ ଜଗତ ନାଶ ହୋଇଯିବା ପରେ ମଧ୍ୟ ସେହିପରି ଭଗବାନ୍ ପୂର୍ବବତ୍ ରହନ୍ତି; ତାଙ୍କର ନାଶ ହୁଏ ନାହିଁ; ଯେଉଁଠାରେ ଏହି ଜଗତର କୌଣସି ଗନ୍ଧ ମଧ୍ୟ ନାହିଁ, ସେଠାରେ ବି ଭଗବାନ୍ ନିଜ ମହିମାରେ ଅବସ୍ଥିତ ରହନ୍ତି। ଏହି ଭାବ ଦେଖାଇବା ନିମନ୍ତେ ଭଗବାନ୍ କହିଛନ୍ତି, ''ପ୍ରକୃତରେ ମୁଁ ସେହି ଭୂତମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ, ଅର୍ଥାତ୍ ମୁଁ ନିଜେ ନିଜ ମଧ୍ୟରେ ହିଁ ନିତ୍ୟସ୍ଥିତ ଅଟେ।''

**ପ୍ରଶ୍ନ –** ''ମୁଁ ସେହି ଭୂତମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ।''– ଭଗବାନଙ୍କର ଏହି କଥନର ଯଦି ନିମ୍ନଲିଖିତ ଅର୍ଥ ଗ୍ରହଣ କରାଯାଏ, ତେବେ ଆପତ୍ତି କଣ ? ଯଥା :–

ପ୍ରଥମତଃ ଯେପରି ସ୍ୱପ୍ନର ବିଭିନ୍ନ ଜୀବ ଓ ପଦାର୍ଥ ସ୍ୱପ୍ନଦ୍ରଷ୍ଟା ପୁରୁଷର ଭିତରେ ଥିବାରୁ ସେହି ପୁରୁଷ ସେମାନଙ୍କ ଭିତରେ ସୀମିତ ହୋଇ ନ ଥାଏ, ବାହାରେ ମଧ୍ୟ ଥାଏ, ସେହିପରି ସାରା ଜଗତ ଭଗବାନଙ୍କର ଏକ ଅଂଶରେ ରହୁଥିବାରୁ ଭଗବାନ୍ ତା'ମଧ୍ୟରେ ସର୍ବତ୍ର ବ୍ୟାପ୍ତ ହୋଇଥିଲେ ମଧ୍ୟ ତାହାରି ଭିତରେ ସୀମିତ ନୁହନ୍ତି।

ଦ୍ୱିତୀୟତଃ ସ୍ୱପ୍ନ ଦେଖୁଥିବା ମନୁଷ୍ୟ ଯେପରି ସ୍ୱପ୍ନର ସକଳ ପଦାର୍ଥ ସ୍ୱପ୍ନାବସ୍ଥାରେ ପ୍ରତ୍ୟକ୍ଷ ଦେଖୁଥିଲେ ମଧ୍ୟ ସ୍ୱପ୍ନକ୍ରିୟା ସହିତ ଏବଂ ସ୍ୱପ୍ନର ପଦାର୍ଥମାନଙ୍କ ସହିତ ତାର ବସ୍ତୁତଃ କୌଣସି ସମ୍ବନ୍ଧ ନ ଥାଏ, ସେ ସ୍ୱପ୍ନର ସୃଷ୍ଟିଠାରୁ ସର୍ବଥା ଅତୀତ ଓ ସମ୍ବନ୍ଧରହିତ ହୋଇ ରହିଥାଏ; ସେ ସ୍ୱପ୍ନ ଦେଖିବା ପୂର୍ବରୁ ଥିଲା, ସ୍ୱପ୍ନକାଳରେ ଥାଏ ଓ ସ୍ୱପ୍ନ ନାଶ ହେବା ପରେ ମଧ୍ୟ ରହିବ, ଠିକ୍ ସେହିପରି ଭଗବାନ୍ ସର୍ବଦା ରହିଛନ୍ତି। ଜଗତର ନାଶ ହୋଇଗଲେ ମଧ୍ୟ ତାଙ୍କର ନାଶ ହୁଏ ନାହିଁ। ବରଂ ଯେଉଁଠି ଜଗତର ଗନ୍ଧ ମଧ୍ୟ ନାହିଁ, ସେଠାରେ ମଧ୍ୟ ଭଗବାନ୍ ନିଜ ମହିମାରେ ନିଜେ ଅବସ୍ଥିତ ହିଁ ଅଛନ୍ତି। ଏହିପ୍ରକାରେ ସେ ତା'ଠାରୁ ସର୍ବଥା ଅତୀତ ଓ ନିର୍ଲିପ୍ତ ହୋଇଥିବାରୁ ସେଥିରେ ନ ଥାନ୍ତି।

ତୃତୀୟତଃ, ସ୍ୱପ୍ନର ସକଳ ପଦାର୍ଥ ଯେପରି ବସ୍ତୁତଃ ସ୍ୱପ୍ନଦ୍ରଷ୍ଟା ପୁରୁଷଠାରୁ ଅଭିନ୍ନ ଓ ତାର ସ୍ୱରୂପ ହୋଇଥିବାରୁ ସେ ତା'ମଧ୍ୟରେ ନ ଥାଏ; ବରଂ କେବଳ ସେ ହିଁ ଥାଏ, ଠିକ୍ ସେହିପରି ସମସ୍ତ ଜଗତ୍ ମଧ୍ୟ ଭଗବାନଙ୍କ ଠାରୁ ଅଭିନ୍ନ ତାଙ୍କରି ସ୍ୱରୂପ ହିଁ ହୋଇଥିବାରୁ, ସେ ତା'ମଧ୍ୟରେ ନଥା'ନ୍ତି, ବରଂ 'କେବଳ ସେ ହିଁ ଥାଆନ୍ତି।'

ଏପରିଭାବରେ ଜଗତର ଆଧାର ଏବଂ ତା'ଠାରୁ ଅତୀତ ହୋଇଥିବାରୁ ଏବଂ ଜଗତ ତାଙ୍କ ସ୍ୱରୂପ ହିଁ ହୋଇଥିବାରୁ ସେ ଜଗତରେ ଅବସ୍ଥିତ ନୁହନ୍ତି। ତେଣୁ ଭଗବାନ୍ ଏଠାରେ ଦର୍ଶାଇଦେଇଛନ୍ତି, ''ମୁଁ ଜଗତର ଅଣୁ-ଅଣୁରେ ବ୍ୟାପ୍ତ ହୋଇଥିଲେ ମଧ୍ୟ ବସ୍ତୁତଃ ତା' ମଧ୍ୟରେ ନାହିଁ – ବରଂ ମୁଁ ନିଜ ମହିମାରେ ହିଁ ଅଚଳରୂପେ ଅବସ୍ଥିତ।''

**ଉତ୍ତର –** କୌଣସି ଆପତ୍ତି ନାହିଁ। ଅଭେଦଜ୍ଞାନ ଦୃଷ୍ଟିରୁ ଏହି ଭାବ ମଧ୍ୟ ବହୁତ ଠିକ୍। କିନ୍ତୁ ଏଠାରେ ସେହି ପ୍ରସଙ୍ଗ ନାହିଁ।

## ନ ଚ ମତ୍ସ୍ଥାନି ଭୂତାନି ପଶ୍ୟ ମେ ଯୋଗମୈଶ୍ୱରମ୍ ।
## ଭୂତଭୃନ୍ନ ଚ ଭୂତସ୍ଥୋ ମମାତ୍ମା ଭୂତଭାବନଃ॥ ୫ ॥

**ଅନ୍ୱୟ –** ଭୂତାନି = ସେହି ସମସ୍ତ ଭୂତ; ମତ୍ସ୍ଥାନି, ନ = ମୋ ଭିତରେ ଅବସ୍ଥିତ ନୁହନ୍ତି; ମେ = (କିନ୍ତୁ) ମୋର; ଐଶ୍ୱରମ୍ = ଈଶ୍ୱରୀୟ; ଯୋଗମ୍ = ଯୋଗଶକ୍ତିକୁ; ପଶ୍ୟ = ଦେଖ (ଯେ); ଭୂତଭୃତ୍ = ପ୍ରାଣୀମାନଙ୍କର ଧାରଣପୋଷଣକାରୀ; ଚ = ଏବଂ; ଭୂତଭାବନଃ = ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା; ଚ = (ହୋଇ) ମଧ୍ୟ; ମମ = ମୋର; ଆତ୍ମା = ଆତ୍ମା (ପ୍ରକୃତରେ); ଭୂତସ୍ଥଃ = ପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥିତ; ନ = ନୁହେଁ।

**ସେହି ସମସ୍ତ ଭୂତ ମୋ ଭିତରେ ଅବସ୍ଥିତ ନୁହନ୍ତି; କିନ୍ତୁ ମୋର ଈଶ୍ୱରୀୟ ଯୋଗଶକ୍ତିକୁ ଦେଖ ଯେ, ପ୍ରାଣୀମାନଙ୍କର ଧାରଣ-ପୋଷଣକାରୀ ଏବଂ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା ହୋଇ ମଧ୍ୟ ମୋର ଆତ୍ମା ପ୍ରକୃତରେ ପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ॥ ୫ ॥**

**ପ୍ରଶ୍ନ –** ପୂର୍ବଶ୍ଳୋକରେ ସମସ୍ତ ଭୂତଙ୍କୁ ଭଗବାନ୍ ନିଜ ଭିତରେ ଅବସ୍ଥିତ ବୋଲି କହିଲେ ଏବଂ ଏହି ଶ୍ଳୋକରେ କହୁଛନ୍ତି ଯେ, ସେହି ଭୂତମାନେ ତାଙ୍କ ଭିତରେ ନାହାନ୍ତି– ଏପରି ବିରୁଦ୍ଧ ଉକ୍ତିର ଅଭିପ୍ରାୟ କଣ?

**ଉତ୍ତର –** ଏଠାରେ ଏପରି ବିରୁଦ୍ଧ ଉକ୍ତି ପ୍ରୟୋଗ କରି ଏବଂ ତା' ସଙ୍ଗେ ସଙ୍ଗେ ଅର୍ଜୁନଙ୍କୁ ନିଜର ଈଶ୍ୱରୀୟ ଯୋଗଶକ୍ତି ଦେଖିବାକୁ କହି ଭଗବାନ୍ କହୁଛନ୍ତି, ''ଅର୍ଜୁନ! ତୁମେ ମୋର ଅସାଧାରଣ ଯୋଗଶକ୍ତି ଦେଖ। ଏହା କିପରି ଆଶ୍ଚର୍ଯ୍ୟକର ଯେ, ଆକାଶରେ ମେଘ ଥିବାପରି ସମସ୍ତ ଜଗତ୍ ମୋ ଭିତରେ ଅଛି ଏବଂ ମୋ ଭିତରେ ନାହିଁ ମଧ୍ୟ। ମେଘମାନଙ୍କର ଆଧାର ଆକାଶ। କିନ୍ତୁ ମେଘମାନେ ସବୁବେଳେ ତହିଁରେ ରହନ୍ତି ନାହିଁ। ବସ୍ତୁତଃ ଅନିତ୍ୟ ହୋଇଥିବାରୁ ସେମାନଙ୍କର ସ୍ଥିରସତ୍ତା ମଧ୍ୟ ନାହିଁ। ଅତଏବ ସେମାନେ ଆକାଶରେ ନାହାନ୍ତି। ଠିକ୍ ସେହିପରି ଏହି ସମଗ୍ର ଜଗତ୍ ମୋର ଯୋଗଶକ୍ତିରୁ ହିଁ ଉତ୍ପନ୍ନ ଏବଂ ମୁଁ ହିଁ ଏହାର ଆଧାର, ତେଣୁ ସମସ୍ତ ଭୂତ ମୋଠାରେ ସ୍ଥିତ; କିନ୍ତୁ ଏପରି ହେଉଥିଲେ ବି, ମୁଁ ସେମାନଙ୍କ ଠାରୁ ସର୍ବଥା ଅତୀତ। ସେମାନେ ସର୍ବଦା ମୋ ଭିତରେ ରହନ୍ତି ନାହିଁ

ଏବଂ ସେମାନଙ୍କର ମୋଠାରୁ ଭିନ୍ନ ସତ୍ତା ନାହିଁ। ଅତଏବ ସେମାନେ ମୋ ଭିତରେ ଅବସ୍ଥିତ ନୁହନ୍ତି। ଏଣୁ ଯେତେବେଳଯାଏ ମନୁଷ୍ୟଦୃଷ୍ଟିରେ ଜଗତ୍ ରହିଛି, ସେତେବେଳଯାଏ ସବୁ କିଛି ମୋ ଭିତରେ ହିଁ ରହିଛି; ମୋ ଛଡ଼ା ଏହି ଜଗତର ଅନ୍ୟ କୌଣସି ଆଧାର ହିଁ ନାହିଁ। ଯେତେବେଳେ ମୋର ସାକ୍ଷାତ୍ ହୋଇଯାଏ, ସେତେବେଳେ ମନୁଷ୍ୟ ଦୃଷ୍ଟିରେ ମୋ ଭିନ୍ନ ଅନ୍ୟ କୌଣସି ବସ୍ତୁ ରହେ ନାହିଁ। ସେତେବେଳେ ମୋଠାରେ ଏହି ଜଗତ୍ ନ ଥାଏ।

**ପ୍ରଶ୍ନ —** ଏହି ବିରୁଦ୍ଧ ଉକ୍ତି ସମ୍ବନ୍ଧରେ ଭଗବାନଙ୍କର ନିମ୍ନଲିଖିତ ଅଭିପ୍ରାୟ ମାନିଗଲେ ଦୋଷ କଣ ?—

ଏହି ବିରୁଦ୍ଧ ଉକ୍ତିଦ୍ୱାରା ଭଗବାନ୍ ନିଜ ପୂର୍ବକଥିତ ସିଦ୍ଧାନ୍ତର ହିଁ ପୁଷ୍ଟି କରୁଛନ୍ତି। ଯଦି ସ୍ୱପ୍ନର ସୃଷ୍ଟିପରି ସମଗ୍ର ଜଗତ୍ ଭଗବାନଙ୍କ ସଂକଳ୍ପର ଆଧାର ଉପରେ ହିଁ ଟିକି ରହିଛି ଏବଂ ବସ୍ତୁତଃ ଭଗବାନଙ୍କ ଭିନ୍ନ ଅନ୍ୟ କୌଣସି ସତ୍ତା ନାହିଁ, ତେବେ 'ସେହି ସକଳ ଭୂତ ମୋଠାରେ ସ୍ଥିତ ନୁହନ୍ତି' ବୋଲି କହିବା ଠିକ୍ ହିଁ ଅଟେ। ତା'ହେଲେ ଏହି ସମଗ୍ର ସୃଷ୍ଟି ଦେଖାଯାଉଛି କିପରି? ଏହାର ରହସ୍ୟ କଣ? ଏହି ଶଙ୍କା ନିବାରଣପାଇଁ ଭଗବାନ୍ କହୁଛନ୍ତି— ''ହେ ଅର୍ଜୁନ, ଏହା ମୋର ଅସାଧାରଣ ଯୋଗଶକ୍ତିର ଚମତ୍କାର; ଦେଖ, କି ଆଶ୍ଚର୍ଯ୍ୟ ! ସମଗ୍ର ଜଗତ୍ ମୋ ଭିତରେ ଥିବାପରି ଦେଖାଯାଉଛି ଅଥଚ ବସ୍ତୁତଃ ମୋ' ଛଡ଼ା ଅନ୍ୟ କିଛି ବି ନାହିଁ'' ଅଭିପ୍ରାୟ ହେଉଛି, ଯେତେବେଳଯାଏ ମନୁଷ୍ୟର ଦୃଷ୍ଟିରେ ଜଗତ୍ ରହିଛି, ସେତେବେଳଯାଏ ସବୁକିଛି ଭଗବାନଙ୍କ ଭିତରେ ରହିଛି, ତାଙ୍କ ଛଡ଼ା ଏହି ଜଗତ୍‌ର ଅନ୍ୟ କୌଣସି ଆଧାର ହିଁ ନାହିଁ ଏବଂ ବାସ୍ତବରେ ଭଗବାନ୍ ହିଁ ସବୁକିଛି ଅଟନ୍ତି; ତାଙ୍କ ଭିନ୍ନ ଅନ୍ୟ କିଛି ବି ନାହିଁ। ଯେତେବେଳେ ସାଧକଙ୍କ ସହିତ ଭଗବାନଙ୍କର ସାକ୍ଷାତ୍ ହୋଇଯାଏ, ସେତେବେଳେ ତାଙ୍କୁ ଏହି ବିଷୟ ପ୍ରତ୍ୟକ୍ଷ ହୋଇଯାଏ; ତା'ପରେ ତାଙ୍କ ଦୃଷ୍ଟିରେ ଭଗବାନଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁ ରହେ ହିଁ ନାହିଁ। ଅତଏବ ସେହିସକଳ ଭୂତ ପ୍ରକୃତରେ ଭଗବାନଙ୍କ ଭିତରେ ଅବସ୍ଥିତ ନୁହନ୍ତି।

**ଉତ୍ତର —** କୌଣସି ଦୋଷ ନାହିଁ। ଅଭେଦଜ୍ଞାନଦୃଷ୍ଟିରୁ ଏହା ମଧ୍ୟ ଠିକ୍। କିନ୍ତୁ ଏଠାରେ ଏହି ପ୍ରସଙ୍ଗ ନାହିଁ।

**ପ୍ରଶ୍ନ —** **ଐଶ୍ୱରମ୍** ଓ **ଯୋଗମ୍** ପଦ କାହାର ବାଚକ? ଏହାକୁ ଦେଖିବାକୁ କହି, ଭଗବାନ୍ ଏହି ଶ୍ଳୋକରେ କୁହାଯାଇଥିବା କେଉଁ ବିଷୟ ଦେଖିବାକୁ କହିଛନ୍ତି ?

**ଉତ୍ତର —** ସମସ୍ତଙ୍କର ଉତ୍ପାଦକ ଏବଂ ସମସ୍ତଙ୍କ ମଧ୍ୟରେ ବ୍ୟାପ୍ତ ଥାଇ ଥାଇ ତଥା ସମସ୍ତଙ୍କର ଧାରଣ-ପୋଷଣ କରୁ କରୁ ମଧ୍ୟ ସମସ୍ତଙ୍କ ଠାରୁ ସର୍ବଥା ନିର୍ଲିପ୍ତ ରହିବାର ଯେଉଁ ଅଦ୍ଭୁତ ପ୍ରଭାବମୟୀ ଶକ୍ତି ରହିଛି, ଯାହା ଈଶ୍ୱରଙ୍କ ଛଡ଼ା ଅନ୍ୟ କାହା ଠାରେ ବି ରହି ନ ପାରେ, ତାହାକୁ ଏଠାରେ **ଐଶ୍ୱରମ୍ ଯୋଗମ୍** ପଦଦ୍ୱୟଟି ଦ୍ୱାରା ପ୍ରତିପାଦନ କରାଯାଇଛି। ଏହି ଦୁଇ ଶ୍ଳୋକରେ କୁହାଯାଇଥିବା ସବୁ ବିଷୟକୁ ଲକ୍ଷ୍ୟ କରି ଭଗବାନ୍ ଅର୍ଜୁନଙ୍କୁ ନିଜର 'ଈଶ୍ୱରୀୟ ଯୋଗ' ଦେଖିବାକୁ କହିଛନ୍ତି।

**ପ୍ରଶ୍ନ —** **ଭୂତଭୃତ୍** ଓ **ଭୂତଭାବନଃ** — ଏହି ଦୁଇ ପଦର ଅଭିପ୍ରାୟ କଣ? **ମମ ଆତ୍ମା** ପଦ କାହାର ବାଚକ? ଏବଂ **ଭୂତସ୍ଥଃ ନ** ର ଅଭିପ୍ରାୟ କଣ?

**ଉତ୍ତର —** ଯେ ଭୂତମାନଙ୍କର ଧାରଣ-ପୋଷଣ କରନ୍ତି, ତାଙ୍କୁ **ଭୂତଭୃତ୍** କୁହାଯାଏ ଏବଂ ଯେ ଭୂତମାନଙ୍କୁ ଉତ୍ପନ୍ନ କରନ୍ତି, ତାଙ୍କୁ **ଭୂତଭାବନ** କୁହାଯାଏ। **ମମ ଆତ୍ମା**ଦ୍ୱାରା ଭଗବାନଙ୍କର ସଗୁଣ ନିରାକାର ସ୍ୱରୂପକୁ ନିର୍ଦ୍ଦେଶ କରାଯାଇଛି। ତାତ୍ପର୍ଯ୍ୟ ଏହି ଯେ, ଭଗବାନଙ୍କର ଏହି ସଗୁଣ-ନିରାକାର ସ୍ୱରୂପଦ୍ୱାରା ହିଁ ସମସ୍ତ ଜଗତର ଉତ୍ପତ୍ତି ଓ ତାହାର ଧାରଣ-ପୋଷଣ ହୁଏ। ଏଣୁ ତାହାକୁ **ଭୂତଭାବନ** ଓ **ଭୂତଭୃତ୍** ବୋଲି କୁହାଯାଇଛି। ଏସବୁ ହେଉଥିଲେ ମଧ୍ୟ ପ୍ରକୃତରେ ଭଗବାନ୍ ଏହି ସମସ୍ତ ଜଗତଠାରୁ ଅତୀତ ଅଟନ୍ତି। ଏହା ଦର୍ଶାଇବା ନିମନ୍ତେ **ଭୂତସ୍ଥଃ ନ** (ତାହା ଭୂତଙ୍କ ମଧ୍ୟରେ ସ୍ଥିତ ନୁହେଁ) ବୋଲି କୁହାଯାଇଛି।

**ସମ୍ବନ୍ଧ —** ପୂର୍ବଶ୍ଳୋକମାନଙ୍କରେ ଭଗବାନ୍ ସକଳ ଭୂତଙ୍କୁ ନିଜର ଅବ୍ୟକ୍ତରୂପଦ୍ୱାରା ବ୍ୟାପ୍ତ ଓ ସେଥିରେ ଅବସ୍ଥିତ ବୋଲି କହିଲେ। ଏଣୁ ଏହି ବିଷୟଟି ସ୍ପଷ୍ଟରୂପେ ଜାଣିବାର ଇଚ୍ଛା ହୋଇପାରେ ଭାବି ବର୍ତ୍ତମାନ ଦୃଷ୍ଟାନ୍ତଦ୍ୱାରା ତାହାର ସ୍ପଷ୍ଟୀକରଣ କରୁଛନ୍ତି—

**ଯଥାକାଶସ୍ଥିତୋ ନିତ୍ୟଂ ବାୟୁଃ ସର୍ବତ୍ରଗୋ ମହାନ୍ ।**
**ତଥା ସର୍ବାଣି ଭୂତାନି ମତ୍‌ସ୍ଥାନୀତ୍ୟୁପଧାରୟ ॥ ୬ ॥**

**ଅନ୍ୱୟ—** **ଯଥା** = ଯେପରି (ଆକାଶରୁ ଉତ୍ପନ୍ନ); **ସର୍ବତ୍ରଗଃ** = ସର୍ବତ୍ର ବିଚରଣ କରୁଥିବା; **ମହାନ୍** = ମହାନ୍; **ବାୟୁଃ** = ବାୟୁ; **ନିତ୍ୟମ୍** = ସର୍ବଦା; **ଆକାଶସ୍ଥିତଃ** = ଆକାଶରେ ହିଁ ସ୍ଥିତ; **ତଥା** = ସେହିପରି (ମୋର ସଂକଳ୍ପଦ୍ୱାରା ଉତ୍ପନ୍ନ ହୋଇଥିବାରୁ); **ସର୍ବାଣି** = ସମସ୍ତ; **ଭୂତାନି** = ଭୂତମାନେ; **ମତ୍‌ସ୍ଥାନି** = ମୋ ମଧ୍ୟରେ ଅବସ୍ଥିତ; **ଇତି** = ବୋଲି; **ଉପଧାରୟ** = ଜାଣ।

**ଆକାଶରୁ ଉତ୍ପନ୍ନ ହୋଇଥିବା ଓ ସର୍ବତ୍ର ବିଚରଣ କରୁଥିବା ମହାନ୍ ବାୟୁ ଯେପରି ସର୍ବଦା ଆକାଶରେ ହିଁ ଅବସ୍ଥିତ ରହେ, ମୋର ସଂକଳ୍ପଦ୍ୱାରା ଉତ୍ପନ୍ନ ହୋଇଥିବା ସମସ୍ତ ଭୂତ ସେହିପରି ମୋ ମଧ୍ୟରେ ଅବସ୍ଥିତ ବୋଲି ଜାଣ ॥ ୬ ॥**

**ପ୍ରଶ୍ନ—** ଏଠାରେ ବାୟୁକୁ **ସର୍ବତ୍ରଗ** ଓ **ମହାନ୍** କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଭୂତପ୍ରାଣୀମାନଙ୍କ ସହିତ ବାୟୁର ସାଦୃଶ୍ୟ ଦେଖାଇବାପାଇଁ ତାହାକୁ **ସର୍ବତ୍ରଗ** ଓ **ମହାନ୍** ବୋଲି କୁହାଯାଇଛି। ଅଭିପ୍ରାୟ ଏହି ଯେ, ବାୟୁ ଯେପରି ସବୁସ୍ଥାନରେ ବିଚରଣ କରେ, ସକଳ ଭୂତ ମଧ୍ୟ ଠିକ୍ ସେହିପରି ନାନା ଯୋନିରେ ଭ୍ରମଣ କରନ୍ତି ଏବଂ ବାୟୁ ଯେପରି 'ମହାନ୍' ଅର୍ଥାତ୍ ଅତ୍ୟନ୍ତ ବିସ୍ତୃତ, ଭୂତସମୁଦାୟ ମଧ୍ୟ ସେହିପରି ବିସ୍ତୃତ।

**ପ୍ରଶ୍ନ—** ଏଠାରେ **ନିତ୍ୟମ୍** ପଦ ପ୍ରୟୋଗ କରି ବାୟୁ ସର୍ବଦା ଆକାଶରେ ଅବସ୍ଥିତ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ବାୟୁ ଆକାଶରୁ ହିଁ ଉତ୍ପନ୍ନ ହୁଏ; ଆକାଶରେ ହିଁ ଅବସ୍ଥିତ ରହେ, ଏବଂ ଆକାଶରେ ହିଁ ଲୀନ ହୋଇଯାଏ— ଏହି ଭାବ ଦର୍ଶାଇବାକୁ, **ନିତ୍ୟମ୍** ପଦ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ହେଉଛି, ସବୁ ଅବସ୍ଥାରେ ଏବଂ ସବୁ ସମୟରେ ଆକାଶ ହିଁ ବାୟୁର ଆଧାର।

**ପ୍ରଶ୍ନ—** 'ବାୟୁ ଯେପରି ଆକାଶରେ ଅବସ୍ଥିତ ରହେ, ସକଳ ଭୂତ ସେହିପରି ମୋଠାରେ ଅବସ୍ଥିତ'— ଏହି ଉକ୍ତିର ଅଭିପ୍ରାୟ କଣ ?

**ଉତ୍ତର—** ଭଗବାନଙ୍କୁ ଆକାଶପରି ସମ, ନିରାକାର, ଅକର୍ତ୍ତା, ଅନନ୍ତ, ଅସଙ୍ଗ ଓ ନିର୍ବିକାର ତଥା ବାୟୁପରି ସମସ୍ତ ଚରାଚର ଭୂତ ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ, ତାଙ୍କରି ଠାରେ ଅବସ୍ଥିତ ଏବଂ ତାଙ୍କରି ଠାରେ ହିଁ ଲୀନ ହୁଅନ୍ତି ବୋଲି ଦର୍ଶାଇବାକୁ ଏପରି କୁହାଯାଇଛି। ଯେପରି ବାୟୁର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଆକାଶରେ ହିଁ ହେଉଥିବାରୁ, ତାହା କଦାପି କୌଣସି ବି ଅବସ୍ଥାରେ ଆକାଶରୁ ପୃଥକ୍ ହୋଇ ରହିପାରେ ନାହିଁ; ସର୍ବଦା ଆକାଶରେ ହିଁ ଅବସ୍ଥିତ ରହେ ଏବଂ ଏପରି ହେଲେ ମଧ୍ୟ ବାୟୁ ସହିତ ଏବଂ ତା'ର ବିଚରଣାଦି ବିକାର ସହିତ ଆକାଶର କୌଣସି ବି ସମ୍ବନ୍ଧ ନ ଥାଏ; ସେ ସର୍ବଦା ତା'ଠାରୁ ଅତୀତ, ଠିକ୍ ସେହିପରି ସମସ୍ତ ପ୍ରାଣୀଙ୍କ ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଭଗବାନଙ୍କ ସଂକଳ୍ପର ଆଧାର ଉପରେ ହେଉଥିବାରୁ ସମସ୍ତ ଭୂତସମୁଦାୟ ସର୍ବଦା ଭଗବାନଙ୍କ ଠାରେ ହିଁ ରହନ୍ତି; ତଥାପି ଭଗବାନ୍ ସେହି ଭୂତମାନଙ୍କ ଠାରୁ ସର୍ବଥା ଅତୀତ ଏବଂ ଭଗବାନଙ୍କ ଠାରେ ସବୁପ୍ରକାର ବିକାରର ସର୍ବଥା ଅଭାବ ରହେ।

**ସମ୍ବନ୍ଧ—** ବିଜ୍ଞାନସହିତ ଜ୍ଞାନର ବର୍ଣ୍ଣନା କରି ଭଗବାନ୍ ଏପର୍ଯ୍ୟନ୍ତ ପ୍ରଭାବସହିତ ନିଜର ନିରାକାର ସ୍ୱରୂପର ତତ୍ତ୍ୱ ବୁଝାଇବାକୁ ତାଙ୍କ ବ୍ୟାପକତା, ଅସଙ୍ଗତା ଓ ନିର୍ବିକାରତା ପ୍ରତିପାଦନ କଲେ। ବର୍ତ୍ତମାନ ନିଜର ଭୂତଭାବନ ସ୍ୱରୂପର ସ୍ପଷ୍ଟୀକରଣ କରିବା ସହିତ ସୃଷ୍ଟିରଚନାଦି କର୍ମର ତତ୍ତ୍ୱ ବୁଝାଇବା ନିମନ୍ତେ ପ୍ରଥମ ଦୁଇଟି ଶ୍ଳୋକଦ୍ୱାରା କଳ୍ପକ୍ଷୟରେ ସମସ୍ତ ଭୂତଙ୍କର ପ୍ରଳୟ ଓ କଳ୍ପର ଆରମ୍ଭରେ ସେମାନଙ୍କ ଉତ୍ପତ୍ତିର ପ୍ରକାର କହୁଛନ୍ତି—

**ସର୍ବଭୂତାନି କୌନ୍ତେୟ ପ୍ରକୃତିଂ ଯାନ୍ତି ମାମିକାମ୍ ।**
**କଳ୍ପକ୍ଷୟେ ପୁନସ୍ତାନି କଳ୍ପାଦୌ ବିସୃଜାମ୍ୟହମ୍ ॥ ୭ ॥**

**ଅନ୍ୱୟ –** **କୌନ୍ତେୟ** = ହେ ଅର୍ଜୁନ; **କଳ୍ପକ୍ଷୟେ** = କଳ୍ପଶେଷରେ; **ସର୍ବଭୂତାନି** = ସକଳଭୂତ; **ମାମିକାମ୍** = ମୋର; **ପ୍ରକୃତିମ୍** = ପ୍ରକୃତିକୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି (ଅର୍ଥାତ୍ ପ୍ରକୃତିରେ ଲୀନ ହୁଅନ୍ତି); **କଳ୍ପାଦୌ** = (ପୁଣି) କଳ୍ପର ଆରମ୍ଭରେ; **ତାନି** = ସେମାନଙ୍କୁ; **ଅହମ୍** = ମୁଁ; **ପୁନଃ** = ପୁଣି ଥରେ; **ବିସୃଜାମି** = ରଚନା କରେ ।

**ହେ ଅର୍ଜୁନ, କଳ୍ପଶେଷରେ ସକଳ ଭୂତ ମୋ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ମୋର ପ୍ରକୃତିରେ ଲୀନ ହୁଅନ୍ତି ଏବଂ କଳ୍ପର ଆରମ୍ଭରେ ସେମାନଙ୍କୁ ମୁଁ ପୁଣି ଥରେ ରଚନା କରେ ।। ୭ ।।**

**ପ୍ରଶ୍ନ – କଳ୍ପକ୍ଷୟ** କେଉଁ ସମୟର ବାଚକ ?

**ଉତ୍ତର –** ବ୍ରହ୍ମାଙ୍କର ଗୋଟିଏ ଦିନକୁ 'କଳ୍ପ' କହନ୍ତି ଏବଂ ତାଙ୍କର ରାତ୍ରି ମଧ୍ୟ ସେତିକି ବଡ଼ । ଏହି ଅହୋରାତ୍ର ହିସାବରେ ଯେତେବେଳେ ବ୍ରହ୍ମାଙ୍କର ଶହେ ବର୍ଷ ଆୟୁ ପୂର୍ଣ୍ଣ ହୋଇଯାଏ, ଏଠାରେ **କଳ୍ପକ୍ଷୟ** ହେଉଛି ସେହି ସମୟର ବାଚକ । ତାହା କଳ୍ପର ଅନ୍ତ ବା ଶେଷ । ଏହାକୁ ମହାପ୍ରଳୟ ବୋଲି ମଧ୍ୟ କହନ୍ତି ।

**ପ୍ରଶ୍ନ – ସର୍ବଭୂତାନି** ପଦ କେଉଁମାନଙ୍କ ବାଚକ ?

**ଉତ୍ତର – ସର୍ବଭୂତାନି** ପଦଟି ହେଉଛି ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ସମସ୍ତ ଭୋଗ୍ୟବସ୍ତୁ ଏବଂ ବାସସ୍ଥାନସହିତ ଚରାଚର ପ୍ରାଣୀମାନଙ୍କର ବାଚକ ।

**ପ୍ରଶ୍ନ – ପ୍ରକୃତିମ୍** ପଦ କାହାର ବାଚକ ? ତା' ସହିତ **ମାମିକାମ୍** ବିଶେଷଣ ପ୍ରୟୋଗର ଅଭିପ୍ରାୟ କଣ ? ଏବଂ 'ସେହି ପ୍ରକୃତିକୁ ପ୍ରାପ୍ତ ହେବା' କଣ ?

**ଉତ୍ତର –** ସମସ୍ତ ଜଗତର କାରଣଭୂତା ଯେଉଁ ମୂଳପ୍ରକୃତି ରହିଛି, ଯାହାକୁ ଚତୁର୍ଦ୍ଦଶ ଅଧ୍ୟାୟର ତୃତୀୟ ଓ ଚତୁର୍ଥ ଶ୍ଳୋକରେ 'ମହଦ୍‌ବ୍ରହ୍ମ' ବୋଲି କୁହାଯାଇଛି, ତଥା ଯାହାକୁ ଅବ୍ୟାକୃତ ବା ପ୍ରଧାନ ମଧ୍ୟ କହନ୍ତି, ଏଠାରେ **ପ୍ରକୃତିମ୍** ପଦଟି ହେଉଛି ତାହାର ବାଚକ । ସେହି ପ୍ରକୃତି ଭଗବାନଙ୍କର ଶକ୍ତି । ଏହି କଥାଟି ଦର୍ଶାଇଦେବାକୁ ତା'ସହିତ **ମାମିକାମ୍** ବିଶେଷଣ ଦିଆଯାଇଛି । କଳ୍ପର ଅନ୍ତରେ ସମସ୍ତ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ଭୋଗସାମଗ୍ରୀ ଓ ସମସ୍ତ ଲୋକଙ୍କ ସହିତ ସମସ୍ତ ପ୍ରାଣୀ ପ୍ରକୃତିରେ ଲୟ ହୋଇଯାନ୍ତି– ଅର୍ଥାତ୍ ସେମାନଙ୍କ ଗୁଣକର୍ମର ସଂସ୍କାରସମୁଦାୟରୂପକ କାରଣଶରୀର ସହିତ ସେମାନଙ୍କର ମୂଳ ପ୍ରକୃତିରେ ଲୟ ହୋଇଯାଏ । ଏହା ହିଁ ସକଳଭୂତଙ୍କର 'ପ୍ରକୃତିକୁ ପ୍ରାପ୍ତ ହେବା' ।

**ପ୍ରଶ୍ନ –** ଅଷ୍ଟମ ଅଧ୍ୟାୟର ଅଠର ଏବଂ ଉଣେଇଶ ଶ୍ଳୋକରେ ଯେଉଁ 'ଅବ୍ୟକ୍ତ'ରୁ ସକଳଭୂତଙ୍କର ଉତ୍ପତ୍ତି ହୁଏ ବୋଲି କୁହାଯାଇଛି ଏବଂ ଯେଉଁଥିରେ ସମସ୍ତଙ୍କର ଲୟ ହେବା କଥା କୁହାଯାଇଛି, ସେହି ଅବ୍ୟକ୍ତ ଏବଂ ଏହି ପ୍ରକୃତି ମଧ୍ୟରେ ପ୍ରଭେଦ କଣ ? ତଥା ସେଥିରେ ଲୟ ହେବା ଏବଂ ଏଥିରେ ଲୟ ହେବା ମଧ୍ୟରେ ପାର୍ଥକ୍ୟ କଣ ?

**ଉତ୍ତର –** ସେଠାରେ ଅବ୍ୟକ୍ତ ଶବ୍ଦ ପ୍ରକୃତିର ନିରାକାର ସୂକ୍ଷ୍ମସ୍ୱରୂପର ବାଚକ; ମୂଳପ୍ରକୃତିର ନୁହେଁ । ସେଥିରେ ସମସ୍ତ ଭୂତ ନିଜର 'ସୂକ୍ଷ୍ମଶରୀର' ସହିତ ଲୀନ ହୁଅନ୍ତି ଏବଂ ଏଥିରେ 'କାରଣଶରୀର' ସହିତ ଲୀନ ହୁଅନ୍ତି । ସେଥିରେ ବ୍ରହ୍ମା ଲୀନ ହୁଅନ୍ତି ନାହିଁ; ସେ ଶୁଅନ୍ତି ଏବଂ ଏଥିରେ ସ୍ୱୟଂ ବ୍ରହ୍ମା ମଧ୍ୟ ଲୀନ ହୋଇଯାଆନ୍ତି । ଏହିପରି ସେହି ପ୍ରଳୟ ଏବଂ ଏହି ମହାପ୍ରଳୟ ମଧ୍ୟରେ ବହୁତ ପ୍ରଭେଦ ରହିଛି ।

**ପ୍ରଶ୍ନ –** ସପ୍ତମ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ତ ଭଗବାନ୍ ସମସ୍ତ ଜଗତର 'ପ୍ରଳୟ' ସ୍ୱୟଂ ସେ ନିଜେ ବୋଲି କହିଛନ୍ତି ଏବଂ ଏଠାରେ ସମସ୍ତେ ପ୍ରକୃତିରେ ଲୀନ ହୁଅନ୍ତି ବୋଲି କହୁଛନ୍ତି । ଏହି ଦୁଇଟି ମଧ୍ୟରୁ କେଉଁଟି ଠିକ୍ ?

**ଉତ୍ତର –** ଉଭୟ ଠିକ୍ । ବସ୍ତୁତଃ ଉଭୟ ସ୍ଥାନରେ ଗୋଟିଏ କଥା ହିଁ କୁହାଯାଇଛି । ପ୍ରଥମେ କୁହାଯାଇସାରିଛି ଯେ, ପ୍ରକୃତି ଭଗବାନଙ୍କର ଶକ୍ତି ଏବଂ ଶକ୍ତି କେବେ ଶକ୍ତିମାନ୍‌ଙ୍କ ଠାରୁ ଭିନ୍ନ ନୁହେଁ । ଅତଏବ ପ୍ରକୃତିରେ ଲୀନ ହେବା ଅର୍ଥ ଭଗବାନଙ୍କ ଠାରେ ହିଁ ଲୀନ ହେବା । ତେଣୁ ଏଠାରେ ପ୍ରକୃତିରେ ଲୀନ ହେବା କଥା କୁହାଗଲା । ପୁଣି ପ୍ରକୃତି ଭଗବାନଙ୍କର ତଥା ଭଗବାନଙ୍କ ମଧ୍ୟରେ ହିଁ ଅବସ୍ଥିତ । ତେଣୁ ଭଗବାନ୍ ହିଁ ସମସ୍ତ ଜଗତର ପ୍ରଳୟସ୍ଥାନ । ଏହିପରି ଉଭୟ କଥାର ଅଭିପ୍ରାୟ ଏକ ।

**ପ୍ରଶ୍ନ –** କଳ୍ପାଦି ଶବ୍ଦ କେଉଁ ସମୟର ବାଚକ

ଓ 'ସେହି ସମୟରେ ଭଗବାନ୍ ସମସ୍ତ ଭୂତଙ୍କର ରଚନା କରନ୍ତି' କହିବାର ଅର୍ଥ କଣ ?

**ଉତ୍ତର –** କଳ୍ପ ଶେଷ ହେବା ପରେ ଅର୍ଥାତ୍ ବ୍ରହ୍ମାଙ୍କର ଶହେ ବର୍ଷର ଆୟୁ ପୂର୍ଣ୍ଣ ହେବା ପରେ ଯେତେବେଳେ ପୁନର୍ବାର ଜୀବମାନଙ୍କୁ କର୍ମଫଳ ଭୋଗାଇବାପାଇଁ ଜଗତର ବିସ୍ତାର କରିବାକୁ ଭଗବାନଙ୍କର ଇଚ୍ଛା ହୁଏ, **କଳ୍ପାଦି** ହେଉଛି ସେହି କାଳ(ସମୟ)ର ବାଚକ। ଏହାକୁ ମହାସର୍ଗର ଆଦି ବୋଲି ମଧ୍ୟ କୁହାଯାଏ। ସେହି ସମୟରେ ଭଗବାନ୍ ସକଳ ଭୂତଙ୍କର ଉତ୍ପତ୍ତିନିମନ୍ତେ ନିଜର ସଂକଳ୍ପଦ୍ୱାରା ହିରଣ୍ୟଗର୍ଭ ବ୍ରହ୍ମାଙ୍କୁ ତାଙ୍କର ଲୋକସହିତ ଉତ୍ପନ୍ନ କରିବା ହିଁ ତାଙ୍କର ସକଳ ଭୂତଙ୍କର ରଚନା କରିବା।

## ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ।
## ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍॥ ୮ ॥

**ଅନ୍ୱୟ –** ସ୍ୱାମ୍ = (ମୁଁ ମୋ) ନିଜ; **ପ୍ରକୃତିମ୍** = ପ୍ରକୃତିକୁ; **ଅବଷ୍ଟଭ୍ୟ** = ଗ୍ରହଣ କରି; **ପ୍ରକୃତେଃ, ବଶାତ୍** = ସ୍ୱଭାବବଶତଃ; **ଅବଶମ୍** = ପରତନ୍ତ୍ର ହୋଇଥିବା; **ଇମମ୍** = ଏହି; **କୃତ୍ସ୍ନମ୍** = ସମସ୍ତ; **ଭୂତଗ୍ରାମମ୍** = ଭୂତସମୁଦାୟକୁ; **ପୁନଃ, ପୁନଃ** = ବାରମ୍ବାର (ସେମାନଙ୍କ କର୍ମ ଅନୁସାରେ); **ବିସୃଜାମି** = ସୃଷ୍ଟି କରେ।

**ମୁଁ ମୋ ନିଜ ପ୍ରକୃତିକୁ ଗ୍ରହଣ କରି ସ୍ୱଭାବବଶତଃ ପରତନ୍ତ୍ର ହୋଇଥିବା ଏହି ସମସ୍ତ ଭୂତସମୁଦାୟକୁ ସେମାନଙ୍କ କର୍ମ ଅନୁସାରେ ବାରମ୍ବାର ସୃଷ୍ଟି କରେ॥ ୮ ॥**

**ପ୍ରଶ୍ନ – ସ୍ୱାମ୍** ବିଶେଷଣସହିତ **ପ୍ରକୃତିମ୍** ପଦ କାହାର ବାଚକ? ଏବଂ 'ଭଗବାନ୍ ତାହାକୁ ଗ୍ରହଣ କରନ୍ତି' କହିଲେ କଣ ବୁଝାଏ ?

**ଉତ୍ତର –** ପୂର୍ବଶ୍ଳୋକରେ ଯେଉଁ ମୂଳପ୍ରକୃତିରେ ସବୁ ଜୀବଙ୍କର ଲୟ ହେବା କଥା କୁହାଗଲା, ଏଠାରେ **ସ୍ୱାମ୍** ବିଶେଷଣସହିତ **ପ୍ରକୃତିମ୍** ପଦଟି ହେଉଛି ତାହାର ବାଚକ। ସୃଷ୍ଟିରଚନାଦି କାର୍ଯ୍ୟପାଇଁ ନିଜମଧ୍ୟରେ ଶକ୍ତିରୂପରେ ଥିବା ପ୍ରକୃତିକୁ ଭଗବାନ ସ୍ୱୀକାର କରିବା ହିଁ ତାହାକୁ ଗ୍ରହଣ କରିବା।

**ପ୍ରଶ୍ନ – ଇମମ୍** ଓ **କୃତ୍ସ୍ନମ୍** ବିଶେଷଣସହିତ **ଭୂତଗ୍ରାମମ୍** ପଦ କାହାର ବାଚକ ଏବଂ ତାହା ସ୍ୱଭାବବଶତଃ ପରତନ୍ତ୍ର ହେବା କଣ ?

**ଉତ୍ତର –** ପ୍ରଥମେ 'ସର୍ବଭୂତାନି' ନାମରେ ଯେଉଁମାନଙ୍କର ବର୍ଣ୍ଣନା କରାଯାଇଛି, **ଇମମ୍** ଓ **କୃତ୍ସ୍ନମ୍** ବିଶେଷଣ ସହିତ **ଭୂତଗ୍ରାମମ୍** ପଦଟି ହେଉଛି ସେହି ସମସ୍ତ ଚରାଚର ପ୍ରାଣୀମାନଙ୍କର ବାଚକ। ନିଜ ନିଜର ଗୁଣ ଓ କର୍ମ ଅନୁସାରେ ସେହି ଭିନ୍ନ ଭିନ୍ନ ପ୍ରାଣୀମାନଙ୍କର ଯେଉଁ ସ୍ୱଭାବ ଗଠିତ ହୋଇଥାଏ, ତାହା ହିଁ ସେମାନଙ୍କର ପ୍ରକୃତି। ଭଗବାନଙ୍କର ପ୍ରକୃତି ହେଉଛି ସମଷ୍ଟି-ପ୍ରକୃତି ଓ ଜୀବମାନଙ୍କର ପ୍ରକୃତି ହେଉଛି ତାଙ୍କର ଏକ ଅଂଶଭୂତା ବ୍ୟଷ୍ଟି-ପ୍ରକୃତି। ସେହି ବ୍ୟଷ୍ଟି-ପ୍ରକୃତିର ବନ୍ଧନରେ ଆବଦ୍ଧ ହେବା ହିଁ ତାହା 'ସ୍ୱଭାବବଶତଃ ପରତନ୍ତ୍ର' ହେବା।

ଯେଉଁ ମନୁଷ୍ୟ ଭଗବାନଙ୍କର ଶରଣ ନେଇ ସେହି ପ୍ରକୃତିର ବନ୍ଧନକୁ କାଟିପାରନ୍ତି, ସେ ପ୍ରକୃତିର ବଶରେ ରହନ୍ତି ନାହିଁ (୭/୧୪), ସେ ପ୍ରକୃତିକୁ ଅତିକ୍ରମ କରି ଭଗବାନଙ୍କ ନିକଟରେ ପହଞ୍ଚି ଭଗବାନଙ୍କୁ ପାଇଯାଆନ୍ତି।

**ପ୍ରଶ୍ନ –** ଏଠାରେ **ପୁନଃ** ପଦ ଦୁଇ ଥର ପ୍ରୟୋଗ କରିବାର ଓ **ବିସୃଜାମି** ପଦର ଅଭିପ୍ରାୟ କଣ ?

**ଉତ୍ତର – ପୁନଃ** ପଦ ଦୁଇ ଥର ପ୍ରୟୋଗ କରିବାଦ୍ୱାରା ତଥା **ବିସୃଜାମି** ପଦଦ୍ୱାରା ଭଗବାନ୍ କହୁଛନ୍ତି, ଜୀବମାନେ ଯେତେକାଳଯାଏ ନିଜ ନିଜ ପ୍ରକୃତିର ପରବଶ ହୋଇ ରହିଥାନ୍ତି, ଭଗବାନ୍ ସେତେକାଳଯାଏ ସେମାନଙ୍କୁ ବାରମ୍ବାର ଏହିପରି ପ୍ରତ୍ୟେକ କଳ୍ପର ଆରମ୍ଭରେ ସେମାନଙ୍କ ବିଭିନ୍ନ ଗୁଣକର୍ମ ଅନୁସାରେ ନାନା ଯୋନିରେ ଜନ୍ମ ଦେଇଥାନ୍ତି।

**ସମ୍ବନ୍ଧ –** ଏପରିଭାବରେ ସୃଷ୍ଟିରଚନା ଆଦି ସମସ୍ତ କର୍ମ କରୁଥିଲେ ମଧ୍ୟ ଭଗବାନ୍ କର୍ମବନ୍ଧନରେ କାହିଁକି ପଡ଼ନ୍ତି ନାହାନ୍ତି, ବର୍ତ୍ତମାନ ସେହି ତତ୍ତ୍ୱ ବୁଝାଇବାକୁ କହୁଛନ୍ତି–

## ନ ଚ ମାଂ ତାନି କର୍ମାଣି ନିବଧ୍ନନ୍ତି ଧନଞ୍ଜୟ।
## ଉଦାସୀନବଦାସୀନମସକ୍ତଂ ତେଷୁ କର୍ମସୁ।। ୯ ।।

**ଅନ୍ୱୟ –** **ଧନଞ୍ଜୟ** = ହେ ଅର୍ଜୁନ; **ତେଷୁ** = ସେସବୁ; **କର୍ମସୁ** = କର୍ମମାନଙ୍କରେ; **ଅସକ୍ତମ୍** = ଆସକ୍ତିରହିତ; **ଚ** = ଏବଂ; **ଉଦାସୀନବତ୍** = ଉଦାସୀନସଦୃଶ; **ଆସୀନମ୍** = ଅବସ୍ଥାନ କରୁଥିବା; **ମାମ୍** = ମୋତେ ଅର୍ଥାତ୍ ପରମାତ୍ମାଙ୍କୁ; **ତାନି** = ସେସବୁ; **କର୍ମାଣି** = କର୍ମମାନ; **ନ, ନିବଧ୍ନନ୍ତି** = ବାନ୍ଧନ୍ତି ନାହିଁ।

**ହେ ଅର୍ଜୁନ, ମୁଁ ସେସବୁ କର୍ମରେ ଅନାସକ୍ତ ଓ ଉଦାସୀନସଦୃଶ ଅବସ୍ଥାନ କରୁଥିବାରୁ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ସେସବୁ କର୍ମ ବାନ୍ଧନ୍ତି ନାହିଁ।। ୯ ।।**

**ପ୍ରଶ୍ନ –** 'ସେସବୁ କର୍ମ' କହି କେଉଁ କର୍ମମାନଙ୍କୁ ଲକ୍ଷ୍ୟ କରାଯାଇଛି ତଥା 'ସେଥିରେ ଭଗବାନ୍ ଅନାସକ୍ତ ଓ ଉଦାସୀନସଦୃଶ ରହନ୍ତି' କହିଲେ କଣ ବୁଝାଏ ?

**ଉତ୍ତର –** ସାରା ଜଗତର ଉତ୍ପତ୍ତି, ପାଳନ ଓ ସଂହାର ପ୍ରଭୃତିପାଇଁ ଭଗବାନଙ୍କ ଦ୍ୱାରା ଯେତେ ଚେଷ୍ଟା ହୁଏ, ଯେଉଁମାନଙ୍କ ବର୍ଣ୍ଣନା ପୂର୍ବଶ୍ଳୋକମାନଙ୍କରେ ସଂକ୍ଷେପରେ କରାଯାଇଛି, 'ସେସବୁ କର୍ମ'ଦ୍ୱାରା ଏଠାରେ ସେହିସବୁ ଚେଷ୍ଟାକୁ ଲକ୍ଷ୍ୟ କରାଯାଇଛି। ସେସବୁ କର୍ମରେ ବା ସେସବୁର ଫଳରେ ଭଗବାନଙ୍କର କୌଣସିପ୍ରକାରେ ଆସକ୍ତି ନ ହେବା ହିଁ ସେ ଅନାସକ୍ତ ହେବା ଏବଂ କେବଳ ଅଧ୍ୟକ୍ଷମାତ୍ର ହୋଇ ପ୍ରାଣୀମାନଙ୍କର ଗୁଣ-କର୍ମାନୁସାରେ ସେମାନଙ୍କର ଉତ୍ପତ୍ତି ଆଦି ନିମନ୍ତେ ପ୍ରକୃତିଦ୍ୱାରା କରାଯାଉଥିବା ଚେଷ୍ଟାରେ କର୍ତ୍ତୃତ୍ୱାଭିମାନରୁ ତଥା ପକ୍ଷପାତରୁ ରହିତ ହୋଇ ନିର୍ଲିପ୍ତ ରହିବା ହିଁ– 'ସେସବୁ କର୍ମରେ ଉଦାସୀନସଦୃଶ ରହିବା'।

**ପ୍ରଶ୍ନ –** ଭଗବାନ୍ ନିଜକୁ 'ଆସକ୍ତିରହିତ' ଓ 'ଉଦାସୀନ'ସଦୃଶ ସ୍ଥିତ ବୋଲି ଏବଂ 'ସେସବୁ କର୍ମ ମୋତେ ବାନ୍ଧନ୍ତି ନାହିଁ' ବୋଲି ଯାହା କହିଛନ୍ତି, ତାହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, କର୍ମ ଓ ତା'ର ଫଳରେ ଆସକ୍ତ ନ ହେବାଯୋଗୁଁ ଏବଂ ସେଥିରେ କର୍ତ୍ତୃତ୍ୱାଭିମାନ ଓ ପକ୍ଷପାତ ନ ରଖିବାଯୋଗୁଁ ହିଁ ସେହି କର୍ମମାନେ ତାଙ୍କୁ ବାନ୍ଧନ୍ତି ନାହିଁ।

ଅନ୍ୟ ଲୋକଙ୍କ ପାଇଁ ମଧ୍ୟ ଜନ୍ମ-ମୃତ୍ୟୁ, ହର୍ଷ-ଶୋକ ଓ ସୁଖ-ଦୁଃଖ ଆଦି କର୍ମଫଳରୂପକ ବନ୍ଧନରୁ ମୁକ୍ତି ପାଇବାର ଏହା ହିଁ ସରଳ ଉପାୟ। ଯେଉଁ ମନୁଷ୍ୟ ଏହି ତତ୍ତ୍ୱ ବୁଝି ଏପରି କର୍ତ୍ତୃତ୍ୱାଭିମାନରୁ ଓ ଫଳାସକ୍ତିରୁ ରହିତ ହୋଇ କର୍ମ କରନ୍ତି, ସେ ଅନାୟାସରେ କର୍ମବନ୍ଧନରୁ ମୁକ୍ତ ହୋଇଯାନ୍ତି।

*ସମ୍ବନ୍ଧ – 'ଉଦାସୀନବଦାସୀନମ୍' ପଦଦ୍ୱାରା ଭଗବାନଙ୍କ ଠାରେ ଯେଉଁ କର୍ତାପଣର ଅଭାବ ଦେଖାଇଦିଆଗଲା, ବର୍ତ୍ତମାନ ତାହା ସ୍ପଷ୍ଟ କରିବାକୁ କହୁଛନ୍ତି–*

## ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍।
## ହେତୁନାନେନ କୌନ୍ତେୟ ଜଗଦ୍‌ବିପରିବର୍ତ୍ତତେ ।। ୧୦ ।।

**ଅନ୍ୱୟ –** **କୌନ୍ତେୟ** = ହେ ଅର୍ଜୁନ; **ମୟା, ଅଧ୍ୟକ୍ଷେଣ** = ଅଧ୍ୟକ୍ଷରୂପୀ ମୋର ଶକ୍ତି ଓ ସହାୟତାରେ; **ପ୍ରକୃତିଃ** = ପ୍ରକୃତି; **ସଚରାଚରମ୍** = ଚରାଚରସହିତ ସମସ୍ତ ଜଗତକୁ; **ସୂୟତେ** = ସୃଷ୍ଟି କରେ (ଏବଂ); **ଅନେନ** = ସେହି; **ହେତୁନା** = ହେତୁ ହିଁ; **ଜଗତ୍** = ସଂସାରଚକ୍ର; **ବିପରିବର୍ତ୍ତତେ** = ଘୂରିଚାଲିଛି।

**ହେ ଅର୍ଜୁନ, ଅଧ୍ୟକ୍ଷରୂପୀ ମୋର ଶକ୍ତି ଓ ସହାୟତାରେ ପ୍ରକୃତି ଚରାଚରସହିତ ସମସ୍ତ ଜଗତକୁ ସୃଷ୍ଟି କରେ ଏବଂ ସେହିହେତୁ ହିଁ ସଂସାରଚକ୍ର ଘୂରିଚାଲିଛି।। ୧୦ ।।**

**ପ୍ରଶ୍ନ—** ମୟା ପଦ ସହ ଅଧ୍ୟକ୍ଷେଣ ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ଜଗତରଚନାଦି କାର୍ଯ୍ୟ କରିବାରେ ମୁଁ କେବଳ ନିଜ ପ୍ରକୃତିକୁ ସତ୍ତା ଓ ସ୍ଫୂର୍ତ୍ତି ଦେଉଥିବା ଅଧିଷ୍ଠାତାରୂପେ ରହେ ଏବଂ ଅଧିଷ୍ଠାତାରୂପକ ମୋ'ଠାରୁ ସତ୍ତା ଓ ସ୍ଫୂର୍ତ୍ତି ପାଇ ମୋର ପ୍ରକୃତି ହିଁ ଜଗତରଚନାଦି ସମସ୍ତ କ୍ରିୟା କରେ।"

**ପ୍ରଶ୍ନ—** ଭଗବାନଙ୍କ ଅଧ୍ୟକ୍ଷତାରେ ପ୍ରକୃତି ସଚରାଚର ଜଗତକୁ କିପରି ଉତ୍ପନ୍ନ କରେ ?

**ଉତ୍ତର—** କୃଷକ ଯେପରି ତା'ର ଅଧ୍ୟକ୍ଷତାରେ ପୃଥିବୀ ସହିତ ବୀଜର ସମ୍ବନ୍ଧ କରିଦିଏ ଓ ପୃଥିବୀ ସେହି ବୀଜ ଅନୁସାରେ ଭିନ୍ନ ଭିନ୍ନ ଉଦ୍ଭିଦ ଉତ୍ପନ୍ନ କରେ, ଭଗବାନ୍ ସେହିପରି ତାଙ୍କ ଅଧ୍ୟକ୍ଷତାରେ ଚେତନସମୂହରୂପୀ ବୀଜର ସମ୍ବନ୍ଧ ପ୍ରକୃତିରୂପୀ ଭୂମି ସହିତ କରିଦିଅନ୍ତି (୧୪/୩)। ଏପରିଭାବରେ ଜଡ଼-ଚେତନର ସଂଯୋଗ କରିଦେବାରୁ ଏହି ପ୍ରକୃତି ସମସ୍ତ ଚରାଚର ଜଗତକୁ କର୍ମାନୁସାରେ ଭିନ୍ନ ଭିନ୍ନ ଯୋନିରେ ଉତ୍ପନ୍ନ କରିଥାଏ।

ଏହି ଦୃଷ୍ଟାନ୍ତ କେବଳ ବୁଝାଇବାକୁ ଦିଆଯାଇଛି। ବସ୍ତୁତଃ ଏହି ଦୃଷ୍ଟାନ୍ତ ଭଗବାନଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ; କାରଣ କୃଷକ ଅଳ୍ପଜ୍ଞ, ଅଳ୍ପଶକ୍ତିସମ୍ପନ୍ନ ଓ ଏକଦେଶୀୟ ତଥା ସେ ତା'ର ଶକ୍ତି ଦେଇ ଭୂମିରୁ କିଛି ବି ଉତ୍ପାଦନ କରି ନ ପାରେ; କିନ୍ତୁ ଭଗବାନ୍ ତ ସର୍ବଜ୍ଞ, ସର୍ବଶକ୍ତିମାନ୍ ଓ ସର୍ବବ୍ୟାପୀ ଓ ତାଙ୍କରି ଶକ୍ତି ତଥା ସତ୍ତା-ସ୍ଫୂର୍ତ୍ତି ପାଇ ହିଁ ପ୍ରକୃତି ସଂପୂର୍ଣ୍ଣ ଜଗତକୁ ଉତ୍ପନ୍ନ କରେ।

**ପ୍ରଶ୍ନ—** 'ସେହିହେତୁ ଏହି ସଂସାରଚକ୍ର ଘୂରୁଛି' କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହିଦେଉଛନ୍ତି, "ମୋର ଅଧ୍ୟକ୍ଷତା ଓ ପ୍ରକୃତିର କର୍ତ୍ତୃତ୍ୱ— ଏହି ଦୁଇଟିଦ୍ୱାରା ସଚରାଚର ସମସ୍ତ ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାର ଆଦି ସମସ୍ତ କ୍ରିୟା ହେଉଛି।"

**ପ୍ରଶ୍ନ—** ଚତୁର୍ଥ ଅଧ୍ୟାୟର ତେର ଶ୍ଳୋକରେ ଏବଂ ଏହି ଅଧ୍ୟାୟର ଅଷ୍ଟମ ଶ୍ଳୋକରେ ଭଗବାନ୍ କହିଛନ୍ତି, "ମୁଁ ସେହି ଭୂତମାନଙ୍କୁ ଭିନ୍ନ ଭିନ୍ନରୂପରେ ରଚନା କରେ।" ଏବଂ ଏହି ଶ୍ଳୋକରେ କହୁଛନ୍ତି, "ଚରାଚର ପ୍ରାଣୀମାନଙ୍କ ସହିତ ସମସ୍ତ ଜଗତକୁ ପ୍ରକୃତି ରଚନା କରେ।"— ଏପରି ଦୁଇପ୍ରକାର ବର୍ଣ୍ଣନାର ଅଭିପ୍ରାୟ କଣ ?

**ଉତ୍ତର—** ଯେଉଁଠି ଭଗବାନ୍ ନିଜକୁ ଜଗତର ସୃଷ୍ଟିକର୍ତ୍ତା ବୋଲି କହିଛନ୍ତି, ସେଠାରେ ବୁଝିବା ଉଚିତ ଯେ, ପ୍ରକୃତରେ ଭଗବାନ୍ ନିଜେ କିଛି କରନ୍ତି ନାହିଁ। ସେ ନିଜ ଶକ୍ତିରୂପୀ ପ୍ରକୃତିକୁ ଗ୍ରହଣ କରି ତାହାରି ଦ୍ୱାରା ଜଗତକୁ ରଚନା କରାନ୍ତି ଏବଂ ଯେଉଁଠି ପ୍ରକୃତି ସୃଷ୍ଟିରଚନାଦି କାର୍ଯ୍ୟ କରେ ବୋଲି କୁହାଯାଇଛି, ସେଠାରେ ବୁଝିବା ଉଚିତ ଯେ, ଭଗବାନଙ୍କ ଅଧ୍ୟକ୍ଷତାରେ ତାଙ୍କ ଠାରୁ ସତ୍ତା-ସ୍ଫୂର୍ତ୍ତି ପାଇ ହିଁ ପ୍ରକୃତି ସବୁ କିଛି କରେ। ଯେତେବେଳଯାଏ ତାକୁ ଭଗବାନଙ୍କ ଆଶ୍ରୟ ବା ସାହାଯ୍ୟ ମିଳେ ନାହିଁ, ସେତେବେଳଯାଏ ଜଡ଼ପ୍ରକୃତି କିଛି ବି କରିପାରେ ନାହିଁ। ତେଣୁ ଅଷ୍ଟମ ଶ୍ଳୋକରେ କହିଛନ୍ତି, "ମୁଁ ମୋ' ନିଜ ପ୍ରକୃତିକୁ ଗ୍ରହଣ କରି ଜଗତକୁ ରଚନା କରୁଛି" ଏବଂ ଏହି ଶ୍ଳୋକରେ କହୁଛନ୍ତି, "ମୋର ଅଧ୍ୟକ୍ଷତାରେ ପ୍ରକୃତି ଜଗତ ରଚନା କରେ।" ବସ୍ତୁତଃ ଉଭୟପ୍ରକାର ଉକ୍ତିଦ୍ୱାରା ଗୋଟିଏ ତତ୍ତ୍ୱ ହିଁ ବୁଝାଇଦିଆଯାଇଛି।

**ସମ୍ବନ୍ଧ—** ନିଜର ପ୍ରତିଜ୍ଞାନୁସାରେ ବିଜ୍ଞାନସହିତ ଜ୍ଞାନ ବର୍ଣ୍ଣନା କରୁ କରୁ ଭଗବାନ୍ ଚତୁର୍ଥରୁ ଷଷ୍ଠ ଶ୍ଳୋକଯାଏ ପ୍ରଭାବସହିତ ସଗୁଣ-ନିରାକାର ସ୍ୱରୂପର ତତ୍ତ୍ୱ ବୁଝାଇଲେ। ପୁଣି ସପ୍ତମରୁ ଦଶମଯାଏ ସୃଷ୍ଟିରଚନାଦି ସମସ୍ତ କର୍ମରେ ନିଜର ଅସଙ୍ଗତା ଓ ନିର୍ବିକାରତା ଦେଖାଇ ସେସବୁ କର୍ମର ଦିବ୍ୟତାର ତତ୍ତ୍ୱ ବୁଝାଇଲେ। ବର୍ତ୍ତମାନ ନିଜ ସଗୁଣ-ସାକାର ରୂପର ମହତ୍ତ୍ୱ, ତାହାର ଭକ୍ତିର ପ୍ରକାର ଏବଂ ତା'ର ଗୁଣ ଓ ପ୍ରଭାବର ତତ୍ତ୍ୱ ବୁଝାଇବାପାଇଁ ଆଗ ଦୁଇଟି ଶ୍ଳୋକରେ ସେହିରୂପର ପ୍ରଭାବ ଜାଣି ନ ଥିବା ଅସୁର-ପ୍ରକୃତିର ମନୁଷ୍ୟମାନଙ୍କୁ ନିନ୍ଦା କରୁଛନ୍ତି—

**ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍।**
**ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍॥ ୧୧ ॥**

**ଅନ୍ୱୟ —** ମମ = ମୋର; ପରମ୍ = ପରମ; ଭାବମ୍ = ଭାବକୁ; ଅଜାନନ୍ତଃ = ଜାଣି ନ ଥିବା; ମୂଢ଼ାଃ = ମୂଢ଼ ଲୋକମାନେ; **ମାନୁଷୀମ୍, ତନୁମ୍** = ମନୁଷ୍ୟ ଶରୀର; **ଆଶ୍ରିତମ୍** = ଧାରଣ କରିଥିବା; **ଭୂତମହେଶ୍ୱରମ୍, ମାମ୍** = ସକଳଭୂତଙ୍କ ମହାନ୍ ଈଶ୍ୱରସ୍ୱରୂପ ମୋତେ; **ଅବଜାନନ୍ତି** = ତୁଚ୍ଛଦୃଷ୍ଟିରେ ଦେଖନ୍ତି (ଅର୍ଥାତ୍ ନିଜର ଯୋଗମାୟାଦ୍ୱାରା ସଂସାରର ଉଦ୍ଧାର ନିମନ୍ତେ ମନୁଷ୍ୟରୂପରେ ବିଚରଣ କରୁଥିବା ମୋତେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି)।

**ମୋର ପରମଭାବ ଜାଣି ନ ଥିବା ମୂଢ଼ ଲୋକମାନେ ମନୁଷ୍ୟଶରୀର ଧାରଣ କରିଥିବା ସକଳଭୂତଙ୍କ ମହାନ୍ ଈଶ୍ୱରସ୍ୱରୂପ ମୋତେ ତୁଚ୍ଛଦୃଷ୍ଟିରେ ଦେଖନ୍ତି ଅର୍ଥାତ୍ ନିଜର ଯୋଗମାୟାଦ୍ୱାରା ସଂସାରର ଉଦ୍ଧାରନିମନ୍ତେ ମନୁଷ୍ୟରୂପରେ ବିଚରଣ କରୁଥିବା ମୋତେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି।। ୧୧ ।।**

**ପ୍ରଶ୍ନ —** **ପରମ୍** ବିଶେଷଣ ସହିତ **ଭାବମ୍** ପଦଟି କାହାର ବାଚକ ଏବଂ ତାଙ୍କୁ ନ ଜାଣିବା ଅର୍ଥ କଣ ?

**ଉତ୍ତର —** ଚତୁର୍ଥରୁ ଷଷ୍ଠ ଶ୍ଳୋକଯାଏ ଭଗବାନଙ୍କର ଯେଉଁ 'ସର୍ବବ୍ୟାପକତ୍ୱ' ଆଦି ପ୍ରଭାବର ବର୍ଣ୍ଣନା କରାଗଲା, ଯାହାକୁ 'ଐଶ୍ୱରଯୋଗ' ବୋଲି କହିଛନ୍ତି ତଥା ସପ୍ତମ ଅଧ୍ୟାୟର ଚବିଶ ଶ୍ଳୋକରେ ଯେଉଁ 'ପରମଭାବ' ନ ଜାଣିବା କଥା କହିଛନ୍ତି, **ପରମ୍** ବିଶେଷଣସହିତ **ଭାବମ୍** ପଦଟି ହେଉଛି ଭଗବାନଙ୍କର ସେହି ସର୍ବୋତ୍ତମ ପ୍ରଭାବର ବାଚକ। ସର୍ବାଧାର, ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଏବଂ ସମସ୍ତଙ୍କର ହର୍ତ୍ତାକର୍ତ୍ତା ପରମେଶ୍ୱର ହିଁ ସବୁ ଜୀବଙ୍କ ଉପରେ ଅନୁଗ୍ରହ କରି ସମସ୍ତଙ୍କୁ ନିଜର ଶରଣ ପ୍ରଦାନ କରିବାକୁ ଏବଂ ଧର୍ମସଂସ୍ଥାପନ, ଭକ୍ତ-ଉଦ୍ଧାରଣ ଆଦି ଅନେକ ଲୀଳା କରିବାକୁ ନିଜର ଯୋଗମାୟା ବଳରେ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୋଇଥାନ୍ତି (୪/୬,୭,୮) ଏହି ରହସ୍ୟ ନ ବୁଝିପାରିବା ଓ ଏହା ଉପରେ ବିଶ୍ୱାସ ନ କରିବା ହିଁ ସେହି ପରମଭାବକୁ ନ ଜାଣିବା।

**ପ୍ରଶ୍ନ —** କେଉଁ ଶ୍ରେଣୀର ମନୁଷ୍ୟମାନଙ୍କୁ **ମୂଢ଼ାଃ** କୁହାଯାଇଛି ଏବଂ ସେମାନଙ୍କ ଦ୍ୱାରା ମନୁଷ୍ୟଶରୀରଧାରୀ ଭୂତମହେଶ୍ୱର ଭଗବାନଙ୍କୁ ଅବଜ୍ଞା କରାଯିବାର ଅର୍ଥ କଣ ?

**ଉତ୍ତର —** ଆଗ ଶ୍ଳୋକରେ ଯେଉଁମାନଙ୍କୁ ରାକ୍ଷସ ଓ ଆସୁର ପ୍ରକୃତିର ଲୋକ ବୋଲି କୁହାଯାଇଛି, ସପ୍ତମ ଅଧ୍ୟାୟର ପନ୍ଦର ଶ୍ଳୋକରେ ଯେଉଁମାନଙ୍କର ବର୍ଣ୍ଣନା ହୋଇଛି ଏବଂ ଷୋଡ଼ଶ ଅଧ୍ୟାୟର ଚତୁର୍ଥ ତଥା ସପ୍ତମଠାରୁ କୋଡ଼ିଏ ଶ୍ଳୋକଯାଏ ଯେଉଁମାନଙ୍କର ବିବିଧ ଲକ୍ଷଣ କୁହାଯାଇଛି, ସେପରି ଆସୁରୀସମ୍ପଦସମ୍ପନ୍ନ ମନୁଷ୍ୟମାନଙ୍କୁ **ମୂଢ଼ାଃ** କୁହାଯାଇଛି। ଭଗବାନଙ୍କର ଉପରୋକ୍ତ ପ୍ରଭାବ ଜାଣି ନ ଥିବାରୁ ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି କୀଟପର୍ଯ୍ୟନ୍ତ ସମସ୍ତ ପ୍ରାଣୀଙ୍କର ମହାନ୍ ଈଶ୍ୱର ଭଗବାନଙ୍କୁ ନିଜଭଳି ସାଧାରଣ ମନୁଷ୍ୟ ବୋଲି ଭାବି ତାଙ୍କର ଆଜ୍ଞାଦି ପାଳନ ନ କରିବା ତଥା ତାଙ୍କ ଉପରେ ମିଥ୍ୟା ଦୋଷାରୋପ କରିବା ହିଁ ତାଙ୍କର ଅବଜ୍ଞା କରିବା।★

**ମୋଘାଶା ମୋଘକର୍ମାଣୋ ମୋଘଜ୍ଞାନା ବିଚେତସଃ।**
**ରାକ୍ଷସୀମାସୁରୀ ଚୈବ ପ୍ରକୃତିଂ ମୋହିନୀଂ ଶ୍ରିତାଃ।। ୧୨ ।।**

---

★ ପିତାମହ ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ବ୍ରହ୍ମା ଓ ଦେବତାମାନଙ୍କ ମଧ୍ୟରେ ହୋଇଥିବା ଏକ ସମ୍ବାଦ ଶୁଣାଇଥିଲେ; ସେଥିରୁ ଶ୍ରୀକୃଷ୍ଣଙ୍କର ମହିମା ଜଣାପଡ଼େ। ବ୍ରହ୍ମା ଦେବତାମାନଙ୍କୁ ସାବଧାନ କରି କହୁଛନ୍ତି –

ସର୍ବଲୋକମହେଶ୍ୱର ଭଗବାନ ବାସୁଦେବ ତୁମ ସମସ୍ତଙ୍କର ପୂଜନୀୟ। ସେହି ମହାନ୍ ବୀର୍ଯ୍ୟବାନ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ବାସୁଦେବଙ୍କୁ ମନୁଷ୍ୟ ମନେ କରି କଦାପି ତାଙ୍କୁ ଅବଜ୍ଞା କର ନାହିଁ। ସେ ହିଁ ପରମ ଗୁହ୍ୟ, ପରମପଦ, ପରମବ୍ରହ୍ମ ଓ ପରମଯଶସ୍ୱରୂପ। ସେ ହିଁ ଅକ୍ଷର, ଅବ୍ୟକ୍ତ, ସନାତନ, ପରମତେଜ, ପରମସୁଖ ଓ ପରମସତ୍ୟ। ଦେବତା, ଇନ୍ଦ୍ର ଓ ମନୁଷ୍ୟ କେହି ମଧ୍ୟ ସେହି ଅମିତପରାକ୍ରମୀ ପ୍ରଭୁ ବାସୁଦେବଙ୍କୁ ମନୁଷ୍ୟ ମନେ କରି ଅନାଦର କରିବା ଉଚିତ ନୁହେଁ। ଯେଉଁ ମୂଢ଼ ଲୋକମାନେ ସେହି ହୃଷୀକେଶଙ୍କୁ ମନୁଷ୍ୟ ବୋଲି କହନ୍ତି, ସେମାନେ ନରାଧମ। ଯେଉଁ ମନୁଷ୍ୟମାନେ ଏହି ମହାତ୍ମା ଯୋଗେଶ୍ୱରଙ୍କୁ ମନୁଷ୍ୟ ମନେ କରି ଅନାଦର କରନ୍ତି ଏବଂ ଯେଉଁମାନେ ଏହି ଚରାଚର ଜଗତର ଆତ୍ମା ଶ୍ରୀବତ୍ସଚିହ୍ନଧାରୀ ମହାତେଜସ୍ୱୀ ପଦ୍ମନାଭ ଭଗବାନଙ୍କୁ ଚିହ୍ନନ୍ତି ନାହିଁ, ସେମାନେ ତାମସ ପ୍ରକୃତିର ଲୋକ। ଯେଉଁମାନେ ଏହି କୌସ୍ତୁଭକିରୀଟଧାରୀ ଓ ମିତ୍ରମାନଙ୍କ ଅଭୟଦାତା ଭଗବାନଙ୍କୁ ଅପମାନ କରନ୍ତି, ସେମାନେ ଅତ୍ୟନ୍ତ ଭୟାନକ ନରକରେ ପଡ଼ନ୍ତି।

**ଏବଂ ବିଦିତ୍ୱା ତତ୍ତ୍ୱାର୍ଥଂ ଲୋକାନାମୀଶ୍ୱରେଶ୍ୱରଃ। ବାସୁଦେବୋ ନମସ୍କାର୍ଯ୍ୟଃ ସର୍ବଲୋକୈଃ ସୁରୋତ୍ତମାଃ।।** (ମ.ଭା.ଭୀଷ୍ମ ୬୬/୨୩)

'ହେ ଶ୍ରେଷ୍ଠ ଦେବତାମାନେ! ଏହିପରି ତାଙ୍କର ତାତ୍ତ୍ୱିକ ସ୍ୱରୂପ ଜାଣି ସର୍ବଲୋକର ଈଶ୍ୱରମାନଙ୍କର ମଧ୍ୟ ଈଶ୍ୱର ଭଗବାନ ବାସୁଦେବଙ୍କୁ ସମସ୍ତେ ପ୍ରଣାମ କରିବା ଉଚିତ।'

ଅନ୍ୱୟ — ମୋଘାଶାଃ = (ସେହି) ବ୍ୟର୍ଥ-ଆଶା ରଖିଥିବା; **ମୋଘକର୍ମାଣଃ** = ବ୍ୟର୍ଥକର୍ମ କରୁଥିବା (ଓ); **ମୋଘଜ୍ଞାନାଃ** = ବ୍ୟର୍ଥଜ୍ଞାନଯୁକ୍ତ; **ବିଚେତସଃ** = ବିକ୍ଷିପ୍ତଚିତ୍ତ ଅଜ୍ଞାନୀମାନେ; **ରାକ୍ଷସୀମ୍** = ରାକ୍ଷସୀ; **ଆସୁରୀମ୍** = ଆସୁରୀ; **ଚ** = ଓ; **ମୋହିନୀମ୍** = ମୋହିନୀ; **ପ୍ରକୃତିମ୍** = ପ୍ରକୃତିକୁ; **ଏବ** = ହିଁ; **ଶ୍ରିତାଃ** = ଧାରଣ କରି ରହନ୍ତି।

**ବ୍ୟର୍ଥଆଶା ରଖିଥିବା, ବ୍ୟର୍ଥକର୍ମ କରୁଥିବା ଓ ବ୍ୟର୍ଥଜ୍ଞାନଯୁକ୍ତ ହୋଇଥିବା ସେହି ବିକ୍ଷିପ୍ତଚିତ୍ତ ଅଜ୍ଞାନୀମାନେ ରାକ୍ଷସୀ, ଆସୁରୀ ଓ ମୋହିନୀ ପ୍ରକୃତି ହିଁ ଧାରଣ କରି ରହନ୍ତି॥ ୧୨ ॥**

**ପ୍ରଶ୍ନ — ମୋଘାଶାଃ** ପଦର ଅର୍ଥ କଣ ?

**ଉତ୍ତର —** ଯେଉଁମାନଙ୍କର ଆଶା (କାମନାଦି) ବ୍ୟର୍ଥ, ସେମାନଙ୍କୁ **ମୋଘାଶାଃ** କହନ୍ତି। ଭଗବାନଙ୍କ ପ୍ରଭାବ ନ ଜାଣିଥିବା ଆସୁରିକ ମନୁଷ୍ୟମାନେ ଏପରି ନିରର୍ଥକ ଆଶା କରି ରହନ୍ତି, ଯାହା କି କଦାପି ପୂର୍ଣ୍ଣ ହୁଏ ନାହିଁ। (୧୬/୧୦ ଠାରୁ ୧୨)। ଅତଏବ ସେମାନଙ୍କୁ **ମୋଘାଶାଃ** କୁହନ୍ତି।

**ପ୍ରଶ୍ନ — ମୋଘକର୍ମାଣଃ** ପଦର ଅଭିପ୍ରାୟ କଣ ?

**ଉତ୍ତର —** ଯେଉଁମାନଙ୍କର ଯଜ୍ଞ, ଦାନ ଓ ତପ ଆଦି ସମସ୍ତ କର୍ମ ବ୍ୟର୍ଥ ହୁଏ, ଶାସ୍ତ୍ରୋକ୍ତ ଫଳ ମଧ୍ୟ ମିଳେ ନାହିଁ, ସେମାନଙ୍କୁ **ମୋଘକର୍ମାଣଃ** କହନ୍ତି। ଭଗବାନଙ୍କୁ ଓ ଶାସ୍ତ୍ରକୁ ବିଶ୍ୱାସ କରୁ ନ ଥିବା ବିଷୟୀ ପାମର ଲୋକେ ଶାସ୍ତ୍ରବିଧି ତ୍ୟାଗ କରି ଅଶ୍ରଦ୍ଧାପୂର୍ବକ ମନଇଚ୍ଛା ଯେଉଁ ଯଜ୍ଞାଦି କର୍ମ କରନ୍ତି; ସେହି କର୍ମରୁ ସେମାନଙ୍କୁ ଇହଲୋକ ବା ପରଲୋକରେ କିଛି ହେଲେ ଫଳ ମିଳେ ନାହିଁ। ଅତଏବ ସେମାନଙ୍କୁ **ମୋଘକର୍ମାଣଃ** କୁହାଯାଏ (୧୬/୧୭, ୨୩; ୧୭/୨୮)।

**ପ୍ରଶ୍ନ — ମୋଘଜ୍ଞାନାଃ** ପଦର ଅଭିପ୍ରାୟ କଣ ?

**ଉତ୍ତର —** ଯେଉଁମାନଙ୍କର ଜ୍ଞାନ ବ୍ୟର୍ଥ, ତାତ୍ତ୍ୱିକ-ଅର୍ଥଶୂନ୍ୟ ଏବଂ ଯୁକ୍ତିଯୁକ୍ତ ନୁହେଁ (୧୮/୨୨), ସେମାନଙ୍କୁ **ମୋଘଜ୍ଞାନାଃ** କହନ୍ତି। ଭଗବାନଙ୍କ ମହିମା ଜାଣି ନ ଥିବା ମନୁଷ୍ୟମାନେ ସାଂସାରିକ ଭୋଗକୁ ସତ୍ୟ ଓ ସୁଖପ୍ରଦ ମନେ କରି ତାହା ପାଇବା ପାଇଁ ଲାଗିପଡ଼ନ୍ତି। ସେମାନେ ଭ୍ରମରେ ଭାବନ୍ତି ଯେ, ଏହି ଭୋଗମାନଙ୍କୁ ଉପଭୋଗ କରିବା ହିଁ ପରମସୁଖ ଏବଂ ଏହାଠାରୁ ବଳି ଆଉ କିଛି ନାହିଁ (୧୬/୧୧)। ସେହି କାରଣରୁ ହିଁ ସେମାନେ ପ୍ରକୃତ ସୁଖପ୍ରାପ୍ତିରୁ ବଞ୍ଚିତ ହୁଅନ୍ତି। ଅତଏବ ସେମାନଙ୍କୁ **ମୋଘଜ୍ଞାନାଃ** କୁହାଯାଏ। ଏପରି ଲୋକମାନେ ନିଜ ଜ୍ଞାନଶକ୍ତିର ଦୁରୁପଯୋଗ କରି ତାହାକୁ ବୃଥାରେ ନଷ୍ଟ କରନ୍ତି।

**ପ୍ରଶ୍ନ — ବିଚେତସଃ** ପଦର ଅଭିପ୍ରାୟ କଣ ?

**ଉତ୍ତର —** ଯେଉଁମାନଙ୍କର ଚିତ୍ତ ବିକ୍ଷିପ୍ତ, ସଂସାରର ବିଭିନ୍ନ ବସ୍ତୁରେ ଆସକ୍ତିଯୋଗୁଁ ସ୍ଥିର ରହେ ନାହିଁ, ସେମାନଙ୍କୁ **ବିଚେତସଃ** କହନ୍ତି। ଆସୁରୀ ପ୍ରକୃତିର ମନୁଷ୍ୟମାନଙ୍କ ମନ ପ୍ରତିକ୍ଷଣ ଭିନ୍ନ ଭିନ୍ନପ୍ରକାର କଳ୍ପନା କରୁଥାଏ (୧୬/୧୩-୧୬)। ଅତଏବ ସେମାନଙ୍କୁ **ବିଚେତସଃ** କୁହାଯାଏ।

**ପ୍ରଶ୍ନ — ରାକ୍ଷସୀମ୍, ଆସୁରୀମ୍ ଓ ମୋହିନୀମ୍ —** ଏସବୁ ବିଶେଷଣସହିତ **ପ୍ରକୃତିମ୍** ପଦର ଭାବ କଣ ? ଏବଂ ତାହାକୁ ଧାରଣ କରି ରହିବା କଣ ?

**ଉତ୍ତର —** ରାକ୍ଷସମାନଙ୍କ ପରି ବିନା କାରଣରେ ଦ୍ୱେଷ କରି ଅନ୍ୟମାନଙ୍କର ଅନିଷ୍ଟ କରିବା ଏବଂ ସେମାନଙ୍କୁ କଷ୍ଟ ଦେବା ସ୍ୱଭାବକୁ ରାକ୍ଷସୀ ପ୍ରକୃତି କହନ୍ତି। କାମ ଓ ଲୋଭର ବଶ ହୋଇ ନିଜର ସ୍ୱାର୍ଥସିଦ୍ଧିପାଇଁ ଅନ୍ୟକୁ କଷ୍ଟ ଦେବା ଓ ଅନ୍ୟର ସ୍ୱତ୍ୱ ଅପହରଣ କରିବା ସ୍ୱଭାବକୁ **ଆସୁରୀ** ପ୍ରକୃତି କହନ୍ତି। ପ୍ରମାଦ ବା ମୋହହେତୁ କୌଣସି ପ୍ରାଣୀକୁ ଦୁଃଖଦେବାର ସ୍ୱଭାବକୁ **ମୋହିନୀ ପ୍ରକୃତି** କହନ୍ତି। ଏପରି ଦୁଷ୍ଟସ୍ୱଭାବ ତ୍ୟାଗ କରିବାକୁ ଚେଷ୍ଟା ନ କରି ବରଂ ତାହାକୁ ଉତ୍ତମ ଭାବି ନ ଛାଡ଼ିବା ହିଁ, 'ତାହାକୁ ଧାରଣ କରିବା।' ଭଗବାନଙ୍କର ମହିମା ଜାଣି ନ ଥିବା ମନୁଷ୍ୟ ପ୍ରାୟ ଏପରି କରିଥାଏ। ଅତଏବ ତାହାକୁ ସେହି ପ୍ରକୃତିର ଆଶ୍ରିତ ବୋଲି କହନ୍ତି।

**ପ୍ରଶ୍ନ —** ଏଠାରେ ଏବ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର — ଏବ**ଦ୍ୱାରା ଦର୍ଶାଇଦିଆଯାଇଛି ଯେ, ସେମାନେ ଏପରି ଆସୁର ସ୍ୱଭାବର ହିଁ ଆଶ୍ରୟ ନିଅନ୍ତି; ଦୈବୀ ପ୍ରକୃତିର ଆଶ୍ରୟ କେବେ ବି ନିଅନ୍ତି ନାହିଁ।

**ସମ୍ବନ୍ଧ —** ଭଗବାନଙ୍କର ପ୍ରଭାବ ନ ଜାଣିଥିବା ଆସୁରୀ ପ୍ରକୃତିର ମନୁଷ୍ୟମାନଙ୍କୁ ନିନ୍ଦା କରିସାରି ବର୍ତ୍ତମାନ ସଗୁଣରୂପର ଭକ୍ତିତତ୍ତ୍ୱ ବୁଝାଇବାକୁ ଭଗବାନଙ୍କର ପ୍ରଭାବ ଜାଣିଥିବା ଦୈବୀ-ପ୍ରକୃତିସମ୍ପନ୍ନ ଉଚ୍ଚ ଶ୍ରେଣୀର ଅନନ୍ୟ ଭକ୍ତମାନଙ୍କର ଲକ୍ଷଣ କହୁଛନ୍ତି—

## ମହାତ୍ମାନସ୍ତୁ ମାଂ ପାର୍ଥ ଦୈବୀଂ ପ୍ରକୃତିମାଶ୍ରିତାଃ ।
## ଭଜନ୍ତ୍ୟନନ୍ୟମନସୋ ଜ୍ଞାତ୍ୱା ଭୂତାଦିମବ୍ୟୟମ୍ ।। ୧୩ ।।

**ଅନ୍ୱୟ –** ତୁ = କିନ୍ତୁ; ପାର୍ଥ = ହେ କୁନ୍ତୀପୁତ୍ର; ଦୈବୀମ୍, ପ୍ରକୃତିମ୍ = ଦୈବୀ ପ୍ରକୃତିକୁ; ଆଶ୍ରିତାଃ = ଆଶ୍ରିତ; ମହାତ୍ମାନଃ = ମହାତ୍ମାମାନେ; ମାମ୍ = ମୋତେ; ଭୂତାଦିମ୍ = ସକଳ ଭୂତଙ୍କର ସନାତନ କାରଣ (ଓ); ଅବ୍ୟୟମ୍ = ଅବିନାଶୀ ଅକ୍ଷରସ୍ୱରୂପ; ଜ୍ଞାତ୍ୱା = ଜାଣି; ଅନନ୍ୟମନସଃ = ଅନନ୍ୟ ମନରେ ଯୁକ୍ତ (ହୋଇ); ଭଜନ୍ତି = (ନିରନ୍ତର ମୋର) ଭଜନ କରନ୍ତି ।

**କିନ୍ତୁ ହେ କୁନ୍ତୀପୁତ୍ର ! ଦୈବୀ ପ୍ରକୃତିର ଆଶ୍ରିତ ମହାତ୍ମାମାନେ ମୋତେ ସକଳ ଭୂତଙ୍କର ସନାତନ କାରଣ ଓ ଅବିନାଶୀ ଅକ୍ଷରସ୍ୱରୂପ ଜାଣି ଅନନ୍ୟମନରେ ଯୁକ୍ତ ହୋଇ ନିରନ୍ତର ମୋର ଭଜନ କରନ୍ତି ।। ୧୩ ।।**

**ପ୍ରଶ୍ନ –** ଏଠାରେ ତୁ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଏଗାର ଓ ବାର ଶ୍ଳୋକରେ ଯେଉଁସବୁ ନୀଚଶ୍ରେଣୀର ମୂଢ଼ ଓ ଆସୁରୀ ପ୍ରକୃତିର ମନୁଷ୍ୟମାନଙ୍କ ବର୍ଣ୍ଣନା କରାଯାଇଛି, ସେମାନଙ୍କ ଠାରୁ ସର୍ବଥା ଭିନ୍ନ ଉଚ୍ଚଶ୍ରେଣୀର ପୁରୁଷମାନଙ୍କର ବର୍ଣ୍ଣନା ଏହି ଶ୍ଳୋକରେ କରାଯାଇଛି । ଏହି ଭାବ ଦେଖାଇବାକୁ ତୁ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ – ଦୈବୀମ୍** ବିଶେଷଣସହିତ **ପ୍ରକୃତିମ୍** ପଦ କାହାର ବାଚକ ଏବଂ ତାଙ୍କର ଆଶ୍ରିତ ହେବା ଅର୍ଥ କଣ ?

**ଉତ୍ତର –** ଦେବ ଅର୍ଥାତ୍ ଭଗବାନଙ୍କ ସହିତ ସମ୍ବନ୍ଧ ରଖିଥିବା ଓ ତାଙ୍କୁ ପ୍ରାପ୍ତ କରାଇଦେଉଥିବା ଯେଉଁସବୁ ସାତ୍ତ୍ୱିକ ଗୁଣ ଓ ଆଚରଣ ରହିଛି ଓ ଷୋଡ଼ଶ ଅଧ୍ୟାୟର ପ୍ରଥମରୁ ତୃତୀୟ ଶ୍ଳୋକପର୍ଯ୍ୟନ୍ତ ଅଭୟ ଆଦି ଛବିଶଟି ନାମରେ ଯାହାର ବର୍ଣ୍ଣନା କରାଯାଇଛି, ଏଠାରେ **ଦୈବୀମ୍** ବିଶେଷଣସହିତ **ପ୍ରକୃତିମ୍** ପଦଟି ହେଉଛି ସେସବୁର ବାଚକ । ସେସବୁକୁ ଉଚରୂପେ ଧାରଣ କରିବା ହିଁ ଦୈବୀ ପ୍ରକୃତିର ଆଶ୍ରିତ ହେବା ।

**ପ୍ରଶ୍ନ – ମହାତ୍ମାନଃ** ପଦଟି କେଉଁ ଶ୍ରେଣୀର ପୁରୁଷମାନଙ୍କ ପାଇଁ ପ୍ରୟୋଗ କରାଯାଇଛି ?

**ଉତ୍ତର –** ଯେଉଁମାନଙ୍କର ଆତ୍ମା ମହାନ୍, ସେମାନଙ୍କୁ ମହାତ୍ମା କହନ୍ତି । ସେ ହେଉଛନ୍ତି ମହାନ୍, ଯେ ନିଜର ମହାନ୍ ଲକ୍ଷ୍ୟକୁ ଭଗବତ୍ପ୍ରାପ୍ତିପାଇଁ ହିଁ ସବୁପ୍ରକାରେ ଭଗବାନଙ୍କ ଠାରେ ଲଗାଇଦେଇଛନ୍ତି । ଯେଉଁମାନେ ଭଗବତ୍ପ୍ରେମରେ ସଦା ମଜ୍ଜି ରହନ୍ତି ଏବଂ ଭଗବତ୍ପ୍ରାପ୍ତିନିମନ୍ତେ ସର୍ବଥା ଯୋଗ୍ୟ ଅଟନ୍ତି, ସେହି ନିଷ୍କାମ ଅନନ୍ୟପ୍ରେମୀ ଭଗବତ୍ ଭକ୍ତମାନଙ୍କ ପାଇଁ ଏଠାରେ **ମହାତ୍ମାନଃ** ପଦ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ –** ଏଠାରେ ମାମ୍ ପଦ ଭଗବାନଙ୍କର କେଉଁ ରୂପର ବାଚକ ତଥା ତାଙ୍କୁ ସକଳ ପ୍ରାଣୀଙ୍କର ଆଦି ଓ ଅବିନାଶୀ ବୋଲି ବୁଝିବା କଣ ?

**ଉତ୍ତର – ମାମ୍** ପଦଟି ହେଉଛି ଏଠାରେ ଭଗବାନଙ୍କର ସଗୁଣ ପୁରୁଷୋତ୍ତମସ୍ୱରୂପର ବାଚକ । ସେହି ସଗୁଣ ପରମେଶ୍ୱରଙ୍କ ଦ୍ୱାରା ହିଁ ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି, ଭୋଗସାମଗ୍ରୀ ଏବଂ ସକଳ ଲୋକସହିତ ସମସ୍ତ ଚରାଚର ପ୍ରାଣୀଙ୍କର ଉତ୍ପତ୍ତି, ପାଳନ ଓ ସଂହାର ହୁଏ (୭/୬, ୯/୧୮, ୧୦/୨,୪,୫,୬,୮) — ଏହି ତତ୍ତ୍ୱକୁ ସମ୍ୟକ୍ରୂପେ ବୁଝିବା ହିଁ ଭଗବାନଙ୍କୁ 'ସକଳ ପ୍ରାଣୀଙ୍କର ଆଦି' ବୋଲି ବୁଝିବା । ଭଗବାନ୍ ଅଜନ୍ମା ତଥା ଅବିନାଶୀ; ଲୋକମାନଙ୍କୁ କେବଳ ଅନୁଗ୍ରହ କରିବା ପାଇଁ ହିଁ ସେ ଲୀଳାରେ ମନୁଷ୍ୟ ଆଦି ରୂପରେ ପ୍ରକଟ ଓ ଅନ୍ତର୍ଦ୍ଧାନ ହୁଅନ୍ତି । ତାହାଙ୍କୁ ଅକ୍ଷର, ଅବିନାଶୀ ପରବ୍ରହ୍ମ ପରମାତ୍ମା କହନ୍ତି ଏବଂ ସକଳ ପ୍ରାଣୀଙ୍କର ନାଶ ହେଲେ ମଧ୍ୟ ଭଗବାନଙ୍କର ନାଶ ହୁଏ ନାହିଁ (୮/୨୦) । ଏହା ଯଥାର୍ଥରୂପେ ବୁଝିବା ହିଁ 'ଭଗବାନଙ୍କୁ ଅବିନାଶୀ ବୋଲି ବୁଝିବା' ।

**ପ୍ରଶ୍ନ – ଅନନ୍ୟମନସଃ** ପଦ କେଉଁ ଅବସ୍ଥାରେ ପହଞ୍ଚିଥିବା ଭକ୍ତମାନଙ୍କର ବାଚକ ଏବଂ ସେମାନେ ଭଗବାନଙ୍କୁ କିପରି ଭଜନ କରନ୍ତି ?

**ଉତ୍ତର –** ଯେଉଁମାନଙ୍କର ମନ ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ପ୍ରତି ଆକୃଷ୍ଟ ହୁଏ ନାହିଁ ଏବଂ କ୍ଷଣମାତ୍ର ଭଗବାନଙ୍କର ବିୟୋଗ ଯେଉଁମାନଙ୍କ ପକ୍ଷରେ ଅସହ୍ୟ ବୋଧହୁଏ, ଏଠାରେ **ଅନନ୍ୟମନସଃ** ପଦଟି ହେଉଛି ଭଗବାନଙ୍କର ସେପରି ଅନନ୍ୟପ୍ରେମୀ ଭକ୍ତମାନଙ୍କର ବାଚକ । ସେପରି ଭକ୍ତମାନେ ଆଗ ଶ୍ଳୋକରେ ତଥା ଦଶମ ଅଧ୍ୟାୟର ନବମ ଶ୍ଳୋକରେ କୁହାଯାଇଥିବା ପ୍ରଣାଳୀରେ ନିରନ୍ତର ଭଗବାନଙ୍କର ଭଜନ କରନ୍ତି ।

**ସମ୍ବନ୍ଧ—** ବର୍ତ୍ତମାନ ପୂର୍ବଶ୍ଳୋକରେ ବର୍ଣ୍ଣିତ ଭଗବତ୍‌ପ୍ରେମୀ ଭକ୍ତମାନଙ୍କ ଭଜନର ପ୍ରକାର କହୁଛନ୍ତି—

**ସତତଂ କୀର୍ତ୍ତୟନ୍ତୋ ମାଂ ଯତନ୍ତଶ୍ଚ ଦୃଢ଼ବ୍ରତାଃ ।**
**ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା ନିତ୍ୟଯୁକ୍ତା ଉପାସତେ ॥ ୧୪ ॥**

**ଅନ୍ୱୟ—** **ଦୃଢ଼ବ୍ରତାଃ** = ଦୃଢ଼ନିଶ୍ଚୟୀ ଭକ୍ତମାନେ; **ସତତମ୍** = ନିରନ୍ତର; **କୀର୍ତ୍ତୟନ୍ତଃ** = (ମୋର ନାମ ଓ ଗୁଣ) କୀର୍ତ୍ତନ କରି କରି; **ଚ** = ତଥା; **ଯତନ୍ତଃ** = (ମୋର ପ୍ରାପ୍ତିନିମନ୍ତେ) ଯତ୍ନ କରି କରି; **ଚ** = ଓ; **ମାମ୍** = ମୋତେ; **ନମସ୍ୟନ୍ତଃ** = (ବାରମ୍ବାର) ପ୍ରଣାମ କରି; **ନିତ୍ୟଯୁକ୍ତାଃ** = ସଦା ମୋର ଧ୍ୟାନରେ ଲାଗିରହି; **ଭକ୍ତ୍ୟା** = ଅନନ୍ୟ ପ୍ରେମରେ; **ମାମ୍** = ମୋତେ; **ଉପାସତେ** = ଉପାସନା କରନ୍ତି ।

**ସେହି ଦୃଢ଼ନିଶ୍ଚୟୀ ଭକ୍ତମାନେ ନିରନ୍ତର ମୋର ନାମ ଓ ଗୁଣ କୀର୍ତ୍ତନ କରି କରି, ମୋର ପ୍ରାପ୍ତିପାଇଁ ଯତ୍ନ କରି କରି ଏବଂ ମୋତେ ବାରମ୍ବାର ପ୍ରଣାମ କରି, ନିରନ୍ତର ମୋର ଧ୍ୟାନରେ ଯୁକ୍ତ ହୋଇ ଅନନ୍ୟ ପ୍ରେମରେ ମୋତେ ଉପାସନା କରନ୍ତି ॥ ୧୪ ॥**

**ପ୍ରଶ୍ନ—** **ଦୃଢ଼ବ୍ରତାଃ** ପଦର ଅଭିପ୍ରାୟ କଣ ?

**ଉତ୍ତର—** ଯେଉଁମାନଙ୍କର ବ୍ରତ ବା ନିଶ୍ଚୟ ଦୃଢ଼ ହୋଇଥାଏ, ସେମାନଙ୍କୁ **ଦୃଢ଼ବ୍ରତାଃ** କହନ୍ତି । ଭଗବାନଙ୍କ ପ୍ରେମୀ ଭକ୍ତଙ୍କର ନିଶ୍ଚୟ, ଶ୍ରଦ୍ଧା, ବିଚାର ଓ ନିୟମ ନିଶ୍ଚିତରୂପେ ଅତ୍ୟନ୍ତ ଦୃଢ଼ ହୋଇଥାଏ । ଦାରୁଣ ବିପତ୍ତି ଏବଂ ପ୍ରବଳ ବିଘ୍ନ ମଧ୍ୟ ସେମାନଙ୍କୁ ନିଜର ସାଧନା ଓ ବିଚାରରୁ ବିଚଳିତ କରିପାରେ ନାହିଁ । ଅତଏବ ସେମାନଙ୍କୁ **ଦୃଢ଼ବ୍ରତାଃ** ବୋଲି କୁହାଯାଇଛି ।

**ପ୍ରଶ୍ନ—** **ସତତମ୍** ପଦର ଅଭିପ୍ରାୟ କ'ଣ ? ଏହାର ସମ୍ବନ୍ଧ କେବଳ **କୀର୍ତ୍ତୟନ୍ତଃ** ସହ, ନା **ଯତନ୍ତଃ** ଓ **ନମସ୍ୟନ୍ତଃ** ସହିତ ମଧ୍ୟ ?

**ଉତ୍ତର—** **ସତତମ୍** ପଦ ଏଠାରେ 'ନିତ୍ୟ-ନିରନ୍ତର' ସମୟର ବାଚକ ଏବଂ ଏହାର ମୁଖ୍ୟ ସମ୍ବନ୍ଧ ଉପାସନା ସହିତ ରହିଛି; କୀର୍ତ୍ତନ, ନମସ୍କାରାଦି ଉପାସନାର ହିଁ ଅଙ୍ଗ ହୋଇଥିବାରୁ ପ୍ରକାରାନ୍ତରେ ସେସବୁ ସହିତ ମଧ୍ୟ ଏହାର ସମ୍ବନ୍ଧ ରହିଛି । ଅଭିପ୍ରାୟ ହେଲା, ଭଗବାନଙ୍କର ପ୍ରେମୀ ଭକ୍ତମାନେ କେତେବେଳେ କୀର୍ତ୍ତନ, କେତେବେଳେ ନମସ୍କାର; କେତେବେଳେ ବା ସେବା ଆଦି ପ୍ରନ୍ଥରୁ କରି କରି ତଥା ସଦାସର୍ବଦା ଭଗବାନଙ୍କର ଚିନ୍ତନ କରି କରି ନିରନ୍ତର ତାଙ୍କର ଉପାସନା କରିଥାଆନ୍ତି ।

**ପ୍ରଶ୍ନ—** ଭଗବାନଙ୍କର କୀର୍ତ୍ତନ କରିବା କଣ ?

**ଉତ୍ତର—** କଥା, ବ୍ୟାଖ୍ୟାନ ଆଦିଦ୍ୱାରା ଭକ୍ତମାନଙ୍କ ଆଗରେ ଭଗବାନଙ୍କର ଗୁଣ, ପ୍ରଭାବ, ମହିମା ଓ ଚରିତ୍ର ଆଦି ବର୍ଣ୍ଣନା କରିବା; ଏକାକୀ କିମ୍ବା ଅନ୍ୟ ଲୋକଙ୍କ ସହିତ ମିଶି, ଭଗବାନ୍ ନିଜ ସମ୍ମୁଖରେ ଅଛନ୍ତି ଭାବି ରାମ, କୃଷ୍ଣ, ଗୋବିନ୍ଦ, ହରି, ନାରାୟଣ, ବାସୁଦେବ, କେଶବ, ମାଧବ, ଶିବ ଆଦି ଭଗବାନଙ୍କର ପବିତ୍ର ନାମ ଜପ କରିବା ଅଥବା ଉଚ୍ଚସ୍ୱରରେ କୀର୍ତ୍ତନ କରିବା; ଭଗବାନଙ୍କର ଗୁଣ, ପ୍ରଭାବ ଓ ଚରିତ୍ର ଆଦି ଶ୍ରଦ୍ଧା ଓ ପ୍ରେମପୂର୍ବକ ଧୀରେ ଧୀରେ ବା ଉଚ୍ଚସ୍ୱରରେ, ଠିଆ ହୋଇ ବା ବସି, ବାଦ୍ୟନୃତ୍ୟସହ ବା ବିନା ବାଦ୍ୟନୃତ୍ୟରେ ଗାନ କରିବା ଓ ଦିବ୍ୟ ସ୍ତୋତ୍ର ତଥା ସୁନ୍ଦର ଭଜନଦ୍ୱାରା ଭଗବାନଙ୍କର ସ୍ତୁତି ପ୍ରାର୍ଥନା କରିବା ଆଦି ଭଗବନ୍ନାମ-ଗୁଣଗାନସମ୍ବନ୍ଧୀୟ ସକଳ ଚେଷ୍ଟା କୀର୍ତ୍ତନର ଅନ୍ତର୍ଗତ ।

**ପ୍ରଶ୍ନ—** **ଯତନ୍ତଃ** ପଦର ଅଭିପ୍ରାୟ କଣ ?

**ଉତ୍ତର—** ଭଗବାନଙ୍କୁ ପୂଜା କରିବା, ସମସ୍ତଙ୍କୁ ଭଗବାନଙ୍କର ସ୍ୱରୂପ ମନେ କରି ସେବା କରିବା ଓ ଭଗବାନଙ୍କର ଭକ୍ତମାନଙ୍କ ଠାରୁ ଗୁଣ, ପ୍ରଭାବ ଓ ଚରିତ୍ର ଆଦି ଶ୍ରବଣ କରିବା ପ୍ରଭୃତି ଭକ୍ତିର ଯେଉଁ ଅଙ୍ଗଗୁଡ଼ିକ ଅନ୍ୟ ପଦମାନଙ୍କରେ କୁହାଯାଇ ନାହିଁ, ସେସବୁକୁ ଉତ୍ସାହ ଓ ତତ୍ପରତାର ସହିତ କରୁଥିବା ହିଁ **ଯତନ୍ତଃ** ପଦଦ୍ୱାରା ସୂଚିତ ହୁଏ ।

**ପ୍ରଶ୍ନ—** ଭଗବାନଙ୍କୁ ବାରମ୍ବାର ପ୍ରଣାମ କରିବା କହିଲେ କଣ ବୁଝାଏ ?

**ଉତ୍ତର—** ଭଗବାନଙ୍କ ମନ୍ଦିରକୁ ଯାଇ ଶ୍ରଦ୍ଧାଭକ୍ତିପୂର୍ବକ ଅର୍ଚ୍ଚାବିଗ୍ରହରୂପୀ ଭଗବାନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବା; ନିଜ ଘରେ ଭଗବାନଙ୍କର ପ୍ରତିମା ବା ଚିତ୍ରପଟକୁ, ତାଙ୍କ ନାମକୁ, ଭଗବାନଙ୍କର ଚରଣ ଓ ପାଦୁକାକୁ, ତାଙ୍କର ତତ୍ତ୍ୱ, ରହସ୍ୟ, ପ୍ରେମ, ପ୍ରଭାବ

ଓ ବିଭିନ୍ନ ମଧୁର ଲୀଳା ବର୍ଣ୍ଣନା କରୁଥିବା ଗ୍ରନ୍ଥମାନଙ୍କୁ ତାଙ୍କ ସ୍ୱରୂପ ମନେ କରି ପ୍ରମାଣ କରିବା; ସମସ୍ତଙ୍କ ହୃଦୟରେ ସେ ବିରାଜମାନ ବୋଲି ଜାଣି ସକଳ ପ୍ରାଣୀଙ୍କୁ ଯଥାଯୋଗ୍ୟ ବିନୟପୂର୍ବକ ଶ୍ରଦ୍ଧାଭକ୍ତିର ସହିତ ଗଦ୍‌ଗଦ ହୋଇ ମନ, ବାଣୀ ଓ ଶରୀରଦ୍ୱାରା ନମସ୍କାର କରିବା – ଏସବୁ ହେଉଛି ଭଗବାନଙ୍କୁ ପ୍ରଣାମ କରିବା।

**ପ୍ରଶ୍ନ – ନିତ୍ୟଯୁକ୍ତାଃ** ପଦର ଭାବ କଣ ?

**ଉତ୍ତର –** ଯେଉଁମାନେ ଚଲାବୁଲା କଲାବେଳେ, ଉଠିବା-ବସିବାବେଳେ ତଥା ଶୋଇବା-ଚେଇଁବାବେଳେ ଅର୍ଥାତ୍ ସବୁକିଛି କରିବାବେଳେ ତଥା ଏକାନ୍ତରେ ଧ୍ୟାନ କରୁଥିବାବେଳେ ନିତ୍ୟନିରନ୍ତର ଭଗବାନଙ୍କର ଚିନ୍ତନ କରୁଥାନ୍ତି, ସେମାନଙ୍କୁ **ନିତ୍ୟଯୁକ୍ତାଃ** କହନ୍ତି।

**ପ୍ରଶ୍ନ – ଭକ୍ତ୍ୟା** ପଦର ଅଭିପ୍ରାୟ କଣ ? ଏବଂ ତା'ଦ୍ୱାରା ଭଗବାନଙ୍କର ଉପାସନା କରିବା କଣ ?

**ଉତ୍ତର –** ଶ୍ରଦ୍ଧାଯୁକ୍ତ ଅନନ୍ୟ ପ୍ରେମର ନାମ **ଭକ୍ତି**। ତେଣୁ ଶ୍ରଦ୍ଧା ଓ ଅନନ୍ୟ ପ୍ରେମର ସହିତ ନିରନ୍ତର ଉପରୋକ୍ତ ସାଧନା କରିବାକୁ ଭକ୍ତିଦ୍ୱାରା ଭଗବାନଙ୍କର ଉପାସନା କରିବା କୁହାଯାଏ।

*ସମ୍ବନ୍ଧ – ଭଗବାନଙ୍କର ଗୁଣ, ପ୍ରଭାବ ଆଦି ଜାଣୁଥିବା ଅନନ୍ୟପ୍ରେମୀ ଭକ୍ତମାନଙ୍କ ଭଜନର ପ୍ରକାର କହିସାରି ବର୍ତ୍ତମାନ ସେମାନଙ୍କ ଠାରୁ ଭିନ୍ନଶ୍ରେଣୀର ଉପାସକମାନଙ୍କ ଉପାସନାର ପ୍ରଣାଳୀ କହୁଛନ୍ତି–*

**ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ ଯଜନ୍ତୋ ମାମୁପାସତେ।**
**ଏକତ୍ୱେନ ପୃଥକ୍ତ୍ୱେନ ବହୁଧା ବିଶ୍ୱତୋମୁଖମ୍॥ ୧୫ ॥**

**ଅନ୍ୱୟ – ଅନ୍ୟେ** = ଅନ୍ୟ କେତେକ ଜ୍ଞାନଯୋଗୀ; **ମାମ୍** = ମୋତେ (ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ); **ଜ୍ଞାନଯଜ୍ଞେନ** = ଜ୍ଞାନଯଜ୍ଞଦ୍ୱାରା; **ଏକତ୍ୱେନ** = ଅଭିନ୍ନଭାବରେ; **ଯଜନ୍ତଃ** = ପୂଜା କରୁଥିଲେ; **ଅପି** = ମଧ୍ୟ (ଉପାସନା କରନ୍ତି); **ଚ** = ଏବଂ (ଅନ୍ୟ କେତେକ ମନୁଷ୍ୟ); **ବହୁଧା** = ବହୁପ୍ରକାରରେ ସ୍ଥିତ; **ବିଶ୍ୱତୋମୁଖମ୍** = ମୋତେ ଅର୍ଥାତ୍ ବିରାଟସ୍ୱରୂପ ପରମେଶ୍ୱରଙ୍କୁ; **ପୃଥକ୍ତ୍ୱେନ** = ପୃଥକ୍‌ଭାବରେ; **ଉପାସତେ** = ଉପାସନା କରନ୍ତି।

**ଅନ୍ୟ କେତେକ ଜ୍ଞାନଯୋଗୀ ମୋତେ ନିର୍ଗୁଣ-ନିରାକାର ବ୍ରହ୍ମ ବୋଲି ଜାଣି ଜ୍ଞାନଯଜ୍ଞଦ୍ୱାରା ଅଭିନ୍ନଭାବରେ ପୂଜା କରି ଉପାସନା କରନ୍ତି ଏବଂ ଅନ୍ୟ କେତେକ ମନୁଷ୍ୟ ବହୁପ୍ରକାରରେ ସ୍ଥିତ ମୋତେ ଅର୍ଥାତ୍ ବିରାଟସ୍ୱରୂପ ପରମେଶ୍ୱରଙ୍କୁ ପୃଥକ୍‌ଭାବରେ ଉପାସନା କରନ୍ତି॥ ୧୫ ॥**

**ପ୍ରଶ୍ନ – ଅନ୍ୟେ** ପଦର ପ୍ରୟୋଗ କେଉଁ ଅଭିପ୍ରାୟରେ କରାଯାଇଛି ?

**ଉତ୍ତର –** ଏଠାରେ **ଅନ୍ୟେ** ପଦର ପ୍ରୟୋଗ ଜ୍ଞାନଯୋଗୀମାନଙ୍କୁ ପୂର୍ବୋକ୍ତ ଭକ୍ତମାନଙ୍କ ଶ୍ରେଣୀରୁ ପୃଥକ୍ କରିବାପାଇଁ କରାଯାଇଛି। ଅଭିପ୍ରାୟ ଏହି ଯେ, ପୂର୍ବୋକ୍ତ ଭକ୍ତମାନଙ୍କ ଠାରୁ ଭିନ୍ନ ଯେଉଁ ଜ୍ଞାନଯୋଗୀମାନେ ଅଛନ୍ତି, ସେମାନେ ଆଗକୁ କୁହାଯାଉଥିବା ପ୍ରଣାଳୀରେ ଉପାସନା କରନ୍ତି।

**ପ୍ରଶ୍ନ –** ଏଠାରେ **ମାମ୍** ପଦର ଅର୍ଥ ନିର୍ଗୁଣ-ନିରାକାର ବ୍ରହ୍ମ କାହିଁକି କରାଗଲା ?

**ଉତ୍ତର –** ଜ୍ଞାନଯଜ୍ଞଦ୍ୱାରା ନିର୍ଗୁଣ-ନିରାକାର ବ୍ରହ୍ମଙ୍କର ହିଁ ଉପାସନା ହୁଏ। ଏଠାରେ **ମାମ୍** ପଦ ପ୍ରୟୋଗ କରି ଭଗବାନ୍ ସଚ୍ଚିଦାନନ୍ଦଘନ ନିର୍ଗୁଣ ବ୍ରହ୍ମ ସହ ନିଜର ଅଭିନ୍ନତା ପ୍ରତିପାଦନ କରିଛନ୍ତି। ତେଣୁ ମାମ୍‌ର ଅର୍ଥ ନିର୍ଗୁଣ-ନିରାକାର ବ୍ରହ୍ମ କରାଯାଇଛି।

**ପ୍ରଶ୍ନ –** ଜ୍ଞାନଯଜ୍ଞର ସ୍ୱରୂପ କଣ ? ତା'ଦ୍ୱାରା ଅଭିନ୍ନଭାବରେ **ମାମ୍** ପଦର ଲକ୍ଷ୍ୟ ନିର୍ଗୁଣ ବ୍ରହ୍ମଙ୍କର ପୂଜା କରିବା ସହିତ ତାଙ୍କର ଉପାସନା କରିବା କଣ ?

**ଉତ୍ତର –** ତୃତୀୟ ଅଧ୍ୟାୟର ତୃତୀୟ ଶ୍ଳୋକରେ 'ଜ୍ଞାନଯୋଗ'ର ଯେଉଁ ବର୍ଣ୍ଣନା କରାଯାଇଛି, ଏଠାରେ ମଧ୍ୟ ଜ୍ଞାନଯଜ୍ଞର ସେହି ସ୍ୱରୂପ ନିଆଯାଇଛି। ତା' ଅନୁସାରେ ଶରୀର, ଇନ୍ଦ୍ରିୟ ଓ ମନଦ୍ୱାରା ହେଉଥିବା ସମସ୍ତ କର୍ମରେ ମାୟାମୟ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହେଉଛନ୍ତି ବୋଲି ବୁଝି କର୍ତ୍ତାପଣ ଅଭିମାନରୁ ରହିତ ହେବା, ସକଳ ଦୃଶ୍ୟବର୍ଗଙ୍କୁ ମୃଗତୃଷ୍ଣାର ଜଳପରି ବା ସ୍ୱପ୍ନର ସଂସାରପରି ଅନିତ୍ୟ ବୋଲି ବୁଝିବା ତଥା

ଏକ ସଚ୍ଚିଦାନନ୍ଦଘନ ନିର୍ଗୁଣ-ନିରାକାର ପରବ୍ରହ୍ମ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାର ବି ସତ୍ତା ସ୍ୱୀକାର ନ କରି ନିରନ୍ତର ସେହି ଏକ ବ୍ରହ୍ମ ପରମାତ୍ମାଙ୍କର ଶ୍ରବଣ, ମନନ ଓ ନିଦିଧ୍ୟାସନ କରି କରି ସେହି ସଚ୍ଚିଦାନନ୍ଦଘନ ବ୍ରହ୍ମରେ ନିତ୍ୟ ଅଭିନ୍ନଭାବରେ ସ୍ଥିତ ରହିବାନିମନ୍ତେ ଅଭ୍ୟାସ କରିଚାଲିବା ହିଁ ଜ୍ଞାନଯଜ୍ଞଦ୍ୱାରା ପୂଜନ କରି ତାଙ୍କ ଉପାସନା କରିବା।

**ପ୍ରଶ୍ନ** — ଚ ପ୍ରୟୋଗର ଭାବ କଣ ?

**ଉତ୍ତର** — ଉପରୋକ୍ତ ଜ୍ଞାନଯଜ୍ଞଦ୍ୱାରା ପୂଜନ ସହିତ ଉପାସନା କରୁଥିବା ଲୋକଙ୍କ ଠାରୁ ଭିନ୍ନ ଶ୍ରେଣୀର ଉପାସକମାନଙ୍କୁ ପୃଥକ୍ କରିବାପାଇଁ ହିଁ ଏଠାରେ ଚ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ** — ବହୁତପ୍ରକାରେ ସ୍ଥିତ ଭଗବାନଙ୍କ ବିରାଟସ୍ୱରୂପର ପୃଥକ୍‌ଭାବରେ ଉପାସନା କରିବା କଣ ?

**ଉତ୍ତର** — ସମସ୍ତ ବିଶ୍ୱ ସେହି ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି ଏବଂ ସେଥିରେ ଭଗବାନ୍ ହିଁ ବ୍ୟାପ୍ତ ହୋଇଛନ୍ତି। ତେଣୁ ଭଗବାନ୍ ସ୍ୱୟଂ ହିଁ ବିଶ୍ୱରୂପରେ ସ୍ଥିତ। ତେଣୁ ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ଇନ୍ଦ୍ର ଓ ବରୁଣ ଆଦି ବିଭିନ୍ନ ଦେବତା ତଥା ଅନ୍ୟ ସକଳ ପ୍ରାଣୀ ଭଗବାନଙ୍କର ହିଁ ସ୍ୱରୂପ ବୋଲି ବୁଝି ନିଜ କର୍ମଦ୍ୱାରା ଯଥାଯୋଗ୍ୟ ନିଷ୍କାମଭାବରେ ସେହି ସମସ୍ତଙ୍କର ସେବାପୂଜା କରିବା (୧୮/୪୬) ହିଁ ବହୁପ୍ରକାରେ ସ୍ଥିତ ଭଗବାନଙ୍କ ବିରାଟ ସ୍ୱରୂପର ପୃଥକ୍‌ଭାବରେ ଉପାସନା କରିବା।

*ସମ୍ବନ୍ଧ — ସମସ୍ତ ବିଶ୍ୱର ଉପାସନା ଯେ ଭଗବାନଙ୍କର ହିଁ ଉପାସନା, ଏହା ସ୍ପଷ୍ଟରୂପେ ବୁଝାଇଦେବାପାଇଁ ପରବର୍ତ୍ତୀ ଚାରୋଟି ଶ୍ଳୋକରେ ଭଗବାନ୍ ଘୋଷଣା କରୁଛନ୍ତି, ''ସମଗ୍ର ଜଗତ ମୋର ହିଁ ସ୍ୱରୂପ ଅଟେ'' —*

**ଅହଂ କ୍ରତୁରହଂ ଯଜ୍ଞଃ ସ୍ୱଧାହମହମୌଷଧମ୍।**
**ମନ୍ତ୍ରୋଽହମହମେବାଜ୍ୟମହମଗ୍ନିରହଂ ହୁତମ୍॥ ୧୬ ॥**

**ଅନ୍ୱୟ** — **ଅହମ୍, କ୍ରତୁଃ** = ମୁଁ କ୍ରତୁ; **ଅହମ୍, ଯଜ୍ଞଃ** = ମୁଁ ଯଜ୍ଞ; **ଅହମ୍, ସ୍ୱଧା** = ମୁଁ ସ୍ୱଧା; **ଅହମ୍, ଔଷଧମ୍** = ମୁଁ ଔଷଧ; **ଅହମ୍, ମନ୍ତ୍ରଃ** = ମୁଁ ମନ୍ତ୍ର; **ଅହମ୍, ଆଜ୍ୟମ୍** = ମୁଁ ଘୃତ; **ଅହମ୍, ଅଗ୍ନିଃ** = ମୁଁ ଅଗ୍ନି (ଓ); **ଅହମ୍,, ହୁତମ୍, ଏବ** = ମୁଁ ହିଁ ହବନରୂପୀ କ୍ରିୟା।

**ମୁଁ କ୍ରତୁ; ମୁଁ ଯଜ୍ଞ; ମୁଁ ସ୍ୱଧା; ମୁଁ ଔଷଧ; ମୁଁ ମନ୍ତ୍ର; ମୁଁ ଘୃତ; ମୁଁ ଅଗ୍ନି ଏବଂ ମୁଁ ହିଁ ହବନରୂପୀ କ୍ରିୟା॥ ୧୬ ॥**

**ପ୍ରଶ୍ନ** — ଏହି ଶ୍ଳୋକର ଭାବ କଣ ?

**ଉତ୍ତର** — ଏହି ଶ୍ଳୋକରେ ଭଗବାନ୍ କହୁଛନ୍ତି, ''ଦେବତା ଓ ପିତୃମାନଙ୍କ ଉଦ୍ଦେଶ୍ୟରେ କରାଯାଉଥିବା ଯେତେପ୍ରକାର ଶ୍ରୌତସ୍ମାର୍ତ୍ତ କର୍ମ ଓ ତାହାର ସାଧନ ରହିଛି, ସେସବୁ ମୁଁ ହିଁ ଅଟେ।'' ଶ୍ରୌତ କର୍ମକୁ **କ୍ରତୁ** କହନ୍ତି। ପଞ୍ଚମହାଯଜ୍ଞାଦି ସ୍ମାର୍ତ୍ତ କର୍ମକୁ **ଯଜ୍ଞ** କୁହାଯାଏ। ପିତୃମାନଙ୍କ ନିମିତ୍ତ ପ୍ରଦାନ କରାଯାଉଥିବା ଅନ୍ନକୁ **ସ୍ୱଧା** କୁହାଯାଏ। ଭଗବାନ୍ କହୁଛନ୍ତି, ''ମୁଁ ହିଁ ଏହି 'କ୍ରତୁ', 'ଯଜ୍ଞ' ଓ 'ସ୍ୱଧା' ଏବଂ ଏସବୁ କର୍ମପାଇଁ ପ୍ରୟୋଜନୀୟ ଯେତେ ବି ବନସ୍ପତି ଦ୍ରବ୍ୟ, ଅନ୍ନ ତଥା ରୋଗନାଶକ ଜୈଉମୂଳିକା ରହିଛି, ସେସବୁ ମଧ୍ୟ ମୁଁ। ଯେଉଁ ମନ୍ତ୍ରମାନଙ୍କ ଦ୍ୱାରା ଏସବୁ କର୍ମ ସମ୍ପନ୍ନ ହୁଏ ଏବଂ ବିଭିନ୍ନ ବ୍ୟକ୍ତିମାନଙ୍କ ଦ୍ୱାରା ବିଭିନ୍ନଭାବରେ ଯାହା ଜପ କରାଯାଏ, ସେସବୁ ମନ୍ତ୍ର ମଧ୍ୟ ମୁଁ। ଯଜ୍ଞପାଇଁ ଯେଉଁ ଘୃତାଦି ସାମଗ୍ରୀ ଆବଶ୍ୟକ ହୁଏ, ସେସବୁ ହବି ମଧ୍ୟ ମୁଁ। ଗାର୍ହପତ୍ୟ, ଆହବନୀୟ ଓ ଦକ୍ଷିଣାଗ୍ନି ଆଦି ସବୁପ୍ରକାର ଅଗ୍ନି ମଧ୍ୟ ମୁଁ ଏବଂ ଯାହାଦ୍ୱାରା ଯଜ୍ଞକର୍ମ ସମ୍ପନ୍ନ ହୁଏ, ସେହି ହବନକ୍ରିୟା ମଧ୍ୟ ମୁଁ।'' ଅଭିପ୍ରାୟ ଏହି ଯେ, ଯଜ୍ଞ, ଶ୍ରାଦ୍ଧ ଆଦି ଶାସ୍ତ୍ରୀୟ ଶୁଭକର୍ମରେ ପ୍ରୟୋଜନୀୟ ସମସ୍ତ ବସ୍ତୁ, ସେହିସମ୍ବନ୍ଧୀ ମନ୍ତ୍ର, ଯେଉଁଠି ଯଜ୍ଞାଦି କରାଯାଏ, ସେହି ଅଧିଷ୍ଠାନ, ତଥା ମନ, ବାଣୀ, ଶରୀରଦ୍ୱାରା ହେଉଥିବା ସେହି ବିଷୟକ ସମସ୍ତ ଚେଷ୍ଟା ଭଗବାନଙ୍କର ହିଁ ସ୍ୱରୂପ। ଏହି କଥା ସିଦ୍ଧ କରିବାନିମନ୍ତେ ପ୍ରତ୍ୟେକ

ସହିତ **ଅହମ୍** ପଦ ପ୍ରୟୋଗ କରାଯାଇଛି ଏବଂ ଏବ ପ୍ରୟୋଗ କରି ପୁଷ୍ଟିସାଧନ କରାଯାଇଛି ଯେ, ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ବି ନାହିଁ। ଏହିପରି ବିଭିନ୍ନରୂପରେ ଦେଖାଯାଉଥିବା ସବୁକିଛି ଭଗବାନ୍ ହିଁ ଅଟନ୍ତି। ଭଗବତ୍ତତ୍ତ୍ୱ ନ ବୁଝିଥିବାରୁ ହିଁ ସକଳ ବସ୍ତୁ ତାଙ୍କ ଠାରୁ ଭିନ୍ନପରି ଦେଖାଯାଉଛି।

## ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ।
## ବେଦ୍ୟଂ ପବିତ୍ରମୋଙ୍କାର ଋକ୍ସାମ ଯଜୁରେବ ଚ॥ ୧୭ ॥

**ଅନ୍ୱୟ—** **ଅସ୍ୟ, ଜଗତଃ** = ଏହି ସମଗ୍ର ଜଗତର; **ଧାତା** = ଧାତା ଅର୍ଥାତ୍ ଧାରଣକର୍ତ୍ତା ଓ କର୍ମଫଳଦାତା; **ପିତା** = ପିତା; **ମାତା** = ମାତା; **ପିତାମହଃ** = ପିତାମହ; **ବେଦ୍ୟମ୍** = ଜାଣିବାର ଯୋଗ୍ୟ; **ପବିତ୍ରମ୍** = ପବିତ୍ର; **ଓଁକାରଃ** = ଓଁକାର (ତଥା); **ଋକ୍** = ଋଗ୍‌ବେଦ; **ସାମ** = ସାମବେଦ; **ଚ** = ଓ; **ଯଜୁଃ** = ଯଜୁର୍ବେଦ (ମଧ୍ୟ); **ଅହମ୍, ଏବ** = ମୁଁ ହିଁ ଅଟେ।

**ଏହି ସମଗ୍ର ଜଗତର ଧାତା ଅର୍ଥାତ୍ ଧାରଣକର୍ତ୍ତା ଓ କର୍ମଫଳଦାତା, ପିତା, ମାତା, ପିତାମହ, ଜାଣିବାର ଯୋଗ୍ୟ ବସ୍ତୁ, ପବିତ୍ର, ଓଁକାର ତଥା ଋଗ୍‌ବେଦ, ସାମବେଦ ଓ ଯଜୁର୍ବେଦ ମଧ୍ୟ ମୁଁ ହିଁ ଅଟେ॥ ୧୭ ॥**

**ପ୍ରଶ୍ନ—** **ଅସ୍ୟ** ବିଶେଷଣ ସହିତ **ଜଗତଃ** ପଦ କାହାର ବାଚକ ତଥା ଭଗବାନ୍ ତାହାର **ପିତା, ମାତା, ଧାତା** ଓ **ପିତାମହ** କିପରି ?

**ଉତ୍ତର—** ଏଠାରେ **ଜଗତଃ** ପଦଟି ହେଉଛି ଚରାଚର ପ୍ରାଣୀମାନଙ୍କ ସହିତ ସମସ୍ତ ବିଶ୍ୱର ବାଚକ। ଏହି ସମସ୍ତ ବିଶ୍ୱ ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି, ଭଗବାନ୍ ହିଁ ଏହାର ମହାକାରଣ। ଏଣୁ ଭଗବାନ୍ ନିଜକୁ ଜଗତର **ପିତା-ମାତା** ବୋଲି କହିଛନ୍ତି। ଭଗବାନ୍ ନିଜର ଏକ ଅଂଶରେ ଏହି ସମଗ୍ର ଜଗତକୁ ଧାରଣ କରିଛନ୍ତି (୧୦/୪୨)। ସେ ହିଁ ସକଳପ୍ରକାର କର୍ମଫଳର ଯଥାଯୋଗ୍ୟ ବିଧାନ କରନ୍ତି। ଏଣୁ ସେ ନିଜକୁ ଜଗତର **ଧାତା** ବୋଲି କହିଛନ୍ତି। ଯେଉଁ ବ୍ରହ୍ମା ଆଦି ପ୍ରଜାପତିମାନଙ୍କ ଦ୍ୱାରା ସୃଷ୍ଟିରଚନା ହୁଏ, ସେମାନଙ୍କୁ ମଧ୍ୟ ଭଗବାନ୍ ହିଁ ଉତ୍ପନ୍ନ କରିଛନ୍ତି। ଏଣୁ ସେ ନିଜକୁ ଜଗତର **ପିତାମହ** ବୋଲି କହିଛନ୍ତି।

**ପ୍ରଶ୍ନ—** **ବେଦ୍ୟମ୍** ପଦ କାହାର ବାଚକ? ଏବଂ ଏଠାରେ ଭଗବାନ୍ ନିଜକୁ **ବେଦ୍ୟ** ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଜାଣିବାଯୋଗ୍ୟ ବସ୍ତୁକୁ **ବେଦ୍ୟ** କହନ୍ତି। ଏକମାତ୍ର ଭଗବାନ୍ ହିଁ ସମସ୍ତ ବେଦଦ୍ୱାରା ଜାଣିବାଯୋଗ୍ୟ ପରମତତ୍ତ୍ୱ (୧୫/୧୫)। ଅତଏବ ଭଗବାନ୍ ନିଜକୁ **ବେଦ୍ୟ** ବୋଲି କହିଛନ୍ତି।

**ପ୍ରଶ୍ନ—** **ପବିତ୍ର** ଶବ୍ଦର ଅର୍ଥ କଣ ଏବଂ ଭଗବାନ୍ ନିଜକୁ ପବିତ୍ର ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଯେ ସ୍ୱୟଂ ବିଶୁଦ୍ଧ ଏବଂ ସହଜରେ ଅନ୍ୟମାନଙ୍କର ପାପ ନାଶ କରି ସେମାନଙ୍କୁ ବିଶୁଦ୍ଧ କରନ୍ତି, ତାହାଙ୍କୁ **ପବିତ୍ର** କହନ୍ତି। ଭଗବାନ୍ ପରମ ପବିତ୍ର ଏବଂ ଭଗବାନଙ୍କର ଦର୍ଶନ, କୀର୍ତ୍ତନ ଓ ସ୍ମରଣଦ୍ୱାରା ମନୁଷ୍ୟ ପରମ ପବିତ୍ର ହୋଇଯାଏ। ଏହା ଛଡ଼ା ଜଗତରେ ଜପ, ତପ, ବ୍ରତ, ତୀର୍ଥ ଆଦି ଯେତେ ବି ପବିତ୍ରକାରକ ପଦାର୍ଥ ରହିଛି, ସେସବୁ ଭଗବାନଙ୍କର ହିଁ ସ୍ୱରୂପ ତଥା ସେସବୁରେ ଯେଉଁ ପବିତ୍ରକାରିଣୀ ଶକ୍ତି ରହିଛି, ତାହା ମଧ୍ୟ ଭଗବାନଙ୍କର।— ଏହି ଭାବ ଦେଖାଇବାକୁ ଭଗବାନ୍ ନିଜକୁ **ପବିତ୍ର** ବୋଲି କହିଛନ୍ତି।

**ପ୍ରଶ୍ନ—** **ଓଁକାର** କାହାକୁ କହନ୍ତି ଏବଂ ଏଠାରେ ଭଗବାନ୍ ନିଜକୁ ଓଁକାର ବୋଲି କାହିଁକି କହିଛନ୍ତି ?

**ଉତ୍ତର—** ଓଁ ହେଉଛି ଭଗବାନଙ୍କର ନାମ। ଏହାକୁ ପ୍ରଣବ ମଧ୍ୟ କହନ୍ତି। ଅଷ୍ଟମ ଅଧ୍ୟାୟର ତେର ଶ୍ଳୋକରେ ଏହାକୁ ବ୍ରହ୍ମ ବୋଲି କୁହାଯାଇଛି ତଥା ଏହାକୁ ହିଁ ଉଚ୍ଚାରଣ କରିବାକୁ କୁହାଯାଇଛି। ଏଠାରେ ନାମ ତଥା ନାମୀଙ୍କ ଅଭେଦ ପ୍ରତିପାଦନ କରିବାପାଇଁ ହିଁ ଭଗବାନ୍ ନିଜକୁ **ଓଁକାର** ବୋଲି କହିଛନ୍ତି।

**ପ୍ରଶ୍ନ—** **ଋକ୍, ସାମ** ଓ **ଯଜୁଃ**— ଏହି ତିନୋଟି ପଦ କେଉଁମାନଙ୍କ ବାଚକ ଏବଂ ଭଗବାନ୍ ଏସବୁକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏହି ତିନୋଟି ପଦ ହେଉଛି ତିନି ବେଦର

ବାଚକ। ବେଦମାନେ ଭଗବାନଙ୍କ ଠାରୁ ହିଁ ପ୍ରକଟ ହୋଇଛନ୍ତି ତଥା ସମସ୍ତ ବେଦଦ୍ୱାରା ଭଗବାନଙ୍କ ବିଷୟରେ ଜ୍ଞାନ ହୁଏ। ତେଣୁ ସବୁ ବେଦକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଏଠାରେ ଚ ଏବଂ ଏବ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଚ ଅବ୍ୟୟଦ୍ୱାରା ଏହି ଶ୍ଳୋକରେ ବର୍ଣ୍ଣିତ ସମସ୍ତ ପଦାର୍ଥର ସମାହାର କରାଯାଇଛି ଏବଂ **ଏବ**ଦ୍ୱାରା ଭଗବାନଙ୍କ ଛଡ଼ା ଅନ୍ୟ ବସ୍ତୁମାତ୍ରର ସତ୍ତାକୁ ପ୍ରତ୍ୟାଖ୍ୟାନ କରାଯାଇଛି। ଅଭିପ୍ରାୟ ଏହି ଯେ, ଏହି ଶ୍ଳୋକରେ ବର୍ଣ୍ଣିତ ସମସ୍ତ ପଦାର୍ଥ ଭଗବାନଙ୍କର ହିଁ ସ୍ୱରୂପ; ତାଙ୍କ ଛଡ଼ା ଅନ୍ୟ କୌଣସି ବି ବସ୍ତୁ ନାହିଁ।

## ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍।
## ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍।। ୧୮ ।।

**ଅନ୍ୱୟ –** **ଗତିଃ** = ପ୍ରାପ୍ତ ହେବା ଯୋଗ୍ୟ ପରମଧାମ; **ଭର୍ତ୍ତା** = ଭରଣ-ପୋଷଣକାରୀ; **ପ୍ରଭୁଃ** = ସମସ୍ତଙ୍କର ସ୍ୱାମୀ; **ସାକ୍ଷୀ** = ଶୁଭାଶୁଭଦ୍ରଷ୍ଟା; **ନିବାସଃ** = (ସମସ୍ତଙ୍କର) ବାସସ୍ଥାନ; **ଶରଣମ୍** = ଶରଣ ନେବାର ଯୋଗ୍ୟ; **ସୁହୃତ୍** = ପ୍ରତ୍ୟୁପକାର ନ ଚାହିଁ (ସମସ୍ତଙ୍କର) ହିତକାରୀ; **ପ୍ରଭବଃ, ପ୍ରଳୟଃ** = ସମସ୍ତଙ୍କର ଉତ୍ପତ୍ତି ଓ ପ୍ରଳୟର ହେତୁ; **ସ୍ଥାନମ୍** = ସ୍ଥିତିର ଆଧାର; **ନିଧାନମ୍** = ନିଧାନ (ଓ); **ଅବ୍ୟୟମ୍** = ଅବିନାଶୀ; **ବୀଜମ୍** = କାରଣ (ମଧ୍ୟ); **(ଅହମ୍, ଏବ)** = ମୁଁ ହିଁ ଅଟେ।

**ପ୍ରାପ୍ତହେବାଯୋଗ୍ୟ ପରମଧାମ, ସମସ୍ତଙ୍କର ଭରଣ-ପୋଷଣକାରୀ, ସମସ୍ତଙ୍କର ସ୍ୱାମୀ, ଶୁଭାଶୁଭ ଦ୍ରଷ୍ଟା, ସମସ୍ତଙ୍କର ବାସସ୍ଥାନ, ଶରଣ ନେବାର ଯୋଗ୍ୟ, ପ୍ରତ୍ୟୁପକାର ନ ଚାହିଁ ହିତକାରୀ, ସମସ୍ତଙ୍କର ଉତ୍ପତ୍ତି ଓ ପ୍ରଳୟର ହେତୁ, ସ୍ଥିତିର ଆଧାର, ନିଧାନ ଓ ଅବିନାଶୀ କାରଣ ମଧ୍ୟ ମୁଁ ହିଁ ଅଟେ।। ୧୮ ।।**

**ପ୍ରଶ୍ନ – ଗତିଃ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ପ୍ରାପ୍ତ କରିବା ବସ୍ତୁର ନାମ **ଗତି**। ସବୁଠାରୁ ଶ୍ରେଷ୍ଠ ପ୍ରାପ୍ୟ ବସ୍ତୁ ହେଉଛନ୍ତି ଏକମାତ୍ର ଭଗବାନ୍। ଅତଏବ ସେ ନିଜକୁ **ଗତି** ବୋଲି କହିଛନ୍ତି। ଏହାକୁ ହିଁ 'ପରା ଗତି', 'ପରମା ଗତି', 'ଅବିନାଶୀ ପଦ' ଆଦି ମଧ୍ୟ କହନ୍ତି।

**ପ୍ରଶ୍ନ – ଭର୍ତ୍ତା** ପଦର ଅଭିପ୍ରାୟ କଣ ?

**ଉତ୍ତର –** ପାଳନ-ପୋଷଣ କରିବା ଲୋକକୁ **ଭର୍ତ୍ତା** କୁହାଯାଏ। କେବଳ ଭଗବାନ୍ ହିଁ ଯାହାଙ୍କ ଦ୍ୱାରା ବିଶ୍ୱର ରକ୍ଷଣ ଓ ପାଳନ କରନ୍ତି। ଅତଏବ ସେ ନିଜକୁ **ଭର୍ତ୍ତା** ବୋଲି କହିଛନ୍ତି।

**ପ୍ରଶ୍ନ – ପ୍ରଭୁ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଶାସନକାରୀ ସ୍ୱାମୀଙ୍କୁ **ପ୍ରଭୁ** କୁହାଯାଏ। ଭଗବାନ୍ ହିଁ ସମସ୍ତଙ୍କର ଏକମାତ୍ର ପରମ ପ୍ରଭୁ। ସେ ଈଶ୍ୱରମାନଙ୍କର ମହାନ୍ ଈଶ୍ୱର, ଦେବତାମାନଙ୍କର ପରମଦେବତା, ପତିମାନଙ୍କର ପରମପତି, ସମସ୍ତ ଭୁବନର ସ୍ୱାମୀ ଓ ପରମପୂଜ୍ୟ ପରମଦେବ ଅଟନ୍ତି (ଶ୍ୱେତାଶ୍ୱତର ଉ ୬/୭); ତଥା ସୂର୍ଯ୍ୟ, ଅଗ୍ନି, ଇନ୍ଦ୍ର, ବାୟୁ ଓ ମୃତ୍ୟୁ ଆଦି ସକଳଦେବତା ତାହାଙ୍କ ଭୟରେ ନିଜ ନିଜର ମର୍ଯ୍ୟାଦାରେ ରହିଛନ୍ତି (କଠ ଉ. ୨/୩/୩)। ତେଣୁ ଭଗବାନ୍ ନିଜକୁ **ପ୍ରଭୁ** ବୋଲି କହିଛନ୍ତି।

**ପ୍ରଶ୍ନ – ସାକ୍ଷୀ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ସମସ୍ତ ଲୋକକୁ, ସମସ୍ତ ଜୀବକୁ ଏବଂ ସେମାନଙ୍କର ସମସ୍ତ ଶୁଭାଶୁଭ କର୍ମକୁ ଜାଣନ୍ତି ଓ ଦେଖନ୍ତି। ଭୂତ, ବର୍ତ୍ତମାନ ଓ ଭବିଷ୍ୟତରେ କୌଣସି ବି ସ୍ଥାନରେ, ଏପରି କୌଣସିପ୍ରକାର କର୍ମ ନାହିଁ, ଯାହାକୁ ଭଗବାନ୍ ଦେଖୁ ନାହାନ୍ତି। ତାଙ୍କ ପରି ସର୍ବଜ୍ଞ ଅନ୍ୟ କେହି ନାହିଁ। ସେ ହେଉଛନ୍ତି ସର୍ବଜ୍ଞତାର ଶେଷ ସୀମା। ଏଣୁ ସେ ନିଜକୁ **ସାକ୍ଷୀ** ବୋଲି କହିଛନ୍ତି।

**ପ୍ରଶ୍ନ – ନିବାସଃ** ପଦର ଅର୍ଥ କଣ ?

**ଉତ୍ତର –** ରହିବା ସ୍ଥାନର ନାମ **ନିବାସ**। ଉଠୁଥିବା-ବସୁଥିବା, ଶୋଉଥିବା-ଚେଇଁଥିବା, ଚାଲୁଥିବା-ବୁଲୁଥିବା, ଜନ୍ମୁଥିବା-ମରୁଥିବା ସକଳ ଜୀବ ସଦା-ସର୍ବଦା ଓ ସର୍ବଥା କେବଳ ଭଗବାନଙ୍କ ମଧ୍ୟରେ ହିଁ ନିବାସ କରନ୍ତି। ଅତଏବ ଭଗବାନ୍ ନିଜକୁ **ନିବାସ** ବୋଲି କହିଛନ୍ତି।

**ପ୍ରଶ୍ନ –** **ଶରଣମ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କର ଶରଣ ନିଆଯିବା ଉଚିତ, ତାଙ୍କୁ **ଶରଣମ୍** କହନ୍ତି। ଭଗବାନଙ୍କ ପରି ଶରଣାଗତବତ୍ସଳ, ପ୍ରଣତପାଳ ଓ ଶରଣାଗତର ଦୁଃଖବିନାଶକ ଅନ୍ୟ କେହି ନାହିଁ। ବାଲ୍ମୀକି-ରାମାୟଣରେ କୁହାଯାଇଛି –

**ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ।**
**ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍‌ବ୍ରତଂ ମମ।।**
(୬/୧୮/୩୩)

ଅର୍ଥାତ୍ "ଥରେମାତ୍ର 'ମୁଁ ତୁମର ଅଟେ' – ବୋଲି କହି ଯେ ମୋର ଶରଣ ନିଏ ଓ ମୋ'ଠାରୁ ଅଭୟ ଚାହେଁ, ତାକୁ ମୁଁ ସକଳ ପ୍ରାଣୀଙ୍କ ଠାରୁ ଅଭୟ କରିଦିଏ – ଏହା ମୋର ବ୍ରତ।" ଅତଏବ ଭଗବାନ୍ ନିଜକୁ **ଶରଣ** ବୋଲି କହିଛନ୍ତି।

**ପ୍ରଶ୍ନ –** **ସୁହୃଦ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ପ୍ରତ୍ୟୁପକାର ନ ଚାହିଁ ବିନା କାରଣରେ ସ୍ୱଭାବତଃ ହିତ ଚାହୁଁଥିବା ତଥା ହିତ କରୁଥିବା ଦୟାଳୁ ଓ ପ୍ରେମୀ ପୁରୁଷଙ୍କୁ **ସୁହୃଦ୍** କହନ୍ତି। ଭଗବାନ୍ ହେଉଛନ୍ତି ବିନା କାରଣରେ ସମସ୍ତ ପ୍ରାଣୀଙ୍କର ଉପକାର କରୁଥିବା ପରମ ହିତୈଷୀ ଓ ସମସ୍ତଙ୍କୁ ଅତ୍ୟନ୍ତ ପ୍ରେମ କରୁଥିବା ପରମ ବନ୍ଧୁ। ଅତଏବ ସେ ନିଜକୁ **ସୁହୃଦ୍** ବୋଲି କହିଛନ୍ତି। ପଞ୍ଚମ ଅଧ୍ୟାୟ ଶେଷରେ ମଧ୍ୟ ଭଗବାନ୍ କହିଛନ୍ତି, "ମୋତେ ସମସ୍ତ ପ୍ରାଣୀଙ୍କର ସୁହୃଦ୍ ବୋଲି ଜାଣି ମନୁଷ୍ୟ ପରମ ଶାନ୍ତି ପାଏ।" (୫/୨୯)

**ପ୍ରଶ୍ନ –** **ପ୍ରଭବଃ, ପ୍ରଳୟଃ** ଓ **ସ୍ଥାନମ୍ –** ଏହି ତିନୋଟି ପଦର ଅଭିପ୍ରାୟ କଣ ?

**ଉତ୍ତର –** ସମସ୍ତ ଜଗତର ଉତ୍ପତ୍ତି-କାରଣକୁ **ପ୍ରଭବ**, ସ୍ଥିତିର ଆଧାରକୁ **ସ୍ଥାନ** ଏବଂ ପ୍ରଳୟର କାରଣକୁ **ପ୍ରଳୟ** ବୋଲି କହନ୍ତି। ଭଗବାନଙ୍କର ସଂକଳ୍ପମାତ୍ରେ ସମସ୍ତ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ହୋଇଯାଏ। ଅତଏବ ସେ ନିଜକୁ **ପ୍ରଭବ, ପ୍ରଳୟ** ଓ **ସ୍ଥାନ** ବୋଲି କହିଛନ୍ତି।

**ପ୍ରଶ୍ନ –** **ନିଧାନମ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁଥିରେ କୌଣସି ବସ୍ତୁକୁ ବହୁତ ଦିନଯାଏ ରଖାଯାଏ, ତାହାକୁ **ନିଧାନ** କହନ୍ତି। ମହାପ୍ରଳୟରେ ସମସ୍ତ ପ୍ରାଣୀମାନଙ୍କ ସହିତ ଅବ୍ୟକ୍ତ ପ୍ରକୃତି ଭଗବାନଙ୍କର କୌଣସି ଏକ ଅଂଶରେ ନ୍ୟାସଭୂତ ହୋଇ ବହୁକାଳପର୍ଯ୍ୟନ୍ତ ଅକ୍ରିୟ ଅବସ୍ଥାରେ ରହେ। ଏଣୁ ଭଗବାନ୍ ନିଜକୁ **ନିଧାନ** ବୋଲି କହିଛନ୍ତି।

**ପ୍ରଶ୍ନ –** **ଅବ୍ୟୟମ୍** ବିଶେଷଣସହିତ **ବୀଜମ୍** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଯାହାର କେବେ ବି ନାଶ ହୁଏ ନାହିଁ, ତାହାକୁ **ଅବ୍ୟୟ** କହନ୍ତି। ଭଗବାନ୍ ହେଉଛନ୍ତି ସମସ୍ତ ଚରାଚର ଜୀବ ଓ ପ୍ରାଣୀଙ୍କର ଅବିନାଶୀ କାରଣ। ସମସ୍ତଙ୍କର ଉତ୍ପତ୍ତି ତାଙ୍କରି ଠାରୁ ହୁଏ। ସେ ହିଁ ସମସ୍ତଙ୍କର ପରମ ଆଧାର। ତେଣୁ ତାହାଙ୍କୁ **ଅବ୍ୟୟ ବୀଜ** ବୋଲି କୁହାଯାଇଛି। ସପ୍ତମ ଅଧ୍ୟାୟର ଦଶମ ଶ୍ଲୋକରେ ତାହାଙ୍କୁ 'ସନାତନ ବୀଜ' ଓ ଦଶମ ଅଧ୍ୟାୟର ଅଣଚାଳିଶ ଶ୍ଲୋକରେ 'ସକଳ ପ୍ରାଣୀଙ୍କର ବୀଜ' ବୋଲି କୁହାଯାଇଛି।

**ପ୍ରଶ୍ନ –** ଏହି ଶ୍ଲୋକରେ ଭଗବାନ୍ ଥରେ ମଧ୍ୟ **ଅହମ୍** ପଦ ପ୍ରୟୋଗ କରି ନାହାନ୍ତି; ଏହାର କାରଣ କଣ ?

**ଉତ୍ତର –** ଅନ୍ୟ ଶ୍ଲୋକରେ ଆସିଥିବା କ୍ରତୁ, ଯଜ୍ଞ, ସ୍ୱଧା, ଔଷଧ, ମନ୍ତ୍ର, ଘୃତ, ଅଗ୍ନି, ଯଜ୍ଞ ଆଦି ବହୁ ଶବ୍ଦ ସ୍ୱଭାବତଃ ଭଗବାନଙ୍କ ଠାରୁ ଭିନ୍ନ ବସ୍ତୁମାନଙ୍କର ବାଚକ। ଅତଏବ ସେହି ବସ୍ତୁମାନଙ୍କୁ ନିଜର ରୂପ ବୋଲି କହିବାପାଇଁ ଭଗବାନ୍ ସେସବୁ ସହିତ **ଅହମ୍** ପଦ ପ୍ରୟୋଗ କରିଛନ୍ତି। କିନ୍ତୁ ଏହି ଶ୍ଲୋକରେ ଯେତେ ବି ଶବ୍ଦ ଆସିଛି, ସେସବୁ ଭଗବାନଙ୍କର ବିଶେଷଣ। ଏହା ବ୍ୟତୀତ ପୂର୍ବଶ୍ଲୋକରେ ଆସିଥିବା 'ଅହମ୍' ସହିତ ଏହି ଶ୍ଲୋକର ଅନ୍ୱୟ ରହିଛି। ଏଣୁ ଏଥିରେ **ଅହମ୍** ପଦ ପ୍ରୟୋଗର ଆବଶ୍ୟକତା ନାହିଁ।

## ତପାମ୍ୟହମହଂ ବର୍ଷଂ ନିଗୃହ୍ଣାମ୍ୟୁତ୍ସୃଜାମି ଚ।
## ଅମୃତଂ ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ।। ୧୯ ।।

**ଅନ୍ୱୟ –** **ଅହମ୍** = ମୁଁ (ହିଁ); **ତପାମି** = ସୂର୍ଯ୍ୟରୂପରେ ଉତ୍ତାପ ପ୍ରଦାନ କରେ; **ବର୍ଷମ୍** = ବର୍ଷାକୁ; **ନିଗୃହ୍ଣାମି** = ଆକର୍ଷଣ କରେ; **ଚ** = ଏବଂ (ତାହାକୁ); **ଉତ୍ସୃଜାମି** = ବର୍ଷଣ କରେ; **ଅର୍ଜୁନ** = ହେ ଅର୍ଜୁନ; **ଅହମ୍** = ମୁଁ **ଏବ** = ହିଁ; **ଅମୃତମ୍** = ଅମୃତ; **ଚ** = ଓ; **ମୃତ୍ୟୁଃ** = ମୃତ୍ୟୁ (ଅଟେ); **ଚ** = ତଥା; **ସତ୍-ଅସତ୍** = ସତ୍-ଅସତ୍; **ଚ** = ମଧ୍ୟ; **ଅହମ୍** = ମୁଁ ହିଁ ଅଟେ।

**ମୁଁ ହିଁ ସୂର୍ଯ୍ୟରୂପରେ ଉତ୍ତାପ ପ୍ରଦାନ କରେ; ମୁଁ ବର୍ଷାକୁ ଆକର୍ଷଣ କରେ ଏବଂ ବର୍ଷା କରେ। ହେ ଅର୍ଜୁନ! ମୁଁ ହିଁ ଅମୃତ ଏବଂ ମୃତ୍ୟୁ ତଥା ସତ୍-ଅସତ୍ ମଧ୍ୟ ମୁଁ ହିଁ ଅଟେ।। ୧୯ ।।**

**ପ୍ରଶ୍ନ –** 'ମୁଁ ସୂର୍ଯ୍ୟରୂପରେ ଉତ୍ତାପ ଦେଉଛି, ବର୍ଷାକୁ ଆକର୍ଷଣ କରୁଛି ଏବଂ ବର୍ଷା କରୁଛି' – ଏହି ଉକ୍ତିର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ଭଗବାନ୍ ଯେଉଁ ଭାବ ପ୍ରକାଶ କରୁଛନ୍ତି, ତାହା ହେଲା – ''ନିଜର କିରଣଦ୍ୱାରା ସମଗ୍ର ଜଗତକୁ ଉଷ୍ଣତା ଓ ଆଲୋକ ପ୍ରଦାନ କରୁଥିବା ତଥା ସମୁଦ୍ର ଆଦି ସ୍ଥାନରୁ ଜଳକୁ ବାଷ୍ପ କରି, ଉପରକୁ ଉଠାଇ ଉପରେ ରଖୁଥିବା ତଥା ତାହାକୁ ଲୋକମାନଙ୍କ ହିତଦୃଷ୍ଟିରୁ ମେଘମାନଙ୍କ ଦ୍ୱାରା ଯଥାସମୟରେ ଯଥାଯୋଗ୍ୟ ବିତରଣ କରୁଥିବା ସୂର୍ଯ୍ୟ ମଧ୍ୟ ମୋର ହିଁ ସ୍ୱରୂପ ଅଟନ୍ତି।''

**ପ୍ରଶ୍ନ –** ଅମୃତମ୍ ପଦର ଅଭିପ୍ରାୟ କଣ ?

**ଉତ୍ତର –** ଯାହା ପାନ କଲେ ମନୁଷ୍ୟ ମୃତ୍ୟୁର ବଶ ନ ହୋଇ ଅମର ହୋଇଯାଏ, ତାହାକୁ **ଅମୃତ** କହନ୍ତି। ଦେବଲୋକର ଯେଉଁ ଅମୃତ କଥା କୁହାଯାଏ, ତାହା ପାନ କରି ଯଦ୍ୟପି ଦେବତାମାନଙ୍କର ମରଣ ମର୍ତ୍ତ୍ୟ ଜୀବମାନଙ୍କ ପରି ହୁଏ ନାହିଁ; ଏମାନଙ୍କ ଠାରୁ ଅତ୍ୟନ୍ତ ବିଲକ୍ଷଣ ହୋଇଥାଏ, ତଥାପି ଏହା ନୁହେଁ ଯେ, ସେହି ଅମୃତ ପାନ କଲେ କାହାର କଦାପି ନାଶ ହେବ ନାହିଁ। ଏପରି ପରମ ଅମୃତ ତ କେବଳ ଭଗବାନ୍ ହିଁ ଅଟନ୍ତି, ଯାହାଙ୍କୁ ପାଇଲା ପରେ ମନୁଷ୍ୟ ଚିରଦିନପାଇଁ ମୃତ୍ୟୁପାଶରୁ ମୁକ୍ତ ହୋଇଯାଏ। ତେଣୁ ଭଗବାନ୍ ନିଜକୁ **ଅମୃତ** କହିଛନ୍ତି; ଏଣୁ ମୁକ୍ତିକୁ ମଧ୍ୟ ଅମୃତ କହନ୍ତି।

**ପ୍ରଶ୍ନ – ମୃତ୍ୟୁଃ** ପଦ କାହାର ବାଚକ ଏବଂ ଭଗବାନ୍ ତାହାକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସମସ୍ତଙ୍କର ବିନାଶକାରୀ 'କାଳ'କୁ **ମୃତ୍ୟୁ** କହନ୍ତି। ସୃଷ୍ଟିଲୀଳାକୁ ସୁଚାରୁରୂପେ ଚାଲୁରଖିବାରେ ସର୍ଗ ଓ ସଂହାର — ଉଭୟର ପରମ ଆବଶ୍ୟକତା ରହିଛି ଏବଂ ଏ ଦୁଇଟିଯାକ କାର୍ଯ୍ୟ ଲୀଳାମୟ ଭଗବାନ୍ ହିଁ କରନ୍ତି। ସେ ହିଁ ଯଥାସମୟରେ ଲୋକମାନଙ୍କୁ ସଂହାର କରିବାପାଇଁ ମହାକାଳରୂପ ଧାରଣ କରିଥାଆନ୍ତି। ଭଗବାନ୍ ସ୍ୱୟଂ କହିଛନ୍ତି, ''ମୁଁ ଲୋକମାନଙ୍କୁ କ୍ଷୟ କରୁଥିବା ପ୍ରବୃଦ୍ଧ ମହାକାଳ ଅଟେ (୧୧/୩୨)।'' ତେଣୁ ଭଗବାନ୍ **ମୃତ୍ୟୁ**କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ – ସତ୍** ଓ **ଅସତ୍** ପଦ କାହାର ବାଚକ ଏବଂ ତାହାକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯାହାର ଅଭାବ କେବେ ହେଲେ ହୁଏ ନାହିଁ, ସେହି ଅବିନାଶୀ ଆତ୍ମାକୁ **ସତ୍** କହନ୍ତି ଏବଂ ସକଳ ନାଶବାନ୍ ଅନିତ୍ୟ ବସ୍ତୁ **ଅସତ୍**। ଏହି ଦୁଇଟିକୁ ପନ୍ଦର ଅଧ୍ୟାୟରେ **ଅକ୍ଷର** ଓ **କ୍ଷର** ପୁରୁଷ ବୋଲି କୁହାଯାଇଛି। ଏ ଦୁଇଟି ହିଁ ଭଗବାନଙ୍କର 'ପରା' ଓ 'ଅପରା' ପ୍ରକୃତି ଏବଂ ଏ ଦୁଇ ପ୍ରକୃତି ଭଗବାନଙ୍କ ଠାରୁ ଅଭିନ୍ନ। ଅତଏବ ଭଗବାନ୍ **ସତ୍** ଓ **ଅସତ୍**କୁ ତାଙ୍କର ସ୍ୱରୂପ ବୋଲି କହିଛନ୍ତି।

**ସମ୍ବନ୍ଧ –** *ତେରଠାରୁ ପନ୍ଦର ଶ୍ଳୋକଯାଏ ନିଜର ସଗୁଣ-ନିର୍ଗୁଣ ଓ ବିରାଟରୂପର ବିଭିନ୍ନ ଉପାସନାର ବର୍ଣ୍ଣନା କରିବା ପରେ ଭଗବାନ୍ ଉଣେଇଶ ଶ୍ଳୋକପର୍ଯ୍ୟନ୍ତ ସମସ୍ତ ବିଶ୍ୱକୁ ତାଙ୍କର ସ୍ୱରୂପ ବୋଲି କହିଲେ। ସମସ୍ତ ବିଶ୍ୱ ତାଙ୍କର ହିଁ ସ୍ୱରୂପ ହୋଇଥିବାରୁ ଇନ୍ଦ୍ରାଦି ଅନ୍ୟ ଦେବତାମାନଙ୍କର ଉପାସନା ମଧ୍ୟ ପ୍ରକାରାନ୍ତରେ ତାଙ୍କର ହିଁ ଉପାସନା। କିନ୍ତୁ ଏପରି ନ ଜାଣି ଫଳାସକ୍ତିପୂର୍ବକ ପୃଥକ୍ ପୃଥକ୍ଭାବରେ ଉପାସନା କରୁଥିବା ମନୁଷ୍ୟମାନେ ଭଗବାନଙ୍କୁ ପାଇପାରନ୍ତି ନାହିଁ। ସେମାନଙ୍କୁ ବିନାଶଶୀଳ ଫଳ ମିଳିଥାଏ। ଏହି କଥାଟି ବୁଝାଇଦେବାକୁ ଏବେ ଦୁଇଟି ଶ୍ଳୋକରେ ଭଗବାନ୍ ଫଳସହିତ ସେହି ଉପାସନାର ବର୍ଣ୍ଣନା କରୁଛନ୍ତି–*

**ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା**
**ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।**
**ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ-**
**ମଶ୍ନନ୍ତି ଦିବ୍ୟାନ୍ ଦିବି ଦେବଭୋଗାନ୍ ॥ ୨୦ ॥**

**ଅନ୍ୱୟ –** ତ୍ରୈବିଦ୍ୟାଃ = ତିନିବେଦରେ ବିଧାନ କରାଯାଇଥିବା ସକାମକର୍ମକାରୀ; **ସୋମପାଃ** = (ଯଜ୍ଞର) ସୋମରସ ପାନ କରୁଥିବା; **ପୂତପାପାଃ** = ନିଷ୍ପାପ ପୁରୁଷମାନେ; **ମାମ୍** = ମୋତେ; **ଯଜ୍ଞୈଃ** = ଯଜ୍ଞମାନଙ୍କ ଦ୍ୱାରା; **ଇଷ୍ଟ୍ୱା** = ପୂଜା କରି; **ସ୍ୱର୍ଗତିମ୍** = ସ୍ୱର୍ଗପ୍ରାପ୍ତି; **ପ୍ରାର୍ଥୟନ୍ତେ** = ଚାହାଁନ୍ତି; **ତେ** = ସେମାନେ; **ପୁଣ୍ୟମ୍** = ସେମାନଙ୍କ ପୁଣ୍ୟର ଫଳସ୍ୱରୂପ; **ସୁରେନ୍ଦ୍ରଲୋକମ୍** = ସ୍ୱର୍ଗଲୋକକୁ; **ଆସାଦ୍ୟ** = ପାଇ; **ଦିବି** = ସ୍ୱର୍ଗରେ; **ଦିବ୍ୟାନ୍** = ଦିବ୍ୟ; **ଦେବଭୋଗାନ୍** = ଦେବତାମାନଙ୍କର ସୁଖଭୋଗମାନ; **ଅଶ୍ନନ୍ତି** = ଭୋଗ କରନ୍ତି ।

**ତିନି ବେଦରେ ବିଧାନ କରାଯାଇଥିବା ସକାମକର୍ମକାରୀ, (ଯଜ୍ଞର) ସୋମରସ ପାନ କରୁଥିବା ନିଷ୍ପାପ ପୁରୁଷମାନେ ମୋତେ ଯଜ୍ଞମାନଙ୍କ ଦ୍ୱାରା ପୂଜା କରି ସ୍ୱର୍ଗପ୍ରାପ୍ତି ଚାହାଁନ୍ତି । ସେମାନେ ନିଜ ପୁଣ୍ୟମାନଙ୍କର ଫଳସ୍ୱରୂପ ସ୍ୱର୍ଗଲୋକକୁ ପାଇ ସ୍ୱର୍ଗରେ ଦେବତାମାନଙ୍କର ଦିବ୍ୟ ଭୋଗମାନ ଉପଭୋଗ କରନ୍ତି ॥ ୨୦ ॥**

**ପ୍ରଶ୍ନ –ତ୍ରୈବିଦ୍ୟାଃ, ସୋମପାଃ** ଏବଂ **ପୂତପାପାଃ** ଏହି ତିନୋଟି ପଦର ଅର୍ଥ କଣ ତଥା ଏସବୁ କେଉଁ ଶ୍ରେଣୀର ମନୁଷ୍ୟମାନଙ୍କର ବିଶେଷଣ ?

**ଉତ୍ତର –** ଋକ୍, ଯଜୁ ଓ ସାମ– ଏହି ତିନି ବେଦକୁ 'ବେଦତ୍ରୟୀ' ଅଥବା **ତ୍ରିବିଦ୍ୟା** କହନ୍ତି । ଏହି ତିନି ବେଦରେ ବର୍ଣ୍ଣିତ ନାନାପ୍ରକାର ଯଜ୍ଞବିଧି ଓ ତାହାର ଫଳରେ ଶ୍ରଦ୍ଧା-ପ୍ରେମ ରଖୁଥିବା ତଥା ସେହି ଅନୁସାରେ ସକାମକର୍ମ କରୁଥିବା ମନୁଷ୍ୟମାନଙ୍କୁ **ତ୍ରୈବିଦ୍ୟ** କହନ୍ତି । ଯଜ୍ଞମାନଙ୍କରେ ସୋମଲତାର ରସପାନ କରିବାର ଯେଉଁ ବିଧି କୁହାଯାଇଛି, ସେହି ବିଧିରେ ସୋମଲତାର ରସ ପାନ କରୁଥିବା ମନୁଷ୍ୟମାନଙ୍କୁ **ସୋମପା** କହନ୍ତି । ଉପରୋକ୍ତ ବେଦୋକ୍ତ କର୍ମମାନଙ୍କୁ ବିଧିପୂର୍ବକ ଅନୁଷ୍ଠାନ କରିବାଦ୍ୱାରା ଯେଉଁମାନଙ୍କର ସ୍ୱର୍ଗପ୍ରାପ୍ତିର ପ୍ରତିବନ୍ଧକରୂପ ପାପ ନଷ୍ଟ ହୋଇଯାଇଛି, ସେମାନଙ୍କୁ **ପୂତପାପ** କହନ୍ତି । ଯେଉଁମାନେ ଭଗବାନଙ୍କର ସର୍ବରୂପତା ବିଷୟରେ ଅନଭିଜ୍ଞ ଏବଂ ବେଦୋକ୍ତ କର୍ମକାଣ୍ଡରେ ପ୍ରେମ ଓ ଶ୍ରଦ୍ଧା ରଖି ପାପକର୍ମରୁ ନିବୃତ୍ତ ହୋଇ ସକାମଭାବରେ ଯଜ୍ଞାଦି କର୍ମ ବିଧିପୂର୍ବକ ଅନୁଷ୍ଠାନ କରୁଥାଆନ୍ତି, ଏହି ତିନୋଟି ବିଶେଷଣ ସେହି ଶ୍ରେଣୀର ମନୁଷ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ ।

**ପ୍ରଶ୍ନ – ପୂତପାପାଃ**ର ଅର୍ଥ ଯଦି 'ଯେଉଁମାନଙ୍କର ସକଳ ପାପ ଧୋଇ ହୋଇଗଲାଣି, ସେମାନେ' ବୋଲି ଧରାଯାଏ, ତେବେ ହାନି କଣ ?

**ଉତ୍ତର –** ପରବର୍ତ୍ତୀ ଶ୍ଳୋକରେ 'ପୁଣ୍ୟକ୍ଷୟ ହୋଇଯିବା ପରେ ସେମାନଙ୍କୁ ପୁନଃ ମୃତ୍ୟୁଲୋକକୁ ଫେରିଆସିବାକୁ ହୁଏ' ବୋଲି କୁହାଯାଇଛି । ଯଦି ସେମାନଙ୍କର ସମସ୍ତ ପାପ ସର୍ବଥା ନଷ୍ଟ ହୋଇଯାଇଥାଆନ୍ତା, ତେବେ ପୁଣ୍ୟକର୍ମମାନଙ୍କର କ୍ଷୟ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ମୁକ୍ତି ହୋଇଯିବା ଉଚିତ ଥିଲା । ଯଦି ପାପ ଓ ପୁଣ୍ୟ ଉଭୟର ଅଭାବ ହେଲା, ତେବେ ତ ପୁଣି ଜନ୍ମ ହେବାରେ କୌଣସି କାରଣ ବି ରହିଲା ନାହିଁ । ଏପରି ଅବସ୍ଥାରେ ପୁନରାଗମନର ପ୍ରଶ୍ନ ହିଁ ଉଠିବା ଉଚିତ ନ ଥିଲା । କିନ୍ତୁ ସେମାନଙ୍କର ପୁନରାଗମନ ହୁଏ । ଏଣୁ, ଯେପରି ଅର୍ଥ କରାଯାଇଛି, ତାହା ଠିକ୍ ।

**ପ୍ରଶ୍ନ –** ଏଠାରେ **ମାମ୍** ପଦ କେଉଁମାନଙ୍କ ବାଚକ ଓ ସେମାନଙ୍କୁ 'ଯଜ୍ଞଦ୍ୱାରା ପୂଜା କରିବା' କଣ ?

**ଉତ୍ତର –** ଏଠାରେ ମାମ୍ ପଦଟି ଭଗବାନଙ୍କର ଅଙ୍ଗୀଭୂତ ଇନ୍ଦ୍ରାଦି ଦେବତାମାନଙ୍କର ବାଚକ । ଶାସ୍ତ୍ରବିଧି ଅନୁସାରେ ଶ୍ରଦ୍ଧାପୂର୍ବକ ଯଜ୍ଞ ଓ ପୂଜା ଆଦିଦ୍ୱାରା ଭିନ୍ନ ଭିନ୍ନ ଦେବତାଙ୍କର ପୂଜା କରିବା ହିଁ ଭଗବାନଙ୍କୁ ଯଜ୍ଞଦ୍ୱାରା ପୂଜିବା । ଏଠାରେ ଭଗବାନଙ୍କର ଏହି ଉକ୍ତିର ଭାବ ଏହି ଯେ, ଇନ୍ଦ୍ରାଦି ଦେବଗଣ ଭଗବାନଙ୍କର ଅଙ୍ଗୀଭୂତ

ହୋଇଥିବାରୁ, ସେମାନଙ୍କର ପୂଜନ ମଧ୍ୟ ପ୍ରକାରାନ୍ତରେ ଭଗବାନଙ୍କର ହିଁ ପୂଜନ। କିନ୍ତୁ ଅଜ୍ଞାନବଶତଃ ସକାମ ମନୁଷ୍ୟମାନେ ଏହି ତତ୍ତ୍ୱ ବୁଝିପାରନ୍ତି ନାହିଁ। ତେଣୁ ସେମାନଙ୍କୁ ଭଗବତ୍‌ପ୍ରାପ୍ତି ହୁଏ ନାହିଁ।

**ପ୍ରଶ୍ନ –** **ସ୍ୱର୍ଗତିମ୍** ପଦ କାହାର ବାଚକ ? ତା'ପାଇଁ ପ୍ରାର୍ଥନା କରିବା କଣ ?

**ଉତ୍ତର –** ସ୍ୱର୍ଗପ୍ରାପ୍ତିକୁ **ସ୍ୱର୍ଗତି** କହନ୍ତି। ଉପରୋକ୍ତ ବେଦବିହିତ କର୍ମମାନଙ୍କ ଦ୍ୱାରା ଦେବତାମାନଙ୍କର ପୂଜା କରି ସେମାନଙ୍କୁ ସ୍ୱର୍ଗପ୍ରାପ୍ତି ପ୍ରାର୍ଥନା କରିବା ହିଁ ତା'ପାଇଁ ପ୍ରାର୍ଥନା କରିବା।

**ପ୍ରଶ୍ନ –** **ପୁଣ୍ୟମ୍** ବିଶେଷଣ ସହିତ **ସୁରେନ୍ଦ୍ରଲୋକମ୍** ପଦ କେଉଁ ଲୋକକୁ ଲକ୍ଷ୍ୟ କରି କୁହାଯାଇଛି ଏବଂ ସେଠାରେ ଦେବତାମାନଙ୍କର ଦିବ୍ୟ ଭୋଗମାନ ଭୁଞ୍ଜିବାର ଅର୍ଥ କଣ ?

**ଉତ୍ତର –** ଯଜ୍ଞାଦି ପୁଣ୍ୟକର୍ମର ଫଳରୂପେ ପ୍ରାପ୍ତ ହେଉଥିବା ଇନ୍ଦ୍ରଲୋକଠାରୁ ବ୍ରହ୍ମଲୋକପର୍ଯ୍ୟନ୍ତ ଯେତେସବୁ ଲୋକ ରହିଛି, ସେସବୁକୁ ଲକ୍ଷ୍ୟ କରି ଏଠାରେ **ପୁଣ୍ୟମ୍** ବିଶେଷଣ ସହିତ **ସୁରେନ୍ଦ୍ରଲୋକମ୍** ପଦ ପ୍ରୟୋଗ କରାଯାଇଛି। ଅତଏବ **ସୁରେନ୍ଦ୍ରଲୋକମ୍** ପଦ ଇନ୍ଦ୍ରଲୋକର ବାଚକ ହେଲେ ମଧ୍ୟ ତାହାକୁ ଉପରୋକ୍ତ ସମସ୍ତ ଲୋକର ବାଚକ ବୋଲି ବୁଝିବା ଉଚିତ। ନିଜ ନିଜର ପୁଣ୍ୟକର୍ମ ଅନୁସାରେ ସେସବୁ ଲୋକକୁ ଯାଇ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ମନୁଷ୍ୟଲୋକପାଇଁ ଦୁର୍ଲଭ ତେଜୋମୟ ଏବଂ ବିଲକ୍ଷଣ ଦେବଭୋଗ ଭୋଗ କରିବାକୁ 'ଦେବତାମାନଙ୍କର ଦିବ୍ୟ ଭୋଗ ଭୁଞ୍ଜିବା' କୁହାଯାଏ।

## ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଲଂ
## କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।
## ଏବଂ ତ୍ରୟୀଧର୍ମମନୁପ୍ରପନ୍ନା
## ଗତାଗତଂ କାମକାମା ଲଭନ୍ତେ ।। ୨୧ ।।

**ଅନ୍ୱୟ –** ତେ = ସେମାନେ; ତମ୍ = ସେହି; **ବିଶାଳମ୍** = ବିଶାଳ; **ସ୍ୱର୍ଗଲୋକମ୍** = ସ୍ୱର୍ଗଲୋକକୁ; **ଭୁକ୍ତ୍ୱା** = ଭୋଗ କରି; **ପୁଣ୍ୟେ** = ପୁଣ୍ୟ; **କ୍ଷୀଣେ** = କ୍ଷୀଣ ହୋଇଯିବା ପରେ; **ମର୍ତ୍ତ୍ୟଲୋକମ୍** = ମୃତ୍ୟୁଲୋକକୁ; **ବିଶନ୍ତି** = ପ୍ରାପ୍ତ ହୁଅନ୍ତି; **ଏବମ୍** = ଏହିପରି (ସ୍ୱର୍ଗପ୍ରାପ୍ତିର ସାଧନରୂପକ); **ତ୍ରୟୀଧର୍ମମ୍** = ତିନିବେଦରେ କୁହାଯାଇଥିବା ସକାମ କର୍ମର; **ଅନୁପ୍ରପନ୍ନାଃ** = ଆଶ୍ରୟ ନେଇଥିବା (ଓ); **କାମକାମାଃ** = ବିଭିନ୍ନ ଭୋଗ କାମନା କରୁଥିବା ପୁରୁଷମାନେ; **ଗତାଗତମ୍** = ବାରମ୍ବାର ଗମନାଗମନକୁ; **ଲଭନ୍ତେ** = ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ପୁଣ୍ୟବଳରେ ସ୍ୱର୍ଗକୁ ଯାଆନ୍ତି ଓ ପୁଣ୍ୟ କ୍ଷୀଣ ହୋଇଗଲେ ମୃତ୍ୟୁଲୋକକୁ ଫେରିଆସନ୍ତି।

**ସେମାନେ ସେହି ବିଶାଳ ସ୍ୱର୍ଗଲୋକ ଭୋଗ କରି ପୁଣ୍ୟ କ୍ଷୀଣ ହୋଇଯିବା ପରେ ମୃତ୍ୟୁଲୋକକୁ ପ୍ରାପ୍ତ ହୁଅନ୍ତି। ଏହିପରି ସ୍ୱର୍ଗପ୍ରାପ୍ତିର ସାଧନରୂପକ ତିନି ବେଦରେ କୁହାଯାଇଥିବା ସକାମ କର୍ମର ଆଶ୍ରୟ ନେଇଥିବା ଏବଂ ନାନାଭୋଗ କାମନା କରୁଥିବା ପୁରୁଷମାନେ ବାରମ୍ବାର ଗମନାଗମନ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ପୁଣ୍ୟବଳରେ ସ୍ୱର୍ଗକୁ ଯାଆନ୍ତି ଏବଂ ପୁଣ୍ୟ କ୍ଷୀଣ ହୋଇଗଲେ ମୃତ୍ୟୁଲୋକକୁ ଫେରିଆସନ୍ତି।। ୨୧ ।।**

**ପ୍ରଶ୍ନ –** ସ୍ୱର୍ଗଲୋକକୁ ବିଶାଳ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସ୍ୱର୍ଗାଦି ଲୋକମାନଙ୍କ ବିସ୍ତାରର, ସେଠାର ଭୋଗ୍ୟବସ୍ତୁମାନଙ୍କର, ଭୋଗପ୍ରକାରମାନଙ୍କର, ଭୋଗ୍ୟବସ୍ତୁମାନଙ୍କ ସୁଖରୂପତାର ଏବଂ ଭୋଗଯୋଗ୍ୟ ମାନସିକ ତଥା ଶାରୀରିକ ଶକ୍ତିର ଓ ପରମାୟୁ ଆଦିର ପରିମାଣ ମୃତ୍ୟୁଲୋକ ତୁଳନାରେ ବହୁତ ଅଧିକ ଓ ମହାନ୍। ତେଣୁ ତାହାକୁ **ବିଶାଳ** ବୋଲି କୁହାଯାଇଛି।

**ପ୍ରଶ୍ନ –** ପୁଣ୍ୟକ୍ଷୟ ହେବା ଓ ମୃତ୍ୟୁଲୋକ ପ୍ରାପ୍ତ ହେବା କଣ ?

**ଉତ୍ତର –** ଯେଉଁ ପୁଣ୍ୟକର୍ମମାନଙ୍କର ଫଳ ଭୋଗିବାପାଇଁ ଜୀବକୁ ସ୍ୱର୍ଗଲୋକପ୍ରାପ୍ତି ହୋଇଥାଏ,

ସେହି ପୁଣ୍ୟକର୍ମମାନଙ୍କ ଫଳଭୋଗ ସମାପ୍ତ ହୋଇଯିବା ହିଁ 'ପୁଣ୍ୟର କ୍ଷୟ ହୋଇଯିବା'। ଏବଂ ସେହି ସ୍ୱର୍ଗବିଷୟକ ପୁଣ୍ୟଫଳ ସମାପ୍ତ ହେବାମାତ୍ରେ ଅବଶିଷ୍ଟ ପୁଣ୍ୟ-ପାପର ଫଳଭୋଗ କରିବାକୁ ପୁନଃ ମୃତ୍ୟୁଲୋକକୁ ଖସିପଡ଼ିବା ହିଁ 'ମୃତ୍ୟୁଲୋକ ପ୍ରାପ୍ତ ହେବା'।

**ପ୍ରଶ୍ନ – ତ୍ରୟୀଧର୍ମମ୍** ପଦ କେଉଁ ଧର୍ମର ବାଚକ ଏବଂ ତାହାର ଆଶ୍ରୟ ନେବା କଣ ?

**ଉତ୍ତର –** ଋକ୍, ଯଜୁଃ ଓ ସାମ – ଏହି ତିନି ବେଦରେ ସ୍ୱର୍ଗପ୍ରାପ୍ତିର ଯେଉଁ ଉପାୟଭୂତ ଧର୍ମମାନ କୁହାଯାଇଛି, **ତ୍ରୟୀଧର୍ମମ୍** ପଦଟି ହେଉଛି ସେସବୁର ବାଚକ। ସ୍ୱର୍ଗପ୍ରାପ୍ତିର ସାଧନରୂପକ ସେହିସବୁ ଧର୍ମ ଯଥାବିଧି ପାଳନ କରିବା ଓ ସ୍ୱର୍ଗସୁଖକୁ ହିଁ ସର୍ବଶ୍ରେଷ୍ଠ ପ୍ରାପ୍ୟ ବସ୍ତୁ ବୋଲି ମାନିବା ହିଁ 'ତ୍ରୟୀଧର୍ମ'ର ଆଶ୍ରୟ ନେବା।

ଭଗବାନଙ୍କର ସ୍ୱରୂପତତ୍ତ୍ୱକୁ ନ ଜାଣିଥିବା ସକାମ ମନୁଷ୍ୟମାନେ ଅନନ୍ୟ ଚିତ୍ତରେ ଭଗବାନଙ୍କର ଶରଣ ଗ୍ରହଣ କରନ୍ତି ନାହିଁ। ଭୋଗକାମନାର ବଶବର୍ତ୍ତୀ ହୋଇ ସେମାନେ ଉପରୋକ୍ତ ଧର୍ମର ଆଶ୍ରୟ ନିଅନ୍ତି। ଏହି କାରଣରୁ ହିଁ ସେମାନଙ୍କ କର୍ମଫଳ ଅନିତ୍ୟ ହୁଏ ଏବଂ ସେଥିପାଇଁ ସେମାନଙ୍କୁ ପୁନର୍ବାର ମର୍ତ୍ତ୍ୟଲୋକକୁ ଫେରିବାକୁ ପଡ଼େ। କିନ୍ତୁ ଯେଉଁ ପୁରୁଷମାନେ ସ୍ୱର୍ଗସୁଖପ୍ରଦାୟକ ଏହିସବୁ ଧର୍ମର ଆଶ୍ରୟ ଛାଡ଼ି ଏକମାତ୍ର ଭଗବାନଙ୍କର ହିଁ ଶରଣାଗତ ହୋଇଯାଆନ୍ତି, ସେମାନେ ସାକ୍ଷାତ୍ ଭଗବାନଙ୍କୁ ପାଇ ସମସ୍ତ ବନ୍ଧନରୁ ସର୍ବଥା ମୁକ୍ତ ହୋଇଯାଆନ୍ତି। ଅତଏବ ସେହି କୃତକୃତ୍ୟ ମନୁଷ୍ୟମାନଙ୍କର ଆଉ ଏହି ଜଗତରେ ଜନ୍ମ ହୁଏ ନାହିଁ।

**ପ୍ରଶ୍ନ – କାମକାମାଃ** ପଦର ଅର୍ଥ କଣ ? ଏହା କେଉଁ ପୁରୁଷମାନଙ୍କର ବିଶେଷଣ ତଥା ବାରମ୍ବାର ଗମନାଗମନ ପ୍ରାପ୍ତ ହେବା କହିଲେ କଣ ବୁଝାଏ ?

**ଉତ୍ତର –** ସାଂସାରିକ ଭୋଗମାନଙ୍କର ନାମ **କାମ**। ଏବଂ ସେସବୁ ଭୋଗ କାମନା କରୁଥିବା ମନୁଷ୍ୟମାନଙ୍କ ପାଇଁ **କାମକାମାଃ** ପଦ ପ୍ରୟୋଗ କରାଯାଇଛି। ଏହା ହେଉଛି ଉପରୋକ୍ତ ସ୍ୱର୍ଗପ୍ରାପ୍ତିର ସାଧନରୂପକ ବେଦବିହିତ ସକାମକର୍ମ ଓ ଉପାସନା କରୁଥିବା ମନୁଷ୍ୟମାନଙ୍କର ବିଶେଷଣ। ନିଜ କର୍ମର ଫଳ ଭୋଗିବାକୁ ଏପରି ମନୁଷ୍ୟମାନଙ୍କର ବାରମ୍ବାର ଉଚ୍ଚ ଓ ନୀଚ ଲୋକମାନଙ୍କରେ ଘୂରିବୁଲିବା ହିଁ ବାରମ୍ବାର ଗମନାଗମନ ପ୍ରାପ୍ତ ହେବା।

*ସମ୍ବନ୍ଧ –* *ପୂର୍ବରୁ ଦୁଇ ଶ୍ଳୋକରେ ଯଜ୍ଞଦ୍ୱାରା ଦେବତାମାନଙ୍କୁ ପୂଜା କରୁଥିବା ସକାମ ମନୁଷ୍ୟମାନଙ୍କ ଦେବପୂଜନର ଫଳ ଗମନାଗମନ ବୋଲି ବୁଝାଇଦେଲେ। ବର୍ତ୍ତମାନ ସେମାନଙ୍କ ଠାରୁ ଭିନ୍ନ ନିଜର ଅନନ୍ୟପ୍ରେମୀ ନିଷ୍କାମ ଭକ୍ତମାନଙ୍କ ଉପାସନାର ଫଳସ୍ୱରୂପ ସେମାନଙ୍କର ଯୋଗକ୍ଷେମ ଭଗବାନ ସ୍ୱତଃ ବହନ କରନ୍ତି ବୋଲି କହୁଛନ୍ତି–*

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍॥ ୨୨ ॥**

**ଅନ୍ୱୟ –** ଯେ = ଯେଉଁ; ଅନନ୍ୟାଃ = ଅନନ୍ୟପ୍ରେମୀ; **ଜନାଃ** = ଭକ୍ତଜନମାନେ; ମାମ୍ = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ; **ଚିନ୍ତୟନ୍ତଃ** = ନିରନ୍ତର ଚିନ୍ତନ କରି କରି; **ପର୍ଯ୍ୟୁପାସତେ** = ନିଷ୍କାମଭାବରେ ଉପାସନା କରନ୍ତି; **ତେଷାମ୍** = ସେହି; **ନିତ୍ୟାଭିଯୁକ୍ତାନାମ୍** = ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ପୁରୁଷମାନଙ୍କର; **ଯୋଗକ୍ଷେମମ୍** = ଯୋଗକ୍ଷେମ; **ଅହମ୍** = ମୁଁ ସ୍ୱୟଂ; **ବହାମି** = ବହନ କରେ।

**ଯେଉଁ ଅନନ୍ୟପ୍ରେମୀ ଭକ୍ତଜନମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ନିରନ୍ତର ଚିନ୍ତନପୂର୍ବକ ନିଷ୍କାମଭାବରେ ଭଜନ କରନ୍ତି, ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ସେହି ପୁରୁଷମାନଙ୍କର ଯୋଗକ୍ଷେମ ମୁଁ ସ୍ୱୟଂ ବହନ କରେ॥ ୨୨ ॥**

**ପ୍ରଶ୍ନ –** ଅନନ୍ୟାଃ ପଦ କେଉଁପ୍ରକାର ଭକ୍ତମାନଙ୍କର ବିଶେଷଣ ?

**ଉତ୍ତର –** ଯେଉଁମାନଙ୍କର ପ୍ରେମ ସଂସାରର ସମସ୍ତ ଭୋଗରୁ ହଟି ଆସି କେବଳମାତ୍ର ଭଗବାନଙ୍କ ଠାରେ ହିଁ ଅଟଳ ଓ ଅଚଳ ହୋଇଗଲାଣି, ଯେଉଁମାନଙ୍କ ପାଇଁ ଭଗବାନଙ୍କର ବିୟୋଗ ଅସହ୍ୟ ହେଲାଣି, ଯେଉଁମାନଙ୍କର ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି ଉପାସ୍ୟ ଦେବତା ନାହାନ୍ତି ଏବଂ ଯେଉଁମାନେ ଭଗବାନଙ୍କୁ ହିଁ ପରମ

ଆଶ୍ରୟ, ପରମଗତି ଓ ପରମ ପ୍ରେମାସ୍ପଦ ବୋଲି ମାନନ୍ତି, **ଅନନ୍ୟାଃ** ପଦଟି ହେଉଛି ସେହିପରି ଅନନ୍ୟପ୍ରେମୀ ଏକନିଷ୍ଠ ଭକ୍ତମାନଙ୍କର ବିଶେଷଣ।

**ପ୍ରଶ୍ନ—** ଏଠାରେ **ମାମ୍** ପଦ କାହାର ବାଚକ? ଏବଂ ତାଙ୍କର 'ଚିନ୍ତନ କରିବାପୂର୍ବକ ନିଷ୍କାମଭାବରେ ଭଜନ କରିବା' କଣ?

**ଉତ୍ତର—** ଏଠାରେ **ମାମ୍** ପଦଟି ହେଉଛି ସଗୁଣ ଭଗବାନ୍ ପୁରୁଷୋତ୍ତମଙ୍କ ବାଚକ। ତାଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟ ବୁଝି ଚାଲିବା-ବୁଲିବାବେଳେ, ଉଠିବା-ବସିବାବେଳେ, ଶୋଇବା-ଚେଇଁବାବେଳେ ଏବଂ ଏକାନ୍ତରେ ସାଧନା କରିବାବେଳେ— ଏପରି ସବୁ ସମୟରେ ନିରନ୍ତର ଅବିଚ୍ଛିନ୍ନଭାବରେ ତାଙ୍କୁ ଚିନ୍ତନ କରି କରି, ତାଙ୍କ ଆଜ୍ଞାନୁସାରେ ନିଷ୍କାମଭାବରେ ତାଙ୍କର ହିଁ ପ୍ରସନ୍ନତାପାଇଁ ଚେଷ୍ଟା କରିଚାଲିବା ହିଁ ତାଙ୍କୁ 'ଚିନ୍ତନ କରିବାପୂର୍ବକ ଭଜନ କରିବା'।

**ପ୍ରଶ୍ନ—** ନିତ୍ୟ-ନିରନ୍ତର ଚିନ୍ତନ କରୁଥିବା ଭକ୍ତମାନଙ୍କର ଯୋଗକ୍ଷେମ ବହନ କରିବା କହିଲେ କଣ ବୁଝାଏ?

**ଉତ୍ତର—** ଅପ୍ରାପ୍ତବସ୍ତୁର ପ୍ରାପ୍ତିର ନାମ **ଯୋଗ** ଏବଂ ପ୍ରାପ୍ତବସ୍ତୁର ରକ୍ଷାର ନାମ **କ୍ଷେମ**। ଏଣୁ ଭଗବତ୍ପ୍ରାପ୍ତି ନିମନ୍ତେ ସେମାନଙ୍କ ପାଖରେ ଯେଉଁ ସାଧନ ରହିଛି, ତାହାକୁ ସବୁପ୍ରକାର ବାଧାବିଘ୍ନରୁ ରକ୍ଷା କରିବା ଏବଂ ଯେଉଁ ସାଧନର ଅଭାବ ରହିଛି, ତାହା ପୂର୍ଣ୍ଣ କରିଦେଇ ସ୍ୱୟଂ ସେମାନଙ୍କୁ ଭଗବତ୍ପ୍ରାପ୍ତି କରାଇଦେବା— ଏହା ହିଁ ସେହି ପ୍ରେମୀ ଭକ୍ତମାନଙ୍କର ଯୋଗକ୍ଷେମ ବହନ କରିବା। ଭକ୍ତ ପ୍ରହ୍ଲାଦଙ୍କର ଜୀବନ ହେଉଛି ଏହାର ଏକ ସୁନ୍ଦର ଉଦାହରଣ। ହିରଣ୍ୟକଶିପୁଦ୍ୱାରା ପ୍ରହ୍ଲାଦଙ୍କ ସାଧନାରେ ବଡ଼ ବଡ଼ ବିଘ୍ନ ଉପସ୍ଥିତ କରାଯାଇଥିଲେ ବି ଭଗବାନ୍ ତାଙ୍କୁ ସବୁପ୍ରକାରେ ରକ୍ଷା କରି ଶେଷରେ ନିଜ ପ୍ରାପ୍ତି କରାଇଦେଇଥିଲେ।

**ପ୍ରଶ୍ନ—** ଭଗବାନ୍ ଯେ ସାଧନାସମ୍ବନ୍ଧୀ ଯୋଗକ୍ଷେମ ବହନ କରନ୍ତି, ତାହା ତ ଠିକ୍, କିନ୍ତୁ ସେ କଣ ଜୀବନନିର୍ବାହ-ଉପଯୋଗୀ ଲୌକିକ ଯୋଗକ୍ଷେମ ମଧ୍ୟ ବହନ କରନ୍ତି?

**ଉତ୍ତର—** ଭଗବାନ୍ ଯେତେବେଳେ ସମଗ୍ର ବିଶ୍ୱର କି ଛୋଟ, କି ବଡ଼ ଅନନ୍ତ ଜୀବଙ୍କର ଭରଣପୋଷଣ କରନ୍ତି, କେହି ତାଙ୍କୁ ଭଜନ କରୁ ବା ନ କରୁ— ସେଥିପ୍ରତି ଧ୍ୟାନ ନ ଦେଇ ଯେତେବେଳେ ସେ ସ୍ୱଭାବତଃ ପରମ ସୁହୃଦ୍ଭାବରେ ସମସ୍ତ ବିଶ୍ୱର ଯୋଗକ୍ଷେମର ସମସ୍ତ ଭାର ବହନ କରିଛନ୍ତି, ସେତେବେଳେ ଅନନ୍ୟ ଭକ୍ତଙ୍କର ଜୀବନଭାର ଯେ ସେ ବହନ କରିବେ, ଏଥିରେ କହିବାର କଣ ଅଛି? କଥା ହେଉଛି, ଅନନ୍ୟ ଭକ୍ତମାନେ ନିତ୍ୟ-ନିରନ୍ତର କେବଳ ଭଗବାନଙ୍କ ଚିନ୍ତନରେ ହିଁ ଲାଗିରହନ୍ତି; ଭଗବାନଙ୍କୁ ଛାଡ଼ି ଅନ୍ୟ କୌଣସି ବି ବିଷୟରେ ସେମାନେ କିଛି ହିଁ ଚିନ୍ତା କରନ୍ତି ନାହିଁ। ଏପରି ନିତ୍ୟ ଏକନିଷ୍ଠ ଭକ୍ତମାନଙ୍କର ସକଳପ୍ରକାର ଦେଖାରଖା ଭଗବାନ୍ ହିଁ କରନ୍ତି।

ଯେପରି ମାତୃପରାୟଣ ଶିଶୁ କେବଳ ମାଆକୁ ହିଁ ଜାଣେ, ତା'ର କେଉଁ କେଉଁ ବସ୍ତୁ ସାଇତି ରଖିବା ଆବଶ୍ୟକ ଏବଂ ତା'ର କେତେବେଳେ କେଉଁ ବସ୍ତୁ ଆବଶ୍ୟକ, ସେ ବିଷୟରେ ସେ କେବେ କୌଣସି ଚିନ୍ତା କରେ ନାହିଁ; ମାଆ ହିଁ ସେଥିପ୍ରତି ଧ୍ୟାନ ଦିଅନ୍ତି; ଶିଶୁର କେଉଁ କେଉଁ ବସ୍ତୁ ସାବଧାନରେ ରଖିବା ଉଚିତ, ମାଆ ବିଚାର କରନ୍ତି; ତା'ର କେତେବେଳେ କେଉଁ ବସ୍ତୁ ଆବଶ୍ୟକ ହେବ, ତାହା ମନେ ରଖନ୍ତି ଏବଂ ଶିଶୁର ସମସ୍ତ ଆବଶ୍ୟକ ବସ୍ତୁର ବ୍ୟବସ୍ଥା କରି ସେସବୁ ସାଇତି ରଖନ୍ତି ଓ ଠିକ୍ ସମୟରେ ତାହା ଶିଶୁକୁ ଯୋଗାଇଦିଅନ୍ତି, ଠିକ୍ ସେହିପରି ନିତ୍ୟ ଏକନିଷ୍ଠ ଅନନ୍ୟ ଭକ୍ତର ଜୀବନରେ କେଉଁ କେଉଁ ଲୌକିକ ବା ପାରମାର୍ଥିକ ବସ୍ତୁ ରକ୍ଷା କରିବା ଆବଶ୍ୟକ ଓ କେଉଁ କେଉଁ ବସ୍ତୁ ପ୍ରାପ୍ତ କରିବା ଆବଶ୍ୟକ, ତାହା ମଧ୍ୟ ଭଗବାନ୍ ସ୍ଥିର କରନ୍ତି ଏବଂ ସେହି ସେହି ପ୍ରାପ୍ତବସ୍ତୁର ରକ୍ଷା ତଥା ଅପ୍ରାପ୍ତର ପ୍ରାପ୍ତି ମଧ୍ୟ ଭଗବାନ୍ ହିଁ କରାଇଦିଅନ୍ତି।

ମାଆ ଯେପରି ନିଜ ଦାୟିତ୍ୱରେ ଥିବା ଶିଶୁର ଅଳି ପ୍ରତି ଧ୍ୟାନ ନ ଦେଇ, ତା'ର ଯେଉଁଥିରେ ପ୍ରକୃତ ହିତ ହେବ, ତାହା ହିଁ କରନ୍ତି, ଭଗବାନ୍ ନିଜ ଭକ୍ତର ଯଥାର୍ଥ ହିତନିମନ୍ତେ ତା'ଠାରୁ ମଧ୍ୟ ଯଥେଷ୍ଟ ଅଧିକ କରନ୍ତି। ଏପରି ଭକ୍ତମାନଙ୍କର କେତେବେଳେ କେଉଁ ବସ୍ତୁ ଆବଶ୍ୟକ ହେବ ଓ ସେମାନଙ୍କର କେଉଁ କେଉଁ ବସ୍ତୁ ରକ୍ଷା କରିବା ଆବଶ୍ୟକ, ତାହା ଭଗବାନ୍ ହିଁ ସ୍ଥିର କରନ୍ତି ଏବଂ ଭଗବାନ୍ ଯାହା ସ୍ଥିର କରନ୍ତି, ତାହା କଲ୍ୟାଣମୟ ହୋଇଥାଏ ଏବଂ ଭଗବାନ୍ ହିଁ ସେହି ବସ୍ତୁର ରକ୍ଷା ତଥା ପ୍ରାପ୍ତିର ଭାର ବହନ କରନ୍ତି। ସେଥିରେ ଲୌକିକ-ପାରମାର୍ଥିକର କୌଣସି ପ୍ରଶ୍ନ ହିଁ

ନ ଥାଏ, ତଥା କୌଣସି ଏକ ବସ୍ତୁର ପ୍ରାପ୍ତି-ଅପ୍ରାପ୍ତିର ପ୍ରଶ୍ନ ମଧ ନ ଥାଏ। ଯେଉଁ ବସ୍ତୁ ପ୍ରାପ୍ତ ହେଲେ ବା ରହିଲେ ମନୁଷ୍ୟ ଭଗବାନଙ୍କୁ ଭୁଲି ବିଷୟଭୋଗରେ ବାନ୍ଧିହୋଇଯାଏ, ଯାହାଦ୍ୱାରା ବସ୍ତୁତଃ ତାହାର ଯୋଗକ୍ଷେମରେ ହାନି ହୁଏ, ସେସବୁ ପ୍ରାପ୍ତ ନ ହେବା ଏବଂ ନ ରହିବା ହିଁ ପ୍ରକୃତ ଯୋଗକ୍ଷେମପ୍ରାପ୍ତି। ତଥା ଯେଉଁ ବସ୍ତୁମାନଙ୍କର ପ୍ରାପ୍ତି ନ ହେଲେ, ରକ୍ଷା ନ ହେଲେ, ଭଗବତ୍‌ସ୍ମୃତିରେ ବାଧା ପହୁଁଚେ ଏବଂ ତା'ଫଳରେ ଭକ୍ତଙ୍କର ପ୍ରକୃତ କଲ୍ୟାଣ ସହ ଯୋଗ ହେବାରେ ତଥା କଲ୍ୟାଣର ରକ୍ଷା ହେବାରେ ବାଧା ଉପସ୍ଥିତ ହୁଏ, ତାହା ପ୍ରାପ୍ତ ହେବାରେ ଏବଂ ସୁରକ୍ଷିତ ରହିବାରେ ହିଁ ପ୍ରକୃତ ଯୋଗକ୍ଷେମ ନିହିତ।

ଅନନ୍ୟ ଏକନିଷ୍ଠ ଭକ୍ତଙ୍କର ବାସ୍ତବିକ କଲ୍ୟାଣ ଓ ପ୍ରକୃତ ଯୋଗକ୍ଷେମର ଭାର ଭଗବାନ୍ ବହନ କରନ୍ତି ବୋଲି କହିବାର ତାତ୍ପର୍ଯ୍ୟ ଏହି ଯେ, କେଉଁ ବସ୍ତୁର ପ୍ରାପ୍ତିରେ ଏବଂ କେଉଁ ବସ୍ତୁର ସଂରକ୍ଷଣରେ ତାଙ୍କର କଲ୍ୟାଣ ହୋଇପାରିବ, ସେଥିପ୍ରତି ଲକ୍ଷ୍ୟ ରଖି ସେସବୁ ଲୌକିକ ହେଉ ବା ସାଧନାସମ୍ବନ୍ଧୀ ହେଉ, ଭଗବାନ୍ ହିଁ ସ୍ୱୟଂ ସେସବୁ ଯୋଗାଇଦିଅନ୍ତି ଏବଂ ଭଗବାନ୍ ହିଁ ସେସବୁ ରକ୍ଷା କରନ୍ତି। ଏଥିରୁ ଏହା ନିଶ୍ଚିତଭାବରେ ବୁଝିବା ଉଚିତ ଯେ, ଯେଉଁମାନେ ଭଗବତ୍‌ପରାୟଣ ହୋଇ ଅନନ୍ୟଚିତ୍ତରେ ପ୍ରେମପୂର୍ବକ ନିରନ୍ତର ତାଙ୍କୁ ଚିନ୍ତନ କରି କରି ସବୁ କାର୍ଯ୍ୟ କରନ୍ତି, ଅନ୍ୟ କୌଣସି ବିଷୟରେ କାମନା, ଅପେକ୍ଷା ଓ ଚିନ୍ତା ରଖନ୍ତି ନାହିଁ, ସେମାନଙ୍କ ଜୀବନନିର୍ବାହର ସମସ୍ତ ଭାର ମଧ ଭଗବାନଙ୍କ ଉପରେ ରହେ। ସେହି ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବଦର୍ଶୀ, ପରମସୁହୃଦ୍ ଭଗବାନ୍ ହିଁ ନିଜ ଭକ୍ତଙ୍କର ସକଳପ୍ରକାର ଯୋଗକ୍ଷେମର ବ୍ୟବସ୍ଥା କରନ୍ତି; ତେଣୁ ସେଥିରେ କଦାପି କୌଣସି ଭୁଲ ହୁଏ ନାହିଁ, କି ତା'ର ବିପରୀତ ପରିଣାମ ହୁଏ ନାହିଁ। ଭଗବାନଙ୍କ ଦ୍ୱାରା ବ୍ୟବସ୍ଥିତ 'ଯୋଗକ୍ଷେମ' ବିଶେଷ ସୁଖ, ଶାନ୍ତି, ପ୍ରେମ ଓ ଆନନ୍ଦ ଦେଇଥାଏ ଏବଂ ଭକ୍ତଙ୍କୁ ଅତି ଶୀଘ୍ର ଭଗବାନଙ୍କ ପ୍ରତ୍ୟକ୍ଷ ସାକ୍ଷାତ୍ କରାଇବାରେ ପରମ ସହାୟକ ହୋଇଥାଏ। ଅତଏବ ଏଠାରେ ଯୋଗର ଅର୍ଥ 'ଭଗବତ୍‌ସ୍ୱରୂପର ପ୍ରାପ୍ତି' ଓ କ୍ଷେମର ଅର୍ଥ — 'ସେହି ଭଗବତପ୍ରାପ୍ତିପାଇଁ କରାଯାଉଥିବା ସାଧନାମାନଙ୍କର ରକ୍ଷା' ବୋଲି କରାଯାଇଛି।

**ସମ୍ବନ୍ଧ —** ପୂର୍ବଶ୍ଳୋକମାନଙ୍କରେ ଭଗବାନ୍ ସମସ୍ତ ବିଶ୍ୱକୁ ନିଜର ସ୍ୱରୂପ ବୋଲି କହିଲେ। ପୁଣି ବିଭିନ୍ନପଙ୍କଦ୍ୱାରା କରାଯାଉଥିବା ଦେବପୂଜାକୁ ପ୍ରକାରାନ୍ତରେ ନିଜର ହିଁ ପୂଜା ବୋଲି କହିଲେ। କିନ୍ତୁ ତା'ର ଫଳ ଜନ୍ମମୃତ୍ୟୁ ଚକ୍ରରେ ପଡ଼ିବା ଏବଂ ନିଜର ଅନନ୍ୟ ଭକ୍ତଙ୍କ ଉପାସନାର ଫଳ ତାଙ୍କୁ ଭଗବତ୍‌ପ୍ରାପ୍ତି କରାଇଦେବା ବୋଲି କିପରି କହିଲେ? ଏ ବିଷୟରେ ଭଗବାନ୍ କହୁଛନ୍ତି—

**ଯେଽପ୍ୟନ୍ୟଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ।**
**ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକମ୍॥ ୨୩ ॥**

**ଅନ୍ୱୟ —** କୌନ୍ତେୟ = ହେ କୁନ୍ତୀପୁତ୍ର ଅର୍ଜୁନ! ଯେ = ଯେଉଁ; ଭକ୍ତାଃ = ସକାମ ଭକ୍ତମାନେ; ଶ୍ରଦ୍ଧୟା = ଶ୍ରଦ୍ଧାରେ; ଅନ୍ୱିତାଃ = ଯୁକ୍ତ ହୋଇ; ଅପି = ଯଦ୍ୟପି; ଅନ୍ୟଦେବତାଃ = ଅନ୍ୟ ଦେବତାମାନଙ୍କୁ; ଯଜନ୍ତେ = ପୂଜା କରନ୍ତି; ତେ = ସେମାନେ; ଅପି = ମଧ; ମାମ୍ = ମୋତେ; ଏବ = ହିଁ; ଯଜନ୍ତି = ପୂଜା କରନ୍ତି; ଅବିଧିପୂର୍ବକମ୍ = (କିନ୍ତୁ ସେମାନଙ୍କର ସେହି ପୂଜା) ଅବିଧିପୂର୍ବକ ଅର୍ଥାତ୍ ଅଜ୍ଞାନପୂର୍ବକ ହୋଇଥାଏ।

**ହେ ଅର୍ଜୁନ! ଯେଉଁ ସକାମ ଭକ୍ତମାନେ ଶ୍ରଦ୍ଧାଯୁକ୍ତ ହୋଇ ଅନ୍ୟ ଦେବତାମାନଙ୍କୁ ପୂଜା କରନ୍ତି, ସେମାନେ ମଧ ମୋତେ ହିଁ ପୂଜା କରିଥାନ୍ତି; କିନ୍ତୁ ସେମାନଙ୍କର ସେହି ପୂଜା ଅବିଧିପୂର୍ବକ ଅର୍ଥାତ୍ ଅଜ୍ଞାନପୂର୍ବକ ହୋଇଥାଏ॥ ୨୩ ॥**

**ପ୍ରଶ୍ନ —** ଶ୍ରଦ୍ଧୟାନ୍ୱିତାଃର ଅଭିପ୍ରାୟ କଣ? ତଥା ଏଠାରେ ଏହି ବିଶେଷଣ କାହିଁକି ପ୍ରୟୋଗ କରାଯାଇଛି?

**ଉତ୍ତର —** ବେଦ-ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଦେବତାମାନଙ୍କ ଠାରେ, ସେମାନଙ୍କ ଉପାସନାରେ ଓ ସ୍ୱର୍ଗାଦିପ୍ରାପ୍ତିରୂପକ ତାହାର ଫଳରେ ଯେଉଁମାନଙ୍କର ଶ୍ରଦ୍ଧାପୂର୍ବକ ଦୃଢ଼ ବିଶ୍ୱାସ ହୁଏ, ସେମାନଙ୍କୁ ଏଠାରେ

**ଶ୍ରଦ୍ଧୟାନ୍ୱିତାଃ** କୁହାଯାଉଛି ଏବଂ ଏହି ବିଶେଷଣ ପ୍ରୟୋଗ କରି ଦେଖାଇଦିଆଯାଉଛି ଯେ, ଯେଉଁମାନେ ବିନା ଶ୍ରଦ୍ଧାରେ ଦମ୍ଭପୂର୍ବକ ଯଜ୍ଞାଦି କର୍ମଦ୍ୱାରା ଦେବତାମାନଙ୍କର ପୂଜା କରନ୍ତି, ସେମାନେ ଏହି ଶ୍ରେଣୀରେ ଆସିପାରିବେ ନାହିଁ; ସେମାନଙ୍କ ଗଣନା ଆସୁରୀ ପ୍ରକୃତିରେ ଆସିବ।

**ପ୍ରଶ୍ନ—** ଏପରି ମନୁଷ୍ୟମାନଙ୍କର ଅନ୍ୟ ଦେବତାଙ୍କୁ ପୂଜା କରିବା କଣ ଏବଂ ତାହା ଭଗବାନଙ୍କର 'ଅବିଧିପୂର୍ବକ ପୂଜା' କାହିଁକି ହୁଏ ?

**ଉତ୍ତର—** ଶାସ୍ତ୍ରରେ ଯେଉଁ କାମନା ର ସିଦ୍ଧିପାଇଁ ଯେଉଁ ଦେବତାଙ୍କ ପୂଜାର ବିଧାନ ରହିଛି, ଶାସ୍ତ୍ରୋକ୍ତ ଯଜ୍ଞାଦି କର୍ମଦ୍ୱାରା ଶ୍ରଦ୍ଧାପୂର୍ବକ ସେହି ଦେବତାଙ୍କୁ ପୂଜା କରିବା ହିଁ 'ଅନ୍ୟ ଦେବତାଙ୍କୁ ପୂଜା କରିବା'। ସମସ୍ତ ଦେବତା ମଧ୍ୟ ଭଗବାନଙ୍କର ହିଁ ଅଙ୍ଗଭୂତ ଏବଂ ଭଗବାନ୍ ହିଁ ସମସ୍ତଙ୍କର ସ୍ୱାମୀ ଏବଂ ବସ୍ତୁତଃ ଭଗବାନ୍ ହିଁ ସେମାନଙ୍କ ରୂପରେ ପ୍ରକଟ ହୋଇଛନ୍ତି — ଏହି ତତ୍ତ୍ୱ ନ ଜାଣି ସେହି ଦେବତାମାନଙ୍କୁ ଭଗବାନଙ୍କ ଠାରୁ ଭିନ୍ନ ବୋଲି ବୁଝି ସକାମଭାବରେ ସେମାନଙ୍କର ଯେଉଁ ପୂଜା କରାଯାଏ, ତାହା ହେଉଛି ଭଗବାନଙ୍କର 'ଅବିଧିପୂର୍ବକ' ପୂଜା।

**ପ୍ରଶ୍ନ—** ଅନ୍ୟ ଦେବତାମାନଙ୍କ ପୂଜାଦ୍ୱାରା ଭଗବାନଙ୍କର ବିଧିପୂର୍ବକ ପୂଜା କିପରି କରାଯାଇପାରେ ଓ ତା'ର ଫଳ କଣ ?

**ଉତ୍ତର—** ଅନ୍ୟ ଦେବତାମାନେ ମଧ୍ୟ ଭଗବାନଙ୍କର ହିଁ ଅଙ୍ଗଭୂତ ହୋଇଥିବାରୁ ସମସ୍ତେ ଭଗବାନଙ୍କର ହିଁ ସ୍ୱରୂପ। ଏପରି ବୁଝି ଭଗବତ୍ପ୍ରାପ୍ତିନିମନ୍ତେ ନିଷ୍କାମଭାବରେ ଶାସ୍ତ୍ରୋକ୍ତପ୍ରକାରେ ଶ୍ରଦ୍ଧାପୂର୍ବକ ସେହି ଦେବତାମାନଙ୍କର ପୂଜା କରିବା ହିଁ ସେହି ଦେବତାମାନଙ୍କ ପୂଜାଦ୍ୱାରା ଭଗବାନଙ୍କୁ 'ବିଧିପୂର୍ବକ ପୂଜା କରିବା' ଏବଂ ତାହାର ଫଳ ମଧ୍ୟ ଭଗବତ୍ପ୍ରାପ୍ତି।

ରାଜା ରନ୍ତିଦେବ ଅତିଥି ଏବଂ ଅଭ୍ୟାଗତମାନଙ୍କୁ ଭଗବାନଙ୍କର ସ୍ୱରୂପ ମନେ କରି ସ୍ୱୟଂ କ୍ଷୁଧାତୃଷ୍ଣା ସହି ଅନ୍ନଦାନଦ୍ୱାରା ନିଷ୍କାମଭାବରେ ଭଗବାନଙ୍କୁ ପୂଜା କରିଥିଲେ। ତା'ର ଫଳସ୍ୱରୂପ ତାଙ୍କୁ ଭଗବତ୍ପ୍ରାପ୍ତି ହୋଇଗଲା। ଠିକ୍ ଏହିପରି ଯେକୌଣସି ମନୁଷ୍ୟ ଯଦି ଦେବତା, ଗୁରୁ, ବ୍ରାହ୍ମଣ, ମାତା-ପିତା, ଅତିଥି, ଅଭ୍ୟାଗତ ଆଦି ସକଳ ପ୍ରାଣୀଙ୍କୁ ଭଗବାନଙ୍କର ସ୍ୱରୂପ ବୋଲି ବୁଝି ଭଗବାନଙ୍କର ପ୍ରସନ୍ନତାପାଇଁ ତାଙ୍କରି ଆଜ୍ଞାନୁସାରେ ସେମାନଙ୍କର ସେବା ଆଦି କାର୍ଯ୍ୟ କରନ୍ତି, ତେବେ ତାଙ୍କର ସେହି ସେବା ବିଧିପୂର୍ବକ ଭଗବାନଙ୍କର ସେବା ହୁଏ ଏବଂ ତା'ର ଫଳସ୍ୱରୂପ ତାଙ୍କୁ ଭଗବାନ୍ ପ୍ରାପ୍ତ ହୁଅନ୍ତି। ଏହି ତତ୍ତ୍ୱ ନ ବୁଝି ସକାମବୁଦ୍ଧିରେ ଶ୍ରଦ୍ଧା ଓ ପ୍ରେମପୂର୍ବକ ଅନ୍ୟ ଦେବତାମାନଙ୍କର ଯେଉଁ ଯଥାଯୋଗ୍ୟ ସେବାପୂଜା ଆଦି କରାଯାଏ, ସେହି ସେବାପୂଜା ମଧ୍ୟ ଭଗବାନଙ୍କର ସେବାପୂଜା ହୋଇଥାଏ; କାରଣ, ଭଗବାନ୍ ହିଁ ସବୁ ଯଜ୍ଞର ଭୋକ୍ତା, ସମସ୍ତଙ୍କର ମହେଶ୍ୱର ଏବଂ ଭଗବାନ୍ ହିଁ ସର୍ବରୂପ। ତଥାପି ଭାବର ନ୍ୟୂନତାଯୋଗୁଁ ତାହାକୁ ଭଗବାନଙ୍କର ବିଧିପୂର୍ବକ ସେବା ବୋଲି ଗ୍ରହଣ କରାଯାଏ ନାହିଁ। ତେଣୁ ତା'ର ଫଳ ଭଗବତ୍ପ୍ରାପ୍ତି ନ ହୋଇ ସ୍ୱର୍ଗପ୍ରାପ୍ତି ହିଁ ହୁଏ। ଭଗବତ୍ସ୍ୱରୂପର ଅନଭିଜ୍ଞତାହେତୁ ଫଳରେ ଏତେ ବଡ଼ ପ୍ରଭେଦ ଆସିଯାଏ।

*ସମ୍ବନ୍ଧ—* *ଅନ୍ୟ ଦେବତାମାନଙ୍କୁ ପୂଜା କରୁଥିବା ଲୋକେ ଯେଉଁ ପୂଜା କରନ୍ତି, ତାହା ଭଗବାନଙ୍କର ବିଧିପୂର୍ବକ ପୂଜା ନୁହେଁ ବୋଲି କହିବା ପରେ, ସେପରି ପୂଜା କରୁଥିବା ମନୁଷ୍ୟମାନେ ଭଗବତ୍ପ୍ରାପ୍ତିରୂପକ ଫଳରୁ କାହିଁକି ବଞ୍ଚିତ ହୁଅନ୍ତି, ବର୍ତ୍ତମାନ ଭଗବାନ୍ ତାହା ସ୍ପଷ୍ଟରୂପେ ନିରୂପଣ କରୁଛନ୍ତି—*

**ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ।**
**ନ ତୁ ମାମଭିଜାନନ୍ତି ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ॥ ୨୪ ॥**

**ଅନ୍ୱୟ—** ହି = କାରଣ; ସର୍ବଯଜ୍ଞାନାମ୍ = ସବୁ ଯଜ୍ଞମାନଙ୍କର; ଭୋକ୍ତା = ଭୋକ୍ତା; ଚ = ଓ; ପ୍ରଭୁଃ = ସ୍ୱାମୀ; ଚ = ମଧ୍ୟ; ଅହମ୍ = ମୁଁ; ଏବ = ହିଁ; ତୁ = କିନ୍ତୁ; ତେ = ସେମାନେ; ମାମ୍ = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ; ତତ୍ତ୍ୱେନ = ତତ୍ତ୍ୱତଃ; ନ, ଅଭିଜାନନ୍ତି = ଜାଣନ୍ତି ନାହିଁ; ଅତଃ = ଏଣୁ; ଚ୍ୟବନ୍ତି = ଚ୍ୟୁତ ହୁଅନ୍ତି ଅର୍ଥାତ୍ ପୁନର୍ଜନ୍ମ ପାଆନ୍ତି।

**କାରଣ ସକଳ ଯଜ୍ଞର ଭୋକ୍ତା ଓ ସ୍ୱାମୀ ମଧ୍ୟ ମୁଁ ହିଁ ଅଟେ। କିନ୍ତୁ ସେମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ତତ୍ତ୍ୱତଃ ଜାଣନ୍ତି ନାହିଁ, ତେଣୁ ସେମାନଙ୍କର ପତନ ହୁଏ ଅର୍ଥାତ୍ ସେମାନେ ପୁନର୍ଜନ୍ମକୁ ପ୍ରାପ୍ତ ହୁଅନ୍ତି॥ ୨୪ ॥**

**ପ୍ରଶ୍ନ –** ଭଗବାନ୍ ହିଁ କିପରି ସମସ୍ତ ଯଜ୍ଞର ଭୋକ୍ତା ଓ ପ୍ରଭୁ ଅଟନ୍ତି ?

**ଉତ୍ତର –** ଏହି ସମଗ୍ର ବିଶ୍ୱ ଭଗବାନଙ୍କର ହିଁ ବିରାଟରୂପ ହୋଇଥିବାରୁ ଭିନ୍ନ ଭିନ୍ନ ଯଜ୍ଞପୂଜାଦି କର୍ମର ଭୋକ୍ତାରୂପେ ମାନ୍ୟ ଯେତେ ବି ଦେବତା ଅଛନ୍ତି, ସେ ସମସ୍ତେ ଭଗବାନଙ୍କର ହିଁ ଅଙ୍ଗ ତଥା ଭଗବାନ୍ ହିଁ ସେ ସମସ୍ତଙ୍କର ଆତ୍ମା (୧୦/୨୦)। ଏଣୁ ସେହି ଦେବତାଙ୍କ ରୂପରେ ଭଗବାନ୍ ହିଁ ସମସ୍ତ ଯଜ୍ଞାଦିକର୍ମର ଭୋକ୍ତା ଅଟନ୍ତି। ଭଗବାନ୍ ହିଁ ନିଜ ଯୋଗଶକ୍ତିଦ୍ୱାରା ସମଗ୍ର ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ କରନ୍ତି ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ନିୟମରେ ପରିଚାଳିତ କରନ୍ତି। ଇନ୍ଦ୍ର, ବରୁଣ, ଯମ, ପ୍ରଜାପତି ଆଦି ଯେତେ ବି ଲୋକପାଳ ଓ ଦେବତା ଅଛନ୍ତି, ସେ ହିଁ ସମସ୍ତଙ୍କର ନିୟନ୍ତା। ଅତଏବ ସେ ହିଁ ସମସ୍ତଙ୍କର ପ୍ରଭୁ ଅର୍ଥାତ୍ ମହେଶ୍ୱର (୫/୨୯)।

**ପ୍ରଶ୍ନ –** ଏଠାରେ ତୁର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ ତୁ ଅର୍ଥ କିନ୍ତୁ। ଅଭିପ୍ରାୟ ଏହି ଯେ, ଏପରି ହୋଇଥିଲେ ବି ସେମାନେ ଭଗବାନଙ୍କର ପ୍ରଭାବ ଜାଣନ୍ତି ନାହିଁ। ଏହା ସେମାନଙ୍କର ଅଜ୍ଞତା ବା ମୂର୍ଖତା।

**ପ୍ରଶ୍ନ –** ଏଠାରେ ତେ ପଦ କେଉଁ ମନୁଷ୍ୟମାନଙ୍କୁ ଲକ୍ଷ୍ୟ କରୁଛି ଏବଂ ସେମାନେ ଭଗବାନଙ୍କୁ ତତ୍ତ୍ୱତଃ ଜାଣନ୍ତି ନାହିଁ ବୋଲି କହିବାର ଅର୍ଥ କଣ ?

**ଉତ୍ତର –** ଏଠାରେ ତେ ପଦ ପୂର୍ବଶ୍ଳୋକରେ ବର୍ଣ୍ଣିତ ଅନ୍ୟ ଦେବତାମାନଙ୍କର ପୂଜାଦ୍ୱାରା ଅବିଧିପୂର୍ବକ ଭଗବାନଙ୍କୁ ପୂଜା କରୁଥିବା ସକାମ ମନୁଷ୍ୟମାନଙ୍କୁ ଲକ୍ଷ୍ୟ କରୁଛି ତଥା ଷୋହଳରୁ ଉଣେଇଶ ଶ୍ଳୋକପର୍ଯ୍ୟନ୍ତ ଭଗବାନଙ୍କର ଗୁଣ ଓ ପ୍ରଭାବସହିତ ଯେଉଁ ସ୍ୱରୂପର ବର୍ଣ୍ଣନା ହୋଇଛି, ତାହା ନ ଜାଣିଥିବାରୁ ଭଗବାନଙ୍କୁ ସବୁ ଯଜ୍ଞର ଭୋକ୍ତା ଓ ସମସ୍ତ ଲୋକର ମହାନ୍ ଈଶ୍ୱର ବୋଲି ନ ବୁଝିପାରିବା ହିଁ, ତାଙ୍କୁ ତତ୍ତ୍ୱତଃ ନ ଜାଣିବା।

**ପ୍ରଶ୍ନ –** **ଅତଃ** ପଦର ଅଭିପ୍ରାୟ କଣ ? ଏବଂ ତା'ସହିତ **ଚ୍ୟବନ୍ତି** କ୍ରିୟା ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** **ଅତଃ** ପଦ ହେତୁବାଚକ। ଏହା ସହିତ **ଚ୍ୟବନ୍ତି** କ୍ରିୟା ପ୍ରୟୋଗର ଅଭିପ୍ରାୟ ହେଉଛି : ଏହି କାରଣରୁ ହିଁ ଅର୍ଥାତ୍ ଭଗବାନଙ୍କୁ ତତ୍ତ୍ୱତଃ ନ ଜାଣିବା କାରଣରୁ ହିଁ ସେହି ମନୁଷ୍ୟମାନେ ଭଗବତ୍ପ୍ରାପ୍ତିରୂପକ ଅତ୍ୟନ୍ତ ଉତ୍ତମ ଫଳରୁ ବଞ୍ଚିତ ରହି ସ୍ୱର୍ଗପ୍ରାପ୍ତିରୂପକ ଅଳ୍ପଫଳର ଭାଗୀ ହୁଅନ୍ତି ଏବଂ ଜନ୍ମମୃତ୍ୟୁଚକ୍ରରେ ଘୂରିବୁଲନ୍ତି।

**ସମ୍ବନ୍ଧ –** ଭଗବାନଙ୍କର ଭକ୍ତ ଜନ୍ମମୃତ୍ୟୁଚକ୍ର ପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଅନ୍ୟ ଦେବତାମାନଙ୍କର ଉପାସକମାନେ ତାହା ପ୍ରାପ୍ତ ହୁଅନ୍ତି— ଏହାର କାରଣ କଣ ? ଏହି ଜିଜ୍ଞାସା ଉପରେ ଭଗବାନ୍ ଉପାସ୍ୟର ସ୍ୱରୂପ ଓ ଉପାସକର ଭାବ ଅନୁସାରେ ଉପାସନାର ଫଳରେ ପ୍ରଭେଦ ଘଟେ ବୋଲି କହୁଛନ୍ତି–

**ଯାନ୍ତି ଦେବବ୍ରତା ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତାଃ।**
**ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ୟାଜିନୋଽପି ମାମ୍॥ ୨୫ ॥**

**ଅନ୍ୱୟ –** **ଦେବବ୍ରତାଃ** = ଦେବତାମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ; **ଦେବାନ୍** = ଦେବମାନଙ୍କୁ ଅର୍ଥାତ୍ ଦେବଲୋକକୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି; **ପିତୃବ୍ରତାଃ** = ପିତୃମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ; **ପିତୃନ୍** = ପିତୃମାନଙ୍କୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି; **ଭୂତେଜ୍ୟାଃ** = ଭୂତପ୍ରେତଙ୍କୁ ପୂଜା କରୁଥିବା ମନୁଷ୍ୟମାନେ; **ଭୂତାନି** = ଭୂତପ୍ରେତଙ୍କୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି (ଓ); **ମଦ୍ୟାଜିନଃ** = ମୋତେ ପୂଜା କରୁଥିବା ଭକ୍ତମାନେ; **ମାମ୍** = ମୋତେ; **ଅପି** = ହିଁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି (ତେଣୁ ମୋର ଭକ୍ତମାନଙ୍କର ପୁନର୍ଜନ୍ମ ହୁଏ ନାହିଁ)।

**ଦେବତାମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ଦେବତାମାନଙ୍କୁ ପ୍ରାପ୍ତ ହୁଅନ୍ତି; ପିତୃମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ପିତୃମାନଙ୍କୁ ପ୍ରାପ୍ତ ହୁଅନ୍ତି; ଭୂତପ୍ରେତଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ଭୂତପ୍ରେତଙ୍କୁ ପ୍ରାପ୍ତ ହୁଅନ୍ତି ଏବଂ ମୋତେ ପୂଜା କରୁଥିବା ଭକ୍ତମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି । ତେଣୁ ମୋର ଭକ୍ତମାନଙ୍କର ପୁନର୍ଜନ୍ମ ହୁଏ ନାହିଁ ॥ ୨୫ ॥**

**ପ୍ରଶ୍ନ — ଦେବବ୍ରତାଃ** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ ସେମାନେ ଦେବତାମାନଙ୍କୁ ପ୍ରାପ୍ତ ହେବା କଣ ?

**ଉତ୍ତର —** ଦେବତାମାନଙ୍କର ପୂଜା କରିବା, ସେମାନଙ୍କ ପୂଜାପାଇଁ କୁହାଯାଇଥିବା ନିୟମମାନ ପାଳନ କରିବା, ସେମାନଙ୍କ ପାଇଁ ଯଜ୍ଞାଦି ଅନୁଷ୍ଠାନ କରିବା, ସେମାନଙ୍କର ମନ୍ତ୍ର ଜପ କରିବା ଏବଂ ସେମାନଙ୍କ ନିମିତ୍ତ ବ୍ରାହ୍ମଣଭୋଜନ କରାଇବା ଇତ୍ୟାଦି ସବୁକିଛି ହେଉଛି 'ଦେବତାମାନଙ୍କର ବ୍ରତ' । ଏଗୁଡ଼ିକୁ ପାଳନ କରୁଥିବା ମନୁଷ୍ୟମାନଙ୍କର ବାଚକ ହେଉଛି **ଦେବବ୍ରତାଃ** । ଏପରି ମନୁଷ୍ୟମାନଙ୍କୁ ସେମାନଙ୍କ ଉପାସନାର ଫଳସ୍ୱରୂପ ସେହି ଦେବତାମାନଙ୍କର ଯେଉଁ ଲୋକ, ଯେଉଁ ଭୋଗ ଅଥବା ଯେଉଁ ରୂପ ପ୍ରାପ୍ତ ହୁଏ, ତାହା ହିଁ ଦେବତାମାନଙ୍କୁ ପ୍ରାପ୍ତ ହେବା ।

**ପ୍ରଶ୍ନ —** ତୃତୀୟ ଅଧ୍ୟାୟର ଏଗାର ଓ ଚତୁର୍ଥ ଅଧ୍ୟାୟର ପଚିଶ ଶ୍ଳୋକରେ ଦେବପୂଜନକୁ କଲ୍ୟାଣର ହେତୁ ବୋଲି କହିଛନ୍ତି । ଏଠାରେ (୨୦,୨୧,୨୪ ଶ୍ଳୋକ) ତା'ର ଫଳ ଅନିତ୍ୟ ସ୍ୱର୍ଗର ପ୍ରାପ୍ତି ଏବଂ ଜନ୍ମମୃତ୍ୟୁଚକ୍ରରେ ପଡ଼ିବା ବୋଲି କହୁଛନ୍ତି । ଏହାର କାରଣ କଣ ?

**ଉତ୍ତର —** ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ନିଷ୍କାମଭାବରେ ଦେବପୂଜନ କରିବାର ବିଷୟ ଅଛି; ତେଣୁ ତା'ର ଫଳ ପରମ କଲ୍ୟାଣ; କାରଣ ନିଷ୍କାମଭାବରେ କରାଯିବା ଦେବପୂଜା ଅନ୍ତଃକରଣକୁ ଶୁଦ୍ଧ କରେ; ଏଣୁ ତା'ର ଫଳ ପରମ କଲ୍ୟାଣ ହିଁ ହୁଏ । କିନ୍ତୁ ଏଠାରେ ସକାମଭାବରେ କରାଯାଉଥିବା ଦେବପୂଜାର ପ୍ରକରଣ ଚାଲିଛି । ଏଣୁ ଏହାର ଫଳ ସେହି ସେହି ଦେବତାମାନଙ୍କୁ ପ୍ରାପ୍ତିମାତ୍ର ବୋଲି କୁହାଯାଇପାରେ । ସେମାନେ ଅତିବେଶୀ ହେଲେ ସେହି ଉପାସ୍ୟ ଦେବତାମାନଙ୍କର ଆୟୁପର୍ଯ୍ୟନ୍ତ ସ୍ୱର୍ଗାଦିଲୋକରେ ରହିପାରିବେ । ଅତଏବ ସେମାନଙ୍କର ପୁନରାଗମନ ନିଶ୍ଚିତ ।

**ପ୍ରଶ୍ନ — ପିତୃବ୍ରତାଃ** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ ସେମାନଙ୍କୁ ପିତୃମାନଙ୍କ ପ୍ରାପ୍ତ ହେବା କଣ ?

**ଉତ୍ତର —** ପିତୃମାନଙ୍କ ପାଇଁ ଯଥାବିଧି ଶ୍ରାଦ୍ଧତର୍ପଣ କରିବା, ସେମାନଙ୍କ ନିମିତ୍ତ ବ୍ରାହ୍ମଣଭୋଜନ କରାଇବା, ହୋମ କରିବା, ଜପ କରିବା, ପୂଜାପାଠ କରିବା ତଥା ସେମାନଙ୍କ ପାଇଁ ଶାସ୍ତ୍ରରେ କୁହାଯାଇଥିବା ବ୍ରତ ଓ ନିୟମ ଭଲଭାବରେ ପାଳନ କରିବା ଆଦି ହେଉଛି ପିତୃମାନଙ୍କର ବ୍ରତ । **ପିତୃବ୍ରତାଃ** ପଦଟି ହେଉଛି ଏସବୁ ପାଳନ କରୁଥିବା ଲୋକମାନଙ୍କର ବାଚକ । ଯେଉଁ ମନୁଷ୍ୟମାନେ ସକାମଭାବରେ ଏସବୁ ବ୍ରତ ପାଳନ କରନ୍ତି, ସେମାନେ ମୃତ୍ୟୁପରେ ପିତୃଲୋକକୁ ଯାଆନ୍ତି ଏବଂ ସେଠାରେ ପିତୃମାନଙ୍କ ପରି ସ୍ୱରୂପ ପ୍ରାପ୍ତ ହୋଇ ସେମାନଙ୍କ ପରି ଭୋଗ କରନ୍ତି । ଏହା ହିଁ ପିତୃମାନଙ୍କ ପ୍ରାପ୍ତି ହେବା । ଏହି ପିତୃବ୍ରତାମାନେ ମଧ୍ୟ ସର୍ବାଧିକ ଦିବ୍ୟ ପିତୃମାନଙ୍କର ଆୟୁପର୍ଯ୍ୟନ୍ତ ହିଁ ସେଠାରେ ରହିପାରନ୍ତି । ଶେଷରେ ଏମାନଙ୍କର ମଧ୍ୟ ପୁନରାଗମନ ହୋଇଥାଏ ।

ଏଥିରୁ ଦେବତା ଓ ପିତୃମାନଙ୍କର ପୂଜା କରିବା ନିଷେଧ ବୋଲି ବୁଝିବା ଉଚିତ ନୁହେଁ । ଦେବ-ପିତୃପୂଜା ତ ଯଥାବିଧି ନିଜ ନିଜର ବର୍ଣ୍ଣାଶ୍ରମ ଅଧିକାର ଅନୁସାରେ ସମସ୍ତେ ଅବଶ୍ୟ କରିବା ଉଚିତ । କିନ୍ତୁ ସେହି ପୂଜା ଯଦି ସକାମଭାବରେ ହୁଏ, ତେବେ ତାହା ନିଜର ସର୍ବାଧିକ ଫଳ ଦେଇ ନଷ୍ଟ ହୋଇଯାଏ । ଆଉ ଯଦି କର୍ତ୍ତବ୍ୟବୁଦ୍ଧିରେ ଭଗବତ୍-ଆଜ୍ଞା ଭାବି ବା ଭଗବତ୍‌ପୂଜା ବୋଲି ବୁଝି କରାଯାଏ, ତେବେ ତାହା ଭଗବତ୍‌ପ୍ରାପ୍ତିରୂପକ ମହାନ୍ ଫଳର କାରଣ ହୁଏ । ଅତଏବ ଏଠାରେ ବୁଝିବା ଉଚିତ ଯେ, ଦେବ-ପିତୃ କର୍ମ ତ ଅବଶ୍ୟ କରିବା କଥା, କିନ୍ତୁ ତା' ସଙ୍ଗେ ସଙ୍ଗେ ସେଥିରେ ନିଷ୍କାମଭାବ ରଖିବାକୁ ପ୍ରଯତ୍ନ କରିବା ଉଚିତ ।

**ପ୍ରଶ୍ନ — ଭୂତେଜ୍ୟାଃ** ପଦଟି କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ ସେମାନଙ୍କର ଭୂତମାନଙ୍କୁ ପ୍ରାପ୍ତ ହେବା କଣ ?

**ଉତ୍ତର –** ଯେଉଁମାନେ ଭୂତପ୍ରେତମାନଙ୍କର ପୂଜା କରନ୍ତି, ସେମାନଙ୍କ ପୂଜାର ନିୟମ ପାଳନ କରନ୍ତି ଏବଂ ସେମାନଙ୍କ ପାଇଁ ହୋମ ବା ଦାନ ଆଦି କର୍ମ କରନ୍ତି, **ଭୂତେଜ୍ୟାଃ** ହେଉଛି ସେମାନଙ୍କର ବାଚକ। ଏପରି ମନୁଷ୍ୟମାନଙ୍କୁ ସେହି ସେହି ଭୂତପ୍ରେତାଦିଙ୍କ ସମାନ ରୂପ-ଭୋଗ ଆଦି ମିଳିବା ହିଁ ସେମାନଙ୍କର ଭୂତପ୍ରେତାଦିଙ୍କୁ ପ୍ରାପ୍ତ ହେବା। ଭୂତପ୍ରେତଙ୍କ ପୂଜା ହେଉଛି ତାମସୀ କ୍ରିୟା; ତାହା ଅନିଷ୍ଟଫଳ ଦିଏ। ଅତଏବ ତାହା କରିବା ଉଚିତ ନୁହେଁ।

**ପ୍ରଶ୍ନ –** ଏଠାରେ **ମଦ୍‌ଯାଜିନଃ** ପଦ କେଉଁମାନଙ୍କର ବାଚକ ଏବଂ ସେମାନଙ୍କର ଭଗବାନଙ୍କୁ ପ୍ରାପ୍ତ ହେବା କଣ ?

**ଉତ୍ତର –** ଯେଉଁ ପୁରୁଷମାନେ ଭଗବାନଙ୍କର ସଗୁଣ ନିରାକାର ଅଥବା ସାକାର — ଯେକୌଣସି ରୂପର ସେବନ-ପୂଜନ ଓ ଭଜନ-ଧ୍ୟାନ ଆଦି କରନ୍ତି, ସମସ୍ତ କର୍ମ ତାଙ୍କୁ ଅର୍ପଣ କରନ୍ତି, ତାଙ୍କ ନାମ ଜପ କରନ୍ତି, ତାଙ୍କ ଗୁଣକୀର୍ତ୍ତନ ଶୁଣନ୍ତି ଓ ଗାଆନ୍ତି ଏବଂ ଏପରିଭାବରେ ଭଗବାନଙ୍କର ଭକ୍ତିବିଷୟକ ବିବିଧପ୍ରକାର ସାଧନା କରନ୍ତି, ଏଠାରେ **ମଦ୍‌ଯାଜିନଃ** ପଦଟି ହେଉଛି ସେହିମାନଙ୍କର ବାଚକ। ସେମାନେ ଭଗବାନଙ୍କ ଦିବ୍ୟଲୋକକୁ ଯିବା, ଭଗବାନଙ୍କ ନିକଟରେ ରହିବା, ତାଙ୍କଭଳି ପରି ଦିବ୍ୟରୂପ ପ୍ରାପ୍ତ ହେବା ଅଥବା ତାଙ୍କ ଠାରେ ଲୀନ ହୋଇଯିବା ହିଁ ସେମାନଙ୍କର ଭଗବାନଙ୍କୁ ପ୍ରାପ୍ତ ହେବା।

**ପ୍ରଶ୍ନ –** ଏହି ବାକ୍ୟରେ **ଅପି** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର – ଅପି** ପଦଦ୍ୱାରା ଭଗବାନ୍ ଦେଖାଇଛନ୍ତି, ''ନିରାକାର ହେଉ ବା ସାକାର ହେଉ ମୋର ଯେକୌଣସି ରୂପର ନିଷ୍କାମ ଉପାସନା କରୁଥିବା ମନୁଷ୍ୟ ଯେ ମୋତେ ପ୍ରାପ୍ତ ହୁଅନ୍ତି, ସେଥିରେ କହିବାର କ'ଣ ଅଛି ? ସକାମଭାବରେ ଉପାସନା କରୁଥିବା ମନୁଷ୍ୟ ମଧ୍ୟ ମୋତେ ପ୍ରାପ୍ତ ହୁଅନ୍ତି।''

**ସମ୍ବନ୍ଧ –** *ଭଗବଦ୍‌ଭକ୍ତିର ମହାନ୍ ଫଳସ୍ୱରୂପ ଭଗବତ୍‌ପ୍ରାପ୍ତି ହେଉଥିଲେ ମଧ୍ୟ, ତାହା ସାଧନା କରିବା କୌଣସିପ୍ରକାରେ କଠିନ ନୁହେଁ, ବରଂ ତାହା ସାଧନା କରିବା ଅତି ସହଜ। ଏହା ବୁଝାଇଦେବାକୁ ଭଗବାନ୍ କହୁଛନ୍ତି–*

## ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।
## ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ ।। ୨୬ ।।

**ଅନ୍ୱୟ –** **ଯଃ** = ଯେକେହି ଭକ୍ତ; **ମେ** = ମୋ'ପାଇଁ; **ଭକ୍ତ୍ୟା** = ପ୍ରେମର ସହିତ; **ପତ୍ରମ୍** = ପତ୍ର; **ପୁଷ୍ପମ୍** = ପୁଷ୍ପ; **ଫଳମ୍** = ଫଳ; **ତୋୟମ୍** = ଜଳ ଆଦି; **ପ୍ରଯଚ୍ଛତି** = ଅର୍ପଣ କରେ; **ପ୍ରୟତାତ୍ମନଃ** = (ସେହି) ଶୁଦ୍ଧବୁଦ୍ଧି ନିଷ୍କାମପ୍ରେମୀ ଭକ୍ତଙ୍କର; **ଭକ୍ତ୍ୟୁପହୃତମ୍** = ପ୍ରେମପୂର୍ବକ ଅର୍ପିତ; **ତତ୍** = ସେହି (ପତ୍ରପୁଷ୍ପାଦି); **ଅହମ୍** = ମୁଁ (ସଗୁଣରୂପରେ ପ୍ରକଟ ହୋଇ); **ଅଶ୍ନାମି** = ପ୍ରୀତିପୂର୍ବକ ଭୋଜନ କରେ।

**ଯେକେହି ଭକ୍ତ ମୋତେ ପ୍ରେମର ସହିତ ପତ୍ର, ପୁଷ୍ପ, ଫଳ, ଜଳ ଆଦି ଅର୍ପଣ କଲେ, ସେହି ଶୁଦ୍ଧବୁଦ୍ଧି ନିଷ୍କାମପ୍ରେମୀ ଭକ୍ତଙ୍କ ଦ୍ୱାରା ପ୍ରେମପୂର୍ବକ ଅର୍ପିତ ହୋଇଥିବା ସେହି ପତ୍ରପୁଷ୍ପାଦି ମୁଁ ସଗୁଣରୂପରେ ପ୍ରକଟ ହୋଇ ପ୍ରୀତିପୂର୍ବକ ଭୋଜନ କରେ।। ୨୬ ।।**

**ପ୍ରଶ୍ନ –** ଯଃ ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** ଏହା ପ୍ରୟୋଗ କରି ଭଗବାନ୍ କହୁଛନ୍ତି, ''ଯେକୌଣସି ବର୍ଣ୍ଣ, ଆଶ୍ରମ ଓ ଜାତିର ଯେକୌଣସି ମନୁଷ୍ୟ ମୋତେ ପତ୍ର, ପୁଷ୍ପ, ଫଳ ଜଳ ଆଦି ଅର୍ପଣ କରିପାରେ। ବଳ, ରୂପ, ଧନ, ଆୟୁ, ଜାତି, ଗୁଣ ଓ ବିଦ୍ୟା ଆଦି କୌଣସିଥିରେ ମୁଁ ଛୋଟବଡ଼ ଦେଖେ ନାହିଁ; ଅବଶ୍ୟ ଅର୍ପଣ କରୁଥିବା ଲୋକର ଭାବ ବିଦୁର ଓ ଶବରୀ ଆଦିଙ୍କ ପରି ସର୍ବଥା ଶୁଦ୍ଧ ଓ ପ୍ରେମପୂର୍ଣ୍ଣ ହୋଇଥିବା ଆବଶ୍ୟକ।

**ପ୍ରଶ୍ନ –** ପୂଜାର ଅନେକ ସାମଗ୍ରୀମଧ୍ୟରୁ କେବଳ ପତ୍ର, ପୁଷ୍ପ, ଫଳ ଓ ଜଳର ନାମ ନେବାର ଅଭିପ୍ରାୟ

କଣ ? ଏବଂ ଭଗବାନଙ୍କୁ ଏସବୁ ଭକ୍ତିପୂର୍ବକ ଅର୍ପଣ କରିବା କଣ ?

**ଉତ୍ତର —** ଏଠାରେ ପତ୍ର, ପୁଷ୍ପ, ଫଳ ଓ ଜଳର ନାମ ନେଇ ଦେଖାଇଦିଆଗଲା ଯେ, ସାଧାରଣ ମନୁଷ୍ୟମାନଙ୍କୁ ବିନାକିଛି ପରିଶ୍ରମ, ହିଂସା ଓ ଖର୍ଚ୍ଚରେ ଅନାୟାସରେ ମିଳିପାରୁଥିବା ଯେକୌଣସି ବସ୍ତୁ ଭଗବାନଙ୍କୁ ଅର୍ପଣ କରାଯାଇପାରେ । ଭଗବାନ୍ ପୂର୍ଣ୍ଣକାମ । ତେଣୁ ସେ ବସ୍ତୁପାଇଁ କ୍ଷୁଧାର୍ତ୍ତ ନୁହନ୍ତି; ତାଙ୍କର କେବଳ ପ୍ରେମ ହିଁ ଆବଶ୍ୟକ । 'ମୋ'ଭଳି ସାଧାରଣ ବ୍ୟକ୍ତି ଅର୍ପଣ କରିଥିବା କ୍ଷୁଦ୍ରାଦପି କ୍ଷୁଦ୍ର ପଦାର୍ଥ ମଧ୍ୟ ଭଗବାନ୍ ଯେଉଁ ଆନନ୍ଦରେ ସ୍ୱୀକାର କରନ୍ତି, ତାହା ତାଙ୍କର କେତେ ବଡ଼ ମହନୀୟତା ନୁହେଁ!'— ଏହି ଭାବରେ ଭାବିତ ହୋଇ ପ୍ରେମବିହ୍ୱଳ ଚିତ୍ତରେ କୌଣସି ବି ବସ୍ତୁ ଭଗବାନଙ୍କୁ ସମର୍ପଣ କରିବା ହିଁ ତାହା ଭକ୍ତିପୂର୍ବକ ଭଗବାନଙ୍କୁ ଅର୍ପଣ କରିବା ।

**ପ୍ରଶ୍ନ — ପ୍ରୟତାତ୍ମନଃ** ପଦର ଅର୍ଥ କଣ ଓ ଏହା ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର —** ଯାହାଙ୍କ ଅନ୍ତଃକରଣ ଶୁଦ୍ଧ, ତାଙ୍କୁ **ପ୍ରୟତାତ୍ମା** କହନ୍ତି । ଏହା ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି, ''ଯଦି ଅର୍ପଣ କରୁଥିବା ବ୍ୟକ୍ତିର ଭାବ ଶୁଦ୍ଧ ନ ହୁଏ, ତେବେ ବାହାରେ ଯେତେ ଶିଷ୍ଟାଚାର ଦେଖାଇ ଯେତେ ବଡ଼ ଉତ୍ତମ ସାମଗ୍ରୀ ମୋତେ ଅର୍ପଣ କଲେ ମଧ୍ୟ, ମୁଁ ତାହା କଦାପି ଗ୍ରହଣ କରେ ନାହିଁ । ଦୁର୍ଯ୍ୟୋଧନର ନିମନ୍ତ୍ରଣ ଅସ୍ୱୀକାର କରି ବିଦୁରଙ୍କ ଭାବ ଶୁଦ୍ଧ ହୋଇଥିବାରୁ ମୁଁ ବିଦୁରଙ୍କ ଘରକୁ ଯାଇ ପ୍ରେମପୂର୍ବକ ଭୋଜନ କଲି; ସୁଦାମାଙ୍କ ଚୁଡ଼ା ଆନନ୍ଦରେ ଖାଇଲି; ଦ୍ରୌପଦୀଙ୍କ ଅନ୍ନପାତ୍ରରେ ଲାଗିଥିବା ଶାଗପତ୍ରଟିଏ ଖାଇ ବିଶ୍ୱକୁ ତୃପ୍ତ କରିଦେଲି; ଗଜେନ୍ଦ୍ରଙ୍କ ଅର୍ପିତ ପଦ୍ମ ମୁଁ ନିଜେ ସେଠାକୁ ଯାଇ ଗ୍ରହଣ କଲି; ଶବରୀଙ୍କ କୁଟିଆକୁ ଯାଇ ସେ ଦେଇଥିବା ଫଳ ଖାଇଲି ଏବଂ ରନ୍ତିଦେବଙ୍କ ଜଳ ସ୍ୱୀକାର କରି ତାଙ୍କୁ କୃତାର୍ଥ କରିଦେଲି । ଏହିପରି ପ୍ରତ୍ୟେକ ଭକ୍ତର ପ୍ରେମପୂର୍ବକ ଅର୍ପିତ ବସ୍ତୁ ମୁଁ ଆନନ୍ଦର ସହିତ ଗ୍ରହଣ କରିଥାଏ ।''

ଏହି ଭକ୍ତମାନଙ୍କର, ବିଶେଷତଃ ଏହି ପ୍ରସଙ୍ଗସମ୍ବନ୍ଧୀୟ ଘଟଣାଗୁଡ଼ିକର ସଂକ୍ଷିପ୍ତ ବିବରଣୀ ଏଠାରେ କ୍ରମାନ୍ୱୟରେ ଦିଆଯାଉଛି —

## ବିଦୁର

ବାର ବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତ ବାସ ପୂର୍ଣ୍ଣ କରିବା ପରେ, ଯେତେବେଳେ ପାଣ୍ଡବମାନେ ଦୁର୍ଯ୍ୟୋଧନକୁ ସେମାନଙ୍କର ରାଜ୍ୟ ମାଗିଲେ, ସେତେବେଳେ ଦୁର୍ଯ୍ୟୋଧନ ରାଜ୍ୟ ଫେରାଇବାକୁ ସ୍ପଷ୍ଟ ମନା କରିଦେଲା । ଏହି କାର୍ଯ୍ୟରେ ପାଣ୍ଡବଙ୍କ ପକ୍ଷରୁ ସ୍ୱୟଂ ଭଗବାନ୍ କୃଷ୍ଣ ଦୂତ ହୋଇ କୌରବମାନଙ୍କ ନିକଟକୁ ଯାଇଥିଲେ । ବାହ୍ୟଶିଷ୍ଟାଚାର ଦେଖାଇବା ନିମନ୍ତେ ଦୁର୍ଯ୍ୟୋଧନ ଭଗବାନ୍ କୃଷ୍ଣଙ୍କୁ ସ୍ୱାଗତ କରିବାକୁ ବିଶେଷ ବ୍ୟବସ୍ଥା କରିଥିଲା । ଦୁର୍ଯ୍ୟୋଧନ ଯେତେବେଳେ ଭୋଜନ ନିମନ୍ତେ ଡାକିଲା, ଭଗବାନ୍ କୃଷ୍ଣ ମନା କଲେ । ଦୁର୍ଯ୍ୟୋଧନ କାରଣ ପଚାରିବାରୁ ଭଗବାନ୍ କହିଲେ, 'ଭୋଜନ ଦୁଇପ୍ରକାରେ କରାଯାଏ । ଯେଉଁଠି ପ୍ରେମ ଥାଏ, ସେଠାରେ ଯାହାକିଛି ମିଳିଲେ ମଧ୍ୟ, ବଡ଼ ଆନନ୍ଦରେ ଭୋଜନ କରାଯାଏ । ନଚେତ୍ କ୍ଷୁଧାରେ ପ୍ରାଣ ଯିବାକୁ ବସିଥିବାବେଳେ ଯେଉଁଠି ଯେଉଁଭାବରେ ଯାହାକିଛି ମିଳିଲା, ସେଥିରେ ଉଦର ପୂର୍ଣ୍ଣ କରିବାକୁ ପଡ଼େ । ଏଠାରେ ଏହି ଦୁଇଟିଯାକ ଅବସ୍ଥା ନାହିଁ । ପ୍ରେମ ତ ତୁମ ପାଖରେ ଆଦୌ ନାହିଁ ଏବଂ ମୁଁ ଭୋକରେ ମରୁ ନାହିଁ । *

ଏତକି କହି ଭଗବାନ୍ ବିନା-ନିମନ୍ତ୍ରଣରେ ଭକ୍ତ ବିଦୁରଙ୍କ ଘରକୁ ଚାଲିଗଲେ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ବାହ୍ଲୀକ ଆଦି ବଡ଼ ବଡ଼ ବୃଦ୍ଧ ଲୋକ ବିଦୁରଙ୍କ ଘରକୁ ଯାଇ ଶ୍ରୀକୃଷ୍ଣଙ୍କୁ ନିଜ ନିଜ ଘରକୁ ଯିବାକୁ ଅନୁରୋଧ କଲେ । କିନ୍ତୁ ଭଗବାନ୍ କାହାରି ଘରକୁ ଗଲେ ନାହିଁ । ସେ ବିଦୁରଙ୍କ ଘରେ ହିଁ ଅତ୍ୟନ୍ତ ପ୍ରେମରେ ଦିଆଯାଉଥିବା ଶାକାନ୍ନ ଭୋଜନ କରି ବିଦୁରଙ୍କୁ କୃତାର୍ଥ କରିଦେଲେ । (ମହା. ଉଦ୍ୟୋଗ. ୯୧) । ତେଣୁ **''ଦୁର୍ଯ୍ୟୋଧନକୀ ମେବା ତ୍ୟାଗୀ, ସାଗ ବିଦୁର ଘର ଖାୟୋ'** ବୋଲି ହିନ୍ଦୀରେ ଏକ ପ୍ରସିଦ୍ଧ ଉକ୍ତି ରହିଛି ।

---

* ସମ୍ପ୍ରୀତିଭୋଜ୍ୟାନ୍ୟନ୍ନାନି ଆପଦ୍‌ଭୋଜ୍ୟାନି ବା ପୁନଃ । ନ ଚ ସମ୍ପ୍ରୀୟସେ ରାଜନ ନୈବାପଦ୍‌ଗତା ବୟମ୍ ॥ (ମହା.ଉଦ୍ୟୋଗ. ୯୧/୨୫)

## ସୁଦାମା

ସୁଦାମା ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ବାଲ୍ୟସଖା ଥିଲେ। ଉଭୟେ ଉଜ୍ଜୟିନୀରେ ସାନ୍ଦୀପନି ମୁନିଙ୍କ ଘରେ ଏକାଠି ପାଠ ପଢୁଥିଲେ। ସୁଦାମା ବେଦଜ୍ଞ, ବିଷୟଭୋଗରୁ ବିରକ୍ତ, ଶାନ୍ତ ଓ ଜିତେନ୍ଦ୍ରିୟ ଥିଲେ। ବିଦ୍ୟା ଅଧ୍ୟୟନ କରି ଦୁଇ ସଖା ନିଜ ନିଜ ଘରକୁ ଚାଲିଯାଇଥିଲେ।

ସୁଦାମା ବଡ଼ ଗରିବ ଥିଲେ। ଏପରି ଏକ ସମୟ ଆସିଲା, ଯେତେବେଳେ କି ଗରିବ ସୁଦାମାଙ୍କ ପରିବାରରେ ଅନେକ ଦିନଯାଏ କିଛି ଖାଇବାକୁ ମିଳିଲା ନାହିଁ। ଭୋକ ଉପାସରେ ସୁଦାମାଙ୍କର ସ୍ତ୍ରୀଙ୍କ ମୁହଁ ଶୁଖିଗଲା; ପିଲାମାନଙ୍କ ଦଶା ଦେଖି ତାଙ୍କ ହୃଦୟ କାନ୍ଦିଲା। ସେ ଜାଣିଥିଲେ ଯେ, ଦ୍ୱାରକାଧୀଶ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ତାଙ୍କ ସ୍ୱାମୀଙ୍କର ସଖା। ସେ ଡରରେ ଥରି ଥରି ସୁଦାମାଙ୍କୁ ସବୁ କଥା କହିଲେ ଏବଂ ଦ୍ୱାରକା ଯିବାକୁ ଅନୁରୋଧ କଲେ। ସେ ତ ସ୍ୱାମୀଙ୍କ ନିଷ୍କାମ ଭାବ ଜାଣିଥିଲେ। ତେଣୁ କହିଲେ, 'ପ୍ରଭୁ! ମୁଁ ଜାଣେ, ଆପଣ ଧନପାଇଁ ତିଳେମାତ୍ର ଆଶାୟୀ ନୁହନ୍ତି; କିନ୍ତୁ ଧନ ବିନା ଘର ଚଳାଇବା ଅତ୍ୟନ୍ତ କଠିନ। ଅତଏବ ମୋ ମତରେ ଆପଣ ନିଜ ପ୍ରିୟମିତ୍ରଙ୍କ ନିକଟକୁ ଯିବା ଆବଶ୍ୟକ।'

ସୁଦାମା ବିଚାରିଲେ, ବ୍ରାହ୍ମଣୀ ଦୁଃଖରେ ବ୍ୟସ୍ତ ହୋଇ ଧନ ଆଶାରେ ତାଙ୍କୁ ସେଠାକୁ ପଠାଇବାକୁ ଚାହୁଁଛନ୍ତି। ତାଙ୍କୁ ଏହି କାର୍ଯ୍ୟପାଇଁ ମିତ୍ରଙ୍କ ଘରକୁ ଯିବାକୁ ବଡ଼ ସଂକୋଚ ଲାଗିଲା। ସେ କହିଲେ, ''ପାଗଳି! କଣ ଧନପାଇଁ ତୁମେ ମୋତେ ସେଠାକୁ ପଠାଉଛ? ବ୍ରାହ୍ମଣ କଣ କେବେ ଧନ ଇଚ୍ଛା କରେ? ଆମ କାମ ତ ଭଗବାନଙ୍କର ଭଜନ କରିବା; ଭୋକ ଲାଗିଲେ, ଭିକ ମାଗିପାରିବା।''

ବ୍ରାହ୍ମଣୀ କହିଲେ, ''ତାହା ଠିକ୍, କିନ୍ତୁ ଏଠାରେ ଭିକ ମିଳିବା ମଧ୍ୟ ଭାଗ୍ୟରେ ନାହିଁ। ମୋର ଚିରାପଟା ଲୁଗା ଓ ଭୋକରେ ଛଟପଟ ହେଉଥିବା ପିଲାଙ୍କ ମୁହଁକୁ ଟିକିଏ ଦେଖନ୍ତୁ! ମୋର ଧନ ଲୋଡ଼ା ନାହିଁ। ମୁଁ କହୁନି ଯେ, ଆପଣ ତାଙ୍କ ନିକଟକୁ ଯାଇ ରାଜ୍ୟ ବା ଲକ୍ଷ୍ମୀ ମାଗନ୍ତୁ। ଆମର ଏହି ଦୀନହୀନ ଅବସ୍ଥାରେ ତାଙ୍କ ନିକଟକୁ ଯାଇ ଟିକିଏ ଦେଖା କରି ଆସନ୍ତୁ।'' ସୁଦାମା ଯିବାକୁ ବହୁତ କୁଣ୍ଠିତ ହେଲେ; କିନ୍ତୁ ଶେଷରେ ବିଚାର କଲେ, 'ହେଉ, ଅନ୍ତତଃ ଏହି ବାହାନାରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଦୁର୍ଲଭ ଦର୍ଶନ ଟିକିଏ ମିଳିଯିବ।' ତେଣୁ ସୁଦାମା ଯିବାକୁ ସ୍ଥିର କଲେ। କିନ୍ତୁ ଖାଲିହାତରେ ଯିବେ କିପରି? ସେ ସ୍ତ୍ରୀଙ୍କୁ କହିଲେ, ''କଲ୍ୟାଣି! ଯଦି ଭେଟି ଦେବାକୁ କିଛି ଜିନିଷ ଘରେ ଅଛି, ତେବେ ଆଣ।'' ପତି ତ ଠିକ୍ କହିଲେ; କିନ୍ତୁ ବିଚାରୀ ଦେବେ କଣ? ଘରେ ଖୁଦକଣିଟିଏ ବି ନ ଥିଲା। ବ୍ରାହ୍ମଣୀ କିଛି କହିପାରିଲେ ନାହିଁ; କିନ୍ତୁ ଦେଖିଲେ, କିଛି ନ ଦେଲେ, ସୁଦାମା ଯିବେ ନାହିଁ। ତେଣୁ ସେ ବଡ଼ ସଙ୍କୋଚରେ କିଛି ମାଗିବାକୁ ପଡିଶାଘରକୁ ଗଲେ। ଆଶା ତ ନ ଥିଲା, ତଥାପି ପଡ଼ୋଶୀ ଦୟା କରି ତାଙ୍କୁ ଚାରିମୁଠା ଚୁଡ଼ା ଦେଲେ। ବ୍ରାହ୍ମଣୀ ତାହାକୁ ଖଣ୍ଡିଏ ଚିରା ମଇଳା ଗାମୁଛାରେ ବାନ୍ଧି ଶ୍ରୀକୃଷ୍ଣଙ୍କୁ ଭେଟି ଦେବାପାଇଁ ପତିଙ୍କ ହାତକୁ ବଢ଼ାଇଦେଲେ।

ସୁଦାମା ଦ୍ୱାରକା ଗଲେ। ସେଠାରେ ପଚାରି ପଚାରି ଯାଇ ଭଗବାନଙ୍କର ନଅର ଦୁଆରେ ପହଞ୍ଚିଗଲେ। ଏହି ବିଷୟଟିକୁ କବିବର ନରୋତ୍ତମ ବଡ଼ ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି। ସେ ଲେଖିଛନ୍ତି, ଦ୍ୱାରପାଳ ବଡ଼ ଆଦରରେ ତାଙ୍କୁ ସେଠାରେ ବସାଇଦେଇ ଖବର ଦେବାକୁ ଭଗବାନଙ୍କ ପାଖକୁ ଗଲା। ଯାଇ କହିଲା,

**'ସୀସ ପଗା ନ ଝଗା ତନ ପୈ ପ୍ରଭୁ!**
**ଜାନେ କୋ ଆହି ବସୈ କେହି ଗାଁମା।**
**ଧୋତି ଫଟୀସୀ, ଲଟୀ ଦୁପଟୀ,**
**ଅରୁ ପାୟଁ ଉପାନହ କୀ ନହିଂ ସାମା॥**
**ଦ୍ୱାର ଖଡ଼ୋ ଦ୍ୱିଜ ଦୁର୍ବଲ, ଦେଖି**
**ରହ୍ୟୋ ଚକି ସୋ ବସୁଧା ଅଭିରାମା।**
**ପୂଛତ ଦୀନଦୟାଲ କୋ ଧାମ,**
**ବତାଓ୍ୱତ ଆପନୋ ନାମ ସୁଦାମା॥''**

ଅର୍ଥାତ୍ 'ହେ ପ୍ରଭୁ, ମୁଣ୍ଡରେ ପଗଡ଼ି ନାହିଁ, କି ଦେହରେ ଜାମାପଟା ନାହିଁ; ନାଁ ଗାଁ ଜଣା ନାହିଁ; ଫଟା ଧୋତିଖଣ୍ଡେ ପିନ୍ଧିଛନ୍ତି; କାନ୍ଧରେ ଚିରା ଚାଦର ଖଣ୍ଡିଏ ପଡିଛି; ପାଦରେ ଜୋତା ବି ନାହିଁ; ଏପରି ଜଣେ ଦୁର୍ବଳ ବ୍ରାହ୍ମଣ ଆସି ଦ୍ୱାରରେ ଠିଆ ହୋଇଛନ୍ତି। ଦେଖିଲି, ସେ ଚକିତ ହୋଇ ଦ୍ୱାରକାର ଶୋଭା ଦେଖୁଛନ୍ତି ଓ ଦୀନଦୟାଳୁ କୃଷ୍ଣଙ୍କ ଧାମ କେଉଁଠି ବୋଲି ପଚାରୁଛନ୍ତି। ନିଜ ନାମ ସୁଦାମା ବୋଲି କହୁଛନ୍ତି।''

'ସୁଦାମା' ଶବ୍ଦ ଶୁଣିବାମାତ୍ରେ ଭଗବାନ୍ ସମ୍ପୂର୍ଣ୍ଣଭାବରେ ନିଜର ସ୍ଥିତି ଭୁଲିଗଲେ। ସତେ ଯେପରି ତାଙ୍କର ବୁଦ୍ଧିଶୁଦ୍ଧି ହଜିଗଲା। ସେ ତରବର ହୋଇ

ଉଠିପଡ଼ିଲେ। ମୁକୁଟ ସେଇଠି ରହିଗଲା। ପୀତାମ୍ବର ଖସିପଡ଼ିଲା। ପାଦୁକା ପିନ୍ଧିବାକୁ ବି ସମୟ ପାଇଲେ ନାହିଁ। ସିଂହଦ୍ୱାରକୁ ଧାଇଁଲେ। ଦୂରରୁ ହିଁ ସୁଦାମାଙ୍କର ଦୁର୍ଦ୍ଦଶା ଦେଖିଦେଇ ସେ କହିଲେ —

**ଐସେ ବିହାଲ ବିୱାଇନ ସୌଁ,**
**ପଗ କଣ୍ଟକ ଜାଲ ଗଡ଼େ ପୁନି ଜୋଏ।**
**ହାୟ! ମହାଦୁଖ ପାଏ ସଖା! ତୁମ**
**ଆଏ ଇତେ ନ, କିତେ ଦିନ ଖୋଏ॥**
**ଦେଖି ସୁଦାମ କୀ ଦୀନ ଦସା**
**କରୁନା କରିକେ କରୁନାନିଧି ରୋଏ,**
**ପାନି ପରାତ କୋ ହାଥ ଛୁୟୋ ନହିଁ**
**ନୈନନ କେ ଜଲ ସୌଁ ପଗ ଧୋଏ॥**

**(ନରୋତ୍ତମ କବି)**

ଅର୍ଥାତ୍ 'ସଖାଙ୍କର ସେହି ଦୁର୍ଦ୍ଦଶା ଦେଖି, ପାଦରେ ଏତେ କଣ୍ଟା ପଶିଯାଇଥିବା ଦେଖି ପ୍ରଭୁ ବିହ୍ୱଳ ହୋଇ କହିପକାଇଲେ, ''ହାୟ ସଖା! ତୁମେ ଏପରି ମହାଦୁଃଖ ପାଇବା ପରେ, ଏତେ ଦିନକେ ଆସିଲ!' ସୁଦାମାଙ୍କର ଦୀନଦଶା ଦେଖି କରୁଣାନିଧି କରୁଣାରେ ବିଗଳିତ ହୋଇ କାନ୍ଦିପକାଇଲେ। ଜଳପାତ୍ରରେ ଜଳ ନେଇ ପାଦ ଧୋଇବାକୁ ପଡ଼ିଲା ନାହିଁ; ନୟନନୀରରେ ପାଦ ଧୋଇ ହୋଇଗଲା।''

ନୟନନୀରରେ ସୁଦାମାଙ୍କର ପାଦ ଧୋଇଦେଇ ପ୍ରଭୁ ତାଙ୍କୁ ଛାତିରେ ଜାବୋଡ଼ିଧରିଲେ। ତା'ପରେ ଭଗବାନ୍ ତାଙ୍କୁ ଆଦରରେ ନଅରକୁ ନେଇଗଲେ ଏବଂ ସେଠାରେ ନିଜର ଦିବ୍ୟ ପଲଙ୍କରେ ବସାଇଲେ ଓ ପୂଜାସାମଗ୍ରୀ ସଂଗ୍ରହ କରି, ନିଜ ହାତରେ ସୁଦାମାଙ୍କର ପାଦ ଧୋଇଦେଲେ ଓ ନିଜେ ତ୍ରିଲୋକପାବନ ହୋଇଥିଲେ ବି ସେହି ଜଳକୁ ନିଜ ମସ୍ତକରେ ଧାରଣ କଲେ।

ତା'ପରେ ଭଗବାନ୍ ପ୍ରିୟ ମିତ୍ରଙ୍କ ଶରୀରରେ ଦିବ୍ୟ ଗନ୍ଧଚନ୍ଦନ, ଅଗୁରୁ, କୁଙ୍କୁମ ଲଗାଇଦେଲେ ଏବଂ ସୁଗନ୍ଧିତ ଧୂପ, ଦୀପ ଆଦିଦ୍ୱାରା ପୂଜା କରି ତାଙ୍କୁ ଦିବ୍ୟଭୋଜନ ନିବେଦନ କଲେ। ତା'ପରେ ପାନଗୁଆ ଦେଲେ। ବ୍ରାହ୍ମଣ ସୁଦାମାଙ୍କ ଶରୀର ଅତ୍ୟନ୍ତ ମଳିନ ଓ କ୍ଷୀଣ ହୋଇଯାଇଥିଲା। ଦୁର୍ବଳତାଯୋଗୁଁ ଦେହସାରା ସ୍ଥାନେ ସ୍ଥାନେ ଶିରାପ୍ରଶିରା ଦେଖାଯାଉଥିଲା। ସେ ଖଣ୍ଡିଏ ଫଟା-ପୁରୁଣା ଲୁଗା ପିନ୍ଧିଥିଲେ। କିନ୍ତୁ ଭଗବାନଙ୍କର ପ୍ରିୟ ସଖା ହୋଇଥିବାରୁ ସାକ୍ଷାତ୍ ଲକ୍ଷ୍ମୀଙ୍କର ଅବତାର ରୁକ୍ମିଣୀ ତାଙ୍କର ସଖୀମାନଙ୍କ ସହିତ ରତ୍ନଦଣ୍ଡଯୁକ୍ତ ବ୍ୟଜନଚାମର ହାତରେ ଧରି ସେହି ଅତି ଦରିଦ୍ର ଭିକ୍ଷୁକ ବ୍ରାହ୍ମଣଙ୍କୁ ବଡ଼ ପ୍ରେମ ଓ ଶ୍ରଦ୍ଧାର ସହିତ ସେବାପୂଜା କରିବାକୁ ଲାଗିଲେ। ଭଗବାନ୍ ଶ୍ରୀକୃଷ୍ଣ ସୁଦାମାଙ୍କ ହାତକୁ ଧରି ବାଲ୍ୟକାଳର ମଜାକଥାମାନ କହିବାକୁ ଲାଗିଲେ।

କିଛି ସମୟ ପରେ ଭଗବାନ୍ ପ୍ରିୟ ମିତ୍ରଙ୍କୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହିଁ ହସି ହସି ପଚାରିଲେ, ''ଭାଇ! ତୁମେ ମୋପାଇଁ କିଛି ଭେଟି ଆଣିଛ କି? ଭକ୍ତମାନଙ୍କର ପ୍ରେମପୂର୍ବକ ପ୍ରଦତ୍ତ ସାମାନ୍ୟ ପଦାର୍ଥକୁ ବି ମୁଁ ବହୁତ ମନେ କରେ; କାରଣ ମୁଁ ହେଉଛି ପ୍ରେମର ଭିକାରୀ। ଭକ୍ତିହୀନ ଲୋକର ପ୍ରଦତ୍ତ ଅପାର ସାମଗ୍ରୀ ମଧ୍ୟ ମୋତେ ସନ୍ତୁଷ୍ଟ କରିପାରେ ନାହିଁ।''

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି।**
**ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ॥**

(ଶ୍ରୀମଦ୍‌ଭାଗବତ ୧୦/୮୧/୪)

ଭଗବାନ୍ ଏହା କହିବା ପରେ ବି ସୁଦାମା ଚୁଡ଼ା ପୁଟୁଳିଟି ତାଙ୍କୁ ଦେଇପାରିଲେ ନାହିଁ।

ଭଗବାନଙ୍କର ଅତୁଳ ରାଜ୍ୟସମ୍ପଦ ଓ ବୈଭବ ଦେଖି ତାଙ୍କୁ ଚୁଡ଼ା ଦେବାପାଇଁ ସୁଦାମାଙ୍କୁ ଅତ୍ୟନ୍ତ ସଂକୋଚ ଲାଗିଲା।

ସେତେବେଳେ ସକଳ ପ୍ରାଣୀଙ୍କ ଅନ୍ତର କଥା ଜାଣିପାରୁଥିବା ହରି ବ୍ରାହ୍ମଣଙ୍କ ଆସିବାର କାରଣ ବୁଝିପାରି ବିଚାର କଲେ, ''ଏ ତ ମୋର ନିଷ୍କାମ ଭକ୍ତ ଓ ପ୍ରିୟ ସଖା। ଏ ତ ଧନକାମନାରେ ପୂର୍ବେ କେବେ ହେଲେ ମୋର ଭଜନ କରି ନାହାନ୍ତି ଏବଂ ବର୍ତ୍ତମାନ ମଧ୍ୟ ଏହାଙ୍କର ସେପରି କୌଣସି କାମନା ନାହିଁ। କେବଳ ନିଜ ପତିବ୍ରତା ସ୍ତ୍ରୀଙ୍କ ପ୍ରାର୍ଥନାରେ ମୋ ପାଖକୁ ଆସିଛନ୍ତି। ଅତଏବ ଏହାଙ୍କୁ ମୁଁ ସେହି (ଭୋଗ ଓ ମୋକ୍ଷରୂପକ) ସମ୍ପତ୍ତି ଦେବି, ଯାହା କି ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲ୍ଲଭ।''

ଏପରି ବିଚାର କରି ଭଗବାନ୍ 'ଏ କଣ?' କହି ସଙ୍ଗେ ସଙ୍ଗେ ସୁଦାମାଙ୍କ କାଖତଳେ ଜକାଯାଇଥିବା ଚୁଡ଼ା ପୁଟୁଳିଟି ଛଡ଼ାଇନେଲେ। ଗାମୁଛା ଖଣ୍ଡିକ ପୁରୁଣା ଓ ଚିରା ହୋଇଥିବାରୁ ପୁଟୁଳି ଫାଟିଗଲା ଏବଂ ଚୁଡ଼ାତକ ଚାରିଆଡ଼େ ବିଞ୍ଛି ହୋଇଗଲା। ଭଗବାନ୍ ଅତ୍ୟନ୍ତ ପ୍ରେମରେ କହିବାକୁ ଲାଗିଲେ —

ନତ୍ୱେତଦୁପନୀତଂ ମେ ପରମପ୍ରୀଣନଂ ସଖେ ।
ତର୍ପୟନ୍ତ୍ୟଙ୍ଗ ମାଂ ବିଶ୍ୱମେତେ ପୃଥୁକତଣ୍ଡୁଳାଃ ॥
(ଶ୍ରୀମଦ୍‌ଭାଗବତ ୧୦/୮୧/୯)

'ହେ ସଖା, ଆପଣ ଆଣିଥିବା ଏହି ଚୂଡ଼ା ଉପହାର ମୋତେ ଅତ୍ୟନ୍ତ ପ୍ରସନ୍ନ କରୁଛି। ଏହି ଚୂଡ଼ା ମୋତେ ଏବଂ (ମୋ ସହିତ) ସମଗ୍ର ବିଶ୍ୱକୁ ତୃପ୍ତ କରିଦେବ।' ଏପରି କହି ଭଗବାନ୍ ବିଞ୍ଚି ହୋଇ ପଡ଼ିଥିବା ସେହି ଚୂଡ଼ା ଗୋଟେଇ ଗୋଟେଇ ପାଟିରେ ପକାଇବାକୁ ଲାଗିଲେ। ଭକ୍ତ ପ୍ରେମପୂର୍ବକ ଆଣିଥିବା ଉପହାରକୁ ଏପରିଭାବରେ ଭୋଗ ଲଗାଇ ପ୍ରଭୁ ନିଜର ଅତୁଳନୀୟ ପ୍ରେମର ପରିଚୟ ଦେଲେ।

କିଛି ଦିନ ବଡ଼ ଆନନ୍ଦରେ ସେଠାରେ ରହିବା ପରେ ସୁଦାମା ନିଜ ଘରକୁ ଫେରିଲେ। ଏଥିମଧ୍ୟରେ ଘରର ରୂପାନ୍ତର ହୋଇସାରିଥିଲା। ଭଗବାନଙ୍କର ଲୀଳାଫଳରେ ଭଙ୍ଗାକୁଡ଼ିଆ ସ୍ୱର୍ଣ୍ଣମହଲରେ ପରିଣତ ହୋଇଯାଇଥିଲା। ସୁଦାମା ଏସବୁ ଭଗବାନଙ୍କର ଲୀଳା ବୋଲି ଜାଣି ତାହା ସ୍ୱୀକାର କଲେ ଏବଂ ମନେ ମନେ କହିଲେ, ''ଧନ୍ୟ!, ଧନ୍ୟ! ମୋ ସଖା ଏପରି ଯେ, ମାଗିବା ଲୋକ ନ ମାଗୁଣୁ, ସେ ଗୁପ୍ତରେ ସବୁକିଛି ଦେଇ ତା'ର ମନୋରଥ ପୂର୍ଣ୍ଣ କରିଦିଅନ୍ତି। କିନ୍ତୁ ମୋର ତ ଧନ ଲୋଡ଼ା ନାହିଁ। ମୋର ବାରମ୍ବାର ଏହି ପ୍ରାର୍ଥନା ଯେ, ଜନ୍ମଜନ୍ମାନ୍ତରେ ସେହି ଶ୍ରୀକୃଷ୍ଣ ମୋର ସୁହୃଦ୍, ସଖା ତଥା ମିତ୍ର ହୁଅନ୍ତୁ ଏବଂ ମୁଁ ତାଙ୍କର ଅନନ୍ୟ ଭକ୍ତ ହୋଇ ରହେ। ମୁଁ ଏହି ସମ୍ପତ୍ତି ଚାହେଁ ନାହିଁ। ମୋର ତ ପ୍ରତ୍ୟେକ ଜନ୍ମରେ ସେହି ସର୍ବଗୁଣସମ୍ପନ୍ନ ଭଗବାନଙ୍କର ବିଶୁଦ୍ଧ ଭକ୍ତି ଓ ତାଙ୍କ ଭକ୍ତମାନଙ୍କର ପବିତ୍ର ସତ୍‌ସଙ୍ଗ ଆବଶ୍ୟକ। ସେ ଦୟା କରି ହିଁ ଧନ ଦିଅନ୍ତି ନାହିଁ; କାରଣ, ଧନଗର୍ବରେ ଧନବାନ୍‌ର ଅଧଃପତନ ହୋଇଯାଏ। ଅତଏବ ସେ ନିଜର ଅଦୂରଦର୍ଶୀ ଭକ୍ତକୁ ସମ୍ପତ୍ତି, ରାଜ୍ୟ ଓ ଐଶ୍ୱର୍ଯ୍ୟ ଦିଅନ୍ତି ନାହିଁ।'' ସୁଦାମା ଆଜୀବନ ଅନାସକ୍ତଭାବରେ ଘରେ ରହିଲେ ଏବଂ ନିଜର ସମସ୍ତ ସମୟ ଭଗବାନଙ୍କ ଭଜନରେ ହିଁ ଲଗାଇଦେଲେ।

## ଦ୍ରୌପଦୀ

ପାଣ୍ଡବମାନେ ବନରେ ରହି ଦୁଃଖରେ ଦିନ କାଟୁଥିଲେ। କିନ୍ତୁ ଦୁର୍ଯ୍ୟୋଧନଙ୍କ ଖଳମଣ୍ଡଳୀ ନିଜର ଦୁଷ୍ଟବୁଦ୍ଧିହେତୁ ସେମାନଙ୍କର ବିନାଶ କଥା ହିଁ ଚିନ୍ତା କରୁଥିଲେ। ଦୁର୍ଯ୍ୟୋଧନ ଥରେ ଦୁର୍ବାସା ମୁନିଙ୍କୁ ସନ୍ତୁଷ୍ଟ କରାଇ ତାଙ୍କୁ ବର ମାଗିଲେ, ''ଆମର ଧର୍ମାତ୍ମା ବଡ଼ଭାଇ ମହାତ୍ମା ଯୁଧିଷ୍ଠିର ତାଙ୍କ ଭାଇମାନଙ୍କ ସହିତ ବଣରେ ରହୁଛନ୍ତି। ଦିନେ ଆପଣ ନିଜର ଦଶହଜାର ଶିଷ୍ୟଙ୍କ ସହିତ ତାଙ୍କ ପାଖକୁ ଯାଇ ତାଙ୍କ ଅତିଥି ହୁଅନ୍ତୁ। କିନ୍ତୁ ପ୍ରାର୍ଥନା ଏତିକି ଯେ, ସେଠାରେ ସମସ୍ତେ ଖାଇପିଇ ସାରିବା ପରେ, ଯେତେବେଳେ ଯଶସ୍ୱିନୀ ଦ୍ରୌପଦୀ ମଧ୍ୟ ଖାଇପିଇ ସାରି ବିଶ୍ରାମ କରୁଥିବେ, ଆପଣ ସେତେବେଳେ ସେଠାକୁ ଯିବେ।' ଦୁର୍ଯ୍ୟୋଧନ ଖଳମଣ୍ଡଳୀଙ୍କ ପରାମର୍ଶ ଅନୁଯାୟୀ ଏପରି ବର ମାଗିଦେଇ ଭାବିଲେ, ଦ୍ରୌପଦୀ ଖାଇସାରିବା ପରେ ସୂର୍ଯ୍ୟ ଦେଇଥିବା ପାତ୍ରରୁ ସେଦିନପାଇଁ ଆଉ ଅନ୍ନ ମିଳିବ ନାହିଁ, ତଦ୍ୱାରା କୋପୀ ଦୁର୍ବାସା ପାଣ୍ଡବମାନଙ୍କୁ ଶାପ ଦେଇ ଭସ୍ମ କରିଦେବେ ଏବଂ ଏପରିଭାବରେ ସହଜରେ ତାଙ୍କ କାର୍ଯ୍ୟ ସିଦ୍ଧ ହୋଇଯିବ। ସରଳହୃଦୟ ଦୁର୍ବାସା ଦୁର୍ଯ୍ୟୋଧନଙ୍କ କପଟତା ବୁଝି ନ ପାରି ତାଙ୍କ କହିବା ଅନୁସାରେ ଯାଇ ପାଣ୍ଡବମାନଙ୍କର ବାସସ୍ଥାନ କାମ୍ୟକବନରେ ପହଞ୍ଚିଲେ। ଦ୍ରୌପଦୀ ଖାଇପିଇସାରି ଆରାମରେ ବସି କଥାବାର୍ତ୍ତା କରୁଥିବାବେଳେ ଦଶହଜାର ଶିଷ୍ୟଙ୍କୁ ନେଇ ଦୁର୍ବାସା ଯାଇ ସେଠାରେ ପହଞ୍ଚିଗଲେ। ଯୁଧିଷ୍ଠିର ଭାଇମାନଙ୍କ ସହ ଋଷିଙ୍କୁ ସ୍ୱାଗତସତ୍କାର କଲେ ଏବଂ ଭୋଜନ କରିବାପାଇଁ ପ୍ରାର୍ଥନା କଲେ। ଦୁର୍ବାସା ପ୍ରାର୍ଥନା ସ୍ୱୀକାର କଲେ ଏବଂ ସ୍ନାନାଦି କରି ଆସିବାପାଇଁ ନଦୀକୁ ଚାଲିଗଲେ। ଏଣେ ଦ୍ରୌପଦୀ ବଡ଼ ଚିନ୍ତାରେ ପଡ଼ିଗଲେ। କିନ୍ତୁ ଏହି ବିଷମ ଅବସ୍ଥାରେ ପ୍ରିୟ ବନ୍ଧୁ ଶ୍ରୀକୃଷ୍ଣଙ୍କ ଛଡ଼ା ତାଙ୍କ କୃଷ୍ଣାଙ୍କୁ ଆଉ କିଏ ବା ରକ୍ଷା କରିବ! ସେ ଭଗବାନଙ୍କୁ ସ୍ମରଣ କରି କହିଲେ, 'ହେ କୃଷ୍ଣ! ହେ ଗୋପାଳ! ହେ ଅଶରଣଶରଣ! ହେ ଶରଣାଗତବତ୍ସଳ! ଏବେ ଏହି ବିପତ୍ତିରୁ ମୋତେ ଉଦ୍ଧାର କର –

ଦୁଃଶାସନାଦହଂ ପୂର୍ବଂ ସଭାୟାଂ ମୋଚିତା ଯଥା।
ତଥୈବ ସଂକଟାଦସ୍ମାନ୍ ମାମୁଦ୍ଧର୍ତୁମିହାର୍ହସି ॥
(ମହା.ବନ. ୨୬୩/୧୬)

ଅର୍ଥାତ୍ 'ଆପଣ ପୂର୍ବେ କୌରବଙ୍କ ରାଜସଭାରେ ଯେପରି ଦୁଷ୍ଟ ଦୁଃଶାସନହାତରୁ ମୋତେ ରକ୍ଷା କରିଥିଲେ,

ସେହିପରି ମୋତେ ଏହି ବିପତ୍ତିରୁ ମଧ୍ୟ ଉଦ୍ଧାର କରିବା ଉଚିତ।' ସେତେବେଳକୁ ଭଗବାନ୍ ଦ୍ୱାରକାରେ ରୁକ୍ମିଣୀଙ୍କ ନଅରରେ ଥିଲେ। ଦ୍ରୌପଦୀଙ୍କ ସ୍ତୁତି ଶୁଣିବା କ୍ଷଣି ସେ ସଙ୍କଟରେ ଥିବା ଜାଣିପାରି, ଭକ୍ତବତ୍ସଳ ଭଗବାନ୍ ରୁକ୍ମିଣୀଙ୍କୁ ଛାଡ଼ି ଅତ୍ୟନ୍ତ ତୀବ୍ର ଗତିରେ ଦ୍ରୌପଦୀଙ୍କ ନିକଟକୁ ଧାଇଁଲେ। ଅଚିନ୍ତ୍ୟଗତି ପରମେଶ୍ୱରଙ୍କୁ ଆସିବାରେ କଣ ସମୟ ଲାଗିବ! ସେ ତୁରନ୍ତ ଆସି ଦ୍ରୌପଦୀଙ୍କ ନିକଟରେ ପହଞ୍ଚିଗଲେ। ତାଙ୍କୁ ଦେଖି ସତେ ଯେପରି ଦ୍ରୌପଦୀଙ୍କର ପ୍ରାଣ ଫେରି ଆସିଲା। ସେ ପ୍ରଣାମ କରି ଭଗବାନଙ୍କୁ ସମସ୍ତ ବିଷୟ ଶୁଣାଇଲେ। ଭଗବାନ୍ କହିଲେ, ''ଏ ବିଷୟରେ ପଛେ କଥା ହେବା। ମୋତେ ବଡ଼ ଭୋକ ଲାଗୁଛି; ଶୀଘ୍ର କିଛି ଖାଇବାକୁ ଦିଅ।' ଦ୍ରୌପଦୀ କହିଲେ, 'ଭଗବାନ୍, ଖାଇବାକୁ କିଛି ନାହିଁ ବୋଲି ତ ମୁଁ ଆପଣଙ୍କୁ ସ୍ମରଣ କଲି। ମୁଁ ଖାଇସାରିଛି; ସେହି ପାତ୍ରରେ ଆଉ କିଛି ନାହିଁ।' ଭଗବାନ୍ ବଡ଼ ପରିହାସପ୍ରିୟ ଥିଲେ; କହିଲେ—

**କୃଷ୍ଣେ ନ ନର୍ମକାଳୋଽୟଂ କ୍ଷୁଚ୍ଛ୍ରମେଣାତୁରେ ମୟି।**
**ଶୀଘ୍ରଂ ଗଚ୍ଛ ମମ ସ୍ଥାଲୀମାନୟିତ୍ୱା ପ୍ରଦର୍ଶୟ॥**

(ମହା.ବନ. ୨୬୩/୨୩)

ଅର୍ଥାତ୍ 'ହେ ଦ୍ରୌପଦୀ, ଏପଟେ ଭୋକ, ସେପଟେ ବାଟ ଚାଲି ଚାଲି ମୁଁ କ୍ଳାନ୍ତିରେ ବ୍ୟାକୁଳ ହେଉଛି। ଏଇଟା ମୋ ସହିତ ଥଟ୍ଟାପରିହାସ ଖେଳିବାର ସମୟ ନୁହେଁ। ଶୀଘ୍ର ଯାଅ; ସୂର୍ଯ୍ୟ ଦେଇଥିବା ପାତ୍ରଟି ଆଣି ମୋତେ ଦେଖାଅ।'

ଦ୍ରୌପଦୀ ବିଚାରି କରିବେ କଣ! ପାତ୍ରଟି ଆଣି ଭଗବାନଙ୍କ ଆଗରେ ରଖିଦେଲେ। ଭଗବାନ୍ ସୂକ୍ଷ୍ମଦୃଷ୍ଟିରେ ପାତ୍ର ଭିତରକୁ ଚାହିଁଲେ; ଖୋଜି ଖୋଜି ତା'ଭିତରେ ଲାଗିଥିବା ଶାଗପତ୍ରଟିଏ ବାହାର କଲେ। କହିଲେ, 'ତୁମେ କହୁଥିଲ, କିଛି ନାହିଁ ବୋଲି; କିନ୍ତୁ ଏହି ଗୋଟିକ ପତ୍ରରେ ତ ତ୍ରିଭୁବନ ତୃପ୍ତ ହୋଇଯିବ।' ଯଜ୍ଞଭୋକ୍ତା ଭଗବାନ୍ ଶାଗପତ୍ରଟି ବାହାର କରି ଆଣି ପାଟିରେ ପକାଇଦେଲେ। କହିଲେ—

**ବିଶ୍ୱାତ୍ମା ପ୍ରୀୟତାଂ ଦେବସ୍ତୁଷ୍ଟଶ୍ଚାସ୍ତିତି ଯଜ୍ଞଭୁକ୍।**

(ମହା.ବନ. ୨୬୩/୨୫)

ଅର୍ଥାତ୍ 'ଏହି ପତ୍ରଟିରେ ସମଗ୍ର ବିଶ୍ୱର ଆତ୍ମା ଯଜ୍ଞଭୋକ୍ତା ଭଗବାନ୍ ତୃପ୍ତ ହୋଇଯାଆନ୍ତୁ।' ଏପରି କହି ସଙ୍ଗେ ସଙ୍ଗେ ସହଦେବଙ୍କୁ କହିଲେ, 'ଯାଅ, ଋଷିମାନଙ୍କୁ ଭୋଜନପାଇଁ ଡାକିଆଣ।' ସେତେବେଳକୁ ନଦୀତଟରେ ଆଉ ଏକ ଚମତ୍କାର ଘଟିଯାଇଥିଲା। ସ୍ନାନ ସାରି ସନ୍ଧ୍ୟା କରୁ କରୁ ଦୁର୍ବାସାଙ୍କ ଶିଷ୍ୟମାନଙ୍କର ପେଟ ଫୁଲିଗଲା ଏବଂ ଢେକାର ଆସିବାକୁ ଲାଗିଲା। ସେମାନେ ଦୁର୍ବାସାଙ୍କୁ କହିଲେ— 'ମହାଭାଗ! ଆମର ତ ଗଳାପର୍ଯ୍ୟନ୍ତ ପେଟ ଭରି ହୋଇଯାଇଛି; ସେଠିକି ଯାଇ ଆଉ ଖାଇବୁ କଣ?' ଦୁର୍ବାସାଙ୍କର ମଧ୍ୟ ସେହି ଦଶା। ସେ କହିଲେ, 'ପିଲେ! ଚାଲ, ଏଠୁ ଶୀଘ୍ର ପଳାଇଯିବା। ଏହି ପାଣ୍ଡବମାନେ ବଡ଼ ଧର୍ମାତ୍ମା, ବିଦ୍ୱାନ୍ ଓ ସଦାଚାରୀ; ପୁଣି ଭଗବାନ୍ ଶ୍ରୀକୃଷ୍ଣଙ୍କର ଅନନ୍ୟ ଭକ୍ତ। ସେମାନେ ଚାହିଁଲେ, ତୂଳାଗଦାକୁ ଯେପରି ନିଆଁ ଭସ୍ମ କରିଦିଏ, ଆମକୁ ସେପରି ଭସ୍ମ କରିଦେଇପାରିବେ। ମୁଁ ଆଜିଯାଏ ଅମ୍ବରୀଷଙ୍କ ଘଟଣା ଭୁଲି ନାହିଁ। ଶ୍ରୀକୃଷ୍ଣଙ୍କ ଶରଣାଗତମାନଙ୍କୁ ମୋର ଭାରି ଭୟ।'' ଦୁର୍ବାସାଙ୍କର ଏହି କଥା ଶୁଣି ଶିଷ୍ୟମଣ୍ଡଳୀ କିଏ କେଉଁଆଡ଼େ ପଳାଇଗଲେ ଯେ, ସହଦେବ ଜଣକୁ ବି ପାଇଲେ ନାହିଁ।

ଏଥର ଭଗବାନ୍ ପାଣ୍ଡବମାନଙ୍କୁ ଓ ଦ୍ରୌପଦୀଙ୍କୁ କହିଲେ, 'ବେଶ; ଏଥର ମୋତେ ଦ୍ୱାରକା ଯିବାକୁ ଦିଅ। ତୁମେ ସବୁ ଧର୍ମାତ୍ମା। ନିରନ୍ତର ଧର୍ମପରାୟଣ ଲୋକଙ୍କ ପାଖରେ କେବେ ଦୁଃଖ ପଶିପାରେ ନାହିଁ।'—

**ଧର୍ମନିତ୍ୟାସ୍ତୁ ଯେ କେଚିନ୍ ନ ତେ ସୀଦନ୍ତି କର୍ହିଚିତ୍।**

(ମହା.ବନ. ୨୬୩/୪୪)

## ଗଜେନ୍ଦ୍ର

ଗଜେନ୍ଦ୍ର ତ୍ରିକୂଟ ପର୍ବତରେ ରହୁଥିଲା। ଦିନେ ସେ ଗ୍ରୀଷ୍ମରେ ଛଟପଟ ହୋଇ ବଡ଼ ବଡ଼ ହାତୀ ଓ ହାତୁଣୀମାନଙ୍କ ସହିତ ଯାଇ ବରୁଣଦେବଙ୍କର ଋତୁମାନ୍ ନାମକ ଉଦ୍ୟାନରେ ଥିବା ଗୋଟିଏ ବିସ୍ତୃତ ସରୋବରତଟରେ ପହଞ୍ଚିଲା। ସରୋବରରେ ପଶି ସେ ଅମୃତତୁଲ୍ୟ ଜଳ ପାନ କଲା ଏବଂ ହାତୁଣୀ ଓ ସେମାନଙ୍କର ଛୁଆ ହାତୀଙ୍କ ସହିତ ଖେଳିବାକୁ ଲାଗିଲା। ସେହି ସରୋବରରେ ଗୋଟିଏ ବିରାଟ ବଳବାନ୍ କୁମ୍ଭୀର ରହୁଥିଲା। ସେହି କୁମ୍ଭୀର ଗଜେନ୍ଦ୍ରର ପାଦକୁ କାମୁଡ଼ି ଧରିଲା। ଗଜେନ୍ଦ୍ର ନିଜର ସବୁ ବଳ ଖଟାଇ କୁମ୍ଭୀରକବଳରୁ ମୁକୁଳିବାକୁ ଚେଷ୍ଟା କଲା; କିନ୍ତୁ ମୁକୁଳିପାରିଲା ନାହିଁ।

କୁମ୍ଭୀର ତାକୁ ଗଭୀର ପାଣିକୁ ଟାଣିନେବାକୁ ବସିଲା। ସାଥିରେ ଥିବା ହାତୀ ଓ ହାତୁଣୀମାନେ ଶୁଣ୍ଢକୁ ଶୁଣ୍ଢ ଯୋଡ଼ି ଗଜେନ୍ଦ୍ରକୁ ଉଦ୍ଧାର କରିବାପାଇଁ ବାହାରକୁ ଟାଣିଲେ; କିନ୍ତୁ ପାରିଲେ ନାହିଁ। ଗଜେନ୍ଦ୍ର ଓ କୁମ୍ଭୀର ଭିତରେ ବହୁ ସମୟଯାଏଁ ଲଢ଼େଇ ଚାଲିଲା। ଶେଷରେ ଗଜେନ୍ଦ୍ର କାତର ହୋଇ ଭଗବାନଙ୍କ ଶରଣ ଲୋଡ଼ିଲା –

**ଯଃ କଶ୍ଚନେଶୋ ବଲିନୋଽନ୍ତକୋରଗାତ୍**
**ପ୍ରଚଣ୍ଡବେଗାଦଭିଧାବତୋ ଭୃଶମ୍।**
**ଭୀତଂ ପ୍ରପନ୍ନଂ ପରିପାତି ଯଦ୍‌ଭୟାନ୍–**
**ମୃତ୍ୟୁଃ ପ୍ରଧାବତ୍ୟରଣଂ ତମୀମହି॥**

(ଶ୍ରୀମଦ୍‌ଭାଗବତମ୍ ୮/୨/୩୩)

ଅର୍ଥାତ୍ 'ଯେ ଅତ୍ୟନ୍ତ ପ୍ରଚଣ୍ଡ ବେଗରେ ଧାବମାନ କାଳରୂପକ ସର୍ପର ଭୟରେ ଭୀତତ୍ରସ୍ତ ହୋଇଥିବା ଶରଣାଗତ ପ୍ରାଣୀକୁ ରକ୍ଷା କରନ୍ତି, ତଥା ଯାହାଙ୍କ ଭୟରେ ମୃତ୍ୟୁ ମଧ୍ୟ (ପ୍ରାଣୀଙ୍କୁ ମାରିବାପାଇଁ) ଇତସ୍ତତଃ ଧାଉଁଛି, ମୁଁ ସେହି ଈଶ୍ୱରଙ୍କ ଶରଣ ନେଉଛି।'

ଗଜେନ୍ଦ୍ର ମନେ ମନେ ଅତି ସୁନ୍ଦର ସ୍ତୁତି ମଧ୍ୟ କଲା। ଭଗବାନ୍ ଭକ୍ତର ଡାକ ଶୁଣିଲେ ଏବଂ ଶୁଣିବା କ୍ଷଣି ଭକ୍ତକୁ ରକ୍ଷା କରିବାପାଇଁ ଅଧୀର ହୋଇପଡ଼ିଲେ। ଭଗବାନଙ୍କର ସେହି ବ୍ୟଗ୍ର ଅବସ୍ଥାକୁ ଲକ୍ଷ୍ୟ କରି ଜଣେ କବି ବଡ଼ ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି –

**ପର୍ଯ୍ୟଙ୍କଂ ବିସୃଜନ୍ ଗଣାନଗଣୟନ୍ ଭୂଷାମଣିଂ ବିସ୍ମରନ୍–**
**ଭକ୍ତାନୋଽପି ଗଦାଗଦେତି ନିଗଦନ୍ ପଦ୍ମାମନାଲୋକୟନ୍।**
**ନିର୍ଗଚ୍ଛନ୍ନପରିଚ୍ଛଦଂ ଖଗପତିଂ ଚାରୋହମାଣୋଽବତୁ**
**ଗ୍ରାହଗ୍ରସ୍ତମତଙ୍ଗପୁଙ୍ଗବସମୁଦ୍ଧାରାୟ ନାରାୟଣଃ॥**

ଅର୍ଥାତ୍ 'କୁମ୍ଭୀରକବଳରେ ପଡ଼ିଥିବା ଗଜେନ୍ଦ୍ରକୁ ରକ୍ଷା କରିବାପାଇଁ ବ୍ୟଗ୍ର ହୋଇ ପଲଙ୍କ ଛାଡ଼ି, ପାର୍ଷଦମାନଙ୍କୁ ଭ୍ରୂକ୍ଷେପ ନ କରି, କୌସ୍ତୁଭମଣି ଭୁଲିଯାଇ, ଉଚ୍ଚ ଉଚ୍ଚ 'ଗଦା' 'ଗଦା' ବୋଲି ଡାକ ଛାଡ଼ି, ଲକ୍ଷ୍ମୀଙ୍କ ଆଡ଼କୁ ବି ନ ଚାହିଁ ଏବଂ ଗରୁଡ଼ପିଠିରେ କିଛି ଆସନ ନ ପକାଇ, ଖାଲିପିଠିରେ ବସି ଯାଉଥିବା ଭଗବାନ୍ ନାରାୟଣ ଆମକୁ ରକ୍ଷା କରନ୍ତୁ।'

ଗରୁଡ଼ପିଠିରେ ବସି ଭଗବାନ୍ ସେଠାରେ ପହଞ୍ଚିଲେ। ଗଜେନ୍ଦ୍ର ଗରୁଡ଼ପିଠିରେ ବସିଥିବା ଭଗବାନଙ୍କୁ ଆକାଶରେ ଦର୍ଶନ କଲା ଏବଂ ଶୁଣ୍ଢରେ ଗୋଟିଏ ପଦ୍ମଫୁଲ ଧରି ଉପରକୁ ଟେକି ବଡ଼ କଷ୍ଟରେ ଅତ୍ୟନ୍ତ ଆର୍ତ୍ତସ୍ୱରରେ କହିଲା, 'ହେ ନାରାୟଣ, ହେ ସର୍ବଲୋକର ଗୁରୁ, ଆପଣଙ୍କୁ ନମସ୍କାର।'

ଭଗବାନ୍ ଭକ୍ତର ପ୍ରେମପୂର୍ବକ ଅର୍ପିତ ପଦ୍ମଫୁଲଟି ଗ୍ରହଣ କଲେ ଓ ନିଜର ସୁଦର୍ଶନ ଚକ୍ରରେ କୁମ୍ଭୀରର ମସ୍ତକ ଛେଦନ କରି ଗଜେନ୍ଦ୍ରକୁ ମହାସଙ୍କଟରୁ ଉଦ୍ଧାର କଲେ।

## ଶବରୀ

ଶବରୀ ଭୀଲଜାତିର ମହିଳା ଥିଲେ। ହୀନ ଜାତିର ହୋଇ ମଧ୍ୟ ସେ ଥିଲେ ଭଗବାନଙ୍କର ପରମ ଭକ୍ତ। ସେ ତାଙ୍କ ଜୀବନର ଅଧିକାଂଶ ସମୟ ଦଣ୍ଡକାରଣ୍ୟରେ ଲୁଚି ଲୁଚି ଋଷିମାନଙ୍କର ସେବାରେ ବିତାଇଥିଲେ। ଯେଉଁ ରାସ୍ତାରେ ଋଷିମାନେ ସ୍ନାନ କରିବାକୁ ଯାଉଥିଲେ, ସେହି ରାସ୍ତା ଝାଡୁ କରି ସଫା କରିବା, ଗୋଡ଼ିରାସ୍ତାରେ ବାଲି ବିଛାଇବା, ଜଙ୍ଗଲରୁ କାଠ କାଟି ଆଣି ସେମାନଙ୍କ ଆଶ୍ରମରେ ରଖିଦେବା – ଏସବୁ ଥିଲା ତାଙ୍କର ନିତିଦିନିଆ କାମ। ମାତଙ୍ଗ ଋଷି ତାଙ୍କୁ କୃପା କଲେ। ତାଙ୍କୁ ଭଗବାନଙ୍କ ନାମ-ଉପଦେଶ ଦେଲେ ଏବଂ ବ୍ରହ୍ମଲୋକକୁ ଚାଲିଯିବା ସମୟରେ ସେ ଶବରୀଙ୍କୁ କହିଗଲେ, ''ଭଗବାନ୍ ରାମ ତୁମ କୁଡ଼ିଆକୁ ଆସିବେ। ତାଙ୍କ ଦର୍ଶନ ପାଇ ତୁମେ କୃତାର୍ଥ ହୋଇଯିବ; ସେହିଯାଏ ଏଠାରେ ରହି ଭଜନ କର।''

ଶବରୀଙ୍କ ମନ ଭଜନରେ ମଜ୍ଜିଗଲା। ରାମଙ୍କ ଆସିବା ବାଟ ଦେଖି ଦେଖି ତାଙ୍କ ଜୀବନ ବିତିବାକୁ ଲାଗିଲା। ଦିନ ଯେତେ ଗଡ଼ିଯାଉଥାଏ, ଶବରୀଙ୍କ ଉତ୍କଣ୍ଠା ସେତିକି ବଢ଼ିଚାଲିଥାଏ। ସେ ପ୍ରତିଦିନ ଭାବୁଥିଲେ, 'ଏଥର ପ୍ରଭୁ ଆସିଯିବେ; ପ୍ରଭୁଙ୍କ ପାଦରେ କେଉଁଠି କଣ୍ଟା ନ ଲାଗୁ।' ତେଣୁ ସେ ଧାଇଁଯାଇ ବହୁଦୂରପର୍ଯ୍ୟନ୍ତ ରାସ୍ତା ସଫା କରିଦେଇ ଆସୁଥିଲେ। ରାସ୍ତାରେ ପାଣି ଛିଞ୍ଚି ଧୂଳି ଉଡ଼ିବା ବନ୍ଦ କରୁଥିଲେ। କୁଟୀର ଅଗଣାକୁ ଗୋବରରେ ଲିପି ପରିଷ୍କାର କରୁଥିଲେ ଏବଂ ଭଗବାନ୍ ଆସିଲେ ବସିବେ ବୋଲି ମାଟି ଓ ଗୋବର ମିଶାଇ ବେଦୀ ଲିପୁଥିଲେ। ବଣକୁ ଯାଇ ଚାଖି ଚାଖି ଯେଉଁ ଗଛର ଫଳ ମିଠା, ସେହି ଗଛର ଫଳ ତୋଳି ଆଣି ଦନାରେ ରଖୁଥିଲେ। ଏପରିଭାବରେ ତାଙ୍କର ଦିନ ବିତିବାକୁ ଲାଗିଲା। ପ୍ରତିଦିନ ଶବରୀ ଏହି କାମ ହିଁ କରିଚାଲିଥିଲେ। ଦିନଭିତରେ ସେ କେତେ ଥର ଯେ ରାସ୍ତା ଝାଡୁ

କରୁଥିଲେ, ଅଗଣା ସଫା କରୁଥିଲେ, ବେଦୀ ଲିପାପୋଛା କରୁଥିଲେ, ବାଛି ବାଛି ଫଳ ଆଣି ରଖୁଥିଲେ, ତା'ର ଠିକଣା ନାହିଁ। ଶେଷରେ ଦିନେ ଭଗବାନ୍ ତାଙ୍କ କୁଡ଼ିଆକୁ ଆସିଗଲେ। ଶବରୀ କୃତକୃତ୍ୟ ହୋଇଗଲେ। ଶ୍ରୀରାମଚରିତ ମାନସରେ ଗୋସ୍ୱାମୀ ତୁଳସୀଦାସ ଲେଖିଛନ୍ତି —

ସବରୀ ଦେଖି ରାମ ଗୃହ ଆଏ।
ମୁନି କେ ବଚନ ସମୁଝି ଜିୟଁ ଭାଏ॥
ସରସିଜ ଲୋଚନ ବାହୁ ବିସାଲା।
ଜଟା ମୁକୁଟ ସିର ଉର ବନମାଲା॥
ସ୍ୟାମ ଗୌର ସୁନ୍ଦର ଦୋଉ ଭାଈ।
ସବରୀ ପରୀ ଚରନ ଲପଟାଈ॥
ପ୍ରେମ ମଗନ ମୁଖ ବଚନ ନ ଆୱା।
ପୁନି ପୁନି ପଦ ସରୋଜ ସିର ନାୱା॥

—୦—

ଅର୍ଥାତ୍ :- ଦେଖନ୍ତେ ଶବରୀ ଗୃହେ ରାମ ଉପସ୍ଥିତ।
ମୁନିଙ୍କ ବଚନ ସ୍ମରି ହୋଇଲା ହର୍ଷିତ।
ସରସୀରୁହ ଲୋଚନ ବାହୁ ସୁବିଶାଳ।
ମସ୍ତକେ ଜଟାମୁକୁଟ ବକ୍ଷେ ବନମାଳ॥
ଶ୍ୟାମ-ଗଉର ସୁନ୍ଦର ଦୁଇ ସହୋଦର।
ଦେଖି ଶବରୀ ଆନନ୍ଦେ ଲୋଟିଲା ପୟର॥
ପ୍ରେମ-ନିମଗନ ମୁଖୁ ବାଣୀ ନ ସ୍ଫୁରିଲା।
ପୁଣି ପୁଣି ପଦସରସିଜେ ପ୍ରଣମିଲା॥

ଶବରୀ ଆନନ୍ଦସାଗରରେ ବୁଡ଼ିଗଲେ। ପ୍ରେମ-ଆବେଶରେ ତାଙ୍କ ପାଟିରୁ କଥା ବାହାରିଲା ନାହିଁ ଏବଂ ସେ ବାରମ୍ବାର ଭଗବାନଙ୍କ ଚରଣକମଳରେ ମସ୍ତକ ଲଗାଇ ପ୍ରଣାମ କରିବାକୁ ଲାଗିଲେ। ପୁଣି ସେ ଭଗବାନଙ୍କୁ ପୂଜା କଲେ। ଫଳ ଆଣି ଆଗରେ ଥୋଇଲେ। ଭଗବାନ୍ ତାଙ୍କ ଭକ୍ତିର ପ୍ରଶଂସା କରି କରି ତାଙ୍କ ପୂଜା ଗ୍ରହଣ କଲେ ଏବଂ ସେ ପ୍ରେମରେ ଦେଇଥିବା ଫଳ ଖାଇ ତାଙ୍କୁ କୃତାର୍ଥ କରିଦେଲେ। ତାଙ୍କ ଫଳରୁ ଭଗବାନଙ୍କୁ ଅପୂର୍ବ ସ୍ୱାଦ ମିଳିଲା। ତାହା ବର୍ଣ୍ଣନା କରି ତୁଳସୀ ଦାସ କହୁଛନ୍ତି —

ଘର, ଗୁରୁଗୃହ, ପ୍ରିୟ-ସଦନ, ସାସୁରେ ଭଇ ଜବ ଜହଁ ପହୁନାଈ।
ତବ ତହଁ କହି ସବରୀ କେ ଫଲନି କୀ ରୁଚି ମାଧୁରୀ ନ ପାଈ॥

ଅର୍ଥାତ୍ ନିଜ ଘରେ ନୁହେଁ, କି ଗୁରୁଗୃହରେ ନୁହେଁ, କି ମିତ୍ରଙ୍କ ଗୃହରେ ନୁହେଁ କିମ୍ବା ଶ୍ୱଶୁରାଳୟରେ ନୁହେଁ, ଭଗବାନ୍ ଯେବେ ଯେଉଁଠି ସମ୍ବର୍ଦ୍ଧନା ପାଇଛନ୍ତି, କୌଣସି ଠାରେ କେବେ ବି ଭୋଜନରେ ସେ ଶବରୀପ୍ରଦତ୍ତ ଭୋଜନର ସ୍ୱାଦ ପାଇ ନାହାନ୍ତି, କି ଶବରୀହାତର ଫଳର ରୁଚିମାଧୁରୀ ଆସ୍ୱାଦନ କରି ନାହାନ୍ତି; ଏହା ସେ ପ୍ରତ୍ୟେକ ସମ୍ବର୍ଦ୍ଧନାରେ ଉପଲବ୍ଧି କରିଛନ୍ତି।*

## ରନ୍ତିଦେବ

ମହାରାଜ ରନ୍ତିଦେବ ସଂକୃତିନାମକ ଜଣେ ରାଜାଙ୍କର ପୁତ୍ର ଥିଲେ। ସେ ବଡ଼ ପ୍ରତାପୀ ଓ ଦୟାଳୁ ଥିଲେ। ରନ୍ତିଦେବ ଗରିବଙ୍କ ଦୁଃଖ ଦେଖି ନିଜର ସର୍ବସ୍ୱ ଦାନ କରିଦେଲେ। ଫଳରେ ସେ କୌଣସିପ୍ରକାରେ କଷ୍ଟରେ ଜୀବନ ନିର୍ବାହ କରିବାକୁ ଲାଗିଲେ; କିନ୍ତୁ ତାଙ୍କୁ ଯାହା କିଛି ମିଳୁଥିଲା, ନିଜେ ଭୋକରେ ରହି ବି ଗରିବମାନଙ୍କୁ ବାଣ୍ଟିଦେଉଥିଲେ। ଏପରିଭାବରେ ରାଜା ସର୍ବଥା ନିର୍ଦ୍ଧନ ଅବସ୍ଥାରେ ରହି ସପରିବାର ଅତ୍ୟନ୍ତ କଷ୍ଟ ସହିବାକୁ ଲାଗିଲେ।

ଥରେ ପୂରା ଅଠଚାଳିଶ ଦିନଯାଏଁ ରାଜାଙ୍କୁ ଅନ୍ନଜଳ ମିଳିଲା ନାହିଁ। ଭୋକଶୋଷରେ ପୀଡ଼ିତ ରାଜାଙ୍କର ଦୁର୍ବଳ ଶରୀର ଥରିବାକୁ ଲାଗିଲା। ଶେଷରେ ଅଣଚାଶ ଦିନ ସକାଳେ କେହି ଜଣେ ଲୋକ ରାଜପରିବାରକୁ କିଛି ଘିଅ, କ୍ଷୀର, ହାଲୁଆ ଓ କିଛି ଜଳ ଆଣିଦେଲେ। ଏକକାଳୀନ ଅଠଚାଳିଶ ଦିନଯାଏ ଉପବାସଯୋଗୁଁ ପରିବାରର ସମସ୍ତେ ବଡ଼ ଦୁର୍ବଳ ହୋଇପଡ଼ିଥିଲେ। ସମସ୍ତଙ୍କର ହାତପାଦ ଥରୁଥାଏ।

କୌଣସିମତେ ଖାଦ୍ୟତକ ନିଜ ନିଜ ମଧ୍ୟରେ ବାଣ୍ଟି ସେମାନେ ଭୋଜନ କରିବାକୁ ଯାଉଛନ୍ତି, ଏହି ସମୟରେ ଜଣେ ବ୍ରାହ୍ମଣ ଅତିଥି ଆସି ପହଞ୍ଚିଗଲେ। କୋଟିଏ ଟଙ୍କାରୁ ଲକ୍ଷେ ଟଙ୍କା ଦାନ କରିଦେବା ସହଜ, କିନ୍ତୁ ଭୋକିଲା ପେଟରେ ରହି ଅନ୍ନଦାନ କରିବା ବଡ଼ କଠିନ। ତଥାପି ସର୍ବତ୍ର ହରି ବ୍ୟାପ୍ତ ହୋଇଛନ୍ତି ବୋଲି ଦେଖିପାରୁଥିବା ଭକ୍ତ ରନ୍ତିଦେବ

★ ଏହି ବର୍ଣ୍ଣନା ଶ୍ରୀରାମଚରିତମାନସ ଆଦି ଗ୍ରନ୍ଥମାନଙ୍କରୁ ନିଆଯାଇଅଛି

ନିଜ ଭାଗରେ ପଡ଼ିଥିବା ଖାଦ୍ୟତକ ବଡ଼ ଆଦର ଓ ଶ୍ରଦ୍ଧାର ସହିତ ବ୍ରାହ୍ମଣରୂପୀ ଅତିଥିନାରାୟଣଙ୍କୁ ଦେଇଦେଲେ। ବ୍ରାହ୍ମଣଦେବତା ଭୋଜନ କରି ତୃପ୍ତ ହୋଇ ଚାଲିଗଲେ।

ତା' ପରେ ବଳକା ଖାଦ୍ୟତକ ପରିବାରର ସମସ୍ତେ ବାଣ୍ଟି ଖାଇବାକୁ ଯାଉଥିବା ସମୟରେ ଜଣେ ଶୂଦ୍ର ଅତିଥି ଆସି ପହଞ୍ଚିଗଲେ। ରାଜା ଭଗବାନ୍ ଶ୍ରୀହରିଙ୍କୁ ସ୍ମରଣ କରି ବଳିଥିବା ଖାଦ୍ୟରୁ କିଛି ସେହି ଦରିଦ୍ରନାରାୟଣଙ୍କୁ ଦେଇଦେଲେ। ଏତିକିବେଳେ କେତୋଟି କୁକୁର ଧରି ଅନ୍ୟ ଜଣେ ଅତିଥି ଆସି କହିଲେ, 'ରାଜନ୍, ମୁଁ ଓ ମୋର ଏହି କୁକୁରଗୁଡ଼ିକ ବଡ଼ ଭୋକରେ ଅଛୁ, କିଛି ଖାଇବାକୁ ଦିଅନ୍ତୁ।'

ହରିଭକ୍ତ ରାଜା ତାଙ୍କର ମଧ୍ୟ ସତ୍କାର କଲେ ଏବଂ ବଳିଥିବା ସବୁତକ ଖାଦ୍ୟ ଆଦରସହିତ କୁକୁରମାନଙ୍କୁ ଓ ସେହି ଅତିଥିଭଗବାନଙ୍କୁ ସମର୍ପଣ କରିଦେଇ ପ୍ରଣାମ କଲେ।

ସେତେବେଳକୁ ସେମାନଙ୍କ ପାଖରେ ମାତ୍ର ଜଣେ ଲୋକ ପିଇବା ଭଳି ସାମାନ୍ୟ କିଛି ଜଳ ବଳିଥାଏ। ରାଜା ସେତକ ପିଇବାକୁ ଚାହୁଁଥିଲେ। କିନ୍ତୁ ଅକସ୍ମାତ୍ ଜଣେ ଚଣ୍ଡାଳ ଆସି କରୁଣ ସ୍ୱରରେ କହିଲା, 'ମହାରାଜ, ମୋତେ ବଡ଼ ହାଲିଆ ଲାଗୁଛି, ମୋତେ ମୁନ୍ଦିଏ ପାଣି ପିଇବାକୁ ଦିଅନ୍ତୁ।'

ଚଣ୍ଡାଳର କରୁଣ ବଚନ ଶୁଣି ଏବଂ ସେ କ୍ଳାନ୍ତ ଥିବା ଜାଣିପାରି ରାଜାଙ୍କ ମନରେ ଦୟା ହେଲା; ସେ ଭଗବାନଙ୍କୁ ପ୍ରାର୍ଥନା କରି ଏହି ଅମୃତମୟ ବଚନ କହିଲେ –

**ନ କାମୟେଽହଂ ଗତିମୀଶ୍ୱରାତ୍ପରାମ୍**
**ଅଷ୍ଟର୍ଦ୍ଧିଯୁକ୍ତାମପୁନର୍ଭବଂ ବା।**
**ଆର୍ତିଂ ପ୍ରପଦ୍ୟେଽଖିଳଦେହଭାଜାମ୍**
**ଅନ୍ତଃସ୍ଥିତୋ ଯେନ ଭବନ୍ତ୍ୟଦୁଃଖାଃ ॥**
**କ୍ଷୁତ୍ତୃଟ୍ଶ୍ରମୋ ଗାତ୍ରପରିଶ୍ରମଶ୍ଚ**
**ଦୈନ୍ୟଂ କ୍ଳମଃ ଶୋକବିଷାଦମୋହାଃ।**
**ସର୍ବେ ନିବୃତ୍ତାଃ କୃପଣସ୍ୟ ଜନ୍ତୋ-**
**ର୍ଜିଜୀବିଷୋର୍ଜୀବଜଳାର୍ପଣାନ୍ମେ ॥**

(ଶ୍ରୀମଦ୍ଭାଗବତ ୯/୨୧/୧୨-୧୩)

'ମୁଁ ପରମାତ୍ମାଙ୍କ ଠାରୁ ଅଣିମା ଆଦି ଅଷ୍ଟସିଦ୍ଧିଯୁକ୍ତ ଉତ୍ତମ ଗତି ବା ମୁକ୍ତି ଚାହୁଁ ନାହିଁ, ମୁଁ କେବଳ ଏହା ଚାହୁଁଛି ଯେ, ମୁଁ ହିଁ ସବୁ ପ୍ରାଣୀଙ୍କ ଅନ୍ତଃକରଣରେ ରହି ସେମାନଙ୍କର ଦୁଃଖ ଭୋଗ କରିବି, ଯଦ୍ଦ୍ୱାରା ସେହି ଲୋକମାନେ ଦୁଃଖରୁ ମୁକ୍ତି ପାଇଯିବେ।'

'ଏହି ଲୋକଟିର ପ୍ରାଣ ଜଳ ବିନା ଚାଲିଯାଉଛି, ଏଣୁ ପ୍ରାଣରକ୍ଷାପାଇଁ କାତର ହୋଇ ଏ ଜଳ ଭିକ୍ଷା କରୁଛି, 'ବଞ୍ଚିରହିବା ପାଇଁ ଇଚ୍ଛା କରୁଥିବା ଦୀନ ପ୍ରାଣୀକୁ ଏହି ଜୀବନରୂପ ଜଳ ଅର୍ପଣ କରିବାଦ୍ୱାରା ମୋର କ୍ଷୁଧା, ତୃଷା, କ୍ଳାନ୍ତି, ଶାରୀରିକ କଷ୍ଟ, ଦୀନତା, ଦୁର୍ବଳତା, ଶୋକ, ବିଷାଦ ଓ ମୋହ ଆଦି ସବୁ ଚାଲିଯାଉ।'

ଏତିକି କହି ସ୍ୱଭାବତଃ ଦୟାଳୁ ରାଜା ରନ୍ତିଦେବ ସ୍ୱୟଂ ଶୋଷରେ ମୃତପ୍ରାୟ ହୋଇ ରହିଥିଲେ ବି, ସେହି ଚଣ୍ଡାଳକୁ ଆଦର ଓ ପ୍ରସନ୍ନତାପୂର୍ବକ ଜଳତକ ଦେଇଦେଲେ।

ଫଳକାମୀଙ୍କର ଫଳଦାତା ତ୍ରିଭୁବନନାଥ ଭଗବାନ୍ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ହିଁ ମହାରାଜ ରନ୍ତିଦେବଙ୍କୁ ପରୀକ୍ଷା କରିବାକୁ ମାୟାରେ ବ୍ରାହ୍ମଣାଦି ରୂପ ଧରି ସେଠାକୁ ଆସିଥିଲେ। ରାଜାଙ୍କର ଧୈର୍ଯ୍ୟ ଓ ଭକ୍ତି ଦେଖି ସେମାନେ ପରମ ସନ୍ତୋଷ ଲାଭ କଲେ ଏବଂ ନିଜ ନିଜର ପ୍ରକୃତ ରୂପ ଧରି ରାଜାଙ୍କୁ ଦର୍ଶନ ଦେଲେ। ରାଜା ତିନିଦେବତାଙ୍କୁ ଏକତ୍ର ପ୍ରତ୍ୟକ୍ଷ ଦର୍ଶନ କରି ଭକ୍ତିର ସହିତ ପ୍ରଣାମ କଲେ ଏବଂ ସେମାନେ କହିବା ପରେ ମଧ୍ୟ କୌଣସି ବର ମାଗିଲେ ନାହିଁ। କାରଣ ରାଜା ଆସକ୍ତି ଓ କାମନା ତ୍ୟାଗ କରି ନିଜ ମନକୁ କେବଳ ଭଗବାନ୍ ବାସୁଦେବଙ୍କ ଠାରେ ଲଗାଇରଖିଥିଲେ। ପରମାତ୍ମାଙ୍କର ଅନନ୍ୟ ଭକ୍ତ ରନ୍ତିଦେବ ନିଜ ଚିତ୍ତକୁ ପୂର୍ଣ୍ଣଭାବରେ କେବଳ ଈଶ୍ୱରଙ୍କ ଠାରେ ଲଗାଇଦେଇଥିଲେ ଏବଂ ପରମାତ୍ମାଙ୍କ ସହିତ ତନ୍ମୟ ହୋଇ ରହିଥିବାରୁ ତ୍ରିଗୁଣମୟୀ ମାୟା ତାଙ୍କ ଆଗରୁ ସ୍ୱପ୍ନପରି ଉଭେଇଗଲା। ରନ୍ତିଦେବଙ୍କ ପରିବାରର ଅନ୍ୟ ସମସ୍ତେ ବି ତାଙ୍କ ସଙ୍ଗର ପ୍ରଭାବରେ ନାରାୟଣପରାୟଣ ହୋଇ ଯୋଗୀମାନଙ୍କର ପରମଗତି ପ୍ରାପ୍ତ ହେଲେ।

**ପ୍ରଶ୍ନ –** **ଭକ୍ତ୍ୟୁପହୃତମ୍**ର ଅର୍ଥ କଣ ଏବଂ ତାହା ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର –** ଉପରୋକ୍ତ ପତ୍ର, ପୁଷ୍ପ ଆଦି କୌଣସି ବସ୍ତୁ ଯାହା ପ୍ରେମପୂର୍ବକ ସମର୍ପଣ କରାଯାଏ, ତାହାକୁ **ଭକ୍ତ୍ୟୁପହୃତ** କହନ୍ତି। ଏହା ପ୍ରୟୋଗ କରି ଭଗବାନ୍ କହୁଛନ୍ତି, ''ବିନା-ପ୍ରେମରେ ଦିଆଯାଇଥିବା ବସ୍ତୁ ମୁଁ

ସ୍ୱୀକାର କରେ ନାହିଁ। ଯେଉଁଠି ପ୍ରେମ ଥାଏ ତଥା ମୋତେ ବସ୍ତୁ ଅର୍ପଣ କରି ଏବଂ ମୁଁ ତାହା ସ୍ୱୀକାର କରିବା ଦେଖି ଯାହାର ପ୍ରକୃତ ଆନନ୍ଦ ହୁଏ, ସେଠାରେ ସେହି ଭକ୍ତଙ୍କ ଦ୍ୱାରା ଅର୍ପିତ ବସ୍ତୁକୁ ସ୍ୱୀକାର କରିନେବାରେ ବଡ଼ କଥା କଣ ରହିଲା ? ପୁଣ୍ୟମୟୀ ବ୍ରଜଗୋପିକାମାନଙ୍କ ଘରକୁ ଗଲାପରି ସେହି ଭକ୍ତମାନଙ୍କ ଘରେ ପଶି ମୁଁ ସେମାନଙ୍କର ଖାଦ୍ୟ ଗ୍ରହଣ କରେ। ପ୍ରକୃତରେ ମୁଁ ପ୍ରେମର ଭିକାରୀ; ବସ୍ତୁର ଭିକାରୀ ନୁହେଁ।''

**ପ୍ରଶ୍ନ –** **ଅହମ୍** ଓ **ଅଶ୍ନାମି** ପଦଦୁଇଟିର ଭାବ କଣ ?

**ଉତ୍ତର –** ଏ ଦୁଇଟି ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି, ''ଏପରି ଶୁଦ୍ଧଭାବରେ ପ୍ରେମପୂର୍ବକ ସମର୍ପଣ କରାଯାଇଥିବା ବସ୍ତୁମାନଙ୍କୁ ମୁଁ ସ୍ୱୟଂ ସେହି ଭକ୍ତଙ୍କ ସମ୍ମୁଖରେ ପ୍ରତ୍ୟକ୍ଷ ପ୍ରକଟ ହୋଇ ଭୋଜନ କରେ ଅର୍ଥାତ୍ ମୁଁ ଯେତେବେଳେ ମନୁଷ୍ୟାଦିରୂପରେ ଅବତୀର୍ଣ୍ଣ ହୋଇ ସଂସାରରେ ବିଚରଣ କରେ, ସେତେବେଳେ ତ ମନୁଷ୍ୟରୂପରେ ହିଁ ସେଠାରେ ପହଞ୍ଚିଯାଏ ଏବଂ ଅନ୍ୟ ସମୟରେ ସେହି ଭକ୍ତଙ୍କର ଇଚ୍ଛାନୁସାର ରୂପରେ ପ୍ରକଟ ହୋଇ ସେ ଦେଇଥିବା ବସ୍ତୁକୁ ଭୋଜନ କରି ମୁଁ ତାଙ୍କୁ କୃତାର୍ଥ କରିଦିଏ।''

***ସମ୍ବନ୍ଧ –*** *'ଯଦି ଏପରି କଥା, ତେବେ ମୁଁ କଣ କରିବା ଉଚିତ ?'— ଏହି ଜିଜ୍ଞାସାର ଉତ୍ତରରେ ଭଗବାନ୍ ଅର୍ଜୁନଙ୍କୁ ତାଙ୍କର କର୍ତ୍ତବ୍ୟ କହୁଛନ୍ତି–*

## ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
## ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣମ୍ ॥ ୨୭ ॥

**ଅନ୍ୱୟ –** **କୌନ୍ତେୟ** = ହେ ଅର୍ଜୁନ (ତୁମେ); **ଯତ୍** = ଯାହାକିଛି (କର୍ମ); **କରୋଷି** = କରୁଛ; **ଯତ୍** = ଯାହା; **ଅଶ୍ନାସି** = ଖାଉଛ; **ଯତ୍** = ଯାହା; **ଜୁହୋଷି** = ହବନ କରୁଛ; **ଯତ୍** = ଯାହା; **ଦଦାସି** = ଦାନ କରୁଛି (ଓ); **ଯତ୍** = ଯାହା; **ତପସ୍ୟସି** = ତପ କରୁଛ; **ତତ୍** = ସେସବୁ; **ମଦର୍ପଣମ୍** = ମୋତେ ଅର୍ପଣ; **କୁରୁଷ୍ୱ** = କର।

**ହେ ଅର୍ଜୁନ, ତୁମେ ଯାହାକିଛି କର୍ମ କରୁଛ, ଯାହାକିଛି ଖାଉଛ, ଯାହାକିଛି ହବନ କରୁଛ, ଯାହାକିଛି ଦାନ କରୁଛ ଏବଂ ଯାହାକିଛି ତପ କରୁଛ, ସେସବୁ ମୋତେ ଅର୍ପଣ କର ॥ ୨୭ ॥**

**ପ୍ରଶ୍ନ –** ଏଠାରେ **ଯତ୍** ପଦ ସହିତ **କରୋଷି, ଅଶ୍ନାସି, ଜୁହୋଷି, ଦଦାସି** ଓ **ତପସ୍ୟସି**– ଏହି ପାଞ୍ଚଟି କ୍ରିୟା ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ସବୁପ୍ରକାର କର୍ତ୍ତବ୍ୟକର୍ମର ସମାହାର କରିଛନ୍ତି। ଅଭିପ୍ରାୟ ହେଲା, ଯଜ୍ଞ, ଦାନ ଓ ତପ ଛଡ଼ା ଜୀବିକାନିର୍ବାହ ଆଦିପାଇଁ କରାଯାଉଥିବା ବର୍ଣ୍ଣ, ଆଶ୍ରମ ଓ ବ୍ୟାବହାରିକ କର୍ମ ତଥା ଭଗବାନଙ୍କ ଭଜନ, ଧ୍ୟାନ ଆଦି ଯେତେ ବି ଶାସ୍ତ୍ରୀୟ କର୍ମ ରହିଛି, ସେସବୁର ସମାବେଶ **ଯତ୍କରୋଷି**ରେ କରାଯାଇଛି; ଶରୀରପାଳନ ନିମନ୍ତେ କରାଯାଉଥିବା ଖାଇବା ପିଇବା ଆଦି ସମସ୍ତ କର୍ମ **ଯଦଶ୍ନାସି**ରେ; ପୂଜା ଓ ହୋମସମ୍ବନ୍ଧୀ ସମସ୍ତ କର୍ମ **ଯଜ୍ଜୁହୋଷି**ରେ; ସେବା ଓ ଦାନସମ୍ବନ୍ଧୀ ସମସ୍ତ କର୍ମ **ଯଦ୍ଦଦାସି**ରେ ଏବଂ ସଂଯମ ତଥା ତପ ସମ୍ବନ୍ଧୀ ସମସ୍ତ କର୍ମର ସମାବେଶ **ଯତ୍ତପସ୍ୟସି**ରେ କରାଯାଇଛି (୧୭/୧୪-୧୭)।

**ପ୍ରଶ୍ନ –** 'ଉପରୋକ୍ତ ସମସ୍ତ କର୍ମ ଭଗବାନଙ୍କ ଠାରେ ଅର୍ପଣ କରିବା କଣ ?'

**ଉତ୍ତର –** ଉପରୋକ୍ତ କର୍ମମାନଙ୍କରେ ସାଧାରଣ ମନୁଷ୍ୟର ମମତ୍ୱ ଓ ଆସକ୍ତି ହୋଇଥାଏ ତଥା ସେ ସେଥିରେ ଫଳ-ଆଶା ରଖେ। ଅତଏବ ସମସ୍ତ କର୍ମରେ ମମତ୍ୱ, ଆସକ୍ତି ଓ ଫଳାକାଙ୍କ୍ଷା ତ୍ୟାଗ କରିଦେବା ଏବଂ 'ସମସ୍ତ ଜଗତ ଭଗବାନଙ୍କର; ମୋର ମନ, ବୁଦ୍ଧି, ଶରୀର ତଥା ଇନ୍ଦ୍ରିୟ ମଧ୍ୟ ଭଗବାନଙ୍କର ଏବଂ ମୁଁ ସ୍ୱୟଂ ଭଗବାନଙ୍କର; ଅତଏବ ମୋ ଦ୍ୱାରା ଯାହାକିଛି ଯଜ୍ଞାଦି କର୍ମ କରାଯାଉଛି,

ସେସବୁ ମଧ୍ୟ ଭଗବାନଙ୍କର ହିଁ ଅଟେ; କାଠକଣ୍ଢେଇକୁ ନଚାଉଥିବା ସୂତ୍ରଧାରପରି ଭଗବାନ୍ ହିଁ ମୋ ଦ୍ୱାରା ସବୁକିଛି କରାଉଛନ୍ତି ଏବଂ ସେ ହିଁ ବିଭିନ୍ନରୂପରେ ଏସବୁର ଭୋକ୍ତା; ମୁଁ ତ ନିମିତ୍ତମାତ୍ର' — ଏପରି ବୁଝି ଭଗବାନଙ୍କର ଆଜ୍ଞାନୁସାରେ ତାଙ୍କ ପ୍ରସନ୍ନତାପାଇଁ ହିଁ ନିଷ୍କାମଭାବରେ ଉପରୋକ୍ତ କର୍ମସବୁ କରିବା ହିଁ 'ସେସବୁ କର୍ମ ଭଗବାନଙ୍କୁ ଅର୍ପଣ କରିବା'।

**ପ୍ରଶ୍ନ** — ପ୍ରଥମେ କୌଣସି ଅନ୍ୟ ଉଦ୍ଦେଶ୍ୟରେ କରାଯାଉଥିବା କର୍ମକୁ ପରେ ଭଗବାନଙ୍କୁ ଅର୍ପଣ କରିବା, କର୍ମ କରୁ କରୁ ମଝିରେ ହିଁ ଭଗବାନଙ୍କୁ ଅର୍ପଣ କରିଦେବା, କର୍ମ ସମାପ୍ତ ହେଉ ହେଉ ଭଗବାନଙ୍କୁ ଅର୍ପଣ କରିଦେବା ଅଥବା କର୍ମର ଫଳକୁ ଭଗବାନଙ୍କୁ ଅର୍ପଣ କରିଦେବା — ଏପରି ଅର୍ପଣ ପ୍ରକୃତରେ ଅର୍ପଣ କରିବା, ନା ନୁହେଁ?

**ଉତ୍ତର** — ଏପରି କରିବା ମଧ୍ୟ ଭଗବାନଙ୍କୁ ହିଁ ଅର୍ପଣ କରିବା। ପ୍ରଥମେ ପ୍ରଥମେ ଏପରି ହୋଇଥାଏ। ଏପରି କରୁ କରୁ ହିଁ ଉପରୋକ୍ତପ୍ରକାରେ ପୂର୍ଣ୍ଣତଃ ଭଗବଦ୍ ଅର୍ପଣ ହୁଏ।

***ସମ୍ବନ୍ଧ** — 'ଏପରିଭାବରେ ସମସ୍ତ କର୍ମ ଆପଣଙ୍କୁ ଅର୍ପଣ କରିଦେଲେ କଣ ହେବ?' — ଏହି ଜିଜ୍ଞାସା ଉପରେ ଭଗବାନ୍ କହୁଛନ୍ତି—*

## ଶୁଭାଶୁଭଫଲୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ।
## ସଂନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋ ମାମୁପୈଷ୍ୟସି॥ ୨୮ ॥

**ଅନ୍ୱୟ** — **ଏବମ୍** = ଏପରିଭାବରେ; **ସଂନ୍ୟାସଯୋଗଯୁକ୍ତାତ୍ମା** = (ଯେଉଁଥିରେ ସମସ୍ତ କର୍ମ ମୋତେ ଅର୍ପଣ କରାଯାଏ, ସେହି) ସଂନ୍ୟାସଯୋଗରେ ଯୁକ୍ତଚିତ୍ତ (ଅର୍ଥାତ୍ ଫଳାସକ୍ତିତ୍ୟାଗପୂର୍ବକ ସମର୍ପଣବୁଦ୍ଧିରେ କର୍ତ୍ତବ୍ୟକର୍ମ କରୁଥିବା); **ଶୁଭାଶୁଭଫଲୈଃ** = ଶୁଭାଶୁଭଫଳରୂପକ; **କର୍ମବନ୍ଧନୈଃ** = କର୍ମବନ୍ଧନରୁ; **ମୋକ୍ଷ୍ୟସେ** = ମୁକ୍ତ ହୋଇଯିବ (ଓ ସେଥିରୁ); **ବିମୁକ୍ତଃ** = ମୁକ୍ତ ହୋଇ; **ମାମ୍** = ମୋତେ; **ଉପୈଷ୍ୟସି** = ପ୍ରାପ୍ତ ହେବ।

**ଏପରିଭାବରେ, ଯେଉଁଥିରେ ସମସ୍ତ କର୍ମ ମୋତେ ଅର୍ପଣ କରାଯାଏ, ସେହି ସଂନ୍ୟାସଯୋଗରେ ଯୁକ୍ତଚିତ୍ତ ହୋଇ ଅର୍ଥାତ୍ ଫଳାସକ୍ତିତ୍ୟାଗପୂର୍ବକ ସମର୍ପଣବୁଦ୍ଧିରେ କର୍ତ୍ତବ୍ୟକର୍ମ କରି, ତୁମେ ଶୁଭାଶୁଭଫଳରୂପକ କର୍ମବନ୍ଧନରୁ ମୁକ୍ତ ହୋଇଯିବ ଏବଂ ସେଥିରୁ ମୁକ୍ତ ହୋଇ ମୋତେ ପ୍ରାପ୍ତ ହେବ॥ ୨୮ ॥**

**ପ୍ରଶ୍ନ** — ଏବମ୍ ପଦସହିତ ସଂନ୍ୟାସଯୋଗଯୁକ୍ତାତ୍ମାର ଅଭିପ୍ରାୟ କଣ?

**ଉତ୍ତର** — ଏବମ୍ ପଦ ପ୍ରୟୋଗର ଭାବ ଏହିପରି : ଏଠାରେ 'ସଂନ୍ୟାସଯୋଗ' ପଦ ସାଂଖ୍ୟଯୋଗର ଅର୍ଥାତ୍ ଜ୍ଞାନଯୋଗର ବାଚକ ନୁହେଁ; ପୂର୍ବଶ୍ଳୋକ ଅନୁସାରେ ଏଠାରେ 'ସଂନ୍ୟାସଯୋଗ' ହେଉଛି ସମସ୍ତ କର୍ମକୁ ଭଗବାନଙ୍କ ଠାରେ ଅର୍ପଣ କରିଦେବା। ଅତଏବ ଯାହାଙ୍କର ଆତ୍ମା ଏପରି ସଂନ୍ୟାସଯୋଗରେ ଯୁକ୍ତ ହୋଇଥାଏ, ଯାହାଙ୍କର ମନ ଓ ବୁଦ୍ଧିରେ ପୂର୍ବଶ୍ଳୋକର କଥନ ଅନୁସାରେ ସମସ୍ତ କର୍ମ ଭଗବାନଙ୍କୁ ଅର୍ପଣ କରିଦେବା ଭାବ ସୁଦୃଢ଼ ହୋଇଥାଏ, ତାହାଙ୍କୁ ସଂନ୍ୟାସଯୋଗଯୁକ୍ତାତ୍ମା ବୋଲି ବୁଝିବା ଉଚିତ।

**ପ୍ରଶ୍ନ** — ଶୁଭାଶୁଭଫଳରୂପକ କର୍ମବନ୍ଧନରୁ ମୁକ୍ତ ହେବା କଣ ଏବଂ ସେଥିରୁ ମୁକ୍ତ ହୋଇ ଭଗବାନଙ୍କୁ ପ୍ରାପ୍ତ ହେବା କଣ?

**ଉତ୍ତର** — ଭିନ୍ନ ଭିନ୍ନ ଶୁଭାଶୁଭ କର୍ମ ଅନୁସାରେ ସ୍ୱର୍ଗ, ନରକ, ପଶୁ-ପକ୍ଷୀ ଏବଂ ମନୁଷ୍ୟାଦି ଲୋକମଧ୍ୟରେ ନାନାପ୍ରକାର ଯୋନିରେ ଜନ୍ମ ନେବା ତଥା ସୁଖ-ଦୁଃଖ ଭୋଗ କରିବା ହିଁ ଶୁଭାଶୁଭ ଫଳ। ଏହାକୁ କର୍ମବନ୍ଧନ କହନ୍ତି। କାରଣ କର୍ମଫଳ ଭୋଗ କରିବା ହିଁ କର୍ମବନ୍ଧନରେ ପଡ଼ିବା। ଉପରୋକ୍ତପ୍ରକାରେ ସମସ୍ତ କର୍ମ ଭଗବାନଙ୍କୁ ଅର୍ପଣ କରିଦେଉଥିବା ମନୁଷ୍ୟ କର୍ମଫଳରୂପକ ପୁନର୍ଜନ୍ମରୁ ଓ ସୁଖଦୁଃଖଭୋଗରୁ ମୁକ୍ତ ହୋଇଯାଏ; ଏହା ହିଁ ଶୁଭାଶୁଭ ଫଳରୂପକ କର୍ମବନ୍ଧନରୁ ମୁକ୍ତ ହୋଇଯିବା। ମୃତ୍ୟୁ ପରେ ଭଗବାନଙ୍କ ପରମଧାମରେ ପହଞ୍ଚିଯିବା ବା ଇହଜନ୍ମରେ ଭଗବାନଙ୍କୁ ପ୍ରତ୍ୟକ୍ଷ ପାଇଯିବା ହିଁ ସେହି କର୍ମବନ୍ଧନରୁ

ମୁକ୍ତ ହୋଇ ଭଗବାନଙ୍କୁ ପ୍ରାପ୍ତ ହେବା ।

**ପ୍ରଶ୍ନ –** ପୂର୍ବଶ୍ଳୋକର କଥନ ଅନୁଯାୟୀ ଭଗବଦର୍ପଣ କର୍ମ କରୁଥିବା ମନୁଷ୍ୟ ଅଶୁଭ କର୍ମ ତ କରେ ନାହିଁ, ପୁଣି ସେ ଅଶୁଭ ଫଳରୁ ମୁକ୍ତି ପାଇବା କଥା କିପରି କୁହାଗଲା ?

**ଉତ୍ତର –** ଏହି ସାଧନାରେ ଲାଗିବା ପୂର୍ବରୁ, ଅନେକ ପୂର୍ବଜନ୍ମରେ ଓ ଏହି ଜନ୍ମରେ ମଧ୍ୟ ତାଙ୍କ ଦ୍ୱାରା ଯେତେ ଅଶୁଭ କର୍ମ ହୋଇଛି ଏବଂ **'ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ'** ଅନୁସାରେ ବିହିତ କର୍ମ କରିବା ଦ୍ୱାରା ଯେଉଁ ଆନୁଷଙ୍ଗିକ ଦୋଷ ହୁଏ, ସେସବୁରୁ ମଧ୍ୟ ଭଗବଦର୍ପଣକର୍ମ କରୁଥିବା ସାଧକ ମୁକ୍ତ ହୋଇଯାଆନ୍ତି । ଏହି ଭାବ ଦେଖାଇବା ପାଇଁ ଶୁଭ ଓ ଅଶୁଭ ଉଭୟପ୍ରକାର କର୍ମଫଳରୁ ମୁକ୍ତ ହେବା କଥା କୁହାଯାଇଛି ।

**ପ୍ରଶ୍ନ –** ଶୁଭକର୍ମମାନଙ୍କର ଫଳ ବନ୍ଧନକାରକ ବୋଲି କାହିଁକି କୁହାଗଲା ?

**ଉତ୍ତର –** ପୂର୍ବଶ୍ଳୋକର କଥନ ଅନୁଯାୟୀ ଯଦି ସମସ୍ତ ଶୁଭକର୍ମ ଭଗବାନଙ୍କୁ ଅର୍ପଣ କରାଯାଏ, ତେବେ ତାହାର ଫଳ ଭଗବତ୍ପ୍ରାପ୍ତି ହିଁ ହୁଏ । କିନ୍ତୁ ସକାମଭାବରେ କରାଯାଉଥିବା ଶୁଭକର୍ମ ଇହଲୋକ ଓ ପରଲୋକରେ ଭୋଗରୂପକ ଫଳ ଦିଏ । ଯେଉଁ କର୍ମର ଫଳ ଭୋଗପ୍ରାପ୍ତି, ତାହା ପୁନର୍ଜନ୍ମକାରକ ହୁଏ ଏବଂ ମନୁଷ୍ୟକୁ ଭୋଗେଚ୍ଛା ତଥା ଆସକ୍ତିରେ ବାନ୍ଧିଦିଏ । ଅତଏବ ତାହାର ଫଳ ବନ୍ଧନକାରକ ବୋଲି କହିବା ଠିକ୍ । କିନ୍ତୁ ଏଥିରୁ ବୁଝିବା ଉଚିତ ନୁହେଁ ଯେ, ଶୁଭକର୍ମ ତ୍ୟାଜ୍ୟ । ଶୁଭକର୍ମ ତ କରିବା ହିଁ ଉଚିତ; କିନ୍ତୁ କରିବାକୁ ହେବ କୌଣସି ଫଳ ଆଶା ନ ରଖି । ଭଗବଦର୍ପଣ ବୁଦ୍ଧିରେ ଏପରି କଲେ ଫଳ ବନ୍ଧନକାରକ ନ ହୋଇ ଭଗବତ୍ପ୍ରାପକ ହେବ ।

**ସମ୍ବନ୍ଧ –** *'ଉପରୋକ୍ତପ୍ରକାରେ ଭଗବାନଙ୍କୁ ଭକ୍ତି କରୁଥିବା ଭକ୍ତଙ୍କର ଭଗବତ୍ପ୍ରାପ୍ତି ହୁଏ; ଅନ୍ୟମାନଙ୍କର ନୁହେଁ'– ଏହି ଉକ୍ତିରୁ ଭଗବାନଙ୍କ ଠାରେ ବିଷମତା ଦୋଷର ଆଶଙ୍କା ହୋଇପାରେ । ଅତଏବ ତାହା ନିବାରଣ କରି ଭଗବାନ୍ କହୁଛନ୍ତି–*

## ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
## ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହମ୍ ॥ ୨୯ ॥

**ଅନ୍ୱୟ –** **ଅହମ୍** = ମୁଁ; **ସର୍ବଭୂତେଷୁ** = ସକଳ ଭୂତଙ୍କ ଠାରେ; **ସମଃ** = ସମଭାବରେ ବ୍ୟାପକ; **ମେ** = ମୋର; **ନ, ଦ୍ୱେଷ୍ୟଃ** = କେହି ଅପ୍ରିୟ ନୁହେଁ (ଓ); **ପ୍ରିୟଃ** = କେହି ପ୍ରିୟଃ; **ନ, ଅସ୍ତି** = ନୁହେଁ; **ତୁ** = କିନ୍ତୁ; **ଯେ** = ଯେଉଁ ଭକ୍ତମାନେ; **ମାମ୍** = ମୋତେ; **ଭକ୍ତ୍ୟା** = ପ୍ରେମରେ; **ଭଜନ୍ତି** = ଭଜନ କରନ୍ତି; **ତେ** = ସେମାନେ; **ମୟି** = ମୋ ମଧ୍ୟରେ (ଥାଆନ୍ତି); **ଚ** = ଓ; **ଅହମ୍** = ମୁଁ; **ଅପି** = ମଧ୍ୟ; **ତେଷୁ** = ସେମାନଙ୍କ ମଧ୍ୟରେ (ପ୍ରତ୍ୟକ୍ଷ ପ୍ରକଟ ହୋଇଥାଏ) ।

**ମୁଁ ସକଳ ଭୂତଙ୍କ ଠାରେ ସମଭାବରେ ବ୍ୟାପକ; ମୋର କେହି ଅପ୍ରିୟ ନୁହନ୍ତି, କି କେହି ପ୍ରିୟ ନୁହନ୍ତି; କିନ୍ତୁ ଯେଉଁ ଭକ୍ତମାନେ ମୋତେ ପ୍ରେମରେ ଭଜନ କରନ୍ତି, ସେମାନେ ମୋ ମଧ୍ୟରେ ଥାଆନ୍ତି ଓ ମୁଁ ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ପ୍ରକଟ ହୋଇଥାଏ ॥ ୨୯ ॥**

**ପ୍ରଶ୍ନ –** 'ମୁଁ ସକଳଭୂତଙ୍କ ଠାରେ ସମ' ତଥା 'ମୋର କେହି ଅପ୍ରିୟ ବା ପ୍ରିୟ ନୁହନ୍ତି'– ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହିଛନ୍ତି, ''ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ସ୍ତମ୍ବପର୍ଯ୍ୟନ୍ତ ସମସ୍ତଙ୍କ ମଧ୍ୟରେ ମୁଁ ଅନ୍ତର୍ଯାମୀରୂପରେ ସମାନଭାବରେ ବ୍ୟାପ୍ତ ହୋଇଛି । ଅତଏବ ମୋର ସମସ୍ତଙ୍କ ଠାରେ ସମଭାବ ରହିଛି; କାହାରି ଠାରେ ବି ରାଗଦ୍ୱେଷ ନାହିଁ । ଅତଏବ ପ୍ରକୃତରେ ମୋର କେହି ଅପ୍ରିୟ, କି ପ୍ରିୟ ନୁହନ୍ତି ।'

**ପ୍ରଶ୍ନ –** ଭକ୍ତିରେ ଭଗବାନଙ୍କୁ ଭଜନ କରିବା କଣ ତଥା 'ସେମାନେ ମୋ ମଧ୍ୟରେ ଅଛନ୍ତି ଏବଂ ମୁଁ ବି ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ପ୍ରକଟ ହୋଇଥାଏ'– ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନଙ୍କର ସାକାର ବା ନିରାକାର

କୌଣସି ବି ରୂପକୁ ଶ୍ରଦ୍ଧା ଓ ପ୍ରେମପୂର୍ବକ ନିରନ୍ତର ଚିନ୍ତନ କରିବା, ତାଙ୍କ ନାମ, ଗୁଣ, ପ୍ରଭାବ, ମହିମା ଓ ଲୀଳାଚରିତ ଶ୍ରବଣ, ମନନ ଓ କୀର୍ତ୍ତନ କରିବା, ତାଙ୍କୁ ନମସ୍କାର କରିବା, ପତ୍ର, ପୁଷ୍ପ ଆଦି ଯେକୌଣସି ସାମଗ୍ରୀଦ୍ୱାରା ପ୍ରେମପୂର୍ବକ ତାଙ୍କୁ ପୂଜା କରିବା ଏବଂ ତାଙ୍କୁ ନିଜର ସମସ୍ତ କର୍ମ ସମର୍ପଣ କରିଦେବା ଆଦି ସମସ୍ତ କ୍ରିୟାମାନଙ୍କର ନାମ ଭକ୍ତିପୂର୍ବକ ଭଗବାନଙ୍କୁ ଭଜିବା ।

ଯେଉଁ ପୁରୁଷମାନେ ଏପରିଭାବରେ ଭଗବାନଙ୍କୁ ଭଜନ୍ତି, ଭଗବାନ୍ ମଧ୍ୟ ସେମାନଙ୍କୁ ସେହିପରିଭାବରେ ଭଜନ୍ତି । ସେମାନେ ଯେପରି ଭଗବାନଙ୍କୁ ଭୁଲନ୍ତି ନାହିଁ, ଭଗବାନ୍ ମଧ୍ୟ ସେମାନଙ୍କୁ ସେପରି ଭୁଲିପାରନ୍ତି ନାହିଁ– ଏହି ଭାବ ଦେଖାଇବାପାଇଁ ଭଗବାନ୍ ସେମାନଙ୍କୁ 'ନିଜ ମଧ୍ୟରେ' ଅଛନ୍ତି ବୋଲି କହିଛନ୍ତି । ଏବଂ ସେହି ଭକ୍ତମାନଙ୍କର ବିଶୁଦ୍ଧ ଅନ୍ତଃକରଣ ଭଗବତ୍‌ପ୍ରେମରେ ପରିପୂର୍ଣ୍ଣ ହୋଇଯାଏ, ଏହାଦ୍ୱାରା ସେମାନଙ୍କ ହୃଦୟରେ ଭଗବାନ୍ ସଦାସର୍ବଦା ପ୍ରତ୍ୟକ୍ଷ ଦେଖାଯାନ୍ତି । ଏହି ଭାବ ଦେଖାଇବାକୁ ଭଗବାନ୍ ନିଜେ ସେପରି ଭକ୍ତମାନଙ୍କ ମଧ୍ୟରେ ରହିଥିବା କଥା କହିଛନ୍ତି ।

ଅଭିପ୍ରାୟ ଏହି ଯେ, ଏହି ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଲୋକ ଅନୁସାରେ ଭଗବାନଙ୍କର ନିରାକାର ରୂପ ସମସ୍ତ ଚରାଚର ପ୍ରାଣୀଙ୍କ ମଧ୍ୟରେ ବ୍ୟାପ୍ତ ହୋଇଥିଲେ ମଧ୍ୟ ଓ ସମସ୍ତ ଚରାଚର ପ୍ରାଣୀ ଭଗବାନଙ୍କ ମଧ୍ୟରେ ସଦା ରହିଥିଲେ ମଧ୍ୟ, ଭଗବାନ୍ ନିଜ ଭକ୍ତମାନଙ୍କୁ ନିଜ ହୃଦୟରେ ବିଶେଷରୂପରେ ଧାରଣ କରିଥାନ୍ତି ଓ ସେମାନଙ୍କ ହୃଦୟରେ ସ୍ୱୟଂ ପ୍ରତ୍ୟକ୍ଷରୂପରେ ନିବାସ କରିଥାନ୍ତି । ଏହା ଭକ୍ତମାନଙ୍କର ଭକ୍ତିଯୋଗୁଁ ହିଁ ହୋଇଥାଏ । ତେଣୁ ଭଗବାନ୍ ଦୁର୍ବାସାଙ୍କୁ କହିଛନ୍ତି –

**ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟଂ ତ୍ୱହମ୍ ।**
**ମଦନ୍ୟତ୍ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି ॥**

(ଶ୍ରୀମଦ୍‌ଭାଗବତ ୯/୪/୬୮)

ଅର୍ଥାତ୍ 'ସାଧୁମାନେ (ଭକ୍ତମାନେ) ମୋର ହୃଦୟ ଏବଂ ମୁଁ ସେମାନଙ୍କର ହୃଦୟ । ସେମାନେ ମୋ ଛଡ଼ା ଆଉ କିଛି ଜାଣନ୍ତି ନାହିଁ, କି ମୁଁ ସେମାନଙ୍କ ଛଡ଼ା ଅନ୍ୟ କିଛି ଜାଣେ ନାହିଁ ।'

ଯେପରି ସବୁ ସ୍ଥାନରେ ସମଭାବରେ ଆଲୋକ ଦେଉଥିବା ସୂର୍ଯ୍ୟ ଦର୍ପଣ ଆଦି ସ୍ୱଚ୍ଛ ପଦାର୍ଥମାନଙ୍କରେ ପ୍ରତିବିମ୍ବିତ ହୁଅନ୍ତି, କିନ୍ତୁ କାଷ୍ଠାଦିରେ ହୁଅନ୍ତି ନାହିଁ, ତଥାପି ସୂର୍ଯ୍ୟଙ୍କ ଠାରେ ବିଷମତା, ପକ୍ଷପାତିତା ନାହିଁ, ସେହିପରି ଭଗବାନ୍ ମଧ୍ୟ ଭକ୍ତମାନଙ୍କୁ ମିଳନ୍ତି; ଅନ୍ୟମାନଙ୍କୁ ମିଳନ୍ତି ନାହିଁ– ଏଥିରେ ତାଙ୍କର ବିଷମତା ନାହିଁ; ଏହା ଭକ୍ତିର ହିଁ ମହିମା ।

*ସମ୍ବନ୍ଧ – ଭଗବାନ୍ ଭଜନ କରୁଥିବା ଭକ୍ତମାନଙ୍କ ଠାରେ ନିଜର ସମଭାବ ପ୍ରଦର୍ଶନ କରନ୍ତି ବୋଲି କହିବା ପରେ ବର୍ତ୍ତମାନ ଆଗ ଦୁଇ ଶ୍ଲୋକରେ ଦୁରାଚାରୀ ମଧ୍ୟ ଶାଶ୍ୱତ ଶାନ୍ତି ପ୍ରାପ୍ତ ହୁଏ ବୋଲି ଘୋଷଣା କରି ନିଜ ଭକ୍ତିର ବିଶେଷ ମହିମା ଦେଖାଉଛନ୍ତି–*

## ଅପି ଚେତ୍‌ସୁଦୁରାଚାରୋ ଭଜତେ ମାମନନ୍ୟଭାକ୍ ।
## ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍‌ବ୍ୟବସିତୋ ହି ସଃ ॥ ୩୦ ॥

**ଅନ୍ୱୟ –** ଚେତ୍ = ଯଦି (କୌଣସି); **ସୁଦୁରାଚାରଃ** = ଅତିଶୟ ଦୁରାଚାରୀ; **ଅପି** = ମଧ୍ୟ; **ଅନନ୍ୟଭାକ୍** = ଅନନ୍ୟଭାବରେ ମୋର ଭକ୍ତ ହୋଇ; **ମାମ୍** = ମୋତେ; **ଭଜତେ** = ଭଜନ କରେ (ତେବେ); **ସଃ** = ସେ; **ସାଧୁଃ** = ସାଧୁ ବୋଲି; **ଏବ** = ହିଁ; **ମନ୍ତବ୍ୟଃ** = ଗଣାଯିବାକୁ ଯୋଗ୍ୟ; **ହି** = କାରଣ; **ସଃ** = ସେ; **ସମ୍ୟକ୍** = ଯଥାର୍ଥ; **ବ୍ୟବସିତଃ** = ନିଶ୍ଚୟ କରିଥାଏ (ଅର୍ଥାତ୍ ସେ ଭଲରୂପେ ନିଶ୍ଚୟ କରି ନେଇଥାଏ ଯେ, ପରମେଶ୍ୱରଙ୍କ ଭଜନ ସମାନ ଆଉ କିଛି ନାହିଁ) ।

**ଯଦି କୌଣସି ଅତିଶୟ ଦୁରାଚାରୀ ମଧ୍ୟ ଅନନ୍ୟଭାବରେ ମୋର ଭକ୍ତ ହୋଇ ମୋତେ ଭଜନ କରେ, ତେବେ ସେ ବି ସାଧୁ ବୋଲି ଗଣାଯିବ; କାରଣ ସେ ଯଥାର୍ଥ ନିଶ୍ଚୟ କରିଥାଏ ଯେ, ପରମେଶ୍ୱରଙ୍କ ଭଜନ ସମାନ ଅନ୍ୟ କିଛି ନାହିଁ ॥ ୩୦ ॥**

**ପ୍ରଶ୍ନ –** କେଉଁ ଅଭିପ୍ରାୟ ନେଇ ଅପିର ପ୍ରୟୋଗ କରାଯାଇଛି ?

**ଉତ୍ତର –** ଅପିଦ୍ୱାରା ଭଗବାନ୍ ତାଙ୍କ ସମଭାବ ପ୍ରତିପାଦନ କରିଛନ୍ତି। ଅଭିପ୍ରାୟ ହେଉଛି, 'ସଦାଚାରୀ ଓ ସାଧାରଣ ପାପୀମାନଙ୍କ ଉଦ୍ଧାର ଯେ ମୋର ଭଜନ କଲେ ହୋଇଯାଏ, ଏଥିରେ କହିବାର କଣ ଅଛି ? ଭଜନଦ୍ୱାରା ଅତିଶୟ ଦୁରାଚାରୀ ମଧ୍ୟ ଉଦ୍ଧାର ପାଇଯାଏ।'

**ପ୍ରଶ୍ନ –** **ଚେତ୍** ଅବ୍ୟୟ ପଦର ପ୍ରୟୋଗ ଏଠାରେ କାହିଁକି କରାଗଲା ?

**ଉତ୍ତର –** ଚେତ୍‌ର ଅର୍ଥ 'ଯଦି'। ଏହା ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି, ''ସାଧାରଣତଃ ଦୁରାଚାରୀ ମନୁଷ୍ୟମାନେ ବିଷୟସୁଖରେ ଓ ପାପରେ ଆସକ୍ତି ରଖିଥିବାରୁ ପ୍ରେମର ସହିତ ମୋର ଭଜନ କରିପାରନ୍ତି ନାହିଁ। ତଥାପି କୌଣସି ପୂର୍ବଶୁଭସଂସ୍କାରର ଜାଗୃତି, ଭଗବଦ୍‌ଭାବମୟ ବାତାବରଣ, ଶାସ୍ତ୍ର-ଅଧ୍ୟୟନ ଓ ମହାତ୍ମା ପୁରୁଷମାନଙ୍କ ସତ୍‌ସଙ୍ଗରୁ ମୋର ଗୁଣ, ପ୍ରଭାବ, ମହତ୍ତ୍ୱ ଓ ରହସ୍ୟ ଶ୍ରବଣ କରିବାଦ୍ୱାରା ଯଦି କଦାଚିତ୍ ଦୁରାଚାରୀ ମନୁଷ୍ୟର ମୋଠାରେ ଶ୍ରଦ୍ଧା, ଭକ୍ତି ହୋଇଯାଏ ଓ ସେ ମୋର ଭଜନ କରିବାରେ ଲାଗିଯାଏ, ତେବେ ତା'ର ମଧ୍ୟ ଉଦ୍ଧାର ହୋଇଯାଏ।''

**ପ୍ରଶ୍ନ –** **ସୁଦୁରାଚାରଃ** ପଦଟି କିପରି ମନୁଷ୍ୟର ବାଚକ ? ଏବଂ ସେ **ଅନନ୍ୟଭାକ୍** ହୋଇ ଭଗବାନଙ୍କୁ ଭଜନ କରିବା କଣ ?

**ଉତ୍ତର –** ଯାହାର ଆଚରଣ ଅତ୍ୟନ୍ତ ମନ୍ଦ, ଯାହାର ଖାନ-ଭୋଜନ ଓ ଚାଲି-ଚଳନ ଭ୍ରଷ୍ଟ ହୋଇଯାଇଛି, ଯେ ନିଜର ସ୍ୱଭାବ, ଆସକ୍ତି ଓ ମନ୍ଦ ଅଭ୍ୟାସଦ୍ୱାରା ବିବଶ ହୋଇଯାଇଥିବାରୁ ଦୁରାଚାର ତ୍ୟାଗ କରିପାରୁ ନାହିଁ, ଏଠାରେ **ସୁଦୁରାଚାରଃ** ପଦଟି ହେଉଛି ସେପରି ମନୁଷ୍ୟର ବାଚକ। ସେପରି ମନୁଷ୍ୟ ଭଗବାନଙ୍କ ଗୁଣ, ପ୍ରଭାବ, ଆଦି ଶୁଣି ଓ ପଢ଼ି କିମ୍ବା ଅନ୍ୟ କୌଣସି କାରଣରୁ ଭଗବାନଙ୍କୁ ସର୍ବୋତ୍ତମ ବୋଲି ଜାଣିପାରିବା ଏବଂ ଏକମାତ୍ର ଭଗବାନଙ୍କର ହିଁ ଆଶ୍ରୟ ନେଇ ଅତିଶୟ ଶ୍ରଦ୍ଧାପ୍ରେମପୂର୍ବକ ତାଙ୍କୁ ନିଜର ଇଷ୍ଟଦେବତା ବୋଲି ମାନିନେବା ହିଁ ସେ **ଅନନ୍ୟଭାକ୍** ହେବା। ଏପରିଭାବରେ ଭଗବାନଙ୍କର ଭକ୍ତ ହୋଇ ତାଙ୍କ ସ୍ୱରୂପ ଚିନ୍ତନ କରିବା, ନାମ, ଗୁଣ, ମହିମା ଓ ପ୍ରଭାବ ଶ୍ରବଣ, ମନନ ଓ କୀର୍ତ୍ତନ କରିବା, ତାଙ୍କୁ ନମସ୍କାର କରିବା, ପତ୍ର-ପୁଷ୍ପ ଆଦି ଯାହା କିଛି ବସ୍ତୁ ଅର୍ପଣ କରି ତାଙ୍କୁ ପୂଜା କରିବା ତଥା ନିଜକୃତ ଶୁଭକର୍ମକୁ ଭଗବାନଙ୍କ ଠାରେ ସମର୍ପଣ କରିଦେବା ହିଁ ଅନନ୍ୟଭାକ୍ ହୋଇ ଭଗବାନଙ୍କର ଭଜନ କରିବା।

**ପ୍ରଶ୍ନ –** ଏପରି ମନୁଷ୍ୟକୁ ସାଧୁ ବୋଲି ମାନିବାକୁ କହି ତାଙ୍କୁ ଯଥାର୍ଥ ନିଶ୍ଚୟ କରିଥିବା ବ୍ୟକ୍ତି ବୋଲି ଭଗବାନ୍ ଯାହା କହିଲେ, ତାହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି, ''ମୋର ଭକ୍ତ ଯଦି ସର୍ବଥା ନିଜର ଦୁରାଚାର ଦୂର କରିବାକୁ ଇଚ୍ଛା ଓ ଚେଷ୍ଟା କଲେ ମଧ୍ୟ ସ୍ୱଭାବ ଓ ଅଭ୍ୟାସବଶତଃ ତାହା ପୂର୍ଣ୍ଣରୂପେ ତ୍ୟାଗ କରିପାରୁ ନ ଥାଏ, ତେବେ ବି ତାଙ୍କୁ ଦୁଷ୍ଟ ନ ଭାବି ସାଧୁ ବୋଲି ହିଁ ମାନିବା ଉଚିତ। କାରଣ ସେ ଯେଉଁ ଦୃଢ଼ନିଶ୍ଚୟ କରିନେଇଥାଏ ଯେ, 'ଭଗବାନ୍ ପତିତପାବନ, ସମସ୍ତଙ୍କର ସୁହୃତ୍, ସର୍ବଶକ୍ତିମାନ୍, ପରମ ଦୟାଳୁ, ସର୍ବଜ୍ଞ, ସମସ୍ତଙ୍କର ସ୍ୱାମୀ ଓ ସର୍ବୋତ୍ତମ ଏବଂ ତାଙ୍କର ଭଜନ କରିବା ହିଁ ମନୁଷ୍ୟ-ଜୀବନର ପରମ କର୍ତ୍ତବ୍ୟ; ଏହାଦ୍ୱାରା ସମସ୍ତ ପାପ ଓ ପାପବାସନା ସମୂଳେ ବିନାଶ ହୋଇ ଭଗବତ୍‌କୃପାରୁ ମୋର ସ୍ୱତଃ ଭଗବତ୍‌ପ୍ରାପ୍ତି ହୋଇଯିବ, ତାହା ଅତ୍ୟନ୍ତ ଶ୍ରେଷ୍ଠ ଓ ଯଥାର୍ଥ ନିଶ୍ଚୟ।' ଯେ ଏପରି ନିଶ୍ଚୟ କରିପାରନ୍ତି, ସେ ମୋର ଭକ୍ତ ଅଟନ୍ତି ଓ ମୋର ଭକ୍ତି ବଳରେ ସେ ଶୀଘ୍ର ହିଁ ପୂର୍ଣ୍ଣ ଧର୍ମାତ୍ମା ହୋଇଯିବେ। ଅତଏବ ତାଙ୍କୁ ପାପୀ ବା ଦୁଷ୍ଟ ବୋଲି ନ ଭାବି, ସାଧୁ ବୋଲି ହିଁ ମାନିବା ଉଚିତ।''

**ପ୍ରଶ୍ନ –** ସପ୍ତମ ଅଧ୍ୟାୟର ପନ୍ଦର ଶ୍ଳୋକରେ ତ ଭଗବାନ୍ କହିଲେ, ''ଦୁରାଚାରୀ ମନୁଷ୍ୟମାନେ ମୋତେ ଭଜନ କରନ୍ତି ନାହିଁ'' ଅଥଚ ଏଠାରେ ଦୁରାଚାରୀଙ୍କ ଭଜନର ଫଳ ବୁଝାଉଛନ୍ତି। ଏହାଦ୍ୱାରା ଭଗବାନଙ୍କ କଥାରେ ବିରୋଧଭାବ ଥିଲାପରି ପ୍ରତୀତ ହେଉ ନାହିଁ କି ? ଏହାର ସମାଧାନ କଣ ?

**ଉତ୍ତର –** ସେଠାରେ ଯେଉଁ ଦୁରାଚାରୀମାନଙ୍କର ବର୍ଣ୍ଣନା କରାଯାଇଛି, ସେମାନେ କେବଳ ପାପ କରନ୍ତି ନାହିଁ, ସେମାନଙ୍କର ତ ଭଗବାନଙ୍କ ଠାରେ ବିଶ୍ୱାସ ମଧ୍ୟ ନାହିଁ। ସେମାନେ ଭଗବାନଙ୍କୁ ଜାଣନ୍ତି ନାହିଁ ଓ ପାପକର୍ମରୁ ନିବୃତ୍ତ ହେବା ଚାହାଁନ୍ତି ନାହିଁ। ଅତଏବ ସେହି ନାସ୍ତିକ ଓ ମୂଢ଼ ମନୁଷ୍ୟମାନଙ୍କ ପାଇଁ

**ମାୟୟାପହୃତଜ୍ଞାନାଃ, ନରାଧମାଃ** ଓ **ଆସୁରଂ ଭାବମାଶ୍ରିତାଃ** ଇତ୍ୟାଦି ବିଶେଷଣ ଦିଆଯାଇଛି। କିନ୍ତୁ ଏଠାରେ ଯେଉଁମାନଙ୍କର ବର୍ଣ୍ଣନା ହୋଇଛି, ସେମାନଙ୍କ ଦ୍ୱାରା ପାପ ତ ହୁଏ, ତଥାପି ପାପରୁ ମୁକ୍ତି ପାଇବାକୁ ସେମାନେ ବ୍ୟଗ୍ର। ସେମାନଙ୍କର ଭଗବତ୍ ଗୁଣ, ପ୍ରଭାବ, ସ୍ୱରୂପ ଓ ନାମରେ ଭକ୍ତି ଥାଏ ତଥା ସେମାନେ ଦୃଢ଼ବିଶ୍ୱାସସହ ନିଶ୍ଚୟ କରିଥାନ୍ତି, "ଏକମାତ୍ର ପତିତପାବନ ପରମଦୟାଳୁ ପରମେଶ୍ୱର ହିଁ ସମସ୍ତଙ୍କ ଅପେକ୍ଷା ପରମ ଶ୍ରେଷ୍ଠ। ସେ ହିଁ ଆମର ପରମ ଇଷ୍ଟଦେବ। ତାଙ୍କ ଭଜନ କରିବା ହିଁ ମନୁଷ୍ୟଜୀବନର ପରମ କର୍ତ୍ତବ୍ୟ। ତାଙ୍କ କୃପାରୁ ହିଁ ଆମର ସକଳ ପାପ ସମୂଳେ ଧ୍ୱଂସ ପାଇଯିବ ଏବଂ ଆମକୁ ସେ ସହଜରେ ପ୍ରାପ୍ତ ହେବେ।" ତେଣୁ ସେମାନଙ୍କୁ **ସମ୍ୟଗ୍‌ବ୍ୟବସିତଃ** ଓ **ଅନନ୍ୟଭାକ୍** ଭକ୍ତ ବୋଲି କୁହାଯାଇଛି। ତେଣୁ ସେମାନଙ୍କ ଦ୍ୱାରା ଭଜନ ହେବା ସ୍ୱାଭାବିକ କିନ୍ତୁ ନାସ୍ତିକମାନଙ୍କର ଭଗବାନଙ୍କ ଠାରେ ବିଶ୍ୱାସ ହୁଏ ନାହିଁ, ଅତଏବ ସେମାନଙ୍କ ଦ୍ୱାରା ଭଜନ ହେବା ସମ୍ଭବ ନୁହେଁ। ତେଣୁ ଭଗବାନଙ୍କର ଏହି ଦୁଇପ୍ରକାର କଥାରେ କୌଣସି ବିରୋଧଭାବ ନାହିଁ। ପ୍ରସଙ୍ଗଭେଦରେ ଉଭୟ କଥା ଠିକ୍।

## କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି।
## କୌନ୍ତେୟ ପ୍ରତି ଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି।। ୩୧ ।।

**ଅନ୍ୱୟ–** **କ୍ଷିପ୍ରମ୍** = (ତେଣୁ ସେ) ଶୀଘ୍ର ହିଁ; **ଧର୍ମାତ୍ମା** = ଧର୍ମାତ୍ମା; **ଭବତି** = ହୋଇଯାଏ (ଏବଂ); **ଶଶ୍ୱଦ୍** = ଚିରନ୍ତନ; **ଶାନ୍ତିମ୍** = ଶାନ୍ତି; **ନିଗଚ୍ଛତି** = ପ୍ରାପ୍ତ ହୋଇଯାଆନ୍ତି; **କୌନ୍ତେୟ** = ହେ ଅର୍ଜୁନ (ତୁମେ); **ପ୍ରତି** = (ଏହା) ନିଶ୍ଚିତ ସତ୍ୟ ବୋଲି; **ଜାନୀହି** = ଜାଣ (ଯେ); **ମେ** = ମୋର; **ଭକ୍ତଃ** = ଭକ୍ତ; **ନ, ପ୍ରଣଶ୍ୟତି** = ନଷ୍ଟ ହୁଏ ନାହିଁ।

**ତେଣୁ ସେ ଶୀଘ୍ର ହିଁ ଧର୍ମାତ୍ମା ହୋଇଯାଏ ଏବଂ ଚିରନ୍ତନ ଶାନ୍ତି ପ୍ରାପ୍ତ ହୋଇଯାଏ। ହେ ଅର୍ଜୁନ! ତୁମେ ଏହା ନିଶ୍ଚିତ ସତ୍ୟ ବୋଲି ଜାଣ ଯେ, ମୋର ଭକ୍ତଙ୍କର ବିନାଶ ହୁଏ ନାହିଁ।। ୩୧ ।।**

**ପ୍ରଶ୍ନ–** 'ଉପରୋକ୍ତପ୍ରକାରେ ଭଗବାନଙ୍କୁ ଭଜନ କରୁଥିବା ଭକ୍ତ ଶୀଘ୍ର ହିଁ ଧର୍ମାତ୍ମା ହୋଇଯାଏ' କହିଲେ କଣ ବୁଝାଏ ତଥା **ଶଶ୍ୱତ୍ ଶାନ୍ତି** ପ୍ରାପ୍ତ ହେବା କଣ ?

**ଉତ୍ତର–** ଏହି ଜନ୍ମରେ ଅତିଶୀଘ୍ର ସକଳପ୍ରକାର ଦୁର୍ଗୁଣ ଓ ଦୁରାଚାରରୁ ମୁକ୍ତ ହୋଇ ଷୋହଳ ଅଧ୍ୟାୟର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ଳୋକରେ ବର୍ଣ୍ଣିତ ଦୈବୀ ସମ୍ପଦ୍‌ଯୁକ୍ତ ହୋଇଯିବା ଅର୍ଥାତ୍ ଭଗବତ୍‌ପ୍ରାପ୍ତିପାଇଁ ଯୋଗ୍ୟ ହୋଇଯିବା ହିଁ ଶୀଘ୍ର ଧର୍ମାତ୍ମା ହୋଇଯିବା ଏବଂ ଚିରଶାନ୍ତି ଅର୍ଥାତ୍ ଯାହାକୁ ଥରେ ପାଇଲେ, ଆଉ ଯାହାର ଅଭାବ ହୁଏ ନାହିଁ, ଯାହାକୁ ନୈଷ୍ଠିକ ଶାନ୍ତି (୫/୧୨), ନିର୍ବାଣପରମା ଶାନ୍ତି (୬/୧୫) ଓ ପରମା ଶାନ୍ତି (୧୮/୬୨) ବୋଲି କହନ୍ତି, ପରମେଶ୍ୱରଙ୍କ ପ୍ରାପ୍ତିରୂପୀ ସେହି ଶାନ୍ତି ପ୍ରାପ୍ତ ହୋଇଯିବା ହିଁ **ଶଶ୍ୱତ୍ ଶାନ୍ତି** ପ୍ରାପ୍ତ ହେବା।

**ପ୍ରଶ୍ନ–** **ପ୍ରତି ଜାନୀହି** ପଦର ଅର୍ଥ କଣ ଏବଂ ଏଠାରେ ଏହାକୁ ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର–** **ଜାନୀହି** ପଦଟି 'ଜ୍ଞା' ଧାତୁରୁ ନିଷ୍ପନ୍ନ ଏବଂ 'ପ୍ରତି' ଉପସର୍ଗ ଯୋଗରେ **ପ୍ରତି ଜାନୀହି** ହୋଇଛି। ଏହାର ଅର୍ଥ ହେଉଛି 'ପ୍ରତିଜ୍ଞା କର' ବା 'ଦୃଢ଼ ନିଶ୍ଚୟ କର'। ଏଠାରେ ଏହା ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି, "ଅର୍ଜୁନ, ମୁଁ ତୁମକୁ ମୋର ଭକ୍ତି ଓ ଭକ୍ତଙ୍କର ଏହି ଯେଉଁ ମହତ୍ତ୍ୱ କହିଲି, ସେଥିରେ ତିଳେମାତ୍ର ସଂଶୟ ନ ରଖି ତାହା ସର୍ବଥା ସତ୍ୟ ବୋଲି ବୁଝ ଏବଂ ଦୃଢ଼ତାପୂର୍ବକ ଧାରଣ କର।"

**ପ୍ରଶ୍ନ–** 'ମୋ ଭକ୍ତଙ୍କର ବିନାଶ ହୁଏ ନାହିଁ'– ଏହି ଉକ୍ତିର ଅଭିପ୍ରାୟ କଣ ?

**ଉତ୍ତର–** ଏଠାରେ **ପ୍ର** ଉପସର୍ଗସହିତ **ନଶ୍ୟତି** କ୍ରିୟାର ଭାବାର୍ଥ ହେଉଛି 'ପତନ ହେବା'। ତେଣୁ ଏଠାରେ ଭଗବାନ୍ କହୁଛନ୍ତି, "ମୋ ଭକ୍ତର କ୍ରମଶଃ ଉତ୍‌ଥାନ ହିଁ ହୁଏ; ପତନ ହୁଏ ନାହିଁ। ଅର୍ଥାତ୍, ସେ ନିଜ ସ୍ଥିତିରୁ କେବେହେଲେ ଖସେ ନାହିଁ ଅର୍ଥାତ୍, ତା'ର ନୀଚଯୋନିରେ ଜନ୍ମ ବା ନରକାଦି ଦୁର୍ଗତିପ୍ରାପ୍ତି ହୁଏ ନାହିଁ। ସେ ପୂର୍ବକଥନ ଅନୁସାରେ କ୍ରମଶଃ ଦୁର୍ଗୁଣ-ଦୁରାଚାରରୁ ସର୍ବଥା ମୁକ୍ତ ହୋଇ ଶୀଘ୍ର ହିଁ

ଧର୍ମାତ୍ମା ହୋଇଯାଏ ଏବଂ ପରମଶାନ୍ତି ପ୍ରାପ୍ତ ହୁଏ ।''

**ପ୍ରଶ୍ନ –** ଏପରି କୌଣସି ଭକ୍ତଙ୍କର ଦୃଷ୍ଟାନ୍ତ ଅଛି କି ?

**ଉତ୍ତର –** ଅନେକ ଦୃଷ୍ଟାନ୍ତ ରହିଛି । ଉଦାହରଣ ସ୍ୱରୂପ ଭକ୍ତିରସପୂର୍ଣ୍ଣ 'ଶ୍ରୀକୃଷ୍ଣକର୍ଣ୍ଣାମୃତ' କାବ୍ୟର ରଚୟିତା ଶ୍ରୀବିଲ୍ୱମଙ୍ଗଳଙ୍କୁ ନିଆଯାଇପାରେ ।

## ଭକ୍ତ ବିଲ୍ୱମଙ୍ଗଳ

ଦାକ୍ଷିଣାତ୍ୟର କୃଷ୍ଣବେଣୀ ନଦୀ ତଟସ୍ଥ ଏକ ଗ୍ରାମରେ ରାମଦାସ ନାମକ ଜଣେ ଭକ୍ତ ବ୍ରାହ୍ମଣ ନିବାସ କରୁଥିଲେ । ବିଲ୍ୱମଙ୍ଗଳ ଥିଲେ ତାଙ୍କର ପୁଅ । ସେ ପାଠଶାଠ ପଢ଼ିଥିଲେ; ପ୍ରଥମେ ଶାନ୍ତ, ଶିଷ୍ଟ ଓ ସାଧୁସ୍ୱଭାବର ଯୁବକ ଥିଲେ । କିନ୍ତୁ ପିତାଙ୍କ ମୃତ୍ୟୁପରେ କୁସଙ୍ଗରେ ପଡ଼ି ସେ ଅତ୍ୟନ୍ତ ଦୁରାଚାରୀ ହୋଇଗଲେ । ବେଶ୍ୟାଳୟରେ ପଡ଼ିରହିବା ଓ ଦିନରାତି ପାପକର୍ମରେ ଲିପ୍ତ ରହିବା ତାଙ୍କର ନିତିଦିନିଆ କାମ ହୋଇଗଲା । ଚିନ୍ତାମଣି ବୋଲି ଜଣେ ବେଶ୍ୟା ପ୍ରତି ସେ ବିଶେଷ ଆସକ୍ତ ହୋଇଗଲେ । ବେଶ୍ୟା ନଦୀର ଆର ପାଖରେ ରହୁଥିଲା । ଥରେ ପିତାଙ୍କର ଶ୍ରାଦ୍ଧ ଥିବାରୁ ସେ ଦିନବେଳେ ତା' ଘରକୁ ଯାଇପାରିଲେ ନାହିଁ । କିନ୍ତୁ ଶରୀର ସିନା ଘରେ ଥିଲା, ମନ ଥିଲା ବେଶ୍ୟା ନିକଟରେ । ଶ୍ରାଦ୍ଧ କାମ ସରୁ ସରୁ ସନ୍ଧ୍ୟା ହୋଇଗଲା । ସେ ବେଶ୍ୟାଘରକୁ ଯିବାକୁ ବାହାରିଲେ । ଲୋକମାନେ କହିଲେ, ''ଆଜି ପିତାଙ୍କ ଶ୍ରାଦ୍ଧ; ଯାଅ ନାହିଁ ।'' କିନ୍ତୁ ସେ କାହିଁକି କାହା କଥା ଶୁଣିବେ ! ଯାଇ ନଦୀକୂଳରେ ପହଞ୍ଚଗଲେ । ଏତିକିବେଳେ ଏକ ତୋଫାନ ଆସିଲା । ମୁଷଳଧାରାରେ ବର୍ଷା ହେବାକୁ ଲାଗିଲା । ନାଉରୀମାନେ ତୋଫାନକୁ ଡରି, ସବୁ ଡଙ୍ଗା ଆଣି, କୂଳରେ ବାନ୍ଧିଦେଇ ଗଛମୂଳେ ଆଶ୍ରୟ ନେଲେ । ରାତି ବଡ଼ ଭୟଙ୍କର ହୋଇଗଲା । ଡଙ୍ଗା ଖୋଲିବାକୁ ବିଲ୍ୱମଙ୍ଗଳ ନାଉରୀମାନଙ୍କୁ ବୁଝାଇଲେ, ଲୋଭ ଦେଖାଇଲେ; କିନ୍ତୁ ପଇସା ଲୋଭରେ ଜୀବନ ଦେବାକୁ କିଏ ବା ବାହାରିବ ? ତଥାପି ତାଙ୍କ ମନ ତ ଅନ୍ୟଠାରେ ଲାଗିଛି । ନାଉରୀ କେହି ବାହାରୁ ନାହାନ୍ତି ଦେଖି, ସେ ଆଗପଛ ବିଚାର ନ କରି ନଦୀକୁ ଡେଇଁପଡ଼ିଲେ । ସେତେବେଳକୁ କୌଣସି ଜଣେ ସ୍ତ୍ରୀଲୋକର ଶବ ଭାସିଯାଉଥିଲା । ଅନ୍ଧାରରେ ତ କିଛି ଦେଖାଯାଉ ନ ଥାଏ; ପୁଣି ସେତେବେଳକୁ ବିଲ୍ୱମଙ୍ଗଳ କାମାନ୍ଧ ହୋଇ ରହିଥିଲେ । ସେ ଭାବିଲେ, କାଠଗଡ଼ଟାଏ ଭାସି ଆସୁଛି । ତେଣୁ ସେ ଶବଟାକୁ ଆଶ୍ରା କରି ଆଗକୁ ବଢ଼ିଲେ । ଶବ ବୋଲି ଜାଣି ନ ଥାନ୍ତି, କି ଦୁର୍ଗନ୍ଧର ଜ୍ଞାନ ନ ଥାଏ । ଦୈବଯୋଗକୁ ସେ ଯାଇ ଆର କୂଳରେ ଲାଗିଗଲେ ଏବଂ ଦୌଡ଼ିଯାଇ ଚିନ୍ତାମଣି ଘରେ ପହଞ୍ଚିଲେ । ଘର ଦୁଆର ବନ୍ଦ ଥାଏ; କିନ୍ତୁ ତାଙ୍କ ମନ ତ ବିଚିତ୍ରଭାବରେ ଛଟପଟ ହେଉଥିଲା । କାନ୍ଥ ଡେଇଁ ଭିତରକୁ ଯିବେ ବୋଲି ସେ କାନ୍ଥ ଉପରକୁ ହାତ ବଢ଼ାଇଦେଲେ । ହାତମୁଠାରେ ରେଶମ ଡିଆରି କଅଁଳ ଦଉଡ଼ିପରି କିଛି ଗୋଟିଏ ଜିନିଷ ପଡ଼ିଗଲା । ସେଇଟି ଥିଲା ଗୋଟିଏ କଳା ନାଗସାପ । ମୁଣ୍ଡ ତା'ର କାନ୍ଥ ଉପରେ ଥିଲା ଏବଂ ଲାଞ୍ଜଟା ତଳକୁ ଲମ୍ବି ରହିଥିଲା । ସେ ସେହି ସାପଲାଞ୍ଜକୁ ଧରି ଉପରକୁ ଚଢ଼ିଗଲେ । ଭଗବାନଙ୍କ ଲୀଳାରୁ ସାପ ତାଙ୍କୁ ଦଂଶନ କଲା ନାହିଁ । ସେ ଯାଇ ଚିନ୍ତାମଣିକୁ ଉଠାଇଲେ । ତାଙ୍କୁ ଦେଖିବା ମାତ୍ରେ ଚିନ୍ତାମଣି ବିସ୍ମିତ ହୋଇଗଲା; କହିଲା, 'ତୁମେ ଏହି ଭୟଙ୍କର ରାତିରେ କିପରି ନଦୀ ପାର ହୋଇ ଘରେ ପଶିଲ ?' ବିଲ୍ୱମଙ୍ଗଳ କାଠଗଡ଼ ଧରି ନଦୀ ପାରହେବା ଏବଂ ଦଉଡ଼ି ଧରି କାନ୍ଥ ଚଢ଼ିବା କଥା ଶୁଣାଇଲେ । ବର୍ଷା ବନ୍ଦ ହୋଇଯାଇଥିଲା । ଚିନ୍ତାମଣି ଦୀପଟିଏ ଧରି ବାହାରକୁ ଆସିଲା । ଦେଖିଲା, କାନ୍ଥ ଉପରେ ଭୟାନକ କଳା ନାଗସାପଟିଏ ଓହଳିଛି ଏବଂ ନଦୀକୂଳରେ ସଢ଼ା ଶବଟାଏ ପଡ଼ିରହିଛି । ବିଲ୍ୱମଙ୍ଗଳ ମଧ୍ୟ ସେସବୁ ଦେଖି ଭୟରେ କମ୍ପି ଉଠିଲେ । ଚିନ୍ତାମଣି ଭର୍ତ୍ସନା କରି କହିଲା, ''ତୁ ବ୍ରାହ୍ମଣ ତ ? ହଇରେ, ଆଜି ତୋ ବାପାଙ୍କ ଶ୍ରାଦ୍ଧ, ଅଥଚ ଗୋଟେ ହାଡ଼ମାଂସର କଙ୍କାଳ ପ୍ରତି ତୁ ଏତେ ଆସକ୍ତ ଯେ, ନିଜର ଧର୍ମକର୍ମକୁ ଜଳାଞ୍ଜଳି ଦେଇ ଏହି ଭୟଙ୍କର ରାତିରେ ଶବ ଓ ସାପର ସହାୟତାରେ ଏଠାକୁ ଦୌଡ଼ିଆସିଛୁ ? ତୁ ଆଜି ଯାହାକୁ ପରମ ସୁନ୍ଦର ମନେ କରି ଏପରି ପାଗଳ ହେଉଛୁ, ତା'ର ମଧ୍ୟ ଦିନେ ଏହି ଦଶା ହେବ,— ତୋ ଆଖି ଆଗରେ ପଡ଼ିଥିବା ଏହି ପଚାସଢ଼ା ଶବର ଦଶା ହେବ । ତୋର ଏ ନୀଚ ପ୍ରବୃତ୍ତିକୁ ଧିକ୍ ! ଆରେ, ତୁ ଯଦି ସେହି ମନମୋହନ ଶ୍ୟାମସୁନ୍ଦରଙ୍କ ପ୍ରତି ଏତିକି ଆସକ୍ତ ହୁଅନ୍ତୁ – ଯଦି ତାଙ୍କୁ ଦେଖିବାପାଇଁ ଏପରି ବ୍ୟାକୁଳ ହୋଇ ଦୌଡ଼ିଥା'ନ୍ତୁ, ତେବେ ନିଶ୍ଚୟ ତାଙ୍କୁ ପାଇ ଏତେବେଳକୁ ଅବଶ୍ୟ କୃତାର୍ଥ ହୋଇସାରନ୍ତୁଣି ।'' ବେଶ୍ୟାର ସେହି ବାଣୀ କୁହୁକପରି କାମ କଲା । ବିଲ୍ୱମଙ୍ଗଳଙ୍କ ହୃଦୟରେ

ଏକ ନୂତନ ଭାବର ସଂଚାର ହୋଇଗଲା; ତାଙ୍କ ବିବେକର ଅଗ୍ନି ଜଳିଉଠିଲା ଏବଂ ତାହା ତାଙ୍କର ସମସ୍ତ କଳୁଷ ଜାଳିଦେଲା। ଅନ୍ତଃକରଣ ଶୁଦ୍ଧ ହୋଇଯିବାମାତ୍ରେ ଭଗବତ୍‌ପ୍ରେମର ଜୁଆର ଉଠିଲା ଓ ତାଙ୍କ ଆଖିରୁ ଅଜସ୍ର-ଅଶ୍ରୁଧାରା ବୋହିବାକୁ ଲାଗିଲା। ବିଲ୍ୱମଙ୍ଗଳ ଚିନ୍ତାମଣିର ପାଦ ଧରି କହିଲେ, ''ମାଆ, ତୁମେ ମୋତେ ଆଜି ବିବେକଦୃଷ୍ଟି ଦେଇ କୃତାର୍ଥ କରିଦେଲ।'' ମନେ ମନେ ଚିନ୍ତାମଣିଙ୍କୁ ଗୁରୁ ମଣି ସେ ପ୍ରଣାମ କଲେ। ତା'ପରେ ସାରା ରାତି ଚିନ୍ତାମଣି ତାଙ୍କୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳା ଗାନ କରି ଶୁଣାଇଲେ। ବିଲ୍ୱମଙ୍ଗଳଙ୍କ ଉପରେ ତା'ର ବଡ଼ ପ୍ରଭାବ ପଡ଼ିଲା। ସେ ପ୍ରାତଃକାଳ ହେଉ ହେଉ ଜଗଚ୍ଚିନ୍ତାମଣି ଶ୍ରୀକୃଷ୍ଣଙ୍କର ପବିତ୍ର ଚିନ୍ତନରେ ନିମଗ୍ନ ହୋଇ ଉନ୍ମତ୍ତ ହେଲାପରି ଚିନ୍ତାମଣି ଘରୁ ବାହାରିପଡ଼ିଲେ। ବିଲ୍ୱମଙ୍ଗଳଙ୍କ ଜୀବନନାଟକର ପରଦା ବଦଳିଗଲା। ବିଲ୍ୱମଙ୍ଗଳ କୃଷ୍ଣବେଣୀ ନଦୀତଟରେ ରହୁଥିବା ମହାତ୍ମା ସୋମଗିରିଙ୍କ ନିକଟକୁ ଗଲେ ଏବଂ ତାଙ୍କଠାରୁ ଗୋପାଳ-ମନ୍ତ୍ରରାଜ ଦୀକ୍ଷା ପାଇ ଭଜନରେ ଲାଗିଗଲେ। ସେ ଭଗବାନଙ୍କର ନାମ କୀର୍ତ୍ତନ କରି କରି ବିଚରଣ କରିବାକୁ ଲାଗିଲେ। ମନରେ ଭଗବାନଙ୍କର ଦର୍ଶନଲାଳସା ଜାଗି ଉଠିଲା; କିନ୍ତୁ ଏବେ ମଧ୍ୟ ଦୁରାଚାରୀ ସ୍ୱଭାବ ପୂରା ନଷ୍ଟ ହୋଇ ନ ଥାଏ। ଖରାପ ଅଭ୍ୟାସର ବଶବର୍ତ୍ତୀ ହୋଇ ତାଙ୍କ ମନ ପୁଣି ଏକ ଯୁବତୀ ପ୍ରତି ଆକୃଷ୍ଟ ହେଲା। ବିଲ୍ୱମଙ୍ଗଳ ତା' ଦୁଆରେ ଯାଇ ବସିଲେ। ଘରମାଲିକ ଥିଲେ ଜଣେ ସେଠ; ସେ ଆସି ଦେଖିଲେ, ଜଣେ ମଳିନମୁଖ ବ୍ରାହ୍ମଣ ବାହାରେ ବସିଛନ୍ତି। ସେ କାରଣ ପଚାରିଲେ। ବିଲ୍ୱମଙ୍ଗଳ କପଟ ତ୍ୟାଗ କରି ସମସ୍ତ ଘଟଣା ଶୁଣାଇଦେଲେ ଏବଂ କହିଲେ, ''ମୁଁ ଥରେମାତ୍ର ସେହି ଯୁବତୀଙ୍କୁ ପ୍ରାଣଭରି ଦେଖିବି। ଆପଣ ତାଙ୍କୁ ଏଠିକି ଡାକିଆଣନ୍ତୁ।'' ଯୁବତୀ ଥିଲେ ସେହି ସେଠଙ୍କ ଧର୍ମପତ୍ନୀ। ସେଠ ବିଚାର କଲେ, ଯଦି ତାଙ୍କୁ ଦେଖିଲେ ହିଁ ଯାଙ୍କର ତୃପ୍ତି ହୋଇଯିବ, ସେଥିରେ କ୍ଷତି କଣ? ସାଧୁସ୍ୱଭାବ ସେଠ ନିଜ ପତ୍ନୀଙ୍କୁ ଡାକିବାକୁ ଘର ଭିତରକୁ ଗଲେ। ଏଣେ ବିଲ୍ୱମଙ୍ଗଳଙ୍କ ମାନସସମୁଦ୍ରରେ ପରିବର୍ତ୍ତନର ଢେଉ ଓ ତୋଫାନ ଉଠିଲା।

ବିଲ୍ୱମଙ୍ଗଳ ଭଗବାନଙ୍କର ଭକ୍ତ ହୋଇ ସାରିଥିଲେ; ତାଙ୍କର ପତନ ହୁଅନ୍ତା କିପରି? ଦୀନବତ୍ସଳ ଭଗବାନ୍ ଅଜ୍ଞାନାନ୍ଧ ବିଲ୍ୱମଙ୍ଗଳଙ୍କୁ ବିବେକଚକ୍ଷୁ ପ୍ରଦାନ କଲେ; ତାଙ୍କୁ ତାଙ୍କ ଅବସ୍ଥାର ଯଥାର୍ଥ ଜ୍ଞାନ ହୋଇଗଲା; ହୃଦୟ ଶୋକରେ ଭରିଗଲା ଏବଂ କଣ ଭାବି କେଜାଣି, ସେ ନିକଟସ୍ଥ ବେଲଗଛରୁ ଦୁଇଟି କଣ୍ଟା ନେଇ ଆସିଲେ। ଏତିକିବେଳେ ସେଠଙ୍କ ପତ୍ନୀ ସେଇଠି ଆସି ପହଞ୍ଚିଗଲେ। ବିଲ୍ୱମଙ୍ଗଳ ତାଙ୍କୁ ପୁଣି ଦେଖିଲେ ଏବଂ ମନେ ମନେ ନିଜକୁ ଧିକ୍କାର କରି କହିଲେ, ''ଅଭାଗା ଆଖି, ଯଦି ତୁମେଦୁଇଟା ନ ଥାନ୍ତ, ତେବେ ଆଜି ମୋର ଏତେ ପତନ ହୁଅନ୍ତା କାହିଁକି?'' ଏତିକି କହି ବିଲ୍ୱମଙ୍ଗଳ, ତାଙ୍କର ଦୁର୍ବଳତା ହେଉ ବା ଅନ୍ୟ କିଛି ହେଉ, ଶୀଘ୍ର ଆଖିକୁ ଦଣ୍ଡ ଦେବା ହିଁ ଉଚିତ ହେବ ଭାବି ସେହିକ୍ଷଣି ସେହି ଦୁଇଟି କଣ୍ଟାରେ ନିଜର ଦୁଇ ଆଖି ଫୁଟାଇଦେଲେ। ରକ୍ତଧାର ବୋହିବାକୁ ଲାଗିଲା। ବିଲ୍ୱମଙ୍ଗଳ ହସି ହସି, ନାଚି ନାଚି ତୁମୁଳ ହରିଧ୍ୱନିରେ ଆକାଶ ପ୍ରତିଧ୍ୱନିତ କରିଦେଲେ। ସେଠ ଓ ତାଙ୍କ ପତ୍ନୀଙ୍କୁ ବଡ଼ ଦୁଃଖ ଲାଗିଲା; କିନ୍ତୁ ସେମାନେ ତ ନିରୁପାୟ ଥିଲେ। ବିଲ୍ୱମଙ୍ଗଳଙ୍କ ମନରେ ଯାହାକିଛି କୁସଂସ୍କାର ଅବଶିଷ୍ଟ ଥିଲା, ଆଜି ତାହା ସଂପୂର୍ଣ୍ଣ ନଷ୍ଟ ହୋଇଗଲା ଏବଂ ସେହି ଅନାଥର ନାଥଙ୍କୁ ଅତିଶୀଘ୍ର ପାଇବାକୁ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲେ।

ପରମ ପ୍ରିୟତମ ଶ୍ରୀକୃଷ୍ଣଙ୍କ ବିୟୋଗର ଦାରୁଣ ବ୍ୟଥାରେ ତାଙ୍କର ଫୁଟିଯାଇଥିବା ଆଖି ଦୁଇଟି ଚବିଶ ଘଣ୍ଟା ଅଶ୍ରୁ ବର୍ଷଣ କରିବାକୁ ଲାଗିଲା। ଭୋକ-ଶୋଷ, ଶୋଇବା ନ ଶୋଇବାର ଜ୍ଞାନ ଚାଲିଗଲା। 'କୃଷ୍ଣ! କୃଷ୍ଣ!' ଡାକରେ ଚତୁର୍ଦ୍ଦିଗ ଗୁଞ୍ଜରିତ ହେଲା ଏବଂ ବିଲ୍ୱମଙ୍ଗଳ ବଣ ଜଙ୍ଗଲ ଓ ଗାଁ ଗାଁ ବୁଲିବାକୁ ଲାଗିଲେ। ଯେଉଁ ଦୀନବନ୍ଧୁଙ୍କ ପାଇଁ ଜାଣିଶୁଣି ଆଖି ଫୁଟାଇଦେଲେ, ଯେଉଁ ପ୍ରିୟତମଙ୍କୁ ପାଇବାପାଇଁ ସମସ୍ତ ଭୋଗ ଓ ସୁଖକୁ ଲାତ ମାରିଦେଲେ, ସେ ମିଳିବାରେ ଯଦି ଏତେ ଡେରି କରିବେ, ତାହା ଭଲା କିପରି ସହିହେବ! ଏପରି ଦଶାରେ ପ୍ରେମମୟ ଶ୍ରୀକୃଷ୍ଣ ବା କିପରି ନିଶ୍ଚିନ୍ତ ହୋଇ ରହିପାରିବେ! ଜଣେ ଗଉଡ଼ପିଲା ବେଶରେ ଭଗବାନ୍ ବିଲ୍ୱମଙ୍ଗଳଙ୍କ ପାଖକୁ ଆସି ନିଜର ମୁନିମନମୋହନ ମଧୁର କଣ୍ଠରେ କହିଲେ, ''ସୁରଦାସ ବାବା, ଆପଣଙ୍କୁ ବଡ଼ ଭୋକ ଲାଗିବଣି। ମୁଁ କିଛି ମିଠେଇ ଆଣିଛି; ପାଣି ମଧ୍ୟ ଆଣିଛି; ଆପଣ ଏହାକୁ ପାଇଦିଅନ୍ତୁ।'' ବିଲ୍ୱମଙ୍ଗଳଙ୍କର ପ୍ରାଣ ତ ବାଳକଟିର ସେହି ମଧୁର କଣ୍ଠରେ ଆଗରୁ ମୋହିତ ହୋଇସାରିଥିଲା, ଏବେ ତା' ହାତର ଦୁର୍ଲଭ

ପ୍ରସାଦ ପାଇବାମାତ୍ରେ ତାଙ୍କର ହୃଦୟ ଆନନ୍ଦ ଉଲ୍ଲାସରେ ଉଚ୍ଛୁଳିଉଠିଲା । ବିଲ୍ୱମଙ୍ଗଳ ବାଳକଟିକୁ ପଚାରିଲେ, "ବାପ, ତୁମ ଘର କେଉଁଠି? ତୁମ ନାମ କଣ? ତୁମେ କି କାମ କରୁଛ?"

ବାଳକଟି କହିଲା, "ମୋ ଘର ତ ଏଇ ପାଖରେ । ମୋର ସିମିତି କିଛି ନିର୍ଦ୍ଦିଷ୍ଟ ନାଆଁ ନାହିଁ; ଯେ ଯେଉଁ ନାଆଁରେ ଡାକନ୍ତି, ମୁଁ ସେହି ନାଁରେ ଶୁଣେ, ବୋଲହାକ କରେ; ଗାଈ ଚରାଏ । ମୋତେ ଯେଉଁମାନେ ଭଲ ପାଆନ୍ତି, ମୁଁ ମଧ୍ୟ ସେମାନଙ୍କୁ ଭଲ ପାଏ ।" ବାଳକର ମଧୁର କଥା ଶୁଣି ବିଲ୍ୱମଙ୍ଗଳ ବିମୁଗ୍ଧ ହୋଇଗଲେ । ବାଳକଟି ଯାଉ ଯାଉ କହିଲା, "ମୁଁ ପ୍ରତିଦିନ ଆସି ଆପଣଙ୍କୁ ଖୋଇଦେଉଥିବି ।" ବିଲ୍ୱମଙ୍ଗଳ କହିଲେ, "ଖୁବ୍ ଭଲ କଥା; ତୁମେ ନିତି ଆସୁଥାଅ ।" ବାଳକଟି ଚାଲିଗଲା ଏବଂ ବିଲ୍ୱମଙ୍ଗଳଙ୍କ ମନ ଓ ହୃଦୟକୁ ମଧ୍ୟ ସାଥିରେ ନେଇଗଲା । ସେହି ଦିନଠାରୁ ବାଳକଟି ସବୁଦିନ ଆସି ତାଙ୍କୁ ଭୋଜନ କରାଇ ଯାଉଥାଏ ।

ବିଲ୍ୱମଙ୍ଗଳ ବୁଝିପାରିଲେ ନାହିଁ ଯେ, ଯାହାପାଇଁ ସେ ଭିକାରୀ ହେଲେ, ଆଖି ଫୁଟାଇଦେଲେ, ଏ ବାଳକଟି ହେଉଛି ସେ । କିନ୍ତୁ ସେହି ଗଉଡପୋକା ତାଙ୍କ ହୃଦୟକୁ ଏତେ ଦୂର ଜୟ କରିସାରିଥାଏ ଯେ, ତାଙ୍କୁ ଅନ୍ୟର କଥା ଶୁଣିବା ଅସହ୍ୟ ହେଉଥାଏ । ଦିନେ ବିଲ୍ୱମଙ୍ଗଳ ମନେ ମନେ ବିଚାର କରିବାକୁ ଲାଗିଲେ, "ସବୁ ଝନ୍‌ଝଟ୍ ଛାଡ଼ି ଏଠାଏ ଆସିଲି; ଏଠାରେ ନୂଆ ଝନ୍‌ଝଟ୍‌ରେ ପଡ଼ିଗଲି! ସ୍ତ୍ରୀମୋହରୁ ମୁକ୍ତ ହେଲି; ଅଥଚ ଏହି ବାଳକର ମୋହରେ ପଡ଼ିଗଲି!!" ଏପରି ଚିନ୍ତା କରୁଥିବାବେଳେ ସେହି ରସିକ ବାଳକଟି ଆସି ତାଙ୍କ ପାଖରେ ବସିପଡ଼ିଲା; କହିଲା, "ବାବାଜୀ, ଚୁପ୍‌ଚାପ୍ ରହି କଣ ଭାବୁଛ? ବୃନ୍ଦାବନ ଯିବ?" ବାଳକର କଣ୍ଠରେ ଯେପରି ମାଦକତା ପୂରି ରହିଥିଲା । ତା' କଥା ଶୁଣି ବିଲ୍ୱମଙ୍ଗଳ ମତୁଆଲା ହୋଇଗଲେ । ବୃନ୍ଦାବନ ନାମ ଶୁଣିବାମାତ୍ରେ ତାଙ୍କର ହୃଦୟ ନାଚିଉଠିଲା; କିନ୍ତୁ ନିଜର ଅସାମର୍ଥ୍ୟ ପ୍ରକାଶ କରି ସେ କହିଲେ, 'ଭାଇ, ମୁଁ ଅନ୍ଧ; ବୃନ୍ଦାବନ କିପରି ଯିବି?" ବାଳକ କହିଲା, "ଏଇ ମୋ ବାଡ଼ି ଧର; ମୁଁ ବାଡ଼ି ଧରି ତୁମ ଆଗେ ଆଗେ ଚାଲିବି ।" ବିଲ୍ୱମଙ୍ଗଳଙ୍କ ମୁଖମଣ୍ଡଳ ଉଦ୍‌ଭାସିତ ହୋଇଉଠିଲା । ବାଡ଼ି ଧରି ଭଗବାନ୍ ଭକ୍ତର ଆଗେ ଆଗେ ଚାଲିଲେ । ଧନ୍ୟ ସେ ଦୟାଳୁତା! ଭକ୍ତର ବାଡ଼ି ଧରି ଭଗବାନ୍ ଆଜି ବାଟ କଢ଼ାଇନେଉଛନ୍ତି! କିଛିଏ ପରେ ବାଳକ କହିଲା, "ହେଉ ତ ବୃନ୍ଦାବନରେ ପହଞ୍ଚିଗଲେ! ଏବେ ମୁଁ ଯାଉଛି ।" ବିଲ୍ୱମଙ୍ଗଳ ବାଳକର ହାତ ଧରିପକାଇଲେ । ହାତର ସ୍ପର୍ଶ ପାଇବାମାତ୍ରେ ତାଙ୍କର ସାରା ଶରୀରରେ ଏକ ବିଜୁଳି ଖେଳିଗଲା; ସାତ୍ତ୍ୱିକ ଆଲୋକରେ ସମସ୍ତ ଇନ୍ଦ୍ରିୟମାନଙ୍କର ଦ୍ୱାରପଥ ଆଲୋକିତ ହୋଇଉଠିଲା; ବିଲ୍ୱମଙ୍ଗଳ ଦିବ୍ୟଦୃଷ୍ଟି ପାଇଗଲେ ଏବଂ ଦେଖିଲେ, ସେହି ବାଳକରୂପରେ ସାକ୍ଷାତ୍ ଶ୍ୟାମସୁନ୍ଦର ଠିଆ ହୋଇଛନ୍ତି । ବିଲ୍ୱମଙ୍ଗଳଙ୍କ ଶରୀର ପୁଲକିତ ହୋଇଗଲା, ଆଖିରୁ ପ୍ରେମଲୋତକର ଅବାରିତ ଧାରା ବୋହିବାକୁ ଲାଗିଲା । ଭଗବାନଙ୍କର ହାତକୁ ସେ ଆହୁରି ଜୋରରେ ଧରିଲେ ଓ କହିଲେ, "ଏବେ ଚିହ୍ନିପାରିଲି; ଅନେକ ଦିନ ପରେ ମୁଁ ତୁମକୁ ଧରିବାକୁ ସମର୍ଥ ହୋଇଛି । ପ୍ରଭୁ! ଏବେ ଆଉ ଛାଡ଼ିବା କଥା ନୁହେଁ ।" ଭଗବାନ୍ କହିଲେ, "ଛାଡ଼ିବ ନା ନାହିଁ?" ବିଲ୍ୱମଙ୍ଗଳ କହିଲେ, 'ନା, କେବେ ନୁହେଁ; ମୋତେ ନୁହେଁ ।"

ଭଗବାନ୍ ତାଙ୍କୁ ଜୋରରେ ଠେଲିଦେଇ ହାତ ଟାଣିନେଲେ । ବାଃ! ଯାହାର ବଳରେ ବଳୀୟାନ୍ ହୋଇ ମାୟା ସମଗ୍ର ଜଗତକୁ ପଦଦଳିତ କରି ରଖିଛି, ତା'ର ବଳ ଆଗରେ ବିଚରା ଅନ୍ଧ ବିଲ୍ୱମଙ୍ଗଳ ବା କଣ କରିପାରନ୍ତେ! କିନ୍ତୁ ସେ ଏପରି ଏକ ଡୋରିରେ ତାଙ୍କୁ ବାନ୍ଧିଦେଇଥିଲେ ଯେ, ସେଥିରୁ ମୁକ୍ତ ହୋଇପାରିବା ପ୍ରଭୁଙ୍କ ପାଇଁ ବଡ଼ କଠିନ ଥିଲା । ହାତ ଛଡ଼ାଇନେବାମାତ୍ରେ ବିଲ୍ୱମଙ୍ଗଳ କହିଲେ, "ଯାଉଛ? କିନ୍ତୁ ମନେ ରଖ । ହେ କୃଷ୍ଣ, ତୁମେ ବଳପୂର୍ବକ ହାତ ଛଡ଼ାଇ ଚାଲିଯାଉଛ; ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି! ଯଦି ତୁମେ ମୋ ହୃଦୟରୁ ଖସି ଚାଲିଯାଇପାରିବ, ତେବେ ଯାଇଁ ତୁମ ପଉରୁଷ ଜାଣିବି ।"

**ହସ୍ତମୁତ୍କ୍ଷିପ୍ୟ ଯାତୋଽସି ବଳାତ୍କୃଷ୍ଣ କିମଦ୍ଭୁତମ୍ ।**
**ହୃଦୟାଦ୍‌ଯଦି ନିର୍ଯ୍ୟାସି ପୌରୁଷଂ ଗଣୟାମି ତେ ॥**

ବିଲ୍ୱମଙ୍ଗଳ ଅତ୍ୟନ୍ତ ଦୁରାଚାରୀ ଥିଲେ । ଭକ୍ତ ହେଲେ ଓ ପତନର କାରଣ ସମ୍ମୁଖରେ ପହଞ୍ଚି ମଧ୍ୟ ସେଥିରୁ ରକ୍ଷା ପାଇଗଲେ ଏବଂ ଶେଷରେ ଭଗବାନଙ୍କୁ ଲାଭ କରି କୃତାର୍ଥ ହୋଇଗଲେ । ବୃନ୍ଦାବନ ଯିବା ସମୟରେ ସେ ଭାବାବିଷ୍ଟ ହୋଇ ଯେଉଁ ମଧୁର ପଦ୍ୟାବଳୀ ରଚନା କରିଥିଲେ, ତାହାର ନାମ **ଶ୍ରୀକୃଷ୍ଣକର୍ଣ୍ଣାମୃତମ୍** । ସେହି ପଦ୍ୟାବଳୀର ପ୍ରଥମ ଶ୍ଳୋକରେ ସେ ଚିନ୍ତାମଣିଙ୍କୁ ଗୁରୁ ବୋଲି ଭାବି, ସେ ତାଙ୍କର ବନ୍ଦନା କରିଛନ୍ତି —

ଚିନ୍ତାମଣିର୍ଜୟତି ସୋମଗିରିର୍ଗୁରୁର୍ମେ
 ଶିକ୍ଷାଗୁରୁଶ୍ଚ ଭଗବାନ୍ ଶିଖିପିଚ୍ଛମୌଳିଃ ।
ଯତ୍ପାଦକଳ୍ପତରୁପଲ୍ଲବଶେଖରେଷୁ
 ଲୀଳାସ୍ୱୟଂବରରସଂ ଲଭତେ ଜୟଶ୍ରୀ ॥

ଅର୍ଥାତ୍ "ମୋର ମୋହକୁ ଦୂର କରିଥିବା ଚିନ୍ତାମଣିଙ୍କର ଓ ଦୀକ୍ଷାଗୁରୁ ସୋମଗିରିଙ୍କର ଜୟ ହେଉ ! ତଥା ମସ୍ତକରେ ମୟୂରପୁଚ୍ଛ ଧାରଣ କରିଥିବା ମୋର ଶିକ୍ଷାଗୁରୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ଜୟ ହେଉ, ଯାହାଙ୍କ ଚରଣରୂପୀ କଳ୍ପବୃକ୍ଷର ପଲ୍ଲବ ଶିଖରରେ ବିଜୟଲକ୍ଷ୍ମୀ ଲୀଳା କରି ସ୍ୱୟଂବରସୁଖ ଲାଭ କରୁଛନ୍ତି (ଅର୍ଥାତ୍ ଭକ୍ତମାନଙ୍କର ଇଚ୍ଛା ପୂରଣକାରୀ ଯାହାଙ୍କର ଚରଣରେ ବିଜୟଲକ୍ଷ୍ମୀ ସଦା ସ୍ୱେଚ୍ଛାରେ ନିବାସ କରନ୍ତି ।)"

ଶ୍ରୀଶୁକଦେବଙ୍କ ପରି ଶ୍ରୀବିଲ୍ୱମଙ୍ଗଳ ମଧ୍ୟ ଭଗବାନ୍ ଶ୍ରୀକୃଷ୍ଣଙ୍କର ମଧୁମୟୀ ଲୀଳାର ରସ ଆସ୍ୱାଦନ କରିଥିଲେ, ତେଣୁ ତାଙ୍କର ଅନ୍ୟ ଏକ ନାମ 'ଲୀଳାଶୁକ' ।

*ସମ୍ବନ୍ଧ* – ଏପରିଭାବରେ ଭଗବାନ୍ ନିଜଠାରେ ସଦାଚାରିତା ଓ ଦୁରାଚାରିତାଜନିତ ବିଷମତା ନ ଥିବାର ଦେଖାଇଲେ । ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଉଚ୍ଚନୀଚ-ଜାତିଜନିତ ବିଷମତା ମଧ୍ୟ ନିଜଠାରେ ନ ଥିବାର ଦେଖାଇ ଭଗବାନ୍ ଶରଣାଗତିରୂପକ ଭକ୍ତିର ମହତ୍ତ୍ୱ ପ୍ରତିପାଦନ କରିବା ସହିତ ଅର୍ଜୁନଙ୍କୁ ଭଜନ କରିବାକୁ ଆଜ୍ଞା ଦେଉଛନ୍ତି–

## ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।
## ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିମ୍ ॥ ୩୨ ॥

**ଅନ୍ୱୟ** – **ହି** = କାରଣ; **ପାର୍ଥ** = ହେ ଅର୍ଜୁନ; **ସ୍ତ୍ରିୟଃ** = ସ୍ତ୍ରୀମାନେ; **ବୈଶ୍ୟାଃ** = ବୈଶ୍ୟମାନେ; **ଶୂଦ୍ରାଃ** = ଶୂଦ୍ରମାନେ; **ତଥା** = ତଥା; **ପାପଯୋନୟଃ** = ଅନ୍ୟ ପାପଯୋନିମାନେ; **ଯେ, ଅପି** = ଯେ କେହି ବି; **ସ୍ୟୁଃ** = ହୋଇଥାନ୍ତୁ (ନା କାହିଁକି); **ତେ** = ସେମାନେ; **ଅପି** = ମଧ୍ୟ; **ମାମ୍** = ମୋତେ; **ବ୍ୟପାଶ୍ରିତ୍ୟ** = ଶରଣାପନ୍ନ ହୋଇ; **ପରାମ୍** = ପରମ; **ଗତିମ୍** = ଗତିକୁ (ହିଁ); **ଯାନ୍ତି** = ପ୍ରାପ୍ତ ହୁଅନ୍ତି ।

**କାରଣ, ହେ ଅର୍ଜୁନ ! ସ୍ତ୍ରୀ, ବୈଶ୍ୟ, ଶୂଦ୍ର ତଥା ନୀଚ ଜାତିର ଯେ କେହି ବି ହୁଅନ୍ତୁ ନା କାହିଁକି, ସେମାନେ ମଧ୍ୟ ମୋର ଶରଣାପନ୍ନ ହୋଇ ପରମଗତି ହିଁ ପ୍ରାପ୍ତ ହୁଅନ୍ତି ॥ ୩୨ ॥**

**ପ୍ରଶ୍ନ** – **ପାପଯୋନୟଃ** ପଦ ଏଠାରେ କେଉଁମାନଙ୍କ ବାଚକ ?

**ଉତ୍ତର** – ପୂର୍ବଜନ୍ମକୃତ ପାପଯୋଗୁଁ ଚାଣ୍ଡାଳାଦି ଯୋନିରେ ଜନ୍ମିଥିବା ପ୍ରାଣୀମାନଙ୍କୁ **ପାପଯୋନି** ବୋଲି ଧରାଯାଇଛି । ଏମାନଙ୍କ ବ୍ୟତୀତ ଶାସ୍ତ୍ରାନୁସାରେ ହୂଣ, ଭୀଲ, ଖସ, ଯବନ ଆଦି ମ୍ଲେଚ୍ଛ ଜାତିର ମନୁଷ୍ୟମାନେ ମଧ୍ୟ **ପାପଯୋନି** ବୋଲି ଗଣ୍ୟ ହୁଅନ୍ତି । ଏଠାରେ **ପାପଯୋନି** ପଦ ହେଉଛି ଏହି ସମସ୍ତଙ୍କର ବାଚକ । ଭଗବାନଙ୍କୁ ଭକ୍ତି କରିବାରେ କୌଣସି ଜାତି ବା ବର୍ଣ୍ଣପାଇଁ କୌଣସିପ୍ରକାର ବାଧା ନାହିଁ । ଏଥିପାଇଁ ଆବଶ୍ୟକ କେବଳ ଶୁଦ୍ଧପ୍ରେମ । ★ ଏପରି ଜାତିମାନଙ୍କ ମଧ୍ୟରେ ପ୍ରାଚୀନ ଓ ଅର୍ବାଚୀନ କାଳରେ ଭଗବାନଙ୍କର ଏପରି ଅନେକ ମହାନ୍ ଭକ୍ତ ହୋଇଛନ୍ତି, ଯେଉଁମାନେ କି ନିଜର ଭକ୍ତିବଳରେ ଭଗବାନଙ୍କୁ ପ୍ରାପ୍ତ ହୋଇଥିଲେ । ସେମାନଙ୍କ ମଧ୍ୟରେ ନିଷାଦଜାତୀୟ ଗୁହ ଆଦିଙ୍କ ନାମ ତ ଅତ୍ୟନ୍ତ ପ୍ରସିଦ୍ଧ ।

---

★ (୧) **ନାସ୍ତି ତେଷୁ ଜାତିବିଦ୍ୟାରୂପକୁଲଧନକ୍ରିୟାଦିଭେଦଃ ।** (ନାରଦଭକ୍ତିସୂତ୍ର ୭୨)
 ଅର୍ଥାତ୍ ଭକ୍ତମାନଙ୍କ ମଧ୍ୟରେ ଜାତି, ବିଦ୍ୟା, ରୂପ, କୁଳ, ଧନ ଓ କ୍ରିୟାଦିର ପ୍ରଭେଦ ନାହିଁ ।

(୨) **ଆନିନ୍ଦ୍ୟଯୋନ୍ୟଧିକ୍ରିୟତେ ପାରମ୍ପର୍ଯାତ୍ ସାମାନ୍ୟବତ୍ ।** (ଶାଣ୍ଡିଲ୍ୟ ଭକ୍ତିସୂତ୍ର ୭୮)
 ଅର୍ଥାତ୍ 'ଶାସ୍ତ୍ରପରମ୍ପରାନୁସାରେ ଅହିଂସାଦି ସାମାନ୍ୟ ଧର୍ମପରି ଭକ୍ତିରେ ମଧ୍ୟ ଚଣ୍ଡାଳାଦି ସମସ୍ତ ନିନ୍ଦନୀୟ ଯୋନିପର୍ଯ୍ୟନ୍ତ ମନୁଷ୍ୟମାନଙ୍କର ଅଧିକାର ରହିଛି ।'

(୩) **ଭକ୍ତ୍ୟାହମେକୟା ଗ୍ରାହ୍ୟଃ ଶ୍ରଦ୍ଧୟାଽଽତ୍ମା ପ୍ରିୟଃ ସତାମ୍ ।**
 **ଭକ୍ତିଃ ପୁନାତି ମନ୍ନିଷ୍ଠା ଶ୍ୱପାକାନପି ସମ୍ଭବାତ୍ ॥** (ଶ୍ରୀମଦ୍ଭାଗବତ ୧୧/୧୪/୨୧)
 ଅର୍ଥାତ୍ "ହେ ଉଦ୍ଧବ ! ସନ୍ଥମାନଙ୍କର ପରମପ୍ରିୟ 'ଆତ୍ମା'ରୂପ ମୁଁ ଏକମାତ୍ର ଶ୍ରଦ୍ଧାଭକ୍ତିଦ୍ୱାରା ହିଁ ବଶୀଭୂତ ହୋଇଥାଏ । ମୋର ଭକ୍ତି ଜନ୍ମତଃ ଚାଣ୍ଡାଳମାନଙ୍କୁ ମଧ୍ୟ ପବିତ୍ର କରିଦିଏ ।'

ନିଷାଦଜାତୀୟ ଗୁହ ଶୃଙ୍ଗବେରପୁରରେ ଭୀଲମାନଙ୍କର ରାଜା ଥିଲେ। ସେ ଭଗବାନଙ୍କର ବଡ଼ ଭକ୍ତ ଥିଲେ। ଭଗବାନ୍ ଶ୍ରୀରଘୁନାଥ ଯେତେବେଳେ ଶ୍ରୀସୀତା ଓ ଲକ୍ଷ୍ମଣଙ୍କ ସହିତ ବନକୁ ଗଲେ, ସେତେବେଳେ ସେ ଗୁହଙ୍କର ଆତିଥ୍ୟ ସ୍ୱୀକାର କରିଥିଲେ। ଭଗବାନ୍ ତାଙ୍କୁ ନିଜର ସଖା ବୋଲି ମାନିଥିଲେ। ତେଣୁ ଭରତ ତାଙ୍କୁ ନିଜ ହୃଦୟରେ ଲଗାଇ ଆଲିଙ୍ଗନ କରିଥିଲେ —

**କରତ ଦଣ୍ଡବତ ଦେଖି ତେହି ଭରତ ଲୀନ୍ହ ଉର ଲାଇ।**
**ମନହୁଁ ଲଖନ ସନ ଭେଁଟ ଭଈ ପ୍ରେମୁ ନ ହୃଦୟଁ ସମାଇ॥**

ଅର୍ଥାତ୍ :—

ହୁଅନ୍ତେ ବିନତ ଦେଖି ତାଙ୍କୁ ଭରତ
ହୃଦୟରେ ଲଗାଇଲେ।
ଲକ୍ଷ୍ମଣ ସହିତ ଭେଟ ହେଲା ପରି
ପ୍ରେମଭରେ ଉଚ୍ଛୁଳିଲେ॥

**ପ୍ରଶ୍ନ –** ଯଦି **ପାପଯୋନୟଃ** ପଦକୁ ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ରମାନଙ୍କର ବିଶେଷଣ ବୋଲି ଧରାଯାଏ, ତେବେ ଆପତ୍ତି କଣ ?

**ଉତ୍ତର –** ବୈଶ୍ୟମାନଙ୍କୁ ଦ୍ୱିଜମାନଙ୍କ ମଧ୍ୟରେ ଗଣନା କରାଯାଏ। ସେମାନଙ୍କୁ ବେଦ ପଢ଼ିବା ଓ ଯଜ୍ଞାଦି ବୈଦିକ କର୍ମମାନ କରିବାପାଇଁ ଶାସ୍ତ୍ରରେ ପୂର୍ଣ୍ଣ ଅଧିକାର ଦିଆଯାଇଛି। ଏଣୁ ଦ୍ୱିଜ ହୋଇଥିବାରୁ ବୈଶ୍ୟମାନଙ୍କୁ 'ପାପଯୋନି' କୁହାଯାଇ ନ ପାରେ। ଏହା ବ୍ୟତୀତ ଛାନ୍ଦୋଗ୍ୟ ଉପନିଷଦରେ, ଯେଉଁଠି ଜୀବମାନଙ୍କର କର୍ମାନୁସାରେ ଗତିର ବର୍ଣ୍ଣନା ଅଛି, ସ୍ପଷ୍ଟଭାବେ କୁହାଯାଇଛି ଯେ –

**ତଦ୍ୟ ଇହ ରମଣୀୟଚରଣା ଅଭ୍ୟାଶୋ ହ ଯତ୍ତେ ରମଣୀୟାଂ ଯୋନିମାପଦ୍ୟେରନ୍ ବ୍ରାହ୍ମଣଯୋନିଂ ବା କ୍ଷତ୍ରିୟଯୋନିଂ ବା ବୈଶ୍ୟଯୋନିଂ ବାଥ ଯ ଇହ କପୂୟଚରଣା ଅଭ୍ୟାଶୋ ହ ଯତ୍ତେ କପୂୟାଂ ଯୋନିମାପଦ୍ୟେରନ୍ ଶ୍ୱଯୋନିଂ ବା ସୂକରଯୋନିଂ ବା ଚାଣ୍ଡାଲଯୋନିଂ ବା॥** ଅ/୫/୧୦/ମ.୭ ଅର୍ଥାତ୍— ସେହି ଜୀବମାନଙ୍କ ମଧ୍ୟରେ ଯେଉଁମାନେ ଏହି ଲୋକରେ ଉତ୍ତମ ଆଚରଣ କରନ୍ତି, ଅର୍ଥାତ୍ ପୁଣ୍ୟାତ୍ମା ହୁଅନ୍ତି, ସେମାନେ ଶୀଘ୍ର ହିଁ ଉତ୍ତମଯୋନି ଯଥା ବ୍ରାହ୍ମଣଯୋନି, କ୍ଷତ୍ରିୟଯୋନି ଅଥବା ବୈଶ୍ୟଯୋନି ପ୍ରାପ୍ତ ହୁଅନ୍ତି ଏବଂ ଯେଉଁମାନେ ଏହି ସଂସାରରେ ଅଧମ ଆଚରଣ କରନ୍ତି ଅର୍ଥାତ୍ ପାପକର୍ମ କରନ୍ତି, ସେମାନେ ଅଧମଯୋନି ଅର୍ଥାତ୍ କୁକୁର, ଘୁଷୁରୀ ବା ଚାଣ୍ଡାଳଯୋନି ପ୍ରାପ୍ତ ହୁଅନ୍ତି।

ଏଥିରୁ ସିଦ୍ଧ ହେଉଛି ଯେ, ବୈଶ୍ୟମାନଙ୍କ ଗଣନା 'ପାପଯୋନି' ମଧ୍ୟରେ କରାଯାଇ ନ ପାରେ। ବାକି ରହିଲା ସ୍ତ୍ରୀମାନଙ୍କ କଥା। ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ସ୍ତ୍ରୀମାନେ ନିଜ ନିଜ ପତିଙ୍କ ସହିତ ଯଜ୍ଞାଦି ବୈଦିକକର୍ମରେ ବସିବାରେ ଅଧିକାରିଣୀ ବୋଲି ସ୍ୱୀକାର କରାଯାଇଛି। ତେଣୁ ସେମାନଙ୍କୁ ମଧ୍ୟ 'ପାପଯୋନି' କୁହାଯାଇ ନ ପାରେ। ବର୍ତ୍ତମାନ ସବୁଠାରୁ ବଡ଼ ସମସ୍ୟା ହେଉଛି ଭଗବଦ୍ ଭକ୍ତିବଳରେ ଚାଣ୍ଡାଳ ଆଦିଙ୍କୁ ମଧ୍ୟ ଯେଉଁ ପରମଗତି ମିଳେ, ଯାହା କି ସର୍ବଶାସ୍ତ୍ରସମ୍ମତ ଓ ଯାହା ଭକ୍ତିର ମହତ୍ତ୍ୱ ପ୍ରକଟ କରେ, * ତାହା କିପରି ରହିବ ? ସୁତରାଂ **ପାପଯୋନୟଃ** ପଦକୁ ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ରଙ୍କ ବିଶେଷଣ ବୋଲି ନ ମାନି ଶୂଦ୍ରମାନଙ୍କ ଅପେକ୍ଷା ବି ହୀନ ଜାତିର ମନୁଷ୍ୟମାନଙ୍କ ବାଚକରୂପେ ମାନିବା ହିଁ ଉଚିତ ପ୍ରତୀତ ହେଉଛି।

ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ରମାନଙ୍କ ମଧ୍ୟରେ ବି ଅନେକ ଭକ୍ତ ଥିଲେ। କେବଳ ଦୃଷ୍ଟାନ୍ତଭାବରେ ଏଠାରେ ଯଜ୍ଞପତ୍ନୀ, ସମାଧି ଓ ସଞ୍ଜୟଙ୍କ ଉଦାହରଣ ଦିଆଯାଉଛି —

---

* **କିରାତହୂଣାନ୍ଧ୍ରପୁଳିନ୍ଦପୁଲ୍‌କସା ଆଭୀରକଙ୍କା ଯବନାଃ ଖସାଦୟଃ।**
**ଯେଽନ୍ୟେ ଚ ପାପା ଯଦୁପାଶ୍ରୟାଶ୍ରୟାଃ ଶୁଦ୍ଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ॥**

(ଶ୍ରୀମଦ୍ଭାଗବତ ୨/୪/୧୮)

''ଯାହାଙ୍କ ଆଶ୍ରିତ ଭକ୍ତମାନଙ୍କର ଆଶ୍ରୟ ନେଇ କିରାତ, ହୂଣ, ଆନ୍ଧ୍ର, ପୁଳିନ୍ଦ, ପୁଲ୍‌କସ, ଆଭୀର, କଙ୍କ, ଯବନ ଓ ଖସ ଆଦି ଅଧମ ଜାତିର ଲୋକ ତଥା ସେମାନଙ୍କ ବ୍ୟତୀତ ଆହୁରି ମଧ୍ୟ ବଡ଼ ବଡ଼ ପାପୀ ଶୁଦ୍ଧ ହୋଇଯାଆନ୍ତି, ସେହି ଜଗତ୍ପ୍ରଭୁ ଭଗବାନ୍ ବିଷ୍ଣୁଙ୍କୁ ନମସ୍କାର।''

**ବ୍ୟାଧସ୍ୟାଚରଣଂ ଧ୍ରୁବସ୍ୟ ଚ ବୟୋ ବିଦ୍ୟା ଗଜେନ୍ଦ୍ରସ୍ୟ କା**
**କା ଜାତିର୍ବିଦୁରସ୍ୟ ଯାଦବପତେରୁଗ୍ରସ୍ୟ କିଂ ପୌରୁଷମ୍।**
**କୁବ୍‌ଜାୟାଃ କମନୀୟରୂପମଧିକଂ କିଂ ତତ୍ସୁଦାମ୍ନୋ ଧନଂ**
**ଭକ୍ତ୍ୟା ତୁଷ୍ୟତି କେବଳଂ ନ ଚ ଗୁଣୈର୍ଭକ୍ତିପ୍ରିୟୋ ମାଧବଃ॥**

''ବ୍ୟାଧର ବା କି ଭଲ ଆଚରଣ ଥିଲା ? ଧ୍ରୁବଙ୍କର ବା କେତେ ବୟସ ହୋଇଥିଲା ? ଗଜେନ୍ଦ୍ର ନିକଟରେ ବା କି ବିଦ୍ୟା ଥିଲା ? ବିଦୁରଙ୍କ ଜାତି ବା କି ବଡ଼ ଥିଲା ? ଯାଦବପତି ଉଗ୍ରସେନଙ୍କର କଣ ବା ପୁରୁଷାର୍ଥ ଥିଲା ? କୁବ୍‌ଜାଙ୍କ ଏପରି କଣ ବିଶେଷ ସୁନ୍ଦର ରୂପ ଥିଲା ? ସୁଦାମାଙ୍କ ପାଖରେ କି ବା ଧନ ଥିଲା ? ମାଧବ ତ କେବଳ ଭକ୍ତିରେ ହିଁ ସନ୍ତୁଷ୍ଟ ହୁଅନ୍ତି, ଗୁଣରେ ନୁହେଁ, କାରଣ ତାଙ୍କୁ ଭକ୍ତି ହିଁ ପ୍ରିୟ ଅଟେ।''

## ଯଜ୍ଞପତ୍ନୀ

ବୃନ୍ଦାବନରେ କେତେଜଣ ବ୍ରାହ୍ମଣ ଯଜ୍ଞ କରୁଥିଲେ। ଭଗବାନ୍ ଶ୍ରୀକୃଷ୍ଣଙ୍କ ଅନୁମତି ନେଇ ତାଙ୍କର ସଖାମାନେ ଯାଇ ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ଅନ୍ନ ଭିକ୍ଷା ମାଗିଲେ। ଯାଜ୍ଞିକ ବ୍ରାହ୍ମଣମାନେ ସେମାନଙ୍କ କଥା ଶୁଣି ନ ଶୁଣିଲାପରି ରହିଗଲେ। ତା'ପରେ ସେମାନେ ସେମାନଙ୍କ ସ୍ତ୍ରୀମାନଙ୍କ ନିକଟକୁ ଗଲେ; ସେମାନେ ଶ୍ରୀକୃଷ୍ଣଙ୍କ ନାମ ଶୁଣିବାମାତ୍ରେ ପ୍ରସନ୍ନ ହୋଇଗଲେ ଓ ଭୋଜନସାମଗ୍ରୀ ନେଇ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେ; ଜଣେ ବ୍ରାହ୍ମଣ ତାଙ୍କ ସ୍ତ୍ରୀଙ୍କୁ ଯିବାକୁ ଦେଲେ ନାହିଁ; ତାଙ୍କୁ ବଳପୂର୍ବକ ଘରେ ବନ୍ଦ କରି ରଖିଲେ; କିନ୍ତୁ ସେହି ସ୍ତ୍ରୀଙ୍କର କୃଷ୍ଣପ୍ରେମ ଏତେ ପ୍ରବଳ ଥିଲା ଯେ, ସେ ଭଗବାନଙ୍କ ରୂପବିଷୟରେ ଯେପରି ଶୁଣିଥିଲେ, ସେପରି ରୂପକୁ ଧ୍ୟାନ କରି କରି ଦେହ ତ୍ୟାଗ କଲେ ଓ ସମସ୍ତଙ୍କ ପୂର୍ବରୁ ଯାଇ ଶ୍ରୀକୃଷ୍ଣଙ୍କୁ ପ୍ରାପ୍ତ ହୋଇଗଲେ। (ଶ୍ରୀମଦ୍ଭାଗବତ ୧୦/୨୩)

## ସମାଧି ବୈଶ୍ୟ

ସମାଧି ଥିଲେ ଦ୍ରୁମିଣ ନାମକ ଜଣେ ଧନୀ ବୈଶ୍ୟଙ୍କର ପୁତ୍ର। ତା'ଙ୍କୁ ତାଙ୍କ ସ୍ତ୍ରୀପୁତ୍ରମାନେ ଧନଲୋଭରେ ଘରୁ ବାହାର କରିଦେଇଥିଲେ। ସେ ବଣକୁ ଚାଲିଗଲେ; ସେଠାରେ ସୁରଥନାମକ ଜଣେ ରାଜାଙ୍କ ସହିତ ତାଙ୍କର ଭେଟ ହେଲା। ସୁରଥ ମଧ୍ୟ ମନ୍ତ୍ରୀ, ସେନାପତି ଓ ସ୍ୱଜନମାନଙ୍କ ଠାରୁ ଧୋକା ଖାଇ ବଣକୁ ଚାଲିଆସିଥିଲେ। ଉଭୟଙ୍କର ଦଶା ଏକାଭଳି ଥିଲା। ଶେଷରେ ଉଭୟେ ସଚ୍ଚିଦାନନ୍ଦମୟୀ ଭଗବତୀଙ୍କର ଶରଣ ନେଲେ ଓ ଉଭୟେ ବିଷୟଭୋଗରୁ ଆସକ୍ତି ତ୍ୟାଗ କରି ଭଗବତୀଙ୍କୁ ଆରାଧନା କରିବାକୁ ଲାଗିଲେ। ତିନି ବର୍ଷ ଆରାଧନା କରିବା ପରେ ଉଭୟଙ୍କୁ ଭଗବତୀ ଦର୍ଶନ ଦେଲେ ଓ ବର ମାଗିବାକୁ କହିଲେ। ରାଜା ସୁରଥଙ୍କ ମନରେ ଭୋଗବାସନା ଥିଲା। ତେଣୁ ସେ ଭୋଗ ପ୍ରାର୍ଥନା କଲେ। କିନ୍ତୁ ସମାଧିଙ୍କ ମନ ବୈରାଗ୍ୟପୂର୍ଣ ଥିଲା; ସେ ସଂସାରର କ୍ଷଣଭଙ୍ଗୁରତା ଓ ଦୁଃଖରୂପ ଜାଣିସାରିଥିଲେ; ଅତଏବ ସେ ଭଗବତୀଙ୍କୁ ଜ୍ଞାନପାଇଁ ପ୍ରାର୍ଥନା କଲେ। ଭଗବତୀଙ୍କ କୃପାରୁ ତାଙ୍କର ଅଜ୍ଞାନ ନଷ୍ଟ ହୋଇଗଲା ଓ ସେ ଭଗବତ୍‌ତତ୍ତ୍ୱର ଜ୍ଞାନ ପ୍ରାପ୍ତ ହୋଇଗଲେ। (ମାର୍କଣ୍ଡେୟ ପୁରାଣ ୧୮/୯୩; ବ୍ରହ୍ମବୈବର୍ତ୍ତ ପୁରାଣ ପ୍ର.୬୨/୬୩)।

## ମନ୍ତ୍ରୀଶ୍ରେଷ୍ଠ ସଂଜୟ

ସଂଜୟ ଥିଲେ ଗାବଲ୍‌ଗଣ ନାମକ ଜଣେ ସୂତଙ୍କର ପୁତ୍ର। ସେ ଅତ୍ୟନ୍ତ ଶାନ୍ତ, ଶିଷ୍ଟ, ଜ୍ଞାନବିଜ୍ଞାନସମ୍ପନ୍ନ, ସଦାଚାରୀ, ନିର୍ଭୀକ, ସତ୍ୟବାଦୀ, ଜିତେନ୍ଦ୍ରିୟ, ଧର୍ମାତ୍ମା, ସ୍ପଷ୍ଟଭାଷୀ ଓ ଶ୍ରୀକୃଷ୍ଣଙ୍କର ପରମ ଭକ୍ତ ତଥା ତାଙ୍କ ତତ୍ତ୍ୱ ଜାଣିଥିବା ବ୍ୟକ୍ତି ଥିଲେ। ଅର୍ଜୁନଙ୍କ ସହ ସଂଜୟଙ୍କର ବାଲ୍ୟକାଳରୁ ମିତ୍ରତା ଥିଲା; ତେଣୁ ସେ ଅର୍ଜୁନଙ୍କ ଅନ୍ତଃପୁରରେ ଯେତେବେଳେ ଇଚ୍ଛା ସେତେବେଳେ ପ୍ରବେଶ କରିବାକୁ ଅଧିକାର ପାଇଥିଲେ। ଯେତେବେଳେ ସଂଜୟ କୌରବଙ୍କ ପକ୍ଷରୁ ପାଣ୍ଡବଙ୍କ ନିକଟକୁ ଗଲେ, ସେତେବେଳେ ଅର୍ଜୁନ ଅନ୍ତଃପୁରରେ ଥିଲେ। ସେଠାରେ ଭଗବାନ୍ ଶ୍ରୀକୃଷ୍ଣ ଓ ଦେବୀ ଦ୍ରୌପଦୀ ତଥା ସତ୍ୟଭାମା ମଧ୍ୟ ଥିଲେ। ସଂଜୟ ସେଠାରୁ ଫେରି ସେଠିକାର ବଡ଼ ସୁନ୍ଦର ଓ ସ୍ପଷ୍ଟ ବର୍ଣ୍ଣନା କରିଛନ୍ତି। (ମହା-ଉଦ୍ୟୋଗ. ୫୯)।

ମହାଭାରତ-ଯୁଦ୍ଧରେ ଭଗବାନ୍ ବ୍ୟାସଦେବ ସଂଜୟଙ୍କୁ ଦିବ୍ୟଦୃଷ୍ଟି ଦେଇଥିଲେ; ତାହାର ପ୍ରଭାବରେ ସେ ଧୃତରାଷ୍ଟ୍ରଙ୍କୁ ଯୁଦ୍ଧର ସମସ୍ତ ବୃତ୍ତାନ୍ତ ଶୁଣାଉଥିଲେ।

ମହର୍ଷି ବ୍ୟାସ, ସଂଜୟ, ବିଦୁର ଓ ଭୀଷ୍ମ ପ୍ରଭୃତି ଏପରି କେତେଜଣ ମହାନୁଭାବ ଥିଲେ, ଯେଉଁମାନେ କି ଭଗବାନ୍ ଶ୍ରୀକୃଷ୍ଣଙ୍କର ଯଥାର୍ଥ ସ୍ୱରୂପ ଚିହ୍ନି ପାରିଥିଲେ। ଧୃତରାଷ୍ଟ୍ର ପଚାରିବାରୁ ସଂଜୟ କହିଥିଲେ, "ମୁଁ ସ୍ତ୍ରୀ-ପୁତ୍ର ପ୍ରଭୃତିଙ୍କ ମୋହରେ ପଡ଼ି ଅବିଦ୍ୟାକୁ ଆଦର କରେ ନାହିଁ; ମୁଁ ଭଗବାନଙ୍କୁ ଅର୍ପଣ ନ କରି, ବୃଥା ଧର୍ମ ଆଚରଣ କରେ ନାହିଁ; ମୁଁ ଶୁଦ୍ଧଭାବ ଓ ଭକ୍ତିଯୋଗଦ୍ୱାରା ହିଁ ଜନାର୍ଦ୍ଦନ ଶ୍ରୀକୃଷ୍ଣଙ୍କ ସ୍ୱରୂପକୁ ଠିକ୍‌ରୂପେ ଜାଣିଛି।" ଭଗବାନଙ୍କର ସ୍ୱରୂପ ଓ ପରାକ୍ରମ ବିଷୟ ବୁଝାଇ ସଂଜୟ କହିଥିଲେ– "ଉଦାରହୃଦୟ ଶ୍ରୀବାସୁଦେବଙ୍କ ଚକ୍ରର ମଧ୍ୟଭାଗ ପାଞ୍ଚହାତ ବିସ୍ତୃତ; କିନ୍ତୁ ଭଗବାନଙ୍କ ଇଚ୍ଛାନୁସାରେ ତାହା ଯେତେ ଇଚ୍ଛା ସେତେ ବଡ଼ ହୋଇପାରିବ। ତେଜପୁଞ୍ଜ-ପ୍ରକାଶିତ ସେହି ଚକ୍ର ସମସ୍ତଙ୍କ ବଳ ଜଳନା କରିବାକୁ ନିର୍ମିତ ହୋଇଛି। ତାହା କୌରବମାନଙ୍କର ସଂହାରକ ଓ ପାଣ୍ଡବମାନଙ୍କର ପ୍ରିୟତମ ଅଟେ। ମହାବଳବାନ୍ ଶ୍ରୀକୃଷ୍ଣ ଅନାୟାସରେ କ୍ରୀଡ଼ାଛଳରେ ଭୟାନକ ରାକ୍ଷସ ନରକାସୁର, ଶମ୍ବରାସୁର, ଅଭିମାନୀ କଂସ ଓ ଶିଶୁପାଳକୁ ବଧ କରିଦେଲେ।

ପରମ ଐଶ୍ୱର୍ଯ୍ୟବାନ୍ ସୌନ୍ଦର୍ଯ୍ୟରାଶି ଶ୍ରୀକୃଷ୍ଣ ମାନସିକ ସଂକଳ୍ପଦ୍ୱାରା ହିଁ ପୃଥିବୀ, ଅନ୍ତରିକ୍ଷ ଓ ସ୍ୱର୍ଗକୁ ନିଜର ବଶୀଭୂତ କରିପାରିବେ। ଯଦି ଗୋଟିଏ ପାଖରେ ସମଗ୍ର ଜଗତ ରହେ ଓ ଅନ୍ୟ ପାଖରେ କେବଳ ଶ୍ରୀକୃଷ୍ଣ ରହନ୍ତି, ତେବେ ଶକ୍ତିରେ ଶ୍ରୀକୃଷ୍ଣ ହିଁ ସମସ୍ତଙ୍କ ଅପେକ୍ଷା ଅଧିକ ହେବେ। ସେ ନିଜର ଇଚ୍ଛାମାତ୍ରେ ଜଗତକୁ ଭସ୍ମ କରିଦେଇପାରିବେ, କିନ୍ତୁ ତାଙ୍କୁ ଭସ୍ମ କରିବାକୁ ସାରା ବିଶ୍ୱ ମଧ୍ୟ ଅସମର୍ଥ।

**ଯତଃ ସତ୍ୟଂ ଯତୋ ଧର୍ମୋ ଯତୋ ହ୍ରୀରାର୍ଜବଂ ଯତଃ।**
**ତତୋ ଭବତି ଗୋବିନ୍ଦୋ ଯତଃ କୃଷ୍ଣସ୍ତତୋ ଜୟଃ॥**

(ମହା.ଉଦ୍ୟୋଗ ୬୮/୯)

ଅର୍ଥାତ୍: ''ଯେଉଁଠି ସତ୍ୟ ଅଛି, ଯେଉଁଠି ଧର୍ମ ଅଛି, ଯେଉଁଠି ଈଶ୍ୱରବିରୋଧୀ କାର୍ଯ୍ୟ କରିବାରେ ଲଜ୍ଜା ଅଛି ଓ ହୃଦୟର ସରଳତା ଅଛି, ସେଠାରେ ଶ୍ରୀକୃଷ୍ଣ ରହନ୍ତି ଏବଂ ଯେଉଁଠି ଶ୍ରୀକୃଷ୍ଣ ରହନ୍ତି, ସେଠାରେ ନିଃସନ୍ଦେହ ବିଜୟ ରହିଛି।'' ସର୍ବଭୂତାତ୍ମା ପୁରୁଷୋତ୍ତମ ଶ୍ରୀକୃଷ୍ଣ ଲୀଳାକ୍ରମେ ପୃଥିବୀ, ଅନ୍ତରିକ୍ଷ ଓ ସ୍ୱର୍ଗକୁ ସଞ୍ଚାଳନ କରନ୍ତି; ସେହି ଶ୍ରୀକୃଷ୍ଣ ସବୁ ଲୋକଙ୍କୁ ମୋହିତ କରୁଥିବାପରି ପାଣ୍ଡବମାନଙ୍କୁ ନିମିତ୍ତ କରି ତୁମ ଅଧର୍ମୀ ମୂର୍ଖପୁତ୍ରମାନଙ୍କୁ ଭସ୍ମ କରିବାକୁ ଚାହାଁନ୍ତି। ଭଗବାନ୍ ଶ୍ରୀକୃଷ୍ଣ ନିଜ ପ୍ରଭାବରେ କାଳ-ଚକ୍ର, ଜଗତ୍-ଚକ୍ର ଓ ଯୁଗ-ଚକ୍ରକୁ ସବୁବେଳେ ଘୁରାନ୍ତି। ମୁଁ ଏହା ସତ୍ୟ କହୁଛି ଯେ, ଭଗବାନ୍ ଶ୍ରୀକୃଷ୍ଣ ହିଁ କାଳ, ମୃତ୍ୟୁ ଓ ସ୍ଥାବର-ଜଙ୍ଗମରୂପକ ଜଗତର ଏକମାତ୍ର ଅଧୀଶ୍ୱର। କୃଷକ ଯେପରି ନିଜେ ବୁଣିଥିବା ଶସ୍ୟକୁ (ପାଚିଯିବା ପରେ) କାଟିନିଏ, ମହାଯୋଗେଶ୍ୱର ଶ୍ରୀକୃଷ୍ଣ ସେପରି ସମସ୍ତ ବିଶ୍ୱର ପାଳନକର୍ତ୍ତା ହୋଇ ମଧ୍ୟ ସ୍ୱୟଂ ତାହାର ସଂହାର ମଧ୍ୟ କରନ୍ତି। ସେ ନିଜ ମହାମାୟାଙ୍କ ପ୍ରଭାବରେ ସମସ୍ତଙ୍କୁ ମୋହିତ କରନ୍ତି; କିନ୍ତୁ ଯେଉଁ ମନୁଷ୍ୟମାନେ ତାଙ୍କର ଶରଣ ଗ୍ରହଣ କରନ୍ତି, ସେମାନେ କେବେହେଲେ ମାୟାରେ ମୋହିତ ହୁଅନ୍ତି ନାହିଁ—

**ଯେ ତମେବ ପ୍ରପଦ୍ୟନ୍ତେ ନ ତେ ମୁହ୍ୟନ୍ତି ମାନବାଃ।**

(ମହା. ଉଦ୍ୟୋଗ ୬୮/୧୫)

ତା'ପରେ ସେ ଭଗବାନ୍ ଶ୍ରୀକୃଷ୍ଣଙ୍କ ନାମାବଳୀ ଓ ସେସବୁର ବଡ଼ ସୁନ୍ଦର ଅର୍ଥ ଧୃତରାଷ୍ଟ୍ରଙ୍କୁ ଶୁଣାଇଲେ। ସଂଜୟ ମଧ୍ୟ ମହାଭାରତ ଯୁଦ୍ଧ କିପରି ନ ହେବ, ସେଥିପାଇଁ ବହୁ ଚେଷ୍ଟା କରିଥିଲେ; କିନ୍ତୁ ସେ ତାହାକୁ ରୋକିପାରିଲେ ନାହିଁ। ଧୃତରାଷ୍ଟ୍ର ଯେତେବେଳେ ବନ ଗମନ କଲେ, ସେତେବେଳେ ସଂଜୟ ମଧ୍ୟ ତାଙ୍କ ସହିତ ବନକୁ ଚାଲିଗଲେ।

**ପ୍ରଶ୍ନ—** ଏଠାରେ ଦୁଇ ଥର **ଅପି** ପ୍ରୟୋଗର ଭାବ କଣ ?

**ଉତ୍ତର—** ଏଠାରେ ଦୁଇ ଥର **ଅପି** ପ୍ରୟୋଗ କରି ଭଗବାନ୍ ନିଜଠାରେ ଭଜନୀତଜାତିହେତୁକ ବିଷମତାର ସର୍ବଥା ଅଭାବ ଦର୍ଶାଇଛନ୍ତି। ଭଗବାନଙ୍କ ଉକ୍ତିର ଅଭିପ୍ରାୟ ହେଉଛି, ''ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ଅପେକ୍ଷା ହୀନ ବୋଲି ଗଣ୍ୟ ହେଉଥିବା ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ର ଏବଂ ସେମାନଙ୍କ ଠାରୁ ମଧ୍ୟ ହୀନ ଚଣ୍ଡାଳ ଆଦି ଯେ କେହି ବି ହୁଅନ୍ତୁ ନା କାହିଁକି, ମୋର ସେମାନଙ୍କ ଠାରେ କୌଣସି ଭେଦବୁଦ୍ଧି ନାହିଁ। ମୋର ଶରଣ ନେଇ ଯେ କେହି ମୋତେ ଭଜନ୍ତି, ସେମାନଙ୍କୁ ପରମଗତି ମିଳିଥାଏ।''

**ପ୍ରଶ୍ନ—** ଏଠାରେ 'ଭଗବାନଙ୍କୁ ଶରଣାପନ୍ନ ହେବା' କହିଲେ କଣ ବୁଝାଏ ?

**ଉତ୍ତର—** ଭଗବାନଙ୍କ ଠାରେ ପୂର୍ଣ୍ଣ ବିଶ୍ୱାସ ରଖି ଚଉତିରିଶ ଶ୍ଳୋକର କଥନ ଅନୁସାରେ, ପ୍ରେମପୂର୍ବକ ସଂପୂର୍ଣ୍ଣରୂପେ ଭଗବାନଙ୍କ ଶରଣାପନ୍ନ ହୋଇଯିବା ଅର୍ଥାତ୍ ତାଙ୍କର ପ୍ରତ୍ୟେକ ବିଧାନରେ ସଦା ସନ୍ତୁଷ୍ଟ ରହିବା, ତାଙ୍କ ନାମ, ରୂପ, ଗୁଣ, ଲୀଳା ପ୍ରଭୃତି ନିରନ୍ତର ଶ୍ରବଣ, କୀର୍ତ୍ତନ ଓ ଚିନ୍ତନ କରିବା, ତାଙ୍କୁ ହିଁ ନିଜର ଗତି, ଭର୍ତ୍ତା, ପ୍ରଭୁ ଆଦି ବୋଲି ମାନିବା ଏବଂ ଶ୍ରଦ୍ଧା ଓ ଭକ୍ତିପୂର୍ବକ ତାଙ୍କୁ ପୂଜା କରିବା, ତାଙ୍କୁ ନମସ୍କାର କରିବା, ତାଙ୍କ ଆଜ୍ଞା ପାଳନ କରିବା ଏବଂ ସକଳ କର୍ମ ତାଙ୍କୁ ହିଁ ସମର୍ପଣ କରିଦେବା ଆଦି ହେଉଛି ଭଗବାନଙ୍କର ଶରଣାପନ୍ନ ହୋଇଯିବା।

**ପ୍ରଶ୍ନ—** ଏହିପ୍ରକାରେ ଭଗବାନଙ୍କ ଶରଣାପନ୍ନ ହୋଇଯିବା ଭକ୍ତମାନଙ୍କୁ 'ପରମଗତି ପ୍ରାପ୍ତ' ହେବା କଣ ?

**ଉତ୍ତର—** ସାକ୍ଷାତ୍ ପରମେଶ୍ୱରଙ୍କୁ ପ୍ରାପ୍ତ ହୋଇଯିବା ହିଁ ପରମଗତି ପ୍ରାପ୍ତ ହେବା। ଅଭିପ୍ରାୟ ଏହି ଯେ, ଉପରୋକ୍ତପ୍ରକାରେ ଭଗବାନଙ୍କ ଶରଣ ଗ୍ରହଣ କରୁଥିବା ସ୍ତ୍ରୀ-ପୁରୁଷ ଯେକୌଣସି ଜାତିର ହୁଅନ୍ତୁ ନା କାହିଁକି, ସେମାନଙ୍କୁ ଭଗବତ୍ପ୍ରାପ୍ତି ହୋଇଯାଏ।

**କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା ଭକ୍ତା ରାଜର୍ଷୟସ୍ତଥା ।**
**ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ ।। ୩୩ ।।**

**ଅନ୍ୱୟ –** **ପୁଣ୍ୟାଃ** = ପୁଣ୍ୟଶୀଳ; **ବ୍ରାହ୍ମଣାଃ** = ବ୍ରାହ୍ମଣମାନେ; **ତଥା** = ତଥା; **ରାଜର୍ଷୟଃ** = ରାଜର୍ଷିମାନେ; **ଭକ୍ତାଃ** = ଭକ୍ତମାନେ (ଯେ) ମୋର ଶରଣାପନ୍ନ ହେଲେ ପରମଗତି ପ୍ରାପ୍ତ ହୁଅନ୍ତି; **ପୁନଃ,** **କିମ୍** = (ତାହା) ଆଉ କଣ କହିବା (ଅତଏବ); **ଅସୁଖମ୍** = ସୁଖରହିତ (ଓ) **ଅନିତ୍ୟମ୍** = କ୍ଷଣଭଙ୍ଗୁର; **ଇମମ୍** = ଏହି; **ଲୋକମ୍** = ମନୁଷ୍ୟ ଶରୀରକୁ; **ପ୍ରାପ୍ୟ** = ପ୍ରାପ୍ତ ହୋଇ (ନିରନ୍ତର); **ମାମ୍** = ମୋର ହିଁ; **ଭଜସ୍ୱ** = ଭଜନ କର ।

**ତେଣୁ ପୁଣ୍ୟଶୀଳ ବ୍ରାହ୍ମଣ ତଥା ରାଜର୍ଷି ଭକ୍ତମାନେ ଯେ ମୋର ଶରଣାପନ୍ନ ହେଲେ ପରମଗତି ପ୍ରାପ୍ତ ହୁଅନ୍ତି, ତାହା ଆଉ କଣ କହିବା ! ଅତଏବ ତୁମେ ସୁଖରହିତ ଓ କ୍ଷଣଭଙ୍ଗୁର ଏହି ମନୁଷ୍ୟଶରୀର ପ୍ରାପ୍ତ ହୋଇ ନିରନ୍ତର ମୋର ହିଁ ଭଜନ କର ।। ୩୩ ।।**

**ପ୍ରଶ୍ନ –** **କିମ୍** ଓ **ପୁନଃ** ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** **କିମ୍** ଓ **ପୁନଃ** ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି, ''ଯଦି ଉପରୋକ୍ତ ଅତ୍ୟନ୍ତ ଦୁରାଚାରୀ (୯/୩୦) ଓ ଚାଣ୍ଡାଳ ଆଦି ନୀଚ ଜାତିର ମନୁଷ୍ୟ ମଧ୍ୟ (୯/୩୨) ମୋତେ ଭଜନ କରି ପରମଗତି ପ୍ରାପ୍ତ ହୋଇଯାଆନ୍ତି, ତେବେ ପୁଣି ଆଚାର, ବ୍ୟବହାର ଓ ବର୍ଣ୍ଣ ଆଦିରେ ଅତ୍ୟନ୍ତ ଉତ୍ତମ ହୋଇଥିବା ମୋର ଭକ୍ତ, ପୁଣ୍ୟଶୀଳ ବ୍ରାହ୍ମଣ ଓ ରାଜର୍ଷିମାନେ ଯେ ମୋର ଶରଣାପନ୍ନ ହୋଇ ପରମଗତି ପାଇଯାଆନ୍ତି, ତାହା ବା କଣ କହିବା !''

**ପ୍ରଶ୍ନ –** **ପୁଣ୍ୟାଃ** ପଦର ଅର୍ଥ କଣ ଏବଂ ଏହି ବିଶେଷଣ କେବଳ ବ୍ରାହ୍ମଣମାନଙ୍କର, ନା ବ୍ରାହ୍ମଣ ଓ ରାଜର୍ଷି — ଉଭୟଙ୍କର ?

**ଉତ୍ତର –** ଯେଉଁମାନଙ୍କର ସ୍ୱଭାବ ଓ ଆଚରଣ ପବିତ୍ର ଓ ଉତ୍ତମ ହୋଇଥାଏ, ସେମାନଙ୍କୁ **ପୁଣ୍ୟ** କହନ୍ତି । ଏହି ବିଶେଷଣ କେବଳ ବ୍ରାହ୍ମଣମାନଙ୍କ ପାଇଁ ପ୍ରଯୁଜ୍ୟ, କାରଣ ଯେଉଁମାନେ ରାଜା ହୋଇ ବି ଋଷିମାନଙ୍କ ପରି ଶୁଦ୍ଧସ୍ୱଭାବ ଓ ଉତ୍ତମ-ଆଚାରୀ ହୁଅନ୍ତି, ସେମାନଙ୍କୁ 'ରାଜର୍ଷି' କହନ୍ତି । ଏଣୁ ସେମାନଙ୍କ ସହିତ **ପୁଣ୍ୟାଃ** ବିଶେଷଣ ଦେବାର ଆବଶ୍ୟକତା ନାହିଁ ।

**ପ୍ରଶ୍ନ –** **ଭକ୍ତାଃ** ପଦର ସମ୍ବନ୍ଧ କାହା ସହିତ ରହିଛି ?

**ଉତ୍ତର –** **ଭକ୍ତାଃ** ପଦର ସମ୍ବନ୍ଧ ବ୍ରାହ୍ମଣ ଓ ରାଜର୍ଷି ଦୁହିଁଙ୍କ ସହିତ ରହିଛି; କାରଣ ଏଠାରେ ଭକ୍ତିଯୋଗୁଁ ହିଁ ସେମାନଙ୍କୁ ପରମଗତି ମିଳେ ବୋଲି କୁହାଯାଇଛି ।

ବ୍ରାହ୍ମଣ ଓ ରାଜର୍ଷିମାନଙ୍କ ମଧ୍ୟରେ ଅଗଣିତ ଭକ୍ତ ଥିଲେ । ସେମାନଙ୍କ ମହିମାର ପରିଚୟମାତ୍ର ଦେବାକୁ ଏଠାରେ ମହର୍ଷି ସୁତୀକ୍ଷ୍ଣ ଓ ରାଜର୍ଷି ଅମ୍ବରୀଷଙ୍କ କଥା ବର୍ଣ୍ଣନା କରାଯାଉଛି ।

## ମହର୍ଷି ସୁତୀକ୍ଷ୍ଣ

ମହର୍ଷି ସୁତୀକ୍ଷ୍ଣ ଦଣ୍ଡକାରଣ୍ୟରେ ରହୁଥିଲେ । ସେ ଥିଲେ ଅଗସ୍ତିଙ୍କର ଶିଷ୍ୟ । ସେ ବଡ଼ ତପସ୍ୱୀ, ତେଜସ୍ୱୀ ଓ ଭକ୍ତ ଥିଲେ । ନିଜ ପାପଯୋଗୁଁ ପିଶାଚ ହୋଇଯାଇଥିବା ଦୁର୍ଲଭ୍ୟ ନାମକ ଜଣେ ବୈଶ୍ୟକୁ ସେ ଉଦ୍ଧାର କରିଥିଲେ (ସ୍କନ୍ଦ.ବ୍ରହ୍ମ.୨୨) । ସେ ଭଗବାନ୍ ଶ୍ରୀରାମଙ୍କର ଅନନ୍ୟ ଭକ୍ତ ଥିଲେ । ଯେତେବେଳେ ସେ ଶୁଣିଲେ ଯେ, ଭଗବାନ୍ ଶ୍ରୀରଘୁନାଥ ଜଗଜ୍ଜନନୀ ଜାନକୀଙ୍କ ସହିତ ସେଠାକୁ ଆସୁଛନ୍ତି, ସେତେବେଳେ ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ବିଭିନ୍ନ ମନୋରଥ ନେଇ ପ୍ରଭୁଙ୍କ ଦର୍ଶନପାଇଁ ଆଗକୁ ଚାଲିଲେ । ଚାଲୁ ଚାଲୁ ସେ ପ୍ରେମରେ ଦେହଜ୍ଞାନ ହରାଇବସିଲେ । ସେ କିଏ, କେଉଁଠିକି ଯାଉଛନ୍ତି, କେଉଁ ଆଡ଼େ ଯାଉଛନ୍ତି, ଆଗକୁ ରାସ୍ତା ଅଛି, କି ନାହିଁ, ଇତ୍ୟାଦି ସବୁକିଛି ସେ ଭୁଲି ହିଁ ଗଲେ । କେତେବେଳେ ପଛକୁ ଫେରି ପୁଣି ଆଗକୁ ଚାଲିବାକୁ ଲାଗିଲେ ତ, କେତେବେଳେ ପ୍ରଭୁଙ୍କ ଗୁଣ ଗାଇ ଗାଇ ନାଚିବାକୁ ଲାଗିଲେ । ଭଗବାନ୍ ଶ୍ରୀରଘୁନାଥ ଗଛ ଆଢୁଆଳରେ ଲୁଚି ରହି ଭକ୍ତଙ୍କର ପ୍ରେମୋନ୍ମାଦ-ଦଶାକୁ ଚାହିଁରହିଲେ । ମୁନିଙ୍କର ଉତ୍କଟ ପ୍ରେମ ଦେଖି ଭବଭୟହାରୀ ଭଗବାନ୍ ମୁନିଙ୍କ ହୃଦୟରେ ପ୍ରକଟ ହୋଇଗଲେ । ହୃଦୟମଧ୍ୟରେ ଭଗବାନଙ୍କର ଦର୍ଶନ ପାଇ ସୁତୀକ୍ଷ୍ଣ ବାଟମଝିରେ ହିଁ ନିଶ୍ଚଳ ହୋଇ ବସିଗଲେ । ଆନନ୍ଦରେ ତାଙ୍କ ଶରୀର ପୁଲକିତ ହୋଇଗଲା । ତା'ପରେ ଶ୍ରୀରଘୁନାଥ ତାଙ୍କ ପାଖକୁ ଆସି ତାଙ୍କ ପ୍ରେମଦଶା ଦେଖି ଅତ୍ୟନ୍ତ ପ୍ରସନ୍ନ ହୋଇଗଲେ ।

ଶ୍ରୀରଘୁନାଥ ମୁନିଙ୍କୁ ବିଭିନ୍ନ ଉପାୟରେ ଚେତା କରାଇବାକୁ ଲାଗିଲେ, କିନ୍ତୁ ମୁନି ଚେତା ହେଲେ ନାହିଁ। ତାଙ୍କୁ ପ୍ରଭୁଙ୍କ ଧ୍ୟାନରେ ସୁଖ ମିଳୁଥିଲା। ଯେତେବେଳେ ଶ୍ରୀରାମ ନିଜର ସେହି ରୂପ ତାଙ୍କ ହୃଦୟରୁ କାଢ଼ିନେଲେ, ସେତେବେଳେ ସେ ବ୍ୟାକୁଳ ହୋଇଉଠିଲେ। ଆଖି ଖୋଲିଦେବାମାତ୍ରେ ସେ ନିଜ ଆଗରେ ସୀତା ଓ ଲକ୍ଷ୍ମଣଙ୍କ ସହିତ ଶ୍ୟାମସୁନ୍ଦର ସୁଖଧାମ ଶ୍ରୀରାମଙ୍କୁ ପ୍ରତ୍ୟକ୍ଷ ଦର୍ଶନ କଲେ। ତପସ୍ୟାର ଫଳ ମିଳିଗଲା। ସେ ଧନ୍ୟ ହୋଇଗଲେ। (ଶ୍ରୀରାମଚରିତମାନସ, ଅରଣ୍ୟକାଣ୍ଡ)

## ରାଜର୍ଷି ଅମ୍ବରୀଷ

ରାଜର୍ଷି ଅମ୍ବରୀଷ ବୈବସ୍ୱତ ମନୁଙ୍କ ପୌତ୍ର ମହାରାଜ ନାଭାଗଙ୍କର ପ୍ରଭାବଶାଳୀ ପୁତ୍ର ଥିଲେ। ସେ ଚକ୍ରବର୍ତ୍ତୀ ସମ୍ରାଟ୍ ଥିଲେ। କିନ୍ତୁ ସେ ଜାଣିଥିଲେ ଯେ, ଏ ସମସ୍ତ ଐଶ୍ୱର୍ଯ୍ୟ ସ୍ୱପ୍ନରେ ଦେଖାଯାଉଥିବା ପଦାର୍ଥପରି କ୍ଷଣଭଙ୍ଗୁର। ତେଣୁ ସେ ନିଜର ସମସ୍ତ ଜୀବନ ପରମାତ୍ମାଙ୍କ ଚରଣରେ ଅର୍ପଣ କରିଦେଇଥିଲେ। ତାଙ୍କର ସମସ୍ତ ଇନ୍ଦ୍ରିୟ ଓ ମନ ସଦାସର୍ବଦା ଭଗବାନଙ୍କ ସେବାରେ ହିଁ ଲାଗିରହିଥିଲା।

ଥରେ ସେ ଶ୍ରୀକୃଷ୍ଣଙ୍କ ପ୍ରୀତି ଉଦ୍ଦେଶ୍ୟରେ ରାଣୀଙ୍କ ସହିତ ଏକବର୍ଷଯାଏ ଏକାଦଶୀ ବ୍ରତ ପାଳନ କରିବାକୁ ନିୟମ କଲେ। ଅନ୍ତିମ ଏକାଦଶୀର ପରଦିନ ବିଧିପୂର୍ବକ ଭଗବାନଙ୍କର ପୂଜା କରାଗଲା। ରାଜା ପାରଣା କରିବାକୁ ବାହାରିଲାବେଳେ ଋଷି ଦୁର୍ବାସା ତାଙ୍କ ଶିଷ୍ୟମାନଙ୍କ ସହିତ ଆସି ସେଠାରେ ପହଞ୍ଚିଗଲେ। ଦୁର୍ବାସାଙ୍କୁ ସକଳପ୍ରକାରେ ସତ୍କାର କରିବା ପରେ, ରାଜା ତାଙ୍କୁ ଭୋଜନ କରିବାପାଇଁ ପ୍ରାର୍ଥନା କଲେ। ଋଷି ଭୋଜନ କରିବାକୁ ସ୍ୱୀକାର କଲେ ଏବଂ ମଧ୍ୟାହ୍ନ ନିତ୍ୟକର୍ମ କରିବାପାଇଁ ଯମୁନାତଟକୁ ଚାଲିଗଲେ। ସେତେବେଳକୁ ଦ୍ୱାଦଶୀ ଆଉ ଏକ ଘଡ଼ିମାତ୍ର ବାକି ଥିଲା। ଦ୍ୱାଦଶୀରେ ପାରଣା ନ କଲେ ବ୍ରତଭଙ୍ଗ ହୁଏ। ତେଣୁ ରାଜା ବ୍ରାହ୍ମଣମାନଙ୍କ ପରାମର୍ଶକ୍ରମେ ଶ୍ରୀହରିଙ୍କ ଚରଣୋଦକରେ ପାରଣା କରିନେଲେ ଏବଂ ଭୋଜନ କରାଇବାପାଇଁ ଦୁର୍ବାସାଙ୍କ ବାଟକୁ ଚାହିଁରହିଲେ। ଦୁର୍ବାସା ନିଜର ନିତ୍ୟକର୍ମ ଶେଷ କରି ରାଜନବରକୁ ଲେଉଟିଲେ ଓ ରାଜା ପାରଣା କରିସାରିଥିବା କଥା ତପୋବଳରେ ଜାଣିପାରିଲେ। ଅପରାଧୀପରି ଯୋଡ଼ହସ୍ତ ହୋଇ ଠିଆ ହୋଇଥିବା ରାଜାଙ୍କୁ ସେ ଅତ୍ୟନ୍ତ କ୍ରୋଧରେ ଆଖି ଦେଖାଇ କହିଲେ, ''ଓହୋ! ଧନମଦରେ ଅନ୍ଧ ଏହି ଅଧମ ରାଜାର ଧୃଷ୍ଟତା ଓ ଧର୍ମ ପ୍ରତି ଅନାଦର ଦେଖ ତ! ଏ ଆଉ ବିଷ୍ଣୁଭକ୍ତ ନୁହେଁ। ଏ ତ ନିଜକୁ ହିଁ ଈଶ୍ୱର ବୋଲି ମନେ କରୁଛି। ମୋତେ ଅତିଥିଭାବରେ ନିମନ୍ତ୍ରଣ କରି ଭୋଜନ ନ କରାଇ ନିଜେ ଭୋଜନ କରିସାରିଲାଣି। ଏହାକୁ ଏହିକ୍ଷଣି ଏହି ଅପରାଧର ଫଳ ଚଖାଉଛି।'' ଏହା କହି ଦୁର୍ବାସା ନିଜ ମସ୍ତକରୁ ଗୋଟିଏ ଜଟା ଉପାଡ଼ି ତାହାକୁ ପୃଥିବୀ ଉପରେ ଜୋରରେ ଛାଟିଦେଲେ। ତତ୍‌କ୍ଷଣାତ୍ ସେଥିରୁ କାଳାଗ୍ନିସମାନ କୃତ୍ୟା ନାମକ ଏକ ଭୟାନକ ରାକ୍ଷସୀ ପ୍ରକଟ ହେଲା ଏବଂ ନିଜ ପାଦାଘାତରେ ଭୂମି କମ୍ପାଇ ହାତରେ ଖଣ୍ଡା ଧରି ରାଜାଙ୍କ ଉପରକୁ ଝପଟିଗଲା। କିନ୍ତୁ ଭଗବାନଙ୍କ ଉପରେ ଦୃଢ଼ ଭରସା ରଖିଥିବା ଅମ୍ବରୀଷ ଯେଉଁଠି ଠିଆ ହୋଇଥିଲେ ସେଇଠି ହିଁ ଠିଆ ହୋଇ ରହିଲେ; ସେ ପଛକୁ ଘୁଞ୍ଚିଲେ ନାହିଁ, କି କିଛି ବି ଭୟ କଲେ ନାହିଁ। ସାରା ସଂସାରରେ ପରମାତ୍ମା ବ୍ୟାପ୍ତ ହୋଇଛନ୍ତି ବୋଲି ଯେ ବୁଝିପାରେ, ସେ କାହିଁକି କାହାକୁ ଡରିବ?

କୃତ୍ୟା ଅମ୍ବରୀଷଙ୍କ ପାଖରେ ପହଞ୍ଚିବା ପୂର୍ବରୁ ଭଗବାନଙ୍କର ସୁଦର୍ଶନ ଚକ୍ର ଆସି କୁପିତ ସର୍ପକୁ ପ୍ରଚଣ୍ଡ ଦାବାନଳ ଭସ୍ମ କରିଦେଲାପରି କୃତ୍ୟାକୁ ସେହିକ୍ଷଣି ଭସ୍ମ କରିଦେଲେ। ତା'ପରେ ଋଷି ଦୁର୍ବାସାଙ୍କୁ ଶାସ୍ତି ଦେବାପାଇଁ ସୁଦର୍ଶନ ଗୋଡ଼ାଇଲେ। ଦୁର୍ବାସା ଅତ୍ୟନ୍ତ ବିହ୍ୱଳ ହୋଇ ପ୍ରାଣଭୟରେ ଧାଇଁ ପଳାଇଗଲେ। ଚକ୍ର ତାଙ୍କ ପଛେ ପଛେ ଧାଇଁଲେ। ଦୁର୍ବାସା ଦଶଦିଗ ଓ ଚଉଦ ଭୁବନ ବୁଲିଲେ, କିନ୍ତୁ ତାଙ୍କୁ କେଉଁଠି ହେଲେ ଆଶ୍ରୟ ନେବାକୁ ସ୍ଥାନ ମିଳିଲା ନାହିଁ। କେହି ମଧ୍ୟ ତାଙ୍କୁ ଆଶ୍ରୟ ଓ ଅଭୟ ଦେଲେ ନାହିଁ। ଶେଷରେ ବିଚରା ବୈକୁଣ୍ଠକୁ ଧାଇଁଲେ ଏବଂ ଭଗବାନ୍ ଶ୍ରୀବିଷ୍ଣୁଙ୍କ ଚରଣ ଧରି ବ୍ୟାକୁଳ ହୋଇ କହିଲେ, ''ହେ ପ୍ରଭୁ! ମୁଁ ଆପଣଙ୍କ ପ୍ରଭାବ ଜାଣି ନ ପାରି ଆପଣଙ୍କ ଭକ୍ତର ଅପମାନ କରିଛି, ମୋତେ ଏହି ଅପରାଧରୁ ମୁକ୍ତ କରନ୍ତୁ। ଆପଣଙ୍କ ନାମକୀର୍ତ୍ତନ କରିବା କ୍ଷଣି ନରକର ଜୀବ ମଧ୍ୟ ନରକକଷ୍ଟରୁ ମୁକ୍ତି ପାଇଯାଏ, ଅତଏବ ମୋର ଅପରାଧ କ୍ଷମା କରନ୍ତୁ।'' ଭଗବାନ୍ କହିଲେ, ''ହେ ବ୍ରାହ୍ମଣ! ମୁଁ ଭକ୍ତଙ୍କ ଅଧୀନରେ ରହେ; ମୁଁ ସ୍ୱତନ୍ତ୍ର ନୁହେଁ। ଭକ୍ତଜନମାନେ ମୋର ବଡ଼ ପ୍ରିୟ; ମୋର ହୃଦୟ ଉପରେ ସେମାନଙ୍କର ପୂର୍ଣ୍ଣ ଅଧିକାର। ଯେଉଁମାନେ ମୋତେ ହିଁ ନିଜର ପରମଗତି ବୋଲି

ମାନିନେଇଛନ୍ତି, ମୋର ପରମଭକ୍ତ ସେହି ସତ୍‌ପୁରୁଷଙ୍କ ଆଗରେ ମୁଁ ମୋର ଆତ୍ମାକୁ ଓ ସଂପୂର୍ଣ୍ଣ ଶ୍ରୀକୁ ମଧ୍ୟ ତୁଚ୍ଛ ମନେ କରେ। ଯେଉଁ ଭକ୍ତମାନେ ମୋପାଇଁ ସ୍ତ୍ରୀ, ପୁତ୍ର, ଗୃହ, ପରିବାର, ଧନ, ଜୀବନ ଆଦି ଇହଲୋକ ଓ ପରଲୋକର ସବୁସୁଖ ତ୍ୟାଗ କରିଦେଇ କେବଳ ମୋରି ଆଶ୍ରୟ ନେଇ ରହନ୍ତି, ସେମାନଙ୍କୁ ମୁଁ କିପରି ଛାଡ଼ିପାରିବି ? ପତିବ୍ରତା ସ୍ତ୍ରୀ ଯେପରି ନିଜର ଶୁଦ୍ଧପ୍ରେମରେ ପତିଦେବଙ୍କୁ ବଶ କରିନିଏ, ମୋଠାରେ ଚିତ୍ତ ଲଗାଇଥିବା ସର୍ବତ୍ର ସମଦର୍ଶୀ ଭକ୍ତମାନେ ମଧ୍ୟ ନିଜର ଶୁଦ୍ଧଭକ୍ତିରେ ସେହିପରି ମୋତେ ନିଜର ବଶ କରିନିଅନ୍ତି। ସମୟାନୁକ୍ରମେ ନଷ୍ଟ ହୋଇଯାଉଥିବା ସ୍ୱର୍ଗାଦି ଲୋକକୁ ଗଣୁଛି କିଏ, ମୋର ସେବା କରିବା ପରେ ସେମାନଙ୍କୁ ଯେଉଁ ଚତୁର୍ବିଧ (ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ ଓ ସାଯୁଜ୍ୟ) ମୁକ୍ତି ମିଳେ, ତାହା ମଧ୍ୟ ସେମାନେ ଗ୍ରହଣ କରନ୍ତି ନାହିଁ; ମୋର ପ୍ରେମ ଆଗରେ ସେମାନେ ସବୁକିଛିକୁ ତୁଚ୍ଛ ମନେ କରନ୍ତି।''

ଶେଷରେ ଭଗବାନ୍ କହିଲେ– ''ତୁମେ ନିଜକୁ ରକ୍ଷା କରିବାକୁ ହେଲେ, ହେ ବ୍ରହ୍ମନ୍! ତୁମର କଲ୍ୟାଣ ହେଉ, ତୁମେ ସେହି ମହାଭାଗ ରାଜା ଅମ୍ବରୀଷଙ୍କ ନିକଟକୁ ଯାଅ ଓ ତାଙ୍କୁ କ୍ଷମା ମାଗ; ତେବେ ଯାଇ ତୁମକୁ ଶାନ୍ତି ମିଳିବ।'' ଭଗବାନଙ୍କର ଆଜ୍ଞା ପାଇ ଦୁର୍ବାସା ଲେଉଟିଲେ।

ଏପଟେ, ଭକ୍ତଶିରୋମଣି ଅମ୍ବରୀଷଙ୍କ ଅବସ୍ଥା ବିଚିତ୍ର ହୋଇଯାଇଥିଲା। ଯେତିକିବେଳକୁ ଦୁର୍ବାସାଙ୍କୁ ଚକ୍ର ଗୋଡ଼େଇଲେ, ସେତିକିବେଳକୁ ଅମ୍ବରୀଷ ଋଷିଙ୍କ ସନ୍ତାପରେ ସନ୍ତପ୍ତ ହେଉଥିଲେ। ଅମ୍ବରୀଷ ମନେ ମନେ ଚିନ୍ତା କରୁଥିଲେ, 'ବ୍ରାହ୍ମଣ ଭୋକରେ ଗଲେ ଏବଂ ମୋଯୋଗୁଁ ହିଁ ମୃତ୍ୟୁଭୟରେ ତ୍ରସ୍ତ ହୋଇ ତାଙ୍କୁ ଏତେ ଦୌଡ଼ିବାକୁ ପଡୁଛି। ଏପରି ଅବସ୍ଥାରେ ମୋର ଭୋଜନ କରିବାର କି ଅଧିକାର ଅଛି!' ଏହା ବିଚାରି ରାଜା ସେହି ମୁହୂର୍ତ୍ତରୁ ଅନ୍ନ ତ୍ୟାଗ କରିଦେଇ କେବଳ ଜଳ ପିଇ ରହିଥିଲେ। ଦୁର୍ବାସା ଫେରିଆସିବାକୁ ପୂରା ଏକ ବର୍ଷ ବିତିଗଲା; କିନ୍ତୁ ଅମ୍ବରୀଷଙ୍କ ବ୍ରତଭଙ୍ଗ ହେଲା ନାହିଁ।

ଦୁର୍ବାସା ଆସିବା କ୍ଷଣି ରାଜାଙ୍କ ପାଦ ଧରିଲେ। ରାଜାଙ୍କୁ ବଡ଼ ସଂକୋଚ ଲାଗିଲା। ସେ ବଡ଼ ବିନୟରେ ସୁଦର୍ଶନଙ୍କୁ ସ୍ତୁତି କରି କହିଲେ, ''ଯଦି ମୋ ମନରେ ଦୁର୍ବାସାଙ୍କ ପ୍ରତି ତିଳେ ହେଲେ ଦ୍ୱେଷଭାବ ନ ଥିବ ଏବଂ ସକଳ ପ୍ରାଣୀଙ୍କର ଆତ୍ମା ଶ୍ରୀଭଗବାନ୍ ଯଦି ମୋ ପ୍ରତି ପ୍ରସନ୍ନ ହୋଇଛନ୍ତି, ତେବେ ଆପଣ ଶାନ୍ତ ହୋଇଯାଆନ୍ତୁ ଓ ଋଷିଙ୍କୁ ସଙ୍କଟରୁ ମୁକ୍ତ କରନ୍ତୁ।'' ସୁଦର୍ଶନ ଶାନ୍ତ ହୋଇଗଲେ। ଦୁର୍ବାସା ତ ଭୟରୂପକ ଅଗ୍ନିରେ ଜଳୁଥିଲେ; ସୁଦର୍ଶନ ଶାନ୍ତ ହୋଇଯିବା ପରେ ସେ ସୁସ୍ଥ ବୋଧ କଲେ ଏବଂ ତାଙ୍କ ମୁଖରେ ହର୍ଷ ଓ କୃତଜ୍ଞତାର ଚିହ୍ନ ସ୍ପଷ୍ଟରୂପେ ଦେଖାଗଲା। (ଶ୍ରୀମଦ୍‌ଭାଗବତ, ନବମ ସ୍କନ୍ଧ, ଅଧ୍ୟାୟ ୪-୫)

**ପ୍ରଶ୍ନ**– 'ଏହି ସୁଖରହିତ ଓ କ୍ଷଣଭଙ୍ଗୁର ଶରୀର ପାଇ ତୁମେ ମୋତେ ହିଁ ଭଜନ କର'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର**– ମନୁଷ୍ୟଶରୀର ବଡ଼ ଦୁର୍ଲଭ। ବିଶେଷ ପୁଣ୍ୟବଳରେ, ବିଶେଷତଃ ଭଗବାନଙ୍କ କୃପାରୁ ଏହି ଶରୀର ମିଳେ ଏବଂ ମିଳିଥାଏ କେବଳ ଭଗବତ୍‌ପ୍ରାପ୍ତି-ନିମନ୍ତେ। ଏହି ଶରୀର ପାଇ ଯେ ଭଗବତ୍‌ପ୍ରାପ୍ତିନିମନ୍ତେ ସାଧନା କରେ, ତାହାର ମନୁଷ୍ୟଜନ୍ମ ସଫଳ ହୁଏ। ଯେ ଏଥିରେ ସୁଖ ଖୋଜେ, ସେ ତ ପ୍ରକୃତ ଲାଭରୁ ବଞ୍ଚିତ ହୋଇଯାଏ। କାରଣ ଏ ଶରୀର ସର୍ବଥା ସୁଖରହିତ; ଏଥିରେ କେଉଁଠି ହେଲେ ଲେଶମାତ୍ର ସୁଖ ନାହିଁ। ଯେଉଁ ବିଷୟ-ଭୋଗସମୂହକୁ ମନୁଷ୍ୟ ସୁଖ ବୋଲି ଭାବେ, ତାହା ମନୁଷ୍ୟକୁ ବାରମ୍ବାର ଜନ୍ମମୃତ୍ୟୁର ଚକ୍ରରେ ପକାଏ। ତେଣୁ ତାହା ବସ୍ତୁତଃ କେବଳ ଦୁଃଖରୂପ ହିଁ ଅଟେ। ଅତଏବ ଏହାକୁ ସୁଖରୂପ ବୋଲି ନ ଭାବି ଏହା ଯେଉଁ ଉଦ୍ଦେଶ୍ୟସିଦ୍ଧିପାଇଁ ମିଳିଛି, ସେହି ଉଦ୍ଦେଶ୍ୟକୁ ଶୀଘ୍ରାତିଶୀଘ୍ର ପ୍ରାପ୍ତ କରିନେବା ଉଚିତ; କାରଣ ଏହି ଶରୀର କ୍ଷଣଭଙ୍ଗୁର; କେଉଁ ମୁହୂର୍ତ୍ତରେ ଯେ ଏହାର ବିନାଶ ଘଟିବ, କିଏ କହିବ! ଅତଏବ ସାବଧାନ ହୋଇଯିବା ଉଚିତ। ଏହାକୁ ସୁଖରୂପ ମନେ କରି ବିଷୟରେ ବାନ୍ଧିହେବା ଉଚିତ ନୁହେଁ, କିମ୍ବା ଏ ଶରୀର ନିତ୍ୟ ବୋଲି ଭାବି ଭଜନରେ ବିଳମ୍ବ କରିବା ଉଚିତ ନୁହେଁ। ଯଦି ନିଜର ଅସାବଧାନତାଯୋଗୁଁ ଏହା ବୃଥା ନଷ୍ଟ ହୋଇଯିବ, ତା'ହେଲେ ପଶ୍ଚାତ୍ତାପ କରିବା ଛଡ଼ା ଆଉ କୌଣସି ଉପାୟ ହିଁ ରହିବ ନାହିଁ। ଶ୍ରୁତି କହନ୍ତି—

ଇହ ଚେଦବେଦୀଦଥ ସତ୍ୟମସ୍ତି
ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ।

(କେନୋପନିଷଦ ୨/୫)

'ଯଦି ଏହି ମନୁଷ୍ୟଜନ୍ମରେ ପରମାତ୍ମାଙ୍କୁ ଜାଣିଗଲ,

ତେବେ ତ ଠିକ୍; ଆଉ ଯଦି ତାହାଙ୍କୁ ଏହି ଜନ୍ମରେ ଜାଣିପାରିଲ ନାହିଁ, ତେବେ ବିରାଟ କ୍ଷତି।'

ଅତଏବ ଭଗବାନ୍ କହୁଛନ୍ତି, ''ଏପରି ଶରୀର ପାଇ ନିତ୍ୟ ନିରନ୍ତର ମୋର ଭଜନ ହିଁ କର। କ୍ଷଣେମାତ୍ର ବି ମୋତେ ଭୁଲ ନାହିଁ।''

**ପ୍ରଶ୍ନ—** ମାମ୍ ପଦ କାହାର ବାଚକ ତଥା ତାଙ୍କୁ ଭଜନ କରିବା କଣ ଓ ଭଜନ କରିବାକୁ ଆଜ୍ଞା ଦେବାର ହେତୁ କଣ ?

**ଉତ୍ତର—** **ମାମ୍** ପଦ ଏଠାରେ ସଗୁଣ ପରମେଶ୍ୱରଙ୍କ ବାଚକ ଓ ଆଗ ଶ୍ଳୋକରେ କୁହାଯାଇଥିବା ବିଧିରେ ଭଗବତ୍‌ପରାୟଣ ହୋଇଯିବା ଅର୍ଥାତ୍ ନିଜର ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀର ଆଦିକୁ ଭଗବାନଙ୍କୁ ସମର୍ପଣ କରିଦେବା ହିଁ ତାଙ୍କ ଭଜନ କରିବା। ଭଜନଦ୍ୱାରା ହିଁ ଭଗବତ୍‌ପ୍ରାପ୍ତି ଶୀଘ୍ର ହୁଏ ତଥା ଭଗବତ୍‌ପ୍ରାପ୍ତିରେ ହିଁ ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ସଫଳ ହୁଏ। ତେଣୁ ନିରନ୍ତର ଭଜନ କରିବାକୁ କୁହାଯାଇଛି।

**ସମ୍ବନ୍ଧ—** *ଗତ ଶ୍ଳୋକମାନଙ୍କରେ ଭଗବାନ୍ ନିଜ ଭଜନର ମହତ୍ତ୍ୱ ଦେଖାଇଲେ ଓ ଶେଷରେ ଅର୍ଜୁନଙ୍କୁ ଭଜନ କରିବାକୁ କହିଲେ। ଅତଏବ ବର୍ତ୍ତମାନ ଭଗବାନ୍ ନିଜ ଭଜନର ଅର୍ଥାତ୍ ଶରଣାଗତିର ପ୍ରକାର ବୁଝାଇବା ପରେ ଅଧ୍ୟାୟ ସମାପ୍ତ କରୁଛନ୍ତି—*

## ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ।
## ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍‌ପରାୟଣଃ ॥ ୩୪ ॥

**ଅନ୍ୱୟ—** **ମନ୍ମନାଃ, ଭବ** = ମୋଠାରେ ମନ ଲଗାଅ; **ମଦ୍‌ଭକ୍ତଃ** = ମୋର ଭକ୍ତ (ହୁଅ); **ମଦ୍‌ଯାଜୀ** = ମୋର ପୂଜକ (ହୁଅ); **ମାମ୍** = ମୋତେ; **ନମସ୍କୁରୁ** = ପ୍ରଣାମ କର; **ଏବମ୍** = ଏପରିଭାବରେ; **ଆତ୍ମାନମ୍** = ଆତ୍ମାକୁ (ମୋଠାରେ); **ଯୁକ୍ତ୍ୱା** = ଲଗାଇ; **ମତ୍‌ପରାୟଣଃ** = ମୋର ପରାୟଣ (ହେଲେ, ତୁମେ); **ମାମ୍** = ମୋତେ; **ଏବ** = ହିଁ; **ଏଷ୍ୟସି** = ପ୍ରାପ୍ତ ହେବ।

**ମୋଠାରେ ମନ ଲଗାଅ; ମୋର ଭକ୍ତ ହୁଅ; ମୋର ପୂଜନ କର; ମୋତେ ପ୍ରଣାମ କର। ଏପରିଭାବରେ ଆତ୍ମାକୁ ମୋଠାରେ ଲଗାଇ ମୋର ପରାୟଣ ହେଲେ ତୁମେ ମୋତେ ହିଁ ପ୍ରାପ୍ତ ହେବ॥ ୩୪ ॥**

**ପ୍ରଶ୍ନ—** ଭଗବାନଙ୍କ ଠାରେ ମନ ଲଗାଇବା କ'ଣ ?

**ଉତ୍ତର—** ଭଗବାନ୍ ହିଁ ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବଲୋକମହେଶ୍ୱର, ସର୍ବାତୀତ, ସର୍ବମୟ, ନିର୍ଗୁଣ-ସଗୁଣ, ନିରାକାର-ସାକାର, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ସମୁଦ୍ର ଓ ପରମ ପ୍ରେମସ୍ୱରୂପ ଅଟନ୍ତି—ଏହିପ୍ରକାରେ ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟର ଯଥାର୍ଥ ପରିଚୟ ହୋଇଯିବାଦ୍ୱାରା ଯେତେବେଳେ ସାଧକ ନିଶ୍ଚୟ କରନ୍ତି ଯେ, ଏକମାତ୍ର ଭଗବାନ୍ ହିଁ ତାଙ୍କର ପରମ ପ୍ରେମାସ୍ପଦ, ସେତେବେଳେ ଜଗତର କୌଣସି ବସ୍ତୁରେ ତାଙ୍କର ତିଳେମାତ୍ର ରମଣୀୟ ବୁଦ୍ଧି ରହେ ନାହିଁ। ଏପରି ଅବସ୍ଥାରେ ସଂସାରର କୌଣସି ଦୁର୍ଲଭରୁ ଦୁର୍ଲଭତର ଭୋଗରେ ମଧ୍ୟ ତାଙ୍କ ପାଇଁ କିଛି ବି ଆକର୍ଷଣ ରହେ ନାହିଁ। ଏହିପ୍ରକାର ସ୍ଥିତି ହୋଇଗଲେ, ସ୍ୱାଭାବିକଭାବରେ ଇହଲୋକ ଓ ପରଲୋକର ସମସ୍ତ ବସ୍ତୁରୁ ତାଙ୍କର ମନ ସର୍ବଥା ପ୍ରତ୍ୟାହୃତ ହୋଇଯାଏ ଏବଂ ସେ ଅନନ୍ୟ ତଥା ପରମପ୍ରେମ ଓ ଶ୍ରଦ୍ଧାର ସହିତ ନିରନ୍ତର କେବଳ ଭଗବାନଙ୍କର ଚିନ୍ତନ କରିବାଲାଗନ୍ତି। ଭଗବାନଙ୍କର ଏପରି ପ୍ରେମପୂର୍ଣ୍ଣ ଚିନ୍ତନ ହିଁ ତାଙ୍କ ପ୍ରାଣର ଆଧାର ହୁଏ; ସେ କ୍ଷଣେମାତ୍ର ମଧ୍ୟ ପ୍ରଭୁଙ୍କର ବିସ୍ମୃତି ସହିପାରନ୍ତି ନାହିଁ। ଯାହାର ସ୍ଥିତି ଏପରି ହୋଇଯାଏ, ତାଙ୍କୁ ଭଗବାନଙ୍କ ଠାରେ ମନ ଲଗାଇଥିବା ମନୁଷ୍ୟ ବୋଲି କହନ୍ତି।

**ପ୍ରଶ୍ନ—** ଭଗବାନଙ୍କର ଭକ୍ତ ହୋଇଯିବା କଣ ?

**ଉତ୍ତର—** କେବଳମାତ୍ର ଭଗବାନ୍ ହିଁ ପରମଗତି; ସେ ହିଁ ଏକମାତ୍ର ଭର୍ତ୍ତା ଓ ସ୍ୱାମୀ; ସେ ହିଁ ପରମ ଆଶ୍ରୟ ଓ ପରମ ଆତ୍ମୀୟ, ସଂରକ୍ଷକ—ଏପରି ମାନି ତାଙ୍କ ଉପରେ ନିର୍ଭରଶୀଳ ହୋଇଯିବା, ତାଙ୍କର ପ୍ରତ୍ୟେକ ବିଧାନରେ ସଦା ସନ୍ତୁଷ୍ଟ ରହିବା, ତାଙ୍କରି ଆଜ୍ଞାକୁ ଅନୁସରଣ କରିବା, ଭଗବାନଙ୍କର ନାମ, ରୂପ, ଗୁଣ, ପ୍ରଭାବ, ଲୀଳା ଆଦି ଶ୍ରବଣ, କୀର୍ତ୍ତନ, ସ୍ମରଣ ପ୍ରଭୃତି

କରିବାରେ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ମଜାଇରଖିବା ଓ ତାଙ୍କରି ପ୍ରୀତିପାଇଁ ପ୍ରତ୍ୟେକ କାର୍ଯ୍ୟ କରିବାକୁ ଭଗବାନଙ୍କର ଭକ୍ତ ହୋଇଯିବା କହନ୍ତି ।

**ପ୍ରଶ୍ନ –** ଭଗବାନଙ୍କୁ ପୂଜା କରିବା କଣ ?

**ଉତ୍ତର –** ଭଗବାନଙ୍କ ମନ୍ଦିରକୁ ଯାଇ ତାଙ୍କ ମଙ୍ଗଳମୟ ବିଗ୍ରହକୁ ଯଥାବିଧି ପୂଜା କରିବା; ସୁବିଧାନୁସାରେ ନିଜ ଘରେ ଇଷ୍ଟଦେବତାଙ୍କ ମୂର୍ତ୍ତି ସ୍ଥାପନ କରି ବିଧିପୂର୍ବକ ଶ୍ରଦ୍ଧା ଓ ପ୍ରେମର ସହିତ ତାଙ୍କୁ ପୂଜା କରିବା; ନିଜ ହୃଦୟରେ ବା ଅନ୍ତରିକ୍ଷରେ ନିଜ ଆଗରେ ଭଗବାନଙ୍କର ମାନସିକ ମୂର୍ତ୍ତି ସ୍ଥାପନ କରି ମାନସିକ ପୂଜା କରିବା; ତାଙ୍କର ବଚନ, ତାଙ୍କର ଲୀଳା-ଭୂମି ଓ ଚିତ୍ରପଟ ପ୍ରଭୃତିକୁ ଆଦର-ସତ୍କାର କରିବା; ତାଙ୍କର ସେବାକାର୍ଯ୍ୟରେ ନିଜକୁ ସଂଲଗ୍ନ ରଖିବା; ନିଷ୍କାମଭାବରେ ଯଜ୍ଞାଦି ଅନୁଷ୍ଠାନଦ୍ୱାରା ଭଗବାନଙ୍କୁ ପୂଜା କରିବା; ମାତା-ପିତା, ବ୍ରାହ୍ମଣ, ସାଧୁ-ସନ୍ଥ ଓ ଗୁରୁଜନମାନଙ୍କୁ ତଥା ଅନ୍ୟ ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କର ହିଁ ସ୍ୱରୂପ ବୋଲି ବୁଝି ବା ଅନ୍ତର୍ଯାମୀରୂପରେ ଭଗବାନ୍ ସମସ୍ତଙ୍କ ଠାରେ ବ୍ୟାପ୍ତ ବୋଲି ଜାଣି ସମସ୍ତଙ୍କର ଯଥାଯୋଗ୍ୟ ପୂଜା, ଆଦର-ସତ୍କାର କରିବା ଏବଂ ତନମନଧନଦ୍ୱାରା ସମସ୍ତଙ୍କୁ ଯଥାଯୋଗ୍ୟ ସୁଖ ଦେବାକୁ ତଥା ସମସ୍ତଙ୍କର ହିତସାଧନ କରିବାକୁ ଯଥାର୍ଥ ଚେଷ୍ଟା କରିବା — ଏସବୁ କରିବା ହିଁ ଭଗବାନଙ୍କୁ ପୂଜା କରିବା ।

**ପ୍ରଶ୍ନ –ମାମ୍** ପଦ କାହାର ବାଚକ ଓ ତାଙ୍କୁ ନମସ୍କାର କରିବା କଣ ?

**ଉତ୍ତର –** ଯେଉଁ ପରମେଶ୍ୱରଙ୍କର ସଗୁଣ, ନିର୍ଗୁଣ, ନିରାକାର, ସାକାର ଆଦି ଅନେକ ରୂପ ରହିଛି, ଯେ ବିଷ୍ଣୁରୂପରେ ସମସ୍ତଙ୍କୁ ପାଳନ କରନ୍ତି, ବ୍ରହ୍ମାରୂପରେ ସମସ୍ତଙ୍କୁ ରଚନା କରନ୍ତି ଓ ରୁଦ୍ରରୂପରେ ସମସ୍ତଙ୍କୁ ସଂହାର କରନ୍ତି, ଯେଉଁ ଭଗବାନ୍ ଯୁଗେ ଯୁଗେ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ଦିବ୍ୟରୂପରେ ଅବତୀର୍ଣ୍ଣ ହୋଇ ଜଗତରେ ବିଚିତ୍ର ଲୀଳାମାନ କରନ୍ତି, ଯେ ଭକ୍ତମାନଙ୍କର ଇଚ୍ଛାନୁସାରେ ବିଭିନ୍ନରୂପରେ ପ୍ରକଟ ହୋଇ ସେମାନଙ୍କୁ ଶରଣ ପ୍ରଦାନ କରନ୍ତି, **ମାମ୍** ପଦଟି ହେଉଛି ସମସ୍ତଜଗତର କର୍ତ୍ତା, ହର୍ତ୍ତା, ବିଧାତା, ସର୍ବାଧାର, ସର୍ବଶକ୍ତିମାନ୍, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବସୁହୃଦ୍, ସର୍ବଗୁଣସମ୍ପନ୍ନ, ପରମ ପୁରୁଷୋତ୍ତମ ସେହି ସମଗ୍ର ଭଗବାନଙ୍କର ବାଚକ । ତାଙ୍କର ସାକାର ବା ନିରାକାର ରୂପକୁ, ତାଙ୍କର ମୂର୍ତ୍ତିକୁ, ଚିତ୍ରପଟକୁ, ତାଙ୍କର ଚରଣକୁ, ଚରଣ-ପାଦୁକାକୁ ବା ଚରଣଚିହ୍ନକୁ, ତାଙ୍କର ତତ୍ତ୍ୱ, ରହସ୍ୟ, ପ୍ରେମ, ପ୍ରଭାବ ଓ ତାଙ୍କର ମଧୁର ଲୀଳାମାନଙ୍କୁ ବ୍ୟାଖ୍ୟାନ କରୁଥିବା ସଦ୍-ଶାସ୍ତ୍ରମାନଙ୍କୁ, ମାତା-ପିତା, ବ୍ରାହ୍ମଣ, ଗୁରୁ, ସାଧୁସନ୍ଥ ଓ ମହାପୁରୁଷମାନଙ୍କୁ ତଥା ବିଶ୍ୱର ସମସ୍ତ ପ୍ରାଣୀଙ୍କୁ ତାଙ୍କରି ସ୍ୱରୂପ ବୋଲି ବୁଝି, ବା ଅନ୍ତର୍ଯାମୀରୂପରେ ସେ ସବୁଥିରେ ବ୍ୟାପ୍ତ ହୋଇଛନ୍ତି ବୋଲି ଜାଣି ଶ୍ରଦ୍ଧାଭକ୍ତି ସହିତ ମନ, ବାଣୀ ଓ ଶରୀରଦ୍ୱାରା ଯଥାଯୋଗ୍ୟ ପ୍ରଣାମ କରିବା ହିଁ ଭଗବାନଙ୍କୁ ନମସ୍କାର କରିବା ।

**ପ୍ରଶ୍ନ – ଆତ୍ମାନମ୍** ପଦ କାହାର ବାଚକ ଓ ତାହାକୁ ଉପର୍ଯ୍ୟୁକ୍ତପ୍ରକାରେ ଭଗବାନଙ୍କ ସହିତ ଯୁକ୍ତ କରିବା କଣ ?

**ଉତ୍ତର –** ଏଠାରେ **ଆତ୍ମା** ପଦଟି ହେଉଛି ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରର ବାଚକ; ତଥା ଏସବୁକୁ ଉପର୍ଯ୍ୟୁକ୍ତପ୍ରକାରେ ଭଗବାନଙ୍କ ଠାରେ ଲଗାଇଦେବା ହିଁ ଆତ୍ମାକୁ ଭଗବାନଙ୍କ ସହିତ ଯୁକ୍ତ କରିବା ।

**ପ୍ରଶ୍ନ –** ଭଗବଦ୍‌ପରାୟଣ ହେବା କଣ ?

**ଉତ୍ତର –** ଏପରିଭାବରେ ସବୁକିଛି ଭଗବାନଙ୍କୁ ସମର୍ପଣ କରିଦେବା ଓ ଭଗବାନଙ୍କୁ ହିଁ ପରମପ୍ରାପ୍ୟ, ପରମଗତି, ପରମ ଆଶ୍ରୟ ଓ ନିଜର ସର୍ବସ୍ୱ ବୋଲି ବୁଝିଯିବା ହିଁ ଭଗବତ୍‌ପରାୟଣ ହେବା ।

**ପ୍ରଶ୍ନ –** ଏବ ପ୍ରୟୋଗର ଅଭିପ୍ରାୟ କଣ ତଥା ଭଗବାନଙ୍କୁ ପ୍ରାପ୍ତ ହେବା କଣ ?

**ଉତ୍ତର –** ଏବ ପଦ ଅବଧାରଣ ଅର୍ଥରେ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଉପରୋକ୍ତପ୍ରକାରେ ସାଧନା କରି ଭକ୍ତ ଭଗବାନଙ୍କୁ ହିଁ ପ୍ରାପ୍ତ ହେବ, ଏଥିରେ କିଛି ବି ସଂଶୟ ନାହିଁ। ତଥା ଏହି ମନୁଷ୍ୟଶରୀରରେ ହିଁ ଭଗବାନଙ୍କର ପ୍ରତ୍ୟକ୍ଷ ସାକ୍ଷାତ୍କାର ହୋଇଯିବା, ଭଗବାନଙ୍କୁ ତତ୍ତ୍ୱତଃ ଜାଣିପାରି ତାଙ୍କଠାରେ ପ୍ରବେଶ କରିଯିବା, ଅଥବା ଭଗବାନଙ୍କର ଦିବ୍ୟଲୋକକୁ ଯିବା, ତାଙ୍କ ନିକଟରେ ରହିବା ଅଥବା ତାଙ୍କ ଭଳି ରୂପ ପ୍ରାପ୍ତ ହେବା – ଏସବୁ ହିଁ ଭଗବାନଙ୍କୁ ପ୍ରାପ୍ତ ହେବା ।

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ରାଜବିଦ୍ୟାରାଜଗୁହ୍ୟଯୋଗୋ*
*ନାମ ନବମୋଽଧ୍ୟାୟଃ ॥ ୯ ॥*

— ୦ —

ଓଁ ଶ୍ରୀପରମାତ୍ମନେ ନମଃ

# ଦଶମୋଽଧ୍ୟାୟଃ

## ବିଭୂତି ଯୋଗ

**ଅଧ୍ୟାୟର ନାମ :** ଏହି ଅଧ୍ୟାୟରେ ମୁଖ୍ୟତଃ ଭଗବାନଙ୍କର ବିଭୂତିଗୁଡ଼ିକ ବର୍ଣ୍ଣିତ ହୋଇଛି । ଅତଏବ ଏହି ଅଧ୍ୟାୟର ନାମ 'ବିଭୂତିଯୋଗ' ରଖାଯାଇଛି ।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଭଗବାନ୍ ପୁନର୍ବାର ପରମ ଶ୍ରେଷ୍ଠ ଉପଦେଶ ପ୍ରଦାନ କରିବାକୁ ପ୍ରତିଜ୍ଞା କରି ତାହା ଶୁଣିବାକୁ ଅର୍ଜୁନଙ୍କୁ ଅନୁରୋଧ କରିଛନ୍ତି । ଦ୍ୱିତୀୟ ଓ ତୃତୀୟ ଶ୍ଳୋକରେ ଭଗବାନ୍ 'ଯୋଗ' ଶବ୍ଦବାଚ୍ୟ ନିଜ ପ୍ରଭାବର ବର୍ଣ୍ଣନା କରିସାରି ତାହା ଜାଣିବାର ଫଳ କହିଛନ୍ତି । ଚତୁର୍ଥଠାରୁ ଷଷ୍ଠଯାଏ ବିଭୂତିମାନଙ୍କର ସଂକ୍ଷିପ୍ତ ବର୍ଣ୍ଣନା କରିଛନ୍ତି । ସପ୍ତମରେ ନିଜର ବିଭୂତି ଓ ଯୋଗକୁ ତତ୍ତ୍ୱତଃ ଜାଣିବାର ଫଳ କହିଛନ୍ତି । ଅଷ୍ଟମ ଓ ନବମରେ ନିଜର ବୁଦ୍ଧିମାନ୍ ଅନନ୍ୟପ୍ରେମୀ ଭକ୍ତମାନଙ୍କର ଭଜନପ୍ରଣାଳୀ ବୁଝାଇଦେଇଛନ୍ତି । ଦଶମ ଓ ଏକାଦଶରେ ସେହି ଭଜନର ଫଳ ବର୍ଣ୍ଣନା କରିଛନ୍ତି । ତା'ପରେ ବାରଠାରୁ ପନ୍ଦରପର୍ଯ୍ୟନ୍ତ ଅର୍ଜୁନ ଭଗବାନଙ୍କର ସ୍ତୁତି କରିଛନ୍ତି ଓ ଷୋହଳଠାରୁ ଅଠରପର୍ଯ୍ୟନ୍ତ ବିଭୂତିମାନଙ୍କର ଓ ଯୋଗଶକ୍ତିର ବର୍ଣ୍ଣନା ପୁଣି ଥରେ ବିସ୍ତାରପୂର୍ବକ କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି । ଉଣେଇଶରେ ଭଗବାନ୍ ତାଙ୍କ ବିଭୂତିମାନଙ୍କର ବିସ୍ତାର ଅନନ୍ତ ବୋଲି କହି ମୁଖ୍ୟ ମୁଖ୍ୟ ବିଭୂତିମାନଙ୍କର ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଛନ୍ତି ଓ କୋଡ଼ିଏଠାରୁ ଅଣଚାଳିଶଯାଏ ସେସବୁ ବର୍ଣ୍ଣନା କରିଛନ୍ତି । ଚାଳିଶରେ ନିଜ ଦିବ୍ୟ ବିଭୂତିମାନଙ୍କର ବିସ୍ତାର ଅନନ୍ତ ବୋଲି କହି ଏହି ପ୍ରକରଣ ସମାପ୍ତ କରିଛନ୍ତି । ତା'ପରେ ଏକଚାଳିଶ ଓ ବୟାଳିଶ ଶ୍ଳୋକରେ 'ଯୋଗ' ଶବ୍ଦବାଚ୍ୟ ତାଙ୍କ ପ୍ରଭାବ ବର୍ଣ୍ଣନା କରି ଅଧ୍ୟାୟର ଉପସଂହାର କରିଛନ୍ତି ।

**ସମ୍ବନ୍ଧ—** ସପ୍ତମ ଅଧ୍ୟାୟଠାରୁ ନବମ ଅଧ୍ୟାୟପର୍ଯ୍ୟନ୍ତ ବିଜ୍ଞାନସହିତ ଜ୍ଞାନର ଯେଉଁ ବର୍ଣ୍ଣନା କରାଗଲା, ତାହା ଅତ୍ୟନ୍ତ ଗମ୍ଭୀର ହୋଇଯାଇଥିବାରୁ ବର୍ତ୍ତମାନ ପୁଣି ଥରେ ସେହି ବିଷୟଟି ଅନ୍ୟଭାବରେ ଭଲରୂପେ ବୁଝାଇଦେବାକୁ ଦଶମ ଅଧ୍ୟାୟ ଆରମ୍ଭ କରାଯାଇଛି । ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଭଗବାନ୍ ପୂର୍ବୋକ୍ତ ବିଷୟ ହିଁ ପୁଣି ଥରେ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି—

ଶ୍ରୀଭଗବାନୁବାଚ

**ଭୂୟ ଏବ ମହାବାହୋ ଶୃଣୁ ମେ ପରମଂ ବଚଃ ।**
**ଯତ୍ତେଽହଂ ପ୍ରୀୟମାଣାୟ ବକ୍ଷ୍ୟାମି ହିତକାମ୍ୟୟା ॥ ୧ ॥**

ଅନ୍ୱୟ— ମହାବାହୋ = ହେ ମହାବାହୋ !; ମେ = ମୋର; ପରମମ୍ = ପରମ (ରହସ୍ୟ ଓ ପ୍ରଭାବଯୁକ୍ତ); ବଚଃ = ବଚନକୁ; ଭୂୟଃ, ଏବ = ପୁଣି ଥରେ; ଶୃଣୁ = ଶ୍ରବଣ କର; ଯତ୍ = ଯାହା (କି); ଅହମ୍ = ମୁଁ; ତେ = ତୁମ (ପରି); ପ୍ରୀୟମାଣାୟ = ଅତିଶୟ ପ୍ରେମୀ (ପୁରୁଷଙ୍କୁ); ହିତକାମ୍ୟୟା = (ତୁମର) ହିତ କାମନା କରି; ବକ୍ଷ୍ୟାମି = କହିବି ।

**ଶ୍ରୀଭଗବାନ୍ କହିଲେ— ହେ ମହାବାହୋ ! ମୋର ପରମ ରହସ୍ୟ ଓ ପ୍ରଭାବଯୁକ୍ତ ବଚନ ପୁଣି ଥରେ ଶ୍ରବଣ କର । ତୁମେ ମୋ'ଠାରେ ଅତିଶୟ ପ୍ରେମ ରଖୁଛ; ତୁମର ହିତ କାମନା କରି ମୁଁ ଏହା କହିବି ॥ ୧ ॥**

**ପ୍ରଶ୍ନ –** ଭୂୟଃ ଓ ଏବ ପଦର ଅଭିପ୍ରାୟ କଣ ?

**ଉତ୍ତର –** **ଭୂୟଃ** ପଦର ଅର୍ଥ **ପୁନଃ** ବା ପୁଣି ଓ ଏବ ପଦ ଏଠାରେ **ଅପି** ଅର୍ଥରେ ଆସିଛି। ଏ ଦୁଇଟି ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ସପ୍ତମରୁ ନବମ ଅଧ୍ୟାୟଯାଏ ସେ ଯେଉଁ ବିଷୟ ପ୍ରତିପାଦନ କଲେ, ସେହି ବିଷୟଟି ବର୍ତ୍ତମାନ ପ୍ରକାରାନ୍ତରେ ଆଉ ଥରେ କହୁଛନ୍ତି।

**ପ୍ରଶ୍ନ –** 'ପରମ ବଚନ'ର ଭାବ କଣ ? ଓ ତାହା ପୁଣି ଥରେ ଶୁଣିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ଉପଦେଶ ପରମ ପୁରୁଷ ପରମାତ୍ମାଙ୍କ ପରମ ଗୋପନୀୟ ଗୁଣ, ପ୍ରଭାବ ଓ ତତ୍ତ୍ୱର ରହସ୍ୟ ଖୋଲିଦିଏ ଓ ଯାହାଦ୍ୱାରା ସେହି ପରମେଶ୍ୱରଙ୍କ ପ୍ରାପ୍ତି ହୁଏ, ତାହାକୁ 'ପରମ ବଚନ' କହନ୍ତି। ଅତଏବ ଏହି ଅଧ୍ୟାୟରେ ଭଗବାନ୍ ତାଙ୍କର ଗୁଣ, ପ୍ରଭାବ ଓ ତତ୍ତ୍ୱର ରହସ୍ୟ ବୁଝାଇବାପାଇଁ ଯେଉଁ ଉପଦେଶ ଦେଇଛନ୍ତି, ତାହା ହିଁ 'ପରମ ବଚନ' ଓ ତାହା ପୁଣି ଥରେ ଶୁଣିବାକୁ କହି ଭଗବାନ୍ ଦେଖାଇଦେଇଛନ୍ତି ଯେ, ତାଙ୍କର ଭକ୍ତିର ତତ୍ତ୍ୱ ଅତ୍ୟନ୍ତ ଗହନ। ତେଣୁ ତାହାକୁ ବାରମ୍ବାର ଶୁଣିବା ପରମ ଆବଶ୍ୟକ ମନେ କରି, ବିଶେଷ ସାବଧାନ ହୋଇ ଶ୍ରଦ୍ଧା ଓ ପ୍ରେମପୂର୍ବକ ଶୁଣିବା ଉଚିତ।

**ପ୍ରଶ୍ନ –** **ପ୍ରୀୟମାଣାୟ** ବିଶେଷଣ ଓ **ହିତକାମ୍ୟୟା** ପଦ ପ୍ରୟୋଗ କରି ଭଗବାନ୍ କି ଭାବ ଦେଖାଇଛନ୍ତି ?

**ଉତ୍ତର –** **ପ୍ରୀୟମାଣାୟ** ବିଶେଷଣ ପ୍ରୟୋଗ କରି ଭଗବାନ୍ କହୁଛନ୍ତି, ''ହେ ଅର୍ଜୁନ ! ତୁମର ମୋଠାରେ ଅତିଶୟ ପ୍ରେମ ରହିଛି। ମୋ କଥାକୁ ତୁମେ ଅମୃତତୁଲ୍ୟ ମନେ କରି ଅତ୍ୟନ୍ତ ଶ୍ରଦ୍ଧା ଓ ପ୍ରେମସହ ଶୁଣୁଛ। ତେଣୁ ମୁଁ କୌଣସିପ୍ରକାର ସଂକୋଚ ନ କରି, ତୁମେ ପଚାରୁ ନ ଥିଲେ ମଧ୍ୟ ତୁମ ଆଗରେ ନିଜର ପରମ ଗୋପନୀୟ ଗୁଣ, ପ୍ରଭାବ ଓ ତତ୍ତ୍ୱର ରହସ୍ୟ ବାରମ୍ବାର ଖୋଲି କହୁଛି। ଏହା ତୁମ ପ୍ରେମର ହିଁ ଫଳ।'' **ହିତକାମ୍ୟୟା** ପଦ ପ୍ରୟୋଗ କରି କହିଛନ୍ତି, ''ତୁମରି ପ୍ରେମହେତୁ ମୋର ହୃଦୟ ତୁମରି ହିତକାମନାରେ ପୂର୍ଣ୍ଣ। ତେଣୁ ମୁଁ ଯାହା କିଛି ବି କହୁଛି, ତାହା ସ୍ୱଭାବତଃ କେବଳ ତୁମରି ହିତକାମନାରେ ହିଁ ପୂର୍ଣ୍ଣ ହୋଇ ରହିଛି।''

*ସମ୍ବନ୍ଧ – ପ୍ରଥମ ଶ୍ଲୋକରେ ଭଗବାନ୍ ଯେଉଁ ବିଷୟ କହିବାକୁ ପ୍ରତିଜ୍ଞା କରିଛନ୍ତି, ତା'ର ବର୍ଣ୍ଣନା ଆରମ୍ଭ କରି ବର୍ତ୍ତମାନ ପରବର୍ତ୍ତୀ ପାଞ୍ଚଟି ଶ୍ଲୋକରେ ଯୋଗଶକ୍ତିବାଚ୍ୟ ପ୍ରଭାବର ଓ ନିଜ ବିଭୂତିର ସଂକ୍ଷିପ୍ତ ବର୍ଣ୍ଣନା କରୁଛନ୍ତି–*

## ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।
## ଅହମାଦିର୍ହି ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ।। ୨ ।।

**ଅନ୍ୱୟ –** **ମେ** = ମୋର; **ପ୍ରଭବମ୍** = ଉତ୍ପତ୍ତିକୁ ଅର୍ଥାତ୍ ଲୀଳାରେ ପ୍ରକଟ ହେଉଥିବା ରହସ୍ୟକୁ; **ନ, ସୁରଗଣାଃ, ବିଦୁଃ** = ଦେବତାମାନେ ଜାଣନ୍ତି ନାହିଁ; **ନ, ମହର୍ଷୟଃ (ବିଦୁଃ)** = (କି) ମହର୍ଷିମାନେ ଜାଣନ୍ତି ନାହିଁ; **ହି** = କାରଣ; **ଅହମ୍** = ମୁଁ; **ସର୍ବଶଃ** = ସବୁପ୍ରକାରେ; **ଦେବାନାମ୍** = ଦେବତାମାନଙ୍କର; **ଚ** = ତଥା; **ମହର୍ଷୀଣାମ୍** = ମହର୍ଷିମାନଙ୍କର; **ଆଦିଃ** = ଆଦିକାରଣ।

**ମୋର ଉତ୍ପତ୍ତି ଅର୍ଥାତ୍ ଲୀଳାରେ ପ୍ରକଟ ହେଉଥିବା ରହସ୍ୟ ଦେବତାମାନେ ଜାଣନ୍ତି ନାହିଁ, କି ମହର୍ଷିମାନେ ଜାଣନ୍ତି ନାହିଁ; କାରଣ ମୁଁ ହେଉଛି ସବୁଦୃଷ୍ଟିରୁ ଦେବତାମାନଙ୍କର ତଥା ମହର୍ଷିମାନଙ୍କର ଆଦିକାରଣ।। ୨ ।।**

**ପ୍ରଶ୍ନ –** ଏଠାରେ **ପ୍ରଭବମ୍** ପଦର ଅର୍ଥ କଣ ଏବଂ 'ଦେବତାମାନେ ଓ ମହର୍ଷିମାନେ ମଧ୍ୟ ତାହା ଜାଣନ୍ତି ନାହିଁ' କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ନିଜର ଅତୁଳନୀୟ ପ୍ରଭାବରେ ଜଗତର ସୃଷ୍ଟି, ପାଳନ ଓ ସଂହାର କରିବାକୁ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରରୂପରେ ପ୍ରକଟ ହୁଅନ୍ତି; ଦୁଷ୍ଟମାନଙ୍କର ବିନାଶ, ଭକ୍ତମାନଙ୍କର ପରିତ୍ରାଣ, ଧର୍ମସଂସ୍ଥାପନ ତଥା ନାନାପ୍ରକାର ସୁନ୍ଦର ଚିତ୍ର-ବିଚିତ୍ର ଲୀଳାଦ୍ୱାରା ଜଗତର ପ୍ରାଣୀମାନଙ୍କର ଉଦ୍ଧାରପାଇଁ ଶ୍ରୀରାମ, ଶ୍ରୀକୃଷ୍ଣ, ଶ୍ରୀମତ୍ସ୍ୟ, ଶ୍ରୀକଚ୍ଛପ ପ୍ରଭୃତି ଦିବ୍ୟ ଅବତାରରୂପେ ପ୍ରକଟ ହୁଅନ୍ତି;

ଭକ୍ତମାନଙ୍କୁ ଦର୍ଶନ ଦେଇ ସେମାନଙ୍କୁ କୃତାର୍ଥ କରିବାପାଇଁ ସେମାନଙ୍କର ଇଚ୍ଛାନୁଯାୟୀ ନାନାରୂପରେ ତଥା ଲୀଳାବୈଚିତ୍ର୍ୟର ଅନନ୍ତ ଧାରା ପ୍ରବାହିତ କରିବାପାଇଁ ସମସ୍ତ ବିଶ୍ୱରୂପରେ ବି ପ୍ରକଟ ହୁଅନ୍ତି। ଏଠାରେ **ପ୍ରଭବମ୍** ପଦଟି ସେହି ପ୍ରକଟ ହେବାର ବାଚକ। 'ଦେବତାମାନେ ଓ ମହର୍ଷିମାନେ ଜାଣନ୍ତି ନାହିଁ'— ଏହା କହି ଭଗବାନ୍ ଦେଖାଇଛନ୍ତି, "ମୁଁ କେଉଁ କେଉଁ ସମୟରେ, କେଉଁ କେଉଁ ରୂପରେ, କି କି ଉଦ୍ଦେଶ୍ୟରେ, କିପରି ପ୍ରକଟ ହୁଏ, ତାହାର ରହସ୍ୟ ସାଧାରଣ ମନୁଷ୍ୟଙ୍କ କଥା କ'ଣ କହିବା, ଯେଉଁ ଦେବତା ଓ ମହର୍ଷିମାନେ ଅତୀନ୍ଦ୍ରିୟ ବିଷୟମାନଙ୍କୁ ବୁଝିବାକୁ ସମର୍ଥ, ସେମାନେ ମଧ୍ୟ ଯଥାର୍ଥରୂପେ ଜାଣନ୍ତି ନାହିଁ।"

**ପ୍ରଶ୍ନ—** ଏଠାରେ **ସୁରଗଣାଃ** ପଦ କେଉଁମାନଙ୍କର ବାଚକ ଓ **ମହର୍ଷୟଃ** ପଦ କେଉଁ କେଉଁ ମହର୍ଷିଙ୍କୁ ସୂଚିତ କରେ ?

**ଉତ୍ତର—** ଏଠାରେ **ସୁରଗଣାଃ** ପଦ ଏକାଦଶ ରୁଦ୍ର, ଅଷ୍ଟବସୁ, ଦ୍ୱାଦଶ ଆଦିତ୍ୟ, ପ୍ରଜାପତି, ଅଣଚାଶ ମରୁଦ୍‌ଗଣ, ଅଶ୍ୱିନୀକୁମାର ଓ ଇନ୍ଦ୍ର ଆଦି ଯେତେ ଶାସ୍ତ୍ରୀୟ ଦେବତା ଅଛନ୍ତି, ସେହି ସମସ୍ତଙ୍କର ବାଚକ। **ମହର୍ଷୟଃ** ପଦର ଅର୍ଥ ଏଠାରେ ସପ୍ତମହର୍ଷି ବୋଲି ବୁଝିବା ଉଚିତ।

**ପ୍ରଶ୍ନ—** 'ଦେବତାମାନଙ୍କର ଓ ମହର୍ଷିମାନଙ୍କର ମୁଁ ସବୁପ୍ରକାରେ ଆଦି ଅଟେ'— ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର—** ଏହି କଥନଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ଯେଉଁ ଦେବତା ଓ ମହର୍ଷିମାନଙ୍କ ଠାରୁ ଏହି ସମସ୍ତ ଜଗତର ଉତ୍ପତ୍ତି ହୋଇଛି, ସେସମସ୍ତେ ତାଙ୍କରି ଠାରୁ ହିଁ ଉତ୍ପନ୍ନ ହୋଇଛନ୍ତି। ଭଗବାନ୍ ନିଜେ ହେଉଛନ୍ତି ସେମାନଙ୍କ ନିମିତ୍ତ ଓ ଉପାଦାନ କାରଣ ଏବଂ ସେମାନଙ୍କ ଠାରେ ଯେଉଁ ବିଦ୍ୟା, ବୁଦ୍ଧି, ଶକ୍ତି, ତେଜ ଆଦି ପ୍ରଭାବ ରହିଛି, ସେସବୁ ଭଗବାନଙ୍କ ଠାରୁ ହିଁ ସେମାନଙ୍କୁ ମିଳିଛି।

## ଯୋ ମାମଜମନାଦିଂ ଚ ବେତ୍ତି ଲୋକମହେଶ୍ୱରମ୍।
## ଅସଂମୂଢଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ॥ ୩ ॥

**ଅନ୍ୱୟ—** ଯଃ = ଯେ; ମାମ୍ = ମୋତେ; **ଅଜମ୍** = ଅଜନ୍ମା ଅର୍ଥାତ୍ ପ୍ରକୃତରେ ଜନ୍ମରହିତ; **ଅନାଦିମ୍** = ଅନାଦି; ଚ = ଓ; **ଲୋକମହେଶ୍ୱରମ୍** = ଲୋକମାନଙ୍କର ମହାନ୍ ଈଶ୍ୱର; **ବେତ୍ତି** = (ବୋଲି) ତତ୍ତ୍ୱତଃ ଜାଣେ; **ମର୍ତ୍ତ୍ୟେଷୁ** = ମନୁଷ୍ୟମାନଙ୍କ ମଧ୍ୟରେ; **ସଃ** = ସେହି; **ଅସଂମୂଢଃ** = ଜ୍ଞାନୀପୁରୁଷ; **ସର୍ବପାପୈଃ** = ସକଳ ପାପରୁ; **ପ୍ରମୁଚ୍ୟତେ** = ମୁକ୍ତ ହୋଇଯାଏ।

**ଯେ ମୋତେ ଅଜନ୍ମା ଅର୍ଥାତ୍ ପ୍ରକୃତରେ ଜନ୍ମରହିତ, ଅନାଦି ଓ ଲୋକମହେଶ୍ୱର ବୋଲି ତତ୍ତ୍ୱତଃ ଜାଣନ୍ତି, ମନୁଷ୍ୟମାନଙ୍କ ମଧ୍ୟରେ ଥିବା ସେହି ଜ୍ଞାନୀପୁରୁଷ ସକଳ ପାପରୁ ମୁକ୍ତ ହୋଇଯାଆନ୍ତି॥ ୩ ॥**

**ପ୍ରଶ୍ନ—** ଭଗବାନଙ୍କୁ ଅଜନ୍ମା, ଅନାଦି ଓ ଲୋକମହେଶ୍ୱର ବୋଲି ଜାଣିବା କଣ ?

**ଉତ୍ତର—** ଭଗବାନ୍ ତାଙ୍କର ଯୋଗମାୟାବଳରେ ନାନାରୂପରେ ପ୍ରକଟ ହେଉଥିଲେ ମଧ୍ୟ ଅଜନ୍ମା ଅଟନ୍ତି (୪/୬); ଅନ୍ୟ ଜୀବମାନଙ୍କ ପରି ତାଙ୍କର ଜନ୍ମ ହୁଏ ନାହିଁ। ସେ ନିଜ ଭକ୍ତମାନଙ୍କୁ ସୁଖ ଦେବାକୁ ଓ ଧର୍ମସ୍ଥାପନ କରିବାକୁ କେବଳ ଜନ୍ମଧାରଣର ଲୀଳା କରନ୍ତି। ଶ୍ରଦ୍ଧା ଓ ବିଶ୍ୱାସର ସହିତ ଏହା ଠିକ୍ ଠିକ୍ ବୁଝିବା ତଥା ଏଥିରେ ତିଳେମାତ୍ର ସନ୍ଦେହ ନ କରିବା ହିଁ ଭଗବାନଙ୍କୁ ଅଜନ୍ମା ବୋଲି ଜାଣିବା। ଭଗବାନ୍ ହିଁ ସମସ୍ତଙ୍କର ଆଦି ଅର୍ଥାତ୍ ମହାକାରଣ; ତାଙ୍କର ଆଦି ହୋଇ କେହି ନାହିଁ; ସେ ନିତ୍ୟ ତଥା ସଦା ଅଛନ୍ତି; ଅନ୍ୟ ପଦାର୍ଥପରି କୌଣସି କାଳବିଶେଷରୁ ତାଙ୍କର ଆରମ୍ଭ ହୋଇ ନାହିଁ— ଶ୍ରଦ୍ଧା ଓ ବିଶ୍ୱାସର ସହିତ ଏହା ଠିକ୍ ଠିକ୍ ବୁଝିବାର ଅର୍ଥ ଭଗବାନଙ୍କୁ ଅନାଦି ବୋଲି ବୁଝିବା ଏବଂ ଈଶ୍ୱରକୋଟିରେ ଗଣା ହେଉଥିବା ଇନ୍ଦ୍ର, ବରୁଣ, ଯମ, ପ୍ରଜାପତି ଆଦି ଯେତେ ଲୋକପାଳ ଅଛନ୍ତି, ଭଗବାନ୍ ହେଉଛନ୍ତି ସେହି ସମସ୍ତଙ୍କର ମହାନ୍ ଈଶ୍ୱର; ସେ ହିଁ ସମସ୍ତଙ୍କର ନିୟନ୍ତା, ପ୍ରେରକ, କର୍ତ୍ତା, ହର୍ତ୍ତା, ସବୁପ୍ରକାରେ ସମସ୍ତଙ୍କର ଭରଣପୋଷଣ ତଥା ସଂରକ୍ଷଣକାରୀ

ସର୍ବଶକ୍ତିମାନ୍ ପରମେଶ୍ୱର ଅଟନ୍ତି— ଶ୍ରଦ୍ଧାପୂର୍ବକ ସଂଶୟରହିତ ହୋଇ ଏହା ଠିକ୍ ଠିକ୍ ବୁଝିଯିବାର ଅର୍ଥ ହିଁ ଭଗବାନଙ୍କୁ ଲୋକମହେଶ୍ୱର (ଲୋକମାନଙ୍କର ମହାନ୍ ଈଶ୍ୱର) ବୋଲି ଜାଣିବା।

**ପ୍ରଶ୍ନ —** ଏପରି ପୁରୁଷଙ୍କୁ 'ମନୁଷ୍ୟମାନଙ୍କ ମଧ୍ୟରେ ଅସମ୍ମୂଢ଼ କହି 'ସେ ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି' — ବୋଲି ଯାହା କୁହାଗଲା, ତାହାର ଅଭିପ୍ରାୟ କଣ ?

**ଉତ୍ତର —** ଭଗବାନଙ୍କୁ ଉପରୋକ୍ତପ୍ରକାରେ ଅଜନ୍ମା, ଅନାଦି ଓ ଲୋକମହେଶ୍ୱର ବୋଲି ଜାଣିବାର ଫଳ ଦେଖାଇବାକୁ ଏପରି କୁହାଯାଇଛି। ଅଭିପ୍ରାୟ ଏହି ଯେ, ଜଗତର ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁ ପୁରୁଷ ଉପରୋକ୍ତପ୍ରକାରେ ଭଗବାନଙ୍କର ପ୍ରଭାବକୁ ଠିକ୍ ଠିକ୍ ଜାଣିପାରନ୍ତି, ସେ ହିଁ ବାସ୍ତବରେ ଭଗବାନଙ୍କୁ ଜାଣନ୍ତି ଓ ଯେ ଭଗବାନଙ୍କୁ ଜାଣନ୍ତି, ସେ ହେଉଛନ୍ତି ଅସମ୍ମୂଢ଼। ଆଉ ଯେତେ ରହିଲେ, ସେ ସମସ୍ତେ ତ ସମ୍ମୂଢ଼। ଯେ ଭଗବାନଙ୍କର ତତ୍ତ୍ୱକୁ ଭଲଭାବରେ ବୁଝିପାରନ୍ତି, ସେ ସ୍ୱଭାବତଃ ତାଙ୍କ ମନୁଷ୍ୟଜୀବନର ଅମୂଲ୍ୟ ସମୟକୁ ସବୁପ୍ରକାରେ ନିରନ୍ତର ଭଗବାନଙ୍କ ଭଜନରେ ହିଁ ଲଗାନ୍ତି (୧୫/୧୯); ବିଷୟୀ ଲୋକମାନଙ୍କ ପରି ଭୋଗକୁ ସୁଖର ହେତୁ ବୋଲି ଭାବି ସେଥିରେ ଲିପ୍ତ ରହନ୍ତି ନାହିଁ। ତେଣୁ ସେ ଏହି ଜନ୍ମର ଓ ପୂର୍ବଜନ୍ମମାନଙ୍କର ସକଳପ୍ରକାର ପାପରୁ ସର୍ବଥା ମୁକ୍ତ ହୋଇ ସହଜରେ ପରମାତ୍ମାଙ୍କୁ ପାଇଯାଆନ୍ତି।

**ବୁଦ୍ଧିର୍ଜ୍ଞାନମସଂମୋହଃ କ୍ଷମା ସତ୍ୟଂ ଦମଃ ଶମଃ।**
**ସୁଖଂ ଦୁଃଖଂ ଭବୋଽଭାବୋ ଭୟଂ ଚାଭୟମେବ ଚ ॥ ୪ ॥**
**ଅହିଂସା ସମତା ତୁଷ୍ଟିସ୍ତପୋ ଦାନଂ ଯଶୋଽଯଶଃ।**
**ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍‌ବିଧାଃ ॥ ୫ ॥**

**ଅନ୍ୱୟ —** ବୁଦ୍ଧିଃ = ନିଶ୍ଚୟ କରିବା ଶକ୍ତି; ଜ୍ଞାନମ୍ = ଯଥାର୍ଥ ଜ୍ଞାନ; ଅସମ୍ମୋହଃ = ଅସମ୍ମୂଢ଼ତା; କ୍ଷମା = କ୍ଷମା; ସତ୍ୟମ୍ = ସତ୍ୟ; ଦମଃ = ଇନ୍ଦ୍ରିୟସଂଯମ; ଶମଃ = ମନୋନିଗ୍ରହ; ଏବ = ତଥା; ସୁଖମ୍-ଦୁଃଖମ୍ = ସୁଖ-ଦୁଃଖ; ଭବଃ, ଅଭାବଃ = ଉତ୍ପତ୍ତି-ପ୍ରଳୟ; ଚ = ଓ; ଭୟମ୍, ଅଭୟମ୍ = ଭୟ-ଅଭୟ; ଚ = ଏବଂ; ଅହିଂସା = ଅହିଂସା; ସମତା = ସମତା; ତୁଷ୍ଟିଃ = ସନ୍ତୋଷ; ତପଃ = ତପ; ଦାନମ୍ = ଦାନ; ଯଶଃ = କୀର୍ତ୍ତି; ଅଯଶଃ = ଅପକୀର୍ତ୍ତି; ଭୂତାନାମ୍ = ପ୍ରାଣୀମାନଙ୍କର; (ଏବମ୍) = ଏହିପରି; ପୃଥଗ୍‌ବିଧାଃ = ନାନାପ୍ରକାର; ଭାବାଃ = ଭାବମାନ (ରହିଛି, ସେଗୁଡ଼ିକ); ମତ୍ତଃ = ମୋଠାରୁ; ଏବ = ହିଁ; ଭବନ୍ତି = ଉତ୍ପନ୍ନ ହୋଇଥାନ୍ତି।

**ନିଶ୍ଚୟ କରିବା ଶକ୍ତି, ଯଥାର୍ଥ ଜ୍ଞାନ, ଅସମ୍ମୂଢ଼ତା, କ୍ଷମା, ସତ୍ୟ, ଇନ୍ଦ୍ରିୟସଂଯମ, ମନୋନିଗ୍ରହ ତଥା ସୁଖ-ଦୁଃଖ, ଉତ୍ପତ୍ତି-ପ୍ରଳୟ ଓ ଭୟ-ଅଭୟ ଏବଂ ଅହିଂସା, ସମତା, ସନ୍ତୋଷ, ତପ, ଦାନ, କୀର୍ତ୍ତି ଓ ଅପକୀର୍ତ୍ତି— ପ୍ରାଣୀମାନଙ୍କର ଏହିପରି ଯେଉଁ ନାନାପ୍ରକାର ଭାବ ରହିଛି, ସେଗୁଡ଼ିକ ମୋଠାରୁ ହିଁ ଉତ୍ପନ୍ନ ହୋଇଥାନ୍ତି॥ ୪-୫ ॥**

**ପ୍ରଶ୍ନ — ବୁଦ୍ଧି, ଜ୍ଞାନ** ଓ **ଅସମ୍ମୋହ** — ଏ ତିନୋଟି ଶବ୍ଦ କେଉଁ କେଉଁ ଭାବର ବାଚକ ?

**ଉତ୍ତର —** କର୍ତ୍ତବ୍ୟ-ଅକର୍ତ୍ତବ୍ୟ, ଗ୍ରାହ୍ୟ-ଅଗ୍ରାହ୍ୟ ଓ ଭଲ-ମନ୍ଦ ପ୍ରଭୃତି ନିର୍ଣ୍ଣୟ କରି ନିଶ୍ଚୟ କରିବାର ବୃତ୍ତିକୁ **ବୁଦ୍ଧି** କହନ୍ତି।

ଯେକୌଣସି ପଦାର୍ଥକୁ ଠିକ୍‌ଭାବରେ ଜାଣିବା ହିଁ **ଜ୍ଞାନ।** ଏଠାରେ **ଜ୍ଞାନ** ଶବ୍ଦ ହେଉଛି ସାଧାରଣ ଜ୍ଞାନଠାରୁ ଆରମ୍ଭ କରି ଭଗବାନଙ୍କ ସ୍ୱରୂପଜ୍ଞାନଯାଏ ସମସ୍ତପ୍ରକାର ଜ୍ଞାନର ବାଚକ।

ଭୋଗାସକ୍ତ ମନୁଷ୍ୟମାନେ ଯେଉଁ ସାଂସାରିକ ଭୋଗମାନଙ୍କୁ ନିତ୍ୟ ଓ ସୁଖପ୍ରଦ ବୋଲି ମନେ କରନ୍ତି, ସେହିସବୁ ସାଂସାରିକ ଭୋଗକୁ ଅନିତ୍ୟ, କ୍ଷଣିକ ଓ ଦୁଃଖର ମୂଳ ବୋଲି ବୁଝି ସେଥିରେ ମୋହିତ ନ ହେବା ହିଁ **ଅସମ୍ମୋହ।**

**ପ୍ରଶ୍ନ — କ୍ଷମା** ଓ **ସତ୍ୟ** କାହାର ବାଚକ ?

**ଉତ୍ତର —** ମନ ଚାହିଁବା, ମନକାର୍ଯ୍ୟ କରିବା, ଧନ ହରଣ କରିବା, ଅପମାନ ଦେବା, ଆଘାତ ଦେବା କଟୁକଥା କହିବା ବା ଗାଳି ଦେବା, ନିନ୍ଦା ବା ଚୁଗୁଲି

କରିବା, ନିଆଁ ଲଗାଇବା, ବିଷ ଦେବା, ହତ୍ୟା କରିବା ଓ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷଭାବରେ କ୍ଷତି କରିବା ପ୍ରଭୃତି ଯେତେସବୁ ଅପରାଧ ରହିଛି, ସେସବୁ ମଧ୍ୟରୁ ଏକ ବା ଏକାଧିକ ଅପରାଧ କରିଥିବା ଯେକୌଣସି ପ୍ରାଣୀର ପ୍ରତିଶୋଧ ନେବାକୁ ନିଜଠାରେ ପୂର୍ଣ୍ଣ ସାମର୍ଥ୍ୟ ଥିଲେ ମଧ୍ୟ, ସେହି ଅପରାଧର କୌଣସିପ୍ରକାରେ ପ୍ରତିଶୋଧ ନେବାର ଇଚ୍ଛା ସର୍ବଥା ତ୍ୟାଗ କରିଦେବା, ତଥା ସେହି ଅପରାଧଯୋଗୁଁ ତାକୁ ଇହଲୋକ ବା ପରଲୋକରେ କୌଣସିପ୍ରକାର ଦଣ୍ଡ ନ ମିଳୁ ବୋଲି ଭାବନା ରଖିବା ହିଁ **କ୍ଷମା**।

ଇନ୍ଦ୍ରିୟ ଓ ଅନ୍ତଃକରଣଦ୍ୱାରା ଯେଉଁ ବିଷୟ ଯେପରିଭାବରେ ଦେଖାଯାଏ, ଶୁଣାଯାଏ ଓ ଅନୁଭବ କରାଯାଏ, ଅନ୍ୟକୁ ବୁଝାଇବା ଉଦ୍ଦେଶ୍ୟରେ ଠିକ୍ ସେହିପରି ହିତକର ପ୍ରିୟ ଶବ୍ଦରେ ତାହା ପ୍ରକାଶ କରିବା ହିଁ **ସତ୍ୟ**।

**ପ୍ରଶ୍ନ—** **ଦମ** ଓ **ଶମ** ଶବ୍ଦ କାହାର ବାଚକ ?

**ଉତ୍ତର—** ବିଷୟ ପଛରେ ଦୌଡ଼ୁଥିବା ଇନ୍ଦ୍ରିୟମାନଙ୍କୁ ସେଥିରୁ ନିବୃତ୍ତ କରି ନିଜର ଅଧୀନ କରିନେବା ତଥା ସେମାନଙ୍କୁ ସ୍ୱେଚ୍ଛାଚାରୀ ହେବାକୁ ନ ଦେବାର ଅର୍ଥାତ୍ ଯାହା ଇଚ୍ଛା ତାହା କରିବାକୁ ନ ଦେବାର ନାମ **ଦମ**। ମନକୁ ଭଲରୂପେ ସଂଯତ କରି ତାକୁ ନିଜର ଅଧୀନ କରିନେବାକୁ **ଶମ** କହନ୍ତି।

**ପ୍ରଶ୍ନ—** **ସୁଖ** ଓ **ଦୁଃଖ**ର ଅର୍ଥ କଣ ?

**ଉତ୍ତର—** ଏଠାରେ ପ୍ରିୟ (ଅନୁକୂଳ) ବସ୍ତୁର ସଂଯୋଗରେ ଓ ଅପ୍ରିୟ (ପ୍ରତିକୂଳ)ର ବିୟୋଗରେ ହେଉଥିବା ସବୁପ୍ରକାର ସୁଖର ବାଚକ ହେଉଛି **ସୁଖ**। ସେହିପରି ପ୍ରିୟର ବିୟୋଗରେ ଓ ଅପ୍ରିୟର ସଂଯୋଗରେ ହେଉଥିବା ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ★ ଆଦି ସକଳପ୍ରକାର ଦୁଃଖର ବାଚକ ହେଉଛି **ଦୁଃଖ**।

**ପ୍ରଶ୍ନ—** **ଭବ** ଓ **ଅଭାବ** ତଥା **ଭୟ** ଓ **ଅଭୟ** ଶବ୍ଦମାନଙ୍କର ଅର୍ଥ କଣ ?

**ଉତ୍ତର—** ସର୍ଗ କାଳରେ ସମସ୍ତ ଚରାଚର ଜଗତର ଉତ୍ପନ୍ନ ହେବାକୁ **ଭବ** କହନ୍ତି; ପ୍ରଳୟକାଳରେ ତାହାର ଲୀନ ହୋଇଯିବାର ନାମ **ଅଭାବ**। କୌଣସିପ୍ରକାର କ୍ଷତି ବା ମୃତ୍ୟୁର କାରଣ ଦେଖିଲେ ଅନ୍ତଃକରଣରେ ଯେଉଁ ଭାବ ଜାତ ହୁଏ, ତାହାର ନାମ **ଭୟ** ଏବଂ ସର୍ବତ୍ର ଏକ ପରମେଶ୍ୱରଙ୍କୁ ବ୍ୟାପ୍ତ ବୋଲି ବୁଝିନେବା ଫଳରେ ଅଥବା ଅନ୍ୟ କୌଣସି କାରଣରୁ ସର୍ବଥା ଭୟର ଅଭାବ ହେବାର ନାମ **ଅଭୟ**।

**ପ୍ରଶ୍ନ—** **ଅହିଂସା**, **ସମତା** ଓ **ତୁଷ୍ଟି** ଅର୍ଥ କଣ ?

**ଉତ୍ତର—** କୌଣସି ପ୍ରାଣୀକୁ କୌଣସି ସମୟରେ ମଧ୍ୟ କୌଣସିପ୍ରକାରେ ମନ, ବାଣୀ ବା ଶରୀରଦ୍ୱାରା ଟିକିଏ ବି କଷ୍ଟ ନ ଦେବାର ଭାବକୁ **ଅହିଂସା** କହନ୍ତି।

ସୁଖ-ଦୁଃଖ, ଲାଭ-କ୍ଷତି, ଜୟ-ପରାଜୟ, ନିନ୍ଦା-ସ୍ତୁତି, ମାନ-ଅପମାନ, ମିତ୍ର-ଶତ୍ରୁ ଆଦି ଯେତେ ବି କ୍ରିୟା, ପଦାର୍ଥ ଓ ଘଟଣା ଆଦିକୁ ବିଷମତାର କାରଣ ବୋଲି ସ୍ୱୀକାର କରାଯାଏ, ସେସବୁରେ ନିରନ୍ତର ରାଗ-ଦ୍ୱେଷରହିତ ସମବୁଦ୍ଧି ରହିବା ଭାବକୁ **ସମତା** କହନ୍ତି।

ଯାହା କିଛି ପ୍ରାପ୍ତ ହେଉ, ତାହା ପ୍ରାରବ୍ଧଭୋଗ ବା ଭଗବାନଙ୍କ ବିଧାନ ବୋଲି ବୁଝି ସେଥିରେ ସଦା ସନ୍ତୁଷ୍ଟ ରହିବା ଭାବକୁ **ତୁଷ୍ଟି** କହନ୍ତି।

**ପ୍ରଶ୍ନ—** **ତପ**, **ଦାନ**, **ଯଶ** ଓ **ଅଯଶ**— ଏହି ଶବ୍ଦଗୁଡ଼ିକର ଅର୍ଥ କଣ ?

**ଉତ୍ତର—** ସ୍ୱଧର୍ମପାଳନପାଇଁ କଷ୍ଟ ସହିବାକୁ **ତପ**; ଅନ୍ୟର ହିତପାଇଁ ନିଜର ସ୍ୱତ୍ୱ ବିତରଣ କରିବାକୁ **ଦାନ**, ଜଗତରେ କୀର୍ତ୍ତିକୁ **ଯଶ** ଓ ଅପକୀର୍ତ୍ତିକୁ **ଅଯଶ** ବୋଲି କହନ୍ତି।

**ପ୍ରଶ୍ନ—** 'ପ୍ରାଣୀମାନଙ୍କର ନାନାପ୍ରକାର ଭାବ ମୋଠାରୁ ହିଁ ଉତ୍ପନ୍ନ ହୋଇଥାଏ'— ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର—** ଏହି କଥନଦ୍ୱାରା ଭଗବାନ୍ ଦେଖାଉଛନ୍ତି, ବିଭିନ୍ନ ପ୍ରାଣୀଙ୍କର ପ୍ରକୃତି ଅନୁସାରେ ଉପରୋକ୍ତପ୍ରକାରେ ଯେତେସବୁ ବିଭିନ୍ନ ଭାବ ପ୍ରକାଶ ପାଏ, ସେସବୁ ତାଙ୍କଠାରୁ ହିଁ ଉତ୍ପନ୍ନ ହୋଇଥାଏ ଅର୍ଥାତ୍ ସେସବୁ ପ୍ରଭୁଙ୍କର ସାହାଯ୍ୟ, ଶକ୍ତି ଓ ସତ୍ତାଦ୍ୱାରା ହୋଇଥାଏ।

**ପ୍ରଶ୍ନ—** ଏହି ଦୁଇ ଶ୍ଳୋକରେ ସୁଖ, ଭାବ, ଅଭୟ ଓ ଯଶ— ଏହି ଚାରିଟି ଭାବର ବିରୋଧୀ ଭାବ ଯଥା : ଦୁଃଖ, ଅଭାବ, ଭୟ ଓ ଅପଯଶର ବର୍ଣ୍ଣନା କରାଯାଇଛି। କ୍ଷମା, ସତ୍ୟ, ଦମ ଓ ଅହିଂସା ଆଦି ଭାବର ବିରୋଧୀ ଭାବମାନଙ୍କର କାହିଁକି ବର୍ଣ୍ଣନା କରାଗଲା ନାହିଁ ?

---

★ ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଆଦି ପ୍ରାଣୀମାନଙ୍କ ଯୋଗୁଁ ମିଳୁଥିବା କଷ୍ଟମାନଙ୍କୁ 'ଆଧିଭୌତିକ'; ଅନାବୃଷ୍ଟି, ଅତିବୃଷ୍ଟି, ଭୂକମ୍ପ, ବଜ୍ରପାତ ଓ ଅକାଳ (ଦୁର୍ଭିକ୍ଷ ପ୍ରଭୃତି) ଆଦି ଦୈବପ୍ରକୋପରୁ ହେଉଥିବା କଷ୍ଟମାନଙ୍କୁ 'ଆଧିଦୈବିକ' ଏବଂ ଶରୀର, ଇନ୍ଦ୍ରିୟ, ତଥା ଅନ୍ତଃକରଣରେ କୌଣସିପ୍ରକାର ରୋଗରୁ ହେଉଥିବା କଷ୍ଟମାନଙ୍କୁ 'ଆଧ୍ୟାତ୍ମିକ' ଦୁଃଖ କହନ୍ତି।

**ଉତ୍ତର —** ଦୁଃଖ, ଅଭାବ, ଭୟ ଓ ଅପଯଶ ଆଦି ଭାବ ଜୀବମାନଙ୍କୁ ପ୍ରାରବ୍ଧ ଭୋଗ କରାଇବା ପାଇଁ ଉତ୍ପନ୍ନ ହୁଅନ୍ତି । ଏଣୁ ଏସବୁର ଉଦ୍ଭବ କର୍ମଫଳଦାତା ତଥା ଜଗତର ନିୟନ୍ତ୍ରଣକର୍ତ୍ତା ଭଗବାନଙ୍କ ଠାରୁ ହେବା ଠିକ୍ । କିନ୍ତୁ କ୍ଷମା, ସତ୍ୟ, ଦମ ଓ ଅହିଂସା ଆଦିର ବିରୋଧୀ କ୍ରୋଧ, ଅସତ୍ୟ, ଇନ୍ଦ୍ରିୟମାନଙ୍କ ଦାସତ୍ୱ ଓ ହିଂସା ଆଦି ଦୁର୍ଗୁଣ ଓ ଦୁରାଚାର ଭଗବାନଙ୍କ ଠାରୁ ଉତ୍ପନ୍ନ ହୁଏ ନାହିଁ । ବରଂ ଗୀତାର ଅନ୍ୟ ସ୍ଥାନମାନଙ୍କରେ ଏହିସବୁ ଦୁର୍ଗୁଣ-ଦୁରାଚାରମାନଙ୍କ ଉତ୍ପତ୍ତିର ମୂଳକାରଣ ଅଜ୍ଞାନଜନିତ 'କାମ' ବୋଲି କୁହାଯାଇଛି (୩/୩୭) ଏବଂ ଏଗୁଡ଼ିକୁ ସମ୍ପୂର୍ଣ୍ଣ ତ୍ୟାଗ କରିବା ପାଇଁ ପ୍ରେରଣା ଦିଆଯାଇଛି । ଏଣୁ ସତ୍ୟ ଆଦି ସଦ୍‌ଗୁଣ ଓ ସଦାଚାରର ବିରୋଧୀ ଭାବର ବର୍ଣ୍ଣନା ଏଠାରେ କରାଯାଇ ନାହିଁ ।

## ମହର୍ଷୟଃ ସପ୍ତ ପୂର୍ବେ ଚତ୍ୱାରୋ ମନବସ୍ତଥା ।
## ମଦ୍‌ଭାବା ମାନସା ଜାତା ଯେଷାଂ ଲୋକ ଇମାଃ ପ୍ରଜାଃ ।। ୬ ।।

**ଅନ୍ୱୟ —** ଲୋକେ = ସଂସାରର; **ଇମାଃ, ପ୍ରଜାଃ** = ଏହି ସମସ୍ତ ପ୍ରଜା; **ଯେଷାମ୍ (ଜାତାଃ)** = ଯେଉଁମାନଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି; **ତେ** = ସେହି; **ସପ୍ତ, ମହର୍ଷୟଃ** = ସପ୍ତମହର୍ଷି (ଓ); **ପୂର୍ବେ** = (ସେମାନଙ୍କ) ପୂର୍ବରୁ (ଜାତ ହୋଇଥିବା); **ଚତ୍ୱାରଃ** = ସନକାଦି ଚାରିକୁମାର; **ତଥା** = ତଥା; **ମନବଃ** = ସ୍ୱାୟମ୍ଭୁବାଦି ଚଉଦ ମନୁ; **ମାନସାଃ** = ମୋ ସଂକଳ୍ପରୁ; **ଜାତାଃ** = ଉତ୍ପନ୍ନ ହୋଇଛନ୍ତି; **ମଦ୍‌ଭାବାଃ** = (ଏ ସମସ୍ତେ) ମୋ ଠାରେ ଶ୍ରଦ୍ଧାଭାବ ରଖନ୍ତି ।

**ସଂସାରର ଏହି ସମସ୍ତ ପ୍ରଜା ଯେଉଁମାନଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି, ସେହି ସପ୍ତମହର୍ଷି ଓ ସେମାନଙ୍କ ପୂର୍ବରୁ ଜାତ ହୋଇଥିବା ସନକାଦି ଚାରିକୁମାର ତଥା ସ୍ୱାୟମ୍ଭୁବାଦି ଚଉଦ ମନୁ ମୋ ସଂକଳ୍ପରୁ ଉତ୍ପନ୍ନ ହୋଇଛନ୍ତି । ଏ ସମସ୍ତେ ମୋ ଠାରେ ଶ୍ରଦ୍ଧାଭାବ ରଖନ୍ତି ।। ୬ ।।**

**ପ୍ରଶ୍ନ —** ସପ୍ତ ମହର୍ଷିମାନଙ୍କର ଲକ୍ଷଣ କଣ ଓ ସେମାନେ କିଏ ?

**ଉତ୍ତର —** ସପ୍ତମହର୍ଷିଙ୍କର ଲକ୍ଷଣ ଏପରି କୁହାଯାଇଛି —

**ଏତାନ୍ ଭାବାନଧୀୟାନା ଯେ ଚୈତ ଋଷୟୋ ମତାଃ ।**
**ସପ୍ତୈତେ ସପ୍ତଭିଶ୍ଚୈବ ଗୁଣୈଃ ସପ୍ତର୍ଷୟଃ ସ୍ମୃତାଃ ।।**
**ଦୀର୍ଘାୟୁଷୋ ମନ୍ତ୍ରକୃତ ଈଶ୍ୱରା ଦିବ୍ୟଚକ୍ଷୁଷଃ ।**
**ବୃଦ୍ଧାଃ ପ୍ରତ୍ୟକ୍ଷଧର୍ମାଣୋ ଗୋତ୍ରପ୍ରବର୍ତ୍ତକାଶ୍ଚ ଯେ ।।**
(ବାୟୁପୁରାଣ ୬୧/୯୩-୯୪)

ଅର୍ଥାତ୍ ଦେବର୍ଷିମାନଙ୍କର * ଉପରୋକ୍ତ ଭାବମାନଙ୍କୁ ଯେଉଁମାନେ ଅଧ୍ୟୟନ (ସ୍ମରଣ) କରନ୍ତି, ସେମାନଙ୍କୁ ଋଷି ବୋଲି ସ୍ୱୀକାର କରାଯାଏ । ଏହି ଋଷିମାନଙ୍କ ମଧ୍ୟରୁ ଯେଉଁମାନେ ଦୀର୍ଘାୟୁ, (ମନ୍ତ୍ରକୃତ), ଐଶ୍ୱର୍ଯ୍ୟବାନ୍, ଦିବ୍ୟଦୃଷ୍ଟିଯୁକ୍ତ, ଗୁଣ, ବିଦ୍ୟା ତଥା ଆୟୁରେ ବୃଦ୍ଧ, ଧର୍ମର ପ୍ରତ୍ୟକ୍ଷ(ସାକ୍ଷାତ୍‌କାର) କାରୀ, ଗୋତ୍ରପ୍ରବର୍ତ୍ତକ — ଏହିପରି ସାତ ଗୁଣରେ ଯୁକ୍ତ, ସେହି ସାତ ଋଷିଙ୍କୁ ସପ୍ତର୍ଷି କହନ୍ତି । ଏମାନଙ୍କ ଦ୍ୱାରା ପ୍ରଜାମାନଙ୍କର ବିସ୍ତାର ହୁଏ ତଥା ଧର୍ମବ୍ୟବସ୍ଥା ଚାଲେ ।**

ଏହି ସପ୍ତର୍ଷିମାନେ ପ୍ରତ୍ୟେକ ମନ୍ୱନ୍ତରରେ ଭିନ୍ନ ଭିନ୍ନ ହୁଅନ୍ତି । ଏଠାରେ ଯେଉଁ ସପ୍ତର୍ଷିଙ୍କର ବର୍ଣ୍ଣନା ହୋଇଛି, ସେମାନଙ୍କୁ ଭଗବାନ୍ 'ମହର୍ଷି' ବୋଲି କହିଛନ୍ତି ଓ

---

* ଦେବର୍ଷିମାନଙ୍କ ଲକ୍ଷଣ ଏହି ଅଧ୍ୟାୟର ୧୨-୧୩ ଶ୍ଳୋକର ଟୀକାରେ ଦେଖନ୍ତୁ ।

** ଏହି ସପ୍ତର୍ଷିମାନେ ପ୍ରବୃତ୍ତିମାର୍ଗୀ ଅଟନ୍ତି । ଏମାନଙ୍କ ବିଚାର ଓ ଜୀବନର ବର୍ଣ୍ଣନା ଏହିପରି —

**ଷଟ୍‌କର୍ମାଭିରତା ନିତ୍ୟଂ ଶାଳିନୋ ଗୃହମେଧିନଃ । ତୁଲ୍ୟୈର୍ବ୍ୟବହରନ୍ତି ସ୍ମ ଅଦୃଷ୍ଟୈଃ କର୍ମହେତୁଭିଃ ।।**
**ଅଗ୍ରାମ୍ୟୈର୍ବର୍ତ୍ତୟନ୍ତି ସ୍ମ ରସୈଶ୍ଚୈବ ସ୍ୱୟଂକୃତୈଃ । କୁଟୁମ୍ବିନଃ ଋଦ୍ଧିମନ୍ତୋ ବାହ୍ୟାନ୍ତରନିବାସିନଃ ।**
**କୃତାଦିଷୁ ଯୁଗାଖ୍ୟେଷୁ ସର୍ବେଷ୍ୱେବ ପୁନଃ ପୁନଃ । ବର୍ଣ୍ଣାଶ୍ରମବ୍ୟବସ୍ଥାନଂ କ୍ରିୟତେ ପ୍ରଥମଂ ତୁ ବୈ ।।**
(ବାୟୁ ପୁରାଣ ୬୧/୯୪-୯୬)

ଏହି ମହର୍ଷିମାନେ ସର୍ବଦା ପଢ଼ିବା-ପଢ଼ାଇବା, ଯଜ୍ଞ କରିବା-କରାଇବା, ଦାନ ଦେବା-ନେବା — ଏହି ଛଅପ୍ରକାର କର୍ମ କରନ୍ତି । ବ୍ରହ୍ମଚାରୀମାନଙ୍କୁ ପଢ଼ାଇବାପାଇଁ ଘରେ ଗୁରୁକୁଳ ରଖନ୍ତି ତଥା ପ୍ରଜା ବଢ଼ିବାପାଇଁ ହିଁ ସ୍ତ୍ରୀ ଓ ଅଗ୍ନି ଗ୍ରହଣ କରିଥାନ୍ତି । କର୍ମହେତୁକ ଅଦୃଷ୍ଟବୃଷ୍ଟିରୁ (ଅର୍ଥାତ୍ ବର୍ଷା ଆଦିରେ) ଯେଉଁମାନେ ସମାନ ଅଟନ୍ତି, ସେହିମାନଙ୍କ ସହିତ ଏମାନେ ବ୍ୟବହାର କରନ୍ତି (ଚଳନ୍ତି) ଏବଂ ନିଜଦ୍ୱାରା ହିଁ ଉଚିତ ଅନିନ୍ଦ୍ୟ ଭୋଗ୍ୟପଦାର୍ଥଦ୍ୱାରା ଜୀବନ ନିର୍ବାହ କରନ୍ତି । ଏମାନେ ସନ୍ତାନସମ୍ପତ୍ତି ଓ ଗୋ-ଧନ ଆଦି ସମ୍ପତ୍ତିଯୁକ୍ତ । ଏମାନେ ଲୋକମାନଙ୍କ ଭିତରେ ଓ ଲୋକବସତି ବାହାରେ ନିବାସ କରନ୍ତି । ସତ୍ୟ ଆଦି ସବୁ ଯୁଗର ଆରମ୍ଭରେ ପ୍ରଥମେ ଏହି ମହର୍ଷିମାନେ ହିଁ ବାରମ୍ବାର ବର୍ଣ୍ଣାଶ୍ରମ ଧର୍ମର ବ୍ୟବସ୍ଥା କରିଥାନ୍ତି ।

ସେମାନେ ତାଙ୍କ ସଂକଳ୍ପରୁ ଜାତ ହୋଇଛନ୍ତି ବୋଲି କହିଛନ୍ତି। ତେଣୁ ଯେଉଁମାନେ ଋଷିମାନଙ୍କ ମଧ୍ୟରେ ବି ଉଚ୍ଚସ୍ତରର ଅଟନ୍ତି, ଏଠାରେ ସେହିମାନଙ୍କୁ ହିଁ ଲକ୍ଷ୍ୟ କରାଯାଇଛି। ଏପରି ସପ୍ତର୍ଷିମାନଙ୍କର ଉଲ୍ଲେଖ ମହାଭାରତ-ଶାନ୍ତିପର୍ବରେ ମିଳେ। ଏମାନଙ୍କ ପାଇଁ ସାକ୍ଷାତ୍ ପରମପୁରୁଷ ପରମେଶ୍ୱର ଦେବତାମାନଙ୍କ ସମକ୍ଷରେ ବ୍ରହ୍ମାଙ୍କୁ କହିଛନ୍ତି—

ମରୀଚିରଙ୍ଗିରାଶ୍ଚାତ୍ରିଃ ପୁଲସ୍ତ୍ୟଃ ପୁଲହଃ କ୍ରତୁଃ।
ବସିଷ୍ଠ ଇତି ସପ୍ତୈତେ ମାନସା ନିର୍ମିତା ହି ତେ॥
ଏତେ ବେଦବିଦୋ ମୁଖ୍ୟା ବେଦାଚାର୍ଯ୍ୟାଶ୍ଚ କଳ୍ପିତାଃ।
ପ୍ରବୃତ୍ତିଧର୍ମିଣଶ୍ଚୈବ ପ୍ରାଜାପତ୍ୟେ ଚ କଳ୍ପିତାଃ॥
(ମହା-ଶାନ୍ତି ୩୪୦/୬୯-୭୦)

ଅର୍ଥାତ୍ 'ମରୀଚି, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବସିଷ୍ଠ — ଏହି ସାତ ମହର୍ଷି ଆପଣଙ୍କ (ବ୍ରହ୍ମାଙ୍କ) ★

---

★ ଏହି ସାତଜଣ ହିଁ ଅତ୍ୟନ୍ତ ତେଜସ୍ୱୀ ଓ ବୁଦ୍ଧିମାନ ପ୍ରଜାପତି। ପ୍ରଜା ଉତ୍ପତ୍ତିକାରୀ ହୋଇଥିବାରୁ ଏମାନଙ୍କୁ ସପ୍ତ 'ବ୍ରହ୍ମା' ବୋଲି କୁହାଯାଇଛି (ମହାଭାରତ ଶାନ୍ତିପର୍ବ ୨୦୮/୩,୪,୫)। ଏମାନଙ୍କର ସଂକ୍ଷିପ୍ତ ଚରିତ ଦେଉଛି :—

(୧) **ମରୀଚି**— ଏହାଙ୍କୁ ଭଗବାନଙ୍କର ଅଂଶାବତାର ବୋଲି ଗ୍ରହଣ କରାଯାଇଛି। ଏହାଙ୍କର ଅନେକ ପତ୍ନୀ ଅଛନ୍ତି; ସେମାନଙ୍କ ମଧ୍ୟରେ ଦକ୍ଷ-ପ୍ରଜାପତିଙ୍କ କନ୍ୟା ସମ୍ଭୂତି ଓ ଧର୍ମକାମଙ୍କ ବ୍ରାହ୍ମଣଙ୍କ କନ୍ୟା ଧର୍ମବ୍ରତା ଅଛନ୍ତି। ଏହାଙ୍କ ସନ୍ତତିମାନଙ୍କଦ୍ୱାରା ବିଶେଷ ବିସ୍ତାର ବା ବୃଦ୍ଧି ହୋଇଛି। ମହର୍ଷି କଶ୍ୟପ ଏହାଙ୍କର ପୁତ୍ର। ବ୍ରହ୍ମା ଏହାଙ୍କୁ ପଦ୍ମପୁରାଣର କିଛି ଅଂଶ ଶୁଣାଇଥିଲେ। ପ୍ରାୟ ସବୁ ପୁରାଣରେ, ମହାଭାରତରେ ଓ ବେଦରେ ମଧ୍ୟ ଏହାଙ୍କ ପ୍ରସଙ୍ଗରେ ବିସ୍ତାରପୂର୍ବକ କୁହାଯାଇଛି। ବ୍ରହ୍ମା ସର୍ବପ୍ରଥମେ ଏହାଙ୍କୁ ହିଁ ବ୍ରହ୍ମପୁରାଣ ଦେଇଥିଲେ। ଏ ସଦାସର୍ବଦା ସୃଷ୍ଟିର ଉନ୍ନତି ଓ ତାହାର ପାଳନ କାର୍ଯ୍ୟରେ ଲାଗିରହନ୍ତି। ଏହାଙ୍କର ବିସ୍ତୃତ ବିବରଣ ବାୟୁପୁରାଣ, ସ୍କନ୍ଦପୁରାଣ, ଅଗ୍ନିପୁରାଣ, ପଦ୍ମପୁରାଣ, ମାର୍କଣ୍ଡେୟ ପୁରାଣ, ବିଷ୍ଣୁପୁରାଣ ଓ ମହାଭାରତ ପ୍ରଭୃତିରେ ରହିଛି।

(୨) **ଅଙ୍ଗିରା**— ଏ ବଡ଼ ତେଜସ୍ୱୀ ମହର୍ଷି ଅଟନ୍ତି। ଏହାଙ୍କର ଅନେକ ପତ୍ନୀ। ସେମାନଙ୍କ ମଧ୍ୟରେ ତିନି ଜଣ ପ୍ରଧାନ। ସେମାନଙ୍କ ମଧ୍ୟରୁ ମରୀଚିଙ୍କ କନ୍ୟା ସୁରୂପାଙ୍କ ଠାରୁ ବୃହସ୍ପତି, କର୍ଦ୍ଦମ ଋଷିଙ୍କ କନ୍ୟା ସ୍ୱରାଟ୍‌ଙ୍କ ଠାରୁ ଗୌତମ-ବାମଦେବ ଆଦି ପାଞ୍ଚପୁତ୍ର ଓ ମନୁଙ୍କ କନ୍ୟା ପଥ୍ୟାଙ୍କ ଠାରୁ ବିଷ୍ଣୁ ଆଦି ତିନି ପୁତ୍ର ଜନ୍ମ ହୋଇଥିଲେ (ବାୟୁପୁରାଣ ଅ. ୬୫) ତଥା ଅତ୍ରିଙ୍କ କନ୍ୟା 'ଆତ୍ରେୟୀଙ୍କ ଠାରୁ ଆଙ୍ଗିରସ ନାମକ ପୁତ୍ରମାନଙ୍କର ଜନ୍ମ ହୋଇଥିଲା (ବ୍ରହ୍ମପୁରାଣ)। କୌଣସି କୌଣସି ଗ୍ରନ୍ଥରେ ସ୍ୱୀକାର କରାଯାଇଛି ଯେ, ବୃହସ୍ପତିଙ୍କ ଜନ୍ମ ଏହାଙ୍କର ଶୁଭା ନାମକ ପତ୍ନୀଠାରୁ ହୋଇଥିଲା (ମହାଭାରତ)।

(୩) **ଅତ୍ରି**— ଏ ଦକ୍ଷିଣ ଦିଗରେ ରହନ୍ତି। ପ୍ରସିଦ୍ଧ ପତିବ୍ରତା ଅନସୂୟା ଏହାଙ୍କର ଧର୍ମପତ୍ନୀ। ଅନସୂୟା ଭଗବାନ୍ କପିଳଦେବଙ୍କ ଭଉଣୀ ଓ କର୍ଦ୍ଦମ-ଦେବହୂତିଙ୍କ କନ୍ୟା। ଭଗବାନ୍ ଶ୍ରୀରାମଚନ୍ଦ୍ର ବନବାସସମୟରେ ଏହାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ। ଅନସୂୟା ଜଗଜ୍ଜନନୀ ସୀତାଙ୍କୁ ବିଭିନ୍ନପ୍ରକାର ଅଳଙ୍କାର ଓ ବସ୍ତ୍ର ପ୍ରଦାନ କରିଥିଲେ ଏବଂ ସତୀ(ପତିବ୍ରତା)ଧର୍ମ ବିଷୟରେ ଉପଦେଶ ଦେଇଥିଲେ।

ବ୍ରହ୍ମବାଦୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହର୍ଷି ଅତ୍ରିଙ୍କୁ ବ୍ରହ୍ମା ଯେତେବେଳେ ପ୍ରଜାବିସ୍ତାରପାଇଁ ଆଦେଶ ଦେଲେ, ସେତେବେଳେ ଅତ୍ରି ତାଙ୍କ ପତ୍ନୀ ଅନସୂୟାଙ୍କ ସହିତ ଋକ୍ଷ ନାମକ ପର୍ବତ ଉପରକୁ ଯାଇ ତପ କରିବାକୁ ଲାଗିଲେ। ଏ ପତିପତ୍ନୀ ଭଗବାନଙ୍କର ଭକ୍ତ ଥିଲେ। ଏ ଦୁହେଁ ଘୋର ତପ କରିବାକୁ ଲାଗିଲେ। ତପର ଫଳସ୍ୱରୂପ ଭଗବାନଙ୍କର ପ୍ରତ୍ୟକ୍ଷ ଦର୍ଶନ ଚାହିଁଲେ। ଦୁହେଁ ଜଗତ୍ପତି ଭଗବାନଙ୍କର ଶରଣାପନ୍ନ ହୋଇ ତାଙ୍କ ଅଖଣ୍ଡ ଚିନ୍ତନରେ ଲାଗିରହିଲେ। ମସ୍ତକରୁ ଯୋଗାଗ୍ନି ବାହାରିବା, ଯାହାଯୋଗୁଁ ତିନିଲୋକ ଜଳିବାକୁ ଲାଗିଲା। ସେତେବେଳେ ସେ ତୁହିଁଙ୍କର ତପରେ ପ୍ରସନ୍ନ ହୋଇ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର— ତିନିହେଁ ତାଙ୍କୁ ବର ଦେବାକୁ ପ୍ରକଟ ହେଲେ। ଭଗବାନଙ୍କର ତ୍ରିବିଧ ସ୍ୱରୂପକୁ ଦର୍ଶନ କରି ମୁନି ଓ ମୁନିପତ୍ନୀ କୃତାର୍ଥ ହୋଇଗଲେ ଏବଂ ଗଦ୍‌ଗଦ ହୋଇ ଭଗବାନଙ୍କର ସ୍ତୁତି କରିବାକୁ ଲାଗିଲେ। ଭଗବାନ ତୁହିଙ୍କୁ ବର ମାଗିବାକୁ କହିଲେ। ବ୍ରହ୍ମାଙ୍କର ଆଦେଶ ଥିଲା ସୃଷ୍ଟିରଚନା କରିବାପାଇଁ; ତେଣୁ ଅତ୍ରି କହିଲେ, ''ମୁଁ ପୁତ୍ରପାଇଁ ଭଗବାନଙ୍କୁ ଆରାଧନା କରିଥିଲି ଓ ତାଙ୍କର ଦର୍ଶନ ଚାହିଁଥିଲି। ଆପଣ ତିନିହେଁ ଆସିଗଲେ। ଆପଣମାନଙ୍କର କଳ୍ପନା ତ କେହି କରିପାରିବ ନାହିଁ। ମୋ ପ୍ରତି କିପରି ଏହି କୃପା ହେଲା, ଆପଣମାନେ ହିଁ ବୁଝାଇଦିଅନ୍ତୁ।'' ଅତ୍ରିଙ୍କ କଥା ଶୁଣି ତିନିହେଁ ମୁରୁକି ହସିଲେ ଏବଂ କହିଲେ— ''ବ୍ରହ୍ମନ! ତୁମର ସଂକଳ୍ପ ସତ। ତୁମେ ଯାହାଙ୍କୁ ଧ୍ୟାନ କରୁଛ, ଆମେ ତିନିହେଁ ସେହିଁ ଏକଙ୍କର ହିଁ ତିନି ସ୍ୱରୂପ। ଆମ ତିନିଙ୍କ ଅଂଶରେ ତୁମର ତିନି ପୁତ୍ର ଜନ୍ମ ହେବେ। ତୁମେ ତ କୃତାର୍ଥରୂପ।'' ଏତିକି କହି ଭଗବାନଙ୍କର ତିନି ସ୍ୱରୂପ ଅନ୍ତର୍ଦ୍ଧାନ ହୋଇଗଲେ। ପରେ ତିନି ଜଣ ତାଙ୍କ ଘରେ ଅବତାର ଗ୍ରହଣ କଲେ। ଭଗବାନ ବିଷ୍ଣୁଙ୍କ ଅଂଶରେ ଦତ୍ତାତ୍ରେୟ, ବ୍ରହ୍ମାଙ୍କ ଅଂଶରେ ଚନ୍ଦ୍ରମା ଓ ଶିବଙ୍କ ଅଂଶରେ ଦୁର୍ବାସା ଜନ୍ମ ହେଲେ। ତପର ପ୍ରଭାବ ଏହିପରି। ଧ୍ୟାନରେ ମଧ୍ୟ ଯାହାଙ୍କୁ କଳ୍ପନା କରିହୁଏ ନାହିଁ, ସେ ହିଁ ଶିଶୁ ହୋଇ କୋଳରେ ଖେଳିବାକୁ ଲାଗିଲେ। (ବାଲ୍ମୀକୀୟ ରାମାୟଣ ଅଯୋଧ୍ୟାକାଣ୍ଡ ଓ ଶ୍ରୀମଦ୍ଭାଗବତ, ସ୍କନ୍ଧ ୪)

ଦ୍ୱାରା ହିଁ ନିଜ ମନରୁ ଉଚିତ ହୋଇଛନ୍ତି। ଏହି ସାତ ଜଣ ହେଉଛନ୍ତି ବେଦଜ୍ଞ। ଏମାନଙ୍କୁ ମୁଁ (ଭଗବାନ୍) ମୁଖ୍ୟ ବେଦାଚାର୍ଯ୍ୟ କରିଛି। ଏମାନେ ପ୍ରବୃତ୍ତିମାର୍ଗର ସଞ୍ଚାଳକ ଓ (ମୋ ଦ୍ୱାରା ହିଁ) ପ୍ରଜାପତିଙ୍କ କର୍ମରେ ନିଯୁକ୍ତ ହୋଇଛନ୍ତି।'

ଏମାନେ ଏହି କଳ୍ପର ସର୍ବପ୍ରଥମ ସ୍ୱାୟମ୍ଭୁବ ମନ୍ୱନ୍ତରର ସପ୍ତର୍ଷି (ହରିବଂଶ ୭/୮,୯) ଅଟନ୍ତି। ଅତଏବ ଏଠାରେ ସପ୍ତର୍ଷି କହିଲେ ଏହିମାନଙ୍କୁ ହିଁ ଗ୍ରହଣ କରାଯିବା ଉଚିତ।

(୪) **ପୁଲସ୍ତ୍ୟ :–** ଏ ବଡ଼ ଧର୍ମପରାୟଣ, ତପସ୍ୱୀ ଓ ତେଜସ୍ୱୀ ଅଟନ୍ତି। ଯୋଗବିଦ୍ୟାରେ ମଧ୍ୟ ବଡ଼ ଆଚାର୍ଯ୍ୟ ଓ ପାରଦର୍ଶୀ ଥିଲେ। ପରାଶର ଯେତେବେଳେ ରାକ୍ଷସମାନଙ୍କୁ ନାଶ କରିବାକୁ ଏକ ବଡ଼ ଯଜ୍ଞ କରୁଥିଲେ, ସେତେବେଳେ ବଶିଷ୍ଠଙ୍କ ପରାମର୍ଶ ଅନୁଯାୟୀ ପୁଲସ୍ତ୍ୟ ଯାଇ ତାଙ୍କୁ ଯଜ୍ଞ ବନ୍ଦ କରିଦେବାକୁ କହିଲେ; ପରାଶର ତାଙ୍କ କଥା ମାନି ଯଜ୍ଞ ବନ୍ଦ କରିଦେଲେ। ଏଥିରେ ପ୍ରସନ୍ନ ହୋଇ ପୁଲସ୍ତ୍ୟ ତାଙ୍କୁ ଏପରି ଆଶୀର୍ବାଦ ଦେଲେ ଯେ, ପରାଶରଙ୍କର ସକଳ ଶାସ୍ତ୍ରରେ ଜ୍ଞାନ ହୋଇଗଲା।

ଏହାଙ୍କର ସନ୍ଧ୍ୟା, ପ୍ରତୀଚୀ, ପ୍ରୀତି ଓ ହବିର୍ଭୂନାମରେ ପତ୍ନୀମାନେ ଥିଲେ; ସେମାନଙ୍କ ଗର୍ଭରୁ ବହୁପୁତ୍ର ଜନ୍ମ ହୋଇଥିଲେ। ଦତ୍ତୋଳି ବା ଅଗସ୍ତ୍ୟ ଓ ପ୍ରସିଦ୍ଧ ଋଷି ନିଦାଘ ଏହାଙ୍କର ପୁତ୍ର। ବିଶ୍ରବା ମଧ୍ୟ ଏହାଙ୍କର ପୁତ୍ର ଥିଲେ; ବିଶ୍ରବାଙ୍କ ଔରସରୁ କୁବେର, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଜନ୍ମ ହୋଇଥିଲେ। ପୁରାଣରେ ଓ ମହାଭାରତରେ ସ୍ଥାନେ ସ୍ଥାନେ ଏହାଙ୍କର ଚର୍ଚ୍ଚା ହୋଇଛି। ବିଷ୍ଣୁପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, କୂର୍ମପୁରାଣ, ଶ୍ରୀମଦ୍ଭାଗବତ, ବାୟୁପୁରାଣ ଓ ମହାଭାରତର ଉଦ୍ୟୋଗପର୍ବରେ ଏହାଙ୍କର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ।

(୫) **ପୁଲହ :–** ଏ ବଡ଼ ଐଶ୍ୱର୍ଯ୍ୟବାନ୍ ଓ ଜ୍ଞାନୀ ମହର୍ଷି ଅଟନ୍ତି। ଏ ମହର୍ଷି ସନନ୍ଦନଙ୍କ ଠାରୁ ଈଶ୍ୱରୀୟ ଜ୍ଞାନ ଶିକ୍ଷା ପ୍ରାପ୍ତ କରି ଗୌତମଙ୍କୁ ସେହି ଜ୍ଞାନ ଶିଖାଇଥିଲେ। ଦକ୍ଷପ୍ରଜାପତିଙ୍କ କନ୍ୟା କ୍ଷମା ଓ କର୍ଦ୍ଦମ ଋଷିଙ୍କ କନ୍ୟା ଗତିଙ୍କ ଠାରୁ ଏହାଙ୍କର ବହୁ ସନ୍ତାନ ହୋଇଥିଲେ। କୂର୍ମପୁରାଣ, ବିଷ୍ଣୁପୁରାଣ ଓ ଶ୍ରୀମଦ୍ଭାଗବତରେ ଏହାଙ୍କର କଥା ରହିଛି।

(୬) **କ୍ରତୁ :–** ଏ ମଧ୍ୟ ବଡ଼ ତେଜସ୍ୱୀ ମହର୍ଷି। ଏ କର୍ଦ୍ଦମ ଋଷିଙ୍କ କନ୍ୟା କ୍ରିୟା ଓ ଦକ୍ଷପୁତ୍ରୀ ସନ୍ନତିଙ୍କୁ ବିବାହ କରିଥିଲେ। ଏହାଙ୍କ ଠାରୁ ଷାଠିଏହଜାର ବାଲଖିଲ୍ୟନାମକ ଋଷି ଜନ୍ମ ହୋଇଥିଲେ। ଏହି ଋଷିମାନେ ସୂର୍ଯ୍ୟଙ୍କ ରଥ ଆଗରେ ତାଙ୍କ ଆଡ଼କୁ ମୁହଁ କରି, ସ୍ତୁତି କରି କରି ଚାଲନ୍ତି। ପୁରାଣରେ ଏହାଙ୍କର କଥା ବିଭିନ୍ନ ସ୍ଥାନରେ ଆସେ। (ଶ୍ରୀମଦ୍ଭାଗବତ ଚତୁର୍ଥସ୍କନ୍ଧ ଓ ବିଷ୍ଣୁପୁରାଣ-ପ୍ରଥମାଂଶ)।

(୭) **ବଶିଷ୍ଠ :–** ମହର୍ଷି ବଶିଷ୍ଠଙ୍କର ତପ, ତେଜ, କ୍ଷମା ଓ ଧର୍ମ ବିଶ୍ୱବିଦିତ। ତାଙ୍କ ଉତ୍ପତ୍ତିସମ୍ବନ୍ଧରେ ପୁରାଣରେ ବହୁ ବର୍ଣ୍ଣନା ରହିଛି; କଳ୍ପଭେଦଦୃଷ୍ଟିରୁ ସେସବୁ ଠିକ୍। ଅରୁନ୍ଧତୀ ଏହାଙ୍କର ପତ୍ନୀ; ସେ ବଡ଼ ସାଧ୍ୱୀ ଓ ପତିବ୍ରତା। ବଶିଷ୍ଠ ସୂର୍ଯ୍ୟବଂଶର କୁଳପୁରୋହିତ ଥିଲେ। ମର୍ଯ୍ୟାଦାପୁରୁଷୋତ୍ତମ ଭଗବାନ୍ ଶ୍ରୀରାମଙ୍କର ଦର୍ଶନ ଓ ସତ୍‌ସଙ୍ଗଲାଭ ନିମନ୍ତେ ହିଁ ବଶିଷ୍ଠ ସୂର୍ଯ୍ୟବଂଶୀ ରାଜାମାନଙ୍କର ପୁରୋହିତ ହୋଇଥିଲେ ଏବଂ ସୂର୍ଯ୍ୟବଂଶର ହିତପାଇଁ ନିରନ୍ତର ଚେଷ୍ଟା କରୁଥିଲେ। ଭଗବାନ୍ ରାମଚନ୍ଦ୍ରଙ୍କୁ ଶିଷ୍ୟରୂପେ ପାଇ ତାଙ୍କର ଜୀବନ ଧନ୍ୟ ହୋଇଥିଲା।

'ତପସ୍ୟା ବଡ଼, ନା ସତ୍‌ସଙ୍ଗ ବଡ଼?'– ଏହି ପ୍ରଶ୍ନ ଉପରେ ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ଭିତରେ ମତଭେଦ ହେଲା। ବଶିଷ୍ଠ କହିଲେ, 'ସତ୍‌ସଙ୍ଗ ବଡ଼'; ବିଶ୍ୱାମିତ୍ର କହିଲେ, 'ତପସ୍ୟା ବଡ଼।' ବିବାଦ ତୁଟାଇବାକୁ ଦୁହେଁ ଶେଷଦେବଙ୍କ ପାଖକୁ ଗଲେ। ସବୁ ଶୁଣି ଶେଷଦେବ କହିଲେ, "ଦେଖ, ମୋ ମୁଣ୍ଡରେ ପୃଥିବୀ ଏକ ବୋଝ ହୋଇ ରହିଛି। ତୁମ ଦୁହିଁଙ୍କ ଭିତରୁ କେହି ଜଣେ ଯଦି କିଛି ସମୟପାଇଁ ଏହି ବୋଝଟି ମୁଣ୍ଡାନ୍ତ, ତେବେ ମୁଁ ଭାବିଚିନ୍ତି ତୁମ କଳି ତୁଟାଇଦିଅନ୍ତି।" ବିଶ୍ୱାମିତ୍ର ତ ବହୁ ତପସ୍ୟା କରିଥିଲେ; ସେ ତାଙ୍କର ଦଶହଜାରବର୍ଷ-ତପସ୍ୟାର ଫଳ ଦେଇ ପୃଥିବୀକୁ ମୁଣ୍ଡାଇବାକୁ ବସିଲେ; କିନ୍ତୁ ପାରିଲେ ନାହିଁ; ପୃଥିବୀ ଟଳମଳ ହେଲା। ତା'ପରେ ବଶିଷ୍ଠ ଅର୍ଦ୍ଧକ୍ଷଣ-ସତ୍‌ସଙ୍ଗର ଫଳ ଦେଇ ଅନାୟାସରେ ପୃଥିବୀକୁ ଉଠାଇ ବହୁ ସମୟ ମୁଣ୍ଡାଇଧରିଲେ। ଶେଷଦେବଙ୍କୁ ବିଶ୍ୱାମିତ୍ର ପଚାରିଲେ, "ଏତେ ଡେରି ହେଲାଣି! ଆପଣଙ୍କ ନିର୍ଣ୍ଣୟ ଶୁଣାଉ ନାହାନ୍ତି କାହିଁକି?" ଶେଷଦେବ ହସିଦେଇ କହିଲେ, "ନିର୍ଣ୍ଣୟ ତ ସ୍ୱୟଂ ହୋଇଗଲା। ଦଶହଜାର ବର୍ଷର ତପସ୍ୟାଫଳରେ ଯାହା ସମ୍ଭବ ନ ହେଲା, ଅର୍ଦ୍ଧକ୍ଷଣ-ସତ୍‌ସଙ୍ଗରେ ତାହା ହୋଇଗଲା। ତେଣୁ ଦୁଇଟିଭିତରୁ କେଉଁଟି ବଡ଼, ଆପଣ ହିଁ ଚିନ୍ତା କରନ୍ତୁ।" ସତ୍‌ସଙ୍ଗର ମହିମା ବୁଝିପାରି ଦୁଇ ଋଷି ପ୍ରସନ୍ନ ହୋଇ ଫେରି ଆସିଲେ।

ବଶିଷ୍ଠ ଥିଲେ ବସୁସମ୍ପନ୍ନ, ଅର୍ଥାତ୍ ଅଣିମାଦି ସିଦ୍ଧିଯୁକ୍ତ ଓ ଗୃହସ୍ଥମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ। ଏଣୁ ତାଙ୍କୁ 'ବଶିଷ୍ଠ' ବୋଲାଗଲା। କାମ, କ୍ରୋଧ, ଲୋଭ, ମୋହ ଆଦି ଶତ୍ରୁ ତାଙ୍କ ଆଶ୍ରମ ନିକଟକୁ ଆସିପାରୁ ନ ଥିଲେ। ନିଜର ପୂର୍ଣ୍ଣସାମର୍ଥ୍ୟ ଥିବା ସତ୍ତ୍ୱେ, ତାଙ୍କର ଶହେ ପୁଅଙ୍କୁ ହତ୍ୟା କରିଥିବା ବିଶ୍ୱାମିତ୍ରଙ୍କ ପ୍ରତି ସେ କ୍ରୋଧପ୍ରକାଶ କରି ନ ଥିଲେ ଓ ତାଙ୍କର ତିଳେ ବି ଅନିଷ୍ଟ ଚାହିଁ ନ ଥିଲେ। ବଶିଷ୍ଠଙ୍କ ଉପରେ ସନ୍ତୁଷ୍ଟ ହୋଇ ମହାଦେବ ତାଙ୍କୁ ବ୍ରାହ୍ମଣମାନଙ୍କ ଉପରେ ଆଧିପତ୍ୟ ପ୍ରଦାନ କରିଥିଲେ। ସନାତନ ଧର୍ମର ମର୍ମ ଯଥାର୍ଥରୂପେ ଜାଣିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବଶିଷ୍ଠଙ୍କ ନାମ ଅଗ୍ରଗଣ୍ୟ। ତାଙ୍କ ଜୀବନର ଘଟଣାସବୁ ରାମାୟଣ, ମହାଭାରତ, ଦେବୀଭାଗବତ, ବିଷ୍ଣୁପୁରାଣ, ମତ୍ସ୍ୟପୁରାଣ, ବାୟୁପୁରାଣ, ଶିବପୁରାଣ, ଲିଙ୍ଗପୁରାଣ ଆଦି ଶାସ୍ତ୍ରରେ ବିସ୍ତୃତଭାବରେ ରହିଛି।

**ପ୍ରଶ୍ନ –** ଏଠାରେ ସପ୍ତମହର୍ଷିରୂପେ ବର୍ତ୍ତମାନ ମନ୍ୱନ୍ତରର ବିଶ୍ୱାମିତ୍ର, ଜମଦଗ୍ନି, ଭରଦ୍ୱାଜ, ଗୌତମ, ଅତ୍ରି, ବଶିଷ୍ଠ ଓ କଶ୍ୟପ ଏହି ସାତଜଣଙ୍କୁ ମାନିନେଲେ ଆପତ୍ତି କଣ ?

**ଉତ୍ତର –** ଏହି ବିଶ୍ୱାମିତ୍ର ଆଦି ସପ୍ତମହର୍ଷି ମଧ୍ୟରୁ ଅତ୍ରି ଓ ବଶିଷ୍ଠଙ୍କ ବ୍ୟତୀତ ଅନ୍ୟ ପାଞ୍ଚଜଣ ଭଗବାନଙ୍କର କିମ୍ବା ବ୍ରହ୍ମାଙ୍କର ମାନସ ପୁତ୍ର ନୁହନ୍ତି। ଅତଏବ ଏଠାରେ ଏମାନଙ୍କୁ ଗ୍ରହଣ ନ କରି ପୂର୍ବୋକ୍ତ ଋଷିମାନଙ୍କୁ ମାନିନେବା ଠିକ୍ ହେବ।

**ପ୍ରଶ୍ନ –ଚତ୍ୱାରଃ ପୂର୍ବେ** ଦ୍ୱାରା କେଉଁମାନଙ୍କୁ ନିଆଯିବ ?

**ଉତ୍ତର –** ସର୍ବପ୍ରଥମେ ଉତ୍ପନ୍ନ ହୋଇଥିବା ସନକ, ସନନ୍ଦନ, ସନାତନ ଓ ସନତ୍କୁମାର – ଏହି ଚାରିଜଣଙ୍କୁ ନିଆଯିବ। ଏମାନେ ମଧ୍ୟ ଭଗବାନଙ୍କର ହିଁ ସ୍ୱରୂପ ଏବଂ ବ୍ରହ୍ମା ତପ କରିବାରୁ ଏମାନେ ସ୍ୱେଚ୍ଛାରେ ପ୍ରକଟ ହୋଇଛନ୍ତି। ବ୍ରହ୍ମା ସ୍ୱୟଂ କହିଛନ୍ତି –

**ତପ୍ତଂ ତପୋ ବିବିଧଲୋକସିସୃକ୍ଷୟା ମେ**
**ଆଦୌ ସନାତ୍ସ୍ୱତପସଃ ସ ଚତୁଃସନୋଽଭୂତ୍।**
**ପ୍ରାକ୍‌କଳ୍ପସଂପ୍ଲବବିନଷ୍ଟମିହାତ୍ମତତ୍ତ୍ୱଂ**
**ସମ୍ୟଗ୍ ଜଗାଦ ମୁନୟୋ ଯଦଚକ୍ଷତାତ୍ମନ୍॥**
(ଶ୍ରୀମଦ୍‌ଭାଗବତ ୨/୭/୫)

ଅର୍ଥାତ୍ "ମୁଁ ବିବିଧପ୍ରକାର ଲୋକସୃଷ୍ଟି କରିବା ଇଚ୍ଛାରେ ସର୍ବପ୍ରଥମେ ଯେଉଁ ତପ କଲି, ମୋର ସେହି ଅଖଣ୍ଡିତ ତପସ୍ୟାରୁ ହିଁ ଭଗବାନ୍ ସ୍ୱୟଂ ସନକ, ସନନ୍ଦନ, ସନାତନ ଓ ସନତ୍କୁମାର – 'ସନ' ନାମଧାରୀ ଏହି ଚାରିରୂପରେ ପ୍ରକଟ ହେଲେ ଏବଂ ପୂର୍ବକଳ୍ପର ପ୍ରଳୟସମୟରେ ଯେଉଁ ଆତ୍ମତତ୍ତ୍ୱଜ୍ଞାନର ପ୍ରଚାର ଏହି ସଂସାରରେ ନଷ୍ଟ ହୋଇଯାଇଥିଲା, ତାହା ଏମାନେ ଭଲଭାବରେ ଉପଦେଶ ଦେଲେ, ଯଦ୍ୱାରା ସେହି ମୁନିମାନେ ନିଜ ହୃଦୟରେ ଆତ୍ମତତ୍ତ୍ୱ ସାକ୍ଷାତ୍କାର କଲେ।"

**ପ୍ରଶ୍ନ –** ଏହି ଶ୍ଳୋକରେ ହିଁ କୁହାଯାଇଛି – ଯାହାଙ୍କର ସବୁଲୋକରେ ଏହି ପ୍ରଜାମାନେ ଅଛନ୍ତି, କିନ୍ତୁ **ଚତ୍ୱାରଃ ପୂର୍ବେ**ର ଅର୍ଥ ସନକାଦି ମହର୍ଷି ବୋଲି ମାନିନେବା ଦ୍ୱାରା ଏଥିରେ ବିରୋଧ ଆସୁଛି, କାରଣ ସନକାଦିଙ୍କର ତ କୌଣସି ପ୍ରଜା ନାହାନ୍ତି।

**ଉତ୍ତର –** ସନକାଦି କୁମାରମାନେ ହେଉଛନ୍ତି ସମସ୍ତଙ୍କୁ ଜ୍ଞାନ ପ୍ରଦାନ କରୁଥିବା ନିବୃତ୍ତିଧର୍ମର ପ୍ରବର୍ତ୍ତକ ଆଚାର୍ଯ୍ୟ। ଅତଏବ ସେମାନଙ୍କର ଶିକ୍ଷା ଗ୍ରହଣ କରୁଥିବା ସମସ୍ତଙ୍କୁ ଶିଷ୍ୟସମ୍ବନ୍ଧଯୋଗୁଁ ସେମାନଙ୍କର ପ୍ରଜା ବୋଲି ମାନି ନେଇ ହେବ; ଅତଏବ ଏଥିରେ କୌଣସି ବିରୋଧ ନାହିଁ।

**ପ୍ରଶ୍ନ – ମନବଃ** ପଦ କେଉଁମାନଙ୍କର ବାଚକ ?

**ଉତ୍ତର –** ବ୍ରହ୍ମାଙ୍କର ଗୋଟିଏ ଦିନରେ ଚଉଦଟି ମନୁ ହୁଅନ୍ତି। ପ୍ରତ୍ୟେକ ମନୁଙ୍କ ଅଧିକାରକାଳକୁ 'ମନ୍ୱନ୍ତର' କହନ୍ତି। ଏକସ୍ତରି ଚତୁର୍ଯୁଗୀଠାରୁ କିଛି ଅଧିକ କାଳ ହେଲେ ଗୋଟିଏ ମନ୍ୱନ୍ତର ହୁଏ। ମାନବୀୟ ବର୍ଷଗଣନା ଅନୁସାରେ ଏକ ମନ୍ୱନ୍ତର ତିରିଶ କୋଟି ସତଷଠି ଲକ୍ଷ କୋଡ଼ିଏ ହଜାର ବର୍ଷ ହୁଏ ଏବଂ ଦିବ୍ୟ ବର୍ଷଗଣନା ହିସାବରେ ଆଠ ଲକ୍ଷ ବାଉନ ହଜାର ବର୍ଷରୁ କିଛି ଅଧିକକାଳ ହୁଏ (ବିଷ୍ଣୁ ପୁରାଣ ୧/୩) ★

ପ୍ରତ୍ୟେକ ମନ୍ୱନ୍ତରରେ ଧର୍ମର ବ୍ୟବସ୍ଥା ଓ ଲୋକରକ୍ଷଣପାଇଁ ଭିନ୍ନ ଭିନ୍ନ ସପ୍ତର୍ଷି ହୁଅନ୍ତି। ଏକ

---

★ ସୂର୍ଯ୍ୟସିଦ୍ଧାନ୍ତରେ ମନ୍ୱନ୍ତରାଦିର ଯେଉଁ ବର୍ଣ୍ଣନା ରହିଛି, ସେହି ଅନୁସାରେ ଏପରି ବୁଝିବା ଉଚିତ –

ସୌରମାନରେ ୪୩,୨୦,୦୦୦ ବର୍ଷ ଅଥବା ଦେବମାନରେ ୧୨,୦୦୦ ବର୍ଷରେ ଗୋଟିଏ ଚତୁର୍ଯୁଗୀ ହୁଏ। ଏହାକୁ ହିଁ ମହାଯୁଗ କହନ୍ତି। ଏପରି ଏକସ୍ତରୀ ଯୁଗରେ ଗୋଟିଏ ମନ୍ୱନ୍ତର ହୁଏ। ପ୍ରତ୍ୟେକ ମନ୍ୱନ୍ତର ଶେଷରେ ସତ୍ୟଯୁଗପରିମାଣର ଅର୍ଥାତ୍ ୧୭,୨୮,୦୦୦ ବର୍ଷର ସନ୍ଧ୍ୟା ହୁଏ। ମନ୍ୱନ୍ତର ବିତିଯିବା ପରେ ଯେତେବେଳେ ସନ୍ଧ୍ୟା ହୁଏ, ସେତେବେଳେ ସାରା ପୃଥିବୀ ଜଳରେ ବୁଡ଼ିଯାଏ। ପ୍ରତ୍ୟେକ କଳ୍ପରେ (ବ୍ରହ୍ମାଙ୍କର ଏକ ଦିନରେ) ନିଜ ନିଜ ସନ୍ଧ୍ୟାର ପରିମାଣ ସହିତ ଚଉଦ ମନ୍ୱନ୍ତର ହୁଏ। ଏହା ବ୍ୟତୀତ କଳ୍ପର ଆରମ୍ଭକାଳରେ ମଧ୍ୟ ସତ୍ୟଯୁଗପରିମାଣର ଗୋଟିଏ ସନ୍ଧ୍ୟା ହୁଏ। ଏହିପରି ଗୋଟିଏ କଳ୍ପର ଚଉଦ ମନୁରେ ୭୧ଟି ଚତୁର୍ଯୁଗୀ ଛଡ଼ା ସତ୍ୟଯୁଗପରିମାଣର ୧୫ଟି ସନ୍ଧ୍ୟା ହୁଏ। ୭୧ ମହାଯୁଗର ମାନରେ ୧୪ ମନୁମଧ୍ୟରେ ୯୯୪ ମହାଯୁଗ ହୁଏ ଏବଂ ସତ୍ୟଯୁଗ-ପରିମାଣର ୧୫ଟି ସନ୍ଧ୍ୟାକାଳ ପୁରା ୬ଟି ମହାଯୁଗସମାନ ହୋଇଯାଏ। ଉଭୟର ଯୋଗ କଲେ ପୁରା ଏକହଜାର ମହାଯୁଗ ବା ଦିବ୍ୟଯୁଗ ବିତିଯାଏ। ଏହି ହିସାବରେ ନିମ୍ନଲିଖିତ ତାଲିକାଦ୍ୱାରା ଏହାକୁ ବୁଝନ୍ତୁ –

| | ସୌରମାନ ବା ମାନବ ବର୍ଷ | ଦେବମାନ ବା ଦିବ୍ୟବର୍ଷ |
|---|---|---|
| ଏକ ଚତୁର୍ଯୁଗୀ (ମହାଯୁଗ ବା ଦିବ୍ୟଯୁଗ) | ୪୩,୨୦,୦୦୦ | ୧୨,୦୦୦ |
| ଏକସ୍ତରୀ ଚତୁର୍ଯୁଗୀ | ୩୦,୬୭,୨୦,୦୦୦ | ୮,୫୨,୦୦୦ |
| କଳ୍ପସନ୍ଧି | ୧୭,୨୮,୦୦୦ | ୪,୮୦୦ |
| ମନ୍ୱନ୍ତରର ଚଉଦ ସନ୍ଧ୍ୟା | ୨,୪୧,୯୨,୦୦୦ | ୬୭,୨୦୦ |
| ସନ୍ଧିସହିତ ଏକ ମନ୍ୱନ୍ତର | ୩୦,୮୪,୪୮,୦୦୦ | ୮,୫୬,୮୦୦ |
| ଚଉଦ ସନ୍ଧ୍ୟାସହ ଚଉଦ ମନ୍ୱନ୍ତର | ୪୩୧,୮୨,୭୨,୦୦୦ | ୧,୧୯,୯୫,୨୦୦ |
| କଳ୍ପର ସନ୍ଧି ସହ ଚଉଦ ମନ୍ୱନ୍ତର ବା ଏକକଳ୍ପ | ୪,୩୨,୦୦,୦୦,୦୦୦ | ୧,୨୦,୦୦,୦୦୦ |

ମନ୍ୱନ୍ତର ବିତିଯିବା ପରେ ଯେତେବେଳେ ମନୁ ବଦଳିଯାଆନ୍ତି, ସେତେବେଳେ ତାଙ୍କ ସହିତ ସପ୍ତର୍ଷି, ଦେବତା, ଇନ୍ଦ୍ର ଓ ମନୁପୁତ୍ର ମଧ୍ୟ ବଦଳିଯାଆନ୍ତି। ବର୍ତ୍ତମାନ କଳ୍ପର ମନୁମାନଙ୍କର ନାମ ହେଲା— ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି, ଦେବସାବର୍ଣ୍ଣି ଓ ଇନ୍ଦ୍ରସାବର୍ଣ୍ଣି। ★

**ପ୍ରଶ୍ନ—** ଏହି ସପ୍ତ ମହର୍ଷି ଆଦିଙ୍କ ସହିତ **ମଦ୍ଭାବାଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଏମାନେ ସମସ୍ତେ ଭଗବାନଙ୍କ ଠାରେ ଶ୍ରଦ୍ଧା ଓ ପ୍ରେମ ରଖନ୍ତି। ଏହି ଭାବ ଦେଖାଇବାପାଇଁ **ମଦ୍ଭାବାଃ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ—** ସପ୍ତର୍ଷି ଓ ସନକାଦିଙ୍କ ଉତ୍ପତ୍ତି ତ ବ୍ରହ୍ମାଙ୍କ ମନରୁ ହୋଇଥିବା ଧରାଯାଏ। ଏଠାରେ ଭଗବାନ୍ ସେମାନଙ୍କୁ ନିଜ ମନରୁ ଉତ୍ପନ୍ନ ବୋଲି କିପରି କହିଲେ ?

**ଉତ୍ତର—** ଏମାନେ ବ୍ରହ୍ମାଙ୍କ ଠାରୁ ଉତ୍ପନ୍ନ ବୋଲି ଯାହା କୁହାଯାଏ, ତାହା ପ୍ରକୃତରେ ଭଗବାନଙ୍କ ଠାରୁ; କାରଣ ସ୍ୱୟଂ ଭଗବାନ୍ ହିଁ ଜଗତକୁ ସୃଷ୍ଟି କରିବା ପାଇଁ ବ୍ରହ୍ମାଙ୍କ ରୂପ ଧାରଣ କରନ୍ତି। ଅତଏବ ବ୍ରହ୍ମାଙ୍କ ମନରୁ ଯେଉଁମାନେ ଉତ୍ପନ୍ନ, ସେମାନଙ୍କୁ ନିଜ ମନରୁ ଉତ୍ପନ୍ନ ବୋଲି ଭଗବାନଙ୍କ କହିବାରେ ମଧ୍ୟ କୌଣସି ବିରୋଧ ନାହିଁ।

***ସମ୍ବନ୍ଧ—** ଏପରିଭାବରେ ଦ୍ୱିତୀୟ ଓ ତୃତୀୟ ଶ୍ଳୋକଦ୍ୱାରା ଭଗବାନଙ୍କ ଯୋଗ(ପ୍ରଭାବ)ର ଓ ଚତୁର୍ଥଠାରୁ ଷଷ୍ଠଯାଏ ତାଙ୍କ ବିଭୂତିମାନଙ୍କର ଯେଉଁ ବର୍ଣ୍ଣନା କରାଗଲା, ତାହା ଜାଣିବାର ଫଳ ଆଗ ଶ୍ଳୋକରେ କହୁଛନ୍ତି—*

## ଏତାଂ ବିଭୂତିଂ ଯୋଗଂ ଚ ମମ ଯୋ ବେତ୍ତି ତତ୍ତ୍ୱତଃ।
## ସୋଽବିକମ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ॥ ୭ ॥

**ଅନ୍ୱୟ—** **ଯଃ** = ଯେଉଁ ପୁରୁଷ; **ମମ** = ମୋର; **ଏତାମ୍** = ଏହି; **ବିଭୂତିମ୍** = ପରମ ଐଶ୍ୱର୍ଯ୍ୟରୂପୀ ବିଭୂତିକୁ; **ଚ** = ଓ; **ଯୋଗମ୍** = ଯୋଗଶକ୍ତିକୁ; **ତତ୍ତ୍ୱତଃ** = ତତ୍ତ୍ୱତଃ; **ବେତ୍ତି** = ଜାଣେ; **ସଃ** = ସେ; **ଅବିକମ୍ପେନ** = ନିଶ୍ଚଳ; **ଯୋଗେନ** = ଭକ୍ତିଯୋଗଦ୍ୱାରା; **ଯୁଜ୍ୟତେ** = ଯୁକ୍ତ ହୋଇଯାଏ; **ଅତ୍ର** = ଏଥିରେ (କୌଣସି); **ସଂଶୟଃ** = ସନ୍ଦେହ; **ନ (ଅସ୍ତି)** = ନାହିଁ।

**ଯେଉଁ ପୁରୁଷ ମୋର ଏହି ପରମ ଐଶ୍ୱର୍ଯ୍ୟରୂପୀ ବିଭୂତି ଓ ଯୋଗଶକ୍ତିକୁ ତତ୍ତ୍ୱତଃ ଜାଣନ୍ତି, ସେ ନିଶ୍ଚଳ ଭକ୍ତିଯୋଗଦ୍ୱାରା ଯୁକ୍ତ ହୋଇଯାଆନ୍ତି; ଏଥିରେ କୌଣସି ସନ୍ଦେହ ନାହିଁ॥ ୭ ॥**

**ପ୍ରଶ୍ନ—** ଏଠାରେ **ଏତାମ୍** ବିଶେଷଣ ସହିତ **ବିଭୂତିମ୍** ପଦ କାହାର ବାଚକ ଏବଂ **ଯୋଗମ୍** ପଦଦ୍ୱାରା କଣ କୁହାଗଲା ? ଏ ଉଭୟଙ୍କୁ ତତ୍ତ୍ୱତଃ ଜାଣିବା କହିଲେ କଣ ବୁଝାଏ ?

**ଉତ୍ତର—** ପୂର୍ବ ତିନୋଟି ଶ୍ଳୋକରେ ଭଗବାନ୍ ଯେଉଁ ବୁଦ୍ଧି ଆଦି ଭାବକୁ ଓ ମହର୍ଷି ଆଦିଙ୍କୁ ନିଜ ଠାରୁ ଉତ୍ପନ୍ନ ବୋଲି କହିଛନ୍ତି, ତଥା ସପ୍ତମ ଅଧ୍ୟାୟରେ 'ଜଳରେ ମୁଁ ରସ' (୭/୮) ଏବଂ ନବମ ଅଧ୍ୟାୟରେ

---

ବ୍ରହ୍ମାଙ୍କର ଦିନଟି ହିଁ ଗୋଟିଏ କଳ୍ପ। ତାଙ୍କର ରାତିଟିଏ ମଧ୍ୟ ସେତିକି ବଡ଼। ଏହି ଅହୋରାତ୍ରମାନରେ ବ୍ରହ୍ମାଙ୍କର ପରମାୟୁ ଏକଶହ ବର୍ଷ। ଏହାକୁ 'ପର' କହନ୍ତି। ଏବେ ବ୍ରହ୍ମା ତାଙ୍କ ଆୟୁର ଅଧାଭାଗ ଅର୍ଥାତ୍ ଏକପରାର୍ଦ୍ଧ ବିତାଇସାରିବା ପରେ ଦ୍ୱିତୀୟ ପରାର୍ଦ୍ଧ ବିତାଉଛନ୍ତି। ଏହା ତାଙ୍କ ୫୧ ବର୍ଷର ପ୍ରଥମ ଦିନ ବା କଳ୍ପ। ବର୍ତ୍ତମାନ କଳ୍ପର ଆରମ୍ଭରୁ ଏଯାଏଁ ସ୍ୱାୟମ୍ଭୁବ ଆଦି ଛଅ ମନ୍ୱନ୍ତର ନିଜ ନିଜ ସନ୍ଧ୍ୟା ସହିତ ବିତିସାରିଲେଣି। କଳ୍ପର ଆଦ୍ୟସନ୍ଧ୍ୟା ସହିତ ସାତଟି ସନ୍ଧ୍ୟା ବିତିସଲାଣି। ବର୍ତ୍ତମାନ ସୁଦ୍ଧା ସପ୍ତମ ବୈବସ୍ୱତ ମନ୍ୱନ୍ତରର ୨୭ ଚତୁର୍ଯୁଗ ବିତିସାରିଲାଣି। ଏବେ ୨୮ଶ ଚତୁର୍ଯୁଗର କଳିଯୁଗର ସନ୍ଧ୍ୟାକାଳ ଚାଲିଛି। (ସୂର୍ଯ୍ୟସିଦ୍ଧାନ୍ତ; ମଧ୍ୟମାଧିକାର, ଶ୍ଳୋକ ୧୫ରୁ ୨୪ ଯାଏ ଦେଖନ୍ତୁ)

ଏହି ୨୦୫୬ ବିକ୍ରମ ସମ୍ବତଯାଏଁ (୧୯୯୯ ମସିହା) କଳିଯୁଗର ୫୧୦୦ ବର୍ଷ ବିତିଗଲାଣି। କଳିଯୁଗର ଆରମ୍ଭରେ ୩୬,୦୦୦ ବର୍ଷ ସନ୍ଧ୍ୟାକାଳର ପରିମାଣ। ଏହି ହିସାବାନୁସାରେ ବର୍ତ୍ତମାନ (୧୯୯୯) କଳିଯୁଗସନ୍ଧ୍ୟାର ଆହୁରି ୩୦,୯୦୦ ସୌର ବର୍ଷ ବିତିବାକୁ ବାକି ରହିଛି।

★ ଶ୍ରୀମଦ୍ଭାଗବତର ଅଷ୍ଟମ ସ୍କନ୍ଧର ପ୍ରଥମ, ପଞ୍ଚମ ଓ ତ୍ରୟୋଦଶ ଅଧ୍ୟାୟରେ ଏମାନଙ୍କର ବିସ୍ତୃତ ବିବରଣୀ ଦେଖନ୍ତୁ। ବିଭିନ୍ନ ପୁରାଣରେ ଏମାନଙ୍କର ନାମଭେଦ ଦେଖିବାକୁ ମିଳେ। ଏଠାରେ ସବୁ ନାମ ଶ୍ରୀମଦ୍ଭାଗବତ ଅନୁସାରେ ଦିଆଯାଇଛି। ଚଉଦ ମନୁଙ୍କର ଏକ କଳ୍ପ ବିତିଯିବା ପରେ ସବୁ ମନୁ ବଦଳିଯାଆନ୍ତି।

'ମୁଁ କ୍ରତୁ', 'ମୁଁ ଯଜ୍ଞ' (୯/୧୬) ଇତ୍ୟାଦି ବାକ୍ୟରେ ଯେଉଁ ଯେଉଁ ପଦାର୍ଥର, ଭାବର ଓ ଦେବତା ଆଦିଙ୍କର ବର୍ଣ୍ଣନା କରିଛନ୍ତି, ଏଠାରେ **ଏତାମ୍** ବିଶେଷଣ ସହିତ **ବିଭୂତିମ୍** ପଦ ହେଉଛି ସେସବୁର ବାଚକ।

ଭଗବାନଙ୍କର ଯେଉଁ ଅଲୌକିକ ଶକ୍ତି ରହିଛି, ଯାହାକୁ ଦେବତା ଓ ମହର୍ଷିମାନେ ମଧ ସଂପୂର୍ଣ୍ଣଭାବେ ଜାଣନ୍ତି ନାହିଁ (୧୦/୨,୩), ଯେଉଁ ଶକ୍ତିବଳରେ ସ୍ୱୟଂ ସାତ୍ତ୍ୱିକ, ରାଜସ ଓ ତାମସ ଭାବର ଅଭିନ୍ନ-ନିମିତ୍ତୋପାଦାନ-କାରଣ ହୋଇ ମଧ ଭଗବାନ୍ ସଦା ସେମାନଙ୍କ ଠାରୁ ଅଲଗା ରହନ୍ତି ଓ କୁହାଯାଏ ଯେ, 'ସେହି ଭାବସବୁ ଭଗବାନଙ୍କ ଠାରେ ନାହିଁ , କି ଭଗବାନ୍ ସେସବୁ ମଧରେ ନାହାନ୍ତି (୭/୧୨), ଯେଉଁ ଶକ୍ତିବଳରେ ସାରା ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାର ଆଦି ସମସ୍ତ କର୍ମ କରି ଭଗବାନ୍ ସାରା ବିଶ୍ୱକୁ ନିୟମରେ ପରିଚାଳନା କରନ୍ତି, ଯେଉଁ କାରଣରୁ ସେ ସମସ୍ତ ଲୋକଙ୍କର ମହାନ୍ ଈଶ୍ୱର, ସମସ୍ତ ପ୍ରାଣୀଙ୍କର ସୁହୃଦ୍, ସମସ୍ତ ଯଜ୍ଞାଦିର ଭୋକ୍ତା, ସର୍ବାଧାର ଓ ସର୍ବଶକ୍ତିମାନ୍, ଯେଉଁ ଶକ୍ତିରେ ଭଗବାନ୍ ଏହି ସାରା ଜଗତକୁ ତାଙ୍କର ଏକ ଅଂଶରେ ଧାରଣ କରି ରଖିଛନ୍ତି (୧୦/୪୨) ଓ ବିଭିନ୍ନ ଯୁଗରେ ନିଜର ଇଚ୍ଛାନୁସାରେ ବିଭିନ୍ନ କାର୍ଯ୍ୟପାଇଁ ବିଭିନ୍ନ ରୂପ ଧାରଣ କରନ୍ତି ତଥା ସବୁ କିଛି କରି ମଧ ସମସ୍ତ କର୍ମଠାରୁ, ସଂପୂର୍ଣ୍ଣ ଜଗତଠାରୁ ଏବଂ ଜନ୍ମାଦି ସମସ୍ତ ବିକାରରୁ ସର୍ବଥା ନିର୍ଲିପ୍ତ ରହନ୍ତି ଏବଂ ନବମ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଯାହାକୁ 'ଐଶ୍ୱର ଯୋଗ' କୁହାଯାଇଛି, ଏଠାରେ **ଯୋଗମ୍** ପଦଟି ହେଉଛି ସେହି ଅଦ୍ଭୁତ ଶକ୍ତି (ପ୍ରଭାବ)ର ବାଚକ।

ଏପରିଭାବରେ ସମସ୍ତ ଜଗତ ଭଗବାନଙ୍କର ହିଁ ରଚନା ଏବଂ ସବୁ ତାଙ୍କର ଏକ ଅଂଶରେ ରହିଛି। ଏଣୁ ଜଗତରେ ଯେକୌଣସି ବସ୍ତୁ ଶକ୍ତିସମ୍ପନ୍ନ ପ୍ରତୀତ ହୁଏ, ଯାହାଠାରେ କିଛି ବିଶେଷତା ଦେଖାଯାଏ, ତାହାକୁ ଅଥବା ସମସ୍ତ ଜଗତକୁ ଭଗବାନଙ୍କର ହିଁ ବିଭୂତି ଅର୍ଥାତ୍ ତାଙ୍କର ସ୍ୱରୂପ ବୋଲି ବୁଝିବା ଏବଂ ଉପରୋକ୍ତପ୍ରକାରେ ଭଗବାନଙ୍କୁ ସମସ୍ତ ଜଗତରେ କର୍ତ୍ତା-ହର୍ତ୍ତା, ସର୍ବଶକ୍ତିମାନ୍, ସର୍ବେଶ୍ୱର, ସର୍ବାଧାର, ପରମଦୟାଳୁ, ସମସ୍ତଙ୍କର ସୁହୃଦ୍ ଓ ସର୍ବାନ୍ତର୍ଯାମୀ ବୋଲି ମାନିବା ହିଁ 'ଭଗବାନଙ୍କର ବିଭୂତି ଓ ଯୋଗକୁ ତତ୍ତ୍ୱତଃ ଜାଣିବା'।

**ପ୍ରଶ୍ନ –** ଅବିକମ୍ପେନ ବିଶେଷଣ ସହିତ **ଯୋଗେନ** ପଦ କାହାର ବାଚକ ଓ ତା ସହିତ ଯୁକ୍ତ ହୋଇଯିବା କଣ ?

**ଉତ୍ତର –** ଭଗବାନଙ୍କ ପ୍ରତି ଯେଉଁ ଅନନ୍ୟ ଭକ୍ତି (୧୧/୫୫) ରହିଥାଏ, ଯାହାକୁ 'ଅବ୍ୟଭିଚାରିଣୀ ଭକ୍ତି' (୧୩/୧୦) ଓ 'ଅବ୍ୟଭିଚାରୀ ଭକ୍ତିଯୋଗ' (୧୪/୨୬) ବୋଲି ମଧ କହନ୍ତି, ସପ୍ତମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଯାହାକୁ 'ଯୋଗ' ବୋଲି କୁହାଗଲା, ନବମ ଅଧ୍ୟାୟର ତେର, ଚଉଦ ତଥା ଚଉତିରିଶ ଶ୍ଳୋକରେ ଓ ଏହି ଅଧ୍ୟାୟର ନବମ ଶ୍ଳୋକରେ ଯାହାର ସ୍ୱରୂପ କୁହାଗଲା, ଏଠାରେ **ଅବିକମ୍ପେନ** ବିଶେଷଣ ସହିତ **ଯୋଗେନ** ପଦଟି ହେଉଛି ସେହି **ଅବିଚଳ ଭକ୍ତିଯୋଗର** ବାଚକ ଓ ସେଥିରେ ସଂଲଗ୍ନ ରହିବା ହିଁ ତା' ସହିତ ଯୁକ୍ତ ହେବା।

*ସମ୍ବନ୍ଧ – ଭଗବାନଙ୍କ ପ୍ରଭାବ ଓ ବିଭୂତିମାନଙ୍କୁ ଜାଣିବାର ଫଳ ଅଟଳ ଭକ୍ତିଯୋଗପ୍ରାପ୍ତି ବୋଲି କୁହାଗଲା। ବର୍ତ୍ତମାନ ଆଗ ଦୁଇଟି ଶ୍ଳୋକରେ ସେହି ଭକ୍ତିଯୋଗପ୍ରାପ୍ତିର କ୍ରମ କୁହାଯାଉଛି–*

## ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ।
## ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ ॥ ୮ ॥

**ଅନ୍ୱୟ –** **ଅହମ୍** = ମୁଁ ବାସୁଦେବ ହିଁ; **ସର୍ବସ୍ୟ** = ସମସ୍ତ ଜଗତର; **ପ୍ରଭବଃ** = ଉତ୍ପତ୍ତିର କାରଣ; **ମତ୍ତଃ** = (ଓ) ମୋ ଠାରୁ (ହିଁ); **ସର୍ବମ୍** = ସମସ୍ତ ଜଗତ; **ପ୍ରବର୍ତ୍ତତେ** = ପ୍ରବୃତ୍ତ ହେଉଛି; **ଇତି** = ଏପରି; **ମତ୍ୱା** = ବୁଝି; **ଭାବସମନ୍ୱିତାଃ** = ଶ୍ରଦ୍ଧାଯୁକ୍ତ ଓ ଭକ୍ତିଯୁକ୍ତ; **ବୁଧାଃ** = ବୁଦ୍ଧିମାନ୍ ଭକ୍ତମାନେ; **ମାମ୍** = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ; **ଭଜନ୍ତି** = ଭଜନ କରନ୍ତି।

**ମୁଁ ବାସୁଦେବ ହିଁ ସମସ୍ତ ଜଗତର ଉତ୍ପତ୍ତିର କାରଣ ଓ ମୋ ଦ୍ୱାରା ହିଁ ସମସ୍ତ ଜଗତ ପ୍ରବୃତ୍ତ ହେଉଛି, ଏପରି ବୁଝି ଶ୍ରଦ୍ଧାଯୁକ୍ତ ଓ ଭକ୍ତିଯୁକ୍ତ ବୁଦ୍ଧିମାନ୍ ଭକ୍ତମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ନିରନ୍ତର ଭଜନ କରନ୍ତି ॥ ୮ ॥**

**ପ୍ରଶ୍ନ—** ଭଗବାନଙ୍କୁ ସମସ୍ତ ଜଗତର **'ପ୍ରଭବ'** ବୋଲି ବୁଝିବା କଣ ?

**ଉତ୍ତର—** ସମସ୍ତ ଜଗତ ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି। ଭଗବାନ୍ ହିଁ ସମସ୍ତ ଜଗତର ଉପାଦାନ ଓ ନିମିତ୍ତ କାରଣ। ଅତଏବ ଭଗବାନ୍ ହିଁ ସର୍ବୋତ୍ତମ। ଏହା ବୁଝିବା ହିଁ ଭଗବାନଙ୍କୁ ସମସ୍ତ ଜଗତର **'ପ୍ରଭବ'** ବୋଲି ବୁଝିବା।

**ପ୍ରଶ୍ନ—** 'ସମସ୍ତ ଜଗତ ଭଗବାନଙ୍କ ଦ୍ୱାରା ହିଁ ପ୍ରବୃତ୍ତ ହୁଏ'— ଏହା ବୁଝିବାର ଅର୍ଥ କଣ ?

**ଉତ୍ତର—** ଭଗବାନଙ୍କ ଯୋଗବଳରେ ଏହି ସୃଷ୍ଟିଚକ୍ର ଚାଲିଛି; ତାଙ୍କ ଶାସନଶକ୍ତିରେ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରଗଣ ଓ ପୃଥିବୀ ଆଦି ନିୟମପୂର୍ବକ ଘୁରୁଛନ୍ତି; ତାଙ୍କ ଶାସନଯୋଗୁଁ ସକଳ ପ୍ରାଣୀ ନିଜ ନିଜର କର୍ମାନୁସାରେ ଭଲ-ମନ୍ଦ ଯୋନିରେ ଜନ୍ମ ଗ୍ରହଣ କରି ନିଜ ନିଜ କର୍ମମାନଙ୍କର ଫଳ ଭୋଗ କରୁଛନ୍ତି। ଏପରିଭାବରେ ଭଗବାନଙ୍କୁ ସମସ୍ତଙ୍କର ନିୟନ୍ତା ଓ ପ୍ରବର୍ତ୍ତକ ବୋଲି ବୁଝିବା ହିଁ 'ସଂପୂର୍ଣ୍ଣ ଜଗତ ଭଗବାନଙ୍କ ଦ୍ୱାରା ପ୍ରବୃତ୍ତ ହେଉଛି' ବୋଲି ବୁଝିବା।

**ପ୍ରଶ୍ନ—ଭାବସମନ୍ୱିତାଃ** ବିଶେଷଣ ସହିତ **ବୁଧାଃ** ପଦ କେଉଁ ଭକ୍ତମାନଙ୍କର ବାଚକ ?

**ଉତ୍ତର—** ଯେଉଁମାନେ ଭଗବାନଙ୍କର ଅତିଶୟ ପ୍ରେମରେ ନିମଗ୍ନ, ଭଗବାନଙ୍କ ଠାରେ ଯେଉଁମାନଙ୍କର ଅଟଳ ଶ୍ରଦ୍ଧା ରହିଛି, ଯେଉଁମାନେ ଭଗବାନଙ୍କର ଗୁଣ ଓ ପ୍ରଭାବକୁ ଭଲଭାବରେ ବିଶ୍ୱାସପୂର୍ବକ ବୁଝନ୍ତି— **ଭାବସମନ୍ୱିତାଃ** ବିଶେଷଣ ସହିତ **ବୁଧାଃ** ପଦଟି ହେଉଛି ଭଗବାନଙ୍କର ସେହି ବୁଦ୍ଧିମାନ୍ ଭକ୍ତମାନଙ୍କ ବାଚକ।

**ପ୍ରଶ୍ନ—** ଉପରୋକ୍ତପ୍ରକାରେ ବୁଝି ଭଗବାନଙ୍କୁ ଭଜନ କରିବା କଣ ?

**ଉତ୍ତର—** ଉପରୋକ୍ତପ୍ରକାରେ ଭଗବାନଙ୍କୁ ସଂପୂର୍ଣ୍ଣ ଜଗତର କର୍ତ୍ତା, ହର୍ତ୍ତା ଓ ପ୍ରବର୍ତ୍ତକ ବୋଲି ବୁଝି ଆଗ ଶ୍ଳୋକରେ କୁହାଯାଇଥିବାପ୍ରକାରେ ଅତିଶୟ ଶ୍ରଦ୍ଧା ଓ ପ୍ରେମପୂର୍ବକ ମନ, ବୁଦ୍ଧି ଓ ସମସ୍ତ ଇନ୍ଦ୍ରିୟଦ୍ୱାରା ନିରନ୍ତର ଭଗବାନଙ୍କୁ ସ୍ମରଣ ଓ ସେବା କରିବା ହିଁ ଭଗବାନଙ୍କୁ ଭଜନ କରିବା।

**ମଚ୍ଚିତ୍ତା ମଦ୍‌ଗତପ୍ରାଣା ବୋଧୟନ୍ତଃ ପରସ୍ପରମ୍।**
**କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ ॥ ୯ ॥**

**ଅନ୍ୱୟ—** **ମଚ୍ଚିତ୍ତାଃ** = ନିରନ୍ତର ମୋଠାରେ ମନ ଲଗାଇଥିବା (ଓ); **ମଦ୍‌ଗତପ୍ରାଣାଃ** = ମୋଠାରେ ହିଁ ପ୍ରାଣକୁ ଅର୍ପଣ କରିଦେଇଥିବା ଭକ୍ତଗଣ; **ପରସ୍ପରମ୍, ବୋଧୟନ୍ତଃ** = ମୋ ଭକ୍ତିସମ୍ବନ୍ଧରେ ଚର୍ଚ୍ଚା କରି ଓ ମୋ ପ୍ରଭାବକୁ ପରସ୍ପର ଆଲୋଚନା କରି ଏକ ଆରେକକୁ ବୋଧ କରାଇ; **ଚ** = ତଥା; **କଥୟନ୍ତଃ** = ମୋର ଗୁଣ ଓ ପ୍ରଭାବ ସହିତ ମୋ ବିଷୟରେ କଥାଭାଷା କରି; **ଚ** = ହିଁ; **ନିତ୍ୟମ୍** = ନିରନ୍ତର; **ତୁଷ୍ୟନ୍ତି** = ସନ୍ତୁଷ୍ଟ ହୁଅନ୍ତି; **ଚ** = ଓ; **ମାମ୍** = ମୋ ଠାରେ (ବାସୁଦେବଙ୍କ ଠାରେ ହିଁ); **ରମନ୍ତି** = ନିରନ୍ତର ରମଣ କରନ୍ତି।

**ନିରନ୍ତର ମୋଠାରେ ମନ ଲଗାଇଥିବା ଓ ମୋଠାରେ ହିଁ ପ୍ରାଣ ଅର୍ପଣ କରିଦେଇଥିବା ଭକ୍ତମାନେ ମୋ' ଭକ୍ତି ସମ୍ବନ୍ଧରେ ଚର୍ଚ୍ଚା କରି, ମୋର ପ୍ରଭାବ ବିଷୟରେ ପରସ୍ପର ଆଲୋଚନା କରି, ଏକ ଆରେକକୁ ବୋଧ କରାଇ ତଥା ମୋର ଗୁଣ ଓ ପ୍ରଭାବ ସହିତ ମୋ ବିଷୟରେ କଥାଭାଷା କରି ହିଁ ନିରନ୍ତର ସନ୍ତୁଷ୍ଟ ହୁଅନ୍ତି ଓ ମୋଠାରେ (ବାସୁଦେବଙ୍କ ଠାରେ) ହିଁ ନିରନ୍ତର ରମଣ କରନ୍ତି ॥ ୯ ॥**

**ପ୍ରଶ୍ନ— ମଚ୍ଚିତ୍ତାଃ**ର ଅଭିପ୍ରାୟ କଣ ?

**ଉତ୍ତର—** ଭଗବାନଙ୍କୁ ହିଁ ନିଜର ପରମ ପ୍ରେମୀ, ପରମ ସୁହୃଦ୍, ପରମ ଆତ୍ମୀୟ, ପରମ ଗତି ଓ ପରମ ପ୍ରିୟ ବୋଲି ବୁଝିଥିବାରୁ ଯେଉଁମାନଙ୍କର ଚିତ୍ତ ଅନନ୍ୟଭାବରେ ଭଗବାନଙ୍କ ଠାରେ ଲାଗିରହିଥାଏ (୮/୧୪, ୯/୨୨), ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି

ବି ବସ୍ତୁରେ ଯେଉଁମାନଙ୍କର ପ୍ରୀତି, ଆସକ୍ତି ବା ରମଣୀୟ ବୁଦ୍ଧି ନ ଥାଏ, ଯେଉଁମାନେ ସଦାସର୍ବଦା ଭଗବାନଙ୍କର ନାମ, ଗୁଣ, ପ୍ରଭାବ, ଲୀଳା ଓ ସ୍ୱରୂପ ଚିନ୍ତନ କରନ୍ତି ଓ ଶାସ୍ତ୍ରବିଧି ଅନୁସାରେ କର୍ମ କରି କରି, ଉଠିବା, ବସିବା, ଶୋଇବା, ଚେଇଁବା, ଚାଲିବା-ବୁଲିବା, ଖାଇବା, ପିଇବା ଆଦି ବ୍ୟବହାରକାଳରେ ଓ ଧ୍ୟାନକାଳରେ କେବେ ବି କ୍ଷଣେ ମଧ୍ୟ ଭଗବାନଙ୍କୁ ଭୁଲନ୍ତି ନାହିଁ, ସେପରି ନିତ୍ୟନିରନ୍ତର ଭଗବତ୍-ଚିନ୍ତନ କରୁଥିବା ଭକ୍ତମାନଙ୍କ ପାଇଁ ହିଁ ଭଗବାନ୍ **ମଚ୍ଚିତ୍ତାଃ** ବିଶେଷଣ ପ୍ରୟୋଗ କରିଛନ୍ତି ।

**ପ୍ରଶ୍ନ –** **ମଦ୍‌ଗତପ୍ରାଣାଃ**ର ଭାବ କଣ ?

**ଉତ୍ତର –** ଯେଉଁମାନଙ୍କ ଜୀବନର ଓ ଇନ୍ଦ୍ରିୟମାନଙ୍କର ସମସ୍ତ ଚେଷ୍ଟା କେବଳ ଭଗବାନଙ୍କ ପାଇଁ ହିଁ ହୁଏ, ଯେଉଁମାନଙ୍କୁ କ୍ଷଣେମାତ୍ର ଭଗବାନଙ୍କର ବିୟୋଗ ଅସହ୍ୟ ବୋଧହୁଏ, ଯେଉଁମାନେ ଭଗବାନଙ୍କ ପାଇଁ ହିଁ ପ୍ରାଣ ଧାରଣ କରନ୍ତି, ଖାଇବା-ପିଇବା, ଚାଲିବା-ବୁଲିବା, ଶୋଇବା-ଉଠିବା ଆଦି ଯେତେପ୍ରକାର ଚେଷ୍ଟା ଅଛି, ସେସବୁରେ ଯେଉଁମାନଙ୍କର ନିଜର କିଛି ବି ପ୍ରୟୋଜନ ରହି ନାହିଁ, ଯେଉଁମାନେ ସବୁକିଛି ଭଗବାନଙ୍କ ପାଇଁ ହିଁ କରନ୍ତି, ସେମାନଙ୍କ ପାଇଁ ଭଗବାନ୍ **ମଦ୍‌ଗତପ୍ରାଣାଃ** ପ୍ରୟୋଗ କରିଛନ୍ତି ।

**ପ୍ରଶ୍ନ –** **ପରସ୍ପରଂ ବୋଧୟନ୍ତଃ**ର ଭାବ କଣ ?

**ଉତ୍ତର –** ଭଗବାନଙ୍କ ଠାରେ ଶ୍ରଦ୍ଧା-ଭକ୍ତି ରଖିଥିବା ପ୍ରେମୀ ଭକ୍ତମାନେ ନିଜ ନିଜର ଅନୁଭବ ଅନୁସାରେ ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ, ଲୀଳା, ମାହାତ୍ମ୍ୟ ଓ ରହସ୍ୟକୁ ନାନାପ୍ରକାର ଯୁକ୍ତିଦ୍ୱାରା ପରସ୍ପର ବୁଝାଇବାକୁ ଯେଉଁ ଚେଷ୍ଟା କରନ୍ତି, ତାହା ହିଁ ପରସ୍ପର ଭଗବାନଙ୍କୁ ବୋଧ କରାଇବା ।

**ପ୍ରଶ୍ନ –** ଭଗବାନଙ୍କ ବିଷୟରେ କଥାଭାଷା ହେବା କଣ ?

**ଉତ୍ତର –** ଶ୍ରଦ୍ଧାଭକ୍ତିପୂର୍ବକ ଭଗବାନଙ୍କର ନାମ, ଗୁଣ, ପ୍ରଭାବ, ଲୀଳା ଓ ସ୍ୱରୂପ କୀର୍ତ୍ତନ ଓ ଗାନ କରିବା ତଥା ଲୀଳାକଥନ ଓ ବ୍ୟାଖ୍ୟାନ ଆଦିଦ୍ୱାରା ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବା ଓ ପ୍ରଭୁଙ୍କୁ ସ୍ତୁତି କରିବା ଆଦି ସବୁଚେଷ୍ଟା ହିଁ ଭଗବାନଙ୍କ ବିଷୟରେ କଥାଭାଷା ହେବା ।

**ପ୍ରଶ୍ନ –** ଉପରୋକ୍ତପ୍ରକାରେ ସବୁକିଛି କରି ନିତ୍ୟ ସନ୍ତୁଷ୍ଟ ରହିବା କଣ ?

**ଉତ୍ତର –** ପ୍ରତ୍ୟେକ କ୍ରିୟା କରୁଥିବାବେଳେ ନିରନ୍ତର ପରମ ଆନନ୍ଦ ଅନୁଭବ କରିବା ହିଁ 'ନିତ୍ୟ ସନ୍ତୁଷ୍ଟ' ରହିବା । ଏହିପରି ସନ୍ତୁଷ୍ଟ ରହୁଥିବା ଭକ୍ତଙ୍କର ଶାନ୍ତି, ଆନନ୍ଦ ଓ ସନ୍ତୋଷର କାରଣ ହେଉଛି କେବଳ ଭଗବାନଙ୍କର ନାମ, ଗୁଣ, ପ୍ରଭାବ, ଲୀଳା ଓ ସ୍ୱରୂପ ଆଦିର ଶ୍ରବଣ, ମନନ ଓ କୀର୍ତ୍ତନ ତଥା ପଠନ-ପାଠନ ଆଦି । ସାଂସାରିକ ବସ୍ତୁମାନଙ୍କ ସହିତ ସେମାନଙ୍କର ଆନନ୍ଦ ଓ ସନ୍ତୋଷର କୌଣସି ସମ୍ବନ୍ଧ ନ ଥାଏ ।

**ପ୍ରଶ୍ନ –** ଉପରୋକ୍ତପ୍ରକାରେ ସବୁ କିଛି କରୁଥିବାବେଳେ ଭଗବାନଙ୍କ ଠାରେ ନିରନ୍ତର ରମଣ କରିବା କଣ ?

**ଉତ୍ତର –** ଭଗବାନଙ୍କର ନାମ, ଗୁଣ, ପ୍ରଭାବ, ଲୀଳା, ସ୍ୱରୂପ, ତତ୍ତ୍ୱ ଓ ରହସ୍ୟର ଯଥାଯୋଗ୍ୟ ଶ୍ରବଣ, ମନନ ଓ କୀର୍ତ୍ତନ କରି କରି ଏବଂ ତାଙ୍କର ରୁଚି, ଆଜ୍ଞା ଓ ସଙ୍କେତ ଅନୁସାରେ କେବଳ ତାଙ୍କରି ଠାରେ ପ୍ରେମ ହେବାପାଇଁ ହିଁ ପ୍ରତ୍ୟେକଟି କ୍ରିୟା କରି, ମନଦ୍ୱାରା ସେ ସଦାସର୍ବଦା ପ୍ରତ୍ୟକ୍ଷବତ୍ ନିଜ ପାଖରେ ଥିଲାପରି ବୁଝି ନିରନ୍ତର ପ୍ରେମପୂର୍ବକ ତାଙ୍କର ଦର୍ଶନ, ସ୍ପର୍ଶ ଓ ତାଙ୍କ ସହିତ ବାର୍ତ୍ତାଳାପ ଆଦି କ୍ରୀଡ଼ା କରିଚାଲିବା ହିଁ ଭଗବାନଙ୍କ ଠାରେ ନିରନ୍ତର ରମଣ କରିବା ।

*ସମ୍ବନ୍ଧ – ଉପରୋକ୍ତପ୍ରକାରେ ଭଜନ କରୁଥିବା ଭକ୍ତମାନଙ୍କ ପ୍ରତି ଭଗବାନ୍ କଣ କରନ୍ତି, ତାହା ଆଗାମୀ ଦୁଇଟି ଶ୍ଲୋକରେ କହୁଛନ୍ତି–*

## ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
## ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ।। ୧୦ ।।

**ଅନ୍ୱୟ –** **ତେଷାମ୍** = ସେହି; **ସତତଯୁକ୍ତାନାମ୍** = ନିରନ୍ତର ମୋର ଧ୍ୟାନ ଆଦିରେ ଲାଗିରହୁଥିବା; **ପ୍ରୀତିପୂର୍ବକମ୍** = (ତଥା) ପ୍ରେମପୂର୍ବକ; **ଭଜତାମ୍** = ଭଜନ କରୁଥିବା ଭକ୍ତମାନଙ୍କୁ (ମୁଁ); **ତମ୍** = ସେହି; **ବୁଦ୍ଧିଯୋଗମ୍** = ତତ୍ତ୍ୱଜ୍ଞାନରୂପୀ ଯୋଗ; **ଦଦାମି** = ପ୍ରଦାନ କରେ; **ଯେନ** = ଯାହାଦ୍ୱାରା; **ତେ** = ସେମାନେ; **ମାମ୍** = ମୋତେ (ହିଁ); **ଉପଯାନ୍ତି** = ପ୍ରାପ୍ତ ହୁଅନ୍ତି ।

**ନିରନ୍ତର ମୋର ଧ୍ୟାନ ଆଦିରେ ଲାଗିରହୁଥିବା ତଥା ପ୍ରେମପୂର୍ବକ ଭଜନ କରୁଥିବା ସେହି ଭକ୍ତମାନଙ୍କୁ ମୁଁ ସେହି ତତ୍ତ୍ୱଜ୍ଞାନରୂପୀ ଯୋଗ ପ୍ରଦାନ କରେ, ଯାହାଦ୍ୱାରା ସେମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି॥ ୧୦ ॥**

**ପ୍ରଶ୍ନ –** **ତେଷାମ୍** ପଦ କେଉଁମାନଙ୍କର ବାଚକ ?

**ଉତ୍ତର –** ପୂର୍ବ ଦୁଇଟି ଶ୍ଳୋକରେ **ବୁଧାଃ** ଓ **ମଚ୍ଚିତ୍ତାଃ** ଆଦି ପଦମାନଙ୍କ ଦ୍ୱାରା ଯେଉଁ ଭକ୍ତମାନଙ୍କର ବର୍ଣ୍ଣନା କରାଗଲା, ଏଠାରେ **ତେଷାମ୍** ପଦଟି ହେଉଛି ସେହି ନିଷ୍କାମ ଅନନ୍ୟପ୍ରେମୀ ଭକ୍ତମାନଙ୍କର ବାଚକ।

**ପ୍ରଶ୍ନ –** **ସତତଯୁକ୍ତାନାମ୍**ର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ **ମଚ୍ଚିତ୍ତାଃ, ମଦ୍‌ଗତପ୍ରାଣାଃ, ପରସ୍ପରଂ ମାଂ ବୋଧୟନ୍ତଃ** ଓ **କଥୟନ୍ତଃ**ଦ୍ୱାରା ଯେଉଁ କଥା କୁହାଗଲା, **ସତତଯୁକ୍ତାନାମ୍** ପଦରେ ସେସବୁର ସମାହାର କରାଯାଇଛି।

**ପ୍ରଶ୍ନ –** **ପ୍ରୀତିପୂର୍ବକଂ ଭଜତାମ୍**ର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ **ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ**-ରେ ଯେଉଁ କଥା କୁହାଯାଇଛି, ସେସବୁର ସମାହାର ଏଠାରେ **ପ୍ରୀତିପୂର୍ବକଂ ଭଜତାମ୍**ରେ କରାଯାଇଛି। ଅଭିପ୍ରାୟ ଏହି ଯେ, ପୂର୍ବଶ୍ଳୋକରେ ଭଗବାନଙ୍କର ଯେଉଁ ଭକ୍ତମାନଙ୍କର ବର୍ଣ୍ଣନା ହୋଇଛି, ସେମାନେ ଭୋଗ କାମନା କରି ଭଗବାନଙ୍କୁ ଭଜନ କରୁଥିବା ଭକ୍ତ ନୁହନ୍ତି; ସେମାନେ ହେଉଛନ୍ତି କୌଣସିପ୍ରକାର ଫଳକାମନା ନ କରି କେବଳ ନିଷ୍କାମ-ଅନନ୍ୟ ପ୍ରେମଭାବପୂର୍ବକ ସେହି ଶ୍ଳୋକରେ କୁହାଯାଇଥିବାପ୍ରକାରେ ଭଗବାନଙ୍କର ନିରନ୍ତର ଭଜନ କରୁଥିବା ଭକ୍ତ।★

**ପ୍ରଶ୍ନ –** ଏପରି ଭକ୍ତମାନଙ୍କୁ ଭଗବାନ୍ ଯେଉଁ ବୁଦ୍ଧିଯୋଗ ପ୍ରଦାନ କରନ୍ତି, ତାହା କଣ ଓ ତାହାଦ୍ୱାରା ଭଗବାନଙ୍କୁ ପ୍ରାପ୍ତ ହୋଇଯିବା କହିଲେ କଣ ବୁଝାଏ ?

**ଉତ୍ତର –** ଭଗବାନ୍ ଭକ୍ତମାନଙ୍କ ଅନ୍ତଃକରଣରେ ନିଜ ପ୍ରଭାବ ଓ ମହତ୍ତ୍ୱାଦିର ରହସ୍ୟ ସହିତ ନିର୍ଗୁଣ-ନିରାକାର ତତ୍ତ୍ୱକୁ, ତଥା ଲୀଳା, ରହସ୍ୟ, ମହତ୍ତ୍ୱ ଓ ପ୍ରଭାବ ଆଦି ସହିତ ସଗୁଣ ନିରାକାର ଓ ସାକାର ତତ୍ତ୍ୱକୁ ଯଥାର୍ଥରୂପରେ ବୁଝିବାର ଯେଉଁ ଶକ୍ତି ପ୍ରଦାନ କରନ୍ତି, ତାହା ହିଁ ଭଗବାନଙ୍କ ଦ୍ୱାରା ବୁଦ୍ଧିଯୋଗପ୍ରଦାନ କରିବା। ଏହାକୁ ଭଗବାନ୍ ସପ୍ତମ ଓ ନବମ ଅଧ୍ୟାୟରେ ବିଜ୍ଞାନ ସହିତ ଜ୍ଞାନ ବୋଲି କହିଛନ୍ତି ଏବଂ ଏହି ବୁଦ୍ଧିଯୋଗଦ୍ୱାରା ଭଗବାନଙ୍କୁ ପ୍ରତ୍ୟକ୍ଷ କରିବା ହିଁ ଭଗବାନଙ୍କୁ ପ୍ରାପ୍ତ ହୋଇଯିବା।

**ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ।**
**ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା॥ ୧୧ ॥**

**ଅନ୍ୱୟ –** **ତେଷାମ୍** = ସେମାନଙ୍କ ଉପରେ **ଅନୁକମ୍ପାର୍ଥମ୍** = ଅନୁଗ୍ରହ କରିବା ପାଇଁ; **ଆତ୍ମଭାବସ୍ଥଃ** = (ସେମାନଙ୍କ) ଅନ୍ତଃକରଣରେ ଅବସ୍ଥିତ ହୋଇ; **ଅହମ୍** = ମୁଁ (ନିଜେ); **ଏବ** = ହିଁ; **ଭାସ୍ୱତା** = ଆଲୋକମୟ; **ଜ୍ଞାନଦୀପେନ** = ତତ୍ତ୍ୱଜ୍ଞାନରୂପୀ ଦୀପଦ୍ୱାରା; **ଅଜ୍ଞାନଜମ୍** = (ସେମାନଙ୍କ) ଅଜ୍ଞାନଜନିତ; **ତମଃ** = ଅନ୍ଧକାରକୁ; **ନାଶୟାମି** = ନାଶ କରିଦିଏ।

**ହେ ଅର୍ଜୁନ ! ସେମାନଙ୍କ ଉପରେ ଅନୁଗ୍ରହ କରିବାକୁ ସେମାନଙ୍କ ଅନ୍ତଃକରଣରେ ଅବସ୍ଥିତ ହୋଇ ମୁଁ ନିଜେ ହିଁ ଆଲୋକମୟ ତତ୍ତ୍ୱଜ୍ଞାନରୂପୀ ଦୀପଦ୍ୱାରା ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାରକୁ ନାଶ କରିଦିଏ॥ ୧୧ ॥**

---

★ **ନ ନାକପୃଷ୍ଠଂ ନ ଚ ପାରମେଷ୍ଠ୍ୟଂ ନ ସାର୍ବଭୌମଂ ନ ରସାଧିପତ୍ୟମ୍।**
**ନ ଯୋଗସିଦ୍ଧୀରପୁନର୍ଭବଂ ବା ସମଞ୍ଜସ ତ୍ୱା ବିରହଯ୍ୟ କାଂକ୍ଷେ॥** (ଶ୍ରୀମଦ୍‌ଭାଗବତ ୬/୧୧/୨୫)

''ହେ ସର୍ବସଦ୍‌ଗୁଣଯୁକ୍ତ ! ଆପଣଙ୍କୁ ଛାଡ଼ି ମୁଁ ସ୍ୱର୍ଗରେ ସବୁଠାରୁ ଉଚ୍ଚ ଲୋକର ନିବାସ ଚାହୁଁ ନାହିଁ, କି ବ୍ରହ୍ମପଦ ଚାହୁଁ ନାହିଁ, କି ସାରା ପୃଥିବୀର ରାଜତ୍ୱ ଚାହୁଁ ନାହିଁ, କି ପାତାଳଲୋକର ଆଧିପତ୍ୟ ଚାହୁଁ ନାହିଁ, କି ଯୋଗସିଦ୍ଧି ଚାହୁଁ ନାହିଁ– ଆଉ ଅଧିକ କଣ କହିବି, ମୁଁ ମୁକ୍ତି ମଧ୍ୟ ଚାହୁଁ ନାହିଁ।''

**ପ୍ରଶ୍ନ –** 'ସେହି ଭକ୍ତମାନଙ୍କ ଉପରେ ଅନୁଗ୍ରହ କରିବାକୁ ମୁଁ ନିଜେ ହିଁ ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାର ନାଶ କରିଦିଏ' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ଭକ୍ତମାନଙ୍କ ଉପରେ ଅନୁଗ୍ରହ କରିବାକୁ ସେ ନିଜେ ହିଁ ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାର ନାଶ କରିଦିଅନ୍ତି; ଏଥିପାଇଁ ସେମାନଙ୍କୁ ଅନ୍ୟ କିଛି ସାଧନା କରିବାକୁ ପଡ଼େ ନାହିଁ।

**ପ୍ରଶ୍ନ – ଅଜ୍ଞାନଜମ୍** ବିଶେଷଣ ସହିତ **ତମଃ** ପଦ କାହାର ବାଚକ ଓ ତାହାକୁ 'ସେମାନଙ୍କ ଅନ୍ତଃକରଣରେ ରହୁଥିବା ମୁଁ ନାଶ କରିଦିଏ' – ଭଗବାନଙ୍କର ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଅନାଦିସିଦ୍ଧ ଅଜ୍ଞାନରୁ ଉତ୍ପନ୍ନ ଯେଉଁ ଆବରଣଶକ୍ତି ରହିଛି, ଯାହାରି ଯୋଗୁଁ ମନୁଷ୍ୟ ଭଗବାନଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପକୁ ଯଥାର୍ଥରୂପେ ଜାଣିପାରେ ନାହିଁ, ଏଠାରେ **ଅଜ୍ଞାନଜମ୍** ବିଶେଷଣ ସହିତ **ତମଃ** ପଦଟି ହେଉଛି ତାହାର ବାଚକ। 'ତାହାକୁ ମୁଁ ଭକ୍ତମାନଙ୍କର ଆତ୍ମଭାବରେ ସ୍ଥିତ ରହି ନାଶ କରେ' – ଏହି କଥନଦ୍ୱାରା ଭଗବାନ୍ ଭକ୍ତିର ମହିମା ଦେଖାଇଛନ୍ତି ଓ ତାଙ୍କ ନିକଟାରେ ବିଷମତା ଦୋଷ ନ ଥିବା ଦେଖାଇଛନ୍ତି। ଭଗବାନଙ୍କ କଥନର ଅଭିପ୍ରାୟ ଏହି ଯେ, ମୁଁ ସମସ୍ତଙ୍କ ହୃଦୟରେ ଅନ୍ତର୍ଯାମୀରୂପରେ ସର୍ବଥା ରହୁଥିଲେ ମଧ୍ୟ ଲୋକେ ମୋତେ ନିଜ ମଧ୍ୟରେ ରହୁଥିବା ବିଶ୍ୱାସ କରନ୍ତି ନାହିଁ; ଏହି କାରଣରୁ ହିଁ ମୁଁ ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାର ନାଶ କରିପାରେ ନାହିଁ; କିନ୍ତୁ ମୋର ପ୍ରେମୀ ଭକ୍ତମାନେ ମୋତେ ନିଜର ଅନ୍ତର୍ଯାମୀ ବୋଲି ବୁଝିବା ସଙ୍ଗେ ସଙ୍ଗେ ପୂର୍ବଶ୍ଳୋକରେ କୁହାଯାଇଥିବା ପ୍ରକାରେ ନିରନ୍ତର ମୋତେ ଭଜନ କରୁଥାନ୍ତି। ତେଣୁ ମୁଁ ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାରକୁ ସହଜରେ ନାଶ କରିଦିଏ।

**ପ୍ରଶ୍ନ – ଭାସ୍ୱତା** ବିଶେଷଣ ସହିତ **ଜ୍ଞାନଦୀପେନ** ପଦ କାହାର ବାଚକ ଏବଂ ତାହାଦ୍ୱାରା 'ଅଜ୍ଞାନଜନିତ ଅନ୍ଧକାରକୁ ନାଶ କରିବା' କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଯାହାକୁ ବୁଦ୍ଧିଯୋଗ ବୋଲି କୁହାଯାଇଛି, ଯାହାଦ୍ୱାରା ପ୍ରଭାବ ଓ ମହିମା ଆଦି ସହିତ ନିର୍ଗୁଣ-ନିରାକାର ତତ୍ତ୍ୱର, ତଥା ଲୀଳା, ରହସ୍ୟ, ମହତ୍ତ୍ୱ ଓ ପ୍ରଭାବ ଆଦି ସହିତ ସଗୁଣ-ନିରାକାର ଓ ସାକାର ତତ୍ତ୍ୱର ସ୍ୱରୂପ ଭଲରୂପେ ଜଣାଯାଏ, ଯାହାକୁ ସପ୍ତମ ଓ ନବମ ଅଧ୍ୟାୟରେ ବିଜ୍ଞାନ ସହିତ ଜ୍ଞାନ ନାମରେ କହିଛନ୍ତି, ଏଠାରେ **ଭାସ୍ୱତା** ବିଶେଷଣ ସହିତ **ଜ୍ଞାନଦୀପେନ** ପଦଟି ହେଉଛି ସଂଶୟ, ବିପର୍ଯ୍ୟୟ ଆଦି ଦୋଷରୁ ରହିତ ସେହି **ଦିବ୍ୟବୋଧର** ବାଚକ। ତାହା ଦ୍ୱାରା ଭକ୍ତମାନଙ୍କର ଅନ୍ତଃକରଣରେ ଭଗବତ୍‌ତତ୍ତ୍ୱଜ୍ଞାନର ପ୍ରତିବନ୍ଧକ ଆବରଣଦୋଷ ସର୍ବଥା ଅଭାବ କରିଦେବା ହିଁ 'ଅଜ୍ଞାନଜନିତ ଅନ୍ଧକାରକୁ ନାଶ କରିବା'।

**ପ୍ରଶ୍ନ –** ଏହି ଜ୍ଞାନଦୀପ (ବୁଦ୍ଧିଯୋଗ)ଦ୍ୱାରା ପ୍ରଥମେ ଅଜ୍ଞାନନାଶ ହୁଏ, ନା ଭଗବତ୍‌ପ୍ରାପ୍ତି ହୁଏ ?

**ଉତ୍ତର –** 'ଜ୍ଞାନଦୀପ'ଦ୍ୱାରା ଯଦ୍ୟପି ଅଜ୍ଞାନନାଶ ଓ ଭଗବତ୍‌ପ୍ରାପ୍ତି – ଉଭୟ ଏକା ସଙ୍ଗେ ହୁଏ, ତଥାପି ଯଦି ପୂର୍ବାପର ବିଭାଗ କରାଯାଏ, ତେବେ ଏହା ବୁଝିବା ଉଚିତ ଯେ, ପ୍ରଥମେ ଅଜ୍ଞାନନାଶ ହୁଏ ଓ ସେହିକ୍ଷଣି ଭଗବତ୍‌ପ୍ରାପ୍ତି ମଧ୍ୟ ହୋଇଯାଏ।

*__ସମ୍ବନ୍ଧ –__ ସପ୍ତମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ନିଜ ସମଗ୍ରରୂପ ଜଣାଉଥିବା ଯେଉଁ ବିଷୟ ଶୁଣିବାକୁ ଭଗବାନ୍ ଅର୍ଜୁନଙ୍କୁ ଆଜ୍ଞା ଦେଇଥିଲେ, ତଥା ଦ୍ୱିତୀୟ ଶ୍ଳୋକରେ ଯେଉଁ ବିଜ୍ଞାନ ସହିତ ଜ୍ଞାନ ପୂର୍ଣ୍ଣଭାବରେ କହିବାକୁ ପ୍ରତିଜ୍ଞା କରିଥିଲେ, ତାହାର ବର୍ଣ୍ଣନା ଭଗବାନ୍ ସପ୍ତମ ଅଧ୍ୟାୟରେ କଲେ। ତା'ପରେ ଅଷ୍ଟମ ଅଧ୍ୟାୟରେ ଅର୍ଜୁନଙ୍କର ସାତୋଟି ପ୍ରଶ୍ନର ଉତ୍ତର ଦେବାବେଳେ ଭଗବାନ୍ ସେହି ବିଷୟର ସ୍ପଷ୍ଟୀକରଣ କଲେ; କିନ୍ତୁ ସେଠାରେ କହିବାର ଶୈଳୀ ଭିନ୍ନ ଥିଲା। ତେଣୁ ନବମ ଅଧ୍ୟାୟର ଆରମ୍ଭରେ ପୁନର୍ବାର ବିଜ୍ଞାନସହିତ ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରି ସେହି ବିଷୟଟି ପ୍ରାଞ୍ଜଳ କରି ଭଲଭାବରେ ବୁଝାଇଲେ। ତା'ପରେ ଅନ୍ୟ ଶବ୍ଦମାନଙ୍କ ଦ୍ୱାରା ପୁନଶ୍ଚ ତା'ର ସ୍ପଷ୍ଟୀକରଣପାଇଁ ଦଶମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ସେହି ବିଷୟଟି ପୁଣି ଥରେ କହିବାକୁ ପ୍ରତିଜ୍ଞା କରି ଆଉ ପାଞ୍ଚଟି ଶ୍ଳୋକଦ୍ୱାରା ନିଜର ଯୋଗଶକ୍ତି ଓ ବିଭୂତିମାନଙ୍କର ବର୍ଣ୍ଣନା କଲେ ଏବଂ ସପ୍ତମ ଶ୍ଳୋକରେ ତାହା ଜାଣିବାର ଫଳ 'ଅଚଳ ଭକ୍ତିଯୋଗପ୍ରାପ୍ତି' ବୋଲି କହିଲେ। ତା'ପରେ ଅଷ୍ଟମ ଓ ନବମ ଶ୍ଳୋକରେ ଭକ୍ତିଯୋଗଦ୍ୱାରା ଭଗବାନଙ୍କ ଭଜନରେ ଲାଗିରହିଥିବା ଭକ୍ତମାନଙ୍କର ଭାବ ଓ ଆଚରଣ ବର୍ଣ୍ଣନା କଲେ ଏବଂ ଦଶମ ଓ ଏକାଦଶରେ ତାହାର ଫଳ ଅଜ୍ଞାନଜନିତ ଅନ୍ଧକାରନାଶ*

ଓ ଭଗବତ୍‌ପ୍ରାପକ ବୁଦ୍ଧିଯୋଗପ୍ରାପ୍ତି ବୋଲି କହି ସେହି ବିଷୟର ଉପସଂହାର କରିଦେଲେ। ଏଥିରୁ ଭଗବାନଙ୍କର ବିଭୂତି ଓ ଯୋଗକୁ ତତ୍ତ୍ୱତଃ ଜାଣିବା ବି ଭଗବତ୍‌ପ୍ରାପ୍ତିରେ ପରମ ସହାୟକ ବୋଲି ବୁଝି, ବର୍ତ୍ତମାନ ସାତୋଟି ଶ୍ଳୋକରେ ଅର୍ଜୁନ ପ୍ରଥମେ ଭଗବାନଙ୍କୁ ସ୍ତୁତି କରି ତାଙ୍କର ଯୋଗଶକ୍ତି ଓ ବିଭୂତିମାନଙ୍କର ବିସ୍ତୃତ ବର୍ଣ୍ଣନା କରିବାନିମନ୍ତେ ପ୍ରାର୍ଥନା କରୁଛନ୍ତି--

ଅର୍ଜୁନ ଉବାଚ

**ପରଂ ବ୍ରହ୍ମ ପରଂ ଧାମ ପବିତ୍ରଂ ପରମଂ ଭବାନ୍।**
**ପୁରୁଷଂ ଶାଶ୍ୱତଂ ଦିବ୍ୟମାଦିଦେବମଜଂ ବିଭୁମ୍॥ ୧୨॥**
**ଆହୁସ୍ତ୍ୱାମୃଷୟଃ ସର୍ବେ ଦେବର୍ଷିର୍ନାରଦସ୍ତଥା।**
**ଅସିତୋ ଦେବଲୋ ବ୍ୟାସଃ ସ୍ୱୟଂ ଚୈବ ବ୍ରବୀଷି ମେ॥ ୧୩॥**

**ଅନ୍ୱୟ—** ଭବାନ୍ = ଆପଣ; ପରମ୍ = ପରମ; ବ୍ରହ୍ମ = ବ୍ରହ୍ମ; ପରମ୍ = ପରମ; ଧାମ = ଧାମ (ଓ); ପରମମ୍ = ପରମ; ପବିତ୍ରମ୍ = ପବିତ୍ର (କାରଣ); ତ୍ୱାମ୍ = ଆପଣଙ୍କୁ; ସର୍ବେ = ସକଳ; ଋଷୟଃ = ଋଷିମାନେ; ଶାଶ୍ୱତମ୍ = ସନାତନ; ଦିବ୍ୟମ୍ ପୁରୁଷମ୍ = ଦିବ୍ୟ ପୁରୁଷ (ଓ); ଆଦିଦେବମ୍ = ଦେବତାମାନଙ୍କର ମଧ୍ୟ ଆଦିଦେବ; ଅଜମ୍ = ଅଜନ୍ମା (ଓ); ବିଭୁମ୍ = ସର୍ବବ୍ୟାପୀ; ଆହୁଃ = (ବୋଲି) କହନ୍ତି; ତଥା = ସେହିପରି; ଦେବର୍ଷିଃ = ଦେବର୍ଷି; ନାରଦଃ = ନାରଦ (ତଥା); ଅସିତଃ = ଅସିତ (ଓ); ଦେବଲଃ = ଦେବଳ ଋଷି (ତଥା); ବ୍ୟାସଃ = ମହର୍ଷି ବ୍ୟାସ; ଚ = ଓ; ସ୍ୱୟମ୍ = ସ୍ୱୟଂ ଆପଣ; ଏବ = ମଧ୍ୟ; ମେ = ମୋତେ; ବ୍ରବୀଷି = (ନିଜେ ସେହି କଥା) କହୁଛନ୍ତି।

**ଅର୍ଜୁନ କହିଲେ— ଆପଣ ପରମ ବ୍ରହ୍ମ, ପରମ ଧାମ ଓ ପରମ ପବିତ୍ର ଅଟନ୍ତି; କାରଣ ଆପଣଙ୍କୁ ସକଳ ଋଷି ସନାତନ, ଦିବ୍ୟପୁରୁଷ ଏବଂ ଦେବତାମାନଙ୍କର ମଧ୍ୟ ଆଦିଦେବ, ଅଜନ୍ମା ଓ ସର୍ବବ୍ୟାପୀ ବୋଲି କହନ୍ତି। ଦେବର୍ଷି ନାରଦ ତଥା ଅସିତ ଓ ଦେବଳ ଋଷି ତଥା ମହର୍ଷି ବ୍ୟାସ ମଧ୍ୟ ସେହିପରି କହନ୍ତି ଓ ଆପଣ ନିଜେ ମଧ୍ୟ ମୋତେ ସେହି କଥା କହୁଛନ୍ତି॥ ୧୨-୧୩ ॥**

**ପ୍ରଶ୍ନ—** 'ଆପଣ ପରମ ବ୍ରହ୍ମ', ପରମ ଧାମ ଓ ପରମ ପବିତ୍ର ଅଟନ୍ତି'— ଅର୍ଜୁନଙ୍କର ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଯେଉଁ ନିର୍ଗୁଣ ପରମାତ୍ମାଙ୍କୁ 'ପରମ ବ୍ରହ୍ମ' କହନ୍ତି, ସେ ଆପଣଙ୍କର ହିଁ ସ୍ୱରୂପ ତଥା ଆପଣଙ୍କର ଯେଉଁ ନିତ୍ୟଧାମ ରହିଛି, ତାହା ମଧ୍ୟ ସଚ୍ଚିଦାନନ୍ଦମୟ ଦିବ୍ୟ ଓ ଆପଣଙ୍କ ଠାରୁ ଅଭିନ୍ନ ହୋଇଥିବାରୁ ଆପଣଙ୍କର ହିଁ ସ୍ୱରୂପ। ପୁଣି ଆପଣଙ୍କର ନାମ, ଗୁଣ, ପ୍ରଭାବ, ଲୀଳା ଓ ସ୍ୱରୂପର ଶ୍ରବଣ, ମନନ ଓ କୀର୍ତ୍ତନ ଆଦି ସମସ୍ତଙ୍କୁ ସର୍ବଥା ପରମ ପବିତ୍ର କରେ। ତେଣୁ ଆପଣ 'ପରମ ପବିତ୍ର' ଅଟନ୍ତି।

**ପ୍ରଶ୍ନ—** ସର୍ବେ ବିଶେଷଣ ସହିତ **ଋଷୟଃ** ପଦ କେଉଁ ଋଷିମାନଙ୍କର ବାଚକ ଏବଂ 'ସେମାନେ ଆପଣଙ୍କୁ ସନାତନ, ଦିବ୍ୟପୁରୁଷ, ଆଦିଦେବ, ବିଭୁ ଓ ଅଜନ୍ମା ବୋଲି କହନ୍ତି'— ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର— ସର୍ବେ** ବିଶେଷଣ ସହିତ **ଋଷୟଃ** ★ ପଦଟି ଏଠାରେ ମାର୍କଣ୍ଡେୟ, ଅଙ୍ଗିରା

★ ଋଷାତେ୍ୟଷ ଗତୌ ଧାତୁଃ ଶ୍ରୁତୌ ସତ୍ୟେ ତପସ୍ୟଥ। ଏତତ୍ ସନ୍ନିୟତଂ ଯସ୍ମିନ୍ ବ୍ରହ୍ମଣା ସ ଋଷିଃ ସ୍ମୃତଃ॥
ଗତ୍ୟର୍ଥାଦୃଷତେର୍ଧାତୋର୍ନାମନିର୍ବୃତ୍ତିରାଦିତଃ। ଯସ୍ମାଦେଷ ସ୍ୱୟମ୍ଭୂତସ୍ତସ୍ମାଚ୍ଚ ଋଷିତା ସ୍ମୃତା॥ (ବାୟୁପୁରାଣ ୫୯/୭୯,୮୧)

'ଋଷ୍' ଧାତୁ ଗମନ (ଜ୍ଞାନ), ଶ୍ରବଣ, ସତ୍ୟ ଓ ତପ ଏହି ଅର୍ଥରେ ପ୍ରଯୁକ୍ତ ହୁଏ। ଏସବୁ ବିଷୟ ଯାହାଙ୍କ ମଧ୍ୟରେ ଏକାଧାରରେ ନିଶ୍ଚିତରୂପରେ ଥାଏ, ବ୍ରହ୍ମା ତାଙ୍କର ନାମ 'ଋଷି' ରଖିଛନ୍ତି। ଗତ୍ୟର୍ଥକ 'ଋଷ୍' ଧାତୁରୁ 'ଋଷି' ଶବ୍ଦର ନିଷ୍ପତ୍ତି ହୋଇଛି ଓ ଆଦିକାଳରେ ଏହି ଋଷିସମୁଦାୟ ସ୍ୱୟଂ ଉତ୍ପନ୍ନ ହୁଅନ୍ତି। ତେଣୁ ଏମାନଙ୍କର ସଂଜ୍ଞା 'ଋଷି'।

ଆଦି ସମସ୍ତ ଋଷିମାନଙ୍କର ବାଚକ ଏବଂ ନିଜ ମାନ୍ୟତାର ସମର୍ଥନରେ ଅର୍ଜୁନ ସେହି ଋଷିମାନଙ୍କ ବଚନର ପ୍ରମାଣ ଦେଉଛନ୍ତି । ଅଭିପ୍ରାୟ ହେଉଛି, "ଲୋକେ ଆପଣଙ୍କୁ ସନାତନ ଅର୍ଥାତ୍ ଯେ ନିତ୍ୟ ଏକରସରେ ସ୍ଥିତ, କ୍ଷୟବିନାଶରହିତ, ଦିବ୍ୟ ଅର୍ଥାତ୍ ସ୍ୱତଃପ୍ରକାଶ ଓ ଜ୍ଞାନସ୍ୱରୂପ, ସମସ୍ତଙ୍କର ଆଦିଦେବ ତଥା ଅଜନ୍ମା ଅର୍ଥାତ୍ ଉତ୍ପତ୍ତିରୂପକ ବିକାରରୁ ରହିତ ଓ ସର୍ବବ୍ୟାପୀ ବୋଲି କହନ୍ତି ; ଅତଏବ ଆପଣ ଯେ, 'ପରମ ବ୍ରହ୍ମ', 'ପରମ ଧାମ' ଓ 'ପରମ ପବିତ୍ର', ଏଥିରେ କୌଣସି ସନ୍ଦେହ ନାହିଁ ।" ★

**ପ୍ରଶ୍ନ –** ଦେବର୍ଷିମାନଙ୍କର ଲକ୍ଷଣ କଣ ଏବଂ ଏପରି ଦେବର୍ଷି କେଉଁମାନେ ?

**ଉତ୍ତର –** ଦେବର୍ଷିମାନଙ୍କର ଲକ୍ଷଣ ହେଉଛି –

**ଦେବଲୋକପ୍ରତିଷ୍ଠାଶ୍ଚ ଜ୍ଞେୟା ଦେବର୍ଷୟଃ ଶୁଭାଃ ॥**
**ଦେବର୍ଷୟସ୍ତଥାନ୍ୟେ ଚ ତେଷାଂ ବକ୍ଷ୍ୟାମି ଲକ୍ଷଣମ୍ ।**
**ଭୂତଭବ୍ୟଭବଜ୍ଜ୍ଞାନଂ ସତ୍ୟାଭିବ୍ୟାହୃତଂ ତଥା ॥**
**ସମ୍ବୁଦ୍ଧାସ୍ତୁ ସ୍ୱୟଂ ଯେ ତୁ ସମ୍ବଦ୍ଧା ଯେ ଚ ବୈ ସ୍ୱୟମ୍ ।**
**ତପସେହ ପ୍ରସିଦ୍ଧା ଯେ ଗର୍ଭେ ଯୈଶ୍ଚ ପ୍ରଣୋଦିତମ୍ ॥**
**ମନ୍ତ୍ରବ୍ୟାହାରିଣୋ ଯେ ଚ ଐଶ୍ୱର୍ଯାତ୍ ସର୍ବଗାଶ୍ଚ ଯେ ।**
**ଇତ୍ୟେତେ ଋଷିଭିର୍ଯୁକ୍ତା ଦେବଦ୍ୱିଜନୃପାସ୍ତୁ ଯେ ॥**

(ବାୟୁ ପୁରାଣ ୬୧/୮୮,୯୦,୯୧,୯୨)

ଅର୍ଥାତ୍ 'ଯେଉଁମାନଙ୍କର ଦେବଲୋକରେ ନିବାସ, ସେମାନଙ୍କୁ ଶୁଭ ଦେବର୍ଷି ବୋଲି ବୁଝିବା ଉଚିତ । ସେମାନଙ୍କ ଛଡ଼ା ଆଉ ଯେତେ ଦେବର୍ଷି ଅଛନ୍ତି, ସେମାନଙ୍କର ଲକ୍ଷଣ କହୁଛି । ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ବିଷୟରେ ଜ୍ଞାନ ହେବା ତଥା ସର୍ବଥା ସତ୍ୟ କହିବା ହେଉଛି ଦେବର୍ଷିମାନଙ୍କର ଲକ୍ଷଣ । ଯେଉଁମାନେ ନିଜେ ଭଲଭାବରେ ଜ୍ଞାନ ପ୍ରାପ୍ତ କରିଛନ୍ତି ତଥା ଯେଉଁମାନେ ସ୍ୱୟଂ ନିଜ ଇଚ୍ଛାରେ ସଂସାର ସହିତ ସଂପୃକ୍ତ, ଯେଉଁମାନେ ନିଜ ତପସ୍ୟାପାଇଁ ଏହି ସଂସାରରେ ବିଖ୍ୟାତ, ଯେଉଁମାନେ (ପ୍ରହ୍ଲାଦ ଆଦିଙ୍କୁ) ଗର୍ଭରେ ହିଁ ଉପଦେଶ ଦେଇଛନ୍ତି, ଯେଉଁମାନେ ମନ୍ତ୍ରର ବକ୍ତା ଅଟନ୍ତି ଓ ଯେଉଁମାନେ ଐଶ୍ୱର୍ଯ୍ୟ (ସିଦ୍ଧି) ବଳରେ ସର୍ବତ୍ର ସବୁ ଲୋକଙ୍କୁ ଅବାଧରେ ଯିବା-ଆସିବା କରିପାରନ୍ତି ଓ ଯେଉଁମାନେ ସଦା ଋଷିପରିବେଷ୍ଟିତ ହୋଇ ରହନ୍ତି, ସେହି ଦେବତା, ବ୍ରାହ୍ମଣ ଓ ରାଜା – ଏ ସମସ୍ତେ ଦେବର୍ଷି ଅଟନ୍ତି ।'

ଦେବର୍ଷି ଅନେକ ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେକଙ୍କ ନାମ ଏହିପରି –

**ଦେବର୍ଷୀ ଧର୍ମପୁତ୍ରୌ ତୁ ନରନାରାୟଣାବୁଭୌ ॥**
**ବାଲଖିଲ୍ୟାଃ କ୍ରତୋଃ ପୁତ୍ରାଃ କର୍ଦମଃ ପୁଲହସ୍ୟ ତୁ ।**
**ପର୍ବତୋ ନାରଦଶ୍ଚୈବ କଶ୍ୟପସ୍ୟାତ୍ମଜାବୁଭୌ ।**
**ଋଷନ୍ତି ଦେବାନ୍ ଯସ୍ମାତ୍ତେ ତସ୍ମାଦ୍ଦେବର୍ଷୟଃ ସ୍ମୃତାଃ ॥**

(ବାୟୁ ପୁରାଣ ୬୧/୮୩,୮୪,୮୫)

ଅର୍ଥାତ୍ 'ଧର୍ମଙ୍କ ଦୁଇ ପୁତ୍ର ନର ଓ ନାରାୟଣ, କ୍ରତୁଙ୍କ ପୁତ୍ର ବାଲଖିଲ୍ୟ ଋଷିମାନେ, ପୁଲହଙ୍କ ପୁତ୍ର କର୍ଦମ, ପର୍ବତ ଓ ନାରଦ, ତଥା କଶ୍ୟପଙ୍କ ବ୍ରହ୍ମବାଦୀ ଦୁଇ ପୁତ୍ର ଅସିତ ଓ ବତ୍ସର – ଏମାନେ ଯେହେତୁ ଦେବତାମାନଙ୍କୁ ଅଧୀନରେ ରଖିପାରନ୍ତି; ତେଣୁ ଏମାନଙ୍କୁ 'ଦେବର୍ଷି' କହନ୍ତି ।'

---

★ ପରମ ସତ୍ୟବାଦୀ ଧର୍ମମୂର୍ତ୍ତି ପିତାମହ ଭୀଷ୍ମ ଦୁର୍ଯୋଧନଙ୍କୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରଭାବ ବୁଝାଇ କହିଛନ୍ତି –

'ଭଗବାନ୍ ବାସୁଦେବ ସବୁ ଦେବତାମାନଙ୍କର ଦେବତା ଓ ସବୁଠାରୁ ଶ୍ରେଷ୍ଠ; ସେ ହିଁ ଧର୍ମ, ଧର୍ମଜ୍ଞ, ବରଦାତା, ବାଞ୍ଛାକଳ୍ପତରୁ, ଓ ସେ ହିଁ କର୍ତ୍ତା, କର୍ମ ଓ ସ୍ୱୟଂପ୍ରଭୁ । ଭୂତ, ଭବିଷ୍ୟତ୍, ବର୍ତ୍ତମାନ, ସନ୍ଧ୍ୟା, ଦିଗ, ଆକାଶ ଓ ସମସ୍ତ ନିୟମ ଏହି ଜନାର୍ଦନ ହିଁ ରଚନା କରିଛନ୍ତି । ଏହି ମହାତ୍ମା ଅବିନାଶୀ ପ୍ରଭୁ ହିଁ, ଋଷି, ତପ ଓ ଜଗତ୍‌ସ୍ରଷ୍ଟିକର୍ତ୍ତା ପ୍ରଜାପତିଙ୍କୁ ରଚନା କରିଛନ୍ତି । ସକଳ ପ୍ରାଣୀଙ୍କର ଅଗ୍ରଜ ସଂକର୍ଷଣଙ୍କୁ ମଧ୍ୟ ଏ ରଚନା କରିଛନ୍ତି । ଲୋକେ ଯାହାଙ୍କୁ 'ଅନନ୍ତ' କହନ୍ତି, ସେ ପର୍ବତମାନଙ୍କ ସହିତ ସାରା ପୃଥିବୀକୁ ଧାରଣ କରି ରଖିଛନ୍ତି, ସେହି ଶେଷନାଗ ମଧ୍ୟ ଏହାଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି । ଏ ହିଁ ବରାହ, ନୃସିଂହ ଓ ବାମନ ଅବତାର-ଧାରଣକାରୀ ଅଟନ୍ତି । ଏ ହିଁ ସମସ୍ତଙ୍କର ମାତା-ପିତା । ଏହାଙ୍କ ଠାରୁ ଶ୍ରେଷ୍ଠ ଆଉ କେହି ନାହିଁ । ଏହି କେଶବ ହିଁ ପରମ ତେଜରୂପ ଏବଂ ସମସ୍ତଙ୍କର ପିତାମହ । ମୁନିମାନେ ଏହାଙ୍କୁ ହୃଷୀକେଶ କହନ୍ତି । ଏ ହିଁ ଆଚାର୍ଯ୍ୟ, ପିତୃ ଓ ଗୁରୁ । ଏହି ଶ୍ରୀକୃଷ୍ଣ ଯାହା ଉପରେ ପ୍ରସନ୍ନ ହୁଅନ୍ତି, ତାହାକୁ ଅକ୍ଷୟଲୋକ ପ୍ରାପ୍ତ ହୁଏ । ଯେ ଆପଦକାଳରେ ଏହି ଭଗବାନ୍ କେଶବଙ୍କର ଶରଣ ନିଏ ଓ ଏହାଙ୍କୁ ସ୍ତୁତି କରେ, ସେ ପରମସୁଖ ପ୍ରାପ୍ତ ହୁଏ । ଯେଉଁମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଶରଣକୁ ଚାଲିଯାଆନ୍ତି, ସେମାନେ କେବେ ମୋହପ୍ରାପ୍ତ ହୁଅନ୍ତି ନାହିଁ । ଭୀଷଣ ଭୟ ଓ ସଂକଟରେ ବୁଡ଼ିଯାଉଥିବା ଲୋକଙ୍କୁ ମଧ୍ୟ ଭଗବାନ୍ ଜନାର୍ଦନ ନିତ୍ୟ ରକ୍ଷା କରନ୍ତି ।

ଯେ ଚ କୃଷ୍ଣଂ ପ୍ରପଦ୍ୟନ୍ତେ ତେ ନ ମୁହ୍ୟନ୍ତି ମାନବାଃ ।
ଭୟେ ମହତି ମଗ୍ନାଂଶ୍ଚ ପାତି ନିତ୍ୟଂ ଜନାର୍ଦନଃ ॥ (ମହା.ଭୀଷ୍ମ ୬୭/୨୪)

**ପ୍ରଶ୍ନ**— ଦେବର୍ଷି ନାରଦ, ଅସିତ, ଦେବଳ ଓ ବ୍ୟାସ କିଏ ? ଅର୍ଜୁନ ମୁଖ୍ୟତଃ ଏମାନଙ୍କ ନାମ କାହିଁକି ଧରିଲେ ଓ ଏମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମହିମା ବିଷୟରେ କଣ କହିଥିଲେ ?

**ଉତ୍ତର**— ଦେବର୍ଷି ନାରଦ, ଅସିତ, ଦେବଳ ଓ ବ୍ୟାସ— ଏହି ଚାରିଜଣ ହିଁ ଭଗବାନଙ୍କର ପ୍ରକୃତ ତତ୍ତ୍ୱ ଜାଣନ୍ତି । ଏମାନେ ଭଗବାନଙ୍କର ମହାନ୍ ପ୍ରେମୀ ଭକ୍ତ ଓ ପରମ ଜ୍ଞାନୀ ମହର୍ଷି । ★ ଏମାନେ ଏମାନଙ୍କ

---

★ ନାରଦ ଅନେକ; କିନ୍ତୁ ଏହି ଦେବର୍ଷି ନାରଦ ଏକମାତ୍ର ଜଣେ । ଏହାଙ୍କୁ ଭଗବାନଙ୍କର 'ମନ' ବୋଲି କୁହାଯାଏ । ଏ ପରମ ତତ୍ତ୍ୱଜ୍ଞ, ପରମପ୍ରେମୀ ଓ ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀ । ଏ ହେଉଛନ୍ତି ଭକ୍ତିର ପ୍ରଧାନ ଆଚାର୍ଯ୍ୟ । ସଂସାର ପ୍ରତି ଏହାଙ୍କର ଉପକାର ଅସୀମ, ଅମିତ । ପ୍ରହ୍ଲାଦ, ଧ୍ରୁବ, ଅମ୍ବରୀଷ ଆଦି ମହାନ୍ ଭକ୍ତମାନଙ୍କୁ ଏ ଭକ୍ତିମାର୍ଗରେ ପ୍ରବୃତ୍ତ କରିଥିଲେ । ଶ୍ରୀମଦ୍‌ଭାଗବତ ତଥା ବାଲ୍ମୀକୀୟ ରାମାୟଣପରି ଦୁଇଟି ବିଶଦ ଗ୍ରନ୍ଥ ମଧ୍ୟ ସଂସାରକୁ ଏହାଙ୍କ କୃପାରୁ ପ୍ରାପ୍ତ ହୋଇଛି । ଶୁକଦେବଙ୍କ ପରି ମହାନ୍ ଜ୍ଞାନୀଙ୍କୁ ମଧ୍ୟ ଏ ଉପଦେଶ ଦେଇଥିଲେ ।

ଏହି ନାରଦ ପୂର୍ବକଳ୍ପରେ ଦାସୀପୁତ୍ର ଥିଲେ । ଏହାଙ୍କ ମାତା ମହର୍ଷିମାନଙ୍କର ବାସନ ମାଜୁଥିଲେ । ନାରଦଙ୍କୁ ପାଞ୍ଚ ବର୍ଷ ହୋଇଥିବାବେଳେ ମାତାଙ୍କର ଅକସ୍ମାତ୍ ମୃତ୍ୟୁ ହୋଇଗଲା । ତା'ପରେ ଏ ସବୁପ୍ରକାର ସାଂସାରିକ ବନ୍ଧନରୁ ମୁକ୍ତ ହୋଇ ବନକୁ ଚାଲିଗଲେ ଓ ସେଠାରେ ଗୋଟିଏ ଗଛତଳେ ବସି ଭଗବାନଙ୍କର ସ୍ୱରୂପ ଧ୍ୟାନ କରିବାକୁ ଲାଗିଲେ । ଧ୍ୟାନ କରୁ କରୁ ଏହାଙ୍କ ମନ ଏକାଗ୍ର ହୋଇଗଲା ଏବଂ ଏହାଙ୍କ ହୃଦୟରେ ଭଗବାନ୍ ପ୍ରକଟ ହୋଇଗଲେ । କିନ୍ତୁ ଅଳ୍ପ ସମୟପାଇଁ ଏହାଙ୍କୁ ନିଜ ମନମୋହନ ରୂପର ଝଲକ ଦେଖାଇ ଭଗବାନ୍ ତୁରନ୍ତ ଅନ୍ତର୍ଦ୍ଧାନ ହୋଇଗଲେ । ଫଳରେ ଏ ଅତ୍ୟନ୍ତ ବ୍ୟାକୁଳ ହେଲେ ଏବଂ ମନକୁ ପୁଣି ସ୍ଥିର କରି ଭଗବାନଙ୍କ ଧ୍ୟାନ କରିବାକୁ ଲାଗିଲେ । କିନ୍ତୁ ଭଗବାନଙ୍କର ସେହି ରୂପ ତାଙ୍କୁ ପୁଣି ଦେଖିବାକୁ ମିଳିଲା ନାହିଁ । ଏତିକିବେଳେ ଆକାଶବାଣୀ ହେଲା, ''ହେ ଦାସୀପୁତ୍ର ! ଏହି ଜନ୍ମରେ ପୁଣି ତୁମକୁ ମୋର ଦର୍ଶନ ହେବ ନାହିଁ । ଏହି ଶରୀର ତ୍ୟାଗ କରିବା ପରେ ମୋର ପାର୍ଷଦରୂପରେ ଜାତ ହୋଇ ତୁମେ ମୋତେ ପୁଣି ଥରେ ପାଇବ ।'' ଭଗବାନଙ୍କର ଏହି କଥା ଶୁଣି ତାଙ୍କୁ ବଡ଼ ସାନ୍ତ୍ୱନା ମିଳିଲା ଏବଂ ସେ ମୃତ୍ୟୁପର୍ଯ୍ୟନ୍ତ ପୃଥିବୀରେ ଏକାକୀ ବୁଲିବାକୁ ଲାଗିଲେ । ସମୟ ଆସିବାକ୍ଷଣି ସେ ନିଜର ପାଞ୍ଚଭୌତିକ ଶରୀର ତ୍ୟାଗ କରିଦେଲେ । କଳ୍ପଶେଷରେ ସେ ଭଗବାନଙ୍କ ପ୍ରାଣରେ ପ୍ରବିଷ୍ଟ ହୋଇଗଲେ ଏବଂ ପୁଣି ଅନ୍ୟ କଳ୍ପରେ ଦିବ୍ୟବିଗ୍ରହ ଧାରଣ କରି ବ୍ରହ୍ମାଙ୍କ ମାନସପୁତ୍ରରୂପେ ଅବତୀର୍ଣ୍ଣ ହେଲେ ଏବଂ ସେହି ଦିନଠାରୁ ଅଖଣ୍ଡ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରି ବୀଣା ବଜାଇ ବଜାଇ ଭଗବାନଙ୍କର ଗୁଣ କୀର୍ତ୍ତନ କରି ଆସୁଛନ୍ତି (ଶ୍ରୀମଦ୍‌ଭାଗବତ ସ୍କନ୍ଧ ୧/୬) ।

ମହାଭାରତର ସଭାପର୍ବ ପଞ୍ଚମ ଅଧ୍ୟାୟରେ କୁହାଯାଇଛି–

'ଦେବର୍ଷି ନାରଦ ହେଉଛନ୍ତି ବେଦ ଓ ଉପନିଷଦର ମର୍ମଜ୍ଞ; ଦେବଗଣଙ୍କ ଦ୍ୱାରା ପୂଜିତ; ଇତିହାସ-ପୁରାଣର ବିଶେଷଜ୍ଞ; ଅତୀତ କଳ୍ପମାନଙ୍କର କଥା ଜାଣିଥିବା ବ୍ୟକ୍ତି; ନ୍ୟାୟ ଓ ଧର୍ମର ତତ୍ତ୍ୱଜ୍ଞ; ଶିକ୍ଷା, କଳ୍ପ, ବ୍ୟାକରଣ, ଆୟୁର୍ବେଦ ଆଦିରେ ଶ୍ରେଷ୍ଠଜ୍ଞ; ପରସ୍ପରବିରୁଦ୍ଧ ବିଭିନ୍ନ ବିଧିବାକ୍ୟମଧ୍ୟରେ ସମନ୍ୱୟ ସ୍ଥାପନ କରିବାରେ ପ୍ରବୀଣ; ପ୍ରଭାବଶାଳୀ ବକ୍ତା; ନୀତିଜ୍ଞ, ମେଧାବୀ, ସ୍ମରଣଶୀଳ, ଜ୍ଞାନୀ, କବି; ଭଲ-ମନ୍ଦ ଚିହ୍ନିବାରେ ଦକ୍ଷ; ସମସ୍ତ ପ୍ରମାଣଦ୍ୱାରା ବାସ୍ତବିକ ତତ୍ତ୍ୱ ନିର୍ଣ୍ଣୟ କରିବାରେ ସମର୍ଥ; ନ୍ୟାୟବାକ୍ୟର ଗୁଣଦୋଷନିର୍ଣ୍ଣୟରେ ବିଜ୍ଞ; ବୃହସ୍ପତିଙ୍କ ପରି ବିଦ୍ୱାନମାନଙ୍କର ଶଙ୍କାସମାଧାନରେ ସମର୍ଥ; ଧର୍ମ, ଅର୍ଥ, କାମ ଓ ମୋକ୍ଷର ଯଥାର୍ଥ ତତ୍ତ୍ୱଜ୍ଞ; ଯୋଗବଳରେ ସମସ୍ତ ବ୍ରହ୍ମାଣ୍ଡର ତଥା ତ୍ରିଲୋକର ସମସ୍ତ ଘଟଣାବଳୀର ପ୍ରତ୍ୟକ୍ଷଦ୍ରଷ୍ଟା; ସାଂଖ୍ୟଦର୍ଶନ ଓ ଯୋଗଦର୍ଶନ–ଉଭୟରେ ବିଜ୍ଞ; ଦେବ ଓ ଦୈତ୍ୟମାନଙ୍କୁ ବୈରାଗ୍ୟ ଉପଦେଶ ଦେବାରେ ଚତୁର; ସନ୍ଧି-ବିଗ୍ରହର ତତ୍ତ୍ୱଜ୍ଞ; କର୍ତ୍ତବ୍ୟ-ଅକର୍ତ୍ତବ୍ୟ ବିଭାଗ କରିବାରେ ଦକ୍ଷ; ଷାଡ଼୍‌ଗୁଣ୍ୟ-ପ୍ରୟୋଗ ବିଷୟରେ ଅନୁପମ; ସକଳ ଶାସ୍ତ୍ରରେ ପ୍ରବୀଣ; ଯୁଦ୍ଧବିଦ୍ୟାରେ ନିପୁଣ; ସଂଗୀତ-ବିଶାରଦ ଓ ଭଗବାନଙ୍କର ଭକ୍ତ; ବିଦ୍ୟା ଓ ଗୁଣର ଭଣ୍ଡାର; ସଦାଚାରର ଆଧାର; ସମସ୍ତଙ୍କର ହିତକାରୀ ଏବଂ ସର୍ବତ୍ର ଗତି କରିପାରୁଥିବା ବ୍ୟକ୍ତି ।' ଉପନିଷଦ, ପୁରାଣ ଓ ଇତିହାସରେ ଏହାଙ୍କର ପବିତ୍ର ଚରିତାବଳୀ ପୂର୍ଣ୍ଣ ହୋଇ ରହିଛି ।

☆ ☆ ☆ ☆ ☆ ☆ ☆ ☆ ☆ ☆ ☆ ☆

**ମହର୍ଷି ଅସିତ ଓ ଦେବଳ ପିତା-ପୁତ୍ର ଅଟନ୍ତି । ଏଦୁହିଁଙ୍କ ବିଷୟରେ କୂର୍ମପୁରାଣରେ ବର୍ଣ୍ଣନା ଦେଖିବାକୁ ମିଳେ–**

**ଏତାନୁତ୍ପାଦ୍ୟ ପୁତ୍ରାଂସ୍ତୁ ପ୍ରଜାସନ୍ତାନକାରଣାତ୍ । କଶ୍ୟପଃ ପୁତ୍ରକାମସ୍ତୁ ଚଚାର ସୁମହତ୍ତପଃ ॥**
**ତସ୍ୟୈବଂ ତପତୋଽତ୍ୟର୍ଥଂ ପ୍ରାଦୁର୍ଭୂତୌ ସୁତାବିମୌ । ବତ୍ସରଶ୍ଚାସିତଶ୍ଚୈବ ତାବୁଭୌ ବ୍ରହ୍ମବାଦିନୌ ॥**
**ଅସିତସ୍ୟୈକପର୍ଣ୍ଣାୟାଂ ବ୍ରହ୍ମିଷ୍ଠଃ ସମପଦ୍ୟତ । ନାମ୍ନା ବୈ ଦେବଳଃ ପୁତ୍ରୋ ଯୋଗାଚାର୍ଯ୍ୟୋ ମହାତପାଃ ॥**

(କୂର୍ମପୁରାଣ ୧୯/୧,୨,୫)

ଅର୍ଥାତ୍ ''କଶ୍ୟପ ମୁନି ପ୍ରଜାବୃଦ୍ଧି ଉଦ୍ଦେଶ୍ୟରେ ଏହି ପୁତ୍ରମାନଙ୍କୁ ଉତ୍ପନ୍ନ କରି ପୁଣି ପୁତ୍ରପ୍ରାପ୍ତିକାମନାରେ ମହାନ୍ ତପ କରିବାକୁ ଲାଗିଲେ । ତାଙ୍କର ଏପରି ଉଗ୍ର ତପସ୍ୟାଫଳରେ 'ବତ୍ସର' ଓ 'ଅସିତ' ନାମରେ ଦୁଇ ପୁତ୍ର ଜନ୍ମ ହେଲେ । ସେ ଦୁହେଁ ବ୍ରହ୍ମବାଦୀ (ବ୍ରହ୍ମବେତ୍ତା ଓ ବ୍ରହ୍ମ-ଉପଦେଶକ) ଥିଲେ । ଅସିତଙ୍କ ଔରସରୁ ତାଙ୍କ ପତ୍ନୀ ଏକପର୍ଣ୍ଣାଙ୍କ ଗର୍ଭରେ ମହାତପସ୍ୱୀ ଯୋଗାଚାର୍ଯ୍ୟ 'ଦେବଳ' ନାମକ ବେଦବିତ୍ ପୁତ୍ର ଜନ୍ମ ହୋଇଥିଲେ ।''

ଏ ଦୁହେଁ ଋଗ୍‌ବେଦର ମନ୍ତ୍ରଦ୍ରଷ୍ଟା ଋଷି । ଦେବଳ ଋଷି ଶିବଙ୍କ ଆରାଧନା କରି ସିଦ୍ଧି ପାଇଥିଲେ । ଏ ଦୁହେଁ ବଡ଼ ପ୍ରବୀଣ ଓ ପ୍ରାଚୀନ ମହର୍ଷି । ପ୍ରତ୍ୟୁଷନାମକ ବସୁଙ୍କର ମଧ୍ୟ ଦେବଳ ଋଷିନାମକ ପୁତ୍ର ଥିଲେ । (ହରିବଂଶ ୩/୪୪) ।

☆ ☆ ☆ ☆ ☆ ☆ ☆ ☆ ☆ ☆ ☆ ☆

ସମୟର ବିଶେଷ ସମ୍ମାନନୀୟ ତଥା ମହାନ୍ ସତ୍ୟବାଦୀ ମହାପୁରୁଷରୂପେ ଗଣ୍ୟ । ତେଣୁ ଏମାନଙ୍କର ନାମ ମୁଖ୍ୟତଃ ଗଣନା କରାଗଲା । ଭଗବାନଙ୍କର ମହିମା ଏମାନେ ନିତ୍ୟ ଗାଉଥାନ୍ତି । ଏମାନଙ୍କ ଜୀବନର ପ୍ରଧାନ କାର୍ଯ୍ୟ ହେଉଛି ଭଗବାନଙ୍କର ମହିମାକୁ ହିଁ ବିସ୍ତାର କରିବା । ମହାଭାରତରେ ମଧ୍ୟ ଏମାନେ ତଥା ଅନ୍ୟାନ୍ୟ ଋଷିମହର୍ଷିମାନେ ଭଗବାନଙ୍କର ମହିମା ଗାନ କରିଥିବାର ଅନେକ ପ୍ରସଙ୍ଗ ଆସିଛି । ଭଗବାନ୍ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ କେଉଁ ଋଷି କଣ କହିଥିଲେ, ତା'ର ସଂକ୍ଷିପ୍ତ ବର୍ଣ୍ଣନା ଭୀଷ୍ମପର୍ବରେ ପିତାମହ ଭୀଷ୍ମ ବର୍ଣ୍ଣନା କରିଛନ୍ତି । ★★

---

ଶ୍ରୀବେଦବ୍ୟାସଙ୍କୁ ଭଗବାନଙ୍କର ଅଂଶାବତାର ବୋଲି ଧରାଯାଏ । ଏହାଙ୍କର ଜନ୍ମ ଦ୍ୱୀପରେ ହୋଇଥିଲା; ଏଣୁ ଏହାଙ୍କର ନାମ 'ଦ୍ୱୈପାୟନ' ହେଲା । ଏହାଙ୍କର ଶରୀର ଶ୍ୟାମବର୍ଣ୍ଣ ହୋଇଥିବାରୁ ଏ 'କୃଷ୍ଣଦ୍ୱୈପାୟନ' ବୋଲି କୁହାଗଲେ ଓ ଏ ବେଦର ବିଭାଗ କରିଥିବାରୁ ଲୋକମାନେ ଏହାଙ୍କୁ 'ବେଦବ୍ୟାସ' ବୋଲି କହନ୍ତି । ଏ ଥିଲେ ମହାମୁନି ପରାଶରଙ୍କ ପୁତ୍ର । ଏହାଙ୍କର ମାତାଙ୍କ ନାମ ଥିଲା ସତ୍ୟବତୀ । ଏ ଜନ୍ମ ହେବା ପରେ ପରେ ତପସ୍ୟା କରିବାକୁ ଅରଣ୍ୟକୁ ଚାଲିଯାଇଥିଲେ । ବ୍ୟାସଦେବ ଥିଲେ ଭଗବତ୍ତତ୍ତ୍ୱର ପୂର୍ଣ୍ଣଜ୍ଞାତା ଓ ଅଦ୍ୱିତୀୟ ମହାକବି । ଏ ଜ୍ଞାନର ଅସୀମ ଓ ଅଗାଧ ସମୁଦ୍ର; ଏହାଙ୍କ ବିଦ୍ୱତ୍ତାର ପରାକାଷ୍ଠା ଓ କବିତ୍ୱର ସୀମା ନାହିଁ । ବ୍ୟାସଦେବଙ୍କ ହୃଦୟ ଓ ବାଣୀର ବିକାଶ ହିଁ ସମସ୍ତ ଜଗତକୁ ଜ୍ଞାନର ଆଲୋକ ପ୍ରଦାନ କଲା ଏବଂ ତାହା ହିଁ ଜଗତର ଅବଲମ୍ବନ ।

ଭଗବାନ୍ ବ୍ୟାସ ହିଁ ବ୍ରହ୍ମସୂତ୍ର ରଚନା କରିଛନ୍ତି । ମହାଭାରତପରି ଅଲୌକିକ ଗ୍ରନ୍ଥର ପ୍ରଣୟନ ମଧ୍ୟ ସେହି ବ୍ୟାସ କରିଛନ୍ତି । ଅଷ୍ଟାଦଶ ପୁରାଣ ଓ ଅନେକ ଉପପୁରାଣ ମଧ୍ୟ ତାଙ୍କରି ରଚନା । ଭାରତର ଇତିହାସ ଏହି କଥାର ସାକ୍ଷୀ । ଆଜି ସମଗ୍ର ସଂସାରର ଲୋକେ ବ୍ୟାସଦେବଙ୍କ ଜ୍ଞାନପ୍ରସାଦରୁ ନିଜ ନିଜ କର୍ତ୍ତବ୍ୟର ମାର୍ଗ ଅନ୍ୱେଷଣ କରୁଛନ୍ତି ।

ପ୍ରତ୍ୟେକ ଦ୍ୱାପରଯୁଗରେ ବେଦର ବିଭାଗ କରୁଥିବା ଭିନ୍ନ ଭିନ୍ନ ବ୍ୟାସ ହୁଅନ୍ତି । ଏହି ବୈବସ୍ୱତ ମନ୍ୱନ୍ତରର ବ୍ୟାସ ପରାଶରପୁତ୍ର ଶ୍ରୀକୃଷ୍ଣଦ୍ୱୈପାୟନ ହେଉଛନ୍ତି ଅଷ୍ଟାବିଂଶ ବେଦବ୍ୟାସ । ଏ ନିଜର ପ୍ରଧାନ ଶିଷ୍ୟ ପୈଲଙ୍କୁ ଋଗ୍‌ବେଦ, ବୈଶମ୍ପାୟନଙ୍କୁ ଯଜୁର୍ବେଦ, ଜୈମିନିଙ୍କୁ ସାମବେଦ ଓ ସୁମନ୍ତଙ୍କୁ ଅଥର୍ବବେଦ ପଢ଼ାଇଥିଲେ ଏବଂ ସୂତଜାତୀୟ ମହାନ୍ ବୁଦ୍ଧିମାନ୍ ଲୋମହର୍ଷଣ ମହାମୁନିଙ୍କୁ ଇତିହାସ ଓ ପୁରାଣ ପଢ଼ାଇଥିଲେ ।

★★ ଦେବର୍ଷି ନାରଦ କହିଲେ– "ଭଗବାନ୍ ଶ୍ରୀକୃଷ୍ଣ ସମସ୍ତ ଲୋକର ସୃଷ୍ଟିକର୍ତ୍ତା । ସେ ସମସ୍ତଙ୍କର ଭାବ ଜାଣନ୍ତି । ସେ ସାଧ୍ୟମାନଙ୍କର ତଥା ଦେବତାମାନଙ୍କର ମହେଶ୍ୱର ।

ମାର୍କଣ୍ଡେୟ ମୁନି କହିଛନ୍ତି– "ଶ୍ରୀକୃଷ୍ଣ ହେଉଛନ୍ତି ଯଜ୍ଞର ଯଜ୍ଞ, ତପର ତପ ଓ ଭୂତ-ଭବିଷ୍ୟତ୍-ବର୍ତ୍ତମାନରୂପୀ ।"

ଭୃଗୁ କହିଛନ୍ତି– "ଏ ହେଉଛନ୍ତି ଦେବତାମାନଙ୍କର ଦେବତା ଓ ପରମ ପୁରାତନ ବିଷ୍ଣୁ ।"

ବ୍ୟାସ କହିଛନ୍ତି– "ଏ ହେଉଛନ୍ତି ଇନ୍ଦ୍ରଙ୍କୁ ଇନ୍ଦ୍ରତ୍ୱ ପ୍ରଦାନ କରିଥିବା ଦେବତାମାନଙ୍କର ପରମ ଦେବତା ।"

ଅଙ୍ଗିରା କହିଛନ୍ତି– "ଏ ହେଉଛନ୍ତି ସବୁ ପ୍ରାଣୀଙ୍କୁ ରଚନା କରିଥିବା ସୃଷ୍ଟିକର୍ତ୍ତା ।"

ସନତ୍କୁମାର ଆଦି କହିଛନ୍ତି– "ଏହାଙ୍କ ମସ୍ତକରେ ଆକାଶ ଓ ବାହୁରେ ପୃଥିବୀ ବ୍ୟାପ୍ତ ହୋଇଛି; ତ୍ରିଲୋକ ଏହାଙ୍କ ଉଦରରେ ରହିଛି; ଏ ସନାତନ ପୁରୁଷ; ତପଦ୍ୱାରା ଅନ୍ତଃକରଣ ଶୁଦ୍ଧ ହେଲେ ହିଁ ସାଧକ ଏହାଙ୍କୁ ଜାଣିପାରିବେ । ଆତ୍ମଦର୍ଶନରେ ତୃପ୍ତ ଋଷିମାନଙ୍କ ମଧ୍ୟରେ ବି ଏ ପରମୋତ୍ତମ ବୋଲି ଗଣ୍ୟ ହୁଅନ୍ତି ଓ ଯୁଦ୍ଧରେ ପଶ୍ଚାତ୍‌ପଦ ହେଉ ନ ଥିବା ଉଦାର ରାଜର୍ଷିମାନଙ୍କର ମଧ୍ୟ ଏ ପରମଗତି ।" (ମହା.ଭୀଷ୍ମ ୬୮)

ମହାଭାରତର ବନପର୍ବର ଦ୍ୱାଦଶ ଅଧ୍ୟାୟରେ ଭକ୍ତିମତୀ ଦ୍ରୌପଦୀଙ୍କର ବଚନ ଉଦ୍ଧାର କରି–

ଅସିତ ଓ ଦେବଳ ଋଷି କହିଛନ୍ତି, "ଶ୍ରୀକୃଷ୍ଣ ହିଁ ପ୍ରଜାମାନଙ୍କ ପୂର୍ବସୃଷ୍ଟିର ପ୍ରଜାପତି ଓ ସମସ୍ତ ଲୋକର ଏକମାତ୍ର ରଚୟିତା ବା ସୃଷ୍ଟିକର୍ତ୍ତା ।"

ପରଶୁରାମ କହିଛନ୍ତି — "ଏ ହିଁ ବିଷ୍ଣୁ; ଏହାଙ୍କୁ କେହି ଜୟ କରିପାରିବ ନାହିଁ; ଏ ହିଁ ଯଜ୍ଞ, ଯଜ୍ଞକର୍ତ୍ତା ଓ ଯଜ୍ଞଦ୍ୱାରା ଯଜନୀୟ ।"

ନାରଦ କହିଛନ୍ତି– "ଏ ସାଧ୍ୟଦେବମାନଙ୍କର ଓ ସମସ୍ତ କଲ୍ୟାଣର ଈଶ୍ୱରଙ୍କର ମଧ୍ୟ ଈଶ୍ୱର ।"

"ବାଳକ ଯେପରି ନିଜ ଇଚ୍ଛାନୁସାରେ ବିଭିନ୍ନ ଖେଳନା ନେଇ ଖେଳେ, ଶ୍ରୀକୃଷ୍ଣ ମଧ୍ୟ ସେହିପରି ବ୍ରହ୍ମା, ଶିବ ଓ ଇନ୍ଦ୍ରାଦି ଦେବତାମାନଙ୍କୁ ନେଇ କ୍ରୀଡ଼ା କରନ୍ତି ।"

ଏସବୁ ଛଡ଼ା ମହାଭାରତରେ ଭଗବାନ୍ ବ୍ୟାସ କହିଛନ୍ତି– "ସୌରାଷ୍ଟ୍ର ଦେଶରେ ଦ୍ୱାରକା ନାମକ ଏକ ପବିତ୍ର ନଗର ଅଛି । ସେଠାରେ ସାକ୍ଷାତ୍ ପୁରାଣପୁରୁଷୋତ୍ତମ ମଧୁସୂଦନ ଭଗବାନ୍ ବିରାଜମାନ ଅଛନ୍ତି । ସେ ସ୍ୱୟଂ ସନାତନ ଧର୍ମର ମୂର୍ତ୍ତି । ବେଦଜ୍ଞ ବ୍ରାହ୍ମଣ ଓ ଆତ୍ମଜ୍ଞାନୀ ପୁରୁଷମାନେ ମହାତ୍ମା ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ 'ସନାତନଧର୍ମ' ବୋଲି କହନ୍ତି । ଭଗବାନ୍ ଗୋବିନ୍ଦ ପବିତ୍ରମାନଙ୍କ ମଧ୍ୟରେ ପରମ ପବିତ୍ର, ପୁଣ୍ୟମାନଙ୍କ ମଧ୍ୟରେ ପରମ ପୁଣ୍ୟ ଓ ମଙ୍ଗଳମାନଙ୍କର ପରମ ମଙ୍ଗଳ । ସେହି କମଳନୟନ ଭଗବାନ୍ ଶ୍ରୀକୃଷ୍ଣ ତିନି ଲୋକରେ ସନାତନ ଦେବମାନଙ୍କର ଦେବ । ସେ ହିଁ ମଧୁସୂଦନ, ଅକ୍ଷର, କ୍ଷର, କ୍ଷେତ୍ରଜ୍ଞ, ପରମେଶ୍ୱର ଓ ଅଚିନ୍ତ୍ୟମୂର୍ତ୍ତି ।" (ମହା.ବନ ୮୮/୨୪ ଠାରୁ ୨୭)

ଶ୍ରୀମଦ୍‌ଭାଗବତରେ ଦେବର୍ଷି ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଛନ୍ତି–

> ଯୂୟଂ ନୃଲୋକେ ବତ ଭୂରିଭାଗା ଲୋକଂ ପୁନାନା ମୁନୟୋଽଭିଯନ୍ତି ।
> ଯେଷାଂ ଗୃହାନାବସତୀତି ସାକ୍ଷାଦ୍ ଗୂଢ଼ଂ ପରଂ ବ୍ରହ୍ମ ମନୁଷ୍ୟଲିଙ୍ଗମ୍ ॥ ୭୫ ॥
> ସ ବା ଅୟଂ ବ୍ରହ୍ମ ମହଦ୍‌ବିମୃଗ୍ୟଂ କୈବଲ୍ୟନିର୍ବାଣସୁଖାନୁଭୂତିଃ ।
> ପ୍ରିୟଃ ସୁହୃଦ୍ ବଃ ଖଲୁ ମାତୁଲେୟ ଆତ୍ମାର୍ହଣୀୟୋ ବିଧିକୃଦ୍ ଗୁରୁଶ୍ଚ ॥ ୭୬ ॥

"ହେ ରାଜନ୍ ! ମନୁଷ୍ୟମାନଙ୍କ ମଧ୍ୟରେ ଆପଣ ଅତ୍ୟନ୍ତ ଭାଗ୍ୟବାନ୍, କାରଣ ଲୋକଙ୍କୁ ପବିତ୍ର କରୁଥିବା ମୁନିମାନେ ଆପଣଙ୍କ ରାଜଭବନକୁ ଆସୁଛନ୍ତି ଏବଂ ମାନବରୂପଧାରୀ ସାକ୍ଷାତ୍ ପରବ୍ରହ୍ମ ଗୂଢ଼ରୂପରେ ଏଠାରେ ବିରାଜମାନ । ଆହା ! ମହାତ୍ମା ପୁରୁଷମାନେ ଯେଉଁ କୈବଲ୍ୟନିର୍ବାଣ ସୁଖାନୁଭୂତି ଖୋଜନ୍ତି, ଏହି ଶ୍ରୀକୃଷ୍ଣ ସେହି ପରମବ୍ରହ୍ମ । ଏ ଆପଣଙ୍କର ପ୍ରିୟ ବନ୍ଧୁ, ସୁହୃଦ, ମାତୁଳପୁତ୍ର, ପୂଜ୍ୟ, ପଥପ୍ରଦର୍ଶକ ଏବଂ ଗୁରୁ; ତେଣୁ କହନ୍ତୁ, ଆପଣଙ୍କ ପରି ଭାଗ୍ୟବାନ୍ ଆଉ କିଏ ବା ଅଛି !" (୭/୧୫/୭୫-୭୬)

**ପ୍ରଶ୍ନ –** 'ଆପଣ ନିଜେ ମଧ୍ୟ ମୋତେ ସେହିକଥା କହୁଛନ୍ତି' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଅର୍ଜୁନ କହୁଛନ୍ତି, 'କେବଳ ଉପରୋକ୍ତ ଋଷିମାନେ ଯେ କହିଛନ୍ତି, ତାହା ନୁହେଁ, ସ୍ୱୟଂ ଆପଣ ମଧ୍ୟ ମୋତେ ଆପଣଙ୍କର ଅତୁଳନୀୟ ପ୍ରଭାବ କଥା ବର୍ତ୍ତମାନ ବି କହୁଛନ୍ତି (୪/୬ ଠାରୁ ୯ ପର୍ଯ୍ୟନ୍ତ; ୫/୨୯; ୭/୭-୧୨; ୯/୪-୧୧ ଓ ୧୬-୧୯; ୧୦/୨,୩,୮)। ତେଣୁ ମୁଁ ଆପଣଙ୍କୁ ସାକ୍ଷାତ୍ ପରମେଶ୍ୱର ବୋଲି ଯାହା ବୁଝିଛି, ତାହା ଠିକ୍।''

**ସର୍ବମେତଦୃତଂ ମନ୍ୟେ ଯନ୍ମାଂ ବଦସି କେଶବ ।**
**ନ ହି ତେ ଭଗବନ୍ ବ୍ୟକ୍ତିଂ ବିଦୁର୍ଦେବା ନ ଦାନବାଃ ।। ୧୪ ।।**

**ଅନ୍ୱୟ –** **କେଶବ** = ହେ କେଶବ; **ଯତ୍** = ଯାହା (କିଛି ବି); **ମାମ୍** = ମୋତେ; **ବଦସି** = ଆପଣ କହୁଛନ୍ତି; **ଏତତ୍, ସର୍ବମ୍** = ସେସବୁକୁ (ମୁଁ); **ଋତମ୍** = ସତ୍ୟ (ବୋଲି); **ମନ୍ୟେ** = ମାନୁଛି; **ଭଗବନ୍** = ହେ ଭଗବନ୍; **ତେ** = ଆପଣଙ୍କର; **ବ୍ୟକ୍ତିମ୍** = ଲୀଳାମୟ ସ୍ୱରୂପକୁ; **ନ, ଦାନବାଃ, ବିଦୁଃ** = ଦାନବମାନେ ଜାଣନ୍ତି ନାହିଁ (କି); **ନ, ଦେବାଃ, ହି, (ବିଦୁଃ)** = ଦେବତାମାନେ ବି ଜାଣନ୍ତି ନାହିଁ।

**ହେ କେଶବ ! ଆପଣ ମୋତେ ଯାହା କିଛି ବି କହୁଛନ୍ତି, ସେସବୁ ମୁଁ ସତ୍ୟ ବୋଲି ମାନୁଛି। ହେ ଭଗବନ୍ ! ଆପଣଙ୍କର ଲୀଳାମୟ ସ୍ୱରୂପକୁ ଦାନବମାନେ ଜାଣନ୍ତି ନାହିଁ, କି ଦେବତାମାନେ ଜାଣନ୍ତି ନାହିଁ (ଅର୍ଥାତ୍ କେହି ଜାଣନ୍ତି ନାହିଁ।)।। ୧୪ ।।**

**ପ୍ରଶ୍ନ –** ଏଠାରେ **କେଶବ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –ବ୍ରହ୍ମା, ବିଷ୍ଣୁ** ଓ **ମହେଶ –** ଏହି ତିନି ଶକ୍ତିକୁ କ୍ରମଶଃ **କ, ଅ** ଓ **ଈଶ** (କେଶ) କହନ୍ତି ଏବଂ ଏହି ତିନି ଯାହାଙ୍କର ବପୁ ଅର୍ଥାତ୍ ସ୍ୱରୂପ, ତାହାଙ୍କୁ **କେଶବ** କହନ୍ତି। ଏଣୁ ଏଠାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କେଶବ ବୋଲି କହି ଦେଖାଉଛନ୍ତି ଯେ, ସେ (ଶ୍ରୀକୃଷ୍ଣ) ସମସ୍ତ ଜଗତର ଉତ୍ପତ୍ତି, ପାଳନ ଓ ସଂହାର ଆଦିର କର୍ତ୍ତା ସାକ୍ଷାତ୍ ପରମେଶ୍ୱର; ଏଥିରେ ତାଙ୍କର (ଅର୍ଜୁନଙ୍କର) କୌଣସି ସନ୍ଦେହ ନାହିଁ।

**ପ୍ରଶ୍ନ –** ଏଠାରେ **ଏତତ୍** ଓ **ଯତ୍** ପଦ ଭଗବାନଙ୍କର କେଉଁ କଥନକୁ ସଂକେତ କରୁଛି ଓ ସେସବୁକୁ ସତ୍ୟ ବୋଲି ମାନିବାର ଅର୍ଥ କଣ ?

**ଉତ୍ତର –** ସପ୍ତମ ଅଧ୍ୟାୟର ଆରମ୍ଭଠାରୁ ଏହି ଅଧ୍ୟାୟର ଏକାଦଶ ଶ୍ଳୋକଯାଏ ଭଗବାନ୍ ନିଜର ଗୁଣ, ପ୍ରଭାବ, ସ୍ୱରୂପ, ମହିମା, ରହସ୍ୟ ଓ ଐଶ୍ୱର୍ଯ୍ୟ ଆଦିର ଯେଉଁ କଥା କହିଛନ୍ତି, ଯେଉଁଥିରୁ ଶ୍ରୀକୃଷ୍ଣ ନିଜକୁ ସାକ୍ଷାତ୍ ପରମେଶ୍ୱର ବୋଲି ସ୍ୱୀକାର କରିଥିବା ସିଦ୍ଧ ହେଉଛି, **ଏତତ୍** ଓ **ଯତ୍** ପଦରୁ ସେହି ସମସ୍ତ କଥାର ସୂଚନା ମିଳୁଛି ତଥା ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସମସ୍ତ ଜଗତର ହର୍ତ୍ତା, କର୍ତ୍ତା, ସର୍ବାଧାର, ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସବୁର ଆଦିମୂଳ, ସବୁର ନିୟନ୍ତା, ସର୍ବାନ୍ତର୍ଯାମୀ, ଦେବଦେବ, ସଚ୍ଚିଦାନନ୍ଦଘନ ସାକ୍ଷାତ୍ ପୂର୍ଣ୍ଣବ୍ରହ୍ମ ପରମାତ୍ମା ବୋଲି ବୁଝିବା ଓ ତାଙ୍କ ଉପଦେଶକୁ ସତ୍ୟ ମନେ କରିବା ତଥା ତାହାକୁ ତିଳେମାତ୍ର ସନ୍ଦେହ ନ କରିବା ହିଁ ସେସବୁ ବାଣୀକୁ ସତ୍ୟ ବୋଲି ମାନିବା।

**ପ୍ରଶ୍ନ –ଭଗବନ୍** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ବିଷ୍ଣୁପୁରାଣରେ କୁହାଯାଇଛି–

**ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ଧର୍ମସ୍ୟ ଯଶସଃ ଶ୍ରିୟଃ।**
**ଜ୍ଞାନବୈରାଗ୍ୟୟୋଶ୍ଚୈବ ଷଣ୍ଣାଂ ଭଗ ଇତୀରଣା।।**
(୬/୫/୭୪)

ଅର୍ଥାତ୍ 'ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ, ସମ୍ପୂର୍ଣ୍ଣ ଧର୍ମ, ସମ୍ପୂର୍ଣ୍ଣ ଯଶ, ସମ୍ପୂର୍ଣ୍ଣ ଶ୍ରୀ, ସମ୍ପୂର୍ଣ୍ଣ ଜ୍ଞାନ ଓ ସମ୍ପୂର୍ଣ୍ଣ ବୈରାଗ୍ୟ – ଏହି ଛଅଟିର ନାମ 'ଭଗ'। ଏସବୁ ଯାହାଙ୍କ ଠାରେ ଅଛି, ତାହାଙ୍କୁ ଭଗବାନ୍ କହନ୍ତି। ସେଥିରେ ଆହୁରି ମଧ୍ୟ କୁହାଯାଇଛି –

**ଉତ୍ପତ୍ତିଂ ପ୍ରଳୟଂ ଚୈବ ଭୂତାନାମାଗତିଂ ଗତିମ୍।**
**ବେତ୍ତି ବିଦ୍ୟାମବିଦ୍ୟାଂ ଚ ସ ବାଚ୍ୟୋ ଭଗବାନିତି।।**
(୬/୫/୭୮)

ଅର୍ଥାତ୍ 'ଯେ ଉତ୍ପତ୍ତି ଓ ପ୍ରଳୟ, ପ୍ରାଣୀମାନଙ୍କର ଆସିବା ଓ ଯିବା (ଜନ୍ମମୃତ୍ୟୁକୁ) ତଥା ବିଦ୍ୟା ଓ ଅବିଦ୍ୟା ଜାଣନ୍ତି, ତାହାଙ୍କୁ 'ଭଗବାନ୍' କହିବା ଉଚିତ।'

ଅତଏବ ଏଠାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ 'ଭଗବନ୍' ସମ୍ବୋଧନ କରି କହୁଛନ୍ତି, ସେ ଯେ ସର୍ବୈଶ୍ୱର୍ଯ୍ୟସମ୍ପନ୍ନ ଓ ସର୍ବଜ୍ଞ, ସାକ୍ଷାତ୍ ପରମେଶ୍ୱର, ଏଥିରେ କୌଣସି ସନ୍ଦେହ ନାହିଁ।

**ପ୍ରଶ୍ନ –** ଏଠାରେ **ବ୍ୟକ୍ତିମ୍** ପଦ କାହାର ବାଚକ ତଥା 'ତାଙ୍କୁ ଦେବତା ଓ ଦାନବ ଜାଣନ୍ତି ନାହିଁ' – କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାର କରିବା ପାଇଁ, ଧର୍ମସ୍ଥାପନା କରିବା ପାଇଁ ଓ ଭକ୍ତମାନଙ୍କୁ ଦର୍ଶନ ଦେଇ ଉଦ୍ଧାର କରିବା ପାଇଁ, ଦେବତାମାନଙ୍କର ସଂରକ୍ଷଣ ଓ ରାକ୍ଷସମାନଙ୍କର ସଂହାର କରିବା ପାଇଁ ଏବଂ ଅନ୍ୟାନ୍ୟ କାରଣରୁ ଭଗବାନ୍ ଯେଉଁ ଭିନ୍ନ ଭିନ୍ନ ଲୀଳାମୟ ସ୍ୱରୂପ ଧାରଣ କରନ୍ତି, ଏଠାରେ **ବ୍ୟକ୍ତିମ୍** ପଦଟି ହେଉଛି ସେସବୁର ବାଚକ। 'ତାଙ୍କୁ ଦେବତା ଓ ଦାନବ ଜାଣନ୍ତି ନାହିଁ' – ଏହା କହି ଅର୍ଜୁନ ଦେଖାଉଛନ୍ତି, 'ଯେଉଁଠି ମାୟାଦ୍ୱାରା ନାନାରୂପ ଧାରଣ କରିବାର ଶକ୍ତି ଥିବା ଦାନବମାନେ ତଥା ଇନ୍ଦ୍ରିୟାତୀତ ବିଷୟମାନଙ୍କୁ ପ୍ରତ୍ୟକ୍ଷ କରୁଥିବା ଦେବତାମାନେ ମଧ୍ୟ ଭଗବାନଙ୍କର ଦିବ୍ୟ ଲୀଳାମୟ ରୂପମାନଙ୍କୁ, ସେସବୁକୁ ଧାରଣ କରିବାର ଦିବ୍ୟ ଶକ୍ତି ଓ ଯୁକ୍ତିକୁ, ସେସବୁର ନିମିତ୍ତକୁ ଓ ସେସବୁର ଲୀଳାରହସ୍ୟକୁ ଜାଣିପାରନ୍ତି ନାହିଁ, ସେଠି ସାଧାରଣ ଲୋକଙ୍କ କଥା ବା କଣ କହିବା !'

## ସ୍ୱୟମେବାତ୍ମନାତ୍ମାନଂ ବେତ୍ଥ ତ୍ୱଂ ପୁରୁଷୋତ୍ତମ।
## ଭୂତଭାବନ ଭୂତେଶ ଦେବଦେବ ଜଗତ୍ପତେ॥ ୧୫ ॥

**ଅନ୍ୱୟ –** **ଭୂତଭାବନ** = ହେ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା !; **ଭୂତେଶ** = ହେ ଭୂତମାନଙ୍କର ଈଶ୍ୱର !; **ଦେବଦେବ** = ହେ ଦେବାଧିଦେବ !; **ଜଗତ୍ପତେ** = ହେ ଜଗନ୍ନାଥ !; **ପୁରୁଷୋତ୍ତମ** = ହେ ପୁରୁଷୋତ୍ତମ !; **ତ୍ୱମ୍** = ଆପଣ; **ସ୍ୱୟମ୍** = ନିଜେ; **ଏବ** = ହିଁ; **ଆତ୍ମନା** = ନିଜଦ୍ୱାରା; **ଆତ୍ମାନମ୍** = ନିଜକୁ; **ବେତ୍ଥ** = ଜାଣନ୍ତି।

**ହେ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା ! ହେ ପ୍ରାଣୀମାନଙ୍କର ଈଶ୍ୱର ! ହେ ଦେବାଧିଦେବ ! ହେ ଜଗନ୍ନାଥ ! ହେ ପୁରୁଷୋତ୍ତମ ! ଆପଣ ନିଜେ ହିଁ ନିଜଦ୍ୱାରା ନିଜକୁ ଜାଣନ୍ତି॥ ୧୫ ॥**

**ପ୍ରଶ୍ନ –** ଭୂତଭାବନ, ଭୂତେଶ, ଦେବଦେବ, **ଜଗତ୍ପତେ** ଓ **ପୁରୁଷୋତ୍ତମ –** ଏହି ପାଞ୍ଚପ୍ରକାର ସମ୍ବୋଧନର ଅର୍ଥ କ'ଣ ଏବଂ ଏଠାରେ ଏକାସଙ୍ଗେ ପାଞ୍ଚଟି ସମ୍ବୋଧନ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଯେ ସକଳ ପ୍ରାଣୀଙ୍କୁ ଉତ୍ପନ୍ନ କରନ୍ତି, ତାଙ୍କୁ **ଭୂତଭାବନ** କହନ୍ତି। ଯେ ସକଳ ପ୍ରାଣୀଙ୍କୁ ନିୟମରେ ପରିଚାଳନା କରନ୍ତି, ସମସ୍ତଙ୍କର ଶାସକ ଅଟନ୍ତି, ତାଙ୍କୁ **ଭୂତେଶ** କହନ୍ତି। ଯେ ଦେବମାନଙ୍କର ମଧ୍ୟ ପୂଜନୀୟ ଦେବ, ତାଙ୍କୁ **ଦେବଦେବ** କହନ୍ତି। ସମସ୍ତ ଜଗତକୁ ପାଳନ କରୁଥିବା ସ୍ୱାମୀଙ୍କୁ **ଜଗତ୍ପତି** ବା **ଜଗନ୍ନାଥ** କହନ୍ତି ତଥା ଯେ କ୍ଷର ଓ ଅକ୍ଷର ଉଭୟ ପୁରୁଷଙ୍କ ଠାରୁ ମଧ୍ୟ ଉତ୍ତମ, ତାଙ୍କୁ **ପୁରୁଷୋତ୍ତମ** କହନ୍ତି। ଏଠାରେ ଅର୍ଜୁନ ଏହି ପାଞ୍ଚଟି ସମ୍ବୋଧନ ପ୍ରୟୋଗ କରି ଦେଖାଉଛନ୍ତି ଯେ, ଭଗବାନ୍ ସମସ୍ତ ଜଗତର ସୃଷ୍ଟିକର୍ତ୍ତା, ସମସ୍ତଙ୍କ ନିୟନ୍ତା, ସମସ୍ତଙ୍କ ପୂଜନୀୟ, ସମସ୍ତଙ୍କ ପାଳନ-ପୋଷଣକାରୀ ତଥା 'ଅପରା' ଓ 'ପରା' ପ୍ରକୃତି ନାମକ ଯେଉଁ କ୍ଷର ଓ ଅକ୍ଷର ପୁରୁଷ ଅଛନ୍ତି, ସେହି ଦୁହିଁଙ୍କ ଠାରୁ ମଧ୍ୟ ଉତ୍ତମ ସାକ୍ଷାତ୍ ପୁରୁଷୋତ୍ତମ ଅଟନ୍ତି।

**ପ୍ରଶ୍ନ –** 'ଆପଣ ନିଜେ ହିଁ ନିଜଦ୍ୱାରା ନିଜକୁ ଜାଣନ୍ତି' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, 'ଆପଣ ସକଳ ଜଗତର ଆଦିମୂଳ ଏବଂ ଆପଣଙ୍କର ଗୁଣ, ପ୍ରଭାବ, ଲୀଳା, ମାହାତ୍ମ୍ୟ, ରୂପ ଆଦି ଅପରିମିତ।' ତେଣୁ ଭଗବାନଙ୍କର ଗୁଣ, ପ୍ରଭାବ, ଲୀଳା, ମାହାତ୍ମ୍ୟ, ରହସ୍ୟ ଓ ସ୍ୱରୂପ ଆଦିକୁ ଅନ୍ୟ କୌଣସି ପୁରୁଷ ପୂର୍ଣ୍ଣରୂପେ ଜାଣିପାରେ ନାହିଁ; ସ୍ୱୟଂ ଭଗବାନ୍ ହିଁ ନିଜ ପ୍ରଭାବ ଆଦି ଜାଣନ୍ତି। ମନୁଷ୍ୟ ତା'ର ବୁଦ୍ଧିଶକ୍ତିଦ୍ୱାରା ଶାସ୍ତ୍ରାଦି ସାହାଯ୍ୟରେ ତା'ଠାରୁ ଭିନ୍ନ ଅନ୍ୟ କୌଣସି ବସ୍ତୁର ସ୍ୱରୂପ ଯେପରି ଜାଣିପାରେ, ଭଗବାନଙ୍କର ଜାଣିବା ସେପରି ଜାଣିବା ନୁହେଁ। ଭଗବାନ୍ ସ୍ୱୟଂ ଜ୍ଞାନସ୍ୱରୂପ; ତେଣୁ ସେ ନିଜଦ୍ୱାରା ନିଜକୁ ଜାଣନ୍ତି। ଭଗବାନଙ୍କ ଠାରେ ଜ୍ଞାତା, ଜ୍ଞାନ ଓ ଜ୍ଞେୟର କୌଣସି ପ୍ରଭେଦ ନାହିଁ।

**ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି ।। ୧୬ ।।**

**ଅନ୍ୱୟ –** ତ୍ୱମ୍ = ଆପଣ; ହି = ହିଁ; ଦିବ୍ୟାଃ, ଆତ୍ମବିଭୂତୟଃ = ନିଜର ସେହି ଦିବ୍ୟ ବିଭୂତିଗୁଡ଼ିକୁ; **ଅଶେଷେଣ** = ସଂପୂର୍ଣ୍ଣରୂପେ; **ବକ୍ତୁମ୍** = କହିବାକୁ; **ଅର୍ହସି** = ସମର୍ଥ ଅଟନ୍ତି; **ଯାଭିଃ** = ଯେଉଁ; **ବିଭୂତିଭିଃ** = ବିଭୂତିଗୁଡ଼ିକଦ୍ୱାରା (ଆପଣ); **ଇମାନ୍** = ଏହିସବୁ; **ଲୋକାନ୍** = ଲୋକଗୁଡ଼ିକୁ; **ବ୍ୟାପ୍ୟ** = ବ୍ୟାପି; **ତିଷ୍ଠସି** = ରହିଛନ୍ତି।

**ତେଣୁ ଯେଉଁ ବିଭୂତିଗୁଡ଼ିକଦ୍ୱାରା ଆପଣ ଏହିସବୁ ଲୋକକୁ ବ୍ୟାପି ରହିଛନ୍ତି, ଆପଣ ହିଁ ନିଜର ସେହି ଦିବ୍ୟବିଭୂତିଗୁଡ଼ିକୁ ସଂପୂର୍ଣ୍ଣରୂପେ କହିବାକୁ ସମର୍ଥ ଅଟନ୍ତି ।। ୧୬ ।।**

**ପ୍ରଶ୍ନ –** **ଦିବ୍ୟାଃ** ବିଶେଷଣ ସହିତ **ଆତ୍ମବିଭୂତୟଃ** ପଦ କେଉଁ ବିଭୂତିମାନଙ୍କର ବାଚକ ଓ 'ସେଗୁଡ଼ିକ ଆପଣ ପୂର୍ଣ୍ଣରୂପେ କହିବାକୁ ସମର୍ଥ ଅଟନ୍ତି' – ଏପରି କହିବାର ଭାବ କଣ ?

**ଉତ୍ତର –** ସକଳ ଲୋକରେ ଯେଉଁସବୁ ପଦାର୍ଥ ତେଜ, ବଳ, ବିଦ୍ୟା, ଐଶ୍ୱର୍ଯ୍ୟ, ଗୁଣ ଓ ଶକ୍ତି ଆଦିରେ ସମ୍ପନ୍ନ, ଏଠାରେ **ଦିବ୍ୟାଃ** ବିଶେଷଣ ସହିତ **ଆତ୍ମବିଭୂତୟଃ** ପଦଟି ହେଉଛି ସେହିସବୁର ବାଚକ ତଥା ତାହା ସଂପୂର୍ଣ୍ଣଭାବରେ କହିବାକୁ ଭଗବାନ୍ ହିଁ ସମର୍ଥ ଅଟନ୍ତି ବୋଲି କହିବାର ଅଭିପ୍ରାୟ ଏହି ଯେ, ସେହିସବୁ ବିଭୂତି ଭଗବାନଙ୍କର; ଅତଏବ ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ସେସବୁ ପୂର୍ଣ୍ଣରୂପେ ଜାଣନ୍ତି ନାହିଁ; ତେଣୁ ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ବି ବ୍ୟକ୍ତି ସେସବୁକୁ ପୂର୍ଣ୍ଣରୂପେ ବର୍ଣ୍ଣନା କରି ପାରିବ ନାହିଁ; ଅତଏବ କୃପା କରି ସେ ହିଁ ସେସବୁ ବର୍ଣ୍ଣନା କରନ୍ତୁ।

**ପ୍ରଶ୍ନ –** 'ଯେଉଁ ବିଭୂତିମାନଙ୍କ ଦ୍ୱାରା ଆପଣ ସକଳ ଲୋକଙ୍କୁ ବ୍ୟାପି ରହିଛନ୍ତି' – ଏହି କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଅର୍ଜୁନ ଜଣାଉଛନ୍ତି ଯେ, ସେ କେବଳ ଭଗବାନଙ୍କର ଏହି ଲୋକରେ ରହିଥିବା ଦିବ୍ୟ ବିଭୂତିମାନଙ୍କର ବର୍ଣ୍ଣନା ଶୁଣିବାକୁ ଚାହାଁନ୍ତି ନାହିଁ; ସେ ଭଗବାନଙ୍କର ସେହି ସମସ୍ତ ବିଭିନ୍ନ ବିଭୂତିର ପୂର୍ଣ୍ଣ ବର୍ଣ୍ଣନା ଶୁଣିବାକୁ ଚାହାଁନ୍ତି, ଯେଉଁମାନଙ୍କ ଦ୍ୱାରା କି ବିଭିନ୍ନ ରୂପରେ ଭଗବାନ୍ ସ୍ୱର୍ଗାଦି ସମସ୍ତ ଲୋକରେ ପରିପୂର୍ଣ୍ଣ ହୋଇ ରହିଛନ୍ତି।

**କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍ ।**
**କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ ମୟା ।। ୧୭ ।।**

**ଅନ୍ୱୟ –** ଯୋଗିନ୍ = ହେ ଯୋଗେଶ୍ୱର !; ଅହମ୍ = ମୁଁ; କଥମ୍ = କିପରି; ସଦା = ନିରନ୍ତର; **ପରିଚିନ୍ତୟନ୍** = ଚିନ୍ତନ କରି କରି; ତ୍ୱାମ୍ = ଆପଣଙ୍କୁ; ବିଦ୍ୟାମ୍ = ଜାଣିପାରିବି; ଚ = ଓ; ଭଗବନ୍ = ହେ ଭଗବନ୍ (ଆପଣ); **କେଷୁ, କେଷୁ** = କେଉଁ କେଉଁ; **ଭାବେଷୁ** = ଭାବମାନଙ୍କରେ; **ମୟା** = ମୋ ଦ୍ୱାରା; **ଚିନ୍ତ୍ୟଃ** = ଚିନ୍ତନଯୋଗ୍ୟ; **ଅସି** = ଅଟନ୍ତି।

**ହେ ଯୋଗେଶ୍ୱର! ନିରନ୍ତର କିପରି ଚିନ୍ତନ କରି କରି ମୁଁ ଆପଣଙ୍କୁ ଜାଣିପାରିବି ଏବଂ ହେ ଭଗବନ୍! ଆପଣ କେଉଁ କେଉଁ ଭାବରେ ମୋ ଦ୍ୱାରା ଚିନ୍ତନଯୋଗ୍ୟ ଅଟନ୍ତି ? ।। ୧୭ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନ ଏଥିରେ ଭଗବାନଙ୍କୁ ଦୁଇଟି ପ୍ରଶ୍ନ ପଚାରିଛନ୍ତି – (୧) ଏପରି କିଛି ଉପାୟ କହନ୍ତୁ, ଯାହାଦ୍ୱାରା ମୁଁ ଶ୍ରଦ୍ଧା ଓ ପ୍ରେମର ସହିତ ନିରନ୍ତର ଆପଣଙ୍କୁ ଚିନ୍ତନ କରୁଥିବି ଏବଂ ଗୁଣ, ପ୍ରଭାବ ତଥା ତତ୍ତ୍ୱ ସହିତ ଆପଣଙ୍କୁ ଭଲଭାବରେ ଜାଣିପାରିବି ଓ (୨) ଜଡ଼-ଚେତନ ଆଦି ଯେତେ ଚରାଚର

ପଦାର୍ଥ ଅଛି, ତନ୍ମଧ୍ୟରୁ ମୁଁ କାହାକୁ କାହାକୁ ଆପଣଙ୍କର ସ୍ୱରୂପ ବୋଲି ବୁଝି ସେଥିରେ ଚିତ୍ତ ଲଗାଇବି, ତାହାର ବ୍ୟାଖ୍ୟା କରନ୍ତୁ। ଅଭିପ୍ରାୟ ଏହି ଯେ, କେଉଁ କେଉଁ ପଦାର୍ଥରେ କିପରିଭାବରେ ନିରନ୍ତର ଚିନ୍ତନ କରି ସହଜରେ ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟକୁ ବୁଝାଯାଇପାରିବ, ସେହି ସମ୍ବନ୍ଧରେ ଅର୍ଜୁନ ପଚାରୁଛନ୍ତି।

## ବିସ୍ତରେଣାତ୍ମନୋ ଯୋଗଂ ବିଭୂତିଂ ଚ ଜନାର୍ଦ୍ଦନ।
## ଭୂୟଃ କଥୟ ତୃପ୍ତିର୍ହି ଶୃଣ୍ୱତୋ ନାସ୍ତି ମେଽମୃତମ୍।। ୧୮ ।।

**ଅନ୍ୱୟ –** ଜନାର୍ଦ୍ଦନ = ହେ ଜନାର୍ଦ୍ଦନ; ଆତ୍ମନଃ = ନିଜର; ଯୋଗମ୍ = ଯୋଗଶକ୍ତିକୁ; ଚ = ଓ; ବିଭୂତିମ୍ = ବିଭୂତିକୁ; ଭୂୟଃ = ଆହୁରି; ବିସ୍ତରେଣ = ବିସ୍ତୃତଭାବରେ; କଥୟ = କହନ୍ତୁ; ହି = କାରଣ; ଅମୃତମ୍ = ଆପଣଙ୍କର ଅମୃତମୟ ବଚନକୁ; ଶୃଣ୍ୱତଃ = ଶୁଣି ଶୁଣି; ମେ = ମୋର; ତୃପ୍ତିଃ = ତୃପ୍ତି; ନ, ଅସ୍ତି = ହେଉ ନାହିଁ ଅର୍ଥାତ୍ ଶୁଣିବାକୁ ଉତ୍କଣ୍ଠା ବଢୁଛି।

**ହେ ଜନାର୍ଦ୍ଦନ ! ଆପଣଙ୍କ ଯୋଗଶକ୍ତି ଓ ବିଭୂତି ଆହୁରି ବିସ୍ତୃତଭାବରେ କହନ୍ତୁ; କାରଣ ଆପଣଙ୍କର ଅମୃତମୟ ବଚନ ଶୁଣି ଶୁଣି ବି ମୋର ତୃପ୍ତି ହେଉ ନାହିଁ; ଆହୁରି ଶୁଣିବାକୁ ଉତ୍କଣ୍ଠା ବଢୁଛି।। ୧୮ ।।**

**ପ୍ରଶ୍ନ –** ଏଠାରେ **ଜନାର୍ଦ୍ଦନ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ସବୁ ମନୁଷ୍ୟ ନିଜ ନିଜର ବାଞ୍ଛିତ ବସ୍ତୁମାନଙ୍କ ପାଇଁ ଯାହାଙ୍କୁ ପ୍ରାର୍ଥନା କରନ୍ତି, ତାଙ୍କୁ **ଜନାର୍ଦ୍ଦନ** କହନ୍ତି। ଏଠାରେ ଅର୍ଜୁନ ଭଗବାନଙ୍କୁ ଜନାର୍ଦ୍ଦନ ନାମରେ ସମ୍ବୋଧନ କରି ଦେଖାଉଛନ୍ତି ଯେ, ସମସ୍ତେ ଭଗବାନଙ୍କ ଠାରୁ ନିଜ ନିଜର ଇଷ୍ଟବସ୍ତୁ ପାଇବାକୁ ଚାହାଁନ୍ତି ଏବଂ ଭଗବାନ୍ ସମସ୍ତଙ୍କୁ ସବୁ ଦେବାକୁ ସମର୍ଥ। ତେଣୁ ମୁଁ ଯାହା ପ୍ରାର୍ଥନା କରୁଛି, ଆପଣ କୃପା କରି ତାହା ପୂର୍ଣ୍ଣ କରନ୍ତୁ।

**ପ୍ରଶ୍ନ –** ଏଠାରେ **ଯୋଗମ୍** ଓ **ବିଭୂତିମ୍** ପଦ କାହାର ବାଚକ ତଥା ସେହି ଦୁଇଟିକୁ ଆହୁରି ବିସ୍ତୃତଭାବରେ କହିବାପାଇଁ ପ୍ରାର୍ଥନା କରିବାର ଅଭିପ୍ରାୟ କଣ ?

**ଉତ୍ତର –** ନିଜର ଯେଉଁ ଈଶ୍ୱରୀୟ ଶକ୍ତିଦ୍ୱାରା ଭଗବାନ୍ ନିଜେ ଏହି ଜଗତରୂପରେ ପ୍ରକଟ ହୋଇ ଅନେକରୂପରେ ବିସ୍ତୃତ ହୁଅନ୍ତି, ସେହି ଶକ୍ତିର ନାମ **ଯୋଗ** ଏବଂ ସେହି ବିଭିନ୍ନ ରୂପର ବିସ୍ତୃତିର ନାମ **ବିଭୂତି**। ଏହି ଅଧ୍ୟାୟର ସପ୍ତମ ଶ୍ଳୋକରେ ଭଗବାନ୍ ଏହି ଦୁଇ ଶବ୍ଦ ପ୍ରୟୋଗ କରିଛନ୍ତି; ସେଠାରେ ଏ ଦୁଇଟିର ଅର୍ଥ ବିସ୍ତୃତଭାବେ ଦିଆଯାଇଛି। ସେହି ଶ୍ଳୋକରେ ଏହି ଦୁଇଟିକୁ ତତ୍ତ୍ୱତଃ ଜାଣିବାର ଫଳ ଅବିଚଳ ଭକ୍ତିଯୋଗପ୍ରାପ୍ତି ବୋଲି କୁହାଯାଇଛି। ଅତଏବ ଅର୍ଜୁନ ଏହି 'ବିଭୂତି' ଓ 'ଯୋଗ' ଉଭୟର ରହସ୍ୟ ଭଲଭାବରେ ଜାଣିବାକୁ ଇଚ୍ଛା କରି ବାରମ୍ବାର ବିସ୍ତୃତ ବର୍ଣ୍ଣନା କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି।

**ପ୍ରଶ୍ନ –** 'ଆପଣଙ୍କର ଅମୃତମୟ କଥା ଶୁଣି ଶୁଣି ବି ମୋର ତୃପ୍ତି ହେଉ ନାହିଁ'– ଅର୍ଜୁନଙ୍କର ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହା କହି ଅର୍ଜୁନ ଜଣାଉଛନ୍ତି, ''ଆପଣଙ୍କ କଥାରେ ଏପରି ମାଧୁରୀ ଭରି ହୋଇଛି ଯେ, ତହିଁରୁ ଆନନ୍ଦର ସୁଧାଧାରା ବହିଚାଲିଛି। ତାହା ଯେତେ ପାନ କଲେ ବି ତୃପ୍ତି ଆସୁ ନାହିଁ। ସେହି ଦିବ୍ୟ ଅମୃତ ମୁଁ ଯେତେ ପିଉଛି, ମୋର ତୃଷା ସେତେ ବଢୁଛି। ମନ ଚାହୁଁଛି, ସେହି ଅମୃତମୟ ରସକୁ ନିରନ୍ତର ପିଇଚାଲିବି। ତେଣୁ ହେ ଭଗବନ୍ ! ଭାବନ୍ତୁ ନାହିଁ ଯେ, 'ଏ କଥା ତ ବହୁତ କହିସାରିଛି, ଆଉ ଅଧିକ କଣ କହିବି !' ଦୟା କରି ଏହି ଦିବ୍ୟ ଅମୃତ ବର୍ଷା କରୁଥାଆନ୍ତୁ; ମୁଁ ପିଇ ଚାଲିଥାଏ।''

**ସମ୍ବନ୍ଧ –** ନିଜର ଯୋଗ ଓ ବିଭୂତିଗୁଡ଼ିକ ବିସ୍ତାରପୂର୍ବକ ସଂପୂର୍ଣ୍ଣରୂପେ ବର୍ଣ୍ଣନା କରିବାକୁ ଅର୍ଜୁନ ପ୍ରାର୍ଥନା କରିବାରୁ ଭଗବାନ୍ ପ୍ରଥମେ ନିଜ ବିସ୍ତାରର ଅନନ୍ତତା କହି ନିଜର ମୁଖ୍ୟ ମୁଖ୍ୟ ବିଭୂତିଗୁଡ଼ିକ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି–

ଶ୍ରୀଭଗବାନୁବାଚ

**ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ॥ ୧୯ ॥**

**ଅନ୍ୱୟ –** **କୁରୁଶ୍ରେଷ୍ଠ** = ହେ କୁରୁଶ୍ରେଷ୍ଠ; **ହନ୍ତ** = ବର୍ତ୍ତମାନ; **ଦିବ୍ୟାଃ, ଆତ୍ମବିଭୂତୟଃ** = ମୋର ଯେଉଁ ଦିବ୍ୟ ବିଭୂତିଗୁଡ଼ିକ ରହିଛି (ସେଗୁଡ଼ିକ); **ତେ** = ତୁମକୁ; **ପ୍ରାଧାନ୍ୟତଃ** = ମୁଖ୍ୟରୂପରେ; **କଥୟିଷ୍ୟାମି** = କହିବି; **ହି** = କାରଣ; **ମେ** = ମୋର; **ବିସ୍ତରସ୍ୟ** = ବିସ୍ତାରର; **ଅନ୍ତଃ** = ଅନ୍ତ; **ନ, ଅସ୍ତି** = ନାହିଁ।

**ଶ୍ରୀଭଗବାନ୍ କହିଲେ — ହେ କୁରୁଶ୍ରେଷ୍ଠ ! ମୋର ଯେଉଁସବୁ ଦିବ୍ୟ ବିଭୂତି ରହିଛି, ସେଗୁଡ଼ିକ ତୁମକୁ ମୁଖ୍ୟଭାବରେ ବର୍ତ୍ତମାନ କହିବି; କାରଣ ମୋ' ବିସ୍ତାରର ଅନ୍ତ ନାହିଁ ॥ ୧୯ ॥**

**ପ୍ରଶ୍ନ –** **କୁରୁଶ୍ରେଷ୍ଠ** ସମ୍ବୋଧନର ଭାବ କଣ ?

**ଉତ୍ତର –** ଅର୍ଜୁନଙ୍କୁ **କୁରୁଶ୍ରେଷ୍ଠ** ବୋଲି ସମ୍ବୋଧନ କରି ଭଗବାନ୍ କହୁଛନ୍ତି, ''ତୁମେ କୁରୁକୁଳର ସର୍ବଶ୍ରେଷ୍ଠ ବ୍ୟକ୍ତି; ଏଣୁ ମୋ' ବିଭୂତିଗୁଡ଼ିକର ବର୍ଣ୍ଣନା ଶୁଣିବାକୁ ତୁମେ ଅଧିକାରୀ।''

**ପ୍ରଶ୍ନ –** **ଦିବ୍ୟାଃ** ବିଶେଷଣ ସହିତ **ଆତ୍ମବିଭୂତୟଃ** ପଦର ଅର୍ଥ କଣ ଏବଂ 'ସେଗୁଡ଼ିକୁ ମୁଖ୍ୟରୂପରେ କହିବି' – ଏହା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସାରା ଜଗତ ଭଗବାନଙ୍କର ସ୍ୱରୂପ; ତେଣୁ ସାଧାରଣତଃ ସବୁ ବସ୍ତୁ ତାଙ୍କରି ହିଁ ବିଭୂତି। କିନ୍ତୁ ସେସବୁ ଦିବ୍ୟବିଭୂତି ନୁହେଁ। ଦିବ୍ୟବିଭୂତି କହିଲେ ସେହିସବୁ ବସ୍ତୁ ଓ ପ୍ରାଣୀଙ୍କୁ ବୁଝିବା ଉଚିତ, ଯାହାଙ୍କ ଠାରେ ଭଗବାନଙ୍କର ତେଜ, ବଳ, ବିଦ୍ୟା, ଐଶ୍ୱର୍ଯ୍ୟ, କାନ୍ତି ଓ ଶକ୍ତି ଆଦିର ବିଶେଷ ବିକାଶ ହୋଇଛି। ଭଗବାନ୍ ଏଠାରେ ସେହିସବୁ ବିଭୂତି ବିଷୟରେ କହୁଛନ୍ତି, ''ମୋର ଏପରି ବିଭୂତି ଅନନ୍ତ। ଅତଏବ ସବୁର ତ ପୂରା ବର୍ଣ୍ଣନା ହୋଇପାରିବ ନାହିଁ; ସେସବୁମଧରୁ ଯେଉଁଗୁଡ଼ିକ ପ୍ରଧାନ, ଏଠାରେ ମୁଁ ସେଗୁଡ଼ିକ ହିଁ ବର୍ଣ୍ଣନା କରିବି।''

**ପ୍ରଶ୍ନ –** 'ମୋର ବିସ୍ତାରର ଅନ୍ତ ନାହିଁ' – ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ଏହାଦ୍ୱାରା ଅଠର ଶ୍ଳୋକରେ ଅର୍ଜୁନ କରିଥିବା ସେହି ପ୍ରାର୍ଥନାର ଉତ୍ତର ଦେଉଛନ୍ତି, ଯେଉଁଥିରେ କି ବିସ୍ତାରପୂର୍ବକ ବିଭୂତିଗୁଡ଼ିକ ବର୍ଣ୍ଣନା କରିବାକୁ ସେ ପ୍ରାର୍ଥନା କରିଥିଲେ। ଭଗବାନ୍ କହୁଛନ୍ତି, ''ମୋର ସକଳ ବିଭୂତିର ବର୍ଣ୍ଣନା ତ ହୋଇପାରିବ ନାହିଁ; ମୋର ଯେତେ ପ୍ରଧାନ ପ୍ରଧାନ ବିଭୂତି ରହିଛି, ସେସବୁର ସମ୍ପୂର୍ଣ୍ଣ ବର୍ଣ୍ଣନା ମଧ ସମ୍ଭବ ନୁହେଁ।'' ★

---

★ ବିଶ୍ୱରେ ଅସଂଖ୍ୟ ପଦାର୍ଥ, ଭାବ ଓ ବିଭିନ୍ନଜାତୀୟ ପ୍ରାଣୀମାନଙ୍କର ସୃଷ୍ଟି ଓ ବୃଦ୍ଧି ହୋଇଛି। ସେସବୁର ଯଥାବିଧି ନିୟନ୍ତ୍ରଣ ଓ ସଞ୍ଚାଳନ କରିବା ପାଇଁ ଜଗତସ୍ରଷ୍ଟା ଭଗବାନଙ୍କର ଅଟଳ ନିୟମଦ୍ୱାରା ବିଭିନ୍ନଜାତୀୟ ପଦାର୍ଥ, ଭାବ ଓ ଜୀବମାନଙ୍କର ବିଭିନ୍ନ ସମଷ୍ଟି-ବିଭାଗ କରିଦିଆଯାଇଛି ଓ ଠିକ୍ ନିୟମାନୁସାରେ ସେସବୁର ସୃଜନ, ପାଳନ ତଥା ସଂହାରର କାର୍ଯ୍ୟ ଚାଲୁରହିଛି – ଏଥିପାଇଁ ପ୍ରତ୍ୟେକ ସମଷ୍ଟିବିଭାଗର ଅଧିକାରୀ ନିଯୁକ୍ତ ହୋଇଛନ୍ତି। ରୁଦ୍ର, ବସୁ, ଆଦିତ୍ୟ, ଇନ୍ଦ୍ର, ସାଧ୍ୟ, ବିଶ୍ୱଦେବ, ମରୁତ, ପିତୃଦେବ, ମନୁ ଓ ସପ୍ତର୍ଷି ଆଦି ହେଉଛି ସେହି ଅଧିକାରୀମାନଙ୍କର ବିଭିନ୍ନ ସଂଜ୍ଞା। ସେମାନଙ୍କର ମୂର୍ତ୍ତ ଓ ଅମୂର୍ତ୍ତ ଉଭୟରୂପ ସ୍ୱୀକାର କରାଯାଉଛି। ଏ ସମସ୍ତେ ହେଉଛନ୍ତି ଭଗବାନଙ୍କର ବିଭୂତି।

**ସର୍ବେ ଚ ଦେବା ମନବଃ ସମସ୍ତାଃ ସପ୍ତର୍ଷୟୋ ଯେ ମନୁସୂନବଶ୍ଚ । ଇନ୍ଦ୍ରଶ୍ଚ ଯୋଽୟଂ ତ୍ରିଦଶେଶଭୂତୋ ବିଷ୍ଣୋରଶେଷାସ୍ତୁ ବିଭୂତୟସ୍ତାଃ ॥**

(ଶ୍ରୀ ବିଷ୍ଣୁପୁରାଣ ୩/୧/୪୬)

ଅର୍ଥାତ୍ 'ସବୁ ଦେବତା, ସମସ୍ତ ମନୁ, ସପ୍ତର୍ଷି ତଥା ଯେଉଁମାନେ ମନୁଙ୍କର ପୁତ୍ର ଓ ଦେବତାମାନଙ୍କର ଅଧିପତି ଇନ୍ଦ୍ର – ଏ ସମସ୍ତେ ଭଗବାନ୍ ବିଷ୍ଣୁଙ୍କର ହିଁ ବିଭୂତି।

ଏମାନଙ୍କ ଛଡ଼ା ସୃଷ୍ଟିସଞ୍ଚାଳନପାଇଁ ପ୍ରଜାମାନଙ୍କର ସମଷ୍ଟି-ବିଭାଗମାନଙ୍କ ମଧ୍ୟରୁ ଯଥାଯୋଗ୍ୟ ନିର୍ବାଚନ କରିନିଆଯାଏ। ସେହି ନିର୍ବାଚନରେ ପ୍ରଧାନତଃ ସେହିମାନଙ୍କୁ ନିଆଯାଏ, ଯାହାଙ୍କ ଠାରେ ଭଗବାନଙ୍କର ତେଜ, ଶକ୍ତି, ବିଦ୍ୟା, ଜ୍ଞାନ ଓ ବଳ ଆଦିର ବିଶେଷ ବିକାଶ ହୋଇଥାଏ। ଏଣୁ ଭଗବାନ୍ ସେମାନଙ୍କୁ ମଧ ନିଜର ବିଭୂତି ବୋଲି କହିଛନ୍ତି।

ବାୟୁପୁରାଣର ସତର ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ, 'ମହର୍ଷି କଶ୍ୟପଙ୍କ ଦ୍ୱାରା ଯେତେବେଳେ ପ୍ରଜାମାନଙ୍କର ସୃଷ୍ଟି ହୋଇଗଲା, ସେତେବେଳେ ପ୍ରଜାପତି ବିଭିନ୍ନଜାତୀୟ ପ୍ରଜାମାନଙ୍କ ମଧ୍ୟରୁ ଯେଉଁମାନେ ସବୁଠାରୁ ଶ୍ରେଷ୍ଠ ଓ ତେଜସ୍ୱୀ ଥିଲେ, ସେମାନଙ୍କୁ ବାଛି ସେହି ସେହି ଜାତୀୟ ପ୍ରଜାଙ୍କର ନିୟନ୍ତ୍ରଣପାଇଁ ସେମାନଙ୍କୁ ରାଜା କରିଦେଲେ, ଯଥା – ଚନ୍ଦ୍ରମାଙ୍କୁ ଗ୍ରହ-ନକ୍ଷତ୍ରାଦିର, ବୃହସ୍ପତିଙ୍କୁ ଅଙ୍ଗିରସମାନଙ୍କର, ଶୁକ୍ରାଚାର୍ଯ୍ୟଙ୍କୁ ଭାର୍ଗବମାନଙ୍କର, ବିଷ୍ଣୁଙ୍କୁ ଆଦିତ୍ୟମାନଙ୍କର, ପାବକ (ଅଗ୍ନି)ଙ୍କୁ ବସୁମାନଙ୍କର, ଦକ୍ଷଙ୍କୁ ପ୍ରଜାପତିମାନଙ୍କର, ପ୍ରହ୍ଲାଦଙ୍କୁ ଦୈତ୍ୟମାନଙ୍କର, ଇନ୍ଦ୍ରଙ୍କୁ ମରୁତମାନଙ୍କର, ନାରାୟଣଙ୍କୁ ସାଧ୍ୟମାନଙ୍କର, ଶଙ୍କରଙ୍କୁ ରୁଦ୍ରମାନଙ୍କର, ବରୁଣଙ୍କୁ ଜଳମାନଙ୍କର, କୁବେରଙ୍କୁ ଯକ୍ଷ-ରାକ୍ଷସାଦିଙ୍କର, ଶୂଳପାଣିଙ୍କୁ ଭୂତ-ପିଶାଚଙ୍କର, ସାଗରଙ୍କୁ ନଦୀମାନଙ୍କର, ଚିତ୍ରରଥଙ୍କୁ ଗନ୍ଧର୍ବମାନଙ୍କର, ଉଚ୍ଚୈଃଶ୍ରବାଙ୍କୁ ଅଶ୍ୱମାନଙ୍କର, ସିଂହଙ୍କୁ ବନ୍ୟ ପଶୁମାନଙ୍କର, ବୃଷଭଙ୍କୁ ଚତୁଷ୍ପଦମାନଙ୍କର, ଗରୁଡ଼ଙ୍କୁ ପକ୍ଷୀମାନଙ୍କର, ଆଦିଶେଷଙ୍କୁ ଦଂଶନକାରୀ ଜୀବମାନଙ୍କର, ବାସୁକିଙ୍କୁ ନାଗମାନଙ୍କର, ତକ୍ଷକଙ୍କୁ ଅନ୍ୟଜାତୀୟ ସର୍ପ ଓ କୀଟମାନଙ୍କର, ହିମବାନଙ୍କୁ ପର୍ବତମାନଙ୍କର, ବିପ୍ରଚିତ୍ତିଙ୍କୁ ଦାନବମାନଙ୍କର, ବୈବସ୍ୱତଙ୍କୁ ପିତୃମାନଙ୍କର, ପର୍ଜନ୍ୟଙ୍କୁ ସାଗର, ନଦୀ ଓ ମେଘମାନଙ୍କର, କାମଦେବଙ୍କୁ ଅପ୍ସରାମାନଙ୍କର, ସମ୍ବତ୍ସରଙ୍କୁ ଋତୁ ଓ ମାସମାନଙ୍କର, ସୁଧାମାଙ୍କୁ ପୂର୍ବଦିଗର, କେତୁମାନଙ୍କୁ ପଶ୍ଚିମଦିଗର ଓ ବୈବସ୍ୱତ ମନୁଙ୍କୁ ମନୁଷ୍ୟମାନଙ୍କର ରାଜା କରାଇଲେ। ଏହିସବୁ ଅଧିକାରୀମାନଙ୍କ ଦ୍ୱାରା ସମଗ୍ର ଜଗତର ସଞ୍ଚାଳନ ଓ ପାଳନ ହେଉଛି। ଏଠାରେ ଏହି ଅଧ୍ୟାୟରେ ଯେଉଁ ବିଭୂତିମାନଙ୍କର ବର୍ଣ୍ଣନା ହୋଇଛି, ସେସବୁର ଅନେକାଂଶରେ ଏଥି ସହିତ ସାଦୃଶ୍ୟ ରହିଛି।

*ସମ୍ବନ୍ଧ— ବର୍ତ୍ତମାନ ନିଜର ପ୍ରତିଜ୍ଞାନୁସାରେ ଭଗବାନ୍ କୋଡ଼ିଏରୁ ଅଣଚାଳିଶ ଶ୍ଳୋକଯାଏ ପ୍ରଥମେ ନିଜର ବିଭୂତିମାନଙ୍କର ବର୍ଣ୍ଣନା କରୁଛନ୍ତି—*

**ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟସ୍ଥିତଃ ।**
**ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ ॥ ୨୦ ॥**

**ଅନ୍ୱୟ—** **ଗୁଡ଼ାକେଶ** = ହେ ଅର୍ଜୁନ !; **ଅହମ୍** = ମୁଁ; **ସର୍ବଭୂତାଶୟସ୍ଥିତଃ** = ସକଳଜୀବଙ୍କ ହୃଦୟରେ ସ୍ଥିତ; **ଆତ୍ମା** = ସମସ୍ତଙ୍କର ଆତ୍ମା; **ଚ** = ତଥା; **ଭୂତାନାମ୍** = ସକଳଜୀବଙ୍କର; **ଆଦିଃ** = ଆଦି; **ମଧ୍ୟମ୍** = ମଧ୍ୟ; **ଚ** = ଓ; **ଅନ୍ତଃ** = ଅନ୍ତ; **ଚ** = ବି; **ଅହମ୍** = ମୁଁ; **ଏବ** = (ହିଁ) ଅଟେ ।

**ହେ ଅର୍ଜୁନ! ମୁଁ ସକଳ ଜୀବଙ୍କ ହୃଦୟରେ ସ୍ଥିତ ସମସ୍ତଙ୍କର ଆତ୍ମା ; ତଥା ସକଳ ଜୀବଙ୍କର ଆଦି, ମଧ୍ୟ ଓ ଅନ୍ତ ବି ମୁଁ ହିଁ ଅଟେ ॥ ୨୦ ॥**

**ପ୍ରଶ୍ନ—** **ଗୁଡ଼ାକେଶ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର—** **ଗୁଡ଼ାକା** ନିଦ୍ରାକୁ କହନ୍ତି । ତାକୁ ଜୟ କରିଥିବା ବ୍ୟକ୍ତିକୁ **ଗୁଡ଼ାକେଶ** କହନ୍ତି । ଭଗବାନ୍ ଅର୍ଜୁନଙ୍କୁ **ଗୁଡ଼ାକେଶ** ନାମରେ ସମ୍ବୋଧିତ କରି କହିଛନ୍ତି, ''ତୁମେ ନିଦ୍ରାକୁ ଜୟ କରିସାରିଛ । ଅତଏବ ମୋର ଉପଦେଶ ଗ୍ରହଣ କରି ଅଜ୍ଞାନରୂପୀ ନିଦ୍ରାକୁ ମଧ୍ୟ ଜୟ କରିପାରିବ ।''

**ପ୍ରଶ୍ନ—** **ସର୍ବଭୂତାଶୟସ୍ଥିତଃ** ବିଶେଷଣ ସହିତ **ଆତ୍ମା** ପଦ କାହାର ବାଚକ ଓ 'ସେହି ଆତ୍ମା ମୁଁ ହିଁ ଅଟେ'— କହିବାର ଅଭିପ୍ରାୟ କଣ ?

**ଉତ୍ତର—** ସମସ୍ତ ପ୍ରାଣୀଙ୍କ ହୃଦୟରେ ଯେଉଁ 'ଚେତନ' ଅଛି, ଯାହାକୁ 'ପରା ପ୍ରକୃତି' ଓ 'କ୍ଷେତ୍ରଜ୍ଞ' ମଧ୍ୟ କହନ୍ତି (୭/୫, ୧୩/୧), ଏଠାରେ **ସର୍ବଭୂତାଶୟସ୍ଥିତଃ** ବିଶେଷଣ ସହିତ 'ଆତ୍ମା' ପଦଟି ହେଉଛି ତାହାର ବାଚକ । ତାହା ଭଗବାନଙ୍କର ହିଁ ଅଂଶ ହୋଇଥିବାରୁ (୧୫/୭) ବସ୍ତୁତଃ ଭଗବତ୍‌ସ୍ୱରୂପ ହିଁ ଅଟେ (୧୩/୨), ଅତଏବ ଭଗବାନ୍ କହୁଛନ୍ତି, ''ସେହି ଆତ୍ମା ମୁଁ ହିଁ ଅଟେ ।''

**ପ୍ରଶ୍ନ—** **ଭୂତାନାମ୍** ପଦ କେଉଁମାନଙ୍କର ବାଚକ ଓ ''ସେମାନଙ୍କର ଆଦି, ମଧ୍ୟ ଓ ଅନ୍ତ ମୁଁ ହିଁ ଅଟେ ।''— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର—** **ଭୂତାନାମ୍** ପଦଟି ହେଉଛି ଚରାଚର ସମସ୍ତ ଦେହଧାରୀ ପ୍ରାଣୀମାନଙ୍କର ବାଚକ । ସେମାନଙ୍କର ସୃଜନ, ପାଳନ ଓ ସଂହାର ଭଗବାନଙ୍କ ଦ୍ୱାରା ହିଁ ହୋଇଥାଏ । ସମସ୍ତ ପ୍ରାଣୀ ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ ହୁଅନ୍ତି; ତାଙ୍କ ଠାରେ ଅବସ୍ଥିତ ରହନ୍ତି ଓ ପ୍ରଳୟକାଳରେ ତାଙ୍କ ମଧ୍ୟରେ ହିଁ ଲୀନ ହୁଅନ୍ତି । ଭଗବାନ୍ ହିଁ ସମସ୍ତଙ୍କର ମୂଳକାରଣ ଓ ଆଧାର— ଏହି ଭାବ ଦେଖାଇବାପାଇଁ ଭଗବାନ୍ ନିଜକୁ ସେସବୁର ଆଦି, ମଧ୍ୟ ଓ ଅନ୍ତ ବୋଲି କହିଛନ୍ତି ।

**ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।**
**ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ ॥ ୨୧ ॥**

**ଅନ୍ୱୟ—** **ଅହମ୍** = ମୁଁ; **ଆଦିତ୍ୟାନାମ୍** = ଅଦିତିଙ୍କ ଦ୍ୱାଦଶ ପୁତ୍ରଙ୍କ ମଧ୍ୟରେ; **ବିଷ୍ଣୁଃ** = ବିଷ୍ଣୁ (ଓ); **ଜ୍ୟୋତିଷାମ୍** = ଜ୍ୟୋତିମାନଙ୍କ ମଧ୍ୟରେ; **ଅଂଶୁମାନ୍** = କିରଣଧାରୀ; **ରବିଃ** = ସୂର୍ଯ୍ୟ; **ଅସ୍ମି** = ଅଟେ (ତଥା); **ଅହମ୍** = ମୁଁ; **ମରୁତାମ୍** = ଅଣଚାଶ ବାୟୁଦେବତାମାନଙ୍କର; **ମରୀଚିଃ** = ତେଜ (ଓ); **ନକ୍ଷତ୍ରାଣାମ୍** = ନକ୍ଷତ୍ରମାନଙ୍କର ଅଧିପତି; **ଶଶୀ** = ଚନ୍ଦ୍ରମା; **(ଅସ୍ମି)** = ଅଟେ ।

**ମୁଁ ଅଦିତିଙ୍କର ଦ୍ୱାଦଶ ପୁତ୍ରଙ୍କ ମଧ୍ୟରେ ବିଷ୍ଣୁ ଓ ଜ୍ୟୋତିମାନଙ୍କ ମଧ୍ୟରେ କିରଣପ୍ରଦାନକାରୀ ସୂର୍ଯ୍ୟ ତଥା ଅଣଚାଶ ବାୟୁଦେବତାଙ୍କର ତେଜ* ଓ ନକ୍ଷତ୍ରମାନଙ୍କର ଅଧିପତି ଚନ୍ଦ୍ରମା ଅଟେ ॥ ୨୧ ॥**

---

★ ଅଣଚାଶ ମରୁତଙ୍କ ନାମ ହେଉଛି— ସତ୍ତ୍ୱଜ୍ୟୋତି, ଆଦିତ୍ୟ, ସତ୍ୟଜ୍ୟୋତି, ତିର୍ଯ୍ୟଗ୍‌ଜ୍ୟୋତି, ସଜ୍ୟୋତି, ଜ୍ୟୋତିଷ୍ମାନ୍, ହରିତ, ଋତଜିତ୍, ସତ୍ୟଜିତ୍, ସୁଷେଣ, ସେନଜିତ୍, ସତ୍ୟମିତ୍ର, ଅଭିମିତ୍ର, ହରିମିତ୍ର, କୃତ, ସତ୍ୟ, ଧ୍ରୁବ, ଧର୍ତ୍ତା, ବିଧର୍ତ୍ତା, ବିଧାରୟ, ଧ୍ୱାନ୍ତ, ଧୁନି, ଉଗ୍ର, ଭୀମ,

**ପ୍ରଶ୍ନ –** ଏଠାରେ ଆଦିତ୍ୟ ଶବ୍ଦ କେଉଁମାନଙ୍କ ବାଚକ ଏବଂ ସେମାନଙ୍କ ମଧ୍ୟରେ ମୁଁ 'ବିଷ୍ଣୁ'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଅଦିତିଙ୍କର ଧାତା, ମିତ୍ର, ଅର୍ଯ୍ୟମା, ଶକ୍ର, ବରୁଣ, ଅଂଶ, ଭଗ, ବିବସ୍ୱାନ୍, ପୂଷା, ସବିତା, ତ୍ୱଷ୍ଟା ଓ ବିଷ୍ଣୁ ନାମକ ଦ୍ୱାଦଶ ପୁତ୍ରଙ୍କୁ ଦ୍ୱାଦଶ ଆଦିତ୍ୟ କହନ୍ତି। * ଏମାନଙ୍କ ମଧ୍ୟରେ ଯେ ବିଷ୍ଣୁ, ସେ ଏମାନଙ୍କର ରାଜା ଓ ଅନ୍ୟମାନଙ୍କ ଠାରୁ ଶ୍ରେଷ୍ଠ ଅଟନ୍ତି। ଅତଏବ ଭଗବାନ୍ ବିଷ୍ଣୁଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ଜ୍ୟୋତିମାନଙ୍କ ମଧ୍ୟରେ କିରଣ ବିତରଣ କରୁଥିବା ସୂର୍ଯ୍ୟ ମୁଁ' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ସୂର୍ଯ୍ୟ, ଚନ୍ଦ୍ରମା, ତାରା, ବିଦ୍ୟୁତ୍ ଓ ଅଗ୍ନି ଆଦି ଯେତେ ବି ପ୍ରକାଶମାନ ପଦାର୍ଥ ଅଛନ୍ତି, ସେସବୁ ମଧ୍ୟରେ ସୂର୍ଯ୍ୟ ପ୍ରଧାନ; ଏଣୁ ଭଗବାନ୍ ସମସ୍ତ ଜ୍ୟୋତିମଧ୍ୟରେ ସୂର୍ଯ୍ୟଙ୍କୁ ତାଙ୍କର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ବାୟୁଦେବତାମାନଙ୍କ'ର 'ମରୀଚି' ଶବ୍ଦବାଚ୍ୟ ତେଜ ମୁଁ ଅଟେ' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଦିତିପୁତ୍ର ଅଣଚାଶ ମରୁଦ୍‌ଗଣ ଦିତି ଦେବୀଙ୍କର ଭଗବଦ୍‌ଧ୍ୟାନରୂପୀ ବ୍ରତର ତେଜରୁ ଉତ୍ପନ୍ନ। ସେହି ତେଜଯୋଗୁଁ ହିଁ ଗର୍ଭଭିତରେ ସେମାନଙ୍କର ବିନାଶ ହୋଇପାରି ନ ଥିଲା। ** ଏଣୁ ତାଙ୍କର ଏହି ତେଜକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

---

ଅଭିଯୁକ୍ତ, ସାକ୍ଷିପ, କ୍ଷବ୍ଦକ୍, ଅନ୍ୟାଦୃକ୍, ଯାଦୃକ୍, ପ୍ରତିକୃତ, ଋକ୍, ସମିତି, ସଂରମ୍ଭ, କ୍ଷଦୃକ୍ଷ, ପୁରୁଷ, ଅନ୍ୟାଦୃକ୍ଷ, ଚେତସ, ସମିତା, ସମିଦୃକ୍ଷ, ପ୍ରତିଦୃକ୍ଷ, ମରୁତି, ସରତ, ଦେବ, ଦିଶ, ଯଜୁଃ, ଅନୁଦୃକ୍, ସାମ, ମାନୁଷ ଓ ବିଶ୍ (ବାୟୁପୁରାଣ ୬୭/୧୨୩ରୁ ୧୩୦)। ଗରୁଡ଼ପୁରାଣ ତଥା ଅନ୍ୟାନ୍ୟ ପୁରାଣରେ କିଛି ନାମଭେଦ ମିଳେ। କିନ୍ତୁ 'ମରୀଚି' ନାମ କେଉଁଠି ମିଳେ ନାହିଁ। ଅତଏବ 'ମରୀଚି'କୁ ମରୁତ ବୋଲି ନ ମାନି ସମସ୍ତ ମରୁଦ୍‌ଗଣଙ୍କ ତେଜ ବା କିରଣ ବୋଲି ଗ୍ରହଣ କରାଯାଏ।

ଦକ୍ଷକନ୍ୟା ମରୁତ୍ୱତୀଙ୍କ ଠାରୁ ଉତ୍ପନ୍ନ ପୁତ୍ରମାନଙ୍କୁ ମଧ୍ୟ ମରୁଦ୍‌ଗଣ କହନ୍ତି (ହରିବଂଶ)। ଭିନ୍ନ ଭିନ୍ନ ମନ୍ୱନ୍ତରରେ ଭିନ୍ନ ଭିନ୍ନ ନାମରେ ତଥା ବିଭିନ୍ନପ୍ରକାରେ ଏମାନଙ୍କ ଉତ୍ପତ୍ତିର ବର୍ଣ୍ଣନା ପୁରାଣମାନଙ୍କରେ ମିଳେ।

* ଧାତା ମିତ୍ରୋଽର୍ଯମା ଶକ୍ରୋ ବରୁଣସ୍ତ୍ୱଂଶ ଏବ ଚ। ଭଗୋ ବିବସ୍ୱାନ୍ ପୂଷା ଚ ସବିତା ଦଶମସ୍ତଥା ॥
ଏକାଦଶସ୍ତଥା ତ୍ୱଷ୍ଟା ଦ୍ୱାଦଶୋ ବିଷ୍ଣୁରୁଚ୍ୟତେ। ଜଘନ୍ୟଜସ୍ତୁ ସର୍ବେଷାମାଦିତ୍ୟାନାଂ ଗୁଣାଧିକଃ ॥ (ମହା. ଆଦି. ୬୫/୧୫-୧୬)

** କଶ୍ୟପଙ୍କ ପତ୍ନୀ ଦିତିଙ୍କର ଅନେକ ପୁତ୍ର ମରିଯିବାରୁ ସେ ପତି କଶ୍ୟପଙ୍କୁ ନିଜର ସେବାଦ୍ୱାରା ପ୍ରସନ୍ନ କଲେ, ତାଙ୍କର ସମ୍ୟକ୍ ଆରାଧନାରେ ସନ୍ତୁଷ୍ଟ ହୋଇ ତପସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ କଶ୍ୟପ ତାଙ୍କୁ ବର ପ୍ରଦାନ କରି ସନ୍ତୁଷ୍ଟ କଲେ। ସେହି ସମୟରେ ଦିତି ଇନ୍ଦ୍ରଙ୍କୁ ବଧ କରିବାକୁ ସମର୍ଥ ଏକ ଅତିତେଜସ୍ୱୀ ପୁତ୍ରପାଇଁ ବର ମାଗିଲେ। ମୁନିଶ୍ରେଷ୍ଠ କଶ୍ୟପ ତାଙ୍କୁ ଅଭୀଷ୍ଟ ବର ଦେଲେ ଏବଂ ସେହି ଅତି ଉଗ୍ର ବର ଦେଇ ତାଙ୍କୁ କହିଲେ– "ଯଦି ତୁମେ ନିତ୍ୟ ଭଗବାନଙ୍କ ଧ୍ୟାନରେ ତତ୍ପର ରହି ନିଜ ଗର୍ଭକୁ ପବିତ୍ରତା ଓ ସଂଯମ ସହ ଶହେବର୍ଷଯାଏ ଧାରଣ କରିପାରିବ, ତେବେ ତୁମର ପୁତ୍ର ଇନ୍ଦ୍ରଙ୍କୁ ମାରିପାରିବ।" ସେହି ଗର୍ଭକୁ ନିଜ ମୃତ୍ୟୁର କାରଣ ବୋଲି ଜାଣିପାରି ଦେବରାଜ ଇନ୍ଦ୍ର ମଧ୍ୟ ବିନୟପୂର୍ବକ ଦିତିଙ୍କ ସେବା କରିବାକୁ ଆସିଗଲେ। ତାଙ୍କ ପବିତ୍ରତାରେ ଯଦି କେବେ ଦୋଷ ଲାଗିବ, ତେବେ ସେ କିଛି କରିପାରିବେ– ଏହି ପ୍ରତୀକ୍ଷାରେ ଇନ୍ଦ୍ର ସେଠାରେ ସବୁ ସମୟ ଉପସ୍ଥିତ ରହିଲେ। ଶେଷରେ, ଶହେବର୍ଷ ପୂର୍ଣ୍ଣ ହେବାକୁ ଅଳ୍ପ କିଛି ଦିନ ବାକି ଅଛି, ଦିନେ ଦିତି ପାଦ ନ ଧୋଇ ନିଜ ବିଛଣାରେ ଶୋଇପଡ଼ିଲେ। ସେହି ସମୟରେ ତାଙ୍କୁ ନିଦ୍ରା ଘାରିଦେଲା। ସେତିକିବେଳେ ଇନ୍ଦ୍ର ସୁଯୋଗ ପାଇ ହାତରେ ବଜ୍ର ଧରି ଦିତିଙ୍କ ଗର୍ଭରେ ପ୍ରବେଶ କରିଗଲେ ଓ ସେହି ମହାଗର୍ଭକୁ ସାତ ଭାଗ କରିଦେଲେ। ଏପରିଭାବରେ ବଜ୍ରଦ୍ୱାରା ପୀଡ଼ିତ ହେବାରୁ ସେହି ଗର୍ଭ ଜୋରରେ କାନ୍ଦିବାକୁ ଲାଗିଲା। ଇନ୍ଦ୍ର ତାଙ୍କୁ ବାରମ୍ବାର କହିଲେ 'ମା ରୋଦୀଃ' ଅର୍ଥାତ୍ 'କାନ୍ଦ ନାହିଁ'। କିନ୍ତୁ ଯେତେବେଳେ ସେହି ଗର୍ଭ ସାତ ଭାଗରେ ବିଭକ୍ତ ହୋଇ ମଧ୍ୟ ମଲା ନାହିଁ, ସେତେବେଳେ ଇନ୍ଦ୍ର ଅତ୍ୟନ୍ତ କ୍ରୋଧରେ ପୁଣି ପ୍ରତିଖଣ୍ଡକୁ ସାତ ସାତ ଖଣ୍ଡ କରିଦେଲେ। ଏପରିଭାବରେ ଏକଚ୍ଚ ଅଣଚାଶ ହୋଇ ମଧ୍ୟ ସେମାନେ ଜୀବିତ ରହିଲେ। ଏଥର ଇନ୍ଦ୍ର ଜାଣିପାରିଲେ ଯେ, ସେମାନେ ମରିବେ ନାହିଁ। ସେମାନେ ହିଁ ଅତି ବେଗବାନ୍ ମରୁତ ନାମକ ଦେବତା ହୋଇଗଲେ। ଇନ୍ଦ୍ର ସେମାନଙ୍କୁ ଯେଉଁ 'ମା ରୋଦୀଃ' (କାନ୍ଦ ନାହିଁ) ବୋଲି କହିଥିଲେ, ସେଥିରୁ ସେମାନେ 'ମରୁତ୍' ବୋଲି ପରିଚିତ ହେଲେ। (ବିଷ୍ଣୁପୁରାଣ, ପ୍ରଥମ ଅଂଶ, ଅଧ୍ୟାୟ ୨୧)।

**ପ୍ରଶ୍ନ –** 'ନକ୍ଷତ୍ରମାନଙ୍କର ଅଧିପତି ଚନ୍ଦ୍ରମା ମୁଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅଶ୍ୱିନୀ, ଭରଣୀ, କୃତ୍ତିକା ଆଦି ଯେଉଁ ୨୭ ନକ୍ଷତ୍ର ଅଛନ୍ତି, ସେସମସ୍ତଙ୍କର ସ୍ୱାମୀ ଓ ସମସ୍ତ ତାରାମଣ୍ଡଳର ରାଜା ହୋଇଥିବାରୁ ଚନ୍ଦ୍ରମା ଭଗବାନଙ୍କର ପ୍ରଧାନ ବିଭୂତି ଅଟନ୍ତି। ତେଣୁ ତାଙ୍କୁ ଭଗବାନଙ୍କର ସ୍ୱରୂପ ବୋଲି କୁହାଯାଇଛି।

## ବେଦାନାଂ ସାମବେଦୋଽସ୍ମି ଦେବାନାମସ୍ମି ବାସବଃ ।
## ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି ଭୂତାନାମସ୍ମି ଚେତନା ।। ୨୨ ।।

**ଅନ୍ୱୟ –** ବେଦାନାମ୍ = (ମୁଁ) ବେଦମାନଙ୍କ ମଧ୍ୟରେ; **ସାମବେଦଃ** = ସାମବେଦ; **ଅସ୍ମି** = ଅଟେ; **ଦେବାନାମ୍** = ଦେବମାନଙ୍କ ମଧ୍ୟରେ; **ବାସବଃ** = ଇନ୍ଦ୍ର; **ଅସ୍ମି** = ଅଟେ; **ଇନ୍ଦ୍ରିୟାଣାମ୍** = ଇନ୍ଦ୍ରିୟମାନଙ୍କ ମଧ୍ୟରେ; **ମନଃ** = ମନ; **ଅସ୍ମି** = ଅଟେ; **ଚ** = ଓ; **ଭୂତାନାମ୍** = ପ୍ରାଣୀମାନଙ୍କର; **ଚେତନା** = ଚେତନା ଅର୍ଥାତ୍ ଜୀବନୀ ଶକ୍ତି; **ଅସ୍ମି** = ଅଟେ।

**ମୁଁ ବେଦମାନଙ୍କ ମଧ୍ୟରେ ସାମବେଦ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ଓ ପ୍ରାଣୀମାନଙ୍କର ଚେତନା ଅର୍ଥାତ୍ ଜୀବନୀ ଶକ୍ତି ଅଟେ।। ୨୨ ।।**

**ପ୍ରଶ୍ନ –** 'ବେଦମାନଙ୍କ ମଧ୍ୟରେ ମୁଁ ସାମବେଦ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଋକ୍, ଯଜୁଃ, ସାମ ଓ ଅଥର୍ବ – ଏହି ଚାରି ବେଦ ମଧ୍ୟରେ ସାମବେଦ ଅତ୍ୟନ୍ତ ମଧୁର, ସଂଗୀତମୟ ତଥା ପରମେଶ୍ୱରଙ୍କର ଅତ୍ୟନ୍ତ ରମଣୀୟ ସ୍ତୁତିରେ ପୂର୍ଣ୍ଣ; ତେଣୁ ବେଦମାନଙ୍କ ମଧ୍ୟରେ ଏହାର ପ୍ରାଧାନ୍ୟ ରହିଛି। ତେଣୁ ଭଗବାନ୍ ସାମବେଦକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ଦେବତାମାନଙ୍କ ମଧ୍ୟରେ ମୁଁ ଇନ୍ଦ୍ର' କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସୂର୍ଯ୍ୟ, ଚନ୍ଦ୍ରମା, ଅଗ୍ନି, ବାୟୁ ଆଦି ଯେତେ ବି ଦେବତା ଅଛନ୍ତି, ସେ ସମସ୍ତଙ୍କର ଶାସକ ଓ ରାଜା ହୋଇଥିବାରୁ ଇନ୍ଦ୍ର ସମସ୍ତଙ୍କ ମଧ୍ୟରେ ପ୍ରଧାନ। ଏଣୁ ଇନ୍ଦ୍ରଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଁ ମନ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଚକ୍ଷୁ, ଶ୍ରୋତ୍ର, ଚର୍ମ, ରସନା, ଘ୍ରାଣ, ବାକ୍, ହସ୍ତ, ପଦ, ଉପସ୍ଥ, ପାୟୁ ତଥା ମନ — ଏହି ଏକାଦଶ ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ହେଉଛି ଅନ୍ୟ ଦଶ ଇନ୍ଦ୍ରିୟର ସ୍ୱାମୀ, ପ୍ରେରକ ତଥା ସେହିମାନଙ୍କ ମଧ୍ୟରେ ସବୁଠାରୁ ସୂକ୍ଷ୍ମ ଓ ଶ୍ରେଷ୍ଠ। ଅତଏବ ମନ ସମସ୍ତ ଇନ୍ଦ୍ରିୟଙ୍କ ମଧ୍ୟରେ ପ୍ରଧାନ। ତେଣୁ ମନକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ପ୍ରାଣୀମାନଙ୍କର ଚେତନା ମୁଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସକଳ ପ୍ରାଣୀଙ୍କର ଯେଉଁ ଜ୍ଞାନଶକ୍ତି ରହିଛି, ଯାହାଦ୍ୱାରା ସେମାନଙ୍କୁ ସୁଖ-ଦୁଃଖ ଓ ସକଳ ପଦାର୍ଥର ଅନୁଭବ ହୁଏ, ଯାହା ଅନ୍ତଃକରଣର ବୃତ୍ତିବିଶେଷ, ତ୍ରୟୋଦଶ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଯାହାର ଗଣନା କ୍ଷେତ୍ରର ବିକାରମଧ୍ୟରେ କରାଯାଇଛି, ସେହି ଜ୍ଞାନଶକ୍ତିର ନାମ **'ଚେତନା'**। ଏହା ପ୍ରାଣୀମାନଙ୍କ ସମସ୍ତ ଅନୁଭବର ହେତୁଭୂତ ପ୍ରଧାନ ଶକ୍ତି। ତେଣୁ ଭଗବାନ୍ ଏହାକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

## ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ବିତ୍ତେଶୋ ଯକ୍ଷରକ୍ଷସାମ୍।
## ବସୂନାଂ ପାବକଶ୍ଚାସ୍ମି ମେରୁଃ ଶିଖରିଣାମହମ୍ ।। ୨୩ ।।

**ଅନ୍ୱୟ –** ରୁଦ୍ରାଣାମ୍ = (ମୁଁ) ଏକାଦଶରୁଦ୍ରଙ୍କ ମଧ୍ୟରେ; **ଶଙ୍କରଃ** = ଶଙ୍କର; **ଅସ୍ମି** = ଅଟେ; **ଚ** = ଓ; **ଯକ୍ଷରକ୍ଷସାମ୍** = ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ; **ଅହମ୍** = ମୁଁ; **ବିତ୍ତେଶଃ** = ଧନର ସ୍ୱାମୀ କୁବେର; **ବସୂନାମ୍** = ଅଷ୍ଟ ବସୁଙ୍କ ମଧ୍ୟରେ; **ପାବକଃ** = ଅଗ୍ନି; **ଅସ୍ମି** = ଅଟେ; **ଚ** = ଓ; **ଶିଖରିଣାମ୍** = ପର୍ବତମାନଙ୍କ ମଧ୍ୟରେ; **ମେରୁଃ** = ସୁମେରୁ ପର୍ବତ; **(ଅସ୍ମି)** = ଅଟେ।

**ମୁଁ ଏକାଦଶ ରୁଦ୍ରଙ୍କ ମଧ୍ୟରେ ଶଙ୍କର ଓ ଯକ୍ଷ ତଥା ରାକ୍ଷସମାନଙ୍କ ମଧ୍ୟରେ ଧନପତି କୁବେର ଅଟେ। ମୁଁ ଅଷ୍ଟବସୁଙ୍କ ମଧ୍ୟରେ ଅଗ୍ନି ଓ ପର୍ବତମାନଙ୍କ ମଧ୍ୟରେ ସୁମେରୁ ପର୍ବତ ଅଟେ।। ୨୩ ।।**

**ପ୍ରଶ୍ନ –** ଏକାଦଶ ରୁଦ୍ର କେଉଁମାନେ ଓ ସେମାନଙ୍କ ମଧ୍ୟରେ ଶଙ୍କରଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ହର, ବହୁରୂପ, ତ୍ର୍ୟମ୍ବକ, ଅପରାଜିତ, ବୃଷାକପି, ଶମ୍ଭୁ, କପର୍ଦ୍ଦୀ, ରୈବତ, ମୃଗବ୍ୟାଧ, ଶର୍ବ ଓ କପାଳୀ * – ଏମାନଙ୍କୁ ଏକାଦଶ ରୁଦ୍ର କୁହାଯାଏ। ଏମାନଙ୍କ ମଧ୍ୟରେ ଶମ୍ଭୁ, ଅର୍ଥାତ୍ ଶଙ୍କର ସମସ୍ତଙ୍କର ଅଧୀଶ୍ୱର ତଥା କଲ୍ୟାଣପ୍ରଦାତା ଓ କଲ୍ୟାଣସ୍ୱରୂପ। ତେଣୁ ତାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଯକ୍ଷ-ରାକ୍ଷସମାନଙ୍କ ମଧ୍ୟରେ ଧନପତି କୁବେରଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** କୁବେର** ଯକ୍ଷ-ରାକ୍ଷସମାନଙ୍କର ରାଜା ତଥା ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ଧନାଧ୍ୟକ୍ଷଙ୍କ ପଦରେ ଆରୂଢ଼ ପ୍ରସିଦ୍ଧ ଲୋକପାଳ। ତେଣୁ ଭଗବାନ୍ ତାହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଅଷ୍ଟବସୁ କେଉଁମାନେ ଓ ସେମାନଙ୍କ ମଧ୍ୟରେ ପାବକ(ଅଗ୍ନି)ଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଧର, ଧ୍ରୁବ, ସୋମ, ଅହଃ, ଅନିଳ, ଅନଳ, ପ୍ରତ୍ୟୁଷ ଓ ପ୍ରଭାସ – ଏହି ଆଠଜଣଙ୍କୁ ବସୁ କହନ୍ତି।***ଏମାନଙ୍କ ମଧ୍ୟରେ ଅନଳ (ଅଗ୍ନି) ବସୁମାନଙ୍କର ରାଜା। ସେ ଦେବତାମାନଙ୍କ ପାଖରେ ହବି ପହଞ୍ଚାନ୍ତି। ଏହା ଛଡ଼ା ତାଙ୍କୁ ଭଗବାନଙ୍କର ମୁଖ ବୋଲି ମଧ୍ୟ କୁହାଯାଏ। ଏଣୁ ଅଗ୍ନି (ପାବକ)ଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ପର୍ବତମାନଙ୍କ ମଧ୍ୟରେ ମୁଁ ମେରୁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସୁମେରୁ ପର୍ବତ ନକ୍ଷତ୍ର ଓ ଦ୍ୱୀପମାନଙ୍କର କେନ୍ଦ୍ର ତଥା ସୁବର୍ଣ୍ଣ ଓ ରତ୍ନର ଭଣ୍ଡାର ବୋଲି କୁହାଯାଏ; ତା'ର ଶିଖର ଅନ୍ୟ ପର୍ବତମାନଙ୍କ ଅପେକ୍ଷା ଉଚ୍ଚ। ପର୍ବତମାନଙ୍କ ମଧ୍ୟରେ ଏହିପରି ପ୍ରଧାନ ହୋଇଥିବାରୁ ସୁମେରୁ ପର୍ବତକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

## ପୁରୋଧସାଂ ଚ ମୁଖ୍ୟଂ ମାଂ ବିଦ୍ଧି ପାର୍ଥ ବୃହସ୍ପତିମ୍। ସେନାନୀନାମହଂ ସ୍କନ୍ଦଃ ସରସାମସ୍ମି ସାଗରଃ।। ୨୪ ।।

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ; **ମାମ୍** = ମୋତେ; **ପୁରୋଧସାମ୍** = ପୁରୋହିତମାନଙ୍କର; **ମୁଖ୍ୟମ୍** = ମୁଖ୍ୟ; **ବୃହସ୍ପତିମ୍** = ବୃହସ୍ପତି; **ବିଦ୍ଧି** = (ବୋଲି) ଜାଣ; **ଅହମ୍** = ମୁଁ; **ସେନାନୀନାମ୍** = ସେନାପତିମାନଙ୍କ ମଧ୍ୟରେ; **ସ୍କନ୍ଦଃ** = କାର୍ତ୍ତିକେୟ; **ଚ** = ଏବଂ; **ସରସାମ୍** = ଜଳାଶୟମାନଙ୍କ ମଧ୍ୟରେ; **ସାଗରଃ** = ସମୁଦ୍ର; **ଅସ୍ମି** = ଅଟେ।

**ହେ ପାର୍ଥ ! ମୋତେ ପୁରୋହିତମାନଙ୍କର ମୁଖ୍ୟ ବୃହସ୍ପତି ବୋଲି ଜାଣ। ମୁଁ ସେନାପତିମାନଙ୍କ ମଧ୍ୟରେ ସ୍କନ୍ଦ ଓ ଜଳାଶୟମାନଙ୍କ ମଧ୍ୟରେ ସାଗର ଅଟେ।। ୨୪ ।।**

---

* ହରଶ୍ଚ ବହୁରୂପଶ୍ଚ ତ୍ର୍ୟମ୍ବକଶ୍ଚାପରାଜିତଃ। ବୃଷାକପିଶ୍ଚ ଶମ୍ଭୁଶ୍ଚ କପର୍ଦ୍ଦୀ ରୈବତସ୍ତଥା।।
ମୃଗବ୍ୟାଧଶ୍ଚ ଶର୍ବଶ୍ଚ କପାଳୀ ଚ ବିଶାଂପତେ। ଏକାଦଶୈତେ କଥିତା ରୁଦ୍ରାସ୍ତ୍ରିଭୁବନେଶ୍ୱରାଃ।। (ହରିବଂଶ ୧/୩/୫୧,୫୨)

** କୁବେର ପୁଲସ୍ତ୍ୟ ଋଷିଙ୍କ ନାତି ଓ ବିଶ୍ରବାଙ୍କ ଔରସପୁତ୍ର। ଭରଦ୍ୱାଜକନ୍ୟା ଦେବବର୍ଣ୍ଣିନୀଙ୍କ ଗର୍ଭରୁ ଏହାଙ୍କର ଜନ୍ମ। ଏହାଙ୍କ ଦୀର୍ଘକାଳର କଠୋର ତପସ୍ୟାରେ ବ୍ରହ୍ମା ପ୍ରସନ୍ନ ହୋଇ ଏହାଙ୍କୁ ବର ମାଗିବାକୁ କହିଲେ। ତେଣୁ ସେ ବିଶ୍ୱର ଧନରକ୍ଷକ ହେବାକୁ ଇଚ୍ଛା ପ୍ରକଟ କଲେ। ବ୍ରହ୍ମା କହିଲେ, "ମୁଁ ମଧ୍ୟ ଚତୁର୍ଥ ଲୋକପାଳ ନିଯୁକ୍ତ କରିବାକୁ ଚାହୁଁଛି। ଅତଏବ ଇନ୍ଦ୍ର, ଯମ ଓ ବରୁଣଙ୍କ ପରି ତୁମେ ମଧ୍ୟ ଏହି ପଦ ଗ୍ରହଣ କର।" ସେ ହିଁ ତାଙ୍କୁ ପୁଷ୍ପକ ବିମାନ ଦେଲେ। ତା' ପରଠାରୁ କୁବେର ଧନାଧ୍ୟକ୍ଷ ହୋଇଛନ୍ତି। ଏହାଙ୍କ ବିମାତା କୈକସୀଙ୍କ ଠାରୁ ରାବଣ, କୁମ୍ଭକର୍ଣ୍ଣ ଆଦିଙ୍କର ଜନ୍ମ ହୋଇଥିଲା (ବାଲ୍ମୀକି ରାମାୟଣ ଉତ୍ତର କାଣ୍ଡ ସର୍ଗ ୩)। ନଳକୁବେର ଓ ମଣିଗ୍ରୀବ, ଯେଉଁମାନେ କି ନାରଦମୁନିଙ୍କ ଶାପରୁ ଯୋଡ଼ି ହୋଇଥିବା ଅର୍ଜୁନବୃକ୍ଷ ହୋଇଯାଇଥିଲେ ଏବଂ ଯାହାଙ୍କୁ ଭଗବାନ ଶ୍ରୀକୃଷ୍ଣ ଉଦ୍ଧାର କରିଥିଲେ, ସେ ଦୁହେଁ କୁବେରଙ୍କର ପୁତ୍ର ଥିଲେ (ଶ୍ରୀମଦ ଭାଗବତ ୧୦/୧୦)।

*** ଧରୋ ଧ୍ରୁବଶ୍ଚ ସୋମଶ୍ଚ ଅହଶ୍ଚୈବାନିଲୋଽନଳଃ। ପ୍ରତ୍ୟୂଷଶ୍ଚ ପ୍ରଭାସଶ୍ଚ ବସବୋଽଷ୍ଟୌ ପ୍ରକୀର୍ତ୍ତିତାଃ।। (ମହା.ଆଦି. ୬୬/୧୮)

**ପ୍ରଶ୍ନ –** ଭଗବାନ୍ ବୃହସ୍ପତିଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ବୃହସ୍ପତି * ଦେବରାଜ ଇନ୍ଦ୍ରଙ୍କର ଗୁରୁ, ଦେବତାମାନଙ୍କର କୁଳପୁରୋହିତ ଓ ବିଦ୍ୟାବୁଦ୍ଧିରେ ସର୍ବଶ୍ରେଷ୍ଠ ତଥା ସଂସାରର ସମସ୍ତ ପୁରୋହିତମାନଙ୍କର ମୁଖ୍ୟ ଏବଂ ଆଙ୍ଗିରସମାନଙ୍କର ରାଜାଭାବେ ଗଣ୍ୟ ହୁଅନ୍ତି। ତେଣୁ ଭଗବାନ୍ ତାହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ସ୍କନ୍ଦ କିଏ ଓ ସେନାପତିମାନଙ୍କ ମଧ୍ୟରେ ଏହାଙ୍କୁ ନିଜର ସ୍ୱରୂପ ବୋଲି ଭଗବାନ୍ କାହିଁକି କହିଲେ ?

**ଉତ୍ତର –** ସ୍କନ୍ଦଙ୍କର ଅନ୍ୟ ନାମ କାର୍ତ୍ତିକେୟ। ଏହାଙ୍କର ଛଅ ମୁହଁ ଓ ବାର ହାତ। ଏ ମହାଦେବଙ୍କର ପୁତ୍ର ** ଓ ଦେବତାମାନଙ୍କର ସେନାପତି। ସଂସାରର ସମସ୍ତ ସେନାପତିଙ୍କ ମଧ୍ୟରେ ଏ ପ୍ରଧାନ; ଅତଏବ ଭଗବାନ୍ ଏହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଜଳାଶୟମାନଙ୍କ ମଧ୍ୟରେ ସମୁଦ୍ରକୁ ଭଗବାନ୍ ନିଜର ସ୍ୱରୂପ କହିବାର ଭାବ କଣ ?

**ଉତ୍ତର –** ପୃଥିବୀରେ ଯେତେ ବି ଜଳାଶୟ ଅଛି, ସେସବୁ ମଧ୍ୟରେ ସମୁଦ୍ର ବଡ଼ ଓ ସମସ୍ତଙ୍କର ରାଜା ବୋଲି ମାନିବାକୁ ହୁଏ; ଏଣୁ ସମୁଦ୍ରର ପ୍ରଧାନତା ରହିଛି। 'ସମୁଦ୍ର' କହିଲେ ଏଠାରେ 'ସମଷ୍ଟି ସମୁଦ୍ର' ବୋଲି ବୁଝିବା ଉଚିତ। ଏଥିପାଇଁ ସମସ୍ତ ଜଳାଶୟ ମଧ୍ୟରେ ସମୁଦ୍ରକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେକମକ୍ଷରମ୍ ।**
**ଯଜ୍ଞାନାଂ ଜପଯଜ୍ଞୋଽସ୍ମି ସ୍ଥାବରାଣାଂ ହିମାଳୟଃ ।। ୨୫ ।।**

**ଅନ୍ୱୟ –** **ଅହମ୍** = ମୁଁ; **ମହର୍ଷୀଣାମ୍** = ମହର୍ଷିମାନଙ୍କ ମଧ୍ୟରେ; **ଭୃଗୁଃ** = ଭୃଗୁ (ଓ); **ଗିରାମ୍** = ଶବ୍ଦମାନଙ୍କ ମଧ୍ୟରେ; **ଏକମ୍** = ଏକ; **ଅକ୍ଷରମ୍** = ଅକ୍ଷର ଅର୍ଥାତ୍ ଓଁକାର; **ଅସ୍ମି** = ଅଟେ; **ଯଜ୍ଞାନାମ୍** = ସକଳପ୍ରକାର ଯଜ୍ଞମାନଙ୍କ ମଧ୍ୟରେ; **ଜପଯଜ୍ଞଃ** = ଜପଯଜ୍ଞ (ଓ); **ସ୍ଥାବରାଣାମ୍** = ସ୍ଥାବରମାନଙ୍କ ମଧ୍ୟରେ; **ହିମାଳୟଃ** = ହିମାଳୟ ପର୍ବତ; **ଅସ୍ମି** = ଅଟେ।

**ମୁଁ ମହର୍ଷିମାନଙ୍କ ମଧ୍ୟରେ ଭୃଗୁ ଓ ଶବ୍ଦମାନଙ୍କ ମଧ୍ୟରେ ଏକାକ୍ଷର ଓଁ ଅଟେ। ମୁଁ ସକଳପ୍ରକାର ଯଜ୍ଞମାନଙ୍କ ମଧ୍ୟରେ ଜପଯଜ୍ଞ ଓ ସ୍ଥାବରମାନଙ୍କ ମଧ୍ୟରେ ହିମାଳୟ ପର୍ବତ ଅଟେ।। ୨୫ ।।**

**ପ୍ରଶ୍ନ –** ମହର୍ଷି କେଉଁମାନେ ଓ ସେମାନଙ୍କର ଲକ୍ଷଣ କଣ ?

**ଉତ୍ତର –** ମହର୍ଷି ଅନେକ ଅଛନ୍ତି। ସେମାନଙ୍କର ଲକ୍ଷଣ ଓ ସେମାନଙ୍କ ମଧ୍ୟରୁ ପ୍ରଧାନ ଦଶ ଜଣଙ୍କର ନାମ ଏହିପରି –

ଈଶ୍ୱରାଃ ସ୍ୱୟମୁଦ୍ଭୂତା ମାନସା ବ୍ରହ୍ମଣଃ ସୁତାଃ।
ଯସ୍ମାନ୍ନ ହନ୍ୟତେ ମାନୈର୍ମହାନ୍ ପରିଗତଃ ପୁରଃ ।।
ଯସ୍ମାଦୃଷନ୍ତି ଯେ ଧୀରା ମହାନ୍ତଂ ସର୍ବତୋ ଗୁଣୈଃ।
ତସ୍ମାନ୍ମହର୍ଷୟଃ ପ୍ରୋକ୍ତା ବୁଦ୍ଧେଃ ପରମଦର୍ଶିନଃ ।।
ଭୃଗୁର୍ମରୀଚିରତ୍ରିଶ୍ଚ ଅଙ୍ଗିରାଃ ପୁଲହଃ କ୍ରତୁଃ।
ମନୁର୍ଦକ୍ଷୋ ବସିଷ୍ଠଶ୍ଚ ପୁଲସ୍ତ୍ୟଶ୍ଚେତି ତେ ଦଶ ।।
ବ୍ରହ୍ମଣୋ ମାନସା ହ୍ୟେତ ଉଦ୍ଭୂତାଃ ସ୍ୱୟମୀଶ୍ୱରାଃ।
ପ୍ରବର୍ତତ ଋଷେର୍ଯସ୍ମାନ୍ ମହାଂସ୍ତସ୍ମାନ୍ମହର୍ଷୟଃ ।।
(ବାୟୁପୁରାଣ ୫୯/୮୨-୮୩, ୮୯-୯୦)

★ ବୃହସ୍ପତି ହେଉଛନ୍ତି ମହର୍ଷି ଅଙ୍ଗିରାଙ୍କର ଅତ୍ୟନ୍ତ ପ୍ରତାପୀ ପୁତ୍ର। ସ୍ୱାରୋଚିଷ ମନ୍ୱନ୍ତରରେ ବୃହସ୍ପତି ସପ୍ତର୍ଷିଙ୍କ ମଧ୍ୟରେ ପ୍ରଧାନ ଥିଲେ (ହରିବଂଶ ୭/୧୨, ମତ୍ସ୍ୟପୁରାଣ ୯/୮)। ସେ ମହାନ୍ ବିଦ୍ୱାନ୍। ବାମନ ଅବତାରରେ ଭଗବାନ୍ ସାଙ୍ଗୋପାଙ୍ଗ ବେଦ, ଷଡ୍ଶାସ୍ତ୍ର, ସ୍ମୃତି, ଆଗମ ଆଦି ସବୁଶାସ୍ତ୍ର ଏହାଙ୍କ ଠାରୁ ଶିଖିଥିଲେ (ବୃହଦ୍ଧର୍ମପୁରାଣ ମଧ୍ୟ ୧୬/୬୯-୭୩)। ଏହାଙ୍କ ପୁତ୍ର କଚ ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ରହି ସଞ୍ଜୀବନୀ ବିଦ୍ୟା ଶିଖିଥିଲେ। ଏ ଦେବରାଜ ଇନ୍ଦ୍ରଙ୍କର ପୁରୋହିତଙ୍କ କାର୍ଯ୍ୟ କରନ୍ତି। ଏ ସମୟେ ସମୟେ ଇନ୍ଦ୍ରଙ୍କୁ ଯେଉଁ ଦିବ୍ୟ ଉପଦେଶ ଦେଇଛନ୍ତି, ତାହା ମନନ କଲେ ମନୁଷ୍ୟର କଲ୍ୟାଣ ହେବା ସମ୍ଭବ। ମହାଭାରତଶାନ୍ତିପର୍ବ ଓ ଅନୁଶାସନପର୍ବରେ ଏହାଙ୍କର ଉପଦେଶ-କଥା ପଢ଼ିବା ଉଚିତ।

★★ କେଉଁ କେଉଁ ଗ୍ରନ୍ଥରେ କାର୍ତ୍ତିକେୟଙ୍କୁ ଅଗ୍ନିଙ୍କ ତେଜରୁ ତଥା ଦକ୍ଷକନ୍ୟା ସ୍ୱାହାଙ୍କ ଦ୍ୱାରା ଉତ୍ପନ୍ନ ବୋଲି ଉଲ୍ଲେଖ ଅଛି, (ମହାଭାରତ ବନ ପର୍ବ ୨୨୫)। ଏହାଙ୍କ ସମ୍ବନ୍ଧରେ ମହାଭାରତ ଓ ପୁରାଣରେ ଅନେକ ବିଚିତ୍ର ବିଚିତ୍ର କଥା ଦେଖିବାକୁ ମିଳେ।

ଅର୍ଥାତ୍ 'ବ୍ରହ୍ମାଙ୍କର ଏହି ମାନସ ପୁତ୍ରମାନେ ଐଶ୍ୱର୍ଯ୍ୟବାନ୍ (ସିଦ୍ଧିସମ୍ପନ୍ନ) ଏବଂ ଏମାନେ ସ୍ୱୟଂ ଉତ୍ପନ୍ନ। ପରିମାଣତଃ ଯାହାର ବିନାଶ ନାହିଁ, (ଯେ ଅପରିମେୟ) ଏବଂ ଯେ ସର୍ବତ୍ର ବ୍ୟାପ୍ତ ହୋଇ ମଧ୍ୟ ପ୍ରତ୍ୟକ୍ଷ ହୁଅନ୍ତି, ସେ ହିଁ ମହାନ୍। ବୁଦ୍ଧିର ସୀମାରୁ ଅତୀତ ଭଗବତ୍‌ପ୍ରାପ୍ତ ବିଜ୍ଞମାନେ ଗୁଣଦ୍ୱାରା ସେହି ପରମେଶ୍ୱରଙ୍କୁ ସକଳ ଦିଗରୁ ଅବଲମ୍ବନ କରନ୍ତି, ସେମାନଙ୍କୁ **(ମହାନ୍ତମ୍ ଋଷନ୍ତି ଇତି ମହର୍ଷୟଃ —** ଏହି ବ୍ୟୁତ୍ପତ୍ତି ଅନୁସାରେ) ମହର୍ଷି କୁହାଯାଏ। ଭୃଗୁ, ମରୀଚି, ଅତ୍ରି, ଅଙ୍ଗିରା, ପୁଲହ, କ୍ରତୁ, ମନୁ, ଦକ୍ଷ, ବସିଷ୍ଠ ଓ ପୁଲସ୍ତ୍ୟ — ଏହି ଦଶ ଜଣ ମହର୍ଷି ଅଟନ୍ତି। ଏମାନେ ସମସ୍ତେ ବ୍ରହ୍ମାଙ୍କ ମନରୁ ସ୍ୱୟଂ ଉତ୍ପନ୍ନ ହୋଇଛନ୍ତି ଏବଂ ଐଶ୍ୱର୍ଯ୍ୟବାନ୍ ଅଟନ୍ତି। ଯେହେତୁ ଋଷିଙ୍କ (ବ୍ରହ୍ମାଙ୍କ) ଠାରୁ ଏହି ଋଷିମାନଙ୍କ ରୂପରେ ସ୍ୱୟଂ ମହାନ୍ ପରମେଶ୍ୱର ହିଁ ପ୍ରକଟ ହେଲେ, ତେଣୁ ଏମାନଙ୍କୁ ମହର୍ଷି କୁହାଯାଏ।

**ପ୍ରଶ୍ନ —** ମହର୍ଷିମାନଙ୍କ ମଧ୍ୟରେ 'ଭୃଗୁ'ଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର —** ମହର୍ଷିମାନଙ୍କ ମଧ୍ୟରେ ଭୃଗୁ★ ମୁଖ୍ୟ। ସେ ଭଗବାନଙ୍କର ଭକ୍ତ, ଜ୍ଞାନୀ ଓ ବଡ଼ ତେଜସ୍ୱୀ ଅଟନ୍ତି। ଅତଏବ ଭଗବାନ୍ ଏହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ — ଗିରାମ୍** ପଦର ଅର୍ଥ କଣ? **ଏକମ୍ ଅକ୍ଷରମ୍‌ରୁ** କଣ ବୁଝିବା ଉଚିତ? ଏବଂ ତାହା ଭଗବାନଙ୍କର ରୂପ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର —** କୌଣସି ଅର୍ଥବୋଧ କରାଇବା ଶବ୍ଦକୁ **ଗୀଃ** (ବାଣୀ) କହନ୍ତି ଏବଂ ଓଁକାର (ପ୍ରଣବ)କୁ ଏକାକ୍ଷର କହନ୍ତି (୮/୧୩)। ଯେତେ ବି ଅର୍ଥବୋଧକ ଶବ୍ଦ ଅଛି, ସେସବୁ ମଧ୍ୟରେ ପ୍ରଣବର ପ୍ରାଧାନ୍ୟ ରହିଛି, କାରଣ **ପ୍ରଣବ** ଭଗବାନଙ୍କର ନାମ (୧୭/୨୩)। ପ୍ରଣବଜପଦ୍ୱାରା ଭଗବତ୍‌ପ୍ରାପ୍ତି ହୁଏ। ନାମ ଓ ନାମୀ ଅଭେଦ ବୋଲି ସ୍ୱୀକାର କରାଯାଇଛି। ଅତଏବ ଭଗବାନ୍ **ପ୍ରଣବକୁ** ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ —** ସମସ୍ତପ୍ରକାର ଯଜ୍ଞମଧ୍ୟରେ ଜପଯଜ୍ଞକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର —** ଜପଯଜ୍ଞରେ ହିଂସାର ସର୍ବଥା ଅଭାବ ଥାଏ ଓ ଜପଯଜ୍ଞ ଭଗବାନଙ୍କୁ ପ୍ରତ୍ୟକ୍ଷ କରାଏ। ମନୁସ୍ମୃତିରେ ମଧ୍ୟ ଜପଯଜ୍ଞର ବହୁତ ପ୍ରଶଂସା କରାଯାଇଛି। ★★ ଅତଏବ ସବୁପ୍ରକାର ଯଜ୍ଞମଧ୍ୟରେ ଜପଯଜ୍ଞର ପ୍ରାଧାନ୍ୟ ରହିଛି। ଏହି ଭାବ ପ୍ରକାଶ କରିବାକୁ ଭଗବାନ୍ ଜପଯଜ୍ଞକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ —** ସ୍ଥାବରମାନଙ୍କ ମଧ୍ୟରେ ହିମାଳୟକୁ ନିଜର ସ୍ୱରୂପ କହିବାର ଭାବ କଣ?

**ଉତ୍ତର —** ଯାହା ସ୍ଥିର ରହେ ତାହାକୁ ସ୍ଥାବର କହନ୍ତି। ଯେତେ ପର୍ବତ ଅଛନ୍ତି, ସମସ୍ତେ ଅଚଳ ହୋଇଥିବାରୁ ସ୍ଥାବର ଅଟନ୍ତି। ସେମାନଙ୍କ ମଧ୍ୟରେ ହିମାଳୟ ସର୍ବୋତ୍ତମ। ତାହା ପରମ ପବିତ୍ର ତପୋଭୂମି ଓ ମୁକ୍ତିଲାଭର ସହାୟକ ଅଟେ। ଭଗବାନ୍ ନର-ନାରାୟଣ ସେଠାରେ ତପସ୍ୟା କରିଥିଲେ। ତା'ଛଡ଼ା ହିମାଳୟ ସବୁ ପର୍ବତମାନଙ୍କର ରାଜା ଅଟନ୍ତି। ତେଣୁ ହିମାଳୟକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

## ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଂ ଚ ନାରଦଃ।
## ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଳୋ ମୁନିଃ ॥ ୨୬ ॥

---

★ ବ୍ରହ୍ମାଙ୍କର ମାନସପୁତ୍ରମାନଙ୍କ ମଧ୍ୟରେ 'ଭୃଗୁ' ପ୍ରଧାନ। ସ୍ୱାୟମ୍ଭୁବ ଓ ଚାକ୍ଷୁଷ ଆଦି କେତେକ ମନ୍ୱନ୍ତରରେ ଏ ସପ୍ତର୍ଷିମାନଙ୍କ ମଧ୍ୟରେ ରହିସାରିଛନ୍ତି। ଏହାଙ୍କ ବଂଶଜମାନଙ୍କ ମଧ୍ୟରେ ବହୁ ଋଷି, ମନ୍ତ୍ରପ୍ରଣେତା ଓ ଗୋତ୍ରପ୍ରବର୍ତ୍ତକ ଅଛନ୍ତି। ମହର୍ଷିମାନଙ୍କ ମଧ୍ୟରେ ଏହାଙ୍କର ପ୍ରଭାବ ଅତି ବେଶୀ। ଏ ଦକ୍ଷକନ୍ୟା ଖ୍ୟାତିଙ୍କୁ ବିବାହ କରିଥିଲେ। ଏହାଙ୍କର ଧାତା ଓ ବିଧାତା ନାମରେ ଦୁଇ ପୁତ୍ର ଏବଂ ଶ୍ରୀ ନାମକ ଏକ କନ୍ୟା ହୋଇଥିଲେ। ଏହି ଶ୍ରୀ ଭଗବାନ୍ ନାରାୟଣଙ୍କ ପତ୍ନୀ ଅଟନ୍ତି। ଚ୍ୟବନ ଋଷି ମଧ୍ୟ ଏହାଙ୍କର ପୁତ୍ର। ଏହାଙ୍କର ଜ୍ୟୋତିଷ୍ମାନ୍, ସୁକୃତି, ହବିଷ୍ମାନ୍, ତପୋଧୃତି, ନିଶ୍ଚର ଓ ଅତିବାହୁ ନାମକ ପୁତ୍ରମାନେ ସପ୍ତର୍ଷିମାନଙ୍କ ମଧ୍ୟରେ ପ୍ରଧାନ ହୋଇ ବିଭିନ୍ନ ମନ୍ୱନ୍ତରରେ ରହିସାରିଛନ୍ତି। ଏ ଜଣେ ମହାନ୍ ମନ୍ତ୍ରପ୍ରଣେତା ମହର୍ଷି। ବିଷ୍ଣୁଭଗବାନଙ୍କର ବକ୍ଷଃସ୍ଥଳ ଉପରେ ଲାତ ମାରି ଏ ହିଁ ଭଗବାନଙ୍କର ସାତ୍ତ୍ୱିକ କ୍ଷମାର ପରୀକ୍ଷା ନେଇଥିଲେ। ଏବେ ମଧ୍ୟ ବିଷ୍ଣୁ ଭଗବାନ୍ ଏହି ଭୃଗୁଲତା ଚିହ୍ନକୁ ନିଜ ହୃଦୟରେ ଧାରଣ କରିଛନ୍ତି। ଭୃଗୁ, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅଙ୍ଗିରା, ମରୀଚି, ଦକ୍ଷ, ଅତ୍ରି ଓ ବସିଷ୍ଠ— ଏମାନେ ପ୍ରଜାସୃଷ୍ଟିଲାଗି ହୋଇଥିବାରୁ 'ନବ ବ୍ରହ୍ମା' ବୋଲି କୁହାଯା'ନ୍ତି। ପ୍ରାୟ ସବୁ ପୁରାଣରେ ଭୃଗୁଙ୍କର ବର୍ଣ୍ଣନା ବିଶେଷରୂପେ ରହିଛି। ଏହାଙ୍କ କଥାର ବିବରଣୀ ହରିବଂଶ, ମତ୍ସ୍ୟପୁରାଣ, ଶିବପୁରାଣ, ବ୍ରହ୍ମାଣ୍ଡପୁରାଣ, ଦେବୀଭାଗବତ, ମାର୍କଣ୍ଡେୟପୁରାଣ, ପଦ୍ମପୁରାଣ, ବାୟୁପୁରାଣ, ମହାଭାରତ ଓ ଶ୍ରୀମଦ୍‌ଭାଗବତରେ ଅଛି।

★★ **ବିଧିଯଜ୍ଞାଜ୍ଜପଯଜ୍ଞୋ ବିଶିଷ୍ଟୋ ଦଶଭିର୍ଗୁଣୈଃ। ଉପାଂଶୁଃ ସ୍ୟାଚ୍ଛତଗୁଣଃ ସାହସ୍ରୋ ମାନସଃ ସ୍ମୃତଃ ॥** (ମନୁ ୨/୮୫)

ଅର୍ଥାତ୍ :— ବିଧିଯଜ୍ଞଠାରୁ ଜପଯଜ୍ଞ ଦଶଗୁଣ, ଉପାଂଶୁଜପ ଶତଗୁଣ ଓ ମାନସ ଜପ ହଜାରଗୁଣ ଶ୍ରେଷ୍ଠ ବୋଲି କୁହାଯାଇଛି।

**ଅନ୍ୱୟ – ସର୍ବବୃକ୍ଷାଣାମ୍** = (ମୁଁ) ସମସ୍ତ ବୃକ୍ଷଙ୍କ ମଧ୍ୟରେ; **ଅଶ୍ୱତ୍ଥଃ** = ଅଶ୍ୱତ୍ଥ ବୃକ୍ଷ; **ଦେବର୍ଷୀଣାମ୍** = ଦେବର୍ଷିମାନଙ୍କ ମଧ୍ୟରେ; **ନାରଦଃ** = ନାରଦ ମୁନି; **ଗନ୍ଧର୍ବାଣାମ୍** = ଗନ୍ଧର୍ବମାନଙ୍କ ମଧ୍ୟରେ; **ଚିତ୍ରରଥଃ** = ଚିତ୍ରରଥ; **ଚ** = ଓ; **ସିଦ୍ଧାନାମ୍** = ସିଦ୍ଧମାନଙ୍କ ମଧ୍ୟରେ; **କପିଳଃ** = କପିଳ; **ମୁନିଃ** = ମୁନି; **(ଅସ୍ମି)** = ଅଟେ।

**ମୁଁ ସକଳ ବୃକ୍ଷଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ, ଦେବର୍ଷିମାନଙ୍କ ମଧ୍ୟରେ ନାରଦ ମୁନି, ଗନ୍ଧର୍ବମାନଙ୍କ ମଧ୍ୟରେ ଚିତ୍ରରଥ ଓ ସିଦ୍ଧମାନଙ୍କ ମଧ୍ୟରେ କପିଳ ମୁନି ଅଟେ।। ୨୬ ।।**

**ପ୍ରଶ୍ନ –** ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅଶ୍ୱତ୍ଥ ବୃକ୍ଷ ** ସମସ୍ତ ବନସ୍ପତିଙ୍କର ରାଜା ଓ ପୂଜନୀୟ ବୋଲି ମନେ କରାଯାଏ। ତେଣୁ ଭଗବାନ୍ ତାହାକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଦେବର୍ଷି କେଉଁମାନଙ୍କୁ କହନ୍ତି ଓ ସେମାନଙ୍କ ମଧ୍ୟରେ ନାରଦଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଦେବର୍ଷିଙ୍କ ଲକ୍ଷଣ ବାର ଓ ତେର ଶ୍ଳୋକର ଟୀକାରେ ଦିଆଯାଇଛି। ତାହା ପଢ଼ିବା ଉଚିତ। ଦେବର୍ଷିମାନଙ୍କ ମଧ୍ୟରେ ନାରଦ ସର୍ବଶ୍ରେଷ୍ଠ। ତା' ସଙ୍ଗେ ସଙ୍ଗେ ସେ ଭଗବାନଙ୍କର ପରମ ଅନନ୍ୟ ଭକ୍ତ, ମହାନ୍ ଜ୍ଞାନୀ ଓ ନିପୁଣ ମନ୍ତ୍ରଦ୍ରଷ୍ଟା ଅଟନ୍ତି। ତେଣୁ ନାରଦଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି। ନାରଦଙ୍କ ସମ୍ବନ୍ଧରେ ମଧ୍ୟ ବାର ଓ ତେର ଶ୍ଳୋକର ଟିପ୍ପଣୀ ଦେଖିବା ଉଚିତ।

**ପ୍ରଶ୍ନ –** ଚିତ୍ରରଥ ଗନ୍ଧର୍ବଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଗନ୍ଧର୍ବମାନେ ଦେବଯୋନିବିଶେଷ ଅଟନ୍ତି। ଏମାନେ ଦେବଲୋକରେ ଗାନ, ବାଦ୍ୟ ଓ ନାଟ୍ୟାଭିନୟ କରନ୍ତି। ସ୍ୱର୍ଗରେ ଏମାନେ ସବୁଠାରୁ ସୁନ୍ଦର ଓ ଅତ୍ୟନ୍ତ ରୂପବାନ୍‌ଭାବେ ଗଣ୍ୟ ହୁଅନ୍ତି। ଗୁହ୍ୟକଲୋକର ଉପରେ ଓ ବିଦ୍ୟାଧରଲୋକର ତଳେ ଏମାନଙ୍କର ଗନ୍ଧର୍ବଲୋକ ରହିଛି। ଦେବତା ଓ ପିତୃଙ୍କ ପରି ଗନ୍ଧର୍ବମାନେ ମଧ୍ୟ ଦୁଇପ୍ରକାର– ଯଥା 'ମର୍ତ୍ତ୍ୟ' ଓ 'ଦିବ୍ୟ'। ଯେଉଁ ମନୁଷ୍ୟମାନେ ମୃତ୍ୟୁପରେ ପୁଣ୍ୟବଳରେ ଗନ୍ଧର୍ବଲୋକକୁ ଯା'ନ୍ତି, ସେମାନେ 'ମର୍ତ୍ତ୍ୟ' ଓ ଯେଉଁମାନେ କଳ୍ପର ଆରମ୍ଭରୁ ହିଁ ଗନ୍ଧର୍ବ, ସେମାନଙ୍କୁ ଦିବ୍ୟ କହନ୍ତି। ଦିବ୍ୟଗନ୍ଧର୍ବମାନେ ମୌନେୟ ଓ ପ୍ରାଧେୟ—— ଏପରି ଦୁଇ ଶ୍ରେଣୀର। ମହର୍ଷି କଶ୍ୟପଙ୍କ ଦୁଇ ପତ୍ନୀଙ୍କର ନାମ ଥିଲା– ମୁନି ଓ ପ୍ରାଧା। ସେମାନଙ୍କ ଠାରୁ ଅପ୍‌ସରାମାନଙ୍କର ଓ ଗନ୍ଧର୍ବମାନଙ୍କର ଉତ୍ପତ୍ତି ହେଲା। ଭୀମସେନ, ଉଗ୍ରସେନ, ସୁପର୍ଣ୍ଣ, ବରୁଣ, ଗୋପତି, ଧୃତରାଷ୍ଟ୍ର, ସୂର୍ଯ୍ୟବର୍ଚ୍ଚା, ସତ୍ୟବାକ୍, ଅର୍କପର୍ଣ୍ଣ, ପ୍ରୟୁତ, ଭୀମ, ଚିତ୍ରରଥ, ଶାଳିଶିରା, ପର୍ଜନ୍ୟ, କଳି ଓ ନାରଦ – ଏହି ଷୋଳଜଣ ଦେବ-ଗନ୍ଧର୍ବ 'ମୁନି'ଙ୍କ ଠାରୁ ଜନ୍ମ ହୋଇଥିବାରୁ ଏମାନଙ୍କୁ 'ମୌନେୟ' କୁହାଗଲା। ସିଦ୍ଧ, ପୂର୍ଣ୍ଣ, ବର୍ହି, ପୂର୍ଣ୍ଣାୟୁ, ବ୍ରହ୍ମଚାରୀ, ରତିଗୁଣ, ସୁପର୍ଣ୍ଣ, ବିଶ୍ୱାବସୁ, ସୁଚନ୍ଦ୍ର, ଭାନୁ, ଅତିବାହୁ, ହାହା, ହୁହୂ ଓ ତୁମ୍ବୁରୁ– ଏହି ଚଉଦ ଜଣ 'ପ୍ରାଧା'ଙ୍କ ଠାରୁ ଜନ୍ମ ହୋଇଥିବାରୁ ଏମାନଙ୍କୁ 'ପ୍ରାଧେୟ' କୁହାଗଲା (ମହାଭାରତ ଆଦିପର୍ବ ୬୫)। ଏମାନଙ୍କ ମଧ୍ୟରେ ହାହା, ହୁହୂ, ବିଶ୍ୱାବସୁ, ତୁମ୍ବୁରୁ ଓ ଚିତ୍ରରଥ ଆଦି ମୁଖ୍ୟ। ଏମାନଙ୍କ ମଧ୍ୟରେ ବି ଚିତ୍ରରଥଙ୍କୁ ସମସ୍ତଙ୍କର ଅଧିପତି ବୋଲି ଧରାଯାଏ। ଚିତ୍ରରଥ ଦିବ୍ୟ ସଂଗୀତ-ବିଦ୍ୟାରେ ପାରଦର୍ଶୀ ଓ ଅତ୍ୟନ୍ତ ନିପୁଣ ଅଟନ୍ତି।

---

** ପୁରାଣରେ ଅଶ୍ୱତ୍ଥର ବିଶେଷ ମାହାତ୍ମ୍ୟ କୁହାଯାଇଛି। ସ୍କନ୍ଦ ପୁରାଣରେ ଅଛି –

**ମୂଳେ ବିଷ୍ଣୁଃ ସ୍ଥିତୋ ନିତ୍ୟଂ ସ୍କନ୍ଧେ କେଶବ ଏବ ଚ। ନାରାୟଣସ୍ତୁ ଶାଖାସୁ ପତ୍ରେଷୁ ଭଗବାନ୍ ହରିଃ ।।**
**ଫଳେଽଚ୍ୟୁତୋ ନ ସନ୍ଦେହଃ ସର୍ବଦେବୈଃ ସମନ୍ୱିତଃ।**
**ସ ଏବ ବିଷ୍ଣୁର୍ଦ୍ରୁମ ଏବ ମୂର୍ତ୍ତୋ ମହାତ୍ମଭିଃ ସେବିତପୁଣ୍ୟମୂଳଃ।**
**ଯସ୍ୟାଶ୍ରୟଃ ପାପସହସ୍ରହନ୍ତା ଭବେନ୍ନୃଣାଂ କାମଦୁଘୋ ଗୁଣାଢ୍ୟଃ ।।**

(ସ୍କନ୍ଦ/ନାଗର/ ୨୪୭/୪୧,୪୨,୪୪)

ଅର୍ଥାତ୍ 'ଅଶ୍ୱତ୍ଥର ମୂଳରେ ବିଷ୍ଣୁ, ଗଣ୍ଡିରେ କେଶବ, ଶାଖାମାନଙ୍କରେ ନାରାୟଣ, ପତ୍ରରେ ଭଗବାନ୍ ହରି ଓ ଫଳରେ ସବୁ ଦେବତାମାନଙ୍କ ସହ ଅଚ୍ୟୁତ ସଦା ନିବାସ କରନ୍ତି; ଏଥିରେ କିଛି ବି ସନ୍ଦେହ ନାହିଁ। ଏହି ବୃକ୍ଷ ମୂର୍ତ୍ତିମାନ୍ ଶ୍ରୀବିଷ୍ଣୁସ୍ୱରୂପ; ମହାତ୍ମାମାନେ ଏହି ବୃକ୍ଷର ପୁଣ୍ୟମୟମୂଳକୁ ସେବା କରନ୍ତି। ଏହାର ଗୁଣଯୁକ୍ତ ଓ କାମନାଦାୟକ ଆଶ୍ରୟ ମନୁଷ୍ୟମାନଙ୍କର ସହସ୍ର ପାପ ନାଶ କରେ।'

ଏହା ବ୍ୟତୀତ ବୈଦ୍ୟ ଗ୍ରନ୍ଥମାନଙ୍କରେ ମଧ୍ୟ ଅଶ୍ୱତ୍ଥର ବିଶେଷ ମହିମା ଅଛି:– ଏହାର ପତ୍ର, ଫଳ, ଛାଲି ସବୁ ରୋଗନାଶକ। ରକ୍ତବିକାର, କଫ, ବାତ, ପିତ୍ତ, ଦାହ, ବମନ, ଶୋଥ, ଅରୁଚି, ବିଷଦୋଷ, କାଶ, ବିଷମ-ଜ୍ୱର, ହାଇକୁଟି, ଛାତିଘାତ, ନାସାରୋଗ, ବିସର୍ପ, କ୍ରିମି, କୁଷ୍ଠ, ଚର୍ମବ୍ରଣ, ଅଗ୍ନିଦଗ୍ଧ ବ୍ରଣ, ବାଗୀ ଆଦି ବହୁ ରୋଗରେ ଏହାର ଉପଯୋଗ ହୁଏ।

ତେଣୁ ଭଗବାନ୍ ଏହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି। ଏହାଙ୍କର ଚରିତ ଅଗ୍ନି-ପୁରାଣ, ମାର୍କଣ୍ଡେୟ-ପୁରାଣ, ମହାଭାରତ-ଆଦିପର୍ବ, ବାୟୁ-ପୁରାଣ ଆଦିରେ ରହିଛି।

**ପ୍ରଶ୍ନ –** ସିଦ୍ଧ କେଉଁମାନଙ୍କୁ କହନ୍ତି ଓ ସେମାନଙ୍କ ମଧ୍ୟରେ ଭଗବାନ୍ କପିଳମୁନିଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁମାନେ ସର୍ବପ୍ରକାର ସ୍ଥୂଳ ଓ ସୂକ୍ଷ୍ମ ଜଗତର ସିଦ୍ଧିମାନଙ୍କୁ ପ୍ରାପ୍ତ ହୋଇଛନ୍ତି, ତଥା ଧର୍ମ, ଜ୍ଞାନ, ଐଶ୍ୱର୍ଯ୍ୟ ଓ ବୈରାଗ୍ୟ ଆଦି ଶ୍ରେଷ୍ଠ ଗୁଣରେ ସଂପୂର୍ଣ୍ଣରୂପେ ସମ୍ପନ୍ନ, ସେମାନଙ୍କୁ ସିଦ୍ଧ କହନ୍ତି। ଏପରି ହଜାର ହଜାର ସିଦ୍ଧ ଅଛନ୍ତି ଯେଉଁମାନଙ୍କ ମଧ୍ୟରେ ଭଗବାନ୍ କପିଳ ସର୍ବପ୍ରଧାନ। ଭଗବାନ୍ କପିଳ ସାକ୍ଷାତ୍ ଈଶ୍ୱରଙ୍କ ଅବତାର। ମହାଯୋଗୀ କର୍ଦମମୁନିଙ୍କର ପତ୍ନୀ ଦେବହୂତିଙ୍କୁ ଜ୍ଞାନ ପ୍ରଦାନ କରିବାପାଇଁ ସେ ତାହାଙ୍କ ଗର୍ଭରେ ଅବତାର ନେଇଥିଲେ। ସେ ପ୍ରକଟ ହେବା ସମୟରେ ସ୍ୱୟଂ ବ୍ରହ୍ମା ଆଶ୍ରମକୁ ଆସି ଶ୍ରୀଦେବହୂତିଙ୍କୁ କହିଥିଲେ –

**ଅୟଂ ସିଦ୍ଧଗଣାଧୀଶଃ ସାଂଖ୍ୟାଚାର୍ଯୈଃ ସୁସମ୍ମତଃ।**
**ଲୋକେ କପିଳ ଇତ୍ୟାଖ୍ୟାଂ ଗନ୍ତା ତେ କୀର୍ତ୍ତିବର୍ଦ୍ଧନଃ॥**

(ଶ୍ରୀମଦ୍‌ଭାଗବତ ୩/୨୪/୧୯)

ଅର୍ଥାତ୍ 'ଏ ସିଦ୍ଧଗଣଙ୍କର ଅଧୀଶ୍ୱର ଓ ସାଂଖ୍ୟର ଆଚାର୍ଯ୍ୟମାନଙ୍କ ଦ୍ୱାରା ପୂଜିତ ହୋଇ ତୁମର କୀର୍ତ୍ତି ବଢ଼ାଇବେ ଓ ସଂସାରରେ 'କପିଳ' ନାମରେ ପ୍ରସିଦ୍ଧ ହେବେ।'

ଏ ସ୍ୱଭାବତଃ ହିଁ ନିତ୍ୟଜ୍ଞାନ, ଐଶ୍ୱର୍ଯ୍ୟ, ଧର୍ମ ଓ ବୈରାଗ୍ୟ ଆଦି ଗୁଣରେ ସମ୍ପନ୍ନ ଅଟନ୍ତି। ଏହାଙ୍କର ସମକକ୍ଷ ଅନ୍ୟ କେହି ସିଦ୍ଧ ନାହାନ୍ତି। ଏହାଙ୍କ ଠାରୁ ଆଉ କେହି ବଡ଼ ହୋଇପାରେ କି? ତେଣୁ ଭଗବାନ୍ ସମସ୍ତ ସିଦ୍ଧମାନଙ୍କ ମଧ୍ୟରେ କପିଳମୁନିଙ୍କୁ ନିଜର ସ୍ୱରୂପ ବୋଲି କହିଲେ।

## ଉଚ୍ଚୈଃଶ୍ରବସମଶ୍ୱାନାଂ ବିଦ୍ଧି ମାମମୃତୋଭବମ୍ ।
## ଐରାବତଂ ଗଜେନ୍ଦ୍ରାଣାଂ ନରାଣାଂ ଚ ନରାଧିପମ୍ ॥ ୨୭ ॥

**ଅନ୍ୱୟ –** ମାମ୍ = ମୋତେ; ଅଶ୍ୱାନାମ୍ = ଅଶ୍ୱମାନଙ୍କ ମଧ୍ୟରେ; ଅମୃତୋଭବମ୍ = ଅମୃତସହିତ ଉତ୍ପନ୍ନ ହୋଇଥିବା; ଉଚ୍ଚୈଃଶ୍ରବସମ୍ = ଉଚ୍ଚୈଃଶ୍ରବା; ଗଜେନ୍ଦ୍ରାଣାମ୍ = ଶ୍ରେଷ୍ଠ ହସ୍ତୀମାନଙ୍କ ମଧ୍ୟରେ; ଐରାବତମ୍ = ଐରାବତ; ଚ = ଓ; ନରାଣାମ୍ = ମନୁଷ୍ୟମାନଙ୍କ ମଧ୍ୟରେ; ନରାଧିପମ୍ = ରାଜା; ବିଦ୍ଧି = (ବୋଲି) ଜାଣ।

**ମୋତେ ଅଶ୍ୱମାନଙ୍କ ମଧ୍ୟରେ ଅମୃତସହିତ ଉତ୍ପନ୍ନ ହୋଇଥିବା ଉଚ୍ଚୈଃଶ୍ରବା, ଶ୍ରେଷ୍ଠ ହସ୍ତୀମାନଙ୍କ ମଧ୍ୟରେ ଐରାବତ ଓ ମନୁଷ୍ୟମାନଙ୍କ ମଧ୍ୟରେ ରାଜା ବୋଲି ଜାଣ॥ ୨୭ ॥**

**ପ୍ରଶ୍ନ –** ଅଶ୍ୱମାନଙ୍କ ମଧ୍ୟରେ ଉଚ୍ଚୈଃଶ୍ରବାଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅମୃତପାଇଁ ସମୁଦ୍ର ମନ୍ଥନ କରିବା ସମୟରେ ଅମୃତ ସହ ଉଚ୍ଚୈଃଶ୍ରବା ଅଶ୍ୱ ଉତ୍ପନ୍ନ ହୋଇଥିଲା। ଏଣୁ ଏହାଙ୍କୁ ଚଉଦଟି ରତ୍ନ ମଧ୍ୟରୁ ଗୋଟିଏ ରତ୍ନ ବୋଲି ଗଣାଯାଏ ଏବଂ ସମସ୍ତ ଅଶ୍ୱଙ୍କର ରାଜା ବୋଲି କୁହାଯାଏ। ତେଣୁ ଏହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଗଜେନ୍ଦ୍ରଙ୍କ ମଧ୍ୟରେ ଐରାବତଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଗଜ ଅର୍ଥ ହାତୀ। ଅନେକ ହାତୀଙ୍କ ମଧ୍ୟରେ ଯେ ଶ୍ରେଷ୍ଠ, ତାହାଙ୍କୁ ଗଜେନ୍ଦ୍ର କହନ୍ତି। ଏପରି ଗଜେନ୍ଦ୍ରଙ୍କ ମଧ୍ୟରେ ବି ଇନ୍ଦ୍ରଙ୍କ ବାହନ ଐରାବତ ସର୍ବଶ୍ରେଷ୍ଠ ଓ 'ଗଜ'ଜାତିର ରାଜାରୂପେ ଗଣ୍ୟ ହୁଏ। ଏହାର ଉତ୍ପତ୍ତି ମଧ୍ୟ ଉଚ୍ଚୈଃଶ୍ରବା ଅଶ୍ୱପରି ସମୁଦ୍ରମନ୍ଥନରୁ ହୋଇଥିଲା। ଅତଏବ ଏହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ମନୁଷ୍ୟମାନଙ୍କ ମଧ୍ୟରେ ରାଜାଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଶାସ୍ତ୍ରୋକ୍ତ ଲକ୍ଷଣଯୁକ୍ତ ଧର୍ମପରାୟଣ ରାଜା ନିଜ ପ୍ରଜାଙ୍କୁ ପାପରୁ ନିବୃତ୍ତ କରି ଧର୍ମରେ ପ୍ରବୃତ୍ତ କରନ୍ତି ଓ ସମସ୍ତଙ୍କୁ ରକ୍ଷା କରନ୍ତି। ତେଣୁ ଅନ୍ୟ ମନୁଷ୍ୟମାନଙ୍କ ଅପେକ୍ଷା ରାଜା ଶ୍ରେଷ୍ଠ ବିବେଚିତ ହୁଅନ୍ତି। ସାଧାରଣ ମନୁଷ୍ୟମାନଙ୍କ ଅପେକ୍ଷା ଏପରି ରାଜାମାନଙ୍କ ମଧ୍ୟରେ ଭଗବାନଙ୍କର ଶକ୍ତି ଅଧିକ ଥାଏ। ଏଣୁ ଭଗବାନ୍ ରାଜାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ —** ସାଧାରଣ ରାଜାମାନଙ୍କୁ ନ ନେଇ ଏଠାରେ ଯଦି ପ୍ରତ୍ୟେକ ମନ୍ୱନ୍ତରରେ ହେଉଥିବା ମାନଙ୍କୁ,— ଯେଉଁମାନେ କି ନିଜ ନିଜ ସମୟର ମନୁଷ୍ୟମାନଙ୍କ ଅଧିପତି ହୁଅନ୍ତି,— ମନୁଷ୍ୟମାନଙ୍କର ରାଜା ବୋଲି ନିଆଯାଏ, ତେବେ ଆପତ୍ତି କଣ ? ଏହି ମନ୍ୱନ୍ତରପାଇଁ ପ୍ରଜାପତି ବୈବସ୍ୱତ ମନୁଙ୍କୁ ମନୁଷ୍ୟମାନଙ୍କର ଅଧିପତି କରିଥିଲେ । ଏହି କଥାର ପ୍ରସିଦ୍ଧି ଅଛି, ଯଥା —

ମନୁଷ୍ୟାଣାମଧିପତିଂ ଚକ୍ରେ ବୈବସ୍ୱତଂ ମନୁମ୍ ।

(ବାୟୁପୁରାଣ ୭୦/୧୮)

**ଉତ୍ତର —** କୌଣସି ଆପତ୍ତି ନାହିଁ । 'ବୈବସ୍ୱତ' ମନୁଙ୍କୁ ମଧ୍ୟ 'ନରାଧିପ' ବୋଲି ଗ୍ରହଣ କରାଯାଇ ପାରିବ ।

## ଆୟୁଧାନାମହଂ ବଜ୍ରଂ ଧେନୂନାମସ୍ମି କାମଧୁକ୍ ।
## ପ୍ରଜନଶ୍ଚାସ୍ମି କନ୍ଦର୍ପଃ ସର୍ପାଣାମସ୍ମି ବାସୁକିଃ ।। ୨୮ ।।

**ଅନ୍ୱୟ —** **ଅହମ୍** = ମୁଁ; **ଆୟୁଧାନାମ୍** = ଶସ୍ତ୍ରମାନଙ୍କ ମଧ୍ୟରେ; **ବଜ୍ରମ୍** = ବଜ୍ର; **ଧେନୂନାମ୍** = ଧେନୁ-(ଗାଈ)ମାନଙ୍କ ମଧ୍ୟରେ; **କାମଧୁକ୍** = କାମଧେନୁ; **ଅସ୍ମି** = ଅଟେ; **ପ୍ରଜନଃ** = ଶାସ୍ତ୍ରୋକ୍ତ ରୀତିରେ ସନ୍ତାନ-ଉତ୍ପତ୍ତିର ହେତୁ; **କନ୍ଦର୍ପଃ** = କାମଦେବ; **ଅସ୍ମି** = ଅଟେ; **ଚ** = ଓ; **ସର୍ପାଣାମ୍** = ସର୍ପମାନଙ୍କ ମଧ୍ୟରେ; **ବାସୁକିଃ** = ସର୍ପରାଜ ବାସୁକି; **ଅସ୍ମି** = ଅଟେ ।

**ମୁଁ ଶସ୍ତ୍ରମାନଙ୍କ ମଧ୍ୟରେ ବଜ୍ର ଓ ଧେନୁ(ଗାଈ)ମାନଙ୍କ ମଧ୍ୟରେ କାମଧେନୁ ଅଟେ । ମୁଁ ଶାସ୍ତ୍ରୋକ୍ତ ରୀତିରେ ସନ୍ତାନ-ଉତ୍ପତ୍ତିର ହେତୁ କାମଦେବ ଏବଂ ସର୍ପମାନଙ୍କ ମଧ୍ୟରେ ସର୍ପରାଜ ବାସୁକି ଅଟେ ।। ୨୮ ।।**

**ପ୍ରଶ୍ନ —** ଶସ୍ତ୍ରମାନଙ୍କ ମଧ୍ୟରେ ବଜ୍ରକୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଯେତେ ବି ଶସ୍ତ୍ର ଅଛି, ସେସବୁ ମଧ୍ୟରେ ବଜ୍ର ହେଉଛି ଅତ୍ୟନ୍ତ ଶ୍ରେଷ୍ଠ; କାରଣ ବଜ୍ରରେ ଦଧୀଚି ଋଷିଙ୍କର ତପ ଓ ଭଗବାନଙ୍କର ତେଜ ବିରାଜମାନ ଓ ତାହାକୁ ଅମୋଘ ବୋଲି ମନେ କରାଯାଏ (ଶ୍ରୀମଦ୍ ଭାଗବତ ୬/୧୧/୧୯-୨୦) । ଅତଏବ ବଜ୍ରକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ପ୍ରଶ୍ନ —** ଧେନୁମାନଙ୍କ ମଧ୍ୟରେ କାମଧେନୁକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** କାମଧେନୁ ଗାଈମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦିବ୍ୟ ଗାଈ । ସେ ଦେବତା ତଥା ମନୁଷ୍ୟ — ସମସ୍ତଙ୍କର ସମସ୍ତ କାମନା ପୂର୍ଣ୍ଣ କରନ୍ତି ଏବଂ ତାହାଙ୍କର ଉତ୍ପତ୍ତି ମଧ୍ୟ ସମୁଦ୍ର ମନ୍ଥନରୁ ହୋଇଛି । ଅତଏବ ଭଗବାନ୍ ଏହାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ପ୍ରଶ୍ନ —** କନ୍ଦର୍ପ ସହିତ **ପ୍ରଜନଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର —** କନ୍ଦର୍ପ ଶବ୍ଦ କାମଦେବଙ୍କର ବାଚକ । ଏହା ସହିତ **ପ୍ରଜନଃ** ବିଶେଷଣ ଦେଇ ଭଗବାନ୍ ଦେଖାଇଛନ୍ତି ଯେ, ଯେ ଧର୍ମାନୁକୂଳ ସନ୍ତାନ-ଉତ୍ପତ୍ତିପାଇଁ ଉପଯୋଗୀ, ସେହି 'କାମ' ମୋର ବିଭୂତି । ସପ୍ତମ ଅଧ୍ୟାୟର ଏକାଦଶ ଶ୍ଳୋକରେ ମଧ୍ୟ କାମ ସହିତ **ଧର୍ମାବିରୁଦ୍ଧଃ** ବିଶେଷଣ ଦେଇ ଏହି ଭାବ ଦେଖାଇଦିଆଯାଇଛି । ଅଭିପ୍ରାୟ ଏହି ଯେ, ଇନ୍ଦ୍ରିୟାରାମ ମନୁଷ୍ୟମାନଙ୍କ ଦ୍ୱାରା ବିଷୟସୁଖପାଇଁ ଉପଭୋଗ୍ୟ କାମପ୍ରବୃତ୍ତି ନିକୃଷ୍ଟ । ତାହା ଧର୍ମାନୁକୂଳ ନୁହେଁ । ପରନ୍ତୁ ଶାସ୍ତ୍ରବିଧି ଅନୁସାରେ ସନ୍ତାନ-ଉତ୍ପତ୍ତି ପାଇଁ ଇନ୍ଦ୍ରିୟଜୟୀ ପୁରୁଷଙ୍କ ଦ୍ୱାରା ପ୍ରଯୁକ୍ତ ହେଉଥିବା କାମ ହିଁ ଧର୍ମାନୁକୂଳ ହୋଇଥିବାରୁ ଶ୍ରେଷ୍ଠ । ଏଣୁ ତାହାକୁ ଭଗବାନଙ୍କର ବିଭୂତିମାନଙ୍କ ମଧ୍ୟରେ ଗଣାଯାଇଛି ।

**ପ୍ରଶ୍ନ —** ସର୍ପମାନଙ୍କ ମଧ୍ୟରେ ବାସୁକିଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର —** ବାସୁକି ସମସ୍ତ ସର୍ପଙ୍କର ରାଜା ଓ ଭଗବାନଙ୍କର ଭକ୍ତ ହୋଇଥିବାରୁ ସର୍ପମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଗଣ୍ୟ ହୁଅନ୍ତି । ଅତଏବ ତାହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ଅନନ୍ତଶ୍ଚାସ୍ମି ନାଗାନାଂ ବରୁଣୋ ଯାଦସାମହମ୍।**
**ପିତୃଣାମର୍ଯ୍ୟମା ଚାସ୍ମି ଯମଃ ସଂଯମତାମହମ୍।। ୨୯ ।।**

ଅନ୍ୱୟ – **ଅହମ୍** = ମୁଁ; **ନାଗାନାମ୍** = ନାଗମାନଙ୍କ ମଧ୍ୟରେ; **ଅନନ୍ତଃ** = ଶେଷନାଗ; **ଚ** = ଓ; **ଯାଦସାମ୍** = ଜଳଚରମାନଙ୍କର (ଅଧିପତି); **ବରୁଣଃ** = ବରୁଣ ଦେବତା; **ଅସ୍ମି** = ଅଟେ; **ଚ** = ଓ; **ପିତୃଣାମ୍** = ପିତୃମାନଙ୍କ ମଧ୍ୟରେ; **ଅର୍ଯ୍ୟମା** = ଅର୍ଯ୍ୟମା ନାମକ ପିତୃ; **ସଂଯମତାମ୍** = ଶାସକମାନଙ୍କ ମଧ୍ୟରେ; **ଯମଃ** = ଯମରାଜ; **ଅହମ୍** = ମୁଁ; **ଅସ୍ମି** = ଅଟେ।

**ମୁଁ ନାଗମାନଙ୍କ ମଧ୍ୟରେ ଶେଷନାଗ, ଜଳଚରମାନଙ୍କ ମଧ୍ୟରେ ସେମାନଙ୍କର ଅଧିପତି ବରୁଣଦେବତା ଏବଂ ପିତୃମାନଙ୍କ ମଧ୍ୟରେ ଅର୍ଯ୍ୟମା ନାମକ ପିତୃ ତଥା ଶାସକମାନଙ୍କ ମଧ୍ୟରେ ଯମରାଜ ଅଟେ।। ୨୯ ।।**

**ପ୍ରଶ୍ନ –** ନାଗମାନଙ୍କ ମଧ୍ୟରେ ଶେଷନାଗଙ୍କୁ ଭଗବାନ ନିଜ ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଶେଷନାଗ ସମସ୍ତ ନାଗଙ୍କର ରାଜା ଓ ସହସ୍ରଫଣାଯୁକ୍ତ ଅଟନ୍ତି। ସେ ଭଗବାନଙ୍କର ଶଯ୍ୟା ହୋଇ ଏବଂ ନିତ୍ୟ ତାଙ୍କ ସେବାରେ ଲାଗିରହି ତାଙ୍କୁ ସୁଖ ଦେଉଥିବା ପରମ ଅନନ୍ୟ ଭକ୍ତ ଅଟନ୍ତି। ସେ ବହୁବାର ଭଗବାନଙ୍କ ସହିତ ଅବତାର ନେଇ ତାଙ୍କ ଲୀଳାରେ ସମ୍ମିଳିତ ହୋଇଛନ୍ତି। ତାହାଙ୍କର ଉତ୍ପତ୍ତି ମଧ୍ୟ ଭଗବାନଙ୍କ ଠାରୁ ବୋଲି ଗ୍ରହଣ କରାଯାଇଛି। ★ ଅତଏବ ତାହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଜଳଚରମାନଙ୍କର ଅଧିପତି ବରୁଣଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ବରୁଣ ସମସ୍ତ ଜଳଚର ତଥା ଜଳଦେବତାଙ୍କ ଅଧିପତି, ଲୋକପାଳ, ଦେବତା ଓ ଭଗବାନଙ୍କର ଭକ୍ତ ହୋଇଥିବାରୁ ସର୍ବଶ୍ରେଷ୍ଠ ବୋଲି ସ୍ୱୀକୃତ ହୁଅନ୍ତି। ଅତଏବ ତାହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ପିତୃମାନଙ୍କ ମଧ୍ୟରେ ଅର୍ଯ୍ୟମାଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର – କବ୍ୟବାହ, ଅନଳ, ସୋମ, ଯମ, ଅର୍ଯ୍ୟମା, ଅଗ୍ନିଷ୍ୱାତ୍ତ ଓ ବର୍ହିଷଦ –** ଏହି ସାତ ହେଉଛନ୍ତି **ପିତୃଗଣ।** ★★ ଏମାନଙ୍କ ମଧ୍ୟରେ ଅର୍ଯ୍ୟମା ନାମକ ପିତୃପୁରୁଷ ସମସ୍ତ ପିତୃଙ୍କ ମଧ୍ୟରେ ପ୍ରଧାନ ହୋଇଥିବାରୁ ସର୍ବଶ୍ରେଷ୍ଠ ବୋଲି ସ୍ୱୀକୃତ ହୋଇଛନ୍ତି। ଅତଏବ ତାହାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ଶାସକମାନଙ୍କ ମଧ୍ୟରେ ଯମଙ୍କୁ ନିଜ ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ମର୍ତ୍ତ୍ୟ ଓ ଦେବଜଗତରେ, ଯେତେ ବି ଶାସକ ଅଛନ୍ତି, ଯମରାଜ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ। ଏହାଙ୍କର ସମସ୍ତ ଦଣ୍ଡ ନ୍ୟାୟ ଓ ଧର୍ମଯୁକ୍ତ, ହିତପୂର୍ଣ୍ଣ ଓ ପାପନାଶକ ହୋଇଥାଏ। ଏ ଭଗବାନଙ୍କର ଜ୍ଞାନୀ ଭକ୍ତ ଓ ଲୋକପାଳ ମଧ୍ୟ। ଅତଏବ ଭଗବାନ୍ ଏହାଙ୍କୁ ନିଜର ସ୍ୱରୂପ ବୋଲି କହିଲେ। ★★★

---

★ **ଶେଷଂ ଚାକଲ୍ପୟଦେବମନନ୍ତଂ ବିଶ୍ୱରୂପିଣମ୍।**
**ଯୋ ଧାରୟତି ଭୂତାନି ଧରାଂ ଚେମାଂ ସପର୍ବତାମ୍।।** (ମହା.ଭୀଷ୍ମ. ୬୭/୧୩)

ଅର୍ଥାତ୍, ଏହି ପରମଦେବ ବିଶ୍ୱରୂପ ଅନନ୍ତ ନାମକ ଦେବସ୍ୱରୂପ ଶେଷନାଗଙ୍କୁ ଉତ୍ପନ୍ନ କଲେ, ଯେ ପର୍ବତମାନଙ୍କ ସହିତ ଏହି ସାରା ପୃଥିବୀଙ୍କୁ ତଥା ପ୍ରାଣୀମାନଙ୍କୁ ଧାରଣ କରି ରହିଛନ୍ତି।

★★ **କବ୍ୟବାହୋଽନଳଃ ସୋମୋ ଯମଶ୍ଚୈବାର୍ଯମା ତଥା।**
**ଅଗ୍ନିଷ୍ୱାତ୍ତା ବର୍ହିଷଦଶ୍ଚସ୍ୟ୍ୟାଦ୍ୟା ହ୍ୟମୂର୍ତ୍ତୟଃ।।** (ଶିବପୁରାଣ, ଧର୍ମ.୬୩/୨)

କେଉଁଠି କେଉଁଠି ଏହାଙ୍କର ନାମ ଏପରି ମିଳୁଛି– ସୁକାଳ, ଆଙ୍ଗିରସ, ସ୍ୱଧା, ସୋମପା, ବୈରାଜ, ଅଗ୍ନିଷ୍ୱାତ୍ତ ଓ ବର୍ହିଷଦ (ହରିବଂଶ, ପୂର୍ବ.ଅ..୧୮)। ମନ୍ୱନ୍ତରଭେଦରେ ନାମର ଏହି ପାର୍ଥକ୍ୟ ସମ୍ଭବ।

★★★ ଯମରାଜଙ୍କ ଦରବାରରେ କାହା ସହିତ କୌଣସି ବି କାରଣରୁ କିଛି ପକ୍ଷପାତ ହୁଏ ନାହିଁ ଓ କୌଣସିପ୍ରକାର ସୁପାରିଶ, ଲାଞ୍ଚ ବା ଖୋସାମଦ ଚଳେ ନାହିଁ। ଏହାଙ୍କ ନିୟମ ଏତେ କଠୋର ଯେ, ସେଥିରେ ତିଳେମାତ୍ର ଛାଡ଼ର ବ୍ୟବସ୍ଥା ନାହିଁ। ତେଣୁ ଏହାଙ୍କୁ 'ଶାସନ କରୁଥିବା' ଅଧିକାରୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ମନେ କରାଯାଇଅଛି।

**ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ କାଳଃ କଳୟତାମହମ୍ ।**
**ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ ବୈନତେୟଶ୍ଚ ପକ୍ଷିଣାମ୍ ।। ୩୦ ।।**

**ଅନ୍ୱୟ–** **ଅହମ୍** = ମୁଁ; **ଦୈତ୍ୟାନାମ୍** = ଦୈତ୍ୟମାନଙ୍କ ମଧ୍ୟରେ; **ପ୍ରହ୍ଲାଦଃ** = ପ୍ରହ୍ଲାଦ; **ଚ** = ଓ; **କଳୟତାମ୍** = ଗଣନାକାରୀମାନଙ୍କ ମଧ୍ୟରେ; **କାଳଃ** = ସମୟ; **ଅସ୍ମି** = ଅଟେ; **ଚ** = ତଥା; **ମୃଗାଣାମ୍** = ପଶୁମାନଙ୍କ ମଧ୍ୟରେ; **ମୃଗେନ୍ଦ୍ରଃ** = ମୃଗରାଜ ସିଂହ; **ଚ** = ଓ; **ପକ୍ଷିଣାମ୍** = ପକ୍ଷୀମାନଙ୍କ ମଧ୍ୟରେ; **ଅହମ୍** = ମୁଁ; **ବୈନତେୟଃ** = ଗରୁଡ଼; **(ଅସ୍ମି)** = ଅଟେ।

**ମୁଁ ଦୈତ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦ ଓ ଗଣନାକାରୀମାନଙ୍କ ମଧ୍ୟରେ କାଳ ତଥା ପଶୁମାନଙ୍କ ମଧ୍ୟରେ ମୃଗରାଜ ସିଂହ ଓ ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟେ।। ୩୦ ।।**

**ପ୍ରଶ୍ନ–** ଦୈତ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର–** ଦିତିଙ୍କ ବଂଶଜମାନଙ୍କୁ ଦୈତ୍ୟ କହନ୍ତି। ସେମାନଙ୍କ ମଧ୍ୟରେ ପ୍ରହ୍ଲାଦଙ୍କୁ ଉତ୍ତମ ବୋଲି କୁହାଯାଏ; କାରଣ ସେ ସର୍ବସଦ୍‌ଗୁଣସମ୍ପନ୍ନ, ପରମ ଧର୍ମାତ୍ମା ଓ ଭଗବାନଙ୍କର ପରମ ଶ୍ରଦ୍ଧାଳୁ, ନିଷ୍କାମ, ଅନନ୍ୟ ପ୍ରେମୀ ଭକ୍ତ ତଥା ଦୈତ୍ୟମାନଙ୍କର ରାଜା। ତେଣୁ ଭଗବାନ୍ ତାହାଙ୍କୁ ନିଜର ସ୍ୱରୂପ ବୋଲି କହିଲେ।

**ପ୍ରଶ୍ନ–** ଏଠାରେ 'କାଳ' ଶବ୍ଦ କାହାର ବାଚକ ଓ ତାହାକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର–** ଏଠାରେ 'କାଳ' ଶବ୍ଦଟି ହେଉଛି କ୍ଷଣ, ଘଡ଼ି, ଦିନ, ପକ୍ଷ, ମାସ ଆଦି ନାମରେ କୁହାଯାଉଥିବା ସମୟର ବାଚକ। ଏହା ଗଣିତଜ୍ଞମାନଙ୍କ ଗଣନାର ଆଧାର। ଅତଏବ କାଳକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ–** ସିଂହ ତ ହିଂସ୍ର ଜନ୍ତୁ। ଏହାର ଗଣନା ଭଗବାନ୍ ନିଜ ବିଭୂତିମାନଙ୍କ ମଧ୍ୟରେ କିପରି କଲେ ?

**ଉତ୍ତର–** ସିଂହ ପଶୁମାନଙ୍କର ରାଜାରୂପେ ଗଣ୍ୟ ହୁଏ। ସେ ଅନ୍ୟ ପଶୁମାନଙ୍କ ଅପେକ୍ଷା ଅଧିକ ବଳବାନ୍, ତେଜସ୍ୱୀ, ଶୂରବୀର ଓ ସାହସୀ। ତେଣୁ ଭଗବାନ୍ ସିଂହକୁ ନିଜର ବିଭୂତିମାନଙ୍କ ମଧ୍ୟରେ ଗଣନା କରିଛନ୍ତି।

---

ଇନ୍ଦ୍ର, ଅଗ୍ନି, ନିଋତି, ବରୁଣ, ବାୟୁ, କୁବେର, ଈଶାନ, ବ୍ରହ୍ମା, ଅନନ୍ତ ଓ ଯମ– ଏମାନେ ଦଶ ଦିଗପାଳ (ବୃହଦ୍ଧର୍ମପୁରାଣ, ଉତ୍ତର-୯)। ଏମାନେ ସମଷ୍ଟିଜଗତର ଦଶ ଦିଗର ସଂରକ୍ଷକ।

କଥିତ ଅଛି, ପୁଣ୍ୟାତ୍ମା ଜୀବଙ୍କୁ ଏହି ଯମରାଜ ସ୍ୱଭାବତଃ ସୌମ୍ୟମୂର୍ତ୍ତି ଦେଖାଯା'ନ୍ତି ଓ ପାପୀମାନଙ୍କୁ ଅତ୍ୟନ୍ତ ରକ୍ତନେତ୍ର, ବିକରାଳଦଂଷ୍ଟ୍ର, ବିଜୁଳିପରି ଲହ ଲହ ହେଉଥିବା ଜିହ୍ୱାଯୁକ୍ତ, ଉପରକୁ ଉଠିଥିବା ଭୟଙ୍କର କେଶଯୁକ୍ତ, ଅତ୍ୟନ୍ତ ଭୟାନକ କଳା ଆକୃତିବିଶିଷ୍ଟ ତଥା ହାତରେ କାଳଦଣ୍ଡ ଧରିଥିବା ବ୍ୟକ୍ତିପରି ଦେଖାଯା'ନ୍ତି (ସ୍କନ୍ଦ ପୁରାଣ, କାଶୀ-ଖଣ୍ଡ ପୂର୍ବ. ୮/୫୫,୫୬)।

ଯମରାଜ ପରମ ଜ୍ଞାନୀ। ସେ ନଚିକେତାଙ୍କୁ ଆତ୍ମତତ୍ତ୍ୱର ଜ୍ଞାନ ଦେଇଥିଲେ। କଠୋପନିଷଦ, ମହାଭାରତର ଅନୁଶାସନ ପର୍ବ ଓ ବରାହପୁରାଣରେ ନଚିକେତାଙ୍କ କଥା ମିଳେ। ତା' ସଙ୍ଗେ ସଙ୍ଗେ ଯମ ବଡ଼ ଭଗବଦ୍ଭକ୍ତ। ଶ୍ରୀମଦ୍ଭାଗବତ, ଷଷ୍ଠ ସ୍କନ୍ଧର ତୃତୀୟ ଅଧ୍ୟାୟରେ, ବିଷ୍ଣୁପୁରାଣ ତୃତୀୟ ଅଂଶ ସପ୍ତମ ଅଧ୍ୟାୟରେ ଓ ସ୍କନ୍ଦ ପୁରାଣ କାଶୀଖଣ୍ଡ ପୂର୍ବାର୍ଦ୍ଧର ଅଷ୍ଟମ ଅଧ୍ୟାୟରେ ସେ ନିଜ ଦୂତମାନଙ୍କ ଆଗରେ ଭଗବାନଙ୍କର ଓ ଭଗବାନଙ୍କ ନାମର ମହିମା ଗାନ କରିଛନ୍ତି; ତାହା ଅବଶ୍ୟ ପଢ଼ିବା ଉଚିତ।

କିନ୍ତୁ ଯମଙ୍କ ବୁଦ୍ଧିକୁ ମଧ୍ୟ ଭ୍ରମ କରୁଥିବା ପୁରୁଷ ବେଳେବେଳେ ଜନ୍ମ ହୁଅନ୍ତି। ସ୍କନ୍ଦ ପୁରାଣରେ କଥା ଅଛି, କୀର୍ତ୍ତିମାନ୍ ନାମକ ଜଣେ ଚକ୍ରବର୍ତ୍ତୀ ଭକ୍ତ ରାଜା ଥିଲେ। ତାଙ୍କର ଉପଦେଶରେ ସମସ୍ତ ପ୍ରଜା ସଦାଚାର ଓ ଭକ୍ତିରେ ପୂର୍ଣ୍ଣ ହୋଇଗଲେ। ତାଙ୍କର ପୁଣ୍ୟଫଳରେ ତାଙ୍କ ରାଜ୍ୟରେ ଆଗରୁ ଯେତେସବୁ ଜୀବ ଥିଲେ, ସେସମସ୍ତଙ୍କର ସଦ୍‌ଗତି ହେବାକୁ ଲାଗିଲା ଏବଂ ବର୍ତ୍ତମାନ ମରୁଥିବା ସବୁଲୋକଙ୍କୁ ପରମଗତି ମିଳିବାକୁ ଲାଗିଲା। ଫଳରେ ନୂତନ ଜୀବଙ୍କର ଯମାଳୟକୁ ଯିବା ବନ୍ଦ ହୋଇଗଲା। ଏହିପ୍ରକାରେ ଯମଲୋକ ଶୂନ୍ୟ ହୋଇଗଲା। ତହୁଁ ଯମ ଯାଇ ବ୍ରହ୍ମାଙ୍କୁ ଏକଥା କହିଲେ। ସେ ତାହାଙ୍କୁ ବିଷ୍ଣୁ ଭଗବାନଙ୍କ ପାଖକୁ ପଠାଇଲେ। ଭଗବାନ୍ ବିଷ୍ଣୁ କହିଲେ– ''ଯେତେ କାଳଯାଏ ଏହି ଧର୍ମାତ୍ମା ଭକ୍ତ କୀର୍ତ୍ତିମାନ୍ ରାଜା ଜୀବିତ ଅଛନ୍ତି, ସେତେକାଳଯାଏ ତ ଏପରି ହେବ ହିଁ ହେବ; କିନ୍ତୁ ସଂସାରରେ ସବୁଦିନ ଏପରି ଚଳିବ ନାହିଁ।'' (ସ୍କନ୍ଦପୁରାଣ, ବିଷ୍ଣୁ ବୈ. ୧୧/୧୨/୧୩)।

**ପ୍ରଶ୍ନ –** ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ବିନତାଙ୍କ ପୁତ୍ର ଗରୁଡ଼ ପକ୍ଷୀମାନଙ୍କର ରାଜା। ସେ ସବୁପକ୍ଷୀଙ୍କ ମଧ୍ୟରେ ବଡ଼ ହୋଇଥିବାରୁ ଶ୍ରେଷ୍ଠରୂପେ ଗଣ୍ୟ। ପୁଣି ସେ ଭଗବାନଙ୍କର ବାହନ, ତାଙ୍କର ପରମ ଭକ୍ତ ଓ ଅତ୍ୟନ୍ତ ପରାକ୍ରମୀ। ତେଣୁ ଭଗବାନ୍ ଗରୁଡ଼ଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

## ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହମ୍।
## ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ ।। ୩୧ ।।

**ଅନ୍ୱୟ –** **ଅହମ୍** = ମୁଁ; **ପବତାମ୍** = ପବିତ୍ରକାରୀମାନଙ୍କ ମଧ୍ୟରେ; **ପବନଃ** = ବାୟୁ (ଓ); **ଶସ୍ତ୍ରଭୃତାମ୍** = ଶସ୍ତ୍ରଧାରୀମାନଙ୍କ ମଧ୍ୟରେ; **ରାମଃ** = ଶ୍ରୀରାମ; **ଅସ୍ମି** = ଅଟେ; **ଝଷାଣାମ୍** = ମତ୍ସ୍ୟମାନଙ୍କ ମଧ୍ୟରେ; **ମକରଃ** = ମଗର; **ଅସ୍ମି** = ଅଟେ; **ଚ** = ଓ; **ସ୍ରୋତସାମ୍** = ନଦୀମାନଙ୍କ ମଧ୍ୟରେ; **ଜାହ୍ନବୀ** = ଗଙ୍ଗା; **ଅସ୍ମି** = ଅଟେ।

**ମୁଁ ପବିତ୍ରକାରୀମାନଙ୍କ ମଧ୍ୟରେ ବାୟୁ ଓ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରୀରାମ ତଥା ମତ୍ସ୍ୟମାନଙ୍କ ମଧ୍ୟରେ ମଗର ଓ ନଦୀମାନଙ୍କ ମଧ୍ୟରେ ଗଙ୍ଗା ଅଟେ।। ୩୧ ।।**

**ପ୍ରଶ୍ନ – ପବତାମ୍** ପଦର ଅର୍ଥ ଯଦି ବେଗବାନ୍ ବୋଲି ମାନିନିଆଯାଏ, ଆପତ୍ତି କଣ ?

**ଉତ୍ତର –** ଯଦ୍ୟପି ବ୍ୟାକରଣ ଦୃଷ୍ଟିରୁ 'ବେଗବାନ୍' ଅର୍ଥ ଯଥାର୍ଥ ନୁହେଁ, ତଥାପି ଟୀକାକାରମାନେ ଏହି ଅର୍ଥ ମଧ୍ୟ ମାନିଛନ୍ତି। ଏଣୁ କେହି ଯଦି ଏପରି ମାନନ୍ତି, ମାନି ପାରନ୍ତି। ବାୟୁଙ୍କୁ ବେଗବାନ୍‌ମାନଙ୍କ ମଧ୍ୟରେ ବି ସର୍ବଶ୍ରେଷ୍ଠ ବୋଲି ଧରାଯାଇଛି ଓ ସେ ପବିତ୍ରକାରୀମାନଙ୍କ ମଧ୍ୟରେ ବି ଶ୍ରେଷ୍ଠ। ଏଣୁ ବାୟୁର ଉଭୟପ୍ରକାର ଶ୍ରେଷ୍ଠତା ରହିଛି।

**ପ୍ରଶ୍ନ –** ଏଠାରେ **ରାମ** ଶବ୍ଦ କାହାର ବାଚକ ଓ ତାହାଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର – ରାମ** ଶବ୍ଦ ଦଶରଥନନ୍ଦନ ଶ୍ରୀରାମଚନ୍ଦ୍ରଙ୍କ ବାଚକ। ତାହାଙ୍କୁ ନିଜର ସ୍ୱରୂପ ବୋଲି ପ୍ରକାଶ କରି ଭଗବାନ୍ କହିଛନ୍ତି, "ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ଲୀଳା କରିବାପାଇଁ ମୁଁ ହିଁ ଭିନ୍ନ ଭିନ୍ନ ରୂପ ଧାରଣ କରେ। ଶ୍ରୀରାମ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ମୁଁ ନିଜେ ହିଁ ଶ୍ରୀରାମରୂପରେ ଅବତୀର୍ଣ୍ଣ ହୁଏ।"

**ପ୍ରଶ୍ନ –** ମତ୍ସ୍ୟମାନଙ୍କ ମଧ୍ୟରେ ମଗରଙ୍କୁ ନିଜର ବିଭୂତି ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେତେପ୍ରକାର ମତ୍ସ୍ୟ ଅଛନ୍ତି, ସେମାନଙ୍କ ମଧ୍ୟରେ ମଗର ମତ୍ସ୍ୟ ହେଉଛି ଆକାରରେ ବହୁତ ବଡ଼ ଓ ବଳବାନ୍। ଏହି ବିଶେଷତ୍ୱ ହେତୁ ମତ୍ସ୍ୟମାନଙ୍କ ମଧ୍ୟରେ ମଗରକୁ ନିଜର ବିଭୂତି ବୋଲି କହିଛନ୍ତି।

**ପ୍ରଶ୍ନ –** ନଦୀମାନଙ୍କ ମଧ୍ୟରେ ଜାହ୍ନବୀ (ଗଙ୍ଗା)ଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଜାହ୍ନବୀ ଅର୍ଥାତ୍ ଶ୍ରୀଭାଗୀରଥୀ ଗଙ୍ଗା ସମସ୍ତ ନଦୀଙ୍କ ମଧ୍ୟରେ ପରମ ଶ୍ରେଷ୍ଠ। ସେ ଶ୍ରୀଭଗବାନଙ୍କର ଚରଣୋଦକରୁ ଉତ୍ପନ୍ନ ହୋଇଥିବାରୁ ପରମ ପବିତ୍ର ଅଟନ୍ତି। * ପୁରାଣ ଓ ଇତିହାସରେ ଗଙ୍ଗାଙ୍କର ବହୁ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି। ଏହା ଛଡ଼ା ଏ କଥା ମଧ୍ୟ ଅଛି ଯେ, ଥରେ ଭଗବାନ୍ ବିଷ୍ଣୁ ନିଜେ ଦ୍ରବରୂପ ହୋଇ ବହିବାକୁ ଲାଗିଥିଲେ ଏବଂ ବ୍ରହ୍ମାଙ୍କ କମଣ୍ଡଳୁମଧ୍ୟକୁ ଯାଇ ଗଙ୍ଗାରୂପ ହୋଇଯାଇଥିଲେ। ଏହିପ୍ରକାରେ ସାକ୍ଷାତ୍ ବ୍ରହ୍ମଦ୍ରବ ହୋଇଥିବାରୁ ମଧ୍ୟ

---

* ଧାତୁଃ କମଣ୍ଡଳୁଜଳଂ ତଦୁରୁକ୍ରମସ୍ୟ ପାଦାବନେଜନପବିତ୍ରତୟା ନରେନ୍ଦ୍ର।
ସ୍ୱର୍ଧୁନ୍ୟଭୂନ୍ନଭସି ସା ପତତୀ ନିମାର୍ଷ୍ଟି ଲୋକତ୍ରୟଂ ଭଗବତୋ ବିଶଦେବ କୀର୍ତ୍ତିଃ ।। (ଶ୍ରୀମଦ୍‌ଭାଗବତ ୮/୨୧/୪)

ଅର୍ଥାତ୍, 'ହେ ରାଜନ୍! ବ୍ରହ୍ମାଙ୍କର ସେହି କମଣ୍ଡଳୁଜଳ ଭଗବାନଙ୍କ ଚରଣକୁ ଧୋଇବାରୁ ପବିତ୍ରତମ ହୋଇ ସ୍ୱର୍ଗଗଙ୍ଗା (ମନ୍ଦାକିନୀ) ହୋଇଗଲା। ସେହି ଗଙ୍ଗା ଭଗବାନଙ୍କ ନିର୍ମଳ କୀର୍ତ୍ତିପରି ଆକାଶରୁ ପୃଥିବୀ ଉପରକୁ ଓହ୍ଲାଇ ଆସି ଭଗବାନଙ୍କ କୀର୍ତ୍ତି ବିସ୍ତାରପୂର୍ବକ ଏପର୍ଯ୍ୟନ୍ତ ତ୍ରିଲୋକକୁ ପବିତ୍ର କରୁଛନ୍ତି।'

ନ ହ୍ୟେତଦ୍‌ପରମାଶ୍ଚର୍ଯ୍ୟଂ ସ୍ୱର୍ଧୁନ୍ୟା ଯଦିହୋଦିତମ୍। ଅନନ୍ତଚରଣାମ୍ଭୋଜପ୍ରସୂତାୟା ଭବଚ୍ଛିଦଃ ।।
ସନ୍ନିବେଶ୍ୟ ମନୋ ଯସ୍ମିନ୍ ଶ୍ରଦ୍ଧୟା ମୁନୟୋଽମଲାଃ। ତ୍ରୈଗୁଣ୍ୟଂ ଦୁସ୍ତ୍ୟଜଂ ହିତ୍ୱା ସଦ୍ୟୋ ଯାତାସ୍ତଦାତ୍ମତାମ୍ ।।
(ଶ୍ରୀମଦ୍‌ଭାଗବତ ୯/୯/୧୪-୧୫)

ଅର୍ଥାତ୍, 'ଯେଉଁ ଅନନ୍ତ ଭଗବାନଙ୍କର ଚରଣକମଳରେ ଶ୍ରଦ୍ଧାପୂର୍ବକ ପୂର୍ଣ୍ଣରୂପେ ଚିତ୍ତ ଲଗାଇ ନିର୍ମଳହୃଦୟ ମୁନିମାନେ ତୁରନ୍ତ ହିଁ ଦୁସ୍ତ୍ୟଜ ତ୍ରିଗୁଣ-ପ୍ରପଞ୍ଚକୁ ତ୍ୟାଗ କରି ତାଙ୍କ ସ୍ୱରୂପ ହୋଇଯାଉଛନ୍ତି, ସେହି ଚରଣକମଳରୁ ଉତ୍ପନ୍ନ ହୋଇ ଭବବନ୍ଧନକୁ କାଟିଦେଉଥିବା ଭଗବତୀ ଗଙ୍ଗାଙ୍କର ଏ ଯେଉଁ ମାହାତ୍ମ୍ୟ ଏଠାରେ କୁହାଗଲା, ଏଥିରେ କୌଣସି ବିଶେଷ ଆଶ୍ଚର୍ଯ୍ୟର କଥା ନାହିଁ।'

ଗଙ୍ଗାଙ୍କର ଅତ୍ୟନ୍ତ ମାହାତ୍ମ୍ୟ ରହିଛି। ** ଅତଏବ ଭଗବାନ୍ ଗଙ୍ଗାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ।**
**ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହମ୍॥ ୩୨ ॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ; **ସର୍ଗାଣାମ୍** = ସୃଷ୍ଟିମାନଙ୍କର; **ଆଦିଃ** = ଆଦି; **ଚ** = ଓ; **ଅନ୍ତଃ** = ଅନ୍ତ; **ଚ** = ତଥା; **ମଧ୍ୟମ** = ମଧ୍ୟ (ବି); **ଅହମ୍** = ମୁଁ; **ଏବ** = ହିଁ (ଅଟେ); **ଅହମ୍** = ମୁଁ; **ବିଦ୍ୟାନାମ୍** = ବିଦ୍ୟାମାନଙ୍କ ମଧ୍ୟରେ; **ଅଧ୍ୟାତ୍ମବିଦ୍ୟା** = ଅଧ୍ୟାତ୍ମବିଦ୍ୟା ଅର୍ଥାତ୍ ବ୍ରହ୍ମବିଦ୍ୟା (ଓ); **ପ୍ରବଦତାମ୍** = (ଶାସ୍ତ୍ରାର୍ଥପାଇଁ) ପରସ୍ପର ବାଦ କରୁଥିବା ଲୋକଙ୍କର; **ବାଦଃ** = ତତ୍ତ୍ୱନିର୍ଣ୍ଣୟପାଇଁ କରାଯାଉଥିବା ବାଦ; **ଅସ୍ମି** = (ମଧ୍ୟ ମୁଁ) ଅଟେ।

**ହେ ଅର୍ଜୁନ! ସୃଷ୍ଟିମାନଙ୍କର ଆଦି ଓ ଅନ୍ତ ତଥା ମଧ୍ୟ ବି ମୁଁ ହିଁ ଅଟେ। ମୁଁ ବିଦ୍ୟାମାନଙ୍କ ମଧ୍ୟରେ ଅଧ୍ୟାତ୍ମବିଦ୍ୟା ଅର୍ଥାତ୍ ବ୍ରହ୍ମବିଦ୍ୟା ଏବଂ ଶାସ୍ତ୍ରାର୍ଥପାଇଁ ପରସ୍ପର ବାଦ କରୁଥିବା ଲୋକଙ୍କ ମଧ୍ୟରେ ତତ୍ତ୍ୱନିର୍ଣ୍ଣୟପାଇଁ କରାଯାଉଥିବା ବାଦ ମଧ୍ୟ ମୁଁ ଅଟେ॥ ୩୨ ॥**

**ପ୍ରଶ୍ନ—** କୋଡ଼ିଏ ଶ୍ଳୋକରେ ଭଗବାନ୍ ନିଜକୁ ପ୍ରାଣୀମାନଙ୍କର ଆଦି, ମଧ୍ୟ ଓ ଅନ୍ତ ବୋଲି କହିଛନ୍ତି; ଏଠାରେ ପୁଣି ସୃଷ୍ଟିମାନଙ୍କର ଆଦି, ମଧ୍ୟ ଓ ଅନ୍ତ ବୋଲି କହୁଛନ୍ତି। ଏଥିରେ ଜଣେ ପୁନରୁକ୍ତି ଦୋଷ ନାହିଁ?

**ଉତ୍ତର—** ପୁନରୁକ୍ତି ଦୋଷ ନାହିଁ; କାରଣ, ସେଠାରେ **ଭୂତ** ଶବ୍ଦ ଚେତନ ପ୍ରାଣୀମାନଙ୍କର ବାଚକ ଏବଂ ଏଠାରେ **ସର୍ଗ** ଶବ୍ଦ ଜଡ଼, ଚେତନ ଆଦି ସମସ୍ତ ବସ୍ତୁ ଓ ସମସ୍ତ ଲୋକ ସହିତ ସଂପୂର୍ଣ୍ଣ ସୃଷ୍ଟିର ବାଚକ।

**ପ୍ରଶ୍ନ—** ସମସ୍ତ ବିଦ୍ୟାମାନଙ୍କ ମଧ୍ୟରେ ଅଧ୍ୟାତ୍ମବିଦ୍ୟାକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର—** ଅଧ୍ୟାତ୍ମବିଦ୍ୟା ବା ବ୍ରହ୍ମବିଦ୍ୟା ସେହି ବିଦ୍ୟାକୁ କହନ୍ତି, ଯାହାର ଆତ୍ମା ସହିତ ସମ୍ବନ୍ଧ ରହିଛି; ଯାହା ଆତ୍ମତତ୍ତ୍ୱକୁ ପ୍ରକାଶ କରେ ଓ ଯାହାର ପ୍ରଭାବରେ ଅନାୟାସରେ ହିଁ ବ୍ରହ୍ମସାକ୍ଷାତ୍କାର ହୋଇଯାଏ। ସଂସାରରେ ଜ୍ଞାତ ଓ ଅଜ୍ଞାତ ହୋଇ ଯେତେ ବି ବିଦ୍ୟା ଅଛି, ସବୁ ଏହି ବ୍ରହ୍ମବିଦ୍ୟାଠାରୁ ନିକୃଷ୍ଟ; କାରଣ ସେସବୁ ବିଦ୍ୟାଦ୍ୱାରା ଅଜ୍ଞାନର ବନ୍ଧନ ତୁଟେ ନାହିଁ, ବରଂ ଆହୁରି ଦୃଢ଼ ହୁଏ। କିନ୍ତୁ ଏହି ବ୍ରହ୍ମବିଦ୍ୟାଦ୍ୱାରା ଅଜ୍ଞାନର ଗଣ୍ଠି ସବୁଦିନପାଇଁ ଖୋଲିଯାଏ ଏବଂ ପରମାତ୍ମାଙ୍କ ସ୍ୱରୂପର ଯଥାର୍ଥ ସାକ୍ଷାତ୍କାର ହୋଇଯାଏ। ସୁତରାଂ ଏହା ସର୍ବଶ୍ରେଷ୍ଠ; ତେଣୁ ଭଗବାନ୍ ଏହାକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

---

** ଭଗବତୀ— ମହେଶ୍ୱରୀ ଦକ୍ଷକନ୍ୟା ସତୀ ଦେହତ୍ୟାଗ କରିବା ପରେ ଯେତେବେଳେ ଭଗବାନ୍ ଶିବ ତପସ୍ୟା କରିବାକୁ ଲାଗିଲେ, ସେତେବେଳେ ଦେବତାମାନେ ଜଗଦମ୍ବାଙ୍କୁ ସ୍ତୁତି କଲେ। ମହେଶ୍ୱରୀ ପ୍ରକଟ ହେଲେ। ପୁଣି ଥରେ ଶଙ୍କରଙ୍କୁ ବରଣ କରିବାକୁ ଦେବତାମାନେ ତାଙ୍କୁ ପ୍ରାର୍ଥନା କଲେ। ଦେବୀ କହିଲେ, ''ମୁଁ ଦୁଇଟି ରୂପରେ ସୁମେରୁକନ୍ୟା ମେନକାଙ୍କ ଗର୍ଭରୁ ଶୈଳରାଜ ହିମାଳୟଙ୍କ ଘରେ ପ୍ରକଟ ହେବି।'' ତା'ପରେ ସେ ପ୍ରଥମେ ଗଙ୍ଗାରୂପରେ ପ୍ରକଟ ହେଲେ। ଦେବତାମାନେ ତାଙ୍କୁ ସ୍ତୁତି କରି କରି ଦେବଲୋକକୁ ନେଇଗଲେ। ସେଠାରେ ସେ ମୂର୍ତ୍ତିମତୀ ହୋଇ ଶଙ୍କରଙ୍କ ସହିତ ଦିବ୍ୟ କୈଳାସଧାମରେ ରହିଥିଲେ ଏବଂ ବ୍ରହ୍ମା ପ୍ରାର୍ଥନା କରିବାରୁ ନିରାକାରରୂପରେ ତାଙ୍କ କମଣ୍ଡଳୁରେ ରହିଲେ (ଅନ୍ତର୍ଧାନାଂଶଭାଗେନ ସ୍ଥିତା ବ୍ରହ୍ମକମଣ୍ଡଳୌ)। ବ୍ରହ୍ମା କମଣ୍ଡଳୁରେ ତାଙ୍କୁ ବ୍ରହ୍ମଲୋକକୁ ନେଇଗଲେ। ଥରେ ଭଗବାନ୍ ଶଙ୍କର ଗଙ୍ଗାଙ୍କ ସହିତ ବୈକୁଣ୍ଠପୁରକୁ ଯାଇଥିଲେ। ସେଠାରେ ବିଷ୍ଣୁଙ୍କ ଅନୁରୋଧକ୍ରମେ ସେ ଗୀତ ଗାଇଲେ। ସେ ଯେଉଁ ରାଗିଣୀ ଗାଉଥିଲେ, ତାହା ମୂର୍ତ୍ତିମତୀ ହୋଇ ପ୍ରକଟ ହୋଇଯାଉଥିଲା। ସେ 'ଶ୍ରୀ' ରାଗିଣୀ ଗାନ କଲେ। ତାହା ମଧ୍ୟ ପ୍ରକଟ ହୋଇଗଲା। ସେହି ରାଗିଣୀରେ ମୁଗ୍ଧ ହୋଇ ରସମୟ ଭଗବାନ୍ ନାରାୟଣ ସ୍ୱୟଂ ରସରୂପରେ ବହିଗଲେ। ଏହା ଦେଖି ବ୍ରହ୍ମା ଭାବିଲେ, ''ବ୍ରହ୍ମକୁ ଉତ୍ପନ୍ନ ସଂଗୀତ ବ୍ରହ୍ମମୟ ଓ ସ୍ୱୟଂ ବ୍ରହ୍ମ ହରି ମଧ୍ୟ ଏବେ ଦ୍ରବୀଭୂତ; ଅତଏବ ବ୍ରହ୍ମମୟୀ ଗଙ୍ଗା ଏହାଙ୍କୁ ସଂବରଣ କରନ୍ତୁ।'' ଏପରି ବିଚାର କରି ସେ ବ୍ରହ୍ମଦ୍ରବରେ କମଣ୍ଡଳୁକୁ ଛୁଆଁଇ ଦେବା ମାତ୍ରେ ସେହି ସମସ୍ତ ଜଳ ଗଙ୍ଗାଙ୍କ ଠାରେ ମିଶିଗଲେ ଏବଂ ନିରାକାରା ଗଙ୍ଗା ଜଳମୟୀ ହୋଇଗଲେ। ବ୍ରହ୍ମା ବ୍ରହ୍ମଲୋକକୁ ଫେରିଗଲେ। ଏହା ପରେ ଭଗବାନ୍ ବିଷ୍ଣୁ ଯେତେବେଳେ ବାମନ-ଅବତାରରେ ନିଜର ବାମ ପାଦରେ ସମସ୍ତ ଦ୍ୟୁଲୋକକୁ ମାପିଦେଲେ, ସେତେବେଳେ ବ୍ରହ୍ମା କମଣ୍ଡଳୁର ସେହି ଜଳରେ ବାମନ ଭଗବାନଙ୍କ ଚରଣକୁ ଧୋଇଦେଲେ। କମଣ୍ଡଳୁର ଜଳରେ ଧୌତ ହେବାମାତ୍ରେ ସେହି ଚରଣ ସେଇଠି ସ୍ଥିର ହୋଇ ରହିଗଲା ଏବଂ ଭଗବାନ୍ ଅନ୍ତର୍ଧାନ ହୋଇଯିବା ପରେ ମଧ୍ୟ ତାଙ୍କ ଦିବ୍ୟଚରଣ ସେଠାରେ ସ୍ୱର୍ଗ-ଗଙ୍ଗାଙ୍କ ସହ ରହିଗଲା। ସେଥିରୁ ଉତ୍ପନ୍ନ ଗଙ୍ଗାମାତାଙ୍କୁ ଘୋର ତପ କରି ଭଗୀରଥ ତାଙ୍କ ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରିବାପାଇଁ ଭଗବାନଙ୍କ ଦିବ୍ୟଚରଣରୁ ଏହି ଲୋକକୁ ଆଣିଲେ। ଏଠାରେ ମଧ୍ୟ ଶ୍ରୀଶଙ୍କର ହିଁ ଗଙ୍ଗାଙ୍କୁ ମସ୍ତକରେ ଧାରଣ କଲେ। ଗଙ୍ଗାଙ୍କ ମାହାତ୍ମ୍ୟର ଏହି ଅତ୍ୟନ୍ତ ସୁନ୍ଦର, ଉପଦେଶପ୍ରଦ ଓ ବିଚିତ୍ର କଥା ବିସ୍ତାରପୂର୍ବକ ବୃହଦ୍ଧର୍ମପୁରାଣର ମଧ୍ୟଖଣ୍ଡ ଦ୍ୱାଦଶ ଅଧ୍ୟାୟରୁ ଅଷ୍ଟାବିଂଶ ଅଧ୍ୟାୟପର୍ଯ୍ୟନ୍ତ ପଢ଼ିବା ଉଚିତ।

**ପ୍ରଶ୍ନ –** ବାଦକୁ ଏକ ବିଭୂତି ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଶାସ୍ତ୍ରାର୍ଥର ତିନିପ୍ରକାରରେ କରାଯାଏ, ଯଥା– **ଜଳ୍ପ, ବିତଣ୍ଡା** ଓ **ବାଦ**। ଉଚିତ-ଅନୁଚିତ ବିଚାର ଛାଡ଼ିଦେଇ ନିଜ ପକ୍ଷକୁ ମଣ୍ଡନ ଓ ଅନ୍ୟ ପକ୍ଷକୁ ଖଣ୍ଡନ କରିବାପାଇଁ ଯେଉଁ ବିବାଦ କରାଯାଏ, ତାହାକୁ **ଜଳ୍ପ** କୁହାଯାଏ। କେବଳ ଅନ୍ୟ ପକ୍ଷର ଖଣ୍ଡନ ପାଇଁ କରାଯାଉଥିବା ବିବାଦକୁ **ବିତଣ୍ଡା** କହନ୍ତି ଏବଂ ଯାହା ତତ୍ତ୍ୱନିର୍ଣ୍ଣୟ ଉଦ୍ଦେଶ୍ୟରେ ଶୁଦ୍ଧଭାବରେ କରାଯାଏ, ତାହାକୁ **ବାଦ** କହନ୍ତି। 'ଜଳ୍ପ' ଓ 'ବିତଣ୍ଡା'ଦ୍ୱାରା ଦ୍ୱେଷ, କ୍ରୋଧ, ହିଂସା ଓ ଅଭିମାନାଦି ଦୋଷ ଉତ୍ପନ୍ନ ହୁଏ; ବାଦଦ୍ୱାରା ସତ୍ୟନିର୍ଣ୍ଣୟରେ ଓ କଲ୍ୟାଣ-ସାଧନରେ ସହାୟତା ମିଳେ। 'ଜଳ୍ପ' ଓ 'ବିତଣ୍ଡା' ତ୍ୟାଜ୍ୟ; କିନ୍ତୁ ଆବଶ୍ୟକ ହେଲେ 'ବାଦ' ଗ୍ରାହ୍ୟ। ଏହି ବିଶେଷତ୍ୱ ହେତୁ ଭଗବାନ୍ 'ବାଦ'କୁ ନିଜର ବିଭୂତି ବୋଲି କହିଛନ୍ତି।

**ଅକ୍ଷରାଣାମକାରୋଽସ୍ମି ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।**
**ଅହମେବାକ୍ଷୟଃ କାଲୋ ଧାତାହଂ ବିଶ୍ୱତୋମୁଖଃ ।। ୩୩ ।।**

**ଅନ୍ୱୟ–** **ଅହମ୍** = ମୁଁ; **ଅକ୍ଷରାଣାମ୍** = ଅକ୍ଷରମାନଙ୍କ ମଧ୍ୟରେ; **ଅକାରଃ** = 'ଅ'କାର ଅଟେ; **ଚ** = ଓ; **ସାମାସିକସ୍ୟ** = ସମାସମାନଙ୍କ ମଧ୍ୟରେ; **ଦ୍ୱନ୍ଦ୍ୱଃ** = ଦ୍ୱନ୍ଦ୍ୱନାମକ ସମାସ; **ଅସ୍ମି** = ଅଟେ; **ଅକ୍ଷୟଃ** = ଅକ୍ଷୟ; **କାଲଃ** = କାଳ ଅର୍ଥାତ୍ କାଳର ମଧ୍ୟ ମହାକାଳ; **ବିଶ୍ୱତୋମୁଖଃ** = ସର୍ବଦିଗରେ ମୁଖ ଥିବା ବିରାଟସ୍ୱରୂପ (ଓ); **ଧାତା** = (ସମସ୍ତଙ୍କର) ଧାରଣ-ପୋଷଣକାରୀ (ମଧ୍ୟ); **ଅହମ୍** = ମୁଁ; **ଏବ** = ହିଁ; **(ଅସ୍ମି)** = ଅଟେ।

**ମୁଁ ଅକ୍ଷରମାନଙ୍କ ମଧ୍ୟରେ 'ଅ'କାର ଓ ସମାସମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱନାମକ ସମାସ ଅଟେ। ମୁଁ ଅକ୍ଷୟ କାଳ ଅର୍ଥାତ୍ କାଳର ମଧ୍ୟ ମହାକାଳ ଅଟେ। ସକଳଦିଗରେ ମୁଖ ଥିବା (ବିରାଟସ୍ୱରୂପ) ସମସ୍ତଙ୍କର ଧାରଣପୋଷଣକାରୀ ମଧ୍ୟ ମୁଁ ହିଁ ଅଟେ।। ୩୩ ।।**

**ପ୍ରଶ୍ନ –** ଅକ୍ଷରମାନଙ୍କ ମଧ୍ୟରେ 'ଅ'କାରକୁ ଭଗବାନ୍ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ସ୍ୱର ଓ ବ୍ୟଞ୍ଜନ ଆଦି ଯେତେ ବି ଅକ୍ଷର ଅଛି, ସେସବୁଙ୍କ ମଧ୍ୟରେ 'ଅ'କାର ସମସ୍ତଙ୍କର ଆଦି ଏବଂ ତାହା ହିଁ ସବୁ ଅକ୍ଷରମଧ୍ୟରେ ବ୍ୟାପ୍ତ ଅଟେ। ଶ୍ରୁତିରେ ମଧ୍ୟ କୁହାଯାଇଛି–

**'ଅକାରୋ ବୈ ସର୍ବା ବାକ୍'** (ଐତରେୟ ବ୍ରା.ଉ. ୩/୬)।

ଅର୍ଥାତ୍ 'ସମସ୍ତ ବାଣୀ 'ଅ'କାର ଅଟେ।' ଏହି ସବୁ କାରଣରୁ 'ଅ'କାର ସବୁବର୍ଣ୍ଣମଧ୍ୟରେ ଶ୍ରେଷ୍ଠ। ତେଣୁ ଭଗବାନ୍ ଅକାରକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** ବହୁପ୍ରକାର ସମାସଭିତରୁ ଦ୍ୱନ୍ଦ୍ୱ ସମାସକୁ ଭଗବାନ୍ ନିଜର ବିଭୂତି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଦ୍ୱନ୍ଦ୍ୱ ସମାସରେ ଦୁଇ ପଦର ଅର୍ଥର ପ୍ରାଧାନ୍ୟ ★ ରହୁଥିବାରୁ, ତାହା ଅନ୍ୟ ସମାସମାନଙ୍କ

★ ସଂସ୍କୃତ ବ୍ୟାକରଣ ଅନୁସାରେ ସମାସ ଚାରିପ୍ରକାର ୧. ଅବ୍ୟୟୀଭାବ, ୨. ତତ୍ପୁରୁଷ, ୩. ବହୁବ୍ରୀହି ଓ ୪. ଦ୍ୱନ୍ଦ୍ୱ। କର୍ମଧାରୟ ଓ ଦ୍ୱିଗୁ– ଏ ଦୁହେଁ ତତ୍ପୁରୁଷର ହିଁ ଅନ୍ତର୍ଗତ। ଅବ୍ୟୟୀଭାବ ସମାସରେ ପୂର୍ବ ଓ ଉତ୍ତର– ଏହି ଦୁଇପଦ ମଧ୍ୟରୁ ପୂର୍ବ ପଦର ଅର୍ଥର ପ୍ରାଧାନ୍ୟ ରହେ, ଯଥା– ଅଧିହରି– ଏଠାରେ ଅବ୍ୟୟୀଭାବ ସମାସ; ଏହାର ଅର୍ଥ ହେଉଛି 'ହରୌ' ଅର୍ଥାତ୍ ହରିଙ୍କ ଠାରେ; ସପ୍ତମୀ ବିଭକ୍ତି ହିଁ 'ଅଧି' ଶବ୍ଦର ଅର୍ଥ ଏବଂ ଏହାକୁ ହିଁ ବ୍ୟକ୍ତ କରିବା ଏଠାରେ ଅଭୀଷ୍ଟ। ତତ୍ପୁରୁଷ ସମାସରେ ଉତ୍ତରପଦର ଅର୍ଥର ପ୍ରାଧାନ୍ୟ ରହେ, ଯଥା– 'ସୀତାପତିଂ ବନ୍ଦେ', ଏହି ବାକ୍ୟର ଅନ୍ତର୍ଗତ 'ସୀତାପତି' ଶବ୍ଦରେ ତତ୍ପୁରୁଷ ସମାସ ହୋଇଛି। ଏହି ବାକ୍ୟର ଅର୍ଥ ହେଉଛି– ସୀତାଙ୍କ ପତି ଶ୍ରୀରାମଚନ୍ଦ୍ରଙ୍କୁ ମୁଁ ପ୍ରଣାମ କରୁଛି। ଏଠାରେ ସୀତା ଓ ପତି ଏହି ଦୁଇପଦ ମଧ୍ୟରେ 'ପତି' ପଦର ଅର୍ଥରେ ହିଁ ପ୍ରାଧାନ୍ୟ ରହିଛି। କାରଣ 'ସୀତାପତି' ଶବ୍ଦ 'ଶ୍ରୀରାମ'ଙ୍କୁ ହିଁ ବୁଝାଉଛି। ବହୁବ୍ରୀହି ସମାସରେ ଅନ୍ୟ ପଦର ଅର୍ଥର ପ୍ରାଧାନ୍ୟ ରହେ ଯଥା 'ପୀତାମ୍ବରଃ'– ଏଠାରେ ବହୁବ୍ରୀହି ସମାସ ହୋଇଛି। ଏହାର ଅର୍ଥ– ଯାହାର ବସ୍ତ୍ର ହଳଦିଆ, ସେହି ବ୍ୟକ୍ତି। ଏଠାରେ ପୂର୍ବପଦ 'ପୀତ' ଓ ଉତ୍ତରପଦ 'ଅମ୍ବର'। ଏଥିରୁ କୌଣସି ପଦର ପ୍ରାଧାନ୍ୟ ନାହିଁ। ଏହି ଦୁଇଟିଦ୍ୱାରା ଯେଉଁ 'ଅନ୍ୟ ବ୍ୟକ୍ତି'(ଭଗବାନ୍)ରୂପକ ଅର୍ଥ ବ୍ୟକ୍ତ ହେଉଛି, ତା'ର ପ୍ରାଧାନ୍ୟ ରହିଛି। ଦ୍ୱନ୍ଦ୍ୱ ସମାସରେ ଦୁଇଟିଯାକ ପଦର ଅର୍ଥର ପ୍ରାଧାନ୍ୟ ରହେ– ଯଥା 'ରାମଲକ୍ଷ୍ମଣୌ ପଶ୍ୟ'– ରାମ ଓ ଲକ୍ଷ୍ମଣଙ୍କୁ ଦେଖ। ଏଠାରେ ରାମ ଓ ଲକ୍ଷ୍ମଣ– ଉଭୟଙ୍କୁ ହିଁ ଦେଖିବାକୁ କୁହାଯାଉଛି। ଏଣୁ ଦୁଇଟିଯାକ ପଦର ଅର୍ଥର ପ୍ରାଧାନ୍ୟ ରହିଛି।

ଅପେକ୍ଷା ଶ୍ରେଷ୍ଠ; ଅତଏବ ଭଗବାନ୍ ତାହାକୁ ନିଜର ବିଭୂତି ବୋଲି ଗ୍ରହଣ କରିଛନ୍ତି ।

**ପ୍ରଶ୍ନ –** ତିରିଶ ଶ୍ଳୋକରେ ଯେଉଁ କାଳକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି, ସେହି 'କାଳ' ଏବଂ ଏହି ଶ୍ଳୋକରେ କହିଥିବା କାଳ ମଧ୍ୟରେ କି ପାର୍ଥକ୍ୟ ରହିଛି ?

**ଉତ୍ତର –** ତିରିଶି ଶ୍ଳୋକରେ ଯେଉଁ କାଳର ବର୍ଣ୍ଣନା ହୋଇଛି, ତାହା କଳ୍ପ, ଯୁଗ, ବର୍ଷ, ଅୟନ, ମାସ, ଦିନ, ଘଡ଼ି ଓ କ୍ଷଣ ପ୍ରଭୃତି ନାମରେ କୁହାଯାଉଥିବା 'ସମୟ'ର ବାଚକ । ତାହା ହେଉଛି ପ୍ରକୃତିର କାର୍ଯ୍ୟ । ମହାପ୍ରଳୟବେଳେ ତାହା ରହେ ନାହିଁ । ଏଣୁ ତାହା 'ଅକ୍ଷୟ' ନୁହେଁ । କିନ୍ତୁ ଏହି ଶ୍ଳୋକରେ ଯେଉଁ କାଳର ବର୍ଣ୍ଣନା ହୋଇଛି, ତାହା ସନାତନ, ଶାଶ୍ୱତ, ଅନାଦି, ଅନନ୍ତ ଓ ନିତ୍ୟ ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍ ସ୍ୱରୂପ । ତେଣୁ ଏହା ସହିତ 'ଅକ୍ଷୟ' ବିଶେଷଣ ଦିଆଯାଇଛି । ଅତଏବ 'ତିରିଶ' ଶ୍ଳୋକରେ ବର୍ଣ୍ଣିତ 'କାଳ' ଓ ଏଥିରେ ବର୍ଣ୍ଣିତ 'କାଳ' ମଧ୍ୟରେ ବହୁ ପ୍ରଭେଦ ରହିଛି । ତିରିଶ ଶ୍ଳୋକର 'କାଳ' ପ୍ରକୃତିର କାର୍ଯ୍ୟ ଓ ଏହା ହେଉଛି ପ୍ରକୃତିଠାରୁ ସର୍ବଥା ଅତୀତ । ★

**ପ୍ରଶ୍ନ –** 'ସବୁ ଦିଗରେ ମୁଖ ଥିବା ଧାତା ଅର୍ଥାତ୍ ସମସ୍ତଙ୍କର ଧାରଣ-ପୋଷଣକାରୀ ମୁଁ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଭଗବାନ୍ ବିରାଟ ପୁରୁଷଙ୍କ ସହିତ ନିଜର ଏକତ୍ୱ ପ୍ରତିପାଦନ କରିଛନ୍ତି । ଅଭିପ୍ରାୟ ହେଲା, "ସମସ୍ତଙ୍କର ଧାରଣ-ପୋଷଣ କରୁଥିବା ସର୍ବବ୍ୟାପୀ ବିଶ୍ୱରୂପ ପରମେଶ୍ୱର ମୁଁ ହିଁ ଅଟେ । ସେ ମୋ ଠାରୁ ଭିନ୍ନ ଅନ୍ୟ କେହି ନୁହନ୍ତି ।"

## ମୃତ୍ୟୁଃ ସର୍ବହରଶ୍ଚାହମୁଦ୍ଭବଶ୍ଚ ଭବିଷ୍ୟତାମ୍ ।
## କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ ସ୍ମୃତିର୍ମେଧା ଧୃତିଃ କ୍ଷମା ।। ୩୪ ।।

**ଅନ୍ୱୟ –** **ଅହମ୍** = ମୁଁ; **ସର୍ବହରଃ** = ସମସ୍ତଙ୍କ ବିନାଶକ; **ମୃତ୍ୟୁଃ** = ମୃତ୍ୟୁ; **ଚ** = ଓ; **ଭବିଷ୍ୟତାମ୍** = ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କର; **ଉଦ୍ଭବଃ** = ଉତ୍ପତ୍ତିର କାରଣ; **ଚ** = ତଥା; **ନାରୀଣାମ୍** = ନାରୀମାନଙ୍କ ମଧ୍ୟରେ; **କୀର୍ତ୍ତିଃ** = କୀର୍ତ୍ତି; **ଶ୍ରୀଃ** = ଶ୍ରୀ; **ବାକ୍** = ବାକ୍; **ସ୍ମୃତିଃ** = ସ୍ମୃତି; **ମେଧା** = ମେଧା; **ଧୃତିଃ** = ଧୃତି; **ଚ** = ଓ; **କ୍ଷମା** = କ୍ଷମା; **(ଅସ୍ମି)** = ଅଟେ ।

**ମୁଁ ସମସ୍ତଙ୍କୁ ବିନାଶ କରୁଥିବା ମୃତ୍ୟୁ ଏବଂ ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କ ଉତ୍ପତ୍ତିର ହେତୁ ଅଟେ ତଥା ନାରୀମାନଙ୍କ ମଧ୍ୟରେ କୀର୍ତ୍ତି, ଶ୍ରୀ, ବାକ୍, ସ୍ମୃତି, ମେଧା, ଧୃତି ଓ କ୍ଷମା ଅଟେ ।। ୩୪ ।।**

**ପ୍ରଶ୍ନ –** ସମସ୍ତଙ୍କର ବିନାଶକାରୀ ମୃତ୍ୟୁକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ହିଁ ମୃତ୍ୟୁରୂପ ହୋଇ ସମସ୍ତଙ୍କୁ ସଂହାର କରନ୍ତି । ଅତଏବ ଏଠାରେ ଭଗବାନ୍ ମୃତ୍ୟୁକୁ ନିଜର ସ୍ୱରୂପ ବୋଲି କହିଛନ୍ତି । ନବମ ଅଧ୍ୟାୟର ଉଣେଇଶ ଶ୍ଳୋକରେ ମଧ୍ୟ କହିଛନ୍ତି, 'ମୃତ୍ୟୁ ଓ ଅମୃତ ମଧ୍ୟ ମୁଁ ହିଁ ଅଟେ ।'

**ପ୍ରଶ୍ନ –** ଭଗବାନ୍ ନିଜକୁ ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କ ଉତ୍ପତ୍ତିର ହେତୁ ବୋଲି କହିବାର ଅଭିପ୍ରାୟ କଣ ?

---

★ କାଳ ତିନି ପ୍ରକାର ରହିଛି; ଯଥା –

୧. ସମୟବାଚକ କାଳ । ୨. 'ପ୍ରକୃତି'ରୂପ କାଳ; ମହାପ୍ରଳୟପରେ ଯେତେ ସମୟପର୍ଯ୍ୟନ୍ତ ପ୍ରକୃତିର ସାମ୍ୟାବସ୍ଥା ରହେ, ତାହା ପ୍ରକୃତିରୂପୀ କାଳ ଓ ୩. ନିତ୍ୟ ଶାଶ୍ୱତ ବିଜ୍ଞାନାନନ୍ଦଘନ ପରମାତ୍ମା ।

ସମୟବାଚକ ସ୍ଥୂଳକାଳ ଅପେକ୍ଷା ବୁଦ୍ଧିର ଅଗମ୍ୟ ପ୍ରକୃତିରୂପୀ କାଳ ସୂକ୍ଷ୍ମ ଓ ଶ୍ରେଷ୍ଠ ଏବଂ ଏହି ପ୍ରକୃତିରୂପୀ କାଳଠାରୁ ପରମାତ୍ମାରୂପୀ କାଳ ଅତ୍ୟନ୍ତ ସୂକ୍ଷ୍ମ, ପରାତ୍ପର ଓ ପରମ ଶ୍ରେଷ୍ଠ । ବସ୍ତୁତଃ ପରମାତ୍ମା ଦେଶକାଳରୁ ସର୍ବଥା ରହିତ । ପରନ୍ତୁ ଯେଉଁଠି ପ୍ରକୃତି ଓ ତାଙ୍କ କାର୍ଯ୍ୟରୂପୀ ସଂସାରର ବର୍ଣ୍ଣନା କରାଯାଏ, ସେଠାରେ ସମସ୍ତଙ୍କୁ ଧାରା-ବୁଦ୍ଧି ଦେଉଥିବାରୁ ସେସବୁର ଅଧିଷ୍ଠାନରୂପୀ ବିଜ୍ଞାନାନନ୍ଦଘନ ପରମାତ୍ମା ହିଁ ବାସ୍ତବିକ 'କାଳ' ପଦବାଚ୍ୟ । ସେ ହିଁ 'ଅକ୍ଷୟ' କାଳ ।

**ଉତ୍ତର –** ଯେପରି ମୃତ୍ୟୁରୂପ ହୋଇ ଭଗବାନ୍ ସମସ୍ତଙ୍କୁ ବିନାଶ କରନ୍ତି ଅର୍ଥାତ୍ ସେମାନଙ୍କୁ ଶରୀରରୁ ବିୟୋଗ କରାନ୍ତି, ସେହିପରି ଭଗବାନ୍ ହିଁ ଅନ୍ୟ ଶରୀର ସହିତ ସେମାନଙ୍କର ସମ୍ବନ୍ଧ କରାଇ ସେମାନଙ୍କୁ ପୁଣି ଉତ୍ପନ୍ନ କରନ୍ତି – ଏହି ଭାବ ବ୍ୟକ୍ତ କରିବାପାଇଁ ସେ ନିଜକୁ ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କ ଉତ୍ପତ୍ତିର ହେତୁ ବୋଲି କହିଛନ୍ତି।

**ପ୍ରଶ୍ନ – କୀର୍ତ୍ତି, ଶ୍ରୀ, ବାକ୍, ସ୍ମୃତି, ମେଧା, ଧୃତି ଓ କ୍ଷମା –** ଏହି ସାତଟି କଣ? ଏମାନଙ୍କୁ ଭଗବାନ୍ ନିଜର ବିଭୂତି କହିବାର ଅଭିପ୍ରାୟ କଣ?

**ଉତ୍ତର –** ସ୍ୱାୟଂଭୁବ ମନୁଙ୍କ କନ୍ୟା ପ୍ରସୂତି ପ୍ରଜାପତି ଦକ୍ଷଙ୍କୁ ବିବାହ କରିଥିଲେ। ତାଙ୍କଠାରୁ ଚବିଶିଟି କନ୍ୟା ଜାତ ହୋଇଥିଲେ। **କୀର୍ତ୍ତି, ମେଧା, ଧୃତି, ସ୍ମୃତି** ଓ **କ୍ଷମା** ସେମାନଙ୍କର ଅନ୍ତର୍ଭୁକ୍ତ। ସେମାନଙ୍କ ମଧ୍ୟରେ **କୀର୍ତ୍ତି, ମେଧା** ଓ **ଧୃତି**ଙ୍କର ବିବାହ ଧର୍ମଙ୍କ ସହିତ ହୋଇଥିଲା। **ସ୍ମୃତି** ଅଙ୍ଗିରାଙ୍କୁ ଓ **କ୍ଷମା** ମହର୍ଷି ପୁଲହଙ୍କୁ ବିବାହ କରିଥିଲେ। ମହର୍ଷି ଭୃଗୁଙ୍କ କନ୍ୟାର ନାମ **ଶ୍ରୀ**, ଯେ କି ଦକ୍ଷକନ୍ୟା ଖ୍ୟାତିଙ୍କ ଗର୍ଭରୁ ଉତ୍ପନ୍ନ ହୋଇଥିଲେ। ଭଗବାନ୍ ବିଷ୍ଣୁ ତାହାଙ୍କ ପାଣିଗ୍ରହଣ କରିଥିଲେ ଓ **ବାକ୍** ବ୍ରହ୍ମାଙ୍କ କନ୍ୟା ଥିଲେ। ଏହି ସାତଜଣଙ୍କ ନାମ ଯେଉଁ ଯେଉଁ ଗୁଣ ନିର୍ଦ୍ଦେଶ କରୁଛି, ଏହି ସାତ ଜଣ ସେହି ସେହି ଗୁଣର ଅଧିଷ୍ଠାତୃଦେବତା ତଥା ସଂସାରର ସମସ୍ତ ସ୍ତ୍ରୀଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଗଣ୍ୟ ହୁଅନ୍ତି। ଅତଏବ ଭଗବାନ୍ ଏମାନଙ୍କୁ ନିଜର ବିଭୂତି ବୋଲି କହିଛନ୍ତି।

**ବୃହତ୍ସାମ ତଥା ସାମ୍ନାଂ ଗାୟତ୍ରୀ ଛନ୍ଦସାମହମ୍।**
**ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ॥ ୩୫ ॥**

**ଅନ୍ୱୟ –** **ତଥା** = ତଥା; **ସାମ୍ନାମ୍** = ଗାୟନଯୋଗ୍ୟ ଶ୍ରୁତିମାନଙ୍କ ମଧ୍ୟରେ; **ଅହମ୍** = ମୁଁ; **ବୃହତ୍ସାମ** = ବୃହତ୍ସାମ (ଓ); **ଛନ୍ଦସାମ୍** = ଛନ୍ଦମାନଙ୍କ ମଧ୍ୟରେ; **ଗାୟତ୍ରୀ** = ଗାୟତ୍ରୀ ଛନ୍ଦ (ତଥା); **ମାସାନାମ୍** = ମାସମାନଙ୍କ ମଧ୍ୟରେ; **ମାର୍ଗଶୀର୍ଷଃ** = ମାର୍ଗଶିର (ଓ); **ଋତୂନାମ୍** = ଋତୁମାନଙ୍କ ମଧ୍ୟରେ; **କୁସୁମାକରଃ** = ବସନ୍ତ; **ଅହମ୍, ଅସ୍ମି** = ମୁଁ ଅଟେ।

**ତଥା ମୁଁ ହେଉଛି ଗାୟନଯୋଗ୍ୟ ଶ୍ରୁତିମାନଙ୍କ ମଧ୍ୟରେ ବୃହତ୍ସାମ ଓ ଛନ୍ଦମାନଙ୍କ ମଧ୍ୟରେ ଗାୟତ୍ରୀ ଛନ୍ଦ ଏବଂ ମୁଁ ମାସମାନଙ୍କ ମଧ୍ୟରେ ମାର୍ଗଶିର ଓ ଋତୁମାନଙ୍କ ମଧ୍ୟରେ ବସନ୍ତ ଅଟେ॥ ୩୫ ॥**

**ପ୍ରଶ୍ନ –** ସାମବେଦକୁ ତ ଭଗବାନ୍ ପ୍ରଥମେ ହିଁ ନିଜର ସ୍ୱରୂପ ବୋଲି କହିଦେଇଛନ୍ତି (୧୦/୨୨), ପୁଣି ଏଠାରେ 'ବୃହତ୍ସାମ'କୁ ନିଜ ସ୍ୱରୂପ କହିବାର ଅଭିପ୍ରାୟ କଣ?

**ଉତ୍ତର –** ସାମବେଦର 'ରଥନ୍ତର' ଆଦି ସାମମାନଙ୍କ ମଧ୍ୟରେ ବୃହତ୍ସାମ ★ (ବୃହତ୍ ନାମକ ସାମ) ପ୍ରଧାନ ହୋଇଥିବାରୁ ସବୁଠାରୁ ଶ୍ରେଷ୍ଠ ଅଟେ। ତେଣୁ ଭଗବାନ୍ ଏଠାରେ 'ବୃହତ୍ସାମ'କୁ ନିଜର ସ୍ୱରୂପ ବୋଲି କହିଲେ।

**ପ୍ରଶ୍ନ –** ଛନ୍ଦମାନଙ୍କ ମଧ୍ୟରେ ଗାୟତ୍ରୀ ଛନ୍ଦକୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର –** ବେଦରେ ଯେତେ ବି ଛନ୍ଦୋବଦ୍ଧ ଋକ୍ (ମନ୍ତ୍ର) ରହିଛି, ସେସବୁ ମଧ୍ୟରେ ଗାୟତ୍ରୀ ପ୍ରଧାନ। ଶ୍ରୁତି, ସ୍ମୃତି, ଇତିହାସ ଓ ପୁରାଣ ଆଦି ଶାସ୍ତ୍ରରେ ଅନେକ ସ୍ଥାନରେ ଗାୟତ୍ରୀର ମହିମା ପୂର୍ଣ୍ଣ ହୋଇ ରହିଛି। ଗାୟତ୍ରୀର ଏହି ଶ୍ରେଷ୍ଠତା ହେତୁ ହିଁ ଭଗବାନ୍ ଗାୟତ୍ରୀକୁ ନିଜର ସ୍ୱରୂପ ବୋଲି କହିଛନ୍ତି। ★★

---

★ ସାମବେଦରେ 'ବୃହତ୍ସାମ'ନାମକ ଏକ ଗୀତିବିଶେଷ ଅଛି। ଏହାଦ୍ୱାରା ପରମେଶ୍ୱରଙ୍କୁ ସମ୍ରାଟରୂପରେ ସ୍ତୁତି କରାଯାଇଛି। 'ଅତିରାତ୍ର' ଯାଗରେ ଏହି ପୃଷ୍ଠସ୍ତୋତ୍ର ରହିଛି।

★★ ଗାୟତ୍ରୀର ମହିମାକୁ ନିମ୍ନଲିଖିତ ବାଣୀଦ୍ୱାରା କିଞ୍ଚିତ୍ ବର୍ଣ୍ଣନା ଦିଆଯାଇଛି –

**'ଗାୟତ୍ରୀ ଛନ୍ଦସାଂ ମାତେତି।'** (ନାରାୟଣୋପନିଷଦ୍ ୩୪) ଅର୍ଥାତ୍ 'ଗାୟତ୍ରୀ ସମସ୍ତ ବେଦଙ୍କର ମାତା ଅଟନ୍ତି।'

**ସର୍ବବେଦସାରଭୂତା ଗାୟତ୍ର୍ୟାସ୍ତୁ ସମର୍ଚ୍ଚନା। ବ୍ରହ୍ମାଦୟୋଽପି ସନ୍ଧ୍ୟାୟାଂ ତାଂ ଧ୍ୟାୟନ୍ତି ଜପନ୍ତି ଚ॥**

(ଦେବୀଭାଗବତ ୧୧/୧୬/୧୫)

ଅର୍ଥାତ୍ 'ଗାୟତ୍ରୀ ଉପାସନା ସମସ୍ତ ବେଦର ସାରଭୂତ। ବ୍ରହ୍ମା ଆଦି ଦେବତା ମଧ୍ୟ ସନ୍ଧ୍ୟାକାଳରେ ଗାୟତ୍ରୀଙ୍କର ଧ୍ୟାନ ଓ ଜପ କରନ୍ତି।' (ପରବର୍ତ୍ତୀ ପୃଷ୍ଠା ଦେଖନ୍ତୁ)

**ପ୍ରଶ୍ନ —** ମାସମାନଙ୍କ ମଧ୍ୟରେ ମାର୍ଗଶିରକୁ ଭଗବାନ୍ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର —** ମହାଭାରତକାଳରେ ମାସଗଣନା ମାର୍ଗଶିର ମାସଠାରୁ ହିଁ ଆରମ୍ଭ ହେଉଥିଲା (ମହା.ଅନୁଶାସନ ୧୦୬ ଓ ୧୦୯)। ତେଣୁ ଏହା ସବୁ ମାସ ମଧ୍ୟରେ ପ୍ରଥମ ମାସ। ଏହି ମାସରେ କରାଯାଉଥିବା ବ୍ରତ-ଉପବାସଗୁଡ଼ିକ ମହାନ୍ ଫଳଦାୟୀ ବୋଲି ଶାସ୍ତ୍ରରେ କୁହାଯାଇଛି। * ଏହି ମାସରେ ନୂଆ ଅନ୍ନର ଇଷ୍ଟି (ଯଜ୍ଞ) କରିବାକୁ ମଧ୍ୟ ବିଧାନ ରହିଛି। ବାଲ୍ମୀକୀୟ ରାମାୟଣରେ ଏହି ମାସକୁ ସମ୍ବତ୍ସରର ଭୂଷଣ ବୋଲି କୁହାଯାଇଛି। ତେଣୁ ଅନ୍ୟାନ୍ୟ ମାସ ଅପେକ୍ଷା ଏଥିରେ ଅନେକ ବିଶେଷତା ରହିଛି। ଏଣୁ ଭଗବାନ୍ ଏହାକୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ —** ଋତୁମାନଙ୍କ ମଧ୍ୟରେ ବସନ୍ତ ଋତୁକୁ ନିଜ ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ବସନ୍ତ ସବୁ ଋତୁମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସବୁ ଋତୁଙ୍କର ରାଜା। ଏହି ଋତୁରେ ବିନା ଜଳରେ ସବୁ ବନସ୍ପତି ସବୁଜିମାରେ ପୂର୍ଣ୍ଣ ହୋଇ ନୂତନ ପତ୍ର ଓ ପୁଷ୍ପରେ ସମନ୍ୱିତ ହୋଇଯା'ନ୍ତି। ଏହି ଋତୁରେ ଅଧିକ ଗରମ ରହେ ନାହିଁ, କି ଥଣ୍ଡା ରହେ ନାହିଁ। ଏହି ଋତୁରେ ପ୍ରାୟ ସବୁ ପ୍ରାଣୀଙ୍କୁ ଆନନ୍ଦ ମିଳିଥାଏ। ଅତଏବ ଭଗବାନ୍ ଏହାକୁ ନିଜର ସ୍ୱରୂପ ବୋଲି କହିଲେ।

## ଦ୍ୟୂତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହମ୍।
## ଜୟୋଽସ୍ମି ବ୍ୟବସାୟୋଽସ୍ମି ସତ୍ତ୍ୱଂ ସତ୍ତ୍ୱବତାମହମ୍॥ ୩୬ ॥

**ଅନ୍ୱୟ —** **ଅହମ୍** = ମୁଁ; **ଛଳୟତାମ୍** = ଛଳନାକାରୀମାନଙ୍କ ମଧ୍ୟରେ; **ଦ୍ୟୂତମ୍** = ଦ୍ୟୂତ; **ତେଜସ୍ୱିନାମ୍** = ପ୍ରଭାବଶାଳୀ ପୁରୁଷମାନଙ୍କର; **ତେଜଃ** = ପ୍ରଭାବ; **ଅସ୍ମି** = ଅଟେ; **ଅହମ୍** = ମୁଁ; **(ଜେତୃଣାମ୍)** = ବିଜେତାମାନଙ୍କର; **ଜୟଃ** = ବିଜୟ; **ଅସ୍ମି** = ଅଟେ; **(ବ୍ୟବସାୟିନାମ୍)** = ନିଶ୍ଚୟ କରୁଥିବା ଲୋକଙ୍କର; **ବ୍ୟବସାୟଃ** = ନିଶ୍ଚୟ; **ସତ୍ତ୍ୱବତାମ୍** = ସାତ୍ତ୍ୱିକ ପୁରୁଷମାନଙ୍କର; **ସତ୍ତ୍ୱମ୍** = ସାତ୍ତ୍ୱିକଭାବ; **ଅସ୍ମି** = ଅଟେ।

---

**ଗାୟତ୍ର୍ୟୁପାସନା ନିତ୍ୟା ସର୍ବବେଦୈଃ ସମୀରିତା। ଯୟା ବିନା ତ୍ୱଧଃପାତୋ ବ୍ରାହ୍ମଣସ୍ୟାସ୍ତି ସର୍ବଥା॥** (ଦେବୀଭାଗବତ ୧୨/୮/୮୯)

ଅର୍ଥାତ୍ 'ଗାୟତ୍ରୀଙ୍କ ଉପାସନାକୁ ସମସ୍ତ ବେଦ ନିତ୍ୟ (ଅନିବାର୍ଯ୍ୟ) ବୋଲି କହିଛନ୍ତି। ଏହି ଗାୟତ୍ରୀଙ୍କ ଉପାସନା ବିନା ବ୍ରାହ୍ମଣର ତ ସବୁପ୍ରକାରେ ଅଧଃପତନ ହୋଇଥାଏ।'

**ଅଭୀଷ୍ଟଂ ଲୋକମାପ୍ନୋତି ପ୍ରାପ୍ନୁୟାତ୍ କାମମୀପ୍ସିତମ୍। ଗାୟତ୍ରୀ ବେଦଜନନୀ ଗାୟତ୍ରୀ ପାପନାଶିନୀ॥**
**ଗାୟତ୍ର୍ୟାଃ ପରମଂ ନାସ୍ତି ଦିବି ଚେହ ଚ ପାବନମ୍। ହସ୍ତତ୍ରାଣପ୍ରଦା ଦେବୀ ପତତାଂ ନରକାର୍ଣ୍ଣବେ॥**

(ଶଙ୍ଖସ୍ମୃତି ୧୨/୨୪-୨୫)

ଅର୍ଥାତ୍ 'ଗାୟତ୍ରୀ ଉପାସନା କରୁଥିବା ଦ୍ୱିଜ ନିଜର ଅଭୀଷ୍ଟ ଲୋକ ଏବଂ ମନୋବାଞ୍ଛିତ ଭୋଗ ପ୍ରାପ୍ତ ହୁଏ। ଗାୟତ୍ରୀ ସମସ୍ତ ବେଦର ଜନନୀ ଓ ସମସ୍ତ ପାପକୁ ନଷ୍ଟ କରନ୍ତି। ସ୍ୱର୍ଗଲୋକରେ ତଥା ପୃଥିବୀରେ ଗାୟତ୍ରୀଠାରୁ ବଳି ପବିତ୍ରକାରୀ ଅନ୍ୟ କିଛି ବସ୍ତୁ ନାହିଁ। ଗାୟତ୍ରୀ ଦେବୀ ନରକସମୁଦ୍ରରେ ବୁଡ଼ିଯାଉଥିବା ଲୋକଙ୍କୁ ହାତ ବଢ଼ାଇ ରକ୍ଷା କରିଥାନ୍ତି।'

**ଗାୟତ୍ର୍ୟାସ୍ତୁ ପରଂ ନାସ୍ତି ଶୋଧନଂ ପାପକର୍ମଣାମ୍। ମହାବ୍ୟାହୃତିସଂଯୁକ୍ତାଂ ପ୍ରଣବେନ ଚ ସଂଜପେତ୍॥**

(ସଂବର୍ତ୍ତସ୍ମୃତି ୨୧୮)

'ଗାୟତ୍ରୀଠାରୁ ବଳି ପାପକର୍ମଶୋଧକ (ପ୍ରାୟଶ୍ଚିତ୍ତ) ଅନ୍ୟ କିଛି ନାହିଁ। ପ୍ରଣବ (ଓଁକାର) ସହିତ ତିନି ମହାବ୍ୟାହୃତିଯୁକ୍ତ ଗାୟତ୍ରୀମନ୍ତ୍ର ଜପ କରିବା ଉଚିତ।'

**ନାସ୍ତି ଗଙ୍ଗାସମଂ ତୀର୍ଥଂ ନ ଦେବଃ କେଶବାତ୍ପରଃ। ଗାୟତ୍ର୍ୟାସ୍ତୁ ପରଂ ଜପ୍ୟଂ ନ ଭୂତଂ ନ ଭବିଷ୍ୟତି॥**

(ବୃହଦ୍ୟୋଗିଯାଜ୍ଞବଲ୍କ୍ୟ ୧୦/୧୦)

ଅର୍ଥାତ୍ 'ଗଙ୍ଗାସମାନ ତୀର୍ଥ ନାହିଁ, ଶ୍ରୀବିଷ୍ଣୁଭଗବାନଙ୍କ ଠାରୁ ବଳି ଦେବତା ନାହାନ୍ତି ଏବଂ ଗାୟତ୍ରୀଠାରୁ ବଳି ଜପଯୋଗ୍ୟ ମନ୍ତ୍ର ହୋଇ ନାହିଁ, କି ହେବ ନାହିଁ।'

* **ଶୁକ୍ଳେ ମାର୍ଗଶିରେ ପକ୍ଷେ ଯୋଷିଦ୍‌ଭର୍ତ୍ତୁରନୁଜ୍ଞୟା। ଆରଭେତ ବ୍ରତମିଦଂ ସାର୍ବକାମିକମାଦିତଃ।** (ଶ୍ରୀମଦ୍‌ଭାଗବତ- ୬/୧୯/୨)

ଅର୍ଥାତ୍ 'ପ୍ରଥମରୁ ହିଁ ମାର୍ଗଶିର ଶୁକ୍ଳପକ୍ଷରେ ସ୍ତ୍ରୀ ନିଜ ପତିର ଆଜ୍ଞା ନେଇ ସର୍ବକାମପ୍ରଦ ଏହି ପୁଂସବନ-ବ୍ରତ ଆରମ୍ଭ କରିବା ଉଚିତ।'

**ମୁଁ ଛଳନାକାରୀମାନଙ୍କ ମଧ୍ୟରେ ଜୁଆ ଓ ପ୍ରଭାବଶାଳୀ ପୁରୁଷମାନଙ୍କର ପ୍ରଭାବ ଅଟେ। ମୁଁ ବିଜେତାମାନଙ୍କର ବିଜୟ, ନିଶ୍ଚୟକାରୀମାନଙ୍କର ନିଶ୍ଚୟ ଏବଂ ସାତ୍ତ୍ୱିକପୁରୁଷମାନଙ୍କର ସାତ୍ତ୍ୱିକ ଭାବ ଅଟେ।। ୩୬ ।।**

**ପ୍ରଶ୍ନ –** ଦ୍ୟୂତ ଅର୍ଥାତ୍ ଜୁଆଖେଳ ତ ଅତ୍ୟନ୍ତ ଖରାପ କାର୍ଯ୍ୟ ଓ ଶାସ୍ତ୍ରମାନେ ଏହାକୁ ସମ୍ପୂର୍ଣ୍ଣ ନିଷେଧ କରିଛନ୍ତି; ଏହାକୁ ଭଗବାନ୍ ନିଜର ସ୍ୱରୂପ ବୋଲି କାହିଁକି କହିଲେ? ଯଦି ଏହା ଭଗବାନଙ୍କର ହିଁ ସ୍ୱରୂପ, ତେବେ ପୁଣି ଏହା ଖେଳିବାରେ ଆପତ୍ତି କଣ?

**ଉତ୍ତର –** ସଂସାରରେ ଉତ୍ତମ, ମଧ୍ୟମ ଓ ଅଧମ — ଯେତେ ବି ଜୀବ ଓ ପଦାର୍ଥ ଅଛନ୍ତି, ସମସ୍ତଙ୍କ ମଧ୍ୟରେ ଭଗବାନ୍ ବ୍ୟାପ୍ତ ହୋଇ ରହିଛନ୍ତି ଏବଂ ଭଗବାନଙ୍କ ସତ୍ତା-ସ୍ଫୂର୍ତ୍ତି ପାଇ ସମସ୍ତେ କ୍ରିୟାଶୀଳ ହୁଅନ୍ତି। ଏପରି ଗୋଟିଏ ବି ପଦାର୍ଥ ନାହିଁ, ଯାହା କି ଭଗବାନଙ୍କ ସତ୍ତା ଓ ଶକ୍ତିରୁ ରହିତ। ଏହିପରି ସବୁପ୍ରକାର ସାତ୍ତ୍ୱିକ, ରାଜସ ଓ ତାମସ ଜୀବ ଏବଂ ପଦାର୍ଥମାନଙ୍କ ମଧ୍ୟରେ ଯେ ବିଶେଷ ଗୁଣ, ବିଶେଷ ପ୍ରଭାବ ଓ ବିଶେଷ ଚମତ୍କାରରେ ଯୁକ୍ତ, ତାହାରି ଠାରେ ଭଗବାନଙ୍କ ସତ୍ତା ଓ ଶକ୍ତିର ବିଶେଷ ବିକାଶ ହୋଇଥାଏ। ସେହିଦୃଷ୍ଟିରୁ ଏଠାରେ ଭଗବାନ୍ ଅତି ସଂକ୍ଷେପରେ ଦେବତା, ଦୈତ୍ୟ, ମନୁଷ୍ୟ, ପଶୁ, ପକ୍ଷୀ ଓ ସର୍ପ ଆଦି ଚେତନ ପଦାର୍ଥ ତଥା ବଜ୍ର, ଇନ୍ଦ୍ରିୟ, ମନ, ସମୁଦ୍ର ପ୍ରଭୃତି ଜଡ଼ ପଦାର୍ଥ ସହିତ ଜୟ, ନିଶ୍ଚୟ, ତେଜ, ନୀତି, ଜ୍ଞାନ ଆଦି ଭାବର ମଧ୍ୟ ବର୍ଣ୍ଣନା କରିଛନ୍ତି। ସଂକ୍ଷେପରେ ସମସ୍ତଙ୍କର ବର୍ଣ୍ଣନା ହୋଇଯିବା-ପାଇଁ ପ୍ରଧାନ ପ୍ରଧାନ ସମଷ୍ଟିବିଭାଗର ନାମ କୁହାଯାଇଛି। ଅଭିପ୍ରାୟ ଏହି ଯେ, ଯେଉଁ ଯେଉଁ ବ୍ୟକ୍ତି, ପଦାର୍ଥ, କ୍ରିୟା ବା ଭାବର ମନରେ ଚିନ୍ତନ ହେବାକୁ ଲାଗେ, ସେହିସବୁଥିରେ ଭଗବାନଙ୍କୁ ହିଁ ଚିନ୍ତା କରିବା ଉଚିତ। ଏହି କାରଣରୁ ଛଳନାକାରୀଙ୍କ ମଧ୍ୟରେ ଦ୍ୟୂତକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି। ସେଥିରେ ପ୍ରବୃତ୍ତ କରିବା ଉଦ୍ଦେଶ୍ୟରେ ତାହା ଉତ୍ତମ ବୋଲି କହି ନାହାନ୍ତି।

ଭଗବାନ୍ ତ ଭୀଷଣ କ୍ରୂର ଓ ହିଂସ୍ରକ ସିଂହକୁ ଓ ମଗରକୁ ଏବଂ ସହଜରେ ବିନାଶ କରୁଥିବା ଅଗ୍ନିକୁ ତଥା ସର୍ବସଂହାରକାରୀ ମୃତ୍ୟୁକୁ ମଧ୍ୟ ନିଜର ସ୍ୱରୂପ ବୋଲି କହିଛନ୍ତି। ତା'ର ଅଭିପ୍ରାୟ କିନ୍ତୁ ଏହା ନୁହେଁ ଯେ, କୌଣସି ମନୁଷ୍ୟ ଯାଇ ସିଂହ ବା ମଗର ସହିତ ଖେଳୁ, ନିଆଁକୁ ତେଇଁପଡୁ ଅଥବା ଜାଣିଶୁଣି ମୃତ୍ୟୁମୁଖରେ ପଡୁ। ଏସବୁ କରିବାରେ ଯେଉଁ ବିପଦ ରହିଛି, ଜୁଆ ଖେଳିବାରେ ମଧ୍ୟ ସେହି ବିପଦ ରହିଛି।

**ପ୍ରଶ୍ନ –** 'ପ୍ରଭାବ', 'ବିଜୟ', 'ନିଶ୍ଚୟ' ଓ 'ସାତ୍ତ୍ୱିକଭାବ'କୁ ଭଗବାନ୍ ନିଜ ସ୍ୱରୂପ କହିବାର ଅଭିପ୍ରାୟ କଣ?

**ଉତ୍ତର –** ଏହି ଚାରୋଟିଯାକ ଗୁଣ ଭଗବତ୍‌ପ୍ରାପ୍ତିରେ ସହାୟକ। ଅତଏବ ଭଗବାନ୍ ଏଗୁଡ଼ିକୁ ନିଜର ସ୍ୱରୂପ ବୋଲି କହିଛନ୍ତି। ଏହି ଚାରିଗୁଣକୁ ନିଜର ସ୍ୱରୂପ ବୋଲି କହି ଭଗବାନ୍ ଏହି ଭାବ ମଧ୍ୟ ଦେଖାଇଛନ୍ତି ଯେ, ତେଜସ୍ୱୀ ପ୍ରାଣୀମାନଙ୍କ ଠାରେ ଯେଉଁ ତେଜ ବା ପ୍ରଭାବ ଥାଏ, ତାହା ପ୍ରକୃତରେ ତାଙ୍କର ନିଜର (ଭଗବାନଙ୍କର) ହିଁ ଅଟେ। ଯେଉଁ ମନୁଷ୍ୟ ତାହାକୁ ନିଜର ଶକ୍ତି ବୋଲି ଭାବି ଅଭିମାନ କରେ, ସେ ଭୁଲ କରେ। ଠିକ୍ ସେହିପରି ବିଜୟ ଲାଭ କରୁଥିବା ଲୋକଙ୍କର ବିଜୟ, ନିଶ୍ଚୟ କରୁଥିବା ଲୋକଙ୍କର ନିଶ୍ଚୟ ଓ ସାତ୍ତ୍ୱିକ ପୁରୁଷଙ୍କର ସାତ୍ତ୍ୱିକଭାବ – ଏସବୁ ଗୁଣ ମଧ୍ୟ ଭଗବାନଙ୍କର ଅଟେ। ଏଥିପାଇଁ ଅଭିମାନ କରିବା ମଧ୍ୟ ଅତ୍ୟନ୍ତ ମୂର୍ଖତା। * ଏହା ଛଡ଼ା ଏ କଥନରେ ଏହି ଭାବ ମଧ୍ୟ ଅଛି ଯେ, ଯେଉଁ ଯେଉଁମାନଙ୍କ ଠାରେ ଉପରୋକ୍ତ ଗୁଣମାନ ଅଛି, ସେମାନଙ୍କ ଠାରେ ଭଗବାନଙ୍କ ତେଜର ଆଧିକ୍ୟ ରହିଛି ବୋଲି ବୁଝି ସେମାନଙ୍କୁ ଶ୍ରେଷ୍ଠ ମାନିବା ଉଚିତ।

---

★ କେନ-ଉପନିଷଦରେ ଗୋଟିଏ କଥା ଅଛି :– ଥରେ ସ୍ୱର୍ଗର ଦେବତାମାନେ ପରମାତ୍ମାଙ୍କ ପ୍ରତାପରେ ଅସୁରମାନଙ୍କୁ ପରାସ୍ତ କରିଦେଇ ବିଜୟ ଲାଭ କଲେ। ଦେବତାମାନଙ୍କର କୀର୍ତ୍ତି ଓ ମହିମା ସବୁଆଡ଼େ ବ୍ୟାପିଗଲା। ବିଜୟୋନ୍ମତ୍ତ ଦେବତାମାନେ ଭଗବାନଙ୍କୁ ଭୁଲିଯାଇ କହିବାକୁ ଲାଗିଲେ, ''ଆମର ହିଁ ଜୟ ହେଲା। ଆମେମାନେ ଆମ ପରାକ୍ରମ ଓ ବୁଦ୍ଧିବଳରେ ଦୈତ୍ୟମାନଙ୍କୁ ଦମନ କଲୁ। ତେଣୁ ଲୋକମାନେ ଆମକୁ ପୂଜା କରୁଛନ୍ତି ଓ ଆମ ବିଜୟସଂଗୀତ ଗାଉଛନ୍ତି।'' ଦେବତାମାନଙ୍କ ଅଭିମାନ ନାଶ କରି ସେମାନଙ୍କର ଉପକାର କରିବାକୁ ପରମାତ୍ମା ବ୍ରହ୍ମ ନିଜ ଲୀଳାରେ ଏପରି ଏକ ଅଦ୍ଭୁତ ରୂପ ପ୍ରକଟ କଲେ ଯେ, (ପରବର୍ତ୍ତୀ ପୃଷ୍ଠା ଦେଖନ୍ତୁ)

## ବୃଷ୍ଣୀନାଂ ବାସୁଦେବୋଽସ୍ମି ପାଣ୍ଡବାନାଂ ଧନଞ୍ଜୟଃ ।
## ମୁନୀନାମପ୍ୟହଂ ବ୍ୟାସଃ କବୀନାମୁଶନା କବିଃ ।। ୩୭ ।।

**ଅନ୍ୱୟ—** **ବୃଷ୍ଣୀନାମ୍** = ବୃଷ୍ଣିବଂଶୀମାନଙ୍କ ମଧ୍ୟରେ; **ବାସୁଦେବଃ** = ବାସୁଦେବ (ଅର୍ଥାତ୍ ମୁଁ ସ୍ୱୟଂ, ତୁମ ସଖା); **ପାଣ୍ଡବାନାମ୍** = ପାଣ୍ଡବମାନଙ୍କ ମଧ୍ୟରେ; **ଧନଞ୍ଜୟଃ** = ଧନଞ୍ଜୟ ଅର୍ଥାତ୍ ତୁମେ; **ମୁନୀନାମ୍** = ମୁନିମାନଙ୍କ ମଧ୍ୟରେ; **ବ୍ୟାସଃ** = ବେଦବ୍ୟାସ (ଓ); **କବୀନାମ୍** = କବିମାନଙ୍କ ମଧ୍ୟରେ; **ଉଶନା** = ଶୁକ୍ରାଚାର୍ଯ୍ୟ; **କବିଃ** = କବି; **ଅପି** = ମଧ୍ୟ; **ଅହମ୍** = ମୁଁ (ହିଁ); **ଅସ୍ମି** = ଅଟେ ।

---

ତାହାଙ୍କୁ ଦେଖି ଦେବତାମାନଙ୍କର ବୁଦ୍ଧି ବଣା ହୋଇଗଲା । ଦେବତାମାନେ ଏହି ଯକ୍ଷରୂପଧାରୀ ଅଦ୍ଭୁତ ପୁରୁଷଙ୍କ ପରିଚୟ ପାଇବାପାଇଁ ସେମାନଙ୍କର ଅଗ୍ରଣୀ ଅଗ୍ନିଦେବଙ୍କୁ କହିଲେ, ''ହେ ଜାତବେଦ ! ଆମ ସମସ୍ତଙ୍କ ଅପେକ୍ଷା ଆପଣ ଅଧିକ ତେଜସ୍ୱୀ; ଏହି ଯକ୍ଷରୂପଧାରୀ ପ୍ରକୃତରେ କିଏ ? ତାହା ବୁଝି କହନ୍ତୁ ।'' ଅଗ୍ନି କହିଲେ, ''ଠିକ୍ ଅଛି; ମୁଁ ତା'ର ପରିଚୟ ନେଇ ଆସୁଛି ।'' ଏହା କହି, ଅଗ୍ନିଦେବ ସେହି ଯକ୍ଷରୂପଧାରୀଙ୍କ ନିକଟକୁ ଗଲେ; କିନ୍ତୁ ତାଙ୍କ ନିକଟରେ ପହଞ୍ଚିବାମାତ୍ରେ ତାଙ୍କର ତେଜରେ ଏପରି ଚମକିପଡ଼ିଲେ ଯେ, କଥା କହିବାକୁ ମଧ୍ୟ ତାଙ୍କର ସାହସ ହେଲା ନାହିଁ । ଶେଷରେ ସେହି ଯକ୍ଷରୂପୀ ବ୍ରହ୍ମ ଅଗ୍ନିଙ୍କୁ ପଚାରିଲେ, ''ତୁମେ କିଏ ?'' ଅଗ୍ନି କହିଲେ, ''ମୋର ନାମ ପ୍ରସିଦ୍ଧ; ମୋତେ ଅଗ୍ନି କହନ୍ତି ଓ ଜାତବେଦ ମଧ୍ୟ କହନ୍ତି ।'' ବ୍ରହ୍ମ ପୁଣି ପଚାରିଲେ, ''ଏସବୁ ତ ଠିକ୍; କିନ୍ତୁ ହେ ଅଗ୍ନିଦେବ ! ତୁମପାଖରେ କିପ୍ରକାର ସାମର୍ଥ୍ୟ ଅଛି ? ତୁମେ କ'ଣ କରିପାର ?'' ଅଗ୍ନି କହିଲେ, ''ହେ ଯକ୍ଷ ! ଏହି ପୃଥିବୀ ଓ ଅନ୍ତରିକ୍ଷରେ ଯାହା କିଛି ବି ସ୍ଥାବର-ଜଙ୍ଗମ ପଦାର୍ଥ ରହିଛି, ସେସବୁକୁ ମୁଁ ଜାଳି ଭସ୍ମ କରିଦେଇପାରେ ।''

ବ୍ରହ୍ମ ତାଙ୍କ ଆଗରେ ଖଣ୍ଡିଏ କୁଟା ଥୋଇଦେଇ କହିଲେ, ''ଏହି କୁଟାଟି ତୁମେ ଜାଳିଦିଅ ।'' ଅଗ୍ନିଦେବତା ନିଜର ପୂରା ତେଜରେ କୁଟାଟି ଜାଳିବାକୁ ସକଳପ୍ରକାର ଯତ୍ନ କଲେ, କିନ୍ତୁ କୁଟାଟିକୁ ଜାଳିପାରିଲେ ନାହିଁ । ଲଜ୍ଜାରେ ତାଙ୍କ ମୁଣ୍ଡ ନଇଁପଡ଼ିଲା । ଶେଷରେ ଯକ୍ଷଙ୍କୁ କିଛି ନ କହି ଅଗ୍ନିଦେବ ମୁହଁ ପୋତି ଦେବତାମାନଙ୍କ ନିକଟକୁ ଫେରି ଆସିଲେ ଏବଂ କହିଲେ, ''ଏହି ଯକ୍ଷ କିଏ, ମୁଁ ତ ଜାଣିପାରିଲି ନାହିଁ ।''

ଏହା ପରେ ବାୟୁଦେବ ଯକ୍ଷଙ୍କ ନିକଟକୁ ଗଲେ, କିନ୍ତୁ ତାଙ୍କ ଦଶା ମଧ୍ୟ ଅଗ୍ନିଙ୍କ ପରି ହୋଇଗଲା । ସେ କିଛି କହିପାରିଲେ ନାହିଁ । ଯକ୍ଷ ପଚାରିଲେ, ''ତୁମେ କିଏ ?'' ବାୟୁଦେବ କହିଲେ, ''ମୁଁ ବାୟୁ, ମୋର ନାମ ଓ ଗୁଣ ପ୍ରସିଦ୍ଧ— ମୁଁ ଗତି କରେ, ପ୍ରବାହିତ ହୁଏ, ପୃଥିବୀର ଗନ୍ଧ ବହନ କରେ । ଅନ୍ତରିକ୍ଷଗାମୀ ହୋଇଥିବାରୁ ମୋତେ ମାତରିଶ୍ୱା ମଧ୍ୟ କହନ୍ତି ।' ଯକ୍ଷ ପଚାରିଲେ, ''ତୁମର ସାମର୍ଥ୍ୟ କଣ ?'' ବାୟୁଦେବ କହିଲେ, ''ଏହି ପୃଥିବୀ ଓ ଅନ୍ତରିକ୍ଷରେ ଯାହାକିଛି ବି ପଦାର୍ଥ ଅଛି, ସେସବୁକୁ ମୁଁ ଉଡ଼ାଇନେଇପାରେ ।'' ବ୍ରହ୍ମ ବାୟୁଙ୍କ ଆଗରେ ସେହି ଶୁଖିଲା କୁଟାଟି ରଖିଦେଇ କହିଲେ, ''ଏହି କୁଟାଖଣ୍ଡକୁ ଉଡ଼ାଇନିଅ ।'' ବାୟୁଦେବ ନିଜର ସମସ୍ତ ବଳ ଖଟାଇଲେ, କିନ୍ତୁ କୁଟାଖିଅଟି ହଲିଲା ବି ନାହିଁ । ତାହା ଦେଖି ବାୟୁଦେବ ବଡ଼ ଲଜ୍ଜିତ ହେଲେ ଏବଂ ତୁରନ୍ତ ଦେବତାମାନଙ୍କ ପାଖକୁ ଫେରିଆସି କହିଲେ, ''ହେ ଦେବଗଣ ! ଏହି ଯକ୍ଷ କିଏ; ମୁଁ ତ କିଛି ବି ଜାଣିପାରିଲି ନାହିଁ ।'' ଏଥର ଇନ୍ଦ୍ର ଯକ୍ଷଙ୍କ ନିକଟକୁ ଗଲେ । ଦେବରାଜଙ୍କୁ ଅଭିମାନରେ ପୂର୍ଣ୍ଣ ଥିବା ଦେଖି ଯକ୍ଷରୂପୀ ବ୍ରହ୍ମ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଇନ୍ଦ୍ରଙ୍କ ଅଭିମାନ ଚୂର୍ଣ୍ଣ କରିବାପାଇଁ ସେ ତାଙ୍କୁ କଥା ମଧ୍ୟ କହିଲେ ନାହିଁ । ଏତିକିବେଳେ ଇନ୍ଦ୍ର ଦେଖିଲେ ଯେ, ଅନ୍ତରିକ୍ଷରେ ଅତ୍ୟନ୍ତ ଶୋଭାଯୁକ୍ତ ଓ ସବୁପ୍ରକାରେ ଉତ୍ତମୋତ୍ତମ ଅଳଙ୍କାରରେ ବିଭୂଷିତା ହିମବାନଙ୍କ କନ୍ୟା ଭଗବତୀ ପାର୍ବତୀ ଉମା ଠିଆ ହୋଇଛନ୍ତି । ଇନ୍ଦ୍ର ବିନୟପୂର୍ବକ ତାଙ୍କୁ ପଚାରିଲେ, ''ମା ! ବର୍ତ୍ତମାନ ଯେଉଁ ଯକ୍ଷ ମୋତେ ଦର୍ଶନ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ, ସେ କିଏ ?'' ଉମା କହିଲେ, ''ସେ ଯକ୍ଷ ହେଉଛନ୍ତି ପ୍ରସିଦ୍ଧ ବ୍ରହ୍ମ । ହେ ଇନ୍ଦ୍ର ! ଏହି ବ୍ରହ୍ମ ହିଁ ଅସୁରମାନଙ୍କୁ ପରାଜିତ କରିଛନ୍ତି । ତୁମେମାନେ ତ କେବଳ ନିମିତ୍ତମାତ୍ର; ବ୍ରହ୍ମଙ୍କ ବିଜୟଯୋଗୁଁ ତୁମମାନଙ୍କର ମହିମା ବଢ଼ିଛି ଏବଂ ଏହିହେତୁ ତୁମର ପୂଜା ମଧ୍ୟ ହେଉଛି । ତୁମେ ଯାହାକୁ ନିଜର ବିଜୟ ଓ ନିଜର ମହିମା ବୋଲି ଭାବୁଛ, ତାହା ତୁମର ମିଥ୍ୟା ଅଭିମାନ; ତାହା ତ୍ୟାଗ କର ଓ ବୁଝିରଖ ଯେ, ଯାହାକିଛି ହେଉଛି, ତାହା କେବଳ ଏହି ବ୍ରହ୍ମଙ୍କ ସତ୍ତାଦ୍ୱାରା ହିଁ ହେଉଛି ।''

ଉମାଙ୍କ କଥାରେ ଇନ୍ଦ୍ରଙ୍କର ଆଖି ଖୋଲିଗଲା । ଅଭିମାନ ଚାଲିଗଲା । ବ୍ରହ୍ମଙ୍କ ମହତୀ ଶକ୍ତିର ପରିଚୟ ପାଇ ଇନ୍ଦ୍ର ଫେରିଲେ ଏବଂ ଅଗ୍ନି ତଥା ବାୟୁଙ୍କୁ ବ୍ରହ୍ମଙ୍କ ଉପଦେଶ ଶୁଣାଇଲେ । ଏଥର ଅଗ୍ନି ଓ ବାୟୁ ମଧ୍ୟ ବ୍ରହ୍ମଙ୍କୁ ଜାଣିପାରିଲେ । ଏହି କାରଣରୁ ଏହି ତିନି ଦେବତା ସବୁଠାରୁ ଶ୍ରେଷ୍ଠ ହେଲେ । ସେମାନଙ୍କ ମଧ୍ୟରେ ଇନ୍ଦ୍ର ସବୁଠାରୁ ଶ୍ରେଷ୍ଠ ବୋଲି ବିବେଚିତ ହେଲେ, କାରଣ ସେ ସର୍ବପ୍ରଥମେ ବ୍ରହ୍ମଙ୍କୁ ଜାଣିପାରିଥିଲେ ।

**ମୁଁ ବୃଷ୍ଣିବଂଶୀମାନଙ୍କ ମଧ୍ୟରେ ବାସୁଦେବ ଅର୍ଥାତ୍ ମୁଁ ସ୍ୱୟଂ ତୁମ ସଖା, ପାଣ୍ଡବମାନଙ୍କ ମଧ୍ୟରେ ଧନଞ୍ଜୟ ଅର୍ଥାତ୍ ତୁମେ, ମୁନିମାନଙ୍କ ମଧ୍ୟରେ ବେଦବ୍ୟାସ ଓ କବିମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଶୁକ୍ରାଚାର୍ଯ୍ୟ ମଧ୍ୟ ମୁଁ ହିଁ ଅଟେ।। ୩୭ ।।**

**ପ୍ରଶ୍ନ –** 'ବୃଷ୍ଣିବଂଶୀମାନଙ୍କ ମଧ୍ୟରେ ବାସୁଦେବ ମୁଁ ହିଁ ଅଟେ' କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହା କହି ଭଗବାନ୍ ଅବତାର ଓ ଅବତାରୀଙ୍କର ଏକତ୍ୱ ଦେଖାଇଛନ୍ତି। କହିବାର ଭାବ ଏହି ଯେ, "ମୁଁ ଅଜନ୍ମା, ଅବିନାଶୀ, ସବୁ ପ୍ରାଣୀଙ୍କର ମହେଶ୍ୱର, ସର୍ବଶକ୍ତିମାନ୍, ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମ ହିଁ ଏଠାରେ ବସୁଦେବଙ୍କ ପୁତ୍ରରୂପରେ ଲୀଳାରେ ପ୍ରକଟ ହୋଇଛି (୪/୬)। ଅତଏବ ଯେଉଁମାନେ ମୋତେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି, ସେମାନେ ବିରାଟ ଭୁଲ କରନ୍ତି।"

**ପ୍ରଶ୍ନ –** ପାଣ୍ଡବମାନଙ୍କ ମଧ୍ୟରେ ଅର୍ଜୁନଙ୍କୁ ନିଜର ସ୍ୱରୂପ ବୋଲି କହିବାର ଅଭିପ୍ରାୟ କଣ? କାରଣ, ପାଞ୍ଚ ପାଣ୍ଡବଙ୍କ ମଧ୍ୟରେ ଧର୍ମରାଜ ଯୁଧିଷ୍ଠିର ହିଁ ତ ସମସ୍ତଙ୍କ ଠାରୁ ବଡ଼ ତଥା ଭଗବାନଙ୍କର ଭକ୍ତ ଓ ଧର୍ମାତ୍ମା ଥିଲେ।

**ଉତ୍ତର –** ଯୁଧିଷ୍ଠିର ଯେ ପାଣ୍ଡବମାନଙ୍କ ମଧ୍ୟରେ ସମସ୍ତଙ୍କ ଠାରୁ ବଡ଼, ଧର୍ମାତ୍ମା ଓ ଭଗବାନଙ୍କର ପରମ ଭକ୍ତ ଥିଲେ, ତାହା ନିଃସନ୍ଦେହ। ତଥାପି ଅର୍ଜୁନ ହିଁ ସବୁ ପାଣ୍ଡବଙ୍କ ମଧ୍ୟରେ ଶ୍ରେଷ୍ଠ ଗଣ୍ୟ ହୁଅନ୍ତି। ଏହାର କାରଣ ଏହି ଯେ, ନର-ନାରାୟଣ ଅବତାରରେ ଅର୍ଜୁନ ନରରୂପରେ ଭଗବାନଙ୍କ ସହିତ ରହିସାରିଥିଲେ। ତା'ଛଡ଼ା ସେ ଭଗବାନଙ୍କର ପରମ ପ୍ରିୟ ସଖା ଓ ତାଙ୍କର ଅନନ୍ୟ ପ୍ରେମୀ ଭକ୍ତ। ତେଣୁ ଅର୍ଜୁନଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି। ★

**ପ୍ରଶ୍ନ –** ମୁନିମାନଙ୍କ ମଧ୍ୟରେ ବ୍ୟାସଙ୍କୁ ଭଗବାନ୍ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନଙ୍କ ସ୍ୱରୂପକୁ ଓ ବେଦାଦି ଶାସ୍ତ୍ରକୁ ମନନ କରିବା ଲୋକଙ୍କୁ 'ମୁନି' କହନ୍ତି। ଭଗବାନ୍ ବେଦବ୍ୟାସ ସମସ୍ତ ବେଦକୁ ଭଲଭାବରେ ଚିନ୍ତନ କରି ତା'ର ବିଭାଗ କରିଛନ୍ତି। ସେ ମହାଭାରତ, ପୁରାଣ ଆଦି ଅନେକ ଶାସ୍ତ୍ର ରଚନା କରିଛନ୍ତି। ସେ ଭଗବାନଙ୍କ ଅଂଶାବତାର ଓ ସର୍ବସଦ୍‌ଗୁଣସମ୍ପନ୍ନ। ଅତଏବ ମୁନିମଣ୍ଡଳରେ ତାହାଙ୍କର ପ୍ରାଧାନ୍ୟ ଥିବାରୁ ଭଗବାନ୍ ତାଙ୍କୁ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** କବିମାନଙ୍କ ମଧ୍ୟରେ ଶୁକ୍ରାଚାର୍ଯ୍ୟଙ୍କୁ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେ ପଣ୍ଡିତ ଓ ବୁଦ୍ଧିମାନ୍, ତାହାଙ୍କୁ କବି କହନ୍ତି। ଶୁକ୍ରାଚାର୍ଯ୍ୟ ଭାର୍ଗବମାନଙ୍କର ଅଧିପତି, ସକଳ ବିଦ୍ୟାରେ ବିଶାରଦ, ସଂଜୀବନୀ ବିଦ୍ୟାରେ ଅଭିଜ୍ଞ ଓ କବିମାନଙ୍କ ମଧ୍ୟରେ ପ୍ରଧାନ। ତେଣୁ ତାଙ୍କୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି। ★★

---

★ ଭଗବାନ୍ ସ୍ୱୟଂ କହିଛନ୍ତି –

**ନରସ୍ତ୍ୱମସି ଦୁର୍ଦ୍ଧର୍ଷ ହରିର୍ନାରାୟଣୋ ହ୍ୟହମ୍। କାଳେ ଲୋକମିମଂ ପ୍ରାପ୍ତୌ ନରନାରାୟଣାବୃଷୀ ।।**

**ଅନନ୍ୟଃ ପାର୍ଥ ମତ୍ତସ୍ତ୍ୱଂ ତ୍ୱତ୍ତଶ୍ଚାହଂ ତଥୈବ ଚ। ନାବୟୋରନ୍ତରଂ ଶକ୍ୟଂ ବେଦିତୁଂ ଭରତର୍ଷଭ ।।** (ମହା.ବନ. ୧୨/୪୬-୪୭)

"ହେ ଦୁର୍ଦ୍ଧର୍ଷ ଅର୍ଜୁନ! ତୁମେ ଭଗବାନ୍ ନର ଓ ମୁଁ ସ୍ୱୟଂ ହରିନାରାୟଣ। ଆମେ ଦୁହେଁ ଏକଦା ନର ଓ ନାରାୟଣ ଋଷି ହୋଇ ଏହି ଲୋକକୁ ଆସିଥିଲେ। ତେଣୁ ହେ ଅର୍ଜୁନ! ତୁମେ ମୋଠାରୁ ଅଲଗା ନୁହଁ ଓ ମୁଁ ତୁମଠାରୁ ଅଲଗା ନୁହେଁ। ହେ ଭରତଶ୍ରେଷ୍ଠ! ଆମ ଦୁହିଁଙ୍କ ମଧ୍ୟରେ କିଛି ବି ପ୍ରଭେଦ ନାହିଁ, ଏହା କେହି ଜାଣନ୍ତି ନାହିଁ।"

★★ ମହର୍ଷି ଭୃଗୁଙ୍କର ଚ୍ୟବନ ଆଦି ସାତ ପୁତ୍ରଙ୍କ ମଧ୍ୟରେ ଶୁକ୍ର ପ୍ରଧାନ। ସେ ଭଗବାନ୍ ଶଙ୍କରଙ୍କୁ ଆରାଧନା କରି ସଞ୍ଜୀବନୀ-ବିଦ୍ୟା ଓ ଜରାମରଣରହିତ ବଜ୍ରସମାନ ଦୃଢ଼ଶରୀର ପ୍ରାପ୍ତ କରିଥିଲେ। ଭଗବାନ୍ ଶଙ୍କରଙ୍କ ପ୍ରସାଦରୁ ହିଁ ଯୋଗବିଦ୍ୟାରେ ନିପୁଣ ହୋଇ ସେ ଯୋଗାଚାର୍ଯ୍ୟ ପଦବୀ ପ୍ରାପ୍ତ ହୋଇଥିଲେ। ସେ ଦୈତ୍ୟମାନଙ୍କର ପୁରୋହିତ। 'କାବ୍ୟ', 'କବି' ଓ 'ଉଶନା' ଏହାଙ୍କର ଅନ୍ୟ ନାମ। ପିତୃଙ୍କ ମାନସୀ କନ୍ୟା 'ଗୋ'ଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା। ଶଣ୍ଡ ଓ ଅମର୍କ ନାମକ ଦୁଇ ପୁତ୍ର, ଯେଉଁମାନେ କି ପ୍ରହ୍ଲାଦଙ୍କର ଗୁରୁ ଥିଲେ, ଏହାଙ୍କ ଠାରୁ ଉତ୍ପନ୍ନ ହୋଇଥିଲେ। ଶୁକ୍ରାଚାର୍ଯ୍ୟ ଅନେକ ଗୁପ୍ତ ଓ ଦୁର୍ଲଭ ମନ୍ତ୍ରମାନଙ୍କର ଜ୍ଞାତା, ଅନେକ ବିଦ୍ୟାରେ ପାରଦର୍ଶୀ, ବୁଦ୍ଧିମାନ୍ ଓ ପରମ ନୀତିନିପୁଣ ଅଟନ୍ତି। ତାହାଙ୍କ ରଚିତ 'ଶୁକ୍ରନୀତି' ପ୍ରସିଦ୍ଧ। ବୃହସ୍ପତିଙ୍କ ପୁତ୍ର କଚ ଏହାଙ୍କ ଠାରୁ ସଞ୍ଜୀବନୀ-ବିଦ୍ୟା ଶିଖିଥିଲେ। ମହାଭାରତ, ଶ୍ରୀମଦ୍‌ଭାଗବତ, ବାୟୁପୁରାଣ, ବ୍ରହ୍ମପୁରାଣ, ମତ୍ସ୍ୟପୁରାଣ ଓ ସ୍କନ୍ଦପୁରାଣ ପ୍ରଭୃତିରେ ଏହାଙ୍କର ବହୁ ବିଚିତ୍ର ଓ ଶିକ୍ଷାପ୍ରଦ କଥାମାନ ରହିଛି।

**ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାମ୍ ।**
**ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହମ୍ ।। ୩୮ ।।**

**ଅନ୍ୱୟ –** (ଅହମ୍) = ମୁଁ; **ଦମୟତାମ୍** = ଦମନକାରୀମାନଙ୍କର; **ଦଣ୍ଡଃ** = ଦଣ୍ଡ ଅର୍ଥାତ୍ ଦମନ କରିବା ଶକ୍ତି; **ଅସ୍ମି** = ଅଟେ; **ଜିଗୀଷତାମ୍** = ବିଜୟକାମୀମାନଙ୍କର; **ନୀତିଃ** = ନୀତି; **ଅସ୍ମି** = ଅଟେ; **ଗୁହ୍ୟାନାମ୍** = ଗୋପନଯୋଗ୍ୟ ଭାବମାନଙ୍କର (ରକ୍ଷକ); **ମୌନମ୍** = ମୌନ; **ଅସ୍ମି** = ଅଟେ; **ଚ** = ଓ; **ଜ୍ଞାନବତାମ୍** = ଜ୍ଞାନୀମାନଙ୍କର; **ଜ୍ଞାନମ୍** = ତତ୍ତ୍ୱଜ୍ଞାନ; **ଅହମ୍** = ମୁଁ; **ଏବ** = ହିଁ; **ଅସ୍ମି** = ଅଟେ ।

**ମୁଁ ଦମନକାରୀମାନଙ୍କର ଦଣ୍ଡ ଅର୍ଥାତ୍ ଦମନଶକ୍ତି ଅଟେ; ମୁଁ ବିଜୟକାମୀମାନଙ୍କର ନୀତି ଅଟେ; ମୁଁ ଗୋପନଯୋଗ୍ୟ ଭାବମାନଙ୍କର ରକ୍ଷକ ମୌନ ଏବଂ ଜ୍ଞାନୀମାନଙ୍କର ତତ୍ତ୍ୱଜ୍ଞାନ ମଧ୍ୟ ମୁଁ ହିଁ ଅଟେ ।। ୩୮ ।।**

**ପ୍ରଶ୍ନ –** ଦମନକାରୀମାନଙ୍କର ଦଣ୍ଡକୁ ନିଜ ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଦଣ୍ଡ (ଦମନଶକ୍ତି) ଧର୍ମ ତ୍ୟାଗ କରି ଅଧର୍ମରେ ପ୍ରବୃତ୍ତ ଉଲ୍ଲଙ୍ଘକ ମନୁଷ୍ୟମାନଙ୍କୁ ପାପାଚାରରୁ ରୋକି ସତ୍‌କର୍ମରେ ପ୍ରବୃତ୍ତ କରାଏ । ମନୁଷ୍ୟର ମନ ଓ ଇନ୍ଦ୍ରିୟ ପ୍ରଭୃତି ମଧ୍ୟ ଏହି ଦମନଶକ୍ତିଦ୍ୱାରା ହିଁ ବଶ ହୋଇ ଭଗବତ୍‌ପ୍ରାପ୍ତିରେ ସହାୟକ ହୋଇପାରନ୍ତି । ଦମନଶକ୍ତିଦ୍ୱାରା ସମସ୍ତ ପ୍ରାଣୀ ନିଜ ନିଜର ଅଧିକାର ପାଳନ କରନ୍ତି । ଏଣୁ ଯେଉଁ ଦେବତା, ରାଜା ଓ ଶାସକ ଆଦି ନ୍ୟାୟପୂର୍ବକ ଦମନକାରୀ ଅଟନ୍ତି, ସେହି ସମସ୍ତଙ୍କର ଦମନଶକ୍ତିକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ପ୍ରଶ୍ନ –** ବିଜୟ ଚାହୁଁଥିବା ଲୋକଙ୍କର **ନୀତିକୁ** ଭଗବାନ୍ ନିଜର ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** 'ନୀତି' ଶବ୍ଦ ଏଠାରେ ନ୍ୟାୟର ବାଚକ । ନ୍ୟାୟରେ ହିଁ ମନୁଷ୍ୟର ପ୍ରକୃତ ବିଜୟ ହୁଏ । ଯେଉଁ ରାଜ୍ୟରେ ନୀତି ରହେ ନାହିଁ, ଅନୀତି ହୁଏ, ସେହି ରାଜ୍ୟ ମଧ୍ୟ ଶୀଘ୍ର ନଷ୍ଟ ହୋଇଯାଏ । ଅତଏବ ନୀତି ଅର୍ଥାତ୍ ନ୍ୟାୟ ହିଁ ବିଜୟର ପ୍ରଧାନ ଉପାୟ । ତେଣୁ ବିଜୟକାମୀମାନଙ୍କର ନୀତିକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ପ୍ରଶ୍ନ –** ଭଗବାନ୍ ମୌନକୁ ନିଜର ସ୍ୱରୂପ କହିବାର ଭାବ କଣ ?

**ଉତ୍ତର –** ଯେତେ ବି ଗୋପନୀୟ ଭାବ ଅଛି, ସେସବୁ ମୌନଦ୍ୱାରା ହିଁ ଗୁପ୍ତ ରହିପାରେ । କହିବା ବନ୍ଦ ନ କଲେ, ତାହାକୁ ଗୁପ୍ତ ରଖିପାରିବା କଠିନ । ଏପ୍ରକାରେ ଗୋପନୀୟ ଭାବର ରକ୍ଷକରୂପେ ମୌନର ପ୍ରାଧାନ୍ୟ ଥିବାରୁ ମୌନକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିଛନ୍ତି ।

**ପ୍ରଶ୍ନ –** ଏଠାରେ **ଜ୍ଞାନବତାମ୍** ପଦ କେଉଁ ଜ୍ଞାନୀମାନଙ୍କର ବାଚକ ? ସେମାନଙ୍କର ଜ୍ଞାନକୁ ଭଗବାନ୍ ନିଜର ସ୍ୱରୂପ ବୋଲି କହିବାର ଭାବ କଣ ?

**ଉତ୍ତର –** **ଜ୍ଞାନବତାମ୍** ପଦଟି ହେଉଛି ପରବ୍ରହ୍ମ ପରମାତ୍ମାଙ୍କ ସ୍ୱରୂପକୁ ସାକ୍ଷାତ୍ କରିଥିବା ଯଥାର୍ଥ ଜ୍ଞାନୀମାନଙ୍କର ବାଚକ । ସେମାନଙ୍କର ଜ୍ଞାନ ହିଁ ସର୍ବୋତ୍ତମ ଜ୍ଞାନ । ଅତଏବ ତାହାକୁ ଭଗବାନ୍ ନିଜ ସ୍ୱରୂପ ବୋଲି କହିଛନ୍ତି । ତେର ଅଧ୍ୟାୟର ସତର ଶ୍ଳୋକରେ ମଧ୍ୟ ଭଗବାନ୍ ନିଜକୁ ଜ୍ଞାନସ୍ୱରୂପ ବୋଲି କହିଛନ୍ତି ।

**ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।**
**ନ ତଦସ୍ତି ବିନା ଯତ୍‌ସ୍ୟାନ୍ ମୟା ଭୂତଂ ଚରାଚରମ୍ ।। ୩୯ ।।**

**ଅନ୍ୱୟ –** **ଚ** = ଏବଂ; **ଅର୍ଜୁନ** = ହେ ଅର୍ଜୁନ; **ଯତ୍** = ଯାହା; **ସର୍ବଭୂତାନାମ୍** = ସକଳ ଜୀବଙ୍କର; **ବୀଜମ୍** = ବୀଜ ବା ଉତ୍ପତ୍ତିର କାରଣ; **ତତ୍** = ତାହା; **ଅପି** = ମଧ୍ୟ; **ଅହମ୍** = ମୁଁ (ହିଁ ଅଟେ; କାରଣ); **ତତ୍** = ସେହି; **ଚରାଚରମ୍** = ଚର ଓ ଅଚର (ହୋଇ କୌଣସି ବି); **ଭୂତମ୍** = ପ୍ରାଣୀ; **ନ, ଅସ୍ତି** = ନାହିଁ; **ଯତ୍** = ଯାହା; **ମୟା** = ମୋ; **ବିନା** = ବିନା; **ସ୍ୟାତ୍** = ହୋଇପାରେ ।

**ଏବଂ ହେ ଅର୍ଜୁନ! ଯାହା ସକଳ ଜୀବଙ୍କର ବୀଜ ବା ଉତ୍ପତ୍ତିର କାରଣ, ତାହା ବି ମୁଁ ହିଁ ଅଟେ, କାରଣ ଚର ବା ଅଚର ଏପରି କୌଣସି ବି ପ୍ରାଣୀ ନାହିଁ, ଯେ କି ମୋ ବିନା ଥାଇପାରେ।। ୩୯ ।।**

**ପ୍ରଶ୍ନ –** ସମସ୍ତ ଚରାଚର ପ୍ରାଣୀମାନଙ୍କର ବୀଜ କଣ ? ଭଗବାନ୍ ତାହାକୁ ନିଜ ସ୍ୱରୂପ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ହିଁ ସମସ୍ତ ଚରାଚର ପ୍ରାଣୀଙ୍କର ପରମ ଆଧାର ଓ ତାଙ୍କଠାରୁ ସମସ୍ତଙ୍କର ଉତ୍ପତ୍ତି ହୁଏ। ଅତଏବ ସେ ହିଁ ସମସ୍ତଙ୍କର ବୀଜ ବା ମହାନ୍ କାରଣ ଅଟନ୍ତି। ଏହିହେତୁ ସପ୍ତମ ଅଧ୍ୟାୟର ଦଶମ ଶ୍ଳୋକରେ ତାହାଙ୍କୁ ସକଳ ପ୍ରାଣୀଙ୍କର 'ସନାତନ ବୀଜ' ଏବଂ ନବମ ଅଧ୍ୟାୟର ଅଠର ଶ୍ଳୋକରେ 'ଅବିନାଶୀ ବୀଜ' ବୋଲି କୁହାଯାଇଛି। ଏଣୁ ଭଗବାନ୍ ସେହି ବୀଜକୁ ଏଠାରେ ନିଜର ସ୍ୱରୂପ ବୋଲି କହିଛନ୍ତି।

**ପ୍ରଶ୍ନ –** 'ଏପରି କୌଣସି ବି ଚର ବା ଅଚର ପ୍ରାଣୀ ନାହିଁ, ଯେ କି ମୋ' ବିନା ଥାଇପାରେ'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ନିଜର ସର୍ବବ୍ୟାପକତା ଓ ସର୍ବରୂପତା ଦେଖାଉଛନ୍ତି। ଅଭିପ୍ରାୟ ଏହି ଯେ, ଚର ବା ଅଚର ଯେତେ ବି ପ୍ରାଣୀ ଅଛନ୍ତି, ସେହି ସମସ୍ତଙ୍କ ମଧ୍ୟରେ ମୁଁ ବ୍ୟାପ୍ତ ହୋଇ ରହିଛି; ଏପରି କୌଣସି ପ୍ରାଣୀ ନାହିଁ, ଯେ କି ମୋ' ବିନା ରହିପାରେ। ଅତଏବ ସମସ୍ତ ପ୍ରାଣୀଙ୍କୁ ମୋର ସ୍ୱରୂପ ବୋଲି ବୁଝି ଓ ମୁଁ ସେମାନଙ୍କ ମଧ୍ୟରେ ବ୍ୟାପ୍ତ ଥିବା ଜାଣି ତୁମର ମନ ଯେଉଁଠାକୁ ଯିବ ଯାଉ, ସେଠାରେ ତୁମେ ମୋତେ ଚିନ୍ତା କରୁଥାଅ। ଏହି ଅଧ୍ୟାୟର ୧୭ ଶ୍ଳୋକରେ ଅର୍ଜୁନ 'ଆପଣଙ୍କୁ କେଉଁ ଭାବରେ ଚିନ୍ତନ କରିବା ଉଚିତ', ବୋଲି ଯେଉଁ ପ୍ରଶ୍ନ ପଚାରିଥିଲେ, ଏଥିରୁ ତା'ର ଉତ୍ତର ମିଳିଯାଉଛି।

**ସମ୍ବନ୍ଧ –** *ଉଣେଇଶ ଶ୍ଳୋକରେ ଭଗବାନ୍ ନିଜର ଦିବ୍ୟ ବିଭୂତିଗୁଡ଼ିକ ଅନନ୍ତ ବୋଲି କହି, ପ୍ରଧାନତଃ ସେଗୁଡ଼ିକର ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଥିଲେ। ସେହି ଅନୁସାରେ କୋଡ଼ିଏରୁ ଅଣଚାଳିଶ ଶ୍ଳୋକଯାଏ ସେଗୁଡ଼ିକ ବର୍ଣ୍ଣନା କଲେ। ବର୍ତ୍ତମାନ ପୁନର୍ବାର ସେହି ଦିବ୍ୟ ବିଭୂତିଗୁଡ଼ିକର ଅନନ୍ତତା ଦେଖାଇ ବର୍ଣ୍ଣନାର ଉପସଂହାର କରୁଛନ୍ତି–*

**ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରଂତପ।**
**ଏଷ ତୂଦ୍ଦେଶତଃ ପ୍ରୋକ୍ତୋ ବିଭୂତେର୍ବିସ୍ତରୋ ମୟା।। ୪୦ ।।**

**ଅନ୍ୱୟ –** **ପରନ୍ତପ** = ହେ ପରନ୍ତପ; **ମମ** = ମୋର; **ଦିବ୍ୟାନାମ୍** = ଦିବ୍ୟ; **ବିଭୂତୀନାମ୍** = ବିଭୂତିମାନଙ୍କର; **ଅନ୍ତଃ** = ଅନ୍ତ; **ନ, ଅସ୍ତି** = ନାହିଁ; **ମୟା** = ମୋ' ଦ୍ୱାରା; **ବିଭୂତେଃ** = ବିଭୂତିର; **ଏଷଃ** = ଏହି; **ବିସ୍ତରଃ, ତୁ** = ବିସ୍ତାର; **ଉଦ୍ଦେଶତଃ** = ଅତି ସଂକ୍ଷେପରେ; **ପ୍ରୋକ୍ତଃ** = କୁହାହେଲା।

**ହେ ପରଂତପ! ମୋର ଦିବ୍ୟ ବିଭୂତିମାନଙ୍କର ଅନ୍ତ ନାହିଁ। ମୁଁ ମୋ ନିଜ ବିଭୂତିର ବିସ୍ତାର ତୁମକୁ ଅତି ସଂକ୍ଷେପରେ କହିଲି।। ୪୦ ।।**

**ପ୍ରଶ୍ନ –** 'ମୋର ଦିବ୍ୟ ବିଭୂତିମାନଙ୍କର ଅନ୍ତ ନାହିଁ', ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ମୋର ସାଧାରଣ ବିଭୂତିମାନଙ୍କ କଥା କଣ କହିବି, ମୋର ଯେଉଁ ଦିବ୍ୟ ବିଭୂତିମାନ ଅଛି, ସେସବୁର ମଧ୍ୟ ସୀମା ନାହିଁ। ଜଳ ଓ ପୃଥିବୀର ପରମାଣୁମାନଙ୍କୁ ଯେପରି ଗଣଯାଇ ନ ପାରେ, ସେହିପରି ମୋର ବିଭୂତିମାନଙ୍କର ମଧ୍ୟ ଗଣନା ହୋଇପାରିବ ନାହିଁ। ସେସବୁ ଏତେ ବେଶୀ ଯେ, ତାକୁ କେହି ଜାଣିପାରିବ ନାହିଁ, କି ବର୍ଣ୍ଣନା କରିପାରିବ ନାହିଁ। ଅନନ୍ତ ବ୍ରହ୍ମାଣ୍ଡରେ ମୋର ଅନନ୍ତ ବିଭୂତି ରହିଛି; କେହି ସେସବୁର ଅନ୍ତ ପାଇପାରିବ ନାହିଁ।''

**ପ୍ରଶ୍ନ –** 'ସେହି ବିଭୂତିଗୁଡ଼ିକର ବିସ୍ତାର ମୁଁ ଅତି ସଂକ୍ଷେପରେ କହିଲି' – ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥାଦ୍ୱାରା ଭଗବାନ୍ ଦେଖାଉଛନ୍ତି, ''ମୁଁ ମୋ ନିଜ ଦିବ୍ୟ ବିଭୂତିମାନଙ୍କର ଯାହା କିଛି

ବିସ୍ତାର ତୁମକୁ କହିଲି, ତାହା ସେହି ଦିବ୍ୟ ବିଭୂତିମାନଙ୍କର ଆଂଶିକ ବର୍ଣ୍ଣନାମାତ୍ର; ସମ୍ପୂର୍ଣ୍ଣ ବର୍ଣ୍ଣନା ଦେବା ଅତ୍ୟନ୍ତ କଠିନ। ଅତଏବ ବର୍ତ୍ତମାନ ମୁଁ ଏଠାରେ ଏହି ବର୍ଣ୍ଣନାର ଉପସଂହାର କରୁଛି।''

*ସମ୍ବନ୍ଧ– ଅଠର ଶ୍ଳୋକରେ ଅର୍ଜୁନ ଭଗବାନଙ୍କୁ ତାଙ୍କ ବିଭୂତିର ଓ ଯୋଗଶକ୍ତିର ବର୍ଣ୍ଣନା କରିବାକୁ ପ୍ରାର୍ଥନା କରିଥିଲେ। ସେହି ଅନୁସାରେ ଭଗବାନ୍ ନିଜର ଦିବ୍ୟବିଭୂତିମାନଙ୍କର ବର୍ଣ୍ଣନା ସମାପ୍ତ କରି ବର୍ତ୍ତମାନ ସଂକ୍ଷେପରେ ଯୋଗ-ଶକ୍ତିର ବର୍ଣ୍ଣନା କରୁଛନ୍ତି–*

## ଯଦ୍ୟଦ୍‌ବିଭୂତିମତ୍‌ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।
## ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶସଂଭବମ୍ ।। ୪୧ ।।

**ଅନ୍ୱୟ–** ଯଦ୍, ଯଦ୍ = ଯାହା ଯାହା; ଏବ = ବି; ବିଭୂତିମଦ୍ = ବିଭୂତିଯୁକ୍ତ ଅର୍ଥାତ୍ ଐଶ୍ୱର୍ଯ୍ୟଯୁକ୍ତ; ଶ୍ରୀମଦ୍ = କାନ୍ତିଯୁକ୍ତ; ବା = ଓ; ଊର୍ଜିତମ୍ = ଶକ୍ତିଯୁକ୍ତ; ସତ୍ତ୍ୱମ୍ = ବସ୍ତୁ ଅଛି; ତଦ୍, ତଦ୍ = ତାହା ତାହା; ତ୍ୱମ୍ = ତୁମେ; ମମ = ମୋର; ତେଜୋଽଂଶସମ୍ଭବମ୍, ଏବ = ତେଜର ଆଂଶିକ ଅଭିବ୍ୟକ୍ତି ବୋଲି ହିଁ; ଅବଗଚ୍ଛ = ଜାଣ।

**ଯେଉଁସବୁ ବିଭୂତିଯୁକ୍ତ ଅର୍ଥାତ୍ ଐଶ୍ୱର୍ଯ୍ୟଯୁକ୍ତ, କାନ୍ତିଯୁକ୍ତ ଓ ଶକ୍ତିଯୁକ୍ତ ବସ୍ତୁ ଅଛି, ସେସବୁକୁ ତୁମେ ମୋ' ତେଜର ଆଂଶିକ ଅଭିବ୍ୟକ୍ତି ବୋଲି ହିଁ ଜାଣ।। ୪୧ ।।**

**ପ୍ରଶ୍ନ–** **ଯଦ୍ ଯଦ୍** ତଥା **ବିଭୂତିମତ୍, ଶ୍ରୀମତ୍** ଓ **ଊର୍ଜିତମ୍** ବିଶେଷଣ ସହିତ **ସତ୍ତ୍ୱମ୍** ପଦ କାହାର ବାଚକ ଏବଂ ତାହାକୁ ଭଗବାନଙ୍କ ତେଜର ଆଂଶିକ ଅଭିବ୍ୟକ୍ତି ବୋଲି ବୁଝିବା କଣ ?

**ଉତ୍ତର–** ଯେଉଁ ପ୍ରାଣୀ ବା କୌଣସି ଜଡ଼ବସ୍ତୁ ଐଶ୍ୱର୍ଯ୍ୟ, ଶୋଭା ଓ କାନ୍ତି ଆଦି ଗୁଣରେ ସମ୍ପନ୍ନ ଏବଂ ବଳ, ତେଜ, ପରାକ୍ରମ ବା ଅନ୍ୟ କୌଣସିପ୍ରକାର ଶକ୍ତିଦ୍ୱାରା ଯୁକ୍ତ, ଉପରୋକ୍ତ ବିଶେଷଣ ସହିତ **ସତ୍ତ୍ୱମ୍** ପଦଟି ହେଉଛି ସେହିସବୁର ବାଚକ। ଯାହାଠାରେ ଉପରୋକ୍ତ ଐଶ୍ୱର୍ଯ୍ୟ, ଶୋଭା, ଶକ୍ତି, ବଳ ଓ ତେଜ ଆଦି ବିଭୂତିଗୁଡ଼ିକର ବା ସେସବୁମଧ୍ୟରୁ କୌଣସି ଗୋଟିକର ବା ଏକାଧିକର ବିଶେଷତା ଅନୁଭୂତ ହୁଏ, ସେହି ପ୍ରତ୍ୟେକ ପ୍ରାଣୀ ଓ ବସ୍ତୁକୁ ଭଗବାନଙ୍କ ତେଜର ଏକ ଅଂଶ ବୋଲି ବୁଝିବା ହିଁ ତାହାକୁ ଭଗବାନଙ୍କ ତେଜର ଆଂଶିକ ଅଭିବ୍ୟକ୍ତି ବୋଲି ବୁଝିବା।

ଅଭିପ୍ରାୟ ଏହି ଯେ, ଯେପରି ବିଜୁଳୀଦ୍ୱାରା କେଉଁଠି ବତୀ ଜଳୁଛି, କେଉଁଠି ପଙ୍ଖା ଚାଲିଛି, କେଉଁଠି ପାଣି ଉଠୁଛି, କେଉଁଠି ଦୂରର ଗୀତବାଦ୍ୟ ଶୁଭୁଛି– ଏହିପରି ନାନା ସ୍ଥାନରେ ନାନା କାର୍ଯ୍ୟ ହେଉଛି; କିନ୍ତୁ ଏକଥା ନିଶ୍ଚିତ ଯେ ଯେଉଁଠି ଏସବୁ କାର୍ଯ୍ୟ ହେଉଛି, ସେଠାରେ ବିଜୁଳିର ହିଁ ପ୍ରଭାବ କାର୍ଯ୍ୟ କରୁଛି; ବସ୍ତୁତଃ ତାହା ବିଜୁଳିର ହିଁ କିଛି ଅଂଶର ଅଭିବ୍ୟକ୍ତି, ଠିକ୍ ସେହିପରି ଯେଉଁପ୍ରାଣୀ ବା ବସ୍ତୁରେ ଯାହାକିଛି ବା ବିଶେଷତା ଦେଖାଯାଉଛି, ତାହା ଭଗବାନଙ୍କ ତେଜର ହିଁ ଏକ ଅଂଶର ଅଭିବ୍ୟକ୍ତି ବୋଲି ବୁଝିବା ଉଚିତ।

*ସମ୍ବନ୍ଧ– ଏହିପରି ମୁଖ୍ୟ ମୁଖ୍ୟ ବସ୍ତୁମାନଙ୍କରେ ନିଜ ଯୋଗଶକ୍ତିରୂପୀ ତେଜର ଅଂଶର ଅଭିବ୍ୟକ୍ତି ବର୍ଣ୍ଣନା କରି ବର୍ତ୍ତମାନ ଭଗବାନ୍ କହୁଛନ୍ତି ଯେ, ସମସ୍ତ ଜଗତ ତାଙ୍କରି ଯୋଗଶକ୍ତିର ଏକ ଅଂଶଦ୍ୱାରା ହିଁ ଧାରଣ କରାଯାଇଛି–*

## ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜୁନ।
## ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ।। ୪୨ ।।

**ଅନ୍ୱୟ–** ଅଥବା = ଅଥବା; ଅର୍ଜୁନ = ହେ ଅର୍ଜୁନ; ଏତେନ = ଏତେ; ବହୁନା = ବହୁତ; ଜ୍ଞାତେନ = ଜାଣିବାରେ; ତବ = ତୁମର; କିମ୍ = କେଉଁ (ପ୍ରୟୋଜନ); ଅହମ୍ = ମୁଁ; ଇଦମ୍ = ଏହି; କୃତ୍ସ୍ନମ୍ = ସମଗ୍ର; ଜଗତ୍ = ଜଗତକୁ; ଏକାଂଶେନ = ନିଜ ଯୋଗଶକ୍ତିର ଗୋଟିଏ ଅଂଶମାତ୍ରଦ୍ୱାରା; ବିଷ୍ଟଭ୍ୟ = ଧାରଣ କରି; ସ୍ଥିତଃ = ରହିଛି।

**ଅଥବା ହେ ଅର୍ଜୁନ! ଏତେ ବହୁତ ଜାଣିବାରେ ତୁମର କି ପ୍ରୟୋଜନ! ମୁଁ ଏହି ସଂପୂର୍ଣ୍ଣ ଜଗତକୁ ନିଜ ଯୋଗଶକ୍ତିର ଏକ ଅଂଶମାତ୍ରଦ୍ୱାରା ଧାରଣ କରି ରହିଛି॥ ୪୨ ॥**

**ପ୍ରଶ୍ନ –** ଏଠାରେ **ଅଥବା** ଶବ୍ଦ ପ୍ରୟୋଗର ଭାବ କଣ ?

**ଉତ୍ତର – ଅଥବା** ଶବ୍ଦ ପକ୍ଷାନ୍ତରର ବୋଧକ। କୋଡ଼ିଏରୁ ଅଣଚାଳିଶି ଶ୍ଳୋକଯାଏ ଭଗବାନ୍ ନିଜର ପ୍ରଧାନ ପ୍ରଧାନ ବିଭୂତିଗୁଡ଼ିକ ବର୍ଣ୍ଣନା କରି ଓ ଏକଚାଳିଶ ଶ୍ଳୋକରେ ନିଜ ତେଜର ଅଭିବ୍ୟକ୍ତିର ସ୍ଥାନଗୁଡ଼ିକ କହି ଯେଉଁ କଥା ବୁଝାଇଲେ, ତା'ଠାରୁ ଭିନ୍ନ ନିଜ ବିଶେଷପ୍ରଭାବର କଥା ଏବେ କହୁଛନ୍ତି। ଏହି ଭାବ ଦେଖାଇବାକୁ ଏଠାରେ 'ଅଥବା' ଶବ୍ଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** 'ଏପରି ବହୁତ ଜାଣିବାରେ ତୁମର କି ପ୍ରୟୋଜନ !' ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ତୁମେ ପଚାରିବାରୁ ମୁଁ ପ୍ରଧାନ ପ୍ରଧାନ ବିଭୂତିମାନଙ୍କର ବର୍ଣ୍ଣନା ତ କରିଦେଲି; କିନ୍ତୁ ଏତିକି ହିଁ ଜାଣିଲେ ଯଥେଷ୍ଟ ନୁହେଁ। ସାରକଥା ଏହି ଯେ, ମୁଁ ତୁମକୁ ଏବେ ଯାହା କହୁଛି, ତାହା ତୁମେ ଭଲଭାବେ ବୁଝିନିଅ; ବାକିସବୁ କଥା ସ୍ୱତଃ ବୁଝିପାରିବ। ତା'ପରେ ତୁମପାଇଁ ଆଉ ଜାଣିବାକୁ କିଛି ବାକି ରହିବ ନାହିଁ।''

**ପ୍ରଶ୍ନ – ଇଦମ୍** ଓ **କୃତ୍ସ୍ନମ୍** ବିଶେଷଣ ସହିତ **ଜଗତ୍** ପଦ କାହାର ବାଚକ ଏବଂ ତାହାକୁ ଭଗବାନ୍ ନିଜ ଯୋଗଶକ୍ତିର ଏକ ଅଂଶରେ ଧାରଣ କରିଥିବା କଥା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ **ଇଦମ୍** ଓ **କୃତ୍ସ୍ନମ୍** ବିଶେଷଣ ସହିତ **ଜଗତ୍** ପଦଟି ହେଉଛି ମନ, ଇନ୍ଦ୍ରିୟ ଓ ଶରୀରସହିତ ସମସ୍ତ ଚରାଚର ପ୍ରାଣୀଙ୍କର ତଥା ଭୋଗସାମଗ୍ରୀ, ଭୋଗସ୍ଥାନ ଓ ସମସ୍ତ ଲୋକସହିତ ବ୍ରହ୍ମାଣ୍ଡର ବାଚକ। ଏହି ବ୍ରହ୍ମାଣ୍ଡ ଭଗବାନଙ୍କର କୌଣସି ଏକ ଅଂଶରେ ତାଙ୍କ ଯୋଗଶକ୍ତିଦ୍ୱାରା ଧାରଣ କରାଯାଇଛି। ଏହିଭାବ ଦେଖାଇବାକୁ ଭଗବାନ୍ ଏହି ଜଗତର ସଂପୂର୍ଣ୍ଣ ବିସ୍ତାରକୁ ନିଜ ଯୋଗଶକ୍ତିର ଏକ ଅଂଶଦ୍ୱାରା ଧରାଯାଇଛି ବୋଲି କହିଛନ୍ତି।

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ*
*ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ବିଭୂତିଯୋଗୋ*
*ନାମ ଦଶମୋଽଧ୍ୟାୟଃ ॥ ୧୦॥*

—୦—

ଓଁ ଶ୍ରୀପରମାତ୍ମନେ ନମଃ

# ଏକାଦଶୋଽଧ୍ୟାୟଃ

## ବିଶ୍ୱରୂପଦର୍ଶନଯୋଗ

***ଅଧ୍ୟାୟର ନାମ :*** ଏହି ଅଧ୍ୟାୟରେ ଅର୍ଜୁନଙ୍କ ପ୍ରାର୍ଥନାକ୍ରମେ ଭଗବାନ୍ ତାହାଙ୍କୁ ନିଜର ବିଶ୍ୱରୂପ ଦର୍ଶନ କରାଇଛନ୍ତି। ଅଧ୍ୟାୟର ଅଧିକାଂଶ ଭାଗ ହେଉଛି କେବଳ ବିଶ୍ୱରୂପର ଓ ତା'ର ସ୍ତବନର ପ୍ରକରଣ। ତେଣୁ ଏହି ଅଧ୍ୟାୟର ନାମ 'ବିଶ୍ୱରୂପଦର୍ଶନଯୋଗ' ରଖାଯାଇଛି।

***ଅଧ୍ୟାୟର ସଂକ୍ଷିପ୍ତ ସାର :*** ଏହି ଅଧ୍ୟାୟର ପ୍ରଥମରୁ ଚତୁର୍ଥ ଶ୍ଳୋକଯାଏ ଅର୍ଜୁନ ଭଗବାନଙ୍କର ଓ ତାଙ୍କ ଉପଦେଶର ପ୍ରଶଂସା କରି ବିଶ୍ୱରୂପ ଦେଖାଇବାପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି। ପଞ୍ଚମରୁ ଅଷ୍ଟମ ଶ୍ଳୋକଯାଏ ଭଗବାନ୍ ନିଜ ଭିତରେ ଦେବତା, ମନୁଷ୍ୟ, ପଶୁ, ପକ୍ଷୀ ଆଦି ସମସ୍ତ ଚରାଚର ପ୍ରାଣୀଙ୍କୁ ତଥା ଅନେକ ଆଶ୍ଚର୍ଯ୍ୟପ୍ରଦ ଦୃଶ୍ୟସହିତ ସଂପୂର୍ଣ୍ଣ ଜଗତକୁ ଦେଖିବାକୁ ଆଜ୍ଞା ଦେଇ ଶେଷରେ ଦିବ୍ୟଦୃଷ୍ଟି ପ୍ରଦାନ କରିବାକୁ କହିଛନ୍ତି। ନବମରେ ସଞ୍ଜୟ ଭଗବାନଙ୍କ ଦ୍ୱାରା ଅର୍ଜୁନଙ୍କୁ ବିଶ୍ୱରୂପ ଦେଖାଇବା କଥା କହି, ଦଶମଠାରୁ ତେରଶ୍ଳୋକଯାଏ ଅର୍ଜୁନଙ୍କୁ କିପରି ରୂପ ଦେଖାଇଲେ, ତାହା ବର୍ଣ୍ଣନା କରିଛନ୍ତି। ଚଉଦରେ ସେହି ରୂପ ଦେଖି, ବିସ୍ମିତ ଓ ହର୍ଷିତ ହୋଇ ଶ୍ରଦ୍ଧାର ସହିତ ଭଗବାନଙ୍କୁ ପ୍ରଣାମ କରିବାପୂର୍ବକ ଅର୍ଜୁନ ଅନ୍ତରର ଭାବ ବ୍ୟକ୍ତ କରିଛନ୍ତି। ତା'ପରେ ପନ୍ଦରଠାରୁ ଏକତିରିଶଯାଏ ଅର୍ଜୁନ ବିଶ୍ୱରୂପର ସ୍ତବନ କରି ତାହାର ପ୍ରଭାବ ବର୍ଣ୍ଣନା କରିଛନ୍ତି ଏବଂ ସେଥିରେ ଦେଖାଯାଉଥିବା ଦୃଶ୍ୟଗୁଡ଼ିକ ବର୍ଣ୍ଣନା କରି ଶେଷରେ ଭଗବାନଙ୍କୁ ତାଙ୍କର ପ୍ରକୃତ ପରିଚୟ ଦେବାକୁ ପ୍ରାର୍ଥନା କରିଛନ୍ତି। ବତିଶଠାରୁ ଚୌତିରିଶଯାଏ ଭଗବାନ୍ ନିଜକୁ ଲୋକବିନାଶକାରୀ 'କାଳ' ବୋଲି କହି ତଥା ଭୀଷ୍ମ-ଦ୍ରୋଣାଦି ସମସ୍ତ ବୀର ତାଙ୍କ ଦ୍ୱାରା ପୂର୍ବରୁ ନିହତ ହୋଇସାରିଥିବା କଥା କହି ଅର୍ଜୁନଙ୍କୁ ଉତ୍ସାହିତ କରିଛନ୍ତି ଏବଂ ସେ ନିମିତ୍ତମାତ୍ର ହୋଇ ଯୁଦ୍ଧ କରିବାକୁ ଆଜ୍ଞା ଦେଇଛନ୍ତି। ତା'ପରେ ପଇଁତିରିଶ ଶ୍ଳୋକରେ ଭଗବାନଙ୍କ କଥା ଶୁଣି, ଆଶ୍ଚର୍ଯ୍ୟ ଓ ଭୟରେ ନିମଜ୍ଜିତ ହୋଇ ଅର୍ଜୁନ କିପରି କଣ ସବୁ କହିଲେ, ତାହା ବର୍ଣ୍ଣନା କରାଯାଇଛି। ଛତିଶଠାରୁ ଛୟାଳିଶଯାଏ ଅର୍ଜୁନ ଭଗବାନଙ୍କୁ ସ୍ତୁତି, ନମସ୍କାର କରି, କ୍ଷମାଭିକ୍ଷା କରିବା କଥା ଓ ଦିବ୍ୟ ଚତୁର୍ଭୁଜରୂପ ଦର୍ଶନ କରାଇବାକୁ ପ୍ରାର୍ଥନା କରିବା କଥା ବର୍ଣ୍ଣିତ ହୋଇଛି। ସତଚାଳିଶ ଓ ଅଠଚାଳିଶରେ ଭଗବାନ୍ ନିଜ ବିଶ୍ୱରୂପର ମହିମା ଓ ତା'ର ଦର୍ଶନର ଦୁର୍ଲଭତା ବିଷୟ କହି, ଅଣଚାଶରେ ଅର୍ଜୁନଙ୍କୁ ଆଶ୍ୱାସନା ଦେବାପୂର୍ବକ ଚତୁର୍ଭୁଜରୂପ ଦେଖିବାକୁ ଆଜ୍ଞା ଦେଇଛନ୍ତି। ପଚାଶରେ ଚତୁର୍ଭୁଜରୂପ ଦର୍ଶନ କରାଇ ପୁଣି ମନୁଷ୍ୟରୂପ ହେବା କଥା ସଞ୍ଜୟ ବର୍ଣ୍ଣନା କରିଛନ୍ତି। ଏକାବନରେ ଅର୍ଜୁନ ଭଗବାନଙ୍କର ସୌମ୍ୟ ମାନବରୂପ ଦେଖି ସଚେତ ଓ ପ୍ରକୃତିସ୍ଥ ହେଲେ ବୋଲି କୁହାଯାଇଛି। ତା'ପରେ ବାଉନ ଓ ତେପନ ଶ୍ଳୋକରେ ଭଗବାନ୍ ତାଙ୍କ ଚତୁର୍ଭୁଜରୂପଦର୍ଶନକୁ ଦୁର୍ଲଭ କହି ଚଉବନରେ ଅନନ୍ୟଭକ୍ତିଦ୍ୱାରା ସେହି ରୂପର ଦର୍ଶନ, ଜ୍ଞାନ ଏବଂ ପ୍ରାପ୍ତି ସୁଲଭ ବୋଲି କହିଛନ୍ତି। ପୁଣି ପଞ୍ଚାବନରେ ଅନନ୍ୟଭକ୍ତିର ସ୍ୱରୂପ ଓ ତା'ର ଫଳ କହି ଅଧ୍ୟାୟର ଉପସଂହାର କରିଛନ୍ତି।

*ସମ୍ବନ୍ଧ—* ଦଶମ ଅଧ୍ୟାୟର ସପ୍ତମ ଶ୍ଳୋକଯାଏ ଭଗବାନ୍ ନିଜର ବିଭୂତି ତଥା ଯୋଗଶକ୍ତି ଓ ତାହା ଜାଣିବାର ମାହାତ୍ମ୍ୟ ସଂକ୍ଷେପରେ ବର୍ଣ୍ଣନା କରି ଏଗାର ଶ୍ଳୋକଯାଏ ଭକ୍ତିଯୋଗ ଓ ତାହାର ଫଳ ନିରୂପଣ କରିଥିଲେ। ତା'ପରେ ବାରରୁ ଅଠର ଶ୍ଳୋକଯାଏ ଅର୍ଜୁନ ,ଭଗବାନଙ୍କୁ ସ୍ତୁତି କରି ତାଙ୍କୁ ଦିବ୍ୟ ବିଭୂତିମାନଙ୍କର ଓ ଯୋଗଶକ୍ତିର ବିସ୍ତୃତ ବର୍ଣ୍ଣନା କରିବାକୁ ପ୍ରାର୍ଥନା କରିଥିଲେ। ତେଣୁ ଭଗବାନ୍ ଚାଳିଶ ଶ୍ଳୋକଯାଏ ନିଜ ବିଭୂତିମାନଙ୍କର ବର୍ଣ୍ଣନା କରି ଶେଷରେ ଯୋଗଶକ୍ତିର ପ୍ରଭାବ କହିଥିଲେ ଏବଂ ସମସ୍ତ ବ୍ରହ୍ମାଣ୍ଡକୁ

ନିଜର ଏକ ଅଂଶରେ ଧାରଣ କରିଥିବା କଥା କହି ଅଧ୍ୟାୟ ଉପସଂହାର କରିଥିଲେ । ସେହି ପ୍ରସଙ୍ଗ ଶୁଣି ଅର୍ଜୁନଙ୍କ ମନରେ ସେହି ମହାନ୍ ସ୍ୱରୂପ (ଯାହାର ଏକ ଅଂଶରେ ସମସ୍ତ ବିଶ୍ୱ ରହିଛି) ପ୍ରତ୍ୟକ୍ଷ ଦର୍ଶନ କରିବାକୁ ଇଚ୍ଛା ଜାଗ୍ରତ ହେଲା । ଅତଏବ ଏହି ଏଗାର ଅଧ୍ୟାୟର ଆରମ୍ଭରେ ପ୍ରଥମ ଚାରିଟି ଶ୍ଳୋକରେ ଭଗବାନଙ୍କର ଓ ତାଙ୍କ ଉପଦେଶର ପ୍ରଶଂସା କରି ଅର୍ଜୁନ ଭଗବାନଙ୍କୁ ବିଶ୍ୱରୂପ ଦେଖାଇବାକୁ ପ୍ରାର୍ଥନା କରୁଛନ୍ତି —

ଅର୍ଜୁନ ଉବାଚ

**ମଦନୁଗ୍ରହାୟ ପରମଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତମ୍ ।**
**ଯତ୍ ତ୍ୱୟୋକ୍ତଂ ବଚସ୍ତେନ ମୋହୋଽୟଂ ବିଗତୋ ମମ ॥ ୧ ॥**

ଅନ୍ୱୟ – **ମଦନୁଗ୍ରହାୟ** = ମୋ ପ୍ରତି ଅନୁଗ୍ରହ କରିବା ପାଇଁ; **ତ୍ୱୟା** = ଆପଣଙ୍କ ଦ୍ୱାରା; **ଯତ୍** = ଯେଉଁ; **ପରମମ୍** = ପରମ; **ଗୁହ୍ୟମ୍** = ଗୋପନୀୟ; **ଅଧ୍ୟାତ୍ମସଂଜ୍ଞିତମ୍** = ଅଧ୍ୟାତ୍ମବିଷୟକ; **ବଚଃ** = ବଚନ ଅର୍ଥାତ୍ ଉପଦେଶ; **ଉକ୍ତମ୍** = କଥିତ ହେଲା; **ତେନ** = ତାହା ଦ୍ୱାରା; **ମମ** = ମୋର; **ଅୟମ୍** = ଏହି; **ମୋହଃ** = ଅଜ୍ଞାନ; **ବିଗତଃ** = ନଷ୍ଟ ହୋଇଗଲା ।

**ଅର୍ଜୁନ କହିଲେ — ମୋ ପ୍ରତି ଅନୁଗ୍ରହ କରି ଆପଣ ଯେଉଁ ପରମ ଗୋପନୀୟ ଅଧ୍ୟାତ୍ମବିଷୟକ ବଚନ କହିଲେ ଅର୍ଥାତ୍ ଉପଦେଶ ଦେଲେ, ତଦ୍ୱାରା ମୋର ଏହି ଅଜ୍ଞାନ ନଷ୍ଟ ହୋଇଗଲା ॥ ୧ ॥**

**ପ୍ରଶ୍ନ –** **ମଦନୁଗ୍ରହାୟ** ପଦ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଦଶମ ଅଧ୍ୟାୟର ପ୍ରାରମ୍ଭରେ ପ୍ରେମପାରାବାର ଭଗବାନ୍ କହିଥିଲେ, "ଅର୍ଜୁନ ! ତୁମର ମୋଠାରେ ଅତ୍ୟନ୍ତ ପ୍ରେମ ରହିଛି, ତେଣୁ ମୁଁ ଏସବୁ କଥା ତୁମର ହିତପାଇଁ କହୁଛି ।" ଏପରି କହି ଭଗବାନ୍ ନିଜର ଯେଉଁ ଅଲୌକିକ ପ୍ରଭାବ ଶୁଣାଇଦେଲେ, ତାହା ଶୁଣି ଅର୍ଜୁନଙ୍କ ହୃଦୟରେ କୃତଜ୍ଞତା, ସୁଖ ଓ ପ୍ରେମର ତରଙ୍ଗ ଉଚ୍ଛୁଳିବାକୁ ଲାଗିଲା । ସେ ଭାବିଲେ, "ଆହା ! ଏହି ସର୍ବଲୋକମହେଶ୍ୱର ଭଗବାନଙ୍କର ମୋପରି ତୁଚ୍ଛଠାରେ କେତେ କୃପା ଯେ, ମୋଭଳି ଜଣେ ସାମାନ୍ୟ ବ୍ୟକ୍ତିକୁ ନିଜର ପ୍ରେମୀ ବୋଲି ମାନୁଛନ୍ତି ଏବଂ ମୋ ଆଗରେ ନିଜ ମହିମାର ଏତେସବୁ ଅଦ୍ଭୁତ ଓ ଗୋପନୀୟ କଥା ହୃଦୟ ଖୋଲି କହି ଚାଲିଛନ୍ତି !" ଏଭିତରେ ତାଙ୍କୁ ମହର୍ଷିମାନେ କହିଥିବା କଥା ମନେ ପଡ଼ିଗଲା ଓ ସେ ପରମ ବିଶ୍ୱାସର ସହିତ ଭଗବାନଙ୍କର ଗୁଣଗାନ କରି କରି ପ୍ରଭୁଙ୍କୁ ତାଙ୍କର ଯୋଗଶକ୍ତି ଓ ବିଭୂତିଗୁଡ଼ିକ ଆହୁରି ବିସ୍ତୃତଭାବରେ ଶୁଣାଇବାକୁ ସପ୍ରେମ ପ୍ରାର୍ଥନା କଲେ । ଭଗବାନ୍ ତାଙ୍କ ପ୍ରାର୍ଥନା ଶୁଣିଲେ ଏବଂ ନିଜ ବିଭୂତିଗୁଡ଼ିକର ତଥା ଯୋଗଶକ୍ତିର ସଂକ୍ଷିପ୍ତ ବର୍ଣ୍ଣନା ଶୁଣାଇଲେ । ଅର୍ଜୁନଙ୍କ ହୃଦୟରେ ଭଗବତ୍‌କୃପାର ସ୍ପର୍ଶ ଲାଗିଗଲା । ସେ ଭଗବତ୍‌କୃପାର ଅପୂର୍ବ ଦର୍ଶନ ଲାଭ କରି ଆନନ୍ଦବିମୁଗ୍ଧ ହୋଇଗଲେ ।

ସାଧକକୁ ଯେତେବେଳଯାଏ ନିଜ ପୁରୁଷାର୍ଥ, ସାଧନା ବା ନିଜ ଯୋଗ୍ୟତାର ସ୍ମରଣ ହେଉଥିବ, ସେତେବେଳଯାଏ ସେ ଭଗବତ୍‌କୃପାରୂପୀ ପରମଲାଭରୁ ବଞ୍ଚିତ ହେବାଭଳି ରହିଥିବ; ଭଗବତ୍‌କୃପାପ୍ରଭାବରେ ସେ ସହଜରେ ସାଧନାର ଉଚ୍ଚସ୍ତରକୁ ଉଠିପାରିବ ନାହିଁ । କିନ୍ତୁ ଯେତେବେଳେ ତାଙ୍କୁ ଭଗବତ୍‌କୃପାରୁ ହିଁ ଭଗବତ୍‌କୃପାର ପ୍ରତୀତି ହୋଇଯିବ ଏବଂ ସେ ପ୍ରତ୍ୟକ୍ଷପରି ବୁଝିପାରିବ ଯେ, ଯାହା କିଛି ହେଉଛି, ସବୁ ଭଗବାନଙ୍କ ଅନୁଗ୍ରହରୁ ହିଁ ହେଉଛି, ସେତେବେଳେ ତା'ର ହୃଦୟ କୃତଜ୍ଞତାରେ ଭରିଯିବ ଓ ସେ କହି ଉଠିବ, "ହେ, ଭଗବନ୍ ! ମୁଁ କୌଣସିପ୍ରକାରେ ଯୋଗ୍ୟ ନୁହେଁ । ମୁଁ ତ ସର୍ବଥା ଅନଧିକାରୀ । ଏସବୁ ହେଉଛି କେବଳ ଆପଣଙ୍କ ଅନୁଗ୍ରହର ଲୀଳା ।" ସେହିପରି କୃତଜ୍ଞତାପୂର୍ଣ୍ଣ ହୃଦୟରେ ଅର୍ଜୁନ କହୁଛନ୍ତି, "ଭଗବନ୍ ! ଆପଣ ଯାହା କିଛି ବି ମହତ୍ତ୍ୱ ଓ ପ୍ରଭାବର କଥା ଶୁଣାଇଲେ, ମୁଁ ତାହାର ପାତ୍ର

ନୁହେଁ। ମୋତେ ଅନୁଗ୍ରହ କରିବାପାଇଁ ହିଁ ଆପଣ ନିଜର ଏହି ପରମ ଗୋପନୀୟ ରହସ୍ୟ ଶୁଣାଇଛନ୍ତି।'' ଏହା ହିଁ **ମଦନୁଗ୍ରହାୟ** ପଦ ପ୍ରୟୋଗର ଅଭିପ୍ରାୟ।

**ପ୍ରଶ୍ନ – ପରମମ୍, ଗୁହ୍ୟମ୍, ଅଧ୍ୟାତ୍ମସଂଜ୍ଞିତମ୍ –** ଏହି ତିନୋଟି ବିଶେଷଣ ସହିତ **ବଚଃ** ପଦ ଭଗବାନଙ୍କର କେଉଁ ଉପଦେଶର ସୂଚକ ତଥା ଏସବୁ ବିଶେଷଣର ଭାବ କଣ ?

**ଉତ୍ତର –** ଦଶମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଭଗବାନ୍ ପୁଣି ଥରେ ଯେଉଁ ପରମ ବଚନ ଶୁଣାଇବାକୁ ପ୍ରତିଜ୍ଞା କରିଛନ୍ତି ଏବଂ ସେହି ପ୍ରତିଜ୍ଞାନୁସାରେ ଏଗାର ଶ୍ଳୋକଯାଏ ଭଗବାନଙ୍କର ଯେଉଁ ଉପଦେଶ ରହିଛି ଏବଂ ତା'ଛଡ଼ା ଅର୍ଜୁନ ପଚାରିବାରୁ ପୁଣି କୋଡ଼ିଏଠାରୁ ବୟାଳିଶ ଶ୍ଳୋକଯାଏ ଭଗବାନ୍ ନିଜର ବିଭୂତିମାନଙ୍କର ଓ ଯୋଗଶକ୍ତିର ଯେଉଁ ପରିଚୟ ଦେଇଛନ୍ତି ତଥା ସପ୍ତମରୁ ନବମ ଅଧ୍ୟାୟଯାଏ ବିଜ୍ଞାନସହିତ ଜ୍ଞାନ କହିବାର ପ୍ରତିଜ୍ଞା କରି ଭଗବାନ୍ ନିଜର ଯେଉଁ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଓ ସ୍ୱରୂପର ତତ୍ତ୍ୱ ଓ ରହସ୍ୟ ବୁଝାଇଛନ୍ତି, ଏଠାରେ **ପରମମ୍, ଗୁହ୍ୟମ୍** ଓ **ଅଧ୍ୟାତ୍ମସଂଜ୍ଞିତମ୍ –** ଏହି ତିନି ବିଶେଷଣ ସହିତ **ବଚଃ** ପଦଟି ହେଉଛି ସେହିସବୁ ଉପଦେଶର ବାଚକ।

ଯେଉଁ ଯେଉଁ ପ୍ରକରଣରେ ଭଗବାନ୍ ନିଜର ଗୁଣ, ପ୍ରଭାବ ଓ ତତ୍ତ୍ୱ ନିରୂପଣ କରି ଅର୍ଜୁନଙ୍କୁ ନିଜର ଶରଣ ନେବାକୁ ପ୍ରେରଣା ଦେଇଛନ୍ତି ଓ ସ୍ପଷ୍ଟଭାବରେ କହିଛନ୍ତି ଯେ, ''ଏଠାରେ ତୁମ ସମ୍ମୁଖରେ ବିରାଜିତ ମୁଁ ଶ୍ରୀକୃଷ୍ଣ ହିଁ ଏହି ସମସ୍ତ ଜଗତର କର୍ତ୍ତା, ହର୍ତ୍ତା, ନିର୍ଗୁଣ, ସଗୁଣ, ନିରାକାର, ସାକାର, ମାୟାତୀତ, ସର୍ବଶକ୍ତିମାନ୍, ସର୍ବାଧାର ପରମେଶ୍ୱର,'' ସେହି ପ୍ରକରଣକୁ ଭଗବାନ୍ ସ୍ୱୟଂ 'ପରମ ଗୁହ୍ୟ' ବୋଲି କହିଛନ୍ତି। ଅତଏବ ଏଠାରେ ସେହି ବିଶେଷଣଗୁଡ଼ିକ ପୁଣି ଥରେ କହି ଅର୍ଜୁନ ଜଣାଉଛନ୍ତି, ''ଆପଣଙ୍କର ଏହି ଉପଦେଶ ନିଶ୍ଚିତରୂପେ ପରମ ଗୋପନୀୟ।''

**ପ୍ରଶ୍ନ –** ଏଠାରେ **ଅୟମ୍** ବିଶେଷଣ ସହିତ **ମୋହଃ** ପଦ ଅର୍ଜୁନଙ୍କର କେଉଁ ମୋହର ବାଚକ ଏବଂ ଉପରୋକ୍ତ ଉପଦେଶଦ୍ୱାରା ତାହା ନାଶ ହୋଇଯିବା କଣ ?

**ଉତ୍ତର –** ଅର୍ଜୁନ ଭଗବାନଙ୍କର ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଓ ସ୍ୱରୂପ ସଂପୂର୍ଣ୍ଣରୂପେ ଜାଣି ନ ଥିଲେ ଏବଂ ତାହା ହିଁ ଥିଲା ତାଙ୍କର ମୋହ। ବର୍ତ୍ତମାନ ଉପରୋକ୍ତ ଉପଦେଶଦ୍ୱାରା ଭଗବାନଙ୍କର ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ, ରହସ୍ୟ ଓ ସ୍ୱରୂପ କେତେକାଂଶରେ ବୁଝିପାରି ସେ ଜାଣିଗଲେ ଯେ, ଶ୍ରୀକୃଷ୍ଣ ହିଁ ସାକ୍ଷାତ୍ ପରମେଶ୍ୱର; ତାହା ହିଁ ତାଙ୍କର ମୋହନାଶ ହୋଇଯିବା।

## ଭବାପ୍ୟୟୌ ହି ଭୂତାନାଂ ଶ୍ରୁତୌ ବିସ୍ତରଶୋ ମୟା।
## ତ୍ୱତ୍ତଃ କମଳପତ୍ରାକ୍ଷ ମାହାତ୍ମ୍ୟମପି ଚାବ୍ୟୟମ୍॥ ୨ ॥

ଅନ୍ୱୟ – **ହି** = କାରଣ; **କମଳପତ୍ରାକ୍ଷ** = ହେ କମଳନୟନ !; **ମୟା** = ମୋ'ଦ୍ୱାରା; **ତ୍ୱତ୍ତଃ** = ଆପଣଙ୍କ ଠାରୁ; **ଭୂତାନାମ୍** = ପ୍ରାଣୀମାନଙ୍କର; **ଭବାପ୍ୟୟୌ** = ଉତ୍ପତ୍ତି ଓ ପ୍ରଳୟ ବିଷୟ; **ବିସ୍ତରଶଃ** = ବିସ୍ତୃତଭାବରେ; **ଶ୍ରୁତୌ** = ଶୁଣିଲି; **ଚ** = ତଥା; **ଅବ୍ୟୟମ୍** = (ଆପଣଙ୍କର) ଅବିନାଶୀ; **ମାହାତ୍ମ୍ୟମ୍** = ମହିମା; **ଅପି** = ମଧ (ଶୁଣିଲି)।

**କାରଣ, ହେ କମଳନୟନ! ମୁଁ ଆପଣଙ୍କ ଠାରୁ ପ୍ରାଣୀମାନଙ୍କର ଉତ୍ପତ୍ତି ଓ ପ୍ରଳୟ ବିଷୟ ବିସ୍ତୃତଭାବରେ ଶୁଣିଲି ତଥା ଆପଣଙ୍କର ଅବିନାଶୀ ମହିମା ମଧ ଶୁଣିଲି॥ ୨ ॥**

**ପ୍ରଶ୍ନ –** 'ମୁଁ ଆପଣଙ୍କ ଠାରୁ ପ୍ରାଣୀମାନଙ୍କର ଉତ୍ପତ୍ତି ଓ ପ୍ରଳୟ ବିସ୍ତୃତଭାବରେ ଶୁଣିଛି'– ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଆପଣଙ୍କ ଠାରୁ ହିଁ ସମସ୍ତ ଚରାଚର ପ୍ରାଣୀମାନଙ୍କର ଉତ୍ପତ୍ତି ହୁଏ; ଆପଣ ହିଁ ସେମାନଙ୍କୁ ପାଳନ କରନ୍ତି ଓ ସେମାନେ ସମସ୍ତେ ଆପଣଙ୍କ ଠାରେ ହିଁ ଲୀନ ହୁଅନ୍ତି; ଏହା ମୁଁ ଆପଣଙ୍କ ମୁଖରୁ (ସପ୍ତମ ଅଧ୍ୟାୟଠାରୁ ଦଶମ ଅଧ୍ୟାୟଯାଏ) ବିସ୍ତୃତଭାବରେ ବାରମ୍ବାର ଶୁଣିଛି।''

**ପ୍ରଶ୍ନ –** 'ତଥା ଆପଣଙ୍କର ଅବିନାଶୀ ମହିମା ମଧ ଶୁଣିଛି'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନ କହୁଛନ୍ତି, ''କେବଳ ପ୍ରାଣୀମାନଙ୍କର ଉତ୍ପତ୍ତି ଓ ପ୍ରଳୟର କଥା ହିଁ ଯେ ଆପଣଙ୍କ ଠାରୁ ଶୁଣିଛି, ତାହା ନୁହେଁ, ଆପଣଙ୍କର

ଯେଉଁ ଅବିନାଶୀ ମହିମା ରହିଛି, ତାହା ବି ଶୁଣିଛି। ଅର୍ଥାତ୍, ଆପଣ ସମଗ୍ର ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର ଆଦି କରି ମଧ୍ୟ ପ୍ରକୃତରେ ଅକର୍ତ୍ତା ଅଟନ୍ତି, ସମସ୍ତଙ୍କୁ ନିୟମିତ କରି ମଧ୍ୟ, ଉଦାସୀନ, ସର୍ବବ୍ୟାପୀ ହୋଇ ମଧ୍ୟ ସକଳ ବସ୍ତୁର ଗୁଣ-ଦୋଷରୁ ସର୍ବଥା ନିର୍ଲିପ୍ତ ଏବଂ ଶୁଭାଶୁଭ କର୍ମର ସୁଖ-ଦୁଃଖରୂପୀ ଫଳ ଦେଇ ମଧ୍ୟ ନିର୍ଦ୍ଦୟତା ଓ ବିଷମତା ଦୋଷରୁ ରହିତ। ଆପଣ ହିଁ ପ୍ରକୃତି, କାଳ ଓ ସକଳ ଲୋକପାଳରୂପେ ପ୍ରକଟ ହୋଇ ସମସ୍ତଙ୍କୁ ଶାସନ କରୁଥିବା ସର୍ବଶକ୍ତିମାନ୍ ଭଗବାନ୍– ଆପଣଙ୍କର ଏପ୍ରକାର ମାହାତ୍ମ୍ୟ ମଧ୍ୟ ମୁଁ ସେହି ସେହି ପ୍ରକରଣରେ ବାରମ୍ବାର ଶୁଣିଛି।''

**ଏବମେତଦ୍ ଯଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର।**
**ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ ।। ୩ ।।**

**ଅନ୍ୱୟ–** ପରମେଶ୍ୱର = ହେ ପରମେଶ୍ୱର; **ତ୍ୱମ୍** = ଆପଣ; **ଆତ୍ମାନମ୍** = ନିଜକୁ; **ଯଥା** = ଯେପରି; **ଆତ୍ଥ** = କହୁଛନ୍ତି; **ଏତଦ୍** = ଏହା; **ଏବମ୍ (ଏବ)** = ଠିକ୍ ସେହିପରି (ତଥାପି); **ପୁରୁଷୋତ୍ତମ** = ହେ ପୁରୁଷୋତ୍ତମ !; **ତେ** = ଆପଣଙ୍କର; **ଐଶ୍ୱରମ୍, ରୂପମ୍** = ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜଯୁକ୍ତ ଦିବ୍ୟରୂପକୁ; **ଦ୍ରଷ୍ଟୁମ୍** = ପ୍ରତ୍ୟକ୍ଷ ଦେଖିବାକୁ; **ଇଚ୍ଛାମି** = ମୁଁ ଚାହୁଁଛି।

**ହେ ପରମେଶ୍ୱର ! ଆପଣ ନିଜକୁ ଯେପରି କହୁଛନ୍ତି, ତାହା ଠିକ୍ ସେହିପରି। ତଥାପି ହେ ପୁରୁଷୋତ୍ତମ ! ଆପଣଙ୍କର ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜଯୁକ୍ତ ଐଶ୍ୱରରୂପକୁ ମୁଁ ପ୍ରତ୍ୟକ୍ଷ ଦେଖିବାକୁ ଚାହୁଁଛି।। ୩ ।।**

**ପ୍ରଶ୍ନ –ପରମେଶ୍ୱର ଓ ପୁରୁଷୋତ୍ତମ** – ଏହି ଦୁଇ ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର – ପରମେଶ୍ୱର** ସମ୍ବୋଧନଦ୍ୱାରା ଅର୍ଜୁନ କହୁଛନ୍ତି, ''ଆପଣ ଈଶ୍ୱରମାନଙ୍କର ମଧ୍ୟ ମହାନ୍ ଈଶ୍ୱର ଓ ସର୍ବସମର୍ଥ; ଅତଏବ ମୁଁ ଆପଣଙ୍କର ଯେଉଁ ଈଶ୍ୱରସ୍ୱରୂପ ଦେଖିବାକୁ ଚାହୁଁଛି, ତାହା ଆପଣ ସହଜରେ ଦେଖାଇପାରିବେ।'' **ପୁରୁଷୋତ୍ତମ** ସମ୍ବୋଧନଦ୍ୱାରା କହୁଛନ୍ତି, ''ଆପଣ କ୍ଷର ଓ ଅକ୍ଷର ଉଭୟଠାରୁ ଉତ୍ତମ ସାକ୍ଷାତ୍ ଭଗବାନ୍। ଅତଏବ ମୋ ଉପରେ ଦୟା କରି ମୋର ଇଚ୍ଛା ପୂର୍ଣ୍ଣ କରନ୍ତୁ।''

**ପ୍ରଶ୍ନ –** 'ଆପଣ ନିଜକୁ ଯେପରି କହୁଛନ୍ତି, ତାହା ଠିକ୍ ସେହିପରି।'' – ଏହି କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି ଯେ, ଭଗବାନ୍ ନିଜର ଗୁଣ, ପ୍ରଭାବ, ତତ୍ତ୍ୱ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ନିଜ ବିଷୟରେ ଯାହାକିଛି କହିଛନ୍ତି, ତାହା ସଂପୂର୍ଣ୍ଣ ଯଥାର୍ଥ; ସେଥିରେ ତାଙ୍କର ତିଳେମାତ୍ର ଶଙ୍କା ନାହିଁ।

**ପ୍ରଶ୍ନ – ଐଶ୍ୱରମ୍** ବିଶେଷଣ ସହିତ **ରୂପମ୍** ପଦ କେଉଁ ରୂପର ବାଚକ ଏବଂ 'ତାହା ମୁଁ ଦେଖିବାକୁ ଚାହେଁ' – ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁଥିରେ ଅସୀମ ଓ ଅନନ୍ତ ଜ୍ଞାନ, ଶକ୍ତି, ବଳ, ବୀର୍ଯ୍ୟ, ଓ ତେଜ ଆଦି ଈଶ୍ୱରୀୟ ଗୁଣ ଓ ପ୍ରଭାବ ପ୍ରତ୍ୟକ୍ଷ ଦେଖାଯାଏ ତଥା ସମସ୍ତ ବିଶ୍ୱ ଯାହାର ଏକ ଅଂଶରେ ନିବାସ କରେ, ଏଠାରେ **ଐଶ୍ୱରମ୍** ବିଶେଷଣ ସହିତ **ରୂପମ୍** ପଦଟି ହେଉଛି ସେହିପରି ରୂପର ବାଚକ। 'ତାହା ମୁଁ ଦେଖିବାକୁ ଚାହୁଁଛି'– ଏ କଥନଦ୍ୱାରା ଅର୍ଜୁନ କହୁଛନ୍ତି, ''ଏପରି ଅଦ୍ଭୁତ ରୂପ ମୁଁ କେବେ ଦେଖି ନାହିଁ; ଆପଣଙ୍କ ମୁଖରୁ ତା'ର ବର୍ଣ୍ଣନା ଶୁଣି (୧୦/୪୨) ତାହା ଦେଖିବାକୁ ମୋର ମନରେ ଅତ୍ୟନ୍ତ ତୀବ୍ର ଇଚ୍ଛା ଜାଗ୍ରତ ହୋଇଯାଇଛି; ସେହି ରୂପ ଦର୍ଶନ କରି ମୁଁ କୃତକୃତ୍ୟ ହୋଇଯିବି ବୋଲି ମନେ କରୁଛି।''

**ପ୍ରଶ୍ନ –** ଯଦି ଅର୍ଜୁନଙ୍କର ଭଗବାନଙ୍କ କଥାରେ ପୂର୍ଣ୍ଣବିଶ୍ୱାସ ଥିଲା, କୌଣସିପ୍ରକାର ସନ୍ଦେହ ନ ଥିଲା, ତେବେ ସେ ସେପରି ରୂପ ଦେଖିବାକୁ କାହିଁକି ଇଚ୍ଛା ପ୍ରକଟ କଲେ ?

**ଉତ୍ତର –** ଯଦି କୌଣସି ସତ୍ୟବାଦୀ ପୁରୁଷଙ୍କ ପାଖରେ ପରଶମଣି, ଚିନ୍ତାମଣି ବା ସେହିପରି ଅନ୍ୟ

କିଛି ଅଦ୍ଭୁତ ବସ୍ତୁ ଥିବ ଏବଂ ତାଙ୍କ କଥା ଶୁଣି ଶ୍ରୋତାଙ୍କର ପୂର୍ଣ୍ଣବିଶ୍ୱାସ ବି ହୋଇଯିବ ଯେ, ତାଙ୍କ ନିକଟରେ ଅମୁକ ବସ୍ତୁ ନିଶ୍ଚୟ ଅଛି; ସେଥିରେ ତିଳେମାତ୍ର ସନ୍ଦେହ ନାହିଁ, ତଥାପି ସେହି ଅଦ୍ଭୁତ ବସ୍ତୁଟି ପୂର୍ବରୁ କେବେ ଦେଖି ନ ଥିବାରୁ ଯଦି ତାହା ମନରେ ତାହା ଦେଖିବାକୁ ତୀବ୍ର ଇଚ୍ଛା ଜାତ ହେବ ଏବଂ ସେ ସେହି ଇଚ୍ଛା ପ୍ରକଟ କରିଦେବ, ତେବେ ତଦ୍ଦ୍ୱାରା ତାହିଁରେ ବିଶ୍ୱାସ ଊଣା ହେବାର କିଛି ଅଛି କି? ଠିକ୍ ସେହିପରି ଭଗବାନଙ୍କର ସେହି ଅଲୌକିକ ସ୍ୱରୂପ ଅର୍ଜୁନ ପୂର୍ବରୁ କେବେ ଦେଖି ନ ଥିଲେ, ଏଣୁ ତାହା ଦେଖିବାକୁ ତାଙ୍କ ମନରେ ଇଚ୍ଛା ଜାତ ହୋଇଗଲା ଏବଂ ତାହା ସେ ପ୍ରକାଶ କରିଦେଲେ। ଏଥିରୁ ତାଙ୍କର ବିଶ୍ୱାସ କମ୍ ଥିଲା ବୋଲି କୁହାଯାଇ ନ ପାରେ; ବରଂ ବିଶ୍ୱାସ ଥିଲା; ତେଣୁ ସେ ଦେଖିବାକୁ ଆଗ୍ରହ ପ୍ରକାଶ କଲେ।

**ମନ୍ୟସେ ଯଦି ତଚ୍ଛକ୍ୟଂ ମୟା ଦ୍ରଷ୍ଟୁମିତି ପ୍ରଭୋ।**
**ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟମ୍॥ ୪ ॥**

**ଅନ୍ୱୟ–** **ପ୍ରଭୋ** = ହେ ପ୍ରଭୁ!; **ଯଦି** = ଯଦି; **ମୟା** = ମୋ'ଦ୍ୱାରା; **ତତ୍** = ଆପଣଙ୍କର ସେହି ରୂପ; **ଦ୍ରଷ୍ଟୁମ୍** = ଦେଖିହେବା; **ଶକ୍ୟମ୍** = ସମ୍ଭବ; **ଇତି** = ବୋଲି; **ମନ୍ୟସେ** = ଆପଣ ମନେ କରୁଛନ୍ତି; **ତତଃ** = ତେବେ; **ଯୋଗେଶ୍ୱର** = ହେ ଯୋଗେଶ୍ୱର; **ତ୍ୱମ୍** = ଆପଣ; **ଆତ୍ମାନମ୍, ଅବ୍ୟୟମ୍** = ନିଜର ସେହି ଅବିନାଶୀ ସ୍ୱରୂପକୁ; **ମେ** = ମୋତେ; **ଦର୍ଶୟ** = ଦେଖାନ୍ତୁ।

**ହେ ପ୍ରଭୁ! ଯଦି ମୋ ଦ୍ୱାରା ଆପଣଙ୍କର ସେହି ରୂପ ଦେଖିହେବା ସମ୍ଭବ ବୋଲି ଆପଣ ମନେ କରୁଛନ୍ତି, ତେବେ ହେ ଯୋଗେଶ୍ୱର! ଆପଣ ନିଜର ସେହି ଅବିନାଶୀ ସ୍ୱରୂପ ମୋତେ ଦର୍ଶନ କରାନ୍ତୁ॥ ୪ ॥**

**ପ୍ରଶ୍ନ– ପ୍ରଭୋ ଓ ଯୋଗେଶ୍ୱର–** ଏହି ଦୁଇ ସମ୍ବୋଧନର ଅଭିପ୍ରାୟ କଣ?

**ଉତ୍ତର– ପ୍ରଭୋ** ସମ୍ବୋଧନଦ୍ୱାରା ଅର୍ଜୁନ କହୁଛନ୍ତି, "ଆପଣ ସମସ୍ତଙ୍କର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ତଥା ଅନ୍ତର୍ଯାମୀରୂପରେ ଶାସନକର୍ତ୍ତା ହୋଇଥିବାରୁ ସର୍ବସମର୍ଥ ଅଟନ୍ତି। ଅତଏବ ଯଦି ମୁଁ ଆପଣଙ୍କର ସେହି ରୂପ ଦର୍ଶନ କରିବାକୁ ସୁଯୋଗ୍ୟ ଅଧିକାରୀ ନୁହେଁ, ତେବେ ଆପଣ କୃପାପୂର୍ବକ ନିଜ ସାମର୍ଥ୍ୟଦ୍ୱାରା ମୋତେ ସୁଯୋଗ୍ୟ ଅଧିକାରୀ କରିଦେଇପାରିବେ।" **ଯୋଗେଶ୍ୱର** ବିଶେଷଣ ଦେଇ ଦେଖାଇଛନ୍ତି, "ଆପଣ ସମସ୍ତ ଯୋଗର ସ୍ୱାମୀ। ଅତଏବ ଯଦି ଆପଣ ଚାହାଁନ୍ତି, ମୋତେ ନିଜର ସେହିରୂପ ଅନାୟାସରେ ଦେଖାଇପାରିବେ। ଯଦି ସାଧାରଣ ଯୋଗୀ ବି ଅନେକପ୍ରକାରେ ନିଜର ଐଶ୍ୱର୍ଯ୍ୟ ଦେଖାଇପାରନ୍ତି, ତେବେ ଆପଣଙ୍କ କଥା ବା କଣ କହିବା!"

**ପ୍ରଶ୍ନ–** 'ଯଦି ମୋ ଦ୍ୱାରା ଆପଣଙ୍କର ସେହି ରୂପ ଦେଖାଯାଇପାରିବ ବୋଲି ଆପଣ ମନେ କରନ୍ତି, ତେବେ ତାହା ମୋତେ ଦେଖାନ୍ତୁ' ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର–** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ମୁଁ ଆପଣଙ୍କ ଶ୍ରୀମୁଖରୁ ଆପଣଙ୍କର ଯେଉଁ ପ୍ରଭାବ ଶୁଣିସାରିଛି, ତାହା ବସ୍ତୁତଃ ସେହିପରି; ସେଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏହା ମଧ୍ୟ ଠିକ୍ ଯେ, ଆପଣ ଯଦି ସେହି ସ୍ୱରୂପ ମୋତେ ନ ଦେଖାନ୍ତି, ତେବେ ତଦ୍ଦ୍ୱାରା ସିଦ୍ଧ ହେବ ନାହିଁ ଯେ, ଆପଣଙ୍କ ପରି ଯୋଗେଶ୍ୱରଙ୍କ ଠାରେ ତାହାକୁ ଦର୍ଶନ କରାଇବାର ସାମର୍ଥ୍ୟ ନାହିଁ ଏବଂ ତଦ୍ଦ୍ୱାରା ମୋ ବିଶ୍ୱାସ ମଧ୍ୟ କୌଣସି ଅଂଶରେ କମିଯିବ ନାହିଁ। କିନ୍ତୁ ଏହା ଅବଶ୍ୟ ନିଶ୍ଚିତ ଯେ, ମୋ ମନରେ ଆପଣଙ୍କର ସେହି ରୂପଦର୍ଶନଲାଳସା ଅତ୍ୟନ୍ତ ପ୍ରବଳ। ଆପଣ ଅନ୍ତର୍ଯାମୀ। ମୋର ସେହି ଲାଳସା ସତ୍ୟ ଓ ଉତ୍କଟ କି ନୁହେଁ, ତାହା ଆପଣ ନିଜେ ଦେଖନ୍ତୁ; ଜାଣନ୍ତୁ। ଯଦି ଆପଣ ସେହି ଲାଳସା ଯଥାର୍ଥ ବୋଲି ଜାଣିବେ, ତେବେ ତ, ପ୍ରଭୁ! ମୁଁ ସେହି ସ୍ୱରୂପଦର୍ଶନର ଅଧିକାରୀ ହୋଇଯିବି, କାରଣ ଆପଣ ତ ଭକ୍ତବାଞ୍ଛାକଳ୍ପତରୁ; ଭକ୍ତମନର ଇଚ୍ଛା ଆପଣ ଦେଖନ୍ତି ଓ ଜାଣନ୍ତି; ଅନ୍ୟ ଯୋଗ୍ୟତା ଦେଖନ୍ତି ନାହିଁ। ଏଣୁ ଯଦି ଉଚିତ ଭାବୁଛନ୍ତି, ତେବେ କୃପା କରି ମୋତେ ନିଜର ସେହି ସ୍ୱରୂପ ଦର୍ଶନ କରାନ୍ତୁ।"

**ସମ୍ବନ୍ଧ –** ପରମ ଶ୍ରଦ୍ଧାଳୁ ଓ ପରମ ପ୍ରେମୀ ଅର୍ଜୁନ ଏପରି ପ୍ରାର୍ଥନା କରିବାରୁ ପରବର୍ତ୍ତୀ ତିନୋଟି ଶ୍ଳୋକରେ ଭଗବାନ୍ ନିଜର ବିଶ୍ୱରୂପ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାହା ଦେଖିବାକୁ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି –

ଶ୍ରୀଭଗବାନୁବାଚ

**ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ।**
**ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ।। ୫ ।।**

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ ! **ଅଥ** = ବର୍ତ୍ତମାନ (ତୁମେ); **ମେ** = ମୋର; **ଶତଶଃ, ସହସ୍ରଶଃ** = ଶତ-ଶତ, ସହସ୍ର-ସହସ୍ର; **ନାନାବିଧାନି** = ନାନାପ୍ରକାର; **ଚ** = ଏବଂ; **ନାନାବର୍ଣ୍ଣାକୃତୀନି** = ନାନା ବର୍ଣ୍ଣର ତଥା ନାନା ଆକୃତିର; **ଦିବ୍ୟାନି** = ଅଲୌକିକ; **ରୂପାଣି** = ରୂପମାନ; **ପଶ୍ୟ** = ଦେଖ ।

**ଶ୍ରୀଭଗବାନ୍ କହିଲେ — ହେ ପାର୍ଥ ! ବର୍ତ୍ତମାନ ତୁମେ ମୋର ନାନା ବର୍ଣ୍ଣର ତଥା ନାନା ଆକୃତିର ନାନାପ୍ରକାର ଶତ-ଶତ, ସହସ୍ର-ସହସ୍ର ଅଲୌକିକ ରୂପ ଦେଖ ।। ୫ ।।**

**ପ୍ରଶ୍ନ –** ଏଠାରେ **ଶତଶଃ** ଓ **ସହସ୍ରଶଃ** ଏହି ସଂଖ୍ୟାବାଚକ ପଦଦୁଇଟି ପ୍ରୟୋଗ କରିବାର ଭାବ କଣ ?

**ଉତ୍ତର –** ଏହା ପ୍ରୟୋଗ କରି ଭଗବାନ୍ ତାଙ୍କ ରୂପର ଅସଂଖ୍ୟତା ପ୍ରକଟ କରିଛନ୍ତି । ଭଗବାନଙ୍କ କଥନର ଅଭିପ୍ରାୟ ହେଉଛି, "ମୋର ବିଶ୍ୱରୂପର ଗୋଟିଏ ସ୍ଥାନରେ ତୁମେ ଅସଂଖ୍ୟ ରୂପ ଦେଖ ।"

**ପ୍ରଶ୍ନ – ନାନାବିଧାନି**ର ଅଭିପ୍ରାୟ କଣ ?

**ଉତ୍ତର – ନାନାବିଧାନି** ପଦଟି ବହୁସଂଖ୍ୟକ ପ୍ରକାରର ବୋଧକ। ଏହା ପ୍ରୟୋଗ କରି ଭଗବାନ୍ ବିଶ୍ୱରୂପରେ ଦେଖାଯାଉଥିବା ରୂପଗୁଡ଼ିକର ଜାତିଗତ ବିଭାଗର ଅନେକତା ପ୍ରକାଶ କରିଛନ୍ତି, ଅର୍ଥାତ୍ ଦେବ, ମନୁଷ୍ୟ ଓ ତିର୍ଯ୍ୟକ୍ ଆଦି ସମସ୍ତ ଚରାଚର ଜୀବମାନଙ୍କର ନାନା ବିଭାଗ ତାଙ୍କଠାରେ ଦେଖିବାକୁ କହିଛନ୍ତି ।

**ପ୍ରଶ୍ନ – ନାନାବର୍ଣ୍ଣାକୃତୀନି**ର ଅଭିପ୍ରାୟ କଣ ?

**ଉତ୍ତର – ବର୍ଣ୍ଣ** ଶବ୍ଦ ରକ୍ତ, ପୀତ ଓ କୃଷ୍ଣ ଆଦି ବିଭିନ୍ନ ରଙ୍ଗର ଏବଂ **ଆକୃତି** ଶବ୍ଦ ଅଙ୍ଗଗଠନର ବାଚକ। ଯେଉଁ ରୂପମାନଙ୍କର ବର୍ଣ୍ଣ ଏବଂ ଅଙ୍ଗଗଠନ ପୃଥକ୍ ପୃଥକ୍ ହୋଇ ଅନେକପ୍ରକାର, ସେଗୁଡ଼ିକୁ **ନାନାବର୍ଣ୍ଣାକୃତି** କହନ୍ତି। ଅତଏବ ଏହି ପଦ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି, "ଏହି ରୂପମାନଙ୍କର ବର୍ଣ୍ଣ ଓ ଅଙ୍ଗଗଠନ ମଧ୍ୟ ନାନାପ୍ରକାରର; ତାହା ମଧ୍ୟ ତୁମେ ଦେଖ ।"

**ପ୍ରଶ୍ନ – ଦିବ୍ୟାନି**ର ଅଭିପ୍ରାୟ କଣ ?

**ଉତ୍ତର –** ଅଲୌକିକ ଓ ଆଶ୍ଚର୍ଯ୍ୟଜନକ ବସ୍ତୁକୁ ଦିବ୍ୟ କହନ୍ତି। **ଦିବ୍ୟାନି** ପଦ ପ୍ରୟୋଗ କରି ଭଗବାନ୍ କହୁଛନ୍ତି, "ମୋ ଶରୀରରେ ଦେଖାଯାଉଥିବା ଭିନ୍ନ ଭିନ୍ନପ୍ରକାରର ଅସଂଖ୍ୟରୂପମଧ୍ୟରୁ ପ୍ରତ୍ୟେକଟି ରୂପ **ସମ୍ପୂର୍ଣ୍ଣ** ଦିବ୍ୟ ଅଟେ; ମୋର ଅଦ୍ଭୁତ ଯୋଗଶକ୍ତିଦ୍ୱାରା ରଚିତ ହୋଇଥିବାରୁ ଏସବୁ ଅଲୌକିକ ଓ ଆଶ୍ଚର୍ଯ୍ୟଜନକ ଅଟେ ।"

**ପଶ୍ୟାଦିତ୍ୟାନ୍ ବସୂନ୍ ରୁଦ୍ରାନଶ୍ୱିନୌ ମରୁତସ୍ତଥା ।**
**ବହୂନ୍ୟଦୃଷ୍ଟପୂର୍ବାଣି ପଶ୍ୟାଶ୍ଚର୍ଯ୍ୟାଣି ଭାରତ ।। ୬ ।।**

**ଅନ୍ୱୟ –** **ଭାରତ** = ହେ ଭରତବଂଶୀ ଅର୍ଜୁନ !; **ଆଦିତ୍ୟାନ୍** = ଆଦିତ୍ୟମାନଙ୍କୁ ଅର୍ଥାତ୍ ଅଦିତିଙ୍କର ଦ୍ୱାଦଶ ପୁତ୍ରଙ୍କୁ; **ବସୂନ୍** = ଅଷ୍ଟ ବସୁଙ୍କୁ; **ରୁଦ୍ରାନ୍** = ଏକାଦଶ ରୁଦ୍ରଙ୍କୁ; **ଅଶ୍ୱିନୌ** = ଦୁଇ ଅଶ୍ୱିନୀକୁମାରଙ୍କୁ; **ମରୁତଃ** = ଅଣଚାଶ ମରୁତଙ୍କୁ; **ପଶ୍ୟ** = ତୁମେ ଦେଖ; **ତଥା** = ତଥା (ଆହୁରି ମଧ୍ୟ); **ବହୂନି** = ବହୁ; **ଅଦୃଷ୍ଟପୂର୍ବାଣି** = ପୂର୍ବରୁ କେବେ ଦେଖି ନ ଥିବା; **ଆଶ୍ଚର୍ଯ୍ୟାଣି** = ଆଶ୍ଚର୍ଯ୍ୟମୟ ରୂପଗୁଡ଼ିକୁ; **ପଶ୍ୟ** = ଦେଖ ।

**ହେ ଭରତବଂଶୀ ଅର୍ଜୁନ! ମୋଠାରେ ଆଦିତ୍ୟମାନଙ୍କୁ ଅର୍ଥାତ୍ ଅଦିତିଙ୍କ ଦ୍ୱାଦଶ ପୁତ୍ରଙ୍କୁ, ଅଷ୍ଟବସୁଙ୍କୁ, ଏକାଦଶ ରୁଦ୍ରଙ୍କୁ, ଅଶ୍ୱିନୀକୁମାରଦ୍ୱୟଙ୍କୁ ଏବଂ ଅଣଚାଶ ମରୁତଙ୍କୁ ଦେଖ ତଥା ପୂର୍ବରୁ ଦେଖି ନ ଥିବା ବହୁ ଆଶ୍ଚର୍ଯ୍ୟମୟ ରୂପ ମଧ୍ୟ ଦେଖ॥ ୬ ॥**

**ପ୍ରଶ୍ନ —** ଆଦିତ୍ୟଗଣ, ବସୁଗଣ, ରୁଦ୍ରଗଣ, ଅଶ୍ୱିନୀକୁମାରଦ୍ୱୟ ଓ ମରୁଦ୍‌ଗଣଙ୍କୁ ଦେଖିବାପାଇଁ କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଉପରୋକ୍ତ ସମସ୍ତ ଶବ୍ଦ ହେଉଛି ପ୍ରଧାନ ପ୍ରଧାନ ଦେବତାଙ୍କର ବାଚକ। ଏମାନଙ୍କର ନାମ ନେଇ ଭଗବାନ୍ ସବୁ ଦେବତାଙ୍କୁ ନିଜର ବିରାଟରୂପରେ ଦେଖିବାକୁ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି। ଏମାନଙ୍କ ମଧ୍ୟରୁ ଆଦିତ୍ୟ ଓ ମରୁଦ୍‌ଗଣଙ୍କର ବ୍ୟାଖ୍ୟା ଦଶମ ଅଧ୍ୟାୟର ଏକୋଇଶ ଶ୍ଳୋକରେ ତଥା ବସୁ ଓ ରୁଦ୍ରମାନଙ୍କର ବର୍ଣ୍ଣନା ତେଇଶ ଶ୍ଳୋକରେ କରାଯାଇସାରିଛି। ତେଣୁ ସେସବୁର ବିସ୍ତୃତ ବର୍ଣ୍ଣନା ଏଠାରେ ଦିଆଯାଉ ନାହିଁ। ଅଶ୍ୱିନୀକୁମାର ଦୁଇ ଭାଇ ହେଉଛନ୍ତି ଦେବ-ବୈଦ୍ୟ।★

**ପ୍ରଶ୍ନ — ଅଦୃଷ୍ଟପୂର୍ବାଣି** ଓ **ବହୂନି** ଏହି ଦୁଇ ବିଶେଷଣସହିତ **ଆଶ୍ଚର୍ଯାଣି** ପଦର ଅର୍ଥ କଣ ଓ ସେସବୁକୁ ଦେଖ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଯେଉଁ ଦୃଶ୍ୟ ପୂର୍ବରୁ କେବେ ଦେଖାଯାଇ ନ ଥିବ, ତାହାକୁ **ଅଦୃଷ୍ଟପୂର୍ବ** କହନ୍ତି। ଯାହା ଅଦ୍ଭୁତ ଅର୍ଥାତ୍ ଦେଖିବାମାତ୍ରେ ଆଶ୍ଚର୍ଯ୍ୟ ଉତ୍ପନ୍ନ କରେ, ତାହାକୁ 'ଆଶ୍ଚର୍ଯ୍ୟ' କହନ୍ତି। ବହୂନି ବିଶେଷଣ ଅଧିକ ସଂଖ୍ୟାର ବୋଧକ। ଆଗରୁ କେହି କେବେ ଦେଖି ନ ଥିବା ବହୁ ଆଶ୍ଚର୍ଯ୍ୟଜନକ ରୂପ ଦେଖିବାପାଇଁ ଆଜ୍ଞା ଦେଇ ଭଗବାନ୍ କହୁଛନ୍ତି, ''ଯେଉଁ ବସ୍ତୁମାନଙ୍କର ରୂପ ତୁମେ କେବେ ଦେଖୁ ନାହଁ, କି ଅନ୍ୟ କେହି ଆଜିପର୍ଯ୍ୟନ୍ତ ଦେଖି ନାହାନ୍ତି, ସେସବୁକୁ ମଧ୍ୟ ତୁମେ ମୋର ଏହି ବିରାଟରୂପରେ ଦେଖ।''

**ଇହୈକସ୍ଥଂ ଜଗତ୍ କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରମ୍।**
**ମମ ଦେହେ ଗୁଡ଼ାକେଶ ଯଚ୍ଚାନ୍ୟଦ୍ଦ୍ରଷ୍ଟୁମିଚ୍ଛସି॥ ୭ ॥**

**ଅନ୍ୱୟ —** **ଗୁଡ଼ାକେଶ** = ହେ ଅର୍ଜୁନ!; **ଅଦ୍ୟ** = ବର୍ତ୍ତମାନ; **ଇହ** = ଏହିଠାରେ; **ମମ** = ମୋର; **ଦେହେ** = ଶରୀରରେ; **ଏକସ୍ଥମ୍** = ଗୋଟିଏ ଅଂଶରେ ଅବସ୍ଥିତ; **ସଚରାଚରମ୍** = ଚରାଚରସହିତ; **କୃତ୍ସ୍ନମ୍** = ସମଗ୍ର; **ଜଗତ୍** = ଜଗତକୁ; **ପଶ୍ୟ** = ଦେଖ (ତଥା); **ଅନ୍ୟତ୍** = ଆଉ; **ଚ** = ମଧ୍ୟ; **ଯତ୍** = ଯାହାକିଛି; **ଦ୍ରଷ୍ଟୁମ୍** = ଦେଖିବାକୁ; **ଇଚ୍ଛସି** = ଇଚ୍ଛା କରୁଛ, (ତାହା ଦେଖ)।

**ହେ ଅର୍ଜୁନ! ଏଥର ମୋର ଏହି ଶରୀରର ଗୋଟିଏ ଅଂଶରେ ଅବସ୍ଥିତ ଚରାଚର ସମଗ୍ର ଜଗତକୁ ଦେଖ, ତଥା ଆଉ ଯାହାକିଛି ଦେଖିବାକୁ ଇଚ୍ଛା କରୁଛ, ତାହା ବି ଦେଖ॥ ୭ ॥**

**ପ୍ରଶ୍ନ — ଗୁଡ଼ାକେଶ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର —** ଏଠାରେ ଅର୍ଜୁନଙ୍କୁ **ଗୁଡ଼ାକେଶ** ନାମରେ ସମ୍ବୋଧିତ କରି ଭଗବାନ୍ କହୁଛନ୍ତି, ''ତୁମେ ନିଦ୍ରାର ସ୍ୱାମୀ (ନିଦ୍ରାଜୟୀ) ଅଟ; ଅତଏବ ସାବଧାନ ହୋଇ ମୋର ରୂପକୁ ଭଲଭାବରେ ଦେଖ, ଯେପରି କି କୌଣସିପ୍ରକାର ସଂଶୟ ବା ଭ୍ରମ ରହିବ ନାହିଁ।''

---

★ ଏ ଦୁହେଁ ସୂର୍ଯ୍ୟଙ୍କ ପତ୍ନୀ ସଂଜ୍ଞାଙ୍କ ଠାରୁ ଉତ୍ପନ୍ନ ବୋଲି ମନେ କରାଯାଏ। (ବିଷ୍ଣୁପୁରାଣ ୩/୨/୭, ଅଗ୍ନିପୁରାଣ ୨୭୩/୪)। କେଉଁଠି କେଉଁଠି ଦୁହିଁଙ୍କୁ କଶ୍ୟପଙ୍କ ଔରସ ଓ ଅଦିତିଙ୍କ ଗର୍ଭରୁ ଉତ୍ପନ୍ନ (ବାଲ୍ମୀକୀୟରାମାୟଣ, ଅରଣ୍ୟ ୧୪/୧୪) ବୋଲି ଏବଂ କେଉଁଠି ବ୍ରହ୍ମାଙ୍କ କର୍ଣ୍ଣରୁ ଜାତ ବୋଲି ମଧ୍ୟ କୁହାଯାଇଛି (ବାୟୁପୁରାଣ ୬୫/୫୬)। କଳ୍ପଭେଦରେ ସବୁ ବର୍ଣ୍ଣନା ଯଥାର୍ଥ। ଏମାନେ ଦଧ୍ୟଙ୍ମୁନିଙ୍କ ଠାରୁ ଜ୍ଞାନ ପାଇଥିଲେ। (ଋଗ୍ବେଦ ୧/୧୭/୧୧୬/୧୨; ଦେବୀଭାଗବତ ୭/୩୬) ରାଜା ଶର୍ଯ୍ୟାତିଙ୍କ କନ୍ୟା ଏବଂ ଚ୍ୟବନମୁନିଙ୍କ ପତ୍ନୀ ସୁକନ୍ୟାଙ୍କ ଉପରେ ପ୍ରସନ୍ନ ହୋଇ ଏ ଦୁହେଁ ବୃଦ୍ଧ ଓ ଅନ୍ଧ ଚ୍ୟବନଙ୍କୁ ନେତ୍ର ଓ ନବଯୌବନ ପ୍ରଦାନ କରିଥିଲେ (ଦେବୀଭାଗବତ ୭/୪,୫)। ମହାଭାରତ, ପୁରାଣ ଓ ରାମାୟଣରେ ଏ ଦୁହିଁଙ୍କ କଥା ଅନେକ ସ୍ଥାନରେ ଆସେ।

**ପ୍ରଶ୍ନ –** ଅଦ୍ୟ ପଦର ଅଭିପ୍ରାୟ କଣ ?

**ଉତ୍ତର – ଅଦ୍ୟ** ପଦ ଏଠାରେ 'ବର୍ତ୍ତମାନ'ର ବାଚକ। ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ତୁମେ ମୋର ଯେଉଁ ରୂପ ଦର୍ଶନ କରିବାକୁ ଇଚ୍ଛା ପ୍ରକାଶ କରିଛ, ତାହା ଦେଖାଇବାରେ ମୁଁ ବିଳମ୍ବ କରୁ ନାହିଁ; ତୁମେ ଇଚ୍ଛା ପ୍ରକାଶ କରିବା କ୍ଷଣି, ମୁଁ ହେଇଟି ତାହା ଦେଖାଉଛି।''

**ପ୍ରଶ୍ନ – ସଚରାଚରମ୍** ଓ **କୃତ୍ସ୍ନମ୍** ବିଶେଷଣ ସହିତ **ଜଗତ୍** ପଦ କାହାର ବାଚକ ତଥା **ଇହ** ଓ **ଏକସ୍ଥମ୍** ପଦ ପ୍ରୟୋଗ କରି ଭଗବାନ୍ ନିଜର କେଉଁ ଶରୀରରେ ଓ କେଉଁଠି ସମସ୍ତ ଜଗତକୁ ଦେଖିବାକୁ କହିଲେ।

**ଉତ୍ତର –** ପଶୁ, ପକ୍ଷୀ, କୀଟ, ପତଙ୍ଗ ଓ ଦେବ, ମନୁଷ୍ୟ ଆଦି ଚଳମାନ ପ୍ରାଣୀମାନଙ୍କୁ **ଚର** କହନ୍ତି; ପର୍ବତ, ବୃକ୍ଷ ଆଦି ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହିଥିବାରୁ ସେମାନେ **ଅଚର**। ଏଠାରେ **କୃତ୍ସ୍ନମ୍** ଓ **ସଚରାଚରମ୍** ଏହି ଦୁଇ ବିଶେଷଣ ସହିତ **ଜଗତ୍** ପଦଟି ହେଉଛି ଏହିପରି ସକଳ ପ୍ରାଣୀଙ୍କର ତଥା ସେମାନଙ୍କ ଶରୀର, ଇନ୍ଦ୍ରିୟ, ଭୋଗସ୍ଥାନ ଓ ଭୋଗସାମଗ୍ରୀମାନଙ୍କ ସହିତ ସମସ୍ତ ବ୍ରହ୍ମାଣ୍ଡର ବାଚକ।

ଏଠାରେ **ଇହ** ପଦ ଭଗବାନଙ୍କ ଶରୀରର ବିଶେଷଣ। ଏହା ସହିତ **ଏକସ୍ଥମ୍** ପଦ ପ୍ରୟୋଗ କରି ଭଗବାନ୍ ଅର୍ଜୁନଙ୍କୁ ବୁଝାଇଦେଉଛନ୍ତି, ''ମୋର ଏହି ଯେଉଁ ଶରୀର, ସାରଥିରୂପରେ ତୁମ ଆଗରେ ରଥରେ ବିରାଜିତ, ଏହି ଶରୀରର ହିଁ ଏକ ଅଂଶରେ ତୁମେ ସମସ୍ତ ଜଗତ ରହିଥିବାର ଦେଖ।'' ଭଗବାନ୍ ଦଶମ ଅଧ୍ୟାୟର ଅନ୍ତିମ ଶ୍ଳୋକରେ ଅର୍ଜୁନଙ୍କୁ କହିଥିଲେ, ''ମୁଁ ଏହି ସମଗ୍ର ବିଶ୍ୱକୁ ମୋର ଏକ ଅଂଶରେ ଧାରଣ କରି ରହିଛି''; ଏଠାରେ ତାଙ୍କୁ ତାହା ପ୍ରତ୍ୟକ୍ଷ ଦେଖାଇଦେଉଛନ୍ତି।

**ପ୍ରଶ୍ନ –** ''ଆଉ ବି ଯାହାକିଛି ତୁମେ ଦେଖିବାକୁ ଚାହୁଁଛ, ତାହା ଦେଖ'' – ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଜଣାଇଦେଉଛନ୍ତି, ''ଏହି ବର୍ତ୍ତମାନର ସମଗ୍ର ଜଗତକୁ ଦେଖିବା ଛଡ଼ା, ତୁମର ଯଦି ମୋର ଅନ୍ୟ ଗୁଣ, ପ୍ରଭାବ ଆଦିର ଦ୍ୟୋତକ କୌଣସି ଦୃଶ୍ୟ ବା ନିଜର ତଥା ଅନ୍ୟମାନଙ୍କର ଜୟ, ପରାଜୟର ଦୃଶ୍ୟ, ଅଥବା ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଘଟଣାବଳୀ ଦେଖିବାକୁ ଇଚ୍ଛା ହେଉଛି, ତେବେ ସେସବୁ ତୁମେ ଏତିକିବେଳେ ମୋର ଶରୀରର ଏକ ଅଂଶରେ ପ୍ରତ୍ୟକ୍ଷ ଦେଖିପାରିବ।''

*__ସମ୍ବନ୍ଧ –__ ତିନୋଟି ଶ୍ଳୋକରେ ନିଜର ଅଦ୍ଭୁତ ରୂପ ଦେଖିବାକୁ ଏପରି ବାରମ୍ବାର ଆଜ୍ଞା ଦେବା ପରେ ବି, ଅର୍ଜୁନ ଯେତେବେଳେ ଭଗବାନଙ୍କ ରୂପ ଦେଖିପାରିଲେ ନାହିଁ, ସେତେବେଳେ ଅର୍ଜୁନଙ୍କ ନ ଦେଖିପାରିବାର କାରଣ ଜାଣିଥିବା ଅନ୍ତର୍ଯାମୀ ଭଗବାନ୍ ତାଙ୍କୁ ଦିବ୍ୟଦୃଷ୍ଟି ଦେବାକୁ ଇଚ୍ଛା କରି କହୁଛନ୍ତି–*

## ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା।
## ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟ ମେ ଯୋଗମୈଶ୍ୱରମ୍।। ୮ ।।

**ଅନ୍ୱୟ –** **ତୁ** = କିନ୍ତୁ; **ମାମ୍** = ମୋତେ; **ଅନେନ** = ଏହି; **ସ୍ୱଚକ୍ଷୁଷା** = ନିଜ ପ୍ରାକୃତ ନେତ୍ରଦ୍ୱାରା; **ଦ୍ରଷ୍ଟୁମ୍** = ଦେଖିବାକୁ; **ଏବ** = ନିଃସଂଦେହ; **ନ**, **ଶକ୍ୟସେ** = ସମର୍ଥ ହେବ ନାହିଁ; **(ଅତଃ)** = ଏଣୁ (ମୁଁ); **ତେ** = ତୁମକୁ; **ଦିବ୍ୟମ୍** = ଦିବ୍ୟ ଅର୍ଥାତ୍ ଅଲୌକିକ; **ଚକ୍ଷୁଃ** = ଚକ୍ଷୁ; **ଦଦାମି** = ପ୍ରଦାନ କରୁଛି; **(ତେନ)** = ତଦ୍ଦ୍ୱାରା ତୁମେ; **ମେ** = ମୋର; **ଐଶ୍ୱରମ୍** = ଈଶ୍ୱରୀୟ; **ଯୋଗମ୍** = ଯୋଗଶକ୍ତିକୁ; **ପଶ୍ୟ** = ଦେଖ।

**ପରନ୍ତୁ ମୋତେ ତୁମେ ନିଜର ଏହି ପ୍ରାକୃତ ନେତ୍ରଦ୍ୱାରା ଦେଖିବାକୁ ନିଃସନ୍ଦେହ ସମର୍ଥ ହେବ ନାହିଁ। ତେଣୁ ମୁଁ ତୁମକୁ ଦିବ୍ୟ ଅର୍ଥାତ୍ ଅଲୌକିକ ଚକ୍ଷୁ ପ୍ରଦାନ କରୁଛି; ତଦ୍ଦ୍ୱାରା ତୁମେ ମୋର ଈଶ୍ୱରୀୟ ଯୋଗଶକ୍ତି ଦେଖ।। ୮ ।।**

**ପ୍ରଶ୍ନ –** ଏଠାରେ 'ତୁ' ପଦ ସହିତ 'ତୁମେ ମୋତେ ନିଜର ଏହି ପ୍ରାକୃତ ନେତ୍ରଦ୍ୱାରା ଦେଖିପାରିବ ନାହିଁ' – ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏପରି କହି ଭଗବାନ୍ ବୁଝାଇଦେଉଛନ୍ତି, ''ତୁମେ ଯେ ମୋର ଅଦ୍ଭୁତ ଯୋଗଶକ୍ତିଯୁକ୍ତ ଦିବ୍ୟସ୍ୱରୂପ ଦେଖିବାକୁ ଚାହୁଁଛ, ତାହା ତ ବଡ଼ ଆନନ୍ଦର କଥା ଏବଂ ମୁଁ ବି ତୁମକୁ ମୋର ସେହି ରୂପ ଦେଖାଇବାକୁ ପ୍ରସ୍ତୁତ ଅଛି। କିନ୍ତୁ ଭାଇ ! ଏହି ପ୍ରାକୃତ ନେତ୍ରଦ୍ୱାରା ତୁମେ ମୋର ସେହି ଅଲୌକିକ ରୂପ ଦେଖିପାରିବ ନାହିଁ; ତାହା ଦେଖିବାକୁ ଯେଉଁ ଶକ୍ତି ଆବଶ୍ୟକ, ତାହା ତୁମ ପାଖରେ ନାହିଁ।''

**ପ୍ରଶ୍ନ –** ଭଗବାନ୍ ଅର୍ଜୁନଙ୍କୁ ଯେଉଁ ଦିବ୍ୟଦୃଷ୍ଟି ଦେଇଥିଲେ, ସେହି ଦିବ୍ୟଦୃଷ୍ଟି କଣ ?

**ଉତ୍ତର –** ଭଗବାନ୍ ଅର୍ଜୁନଙ୍କୁ ବିଶ୍ୱରୂପ ଦର୍ଶନ କରିବାପାଇଁ ନିଜର ଯୋଗବଳରେ ଏକପ୍ରକାର ଯୋଗଶକ୍ତି ପ୍ରଦାନ କରିଥିଲେ, ଯାହାର ପ୍ରଭାବରେ ଅର୍ଜୁନଙ୍କ ଠାରେ ଅଲୌକିକ ସାମର୍ଥ୍ୟ ପ୍ରକାଶ ପାଇଥିଲା; ଫଳରେ ସେ ସେହି ଦିବ୍ୟରୂପକୁ ଦେଖିପାରିବାର ଯୋଗ୍ୟତା ପ୍ରାପ୍ତ ହୋଇଥିଲେ। ଉକ୍ତ ଯୋଗଶକ୍ତିର ନାମ ଦିବ୍ୟଦୃଷ୍ଟି। ଶ୍ରୀବେଦବ୍ୟାସ ମଧ୍ୟ ସଞ୍ଜୟଙ୍କୁ ଏପରି ଦିବ୍ୟଦୃଷ୍ଟି ଦେଇଥିଲେ।

**ପ୍ରଶ୍ନ –** ଯଦି ଏହା ମାନିନିଆଯାଏ ଯେ, ଭଗବାନ୍ ଅର୍ଜୁନଙ୍କୁ ଏପରି ଜ୍ଞାନ ଦେଲେ ଯେ, ତଦ୍ୱାରା ଅର୍ଜୁନ ଏହି ସମଗ୍ର ବିଶ୍ୱକୁ ଭଗବାନଙ୍କର ସ୍ୱରୂପ ବୋଲି ମାନିନେଲେ ଏବଂ ସେହି ଜ୍ଞାନର ନାମ ହିଁ ଏଠାରେ ଦିବ୍ୟଦୃଷ୍ଟି, ତେବେ କ୍ଷତି କଣ ?

**ଉତ୍ତର –** ଏଠାରେ ଯେଉଁ ପ୍ରସଙ୍ଗ ଚାଲିଛି, ତାହା ପଢ଼ି ଏହା ମାନିହେବ ନାହିଁ ଯେ, ଜ୍ଞାନଦ୍ୱାରା ଏହି ଦୃଶ୍ୟଜଗତକୁ ଭଗବଦ୍‌ରୂପ ବୋଲି ବୁଝିବା ହିଁ ଅର୍ଜୁନଙ୍କର 'ବିଶ୍ୱରୂପଦର୍ଶନ' ଓ ସେହି ଜ୍ଞାନ ହିଁ 'ଦିବ୍ୟଦୃଷ୍ଟି'। ଜ୍ଞାନଦ୍ୱାରା ସମଗ୍ର ବିଶ୍ୱକୁ ଭଗବାନଙ୍କର ଏକ ଅଂଶରେ ଦେଖିବାପାଇଁ ତ ଅର୍ଜୁନଙ୍କୁ ଦଶମ ଅଧ୍ୟାୟର ଶେଷରେ ହିଁ କୁହାଯାଇସାରିଛି ଓ ସେ ତାହା ସ୍ୱୀକାର ମଧ୍ୟ କରିଛନ୍ତି। ସେପରି ସ୍ୱୀକାର କରିନେବା ପରେ ମଧ୍ୟ ଅର୍ଜୁନ ଯେତେବେଳେ ଭଗବାନଙ୍କର ବଳ, ବୀର୍ଯ୍ୟ, ଶକ୍ତି ଓ ତେଜଯୁକ୍ତ ଈଶ୍ୱରୀୟ ସ୍ୱରୂପ ପ୍ରତ୍ୟକ୍ଷ ଦେଖିବାକୁ ଇଚ୍ଛା କରୁଛନ୍ତି ଓ ଭଗବାନ୍ ମଧ୍ୟ ନିଜର ଶ୍ରୀକୃଷ୍ଣରୂପ ମଧ୍ୟରେ ହିଁ ଗୋଟିଏ ସ୍ଥାନରେ ସମସ୍ତ ବିଶ୍ୱକୁ ଦେଖାଉଛନ୍ତି, ସେତେବେଳେ ଏହା କିପରି ମାନି ହେବ ଯେ, ତାହା ଜ୍ଞାନଦ୍ୱାରା ବୁଝାଯାଇପାରିବାର ରୂପ ଥିଲା ?

ଏହା ଛଡ଼ା ଭଗବାନ୍ ଯେଉଁ ବିଶ୍ୱରୂପ ବର୍ଣ୍ଣନା କରିଛନ୍ତି, ସେଥିରୁ ମଧ୍ୟ ଏହା ସିଦ୍ଧ ହୋଇଛି ଯେ, ଅର୍ଜୁନ ଭଗବାନଙ୍କର ଯେଉଁ ରୂପରେ ସମସ୍ତ ବ୍ରହ୍ମାଣ୍ଡର ଦୃଶ୍ୟ ଏବଂ ଭବିଷ୍ୟତରେ ହେବାକୁ ଥିବା ଯୁଦ୍ଧସମ୍ବନ୍ଧୀୟ ଘଟଣାବଳୀ ଓ ତାହାର ପରିଣାମ ବି ଦେଖିପାରୁଥିଲେ, ସେହି ରୂପଟି ତାଙ୍କ ସମ୍ମୁଖରେ ହିଁ ଥିଲା; ଏଥିରୁ ଏହା ମାନିବାକୁ ପଡୁଛି ଯେ, ଯେଉଁ ବିଶ୍ୱରେ ଅର୍ଜୁନ ନିଜକୁ ଠିଆ ହୋଇଥିବାର ଦେଖୁଥିଲେ, ସେହି ବିଶ୍ୱ ଭଗବାନଙ୍କ ଶରୀରରେ ଦେଖାଯାଉଥିବା ବିଶ୍ୱଠାରୁ ଭିନ୍ନ ଥିଲା। ଏପରି ହୋଇ ନ ଥିଲେ ତ, ଦୃଶ୍ୟଜଗତର ସ୍ୱର୍ଗଲୋକଠାରୁ ଆରମ୍ଭ କରି ପୃଥିବୀପର୍ଯ୍ୟନ୍ତ ସମସ୍ତ ଆକାଶ ତଥା ସକଳ ଦିଗ ସେହି ବିରାଟ ରୂପଦ୍ୱାରା ବ୍ୟାପ୍ତଥିବାର ଦେଖିପାରିବା ସମ୍ଭବ ହୋଇ ନ ଥାନ୍ତା। ଭଗବାନଙ୍କର ସେହି ଭୟାନକ ରୂପ ଦେଖି ଅର୍ଜୁନଙ୍କର ଆଶ୍ଚର୍ଯ୍ୟ, ମୋହ, ଭୟ, ସନ୍ତାପ ଓ ଦିଗ୍‌ଭ୍ରମାଦି ମଧ୍ୟ ହେଉଥିଲା; ଏଥିରୁ ମଧ୍ୟ ସିଦ୍ଧ ହେଉଛି ଯେ, ଭଗବାନ୍ କେବଳ ଉପଦେଶ ଦେଇ ଜ୍ଞାନଦ୍ୱାରା ଏହି ଦୃଶ୍ୟଜଗତକୁ ନିଜର ସ୍ୱରୂପ ବୋଲି ବୁଝାଇଦେଇ ନ ଥିଲେ; ସେପରି ହୋଇଥିଲେ ଅର୍ଜୁନଙ୍କର ଭୟ, ସନ୍ତାପ, ମୋହ ଓ ଦିଗ୍‌ଭ୍ରମାଦି ହେବାର କୌଣସି କାରଣ ନ ଥାନ୍ତା।

**ପ୍ରଶ୍ନ –** ଯଦି ମାନିନିଆଯାଏ ଯେ, ଆଜିକାଲି ଯେପରି ରେଡିଓ, ଟି.ଭି. ଆଦି ଯନ୍ତ୍ରଦ୍ୱାରା ଦୂରଦେଶର ଶବ୍ଦ ଶୁଣାଯାଏ ଓ ଦୃଶ୍ୟ ଦେଖାଯାଇପାରେ, ଭଗବାନ୍ ତାଙ୍କୁ ସେପରି କିଛି ଗୋଟିଏ ଯନ୍ତ୍ର ଦେଇଥିବେ, ଯାହାଦ୍ୱାରା କି ସେ ଗୋଟିଏ ସ୍ଥାନରେ ଠିଆ ହୋଇ ସମସ୍ତ ବିଶ୍ୱକୁ ଅବାଧରେ ଦେଖିପାରିଥିବେ ଏବଂ ସେହି ଯନ୍ତ୍ରକୁ ହିଁ ଦିବ୍ୟଦୃଷ୍ଟି କୁହାଯାଇଥିବ, ତେବେ ଆପତ୍ତି କଣ ?

**ଉତ୍ତର –** ରେଡିଓ, ଦୂରଦର୍ଶନ ଆଦି ଯନ୍ତ୍ରଦ୍ୱାରା ଏକସମୟରେ ଏକ ସ୍ଥାନରେ ରହି ଦୂରଦେଶର ଯେଉଁ ଶବ୍ଦ ଓ ଦୃଶ୍ୟ ଶୁଣିହେବ ଓ ଦେଖିହେବ, ତାହା ଏକଦେଶୀୟ ଏବଂ ବର୍ତ୍ତମାନ ସହିତ ସଂପୃକ୍ତ। ସେସବୁଦ୍ୱାରା ଗୋଟିଏ ଯନ୍ତ୍ରରେ, ଗୋଟିଏ ସମୟରେ ଓ ଗୋଟିଏ ସ୍ଥାନରେ ସବୁ ଦେଶର ଘଟଣା ଦେଖିପାରିବା ଓ

ଶୁଣିପାରିବା ସମ୍ଭବ ନୁହେଁ। ସେଥିରେ ଲୋକମାନଙ୍କର ମନକଥା ପ୍ରତ୍ୟକ୍ଷ ଦେଖାଯାଏ ନାହିଁ, କି ଭବିଷ୍ୟତରେ ଘଟିବାକୁ ଥିବା ଘଟଣାବଳୀର ଦୃଶ୍ୟ ଦେଖିବାକୁ ମିଳେ ନାହିଁ। ତା'ଛଡ଼ା ଏଠାର ପ୍ରସଙ୍ଗରେ ଏପରି କୌଣସି କଥା ନାହିଁ, ଯା'ଦ୍ୱାରା କି ସିଦ୍ଧ ହୋଇପାରିବ ଯେ, ଅର୍ଜୁନ କୌଣସି ଯନ୍ତ୍ରଦ୍ୱାରା ଭଗବାନଙ୍କର ବିଶ୍ୱରୂପ ଦେଖିଥିଲେ। ଅତଏବ ସେପରି ମାନିବା ସର୍ବଥା ଯୁକ୍ତିବିରୁଦ୍ଧ। ହଁ, ରେଡିଓ ଆଦି ଯନ୍ତ୍ରର ଆବିଷ୍କାରଦ୍ୱାରା ଆଜିକାଲିର ଅବିଶ୍ୱାସୀ ଲୋକଙ୍କୁ କିଛିଦୂର ବୁଝାଇଦେଇହେବ ଯେ, ଯଦି ରେଡିଓ ଆଦି ଭୌତିକ ଯନ୍ତ୍ରଦ୍ୱାରା ଦୂରଦେଶର ଘଟଣାବଳୀ ଶୁଣିବା-ଦେଖିବା ସମ୍ଭବ ହୋଇପାରୁଛି, ତେବେ ଭଗବାନଙ୍କ ପ୍ରଦତ୍ତ ଯୋଗଶକ୍ତିଦ୍ୱାରା ତାଙ୍କର ବିଶ୍ୱରୂପ ଦେଖାଯିବା କେଉଁ ବଡ଼ କଥା! ଅବଶ୍ୟ ଏଠାରେ ଏହା ମଧ୍ୟ ମନେ ରଖିବା ଉଚିତ ଯେ, ଏହା ଭଗବାନଙ୍କର କୌଣସି ଇନ୍ଦ୍ରଜାଲ ନ ଥିଲା, ଯାହାର ପ୍ରଭାବରେ କି ଅର୍ଜୁନ ଘଟି ନ ଥିବା ଘଟଣାମାନଙ୍କୁ ସ୍ୱପ୍ନର ଦୃଶ୍ୟପରି ଦେଖୁଥିଲେ। ଅର୍ଜୁନ ଯେଉଁ ସ୍ୱରୂପକୁ ଦେଖୁଥିଲେ, ତାହା ପ୍ରତ୍ୟକ୍ଷ ସତ୍ୟ ଥିଲା ଓ ତାହା ଦେଖିବାର ଏକମାତ୍ର ସାଧନ ଥିଲା ଭଗବତ୍‌କୃପାରୁ ମିଳିଥିବା ଯୋଗଶକ୍ତିରୂପୀ ଦିବ୍ୟଦୃଷ୍ଟି!

**ପ୍ରଶ୍ନ –** **ଐଶ୍ୱରମ୍** ବିଶେଷଣ ସହିତ **ଯୋଗମ୍** ପଦଟି କାହାର ବାଚକ ଓ 'ତାହା ଦେଖ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନଙ୍କୁ ଯେଉଁ ରୂପର ଦର୍ଶନ ହୋଇଥିଲା, ତାହା ଥିଲା ଦିବ୍ୟ। ଭଗବାନ୍ ତାଙ୍କ ନିଜ ଅଦ୍ଭୁତ ଯୋଗଶକ୍ତିଦ୍ୱାରା ହିଁ ତାହା ପ୍ରକଟ କରି ଅର୍ଜୁନଙ୍କୁ ଦେଖାଇଥିଲେ। ତେଣୁ ତାହାକୁ ଦେଖିବାଦ୍ୱାରା ହିଁ ଭଗବାନଙ୍କ ଅଦ୍ଭୁତ ଯୋଗଶକ୍ତିର ଦର୍ଶନ ସ୍ୱତଃ ହୋଇଯାଏ। ତେଣୁ ଏଠାରେ **ଐଶ୍ୱରମ୍** ବିଶେଷଣ ସହିତ **ଯୋଗମ୍** ପଦଟି ହେଉଛି ଭଗବାନଙ୍କ ଅଦ୍ଭୁତ ଯୋଗଶକ୍ତି ଓ ତଦ୍ଦ୍ୱାରା ପ୍ରକଟିତ ଭଗବାନଙ୍କ ବିରାଟ ସ୍ୱରୂପର ବାଚକ। ତାହା ଦେଖିବାକୁ କହି ଭଗବାନ୍ ଅର୍ଜୁନଙ୍କୁ ତାଙ୍କ ବିରାଟ ସ୍ୱରୂପର ଦର୍ଶନମାଧ୍ୟମରେ ତାଙ୍କ ଯୋଗଶକ୍ତିକୁ ଦେଖିବାକୁ କହିଛନ୍ତି।

**ସମ୍ବନ୍ଧ –** ଅର୍ଜୁନଙ୍କୁ ଦିବ୍ୟଦୃଷ୍ଟି ଦେଇ ଭଗବାନ୍ ନିଜର ଯେଉଁ ଦିବ୍ୟ ବିରାଟ ସ୍ୱରୂପ ଦେଖାଇଥିଲେ, ବର୍ତ୍ତମାନ ପରବର୍ତ୍ତୀ ପାଞ୍ଚଟି ଶ୍ଳୋକରେ ସଞ୍ଜୟ ତାହା ବର୍ଣ୍ଣନା କରୁଛନ୍ତି –

**ସଞ୍ଜୟ ଉବାଚ**

**ଏବମୁକ୍ତ୍ୱା ତତୋ ରାଜନ୍ ମହାଯୋଗେଶ୍ୱରୋ ହରିଃ।**
**ଦର୍ଶୟାମାସ ପାର୍ଥାୟ ପରମଂ ରୂପମୈଶ୍ୱରମ୍॥ ୯ ॥**

**ଅନ୍ୱୟ –** **ରାଜନ୍** = ହେ ରାଜନ୍; **ମହାଯୋଗେଶ୍ୱରଃ** = ମହାଯୋଗେଶ୍ୱର; **ହରିଃ** = ସକଳ ପାପହରଣକାରୀ ଭଗବାନ୍; **ଏବମ୍** = ଏପରି; **ଉକ୍ତ୍ୱା** = କହି; **ତତଃ** = ତା'ପରେ; **ପାର୍ଥାୟ** = ଅର୍ଜୁନଙ୍କୁ; **ପରମମ୍** = (ନିଜର) ପରମ; **ଐଶ୍ୱରମ୍** = ଐଶ୍ୱର୍ଯ୍ୟଯୁକ୍ତ; **ରୂପମ୍** = ଦିବ୍ୟସ୍ୱରୂପ; **ଦର୍ଶୟାମାସ** = ଦେଖାଇଲେ।

**ସଞ୍ଜୟ କହିଲେ — ହେ ରାଜନ୍! ମହାଯୋଗେଶ୍ୱର ଓ ସକଳ ପାପନାଶକାରୀ ଭଗବାନ୍ ଏପରି କହିବା ପରେ ଅର୍ଜୁନଙ୍କୁ ନିଜର ପରମ ଐଶ୍ୱର୍ଯ୍ୟଯୁକ୍ତ ଦିବ୍ୟସ୍ୱରୂପ ଦେଖାଇଲେ॥ ୯ ॥**

**ପ୍ରଶ୍ନ –** ଏଠାରେ ସଞ୍ଜୟ ଭଗବାନଙ୍କ ପାଇଁ **ମହାଯୋଗେଶ୍ୱରଃ** ଓ **ହରିଃ** ଏହି ଦୁଇଟି ବିଶେଷଣ ପ୍ରୟୋଗ କରି କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଯେ ମହାନ୍ ବା ସବୁଠାରୁ ବଡ଼ ଯୋଗେଶ୍ୱର, ତାହାଙ୍କୁ **ମହାଯୋଗେଶ୍ୱର;** ଯେ ସମସ୍ତ ପାପ ଓ ଦୁଃଖ-ହରଣକାରୀ, ତାହାଙ୍କୁ **ହରି** କହନ୍ତି। ଏହି ଦୁଇ ବିଶେଷଣ ପ୍ରୟୋଗ କରି ସଞ୍ଜୟ ଭଗବାନଙ୍କର ଅଦ୍ଭୁତ ଶକ୍ତିସାମର୍ଥ୍ୟ ଆଡ଼କୁ ଧୃତରାଷ୍ଟ୍ରଙ୍କ ଦୃଷ୍ଟି ଆକର୍ଷଣ କରାଇବା ସଙ୍ଗେ ସଙ୍ଗେ ତାଙ୍କୁ ସାବଧାନ କରାଇଦେଇଛନ୍ତି। ତାଙ୍କ କଥନର ଭାବ ହେଉଛି: ଶ୍ରୀକୃଷ୍ଣ ସାଧାରଣ ମନୁଷ୍ୟ ନୁହନ୍ତି; ସେ ସବୁଠାରୁ ମହାନ୍ ଯୋଗେଶ୍ୱର ଓ ସବୁ ପାପ ତଥା ଦୁଃଖ-ନାଶକାରୀ ସାକ୍ଷାତ୍ ପରମେଶ୍ୱର ହିଁ ଅଟନ୍ତି। ସେ ଅର୍ଜୁନଙ୍କୁ ନିଜର ଯେଉଁ ବିଶ୍ୱରୂପ ଦେଖାଇଲେ, ତାହା ବର୍ଣ୍ଣନା କରି ମୁଁ ଏବେ

ଆପଣଙ୍କୁ ଶୁଣାଇବି। ସେହି ରୂପ ବଡ଼ ବଡ଼ ଯୋଗୀ ମଧ୍ୟ ଦେଖାଇପାରିବେ ନାହିଁ; ତାହା ତ ଏକମାତ୍ର ସ୍ୱୟଂ ପରମେଶ୍ୱର ହିଁ ଦେଖାଇପାରିବେ।

**ପ୍ରଶ୍ନ— ରୂପମ୍ ସହ ପରମମ୍ ଓ ଐଶ୍ୱରମ୍—** ବିଶେଷଣ ଦୁଇଟି ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର—** ଯେଉଁ ପଦାର୍ଥ ଶୁଦ୍ଧ, ଶ୍ରେଷ୍ଠ ଓ ଅଲୌକିକ, ତା'ର ବିଶେଷତାର ଦ୍ୟୋତକ ହେଉଛି **ପରମ** ବିଶେଷଣ ଏବଂ ଯେଉଁଥିରେ ଈଶ୍ୱରଙ୍କ ଗୁଣ, ପ୍ରଭାବ ଓ ତେଜ ଦେଖାଯାଏ ତଥା ଯାହା ଈଶ୍ୱରଙ୍କ ଦିବ୍ୟ ଯୋଗଶକ୍ତିରେ ସମ୍ପନ୍ନ, ତାହାକୁ **ଐଶ୍ୱର** କହନ୍ତି। ଭଗବାନ୍ ନିଜର ଯେଉଁ ବିରାଟସ୍ୱରୂପ ଅର୍ଜୁନଙ୍କୁ ଦେଖାଇଥିଲେ, ତାହା ଅଲୌକିକ, ଦିବ୍ୟ, ସର୍ବଶ୍ରେଷ୍ଠ ଓ ତେଜୋମୟ ଥିଲା; ତାହା ସାଧାରଣ ଜଗତର ପାଞ୍ଚଭୌତିକ ପଦାର୍ଥରେ ନିର୍ମିତ ହୋଇ ନ ଥିଲା; ଭଗବାନ୍ ନିଜ ପରମ ପ୍ରିୟ ଭକ୍ତ ଅର୍ଜୁନଙ୍କ ଉପରେ ଅନୁଗ୍ରହ କରି, ତାଙ୍କୁ ନିଜର ଅଦ୍ଭୁତ ପ୍ରଭାବ ବୁଝାଇଦେବାକୁ ଅଦ୍ଭୁତ ଯୋଗଶକ୍ତିଦ୍ୱାରା ସେହି ରୂପ ପ୍ରକଟ କରି ଦେଖାଇଥିଲେ। ଏହିସବୁ ଭାବ ପ୍ରକାଶ କରିବାପାଇଁ ସଞ୍ଜୟ **ରୂପମ୍** ପଦ ସହିତ ଏହି ଦୁଇ ବିଶେଷଣ ପ୍ରୟୋଗ କରିଛନ୍ତି।

**ଅନେକବକ୍ତ୍ରନୟନମନେକାଦ୍ଭୁତଦର୍ଶନମ୍ ।**
**ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧମ୍ ।। ୧୦ ।।**
**ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନମ୍ ।**
**ସର୍ବାଶ୍ଚର୍ଯ୍ୟମୟଂ ଦେବମନନ୍ତଂ ବିଶ୍ୱତୋମୁଖମ୍ ।। ୧୧ ।।**

**ଅନ୍ୱୟ—** **ଅନେକବକ୍ତ୍ରନୟନମ୍** = ଅନେକ ମୁଖ ଓ ନେତ୍ରଯୁକ୍ତ; **ଅନେକାଦ୍ଭୁତଦର୍ଶନମ୍** = ଅନେକ ଅଦ୍ଭୁତ ଦୃଶ୍ୟମୟ; **ଅନେକଦିବ୍ୟାଭରଣମ୍** = ଅନେକ ଦିବ୍ୟ ଆଭରଣଯୁକ୍ତ (ଏବଂ); **ଦିବ୍ୟାନେକୋଦ୍ୟତାୟୁଧମ୍** = ହାତରେ ଅନେକ ଦିବ୍ୟ ଶସ୍ତ୍ର ଧରି ପ୍ରସ୍ତୁତ ଥିବା; **ଦିବ୍ୟମାଲ୍ୟାମ୍ବରଧରମ୍** = ଦିବ୍ୟମାଳା ଓ ବସ୍ତ୍ର ଧରିଥିବା; **ଦିବ୍ୟଗନ୍ଧାନୁଲେପନମ୍** = ସମସ୍ତ ଶରୀର ଦିବ୍ୟଗନ୍ଧରେ ଅନୁଲେପିତ ହୋଇଥିବା; **ସର୍ବାଶ୍ଚର୍ଯ୍ୟମୟମ୍** = ସକଳପ୍ରକାର ଆଶ୍ଚର୍ଯ୍ୟରେ ଯୁକ୍ତ;; **ଅନନ୍ତମ୍** = ଅସୀମ (ଓ); **ବିଶ୍ୱତୋମୁଖମ୍** = ସକଳ ଦିଗକୁ ମୁଖ କରିଥିବା ବିରାଟସ୍ୱରୂପ; **ଦେବମ୍** = ପରମଦେବ ପରମେଶ୍ୱରଙ୍କୁ (ଅର୍ଜୁନ); **(ଅପଶ୍ୟତ୍)** = ଦର୍ଶନ କଲେ।

**ଅନେକ ମୁଖ ଓ ନେତ୍ରଯୁକ୍ତ, ଅନେକ ଅଦ୍ଭୁତ-ଦୃଶ୍ୟମୟ, ବହୁ ଦିବ୍ୟଭୂଷଣରେ ବିଭୂଷିତ ଏବଂ ହସ୍ତରେ ବହୁ ଦିବ୍ୟ ଶସ୍ତ୍ର ଧରି ପ୍ରସ୍ତୁତ ଥିବା, ଦିବ୍ୟମାଳା ଓ ବସ୍ତ୍ରପରିହିତ ଏବଂ ସର୍ବାଙ୍ଗରେ ଦିବ୍ୟଗନ୍ଧଦ୍ୱାରା ଅନୁଲେପିତ, ସର୍ବପ୍ରକାର ଆଶ୍ଚର୍ଯ୍ୟଯୁକ୍ତ, ଅସୀମ ଓ ସକଳ ଦିଗରେ ମୁଖ ଥିବା ବିରାଟସ୍ୱରୂପ ପରମଦେବ ପରମେଶ୍ୱରଙ୍କୁ ଅର୍ଜୁନ ଦର୍ଶନ କଲେ।। ୧୦-୧୧ ।।**

**ପ୍ରଶ୍ନ—** ଅନେକବକ୍ତ୍ରନୟନମ୍‌ର ଅର୍ଥ କଣ ?

**ଉତ୍ତର—** ଯେଉଁ ରୂପର ନାନାପ୍ରକାର ଅସଂଖ୍ୟ ମୁଖ ଓ ଚକ୍ଷୁ ଅଛି, ସେହି ରୂପକୁ **ଅନେକବକ୍ତ୍ରନୟନ** କହନ୍ତି। ଅର୍ଜୁନ ଭଗବାନଙ୍କର ଯେଉଁ ରୂପ ଦେଖିଲେ, ତା'ର ପ୍ରଧାନ ନେତ୍ର ତ ଚନ୍ଦ୍ର ଓ ସୂର୍ଯ୍ୟ ବୋଲି କୁହାଯାଇଛି (୧୧/୧୯); ପରନ୍ତୁ ତା' ମଧ୍ୟରେ ଆହୁରି ଅସଂଖ୍ୟ ମୁଖ ଓ ନେତ୍ର ମଧ୍ୟ ଦେଖିବାକୁ ମିଳୁଥିଲା। ତେଣୁ ଭଗବାନଙ୍କୁ ଅନେକ ମୁଖ ଓ ନୟନ-ଯୁକ୍ତ ବୋଲି କୁହାଯାଇଛି।

**ପ୍ରଶ୍ନ—** ଅନେକାଦ୍ଭୁତଦର୍ଶନମ୍‌ର ଅର୍ଥ କଣ ?

**ଉତ୍ତର—** ଯେଉଁ ଦୃଶ୍ୟ ପୂର୍ବରୁ କେବେ ଦେଖାଯାଇ ନାହିଁ, ଯାହାର ଗଠନ ବିଚିତ୍ର ଓ ଆଶ୍ଚର୍ଯ୍ୟଜନକ, ତାହାକୁ **ଅଦ୍ଭୁତଦର୍ଶନ** କହନ୍ତି। ଯେଉଁ ରୂପରେ ଏପରି ଅସଂଖ୍ୟ ଅଦ୍ଭୁତଦର୍ଶନ ରହିଛି, ତାହାକୁ **ଅନେକାଦ୍ଭୁତଦର୍ଶନ** କହନ୍ତି। ଭଗବାନଙ୍କର ସେହି ବିରାଟରୂପରେ ଅର୍ଜୁନ ଏପରି ଅସଂଖ୍ୟ ଅଲୌକିକ ବିଚିତ୍ର ଦୃଶ୍ୟ ଦେଖିବାକୁ ପାଇଥିଲେ। ତେଣୁ ଭଗବାନଙ୍କ ପାଇଁ ଏହି ବିଶେଷଣ ଦିଆଯାଇଛି।

**ପ୍ରଶ୍ନ—** ଅନେକଦିବ୍ୟାଭରଣମ୍‌ର ଅର୍ଥ କଣ ?

**ଉତ୍ତର –** ଗହଣାକୁ **ଆଭରଣ** କହନ୍ତି । ଯେଉଁ ଗହଣା ଲୌକିକ ଗହଣାଠାରୁ ବିଲକ୍ଷଣ, ତେଜୋମୟ ଓ ଅଲୌକିକ, ସେସବୁ ଦିବ୍ୟ । ତଥା ଯେଉଁ ରୂପ ଏପରି ଅସଂଖ୍ୟ ଦିବ୍ୟ ଆଭୂଷଣଦ୍ୱାରା ବିଭୂଷିତ ହୋଇଥାଏ, ତାହାକୁ **ଅନେକଦିବ୍ୟାଭରଣ** କହନ୍ତି । ଅର୍ଜୁନ ଭଗବାନଙ୍କର ଯେଉଁ ରୂପ ଦେଖିଥିଲେ, ତାହା ନାନାପ୍ରକାର ଅସଂଖ୍ୟ ତେଜୋମୟ ଦିବ୍ୟ ଆଭୂଷଣଦ୍ୱାରା ମଣ୍ଡିତ ହୋଇଥିଲା; ତେଣୁ ଭଗବାନଙ୍କୁ ଏହି ବିଶେଷଣ ଦିଆଯାଇଛି ।

**ପ୍ରଶ୍ନ – ଦିବ୍ୟାନେକୋଦ୍ୟତାୟୁଧମ୍‌**ର ଅର୍ଥ କଣ ?

**ଉତ୍ତର –** ଯାହାଦ୍ୱାରା ଯୁଦ୍ଧ କରାଯାଏ, ସେହି ଶସ୍ତ୍ରମାନଙ୍କର ନାମ **ଆୟୁଧ** ଏବଂ ଯେଉଁ ଆୟୁଧ ଅଲୌକିକ ତଥା ତେଜୋମୟ, ତାହାକୁ 'ଦିବ୍ୟ' କହନ୍ତି, ଯଥା– ଭଗବାନ୍ ବିଷ୍ଣୁଙ୍କର ଚକ୍ର, ଗଦା ଓ ଧନୁ ଆଦି । ଭଗବାନ୍ ନିଜ ହସ୍ତମାନଙ୍କରେ ଏହିପରି ଅସଂଖ୍ୟ ଦିବ୍ୟ ଶସ୍ତ୍ର ଧାରଣ କରିଥିଲେ । ତେଣୁ ଭଗବାନଙ୍କୁ **ଦିବ୍ୟାନେକୋଦ୍ୟତାୟୁଧ** ବୋଲି କହିଛନ୍ତି ।

**ପ୍ରଶ୍ନ – ଦିବ୍ୟମାଲ୍ୟାମ୍ବରଧରମ୍‌**ର ଅର୍ଥ କଣ ?

**ଉତ୍ତର –** ଯେ ଅତି ଉତ୍ତମ ତେଜୋମୟ ଅଲୌକିକ ମାଳା ଓ ବସ୍ତ୍ର ଧାରଣ କରିଥାନ୍ତି, ତାହାଙ୍କୁ **ଦିବ୍ୟମାଲ୍ୟାମ୍ବରଧର** କହନ୍ତି । ବିଶ୍ୱରୂପ ଭଗବାନ୍ ନିଜ ଗଳାରେ ବହୁ ସୁନ୍ଦର ସୁନ୍ଦର ତେଜୀୟାନ୍ ଅଲୌକିକ ମାଳା ଧାରଣ କରିଥିଲେ ତଥା ଅନେକପ୍ରକାର ଉତ୍ତମ ତେଜୀୟାନ୍ ଅଲୌକିକ ବସ୍ତ୍ରରେ ସୁସଜ୍ଜିତ ଥିଲେ । ତେଣୁ ତାଙ୍କ ସହିତ ଏହି ବିଶେଷଣ ଯୋଗ କରାଯାଇଛି ।

**ପ୍ରଶ୍ନ – ଦିବ୍ୟଗନ୍ଧାନୁଲେପନମ୍‌**ର ଅର୍ଥ କଣ ?

**ଉତ୍ତର –** ଚନ୍ଦନ ପ୍ରଭୃତି ଯେଉଁ ଲୌକିକ ଗନ୍ଧସବୁ ରହିଛି, ସେସବୁର ବିଲକ୍ଷଣ ଅଲୌକିକ ଗନ୍ଧକୁ **ଦିବ୍ୟଗନ୍ଧ** କହନ୍ତି । ଏପରି ଦିବ୍ୟଗନ୍ଧର ଅନୁଭବ ପ୍ରାକୃତ ଇନ୍ଦ୍ରିୟମାନଙ୍କ ଦ୍ୱାରା ନ ହୋଇ ଦିବ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ ହୋଇପାରେ; ଯାହାଙ୍କ ସମସ୍ତ ଶରୀରରେ ଏହିପରି ଅତ୍ୟନ୍ତ ମନୋହର ଦିବ୍ୟଗନ୍ଧ ଅନୁଲେପିତ ହୋଇଛି, ତାହାଙ୍କୁ **ଦିବ୍ୟଗନ୍ଧାନୁଲେପନ** କହନ୍ତି ।

**ପ୍ରଶ୍ନ – ସର୍ବାଶ୍ଚର୍ଯ୍ୟମୟମ୍‌**ର ଅର୍ଥ କଣ ?

**ଉତ୍ତର –** ଭଗବାନଙ୍କର ସେହି ବିରାଟ ରୂପରେ ଥିବା ଉପରୋକ୍ତ ମୁଖ, ନେତ୍ର, ଆଭୂଷଣ, ଶସ୍ତ୍ର, ମାଳା, ବସ୍ତ୍ର ଓ ଗନ୍ଧ ଆଦି ସବୁ ଆଶ୍ଚର୍ଯ୍ୟଜନକ ଥିଲା । ତେଣୁ ଭଗବାନଙ୍କୁ **ସର୍ବାଶ୍ଚର୍ଯ୍ୟମୟ** କୁହାଯାଇଛି ।

**ପ୍ରଶ୍ନ – ଅନନ୍ତମ୍‌**ର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କର କେଉଁଠି ଅନ୍ତ ନାହିଁ, କୌଣସି ଆଡ଼କୁ ସୀମା ନାହିଁ, ତାହାଙ୍କୁ **ଅନନ୍ତ** କହନ୍ତି । ଅର୍ଜୁନ ଭଗବାନଙ୍କର ଯେଉଁ ବିଶ୍ୱରୂପ ଦର୍ଶନ କଲେ, ତାହା ଏତେ ପ୍ରଶସ୍ତ ଥିଲା ଯେ, ତାହାର ଅନ୍ତ କଳି ହେଉ ନ ଥିଲା । ତେଣୁ ତାହାଙ୍କୁ 'ଅନନ୍ତ' କୁହାଯାଇଛି ।

**ପ୍ରଶ୍ନ – ବିଶ୍ୱତୋମୁଖମ୍‌**ର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କର ମୁଖ ସବୁଦିଗରେ ଅଛି, ତାହାଙ୍କୁ **ବିଶ୍ୱତୋମୁଖ** କହନ୍ତି । ଭଗବାନଙ୍କର ବିରାଟରୂପରେ ଦେଖାଯାଉଥିବା ଅସଂଖ୍ୟ ମୁଖ ସମଗ୍ର ବିଶ୍ୱରେ ସବୁ ଦିଗରେ ଥିଲା । ଅତଏବ ତାଙ୍କୁ **ବିଶ୍ୱତୋମୁଖ** କୁହାଯାଇଛି ।

**ପ୍ରଶ୍ନ – ଦେବମ୍** ପଦର ଅର୍ଥ କଣ ଏବଂ ଏହାର ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଯେ ପ୍ରକାଶମୟ ଓ ପୂଜ୍ୟ, ତାହାଙ୍କୁ ଦେବ କହନ୍ତି । ଏଠାରେ ଦେବମ୍ ପଦ ପ୍ରୟୋଗ କରି ସଞ୍ଜୟ ଦେଖାଇଛନ୍ତି ଯେ, ପରମ ତେଜୋମୟ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଅର୍ଜୁନ ଉପରୋକ୍ତ ବିଶେଷଣମାନଙ୍କରେ ଯୁକ୍ତ ଥିବା ଦେଖିଲେ ।

**ସମ୍ବନ୍ଧ –** ଉପରୋକ୍ତ ବିରାଟସ୍ୱରୂପ ପରମଦେବ ପରମେଶ୍ୱରଙ୍କ ପ୍ରକାଶ କିପରି ଥିଲା, ବର୍ତ୍ତମାନ ତାହା ବର୍ଣ୍ଣନା କରାଯାଉଛି–

**ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍ ଯୁଗପଦୁତ୍ଥିତା ।**
**ଯଦି ଭାଃ ସଦୃଶୀ ସା ସ୍ୟାଦ୍ ଭାସସ୍ତସ୍ୟ ମହାତ୍ମନଃ ।। ୧୨ ।।**

**ଅନ୍ୱୟ –** **ଦିବି** = ଆକାଶରେ; **ସୂର୍ଯ୍ୟସହସ୍ରସ୍ୟ** = ସହସ୍ରସଂଖ୍ୟକ ସୂର୍ଯ୍ୟଙ୍କର; **ଯୁଗପତ୍** = ଏକସଙ୍ଗେ; **ଉତ୍ଥିତା** = ଉଦିତ ହୋଇଥିବା; **ଭାଃ** = (ଯେଉଁ) ଆଲୋକ ବା ଜ୍ୟୋତି; **ଭବେତ୍** = ହେବ; **ସା** = ତାହା (ବି); **ତସ୍ୟ** = ସେହି; **ମହାତ୍ମନଃ** = ବିଶ୍ୱରୂପ ପରମାତ୍ମାଙ୍କର; **ଭାସଃ** = ଜ୍ୟୋତି; **ସଦୃଶୀ** = ସଦୃଶ; **ଯଦି, ସ୍ୟାତ୍** = କଦାଚିତ୍ ହୋଇପାରିବ ।

**ଆକାଶରେ ଏକସଙ୍ଗେ ସହସ୍ରେ ସୂର୍ଯ୍ୟ ଉଦିତ ହେଲେ ଯେଉଁ ଜ୍ୟୋତି ଉତ୍ପନ୍ନ ହେବ, ତାହା ସେହି ବିଶ୍ୱରୂପ ପରମାତ୍ମାଙ୍କର ଜ୍ୟୋତିସଦୃଶ କଦାଚିତ୍ ହୋଇପାରିବ ଅର୍ଥାତ୍ ହୋଇପାରିବ ନାହିଁ।। ୧୨ ।।**

**ପ୍ରଶ୍ନ—** ଭଗବାନଙ୍କ ଜ୍ୟୋତି ସହିତ ସହସ୍ର ସୂର୍ଯ୍ୟଙ୍କ ଜ୍ୟୋତିର ସାଦୃଶ୍ୟ କହିବାର ଉଦ୍ଦେଶ୍ୟ କଣ ?

**ଉତ୍ତର—** ଏହାଦ୍ୱାରା ବିରାଟସ୍ୱରୂପ ଭଗବାନଙ୍କର ଦିବ୍ୟ ପ୍ରକାଶକୁ ନିରୁପମ ବୋଲି କୁହାଯାଇଛି। ଅଭିପ୍ରାୟ ଏହି ଯେ, ଯେପରି ହଜାର ହଜାର ତାରା ଏକାସଙ୍ଗେ ଉଦୟ ହେଲେ ମଧ୍ୟ ସୂର୍ଯ୍ୟଙ୍କ ସମାନ ହୋଇପାରିବେ ନାହିଁ, ସେହିପରି ହଜାରେ ସୂର୍ଯ୍ୟ ଯଦି ଏକସଙ୍ଗେ ଆକାଶରେ ଉଦୟ ହୁଅନ୍ତି, ତେବେ ସେମାନଙ୍କ ଜ୍ୟୋତି ମଧ୍ୟ ସେହି ବିରାଟସ୍ୱରୂପ ଭଗବାନଙ୍କର ଜ୍ୟୋତି ସହିତ ସମାନ ହେବ ନାହିଁ। ଏହାର କାରଣ ଏହି ଯେ, ସୂର୍ଯ୍ୟମାନଙ୍କର ଜ୍ୟୋତି ଅନିତ୍ୟ, ଭୌତିକ ଓ ସୀମିତ, କିନ୍ତୁ ବିରାଟସ୍ୱରୂପ ଭଗବାନଙ୍କର ଜ୍ୟୋତି ନିତ୍ୟ, ଦିବ୍ୟ, ଅଲୌକିକ ଓ ଅପରିମିତ।

*ସମ୍ବନ୍ଧ— ଭଗବାନଙ୍କର ସେହି ଜ୍ୟୋତିର୍ମୟ ଅଦ୍ଭୁତ ସ୍ୱରୂପରେ ଅର୍ଜୁନ ସମଗ୍ର ବିଶ୍ୱକୁ କିପରି ଦେଖିଲେ, ବର୍ତ୍ତମାନ ତାହା କୁହାଯାଉଛି—*

**ତତ୍ରୈକସ୍ଥଂ ଜଗତ୍ କୃତ୍ସ୍ନଂ ପ୍ରବିଭକ୍ତମନେକଧା ।**
**ଅପଶ୍ୟଦ୍ଦେବଦେବସ୍ୟ ଶରୀରେ ପାଣ୍ଡବସ୍ତଦା ।। ୧୩ ।।**

**ଅନ୍ୱୟ—** **ପାଣ୍ଡବଃ** = ପାଣ୍ଡୁପୁତ୍ର ଅର୍ଜୁନ; **ତଦା** = ସେହି ସମୟରେ; **ଅନେକଧା** = ଅନେକପ୍ରକାରରେ; **ପ୍ରବିଭକ୍ତମ୍** = ଯଥାଯଥ ବିଭକ୍ତ ହୋଇ ପୃଥକ୍ ପୃଥକ୍ ରହିଥିବା; **କୃତ୍ସ୍ନମ୍** = ସମ୍ପୂର୍ଣ୍ଣ; **ଜଗତ୍** = ଜଗତକୁ; **ଦେବଦେବସ୍ୟ** = ଦେବାଧିଦେବ ଶ୍ରୀକୃଷ୍ଣ ଭଗବାନଙ୍କର; **ତତ୍ର** = ସେହି; **ଶରୀରେ** = ଶରୀରରେ; **ଏକସ୍ଥମ୍** = ଏକ ସ୍ଥାନରେ ଥିବାର; **ଅପଶ୍ୟତ୍** = ଦେଖିଲେ।

**ପାଣ୍ଡୁପୁତ୍ର ଅର୍ଜୁନ ସେହି ସମୟରେ ଅନେକପ୍ରକାରରେ ଯଥାଯଥ ବିଭକ୍ତ ହୋଇ ପୃଥକ୍ ପୃଥକ୍ ରହିଥିବା ସଂପୂର୍ଣ୍ଣ ଜଗତକୁ ଦେବାଧିଦେବ ଶ୍ରୀକୃଷ୍ଣ ଭଗବାନଙ୍କର ସେହି ଶରୀରରେ ଗୋଟିଏ ସ୍ଥାନରେ ଥିବାର ଦେଖିଲେ।। ୧୩ ।।**

**ପ୍ରଶ୍ନ—** ଏଠାରେ ତଦା ପଦ କେଉଁ ସମୟର ବାଚକ ?

**ଉତ୍ତର—** ଯେଉଁ ସମୟରେ ଭଗବାନ୍ ଅର୍ଜୁନଙ୍କୁ ଦିବ୍ୟଦୃଷ୍ଟି ଦେଇ ତାଙ୍କ ନିଜର ଅସାଧାରଣ ଯୋଗଶକ୍ତିସହିତ ବିରାଟରୂପ ଦେଖିବାକୁ ଆଜ୍ଞା ଦେଲେ (୧୧/୮), ତଦା ପଦଟି ହେଉଛି ସେହି ସମୟର ବାଚକ।

**ପ୍ରଶ୍ନ—** ଜଗତ୍ ପଦ ସହିତ ଅନେକଧା ପ୍ରବିଭକ୍ତମ୍ ଓ କୃତ୍ସ୍ନମ୍ ବିଶେଷଣ ଦେଇ କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର—** ଏହି ବିଶେଷଣ ଦୁଇଟି ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଦେବତା-ମନୁଷ୍ୟ, ପଶୁ-ପକ୍ଷୀ, କୀଟ-ପତଙ୍ଗ ଓ ବୃକ୍ଷ ଆଦି ଭୋକ୍ତୃବର୍ଗ (ଭୋଗକାରୀ), ପୃଥିବୀ, ଅନ୍ତରିକ୍ଷ, ସ୍ୱର୍ଗ ଓ ପାତାଳ ଆଦି ଭୋଗ୍ୟସ୍ଥାନ ଏବଂ ସେମାନଙ୍କ ଭୋଗଯୋଗ୍ୟ ଅସଂଖ୍ୟ ସାମଗ୍ରୀ ବିଭିନ୍ନ ବିଭାଗରେ ବିଭକ୍ତ ହୋଇ ରହିଥିବା ଏହି ସମସ୍ତ ବ୍ରହ୍ମାଣ୍ଡକୁ ଅର୍ଜୁନ ଭଗବାନଙ୍କ ଶରୀରର ଗୋଟିଏ ସ୍ଥାନରେ ଦେଖିଲେ, ଅର୍ଥାତ୍ ଏହାର କୌଣସି ଗୋଟିଏ ଅଂଶକୁ ଯେ ଦେଖିଲେ କିମ୍ବା ଏହାର ସମସ୍ତ ବିଭାଗକୁ ବିଭିନ୍ନ ଭାବରେ ପୃଥକ୍ ପୃଥକ୍ ହୋଇଥିବା ନ ଦେଖି ମିଶାମିଶି ହୋଇ ପଡ଼ିଥିବାର ଦେଖିଲେ, ତାହା ନୁହେଁ; ସମସ୍ତ ବିସ୍ତାରକୁ ପୃଥକ୍ ପୃଥକ୍ଭାବରେ ସୁବ୍ୟବସ୍ଥିତରୂପେ ରହିଥିବାର ଦେଖିଲେ।

**ପ୍ରଶ୍ନ— ଏକସ୍ଥମ୍ ପ୍ରୟୋଗର ଭାବ କଣ ?**

**ଉତ୍ତର—** ଦଶମ ଅଧ୍ୟାୟର ଶେଷରେ ଭଗବାନ୍ ଯେଉଁ କହିଥିଲେ ଯେ, ସେ ସମଗ୍ର ବିଶ୍ୱକୁ ନିଜର

ଏକ ଅଂଶରେ ଧାରଣ କରି ରହିଛନ୍ତି, ଅର୍ଜୁନ ଏଠାରେ ତାହା ହିଁ ପ୍ରତ୍ୟକ୍ଷ ଦେଖିଲେ । ଏହା ସ୍ପଷ୍ଟ କରିଦେବାକୁ **ଏକସ୍ଥମ୍** ଅର୍ଥାତ୍ 'ଏକ ଦେଶରେ ସ୍ଥିତ' ପଦ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ – ତତ୍ର** ପଦ କାହାର ବିଶେଷଣ ଏବଂ ଏହା ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର – ତତ୍ର** ପଦ ପୂର୍ବୋକ୍ତ ବର୍ଣ୍ଣନା ସହିତ ସମ୍ବନ୍ଧ ରଖୁଛି ଏବଂ ଏଠାରେ ଏହା ହେଉଛି ଦେବଦେବ ଭଗବାନଙ୍କ ଶରୀରର ବିଶେଷଣ । ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଦେବତାମାନଙ୍କର ମଧ୍ୟ ଦେବତା, ସର୍ବଶ୍ରେଷ୍ଠ, ବ୍ରହ୍ମାଦି ଦେବତାମାନଙ୍କର ମଧ୍ୟ ପୂଜ୍ୟ ଭଗବାନ୍ ଶ୍ରୀକୃଷ୍ଣଙ୍କର ଉପରୋକ୍ତ ରୂପରେ ସମସ୍ତ ଜଗତକୁ ପାଣ୍ଡୁପୁତ୍ର ଅର୍ଜୁନ ଏକ ସ୍ଥାନରେ ରହିଥିବାର ଦେଖିଲେ ।

**ସମ୍ବନ୍ଧ –** *ଏପରିଭାବରେ ଅର୍ଜୁନ ଭଗବାନଙ୍କର ବିରାଟରୂପ ଦେଖିବା ପରେ କଣ ହେଲା, ଏହି ଜିଜ୍ଞାସା ଉପରେ ସଞ୍ଜୟ କହୁଛନ୍ତି–*

## ତତଃ ସ ବିସ୍ମୟାବିଷ୍ଟୋ ହୃଷ୍ଟରୋମା ଧନଞ୍ଜୟଃ ।
## ପ୍ରଣମ୍ୟ ଶିରସା ଦେବଂ କୃତାଞ୍ଜଳିରଭାଷତ ।। ୧୪ ।।

**ଅନ୍ୱୟ –** **ତତଃ** = ତା'ପରେ; **ବିସ୍ମୟାବିଷ୍ଟଃ** = ଆଶ୍ଚର୍ଯ୍ୟରେ ଚକିତ (ଓ); **ହୃଷ୍ଟରୋମା** = ପୁଲକିତଶରୀର; **ସଃ** = ସେହି; **ଧନଞ୍ଜୟଃ** = ଅର୍ଜୁନ; **ଦେବମ୍** = ଜ୍ୟୋତିର୍ମୟ ବିଶ୍ୱରୂପ ପରମାତ୍ମାଙ୍କୁ; **ଶିରସା** = (ଶ୍ରଦ୍ଧାଭକ୍ତି ସହିତ) ଶିରଦ୍ୱାରା; **ପ୍ରଣମ୍ୟ** = ପ୍ରଣାମ କରି; **କୃତାଞ୍ଜଳିଃ** = କର ଯୋଡ଼ି; **ଅଭାଷତ** = କହିଲେ ।

**ତା'ପରେ ଆଶ୍ଚର୍ଯ୍ୟଚକିତ ଓ ପୁଲକିତଶରୀର ସେହି ଅର୍ଜୁନ ତେଜୋମୟ ବିଶ୍ୱରୂପ ପରମାତ୍ମାଙ୍କୁ ଶ୍ରଦ୍ଧାଭକ୍ତିସହିତ ନତମସ୍ତକ ହୋଇ, ପ୍ରଣାମ କରି, କର ଯୋଡ଼ି କହିଲେ ।। ୧୪ ।।**

**ପ୍ରଶ୍ନ – ତତଃ** ପଦର ଅଭିପ୍ରାୟ କଣ ?

**ଉତ୍ତର – ତତଃ** ପଦ 'ତତ୍ପଶ୍ଚାତ୍'ର ବାଚକ । ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଅର୍ଜୁନ ଯେତେବେଳେ ଭଗବାନଙ୍କର ଉପରୋକ୍ତ ଅଦ୍ଭୁତ ପ୍ରଭାବଶାଳୀ ରୂପ ଦର୍ଶନ କଲେ, ସେତେବେଳେ ତାଙ୍କ ଠାରେ ଏପ୍ରକାର ପରିବର୍ତ୍ତନ ଚାଲିଆସିଲା ।

**ପ୍ରଶ୍ନ – ଧନଞ୍ଜୟଃ** ସହିତ **ବିସ୍ମୟାବିଷ୍ଟଃ** ଓ **ହୃଷ୍ଟରୋମା** ବିଶେଷଣ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ବହୁ ରାଜାଙ୍କ ଉପରେ ବିଜୟ ଲାଭ କରି ଅର୍ଜୁନ ଧନ ସଂଗ୍ରହ କରିଥିଲେ, ତେଣୁ ତାଙ୍କ ନାମ **ଧନଞ୍ଜୟ** ହୋଇଥିଲା । ଏଠାରେ ସେହି **ଧନଞ୍ଜୟଃ** ପଦ ସହିତ **ବିସ୍ମୟାବିଷ୍ଟଃ** ଓ **ହୃଷ୍ଟରୋମା** ବିଶେଷଣ ଦୁଇଟି ପ୍ରୟୋଗ କରି ଅର୍ଜୁନଙ୍କର ହର୍ଷ ଓ ଆଶ୍ଚର୍ଯ୍ୟର ଆଧିକ୍ୟ ଦେଖାଇଦିଆଯାଇଛି । ଅଭିପ୍ରାୟ ଏହି ଯେ, ଭଗବାନଙ୍କର ସେହି ରୂପ ଦେଖି ଅର୍ଜୁନ ଏତେ ଦୂର ଆନନ୍ଦିତ ଓ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଯେ, ସେହିକ୍ଷଣି ତାଙ୍କର ସମଗ୍ର ଶରୀର ପୁଲକିତ ହୋଇଗଲା । ସେ ଏହା ପୂର୍ବରୁ ଭଗବାନଙ୍କର ଏପରି ଐଶ୍ୱର୍ଯ୍ୟମୟ ସ୍ୱରୂପ କେବେ ଦେଖି ନ ଥିଲେ; ତେଣୁ ସେହି ଅଲୌକିକ ରୂପ ଦେଖିବାମାତ୍ରେ ତାଙ୍କ ହୃଦୟପଟରେ ହଠାତ୍ ଭଗବାନଙ୍କର ଅପରିମିତ ପ୍ରଭାବ କିଛି ଅଂଶରେ ଅଙ୍କିତ ହୋଇଗଲା; ଭଗବାନଙ୍କର କିଛି ପ୍ରଭାବ ସେ ବୁଝିପାରିଲେ । ଫଳରେ ତାଙ୍କର ହର୍ଷ ଓ ବିସ୍ମୟର ସୀମା ରହିଲା ନାହିଁ ।

**ପ୍ରଶ୍ନ – ଦେବମ୍** ପଦ କାହାର ବାଚକ ତଥା **ଶିରସା ପ୍ରଣମ୍ୟ** ଓ **କୃତାଞ୍ଜଳିଃ**ର ଭାବ କଣ ?

**ଉତ୍ତର –** ଏଠାରେ **ଦେବମ୍** ପଦ ଭଗବାନଙ୍କ ତେଜୋମୟ ବିରାଟସ୍ୱରୂପର ବାଚକ ଏବଂ **ଶିରସା ପ୍ରଣମ୍ୟ** ତଥା **କୃତାଞ୍ଜଳିଃ** ପଦଦୁଇଟି ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଅର୍ଜୁନ ଯେତେବେଳେ ଭଗବାନଙ୍କର ଏପରି ଅନନ୍ତ ଆଶ୍ଚର୍ଯ୍ୟମୟ ଦୃଶ୍ୟମାନଙ୍କରେ ଯୁକ୍ତ ପରମପ୍ରକାଶମୟ ଓ ଅସୀମ ଐଶ୍ୱର୍ଯ୍ୟମୟ ମହାନ୍ ସ୍ୱରୂପ ଦେଖିଲେ, ସେତେବେଳେ ସେ ଏତେଦୂର ପ୍ରଭାବିତ ହୋଇଗଲେ ଯେ, ତାଙ୍କ ମନରେ ପୂର୍ବରୁ ଯେଉଁ ମିତ୍ରଭାବ ରହିଥିଲା, ତାହା ସହସା ବିଲୁପ୍ତପ୍ରାୟ ହୋଇଗଲା; ଭଗବାନଙ୍କ ମହିମା ଆଗରେ ସେ ନିଜକୁ ଅତ୍ୟନ୍ତ

ତୁଚ୍ଛ ମନେ କଲେ। ଭଗବାନଙ୍କ ପ୍ରତି ତାଙ୍କ ହୃଦୟରେ ଅତ୍ୟନ୍ତ ପୂଜ୍ୟଭାବ ଜାଗ୍ରତ ହୋଇଗଲା ଓ ସେହି ପୂଜ୍ୟଭାବର ପ୍ରବାହ ବିଜୁଳିପରି ଗତି କରି ତାଙ୍କ ମସ୍ତକକୁ ସେହିକ୍ଷଣି ଭଗବାନଙ୍କ ଚରଣରେ ଲଗାଇଦେଲା ଏବଂ ସେ ଯୋଡ଼ହସ୍ତ ହୋଇ ଅତ୍ୟନ୍ତ ବିନମ୍ରଭାବରେ ଶ୍ରଦ୍ଧାଭକ୍ତିପୂର୍ବକ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ।

*ସମ୍ବନ୍ଧ – ଏପରିଭାବରେ ହର୍ଷ ଓ ଆଶ୍ଚର୍ଯ୍ୟଚକିତ ଅର୍ଜୁନ ବର୍ତ୍ତମାନ ଭଗବାନଙ୍କର ବିଶ୍ୱରୂପରେ ଦିଶୁଥିବା ଦୃଶ୍ୟମାନଙ୍କୁ ବର୍ଣ୍ଣନା କରି କରି ସେହି ବିଶ୍ୱରୂପକୁ ସ୍ତୁତି କରୁଛନ୍ତି –*

*ଅର୍ଜୁନ ଉବାଚ*

**ପଶ୍ୟାମି ଦେବାଂସ୍ତବ ଦେବ ଦେହେ ସର୍ବାଂସ୍ତଥା ଭୂତବିଶେଷସଂଘାନ୍।**
**ବ୍ରହ୍ମାଣମୀଶଂ କମଳାସନସ୍ଥମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍॥ ୧୫ ॥**

ଅନ୍ୱୟ – ଦେବ = ହେ ଦେବ! (ମୁଁ); ତବ = ଆପଣଙ୍କ; ଦେହେ = ଶରୀରରେ; **ସର୍ବାନ୍**, **ଦେବାନ୍** = ସକଳ- ଦେବତାଙ୍କୁ; **ତଥା** = ତଥା; **ଭୂତବିଶେଷସଂଘାନ୍** = ଅନେକ ଭୂତସମୁଦାୟକୁ; **କମଳାସନସ୍ଥମ୍** = କମଳ ଆସନରେ ବିରାଜିତ; **ବ୍ରହ୍ମାଣମ୍** = ବ୍ରହ୍ମାଙ୍କୁ; **ଈଶମ**= ମହାଦେବଙ୍କୁ; **ଚ** = ଏବଂ; **ସର୍ବାନ୍** = ସକଳ; **ଋଷୀନ୍** = ଋଷିମାନଙ୍କୁ; **ଚ** = ତଥା; **ଦିବ୍ୟାନ୍** = ଦିବ୍ୟ; **ଉରଗାନ୍** = ସର୍ପମାନଙ୍କୁ; **ପଶ୍ୟାମି** = ଦେଖୁଛି।

**ଅର୍ଜୁନ କହିଲେ — ହେ ଦେବ! ଆପଣଙ୍କ ଶରୀରରେ ମୁଁ ସମସ୍ତ ଦେବତାଙ୍କୁ, ଚରାଚର ଭୂତସମୁଦାୟକୁ, କମଳ ଆସନରେ ବିରାଜିତ ବ୍ରହ୍ମାଙ୍କୁ, ମହାଦେବଙ୍କୁ ଓ ସମସ୍ତ ଋଷିମାନଙ୍କୁ ତଥା ଦିବ୍ୟ ସର୍ପମାନଙ୍କୁ ଦେଖୁଛି॥ ୧୫ ॥**

**ପ୍ରଶ୍ନ –** ଏଠାରେ ଦେବ ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନଙ୍କର ତେଜୋମୟ ଅଦ୍ଭୁତ ରୂପ ଦେଖି ଅର୍ଜୁନଙ୍କର ଭଗବାନଙ୍କ ଠାରେ ଯେଉଁ ଶ୍ରଦ୍ଧାଭକ୍ତିଯୁକ୍ତ ଅତ୍ୟନ୍ତ ପୂଜ୍ୟଭାବ ଜାତ ହୋଇଥିଲା, ତାହା ଦେଖାଇବାକୁ ହିଁ ଏଠାରେ **ଦେବ** ସମ୍ବୋଧନ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ – ତବ ଦେହେର** ଅଭିପ୍ରାୟ କଣ ?

**ଉତ୍ତର –** ଏହି ଦୁଇଟି ପଦ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି ଯେ, ତାଙ୍କ ଆଗରେ ଭଗବାନଙ୍କର ଯେଉଁ ଶରୀର ରହିଛି, ସେହି ଶରୀରମଧ୍ୟରେ ସେ ଏସବୁ ଦେଖୁଛନ୍ତି।

**ପ୍ରଶ୍ନ –** ଅର୍ଜୁନ ''ମୁଁ ଆପଣଙ୍କ ଶରୀରରେ ସକଳ ଚରାଚର ପ୍ରାଣୀମାନଙ୍କର ବିଭିନ୍ନ ସମୁଦାୟକୁ ଦେଖୁଛି'' ବୋଲି କହିଥିଲେ ଚଳିଥାନ୍ତା, ସମସ୍ତ ଦେବତାଙ୍କୁ ଦେଖୁଛି ବୋଲି ଅଲଗା କହିବାର କି ଆବଶ୍ୟକତା ଥିଲା ?

**ଉତ୍ତର –** ଜଗତର ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଦେବତାମାନେ ସବୁଠାରୁ ଶ୍ରେଷ୍ଠ ବୋଲି ଗଣ୍ୟ ହୁଅନ୍ତି, ଅତଏବ ଦେବତାଙ୍କର ନାମ ପୃଥକ୍‌ଭାବରେ କହିଛନ୍ତି।

**ପ୍ରଶ୍ନ –** ବ୍ରହ୍ମା ଓ ଶିବ ତ ଦେବତାଙ୍କ ମଧ୍ୟରେ ଆସିଗଲେ, ପୁଣି ସେହିଦୁହିଁଙ୍କର ନାମ ଅଲଗା କାହିଁକି କହିଲେ ଓ ବ୍ରହ୍ମାଙ୍କ ସହିତ **କମଳାସନସ୍ଥମ୍** ବିଶେଷଣ କାହିଁକି ଦିଆଗଲା ?

**ଉତ୍ତର –** ବ୍ରହ୍ମା ଓ ଶିବ ଦେବତାମାନଙ୍କର ମଧ୍ୟ ଦେବତା ତଥା ଈଶ୍ୱରକୋଟିର ଅଟନ୍ତି। ଅତଏବ ସେ ଦୁହିଁଙ୍କ ନାମ ଅଲଗା କହିଲେ। ବ୍ରହ୍ମାଙ୍କ ସହିତ **କମଳାସନସ୍ଥମ୍** ବିଶେଷଣ ଦେଇ ଅର୍ଜୁନ ଜଣାଉଛନ୍ତି, ''ମୁଁ ଭଗବାନ୍ ବିଷ୍ଣୁଙ୍କ ନାଭିରୁ ବାହାରିଥିବା କମଳ ଉପରେ ବିରାଜିତ ବ୍ରହ୍ମାଙ୍କୁ ଦେଖୁଛି, ଅର୍ଥାତ୍ ତାଙ୍କ ସହିତ ଆପଣଙ୍କର ବିଷ୍ଣୁରୂପକୁ ମଧ୍ୟ ଆପଣଙ୍କ ଶରୀରରେ ଦେଖୁଛି।''

**ପ୍ରଶ୍ନ –** ସମସ୍ତ ଋଷିଙ୍କୁ ଓ ଦିବ୍ୟ ସର୍ପମାନଙ୍କୁ ଦେଖୁଛି ବୋଲି ଅଲଗା କହିବାର ଅଭିପ୍ରାୟ କଣ ?

**ଉତ୍ତର –** ମନୁଷ୍ୟଲୋକରେ ସବୁ ପ୍ରାଣୀଙ୍କ ମଧ୍ୟରେ ଋଷିମାନଙ୍କୁ ଏବଂ ପାତାଳଲୋକରେ ବାସୁକି ଆଦି ଦିବ୍ୟସର୍ପମାନଙ୍କୁ ଶ୍ରେଷ୍ଠ ବୋଲି ଗ୍ରହଣ କରାଯାଇଛି। ଅତଏବ ସେମାନଙ୍କ ବିଷୟ ଅଲଗା କୁହାଯାଇଛି।

ଏଠାରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି-ଲୋକର ପ୍ରଧାନ ପ୍ରଧାନ ବ୍ୟକ୍ତିମାନଙ୍କ ସମୁଦାୟକୁ ଗଣନା କରି ଅର୍ଜୁନ ଜଣାଉଛନ୍ତି, ''ମୁଁ ତ୍ରିଭୁବନାତ୍ମକ ସମସ୍ତ ବିଶ୍ୱକୁ ଆପଣଙ୍କ ଶରୀରରେ ଦେଖୁଛି।''

**ଅନେକବାହୂଦରବକ୍ତ୍ରନେତ୍ରଂ ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍।
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ॥ ୧୬ ॥**

**ଅନ୍ୱୟ –** **ବିଶ୍ୱେଶ୍ୱର** = ହେ ସକଳ ବିଶ୍ୱର ସ୍ୱାମୀ!; **ତ୍ୱାମ୍** = (ମୁଁ) ଆପଣଙ୍କୁ; **ଅନେକବାହୂଦରବକ୍ତ୍ରନେତ୍ରମ୍** = ଅନେକଭୁଜ, ଉଦର, ମୁଖ ଓ ନେତ୍ର-ଯୁକ୍ତ (ତଥା); **ସର୍ବତଃ** = ସକଳ ଦିଗରେ (ବ୍ୟାପ୍ତ); **ଅନନ୍ତରୂପମ୍** = ଅନନ୍ତରୂପବିଶିଷ୍ଟ; **ପଶ୍ୟାମି** = ଦେଖୁଛି; **ବିଶ୍ୱରୂପ** = ହେ ବିଶ୍ୱରୂପ (ମୁଁ); **ତବ** = ଆପଣଙ୍କର; **ନ** = ନା; **ଅନ୍ତମ୍** = ଅନ୍ତକୁ; **ପଶ୍ୟାମି** = ଦେଖୁଛି; **ନ** = ନା; **ମଧ୍ୟମ୍** = ମଧ୍ୟକୁ; **ପୁନଃ** = ଏବଂ; **ନ** = ନା; **ଆଦିମ୍** = ଆଦିକୁ ହିଁ ଦେଖୁଛି।

**ହେ ବିଶ୍ୱେଶ୍ୱର! ମୁଁ ଆପଣଙ୍କୁ ଅନେକ ଭୁଜ, ଅନେକ ଉଦର, ଅନେକ ମୁଖ ଓ ଅନେକ ନେତ୍ର-ଯୁକ୍ତ ତଥା ସକଳ ଦିଗରେ ବ୍ୟାପ୍ତ ଅନନ୍ତରୂପବିଶିଷ୍ଟ ଦେଖୁଛି। ହେ ବିଶ୍ୱରୂପ! ମୁଁ ଆପଣଙ୍କର ନା ଅନ୍ତ, ନା ଆଦି, ନା ମଧ୍ୟ – କିଛି ବି ଦେଖିପାରୁ ନାହିଁ॥ ୧୬ ॥**

**ପ୍ରଶ୍ନ –** ବିଶ୍ୱେଶ୍ୱର ଓ ବିଶ୍ୱରୂପ ଏହି ଦୁଇ ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ଏହି ଦୁଇ ସମ୍ବୋଧନ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ଆପଣ ହିଁ ଏହି ସମସ୍ତ ବିଶ୍ୱର କର୍ତ୍ତା, ହର୍ତ୍ତା ଓ ସମସ୍ତଙ୍କୁ ନିଜ ନିଜ କାର୍ଯ୍ୟରେ ନିଯୁକ୍ତ କରୁଥିବା ସମସ୍ତଙ୍କର ଅଧୀଶ୍ୱର ଅଟନ୍ତି ଏବଂ ଏହି ସମଗ୍ର ବିଶ୍ୱ ବସ୍ତୁତଃ ଆପଣଙ୍କର ହିଁ ସ୍ୱରୂପ; ଆପଣ ହିଁ ଏହାର ନିମିତ୍ତ ଓ ଉପାଦାନ କାରଣ।''

**ପ୍ରଶ୍ନ –** **ଅନେକବାହୂଦରବକ୍ତ୍ରନେତ୍ରମ୍**ର ଅର୍ଥ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଦର୍ଶାଉଛନ୍ତି, ''ଆପଣଙ୍କୁ ବର୍ତ୍ତମାନ ମୁଁ ଯେଉଁ ରୂପରେ ଦେଖୁଛି, ତାହାର ଭୁଜ, ଉଦର, ମୁଖ ଓ ନେତ୍ର ଅସଂଖ୍ୟ; କେହି କୌଣସିପ୍ରକାରେ ମଧ୍ୟ ଏସବୁକୁ ଗଣନା କରିପାରିବ ନାହିଁ।''

**ପ୍ରଶ୍ନ –** **ସର୍ବତଃ ଅନନ୍ତରୂପମ୍**ର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଦେଉଛନ୍ତି, ''ଆପଣଙ୍କୁ ବର୍ତ୍ତମାନ ମୁଁ ସବୁଆଡୁ ଅନେକପ୍ରକାରେ ପୃଥକ୍ ପୃଥକ୍ ଅଗଣିତ ରୂପରେ ଦେଖୁଛି, ଅର୍ଥାତ୍ ଆପଣଙ୍କର ଏହି ଗୋଟିଏ ଶରୀରରେ ମୋତେ ଅନେକ ଭିନ୍ନ ଭିନ୍ନ ରୂପ ଚତୁର୍ଦ୍ଦିଗରେ ବ୍ୟାପି ରହିଥିବାର ଦେଖାଯାଉଛି।''

**ପ୍ରଶ୍ନ –** 'ଆପଣଙ୍କର ଆଦି, ମଧ୍ୟ ଓ ଅନ୍ତ — କିଛି ବି ଦେଖିବାକୁ ପାଉ ନାହିଁ' – ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, ''ମୁଁ କେଉଁଠି ବି ଆପଣଙ୍କର ଏହି ବିରାଟରୂପର ଆଦି ଓ ଅନ୍ତ ଦେଖୁ ନାହିଁ, ଅର୍ଥାତ୍ ଏହା କେଉଁଠୁ କେଉଁଠାଯାଏ ବ୍ୟାପିଛି, ମୋତେ ତାହା ଜଣାପଡୁ ନାହିଁ ଏବଂ ଏହିପରି ଆଦି ଅନ୍ତ ଠିକ୍ କରି ନ ପାରିବାରୁ, ଏହାର ମଧ୍ୟଭାଗ କେଉଁଠି ଅଛି, ମୁଁ ତାହା ବି ବୁଝିପାରୁ ନାହିଁ। ଏଣୁ ମୁଁ ଆପଣଙ୍କର ମଧ୍ୟଭାଗ ବି ଦେଖିପାରୁ ନାହିଁ। ମୋତେ ତ ଆଗରେ ପଛରେ, ଡାହାଣରେ, ବାମରେ ଓ ଉପରେ ତଳେ –ସବୁ ଦିଗରେ ଆପଣ ସୀମାରହିତ ଦେଖାଯାଉଛନ୍ତି। କୌଣସି ଦିଗରୁ ଆପଣଙ୍କର କୌଣସି ସୀମା ଦେଖାଯାଉ ନାହିଁ।

**କିରୀଟିନଂ ଗଦିନଂ ଚକ୍ରିଣଂ ଚ ତେଜୋରାଶିଂ ସର୍ବତୋ ଦୀପ୍ତିମନ୍ତମ୍।
ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତାଦ୍ ଦୀପ୍ତାନଲାର୍କଦ୍ୟୁତିମପ୍ରମେୟମ୍॥ ୧୭ ॥**

**ଅନ୍ୱୟ –** **ତ୍ୱାମ୍** = ଆପଣଙ୍କୁ (ମୁଁ); **କିରୀଟିନମ୍** = ମୁକୁଟଯୁକ୍ତ; **ଗଦିନମ୍** = ଗଦାଯୁକ୍ତ; **ଚ** = ଓ; **ଚକ୍ରିଣମ୍** = ଚକ୍ରଯୁକ୍ତ (ତଥା); **ସର୍ବତଃ** = ସବୁଦିଗରୁ; **ଦୀପ୍ତିମନ୍ତମ୍** = ପ୍ରକାଶମାନ; **ତେଜୋରାଶିମ୍** = ତେଜପୁଞ୍ଜ; **ଦୀପ୍ତାନଲାର୍କଦ୍ୟୁତିମ୍** = ପ୍ରଜ୍ୱଳିତ ଅଗ୍ନି ଏବଂ ସୂର୍ଯ୍ୟସଦୃଶ ଜ୍ୟୋତିଯୁକ୍ତ; **ଦୁର୍ନିରୀକ୍ଷ୍ୟମ୍** = ଦୁର୍ନିରୀକ୍ଷ୍ୟ (ଦେଖାଯିବା ଅତ୍ୟନ୍ତ କଷ୍ଟକର); **ସମନ୍ତାତ୍** = (ଓ) ସବୁଦିଗରୁ; **ଅପ୍ରମେୟମ୍** = ଅପ୍ରମେୟସ୍ୱରୂପ; **ପଶ୍ୟାମି** = ଦେଖୁଛି।

**ହେ ବିଷ୍ଣୁ! ଆପଣଙ୍କୁ ମୁଁ ମୁକୁଟଯୁକ୍ତ, ଗଦାଯୁକ୍ତ ଓ ଚକ୍ରଯୁକ୍ତ ତଥା ସବୁଦିଗରୁ ପ୍ରକାଶମାନତେଜପୁଞ୍ଜ, ପ୍ରଜ୍ୱଳିତ ଅଗ୍ନି ଓ ସୂର୍ଯ୍ୟସଦୃଶ ଜ୍ୟୋତିଯୁକ୍ତ, ଚାହିଁ ଦେଖିବା ଅତ୍ୟନ୍ତ କଷ୍ଟକର ଓ ସବୁ ଦିଗରୁ ଅପ୍ରମେୟସ୍ୱରୂପ ଦେଖୁଛି।। ୧୭ ।।**

**ପ୍ରଶ୍ନ— କିରୀଟିନମ୍, ଗଦିନମ୍ ଓ ଚକ୍ରିଣମ୍**ର ଅଭିପ୍ରାୟ କଣ ?

**ଉତ୍ତର—** ଯାହାଙ୍କର ମସ୍ତକରେ କିରୀଟ ଅର୍ଥାତ୍ ଅତ୍ୟନ୍ତ ଶୋଭାଯୁକ୍ତ ଓ ତେଜୀୟାନ୍ ମୁକୁଟ ବିରାଜିତ, ତାହାଙ୍କୁ **କିରୀଟୀ** କହନ୍ତି। ଯାହାଙ୍କର ହାତରେ ଗଦା ଅଛି, ତାହାଙ୍କୁ **ଗଦୀ** କହନ୍ତି ଓ ଯାହାଙ୍କ ପାଖରେ 'ଚକ୍ର' ଅଛି, ତାହାଙ୍କୁ **ଚକ୍ରୀ** କହନ୍ତି। ଏହି ତିନୋଟି ପଦ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ଏହି ଅଦ୍ଭୁତ ରୂପରେ ବି ମୁଁ ଆପଣଙ୍କୁ ମହାନ୍ ତେଜୀୟାନ୍ ମୁକୁଟ ଧାରଣ କରିଥିବାର ଏବଂ ହାତରେ ଗଦା ଓ ଚକ୍ର ଧରିଥିବାର ଦେଖୁଛି।''

**ପ୍ରଶ୍ନ— ସର୍ବତଃ ଦୀପ୍ତିମନ୍ତମ୍ ଓ ତେଜୋରାଶିମ୍**ର ଅଭିପ୍ରାୟ କଣ ?

**ଉତ୍ତର—** ଯାହାଙ୍କର ଦିବ୍ୟ ପ୍ରକାଶ ଉପରେ-ତଳେ, ବାହାରେ-ଭିତରେ ଏବଂ ସବୁ ଦିଗରେ ବ୍ୟାପିଛି, ତାହାଙ୍କୁ **ସର୍ବତୋ ଦୀପ୍ତିମାନ୍** କହନ୍ତି ତଥା ତେଜସମୂହକୁ **ତେଜୋରାଶି** କହନ୍ତି। ଏହି ଦୁଇ ପଦ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ଆପଣଙ୍କର ଏହି ବିରାଟରୂପ ମୋତେ ମୂର୍ତ୍ତିମାନ୍ ତେଜପୁଞ୍ଜରୂପେ ତଥା ସବୁ ଦିଗରୁ ପରମ ପ୍ରକାଶମୟ ଦେଖାଯାଉଛି।''

**ପ୍ରଶ୍ନ— ସର୍ବତୋ ଦୀପ୍ତିମନ୍ତମ୍ ଓ ତେଜୋରାଶିମ୍** ଏହି ବିଶେଷଣ ଦେଇସାରିବା ପରେ ସେହି ଭାବର ଦ୍ୟୋତକ **ଦୀପ୍ତାନଳାର୍କଦ୍ୟୁତିମ୍** ପଦ ପ୍ରୟୋଗର ଆବଶ୍ୟକତା କଣ ?

**ଉତ୍ତର—** ଭଗବାନଙ୍କର ସେହି ବିରାଟରୂପ ପରମ-ପ୍ରକାଶମୟ ଓ ମୂର୍ତ୍ତିମାନ୍ ତେଜପୁଞ୍ଜ କିପରି ଥିଲା, ଅଗ୍ନି ଓ ସୂର୍ଯ୍ୟଙ୍କର ଉପମା ଦେଇ ସେହି କଥାଟିକୁ ଠିକ୍ ଠିକ୍ ଅନୁମାନ କରାଇଦେବାପାଇଁ **ଦୀପ୍ତାନଳାର୍କଦ୍ୟୁତିମ୍** ପଦ ପ୍ରୟୋଗ କରାଯାଇଛି। ଅର୍ଜୁନ କହୁଛନ୍ତି, ''ପ୍ରଜ୍ୱଳିତ ଅଗ୍ନି ଓ ପ୍ରକାଶପୁଞ୍ଜ ସୂର୍ଯ୍ୟ ଯେପରି ପ୍ରକାଶମାନ ତେଜରାଶି, ଆପଣଙ୍କର ଏହି ବିରାଟସ୍ୱରୂପ ସେହିପରି ତା'ଠାରୁ ମଧ୍ୟ ଅସଂଖ୍ୟ ଗୁଣରେ ଅଧିକ ପ୍ରକାଶମାନ ତେଜରାଶି। ଅର୍ଥାତ୍ ଅଗ୍ନି ଓ ସୂର୍ଯ୍ୟଙ୍କର ସେହି ତେଜ ତ କୌଣସି ଗୋଟିଏ ସ୍ଥାନରେ ଦେଖାଯାଏ, କିନ୍ତୁ ଆପଣଙ୍କର ଏହି ବିରାଟ ଶରୀର ସବୁଦିଗରୁ ସେସବୁଠାରୁ ବି ଅନନ୍ତ ଗୁଣରେ ଅଧିକ ତେଜୋମୟ ଦେଖାଯାଉଛି।''

**ପ୍ରଶ୍ନ— ଦୁର୍ନିରୀକ୍ଷ୍ୟମ୍**ର ଭାବ କଣ ଓ ଯଦି ଭଗବାନଙ୍କର ସେହିରୂପ ଦୁର୍ନିରୀକ୍ଷ୍ୟ ଥିଲା, ତେବେ ଅର୍ଜୁନ ତାହାକୁ ଦେଖୁଥିଲେ କିପରି ?

**ଉତ୍ତର—** ଅତ୍ୟନ୍ତ ଅଦ୍ଭୁତ ପ୍ରକାଶରେ ଯୁକ୍ତ ହୋଇଥିବାରୁ ସେହି ରୂପ ଆଗରେ ପ୍ରାକୃତ ନେତ୍ର ଖୋଲି ହୁଏ ନାହିଁ। ଅତଏବ ସର୍ବସାଧାରଣଙ୍କ ପାଇଁ ତାହାକୁ **ଦୁର୍ନିରୀକ୍ଷ୍ୟ** କୁହାଯାଇଛି। ଅର୍ଜୁନଙ୍କୁ ତ ଭଗବାନ୍ ସେହି ରୂପ ଦେଖିବାକୁ ଦିବ୍ୟଦୃଷ୍ଟି ପ୍ରଦାନ କରିଥିଲେ; ତେଣୁ ସେ ତା'ଦ୍ୱାରା ସେହି ରୂପ ଦେଖୁଥିଲେ। ତେଣୁ ତାହା ଅନ୍ୟମାନଙ୍କ ପାଇଁ ଦୁର୍ନିରୀକ୍ଷ୍ୟ ହେଲେ ମଧ୍ୟ ଅର୍ଜୁନଙ୍କ ପାଇଁ ସେପରି ନ ଥିଲା।

**ପ୍ରଶ୍ନ— ସମନ୍ତାତ୍ ଅପ୍ରମେୟମ୍**ର ଅଭିପ୍ରାୟ କଣ ?

**ଉତ୍ତର—** ଯାହାକୁ ମାପି ହେବ ନାହିଁ ବା କୌଣସି ଉପାୟରେ ମଧ୍ୟ ଯାହାର ସୀମା ଜାଣି ହେବ ନାହିଁ, ତାହା **ଅପ୍ରମେୟ**। ଯେ ସବୁଦିଗରୁ ଅପ୍ରମେୟ, ତାହାଙ୍କୁ **ସମନ୍ତାତ୍ ଅପ୍ରମେୟ** କହନ୍ତି। ଏହା ପ୍ରୟୋଗ କରି ଅର୍ଜୁନ ଭଗବାନଙ୍କୁ କହୁଛନ୍ତି, ''ଆପଣଙ୍କର ଗୁଣ, ପ୍ରଭାବ, ଶକ୍ତି ଓ ସ୍ୱରୂପକୁ କୌଣସି ପ୍ରାଣୀ କୌଣସି ଉପାୟରେ ବି ସଂପୂର୍ଣ୍ଣରୂପେ ଜାଣିପାରିବ ନାହିଁ।''

**ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍।**
**ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା ସନାତନସ୍ତ୍ୱଂ ପୁରୁଷୋ ମତୋ ମେ।। ୧୮ ।।**

**ଅନ୍ୱୟ—** **ତ୍ୱମ୍** = ଆପଣ ହିଁ; **ବେଦିତବ୍ୟମ୍** = ଜାଣିବାଯୋଗ୍ୟ; **ପରମମ୍** = ପରମ; **ଅକ୍ଷରମ୍** = ଅକ୍ଷର ଅର୍ଥାତ୍ ପରବ୍ରହ୍ମ ପରମାତ୍ମା; **ତ୍ୱମ୍** = ଆପଣ (ହିଁ); **ଅସ୍ୟ** = ଏହି; **ବିଶ୍ୱସ୍ୟ** = ଜଗତର; **ପରମ୍** = ପରମ; **ନିଧାନମ୍** = ଆଶ୍ରୟ; **ତ୍ୱମ୍** = ଆପଣ (ହିଁ); **ଶାଶ୍ୱତଧର୍ମଗୋପ୍ତା** = ଅନାଦି ଧର୍ମର ରକ୍ଷକ; **ତ୍ୱମ୍** = (ଏବଂ) ଆପଣ (ହିଁ); **ଅବ୍ୟୟଃ** = ଅବିନାଶୀ; **ସନାତନଃ** = ସନାତନ; **ପୁରୁଷଃ** = ପୁରୁଷ; **ମେ** = (ଏହା) ମୋର; **ମତଃ** = ମତ।

**ମୋ ମତରେ ଆପଣ ହିଁ ଜାଣିବାଯୋଗ୍ୟ ପରମ ଅକ୍ଷର ଅର୍ଥାତ୍ ପରବ୍ରହ୍ମ ପରମାତ୍ମା; ଆପଣ ହିଁ ଏହି ଜଗତର ପରମ ଆଶ୍ରୟ; ଆପଣ ହିଁ ଅନାଦି ଧର୍ମର ରକ୍ଷକ ଓ ଆପଣ ହିଁ ଅବିନାଶୀ ସନାତନ ପୁରୁଷ॥ ୧୮ ॥**

**ପ୍ରଶ୍ନ –** **ବେଦିତବ୍ୟମ୍** ଓ **ପରମମ୍** ବିଶେଷଣ ସହିତ **ଅକ୍ଷରମ୍** ପଦ କାହାର ବାଚକ ଓ ତା'ର ଭାବ କଣ ?

**ଉତ୍ତର –** ଯେଉଁ ଜାଣିବାଯୋଗ୍ୟ ପରମତତ୍ତ୍ୱକୁ ମୁମୁକ୍ଷୁ ପୁରୁଷ ଜାଣିବାକୁ ଇଚ୍ଛା କରନ୍ତି, ଯାହାକୁ ଜାଣିବାପାଇଁ ଜିଜ୍ଞାସୁ ସାଧକ ନାନାପ୍ରକାର ସାଧନା କରନ୍ତି, ଅଷ୍ଟମ ଅଧ୍ୟାୟର ତୃତୀୟ ଶ୍ଳୋକରେ ଯେଉଁ ପରମ ଅକ୍ଷରଙ୍କୁ ବ୍ରହ୍ମ କୁହାଯାଇଛି, ଏଠାରେ **ବେଦିତବ୍ୟମ୍** ଓ **ପରମମ୍** ବିଶେଷଣ ସହିତ **ଅକ୍ଷରମ୍** ପଦଟି ହେଉଛି ସେହି ପରମତତ୍ତ୍ୱସ୍ୱରୂପ ସଚ୍ଚିଦାନନ୍ଦଘନ ନିର୍ଗୁଣ ନିରାକାର ପରବ୍ରହ୍ମ ପରମାତ୍ମାଙ୍କ ବାଚକ ଏବଂ ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ଆପଣଙ୍କର ବିରାଟ ରୂପ ଦେଖି ମୋର ଦୃଢ଼ବିଶ୍ୱାସ ହେଲା ଯେ, ଆପଣ ହିଁ ସେହି ପରବ୍ରହ୍ମ ପରମାତ୍ମା ନିର୍ଗୁଣ ବ୍ରହ୍ମ।"

**ପ୍ରଶ୍ନ –** **ନିଧାନମ୍** ପଦର ଅର୍ଥ କଣ ଓ ଭଗବାନ୍ ହିଁ ଏହି ଜଗତର ପରମ ନିଧାନ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେଉଁ ସ୍ଥାନରେ କୌଣସି ବସ୍ତୁ ରଖାଯାଇପାରିବ, ସେହି ସ୍ଥାନକୁ ସେହି ବସ୍ତୁର **ନିଧାନ** ଅଥବା ଆଧାର (ଆଶ୍ରୟ) କୁହାଯାଏ। ଏଠାରେ ଅର୍ଜୁନ ଭଗବାନଙ୍କୁ ଏହି ଜଗତର ନିଧାନ କହି ଜଣାଇଛନ୍ତି, "କାରଣ ଓ କାର୍ଯ୍ୟ ସହିତ ଏହି ସମଗ୍ର ଜଗତ ଆପଣଙ୍କ ମଧ୍ୟରେ ରହିଛି; ଆପଣ ହିଁ ଏହାକୁ ଧାରଣ କରି ରଖିଛନ୍ତି; ଅତଏବ ଆପଣ ହିଁ ଏହାର ଆଶ୍ରୟ।"

**ପ୍ରଶ୍ନ –** **ଶାଶ୍ୱତଧର୍ମ** କାହାର ବାଚକ ଓ ଭଗବାନଙ୍କୁ ତାହାର **ଗୋପ୍ତା** କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯାହା ସଦା ରହିଆସିଛି ଓ ସଦା ରହିଥିବ, ସେହି ସନାତନ ବୈଦିକ ଧର୍ମକୁ **ଶାଶ୍ୱତଧର୍ମ** କହନ୍ତି। ଭଗବାନ୍ ବାରମ୍ବାର ଅବତାର ନେଇ ସେହି ଧର୍ମ ରକ୍ଷା କରନ୍ତି। ଅତଏବ ଭଗବାନଙ୍କୁ ଅର୍ଜୁନ **ଶାଶ୍ୱତଧର୍ମଗୋପ୍ତା** ବୋଲି କହିଛନ୍ତି।

**ପ୍ରଶ୍ନ –** **ଅବ୍ୟୟ** ଓ **ସନାତନ** ବିଶେଷଣ ସହିତ **ପୁରୁଷ** ଶବ୍ଦ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ଯାହାର କେବେ ବିନାଶ ନାହିଁ, ତାହାକୁ **ଅବ୍ୟୟ** କହନ୍ତି ତଥା ଯେ ସଦା ରହିଛନ୍ତି ଓ ସଦା ଏକରସ ହୋଇ ରହନ୍ତି, ତାହାଙ୍କୁ **ସନାତନ** କହନ୍ତି। ଏହି ଦୁଇ ବିଶେଷଣ ସହିତ **ପୁରୁଷ** ଶବ୍ଦ ପ୍ରୟୋଗ କରି ଅର୍ଜୁନ କହୁଛନ୍ତି, "ଯାହାଙ୍କର କେବେ ନାଶ ହୁଏ ନାହିଁ, ଆପଣ ହିଁ ସମଗ୍ର ଜଗତର ହର୍ତ୍ତା, କର୍ତ୍ତା, ସର୍ବଶକ୍ତିମାନ୍, ସଂପୂର୍ଣ୍ଣବିକାରରହିତ, ସେପରି ସନାତନ ପରମ ପୁରୁଷ ସାକ୍ଷାତ୍ ପରମେଶ୍ୱର।"

**ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରମ୍।**
**ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ ସ୍ୱତେଜସା ବିଶ୍ୱମିଦଂ ତପନ୍ତମ୍ ॥ ୧୯ ॥**

ଅନ୍ୱୟ – ତ୍ୱାମ୍ = ଆପଣଙ୍କୁ (ମୁଁ); ଅନାଦିମଧ୍ୟାନ୍ତମ୍ = ଆଦି, ମଧ୍ୟ ଓ ଅନ୍ତରହିତ; **ଅନନ୍ତବୀର୍ଯ୍ୟମ୍** = ଅନନ୍ତ ସାମର୍ଥ୍ୟଯୁକ୍ତ; **ଅନନ୍ତବାହୁମ୍** = ଅନନ୍ତଭୁଜଧାରୀ; **ଶଶିସୂର୍ଯ୍ୟନେତ୍ରମ୍** = ଚନ୍ଦ୍ର ଓ ସୂର୍ଯ୍ୟରୂପକ ନେତ୍ରଧାରୀ; **ଦୀପ୍ତହୁତାଶବକ୍ତ୍ରମ୍** = ପ୍ରଜ୍ୱଳିତ ଅଗ୍ନିରୂପକ ମୁଖବିଶିଷ୍ଟ; **ସ୍ୱତେଜସା** = ନିଜ ତେଜଦ୍ୱାରା; **ଇଦମ୍** = ଏହି; **ବିଶ୍ୱମ୍** = ଜଗତକୁ; **ତପନ୍ତମ୍** = ସନ୍ତପ୍ତ କରୁଥିବା; **ପଶ୍ୟାମି** = ଦେଖୁଛି।

**ଆପଣଙ୍କୁ ମୁଁ ଆଦି, ମଧ୍ୟ ଓ ଅନ୍ତରହିତ, ଅନନ୍ତସାମର୍ଥ୍ୟଯୁକ୍ତ, ଅନନ୍ତଭୁଜଧାରୀ, ଚନ୍ଦ୍ର-ସୂର୍ଯ୍ୟରୂପକ ନେତ୍ରଧାରୀ, ପ୍ରଜ୍ୱଳିତ ଅଗ୍ନିରୂପକମୁଖବିଶିଷ୍ଟ ଓ ନିଜ ତେଜରେ ଏହି ଜଗତକୁ ସଂତପ୍ତ କରୁଥିବା ଦେଖୁଛି॥ ୧୯ ॥**

**ପ୍ରଶ୍ନ –** ଷୋଡ଼ଶ ଶ୍ଳୋକରେ ଅର୍ଜୁନ କହିଥିଲେ, "ମୁଁ ଆପଣଙ୍କର ଆଦି, ମଧ୍ୟ ଓ ଅନ୍ତ ଦେଖିପାରୁ ନାହିଁ;" ପୁଣି ଏଠାରେ "ମୁଁ ଆପଣଙ୍କୁ ଆଦି, ମଧ୍ୟ ଓ ଅନ୍ତରହିତ ଦେଖୁଛି।" ଏପରି କହିବାଦ୍ୱାରା ପୁନରୁକ୍ତି ଦୋଷ ହେଲାପରି ପ୍ରତୀତ ହେଉଛି। ଏଣୁ ଏହାର ଭାବ କଣ ?

**ଉତ୍ତର –** ସେଠାରେ ଅର୍ଜୁନ ଭଗବାନଙ୍କ ବିରାଟରୂପକୁ ଅସୀମ ବୋଲି କହିଛନ୍ତି ଓ ଏଠାରେ ଉତ୍ପତ୍ତି ଆଦି ଛଅ ବିକାରରୁ ରହିତ ନିତ୍ୟ ବୋଲି କହୁଛନ୍ତି। ଏଣୁ ପୁନରୁକ୍ତି ଦୋଷ ନାହିଁ। ଏଥିରୁ ବୁଝିବା ଉଚିତ ଯେ, 'ଆଦି' ଶବ୍ଦ ଉତ୍ପତ୍ତିରୂପୀ ବିକାରର ବାଚକ, 'ମଧ୍ୟ' ଶବ୍ଦ ଉତ୍ପତ୍ତି ଓ ବିନାଶର ମଧ୍ୟବର୍ତ୍ତୀ ସ୍ଥିତି, ବୃଦ୍ଧି, କ୍ଷୟ ଓ ପରିଣାମ— ଏହି ଚାରି ଭାବବିକାରର ବାଚକ ଏବଂ 'ଅନ୍ତ' ଶବ୍ଦ ବିନାଶରୂପକ ବିକାରର ବାଚକ। ଏହି ତିନୋଟି ଯାହାଠାରେ ନାହିଁ; ତାହାଙ୍କୁ **ଅନାଦିମଧ୍ୟାନ୍ତ** କହନ୍ତି। ଅତଏବ ଏଠାରେ ଅର୍ଜୁନଙ୍କ ଏହି କଥନର ଭାବ ହେଉଛି, "ମୁଁ ଆପଣଙ୍କୁ ଉତ୍ପତ୍ତି ଆଦି ଷଡ୍‌ଭାବ- ବିକାରରୁ ସର୍ବଥା ରହିତ ଦେଖୁଛି।"

**ପ୍ରଶ୍ନ – ଅନନ୍ତବୀର୍ଯ୍ୟମ୍**ର ଭାବ କଣ ?

**ଉତ୍ତର – ବୀର୍ଯ୍ୟ** ଶବ୍ଦ ସାମର୍ଥ୍ୟ, ବଳ, ତେଜ ଓ ଶକ୍ତି ଆଦିର ବାଚକ। ଯାହାଙ୍କ ବୀର୍ଯ୍ୟର ଅନ୍ତ ନାହିଁ, ତାହାଙ୍କୁ **ଅନନ୍ତବୀର୍ଯ୍ୟ** କହନ୍ତି। ଏଠାରେ ଅର୍ଜୁନ ଭଗବାନଙ୍କୁ **ଅନନ୍ତବୀର୍ଯ୍ୟ** କହି ଜଣାଉଛନ୍ତି, "ଆପଣଙ୍କ ବଳ, ବୀର୍ଯ୍ୟ, ସାମର୍ଥ୍ୟ ଓ ତେଜର କୌଣସି ବି ସୀମା ନାହିଁ।"

**ପ୍ରଶ୍ନ – ଅନନ୍ତବାହୁମ୍**ର ଭାବ କଣ ?

**ଉତ୍ତର –** ଯାହାଙ୍କ ବାହୁମାନଙ୍କ ସଂଖ୍ୟାର ସୀମା ନାହିଁ, ତାହାଙ୍କୁ 'ଅନନ୍ତବାହୁ' କହନ୍ତି। ତେଣୁ ଏଠାରେ ଅର୍ଜୁନ ଜଣାଉଛନ୍ତି, "ଆପଣଙ୍କର ଏହି ବିରାଟରୂପରେ ମୁଁ ଯେଉଁ ଦିଗକୁ ଚାହୁଁଛି, ସେହି ଦିଗରେ ମୋତେ ଅଗଣିତ ଭୁଜ ଦେଖାଯାଉଛି।"

**ପ୍ରଶ୍ନ – ଶଶିସୂର୍ଯ୍ୟନେତ୍ରମ୍**ର ଅର୍ଥ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ମୁଁ ଆପଣଙ୍କ ଦୁଇନେତ୍ରସ୍ଥାନରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଦେଖୁଛି। ଅଭିପ୍ରାୟ ଏହି ଯେ, ଏହି ବିରାଟସ୍ୱରୂପରେ ମୋତେ ସବୁଆଡ଼େ ଆପଣଙ୍କ ଅସଂଖ୍ୟ ମୁଖ ଦେଖାଯାଉଛି; ସେମାନଙ୍କ ମଧ୍ୟରେ ଆପଣଙ୍କର ଯେଉଁ ପ୍ରଧାନ ମୁଖ ଅଛି, ସେହି ମୁଖର ନେତ୍ରସ୍ଥାନରେ ମୁଁ ଚନ୍ଦ୍ରମା ଓ ସୂର୍ଯ୍ୟଙ୍କୁ ଦେଖୁଛି।"

**ପ୍ରଶ୍ନ – ଦୀପ୍ତହୁତାଶବକ୍ତ୍ରମ୍**ର ଭାବ କଣ ?

**ଉତ୍ତର – ହୁତାଶ** ହେଉଛି ଅଗ୍ନିଙ୍କର ନାମ; ପ୍ରଜ୍ୱଳିତ ଅଗ୍ନିକୁ **ଦୀପ୍ତହୁତାଶ** କହନ୍ତି ଏବଂ ଯାହାଙ୍କର ମୁଖ ସେହି ପ୍ରଜ୍ୱଳିତ ଅଗ୍ନିସଦୃଶ ପ୍ରକାଶମାନ ଓ ତେଜପୂର୍ଣ୍ଣ, ତାହାଙ୍କୁ **ଦୀପ୍ତହୁତାଶବକ୍ତ୍ର** କହନ୍ତି। ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ଆପଣଙ୍କର ପ୍ରଧାନ ମୁଖକୁ ମୁଁ ସବୁ ଆଡ଼ୁ ପ୍ରଜ୍ୱଳିତ ଅଗ୍ନିପରି ତେଜଯୁକ୍ତ ଓ ପ୍ରକାଶମୟ ଦେଖୁଛି।"

**ପ୍ରଶ୍ନ –** 'ନିଜ ତେଜରେ ଜଗତକୁ ସଂତପ୍ତ କରୁଥିବା ଦେଖୁଛି' – ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ମୋତେ ଦେଖାଯାଉଛି, ପ୍ରକୃତରେ ଆପଣ ହିଁ ଆପଣଙ୍କ ତେଜଦ୍ୱାରେ ଏହି ସମଗ୍ର ବିଶ୍ୱକୁ— ଯେଉଁଠି ମୁଁ ଠିଆ ହୋଇଛି— ସଂତପ୍ତ କରୁଛନ୍ତି।"

## ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ। ଦୃଷ୍ଟ୍ୱାଦ୍ଭୁତଂ ରୂପମୁଗ୍ରଂ ତବେଦଂ ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍॥ ୨୦ ॥

**ଅନ୍ୱୟ –** ମହାତ୍ମନ୍ = ହେ ମହାତ୍ମନ୍!; **ଇଦମ୍** = ଏହି; **ଦ୍ୟାବାପୃଥିବ୍ୟୋଃ, ଅନ୍ତରମ୍** = ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ଥିବା ସମ୍ପୂର୍ଣ୍ଣ ଆକାଶ; **ଚ** = ତଥା; **ସର୍ବାଃ** = ସକଳ; **ଦିଶଃ** = ଦିଗଗୁଡ଼ିକ; **ଏକେନ** = ଏକମାତ୍ର; **ତ୍ୱୟା** = ଆପଣଙ୍କ ଦ୍ୱାରା; **ହି** = ହିଁ; **ବ୍ୟାପ୍ତମ୍** = ପରିପୂର୍ଣ୍ଣ ହୋଇଛି (ତଥା); **ତବ** = ଆପଣଙ୍କର; **ଇଦମ୍** = ଏହି; **ଅଦ୍ଭୁତମ୍** = ଅଲୌକିକ; **ଉଗ୍ରମ୍** = (ଓ) ଭୟଙ୍କର; **ରୂପମ୍** = ରୂପକୁ; **ଦୃଷ୍ଟ୍ୱା** = ଦେଖି; **ଲୋକତ୍ରୟମ୍** = ତିନିଲୋକ; **ପ୍ରବ୍ୟଥିତମ୍** = ଅତ୍ୟନ୍ତ ଭୟରେ ଥରହର ହେଉଛି।

**ହେ ମହାତ୍ମନ୍! ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ଥିବା ଏହି ସଂପୂର୍ଣ୍ଣ ଆକାଶ ତଥା ସମସ୍ତ ଦିଗ ଏକମାତ୍ର ଆପଣଙ୍କ ଦ୍ୱାରା ହିଁ ପରିପୂର୍ଣ୍ଣ ହୋଇଛି ତଥା ଆପଣଙ୍କର ଏହି ଅଲୌକିକ ଓ ଭୟଙ୍କର ରୂପ ଦେଖି ତ୍ରିଲୋକ ଅତ୍ୟନ୍ତ ଭୟରେ ଥରହର ହେଉଛି॥ ୨୦ ॥**

**ପ୍ରଶ୍ନ –** ଏହି ଶ୍ଳୋକର ତାତ୍ପର୍ଯ୍ୟ କଣ ?

**ଉତ୍ତର –** 'ମହାତ୍ମନ୍' ସମ୍ବୋଧନଦ୍ୱାରା ଭଗବାନଙ୍କୁ ସମଗ୍ର ବିଶ୍ୱର ମହାନ୍ ଆତ୍ମା ବୋଲି କହି ଅର୍ଜୁନ କହୁଛନ୍ତି, ''ଆପଣଙ୍କର ଏହି ବିରାଟରୂପ ଏତେ ବିସ୍ତୃତ ଯେ, ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ଥିବା ଏହି ସଂପୂର୍ଣ୍ଣ ଆକାଶ ତଥା ସମସ୍ତ ଦିଗ ତାହାଦ୍ୱାରା ହିଁ ବ୍ୟାପ୍ତ ହୋଇଛି। ଏପରି କୌଣସି ସ୍ଥାନ ମୋତେ ଦେଖାଯାଉ ନାହିଁ, ଯେଉଁଠି କି ଆପଣଙ୍କର ଏହି ସ୍ୱରୂପ ନାହିଁ। ତା' ସଙ୍ଗେ ସଙ୍ଗେ ମୁଁ ଦେଖୁଛି, ଆପଣଙ୍କର ଏହି ଅଦ୍ଭୁତ ଓ ଅତ୍ୟନ୍ତ ଉଗ୍ରରୂପ ଏଡ଼େ ଭୟାନକ ଯେ, ସ୍ୱର୍ଗ, ମର୍ତ୍ତ୍ୟ ଓ ଅନ୍ତରୀକ୍ଷ– ଏହି ତିନି ଲୋକର ଜୀବମାନେ ଏହା ଦେଖି ଭୟରେ ଅତ୍ୟନ୍ତ ତ୍ରସ୍ତ ଅର୍ଥାତ୍ ପୀଡ଼ିତ ହେଉଛନ୍ତି। ସେମାନଙ୍କର ଦଶା ଅତ୍ୟନ୍ତ ହିଁ ଶୋଚନୀୟ ହୋଇଯାଇଛି।''

**ଅମୀ ହି ତ୍ୱାଂ ସୁରସଙ୍ଘା ବିଶନ୍ତି କେଚିଦ୍‌ଭୀତାଃ ପ୍ରାଞ୍ଜଲୟୋ ଗୃଣନ୍ତି।**
**ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଙ୍ଘାଃ ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଳାଭିଃ।। ୨୧ ।।**

**ଅନ୍ୱୟ –** **ଅମୀ**, **ସୁରସଙ୍ଘାଃ**, **ହି** = (ଦେଖନ୍ତୁ ଯେ) ସେହି ଦେବସମୁଦାୟ ହିଁ; **ତ୍ୱାମ୍** = ଆପଣଙ୍କ ମଧ୍ୟରେ; **ବିଶନ୍ତି** = ପ୍ରବେଶ କରୁଛନ୍ତି (ଏବଂ); **କେଚିତ୍** = କେହି କେହି; **ଭୀତାଃ** = ଭୟଭୀତ ହୋଇ; **ପ୍ରାଞ୍ଜଳୟଃ** = କରପତ୍ର ଯୋଡ଼ି; **ଗୃଣନ୍ତି** = (ଆପଣଙ୍କର ନାମ ଓ ଗୁଣ) ଉଚ୍ଚାରଣ କରୁଛନ୍ତି; **ମହର୍ଷିସିଦ୍ଧସଙ୍ଘାଃ** = (ତଥା) ମହର୍ଷି ଓ ସିଦ୍ଧସମୂହ; **ସ୍ୱସ୍ତି** = 'କଲ୍ୟାଣ ହେଉ'; **ଇତି** = ବୋଲି; **ଉକ୍ତ୍ୱା** = କହି; **ପୁଷ୍କଳାଭିଃ** = ଉତ୍ତମ ଉତ୍ତମ; **ସ୍ତୁତିଭିଃ** = ସ୍ତୁତିମାନଙ୍କ ଦ୍ୱାରା; **ତ୍ୱାମ୍** = ଆପଣଙ୍କୁ; **ସ୍ତୁବନ୍ତି** = ସ୍ତୁତି କରୁଛନ୍ତି।

**(ଦେଖନ୍ତୁ ଯେ) ସେହି ଦେବସମୁଦାୟ ହିଁ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଛନ୍ତି ଓ କେତେକ କରପତ୍ର ଯୋଡ଼ି ଆପଣଙ୍କ ନାମ ଓ ଗୁଣ ଉଚ୍ଚାରଣ କରୁଛନ୍ତି ତଥା ମହର୍ଷି ଓ ସିଦ୍ଧସମୂହ 'କଲ୍ୟାଣ ହେଉ' କହି ଉତ୍ତମ ଉତ୍ତମ ସ୍ତୋତ୍ରମାନଙ୍କ ଦ୍ୱାରା ଆପଣଙ୍କୁ ସ୍ତୁତି କରୁଛନ୍ତି।।। ୨୧ ।।**

**ପ୍ରଶ୍ନ – ସୁରସଙ୍ଘାଃ** ସହିତ **ଅମୀ** ବିଶେଷଣ ଦେଇ 'ସେମାନେ ହିଁ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଛନ୍ତି' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର – ସୁରସଙ୍ଘାଃ** ପଦ ସହିତ ପରୋକ୍ଷବାଚୀ **ଅମୀ** ବିଶେଷଣ ଦେଇ ଅର୍ଜୁନ କହିଛନ୍ତି, ''ମୁଁ ଯେତେବେଳେ ସ୍ୱର୍ଗଲୋକକୁ ଯାଇଥିଲି, ସେତେବେଳେ ସେଠାରେ ଯେଉଁ ଦେବସମୁଦାୟଙ୍କୁ ଦେଖିଥିଲି, ଆଜି ଦେଖୁଛି ସେମାନେ ହିଁ ଆପଣଙ୍କର ଏହି ବିରାଟରୂପରେ ପ୍ରବେଶ କରୁଛନ୍ତି।''

**ପ୍ରଶ୍ନ –** 'କେତେକ ଭୟଭୀତ ହୋଇ କରପତ୍ର ଯୋଡ଼ି ଆପଣଙ୍କ ନାମ ଓ ଗୁଣ ଉଚ୍ଚାରଣ କରୁଛନ୍ତି' – ଏ କଥନର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଅନେକ ଦେବତା ଆପଣଙ୍କ ଉଗ୍ରରୂପରେ ପ୍ରବେଶ କରୁଥିବାର ଦେଖି, ଅବଶିଷ୍ଟ ଦେବତାମାନେ ଆଉ ବେଶୀ ସମୟ ରହିବାର ସମ୍ଭାବନା ନାହିଁ ଜାଣି, ଭୟରେ କରପତ୍ର ଯୋଡ଼ି, ଆପଣଙ୍କର ନାମ ଓ ଗୁଣ ବର୍ଣ୍ଣନା କରି କରି ଆପଣଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କରୁଛନ୍ତି।''

**ପ୍ରଶ୍ନ – ମହର୍ଷିସିଦ୍ଧସଙ୍ଘାଃ** କେଉଁମାନଙ୍କ ବାଚକ ଓ ସେମାନେ 'ସମସ୍ତଙ୍କର କଲ୍ୟାଣ ହେଉ ବୋଲି କହି ବିଭିନ୍ନ ଉତ୍ତମ ଉତ୍ତମ ସ୍ତୋତ୍ରଦ୍ୱାରା ଆପଣଙ୍କୁ ସ୍ତୁତି କରୁଛନ୍ତି' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ମରୀଚି, ଅଙ୍ଗିରା, ଭୃଗୁ ଆଦି ମହର୍ଷିମାନଙ୍କର ଏବଂ ଜଣା ଅଜଣା ସିଦ୍ଧମାନଙ୍କର ଯେତେ ବି ବିଭିନ୍ନ ସମୁଦାୟ ଅଛନ୍ତି, ଏଠାରେ **ମହର୍ଷିସିଦ୍ଧସଙ୍ଘାଃ** ପଦଟି ହେଉଛି ସେହି ସମସ୍ତଙ୍କର ବାଚକ। ସେମାନେ 'ସମସ୍ତଙ୍କର କଲ୍ୟାଣ ହେଉ' କହି ଉତ୍ତମ ଉତ୍ତମ ସ୍ତୋତ୍ରମାନଙ୍କ ଦ୍ୱାରା ଆପଣଙ୍କୁ ସ୍ତୁତି କରୁଛନ୍ତି। ଏହି କଥନଦ୍ୱାରା ଅର୍ଜୁନ ଜଣାଉଦେଉଛନ୍ତି, ''ଆପଣଙ୍କ ତତ୍ତ୍ୱର ଯଥାର୍ଥ ରହସ୍ୟ ଜାଣିଥିବାରୁ ସେମାନେ ଆପଣଙ୍କର ଏହି ଉଗ୍ରରୂପ ଦେଖି ଭୟଭୀତ ହେଉ ନାହାନ୍ତି; ବରଂ ସମଗ୍ର ଜଗତର କଲ୍ୟାଣପାଇଁ ପ୍ରାର୍ଥନା କରି ଅନେକପ୍ରକାର ସୁନ୍ଦର ଭାବମୟ ସ୍ତୋତ୍ରଦ୍ୱାରା ଶ୍ରଦ୍ଧା ଓ ପ୍ରେମପୂର୍ବକ ଆପଣଙ୍କର ସ୍ତବ ଗାନ କରୁଛନ୍ତି– ଏହା ମୁଁ ଦେଖିପାରୁଛି।''

**ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।**
**ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘା ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ॥ ୨୨ ॥**

**ଅନ୍ୱୟ—** ଯେ = ଯେଉଁ; **ରୁଦ୍ରାଦିତ୍ୟାଃ** = ଏକାଦଶ ରୁଦ୍ର ଓ ଦ୍ୱାଦଶ ଆଦିତ୍ୟ; **ଚ** = ତଥା; **ବସବଃ** = ଅଷ୍ଟବସୁ; **ସାଧ୍ୟାଃ** = ସାଧ୍ୟଗଣ; **ବିଶ୍ୱେ** = ବିଶ୍ୱେଦେବମାନେ; **ଅଶ୍ୱିନୌ** = ଅଶ୍ୱିନୀକୁମାର ଦୁହେଁ; **ଚ** = ତଥା; **ମରୁତଃ** = ମରୁଦ୍‌ଗଣ; **ଚ** = ଏବଂ; **ଉଷ୍ମପାଃ** = ପିତୃସମୁଦାୟ; **ଚ** = ତଥା; **ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ** = ଗନ୍ଧର୍ବ, ଯକ୍ଷ, ରାକ୍ଷସ ଓ ସିଦ୍ଧମାନଙ୍କର ସମୁଦାୟମାନ; (ତେ) = ସେମାନେ; **ସର୍ବେ** = ସମସ୍ତେ; **ଏବ** = ହିଁ; **ବିସ୍ମିତାଃ** = ବିସ୍ମିତ ହୋଇ; **ତ୍ୱାମ୍** = ଆପଣଙ୍କୁ; **ବୀକ୍ଷନ୍ତେ** = ଚାହୁଁଛନ୍ତି ।

**ଯେଉଁ ଏକାଦଶ ରୁଦ୍ର ଓ ଦ୍ୱାଦଶ ଆଦିତ୍ୟ ତଥା ଅଷ୍ଟ ବସୁ, ସାଧ୍ୟଗଣ, ବିଶ୍ୱେଦେବମାନେ, ଅଶ୍ୱିନୀକୁମାରଦ୍ୱୟ ତଥା ଅଣଚାଶ ମରୁତ୍‌ଗଣ ଓ ପିତୃସମୁଦାୟ ତଥା ଗନ୍ଧର୍ବ, ଯକ୍ଷ, ରାକ୍ଷସ ଓ ସିଦ୍ଧମାନଙ୍କ ସମୁଦାୟ ଅଛନ୍ତି, ସେ ସମସ୍ତେ ବିସ୍ମିତ ହୋଇ ଆପଣଙ୍କୁ ଚାହୁଁଛନ୍ତି ।। ୨୨ ।।**

**ପ୍ରଶ୍ନ—** **ରୁଦ୍ରାଃ, ଆଦିତ୍ୟାଃ, ବସବଃ, ସାଧ୍ୟାଃ, ବିଶ୍ୱେ, ଅଶ୍ୱିନୌ** ଓ **ମରୁତଃ**— ଏସବୁ କେଉଁ କେଉଁ ଦେବତାଙ୍କର ବାଚକ ?

**ଉତ୍ତର—** ଏଗାର ରୁଦ୍ର, ବାର ଆଦିତ୍ୟ, ଆଠ ବସୁ ଓ ଅଣଚାଶ ମରୁତ୍— ଏହି ଚାରିପ୍ରକାର ଦେବତାମାନଙ୍କ ସମୂହର ବର୍ଣ୍ଣନା ତ ଦଶମ ଅଧ୍ୟାୟର ଏକୋଇଶ ଓ ତେଇଶ ଶ୍ଳୋକର ବ୍ୟାଖ୍ୟାରେ ଏବଂ ତା'ର ଟିପ୍ପଣୀରେ ତଥା ଅଶ୍ୱିନୀକୁମାରଙ୍କ ବର୍ଣ୍ଣନା ଏକାଦଶ ଅଧ୍ୟାୟ ଷଷ୍ଠ ଶ୍ଳୋକର ଟିପ୍‌ପଣୀରେ କରାଯାଇସାରିଛି; ତେଣୁ ଏହା ସେଠାରେ ଦେଖିବା ଉଚିତ । ମନ, ଅନୁମନ୍ତା, ପ୍ରାଣ, ନର, ଯାନ, ଚିତ୍ତି, ହୟ, ନୟ, ହଂସ, ନାରାୟଣ, ପ୍ରଭବ ଓ ବିଭୁ— ଏହି ବାରଜଣ ସାଧ୍ୟଦେବତା ।★ ଏବଂ କ୍ରତୁ, ଦକ୍ଷ, ଶ୍ରବ, ସତ୍ୟ, କାଳ, କାମ, ଧୁନି, କୁରୁବାନ୍, ପ୍ରଭବାନ୍ ଓ ରୋଚମାନ— ଏମାନେ ଦଶ ବିଶ୍ୱେଦେବ । ★★ ଆଦିତ୍ୟ ଓ ରୁଦ୍ର ଆଦି ଦେବତାଙ୍କର ଆଠ ଗଣ (ସମୁଦାୟ) ଅଛନ୍ତି । ସେମାନଙ୍କ ମଧ୍ୟରୁ ସାଧ୍ୟ ଓ ବିଶ୍ୱେଦେବଙ୍କର ମଧ୍ୟ ଦୁଇଟି ବିଭିନ୍ନ ଗଣ ଅଛି । (ବ୍ରହ୍ମାଣ୍ଡ ପୁରାଣ ୭୧/୨) ।

**ପ୍ରଶ୍ନ—** **ଉଷ୍ମପାଃ** ପଦ କେଉଁମାନଙ୍କ ବାଚକ ?

**ଉତ୍ତର—** ଯେଉଁମାନେ ଉଷ୍ମ (ଗରମ) ଅନ୍ନ ଖାଆନ୍ତି, ସେମାନଙ୍କୁ **ଉଷ୍ମପାଃ** କହନ୍ତି । ମନୁସ୍ମୃତିର ତୃତୀୟ ଅଧ୍ୟାୟର ଦୁଇଶହ ସତତିରିଶ ଶ୍ଳୋକରେ କୁହାଯାଇଛି ଯେ, ପିତୃମାନେ ଗରମ ଅନ୍ନ ହିଁ ଖାଆନ୍ତି । ଅତଏବ ଏଠାରେ **ଉଷ୍ମପାଃ** ପଦ ସମସ୍ତ ପିତୃସମୁଦାୟର ★★★ ବାଚକ ବୋଲି ବୁଝିବା ଉଚିତ ।

**ପ୍ରଶ୍ନ—** **ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ**— ଏହି ପଦ କେଉଁ କେଉଁ ସମୁଦାୟର ବାଚକ ?

**ଉତ୍ତର—** କଶ୍ୟପଙ୍କର ତିନି ପତ୍ନୀ ମୁନି ଓ ପ୍ରାଧା ତଥା ଅରିଷ୍ଟାଙ୍କ ଠାରୁ **ଗନ୍ଧର୍ବମାନଙ୍କର**

---

★ ମନୋଽନୁମନ୍ତା ପ୍ରାଣଶ୍ଚ ନରୋ ଯାନଶ୍ଚ ବୀର୍ଯ୍ୟବାନ୍ ।
ଚିତ୍ତିର୍ହୟୋ ନୟଶ୍ଚୈବ ହଂସୋ ନାରାୟଣସ୍ତଥା ।।
ପ୍ରଭବୋଽଥ ବିଭୁଶ୍ଚୈବ ସାଧ୍ୟା ଦ୍ୱାଦଶ ଜଜ୍ଞିରେ । (ବାୟୁପୁରାଣ ୬୬/୧୪-୧୬)

ଧର୍ମପତ୍ନୀ ଦକ୍ଷକନ୍ୟା ସାଧ୍ୟାଙ୍କ ଠାରୁ ଏହି ବାରଜଣ ସାଧ୍ୟଦେବତା ଜନ୍ମ ହୋଇଥିଲେ । ସ୍କନ୍ଦ ପୁରାଣରେ ଏମାନଙ୍କର ଏପରି ନାମାନ୍ତର ମିଳୁଛି ଯଥା— ମନ, ଅନୁମନ୍ତା, ପ୍ରାଣ, ନର, ଅପାନ, ଭକ୍ତି, ଭୟ, ଅନଘ, ହଂସ, ନାରାୟଣ, ବିଭୁ ଓ ପ୍ରଭୁ । (ସ୍କନ୍ଦପୁରାଣ ପ୍ରଭାସ ଖଣ୍ଡ— ୨୧/୧୬-୧୮) ମନ୍ୱନ୍ତର ଭେଦରେ ଏସବୁ ଠିକ୍ ।

★★ ବିଶ୍ୱେଦେବାସ୍ତୁ ବିଶ୍ୱାୟା ଜଜ୍ଞିରେ ଦଶ ବିଶ୍ରୁତାଃ ।।
କ୍ରତୁର୍ଦକ୍ଷଃ ଶ୍ରବଃ ସତ୍ୟଃ କାଳଃ କାମୋ ଧୁନିସ୍ତଥା ।
କୁରୁବାନ୍ ପ୍ରଭବାଂଶ୍ଚୈବ ରୋଚମାନଶ୍ଚ ତେ ଦଶ ।। (ବାୟୁପୁରାଣ ୬୬/୩୧-୩୨)

ଧର୍ମଙ୍କ ପତ୍ନୀ ଦକ୍ଷକନ୍ୟା ବିଶ୍ୱାଙ୍କ ଠାରୁ ଏହି ଦଶ ବିଶ୍ୱେଦେବଙ୍କର ଜନ୍ମ ହୋଇଥିଲା । କେତେକ ପୁରାଣରେ ମନ୍ୱନ୍ତରଭେଦରେ ଏମାନଙ୍କର ମଧ୍ୟ ନାମାନ୍ତର ମିଳେ ।

★★★ ପିତୃଗଣଙ୍କର ନାମ ଦଶମ ଅଧ୍ୟାୟର ଅଣତିରିଶ ଶ୍ଳୋକର ବ୍ୟାଖ୍ୟାରେ ଦିଆଯାଇସାରିଛି ।

ଉତ୍ପତ୍ତି ହୋଇଛି ବୋଲି ସ୍ୱୀକାର କରାଯାଇଛି । ଏମାନେ ରାଗରାଗିଣୀ ସମ୍ବନ୍ଧୀୟ ଜ୍ଞାନରେ ନିପୁଣ ଏବଂ ଦେବଲୋକର ବାଦ୍ୟ-ନୃତ୍ୟକଳାରେ କୁଶଳ ବୋଲି ଗଣ୍ୟ ହୁଅନ୍ତି । **ଯକ୍ଷ**ମାନଙ୍କର ଉତ୍ପତ୍ତି ମହର୍ଷି କଶ୍ୟପଙ୍କର ଖସା ନାମକ ପତ୍ନୀଙ୍କ ଠାରୁ ହୋଇଛି ବୋଲି ଜଣାଯାଏ । ଭଗବାନ୍ ଶଙ୍କରଙ୍କର ଗଣମାନଙ୍କ ମଧ୍ୟରେ ବି **ଯକ୍ଷ**ମାନେ ଅଛନ୍ତି । କୁବେରଙ୍କୁ ଏହି ଯକ୍ଷମାନଙ୍କର ଏବଂ ଉତ୍ତମ ରାକ୍ଷସମାନଙ୍କର ରାଜା ବୋଲି କୁହାଯାଏ । ଦେବତାମାନଙ୍କ ବିରୋଧୀ ଦୈତ୍ୟ, ଦାନବ ଓ ରାକ୍ଷସମାନଙ୍କୁ **ଅସୁର** କୁହାଯାଏ । କଶ୍ୟପଙ୍କ ସ୍ତ୍ରୀ ଦିତିଙ୍କ ଠାରୁ ଦୈତ୍ୟମାନେ ଏବଂ ଅନ୍ୟ ସ୍ତ୍ରୀ ଦନୁଙ୍କ ଠାରୁ ଦାନବମାନେ ଜନ୍ମ ହୋଇଥିଲେ ବୋଲି କୁହାଯାଏ । ରାକ୍ଷସମାନଙ୍କର ଜନ୍ମ ବିଭିନ୍ନପ୍ରକାରରେ ହୋଇଛି । କପିଳ ଆଦି ସିଦ୍ଧମାନଙ୍କୁ **ସିଦ୍ଧ** କହନ୍ତି, ଏଠାରେ **ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ** ପଦଟି ଏସବୁ ସମୁଦାୟର ବାଚକ ।

**ପ୍ରଶ୍ନ –** 'ସେମାନେ ସମସ୍ତେ ବିସ୍ମିତ ହୋଇ ଆପଣଙ୍କୁ ଚାହୁଁଛନ୍ତି' — ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଅର୍ଜୁନ ଜଣାଉଛନ୍ତି, "ଉପରୋକ୍ତ ସମସ୍ତ ଦେବତା, ପିତୃଗଣ, ଗନ୍ଧର୍ବ, ଯକ୍ଷ, ଅସୁର ଓ ସିଦ୍ଧମାନଙ୍କର ଭିନ୍ନ ଭିନ୍ନ ସମୁଦାୟ ଆଶ୍ଚର୍ଯ୍ୟଚକିତ ହୋଇ ଆପଣଙ୍କର ଏହି ଅଦ୍ଭୁତ ରୂପକୁ ଚାହିଁରହିଛନ୍ତି — ଏହା ମୋତେ ଦେଖାଯାଉଛି ।"

**ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ ମହାବାହୋ ବହୁବାହୂରୁପାଦମ୍ ।**
**ବହୂଦରଂ ବହୁଦଂଷ୍ଟ୍ରାକରାଳଂ ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହମ୍ ।। ୨୩ ।।**

**ଅନ୍ୱୟ –** ମହାବାହୋ = ହେ ମହାବାହୁ; ତେ = ଆପଣଙ୍କର; ବହୁବକ୍ତ୍ରନେତ୍ରମ୍ = ବହୁମୁଖ ଓ ନେତ୍ରବିଶିଷ୍ଟ; ବହୁବାହୂରୁପାଦମ୍ = ବହୁ ବାହୁ, ଉରୁ ଓ ପାଦବିଶିଷ୍ଟ; ବହୂଦରମ୍ = ବହୁ ଉଦରବିଶିଷ୍ଟ; ବହୁଦଂଷ୍ଟ୍ରାକରାଳମ୍ = ବହୁତୀକ୍ଷ୍ଣଦନ୍ତଯୁକ୍ତ ଅତ୍ୟନ୍ତ ଭୟଙ୍କର; ମହତ୍‌ରୂପମ୍ = ଭୀଷଣରୂପକୁ; ଦୃଷ୍ଟ୍ୱା = ଦେଖି; ଲୋକାଃ = ଲୋକମାନେ; ପ୍ରବ୍ୟଥିତାଃ = ଅତ୍ୟନ୍ତ ବ୍ୟଥିତ ହେଉଛନ୍ତି; ତଥା = ତଥା; ଅହମ୍ = ମୁଁ; (ଅପି) = ବି (ବ୍ୟାକୁଳ ହେଉଛି) ।

**ହେ ମହାବାହୁ! ଆପଣଙ୍କର ବହୁମୁଖ ଓ ନେତ୍ରବିଶିଷ୍ଟ, ବହୁ ହସ୍ତ, ଉରୁ (ଜଙ୍ଘ) ଓ ପାଦବିଶିଷ୍ଟ; ବହୁ ଉଦରଯୁକ୍ତ ତଥା ବହୁ କରାଳ (ଭୟଙ୍କର) ତୀକ୍ଷ୍ଣ ଦନ୍ତଯୁକ୍ତ ଅତ୍ୟନ୍ତ ଭୀଷଣ ରୂପ ଦେଖି ସବୁ ଲୋକ ବ୍ୟଥିତ ହେଉଛନ୍ତି ତଥା ମୁଁ ବି ବ୍ୟାକୁଳ ହେଉଛି ।। ୨୩ ।।**

**ପ୍ରଶ୍ନ –** ଷୋହଳ ଶ୍ଳୋକରେ ଅର୍ଜୁନ କହିଥିଲେ, "ମୁଁ ଆପଣଙ୍କର ବିରାଟରୂପକୁ ଅନେକ ଭୁଜ, ଉଦର, ମୁଖ ଓ ନେତ୍ରଯୁକ୍ତ ଦେଖୁଛି"; ପୁଣି ଏହି ଶ୍ଳୋକରେ ସେହି କଥା କହି **ବହୁବକ୍ତ୍ରନେତ୍ରମ୍, ବହୁବାହୂରୁପାଦମ୍** ଓ **ବହୂଦରମ୍** ବିଶେଷଣ ଦେବାର ଆବଶ୍ୟକତା କଣ ?

**ଉତ୍ତର –** ଷୋହଳ ଶ୍ଳୋକରେ ଅର୍ଜୁନ ସେହି ରୂପକୁ କେବଳ ଦେଖିବା କଥା କହିଥିଲେ ଏବଂ ଏଠାରେ ତାହା ଦେଖି ଅନ୍ୟମାନେ ଓ ସ୍ୱୟଂ ନିଜେ ବ୍ୟାକୁଳ ହେଉଥିବା କଥା କହୁଛନ୍ତି । ତେଣୁ ପୁନର୍ବାର ସେହି ରୂପର ବର୍ଣ୍ଣନା କରିଛନ୍ତି ।

**ପ୍ରଶ୍ନ –** ତିନି ଲୋକଙ୍କ ବ୍ୟଥିତ ହେବା କଥା ମଧ୍ୟ କୋଡ଼ିଏ ଶ୍ଳୋକରେ କୁହାଯାଇଥିଲା; ଏହି ଶ୍ଳୋକରେ ପୁଣି ଥରେ କହିବାର ଅଭିପ୍ରାୟ କଣ ?

**ଉତ୍ତର –** କୋଡ଼ିଏ ଶ୍ଳୋକରେ ବିରାଟରୂପର ଅସୀମ ବିସ୍ତାର (ଦୈର୍ଘ୍ୟପ୍ରସ୍ଥ) ଓ ଉଗ୍ରତାକୁ ଦେଖି କେବଳ ତିନି ଲୋକଙ୍କ ବ୍ୟାକୁଳ ହେବା କଥା କହିଥିଲେ ଏବଂ ଏହି ଶ୍ଳୋକରେ ଅର୍ଜୁନ ସେହି ରୂପରେ ଅନେକ ହାତ, ପାଦ, ଜଙ୍ଘ, ମୁଖ, ନେତ୍ର, ଓ ଉଦରଯୁକ୍ତ ଏବଂ ବହୁ ତୀକ୍ଷ୍ଣ ଦାନ୍ତ ଥିବାରୁ ତାହା ଅତ୍ୟନ୍ତ ବିକରାଳ ଦେଖି ନିଜେ ବ୍ୟାକୁଳ ହେବା କଥା ମଧ୍ୟ କହୁଛନ୍ତି । ତେଣୁ ଏଠାରେ ପୁନରୁକ୍ତି ଦୋଷ ନାହିଁ ।

**ନଭଃସ୍ପୃଶଂ ଦୀପ୍ତମନେକବର୍ଣ୍ଣଂ ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରମ୍ ।**
**ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ ।। ୨୪ ।।**

**ଅନ୍ୱୟ –** ହି = କାରଣ; ବିଷ୍ଣୋ = ହେ ବିଷ୍ଣୋ !; ନଭଃସ୍ପୃଶମ୍ = ଆକାଶକୁ ସ୍ପର୍ଶ କରୁଥିବା; ଦୀପ୍ତମ୍ = ପ୍ରଜ୍ୱଳିତ; ଅନେକବର୍ଣ୍ଣମ୍ = ବହୁବର୍ଣ୍ଣଯୁକ୍ତ (ତଥା); ବ୍ୟାତ୍ତାନନମ୍ = ବିସ୍ତାରିତମୁଖଯୁକ୍ତ (ଓ); ଦୀପ୍ତବିଶାଳନେତ୍ରମ୍ = ପ୍ରଜ୍ୱଳିତ ବିଶାଳ

ନେତ୍ରଯୁକ୍ତ; **ତ୍ୱାମ୍** = ଆପଣଙ୍କ ରୂପକୁ; **ଦୃଷ୍ଟ୍ୱା** = ଦେଖି; **ପ୍ରବ୍ୟଥିତାନ୍ତରାତ୍ମା** = ଭୟଭୀତ ଅନ୍ତଃକରଣ-ବିଶିଷ୍ଟ (ମୁଁ); **ଧୃତିମ୍** = ଧୈର୍ଯ୍ୟ; **ଚ** = ଓ; **ଶମମ୍** = ଶାନ୍ତି; **ନ, ବିନ୍ଦାମି** = ପାଉ ନାହିଁ।

**କାରଣ ହେ ବିଷ୍ଣୋ ! ଆକାଶକୁ ସ୍ପର୍ଶ କରୁଥିବା, ଦେଦୀପ୍ୟମାନ, ଅନେକବର୍ଣ୍ଣବିଶିଷ୍ଟ ତଥା ବିସ୍ତାରିତ ମୁଖଯୁକ୍ତ ଓ ପ୍ରଜ୍ୱଳିତ ବିଶାଳ ନେତ୍ରଯୁକ୍ତ ଆପଣଙ୍କ ରୂପକୁ ଦେଖି, ମୋର ଅନ୍ତଃକରଣ ଭୟଭୀତ ହେଉଛି ଏବଂ ମୁଁ ଧୈର୍ଯ୍ୟ ଓ ଶାନ୍ତି ପାଉ ନାହିଁ॥ ୨୪ ॥**

**ପ୍ରଶ୍ନ –** ଏଠାରେ **ବିଷ୍ଣୁ** ସମ୍ବୋଧନର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନଙ୍କୁ **ବିଷ୍ଣୁ**ନାମରେ ସମ୍ବୋଧନ କରି ଅର୍ଜୁନ ଦେଖାଉଛନ୍ତି, ''ଆପଣ ସାକ୍ଷାତ୍ ବିଷ୍ଣୁ ହିଁ ପୃଥିବୀର ଭାର ଲାଘବ କରିବାପାଇଁ କୃଷ୍ଣରୂପରେ ପ୍ରକଟ ହୋଇଛନ୍ତି। ତେଣୁ ଆପଣ ମୋର ବ୍ୟାକୁଳତା ଦୂର କରିବାପାଇଁ ଏହି ବିଶ୍ୱରୂପକୁ ସଂବରଣ କରି ବିଷ୍ଣୁରୂପରେ ପ୍ରକଟ ହୁଅନ୍ତୁ।''

**ପ୍ରଶ୍ନ –** କୋଡ଼ିଏ ଶ୍ଳୋକରେ ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ଥିବା ଆକାଶ ଭଗବାନଙ୍କ ଦ୍ୱାରା ବ୍ୟାପ୍ତ ବୋଲି କହି ସେ ତା'ର ଅସୀମ ଦୈର୍ଘ୍ୟର ବର୍ଣ୍ଣନା କରିସାରିଥିଲେ। ପୁଣି ଏଠାରେ 'ନଭଃସ୍ପୃଶମ୍' ବିଶେଷଣ ଦେବା କାହିଁକି ଆବଶ୍ୟକ ହେଲା ?

**ଉତ୍ତର –** କୋଡ଼ିଏ ଶ୍ଳୋକରେ ବିରାଟରୂପର ଦୈର୍ଘ୍ୟ-ପ୍ରସ୍ଥ ବର୍ଣ୍ଣନା କରି ତିନିଲୋକ ବ୍ୟାକୁଳ ହେଉଥିବା କଥା କହିଥିଲେ ଏବଂ ଏହି ଶ୍ଳୋକରେ ତା'ର ଅସୀମ ଦୈର୍ଘ୍ୟ ଦେଖି ଅର୍ଜୁନ ନିଜ ବ୍ୟାକୁଳତାର ତଥା ଧୈର୍ଯ୍ୟ ଓ ଶାନ୍ତି ନାଶର ବର୍ଣ୍ଣନା କରିଛନ୍ତି; ତେଣୁ ଏଠାରେ **ନଭଃସ୍ପୃଶମ୍** ବିଶେଷଣ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ସତର ଶ୍ଳୋକରେ 'ଦୀପ୍ତିମନ୍ତମ୍' ବିଶେଷଣ ଦିଆଯାଇଥିଲା; ପୁଣି ଏଠାରେ 'ଦୀପ୍ତମ୍' ବିଶେଷଣ ଦେବାର କି ଆବଶ୍ୟକତା ଥିଲା ?

**ଉତ୍ତର –** ସେଠାରେ କେବଳ ଭଗବାନଙ୍କର ରୂପ ଦେଖିବା କଥା କୁହାଯାଇଥିଲା ଏବଂ ଏଠାରେ ତାହା ଦେଖି ଧୈର୍ଯ୍ୟ ଓ ଶାନ୍ତି ଭଙ୍ଗ ହେବା କଥା କୁହାଯାଇଛି। ଅତଏବ ସେହି ରୂପର ପୁନଃ ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ –** ଅର୍ଜୁନ ନିଜର ବ୍ୟାକୁଳତା କଥା ତେଇଶ ଶ୍ଳୋକରେ କହିସାରିଥିଲେ; ପୁଣି ଏହି ଶ୍ଳୋକରେ **ପ୍ରବ୍ୟଥିତାନ୍ତରାତ୍ମା** ବିଶେଷଣ ଦେଇ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ସେଠାରେ କେବଳ ବ୍ୟାକୁଳ ହେବା କଥା କହିଥିଲେ। ଏଠାରେ ନିଜର ସ୍ଥିତିକୁ ଭଲଭାବରେ ପ୍ରକାଶ କରିବାକୁ ସେ କହୁଛନ୍ତି, ''ମୁଁ କେବଳ ବ୍ୟାକୁଳ ହେଉ ନାହିଁ, ଆପଣଙ୍କର ବିସ୍ତାରିତ ମୁଖ ଏବଂ ପ୍ରଜ୍ୱଳିତନେତ୍ରଯୁକ୍ତ ଏହି ବିକରାଳ ରୂପ ଦେଖି ମୋର ଧୈର୍ଯ୍ୟ ଓ ଶାନ୍ତି ମଧ୍ୟ ନଷ୍ଟ ହୋଇଯାଉଛି।''

**ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି ଦୃଷ୍ଟ୍ୱୈବ କାଳାନଳସନ୍ନିଭାନି।**
**ଦିଶୋ ନ ଜାନେ ନ ଲଭେ ଚ ଶର୍ମ ପ୍ରସୀଦ ଦେବେଶ ଜଗନ୍ନିବାସ॥ ୨୫ ॥**

**ଅନ୍ୱୟ –** **ଦଂଷ୍ଟ୍ରାକରାଳାନି** = ବିକଟ ଦନ୍ତପାଟୀହେତୁ ଭୟଙ୍କର; **ଚ** = ଓ; **କାଳାନଳସନ୍ନିଭାନି** = ପ୍ରଳୟକାଳର ଅଗ୍ନିପରି ପ୍ରଜ୍ୱଳିତ; **ତେ** = ଆପଣଙ୍କର; **ମୁଖାନି** = ମୁଖମାନଙ୍କୁ; **ଦୃଷ୍ଟ୍ୱା** = ଦେଖି (ମୁଁ); **ଦିଶଃ** = ଦିଗମାନଙ୍କୁ; **ନ, ଜାନେ** = ଜାଣିପାରି ନାହିଁ; **ଚ** = ଏବଂ; **ଶର୍ମ, ଏବ** = ମାନସିକ ଶାନ୍ତି ମଧ୍ୟ; **ନ, ଲଭେ** = ପାଉ ନାହିଁ (ତେଣୁ); **ଦେବେଶ** = ହେ ଦେବେଶ !; **ଜଗନ୍ନିବାସ** = ହେ ଜଗନ୍ନିବାସ; **ପ୍ରସୀଦ** = ଆପଣ ପ୍ରସନ୍ନ ହୁଅନ୍ତୁ।

**ବିକଟ ଦନ୍ତପାଟୀହେତୁ ଭୟଙ୍କର ଦିଶୁଥିବା ଓ ପ୍ରଳୟକାଳର ଅଗ୍ନିପରି ପ୍ରଜ୍ୱଳିତ ହେଉଥିବା ଆପଣଙ୍କର ମୁଖଗୁଡ଼ିକୁ ଦେଖି ମୁଁ ଦିଗମାନଙ୍କୁ ଜାଣିପାରୁ ନାହିଁ ଏବଂ ମାନସିକ ଶାନ୍ତି ବି ପାଉ ନାହିଁ। ତେଣୁ ହେ ଦେବେଶ ! ହେ ଜଗନ୍ନିବାସ ! ଆପଣ ପ୍ରସନ୍ନ ହୁଅନ୍ତୁ॥ ୨୫ ॥**

**ପ୍ରଶ୍ନ –** ତେଇଶ ଶ୍ଳୋକରେ ଭଗବାନଙ୍କର ବିରାଟସ୍ୱରୂପର ବିଶେଷଣ **ବହୁଦଂଷ୍ଟ୍ରାକରାଳମ୍** ଦିଆଯାଇଥିଲା। ପୁଣି ଏଠାରେ ତାଙ୍କ ମୁଖମାନଙ୍କ ପାଇଁ **ଦଂଷ୍ଟ୍ରାକରାଳାନି** ବିଶେଷଣ ଦେବାର ଆବଶ୍ୟକତା କଣ ?

**ଉତ୍ତର –** ସେଠାରେ ସେହି ରୂପ ଦେଖି ଅର୍ଜୁନ ନିଜର ବ୍ୟାକୁଳତା ପ୍ରକାଶ କରିଥିଲେ ଏବଂ ଏଠାରେ ଦିଗ୍‌ଭ୍ରମ ଓ ସୁଖର ଅଭାବ କଥା ବିଶେଷଭାବରେ କହୁଛନ୍ତି; ତେଣୁ ସେହି ବିଶେଷଣଟି ପୁନର୍ବାର ମୁଖମାନଙ୍କ ସହିତ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ – ଦେବେଶ ଓ ଜଗନ୍ନିବାସ –** ଏହି ଦୁଇ ସମ୍ବୋଧନ ପ୍ରୟୋଗ କରି ଭଗବାନଙ୍କୁ ପ୍ରସନ୍ନ ହେବା ପାଇଁ ପ୍ରାର୍ଥନା କରିବାର ଅଭିପ୍ରାୟ କଣ ?

**ଉତ୍ତର –ଦେବେଶ ଓ ଜଗନ୍ନିବାସ —** ଏହି ଦୁଇ ସମ୍ବୋଧନ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି, ''ଆପଣ ହେଉଛନ୍ତି ସମସ୍ତ ଦେବତାଙ୍କର ସ୍ୱାମୀ, ସର୍ବବ୍ୟାପୀ ଓ ସମସ୍ତଜଗତର ପରମାଧାର। ଏହି କଥା ମୁଁ ଆଗରୁ ହିଁ ଶୁଣିଥିଲି ଏବଂ ମୋର ବିଶ୍ୱାସ ମଧ୍ୟ ଥିଲା ଯେ, ଆପଣ ପ୍ରକୃତରେ ଏହିପରି। ଆଜି ମୁଁ ନିଜେ ଆପଣଙ୍କର ସେହି ବିରାଟସ୍ୱରୂପ ପ୍ରତ୍ୟକ୍ଷ ଦେଖିଲି। ତେଣୁ ଆପଣ ଯେ 'ଦେବେଶ' ଓ 'ଜଗନ୍ନିବାସ', ସେଥିରେ ଆଉ କୌଣସି ସନ୍ଦେହ ରହିଲା ନାହିଁ।'' ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରିବାର ଭାବ ହେଉଛି, ''ପ୍ରଭୋ ! ଆପଣଙ୍କର ପ୍ରଭାବ ତ ମୁଁ ନିଜେ ପ୍ରତ୍ୟକ୍ଷ ଦେଖିଲି, ପରନ୍ତୁ ଆପଣଙ୍କର ଏହି ବିରାଟରୂପ ଦେଖି ମୋର ଦଶା ବଡ଼ ଶୋଚନୀୟ ହୋଇଯାଉଛି; ମୋର ସୁଖ, ଶାନ୍ତି ଓ ଧୈର୍ଯ୍ୟ ନଷ୍ଟ ହେବାରେ ଲାଗିଛି। ଏପରି କି, ମୋର ଦିଗଜ୍ଞାନ ବି ରହୁ ନାହିଁ। ଅତଏବ ଦୟା କରି ଆପଣ ଏଥର ଏହି ବିରାଟରୂପ ଶୀଘ୍ର ସମ୍ବରଣ କରିନିଅନ୍ତୁ।''

**ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ ସର୍ବେ ସହୈବାବନିପାଳସଂଘୈଃ।**
**ଭୀଷ୍ମୋ ଦ୍ରୋଣଃ ସୂତପୁତ୍ରସ୍ତଥାସୌ ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ ॥ ୨୬ ॥**
**ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି ଦଂଷ୍ଟ୍ରାକରାଳାନି ଭୟାନକାନି।**
**କେଚିଦ୍‌ବିଲଗ୍ନା ଦଶନାନ୍ତରେଷୁ ସଂଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ ॥ ୨୭ ॥**

**ଅନ୍ୱୟ –** **ଅମୀ** = ସେମାନେ; **ସର୍ବେ, ଏବ** = ସମସ୍ତେ ହିଁ; **ଧୃତରାଷ୍ଟ୍ରସ୍ୟ, ପୁତ୍ରାଃ** = ଧୃତରାଷ୍ଟ୍ରଙ୍କ ପୁତ୍ରମାନେ; **ଅବନିପାଳସଙ୍ଘୈଃ** = ରାଜାମାନଙ୍କ ସମୁଦାୟଙ୍କ; **ସହ** = ସହିତ; **ତ୍ୱାମ୍** = ଆପଣଙ୍କ ମଧ୍ୟରେ; **(ପ୍ରବିଶନ୍ତି)** = ପ୍ରବେଶ କରୁଛନ୍ତି; **ଚ** = ଓ; **ଭୀଷ୍ମଃ** = ପିତାମହ ଭୀଷ୍ମ; **ଦ୍ରୋଣଃ** = ଦ୍ରୋଣାଚାର୍ଯ୍ୟ; **ତଥା** = ତଥା; **ଅସୌ** = ସେହି; **ସୂତପୁତ୍ରଃ** = କର୍ଣ୍ଣ; **ଅସ୍ମଦୀୟୈଃ** = ଆମ ପକ୍ଷର; **ଅପି** = ବି; **ଯୋଧମୁଖ୍ୟୈଃ** = ପ୍ରଧାନ ଯୋଦ୍ଧାମାନଙ୍କ; **ସହ** = ସହିତ (ସମସ୍ତେ); **ତେ** = ଆପଣଙ୍କ; **ଦଂଷ୍ଟ୍ରାକରାଳାନି** = ତୀକ୍ଷ୍ଣଦନ୍ତହେତୁ ବିକରାଳ; **ଭୟାନକାନି** = ଭୟଙ୍କର; **ବକ୍ତ୍ରାଣି** = ମୁଖମାନଙ୍କରେ; **ତ୍ୱରମାଣାଃ** = ପ୍ରଖରବେଗରେ ଧାଇଁ ଧାଇଁ ଆସି; **ବିଶନ୍ତି** = ପ୍ରବେଶ କରୁଛନ୍ତି (ଓ); **କେଚିତ୍** = କେହି କେହି; **ଚୂର୍ଣ୍ଣିତୈଃ** = ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଥିବା; **ଉତ୍ତମାଙ୍ଗୈଃ** = ଶିରମାନଙ୍କ ସହିତ; **ଦଶନାନ୍ତରେଷୁ** = (ଆପଣଙ୍କ) ଦାନ୍ତସନ୍ଧିମାନଙ୍କରେ; **ବିଲଗ୍ନାଃ** = ଲାଗିରହିଥିବା; **ସଂଦୃଶ୍ୟନ୍ତେ** = ଦେଖାଯାଉଛନ୍ତି।

ସେହି ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ରାଜାମାନଙ୍କ ସମୁଦାୟଙ୍କ ସହିତ ଆପଣଙ୍କ ଭିତରକୁ ପ୍ରବେଶ କରୁଛନ୍ତି ଏବଂ ଭୀଷ୍ମପିତାମହ, ଦ୍ରୋଣାଚାର୍ଯ୍ୟ ତଥା ସେହି ସୂତପୁତ୍ର କର୍ଣ୍ଣଙ୍କ ସହିତ ଆମ ପକ୍ଷର ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ମଧ୍ୟ ପ୍ରବଳ ବେଗରେ ଧାଇଁ ଧାଇଁ ଆସି ଆପଣଙ୍କର ତୀକ୍ଷ୍ଣଦନ୍ତପାଟୀଯୁକ୍ତ ବିକରାଳ ଓ ଭୟଙ୍କର ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ଏବଂ କେହି କେହି ଚୂର୍ଣ୍ଣବିଚୂର୍ଣ୍ଣ ମସ୍ତକସହିତ ଆପଣଙ୍କ ଦାନ୍ତସନ୍ଧିମାନଙ୍କରେ ଲାଗିରହିଥିବାର ଦେଖାଯାଉଛନ୍ତି॥ ୨୬-୨୭ ॥

**ପ୍ରଶ୍ନ –** **ଧୃତରାଷ୍ଟ୍ରସ୍ୟ ପୁତ୍ରାଃ** ସହିତ **ଅମୀ, ସର୍ବେ** ଓ **ଏବ** – ଏସବୁ ପଦ ପ୍ରୟୋଗ କରିବାର ଅଭିପ୍ରାୟ କଣ ?

**ଉତ୍ତର –** **ଅମୀ**ଦ୍ୱାରା ଦେଖାଉଛନ୍ତି, 'ଧୃତରାଷ୍ଟ୍ରଙ୍କର ଯେଉଁ ଦୁର୍ଯ୍ୟୋଧନାଦି ପୁତ୍ରମାନଙ୍କୁ ମୁଁ ଏବେ ଏବେ ମୋ ସମ୍ମୁଖରେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଦଣ୍ଡାୟମାନ ଥିବାର ଦେଖୁଥିଲି, ସେମାନଙ୍କୁ ବର୍ତ୍ତମାନ ମୁଁ ଆପଣଙ୍କ ମଧ୍ୟରେ ପ୍ରବେଶ କରି ନଷ୍ଟ ହୋଇଯାଉଥିବାର ଦେଖୁଛି' ତଥା **ସର୍ବେ** ଏବଂ **ଏବ**ଦ୍ୱାରା ଦେଖାଉଛନ୍ତି, 'ସେହି ଦୁର୍ଯ୍ୟୋଧନାଦି ସମସ୍ତେ ହିଁ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଛନ୍ତି; ସେହି ଶହେ ଜଣଙ୍କ ମଧ୍ୟରୁ କେହି ଜଣେ ମଧ୍ୟ ବଞ୍ଚିଥିବାର ଦେଖୁ ନାହିଁ।'

**ପ୍ରଶ୍ନ –** **ଅବନିପାଳସଂଘୈଃ** ଓ **ସହ** ପଦର ଅଭିପ୍ରାୟ କଣ ?

**ଉତ୍ତର –** **ଅବନିପାଳ** ଶବ୍ଦ ରାଜାମାନଙ୍କର ବାଚକ ଏବଂ ଏପରି ରାଜାମାନଙ୍କର ବହୁ ସମୂହର ବାଚକ ହେଉଛି **ଅବନିପାଳସଂଘୈଃ**। ତା'ସହିତ **ସହ** ପଦ ବ୍ୟବହାର କରି ଅର୍ଜୁନ ଦେଖାଉଛନ୍ତି, 'କେବଳ ଧୃତରାଷ୍ଟ୍ରଙ୍କର ପୁତ୍ରମାନଙ୍କୁ ହିଁ ମୁଁ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଥିବା ଦେଖୁ ନାହିଁ, ସେମାନଙ୍କ ସହିତ ମୁଁ ସେହିସବୁ ରାଜାଙ୍କ ସମୂହକୁ ମଧ୍ୟ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଥିବା ଦେଖୁଛି, ଯେଉଁମାନେ ଦୁର୍ଯ୍ୟୋଧନଙ୍କୁ ସାହାଯ୍ୟ କରିବାପାଇଁ ଆସିଥିଲେ।'

**ପ୍ରଶ୍ନ –** ଭୀଷ୍ମ ଓ ଦ୍ରୋଣଙ୍କ ନାମ ପୃଥକ୍‌ଭାବରେ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ପିତାମହ ଭୀଷ୍ମ ଓ ଗୁରୁ ଦ୍ରୋଣ କୌରବ ସେନାର ସର୍ବପ୍ରଧାନ ମହାନ୍ ଯୋଦ୍ଧା ଥିଲେ। ଅର୍ଜୁନଙ୍କ ମତରେ ସେମାନଙ୍କୁ ମାରିବା ବା ପରାସ୍ତ କରିବା ଅତ୍ୟନ୍ତ କଠିନ ଥିଲା। ଏଠାରେ ସେହି ଦୁଇ ଜଣଙ୍କ ନାମ ନେଇ ଅର୍ଜୁନ କହୁଛନ୍ତି, ''ହେ ଭଗବନ୍! ଅନ୍ୟାନ୍ୟମାନଙ୍କ କଥା କଣ କହିବି, ମୁଁ ଦେଖୁଛି, ଭୀଷ୍ମ ଓ ଦ୍ରୋଣଙ୍କ ପରି ମହାନ୍ ଯୋଦ୍ଧାମାନେ ମଧ୍ୟ ଆପଣଙ୍କ ଭୟାନକ ବିକରାଳ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି।'

**ପ୍ରଶ୍ନ –** ସୂତପୁତ୍ର ସହିତ **ଅସୌ** ବିଶେଷଣ ଦେଇ ଅର୍ଜୁନ କେଉଁ ଭାବ ଦେଖାଉଛନ୍ତି ?

**ଉତ୍ତର –** ବୀରବର କର୍ଣ୍ଣଙ୍କ ସହିତ ଅର୍ଜୁନଙ୍କର ସ୍ୱାଭାବିକ ପ୍ରତିଦ୍ୱନ୍ଦ୍ୱିତା ରହିଥିଲା। ତେଣୁ ତାଙ୍କ ନାମ ସହିତ **ଅସୌ** ବିଶେଷଣ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି ଯେ, ନିଜର ଶୂରବୀରତା ଦର୍ପରେ ଯେଉଁ କର୍ଣ୍ଣ ସମସ୍ତଙ୍କୁ ତୁଚ୍ଛ ମନେ କରୁଥିଲେ, ସେ ମଧ୍ୟ ଆଜି ଭଗବାନଙ୍କର ବିକରାଳ ମୁଖରେ ପଡ଼ି ନଷ୍ଟ ହୋଇଯାଉଛନ୍ତି।

**ପ୍ରଶ୍ନ –** **ଅପି** ପଦ ପ୍ରୟୋଗର ଭାବ କଣ ତଥା **ସହ** ପଦ ପ୍ରୟୋଗ କରି **ଅସ୍ମଦୀୟୈଃ** ଏବଂ **ଯୋଧମୁଖ୍ୟୈଃ** ଏହି ଦୁଇ ପଦଦ୍ୱାରା କଣ କୁହାଯାଇଛି ?

**ଉତ୍ତର –** **ଅପି** ତଥା ପ୍ରଶ୍ନରେ ଆସିଥିବା ଅନ୍ୟାନ୍ୟ ପଦ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି, ''କେବଳ ଶତ୍ରୁପକ୍ଷର ବୀରମାନେ ହିଁ ଯେ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଛନ୍ତି, ତାହା ନୁହେଁ, ଆମ ପକ୍ଷର ଯେଉଁ ମୁଖ୍ୟ ମୁଖ୍ୟ ବୀର ଯୋଦ୍ଧାମାନେ ଅଛନ୍ତି, ଶତ୍ରୁପକ୍ଷର ବୀରମାନଙ୍କ ସହିତ ସେମାନଙ୍କୁ ମଧ୍ୟ ଆପଣଙ୍କ ବିକରାଳ ମୁଖମାନଙ୍କରେ ପ୍ରବେଶ କରୁଥିବାର ମୁଁ ଦେଖିପାରୁଛି।''

**ପ୍ରଶ୍ନ –** **ତ୍ୱରମାଣାଃ** ପଦ କେଉଁମାନଙ୍କର ବିଶେଷଣ ଓ ତାହା କେଉଁଭାବରେ ପ୍ରୟୋଗ କରାଯାଇଛି ତଥା **ମୁଖାନି** ସହ **ଦଂଷ୍ଟ୍ରାକରାଳାନି** ଓ **ଭୟାନକାନି** ବିଶେଷଣ ଦୁଇଟି ଦେଇ ଅର୍ଜୁନ କେଉଁ ଭାବ ପ୍ରକାଶ କରୁଛନ୍ତି ?

**ଉତ୍ତର –** **ତ୍ୱରମାଣାଃ** ହେଉଛି ପୂର୍ବଶ୍ଳୋକରେ ବର୍ଣ୍ଣିତ ଦୁଇ ପକ୍ଷର ସମସ୍ତ ଯୋଦ୍ଧାଙ୍କର ବିଶେଷଣ। **ଦଂଷ୍ଟ୍ରାକରାଳାନି** ହେଉଛି ସେହି ମୁଖମାନଙ୍କର ବିଶେଷଣ, ଯେଉଁଗୁଡ଼ିକ କି ବଡ଼ ବଡ଼ ଭୟାନକ ଦାନ୍ତହେତୁ ଅତ୍ୟନ୍ତ ବିକରାଳ ଆକୃତିର ଅଟନ୍ତି। **ଭୟାନକାନି**ର ଅର୍ଥ, ଯେଉଁମାନଙ୍କୁ ଦେଖିବାମାତ୍ରେ ଭୟ ଉତ୍ପନ୍ନ ହୁଏ। ଏଠାରେ ଏହିସବୁ ପଦ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ପୂର୍ବଶ୍ଳୋକରେ ବର୍ଣ୍ଣିତ ଦୁଇ ପକ୍ଷର ସମସ୍ତ ଯୋଦ୍ଧା ପ୍ରବଳ ବେଗରେ ଧାଇଁ ଧାଇଁ ଆସି ଆପଣଙ୍କ ବଡ଼ ବଡ଼ ଦାନ୍ତଯୁକ୍ତ ବିକରାଳ ଓ ଭୟାନକ ମୁଖମାନଙ୍କରେ ପ୍ରବେଶ କରୁଥିବାର ମୁଁ ଦେଖୁଛି, ଅର୍ଥାତ୍ ମୋତେ ଏହା ପ୍ରତ୍ୟକ୍ଷ ଦେଖାଯାଉଛି ଯେ, ସବୁ ବୀର ଚତୁର୍ଦ୍ଦିଗରୁ ପ୍ରଖର ବେଗରେ ଧାଇଁ ଧାଇଁ ଆସି ଆପଣଙ୍କ ଭୟଙ୍କର ମୁଖମାନଙ୍କରେ ପ୍ରବେଶ କରି ନଷ୍ଟ ହେଉଛନ୍ତି।'

**ପ୍ରଶ୍ନ –** 'କେହି କେହି ଚୂର୍ଣ୍ଣିତ ମସ୍ତକସହିତ ଆପଣଙ୍କ ଦାନ୍ତସନ୍ଧିମାନଙ୍କରେ ଲାଗିରହିଥିବାର ଦେଖାଯାଉଛନ୍ତି' – ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, 'ମୁଁ ସେମାନଙ୍କୁ କେବଳ ଆପଣଙ୍କ ମୁଖମାନଙ୍କରେ ପ୍ରବେଶ କରୁଥିବାର ଦେଖୁ ନାହିଁ, ସେମାନଙ୍କ ମଧ୍ୟରୁ କେତେକଙ୍କୁ ଏପରି ଖରାପ ଦଶାରେ ଦେଖୁଛି ଯେ, ସେମାନଙ୍କର ମସ୍ତକ ଚୂର୍ଣ୍ଣ ହୋଇଗଲାଣି ଏବଂ ସେମାନେ ନିତାନ୍ତ ଦୟନୀୟ ଅବସ୍ଥାରେ ଆପଣଙ୍କ ଦାନ୍ତସନ୍ଧିମାନଙ୍କରେ ଲାଗିରହିଛନ୍ତି ।'

**ସମ୍ବନ୍ଧ –** ଦୁଇ ସେନାର ଯୋଦ୍ଧାମାନଙ୍କୁ ଅର୍ଜୁନ କିପରିଭାବରେ ଭଗବାନଙ୍କ ବିକରାଳ ମୁଖମାନଙ୍କରେ ପ୍ରବେଶ କରୁଥିବାର ଦେଖୁଛନ୍ତି, ବର୍ତ୍ତମାନ ଦୁଇଟି ଶ୍ଲୋକରେ ପ୍ରଥମେ ନଦୀସ୍ରୋତର ଦୃଷ୍ଟାନ୍ତଦ୍ୱାରା ଓ ତା'ପରେ ପତଙ୍ଗମାନଙ୍କ ଦୃଷ୍ଟାନ୍ତଦ୍ୱାରା ତାହାର ସ୍ପଷ୍ଟୀକରଣ କରୁଛନ୍ତି–

**ଯଥା ନଦୀନାଂ ବହବୋଽମ୍ବୁବେଗାଃ ସମୁଦ୍ରମେବାଭିମୁଖା ଦ୍ରବନ୍ତି ।**
**ତଥା ତବାମୀ ନରଲୋକବୀରା ବିଶନ୍ତି ବକ୍ତ୍ରାଣ୍ୟଭିବିଜ୍ୱଳନ୍ତି ।। ୨୮ ।।**

**ଅନ୍ୱୟ –** **ଯଥା** = ଯେପରି; **ନଦୀନାମ୍** = ନଦୀମାନଙ୍କର; **ବହବଃ** = ବହୁ; **ଅମ୍ବୁବେଗାଃ** = ଜଳପ୍ରବାହଗୁଡ଼ିକ (ସ୍ୱଭାବତଃ); **ସମୁଦ୍ରମ୍, ଏବ, ଅଭିମୁଖାଃ** = ସମୁଦ୍ରର ହିଁ ଅଭିମୁଖରେ; **ଦ୍ରବନ୍ତି** = ଧାବମାନ ହୁଅନ୍ତି ଏବଂ ସମୁଦ୍ରରେ ପ୍ରବେଶ କରନ୍ତି; **ତଥା** = ସେହିପରି; **ଅମୀ** = ସେହି, **ନରଲୋକବୀରାଃ** = ନରଲୋକର ବୀରମାନେ (ମଧ୍ୟ); **ତବ** = ଆପଣଙ୍କର; **ଅଭିବିଜ୍ୱଳନ୍ତି** = ପ୍ରଜ୍ୱଳିତ ହେଉଥିବା; **ବକ୍ତ୍ରାଣି** = ମୁଖମାନଙ୍କରେ; **ବିଶନ୍ତି** = ପ୍ରବେଶ କରୁଛନ୍ତି ।

**ନଦୀମାନଙ୍କ ଜଳରାଶିର ବହୁ ପ୍ରବାହ ଯେପରି ସ୍ୱଭାବତଃ ସମୁଦ୍ର ଅଭିମୁଖରେ ହିଁ ଧାବମାନ ହୋଇ ସମୁଦ୍ରରେ ପ୍ରବେଶ କରନ୍ତି, ନରଲୋକର ସେହିସବୁ ବୀରମାନେ ମଧ୍ୟ ଠିକ୍ ସେହିପରି ଆପଣଙ୍କ ପ୍ରଜ୍ୱଳିତ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ।। ୨୮ ।।**

**ପ୍ରଶ୍ନ –** ଏହି ଶ୍ଲୋକରେ ନଦୀମାନଙ୍କର ସମୁଦ୍ରରେ ପ୍ରବେଶ କରୁଥିବା ଦୃଷ୍ଟାନ୍ତ ଦେଇ ଭଗବାନଙ୍କ ମୁଖମାନଙ୍କରେ ପ୍ରବେଶ କରୁଥିବା ଲୋକମାନଙ୍କ ପାଇଁ **ନରଲୋକବୀରାଃ** ବିଶେଷଣ କେଉଁ ଅଭିପ୍ରାୟରେ ଦିଆଯାଇଛି, ତଥା ମୁଖମାନଙ୍କ ସହିତ **ଅଭିବିଜ୍ୱଳନ୍ତି** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର –** ଏହି ଶ୍ଲୋକରେ ସେହିସବୁ ଭୀଷ୍ମ-ଦ୍ରୋଣାଦି ଶ୍ରେଷ୍ଠ ଶୂରବୀର ପୁରୁଷମାନେ ଭଗବାନଙ୍କ ମୁଖମାନଙ୍କରେ ପ୍ରବେଶ କରୁଥିବା କଥା ବର୍ଣ୍ଣନା କରାଯାଇଛି, ଯେଉଁମାନେ କି ଭଗବତ୍‌ପ୍ରାପ୍ତିପାଇଁ ସାଧନା କରୁଥିଲେ ତଥା ଯେଉଁମାନଙ୍କୁ ନିଜର ଇଚ୍ଛା ବିନା ଯୁଦ୍ଧରେ ପ୍ରବୃତ୍ତ ହେବାକୁ ପଡ଼ିଥିଲା ଏବଂ ଯେଉଁମାନେ ଯୁଦ୍ଧରେ ମରି ଭଗବାନଙ୍କୁ ପାଇବାର ପାତ୍ର ଥିଲେ । ତେଣୁ ସେମାନଙ୍କ ପାଇଁ **ନରଲୋକବୀରାଃ** ବିଶେଷଣ ଦିଆଯାଇଛି । ସେମାନେ ଭୌତିକ ଯୁଦ୍ଧରେ ଯେପରି ମହାନ୍ ବୀର ଥିଲେ, ଭଗବତ୍‌ପ୍ରାପ୍ତିର ସାଧନାରୂପକ ଆଧ୍ୟାତ୍ମିକ ଯୁଦ୍ଧରେ ମଧ୍ୟ ସେହିପରି କାମ ଆଦି ଶତ୍ରୁଙ୍କ ସହିତ ଅତ୍ୟନ୍ତ ବୀରତ୍ୱ ସହକାରେ ଯୁଦ୍ଧକୁଶଳ ଥିଲେ । ଭଗବାନଙ୍କ ମୁଖରେ ସେମାନଙ୍କର ପ୍ରବେଶକୁ ନଦୀ ଓ ସମୁଦ୍ରର ଦୃଷ୍ଟାନ୍ତ ଦେଇ ଅର୍ଜୁନ ଜଣାଉଛନ୍ତି, "ନଦୀମାନଙ୍କର ଜଳରାଶି ଯେପରି ସ୍ୱଭାବତଃ ସମୁଦ୍ର ଅଭିମୁଖରେ ଧାବିତ ହୁଏ ଓ ପରିଶେଷରେ ନିଜର ନାମରୂପ ତ୍ୟାଗ କରି ସମୁଦ୍ର ହିଁ ହୋଇଯାଏ, ସେହିପରି ଉକ୍ତ ଶୂରବୀର ଭକ୍ତଜନମାନେ ମଧ୍ୟ ଆପଣଙ୍କ ଅଭିମୁଖରେ ଧାଇଁଛନ୍ତି ଓ ଆପଣଙ୍କ ଭିତରେ ଅଭିନ୍ନଭାବରେ ପ୍ରବେଶ କରୁଛନ୍ତି । ଅର୍ଥାତ୍ ଆପଣଙ୍କ ସହିତ ଏକ ହୋଇଯାଉଛନ୍ତି ।"

ଏଠାରେ ମୁଖମାନଙ୍କ ସହିତ **ଅଭିବିଜ୍ୱଳନ୍ତି** ବିଶେଷଣ ଦେଇ କହୁଛନ୍ତି, 'ଯେପରି ସମୁଦ୍ରରେ ଚାରିଆଡ଼େ କେବଳ ଜଳ ହିଁ ପରିପୂର୍ଣ୍ଣ ହୋଇ ରହିଥାଏ ଏବଂ ନଦୀମାନଙ୍କର ଜଳ ଚତୁର୍ଦ୍ଦିଗରୁ ଆସି ସେଥିରେ ପ୍ରବେଶ କରି ତା' ସହିତ ଏକତ୍ୱପ୍ରାପ୍ତ ହୋଇଯାଏ, ସେହିପରି ଆପଣଙ୍କର ସମସ୍ତ ମୁଖ ମଧ୍ୟ ସବୁଦିଗରୁ ଅତ୍ୟନ୍ତ ଜ୍ୟୋତିର୍ମୟ ଏବଂ ତନ୍ମଧ୍ୟରେ ପ୍ରବେଶ କରୁଥିବା ଶୂରବୀର ଭକ୍ତଜନ ମଧ୍ୟ ଆପଣଙ୍କ ମୁଖମାନଙ୍କର ମହାନ୍ ଜ୍ୟୋତିରେ ନିଜର ବାହ୍ୟରୂପକୁ ଜଳାଇଦେଇ, ସ୍ୱୟଂ ଜ୍ୟୋତିର୍ମୟ ହୋଇ ଆପଣଙ୍କ ଠାରେ ଏକତ୍ୱପ୍ରାପ୍ତ ହେଉଛନ୍ତି ।"

**ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।**
**ତଥୈବ ନାଶାୟ ବିଶନ୍ତି ଲୋକାସ୍ତବାପି ବକ୍ତ୍ରାଣି ସମୃଦ୍ଧବେଗାଃ ॥ ୨୯ ॥**

ଅନ୍ୱୟ— ଯଥା = ଯେପରି; ପତଙ୍ଗାଃ = ପତଙ୍ଗମାନେ; ନାଶାୟ = ମୋହବଶ ହୋଇ ନଷ୍ଟ ହେବାପାଇଁ; ସମୃଦ୍ଧବେଗାଃ = ଅତ୍ୟନ୍ତ ବେଗରେ ଉଡ଼ିଆସି; ପ୍ରଦୀପ୍ତମ୍ = ପ୍ରଜ୍ୱଳିତ; ଜ୍ୱଳନମ୍ = ଅଗ୍ନିରେ; ବିଶନ୍ତି = ପ୍ରବେଶ କରନ୍ତି; ତଥା = ସେହିପରି; ଏବ = ହିଁ; ଲୋକାଃ = ଲୋକମାନେ; ଅପି = ବି; ନାଶାୟ = ନିଜର ନାଶନିମନ୍ତେ; ସମୃଦ୍ଧବେଗାଃ = ଅତ୍ୟନ୍ତ ବେଗରେ ଦଉଡ଼ି ଦଉଡ଼ି; ତବ = ଆପଣଙ୍କର; ବକ୍ତ୍ରାଣି = ମୁଖମାନଙ୍କରେ; ବିଶନ୍ତି = ପ୍ରବେଶ କରୁଛନ୍ତି ।

**ପତଙ୍ଗମାନେ ଯେପରି ମୋହବଶ ହୋଇ ନଷ୍ଟ ହେବାପାଇଁ ଅତ୍ୟନ୍ତ ବେଗରେ ଉଡ଼ି ଉଡ଼ି ଆସି ପ୍ରଜ୍ୱଳିତ ଅଗ୍ନିରେ ପ୍ରବେଶ କରନ୍ତି, ଲୋକମାନେ ମଧ୍ୟ ସେହିପରି ନିଜର ବିନାଶପାଇଁ ଅତ୍ୟନ୍ତ ବେଗରେ ଧାଇଁ ଧାଇଁ ଆସି ଆପଣଙ୍କ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ॥ ୨୯ ॥**

ପ୍ରଶ୍ନ— ଏହି ଶ୍ଲୋକରେ ପ୍ରଜ୍ୱଳିତ ଅଗ୍ନି ଓ ପତଙ୍ଗମାନଙ୍କର ଦୃଷ୍ଟାନ୍ତ ଦେଇ ଭଗବାନଙ୍କ ମୁଖମାନଙ୍କରେ ସବୁ ଲୋକ ପ୍ରବେଶ କରୁଥିବା କଥା କହିବାର ଅଭିପ୍ରାୟ କଣ ?

ଉତ୍ତର— ପୂର୍ବଶ୍ଲୋକରେ କୁହାଯାଇଥିବା ଭକ୍ତମାନଙ୍କ ଠାରୁ ଭିନ୍ନ ସେହିସବୁ ସାଧାରଣ ଲୋକଙ୍କର ପ୍ରବେଶ କରିବା କଥା ଏହି ଶ୍ଲୋକରେ ବର୍ଣ୍ଣନା କରାଯାଇଛି, ଯେଉଁମାନେ କି ଇଚ୍ଛାପୂର୍ବକ ଯୁଦ୍ଧ କରିବାକୁ ଆସିଥିଲେ । ଅତଏବ ପ୍ରଜ୍ୱଳିତ ଅଗ୍ନି ଓ ପତଙ୍ଗମାନଙ୍କର ଦୃଷ୍ଟାନ୍ତ ଦେଇ ଅର୍ଜୁନ ଜଣାଉଛନ୍ତି, ''ମୋହରେ ପଡ଼ିଥିବା ପତଙ୍ଗମାନେ ଯେପରି ମରିବାପାଇଁ ହିଁ ଇଚ୍ଛାପୂର୍ବକ ଅତ୍ୟନ୍ତ ବେଗରେ ଉଡ଼ିଆସି ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରନ୍ତି, ଏସବୁ ଲୋକେ ମଧ୍ୟ ସେହିପରି ଆପଣଙ୍କ ପ୍ରଭାବ ଜାଣି ନ ଥିବାରୁ ମୋହରେ ପଡ଼ିଛନ୍ତି ଏବଂ ନିଜର ବିନାଶପାଇଁ ହିଁ ପତଙ୍ଗମାନଙ୍କ ପରି ଧାଇଁଆସି ଆପଣଙ୍କ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ।''

*ସମ୍ବନ୍ଧ— ଭଗବାନଙ୍କ ମୁଖରେ ଦୁଇ ସେନାର ଲୋକମାନଙ୍କ ପ୍ରବେଶକୁ ଦୃଷ୍ଟାନ୍ତଦ୍ୱାରା ବର୍ଣ୍ଣନା କରିସାରି ବର୍ତ୍ତମାନ ସେହି ଲୋକଙ୍କୁ ଭଗବାନ୍ କିପରି ନଷ୍ଟ କରୁଛନ୍ତି, ଅର୍ଜୁନ ତାହା ବର୍ଣ୍ଣନା କରୁଛନ୍ତି—*

**ଲେଲିହ୍ୟସେ ଗ୍ରସମାନଃ ସମନ୍ତାଲ୍ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଲଦ୍ଭିଃ ।**
**ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ ॥ ୩୦ ॥**

ଅନ୍ୱୟ— ସମଗ୍ରାନ୍ = ସମସ୍ତ; ଲୋକାନ୍ = ଲୋକଙ୍କୁ; ଜ୍ୱଲଦ୍ଭିଃ = ଜ୍ୱଳନ୍ତ; ବଦନୈଃ = ମୁଖମାନଙ୍କ ଦ୍ୱାରା; ଗ୍ରସମାନଃ = କାଳସଦୃଶ କବଳିତ କରି; ସମନ୍ତାତ୍ = ସକଳ ଦିଗରୁ; ଲେଲିହ୍ୟସେ = ବାରମ୍ବାର ଲେହନ କରୁଛନ୍ତି (ଚାଟୁଛନ୍ତି); ବିଷ୍ଣୋ = ହେ ବିଷ୍ଣୁ; ତବ = ଆପଣଙ୍କର; ଉଗ୍ରାଃ = ଉଗ୍ର; ଭାସଃ = ଆଲୋକ; ସମଗ୍ରମ୍ = ସମଗ୍ର; ଜଗତ୍ = ଜଗତକୁ; ତେଜୋଭିଃ = ତେଜଦ୍ୱାରା; ଆପୂର୍ଯ୍ୟ = ପରିପୂର୍ଣ୍ଣ କରି; ପ୍ରତପନ୍ତି = ଉତପ୍ତ କରୁଛି ।

**ଆପଣ ସେସବୁ ଲୋକଙ୍କୁ ପ୍ରଜ୍ୱଳନ୍ତ ମୁଖମାନଙ୍କ ଦ୍ୱାରା କାଳସଦୃଶ କବଳିତ କରି ସବୁ ଦିଗରୁ ବାରମ୍ବାର ଲେହନ କରୁଛନ୍ତି । ହେ ବିଷ୍ଣୋ ! ଆପଣଙ୍କର ଉଗ୍ର ଆଲୋକ ସମଗ୍ର ଜଗତକୁ ତେଜଦ୍ୱାରା ପରିପୂର୍ଣ୍ଣ କରି ଉତପ୍ତ କରୁଛି ॥ ୩୦ ॥**

ପ୍ରଶ୍ନ— ଏହି ଶ୍ଲୋକର ଭାବ କଣ ?

ଉତ୍ତର— ଭଗବାନଙ୍କର ମହାନ୍ ଉଗ୍ରରୂପ ଦେଖି ଏଠାରେ ଭୟଭୀତ ଅର୍ଜୁନ ସେହି ଅତ୍ୟନ୍ତ ଭୟାନକ ରୂପ ବର୍ଣ୍ଣନା କରି କରି କହୁଛନ୍ତି, ''ଭୟାନକ ଅଗ୍ନିଶିଖା ବାହାର କରୁଥିବା ଆପଣଙ୍କର ସେହିସବୁ ବିକରାଳ ମୁଖମାନଙ୍କ ଦ୍ୱାରା ଆପଣ ସମସ୍ତ ଲୋକଙ୍କୁ ଗିଳିପକାଉଛନ୍ତି ଏବଂ ଏତେ କରି ବି ଅତୃପ୍ତ ହୋଇ ନିଜର ଜିହ୍ୱାକୁ ବାରମ୍ବାର ଲହ ଲହ କରୁଛନ୍ତି ତଥା ଆପଣଙ୍କର ଅତ୍ୟନ୍ତ ଉଗ୍ରପ୍ରକାଶର ଭୟାନକ ତେଜରେ ସାରା ଜଗତ ଅତ୍ୟନ୍ତ ସନ୍ତପ୍ତ ହେଉଛି ।

**ସମ୍ବନ୍ଧ –** *ତୃତୀୟ ଓ ଚତୁର୍ଥ ଶ୍ଳୋକରେ ଭଗବାନଙ୍କୁ ତାଙ୍କର ଐଶ୍ୱର୍ଯ୍ୟମୟ ରୂପ ଦର୍ଶନ କରାଇବାକୁ ଅର୍ଜୁନ ପ୍ରାର୍ଥନା କରିଥିଲେ। ସେହି ଅନୁସାରେ ଭଗବାନ୍ ଅର୍ଜୁନଙ୍କୁ ନିଜର ବିଶ୍ୱରୂପ ଦେଖାଇଲେ; ପରନ୍ତୁ ଭଗବାନଙ୍କର ସେହି ଭୟାନକ ଉଗ୍ରରୂପ ଦେଖି ଅର୍ଜୁନ ଅତ୍ୟନ୍ତ ଭୀତ ହୋଇଗଲେ; ସେହି ଶ୍ରୀକୃଷ୍ଣ ଯେ ପ୍ରକୃତରେ କିଏ, ତାହା ଜାଣିବାକୁ ତାଙ୍କ ମନରେ ଇଚ୍ଛା ଉତ୍ପନ୍ନ ହେଲା। ସେହି ମହାନ୍ ଉଗ୍ର ସ୍ୱରୂପଦ୍ୱାରା ସେ କଣ କରିବାକୁ ଚାହାଁନ୍ତି, ତାହା ସେ ଭଗବାନଙ୍କୁ ପଚାରୁଛନ୍ତି–*

**ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ ନମୋଽସ୍ତୁ ତେ ଦେବବର ପ୍ରସୀଦ।**
**ବିଜ୍ଞାତୁମିଚ୍ଛାମି ଭବନ୍ତମାଦ୍ୟଂ ନ ହି ପ୍ରଜାନାମି ତବ ପ୍ରବୃତ୍ତିମ୍ ॥ ୩୧ ॥**

**ଅନ୍ୱୟ –** ମେ = ମୋତେ; **ଆଖ୍ୟାହି** = କହନ୍ତୁ; **ଭବାନ୍** = ଆପଣ; **ଉଗ୍ରରୂପଃ** = ଉଗ୍ରରୂପଧାରୀ; **କଃ** = କିଏ; **ଦେବବର** = ହେ ଦେବଶ୍ରେଷ୍ଠ; **ତେ** = ଆପଣଙ୍କୁ; **ନମଃ** = ନମସ୍କାର; **ଅସ୍ତୁ** = ହେଉ; **ପ୍ରସୀଦ** = ପ୍ରସନ୍ନ ହୁଅନ୍ତୁ; **ଆଦ୍ୟମ୍** = ଆଦିପୁରୁଷ; **ଭବନ୍ତମ୍** = ଆପଣଙ୍କୁ; **ବିଜ୍ଞାତୁମ୍** = ବିଶେଷରୂପେ ଜାଣିବାକୁ; **ଇଚ୍ଛାମି** = (ମୁଁ) ଚାହୁଁଛି; **ହି** = କାରଣ; **ତବ** = ଆପଣଙ୍କ; **ପ୍ରବୃତ୍ତିମ୍** = ପ୍ରବୃତ୍ତିକୁ; **ନ, ପ୍ରଜାନାମି** = ଜାଣିପାରୁ ନାହିଁ।

**ହେ ଭଗବନ୍ ! ଉଗ୍ରରୂପଧାରୀ ଆପଣ କିଏ, କୃପା କରି ମୋତେ କହନ୍ତୁ। ହେ ଦେବଶ୍ରେଷ୍ଠ ! ଆପଣଙ୍କୁ ନମସ୍କାର। ଆପଣ ପ୍ରସନ୍ନ ହୁଅନ୍ତୁ। ଆଦିପୁରୁଷ ଆପଣଙ୍କୁ ମୁଁ ବିଶେଷରୂପେ ଜାଣିବାକୁ ଚାହୁଁଛି; କାରଣ ମୁଁ ଆପଣଙ୍କ ପ୍ରବୃତ୍ତିକୁ ଜାଣିପାରୁ ନାହିଁ ॥ ୩୧ ॥**

**ପ୍ରଶ୍ନ –** ଅର୍ଜୁନ ତ ଜାଣିଥିଲେ ଯେ, ଭଗବାନ୍ ଶ୍ରୀକୃଷ୍ଣ ହିଁ ନିଜ ଯୋଗଶକ୍ତିଦ୍ୱାରା ତାଙ୍କୁ ନିଜର ବିଶ୍ୱରୂପ ଦେଖାଉଛନ୍ତି; ପୁଣି ତାଙ୍କୁ 'ଉଗ୍ରରୂପଧାରୀ ଆପଣ କିଏ' ବୋଲି ସେ କାହିଁକି ପଚାରିଲେ ?

**ଉତ୍ତର –** ଅର୍ଜୁନ କେବଳ ଏତିକି ଜାଣିଥିଲେ ଯେ, ଉକ୍ତ ଉଗ୍ରରୂପ ଶ୍ରୀକୃଷ୍ଣଙ୍କର ହିଁ ଅଟେ। କିନ୍ତୁ ସେହି ଭୟଙ୍କର ରୂପ ଦେଖି ଶ୍ରୀକୃଷ୍ଣ ପ୍ରକୃତରେ କିଏ, ଯେ କି ଏପରି ଭୟଙ୍କର ରୂପ ମଧ୍ୟ ଧାରଣ କରିପାରନ୍ତି, ତାହା ଜାଣିବାକୁ ତାଙ୍କ ମନରେ ଇଚ୍ଛା ହେଲା। ତେଣୁ ସେ ଏହା ମଧ୍ୟ କହିଲେ ଯେ, ସେହି ଆଦି ପୁରୁଷଙ୍କୁ ସେ ବିଶେଷରୂପେ ଜାଣିବାକୁ ଚାହୁଁଛନ୍ତି।

**ପ୍ରଶ୍ନ –** ଦେବବର ସମ୍ବୋଧନ ସହିତ ଭଗବାନଙ୍କୁ ନମସ୍କାର କରିବା ଓ ତାଙ୍କୁ ପ୍ରସନ୍ନ ହେବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେ ଦେବତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ତାହାଙ୍କୁ **ଦେବବର** କହନ୍ତି। ଏଣୁ ଭଗବାନଙ୍କୁ 'ଦେବବର' ନାମରେ ସମ୍ବୋଧନ କରି ଅର୍ଜୁନ ତାଙ୍କ ଈଶ୍ୱରତ୍ୱ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ତାହାଙ୍କୁ ନମସ୍କାର କରୁଛନ୍ତି; ପୁଣି ତାଙ୍କର ଭୟାନକ ରୂପ ଦେଖି ଅର୍ଜୁନ ଭୟଭୀତ ହୋଇଯାଇଥିବାରୁ ତାଙ୍କୁ ପ୍ରସନ୍ନ ହେବାକୁ ପ୍ରାର୍ଥନା କରୁଛନ୍ତି।

**ପ୍ରଶ୍ନ –** 'ଆପଣଙ୍କ ପ୍ରବୃତ୍ତିକୁ ମୁଁ ଜାଣିପାରୁ ନାହିଁ' – ଏହି କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, ''ଏହା ଏଡ଼େ ଭୟଙ୍କର ରୂପ ଯେ, ଏହା ମଧ୍ୟରେ କୌରବ ପକ୍ଷର ଓ ଆମ ପକ୍ଷର ପ୍ରାୟ ସମସ୍ତ ଯୋଦ୍ଧା ପ୍ରତ୍ୟକ୍ଷ ନଷ୍ଟ ହୋଇଯାଉଥିବାର ଦେଖାଯାଉଛନ୍ତି। ଆପଣ କାହିଁକି ଏହା ଦେଖାଉଛନ୍ତି, ତଥା ବର୍ତ୍ତମାନ ନିକଟ ଭବିଷ୍ୟତରେ ଆପଣ କଣ କରିବାକୁ ଚାହୁଁଛନ୍ତି, ସେହି ରହସ୍ୟ ମୁଁ ଜାଣିପାରୁ ନାହିଁ। ଅତଏବ ଆପଣ କୃପା କରି ସେହି ରହସ୍ୟ ପ୍ରକାଶ କରନ୍ତୁ।''

**ସମ୍ବନ୍ଧ –** *ଅର୍ଜୁନ ଏପରି ପଚାରିବାରୁ ଭଗବାନ୍ ନିଜ ଉଗ୍ରରୂପ ଧାରଣ କରିବାର କାରଣ କହି ପ୍ରଶ୍ନ ଅନୁସାରେ ଉତ୍ତର ଦେଉଛନ୍ତି–*

*ଶ୍ରୀଭଗବାନୁବାଚ*

**କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ।**
**ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ ॥ ୩୨ ॥**

ଅନ୍ୱୟ – ଲୋକକ୍ଷୟକୃତ୍ = (ମୁଁ) ଲୋକମାନଙ୍କର ବିନାଶକାରୀ; ପ୍ରବୃଦ୍ଧଃ, କାଳଃ = ପ୍ରବୃଦ୍ଧ ମହାକାଳ; ଅସ୍ମି = ଅଟେ; ଇହ = ଏହି ସମୟରେ; ଲୋକାନ୍ = ଲୋକମାନଙ୍କୁ; ସମାହର୍ତ୍ତୁମ୍ = ବିନାଶ କରିବା ନିମନ୍ତେ; ପ୍ରବୃତ୍ତଃ = ପ୍ରବୃତ୍ତ ହୋଇଛି (ତେଣୁ): ଯେ = ଯେଉଁମାନେ; ପ୍ରତ୍ୟନୀକେଷୁ = ଶତ୍ରୁପକ୍ଷର ସେନାରେ; ଅବସ୍ଥିତାଃ = ସ୍ଥିତ; ଯୋଧାଃ = ଯୋଦ୍ଧାମାନେ ଅଛନ୍ତି; (ତେ) = ସେହି; ସର୍ବେ = ସମସ୍ତେ; ତ୍ୱାମ୍, ଋତେ, ଅପି = ତୁମେ ଯୁଦ୍ଧ ନ କଲେ ମଧ; ନ, ଭବିଷ୍ୟନ୍ତି = ରହିବେ ନାହିଁ ଅର୍ଥାତ୍ ସମସ୍ତଙ୍କର ନିଶ୍ଚୟ ବିନାଶ ହେବ।

**ଶ୍ରୀଭଗବାନ୍ କହିଲେ – ମୁଁ ହେଉଛି ଲୋକମାନଙ୍କର ବିନାଶକାରୀ ପ୍ରବୃଦ୍ଧ ମହାକାଳ। ଏହି ସମୟରେ ଲୋକମାନଙ୍କୁ ବିନାଶ କରିବାପାଇଁ ମୁଁ ପ୍ରବୃତ୍ତ ହୋଇଛି। ଏଣୁ ତୁମ ଶତ୍ରୁପକ୍ଷର ସେନାରେ ଯେଉଁ ଯୋଦ୍ଧାମାନେ ଅଛନ୍ତି, ସେ ସମସ୍ତେ, ତୁମେ ଯୁଦ୍ଧ ନ କଲେ ମଧ, ରହିବେ ନାହିଁ ଅର୍ଥାତ୍ ସେ ସମସ୍ତଙ୍କର ବିନାଶ ହୋଇଯିବ।। ୩୨ ।।**

**ପ୍ରଶ୍ନ –** 'ମୁଁ ହେଉଛି ଲୋକଙ୍କର ବିନାଶକାରୀ ପ୍ରବୃଦ୍ଧ ମହାକାଳ।' ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହି କଥନଦ୍ୱାରା ଭଗବାନ୍ ଅର୍ଜୁନଙ୍କ ପ୍ରଥମ ପ୍ରଶ୍ନର ଉତ୍ତର ଦେଇଛନ୍ତି, ଯେଉଁଥିରେ କି ସେ କିଏ ବୋଲି ଅର୍ଜୁନ ଜାଣିବାକୁ ଚାହିଁଥିଲେ। ଭଗବାନଙ୍କ କଥନର ଅଭିପ୍ରାୟ ହେଉଛି, ''ମୁଁ ସମଗ୍ର ଜଗତର ସୃଜନ, ପାଳନ ଓ ସଂହାର କରୁଥିବା ସାକ୍ଷାତ୍ ପରମେଶ୍ୱର। ଅତଏବ ଏହି ସମୟରେ ମୋତେ ଏ ସମସ୍ତଙ୍କର ସଂହାରକାରୀ ସାକ୍ଷାତ୍ ମହାକାଳ ବୋଲି ଜାଣ।''

**ପ୍ରଶ୍ନ –** 'ଏବେ ଏସବୁ ଲୋକଙ୍କୁ ମୁଁ ବିନାଶ କରିବାକୁ ପ୍ରବୃତ୍ତ ହୋଇଛି'– ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅର୍ଜୁନଙ୍କର ସେହି ପ୍ରଶ୍ନର ଉତ୍ତର ଦେଇଛନ୍ତି, ଯେଉଁଥିରେ ଅର୍ଜୁନ 'ମୁଁ ଆପଣଙ୍କର ପ୍ରବୃତ୍ତି ଜାଣିପାରୁ ନାହିଁ' – ବୋଲି କହିଥିଲେ। ଭଗବାନଙ୍କ କଥାର ଅଭିପ୍ରାୟ ହେଉଛି, ''ଏବେ ମୋର ସମସ୍ତ ଚେଷ୍ଟା ଏହିସବୁ ଲୋକଙ୍କୁ ବିନାଶ କରିବାପାଇଁ ହେଉଛି; ଏହା ବୁଝାଇବାକୁ ମୁଁ ଏହି ବିରାଟରୂପ ମଧ୍ୟରେ ତୁମକୁ ସମସ୍ତଙ୍କ ବିନାଶର ଭୟଙ୍କର ଦୃଶ୍ୟ ଦେଖାଇଛି।''

**ପ୍ରଶ୍ନ –** 'ଶତ୍ରୁପକ୍ଷର ସେନାରେ ଉପସ୍ଥିତ ଯେଉଁ ଯୋଦ୍ଧାମାନେ ଅଛନ୍ତି, ସେମାନେ ତୁମ ବିନା ମଧ ରହିବେ ନାହିଁ'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି, ''ଗୁରୁ, ବଡ଼ବାପା; ସାନବାପା, ମାମୁ ଓ ଭାଇ ଆଦି ଆତ୍ମୀୟ ସ୍ୱଜନଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ ଥିବାର ଦେଖି ତୁମ ମନରେ ଯେଉଁ ଭୀରୁତା ଆସିଯାଇଛି ଏବଂ ସେହି କାରଣରୁ ତୁମେ ଯେଉଁ ଯୁଦ୍ଧରୁ ହଟିଯିବାକୁ ଚାହୁଁଛ, ତାହା ଉଚିତ ନୁହେଁ; କାରଣ, ତୁମେ ଯୁଦ୍ଧ କରି ଏମାନଙ୍କୁ ନ ମାରିଲେ ମଧ, ଏମାନେ ବଞ୍ଚିବେ ନାହିଁ। ଏମାନଙ୍କର ମୃତ୍ୟୁ ସୁନିଶ୍ଚିତ। ଯେତେବେଳେ ସ୍ୱୟଂ ମୁଁ ଏମାନଙ୍କୁ ନାଶ କରିବାକୁ ପ୍ରବୃତ୍ତ, ସେତେବେଳେ ଏପରି କୌଣସି ଉପାୟ ନାହିଁ, ଯାହାଦ୍ୱାରା କି ଏମାନଙ୍କର ରକ୍ଷା ହୋଇପାରେ। ତେଣୁ ତୁମେ ଯୁଦ୍ଧରୁ ଓହରିଯିବା ଉଚିତ ନୁହେଁ; ତୁମ ପାଇଁ ତ ମୋ ଆଜ୍ଞାନୁସାରେ ଯୁଦ୍ଧରେ ପ୍ରବୃତ୍ତ ହେବା ହିଁ ହିତକର ହେବ।''

**ପ୍ରଶ୍ନ –** ଅର୍ଜୁନ ତ ଭଗବାନଙ୍କ ବିରାଟରୂପରେ ନିଜର ଓ ଶତ୍ରୁପକ୍ଷର ସମସ୍ତ ଯୋଦ୍ଧାଙ୍କୁ ମରୁଥିବାର ଦେଖିଥିଲେ। ଭଗବାନ୍ ଏଠାରେ କେବଳ କୌରବପକ୍ଷର ଯୋଦ୍ଧାଙ୍କ କଥା କିପରି କହିଲେ ?

**ଉତ୍ତର –** ନିଜ ପକ୍ଷର ଯୋଦ୍ଧାମାନେ ଅର୍ଜୁନଙ୍କ ଦ୍ୱାରା ମରାଯିବା ସମ୍ଭବ ନୁହେଁ। ଅତଏବ 'ତୁମେ ନ ମାରିଲେ ବି ସେମାନେ ମରିବେ ହିଁ ମରିବେ' ଏଭଳି କହିବା ତାଙ୍କ ପକ୍ଷରେ ଶୋଭା ପାଇ ନ ଥାନ୍ତା। ଅତଏବ ଭଗବାନ୍ ଏଠାରେ କେବଳ କୌରବପକ୍ଷର ବୀରଙ୍କ ବିଷୟରେ କହିଲେ। ଏହା ଛଡ଼ା ଅର୍ଜୁନଙ୍କୁ ଉତ୍ସାହିତ କରିବାକୁ ମଧ ଭଗବାନଙ୍କ ଦ୍ୱାରା ଏପରି କୁହାଯିବା ଯୁକ୍ତିସଂଗତ ହୋଇଛି। ଭଗବାନ୍ ସତେ ଯେପରି ବୁଝାଉଛନ୍ତି, 'ଶତ୍ରୁପକ୍ଷର ଯେତେ ବି ଯୋଦ୍ଧା ଅଛନ୍ତି, ସେମାନେ ତ ଏକପ୍ରକାରେ ମରିଗଲେଣି; ସେମାନଙ୍କୁ ମାରିବାପାଇଁ ତୁମକୁ କୌଣସି ପରିଶ୍ରମ କରିବାକୁ ପଡ଼ିବ ନାହିଁ।'

**ସମ୍ବନ୍ଧ –** ଏପରିଭାବରେ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ୍ ବର୍ତ୍ତମାନ ତିନୋଟି ଶ୍ଳୋକରେ ଯୁଦ୍ଧ କରିବାଦ୍ୱାରା ସବୁପ୍ରକାର ଲାଭ ହେବ ବୋଲି ଦର୍ଶାଇ, ଅର୍ଜୁନଙ୍କୁ ଯୁଦ୍ଧ କରିବାପାଇଁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଆଜ୍ଞା ଦେଉଛନ୍ତି–

**ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ ଜିତ୍ୱା ଶତ୍ରୂନ୍ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍ ।**
**ମୟୈବୈତେ ନିହତାଃ ପୂର୍ବମେବ ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ ।। ୩୩ ।।**

**ଅନ୍ୱୟ –** ତସ୍ମାତ୍ = ଅତଏବ; ତ୍ୱମ୍ = ତୁମେ; ଉତ୍ତିଷ୍ଠ = ଉଠ; ଯଶଃ = ଯଶ; ଲଭସ୍ୱ = ଲାଭ କର (ଓ); ଶତ୍ରୂନ୍ = ଶତ୍ରୁମାନଙ୍କୁ; ଜିତ୍ୱା = ଜୟ କରି; ସମୃଦ୍ଧମ୍ = ଧନଧାନ୍ୟସମୃଦ୍ଧ; ରାଜ୍ୟମ୍ = ରାଜ୍ୟକୁ; ଭୁଙ୍କ୍ଷ୍ୱ = ଭୋଗ କର; ଏତେ = ଏମାନେ; ପୂର୍ବମ୍, ଏବ = ପୂର୍ବରୁ ହିଁ; ମୟା = ମୋ ଦ୍ୱାରା; ନିହତାଃ = ନିହତ ହୋଇସାରିଛନ୍ତି; ସବ୍ୟସାଚିନ୍ = ହେ ସବ୍ୟସାଚୀ; ନିମିତ୍ତମାତ୍ରମ୍, ଏବ = ତୁମେ କେବଳ ନିମିତ୍ତମାତ୍ର; ଭବ = ହୋଇଯାଅ ।

**ଅତଏବ ତୁମେ ଉଠ ! ଯଶ ଲାଭ କର ଓ ଶତ୍ରୁମାନଙ୍କୁ ଜୟ କରି ଧନଧାନ୍ୟରେ ସଂପନ୍ନ ରାଜ୍ୟ ଭୋଗ କର । ଏହି ଶୂରବୀରମାନେ ଆଗରୁ ହିଁ ମୋ ଦ୍ୱାରା ନିହତ ହୋଇସାରିଛନ୍ତି; ହେ ସବ୍ୟସାଚୀ ! ତୁମେ କେବଳ ନିମିତ୍ତମାତ୍ର ହୋଇଯାଅ ।। ୩୩ ।।**

**ପ୍ରଶ୍ନ –** ଏଠାରେ **ତସ୍ମାତ୍** ପଦ ସହିତ **ଉତ୍ତିଷ୍ଠ** କ୍ରିୟା ପ୍ରୟୋଗ କରି କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** **ତସ୍ମାତ୍** ସହିତ **ଉତ୍ତିଷ୍ଠ** କ୍ରିୟା ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି, ''ତୁମେ ଯୁଦ୍ଧ ନ କଲେ ବି, କେହି ବଞ୍ଚିବେ ନାହିଁ; ସେମାନେ ମରିବେ ହିଁ ମରିବେ; ତେଣୁ ଯୁଦ୍ଧ କରିବା ହିଁ ତୁମ ପାଇଁ ସବୁ ଦୃଷ୍ଟିରୁ ଲାଭପ୍ରଦ । ଅତଏବ ତୁମେ କୌଣସିପ୍ରକାରେ ଯୁଦ୍ଧରୁ ନିବୃତ୍ତ ହୁଅ ନାହିଁ । ଉତ୍ସାହର ସହିତ ଠିଆ ହୋଇଯାଅ ।''

**ପ୍ରଶ୍ନ –** ଯଶ ଲାଭ କରିବାକୁ ଓ ଶତ୍ରୁମାନଙ୍କୁ ଜୟ କରି ସମୃଦ୍ଧ ରାଜ୍ୟ ଭୋଗ କରିବାକୁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ବୁଝାଇ କହୁଛନ୍ତି, ''ଏହି ଯୁଦ୍ଧରେ ତୁମର ବିଜୟ ନିଶ୍ଚିତ । ଅତଏବ ଶତ୍ରୁମାନଙ୍କୁ ଜୟ କରି ଧନଧାନ୍ୟରେ ସମ୍ପନ୍ନ ମହାନ୍ ରାଜ୍ୟ ଉପଭୋଗ କର ଓ ଦୁର୍ଲଭ ଯଶ ପ୍ରାପ୍ତ କର । ଏହି ସୁଯୋଗ ହାତରୁ ଛାଡ଼ିଦିଅ ନାହିଁ ।''

**ପ୍ରଶ୍ନ –** '**ସବ୍ୟସାଚୀ** ନାମରେ ସମ୍ବୋଧନ କରି 'ଏମାନଙ୍କୁ ମୁଁ ଆଗରୁ ମାରିସାରିଛି, ତୁମେ କେବଳ ନିମିତ୍ତମାତ୍ର ହୁଅ' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯେ ବାମ ହାତରେ ମଧ୍ୟ ବାଣ ମାରିପାରନ୍ତି ତାଙ୍କୁ **ସବ୍ୟସାଚୀ** କହନ୍ତି । ଏଠାରେ ଅର୍ଜୁନଙ୍କୁ ସବ୍ୟସାଚୀ ନାମରେ ସମ୍ବୋଧନ କରି ଓ ନିମିତ୍ତମାତ୍ର ହେବାକୁ କହି ଭଗବାନ୍ ବୁଝାଇଦେଉଛନ୍ତି, ''ତୁମେ ତ ଉଭୟ ହାତରେ ବାଣ ମାରିବାରେ ଅତ୍ୟନ୍ତ ନିପୁଣ, ତୁମପାଇଁ ଏସବୁ ଶୂରବୀରଙ୍କୁ ଜୟ କରିବା କି ବା ବଡ଼ କଥା ! ପୁଣି ଏମାନଙ୍କୁ ପ୍ରକୃତରେ ତୁମକୁ ମାରିବାକୁ ପଡ଼ିବ କଣ, ତୁମେ ତ ପ୍ରତ୍ୟକ୍ଷ ଦେଖିଲ ଯେ, ଏ ସମସ୍ତଙ୍କୁ ମୁଁ ଆଗରୁ ହିଁ ମାରିସାରିଛି । ତୁମର କେବଳ ନାମ ହିଁ ବଢ଼ିବ । ଅତଏବ ଏଥର ତୁମେ ଏମାନଙ୍କୁ ମାରିବାକୁ ତିଳେମାତ୍ର କୁଣ୍ଠାବୋଧ କର ନାହିଁ । ମୁଁ ତ ଆଗରୁ ମାରିସାରିଛି; ତୁମେ ନିମିତ୍ତମାତ୍ର ହୁଅ ।''

ନିମିତ୍ତମାତ୍ର ହେବାକୁ କହିବାର ଅନ୍ୟ ଏକ ଭାବ ହେଉଛି, ''ଏମାନଙ୍କୁ ମାରିବାରେ ତୁମର କୌଣସିପ୍ରକାର ପାପ ହେବାର ସମ୍ଭାବନା ବି ନାହିଁ; କାରଣ, ତୁମେ ତ କ୍ଷାତ୍ରଧର୍ମାନୁସାରେ କର୍ତ୍ତବ୍ୟରୂପେ ପ୍ରାପ୍ତ ଯୁଦ୍ଧରେ ଏମାନଙ୍କୁ ମାରିବାରେ ନିମିତ୍ତମାତ୍ର ହେବ । ଏଥିରେ ପାପ ହେବା କଥା ଛାଡ଼, ଓଲଟି ତୁମ ଦ୍ୱାରା କ୍ଷାତ୍ରଧର୍ମର ପାଳନ ହେବ । ଅତଏବ ତୁମେ ନିଜ ମନରେ କୌଣସିପ୍ରକାର ସଂଶୟ ନ ରଖି, ଅହଂକାର ଓ ମମତ୍ୱରୁ ରହିତ ହୋଇ ଉତ୍ସାହପୂର୍ବକ ଯୁଦ୍ଧରେ ପ୍ରବୃତ୍ତ ହେବା ଉଚିତ ।''

**ଦ୍ରୋଣଂ ଚ ଭୀଷ୍ମଂ ଚ ଜୟଦ୍ରଥଂ ଚ କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।**
**ମୟା ହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ ।। ୩୪ ।।**

**ଅନ୍ୱୟ –** ଦ୍ରୋଣମ୍ = ଦ୍ରୋଣାଚାର୍ଯ୍ୟ; ଚ = ଓ; ଭୀଷ୍ମମ୍ = ଭୀଷ୍ମପିତାମହ; ଚ = ତଥା; ଜୟଦ୍ରଥମ୍ = ଜୟଦ୍ରଥ; ଚ = ଏବଂ; କର୍ଣ୍ଣମ୍ = କର୍ଣ୍ଣ; ତଥା = ତଥା; ମୟା = ମୋ ଦ୍ୱାରା; ହତାନ୍ = ନିହତ ହୋଇଥିବା; ଅନ୍ୟାନ୍, ଅପି, ଯୋଧବୀରାନ୍ = ଅନ୍ୟାନ୍ୟ ଶୂରବୀର ଯୋଦ୍ଧାମାନଙ୍କୁ ମଧ୍ୟ; ତ୍ୱମ୍ = ତୁମେ; ଜହି = ମାର; ମା, ବ୍ୟଥିଷ୍ଠାଃ = ଭୟ କର ନାହିଁ (ନିଃସନ୍ଦେହରେ ତୁମେ); ରଣେ = ଯୁଦ୍ଧରେ; ସପତ୍ନାନ୍ = ଶତ୍ରୁମାନଙ୍କୁ; ଜେତାସି = ଜିତିବ; ଯୁଧ୍ୟସ୍ୱ = (ତେଣୁ) ଯୁଦ୍ଧ କର ।

**ଦ୍ରୋଣାଚାର୍ଯ୍ୟ ଓ ଭୀଷ୍ମପିତାମହ ତଥା ଜୟଦ୍ରଥ ଓ କର୍ଣ୍ଣ ତଥା ମୋ ଦ୍ୱାରା ନିହତ ହୋଇଥିବା ଅନ୍ୟାନ୍ୟ ଶୂରବୀର ଯୋଦ୍ଧାଙ୍କୁ ମଧ୍ୟ ତୁମେ ମାର। ଭୟ କର ନାହିଁ। ନିଃସନ୍ଦେହ ତୁମେ ଯୁଦ୍ଧରେ ଶତ୍ରୁମାନଙ୍କୁ ଜିଣିବ। ଅତଏବ ତୁମେ ଯୁଦ୍ଧ କର॥ ୩୪ ॥**

**ପ୍ରଶ୍ନ—** ଦ୍ରୋଣ, ଭୀଷ୍ମ, ଜୟଦ୍ରଥ ଓ କର୍ଣ୍ଣ— ଏହି ଚାରିଜଣଙ୍କ ନାମ ଅଲଗା ଅଲଗା କହିବାର ଅଭିପ୍ରାୟ କଣ ? ତଥା **ଅନ୍ୟାନ୍** ବିଶେଷଣ ସହିତ **ଯୋଧବୀରାନ୍** ପଦଦ୍ୱାରା କେଉଁମାନଙ୍କୁ ଲକ୍ଷ୍ୟ କରାଯାଇଛି ଏବଂ ଭଗବାନ୍ ସେ ସମସ୍ତଙ୍କୁ ନିଜେ ମାରିଥିବା କଥା କହିସାରି ପୁଣି ମାରିବାକୁ କହିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର—** ଦ୍ରୋଣାଚାର୍ଯ୍ୟ ଧନୁର୍ବେଦ ତଥା ଅନ୍ୟାନ୍ୟ ଶସ୍ତ୍ରାସ୍ତ୍ରପ୍ରୟୋଗ ବିଦ୍ୟାରେ ଅତ୍ୟନ୍ତ ପାରଙ୍ଗମ ଏବଂ ଯୁଦ୍ଧକଳାରେ ପରମ ନିପୁଣ ଥିଲେ। ସମସ୍ତେ ଜାଣିଥିଲେ ଯେ, ଯେତେବେଳଯାଏ ତାଙ୍କ ହାତରେ ଶସ୍ତ୍ର ଥିବ, ସେତେବେଳଯାଏ ତାଙ୍କୁ କେହି ବି ମାରିପାରିବେ ନାହିଁ। ତେଣୁ ଅର୍ଜୁନ ତାଙ୍କୁ ଅଜେୟ ବୋଲି ବୁଝିଥିଲେ ଏବଂ ଗୁରୁ ହୋଇଥିବାରୁ ମଧ୍ୟ ଅର୍ଜୁନ ତାଙ୍କୁ ମାରିବା ପାପ ହେବ ବୋଲି ଭାବୁଥିଲେ। ଭୀଷ୍ମପିତାମହଙ୍କର ଶୂରତା ଜଗତ୍‌ପ୍ରସିଦ୍ଧ ଥିଲା। ପରଶୁରାମଙ୍କ ପରି ଅଜେୟ ବୀରଙ୍କୁ ମଧ୍ୟ ସେ ଯୁଦ୍ଧରେ ଚକିତ କରିଦେଇଥିଲେ। ତା' ସହିତ ତାଙ୍କ ପିତା ଶାନ୍ତନୁଙ୍କର ମଧ୍ୟ ତାଙ୍କ ପ୍ରତି ବରଦାନ ଥିଲା ଯେ, ସେ ନିଜେ ମରିବାକୁ ନ ଚାହିଁଲେ, ତାଙ୍କୁ କେହି ମାରିପାରିବେ ନାହିଁ। ଏହିସବୁ କାରଣରୁ ଅର୍ଜୁନଙ୍କର ଧାରଣା ଥିଲା ଯେ, ପିତାମହ ଭୀଷ୍ମଙ୍କୁ ଜୟ କରିବା ସହଜ କାର୍ଯ୍ୟ ନୁହେଁ। ତା' ସଙ୍ଗେ ସଙ୍ଗେ ସେ ପିତାମହଙ୍କୁ ନିଜ ହାତରେ ବଧ କରିବା ପାପ ବୋଲି ବୁଝିଥିଲେ। ସେ ମଧ୍ୟ ଅନେକ ଥର କହିଥିଲେ ଯେ, ସେ ତାଙ୍କୁ ମାରିବାକୁ ଚାହାଁନ୍ତି ନାହିଁ।

ଜୟଦ୍ରଥ ★ ସ୍ୱୟଂ ବଡ଼ ବୀର ଥିଲେ ଏବଂ ଭଗବାନ୍ ଶଙ୍କରଙ୍କ ଭକ୍ତ ହୋଇଥିବାରୁ ତାଙ୍କ ଠାରୁ ଦୁର୍ଲଭ ବରଦାନ ପାଇ ଅତ୍ୟନ୍ତ ଦୁର୍ଜୟ ହୋଇଥିଲେ। ପୁଣି ଦୁର୍ଯ୍ୟୋଧନଙ୍କ ଭଉଣୀ ଦୁଃଶଳାଙ୍କ ସ୍ୱାମୀ ହୋଇଥିବାରୁ ସେ ପାଣ୍ଡବମାନଙ୍କର ଭିଣୋଇ ବି ଥିଲେ। ସ୍ୱାଭାବିକ ସୌଜନ୍ୟ ଓ ଆତ୍ମୀୟତାଯୋଗୁଁ ମଧ୍ୟ ଅର୍ଜୁନ ତାଙ୍କୁ ମାରିବାକୁ କୁଣ୍ଠାବୋଧ କରୁଥିଲେ।

କର୍ଣ୍ଣଙ୍କୁ ମଧ୍ୟ ଅର୍ଜୁନ କୌଣସିପ୍ରକାରେ ନିଜଠାରୁ ନିକୃଷ୍ଟ ବୀର ବୋଲି ଭାବୁ ନ ଥିଲେ। ସଂସାରସାରା ପ୍ରସିଦ୍ଧି ଥିଲା ଯେ, କର୍ଣ୍ଣ ହିଁ ଅର୍ଜୁନଙ୍କର ଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ। କର୍ଣ୍ଣ ନିଜେ ବଡ଼ ବୀର ଥିଲେ ଓ ପରଶୁରାମଙ୍କ ଠାରୁ ଦୁଲର୍ଭ ଶସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ। ତେଣୁ ଏହି ଚାରିଜଣଙ୍କର ନାମ ପୃଥକ୍ ପୃଥକ୍ ନେଇ ଏବଂ **ଅନ୍ୟାନ୍** ବିଶେଷଣ ସହ **ଯୋଧବୀରାନ୍** ପଦଦ୍ୱାରା ଏମାନଙ୍କ ବ୍ୟତୀତ ଭଗଦତ୍ତ, ଭୂରିଶ୍ରବା ଓ ଶଲ୍ୟ ପ୍ରଭୃତି ଯେଉଁସବୁ ଯୋଦ୍ଧାଙ୍କୁ ଅର୍ଜୁନ ବିଶିଷ୍ଟ ବୀର ବୋଲି ମନେ କରୁଥିଲେ ଏବଂ ଯାହାଙ୍କ ଉପରେ ବିଜୟ ପ୍ରାପ୍ତ କରିବା ସହଜ ବୋଧ କରୁ ନ ଥିଲେ, ସେହି ସମସ୍ତଙ୍କୁ ଲକ୍ଷ୍ୟ କରି ଭଗବାନ୍ ସେମାନଙ୍କୁ ନିଜେ ମାରିସାରିଥିବା

---

★ ଜୟଦ୍ରଥ ଥିଲେ ସିନ୍ଧୁଦେଶର ରାଜା ବୃଦ୍ଧକ୍ଷତ୍ରଙ୍କର ପୁତ୍ର। ସେ ଧୃତରାଷ୍ଟ୍ରଙ୍କର ଏକମାତ୍ର କନ୍ୟା ଦୁଃଶଳାଙ୍କୁ ବିବାହ କରିଥିଲେ। ପାଣ୍ଡବମାନଙ୍କ ବନବାସକାଳରେ ଥରେ ସେମାନେ କୁଟୀରରେ ନ ଥିବାବେଳେ ଜୟଦ୍ରଥ ଦ୍ରୌପଦୀଙ୍କୁ ହରଣ କରି ନେଇଗଲେ; ମାତ୍ର କୁଟୀରକୁ ଫେରୁ ଫେରୁ ଏହା ଜାଣିପାରି ପାଣ୍ଡବମାନେ ଦ୍ରୌପଦୀଙ୍କୁ ଉଦ୍ଧାର କଲେ ଏବଂ ଜୟଦ୍ରଥଙ୍କୁ ଗୋଡ଼ାଇ ଗୋଡ଼ାଇ ଧରିଆଣିଥିଲେ। ଯୁଧିଷ୍ଠିରଙ୍କ ଅନୁରୋଧକ୍ରମେ ତାଙ୍କୁ ନ ମାରି ଦଣ୍ଡ ଦେଇ ଛାଡ଼ିଦେଇଥିଲେ। ତା'ପରେ କୁରୁକ୍ଷେତ୍ରରେ ଯୁଦ୍ଧ ଚାଲିଥିବାବେଳେ ଅର୍ଜୁନ ସେପଟେ ସଂଶପ୍ତକମାନଙ୍କ ସହିତ ଯୁଦ୍ଧରତ ଥିବାବେଳେ, ଅଭିମନ୍ୟୁ ଏପଟେ ଚକ୍ରବ୍ୟୂହଭିତରେ ପଶିଗଲେ ଏବଂ ଜୟଦ୍ରଥ ଚକ୍ରବ୍ୟୂହଦ୍ୱାରରେ ରହି ଶିବଙ୍କ ବରବଳରେ ଯୁଧିଷ୍ଠିର, ଭୀମ, ନକୁଳ ଓ ସହଦେବ— ଏ ଚାରିଜଣଙ୍କୁ ଅଭିମନ୍ୟୁଙ୍କ ସହାୟତାପାଇଁ ବ୍ୟୂହଭିତରେ ପଶିବାକୁ ଦେଇ ନ ଥିଲେ। ତା'ଫଳରେ ସପ୍ତରଥୀ ମିଶି ଅଭିମନ୍ୟୁଙ୍କୁ ନିହତ କରିଥିଲେ। ଏକଥା ଶୁଣିଦେବା କ୍ଷଣି ଅର୍ଜୁନ ପ୍ରତିଜ୍ଞା କଲେ ଯେ, ପରଦିନ ସୂର୍ଯ୍ୟାସ୍ତପୂର୍ବରୁ ସେ ଯଦି ଜୟଦ୍ରଥଙ୍କୁ ମାରି ନ ପାରିବେ, ତେବେ ନିଜେ ଅଗ୍ନିରେ ପଶି ପ୍ରାଣ ତ୍ୟାଗ କରିବେ। କୌରବପକ୍ଷୀୟମାନେ ଜୟଦ୍ରଥଙ୍କୁ ବଞ୍ଚାଇବାପାଇଁ ବହୁ ଚେଷ୍ଟା କଲେ, କିନ୍ତୁ ଭଗବାନ୍ କୃଷ୍ଣଙ୍କ ପ୍ରଭାବରୁ ସେମାନଙ୍କର ସବୁ ଚେଷ୍ଟା ବ୍ୟର୍ଥ ହେଲା ଓ ସୂର୍ଯ୍ୟାସ୍ତପୂର୍ବରୁ ହିଁ ଅର୍ଜୁନ ଜୟଦ୍ରଥଙ୍କ ଶିରଚ୍ଛେଦନ କରିଦେଲେ। ଜୟଦ୍ରଥ ଗୋଟିଏ ବର ପାଇଥିଲେ ଯେ, ଯେ ତାଙ୍କ ଛେଦିତ ଶିର ତଳେ ପକାଇଦେବ, ତା'ର ଶିର ସେହିକ୍ଷଣି ଶତଖଣ୍ଡ ହୋଇ ଫାଟିଯିବ। ତେଣୁ ଭକ୍ତବତ୍ସଳ ଭଗବାନଙ୍କ ନିର୍ଦ୍ଦେଶକ୍ରମେ ଅର୍ଜୁନ ଏପରି ଏକ ବାଣ ମାରିଥିଲେ ଯେ, ଜୟଦ୍ରଥଙ୍କ ଛିନ୍ନଶିର ତଳେ ନ ପଡ଼ି ଆକାଶମାର୍ଗରେ ଉଡ଼ି ଉଡ଼ି ଯାଇ ସମନ୍ତପଞ୍ଚକ ତୀର୍ଥରେ ବସିଥିବା ଜୟଦ୍ରଥଙ୍କ ବାପା ବୃଦ୍ଧକ୍ଷତ୍ରଙ୍କ କୋଳରେ ପଡ଼ିଗଲା ଏବଂ ବୃଦ୍ଧକ୍ଷତ୍ରଙ୍କ କୋଳରୁ ତାହା ତଳେ ପଡ଼ିଯିବା କ୍ଷଣି ତାଙ୍କ ମୁଣ୍ଡ ଶତଖଣ୍ଡ ହୋଇ ଫାଟିଗଲା।

କଥା କହିଲେ ଏବଂ ସେମାନଙ୍କୁ ମାରିବାପାଇଁ ଆଜ୍ଞା ଦେଇ ଭଗବାନ୍ ବୁଝାଇଦେଲେ, ''ତୁମେ କାହାକୁ ଜୟ କରିବାରେ କୌଣସିପ୍ରକାର ସନ୍ଦେହ କରିବା ଉଚିତ ନୁହେଁ। ସେମାନେ ସମସ୍ତେ ମୋ ଦ୍ୱାରା ମରା ହୋଇସାରିଛନ୍ତି।'' ତା' ସହିତ ସୂଚାଇଦେଲେ, ''ତୁମେ ଏହି ଗୁରୁଜନମାନଙ୍କୁ ମାରିଦେଲେ ପାପ ହେବ ବୋଲି ଯେଉଁ ଆଶଙ୍କା କରୁଛ, ତାହା ବି ଠିକ୍ ନୁହେଁ। କାରଣ କ୍ଷତ୍ରିୟଧର୍ମ ଅନୁସାରେ ସେମାନଙ୍କୁ ମାରିବାପାଇଁ ତୁମେ ନିମିତ୍ତ ହେଲେ, ତୁମର କୌଣସି ପାପ ହେବ ନାହିଁ; ବରଂ ଧର୍ମପାଳନ ହିଁ ହେବ। ଅତଏବ ଉଠ ଓ ସେମାନଙ୍କ ଉପରେ ବିଜୟ ଲାଭ କର।''

**ପ୍ରଶ୍ନ – ମା ବ୍ୟଥିଷ୍ଠାଃର** ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ଆଶ୍ୱାସନା ଦେଉଛନ୍ତି, ''ମୋର ଉଗ୍ରରୂପ ଦେଖି ତୁମେ ଯେପରି ଭୟଭୀତ ଓ ବ୍ୟଥିତ ହେଉଛ, ତାହା ଠିକ୍ ନୁହେଁ। ମୁଁ ହେଉଛି ତୁମର ପ୍ରିୟ ସଖା ସେହି କୃଷ୍ଣ। ଅତଏବ ତୁମେ ତିଳେମାତ୍ର ଭୟ କର ନାହିଁ କିମ୍ବା ସନ୍ତପ୍ତ ହୁଅ ନାହିଁ।''

**ପ୍ରଶ୍ନ –** 'ଯୁଦ୍ଧରେ ଶତ୍ରୁମାନଙ୍କୁ ତୁମେ ନିଃସନ୍ଦେହ ଜିଣିବ; ଏଣୁ ଯୁଦ୍ଧ କର' – ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** 'ଯୁଦ୍ଧରେ ଆମେ ଜିଣିବୁ, କି ଆମର ଏହି ଶତ୍ରୁମାନେ ଆମକୁ ଜିଣିବେ' (୨/୬) ବୋଲି ଅର୍ଜୁନଙ୍କ ମନରେ ଯେଉଁ ଶଙ୍କା ଥିଲା, ସେହି ଶଙ୍କା ଦୂର କରିବାକୁ ଭଗବାନ୍ ଏପରି କହିଛନ୍ତି। ଭଗବାନଙ୍କ କଥାର ଅଭିପ୍ରାୟ ହେଲା, ''ଯୁଦ୍ଧରେ ତୁମର ନିଶ୍ଚୟ ବିଜୟ ହେବ, ତେଣୁ ତୁମେ ଉତ୍ସାହପୂର୍ବକ ଯୁଦ୍ଧ କରିବା ଉଚିତ।''

***ସମ୍ବନ୍ଧ –*** *ଏପରିଭାବରେ ଭଗବାନଙ୍କ ମୁଖରୁ ସବୁ କଥା ଶୁଣିବା ପରେ ଅର୍ଜୁନଙ୍କର କି ପରିସ୍ଥିତି ହେଲା ଓ ସେ କଣ କଲେ, ଏହି ଜିଜ୍ଞାସା ଉପରେ ସଞ୍ଜୟ କହୁଛନ୍ତି –*

ସଞ୍ଜୟ ଉବାଚ

## ଏତଦ୍ ଶ୍ରୁତ୍ୱା ବଚନଂ କେଶବସ୍ୟ କୃତାଞ୍ଜଲିର୍ବେପମାନଃ କିରୀଟୀ।
## ନମସ୍କୃତ୍ୱା ଭୂୟ ଏବାହ କୃଷ୍ଣଂ ସଗଦ୍‌ଗଦଂ ଭୀତଭୀତଃ ପ୍ରଣମ୍ୟ ॥ ୩୫ ॥

ଅନ୍ୱୟ – **କେଶବସ୍ୟ** = ଭଗବାନ୍ କେଶବଙ୍କର; **ଏତଦ୍** = ଏହି; **ବଚନମ୍** = କଥାକୁ; **ଶ୍ରୁତ୍ୱା** = ଶୁଣି; **କିରୀଟୀ** = ଅର୍ଜୁନ; **କୃତାଞ୍ଜଲିଃ** = ଯୋଡ଼ହସ୍ତ ହୋଇ; **ବେପମାନଃ** = ଥରି ଥରି; **ନମସ୍କୃତ୍ୱା** = ନମସ୍କାର କରି; **ଭୀତଭୀତଃ** = ଅତ୍ୟନ୍ତ ଭୟଭୀତ ହୋଇ; **ପ୍ରଣମ୍ୟ** = ପ୍ରଣାମ କରି; **କୃଷ୍ଣମ୍** = ଭଗବାନ ଶ୍ରୀକୃଷ୍ଣଙ୍କୁ; **ସଗଦ୍‌ଗଦମ୍** = ଗଦ୍‌ଗଦ କଣ୍ଠରେ; **ଭୂୟଃ, ଏବ** = ପୁଣି ଥରେ; **ଆହ** = କହିଲେ।

**ସଞ୍ଜୟ କହିଲେ — ଭଗବାନ୍ କେଶବଙ୍କର ଏ କଥା ଶୁଣି ଅର୍ଜୁନ ଯୋଡ଼ହସ୍ତ ହୋଇ ଥରି ଥରି, ନମସ୍କାର କରି, ଅତ୍ୟନ୍ତ ଭୟଭୀତ ହୋଇ, ପ୍ରଣାମ କରି ଗଦ୍‌ଗଦ କଣ୍ଠରେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପୁଣି ଥରେ କହିଲେ ଅର୍ଥାତ୍ ସ୍ତୁତି କରିବାକୁ ଲାଗିଲେ -- ॥ ୩୫ ॥**

**ପ୍ରଶ୍ନ –** ଭଗବାନଙ୍କ କଥା ଶୁଣି ଅର୍ଜୁନ ଭୟଭୀତ ଓ ଥରହର ହେବା ବର୍ଣ୍ଣନାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ସଞ୍ଜୟ ପ୍ରକାଶ କଲେ, ''ଶ୍ରୀକୃଷ୍ଣଙ୍କର ସେହି ଘୋର ଉଗ୍ରରୂପ ଦେଖି ଅର୍ଜୁନ ଏତେ ବ୍ୟାକୁଳ ହୋଇଯାଇଥିଲେ ଯେ, ଭଗବାନଙ୍କ ଆଶ୍ୱାସନାସତ୍ତ୍ୱେ ତାଙ୍କ ଭୟ ଦୂର ହୋଇ ନ ଥିଲା; ତେଣୁ ସେ ଭୟରେ କମ୍ପିତ ହୋଇ ସେହି ରୂପକୁ ସଂବରଣ କରିବାପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ।''

**ପ୍ରଶ୍ନ –** ଅର୍ଜୁନଙ୍କର ନାମ **କିରୀଟୀ** କାହିଁକି ହୋଇଥିଲା ?

**ଉତ୍ତର –** ଅର୍ଜୁନଙ୍କ ମସ୍ତକରେ ଦେବରାଜ ଇନ୍ଦ୍ର

ଦେଉଥିବା ସୂର୍ଯ୍ୟସମାନ ପ୍ରକାଶମୟ ଦିବ୍ୟ ମୁକୁଟଟି ସଦା ରହୁଥିଲା; ତେଣୁ ତାଙ୍କର ଗୋଟିଏ ନାମ 'କିରୀଟୀ'★ ହୋଇଥିଲା ।

**ପ୍ରଶ୍ନ —** **କୃତାଞ୍ଜଳିଃ** ବିଶେଷଣ ଦେଇ ପୁନଃ ସେହି ଅର୍ଥବାଚକ **ନମସ୍କୃତ୍ୱା** ଓ **ପ୍ରଣମ୍ୟ** ଏହି ଦୁଇପଦପ୍ରୟୋଗର ଭାବ କଣ ?

**ଉତ୍ତର —** **କୃତାଞ୍ଜଳିଃ** ବିଶେଷଣ ଦେଇ ଏବଂ ଉକ୍ତ ଦୁଇ ପଦ ପ୍ରୟୋଗ କରି ସଞ୍ଜୟ ଦେଖାଉଛନ୍ତି ଯେ, ଭଗବାନଙ୍କ ଅନନ୍ତ ଐଶ୍ୱର୍ଯ୍ୟମୟ ସ୍ୱରୂପ ଦେଖି ସେହି ସ୍ୱରୂପ ପ୍ରତି ଅର୍ଜୁନଙ୍କ ଭିତରେ ଅତ୍ୟନ୍ତ ସମ୍ମାନନୀୟ ଦୃଷ୍ଟି ଜାତ ହୋଇଥିଲା ଏବଂ ସେ ଭୀତ ହୋଇଥିଲେ । ତେଣୁ ସେ ଯୋଡ଼ହସ୍ତ ହୋଇ ବାରମ୍ବାର ଭଗବାନଙ୍କୁ ନମସ୍କାର ଓ ପ୍ରଣାମ କରି କରି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।

**ପ୍ରଶ୍ନ —** **ଭୂୟଃ** ପଦର ଅଭିପ୍ରାୟ କଣ ?

**ଉତ୍ତର —** **ଭୂୟଃ**ଦ୍ୱାରା ଦେଖାଉଛନ୍ତି ଯେ, ଅର୍ଜୁନ ପ୍ରଥମେ ଯେପରି ଭଗବାନଙ୍କର ସ୍ତୁତି କରିଥିଲେ, ଭଗବାନଙ୍କର କଥା ଶୁଣିବା ପରେ ମଧ୍ୟ ପୁଣି ସେହିପରି ସ୍ତୁତି କରିବାକୁ ଲାଗିଲେ ।

**ପ୍ରଶ୍ନ —** **ସଗଦ୍‌ଗଦମ୍** ପଦର ଅର୍ଥ କଣ ଓ ଏହା କାହାର ବିଶେଷଣ ତଥା ଏଠାରେ କି ଅଭିପ୍ରାୟରେ ଏହା ପ୍ରୟୋଗ କରାଯାଇଛି ?

**ଉତ୍ତର —** **ସଗଦ୍‌ଗଦମ୍** ପଦଟି କ୍ରିୟାବିଶେଷଣ ଏବଂ ଅର୍ଜୁନଙ୍କ କହିବାର ଢଙ୍ଗ ବୁଝାଇବାକୁ ହିଁ ଏହା ପ୍ରୟୋଗ କରାଯାଇଛି । ଅଭିପ୍ରାୟ ଏହି ଯେ, ଅର୍ଜୁନ ଯେତେବେଳେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ, ସେତେବେଳେ ଆଶ୍ଚର୍ଯ୍ୟ ଓ ଭୟଯୋଗୁଁ ତାଙ୍କର ହୃଦୟ ବିଗଳିତ ହୋଇଗଲା; ନେତ୍ରରେ ଅଶ୍ରୁ ଭରିଗଲା; କଣ୍ଠ ରୁଦ୍ଧ ହୋଇଗଲା ଏବଂ ତେଣୁ ତାଙ୍କର ବାଣୀ ଗଦ୍‌ଗଦ ହୋଇଗଲା । ତା'ଫଳରେ ତାଙ୍କର ଉଚ୍ଚାରଣ ଅସ୍ପଷ୍ଟ ଓ କରୁଣାପୂର୍ଣ୍ଣ ହୋଇଗଲା ।

***ସମ୍ବନ୍ଧ —*** *ବର୍ତ୍ତମାନ ଛତିଶଠାରୁ ଛୟାଳିଶ ଶ୍ଳୋକଯାଏ ଅର୍ଜୁନଙ୍କ ଦ୍ୱାରା କୃତ ଭଗବାନଙ୍କ ସ୍ତବନ, ନମସ୍କାର ଓ କ୍ଷମାଭିକ୍ଷା ସହିତ ପ୍ରାର୍ଥନା ବର୍ଣ୍ଣିତ ହୋଇଛି । ସେଥିରେ ସର୍ବପ୍ରଥମେ 'ସ୍ଥାନେ' ପଦ ପ୍ରୟୋଗ କରି ଜଗତ ଆନନ୍ଦିତ ହେବା ଆଦିର ଔଚିତ୍ୟ କହୁଛନ୍ତି —*

ଅର୍ଜୁନ ଉବାଚ

**ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।**
**ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି ସର୍ବେ ନମସ୍ୟନ୍ତି ଚ ସିଦ୍ଧସଂଘାଃ ॥ ୩୬ ॥**

**ଅନ୍ୱୟ —** **ହୃଷୀକେଶ** = ହେ ଅନ୍ତର୍ଯାମୀ; **ସ୍ଥାନେ** = ଏହା ଉଚିତ ଯେ; **ତବ** = ଆପଣଙ୍କର; **ପ୍ରକୀର୍ତ୍ତ୍ୟା** = ନାମ-ଗୁଣ ଓ ପ୍ରଭାବ କୀର୍ତ୍ତନଦ୍ୱାରା; **ଜଗତ୍** = ଜଗତ; **ପ୍ରହୃଷ୍ୟତି** = ଅତ୍ୟନ୍ତ ଆନନ୍ଦିତ ହେଉଛି (ତଥା); **ଚ** = ଓ; **ଅନୁରଜ୍ୟତେ** = ଆପଣଙ୍କ ପ୍ରତି ଅନୁରକ୍ତ ହେଉଛି; **ଭୀତାନି** = ଭୟଭୀତ; **ରକ୍ଷାଂସି** = ରାକ୍ଷସମାନେ; **ଦିଶଃ** = ବିଭିନ୍ନ ଦିଗକୁ; **ଦ୍ରବନ୍ତି** = ଧାଇଁ ପଳାଉଛନ୍ତି; **ଚ** = ଓ; **ସର୍ବେ** = ସମସ୍ତ; **ସିଦ୍ଧସଂଘାଃ** = ସିଦ୍ଧମାନଙ୍କ ସମୁଦାୟ; **ନମସ୍ୟନ୍ତି** = ନମସ୍କାର କରୁଛନ୍ତି ।

**ଅର୍ଜୁନ କହିଲେ — ହେ ଅନ୍ତର୍ଯାମୀ ! ଏହା ଉଚିତ ଯେ, ଆପଣଙ୍କ ନାମ, ଗୁଣ ଓ ପ୍ରଭାବ କୀର୍ତ୍ତନଦ୍ୱାରା ଜଗତ ଅତ୍ୟନ୍ତ ଆନନ୍ଦିତ ହେଉଛି ଏବଂ ଆପଣଙ୍କ ପ୍ରତି ଅନୁରକ୍ତ ମଧ୍ୟ ହେଉଛି ତଥା ଭୟଭୀତ ରାକ୍ଷସମାନେ ବିଭିନ୍ନ ଦିଗକୁ ଧାଇଁ ପଳାଇଯାଉଛନ୍ତି ଏବଂ ସମସ୍ତ ସିଦ୍ଧସମୁଦାୟ ନମସ୍କାର କରୁଛନ୍ତି ।। ୩୬ ।।**

---

★ ପୁରା ଶକ୍ରେଣ ମେ ଦତ୍ତଂ ଯୁଧ୍ୟତୋ ଦାନବର୍ଷଭୈଃ । କିରୀଟଂ ମୂର୍ଧ୍ନି ସୂର୍ଯ୍ୟାଭଂ ତେନାହୁର୍ମାଂ କିରୀଟିନମ୍ ॥ (ମହା.ବିରାଟ ୪୪/୧୭)

ବିରାଟପୁତ୍ର ଉତ୍ତରକୁମାରଙ୍କୁ ଅର୍ଜୁନ କହିଛନ୍ତି, ''ପୂର୍ବକାଳରେ ମୁଁ ଯେତେବେଳେ ବଡ଼ ବଡ଼ ବୀର ଦାନବମାନଙ୍କ ସହ ଯୁଦ୍ଧ କରିଥିଲି, ସେତେବେଳେ ଇନ୍ଦ୍ର ପ୍ରସନ୍ନ ହୋଇ ସୂର୍ଯ୍ୟସମାନ ପ୍ରକାଶଯୁକ୍ତ କିରୀଟ ମୋ ମସ୍ତକରେ ପିନ୍ଧାଇଦେଇଥିଲେ । ତେଣୁ ଲୋକମାନେ ମୋତେ 'କିରୀଟୀ' କହନ୍ତି ।''

**ପ୍ରଶ୍ନ –** **ସ୍ଥାନେ** ପଦର ଅଭିପ୍ରାୟ କଣ ?

**ଉତ୍ତର –** **ସ୍ଥାନେ** ଅବ୍ୟୟ ଏଠାରେ 'ଔଚିତ୍ୟ' ଅର୍ଥରେ ପ୍ରଯୁକ୍ତ ହୋଇଛି। ଅଭିପ୍ରାୟ ହେଉଛି, ''ଆପଣଙ୍କ କୀର୍ତ୍ତନ ଆଦି କରି ଜଗତ ଯେଉଁ ହର୍ଷିତ ହେଉଛି, ପ୍ରେମ କରୁଛି ଏବଂ ତତ୍ ସଙ୍ଗେ ସଙ୍ଗେ ରାକ୍ଷସଗଣ ଆପଣଙ୍କ ଅଦ୍ଭୁତ ରୂପ ଓ ପ୍ରଭାବ ଦେଖି ଭୟହେତୁ ଇତସ୍ତତଃ ପଳାଇଯାଉଛନ୍ତି ଏବଂ ସମସ୍ତ ସିଦ୍ଧଗଣ ଆପଣଙ୍କୁ ଯେଉଁ ବାରମ୍ବାର ନମସ୍କାର କରୁଛନ୍ତି, ଏସବୁ ଏପରି ହେବା ହିଁ ଉଚିତ; କାରଣ ଆପଣ ହେଉଛନ୍ତି ସାକ୍ଷାତ୍ ପରମେଶ୍ୱର।''

**ପ୍ରଶ୍ନ –** ଏଠାରେ **ପ୍ରକୀର୍ତ୍ତ୍ୟା** ପଦର ଅର୍ଥ କଣ ତଥା 'ତା'ଦ୍ୱାରା ଜଗତ ହର୍ଷିତ ହେଉଛି ଓ ଅନୁରାଗ କରୁଛି।' – ଏ କଥନର ଅଭିପ୍ରାୟ କଣ ?

**ଉତ୍ତର –** **କୀର୍ତ୍ତି** ଶବ୍ଦ ଏଠାରେ କୀର୍ତ୍ତନବାଚକ। ତା' ସହିତ **ପ୍ର** ଉପସର୍ଗ ପ୍ରୟୋଗ କରି ଉଚ୍ଚସ୍ୱରରେ କୀର୍ତ୍ତନ କରିବାର ଭାବ ପ୍ରକାଶ କରାଯାଇଛି। ଅଭିପ୍ରାୟ ହେଉଛି, 'ଆପଣଙ୍କ ନାମ, ରୂପ, ଗୁଣ, ପ୍ରଭାବ ଓ ମାହାତ୍ମ୍ୟକୁ ଉଚ୍ଚସ୍ୱରରେ କୀର୍ତ୍ତନ କରି ଏହି ଚରାଚର ସମସ୍ତ ଜଗତ ଅତ୍ୟନ୍ତ ପ୍ରସନ୍ନ ହେଉଛି ଏବଂ ସକଳ ପ୍ରାଣୀ ପ୍ରେମରେ ବିହ୍ୱଳ ହେଉଛନ୍ତି।'

**ପ୍ରଶ୍ନ –** କେବଳ ଅର୍ଜୁନ ହିଁ ଭଗବାନଙ୍କର ବିରାଟ ରୂପ ଦେଖୁଥିଲେ, ନା ସାରା ଜଗତ ? ଯଦି ସାରା ଜଗତ ଦେଖୁ ନ ଥିଲା, ତେବେ ସମସ୍ତେ ହର୍ଷିତ ହେବା, ଅନୁରାଗ କରିବା, ରାକ୍ଷସମାନେ ପଳାୟନ କରିବା ଏବଂ ସିଦ୍ଧମାନେ ନମସ୍କାର କରିବା କଥା ଅର୍ଜୁନ କିପରି କହିଲେ ?

**ଉତ୍ତର –** ଭଗବାନଙ୍କ ଦ୍ୱାରା ପ୍ରଦତ୍ତ ଦିବ୍ୟ ଦୃଷ୍ଟିହେତୁ କେବଳ ଅର୍ଜୁନ ହିଁ ତାଙ୍କୁ ଦେଖୁଥିଲେ; ସାରା ଜଗତ ନୁହେଁ। ଜଗତ ହର୍ଷିତ ଓ ଅନୁରକ୍ତ ହେବା, ରାକ୍ଷସମାନେ ଡରି ପଳାଇଯିବା ଓ ସିଦ୍ଧମାନେ ନମସ୍କାର କରିବା – ଏସବୁ ସେହି ବିରାଟରୂପର ହିଁ ଅଙ୍ଗ। ଅଭିପ୍ରାୟ ଏହି ଯେ, ଏହି ବର୍ଣ୍ଣନା ଅର୍ଜୁନ ଦେଖୁଥିବା ବିରାଟରୂପର ହିଁ ଅଟେ; ଏହା ବାହାର ଜଗତର ବର୍ଣ୍ଣନା ନୁହେଁ। ତାଙ୍କୁ ଭଗବାନଙ୍କର ଯେଉଁ ବିରାଟରୂପ ଦେଖାଯାଉଥିଲା, ତା'ରି ମଧ୍ୟରେ ଏସବୁ ଦୃଶ୍ୟ ଦେଖାଯାଉଥିଲା। ତେଣୁ ଅର୍ଜୁନ ଏପରି କହିଛନ୍ତି।

***ସମ୍ବନ୍ଧ –*** *ପୂର୍ବଶ୍ଳୋକରେ ଯେଉଁ 'ସ୍ଥାନେ' ପଦ ପ୍ରୟୋଗ କରି ସିଦ୍ଧସମୁଦାୟଙ୍କ ନମସ୍କାର ଆଦି କରିବା ଉଚିତ ହୋଇଛି ବୋଲି କୁହାଯାଇଥିଲା, ବର୍ତ୍ତମାନ ଆଗ ଚାରି ଶ୍ଳୋକରେ ଭଗବାନଙ୍କ ପ୍ରଭାବ ବର୍ଣ୍ଣନା କରି ତାହା ସିଦ୍ଧ କରିବା ସହିତ ଅର୍ଜୁନ ବାରମ୍ବାର ପ୍ରଣତ ହେବା ଭାବ ଦେଖାଉଛନ୍ତି–*

**କସ୍ମାଚ୍ଚ ତେ ନ ନମେରନ୍ ମହାତ୍ମନ୍ ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ।**
**ଅନନ୍ତ ଦେବେଶ ଜଗନ୍ନିବାସ ତ୍ୱମକ୍ଷରଂ ସଦସତ୍ତତ୍ ପରଂ ଯତ୍॥ ୩୭॥**

**ଅନ୍ୱୟ –** **ମହାତ୍ମନ୍** = ହେ ମହାତ୍ମନ୍ !; **ବ୍ରହ୍ମଣଃ** = ବ୍ରହ୍ମାଙ୍କର; **ଅପି** = ମଧ୍ୟ; **ଆଦିକର୍ତ୍ରେ** = ଆଦିକର୍ତ୍ତା; **ଚ** = ଓ; **ଗରୀୟସେ** = ସମସ୍ତଙ୍କ ଠାରୁ ଶ୍ରେଷ୍ଠ; **ତେ** = ଆପଣଙ୍କୁ; **କସ୍ମାତ୍** = କାହିଁକି; **ନ, ନମେରନ୍** = ନମସ୍କାର ନ କରିବେ (କାରଣ); **ଅନନ୍ତ** = ହେ ଅନନ୍ତ !; **ଦେବେଶ** = ହେ ଦେବେଶ !; **ଜଗନ୍ନିବାସ** = ହେ ଜଗନ୍ନିବାସ !; **ଯତ୍** = ଯେଉଁ; **ସତ୍** = ସତ୍; **ଅସତ୍** = ଅସତ୍ (ଓ); **ତତ୍ପରମ୍** = ତା'ଠାରୁ ଊର୍ଦ୍ଧ୍ୱରେ ସ୍ଥିତ; **ଅକ୍ଷରମ୍** = ଅକ୍ଷର ଅର୍ଥାତ୍ ସଚ୍ଚିଦାନନ୍ଦଘନ ବ୍ରହ୍ମ; (**ତତ୍**) **ତ୍ୱମ୍** = ସେ ମଧ୍ୟ ଆପଣ ହିଁ ଅଟନ୍ତି।

**ହେ ମହାତ୍ମନ୍ ! ଆପଣ ବ୍ରହ୍ମାଙ୍କର ମଧ୍ୟ ଆଦିକର୍ତ୍ତା ଓ ସମସ୍ତଙ୍କ ଠାରୁ ଶ୍ରେଷ୍ଠ; ଆପଣଙ୍କୁ ଏମାନେ ନମସ୍କାର ନ କରିବେ କାହିଁକି ? କାରଣ, ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! ସତ୍, ଅସତ୍ ଓ ତା'ଠାରୁ ବି ଊର୍ଦ୍ଧ୍ୱସ୍ଥିତ ଯେଉଁ ଅକ୍ଷର ଅର୍ଥାତ୍ ସଚ୍ଚିଦାନନ୍ଦଘନ ବ୍ରହ୍ମ ଅଛନ୍ତି, ସେ ମଧ୍ୟ ଆପଣ ହିଁ ଅଟନ୍ତି॥ ୩୭ ॥**

**ପ୍ରଶ୍ନ –** **ମହାତ୍ମନ୍, ଅନନ୍ତ, ଦେବେଶ** ଓ **ଜଗନ୍ନିବାସ** ଏହି ଚାରିଗୋଟି ସମ୍ବୋଧନ ପ୍ରୟୋଗ କରି ଅର୍ଜୁନ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଏଗୁଡ଼ିକ ପ୍ରୟୋଗ କରି ଅର୍ଜୁନ ନମସ୍କାର ଆଦି କ୍ରିୟାମାନଙ୍କର ଔଚିତ୍ୟ ସିଦ୍ଧ କରୁଛନ୍ତି। ଅଭିପ୍ରାୟ ହେଉଛି, ''ଆପଣ ସମସ୍ତ ଚରାଚର

ପ୍ରାଣୀମାନଙ୍କର ମହାନ୍ ଆତ୍ମା ଓ ଅନନ୍ତ ଅଟନ୍ତି, ଆପଣଙ୍କ ରୂପ, ଗୁଣ ଓ ପ୍ରଭାବ ଆଦିର ସୀମା ନାହିଁ; ଆପଣ ଦେବତାମାନଙ୍କର ମଧ୍ୟ ସ୍ୱାମୀ ଓ ସମଗ୍ର ଜଗତର ଏକମାତ୍ର ପରମାଧାର। ଏହି ସମଗ୍ର ଜଗତ ଆପଣଙ୍କ ମଧ୍ୟରେ ହିଁ ରହିଛି ତଥା ଆପଣ ଏଥିରେ ବ୍ୟାପ୍ତ ହୋଇ ରହିଛନ୍ତି। ଅତଏବ ଏମାନେ ସମସ୍ତେ ଆପଣଙ୍କୁ ନମସ୍କାର ଆଦି କରିବା ସବୁପ୍ରକାରେ ଉଚିତ ହିଁ ଅଟେ।''

**ପ୍ରଶ୍ନ –** ଏଠାରେ **ଗରୀୟସେ** ଓ **ବ୍ରହ୍ମଣୋଽପ୍ୟାଦିକର୍ତ୍ରେ**ର ଭାବ କଣ ?

**ଉତ୍ତର –** ଏହି ଦୁଇ ପଦ ମଧ୍ୟ ନମସ୍କାର ଆଦିର ଔଚିତ୍ୟ ସିଦ୍ଧ କରିବା ଉଦ୍ଦେଶ୍ୟରେ ହିଁ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ହେଉଛି, ''ଆପଣ ସମସ୍ତଙ୍କ ଠାରୁ ବଡ଼ ଓ ଶ୍ରେଷ୍ଠତମ ଅଟନ୍ତି। ଜଗତର କଥା କଣ କହିବା, ସମସ୍ତ ଜଗତର ରଚନାକାରୀ ବ୍ରହ୍ମାଙ୍କର ମଧ୍ୟ ଆଦିରଚୟିତା ଆପଣ ହିଁ ଅଟନ୍ତି। ଅତଏବ ସମସ୍ତଙ୍କର ପରମପୂଜ୍ୟ ଓ ପରମ ଶ୍ରେଷ୍ଠ ହୋଇଥିବାରୁ ଏ ସମସ୍ତେ ଆପଣଙ୍କୁ ନମସ୍କାରାଦି କରିବା ଉଚିତ ହିଁ ଅଟେ।'

**ପ୍ରଶ୍ନ –** ଯେ **ସତ୍, ଅସତ୍** ଓ ତା'ଠାରୁ ପର **ଅକ୍ଷର** ଅଟନ୍ତି, ସେ ଆପଣ ହିଁ ଅଟନ୍ତି'– ଏହି କଥାର ଭାବ କଣ ?

**ଉତ୍ତର –** ଯାହାର କେବେ ଅଭାବ ହୁଏ ନାହିଁ ସେହି ଅବିନାଶୀ ଆତ୍ମାକୁ **ସତ୍** ଏବଂ ନାଶବାନ୍ ଅନିତ୍ୟ ବସ୍ତୁମାତ୍ରକୁ **ଅସତ୍** କହନ୍ତି। ଏଇ ଦୁହିଁଙ୍କୁ ସପ୍ତମ ଅଧ୍ୟାୟରେ ପରା ଓ ଅପରା ପ୍ରକୃତି ତଥା ପଞ୍ଚଦଶ ଅଧ୍ୟାୟରେ ଅକ୍ଷର ଓ କ୍ଷର ପୁରୁଷ ବୋଲି କୁହାଯାଇଛି। ପରମ ଅକ୍ଷର ସଚ୍ଚିଦାନନ୍ଦଘନ ପରମାତ୍ମତତ୍ତ୍ୱ ଏଦୁହିଁଙ୍କ ଠାରୁ ପର ଅର୍ଥାତ୍ ଶ୍ରେଷ୍ଠ ଅଟେ। ଅର୍ଜୁନ ନିଜର ନମସ୍କାରାଦିର ଔଚିତ୍ୟ ସିଦ୍ଧ କରିବାକୁ ଯାଇ କହୁଛନ୍ତି, ''ଏସବୁ ଆପଣଙ୍କର ହିଁ ସ୍ୱରୂପ। ଅତଏବ ଆପଣଙ୍କୁ ନମସ୍କାର ଆଦି କରିବା ସବୁପ୍ରକାରେ ଉଚିତ।''

## ତ୍ୱମାଦିଦେବଃ ପୁରୁଷଃ ପୁରାଣସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍। ବେତ୍ତାସି ବେଦ୍ୟଂ ଚ ପରଂ ଚ ଧାମ ତ୍ୱୟା ତତଂ ବିଶ୍ୱମନନ୍ତରୂପ ॥ ୩୮ ॥

**ଅନ୍ୱୟ –** **ତ୍ୱମ୍** = ଆପଣ; **ଆଦିଦେବଃ** = ଆଦିଦେବ (ଓ); **ପୁରାଣଃ** = ସନାତନ; **ପୁରୁଷଃ** = ପୁରୁଷ; **ତ୍ୱମ୍** = ତୁମେ; **ଅସ୍ୟ** = ଏହି; **ବିଶ୍ୱସ୍ୟ** = ଜଗତର; **ପରମ୍** = ପରମ; **ନିଧାନମ୍** = ଆଶ୍ରୟ; **ଚ** = ଓ; **ବେତ୍ତା** = ଜ୍ଞାତା (ଜାଣିଥିବା ଲୋକ); **ବେଦ୍ୟମ୍** = ଜ୍ଞେୟ (ଜାଣିବାର ଯୋଗ୍ୟ); **ଚ** = ଓ; **ପରମ୍** = ପରମ; **ଧାମ** = ଧାମ; **ଅସି** = ଅଟନ୍ତି; **ଅନନ୍ତରୂପ** = ହେ ଅନନ୍ତରୂପ; **ତ୍ୱୟା** = ଆପଣଙ୍କ ଦ୍ୱାରା (ଏହି ସମସ୍ତ); **ବିଶ୍ୱମ୍** = ଜଗତ; **ତତମ୍** = ବ୍ୟାପ୍ତ ଅର୍ଥାତ୍ ପରିପୂର୍ଣ୍ଣ ହୋଇଛି।

**ଆପଣ ଆଦିଦେବ ଓ ସନାତନ ପୁରୁଷ ଅଟନ୍ତି। ଆପଣ ଏହି ଜଗତର ପରମ ଆଶ୍ରୟ, ଜ୍ଞାତା, ଜ୍ଞେୟ ତଥା ପରମ ଧାମ ଅଟନ୍ତି। ହେ ଅନନ୍ତରୂପ! ଆପଣଙ୍କ ଦ୍ୱାରା ଏହି ସମସ୍ତ ଜଗତ ବ୍ୟାପ୍ତ ଅର୍ଥାତ୍ ପରିପୂର୍ଣ୍ଣ ହୋଇଛି॥ ୩୮ ॥**

**ପ୍ରଶ୍ନ –** 'ଆପଣ ଆଦିଦେବ ଓ ସନାତନ ପୁରୁଷ ଅଟନ୍ତି'– ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନଙ୍କୁ ସ୍ତୁତି କରି କରି ଅର୍ଜୁନ କହିଲେ, ''ଆପଣ ସମସ୍ତ ଦେବଙ୍କର ମଧ୍ୟ ଆଦିଦେବ ଏବଂ ଚିରକାଳରୁ ରହିଥିବା ସନାତନ ନିତ୍ୟପୁରୁଷ ପରମାତ୍ମା ଅଟନ୍ତି।''

**ପ୍ରଶ୍ନ –** 'ଆପଣ ଏହି ଜଗତର ପରମ ଆଶ୍ରୟ'– ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଏହି ସମସ୍ତ ଜଗତ ପ୍ରଳୟକାଳରେ ଆପଣଙ୍କ ଠାରେ ହିଁ ଲୀନ ହୁଏ ଏବଂ ସଦା ଆପଣଙ୍କର କୌଣସି ଏକ ଅଂଶରେ ରହେ। ଏଣୁ ଆପଣ ହିଁ ଏହାର ପରମ ଆଶ୍ରୟ।''

**ପ୍ରଶ୍ନ –** ବେତ୍ତା ପଦର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଆପଣ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଆଦି ସମସ୍ତ ଜଗତକୁ ଯଥାର୍ଥ ତଥା ପୂର୍ଣ୍ଣରୂପେ ଜାଣିଥିବା ସମସ୍ତଙ୍କର ନିତ୍ୟ ଦ୍ରଷ୍ଟା। ଅତଏବ ଆପଣ ସର୍ବଜ୍ଞ; ଆପଣଙ୍କ ପରି ସର୍ବଜ୍ଞ ଆଉ କେହି ନାହିଁ।''

**ପ୍ରଶ୍ନ –** ବେଦ୍ୟମ୍ ପଦର ଭାବ କଣ ?

**ଉତ୍ତର –** **ବେଦ୍ୟମ୍**ଦ୍ୱାରା ଅର୍ଜୁନ କହୁଛନ୍ତି, "ଯାହା ଜାଣିବାଯୋଗ୍ୟ, ଯାହା ଜାଣିବା ମନୁଷ୍ୟଜନ୍ମର ପରମ ଉଦ୍ଦେଶ୍ୟ, ତ୍ରୟୋଦଶ ଅଧ୍ୟାୟର ବାରଠାରୁ ସତର ଶ୍ଳୋକଯାଏ ଯେଉଁ ଜ୍ଞେୟ ତତ୍ତ୍ୱର ବର୍ଣ୍ଣନା କରାଯାଇଛି, ଆପଣ ହିଁ ସେହି ସାକ୍ଷାତ୍ ପରବ୍ରହ୍ମ ପରମେଶ୍ୱର।"

**ପ୍ରଶ୍ନ –** **ପରମ୍** ବିଶେଷଣ ସହିତ **ଧାମ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, "ଯାହା ମୁକ୍ତ ପୁରୁଷମାନଙ୍କର ପରମ ଗତି, ଯାହାକୁ ପାଇଲେ ମନୁଷ୍ୟ ପୁଣି ଥରେ ଫେରିଆସେ ନାହିଁ, ଆପଣ ହିଁ ସେହି ସାକ୍ଷାତ୍ ପରମ ଧାମ।"

**ପ୍ରଶ୍ନ –** **ଅନନ୍ତରୂପ** ସମ୍ବୋଧନର ଭାବ କଣ ?

**ଉତ୍ତର –** ଯାହାଙ୍କ ସ୍ୱରୂପ ଅନନ୍ତ, ତାହାଙ୍କୁ ଅନନ୍ତରୂପ କହନ୍ତି। ଅତଏବ ଏହି ନାମରେ ସମ୍ବୋଧନ କରି ଅର୍ଜୁନ କହୁଛନ୍ତି, "ଆପଣଙ୍କର ରୂପ ଅସୀମ ଓ ଅଗଣିତ; ତା'ର 'ଅନ୍ତ' କେହି ପାଇପାରିବେ ନାହିଁ।"

**ପ୍ରଶ୍ନ –** ଏହି ସମସ୍ତ ଜଗତ ଆପଣଙ୍କ ଦ୍ୱାରା ବ୍ୟାପ୍ତ' – ଏହାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, "ସାରା ବିଶ୍ୱର ପ୍ରତ୍ୟେକ ପରମାଣୁରେ ଆପଣ ବ୍ୟାପି ରହିଛନ୍ତି; ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ଆପଣ ନାହାନ୍ତି।"

**ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।**
**ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ॥ ୩୯ ॥**

**ଅନ୍ୱୟ –** **ତ୍ୱମ୍** = ଆପଣ; **ବାୟୁଃ** = ବାୟୁ; **ଯମଃ** = ଯମରାଜ; **ଅଗ୍ନିଃ** = ଅଗ୍ନି; **ବରୁଣଃ** = ବରୁଣ; **ଶଶାଙ୍କଃ** = ଚନ୍ଦ୍ର; **ପ୍ରଜାପତିଃ** = ପ୍ରଜାମାନଙ୍କର ସ୍ୱାମୀ ବ୍ରହ୍ମା; **ଚ** = ଓ; **ପ୍ରପିତାମହଃ** = ବ୍ରହ୍ମାଙ୍କର ବି ପିତା; **ତେ** = ଆପଣଙ୍କୁ; **ସହସ୍ରକୃତ୍ୱଃ** = ସହସ୍ରବାର; **ନମଃ, ନମଃ, ଅସ୍ତୁ** = ନମସ୍କାର ! ନମସ୍କାର ! ହେଉ; **ତେ** = ଆପଣଙ୍କୁ; **ଭୂୟଃ** = ଆହୁରି; **ଅପି** = ବି; **ପୁନଃ, ଚ** = ବାରମ୍ବାର; **ନମଃ, ନମଃ** = ନମସ୍କାର ! ନମସ୍କାର !

**ଆପଣ ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ରମା, ପ୍ରଜାମାନଙ୍କର ପତି ବ୍ରହ୍ମା ଓ ବ୍ରହ୍ମାଙ୍କର ପିତା ମଧ୍ୟ ଅଟନ୍ତି। ଆପଣଙ୍କୁ ସହସ୍ରବାର ନମସ୍କାର ! ପୁନର୍ବାର ନମସ୍କାର ! ବାରମ୍ବାର ନମସ୍କାର ! ଆହୁରି ପୁଣି ଥରେ ନମସ୍କାର !!॥ ୩୯ ॥**

**ପ୍ରଶ୍ନ –** 'ଆପଣ ହିଁ ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ରମା ଓ ପ୍ରଜାପତି ବ୍ରହ୍ମା' – ଏହି କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, "ମୁଁ ଯେଉଁମାନଙ୍କର ନାମ ଉଚ୍ଚାରଣ କଲି, ସେମାନଙ୍କ ସହିତ ଯେତେ ବି ନମସ୍କାରଯୋଗ୍ୟ ଦେବତା ଅଛନ୍ତି, ସେ ସମସ୍ତେ ଆପଣଙ୍କର ହିଁ ସ୍ୱରୂପ। ତେଣୁ ଆପଣ ହିଁ ସକଳପ୍ରକାରେ ସମସ୍ତଙ୍କର ନମସ୍କାରଯୋଗ୍ୟ।"

**ପ୍ରଶ୍ନ –** 'ଆପଣ 'ପ୍ରପିତାମହ' ଅର୍ଥାତ୍ ବ୍ରହ୍ମାଙ୍କର ମଧ୍ୟ ପିତା' – ଏପରି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଅର୍ଜୁନ ଜଣାଉଛନ୍ତି, "ସମସ୍ତ ଜଗତକୁ ଉତ୍ପନ୍ନ କରୁଥିବା କଶ୍ୟପ, ଦକ୍ଷପ୍ରଜାପତି, ତଥା ସପ୍ତର୍ଷି ଆଦିଙ୍କର ପିତା ହୋଇଥିବାରୁ ବ୍ରହ୍ମା ସମସ୍ତଙ୍କର ପିତାମହ ଏବଂ ସେହି ବ୍ରହ୍ମାଙ୍କୁ ବି ଆପଣ ଉତ୍ପନ୍ନ କରିଥିବାରୁ ଆପଣ ସମସ୍ତଙ୍କର ପ୍ରପିତାମହ। ତେଣୁ ମଧ୍ୟ ଆପଣଙ୍କୁ ନମସ୍କାର କରିବା ସର୍ବଥା ଉଚିତ।"

**ପ୍ରଶ୍ନ –** **ସହସ୍ରକୃତ୍ୱଃ** ପଦ ସହିତ ବାରମ୍ବାର **ନମଃ** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** **ସହସ୍ରକୃତ୍ୱଃ** ପଦ ସହିତ ବାରମ୍ବାର **ନମଃ** ପଦ ପ୍ରୟୋଗ କରି ଅର୍ଜୁନ ଦେଖାଉଛନ୍ତି ଯେ, ଭଗବାନଙ୍କ ପ୍ରତି ସମ୍ମାନ ଓ ନିଜର ଭୟଯୋଗୁଁ ସେ ସହସ୍ରବାର ନମସ୍କାର କରୁଥିଲେ ମଧ୍ୟ ତୃପ୍ତ ହେଉ ନାହାନ୍ତି; ପ୍ରଭୁଙ୍କୁ ସେ ବାରମ୍ବାର ନମସ୍କାର କରିବାକୁ ଚାହୁଁଛନ୍ତି।

**ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ ନମୋଽସ୍ତୁ ତେ ସର୍ବତ ଏବ ସର୍ବ ।**
**ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ ॥ ୪୦ ॥**

**ଅନ୍ୱୟ —** **ଅନନ୍ତବୀର୍ଯ୍ୟ** = ହେ ଅନନ୍ତ ସାମର୍ଥ୍ୟବାନ୍; **ତେ** = ଆପଣଙ୍କୁ; **ପୁରସ୍ତାତ୍** = ସମ୍ମୁଖଭାଗରୁ; **ଅଥ** = ଓ; **ପୃଷ୍ଠତଃ** = ପଶ୍ଚାଦ୍‌ଭାଗରୁ; **ନମଃ** = ନମସ୍କାର; **ସର୍ବ** = ହେ ସର୍ବାତ୍ମନ୍ ! **ତେ** = ଆପଣଙ୍କୁ; **ସର୍ବତଃ** = ସକଳ ଦିଗରୁ; **ଏବ** = ହିଁ; **ନମଃ** = ନମସ୍କାର; **ଅସ୍ତୁ** = ହେଉ; **ଅମିତବିକ୍ରମଃ** = (କାରଣ) ଅନନ୍ତ ପରାକ୍ରମଶାଳୀ; **ତ୍ୱମ୍** = ଆପଣ; **ସର୍ବମ୍** = ସକଳ ସଂସାରକୁ; **ସମାପ୍ନୋଷି** = ବ୍ୟାପି ରହିଛନ୍ତି; **ତତଃ** = ତେଣୁ; **ସର୍ବଃ, ଅସି** = ଆପଣ ହିଁ ସର୍ବରୂପ ଅଟନ୍ତି ।

**ହେ ଅନନ୍ତ ସାମର୍ଥ୍ୟବାନ୍ ! ଆପଣଙ୍କୁ ସମ୍ମୁଖରୁ ଓ ପଶ୍ଚାତଦେଶରୁ ମଧ୍ୟ ମୋର ନମସ୍କାର । ହେ ସର୍ବାତ୍ମନ୍ ! ଆପଣଙ୍କୁ ସବୁ ଦିଗରୁ ନମସ୍କାର; କାରଣ ଆପଣ ଅନନ୍ତପରାକ୍ରମଶାଳୀ ଓ ସକଳ ସଂସାରକୁ ବ୍ୟାପି ରହିଛନ୍ତି । ତେଣୁ ଆପଣ ହିଁ ସର୍ବରୂପ ଅଟନ୍ତି ॥ ୪୦ ॥**

**ପ୍ରଶ୍ନ — ସର୍ବ** ସମ୍ବୋଧନ କରି ଆଗରେ, ପଛରେ ଓ ସବୁ ଦିଗରେ ନମସ୍କାର କରିବାର ତାତ୍ପର୍ଯ୍ୟ କଣ ?

**ଉତ୍ତର — ସର୍ବ** ନାମରେ ସମ୍ବୋଧିତ କରି ଅର୍ଜୁନ ଦେଖାଉଛନ୍ତି, "ଆପଣ ସମସ୍ତଙ୍କର ଆତ୍ମା, ସର୍ବବ୍ୟାପୀ ଓ ସର୍ବରୂପ ଅଟନ୍ତି । ଏଣୁ ମୁଁ ଆପଣଙ୍କୁ ଆଗରୁ, ପଛରୁ, ଉପରୁ, ତଳୁ, ଡାହାଣରୁ ଓ ବାମରୁ ସବୁ ଆଡୁ ନମସ୍କାର କରୁଛି; କାରଣ, ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ଆପଣ ନାହାନ୍ତି । ଅତଏବ ସବୁଠାରେ ବିରାଜମାନ ଥିବା ଆପଣଙ୍କୁ ମୁଁ ସବୁ ଆଡୁ ପ୍ରଣାମ କରୁଛି ।"

**ପ୍ରଶ୍ନ —** ଅମିତବିକ୍ରମର ଭାବ କଣ ?

**ଉତ୍ତର —** ଏହି ବିଶେଷଣ ପ୍ରୟୋଗ କରି ଅର୍ଜୁନ କହୁଛନ୍ତି, "ଆପଣଙ୍କ ବିକ୍ରମ ସାଧାରଣ ମନୁଷ୍ୟଙ୍କ ବିକ୍ରମପରି ପରିମିତ ନୁହେଁ; ଆପଣ ଅପରିମିତ ପରାକ୍ରମଶାଳୀ, ଅର୍ଥାତ୍ ଆପଣ ଯେପରି ଶସ୍ତ୍ରାଦି ପ୍ରୟୋଗର ଲୀଳା କରିପାରନ୍ତି, ଅନ୍ୟ କେହି ସେପରି ପ୍ରୟୋଗର ଅନୁମାନ ବି କରିପାରିବ ନାହିଁ ।"

**ପ୍ରଶ୍ନ —** 'ଆପଣ ସାରା ସଂସାରକୁ ବ୍ୟାପି ରହିଛନ୍ତି । ତେଣୁ ଆପଣ ସର୍ବରୂପ ।'— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର —** ଅର୍ଜୁନ ଆଗରୁ 'ସର୍ବ' ନାମରେ ଭଗବାନଙ୍କୁ ସମ୍ବୋଧିତ କରିସାରିଛନ୍ତି । ବର୍ତ୍ତମାନ ଏହି କଥନଦ୍ୱାରା ସେ ଭଗବାନଙ୍କର ସର୍ବରୂପତା ସିଦ୍ଧ କରୁଛନ୍ତି । ଅଭିପ୍ରାୟ ଏହି ଯେ, "ଆପଣ ଏହି ସମଗ୍ର ଜଗତକୁ ବ୍ୟାପି ରହିଛନ୍ତି । ବିଶ୍ୱରେ କ୍ଷୁଦ୍ରରୁ କ୍ଷୁଦ୍ରତମ ଅଣୁମାତ୍ର ଏପରି କୌଣସି ସ୍ଥାନ ବା ବସ୍ତୁ ନାହିଁ, ଯେଉଁଠି ଓ ଯେଉଁଥିରେ ଆପଣ ନାହାନ୍ତି । ଅତଏବ ସବୁକିଛି ଆପଣ ହିଁ ଅଟନ୍ତି । ପ୍ରକୃତରେ ଜଗତର କୌଣସି ବସ୍ତୁ ଆପଣଙ୍କ ଠାରୁ ପୃଥକ୍ ନୁହେଁ । ଏହା ମୋର ନିଶ୍ଚିତ ଅଭିପ୍ରାୟ ।"

*ସମ୍ବନ୍ଧ — ଏପରିଭାବରେ ଭଗବାନଙ୍କୁ ସ୍ତୁତି ଓ ପ୍ରଣାମ କରି ବର୍ତ୍ତମାନ ଭଗବାନଙ୍କର ଗୁଣ, ରହସ୍ୟ ଓ ମାହାତ୍ମ୍ୟ ଯଥାର୍ଥରୂପେ ଜାଣି ନ ଥିବାରୁ ବାଣୀ ଓ କ୍ରିୟାଦ୍ୱାରା କରିଥିବା ଅପରାଧ କ୍ଷମା କରନ୍ତୁ ବୋଲି ଅର୍ଜୁନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି—*

**ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ ହେ କୃଷ୍ଣ ହେ ଯାଦବ ହେ ସଖେତି ।**
**ଅଜାନତା ମହିମାନଂ ତବେଦଂ ମୟା ପ୍ରମାଦାତ୍ ପ୍ରଣୟେନ ବାପି ॥ ୪୧ ॥**
**ଯଚ୍ଚାବହାସାର୍ଥମସତ୍କୃତୋଽସି ବିହାରଶଯ୍ୟାସନଭୋଜନେଷୁ ।**
**ଏକୋଽଥବାପ୍ୟଚ୍ୟୁତ ତତ୍‌ସମକ୍ଷଂ ତତ୍କ୍ଷାମୟେ ତ୍ୱାମହମପ୍ରମେୟମ୍ ॥ ୪୨ ॥**

**ଅନ୍ୱୟ—** **ତବ** = ଆପଣଙ୍କର; **ଇଦମ୍** = ଏହି; **ମହିମାନମ୍** = ଅଚିନ୍ତ୍ୟ ପ୍ରଭାବକୁ; **ଅଜାନତା** = ଜାଣି ନ ଥିବାରୁ; **ସଖା, ଇତି** = ଆପଣ ମୋର ସଖା ବୋଲି; **ମତ୍ୱା** = ମନେ କରି; **ପ୍ରଣୟେନ** = ପ୍ରେମବଶତଃ; **ବା** = ଅଥବା; **ପ୍ରମାଦାତ୍** = ଭୁଲବଶତଃ; **ଅପି** = ବି; **ମୟା** = ମୋ'ଦ୍ୱାରା; **ହେ କୃଷ୍ଣ** = ହେ କୃଷ୍ଣ!; **ହେ ଯାଦବ** = ହେ ଯାଦବ!; **ହେ ସଖେ** = ହେ ସଖେ; **ଇତି** = ଏପରି; **ଯତ୍** = ଯାହାକିଛି (ବିନା ବୁଝିବିଚାରି); **ପ୍ରସଭମ୍** = ହଠାତ୍; **ଉକ୍ତମ୍** = କୁହାଯାଇଛି; **ଚ** = ଏବଂ; **ଅଚ୍ୟୁତ** = ହେ ଅଚ୍ୟୁତ! (ଆପଣ); **ଯତ୍** = ଯେଉଁ (ମୋ ଦ୍ୱାରା); **ଅବହାସାର୍ଥମ୍** = ପରିହାସ ଅଭିପ୍ରାୟରେ; **ବିହାରଶଯ୍ୟାସନଭୋଜନେଷୁ** = ବିହାର, ଶଯ୍ୟା, ଆସନ ଓ ଭୋଜନ କରିବାବେଳେ; **ଏକଃ** = ଏକାକୀ (ଥିବାବେଳେ); **ଅଥବା** = ଅଥବା; **ତତ୍ସମକ୍ଷମ୍** = (ସେହି) ସଖାମାନଙ୍କ ସମକ୍ଷରେ; **ଅପି** = ମଧ୍ୟ; **ଅସତ୍କୃତଃ, ଅସି** = ଅପମାନିତ ହୋଇଛନ୍ତି; **ତତ୍** = ସେହି (ଅପରାଧ ପାଇଁ); **ଅପ୍ରମେୟମ୍** = ଅପ୍ରମେୟସ୍ୱରୂପ ଅର୍ଥାତ୍ ଅଚିନ୍ତ୍ୟ ପ୍ରଭାବଶାଳୀ; **ତ୍ୱାମ୍** = ଆପଣଙ୍କୁ; **ଅହମ୍** = ମୁଁ; **କ୍ଷାମୟେ** = କ୍ଷମା ପ୍ରାର୍ଥନା କରୁଛି।

**ଆପଣଙ୍କର ଏପରି ଅଚିନ୍ତ୍ୟ ପ୍ରଭାବ ଜାଣି ନ ଥିବାରୁ, ଆପଣ ମୋର ସଖା ବୋଲି ଭାବି ପ୍ରେମବଶତଃ ଅଥବା ଭୁଲବଶତଃ ମଧ୍ୟ ମୁଁ ଆପଣଙ୍କୁ 'ହେ କୃଷ୍ଣ!', 'ହେ ଯାଦବ!', 'ହେ ସଖା!' ବୋଲି ବିନା ବୁଝିବିଚାରି ଯାହା କିଛି ହଠାତ୍ କହିଦେଇଛି ଏବଂ ହେ ଅଚ୍ୟୁତ! ବିହାର, ଶଯ୍ୟା, ଆସନ ଓ ଭୋଜନାଦିବେଳେ ଆପଣ ମୋ ଦ୍ୱାରା ପରିହାସହେତୁ ଏକାକୀ ବା ସଖାମାନଙ୍କ ସମ୍ମୁଖରେ ଯାହା ଅପମାନିତ ହୋଇଛନ୍ତି, ସେହି ଅପରାଧପାଇଁ ଅପ୍ରମେୟସ୍ୱରୂପ ଅର୍ଥାତ୍ ଅଚିନ୍ତ୍ୟ ପ୍ରଭାବଶାଳୀ ଆପଣଙ୍କୁ ମୁଁ କ୍ଷମା ପ୍ରାର୍ଥନା କରୁଛି।। ୪୧-୪୨ ।।**

**ପ୍ରଶ୍ନ—** **ଇଦମ୍** ବିଶେଷଣ ସହିତ **ମହିମାନମ୍** ପଦର ଭାବ କଣ ?

**ଉତ୍ତର—** ବିରାଟସ୍ୱରୂପ ଦର୍ଶନ କରିବାବେଳେ ଅର୍ଜୁନ ଭଗବାନଙ୍କର ଯେଉଁ ଅତୁଳନୀୟ ତଥା ଅପ୍ରମେୟ ଐଶ୍ୱର୍ଯ୍ୟ, ଗୌରବ, ଗୁଣ ଓ ପ୍ରଭାବ ପ୍ରତ୍ୟକ୍ଷ ଦେଖିଥିଲେ, ତାହାକୁ ଲକ୍ଷ୍ୟ କରି **ମହିମାନମ୍** ପଦ ସହିତ **ଇଦମ୍** ବିଶେଷଣ ବ୍ୟବହାର କରିଛନ୍ତି।

**ପ୍ରଶ୍ନ— ମୟା** ସହିତ **ଅଜାନତା** ବିଶେଷଣ ଦେବାର ଭାବ କଣ ?

**ଉତ୍ତର—** ଏଠାରେ **ଅଜାନତା** ପଦଟି ହେଉଛି ହେତୁଗର୍ଭ ବିଶେଷଣ। **ମୟା** ସହିତ ଏହା ପ୍ରୟୋଗ କରିବାର ଅଭିପ୍ରାୟ ହେଉଛି, "ଆପଣଙ୍କର ଯେଉଁ ମାହାତ୍ମ୍ୟ ମୁଁ ଏବେ ପ୍ରତ୍ୟକ୍ଷ ଦେଖିଲି, ତାହା ଯଥାର୍ଥ ନ ଜାଣିପାରିଥିବାରୁ ହିଁ ମୁଁ ଆପଣଙ୍କ ସହିତ ଅନୁଚିତ ବ୍ୟବହାର କରିଛି। ଅତଏବ ଅଜ୍ଞାତରେ କରିଥିବା ମୋର ଅପରାଧ ଆପଣ ଅବଶ୍ୟ ହିଁ କ୍ଷମା କରିଦିଅନ୍ତୁ।"

**ପ୍ରଶ୍ନ— ସଖା ଇତି ମତ୍ୱା, ପ୍ରଣୟେନ** ଓ **ପ୍ରମାଦାତ୍** ଏହି ପଦମାନ ପ୍ରୟୋଗ କରିବାର ଭାବ କଣ ?

**ଉତ୍ତର—** ଏସବୁଦ୍ୱାରା ଅର୍ଜୁନ ଜଣାଉଛନ୍ତି, "ଆପଣଙ୍କ ଅପ୍ରତିମ ଓ ଅପାର ମହିମା ଜାଣିପାରି- ନ ଥିବାରୁ ହିଁ ମୁଁ ଆପଣଙ୍କୁ ମୋର ସମସ୍କନ୍ଧ ମିତ୍ର ବୋଲି ବୁଝିଥିଲି ଏବଂ ତେଣୁ ମୁଁ କଥାଭାଷାବେଳେ କେବେହେଲେ ଆପଣଙ୍କର ମହାନ୍ ଗୌରବ ଓ ସର୍ବପୂଜ୍ୟ ମହତ୍ତ୍ୱ ପ୍ରତି ଧ୍ୟାନ ଦେଉ ନ ଥିଲି। ଏଣୁ ପ୍ରେମ ବା ପ୍ରମାଦବଶତଃ ମୁଁ ନିଶ୍ଚୟ ବଡ଼ ଭୁଲ କରିଛି। ବଡ଼ ବଡ଼ ଦେବତା ଓ ମହର୍ଷିମାନେ ଆପଣଙ୍କ ଚରଣ ବନ୍ଦନା କରିବାକୁ ନିଜର ସୌଭାଗ୍ୟ ବୋଲି ମନେ କରନ୍ତି, ଅଥଚ ମୁଁ ଆପଣଙ୍କୁ ମୋର ସମକକ୍ଷ ଭାବି କଥୋପକଥନ କରିଥିଲି। ବର୍ତ୍ତମାନ ଆପଣ ନିଜ ଦୟାଳୁତା ଗୁଣରେ ମୋର ସେହି ଦୋଷ କ୍ଷମା କରନ୍ତୁ।"

**ପ୍ରଶ୍ନ— ପ୍ରସଭମ୍** ପଦ ପ୍ରୟୋଗ କରି **ହେ କୃଷ୍ଣ, ହେ ଯାଦବ, ହେ ସଖେ—** ଏସବୁ ପଦ ପ୍ରୟୋଗ କରିବାର ଭାବ କଣ ?

**ଉତ୍ତର—** "ଅର୍ଜୁନ ପ୍ରେମବଶତଃ ବା ଭୁଲବଶତଃ ଯେଉଁସବୁ ଅପରାଧ କରିଦେଇଥିଲେ ବୋଲି ମାନୁଛନ୍ତି, ଏଠାରେ ଏହି ପଦଗୁଡ଼ିକ ପ୍ରୟୋଗ କରି ସେସବୁର ସ୍ପଷ୍ଟୀକରଣ କରୁଛନ୍ତି। ସେ କହୁଛନ୍ତି, "ପ୍ରଭୋ ! ଆପଣ କେଉଁଠି, ମୁଁ ବା କେଉଁଠି !! ମୁଁ ଏତେବଡ଼ ମୂଢ଼ମତି ହୋଇଥିଲି ଯେ, ପରମ ପୂଜନୀୟ ପରମେଶ୍ୱରରୂପୀ ଆପଣଙ୍କୁ ମୁଁ କେବଳ ମୋର ସଖା ବୋଲି ଧରିନେଇ ଏବଂ କୌଣସିପ୍ରକାର ଆଦର-ସମ୍ମାନସୂଚକ ବିଶେଷଣ

ପ୍ରୟୋଗ ନ କରି, ସର୍ବଦା ନ ବୁଝି, ନ ବିଚାରି 'କୃଷ୍ଣ ! ଯାଦବ ! ସଖେ !' ଆଦି କହି ଆପଣଙ୍କୁ ଅବଜ୍ଞାରେ ଡାକୁଥିଲି। ଆପଣ ମୋର ସେହି ଅପରାଧ କ୍ଷମା କରନ୍ତୁ।''

**ପ୍ରଶ୍ନ — ଅଚ୍ୟୁତ** ସମ୍ବୋଧନର ଭାବ କଣ ?

**ଉତ୍ତର —** ନିଜ ମହତ୍ତ୍ୱ ଓ ସ୍ୱରୂପରୁ ଯାହାଙ୍କର କେବେ ବି ଚ୍ୟୁତି ହୁଏ ନାହିଁ, ତାହାଙ୍କୁ **ଅଚ୍ୟୁତ** କହନ୍ତି। ଏଠାରେ ଭଗବାନଙ୍କୁ 'ଅଚ୍ୟୁତ' ନାମରେ ସମ୍ବୋଧନ କରି ଅର୍ଜୁନ ଦେଖାଉଛନ୍ତି, ''ମୁଁ ନିଜ ବ୍ୟବହାର ଓ କଥାଭାଷାଦ୍ୱାରା ଆପଣଙ୍କୁ ଯେଉଁ ଅପମାନ ଦେଇଛି, ତାହା ଅବଶ୍ୟ ମୋର ବଡ଼ ଅପରାଧ। କିନ୍ତୁ ହେ ପ୍ରଭୁ ! ମୋର ଏତାଦୃଶ ବ୍ୟବହାରରେ ଆପଣଙ୍କର ବସ୍ତୁତଃ କୌଣସି କ୍ଷତି ହେବ ନାହିଁ। ସଂସାରରେ ଏପରି କୌଣସି କ୍ରିୟା ନାହିଁ, ଯାହା କି ଆପଣଙ୍କୁ ନିଜ ମହିମାରୁ ତିଳେମାତ୍ର ବିଚ୍ୟୁତ କରିପାରିବ। କାହାରି ସାମର୍ଥ୍ୟ ନାହିଁ ଯେ, ସେ ଆପଣଙ୍କର ଅପମାନ କରିପାରିବ; କାରଣ ଆପଣ ସଦା ହିଁ ଅଚ୍ୟୁତ।''

**ପ୍ରଶ୍ନ — ଯତ୍** ଓ **ଚ** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର —** ପୂର୍ବଶ୍ଲୋକରେ ଅର୍ଜୁନ ଯେଉଁ ଯେଉଁ ଅପରାଧଗୁଡ଼ିକର ସ୍ପଷ୍ଟୀକରଣ କରିଛନ୍ତି, ଏହି ଶ୍ଳୋକରେ ସେସବୁଠାରୁ ଭିନ୍ନ ନିଜ ବ୍ୟବହାରଦ୍ୱାରା ହୋଇଥିବା ଅନ୍ୟ ଅପରାଧମାନଙ୍କର ବର୍ଣ୍ଣନା କରୁଛନ୍ତି। ଏହି ଭାବ ଦେଖାଇବାପାଇଁ ପୁଣି ଥରେ **ଯତ୍** ଓ ପୂର୍ବଶ୍ଲୋକରେ ବର୍ଣ୍ଣିତ ଅପରାଧମାନଙ୍କ ସହିତ ଏହି ଶ୍ଳୋକରେ କୁହାଯାଇଥିବା ସମସ୍ତ ଅପରାଧର ସମାହାର କରିବାକୁ **ଚ** ପ୍ରୟୋଗ କରିଛନ୍ତି।

**ପ୍ରଶ୍ନ — ଅବହାସାର୍ଥମ୍**ର ଭାବ କଣ ?

**ଉତ୍ତର —** ପ୍ରେମ, ପ୍ରମାଦ ଓ ବିନୋଦ ଏହି ତିନୋଟି କାରଣରୁ ମନୁଷ୍ୟ ବ୍ୟବହାରରେ କାହାରି ମାନାପମାନର ଧ୍ୟାନ ରଖେ ନାହିଁ। ପ୍ରେମରେ ନିୟମ ରହେ ନାହିଁ; ପ୍ରମାଦରେ ଭୁଲ ହୁଏ ଓ ବିନୋଦରେ ବାଣୀର ଯଥାର୍ଥତା ସୁରକ୍ଷିତ ରଖିବା କଠିନ ହୋଇଯାଏ। କୌଣସି ସମ୍ମାନନୀୟ ପୁରୁଷଙ୍କ ଅପମାନରେ ଏହି ତିନୋଟିଯାକ କାରଣ କେଉଁଠି ମିଶିଯାଇ ହୋଇପାରନ୍ତି, କେଉଁଠି ବା ପୃଥକ୍ ପୃଥକ୍। ଏମାନଙ୍କ ମଧ୍ୟରୁ ପ୍ରେମ ଓ ପ୍ରମାଦ— ଏହି ଦୁଇଟି କାରଣ ବିଷୟରେ ଅର୍ଜୁନ ପୂର୍ବଶ୍ଲୋକରେ କହିସାରିଛନ୍ତି। ଏଠାରେ **ଅବହାସାର୍ଥମ୍** ପଦରେ ତୃତୀୟ କାରଣ ବିନୋଦ ବା 'ହାସ-ପରିହାସ'କୁ ଲକ୍ଷ୍ୟ କରୁଛନ୍ତି।

**ପ୍ରଶ୍ନ — ବିହାରଶଯ୍ୟାସନଭୋଜନେଷୁ, ଏକଃ** ଓ **ତତ୍ସମକ୍ଷମ୍** — ଏହି ପଦଗୁଡ଼ିକ ପ୍ରୟୋଗ କରି **ଅସତ୍କୃତୋଽସି** କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଏଗୁଡ଼ିକଦ୍ୱାରା ଅର୍ଜୁନ ସେହି ଅବସରସବୁକୁ ବର୍ଣ୍ଣନା କରୁଛନ୍ତି, ଯେଉଁଥିରେ ସେ ଭଗବାନଙ୍କର ଅପମାନ ହୋଇଥିବାର ମାନୁଛନ୍ତି। ସେ କହୁଛନ୍ତି, ''ଏକା ସାଥିରେ ଚଲାବୁଲା କରିବା, ଶୋଇବା, ଉଚ୍ଚ,ନୀଚ ବା ସମାନ ଆସନରେ ବସିବା ଓ ଖାଇବା-ପିଇବା ସମୟରେ ମୋ ଦ୍ୱାରା ବାରମ୍ବାର ଆପଣଙ୍କ ପ୍ରତି ଯେଉଁ ଅବଜ୍ଞା ହୋଇଛି, ★ —ତାହା ଏକାନ୍ତରେ ହୋଇଥାଉ ବା ଅନ୍ୟମାନଙ୍କ ସମକ୍ଷରେ ହୋଇଥାଉ, ମୁଁ ତାହାକୁ ବଡ଼ ଅପରାଧ ବୋଲି ମାନୁଛି ଏବଂ ଏପରି ପ୍ରତ୍ୟେକ ଅପରାଧ ପାଇଁ ମୁଁ ଆପଣଙ୍କ ଠାରୁ କ୍ଷମା ଚାହୁଁଛି।''

**ପ୍ରଶ୍ନ — ତତ୍** ପଦ କାହାର ବାଚକ ତଥା **ତ୍ୱାମ୍** ସହିତ **ଅପ୍ରମେୟମ୍** ବିଶେଷଣ ଦେଇ **କ୍ଷାମୟେ** କ୍ରିୟା ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର —** ଏକଚାଳିଶ ଓ ବୟାଳିଶ ଶ୍ଳୋକରେ ଅର୍ଜୁନ ଯେଉଁ ଅପରାଧଗୁଡ଼ିକ ବର୍ଣ୍ଣନା କଲେ, **ତତ୍** ହେଉଛି ସେହିପରି ସକଳ ଅପରାଧର ବାଚକ। **ତ୍ୱାମ୍** ପଦ ସହିତ **ଅପ୍ରମେୟମ୍** ବିଶେଷଣ ଦେଇ

---

★ ଶ୍ରୀମଦ୍‌ଭାଗବତରେ ଅର୍ଜୁନଙ୍କର ବଚନ ରହିଛି—

ଶଯ୍ୟାସନାଟନବିକତ୍ଥନଭୋଜନାଦିଷ୍ୱୈକ୍ୟାଦ୍ ବୟସ୍ୟ ଋତବାନିତି ବିପ୍ରଲବ୍ଧଃ।

ସଖ୍ୟୁଃ ସଖେବ ପିତୃବତ୍ତନୟସ୍ୟ ସର୍ବଂ ସେହେ ମହାନ୍ ମହିତୟା କୁମତେରଘଂ ମେ॥ (୧/୧୫/୧୯)

'ଭଗବାନ୍ ଶ୍ରୀକୃଷ୍ଣଙ୍କ ସହିତ ଶୋଇବା, ବସିବା, ବୁଲିବା, ନିଜ ବଡ଼ାଇ କରିବା ଓ ଭୋଜନାଦି କରିବାରେ ତାଙ୍କ-ମୋ ଭିତରେ ଏପରି ଘନିଷ୍ଠ ଭାବ ରହିଥିଲା ଯେ, ମୁଁ କେବେ କେବେ ''ହେ ଭାଇ (ବନ୍ଧୁ)! ତୁମେ ତ ଭାରି ସତ୍ୟଥା !'' ବୋଲି କହି ଆକ୍ଷେପ ମଧ୍ୟ କରୁଥିଲି; କିନ୍ତୁ ସେ ମହାତ୍ମା ପ୍ରଭୁ ନିଜ ମହନୀୟତା ଅନୁସାରେ ମୋ କୁବୁଦ୍ଧିଜନିତ ସେହିସବୁ ଅପରାଧକୁ ସେପରି ସହୁଥିଲେ, ଯେପରି ମିତ୍ର ନିଜ ମିତ୍ରର ଅପରାଧ ବା ପିତା ନିଜ ପୁତ୍ରର ଅପରାଧ ସହିଥାଏ।'

କ୍ଷାମୟେ କ୍ରିୟା ପ୍ରୟୋଗ କରି ଅର୍ଜୁନ ସେହି ସମସ୍ତ ଅପରାଧ କ୍ଷମା କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି। ଅର୍ଜୁନ କହୁଛନ୍ତି, "ପ୍ରଭୁ! ଆପଣଙ୍କ ସ୍ୱରୂପ ଓ ମହତ୍ତ୍ୱ ଅଚିନ୍ତ୍ୟ। ଆପଣଙ୍କୁ କେହି ହେଲେ ପୂର୍ଣ୍ଣରୂପେ ଜାଣି ନ ପାରେ। ଯଦି ସେ ବିଷୟରେ କାହାର କିଛି ଜ୍ଞାନ ହୁଏ, ତେବେ ତାହା ଆପଣଙ୍କ କୃପାରୁ ହିଁ ହୁଏ। ମୁଁ ଆଗେ ଆପଣଙ୍କ ପ୍ରଭାବ ଜାଣି ନ ଥିଲି, ତେଣୁ ଆପଣଙ୍କୁ ଅନାଦର କରୁଥିଲି; ଆପଣଙ୍କ ପରମ ଅନୁଗ୍ରହରୁ ଏବେ ଆପଣଙ୍କ ପ୍ରଭାବ ବୁଝିପାରିଲି। ଅବଶ୍ୟ ମୁଁ ଆପଣଙ୍କର ସମସ୍ତ ପ୍ରଭାବ ଜାଣିପାରି ନାହିଁ; ସବୁ ଜାଣିବା ତ ଦୂରର କଥା, ଆପଣଙ୍କ ଦୟା ମୋତେ ଯେତିକି ଜଣାଇଦେବାକୁ ଚାହେଁ, ମୁଁ ସେତିକି ମଧ୍ୟ ଜାଣିପାରି ନାହିଁ। ତଥାପି ଯାହା କିଛି ଜାଣିପାରିଛି, ସେଥିରୁ ମୁଁ ଭଲରୂପେ ଜାଣିଗଲି ଯେ, ଆପଣ ସର୍ବଶକ୍ତିମାନ୍ ସାକ୍ଷାତ୍ ପରମେଶ୍ୱର। ଆପଣଙ୍କୁ ନିଜର ସମସ୍କନ୍ଧ ଭାବି ଆପଣଙ୍କ ସହିତ ଯେପରି କଥାଭାଷା କରିଛି, ତାହା ମୋର ବିରାଟ ଅପରାଧ; ଏପରି କରିଥିବା ସମସ୍ତ ଅପରାଧପାଇଁ ମୁଁ ଆପଣଙ୍କ ଠାରୁ କ୍ଷମା ଚାହୁଁଛି।"

*__ସମ୍ବନ୍ଧ —__ ଅପରାଧ କ୍ଷମା କରିବାପାଇଁ ଏପରି ପ୍ରାର୍ଥନା କରିସାରି ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଅର୍ଜୁନ ଭଗବାନଙ୍କର ପ୍ରଭାବ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କ୍ଷମା ପାଇବାର ପାତ୍ରତା ପ୍ରତିପାଦନ କରିଛନ୍ତି ଓ ଭଗବାନଙ୍କୁ ପ୍ରସନ୍ନ ହେବାକୁ ପୁନଃ ପ୍ରାର୍ଥନା କରୁଛନ୍ତି—*

**ପିତାସି ଲୋକସ୍ୟ ଚରାଚରସ୍ୟ ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍।**
**ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ॥ ୪୩ ॥**

**ଅନ୍ୱୟ —** **ତ୍ୱମ୍** = ଆପଣ; **ଅସ୍ୟ** = ଏହି; **ଚରାଚରସ୍ୟ** = ଚରାଚର; **ଲୋକସ୍ୟ** = ଜଗତର; **ପିତା** = ପିତା; **ଚ** = ଓ; **ଗରୀୟାନ୍ ଗୁରୁଃ** = ସର୍ବଶ୍ରେଷ୍ଠ ଗୁରୁ (ଏବଂ); **ପୂଜ୍ୟଃ** = ପରମପୂଜନୀୟ; **ଅସି** = ଅଟନ୍ତି; **ଅପ୍ରତିମପ୍ରଭାବ** = ହେ ଅନୁପମପ୍ରଭାବଶାଳୀ!; **ଲୋକତ୍ରୟେ** = ତ୍ରିଲୋକରେ; **ତ୍ୱତ୍ସମଃ** = ଆପଣଙ୍କ ସମାନ; **ଅପି** = ବି; **ଅନ୍ୟଃ** = ଅନ୍ୟ କେହି; **ନ, ଅସ୍ତି** = ନାହାନ୍ତି; **ଅଭ୍ୟଧିକଃ** = ଅଧିକ (ବା ହେବେ); **କୁତଃ** = କାହୁଁ ?

**ଆପଣ ଏହି ଚରାଚର ଜଗତର ପିତା ଓ ସର୍ବଶ୍ରେଷ୍ଠ ଗୁରୁ ତଥା ପରମ ପୂଜନୀୟପୁରୁଷ ଅଟନ୍ତି। ହେ ଅନୁପମପ୍ରଭାବଶାଳୀ! ତ୍ରିଲୋକରେ ଆପଣଙ୍କ ସମାନ ହୋଇ ଅନ୍ୟ କେହି ନାହାନ୍ତି; ଅଧିକ ବା ହେବେ କିପରି ?॥ ୪୩ ॥**

**ପ୍ରଶ୍ନ —** 'ଆପଣ ଏହି ଚରାଚର ଜଗତର ପିତା, ସର୍ବଶ୍ରେଷ୍ଠ ଗୁରୁ ଓ ପୂଜ୍ୟ ପୁରୁଷ ଅଟନ୍ତି'— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର —** ଏହି କଥାଦ୍ୱାରା ଅର୍ଜୁନ ଅପରାଧ କ୍ଷମା କରିବାର ଔଚିତ୍ୟ ପ୍ରତିପାଦନ କରିଛନ୍ତି। ସେ କହୁଛନ୍ତି, "ଭଗବନ୍! ଏହି ସମସ୍ତ ଜଗତ ଆପଣଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି। ଅତଏବ ଆପଣ ହିଁ ଏହାର ପିତା। ସଂସାରରେ ଯେତେ ବି ବଡ଼ ବଡ଼ ଦେବତା, ମହର୍ଷି ଓ ଅନ୍ୟାନ୍ୟ ସମର୍ଥ ପୁରୁଷ ଅଛନ୍ତି, ସେହି ସମସ୍ତଙ୍କ ମଧ୍ୟରେ ବ୍ରହ୍ମା ବଡ଼; କାରଣ ସର୍ବପ୍ରଥମେ ତାଙ୍କରି ପ୍ରାଦୁର୍ଭାବ ହେଲା ଏବଂ ସେ ହିଁ ଆପଣଙ୍କ ନିତ୍ୟଜ୍ଞାନଦ୍ୱାରା ସମସ୍ତଙ୍କୁ ଯଥାଯୋଗ୍ୟ ଶିକ୍ଷା ଦିଅନ୍ତି। ପରନ୍ତୁ ହେ ପ୍ରଭୁ! ସେହି ବ୍ରହ୍ମା ମଧ୍ୟ ଆପଣଙ୍କ ଠାରୁ ଉତ୍ପନ୍ନ ହୁଅନ୍ତି ଏବଂ ତାଙ୍କର ସେହି ଜ୍ଞାନ ମଧ୍ୟ ଆପଣଙ୍କ ଠାରୁ ହିଁ ମିଳିଥାଏ। ଅତଏବ ହେ ସର୍ବେଶ୍ୱର! ଆପଣ ହିଁ ସମସ୍ତଙ୍କ ଠାରୁ ବଡ଼, ସବୁ ବଡ଼ମାନଙ୍କ ଠାରୁ ବଡ଼ ଓ ସମସ୍ତଙ୍କର ଏକମାତ୍ର ମହାନ୍ ଗୁରୁ। ସମସ୍ତ ଜଗତ ଯେଉଁ ଦେବତାମାନଙ୍କୁ ଓ ମହର୍ଷିମାନଙ୍କୁ ପୂଜା କରେ, ସେହି ଦେବତା ଓ ମହର୍ଷିମାନଙ୍କର ମଧ୍ୟ ଆପଣ ପରମପୂଜ୍ୟ। ନିତ୍ୟବନ୍ଦନୀୟ ବ୍ରହ୍ମାଦି ଦେବତା ଓ ବଶିଷ୍ଠାଦି ମହର୍ଷିମାନେ ଯଦି କ୍ଷଣକପାଇଁ ମଧ୍ୟ ଆପଣଙ୍କର ପ୍ରତ୍ୟକ୍ଷ ପୂଜନ ବା ସ୍ତବନର ସୁଅବସର ପାଇଯାଆନ୍ତି, ତେବେ ସେମାନେ ନିଜକୁ ମହାନ୍ ଭାଗ୍ୟବାନ୍ ମନେ କରନ୍ତି। ତେଣୁ ଆପଣ ହିଁ ସମସ୍ତ ପୂଜନୀୟମାନଙ୍କର ମଧ୍ୟ ପରମ ପୂଜନୀୟ। ଏଣୁ ମୋ ଭଳି ଅକିଞ୍ଚନର ଅପରାଧ କ୍ଷମା କରିବା ଆପଣଙ୍କ ପକ୍ଷରେ ସବୁଦୃଷ୍ଟିରୁ ଉଚିତ।"

**ପ୍ରଶ୍ନ – ଅପ୍ରତିମପ୍ରଭାବ** ସମ୍ବୋଧନ ସହିତ ତ୍ରିଲୋକରେ ଆପଣଙ୍କ ସମାନ ହୋଇ ଦ୍ୱିତୀୟ କେହି ନାହିଁ; ଅଧିକ ବା କିପରି ହୋଇପାରିବ'– ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କର ପ୍ରଭାବ ଓ ଶକ୍ତିର କୌଣସି ତୁଳନା ହୋଇପାରିବ ନାହିଁ, ତାହାଙ୍କୁ **ଅପ୍ରତିମପ୍ରଭାବ** କହନ୍ତି। ଏହା ପ୍ରୟୋଗ କରି ଆଗରୁ କୁହାଯାଇଥିବା ବାକ୍ୟରେ ଅର୍ଜୁନ ଦେଖାଉଛନ୍ତି, ''ବିଶ୍ୱବ୍ରହ୍ମାଣ୍ଡରେ ଏପରି କେହି ଜଣେ ବି ନାହିଁ, ଯାହା ସହିତ ଆପଣଙ୍କ ଅଚିନ୍ତ୍ୟାନନ୍ତ ମହାନ୍ ଗୁଣ, ଐଶ୍ୱର୍ଯ୍ୟ ଓ ମହତ୍ତ୍ୱର ତୁଳନା ହୋଇପାରେ। କେବଳ ଆପଣ ହିଁ ଆପଣଙ୍କ ସମାନ ଅଟନ୍ତି। ଯେହେତୁ ଆପଣଙ୍କର ସମାନ ହୋଇ ଆଉ କେହି ନାହିଁ, ତେଣୁ ଆପଣଙ୍କ ଠାରୁ ବଡ଼ ହୋଇ କେହି ଅଛି ବୋଲି କଳ୍ପନା କରିବା ମଧ୍ୟ ଅସମ୍ଭବ। ଏପରି ସ୍ଥିତିରେ, ହେ ଦୟାମୟ! ଆପଣ ଯଦି ମୋ ଅପରାଧ କ୍ଷମା ନ କରିବେ, ତେବେ ଆଉ କରିବ କିଏ ?''

**ତସ୍ମାତ୍ପ୍ରଣମ୍ୟ ପ୍ରଣିଧାୟ କାୟଂ ପ୍ରସାଦୟେ ତ୍ୱାମହମୀଶମୀଡ୍ୟମ୍।**
**ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁମ୍॥ ୪୪॥**

**ଅନ୍ୱୟ –** **ତସ୍ମାତ୍** = ତେଣୁ (ହେ ପ୍ରଭୁ); **ଅହମ୍** = ମୁଁ; **କାୟମ୍** = ଶରୀରକୁ; **ପ୍ରଣିଧାୟ** = ଭଲଭାବରେ ଆପଣଙ୍କ ଚରଣରେ ନିବେଦିତ କରି; **ପ୍ରଣମ୍ୟ** = ପ୍ରଣାମ କରି; **ଈଡ୍ୟମ୍** = ସ୍ତୁତିଯୋଗ୍ୟ; **ତ୍ୱାମ୍, ଈଶମ୍** = ସର୍ବେଶ୍ୱର ଆପଣଙ୍କୁ; **ପ୍ରସାଦୟେ** = ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରୁଛି; **ଦେବ** = ହେ ଦେବ!; **ପିତା, ଇବ** = ପିତା ଯେପରି; **ପୁତ୍ରସ୍ୟ** = ପୁତ୍ରର; **ସଖା, ଇବ** = ସଖା ଯେପରି; **ସଖ୍ୟୁଃ** = ସଖାର; **ପ୍ରିୟଃ, (ଇବ)** = ପତି ଯେପରି; **ପ୍ରିୟାୟାଃ** = ପ୍ରିୟତମା ପତ୍ନୀର (ଅପରାଧ ସହ୍ୟ କରନ୍ତି, ଆପଣ ବି ସେହିପରି ମୋର ଅପରାଧକୁ); **ସୋଢୁମ୍** = ସହିବାକୁ; **ଅର୍ହସି** = ଯୋଗ୍ୟ ଅଟନ୍ତି।

**ଅତଏବ ହେ ପ୍ରଭୁ! ମୁଁ ନିଜ ଶରୀରକୁ ଭଲଭାବରେ ଆପଣଙ୍କ ଚରଣରେ ନିବେଦିତ କରି, ସାଷ୍ଟାଙ୍ଗ ପ୍ରଣାମ କରି, ସର୍ବେଶ୍ୱର ଓ ସ୍ତୁତିଯୋଗ୍ୟ ଆପଣଙ୍କୁ ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରୁଛି। ହେ ଦେବ! ପିତା ଯେପରି ପୁତ୍ରର, ସଖା ଯେପରି ସଖାର ଓ ପତି ଯେପରି ପ୍ରିୟତମା ପତ୍ନୀର ଅପରାଧ ସହ୍ୟ କରନ୍ତି, ଆପଣ ମଧ୍ୟ ସେହିପରି ମୋର ଅପରାଧ ସହ୍ୟ କରିବାକୁ ଯୋଗ୍ୟ ଅଟନ୍ତି॥ ୪୪ ॥**

**ପ୍ରଶ୍ନ – ତସ୍ମାତ୍** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର –** ପୂର୍ବ ଶ୍ଳୋକରେ ଭଗବାନଙ୍କର ଯେଉଁ ମହାମହିମ ଗୁଣଗୁଡ଼ିକ ବର୍ଣ୍ଣନା କରାଯାଇଛି, ସେହି ଗୁଣଗୁଡ଼ିକ ଭଗବାନଙ୍କ ପ୍ରସନ୍ନ ହେବାର କାରଣ ବୋଲି କହିବାକୁ **ତସ୍ମାତ୍** ପଦ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ହେଉଛି, ''ଆପଣ ଏହିପରି ମହତ୍ତ୍ୱ ଓ ପ୍ରଭାବଦ୍ୱାରା ଯୁକ୍ତ; ଅତଏବ ମୋପରି ଦୀନ ଶରଣାଗତ ଉପରେ ଦୟା କରି ପ୍ରସନ୍ନ ହେବା ତ, ମୁଁ ବୁଝୁଛି, ଆପଣଙ୍କର ସ୍ୱଭାବ ହିଁ ଅଟେ। ତେଣୁ ମୁଁ ସାହସ କରି ଆପଣଙ୍କୁ ବିନୟପୂର୍ବକ ଏହି ପ୍ରାର୍ଥନା କରୁଛି ଯେ, ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ।''

**ପ୍ରଶ୍ନ – ତ୍ୱାମ୍** ପଦସହିତ **ଈଶମ୍** ଓ **ଈଡ୍ୟମ୍** ବିଶେଷଣ ଦେଇ 'ମୁଁ ଶରୀରକୁ ଆପଣଙ୍କ ଚରଣରେ ନିବେଦିତ କରି, ପ୍ରଣାମ କରି, ଆପଣଙ୍କୁ ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରୁଛି' ବୋଲି କହିବାର ଭାବ କଣ ?

**ଉତ୍ତର –** ଯେ ସମସ୍ତଙ୍କୁ ନିୟମିତ କରିବାକୁ ସମର୍ଥ, ତାଙ୍କୁ **ଈଶ** କହନ୍ତି ଏବଂ ଯେ ସ୍ତୁତିଯୋଗ୍ୟ, ତାଙ୍କୁ **ଈଡ୍ୟ** କହନ୍ତି। ଏହି ଦୁଇ ବିଶେଷଣ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ହେ ପ୍ରଭୋ! ଆପଣ ହିଁ ଏହି ସମସ୍ତ ଜଗତକୁ ନିୟମିତ କରୁଥିବା,— ଏପରି କି ଇନ୍ଦ୍ର, ଆଦିତ୍ୟ, ବରୁଣ, କୁବେର ଓ ଯମ ଆଦି ଲୋକନିୟନ୍ତା ଦେବତାମାନଙ୍କୁ ମଧ୍ୟ ଶାସିତ କରୁଥିବା ଏକମାତ୍ର ମହେଶ୍ୱର ଅଟନ୍ତି। ଆପଣଙ୍କ ଗୁଣ, ଗୌରବ ତଥା ମହତ୍ତ୍ୱ ଏତେ ବିରାଟ ଓ ବିସ୍ତୃତ ଯେ, ସାରା ଜଗତ ସଦାସର୍ବଦା ଆପଣଙ୍କୁ ସ୍ତୁତି କରୁଥିଲେ ମଧ୍ୟ ତାହାର ଅନ୍ତ ପାଇପାରେ ନାହିଁ। ଅତଏବ ଆପଣ

ହିଁ ବସ୍ତୁତଃ ସ୍ତୁତିଯୋଗ୍ୟ। ମୋ'ଠାରେ ତ ଏତେ ଜ୍ଞାନ ନାହିଁ, କି ମୋ' ବାଣୀରେ ଏତେ ଶକ୍ତି ନାହିଁ ଯେ, ମୁଁ ସ୍ତୁତି କରି ଆପଣଙ୍କୁ ପ୍ରସନ୍ନ କରିପାରିବି। ମୁଁ ଅବୋଧ ଭଲା ଆପଣଙ୍କର କି ସ୍ତବ କରିବି! ମୁଁ ଆପଣଙ୍କ ବିଷୟରେ ଯାହା ଚିଛି କହିବି, ତାହା ପ୍ରକୃତରେ ଆପଣଙ୍କ ପ୍ରଭାବର ଛାୟାକୁ ମଧ୍ୟ ସ୍ପର୍ଶ କରିପାରିବ ନାହିଁ; ବରଂ ତାହା ଆପଣଙ୍କ ପ୍ରଭାବକୁ କମାଇଦେବ। ତେଣୁ ମୁଁ ତ କେବଳ, ଏହି ଶରୀରକୁ ଆପଣଙ୍କ ଚରଣରେ ଲୋଟାଇଦେଇ, ସମସ୍ତ ଅଙ୍ଗଦ୍ୱାରା ଆପଣଙ୍କ ପ୍ରଣାମ କରି ଆପଣଙ୍କ ଚରଣଧୂଳିର ପ୍ରସାଦରେ ଆପଣଙ୍କ ପ୍ରସନ୍ନତା ପାଇବାକୁ ଚାହୁଁଛି। ଆପଣ କୃପା କରି ମୋର ସମସ୍ତ ଅପରାଧ ଭୁଲିଯାଆନ୍ତୁ ଏବଂ ଏହି ଦୀନ ପ୍ରତି ପ୍ରସନ୍ନ ହୋଇଯାଆନ୍ତୁ।"

**ପ୍ରଶ୍ନ –** ପିତା-ପୁତ୍ରର, ସଖା-ସଖାର ଓ ପତି-ପତ୍ନୀର ଉପମା ଦେଇ ଅପରାଧ କ୍ଷମା କରିବାର ଯୋଗ୍ୟତା ଦର୍ଶାଇ କେଉଁ ଭାବ ପ୍ରକାଶ କରାଯାଇଛି ?

**ଉତ୍ତର –** ଏକଚାଳିଶ ଓ ବୟାଳିଶ ଶ୍ଳୋକରେ କୁହାଯାଇଛି ଯେ, ପ୍ରମାଦ, ବିନୋଦ ଓ ପ୍ରେମ– ଏହି ତିନୋଟି କାରଣରୁ ମନୁଷ୍ୟଦ୍ୱାରା ଅନ୍ୟପ୍ରତି ଅପରାଧ ହୁଏ। ଏଠାରେ ଅର୍ଜୁନ ଉପରୋକ୍ତ ତିନୋଟି ଉପମା ଦେଇ ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି, "ଉପରୋକ୍ତ ତିନୋଟି କାରଣରୁ ହୋଇଥିବା ମୋର ଅପରାଧ ଆପଣ ସହିବା ଉଚିତ। ଯେପରି ଅଜ୍ଞାନରେ ପ୍ରମାଦବଶତଃ କରାଯାଇଥିବା ପୁତ୍ରର ଅପରାଧକୁ ପିତା କ୍ଷମା କରନ୍ତି, ହାସପରିହାସରେ କରାଯାଇଥିବା ସଖାର ଅପରାଧକୁ ସଖା ସହ୍ୟ କରେ ଏବଂ ପ୍ରେମବଶତଃ ପ୍ରିୟତମା ପତ୍ନୀ କରିଥିବା ଅପରାଧକୁ ପତି କ୍ଷମା କରେ, ସେହିପରି ଉପରୋକ୍ତ ତିନି କାରଣରୁ ମୁଁ କରିଥିବା ସମସ୍ତ ଅପରାଧ ଆପଣ କ୍ଷମା କରନ୍ତୁ।"

*ସମ୍ବନ୍ଧ – ଭଗବାନଙ୍କୁ ନିଜର ଅପରାଧପାଇଁ ଏହିପରି କ୍ଷମାପ୍ରାର୍ଥନା କରିସାରି ଅର୍ଜୁନ ବର୍ତ୍ତମାନ ଆଗ ଦୁଇ ଶ୍ଳୋକରେ ଭଗବାନଙ୍କୁ ତାଙ୍କ ଚତୁର୍ଭୁଜରୂପ ଦେଖାଇବାକୁ ପ୍ରାର୍ଥନା କରୁଛନ୍ତି–*

**ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।**
**ତଦେବ ମେ ଦର୍ଶୟ ଦେବରୂପଂ ପ୍ରସୀଦ ଦେବେଶ ଜଗନ୍ନିବାସ ॥ ୪୫ ॥**

**ଅନ୍ୱୟ –** **ଅଦୃଷ୍ଟପୂର୍ବମ୍** = ପୂର୍ବରୁ କେବେ ଦେଖା ନ ଥିବା ଆପଣଙ୍କର ଏହି ଆଶ୍ଚର୍ଯ୍ୟମୟ ରୂପକୁ; **ଦୃଷ୍ଟ୍ୱା** = ଦେଖି; **ହୃଷିତଃ, ଅସ୍ମି** = (ମୁଁ) ହର୍ଷିତ ହେଉଛି; **ଚ** = ଓ; **ମେ** = ମୋର; **ମନଃ** = ମନ; **ଭୟେନ** = ଭୟରେ; **ପ୍ରବ୍ୟଥିତମ୍** = ଅତ୍ୟନ୍ତ ବ୍ୟାକୁଳ ବି ହେଉଛି (ତେଣୁ ଆପଣ); **ତତ୍** = (ନିଜର) ସେହି; **ଦେବରୂପମ୍** = ଚତୁର୍ଭୁଜ ବିଷ୍ଣୁରୂପକୁ; **ଏବ** = ହିଁ; **ମେ** = ମୋତେ; **ଦର୍ଶୟ** = ଦେଖାନ୍ତୁ; **ଦେବେଶ** = ହେ ଦେବେଶ !; **ଜଗନ୍ନିବାସ** = ହେ ଜଗନ୍ନିବାସ !; **ପ୍ରସୀଦ** = ପ୍ରସନ୍ନ ହୁଅନ୍ତୁ।

**ଆପଣଙ୍କର ଏହି ଅଦୃଷ୍ଟପୂର୍ବ ଆଶ୍ଚର୍ଯ୍ୟମୟ ରୂପ ଦେଖି ମୁଁ ହର୍ଷିତ ହେଉଛି ଓ ମୋର ମନ ଭୟରେ ଅତ୍ୟନ୍ତ ବ୍ୟାକୁଳ ମଧ୍ୟ ହେଉଛି। ଏଣୁ ଆପଣ ନିଜର ସେହି ଚତୁର୍ଭୁଜ ବିଷ୍ଣୁରୂପ ହିଁ ମୋତେ ଦେଖାନ୍ତୁ! ହେ ଦେବେଶ! ହେ ଜଗନ୍ନିବାସ! ପ୍ରସନ୍ନ ହୁଅନ୍ତୁ।। ୪୫ ।।**

**ପ୍ରଶ୍ନ – ଅଦୃଷ୍ଟପୂର୍ବମ୍**ର ଭାବ କଣ ଓ ତାହା ଦେଖି ହର୍ଷିତ ହେବା ଏବଂ ତା' ସଙ୍ଗେ ସଙ୍ଗେ ଭୟରେ ବ୍ୟାକୁଳ ହେବା କଥା କହି ଅର୍ଜୁନ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଯେଉଁ ରୂପ ଆଗରୁ କେବେ ଦେଖାଯାଇ ନ ଥାଏ, ସେହି ଆଶ୍ଚର୍ଯ୍ୟଜନକ ରୂପକୁ **ଅଦୃଷ୍ଟପୂର୍ବ** କହନ୍ତି। ଅତଏବ ଏଠାରେ ଅର୍ଜୁନଙ୍କ କଥାର ଭାବ ହେଉଛି, "ଆପଣଙ୍କର ଏହି ଅଲୌକିକ ରୂପରେ ଯେତେବେଳେ ମୁଁ ଆପଣଙ୍କ ଗୁଣ, ପ୍ରଭାବ ଓ ଐଶ୍ୱର୍ଯ୍ୟ ଦେଖି ବିଚାର କରୁଛି, ସେତେବେଳେ ମୁଁ ବିଶେଷ ହର୍ଷିତ ହେଉଛି, ଆଃ! ମୁଁ ଅତ୍ୟନ୍ତ ସୌଭାଗ୍ୟଶାଳୀ। ମୋପରି ତୁଚ୍ଛ ମଣିଷ ଉପରେ ସାକ୍ଷାତ୍ ପରମେଶ୍ୱରଙ୍କର ଏତେ ଅପାର ଦୟା ଓ ଏପରି ଦୁର୍ଲଭ ପ୍ରେମ ଅଛି ଯେ, ସେ କୃପା କରି ମୋତେ ନିଜର ଏହି ଅଲୌକିକ

ରୂପ ଦେଖାଉଛନ୍ତି। ପରନ୍ତୁ ଏହା ସହିତ ଯେତେବେଳେ ଆପଣଙ୍କ ଭୟାବହ ବିକରାଳ ମୂର୍ତ୍ତି ଆଡ଼କୁ ମୋ ଦୃଷ୍ଟି ଚାଲିଯାଉଛି, ସେତେବେଳେ ମୋର ମନ ଭୟରେ ଥରି ଉଠୁଛି ଓ ମୁଁ ଅତ୍ୟନ୍ତ ବ୍ୟାକୁଳ ହୋଇଯାଉଛି।''

ତେଣୁ ଅର୍ଜୁନଙ୍କର ଏହି କଥନ ସହେତୁକ। ଅର୍ଜୁନଙ୍କ ଅଭିପ୍ରାୟ ହେଉଛି, ''ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି, ଆପଣ ନିଜର ଏହି ରୂପ ଶୀଘ୍ର ସଂବରଣ କରିନିଅନ୍ତୁ।''

**ପ୍ରଶ୍ନ –** ଏବ ପଦ ସହିତ ତତ୍ ପଦ ପ୍ରୟୋଗ କରି ଦେବରୂପ ଦେଖାଇବାପାଇଁ ପ୍ରାର୍ଥନା କରିବାର ଅଭିପ୍ରାୟ କଣ ?

**ଉତ୍ତର –** ତତ୍ ପଦ ପରୋକ୍ଷବାଚକ। ତା'ସହିତ ଏହା ସେହି ବସ୍ତୁର ବି ବାଚକ, ଯାହା ଆଗରୁ ଦେଖାଯାଇଛି, କିନ୍ତୁ ବର୍ତ୍ତମାନ ଦେଖାଯାଉ ନାହିଁ; ତଥା ଏବ ପଦ ତା'ଠାରୁ ଭିନ୍ନ ରୂପର ନିରାକରଣ କରେ। ଅତଏବ ଅର୍ଜୁନଙ୍କ କଥନର ଅଭିପ୍ରାୟ ହେଉଛି, ''ଆପଣ ବୈକୁଣ୍ଠଧାମରେ ଯେଉଁ ଦେବରୂପରେ ଅର୍ଥାତ୍ ବିଷ୍ଣୁରୂପରେ ନିତ୍ୟ ବାସ କରନ୍ତି, ମୋତେ ସେହି ଚତୁର୍ଭୁଜରୂପ ଦର୍ଶନ କରାନ୍ତୁ।'' କେବଳ ତତ୍‌ର ପ୍ରୟୋଗ ହୋଇଥିଲେ ଏହା ମଧ୍ୟ ସ୍ୱୀକାର କରାଯାଇ ପାରିଥାନ୍ତା ଯେ, ଭଗବାନଙ୍କର ଯେଉଁ ମନୁଷ୍ୟ ଅବତାରର ରୂପ ରହିଛି, ତାହା ଦେଖାଇବାକୁ ଅର୍ଜୁନ ପ୍ରାର୍ଥନା କରୁଛନ୍ତି। କିନ୍ତୁ ରୂପ ସହିତ 'ଦେବ' ପଦ ରହିଥିବାରୁ ତାହା ସ୍ପଷ୍ଟଭାବରେ ମନୁଷ୍ୟରୂପଠାରୁ ଭିନ୍ନ ଦେବସମ୍ବନ୍ଧୀ ରୂପର ବାଚକ ହୋଇଯାଉଛି।

**ପ୍ରଶ୍ନ –** ଦେବେଶ ଓ ଜଗନ୍ନିବାସ ସମ୍ବୋଧନର ଭାବ କଣ ?

**ଉତ୍ତର –** ଯେ ଦେବତାମାନଙ୍କର ମଧ୍ୟ ସ୍ୱାମୀ, ତାଙ୍କୁ **ଦେବେଶ** କହନ୍ତି; ତଥା ଯେ ଜଗତର ଆଧାର ଓ ସର୍ବବ୍ୟାପୀ, ତାହାଙ୍କୁ **ଜଗନ୍ନିବାସ** କହନ୍ତି। ଏହି ଦୁଇ ସମ୍ବୋଧନ ପ୍ରୟୋଗ କରି ଅର୍ଜୁନ ଜଣାଉଛନ୍ତି, ''ଆପଣ ହେଉଛନ୍ତି ସମସ୍ତ ଦେବଙ୍କର ସ୍ୱାମୀ ସାକ୍ଷାତ୍ ସର୍ବାଧାର ସର୍ବବ୍ୟାପୀ ପରମେଶ୍ୱର। ଅତଏବ ଆପଣ ହିଁ ନିଜର ସେହି ଦେବରୂପ ପ୍ରକଟ କରିପାରନ୍ତି।''

**ପ୍ରଶ୍ନ –** **ପ୍ରସୀଦ** ପଦର ଭାବ କଣ ?

**ଉତ୍ତର –** **ପ୍ରସୀଦ** ପଦଦ୍ୱାରା ଅର୍ଜୁନ ଭଗବାନଙ୍କୁ ପ୍ରସନ୍ନ ହେବାପାଇଁ କହୁଛନ୍ତି। ଅଭିପ୍ରାୟ ହେଉଛି, ''ଆପଣ ଶୀଘ୍ର ଏହି ବିକରାଳ ରୂପ ସମ୍ବରଣ କରି ମୋତେ ଆପଣଙ୍କର ଚତୁର୍ଭୁଜ ରୂପ ଦେଖାଇବାର କୃପା କରନ୍ତୁ।''

## କିରୀଟିନଂ ଗଦିନଂ ଚକ୍ରହସ୍ତମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ।
## ତେନୈବ ରୂପେଣ ଚତୁର୍ଭୁଜେନ ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ ॥୪୬॥

ଅନ୍ୱୟ – ଅହମ୍ = ମୁଁ; ତଥା, ଏବ = ସେହିପରି ହିଁ; ତ୍ୱାମ୍ = ଆପଣଙ୍କୁ; **କିରୀଟିନମ୍** = ମୁକୁଟ ଧାରଣ କରିଥିବା (ତଥା); **ଗଦିନମ୍, ଚକ୍ରହସ୍ତମ୍** = ହାତରେ ଗଦା ଓ ଚକ୍ର ଧରିଥିବା; **ଦ୍ରଷ୍ଟୁମ୍** = ଦେଖିବାକୁ; **ଇଚ୍ଛାମି** = ଚାହେଁ; **(ଅତଃ)** = ଏଣୁ; **ବିଶ୍ୱମୂର୍ତ୍ତେ** = ହେ ବିଶ୍ୱରୂପ !; **ସହସ୍ରବାହୋ** ହେ ସହସ୍ରବାହୁ ! (ଆପଣ); **ତେନ, ଏବ** = ସେହି; **ଚତୁର୍ଭୁଜେନ, ରୂପେଣ** = ଚତୁର୍ଭୁଜରୂପରେ; **ଭବ** = (ପ୍ରକଟ) ହୁଅନ୍ତୁ।

**ମୁଁ ଆପଣଙ୍କୁ ସେହିପରି ମୁକୁଟ ଧାରଣ କରିଥିବା ଗଦାଧର ଓ ଚକ୍ରଧର-ରୂପରେ ଦେଖିବାକୁ ଚାହେଁ। ଏଣୁ ହେ ବିଶ୍ୱରୂପ ! ହେ ସହସ୍ରବାହୁ ! ଆପଣ ସେହି ଚତୁର୍ଭୁଜରୂପରେ ପ୍ରକଟ ହୁଅନ୍ତୁ॥ ୪୬ ॥**

**ପ୍ରଶ୍ନ –** ତଥା ସହିତ ଏବ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** ମହାଭାରତଯୁଦ୍ଧରେ ଭଗବାନ୍ ଶସ୍ତ୍ରଗ୍ରହଣ ନ କରିବାକୁ ପ୍ରତିଜ୍ଞା କରିଥିଲେ ଏବଂ ଅର୍ଜୁନଙ୍କ ରଥ ଉପରେ ନିଜ ହାତରେ ଚାବୁକ ଓ ଘୋଡ଼ାମାନଙ୍କର ଲଗାମ ନେଇ ବିରାଜମାନ ଥିଲେ। ପରନ୍ତୁ ଏହି ସମୟରେ ଅର୍ଜୁନ ଭଗବାନଙ୍କର ଏହି ଦ୍ୱିଭୁଜ ରୂପ ଦେଖିବା ପୂର୍ବରୁ ସେହି ଚତୁର୍ଭୁଜ ରୂପ ଦେଖିବାକୁ ଚାହାଁନ୍ତି, ଯାହାଙ୍କ ହାତରେ ଗଦା ଓ ଚକ୍ରାଦି ଥିବ। ଏହି ଅଭିପ୍ରାୟରେ ହିଁ ତଥା ସହିତ ଏବ ପଦର ପ୍ରୟୋଗ ହୋଇଛି।

**ପ୍ରଶ୍ନ –** ତେନ ଏବ ପଦର ଅଭିପ୍ରାୟ କଣ ?

**ଉତ୍ତର –** ପୂର୍ବଶ୍ଳୋକରେ ଆସିଥିବା **ତଦ୍ ଦେବରୂପମ୍** ଏବକୁ ଲକ୍ଷ୍ୟ କରି ହିଁ ଅର୍ଜୁନ କହୁଛନ୍ତି, ''ଆପଣ ସେହି ଚତୁର୍ଭୁଜରୂପ ହୋଇଯାଆନ୍ତୁ।'' ଏଠାରେ **ଏବ** ପଦଦ୍ୱାରା ଏହା ମଧ୍ୟ ଧ୍ୱନିତ ହେଉଛି ଯେ, ଅର୍ଜୁନ ପ୍ରାୟ ସବୁବେଳେ ଭଗବାନଙ୍କର ଦ୍ୱିଭୁଜରୂପ ହିଁ ଦର୍ଶନ କରୁଥିଲେ, ପରନ୍ତୁ ଏଠାରେ 'ଚତୁର୍ଭୁଜରୂପ' ହିଁ ଦେଖିବାକୁ ଚାହୁଁଛନ୍ତି।

**ପ୍ରଶ୍ନ –** ଚତୁର୍ଭୁଜରୂପ ଶ୍ରୀକୃଷ୍ଣଙ୍କ ପାଇଁ କୁହାଯାଇଛି ନା ଦେବରୂପ କୁହାଯାଇଥିବାରୁ ଶ୍ରୀବିଷ୍ଣୁଙ୍କ ପାଇଁ ?

**ଉତ୍ତର –** ଶ୍ରୀବିଷ୍ଣୁଙ୍କ ପାଇଁ କୁହାଯାଇଛି। ଏଥିରେ ନିମ୍ନଲିଖିତ କେତୋଟି ହେତୁ ରହିଛି —

(୧)ଯଦି ଚତୁର୍ଭୁଜ ରୂପ ଶ୍ରୀକୃଷ୍ଣଙ୍କର ସ୍ୱାଭାବିକ ରୂପ ହୋଇଥାନ୍ତା, ତେବେ **ଗଦିନମ୍** ଓ **ଚକ୍ରହସ୍ତମ୍** କହିବାର କୌଣସି ଆବଶ୍ୟକତା ନ ଥିଲା, କାରଣ ଅର୍ଜୁନ ସେହି ରୂପ ସବୁବେଳେ ଦେଖୁଥିଲେ। ବରଂ ଚତୁର୍ଭୁଜ କହିବା ନିଷ୍ପ୍ରୟୋଜନ ଥିଲା; 'ମୁଁ ଅଳ୍ପ କିଛି ସମୟ ପୂର୍ବରୁ ଯେଉଁ ରୂପ ଦେଖୁଥିଲି, ସେହି ରୂପ ଦେଖାନ୍ତୁ।'— ବୋଲି କହିଥିଲେ ପର୍ଯ୍ୟାପ୍ତ ହୋଇଥାନ୍ତା।

(୨) ପୂର୍ବଶ୍ଳୋକରେ ଆସିଥିବା **ଦେବରୂପମ୍** ପଦ ଆଗକୁ ଏକାବନ ଶ୍ଳୋକରେ ଆସୁଥିବା **ମାନୁଷରୂପମ୍** ପଦଠାରୁ ସର୍ବଥା ଭିନ୍ନ ଅର୍ଥ ରଖେ। ଏହାଦ୍ୱାରା ମଧ୍ୟ ସିଦ୍ଧ ହେଉଛି ଯେ, ଦେବରୂପଦ୍ୱାରା ଶ୍ରୀବିଷ୍ଣୁଙ୍କର କଥା ହିଁ କୁହାଯାଇଛି।

(୩) ଆଗକୁ ପଚାଶ ଶ୍ଳୋକରେ **ସ୍ୱକଂ ରୂପମ୍** ସହିତ **ଭୂୟଃ** ପଦ ପ୍ରଥମେ ଏବଂ **ସୌମ୍ୟବପୁଃ** ସହିତ **ପୁନଃ** ପଦ ପରେ ଆସିଥିବାରୁ ମଧ୍ୟ ସେଠାରେ ପ୍ରଥମେ ଚତୁର୍ଭୁଜ ରୂପ ଓ ତା'ପରେ ଦ୍ୱିଭୁଜ ମନୁଷ୍ୟରୂପ ଦେଖାଇବା କଥା ସିଦ୍ଧ ହେଉଛି।

(୪) ଆଗାମୀ ବାଉନ ଶ୍ଳୋକରେ **ସୁଦୁର୍ଦର୍ଶମ୍** ପଦଦ୍ୱାରା କୁହାଯାଇଛି ଯେ, ଏହି ରୂପ ଅତ୍ୟନ୍ତ ଦୁର୍ଲଭ ଓ ପୁଣି କୁହାଯାଇଛି ଯେ, ଦେବତାମାନେ ମଧ୍ୟ ଏହି ରୂପ ଦେଖିବାକୁ ନିତ୍ୟ ଆକାଙ୍କ୍ଷା କରନ୍ତି। ଯଦି ଶ୍ରୀକୃଷ୍ଣଙ୍କ ଚତୁର୍ଭୁଜ ରୂପ ସ୍ୱାଭାବିକ ଥାଆନ୍ତା, ତେବେ ତ ସେହି ରୂପ ମନୁଷ୍ୟମାନଙ୍କୁ ମଧ୍ୟ ଦେଖାଯାଉଥାଆନ୍ତା, ତେଣୁ ଦେବତାମାନେ ତାହା ଦେଖିବାକୁ ସଦା ଆକାଙ୍କ୍ଷା କରୁଥାନ୍ତେ କାହିଁକି? ଯଦି ଏହା ଧରାଯାଆନ୍ତା ଯେ, ବିଶ୍ୱରୂପପାଇଁ ଏପରି କୁହାଯାଉଛି, ତେବେ ଏପରି ଭୟଙ୍କର ବିଶ୍ୱରୂପ ଦେବତାମାନଙ୍କର କଳ୍ପନାରେ ଆସନ୍ତା କାହିଁକି, ଯାହାଙ୍କ ଦନ୍ତରେ ଭୀଷ୍ମ-ଦ୍ରୋଣାଦି ଚୂର୍ଣ୍ଣ ହେଉଛନ୍ତି? ଅତଏବ ଏହା ହିଁ ପ୍ରତୀତ ହେଉଛି ଯେ, ଦେବତାମାନେ ବୈକୁଣ୍ଠବାସୀ ଶ୍ରୀବିଷ୍ଣୁଙ୍କ ରୂପଦର୍ଶନର ହିଁ ଆକାଙ୍କ୍ଷା କରନ୍ତି।

(୫) ବିରାଟସ୍ୱରୂପର ମହିମା ଅଠଚାଳିଶ ଶ୍ଳୋକରେ **ନ ବେଦଯଜ୍ଞାଧ୍ୟୟନୈଃ** ଇତ୍ୟାଦିଦ୍ୱାରା ଗାନ କରାଯାଇଛି, ପୁଣି ତେପନ ଶ୍ଳୋକରେ **ନାହଂ ବେଦୈର୍ନ ତପସା** ଆଦିରେ ପୁଣିଥରେ ସେକଥା ଆସିଛି। ଯଦି ଉଭୟ ସ୍ଥାନରେ କେବଳ ଗୋଟିଏମାତ୍ର ବିରାଟ ରୂପର ମହିମା ରହିବ, ତେବେ ଏଥିରେ ପୁନରୁକ୍ତି ଦୋଷ ଆସିଯିବ; ଏହାଦ୍ୱାରା ମଧ୍ୟ ସିଦ୍ଧ ହେଉଛି ଯେ, ମାନୁଷରୂପ ଦେଖାଇବା ପୂର୍ବରୁ ଭଗବାନ୍ ଅର୍ଜୁନଙ୍କୁ ଚତୁର୍ଭୁଜ ଦେବରୂପ ଦେଖାଇଲେ ଏବଂ ତାଙ୍କର ମହିମା ତେପନ ଶ୍ଳୋକରେ କୁହାଗଲା।

(୬) ଏହି ଅଧ୍ୟାୟର ଚବିଶ ଓ ତିରିଶ ଶ୍ଳୋକରେ ଅର୍ଜୁନ 'ବିଷ୍ଣୋ' ପଦରେ ଭଗବାନଙ୍କୁ ସମ୍ବୋଧିତ ମଧ୍ୟ କରିଥିଲେ। ଏହାଦ୍ୱାରା ମଧ୍ୟ ତାଙ୍କର ବିଷ୍ଣୁରୂପ ଦେଖିବାର ଆକାଙ୍କ୍ଷା ପ୍ରତୀତ ହେଉଛି।

ଏହିସବୁହେତୁ ସିଦ୍ଧ ହେଉଛି ଯେ, ଏଠାରେ ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଚତୁର୍ଭୁଜ ବିଷ୍ଣୁରୂପ ଦେଖାଇବାକୁ ପ୍ରାର୍ଥନା କରୁଛନ୍ତି।

**ପ୍ରଶ୍ନ –** **ସହସ୍ରବାହୋ** ଓ **ବିଶ୍ୱମୂର୍ତ୍ତେ** ସମ୍ବୋଧନ କରି ଚତୁର୍ଭୁଜ ହେବାପାଇଁ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଅର୍ଜୁନଙ୍କୁ ଭଗବାନ୍ ଯେଉଁ ସହସ୍ରହସ୍ତବିଶିଷ୍ଟ ବିରାଟ ସ୍ୱରୂପରେ ଦର୍ଶନ ଦେଉଛନ୍ତି, ସେହି ରୂପ ସମ୍ବରଣ କରି ଚତୁର୍ଭୁଜରୂପ ହେବାପାଇଁ ଅର୍ଜୁନ ଏହି ନାମଗୁଡ଼ିକ ଦ୍ୱାରା ସମ୍ବୋଧନ କରି ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି।

*ସମ୍ବନ୍ଧ – ଅର୍ଜୁନଙ୍କ ପ୍ରାର୍ଥନା ଶୁଣି ଆଗ ଦୁଇ ଶ୍ଳୋକରେ ଭଗବାନ୍ ନିଜ ବିଶ୍ୱରୂପର ମହିମା ଓ ଦୁର୍ଲଭତା ବର୍ଣ୍ଣନା କରିଛନ୍ତି ଏବଂ ଅଣଚାଶ ଶ୍ଳୋକରେ ଅର୍ଜୁନଙ୍କୁ ଆଶ୍ୱାସନା ଦେଇ ଚତୁର୍ଭୁଜରୂପ ଦେଖାଇବେ ବୋଲି କହୁଛନ୍ତି –*

ଶ୍ରୀଭଗବାନୁବାଚ

**ମୟା ପ୍ରସନ୍ନେନ ତବାର୍ଜୁନେଦଂ ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍।**
**ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବମ୍॥ ୪୭॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ!; **ପ୍ରସନ୍ନେନ** = ଅନୁଗ୍ରହପୂର୍ବକ; **ମୟା** = ମୋʼଦ୍ୱାରା; **ଆତ୍ମଯୋଗାତ୍** = ନିଜ ଯୋଗଶକ୍ତିର ପ୍ରଭାବରୁ; **ଇଦମ୍** = ଏହି; **ମେ** = ମୋର; **ପରମ୍** = ପରମ; **ତେଜୋମୟମ୍** = ତେଜୋମୟ; **ଆଦ୍ୟମ୍** = ସମସ୍ତଙ୍କର ଆଦି (ତଥା); **ଅନନ୍ତମ୍** = ଅନନ୍ତ; **ବିଶ୍ୱମ୍** = ବିରାଟ; **ରୂପମ୍** = ରୂପ; **ତବ** = ତୁମ ପାଇଁ; **ଦର୍ଶିତମ୍** = ଦେଖାଇଦିଆଗଲା; **ଯତ୍** = ଯାହା; **ତ୍ୱଦନ୍ୟେନ** = ତୁମ ଭିନ୍ନ ଅନ୍ୟ କାହା ଦ୍ୱାରା; **ନ ଦୃଷ୍ଟପୂର୍ବମ୍** = ପୂର୍ବରୁ କେବେ ଦେଖାଯାଇ ନ ଥିଲା।

**ଶ୍ରୀଭଗବାନ୍ କହିଲେ — ହେ ଅର୍ଜୁନ! ଅନୁଗ୍ରହପୂର୍ବକ ମୁଁ ନିଜର ଯୋଗଶକ୍ତି ପ୍ରଭାବରେ ମୋର ଏହି ପରମ ତେଜୋମୟ, ସମସ୍ତଙ୍କର ଆଦି ଓ ଅନନ୍ତ ବିରାଟ ରୂପ ତୁମକୁ ଦେଖାଇଲି; ତୁମ ବ୍ୟତୀତ ଅନ୍ୟ କେହି ପୂର୍ବରୁ କେବେ ମୋର ଏହିରୂପ ଦେଖି ନ ଥିଲେ॥ ୪୭॥**

**ପ୍ରଶ୍ନ— ମୟା** ସହିତ **ପ୍ରସନ୍ନେନ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ତୁମର ଭକ୍ତି ଓ ପ୍ରାର୍ଥନାଦ୍ୱାରା ପ୍ରସନ୍ନ ହୋଇ ତୁମ ପ୍ରତି ଦୟା କରି ନିଜର ଗୁଣ, ପ୍ରଭାବ ଓ ତତ୍ତ୍ୱ ବୁଝାଇବାପାଇଁ ମୁଁ ତୁମକୁ ଏହି ଅଲୌକିକ ରୂପ ଦେଖାଇଲି। ଏପରି ସ୍ଥିତିରେ ତୁମପାଇଁ ଭୟ, ଦୁଃଖ ଓ ମୋହ ହେବାର କୌଣସି କାରଣ ନାହିଁ। ତଥାପି ତୁମେ ଏପରି ଭୟରେ ବ୍ୟାକୁଳ ହେଉଛ କାହିଁକି ?"

**ପ୍ରଶ୍ନ— ଆତ୍ମଯୋଗାତ୍**ର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ମୋର ଏହି ବିରାଟ ରୂପର ଦର୍ଶନ ସବୁବେଳେ ଓ ସମସ୍ତଙ୍କୁ ମିଳିପାରେ ନାହିଁ। ମୁଁ ନିଜର ଯୋଗଶକ୍ତିବଳରେ ଏହା ଦର୍ଶନ କରାଇଲେ ଏହାର ଦର୍ଶନ ହୁଏ ଏବଂ ତା ମଧ୍ୟ ଯେ ମୋର ଦିବ୍ୟଦୃଷ୍ଟି ପାଇଥାନ୍ତି, ତାଙ୍କୁ ହିଁ ଦର୍ଶନ ହୁଏ; ଅନ୍ୟକୁ ନୁହେଁ। ଅତଏବ ଏହି ରୂପର ଦର୍ଶନ ପାଇବା ବଡ଼ ସୌଭାଗ୍ୟର କଥା।"

**ପ୍ରଶ୍ନ— ରୂପମ୍** ସହ **ଇଦମ୍, ପରମ୍, ତେଜୋମୟମ୍, ଆଦ୍ୟମ୍, ଅନନ୍ତମ୍** ଓ **ବିଶ୍ୱମ୍** ବିଶେଷଣ ଦେବାର ଭାବ କଣ ?

**ଉତ୍ତର—** ଏହି ବିଶେଷଣଗୁଡ଼ିକ ପ୍ରୟୋଗ କରି ଭଗବାନ୍ ଅର୍ଜୁନଙ୍କୁ ନିଜର ଅଲୌକିକ ଓ ଅଦ୍ଭୁତ ବିରାଟସ୍ୱରୂପର ମହତ୍ତ୍ୱ ବୁଝାଉଛନ୍ତି। ସେ କହୁଛନ୍ତି, "ମୋର ଏହି ରୂପ ଅତ୍ୟନ୍ତ ଉତ୍କୃଷ୍ଟ ଓ ଦିବ୍ୟ; ଅସୀମ ଓ ଦିବ୍ୟ ପ୍ରକାଶର ପୁଞ୍ଜ; ସମସ୍ତଙ୍କ ଉତ୍ପାଦକ, ସମସ୍ତଙ୍କର ଆଦି; ଏହା ଅସୀମରୂପରେ ବିସ୍ତୃତ; କୌଣସି ଦିଗରେ ମଧ୍ୟ ଏହାର ଆଦି-ଅନ୍ତ ମିଳେ ନାହିଁ। ତୁମେ ଯାହାକିଛି ଦେଖୁଛ, ତାହା ପୂର୍ଣ୍ଣ ନୁହେଁ, ତାହା ତ ମୋର ସେହି ମହାନ୍ ରୂପର ଅଂଶମାତ୍ର।"

**ପ୍ରଶ୍ନ—** ଭଗବାନ୍ ତ ଏହା ଆଗରୁ ଯଶୋଦା ମାତାଙ୍କୁ ନିଜ ମୁଖରେ ଏବଂ ଭୀଷ୍ମାଦି ବୀରମାନଙ୍କୁ କୌରବମାନଙ୍କ ସଭାରେ ନିଜ ବିରାଟସ୍ୱରୂପ ଦର୍ଶନ କରାଇସାରିଥିଲେ; ବର୍ତ୍ତମାନ, "ତୁମ ବ୍ୟତୀତ ଅନ୍ୟ କେହି ମୋର ଏହି ରୂପ ପୂର୍ବରୁ ଦେଖି ନ ଥିଲେ" ବୋଲି କିପରି କହିଲେ ?

**ଉତ୍ତର—** ଭଗବାନ୍ ଯଶୋଦା ମାତାଙ୍କୁ ନିଜ ମୁଖମଧ୍ୟରେ ଏବଂ ଭୀଷ୍ମାଦି ବୀରମାନଙ୍କୁ କୌରବଙ୍କ ସଭାରେ ଯେଉଁ ବିରାଟ ରୂପ ଦର୍ଶନ କରାଇଥିଲେ, ସେହିରୂପ ଏବଂ ଅର୍ଜୁନଙ୍କୁ ଦେଖାଇଥିବା ଏହି ବିରାଟରୂପ ମଧ୍ୟରେ ବହୁ ପାର୍ଥକ୍ୟ ରହିଛି। ତିନୋଟିର ଭିନ୍ନ ଭିନ୍ନ ବର୍ଣ୍ଣନା ରହିଛି। ଅର୍ଜୁନଙ୍କୁ ଭଗବାନ୍ ଯେଉଁ ରୂପ ଦର୍ଶନ କରାଇଲେ, ସେଥିରେ ଭୀଷ୍ମ ଓ ଦ୍ରୋଣ ଆଦି ଶୂରବୀର ଭଗବାନଙ୍କର ପ୍ରଜ୍ୱଳିତ ମୁଖମାନଙ୍କରେ ପ୍ରବେଶ କରୁଥିବା ଦେଖାଯାଉଥିଲା। ଏପରି ବିରାଟ ରୂପ ଭଗବାନ୍ କେବେ କାହାକୁ ଦେଖାଇ ନ ଥିଲେ। ଅତଏବ ଭଗବାନଙ୍କ କଥାରେ କୌଣସିପ୍ରକାର ଅସଙ୍ଗତି ନାହିଁ।

## ନ ବେଦଯଜ୍ଞାଧ୍ୟୟନୈର୍ନ ଦାନୈର୍ନ ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
## ଏବଂରୂପଃ ଶକ୍ୟ ଅହଂ ନୃଲୋକେ ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର ॥ ୪୮ ॥

**ଅନ୍ୱୟ –** **କୁରୁପ୍ରବୀର** = ହେ ଅର୍ଜୁନ !; **ନୃଲୋକେ** = ମନୁଷ୍ୟଲୋକରେ; **ଏବଂରୂପଃ** = ଏହିପରି ବିଶ୍ୱରୂପରେ; **ଅହମ୍** = ମୁଁ; **ନ, ବେଦଯଜ୍ଞାଧ୍ୟୟନୈଃ** = ନା ବେଦମାନଙ୍କର ଓ ଯଜ୍ଞମାନଙ୍କର ଅଧ୍ୟୟନଦ୍ୱାରା; **ନ, ଦାନୈଃ** = ନା ଦାନମାନଙ୍କ ଦ୍ୱାରା; **ନ, କ୍ରିୟାଭିଃ** = ନା କ୍ରିୟାମାନଙ୍କ ଦ୍ୱାରା; **ଚ** = ଓ; **ନ, ଉଗ୍ରୈଃ, ତପୋଭିଃ** = ନା ଉଗ୍ର ତପମାନଙ୍କ ଦ୍ୱାରା; **ତ୍ୱଦନ୍ୟେନ** = ତୁମ ଛଡ଼ା ଅନ୍ୟ କାହାକୁ; **ଦ୍ରଷ୍ଟୁମ୍** = ଦେଖାଯାଇ; **ଶକ୍ୟଃ** = ପାରିବି ।

**ହେ ଅର୍ଜୁନ! ମନୁଷ୍ୟଲୋକରେ ଏହିପରି ବିଶ୍ୱରୂପରେ ମୁଁ ନା ବେଦମାନଙ୍କର ଓ ଯଜ୍ଞମାନଙ୍କର ଅଧ୍ୟୟନଦ୍ୱାରା, ନା ଦାନମାନଙ୍କ ଦ୍ୱାରା, ନା କ୍ରିୟାମାନଙ୍କ ଦ୍ୱାରା, କିମ୍ବା ନା ଉଗ୍ରତପମାନଙ୍କ ଦ୍ୱାରା ତୁମ ଛଡ଼ା ଅନ୍ୟ କାହାକୁ ଦେଖାଯାଇପାରିବି ॥ ୪୮ ॥**

**ପ୍ରଶ୍ନ – ବେଦଯଜ୍ଞାଧ୍ୟୟନୈଃ, ଦାନୈଃ, କ୍ରିୟାଭିଃ ଓ ଉଗ୍ରୈଃ ତପୋଭିଃ –** ଏହି ପଦମାନଙ୍କର ଅଭିପ୍ରାୟ କଣ ? ଏବଂ ଏମାନଙ୍କ ଦ୍ୱାରା ଭଗବାନଙ୍କ ବିରାଟ ରୂପ ଦେଖାଯିବା ସମ୍ଭବ ନୁହେଁ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ବେଦବେତ୍ତା ଅଧିକାରୀ ଆଚାର୍ଯ୍ୟଙ୍କ ଦ୍ୱାରା ଅଙ୍ଗ-ଉପାଙ୍ଗ ସହିତ ବେଦପାଠ କରି ତାହା ଭଲରୂପେ ବୁଝିବାର ନାମ **ବେଦାଧ୍ୟୟନ** । ଯଜ୍ଞକ୍ରିୟାରେ ସୁନିପୁଣ ଯାଜ୍ଞିକ ପୁରୁଷମାନଙ୍କ ସେବାରେ ରହି ସେମାନଙ୍କ ଦ୍ୱାରା ଯଜ୍ଞବିଧିମାନ ପଢ଼ିବା ଓ ସେମାନଙ୍କ ଅଧ୍ୟକ୍ଷତାରେ ବିଧିବତ୍ କରାଯାଉଥିବା ଯଜ୍ଞ ପ୍ରତ୍ୟକ୍ଷ ଦେଖି ଯଜ୍ଞସମ୍ବନ୍ଧୀୟ ସମସ୍ତ କ୍ରିୟା ଭଲରୂପେ ଜାଣିବା ହେଉଛି **ଯଜ୍ଞର ଅଧ୍ୟୟନ** ।

ନିଜର ସ୍ୱତ୍ୱ ଥିବା ଧନ, ସମ୍ପଦ, ଅନ୍ନ, ଜଳ, ବିଦ୍ୟା, ଗୋ, ଭୂମି ଆଦି ଯେକୌଣସି ବସ୍ତୁ ଅନ୍ୟମାନଙ୍କ ସୁଖ ଓ ହିତପାଇଁ ପ୍ରସନ୍ନ ହୃଦୟରେ ଯଥାଯୋଗ୍ୟ ଦେବାର ନାମ **ଦାନ** ।

ଶ୍ରୌତ-ସ୍ମାର୍ତ୍ତ ଯଜ୍ଞାଦି ଅନୁଷ୍ଠାନପାଇଁ ଏବଂ ନିଜ ବର୍ଣ୍ଣାଶ୍ରମଧର୍ମ ପାଳନପାଇଁ କରାଯାଉଥିବା ସମସ୍ତ ଶାସ୍ତ୍ରବିହିତ କର୍ମକୁ **କ୍ରିୟା** କହନ୍ତି ।

କୃଚ୍ଛ୍ର-ଚାନ୍ଦ୍ରାୟଣାଦି ବ୍ରତ, ବିଭିନ୍ନପ୍ରକାର କଠୋର ନିୟମପାଳନ, ବିବେକ ଓ ବଳପୂର୍ବକ ମନ ଓ ଇନ୍ଦ୍ରିୟମାନଙ୍କ ଦମନ ତଥା ଧର୍ମପାଇଁ ଶାରୀରିକ ବା ମାନସିକ କଠିନ କ୍ଳେଶ ସହନ ଅଥବା ଶାସ୍ତ୍ରବିଧି ଅନୁସାରେ କରାଯାଉଥିବା ଅନ୍ୟ ବିଭିନ୍ନପ୍ରକାର ତପସ୍ୟାର ନାମ **ଉଗ୍ରତପ** ।

ଏହିସବୁ ସାଧନାଦ୍ୱାରା ମଧ୍ୟ ତାଙ୍କର ବିରାଟ ସ୍ୱରୂପ ଦର୍ଶନ କରିବା ଅସମ୍ଭବ ବୋଲି କହି ଭଗବାନ୍ ସେହି ରୂପର ମହିମା ପ୍ରକଟ କରୁଛନ୍ତି ଓ କହୁଛନ୍ତି, ''ଏହିପରି ମହାନ୍ ପ୍ରଯତ୍ନଦ୍ୱାରା ମଧ୍ୟ ଯାହାର ଦର୍ଶନ ହୁଏ ନାହିଁ, ତୁମେ ମୋର ପ୍ରସନ୍ନତା ଓ କୃପାପ୍ରସାଦଦ୍ୱାରା ସେହି ରୂପ ପ୍ରତ୍ୟକ୍ଷ ଦେଖୁଛ; ଏହା ତୁମର ମହାନ୍ ସୌଭାଗ୍ୟ । ବର୍ତ୍ତମାନ ତୁମକୁ ଯେଉଁ ଭୟ, ଦୁଃଖ ଓ ମୋହ ହେଉଛି, ତାହା ହେବା ଉଚିତ ନୁହେଁ ।''

**ପ୍ରଶ୍ନ –** ବିରାଟରୂପର ଦର୍ଶନ ଅର୍ଜୁନଙ୍କ ଛଡ଼ା ଅନ୍ୟମାନଙ୍କ ପାଇଁ ଅସମ୍ଭବ ବୋଲି କହିବାବେଳେ **ନୃଲୋକେ** ପଦ ପ୍ରୟୋଗ କରିବାର ଭାବ କଣ ? କଣ ଅନ୍ୟ ଲୋକରେ ଏହାର ଦର୍ଶନ ସମ୍ଭବ ନୁହେଁ କି ?

**ଉତ୍ତର –** ବେଦ-ଯଜ୍ଞାଦି ଅଧ୍ୟୟନରେ, ଦାନରେ, ତପରେ ତଥା ଅନ୍ୟାନ୍ୟ ବିଭିନ୍ନପ୍ରକାର କ୍ରିୟାମାନଙ୍କରେ ଅଧିକାର କେବଳ ମନୁଷ୍ୟଲୋକରେ ହିଁ ଅଛି ଏବଂ ମନୁଷ୍ୟଶରୀରରେ ହିଁ ଜୀବ ଭିନ୍ନ ଭିନ୍ନ ପ୍ରକାରର ନୂତନ କର୍ମ କରି ଭିନ୍ନ ଭିନ୍ନ ଅଧିକାର ଲାଭ କରେ । ଅନ୍ୟାନ୍ୟ ଲୋକ ତ ମୁଖ୍ୟତଃ ଭୋଗସ୍ଥାନ ହିଁ ଅଟେ । ମନୁଷ୍ୟଲୋକର ଏହି ମହତ୍ତ୍ୱ ବୁଝାଇବାପାଇଁ ଏଠାରେ **ନୃଲୋକେ** ପଦ ପ୍ରୟୋଗ କରାଯାଇଛି । କହିବାର ଅଭିପ୍ରାୟ ହେଉଛି, ''ଯଦି ମନୁଷ୍ୟଲୋକରେ ମଧ୍ୟ ଉପରୋକ୍ତ ସାଧନାଦ୍ୱାରା ଅନ୍ୟ କୌଣସି ବ୍ୟକ୍ତି ମୋର ଏହି ରୂପ ଦେଖିପାରିବ ନାହିଁ, ତେବେ ଅନ୍ୟାନ୍ୟ ଲୋକରେ ଏବଂ ବିନା କିଛି ସାଧନାରେ ଯେ କେହି ଦେଖିପାରିବ ନାହିଁ, ତାହା କହିବା ଅନାବଶ୍ୟକ ।''

**ପ୍ରଶ୍ନ—** କୁରୁପ୍ରବୀର ସମ୍ବୋଧନର ଭାବ କଣ ?

**ଉତ୍ତର—** ଏହା ପ୍ରୟୋଗ କରି ଭଗବାନ୍ କହୁଛନ୍ତି, "ତୁମେ କୌରବମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୀର ପୁରୁଷ। ତୁମପରି ବୀରପୁରୁଷ ପକ୍ଷରେ ଏପରି ଭୟଭୀତ ହେବା ଶୋଭା ପାଉନାହିଁ। ତେଣୁ ତୁମେ ଭୟ କରିବା ଉଚିତ ନୁହେଁ।"

## ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ମମେଦମ୍। ବ୍ୟପେତଭୀ ପ୍ରୀତମନାଃ ପୁନସ୍ତ୍ୱଂ ତଦେବ ମେ ରୂପମିଦଂ ପ୍ରପଶ୍ୟ ॥ ୪୯ ॥

**ଅନ୍ୱୟ—** **ମମ** = ମୋର; **ଈଦୃକ୍** = ଏହିପରି; **ଇଦମ୍** = ଏହି; **ଘୋରମ୍** = ବିକରାଳ; **ରୂପମ୍** = ରୂପକୁ; **ଦୃଷ୍ଟ୍ୱା** = ଦେଖି; **ତେ** = ତୁମେ; **ବ୍ୟଥା** = ବ୍ୟାକୁଳ; **ମା** = ହେବା ଉଚିତ ନୁହେଁ; **ଚ** = ଓ; **ବିମୂଢ଼ଭାବଃ** = ମୂଢ଼ଭାବ (ମଧ୍ୟ); **ମା** = ଉଚିତ ନୁହେଁ; **ତ୍ୱମ୍** = ତୁମେ; **ବ୍ୟପେତଭୀ** = ନିର୍ଭୀକ (ଓ); **ପ୍ରୀତମନାଃ** = ପ୍ରସନ୍ନଚିତ୍ତ ହୋଇ; **ତତ୍, ଏବ** = ସେହି; **ମେ** = ମୋର; **ଇଦମ୍** = ଏହି (ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ); **ରୂପମ୍** = ରୂପକୁ; **ପୁନଃ, ପ୍ରପଶ୍ୟ** = ପୁନର୍ବାର ଦେଖ।

**ମୋର ଏହିପରି ବିକରାଳ ରୂପ ଦେଖି ତୁମେ ବ୍ୟାକୁଳ ହେବା ଉଚିତ ନୁହେଁ ଓ ମୂଢ଼ଭାବ ଧରିବା ମଧ୍ୟ ଉଚିତ ନୁହେଁ। ତୁମେ ନିର୍ଭୀକ ଓ ପ୍ରସନ୍ନଚିତ୍ତ ହୋଇ ମୋର ସେହି ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଚତୁର୍ଭୁଜରୂପ ପୁନର୍ବାର ଦେଖ ॥ ୪୯ ॥**

**ପ୍ରଶ୍ନ—** ମୋର ଏହି ବିକରାଳ ରୂପ ଦେଖି ତୁମେ ବ୍ୟାକୁଳ ଓ ମୂଢ଼ଭାବ ଧରିବା ଉଚିତ ନୁହେଁ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏହି କଥନଦ୍ୱାରା ଭଗବାନ୍ କହୁଛନ୍ତି, "ମୁଁ ପ୍ରସନ୍ନ ହୋଇ ତୁମକୁ ଏହି ଯେଉଁ ପରମ ଦୁର୍ଲଭ ବିରାଟ ସ୍ୱରୂପ ଦର୍ଶନ କରାଇଲି, ଏହାଦ୍ୱାରା ତୁମ ଅନ୍ତରରେ ବ୍ୟାକୁଳତା ଓ ମୂଢ଼ଭାବ ଆସିବା କଦାପି ଉଚିତ ନ ଥିଲା। ତଥାପି ଯଦି ଏହା ଦେଖି ତୁମର ବ୍ୟଥା ତଥା ମୋହ ହେଉଛି ଏବଂ ତୁମେ ଚାହୁଁଛ ଯେ, ମୁଁ ଏବେ ଏହି ସ୍ୱରୂପ ସଂବରଣ କରିନିଏ, ତେବେ ତୁମ ଇଚ୍ଛାନୁସାରେ ତୁମକୁ ସୁଖୀ କରାଇବାକୁ ବର୍ତ୍ତମାନ ମୁଁ ଏହି ରୂପ ତୁମ ଆଗରୁ ସଂବରଣ କରିନେଉଛି। ତୁମେ ମୋହିତ ହୁଅ ନାହିଁ, କି ଭୟରେ ବ୍ୟଥିତ ହୁଅ ନାହିଁ।"

**ପ୍ରଶ୍ନ—** ତ୍ୱମ୍ ସହିତ **ବ୍ୟପେତଭୀ** ଓ **ପ୍ରୀତମନାଃ** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ତ୍ୱମ୍ ସହିତ **ବ୍ୟପେତଭୀ** ଓ **ପ୍ରୀତମନାଃ** ବିଶେଷଣ ଦେଇ ଭଗବାନ୍ କହିଲେ, "ଯେଉଁ ରୂପ ଦେଖି ତୁମେ ଭୟଭୀତ ଓ ବ୍ୟାକୁଳ ହେଉଥିଲ, ତାହା ସଂବରଣ କରି ବର୍ତ୍ତମାନ ମୁଁ ତୁମର ଇଚ୍ଛିତ ଚତୁର୍ଭୁଜରୂପରେ ପ୍ରକଟ ହେଉଛି। ଅତଏବ ତୁମେ ନିର୍ଭୟ ଓ ପ୍ରସନ୍ନମନା ହୋଇଯାଅ।"

**ପ୍ରଶ୍ନ—** ରୂପମ୍ ସହିତ **ତତ୍** ଓ **ଇଦମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ? ତଥା **ପୁନଃ** ପଦ ପ୍ରୟୋଗ କରି ସେହି ରୂପ ଦେଖ ବୋଲି କହିବାର ଭାବ କଣ ?

**ଉତ୍ତର—** **ତତ୍** ଓ **ଇଦମ୍** ବିଶେଷଣ ଦେଇ ଭଗବାନ୍ କହୁଛନ୍ତି, "ଯେଉଁ ଚତୁର୍ଭୁଜ-ଦେବରୂପର ଦର୍ଶନ ମୁଁ ତୁମକୁ ପୂର୍ବେ କରାଇଥିଲି ଏବଂ ଯାହାର ଦର୍ଶନପାଇଁ ତୁମେ ପ୍ରାର୍ଥନା କରୁଛ, ବର୍ତ୍ତମାନ ତୁମେ ସେହି ରୂପ ଦେଖ। ହେଉଟି ଦେଖ, ସେହି ରୂପ ତୁମ ଆଗରେ ରହିଛି, ଅର୍ଥାତ୍ ବର୍ତ୍ତମାନ ତୁମ ସମ୍ମୁଖରୁ ସେହି ବିଶ୍ୱରୂପ ତିରୋହିତ ହୋଇଗଲା ଏବଂ ତା' ସ୍ଥାନରେ ଚତୁର୍ଭୁଜରୂପ ପ୍ରକଟ ହୋଇଛି। ଅତଏବ ବର୍ତ୍ତମାନ ତୁମେ ନିର୍ଭୟ ହୋଇ ପ୍ରସନ୍ନ ମନରେ ମୋର ଏହି ଚତୁର୍ଭୁଜରୂପ ଦର୍ଶନ କର।"

**ପୁନଃ** ପଦ ପ୍ରୟୋଗରୁ ଏଠାରେ ପ୍ରତୀତ ହେଉଛି କି, ଭଗବାନ୍ ଅର୍ଜୁନଙ୍କୁ ନିଜ ଚତୁର୍ଭୁଜରୂପ ପ୍ରଥମେ ବି ଦର୍ଶନ କରାଇଥିଲେ। ପଞ୍ଚଚାଳିଶ ଓ ଛୟାଳିଶ ଶ୍ଳୋକରେ କରାଯାଇଥିବା ଅର୍ଜୁନଙ୍କ ପ୍ରାର୍ଥନାରେ **ତତ୍** ଏବ ଓ ତେନ ଏବ ପଦମାନଙ୍କ ପ୍ରୟୋଗରୁ ମଧ୍ୟ ଏହି ଭାବ ସ୍ପଷ୍ଟ ହୋଇଯାଉଛି।

**ସମ୍ବନ୍ଧ—** ଏପରିଭାବରେ ଚତୁର୍ଭୁଜରୂପ ଦର୍ଶନ କରିବାପାଇଁ ଅର୍ଜୁନଙ୍କୁ ଆଜ୍ଞା ଦେଇ ଭଗବାନ୍ କଣ କଲେ, ବର୍ତ୍ତମାନ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ତାହା କହୁଛନ୍ତି—

ସଞ୍ଜୟ ଉବାଚ

## ଇତ୍ୟର୍ଜୁନଂ ବାସୁଦେବସ୍ତଥୋକ୍ତ୍ୱା ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
## ଆଶ୍ୱାସୟାମାସ ଚ ଭୀତମେନଂ ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା ॥ ୫୦ ॥

**ଅନ୍ୱୟ –** **ବାସୁଦେବଃ** = ବାସୁଦେବ ଭଗବାନ୍; **ଅର୍ଜୁନମ୍** = ଅର୍ଜୁନଙ୍କୁ; **ଇତି** = ଏପରି; **ଉକ୍ତ୍ୱା** = କହି; **ଭୂୟଃ** = ପୁନର୍ବାର; **ତଥା** = ସେହିପରି; **ସ୍ୱକମ୍** = ନିଜର; **ରୂପମ୍** = ଚତୁର୍ଭୁଜରୂପ; **ଦର୍ଶୟାମାସ** = ଦେଖାଇଲେ; **ଚ** = ଓ; **ପୁନଃ** = ତଦନନ୍ତର; **ମହାତ୍ମା** = ମହାତ୍ମା ଶ୍ରୀକୃଷ୍ଣ; **ସୌମ୍ୟବପୁଃ** = ସୌମ୍ୟମୂର୍ତ୍ତି; **ଭୂତ୍ୱା** = ହୋଇ; **ଭୀତମ୍, ଏନମ୍** = ଭୟଭୀତ ହୋଇଥିବା ଏହି ଅର୍ଜୁନଙ୍କୁ; **ଆଶ୍ୱାସୟାମାସ** = ଆଶ୍ୱାସନା ଦେଲେ ।

**ସଞ୍ଜୟ କହିଲେ — ବାସୁଦେବ ଭଗବାନ୍ ଅର୍ଜୁନଙ୍କୁ ଏପରି କହି ପୁନର୍ବାର ନିଜର ସେହି ଚତୁର୍ଭୁଜ ରୂପ ଦେଖାଇଲେ ଓ ତଦନନ୍ତର ମହାତ୍ମା ଶ୍ରୀକୃଷ୍ଣ ସୌମ୍ୟମୂର୍ତ୍ତି ହୋଇ ଭୟଭୀତ ହୋଇଥିବା ଅର୍ଜୁନଙ୍କୁ ଆଶ୍ୱାସନା ଦେଲେ ॥ ୫୦ ॥**

**ପ୍ରଶ୍ନ –** **ବାସୁଦେବଃ** ପଦର ଅଭିପ୍ରାୟ କଣ ?

**ଉତ୍ତର –** ଭଗବାନ୍ ଶ୍ରୀକୃଷ୍ଣ ବସୁଦେବଙ୍କର ପୁତ୍ରରୂପେ ପ୍ରକଟ ହୋଇଛନ୍ତି ଏବଂ ଆତ୍ମରୂପରେ ସମସ୍ତଙ୍କ ମଧ୍ୟରେ ନିବାସ କରନ୍ତି । ଏଣୁ ତାଙ୍କ ନାମ **ବାସୁଦେବ** ।

**ପ୍ରଶ୍ନ –** **ରୂପମ୍** ସହିତ **ସ୍ୱକମ୍** ବିଶେଷଣ ଦେବାର ଏବଂ **ଦର୍ଶୟାମାସ** କ୍ରିୟା ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର –** **ସ୍ୱକଂ ରୂପମ୍**ର ଅର୍ଥ ହେଉଛି 'ନିଜର ସ୍ୱରୂପ ।' ଏପରି ଦେଖି ବସିଲେ ତ ବିଶ୍ୱରୂପ ମଧ୍ୟ ଭଗବାନ୍ ଶ୍ରୀକୃଷ୍ଣଙ୍କର ହିଁ ରୂପ ଓ ତାହା ମଧ୍ୟ ତାଙ୍କର ସ୍ୱକୀୟ ତଥା ଭଗବାନ୍ ଯେଉଁ ମନୁଷ୍ୟରୂପରେ ସମସ୍ତଙ୍କ ଆଗରେ ପ୍ରକଟ ହୋଇଥିଲେ, ସେହି ଶ୍ରୀକୃଷ୍ଣରୂପ ମଧ୍ୟ ତାଙ୍କର ସ୍ୱକୀୟ ହିଁ ଅଟେ । କିନ୍ତୁ ଯେଉଁଠି **ରୂପମ୍** ସହିତ **ସ୍ୱକମ୍** ବିଶେଷଣ ଦିଆଯାଇଛି, ସେଠାରେ ଉକ୍ତ ଦୁଇଟିଠାରୁ ଭିନ୍ନ କୌଣସି ଏକ ତୃତୀୟ ରୂପକୁ ହିଁ ଲକ୍ଷ୍ୟ କରାଯିବା ଉଚିତ; କାରଣ, ବିଶ୍ୱରୂପ ତ ଅର୍ଜୁନଙ୍କ ସମ୍ମୁଖରେ ହିଁ ଥିଲା ଏବଂ ତାହା ଦେଖି ସେ ତ ଭୟଭୀତ ହେଉଥିଲେ; ଅତଏବ ତାହା ଦେଖାଇବା କଥା ଏଠାରେ କଳ୍ପନା ବି କରାଯାଇ ନ ପାରେ । ପୁଣି ମନୁଷ୍ୟରୂପପାଇଁ ଏହା କହିବା ଅନାବଶ୍ୟକ ଯେ, ଭଗବାନ୍ ସେହି ରୂପ ଦେଖାଇଲେ (ଦର୍ଶୟାମାସ); କାରଣ ବିଶ୍ୱରୂପ ସଂବରଣ କରିବା ପରେ ଯେଉଁ ସ୍ୱାଭାବିକ ମନୁଷ୍ୟ-ଅବତାର ରୂପ ରହନ୍ତା, ତାହା ତ ଅର୍ଜୁନଙ୍କ ଆଗରେ ପୂର୍ବବତ୍ ରହିଥିଲା; ତାହା ଦେଖାଇବା କଥା ତ ଉଠୁ ନାହିଁ; ତାହାକୁ ତ ଅର୍ଜୁନ ସ୍ୱୟଂ ଦେଖୁଛନ୍ତି । ଅତଏବ ଏଠାରେ **ସ୍ୱକମ୍** ବିଶେଷଣ ଓ **ଦର୍ଶୟାମାସ** କ୍ରିୟା ପ୍ରୟୋଗଦ୍ୱାରା ଏହି ଭାବ ପ୍ରତୀତ ହେଉଛି ଯେ, ନରଲୀଳାପାଇଁ ପ୍ରକଟ କରାଯାଇଥିବା ଏବଂ ସମସ୍ତଙ୍କ ଆଗରେ ରହୁଥିବା ମନୁଷ୍ୟରୂପଠାରୁ ଏବଂ ନିଜର ଯୋଗଶକ୍ତିଦ୍ୱାରା ପ୍ରକଟ କରି ଦେଖାଉଥିବା ବିଶ୍ୱରୂପଠାରୁ ଭିନ୍ନ ନିତ୍ୟ ବୈକୁଣ୍ଠଧାମରେ ନିବାସ କରୁଥିବା ଭଗବାନଙ୍କର ନିଜର ଯେଉଁ ଦିବ୍ୟ ଚତୁର୍ଭୁଜରୂପ ରହିଛି, ତାହା ଦେଖାଇବାପାଇଁ ହିଁ ଅର୍ଜୁନ ପ୍ରାର୍ଥନା କରିଥିଲେ ଏବଂ ଭଗବାନ୍ ତାଙ୍କୁ ସେହି ରୂପ ଦେଖାଇଲେ ।

**ପ୍ରଶ୍ନ –** **ମହାତ୍ମା** ପଦର ଅଭିପ୍ରାୟ କଣ ? ଏବଂ '**ସୌମ୍ୟବପୁଃ** ହୋଇ ଭୟଭୀତ ଅର୍ଜୁନଙ୍କୁ ଧୈର୍ଯ୍ୟ ଦେଲେ' କଥାର ଅଭିପ୍ରାୟ କଣ ?

**ଉତ୍ତର –** ଯାହାଙ୍କର ଆତ୍ମା ଅର୍ଥାତ୍ ସ୍ୱରୂପ ମହାନ୍, ତାହାଙ୍କୁ ମହାତ୍ମା କହନ୍ତି । ଭଗବାନ୍ ଶ୍ରୀକୃଷ୍ଣ ସମସ୍ତଙ୍କର ଆତ୍ମରୂପ; ତେଣୁ ସେ ମହାତ୍ମା । କହିବାର ଅଭିପ୍ରାୟ ଏହି ଯେ, ଅର୍ଜୁନଙ୍କୁ ନିଜର ଚତୁର୍ଭୁଜରୂପ ଦର୍ଶନ କରାଇବା ପରେ ମହାତ୍ମା ଶ୍ରୀକୃଷ୍ଣ **ସୌମ୍ୟବପୁଃ** ହୋଇ ଅର୍ଥାତ୍ ପରମଶାନ୍ତ ଶ୍ୟାମସୁନ୍ଦର ମନୁଷ୍ୟରୂପ ହୋଇ ଭୟରେ ବ୍ୟାକୁଳ ହେଉଥିବା ଅର୍ଜୁନଙ୍କୁ ଧୈର୍ଯ୍ୟ ଦେଲେ ।

**ସମ୍ବନ୍ଧ –** ଏହିପରିଭାବରେ ଭଗବାନ୍ ଶ୍ରୀକୃଷ୍ଣ ନିଜର ବିଶ୍ୱରୂପ ସଂବରଣ କରି, ଚତୁର୍ଭୁଜରୂପରେ ଦର୍ଶନ ଦେବା ପରେ ଯେତେବେଳେ ସ୍ୱାଭାବିକ ମନୁଷ୍ୟରୂପ ହୋଇ ଅର୍ଜୁନଙ୍କୁ ଆଶ୍ୱାସନା ଦେଲେ, ସେତେବେଳେ ଅର୍ଜୁନ ସାବଧାନ ହୋଇ କହିବାକୁ ଲାଗିଲେ –

ଅର୍ଜୁନ ଉବାଚ

**ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ ତବ ସୌମ୍ୟଂ ଜନାର୍ଦନ।**
**ଇଦାନୀମସ୍ମି ସଂବୃତ୍ତଃ ସଚେତାଃ ପ୍ରକୃତିଂ ଗତଃ॥ ୫୧ ॥**

**ଅନ୍ୱୟ—** **ଜନାର୍ଦନ** = ହେ ଜନାର୍ଦନ !; **ତବ** = ଆପଣଙ୍କର; **ଇଦମ୍** = ଏହି; **ସୌମ୍ୟମ୍** = ଅତି ଶାନ୍ତ; **ମାନୁଷମ୍, ରୂପମ୍** = ମନୁଷ୍ୟରୂପକୁ; **ଦୃଷ୍ଟ୍ୱା** = ଦେଖି; **ଇଦାନୀମ୍** = ଏବେ (ମୁଁ); **ସଚେତାଃ** = ସ୍ଥିରଚିତ୍ତ; **ସଂବୃତ୍ତଃ, ଅସ୍ମି** = ହୋଇଗଲି (ଓ); **ପ୍ରକୃତିମ୍** = ସହଜସ୍ଥିତିକୁ; **ଗତଃ** = ପ୍ରାପ୍ତ ହୋଇଗଲି।

**ଅର୍ଜୁନ କହିଲେ— ହେ ଜନାର୍ଦନ! ଆପଣଙ୍କର ଏହି ଅତି ଶାନ୍ତ ମନୁଷ୍ୟରୂପ ଦେଖି ବର୍ତ୍ତମାନ ମୁଁ ସ୍ଥିରଚିତ୍ତ ହୋଇଗଲି ଏବଂ ନିଜର ସ୍ୱାଭାବିକ ସ୍ଥିତି ପ୍ରାପ୍ତ ହୋଇଗଲି॥ ୫୧ ॥**

**ପ୍ରଶ୍ନ—** ରୂପମ୍ ସହ **ସୌମ୍ୟମ୍** ଓ **ମାନୁଷମ୍** ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର—** ଭଗବାନଙ୍କର ଯେଉଁ ମନୁଷ୍ୟରୂପ ଥିଲା, ତାହା ଥିଲା ଅତ୍ୟନ୍ତ ମଧୁର, ସୁନ୍ଦର ଓ ଶାନ୍ତ ତଥା ପୂର୍ବଶ୍ଳୋକରେ ଭଗବାନଙ୍କର ଯେଉଁ ସୌମ୍ୟବପୁ ଧରିବା କଥା କୁହାଯାଇଛି, ତାହା ମଧ୍ୟ ମନୁଷ୍ୟରୂପକୁ ଲକ୍ଷ୍ୟ କରି କୁହାଯାଇଛି। ଏହା ସ୍ପଷ୍ଟ କରିବାପାଇଁ ଏଠାରେ ରୂପମ୍ ସହିତ **ସୌମ୍ୟମ୍** ଓ **ମାନୁଷମ୍**— ଏହି ଦୁଇଟି ବିଶେଷଣ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ— ସଚେତାଃ ସଂବୃତ୍ତଃ** ଓ **ପ୍ରକୃତିଂ ଗତଃ**ର ଭାବ କଣ ?

**ଉତ୍ତର—** ଭଗବାନଙ୍କର ବିରାଟରୂପ ଦେଖି ଅର୍ଜୁନଙ୍କ ମନରେ ଭୟ, ବ୍ୟଥା ଓ ମୋହ ଆଦି ବିକାର ଉତ୍ପନ୍ନ ହୋଇଯାଇଥିଲା; ଏହିସବୁ ପଦ ପ୍ରୟୋଗଦ୍ୱାରା ସେସବୁର ଅଭାବ ଦେଖାଇଦିଆଯାଇଛି। ଅର୍ଜୁନ କହୁଛନ୍ତି, "ଆପଣଙ୍କର ଏହି ଶ୍ୟାମସୁନ୍ଦର ମଧୁର ମନୁଷ୍ୟରୂପ ଦେଖି ବର୍ତ୍ତମାନ ମୁଁ ସ୍ଥିରଚିତ୍ତ ହୋଇଗଲି ଅର୍ଥାତ୍ ମୋର ମୋହ, ଭ୍ରମ ଓ ଭୟ ଦୂର ହୋଇଗଲା ଏବଂ ମୁଁ ନିଜର ବାସ୍ତବିକ ସ୍ଥିତି ପ୍ରାପ୍ତ ହୋଇସାରିଛି। ଅର୍ଥାତ୍ ମୋର ମନ, ଇନ୍ଦ୍ରିୟ ଓ ଶରୀରରେ ଭୟ, ବ୍ୟାକୁଳତା ଓ କମ୍ପ ଆଦି ଯେଉଁ ଅନେକପ୍ରକାର ବିକାର ଉତ୍ପନ୍ନ ହୋଇଥିଲା;— ସେସବୁ ଦୂର ହୋଇଯିବାରୁ ବର୍ତ୍ତମାନ ମୁଁ ପୂର୍ବପରି ସ୍ୱସ୍ଥ ହୋଇଯାଇଛି।"

*ସମ୍ବନ୍ଧ— ଅର୍ଜୁନଙ୍କର ଏହି କଥା ଶୁଣି ଭଗବାନ୍ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ନିଜ ଚତୁର୍ଭୁଜ ଦେବରୂପ ଦର୍ଶନ କରିବାର ଦୁର୍ଲଭତା ଓ ତାଁର ମହିମା ବର୍ଣ୍ଣନା କରୁଛନ୍ତି—*

ଶ୍ରୀଭଗବାନୁବାଚ

**ସୁଦୁର୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ।**
**ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଙ୍କ୍ଷିଣଃ॥ ୫୨ ॥**

**ଅନ୍ୱୟ—** **ମମ** = ମୋର; **ଯତ୍** = ଯେଉଁ; **ରୂପମ୍** = ଚତୁର୍ଭୁଜରୂପ; **ଦୃଷ୍ଟବାନ୍, ଅସି** = ଦେଖିଲ; **ଇଦମ୍** = ଏହା; **ସୁଦୁର୍ଦର୍ଶମ୍** = ସୁଦୁର୍ଦର୍ଶ ଅର୍ଥାତ୍ ତାହାର ଦର୍ଶନ ପାଇବା ଅତ୍ୟନ୍ତ କଠିନ; **ଦେବାଃ** = ଦେବତାମାନେ; **ଅପି** = ମଧ୍ୟ; **ନିତ୍ୟମ୍** = ସଦା; **ଅସ୍ୟ** = ଏହି; **ରୂପସ୍ୟ** = ରୂପର; **ଦର୍ଶନକାଙ୍କ୍ଷିଣଃ** = ଦର୍ଶନାକାଙ୍କ୍ଷୀ ହୋଇଥାନ୍ତି।

**ଶ୍ରୀଭଗବାନ୍ କହିଲେ— ମୋର ଯେଉଁ ଚତୁର୍ଭୁଜରୂପ ତୁମେ ଦେଖିଲ, ତାହାର ଦର୍ଶନ ପାଇବା ବଡ଼ କଠିନ। ଦେବତାମାନେ ମଧ୍ୟ ସଦା ଏହି ରୂପର ଦର୍ଶନାକାଙ୍କ୍ଷୀ ହୋଇଥାନ୍ତି॥ ୫୨ ॥**

**ପ୍ରଶ୍ନ—** ରୂପମ୍ ସହିତ **ସୁଦୁର୍ଦର୍ଶମ୍** ଓ ଇଦମ୍ ବିଶେଷଣ ଦେବାର ଅଭିପ୍ରାୟ କଣ ?

**ଉତ୍ତର— ସୁଦୁର୍ଦର୍ଶମ୍** ବିଶେଷଣ ଦେଇ ଭଗବାନ୍ ନିଜ ଚତୁର୍ଭୁଜ-ଦିବ୍ୟରୂପ ଦର୍ଶନର ଦୁର୍ଲଭତା ଓ ତାଁର

ମହିମା ଦେଖାଇଛନ୍ତି ଏବଂ **ଇଦମ୍** ପଦ ନିକଟବର୍ତ୍ତୀ ବସ୍ତୁର ନିର୍ଦ୍ଦେଶକ ହୋଇଥିବାରୁ ତାହାଦ୍ୱାରା ବିଶ୍ୱରୂପ ପରେ ଦେଖାଇଦିଆଯାଇଥିବା ଚତୁର୍ଭୁଜରୂପକୁ ସଙ୍କେତ କରାଯାଇଛି। ଭଗବାନଙ୍କ କହିବାର ଅଭିପ୍ରାୟ ହେଉଛି, "ମୋର ଯେଉଁ ଚତୁର୍ଭୁଜ, ଯେଉଁ ମାୟାତୀତ, ଦିବ୍ୟଗୁଣଯୁକ୍ତ ନିତ୍ୟରୂପ ତୁମେ ଦର୍ଶନ କରିଛ, ସେହି ରୂପର ଦର୍ଶନ ପାଇବା ଅତ୍ୟନ୍ତ ଦୁର୍ଲଭ। ତାହାର ଦର୍ଶନ କେବଳ ତାହାଙ୍କୁ ମିଳିପାରେ, ଯେ ମୋର ଅନନ୍ୟ ଭକ୍ତ ହୋଇଥାନ୍ତି ଏବଂ ଯାହାଙ୍କ ଉପରେ ମୋର ଅନନ୍ୟ କୃପାର ପୂର୍ଣ୍ଣ ପ୍ରକାଶ ହୋଇଥାଏ।"

**ପ୍ରଶ୍ନ –** 'ଦେବତାମାନେ ମଧ୍ୟ ସଦା ଏହିରୂପ ଦର୍ଶନ କରିବାର ଇଚ୍ଛା ରଖନ୍ତି' – ଏହି କଥନର ଅଭିପ୍ରାୟ କଣ ତଥା ଏହି ବାକ୍ୟରେ **ଅପି** ପ୍ରୟୋଗ କରିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ମଧ୍ୟ ଭଗବାନ୍ ନିଜ ଚତୁର୍ଭୁଜରୂପଦର୍ଶନର ଦୁର୍ଲଭତା ଓ ତା'ର ମହତ୍ତ୍ୱ ହିଁ ପ୍ରକଟ କରିଛନ୍ତି। ଅପି ପଦ ପ୍ରୟୋଗଦ୍ୱାରା ଦେଖାଇଛନ୍ତି, "ଯେଉଁଠି ଏହି ରୂପ ଦର୍ଶନ କରିବାକୁ ଦେବତାମାନେ ମଧ୍ୟ ସଦା ଅଭିଳାଷ ରଖନ୍ତି ଅଥଚ ସମସ୍ତେ ଏହାର ଦର୍ଶନ ପାଆନ୍ତି ନାହିଁ, ସେଠାରେ ମନୁଷ୍ୟଙ୍କ କଥା ବା କଣ କହିବା !"

## ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା।
## ଶକ୍ୟ ଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା ॥ ୫୩ ॥

ଅନ୍ୱୟ – **ଯଥା** = (ତୁମେ) ଯେଉଁପରି; **ମାମ୍** = ମୋତେ; **ଦୃଷ୍ଟବାନ୍, ଅସି** = ଦେଖିବାକୁ ପାଇଲ; **ଏବଂବିଧଃ** = ସେହିପରି ଚତୁର୍ଭୁଜରୂପ; **ଅହମ୍** = ମୁଁ; **ନ, ବେଦୈଃ** = ନା ବେଦମାନଙ୍କଦ୍ୱାରା; **ନ, ତପସା** = ନା ତପସ୍ୟାଦ୍ୱାରା; **ନ, ଦାନେନ** = ନା ଦାନଦ୍ୱାରା; **ଚ, ନ, ଇଜ୍ୟୟା** = ଏବଂ ନା ଯଜ୍ଞଦ୍ୱାରା; **ଦ୍ରଷ୍ଟୁମ୍** = ଦେଖାଯାଇ; **ଶକ୍ୟଃ** = ପାରିବ।

**ତୁମେ ମୋତେ ଯେଉଁପରି ଦେଖିବାକୁ ପାଇଲ, ମୋର ସେହିପରି ଚତୁର୍ଭୁଜରୂପ ନା ବେଦମାନଙ୍କ ଦ୍ୱାରା, ନା ତପଦ୍ୱାରା, ନା ଦାନଦ୍ୱାରା ଏବଂ ନା ଯଜ୍ଞଦ୍ୱାରା ଦେଖାଯାଇପାରିବ ॥ ୫୩ ॥**

**ପ୍ରଶ୍ନ –** ନବମ ଅଧ୍ୟାୟର ସତେଇଶ ଓ ଅଠେଇଶ ଶ୍ଳୋକରେ କୁହାଯାଇଛି, "ତୁମେ ଯାହା କିଛି ଯଜ୍ଞ କରୁଛ, ଦାନ ଦେଉଛ ଓ ତପ କରୁଛ, ସବୁ ମୋତେ ଅର୍ପଣ କର। ଏପରି କରିବାଦ୍ୱାରା ତୁମେ ସକଳ କର୍ମରୁ ମୁକ୍ତ ହୋଇଯିବ ଏବଂ ମୋତେ ପାଇଯିବ।" ପୁଣି ସତର ଅଧ୍ୟାୟର ପଚିଶ ଶ୍ଳୋକରେ କୁହାଯାଇଛି ଯେ, ମୋକ୍ଷ ଚାହୁଁଥିବା ପୁରୁଷମାନେ ଫଳ-ଇଚ୍ଛା ଛାଡ଼ି ଯଜ୍ଞ, ଦାନ ଓ ତପରୂପକ କ୍ରିୟା କରିଥାନ୍ତି। ଏଥିରୁ ପ୍ରକାଶ ପାଉଛି ଯେ, ମୁକ୍ତିପାଇଁ ଓ ଭଗବତ୍ପ୍ରାପ୍ତିପାଇଁ ଯଜ୍ଞ, ଦାନ ଓ ତପ ଅବଶ୍ୟକରଣୀୟ। କିନ୍ତୁ ଏହି ଶ୍ଳୋକରେ ଭଗବାନ୍ କହୁଛନ୍ତି, "ମୋ' ଚତୁର୍ଭୁଜରୂପର ଦର୍ଶନ ବେଦମାନଙ୍କ ଅଧ୍ୟୟନ-ଅଧ୍ୟାପନବଳରେ ହୋଇପାରିବ ନାହିଁ, କି ତପ, ଦାନ ଓ ଯଜ୍ଞବଳରେ ହୋଇପାରିବ ନାହିଁ।" ଏପରି ବିରୋଧର ସମାଧାନ କଣ ?

**ଉତ୍ତର –** ଏଥିରେ କୌଣସି ବିରୋଧ ନାହିଁ; କାରଣ, ଭଗବାନଙ୍କୁ ସକଳ କର୍ମ ଅର୍ପଣ କରିବା ହେଉଛି ଅନନ୍ୟ ଭକ୍ତିର ଏକ ଅଙ୍ଗ। ଏହି ଅଧ୍ୟାୟର ପଞ୍ଚାବନ ଶ୍ଳୋକରେ ଅନନ୍ୟ ଭକ୍ତିର ବର୍ଣ୍ଣନା କରି ଭଗବାନ୍ ସ୍ୱୟଂ 'ମତ୍କର୍ମକୃତ୍' (ମୋ ପାଇଁ କର୍ମ କରିବା ଲୋକ) ପଦ ପ୍ରୟୋଗ କରିଛନ୍ତି ଏବଂ ଚଉବନ ଶ୍ଳୋକରେ ସ୍ପଷ୍ଟ ଘୋଷଣା କରିଛନ୍ତି ଯେ, ଅନନ୍ୟଭକ୍ତିଦ୍ୱାରା ମୋର ସେହି ସ୍ୱରୂପକୁ ଦେଖିବା, ଜାଣିବା ଓ ପାଇବା ସମ୍ଭବ। ଅତଏବ ଏଠାରେ ବୁଝିବା ଉଚିତ ଯେ, ନିଷ୍କାମଭାବରେ ଭଗବଦର୍ଥ ଓ ଭଗବଦର୍ପଣ ବୁଦ୍ଧିରେ କରାଯାଉଥିବା ଯଜ୍ଞ, ଦାନ ଓ ତପ ଆଦି କର୍ମ ଭକ୍ତିର ଅଙ୍ଗ ହୋଇଥିବାରୁ ଭଗବତ୍ପ୍ରାପ୍ତିରେ ତାହା ସହାୟକ ହୁଏ; କିନ୍ତୁ ସକାମଭାବରେ କରାଗଲେ ତାହା ସହାୟକ ହୁଏ ନାହିଁ। ଅଭିପ୍ରାୟ ଏହି ଯେ, ଉପରୋକ୍ତ ଯଜ୍ଞାଦି କ୍ରିୟା ଭଗବାନଙ୍କୁ ଦର୍ଶନ କରାଇବାରେ ସ୍ୱଭାବତଃ ସମର୍ଥ ନୁହନ୍ତି। ଭଗବାନଙ୍କ ଦର୍ଶନ ତ ପ୍ରେମପୂର୍ବକ ଭଗବାନଙ୍କର ଶରଣାପନ୍ନ ହୋଇ ନିଷ୍କାମଭାବରେ କର୍ମ କରିବା ଫଳରେ ଓ ଭଗବତ୍କୃପା-ଫଳରେ ହିଁ ହୁଏ।

**ପ୍ରଶ୍ନ –** ଏଠାରେ **ଏବଂବିଧଃ** ଓ **ମାଂ ଯଥା ଦୃଷ୍ଟବାନସି** ପ୍ରୟୋଗରୁ ଯଦି ଏକଥା ମାନି ନିଆଯାଏ

ଯେ, ଭଗବାନ୍ ଅର୍ଜୁନଙ୍କୁ ନିଜର ଯେଉଁ ବିଶ୍ୱରୂପ ଦେଖାଇଥିଲେ, ସେହି ରୂପ ବେଦମାନଙ୍କ ଦ୍ୱାରା ଦେଖାଯାଏ ନାହିଁ ବୋଲି ଭଗବାନ୍ କହୁଛନ୍ତି, ତେବେ ହାନି କଣ ?

**ଉତ୍ତର –** ବିଶ୍ୱରୂପର ମହିମାବର୍ଣ୍ଣନାରେ ପ୍ରାୟ ଏହି ପଦମାନଙ୍କର ପ୍ରୟୋଗ ଅଠଚାଳିଶ ଶ୍ଳୋକରେ ହୋଇସାରିଛି। ଏହି ଶ୍ଳୋକକୁ ପୁନଃ ସେହି ବିଶ୍ୱରୂପର ହିଁ ମହିମା ବୋଲି ମାନିନେଲେ ପୁନରୁକ୍ତି ଦୋଷ ଆସିଯିବ।

ଏହା ବ୍ୟତୀତ, ସେହି ବିଶ୍ୱରୂପପାଇଁ ତ ଭଗବାନ୍ କହିଛନ୍ତି, ''ଏହା ତୁମ ଛଡ଼ା ଅନ୍ୟ କାହା ଦ୍ୱାରା ଦେଖାଯାଇପାରିବ ନାହିଁ' ଏବଂ ଆଗ ଶ୍ଳୋକରେ ତାହା ଦେଖିବାର ଉପାୟ ମଧ୍ୟ କହିଛନ୍ତି। ଅତଏବ ଯେପରି ମାନି ନିଆଯାଇଛି, ତାହା ଠିକ୍।

***ସମ୍ବନ୍ଧ –*** *ଯଦି ଉପରୋକ୍ତ ଉପାୟରେ ଆପଣଙ୍କ ଦର୍ଶନ ସମ୍ଭବ ନୁହେଁ, ତେବେ କେଉଁ ଉପାୟରେ ସମ୍ଭବ ?– ଏପରି ପ୍ରଶ୍ନର ଉତ୍ତରରେ ଭଗବାନ୍ କହୁଛନ୍ତି–*

**ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂବିଧୋଽର୍ଜୁନ।**
**ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରଂତପ॥ ୫୪ ॥**

**ଅନ୍ୱୟ –** **ତୁ** = କିନ୍ତୁ; **ପରନ୍ତପ** = ହେ ପରନ୍ତପ; **ଅର୍ଜୁନ** = ଅର୍ଜୁନ !; **ଏବଂବିଧଃ** = ଏହିପରି ଚତୁର୍ଭୁଜଧାରୀ; **ଅହମ୍** = ମୁଁ; **ଦ୍ରଷ୍ଟୁମ୍** = ପ୍ରତ୍ୟକ୍ଷୀଭୂତ ହେବା; **ଚ** = ତଥା; **ତତ୍ତ୍ୱେନ, ଜ୍ଞାତୁମ୍** = ତତ୍ତ୍ୱତଃ ଜାଣିହେବା; **ଚ** = ଓ; **ପ୍ରବେଷ୍ଟୁମ୍** = ପ୍ରବେଶ (ପ୍ରାପ୍ତ) ହେବା ଅର୍ଥାତ୍ ଏକୀଭାବରେ ପ୍ରାପ୍ତ ହେବା; **ଅନନ୍ୟୟା, ଭକ୍ତ୍ୟା** = ଅନନ୍ୟଭକ୍ତିଦ୍ୱାରା ହିଁ; **ଶକ୍ୟଃ** = ସମ୍ଭବ।

**କିନ୍ତୁ ହେ ପରନ୍ତପ ଅର୍ଜୁନ ! ମୁଁ ଏହିପରି ଚତୁର୍ଭୁଜରୂପରେ ପ୍ରତ୍ୟକ୍ଷୀଭୂତ ହୋଇପାରିବା ତଥା ତତ୍ତ୍ୱତଃ ଜାଣିହୋଇପାରିବା ଓ ପ୍ରବେଶ ପ୍ରାପ୍ତ ହୋଇପାରିବା ଅର୍ଥାତ୍ ଏକୀଭାବରେ ପ୍ରାପ୍ତ ହୋଇପାରିବା ଅନନ୍ୟ ଭକ୍ତିଦ୍ୱାରା ହିଁ ସମ୍ଭବ॥ ୫୪ ॥**

**ପ୍ରଶ୍ନ –** ଯାହାଦ୍ୱାରା ଭଗବାନଙ୍କର ଦିବ୍ୟ ଚତୁର୍ଭୁଜରୂପ ଦେଖାଯାଇପାରିବ, ଜାଣିହେବ ଓ ସେଥିରେ ପ୍ରବେଶ କରିହେବ – ସେହି ଅନନ୍ୟ ଭକ୍ତିଟି କଣ ?

**ଉତ୍ତର –** ଭଗବାନଙ୍କ ଠାରେ ହିଁ ଅନନ୍ୟ ପ୍ରେମ ହୋଇଯିବା ତଥା ନିଜର ମନ, ଇନ୍ଦ୍ରିୟ ଓ ଶରୀର ଏବଂ ଧନ, ଜନ ଆଦି ସର୍ବସ୍ୱ ଭଗବାନଙ୍କର ବୋଲି ବୁଝି ଭଗବାନଙ୍କ ପାଇଁ ଭଗବାନଙ୍କର ସେବାରେ ହିଁ ସଦା ଲଗାଇଦେବା – ଏହା ହିଁ ଅନନ୍ୟ ଭକ୍ତି। ଏହାର ବର୍ଣ୍ଣନା ଆଗ ଶ୍ଳୋକରେ ଅନନ୍ୟ ଭକ୍ତଙ୍କ ଲକ୍ଷଣମାନଙ୍କରେ ବିସ୍ତାରପୂର୍ବକ କରାଯାଇଛି।

**ପ୍ରଶ୍ନ –** ସାଂଖ୍ୟଯୋଗଦ୍ୱାରା ମଧ୍ୟ ତ ପରମାତ୍ମପ୍ରାପ୍ତି ହୁଏ ବୋଲି କୁହାଯାଇଛି; ପୁଣି ଏଠାରେ କେବଳ ଅନନ୍ୟ ଭକ୍ତିକୁ ହିଁ ଭଗବାନଙ୍କୁ ଦେଖିବାର ହେତୁ ବୋଲି କାହିଁକି କୁହାଗଲା ?

**ଉତ୍ତର –** ସାଂଖ୍ୟଯୋଗଦ୍ୱାରା ନିର୍ଗୁଣବ୍ରହ୍ମପ୍ରାପ୍ତି ହୁଏ ବୋଲି କୁହାଯାଇଛି ଏବଂ ତାହା ସର୍ବଥା ସତ୍ୟ। ପରନ୍ତୁ ସାଂଖ୍ୟଯୋଗଦ୍ୱାରା ସଗୁଣ-ସାକାର ଭଗବାନଙ୍କର ଦିବ୍ୟ ଚତୁର୍ଭୁଜରୂପ ଦର୍ଶନ ହୋଇଯିବ ବୋଲି କୁହାଯାଇ ନ ପାରେ, କାରଣ, ସାଂଖ୍ୟଯୋଗଦ୍ୱାରା ସାକାରରୂପରେ ଦର୍ଶନ ଦେବାକୁ ଭଗବାନ୍ ବାଧ୍ୟ ନୁହନ୍ତି। ଏଠାରେ ପ୍ରସଙ୍ଗ ମଧ୍ୟ ହେଉଛି ସଗୁଣ ଭଗବାନଙ୍କର ଦର୍ଶନ। ଅତଏବ ଏଠାରେ କେବଳ ଅନନ୍ୟ ଭକ୍ତିକୁ ହିଁ ଭଗବଦ୍ଦର୍ଶନ ଆଦିର ହେତୁ ବୋଲି କହିବା ଉଚିତ।

***ସମ୍ବନ୍ଧ –*** *ଅନନ୍ୟ ଭକ୍ତିଦ୍ୱାରା ଭଗବାନଙ୍କୁ ଦେଖିବା, ଜାଣିବା ଓ ଏକୀଭାବରେ ପ୍ରାପ୍ତ କରିବା ସୁଲଭ ବୋଲି କୁହାଯିବାରୁ ଅନନ୍ୟଭକ୍ତିର ସ୍ୱରୂପ ଜାଣିବାର ଆକାଂକ୍ଷା ହୁଏ; ତେଣୁ ବର୍ତ୍ତମାନ ଅନନ୍ୟ ଭକ୍ତଙ୍କର ଲକ୍ଷଣଗୁଡ଼ିକ ବର୍ଣ୍ଣନା କରାଯାଉଛି–*

**ମତ୍କର୍ମକୃନ୍ ମତ୍ପରମୋ ମଦ୍ଭକ୍ତଃ ସଙ୍ଗବର୍ଜିତଃ ।**
**ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ ।। ୫୫ ।।**

**ଅନ୍ୱୟ –** **ପାଣ୍ଡବ** = ହେ ଅର୍ଜୁନ !; **ଯଃ** = ଯେଉଁ ପୁରୁଷ; **ମତ୍କର୍ମକୃତ୍** = (କେବଳ) ମୋ ପାଇଁ ସକଳ କର୍ତ୍ତବ୍ୟକର୍ମ କରନ୍ତି; **ମତ୍ପରମଃ** = ମୋର ପରାୟଣ; **ମଦ୍ଭକ୍ତଃ** = ମୋର ଭକ୍ତ; **ସଙ୍ଗବର୍ଜିତଃ** = ଆସକ୍ତିରହିତ; **ସର୍ବଭୂତେଷୁ** = ସକଳ ପ୍ରାଣୀଙ୍କ ଠାରେ; **ନିର୍ବୈରଃ** = ବୈରଭାବଶୂନ୍ୟ; **ସଃ** = ସେହି (ଅନନ୍ୟଭକ୍ତିଯୁକ୍ତ ପୁରୁଷ); **ମାମ୍** = ମୋତେ; **ଏତି** = ପ୍ରାପ୍ତ ହୁଅନ୍ତି ।

**ହେ ଅର୍ଜୁନ ! ଯେଉଁ ପୁରୁଷ କେବଳ ମୋ ପାଇଁ ସକଳ କର୍ତ୍ତବ୍ୟକର୍ମ କରନ୍ତି, ଯେ ମୋର ପରାୟଣ, ଯେ ମୋର ଭକ୍ତ, ଆସକ୍ତିରହିତ ଓ ସକଳ ପ୍ରାଣୀଙ୍କ ଠାରେ ବୈରଭାବଶୂନ୍ୟ, ସେହି ଅନନ୍ୟଭକ୍ତିଯୁକ୍ତ ପୁରୁଷ ମୋତେ ହିଁ ପ୍ରାପ୍ତ ହୁଅନ୍ତି ।। ୫୫ ।।**

**ପ୍ରଶ୍ନ –** **ମତ୍କର୍ମକୃତ୍**ର ଭାବ କଣ ?

**ଉତ୍ତର –** ଯେଉଁ ମନୁଷ୍ୟ ସ୍ୱାର୍ଥ, ମମତ୍ୱ ଓ ଆସକ୍ତି ଛାଡ଼ି, ସବୁକିଛି ଭଗବାନଙ୍କର ବୋଲି ବୁଝି, ନିଜକୁ କେବଳ ନିମିତ୍ତମାତ୍ର ଭାବି ଯଜ୍ଞ, ଦାନ, ତପ ଓ ପାନ-ଭୋଜନ ବ୍ୟବହାର ଆଦି ସମସ୍ତ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ନିଷ୍କାମଭାବରେ କେବଳ ଭଗବାନଙ୍କର ପ୍ରସନ୍ନତାପାଇଁ ଭଗବାନଙ୍କ ଆଜ୍ଞାନୁସାରେ କରନ୍ତି, ସେ ହିଁ **ମତ୍କର୍ମକୃତ୍** ଅର୍ଥାତ୍ ଭଗବାନଙ୍କ ପାଇଁ ଭଗବତ୍କର୍ମ କରୁଥିବା ବ୍ୟକ୍ତି ଅଟନ୍ତି ।

**ପ୍ରଶ୍ନ –** **ମତ୍ପରମଃ**ର ଭାବ କଣ ?

**ଉତ୍ତର –** ଯେ ଭଗବାନଙ୍କୁ ହିଁ ପରମ ଆଶ୍ରୟ, ପରମଗତି, ଏକମାତ୍ର ଶରଣ ନେବା ଯୋଗ୍ୟ, ସର୍ବୋତ୍ତମ, ସର୍ବାଧାର, ସର୍ବଶକ୍ତିମାନ୍, ସମସ୍ତଙ୍କର ସୁହୃଦ୍, ପରମ ଆତ୍ମୀୟ ଓ ନିଜର ସର୍ବସ୍ୱ ବୋଲି ମନନ କରନ୍ତି ତଥା ଭଗବାନଙ୍କ ରଚିତ ପ୍ରତ୍ୟେକ ବିଧାନରେ ସଦା ସୁପ୍ରସନ୍ନ ରହନ୍ତି, ସେ ହିଁ **ମତ୍ପରମଃ** ଅର୍ଥାତ୍ ଭଗବାନଙ୍କର ପରାୟଣ ।

**ପ୍ରଶ୍ନ –** **ମଦ୍ଭକ୍ତଃ**ର ଭାବ କଣ ?

**ଉତ୍ତର –** ଭଗବାନଙ୍କ ଠାରେ ଅନନ୍ୟ ପ୍ରେମ ହୋଇଯିବାରୁ ଯେ ଭଗବାନଙ୍କ ଠାରେ ତନ୍ମୟ ହୋଇ ନିତ୍ୟନିରନ୍ତର ଭଗବାନଙ୍କ ନାମ, ରୂପ, ଗୁଣ, ପ୍ରଭାବ ଓ ଲୀଳା ଆଦି ଶ୍ରବଣ, କୀର୍ତ୍ତନ ଓ ମନନ କରିବାରେ ରହିଥାନ୍ତି, ଏସବୁ କରିବା ବିନା ଯେ କ୍ଷଣେମାତ୍ର ରହିପାରନ୍ତି ନାହିଁ ଏବଂ ଯେ ଭଗବାନଙ୍କ ଦର୍ଶନପାଇଁ ଅତ୍ୟନ୍ତ ଉତ୍କଣ୍ଠାର ସହିତ ନିରନ୍ତର ଲାଳାୟିତ ରହନ୍ତି, ସେ **ମଦ୍ଭକ୍ତଃ** ଅର୍ଥାତ୍ ଭଗବାନଙ୍କର ଭକ୍ତ ଅଟନ୍ତି ।

**ପ୍ରଶ୍ନ –** **ସଙ୍ଗବର୍ଜିତଃ**ର ଭାବ କଣ ?

**ଉତ୍ତର –** ଶରୀର, ସ୍ତ୍ରୀ, ପୁତ୍ର, ଗୃହ, ଧନ, କୁଟୁମ୍ବ ତଥା ମାନ-ବଡ଼ିମା ଆଦି ଇହଲୋକର ଓ ପରଲୋକର ଯେତେ ବି ଭୋଗ୍ୟ ପଦାର୍ଥ ରହିଛି, ସେହିସବୁ ଜଡ଼ଚେତନ ପଦାର୍ଥରେ ଯାହାଙ୍କର ତିଳେମାତ୍ର ଆସକ୍ତି ନାହିଁ, ଭଗବାନଙ୍କ ଛଡ଼ା ଯାହାଙ୍କର ଆଉ କେଉଁଥିରେ ବି ପ୍ରେମ ନାହିଁ, ସେ **ସଙ୍ଗବର୍ଜିତଃ** ଅର୍ଥାତ୍ ଆସକ୍ତିରହିତ ।

**ପ୍ରଶ୍ନ –** **ସର୍ବଭୂତେଷୁ ନିର୍ବୈରଃ**ର ଭାବ କଣ ?

**ଉତ୍ତର –** ସକଳ ପ୍ରାଣୀଙ୍କୁ ଭଗବାନଙ୍କର ହିଁ ସ୍ୱରୂପ ବୋଲି ବୁଝିପାରି, ଅଥବା ସମସ୍ତଙ୍କ ଠାରେ ଏକମାତ୍ର ଭଗବାନ୍ ହିଁ ବ୍ୟାପ୍ତ ବୋଲି ବୁଝିପାରି କେହି କେତେ ବିପରୀତ ବ୍ୟବହାର ଦେଖାଇଲେ ମଧ ଯାହାଙ୍କ ମନରେ ବିକାର ଆସେ ନାହିଁ, ତଥା ଯାହାଙ୍କର କୌଣସି ବି ପ୍ରାଣୀ ପ୍ରତି ତିଳେମାତ୍ର ଦ୍ୱେଷ ବା ବୈରଭାବ ନାହିଁ, ସେ **ସର୍ବଭୂତେଷୁ ନିର୍ବୈରଃ** ଅର୍ଥାତ୍ ସକଳ ପ୍ରାଣୀଙ୍କ ପ୍ରତି ବୈରଭାବଶୂନ୍ୟ ଅଟନ୍ତି ।

**ପ୍ରଶ୍ନ –** **ଯଃ** ଓ **ସଃ** କାହାର ବାଚକ ଏବଂ 'ସେ ମୋତେ ହିଁ ପ୍ରାପ୍ତ ହୁଅନ୍ତି' କହିବାର ଭାବ କଣ ?

**ଉତ୍ତର –** **ଯଃ** ଓ **ସଃ** ପଦ ହେଉଛି ଉପରୋକ୍ତ ଲକ୍ଷଣ ଥିବା ଭଗବାନଙ୍କର ଅନନ୍ୟ ଭକ୍ତଙ୍କ ବାଚକ ଏବଂ 'ସେ ମୋତେ ହିଁ ପ୍ରାପ୍ତ ହୁଅନ୍ତି' – ଏହି କଥନର ଭାବ ହେଉଛି ଚଉବନ ଶ୍ଳୋକ ଅନୁସାରେ ସେ ସଗୁଣ ଭଗବାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରନ୍ତି; ତାହାଙ୍କୁ ଭଲଭାବରେ ତତ୍ତ୍ୱତଃ ଜାଣନ୍ତି ଏବଂ ତାଙ୍କ ଠାରେ ପ୍ରବେଶ କରନ୍ତି । ଅଭିପ୍ରାୟ ଏହି ଯେ, ଯେ ଉପରୋକ୍ତ ଲକ୍ଷଣମାନଙ୍କରେ ଯୁକ୍ତ, ଯେ ଭଗବାନଙ୍କର ଅନନ୍ୟ ଭକ୍ତ, ସେ ଭଗବାନଙ୍କୁ ପାଇପାରନ୍ତି ।

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ବିଶ୍ୱରୂପଦର୍ଶନଯୋଗୋ*
*ନାମୈକାଦଶୋଽଧ୍ୟାୟଃ ।। ୧୧ ।।*

ଓଁ ଶ୍ରୀପରମାତ୍ମନେ ନମଃ

# ଦ୍ୱାଦଶୋଽଧ୍ୟାୟଃ

## ଭକ୍ତିଯୋଗ

**ଅଧ୍ୟାୟର ନାମ :** ଏହି ଦ୍ୱାଦଶ ଅଧ୍ୟାୟରେ ଅନେକପ୍ରକାର ସାଧନା ସହିତ ଭଗବଦ୍‌ଭକ୍ତି ବର୍ଣ୍ଣନା କରି ଭଗବଦ୍‌ଭକ୍ତଙ୍କର ଲକ୍ଷଣ କୁହାଯାଇଛି। ଏହାର ଉପକ୍ରମ ଓ ଉପସଂହାର ଭଗବାନଙ୍କ ଭକ୍ତିରେ ହିଁ ହୋଇଛି। କେବଳ ତିନୋଟି ଶ୍ଳୋକରେ ଜ୍ଞାନ-ସାଧନାର ବର୍ଣ୍ଣନା ରହିଛି— ତାହା ମଧ୍ୟ କେବଳ ଭଗବଦ୍‌ଭକ୍ତି ଏବଂ ଜ୍ଞାନଯୋଗର ପରସ୍ପର ତୁଳନା କରିବାପାଇଁ ହୋଇଛି। ଅତଏବ ଏହି ଅଧ୍ୟାୟର ନାମ **ଭକ୍ତିଯୋଗ** ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ସଗୁଣ-ସାକାର ଓ ନିର୍ଗୁଣ-ନିରାକାରଙ୍କ ଉପାସକମାନଙ୍କ ମଧ୍ୟରୁ ଶ୍ରେଷ୍ଠ କିଏ, ତାହା ଜାଣିବାକୁ ଅର୍ଜୁନ ଚାହିଁଛନ୍ତି। ଦ୍ୱିତୀୟରେ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଭଗବାନ୍ ସଗୁଣ-ସାକାରଙ୍କ ଉପାସକମାନଙ୍କୁ ଶ୍ରେଷ୍ଠ ବୋଲି କହିଛନ୍ତି। ତୃତୀୟ ଓ ଚତୁର୍ଥରେ ନିର୍ଗୁଣ-ନିରାକାର ପରମାତ୍ମାଙ୍କ ଲକ୍ଷଣ ବର୍ଣ୍ଣନା କରି ତାଙ୍କ ଉପାସନାର ଫଳ ମଧ୍ୟ ଭଗବତ୍‌ପ୍ରାପ୍ତି ବୋଲି କହିଛନ୍ତି ଏବଂ ପଞ୍ଚମରେ ଦେହାଭିମାନୀ ମନୁଷ୍ୟମାନଙ୍କ ପାଇଁ ନିରାକାର ଉପାସନା କଠିନ ବୋଲି କହିଛନ୍ତି। ଷଷ୍ଠ ଓ ସପ୍ତମରେ ଭଗବାନ୍ କହିଛନ୍ତି, ''ସକଳ କର୍ମ ମୋ'ଠାରେ ଅର୍ପଣ କରିଦେଇ ଅନନ୍ୟଭାବରେ ନିରନ୍ତର ମୋତେ ସଗୁଣ ପରମେଶ୍ୱରରୂପେ ଚିନ୍ତନ କରୁଥିବା ଭକ୍ତମାନଙ୍କର ଉଦ୍ଧାର ସ୍ୱୟଂ ମୁଁ କରେ।'' ଅଷ୍ଟମ ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ତାଙ୍କ ମନ-ବୁଦ୍ଧି ଭଗବାନଙ୍କ ଠାରେ ଅର୍ପଣ କରିବାକୁ ଆଜ୍ଞା ଦେଇଛନ୍ତି ଏବଂ ତା'ର ଫଳ ଭଗବତ୍‌ପ୍ରାପ୍ତି ବୋଲି କହିଛନ୍ତି। ତା'ପରେ ନବମଠାରୁ ଏକାଦଶପର୍ଯ୍ୟନ୍ତ ଉପରୋକ୍ତ ସାଧନା କରି ନ ପାରିଲେ ଅଭ୍ୟାସଯୋଗ ସାଧନା କରିବାକୁ ଏବଂ ସେଥିରେ ମଧ୍ୟ ଅସମର୍ଥ ହେଲେ ଭଗବଦର୍ଥ କର୍ମ କରିବାକୁ କହିଛନ୍ତି; ପୁଣି ସେଥିରେ ମଧ୍ୟ ଅସମର୍ଥ ହେଲେ ସମସ୍ତ କର୍ମଫଳ ତ୍ୟାଗ କରିବାକୁ କହିଛନ୍ତି। ବାରରେ କର୍ମଫଳତ୍ୟାଗକୁ ସର୍ବଶ୍ରେଷ୍ଠ ବୋଲି କହି ତାର ଫଳ ତତ୍‌କାଳ-ଶାନ୍ତିପ୍ରାପ୍ତି ବୋଲି କହିଛନ୍ତି। ତା'ପରେ ତେରଠାରୁ ଉଣେଇଶ ଶ୍ଳୋକଯାଏ ଭଗବାନ୍ ନିଜର ପ୍ରିୟ ଜ୍ଞାନୀ ମହାତ୍ମା ଭକ୍ତମାନଙ୍କର ଲକ୍ଷଣ କହିଛନ୍ତି ଏବଂ କୋଡ଼ିଏରେ ସେହି ଜ୍ଞାନୀ ମହାତ୍ମା ଭକ୍ତମାନଙ୍କର ଲକ୍ଷଣଗୁଡ଼ିକୁ ଆଦର୍ଶରୂପେ ଗ୍ରହଣ କରି ଶ୍ରଦ୍ଧାପୂର୍ବକ ସେହିପରି ସାଧନା କରୁଥିବା ଭକ୍ତମାନଙ୍କୁ ଅତ୍ୟନ୍ତ ପ୍ରିୟଭକ୍ତ ବୋଲି କହିଛନ୍ତି।

**ସମ୍ବନ୍ଧ—** ଦ୍ୱିତୀୟ ଅଧ୍ୟାୟଠାରୁ ଷଷ୍ଠ ଅଧ୍ୟାୟଯାଏ ଭଗବାନ୍ ସ୍ଥାନେ ସ୍ଥାନେ ନିର୍ଗୁଣ ବ୍ରହ୍ମଙ୍କ ଉପାସନା ଓ ସଗୁଣସାକାର ପରମେଶ୍ୱରଙ୍କ ଉପାସନାକୁ ପ୍ରଶଂସା କରିଛନ୍ତି। ସପ୍ତମ ଅଧ୍ୟାୟରୁ ଏକାଦଶ ଅଧ୍ୟାୟପର୍ଯ୍ୟନ୍ତ ବିଶେଷରୂପେ ସଗୁଣସାକାର ଭଗବାନଙ୍କ ଉପାସନାର ମହତ୍ତ୍ୱ ଦେଖାଇଛନ୍ତି। ତା' ସହିତ ପଞ୍ଚମ ଅଧ୍ୟାୟର ସତରଠାରୁ ଛବିଶ ଶ୍ଳୋକଯାଏ, ଷଷ୍ଠ ଅଧ୍ୟାୟର ଚବିଶଠାରୁ ଅଣତିରିଶଯାଏ, ଅଷ୍ଟମ ଅଧ୍ୟାୟର ଏଗାରଠାରୁ ତେରଯାଏ ଏବଂ ଆହୁରି ଅନେକ ସ୍ଥାନରେ ବି ନିର୍ଗୁଣନିରାକାରଙ୍କ ଉପାସନାର ମହତ୍ତ୍ୱ ମଧ୍ୟ ଦେଖାଇଛନ୍ତି ତଥା ଏକାଦଶ ଅଧ୍ୟାୟ ଶେଷରେ ସଗୁଣସାକାର ଭଗବାନଙ୍କୁ ଅନନ୍ୟ ଭକ୍ତି କରିବାର ଫଳ ଭଗବତ୍‌ପ୍ରାପ୍ତି ବୋଲି କହି 'ମତ୍‌କର୍ମକୃତ୍'ରୁ ଆରମ୍ଭ ହୋଇଥିବା ଏହି ଅନ୍ତିମ ଶ୍ଳୋକରେ ସଗୁଣସାକାରସ୍ୱରୂପ ଭଗବାନଙ୍କ ଭକ୍ତମାନଙ୍କୁ ବିଶେଷଭାବରେ ପ୍ରଶଂସା କରିଛନ୍ତି। ଏହା ଉପରେ ଅର୍ଜୁନଙ୍କ ମନରେ ଜିଜ୍ଞାସା ଉଠିଲା, 'ନିର୍ଗୁଣ-ନିରାକାର ବ୍ରହ୍ମଙ୍କ ଉପାସନା ଏବଂ ସଗୁଣ-ସାକାର ଭଗବାନଙ୍କ ଉପାସନା କରୁଥିବା ଦୁଇପ୍ରକାର ଉପାସକଙ୍କ ମଧ୍ୟରୁ ଶ୍ରେଷ୍ଠ ଉପାସକ କିଏ ?' ଏହି ଜିଜ୍ଞାସାନୁସାରେ ଅର୍ଜୁନ ପଚାରୁଛନ୍ତି—

ଅର୍ଜୁନ ଉବାଚ

## ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ ।
## ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ ॥ ୧ ॥

**ଅନ୍ୱୟ –** **ଯେ** = ଯେଉଁ; **ଭକ୍ତାଃ** = ଅନନ୍ୟପ୍ରେମୀ ଭକ୍ତମାନେ; **ଏବମ୍** = (ପୂର୍ବୋକ୍ତ) ପ୍ରକାରେ; **ସତତଯୁକ୍ତାଃ** = ନିରନ୍ତର ଆପଣଙ୍କ ଭଜନ-ଧ୍ୟାନରେ ଲାଗିଥିବା; **ତ୍ୱାମ୍** = ଆପଣଙ୍କୁ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ (ଭଜନ କରନ୍ତି); **ଚ** = ଓ; **ଯେ** = ଅନ୍ୟ ଯେଉଁମାନେ (କେବଳ); **ଅକ୍ଷରମ୍** = ଅବିନାଶୀ ସଚ୍ଚିଦାନନ୍ଦଘନ; **ଅବ୍ୟକ୍ତମ୍** = ନିରାକାର ବ୍ରହ୍ମଙ୍କୁ; **ଅପି** = ହିଁ; **ପର୍ଯ୍ୟୁପାସତେ** = ଅତି ଶ୍ରେଷ୍ଠଭାବରେ ଭଜନ କରନ୍ତି; **ତେଷାମ୍** = ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ; **ଯୋଗବିତ୍ତମାଃ** = ଅତି ଉତ୍ତମ ଯୋଗବେତ୍ତା; **କେ (ସନ୍ତି)** = କେଉଁମାନେ ଅଟନ୍ତି ?

**ଅର୍ଜୁନ ପଚାରିଲେ – ଯେଉଁ ଅନନ୍ୟପ୍ରେମୀ ଭକ୍ତମାନେ ପୂର୍ବୋକ୍ତପ୍ରକାରେ ନିରନ୍ତର ଆପଣଙ୍କ ଭଜନ-ଧ୍ୟାନରେ ଲାଗିରହି ଆପଣଙ୍କୁ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ଭଜନ କରନ୍ତି ଏବଂ ଅନ୍ୟ ଯେଉଁମାନେ କେବଳ ଅବିନାଶୀ ସଚ୍ଚିଦାନନ୍ଦଘନ ନିରାକାର ବ୍ରହ୍ମଙ୍କୁ ହିଁ ଶ୍ରେଷ୍ଠଭାବରେ ଭଜନ କରନ୍ତି, ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ ଅଧିକ ଉତ୍ତମ ଯୋଗବେତ୍ତା କେଉଁମାନେ ?॥ ୧ ॥**

**ପ୍ରଶ୍ନ –** ଏବମ୍ ପଦର ଅଭିପ୍ରାୟ କଣ ?

**ଉତ୍ତର –** ଏବମ୍ ପଦଦ୍ୱାରା ଅର୍ଜୁନ ପୂର୍ବ ଅଧ୍ୟାୟର ପଞ୍ଚାବନ ଶ୍ଳୋକରେ କୁହାଯାଇଥିବା ଅନନ୍ୟ ଭକ୍ତିର ପ୍ରକାର ନିର୍ଦ୍ଦେଶ କରିଛନ୍ତି ।

**ପ୍ରଶ୍ନ –** ତ୍ୱାମ୍ ପଦ ଏଠାରେ କାହାର ବାଚକ ଏବଂ ନିରନ୍ତର ଭଜନ-ଧ୍ୟାନରେ ଲାଗିରହି ତାହାଙ୍କର ଶ୍ରେଷ୍ଠ ଉପାସନା କରିବା କଣ ?

**ଉତ୍ତର –** ତ୍ୱାମ୍ ପଦ ଯଦ୍ୟପି ଏଠାରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ବାଚକ ତଥାପି ଭିନ୍ନ ଭିନ୍ନ ଅବତାରରେ ଭଗବାନ୍ ଯେତେ ସଗୁଣରୂପ ଧାରଣ କରିଛନ୍ତି ଏବଂ ଦିବ୍ୟଧାମରେ ଭଗବାନଙ୍କର ଯେଉଁ ସଗୁଣରୂପ ବିରାଜମାନ ଅଛି, ଯାହାକୁ ନିଜ ନିଜ ମାନ୍ୟତାନୁସାରେ ଲୋକେ ଅନେକ ରୂପ ଓ ନାମରେ କହନ୍ତି, ଏଠାରେ ତ୍ୱାମ୍ ପଦଟିକୁ ସେସବୁର ବାଚକ ବୋଲି ଗ୍ରହଣ କରିବା ଉଚିତ; କାରଣ ସେମାନେ ସମସ୍ତେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଠାରୁ ଅଭିନ୍ନ। ସେହି ସଗୁଣ ଭଗବାନଙ୍କୁ ନିରନ୍ତର ଚିନ୍ତନ କରି କରି ପରମ ଶ୍ରଦ୍ଧା ଓ ପ୍ରେମପୂର୍ବକ ନିଷ୍କାମଭାବରେ ସମସ୍ତ ଇନ୍ଦ୍ରିୟକୁ ତାଙ୍କରି ସେବାରେ ଲଗାଇଦେବା ହିଁ ନିରନ୍ତର ଭଜନଧ୍ୟାନରେ ଲାଗିରହି ତାଙ୍କର ଶ୍ରେଷ୍ଠ ଉପାସନା କରିବା ।

**ପ୍ରଶ୍ନ –** **ଅକ୍ଷରମ୍** ବିଶେଷଣ ସହିତ **ଅବ୍ୟକ୍ତମ୍** ପଦଟି ଏଠାରେ କାହାର ବାଚକ ?

**ଉତ୍ତର –** ଏଠାରେ **ଅକ୍ଷରମ୍** ବିଶେଷଣ ସହିତ **ଅବ୍ୟକ୍ତମ୍** ପଦଟି ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କର ବାଚକ। ଯଦ୍ୟପି ଜୀବାତ୍ମାକୁ ମଧ୍ୟ ଅକ୍ଷର ଓ ଅବ୍ୟକ୍ତ କୁହାଯାଇପାରେ, ତଥାପି ଅର୍ଜୁନଙ୍କ ପ୍ରଶ୍ନର ଅଭିପ୍ରାୟ ଜୀବାତ୍ମାର ଉପାସନା ନୁହେଁ; କାରଣ ତା'ର ଉପାସକ ସଗୁଣ ଭଗବାନଙ୍କ ଉପାସକଙ୍କ ଠାରୁ ଶ୍ରେଷ୍ଠ ହେବା ସମ୍ଭବ ନୁହେଁ ଏବଂ ପୂର୍ବପ୍ରସଙ୍ଗରେ କୌଣସିଠାରେ ବି ଜୀବାତ୍ମାର ଉପାସନାର ବିଧାନ ଭଗବାନ୍ କହି ନାହାନ୍ତି ।

**ପ୍ରଶ୍ନ –** 'ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ ଉତ୍ତମ ଯୋଗବେତ୍ତା କେଉଁମାନେ ?' – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର –** ଏହି ବାକ୍ୟରେ ଅର୍ଜୁନ ପଚାରିଛନ୍ତି, 'ଯଦ୍ୟପି ଏହା ନିଃସନ୍ଦେହ ଯେ, ଉପରୋକ୍ତପ୍ରକାରେ ଉପାସନା କରୁଥିବା ଉଭୟ ଉପାସକ ଶ୍ରେଷ୍ଠ ଅଟନ୍ତି, ତଥାପି ସେହି ଦୁହିଁଙ୍କୁ ପରସ୍ପର ତୁଳନା କଲେ ସେମାନଙ୍କ ମଧ୍ୟରେ କେଉଁମାନେ ଉତ୍ତମ ହେବେ, ତାହା କହନ୍ତୁ।''

**ସମ୍ବନ୍ଧ –** ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ ସଗୁଣ-ସାକାରଙ୍କ ଉପାସକମାନଙ୍କୁ ଉତ୍ତମ ବୋଲି କହୁଛନ୍ତି –

### ଶ୍ରୀଭଗବାନୁବାଚ

## ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।
## ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ॥ ୨ ॥

**ଅନ୍ୱୟ –** **ମୟି** = ମୋଠାରେ; **ମନଃ** = ମନକୁ; **ଆବେଶ୍ୟ** = ଏକାଗ୍ର କରି; **ନିତ୍ୟଯୁକ୍ତାଃ** = ନିରନ୍ତର ମୋର ଭଜନଧ୍ୟାନରେ ଲାଗିରହିଥିବା; **ଯେ** = ଯେଉଁ ଭକ୍ତମାନେ; **ପରୟା, ଶ୍ରଦ୍ଧୟା, ଉପେତାଃ** = ପରମ ଶ୍ରଦ୍ଧାର ସହିତ; **ମାମ୍** = ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ; **ଉପାସତେ** = ଉପାସନା କରନ୍ତି; **ତେ** = ସେମାନେ; **ମେ, ଯୁକ୍ତତମାଃ, ମତାଃ** = ମୋ ମତରେ ଯୋଗୀମାନଙ୍କ ମଧ୍ୟରେ ଅତି ଉତ୍ତମ ଯୋଗୀ ଅଟନ୍ତି ।

**ଶ୍ରୀଭଗବାନ୍ କହିଲେ — ମୋଠାରେ ମନ ଏକାଗ୍ର କରି ନିରନ୍ତର ମୋର ଭଜନ-ଧ୍ୟାନରେ ଲାଗିରହିଥିବା ଯେଉଁ ଭକ୍ତମାନେ ପରମ ଶ୍ରଦ୍ଧାର ସହିତ ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ଉପାସନା କରନ୍ତି, ମୋ ମତରେ, ସେମାନେ ଯୋଗୀମାନଙ୍କ ମଧ୍ୟରେ ଅତି ଉତ୍ତମ ଯୋଗୀ ଅଟନ୍ତି ॥ ୨ ॥**

**ପ୍ରଶ୍ନ –** ଭଗବାନଙ୍କ ଠାରେ ମନକୁ ଏକାଗ୍ର କରି ନିରନ୍ତର ତାଙ୍କ ଭଜନ-ଧ୍ୟାନରେ ଲାଗିରହି ତାଙ୍କୁ ଉପାସନା କରିବା କହିଲେ କଣ ବୁଝାଏ ?

**ଉତ୍ତର –** ଗୋପୀମାନଙ୍କ ପରି * ସମସ୍ତ କର୍ମ କରିବା ସମୟରେ ପରମ ପ୍ରେମାସ୍ପଦ, ସର୍ବଶକ୍ତିମାନ୍, ସର୍ବାନ୍ତର୍ଯାମୀ, ସକଳ ଗୁଣର ସାଗର ଭଗବାନଙ୍କ ଠାରେ ମନକୁ ତନ୍ମୟ କରି, ସଦାସର୍ବଦା ତାଙ୍କର ଗୁଣ, ପ୍ରଭାବ, ଓ ସ୍ୱରୂପକୁ ପ୍ରେମପୂର୍ବକ ଚିନ୍ତନ କରି ରହିବା ହିଁ ମନକୁ ଏକାଗ୍ର କରି ନିରନ୍ତର ତାଙ୍କରି ଧ୍ୟାନରେ ମଗ୍ନ ରହି ତାଙ୍କରି ଉପାସନା କରିବା ।

**ପ୍ରଶ୍ନ –** ପରମ ଶ୍ରଦ୍ଧାର ସ୍ୱରୂପ କଣ ଏବଂ ସେଥିରେ ଯୁକ୍ତ ହୋଇଯିବା କଣ ?

**ଉତ୍ତର –** ଭଗବାନଙ୍କ ସତ୍ତାରେ, ତାଙ୍କ ଅବତାରମାନଙ୍କରେ, କଥାରେ, ତାଙ୍କ ଶକ୍ତିରେ, ତାଙ୍କ ଗୁଣ, ପ୍ରଭାବ, ଲୀଳା ଓ ଐଶ୍ୱର୍ଯ୍ୟ ଆଦିରେ ଅତ୍ୟନ୍ତ ସମ୍ମାନପୂର୍ବକ ପ୍ରତ୍ୟକ୍ଷ-ଦେଖିବାଠାରୁ ମଧ୍ୟ ଅଧିକ ବିଶ୍ୱାସ କରିବା ହିଁ ପରମ ଶ୍ରଦ୍ଧା ଏବଂ ଭକ୍ତ ପ୍ରହ୍ଲାଦଙ୍କ ପରି ସକଳପ୍ରକାରେ ଭଗବାନଙ୍କ ଉପରେ ନିର୍ଭରଶୀଳ ହୋଇଯିବା ହିଁ ଉପରୋକ୍ତ ଶ୍ରଦ୍ଧାରେ ଯୁକ୍ତ ହୋଇଯିବା ।

**ପ୍ରଶ୍ନ –** 'ସେମାନେ ମୋ ମତରେ ଅତି ଉତ୍ତମ ଯୋଗବେତ୍ତା ଅଟନ୍ତି' – ଏହାର ଭାବ କଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ କହୁଛନ୍ତି, 'ଉଭୟପ୍ରକାର ଉପାସକଙ୍କ ମଧ୍ୟରୁ ଯେଉଁମାନେ ମୋର ଅର୍ଥାତ୍ ସଗୁଣ ପରମେଶ୍ୱରଙ୍କର ଉପାସକ, ସେମାନଙ୍କୁ ମୁଁ ଉତ୍ତମ ଯୋଗବେତ୍ତା ବୋଲି ମନେ କରେ ।''

**ସମ୍ବନ୍ଧ –** ପୂର୍ବଶ୍ଳୋକରେ ସଗୁଣ-ସାକାର ପରମେଶ୍ୱରଙ୍କ ଉପାସକମାନଙ୍କୁ ଉତ୍ତମ ଯୋଗବେତ୍ତା ବୋଲି କହିଲେ । ଏ ସମ୍ପର୍କରେ ଜିଜ୍ଞାସା ହୋଇପାରେ, 'ତେବେ ନିର୍ଗୁଣ-ନିରାକାର ବ୍ରହ୍ମଙ୍କ ଉପାସକମାନେ ଉତ୍ତମ ଯୋଗବେତ୍ତା ନୁହନ୍ତି ?' ଏ ବିଷୟରେ ଭଗବାନ୍ କହୁଛନ୍ତି–

---

* ଯା ଦୋହନେଽବହନନେ ମଥନୋପଲେପପ୍ରେଙ୍ଖେଙ୍ଖନାର୍ଭରୁଦିତୋକ୍ଷଣମାର୍ଜନାଦୌ ।
ଗାୟନ୍ତି ଚୈନମନୁରକ୍ତଧିୟୋଽଶ୍ରୁକଣ୍ଠ୍ୟୋ ଧନ୍ୟା ବ୍ରଜସ୍ତ୍ରିୟ ଉରୁକ୍ରମଚିତ୍ତୟାନାଃ ॥ (ଶ୍ରୀମଦ୍ଭାଗବତ ୧୦/୪୪/୧୫)

ଅର୍ଥାତ୍ ''ଯେଉଁମାନେ ଗାଈ ଦୁହିଁବା ସମୟରେ, ଧାନ କୁଟିବା ସମୟରେ, ଦହି ମନ୍ଥିବା ସମୟରେ, ଅଗଣା ଲିପିବା ସମୟରେ, ପିଲାଙ୍କୁ ଦୋଳିରେ ଝୁଲାଇବା ସମୟରେ, କାନ୍ଦୁଥିବା ପିଲାଙ୍କୁ ଗୀତ ବୋଲି ଶୁଆଇବା ସମୟରେ, ପାଣି ଛିଞ୍ଚି ଘର ପୋଛିବା ସମୟରେ ଓ ଝାଡୁ ଦେବା ଆଦି କର୍ମ କରିବା ସମୟରେ ପ୍ରେମପୂର୍ଣ୍ଣ ଚିତ୍ତରେ ଅଶ୍ରୁପୂର୍ଣ୍ଣ ନୟନରେ ଗଦ୍‌ଗଦ କଣ୍ଠରେ ଶ୍ରୀକୃଷ୍ଣଙ୍କର ଲୀଳା ଗାନ କରୁଥିଲେ, ସଦା ଶ୍ରୀକୃଷ୍ଣଙ୍କ ଠାରେ ହିଁ ସେପରି ଚିତ୍ତ ଲଗାଇ ରଖିଥିବା ସେହି ବ୍ରଜବାସିନୀ ଗୋପରମଣୀମାନେ ଧନ୍ୟ ।''

**ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।**
**ସର୍ବତ୍ରଗମଚିନ୍ତ୍ୟଂ ଚ କୂଟସ୍ଥମଚଳଂ ଧ୍ରୁବମ୍ ।। ୩ ।।**
**ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।**
**ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ ।। ୪ ।।**

**ଅନ୍ୱୟ –** **ତୁ** = କିନ୍ତୁ; **ଯେ** = ଯେଉଁ ପୁରୁଷମାନେ; **ଇନ୍ଦ୍ରିୟଗ୍ରାମମ୍** = ଇନ୍ଦ୍ରିୟସମୁଦାୟକୁ; **ସଂନିୟମ୍ୟ** = ଭଲରୂପେ ବଶ କରି; **ଅଚିନ୍ତ୍ୟମ୍** = ମନ-ବୁଦ୍ଧିର ଅତୀତ; **ସର୍ବତ୍ରଗମ୍** = ସର୍ବବ୍ୟାପୀ; **ଅନିର୍ଦ୍ଦେଶ୍ୟମ୍** = ଅନିର୍ବଚନୀୟସ୍ୱରୂପ; **ଚ** = ଓ; **କୂଟସ୍ଥମ୍** = ସଦା ଏକରସ ହୋଇ ରହୁଥିବା; **ଧ୍ରୁବମ୍** = ନିତ୍ୟ; **ଅଚଳମ୍** = ଅଚଳ; **ଅବ୍ୟକ୍ତମ୍** = ନିରାକାର; **ଅକ୍ଷରମ୍** = ଅବିନାଶୀ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ; **ପର୍ଯ୍ୟୁପାସତେ** = ନିରନ୍ତର ଏକୀଭାବରେ ଧ୍ୟାନରତ ହୋଇ ଭଜନ୍ତି; **ତେ** = ସେହି; **ସର୍ବଭୂତହିତେ** = ସକଳ ଭୂତଙ୍କ ହିତରେ; **ରତାଃ** = ରତ (ଓ); **ସର୍ବତ୍ର** = ସବୁଠାରେ; **ସମବୁଦ୍ଧୟଃ** = ସମାନ ଭାବ ରଖୁଥିବା ଯୋଗୀମାନେ; **ମାମ୍, ଏବ** = ମୋତେ ହିଁ; **ପ୍ରାପ୍ନୁବନ୍ତି** = ପ୍ରାପ୍ତ ହୁଅନ୍ତି ।

**ପରନ୍ତୁ ଯେଉଁ ପୁରୁଷମାନେ ଇନ୍ଦ୍ରିୟସମୁଦାୟକୁ ଭଲରୂପେ ବଶ କରି ମନ-ବୁଦ୍ଧିର ଅତୀତ, ସର୍ବବ୍ୟାପୀ, ଅନିର୍ବଚନୀୟସ୍ୱରୂପ ଓ ସଦା ଏକରସ ହୋଇ ରହୁଥିବା, ନିତ୍ୟ, ଅଚଳ, ନିରାକାର, ଅବିନାଶୀ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ନିରନ୍ତର ଏକୀଭାବରେ ଧ୍ୟାନରତ ହୋଇ ଭଜନ୍ତି, ସମସ୍ତ ପ୍ରାଣୀଙ୍କ ହିତରେ ରତ ଓ ସମସ୍ତଙ୍କ ଠାରେ ସମାନ ଭାବ ରଖୁଥିବା ସେହି ଯୋଗୀମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି ।। ୩-୪ ।।**

**ପ୍ରଶ୍ନ –** ଅଚିନ୍ତ୍ୟମ୍‌ର ଅର୍ଥ କଣ ?

**ଉତ୍ତର –** ଯାହା ମନ-ବୁଦ୍ଧିର ବିଷୟ ନୁହେଁ, ତାହାକୁ **ଅଚିନ୍ତ୍ୟ** କହନ୍ତି ।

**ପ୍ରଶ୍ନ –** ସର୍ବତ୍ରଗମ୍‌ର ଅର୍ଥ କଣ ?

**ଉତ୍ତର –** ଯେ ଆକାଶପରି ସର୍ବବ୍ୟାପୀ ଅଟନ୍ତି, — ସର୍ବତ୍ର ବିଦ୍ୟମାନ ଅଟନ୍ତି, ସେ **ସର୍ବତ୍ରଗ** ।

**ପ୍ରଶ୍ନ –** ଅନିର୍ଦ୍ଦେଶ୍ୟମ୍‌ର ଅର୍ଥ କଣ ?

**ଉତ୍ତର –** ଯାହାକୁ ନିର୍ଦ୍ଦେଶ କରାଯାଇପାରେନା – କୌଣସି ବି ଯୁକ୍ତି ବା ଉପମାଦ୍ୱାରା ଯାହାର ସ୍ୱରୂପ ବୁଝାଇ ବା କହି ହୁଏନା, ତାହା **ଅନିର୍ଦ୍ଦେଶ୍ୟ** ।

**ପ୍ରଶ୍ନ –** କୂଟସ୍ଥମ୍‌ର ଅର୍ଥ କଣ ?

**ଉତ୍ତର –** ଯାହାର କେବେ କୌଣସି କାରଣରୁ ପରିବର୍ତ୍ତନ ହୁଏ ନାହିଁ, ଯେ ସଦା ଏକାପରି ରହେ, ତାହାକୁ **କୂଟସ୍ଥ** କହନ୍ତି ।

**ପ୍ରଶ୍ନ –** ଧ୍ରୁବମ୍‌ର ଅର୍ଥ କଣ ?

**ଉତ୍ତର –** ଯାହା ନିତ୍ୟ ଓ ନିଶ୍ଚିତରୂପେ ରହିଛି, ଯାହାର ସତ୍ତାରେ କୌଣସିପ୍ରକାର ସଂଶୟ ନାହିଁ ଓ ଯାହାର କେବେ ଅଭାବ ନାହିଁ, ତାହା **ଧ୍ରୁବ** ।

**ପ୍ରଶ୍ନ –** ଅଚଳମ୍‌ର ଅର୍ଥ କଣ ?

**ଉତ୍ତର –** ଯାହା କେବେହେଲେ ହଲଚଲ ହୁଏ ନାହିଁ, ତାହାକୁ **ଅଚଳ** କହନ୍ତି ।

**ପ୍ରଶ୍ନ –** ଅବ୍ୟକ୍ତମ୍‌ର ଅର୍ଥ କଣ ?

**ଉତ୍ତର –** ଯାହା କୌଣସି ବି ଇନ୍ଦ୍ରିୟର ବିଷୟ ନୁହେଁ ଅର୍ଥାତ୍ ଯାହା ଇନ୍ଦ୍ରିୟଦ୍ୱାରା ଜାଣିହୁଏ ନାହିଁ ଓ ଯାହାର କୌଣସି ରୂପ ବା ଆକାର ନାହିଁ, ତାହା **ଅବ୍ୟକ୍ତ** ।

**ପ୍ରଶ୍ନ –** ଅକ୍ଷରମ୍‌ର ଅର୍ଥ କଣ ?

**ଉତ୍ତର –** ଯାହାର କେବେ କୌଣସି ବି କାରଣରୁ ବିନାଶ ହୁଏ ନାହିଁ, ତାହା **ଅକ୍ଷର** ।

**ପ୍ରଶ୍ନ –** ଏହିସବୁ ବିଶେଷଣମାନଙ୍କ ପ୍ରୟୋଗର ଭାବ କଣ ଏବଂ ସେହି ବ୍ରହ୍ମଙ୍କର ଶ୍ରେଷ୍ଠ ଉପାସନା କରିବା କଣ ?

**ଉତ୍ତର –** ଉପରୋକ୍ତ ବିଶେଷଣମାନଙ୍କ ଦ୍ୱାରା ନିର୍ଗୁଣ ନିରାକାର ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦନ କରାଯାଇଛି । ଏହିପରି ସେହି ପରବ୍ରହ୍ମଙ୍କର ଉପରୋକ୍ତ ସ୍ୱରୂପ ବୁଝି ଅଭିନ୍ନଭାବରେ ତାଙ୍କୁ ନିରନ୍ତର ଧ୍ୟାନ କରି ରହିବା ହିଁ ତାଙ୍କର ଉତ୍ତମ ଉପାସନା କରିବା ।

**ପ୍ରଶ୍ନ –** ସର୍ବଭୂତହିତେ ରତାଃର ଭାବ କଣ ?

**ଉତ୍ତର**—**ସର୍ବଭୂତହିତେ ରତାଃ**ଦ୍ୱାରା ଦେଖାଉଛନ୍ତି ଯେ, ଅବିବେକୀ ମନୁଷ୍ୟ ଯେପରି ନିଜ ହିତରେ ଲାଗିରହେ, ସେହି ନିର୍ଗୁଣ ଉପାସକମାନଙ୍କର ସକଳ ପ୍ରାଣୀଙ୍କ ଠାରେ ଆତ୍ମଭାବ ହୋଇଯିବାରୁ ସେମାନେ ସେହିପରି ସମାନଭାବରେ ସମସ୍ତଙ୍କ ହିତରେ ଲାଗିରହନ୍ତି।

**ପ୍ରଶ୍ନ**— **ସର୍ବତ୍ର ସମବୁଦ୍ଧୟଃ**ର ଭାବ କଣ ?

**ଉତ୍ତର**— ଏହାଦ୍ୱାରା ଦେଖାଉଛନ୍ତି ଯେ, ଉପରୋକ୍ତପ୍ରକାରେ ନିର୍ଗୁଣନିରାକାର ବ୍ରହ୍ମଙ୍କୁ ଉପାସନା କରୁଥିବା ଲୋକମାନଙ୍କର କେଉଁଠି ଭେଦବୁଦ୍ଧି ରହେ ନାହିଁ। ସାରା ଜଗତରେ ଏକ ବ୍ରହ୍ମଠାରୁ ଭିନ୍ନ ଅନ୍ୟ କାହାରି ସତ୍ତା ନ ଥିବାରୁ ସେମାନଙ୍କର ସବୁ ସ୍ଥାନରେ ସମବୁଦ୍ଧି ହୋଇଯାଏ।

**ପ୍ରଶ୍ନ**— 'ସେମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି' ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର**— ଏହାଦ୍ୱାରା ଭଗବାନ୍ ବ୍ରହ୍ମଙ୍କୁ ନିଜଠାରୁ ଅଭିନ୍ନ ବୋଲି କହିଛନ୍ତି। ଭଗବାନଙ୍କର ଅଭିପ୍ରାୟ ହେଉଛି, ''ଉପରୋକ୍ତ ଉପାସନାର ଫଳସ୍ୱରୂପ ଯେଉଁ ନିର୍ଗୁଣ ବ୍ରହ୍ମର ପ୍ରାପ୍ତି ହୁଏ, ତାହା ମୋର ହିଁ ପ୍ରାପ୍ତି; କାରଣ ବ୍ରହ୍ମ ମୋଠାରୁ ଭିନ୍ନ ନୁହେଁ ଏବଂ ମୁଁ ବ୍ରହ୍ମଠାରୁ ଭିନ୍ନ ନୁହେଁ। ମୁଁ ହିଁ ସେହି ବ୍ରହ୍ମ।'' ଏହି ଭାବ ଭଗବାନ୍ ଚତୁର୍ଦ୍ଦଶ ଅଧ୍ୟାୟର ସତେଇଶ ଶ୍ଲୋକରେ **ବ୍ରହ୍ମଣୋ ହି ପ୍ରତିଷ୍ଠାହମ୍** ଅର୍ଥାତ୍ 'ମୁଁ ବ୍ରହ୍ମର ପ୍ରତିଷ୍ଠା' ବୋଲି ପ୍ରକାଶ କରିଛନ୍ତି।

**ପ୍ରଶ୍ନ**— ଯଦି ଉଭୟଙ୍କୁ ପରମେଶ୍ୱରଙ୍କ ପ୍ରାପ୍ତି ହୁଏ, ତେବେ ଦ୍ୱିତୀୟ ଶ୍ଲୋକରେ ସଗୁଣ ଉପାସକମାନଙ୍କୁ ଶ୍ରେଷ୍ଠ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର**— ଏକାଦଶ ଅଧ୍ୟାୟରେ ଭଗବାନ୍ କହିଛନ୍ତି, ''ଅନନ୍ୟ ଭକ୍ତିଦ୍ୱାରା ମନୁଷ୍ୟ ମୋତେ ଦେଖିପାରେ, ତତ୍ତ୍ୱତଃ ଜାଣିପାରେ ଓ ପାଇପାରେ (୧୧/୫୪)।'' ଏଥିରୁ ଜଣାଯାଉଛି ଯେ, ପରମାତ୍ମାଙ୍କୁ ତତ୍ତ୍ୱତଃ ଜାଣିବା ଓ ପାଇବା— ଏହି ଉଭୟ ତ ନିର୍ଗୁଣ ଉପାସକଙ୍କ ପାଇଁ ମଧ୍ୟ ସମାନ ହିଁ ଅଟେ। ପରନ୍ତୁ ନିର୍ଗୁଣ-ଉପାସକଙ୍କୁ ସଗୁଣରୂପରେ ଦର୍ଶନ ଦେବାକୁ ଭଗବାନ୍ ବାଧ୍ୟ ନୁହନ୍ତି; ଏବଂ ସଗୁଣ-ଉପାସକଙ୍କୁ ଭଗବାନଙ୍କର ଦର୍ଶନ ମଧ୍ୟ ହୁଏ;— ଏହା ତାଙ୍କର ବିଶେଷତ୍ୱ। ତେଣୁ ତାଙ୍କୁ ଶ୍ରେଷ୍ଠ ବୋଲି କୁହାଯାଇଛି।

*ସମ୍ବନ୍ଧ— ଏହିପ୍ରକାରେ ନିର୍ଗୁଣ-ଉପାସନା ଓ ତା'ର ଫଳ ପ୍ରତିପାଦନ କରିବା ପରେ ବର୍ତ୍ତମାନ ଦେହାଭିମାନୀମାନଙ୍କ ପାଇଁ ଅବ୍ୟକ୍ତଗତିପ୍ରାପ୍ତି କଠିନ ବୋଲି କହୁଛନ୍ତି—*

## କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍।
## ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ॥ ୫ ॥

**ଅନ୍ୱୟ**— **ତେଷାମ୍** = ସେହି; **ଅବ୍ୟକ୍ତାସକ୍ତଚେତସାମ୍** = ସଚ୍ଚିଦାନନ୍ଦଘନ ନିରାକାରବ୍ରହ୍ମରେ ଆସକ୍ତଚିତ୍ତ ପୁରୁଷମାନଙ୍କର (ସାଧନାରେ); **ଅଧିକତରଃ** = ବିଶେଷ; **କ୍ଲେଶଃ** = ପରିଶ୍ରମ (ହୁଏ); **ହି** = କାରଣ; **ଦେହବଦ୍ଭିଃ** = ଦେହାଭିମାନୀମାନଙ୍କ ଦ୍ୱାରା; **ଅବ୍ୟକ୍ତା** = ଅବ୍ୟକ୍ତବିଷୟକ; **ଗତିଃ** = ଗତି; **ଦୁଃଖମ୍** = ଦୁଃଖପୂର୍ବକ; **ଅବାପ୍ୟତେ** = ପ୍ରାପ୍ତ କରାଯାଏ।

**ସେହି ସଚ୍ଚିଦାନନ୍ଦଘନ ନିରାକାର ବ୍ରହ୍ମରେ ଆସକ୍ତଚିତ୍ତ ପୁରୁଷମାନଙ୍କର ସାଧନା ବିଶେଷ ପରିଶ୍ରମସାଧ୍ୟ ହୋଇଥାଏ; କାରଣ ଦେହାଭିମାନୀମାନଙ୍କ ଦ୍ୱାରା ଅବ୍ୟକ୍ତବିଷୟକ ଗତି ଦୁଃଖପୂର୍ବକ ପ୍ରାପ୍ତ କରାଯାଇଥାଏ॥ ୫ ॥**

**ପ୍ରଶ୍ନ**— **ତେଷାମ୍** ପଦ ସହିତ **ଅବ୍ୟକ୍ତାସକ୍ତଚେତସାମ୍** ପଦ କେଉଁମାନଙ୍କ ବାଚକ ଓ 'ସେମାନଙ୍କ (ସାଧନାରେ) ପରିଶ୍ରମ ଅଧିକ ହୁଏ', ଏ କଥାର ଭାବ କଣ ?

**ଉତ୍ତର**— ପୂର୍ବ ଶ୍ଲୋକମାନଙ୍କରେ ଯେଉଁ ନିର୍ଗୁଣ-ଉପାସକମାନଙ୍କର ବର୍ଣ୍ଣନା ହୋଇଛି, ଯେଉଁମାନଙ୍କର ମନ ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମରେ ହିଁ ଆସକ୍ତ,— ଏଠାରେ **ତେଷାମ୍** ସହିତ

**ଅବ୍ୟକ୍ତାସକ୍ତଚେତସାମ୍** ପଦଟି ସେହିମାନଙ୍କର ବାଚକ। 'ସେମାନଙ୍କୁ ଅଧିକ ପରିଶ୍ରମ କରିବାକୁ ହୁଏ'— ଏହା କହି ଭଗବାନ୍ ସୂଚାଇଦେଇଛନ୍ତି ଯେ, ନିର୍ଗୁଣ ବ୍ରହ୍ମଙ୍କ ତତ୍ତ୍ୱ ବଡ଼ ହିଁ ଗହନ; ଯାହାଙ୍କର ବୁଦ୍ଧି ଶୁଦ୍ଧ, ସ୍ଥିର ଓ ସୂକ୍ଷ୍ମ, ଯାହାଙ୍କର ଶରୀରରେ ଅଭିମାନ ନାହିଁ, ସେ ହିଁ ତାଙ୍କୁ ବୁଝିପାରନ୍ତି; ସାଧାରଣ ମନୁଷ୍ୟ ବୁଝିପାରେ ନାହିଁ। ଏଣୁ ସାଧନାର ଆରମ୍ଭକାଳରେ ନିର୍ଗୁଣ-ଉପାସନା ଅଧିକ ପରିଶ୍ରମସାଧ୍ୟ।

**ପ୍ରଶ୍ନ —** ଦେହାଭିମାନୀମାନଙ୍କ ଦ୍ୱାରା ଅବ୍ୟକ୍ତ-ବିଷୟକ ଗତି ଦୁଃଖପୂର୍ବକ ପ୍ରାପ୍ତ କରାଯାଏ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ପୂର୍ବାର୍ଦ୍ଧରେ କହିଥିବା ପରିଶ୍ରମର କାରଣ ଦର୍ଶାଇଛନ୍ତି। ଅଭିପ୍ରାୟ ଏହି ଯେ, ଦେହାଭିମାନୀଙ୍କ ପକ୍ଷରେ ନିର୍ଗୁଣ ବ୍ରହ୍ମତତ୍ତ୍ୱ ବୁଝିବା ବଡ଼ କଠିନ। ତେଣୁ ଯେଉଁମାନଙ୍କର ଶରୀର ପ୍ରତି ଅଭିମାନ ରହିଛି, ସେମାନଙ୍କୁ ସେପରି ସ୍ଥିତି ବିଶେଷ ପରିଶ୍ରମଦ୍ୱାରା ପ୍ରାପ୍ତ ହୁଏ।

**ପ୍ରଶ୍ନ —** ଏଠାରେ ତ ଅବ୍ୟକ୍ତଙ୍କର ଉପାସନାରେ ଅଧିକତର ପରିଶ୍ରମ ହୁଏ ବୋଲି କୁହାଗଲା ଏବଂ ନବମ ଅଧ୍ୟାୟର ଦ୍ୱିତୀୟ ଶ୍ଲୋକରେ **କର୍ତୁମ୍, ସୁସୁଖମ୍** ପଦଦ୍ୱାରା ଜ୍ଞାନ-ବିଜ୍ଞାନଙ୍କୁ ସୁଗମ ବୋଲି କହି ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ଲୋକରେ ଅବ୍ୟକ୍ତଙ୍କର ହିଁ ବର୍ଣ୍ଣନା କରିଛନ୍ତି। ତେଣୁ ଉଭୟ ସ୍ଥାନର ବର୍ଣ୍ଣନାରେ ଯେଉଁ ବିରୋଧାଭାସ ପ୍ରତୀତ ହେଉଛି, ତାହାର ସମାଧାନ କଣ ?

**ଉତ୍ତର —** ଏଥିରେ କୌଣସି ବିରୋଧ ନାହିଁ। ନବମ ଅଧ୍ୟାୟରେ 'ଜ୍ଞାନ' ଓ 'ବିଜ୍ଞାନ' ଶବ୍ଦ ସଗୁଣ ଭଗବାନଙ୍କର ଗୁଣ, ପ୍ରଭାବ ଓ ତତ୍ତ୍ୱ ସହିତ ବିଶେଷ ସମ୍ବନ୍ଧ ରଖେ; ତେଣୁ ସେଠାରେ ସଗୁଣ ନିରାକାରଙ୍କ ଉପାସନା ହିଁ ସୁଗମ ବୋଲି କୁହାଯାଇଛି। ସେଠାରେ ଚତୁର୍ଥ ଶ୍ଲୋକରେ ଆସିଥିବା 'ଅବ୍ୟକ୍ତ' ଶବ୍ଦଟି ସଗୁଣ-ନିରାକାରଙ୍କ ବାଚକ। ତେଣୁ ତାହାଙ୍କୁ ସମସ୍ତ ଭୂତଙ୍କୁ ଧାରଣ-ପୋଷଣ କରୁଥିବା, ସମସ୍ତଙ୍କ ଠାରେ ବ୍ୟାପ୍ତ ଥିବା ଓ ପ୍ରକୃତରେ ଅସଙ୍ଗ ହୋଇ ମଧ୍ୟ ସମସ୍ତଙ୍କର ଉତ୍ପତ୍ତି ଆଦି କରୁଥିବାର କୁହାଯାଇଛି।

**ପ୍ରଶ୍ନ —** ଷଷ୍ଠ ଅଧ୍ୟାୟର ଚବିଶଠାରୁ ସତେଇଶ ଶ୍ଲୋକଯାଏ ନିର୍ଗୁଣ ଉପାସନାର ପ୍ରକାର କହି ଅଠେଇଶ ଶ୍ଲୋକରେ ସେହିପରି ସାଧନା କରୁ କରୁ ସୁଖପୂର୍ବକ ପରମାତ୍ମପ୍ରାପ୍ତିରୂପକ ଅତ୍ୟନ୍ତ ଆନନ୍ଦଲାଭ ହୁଏ ବୋଲି କୁହାଯାଇଛି ଏହି ଦୁଇଟି ମଧ୍ୟରେ ସଙ୍ଗତି କିପରି ହେବ ?

**ଉତ୍ତର —** ଯାହାଙ୍କର ସମସ୍ତ ପାପ ତଥା ରଜୋଗୁଣ ଓ ତମୋଗୁଣ ଶାନ୍ତ ହୋଇଗଲାଣି, ଯେ 'ବ୍ରହ୍ମଭୂତ' ହୋଇଗଲେଣି ଅର୍ଥାତ୍ ଯେ ବ୍ରହ୍ମରେ ଅଭିନ୍ନଭାବରେ ରହିସାରିଲେଣି, ସେଠାର ବର୍ଣ୍ଣନା ସେପରି ପୁରୁଷଙ୍କ ପାଇଁ ହୋଇଛି; ତାହା ଦେହାଭିମାନୀମାନଙ୍କ ପାଇଁ ନୁହେଁ। ତେଣୁ ତାହାଙ୍କୁ ସୁଖପୂର୍ବକ ବ୍ରହ୍ମପ୍ରାପ୍ତି ହୁଏ ବୋଲି କହିବା ଉଚିତ ହୋଇଛି।

**ପ୍ରଶ୍ନ —** କଣ ନିର୍ଗୁଣ-ଉପାସକମାନଙ୍କୁ ହିଁ ସାଧନାକାଳରେ ଅଧିକ ପରିଶ୍ରମ କରିବାକୁ ହୁଏ; ସଗୁଣ ଉପାସକମାନଙ୍କୁ ହୁଏ ନାହିଁ ?

**ଉତ୍ତର —** ସଗୁଣ ଉପାସକମାନଙ୍କୁ ପରିଶ୍ରମ କରିବାକୁ ହୁଏ ନାହିଁ; କାରଣ ଏକେ ତ ସଗୁଣ-ଉପାସନା ସୁଗମ। ଦ୍ୱିତୀୟରେ ସଗୁଣ-ଉପାସକମାନେ ଭଗବାନଙ୍କ ଉପରେ ହିଁ ନିର୍ଭର କରନ୍ତି। ତେଣୁ ସ୍ୱୟଂ ଭଗବାନ୍ ସେମାନଙ୍କୁ ସବୁପ୍ରକାର ସାହାଯ୍ୟ କରନ୍ତି। ଏପରି ଅବସ୍ଥାରେ ସେମାନଙ୍କୁ ବିଶେଷ ପରିଶ୍ରମ କରିବାକୁ ହେବ କିପରି ?

*ସମ୍ବନ୍ଧ — ଏପରିଭାବରେ ନିର୍ଗୁଣ ନିରାକାର ବ୍ରହ୍ମଙ୍କ ଉପାସନାରୁ ଦେହାଭିମାନୀମାନଙ୍କ ନିମନ୍ତେ ପରମାତ୍ମପ୍ରାପ୍ତି ହେବା କଠିନ ବୋଲି କହିସାରି ପରବର୍ତ୍ତୀ ଦୁଇଟି ଶ୍ଲୋକରେ ସଗୁଣ ପରମେଶ୍ୱରଙ୍କ ଉପାସନାଦ୍ୱାରା ପରମେଶ୍ୱରଙ୍କ ପ୍ରାପ୍ତି ଶୀଘ୍ର ଓ ଅନାୟାସରେ ହୁଏ ବୋଲି କହୁଛନ୍ତି—*

**ଯେ ତୁ ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ମତ୍ପରାଃ।**
**ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ॥ ୬ ॥**

**ଅନ୍ୱୟ —** ତୁ = କିନ୍ତୁ; ଯେ, **ମତ୍ପରାଃ** = ମୋର ପରାୟଣ ହୋଇଥିବା ଯେଉଁ ଭକ୍ତମାନେ; **ସର୍ବାଣି** = ସମସ୍ତ; **କର୍ମାଣି** = କର୍ମମାନଙ୍କୁ; **ମୟି** = ମୋଠାରେ; **ସଂନ୍ୟସ୍ୟ** = ଅର୍ପଣ କରିଦେଇ; **ମାମ୍** = ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ; **ଏବ** = ହିଁ; **ଅନନ୍ୟେନ** = ଅନନ୍ୟ; **ଯୋଗେନ** = ଭକ୍ତିଯୋଗଦ୍ୱାରା; **ଧ୍ୟାୟନ୍ତଃ** = ନିରନ୍ତର ଚିନ୍ତନ କରି କରି; **ଉପାସତେ** = ଭଜନ କରନ୍ତି।

**ପରନ୍ତୁ ମୋର ପରାୟଣ ହୋଇଥିବା ଯେଉଁ ଭକ୍ତମାନେ ସମସ୍ତ କର୍ମ ମୋଠାରେ ଅର୍ପଣ କରିଦେଇ ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ହିଁ ଅନନ୍ୟ ଭକ୍ତିଯୋଗରେ ନିରନ୍ତର ଚିନ୍ତନ କରି କରି ଭଜନ୍ତି, - - -॥ ୬ ॥**

**ପ୍ରଶ୍ନ –** ଏଠାରେ ତୁ ପଦର ଅଭିପ୍ରାୟ କଣ ?

**ଉତ୍ତର –** ତୁ ପଦ ଏଠାରେ ନିର୍ଗୁଣ-ଉପାସକ ଓ ସଗୁଣ-ଉପାସକଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଦେଖାଇବାକୁ ଦିଆଯାଇଛି।

**ପ୍ରଶ୍ନ –** ଭଗବତ୍‌ପରାୟଣ ହେବା କଣ ?

**ଉତ୍ତର –** ନାନାପ୍ରକାର ଦୁଃଖ ଆସିଲେ ମଧ୍ୟ ଭକ୍ତ ଭଗବାନଙ୍କ ଉପରେ ନିର୍ଭର କରି ପ୍ରହ୍ଲାଦଙ୍କ ପରି ନିର୍ଭୟ ଓ ନିର୍ବିକାର ରହନ୍ତି; ସେସବୁ ଦୁଃଖ ଭଗବତ୍‌ପ୍ରଦତ୍ତ ପୁରସ୍କାର ବୋଲି ବୁଝି ଭକ୍ତ ସେଗୁଡ଼ିକୁ ସୁଖ ମନେ କରନ୍ତି ତଥା ଭଗବାନଙ୍କୁ ହିଁ ପରମପ୍ରେମୀ, ପରମଗତି, ପରମସୁହୃଦ୍ ଓ ସକଳପ୍ରକାର ଶରଣ ନେବାର ଯୋଗ୍ୟ ବୋଲି ବୁଝି ନିଜେ ନିଜକୁ ଭଗବାନଙ୍କ ଠାରେ ସମର୍ପଣ କରିଦିଅନ୍ତି — ଏସବୁ ହେଉଛି ଭଗବତ୍‌ପରାୟଣତା।

**ପ୍ରଶ୍ନ –** ଭଗବାନଙ୍କ ଠାରେ ସକଳ କର୍ମ ସମର୍ପଣ କରିବା କଣ ?

**ଉତ୍ତର –** କର୍ମ କରିବାରେ ନିଜକୁ ପରାଧୀନ ମନେ କରି ଭଗବାନଙ୍କ ଆଜ୍ଞା ଓ ସଂକେତ ଅନୁସାରେ କାଠକଣ୍ଢେଇପରି ସମସ୍ତ କର୍ମ କରିବା; ସେସବୁ କର୍ମରେ ମମତ୍ୱ ଓ ଆସକ୍ତି ନ ରଖି, ସବୁର ଫଳରେ କୌଣସିପ୍ରକାର ସମ୍ବନ୍ଧ ନ ରଖି ଶାସ୍ତ୍ରାନୁକୂଳ ପ୍ରତ୍ୟେକ କ୍ରିୟାରେ 'ମୁଁ ତ ନିମିତ୍ତମାତ୍ର; ମୋର କିଛି କରିବାର ଶକ୍ତି ନାହିଁ; ଭଗବାନ୍ ହିଁ ତାଙ୍କ ଇଚ୍ଛାନୁସାରେ ମୋ' ଦ୍ୱାରା ସମସ୍ତ କର୍ମ କରାଉଛନ୍ତି' – ଏପରି ଭାବ ରଖିବା ହିଁ ସମସ୍ତ କର୍ମ ଭଗବାନଙ୍କ ଠାରେ ସମର୍ପଣ କରିଦେବା।

**ପ୍ରଶ୍ନ – ଅନନ୍ୟ ଭକ୍ତିଯୋଗ** କଣ ଓ ତାଦ୍ୱାରା ଭଗବାନଙ୍କର ଚିନ୍ତନ କରି କରି ତାଙ୍କୁ ଉପାସନା କରିବା କଣ ?

**ଉତ୍ତର –** ଏକ ପରମେଶ୍ୱରଙ୍କ ବ୍ୟତୀତ ମୋର ଅନ୍ୟ କେହି ନାହିଁ; ସେ ହିଁ ମୋର ସର୍ବସ୍ୱ – ଏପରି ବୁଝି, ସ୍ୱାର୍ଥରହିତ ହୋଇ ତଥା ଅତ୍ୟନ୍ତ ଶ୍ରଦ୍ଧାର ସହିତ ଭଗବାନଙ୍କ ଠାରେ ଯେଉଁ ଅନନ୍ୟ ପ୍ରେମ କରାଯାଏ – ଯେଉଁ ପ୍ରେମରେ ସ୍ୱାର୍ଥ, ଅଭିମାନ ଓ ବ୍ୟଭିଚାରରୂପୀ ତିଳେମାତ୍ର ଦୋଷ ନ ଥାଏ, ଯାହା ସର୍ବଥା ପୂର୍ଣ୍ଣ ଓ ଅଟଳ, ଯାହାର କିଂଚିତ୍ ଅଂଶ ମଧ୍ୟ ଭଗବାନଙ୍କ ଠାରୁ କୌଣସି ଭିନ୍ନବସ୍ତୁ ପ୍ରତି ଢ଼ଳି ନ ଥାଏ ଏବଂ ଯାହାହେତୁ କ୍ଷଣେମାତ୍ର ଭଗବତ୍‌ବିସ୍ମୃତି ମଧ୍ୟ ଅସହ୍ୟ ହୁଏ, ସେହି ଅନନ୍ୟପ୍ରେମକୁ **ଅନନ୍ୟ ଭକ୍ତିଯୋଗ** କହନ୍ତି। ଏପରି ଭକ୍ତିଯୋଗଦ୍ୱାରା ନିରନ୍ତର ଭଗବାନଙ୍କୁ ଚିନ୍ତନ କରି କରି ତାଙ୍କର ଗୁଣ, ପ୍ରଭାବ ଓ ଲୀଳାମାନ ଶ୍ରବଣ, କୀର୍ତ୍ତନ କରିବା ଏବଂ ତାଙ୍କ ନାମ ଉଚ୍ଚାରଣ ଓ ଜପ ଆଦି କରିବା ହିଁ ଅନନ୍ୟ ଭକ୍ତିଯୋଗଦ୍ୱାରା ଭଗବାନଙ୍କର ଚିନ୍ତନ କରି କରି ତାଙ୍କୁ ଉପାସନା କରିବା।

## ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍।
## ଭବାମି ନଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍॥ ୭ ॥

**ଅନ୍ୱୟ –** ପାର୍ଥ = ହେ ଅର୍ଜୁନ; ତେଷାମ୍ = ସେହି; ମୟି = ମୋଠାରେ; ଆବେଶିତଚେତସାମ୍ = ଚିତ୍ତ ନିବେଶ କରିଥିବା ପ୍ରେମୀଭକ୍ତମାନଙ୍କୁ; ଅହମ୍ = ମୁଁ; ନଚିରାତ୍ = ଶୀଘ୍ର ହିଁ; ମୃତ୍ୟୁସଂସାରସାଗରାତ୍ = ମୃତ୍ୟୁରୂପୀ ସଂସାରସାଗରରୁ; ସମୁଦ୍ଧର୍ତ୍ତା, ଭବାମି = ଉଦ୍ଧାରକର୍ତ୍ତା ହୋଇଯାଏ ଅର୍ଥାତ୍ ଉଦ୍ଧାର କରିଦିଏ।

**ହେ ଅର୍ଜୁନ! ମୋଠାରେ ଚିତ୍ତ ନିବେଶ କରିଥିବା ସେହି ପ୍ରେମୀ ଭକ୍ତମାନଙ୍କୁ ମୁଁ ଶୀଘ୍ର ହିଁ ମୃତ୍ୟୁରୂପକ ସଂସାରସାଗରରୁ ଉଦ୍ଧାର କରିଦିଏ।॥ ୭ ॥**

**ପ୍ରଶ୍ନ – ତେଷାମ୍** ପଦ ସହିତ **ମୟ୍ୟାବେଶିତଚେତସାମ୍** ପଦଟି କାହାର ବାଚକ ?

**ଉତ୍ତର –** ପୂର୍ବଶ୍ଲୋକରେ ମନ-ବୁଦ୍ଧିକୁ ସବୁଦିନପାଇଁ ଭଗବାନଙ୍କ ଠାରେ ଲଗାଇଦେଇଥିବା ଯେଉଁ ଅନନ୍ୟପ୍ରେମୀ ସଗୁଣ-ଉପାସକମାନଙ୍କର ବର୍ଣ୍ଣନା ହୋଇଛି, ଏଠାରେ ତେଷାମ୍ ସହିତ **ମୟ୍ୟାବେଶିତଚେତସାମ୍** ପଦଟି ସେହିସବୁ ପ୍ରେମୀ ଭକ୍ତଙ୍କର ବାଚକ।

**ପ୍ରଶ୍ନ –** 'ମୃତ୍ୟୁରୂପୀ ସଂସାରସାଗର କଣ ଏବଂ ସେଥିରୁ ଭଗବାନ୍ ଉପରୋକ୍ତ ଭକ୍ତଙ୍କୁ କିପରି **ଶୀଘ୍ର** ହିଁ ଉଦ୍ଧାର କରନ୍ତି ?

**ଉତ୍ତର –** ଏହି ସଂସାରରେ ସବୁକିଛି ମୃତ୍ୟୁମୟ। ଏଠାରେ ଜନ୍ମ ହେଉଥିବା ଜଣେ ବି କେହି ନାହିଁ, ଯେ କି ମୁହୂର୍ତ୍ତକପାଇଁ ମଧ୍ୟ ମୃତ୍ୟୁର ଦାଉରୁ ମୁକ୍ତ। ସମୁଦ୍ରରେ ଯେପରି ଅସଂଖ୍ୟ ତରଙ୍ଗ ଉଠୁଥାଏ, ଏହି ଅପାର ସଂସାରସାଗରରେ ସେହିପରି ଅନବରତ ଜନ୍ମ-ମୃତ୍ୟୁରୂପୀ ତରଙ୍ଗମାନ ଉଠୁଥାଏ। ସମୁଦ୍ରର ତରଙ୍ଗଙ୍କୁ ହୁଏ ତ ଗଣିହେବ କିନ୍ତୁ ଯେପର୍ଯ୍ୟନ୍ତ ପରମେଶ୍ୱରଙ୍କ ପ୍ରାପ୍ତି ହୋଇ ନାହିଁ, ସେପର୍ଯ୍ୟନ୍ତ ଜୀବକୁ ଯେ କେତେ ଥର ଜନ୍ମିବାକୁ ଓ ମରିବାକୁ ପଡ଼ିବ, ତାହାର ଗଣନା କରିହେବ ନାହିଁ। ଅତଏବ ସଂସାରକୁ 'ମୃତ୍ୟୁରୂପୀ ସଂସାରସାଗର କହନ୍ତି।

ଉପରୋକ୍ତପ୍ରକାରେ ଭଗବାନଙ୍କ ଠାରେ ମନ-ବୁଦ୍ଧି ଲଗାଇ ଯେଉଁ ଭକ୍ତ ନିରନ୍ତର ଭଗବାନଙ୍କର ଉପାସନା କରନ୍ତି, ତାଙ୍କୁ ଭଗବାନ୍ ତତ୍‌କାଳ ହିଁ ଜନ୍ମ-ମୃତ୍ୟୁରୁ ସବୁଦିନପାଇଁ ମୁକ୍ତ କରିଦେଇ ଏଠାରେ ହିଁ ନିଜର ପ୍ରାପ୍ତି କରାଇଦିଅନ୍ତି ଅଥବା ମରିବା ପରେ ତାଙ୍କୁ ନିଜ ପରମଧାମକୁ ନେଇଯାଆନ୍ତି– ଏପରି କି, ନାଉରୀ ଯେପରି ଲୋକଙ୍କୁ ନୌକାରେ ବସାଇ ନଦୀ ପାର କରାଇଦିଏ, ସେହିପରି ଭକ୍ତିରୂପୀ ନୌକାରେ ବସିଥିବା ଭକ୍ତଙ୍କ ପାଇଁ ଭଗବାନ୍ ସ୍ୱୟଂ ନାଉରୀ ହୋଇ ତାଙ୍କର ସମସ୍ତ ଦୁଃଖକଷ୍ଟ, ବାଧାବିଘ୍ନ, ଆପତ୍ତିବିପତ୍ତି ଆଦି ଦୂର କରିଦେଇ ଅତି ଶୀଘ୍ର ତାଙ୍କୁ ଭୀଷଣ ସଂସାରସାଗରର ଆର ପାଖରେ ଥିବା ନିଜର ପରମଧାମକୁ ନେଇଯାଆନ୍ତି। ଭଗବାନ୍ ଏହିପରି ତାଙ୍କର ଉପରୋକ୍ତ ଭକ୍ତଙ୍କୁ ମୃତ୍ୟୁରୂପକ ସଂସାରରୁ ଶୀଘ୍ର ଉଦ୍ଧାର କରିଦିଅନ୍ତି।

*ସମ୍ବନ୍ଧ – ଏପରିଭାବରେ ପୂର୍ବଶ୍ଳୋକମାନଙ୍କରେ ଭଗବାନ ନିର୍ଗୁଣ ଉପାସନା ଅପେକ୍ଷା ସଗୁଣ ଉପାସନାର ସୁଗମତା ପ୍ରତିପାଦନ କଲେ, ବର୍ତ୍ତମାନ ଭଗବାନ୍ ଅର୍ଜୁନଙ୍କୁ ସେହିପରି ମନ, ବୁଦ୍ଧି ଲଗାଇ ସଗୁଣ ଉପାସନା କରିବାକୁ ଆଜ୍ଞା ଦେଉଛନ୍ତି–*

## ମୟ୍ୟେବ ମନ ଆଧତ୍ସ୍ୱ ମୟି ବୁଦ୍ଧିଂ ନିବେଶୟ।
## ନିବସିଷ୍ୟସି ମୟ୍ୟେବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ।। ୮ ।।

**ଅନ୍ୱୟ –** **ମୟି** = ମୋଠାରେ; **ଏବ** = ହିଁ; **ମନଃ** = ମନ; **ଆଧତ୍ସ୍ୱ** = ଲଗାଅ (ଓ); **ମୟି** = ମୋଠାରେ; **(ଏବ)** = ହିଁ; **ବୁଦ୍ଧିମ୍** = ବୁଦ୍ଧିକୁ; **ନିବେଶୟ** = ଲଗାଇଦିଅ; **ଅତଃ, ଊର୍ଦ୍ଧ୍ୱମ୍** = ତା'ପରେ ନେ (ତୁମେ); **ମୟି** = ମୋଠାରେ; **ଏବ** = ହିଁ; **ନିବସିଷ୍ୟସି** = ନିବାସ କରିବ; **ସଂଶୟଃ, ନ** = ଏଥିରେ କୌଣସି ସନ୍ଦେହ ନାହିଁ।

**ତେଣୁ ତୁମେ ମୋ ଠାରେ ହିଁ ମନ ଲଗାଅ; ମୋ ଠାରେ ହିଁ ବୁଦ୍ଧି ଲଗାଇ ଦିଅ। ତା'ହେଲେ ତୁମେ ଯେ ମୋ ଠାରେ ହିଁ ନିବାସ କରିବ, ଏଥିରେ କୌଣସି ସନ୍ଦେହ ନାହିଁ।। ୮ ।।**

**ପ୍ରଶ୍ନ –** ଭଗବାନଙ୍କ ଠାରେ ବୁଦ୍ଧି ଓ ମନ ଲଗାଇଦେବା କାହାକୁ କହନ୍ତି ?

**ଉତ୍ତର –** ଯେ ସକଳ ଚରାଚର ସଂସାରକୁ ବ୍ୟାପ୍ତ କରି ସମସ୍ତଙ୍କ ହୃଦୟରେ ରହିଛନ୍ତି ଏବଂ ଯେ ଦୟାଳୁତା, ସର୍ବଜ୍ଞତା, ସୁଶୀଳତା ତଥା ସୁହୃଦତା ଆଦି ଅନନ୍ତ ଗୁଣର ସମୁଦ୍ର ଅଟନ୍ତି, ସେହି ପରମ ଦିବ୍ୟ, ପରମ ପ୍ରେମମୟ ଓ ଆନନ୍ଦମୟ, ସର୍ବଶକ୍ତିମାନ୍, ସର୍ବୋତ୍ତମ, ଶରଣ ନେବାର ଯୋଗ୍ୟ ପରମେଶ୍ୱରଙ୍କ ଗୁଣ, ପ୍ରଭାବ ଓ ଲୀଳାର ତତ୍ତ୍ୱ ତଥା ରହସ୍ୟ ଭଲଭାବରେ ବୁଝି ତାଙ୍କ ଠାରେ ସଦାସର୍ବଦା ଓ ସର୍ବତ୍ର ଅଟଳ ଦୃଢ଼ ନିଶ୍ଚୟ ରଖିବା ହିଁ ଭଗବାନଙ୍କ ଠାରେ ବୁଦ୍ଧିକୁ ଲଗାଇଦେବା। ଏପରିଭାବରେ ନିଜର ପରମ ପ୍ରେମାସ୍ପଦ ପୁରୁଷୋତ୍ତମ ଭଗବାନଙ୍କ ବ୍ୟତୀତ ଅନ୍ୟ ସମସ୍ତ ବିଷୟରୁ ସର୍ବଥା ଆସକ୍ତି ତ୍ୟାଗ କରିଦେଇ ମନକୁ କେବଳ ତାଙ୍କରି ଠାରେ ତନ୍ମୟ କରିଦେବା ଓ ନିତ୍ୟନିରନ୍ତର ଉପରୋକ୍ତପ୍ରକାରେ ତାଙ୍କୁ ଚିନ୍ତନ କରି କରି ରହିବା ହିଁ ଭଗବାନଙ୍କ ଠାରେ ମନ ଲଗାଇଦେବା। ଯେଉଁମାନେ ନିଜର ମନ ଓ ବୁଦ୍ଧିକୁ ଭଗବାନଙ୍କ ଠାରେ ଏପରି ଲଗାଇଦିଅନ୍ତି, ସେମାନେ ଶୀଘ୍ର ହିଁ ଭଗବାନଙ୍କୁ ପାଇଯାଆନ୍ତି।

**ପ୍ରଶ୍ନ –** ଭଗବାନଙ୍କ ଠାରେ ମନ-ବୁଦ୍ଧି ଲଗାଇଦେଲେ ଯଦି ମନୁଷ୍ୟକୁ ନିଶ୍ଚୟ ଭଗବତ୍‌ପ୍ରାପ୍ତି ହୋଇଯିବ, ତେବେ ସମସ୍ତେ ଭଗବାନଙ୍କ ଠାରେ ମନ-ବୁଦ୍ଧି ଲଗାଉ ନାହାନ୍ତି କାହିଁକି ?

**ଉତ୍ତର** — ଗୁଣ, ପ୍ରଭାବ ତଥା ଲୀଳାର ତତ୍ତ୍ୱ ଓ ରହସ୍ୟ ନ ଜାଣିଥିବାରୁ ଭଗବାନଙ୍କ ଠାରେ ଶ୍ରଦ୍ଧା-ପ୍ରେମ ହେଉ ନାହିଁ ଏବଂ ଅଜ୍ଞାନଜନିତ ଆସକ୍ତିଯୋଗୁଁ ସାଂସାରିକ ବିଷୟମାନଙ୍କର ଚିନ୍ତନ ହେଉଛି। ସଂସାରରେ ଅଧିକାଂଶ ଲୋକଙ୍କର ଏହା ହିଁ ସ୍ଥିତି। ଏହି କାରଣରୁ ସମସ୍ତେ ଭଗବାନଙ୍କ ଠାରେ ମନ-ବୁଦ୍ଧି ଲଗାନ୍ତି ନାହିଁ।

**ପ୍ରଶ୍ନ** — ଯେଉଁ ଅଜ୍ଞାନଜନିତ ଆସକ୍ତିରୁ ଲୋକମାନଙ୍କର ସାଂସାରିକ ଭୋଗଚିନ୍ତନରୂପକ ମନ୍ଦ ଅଭ୍ୟାସ ହୁଏ, ତାହା ଦୂର କରିବାର ଉପାୟ କଣ ?

**ଉତ୍ତର** — ଭଗବାନଙ୍କ ଗୁଣ, ପ୍ରଭାବ ତଥା ଲୀଳାର ତତ୍ତ୍ୱ ଓ ରହସ୍ୟ ଜାଣିବା ଓ ମାନିବା ଦ୍ୱାରା ଏହି ଅଭ୍ୟାସ ଦୂର ହୋଇଯାଇପାରିବ।

**ପ୍ରଶ୍ନ** — ଭଗବାନଙ୍କ ଗୁଣ, ପ୍ରଭାବ ତଥା ଲୀଳାର ତତ୍ତ୍ୱ ଓ ରହସ୍ୟର ଜ୍ଞାନ କିପରି ହୋଇପାରିବ ?

**ଉତ୍ତର** — ଭଗବାନଙ୍କ ଗୁଣ, ପ୍ରଭାବ ତଥା ଲୀଳାର ତତ୍ତ୍ୱ ଓ ରହସ୍ୟ ଜାଣିଥିବା ମହାପୁରୁଷମାନଙ୍କ ସଙ୍ଗ, ସେମାନଙ୍କ ଗୁଣ ଓ ଆଚରଣର ଅନୁକରଣ, ତଥା ଭୋଗ, ଆଳସ୍ୟ ଓ ପ୍ରମାଦ ତ୍ୟାଗ କରି ବିଶ୍ୱାସପୂର୍ବକ ତତ୍ପରତାର ସହିତ ସେମାନେ କହିଥିବା ମାର୍ଗ ଅନୁସରଣ କଲେ, ଭଗବାନଙ୍କ ସମ୍ବନ୍ଧୀୟ ଜ୍ଞାନ ହୋଇପାରେ।

*ସମ୍ବନ୍ଧ* — *ଏଠାରେ ପ୍ରଶ୍ନ ଉଠିପାରେ, "ଯଦି ମୁଁ ଉପରୋକ୍ତପ୍ରକାରେ ଆପଣଙ୍କ ଠାରେ ମନ-ବୁଦ୍ଧି ଲଗାଇ ନ ପାରେ, ତେବେ ମୁଁ କଣ କରିବା ଉଚିତ ?" ଏ ବିଷୟରେ କହୁଛନ୍ତି—*

## ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରମ୍।
## ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ॥ ୯ ॥

**ଅନ୍ୱୟ** — **ଅଥ** = ଯଦି (ତୁମେ); **ଚିତ୍ତମ୍** = ଚିତ୍ତକୁ; **ମୟି** = ମୋଠାରେ; **ସ୍ଥିରମ୍** = ସ୍ଥିରରୂପେ; **ସମାଧାତୁମ୍** = ସ୍ଥାପନ କରିବାକୁ; **ନ**, **ଶକ୍ନୋଷି** = ସମର୍ଥ ନ ହେଉଛ; **ତତଃ** = ତେବେ; **ଧନଞ୍ଜୟ** = ହେ ଅର୍ଜୁନ; **ଅଭ୍ୟାସଯୋଗେନ** = ଅଭ୍ୟାସରୂପୀ ଯୋଗଦ୍ୱାରା; **ମାମ୍** = ମୋତେ; **ଆପ୍ତୁମ୍** = ପାଇବାକୁ; **ଇଚ୍ଛ** = ଇଚ୍ଛା କର।

**ଯଦି ତୁମେ ମୋଠାରେ ଦୃଢ଼ରୂପେ ଚିତ୍ତ ସ୍ଥାପନ କରିବାକୁ ସମର୍ଥ ନ ହେଉଛ, ତେବେ ହେ ଅର୍ଜୁନ! ଅଭ୍ୟାସରୂପୀ ଯୋଗଦ୍ୱାରା ମୋତେ ପାଇବାକୁ ଇଚ୍ଛା କର॥ ୯ ॥**

**ପ୍ରଶ୍ନ** — ଏହି ଶ୍ଳୋକର ଭାବ କଣ ?

**ଉତ୍ତର** — ଭଗବାନ୍ ଅର୍ଜୁନଙ୍କୁ ନିମିତ୍ତ କରି ସମସ୍ତ ଜଗତର ମଙ୍ଗଳପାଇଁ ଉପଦେଶ ଦେଉଛନ୍ତି। ସଂସାରରେ ସବୁ ସାଧକଙ୍କର ପ୍ରକୃତି ଏକାପରି ହୋଇ ନ ଥାଏ। ଏହି କାରଣରୁ ସମସ୍ତଙ୍କ ପାଇଁ ଗୋଟିଏ ସାଧନା ଉପଯୋଗୀ ହୋଇ ନ ପାରେ। ବିଭିନ୍ନ ପ୍ରକୃତିର ମନୁଷ୍ୟମାନଙ୍କ ପାଇଁ ବିଭିନ୍ନପ୍ରକାର ସାଧନା ହିଁ ଉପଯୁକ୍ତ ହୁଏ। ଅତଏବ ଭଗବାନ୍ ଏହି ଶ୍ଳୋକରେ କହୁଛନ୍ତି, "ଯଦି ତୁମେ ଉପରୋକ୍ତପ୍ରକାରେ ମୋଠାରେ ସ୍ଥିରଭାବେ ମନ ଓ ବୁଦ୍ଧି ସ୍ଥାପନ କରିବାରେ ନିଜକୁ ଅସମର୍ଥ ବୋଲି ଭାବୁଛ, ତେବେ ତୁମେ ଅଭ୍ୟାସଯୋଗଦ୍ୱାରା ମୋର ପ୍ରାପ୍ତିପାଇଁ ଇଚ୍ଛା କରିବା ଉଚିତ।"

**ପ୍ରଶ୍ନ** — ଅଭ୍ୟାସଯୋଗ କାହାକୁ କହନ୍ତି ଓ ତା'ଦ୍ୱାରା ଭଗବତ୍ପ୍ରାପ୍ତିପାଇଁ ଇଚ୍ଛା କରିବା କଣ ?

**ଉତ୍ତର** — ଭଗବତ୍ପ୍ରାପ୍ତିପାଇଁ ନାନାପ୍ରକାର ଯୁକ୍ତିଦ୍ୱାରା ଭଗବାନଙ୍କ ଠାରେ ଚିତ୍ତ ଲଗାଇବାକୁ ବାରମ୍ବାର ଯେଉଁ ପ୍ରଯତ୍ନ କରାଯାଏ, ତାହାକୁ 'ଅଭ୍ୟାସଯୋଗ' କହନ୍ତି। ଭଗବାନଙ୍କର ନାମ, ରୂପ, ଗୁଣ ଓ ଲୀଳା ଆଦିରେ ସାଧକଙ୍କର ଶ୍ରଦ୍ଧା ଓ ପ୍ରେମ ହୁଏ; — କେବଳ ଭଗବତ୍ପ୍ରାପ୍ତି ଉଦ୍ଦେଶ୍ୟରେ ହିଁ ସେଥିରେ ବାରମ୍ବାର ମନ ଲଗାଇବାକୁ ପ୍ରଯତ୍ନ କରିବା ହିଁ ଅଭ୍ୟାସଯୋଗଦ୍ୱାରା ଭଗବତ୍ପ୍ରାପ୍ତିପାଇଁ ଇଚ୍ଛା କରିବା।

ଭଗବାନଙ୍କ ଠାରେ ଚିତ୍ତ ଲଗାଇବାର ଏ ଯେଉଁ ସାଧନା, ଏହା କରିବାପାଇଁ ଶାସ୍ତ୍ରମାନଙ୍କରେ ଅନେକପ୍ରକାର ଉପାୟ କୁହାଯାଇଛି। ତା'ଭିତରୁ ନିମ୍ନଲିଖିତ କେତୋଟି ଉପାୟ ସର୍ବସାଧାରଣଙ୍କ ପାଇଁ ବିଶେଷ ଉପଯୋଗୀ ମନେ ହୁଏ —

(୧) ସୂର୍ଯ୍ୟଙ୍କ ସମ୍ମୁଖରେ ରହି ଆଖି ବନ୍ଦ କରିଦେଲେ ମନଦ୍ୱାରା ସର୍ବତ୍ର ସମଭାବରେ ଯେଉଁ ଏକ ପ୍ରକାଶପୁଞ୍ଜ ପ୍ରତୀତ ହୁଏ, ଭଗବତ୍ସ୍ୱରୂପରେ ତା'ଠାରୁ ମଧ୍ୟ ହଜାରେ ଗୁଣ ଅଧିକ ପ୍ରକାଶପୁଞ୍ଜ ରହିଛି —

ମନଦ୍ୱାରା ଏହିପରି ନିଶ୍ଚୟ କରି ପରମାତ୍ମାଙ୍କର ସେହି ତେଜୋମୟ ଜ୍ୟୋତିଃ-ସ୍ୱରୂପରେ ଚିତ୍ତ ଲଗାଇବାକୁ ବାରମ୍ବାର ଚେଷ୍ଟା କରିବା ।

(୨) ଅଗ୍ନି ଯେପରି ଦିଆସିଲିରେ ବ୍ୟାପିରହିଛି, ଭଗବାନ୍ ସେହିପରି ସର୍ବତ୍ର ବ୍ୟାପିରହିଛନ୍ତି ବୋଲି ବୁଝି ମନ ଯେଉଁଠିକୁ ଯାଉଥିବ, ସେଠାରେ ଗୁଣ ଓ ପ୍ରଭାବ ସହିତ ସର୍ବଶକ୍ତିମାନ୍ ପରମପ୍ରେମାସ୍ପଦ ପରମେଶ୍ୱରଙ୍କ ସ୍ୱରୂପକୁ ପ୍ରେମପୂର୍ବକ ବାରମ୍ବାର ଚିନ୍ତନ କରିବା ।

(୩) ମନ ଯେଉଁଠିକି ଚାଲିଯାଉଥିବ, ତାକୁ ସେଠାରୁ ଟାଣିଆଣି ଭଗବାନ୍ ବିଷ୍ଣୁ, ଶିବ, ରାମ ଓ କୃଷ୍ଣ ଆଦି ନିଜ ଇଷ୍ଟଦେବଙ୍କ ମାନସିକ ବା ଧାତୁ ଆଦିରେ ନିର୍ମିତ ମୂର୍ତ୍ତିରେ ଅଥବା ଚିତ୍ରପଟରେ ବା ତାଙ୍କ ନାମଜପରେ ଶ୍ରଦ୍ଧା ଓ ପ୍ରେମର ସହିତ ମନ ଲଗାଇବାକୁ ବାରମ୍ବାର ପ୍ରଯତ୍ନ କରିବା ।

(୪) ଭ୍ରମରର ଗୁଞ୍ଜନପରି ଏକଲୟରେ ଓଁକାର ଧ୍ୱନି କରି କରି ସେହି ଧ୍ୱନିରେ ବାରମ୍ବାର ପରମେଶ୍ୱରଙ୍କ ସ୍ୱରୂପ ଚିନ୍ତନ କରିବା ।

(୫) ସ୍ୱାଭାବିକ ଶ୍ୱାସ-ପ୍ରଶ୍ୱାସ ସହିତ ଭଗବାନଙ୍କର ନାମଜପ ଯେପରି ନିତ୍ୟନିରନ୍ତର ହୁଏ, ସେଥିପାଇଁ ପ୍ରଯତ୍ନ କରିବା ।

(୬) ପରମାତ୍ମାଙ୍କର ନାମ, ରୂପ, ଗୁଣ, ଚରିତ୍ର ଓ ପ୍ରଭାବର ରହସ୍ୟ ଜାଣିବାପାଇଁ ସେହି ବିଷୟକ ଶାସ୍ତ୍ର ପୁନଃ ପୁନଃ ଅଧ୍ୟୟନ କରିବାକୁ ଅଭ୍ୟାସ କରିବା ।

(୭) ଚତୁର୍ଥ ଅଧ୍ୟାୟର ଅଣତିରିଶ ଶ୍ଳୋକ ଅନୁସାରେ ପ୍ରାଣାୟାମ ଅଭ୍ୟାସ କରିବା ଇତ୍ୟାଦି, ଇତ୍ୟାଦି ।

ଏହବୁ ମଧ୍ୟରୁ ଯେକୌଣସି ବି ଅଭ୍ୟାସ ଯଦି ଶ୍ରଦ୍ଧା, ବିଶ୍ୱାସ ଓ ତତ୍ପରତାର ସହିତ କରାଯାଏ, ତେବେ କ୍ରମଶଃ ସକଳ ପାପ ଓ ବିଘ୍ନ ନାଶ ପାଇ ଶେଷରେ ଭଗବତ୍ପ୍ରାପ୍ତି ହୋଇଯାଏ । ତେଣୁ ଅତ୍ୟନ୍ତ ଉତ୍ସାହ ଓ ତତ୍ପରତାର ସହିତ ଅଭ୍ୟାସ କରିବା ଉଚିତ । ସାଧକମାନଙ୍କ ସ୍ଥିତି, ଅଧିକାର ତଥା ସାଧନା ଗତିର ତାରତମ୍ୟ ଅନୁଯାୟୀ ଫଳପ୍ରାପ୍ତି ଶୀଘ୍ର ବା ବିଳମ୍ବରେ ହୋଇପାରେ । ଅତଏବ ଶୀଘ୍ର ଫଳ ନ ମିଳିଲେ ତାହା କଷ୍ଟ ବୋଲି ଭାବି କ୍ଷୁବ୍ଧ ହୋଇ ବା ଆଳସ୍ୟବଶ ହୋଇ ଅଭ୍ୟାସ ଛାଡ଼ିଦେବା ଉଚିତ ନୁହେଁ, କି ସାଧନା କମାଇଦେବା ଉଚିତ ନୁହେଁ; ବରଂ ତାହା ଆହୁରି ବଢ଼ାଇଚାଲିବା ଉଚିତ ।

***ସମ୍ବନ୍ଧ –*** *ଏଠାରେ ଜିଜ୍ଞାସା ହୋଇଥାଏ, 'ଯଦି ଏପରି ଅଭ୍ୟାସଯୋଗ ମଧ୍ୟ କରି ନ ହୁଏ, ତେବେ ମୋର କଣ କରିବା ଉଚିତ ?' ଏ ବିଷୟରେ ଭଗବାନ୍ କହୁଛନ୍ତି–*

**ଅଭ୍ୟାସେଽପ୍ୟସମର୍ଥୋଽସି ମତ୍କର୍ମପରମୋ ଭବ ।**
**ମଦର୍ଥମପି କର୍ମାଣି କୁର୍ବନ୍ ସିଦ୍ଧିମବାପ୍ସ୍ୟସି ।। ୧୦ ।।**

**ଅନ୍ୱୟ –** **ଅଭ୍ୟାସେ** = (ଯଦି ତୁମେ) ଅଭ୍ୟାସରେ; **ଅପି** = ମଧ୍ୟ; **ଅସମର୍ଥଃ** = ଅସମର୍ଥ; **ଅସି** = ଅଛ; **ମତ୍କର୍ମପରମଃ** = (ତେବେ କେବଳ) ମୋ ପାଇଁ କର୍ମ କରିବାରେ ହିଁ ପରାୟଣ; **ଭବ** = ହୁଅ (ଏପରିଭାବରେ); **ମଦର୍ଥମ୍** = ମୋ ପାଇଁ; **କର୍ମାଣି** = କର୍ମମାନ; **କୁର୍ବନ୍** = କରୁ କରୁ; **ଅପି** = ମଧ୍ୟ; **ସିଦ୍ଧିମ୍** = ମୋତେ ପାଇବାରୂପକ ସିଦ୍ଧି; **ଅବାପ୍ସ୍ୟସି** = ଲାଭ କରିପାରିବ ।

**ଯଦି ତୁମେ ଉପରୋକ୍ତ ଅଭ୍ୟାସ କରିବାରେ ମଧ୍ୟ ଅସମର୍ଥ ହେଉଛ, ତେବେ କେବଳ ମୋ ପାଇଁ କର୍ମ କରିବାରେ ହିଁ ପରାୟଣ ହୁଅ । ମୋ ପାଇଁ ଏପରି କର୍ମ କରୁ କରୁ ମଧ୍ୟ ତୁମେ ମୋତେ ପାଇବାରୂପକ ସିଦ୍ଧି ଲାଭ କରିପାରିବ ।। ୧୦ ।।**

**ପ୍ରଶ୍ନ –** 'ଯଦି ତୁମେ ଅଭ୍ୟାସ କରିବାକୁ ମଧ୍ୟ ଅସମର୍ଥ' – ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଯଦ୍ୟପି ମୋଠାରେ ମନ ଲଗାଇବା ବା ଉପରୋକ୍ତପ୍ରକାରେ ଅଭ୍ୟାସଯୋଗଦ୍ୱାରା ମୋତେ ପାଇବା ତୁମ ପାଇଁ କୌଣସି କଷ୍ଟକର କଥା ନୁହେଁ, ତଥାପି ଯଦି ତୁମେ ନିଜକୁ ଏଥିପାଇଁ ଅସମର୍ଥ ମନେ କରୁଥାଅ, ତେବେ ଚିନ୍ତାର କୌଣସି କାରଣ ନାହିଁ; ମୁଁ ତୁମକୁ ଏକ ତୃତୀୟ ଉପାୟ କହୁଛି । ସ୍ୱଭାବଭେଦରେ ଭିନ୍ନ ଭିନ୍ନ ସାଧକଙ୍କ ପାଇଁ ଭିନ୍ନ-ଭିନ୍ନପ୍ରକାର ସାଧନା ହିଁ ଉପଯୋଗୀ ହୋଇଥାଏ ।''

**ପ୍ରଶ୍ନ –** **'ମତ୍କର୍ମ'** ଶବ୍ଦ କେଉଁ କର୍ମର ବାଚକ ଓ ସେଥିରେ ପରାୟଣ ହେବା ଅର୍ଥ କଣ ?

**ଉତ୍ତର –** ଏଠାରେ **ମତ୍କର୍ମ** ଶବ୍ଦ ହେଉଛି

ସେହିସବୁ କର୍ମର ବାଚକ, ଯାହା କେବଳ ଭଗବାନଙ୍କ ପାଇଁ ହିଁ ହୋଇଥାଏ ବା ଭଗବତ୍-ସେବା-ପୂଜାବିଷୟକ ହୋଇଥାଏ ତଥା ଯେଉଁସବୁ କର୍ମରେ ନିଜର ତିଳେମାତ୍ର ସ୍ୱାର୍ଥ, ମମତ୍ୱ ଓ ଆସକ୍ତି ଆଦିର ସମ୍ବନ୍ଧ ନ ଥାଏ। ଏକାଦଶ ଅଧ୍ୟାୟର ଶେଷ ଶ୍ଲୋକରେ ମଧ୍ୟ **ମତ୍କର୍ମକୃତ୍** ପଦରେ **ମତ୍କର୍ମ** ଶବ୍ଦ ଆସିଛି। ସେଠାରେ ମଧ୍ୟ ଏହାର ବ୍ୟାଖ୍ୟା କରାଯାଇଛି।

ଏକମାତ୍ର ଭଗବାନଙ୍କୁ ହିଁ ନିଜର ପରମ ଆଶ୍ରୟ ଓ ପରମଗତି ବୋଲି ଗ୍ରହଣ କରି ଏବଂ କେବଳ ତାଙ୍କରି ପ୍ରସନ୍ନତାପାଇଁ ପରମ ଶ୍ରଦ୍ଧା ଓ ଅନନ୍ୟ ପ୍ରେମ ସହିତ ମନ, ବାଣୀ ଓ ଶରୀରରେ ତାଙ୍କରି ସେବା-ପୂଜା ଆଦି କରିବା ତଥା ନିଜର କର୍ତ୍ତବ୍ୟ ବୋଲି ବୁଝି ଯଜ୍ଞ, ଦାନ ଓ ତପ ଆଦି ଶାସ୍ତ୍ରବିହିତ କର୍ମ ନିରନ୍ତର କରିବା ହିଁ ଭଗବଦର୍ଥ କର୍ମରେ ପରାୟଣ ହେବା।

**ପ୍ରଶ୍ନ** – 'ମୋ ପାଇଁ କର୍ମ କରି କରି ମଧ୍ୟ ମୋର ପ୍ରାପ୍ତିରୂପକସିଦ୍ଧି ପାଇଯିବ – ଏ କଥାର ଅଭିପ୍ରାୟ କଣ ?

**ଉତ୍ତର** – ଏହାଦ୍ୱାରା ଭଗବାନ୍ କହିଛନ୍ତି, ''ଏପ୍ରକାର କର୍ମ କରିବା ମଧ୍ୟ ମୋତେ ପ୍ରାପ୍ତ କରିବାର ଏକ ସ୍ୱତନ୍ତ୍ର ଓ ସୁଗମ ସାଧନା। ଭଜନ-ଧ୍ୟାନରୂପୀ ସାଧନା କରୁଥିବା ଲୋକଙ୍କୁ ଯେପରି ମୋର ପ୍ରାପ୍ତି ହୁଏ, ମୋ ପାଇଁ କର୍ମ କରୁଥିବା ଲୋକମାନଙ୍କୁ ମଧ୍ୟ ସେହିପରି ମୋର ପ୍ରାପ୍ତି ହୁଏ। ଅତଏବ ମୋ ପାଇଁ କର୍ମ କରିବା ପୂର୍ବୋକ୍ତ ସାଧନାମାନଙ୍କ ଅପେକ୍ଷା କୌଣସି ଅଂଶରେ ମଧ୍ୟ ନିମ୍ନଶ୍ରେଣୀର ସାଧନା ନୁହେଁ।''

*ସମ୍ବନ୍ଧ – ଏଠାରେ ଚି ଅର୍ଜୁନଙ୍କ ମନରେ ଜିଜ୍ଞାସା ହୋଇପାରେ ଯେ, ସେ ଯଦି ଉପରୋକ୍ତପ୍ରକାରେ ଭଗବାନଙ୍କ ପାଇଁ କର୍ମ କରି ନ ପାରିବେ, ତେବେ ତାଙ୍କୁ କଣ କରିବା ଉଚିତ ? ଏହି ଜିଜ୍ଞାସା ଉପରେ ଭଗବାନ୍ କହୁଛନ୍ତି–*

**ଅଥୈତଦପ୍ୟଶକ୍ତୋଽସି କର୍ତ୍ତୁଂ ମଦ୍ୟୋଗମାଶ୍ରିତଃ।**
**ସର୍ବକର୍ମଫଳତ୍ୟାଗଂ ତତଃ କୁରୁ ଯତାତ୍ମବାନ୍॥ ୧୧ ॥**

**ଅନ୍ୱୟ** – **ଅଥ** = ଯଦି; **ମଦ୍ୟୋଗମ୍** = ମୋର ପ୍ରାପ୍ତିରୂପକ ଯୋଗର; **ଆଶ୍ରିତଃ** = ଆଶ୍ରିତ ହୋଇ; **ଏତତ୍** = ଏହି ଉପରୋକ୍ତ ସାଧନା; **କର୍ତ୍ତୁମ୍** = କରିବାକୁ; **ଅପି** = ମଧ୍ୟ (ତୁମେ); **ଅଶକ୍ତଃ** = ଅସମର୍ଥ; **ଅସି** = ଅଟ; **ତତଃ** = ତେବେ; **ଯତାତ୍ମବାନ୍** = ମନ, ବୁଦ୍ଧି ଆଦି ଉପରେ ବିଜୟ ଲାଭ କରି; **ସର୍ବକର୍ମଫଳତ୍ୟାଗମ୍** = ସକଳ କର୍ମର ଫଳ ତ୍ୟାଗ; **କୁରୁ** = କର।

**ଯଦି ମୋର ପ୍ରାପ୍ତିରୂପକ ଯୋଗର ଆଶ୍ରିତ ହୋଇ ଉପରୋକ୍ତ ସାଧନା କରିବାରେ ମଧ୍ୟ ତୁମେ ଅସମର୍ଥ ଅଟ, ତେବେ ସଂଯତାତ୍ମା ହୋଇ ଅର୍ଥାତ୍ ମନ, ବୁଦ୍ଧି ଆଦି ଉପରେ ବିଜୟ ଲାଭ କରି ସମସ୍ତ କର୍ମଫଳ ତ୍ୟାଗ କର॥ ୧୧ ॥**

**ପ୍ରଶ୍ନ** – 'ଯଦି ମୋର ପ୍ରାପ୍ତିରୂପକ ଯୋଗର ଆଶ୍ରିତ ହୋଇ ଉପରୋକ୍ତ ସାଧନା କରିବାରେ ମଧ୍ୟ ତୁମେ ଅସମର୍ଥ' ଅଟ – ଏହି ବାକ୍ୟର ଅଭିପ୍ରାୟ କଣ ?

**ଉତ୍ତର** – ଏହି ବାକ୍ୟରେ ଭଗବାନ୍ କହୁଛନ୍ତି, ''ବସ୍ତୁତଃ ଉପରୋକ୍ତପ୍ରକାରେ ଭକ୍ତିଯୁକ୍ତ କର୍ମଯୋଗ ସାଧନା କରିବା ତୁମ ପାଇଁ କଠିନ ନୁହେଁ; ସୁଗମ ହିଁ ଅଟେ। ତଥାପି, ଯଦି ତୁମେ ତାହା କଠିନ ବୋଲି ମନେ କରୁଛ, ତେବେ ମୁଁ ତୁମକୁ ଅନ୍ୟ ଏକପ୍ରକାର ସାଧନା କହୁଛି; ଶୁଣ।''

**ପ୍ରଶ୍ନ** – **ଯତାତ୍ମବାନ୍** କାହାକୁ କହନ୍ତି ଓ ଅର୍ଜୁନଙ୍କୁ 'ଯତାତ୍ମବାନ୍' ହେବା ପାଇଁ କହିବାର ଅଭିପ୍ରାୟ କଣ ?

**ଉତ୍ତର** – 'ଆତ୍ମା' ଶବ୍ଦଟି ହେଉଛି ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରର ବାଚକ। ଯେ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀର ଉପରେ ବିଜୟ ଲାଭ କରିସାରିଛନ୍ତି, ତାଙ୍କୁ **ଯତାତ୍ମବାନ୍** କହନ୍ତି। ମନ ଓ ଇନ୍ଦ୍ରିୟ ଆଦି ଯଦି ବଶ ହୋଇ ନ ଥାନ୍ତି, ତେବେ ସେମାନେ ମନୁଷ୍ୟଙ୍କୁ ବଳପୂର୍ବକ ଭୋଗରେ ପକାଇଦିଅନ୍ତି ଏବଂ ସେପରି ହେଲେ ସମସ୍ତ କର୍ମର ଫଳରୂପେ ପ୍ରାପ୍ତ ଭୋଗକାମନା ଓ ଆସକ୍ତି ତ୍ୟାଗ କରି ହୁଏ ନାହିଁ। ଅତଏବ 'ସର୍ବକର୍ମଫଳତ୍ୟାଗ'ରୂପକ ସାଧନାରେ ଆତ୍ମସଂଯମ ପରମ ଆବଶ୍ୟକ ବୋଲି ବୁଝି ଏଠାରେ ଅର୍ଜୁନଙ୍କୁ **ଯତାତ୍ମବାନ୍** ହେବାକୁ କୁହାଯାଇଛି।

**ପ୍ରଶ୍ନ –** ଷଷ୍ଠଠାରୁ ଦଶମ ଶ୍ଲୋକଯାଏ କୁହାଯାଇଥିବା ସାଧନାରେ **ଯତାତ୍ମବାନ୍** ହେବାକୁ କୁହାଯାଇ ନ ଥିବାର ଅଭିପ୍ରାୟ କଣ ?

**ଉତ୍ତର –** ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ଲୋକରେ ଅନନ୍ୟ ଭକ୍ତିଯୋଗର ସାଧକମାନଙ୍କ ବର୍ଣ୍ଣନା ହୋଇଛି। ସେପରି ଅନନ୍ୟପ୍ରେମୀ ଭକ୍ତମାନଙ୍କର ସାଂସାରିକ ଭୋଗମାନଙ୍କରେ ପ୍ରେମ ନ ଥିବାରୁ, ସେମାନଙ୍କ ମନ, ବୁଦ୍ଧି ଆଦି ସ୍ୱଭାବତଃ ସଂସାରରୁ ବିରକ୍ତ ରହି ଭଗବାନଙ୍କ ଠାରେ ଲାଗିରହିଥାଏ। ଏଣୁ ସେହି ଶ୍ଲୋକମାନଙ୍କରେ **ଯତାତ୍ମବାନ୍** ହେବାପାଇଁ କୁହାଯାଇ ନାହିଁ।

ନବମ ଶ୍ଲୋକରେ 'ଅଭ୍ୟାସଯୋଗ' ବିଷୟ କୁହାଯାଇଛି ଏବଂ ଭଗବାନଙ୍କ ଠାରେ ମନ, ବୁଦ୍ଧି ଲଗାଇବାର ଯେତେ ବି ସାଧନା ରହିଛି, ସେସବୁ ଅଭ୍ୟାସଯୋଗର ଅନ୍ତର୍ଗତ; ଏଣୁ ସେଠାରେ **ଯତାତ୍ମବାନ୍** ହେବାକୁ ଅଲଗା କହିବାର କୌଣସି ଆବଶ୍ୟକତା ନାହିଁ। ଦଶମ ଶ୍ଲୋକରେ ଭକ୍ତିଯୁକ୍ତ କର୍ମଯୋଗର ବର୍ଣ୍ଣନା ହୋଇଛି; ସେଥିରେ ଭଗବାନଙ୍କ ଆଶ୍ରୟ ନେବା କଥା ରହିଛି ଏବଂ ସେଥିରେ ମଧ୍ୟ ସାଧକର ସମସ୍ତ କର୍ମ ଭଗବଦର୍ଥ ହିଁ ହୁଏ। ଅତଏବ ସେଥିରେ ମଧ୍ୟ **ଯତାତ୍ମବାନ୍** ହେବା ପାଇଁ ଅଲଗା କହିବା ପ୍ରୟୋଜନୀୟ ନୁହେଁ। ପରନ୍ତୁ ଏହି ଶ୍ଲୋକରେ ଯେଉଁ **ସର୍ବକର୍ମଫଳତ୍ୟାଗରୂପକ** କର୍ମଯୋଗର ସାଧନା କଥା କୁହାଯାଇଛି, ଏଥିରେ ମନ-ବୁଦ୍ଧିକୁ ବଶ ନ କଲେ କାମ ଚଳିବ ନାହିଁ; କାରଣ, ବର୍ଣ୍ଣାଶ୍ରମୋଚିତ ସମସ୍ତ ବ୍ୟାବହାରିକ କର୍ମ କରୁ କରୁ ଯଦି ମନ, ବୁଦ୍ଧି ଓ ଇନ୍ଦ୍ରିୟମାନେ ବଶୀଭୂତ ନ ହୁଅନ୍ତି, ତେବେ ସେମାନଙ୍କର ଭୋଗରେ ମମତ୍ୱ, ଆସକ୍ତି ଓ କାମନା ଆସିଯିବା ଅତ୍ୟନ୍ତ ସହଜ, ଏବଂ ଏପରି ହେଲେ **ସର୍ବକର୍ମଫଳତ୍ୟାଗରୂପକ** ସାଧନା ହୋଇପାରିବ ନାହିଁ। ଏଣୁ ଏଠାରେ **ଯତାତ୍ମବାନ୍** ପଦ ପ୍ରୟୋଗ କରି ମନ, ବୁଦ୍ଧି ଆଦିକୁ ବଶରେ ରଖିବାପାଇଁ ବିଶେଷ ସାବଧାନ କରାଯାଇଛି।

**ପ୍ରଶ୍ନ – ସର୍ବକର୍ମ** ଶବ୍ଦ ଏଠାରେ କେଉଁ କର୍ମମାନଙ୍କର ବାଚକ ଏବଂ ସେମାନଙ୍କ ଫଳ ତ୍ୟାଗ କରିବା କଣ ?

**ଉତ୍ତର –** ଏଠାରେ **ସର୍ବକର୍ମ** ଶବ୍ଦଟି ହେଉଛି ଯଜ୍ଞ, ଦାନ, ତପ, ସେବା ଓ ବର୍ଣ୍ଣାଶ୍ରମାନୁସାରେ ଜୀବିକା ତଥା ଶରୀରନିର୍ବାହପାଇଁ କରାଯାଉଥିବା ସମସ୍ତ ଶାସ୍ତ୍ରସମ୍ମତ କର୍ମର ବାଚକ। ସେହିସବୁ କର୍ମ ଯଥାଯୋଗ୍ୟ କରିବା ସହିତ ଇହଲୋକର ଓ ପରଲୋକର ଭୋଗପ୍ରାପ୍ତିରୂପକ ସେମାନଙ୍କ ଫଳରେ ମମତ୍ୱ, ଆସକ୍ତି ଓ କାମନା ସର୍ବଥା ତ୍ୟାଗ କରିଦେବା ହିଁ ସର୍ବକର୍ମର ଫଳ ତ୍ୟାଗ କରିବା।

ଏଠାରେ ସ୍ମରଣ ରଖିବା ଉଚିତ ଯେ, ମିଥ୍ୟା, କପଟ, ବ୍ୟଭିଚାର, ହିଂସା ଓ ଚୋରି ଆଦି ନିଷିଦ୍ଧକର୍ମ 'ସର୍ବକର୍ମ'ର ଅନ୍ତର୍ଗତ ନୁହେଁ। ଭୋଗରେ ଆସକ୍ତି ଓ ଭୋଗପାଇଁ କାମନା ହେବାରୁ ହିଁ ସେପରି ପାପକର୍ମମାନ ହୋଇଥାଏ ଏବଂ ସେସବୁର ଫଳସ୍ୱରୂପ ମନୁଷ୍ୟର ସବୁପ୍ରକାରେ ପତନ ହୋଇଯାଏ। ତେଣୁ ସେଗୁଡ଼ିକୁ ସର୍ବଥା ସ୍ୱରୂପତଃ ତ୍ୟାଗ କରିଦେବାକୁ କୁହାଯାଇଛି ଏବଂ ସେପରି କର୍ମ କରିବାର ସର୍ବଥା ନିଷେଧ ହୋଇଥିବାବେଳେ, ସେସବୁର ଫଳତ୍ୟାଗ ପ୍ରସଙ୍ଗ ଆସିବ କିପରି ?

**ପ୍ରଶ୍ନ –** ଭଗବାନ୍ ପ୍ରଥମେ ନିଜଠାରେ ମନ-ବୁଦ୍ଧି ଲଗାଇବାକୁ କହିଲେ; ପୁଣି ଅଭ୍ୟାସଯୋଗ କରିବାକୁ କହିଲେ; ତା'ପରେ ମଦର୍ଥ କର୍ମ କରିବାକୁ କହିଲେ ଏବଂ ଶେଷରେ **ସର୍ବକର୍ମଫଳ** ତ୍ୟାଗ କରିବାକୁ ଆଜ୍ଞା ଦେଲେ ଏବଂ ଗୋଟିକରେ ଅସମର୍ଥ ହେଲେ, ଅନ୍ୟଟି ଆଚରଣ କରିବାକୁ କହିଲେ। ଭଗବାନ ଏହା ଫଳଭେଦ ଦୃଷ୍ଟିରୁ କହିଛନ୍ତି, ନା ଗୋଟିଏ ଅପେକ୍ଷା ଅନ୍ୟଟି ସୁଗମ ବୋଲି ଦେଖାଇବାକୁ କହିଛନ୍ତି, ନା ଅଧିକାରୀଭେଦ ଦୃଷ୍ଟିରୁ କହିଛନ୍ତି ?

**ଉତ୍ତର –** ଫଳଭେଦ ଦୃଷ୍ଟିରୁ କହି ନାହାନ୍ତି; କାରଣ, ସମସ୍ତ ସାଧନାର ଏକମାତ୍ର ଫଳ ଭଗବତ୍‌ପ୍ରାପ୍ତି। ପୁଣି ଗୋଟିକ ଅପେକ୍ଷା ଅନ୍ୟଟି ସୁଗମ ବୋଲି ମଧ୍ୟ କହି ନାହାନ୍ତି; କାରଣ, ଉପରୋକ୍ତ କୌଣସିଟି ସାଧନା ଅନ୍ୟ ସାଧନା ଅପେକ୍ଷା ଉତ୍ତରୋତ୍ତର ସୁଗମ ନୁହେଁ। ଯେଉଁ ସାଧନା ଜଣକପାଇଁ ସୁଗମ, ତାହା ଅନ୍ୟ ଜଣକପାଇଁ କଠିନ ହୋଇପାରେ। ଏହି ବିଚାରରୁ ଜଣାଯାଏ ଯେ, ଏହି ଚାରିପ୍ରକାର ସାଧନାର ବର୍ଣ୍ଣନା କେବଳ ଅଧିକାରୀଭେଦରେ ହିଁ କରାଯାଇଛି।

**ପ୍ରଶ୍ନ –** ଏହି ଚାରି ସାଧନାମଧ୍ୟରୁ କେଉଁ ସାଧନାଟି କେଉଁ ମନୁଷ୍ୟପାଇଁ ଉପଯୋଗୀ ?

**ଉତ୍ତର –** ଯେଉଁ ଲୋକଙ୍କ ଠାରେ ସଗୁଣ ଭଗବାନଙ୍କ ପ୍ରତି ଅଧିକ ପ୍ରେମ ରହିଛି, ଯାହାଙ୍କର

ଭଗବାନଙ୍କ ଠାରେ ସ୍ୱାଭାବିକ ଶ୍ରଦ୍ଧା ଅଛି, ଭଗବାନଙ୍କ ଗୁଣ, ପ୍ରଭାବ ଓ ରହସ୍ୟ କଥା, ତଥା ତାଙ୍କ ଲୀଳା-ବର୍ଣ୍ଣନା ଯାହାଙ୍କୁ ସ୍ୱଭାବତଃ ଭଲ ଲାଗୁଛି, ସେପରି ପୁରୁଷଙ୍କ ପାଇଁ ଅଷ୍ଟମ ଶ୍ଲୋକରେ କୁହାଯାଇଥିବା ସାଧନା ସୁଗମ ଓ ଉପଯୋଗୀ।

ଯେଉଁ ଲୋକର ଭଗବାନଙ୍କ ଠାରେ ସ୍ୱାଭାବିକ ପ୍ରେମ ନାହିଁ, କିନ୍ତୁ ଶ୍ରଦ୍ଧା ଥିବାରୁ ଯେ ହଠପୂର୍ବକ ସାଧନା କରି ଭଗବାନଙ୍କ ଠାରେ ମନ ଲଗାଇବାକୁ ଚାହେଁ, ସେପରି ପ୍ରକୃତିର ଲୋକପାଇଁ ନବମ ଶ୍ଲୋକରେ କୁହାଯାଇଥିବା ସାଧନା ସୁଗମ ଓ ଉପଯୋଗୀ।

ଯେଉଁ ପୁରୁଷର ସଗୁଣ ପରମେଶ୍ୱରଙ୍କ ଠାରେ ଶ୍ରଦ୍ଧା ଅଛି, ତଥା ଯଜ୍ଞ, ଦାନ, ତପ ଆଦି କର୍ମରେ ଯାହାର ସ୍ୱାଭାବିକ ପ୍ରେମ ରହିଛି, ଏବଂ ଭଗବାନଙ୍କ ପ୍ରତିମାଦିର ସେବାପୂଜା କରିବାରେ ଯାହାର ଶ୍ରଦ୍ଧା ଅଛି, ସେପରି ପୁରୁଷପାଇଁ ଦଶମ ଶ୍ଲୋକରେ କୁହାଯାଇଥିବା ସାଧନା ସୁଗମ ଓ ଉପଯୋଗୀ।

ଏବଂ ଯେଉଁ ପୁରୁଷଙ୍କର ସଗୁଣ-ସାକାର ଭଗବାନଙ୍କ ଠାରେ ସ୍ୱାଭାବିକ ପ୍ରେମ ଓ ଶ୍ରଦ୍ଧା ନାହିଁ, ଯେ ଈଶ୍ୱରଙ୍କ ସ୍ୱରୂପକୁ କେବଳ ସର୍ବବ୍ୟାପୀ ନିରାକାର ବୋଲି ମାନନ୍ତି, ବ୍ୟାବହାରିକ ଓ ଲୋକହିତକର କର୍ମ କରିବାରେ ହିଁ ଯାହାଙ୍କର ସ୍ୱାଭାବିକ ପ୍ରେମ ରହିଛି ତଥା କର୍ମରେ ଶ୍ରଦ୍ଧା ଓ ରୁଚି ଅଧିକ ହେବାରୁ ଯାହାଙ୍କର ମନ ନବମ ଶ୍ଲୋକରେ କୁହାଯାଇଥିବା ଅଭ୍ୟାସଯୋଗରେ ମଧ୍ୟ ଲାଗୁ ନାହିଁ, ସେହିପରି ପୁରୁଷଙ୍କ ପାଇଁ ଏହି ଶ୍ଲୋକରେ କୁହାଯାଇଥିବା ସାଧନା ସୁଗମ ଓ ଉପଯୋଗୀ।

**ପ୍ରଶ୍ନ—** ଷଷ୍ଠ ଶ୍ଲୋକର କଥନାନୁସାରେ ସକଳ କର୍ମ ଭଗବାନଙ୍କ ଠାରେ ଅର୍ପଣ କରିବା, ଦଶମ ଶ୍ଲୋକର କଥନାନୁସାରେ ଭଗବାନଙ୍କ ପାଇଁ ଭଗବତ୍‌କର୍ମମାନ କରିବା ତଥା ଏହି ଶ୍ଲୋକର କଥନାନୁସାରେ ସକଳ କର୍ମର ଫଳ ତ୍ୟାଗ କରିଦେବା— ଏହି ତିନିପ୍ରକାର ସାଧନା ମଧ୍ୟରେ କି ପ୍ରଭେଦ ରହିଛି? ତିନୋଟିଯାକର ଫଳ ଅଲଗା ଅଲଗା, ନା ଏକା?

**ଉତ୍ତର—** ଭଗବାନଙ୍କୁ ସମସ୍ତ କର୍ମ ଅର୍ପଣ କରିବା, ଭଗବାନଙ୍କ ପାଇଁ ସମସ୍ତ କର୍ମ କରିବା ଓ ସବୁ କର୍ମର ଫଳ ତ୍ୟାଗ କରିବା— ଏ ତିନୋଟିଯାକ 'କର୍ମଯୋଗ' ଅଟେ ଏବଂ ପରମେଶ୍ୱରଙ୍କ ପ୍ରାପ୍ତି ହିଁ ତିନୋଟିଯାକର ଫଳ। ଅତଏବ ଫଳରେ କୌଣସିପ୍ରକାର ପ୍ରଭେଦ ନାହିଁ। କେବଳ ସାଧକମାନଙ୍କର ଭାବନା ଓ ସେମାନଙ୍କ ସାଧନାର ପ୍ରଣାଳୀଭେଦରୁ ଏସବୁକୁ ପୃଥକ୍ ପୃଥକ୍ କରାଯାଇଛି। ସମସ୍ତ କର୍ମ ଭଗବାନଙ୍କ ଠାରେ ଅର୍ପଣ କରିବା ଓ ଭଗବାନଙ୍କ ପାଇଁ ସମସ୍ତ କର୍ମ କରିବା— ଏହି ଦୁଇଟିରେ ଭକ୍ତିର ପ୍ରାଧାନ୍ୟ ରହିଛି ଏବଂ ସର୍ବକର୍ମଫଳତ୍ୟାଗରେ କେବଳ ଫଳତ୍ୟାଗର ପ୍ରାଧାନ୍ୟ ରହିଛି। ଏହା ହିଁ ଏମାନଙ୍କର ମୁଖ୍ୟ ପ୍ରଭେଦ।

ଭଗବାନଙ୍କ ଠାରେ ସକଳ କର୍ମ ଅର୍ପଣ କରିଦେଉଥିବା ଭକ୍ତ ଭାବନ୍ତି, "ମୁଁ ହେଉଛି ଭଗବାନଙ୍କ ହାତରେ କଣ୍ଢେଇଟିଏ। ମୋଠାରେ କିଛି ବି କରିବାର ସାମର୍ଥ୍ୟ ନାହିଁ। ମୋର ମନ, ବୁଦ୍ଧି, ଇନ୍ଦ୍ରିୟ ଯାହା କିଛି ବି ଅଛି, ସବୁ ଭଗବାନଙ୍କର, ଏବଂ ଭଗବାନ୍ ହିଁ ଏସବୁଦ୍ୱାରା ନିଜ ଇଚ୍ଛାନୁସାରେ ସମସ୍ତ କର୍ମ କରାନ୍ତି। କର୍ମମାନଙ୍କ ସହିତ ଓ କର୍ମମାନଙ୍କର ଫଳ ସହିତ ମୋର କୌଣସି ବି ସମ୍ବନ୍ଧ ନାହିଁ।" ଏହିପରି ଭାବ ରହିଥିବାରୁ ସେହି ସାଧକଙ୍କ କର୍ମରେ ଓ କର୍ମଫଳରେ ତିଳେମାତ୍ର ରାଗଦ୍ୱେଷ ରହେ ନାହିଁ। ପ୍ରାରବ୍ଧ ଅନୁସାରେ ତାଙ୍କୁ ଯାହା କିଛି ସୁଖ-ଦୁଃଖ ପ୍ରାପ୍ତ ହୁଏ, ସେସବୁ ଭଗବାନଙ୍କର ପ୍ରସାଦ ବୋଲି ଭାବି ସେ ସଦା ପ୍ରସନ୍ନ ରହନ୍ତି। ଅତଏବ ତାଙ୍କର ସବୁଥିରେ ସମଭାବ ହୋଇ ତାଙ୍କୁ ଶୀଘ୍ର ହିଁ ଭଗବତ୍‌ପ୍ରାପ୍ତି ହୋଇଯାଏ।

ଭଗବଦର୍ଥ କର୍ମ କରୁଥିବା ସାଧକ ପୂର୍ବୋକ୍ତ ସାଧକଙ୍କ ପରି "ମୁଁ କିଛି କରୁ ନାହିଁ; ଭଗବାନ୍ ହିଁ ମୋ ଦ୍ୱାରା ସବୁ କିଛି କରାଇନେଉଛନ୍ତି" ବୋଲି ଭାବନ୍ତି ନାହିଁ। ସେ ଭାବନ୍ତି "ଭଗବାନ୍ ମୋର ପରମପୂଜ୍ୟ, ପରମ ପ୍ରେମୀ ଓ ପରମ ସୁହୃଦ୍। ତାଙ୍କ ସେବା କରିବା ଓ ତାଙ୍କ ଆଜ୍ଞା ପାଳନ କରିବା ହିଁ ମୋର ପରମ କର୍ତ୍ତବ୍ୟ।" ଅତଏବ ସେ ଭଗବାନଙ୍କୁ ସମସ୍ତ ଜଗତରେ ବ୍ୟାପ୍ତ ଥିବା ଭାବି ତାଙ୍କ ସେବା ଉଦ୍ଦେଶ୍ୟରେ ଶାସ୍ତ୍ରଦ୍ୱାରା ପ୍ରାପ୍ତ ତାଙ୍କ ଆଜ୍ଞା ଅନୁସାରେ ଯଜ୍ଞ, ଦାନ ଓ ତପ, ବର୍ଣ୍ଣାଶ୍ରମର ଅନୁକୂଳ ଆଜୀବିକା ଏବଂ ଶରୀରନିର୍ବାହର ସମସ୍ତ କର୍ମରେ ତଥା ଭଗବାନଙ୍କ ପୂଜା-ସେବାଦି କର୍ମରେ ଲାଗିରହିଥାନ୍ତି। ତାଙ୍କର ପ୍ରତ୍ୟେକ କ୍ରିୟା ଭଗବାନଙ୍କ ଆଜ୍ଞାନୁସାରେ ଓ ଭଗବାନଙ୍କର ହିଁ ସେବା ଉଦ୍ଦେଶ୍ୟରେ ହୋଇଥାଏ (୧୧/୫୫)। ତେଣୁ ସେହି ସମସ୍ତ କ୍ରିୟାରେ ଓ ସେସବୁର ଫଳରେ ତାଙ୍କର ଆସକ୍ତି ଓ କାମନା ରହେ ନାହିଁ; ଫଳତଃ ତାହାଙ୍କୁ ଶୀଘ୍ର ଭଗବତ୍‌ପ୍ରାପ୍ତି ହୋଇଯାଏ।

କେବଳ ସକଳ କର୍ମଫଳ ତ୍ୟାଗ କରିଦେଉଥିବା ପୁରୁଷ ଭାବନ୍ତି ନାହିଁ ଯେ, ଭଗବାନ୍ ତାଙ୍କ ଦ୍ୱାରା କର୍ମ କରାଉଛନ୍ତି; ପୁଣି ସେ ବୁଝନ୍ତି ନାହିଁ ଯେ, ସେ ଭଗବାନଙ୍କ ପାଇଁ ସମସ୍ତ କର୍ମ କରୁଛନ୍ତି; ସେ ବୁଝନ୍ତି, କର୍ମ କରିବାରେ ହିଁ ମନୁଷ୍ୟର ଅଧିକାର ରହିଛି, କର୍ମଫଳରେ ତା'ର ଅଧିକାର ନାହିଁ (୨/୪୭-୫୧)। ତେଣୁ ସେ ଭାବନ୍ତି, "କୌଣସିପ୍ରକାର ଫଳ ନ ଚାହିଁ ଯଜ୍ଞ, ଦାନ, ତପ, ସେବା ତଥା ବର୍ଣ୍ଣାଶ୍ରମ ଅନୁସାରେ ଜୀବିକା ଓ ଶରୀର ନିର୍ବାହପାଇଁ ଖାଇବା, ପିଇବା ଆଦି ସମସ୍ତ ଶାସ୍ତ୍ରବିହିତ କର୍ମ କରିବା ହିଁ ମୋର କର୍ତ୍ତବ୍ୟ।" ଅତଏବ ସେ ସମସ୍ତ କର୍ମର ଫଳରୂପ 'ଇହ-ଲୋକ ଓ ପରଲୋକର ଭୋଗ'ରେ ମମତ୍ୱ, ଆସକ୍ତି ଓ କାମନା ସର୍ବଥା ତ୍ୟାଗ କରିଦିଅନ୍ତି (୧୮/୯)। ଏହାଫଳରେ ତାଙ୍କ ଠାରେ ରାଗଦ୍ୱେଷ ସର୍ବଥା ଅଭାବ ହୋଇ ତାଙ୍କୁ ଶୀଘ୍ର ହିଁ ପରମାତ୍ମପ୍ରାପ୍ତି ମିଳିଯାଏ।

ଏହିପରି ତିନୋଟିଯାକ ସାଧନାର ଫଳ ଏକମାତ୍ର ଭଗବଦ୍‌ପ୍ରାପ୍ତି ହୋଇଥିଲେ ମଧ୍ୟ, ସାଧକମାନଙ୍କର ମାନ୍ୟତାରେ ଓ ସାଧନାପ୍ରଣାଳୀରେ ଭିନ୍ନତା ଥିବାରୁ ତିନିପ୍ରକାର ସାଧନାକୁ ଅଲଗା ଅଲଗା କୁହାଯାଇଛି।

*ସମ୍ବନ୍ଧ – ଷଷ୍ଠ ଶ୍ଳୋକଠାରୁ ଅଷ୍ଟମ ଶ୍ଳୋକଯାଏ ଫଳସହିତ ଅନନ୍ୟଧ୍ୟାନ ବର୍ଣ୍ଣନା କରି, ନବମଠାରୁ ଏକାଦଶ ଶ୍ଳୋକଯାଏ, ଗୋଟିଏପ୍ରକାର ସାଧନାରେ ଅସମର୍ଥ ହେଲେ ଅନ୍ୟପ୍ରକାର ସାଧନା କରିବାକୁ କହିଛନ୍ତି ଏବଂ ଶେଷରେ 'ସର୍ବକର୍ମଫଳତ୍ୟାଗ'ରୂପୀ ସାଧନା ବର୍ଣ୍ଣନା କରାଯାଇଛି। ଏଥିରୁ ଶଙ୍କା ଆସିପାରେ ଯେ, 'କର୍ମଫଳତ୍ୟାଗ'ରୂପୀ ସାଧନା ପୂର୍ବୋକ୍ତ ଅନ୍ୟ ସାଧନା ଅପେକ୍ଷା ନିମ୍ନଶ୍ରେଣୀର ହୋଇଥିବ। ଅତଏବ ସେହି ଶଙ୍କା ଦୂର କରିବାକୁ ଭଗବାନ୍ ଆଗ ଶ୍ଳୋକରେ କର୍ମଫଳତ୍ୟାଗର ମହତ୍ତ୍ୱ କହୁଛନ୍ତି–*

**ଶ୍ରେୟୋ ହି ଜ୍ଞାନମଭ୍ୟାସାଜ୍ଜ୍ଞାନାଦ୍‌ଧ୍ୟାନଂ ବିଶିଷ୍ୟତେ।**
**ଧ୍ୟାନାତ୍ କର୍ମଫଳତ୍ୟାଗସ୍ତ୍ୟାଗାଚ୍ଛାନ୍ତିରନନ୍ତରମ୍॥ ୧୨ ॥**

**ଅନ୍ୱୟ –** **ଅଭ୍ୟାସାତ୍** = ମର୍ମ ନ ଜାଣି କରୁଥିବା ଅଭ୍ୟାସ ଅପେକ୍ଷା; **ଜ୍ଞାନମ୍** = ଜ୍ଞାନ; **ଶ୍ରେୟଃ** = ଶ୍ରେଷ୍ଠ; **ଜ୍ଞାନାତ୍** = ଜ୍ଞାନଠାରୁ; **ଧ୍ୟାନମ୍** = ମୋର (ପରମେଶ୍ୱରଙ୍କ) ସ୍ୱରୂପର ଧ୍ୟାନ; **ବିଶିଷ୍ୟତେ** = ଶ୍ରେଷ୍ଠ ଅଟେ ଓ; **ଧ୍ୟାନାତ୍** = ଧ୍ୟାନ ଅପେକ୍ଷା; **କର୍ମଫଳତ୍ୟାଗଃ** = ସର୍ବକର୍ମର ଫଳତ୍ୟାଗ (ଶ୍ରେଷ୍ଠ ଅଟେ); **ହି** = କାରଣ; **ତ୍ୟାଗାତ୍** = ତ୍ୟାଗଦ୍ୱାରା; **ଅନନ୍ତରମ୍** = ତତ୍କାଳ ହିଁ; **ଶାନ୍ତିଃ** = ପରମଶାନ୍ତି (ପ୍ରାପ୍ତ ହୋଇଥାଏ)।

**ମର୍ମ ନ ଜାଣି କରାଯାଉଥିବା ଅଭ୍ୟାସ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ; ଜ୍ଞାନଠାରୁ ମୋର ପରମେଶ୍ୱର-ସ୍ୱରୂପର ଧ୍ୟାନ ଶ୍ରେଷ୍ଠ ଏବଂ ଧ୍ୟାନ ଅପେକ୍ଷା ସବୁକର୍ମର ଫଳତ୍ୟାଗ ଶ୍ରେଷ୍ଠ ଅଟେ; କାରଣ ତ୍ୟାଗଦ୍ୱାରା ତତ୍କାଳ ହିଁ ପରମ ଶାନ୍ତି ପ୍ରାପ୍ତ ହୋଇଥାଏ॥ ୧୨ ॥**

**ପ୍ରଶ୍ନ –** ଏଠାରେ 'ଅଭ୍ୟାସ' ଶବ୍ଦ କାହାର ବାଚକ ଓ 'ଜ୍ଞାନ' ଶବ୍ଦ କାହାର ବାଚକ? ତଥା ଅଭ୍ୟାସ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏଠାରେ 'ଅଭ୍ୟାସ' ଶବ୍ଦଟି ହେଉଛି ନବମ ଶ୍ଳୋକରେ କୁହାଯାଇଥିବା 'ଅଭ୍ୟାସଯୋଗ' ମଧ୍ୟରୁ କେବଳ ଅଭ୍ୟାସମାତ୍ରର ବାଚକ। ଅର୍ଥାତ୍ ସକାମଭାବରେ ପ୍ରାଣାୟାମ, ମନୋନିଗ୍ରହ, ସ୍ତୋତ୍ରପାଠ, ବେଦାଧ୍ୟୟନ, ଭଗବନ୍ନାମଜପ ଆଦିପାଇଁ ବାରମ୍ବାର କରାଯାଉଥିବା ସେହିପ୍ରକାର ଚେଷ୍ଟାର ନାମ ଏଠାରେ 'ଅଭ୍ୟାସ', ଯେଉଁଥିରେ କି ବିବେକଜ୍ଞାନ ନ ଥାଏ, କି ଧ୍ୟାନ ନ ଥାଏ, କି କର୍ମଫଳ-ତ୍ୟାଗ ନ ଥାଏ। ଅଭିପ୍ରାୟ ଏହି ଯେ, ନବମ ଶ୍ଳୋକରେ ଯେଉଁ ଯୋଗର ଅର୍ଥାତ୍ ନିଷ୍କାମଭାବ ଓ ବିବେକଜ୍ଞାନର ଫଳ ଭଗବତ୍‌ପ୍ରାପ୍ତି-ଇଚ୍ଛା ବୋଲି କୁହାଯାଇଛି, ତାହା ଏଥିରେ ନାହିଁ; କାରଣ ଏ ଦୁଇଟି ଯେଉଁ ଅଭ୍ୟାସର ଅନ୍ତର୍ଗତ, ସେହି ଅଭ୍ୟାସ ସହିତ ଜ୍ଞାନର ତୁଳନା କରିବା ଏବଂ ତାହା ଅପେକ୍ଷା ଅଭ୍ୟାସରହିତ ଜ୍ଞାନ ଶ୍ରେଷ୍ଠ ବୋଲି କହିବା ଯୁକ୍ତିସଙ୍ଗତ ହୋଇ ନ ପାରେ।

ସେହିପରି ଏଠାରେ 'ଜ୍ଞାନ' ଶବ୍ଦ ମଧ୍ୟ ସତ୍‌ସଙ୍ଗ ଓ ଶାସ୍ତ୍ରରୁ ଉତ୍ପନ୍ନ ସେହି ବିବେକ-ଜ୍ଞାନର ବାଚକ, ଯାହାଦ୍ୱାରା ମନୁଷ୍ୟ ଆତ୍ମା ଓ ପରମାତ୍ମାଙ୍କ ସ୍ୱରୂପକୁ ତଥା ଭଗବାନଙ୍କ ଗୁଣ, ପ୍ରଭାବ, ଲୀଳା ଆଦିକୁ ବୁଝିପାରେ, ଏବଂ ସଂସାରର ଓ ଭୋଗମାନଙ୍କର ଅନିତ୍ୟତା ଆଦି ଅନ୍ୟ ଆଧ୍ୟାତ୍ମିକ ବିଷୟ ମଧ୍ୟ ବୁଝିପାରେ; କିନ୍ତୁ ଯାହା ସହିତ ଅଭ୍ୟାସ ନ ଥାଏ, କି ଧ୍ୟାନ ନ ଥାଏ, କି କର୍ମଫଳତ୍ୟାଗର ଇଚ୍ଛା ବି ନ ଥାଏ; କାରଣ ଏସବୁ ଯାହାର ଅନ୍ତର୍ଗତ ହୋଇଥିବ, ସେହି ଜ୍ଞାନ ସହିତ ଅଭ୍ୟାସ, ଧ୍ୟାନ ଓ କର୍ମଫଳତ୍ୟାଗର ତୁଳନାତ୍ମକ ବିବେଚନ କରିବା ଏବଂ ତା' ଅପେକ୍ଷା ଧ୍ୟାନକୁ ତଥା କର୍ମଫଳତ୍ୟାଗକୁ ଶ୍ରେଷ୍ଠ ବୋଲି କହିବା ଯୁକ୍ତିସଂଗତ ହୋଇ ନ ପାରେ।

ଉପରୋକ୍ତ ଅଭ୍ୟାସ ଓ ଜ୍ଞାନ ଉଭୟ ନିଜ ନିଜ କ୍ଷେତ୍ରରେ ଭଗବତ୍‌ପ୍ରାପ୍ତିରେ ସହାୟକ ଅଟନ୍ତି। ଶ୍ରଦ୍ଧା-ଭକ୍ତି ଓ ନିଷ୍କାମ ଭାବ ସହିତ ସମ୍ବନ୍ଧ ରଖିଲେ ଉଭୟଙ୍କ ଦ୍ୱାରା ହିଁ ମନୁଷ୍ୟ ପରମାତ୍ମାଙ୍କୁ ପ୍ରାପ୍ତ କରିପାରେ। ତଥାପି ସେହି ଦୁଇଟିକୁ ତୁଳନା କଲେ, ଅଭ୍ୟାସ ଅପେକ୍ଷା ଜ୍ଞାନ ହିଁ ଶ୍ରେଷ୍ଠ ସିଦ୍ଧ ହୁଏ। ଭଗବତ୍‌ପ୍ରାପ୍ତିରେ ଅଭ୍ୟାସହୀନ ବିବେକଜ୍ଞାନ ଯେତେ ସହାୟକ ହୁଏ, ବିବେକହୀନ ଅଭ୍ୟାସ ସେତେ ସହାୟକ ହୁଏ ନାହିଁ; କାରଣ ବିବେକଜ୍ଞାନ ହେଉଛି ଭଗବତ୍‌ପ୍ରାପ୍ତି-ଇଚ୍ଛାର ହେତୁ। ଏହା ଦେଖାଇବା ପାଇଁ ଏଠାରେ ଅଭ୍ୟାସ ଅପେକ୍ଷା ଜ୍ଞାନକୁ ଶ୍ରେଷ୍ଠ ବୋଲି କହିଛନ୍ତି।

**ପ୍ରଶ୍ନ – ଧ୍ୟାନ** ଶବ୍ଦ କାହାର ବାଚକ? ତାହାକୁ ଜ୍ଞାନ ଅପେକ୍ଷା ଶ୍ରେଷ୍ଠ କହିବାର ଅଭିପ୍ରାୟ କଣ?

**ଉତ୍ତର –** ଏଠାରେ ମଧ୍ୟ **ଧ୍ୟାନ** ଶବ୍ଦଟି ହେଉଛି ଷଷ୍ଠଠାରୁ ଅଷ୍ଟମ ଶ୍ଳୋକପର୍ଯ୍ୟନ୍ତ କୁହାଯାଇଥିବା ଧ୍ୟାନଯୋଗ ମଧ୍ୟରୁ କେବଳ ଧ୍ୟାନମାତ୍ରର ବାଚକ; ଅର୍ଥାତ୍ ଉପାସ୍ୟ ଦେବତା ବୋଲି ମାନି ସକାମଭାବରେ କେବଳ ମନବୁଦ୍ଧିକୁ ଭଗବାନଙ୍କର ସାକାର ବା ନିରାକାର କୌଣସି ଏକ ସ୍ୱରୂପରେ ସ୍ଥିର କରିଦେବାର ବାଚକ। ଏଥିରେ ପୂର୍ବୋକ୍ତ ବିବେକଜ୍ଞାନ ନ ଥାଏ, କି ଭୋଗକାମନା-ତ୍ୟାଗରୂପକ ନିଷ୍କାମ ଭାବ ନ ଥାଏ। ଅଭିପ୍ରାୟ ଏହି ଯେ, ସେହି ଧ୍ୟାନଯୋଗରେ ଭଗବାନଙ୍କ ଠାରେ ସକଳକର୍ମ ସମର୍ପଣ କରିଦେବା, ଭଗବାନଙ୍କୁ ହିଁ ପରମପ୍ରାପ୍ୟ ବୋଲି ବୁଝିବା ଏବଂ ଅନନ୍ୟ ପ୍ରେମରେ ଭଗବାନଙ୍କୁ ଧ୍ୟାନ କରିବା- ଏସବୁ ଭାବ ମଧ୍ୟ ସମ୍ମିଳିତ ଥାଏ; କିନ୍ତୁ ସେସବୁ ଭାବ ଏଥିରେ ନାହିଁ। କାରଣ ଭଗବାନଙ୍କୁ ସର୍ବଶ୍ରେଷ୍ଠ ବୋଲି ଜାଣି ଅନନ୍ୟପ୍ରେମର ସହିତ ନିଷ୍କାମଭାବରେ କରାଯାଉଥିବା ଧ୍ୟାନଯୋଗରେ ବିବେକଜ୍ଞାନ ଓ କର୍ମଫଳତ୍ୟାଗ ରହିଥାଏ। ଅତଏବ ତା' ସହିତ ବିବେକଜ୍ଞାନକୁ ତୁଳନା କରିବା ଓ ତା' ଅପେକ୍ଷା କର୍ମଫଳତ୍ୟାଗକୁ ଶ୍ରେଷ୍ଠ କହିବା ଯୁକ୍ତିସଙ୍ଗତ ହୋଇ ନ ପାରେ।

ପ୍ରଥମ ପ୍ରଶ୍ନର ଉତ୍ତରରେ କୁହାଯାଇଥିବା ବିବେକଜ୍ଞାନ ଓ ଉପରୋକ୍ତ ଧ୍ୟାନ ଉଭୟେ ଶ୍ରଦ୍ଧାପ୍ରେମ ଓ ନିଷ୍କାମଭାବର ସମ୍ବନ୍ଧଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ କରାଇଦିଅନ୍ତି। ଏଣୁ ସେହି ଉଭୟେ ଭଗବତ୍‌ପ୍ରାପ୍ତିରେ ସହାୟକ ଅଟନ୍ତି। କିନ୍ତୁ ସେହି ଦୁଇଟିକୁ ପରସ୍ପର ତୁଳନା କଲେ, ଧ୍ୟାନ ଓ ଅଭ୍ୟାସରହିତ ଜ୍ଞାନ ଅପେକ୍ଷା ବିବେକରହିତ ଧ୍ୟାନ ଶ୍ରେଷ୍ଠ ବୋଲି ସିଦ୍ଧ ହୁଏ; କାରଣ ଭଗବତ୍‌ପ୍ରାପ୍ତିରେ ବିବେକଜ୍ଞାନରହିତ କେବଳ ଧ୍ୟାନ ଯେତେ ସହାୟକ ହୋଇପାରେ, ଧ୍ୟାନ ଓ ଅଭ୍ୟାସ ବିନା କେବଳ ବିବେକଜ୍ଞାନ ସେତେ ସହାୟକ ହୋଇପାରେନା। ଧ୍ୟାନଦ୍ୱାରା ଚିତ୍ତ ସ୍ଥିର ହୋଇଗଲେ ଚିତ୍ତର ମଳିନତା ଓ ଚଞ୍ଚଳତା ନାଶ ପାଇଯାଏ; କିନ୍ତୁ କେବଳ ଏକଥା ଜାଣିଗଲେ, ତାହା ହୋଇପାରେନା। ଏହି ଭାବ ଦେଖାଇବା ନିମନ୍ତେ ଧ୍ୟାନକୁ ଜ୍ଞାନଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି।

**ପ୍ରଶ୍ନ – କର୍ମଫଳତ୍ୟାଗ** କାହାର ବାଚକ ଓ ତାହା ଧ୍ୟାନଠାରୁ ଶ୍ରେଷ୍ଠ ବୋଲି କହିବାର ଅଭିପ୍ରାୟ କଣ?

**ଉତ୍ତର –** ଏଗାର ଶ୍ଳୋକରେ ଯେଉଁ 'ସର୍ବକର୍ମଫଳତ୍ୟାଗ'ର ସ୍ୱରୂପ କୁହାଗଲା, **କର୍ମଫଳତ୍ୟାଗ** ହେଉଛି ତାହାର ବାଚକ। ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ କୁହାଯାଇଥିବା ଧ୍ୟାନ ମଧ୍ୟ ପରମାତ୍ମାଙ୍କ ପ୍ରାପ୍ତିରେ ସହାୟକ; କିନ୍ତୁ ଯେତେବେଳଯାଏ ମନୁଷ୍ୟର କାମନା ଓ ଆସକ୍ତି ନାଶ ପାଇ ନାହିଁ, ସେତେବେଳଯାଏ ତା'ପାଇଁ ପରମାତ୍ମପ୍ରାପ୍ତି ସହଜ ହୁଏ ନାହିଁ। ତେଣୁ କୌଣସି ଧ୍ୟାନ ନ କରି ସମସ୍ତ କର୍ମଫଳ ଓ ଆସକ୍ତି ତ୍ୟାଗ କରିଦେଲେ ପରମାତ୍ମପ୍ରାପ୍ତିରେ ଯେତେ ସହାୟତା ମିଳେ, ଆସକ୍ତି ଓ ଫଳାକାଙ୍କ୍ଷା ତ୍ୟାଗ ନ କରି ଧ୍ୟାନରତ ହେଲେ ସେତେ ସହାୟତା ମିଳେ ନାହିଁ।

**ପ୍ରଶ୍ନ –** 'ତ୍ୟାଗଦ୍ୱାରା ତତ୍‌କାଳ ଶାନ୍ତି ମିଳିଯାଏ'– ଏହି କଥନର ଭାବ କଣ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ,

କର୍ମଫଳରୂପୀ ଇହଲୋକ ଓ ପରଲୋକର ସମସ୍ତ ଭୋଗରେ ମମତ୍ୱ, ଆସକ୍ତି ଓ କାମନାର ସର୍ବଥା ତ୍ୟାଗ ହେବାଦ୍ୱାରା ମନୁଷ୍ୟକୁ ତତ୍‌କାଳ ହିଁ ପରମେଶ୍ୱରପ୍ରାପ୍ତି ହୋଇଯାଏ; ବିଳମ୍ବ ହେବାପାଇଁ କୌଣସି କାରଣ ରହିଯାଏ ନା; କାରଣ ବିଷୟାସକ୍ତି ହିଁ ମନୁଷ୍ୟକୁ ବନ୍ଧନରେ ପକାଏ; ତାହା ନାଶ ପାଇଯିବା ପରେ ଭଗବାନ୍ ତା'ଠାରୁ ଆଉ ଲୁଚି ରହିପାରନ୍ତି ନାହିଁ।

ଏହି ଶ୍ଳୋକରେ ଅଭ୍ୟାସଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ ଓ କର୍ମଯୋଗର ତୁଳନାତ୍ମକ ବିବେଚନା ହୋଇ ନାହିଁ; କାରଣ ଏହିସବୁ ସାଧନାରେ କର୍ମଫଳରୂପୀ ଭୋଗମାନଙ୍କର ଆସକ୍ତିତ୍ୟାଗରୂପକ ନିଷ୍କାମଭାବ ରହିଥାଏ। ତେଣୁ ଏସବୁର ତୁଳନାତ୍ମକ ବିବେଚନ ହୋଇପାରିବ ନାହିଁ। ଏଠାରେ ତ କର୍ମଫଳତ୍ୟାଗର ମହତ୍ତ୍ୱ ଦେଖାଇବା ପାଇଁ ସଂସାରଇଞ୍ଜାଳରୁ ଅଲଗା ରହି କରାଯାଉଥିବା ଅଭ୍ୟାସ, ଜ୍ଞାନ ଓ ଧ୍ୟାନରୂପୀ ସାଧନା ବିଷୟ କୁହାଯାଇଛି। କ୍ରିୟାଦୃଷ୍ଟିରୁ ଦେଖିଲେ ଏସବୁ ସାଧନା ଗୋଟିକ ଅପେକ୍ଷା ଅନ୍ୟଟି ସାତ୍ତ୍ୱିକ ଓ ନିବୃତ୍ତିପରକ ହୋଇଥିବାରୁ କ୍ରମାନ୍ୱୟରେ ଶ୍ରେଷ୍ଠ। ତଥାପି ଭାବର ପ୍ରାଧାନ୍ୟହେତୁ କର୍ମଫଳତ୍ୟାଗକୁ ଏମାନଙ୍କ ଅପେକ୍ଷା ଶ୍ରେଷ୍ଠ ବୋଲି କୁହାଯାଇଛି। ଅଭିପ୍ରାୟ ଏହି ଯେ, ଆଧ୍ୟାତ୍ମିକ ଉନ୍ନତିରେ କ୍ରିୟା ଅପେକ୍ଷା ଭାବର ମହତ୍ତ୍ୱ ହିଁ ଅଧିକ। (୧) ବର୍ଣ୍ଣାଶ୍ରମ ଅନୁସାରେ ଯଜ୍ଞ, ଦାନ, ଯୁଦ୍ଧ, ବାଣିଜ୍ୟ, ସେବା ଆଦି ହେଉଛି ଶରୀରନିର୍ବାହ କ୍ରିୟା; (୨) ପ୍ରାଣାୟାମ, ସ୍ତୋତ୍ରପାଠ, ବେଦପାଠ, ନାମଜପ ଆଦି ହେଉଛି ଅଭ୍ୟାସକ୍ରିୟା; (୩) ସତ୍‌ସଙ୍ଗ କରିବା ଓ ଶାସ୍ତ୍ରଦ୍ୱାରା ଆଧ୍ୟାତ୍ମିକ ବିଷୟ ଜାଣିବା ହେଉଛି ଜ୍ଞାନବିଷୟକ କ୍ରିୟା ଏବଂ (୪) ମନକୁ ସ୍ଥିର କରିବା ହେଉଛି ଧ୍ୟାନବିଷୟକ କ୍ରିୟା। ଏସବୁ କ୍ରିୟା ଗୋଟିଏ ଅପେକ୍ଷା ଅନ୍ୟଟି କ୍ରମାନ୍ୱୟରେ ଶ୍ରେଷ୍ଠ; ତଥାପି ଏମାନଙ୍କ ମଧ୍ୟରୁ ଯାହା ସହିତ କର୍ମଫଳତ୍ୟାଗରୂପକ ବୈରାଗ୍ୟ ରହିଛି, ତାହା ହିଁ ଶ୍ରେଷ୍ଠ। କାରଣ ସଂସାରରେ ବୈରାଗ୍ୟ ଓ ଭଗବାନଙ୍କ ଠାରେ ଅନନ୍ୟ ପ୍ରେମଦ୍ୱାରା ହିଁ ଭଗବତ୍‌ପ୍ରାପ୍ତି ହୁଏ; ଅନ୍ୟଥା ନୁହେଁ। ଏଣୁ କର୍ମଫଳତ୍ୟାଗ ହିଁ ଶ୍ରେଷ୍ଠ। ପୁଣି ତାହା ଯେକୌଣସି ଶାସ୍ତ୍ରସମ୍ମତ କ୍ରିୟା ସହିତ ଯୁକ୍ତ ହେଉ ନା କାହିଁକି, ସେହି କ୍ରିୟା ଦେଖିବାକୁ ସାଧାରଣ ହେଲେ ବି, ସର୍ବଶ୍ରେଷ୍ଠ ହୋଇଯାଏ।

*ସମ୍ବନ୍ଧ — ଉପରୋକ୍ତ ଶ୍ଳୋକମାନଙ୍କରେ ଭଗବତ୍‌ପ୍ରାପ୍ତିପାଇଁ ଭକ୍ତିର ଅଙ୍ଗଭୂତ ଭିନ୍ନ ଭିନ୍ନ ସାଧନା ବୁଝାଇଦେଇ ତା'ର ଫଳ ପରମାତ୍ମପ୍ରାପ୍ତି ବୋଲି କୁହାଗଲା। ଅତଏବ ଭଗବାନଙ୍କୁ ପାଇଥିବା ପ୍ରେମୀଭକ୍ତଙ୍କର ଲକ୍ଷଣ ଜାଣିବାକୁ ଇଚ୍ଛା ହେବାରୁ ବର୍ତ୍ତମାନ ପରବର୍ତ୍ତୀ ସାତଟି ଶ୍ଳୋକରେ ଭଗବତ୍‌ପ୍ରାପ୍ତ ଜ୍ଞାନୀଭକ୍ତଙ୍କର ଲକ୍ଷଣ କହୁଛନ୍ତି—*

**ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ।**
**ନିର୍ମମୋ ନିରହଂକାରଃ ସମଦୁଃଖସୁଖଃ କ୍ଷମୀ।। ୧୩ ।।**
**ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ।**
**ମୟ୍ୟର୍ପିତମନୋବୁଦ୍ଧିର୍ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ।। ୧୪ ।।**

**ଅନ୍ୱୟ —** **ଯଃ** = ଯେଉଁ ପୁରୁଷ; **ସର୍ବଭୂତାନାମ୍** = ସକଳ ଭୂତଙ୍କଠାରେ; **ଅଦ୍ୱେଷ୍ଟା** = ଦ୍ୱେଷରହିତ; **ମୈତ୍ରଃ** = ନିଃସ୍ୱାର୍ଥଭାବରେ ସମସ୍ତଙ୍କର ପ୍ରେମୀ; **ଚ** = ଓ; **କରୁଣଃ** = ଅହେତୁକ ଦୟାଳୁ; **ଏବ** = ତଥା; **ନିର୍ମମଃ** = ମମତାରହିତ; **ନିରହଙ୍କାରଃ** = ଅହଙ୍କାରରହିତ; **ସମଦୁଃଖସୁଖଃ** = ସୁଖଦୁଃଖପ୍ରାପ୍ତିରେ ସମ (ଓ); **କ୍ଷମୀ** = କ୍ଷମାଶୀଳ ଅର୍ଥାତ୍ ଅପରାଧୀକୁ ମଧ୍ୟ ଅଭୟ ଦେବା ଲୋକ (ତଥା ଯେଉଁ); **ଯୋଗୀ** = ଯୋଗୀ; **ସତତମ୍** = ନିରନ୍ତର; **ସନ୍ତୁଷ୍ଟଃ** = ସନ୍ତୁଷ୍ଟ (ରହନ୍ତି); **ଯତାତ୍ମା** = ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥିବା (ଓ); **ଦୃଢ଼ନିଶ୍ଚୟଃ** = (ମୋଠାରେ) ଦୃଢ଼ ନିଶ୍ଚୟ କରିଥିବା; **ମୟି** = ମୋଠାରେ; **ଅର୍ପିତମନୋବୁଦ୍ଧିଃ** = ମନ-ବୁଦ୍ଧି ଅର୍ପଣ କରିଥିବା; **ସଃ, ମଦ୍ଭକ୍ତଃ** = ମୋର ସେହି ଭକ୍ତ; **ମେ** = ମୋତେ; **ପ୍ରିୟଃ** = ପ୍ରିୟ।

ଯେଉଁ ପୁରୁଷ ସକଳ ଭୂତଙ୍କଠାରେ ଦ୍ୱେଷରହିତ, ନିଃସ୍ୱାର୍ଥଭାବରେ ସମସ୍ତଙ୍କର ପ୍ରେମୀ ଓ ଅହେତୁକ ଦୟାଳୁ ତଥା ମମତାରହିତ, ଅହଙ୍କାରରହିତ, ସୁଖଦୁଃଖପ୍ରାପ୍ତିରେ ସମ

**ଓ କ୍ଷମାଶୀଳ ଅର୍ଥାତ୍ ଅପରାଧୀକୁ ବି ଅଭୟ ପ୍ରଦାନ କରନ୍ତି, ପୁଣି ଯେଉଁ ଯୋଗୀ ନିରନ୍ତର ସନ୍ତୁଷ୍ଟ ରହନ୍ତି, ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥାନ୍ତି ଏବଂ ଯେ ମୋଠାରେ ଦୃଢ଼ନିଶ୍ଚୟ ହୋଇଥାନ୍ତି, ମୋ ଠାରେ ମନ-ବୁଦ୍ଧି ଅର୍ପଣ କରିଦେଇଥିବା ସେହି ଭକ୍ତ ମୋର ପ୍ରିୟ ଅଟନ୍ତି॥ ୧୩-୧୪ ॥**

**ପ୍ରଶ୍ନ—** ସର୍ବଭୂତାନାମ୍ ଶବ୍ଦ କାହା ସହିତ ସମ୍ବନ୍ଧ ରଖୁଛି ?

**ଉତ୍ତର—** ଏହାର ସମ୍ବନ୍ଧ ମୁଖ୍ୟତଃ 'ଅଦ୍ୱେଷ୍ଟା' ସହିତ ରହିଛି; କିନ୍ତୁ ତା ସଙ୍ଗେ ସଙ୍ଗେ ଏହାର ସମ୍ବନ୍ଧ 'ମୈତ୍ରଃ' ଓ 'କରୁଣଃ' ସହିତ ମଧ୍ୟ ରହିଛି। ଭାବ ଏହି ଯେ, ସମସ୍ତ ପ୍ରାଣୀଙ୍କ ପ୍ରତି ସେ ଯେ କେବଳ ଦ୍ୱେଷରହିତ, ତାହା ନୁହେଁ, ବରଂ ସେମାନଙ୍କ ପ୍ରତି ତାଙ୍କଠାରେ ସ୍ୱାଭାବିକ ଓ ଅହେତୁକ 'ମୈତ୍ରୀ' ଓ 'ଦୟା' ମଧ୍ୟ ଥାଏ।

**ପ୍ରଶ୍ନ—** ସିଦ୍ଧପୁରୁଷଙ୍କର ତ ସମସ୍ତଙ୍କ ଠାରେ ସମଭାବ ହୋଇଯାଏ, ପୁଣି ତାଙ୍କଠାରେ ମୈତ୍ରୀ ଓ କରୁଣାର ବିଶେଷ ଭାବ କିପରି ରହିପାରେ ?

**ଉତ୍ତର—** ଭକ୍ତିମାର୍ଗର ସାଧକଙ୍କ ଠାରେ ଆରମ୍ଭରୁ ହିଁ ମୈତ୍ରୀ ଓ ଦୟାଭାବ ବିଶେଷରୂପେ ରହିଥାଏ। ଏଣୁ ସିଦ୍ଧାବସ୍ଥାରେ ମଧ୍ୟ ଏସବୁ ଗୁଣ ତାଙ୍କ ସ୍ୱଭାବରେ ଓ ବ୍ୟବହାରରେ ସହଜରେ ମିଳିଥାଏ। ଏହା ଛଡ଼ା ଭଗବାନଙ୍କ ଠାରେ ଯେପରି ଅହୈତୁକୀ ଅପାର ଦୟା ଓ ପ୍ରେମ ଆଦି ରହେ, ସେହିପରି ତାଙ୍କ ସିଦ୍ଧଭକ୍ତଙ୍କ ଠାରେ ମଧ୍ୟ ଏସବୁ ରହିବା ଉଚିତ ହିଁ ଅଟେ।

**ପ୍ରଶ୍ନ— ନିର୍ମମଃ ଓ ନିରହଙ୍କାରଃ—** ଏହି ଦୁଇଟି ଲକ୍ଷଣର ଅଭିପ୍ରାୟ କଣ ?

**ଉତ୍ତର—** ଏହି ଲକ୍ଷଣଦୁଇଟିଦ୍ୱାରା ଏଠାରେ ଦେଖାଇଦିଆଯାଇଛି ଯେ, ଭଗବାନଙ୍କ ଜ୍ଞାନୀଭକ୍ତଙ୍କର ସର୍ବତ୍ର ସମଭାବ ହୁଏ; ଅତଏବ ତାଙ୍କର କେଉଁଥିରେ ମମତ୍ୱ ରହେ ନାହିଁ, କି ନିଜ ଶରୀରରେ ଅହଂକାର ରହେ ନାହିଁ। ତଥାପି କୌଣସି ପ୍ରୟୋଜନ ନ ଥାଇ ସେ ସକଳ ପ୍ରାଣୀଙ୍କ ଠାରେ ପ୍ରେମ ରଖନ୍ତି ଓ ସମସ୍ତଙ୍କ ପ୍ରତି ଦୟା ରଖନ୍ତି। ଏହା ତାଙ୍କର ମହନୀୟତା। ଭଗବାନଙ୍କର ସାଧକଭକ୍ତ ମଧ୍ୟ ଦୟା ଓ ପ୍ରେମ କରନ୍ତି; କିନ୍ତୁ ତାଙ୍କ ଠାରେ ମମତ୍ୱ ଓ ଅହଂକାରର ସର୍ବଥା ଅଭାବ ନ ଥାଏ।

**ପ୍ରଶ୍ନ— ସମଦୁଃଖସୁଖଃ** ଏହି ପଦରେ ଆସିଥିବା **ସୁଖ-ଦୁଃଖ** ଶବ୍ଦ ହର୍ଷଶୋକର ବାଚକ, ନା ଅନ୍ୟ କାହାର ? ସେଥିରେ ସମ ରହିବା କଣ ?

**ଉତ୍ତର—** ଏଠାରେ 'ସୁଖ-ଦୁଃଖ' ହର୍ଷ-ଶୋକମାନଙ୍କର ବାଚକ ନୁହେଁ; କିନ୍ତୁ ଏମାନଙ୍କ ହେତୁମାନଙ୍କର ବାଚକ ତଥା ଏମାନଙ୍କ ଠାରୁ ଉତ୍ପନ୍ନ ହେଉଥିବା ବିକାରମାନଙ୍କର ନାମ ହର୍ଷ ଓ ଶୋକ। ଅଜ୍ଞାନୀ ମନୁଷ୍ୟମାନେ ସୁଖରେ ଆସକ୍ତ ହୁଅନ୍ତି, ଏଣୁ ସୁଖପ୍ରାପ୍ତିରେ ସେମାନଙ୍କୁ ହର୍ଷ ହୁଏ ଏବଂ ଦୁଃଖରେ ଦ୍ୱେଷ ହୁଏ। ଦୁଃଖପ୍ରାପ୍ତିରେ ସେମାନଙ୍କର ଶୋକ ହୁଏ। କିନ୍ତୁ ଜ୍ଞାନୀଭକ୍ତଙ୍କର ସୁଖ ଓ ଦୁଃଖରେ ସମଭାବ ହୋଇଯିବାରୁ କୌଣସି ବି ଅବସ୍ଥାରେ ତାଙ୍କ ଅନ୍ତଃକରଣରେ ହର୍ଷ, ଶୋକ ଆଦି ବିକାର ହୁଏ ନାହିଁ। ଶ୍ରୁତିରେ ମଧ୍ୟ କୁହାଯାଇଛି ଯେ, **ହର୍ଷଶୋକୌ ଜହାତି** (କଠୋପନିଷଦ ୧/୨/୧୨), ଅର୍ଥାତ୍ 'ଜ୍ଞାନୀ ପୁରୁଷ ହର୍ଷ-ଶୋକକୁ ସର୍ବଥା ତ୍ୟାଗ କରିଦିଅନ୍ତି।' ପ୍ରାରବ୍ଧଭୋଗ ଅନୁସାରେ ଶରୀରରେ ରୋଗ ହେଲେ ପୀଡ଼ାରୂପୀ ଦୁଃଖ ବୋଧ ହୋଇଥାଏ ଏବଂ ଶରୀର ସୁସ୍ଥ ରହିଲେ ତହିଁରେ ପୀଡ଼ାର ଅଭାବବୋଧରୂପୀ ସୁଖ ମଧ୍ୟ ହୁଏ; କିନ୍ତୁ ରାଗଦ୍ୱେଷ ନ ଥିବାଯୋଗୁଁ ସେମାନଙ୍କୁ ହର୍ଷ ଓ ଶୋକ ହୁଏ ନାହିଁ। ଏପରିଭାବରେ କୌଣସି ଅନୁକୂଳ ଓ ପ୍ରତିକୂଳ ପଦାର୍ଥର ବା ଘଟଣାର ସଂଯୋଗ-ବିୟୋଗରେ ମଧ୍ୟ ସେମାନଙ୍କୁ କୌଣସିପ୍ରକାର ହର୍ଷ-ଶୋକ ହୁଏ ନାହିଁ। ଏହା ହିଁ ସେମାନଙ୍କ ସୁଖଦୁଃଖରେ ସମ ରହିବା।

**ପ୍ରଶ୍ନ— କ୍ଷମାବାନ୍** କାହାକୁ କହନ୍ତି ଓ ଜ୍ଞାନୀ ଭକ୍ତଙ୍କୁ **କ୍ଷମାବାନ୍** କାହିଁକି କୁହାଯାଇଛି ?

**ଉତ୍ତର—** ନିଜର ଅପକାର କରିଥିବା ଲୋକକୁ କୌଣସିପ୍ରକାର ଦଣ୍ଡ ଦେବାର ଇଚ୍ଛା ନ ରଖି ତାହାକୁ ଅଭୟ ଦେଉଥିବା ଲୋକଙ୍କୁ **କ୍ଷମାବାନ୍** କହନ୍ତି। ଭଗବାନଙ୍କ ଜ୍ଞାନୀଭକ୍ତମାନଙ୍କ ଠାରେ ଅସୀମ କ୍ଷମାଭାବ ଥାଏ। ସେମାନଙ୍କର ସମସ୍ତଙ୍କ ଠାରେ ଭଗବଦ୍‌ବୁଦ୍ଧି ହୋଇଯାଇଥିବାରୁ ସେମାନେ କୌଣସି ବି ଘଟଣାକୁ ପ୍ରକୃତରେ କାହାର ଅପରାଧ ବୋଲି ଭାବନ୍ତି ନାହିଁ। ଅତଏବ ସେମାନେ ନିଜ ପ୍ରତି ଅପରାଧ କରୁଥିବା ଲୋକଙ୍କୁ ମଧ୍ୟ କୌଣସିପ୍ରକାର ଦଣ୍ଡ ଦେବାକୁ ଚାହାଁନ୍ତି ନାହିଁ। ଏହି ଭାବ ଦେଖାଇବାକୁ ସେମାନଙ୍କୁ **କ୍ଷମାବାନ୍** କୁହାଯାଇଛି। କ୍ଷମାର ବ୍ୟାଖ୍ୟା ଦଶମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ବିସ୍ତୃତଭାବରେ କରାଯାଇଛି।

**ପ୍ରଶ୍ନ –** ଏଠାରେ **ଯୋଗୀ** ପଦ କାହାର ବାଚକ ଏବଂ ତାଙ୍କର ନିରନ୍ତର ସନ୍ତୁଷ୍ଟ ରହିବା କଣ ?

**ଉତ୍ତର –** ଏଠାରେ **ଯୋଗୀ** ପଦଟି ହେଉଛି ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ପ୍ରାପ୍ତ ହୋଇଥିବା ଜ୍ଞାନୀଭକ୍ତଙ୍କର ବାଚକ। ଏପରି ଭକ୍ତ ପରମାନନ୍ଦର ଅକ୍ଷୟ ଓ ଅନନ୍ତ ଭଣ୍ଡାର ଶ୍ରୀଭଗବାନଙ୍କୁ ପ୍ରତ୍ୟକ୍ଷ କରିନିଅନ୍ତି। ଏହି କାରଣରୁ ସେ ସଦା ସନ୍ତୁଷ୍ଟ ରହନ୍ତି। ସେ କୌଣସି ସମୟରେ କୌଣସି ଅବସ୍ଥାରେ, ସଂସାରର କୌଣସି ବସ୍ତୁର ଅଭାବରେ ଅସନ୍ତୁଷ୍ଟ ହୁଅନ୍ତି ନାହିଁ। ସେ ପୂର୍ଣ୍ଣକାମ ହୋଇଯାଆନ୍ତି; ତେଣୁ ସଂସାରର କୌଣସି ଘଟଣାରେ ବି ତାଙ୍କ ଠାରେ ସନ୍ତୋଷର ଅଭାବ ହୁଏ ନାହିଁ। ଏହା ହିଁ ତାଙ୍କର ନିରନ୍ତର ସନ୍ତୁଷ୍ଟ ରହିବା।

ସଂସାରୀ ମନୁଷ୍ୟମାନଙ୍କର ଯେଉଁ ସନ୍ତୋଷ ହୁଏ, ତାହା କ୍ଷଣିକ। ଯେଉଁ କାମନାର ପୂର୍ତ୍ତିରେ ସେମାନଙ୍କର ସନ୍ତୋଷ ହୁଏ, ତାହା କମ୍ ହେବା କ୍ଷଣି, ପୁନର୍ବାର ଅସନ୍ତୋଷ ଉତ୍ପନ୍ନ ହୋଇଯାଏ। ଅତଏବ ସେମାନେ ସଦା ସନ୍ତୁଷ୍ଟ ରହିପାରନ୍ତି ନାହିଁ।

**ପ୍ରଶ୍ନ – ଯତାତ୍ମା**ର ଅର୍ଥ କଣ? ଏହା କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ଯେ ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବି ଜୟ କରିଛନ୍ତି, ତାହାଙ୍କୁ **ଯତାତ୍ମା** କହନ୍ତି। ଭଗବାନଙ୍କ ଜ୍ଞାନୀଭକ୍ତମାନଙ୍କର ମନ ଓ ଇନ୍ଦ୍ରିୟ ସହିତ ଶରୀର ସଦା ହିଁ ବଶ ହୋଇ ରହିଥାଏ। ସେମାନେ କେବେ ବି ମନ ଓ ଇନ୍ଦ୍ରିୟମାନଙ୍କ ବଶରେ ରହନ୍ତି ନାହିଁ। ତେଣୁ ସେମାନଙ୍କ ଠାରେ କୌଣସିପ୍ରକାର ଦୁର୍ଗୁଣ ଓ ଦୁରାଚାରର ସମ୍ଭାବନା ନ ଥାଏ। ଏହି ଭାବ ଦେଖାଇବାକୁ ଏହା ପ୍ରୟୋଗ କରାଯାଇଛି।

**ପ୍ରଶ୍ନ – ଦୃଢ଼ନିଶ୍ଚୟଃ** ପଦ କାହାର ବାଚକ ?

**ଉତ୍ତର –** ଯେ ବୁଦ୍ଧିଦ୍ୱାରା ପରମେଶ୍ୱରଙ୍କ ସ୍ୱରୂପକୁ ଭଲଭାବରେ ସ୍ଥିର କରିନେଇଛନ୍ତି, ଯାହାଙ୍କୁ ସର୍ବତ୍ର ଭଗବାନଙ୍କର ପ୍ରତ୍ୟକ୍ଷ ଅନୁଭବ ହୁଏ ତଥା ଗୁଣ, କର୍ମ ଓ ଦୁଃଖ ଆଦିହେତୁ ଯାହାଙ୍କର ବୁଦ୍ଧି ପରମାତ୍ମାଙ୍କ ସ୍ୱରୂପରୁ କେବେ ବି କୌଣସିପ୍ରକାରେ ବିଚଳିତ ହୋଇପାରେ ନାହିଁ, ତାହାଙ୍କୁ **ଦୃଢ଼ନିଶ୍ଚୟ** କହନ୍ତି।

**ପ୍ରଶ୍ନ –** ଭଗବାନଙ୍କ ଠାରେ ମନ-ବୁଦ୍ଧି ଅର୍ପଣ କରିଦେବା କଣ ?

**ଉତ୍ତର –** ନିତ୍ୟନିରନ୍ତର ମନରେ ଭଗବାନଙ୍କ ସ୍ୱରୂପ ଚିନ୍ତନ କରୁ କରୁ ଏବଂ ବୁଦ୍ଧିଦ୍ୱାରା ତାହା ନିଶ୍ଚୟ କରୁ କରୁ ଭଗବାନଙ୍କ ସ୍ୱରୂପରେ ସବୁଦିନ ପାଇଁ ମନ ଓ ବୁଦ୍ଧି ତନ୍ମୟ ହୋଇଯିବା ହିଁ ଭଗବାନଙ୍କ ଠାରେ ମନବୁଦ୍ଧି ଅର୍ପଣ କରିଦେବା।

**ପ୍ରଶ୍ନ –** 'ମୋର ସେହି ଭକ୍ତ ମୋର ପ୍ରିୟ ଅଟନ୍ତି', -- ଏ କଥନର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଯାହାଙ୍କର ଭଗବାନଙ୍କ ଠାରେ ଅହେତୁକ ଓ ଅନନ୍ୟ ପ୍ରେମ ରହିଛି, ଯାହାଙ୍କର ଭଗବାନଙ୍କ ସ୍ୱରୂପରେ ଅଟଳ ସ୍ଥିତି ହୋଇଯାଇଛି, ଯାହାଙ୍କର କେବେହେଲେ ଭଗବାନଙ୍କ ଠାରୁ ବିୟୋଗ ହୁଏ ନାହିଁ, ଯାହାଙ୍କର ମନ ଓ ବୁଦ୍ଧି ଭଗବାନଙ୍କୁ ଅର୍ପିତ ହୋଇଛି, ଭଗବାନ୍ ହିଁ ଯାହାଙ୍କର ଜୀବନ, ଧନ, ପ୍ରାଣ ଏବଂ ସର୍ବସ୍ୱ ଅଟନ୍ତି, ଯେ ଭଗବାନଙ୍କ ହାତରେ କାଠକଣ୍ଢେଇ ଅଟନ୍ତି, ସେପରି ଜ୍ଞାନୀଭକ୍ତଙ୍କୁ ଭଗବାନ୍ ନିଜର ପ୍ରିୟ ବୋଲି କହିଛନ୍ତି।

## ଯସ୍ମାନ୍ନୋଦ୍ୱିଜତେ ଲୋକୋ ଲୋକାନ୍ନୋଦ୍ୱିଜତେ ଚ ଯଃ।
## ହର୍ଷାମର୍ଷଭୟୋଦ୍‌ବେଗୈର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ॥ ୧୫ ॥

ଅନ୍ୱୟ – ଯସ୍ମାତ୍ = ଯାହାଙ୍କ ଦ୍ୱାରା; **ଲୋକଃ** = କୌଣସି ବି ଜୀବ; **ନ**, **ଉଦ୍‌ବିଜତେ** = ଉଦ୍‌ବିଗ୍ନ ହୁଏ ନାହିଁ; **ଚ** = ଓ; **ଯଃ** = ଯେ ନିଜେ ମଧ; **ଲୋକାତ୍** = କୌଣସି ଜୀବହେତୁ; **ନ**, **ଉଦ୍‌ବିଜତେ** = ଉଦ୍‌ବିଗ୍ନ ହୁଅନ୍ତି ନାହିଁ; **ଚ** = ତଥା **ଯଃ** = ଯେ; **ହର୍ଷାମର୍ଷଭୟୋଦ୍‌ବେଗୈଃ** = ହର୍ଷ, ଅମର୍ଷ, ଭୟ ଏବଂ ଉଦ୍‌ବେଗାଦିରୁ; **ମୁକ୍ତଃ** = ରହିତ ଅଟନ୍ତି; **ସଃ** = ସେହି ଭକ୍ତ; **ମେ** = ମୋର; **ପ୍ରିୟଃ** = ପ୍ରିୟ।

**ଯାହାଙ୍କ ଦ୍ୱାରା କୌଣସି ବି ଜୀବ ଉଦ୍‌ବିଗ୍ନ ହୁଏ ନାହିଁ, କି ସେ ନିଜେ କୌଣସି ଜୀବଦ୍ୱାରା ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ତଥା ଯେ ହର୍ଷ, ଅମର୍ଷ, ଭୟ ଓ ଉଦ୍‌ବେଗାଦିରୁ ରହିତ ସେହି ଭକ୍ତ ମୋର ପ୍ରିୟ ଅଟନ୍ତି॥ ୧୫ ॥**

**ପ୍ରଶ୍ନ —** 'ଯାହାଙ୍କ ଦ୍ୱାରା କୌଣସି ବି ଜୀବ ଉଦ୍‌ବିଗ୍ନ ହୁଏ ନାହିଁ'— ଏ କଥାର ଅଭିପ୍ରାୟ କଣ ? ଭକ୍ତ ଜାଣିଶୁଣି କାହାକୁ ଉଦ୍‌ବିଗ୍ନ କରନ୍ତି ନାହିଁ, ନା ତାଙ୍କ ଦ୍ୱାରା କାହାର ଉଦ୍‌ବେଗ (କ୍ଷୋଭ) ହୁଏ ନାହିଁ ?

**ଉତ୍ତର —** ସର୍ବତ୍ର ଭଗବଦ୍‌ବୁଦ୍ଧି ହୋଇଥିବାରୁ ଭକ୍ତ ତ ଜାଣିଶୁଣି କାହାକୁ ଦୁଃଖ, ସନ୍ତାପ, ଭୟ ଓ କ୍ଷୋଭ ଦେଇ ନ ପାରନ୍ତି, ବରଂ ତାଙ୍କ ଦ୍ୱାରା ସ୍ୱାଭାବିକଭାବରେ ହିଁ ସମସ୍ତଙ୍କର କେବଳ ସେବା ଓ ପରମ ହିତ ହୋଇଥାଏ । ଅତଏବ ତାଙ୍କ ପକ୍ଷରୁ କାହାର କେବେ ଉଦ୍‌ବେଗ ନ ହେବା ଉଚିତ । ଯଦି ଭୁଲବଶତଃ କାହାର କେବେ ଉଦ୍‌ବେଗ ହୁଏ, ତେବେ ତା'ଠାରେ ଥିବା ତା'ନିଜର ଅଜ୍ଞାନଜନିତ ରାଗ, ଦ୍ୱେଷ ଓ ଈର୍ଷ୍ୟାଦି ଦୋଷ ହିଁ ତା' ଉଦ୍‌ବେଗର ପ୍ରଧାନ କାରଣ; ଭଗବଦ୍‌ଭକ୍ତ ତା' ଉଦ୍‌ବେଗର କାରଣ ନୁହଁନ୍ତି; କାରଣ ଯେ ଦୟା ଓ ପ୍ରେମର ମୂର୍ତ୍ତି, ଅନ୍ୟର ହିତ କରିବା ହିଁ ଯାହାଙ୍କର ସ୍ୱଭାବ, ସେପରି ପରମଦୟାଳୁ ପ୍ରେମୀ ଭଗବତ୍‌ପ୍ରାପ୍ତ ଭକ୍ତ ତ କଦାପି କାହାର ଉଦ୍‌ବେଗର କାରଣ ହୋଇ ନ ପାରନ୍ତି ।

**ପ୍ରଶ୍ନ —** ଭକ୍ତଙ୍କୁ ଅନ୍ୟ କୌଣସି ପ୍ରାଣୀଠାରୁ କାହିଁକି ଉଦ୍‌ବେଗ ହୁଏ ନାହିଁ ? ତାଙ୍କୁ କୌଣସି ପ୍ରାଣୀ ଦୁଃଖ ଦିଏ ନାହିଁ, ନା ଦୁଃଖର କାରଣ ପ୍ରାପ୍ତ ହେଲେ ମଧ୍ୟ ତାଙ୍କର ଉଦ୍‌ବେଗ ହୁଏ ନାହିଁ ?

**ଉତ୍ତର —** ଭଗବତ୍‌ପ୍ରାପ୍ତ ଜ୍ଞାନୀଭକ୍ତଙ୍କର ସମସ୍ତଙ୍କ ଠାରେ ସମଭାବ ହୋଇଯାଏ । ଏହି କାରଣରୁ ସେ ଜାଣିଶୁଣି ନିଜ ଆଡୁ ଏପରି କୌଣସି ବି କାର୍ଯ୍ୟ କରନ୍ତି ନାହିଁ, ଯାହାଦ୍ୱାରା କି ତାଙ୍କ ସହିତ କାହାର ଦ୍ୱେଷ ହେବ । ଅତଏବ ଅନ୍ୟ ଲୋକମାନେ ମଧ୍ୟ ପ୍ରାୟଃ ତାଙ୍କୁ କୌଣସି ଦୁଃଖ ଦେଲାଭଳି ଆଚରଣ କରନ୍ତି ନାହିଁ । ତଥାପି ସର୍ବଥା ଏ କଥା କୁହାଯାଇ ନ ପାରେ ଯେ, ଅନ୍ୟ କୌଣସି ପ୍ରାଣୀ ତାଙ୍କର ଶାରୀରିକ ଓ ମାନସିକ ପୀଡ଼ାର କାରଣ ହୋଇ ନ ପାରେ । ଅତଏବ ଏହା ବୁଝିବା ଉଚିତ ଯେ, ଜ୍ଞାନୀ ଭକ୍ତଙ୍କୁ ମଧ୍ୟ ପ୍ରାରବ୍ଧ ଅନୁସାରେ ପର-ଇଚ୍ଛାଯୋଗୁଁ ଦୁଃଖ ଆସିପାରେ; ପରନ୍ତୁ ତାଙ୍କ ଠାରେ ରାଗ-ଦ୍ୱେଷର ସର୍ବଥା ଅଭାବ ହୋଇଯିବାରୁ ଯେତେ ବଡ଼ ଦୁଃଖ ଆସିଲେ ମଧ୍ୟ, ସେ ବିଚଳିତ ହୁଅନ୍ତି ନାହିଁ (୬/୨୨) । ତେଣୁ ଜ୍ଞାନୀଭକ୍ତଙ୍କ ଠାରେ କୌଣସି ପ୍ରାଣୀଠାରୁ କୌଣସି ଉଦ୍‌ବେଗ ହୁଏ ନାହିଁ ।

**ପ୍ରଶ୍ନ —** ଭକ୍ତଙ୍କର ଉଦ୍‌ବେଗ ହୁଏ ନାହିଁ ବୋଲି ତ ଶ୍ଳୋକର ପୂର୍ବାର୍ଦ୍ଧରେ କୁହାଯାଇଛି; ଉତ୍ତରାର୍ଦ୍ଧରେ ପୁଣି ଥରେ ଉଦ୍‌ବେଗରୁ ମୁକ୍ତ ହେବା କଥା କହିବାର ଅଭିପ୍ରାୟ କଣ ?

**ଉତ୍ତର —** ପୂର୍ବାର୍ଦ୍ଧରେ କେବଳ ଅନ୍ୟ ପ୍ରାଣୀଠାରୁ ତାଙ୍କୁ ଉଦ୍‌ବେଗ ହୁଏ ନାହିଁ ବୋଲି କୁହାଯାଇଛି । ଏହାଦ୍ୱାରା ପର-ଇଚ୍ଛାଜନିତ ଉଦ୍‌ବେଗର ନିବୃତ୍ତି ତ ହେଲା, କିନ୍ତୁ ଅନିଚ୍ଛାରୁ ଓ ସ୍ୱେଚ୍ଛାରୁ ପ୍ରାପ୍ତ ଘଟଣା ଓ ପଦାର୍ଥରେ ମଧ୍ୟ ତ ମନୁଷ୍ୟକୁ ଉଦ୍‌ବେଗ ହୋଇଥାଏ; ଏଣୁ ଉତ୍ତରାର୍ଦ୍ଧରେ ପୁଣି ଥରେ ଉଦ୍‌ବେଗରୁ ମୁକ୍ତ ହେବା କଥା କହି ଭଗବାନ୍ ଏହା ସିଦ୍ଧ କରୁଛନ୍ତି ଯେ, ଭକ୍ତଙ୍କୁ କେବେ କୌଣସିପ୍ରକାର ଉଦ୍‌ବେଗ ହୁଏ ନାହିଁ ।

**ପ୍ରଶ୍ନ —** ହର୍ଷ ଓ ଉଦ୍‌ବେଗରୁ ମୁକ୍ତ ବୋଲି କହିବା ଦ୍ୱାରା ମଧ୍ୟ ଭକ୍ତଙ୍କର ନିର୍ବିକାରତା ହିଁ ସିଦ୍ଧ ହୋଇଯାଉଛି; ପୁଣି ଅମର୍ଷ ଓ ଭୟରୁ ମୁକ୍ତ ହେବା କଥା କାହିଁକି କୁହାଗଲା ?

**ଉତ୍ତର —** ହର୍ଷ ଓ ଉଦ୍‌ବେଗରୁ ମୁକ୍ତ ଅଟନ୍ତି ବୋଲି କହିଦେବା ଦ୍ୱାରା ନିର୍ବିକାରତା ତ ସିଦ୍ଧ ହୋଇଯାଉଛି; କିନ୍ତୁ ସମସ୍ତ ବିକାରମାନଙ୍କର ଅତ୍ୟନ୍ତାଭାବ ସ୍ପଷ୍ଟ ହେଉ ନାହିଁ । ଏଣୁ ଭକ୍ତଙ୍କ ଠାରେ ସମସ୍ତ ବିକାରର ଅତ୍ୟନ୍ତ ଅଭାବ ହୁଏ, ଏ କଥାଟି ବିଶେଷ ସ୍ପଷ୍ଟ କରିବା ପାଇଁ ଅମର୍ଷ ଓ ଭୟର ମଧ୍ୟ ଅଭାବ ହୁଏ ବୋଲି କୁହାଗଲା ।

ଅଭିପ୍ରାୟ ଏହି ଯେ, ବସ୍ତୁତଃ ନିଜର ଅଭିଳଷିତ ମାନ, ବଡ଼ିମା ଓ ଧନ ଆଦି ବସ୍ତୁ ପ୍ରାପ୍ତ ହେଲେ ମନୁଷ୍ୟକୁ ଯେପରି ହର୍ଷ ହୁଏ, ନିଜ ସମାନ ବା ନିଜଠାରୁ ବଡ଼ ଅନ୍ୟମାନଙ୍କୁ ମଧ୍ୟ ସେହିସବୁ ବସ୍ତୁ ପ୍ରାପ୍ତ ହେବା ଦେଖି ସେହିପରି ପ୍ରସନ୍ନ ହେବା ଉଚିତ । କିନ୍ତୁ ପ୍ରାୟତଃ ସେପରି ନ ହୋଇ ଅଜ୍ଞାନଯୋଗୁଁ ଲୋକଙ୍କୁ ଓଲଟି ଅମର୍ଷ ହୁଏ ଏବଂ ଏହି ଅମର୍ଷ ବିବେକଶୀଳ ପୁରୁଷମାନଙ୍କ ଚିତ୍ତରେ ମଧ୍ୟ ଦେଖାଯାଏ । ଠିକ୍ ସେହିପରି ଇଚ୍ଛା, ନୀତି ଓ ଧର୍ମବିରୁଦ୍ଧ ପଦାର୍ଥ ପ୍ରାପ୍ତ ହେଲେ ଉଦ୍‌ବେଗ ହେବା, ତଥା ନୀତି ଓ ଧର୍ମର ଅନୁକୂଳ ହୋଇ ମଧ୍ୟ ଦୁଃଖପ୍ରଦ ପଦାର୍ଥ ପ୍ରାପ୍ତ ହେଲେ ବା ତା'ର ଆଶଙ୍କା ଥିଲେ ଭୟ ହେବା ଦେଖାଯାଏ । ସାଧାରଣ ଲୋକଙ୍କ କଥା କଣ କହିବା, ବିବେକୀମାନଙ୍କର ମଧ୍ୟ ମୃତ୍ୟୁଭୟ ହୁଏ । କିନ୍ତୁ ଭଗବାନଙ୍କ ଜ୍ଞାନୀଭକ୍ତଙ୍କର ସର୍ବତ୍ର ଭଗବତ୍‌ବୁଦ୍ଧି ହୋଇଯାଏ ଏବଂ ସେ ସମସ୍ତ କ୍ରିୟାକୁ

ଭଗବାନଙ୍କର ଲୀଳା ବୋଲି ବୁଝନ୍ତି। ତେଣୁ ଜ୍ଞାନୀ ଭକ୍ତଙ୍କର ଅମର୍ଷ ହୁଏ ନାହିଁ, କି ଉଦ୍‌ବେଗ ହୁଏ ନାହିଁ, କି ଭୟ ବି ହୁଏ ନାହିଁ— ଏହି ଭାବ ଦେଖାଇବା ପାଇଁ ଏପରି କୁହାଯାଇଛି।

**ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ।**
**ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ॥ ୧୬ ॥**

**ଅନ୍ୱୟ—** **ଯଃ** = ଯେ; **ଅନପେକ୍ଷଃ** = ଆକାଙ୍‌କ୍ଷାରହିତ; **ଶୁଚିଃ** = ବାହାରେ ଓ ଭିତରେ ଶୁଦ୍ଧ; **ଦକ୍ଷଃ** = ଦକ୍ଷ; **ଉଦାସୀନଃ** = ପକ୍ଷପାତରହିତ (ଓ); **ଗତବ୍ୟଥଃ** = ଦୁଃଖରୁ ମୁକ୍ତ; **ସଃ** = ସେହି; **ସର୍ବାରମ୍ଭପରିତ୍ୟାଗୀ** = ସର୍ବାରମ୍ଭତ୍ୟାଗୀ; **ମଦ୍‌ଭକ୍ତଃ** = ମୋର ଭକ୍ତ; **ମେ** = ମୋର; **ପ୍ରିୟଃ** = ପ୍ରିୟ।

**ଯେ ଆକାଙ୍‌କ୍ଷାରହିତ, ବାହାରେ ଓ ଭିତରେ ଶୁଦ୍ଧ, ଦକ୍ଷ, ପକ୍ଷପାତରହିତ ଓ ଦୁଃଖରୁ ମୁକ୍ତ ଅଟନ୍ତି, ସେହି ସର୍ବାରମ୍ଭତ୍ୟାଗୀ ଭକ୍ତ ମୋର ପ୍ରିୟ॥ ୧୬ ॥**

**ପ୍ରଶ୍ନ—** 'ଆକାଂକ୍ଷାରହିତ' କହିବାର ଅଭିପ୍ରାୟ କଣ ?

**ଉତ୍ତର—** ପରମାତ୍ମପ୍ରାପ୍ତ ଭକ୍ତଙ୍କର କୌଣସି ବି ବସ୍ତୁରେ ତିଳେମାତ୍ର ପ୍ରୟୋଜନ ରହେ ନାହିଁ। ଅତଏବ ତାଙ୍କର କୌଣସିପ୍ରକାରର କିଞ୍ଚିତମାତ୍ର ବି ଇଚ୍ଛା, ସ୍ପୃହା ଅଥବା ବାସନା ନ ଥାଏ। ସେ ପୂର୍ଣ୍ଣକାମ ହୋଇଯାଇଥାନ୍ତି। ଏହି ଭାବ ଦେଖାଇବାକୁ ତାଙ୍କୁ ଆକାଂକ୍ଷାରହିତ ବୋଲି କୁହାଯାଇଛି।

**ପ୍ରଶ୍ନ—** ଇଚ୍ଛା ବା ଆବଶ୍ୟକତା ବିନା ତ ମନୁଷ୍ୟଦ୍ୱାରା କୌଣସିପ୍ରକାର ବି କ୍ରିୟା ହୋଇ ନ ପାରେ ଏବଂ କ୍ରିୟା ବିନା ଜୀବନନିର୍ବାହ ସମ୍ଭବ ନୁହେଁ, ତେବେ ଏପରି ଭକ୍ତଙ୍କ ଜୀବନର କିପରି ନିର୍ବାହ ହୁଏ ?

**ଉତ୍ତର—** ଇଚ୍ଛା ଓ ଆବଶ୍ୟକତା ନ ଥାଇ ମଧ୍ୟ ପ୍ରାରବ୍ଧହେତୁକ କ୍ରିୟା ହୋଇପାରେ। ଅତଏବ ତାଙ୍କର ଜୀବନ ପ୍ରାରବ୍ଧଦ୍ୱାରା ଚଳେ। ଅଭିପ୍ରାୟ ଏହି ଯେ, ତାଙ୍କର ମନ, ବାଣୀ ଓ ଶରୀରଦ୍ୱାରା ପ୍ରାରବ୍ଧ ଅନୁସାରେ ସମସ୍ତ କ୍ରିୟା ବିନା-ଇଚ୍ଛା, ସ୍ପୃହା ଓ ସଂକଳ୍ପରେ ସ୍ୱାଭାବିକରୂପେ ହୋଇଥାଏ (୪/୧୯)। ତେଣୁ ତାଙ୍କର ଜୀବନନିର୍ବାହରେ କୌଣସିପ୍ରକାର ଅସୁବିଧା ହୁଏ ନାହିଁ।

**ପ୍ରଶ୍ନ—** ଭଗବାନଙ୍କର ଭକ୍ତ ବାହାରେ ଓ ଭିତରେ ଶୁଦ୍ଧ ହୋଇଥାନ୍ତି। ତାଙ୍କର ସେହି ଶୁଦ୍ଧିର ସ୍ୱରୂପ କଣ ?

**ଉତ୍ତର—** ଭଗବାନଙ୍କ ଭକ୍ତଙ୍କ ଠାରେ ପବିତ୍ରତାର ପରାକାଷ୍ଠା ରହିଥାଏ। ତାଙ୍କର ମନ, ବୁଦ୍ଧି, ଇନ୍ଦ୍ରିୟ, ଆଚରଣ ଓ ଶରୀର ଆଦି ଏତେ ପବିତ୍ର ହୋଇଯାଏ ଯେ, ତାଙ୍କ ସହିତ ବାର୍ତ୍ତାଳାପ ହେବା କଥା କଣ କହିବା, ତାଙ୍କ ଦର୍ଶନ ଓ ସ୍ପର୍ଶମାତ୍ରେ ହିଁ ଅନ୍ୟମାନେ ପବିତ୍ର ହୋଇଯାଆନ୍ତି। ଏପରି ଭକ୍ତ ଯେଉଁଠି ନିବାସ କରନ୍ତି, ସେହି ସ୍ଥାନ ପବିତ୍ର ହୋଇଯାଏ ଏବଂ ତାଙ୍କର ସଙ୍ଗପ୍ରଭାବରେ ସେଠାର ବାୟୁମଣ୍ଡଳ, ଜଳ, ସ୍ଥଳ, ଆଦି ସବୁ ପବିତ୍ର ହୋଇଯାଏ।

**ପ୍ରଶ୍ନ—** ଦକ୍ଷ ଶବ୍ଦର ଭାବ କଣ ?

**ଉତ୍ତର—** ଯେଉଁ ଉଦ୍ଦେଶ୍ୟ ପୂର୍ଣ୍ଣ କରିବାକୁ ମନୁଷ୍ୟଶରୀର ମିଳିଛି, ସେହି ଉଦ୍ଦେଶ୍ୟ ପୂର୍ଣ୍ଣ କରିନେବା ହିଁ ଯଥାର୍ଥ ଦକ୍ଷତା। ଅନନ୍ୟଭକ୍ତିଦ୍ୱାରା ପରମପ୍ରେମୀ, ସମସ୍ତଙ୍କର ସୁହୃଦ୍, ସର୍ବେଶ୍ୱର ପରମେଶ୍ୱରଙ୍କୁ ଲାଭ କରିବା ହିଁ ମନୁଷ୍ୟଜନ୍ମର ପ୍ରଧାନ ଉଦ୍ଦେଶ୍ୟ ପୂର୍ଣ୍ଣ କରିବା। ଜ୍ଞାନୀଭକ୍ତ ଭଗବାନଙ୍କୁ ପାଇଥାନ୍ତି— ଏହି ଭାବ ଦେଖାଇବାକୁ ତାଙ୍କୁ ଦକ୍ଷ ବୋଲି କୁହାଯାଇଛି।

**ପ୍ରଶ୍ନ—** ପକ୍ଷପାତରହିତ ହେବା କଣ ?

**ଉତ୍ତର—** ନ୍ୟାୟାଳୟରେ ସାକ୍ଷ୍ୟ ଦେବା ସମୟରେ ଅଥବା ପଞ୍ଚାୟତର ବା ନ୍ୟାୟାଳୟର କର୍ତ୍ତାରୂପେ କାହାର ଝଗଡ଼ା ତୁଟାଇବା ସମୟରେ ବା ଏହିପରି ଅନ୍ୟ କୌଣସି ସୁଯୋଗ ମିଳିଲେ ନିଜ ପରିବାର, ବନ୍ଧୁବାନ୍ଧବ ବା ମିତ୍ର ଆଦିଙ୍କ ସପକ୍ଷରେ ବା ବିପକ୍ଷରେ ମତ ଦେବା ବା ଅନ୍ୟ କୌଣସି କାରଣରୁ ମଧ୍ୟ ମିଥ୍ୟାସାକ୍ଷ୍ୟ ଦେବା, ନ୍ୟାୟବିରୁଦ୍ଧ ରାୟ ଦେବା ବା ଅନ୍ୟ କୌଣସିପ୍ରକାରେ କାହାର ଅନୁଚିତ ଲାଭ କିମ୍ବା ହାନି ଉଦ୍ଦେଶ୍ୟରେ ଚେଷ୍ଟା କରିବାକୁ ପକ୍ଷପାତ ବୋଲାଯାଏ। ଏଥିରୁ ରହିତ ହେବା ହିଁ ପକ୍ଷପାତରହିତ ହେବା।

**ପ୍ରଶ୍ନ—** ଭଗବାନଙ୍କ ଭକ୍ତ ସବୁପ୍ରକାର ଦୁଃଖରୁ ମୁକ୍ତ ରହନ୍ତି ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ମୂଳ ଶ୍ଳୋକରେ **ଗତବ୍ୟଥଃ** ପଦ ଆସିଛି। ଏହାଦ୍ୱାରା ଭଗବାନଙ୍କର ଅଭିପ୍ରାୟ ପ୍ରତୀତ ହେଉଛି ଯେ, କୌଣସିପ୍ରକାର ଦୁଃଖ ଆସି ପହଞ୍ଚିଲେ

ମଧ୍ୟ, ସେ ସେଥିରେ ଦୁଃଖୀ ହୁଅନ୍ତି ନାହିଁ ଅର୍ଥାତ୍ ତାଙ୍କର ଅନ୍ତଃକରଣରେ କୌଣସିପ୍ରକାର ଚିନ୍ତା, ଦୁଃଖ ବା ଶୋକ ହୁଏ ନାହିଁ। ଭାବ ଏହି ଯେ, ଶରୀରରେ ରୋଗ ଆଦି ହେବା, ସ୍ତ୍ରୀ-ପୁତ୍ର ଆଦିଙ୍କର ବିୟୋଗ ଘଟିବା ଓ ଧନ-ଗୃହ ଆଦି ନାଶ ହେବା ଇତ୍ୟାଦି ଦୁଃଖର ହେତୁ ପ୍ରାରବ୍ଧ ଅନୁସାରେ ପ୍ରାପ୍ତ ହୁଏ; କିନ୍ତୁ ଏସବୁ ଦୁଃଖ ଆସିଗଲେ ମଧ୍ୟ ତାଙ୍କର ଅନ୍ତଃକରଣରେ କୌଣସିପ୍ରକାର ବିକାର ହୁଏ ନାହିଁ।

**ପ୍ରଶ୍ନ — ସର୍ବାରମ୍ଭପରିତ୍ୟାଗୀର** ଭାବ କଣ ?

**ଉତ୍ତର —** ସଂସାରରେ ଯାହା କିଛି ବି ହେଉଛି, ସବୁ ଭଗବାନଙ୍କର ଲୀଳା, ସବୁ ତାଙ୍କ ମାୟାଶକ୍ତିର ଖେଳ; ସେ ଯାହାଦ୍ୱାରା ଯେତେବେଳେ ଯେପରି କରାଇବାକୁ ଚାହାଁନ୍ତି, ସେପରି କରାଉଛନ୍ତି। 'ମୁଁ ଅମୁକ କର୍ମ କରୁଛି; ମୋର ଏପରି ସାମର୍ଥ୍ୟ ଅଛି' ବୋଲି ମନୁଷ୍ୟ ମିଥ୍ୟା ଅଭିମାନ କରେ। କିନ୍ତୁ ଭଗବାନଙ୍କ ଭକ୍ତ ଏହି ରହସ୍ୟକୁ ଭଲରୂପେ ଜାଣିଥାନ୍ତି; ତେଣୁ ସେ ସବୁବେଳେ ଭଗବାନଙ୍କ ହାତର କାଠକଣ୍ଢେଇ ହୋଇ ରହନ୍ତି। ଭଗବାନ୍ ତାଙ୍କୁ ଯେବେ ଯେପରି ନଚାନ୍ତି, ସେ ଆନନ୍ଦରେ ସେହିପରି ନାଚନ୍ତି। ସେ ତିଳେମାତ୍ର ଅଭିମାନ ରଖନ୍ତି ନାହିଁ ଏବଂ ନିଜ ପକ୍ଷରୁ କିଛି ବି କରନ୍ତି ନାହିଁ। ଅତଏବ ସେ ଲୋକଦୃଷ୍ଟିରେ ସବୁ କିଛି କରୁଥିଲେ ମଧ୍ୟ ବସ୍ତୁତଃ କର୍ତ୍ତାପଣ ଅଭିମାନରୁ ରହିତ ହୋଇଥିବାରୁ **ସର୍ବାରମ୍ଭପରିତ୍ୟାଗୀ** ହିଁ ଅଟନ୍ତି।

**ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍କ୍ଷତି।**
**ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ।। ୧୭ ।।**

**ଅନ୍ୱୟ — ଯଃ** = ଯେ; **ନ, ହୃଷ୍ୟତି** = (କେବେ) ହର୍ଷିତ ହୁଅନ୍ତି ନାହିଁ; **ନ, ଦ୍ୱେଷ୍ଟି** = ଦ୍ୱେଷ କରନ୍ତି ନାହିଁ; **ନ, ଶୋଚତି** = ଶୋକ କରନ୍ତି ନାହିଁ; **ନ, କାଙ୍କ୍ଷତି** = (କି) କାମନା କରନ୍ତି ନାହିଁ; **ଯଃ** = (ତଥା) ଯେ; **ଶୁଭାଶୁଭପରିତ୍ୟାଗୀ** = କି ଶୁଭ, କି ଅଶୁଭ ସକଳ କର୍ମର ତ୍ୟାଗୀ; **ସଃ** = ସେହି; **ଭକ୍ତିମାନ୍** = ଭକ୍ତିମାନ୍ ପୁରୁଷ; **ମେ, ପ୍ରିୟଃ** = ମୋର ପ୍ରିୟ।

**ଯେ କେବେ ହର୍ଷିତ ହୁଅନ୍ତି ନାହିଁ, ଦ୍ୱେଷ କରନ୍ତି ନାହିଁ, ଶୋକ କରନ୍ତି ନାହିଁ, କି କାମନା କରନ୍ତି ନାହିଁ ତଥା ଯେ କି ଶୁଭ, କି ଅଶୁଭ ସକଳ କର୍ମର ତ୍ୟାଗୀ ଅଟନ୍ତି, ସେହି ଭକ୍ତିମାନ୍ ପୁରୁଷ ମୋର ପ୍ରିୟ।। ୧୭ ।।**

**ପ୍ରଶ୍ନ —** କେବେ ହର୍ଷିତ ନ ହେବା କଣ ଓ ଏହି ଲକ୍ଷଣଦ୍ୱାରା କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର —** ଇଷ୍ଟବସ୍ତୁର ପ୍ରାପ୍ତି ହେଲେ ଏବଂ ଅନିଷ୍ଟବସ୍ତୁର ବିୟୋଗ ହେଲେ ପ୍ରାଣୀମାନଙ୍କୁ ହର୍ଷ ହୋଇଥାଏ। ତେଣୁ କୌଣସି ବସ୍ତୁର ସଂଯୋଗ-ବିୟୋଗରେ ଅନ୍ତଃକରଣରେ ହର୍ଷର ବିକାର ନ ହେବା ହିଁ କେବେ ହର୍ଷିତ ନ ହେବା। ଜ୍ଞାନୀଭକ୍ତଙ୍କ ଭିତରେ ହର୍ଷରୂପୀ ବିକାରର ସର୍ବଥା ଅଭାବ ଦେଖାଇବାକୁ ଏହି ଲକ୍ଷଣ ବର୍ଣ୍ଣନା କରାଯାଇଛି। ଅଭିପ୍ରାୟ ଏହି କି, ସର୍ବଶକ୍ତିମାନ୍, ସର୍ବାଧାର ପରମଦୟାଳୁ ଭଗବାନ୍ ହିଁ ଭକ୍ତଙ୍କର ପରମ ପ୍ରିୟବସ୍ତୁ ଏବଂ ସେ ତାଙ୍କୁ ସର୍ବଦା ପ୍ରାପ୍ତ ଅଟନ୍ତି। ଅତଏବ ସେ ସଦାସର୍ବଦା ପରମାନନ୍ଦରେ ରହନ୍ତି; ସଂସାରର କୌଣସି ବସ୍ତୁରେ ତାଙ୍କର କିଞ୍ଚିତ୍ ମାତ୍ର ବି ରାଗଦ୍ୱେଷ ହୁଏ ନାହିଁ। ଏଣୁ ଲୋକଦୃଷ୍ଟିରୁ ହେଉଥିବା କୌଣସି ପ୍ରିୟବସ୍ତୁର ସଂଯୋଗରେ ବା ଅପ୍ରିୟର ବିୟୋଗରେ ତାଙ୍କ ଅନ୍ତଃକରଣରେ କେବେହେଲେ କିଞ୍ଚିତ୍ ମାତ୍ର ହର୍ଷବିକାର ହୁଏ ନାହିଁ।

**ପ୍ରଶ୍ନ —** 'ଭଗବାନଙ୍କର ଭକ୍ତ ଦ୍ୱେଷ କରନ୍ତି ନାହିଁ' — ଏହା କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଭଗବାନଙ୍କର ଭକ୍ତ ସମଗ୍ର ଜଗତକୁ ଭଗବାନଙ୍କର ସ୍ୱରୂପ ବୋଲି ବୁଝନ୍ତି। ତେଣୁ ତାଙ୍କର କୌଣସି ବି ବସ୍ତୁରେ ବା ପ୍ରାଣୀଠାରେ କେବେ କୌଣସି କାରଣରୁ ବି ଦ୍ୱେଷ ହୁଏ ନାହିଁ। ତାଙ୍କର ଅନ୍ତଃକରଣରୁ ଦ୍ୱେଷଭାବ ସବୁଦିନପାଇଁ ସର୍ବଥା ଦୂର ହୋଇଯାଇଥାଏ।

**ପ୍ରଶ୍ନ —** 'ଭଗବାନଙ୍କ ଭକ୍ତ କେବେ ଶୋକ କରନ୍ତି ନାହିଁ' — ଏହାର ଭାବ କଣ ?

**ଉତ୍ତର —** ତାଙ୍କ ଠାରେ ହର୍ଷର ବିକାର ଯେପରି ହୁଏ ନାହିଁ, ଶୋକର ବିକାର ମଧ୍ୟ ସେହିପରି ହୁଏ ନାହିଁ। ଅନିଷ୍ଟବସ୍ତୁର ପ୍ରାପ୍ତିରେ ଏବଂ ଇଷ୍ଟବସ୍ତୁର ବିୟୋଗରେ ପ୍ରାଣୀମାନଙ୍କୁ ଶୋକ ହୋଇଥାଏ। ଲୀଳାମୟ ପରମଦୟାଳୁ

ପରମେଶ୍ୱରଙ୍କ ଦୟାରେ ପରିପୂର୍ଣ୍ଣ ହୋଇଥିବା କୌଣସି ବି ବିଧାନରେ ଭଗବଦ୍‌ଭକ୍ତଙ୍କୁ କେବେ ହେଲେ ପ୍ରତିକୂଳତା ପ୍ରତୀତ ହୁଏ ନାହିଁ। ଭଗବାନଙ୍କ ଲୀଳାର ରହସ୍ୟ ବୁଝିଥିବାରୁ ସେ ପ୍ରତି ମୁହୂର୍ତ୍ତରେ ପରମାନନ୍ଦସ୍ୱରୂପ ଅନୁଭବରେ ମଗ୍ନ ରହନ୍ତି। ଏପରି ଅବସ୍ଥାରେ ତାଙ୍କୁ ଶୋକ କିପରି ହୋଇପାରିବ ?

ଆହୁରି ବି ଗୋଟିଏ କଥା ଅଛି— ସର୍ବବ୍ୟାପୀ, ସର୍ବାଧାର, ଭଗବାନ୍ ହିଁ ତାଙ୍କର ସର୍ବୋତ୍ତମ ପରମପ୍ରିୟ ବସ୍ତୁ ଏବଂ ଭଗବାନଙ୍କ ସହିତ ତାଙ୍କର କେବେ ବି ବିୟୋଗ ହୁଏ ନାହିଁ ତଥା ସାଂସାରିକ ବସ୍ତୁମାନଙ୍କର ଉତ୍ପତ୍ତି-ବିନାଶରେ ତାଙ୍କର କିଛି ଯାଏ ଆସେ ନାହିଁ। ଏହି କାରଣରୁ ମଧ୍ୟ ଲୋକଦୃଷ୍ଟିରୁ ହେଉଥିବା ପ୍ରିୟ ବସ୍ତୁମାନଙ୍କର ବିୟୋଗରେ ବା ଅପ୍ରିୟ ବସ୍ତୁମାନଙ୍କର ସଂଯୋଗରେ ତାଙ୍କୁ କୌଣସିପ୍ରକାର ଶୋକ ହୁଏ ନାହିଁ।

**ପ୍ରଶ୍ନ—** ଭଗବାନଙ୍କ ଭକ୍ତ କେବେ ବି କୌଣସି ବସ୍ତୁ ଆକାଙ୍‌କ୍ଷା କରନ୍ତି ନାହିଁ କାହିଁକି ?

**ଉତ୍ତର—** ମନୁଷ୍ୟର ମନରେ ଯେଉଁ ଇଷ୍ଟ ବସ୍ତୁମାନଙ୍କ ଅଭାବ ଅନୁଭୂତ ହୁଏ, ସେ ସେହି ବସ୍ତୁମାନଙ୍କୁ ଆକାଙ୍‌କ୍ଷା କରେ। ଭଗବାନଙ୍କ ଭକ୍ତଙ୍କୁ ସାକ୍ଷାତ୍ ଭଗବତ୍‌ପ୍ରାପ୍ତି ହୋଇଥିବାରୁ ସେ ସବୁଦିନ ପାଇଁ ପରମାନନ୍ଦ ଓ ପରମଶାନ୍ତିରେ ରହି ପୂର୍ଣ୍ଣକାମ ହୋଇଯାନ୍ତି। ତାଙ୍କ ମନରେ କେବେ କୌଣସି ବସ୍ତୁର ଅଭାବ ଅନୁଭବ ହୁଏ ନାହିଁ; ତାଙ୍କର ସମସ୍ତ ଆବଶ୍ୟକତା ନଷ୍ଟ ହୋଇଯାଏ। ସେ ଅଚଳ-ପ୍ରତିଷ୍ଠାରେ ସ୍ଥିତ ହୋଇଯାଆନ୍ତି। ତେଣୁ ତାଙ୍କ ଅନ୍ତଃକରଣରେ ସାଂସାରିକ ବସ୍ତୁମାନଙ୍କ ପ୍ରତି ଆକାଙ୍‌କ୍ଷା ହେବାର କୌଣସି କାରଣ ହିଁ ନ ଥାଏ।

**ପ୍ରଶ୍ନ—** ଏଠାରେ ଶୁଭାଶୁଭ ଶବ୍ଦ କେଉଁ କର୍ମମାନଙ୍କର ବାଚକ ଏବଂ ଭଗବାନ୍‌ଙ୍କ ଭକ୍ତଙ୍କୁ ଶୁଭାଶୁଭ ପରିତ୍ୟାଗୀ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଏଠାରେ ଶୁଭ ଶବ୍ଦଟି ହେଉଛି ଯଜ୍ଞ, ଦାନ, ତପ ଓ ବର୍ଣ୍ଣାଶ୍ରମ ଅନୁସାରେ ଜୀବିକାପାଇଁ ତଥା ଶରୀରନିର୍ବାହପାଇଁ କରାଯାଉଥିବା ଶାସ୍ତ୍ରବିହିତ କର୍ମମାନଙ୍କର ବାଚକ ଏବଂ 'ଅଶୁଭ' ଶବ୍ଦଟି ହେଉଛି ମିଥ୍ୟା, କପଟ, ଚୋରି, ହିଂସା, ବ୍ୟଭିଚାର ଆଦି ପାପକର୍ମର ବାଚକ। ଭଗବାନ୍‌ଙ୍କ ଜ୍ଞାନୀଭକ୍ତ ଏହି ଉଭୟପ୍ରକାର କର୍ମ ତ୍ୟାଗ କରିଥାନ୍ତି। କାରଣ ତାଙ୍କର ଶରୀର, ଇନ୍ଦ୍ରିୟ ଓ ମନଦ୍ୱାରା କରାଯାଉଥିବା ସମସ୍ତ ଶୁଭକର୍ମ ସେ ଭଗବାନଙ୍କୁ ସମର୍ପଣ କରିଦିଅନ୍ତି। ସେଥିରେ ତାଙ୍କର ଟିକିଏ ବି ମମତ୍ୱ, ଆସକ୍ତି ବା ଫଳେଚ୍ଛା ରହେ ନାହିଁ। ତେଣୁ ଏପରି କର୍ମକୁ କର୍ମ ବୋଲି ଧରାଯାଏ ନାହିଁ (୪/୨୦) ଏବଂ ରାଗ-ଦ୍ୱେଷ ନ ଥିବାରୁ ତାଙ୍କ ଦ୍ୱାରା ପାପକର୍ମ ହୁଏ ନାହିଁ। ତେଣୁ ତାଙ୍କୁ **ଶୁଭାଶୁଭପରିତ୍ୟାଗୀ** ବୋଲି କୁହାଯାଇଛି।

## ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ।
## ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ॥ ୧୮ ॥

**ଅନ୍ୱୟ—** **ଶତ୍ରୌ, ମିତ୍ରେ** = (ଯେ) ଶତ୍ରୁଠାରେ-ମିତ୍ରଠାରେ; **ଚ** = ଓ; **ମାନାପମାନୟୋଃ** = ମାନ-ଅପମାନରେ; **ସମଃ** = ସମ; **ତଥା** = ତଥା; **ଶୀତୋଷ୍ଣସୁଖଦୁଃଖେଷୁ** = ଶୀତ-ଉଷ୍ଣ ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ; **ସମଃ** = ସମ; **ଚ** = ଓ; **ସଙ୍ଗବିବର୍ଜିତଃ** = ଆସକ୍ତିରହିତ - - -।

**ଯେ ଶତ୍ରୁ-ମିତ୍ରଠାରେ ଓ ମାନ-ଅପମାନରେ ସମ, ତଥା ଶୀତ-ଉଷ୍ଣ ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ ସମ ଏବଂ ଆସକ୍ତିରହିତ, - - - - ॥ ୧୮ ॥**

**ପ୍ରଶ୍ନ—** ଭଗବାନଙ୍କର ଭକ୍ତ ତ କୌଣସି ବି ପ୍ରାଣୀ ପ୍ରତି ଦ୍ୱେଷ କରନ୍ତି ନାହିଁ; ତାଙ୍କର ପୁଣି ଶତ୍ରୁ ହେବେ କିପରି ? ଏପରି ଅବସ୍ଥାରେ ସେ ଶତ୍ରୁ-ମିତ୍ରରେ ସମ ଅଟନ୍ତି ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର—** ଅବଶ୍ୟ ଭକ୍ତଙ୍କ ଦୃଷ୍ଟିରେ ତାଙ୍କର କେହି ଶତ୍ରୁ-ମିତ୍ର ନାହାନ୍ତି; ତଥାପି ଲୋକମାନେ ନିଜ ନିଜର ଭାବନା ଅନୁସାରେ ମୂର୍ଖତାବଶତଃ ଭକ୍ତଙ୍କ ଦ୍ୱାରା ନିଜର ଅନିଷ୍ଟ ହେଉଛି ଭାବି ବା ଭକ୍ତଙ୍କର ସ୍ୱଭାବ ନିଜର ଅନୁକୂଳ ମନେ ନ ହେବାରୁ ଅଥବା ଈର୍ଷାବଶତଃ ତାଙ୍କ ଉପରେ ଶତ୍ରୁଭାବ ମଧ୍ୟ ଆରୋପ କରିଦିଅନ୍ତି। ସେହିପରି ଅନ୍ୟ ଲୋକମାନେ ନିଜର ଭାବନାନୁସାରେ ତାଙ୍କ ଠାରେ ମିତ୍ରଭାବ ଆରୋପ କରିଦିଅନ୍ତି। କିନ୍ତୁ ଜଗତରେ ସର୍ବତ୍ର

ଭଗବାନଙ୍କୁ ଦର୍ଶନ କରୁଥିବା ଭକ୍ତଙ୍କର ସମସ୍ତଙ୍କ ଠାରେ ସମଭାବ ହିଁ ରହିଥାଏ। ତାଙ୍କ ଦୃଷ୍ଟିରେ ଶତ୍ରୁ-ମିତ୍ର ବୋଲି ଟିକିଏ ବି ଭେଦଭାବ ରହେ ନାହିଁ। ସେ ତ ସଦା-ସର୍ବଦା ସମସ୍ତଙ୍କ ସହିତ ପରମ ପ୍ରେମରେ ହିଁ ଚଳନ୍ତି; ସମସ୍ତଙ୍କୁ ଭଗବାନଙ୍କର ସ୍ୱରୂପ ଭାବି ସମସ୍ତଙ୍କୁ ସମଭାବରେ ସେବା କରିବା ହିଁ ତାଙ୍କର ସ୍ୱଭାବ ହୋଇଥାଏ। ବୃକ୍ଷ ଯେପରି ନିଜକୁ କାଟୁଥିବା ଲୋକକୁ ଏବଂ ଜଳ ଦେଉଥିବା ଲୋକକୁ– ଉଭୟଙ୍କୁ ଛାୟା, ଫଳ ଓ ପୁଷ୍ପ ଆଦିଦ୍ୱାରା ସେବା କରିବାରେ କୌଣସିପ୍ରକାର ଭେଦ ରଖେ ନାହିଁ, ଭକ୍ତଙ୍କ ଠାରେ ମଧ୍ୟ ସେହିପରି କୌଣସିପ୍ରକାର ଭେଦଭାବ ରହେ ନାହିଁ। ଭକ୍ତଙ୍କର ସମତ୍ୱ ବୃକ୍ଷ ଅପେକ୍ଷା ମଧ୍ୟ ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇଥାଏ। ତାଙ୍କ ଦୃଷ୍ଟିରେ ପରମେଶ୍ୱରଙ୍କ ଠାରୁ ଭିନ୍ନ ଅନ୍ୟ କିଛି ବି ନ ଥିବାରୁ ତାଙ୍କ ଠାରେ ଭେଦଭାବର ଆଶଙ୍କା ହିଁ ରହେ ନାହିଁ। ତେଣୁ ସେ ଶତ୍ରୁ-ମିତ୍ରରେ ସମ ଅଟନ୍ତି ବୋଲି କୁହାଯାଇଛି।

**ପ୍ରଶ୍ନ –** 'ମାନ-ଅପମାନ, ଶୀତ-ଉଷ୍ଣ ଓ ସୁଖ-ଦୁଃଖ ଆଦି ଦ୍ୱନ୍ଦ୍ୱରେ ସମ' କହିବାର ଅଭିପ୍ରାୟ କଣ ?

**ଉତ୍ତର –** ମାନ-ଅପମାନ, ଶୀତ-ଉଷ୍ଣ, ସୁଖ-ଦୁଃଖ ଆଦି ଅନୁକୂଳ ଓ ପ୍ରତିକୂଳ ଦ୍ୱନ୍ଦ୍ୱର ମନ, ଇନ୍ଦ୍ରିୟ ଓ ଶରୀର ସହିତ ସମ୍ବନ୍ଧ ଥାଏ; ତେଣୁ ସେସବୁର ଅନୁଭବ ହୁଏ। କିନ୍ତୁ ଭଗବଦ୍‌ଭକ୍ତଙ୍କର ଅନ୍ତଃକରଣରେ ରାଗ-ଦ୍ୱେଷ ବା ହର୍ଷ-ଶୋକ ଆଦି କୌଣସିପ୍ରକାର ବିକାର ଟିକିଏ ବି ହୁଏ ନାହିଁ। ସେ ସର୍ବଦା ସମ ରହନ୍ତି। ସେ ଅନୁକୂଳ ଚାହାଁନ୍ତି ନାହିଁ, କି ପ୍ରତିକୂଳ ପ୍ରତି ଦ୍ୱେଷ କରନ୍ତି ନାହିଁ। ସେ କେବେ କୌଣସି ଅବସ୍ଥାରେ ନିଜ ସ୍ଥିତିରୁ ତିଳେମାତ୍ର ବିଚଳିତ ହୁଅନ୍ତି ନାହିଁ। ସବୁଠି ଭଗବତ୍ ଦର୍ଶନ ହେଉଥିବାରୁ ତାଙ୍କର ଅନ୍ତଃକରଣରୁ ବିଷମତାର ସର୍ବଥା ଅଭାବ ହୋଇଯାଏ। ତେଣୁ ସେ ଏସବୁରେ ସମ ରହନ୍ତି ବୋଲି କୁହାଯାଇଛି।

**ପ୍ରଶ୍ନ –** ସଙ୍ଗବିବର୍ଜିତଃର ଅର୍ଥ ସଂସାରର ସଂସର୍ଗରୁ ରହିତ ହେବା ବୋଲି ମାନିନେଲେ କ୍ଷତି କଣ ?

**ଉତ୍ତର –** ସଂସାର ପ୍ରତି ମନୁଷ୍ୟର ଯେଉଁ ଆସକ୍ତି ରହିଛି, ତାହା ହିଁ ସମସ୍ତ ଅନର୍ଥର ମୂଳ। ବାହାର ସହିତ ସଂସର୍ଗ ଛାଡ଼ିଦେଲେ ମଧ୍ୟ ମନରେ ଯଦି ଆସକ୍ତି ଲାଗିରହିବ, ତେବେ ସେପରି ତ୍ୟାଗଦ୍ୱାରା ବିଶେଷ ଲାଭ ହୋଇପାରିବ ନାହିଁ। ପକ୍ଷାନ୍ତରେ, ମନର ଆସକ୍ତି ନଷ୍ଟ ହୋଇଯିବା ପରେ ମଧ୍ୟ ରାଜା ଜନକାଦିଙ୍କ ପରି ବାହାରେ ସମସ୍ତଙ୍କ ସହିତ ମମତ୍ୱ ଓ ଆସକ୍ତିରହିତ ସଂସର୍ଗ ରହିଲେ ମଧ୍ୟ କୌଣସି କ୍ଷତି ନାହିଁ। ଏପରି ଆସକ୍ତିତ୍ୟାଗୀ ହିଁ ବସ୍ତୁତଃ ଯଥାର୍ଥ **ସଙ୍ଗବିବର୍ଜିତ**। ଦ୍ୱିତୀୟ ଅଧ୍ୟାୟର ସତାବନ ଶ୍ଳୋକରେ ମଧ୍ୟ ଏହି କଥା କୁହାଯାଇଛି। ତେଣୁ **ସଙ୍ଗବିବର୍ଜିତଃ**ର ଯେଉଁ ଅର୍ଥ କରାଯାଇଛି, ତାହା ଠିକ୍ ବୋଲି ବୋଧ ହେଉଛି।

**ପ୍ରଶ୍ନ –** ତେର ଶ୍ଳୋକରେ ଭଗବାନ୍ ସକଳ ପ୍ରାଣୀଙ୍କ ପ୍ରତି ଭକ୍ତଙ୍କର ମିତ୍ରଭାବ ଥିବା କଥା କହିଲେ ଏବଂ ଏଠାରେ ସେ ସମସ୍ତଙ୍କ ପ୍ରତି ଆସକ୍ତିରହିତ ହେବା କଥା କହୁଛନ୍ତି। ଏହି ଦୁଇ କଥା ପରସ୍ପର ବିରୋଧୀପରି ପ୍ରତୀତ ହେଉଛି। ଏହାର ସମାଧାନ କଣ ?

**ଉତ୍ତର –** ଏଥିରେ କୌଣସି ବିରୋଧ ନାହିଁ। ଭଗବଦ୍‌ଭକ୍ତଙ୍କର ସବୁ ପ୍ରାଣୀଙ୍କ ପ୍ରତି ଯେଉଁ ମିତ୍ରଭାବ ହୁଏ, ତାହା ଆସକ୍ତିରହିତ, ନିର୍ଦ୍ଦୋଷ ଓ ବିଶୁଦ୍ଧ। ସାଂସାରିକ ମନୁଷ୍ୟର ପ୍ରେମ ଆସକ୍ତିସଂବନ୍ଧରୁ ହୁଏ। ତେଣୁ ଏଠାରେ ସ୍ଥୂଳଦୃଷ୍ଟିରୁ ବିରୋଧ ଥିବାପରି ପ୍ରତୀତ ହେଉଥିଲେ ବି ପ୍ରକୃତରେ କୌଣସି ବିରୋଧ ନାହିଁ। ମୈତ୍ରୀ ଏକ ସଦ୍‌ଗୁଣ ଏବଂ ଏହା ଭଗବାନ୍‌ଙ୍କ ଠାରେ ମଧ୍ୟ ରହିଛି। କିନ୍ତୁ ଆସକ୍ତି ହେଉଛି ଏକ ଦୁର୍ଗୁଣ ଏବଂ ଏହା ସମସ୍ତ ଅବଗୁଣର ମୂଳ ହୋଇଥିବାରୁ ତ୍ୟାଜ୍ୟ। ତାହା ଭଗବଦ୍‌ଭକ୍ତମାନଙ୍କ ଠାରେ କିପରି ରହିପାରିବ ?

## ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସଂତୁଷ୍ଟୋ ଯେନ କେନଚିତ୍। ଅନିକେତଃ ସ୍ଥିରମତିର୍ଭକ୍ତିମାନ୍ ମେ ପ୍ରିୟୋ ନରଃ ।। ୧୯ ।।

**ଅନ୍ୱୟ –** **ତୁଲ୍ୟନିନ୍ଦାସ୍ତୁତିଃ** = ଯେ ନିନ୍ଦା ଓ ସ୍ତୁତିକୁ ସମାନ ଦେଖନ୍ତି; **ମୌନୀ** = ଯେ ମନନଶୀଳ ଅଟନ୍ତି (ଓ); **ଯେନ, କେନଚିତ୍** = ଯେକୌଣସିପ୍ରକାରେ ଶରୀରନିର୍ବାହ ହେବାରେ; **ସନ୍ତୁଷ୍ଟଃ** = ସଦା ହିଁ ସନ୍ତୁଷ୍ଟ (ଏବଂ); **ଅନିକେତଃ** = ବାସସ୍ଥାନ ପ୍ରତି ମମତ୍ୱ ଓ ଆସକ୍ତିରୁ ରହିତ (ସେହି); **ସ୍ଥିରମତିଃ** = ସ୍ଥିରବୁଦ୍ଧି; **ଭକ୍ତିମାନ୍** = ଭକ୍ତିମାନ୍; **ନରଃ** = ପୁରୁଷ; **ମେ, ପ୍ରିୟଃ** = ମୋର ପ୍ରିୟ।

**ଯେ ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ଦେଖନ୍ତି, ଯେ ମନନଶୀଳ ଏବଂ ଯେ ଯେକୌଣସିପ୍ରକାର ଶରୀରନିର୍ବାହ ହେବାରେ ସଦା ହିଁ ସନ୍ତୁଷ୍ଟ ରହନ୍ତି ଓ ବାସସ୍ଥାନ ପ୍ରତି ମମତ୍ୱ ଓ ଆସକ୍ତିରୁ ରହିତ ଅଟନ୍ତି, ସେହି ସ୍ଥିରବୁଦ୍ଧି ଭକ୍ତିମାନ୍ ପୁରୁଷ ମୋର ପ୍ରିୟ ଅଟନ୍ତି।। ୧୯ ।।**

**ପ୍ରଶ୍ନ –** ଭଗବାନଙ୍କ ଭକ୍ତ ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ଦେଖନ୍ତି କହିଲେ କଣ ବୁଝାଏ ?

**ଉତ୍ତର –** ଭଗବାନଙ୍କ ଭକ୍ତଙ୍କର ନିଜ ନାମ ଓ ଶରୀରରେ ତିଳେମାତ୍ର ଅଭିମାନ ବା ମମତ୍ୱ ରହେ ନାହିଁ। ତେଣୁ ତାଙ୍କୁ ସ୍ତୁତିଦ୍ୱାରା ହର୍ଷ ହୁଏ ନାହିଁ, କି ନିନ୍ଦାଦ୍ୱାରା କୌଣସିପ୍ରକାର ଶୋକ ହୁଏ ନାହିଁ। ତାଙ୍କର ଏହି ଉଭୟରେ ସମଭାବ ରହେ। ସର୍ବତ୍ର ଭଗବଦ୍‌ବୁଦ୍ଧି ହୋଇଯିବାରୁ ସ୍ତୁତି କରୁଥିବା ଲୋକ ଓ ନିନ୍ଦା କରୁଥିବା ଲୋକଙ୍କ ଠାରେ ତାଙ୍କର ଟିକିଏ ବି ଭେଦବୁଦ୍ଧି ରହେ ନାହିଁ। ଏହା ହିଁ ତାଙ୍କର ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ଦେଖିବା।

**ପ୍ରଶ୍ନ –** 'ମୌନୀ' ପଦ 'କଥା ନ କହୁଥିବା ଲୋକ'ର ବାଚକ ବୋଲି ପ୍ରସିଦ୍ଧ। ଏଠାରେ ତା'ର ଅର୍ଥ ମନନଶୀଳ ବୋଲି କାହିଁକି କରାଗଲା ?

**ଉତ୍ତର –** ମନୁଷ୍ୟ କେବଳ ବାଣୀଦ୍ୱାରା ହିଁ କହେ ନାହିଁ; ମନଦ୍ୱାରା ମଧ୍ୟ କହିଥାଏ। ଅନବରତ ବିଷୟ ଚିନ୍ତନ କରିବା ହିଁ ମନର ନିରନ୍ତର କହିବା। ଭକ୍ତଙ୍କର ଚିତ୍ତ ଭଗବାନଙ୍କ ଠାରେ ଏତେଦୂର ସଂଲଗ୍ନ ହୋଇଯାଏ ଯେ, ତାଙ୍କ ଠାରେ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରି ସ୍ଫୁର୍ତ୍ତି ହୁଏ ହିଁ ନାହିଁ। ସେ ସଦାସର୍ବଦା ଭଗବାନଙ୍କର ହିଁ ମନନରେ ଲାଗିରହିଥା'ନ୍ତି। ଏହା ପ୍ରକୃତ ମୌନ। କଥା ନ କହି ଯଦି ମନ ଭିତରେ ବିଷୟଚିନ୍ତନ କରାଯାଉଥାଏ, ତେବେ ତାହା ବାହ୍ୟ ମୌନ ହିଁ ଅଟେ। ମନକୁ ନିର୍ବିଷୟ କରିଦେବା ତଥା ବାଣୀକୁ ପରିଶୁଦ୍ଧ ଓ ସଂଯତ କରିଦେବା ଉଦ୍ଦେଶ୍ୟରେ କରାଯାଉଥିବା ବାହ୍ୟ ମୌନ ମଧ୍ୟ ଲାଭଦାୟକ ଅଟେ। ଏଠାରେ ଭଗବାନଙ୍କ ପ୍ରିୟ ଭକ୍ତଙ୍କ ଲକ୍ଷଣଗୁଡ଼ିକ ବର୍ଣ୍ଣନା କରାଯାଉଛି; ତାଙ୍କର ବାଣୀ ତ ସ୍ୱାଭାବିକ ହିଁ ପରିଶୁଦ୍ଧ ଓ ସଂଯତ। ଏଥିରୁ ଏପରି କୁହାଯାଇ ନ ପାରେ ଯେ, ତାଙ୍କଠାରେ କେବଳ ବାଣୀର ହିଁ ମୌନ ରହିଛି। ବରଂ ସେହି ଭକ୍ତଙ୍କ କଥାରେ ତ ପ୍ରାୟ ନିରନ୍ତର ଭଗବାନଙ୍କ ନାମ ଓ ଗୁଣର କୀର୍ତ୍ତନ ହିଁ ହେଉଥାଏ, ଯାହାଦ୍ୱାରା କି ଜଗତର ପରମ ମଙ୍ଗଳ ହୋଇଥାଏ। ଏହା ଛଡ଼ା ଭଗବାନ୍ ଭକ୍ତମାନଙ୍କ ଦ୍ୱାରା ହିଁ ନିଜ ଭକ୍ତିର ପ୍ରଚାର କରାଉଥାନ୍ତି। ତେଣୁ ବାଣୀଦ୍ୱାରା ମୌନ ରହିବା ଲୋକ ଭଗବାନଙ୍କର ପ୍ରିୟଭକ୍ତ ହୁଏ ଏବଂ କହିବା ଲୋକ ଭକ୍ତ ନୁହନ୍ତି ବୋଲି କଳ୍ପନା କରାଯାଇ ପାରେ ନା। ଅଠର ଅଧ୍ୟାୟର ଅଠଷଠି ଓ ଅଣତରୀ ଶ୍ଳୋକରେ ଭଗବାନ୍ ଗୀତାର ପ୍ରଚାର କରୁଥିବା ଲୋକଙ୍କୁ ନିଜର ସବୁଠାରୁ ପ୍ରିୟକାର୍ଯ୍ୟ କରୁଥିବା ଲୋକ ବୋଲି କହିଛନ୍ତି। ଏହି ମହତ୍ କାର୍ଯ୍ୟ ବାଣୀମୌନଦ୍ୱାରା ହୋଇ ନ ପାରେ। ଏହା ଛଡ଼ା ସତର ଅଧ୍ୟାୟର ଷୋହଳ ଶ୍ଳୋକରେ ମାନସିକ ତପର ଲକ୍ଷଣମାନଙ୍କରେ ମଧ୍ୟ ''ମୌନ'' ଶବ୍ଦ ଆସିଛି। ଯଦି ଭଗବାନ୍ 'ମୌନ' ଶବ୍ଦର ଅର୍ଥ ବାଣୀର ମୌନ ବୋଲି ସ୍ଥିର କରିଥାନ୍ତେ, ତେବେ ସେ ତାହା ବାଣୀର ତପପ୍ରସଙ୍ଗରେ କହିଥାନ୍ତେ, କିନ୍ତୁ ସେପରି କରି ନାହାନ୍ତି। ଏହାଦ୍ୱାରା ମଧ୍ୟ ସିଦ୍ଧ ହେଉଛି ଯେ, ମୁନିଭାବର ନାମ ହିଁ ମୌନ ଏବଂ ଏହି ମୁନିଭାବ ଯାହାଠାରେ ଥାଏ, ସେ ମୌନୀ ବା ମନନଶୀଳ। ବାଣୀର ମୌନ ମନୁଷ୍ୟ ଜିଦ୍ କରି ବି କରିପାରେ। ତାହା କିଛି ବିଶେଷ ମହତ୍ତ୍ୱର କଥା ମଧ୍ୟ ନୁହେଁ। ତେଣୁ ଏଠାରେ 'ମୌନ' ଶବ୍ଦର ଅର୍ଥକୁ ବାଣୀର ମୌନ ନ ମାନି ମନର ମନନଶୀଳତା ହିଁ ମାନିବା ଉଚିତ। ବାଣୀର ସଂଯମ ତ ସ୍ୱତଃ ଏହାର ଅନ୍ତର୍ଗତ ହୋଇଯାଏ।

**ପ୍ରଶ୍ନ –** ଏଠାରେ **ଯେନ କେନଚିତ୍ ସଂତୁଷ୍ଟଃ**ର ଅଭିପ୍ରାୟ କଣ ? କଣ ଭଗବାନଙ୍କର ଭକ୍ତ ଶରୀରନିର୍ବାହପାଇଁ କୌଣସିପ୍ରକାର ଚେଷ୍ଟା କରିବା ଉଚିତ ନୁହେଁ ? – ଆପେ ଆପେ ଯାହା କିଛି ମିଳିଯାଏ, ସେ ସେଥିରେ ସନ୍ତୁଷ୍ଟ ରହିବା ଉଚିତ ?

**ଉତ୍ତର –** ଯେଉଁ ଭକ୍ତ ଅନନ୍ୟଭାବରେ ଭଗବାନଙ୍କ ଚିନ୍ତନରେ ଲାଗିରହନ୍ତି, ଅନ୍ୟ କୌଣସି ଭାବ ଯାହାଙ୍କ ଚିତ୍ତରେ ସ୍ଫୁରିତ ହୁଏ ନାହିଁ, ତାଙ୍କ ଦ୍ୱାରା ଶରୀରନିର୍ବାହପାଇଁ କୌଣସି ଚେଷ୍ଟା ନ ହେବା ଏବଂ ତାଙ୍କର ଲୌକିକ ଯୋଗକ୍ଷେମ ମଧ୍ୟ ଭଗବାନଙ୍କ ଦ୍ୱାରା ହିଁ ବହନ କରାଯିବା ସର୍ବଥା ସିଦ୍ଧ ଓ ସୁସଙ୍ଗତ ହିଁ ଅଟେ। କିନ୍ତୁ ଏଠାରେ **ଯେନ କେନଚିତ୍ ସନ୍ତୁଷ୍ଟଃ**ଦ୍ୱାରା ନିଷ୍କାମଭାବରେ

ବର୍ଣ୍ଣାଶ୍ରମାନୁକୂଳ ଶରୀରନିର୍ବାହର ଉପଯୁକ୍ତ ନ୍ୟାୟସଙ୍ଗତ ଚେଷ୍ଟା କରିବାକୁ ନିଷେଧ କରାଯାଇ ନାହିଁ। ଏପରି ଚେଷ୍ଟା କରିବାଦ୍ୱାରା ପ୍ରାରବ୍ଧ ଅନୁସାରେ ଯାହା କିଛି ବି ପ୍ରାପ୍ତ ହୋଇଯାଏ, ଭକ୍ତ ସେଥିରେ ସନ୍ତୁଷ୍ଟ ରହନ୍ତି। ଏହା ହିଁ **ଯେନ କେନଚିତ୍ ସନ୍ତୁଷ୍ଟଃ**ର ଭାବ। ବସ୍ତୁତଃ ଭଗବାନଙ୍କ ଭକ୍ତଙ୍କର ସାଂସାରିକ ବସ୍ତୁର ପ୍ରାପ୍ତି ଓ ଅପ୍ରାପ୍ତି ସହିତ କୌଣସି ସମ୍ବନ୍ଧ ରହେ ନାହିଁ। ସେ ତ ନିଜର ପରମ ଇଷ୍ଟ ଭଗବାନଙ୍କୁ ପାଇ ସଦା ହିଁ ସନ୍ତୁଷ୍ଟ ରହନ୍ତି। ଏଣୁ ଏଠାରେ **ଯେନ କେନଚିତ୍ ସନ୍ତୁଷ୍ଟଃ**ରୁ ଏହି ଅଭିପ୍ରାୟ ବୋଧ ହେଉଛି ଯେ, ବାହ୍ୟ ବସ୍ତୁ ମିଳିବା ନ ମିଳିବାଦ୍ୱାରା ତାଙ୍କର ତୁଷ୍ଟିରେ କୌଣସିପ୍ରକାର ଅନ୍ତର ପଡ଼େ ନାହିଁ। ପ୍ରାରବ୍ଧାନୁସାରେ ସୁଖଦୁଃଖାଦିର କାରଣ ହେଉଥିବା ଯାହା କିଛି ପଦାର୍ଥ ତାଙ୍କୁ ପ୍ରାପ୍ତ ହୁଏ, ସେ ସେଥିରେ ସନ୍ତୁଷ୍ଟ ରହନ୍ତି।

**ପ୍ରଶ୍ନ—ଅନିକେତଃ** ପଦର କେଉଁ ଅର୍ଥ ଗ୍ରହଣ କରିବା ଉଚିତ?

**ଉତ୍ତର—** ଯାହାର ନିଜର ଘର ନାହିଁ, ତାହାକୁ **ଅନିକେତ** କହନ୍ତି। ଭଗବାନଙ୍କର ଯେଉଁ ସନ୍ନ୍ୟାସୀ ଜ୍ଞାନୀଭକ୍ତମାନେ ଗୃହସ୍ଥାଶ୍ରମରୁ ବାହାରି ଆସି ପୂରାପୂରି ଘରଦ୍ୱାର ଛାଡ଼ିଦେଲେଣି, ଯେଉଁମାନଙ୍କର କୌଣସି ସ୍ଥାନରେ ଆସକ୍ତି, ମମତ୍ୱ ଅଥବା କୌଣସିପ୍ରକାର ସ୍ୱତ୍ୱ ନାହିଁ, ସେମାନେ ତ **ଅନିକେତ** ହିଁ ଅଟନ୍ତି। ତା'ଛଡ଼ା ଯେଉଁମାନେ ନିଜର ସର୍ବସ୍ୱ ଭଗବାନଙ୍କୁ ଅର୍ପଣ କରିଦେଇ ସର୍ବଥା ଅକିଞ୍ଚନ ହୋଇଯାଇଛନ୍ତି, ଯେଉଁମାନଙ୍କର ଘରଦ୍ୱାର, ଶରୀର, ବିଦ୍ୟା-ବୁଦ୍ଧି ଆଦି ସବୁକିଛି ଭଗବାନଙ୍କର ହୋଇସାରିଛି, ସେମାନେ ବ୍ରହ୍ମଚାରୀ ହୋଇଥାନ୍ତୁ, କିମ୍ବା ଗୃହସ୍ଥ, ଅଥବା ବାନପ୍ରସ୍ଥ ହୋଇଥାନ୍ତୁ, ସେମାନେ ମଧ୍ୟ **ଅନିକେତ** ହିଁ ଅଟନ୍ତି। ଶରୀରରେ ଅହଂତ୍ୱ, ମମତ୍ୱ ଓ ଆସକ୍ତି ନ ଥିବାରୁ ଶରୀର ରହିଥିଲେ ମଧ୍ୟ ଜ୍ଞାନୀକୁ ବିଦେହ କୁହାଯାଏ; ସେହିପରି ଯାହାଙ୍କର ଘର ପ୍ରତି ମମତ୍ୱ ଓ ଆସକ୍ତି ନାହିଁ, ସେ ଘରେ ରହିଥିଲେ ମଧ୍ୟ ଗୃହହୀନ 'ଅନିକେତ' ହିଁ ଅଟନ୍ତି।

**ପ୍ରଶ୍ନ—** ଭକ୍ତଙ୍କୁ **ସ୍ଥିରବୁଦ୍ଧି** କହିବାର ଅଭିପ୍ରାୟ କଣ?

**ଉତ୍ତର—** ଭକ୍ତଙ୍କୁ ଭଗବାନଙ୍କର ପ୍ରତ୍ୟକ୍ଷ ଦର୍ଶନ ମିଳୁଥିବାରୁ ତାଙ୍କର ସମସ୍ତ ସଂଶୟ ସମୂଳେ ନଷ୍ଟ ହୋଇଯାଏ। ଭଗବାନଙ୍କ ଠାରେ ତାଙ୍କର ଦୃଢ଼ ବିଶ୍ୱାସ ହୋଇଯାଏ। ତାଙ୍କର ନିଶ୍ଚୟ ଅଟଳ ଓ ନିଶ୍ଚଳ ହୋଇଯାଏ। ତେଣୁ ସେ ସାଧାରଣ ମନୁଷ୍ୟପରି କାମ, କ୍ରୋଧ, ଲୋଭ, ମୋହ ବା ଭୟ ଆଦି ବିକାରମାନଙ୍କର ବଶ ହୋଇ ଧର୍ମରୁ ବା ଭଗବାନଙ୍କ ସ୍ୱରୂପରୁ କେବେ ବିଚଳିତ ହୁଅନ୍ତି ନାହିଁ। ତେଣୁ ତାହାଙ୍କୁ **ସ୍ଥିରବୁଦ୍ଧି** କୁହାଯାଇଛି। 'ସ୍ଥିରବୁଦ୍ଧି' ଶବ୍ଦର ବିଶେଷ ଅଭିପ୍ରାୟ ବୁଝିବାପାଇଁ ଦ୍ୱିତୀୟ ଅଧ୍ୟାୟର ପଞ୍ଚାବନରୁ ବାସ୍ତରୀ ଶ୍ଳୋକଯାଏ ବ୍ୟାଖ୍ୟା ଦେଖିବା ଉଚିତ।

**ପ୍ରଶ୍ନ—** ତେର ଶ୍ଳୋକଠାରୁ ଉଣେଇଶଯାଏ ସାତଟି ଶ୍ଳୋକରେ ଭଗବାନ୍ ନିଜ ପ୍ରିୟ ଭକ୍ତମାନଙ୍କର ଲକ୍ଷଣ କହି 'ଯେ ମୋର ଭକ୍ତ, ସେ ମୋର ପ୍ରିୟ,' 'ଯେ ଏପରି ଭକ୍ତିମାନ୍ ପୁରୁଷ, ସେ ମୋର ପ୍ରିୟ,' 'ଏପରି ପୁରୁଷ ମୋର ପ୍ରିୟ'— ଏହିପରି ଭିନ୍ନ ଭିନ୍ନଭାବରେ ପାଞ୍ଚଥର କହିଛନ୍ତି। ଏହାର ଭାବ କଣ?

**ଉତ୍ତର—** ଉପରୋକ୍ତ ସମସ୍ତ ଲକ୍ଷଣ ଭଗବଦ୍‌ଭକ୍ତମାନଙ୍କର ଏବଂ ସେସବୁ ଶାସ୍ତ୍ରାନୁକୂଳ ଓ ଶ୍ରେଷ୍ଠ। ପରନ୍ତୁ ସ୍ୱଭାବ ଆଦି-ଭେଦରେ ଭକ୍ତମାନଙ୍କର ମଧ୍ୟ ଗୁଣ ଓ ଆଚରଣରେ ଅଳ୍ପ-ବହୁତ ପାର୍ଥକ୍ୟ ରହିବା ସ୍ୱାଭାବିକ। ସମସ୍ତଙ୍କ ଠାରେ ସବୁ ଲକ୍ଷଣ ଏକାପରି ମିଳେ ନାହିଁ। ଅବଶ୍ୟ ସମସ୍ତଙ୍କ ଠାରେ ସମତ୍ୱ ଓ ଶାନ୍ତି ଥାଏ, ତଥା ରାଗ-ଦ୍ୱେଷ ଓ ହର୍ଷ-ଶୋକ ଆଦି ବିକାର କାହାରି ଠାରେ ମଧ୍ୟ ନ ଥାଏ। ତେଣୁ ଏହି ଶ୍ଳୋକଗୁଡ଼ିକରେ ପୁନରୁକ୍ତି ମିଳେ। ବିଚାର କରି ଦେଖିଲେ, ଏହି ପାଞ୍ଚଟି ବିଭାଗମଧ୍ୟରୁ ପ୍ରତ୍ୟେକଟିରେ ରାଗ-ଦ୍ୱେଷ ଓ ହର୍ଷ-ଶୋକର ଅଭାବ ରହିଛି, — କେଉଁଠି ଭାବରେ ରହିଛି ତ, କେଉଁଠି ଶବ୍ଦରେ। ପ୍ରଥମ ବିଭାଗରେ **ଅଦ୍ୱେଷ୍ଟା**ଦ୍ୱାରା ଦ୍ୱେଷର, **ନିର୍ମମଃ**ଦ୍ୱାରା ରାଗର ଏବଂ **ସମଦୁଃଖସୁଖଃ**ଦ୍ୱାରା ହର୍ଷ-ଶୋକର ଅଭାବ କୁହାଯାଇଛି। ଦ୍ୱିତୀୟରେ ହର୍ଷ, ଅମର୍ଷ, ଭୟ ଏବଂ ଉଦ୍‌ବେଗର ଅଭାବ କୁହାଯାଇଛି; ଏହାଦ୍ୱାରା ରାଗ-ଦ୍ୱେଷ ଓ ହର୍ଷ-ଶୋକର ଅଭାବ ସ୍ୱତଃ ସିଦ୍ଧ ହୋଇଯାଏ। ତୃତୀୟରେ **ଅନପେକ୍ଷଃ**ଦ୍ୱାରା ରାଗର, **ଉଦାସୀନଃ**ଦ୍ୱାରା ଦ୍ୱେଷର ଓ **ଗତବ୍ୟଥଃ**ଦ୍ୱାରା ହର୍ଷ-ଶୋକର ଅଭାବ କୁହାଯାଇଛି। ଚତୁର୍ଥରେ **ନ କାଙ୍‌କ୍ଷତି**ଦ୍ୱାରା ରାଗର, **ନ ଦ୍ୱେଷ୍ଟି**ଦ୍ୱାରା ଦ୍ୱେଷର ଓ **ନ ହୃଷ୍ୟତି** ତଥା **ନ ଶୋଚତି**ଦ୍ୱାରା ହର୍ଷ-ଶୋକର ଅଭାବ କହିଛନ୍ତି। ସେହିପରି ପଞ୍ଚମ ବିଭାଗରେ **ସଙ୍ଗବିବର୍ଜିତଃ** ତଥା

**ସନ୍ତୁଷ୍ଟଃ**ଦ୍ୱାରା ରାଗ-ଦ୍ୱେଷର ଓ **ଶୀତୋଷ୍ଣସୁଖଦୁଃଖେଷୁ ସମଃ**ଦ୍ୱାରା ହର୍ଷ-ଶୋକର ଅଭାବ ଦେଖାଇଛନ୍ତି । **ସନ୍ତୁଷ୍ଟଃ** ପଦ ମଧ୍ୟ ଏହି ପ୍ରକରଣରେ ଦୁଇଥର ଆସିଛି । ଏହାଦ୍ୱାରା ସିଦ୍ଧ ହେଉଛି ଯେ, ସମସ୍ତଙ୍କ ଠାରେ ରାଗ-ଦ୍ୱେଷ ତଥା ହର୍ଷ-ଶୋକାଦି ବିକାରର ଅଭାବ ଥିବା ଓ ସମସ୍ତଙ୍କ ଠାରେ ସମତ୍ୱ ତଥା ଶାନ୍ତି ରହିଥିବା ଆବଶ୍ୟକ; ଅନ୍ୟାନ୍ୟ ଲକ୍ଷଣମାନଙ୍କରେ ସ୍ୱଭାବଭେଦରେ କିଛି ପାର୍ଥକ୍ୟ ମଧ୍ୟ ରହିପାରେ । ତେଣୁ ଭଗବାନ୍ ଭକ୍ତମାନଙ୍କର ଲକ୍ଷଣଗୁଡ଼ିକୁ ଭିନ୍ନ ଭିନ୍ନ ଶ୍ରେଣୀରେ ବିଭକ୍ତ କରି ଏଠାରେ ପାଞ୍ଚ ଥର ପୃଥକ୍ ପୃଥକ୍‌ଭାବରେ କହିଛନ୍ତି । ଏମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ବିଭାଗ ଅନୁସାରେ ମଧ୍ୟ ସବୁ ଲକ୍ଷଣ ଯାହାଙ୍କ ଠାରେ ପୂର୍ଣ୍ଣରୂପେ ଥିବ, ସେ ଭଗବାନଙ୍କର ପ୍ରିୟ ଭକ୍ତ ଅଟନ୍ତି ।

**ପ୍ରଶ୍ନ –** ଏହି ଲକ୍ଷଣଗୁଡ଼ିକ ସିଦ୍ଧ ପୁରୁଷଙ୍କର ନା ସାଧକଙ୍କର ?

**ଉତ୍ତର –** ବିଚାର କଲେ ବୋଧ ହେଉଛି, ଏହି ଲକ୍ଷଣଗୁଡ଼ିକ ସାଧକଙ୍କର ନୁହେଁ; ବରଂ ଏସବୁ ହେଉଛି ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ସିଦ୍ଧ ପୁରୁଷଙ୍କର ହିଁ ଲକ୍ଷଣ; କାରଣ, ପ୍ରଥମେ ଭଗବତ୍‌ପ୍ରାପ୍ତିର ଉପାୟ ଓ ଫଳ କହିବା ପରେ ଏହି ଲକ୍ଷଣଗୁଡ଼ିକର ବର୍ଣ୍ଣନା ଆସିଛି । ଏହା ଛଡ଼ା ଚତୁର୍ଦ୍ଦଶ ଅଧ୍ୟାୟର ବାଇଶଠାରୁ ପଚିଶ ଶ୍ଳୋକଯାଏ ଭଗବାନ୍ ଗୁଣାତୀତ ତତ୍ତ୍ୱଦର୍ଶୀ ମହାତ୍ମାଙ୍କର ଯେଉଁ ଲକ୍ଷଣସବୁ କହିଛନ୍ତି, ସେସବୁ ସହିତ ଏସବୁ ଲକ୍ଷଣ ମେଳ ଖାଉଛି; ଏଣୁ ସେସବୁ ସାଧକଙ୍କ ଲକ୍ଷଣ ହୋଇ ନ ପାରେ ।

**ପ୍ରଶ୍ନ –** ଏଗୁଡ଼ିକୁ 'ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ପୁରୁଷଙ୍କ ଲକ୍ଷଣ' ବୋଲି କହିବାର କାରଣ କଣ ?

**ଉତ୍ତର –** ଏହି ଅଧ୍ୟାୟରେ ଭକ୍ତିଯୋଗର ବର୍ଣ୍ଣନା ହୋଇଛି । ତେଣୁ ଏହାର ନାମ ମଧ୍ୟ 'ଭକ୍ତିଯୋଗ' ରଖାଯାଇଛି । ଅର୍ଜୁନଙ୍କ ପ୍ରଶ୍ନ ଓ ଭଗବାନଙ୍କ ଉତ୍ତର ମଧ୍ୟ ଉପାସନାବିଷୟକ ତଥା ଭଗବାନ୍ **'ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ', 'ଭକ୍ତିମାନ୍ ଯଃ ସ ମେ ପ୍ରିୟଃ'** ଇତ୍ୟାଦି ବାକ୍ୟ ମଧ୍ୟ ଏଥିପାଇଁ ଆବୃତ୍ତି କରିଛନ୍ତି । ତେଣୁ ଏଠାରେ ବୁଝିବା ଉଚିତ ଯେ, ଯେଉଁମାନେ ଭକ୍ତିମାର୍ଗଦ୍ୱାରା ପରମସିଦ୍ଧି ପାଇଛନ୍ତି, ଏଗୁଡ଼ିକ ହେଉଛି ସେହି ସିଦ୍ଧପୁରୁଷମାନଙ୍କର ଲକ୍ଷଣ ।

**ପ୍ରଶ୍ନ –** କର୍ମଯୋଗ, ଭକ୍ତିଯୋଗ, ଅଥବା ଜ୍ଞାନଯୋଗ ଆଦି କୌଣସି ବି ମାର୍ଗରେ ପରମସିଦ୍ଧି ପାଇସାରିବା ପରେ ମଧ୍ୟ ସେହି ସିଦ୍ଧପୁରୁଷମାନଙ୍କ ମଧ୍ୟରେ କୌଣସି ଅନ୍ତର ରହେ କି ?

**ଉତ୍ତର –** ସେମାନଙ୍କର ବାସ୍ତବିକ ସ୍ଥିତିରେ ବା ପାଇଥିବା ପରମ ତତ୍ତ୍ୱରେ ତ କୌଣସି ଅନ୍ତର ରହେ ନାହିଁ; କିନ୍ତୁ ସ୍ୱଭାବର ଭିନ୍ନତାହେତୁ ଆଚରଣରେ କିଛି ପ୍ରଭେଦ ରହିଯାଇପାରେ । **'ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି'** (୩/୩୩)— ଏହି କଥନରୁ ମଧ୍ୟ ଏହା ସିଦ୍ଧ ହୁଏ ଯେ, ସମସ୍ତ ଜ୍ଞାନୀଲୋକଙ୍କର ଆଚରଣ ଓ ସ୍ୱଭାବରେ ଜ୍ଞାନୋତ୍ତରକାଳରେ ମଧ୍ୟ ପ୍ରଭେଦ ରହେ ।

ଅହଂତ୍ୱ, ମମତ୍ୱ ଓ ରାଗ-ଦ୍ୱେଷ, ହର୍ଷ-ଶୋକ, କାମ-କ୍ରୋଧ ଆଦି ଅଜ୍ଞାନଜନିତ ବିକାରର ଅଭାବ ତଥା ସମତ୍ୱ ଓ ପରମଶାନ୍ତି– ଏସବୁ ଲକ୍ଷଣ ତ ସମସ୍ତଙ୍କ ଠାରେ ସମାନଭାବରେ ମିଳେ; କିନ୍ତୁ ଭକ୍ତିମାର୍ଗରେ ଭଗବାନଙ୍କୁ ପାଇଥିବା ମହାପୁରୁଷଙ୍କ ଠାରେ ମୈତ୍ରୀ ଓ କରୁଣା ବିଶେଷରୂପରେ ରହେ । ଜ୍ଞାନମାର୍ଗରେ ପରମପଦ ପ୍ରାପ୍ତ ହୋଇଥିବା ମହାତ୍ମାମାନଙ୍କ ଠାରେ ସଂସାର, ଶରୀର ଓ କର୍ମରୁ ଉପରତି ବିଶେଷରୂପରେ ରହେ । ଠିକ୍ ସେହିପରି ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରି ଅନାସକ୍ତଭାବରେ କର୍ମରେ ତତ୍ପର ରହିବା ଲକ୍ଷଣଟି କର୍ମଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ପୁରୁଷଙ୍କ ଠାରେ ବିଶେଷଭାବରେ ରହେ ।

ଦ୍ୱିତୀୟ ଅଧ୍ୟାୟର ପଞ୍ଚାବନରୁ ବାସ୍ତରୀ ଶ୍ଳୋକଯାଏ କେତେକ ଶ୍ଳୋକରେ କର୍ମଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ପୁରୁଷଙ୍କର ତଥା ଚତୁର୍ଦ୍ଦଶ ଅଧ୍ୟାୟର ବାଇଶଠାରୁ ପଚିଶ ଶ୍ଳୋକଯାଏ ଜ୍ଞାନଯୋଗଦ୍ୱାରା ପରମାତ୍ମାଙ୍କୁ ପାଇଥିବା ଗୁଣାତୀତ ପୁରୁଷଙ୍କର ଲକ୍ଷଣ କୁହାଯାଇଛି ଏବଂ ଏଠାରେ ତେରଠାରୁ ଉଣେଇଶ ଶ୍ଳୋକଯାଏ ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ପାଇଥିବା ପୁରୁଷଙ୍କର ଲକ୍ଷଣ କୁହାଯାଇଛି ।

**ସମ୍ବନ୍ଧ –** ପରମାତ୍ମାଙ୍କୁ ପାଇଥିବା ସିଦ୍ଧ ଭକ୍ତମାନଙ୍କର ଲକ୍ଷଣ କହିବା ପରେ ବର୍ତ୍ତମାନ ସେହି ଲକ୍ଷଣଗୁଡ଼ିକୁ ଆଦର୍ଶ ବୋଲି ମାନି ଅତ୍ୟନ୍ତ ପ୍ରଯତ୍ନପୂର୍ବକ ସେଗୁଡ଼ିକୁ ଭଲଭାବେ ସେବନ କରୁଥିବା ପରମଶ୍ରଦ୍ଧାଳୁ, ଶରଣାଗତ ଭକ୍ତମାନଙ୍କୁ ପ୍ରଶଂସା କରିବାପାଇଁ ସେମାନଙ୍କୁ ନିଜର ଅତ୍ୟନ୍ତ ପ୍ରିୟ ବୋଲି କହିବା ସଙ୍ଗେ ସଙ୍ଗେ ଭଗବାନ୍ ଏହି ଅଧ୍ୟାୟର ଉପସଂହାର କରୁଛନ୍ତି–

**ଯେ ତୁ ଧର୍ମ୍ୟାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ ।**
**ଶ୍ରଦ୍ଦଧାନା ମତ୍ପରମା ଭକ୍ତାସ୍ତେଽତୀବ ମେ ପ୍ରିୟାଃ ।। ୨୦ ।।**

**ଅନ୍ୱୟ –** ତୁ = କିନ୍ତୁ; ଯେ = ଯେଉଁ; **ଶ୍ରଦ୍ଦଧାନାଃ** = ଶ୍ରଦ୍ଧାଯୁକ୍ତ ପୁରୁଷମାନେ; **ମତ୍ପରମାଃ** = ମୋର ପରାୟଣ ହୋଇ; **ଇଦମ୍** = ଏହି; **ଯଥା, ଉକ୍ତମ୍** = ଉପରୋକ୍ତ ପ୍ରକାରେ କଥିତ; **ଧର୍ମ୍ୟାମୃତମ୍** = ଧର୍ମମୟ ଅମୃତକୁ; **ପର୍ଯ୍ୟୁପାସତେ** = ନିଷ୍କାମ ପ୍ରେମଭାବରେ ସେବନ କରନ୍ତି; **ତେ** = ସେହି; **ଭକ୍ତାଃ** = ଭକ୍ତମାନେ; **ମେ, ଅତୀବ, ପ୍ରିୟାଃ** = ମୋର ଅତିଶୟ ପ୍ରିୟ ଅଟନ୍ତି।

**ପରନ୍ତୁ ଯେଉଁ ଶ୍ରଦ୍ଧାଯୁକ୍ତ ପୁରୁଷମାନେ ମୋର ପରାୟଣ ହୋଇ ଉପରୋକ୍ତ ଧର୍ମମୟ ଅମୃତକୁ ନିଷ୍କାମ ପ୍ରେମଭାବରେ ସେବନ କରନ୍ତି, ସେହି ଭକ୍ତମାନେ ମୋର ଅତିଶୟ ପ୍ରିୟ ଅଟନ୍ତି ।। ୨୦ ।।**

**ପ୍ରଶ୍ନ –** ଏଠାରେ ତୁ ପଦ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର –** ତେରଠାରୁ ଉଣେଇଶ ଶ୍ଳୋକଯାଏ ଭଗବତ୍ପ୍ରାପ୍ତ ସିଦ୍ଧଭକ୍ତମାନଙ୍କ ଲକ୍ଷଣଗୁଡ଼ିକର ବର୍ଣ୍ଣନା ହୋଇଛି ଏବଂ ଏହି ଶ୍ଳୋକରେ ସେହିସବୁ ଉତ୍ତମ ସାଧକଭକ୍ତମାନଙ୍କର ପ୍ରଶଂସା କରାଯାଇଛି, ଯେଉଁମାନେ କି ଏହି ସିଦ୍ଧମାନଙ୍କ ଠାରୁ ଭିନ୍ନ ଅଟନ୍ତି ଏବଂ ସିଦ୍ଧଭକ୍ତମାନଙ୍କର ଏହିସବୁ ଲକ୍ଷଣକୁ ଆଦର୍ଶ ଜାଣି ସେଗୁଡ଼ିକ ଅଭ୍ୟାସ କରନ୍ତି। ଏହି ପାର୍ଥକ୍ୟ ଦେଖାଇବାକୁ ତୁ ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ଶ୍ରଦ୍ଧାଯୁକ୍ତ ଭଗବତ୍ପରାୟଣ ପୁରୁଷ କାହାକୁ କହନ୍ତି ?

**ଉତ୍ତର –** ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଭଗବାନଙ୍କର ଅବତାରମାନଙ୍କ ଠାରେ, ବଚନମାନଙ୍କରେ ଏବଂ ଭଗବାନଙ୍କ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଓ ଚରିତ୍ରାଦିରେ ଯେଉଁମାନେ ପ୍ରତ୍ୟକ୍ଷସଦୃଶ ସମ୍ମାନପୂର୍ବକ ବିଶ୍ୱାସ ରଖନ୍ତି, ସେହିମାନେ ଶ୍ରଦ୍ଧାବାନ୍। ପରମ ପ୍ରେମୀ ଓ ପରମ ଦୟାଳୁ ଭଗବାନଙ୍କୁ ହିଁ ପରମ ଗତି, ପରମ ଆଶ୍ରୟ ଏବଂ ନିଜର ପ୍ରାଣର ଆଧାର ତଥା ସର୍ବସ୍ୱ ମନେ କରି ତାଙ୍କ ଉପରେ ନିର୍ଭର କରୁଥିବା ଓ ତାଙ୍କ ଦ୍ୱାରା କରାଯାଉଥିବା ବିଧାନରେ ପ୍ରସନ୍ନ ରହୁଥିବା ଲୋକଙ୍କୁ ଭଗବତ୍ପରାୟଣ ପୁରୁଷ କହନ୍ତି।

**ପ୍ରଶ୍ନ –** ଉପରୋକ୍ତ ସାତଟି ଶ୍ଳୋକରେ ବର୍ଣ୍ଣିତ ଭଗବତ୍ଭକ୍ତମାନଙ୍କର ଲକ୍ଷଣକୁ ଏଠାରେ ଧର୍ମମୟ ଅମୃତ କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଭଗବଦ୍ଭକ୍ତମାନଙ୍କର ଉପରୋକ୍ତ ଲକ୍ଷଣସବୁ ହିଁ ବସ୍ତୁତଃ ମାନବଧର୍ମର ପ୍ରକୃତ ସ୍ୱରୂପ। ଏସବୁ ପାଳନ କରିବାରେ ମନୁଷ୍ୟଜନ୍ମର ସାର୍ଥକତା ନିହିତ; କାରଣ ଏସବୁ ପାଳନ କରି ସାଧକ ଚିରଦିନପାଇଁ ମୃତ୍ୟୁବନ୍ଧନରୁ ମୁକ୍ତ ହୋଇଯାଏ ଓ ତାହାକୁ ଅମୃତସ୍ୱରୂପ ଭଗବାନଙ୍କର ପ୍ରାପ୍ତି ହୋଇଯାଏ। ଏହି ଭାବଟି ସ୍ପଷ୍ଟରୂପେ ବୁଝାଇଦେବା ପାଇଁ ଏଠାରେ ଏହି ଲକ୍ଷଣସମୁଦାୟର ନାମ 'ଧର୍ମମୟ ଅମୃତ' ରଖାଯାଇଛି।

**ପ୍ରଶ୍ନ –** ଏଠାରେ **ପର୍ଯ୍ୟୁପାସତେର** ଅଭିପ୍ରାୟ କଣ ?

**ଉତ୍ତର –** ଭଲରୂପେ ତତ୍ପର ହୋଇ ନିଷ୍କାମପ୍ରେମଭାବରେ ଏହି ଉପରୋକ୍ତ ଲକ୍ଷଣଗୁଡ଼ିକ ଶ୍ରଦ୍ଧାପୂର୍ବକ ସଦାସର୍ବଦା ପାଳନ କରିବା ହିଁ **ପର୍ଯ୍ୟୁପାସତେର** ଅଭିପ୍ରାୟ।

**ପ୍ରଶ୍ନ –** ପ୍ରଥମେ ସାତୋଟି ଶ୍ଳୋକରେ ଭଗବତ୍ପ୍ରାପ୍ତ ସିଦ୍ଧଭକ୍ତମାନଙ୍କର ଲକ୍ଷଣଗୁଡ଼ିକ ବର୍ଣ୍ଣନା କରି ସେମାନଙ୍କୁ ତ ଭଗବାନ୍ ନିଜର 'ପ୍ରିୟଭକ୍ତ' ବୋଲି କହିଲେ ଏବଂ ଏହି ଶ୍ଳୋକରେ ଯେଉଁମାନେ ସିଦ୍ଧ ନୁହନ୍ତି, ପରନ୍ତୁ ଏହି ଲକ୍ଷଣଗୁଡ଼ିକର ଉପାସନା କରୁଥିବା ସାଧକ ଭକ୍ତ

ଅଟନ୍ତି, ସେମାନଙ୍କୁ 'ଅତିଶୟ ପ୍ରିୟ' ବୋଲି କହିଲେ — ଏଥିରେ କି ରହସ୍ୟ ରହିଲା ?

**ଉତ୍ତର –** ଯେଉଁ ସିଦ୍ଧ ଭକ୍ତମାନଙ୍କୁ ଭଗବାନଙ୍କର ପ୍ରାପ୍ତି ହୋଇସାରିଛି, ସେମାନଙ୍କ ଠାରେ ତ ଉପରୋକ୍ତ ଲକ୍ଷଣ ସ୍ୱାଭାବିକଭାବରେ ରହେ ଏବଂ ଭଗବାନଙ୍କ ସହିତ ସେମାନଙ୍କର ନିତ୍ୟ ତାଦାତ୍ମ୍ୟ-ସମ୍ବନ୍ଧ ହୋଇଯାଏ । ଏହିହେତୁ ସେମାନଙ୍କ ଠାରେ ଏହି ଲକ୍ଷଣଗୁଡ଼ିକ ରହିବା କୌଣସି ବିଶେଷ ବଡ଼ କଥା ନୁହେଁ । କିନ୍ତୁ ଯେଉଁ ଏକନିଷ୍ଠ ସାଧକ ଭକ୍ତମାନଙ୍କୁ ଭଗବାନଙ୍କର ପ୍ରତ୍ୟକ୍ଷ ଦର୍ଶନ ହୋଇପାରି ନାହିଁ, ତଥାପି ଯେଉଁମାନେ ଭଗବାନଙ୍କ ଉପରେ ବିଶ୍ୱାସ କରି ପରମଶ୍ରଦ୍ଧାର ସହିତ ତନ୍, ମନ, ଧନ, ସର୍ବସ୍ୱ ଭଗବାନଙ୍କୁ ଅର୍ପଣ କରି ତାଙ୍କ ପରାୟଣ ହୋଇଯାଇଛନ୍ତି, ତଥା ଭଗବାନଙ୍କର ଦର୍ଶନପାଇଁ ନିରନ୍ତର ନିଷ୍କାମଭାବରେ ପ୍ରେମପୂର୍ବକ ତାଙ୍କୁ ଚିନ୍ତନ କରୁଥାନ୍ତି ଏବଂ ସତତ ଚେଷ୍ଟା କରି ଉପରୋକ୍ତ ଲକ୍ଷଣ ଅନୁସାରେ ହିଁ ନିଜର ଜୀବନ ବିତାଇବାକୁ ଚାହାଁନ୍ତି, ପ୍ରତ୍ୟକ୍ଷ ଦର୍ଶନ ନ ହେଲେ ବି କେବଳ ବିଶ୍ୱାସଦ୍ୱାରା ସେମାନେ ଏତେ ଦୃଢ଼ନିର୍ଭର ହୋଇଯିବା ଏକ ବିଶେଷ ମହତ୍ତ୍ୱର କଥା । ତେଣୁ ସେମାନେ ଭଗବାନଙ୍କର ବିଶେଷ ପ୍ରିୟ ଅଟନ୍ତି । ଭଗବାନ୍ ଏତେ ଉଦାରହୃଦୟ ଯେ, ଏପରି ପ୍ରେମୀ ଭକ୍ତମାନଙ୍କୁ ସେ ନିଜର ନିତ୍ୟସଙ୍ଗ ପ୍ରଦାନ କରି ଯେପର୍ଯ୍ୟନ୍ତ ସନ୍ତୁଷ୍ଟ ନ କରିଛନ୍ତି, ସେପର୍ଯ୍ୟନ୍ତ ସେ ନିଜକୁ ସେମାନଙ୍କ ନିକଟରେ ଋଣୀ ବୋଲି ମନେ କରନ୍ତି । ଅତଏବ ଭଗବାନ୍ ସେମାନଙ୍କୁ ସିଦ୍ଧ ଭକ୍ତମାନଙ୍କ ଅପେକ୍ଷା ମଧ୍ୟ 'ଅତିଶୟ ପ୍ରିୟ' ବୋଲି କହିବା ଉଚିତ ହିଁ ହୋଇଛି ।

— ୦ —

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଭକ୍ତିଯୋଗୋ*
*ନାମ ଦ୍ୱାଦଶୋଽଧ୍ୟାୟଃ ॥ ୧୨ ॥*

ॐ ଶ୍ରୀପରମାତ୍ମନେ ନମଃ

# ତ୍ରୟୋଦଶୋଽଧ୍ୟାୟଃ

## କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗ

**ଅଧ୍ୟାୟର ନାମ :** କ୍ଷେତ୍ର (ଶରୀର) ଓ କ୍ଷେତ୍ରଜ୍ଞ (ଆତ୍ମା) ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ। କେବଳ ଅଜ୍ଞାନହେତୁ ଏହି ଦୁଇଟି ଆମକୁ ଏକାପରି ଲାଗୁଛି। କ୍ଷେତ୍ର ଜଡ଼, ବିକାରୀ, କ୍ଷଣିକ ଓ ନାଶବାନ୍; କିନ୍ତୁ କ୍ଷେତ୍ରଜ୍ଞ ଚେତନ, ଜ୍ଞାନସ୍ୱରୂପ, ନିର୍ବିକାର, ନିତ୍ୟ ଓ ଅବିନାଶୀ। ଏହି ଅଧ୍ୟାୟରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଉଭୟର ସ୍ୱରୂପ ଉପରୋକ୍ତପ୍ରକାରେ ବିଭାଗୀକୃତ ହୋଇଛି। ତେଣୁ ଏହି ଅଧ୍ୟାୟର ନାମ କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗ ରଖାଯାଇଛି।

**ଅଧ୍ୟାୟର ସାରାଂଶ :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ କ୍ଷେତ୍ର (ଶରୀର) ଓ କ୍ଷେତ୍ରଜ୍ଞ (ଆତ୍ମା)ର ଲକ୍ଷଣ କୁହାଯାଇଛି। ଦ୍ୱିତୀୟ ଶ୍ଳୋକରେ ପରମାତ୍ମାଙ୍କ ସହିତ ଆତ୍ମାର ଏକତ୍ୱ ପ୍ରତିପାଦନ କରି କ୍ଷେତ୍ରକ୍ଷେତ୍ରଜ୍ଞଙ୍କର ଜ୍ଞାନକୁ ହିଁ ଜ୍ଞାନ ବୋଲି କୁହାଯାଇଛି। ତୃତୀୟ ଶ୍ଳୋକରେ ଭଗବାନ୍ ବିକାରସହିତ କ୍ଷେତ୍ରର ସ୍ୱରୂପ ଓ ସ୍ୱଭାବ ଇତ୍ୟାଦିର ଏବଂ ପ୍ରଭାବସହିତ କ୍ଷେତ୍ରଜ୍ଞର ସ୍ୱରୂପ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଛନ୍ତି। ଚତୁର୍ଥ ଶ୍ଳୋକରେ ଋଷି, ବେଦ ଓ ବ୍ରହ୍ମସୂତ୍ରର ପ୍ରମାଣ ଦେଇ ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ବିକାରସହିତ କ୍ଷେତ୍ରର ସ୍ୱରୂପ କହିଦିଆଯାଇଛି। ତତ୍ତ୍ୱଜ୍ଞାନପ୍ରାପ୍ତିର ସାଧନ ହୋଇଥିବାରୁ ଯାହାକୁ ଜ୍ଞାନ ବୋଲି କୁହାଯାଏ, ସପ୍ତମରୁ ଏକାଦଶ ଶ୍ଳୋକପର୍ଯ୍ୟନ୍ତ ସେହି ଅମାନିତ୍ୱ ଆଦି କୋଡ଼ିଏଟି ସାତ୍ତ୍ୱିକ ଭାବ ଓ ଆଚରଣ ବର୍ଣ୍ଣନା କରାଯାଇଛି। ତା'ପରେ ବାର ଶ୍ଳୋକଠାରୁ ସତର ଶ୍ଳୋକପର୍ଯ୍ୟନ୍ତ ଜ୍ଞାନଦ୍ୱାରା ଜାଣିବାଯୋଗ୍ୟ ପରମାତ୍ମାଙ୍କ ସ୍ୱରୂପ ବର୍ଣ୍ଣନା କରାଯିବା ପରେ ଅଠର ଶ୍ଳୋକରେ ସେପର୍ଯ୍ୟନ୍ତ ପ୍ରତିପାଦିତ ହୋଇଥିବା ବିଷୟଗୁଡ଼ିକର ନାମ କହି ସେହି ପ୍ରକରଣ ଜାଣିବାର ଫଳ ପରମାତ୍ମାଙ୍କ ସ୍ୱରୂପପ୍ରାପ୍ତି ବୋଲି କୁହାଯାଇଛି। ତା'ପରେ 'ପ୍ରକୃତି' ଓ 'ପୁରୁଷ' ନାମରେ ପ୍ରକରଣ ଆରମ୍ଭ କରି ଉଣେଇଶରୁ ଏକୋଇଶ ଶ୍ଳୋକପର୍ଯ୍ୟନ୍ତ ପ୍ରକୃତିର ସ୍ୱରୂପ ତଥା କାର୍ଯ୍ୟ ଏବଂ କ୍ଷେତ୍ରଜ୍ଞର ସ୍ୱରୂପ ବର୍ଣ୍ଣନା କରାଯାଇଛି। ବାଇଶରେ ପରମାତ୍ମା ଓ ଆତ୍ମାର ଏକତ୍ୱ ପ୍ରତିପାଦନ କରି ତେଇଶ ଶ୍ଳୋକରେ ଗୁଣମାନଙ୍କ ସହିତ ପ୍ରକୃତି ଓ ପୁରୁଷକୁ ଜାଣିବାର ଫଳ ବର୍ଣ୍ଣନା କରାଯାଇଛି ଏବଂ ଚବିଶ ଓ ପଚିଶ ଶ୍ଳୋକରେ ପରମାତ୍ମସାକ୍ଷାତ୍କାରର ବିଭିନ୍ନ ଉପାୟ ବର୍ଣ୍ଣନା କରାଯାଇଛି। ଛବିଶ ଶ୍ଳୋକରେ କ୍ଷେତ୍ର-କ୍ଷେତ୍ରଜ୍ଞଙ୍କର ସଂଯୋଗରେ ସକଳ ଚରାଚର ପ୍ରାଣୀମାନଙ୍କର ଉତ୍ପତ୍ତି ହୋଇଥିବା କହି ସତେଇଶରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ କୁହାଯାଇଛି ଯେ, ପରମାତ୍ମା ସର୍ବତ୍ର ସମଭାବରେ ଅବସ୍ଥିତ; ସେ ଅବିନାଶୀ ଓ ଅକର୍ତ୍ତା; ଯାହାକିଛି କର୍ମ ହୁଏ, ସବୁ ପ୍ରକୃତିଦ୍ୱାରା ହିଁ ହୁଏ ଏବଂ ସବୁକିଛି ପରମାତ୍ମତତ୍ତ୍ୱରୁ ବିସ୍ତୃତ ହୋଇ ସେହି ତତ୍ତ୍ୱରେ ହିଁ ଅବସ୍ଥିତ ହୁଏ। —ଏପରି ବୁଝିବାର ମହତ୍ତ୍ୱ ଏବଂ ତା'ର ଫଳ ମଧ୍ୟ ଏହି ଶ୍ଳୋକମାନଙ୍କରେ ଦିଆଯାଇଛି। ଏକତିରିଶରୁ ତେତିଶ ଶ୍ଳୋକପର୍ଯ୍ୟନ୍ତ ଆତ୍ମାର ପ୍ରଭାବ ବୁଝାଇଦିଆଯାଇ ତା'ର ଅକର୍ତ୍ତାପଣ ତଥା ନିର୍ଲିପ୍ତତା ଉଦାହରଣମାଧ୍ୟମରେ ନିରୂପଣ କରାଯାଇଛି। ଶେଷରେ ଚଉତିରିଶ ଶ୍ଳୋକରେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ବିଭାଗ ଜାଣିବାର ଫଳ ପରମାତ୍ମପ୍ରାପ୍ତି ବୋଲି କହି ଅଧ୍ୟାୟର ଉପସଂହାର କରାଯାଇଛି।

**ସମ୍ବନ୍ଧ**— ଦ୍ୱାଦଶ ଅଧ୍ୟାୟର ଆରମ୍ଭରେ ଅର୍ଜୁନ ସଗୁଣ ଓ ନିର୍ଗୁଣ ଉପାସକଙ୍କ ମଧ୍ୟରେ ଶ୍ରେଷ୍ଠ କିଏ ବୋଲି ପ୍ରଶ୍ନ କରିଥିଲେ। ତାହାର ଉତ୍ତର ଦେଇ ଦ୍ୱିତୀୟ ଶ୍ଳୋକରେ ଭଗବାନ୍ ସଂକ୍ଷେପରେ ସଗୁଣ ଉପାସକଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲେ ଏବଂ ତୃତୀୟରୁ ପଞ୍ଚମ ଶ୍ଳୋକପର୍ଯ୍ୟନ୍ତ ନିର୍ଗୁଣ ଉପାସନାର ସ୍ୱରୂପ, ଫଳ ଏବଂ ଦେହାଭିମାନୀମାନଙ୍କ ପକ୍ଷରେ ତାହା ଅନୁଷ୍ଠାନ କରିବାର କଠିନତା ନିରୂପଣ କରିଥିଲେ। ତା'ପରେ

ଷଷ୍ଠ ଶ୍ଳୋକଠାରୁ ବିଂଶ ଶ୍ଳୋକପର୍ଯ୍ୟନ୍ତ ସଗୁଣ ଉପାସନାର ମହତ୍ତ୍ୱ, ଫଳ, ପ୍ରକାର ଓ ଭଗବଦ୍‌ଭକ୍ତମାନଙ୍କର ଲକ୍ଷଣମାନ ବର୍ଣ୍ଣନା କରୁ କରୁ ଅଧ୍ୟାୟ ସମାପ୍ତ ହୋଇଗଲା; କିନ୍ତୁ ଭଗବାନ୍ ନିର୍ଗୁଣ ବ୍ରହ୍ମର ତତ୍ତ୍ୱ, ମହିମା ଓ ତାର ପ୍ରାପ୍ତିର ସାଧନାଗୁଡ଼ିକ ବିସ୍ତାରପୂର୍ବକ ବୁଝାଇ ନ ଥିଲେ। ତେଣୁ ନିର୍ଗୁଣ-ନିରାକାର-ତତ୍ତ୍ୱ ଅର୍ଥାତ୍ ଜ୍ଞାନଯୋଗବିଷୟ ଭଲ କରି ବୁଝାଇଦେବା ନିମନ୍ତେ ତ୍ରୟୋଦଶ ଅଧ୍ୟାୟ ଆରମ୍ଭ କରୁଛନ୍ତି। ଏଥିରେ ପ୍ରଥମେ ଭଗବାନ୍ କ୍ଷେତ୍ର (ଶରୀର) ତଥା କ୍ଷେତ୍ରଜ୍ଞ (ଆତ୍ମା)ର ଲକ୍ଷଣ ବୁଝାଉଛନ୍ତି—

ଶ୍ରୀଭଗବାନୁବାଚ

**ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ।**
**ଏତଦ୍‌ଯୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତି ତଦ୍ୱିଦଃ॥ ୧ ॥**

**ଅନ୍ୱୟ—** **କୌନ୍ତେୟ** = ହେ ଅର୍ଜୁନ; **ଇଦମ୍** = ଏହି; **ଶରୀରମ୍** = ଶରୀର; **କ୍ଷେତ୍ରମ୍** = କ୍ଷେତ୍ର; **ଇତି** = ବୋଲି (ଏବଂ); **ଏତଦ୍** = ଏହାକୁ; **ଯଃ** = ଯେ; **ବେତ୍ତି** = ଜାଣେ; **ତମ୍** = ତାକୁ; **କ୍ଷେତ୍ରଜ୍ଞଃ** = କ୍ଷେତ୍ରଜ୍ଞ; **ଇତି** = ବୋଲି; **ଅଭିଧୀୟତେ** = କଥିତ ହୁଏ; **ତଦ୍ୱିଦଃ** = ତତ୍ତ୍ୱଜ୍ଞ ଜ୍ଞାନୀଜନମାନେ; **ପ୍ରାହୁଃ** = କହନ୍ତି।

**ଶ୍ରୀଭଗବାନ୍ କହିଲେ — ହେ ଅର୍ଜୁନ! ଏହି ଶରୀର 'କ୍ଷେତ୍ର' ନାମରେ କଥିତ ହୁଏ ଏବଂ ଏହାକୁ ଯେ ଜାଣନ୍ତି, ତତ୍ତ୍ୱଜ୍ଞ ଜ୍ଞାନୀଜନମାନେ ତାଙ୍କୁ କ୍ଷେତ୍ରଜ୍ଞ ବୋଲି କହନ୍ତି॥ ୧ ॥**

**ପ୍ରଶ୍ନ—** **ଶରୀରମ୍** ସହିତ **ଇଦମ୍** ପଦ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ଏବଂ ଶରୀରକୁ କ୍ଷେତ୍ର ବୋଲି କାହିଁକି କୁହାଯାଏ ?

**ଉତ୍ତର—** **ଶରୀରମ୍** ସହିତ **ଇଦମ୍** ପଦ ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ଶରୀର ଆତ୍ମାଦ୍ୱାରା ଦେଖାଯାଏ ଓ ଜଣାଯାଏ; ତେଣୁ ଶରୀର ଦୃଶ୍ୟ ଓ ଆତ୍ମା ଦ୍ରଷ୍ଟା। ଏପରିଭାବରେ ଦୁହେଁ ପରସ୍ପରଠାରୁ ସର୍ବଥା ଭିନ୍ନ। କ୍ଷେତରେ ବୁଣାଯାଇଥିବା ବୀଜ ଯେପରି ଉପଯୁକ୍ତ ସମୟରେ ତା'ର ଅନୁରୂପ ଫଳ ଉତ୍ପନ୍ନ କରିଥାଏ, ଏହି ଶରୀରରେ ବୁଣାଯାଇଥିବା କର୍ମସଂସ୍କାରରୂପକ ବୀଜରୁ ମଧ୍ୟ ସେହିପରି ଉପଯୁକ୍ତ ସମୟରେ ଫଳ ଉତ୍ପନ୍ନ ହୋଇଥାଏ। ତେଣୁ ଶରୀରକୁ **କ୍ଷେତ୍ର** ବୋଲାଯାଏ। ପୁଣି ପ୍ରତିକ୍ଷଣ ଏହାର କ୍ଷୟ ହୋଇଚାଲିଛି; ସେହି କାରଣରୁ ବି ଏହାକୁ **କ୍ଷେତ୍ର** ବୋଲାଯାଏ। ତେଣୁ ୧୫ଶ ଅଧ୍ୟାୟରେ ଏହାକୁ **କ୍ଷର** ପୁରୁଷ ବୋଲି କୁହାଯାଇଛି। ଏହି କ୍ଷେତ୍ରର ସ୍ୱରୂପ ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ ସଂକ୍ଷେପରେ ବୁଝାଇଦିଆଯାଇଛି।

**ପ୍ରଶ୍ନ—** ଏହି କ୍ଷେତ୍ରକୁ ଯେ ଜାଣନ୍ତି, ତାଙ୍କୁ **କ୍ଷେତ୍ରଜ୍ଞ** ବୋଲି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏପରି କହି ଭଗବାନ୍ ଅନ୍ତରାତ୍ମାରୂପୀ ଦ୍ରଷ୍ଟାଙ୍କୁ **ଲକ୍ଷ୍ୟ** କରାଉଛନ୍ତି। ମନ, ବୁଦ୍ଧି, ଇନ୍ଦ୍ରିୟ, ମହାଭୂତ ଏବଂ ଇନ୍ଦ୍ରିୟମାନଙ୍କର ବିଷୟ ଆଦି ଯେତେସବୁ ଜ୍ଞେୟ ଦୃଶ୍ୟବର୍ଗ ରହିଛି, ସେସବୁ ଜଡ଼, ବିନାଶୀ ଓ ପରିବର୍ତ୍ତନଶୀଳ। ଚେତନ ଆତ୍ମା ଏହି ଜଡ଼ ଦୃଶ୍ୟବର୍ଗଠାରୁ ସର୍ବଥା ଭିନ୍ନ। ସେ ତାହାର ଜ୍ଞାତା, ତାହା ଭିତରେ ଓତପ୍ରୋତ ଏବଂ ତାହାର ଅଧିପତି। ତେଣୁ ତାଙ୍କୁ **କ୍ଷେତ୍ରଜ୍ଞ** ବୋଲାଯାଏ। ଏହି ଜ୍ଞାତା ଚେତନ-ଆତ୍ମାକୁ ସପ୍ତମ ଅଧ୍ୟାୟରେ 'ପରା ପ୍ରକୃତି' (୭/୫), ଅଷ୍ଟମ ଅଧ୍ୟାୟରେ 'ଅଧ୍ୟାତ୍ମ' (୮/୩) ଏବଂ ପଞ୍ଚଦଶ ଅଧ୍ୟାୟରେ 'ଅକ୍ଷର ପୁରୁଷ' (୧୫/୧୬) ବୋଲି କୁହାଯାଇଛି। ଏହି ଆତ୍ମତତ୍ତ୍ୱ ଅତ୍ୟନ୍ତ ଗହନ। ତେଣୁ ଭଗବାନ୍ ଭିନ୍ନ ଭିନ୍ନ ପ୍ରକରଣଦ୍ୱାରା କେଉଁଠି ସ୍ତ୍ରୀବାଚକ, କେଉଁଠି ନପୁଂସକବାଚକ ଏବଂ କେଉଁଠି ପୁରୁଷବାଚକ ନାମରେ ଏହାର ବର୍ଣ୍ଣନା କରିଛନ୍ତି। ବାସ୍ତବରେ ଆତ୍ମା ସର୍ବଥା ବିକାରରହିତ, ଅଲିଙ୍ଗ, ନିତ୍ୟ, ନିର୍ବିକାର ଏବଂ ଚେତନ ଜ୍ଞାନସ୍ୱରୂପ ଅଟେ।

**ପ୍ରଶ୍ନ—** ତଦ୍ୱିଦଃର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହି ପଦର **ତତ୍** ଶବ୍ଦଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞ ଉଭୟଙ୍କୁ ଗ୍ରହଣ କରାଯାଏ। ଯେଉଁମାନେ ଏହି ଉଭୟଙ୍କୁ ଯଥାର୍ଥରୂପେ ଭଲଭାବରେ ଜାଣନ୍ତି, ସେମାନେ **ତଦ୍ୱିଦଃ**। କହିବାର ଅଭିପ୍ରାୟ ଏହି ଯେ, ତତ୍ତ୍ୱବେତ୍ତା ମହାତ୍ମାମାନେ ଏହା କହିଛନ୍ତି; ତେଣୁ ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ।

*ସମ୍ବନ୍ଧ–* ଏପରିଭାବରେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ଲକ୍ଷଣ କହିଲେ। ବର୍ତ୍ତମାନ କ୍ଷେତ୍ରଜ୍ଞ ଓ ପରମାତ୍ମାଙ୍କ ଏକତ୍ୱ ପ୍ରତିପାଦନ କରି ଭଗବାନ୍ ଜ୍ଞାନର ଲକ୍ଷଣ ନିରୂପଣ କରୁଛନ୍ତି–

**କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ।**
**କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ॥ ୨ ॥**

**ଅନ୍ୱୟ–** ଭାରତ = ହେ ଅର୍ଜୁନ!; **ସର୍ବକ୍ଷେତ୍ରେଷୁ** = ସବୁ କ୍ଷେତ୍ରରେ; **କ୍ଷେତ୍ରଜ୍ଞମ୍** = କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବାତ୍ମା; **ଅପି** = ବି; **ମାମ୍** = ମୋତେ; **ବିଦ୍ଧି** = (ବୋଲି) ଜାଣ; **ଚ** = ଏବଂ; **କ୍ଷେତ୍ରକ୍ଷେତ୍ରଜ୍ଞୟୋଃ** = କ୍ଷେତ୍ର ଓ କ୍ଷେତ୍ରଜ୍ଞର ଅର୍ଥାତ୍ ବିକାରସହିତ ପ୍ରକୃତି ଓ ପୁରୁଷର; **ଯତ୍** = ଯେଉଁ; **ଜ୍ଞାନମ୍** = ତତ୍ତ୍ୱତଃ ଜାଣିବା; **ତତ୍** = ତାହା (ହିଁ); **ଜ୍ଞାନମ୍** = ଜ୍ଞାନ; **(ଇତି)** = ଏହା; **ମମ** = ମୋର; **ମତମ୍** = ମତ।

**ହେ ଅର୍ଜୁନ! ତୁମେ ମୋତେ ସବୁ କ୍ଷେତ୍ର(ଶରୀର)ରେ କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବାତ୍ମା ବୋଲି ଜାଣ ଏବଂ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଅର୍ଥାତ୍ ବିକାରସହିତ ପ୍ରକୃତି ଓ ପୁରୁଷ ଉଭୟଙ୍କୁ ତତ୍ତ୍ୱତଃ ଜାଣିବା ହିଁ ମୋ ମତରେ ଜ୍ଞାନ॥ ୨ ॥**

**ପ୍ରଶ୍ନ–** 'ତୁମେ ମୋତେ ସବୁ କ୍ଷେତ୍ରରେ କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବାତ୍ମା ବୋଲି ଜାଣ'— ଏପରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର–** ଏପରି କହିବା ଦ୍ୱାରା ଆତ୍ମା ଓ ପରମାତ୍ମାଙ୍କର ଏକତ୍ୱ ପ୍ରତିପାଦନ କରାଯାଇଛି। ଆତ୍ମା ଓ ପରମାତ୍ମା ମଧ୍ୟରେ ବସ୍ତୁତଃ କୌଣସି ପ୍ରଭେଦ ନାହିଁ; କେବଳ ପ୍ରକୃତିସଙ୍ଗରେ ଥିବାରୁ ପ୍ରଭେଦ ଥିବାପରି ଜଣାପଡୁଛି। ତେଣୁ ଦ୍ୱିତୀୟ ଅଧ୍ୟାୟର ଚବିଶ ଓ ପଚିଶ ଶ୍ଳୋକରେ ଆତ୍ମାର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଉ ଯେଉଁ ଶବ୍ଦ ପ୍ରୟୋଗ କରିଛନ୍ତି, ଦ୍ୱାଦଶ ଅଧ୍ୟାୟର ତୃତୀୟ ଶ୍ଳୋକରେ ନିର୍ଗୁଣ ନିରାକାର ପରମାତ୍ମାଙ୍କ ଲକ୍ଷଣ ବର୍ଣ୍ଣନା କଲାବେଳେ ବି ପ୍ରାୟ ସେହି ଶବ୍ଦ ପ୍ରୟୋଗ କରିଛନ୍ତି। ଭଗବାନଙ୍କ କଥନର ଅଭିପ୍ରାୟ ହେଲା : ସକଳ କ୍ଷେତ୍ରରେ ଯେଉଁ ଚେତନ ଆତ୍ମା କ୍ଷେତ୍ରଜ୍ଞ ହୋଇ ରହିଛି, ତାହା ମୋର ହିଁ ଅଂଶ (୧୫/୭) ହୋଇଥିବାରୁ ବସ୍ତୁତଃ ମୋଠାରୁ ଭିନ୍ନ ନୁହେଁ; ମୁଁ ପରମାତ୍ମା ହିଁ ଜୀବାତ୍ମାରୂପରେ ବିଭିନ୍ନପ୍ରକାରେ ପ୍ରତୀତ ହେଉଛି; ଏହି କଥାଟି ତୁମେ ଭଲରୂପେ ବୁଝିରଖ।

**ପ୍ରଶ୍ନ–** 'ସକଳ କ୍ଷେତ୍ରରେ ଅର୍ଥାତ୍ ଶରୀରରେ କ୍ଷେତ୍ରଜ୍ଞ (ଜୀବାତ୍ମା) ଓ ମୁଁ— ଉଭୟେ ରହିଛୁ'— ଏଠାରେ ଏପରି ଅର୍ଥ କଲେ କ୍ଷତି କ'ଣ ?

**ଉତ୍ତର–** ଭକ୍ତିପ୍ରଧାନ ପ୍ରକରଣ ହୋଇଥିଲେ, ଏହି ଅର୍ଥ ବି କରାଯାଇପାରିଥାନ୍ତା। କିନ୍ତୁ ଏଠାରେ ପ୍ରକରଣଟି ଜ୍ଞାନପ୍ରଧାନ। ଏହି ପ୍ରକରଣରେ ଭକ୍ତିର ବର୍ଣ୍ଣନା ଜ୍ଞାନ ସାଧନାରୂପରେ ଆସିଛି; ତେଣୁ ଏଠାରେ ଭକ୍ତିର ସ୍ଥାନ ଗୌଣ ବୋଲି ଧରାଯାଏ। ଅତଏବ ଏଠାରେ ଅଦ୍ୱୈତପରକ ବ୍ୟାଖ୍ୟା ହିଁ ଠିକ୍ ପ୍ରତୀତ ହେଉଛି।

**ପ୍ରଶ୍ନ–** 'ଯାହା କ୍ଷେତ୍ର ଓ କ୍ଷେତ୍ରଜ୍ଞର ଜ୍ଞାନ, ମୋ ମତରେ ତାହା ହିଁ ଜ୍ଞାନ' —ଏପରି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର–** ଏହାଦ୍ୱାରା ଦେଖାଇଦିଆଗଲା ଯେ, କ୍ଷେତ୍ର ଉତ୍ପତ୍ତିବିନାଶଶୀଳ, ଜଡ଼, ଅନିତ୍ୟ, ଜ୍ଞେୟ ଏବଂ କ୍ଷଣିକ। ବିପରୀତ ପକ୍ଷରେ କ୍ଷେତ୍ରଜ୍ଞ (ଆତ୍ମା) ନିତ୍ୟ, ଚେତନ, ଜ୍ଞାତା, ନିର୍ବିକାର, ଶୁଦ୍ଧ ଓ ସଦା ଏକରୂପ। ତେଣୁ ଗୋଟିଏ ଅନ୍ୟଟି ଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଅଜ୍ଞାନହେତୁ ହିଁ ଉଭୟେ ଏକାପରି ପ୍ରତୀତ ହୁଅନ୍ତି।—ଏକଥା ତତ୍ତ୍ୱତଃ ବୁଝିଯିବା ହିଁ ବାସ୍ତବିକ ଜ୍ଞାନ। ଏହା ଭଗବାନଙ୍କର ମତ। ଏଥିରେ କୌଣସିପ୍ରକାର ସଂଶୟ ବା ଭ୍ରମ ନାହିଁ।

*ସମ୍ବନ୍ଧ–* କ୍ଷେତ୍ର ଓ କ୍ଷେତ୍ରଜ୍ଞର ପୂର୍ଣ୍ଣଜ୍ଞାନ ହୋଇଗଲେ ସଂସାରଭ୍ରମ ନାଶ ପାଇଯାଏ ଏବଂ ପରମାତ୍ମପ୍ରାପ୍ତି ହୋଇଯାଏ। ତେଣୁ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସ୍ୱରୂପ ଆଦି ଭଲରୂପେ ବିଭାଗପୂର୍ବକ ବୁଝାଇଦେବାକୁ ଭଗବାନ୍ କହୁଛନ୍ତି–

**ତତ୍କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଯଦ୍ବିକାରି ଯତଶ୍ଚ ଯତ୍।**
**ସ ଚ ଯୋ ଯତ୍ପ୍ରଭାବଶ୍ଚ ତତ୍ ସମାସେନ ମେ ଶୃଣୁ॥ ୩ ॥**

**ଅନ୍ୱୟ—** ତତ୍ = ସେହି; **କ୍ଷେତ୍ରମ୍** = କ୍ଷେତ୍ର; **ଯତ୍** = ଯାହା; **ଚ** = ଓ; **ଯାଦୃକ୍** = ଯେପରି; **ଚ** = ତଥା; **ଯଦ୍ବିକାରି** = ଯେଉଁ ଯେଉଁ ବିକାରଯୁକ୍ତ; **ଚ** = ଓ; **ଯତଃ** = ଯେଉଁଥିରୁ; **ଯତ୍** = ଯାହା ଉତ୍ପନ୍ନ (ହୋଇଛି); **ଚ** = ତଥା; **ସଃ** = ସେହି (କ୍ଷେତ୍ରଜ୍ଞ ବି); **ଯଃ** = କିଏ; **ଚ** = ଓ; **ଯତ୍ପ୍ରଭାବଃ** = ଯେଉଁ ପ୍ରଭାବଯୁକ୍ତ; **ତତ୍** = ତାହା; **ସମାସେନ** = ସଂକ୍ଷେପରେ; **ମେ** = ମୋଠାରୁ; **ଶୃଣୁ** = ଶୁଣ।

**ସେହି କ୍ଷେତ୍ର କଣ, ତାହା କିପରି ଏବଂ କେଉଁ କେଉଁ ବିକାରଯୁକ୍ତ, କେଉଁଥିରୁ କଣ ଉତ୍ପନ୍ନ ହୋଇଛି ତଥା ସେହି କ୍ଷେତ୍ରଜ୍ଞ ମଧ୍ୟ କିଏ ଓ ତାହା କେଉଁ ପ୍ରଭାବଯୁକ୍ତ, ତାହା ସଂକ୍ଷେପରେ ମୋଠାରୁ ଶୁଣ॥ ୩ ॥**

**ପ୍ରଶ୍ନ—** **କ୍ଷେତ୍ରମ** ସହିତ **ତତ୍** ବିଶେଷଣ ଦେବାର ଭାବ କ'ଣ? **ଯତ୍** ପଦଦ୍ୱାରା ଭଗବାନ୍ କ୍ଷେତ୍ରର କେଉଁ ବିଷୟର ସ୍ପଷ୍ଟୀକରଣ ଦେଇଛନ୍ତି? ସେହି ସ୍ପଷ୍ଟୀକରଣ କେଉଁ ଶ୍ଳୋକରେ ରହିଛି?

**ଉତ୍ତର—** **କ୍ଷେତ୍ରମ୍** ସହିତ **ତତ୍** ବିଶେଷଣ ଦେଇ ଭଗବାନ୍ ପ୍ରଥମ ଶ୍ଳୋକରେ ଯେଉଁ ଶରୀରରୂପୀ **କ୍ଷେତ୍ରର** ଲକ୍ଷଣ କହିଛନ୍ତି, ତାହାକୁ ଏଠାରେ **ତତ୍କ୍ଷେତ୍ରମ୍** ବୋଲି କହିଛନ୍ତି ତଥା **ଯତ୍** ପଦଦ୍ୱାରା ଭଗବାନ୍ କ୍ଷେତ୍ରର ସ୍ୱରୂପ ବୁଝାଇବାକୁ ସଂକେତ ଦେଇ ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ ତାହା କହିଛନ୍ତି।

**ପ୍ରଶ୍ନ—** **ଯାଦୃକ୍** ପଦଦ୍ୱାରା କ୍ଷେତ୍ର ବିଷୟରେ କ'ଣ କହିବାକୁ ସଂକେତ ଦିଆଯାଇଛି ଏବଂ ତାହା କେଉଁଠି କୁହାଯାଇଛି?

**ଉତ୍ତର—** **ଯାଦୃକ୍** ପଦଦ୍ୱାରା କ୍ଷେତ୍ରର ସ୍ୱଭାବ କୁହାଯିବାର ସଂକେତ ମିଳୁଛି। ଛବିଶ ଓ ସତେଇଶ ଶ୍ଳୋକରେ ସମସ୍ତ ଭୂତ ଉତ୍ପତ୍ତି-ବିନାଶଶୀଳ ବୋଲି କହି ସେହି ବିଷୟ ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ—ଯଦ୍ବିକାରି** ପଦଦ୍ୱାରା କ୍ଷେତ୍ରବିଷୟରେ କ'ଣ କୁହାଯିବାର ସଂକେତ ଦିଆଯାଇଛି ଏବଂ ତାହା କେଉଁ ଶ୍ଳୋକରେ କୁହାଯାଇଛି?

**ଉତ୍ତର—** **ଯଦ୍ବିକାରି** ପଦଦ୍ୱାରା କ୍ଷେତ୍ରର ବିକାରମାନଙ୍କର ବର୍ଣ୍ଣନା କରିବାର ସଂକେତ ଦିଆଯାଇଛି ଏବଂ ଷଷ୍ଠ ଶ୍ଳୋକରେ ତାହା ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ—** **ଯତଃ ଚ ଯତ୍**— ଏହି ପଦଗୁଡ଼ିକଦ୍ୱାରା କ୍ଷେତ୍ରର କେଉଁ ବିଷୟ କୁହାଯିବାର ସଂକେତ ମିଳୁଛି? ତାହା କେଉଁ ଶ୍ଳୋକରେ କୁହାଯାଇଛି?

**ଉତ୍ତର—** ଯେଉଁ ପଦାର୍ଥସମୁଦାୟର ନାମ କ୍ଷେତ୍ର, ସେମାନଙ୍କ ଭିତରୁ କେଉଁ ପଦାର୍ଥ କେଉଁଥିରୁ ଉତ୍ପନ୍ନ ହୁଏ, ତାହା ବୁଝାଇଦେବାକୁ **ଯତଃ ଚ ଯତ୍** ପଦଗୁଡ଼ିକଦ୍ୱାରା ସଂକେତ କରାଯାଇଛି। ଉଣେଇଶ ଶ୍ଳୋକର ଉତ୍ତରାର୍ଦ୍ଧ ଓ କୋଡ଼ିଏ ଶ୍ଳୋକର ପୂର୍ବାର୍ଦ୍ଧରେ ତାହା ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ—** **ସଃ** ପଦ କାହାର ବାଚକ ଏବଂ **ଯଃ** ପଦଦ୍ୱାରା ସେହି ବିଷୟରେ ଭଗବାନ୍ କ'ଣ କହିବାକୁ ସଂକେତ ଦେଇଛନ୍ତି; ତାହା କେଉଁ ଶ୍ଳୋକରେ କୁହାଯାଇଛି?

**ଉତ୍ତର—** **ସଃ** ପଦଟି କ୍ଷେତ୍ରଜ୍ଞଙ୍କର ବାଚକ; **ଯଃ** ପଦଦ୍ୱାରା ତାହାର ସ୍ୱରୂପ ବୁଝାଇଦେବାକୁ ସଂକେତ କରାଯାଇଛି। ଆହୁରି ଆଗକୁ କ୍ଷେତ୍ରଜ୍ଞଙ୍କର ପ୍ରକୃତିସ୍ଥ ଏବଂ ବାସ୍ତବ — ଉଭୟ ସ୍ୱରୂପର ବର୍ଣ୍ଣନା ଦିଆଯାଇଛି, ଯଥା: ଉଣେଇଶ ଶ୍ଳୋକରେ ତାହାକୁ 'ଅନାଦି' ବୋଲି, କୋଡ଼ିଏରେ 'ସୁଖଦୁଃଖର ଭୋକ୍ତା' ବୋଲି ଓ ଏକୋଇଶରେ 'ଭଲମନ୍ଦ ଯୋନିରେ ଜନ୍ମୁଥିବା' ବୋଲି କହି ପ୍ରକୃତିସ୍ଥ ପୁରୁଷର ସ୍ୱରୂପ କୁହାଯାଇଛି ଏବଂ ବାଇଶ ତଥା ସତେଇଶଠାରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ପରମାତ୍ମାଙ୍କ ସହିତ ଏକତ୍ୱ ଦର୍ଶାଇ ତାହାର ବାସ୍ତବିକ ସ୍ୱରୂପ ନିରୂପଣ କରାଯାଇଛି।

**ପ୍ରଶ୍ନ—** **ଯତ୍ପ୍ରଭାବ**ଦ୍ୱାରା କ୍ଷେତ୍ରଜ୍ଞ ବିଷୟରେ କ'ଣ କହିବାର ସଙ୍କେତ ଦିଆଯାଇଛି ଏବଂ ତାହା କେଉଁ ଶ୍ଳୋକରେ କୁହାଯାଇଛି?

**ଉତ୍ତର—** **ଯତ୍ପ୍ରଭାବ** ପଦଦ୍ୱାରା କ୍ଷେତ୍ରଜ୍ଞଙ୍କର ପ୍ରଭାବ ବିଷୟ କୁହାଯିବାର ସଂକେତ ଦିଆଯାଇଛି ଏବଂ ତାହା ଏକତିରିଶରୁ ତେତିଶ ଶ୍ଳୋକପର୍ଯ୍ୟନ୍ତ କୁହାଯାଇଛି।

**ସମ୍ବନ୍ଧ–** ତୃତୀୟ ଶ୍ଳୋକରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ଯେଉଁ ତତ୍ତ୍ୱ ସଂକ୍ଷେପରେ ଶୁଣିବାକୁ ଭଗବାନ୍ ଅର୍ଜୁନଙ୍କୁ କହିଥିଲେ, ବର୍ତ୍ତମାନ ତାହା ବିଷୟରେ ଋଷିମାନଙ୍କର, ବେଦର ଓ ବ୍ରହ୍ମସୂତ୍ରର ଉକ୍ତିମାନ ପ୍ରମାଣ ଦେଇ ଭଗବାନ୍ ଋଷି, ବେଦ ଓ ବ୍ରହ୍ମସୂତ୍ରକୁ ଗୌରବ ପ୍ରଦାନ କରୁଛନ୍ତି–

**ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍ ।**
**ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍‌ଭିର୍ବିନିଶ୍ଚିତୈଃ ।। ୪ ।।**

**ଅନ୍ୱୟ–** **ଋଷିଭିଃ** = ଋଷିମାନଙ୍କ ଦ୍ୱାରା; **ବହୁଧା** = ବହୁପ୍ରକାରେ; **ଗୀତମ୍** = କୁହାଯାଇଛି; **ବିବିଧୈଃ** = ବିବିଧ; **ଛନ୍ଦୋଭିଃ** = ବେଦମନ୍ତ୍ରମାନଙ୍କ ଦ୍ୱାରା (ବି); **ପୃଥକ୍** = ବିଭାଗପୂର୍ବକ; **(ଗୀତମ୍)** = କୁହାଯାଇଛି; **ଚ** = ତଥା; **ବିନିଶ୍ଚିତୈଃ** = ଭଲଭାବରେ ନିଶ୍ଚୟ କରାଯାଇଥିବା; **ହେତୁମଦ୍‌ଭିଃ** = ଯୁକ୍ତିଯୁକ୍ତ; **ବ୍ରହ୍ମସୂତ୍ରପଦୈଃ** = ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା; **ଏବ** = ମଧ; **(ଗୀତମ୍)** = କୁହାଯାଇଛି ।

**ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞର ତତ୍ତ୍ୱ ଋଷିମାନଙ୍କ ଦ୍ୱାରା ବହୁପ୍ରକାରେ କୁହାଯାଇଛି ଏବଂ ବିବିଧ ବେଦମନ୍ତ୍ରମାନଙ୍କ ଦ୍ୱାରା ମଧ ବିଭାଗପୂର୍ବକ କୁହାଯାଇଛି ତଥା ଭଲଭାବରେ ନିଶ୍ଚୟ କରାଯାଇଥିବା ଯୁକ୍ତିଯୁକ୍ତ ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା ମଧ କୁହାଯାଇଛି ।। ୪ ।।**

**ପ୍ରଶ୍ନ–** 'ଋଷିମାନଙ୍କ ଦ୍ୱାରା ବହୁପ୍ରକାରେ କୁହାଯାଇଛି'— ଏହାର ଅଭିପ୍ରାୟ କ'ଣ ?

**ଉତ୍ତର–** ଏହାର ଅଭିପ୍ରାୟ ଏହି ଯେ, ମନ୍ତ୍ରଦ୍ରଷ୍ଟା ତଥା ଶାସ୍ତ୍ର ଓ ବିଭିନ୍ନ ସ୍ମୃତିର ରଚୟିତା ଋଷିଗଣ ନିଜ ନିଜ ଗ୍ରନ୍ଥରେ ତଥା ବିଭିନ୍ନ ପୁରାଣ-ଇତିହାସରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସ୍ୱରୂପ ଓ ତତ୍‌ସମ୍ବନ୍ଧୀୟ ସମସ୍ତ ବିଷୟ ନାନାପ୍ରକାର ବର୍ଣ୍ଣନା ଦେଇ ବିସ୍ତୃତଭାବରେ ବୁଝାଇଦେଇଛନ୍ତି । ସେସବୁର ସାରକଥା ଭଗବାନ୍ ବହୁ ସଂକ୍ଷେପରେ କହିଦେଇଛନ୍ତି ।

**ପ୍ରଶ୍ନ–** **ବିବିଧୈଃ** ବିଶେଷଣ ସହିତ **ଛନ୍ଦୋଭିଃ** ପଦଟି କାହାର ବାଚକ ? 'ଏମାନଙ୍କ ଦ୍ୱାରା ସେହି ତତ୍ତ୍ୱ ପୃଥକ୍‌ରୂପେ କୁହାଯାଇଛି' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର–** **ବିବିଧୈଃ** ବିଶେଷଣ ସହିତ **ଛନ୍ଦୋଭିଃ** ପଦଟି ହେଉଛି ଋକ୍, ଯଜୁଃ, ସାମ ଓ ଅଥର୍ବ— ଏହି ଚାରିବେଦର ସଂହିତା ଓ ବ୍ରାହ୍ମଣ— ଉଭୟ ଭାଗର ବାଚକ। ସକଳ ଉପନିଷଦ୍ ଓ ବିଭିନ୍ନ ଶାଖା ମଧ ଏହାର ଅନ୍ତର୍ଗତ ବୋଲି ବୁଝିବାକୁ ପଡ଼ିବ। ଏମାନଙ୍କଦ୍ୱାରା ସେହି ତତ୍ତ୍ୱ ପୃଥକ୍‌ଭାବରେ କୁହାଯାଇଛି ବୋଲି କହିବାର ଅଭିପ୍ରାୟ ଏହି ଯେ, କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟରେ ଭଗବାନ୍ ଏଠାରେ ଯାହା ସଂକ୍ଷେପରେ ପ୍ରକାଶ କରିଛନ୍ତି, ତାହା ଉକ୍ତ ଶାସ୍ତ୍ରମାନଙ୍କରେ ବିସ୍ତୃତଭାବରେ ଓ ବିଭାଗପୂର୍ବକ ସ୍ଥାନେ ସ୍ଥାନେ ଅନେକପ୍ରକାରେ ବର୍ଣ୍ଣନା କରାଯାଇଛି ।

**ପ୍ରଶ୍ନ–** **ବିନିଶ୍ଚିତୈଃ** ଓ **ହେତୁମଦ୍‌ଭିଃ** ଦୁଇ ବିଶେଷଣ ସହିତ **ବ୍ରହ୍ମସୂତ୍ରପଦୈଃ** ପଦଟି କେଉଁ ପଦମାନଙ୍କୁ ବୁଝାଉଛି ଏବଂ ଏପରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର–** ଯାହା ସମ୍ପୂର୍ଣ୍ଣରୂପେ ନିଶ୍ଚିତ ଓ ସନ୍ଦେହ ଦୃଷ୍ଟିରୁ ଅସନ୍ଦିଗ୍ଧ, ତାହାକୁ **ବିନିଶ୍ଚିତ** ବୋଲାଯାଏ; ପୁଣି ଯାହା ଯୁକ୍ତିଯୁକ୍ତ ଅର୍ଥାତ୍ ଯେଉଁଥିରେ ବିଭିନ୍ନ ଯୁକ୍ତିଦ୍ୱାରା ସିଦ୍ଧାନ୍ତ ନିର୍ଣ୍ଣୟ କରାଯାଇଥାଏ, ତାହାକୁ **ହେତୁମତ୍** ବୋଲାଯାଏ । ତେଣୁ ଏଠାରେ ଉକ୍ତ ଦୁଇ ବିଶେଷଣ ସହିତ **ବ୍ରହ୍ମସୂତ୍ରପଦୈଃ** ପଦଟି ବେଦାନ୍ତଦର୍ଶନରେ ଯେଉଁ **ଅଥାତୋ ବ୍ରହ୍ମଜିଜ୍ଞାସା** ଆଦି ସୂତ୍ରରୂପ ପଦ ରହିଛି, ସେହିସବୁର ବାଚକ ବୋଲି ମନେହୁଏ; କାରଣ ସେଥିରେ ଉପଯୁକ୍ତ ଲକ୍ଷଣମାନ ସେହି ପଦମାନଙ୍କ ସହିତ ଠିକ୍ ଠିକ୍ ମିଳିଯାଉଛି। ଏହି ପଦ ବ୍ୟବହାରର ଅଭିପ୍ରାୟ ଏହି ଯେ, ଶ୍ରୁତି-ସ୍ମୃତି ଆଦିରେ ବର୍ଣ୍ଣିତ ଯେଉଁ କ୍ଷେତ୍ର-କ୍ଷେତ୍ରଜ୍ଞ ତତ୍ତ୍ୱକୁ ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା ଯୁକ୍ତିପୂର୍ବକ ବୁଝାଇଦିଆଯାଇଛି, ତାହାର ସାରକଥା ମଧ ଭଗବାନ୍ ଏଠାରେ ସଂକ୍ଷେପରେ କହୁଛନ୍ତି ।

**ସମ୍ବନ୍ଧ–** ଏପରିଭାବରେ ଋଷି, ବେଦ ଓ ବ୍ରହ୍ମସୂତ୍ରର ପ୍ରମାଣ ଦେଇସାରି ଭଗବାନ୍ ବର୍ତ୍ତମାନ ତୃତୀୟ ଶ୍ଳୋକରେ **ଯତ୍** ପଦଦ୍ୱାରା କୁହାଯାଇଥିବା କ୍ଷେତ୍ରର ତଥା **ଯଦ୍‌ବିକାରି** ପଦଦ୍ୱାରା କୁହାଯାଇଥିବା ତାହାର ବିକାରମାନଙ୍କର ବର୍ଣ୍ଣନା ପରବର୍ତ୍ତୀ ଶ୍ଳୋକଦ୍ୱୟରେ କରୁଛନ୍ତି–

**ମହାଭୂତାନ୍ୟହଂକାରୋ ବୁଦ୍ଧିରବ୍ୟକ୍ତମେବ ଚ ।**
**ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ ।। ୫ ।।** *

**ଅନ୍ୱୟ –** ମହାଭୂତାନି = ପଞ୍ଚମହାଭୂତ; ଅହଂକାରଃ = ଅହଂକାର; ବୁଦ୍ଧିଃ = ବୁଦ୍ଧି; ଚ = ଓ; ଅବ୍ୟକ୍ତମ୍ = ମୂଳ ପ୍ରକୃତି; ଏବ = ବି; ଚ = ତଥା; ଦଶ = ଦଶ; ଇନ୍ଦ୍ରିୟାଣି = ଇନ୍ଦ୍ରିୟମାନେ; ଏକମ୍ = ଏକ ମନ; ଚ = ଓ; ପଞ୍ଚ = ପାଞ୍ଚ; **ଇନ୍ଦ୍ରିୟଗୋଚରାଃ** = ଇନ୍ଦ୍ରିୟମାନଙ୍କର ବିଷୟ (ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ) ।

**ପଞ୍ଚ ମହାଭୂତ, ଅହଂକାର, ବୁଦ୍ଧି ଓ ମୂଳ ପ୍ରକୃତି ତଥା ଦଶ ଇନ୍ଦ୍ରିୟ, ଏକ ମନ ଓ ଇନ୍ଦ୍ରିୟମାନଙ୍କର ବିଷୟ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ - - - ।। ୫ ।।**

**ପ୍ରଶ୍ନ –** ମହାଭୂତାନି କାହାକୁ କହନ୍ତି ?

**ଉତ୍ତର –** ପଞ୍ଚତନ୍ମାତ୍ର ଅର୍ଥାତ୍ ସୂକ୍ଷ୍ମ ପଞ୍ଚମହାଭୂତ ହେଉଛି ସ୍ଥୂଳଭୂତମାନଙ୍କର ତଥା ଶବ୍ଦାଦି ବିଷୟମାନଙ୍କର କାରଣ । ସପ୍ତମ ଅଧ୍ୟାୟରେ ଯେଉଁମାନଙ୍କୁ **ଭୂମିଃ, ଆପଃ, ଅନଳଃ, ବାୟୁଃ, ଖମ୍** ନାମରେ ବର୍ଣ୍ଣନା କରାଯାଇଛି, ସେହି ପାଞ୍ଚଟିକୁ ଏଠାରେ **ମହାଭୂତାନି** ବୋଲି କୁହାଯାଇଛି ।

**ପ୍ରଶ୍ନ –** ଅହଂକାରଃ ପଦଟି କାହାର ବାଚକ ?

**ଉତ୍ତର –** ଅହଂକାର ହେଉଛି ସମଷ୍ଟି ଅନ୍ତଃକରଣର ଗୋଟିଏ ରୂପ । ଅହଂକାର ହିଁ ପଞ୍ଚତନ୍ମାତ୍ରର, ମନର ତଥା ସମସ୍ତ ଇନ୍ଦ୍ରିୟର କାରଣ ଏବଂ ଏହା ହେଉଛି ମହତତ୍ତ୍ୱର କାର୍ଯ୍ୟ । ଏହାକୁ ଅହଂଭାବ ବୋଲି ମଧ୍ୟ ବୋଲାଯାଏ ।

**ପ୍ରଶ୍ନ –** ଏଠାରେ **ବୁଦ୍ଧିଃ** ପଦଟି କାହାର ବାଚକ ?

**ଉତ୍ତର –** ଯାହାକୁ ମହତତ୍ତ୍ୱ (ମହାନ୍) ଏବଂ **ସମଷ୍ଟି ବୁଦ୍ଧି** ବୋଲାଯାଏ, ଯାହା ସମଷ୍ଟି ଅନ୍ତଃକରଣର ଏକ ଭେଦ ବା ରୂପ ଏବଂ ନିଶ୍ଚୟ ହିଁ ଯାହାର ସ୍ୱରୂପ, **ବୁଦ୍ଧିଃ** ପଦଟି ହେଉଛି ତାହାର ବାଚକ ।

**ପ୍ରଶ୍ନ –** ଅବ୍ୟକ୍ତମ୍ ପଦଟି କାହାର ବାଚକ ?

**ଉତ୍ତର –** ଯାହା ମହତତ୍ତ୍ୱ ଆଦି ସକଳ ପଦାର୍ଥର କାରଣରୂପା ମୂଳ ପ୍ରକୃତି, ସାଂଖ୍ୟଶାସ୍ତ୍ରରେ ଯାହାକୁ 'ପ୍ରଧାନ' ବୋଲାଯାଏ, ଚଉଦ ଅଧ୍ୟାୟରେ ଭଗବାନ୍ ଯାହାକୁ 'ମହଦ୍‌ବ୍ରହ୍ମ' ବୋଲି କହିଛନ୍ତି ଏବଂ ଏହି ଅଧ୍ୟାୟର ଉଣେଇଶ ଶ୍ଳୋକରେ ଯାହାକୁ 'ପ୍ରକୃତି' ନାମ ଦିଆଯାଇଛି, **ଅବ୍ୟକ୍ତମ୍** ପଦଟି ହେଉଛି ତାହାରି ବାଚକ ।

**ପ୍ରଶ୍ନ –** ଦଶ ଇନ୍ଦ୍ରିୟ କ'ଣ କ'ଣ ?

**ଉତ୍ତର –** ବାକ୍ (ମୁଖ), ପାଣି (ହସ୍ତ), ପାଦ, ଉପସ୍ଥ (ଜନନେନ୍ଦ୍ରିୟ) ଓ ପାୟୁ (ମଳଦ୍ୱାର) — ଏହି ପାଞ୍ଚଟିକୁ କର୍ମେନ୍ଦ୍ରିୟ ଏବଂ କର୍ଣ୍ଣ, ଚକ୍ଷୁ, ଚର୍ମ, ଜିହ୍ୱା ଓ ଘ୍ରାଣ (ନାସା) — ଏହି ପାଞ୍ଚଟି ଜ୍ଞାନେନ୍ଦ୍ରିୟ । ଏସବୁ ମିଶି ଦଶ ଇନ୍ଦ୍ରିୟ । ଅହଂକାର ହେଉଛି ଏସବୁର କାରଣ ।

**ପ୍ରଶ୍ନ –** ଏକମ୍ ପଦଟି କାହାର ବାଚକ ?

**ଉତ୍ତର –** ସମଷ୍ଟି ଅନ୍ତଃକରଣର ଯେଉଁ ମନନକାରୀ ଶକ୍ତିବିଶେଷ ରହିଛି, ସଂକଳ୍ପ-ବିକଳ୍ପ ହେଉଛି ଯାହାର ସ୍ୱରୂପ — **ଏକମ୍** ପଦଟି ହେଉଛି ସେହି ମନର ବାଚକ; ଏହା ମଧ୍ୟ ଅହଂକାରର କାର୍ଯ୍ୟ ।

---

★ ଏହାର ସମ୍ପୃକ୍ତ ବର୍ଣ୍ଣନା ସାଂଖ୍ୟକାରିକା ଓ ଯୋଗଦର୍ଶନରେ ବି ମିଳେ । ଯଥା –

**ମୂଳପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ ।**
**ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନ ବିକୃତିଃ ପୁରୁଷଃ ।।** (ସାଂଖ୍ୟକାରିକା-୩)

ଅର୍ଥାତ୍ ମୂଳପ୍ରକୃତି ଏକା ତାହା କାହାର ବିକୃତି (ବିକାର) ନୁହେଁ । ମହତତ୍ତ୍ୱ, ଅହଂକାର ଓ ପଞ୍ଚତନ୍ମାତ୍ର (ଶବ୍ଦ, ସ୍ପର୍ଶ, ରୂପ, ରସ ଗନ୍ଧ- ତନ୍ମାତ୍ର) — ଏହି ସାତଟି ପ୍ରକୃତି-ବିକୃତି ଅଟେ, ଅର୍ଥାତ୍ ଏହି ସାତଟି ପଞ୍ଚଭୂତାଦିର କାରଣ ହୋଇଥିବାରୁ ପ୍ରକୃତି ବି ଅଟନ୍ତି ଏବଂ ମୂଳ ପ୍ରକୃତିର କାର୍ଯ୍ୟ ହୋଇଥିବାରୁ ବିକୃତି ମଧ୍ୟ ଅଟନ୍ତି । ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ମନ – ଏହି ଏଗାର ଇନ୍ଦ୍ରିୟ ଏବଂ ପଞ୍ଚମହାଭୂତ — ଏପରି ମୋଟ ଷୋଳଟି ତତ୍ତ୍ୱ କେବଳ ବିକୃତି (ବିକାର) ଅଟନ୍ତି; ଏସବୁ କାହାର ପ୍ରକୃତି ଅର୍ଥାତ୍ କାରଣ ନୁହନ୍ତି । ଏଥି ମଧ୍ୟରୁ ଏଗାର ଇନ୍ଦ୍ରିୟ ଅହଂକାରର ଏବଂ ପଞ୍ଚସ୍ଥୂଳ ମହାଭୂତ ପଞ୍ଚତନ୍ମାତ୍ରର କାର୍ଯ୍ୟ ଅଟନ୍ତି; କିନ୍ତୁ ପୁରୁଷ କାହାର କାର୍ଯ୍ୟ ନୁହେଁ, କି କାରଣ ନୁହେଁ; ସେ ସର୍ବଥା ଅସଙ୍ଗ ।

ଯୋଗ ଦର୍ଶନରେ କୁହାଯାଇଛି; **"ବିଶେଷାବିଶେଷଲିଙ୍ଗମାତ୍ରାଲିଙ୍ଗାନି ଗୁଣପର୍ବାଣି"** (୨/୧୯) ବିଶେଷ ଅର୍ଥାତ୍ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ଏକ ମନ ଓ ପଞ୍ଚ ସ୍ଥୂଳଭୂତ ଏବଂ ଅବିଶେଷ ଅର୍ଥାତ୍ ଅହଂକାର ଓ ପଞ୍ଚତନ୍ମାତ୍ର, ଲିଙ୍ଗମାତ୍ର ଅର୍ଥାତ୍ ମହତତ୍ତ୍ୱ ଓ ଅଲିଙ୍ଗ ଅର୍ଥାତ୍ ମୂଳପ୍ରକୃତି — ଏହି ଚବିଶ ତତ୍ତ୍ୱ ହେଉଛି ଗୁଣମାନଙ୍କର ଅବସ୍ଥାବିଶେଷ । ଏସବୁକୁ 'ଦୃଶ୍ୟ' କହନ୍ତି ।

ଯୋଗଦର୍ଶନରେ ଯାହାକୁ 'ଦୃଶ୍ୟ' ବୋଲାଯାଇଛି, ଗୀତାରେ ତାହାକୁ କ୍ଷେତ୍ର କୁହାଯାଇଛି ।

**ପ୍ରଶ୍ନ –** ପଞ୍ଚ ଇନ୍ଦ୍ରିୟଗୋଚରାଃର ଅର୍ଥ କ'ଣ ?

**ଉତ୍ତର –** ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ – ଏହି ପାଞ୍ଚଟି ହେଉଛି ପଞ୍ଚ ଜ୍ଞାନେନ୍ଦ୍ରିୟର ସ୍ଥୂଳବିଷୟ । ଏମାନଙ୍କୁ ପଞ୍ଚ ଇନ୍ଦ୍ରିୟଗୋଚରାଃ ବୋଲାଯାଏ ।

## ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତଶ୍ଚେତନା ଧୃତିଃ ।
## ଏତତ୍ କ୍ଷେତ୍ରଂ ସମାସେନ ସବିକାରମୁଦାହୃତମ୍ ।। ୬ ।।

**ଅନ୍ୱୟ –** **ଇଚ୍ଛା** = ଇଚ୍ଛା; **ଦ୍ୱେଷଃ** = ଦ୍ୱେଷ; **ସୁଖମ୍** = ସୁଖ; **ଦୁଃଖମ୍** = ଦୁଃଖ; **ସଂଘାତଃ** = ସ୍ଥୂଳଦେହର ପିଣ୍ଡ; **ଚେତନା** = ଚେତନା; **ଧୃତିଃ** = ଧୃତି (ଏପରି); **ସବିକାରମ୍** = ବିକାରମାନଙ୍କ ସହିତ; **ଏତତ୍** = ଏହି; **କ୍ଷେତ୍ରମ୍** = କ୍ଷେତ୍ର; **ସମାସେନ** = ସଂକ୍ଷେପରେ; **ଉଦାହୃତମ୍** = କୁହାଗଲା ।

**ତଥା ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ସ୍ଥୂଳ ଦେହର ପିଣ୍ଡ, ଚେତନା ଓ ଧୃତି — ଏପରି ବିକାରମାନଙ୍କ ସହିତ ଏହି କ୍ଷେତ୍ରର ସ୍ୱରୂପ ସଂକ୍ଷେପରେ କୁହାଗଲା ।। ୬ ।।**

**ପ୍ରଶ୍ନ –** **ଇଚ୍ଛା** କ'ଣ ?

**ଉତ୍ତର –** ଯେଉଁସବୁ ପଦାର୍ଥକୁ ମନୁଷ୍ୟ ସୁଖର କାରଣ ତଥା ଦୁଃଖନାଶକ ବୋଲି ଭାବେ, ସେହିସବୁ ପଦାର୍ଥ ପାଇବାକୁ ତା' ଭିତରେ ଏକ ଆସକ୍ତିଯୁକ୍ତ କାମନା ଉପୁଜେ । ସେହି କାମନାର ବାସନା, ତୃଷ୍ଣା, ଆଶା, ଲାଳସା ଏବଂ ସ୍ପୃହା ପ୍ରଭୃତି ବିଭିନ୍ନ ରୂପ ରହିଛି । ସେସବୁକୁ ହିଁ ଏଠାରେ **ଇଚ୍ଛା** ବୋଲାଯାଇଛି । 'ଇଚ୍ଛା' ହେଉଛି ଅନ୍ତଃକରଣର ଏକ ବିକାର; ତେଣୁ ଏହାକୁ କ୍ଷେତ୍ରର ଏକ ବିକାରରୂପେ ଗଣାଯାଇଛି ।

**ପ୍ରଶ୍ନ –** **ଦ୍ୱେଷ** କାହାକୁ କୁହାଯାଏ ?

**ଉତ୍ତର –** ମନୁଷ୍ୟ ଯେତେକ ପଦାର୍ଥକୁ ଦୁଃଖର କାରଣ ବା ସୁଖର ପ୍ରତିବନ୍ଧକ ବୋଲି ଭାବେ । ସେହିସବୁ ପଦାର୍ଥ ପ୍ରତି ମନୁଷ୍ୟର ଅନ୍ତଃକରଣରେ ଏକ ବିରୋଧବୁଦ୍ଧି ଉତ୍ପନ୍ନ ହୁଏ; ତାହାକୁ **ଦ୍ୱେଷ** ବୋଲାଯାଏ । ବୈର, ଈର୍ଷା, ଘୃଣା ଓ କ୍ରୋଧ ହେଉଛି ଦ୍ୱେଷର ସ୍ଥୂଳରୂପ । ଏହା ଅନ୍ତଃକରଣର ଏକ ବିକାର ହୋଇଥିବାରୁ, ଏହାକୁ କ୍ଷେତ୍ରର ବିକାର ମଧ୍ୟରେ ଗଣାଯାଏ ।

**ପ୍ରଶ୍ନ –** **ସୁଖ** କିପରି ବସ୍ତୁ ?

**ଉତ୍ତର –** ଅନୁକୂଳର ପ୍ରାପ୍ତି ଏବଂ ପ୍ରତିକୂଳର ନିବୃତ୍ତିରୁ ଅନ୍ତଃକରଣରେ ଯେଉଁ ପ୍ରସନ୍ନତା ବୃତ୍ତି ଜାତ ହୁଏ, ତାହାରି ନାମ ହିଁ ସୁଖ । ଅନ୍ତଃକରଣର ଏକ ବିକାର ହୋଇଥିବାରୁ ସୁଖକୁ ମଧ୍ୟ କ୍ଷେତ୍ରର ଏକ ବିକାର ବୋଲି ଗଣାଯାଏ ।

**ପ୍ରଶ୍ନ –** **ଦୁଃଖମ୍** ପଦଟି କାହାର ବାଚକ ?

**ଉତ୍ତର –** ପ୍ରତିକୂଳର ପ୍ରାପ୍ତି ହେଲେ ଓ ଅନୁକୂଳର ବିନାଶ ହେଲେ ଅନ୍ତଃକରଣରେ ଯେଉଁ ବ୍ୟାକୁଳତା ଉତ୍ପନ୍ନ ହୁଏ, ଯେଉଁ ବ୍ୟଥା ଦେଖାଦିଏ, **ଦୁଃଖମ୍** ପଦଟି ହେଉଛି ତାହାର ବାଚକ । ଏହା ମଧ୍ୟ ଅନ୍ତଃକରଣର ଏକ ବିକାର; ତେଣୁ ଏହାକୁ ବି କ୍ଷେତ୍ରର ଏକ ବିକାର ବୋଲି ଧରାଯାଏ ।

**ପ୍ରଶ୍ନ –** **ସଂଘାତଃ** ପଦଟିର ଅର୍ଥ କ'ଣ ?

**ଉତ୍ତର –** ପଞ୍ଚଭୂତରେ ନିର୍ମିତ ଏହି ଯେଉଁ ସ୍ଥୂଳ ଶରୀରର ପିଣ୍ଡଟି ରହିଛି, ମୃତ୍ୟୁ ହୋଇ ସୂକ୍ଷ୍ମ ଶରୀର ଚାଲିଯିବା ପରେ ବି ଏହି ଯେଉଁ ଶରୀରଟି ସମସ୍ତଙ୍କ ସମ୍ମୁଖରେ ପଡ଼ିରହେ, ଏହି ସ୍ଥୂଳ ଶରୀରଟିର ନାମ ହେଉଛି **ସଂଘାତ** । ପଞ୍ଚଭୂତର ବିକାର ହୋଇଥିବାରୁ ଏହାକୁ କ୍ଷେତ୍ରର ବିକାରରୂପେ ଗଣାଯାଏ ।

**ପ୍ରଶ୍ନ –** **ଚେତନା** ପଦଟି କାହାର ବାଚକ ?

**ଉତ୍ତର –** ଅନ୍ତଃକରଣରେ ଯେଉଁ ଜ୍ଞାନଶକ୍ତି ରହିଛି, ଯାହାଦ୍ୱାରା ସୁଖ,ଦୁଃଖ ଏବଂ ସମସ୍ତ ପଦାର୍ଥ ଅନୁଭବ କରିହୁଏ, ତାହାକୁ ଦଶମ ଅଧ୍ୟାୟର ବାଇଶ ଶ୍ଳୋକରେ **ଚେତନା** ଆଖ୍ୟା ଦିଆଯାଇଛି । ଏହି **ଚେତନା** ପଦଟି ମଧ୍ୟ ତାହାକୁ ହିଁ ବୁଝାଏ । ଏହା ବି ଅନ୍ତଃକରଣର ବୃତ୍ତିବିଶେଷ । ତେଣୁ ଏହାକୁ ବି କ୍ଷେତ୍ରର ଏକ ବିକାରରୂପେ ଗଣାଯାଏ ।

**ପ୍ରଶ୍ନ –** **ଧୃତିଃ** ପଦ କାହାର ବାଚକ ?

**ଉତ୍ତର –** ଅଠର ଅଧ୍ୟାୟର ତେତିଶ, ଚଉତିରିଶ ଓ ପଞ୍ଚତିରିଶ ଶ୍ଳୋକରେ ଯେଉଁ ଧାରଣାଶକ୍ତିର ସାତ୍ତ୍ୱିକ, ରାଜସିକ ଓ ତାମସିକ — ଏପରି ତିନିବିଭାଗ କରାଯାଇଛି, ଯାହାର ସାତ୍ତ୍ୱିକ ଅଂଶକୁ ଷୋହଳ ଅଧ୍ୟାୟର ତୃତୀୟ ଶ୍ଳୋକରେ ଦୈବୀସମ୍ପଦର ଅନ୍ତର୍ଗତ ଧୃତି ବୋଲି ଗଣାଯାଇଛି, ଏଠାରେ **ଧୃତିଃ** ପଦଟି ତାହାରି ବାଚକ ।

ଏହା ଅନ୍ତଃକରଣର ଗୋଟିଏ ବିକାର ହୋଇଥିବାରୁ, ଏହାକୁ ବି କ୍ଷେତ୍ରର ଏକ ବିକାର ବୋଲି ଗଣାଯାଇଛି ।

**ପ୍ରଶ୍ନ –** 'ଏପରି ବିଭିନ୍ନ ବିକାରସହିତ କ୍ଷେତ୍ରର ସ୍ୱରୂପକୁ ସଂକ୍ଷେପରେ କୁହାଗଲା' — ଏହାର ଅର୍ଥ କ'ଣ ?

**ଉତ୍ତର –** ଏହାର ଅର୍ଥ ହେଉଛି, ଏଠାରେ ବିକାର ସହିତ କ୍ଷେତ୍ରର ସଂକ୍ଷିପ୍ତ ବର୍ଣ୍ଣନା ଦିଆଗଲା । ଅର୍ଥାତ୍ ପଞ୍ଚମ ଶ୍ଳୋକରେ କ୍ଷେତ୍ରର ସ୍ୱରୂପ ସଂକ୍ଷେପରେ କୁହାଯାଇଥିଲା ଏବଂ ଏହି ଷଷ୍ଠ ଶ୍ଳୋକରେ କ୍ଷେତ୍ରର ବିଭିନ୍ନ ବିକାରର ବର୍ଣ୍ଣନା ସଂକ୍ଷେପରେ କରାଗଲା ।

*ସମ୍ବନ୍ଧ –* *ଏପରିଭାବରେ କ୍ଷେତ୍ରର ସ୍ୱରୂପ ଏବଂ ତା'ର ବିକାରମାନଙ୍କର ବର୍ଣ୍ଣନା କରିସାରି ଭଗବାନ୍ ବର୍ତ୍ତମାନ ଜ୍ଞାନ ବିଷୟରେ କହୁଛନ୍ତି । ଦ୍ୱିତୀୟ ଶ୍ଳୋକରେ କହିଥିଲେ, 'କ୍ଷେତ୍ର ଓ କ୍ଷେତ୍ରଜ୍ଞର ଯେଉଁ ଜ୍ଞାନ, ତାହା ହିଁ ମୋ ମତରେ ଜ୍ଞାନ' । ବର୍ତ୍ତମାନ ସେହି ଜ୍ଞାନକୁ ପାଇବାର ସାଧନଗୁଡ଼ିକୁ 'ଜ୍ଞାନ' ନାମ ଦେଇ ପରବର୍ତ୍ତୀ ପାଞ୍ଚଟି ଶ୍ଳୋକରେ ବର୍ଣ୍ଣନା କରୁଛନ୍ତି –*

**ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜ୍ଜବମ୍ ।**
**ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ ॥ ୭ ॥**

**ଅନ୍ୱୟ –** ଅମାନିତ୍ୱମ୍ = ନିଜଠାରେ ଶ୍ରେଷ୍ଠତା-ଅଭିମାନର ଅଭାବ; **ଅଦମ୍ଭିତ୍ୱମ୍** = ଦମ୍ଭାଚରଣର ଅଭାବ; **ଅହିଂସା** = ପ୍ରାଣୀମାତ୍ରକେ କାହାରିକୁ କୌଣସିପ୍ରକାର ଦୁଃଖ ନ ଦେବା; **କ୍ଷାନ୍ତିଃ** = କ୍ଷମାଶୀଳତା; **ଆର୍ଜ୍ଜବମ୍** = ମନ, ବଚନ ଆଦିରେ ସରଳତା; **ଆଚାର୍ଯ୍ୟୋପାସନମ୍** = ଶ୍ରଦ୍ଧାଭକ୍ତିସହିତ ଗୁରୁସେବା; **ଶୌଚମ୍** = ଅନ୍ତଃ-ବାହ୍ୟ ଶୁଦ୍ଧି; **ସ୍ଥୈର୍ଯ୍ୟମ୍** = ଅନ୍ତଃକରଣର ସ୍ଥିରତା; **ଆତ୍ମବିନିଗ୍ରହଃ** = ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରର ନିଗ୍ରହ ।

**ନିଜଠାରେ ଶ୍ରେଷ୍ଠତା-ଅଭିମାନର ଅଭାବ, ଅଦାମ୍ଭିକତା, ପ୍ରାଣୀମାତ୍ରକେ କାହାରିକୁ କୌଣସିପ୍ରକାର ଦୁଃଖ ନ ଦେବା, କ୍ଷମାଶୀଳତା, ମନ-ବଚନ ଆଦିରେ ସରଳତା, ଶ୍ରଦ୍ଧା-ଭକ୍ତିର ସହିତ ଗୁରୁଙ୍କର ସେବା, ଅନ୍ତଃ-ବାହ୍ୟ ଶୁଦ୍ଧି, ଅନ୍ତଃକରଣର ସ୍ଥିରତା ଏବଂ ମନ-ଇନ୍ଦ୍ରିୟ ସହିତ ଶରୀରର ନିଗ୍ରହ, -----॥ ୭ ॥**

**ପ୍ରଶ୍ନ –** ଅମାନିତ୍ୱମ୍ କହିଲେ କ'ଣ ବୁଝାଏ ?

**ଉତ୍ତର –** ନିଜକୁ ଶ୍ରେଷ୍ଠ, ସମ୍ମାନନୀୟ, ପୂଜ୍ୟ ବା ଅତିବଡ଼ ବୋଲି ଭାବିବା ଏବଂ ମାନସମ୍ମାନ, ପୂଜାପ୍ରତିଷ୍ଠା ପ୍ରଭୃତି ଇଚ୍ଛା କରିବା କିମ୍ବା ଇଚ୍ଛା ନ କରି ମଧ୍ୟ ଏସବୁ ମିଳିଗଲେ ଖୁସୀ ହେବାକୁ **ମାନିତ୍ୱ** ବୋଲାଯାଏ ଏବଂ ଏପରି ଭାବ ନ ହେବାକୁ **ଅମାନିତ୍ୱ** ବୋଲାଯାଏ । ଯାହାଙ୍କ ଭିତରେ ପୂର୍ଣ୍ଣ ଅମାନିତ୍ୱ ଆସିଯାଏ, ସେ ମାନ, ସମ୍ମାନ, ପୂଜା, ପ୍ରତିଷ୍ଠା ଆଦି ମିଳିଲେ ଖୁସୀ ହେବା ତ ଦୂରର କଥା, ବରଂ ଏସବୁ ପ୍ରତି ତାଙ୍କର ବିରକ୍ତି ଓ ଉପରତି ହୁଏ ।

**ପ୍ରଶ୍ନ –** ଅଦମ୍ଭିତ୍ୱମ୍ କହିଲେ କ'ଣ ବୁଝାଏ ?

**ଉତ୍ତର –** ମାନ, ମର୍ଯ୍ୟାଦା, ପୂଜା, ପ୍ରତିଷ୍ଠା ଇତ୍ୟାଦି ପାଇବା ଲୋଭରେ, ଧନ ଲୋଭରେ ବା କାହାକୁ ଠକିବା ଅଭିପ୍ରାୟରେ ନିଜକୁ ଧର୍ମାତ୍ମା, ଦାନୀ, ଭକ୍ତ, ଜ୍ଞାନୀ ବା ମହାତ୍ମା ବୋଲି ପ୍ରଚାର କରିବା ତଥା ମିଛରେ ନିଜକୁ ଧାର୍ମିକ, ଉଦାର, ଦାନୀ, ଭକ୍ତ, ଯୋଗସାଧକ, ବ୍ରତଚାରୀ ବା ସେପରି ଅନ୍ୟ କିଛି ଗୁଣର ଅଧିକାରୀ ବୋଲି ବାହାନା କରିବାକୁ ଦମ୍ଭିତ୍ୱ ବୋଲାଯାଏ । ଦମ୍ଭିତ୍ୱର ସମ୍ପୂର୍ଣ୍ଣ ଅଭାବକୁ **ଅଦମ୍ଭିତ୍ୱ** ବୋଲାଯାଏ । ଯେଉଁ ସାଧକଙ୍କ ଭିତରେ ପୂର୍ଣ୍ଣମାତ୍ରାରେ ଅଦମ୍ଭିତ୍ୱ ରହିଥାଏ, ତାଙ୍କ ଭିତରେ ମାନ-ସମ୍ମାନ ପାଇବାପାଇଁ ଟିକିଏ ବି ଇଚ୍ଛା ନ ଥାଏ । ତେଣୁ ସେ ନିଜର ଶୁଦ୍ଧ ଧାର୍ମିକ ଭାବକୁ, ସଦ୍‌ଗୁଣକୁ ତଥା ଭକ୍ତିପୂତ ଆଚରଣକୁ ବି ଅନ୍ୟମାନଙ୍କ ସମ୍ମୁଖରେ ଦେଖାଇବାକୁ ସଂକୋଚ ବୋଧ କରନ୍ତି । ଏପରି ଲୋକ ତା ନିଜଠାରେ ନ ଥିବା ଗୁଣକୁ ଦେଖାଇବେ କିପରି ?

**ପ୍ରଶ୍ନ –** ଅହିଂସାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** କୌଣସି ପ୍ରାଣୀକୁ କାୟ-ମନ-ବାକ୍ୟରେ କେବେ କୌଣସିପ୍ରକାର କଷ୍ଟ ନ ଦେବା ହିଁ ଅହିଂସା । ମନରେ କାହାର ଅମଙ୍ଗଳ ବା କ୍ଷତି

ନ ଚାହିଁବା; କଥାଭାଷାରେ କାହାକୁ ଗାଳି ନ ଦେବା, କଠୋରତା ପ୍ରକାଶ ନ କରିବା, ନିନ୍ଦା ନ କରିବା କିମ୍ବା ଅନ୍ୟ କୌଣସିପ୍ରକାର ଦୁଃଖଦାୟକ, ଅହିତକର ଭାବ ପ୍ରକଟ ନ କରିବା, ପୁଣି ଶରୀରଦ୍ୱାରା କାହାକୁ ନ ମାରିବା, କଷ୍ଟ ନ ଦେବା ଓ କାହାର କିଛି କ୍ଷତି ନ କରିବାକୁ **ଅହିଂସା** କୁହାଯାଏ। ଯାହାଙ୍କ ଭିତରେ ପୂର୍ଣ୍ଣ ଅହିଂସା ଭାବ ଜାଗ୍ରତ ହୋଇଯାଇଥାଏ, ତାଙ୍କ ଠାରେ କାହା ପ୍ରତି ବି କୌଣସିପ୍ରକାର ବୈରଭାବ ବା ଦ୍ୱେଷ ରହେ ନାହିଁ। ତା'ଫଳରେ ତାଙ୍କ ଦ୍ୱାରା କୌଣସି ବି ପ୍ରାଣୀର କୌଣସି ଅହିତ ହୁଏ ନାହିଁ; ତାଙ୍କ ଆଚରଣର ପରିଣାମରୁ କେହି ବି ଦୁଃଖ ପାଆନ୍ତି ନାହିଁ ଏବଂ ତାଙ୍କ ହେତୁ କେହି ବି ଭୟଭୀତ ହୁଅନ୍ତି ନାହିଁ। ମହର୍ଷି ପତଞ୍ଜଳି କହିଛନ୍ତି, ପୂର୍ଣ୍ଣ ଅହିଂସ ବ୍ୟକ୍ତିଙ୍କ ନିକଟରେ ରହିଗଲେ ହିଂସ୍ରକ ପ୍ରାଣୀମାନଙ୍କ ମଧ୍ୟରେ ବି ପରସ୍ପର ପ୍ରତି କୌଣସି ବୈରଭାବ ରହେ ନାହିଁ।*

**ପ୍ରଶ୍ନ – 'କ୍ଷାନ୍ତିଃ'** କହିଲେ କ'ଣ ବୁଝାଏ ?

**ଉତ୍ତର –** କ୍ଷମାଭାବକୁ କ୍ଷାନ୍ତି କୁହାଯାଏ। ଅପରାଧ କରିଥିବା ଲୋକକୁ ବି ଦଣ୍ଡ ଦେବାର କୌଣସି ଭାବନା ମନରେ ନ ରଖିବା, ଅପରାଧର ପ୍ରତିଶୋଧ ନ ନେବା ଏବଂ ସମ୍ପୃକ୍ତ ଅପରାଧୀ ଅପରାଧପାଇଁ ଇହଲୋକରେ ବା ପରଲୋକରେ ଦଣ୍ଡ ଭୋଗ କରୁ ବୋଲି ଇଚ୍ଛା ନ କରିବା ଏବଂ ଅପରାଧକୁ ବସ୍ତୁତଃ ଅପରାଧ ବୋଲି ଗ୍ରହଣ ନ କରି ତାହାକୁ ସର୍ବଥା ଭୁଲିଯିବା ହିଁ କ୍ଷମାଭାବ। ଦଶମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ଏହି ବିଷୟରେ ବିଶେଷରୂପରେ ବ୍ୟାଖ୍ୟା ଦିଆଯାଇଛି।

**ପ୍ରଶ୍ନ – ଆର୍ଜବମ୍** ଅର୍ଥ କ'ଣ ?

**ଉତ୍ତର –** କାୟ-ମନ-ବାକ୍ୟର ସରଳତାକୁ ଆର୍ଜବ ବୋଲାଯାଏ। ଯେଉଁ ସାଧକଙ୍କ ଠାରେ ଏପରି ପୂର୍ଣ୍ଣ ସରଳତା ରହିଥାଏ, ସେ ସମସ୍ତଙ୍କ ସହିତ ସରଳ ବ୍ୟବହାର କରନ୍ତି; ତାଙ୍କ ଠାରେ କୁଟିଳତା ଆଦୌ ରହେ ନାହିଁ। ଅର୍ଥାତ୍ ତାଙ୍କର ବ୍ୟବହାରରେ ମାର-ପେଞ୍ଚ, କପଟ ବା ଟେଢ଼ାପଣ ବୋଲି ଆଦୌ କିଛି ନ ଥାଏ। ସେ ବାହାରେ ଯେପରି ସରଳ, ଭିତରେ ବି ସବୁବେଳେ ସେହିପରି ସରଳ ହୋଇ ରହିଥାନ୍ତି।

**ପ୍ରଶ୍ନ – ଆଚାର୍ଯ୍ୟୋପାସନମ୍**ର ଭାବ କ'ଣ ?

**ଉତ୍ତର –** ବିଦ୍ୟା ଓ ସଦୁପଦେଶ ପ୍ରଦାନ କରୁଥିବା ଗୁରୁଙ୍କୁ ଆଚାର୍ଯ୍ୟ କୁହାଯାଏ। ଏହିପରି ଗୁରୁଙ୍କ ନିକଟରେ ରହି ଶ୍ରଦ୍ଧା ଓ ଭକ୍ତିପୂର୍ବକ କାୟ-ମନ-ବାକ୍ୟରେ ତାଙ୍କୁ ସକଳପ୍ରକାର ସୁଖ ଦେବାକୁ ଚେଷ୍ଟା କରିବା, ନମସ୍କାର କରିବା, ତାଙ୍କର ଆଜ୍ଞା ପାଳନ କରିବା ଏବଂ ତାଙ୍କ ଅନୁକୂଳ ଆଚରଣ କରିବା ଆଦିକୁ **ଆଚାର୍ଯ୍ୟୋପାସନା** ବା ଗୁରୁସେବା କୁହାଯାଏ।

**ପ୍ରଶ୍ନ – ଶୌଚମ୍**ର ଅର୍ଥ କ'ଣ ?

**ଉତ୍ତର –** ଶୁଦ୍ଧିକୁ ଶୌଚ ବୋଲାଯାଏ। ସତ୍ୟତାପୂର୍ବକ ଶୁଦ୍ଧ ବ୍ୟବହାରଦ୍ୱାରା **ଦ୍ରବ୍ୟଶୁଦ୍ଧି** ହୋଇଥାଏ। ସେହି ଦ୍ରବ୍ୟରେ ଉପାର୍ଜିତ ଅନ୍ନଦ୍ୱାରା **ଆହାରଶୁଦ୍ଧି** ହୁଏ। ଯଥାଯୋଗ୍ୟ ଶୁଦ୍ଧ ବ୍ୟବହାରଦ୍ୱାରା **ଆଚରଣଶୁଦ୍ଧି** ହୁଏ ଏବଂ ଜଳ-ମୃତ୍ତିକା ପ୍ରଭୃତିଦ୍ୱାରା ପ୍ରକ୍ଷାଳନ କ୍ରିୟା କଲେ **ଶରୀରଶୁଦ୍ଧି** ହୁଏ। ଏଗୁଡ଼ିକ ହେଉଛି **ବାହ୍ୟଶୁଦ୍ଧି**। ରାଗ-ଦ୍ୱେଷ, ଛଳ-କପଟ ଆଦି ବିକାର ନାଶ କରି ଅନ୍ତଃକରଣ ସ୍ୱଚ୍ଛ କରିଦେଲେ **ଅନ୍ତଃଶୁଦ୍ଧି** ହୋଇଯାଏ। ଏହି ଉଭୟପ୍ରକାର ଶୁଦ୍ଧିର ନାମ **ଶୌଚ**।

**ପ୍ରଶ୍ନ – ସ୍ଥୈର୍ଯ୍ୟ** କ'ଣ ?

**ଉତ୍ତର –** ସ୍ଥିରଭାବକୁ **ସ୍ଥୈର୍ଯ୍ୟ** କୁହାଯାଏ। ଅର୍ଥାତ୍ ଯେତେ ବଡ଼ ଦୁଃଖ, କଷ୍ଟ, ବିପତ୍ତି ବା ଭୟ ଆସୁ ନା କାହିଁକି, ତଦ୍ଦ୍ୱାରା ବିଚଳିତ ନ ହେବା ହିଁ ସ୍ଥୈର୍ଯ୍ୟ। ପୁଣି କାମ, କ୍ରୋଧ, ଭୟ ବା ଲୋଭ ଆଦିର ପ୍ରଭାବରେ ନିଜର ଧର୍ମ ଓ କର୍ତ୍ତବ୍ୟରୁ ତିଳେମାତ୍ର ବିଚ୍ୟୁତ ହୋଇ ନ ଯିବା ତଥା ମନ ଓ ବୁଦ୍ଧିରେ କୌଣସିପ୍ରକାର ଚଞ୍ଚଳତା ନ ରଖିବାକୁ **ସ୍ଥୈର୍ଯ୍ୟ** ବୋଲାଯାଏ।

**ପ୍ରଶ୍ନ – ଆତ୍ମବିନିଗ୍ରହଃ**ର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ ଆତ୍ମା ପଦଟି ହେଉଛି ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରର ବାଚକ। ତେଣୁ ଏମାନଙ୍କୁ ଭଲଭାବେ ନିଜ ବଶରେ ରଖିବାର ନାମ **ଆତ୍ମବିନିଗ୍ରହ**। ଯେଉଁ ସାଧକଙ୍କର ସମ୍ପୂର୍ଣ୍ଣ ଆତ୍ମବିନିଗ୍ରହ ଆସିଯାଇଥାଏ, ମନ, ବୁଦ୍ଧି ଓ ଇନ୍ଦ୍ରିୟ ତାହାଙ୍କର ଆଜ୍ଞାକାରୀ ଅନୁଚର ହୋଇଯାଆନ୍ତି; ସେମାନେ ତାଙ୍କୁ ଆଉ ବିଷୟରେ ବାନ୍ଧିପାରନ୍ତି ନାହିଁ; କେବଳ ତାଙ୍କରି ଇଚ୍ଛାନୁସାରେ ସେମାନେ ସାଧନାରେ ଲାଗିରହିଥାନ୍ତି।

---

* ଅହିଂସାପ୍ରତିଷ୍ଠାୟାଂ ତତ୍ସନ୍ନିଧୌ ବୈରତ୍ୟାଗଃ (ଯୋଗଦର୍ଶନ ୨/୩୫)

## ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଂକାର ଏବ ଚ ।
## ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ ॥ ୮ ॥

**ଅନ୍ୱୟ –** **ଇନ୍ଦ୍ରିୟାର୍ଥେଷୁ** = ଇହଲୋକ ଓ ପରଲୋକର ସକଳପ୍ରକାର ଭୋଗରେ; **ବୈରାଗ୍ୟମ୍** = ଆସକ୍ତିର ଅଭାବ; **ଚ** = ଏବଂ; **ଅନହଂକାରଃ ଏବ** = ଅହଂକାରର ବି ଅଭାବ; **ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ଦୁଃଖ-ଦୋଷାନୁଦର୍ଶନମ୍** = ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ଆଦିରେ ଦୁଃଖ ଓ ଦୋଷକୁ ବାରମ୍ବାର ବିବେଚନା ବା ଦର୍ଶନ କରିବା ।

**ଇହଲୋକ ତଥା ପରଲୋକର ସକଳପ୍ରକାର ଭୋଗରେ ଆସକ୍ତିର ଅଭାବ, ଅହଙ୍କାରଶୂନ୍ୟତା, ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ଆଦିରେ ଦୁଃଖ ଓ ଦୋଷ ଦର୍ଶନ କରି ବାରମ୍ବାର ବିବେଚନା କରିବା, --- ॥ ୮ ॥**

**ପ୍ରଶ୍ନ –** **ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମ୍**ର ଭାବ କ'ଣ ?

**ଉତ୍ତର –** ଇହଲୋକ ଓ ପରଲୋକର ଯେତେସବୁ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରୂପକ ବିଷୟ-ପଦାର୍ଥ ରହିଛି, ଯାହାକୁ କି ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗ କରାଯାଏ ଏବଂ ଯାହାକୁ ଅଜ୍ଞାନହେତୁ ମନୁଷ୍ୟ ସୁଖର କାରଣ ବୋଲି ଭାବେ କିନ୍ତୁ ବାସ୍ତବରେ ଯାହା ଦୁଃଖର ହିଁ କାରଣ ଅଟେ, ସେଗୁଡ଼ିକ ପ୍ରତି କୌଣସିପ୍ରକାର ପ୍ରୀତି ନ ରଖିବା ହିଁ **ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମ୍** ଅର୍ଥାତ୍ ବିଷୟ ପ୍ରତି ଇନ୍ଦ୍ରିୟମାନଙ୍କର ବୈରାଗ୍ୟ ହେବା ।

**ପ୍ରଶ୍ନ –** **ଅନହଙ୍କାର** କାହାକୁ କହନ୍ତି ?

**ଉତ୍ତର –** ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଶରୀର — ଏମାନଙ୍କ ଠାରେ ଯେଉଁ ଅହମ୍ ବୁଦ୍ଧି ହେଉଛି ଅର୍ଥାତ୍ ଅଜ୍ଞାନହେତୁ ଏସବୁ ଅନାତ୍ମ ବସ୍ତୁରେ ଯେଉଁ ଆତ୍ମବୁଦ୍ଧି ହେଉଛି, ଯେଉଁ ଦେହାଭିମାନ ରହୁଛି, ସେହି ଦେହାଭିମାନର ସର୍ବଥା ଅଭାବକୁ **ଅନହଂକାର** କହନ୍ତି ।

**ପ୍ରଶ୍ନ –** ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧିରେ ବାରମ୍ବାର ଦୁଃଖ ଓ ଦୋଷ ଦର୍ଶନ କରିବା କହିଲେ କ'ଣ ବୁଝାଏ ?

**ଉତ୍ତର –** ଜନ୍ମର କଷ୍ଟ କିଛି ସାଧାରଣ କଷ୍ଟ ନୁହେଁ । ପ୍ରଥମତଃ ଅସହାୟ ଜୀବକୁ ମାତୃଗର୍ଭରେ ଦୀର୍ଘଦିନ ଧରି ନାନାପ୍ରକାର କ୍ଳେଶ ସହିବାକୁ ପଡ଼େ । ପୁଣି ଜନ୍ମବେଳେ ଯୋନିଦ୍ୱାରଦେଇ ବାହାରିବା ସମୟରେ ବି ଅସହ୍ୟ ଯନ୍ତ୍ରଣା ହୁଏ । ନାନାପ୍ରକାର ଯୋନିରେ ଏପରି ବାରମ୍ବାର ଜନ୍ମ ଗ୍ରହଣ କରିବାରେ ଜନ୍ମଦୁଃଖ ମିଳିଥାଏ । ମୃତ୍ୟୁକାଳରେ ବି ଭୀଷଣ କଷ୍ଟ ହୁଏ । ଯେଉଁ ଘରେ ଆଜୀବନ କଟାଇବାକୁ ହୋଇଥାଏ, ଯେଉଁ ଶରୀରରେ ଆଜୀବନ ରହିବାକୁ ପଡ଼ିଥାଏ, ତା' ପ୍ରତି ଗଭୀର ମମତା ଆସିଯାଇଥାଏ; ମୃତ୍ୟୁ ଆସିଗଲେ ସେସବୁ ବାଧ୍ୟ ହୋଇ ଛାଡ଼ିଯିବାକୁ ପଡୁଥିବାରୁ ବଡ଼ ଦୁଃଖ ଲାଗେ । ମୃତ୍ୟୁମୁଖୀ ମନୁଷ୍ୟର ନିରାଶ ନୟନକୁ ଦେଖିଲେ, ତା'ର ଶାରୀରିକ ଯନ୍ତ୍ରଣାକୁ ଦେଖିଲେ, ତା'ର ତତ୍କାଳୀନ ଯନ୍ତ୍ରଣା ସମ୍ବନ୍ଧରେ ବହୁତ କିଛି ଅନୁମାନ କରାଯାଇପାରେ । ବାର୍ଦ୍ଧକ୍ୟର ଯନ୍ତ୍ରଣା ବି କିଛି କମ ନୁହେଁ । ବାର୍ଦ୍ଧକ୍ୟରେ ଇନ୍ଦ୍ରିୟମାନେ ଦୁର୍ବଳ ଓ ଶିଥିଳ ହୋଇଯାଆନ୍ତି, ଶରୀର ଜର୍ଜରିତ ହୋଇଯାଏ; ମନରେ ନିତ୍ୟ ଲାଳସାର ଢେଉ ଉଠୁଥାଏ; ଏଣେ ଅବସ୍ଥା ଅସହାୟ ହୋଇଯାଏ । ଏପରି ଅବସ୍ଥାରେ ଯେଉଁ କଷ୍ଟ ହୁଏ, ତାହା ବଡ଼ ଭୟଙ୍କର । ବ୍ୟାଧି-ଦୁଃଖ ମଧ୍ୟ ବଡ଼ ଯନ୍ତ୍ରଣା ଦିଏ । ରୋଗରେ ଶରୀର କ୍ଷୀଣ ହୋଇଯାଏ; ନାନାପ୍ରକାର ଅସହ୍ୟ କଷ୍ଟ ହୁଏ; ଅନ୍ୟର ଅଧୀନ ହୋଇ ଚଳିବାକୁ ପଡ଼େ । ମସ୍ତିଷ୍କ ବ୍ୟାଧିଗ୍ରସ୍ତ ହୋଇଗଲେ ନିରୁପାୟ ସ୍ଥିତିରେ ପଡ଼ିଯାଏ । ଏଗୁଡ଼ିକ ହେଉଛି ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧିର ଦୁଃଖ । ଏସବୁ ଦୁଃଖକୁ ବାରମ୍ବାର ମନେ ପକାଇବା ଓ ଏହା ଉପରେ ବିଚାର କରିବା ହିଁ ଏଥିରେ ଦୁଃଖ ଦର୍ଶନ କରିବା ।

ପାପର ପରିଣାମ ସ୍ୱରୂପ ହିଁ ଜୀବ ଏହି ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ପ୍ରାପ୍ତ ହୁଏ । ତେଣୁ ଏହି ଚାରିଟିଯାକ ଅବସ୍ଥା ଦୋଷମୟ ଅଟେ । ଏହି ବିଷୟ ବାରମ୍ବାର ବିଚାର କରିବା ହିଁ ଏସବୁରେ ଦୋଷ ଦର୍ଶନ କରିବା ।

ଏପରି ଦେଖିଗଲେ, ଏକମାତ୍ର ଚେତନ ଆତ୍ମା ବ୍ୟତୀତ ବସ୍ତୁତଃ ସଂସାରରେ ଏପରି କୌଣସି ବସ୍ତୁ ନାହିଁ, ଯାହାଠାରେ କି ଏହି ଚାରିପ୍ରକାର ଦୋଷ ନାହିଁ । ଜୀବିତ ବସ୍ତୁ କଥା କ'ଣ କହିବା, ଜଡ଼ ବସ୍ତୁର ମଧ୍ୟ ଏହି ଚତୁର୍ବିଧ ଦୋଷ ରହିଛି । ଘର ଗୋଟିଏ ଜଡ଼ ବସ୍ତୁ । ବହୁ ଖୋଳାତଡ଼ା, ଭଙ୍ଗାଯୋଡ଼ା ପରେ ଘର

ଯେଉଁଦିନ ତିଆରି ହୁଏ, ସେଦିନଟି ଘରର ଜନ୍ମକୁ ବୁଝାଉଲା। କିଛିଦିନ ପରେ ଘରର ଏଠିସେଠି କିଛି ଫାଟିଯାଏ; ଭାଙ୍ଗିଯାଏ। ତାହା ହେଲା ବ୍ୟାଧି। ସେଗୁଡ଼ିକୁ ମରାମତ କରାଯାଏ; ତାହା ହେଲା ବ୍ୟାଧିର ଚିକିତ୍ସା। ଘର ପୁରୁଣା ହୋଇଗଲେ, ଜାଣନ୍ତୁ ତା'ର ବାର୍ଦ୍ଧକ୍ୟ ଚାଲିଆସିଲା; ଅତି ପୁରୁଣା ଘରକୁ ଆଉ ମରାମତ କରିହୁଏନା। ପୁରୁଣା ଘର ଜୀର୍ଣ୍ଣ ହୋଇ ଦିନେ ଭୁଷୁଡ଼ିପଡ଼େ;—ତା'ର ମୃତ୍ୟୁ ହୋଇଯାଏ। ଛୋଟ, ବଡ଼— ସବୁ ପଦାର୍ଥର ଏହି ଅବସ୍ଥା ହୁଏ। ତେଣୁ ଜଗତର ପ୍ରତ୍ୟେକ ବସ୍ତୁରେ ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ଅବସ୍ଥା ଦେଖି ଦେଖି ଜଗତ ପ୍ରତି ବୈରାଗ୍ୟ ଉଦୟ କରିବା ଉଚିତ।

## ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାରଗୃହାଦିଷୁ।
## ନିତ୍ୟଂ ଚ ସମଚିତ୍ତତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ॥ ୯ ॥

**ଅନ୍ୱୟ –** **ପୁତ୍ରଦାରଗୃହାଦିଷୁ** = ପୁତ୍ର, ସ୍ତ୍ରୀ, ଗୃହ ଏବଂ ଧନ ଆଦିରେ; **ଅସକ୍ତିଃ** = ଆସକ୍ତିର ଅଭାବ; **ଅନଭିଷ୍ୱଙ୍ଗଃ** = ମମତ୍ୱର ଅଭାବ; **ଚ** = ତଥା; **ଇଷ୍ଟାନିଷ୍ଟୋପପତ୍ତିଷୁ** = ପ୍ରିୟ ଓ ଅପ୍ରିୟ ପ୍ରାପ୍ତିରେ; **ନିତ୍ୟମ୍** = ସର୍ବଦା; **ସମଚିତ୍ତତ୍ୱମ୍** = ସମଚିତ୍ତ ହୋଇ ରହିବା।

**ପୁତ୍ର, ସ୍ତ୍ରୀ, ଗୃହ ଏବଂ ଧନ ଆଦିରେ ଆସକ୍ତିର ଅଭାବ, ମମତ୍ୱର ଅଭାବ ତଥା ପ୍ରିୟ ପ୍ରାପ୍ତି ହେଉ କିମ୍ବା ଅପ୍ରିୟ ପ୍ରାପ୍ତି ହେଉ, ସର୍ବଦା ସମଚିତ୍ତ ହୋଇ ରହିବା, - - - - -॥ ୯ ॥**

**ପ୍ରଶ୍ନ –** ଅଷ୍ଟମ ଶ୍ଳୋକରେ ଇନ୍ଦ୍ରିୟମାନଙ୍କ ବିଷୟରେ ବୈରାଗ୍ୟ ଆସିବା କଥା ଯାହା କୁହାଗଲା, ତା' ଭିତରେ ତ ପୁତ୍ର, ସ୍ତ୍ରୀ, ଗୃହସମ୍ପଦ ଇତ୍ୟାଦି ଆସକ୍ତିର ଅଭାବ ଆସିବା ଉଚିତ ବୋଲି କହିଦିଆଗଲା; ସେହି ବିଷୟ ପୁନର୍ବାର ଏଠାରେ କହିବାର ଅଭିପ୍ରାୟ କ'ଣ?

**ଉତ୍ତର –** ସ୍ତ୍ରୀ, ପୁତ୍ର, ଗୃହ, ଶରୀର ଓ ଧନସମ୍ପଦ, ସହିତ ମନୁଷ୍ୟର ସମ୍ପର୍କ ବଡ଼ ଗଭୀର। ତେଣୁ ଏମାନଙ୍କ ପ୍ରତି ପ୍ରାୟତଃ ଅଧିକ ଆସକ୍ତି ରହିଥାଏ। ଶବ୍ଦାଦି ବିଭିନ୍ନ ବିଷୟରେ ଇନ୍ଦ୍ରିୟମାନଙ୍କର ବୈରାଗ୍ୟ ଆସିଯିବା ପରେ ମଧ୍ୟ ସ୍ତ୍ରୀ, ପୁତ୍ର, ଗୃହ ଇତ୍ୟାଦିରେ ଗୁପ୍ତଭାବରେ ଆସକ୍ତି ରହିଯାଏ। ତେଣୁ ଏସବୁଥିରେ ସର୍ବଥା ଆସକ୍ତିର ଅଭାବ ହେବା ଆବଶ୍ୟକ ବୋଲି ଏଠାରେ ବିଶେଷରୂପରେ କୁହାଯାଉଛି।

**ପ୍ରଶ୍ନ –** **ଅନଭିଷ୍ୱଙ୍ଗଃ**ର ଅର୍ଥ ଅହଙ୍କାରର ଅଭାବ ନ କହି ମମତ୍ୱର ଅଭାବ ବୋଲି କାହିଁକି କୁହାଗଲା?

**ଉତ୍ତର –** ଅହଙ୍କାରର ଅଭାବ କଥା ପୂର୍ବଶ୍ଳୋକରେ **ଅନହଂକାରଃ** ଶବ୍ଦଦ୍ୱାରା ସ୍ପଷ୍ଟରୂପେ କହିଦିଆଯାଇଛି, ତେଣୁ ଏଠାରେ **ଅନଭିଷ୍ୱଙ୍ଗ**ର ଅର୍ଥ ମମତ୍ୱର ଅଭାବ ବୋଲି କୁହାଗଲା। ମମତ୍ୱହେତୁ ହିଁ ସ୍ତ୍ରୀପୁତ୍ରାଦି ସହିତ ମନୁଷ୍ୟର ସମ୍ପର୍କ ଘନିଷ୍ଠ ହୋଇଯାଏ। ଫଳରେ ସେମାନଙ୍କର ସୁଖ-ଦୁଃଖ ଓ ହାନି-ଲାଭକୁ ସେ ନିଜର ସୁଖଦୁଃଖ, ନିଜ ହାନିଲାଭ ବୋଲି ଭାବେ। ମମତ୍ୱ ନ ରହିଲେ ହିଁ ଏପରି ଭାବନା ଆସିବ ନାହିଁ। ତେଣୁ ଏଠାରେ ମମତ୍ୱର ଅଭାବ ବୋଲି ଅର୍ଥ କରାଯାଇଛି।

**ପ୍ରଶ୍ନ –** 'ପ୍ରିୟ ଓ ଅପ୍ରିୟର ପ୍ରାପ୍ତି' ଅର୍ଥ କ'ଣ? ସେଥିରେ ସମଚିତ୍ତ ହୋଇ ରହିବାର ଅର୍ଥ କ'ଣ?

**ଉତ୍ତର –** ଅନୁକୂଳ ବିଷୟର (ବ୍ୟକ୍ତି, କ୍ରିୟା, ଘଟନା ତଥା ପଦାର୍ଥର) ସଂଯୋଗ ଏବଂ ପ୍ରତିକୂଳ ବିଷୟର ବିୟୋଗ ହେଉଛି ସମସ୍ତଙ୍କର ଇଷ୍ଟ ବା ପ୍ରିୟ। ଠିକ୍ ସେହିପରି ଅନୁକୂଳ ବିଷୟର ବିୟୋଗ ଓ ପ୍ରତିକୂଳ ବିଷୟର ସଂଯୋଗ ହେଉଛି ସମସ୍ତଙ୍କର ଅପ୍ରିୟ ବା ଅନିଷ୍ଟ। ଏହି ପ୍ରିୟ ଓ ଅପ୍ରିୟ ସହିତ ସମ୍ବନ୍ଧରୁ ହର୍ଷଶୋକାଦି ନ ହେବା ହିଁ ସମଚିତ୍ତତା ଅର୍ଥାତ୍ ଅନୁକୂଳର ସଂଯୋଗ ଓ ପ୍ରତିକୂଳର ବିୟୋଗରେ ହର୍ଷ ଆଦି ନ ହେବା ଏବଂ ଅନୁକୂଳର ବିୟୋଗ ଓ ପ୍ରତିକୂଳର ସଂଯୋଗରେ ଶୋକ, ଭୟ, କ୍ରୋଧ ଆଦି ନ କରିବା ବା ସଦା ନିର୍ବିକାର, ଏକରସ, ସମ ହୋଇ ରହିବାକୁ ପ୍ରିୟ-ଅପ୍ରିୟପ୍ରାପ୍ତିରେ ସଦା ସମଚିତ୍ତ ହୋଇ ରହିବା ବୋଲି କୁହାଯାଏ।

**ମୟି ଚାନନ୍ୟଯୋଗେନ ଭକ୍ତିରବ୍ୟଭିଚାରିଣୀ।**
**ବିବିକ୍ତଦେଶସେବିତ୍ୱମରତିର୍ଜନସଂସଦି ॥ ୧୦ ॥**

**ଅନ୍ୱୟ –** **ମୟି** = ମୋ ଠାରେ (ଅର୍ଥାତ୍) ପରମେଶ୍ୱରଙ୍କ ଠାରେ; **ଅନନ୍ୟଯୋଗେନ** = ଅନନ୍ୟ ଯୋଗଦ୍ୱାରା; **ଅବ୍ୟଭିଚାରିଣୀ** = ଅବ୍ୟଭିଚାରିଣୀ; **ଭକ୍ତିଃ** = ଭକ୍ତି (କରିବା); **ଚ** = ତଥା; **ବିବିକ୍ତଦେଶସେବିତ୍ୱମ୍** = ଏକାନ୍ତ ଓ ଶୁଦ୍ଧ ସ୍ଥାନରେ ରହିବାର ସ୍ୱଭାବ; **ଜନସଂସଦି** = ବିଷୟାସକ୍ତ ଲୋକମାନଙ୍କ ସମୁଦାୟରେ; **ଅରତିଃ** = ବିରାଗ।

**ମୋ ଠାରେ ଅର୍ଥାତ୍ ପରମେଶ୍ୱରଙ୍କ ଠାରେ ଅନନ୍ୟ ଯୋଗଦ୍ୱାରା ଅବ୍ୟଭିଚାରିଣୀ ଭକ୍ତି, ତଥା ଏକାନ୍ତ ଓ ଶୁଦ୍ଧ ସ୍ଥାନରେ ରହିବାର ସ୍ୱଭାବ, ବିଷୟାସକ୍ତ ଲୋକମାନଙ୍କ ସମୁଦାୟ ପ୍ରତି ବିରାଗ, -----॥ ୧୦ ॥**

**ପ୍ରଶ୍ନ –** **ଅନନ୍ୟଯୋଗ** କ'ଣ ଏବଂ ତା' ଦ୍ୱାରା ଭଗବାନଠାରେ **ଅବ୍ୟଭିଚାରିଣୀ ଭକ୍ତି** କରିବାର ଅର୍ଥ କ'ଣ ?

**ଉତ୍ତର –** ଭଗବାନ୍ ହିଁ ସର୍ବଶ୍ରେଷ୍ଠ ଏବଂ ସେ ହିଁ ମୋର ସ୍ୱାମୀ, ଶରଣ ଗ୍ରହଣ କରିବାର ଯୋଗ୍ୟ, ପରମଗତି, ପରମ ଆଶ୍ରୟ, ମାତା-ପିତା, ଭାଇ-ବନ୍ଧୁ, ପରମ ହିତକାରୀ, ପରମ ଆତ୍ମୀୟ ଏବଂ ସର୍ବସ୍ୱ; ତାଙ୍କୁ ଛାଡ଼ିଦେଲେ ମୋର ଅନ୍ୟ କେହି ବି ନାହିଁ—ଏହିଭାବରେ ଭଗବାନଙ୍କ ସହିତ ଯଦି ଅନନ୍ୟ ସମ୍ବନ୍ଧ ରଖାଯିବ, ତେବେ ତାହା **ଅନନ୍ୟଯୋଗ** ହେବ। ଏହିପରି ସମ୍ବନ୍ଧ ରଖି କେବଳ ଭଗବାନଠାରେ ହିଁ ଅଟଳ, ପୂର୍ଣ୍ଣ ବିଶୁଦ୍ଧ ପ୍ରେମ କରି ନିରନ୍ତର ଭଗବାନଙ୍କର ଭଜନ ଧ୍ୟାନ କରି ରହିବାକୁ 'ଅନନ୍ୟଯୋଗଦ୍ୱାରା ଭଗବାନଙ୍କଠାରେ **ଅବ୍ୟଭିଚାରିଣୀ ଭକ୍ତି** କରିବା' ବୋଲାଯାଏ।

ଏପରି ଭକ୍ତି କରୁଥିବା ଲୋକଠାରେ ଲେଶମାତ୍ର ସ୍ୱାର୍ଥ ଓ ଅଭିମାନ ରହେ ନାହିଁ, କି ସଂସାରର କୌଣସି ବସ୍ତୁ ପ୍ରତି ମମତ୍ୱ ରହେ ନାହିଁ। କେବଳ ଭଗବାନଙ୍କ ସହିତ ସମ୍ବନ୍ଧ ହେବାରୁ ହିଁ ତାଙ୍କର ସଂସାର ସହିତ ସମ୍ବନ୍ଧ ରହେ; ତାଛଡ଼ା କାହାରି ସହିତ କୌଣସିପ୍ରକାର ସ୍ୱତନ୍ତ୍ର ସମ୍ବନ୍ଧ ରହେ ନାହିଁ। ସେ ସବୁକିଛିକୁ ଭଗବାନଙ୍କର ବୋଲି ଭାବନ୍ତି ଏବଂ ଶ୍ରଦ୍ଧା ଓ ପ୍ରେମର ସହିତ ନିଷ୍କାମଭାବରେ ନିରନ୍ତର ଭଗବାନଙ୍କର ହିଁ ଚିନ୍ତନ କରନ୍ତି। ସେ ଯାହା କିଛି କରନ୍ତି, ସବୁ ଭଗବାନଙ୍କ ପାଇଁ କରନ୍ତି।

**ପ୍ରଶ୍ନ –** **ବିବିକ୍ତଦେଶ** କ'ଣ ଏବଂ ତା'ର ସେବନ କିପରି କରାଯାଏ ?

**ଉତ୍ତର –** ଯେଉଁଠାରେ କୌଣସିପ୍ରକାର ପାଟିତୁଣ୍ଡ ବା ଲୋକଗହଳ ନ ଥାଏ, ଯେଉଁଠି ଅନ୍ୟ କେହି ନ ଥାନ୍ତି, ଯେଉଁଠି ରହିବାରେ କାହାରି ଆପତ୍ତି ବା କ୍ଷୋଭ ନ ଥାଏ, ଯେଉଁଠି କୌଣସିପ୍ରକାର ଆବର୍ଜନା ନ ଥାଏ, ଯେଉଁଠି କଣ୍ଟା, ଖୁଣ୍ଟ, କଙ୍କର ଏବଂ ବିଛା ବା ବିଷାକ୍ତ ଜନ୍ତୁ ନ ଥାନ୍ତି, ଯେଉଁ ସ୍ଥାନର ପ୍ରାକୃତିକ ଦୃଶ୍ୟ ସୁନ୍ଦର, ବାୟୁ ଓ ବାତାବରଣ ନିର୍ମଳ ଓ ପବିତ୍ର, ଯେଉଁଠି କୌଣସିପ୍ରକାର ରୋଗ ନ ଥାଏ, ହିଂସ୍ରଜନ୍ତୁ ନ ଥାନ୍ତି, କି କୌଣସି ହିଂସା ନ ଥାଏ ଏବଂ ଯେଉଁଠି ସ୍ୱଭାବତଃ ସାତ୍ତ୍ୱିକତାର ପରମାଣୁ ପୂର୍ଣ୍ଣ ହୋଇ ରହିଥାଏ, ସେପରି ଦେବାଳୟ, ତପୋଭୂମି, ଗଙ୍ଗା, ଗୋଦାବରୀ ପ୍ରଭୃତି ପବିତ୍ର ନଦୀର କୂଳ ଏବଂ ପବିତ୍ର ବନ, ପର୍ବତଗୁମ୍ଫା ପ୍ରଭୃତି ନିର୍ଜନ, ଏକାନ୍ତ ଓ ଶୁଦ୍ଧ ସ୍ଥାନକୁ **'ବିବିକ୍ତଦେଶ'** କୁହାଯାଏ। ଜ୍ଞାନପ୍ରାପ୍ତିନିମନ୍ତେ ସାଧନା କରିବାଲାଗି ସେପରି ସ୍ଥାନରେ ନିବାସ କରିବାର ନାମ ତାହା **ସେବନ** କରିବା।

**ପ୍ରଶ୍ନ –** **ଜନସଂସଦି** କ'ଣ ? ପୁଣି ତହିଁରେ ପ୍ରେମ ନ କରିବା କ'ଣ ?

**ଉତ୍ତର –** ଏଠାରେ **ଜନସଂସଦି** ପଦଟି ହେଉଛି ପ୍ରମାଦୀ ବିଷୟାସକ୍ତ ସାଂସାରିକ ଲୋକସମୁଦାୟର ବାଚକ। ଏପରି ଲୋକଙ୍କର ସଙ୍ଗକୁ ସାଧନାରେ ସବୁଦୃଷ୍ଟିରୁ ବାଧକ ବୋଲି ଜାଣି ସେଥିରୁ ବିରକ୍ତ ରହିବା ହିଁ ସେଥିରେ ପ୍ରେମ ନ କରିବା। ସନ୍ଥ, ମହାତ୍ମା ଏବଂ ସାଧକ ପୁରୁଷମାନଙ୍କର ସଙ୍ଗ ତ ସାଧନାରେ ସହାୟକ ହୁଏ, ତେଣୁ ଜନସଂସଦି ସେମାନଙ୍କ ସମୁଦାୟର ବାଚକ ନୁହେଁ।

**ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନମ୍।**
**ଏତଜ୍ଜ୍ଞାନମିତି ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା॥ ୧୧ ॥**

**ଅନ୍ୱୟ –** **ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱମ୍** = ଅଧ୍ୟାତ୍ମଜ୍ଞାନରେ ନିତ୍ୟସ୍ଥିତି; **ତତ୍ତ୍ୱଜ୍ଞାନାର୍ଥଦର୍ଶନମ୍** = ତତ୍ତ୍ୱଜ୍ଞାନର ଅର୍ଥରୂପ ପରମାତ୍ମାଙ୍କୁ ହିଁ ସର୍ବତ୍ର ଦର୍ଶନ କରିବା; **ଏତତ୍** = ଏସବୁ; **ଜ୍ଞାନମ୍** = ଜ୍ଞାନ ଅଟେ; **ଯତ୍** = ଯାହା; **ଅତଃ** = ଏହା ଠାରୁ; **ଅନ୍ୟଥା** = ବିପରୀତ ଅଟେ; **(ତତ୍) ଅଜ୍ଞାନମ୍, ଇତି** = (ତାହା) ଅଜ୍ଞାନ ବୋଲି; **ପ୍ରୋକ୍ତମ୍** = କୁହାଯାଇଛି ।

**ଅଧ୍ୟାତ୍ମଜ୍ଞାନରେ ନିତ୍ୟସ୍ଥିତି ଏବଂ ତତ୍ତ୍ୱଜ୍ଞାନର ଅର୍ଥରୂପ ପରମାତ୍ମାଙ୍କୁ ହିଁ ସର୍ବତ୍ର ଦର୍ଶନ — ଏସବୁ ଜ୍ଞାନ ବୋଲି ଏବଂ ଯାହା ଏହାର ବିପରୀତ, ତାହା ଅଜ୍ଞାନ ବୋଲି କୁହାଯାଇଛି ॥ ୧୧ ॥**

**ପ୍ରଶ୍ନ – ଅଧ୍ୟାତ୍ମଜ୍ଞାନ** କ'ଣ ? ସେଥିରେ ନିତ୍ୟସ୍ଥିତିର ଅର୍ଥ କ'ଣ ?

**ଉତ୍ତର –** ଆତ୍ମା ନିତ୍ୟ, ଚେତନ, ନିର୍ବିକାର ଏବଂ ଅବିନାଶୀ । ତାହାଠାରୁ ଭିନ୍ନ ହୋଇ ଯେଉଁସବୁ ନାଶବାନ୍, ଜଡ଼, ବିକାରୀ ଓ ପରିବର୍ତ୍ତନଶୀଳ ବସ୍ତୁ ପ୍ରତୀତ ହୁଏ, ସେଗୁଡ଼ିକ ଅନାତ୍ମା; ସେମାନଙ୍କ ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ । ଶାସ୍ତ୍ର ତଥା ଆଚାର୍ଯ୍ୟଙ୍କର ଉପଦେଶରୁ ଆତ୍ମତତ୍ତ୍ୱକୁ ଏହିପରି ଭଲରୂପେ ବୁଝିନେବା ହିଁ **ଅଧ୍ୟାତ୍ମଜ୍ଞାନ** ଏବଂ ବୁଦ୍ଧିରେ ଠିକ୍ ସେହିପରି ଦୃଢ଼ ନିଶ୍ଚୟ କରି ମନଦ୍ୱାରା ସେହି ଆତ୍ମତତ୍ତ୍ୱକୁ ନିତ୍ୟ ନିରନ୍ତର ମନନ କରିବା ହେଉଛି 'ଅଧ୍ୟାତ୍ମଜ୍ଞାନରେ **ନିତ୍ୟସ୍ଥିତ**' ରହିବା ।

**ପ୍ରଶ୍ନ – ତତ୍ତ୍ୱଜ୍ଞାନ**ର ଅର୍ଥ କ'ଣ ଏବଂ ତାହା ଦର୍ଶନ କରିବା ଅର୍ଥ କ'ଣ ?

**ଉତ୍ତର – ତତ୍ତ୍ୱଜ୍ଞାନ**ର ଅର୍ଥ ହେଉଛି ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମା; କାରଣ ତତ୍ତ୍ୱଜ୍ଞାନଦ୍ୱାରା ହିଁ ତାଙ୍କୁ ପ୍ରାପ୍ତ କରାଯାଏ । ସେହି ସଚ୍ଚିଦାନନ୍ଦଘନ ଗୁଣାତୀତ ପରମାତ୍ମାଙ୍କୁ ସର୍ବତ୍ର ସମଭାବରେ ନିତ୍ୟନିରନ୍ତର ଧ୍ୟାନ କରିଚାଲିବା ହିଁ ସେହି ଅର୍ଥକୁ ସର୍ବତ୍ର ଦର୍ଶନ କରିବା ।

**ପ୍ରଶ୍ନ –** 'ଏସବୁ ଜ୍ଞାନ ଅଟେ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ୭ମ ଶ୍ଲୋକର **'ଅମାନିତ୍ୱମ୍'**ଠାରୁ ଆରମ୍ଭ କରି ଏହି ଶ୍ଲୋକର **ତତ୍ତ୍ୱଜ୍ଞାନାର୍ଥଦର୍ଶନ**ପର୍ଯ୍ୟନ୍ତ ଯାହାସବୁ ବର୍ଣ୍ଣନା କରାଗଲା, ସେସବୁ ହେଉଛି ଜ୍ଞାନପ୍ରାପ୍ତିର ସାଧନ; ତେଣୁ ସେସବୁର ନାମ ମଧ୍ୟ ଜ୍ଞାନ ରଖାଗଲା । ଅଭିପ୍ରାୟ ହେଉଛି : ଦ୍ୱିତୀୟ ଶ୍ଲୋକରେ ଭଗବାନ୍ ଯାହା କହିଛନ୍ତି ଯେ, କ୍ଷେତ୍ର ଓ କ୍ଷେତ୍ରଜ୍ଞର ଜ୍ଞାନ ହିଁ ମୋ ମତରେ ଜ୍ଞାନ, ସେଥିରୁ କେହି ଯେପରି ଭାବି ନ ନିଅନ୍ତି ଯେ, ଶରୀରର ନାମ କ୍ଷେତ୍ର ଓ ଶରୀର ଭିତରେ ରହିଥିବା ଜ୍ଞାତା ଆତ୍ମାର ନାମ 'କ୍ଷେତ୍ରଜ୍ଞ' ଅଟେ । ଏତିକି ବୁଝିଗଲେ, ବେଶ୍, ଆମର ଜ୍ଞାନପ୍ରାପ୍ତି ହୋଇଗଲା; କିନ୍ତୁ, ବାସ୍ତବରେ ଉପରୋକ୍ତ କୋଡ଼ିଏଟି ସାଧନଦ୍ୱାରା କ୍ଷେତ୍ର-କ୍ଷେତ୍ରଜ୍ଞର ସ୍ୱରୂପକୁ ଯଥାର୍ଥରୂପରେ ଜାଣିଗଲେ ଯେଉଁ ଜ୍ଞାନ ହୁଏ, ତାହା ହିଁ ପ୍ରକୃତ ଜ୍ଞାନ । ଏହି କଥାଟି ବୁଝାଇଦେବା ନିମନ୍ତେ ଉକ୍ତ ସାଧନଗୁଡ଼ିକୁ 'ଜ୍ଞାନ' ନାମରେ ନାମିତ କରାଯାଇଛି; ଅତଏବ ଜ୍ଞାନୀଙ୍କ ଠାରେ ପ୍ରଥମେ ଉପରୋକ୍ତ ଗୁଣଗୁଡ଼ିକ ରହିବା ଆବଶ୍ୟକ । କିନ୍ତୁ ଏହି ସକଳ ଗୁଣ ସବୁ ସାଧକଙ୍କ ଠାରେ ଏକାସାଥିରେ ରହିବା ଯେ ଏକାନ୍ତ ଆବଶ୍ୟକ, ସେପରି ନୁହେଁ । ଅବଶ୍ୟ ଅମାନିତ୍ୱ, ଅଦମ୍ଭିତ୍ୱ ଆଦି ଗୁଣ ସମସ୍ତଙ୍କ ପାଇଁ ଉପଯୋଗୀ; ଏସବୁ ଗୁଣ ସମସ୍ତଙ୍କ ଠାରେ ରହିଥାଏ; ଏହାଛଡ଼ା **ଅବ୍ୟଭିଚାରିଣୀ ଭକ୍ତି, ଏକାନ୍ତଦେଶସେବିତ୍ୱ, ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱ, ତତ୍ତ୍ୱଜ୍ଞାନାର୍ଥଦର୍ଶନ** ଇତ୍ୟାଦି ଗୁଣଗୁଡ଼ିକରେ ସାଧକମାନଙ୍କର ସାଧନାଶୈଳୀ ଅନୁଯାୟୀ ବିକଳ୍ପ ମଧ୍ୟ ହୋଇପାରେ ।

**ପ୍ରଶ୍ନ –** 'ଯାହା ଏହାର ବିପରୀତ, ତାହା ଅଜ୍ଞାନ' – ଏପରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହା କହିବାର ଅଭିପ୍ରାୟ ହେଉଛି, ଉପରୋକ୍ତ ଅମାନିତ୍ୱାଦି ଗୁଣର ବିପରୀତ ହେଉଛି ମାନସମ୍ମାନପାଇଁ କାମନା, ଦମ୍ଭ, ହିଂସା, କ୍ରୋଧ, କପଟ, କୁଟିଳତା, ଦ୍ରୋହ, ଅପବିତ୍ରତା, ଅସ୍ଥିରତା, ଲୋଲୁପତା, ଆସକ୍ତି, ଅହଂତ୍ୱ, ମମତ୍ୱ, ବିଷମତା, ଅଶ୍ରଦ୍ଧା ଓ କୁସଙ୍ଗ ଆଦି ଦୋଷ । ଏସବୁ ଅଜ୍ଞାନ ବୃଦ୍ଧି କରେ ଓ ଜୀବର ପତନ ଘଟାଏ; ଜାଣିବା ଉଚିତ ଯେ, ଏହି ଅଜ୍ଞାନ ହିଁ ଜନ୍ମ-ମୃତ୍ୟୁର କାରଣ । ତେଣୁ ଏସବୁ ଦୋଷ ସର୍ବଥା ତ୍ୟାଗ କରିବା ଉଚିତ ।

*__ସମ୍ବନ୍ଧ –__ ଏପରିଭାବରେ ଜ୍ଞାନର ସାଧନଗୁଡ଼ିକ ଜ୍ଞାନ ନାମରେ ବର୍ଣ୍ଣିତ ହୋଇଥିବାର ଶୁଣି ପ୍ରଶ୍ନ ଉଠିପାରେ, ଏସବୁ ସାଧନରୁ ପ୍ରାପ୍ତ 'ଜ୍ଞାନ'ଦ୍ୱାରା ଜାଣିବାଯୋଗ୍ୟ ବସ୍ତୁ କ'ଣ ଏବଂ ତାହା ଜାଣିଲେ କ'ଣ ହୁଏ ? ଏହି ପ୍ରଶ୍ନର ଉତ୍ତର ଦେବାନିମନ୍ତେ ଭଗବାନ୍ ବର୍ତ୍ତମାନ ସେହି ଜ୍ଞେୟବସ୍ତୁର ସ୍ୱରୂପ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରି, ତାହାକୁ ଜାଣିବାର ଫଳ ଅମୃତପ୍ରାପ୍ତି ବୋଲି କହି ପରବର୍ତ୍ତୀ ଛ'ଟି ଶ୍ଲୋକରେ ସେହି ଜ୍ଞେୟ ପରମାତ୍ମାଙ୍କର ସ୍ୱରୂପ ବର୍ଣ୍ଣନା କରୁଛନ୍ତି–*

**ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି ଯଜ୍‌ଜ୍ଞାତ୍ୱାମୃତମଶ୍ନୁତେ ।**
**ଅନାଦିମତ୍ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ ॥ ୧୨ ॥**

**ଅନ୍ୱୟ –** ଯତ୍ = ଯାହା; **ଜ୍ଞେୟମ୍** = ଜାଣିବାର ଯୋଗ୍ୟ; ଯତ୍ = (ତଥା) ଯାହାକୁ; **ଜ୍ଞାତ୍ୱା** = ଜାଣି (ମନୁଷ୍ୟ); **ଅମୃତମ୍** = ପରମାନନ୍ଦକୁ; **ଅଶ୍ନୁତେ** = ପ୍ରାପ୍ତ ହୁଏ; **ତତ୍** = ତାହା; **ପ୍ରବକ୍ଷ୍ୟାମି** = ଭଲରୂପେ ବୁଝାଇଦେବି; **ତତ୍** = ସେହି; **ଅନାଦିମତ୍** = ଅନାଦିବାଲା; **ପରଂବ୍ରହ୍ମ** = ପରମ ବ୍ରହ୍ମ; **ନ, ସତ୍, ଉଚ୍ୟତେ** = ସତ୍ ବୋଲି କୁହାଯାଏ ନାହିଁ; **ନ, ଅସତ୍** = (କି) ଅସତ୍ ବୋଲି କୁହାଯାଏ ନାହିଁ।

**ଯାହା ଜାଣିବାର ଯୋଗ୍ୟ ତଥା ଯାହା ଜାଣି ମନୁଷ୍ୟ ପରମାନନ୍ଦକୁ ପ୍ରାପ୍ତ ହୁଏ, ତାହା ମୁଁ ଭଲରୂପେ ବୁଝାଇଦେବି। ସେହି ଅନାଦି ପରମବ୍ରହ୍ମକୁ ସତ୍ ବୋଲି କୁହାଯାଇପାରିବ ନାହିଁ, କି ଅସତ୍ ବୋଲି କୁହାଯାଏ ନାହିଁ॥ ୧୨ ॥**

**ପ୍ରଶ୍ନ –** ଯାହା ବର୍ଣ୍ଣନା କରିବାକୁ ଭଗବାନ୍ ପ୍ରତିଜ୍ଞା କରୁଛନ୍ତି, ସେହି **ଜ୍ଞେୟମ୍** ପଦଟି ଏଠାରେ କାହାର ବାଚକ ?

**ଉତ୍ତର –** ଏଠାରେ **ଜ୍ଞେୟମ୍** ପଦଟି ସଚ୍ଚିଦାନନ୍ଦଘନ ନିର୍ଗୁଣ ଓ ସଗୁଣ ବ୍ରହ୍ମର ବାଚକ, କାରଣ ଏହି ପ୍ରକରଣରେ ସ୍ୱୟଂ ଭଗବାନ୍ ହିଁ ତାହାକୁ ନିର୍ଗୁଣ ଓ ଗୁଣମାନଙ୍କର ଭୋକ୍ତା ବୋଲି କହିଛନ୍ତି।

**ପ୍ରଶ୍ନ –** ସେହି ଜ୍ଞେୟ ବସ୍ତୁକୁ ଜାଣିଲେ ଯେଉଁ ଅମୃତ ପ୍ରାପ୍ତ ହୁଏ, ସେହି **ଅମୃତ**ଟି କ'ଣ ?

**ଉତ୍ତର – ଅମୃତ** ପଦଟି ଏଠାରେ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କର ବାଚକ। କହିବାର ଅଭିପ୍ରାୟ ହେଉଛି : ସେହି ଜ୍ଞେୟ ପରବ୍ରହ୍ମ ପରମାତ୍ମାଙ୍କ ଜ୍ଞାନ ଲାଭ କଲେ ମନୁଷ୍ୟ ଚିରକାଳପାଇଁ ଜନ୍ମମରଣରୂପୀ ସଂସାରବନ୍ଧନରୁ ମୁକ୍ତ ହୋଇ ପରମାନନ୍ଦସ୍ୱରୂପ ପରବ୍ରହ୍ମକୁ ପାଇଯାଏ। ଏହାକୁ ହିଁ ପରମଗତି ଓ ପରମପଦପ୍ରାପ୍ତି ମଧ୍ୟ ବୋଲାଯାଏ।

**ପ୍ରଶ୍ନ – ଅନାଦିମତ୍** ପଦଟିର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହି ଅଧ୍ୟାୟର ଊଣେଇଶ ଶ୍ଳୋକରେ ଭଗବାନ୍ ପ୍ରକୃତି ଓ ଜୀବାତ୍ମାକୁ ଅନାଦି ବୋଲି କହିଛନ୍ତି। ଏହି ଦୁହିଁଙ୍କର ସ୍ୱାମୀ ହୋଇଥିବାରୁ ପରବ୍ରହ୍ମ ପୁରୁଷୋତ୍ତମଙ୍କୁ **ଅନାଦିମତ୍** ଅର୍ଥାତ୍ ଅନାଦି କହିଛନ୍ତି।

**ପ୍ରଶ୍ନ – ପରମ୍** ବିଶେଷଣ ସହିତ **ବ୍ରହ୍ମ** ପଦଟିର ଅର୍ଥ କ'ଣ ?

**ଉତ୍ତର –** ସେହି ଜ୍ଞେୟ ତତ୍ତ୍ୱ ହିଁ ନିର୍ଗୁଣ, ନିରାକାର ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମା; ଏହା ବୁଝାଇଦେବା ଉଦ୍ଦେଶ୍ୟରେ ଏଠାରେ **ପରମ୍** ବିଶେଷଣ ସହିତ **ବ୍ରହ୍ମ** ପଦ ପ୍ରୟୋଗ କରାଯାଇଛି। **ବ୍ରହ୍ମ** ପଦ ବେଦ, ବ୍ରହ୍ମା ଓ ପ୍ରକୃତିର ମଧ୍ୟ ବାଚକ ହୋଇପାରେ। ଅତଏବ ଜ୍ଞେୟତତ୍ତ୍ୱର ସ୍ୱରୂପ ଏସବୁଠାରୁ ବିଲକ୍ଷଣ ବୋଲି ଦର୍ଶାଇଦେବାପାଇଁ **ବ୍ରହ୍ମ** ପଦ ସହିତ **ପରମ୍** ବିଶେଷଣ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ସେହି ପରବ୍ରହ୍ମ ପରମାତ୍ମାଙ୍କୁ **ସତ୍** କିମ୍ବା ଅସତ୍ ବୋଲି କୁହାଯାଇ ନ ପାରିବ କାହିଁକି ?

**ଉତ୍ତର –** ଯାହା ପ୍ରମାଣଦ୍ୱାରା ସିଦ୍ଧ କରାଯାଏ, ତାହାକୁ **ସତ୍** କୁହାଯାଏ। ସ୍ୱତଃପ୍ରମାଣ ନିତ୍ୟ ଅବିନାଶୀ ପରମାତ୍ମାଙ୍କୁ କୌଣସି ପ୍ରମାଣଦ୍ୱାରା ସିଦ୍ଧ କରାଯାଇପାରିବ ନାହିଁ। କାରଣ ପରମାତ୍ମାଙ୍କ ଦ୍ୱାରା ହିଁ ସବୁ ସିଦ୍ଧ ହୁଏ। କୌଣସି ପ୍ରମାଣ ପରମାତ୍ମାଙ୍କ ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ। ଶ୍ରୁତି ବି କହିଛନ୍ତି, 'ଯେ ସମସ୍ତଙ୍କୁ ଜାଣନ୍ତି, ତାଙ୍କୁ ଜାଣିହେବ କିପରି ?' ପ୍ରମାଣଦ୍ୱାରା ଜାଣିହେଉଥିବା ବସ୍ତୁମାନଙ୍କ ଠାରୁ ସେ ଅତ୍ୟନ୍ତ ବିଲକ୍ଷଣ ଅଟନ୍ତି। ତେଣୁ ପରମାତ୍ମାଙ୍କୁ **ସତ୍** କୁହାଯାଇପାରିବ ନାହିଁ। ପୁଣି ଯେଉଁ ବସ୍ତୁର ବାସ୍ତବରେ ଅସ୍ତିତ୍ୱ ନ ଥାଏ, ତାହାକୁ ଅସତ୍ କୁହାଯାଏ। କିନ୍ତୁ ପରବ୍ରହ୍ମ ପରମାତ୍ମାଙ୍କର ଅସ୍ତିତ୍ୱ ନାହିଁ ବୋଲି କହିବା ଠିକ୍ ନୁହେଁ। ସେ ଅବଶ୍ୟ ଅଛନ୍ତି, ବରଂ ସେ ଅଛନ୍ତି ବୋଲି ହିଁ ଅନ୍ୟସବୁ ବସ୍ତୁର ଅସ୍ତିତ୍ୱ ସିଦ୍ଧ ହୁଏ। ତେଣୁ ତାଙ୍କୁ **ଅସତ୍** ବି କୁହାଯାଇ ପାରିବ ନାହିଁ। ତେଣୁ ପରମାତ୍ମା **ସତ୍** ଓ **ଅସତ୍** ଉଭୟରୁ ଅତୀତ।

**ପ୍ରଶ୍ନ –** ନବମ ଅଧ୍ୟାୟର ଊଣେଇଶ ଶ୍ଳୋକରେ ତ ଭଗବାନ୍ କହିଛନ୍ତି, 'ମୁଁ ସତ୍ ଅଟେ, ଅସତ୍ ବି ଅଟେ।' ଅଥଚ ଏଠାରେ ଜ୍ଞେୟ ପରମାତ୍ମାଙ୍କୁ ସତ୍ କୁହାଯାଇପାରିବ ନାହିଁ, କି ଅସତ୍ କୁହାଯାଇପାରିବ ନାହିଁ ବୋଲି କୁହାଯାଇଛି। ଏହି ପରସ୍ପରବିରୋଧର ସମାଧାନ କ'ଣ ?

**ଉତ୍ତର –** ବସ୍ତୁତଃ ଏଠାରେ କୌଣସି ବିରୋଧ ହିଁ ନାହିଁ; କାରଣ ଯେଉଁଠାରେ ପରମାତ୍ମାଙ୍କ ସ୍ୱରୂପକୁ ବିଧିମୁଖରେ ବର୍ଣ୍ଣନା କରାଯାଏ, ସେଠାରେ ବୁଝାଇଦିଆଯାଏ ଯେ, ଯାହା କିଛି ଅଛି, ସବୁ ବ୍ରହ୍ମ। ଏବଂ ଯେତେବେଳେ ନିଷେଧମୁଖରେ ବର୍ଣ୍ଣନା କରାଯାଏ, ସେଠାରେ ବୁଝାଇଦିଆଯାଏ ଯେ, ପରମାତ୍ମା ଏପରି ନୁହନ୍ତି, କି ସେପରି ନୁହନ୍ତି; କିନ୍ତୁ ସେ ଅଛନ୍ତି। ସେଠାରେ ବିଧିମୁଖରେ ବର୍ଣ୍ଣନା କରାଯାଇଥିବାରୁ ଭଗବାନ୍ 'ମୁଁ ସତ୍ ବି ଅଟେ; ଅସତ୍ ବି ଅଟେ' ବୋଲି ଯାହା କହିଛନ୍ତି, ତାହା ଉଚିତ ହୋଇଛି। କିନ୍ତୁ ବସ୍ତୁତଃ ପରବ୍ରହ୍ମ ପରମାତ୍ମାଙ୍କ ସ୍ୱରୂପ ବାଣୀର ଅତୀତ; ତାଙ୍କୁ ବାଣୀଦ୍ୱାରା ବର୍ଣ୍ଣନା କରିବାକୁ ବସିଲେ ନା ବିଧିମୁଖରେ, ନା ନିଷେଧମୁଖରେ ବର୍ଣ୍ଣନା କରିହେବ। ତାଙ୍କ ବିଷୟରେ ଯାହା କିଛି କୁହାଯାଏ, କେବଳ ଶାଖାଚନ୍ଦ୍ରନ୍ୟାୟରେ ତାଙ୍କୁ ଲକ୍ଷ୍ୟ କରାଇବା ପାଇଁ ହିଁ କୁହାଯାଏ; ବାଣୀଦ୍ୱାରା ତାଙ୍କର ସାକ୍ଷାତ୍ ସ୍ୱରୂପକୁ ବର୍ଣ୍ଣନା କରାଯାଇପାରିବ ନାହିଁ। ଶ୍ରୁତି ବି କହିଛନ୍ତି, **'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ'** (ତୈତ୍ତିରୀୟ ଉ. ୨/୯) ଅର୍ଥାତ୍, 'ଯାହାଙ୍କୁ ନ ପାଇ ମନ ସହିତ ବାଣୀ ମଧ୍ୟ ଫେରି ଆସେ ('ସେ ବ୍ରହ୍ମ ଅଟନ୍ତି')। ଏହି ବିଷୟଟି ସ୍ପଷ୍ଟ କରିଦେବା ଲାଗି ଭଗବାନ୍ ଏଠାରେ ନିଷେଧମୁଖରେ କହିଛନ୍ତି, 'ତାଙ୍କୁ ସତ୍ କୁହାଯାଇପାରିବ ନାହିଁ, କି ଅସତ୍ କୁହାଯାଇପାରିବ ନାହିଁ ଅର୍ଥାତ୍ 'ମୁଁ ଯେଉଁ ଜ୍ଞେୟ ବସ୍ତୁର ବର୍ଣ୍ଣନା କରିବାକୁ ଯାଉଛି, ତାହାର ବାସ୍ତବିକ ସ୍ୱରୂପ ମନ-ବାଣୀର ବିଷୟ ନୁହେଁ; ତେଣୁ ତାହାର ଯାହା କିଛି ବି ବର୍ଣ୍ଣନା କରାଯିବ, ତାହା ତାହାର ତଟସ୍ଥ ଲକ୍ଷଣ ବୋଲି ହିଁ ବୁଝିବାକୁ ପଡ଼ିବ।'

**ସମ୍ବନ୍ଧ –** ଜ୍ଞେୟ ତତ୍ତ୍ୱର ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରି ଭଗବାନ୍ ତାହା ଏପରି ସଂକ୍ଷେପରେ ବର୍ଣ୍ଣନା କରିଦେଲେ। କିନ୍ତୁ ସେହି ଜ୍ଞେୟତତ୍ତ୍ୱ ତ ଅତ୍ୟନ୍ତ ଗହନ; ତେଣୁ ସାଧକମାନଙ୍କୁ ତାହା ଜଣାଇଦେବାନିମନ୍ତେ ସର୍ବବ୍ୟାପକତ୍ୱ ଆଦି ଲକ୍ଷଣମାନଙ୍କ ଦ୍ୱାରା ପୁନର୍ବାର ବିସ୍ତାରପୂର୍ବକ ସେହି ତତ୍ତ୍ୱ ବର୍ଣ୍ଣନା କରୁଛନ୍ତି –

**ସର୍ବତଃପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍।**
**ସର୍ବତଃଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥ ୧୩ ॥***

**ଅନ୍ୱୟ –** ତତ୍ = ସେ; **ସର୍ବତଃପାଣିପାଦମ୍** = ସକଳଦିଗରେ ହସ୍ତପଦବିଶିଷ୍ଟ; **ସର୍ବତୋଽକ୍ଷିଶିରୋମୁଖମ୍** = ସକଳଦିଗରେ ନେତ୍ର, ଶିର ଓ ମୁଖବିଶିଷ୍ଟ; **ସର୍ବତଃଶ୍ରୁତିମତ୍** = ସକଳଦିଗରେ କର୍ଣ୍ଣବିଶିଷ୍ଟ; **(ଯତଃ)** = କାରଣ (ସେ); **ଲୋକେ** = ସଂସାରରେ; **ସର୍ବମ୍** = ସବୁକୁ; **ଆବୃତ୍ୟ** = ବ୍ୟାପି; **ତିଷ୍ଠତି** = ରହିଛନ୍ତି।

**ତାଙ୍କର ସକଳଦିଗରେ ହସ୍ତ ଓ ପାଦ ରହିଛି; ସକଳଦିଗରେ ନେତ୍ର, ଶିର ଓ ମୁଖ ରହିଛି; ସକଳଦିଗରେ କର୍ଣ୍ଣ ରହିଛି; କାରଣ ସେ ସଂସାରରେ ସବୁକୁ ବ୍ୟାପି ରହିଛନ୍ତି ॥ ୧୩ ॥**

**ପ୍ରଶ୍ନ –** 'ତାଙ୍କର ସକଳଦିଗରେ ହସ୍ତ ଓ ପାଦ ରହିଛି' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ପ୍ରକାଶ କରାଯାଇଛି ଯେ, ସେହି ପରବ୍ରହ୍ମ ପରମାତ୍ମାଙ୍କର ସକଳ ଦିଗରେ ହସ୍ତ ରହିଛି। ତାଙ୍କୁ ଯେକୌଣସି ସ୍ଥାନରୁ ଯେକୌଣସି ବସ୍ତୁ ସମର୍ପଣ କଲେ ବି, ସେ ତାହା ସେଠାରୁ ଗ୍ରହଣ କରିବାକୁ ସମର୍ଥ। ଠିକ୍ ସେହିପରି ସବୁଠାରେ ତାଙ୍କର ପାଦ ରହିଛି। କୌଣସି ଭକ୍ତ ତାଙ୍କ ଚରଣରେ ଯେକୌଣସି ସ୍ଥାନରେ ପ୍ରଣାମାଦି କଲେ ବି, ସେ ତାହା ସେଠାରେ ଗ୍ରହଣ କରିଥାନ୍ତି। ସେ ସର୍ବଶକ୍ତିମାନ୍ ହୋଇଥିବାରୁ ସର୍ବତ୍ର ସବୁ ଇନ୍ଦ୍ରିୟର କାର୍ଯ୍ୟ କରିପାରନ୍ତି; ତାଙ୍କର ହସ୍ତ-ଇନ୍ଦ୍ରିୟର କାର୍ଯ୍ୟ କରୁଥିବା ଗ୍ରହଣଶକ୍ତି ଓ ପାଦ-ଇନ୍ଦ୍ରିୟର କାର୍ଯ୍ୟ କରୁଥିବା ଚଳନଶକ୍ତି ସର୍ବତ୍ର ବ୍ୟାପ୍ତ ହୋଇ ରହିଛି।

**ପ୍ରଶ୍ନ –** 'ତାଙ୍କର ସକଳ ଦିଗରେ ନେତ୍ର, ଶିର ଓ ମୁଖ ରହିଛି' —ଏପରି କହିବାର ଭାବ କ'ଣ ?

**ଉତ୍ତର –** ଏହା କହି ମଧ୍ୟ ସେହି ଜ୍ଞେୟ ତତ୍ତ୍ୱର ସର୍ବବ୍ୟାପକତା ହିଁ ପ୍ରକାଶ କରାଯାଇଛି। ସର୍ବତ୍ର ତାଙ୍କର ଚକ୍ଷୁ ରହିଥିବାରୁ ସେ ଦେଖିପାରୁ ନ ଥିବା ସ୍ଥାନ ବୋଲି କିଛି ନାହିଁ; ତେଣୁ ତାଙ୍କ ଦୃଷ୍ଟିରୁ କୌଣସି

* ଏହି ଶ୍ଳୋକଟି ଶ୍ୱେତାଶ୍ୱତରୋପନିଷଦରେ ବି ଅକ୍ଷରଶଃ ରହିଛି (୩/୧୬)

ବିଷୟ ଲୁଚିରହିପାରେନା। ତାଙ୍କର ଶିର ସର୍ବତ୍ର ରହିଛି। ତେଣୁ ତାଙ୍କର ସତ୍କାର କରିବା ଉଦ୍ଦେଶ୍ୟରେ ଭକ୍ତଜନମାନେ ଯେକୌଣସି ସ୍ଥାନରେ ବି ଯେଉଁ ପୁଷ୍ପ ପ୍ରଭୃତି ପଦାର୍ଥ ଚଢ଼ାନ୍ତି, ସେସବୁ ଠିକ୍ ତାଙ୍କର ଶିରରେ ହିଁ ଲାଗିଥାଏ; କାରଣ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ଭଗବାନଙ୍କର ଶିର ନାହିଁ। ତାଙ୍କର ମୁଖ ସର୍ବତ୍ର ରହିଛି। ତାଙ୍କର ଭକ୍ତ ତାଙ୍କୁ ଯେକୌଣସି ସ୍ଥାନରେ ବି ନୈବେଦ୍ୟ ଅର୍ପଣ କରନ୍ତୁ ନା କାହିଁକି, ସେ ତାହା ସ୍ୱୀକାର କରିନିଅନ୍ତି; କାରଣ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ତାଙ୍କର ମୁଖ ନାହିଁ। ଅର୍ଥାତ୍ ସେହି ଜ୍ଞେୟସ୍ୱରୂପ ପରମାତ୍ମା ସବୁକିଛିର ସାକ୍ଷୀ, ସବୁକିଛି ଦର୍ଶନ କରିପାରନ୍ତି ତଥା ସମସ୍ତଙ୍କର ପୂଜା ଓ ନୈବେଦ୍ୟ ସ୍ୱୀକାର କରିବାକୁ ସମର୍ଥ ଅଟନ୍ତି।

**ପ୍ରଶ୍ନ –** 'ତାଙ୍କର କର୍ଣ୍ଣ ସର୍ବତ୍ର ରହିଛି' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଥିରେ ବି ଜ୍ଞେୟସ୍ୱରୂପ ପରମାତ୍ମାଙ୍କର ସର୍ବବ୍ୟାପକତା ହିଁ ବର୍ଣ୍ଣିତ ହୋଇଛି। କହିବାର ଅଭିପ୍ରାୟ ଏହି ଯେ, ସେହି ପରମାତ୍ମାଙ୍କର ଶ୍ରବଣଶକ୍ତି ସର୍ବତ୍ର ରହିଛି। ତାଙ୍କର ଭକ୍ତ ଯେକୌଣସି ସ୍ଥାନରେ ସ୍ତୁତି, ବା ପ୍ରାର୍ଥନା କଲେ, ବା କିଛି ଯାଚନା କଲେ ବି, ସେ ତାହା ଭଲଭାବରେ ଶୁଣିପାରନ୍ତି।

**ପ୍ରଶ୍ନ –** 'ସେ ସଂସାରରେ ସବୁକୁ ବ୍ୟାପି ରହିଛନ୍ତି' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏପରି କହି ମଧ୍ୟ ସେହି ଜ୍ଞେୟତତ୍ତ୍ୱଙ୍କର ସର୍ବବ୍ୟାପକତା ହିଁ ସମଗ୍ରରୂପେ ପ୍ରତିପାଦନ କରାଯାଇଛି। ଆକାଶ ଯେପରି ବାୟୁ, ଅଗ୍ନି, ଜଳ ଓ ପୃଥିବୀର କାରଣ ହୋଇଥିବାରୁ ସେହି ସମସ୍ତଙ୍କୁ ବ୍ୟାପି ରହିଛି, ସେହି ଜ୍ଞେୟସ୍ୱରୂପ ପରମାତ୍ମା ସେହିପରି ଚରାଚର ଜୀବସମୂହସହିତ ସମସ୍ତ ଜଗତର କାରଣ ହୋଇଥିବାରୁ ସମସ୍ତଙ୍କୁ ବ୍ୟାପି ରହିଛନ୍ତି। ଅତଏବ ସବୁକିଛି ତାଙ୍କରି ଦ୍ୱାରା ପରିପୂର୍ଣ୍ଣ ହୋଇ ରହିଛି।

***ସମ୍ବନ୍ଧ –*** *ଜ୍ଞେୟସ୍ୱରୂପ ପରମାତ୍ମା ସର୍ବତ୍ର ସକଳଦିଗରେ ହସ୍ତ, ପାଦ ଆଦି ଇନ୍ଦ୍ରିୟଶକ୍ତିରେ ସମ୍ପନ୍ନ ବୋଲି ବୁଝାଇଦେବା ପରେ ବର୍ତ୍ତମାନ ତାଙ୍କର ସ୍ୱରୂପର ଅଲୌକିକତା ନିରୂପଣ କରୁଛନ୍ତି –*

## ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍।
## ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ॥ ୧୪ ॥

ଅନ୍ୱୟ – **ସର୍ବେନ୍ଦ୍ରିୟଗୁଣାଭାସମ୍** = (ସେ) ସକଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟର ଜ୍ଞାତା; **ସର୍ବେନ୍ଦ୍ରିୟବିବର୍ଜିତମ୍** = (ଅଥଚ ବାସ୍ତବରେ ସେ) ସକଳ ଇନ୍ଦ୍ରିୟରୁ ରହିତ; **ଚ** = ତଥା; **ଅସକ୍ତମ୍, ଏବ** = ଆସକ୍ତିରହିତ ହୋଇ ମଧ୍ୟ; **ସର୍ବଭୃତ୍** = ସମସ୍ତଙ୍କର ଧାରଣପୋଷଣକାରୀ; **ଚ** = ଏବଂ; **ନିର୍ଗୁଣମ୍** = ନିର୍ଗୁଣ ହୋଇ (ମଧ୍ୟ); **ଗୁଣଭୋକ୍ତୃ** = ଗୁଣମାନଙ୍କର ଭୋକ୍ତା।

**ସେ ସକଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟର ଜ୍ଞାତା, ଅଥଚ ବାସ୍ତବରେ ସେ ସକଳ ଇନ୍ଦ୍ରିୟରୁ ରହିତ ଅଟନ୍ତି। ସେ ଆସକ୍ତିରହିତ ହୋଇ ମଧ୍ୟ ସମସ୍ତଙ୍କର ଧାରଣ-ପୋଷଣକାରୀ ଏବଂ ନିର୍ଗୁଣ ହୋଇ ମଧ୍ୟ ଗୁଣମାନଙ୍କର ଭୋକ୍ତା ଅଟନ୍ତି॥ ୧୪ ॥**

**ପ୍ରଶ୍ନ –** 'ସେହି ପରମାତ୍ମା ସକଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟର ଜ୍ଞାତା, ଅଥଚ ବସ୍ତୁତଃ ସେ ସକଳ ଇନ୍ଦ୍ରିୟରୁ ରହିତ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏପରି କହି ଦେଖାଇଦିଆଯାଇଛି ଯେ, ସେହି ଜ୍ଞେୟସ୍ୱରୂପ ପରମାତ୍ମାଙ୍କର ସଗୁଣ ରୂପ ମଧ୍ୟ ଅତ୍ୟନ୍ତ ଅଦ୍ଭୁତ ଓ ଅଲୌକିକ। କହିବାର ଅଭିପ୍ରାୟ ଏହି ଯେ, ତେର ଶ୍ଳୋକରେ ପରମାତ୍ମାଙ୍କର ସକଳ ଦିଗରେ ହସ୍ତପାଦାଦି ଇନ୍ଦ୍ରିୟସବୁ ରହିଛି ବୋଲି ଯାହା କୁହାଗଲା, ସେଥିରୁ ବୁଝିବା ଉଚିତ ନୁହେଁ ଯେ, ସେହି ଜ୍ଞେୟ ପରମାତ୍ମାଙ୍କର ଅନ୍ୟ ଜୀବମାନଙ୍କ ପରି ହାତ-ପାଦ ପ୍ରଭୃତି ଇନ୍ଦ୍ରିୟ ରହିଛି। ସେ ଏତାଦୃଶ ଇନ୍ଦ୍ରିୟମାନଙ୍କରୁ ସର୍ବଥା ରହିତ ହୋଇ ମଧ୍ୟ ସର୍ବତ୍ର ଇନ୍ଦ୍ରିୟଗ୍ରାହ୍ୟ ବିଷୟସବୁ ଗ୍ରହଣ କରିବାକୁ ସମର୍ଥ। ତେଣୁ ତାଙ୍କୁ ସର୍ବତ୍ର ସର୍ବଇନ୍ଦ୍ରିୟସମ୍ପନ୍ନ ଏବଂ ସର୍ବଇନ୍ଦ୍ରିୟରହିତ ବୋଲି କୁହାଯାଇଛି।

ଶ୍ରୁତି ବି କହନ୍ତି –

ଅପାଣିପାଦୋ ଜବନୋ ଗ୍ରହୀତା, ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ॥
(ଶ୍ୱେତାଶ୍ୱତରୋପନିଷଦ ୩/୧୯)

ଅର୍ଥାତ୍: 'ସେହି ପରମାତ୍ମା ହାତପାଦ ନ ଥାଇ ବି ବେଗରେ ଚାଲନ୍ତି ଓ ଗ୍ରହଣ କରନ୍ତି ଏବଂ ଆଖିକାନ ନ ଥାଇ ବି ସବୁକିଛି ଦେଖନ୍ତି ଓ ଶୁଣନ୍ତି।'

ତେଣୁ ଏହି ବର୍ଣ୍ଣନାରେ ଦେଖାଇଦିଆଯାଇଛି ଯେ, ତାଙ୍କର ସ୍ୱରୂପ ଅଲୌକିକ।

**ପ୍ରଶ୍ନ –** 'ସେ ଆସକ୍ତିରହିତ ହୋଇ ମଧ୍ୟ ସମସ୍ତଙ୍କର ଧାରଣ-ପୋଷଣ କରନ୍ତି'—ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏପରି କହିବାର ଅଭିପ୍ରାୟ ହେଉଛି; ସଂସାରରେ ମାତା-ପିତା ଯେପରି ଆସକ୍ତିବଶ ହୋଇ ନିଜ ପରିବାରର ଭରଣ-ପୋଷଣ କରନ୍ତି, ପରମାତ୍ମା ସେପରି ଧାରଣପୋଷଣ କରନ୍ତି ନାହିଁ। କୌଣସିପ୍ରକାର ଆସକ୍ତି ନ ରଖି ସେ ସମସ୍ତଙ୍କର ଧାରଣ-ପୋଷଣ କରନ୍ତି। ତେଣୁ ଭଗବାନଙ୍କୁ ସକଳ ପ୍ରାଣୀଙ୍କର ସୁହୃଦ ଅର୍ଥାତ୍ ଅହେତୁକ ହିତକାରୀ ବୋଲି କୁହାଯାଇଛି (୫/୨୯)। କହିବାର ଅଭିପ୍ରାୟ ଏହି ଯେ, ସେହି ଜ୍ଞେୟ ସ୍ୱରୂପ ସର୍ବବ୍ୟାପୀ ପରମାତ୍ମା ବାସ୍ତବରେ ଆସକ୍ତିଦୋଷରୁ ସର୍ବଥା ରହିତ ଅଟନ୍ତି, ତଥାପି ପ୍ରକୃତି ସହିତ ତାଙ୍କର ସମ୍ବନ୍ଧ ଥିବାରୁ ସେ ସମସ୍ତଙ୍କର ଧାରଣପୋଷଣ କରନ୍ତି। ଏହା ତାଙ୍କର ଅଲୌକିକତା।

**ପ୍ରଶ୍ନ –** 'ସେ ନିର୍ଗୁଣ ହୋଇ ମଧ୍ୟ ଗୁଣମାନଙ୍କର ଭୋକ୍ତା ଅଟନ୍ତି'— ଏହାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ମଧ୍ୟ ସେହି ପରମାତ୍ମାଙ୍କର ଅଲୌକିକତା ପ୍ରତିପାଦନ କରାଯାଇଛି। ଅଭିପ୍ରାୟ ଏହି ଯେ, ସେହି ପରମାତ୍ମା ସକଳ ଗୁଣର ଭୋକ୍ତା ହୋଇ ମଧ୍ୟ ଜୀବମାନଙ୍କ ପରି ପ୍ରକୃତିର ଗୁଣରେ ଲିପ୍ତ ନୁହନ୍ତି। ସେ ବାସ୍ତବରେ ଗୁଣମାନଙ୍କରୁ ସର୍ବଥା ଅତୀତ; ତଥାପି ସେ ପ୍ରକୃତିସମ୍ବନ୍ଧରୁ ସକଳ ଗୁଣର ଭୋକ୍ତା। ଏହା ହିଁ ତାଙ୍କର ଅଲୌକିକତା।

**ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ।**
**ସୂକ୍ଷ୍ମତ୍ୱାତ୍ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ ॥ ୧୫ ॥**

ଅନ୍ୱୟ– ଭୂତାନାମ୍ = (ସେହି ପରମାତ୍ମା) ଚରାଚର ସକଳ ଭୂତଙ୍କର; **ବହିଃ, ଅନ୍ତଃ** = ବାହାରେ-ଭିତରେ (ପରିପୂର୍ଣ୍ଣ ହୋଇ ଅଛନ୍ତି); ଚ = ଏବଂ; ଚରମ୍, ଅଚରମ୍ = ଚର-ଅଚରରୂପ; ଏବ = ବି (ସେ ହିଁ ଅଟନ୍ତି); ଚ = ଏବଂ (ପୁଣି); ତତ୍ = ସେ; **ସୂକ୍ଷ୍ମତ୍ୱାତ୍** = ସୂକ୍ଷ୍ମ ହୋଇଥିବାରୁ; ଅବିଜ୍ଞେୟମ୍ = ଅବିଜ୍ଞେୟ ଅଟନ୍ତି; ଚ = ତଥା; ଅନ୍ତିକେ = ସେ ଅତ୍ୟନ୍ତ ନିକଟରେ (ଅଛନ୍ତି); ଚ = ଓ; ଦୂରସ୍ଥମ୍ = ଦୂରରେ ମଧ୍ୟ ଅଛନ୍ତି।

**ସେହି ପରମାତ୍ମା ଚରାଚର ସକଳ ଭୂତଙ୍କର ବାହାରେ ଓ ଭିତରେ ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଛନ୍ତି ଏବଂ ଚର-ଅଚର ରୂପ ମଧ୍ୟ ସେ ହିଁ ଅଟନ୍ତି। ପୁଣି ସେ ସୂକ୍ଷ୍ମ ହୋଇଥିବାରୁ ଅବିଜ୍ଞେୟ ଅଟନ୍ତି ତଥା ସେ ଅତ୍ୟନ୍ତ ନିକଟରେ ଅଛନ୍ତି ଓ ଅତି ଦୂରରେ ମଧ୍ୟ ଅଛନ୍ତି।* ॥ ୧୫ ॥**

**ପ୍ରଶ୍ନ –** ସେହି ଜ୍ଞେୟସ୍ୱରୂପ ପରମାତ୍ମା ସକଳ ଭୂତଙ୍କର ବାହାରେ-ଭିତରେ ସର୍ବତ୍ର ପରିପୂର୍ଣ୍ଣ ହୋଇଛନ୍ତି କିପରି ?

**ଉତ୍ତର –** ସମୁଦ୍ରରେ ପଡ଼ିଥିବା ବରଫଖଣ୍ଡର ବାହାରେ ଭିତରେ ଯେପରି କେବଳ ଜଳ ହିଁ ବ୍ୟାପ୍ତ ହୋଇ ରହିଥାଏ, ସକଳ ଚରାଚର ଭୂତଙ୍କର ବାହାରେ ଓ ଭିତରେ ସର୍ବତ୍ର ସେହିପରି ସେହି ଜ୍ଞେୟସ୍ୱରୂପ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଛନ୍ତି।

**ପ୍ରଶ୍ନ –** 'ଚର ଓ ଅଚର ମଧ୍ୟ ସେ ହିଁ ଅଟନ୍ତି' — ଏ କଥାର ଭାବ କ'ଣ ?

**ଉତ୍ତର –** ପ୍ରଥମ ବାକ୍ୟରେ କୁହାଯାଇଛି ଯେ, ସେହି ପରମାତ୍ମା ଚରାଚର ଭୂତଙ୍କର ବାହାରେ ଓ ଭିତରେ ସର୍ବତ୍ର ଅଛନ୍ତି। ଏ କଥାରୁ ବୁଝିବା ଉଚିତ ନୁହେଁ ଯେ, ଚରାଚର ଭୂତ ତାଙ୍କଠାରୁ ଭିନ୍ନ ହୋଇଥିବେ। ଏହା ସ୍ପଷ୍ଟ କରିଦେବା ନିମନ୍ତେ ହିଁ କୁହାଯାଇଛି ଯେ, ଚରାଚର ଭୂତ ମଧ୍ୟ ସେ ହିଁ ଅଟନ୍ତି। ଅର୍ଥାତ୍ ଯେପରି ବରଫଖଣ୍ଡଟିର ବାହାରେ ଜଳ ରହିଛି, ଭିତରେ ବି ଜଳ ରହିଛି, ପୁଣି ସ୍ୱୟଂ ବରଫଖଣ୍ଡଟି ବି ବସ୍ତୁତଃ ଜଳ; ତାହା ଜଳ ଭିନ୍ନ ଅନ୍ୟ କିଛି ନୁହେଁ, ଠିକ୍ ସେହିପରି ଏହି ସମସ୍ତ ଚରାଚର ଜଗତ୍ ସେହି ପରମାତ୍ମାଙ୍କର ହିଁ ସ୍ୱରୂପ; ତାଙ୍କ ଠାରୁ ଭିନ୍ନ ନୁହେଁ।

---

* ଶ୍ରୁତିରେ କୁହାଯାଇଛି — ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ। ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥ (ଈଶାବାସ୍ୟୋପନିଷଦ-୫) ଅର୍ଥାତ୍ ସେ ଚଳନ୍ତି ଏବଂ ଚଳନ୍ତି ନାହିଁ ମଧ୍ୟ। ସେ ଦୂରରେ ଅଛନ୍ତି; ନିକଟରେ ବି ଅଛନ୍ତି। ସେ ଏହି ସମସ୍ତ ଜଗତର ଭିତରେ ଅଛନ୍ତି; ବାହାରେ ବି ଅଛନ୍ତି।

**ପ୍ରଶ୍ନ** — 'ସେ ସୂକ୍ଷ୍ମ ହୋଇଥିବାରୁ ଅବିଜ୍ଞେୟ' — ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର** — ସେହି ଜ୍ଞେୟତତ୍ତ୍ୱକୁ ସର୍ବରୂପ ବୋଲି କହିଦେଲେ ଶଙ୍କା ପ୍ରକାଶ କରାଯାଇପାରେ, 'ଯଦି ସବୁକିଛି ସେହି ପରମାତ୍ମା ଅଟନ୍ତି, ତେବେ ସମସ୍ତେ ତାଙ୍କୁ ଜାଣିପାରୁ ନାହାନ୍ତି କାହିଁକି ?' ଏହା ଉପରେ ଭଗବାନ୍ କହୁଛନ୍ତି, ଯେପରି ସୂର୍ଯ୍ୟଙ୍କ କିରଣରେ ସ୍ଥିତ ପରମାଣୁରୂପୀ ଜଳକୁ ସାଧାରଣ ମନୁଷ୍ୟ ଜାଣିପାରେ ନାହିଁ; ତା'ପାଇଁ ତାହା ଦୁର୍ବିଜ୍ଞେୟ ହୋଇଯାଏ, ଠିକ୍ ସେହିପରି ସର୍ବବ୍ୟାପୀ ପରବ୍ରହ୍ମ ପରମାତ୍ମା ପରମାଣୁରୂପ ଜଳଠାରୁ ବି ଅତ୍ୟନ୍ତ ସୂକ୍ଷ୍ମ ହୋଇଥିବାରୁ ସାଧାରଣ ମନୁଷ୍ୟ ତାହାଙ୍କୁ ଜାଣିପାରେ ନାହିଁ। ତେଣୁ ସେ ଅବିଜ୍ଞେୟ ଅଟନ୍ତି।

**ପ୍ରଶ୍ନ** — 'ସେ ଅତି ନିକଟରେ ଅଛନ୍ତି, ପୁଣି ଅତି ଦୂରରେ ମଧ୍ୟ ଅଛନ୍ତି' — ଏହା କିପରି ସମ୍ଭବ ?

**ଉତ୍ତର** — ସମସ୍ତ ଜଗତରେ ତଥା ଜଗତର ବାହାରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ପରମାତ୍ମା ନାହାନ୍ତି, ତେଣୁ ସେ ଅତ୍ୟନ୍ତ ନିକଟରେ ଅଛନ୍ତି, ଅତ୍ୟନ୍ତ ଦୂରରେ ବି ଅଛନ୍ତି; କାରଣ ମନୁଷ୍ୟ ଯେଉଁ ସ୍ଥାନକୁ ଦୂର ବା ନିକଟ ବୋଲି ଭାବୁଛି, ସେହି ସମସ୍ତ ସ୍ଥାନରେ ସେହି ବିଜ୍ଞାନାନନ୍ଦଘନ ପରମାତ୍ମା ସର୍ବଦା ପରିପୂର୍ଣ୍ଣ ହୋଇ ରହିଛନ୍ତି। ତେଣୁ ଏହି ତତ୍ତ୍ୱକୁ ବୁଝିପାରୁଥିବା ଶ୍ରଦ୍ଧାଳୁ ଲୋକଙ୍କ ନିମନ୍ତେ ପରମାତ୍ମା ଅତ୍ୟନ୍ତ ନିକଟରେ ଅଛନ୍ତି ଏବଂ ଅଶ୍ରଦ୍ଧାଳୁଙ୍କ ନିମନ୍ତେ ଅତ୍ୟନ୍ତ ଦୂରରେ ଅଛନ୍ତି। ତେଣୁ 'ଭାବକୁ ନିକଟ ହରି, ଅଭାବକୁ ଦୂର।'

## ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତମ୍।
## ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ॥ ୧୬ ॥

**ଅନ୍ୱୟ** — **ଅବିଭକ୍ତମ୍** = (ସେ) ଅବିଭକ୍ତରୂପରେ (ଆକାଶସଦୃଶ ପରିପୂର୍ଣ୍ଣ ହୋଇଥିଲେ); **ଚ** = ମଧ୍ୟ; **ଭୂତେଷୁ** = ଚରାଚର ସମସ୍ତ ଭୂତରେ; **ବିଭକ୍ତମ୍, ଇବ, ସ୍ଥିତମ୍** = ବିଭକ୍ତପରି ହୋଇ ରହିଥିବା ପ୍ରତୀତ ହୁଅନ୍ତି; **ଚ** = ତଥା (ପୁଣି); **ତତ୍** = ସେହି; **ଜ୍ଞେୟମ୍** = ଜ୍ଞେୟସ୍ୱରୂପ (ପରମାତ୍ମା); **ଭୂତଭର୍ତ୍ତୃ** = ବିଷ୍ଣୁରୂପରେ ଭୂତମାନଙ୍କର ଧାରଣପୋଷଣକାରୀ; **ଚ** = ଏବଂ; **ଗ୍ରସିଷ୍ଣୁ** = ରୁଦ୍ରରୂପରେ ସଂହାରକାରୀ; **ଚ** = ତଥା; **ପ୍ରଭବିଷ୍ଣୁ** = ବ୍ରହ୍ମାରୂପରେ ସମସ୍ତଙ୍କର ସୃଷ୍ଟିକର୍ତ୍ତା।

**ସେହି ପରମାତ୍ମା ଅବିଭକ୍ତରୂପରେ ଆକାଶସଦୃଶ ପରିପୂର୍ଣ୍ଣ ହୋଇଥିଲେ ବି ଚରାଚର ସମସ୍ତ ଭୂତମାନଙ୍କ ଭିତରେ ବିଭକ୍ତପରି ହୋଇ ରହିଥିବା ପ୍ରତୀତ ହୁଅନ୍ତି। ପୁଣି ସେହି ଜ୍ଞେୟ ପରମାତ୍ମା ବିଷ୍ଣୁରୂପରେ ଭୂତମାନଙ୍କର ଧାରଣ-ପୋଷଣକର୍ତ୍ତା, ରୁଦ୍ରରୂପରେ ସଂହାରକର୍ତ୍ତା ତଥା ବ୍ରହ୍ମାରୂପରେ ସମସ୍ତଙ୍କର ସୃଷ୍ଟିକର୍ତ୍ତା ଅଟନ୍ତି॥ ୧୬ ॥**

**ପ୍ରଶ୍ନ** — 'ଅବିଭକ୍ତ ହୋଇ ମଧ୍ୟ ସକଳ ପ୍ରାଣୀଙ୍କ ମଧ୍ୟରେ ବିଭକ୍ତ ରହିଥିବାପରି ପ୍ରତୀତ ହୁଅନ୍ତି' — ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର** — ଏହି ବାକ୍ୟଦ୍ୱାରା ସେହି ଜ୍ଞେୟ ପରମାତ୍ମାଙ୍କର ଏକତ୍ୱ ପ୍ରତିପାଦନ କରାଯାଇଛି। ଅଭିପ୍ରାୟ ହେଉଛି, ଯେପରି ମହାକାଶ ବାସ୍ତବରେ ବିଭାଗରହିତ, ତଥାପି ଭିନ୍ନ ଭିନ୍ନ ଘଟସମ୍ବନ୍ଧରୁ ବିଭକ୍ତ ହୋଇଥିବାପରି ପ୍ରତୀତ ହୁଏ, ପରମାତ୍ମା ସେହିପରି ବିଭାଗରହିତ ହୋଇ ମଧ୍ୟ ସମସ୍ତ ଚରାଚର ପ୍ରାଣୀମାନଙ୍କ ମଧ୍ୟରେ କ୍ଷେତ୍ରଜ୍ଞରୂପରେ ଥିବାରୁ ପୃଥକ୍ ପୃଥକ୍ ଭାଗରେ ବିଭକ୍ତ ହୋଇଯାଇଥିବାପରି ପ୍ରତୀତ ହୁଅନ୍ତି। କିନ୍ତୁ ଏହି ଭିନ୍ନତା କେବଳ ପ୍ରତୀତିମାତ୍ର; ବାସ୍ତବରେ ପରମାତ୍ମା ଏକ ଏବଂ ସେ ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଛନ୍ତି।

**ପ୍ରଶ୍ନ** — **ଭୂତଭର୍ତ୍ତୃ, ଗ୍ରସିଷ୍ଣୁ** ଓ **ପ୍ରଭବିଷ୍ଣୁ** ପଦଗୁଡ଼ିକର ଅର୍ଥ କ'ଣ ଏବଂ ସେସବୁକୁ ଏଠାରେ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର** — ସକଳ ପ୍ରାଣୀଙ୍କର ଧାରଣ-ପୋଷଣକାରୀଙ୍କୁ **ଭୂତଭର୍ତ୍ତୃ** କୁହାଯାଏ। ସମସ୍ତ ଜଗତର ସଂହାରକାରୀଙ୍କୁ **ଗ୍ରସିଷ୍ଣୁ** କୁହାଯାଏ ଏବଂ ସମସ୍ତଙ୍କର ସୃଷ୍ଟିକର୍ତ୍ତାଙ୍କୁ **ପ୍ରଭବିଷ୍ଣୁ** କୁହାଯାଏ। ଏଠାରେ ଏହି ତିନୋଟି ପଦ ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ସେହି ସର୍ବଶକ୍ତିମାନ୍ ଜ୍ଞେୟସ୍ୱରୂପ ପରମାତ୍ମା ସକଳ ଚରାଚର ଜଗତର ସୃଷ୍ଟି, ସ୍ଥିତି ଓ ସଂହାରକାରୀ ଅଟନ୍ତି। ସେ ବ୍ରହ୍ମାରୂପରେ ଜଗତକୁ ଉତ୍ପନ୍ନ କରନ୍ତି; ସେ ବିଷ୍ଣୁରୂପରେ ସୃଷ୍ଟିକୁ ପାଳନ କରନ୍ତି ଏବଂ ସେ ହିଁ ରୁଦ୍ରରୂପରେ ଏହାର ସଂହାର କରନ୍ତି। ଅର୍ଥାତ୍ ସେହି ପରମାତ୍ମା ହିଁ ବ୍ରହ୍ମା, ବିଷ୍ଣୁ ଓ ଶିବ ଅଟନ୍ତି।

**ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ ।**
**ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତମ୍ ।। ୧୭ ।।**

**ଅନ୍ୱୟ—** ତତ୍ = ସେହି ପରବ୍ରହ୍ମ; **ଜ୍ୟୋତିଷାମ୍** = ଜ୍ୟୋତିମାନଙ୍କର; **ଅପି** = ବି; **ଜ୍ୟୋତିଃ** = ଜ୍ୟୋତି; **ତମସଃ** = (ଏବଂ) ମାୟାରୁ; **ପରମ୍** = ସମ୍ପୂର୍ଣ୍ଣ ଅତୀତ; **ଉଚ୍ୟତେ** = (ବୋଲି) କୁହାଯାଏ; **ଜ୍ଞାନମ୍** = ( ସ) ବୋଧସ୍ୱରୂପ; **ଜ୍ଞେୟମ୍** = ଜ୍ଞେୟ (ଜାଣିବାର ଯୋଗ୍ୟ); **ଜ୍ଞାନଗମ୍ୟମ୍** = (ଏବଂ) ତତ୍ତ୍ୱଜ୍ଞାନଦ୍ୱାରା ପ୍ରାପ୍ୟ; **ସର୍ବସ୍ୟ** = (ତଥା) ସମସ୍ତଙ୍କର; **ହୃଦି** = ହୃଦୟରେ; **ବିଷ୍ଠିତମ୍** = ବିଶେଷରୂପେ ଅବସ୍ଥିତ ।

**ସେହି ପରବ୍ରହ୍ମ ଜ୍ୟୋତିମାନଙ୍କର ବି ଜ୍ୟୋତି ଏବଂ ମାୟାରୁ ସମ୍ପୂର୍ଣ୍ଣ ଅତୀତ ବୋଲି କୁହାଯାଏ । ସେହି ପରମାତ୍ମା ବୋଧସ୍ୱରୂପ, ଜାଣିବାର ଯୋଗ୍ୟ ଏବଂ ତତ୍ତ୍ୱଜ୍ଞାନଦ୍ୱାରା ପ୍ରାପ୍ୟ ତଥା ସେ ସମସ୍ତଙ୍କର ହୃଦୟରେ ବିଶେଷରୂପେ ଅବସ୍ଥିତ ।। ୧୭ ।।**

**ପ୍ରଶ୍ନ—** ସେହି ପରବ୍ରହ୍ମ କିପରି ଜ୍ୟୋତିମାନଙ୍କର ବି ଜ୍ୟୋତି ଅଟନ୍ତି ?

**ଉତ୍ତର—** ଚନ୍ଦ୍ର, ସୂର୍ଯ୍ୟ, ତାରା, ବିଦ୍ୟୁତ୍ ଆଦି ଯେତେସବୁ ବାହ୍ୟ ଜ୍ୟୋତି ରହିଛି, ବୁଦ୍ଧି, ମନ ଓ ଇନ୍ଦ୍ରିୟ ପ୍ରଭୃତି ଯେତେସବୁ ଆଧ୍ୟାତ୍ମିକ ଜ୍ୟୋତି ରହିଛି ଏବଂ ବିଭିନ୍ନ ଲୋକ ତଥା ବସ୍ତୁମାନଙ୍କର ଅଧିଷ୍ଠାତୃ ଦେବତାରୂପରେ ଯେତେସବୁ ଦେବଜ୍ୟୋତି ରହିଛି, ପରମାତ୍ମା ହେଉଛନ୍ତି ସେସବୁର ପ୍ରକାଶକ । ପୁଣି ସେହିସବୁ ଜ୍ୟୋତିମାନଙ୍କରେ ଯେଉଁ ପ୍ରକାଶନଶକ୍ତି ରହିଛି, ତାହା ମଧ୍ୟ ସେହି ପରବ୍ରହ୍ମ ପରମାତ୍ମାଙ୍କର ଅଂଶମାତ୍ର । ତେଣୁ ସେ ହେଉଛନ୍ତି ସମସ୍ତ ଜ୍ୟୋତିମାନଙ୍କର ଜ୍ୟୋତି ଅର୍ଥାତ୍ ସେ ସମସ୍ତଙ୍କୁ ଜ୍ୟୋତି ପ୍ରଦାନ କରନ୍ତି; ସେ ସମସ୍ତଙ୍କର ଦ୍ୟୋତକ। ତାଙ୍କୁ ଜ୍ୟୋତି ପ୍ରଦାନ କରିବା ଭଳି ଶକ୍ତି କାହାର ନାହିଁ।

ଶ୍ରୁତିରେ ବି କୁହାଯାଇଛି— **'ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ । ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି ।'** (କଠୋପନିଷଦ ୨/୨/୧୫; ଶ୍ୱେତାଶ୍ୱତର ଉ. ୬/୧୪) ଅର୍ଥାତ୍ 'ସେଠାରେ ସୂର୍ଯ୍ୟ, ଚନ୍ଦ୍ର ବା ତାରା କେହି ପ୍ରକାଶ କରେ ନାହିଁ; ବିଦ୍ୟୁତ୍ ବି ଆଲୋକ ପ୍ରଦାନ କରେ ନାହିଁ; ଅଗ୍ନିର କଥା କ'ଣ କହିବା ! ସେ (ପରମାତ୍ମା) ପ୍ରକାଶିତ ହେଲେ ଏମାନେ ସବୁ ପ୍ରକାଶମାନ ହୁଅନ୍ତି ଏବଂ ତାଙ୍କରି ଆଲୋକରେ ହିଁ ସକଳ ଜଗତ୍ ଆଲୋକିତ ହୁଏ ।' ଗୀତାରେ ମଧ୍ୟ ପନ୍ଦର ଅଧ୍ୟାୟର ବାର ଶ୍ଳୋକରେ କୁହାଯାଇଛି, 'ଯେଉଁ ତେଜ ସୂର୍ଯ୍ୟରେ ରହି ସମସ୍ତ ଜଗତକୁ ଆଲୋକିତ କରେ ଏବଂ ଯେଉଁ ତେଜ ଚନ୍ଦ୍ରମା ଓ ଅଗ୍ନିରେ ରହିଛି, ସେହି ତେଜକୁ ତୁମେ ମୋର ହିଁ ତେଜ ବୋଲି ଜାଣ ।'

**ପ୍ରଶ୍ନ—** ଏଠାରେ **ତମଃ** ପଦଟି କାହାର ବାଚକ ? ଏବଂ ସେହି ପରମାତ୍ମା ଉକ୍ତ 'ତମ'ରୁ 'ପର' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଠାରେ **ତମଃ** ପଦଟି ଅନ୍ଧକାର ଓ ଅଜ୍ଞାନର ବାଚକ। ସେହି ପରମାତ୍ମା ସ୍ୱୟଂଜ୍ୟୋତି ଏବଂ ଜ୍ଞାନସ୍ୱରୂପ ଅଟନ୍ତି; ତାଙ୍କ ନିକଟରେ ଅନ୍ଧକାର ଓ ଅଜ୍ଞାନ ରହିପାରେ ନାହିଁ; ତେଣୁ ତାଙ୍କୁ ତମଠାରୁ ଅତ୍ୟନ୍ତ ପର – ତାଠାରୁ ସର୍ବଥା ରହିତ ବୋଲି କୁହାଯାଇଛି ।

**ପ୍ରଶ୍ନ—** ଏଠାରେ **ଜ୍ଞାନମ୍** ପଦ କାହାର ବାଚକ ? ଉକ୍ତ ପଦଟି ପ୍ରୟୋଗ କରିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏଠାରେ **ଜ୍ଞାନମ୍** ପଦଟି ହେଉଛି ପରମାତ୍ମାଙ୍କ ସ୍ୱରୂପର ବାଚକ। ପରମାତ୍ମା ଯେ ଚେତନ ଓ ବୋଧସ୍ୱରୂପ ଅଟନ୍ତି, ତାହା ଦର୍ଶାଇବାକୁ ଏଠାରେ ଉକ୍ତ ପଦଟି ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—** ତାଙ୍କୁ ଏଠାରେ ପୁନର୍ବାର **ଜ୍ଞେୟ** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ତାଙ୍କୁ ଏଠାରେ ପୁନର୍ବାର **ଜ୍ଞେୟ** ବୋଲି କହି ପ୍ରକାଶ କରାଯାଇଛି ଯେ, ବାର ଶ୍ଳୋକରେ ଯେଉଁ 'ଜ୍ଞେୟ'ଙ୍କ ପ୍ରକରଣ ଆରମ୍ଭ କରାଯାଇଛି, ସେହି ପରମାତ୍ମାଙ୍କ ଜ୍ଞାନ ଲାଭ କରିବା ହିଁ ଏହି ସଂସାରରେ ମନୁଷ୍ୟଜନ୍ମର ପରମ କର୍ତ୍ତବ୍ୟ; ଏହି ସଂସାରରେ ଏକମାତ୍ର ପରମାତ୍ମା ହିଁ ଜାଣିବାର ଯୋଗ୍ୟ। ତେଣୁ ତାଙ୍କ ତତ୍ତ୍ୱ ଜାଣିବାନିମନ୍ତେ ସମସ୍ତେ ପୂର୍ଣ୍ଣରୂପରେ ଉଦ୍ୟୋଗ କରିବା ଆବଶ୍ୟକ; ନିଜର ଅମୂଲ୍ୟ ଜୀବନକୁ ସାଂସାରିକ ଭୋଗରେ ଲଗାଇଦେଇ ନଷ୍ଟ କରିଦେବା ଉଚିତ ନୁହେଁ।

**ପ୍ରଶ୍ନ—** ତାଙ୍କୁ **ଜ୍ଞାନଗମ୍ୟମ୍** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** **ଜ୍ଞେୟଂ** ପଦଦ୍ୱାରା ତାଙ୍କୁ ଜାଣିବା ଆବଶ୍ୟକ ବୋଲି କୁହାଗଲା । ଏହା ଉପରେ 'କିପରି ଜାଣିବା ଉଚିତ ?' ବୋଲି ପ୍ରଶ୍ନ ଆସିପାରେ । ତେଣୁ କହୁଛନ୍ତି, ସେ **ଜ୍ଞାନଗମ୍ୟ** ଅଟନ୍ତି ଅର୍ଥାତ୍ ପୂର୍ବୋକ୍ତ ଅମାନିତ୍ୱାଦି ବିଭିନ୍ନ ଜ୍ଞାନସାଧନଦ୍ୱାରା ପ୍ରାପ୍ତ ତତ୍ତ୍ୱଜ୍ଞାନ ଦ୍ୱାରା ତାଙ୍କୁ ଜାଣିହେବ । ଅତଏବ ଉକ୍ତ ସାଧନଗୁଡ଼ିକ ଦ୍ୱାରା ତତ୍ତ୍ୱଜ୍ଞାନ ପ୍ରାପ୍ତ କରି ସେହି ପରମାତ୍ମାଙ୍କୁ ଜାଣିବା ଉଚିତ ।

**ପ୍ରଶ୍ନ –** ପୂର୍ବଶ୍ଳୋକମାନଙ୍କରେ କୁହାଗଲା ଯେ, ସେହି ପରମାତ୍ମା ସର୍ବତ୍ର ବ୍ୟାପ୍ତ; ପୁଣି ଏଠାରେ **ହୃଦି ସର୍ବସ୍ୟ ବିଷ୍ଠିତମ୍** କହି ସେ କେବଳ ସମସ୍ତଙ୍କ ହୃଦୟରେ ଅବସ୍ଥିତ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ପରମାତ୍ମା ସର୍ବତ୍ର ସମାନଭାବରେ ପରିପୂର୍ଣ୍ଣ ହୋଇ ରହିଥିଲେ ମଧ୍ୟ ହୃଦୟରେ ବିଶେଷଭାବରେ ଅଭିବ୍ୟକ୍ତ ହୁଅନ୍ତି । ସୂର୍ଯ୍ୟଙ୍କର ଆଲୋକ ଯେପରି ସର୍ବତ୍ର ସମାନଭାବରେ ବିସ୍ତୃତ ହୋଇ ରହିଥିଲେ ବି ଦର୍ପଣ-ପ୍ରଭୃତି ପଦାର୍ଥରେ ତାଙ୍କ ପ୍ରତିବିମ୍ବ ବିଶେଷରୂପରେ ଅଭିବ୍ୟକ୍ତ ହୁଏ ଏବଂ ଯବକାଚରେ ତାଙ୍କର ତେଜ ପ୍ରତ୍ୟକ୍ଷ ପ୍ରକଟ ହୋଇ ଅଗ୍ନି ଉତ୍ପନ୍ନ କରେ, କିନ୍ତୁ ଅନ୍ୟ ପଦାର୍ଥରେ ସେପରି ଅଭିବ୍ୟକ୍ତ ହୁଏ ନାହିଁ, ଠିକ୍ ସେହିପରି ପରମାତ୍ମାଙ୍କୁ ଉପଲବ୍ଧି କରିବାର ସ୍ଥାନ ହେଉଛି ହୃଦୟ । ଜ୍ଞାନୀଙ୍କ ହୃଦୟରେ ତ ସେ ପ୍ରତ୍ୟକ୍ଷ ପ୍ରକଟ ହୋଇଥାଆନ୍ତି । ଏହା ବୁଝାଇଦେବା ନିମନ୍ତେ ସେ ସମସ୍ତଙ୍କ ହୃଦୟରେ ବିଶେଷରୂପରେ ଅବସ୍ଥିତ ବୋଲି କୁହାଯାଇଛି ।

**ସମ୍ବନ୍ଧ –** ଏପରିଭାବରେ କ୍ଷେତ୍ର, ଜ୍ଞାନ ଓ ଜ୍ଞେୟର ସ୍ୱରୂପ ସଂକ୍ଷେପରେ ବର୍ଣ୍ଣନା କରି ବର୍ତ୍ତମାନ ଭଗବାନ୍ ଉକ୍ତ ପ୍ରକରଣକୁ ଜାଣିବାର ଫଳ କହୁଛନ୍ତି –

## ଇତି କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚୋକ୍ତଂ ସମାସତଃ ।
## ମଦ୍ଭକ୍ତ ଏତଦ୍‌ବିଜ୍ଞାୟ ମଦ୍ଭାବାୟୋପପଦ୍ୟତେ ।। ୧୮ ।।

**ଅନ୍ୱୟ –** **ଇତି** = ଏହିପ୍ରକାରେ; **କ୍ଷେତ୍ରମ୍** = କ୍ଷେତ୍ର; **ତଥା** = ତଥା; **ଜ୍ଞାନମ୍** = ଜ୍ଞାନ; **ଚ** = ଓ; **ଜ୍ଞେୟମ୍** = ଜ୍ଞେୟ ପରମାତ୍ମାଙ୍କର ସ୍ୱରୂପ; **ସମାସତଃ** = ସଂକ୍ଷେପରେ; **ଉକ୍ତମ୍** = କୁହାଗଲା; **ମଦ୍‌ଭକ୍ତଃ** = ମୋର ଭକ୍ତ; **ଏତତ୍** = ଏହାକୁ; **ବିଜ୍ଞାୟ** = ତତ୍ତ୍ୱତଃ ଜାଣି; **ମଦ୍‌ଭାବାୟ** = ମୋର ସ୍ୱରୂପ; **ଉପପଦ୍ୟତେ** = ପ୍ରାପ୍ତ ହୁଅନ୍ତି ।

**ଏପରିଭାବରେ କ୍ଷେତ୍ର ତଥା ଜ୍ଞାନ ଓ ଜ୍ଞେୟ ପରମାତ୍ମାଙ୍କର ସ୍ୱରୂପ ସଂକ୍ଷେପରେ କୁହାଗଲା । ମୋର ଭକ୍ତ ଏହା ତତ୍ତ୍ୱତଃ ଜାଣି ମୋର ସ୍ୱରୂପ ପ୍ରାପ୍ତ ହୁଅନ୍ତି ।। ୧୮ ।।**

**ପ୍ରଶ୍ନ –** ଏପର୍ଯ୍ୟନ୍ତ କ୍ଷେତ୍ର, ଜ୍ଞାନ ଓ ଜ୍ଞେୟର ସ୍ୱରୂପ କେଉଁ କେଉଁ ଶ୍ଳୋକରେ କୁହାଯାଇଛି ?

**ଉତ୍ତର –** ବିକାର ସହିତ କ୍ଷେତ୍ରର ସ୍ୱରୂପ ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ବର୍ଣ୍ଣନା କରାଯାଇଛି । ସପ୍ତମଠାରୁ ଏକାଦଶପର୍ଯ୍ୟନ୍ତ ଶ୍ଳୋକଗୁଡ଼ିକରେ ଜ୍ଞାନ ନାମରେ ଜ୍ଞାନର କୋଡ଼ିଏଟି ସାଧନ ଏବଂ ବାରଠାରୁ ସତରପର୍ଯ୍ୟନ୍ତ ଶ୍ଳୋକଗୁଡ଼ିକରେ ଉକ୍ତ ସାଧନମାନଙ୍କଦ୍ୱାରା ଜ୍ଞେୟ ଅର୍ଥାତ୍ ଜାଣିବାର ଯୋଗ୍ୟ ପରମାତ୍ମାଙ୍କର ସ୍ୱରୂପ ବର୍ଣ୍ଣନା କରାଯାଇଛି ।

**ପ୍ରଶ୍ନ –** **ମଦ୍ଭକ୍ତଃ** ପଦ ପ୍ରୟୋଗର ଅଭିପ୍ରାୟ କ'ଣ ତଥା ସେହି କ୍ଷେତ୍ର, ଜ୍ଞାନ ଓ ଜ୍ଞେୟଙ୍କୁ ଜାଣିବା କହିଲେ କ'ଣ ବୁଝାଏ ? ଏବଂ ଭଗବତ୍‌ଭାବ ପାଇବାର ଅଭିପ୍ରାୟ କ'ଣ ?

**ଉତ୍ତର –** **ମଦ୍ଭକ୍ତଃ** ପଦଟି ଏଠାରେ ଭଗବାନଙ୍କର ଭଜନ, ଧ୍ୟାନ, ଆଜ୍ଞାପାଳନ ଓ ପୂଜନ ତଥା ସେବା ଆଦି ଭକ୍ତି କରୁଥିବା ଭକ୍ତଙ୍କର ବାଚକ । ଏହି ପଦଟି ପ୍ରୟୋଗ କରି ଭଗବାନ୍ ଦର୍ଶାଇଦେଇଛନ୍ତି ଯେ, ଏହି ଜ୍ଞାନମାର୍ଗରେ ବି ତାଙ୍କର ଶରଣ ଗ୍ରହଣ କରି ଚାଲୁଥିବା ସାଧକ ସହଜରେ ପରମପଦ ପାଇପାରେ ।

ଏଠାରେ କ୍ଷେତ୍ରକୁ ପ୍ରକୃତିର କାର୍ଯ୍ୟ, ଜଡ଼, ବିକାରୀ, ଅନିତ୍ୟ ଓ ନାଶବାନ୍ ବୋଲି ବୁଝିପାରିବା, ଜ୍ଞାନର ସାଧନଗୁଡ଼ିକୁ ଭଲଭାବରେ ଧାରଣ କରିବା ଏବଂ ସେମାନଙ୍କ ସାହାଯ୍ୟରେ ଭଗବାନଙ୍କର ନିର୍ଗୁଣ ଓ ସଗୁଣ ରୂପକୁ ଭଲଭାବରେ ବୁଝିପାରିବା ହିଁ କ୍ଷେତ୍ର, ଜ୍ଞାନ ଓ ଜ୍ଞେୟଙ୍କୁ ଜାଣିବା ତଥା ସେହି ଜ୍ଞେୟସ୍ୱରୂପ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯିବା ହିଁ ଭଗବତ୍ ଭାବ ପାଇଯିବା ।

**ସମ୍ବନ୍ଧ –** ତୃତୀୟ ଶ୍ଳୋକରେ ଭଗବାନ୍ କ୍ଷେତ୍ରବିଷୟରେ ଚାରିଟି ଓ କ୍ଷେତ୍ରଜ୍ଞଙ୍କ ବିଷୟରେ ଦୁଇଟି କଥା

ସଂକ୍ଷେପରେ ଶୁଣିବାପାଇଁ ଅର୍ଜୁନଙ୍କୁ କହିଥିଲେ। ବିଷୟ ଆରମ୍ଭ କରି କ୍ଷେତ୍ରର ସ୍ୱରୂପ ଓ ତା'ର ବିକାରମାନଙ୍କ ବର୍ଣ୍ଣନା କରିବା ପରେ ପ୍ରସଙ୍ଗବଶତଃ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ତତ୍ତ୍ୱ ଭଲରୂପେ ଜାଣିବାର ଉପାୟଭୂତ ସାଧନଗୁଡ଼ିକର ତଥା ଜ୍ଞେୟ ପରମାତ୍ମାଙ୍କର ସ୍ୱରୂପ ବର୍ଣ୍ଣନା କଲେ। କିନ୍ତୁ କ୍ଷେତ୍ରର ସ୍ୱଭାବ କିପରି, କେଉଁ କାରଣରୁ କେଉଁ କାର୍ଯ୍ୟ ଉତ୍ପନ୍ନ ହୁଏ, ତଥା ପ୍ରଭାବସହିତ କ୍ଷେତ୍ରଜ୍ଞର ସ୍ୱରୂପ କଣ, ତାହା ବର୍ଣ୍ଣନା କରାଯାଇ ନାହିଁ। ଏଣୁ ବର୍ତ୍ତମାନ ସେସବୁ ବିଷୟ ବର୍ଣ୍ଣନା କରିବାନିମନ୍ତେ ଭଗବାନ୍ ପୁନର୍ବାର ପ୍ରକୃତି ଓ ପୁରୁଷ ନାମରେ ଏକ ପ୍ରକରଣ ଆରମ୍ଭ କରୁଛନ୍ତି। ଏହି ପ୍ରକରଣରେ ପ୍ରଥମେ ପ୍ରକୃତି-ପୁରୁଷର ଅନାଦିତା ପ୍ରତିପାଦନ କରି ପ୍ରକୃତିରୁ ହିଁ ସକଳ ଗୁଣ ଓ ବିକାର ଜାତ ହୁଏ ବୋଲି କହୁଛନ୍ତି—

**ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି।**
**ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସଂଭବାନ୍॥ ୧୯ ॥**

**ଅନ୍ୱୟ —** **ପ୍ରକୃତିମ୍** = ପ୍ରକୃତି; **ଚ** = ଏବଂ; **ପୁରୁଷମ୍** = ପୁରୁଷ; **ଉଭୌ**, **ଏବ** = ଏହି ଉଭୟଙ୍କୁ; **ଅନାଦୀ** = ଅନାଦି; **ବିଦ୍ଧି** = (ବୋଲି) ଜାଣ; **ଚ** = ଏବଂ; **ବିକାରାନ୍** = ରାଗଦ୍ୱେଷାଦି ବିକାରଗୁଡ଼ିକୁ; **ଚ** = ତଥା; **ଗୁଣାନ୍** = ତ୍ରିଗୁଣାତ୍ମକ ସମସ୍ତ ପଦାର୍ଥଙ୍କୁ; **ଅପି** = ବି; **ପ୍ରକୃତିସମ୍ଭବାନ୍**, **ଏବ** = ପ୍ରକୃତିରୁ ହିଁ ଉତ୍ପନ୍ନ ବୋଲି; **ବିଦ୍ଧି** = ଜାଣ।

**ପ୍ରକୃତି (ମୂଳପ୍ରକୃତି) ଏବଂ ପୁରୁଷ (ଜୀବାତ୍ମା)— ଏହି ଉଭୟଙ୍କୁ ଅନାଦି ବୋଲି ଜାଣ ଏବଂ ରାଗଦ୍ୱେଷାଦି ବିକାରଗୁଡ଼ିକୁ ତଥା ତ୍ରିଗୁଣାତ୍ମକ ସମସ୍ତ ପଦାର୍ଥକୁ ବି ପ୍ରକୃତିରୁ ହିଁ ଉତ୍ପନ୍ନ ବୋଲି ଜାଣ॥ ୧୯ ॥**

**ପ୍ରଶ୍ନ —** ଏହି ଶ୍ଳୋକରେ **ପ୍ରକୃତି** ଶବ୍ଦଟି କାହାର ବାଚକ ଏବଂ ସପ୍ତମ ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଯାହାକୁ **ଅପରା ପ୍ରକୃତି** ନାମରେ ବର୍ଣ୍ଣନା କରାଯାଇଛି ଏବଂ ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଯାହାକୁ କ୍ଷେତ୍ରର ସ୍ୱରୂପ ବୋଲି କୁହାଯାଇଛି, ସେହି ଦୁଇଟି ମଧ୍ୟରେ ଓ ଏହି ଶ୍ଳୋକର **'ପ୍ରକୃତି'** ମଧ୍ୟରେ ପ୍ରଭେଦ କ'ଣ ?

**ଉତ୍ତର —** ଏଠାରେ **ପ୍ରକୃତି** ଶବ୍ଦଟି ଈଶ୍ୱରଙ୍କ ଅନାଦିସିଦ୍ଧ ମୂଳପ୍ରକୃତିର ବାଚକ। ଚତୁର୍ଦ୍ଦଶ ଅଧ୍ୟାୟରେ ଏହାକୁ ହିଁ ମହଦ୍‌ବ୍ରହ୍ମ ନାମରେ କୁହାଯାଇଛି। ସପ୍ତମ ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଏହାକୁ **ଅପରା ପ୍ରକୃତି** ନାମରେ ଏବଂ ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଏହାକୁ **କ୍ଷେତ୍ର** ନାମରେ ବି ବର୍ଣ୍ଣନା କରାଯାଇଛି। ପ୍ରଭେଦ ଏତିକି ଯେ, ସେଠାରେ ତାହାର କାର୍ଯ୍ୟ ସହିତ, ଅର୍ଥାତ୍ ମନ, ବୁଦ୍ଧି, ଅହଂକାର ଓ ପଞ୍ଚ ମହାଭୂତାଦି ସହିତ ମୂଳପ୍ରକୃତିର ବର୍ଣ୍ଣନା କରାଯାଇଛି ଏବଂ ଏଠାରେ କେବଳ ମୂଳପ୍ରକୃତିର ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ —** ପ୍ରକୃତି ଏବଂ ପୁରୁଷ — ଏହି ଉଭୟଙ୍କୁ ଅନାଦି ବୋଲି ଜାଣ,' — ଏପରି କହିବାର ଅଭିପ୍ରାୟ କ'ଣ ଓ ଏଠାରେ **ଚ** ଏବଂ **ଏବ** — ଏହି ଦୁଇଟି ପଦ ପ୍ରୟୋଗ କରାଯିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ପ୍ରକୃତି (ମୂଳ ପ୍ରକୃତି) ଏବଂ ପୁରୁଷ (ଜୀବାତ୍ମା) — ଏହି ଉଭୟର ଅନାଦିତା ସମାନ। ଏହି କଥାଟି ଜାଣିବା ନିମନ୍ତେ ଅର୍ଥାତ୍ ଏହି ଅନାଦିତା ଲକ୍ଷଣ ଦୃଷ୍ଟିରୁ ସେହି ଉଭୟର ସମାନତା ଦେଖାଇବା ନିମନ୍ତେ ଚ ଏବଂ ଏବ ପଦଦୁଇଟି ପ୍ରୟୋଗ କରାଯାଇଛି। 'ପ୍ରକୃତି ଓ ପୁରୁଷକୁ ଅନାଦି ବୋଲି ଜାଣ,' — ଏହା କହିବାର ଅଭିପ୍ରାୟ ହେଉଛି : ଜୀବର ଜୀବତ୍ୱ ଅର୍ଥାତ୍ ପ୍ରକୃତି ସହିତ ତାହାର ସମ୍ବନ୍ଧ କୌଣସି କାରଣରୁ ହୋଇ ନାହିଁ — ତାହା ଆଗନ୍ତୁକ ନୁହେଁ; ତାହା ହେଉଛି ଅନାଦିସିଦ୍ଧ ଏବଂ ଠିକ୍ ସେହିପରି ଈଶ୍ୱରଙ୍କର ଶକ୍ତି ଏହି ପ୍ରକୃତି ବି ଅନାଦିସିଦ୍ଧ ବୋଲି ବୁଝିବା ଉଚିତ।

**ପ୍ରଶ୍ନ —** ଏଠାରେ **ବିକାରାନ୍** ପଦଟି କେଉଁମାନଙ୍କର ଓ **ଗୁଣାନ୍** ପଦଟି କେଉଁମାନଙ୍କର ବାଚକ ? ପୁଣି 'ସେ ଉଭୟେ ପ୍ରକୃତିରୁ ଉତ୍ପନ୍ନ ବୋଲି ଜାଣ' — ଏପରି କୁହାଯିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏହି ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଯେଉଁ

ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ ଆଦି ବିକାରଗୁଡ଼ିକ ବର୍ଣ୍ଣନା କରାଯାଇଛି, **ବିକାରାନ୍** ପଦଟି ହେଉଛି ସେସବୁର ବାଚକ ଏବଂ **ଗୁଣାନ୍** ପଦଟି ହେଉଛି ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣର ତଥା ସେଥିରୁ ଉତ୍ପନ୍ନ ସମସ୍ତ ଜଡ଼ ପଦାର୍ଥର ବାଚକ। ଏହି ଉଭୟେ ପ୍ରକୃତିରୁ ଉତ୍ପନ୍ନ ବୋଲି କହି ଭଗବାନ୍ ଦର୍ଶାଇଛନ୍ତି ଯେ, ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣର ନାମ ପ୍ରକୃତି ନୁହେଁ; ପ୍ରକୃତି ଅନାଦି। ଏହି ତିନିଗୁଣ ସୃଷ୍ଟିର ଆଦିରେ ପ୍ରକୃତିରୁ ଉତ୍ପନ୍ନ ହୁଅନ୍ତି, (ଭାଗବତ ୨/୫/୨୨ ତଥା ୧୧/୨୪/୫)। ଏହି କଥାଟି ସ୍ପଷ୍ଟ କରିଦେବାକୁ ଚଉଦ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଭଗବାନ୍ ଏହି ତିନିଗୁଣକୁ ସତ୍ତ୍ୱ, ରଜ ଓ ତମ ନାମ ଦେଇ ଏମାନେ ପ୍ରକୃତିସମ୍ଭବ ବୋଲି କହିଦେଇଛନ୍ତି। ତା'ଛଡ଼ା ତୃତୀୟ ଅଧ୍ୟାୟର ପଞ୍ଚମ ଶ୍ଳୋକରେ, ଅଠର ଅଧ୍ୟାୟର ଚାଳିଶ ଶ୍ଳୋକରେ ତଥା ଏହି ଅଧ୍ୟାୟର ଏକୋଇଶି ଶ୍ଳୋକରେ ମଧ୍ୟ ଗୁଣଗୁଡ଼ିକ ପ୍ରକୃତିଜାତ ବୋଲି ବୁଝାଇଦେଇଛନ୍ତି। ତୃତୀୟ ଅଧ୍ୟାୟର ସତେଇଶ ତଥା ଅଣତିରିଶ ଶ୍ଳୋକରେ ବି ଗୁଣମାନଙ୍କର ବର୍ଣ୍ଣନା ପ୍ରକୃତିର କାର୍ଯ୍ୟରୂପରେ କରାଯାଇଛି। ତେଣୁ ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣକୁ ତଥା ସେମାନଙ୍କର କାର୍ଯ୍ୟକୁ ପ୍ରକୃତିରୁ ଉତ୍ପନ୍ନ ବୋଲି ବୁଝିବା ଉଚିତ; ଏହିପରି ସମସ୍ତ ବିକାର ବି ପ୍ରକୃତିରୁ ଉତ୍ପନ୍ନ ବୋଲି ବୁଝିବା ଉଚିତ।

*ସମ୍ବନ୍ଧ – ତୃତୀୟ ଶ୍ଳୋକରେ କେଉଁଥିରୁ କ'ଣ ଉତ୍ପନ୍ନ ହୁଏ, ତାହା ଶୁଣିବାକୁ କୁହାଯାଇଥିଲା। ତାହା ପୂର୍ବଶ୍ଳୋକର ଉତ୍ତରାର୍ଦ୍ଧରେ କିଛି ବର୍ଣ୍ଣନା କରାଯାଇଛି। ବର୍ତ୍ତମାନ ତାହାର ଆଉ କିଛି ଅଂଶ ପରବର୍ତ୍ତୀ ଶ୍ଳୋକର ପୂର୍ବାର୍ଦ୍ଧରେ କହି ଉତ୍ତରାର୍ଦ୍ଧରେ ତଥା ଏକୋଇଶି ଶ୍ଳୋକରେ ପ୍ରକୃତିରେ ସ୍ଥିତ ପୁରୁଷର ସ୍ୱରୂପ ବର୍ଣ୍ଣନା କରାଯାଉଛି –*

## କାର୍ଯ୍ୟକରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ।
## ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ॥ ୨୦ ॥

ଅନ୍ୱୟ – **କାର୍ଯ୍ୟକରଣକର୍ତ୍ତୃତ୍ୱେ** = କାର୍ଯ୍ୟ ଓ କରଣକୁ ଉତ୍ପନ୍ନ କରିବାରେ; **ହେତୁଃ** = ହେତୁ; **ପ୍ରକୃତିଃ** = ପ୍ରକୃତି; **ଉଚ୍ୟତେ** = କୁହାଯାଏ; **ପୁରୁଷଃ** = (ଏବଂ) ଜୀବାତ୍ମା; **ସୁଖଦୁଃଖାନାମ୍** = ସୁଖ-ଦୁଃଖମାନଙ୍କର; **ଭୋକ୍ତୃତ୍ୱେ** = ଭୋକ୍ତାପଣରେ; **ହେତୁଃ** = ହେତୁ; **ଉଚ୍ୟତେ** = ବୋଲାଯାଏ।

**କାର୍ଯ୍ୟ ଓ କରଣ ଉତ୍ପନ୍ନ କରିବାରେ ପ୍ରକୃତିକୁ ହେତୁ ବୋଲି କୁହାଯାଏ ଏବଂ ସୁଖ-ଦୁଃଖର ଭୋକ୍ତାପଣରେ ଅର୍ଥାତ୍ ଭୋଗିବାରେ ଜୀବାତ୍ମାକୁ ହେତୁ ବୋଲି କୁହାଯାଏ॥ ୨୦ ॥**

**ପ୍ରଶ୍ନ – କାର୍ଯ୍ୟ ଓ କରଣ** ଶବ୍ଦ କେଉଁ କେଉଁ ତତ୍ତ୍ୱର ବାଚକ ? ଏବଂ ସେଦୁହିଁଙ୍କର କର୍ତ୍ତୃତ୍ୱରେ ପ୍ରକୃତିକୁ ହେତୁ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର – 'କାର୍ଯ୍ୟ'** ଶବ୍ଦଟି ହେଉଛି ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ ଏହି ପାଞ୍ଚଟି ସୂକ୍ଷ୍ମ ମହାଭୂତ ତଥା ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ — ଏହି ପାଞ୍ଚଟି ଇନ୍ଦ୍ରିୟର ବିଷୟ — ଏପରି ଦଶଟି ତତ୍ତ୍ୱର ବାଚକ। **'କରଣ'** ଶବ୍ଦଟି ହେଉଛି ବୁଦ୍ଧି, ଅହଂକାର ଓ ମନ — ଏହି ତିନି ଅନ୍ତଃକରଣର; ଶ୍ରୋତ୍ର, ତ୍ୱକ୍, ନେତ୍ର, ରସନା ଓ ଘ୍ରାଣ — ଏହି ପଞ୍ଚ ଜ୍ଞାନେନ୍ଦ୍ରିୟର ଏବଂ ବାକ୍, ପାଣି ପାଦ, ଉପସ୍ଥ ଓ ପାୟୁ — ଏହି ପଞ୍ଚ କର୍ମେନ୍ଦ୍ରିୟର — ଏହିପରି ତେରଟି ତତ୍ତ୍ୱର ବାଚକ। ଏହି ତେଇଶ ତତ୍ତ୍ୱ ପ୍ରକୃତିରୁ ହିଁ ଉତ୍ପନ୍ନ ହୁଅନ୍ତି; ପ୍ରକୃତି ହିଁ ଏମାନଙ୍କର ଉପାଦାନ କାରଣ। ତେଣୁ ପ୍ରକୃତିକୁ ଏମାନଙ୍କର ଉତ୍ପନ୍ନ କରିବାରେ ହେତୁ ବୋଲି କୁହାଯାଇଛି।

**ପ୍ରଶ୍ନ –** ଏହି ତେଇଶିଟି ତତ୍ତ୍ୱ ଗୋଟିକରୁ ଅନ୍ୟଟି ହୋଇ କେଉଁ କ୍ରମରେ ଉତ୍ପନ୍ନ ହୁଅନ୍ତି ବୋଲି ଧରାଯାଏ ?

**ଉତ୍ତର –** ପ୍ରକୃତିରୁ ମହତତ୍ତ୍ୱ, ମହତତ୍ତ୍ୱରୁ ଅହଂକାର, ଅହଂକାରରୁ ପଞ୍ଚ ସୂକ୍ଷ୍ମମହାଭୂତ, ମନ ଏବଂ ଦଶ ଇନ୍ଦ୍ରିୟ ତଥା ପଞ୍ଚ ସୂକ୍ଷ୍ମମହାଭୂତରୁ ପଞ୍ଚ ଇନ୍ଦ୍ରିୟମାନଙ୍କ ଶବ୍ଦାଦି ପଞ୍ଚ ସ୍ଥୂଳବିଷୟର ଉତ୍ପତ୍ତି ହୁଏ ବୋଲି ଧରାଯାଏ। ସାଂଖ୍ୟକାରିକାରେ ବି କୁହାଯାଇଛି –

**ପ୍ରକୃତେର୍ମହାଂସ୍ତତୋଽହଂକାରସ୍ତସ୍ମାଦ୍‌ଗଣଶ୍ଚ ଷୋଡ଼ଶକଃ।**
**ତସ୍ମାଦପି ଷୋଡ଼ଶକାତ୍ ପଞ୍ଚଭ୍ୟଃ ପଞ୍ଚଭୂତାନି॥**
(ସାଂଖ୍ୟକାରିକା ୨୨)

'ପ୍ରକୃତିରୁ ମହତତ୍ତ୍ୱ (ସମଷ୍ଟି-ବୁଦ୍ଧି)ର ଅର୍ଥାତ୍ ବୁଦ୍ଧିତତ୍ତ୍ୱର, ସେଥିରୁ ଅହଂକାରର ଏବଂ ଅହଂକାରରୁ

ପଞ୍ଚ ତନ୍ମାତ୍ର, ଏକ ମନ ଓ ଦଶ ଇନ୍ଦ୍ରିୟର— ଏପରି ଷୋହଳ ତତ୍ତ୍ୱସମୁଦାୟର ଉତ୍ପତ୍ତି ହେଲା ତଥା ସେହି ଷୋହଳ ତତ୍ତ୍ୱ ମଧ୍ୟରୁ ପଞ୍ଚ ତନ୍ମାତ୍ରରୁ ପଞ୍ଚ ସ୍ଥୂଳଭୂତର ଉତ୍ପତ୍ତି ହେଲା ।' ଗୀତାର ବର୍ଣ୍ଣନାରେ ପଞ୍ଚ ତନ୍ମାତ୍ର ସ୍ଥାନରେ ପଞ୍ଚ ସୂକ୍ଷ୍ମମହାଭୂତର ନାମ ଏବଂ ପଞ୍ଚ ସ୍ଥୂଳଭୂତସ୍ଥାନରେ ପଞ୍ଚ ଇନ୍ଦ୍ରିୟମାନଙ୍କ ବିଷୟର ନାମ ଦିଆଯାଇଛି; ଦୁଇଟି ବର୍ଣ୍ଣନା ମଧ୍ୟରେ ଏହା ହିଁ ପ୍ରଭେଦ।

**ପ୍ରଶ୍ନ—** କେତେକ ସ୍ଥାନରେ 'କାର୍ଯ୍ୟକରଣ' ସ୍ଥାନରେ 'କାର୍ଯ୍ୟକାରଣ' ପାଠ ମଧ୍ୟ ଦେଖିବାକୁ ମିଳୁଛି । ସେପରି ପାଠକୁ ଗ୍ରହଣ କଲେ, **'କାର୍ଯ୍ୟ'** ଓ **'କାରଣ'** ଶବ୍ଦ ଦୁଇଟି କେଉଁ କେଉଁ ତତ୍ତ୍ୱର ବାଚକ ବୋଲି ଧରାଯିବ ?

**ଉତ୍ତର—** 'କାର୍ଯ୍ୟ' ଓ 'କାରଣ' ପାଠକୁ ଗ୍ରହଣ କଲେ **'କାର୍ଯ୍ୟ'** ଶବ୍ଦଟିକୁ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ଏକ ମନ ଓ ପଞ୍ଚେନ୍ଦ୍ରିୟଙ୍କର ବିଷୟଗୁଡ଼ିକ— ଏହି ଷୋହଳ ତତ୍ତ୍ୱର ବାଚକ ବୋଲି ଧରାଯିବା ଉଚିତ, କାରଣ ଏମାନେ ହେଉଛନ୍ତି ଅନ୍ୟମାନଙ୍କର କାର୍ଯ୍ୟ; ଏମାନେ ସ୍ୱୟଂ କାହାରି କାରଣ ନୁହନ୍ତି । **'କାରଣ'** ଶବ୍ଦଟିକୁ ବୁଦ୍ଧି, ଅହଂକାର ଓ ପଞ୍ଚ ସୂକ୍ଷ୍ମ ମହାଭୂତର ବାଚକ ବୋଲି ଧରାଯିବା ଉଚିତ, କାହିଁକିନା ବୁଦ୍ଧି ହେଉଛି ଅହଂକାରର କାରଣ, ଅହଂକାର ହେଉଛି ମନ, ଇନ୍ଦ୍ରିୟ ଓ ସୂକ୍ଷ୍ମ ପଞ୍ଚମହାଭୂତର କାରଣ ଏବଂ ସୂକ୍ଷ୍ମ ପଞ୍ଚମହାଭୂତ ହେଉଛି ପଞ୍ଚେନ୍ଦ୍ରିୟର ବିଷୟମାନଙ୍କର କାରଣ ।

**ପ୍ରଶ୍ନ—** ଅନ୍ୟ ଶାସ୍ତ୍ରମାନେ ଅନ୍ତଃକରଣର ବୁଦ୍ଧି, ଅହଂକାର, ଚିତ୍ତ ଓ ମନ— ଏପରି ଚାରିଟି ବିଭାଗ ଥିବା କଥା ମାନନ୍ତି । ତଥାପି ଭଗବାନ୍ ଏଠାରେ ମାତ୍ର ତିନୋଟିର ବର୍ଣ୍ଣନା ଦେଲେ କାହିଁକି ?

**ଉତ୍ତର—** ଭଗବାନ୍ ଚିତ୍ତ ଓ ମନକୁ ଦୁଇଟି ବିଭିନ୍ନ ତତ୍ତ୍ୱ ବୋଲି ଗ୍ରହଣ ନ କରି, ଗୋଟିଏମାତ୍ର ତତ୍ତ୍ୱର ଦୁଇଟି ନାମ ବୋଲି ଗ୍ରହଣ କରନ୍ତି । ସାଂଖ୍ୟ ଓ ଯୋଗଶାସ୍ତ୍ର ବି ଏହା ହିଁ ମାନନ୍ତି । ତେଣୁ ଅନ୍ତଃକରଣକୁ ଚାରି ଭାଗ କରା ନ ଯାଇ ତିନିଭାଗ କରାଯାଇଛି ।

**ପ୍ରଶ୍ନ—** ପୁରୁଷ ଶବ୍ଦଟିକୁ ଚେତନ ଆତ୍ମାର ବାଚକ ବୋଲି ଏବଂ ଆତ୍ମାକୁ ନିର୍ଲେପ ତଥା ଶୁଦ୍ଧ ବୋଲି ଗ୍ରହଣ କରାଯାଏ ; ତଥାପି ଏଠାରେ ପୁରୁଷକୁ ସୁଖ-ଦୁଃଖର ଭୋକ୍ତାପଣରେ ହେତୁ ବୋଲି କିପରି କୁହାଗଲା ?

**ଉତ୍ତର—** ପ୍ରକୃତି ଜଡ଼; ତାଠାରେ ଭୋକ୍ତାପଣର ସମ୍ଭାବନା ନାହିଁ । ପୁଣି ପୁରୁଷ ଅସଙ୍ଗ; ତେଣୁ ତାଠାରେ ବି ବାସ୍ତବିକ ଭୋକ୍ତାପଣ ନାହିଁ । ପ୍ରକୃତିର ସଙ୍ଗରେ ଥିବାରୁ ହିଁ ପୁରୁଷଠାରେ ଭୋକ୍ତାପଣ ଥିଲାପରି ଲାଗେ । ପ୍ରକୃତି-ପୁରୁଷର ଏହି ସଙ୍ଗ ଅନାଦି; ତେଣୁ ଏଠାରେ ପୁରୁଷକୁ ସୁଖ-ଦୁଃଖର ଭୋକ୍ତାପଣରେ ହେତୁ ଅର୍ଥାତ୍ ନିମିତ୍ତ ବୋଲି ଧରାଯାଇଛି । ଏହି କଥାଟି ସ୍ପଷ୍ଟ କରିଦେବା ନିମନ୍ତେ ପରବର୍ତ୍ତୀ ଶ୍ଳୋକରେ କହିଛନ୍ତି ଯେ, 'ପ୍ରକୃତିରେ ସ୍ଥିତ ପୁରୁଷ ହିଁ ପ୍ରକୃତିଜନିତ ଗୁଣମାନଙ୍କୁ ଭୋଗ କରେ ।' ସୁତରାଂ ପ୍ରକୃତିଠାରୁ ମୁକ୍ତ ପୁରୁଷଠାରେ ଭୋକ୍ତାପଣର ଗନ୍ଧମାତ୍ର ନ ଥାଏ ।

## ପୁରୁଷଃ ପ୍ରକୃତିସ୍ଥୋ ହି ଭୁଙ୍କ୍ତେ ପ୍ରକୃତିଜାନ୍ ଗୁଣାନ୍ ।
## କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ ।। ୨୧ ।।

**ଅନ୍ୱୟ—** **ପ୍ରକୃତିସ୍ଥଃ** = ପ୍ରକୃତିରେ ସ୍ଥିତ; **ପୁରୁଷଃ** = ପୁରୁଷ; **ହି** = ହିଁ; **ପ୍ରକୃତିଜାନ୍** = ପ୍ରକୃତିରୁ ଉତ୍ପନ୍ନ; **ଗୁଣାନ୍** = ତ୍ରିଗୁଣାତ୍ମକ ପଦାର୍ଥଗୁଡ଼ିକୁ; **ଭୁଙ୍କ୍ତେ** = ଭୋଗ କରେ; **ଗୁଣସଙ୍ଗଃ** = (ଏବଂ ଏହିସବୁ) ଗୁଣମାନଙ୍କର ସଙ୍ଗ (ହିଁ); **ଅସ୍ୟ** = ଏହି ଜୀବାତ୍ମାର; **ସଦସଦ୍‌ଯୋନିଜନ୍ମସୁ** = ଭଲ-ମନ୍ଦ ଯୋନିମାନଙ୍କରେ ଜନ୍ମ ନେବାରେ; **କାରଣମ୍** = କାରଣ ଅଟେ ।

**ପ୍ରକୃତିରେ ସ୍ଥିତ ପୁରୁଷ ହିଁ ପ୍ରକୃତିରୁ ଉତ୍ପନ୍ନ ତ୍ରିଗୁଣାତ୍ମକ ପଦାର୍ଥଗୁଡ଼ିକୁ ଭୋଗ କରେ ଏବଂ ଏହିସବୁ ଗୁଣମାନଙ୍କର ସଙ୍ଗ ହିଁ ଏହି ଜୀବାତ୍ମାର ଭଲ-ମନ୍ଦ ଯୋନିମାନଙ୍କରେ ଜନ୍ମ ନେବାରେ କାରଣ ଅଟେ ।। ୨୧ ।।**

**ପ୍ରଶ୍ନ—** ଏଠାରେ **ପ୍ରକୃତିଜାନ୍** ବିଶେଷଣ ସହିତ **ଗୁଣାନ୍** ପଦଟି କେଉଁମାନଙ୍କର ବାଚକ ତଥା **ପୁରୁଷଃ** ସହିତ **ପ୍ରକୃତିସ୍ଥ** ବିଶେଷଣ ଦେଇ ତାହାକୁ ସେହି ଗୁଣମାନଙ୍କର ଭୋକ୍ତା ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଠାରେ **ପ୍ରକୃତିଜାନ୍** ବିଶେଷଣ ସହିତ **ଗୁଣାନ୍** ପଦଟି ହେଉଛି ପ୍ରକୃତିଜନିତ ସତ୍ତ୍ୱ, ରଜ ଓ

ତମ — ଏହି ତିନିଗୁଣ ତଥା ଏମାନଙ୍କର କାର୍ଯ୍ୟ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରୂପକ ଯେତେସବୁ ସାଂସାରିକ ପଦାର୍ଥ ରହିଛି, ସେହି ସମସ୍ତଙ୍କର ବାଚକ ଏବଂ **ପୁରୁଷ** ସହିତ **ପ୍ରକୃତିସ୍ଥ** ବିଶେଷଣ ଦେଇ ତାହାକୁ ଉକ୍ତ ଗୁଣମାନଙ୍କର ଭୋକ୍ତା ବୋଲି କହିବାର ଅଭିପ୍ରାୟ ଏହି ଯେ, ପ୍ରକୃତିଦ୍ୱାରା ନିର୍ମିତ ହୋଇଥିବା ସ୍ଥୂଳ, ସୂକ୍ଷ୍ମ ଓ କାରଣ — ଏହି ତିନି ଶରୀର ମଧ୍ୟରୁ ଯେକୌଣସି ଶରୀର ସହିତ ଯେତେ ସମୟପର୍ଯ୍ୟନ୍ତ ଏହି ଜୀବାତ୍ମାର ସମ୍ବନ୍ଧ ରହିଥାଏ, ସେତେ ସମୟପର୍ଯ୍ୟନ୍ତ ତାକୁ ପ୍ରକୃତିରେ ସ୍ଥିତ (ପ୍ରକୃତିସ୍ଥ) କୁହାଯାଏ। ତେଣୁ ଯେପର୍ଯ୍ୟନ୍ତ ପ୍ରକୃତି ସହିତ ଜୀବାତ୍ମାର ସମ୍ପର୍କ ରହିଥାଏ, ସେପର୍ଯ୍ୟନ୍ତ ସେ ପ୍ରକୃତିଜାତ ଗୁଣମାନଙ୍କର ଭୋକ୍ତା ହୁଏ। ପ୍ରକୃତି ସହିତ ସମ୍ବନ୍ଧ ତୁଟିଯିବା ପରେ ତା'ଠାରେ ଆଉ ଭୋକ୍ତାପଣ ରହେ ନାହିଁ; କାରଣ ବସ୍ତୁତଃ ପୁରୁଷର ସ୍ୱରୂପ ନିତ୍ୟ ଅସଙ୍ଗ ହିଁ ଅଟେ।

**ପ୍ରଶ୍ନ —** **ସଦସଦ୍‌ଯୋନି** ଶବ୍ଦଟି କେଉଁ ଯୋନିମାନଙ୍କର ବାଚକ? ପୁଣି ଗୁଣମାନଙ୍କର ସଙ୍ଗ କ'ଣ ଓ ତାହା କିପରି ଏହି ଜୀବାତ୍ମାର ସଦସଦ୍‌ଯୋନିମାନଙ୍କରେ ଜନ୍ମ ନେବାର କାରଣ ହୁଏ?

**ଉତ୍ତର —** **ସଦସଦ୍‌ଯୋନି** ଶବ୍ଦଟି ଏଠାରେ ସତ୍ ଓ ଅସତ୍ ଉଭୟପ୍ରକାର ଯୋନିମାନଙ୍କର ବାଚକ। ମନୁଷ୍ୟଠାରୁ ଆରମ୍ଭ କରି ଉଚ୍ଚ ସ୍ତରରେ ଯେତେସବୁ ଦେବାଦିଯୋନି ରହିଛି, ସେସବୁ ହେଉଛି ସତ୍‌ଯୋନି ଏବଂ ମନୁଷ୍ୟଠାରୁ ନୀଚସ୍ତରର ପଶୁ, ପକ୍ଷୀ, ବୃକ୍ଷଲତା ଆଦି ସମସ୍ତ ଯୋନି ଅସତ୍ ଯୋନି। ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣ ସହିତ ଜୀବର ଯେଉଁ ଅନାଦିସିଦ୍ଧ ସମ୍ବନ୍ଧ ରହିଛି ଏବଂ ତାହାର କାର୍ଯ୍ୟରୂପ ସାଂସାରିକ ପଦାର୍ଥମାନଙ୍କରେ ଯେଉଁ ଆସକ୍ତି ରହିଛି, ତାହା ହିଁ ଗୁଣମାନଙ୍କର ସଙ୍ଗ। ଯେଉଁ ମନୁଷ୍ୟର ଯେଉଁ ଗୁଣରେ ବା ତାହାର କାର୍ଯ୍ୟରୂପ ପଦାର୍ଥମାନଙ୍କରେ ଆସକ୍ତି ରହିବ, ତା'ଠାରେ ସେହିପରି ବାସନା ହିଁ ଜାତ ହେବ ଏବଂ ତାକୁ ତଦନୁଯାୟୀ ପୁନର୍ଜନ୍ମ ପ୍ରାପ୍ତ ହେବ। ତେଣୁ ଗୁଣମାନଙ୍କର ସଙ୍ଗ ହିଁ ସତ୍-ଅସତ୍ ଯୋନିମାନଙ୍କ ପ୍ରାପ୍ତିରେ କାରଣ ବୋଲି ଏଠାରେ କୁହାଯାଇଛି।

**ପ୍ରଶ୍ନ —** ଚତୁର୍ଥ ଅଧ୍ୟାୟର ତେର ଶ୍ଳୋକରେ ତ ଭଗବାନ୍ କହିଛନ୍ତି ଯେ, ଗୁଣ ଓ କର୍ମ ଅନୁସାରେ ତାଙ୍କ ଦ୍ୱାରା ଚାରି ବର୍ଣ୍ଣ ରଚନା କରାଯାଇଛି; ପୁଣି ଅଷ୍ଟମ ଅଧ୍ୟାୟର ଷଷ୍ଠ ଶ୍ଳୋକରେ କୁହାଯାଇଛି ଯେ, ମନୁଷ୍ୟ ଅନ୍ତକାଳରେ ଯେଉଁ ଯେଉଁ ଭାବ ସ୍ମରଣ କରି ଦେହତ୍ୟାଗ କରେ, ଠିକ୍ ତାହା ହିଁ ପ୍ରାପ୍ତ ହୁଏ ଏବଂ ଏଠାରେ କୁହାଯାଉଛି ଯେ, ଗୁଣମାନଙ୍କର ସଙ୍ଗ ହିଁ ସତ୍-ଅସତ୍ ଯୋନିମାନଙ୍କ ପ୍ରାପ୍ତିରେ କାରଣ। ଏହି ତିନୋଟିର ସମନ୍ୱୟ କିପରି କରାଯିବ?

**ଉତ୍ତର —** ଏହି ତିନୋଟି ମଧ୍ୟରେ ବସ୍ତୁତଃ କୌଣସି ଅସାମଞ୍ଜସ୍ୟ ନାହିଁ। ବିଚାର କରି ଦେଖିଲେ, ତିନୋଟିଯାକରେ ପ୍ରକାରାନ୍ତରେ ଗୁଣମାନଙ୍କର ସଙ୍ଗକୁ ହିଁ ସତ୍-ଅସତ୍‌ଯୋନିପ୍ରାପ୍ତିରେ ହେତୁ ବୋଲି କୁହାଯାଇଛି— (୧) ଗୁଣକର୍ମାନୁସାରେ ହିଁ ଭଗବାନ୍ ଚାରି ବର୍ଣ୍ଣ ରଚନା କରିଛନ୍ତି। ଏଥିରେ ସମ୍ପୃକ୍ତ ଜୀବମାନଙ୍କର ଗୁଣସଙ୍ଗ ହିଁ ସ୍ୱାଭାବିକ ହେତୁ ହୋଇଗଲା। (୨) ମନୁଷ୍ୟ ଯେପରି କର୍ମ ଓ ସଙ୍ଗ କରେ, ତଦନୁସାରେ ତିନିଗୁଣମଧ୍ୟରୁ କୌଣସି ଗୋଟିଏ ଗୁଣରେ ତାହାର ବିଶେଷ ଆସକ୍ତି ହୁଏ ଏବଂ ସେହି କର୍ମମାନଙ୍କର ସଂସ୍କାର ଗଢ଼ିହୋଇଯାଏ ଏବଂ ଯେପରି ସଂସ୍କାର ହୁଏ, ଅନ୍ତକାଳରେ ସେହିପରି ସ୍ମୃତି ହୁଏ ଓ ସ୍ମୃତି ଅନୁସାରେ ହିଁ ତାକୁ ସତ୍-ଅସତ୍ ଯୋନି ପ୍ରାପ୍ତ ହୁଏ। ସୁତରାଂ ଏଠାରେ ବି ଗୁଣସଙ୍ଗ ହିଁ ମୂଳ ହେତୁ। (୩) ଏହି ଶ୍ଳୋକରେ ତ ସ୍ପଷ୍ଟରୂପେ କହିଦିଆଯାଇଛି ଯେ, ଗୁଣମାନଙ୍କର ସଙ୍ଗ ହିଁ ସତ୍-ଅସତ୍ ଯୋନିଲାଭର ହେତୁ। ଅତଏବ ତିନୋଟିଯାକରେ ଗୋଟିଏ ହିଁ କଥା କୁହାଯାଇଛି।

*ସମ୍ବନ୍ଧ — ଏପରିଭାବରେ ପ୍ରକୃତିସ୍ଥ ପୁରୁଷର ସ୍ୱରୂପ ବର୍ଣ୍ଣନା କରିବା ପରେ ବର୍ତ୍ତମାନ ଜୀବାତ୍ମା ଓ ପରମାତ୍ମା ମଧ୍ୟରେ ଏକତ୍ୱ ପ୍ରତିପାଦନ କରିବା ସହିତ ଆତ୍ମାର ଗୁଣାତୀତ ସ୍ୱରୂପ କିପରି, ତାହା ବର୍ଣ୍ଣନା କରୁଛନ୍ତି—*

**ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ।**
**ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃ ପରଃ॥ ୨୨ ॥**

**ଅନ୍ୱୟ —** **ଅସ୍ମିନ୍** = ଏହି; **ଦେହେ,** **(ସ୍ଥିତଃ),** **ଅପି** = ଦେହରେ ଅବସ୍ଥିତ ହୋଇ ମଧ୍ୟ; **ପୁରୁଷଃ** = ଏହି ଆତ୍ମା; **ପରଃ,** **(ଏବ)** = ପ୍ରକୃତରେ ପରମାତ୍ମା ହିଁ ଅଟେ; **ଉପଦ୍ରଷ୍ଟା** = (ସେ ହିଁ) ସାକ୍ଷୀ ହୋଇଥିବାରୁ ଉପଦ୍ରଷ୍ଟା;

ଚ = ଏବଂ; **ଅନୁମନ୍ତା** = ଯଥାର୍ଥ ସମ୍ମତିଦାତା ହୋଇଥିବାରୁ ଅନୁମନ୍ତା; **ଭର୍ତ୍ତା** = ସମସ୍ତଙ୍କର ଧାରଣ-ପୋଷଣକାରୀ ହୋଇଥିବାରୁ ଭର୍ତ୍ତା; **ଭୋକ୍ତା** = ଜୀବରୂପ ହୋଇଥିବାରୁ ଭୋକ୍ତା; **ମହେଶ୍ୱରଃ** = ବ୍ରହ୍ମା ପ୍ରଭୃତିଙ୍କର ସ୍ୱାମୀ ହୋଇଥିବାରୁ ମହେଶ୍ୱର; ଚ = ଏବଂ; **ପରମାତ୍ମା** = ଶୁଦ୍ଧ ସଚ୍ଚିଦାନନ୍ଦଘନ ହୋଇଥିବାରୁ ପରମାତ୍ମା; **ଇତି** = ବୋଲି; **ଉକ୍ତଃ** = କୁହାଯାଉଛି।

**ଏହି ଦେହରେ ଅବସ୍ଥିତ ହୋଇ ମଧ୍ୟ ଏହି ଆତ୍ମା ପ୍ରକୃତରେ ପରମାତ୍ମା ହିଁ ଅଟେ। ସେ ହିଁ ସାକ୍ଷୀ ହୋଇଥିବାରୁ ଉପଦ୍ରଷ୍ଟା, ଯଥାର୍ଥ ସମ୍ମତିଦାତା ହୋଇଥିବାରୁ ଅନୁମନ୍ତା, ସମସ୍ତଙ୍କର ଧାରଣ-ପୋଷଣକାରୀ ହୋଇଥିବାରୁ ଭର୍ତ୍ତା, ଜୀବରୂପ ହୋଇଥିବାରୁ ଭୋକ୍ତା, ବ୍ରହ୍ମା ପ୍ରଭୃତିଙ୍କର ସ୍ୱାମୀ ହୋଇଥିବାରୁ ମହେଶ୍ୱର ଏବଂ ଶୁଦ୍ଧ ସଚ୍ଚିଦାନନ୍ଦଘନ ହୋଇଥିବାରୁ ପରମାତ୍ମା ବୋଲି କଥିତ ହୁଏ।। ୨୨ ।।**

**ପ୍ରଶ୍ନ—** ଏହି ଦେହରେ ଅବସ୍ଥିତ ଏହି ଆତ୍ମା ବାସ୍ତବରେ ପରମାତ୍ମା ହିଁ ଅଟେ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏପରି କହି କ୍ଷେତ୍ରଜ୍ଞର ଗୁଣାତୀତ ସ୍ୱରୂପକୁ ନିର୍ଦ୍ଦେଶ କରାଯାଇଛି। କହିବାର ଅଭିପ୍ରାୟ ଏହି ଯେ, ପ୍ରକୃତିଜନିତ ଶରୀରର ଉପାଧିଦ୍ୱାରା ଯେଉଁ ଚେତନ ଆତ୍ମା ଅଜ୍ଞାନହେତୁ ଜୀବଭାବ ପ୍ରାପ୍ତ ହୋଇଥିବାପରି ପ୍ରତୀତ ହୁଏ, ସେହି କ୍ଷେତ୍ରଜ୍ଞ ବାସ୍ତବରେ ଏହି ପ୍ରକୃତିରୁ ସର୍ବଥା ଅତୀତ ହୋଇ ରହିଥିବା ପରମାତ୍ମା ହିଁ ଅଟେ। କାରଣ ପରବ୍ରହ୍ମ ପରମାତ୍ମା ଓ କ୍ଷେତ୍ରଜ୍ଞ ମଧ୍ୟରେ ବସ୍ତୁତଃ କୌଣସିପ୍ରକାର ପ୍ରଭେଦ ନାହିଁ; କେବଳ ଶରୀରରୂପକ ଉପାଧି ହେତୁ ହିଁ ପ୍ରଭେଦ ଥିବା ପରି ଲାଗେ।

**ପ୍ରଶ୍ନ—** ସେହି ଆତ୍ମାକୁ ହିଁ **ଉପଦ୍ରଷ୍ଟା, ଅନୁମନ୍ତା, ଭର୍ତ୍ତା, ଭୋକ୍ତା, ମହେଶ୍ୱର** ଓ **ପରମାତ୍ମା** ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏପରି କହିବାଦ୍ୱାରା ପ୍ରତିପାଦିତ ହେଉଛି ଯେ, ଭିନ୍ନ ଭିନ୍ନ ନିମିତ୍ତଦ୍ୱାରା ସେହି ଏକ ପରବ୍ରହ୍ମ ପରମାତ୍ମା ହିଁ ଭିନ୍ନ ଭିନ୍ନ ନାମରେ ସମ୍ବୋଧିତ ହୁଅନ୍ତି। କିନ୍ତୁ ବସ୍ତୁଦୃଷ୍ଟିରୁ ବ୍ରହ୍ମରେ କୌଣସିପ୍ରକାର ବିବିଧତା ନାହିଁ। ସଚ୍ଚିଦାନନ୍ଦଘନ ପରବ୍ରହ୍ମ ହିଁ ଅନ୍ତର୍ଯାମୀରୂପରେ ସମସ୍ତଙ୍କ ଶୁଭାଶୁଭ କର୍ମର ନିରୀକ୍ଷଣକାରୀ ଅଟନ୍ତି; ତେଣୁ ତାଙ୍କୁ **ଉପଦ୍ରଷ୍ଟା** ବୋଲାଯାଏ। ସମ୍ମତି ଚାହୁଁଥିବା ଲୋକଙ୍କୁ ସେ ହିଁ ଅନ୍ତର୍ଯାମୀରୂପରେ ଉଚିତ ଅନୁମତି ଦିଅନ୍ତି; ତେଣୁ ତାଙ୍କୁ **ଅନୁମନ୍ତା** ବୋଲାଯାଏ। ସେ ବିଷ୍ଣୁରୂପରେ ସମସ୍ତ ଜଗତର ରକ୍ଷଣ ଓ ପାଳନ କରନ୍ତି ବୋଲି ତାଙ୍କୁ **ଭର୍ତ୍ତା** ବୋଲାଯାଏ। ସେ ବିଭିନ୍ନ ଦେବତାରୂପରେ ସକଳ ଯଜ୍ଞର ହବି, ତଥା ବିଭିନ୍ନ ପ୍ରାଣୀରୂପରେ ସମସ୍ତ ଭୋଗ୍ୟବସ୍ତୁ ଭୁଞ୍ଜନ୍ତି ବୋଲି ତାଙ୍କୁ **ଭୋକ୍ତା** ବୋଲାଯାଏ। ସେ ସକଳଲୋକପାଳ ତଥା ବ୍ରହ୍ମାଦି ଈଶ୍ୱରମାନଙ୍କୁ ଶାସନ କରୁଥିବା ମହାନ୍ ଈଶ୍ୱର ହୋଇଥିବାରୁ, ତାଙ୍କୁ **ମହେଶ୍ୱର** ବୋଲାଯାଏ ଏବଂ ବସ୍ତୁତଃ ସେ ସଦା ସକଳ ଗୁଣରୁ ଅତୀତ ଅଟନ୍ତି ବୋଲି ତାଙ୍କୁ **ପରମାତ୍ମା** ବୋଲାଯାଏ। ଏହିପରି ସେହି ଏକ ପରବ୍ରହ୍ମ 'ପରମାତ୍ମା' ଭିନ୍ନ ଭିନ୍ନ ନିମିତ୍ତହେତୁ ଭିନ୍ନ ଭିନ୍ନ ନାମରେ ସମ୍ବୋଧିତ ହୁଅନ୍ତି, ବସ୍ତୁତଃ କୌଣସିପ୍ରକାର ପ୍ରଭେଦ ନାହିଁ।

*ସମ୍ବନ୍ଧ— ଏପରିଭାବରେ ଗୁଣମାନଙ୍କୁ ନେଇ ପ୍ରକୃତି ଓ ପୁରୁଷର ସ୍ୱରୂପ ବର୍ଣ୍ଣନା କରିବା ପରେ ବର୍ତ୍ତମାନ ସେମାନଙ୍କୁ ଯଥାର୍ଥରୂପରେ ଜାଣିବାର ଫଳ କହୁଛନ୍ତି—*

**ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଂ ଚ ଗୁଣୈଃ ସହ।**
**ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ।। ୨୩ ।।**

**ଅନ୍ୱୟ—** **ଏବମ୍** = ଏହିପ୍ରକାରେ; **ପୁରୁଷମ୍** = ପୁରୁଷକୁ; **ଚ** = ଓ; **ଗୁଣୈଃ** = ଗୁଣମାନଙ୍କ; **ସହ** = ସହିତ; **ପ୍ରକୃତିମ୍** = ପ୍ରକୃତିକୁ; **ଯଃ** = ଯେଉଁ ମନୁଷ୍ୟ; **ବେତ୍ତି** = ତତ୍ତ୍ୱତଃ ଜାଣେ; **ସଃ** = ସେ; **ସର୍ବଥା** = ସକଳପ୍ରକାରେ; **ବର୍ତ୍ତମାନଃ, ଅପି** = କର୍ତ୍ତବ୍ୟକର୍ମ କରୁଥିଲେ ବି; **ଭୂୟଃ** = ପୁନର୍ବାର; **ନ, ଅଭିଜାୟତେ** = ଜାତ ହୁଏ ନାହିଁ ଅର୍ଥାତ୍ ପୁନର୍ଜନ୍ମ ପ୍ରାପ୍ତ ହୁଏ ନାହିଁ।

**ଏପରିଭାବରେ ଯେଉଁ ମନୁଷ୍ୟ ପୁରୁଷକୁ (ସ୍ୱ-ସ୍ୱରୂପକୁ) ଓ ଗୁଣମାନଙ୍କ ସହିତ ପ୍ରକୃତିକୁ ତତ୍ତ୍ୱତଃ ଜାଣନ୍ତି, ସେ ସକଳପ୍ରକାରେ କର୍ତ୍ତବ୍ୟ କର୍ମ କରୁଥିଲେ ବି ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ।। ୨୩ ।।**

**ପ୍ରଶ୍ନ –** 'ପୂର୍ବୋକ୍ତପ୍ରକାରେ ପୁରୁଷକୁ ଓ ଗୁଣମାନଙ୍କ ସହିତ ପ୍ରକୃତିକୁ ତତ୍ତ୍ୱତଃ ଜାଣିବା' କହିଲେ କ'ଣ ବୁଝାଏ ?

**ଉତ୍ତର –** ଏହି ଅଧ୍ୟାୟରେ ପୁରୁଷର ସ୍ୱରୂପ ଓ ପ୍ରଭାବ ଯେପରି ବର୍ଣ୍ଣନା କରାଯାଇଛି, ତାହାକୁ ଭଲରୂପେ ସେପରି ବୁଝିନେବା ଅର୍ଥାତ୍ ଯେତେ ବି ପୃଥକ୍‌ପୃଥକ୍ କ୍ଷେତ୍ରଜ୍ଞ ପ୍ରତୀତି ହେଉଛି, ସବୁ ସେହି ଏକ ପରବ୍ରହ୍ମ ପରମାତ୍ମାଙ୍କର ଅଭିନ୍ନ ସ୍ୱରୂପ ବୋଲି ବୁଝିଯିବା, ପୁଣି ପ୍ରକୃତିର ସଙ୍ଗହେତୁ ସେମାନଙ୍କ ମଧ୍ୟରେ ଭିନ୍ନତା ଥିବାପରି ପ୍ରତୀତ ହେଉଥିଲେ ବି ବସ୍ତୁତଃ କୌଣସି ଭିନ୍ନତା ନାହିଁ ବୋଲି ବୁଝିଯିବା ଓ ସେହି ପରମାତ୍ମା ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ, ଅବିନାଶୀ ତଥା ସର୍ବଥା ପ୍ରକୃତିରୁ ଅତୀତ ଅଟନ୍ତି ବୋଲି ସଂଶୟାତୀତ ହୋଇ ଯଥାର୍ଥ ବୁଝିଯିବା ଏବଂ ସେହି ସଚ୍ଚିଦାନନ୍ଦଘନଙ୍କ ଠାରେ ଏକୀଭାବରେ ନିତ୍ୟସ୍ଥିତ ହୋଇ ରହିଯିବା — ଏହା ହିଁ 'ପୁରୁଷକୁ ତତ୍ତ୍ୱତଃ ଜାଣିବା।' ପ୍ରକୃତିରୁ ହିଁ ତ୍ରିଗୁଣ ଉତ୍ପନ୍ନ ହୁଏ; ଏହି ସକଳ ବିଶ୍ୱ ପ୍ରକୃତିର ହିଁ ପ୍ରସାର ଏବଂ ଏହା ନାଶବାନ୍, ଜଡ଼, କ୍ଷଣଭଙ୍ଗୁର ତଥା ଅନିତ୍ୟ — ଏହି ରହସ୍ୟ ବୁଝିଯିବା ହିଁ 'ଗୁଣମାନଙ୍କ ସହିତ ପ୍ରକୃତିକୁ ତତ୍ତ୍ୱତଃ ଜାଣିବା।'

**ପ୍ରଶ୍ନ – ସର୍ବଥା ବର୍ତ୍ତମାନଃ** ସହିତ **ଅପି** ପଦ ପ୍ରୟୋଗ କରି କେଉଁ ଭାବ ଦର୍ଶାଯାଇଛି ?

**ଉତ୍ତର – ସର୍ବଥା ବର୍ତ୍ତମାନଃ** ସହିତ **ଅପି** ପଦ ପ୍ରୟୋଗ କରି ଦର୍ଶାଯାଇଛି ଯେ, ଯେଉଁ ମନୁଷ୍ୟ ଉପରୋକ୍ତପ୍ରକାରେ ପୁରୁଷକୁ ଓ ଗୁଣମାନଙ୍କ ସହିତ ପ୍ରକୃତିକୁ ଜାଣନ୍ତି, ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର — ଯେକୌଣସି ବର୍ଣ୍ଣର ହୋଇଥିଲେ ମଧ୍ୟ ଏବଂ ବ୍ରହ୍ମଚର୍ଯ୍ୟାଦି ଯେକୌଣସି ଆଶ୍ରମରେ ରହିଥିଲେ ମଧ୍ୟ ତଥା ସେହି ସେହି ବର୍ଣ୍ଣାଶ୍ରମ ନିମନ୍ତେ ଶାସ୍ତ୍ରରେ ବିଧାନ କରାଯାଇଥିବା ସକଳ କର୍ମ ଯଥାଯୋଗ୍ୟ କରୁଥିଲେ ମଧ୍ୟ ବାସ୍ତବରେ କିଛି କରନ୍ତି ନାହିଁ; ତେଣୁ ତାଙ୍କର ପୁନର୍ଜନ୍ମ ହୁଏ ନାହିଁ।

**ପ୍ରଶ୍ନ –** ଏଠାରେ **ସର୍ବଥା ବର୍ତ୍ତମାନଃ** ସହିତ **ଅପି** ପଦ ପ୍ରୟୋଗରୁ ଯଦି ଅର୍ଥ କରାଯାଏ ଯେ, 'ସେ ନିଷିଦ୍ଧ କର୍ମ କରୁଥିଲେ ବି ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ', ତେବେ କ୍ଷତି କ'ଣ ?

**ଉତ୍ତର –** ଆତ୍ମତତ୍ତ୍ୱ ଜାଣିଥିବା ଜ୍ଞାନୀଙ୍କ ଠାରେ କାମକ୍ରୋଧାଦି ଦୋଷ ଆଦୌ ରହୁ ନ ଥିବାରୁ (୫/୨୬) ତାଙ୍କ ଦ୍ୱାରା କୌଣସି ନିଷିଦ୍ଧ କର୍ମ ହେବା ସମ୍ଭବ ନୁହେଁ। ତେଣୁ ତାଙ୍କର ଆଚରଣକୁ ସଂସାରରେ ପ୍ରମାଣରୂପେ ଗ୍ରହଣ କରାଯାଏ (୩/୨୧)। ଅତଏବ ଏଠାରେ **ସର୍ବଥା ବର୍ତ୍ତମାନଃ** ସହିତ **ଅପି** ପଦର ପ୍ରୟୋଗକୁ ଏପରି ଅର୍ଥରେ ଗ୍ରହଣ କରିବା ଉଚିତ ହେବ ନାହିଁ; କାରଣ କାମକ୍ରୋଧାଦି ଅବଗୁଣହେତୁ ହିଁ ମନୁଷ୍ୟଠାରେ ପାପପ୍ରବୃତ୍ତି ଜାତ ହୁଏ; ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ତୃତୀୟ ଅଧ୍ୟାୟର ସଇଁତିରିଶ ଶ୍ଳୋକରେ ଭଗବାନ୍ ଏ କଥା ସ୍ପଷ୍ଟଭାବରେ କହିଦେଇଛନ୍ତି।

**ପ୍ରଶ୍ନ –** ପ୍ରକୃତି ଓ ପୁରୁଷର ତତ୍ତ୍ୱକୁ ଏହିପରି ଜାଣିଥିବା ବ୍ୟକ୍ତିଙ୍କର ପୁନର୍ଜନ୍ମ ହୁଏ ନାହିଁ କାହିଁକି ?

**ଉତ୍ତର –** ପ୍ରକୃତି ଓ ପୁରୁଷର ତତ୍ତ୍ୱକୁ ଜାଣିଦେବା କ୍ଷଣି ହିଁ ପ୍ରକୃତିସହିତ ପୁରୁଷର ସମ୍ବନ୍ଧ ତୁଟିଯାଏ; କାରଣ ପ୍ରକୃତି ଓ ପୁରୁଷର ସଂଯୋଗ ସ୍ୱପ୍ନପରି ଅବାସ୍ତବ, ତଥା କେବଳ ଅଜ୍ଞାନଜନିତ ବୋଲି ଧରାଯାଇଛି। ଯେପର୍ଯ୍ୟନ୍ତ ପ୍ରକୃତି ଓ ପୁରୁଷ ବିଷୟରେ ପୂର୍ଣ୍ଣ ଜ୍ଞାନ ନ ଥାଏ, ସେପର୍ଯ୍ୟନ୍ତ ପ୍ରକୃତି ତଥା ତାହାର ଗୁଣମାନଙ୍କ ସହିତ ପୁରୁଷର ସମ୍ବନ୍ଧ ରହିଥାଏ ଏବଂ ସେପର୍ଯ୍ୟନ୍ତ ସେ ନାନାଯୋନିରେ ବାରମ୍ବାର ଜନ୍ମ ନେଉଥାଏ (୧୩/୨୧)। ଅତଏବ ଏହି ତତ୍ତ୍ୱ ଜାଣିଯିବା ପରେ ଆଉ ପୁନର୍ଜନ୍ମ ହୁଏ ନାହିଁ।

*__ସମ୍ବନ୍ଧ –__ ଗୁଣମାନଙ୍କ ସହିତ ପ୍ରକୃତି ଓ ପୁରୁଷର ଜ୍ଞାନର ମହତ୍ତ୍ୱ ଶୁଣି, ଏହି ଜ୍ଞାନ କିପରି ଲାଭ ହୁଏ ବୋଲି ଜାଣିବାକୁ ଇଚ୍ଛା ହୋଇପାରେ। ତେଣୁ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭିନ୍ନ ଭିନ୍ନ ଅଧିକାରୀଙ୍କ ନିମନ୍ତେ ତତ୍ତ୍ୱଜ୍ଞାନଲାଭର ଭିନ୍ନ ଭିନ୍ନ ସାଧନା ପ୍ରତିପାଦନ କରୁଛନ୍ତି–*

**ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା ।**
**ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ।। ୨୪ ।।**

**ଅନ୍ୱୟ –** **ଆତ୍ମାନମ୍** = ସେହି ପରମପୁରୁଷ ପରମାତ୍ମାଙ୍କୁ; **କେଚିତ୍** = କେତେକ ମନୁଷ୍ୟ; **ଆତ୍ମନା** = ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିବଳରେ; **ଧ୍ୟାନେନ** = ଧ୍ୟାନଦ୍ୱାରା; **ଆତ୍ମନି** = ହୃଦୟରେ; **ପଶ୍ୟନ୍ତି** = ଦର୍ଶନ କରନ୍ତି; **ଅନ୍ୟେ** = (ତଥା) ଅନ୍ୟ (କେତେକ); **ସାଂଖ୍ୟେନ, ଯୋଗେନ** = ଜ୍ଞାନଯୋଗଦ୍ୱାରା (ସାଂଖ୍ୟଯୋଗଦ୍ୱାରା); **ଚ** = ଏବଂ; **ଅପରେ** = ଆହୁରି (କେତେକ); **କର୍ମଯୋଗେନ** = କର୍ମଯୋଗଦ୍ୱାରା; **ପଶ୍ୟନ୍ତି** = ଦର୍ଶନ କରନ୍ତି।

**କେତେକ ମନୁଷ୍ୟ ସେହି ପରମପୁରୁଷ ପରମାତ୍ମାଙ୍କୁ ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିବଳରେ ଧ୍ୟାନଦ୍ୱାରା ହୃଦୟରେ ଦର୍ଶନ କରନ୍ତି; ଅନ୍ୟ କେତେକ ଜ୍ଞାନଯୋଗ (ସାଂଖ୍ୟଯୋଗ)ଦ୍ୱାରା ଓ ଆହୁରି କେତେକ କର୍ମଯୋଗଦ୍ୱାରା ତାଙ୍କୁ ଦର୍ଶନ କରନ୍ତି ଅର୍ଥାତ୍ ପ୍ରାପ୍ତ ହୁଅନ୍ତି॥ ୨୪ ॥**

**ପ୍ରଶ୍ନ –** ଏଠାରେ **ଧ୍ୟାନ** ଶବ୍ଦ କାହାର ବାଚକ? ଏବଂ ତାହାଦ୍ୱାରା ଆତ୍ମାରେ ଆତ୍ମାକୁ ଆତ୍ମାମାଧ୍ୟମରେ ଦେଖିବା କଣ?

**ଉତ୍ତର –** ଷଷ୍ଠ ଅଧ୍ୟାୟର ଏଗାର, ବାର ଓ ତେର ଶ୍ଳୋକରେ ବୁଝାଇଦିଆଯାଇଥିବା ବିଧି ଅନୁସାରେ ଶୁଦ୍ଧ ଓ ଏକାନ୍ତ ସ୍ଥାନରେ ଉପଯୁକ୍ତ ଆସନରେ ନିଶ୍ଚଳଭାବରେ ବସି, ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କ ଠାରୁ ହଟାଇ ଆଣି, ମନକୁ ବଶ କରି ତଥା ଏକ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ ସବୁ ଭୁଲିଯାଇ ନିରନ୍ତର ପରମାତ୍ମାଙ୍କୁ ଚିନ୍ତନ କରିବାର ନାମ **ଧ୍ୟାନ**। ଏପରି ଧ୍ୟାନ କରିଚାଲିଲେ ବୁଦ୍ଧି ଶୁଦ୍ଧ ହୋଇଯାଏ ଏବଂ ସେହି ବିଶୁଦ୍ଧ ସୂକ୍ଷ୍ମବୁଦ୍ଧିଦ୍ୱାରା ହୃଦୟରେ ଯେଉଁ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍କାର କରାଯାଏ, ତାହାକୁ ହିଁ ଧ୍ୟାନଦ୍ୱାରା ଆତ୍ମାରେ ଆତ୍ମାକୁ ଆତ୍ମାମାଧ୍ୟମରେ ଦେଖିବା।

**ପ୍ରଶ୍ନ –** ଏଠାରେ ଯେଉଁ ଧ୍ୟାନଦ୍ୱାରା ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ପ୍ରାପ୍ତି ହୁଏ ବୋଲି କୁହାଯାଇଛି, ତାହା ସଗୁଣ ପରମେଶ୍ୱରଙ୍କ ଧ୍ୟାନ, ନା ନିର୍ଗୁଣ ବ୍ରହ୍ମଙ୍କ ଧ୍ୟାନ? ସାକାରଙ୍କ ଧ୍ୟାନ, ନା ନିରାକାରଙ୍କ ଧ୍ୟାନ? ଏହା ଭେଦଭାବରେ କରାଯାଏ, ନା ଅଭେଦଭାବରେ? ଏବଂ ଏହାର ଫଳସ୍ୱରୂପ ସଚ୍ଚିଦାନନ୍ଦଘନବ୍ରହ୍ମଙ୍କ ପ୍ରାପ୍ତି ଭେଦଭାବରେ ହୁଏ, ନା ଅଭେଦଭାବରେ?

**ଉତ୍ତର –** ଏହି ଅଧ୍ୟାୟର ବାଇଶ ଶ୍ଳୋକରେ ପରମାତ୍ମା ଓ ଆତ୍ମାର ଅଭେଦ ପ୍ରତିପାଦନ କରାଯାଇଛି ଏବଂ ତଦନୁଯାୟୀ ପୁରୁଷର ସ୍ୱରୂପଜ୍ଞାନରୂପକ ଫଳପ୍ରାପ୍ତିର ବିଭିନ୍ନ ସାଧନା ବର୍ଣ୍ଣନା କରାଯାଇଛି। ତେଣୁ ଏଠାରେ ପ୍ରସଙ୍ଗ ଅନୁସାରେ ନିର୍ଗୁଣ-ନିରାକାର ବ୍ରହ୍ମଙ୍କର ଅଭେଦଧ୍ୟାନ ହିଁ ବର୍ଣ୍ଣିତ ହୋଇଛି ଏବଂ ଉକ୍ତ ଧ୍ୟାନର ଫଳ 'ଅଭିନ୍ନଭାବରେ ପରମାତ୍ମପ୍ରାପ୍ତି' ବୋଲି ହିଁ କୁହାଯାଇଛି। ତଥାପି ଯଦି ଭେଦଭାବରେ ସଗୁଣ-ନିରାକାର ଓ ସଗୁଣ-ସାକାରଙ୍କୁ ଧ୍ୟାନ କରୁଥିବା ସାଧକ ବି ସେପରି ଫଳ ଚାହାନ୍ତି, ତେବେ ତାଙ୍କୁ ବି ଅଭେଦଭାବରେ ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମ ପ୍ରାପ୍ତ ହୋଇପାରନ୍ତି।

**ପ୍ରଶ୍ନ – ସାଂଖ୍ୟେନ** ଓ **ଯୋଗେନ** ପଦଦୁଇଟି ଦୁଇଟି ଭିନ୍ନ ଭିନ୍ନ ସାଧନାର ବାଚକ, ନା ଗୋଟିଏ ହିଁ ସାଧନାର ବିଶେଷ୍ୟ-ବିଶେଷଣ? ଯଦି ଗୋଟିଏ ହିଁ ସାଧନାର ବାଚକ ହୋଇଥାଏ, ତେବେ ତାହା କେଉଁ ସାଧନା ଓ ତା'ଦ୍ୱାରା ଆତ୍ମାକୁ ଦର୍ଶନ କରିବା କ'ଣ?

**ଉତ୍ତର –** ଏଠାରେ **ସାଂଖ୍ୟେନ** ଓ **ଯୋଗେନ** ପଦଦୁଇଟି ହେଉଛି ସାଂଖ୍ୟଯୋଗର ବାଚକ। ଦ୍ୱିତୀୟ ଅଧ୍ୟାୟର ଏଗାରଠାରୁ ତିରିଶ ଶ୍ଳୋକପର୍ଯ୍ୟନ୍ତ ଏହାର ବିସ୍ତୃତ ବର୍ଣ୍ଣନା କରାଯାଇଛି। ତା'ଛଡ଼ା ପଞ୍ଚମ ଅଧ୍ୟାୟର ଅଷ୍ଟମ, ନବମ ଓ ତ୍ରୟୋଦଶ ଶ୍ଳୋକରେ ତଥା ଚତୁର୍ଦ୍ଦଶ ଅଧ୍ୟାୟର ଉଣେଇଶ ଶ୍ଳୋକରେ ଏବଂ ଯେଉଁ ଯେଉଁ ସ୍ଥାନରେ ଏହାର ପ୍ରକରଣ ଆସିଛି, ସେହି ସେହି ସ୍ଥାନରେ ମଧ୍ୟ ଏହାର ବର୍ଣ୍ଣନା ଦିଆଯାଇଛି। କହିବାର ଅଭିପ୍ରାୟ ଏହି ଯେ, ସମସ୍ତ ପଦାର୍ଥ ମୃଗତୃଷ୍ଣାର ଜଳପରି ବା ସ୍ୱପ୍ନର ସୃଷ୍ଟିପରି ମାୟାମାତ୍ର ଅଟେ। ତେଣୁ ପ୍ରକୃତିରୁ ଜାତ ଗୁଣଗୁଡ଼ିକ ଗୁଣମାନଙ୍କରେ ହିଁ ପ୍ରବୃତ୍ତ ହୁଅନ୍ତି ବୋଲି ଜାଣି ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣର ଅଭିମାନ ତ୍ୟାଗ କରିଦେଇ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକୀଭାବରେ ନିତ୍ୟସ୍ଥିତ ହୋଇ ରହିବା ସଙ୍ଗେ ସଙ୍ଗେ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଛଡ଼ା ଅନ୍ୟ କୌଣସି ବି ଭିନ୍ନ ସତ୍ତାକୁ ସ୍ୱୀକାର ନ କରିବାକୁ **ସାଂଖ୍ୟଯୋଗ** ସାଧନା କୁହାଯାଏ ଏବଂ ଏହାଦ୍ୱାରା ଆତ୍ମା ଓ ପରମାତ୍ମାଙ୍କ

ଅଭେଦ ଦର୍ଶନ କରି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ଅଭିନ୍ନଭାବରେ ପ୍ରାପ୍ତ ହେବାକୁ 'ସାଂଖ୍ୟଯୋଗଦ୍ୱାରା ଆତ୍ମାକୁ ଆତ୍ମାରେ ଦର୍ଶନ କରିବା' ବୋଲି କୁହାଯାଏ।

ସାଂଖ୍ୟଯୋଗର ଏହି ସାଧନା ସାଧନଚତୁଷ୍ଟୟସମ୍ପନ୍ନ ଅଧିକାରୀଙ୍କ ଦ୍ୱାରା ହିଁ ସହଜରେ କରାଯାଇପାରେ।

**ପ୍ରଶ୍ନ –** ସାଧନଚତୁଷ୍ଟୟ କ'ଣ ?

**ଉତ୍ତର –** ବିବେକ, ବୈରାଗ୍ୟ, ଷଟ୍‌ସମ୍ପତ୍ତି ଓ ମୁମୁକ୍ଷୁତ୍ୱ — ଏହି ଚାରୋଟି ସାଧନ ସାଧନଚତୁଷ୍ଟୟର ଅନ୍ତର୍ଗତ। ଏହା ଭିତରୁ ପ୍ରଥମ ସାଧନଟି ହେଉଛି —

### ୧. ବିବେକ

ସତ୍ କ'ଣ, ଅସତ୍ କ'ଣ; ନିତ୍ୟବସ୍ତୁ କ'ଣ, ଅନିତ୍ୟ ବସ୍ତୁ କ'ଣ — ଏହି ବିବେଚନର ନାମ ବିବେକ। ଦୁଇ ବସ୍ତୁକୁ ବିବେଚନ କରି ବିବେକ ସେଦୁହିଁଙ୍କର ପୃଥକ୍‌କରଣ କରିଦିଏ। ତତ୍ତ୍ୱକୁ ଯଥାର୍ଥ ଅନୁଭବ କରିବାର ନାମ ବିବେକ। ସକଳ ଅବସ୍ଥାରେ ଓ ପ୍ରତ୍ୟେକ ବସ୍ତୁରେ ପ୍ରତିକ୍ଷଣ ଆତ୍ମା ଓ ଅନାତ୍ମାକୁ ବିଶ୍ଳେଷଣ କରିଚାଲିଲେ ବିବେକସିଦ୍ଧି ପ୍ରାପ୍ତ ହୋଇଯାଏ। ଏପରିଭାବରେ ବିବେକ ଯଥାର୍ଥ ଉଦୟ ହୋଇଗଲେ, ସତ୍ ଓ ଅସତ୍‌ର ପ୍ରଭେଦ, ନିତ୍ୟବସ୍ତୁ ଓ ଅନିତ୍ୟ ବସ୍ତୁର ପ୍ରଭେଦ କ୍ଷୀର ଓ ନୀରର ପ୍ରଭେଦପରି ପ୍ରତ୍ୟକ୍ଷ ଅନୁଭବ ହୋଇଯାଏ। ଦ୍ୱିତୀୟ ସାଧନଟି ହେଉଛି –

### ୨. ବୈରାଗ୍ୟ

ବିବେକଦ୍ୱାରା ସତ୍ ଓ ଅସତ୍‌ର ଏବଂ ନିତ୍ୟ ଓ ଅନିତ୍ୟର ପୃଥକ୍‌କରଣ ହୋଇଯିବା ପରେ ଅସତ୍ ତଥା ଅନିତ୍ୟ ପ୍ରତି ରହିଥିବା ରାଗ ସ୍ୱତଃ ହଟିଯାଏ; ଏହାରି ନାମ ହିଁ ବୈରାଗ୍ୟ। ଯଦି ମନରେ ଭୋଗପାଇଁ ଅଭିଳାଷ ରହିଯାଏ, ଯଦି ସଂସାର ପ୍ରତି କେବଳ ଉପରେ ଉପରେ ଦ୍ୱେଷ ଓ ଘୃଣା ରହିଥାଏ, ତେବେ ତାହା ବୈରାଗ୍ୟ ନୁହେଁ। ବୈରାଗ୍ୟରେ ସର୍ବଥା ଆସକ୍ତିର ଅଭାବ ରହିଥାଏ। ଯଥାର୍ଥରେ ଆନ୍ତରିକ ଅନାସକ୍ତିର ନାମ ହିଁ ବୈରାଗ୍ୟ। ଯାହାଙ୍କ ଠାରେ ପ୍ରକୃତ ବୈରାଗ୍ୟ ଜାତ ହୋଇଥାଏ, ତାଙ୍କ ଚିତ୍ତରେ ବ୍ରହ୍ମଲୋକପର୍ଯ୍ୟନ୍ତ ରହିଥିବା ସକଳ ଭୋଗରେ ଲେଶମାତ୍ର ତୃଷ୍ଣା ଓ ଆସକ୍ତି ନ ଥାଏ। ସେ ଅସତ୍ ଓ ଅନିତ୍ୟ ପ୍ରତି ବିମୁଖ ହୋଇ ଅଖଣ୍ଡରୂପରେ, ସମ୍ପୂର୍ଣ୍ଣରୂପେ ସତ୍ ଓ ନିତ୍ୟରେ ଲାଗିରହନ୍ତି। ଏହା ହିଁ ବୈରାଗ୍ୟ। ଯେପର୍ଯ୍ୟନ୍ତ ଏପରି ବୈରାଗ୍ୟ ନ ଆସିଛି, ଜାଣିବା ଉଚିତ ଯେ, ସେପର୍ଯ୍ୟନ୍ତ ବିବେକରେ ତ୍ରୁଟି ରହିଯାଇଛି। ବିବେକର ପୂର୍ଣ୍ଣତା ଆସିଗଲେ, ବୈରାଗ୍ୟ ଅବଶ୍ୟମ୍ଭାବୀ।

### ୩. ଷଟ୍‌ସମ୍ପତ୍ତି

ଏହି ବିବେକ ଓ ବୈରାଗ୍ୟର ଫଳସ୍ୱରୂପ ସାଧକକୁ ଛଅ–ବିଭାଗବିଶିଷ୍ଟ ଏକ ପରମ ସମ୍ପତ୍ତି ମିଳିଯାଏ। ତାହା ସମ୍ପୂର୍ଣ୍ଣରୂପେ ନ ମିଳିବାପର୍ଯ୍ୟନ୍ତ ଜାଣିବାକୁ ହେବ ଯେ, ବିବେକ ଓ ବୈରାଗ୍ୟରେ କିଛି ତ୍ରୁଟି ରହିଯାଇଛି; କାରଣ ବିବେକ ଓ ବୈରାଗ୍ୟରେ ଭଲଭାବେ ସମ୍ପନ୍ନ ହୋଇଗଲେ ସାଧକକୁ ଏହି ସମ୍ପତ୍ତି ସହଜରେ ମିଳିଯାଇଥାଏ। ଏହି ସମ୍ପତ୍ତିର ନାମ ଷଟ୍‌ସମ୍ପତ୍ତି ଏବଂ ଏହାର ଛଅଗୋଟି ଅଙ୍ଗ ହେଉଛି, —

**(୧) ଶମ**

ମନ ସମ୍ପୂର୍ଣ୍ଣରୂପେ ନିଗୃହୀତ, ନିଶ୍ଚଳ ଓ ଶାନ୍ତ ହୋଇଯିବା ହିଁ 'ଶମ'। ବିବେକ ଓ ବୈରାଗ୍ୟ ପ୍ରାପ୍ତ ହୋଇଗଲେ, ମନ ସ୍ୱତଃ ନିଶ୍ଚଳ ଓ ଶାନ୍ତ ହୋଇଯାଏ।

**(୨) ଦମ**

ଇନ୍ଦ୍ରିୟମାନେ ସମ୍ପୂର୍ଣ୍ଣରୂପେ ନିଗୃହୀତ ଓ ବିଷୟ-ରସାସ୍ୱାଦନରୁ ରହିତ ହୋଇଯିବାର ନାମ ଦମ।

**(୩) ଉପରତି**

ବିଷୟମାନଙ୍କରୁ ଚିତ୍ତ ଉପରତ ହେବାର ନାମ ଉପରତି। ଯେତେବେଳେ ମନ ଓ ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କରେ ରସାନୁଭୂତି ହେବ ନାହିଁ, ସେତେବେଳେ ସ୍ୱାଭାବତଃ ସେସବୁଥିରୁ ସାଧକର ଉପରତି ହୋଇଯିବ। କେବଳ ତାହାରୁ ନୁହେଁ, ଭିତରୁ ମଧ୍ୟ ଭୋଗମାତ୍ରରେ ଉପରତି ହେବା ଆବଶ୍ୟକ। ଭୋଗସଂକଳ୍ପର ପ୍ରେରଣାରେ ବ୍ରହ୍ମଲୋକପର୍ଯ୍ୟନ୍ତ ରହିଥିବା ଦୁର୍ଲଭ ଭୋଗମାନଙ୍କ ପ୍ରତି ମଧ୍ୟ କେବେ ବି ବୃତ୍ତି ଜାଗ୍ରତ ନ ହେବାର ନାମ ହିଁ ଉପରତି।

**(୪) ତିତିକ୍ଷା**

ଦ୍ୱନ୍ଦ୍ୱମାନଙ୍କୁ ସହିଯିବାର ନାମ ତିତିକ୍ଷା। ଯଦ୍ୟପି ଶୀତ-ଉଷ୍ଣ, ସୁଖ-ଦୁଃଖ, ମାନ-ଅପମାନ ଆଦିକୁ ସହିଯିବାର ନାମ ତିତିକ୍ଷା; ତଥାପି ବିବେକ, ବୈରାଗ୍ୟ, ଶମ, ଦମ ତଥା ଉପରତି ପରେ ପ୍ରାପ୍ତ ହେଉଥିବା ତିତିକ୍ଷା ତାଠାରୁ ଉତ୍କୃଷ୍ଟତର ହେବା ଉଚିତ। ସଂସାରରେ ଦ୍ୱନ୍ଦ୍ୱମାନଙ୍କର କଦାପି ନାଶ ହେବ ନାହିଁ,

କି କେହି ଏସବୁ ଦ୍ୱନ୍ଦ୍ୱରୁ ସର୍ବଦା ରକ୍ଷା ପାଇପାରିବ ନାହିଁ। କୌଣସିପ୍ରକାରେ ଏମାନଙ୍କୁ ସହିଯିବା ହିଁ ଉତ୍ତମ। କିନ୍ତୁ ସର୍ବୋତ୍ତମ ପନ୍ଥା ହେଉଛି, ଦ୍ୱନ୍ଦ୍ୱଜଗତର ଊର୍ଦ୍ଧ୍ୱକୁ ଉଠିଯାଇ କେବଳ ସାକ୍ଷୀରୂପରେ ଦ୍ୱନ୍ଦ୍ୱକୁ ଦେଖିବା। ଏହା ହିଁ ବାସ୍ତବିକ ତିତିକ୍ଷା। ଏତକ ହୋଇଗଲେ ଶୀତ-ଉଷ୍ଣ ତଥା ମାନାପମାନ ସାଧକଙ୍କୁ ବିଚଳିତ କରିପାରିବ ନାହିଁ।

(୫) ଶ୍ରଦ୍ଧା

ଆତ୍ମସତ୍ତାରେ ପ୍ରତ୍ୟକ୍ଷଦର୍ଶନପରି ଅଖଣ୍ଡ ବିଶ୍ୱାସର ନାମ ଶ୍ରଦ୍ଧା। ପ୍ରଥମେ ଶାସ୍ତ୍ର, ଗୁରୁ ଓ ସାଧନା ଆଦିରେ ଶ୍ରଦ୍ଧା ଜାଗ୍ରତ ହୁଏ; ତଦ୍ୱାରା ଆତ୍ମଶ୍ରଦ୍ଧା ବଢ଼େ। କିନ୍ତୁ ଯେପର୍ଯ୍ୟନ୍ତ ଆତ୍ମସ୍ୱରୂପରେ ପୂର୍ଣ୍ଣଶ୍ରଦ୍ଧା ହୋଇ ନାହିଁ, ସେପର୍ଯ୍ୟନ୍ତ ଏକମାତ୍ର ନିଷ୍କଳ, ନିରଞ୍ଜନ, ନିରାକାର, ନିର୍ଗୁଣ ବ୍ରହ୍ମକୁ ଲକ୍ଷ୍ୟ କରି ସେଥିରେ ବୁଦ୍ଧିକୁ ଲଗାଯାଇପାରିବ ନାହିଁ।

(୬) ସମାଧାନ

ମନ ଓ ବୁଦ୍ଧି ପରମାତ୍ମାଙ୍କ ଠାରେ ସମ୍ପୂର୍ଣ୍ଣରୂପେ ସମାହିତ ହୋଇଯିବାର ଅର୍ଥାତ୍, ଗୁରୁ ଦ୍ରୋଣଙ୍କ ସମ୍ମୁଖରେ ପରୀକ୍ଷା ଦେବା ସମୟରେ ଅର୍ଜୁନଙ୍କୁ ଯେପରି ବୃକ୍ଷସ୍ଥ କୃତ୍ରିମ ପକ୍ଷୀଟିର କେବଳ ବେକଟି ହିଁ ଦେଖାଯାଉଥିଲା, ମନ ଓ ବୁଦ୍ଧିକୁ ସେହିପରି ନିରନ୍ତର ଏକମାତ୍ର ଲକ୍ଷ୍ୟବସ୍ତୁ ବ୍ରହ୍ମ ହିଁ ଦେଖାଯାଉଥିବାର ନାମ ସମାଧାନ।

୪. ମୁମୁକ୍ଷୁତ୍ୱ

ଏପରିଭାବରେ ଯେତେବେଳେ ବିବେକ, ବୈରାଗ୍ୟ ଓ ଷଟ୍‌ସମ୍ପତ୍ତି ପ୍ରାପ୍ତ ହୋଇଯାଏ, ସେତେବେଳେ ସାଧକ ସ୍ୱଭାବତଃ ଅବିଦ୍ୟାର ବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବାକୁ ଚାହେଁ। ଫଳରେ ସେ ତା'ର ଚିତ୍ତକୁ ସକଳ ଦିଗରୁ ଅପସାରଣ କରି ଆଣି, ଅନ୍ୟ କୌଣସି ଆଡ଼କୁ ଚିନ ଚାହିଁ ଏକମାତ୍ର ପରମାତ୍ମାଙ୍କ ଆଡ଼କୁ ଧାଏଁ। ତା'ର ସେହି ଅତ୍ୟନ୍ତ ବେଗରେ ଧାଇଁବା ଅର୍ଥାତ୍ ତା'ର ତୀବ୍ର ସାଧନା ହିଁ ତା'ର ପରମାତ୍ମପ୍ରାପ୍ତିନିମନ୍ତେ ତୀବ୍ରତମ ଲାଳସାର ପରିଚୟ ଦିଏ। ତାହା ହିଁ ମୁମୁକ୍ଷୁତ୍ୱ।

**ପ୍ରଶ୍ନ –** ଏଠାରେ 'କର୍ମଯୋଗ' ପଦଟି କେଉଁ ସାଧନାର ବାଚକ ଏବଂ 'ତଦ୍ୱାରା ଆତ୍ମାରେ ଆତ୍ମାକୁ ଦର୍ଶନ କରିବା' ଅର୍ଥ କ'ଣ ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟର ଚାଳିଶ ଶ୍ଳୋକଠାରୁ ଅଧ୍ୟାୟର ଶେଷପର୍ଯ୍ୟନ୍ତ ଫଳସହିତ ଯେଉଁ ସାଧନାର ବର୍ଣ୍ଣନା କରାଯାଇଛି, ଏଠାରେ 'କର୍ମଯୋଗ' ହେଉଛି ତାହାର ବାଚକ। ଅର୍ଥାତ୍ ଆସକ୍ତି ଓ କର୍ମଫଳକୁ ସର୍ବଥା ତ୍ୟାଗ କରି, ସିଦ୍ଧି ଓ ଅସିଦ୍ଧିରେ ସମତ୍ୱ ଦର୍ଶନ କରି ଶାସ୍ତ୍ରାନୁସାରେ ନିଷ୍କାମଭାବରେ ନିଜ ନିଜର ବର୍ଣ୍ଣ ଓ ଆଶ୍ରମ ଅନୁଯାୟୀ ସକଳପ୍ରକାର ବିହିତ କର୍ମ ଅନୁଷ୍ଠାନ କରିବା ହିଁ କର୍ମଯୋଗ, ଏବଂ ତଦ୍ୱାରା ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କୁ ଅଭିନ୍ନଭାବରେ ପାଇବା ହିଁ 'କର୍ମଯୋଗଦ୍ୱାରା ଆତ୍ମାରେ ଆତ୍ମାକୁ ଦର୍ଶନ କରିବା।'

**ପ୍ରଶ୍ନ –** କର୍ମଯୋଗ ସାଧନାରେ ତ ସାଧକ ନିଜକୁ ପରମାତ୍ମାଙ୍କ ଠାରୁ ଭିନ୍ନ ବୋଲି ଭାବିଥାଏ; ତେଣୁ ତାକୁ ଭେଦଭାବରେ ବ୍ରହ୍ମପ୍ରାପ୍ତି ହେବା କଥା। କିନ୍ତୁ ଏଠାରେ କିପରି ତାକୁ ଅଭେଦଭାବରେ ବ୍ରହ୍ମପ୍ରାପ୍ତି ହୁଏ ବୋଲି କୁହାଯାଇଛି ?

**ଉତ୍ତର –** ସାଧନାକାଳରେ ଭେଦଭାବ ରଖିଥିଲେ ବି, ଯେଉଁ ସାଧକ ଫଳରେ ଅଭେଦ ଲକ୍ଷ୍ୟ କରିଥାନ୍ତି, ତାଙ୍କୁ ଅଭେଦଭାବରେ ହିଁ ବ୍ରହ୍ମପ୍ରାପ୍ତି ହୋଇଥାଏ। ଏଠାରେ କେଉଁ କେଉଁ ସାଧନାଦ୍ୱାରା ଅଭେଦଭାବରେ ବ୍ରହ୍ମଜ୍ଞାନ ହୋଇପାରେ, ସେହି ପ୍ରସଙ୍ଗ ପଡ଼ିଛି। ତେଣୁ ଏଠାରେ କର୍ମଯୋଗଦ୍ୱାରା ମଧ୍ୟ ଅଭିନ୍ନଭାବରେ ପରବ୍ରହ୍ମ ପରମାତ୍ମାଙ୍କ ପ୍ରାପ୍ତି ହୁଏ ବୋଲି କୁହାଯାଇଛି।

## ଅନ୍ୟେ ତ୍ୱେବମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ।
## ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ।। ୨୫ ।।

**ଅନ୍ୱୟ –** ତୁ = କିନ୍ତୁ; **ଅନ୍ୟେ** = ଏମାନଙ୍କ ଠାରୁ ଭିନ୍ନ ଅନ୍ୟମାନେ ଅର୍ଥାତ୍ ଯେଉଁମାନେ ଅଳ୍ପବୁଦ୍ଧି ମନୁଷ୍ୟ, ସେମାନେ (ସ୍ୱୟଂ); **ଏବମ୍** = ଏହିପରି; **ଅଜାନନ୍ତଃ** = ଜାଣୁ ନ ଥିବାରୁ; **ଅନ୍ୟେଭ୍ୟଃ** = ଅନ୍ୟମାନଙ୍କ ଠାରୁ ଅର୍ଥାତ୍ ତତ୍ତ୍ୱ ଜାଣିଥିବା ପୁରୁଷମାନଙ୍କ ଠାରୁ; **ଶ୍ରୁତ୍ୱା** = ଶୁଣି ହିଁ; **ଉପାସତେ** = ଉପାସନା କରନ୍ତି; **ଚ** = ଓ; **ତେ** = ସେମାନେ; **ଶ୍ରୁତିପରାୟଣାଃ** = ଶ୍ରବଣପରାୟଣ ପୁରୁଷ; **ଅପି** = ବି; **ମୃତ୍ୟୁମ୍** = ମୃତ୍ୟୁରୂପକ ସଂସାରସାଗରକୁ; **ଅତିତରନ୍ତି,** **ଏବ** = ନିଃସନ୍ଦେହରେ ତରିଯାଆନ୍ତି।

**ପରନ୍ତୁ ଅନ୍ୟ ଅଳ୍ପବୁଦ୍ଧି ପୁରୁଷମାନେ ଏପରି ତତ୍ତ୍ୱ ଜାଣୁ ନ ଥିବାରୁ ଅନ୍ୟମାନଙ୍କ ଠାରୁ ଅର୍ଥାତ୍ ତତ୍ତ୍ୱଜ୍ଞ ପୁରୁଷମାନଙ୍କ ଠାରୁ ଶୁଣି ହିଁ ତଦନୁସାରେ ଉପାସନା କରନ୍ତି ଏବଂ ସେହି ଶ୍ରବଣପରାୟଣ ପୁରୁଷମାନେ ବି ମୃତ୍ୟୁରୂପକ ସଂସାରସାଗରକୁ ନିଃସନ୍ଦେହ ତରିଯାଆନ୍ତି॥ ୨୫ ॥**

**ପ୍ରଶ୍ନ –** ଏଠାରେ ତୁ ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ତୁ ପଦଟି ସୂଚାଇଦେଉଛି ଯେ, ଏଠାରେ ପୂର୍ବୋକ୍ତ ସାଧକମାନଙ୍କ ଠାରୁ ଭିନ୍ନ ଅନ୍ୟ ସାଧକମାନଙ୍କର ବର୍ଣ୍ଣନା କରାଯାଉଛି। କହିବାର ଅଭିପ୍ରାୟ ହେଉଛି, ଯେଉଁ ଲୋକମାନେ ପୂର୍ବୋକ୍ତ ସାଧନା ବିଷୟରେ ଭଲରୂପେ ଜାଣନ୍ତି ନାହିଁ, ସେମାନେ କିପରି ଉଦ୍ଧାର ହେବେ, ତାହାର ଉତ୍ତର ଏହି ଶ୍ଳୋକରେ ଦିଆଯାଇଛି।

**ପ୍ରଶ୍ନ – ଏବମ୍ ଅଜାନନ୍ତଃ** ବିଶେଷଣ ସହିତ **ଅନ୍ୟେ** ପଦଟି କେଉଁମାନଙ୍କ ବାଚକ ଓ ସେମାନଙ୍କର 'ଅନ୍ୟମାନଙ୍କ ଠାରୁ ଶୁଣି ଉପାସନା କରିବା' କ'ଣ ?

**ଉତ୍ତର –** ବୁଦ୍ଧିର ମନ୍ଦତାହେତୁ ଯେଉଁ ଲୋକମାନେ ପୂର୍ବୋକ୍ତ ଧ୍ୟାନଯୋଗ, ସାଂଖ୍ୟଯୋଗ ଓ କର୍ମଯୋଗ ଭିତରୁ କୌଣସି ଗୋଟିଏ ସାଧନାକୁ ବି ଭଲରୂପେ ବୁଝି ନ ଥାନ୍ତି, ସେହି ସାଧକମାନଙ୍କର ବାଚକରୂପରେ ଏଠାରେ **ଏବମ୍ ଅଜାନନ୍ତଃ** ବିଶେଷଣ ସହିତ **ଅନ୍ୟେ** ପଦଟି ପ୍ରୟୋଗ କରାଯାଇଛି।

ଜବାଲଙ୍କ ପୁତ୍ର ସତ୍ୟକାମ ବ୍ରହ୍ମଜ୍ଞାନପ୍ରାପ୍ତି ଇଚ୍ଛାରେ ଗୌତମଗୋତ୍ରୀୟ ମହର୍ଷି ହାରିଦ୍ରୁମତ୍‌ଙ୍କ ନିକଟକୁ ଯାଇଥିଲେ। ସେଠାରେ କଥାଭାଷା ହେବା ପରେ ଗୁରୁ ଚାରିଶହ ଅତ୍ୟନ୍ତ ଦୁର୍ବଳ ଓ କୃଶ ଗାଈଙ୍କୁ ନେଇ, ଅଲଗା ଗୋଠଟିଏ କରି ତାଙ୍କୁ କହିଲେ, "ହେ ସୌମ୍ୟ, ତୁମେ ଏହି ଗାଈଙ୍କୁ ଚରାଅ।" ଗୁରୁଙ୍କ ଆଜ୍ଞାନୁସାରେ ଅତ୍ୟନ୍ତ ଶ୍ରଦ୍ଧା, ଉତ୍ସାହ ଓ ଆନନ୍ଦ ସହକାରେ ସେହି ଗାଈମାନଙ୍କୁ ବଣକୁ ନେଇଗଲାବେଳେ ସତ୍ୟକାମ କହିଥିଲେ, "ଏମାନଙ୍କର ସଂଖ୍ୟା ହଜାରେ ହେବା ପରେ ମୁଁ ଏଠାକୁ ଫେରିବି।" ସେ ସେମାନଙ୍କୁ ଭଲ ଘାସ ଓ ଜଳ ଥିବା ନିରାପଦ ବନଭୂମିକୁ ନେଇ ଚରାଇଲେ ଏବଂ ସେମାନଙ୍କର ସଂଖ୍ୟା ହଜାରେ ହୋଇଯିବା ପରେ ଗୁରୁଗୃହକୁ ଫେରିଲେ। ଏହାର ଫଳସ୍ୱରୂପ, ସେ ଫେରିବା ସମୟରେ ପଥମଧ୍ୟରେ ହିଁ ତାଙ୍କୁ ବ୍ରହ୍ମଜ୍ଞାନ ପ୍ରାପ୍ତ ହୋଇଗଲା (ଛାନ୍ଦୋଗ୍ୟ ଉ.୪/୪-୯)। ଏପରିଭାବରେ ତତ୍ତ୍ୱଜ୍ଞ ଜ୍ଞାନୀ ପୁରୁଷମାନଙ୍କର ଆଦେଶ ଗ୍ରହଣ କରି ଅତ୍ୟନ୍ତ ଶ୍ରଦ୍ଧା ଓ ପ୍ରେମର ସହିତ ତଦନୁଯାୟୀ ଆଚରଣ କରିବା ହିଁ 'ଅନ୍ୟମାନଙ୍କ ଠାରୁ ଶୁଣି ଉପାସନା କରିବା'।

**ପ୍ରଶ୍ନ – ଶ୍ରୁତିପରାୟଣାଃ** ବିଶେଷଣର ତାତ୍ପର୍ଯ୍ୟ କ'ଣ ଏବଂ ଏଠାରେ **ଅପି** ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଯେଉଁମାନେ ଶୁଣିବାରେ ପରାୟଣ ହୁଅନ୍ତି ଅର୍ଥାତ୍ ଯାହା ଶୁଣନ୍ତି, ତଦନୁଯାୟୀ ଶ୍ରଦ୍ଧା, ପ୍ରେମ ଓ ତତ୍ପରତାର ସହିତ ସାଧନାରେ ଲାଗିଯାଆନ୍ତି, ସେମାନଙ୍କୁ **ଶ୍ରୁତିପରାୟଣାଃ** କୁହାଯାଏ। ଏଠାରେ **ଅପି** ପଦ ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ଯଦି ଅଳ୍ପବୁଦ୍ଧି ପୁରୁଷମାନେ ଅନ୍ୟଠାରୁ ଶୁଣି ଉପାସନା କଲେ ମଧ୍ୟ ନିଃସନ୍ଦେହ ମୃତ୍ୟୁରୁ ତରିଯାଆନ୍ତି, ତେବେ ଯେଉଁ ସାଧକମାନେ ପୂର୍ବୋକ୍ତ ତ୍ରିବିଧ ସାଧନାମଧ୍ୟରୁ କୌଣସି ଗୋଟିକୁ ବି ସାଧନା କରୁଛନ୍ତି, ସେମାନେ ଯେ ତରିଯିବେ, ସେଥିରେ କହିବାର କ'ଣ ଅଛି !

**ପ୍ରଶ୍ନ –** ଏଠାରେ **ମୃତ୍ୟୁମ୍** ପଦ କାହାର ବାଚକ ଏବଂ **ଅତି** ଉପସର୍ଗ ସହିତ **ତରନ୍ତି** କ୍ରିୟା ପ୍ରୟୋଗ କରିବାର ଭାବ କ'ଣ ?

**ଉତ୍ତର –** ଏଠାରେ **ମୃତ୍ୟୁମ୍** ପଦଟି ହେଉଛି ବାରମ୍ବାର ଜନ୍ମ-ମୃତ୍ୟୁରୂପକ ସଂସାରର ବାଚକ। **ଅତି** ଉପସର୍ଗ ସହିତ **ତରନ୍ତି** କ୍ରିୟା ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ସାଧନା କରୁଥିବା ପୁରୁଷମାନେ ଜନ୍ମମୃତ୍ୟୁରୂପକ ଦୁଃଖମୟ ସଂସାରସାଗର ପାର ହୋଇ ଚିରକାଳପାଇଁ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କୁ ପାଇଯାଆନ୍ତି; ସେମାନଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ। ଅଭିପ୍ରାୟ ହେଉଛି: **ନ ସ ଭୂୟୋଽଭିଜାୟତେ**ଦ୍ୱାରା ତେଇଶ ଶ୍ଳୋକରେ ଯାହା କୁହାଯାଇଛି ଏବଂ **ଆତ୍ମନି ଆତ୍ମାନଂ ପଶ୍ୟନ୍ତି**ଦ୍ୱାରା ଚବିଶ ଶ୍ଳୋକରେ ଯାହା କୁହାଯାଇଛି, ସେହି କଥା ଏଠାରେ **ମୃତ୍ୟୁମ୍ ଅତିତରନ୍ତି**ଦ୍ୱାରା କହିଦିଆଯାଇଛି।

**ସମ୍ବନ୍ଧ—** ଏପରିଭାବରେ ପରମାତ୍ମସମ୍ବନ୍ଧୀ ତତ୍ତ୍ୱଜ୍ଞାନର ଭିନ୍ନ ଭିନ୍ନ ସାଧନା ପ୍ରତିପାଦନ କରିସାରିବା ପରେ, ତୃତୀୟ ଶ୍ଲୋକରେ 'ଯାଦୃକ୍' ପଦଦ୍ୱାରା କ୍ଷେତ୍ରର ସ୍ୱଭାବ ବିଷୟ ଶୁଣିବାପାଇଁ ଯାହା କହିଥିଲେ, ତଦନୁଯାୟୀ ଭଗବାନ୍ ପରବର୍ତ୍ତୀ ଦୁଇଟି ଶ୍ଲୋକଦ୍ୱାରା କ୍ଷେତ୍ରକୁ ଉତ୍ପତ୍ତି-ବିନାଶଶୀଳ ବୋଲି ବୁଝାଇ ତାହାର ସ୍ୱଭାବ ବର୍ଣ୍ଣନା କରୁଛନ୍ତି ଏବଂ ଆତ୍ମାର ଯଥାର୍ଥ ତତ୍ତ୍ୱ ଜାଣିଥିବା ଲୋକଙ୍କର ପ୍ରଶଂସା କରି କହୁଛନ୍ତି—

**ଯାବତ୍ ସଂଜାୟତେ କିଂଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମମ୍ ।**
**କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ ତଦ୍ୱିଦ୍ଧି ଭରତର୍ଷଭ ।। ୨୬ ।।**

**ଅନ୍ୱୟ—** **ଭରତର୍ଷଭ** = ହେ ଅର୍ଜୁନ; **ଯାବତ୍** = ଯେତେ; **କିଞ୍ଚିତ୍** = କିଛି ବି; **ସ୍ଥାବରଜଙ୍ଗମମ୍** = ସ୍ଥାବର-ଜଙ୍ଗମ; **ସତ୍ତ୍ୱମ୍** = ପ୍ରାଣୀ; **ସଂଜାୟତେ** = ଉତ୍ପନ୍ନ ହୁଅନ୍ତି; **ତତ୍** = ସେହି ସମସ୍ତଙ୍କୁ (ତୁମେ); **କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍** = କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ସଂଯୋଗରୁ ହିଁ (ଉତ୍ପନ୍ନ ହୁଅନ୍ତି ବୋଲି); **ବିଦ୍ଧି** = ଜାଣ ।

**ହେ ଅର୍ଜୁନ! ଯେତେସବୁ ସ୍ଥାବରଜଙ୍ଗମ ପ୍ରାଣୀ ଉତ୍ପନ୍ନ ହେଉଛନ୍ତି, ସେମାନଙ୍କୁ ତୁମେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ସଂଯୋଗରୁ ହିଁ ଉତ୍ପନ୍ନ ହୁଅନ୍ତି ବୋଲି ଜାଣ ।। ୨୬ ।।**

**ପ୍ରଶ୍ନ—** **ଯାବତ୍, କିଞ୍ଚିତ୍** ଓ **ସ୍ଥାବରଜଙ୍ଗମମ୍**— ଏହି ତିନୋଟି ବିଶେଷଣର ଅଭିପ୍ରାୟ କ'ଣ ତଥା ଏହି ତିନୋଟି ବିଶେଷଣଯୁକ୍ତ 'ସତ୍ତ୍ୱମ୍' ପଦ କାହାର ବାଚକ ?

**ଉତ୍ତର—** **ଯାବତ୍** ଏବଂ **କିଞ୍ଚିତ୍**— ଏହି ଦୁଇ ପଦ ଚରାଚର ଜୀବମାନଙ୍କ ସମ୍ପୂର୍ଣ୍ଣତାର ସୂଚକ । ଦେବ, ମନୁଷ୍ୟ, ପଶୁ, ପକ୍ଷୀ ଆଦି ଗତିଶୀଳ ପ୍ରାଣୀମାନଙ୍କୁ **ଜଙ୍ଗମ** କୁହାଯାଏ ଓ ବୃକ୍ଷ, ଲତା, ପର୍ବତ ଆଦି ସ୍ଥିତିଶୀଳ ପ୍ରାଣୀମାନଙ୍କୁ **ସ୍ଥାବର** କୁହାଯାଏ । ଅତଏବ ଏହି ତିନୋଟି ବିଶେଷଣ ସହିତ **ସତ୍ତ୍ୱମ୍** ପଦଟି ହେଉଛି ସମସ୍ତ ଚରାଚର ପ୍ରାଣୀସମୁଦାୟର ବାଚକ ।

**ପ୍ରଶ୍ନ—** ଏଠାରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଶବ୍ଦ କାହାର ବାଚକ ? ଏବଂ ଏହି ଦୁହିଁଙ୍କର ସଂଯୋଗ କ'ଣ, ତଥା ସେଥିରୁ ସମସ୍ତ ପ୍ରାଣୀସମୁଦାୟର ଉତ୍ପନ୍ନ ହେବା କ'ଣ ?

**ଉତ୍ତର—** ଏହି ଅଧ୍ୟାୟର ପଞ୍ଚମ ଶ୍ଲୋକରେ ଯେଉଁ ଚବିଶ ତତ୍ତ୍ୱସମୁଦାୟକୁ କ୍ଷେତ୍ରର ସ୍ୱରୂପ ବୋଲି କୁହାଗଲା, ଏବଂ ସପ୍ତମ ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଲୋକରେ ଯାହାକୁ ଅପରା ପ୍ରକୃତି କୁହାଗଲା, ତାହା ହିଁ କ୍ଷେତ୍ର ଏବଂ ଏହି କ୍ଷେତ୍ରକୁ ଯେ ଜାଣନ୍ତି, ସପ୍ତମ ଅଧ୍ୟାୟର ପଞ୍ଚମ ଶ୍ଲୋକରେ ଯାହାଙ୍କୁ 'ପରାପ୍ରକୃତି' ବୋଲି କୁହାଗଲା, ସେହି ଚେତନତତ୍ତ୍ୱ ହିଁ କ୍ଷେତ୍ରଜ୍ଞ । ପ୍ରକୃତିରୁ ଜାତ ବିଭିନ୍ନ ସୂକ୍ଷ୍ମ ତଥା ସ୍ଥୂଳ ଶରୀର ସହିତ ସେହି କ୍ଷେତ୍ରଜ୍ଞଙ୍କର ଅର୍ଥାତ୍ ପ୍ରକୃତିସ୍ଥ ପୁରୁଷର ଯେଉଁ ସମ୍ବନ୍ଧ ହୁଏ, ତାହାକୁ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ସଂଯୋଗ ବୋଲାଯାଏ ଏବଂ ସେହି ସଂଯୋଗଫଳରେ ଭିନ୍ନ ଭିନ୍ନ ଯୋନିରୁ ଭିନ୍ନ ଭିନ୍ନ ଆକୃତିର ପ୍ରାଣୀମାନଙ୍କ ପ୍ରକଟ ହେବାକୁ ପ୍ରାଣୀମାନଙ୍କର ଉତ୍ପନ୍ନ ହେବା ବୋଲାଯାଏ ।

**ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍ ।**
**ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି ।। ୨୭ ।।**

**ଅନ୍ୱୟ—** **ଯଃ** = ଯେଉଁ ପୁରୁଷ; **ବିନଶ୍ୟତ୍ସୁ** = ବିନଷ୍ଟ ହେଉଥିବା; **ସର୍ବେଷୁ** = ସକଳ; **ଭୂତେଷୁ** = ଚରାଚର ଭୂତଗଣଙ୍କ ଠାରେ; **ପରମେଶ୍ୱରମ୍** = ପରମେଶ୍ୱରଙ୍କୁ; **ଅବିନଶ୍ୟନ୍ତମ୍** = ନାଶରହିତ; **ସମମ୍** = ସମଭାବରେ; **ତିଷ୍ଠନ୍ତମ୍** = ସ୍ଥିତ; **ପଶ୍ୟତି** = ଦେଖେ; **ସଃ** = ସେ ହିଁ; **ପଶ୍ୟତି** = (ଯଥାର୍ଥ) ଦେଖେ ।

**ଯେଉଁ ପୁରୁଷ ବିନଷ୍ଟ ହେଉଥିବା ସକଳ ଚରାଚର ଭୂତମାନଙ୍କ ଠାରେ ପରମେଶ୍ୱରଙ୍କୁ ନାଶରହିତ ଏବଂ ସମଭାବରେ ଅବସ୍ଥିତ ଥିବା ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି ।। ୨୭ ।।**

**ପ୍ରଶ୍ନ—** **ବିନଶ୍ୟତ୍ସୁ** ଏବଂ **ସର୍ବେଷୁ**— ଏହି ଦୁଇ ବିଶେଷଣ ସହିତ **ଭୂତେଷୁ** ପଦଟି କେଉଁମାନଙ୍କ ବାଚକ ଏବଂ ତା'ସହିତ ଏହି ବିଶେଷଣ ଦୁଇଟି ପ୍ରୟୋଗ କରି କେଉଁ ଭାବ ଦର୍ଶାଇଦିଆଯାଇଛି ?

**ଉତ୍ତର—** ବାରମ୍ବାର ଜନ୍ମ ହେଉଥିବା ଓ ମରୁଥିବାର ଯେତେସବୁ ପ୍ରାଣୀ ଅଛନ୍ତି ଏବଂ ଭିନ୍ନ ଭିନ୍ନ ସୂକ୍ଷ୍ମ

ଓ ସ୍ଥୂଳ ଶରୀରମାନଙ୍କର ସଂଯୋଗ-ବିୟୋଗରୁ ଯେଉଁମାନଙ୍କର ଜନ୍ମ ଓ ମୃତ୍ୟୁ ହୁଏ ବୋଲି ଧରାଯାଉଛି, ସେହି ସମସ୍ତଙ୍କର ବାଚକରୂପରେ **ବିନଶ୍ୟତ୍ସୁ** ଓ **ସର୍ବେଷୁ** ଦୁଇ ବିଶେଷଣ ସହିତ **ଭୂତେଷୁ** ପଦଟି ପ୍ରୟୋଗ କରାଯାଇଛି। ସମସ୍ତ ପ୍ରାଣୀଙ୍କୁ ଗ୍ରହଣ କରିବାକୁ **ସର୍ବେଷୁ** ଏବଂ ଶରୀରସମ୍ବନ୍ଧ ଥିବାରୁ ସେମାନଙ୍କୁ ବିନାଶଶୀଳ ବୋଲି କହିବାକୁ **ବିନଶ୍ୟତ୍ସୁ** ବିଶେଷଣ ଦିଆଯାଇଛି।

ଏଠାରେ ସ୍ମରଣ ରଖିବା ଉଚିତ ଯେ, ବିନାଶ ହେବା ହେଉଛି ଶରୀରର ଧର୍ମ; ଆତ୍ମାର ନୁହେଁ। ଆତ୍ମତତ୍ତ୍ୱ ନିତ୍ୟ ଓ ଅବିନାଶୀ ତଥା ଶରୀରଭେଦରେ ଭିନ୍ନ ଭିନ୍ନ ପ୍ରତୀତ ହେଉଥିବା ସମସ୍ତ ପ୍ରାଣୀସମୁଦାୟରେ ସେହି ତତ୍ତ୍ୱ ବସ୍ତୁତଃ ଏକ ହିଁ ଅଟେ। ଏହି ଶ୍ଳୋକରେ ଏହି କଥାଟି ଦେଖାଇଦିଆଯାଇଛି।

**ପ୍ରଶ୍ନ –** ଏଠାରେ **ପରମେଶ୍ୱରମ୍** ପଦଟି କାହାର ବାଚକ ତଥା ସମସ୍ତ ଭୂତଙ୍କ ଠାରେ ତାଙ୍କୁ ନାଶରହିତ ଓ ସମଭାବରେ ଅବସ୍ଥିତ ଥିବା ଦେଖିବାର ଅର୍ଥ କ'ଣ ?

**ଉତ୍ତର –** ଏଠାରେ **ପରମେଶ୍ୱରମ୍** ପଦଟି ହେଉଛି ସର୍ବଦା ପ୍ରକୃତିରୁ ଅତୀତ ହୋଇ ରହିଥିବା ସେହି ନିର୍ବିକାର ଚେତନତତ୍ତ୍ୱର ବାଚକ; କ୍ଷେତ୍ରଜ୍ଞ ସହିତ ପରମେଶ୍ୱରଙ୍କର ଏକତ୍ୱ ପ୍ରତିପାଦନ କରିବାବେଳେ ଏହି ଅଧ୍ୟାୟର ବାଇଶ ଶ୍ଳୋକରେ ତାଙ୍କୁ ଉପଦ୍ରଷ୍ଟା, ଅନୁମନ୍ତା, ଭର୍ତ୍ତା, ଭୋକ୍ତା, ମହେଶ୍ୱର ଏବଂ ପରମାତ୍ମା ନାମରେ ଅଭିହିତ କରି ତାଙ୍କର ବର୍ଣ୍ଣନା କରାଯାଇଛି। ସେହି ପରମପୁରୁଷ ଯଦି ବା ବସ୍ତୁତଃ ଶୁଦ୍ଧ ସଚ୍ଚିଦାନନ୍ଦଘନ ଏବଂ ସର୍ବଥା ପ୍ରକୃତିରୁ ଅତୀତ, ତଥାପି ପ୍ରକୃତି ସହିତ ସଂଯୋଗ ଥିବାରୁ ତାଙ୍କୁ କ୍ଷେତ୍ରଜ୍ଞ ଓ ପ୍ରକୃତିଜନ୍ୟ ଗୁଣମାନଙ୍କର ଭୋକ୍ତା ବୋଲି କୁହାଯାଏ। ତେଣୁ ସମସ୍ତ ପ୍ରାଣୀମାନଙ୍କର ଯେତେ ଶରୀର ରହିଛି, ଯାହାର ସମ୍ବନ୍ଧହେତୁ ପ୍ରାଣୀମାନଙ୍କୁ ବିନାଶଶୀଳ ବୋଲି କୁହାଯାଏ, ସେହି ସମସ୍ତ ଶରୀରରେ ସେମାନଙ୍କର ବାସ୍ତବିକ ସ୍ୱରୂପଭୂତ ଏକ ହିଁ ଅବିନାଶୀ ନିର୍ବିକାର ଚେତନତତ୍ତ୍ୱକୁ, ବିନାଶଶୀଳ ମେଘମାଳାଭିତରେ ଆକାଶପରି ସମଭାବରେ ସ୍ଥିତ ଏବଂ ନିତ୍ୟରୂପେ ଦେଖିବା ଯାହା, 'ପରମେଶ୍ୱରଙ୍କୁ ସମସ୍ତ ଭୂତମାନଙ୍କ ଠାରେ ନାଶରହିତ ଓ ସମଭାବରେ ଅବସ୍ଥିତ ଥିବା ଦେଖିବା' ତାହା।

**ପ୍ରଶ୍ନ –** ଏଠାରେ "ଯେ ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି" ବାକ୍ୟଦ୍ୱାରା କେଉଁ ଭାବ ଦର୍ଶାଯାଇଛି ?

**ଉତ୍ତର –** ଏହି ଶ୍ଳୋକରେ ଆତ୍ମତତ୍ତ୍ୱକୁ ଜନ୍ମ ଓ ମୃତ୍ୟୁ ଆଦି ସକଳ ବିକାରରୁ ଅତୀତ, ନିର୍ବିକାର ଏବଂ ସମ ବୋଲି କୁହାଯାଇଛି। ଅତଏବ ଏହି ବାକ୍ୟରେ ଦର୍ଶାଯାଇଛି ଯେ, ଯେଉଁ ମନୁଷ୍ୟ ଏହି ନିତ୍ୟ, ଚେତନ, ଏକ ଆତ୍ମତତ୍ତ୍ୱକୁ ଏହିପରି ନିର୍ବିକାର, ଅବିନାଶୀ, ଓ ଅସଙ୍ଗରୂପରେ ସର୍ବତ୍ର ସମଭାବରେ ରହିଥିବା ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି। ଯେଉଁମାନେ ଏହାକୁ ଶରୀରମାନଙ୍କ ସଙ୍ଗରେ ଥିବାରୁ ଜନ୍ମ-ମରଣଶୀଳ ଓ ସୁଖୀ-ଦୁଃଖୀ ବୋଲି ବୁଝନ୍ତି, ସେମାନଙ୍କର ଦେଖିବା ଯଥାର୍ଥ ଦେଖିବା ନୁହେଁ। ସେମାନେ ଦେଖିଥିଲେ ମଧ୍ୟ ଦେଖନ୍ତି ନାହିଁ।

*__ସମ୍ବନ୍ଧ –__ ଉପରୋକ୍ତ ଶ୍ଳୋକରେ କୁହାଗଲା ଯେ, ଯେଉଁ ଲୋକ ପରମେଶ୍ୱରଙ୍କୁ ସକଳ ଭୂତରେ ନାଶରହିତ ଓ ସମଭାବରେ ଅବସ୍ଥିତ ଥିବା ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି। ବର୍ତ୍ତମାନ ଉକ୍ତ କଥନର ସାର୍ଥକତା ପ୍ରତିପାଦନ କରିବା ପାଇଁ ତାହାର ଫଳ ପରମଗତିପ୍ରାପ୍ତି ବୋଲି କହୁଛନ୍ତି–*

**ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରମ୍।**
**ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିମ୍॥ ୨୮ ॥**

**ଅନ୍ୱୟ –** ହି = କାରଣ (ଯେଉଁ ପୁରୁଷ); **ସର୍ବତ୍ର** = ସର୍ବତ୍ର; **ସମବସ୍ଥିତମ୍** = ସମଭାବରେ ଅବସ୍ଥିତ; **ଈଶ୍ୱରମ୍** = ପରମେଶ୍ୱରଙ୍କୁ; **ସମମ୍** = ସମାନରୂପରେ; **ପଶ୍ୟନ୍** = ଦେଖି; **ଆତ୍ମନା** = ନିଜଦ୍ୱାରା; **ଆତ୍ମାନମ୍** = ନିଜକୁ; **ନ, ହିନସ୍ତି** = ନଷ୍ଟ କରେ ନାହିଁ; **ତତଃ** = ତଦ୍ୱାରା (ସେ); **ପରାମ୍** = ପରମ; **ଗତିମ୍** = ଗତିକୁ; **ଯାତି** = ପ୍ରାପ୍ତ ହୁଏ।

**କାରଣ, ଯେଉଁ ପୁରୁଷ ସର୍ବତ୍ର ସମଭାବରେ ଅବସ୍ଥିତ ପରମେଶ୍ୱରଙ୍କୁ ସମାନରୂପରେ ଦେଖି ନିଜଦ୍ୱାରା ନିଜକୁ ନଷ୍ଟ କରନ୍ତି ନାହିଁ, ସେ ତାହାର ଫଳସ୍ୱରୂପ ପରମଗତି ପ୍ରାପ୍ତ ହୁଅନ୍ତି॥ ୨୮ ॥**

**ପ୍ରଶ୍ନ –** ଏଠାରେ **'ହି'** ପଦଟି କେଉଁ ଅର୍ଥରେ ଦିଆଯାଇଛି ଏବଂ ଏହି ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ହି ପଦଟି ହେତୁ ଅର୍ଥରେ ଦିଆଯାଇଛି। ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ସମଭାବରେ ଦେଖୁଥିବା ଲୋକ ନିଜର ନାଶ କରନ୍ତି ନାହିଁ ଏବଂ ପରମଗତି ପ୍ରାପ୍ତ ହୋଇଯାନ୍ତି। ତେଣୁ ତାଙ୍କର ଦେଖିବା ହିଁ ଯଥାର୍ଥ ଦେଖିବା।

**ପ୍ରଶ୍ନ –** ସର୍ବତ୍ର ସମଭାବରେ ଅବସ୍ଥିତ ପରମେଶ୍ୱରଙ୍କୁ ସମାନରୂପରେ ଦେଖିବା ଅର୍ଥ କ'ଣ ? ଏବଂ ଏପରି ଦେଖୁଥିବା ଲୋକ ନିଜଦ୍ୱାରା ନିଜକୁ ନଷ୍ଟ କରେ ନାହିଁ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏକ ହିଁ ସଚ୍ଚିଦାନନ୍ଦଘନ ପରମାତ୍ମା ସର୍ବତ୍ର ସମଭାବରେ ଅବସ୍ଥିତ। କେବଳ ଅଜ୍ଞାନହେତୁ ଭିନ୍ନ ଭିନ୍ନ ଶରୀରରେ ତାଙ୍କର ଭିନ୍ନତା ପ୍ରତୀତ ହୋଇଥାଏ। ବସ୍ତୁତଃ ଆତ୍ମତତ୍ତ୍ୱରେ କୌଣସି ଭିନ୍ନତା ନ ଥାଏ— ଏହି ତତ୍ତ୍ୱକୁ ଭଲରୂପେ ବୁଝି ପ୍ରତ୍ୟକ୍ଷ କରିନେବା ହିଁ 'ସର୍ବତ୍ର ସମଭାବରେ ଅବସ୍ଥିତ ପରମେଶ୍ୱରଙ୍କୁ ସମାନରୂପରେ ଦେଖିବା'। ଯେଉଁମାନେ ଏହି ତତ୍ତ୍ୱ ଜାଣନ୍ତି ନାହିଁ, ସେମାନଙ୍କର ଦେଖିବା ସମରୂପରେ ଦେଖିବା ନୁହେଁ। କାରଣ ସେମାନଙ୍କର ସର୍ବତ୍ର ବିଷମବୁଦ୍ଧି ହୁଏ; ସେମାନେ କାହାକୁ ନିଜର ପ୍ରିୟ ହିତୈଷୀରୂପେ ଦେଖନ୍ତି ତ, କାହାକୁ ଅପ୍ରିୟ ତଥା ଅହିତକାରୀ ବୋଲି ଭାବନ୍ତି ତଥା ନିଜେ ନିଜକୁ ଅନ୍ୟମାନଙ୍କ ଠାରୁ ଭିନ୍ନ, ଏକଦେଶୀୟ ବୋଲି ଭାବନ୍ତି। ଅତଏବ ସେମାନେ ଶରୀରର ଜନ୍ମ ଓ ମରଣକୁ ନିଜର ଜନ୍ମ ଓ ମରଣ ବୋଲି ଭାବୁଥିବାରୁ ବାରମ୍ବାର ବିଭିନ୍ନ ଯୋନିରେ ଜନ୍ମ ହୋଇ ମରନ୍ତି। ଏହା ହିଁ ସେମାନଙ୍କର ନିଜଦ୍ୱାରା ନିଜକୁ ନଷ୍ଟ କରିବା; କିନ୍ତୁ ଯେଉଁ ପୁରୁଷ ଉପରୋକ୍ତପ୍ରକାରେ ଏକ ହିଁ ପରମେଶ୍ୱରଙ୍କୁ ସର୍ବତ୍ର ସମଭାବରେ ଅବସ୍ଥିତ ଦେଖନ୍ତି, ସେ ନିଜକୁ ସେହି ପରମେଶ୍ୱରଙ୍କ ଠାରୁ ଭିନ୍ନ ଦେଖନ୍ତି ନାହିଁ, କି ଏହି ଶରୀର ସହିତ ନିଜର କୌଣସି ସମ୍ବନ୍ଧ ସ୍ୱୀକାର କରନ୍ତି ନାହିଁ। ତେଣୁ ଏହି ଶରୀରର ବିନାଶରେ ସେ ନିଜର ବିନାଶ ହେବା ଦେଖନ୍ତି ନାହିଁ ଓ ଫଳସ୍ୱରୂପ ନିଜଦ୍ୱାରା ନିଜକୁ ନଷ୍ଟ କରନ୍ତି ନାହିଁ। କହିବାର ଅଭିପ୍ରାୟ ଏହି ଯେ, ସେ ସର୍ବଜ୍ଞ, ଅବିନାଶୀ, ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ଅବସ୍ଥିତ ହୋଇଯାଆନ୍ତି; ଅତଏବ ସେ ଚିରଦିନପାଇଁ ଜନ୍ମ-ମୃତ୍ୟୁରୁ ରକ୍ଷା ପାଇଯାଆନ୍ତି।

**ପ୍ରଶ୍ନ –** ତତଃ ପଦ କେଉଁ ଅର୍ଥରେ ପ୍ରୟୋଗ ହୋଇଛି ଏବଂ ତାହା ପ୍ରୟୋଗ କରି, ପରମଗତି ପ୍ରାପ୍ତ ହେବା କଥା କହି କେଉଁ ଭାବ ପ୍ରକାଶ କରାଯାଇଛି ?

**ଉତ୍ତର –** ତତଃ ପଦ ମଧ୍ୟ ହେତୁବୋଧକ। ଏହା ପ୍ରୟୋଗ କରି ପ୍ରକାଶ କରାଯାଇଛି ଯେ, ସର୍ବତ୍ର ସମଭାବରେ ଅବସ୍ଥିତ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ସ୍ଥିତରହୁଥିବା ମନୁଷ୍ୟ ନିଜଦ୍ୱାରା ନିଜର ବିନାଶ କରନ୍ତି ନାହିଁ; ତେଣୁ ସେ ଚିରଦିନପାଇଁ ଜନ୍ମମୃତ୍ୟୁରୁ ଉଦ୍ଧାର ପାଇଯାଇ ପରମଗତି ପ୍ରାପ୍ତ ହୁଅନ୍ତି। ଯାହାକୁ ପରମପଦ ବୋଲାଯାଏ, ଯାହାକୁ ଲାଭ କଲେ ଆଉ ଫେରିବାକୁ ପଡ଼େ ନାହିଁ, ତଥା ଯେ ସକଳ ସାଧନାର ଅନ୍ତିମ ଫଳ, ତାକୁ ପ୍ରାପ୍ତ ହେବା ହିଁ 'ପରମଗତି ପ୍ରାପ୍ତ ହେବା'।

*ସମ୍ବନ୍ଧ –* ଏପରିଭାବରେ ନିତ୍ୟ ବିଜ୍ଞାନାନନ୍ଦଘନ ଆତ୍ମତତ୍ତ୍ୱକୁ ସର୍ବତ୍ର ସମଭାବରେ ଦର୍ଶନ କରିବାର ମହତ୍ତ୍ୱ ଓ ଫଳ ବୁଝାଇଦେବା ପରେ, ବର୍ତ୍ତମାନ ଆର ଶ୍ଳୋକରେ ଭଗବାନ୍ ଆତ୍ମାକୁ ଅକର୍ତ୍ତା ବୋଲି ଦେଖୁଥିବା ଲୋକଙ୍କ ମହିମା କହୁଛନ୍ତି–

**ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ।**
**ଯଃ ପଶ୍ୟତି ତଥାତ୍ମାନମକର୍ତ୍ତାରଂ ସ ପଶ୍ୟତି॥ ୨୯ ॥**

**ଅନ୍ୱୟ –** ଚ = ଏବଂ; **ଯଃ** = ଯେଉଁ ପୁରୁଷ; **କର୍ମାଣି** = କର୍ମମାନଙ୍କୁ; **ସର୍ବଶଃ** = ସବୁପ୍ରକାରେ; **ପ୍ରକୃତ୍ୟା** = ପ୍ରକୃତିଦ୍ୱାରା; **ଏବ** = ହିଁ; **କ୍ରିୟମାଣାନି** = କରାଯାଉଥିବା; **ପଶ୍ୟତି** = ଦେଖେ; **ତଥା** = ତଥା; **ଆତ୍ମାନମ୍** = ଆତ୍ମାକୁ; **ଅକର୍ତ୍ତାରମ୍** = ଅକର୍ତ୍ତା (ବୋଲି); **ପଶ୍ୟତି** = ଦେଖେ; **ସଃ** = ସେ ହିଁ; **(ପଶ୍ୟତି)** = (ଯଥାର୍ଥ) ଦେଖେ।

**ଏବଂ ଯେଉଁ ପୁରୁଷ କର୍ମମାନଙ୍କୁ ସବୁପ୍ରକାରେ ପ୍ରକୃତିଦ୍ୱାରା ହିଁ କରାଯାଉଛି ବୋଲି ଦେଖନ୍ତି ଓ ଆତ୍ମାକୁ ଅକର୍ତ୍ତା ବୋଲି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି॥ ୨୯ ॥**

**ପ୍ରଶ୍ନ –** ତୃତୀୟ ଅଧ୍ୟାୟର ସତେଇଶ ଓ ଅଠେଇଶ ଶ୍ଳୋକରେ ଏବଂ ଚଉଦ ଅଧ୍ୟାୟର ଉଣେଇଶ ଶ୍ଳୋକରେ ସକଳ କର୍ମ ଗୁଣଦ୍ୱାରା କରାଯାଏ ବୋଲି କୁହାଯାଇଛି ତଥା ପଞ୍ଚମ ଅଧ୍ୟାୟର ଅଷ୍ଟମ ଓ ନବମ ଶ୍ଳୋକରେ ସକଳ ଇନ୍ଦ୍ରିୟ ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରେ ପ୍ରବୃତ୍ତ ହୁଅନ୍ତି ବୋଲି କୁହାଯାଇଛି, ଏବଂ ଏଠାରେ ସକଳ କର୍ମ ପ୍ରକୃତିଦ୍ୱାରା କରାଯାଉଛି ବୋଲି ଦେଖିବାକୁ କୁହାଯାଇଛି। ଏପରି ତିନିପ୍ରକାର ବର୍ଣ୍ଣନାର ଅଭିପ୍ରାୟ କ'ଣ ?

**ଉତ୍ତର –** ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣ ପ୍ରକୃତିର ହିଁ କାର୍ଯ୍ୟ; ତଥା ସମସ୍ତ ଇନ୍ଦ୍ରିୟ, ମନ, ବୁଦ୍ଧି ଆଦି ଏବଂ ଇନ୍ଦ୍ରିୟମାନଙ୍କର ବିଷୟସମୂହ — ଏସବୁ ବି ଗୁଣମାନଙ୍କର ହିଁ ବିସ୍ତାର। ଅତଏବ ଇନ୍ଦ୍ରିୟମାନେ ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରେ ପ୍ରବୃତ୍ତ ହୁଅନ୍ତି, ଗୁଣମାନେ ଗୁଣମାନଙ୍କ ଠାରେ ପ୍ରବୃତ୍ତ ହୁଅନ୍ତି ଏବଂ ଗୁଣମାନଙ୍କଦ୍ୱାରା ସକଳ କର୍ମ କରାଯାଏ ବୋଲି କହିବା ଯାହା, ସକଳ କର୍ମ ପ୍ରକୃତିଦ୍ୱାରା କରାଯାଉଛି ବୋଲି କହିବା ବି ତାହା; ଏପରିଭାବରେ ସବୁଠାରେ ଗୋଟିଏ କଥା ହିଁ କୁହାଯାଇଛି, ଏଥିରେ କୌଣସି ପ୍ରକାର ପ୍ରଭେଦ ନାହିଁ। ଆତ୍ମାରେ କର୍ତ୍ତାପଣର ଅଭାବ ଦେଖାଇବା ହିଁ ଏସବୁ କହିବାର ଅଭିପ୍ରାୟ।

**ପ୍ରଶ୍ନ –** ଆତ୍ମାକୁ ଅକର୍ତ୍ତା ବୋଲି ଦେଖିବା କ'ଣ ? ଏବଂ 'ଯେ ଏପରି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଆତ୍ମା ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ ଏବଂ ସକଳପ୍ରକାର ବିକାରରୁ ରହିତ। ପ୍ରକୃତି ସହିତ ତା'ର କୌଣସି ସମ୍ବନ୍ଧ ନାହିଁ। ତେଣୁ ସେ କୌଣସି କର୍ମର କର୍ତ୍ତା ନୁହେଁ, କି କୌଣସି କର୍ମଫଳର ଭୋକ୍ତା ନୁହେଁ। ଏହି କଥାଟିକୁ ଅପରୋକ୍ଷଭାବରେ ଅନୁଭବ କରିନେବା ଯାହା, 'ଆତ୍ମାକୁ ଅକର୍ତ୍ତା ବୋଲି ବୁଝିବା' ମଧ୍ୟ ତାହା। ପୁଣି 'ଯେ ଏପରି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି' ବୋଲି କହିବାଦ୍ୱାରା ଉକ୍ତ ଜ୍ଞାନୀଙ୍କର ମହତ୍ତ୍ୱ ପ୍ରକାଶ କରାଯାଉଛି। ମନ, ବୁଦ୍ଧି ଓ ଶରୀରର ସମ୍ପର୍କରୁ ଯେଉଁମାନେ ଆତ୍ମାକୁ ସମସ୍ତ କର୍ମର କର୍ତ୍ତା ଓ ଭୋକ୍ତା ବୋଲି ବୁଝନ୍ତି, ସେମାନଙ୍କର ଦେଖିବା ଭ୍ରମପୂର୍ଣ୍ଣ ହୋଇଥିବାରୁ ଭୁଲ୍। —

**ସମ୍ବନ୍ଧ –** *ଏପରିଭାବରେ ଆତ୍ମାକୁ ଅକର୍ତ୍ତା ବୋଲି ବୁଝିବାର ମହିମା କହିସାରି ଭଗବାନ୍ ବର୍ତ୍ତମାନ ଆତ୍ମାରେ ଏକତ୍ୱଦର୍ଶନର ଫଳ କହୁଛନ୍ତି—*

## ଯଦା ଭୂତପୃଥଗ୍‌ଭାବମେକସ୍ଥମନୁପଶ୍ୟତି।
## ତତ ଏବ ଚ ବିସ୍ତାରଂ ବ୍ରହ୍ମ ସଂପଦ୍ୟତେ ତଦା ॥ ୩୦ ॥

**ଅନ୍ୱୟ – ଯଦା** = (ସେହି ପୁରୁଷ) ଯେଉଁକ୍ଷଣି; **ଭୂତପୃଥଗ୍‌ଭାବମ୍** = ଭୂତମାନଙ୍କର ଭିନ୍ନ ଭିନ୍ନ ଭାବକୁ; **ଏକସ୍ଥମ୍** = ଏକ ପରମାତ୍ମାଙ୍କ ଠାରେ ହିଁ ଅବସ୍ଥିତ; **ଅନୁପଶ୍ୟତି** = ଦେଖେ; **ଚ** = ତଥା; **ତତଃ** = ସେହି ପରମାତ୍ମାଙ୍କ ଠାରୁ; **ଏବ** = ହିଁ; **ବିସ୍ତାରମ୍** = ସକଳଭୂତଙ୍କର ବିସ୍ତାର (ହୋଇଥିବା); **(ପଶ୍ୟତି)** = ଦେଖେ; **ତଦା** = ସେହିକ୍ଷଣି; **ବ୍ରହ୍ମ** = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ; **ସଂପଦ୍ୟତେ** = ପ୍ରାପ୍ତ ହୋଇଯାଏ।

**ଏହି ପୁରୁଷ ଯେଉଁକ୍ଷଣି ଭୂତମାନଙ୍କର ପୃଥକ୍ ପୃଥକ୍ ଭାବକୁ ଏକ ପରମାତ୍ମାଙ୍କ ଠାରେ ଅବସ୍ଥିତ ଥିବା ଦେଖନ୍ତି ଏବଂ ସେହି ଏକ ପରମାତ୍ମାଙ୍କ ଠାରୁ ହିଁ ସମସ୍ତ ଭୂତଙ୍କର ବିସ୍ତାର ହୋଇଛି ବୋଲି ଦେଖନ୍ତି, ସେ ସେହିକ୍ଷଣି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଯାଆନ୍ତି ॥ ୩୦ ॥**

**ପ୍ରଶ୍ନ –** **ଭୂତପୃଥଗ୍‌ଭାବମ୍** ପଦଟି କାହାର ବାଚକ ଏବଂ ତାହାକୁ ଏକ ପରମାତ୍ମାରେ ସ୍ଥିତ ଏବଂ ସେହି ଏକ ପରମାତ୍ମାଙ୍କ ଠାରୁ ସବୁର ବିସ୍ତାର ଦେଖିବା କ'ଣ ?

**ଉତ୍ତର –** ଯେଉଁ ଚରାଚର ପ୍ରାଣୀସମୁଦାୟର ଉତ୍ପତ୍ତି କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଂଯୋଗରୁ ହୋଇଛି ବୋଲି କୁହାଯାଇଛି (୧୩/୨୬), ତଥା ଯେଉଁ ସମସ୍ତ ଭୂତଙ୍କ ଠାରେ ପରମେଶ୍ୱରଙ୍କୁ ସମଭାବରେ ଅବସ୍ଥିତ ବୋଲି ଦେଖିବାକୁ କୁହାଯାଇଛି (୧୩/୨୭), **ଭୂତପୃଥଗ୍‌ଭାବମ୍** ପଦଟି ହେଉଛି ସେହି ସମସ୍ତ ପ୍ରାଣୀମାନଙ୍କ ନାନାତ୍ୱର

ବାଚକ। ସ୍ୱପ୍ନ ଭାଙ୍ଗିଯିବା ପରେ ଜେଗିଁ ଉଠିଥିବା ମନୁଷ୍ୟ ଯେପରି ସ୍ୱପ୍ନକାଳରେ ଦେଖିଥିବା ସମସ୍ତ ପ୍ରାଣୀଙ୍କର ନାନାତ୍ୱକୁ ନିଜେ ନିଜଭିତରେ ଦେଖେ ଏବଂ ଅନୁଭବ ବି କରେ ଯେ, ସେସବୁର ବିସ୍ତାର ତାଠାରୁ ହିଁ ହୋଇଥିଲା; ସ୍ୱପ୍ନର ସୃଷ୍ଟିରେ ବାସ୍ତବରେ ତା'ଭିନ୍ନ ଅନ୍ୟ କିଛି ନ ଥିଲା; ସେଥିରେ ଏକମାତ୍ର ସେ ହିଁ ନିଜେ ନିଜକୁ ଅନେକ ରୂପରେ ଦେଖିଥିଲା, ଠିକ୍ ସେହିପରି ଯେ ସମସ୍ତ ପ୍ରାଣୀମାନଙ୍କୁ କେବଳ ଏକପରମାତ୍ମାଙ୍କ ଠାରେ ହିଁ ଅବସ୍ଥିତ ଏବଂ ତାଙ୍କରି ଠାରୁ ସମସ୍ତଙ୍କର ବିସ୍ତାର ହୋଇଥିବାର ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି; ଏପରି ଦେଖିବା ହିଁ 'ସମସ୍ତଙ୍କୁ ଏକ ପରମାତ୍ମାରେ ଅବସ୍ଥିତ ଓ ସେହି ଏକ ପରମାତ୍ମାଙ୍କ ଠାରୁ ସମସ୍ତଙ୍କର ବିସ୍ତାର ହୋଇଛି' ବୋଲି ଦେଖିବା।

**ପ୍ରଶ୍ନ** — ଏଠାରେ **ଯଦା** ଓ **ତଦା** ପଦ ପ୍ରୟୋଗର ଅଭିପ୍ରାୟ କ'ଣ ଏବଂ ବ୍ରହ୍ମଙ୍କୁ ପ୍ରାପ୍ତ ହେବାର ଅର୍ଥ କ'ଣ ?

**ଉତ୍ତର** — **ଯଦା** ଓ **ତଦା** ପଦ ଦୁଇଟି କାଳବାଚକ ଅବ୍ୟୟ। ଏହି ଦୁଇ ଅବ୍ୟୟ ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ମନୁଷ୍ୟଭିତରେ ଯେଉଁକ୍ଷଣି ଏପରି ଜ୍ଞାନ ଜାତ ହୋଇଯାଏ, ସେହି କ୍ଷଣି ତା'ର ବ୍ରହ୍ମପ୍ରାପ୍ତି ହୋଇଯାଏ ଅର୍ଥାତ୍ ସେ ବ୍ରହ୍ମ ହିଁ ହୋଇଯାଏ; ସେଥିରେ ଟିକିଏ ବି ବିଳମ୍ବ ହୁଏ ନାହିଁ। ଏପରିଭାବରେ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଅଭିନ୍ନତା ପ୍ରାପ୍ତ ହୋଇଯିବାକୁ ପରମଗତିପ୍ରାପ୍ତି, ମୋକ୍ଷପ୍ରାପ୍ତି, ଆତ୍ୟନ୍ତିକ-ସୁଖପ୍ରାପ୍ତି ଏବଂ ପରମଶାନ୍ତିପ୍ରାପ୍ତି ବୋଲି ମଧ୍ୟ କୁହାଯାଏ।

*ସମ୍ବନ୍ଧ — ଏପରିଭାବରେ ଆତ୍ମାକୁ ସକଳ ପ୍ରାଣୀଙ୍କ ଠାରେ ସମଭାବରେ ଅବସ୍ଥିତ, ନିର୍ବିକାର ଓ ଅକର୍ତ୍ତା ବୋଲି କହିଦେବା ପରେ, ସମସ୍ତଙ୍କ ଶରୀରରେ ରହି ମଧ୍ୟ ଆତ୍ମା କିପରି ସେମାନଙ୍କର ଦୋଷରୁ ନିର୍ଲିପ୍ତ ହୋଇ, ଅକର୍ତ୍ତା ହୋଇ ରହେ ବୋଲି ଶଙ୍କା ଉଠିପାରେ। ଉକ୍ତ ଶଙ୍କା ନିବାରଣ କରିବାନିମନ୍ତେ ଭଗବାନ୍ ବର୍ତ୍ତମାନ ତୃତୀୟ ଶ୍ଳୋକରେ 'ଯତ୍ପ୍ରଭାବଶ୍ଚ' ପଦଦ୍ୱାରା କ୍ଷେତ୍ରଜ୍ଞଙ୍କର ପ୍ରଭାବ ଶୁଣିବାକୁ ଯେଉଁ ସଙ୍କେତ ଦେଇଥିଲେ, ତଦନୁସାରେ ପରବର୍ତ୍ତୀ ତିନୋଟି ଶ୍ଳୋକରେ ଆତ୍ମାର ପ୍ରଭାବ ବର୍ଣ୍ଣନା କରୁଛନ୍ତି—*

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ।**
**ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ॥ ୩୧ ॥**

**ଅନ୍ୱୟ** — **କୌନ୍ତେୟ** = ହେ ଅର୍ଜୁନ; **ଅନାଦିତ୍ୱାତ୍** = ଅନାଦି ହୋଇଥିବାରୁ; **ନିର୍ଗୁଣତ୍ୱାତ୍** = (ଓ) ଗୁଣାତୀତ ହୋଇଥିବାରୁ; **ଅୟମ୍** = ଏହି; **ଅବ୍ୟୟଃ** = ଅବିନାଶୀ; **ପରମାତ୍ମା** = ପରମାତ୍ମା; **ଶରୀରସ୍ଥଃ** = ଶରୀରରେ ରହି; **ଅପି** = ମଧ୍ୟ; **ନ, କରୋତି** = (ବାସ୍ତବରେ କିଛି) କରେ ନାହିଁ; **ନ, ଲିପ୍ୟତେ** = (କୌଣସିଥିରେ) ଲିପ୍ତ ହୁଏ ନାହିଁ।

**ହେ ଅର୍ଜୁନ! ଅନାଦି ହୋଇଥିବାରୁ ଓ ନିର୍ଗୁଣ ହୋଇଥିବାରୁ ଏହି ଅବିନାଶୀ ପରମାତ୍ମା ଶରୀରରେ ରହି ମଧ୍ୟ ବାସ୍ତବରେ କିଛି କରନ୍ତି ନାହିଁ, କି କୌଣସିଥିରେ ଲିପ୍ତ ହୁଅନ୍ତି ନାହିଁ॥ ୩୧ ॥**

**ପ୍ରଶ୍ନ** — **ଅନାଦିତ୍ୱାତ୍** ଓ **ନିର୍ଗୁଣତ୍ୱାତ୍** ଏହି ଦୁଇଟି ପଦର ଅର୍ଥ କ'ଣ ଏବଂ ଏହି ପଦଦୁଇଟି ପ୍ରୟୋଗ କରି ଏଠାରେ କେଉଁ ଭାବ ଦର୍ଶାଇଦିଆଯାଇଛି ?

**ଉତ୍ତର** — ଯାହାଙ୍କର କୌଣସି ଆଦି ଅର୍ଥାତ୍ କାରଣ ନାହିଁ ଏବଂ ଯାହାଙ୍କର କୌଣସି କାଳରେ ବି ନୂତନ ଉତ୍ପତ୍ତି ହୁଏ ନାହିଁ ଓ ଯେ ସର୍ବକାଳରେ ରହିଛନ୍ତି, ତାଙ୍କୁ ଅନାଦି କୁହାଯାଏ। ପ୍ରକୃତି ଏବଂ ତା'ର ଗୁଣମାନଙ୍କରୁ ଯେ ସର୍ବଥା ଅତୀତ, ଗୁଣମାନଙ୍କ ସହିତ ତଥା ଗୁଣମାନଙ୍କର କାର୍ଯ୍ୟ ସହିତ ଯାହାଙ୍କର କୌଣସି କାଳରେ ଓ କୌଣସି ଅବସ୍ଥାରେ ବି ବାସ୍ତବିକ କୌଣସି ସମ୍ବନ୍ଧ ନ ଥାଏ, ତାଙ୍କୁ **ନିର୍ଗୁଣ** କୁହାଯାଏ। ଅତଏବ ଏଠାରେ **ଅନାଦିତ୍ୱାତ୍** ଓ **ନିର୍ଗୁଣତ୍ୱାତ୍** ପଦଦୁଇଟି ପ୍ରୟୋଗ କରି ଦର୍ଶାଇଦିଆଯାଇଛି ଯେ, ଯାହାର ପ୍ରକରଣ ଚାଲିଛି, ସେହି ଆତ୍ମା 'ଅନାଦି' ଓ 'ନିର୍ଗୁଣ'; ତେଣୁ ସେ ଅକର୍ତ୍ତା, ନିର୍ଲିପ୍ତ ଓ ଅବ୍ୟୟ— ଜନ୍ମ, ମୃତ୍ୟୁ ଆଦି ଷଡ୍‌ବିକାରରୁ ସର୍ବଥା ଅତୀତ ଅଟନ୍ତି।

**ପ୍ରଶ୍ନ** — ଏଠାରେ 'ପରମାତ୍ମା' ସହିତ **ଅୟମ୍** ବିଶେଷଣ ଯୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯାହାଙ୍କର ପ୍ରକରଣ ପ୍ରଥମରୁ ଚାଲି ଆସିଛି, **ଅୟମ୍** ପଦଟି ତାଙ୍କୁ ନିର୍ଦ୍ଦେଶ କରୁଛି। ତେଣୁ 'ପରମାତ୍ମା' ଶବ୍ଦ ସହିତ **ଅୟମ୍** ବିଶେଷଣ ଯୋଗ କରି ଏଠାରେ ଦର୍ଶାଇଦିଆଯାଇଛି ଯେ, ଯାହାଙ୍କୁ ସତେଇଶ ଶ୍ଳୋକରେ 'ପରମେଶ୍ୱର' ବୋଲି, ଅଠେଇଶ ଶ୍ଳୋକରେ 'ଈଶ୍ୱର' ବୋଲି, ଅଣତିରିଶ ଶ୍ଳୋକରେ 'ଆତ୍ମା' ବୋଲି ଏବଂ ତିରିଶ ଶ୍ଳୋକରେ 'ବ୍ରହ୍ମ' ବୋଲି କୁହାଯାଇଛି, ଏଠାରେ ତାଙ୍କୁ ହିଁ 'ପରମାତ୍ମା' ବୋଲି କୁହାଯାଇଛି। ଅର୍ଥାତ୍ ଏହି ସମସ୍ତଙ୍କର ଅଭିନ୍ନତା ବା ଏକତ୍ୱ ଥିବା ଦର୍ଶାଇଦେବା ନିମନ୍ତେ ଏଠାରେ **ଅୟମ୍** ପଦଟି ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ସତେଇଶ ଶ୍ଳୋକରେ 'ପରମେଶ୍ୱର', ଅଠେଇଶରେ 'ଈଶ୍ୱର' ଅଣତିରିଶରେ 'ଆତ୍ମା', ତିରିଶରେ ବ୍ରହ୍ମ ଓ ଏହି ଶ୍ଳୋକରେ 'ପରମାତ୍ମା'— ଏକ ହିଁ ତତ୍ତ୍ୱପାଇଁ ଏହି ଶ୍ଳୋକମାନଙ୍କରେ ଏପରି ପ୍ରୟୋଗ କାହିଁକି କରାଯାଇଛି ?

**ଉତ୍ତର –** ତୃତୀୟ ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ କ୍ଷେତ୍ରଜ୍ଞଙ୍କର ସ୍ୱରୂପ ଓ ପ୍ରଭାବ ବୁଝାଇଦେବାକୁ ସଙ୍କେତ ଦେଇଥିଲେ। ତଦନୁସାରେ ପରବ୍ରହ୍ମ ପରମାତ୍ମାଙ୍କ ସହିତ କ୍ଷେତ୍ରଜ୍ଞଙ୍କର ଅଭିନ୍ନତା ଦେଖାଇ ତାହାର ବାସ୍ତବିକ ସ୍ୱରୂପ ନିରୂପଣ କରିବା ନିମନ୍ତେ ଏଠାରେ ପରମାତ୍ମାଙ୍କ ବାଚକ ଭିନ୍ନ ଭିନ୍ନ ନାମକୁ ସକାରଣ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** ଶରୀରରେ ରହି ମଧ୍ୟ ଆତ୍ମା କର୍ତ୍ତା ହୁଏ ନାହିଁ କାହିଁକି ? ପୁଣି ସେ ସେଥିରେ ଲିପ୍ତ ହୁଏ ନାହିଁ କିପରି ?

**ଉତ୍ତର –** ବାସ୍ତବରେ ପ୍ରକୃତିର ଗୁଣମାନଙ୍କ ସହିତ ତଥା ସେମାନଙ୍କର ବିସ୍ତାରରୂପ ବୁଦ୍ଧି, ମନ, ଇନ୍ଦ୍ରିୟ ଓ ଶରୀର ସହିତ ଆତ୍ମାର କୌଣସି ବି ସମ୍ବନ୍ଧ ନାହିଁ; ସେ ସର୍ବଥା ଗୁଣମାନଙ୍କରୁ ଅତୀତ। ଆକାଶ ଯେପରି ମେଘମାନଙ୍କ ମଧ୍ୟରେ ରହି ମଧ୍ୟ ସେମାନଙ୍କର କର୍ତ୍ତା ହୁଏ ନାହିଁ, କି ସେମାନଙ୍କ ସହିତ ଲିପ୍ତ ହୁଏ ନାହିଁ, ଆତ୍ମା ସେହିପରି କର୍ମମାନଙ୍କର କର୍ତ୍ତା ହୁଏ ନାହିଁ, କି ଶରୀରମାନଙ୍କ ସହିତ ଲିପ୍ତ ବି ହୁଏ ନାହିଁ। ଏହି ବିଷୟଟି ଭଗବାନ୍ ସ୍ୱୟଂ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଦୃଷ୍ଟାନ୍ତଦ୍ୱାରା ବୁଝାଇଦେଉଛନ୍ତି।

**ସମ୍ବନ୍ଧ –** *ଶରୀରରେ ରହି ମଧ୍ୟ ଆତ୍ମା କାହିଁକି ଲିପ୍ତ ହୁଏ ନାହିଁ, ତାହା କହୁଛନ୍ତି–*

## ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ।
## ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ॥ ୩୨ ॥

**ଅନ୍ୱୟ –** **ଯଥା** = ଯେପରି; **ସର୍ବଗତମ୍** = ସର୍ବତ୍ର ବ୍ୟାପ୍ତ; **ଆକାଶମ୍** = ଆକାଶ; **ସୌକ୍ଷ୍ମ୍ୟାତ୍** = ସୂକ୍ଷ୍ମ ହୋଇଥିବାରୁ; **ନ, ଉପଲିପ୍ୟତେ** = ଲିପ୍ତ ହୁଏ ନାହିଁ; **ତଥା** = ସେପରି; **ଦେହେ** = ଦେହରେ; **ସର୍ବତ୍ର** = ସର୍ବତ୍ର; **ଅବସ୍ଥିତଃ** = ଅବସ୍ଥିତ; **ଆତ୍ମା** = ଆତ୍ମା; **ନ, ଉପଲିପ୍ୟତେ** = (ନିର୍ଗୁଣ ହୋଇଥିବାରୁ ଦେହର ଗୁଣମାନଙ୍କ ଦ୍ୱାରା) ଲିପ୍ତ ହୁଏ ନାହିଁ।

**ଯେପରି ସର୍ବତ୍ର ବ୍ୟାପ୍ତ ଆକାଶ ସୂକ୍ଷ୍ମ ହୋଇଥିବାରୁ ଲିପ୍ତ ହୁଏ ନାହିଁ, ସେହିପରି ଦେହରେ ସର୍ବତ୍ର ଅବସ୍ଥିତ ଆତ୍ମା ନିର୍ଗୁଣ ହୋଇଥିବାରୁ ଦେହର ଗୁଣମାନଙ୍କ ଦ୍ୱାରା ଲିପ୍ତ ହୁଏ ନାହିଁ॥ ୩୨ ॥**

**ପ୍ରଶ୍ନ –** ଏହି ଶ୍ଳୋକରେ ଆକାଶର ଦୃଷ୍ଟାନ୍ତ ଦେଇ କ'ଣ ବୁଝାଇଦିଆଯାଇଛି ?

**ଉତ୍ତର –** ଆକାଶର ଦୃଷ୍ଟାନ୍ତ ଦେଇ ଆତ୍ମାର ନିର୍ଲିପ୍ତତା ସିଦ୍ଧ କରାଯାଇଛି। ଅଭିପ୍ରାୟ ହେଉଛି, ଆକାଶ ଯେପରି ବାୟୁ, ଅଗ୍ନି, ଜଳ ଓ ପୃଥିବୀର ସର୍ବତ୍ର ସମଭାବରେ ବ୍ୟାପ୍ତ ହୋଇ ମଧ୍ୟ ସେମାନଙ୍କର ଦୋଷଗୁଣରେ କୌଣସିପ୍ରକାରେ ଲିପ୍ତ ହୁଏ ନାହିଁ, ଆତ୍ମା ସେହିପରି ଅତ୍ୟନ୍ତ ସୂକ୍ଷ୍ମ ଓ ଗୁଣମାନଙ୍କ ଠାରୁ ସର୍ବଥା ଅତୀତ ହୋଇଥିବାରୁ ଏହି ଶରୀରର ସର୍ବତ୍ର ବ୍ୟାପ୍ତ ହୋଇ ମଧ୍ୟ ବୁଦ୍ଧି, ମନ, ଇନ୍ଦ୍ରିୟ ଓ ଶରୀରର ଗୁଣଦୋଷମାନଙ୍କ ଦ୍ୱାରା ଟିକିଏ ବି ଲିପ୍ତ ହୁଏ ନାହିଁ।

**ସମ୍ବନ୍ଧ –** *ଶରୀରରେ ରହି ବି ଆତ୍ମା କିପରି କର୍ତ୍ତା ହୁଏ ନାହିଁ, ତାହା କହୁଛନ୍ତି–*

**ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକମିମଂ ରବିଃ ।**
**କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ ।। ୩୩ ।।**

**ଅନ୍ୱୟ –** ଭାରତ = ହେ ଅର୍ଜୁନ; **ଯଥା** = ଯେପରି; **ଏକଃ** = ଏକ ହିଁ; **ରବିଃ** = ସୂର୍ଯ୍ୟ; **ଇମମ୍** = ଏହି; **କୃତ୍ସ୍ନମ୍** = ସମସ୍ତ; **ଲୋକମ୍** = ବ୍ରହ୍ମାଣ୍ଡକୁ; **ପ୍ରକାଶୟତି** = ପ୍ରକାଶିତ କରେ; **ତଥା** = ସେହିପରି; **କ୍ଷେତ୍ରୀ** = ଏକ ହିଁ ଆତ୍ମା; **କୃତ୍ସ୍ନମ୍** = ସମସ୍ତ; **କ୍ଷେତ୍ରମ୍** = କ୍ଷେତ୍ରକୁ; **ପ୍ରକାଶୟତି** = ପ୍ରକାଶିତ କରେ ।

**ହେ ଅର୍ଜୁନ ! ଯେପରି ଏକ ହିଁ ସୂର୍ଯ୍ୟ ସମସ୍ତ ବ୍ରହ୍ମାଣ୍ଡକୁ ଆଲୋକିତ କରିଥାଏ, ସେହିପରି ଏକ ହିଁ ଆତ୍ମା ସମସ୍ତ କ୍ଷେତ୍ରକୁ ଆଲୋକିତ କରେ ।। ୩୩ ।।**

**ପ୍ରଶ୍ନ –** ଏହି ଶ୍ଳୋକରେ ରବି (ସୂର୍ଯ୍ୟ)ଙ୍କ ଦୃଷ୍ଟାନ୍ତ ଦେଇ କ'ଣ ବୁଝାଯାଇଛି ଏବଂ **ରବିଃ** ପଦ ସହିତ **ଏକଃ** ବିଶେଷଣ ଯୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ ରବି (ସୂର୍ଯ୍ୟ)ଙ୍କ ଉଦାହରଣ ଦେଇ ଆତ୍ମାରେ ଅକର୍ତ୍ତାପଣ ଏବଂ **ରବିଃ** ପଦ ସହିତ **ଏକଃ** ବିଶେଷଣ ଦେଇ ଆତ୍ମାର ଅଦ୍ୱୈତଭାବ ସିଦ୍ଧ କରାଯାଇଛି । ଅଭିପ୍ରାୟ ହେଉଛି, ଏକ ସୂର୍ଯ୍ୟ ଯେପରି ସମଗ୍ର ବ୍ରହ୍ମାଣ୍ଡକୁ ଆଲୋକିତ କରେ, ଏକ ହିଁ ଆତ୍ମା ସେହିପରି ସମସ୍ତ କ୍ଷେତ୍ରକୁ ଅର୍ଥାତ୍ ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ବିକାରସହିତ କ୍ଷେତ୍ର ନାମରେ ଯାହାର ସ୍ୱରୂପ ବର୍ଣ୍ଣନା କରାଯାଇଛି, ସେହି ସମସ୍ତ ଜଡ଼ବର୍ଗକୁ ପ୍ରକାଶିତ କରେ ଏବଂ ସମସ୍ତଙ୍କୁ ସତ୍ତା ଓ ସ୍ଫୂର୍ତ୍ତି ଦିଏ । ଭିନ୍ନ ଭିନ୍ନ ଅନ୍ତଃକରଣର ସମ୍ବନ୍ଧକୁ ନେଇ ଭିନ୍ନ ଭିନ୍ନ ଶରୀରରେ ତାହା ଭିନ୍ନ ଭିନ୍ନରୂପରେ ବ୍ୟକ୍ତ ହୋଇଥିବାପରି ଦେଖାଯାଏ; ତଥାପି ସେହି ଆତ୍ମା ସୂର୍ଯ୍ୟଙ୍କ ପରି ସେମାନଙ୍କର କର୍ତ୍ତା ହୁଏ ନାହିଁ, କି କରାଇଥିବା ହୁଏ ନାହିଁ; ପୁଣି ଦ୍ୱୈତଭାବରେ ବା ବୈଷମ୍ୟାଦି ଦୋଷରେ ବି ଯୁକ୍ତ ହୁଏ ନାହିଁ । ସେହି ଅବିନାଶୀ ଆତ୍ମା ପ୍ରତ୍ୟେକ ଅବସ୍ଥାରେ ସଦାସର୍ବଦା ଶୁଦ୍ଧ, ବିଜ୍ଞାନସ୍ୱରୂପ, ଅକର୍ତ୍ତା, ନିର୍ବିକାର, ସମ ଓ ନିରଞ୍ଜନ ହୋଇ ହିଁ ରହେ ।

**ସମ୍ବନ୍ଧ –** ତୃତୀୟ ଶ୍ଳୋକରେ ଯେଉଁ ଛଅଟି ବିଷୟ କହିବାକୁ ଭଗବାନ୍ ସଂକେତ ଦେଇଥିଲେ, ସେଗୁଡ଼ିକର ବର୍ଣ୍ଣନା କରିବା ପରେ ବର୍ତ୍ତମାନ ଏହି ଅଧ୍ୟାୟରେ ବର୍ଣ୍ଣିତ ସମସ୍ତ ଉପଦେଶକୁ ଭଲରୂପେ ବୁଝିପାରିବାର ଫଳ ପରବ୍ରହ୍ମ-ପରମାତ୍ମପ୍ରାପ୍ତି ବୋଲି କହି ଅଧ୍ୟାୟ ଉପସଂହାର କରୁଛନ୍ତି–

**କ୍ଷେତ୍ରକ୍ଷେତ୍ରଜ୍ଞୟୋରେବମନ୍ତରଂ ଜ୍ଞାନଚକ୍ଷୁଷା ।**
**ଭୂତପ୍ରକୃତିମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରମ୍ ।। ୩୪ ।।**

**ଅନ୍ୱୟ –** **ଏବମ୍** = ଏହିପରି; **କ୍ଷେତ୍ର-କ୍ଷେତ୍ରଜ୍ଞୟୋଃ** = କ୍ଷେତ୍ର ଓ କ୍ଷେତ୍ରଜ୍ଞର; **ଅନ୍ତରମ୍** = ପ୍ରଭେଦକୁ; **ଚ** = ତଥା; **ଭୂତପ୍ରକୃତିମୋକ୍ଷମ୍** = କାର୍ଯ୍ୟସମେତ ପ୍ରକୃତିରୁ ମୁକ୍ତ ହେବାକୁ; **ଯେ** = ଯେଉଁ ପୁରୁଷମାନେ; **ଜ୍ଞାନଚକ୍ଷୁଷା** = ଜ୍ଞାନନେତ୍ରଦ୍ୱାରା; **ବିଦୁଃ** = ତତ୍ତ୍ୱତଃ ଜାଣନ୍ତି; **ତେ** = ସେହି ମହାତ୍ମାମାନେ; **ପରମ୍** = ପରବ୍ରହ୍ମ ପରମାତ୍ମାଙ୍କୁ; **ଯାନ୍ତି** = ପ୍ରାପ୍ତ ହୁଅନ୍ତି ।

**ଯେଉଁ ପୁରୁଷମାନେ ଏପରିଭାବରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦକୁ ତଥା କାର୍ଯ୍ୟସମେତ ପ୍ରକୃତିରୁ ମୁକ୍ତ ହେବାକୁ ଜ୍ଞାନନେତ୍ରଦ୍ୱାରା ତତ୍ତ୍ୱତଃ ଜାଣିପାରନ୍ତି, ସେହି ମହାତ୍ମାମାନେ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି ।। ୩୪ ।।**

**ପ୍ରଶ୍ନ –** **ଜ୍ଞାନଚକ୍ଷୁଷା** ପଦର ଅଭିପ୍ରାୟ କ'ଣ ତଥା ଜ୍ଞାନଚକ୍ଷୁଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦକୁ ଜାଣିବା କହିଲେ, କ'ଣ ବୁଝାଏ ?

**ଉତ୍ତର –** ଭଗବାନ୍ ଦ୍ୱିତୀୟ ଶ୍ଳୋକରେ ନିଜ ମତ ଦେଇ ଯାହାକୁ 'ଜ୍ଞାନ' ବୋଲି କହିଛନ୍ତି ଓ ପଞ୍ଚମ ଅଧ୍ୟାୟର ଷୋହଳ ଶ୍ଳୋକରେ ଯାହାକୁ ଅଜ୍ଞାନନାଶ

କରିବାରେ କାରଣ ବୋଲି କହିଛନ୍ତି ତଥା ଯାହାକୁ ଅମାନିତ୍ୱାଦି ସାଧନମାନଙ୍କ ଦ୍ୱାରା ପ୍ରାପ୍ତ କରାଯାଏ, **ଜ୍ଞାନଚକ୍ଷୁଷା** ପଦଟି ହେଉଛି ସେହି 'ତତ୍ତ୍ୱଜ୍ଞାନ'ର ବାଚକ ।

ସେହି ଜ୍ଞାନଦ୍ୱାରା ଭଲରୂପେ ତତ୍ତ୍ୱତଃ ବୁଝିହୋଇଯାଏ ଯେ, ମହାଭୂତାଦି ଚବିଶ ତତ୍ତ୍ୱର ସମୁଦାୟରୂପକ ସମଷ୍ଟି-ଶରୀରର ନାମ 'କ୍ଷେତ୍ର'; ତାହା ଜ୍ଞେୟ, ପରିବର୍ତ୍ତନଶୀଳ, ବିନାଶୀ, ବିକାରୀ, ଜଡ଼, ପରିଣାମୀ ଓ ଅନିତ୍ୟ; କିନ୍ତୁ 'କ୍ଷେତ୍ରଜ୍ଞ' ହେଉଛି ତାହାର ଜ୍ଞାତା, ଚେତନ, ନିର୍ବିକାର, ଅକର୍ତ୍ତା, ନିତ୍ୟ, ଅବିନାଶୀ, ଅସଙ୍ଗ, ଶୁଦ୍ଧ, ଜ୍ଞାନସ୍ୱରୂପ ଓ ଏକ (ଅଦ୍ୱିତୀୟ) । ଦୁହିଁଙ୍କମଧ୍ୟରେ ଏପରି ପ୍ରଭେଦ ଥିବାରୁ କ୍ଷେତ୍ରଜ୍ଞ କ୍ଷେତ୍ରଠାରୁ ସର୍ବଥା ଭିନ୍ନ । କ୍ଷେତ୍ର ସହିତ କ୍ଷେତ୍ରଜ୍ଞଙ୍କର ଯେଉଁ ଏକତ୍ୱ ପ୍ରତୀତ ହୁଏ, ତାହା କେବଳ ଅଜ୍ଞାନମୂଳକ ହୁଏ । ବାସ୍ତବରେ କ୍ଷେତ୍ର ସହିତ କ୍ଷେତ୍ରଜ୍ଞଙ୍କର କୌଣସି ବି ସମ୍ବନ୍ଧ ନାହିଁ । ଏହା ବୁଝିପାରିବା ହିଁ ଜ୍ଞାନଚକ୍ଷୁଦ୍ୱାରା 'କ୍ଷେତ୍ର ଓ କ୍ଷେତ୍ରଜ୍ଞ'ର ପ୍ରଭେଦ ଜାଣିପାରିବା ।

**ପ୍ରଶ୍ନ –** **ଭୂତପ୍ରକୃତିମୋକ୍ଷମ୍**ର ଅଭିପ୍ରାୟ କ'ଣ ଏବଂ ତାହାକୁ ଜ୍ଞାନଚକ୍ଷୁଦ୍ୱାରା ଜାଣିବା କହିଲେ କ'ଣ ବୁଝାଏ ?

**ଉତ୍ତର –** ଏଠାରେ **ଭୂତ** ଶବ୍ଦର ଅର୍ଥ ପ୍ରକୃତିର କାର୍ଯ୍ୟରୂପକ ସକଳ ଦୃଶ୍ୟବର୍ଗ ଏବଂ **ପ୍ରକୃତି** ହେଉଛି ତାହାର କାରଣ ।

ତେଣୁ ପ୍ରକୃତି ଓ ତାହାର ସମସ୍ତ କାର୍ଯ୍ୟଠାରୁ ସର୍ବଥା ମୁକ୍ତ ହୋଇଯିବା ହିଁ **ଭୂତପ୍ରକୃତିମୋକ୍ଷ** । ଉଲ୍ଲିଖିତପ୍ରକାରେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ପ୍ରଭେଦ ଜାଣିବା ସହିତ ପ୍ରକୃତିଠାରୁ ପୃଥକ ହୋଇଯାଇ କ୍ଷେତ୍ରଜ୍ଞ ନିଜର ବାସ୍ତବିକ୍ ପରମାତ୍ମସ୍ୱରୂପରେ ଅଭିନ୍ନଭାବରେ ପ୍ରତିଷ୍ଠିତ ହୋଇଯିବାକୁ ହିଁ ପ୍ରକୃତିଠାରୁ ଓ ତା'ର କାର୍ଯ୍ୟମାନଙ୍କରୁ କ୍ଷେତ୍ରଜ୍ଞର (ଜୀବାତ୍ମାର) ମୁକ୍ତି ବୋଲାଯାଏ ।

କହିବାର ଅଭିପ୍ରାୟ ଏହି ଯେ, ସ୍ୱପ୍ନ ଦେଖୁଥିବା ମନୁଷ୍ୟ ଯେପରି କୌଣସି କାରଣରୁ ନିଜ ଜାଗ୍ରତ ଅବସ୍ଥା ସ୍ମରଣ କରିଦେଲେ, ସେ ସ୍ୱପ୍ନ ଦେଖୁଛି ବୋଲି ଜାଣିଦିଏ ଏବଂ ଜାଗ୍ରତ ହୋଇଯିବା ହିଁ ସ୍ୱପ୍ନର ଦୁଃଖକଷ୍ଟରୁ ଉଦ୍ଧାର ପାଇଯିବାର ଏକମାତ୍ର ଉପାୟ ବୋଲି ଜାଣି ସେ ତା'ର ପ୍ରକୃତ ଦେହରେ ଜାଗ୍ରତ ହୋଇଯାଏ, ଠିକ୍ ସେହିପରି ଜ୍ଞାନଯୋଗୀ କ୍ଷେତ୍ର ଓ କ୍ଷେତ୍ରଜ୍ଞର ବିଲକ୍ଷଣତାକୁ ଜାଣିପାରି ସଙ୍ଗେ ସଙ୍ଗେ ବୁଝିଯାଆନ୍ତି ଯେ, ଅଜ୍ଞାନବଶତଃ କ୍ଷେତ୍ରକୁ ପ୍ରକୃତ ବସ୍ତୁ ବୋଲି ଧରିନେଇଥିବାରୁ ହିଁ ତା'ସହିତ ତାଙ୍କର ସମ୍ବନ୍ଧ ରହିଥିଲାପରି ଲାଗୁଥିଲା; ତେଣୁ ବାସ୍ତବିକ ସଚ୍ଚିଦାନନ୍ଦଘନ ପରମାତ୍ମସ୍ୱରୂପରେ ସ୍ଥିତ ହୋଇଯିବା ହିଁ ତହିଁରୁ ମୁକ୍ତ ହୋଇଯିବା । ଏହା ହିଁ ତାଙ୍କର କାର୍ଯ୍ୟସହିତ ପ୍ରକୃତିରୁ ମୁକ୍ତ ହୋଇଯିବା ।

**ପ୍ରଶ୍ନ –** 'ଯେ ଏମାନଙ୍କୁ ଜାଣନ୍ତି, ସେ ହିଁ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି' – ଏପରି କହିବାଦ୍ୱାରା କେଉଁ ଭାବ ଦର୍ଶାଯାଉଛି ?

**ଉତ୍ତର –** ଏପରି କହିବାଦ୍ୱାରା ଦର୍ଶାଇଦିଆଯାଇଛି ଯେ, ଉପର୍ଯ୍ୟୁକ୍ତ ତତ୍ତ୍ୱଜ୍ଞାନ ହୋଇଯିବା ସଙ୍ଗେ ସଙ୍ଗେ ଅଜ୍ଞାନସହିତ ସମସ୍ତ ଦୃଶ୍ୟପ୍ରପଞ୍ଚ ଉଭେଇଯାଏ ଏବଂ ସେହିକ୍ଷଣି ହିଁ ତାଙ୍କୁ ପରବ୍ରହ୍ମ ପରମାତ୍ମା ପ୍ରାପ୍ତ ହୋଇଯାଆନ୍ତି ।

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗୋ*
*ନାମ ତ୍ରୟୋଦଶୋଽଧ୍ୟାୟଃ ॥ ୧୩ ॥*

ॐ ଶ୍ରୀପରମାତ୍ମନେ ନମଃ

# ଚତୁର୍ଦ୍ଦଶୋଽଧ୍ୟାୟଃ

## ଗୁଣତ୍ରୟବିଭାଗଯୋଗ

**ଅଧ୍ୟାୟର ନାମ :** ଏହି ଅଧ୍ୟାୟରେ ସତ୍ତ୍ୱ, ରଜ ଓ ତମ— ଏହି ତିନିଗୁଣର ସ୍ୱରୂପ କିପରି, ସେମାନଙ୍କର କାର୍ଯ୍ୟ, କାରଣ ଓ ଶକ୍ତି କିପରି, ସେମାନେ କିପରି କେଉଁ ଅବସ୍ଥାରେ ଜୀବାତ୍ମାକୁ କେଉଁ ବନ୍ଧନରେ ପକାଇଦିଅନ୍ତି ଏବଂ କେଉଁ ଉପାୟରେ ସେମାନଙ୍କ ବନ୍ଧନରୁ ମୁକ୍ତି ପାଇ ମନୁଷ୍ୟ ପରମପଦ ପ୍ରାପ୍ତ ହୋଇପାରେ ତଥା ସେହି ତିନିଗୁଣରୁ ଅତୀତ ହୋଇ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ମନୁଷ୍ୟଙ୍କର ଲକ୍ଷଣ କ'ଣ— ଏହିସବୁ ତ୍ରିଗୁଣସମ୍ବନ୍ଧୀ ବିଷୟର ବିବେଚନ କରାଯାଇଛି। ପ୍ରଥମେ ସାଧନାକାଳରେ ରଜ ଓ ତମ ତ୍ୟାଗ କରି ସତ୍ତ୍ୱକୁ ଗ୍ରହଣ କରିବା ଏବଂ ଶେଷରେ ସକଳ ଗୁଣରୁ ସର୍ବଥା ସମ୍ବନ୍ଧ ତୁଟାଇଦେବା ଆବଶ୍ୟକ— ଏହା ବୁଝାଇଦେବାନିମନ୍ତେ ତିନିଗୁଣଙ୍କୁ ବିଭାଗପୂର୍ବକ ବର୍ଣ୍ଣନା କରାଯାଇଛି। ତେଣୁ ଏହି ଅଧ୍ୟାୟର ନାମ **'ଗୁଣତ୍ରୟବିଭାଗଯୋଗ'** ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଆଗକୁ କୁହାଯିବାକୁ ଥିବା ଜ୍ଞାନର ମହିମା ଏବଂ ସେହି ଜ୍ଞାନ ବିଷୟ କହିବାକୁ ପ୍ରତିଜ୍ଞା କରାଯାଇଛି। ତୃତୀୟ ଓ ଚତୁର୍ଥ ଶ୍ଳୋକରେ ପ୍ରକୃତି ଓ ପୁରୁଷର ସମ୍ବନ୍ଧରୁ ସକଳ ପ୍ରାଣୀଙ୍କ ଉତ୍ପତ୍ତିର ପ୍ରକାର କହି ପଞ୍ଚମରେ ସତ୍ତ୍ୱ, ରଜ ଓ ତମ— ଏହି ତିନିଗୁଣକୁ ଜୀବାତ୍ମାର ବନ୍ଧନର ହେତୁ ବୋଲି କୁହାଯାଇଛି। ଷଷ୍ଠରୁ ଅଷ୍ଟମପର୍ଯ୍ୟନ୍ତ ସତ୍ତ୍ୱ ଆଦି ତିନିଗୁଣର ସ୍ୱରୂପ ଏବଂ ସେମାନଙ୍କ ଦ୍ୱାରା ଜୀବାତ୍ମାକୁ ବନ୍ଧନରେ ପକାଇବାର ପ୍ରଣାଳୀ କ୍ରମାନ୍ୱୟରେ କୁହାଯାଇଛି। ନବମରେ କେଉଁ ଗୁଣ ଜୀବାତ୍ମାକୁ କେଉଁଥିରେ ଲଗାଏ, ତାହାର ସଂକେତ ଦେଇଛନ୍ତି। ଦଶମରେ ଅନ୍ୟ ଦୁଇଟି ଗୁଣକୁ ଦବାଇଦେଇ ତୃତୀୟ ଗୁଣଟି କିପରି ବଢେ, ତାହା କୁହାଯାଇଛି ଏବଂ ଏଗାରଠାରୁ ତେର ଶ୍ଳୋକପର୍ଯ୍ୟନ୍ତ ବୃଦ୍ଧିପ୍ରାପ୍ତ ସତ୍ତ୍ୱ, ରଜ ଓ ତମ— ଏହି ତିନିଗୁଣର ଲକ୍ଷଣ କ୍ରମାନ୍ୱୟରେ କୁହାଯାଇଛି। ଚଉଦ ଓ ପନ୍ଦରରେ ତିନିଗୁଣମଧ୍ୟରୁ ପ୍ରତ୍ୟେକ ଗୁଣର ବୃଦ୍ଧିସମୟରେ ମରୁଥିବା ଲୋକର ଗତି ନିରୂପଣ କରି ଷୋହଳରେ ସାତ୍ତ୍ୱିକ, ରାଜସ ଓ ତାମସ— ତିନିପ୍ରକାର କର୍ମର ଅନୁରୂପ ଫଳ କହିଦିଆଯାଇଛି। ସତର ଶ୍ଳୋକରେ କୁହାଯାଇଛି ଯେ, ଜ୍ଞାନର ଉତ୍ପତ୍ତିରେ ସତ୍ତ୍ୱଗୁଣ, ଲୋଭର ଉତ୍ପତ୍ତିରେ ରଜୋଗୁଣ ଏବଂ ପ୍ରମାଦ, ମୋହ ଓ ଅଜ୍ଞାନର ଉତ୍ପତ୍ତିରେ ତମୋଗୁଣ ହେତୁ ଅଟେ। ଅଠରରେ କୁହାଯାଇଛି ଯେ, ତିନିଗୁଣମଧ୍ୟରୁ ପ୍ରତ୍ୟେକ ଗୁଣରେ ଅବସ୍ଥିତ ଜୀବାତ୍ମାର ଗତି ସେହି ଗୁଣମାନଙ୍କ ଅନୁରୂପ ହୁଏ। ଉଣେଇଶ ଓ କୋଡ଼ିଏରେ ସକଳ କର୍ମ ଗୁଣମାନଙ୍କ ଦ୍ୱାରା କରାଯାଏ ବୋଲି କହି ଆତ୍ମାକୁ ସକଳ ଗୁଣରୁ ଅତୀତ ଏବଂ ଅକର୍ତ୍ତା ବୋଲି ଦେଖିବାର ଓ ଗୁଣାତୀତ ହେବାର ଫଳ କହିଦିଆଯାଇଛି। ଏକୋଇଶରେ ଗୁଣାତୀତ ପୁରୁଷଙ୍କ ଲକ୍ଷଣ ଓ ଆଚରଣ କିପରି ହୋଇଥାଏ ଓ ଗୁଣାତୀତ ହେବାର ଉପାୟ କ'ଣ ବୋଲି ଅର୍ଜୁନ ପଚାରିଛନ୍ତି ଏବଂ ତାହାର ଉତ୍ତରରେ ବାଇଶରୁ ପଚିଶ ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ଗୁଣାତୀତ ପୁରୁଷଙ୍କର ଲକ୍ଷଣ ଓ ଆଚରଣ ଏବଂ ଛବିଶରେ ଗୁଣରୁ ଅତୀତ ହେବାର ଉପାୟ ତଥା ତାହାର ଫଳ ବର୍ଣ୍ଣନା କରିଛନ୍ତି। ତଦନନ୍ତର ଶେଷ ସତେଇଶ ଶ୍ଳୋକରେ ବ୍ରହ୍ମ, ଅମୃତ, ଅବ୍ୟୟ ଆଦି ସବୁ ଭଗବାନଙ୍କର ହିଁ ସ୍ୱରୂପ ହୋଇଥିବାରୁ ନିଜକୁ (ଭଗବାନଙ୍କୁ) ସେସବୁର ପ୍ରତିଷ୍ଠା ବୋଲି କହି ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ**— ତେର ଅଧ୍ୟାୟରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ଲକ୍ଷଣ ନିର୍ଦ୍ଦେଶ କରିଛନ୍ତି ଏବଂ ସେହି ଦୁଇଟିର ଜ୍ଞାନକୁ ଜ୍ଞାନ ବୋଲି କହିଛନ୍ତି; ତଦନୁସାରେ କ୍ଷେତ୍ରର ସ୍ୱରୂପ, ସ୍ୱଭାବ, ବିକାର ଓ ତା'ର ତତ୍ତ୍ୱର ଉତ୍ପତ୍ତିକ୍ରମ ଆଦି ବର୍ଣ୍ଣନା କରିଛନ୍ତି ତଥା କ୍ଷେତ୍ରଜ୍ଞଙ୍କ ସ୍ୱରୂପ ଓ ତାହାର ପ୍ରଭାବ ବର୍ଣ୍ଣନା କରିଛନ୍ତି। ସେଥିରେ ଉଣେଇଶ ଶ୍ଳୋକଠାରୁ ପ୍ରକୃତି-ପୁରୁଷ ନାମରେ ପ୍ରକରଣ ଆରମ୍ଭ କରି ଗୁଣମାନଙ୍କୁ ପ୍ରକୃତିରୁ ଉତ୍ପନ୍ନ ବୋଲି କହିଛନ୍ତି ଏବଂ ଏକୋଇଶ ଶ୍ଳୋକରେ ଏକଥା ବି କହିଛନ୍ତି ଯେ, ଗୁଣମାନଙ୍କର ସଙ୍ଗହେତୁ ହିଁ ପୁରୁଷକୁ ବାରମ୍ବାର ଭଲ-ମନ୍ଦ ଯୋନିରେ ଜନ୍ମ ନେବାକୁ ପଡେ। ଗୁଣମାନଙ୍କର ବିଭିନ୍ନ ସ୍ୱରୂପ କ'ଣ, ସେମାନେ

ଜୀବାତ୍ମାକୁ କିପରି ଶରୀରରେ ବାନ୍ଧିରଖନ୍ତି, କେଉଁ ଗୁଣର ସଙ୍ଗ କେଉଁ ଯୋନିରେ ଜନ୍ମ କରାଏ, ଗୁଣମାନଙ୍କ ଠାରୁ ମୁକ୍ତି ପାଇବାର ଉପାୟ କ'ଣ, ଗୁଣମୁକ୍ତ ପୁରୁଷଙ୍କର ଲକ୍ଷଣ ଓ ଆଚରଣ କିପରି ହୋଇଥାଏ— ଏସବୁ କଥା ଜାଣିବାକୁ ଇଚ୍ଛା ହେବା ସ୍ୱାଭାବିକ। ଅତଏବ ଏହି ବିଷୟର ସ୍ପଷ୍ଟୀକରଣନିମନ୍ତେ ଚତୁର୍ଦ୍ଦଶ ଅଧ୍ୟାୟ ଆରମ୍ଭ କରାଯାଉଛି। ତ୍ରୟୋଦଶ ଅଧ୍ୟାୟରେ ବର୍ଣ୍ଣିତ ଜ୍ଞାନକୁ ହିଁ ସ୍ପଷ୍ଟ କରି ଚତୁର୍ଦ୍ଦଶ ଅଧ୍ୟାୟରେ ବିସ୍ତାରପୂର୍ବକ ବୁଝାଇ ଦିଆଯାଉଛି; ତେଣୁ ପ୍ରଥମ ଦୁଇଟି ଶ୍ଳୋକରେ ଭଗବାନ୍ ଏହି ଜ୍ଞାନର ମହତ୍ତ୍ୱ କହି ତାହା ପୁନର୍ବାର ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି—

ଶ୍ରୀଭଗବାନୁବାଚ

**ପରଂ ଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମମ୍।**
**ଯଜ୍‌ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧିମିତୋ ଗତାଃ॥ ୧ ॥**

**ଅନ୍ୱୟ—** **ଜ୍ଞାନାନାମ୍** = ଜ୍ଞାନମାନଙ୍କ ମଧ୍ୟରେ; **ଉତ୍ତମମ୍** **(ତତ୍)** = ଅତି ଉତ୍ତମ (ସେହି); **ପରମ୍** = ପରମ; **ଜ୍ଞାନମ୍** = ଜ୍ଞାନକୁ; **ଭୂୟଃ** = (ମୁଁ) ପୁନର୍ବାର; **ପ୍ରବକ୍ଷ୍ୟାମି** = (ତୁମକୁ) କହିବି; **ଯତ୍** = ଯାହା; **ଜ୍ଞାତ୍ୱା** = ଜାଣି; **ସର୍ବେ** = ସକଳ; **ମୁନୟଃ** = ମୁନିମାନେ; **ଇତଃ** = ଏହି ସଂସାରରୁ (ମୁକ୍ତ ହୋଇ); **ପରାମ୍** = ପରମ; **ସିଦ୍ଧିମ୍** = ସିଦ୍ଧିକୁ; **ଗତାଃ** = ପ୍ରାପ୍ତ ହୋଇଛନ୍ତି।

**ଶ୍ରୀଭଗବାନ୍ କହିଲେ— ଜ୍ଞାନମାନଙ୍କ ମଧ୍ୟରେ ଅତି ଉତ୍ତମ ସେହି ପରମ ଜ୍ଞାନ ମୁଁ ତୁମକୁ ପୁନର୍ବାର କହିବି, ଯାହା ଜାଣି ସକଳ ମୁନିଜନ ଏହି ସଂସାରରୁ ମୁକ୍ତ ହୋଇ ପରମ ସିଦ୍ଧି ପ୍ରାପ୍ତ ହୋଇଛନ୍ତି॥ ୧ ॥**

**ପ୍ରଶ୍ନ—** ଏଠାରେ **ଜ୍ଞାନାନାମ୍** ପଦଟି କେଉଁ ଜ୍ଞାନମାନଙ୍କର ବାଚକ ଏବଂ ସେମାନଙ୍କ ମଧ୍ୟରୁ ଏଠାରେ ଭଗବାନ୍ କେଉଁ ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି? ସେହି ଜ୍ଞାନ ଅନ୍ୟ ଜ୍ଞାନମାନଙ୍କ ଅପେକ୍ଷା ଉତ୍ତମ ଓ ଶ୍ରେଷ୍ଠ ବୋଲି କାହିଁକି କହିଛନ୍ତି?

**ଉତ୍ତର—** ଶ୍ରୁତି-ସ୍ମୃତି-ପୁରାଣାଦିରେ ବିଭିନ୍ନ ବିଷୟ ବୁଝାଇବାନିମନ୍ତେ ଯେଉଁ ନାନାପ୍ରକାର ଉପଦେଶ ଦିଆଯାଇଛି, **ଜ୍ଞାନାନାମ୍** ପଦଟି ହେଉଛି ସେସବୁର ବାଚକ। ସେମାନଙ୍କ ମଧ୍ୟରୁ ପ୍ରକୃତି ଓ ପୁରୁଷର ସ୍ୱରୂପ ବିବେଚନ କରି ପୁରୁଷର ବାସ୍ତବିକ ସ୍ୱରୂପକୁ ପ୍ରତ୍ୟକ୍ଷ କରାଇଦେଉଥିବା ଯେଉଁ ତତ୍ତ୍ୱଜ୍ଞାନ ରହିଛି, ଏଠାରେ ଭଗବାନ୍ ସେହି ଜ୍ଞାନ ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରୁଛନ୍ତି। ସେହି ଜ୍ଞାନ ପରମାତ୍ମାଙ୍କର ସ୍ୱରୂପକୁ ପ୍ରତ୍ୟକ୍ଷ କରାଇଦିଏ ଓ ଜୀବାତ୍ମାକୁ ପ୍ରକୃତିର ବନ୍ଧନରୁ ମୁକ୍ତ କରିଦେଇ ଚିରମୁକ୍ତି ପ୍ରଦାନ କରେ। ତେଣୁ ସେହି ଜ୍ଞାନକୁ ଅନ୍ୟାନ୍ୟ ଜ୍ଞାନମାନଙ୍କ ଅପେକ୍ଷା ଉତ୍ତମ ଓ ଅତ୍ୟନ୍ତ ଉତ୍କୃଷ୍ଟ ବୋଲି କୁହାଯାଏ।

**ପ୍ରଶ୍ନ—** ଏଠାରେ **ଭୂୟଃ** ପଦ ପ୍ରୟୋଗର ଅଭିପ୍ରାୟ କ'ଣ?

**ଉତ୍ତର—** **ଭୂୟଃ** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଆଗରୁ ଏହି ଜ୍ଞାନ ତ ନିରୂପଣ କରାଯାଇସାରିଛି, ତଥାପି ଅତ୍ୟନ୍ତ ଗହନ ଓ ଦୁର୍ବିଜ୍ଞେୟ ହୋଇଥିବାରୁ ତାହା ବୁଝିବା କଠିନ। ତେଣୁ ଭଲରୂପେ ବୁଝାଇଦେବା ନିମନ୍ତେ ପ୍ରକାରାନ୍ତରେ ପୁନର୍ବାର ତାହା ବର୍ଣ୍ଣନା କରାଯାଉଛି।

**ପ୍ରଶ୍ନ—** ଏଠାରେ **ମୁନୟଃ** ପଦଟି କେଉଁମାନଙ୍କ ବାଚକ? ଏବଂ ସେମାନେ ଏହି ଜ୍ଞାନକୁ ବୁଝି ଯାହା ପ୍ରାପ୍ତ ହୋଇଛନ୍ତି, ସେହି 'ପରମସିଦ୍ଧି' କ'ଣ?

**ଉତ୍ତର—** ଏଠାରେ **ମୁନୟଃ** ପଦଟି ହେଉଛି ଜ୍ଞାନଯୋଗ ସାଧନାଦ୍ୱାରା ପରମଗତି ପାଇଥିବା ଜ୍ଞାନୀମାନଙ୍କର ବାଚକ। ଯାହାକୁ 'ପରବ୍ରହ୍ମପ୍ରାପ୍ତି' କହନ୍ତି; ଯାହାକୁ 'ପରମଶାନ୍ତି', 'ଆତ୍ୟନ୍ତିକ ସୁଖ' ଓ 'ଅପୁନରାବୃତ୍ତି' ଆଦି ଅନେକ ନାମରେ ବର୍ଣ୍ଣନା କରାଯାଇଛି, ଯେଉଁଠିକି ଗଲେ ଆଉ ଫେରି ଆସିବାକୁ ପଡ଼େ ନାହିଁ, ମୁନିମାନଙ୍କ ଦ୍ୱାରା ପ୍ରାପ୍ତ କରାଯାଇଥିବା 'ପରମସିଦ୍ଧି' ମଧ୍ୟ ତାହାକୁ ହିଁ ବୁଝାଏ।

**ପ୍ରଶ୍ନ—** **ଇତଃ** ପଦଟି କାହାର ବାଚକ ଏବଂ ତାହା ପ୍ରୟୋଗ କରିବାର ଅଭିପ୍ରାୟ କ'ଣ?

**ଉତ୍ତର—** **ଇତଃ** ପଦଟି ସଂସାରର ବାଚକ। ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ସେହି ମୁନିମାନଙ୍କର ଏହି ମହାଦୁଃଖମୟ ମୃତ୍ୟୁରୂପୀ ସଂସାରରୁ ଚିରଦିନଲାଗି ସମ୍ପର୍କ ତୁଟିଯାଇଛି।

**ଇଦଂ ଜ୍ଞାନମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ ।**
**ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ ।। ୨ ।।**

**ଅନ୍ୱୟ –** ଇଦମ୍ = ଏହି; ଜ୍ଞାନମ୍ = ଜ୍ଞାନକୁ; ଉପାଶ୍ରିତ୍ୟ = ଆଶ୍ରୟ କରି ଅର୍ଥାତ୍ ଧାରଣ କରି; ମମ = ମୋର; ସାଧର୍ମ୍ୟମ୍ = ସ୍ୱରୂପକୁ; ଆଗତାଃ = ପ୍ରାପ୍ତ ହୋଇଥିବା ପୁରୁଷ; ସର୍ଗେ = ସୃଷ୍ଟିର ଆରମ୍ଭରେ; ନ, ଉପଜାୟନ୍ତେ = ପୁନଶ୍ଚ ଉତ୍ପନ୍ନ ହୁଅନ୍ତି ନାହିଁ; ଚ = ଓ; ପ୍ରଳୟେ = ପ୍ରଳୟକାଳରେ; ଅପି = ବି; ନ, ବ୍ୟଥନ୍ତି = ବ୍ୟଥିତ ହୁଅନ୍ତି ନାହିଁ।

**ଏହି ଜ୍ଞାନକୁ ଆଶ୍ରୟ କରି ଅର୍ଥାତ୍ ଧାରଣ କରି ମୋର ସ୍ୱରୂପ ପ୍ରାପ୍ତ ହୋଇଥିବା ପୁରୁଷମାନେ ସୃଷ୍ଟିର ଆରମ୍ଭରେ ପୁନର୍ବାର ଉତ୍ପନ୍ନ ହୁଅନ୍ତି ନାହିଁ, କି ପ୍ରଳୟକାଳରେ ବି ବ୍ୟଥିତ ହୁଅନ୍ତି ନାହିଁ ।। ୨ ।।**

**ପ୍ରଶ୍ନ –** **ଜ୍ଞାନମ୍** ସହିତ **ଇଦମ୍** ବିଶେଷଣ ପ୍ରୟୋଗର ଭାବ କ'ଣ? ପୁଣି ସେହି ଜ୍ଞାନର ଆଶ୍ରୟ ନେବା ଅର୍ଥ କ'ଣ?

**ଉତ୍ତର –** 'ଯାହାର ବର୍ଣ୍ଣନା ତେର ଅଧ୍ୟାୟରେ କରାଯାଇସାରିଛି ଏବଂ ଏହି ଚଉଦ ଅଧ୍ୟାୟରେ ମଧ୍ୟ କରାଯାଉଛି, ସେହି ଜ୍ଞାନର ମହିମା ଏପରି'— ଏହି କଥାଟି ସ୍ପଷ୍ଟ କରିଦେବା ନିମନ୍ତେ **ଜ୍ଞାନମ୍** ପଦ ସହିତ **ଇଦମ୍** ବିଶେଷଣ ପ୍ରୟୋଗ କରାଯାଇଛି। ଏହି ପ୍ରକରଣରେ ବର୍ଣ୍ଣିତ ଜ୍ଞାନ ଅନୁସାରେ ପ୍ରକୃତି ଓ ପୁରୁଷର ସ୍ୱରୂପକୁ ବୁଝି ଗୁଣମାନଙ୍କ ସହିତ ପ୍ରକୃତିରୁ ସର୍ବଥା ଅତୀତ ହୋଇଯିବା ଏବଂ ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦ ପରମାତ୍ମାଙ୍କ ସ୍ୱରୂପରେ ଅଭିନ୍ନଭାବରେ ସ୍ଥିତ ରହିବା ହିଁ ଏହି ଜ୍ଞାନର ଆଶ୍ରୟ ନେବା।

**ପ୍ରଶ୍ନ –** ଏଠାରେ ଭଗବାନଙ୍କର ସାଧର୍ମ୍ୟ ପ୍ରାପ୍ତ ହେବା କହିଲେ କ'ଣ ବୁଝାଏ?

**ଉତ୍ତର –** ଗତ ଶ୍ଳୋକରେ **ପରାଂ ସିଦ୍ଧିଂ ଗତାଃ** ଦ୍ୱାରା ଯେଉଁ କଥା କୁହାଯାଇଛି, ଏହି ଶ୍ଳୋକରେ **ମମ ସାଧର୍ମ୍ୟମାଗତାଃ**ଦ୍ୱାରା ମଧ୍ୟ ସେହି କଥା କୁହାଯାଇଛି। ଅଭିପ୍ରାୟ ଏହି ଯେ, ଭଗବାନଙ୍କର ନିର୍ଗୁଣ ରୂପକୁ ଅଭେଦଭାବରେ ପ୍ରାପ୍ତ ହୋଇଯିବା ହିଁ ଭଗବାନଙ୍କର ସାଧର୍ମ୍ୟ ପ୍ରାପ୍ତ ହୋଇଯିବା।

**ପ୍ରଶ୍ନ –** 'ଭଗବତ୍‌ପ୍ରାପ୍ତ ପୁରୁଷମାନେ ସୃଷ୍ଟିର ଆରମ୍ଭରେ ପୁନର୍ବାର ଉତ୍ପନ୍ନ ହୁଅନ୍ତି ନାହିଁ ଓ ପ୍ରଳୟକାଳରେ ବି ବ୍ୟାକୁଳ ହୁଅନ୍ତି ନାହିଁ'– ଏ କଥାର ଅଭିପ୍ରାୟ କ'ଣ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦର୍ଶାଇଦେଇଛନ୍ତି ଯେ, ଏହିସବୁ ଅଧ୍ୟାୟରେ କୁହାଯାଇଥିବା ଜ୍ଞାନର ଆଶ୍ରୟ ନେଇ, ତଦନୁସାରେ ସାଧନା କରି ଯେଉଁ ପୁରୁଷମାନେ ଅଭେଦଭାବରେ ପରବ୍ରହ୍ମ ପରମାତ୍ମାଙ୍କର ସ୍ୱରୂପ ପ୍ରାପ୍ତ ହୋଇଯାଇଛନ୍ତି, ସେହି ମୁକ୍ତ ପୁରୁଷମାନେ ମହାସର୍ଗର ଆଦିରେ ପୁନର୍ବାର ଉତ୍ପନ୍ନ ହୁଅନ୍ତି ନାହିଁ, କି ପ୍ରଳୟକାଳରେ ପୀଡ଼ିତ ହୁଅନ୍ତି ନାହିଁ। ବସ୍ତୁତଃ ସୃଷ୍ଟିର ସର୍ଗ ଓ ପ୍ରଳୟ ସହିତ ସେମାନଙ୍କର କୌଣସି ସମ୍ବନ୍ଧ ହିଁ ରହେ ନାହିଁ। କାରଣ, ଭଲ-ମନ୍ଦ ଯୋନିରେ ଜନ୍ମ ହେବାର ପ୍ରଧାନ କାରଣ ହେଉଛି ଗୁଣମାନଙ୍କର ସଙ୍ଗ ଏବଂ ମୁକ୍ତ ପୁରୁଷମାନେ ଗୁଣରୁ ସର୍ବଥା ଅତୀତ ଅଟନ୍ତି; ତେଣୁ ସେମାନଙ୍କର ପୁନରାଗମନ ହୁଏ ନାହିଁ ଓ ଯେଉଁଠି ଉତ୍ପତ୍ତି ହିଁ ହୁଏ ନାହିଁ, ସେଠାରେ ବିନାଶର ପ୍ରଶ୍ନ ବା ଆସିବ କିପରି?

**ସମ୍ବନ୍ଧ –** ଏପରିଭାବରେ ଜ୍ଞାନ ବିଷୟରେ ପୁନର୍ବାର କହିବାକୁ ପ୍ରତିଜ୍ଞା କରି ତାହାର ମହତ୍ତ୍ୱ ନିରୂପଣ କରିବା ପରେ ବର୍ତ୍ତମାନ ଭଗବାନ୍ ସେହି ଜ୍ଞାନର ବର୍ଣ୍ଣନା ଆରମ୍ଭ କରୁଛନ୍ତି ଏବଂ ପ୍ରକୃତି ଓ ପୁରୁଷରୁ ସମଗ୍ର ଜଗତର ଉତ୍ପତ୍ତି ହୁଏ ବୋଲି ଦୁଇଟି ଶ୍ଳୋକରେ କହୁଛନ୍ତି –

**ମମ ଯୋନିର୍ମହଦ୍‌ବ୍ରହ୍ମ ତସ୍ମିନ୍‌ଗର୍ଭଂ ଦଧାମ୍ୟହମ୍ ।**
**ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ।। ୩ ।।**

**ଅନ୍ୱୟ –** ଭାରତ = ହେ ଅର୍ଜୁନ; ମମ = ମୋର; ମହତ୍, ବ୍ରହ୍ମ = ମହତ୍ ବ୍ରହ୍ମସ୍ୱରୂପ ମୂଳପ୍ରକୃତି ଅର୍ଥାତ୍ ତ୍ରିଗୁଣମୟୀ ମାୟା; ଯୋନିଃ = (ସକଳ ଭୂତଙ୍କର) ଯୋନି ଅର୍ଥାତ ଗର୍ଭାଧାନର ସ୍ଥାନ; ଅହମ୍ = ମୁଁ; ତସ୍ମିନ୍ = ସେହି ଯୋନିରେ;

**ଗର୍ଭମ୍** = ଚେତନସମୁଦାୟରୂପକ ଗର୍ଭକୁ; **ଦଧାମି** = ସ୍ଥାପନ କରେ; **ତତଃ** = ସେହି ଜଡଚେତନର ସଂଯୋଗରୁ; **ସର୍ବଭୂତାନାମ୍** = ସକଳଭୂତଙ୍କର; **ସମ୍ଭବଃ** = ଉତ୍ପତ୍ତି; **ଭବତି** = ହୁଏ।

**ହେ ଅର୍ଜୁନ! ମୋର ମହଦ୍-ବ୍ରହ୍ମରୂପକ ମୂଳପ୍ରକୃତି ହେଉଛି ସକଳ ଭୂତଙ୍କର ଯୋନି ଅର୍ଥାତ୍ ଗର୍ଭାଧାନର ସ୍ଥାନ ଏବଂ ମୁଁ ସେହି ଯୋନିରେ ଚେତନ-ସମୁଦାୟରୂପକ ଗର୍ଭ ସ୍ଥାପନ କରିଥାଏ। ସେହି ଜଡ-ଚେତନର ସଂଯୋଗରୁ ସମସ୍ତ ଭୂତଗଣଙ୍କର ଉତ୍ପତ୍ତି ହୁଏ॥ ୩ ॥**

**ପ୍ରଶ୍ନ** – ମହଦ୍ ବିଶେଷଣ ସହିତ ବ୍ରହ୍ମ ପଦଟି କାହାର ବାଚକ ତଥା ତାହାକୁ **ମମ** କହିବାର ଓ **ଯୋନି** ନାମ ଦେବାର ଅଭିପ୍ରାୟ କ'ଣ ?

**ଉତ୍ତର** – **ମହଦ୍** ବିଶେଷଣ ସହିତ **ବ୍ରହ୍ମ** ପଦଟି ହେଉଛି ସମସ୍ତ ଜଗତର କାରଣରୂପା ମୂଳପ୍ରକୃତିର ବାଚକ; ତାହାକୁ 'ଅବ୍ୟକ୍ତ' ଓ 'ପ୍ରଧାନ' ବୋଲି ମଧ୍ୟ କହନ୍ତି। ନବମ ଅଧ୍ୟାୟର ସପ୍ତମ ଶ୍ଳୋକରେ ଏହାର ବ୍ୟାଖ୍ୟା କରିଦିଆଯାଇଛି। ତାହାକୁ **ମମ** (ମୋର) ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ତାହା ସହିତ ଭଗବାନ୍‌ଙ୍କର ଅନାଦି ସମ୍ବନ୍ଧ ରହିଛି। ଉପାଦାନକାରଣ ଓ ଗର୍ଭାଧାନର ଆଧାରକୁ **ଯୋନି** କୁହାଯାଏ। ଏଠାରେ ତାହାକୁ **ଯୋନି** ନାମ ଦେଇ ଭଗବାନ୍ ଦେଖାଇଛନ୍ତି ଯେ, ପ୍ରାଣୀମାନଙ୍କ ଶରୀରର ଏହା ହେଉଛି ଉପାଦାନ-କାରଣ ଏବଂ ଏହା ଗର୍ଭାଧାନର ଆଧାର।

**ପ୍ରଶ୍ନ** – ଏଠାରେ **ଗର୍ଭମ୍** ପଦଟି କାହାର ବାଚକ ଓ ତାହାକୁ ସେହି ମହଦ୍‌ବ୍ରହ୍ମରୂପକ ପ୍ରକୃତିରେ ସ୍ଥାପନା କରିବା କହିଲେ କ'ଣ ବୁଝାଏ ?

**ଉତ୍ତର** – ସପ୍ତମ ଅଧ୍ୟାୟରେ ଯାହାକୁ 'ପରା ପ୍ରକୃତି' ବୋଲି କୁହାଯାଇଛି, ଏଠାରେ **ଗର୍ଭମ୍** ପଦଟି ହେଉଛି ସେହି ଚେତନ-ସମୁଦାୟର ବାଚକ ଏବଂ ମହାପ୍ରଳୟ ସମୟରେ ନିଜ ନିଜର ସଂସ୍କାରମାନଙ୍କ ସହିତ ପରମେଶ୍ୱରଙ୍କ ଠାରେ ସ୍ଥିତ ଜୀବସମୁଦାୟକୁ ମହାସର୍ଗର ଆଦିରେ ପ୍ରକୃତି ସହିତ ବିଶେଷ ସମ୍ବନ୍ଧିତ କରାଇଦେବା ହିଁ ସେହି ଚେତନସମୁଦାୟର ଗର୍ଭକୁ ପ୍ରକୃତିରୂପକ ଯୋନିରେ ସ୍ଥାପନ କରିବା।

**ପ୍ରଶ୍ନ** – **ତତଃ** ପଦ କାହାର ବାଚକ ଓ **ସର୍ବଭୂତାନାମ୍** ପଦ କେଉଁମାନଙ୍କର ବାଚକ ? ସେମାନଙ୍କର ଉତ୍ପତ୍ତି ହେବା କ'ଣ ?

**ଉତ୍ତର** – ଏଠାରେ **ତତଃ** ପଦଟି ହେଉଛି ଭଗବାନଙ୍କ ଦ୍ୱାରା କରାଯାଉଥିବା ସେହି ଜଡ଼ ଓ ଚେତନର ସଂଯୋଗର ବାଚକ ଏବଂ **ସର୍ବଭୂତାନାମ୍** ପଦଟି ହେଉଛି ନିଜ ନିଜର କର୍ମ-ସଂସ୍କାର ଅନୁସାରେ ଦେବ, ମନୁଷ୍ୟ, ପଶୁ, ପକ୍ଷୀ ଆଦି ବିଭିନ୍ନ ଶରୀରରେ ଉତ୍ପନ୍ନ ହେଉଥିବା ପ୍ରାଣୀମାନଙ୍କର ବାଚକ। ଉପରୋକ୍ତ ଜଡଚେତନଙ୍କ ସଂଯୋଗରେ ଭିନ୍ନ ଭିନ୍ନ ଆକୃତି ନେଇ ସକଳ ପ୍ରାଣୀ ସ୍ଥୂଳରୂପରେ ପ୍ରକଟ ହେବା ହିଁ ସେମାନଙ୍କର ଉତ୍ପତ୍ତି। ମହାସର୍ଗର ଆଦ୍ୟକାଳରେ ଉପରୋକ୍ତ ସଂଯୋଗଦ୍ୱାରା ପ୍ରଥମେ ହିରଣ୍ୟଗର୍ଭଙ୍କର ଓ ତା'ପରେ ଅନ୍ୟାନ୍ୟ ଭୂତମାନଙ୍କର ଉତ୍ପତ୍ତି ହୁଏ।

**ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ।**
**ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା॥ ୪ ॥**

**ଅନ୍ୱୟ** – **କୌନ୍ତେୟ** = ହେ ଅର୍ଜୁନ; **ସର୍ବଯୋନିଷୁ** = (ନାନାପ୍ରକାର) ସକଳ ଯୋନିରେ; **ଯାଃ** = ଯେତେସବୁ; **ମୂର୍ତ୍ତୟଃ** = ଶରୀରଧାରୀ ପ୍ରାଣୀମାନେ; **ସମ୍ଭବନ୍ତି** = ଉତ୍ପନ୍ନ ହୁଅନ୍ତି; **ମହଦ୍, ବ୍ରହ୍ମ** = ମୂଳପ୍ରକୃତି; **ତାସାମ୍** = ସେହି ସମସ୍ତଙ୍କର; **ଯୋନିଃ** = ଗର୍ଭଧାରଣ କରୁଥିବା ମାତା; **ଅହମ୍** = ମୁଁ; **ବୀଜପ୍ରଦଃ** = ବୀଜପ୍ରଦାନକାରୀ; **ପିତା** = ପିତା।

**ହେ ଅର୍ଜୁନ! ନାନାପ୍ରକାର ଯୋନିରେ ଯେତେସବୁ ଶରୀରଧାରୀ ପ୍ରାଣୀ ଉତ୍ପନ୍ନ ହୁଅନ୍ତି, ମୂଳପ୍ରକୃତି ହେଉଛି ସେହି ସମସ୍ତଙ୍କର ଗର୍ଭଧାରଣ କରୁଥିବା ମାତା ଏବଂ ମୁଁ ହେଉଛି ବୀଜ ସ୍ଥାପନ କରୁଥିବା ପିତା॥ ୪ ॥**

**ପ୍ରଶ୍ନ** – ଏଠାରେ **ମୂର୍ତ୍ତୟଃ** ପଦ କେଉଁମାନଙ୍କ ବାଚକ ଏବଂ ସକଳ ଯୋନିରେ ସେମାନଙ୍କର ଉତ୍ପନ୍ନ ହେବା କ'ଣ ?

**ଉତ୍ତର** – **ମୂର୍ତ୍ତୟଃ** ପଦଟି ହେଉଛି ଦେବ, ମନୁଷ୍ୟ,

ରାକ୍ଷସ, ପଶୁ ଓ ପକ୍ଷୀ ଆଦି ନାନାପ୍ରକାର ବର୍ଣ୍ଣ ଓ ଆକୃତିର ଶରୀରଧାରୀ ବିଭିନ୍ନପ୍ରାଣୀମାନଙ୍କର ବାଚକ ଏବଂ ସେହି ଦେବ, ମନୁଷ୍ୟ, ପଶୁ, ପକ୍ଷୀ ଆଦି ବିଭିନ୍ନ ଯୋନିରେ ସେହିସବୁ ପ୍ରାଣୀମାନଙ୍କର ସ୍ଥୂଳରୂପରେ ଜନ୍ମ ଗ୍ରହଣ କରିବା ହିଁ ସେମାନଙ୍କର ଉତ୍ପନ୍ନ ହେବା ।

**ପ୍ରଶ୍ନ –** 'ସେହିସବୁ ମୂର୍ତ୍ତିମାନଙ୍କର ମୁଁ ହେଉଛି ବୀଜ ପ୍ରଦାନକାରୀ ପିତା ଓ ମହଦ୍‌ବ୍ରହ୍ମ ହେଉଛି ମାତା' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏପରି କହି ଭଗବାନ୍ ଦେଖାଇଦେଇଛନ୍ତି ଯେ, ସେହିସବୁ ମୂର୍ତ୍ତିମାନଙ୍କର ଯେଉଁ ସ୍ଥୂଳ-ସୂକ୍ଷ୍ମ ଶରୀର, ସେଗୁଡ଼ିକ ପ୍ରକୃତିର ଅଂଶରୁ ହିଁ ଗଠିତ ହୁଏ ଏବଂ ସେସମସ୍ତଙ୍କର ଯେଉଁ ଚେତନ ଆତ୍ମା ଥାଏ, ତାହା ହେଉଛି ଭଗବାନଙ୍କର ଅଂଶ । ସେହି ଦୁଇ ତତ୍ତ୍ୱର ସମ୍ବନ୍ଧରୁ ସମସ୍ତ ମୂର୍ତ୍ତି ଅର୍ଥାତ୍ ଶରୀରଧାରୀ ପ୍ରାଣୀ ପ୍ରକଟ ହୁଅନ୍ତି । ଅତଏବ ପ୍ରକୃତି ସେମାନଙ୍କର ମାତା ଓ ଭଗବାନ୍ ସେମାନଙ୍କର ପିତା ଅଟନ୍ତି ।

***ସମ୍ବନ୍ଧ –*** *ତ୍ରୟୋଦଶ ଅଧ୍ୟାୟର ଏକୋଇଶ ଶ୍ଳୋକରେ କୁହାଯାଇଥିଲା ଯେ, ଗୁଣମାନଙ୍କର ସଙ୍ଗକୁ ନେଇ ହିଁ ଜୀବର ଭଲ-ମନ୍ଦ ଯୋନିରେ ଜନ୍ମ ହୁଏ । ତଦନୁସାରେ ଜୀବମାନଙ୍କର ନାନାପ୍ରକାର ଯୋନିରେ ଜନ୍ମ ହେବା ବିଷୟ ତ ଚତୁର୍ଥ ଶ୍ଳୋକପର୍ଯ୍ୟନ୍ତ କୁହାଗଲା, କିନ୍ତୁ ସେସବୁଥିରେ ଗୁଣମାନଙ୍କର କଥା ଆସି ନାହିଁ । ତେଣୁ ବର୍ତ୍ତମାନ ସେହି ଗୁଣମାନେ କ'ଣ, ସେମାନଙ୍କର ଢଙ୍ଗ କ'ଣ, କେଉଁ ଗୁଣର ସଙ୍ଗରୁ ଭଲଯୋନିରେ ଓ କାହାର ସଙ୍ଗରୁ ମନ୍ଦଯୋନିରେ ଜନ୍ମ ମିଳେ ଇତ୍ୟାଦି କଥା ସ୍ପଷ୍ଟ କରିବାନିମନ୍ତେ ଏହି ପ୍ରକରଣ ଆରମ୍ଭ କରି ଭଗବାନ୍ ପଞ୍ଚମରୁ ଅଷ୍ଟମ ଶ୍ଳୋକପର୍ଯ୍ୟନ୍ତ ପ୍ରଥମେ ସେହି ତିନିଗୁଣର ପ୍ରକୃତିରୁ ଉତ୍ପତ୍ତି ଓ ସେମାନଙ୍କର ବିଭିନ୍ନ ନାମ କହି, ତା'ପରେ ସେମାନଙ୍କର ସ୍ୱରୂପ ଓ ସେମାନଙ୍କ ଦ୍ୱାରା ଜୀବାତ୍ମାର ବନ୍ଧନର ପ୍ରଣାଳୀ କ୍ରମଶଃ ପୃଥକ୍-ପୃଥକ୍ ବର୍ଣ୍ଣନା କରୁଛନ୍ତି –*

## ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।
## ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ ।। ୫ ।।

**ଅନ୍ୱୟ – ମହାବାହୋ** = ହେ ଅର୍ଜୁନ; **ସତ୍ତ୍ୱମ୍** = ସତ୍ତ୍ୱଗୁଣ; **ରଜଃ** = ରଜୋଗୁଣ; **ତମଃ** = ତମୋଗୁଣ; **ଇତି** = ଏହି; **ପ୍ରକୃତିସମ୍ଭବାଃ** = ପ୍ରକୃତିରୁ ଉତ୍ପନ୍ନ ହୋଇଥିବା; **ଗୁଣାଃ** = (ଏହି) ତିନି ଗୁଣ; **ଅବ୍ୟୟମ୍** = ଅବିନାଶୀ; **ଦେହିନମ୍** = ଜୀବାତ୍ମାକୁ; **ଦେହେ** = ଶରୀରରେ; **ନିବଧ୍ନନ୍ତି** = ବାନ୍ଧିରଖନ୍ତି ।

**ହେ ଅର୍ଜୁନ! ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ସତ୍ତ୍ୱ, ରଜ ଓ ତମ– ଏହି ତିନିଗୁଣ ଅବିନାଶୀ ଜୀବାତ୍ମାକୁ ଶରୀରରେ ବାନ୍ଧିରଖନ୍ତି ।। ୫ ।।**

**ପ୍ରଶ୍ନ –ସତ୍ତ୍ୱମ୍, ରଜଃ** ଓ **ତମଃ** ଏହି ତିନୋଟି ପଦ ପ୍ରୟୋଗର, ତଥା ଗୁଣମାନଙ୍କୁ **ପ୍ରକୃତିସମ୍ଭବ** କହିବାର ଭାବ କ'ଣ ?

**ଉତ୍ତର –** ଗୁଣମାନଙ୍କର ପ୍ରକାର, ନାମ ଓ ସଂଖ୍ୟା କହିବା ନିମନ୍ତେ ଏଠାରେ **ସତ୍ତ୍ୱମ୍, ରଜଃ** ଓ **ତମଃ** – ଏହି ତିନିଟି ପଦ ପ୍ରୟୋଗ କରାଯାଇଛି । ଅଭିପ୍ରାୟ ଏହି ଯେ, ଗୁଣମାନେ ତିନିପ୍ରକାର; ସତ୍ତ୍ୱ, ରଜ ଓ ତମ ହେଉଛି ସେମାନଙ୍କର ନାମ ଓ ଏହି ତିନିଗୁଣ ପରସ୍ପରଠାରୁ ଭିନ୍ନ ଅଟନ୍ତି । ଏମାନଙ୍କୁ **ପ୍ରକୃତିସମ୍ଭବ** ବୋଲି କହିବାର ଅଭିପ୍ରାୟ ହେଲା, ଏହି ତିନିଗୁଣ ହେଉଛି ପ୍ରକୃତିର କାର୍ଯ୍ୟ ଏବଂ ସକଳ ଜଡ଼ ପଦାର୍ଥ ଏହି ତିନି ଗୁଣର ହିଁ ବିସ୍ତାର ।

**ପ୍ରଶ୍ନ –** ଦେହିନମ୍ ପଦ ପ୍ରୟୋଗ କରିବାର ଓ ତାହାକୁ **ଅବ୍ୟୟମ୍** କହିବାର ଅଭିପ୍ରାୟ କ'ଣ ? 'ଏହି ତିନିଗୁଣ ଜୀବାତ୍ମାକୁ ଶରୀରରେ ବାନ୍ଧିରଖନ୍ତି' କହିଲେ କ'ଣ ବୁଝାଏ ?

**ଉତ୍ତର – ଦେହିନମ୍** ପଦ ବ୍ୟବହାର କରି ଭଗବାନ୍ ଦେଖାଇଛନ୍ତି ଯେ, ଯାହାର ଶରୀରରେ ଅଭିମାନ ରହିଛି, ତା'ଉପରେ ଏହି ଗୁଣଗୁଡ଼ିକର ପ୍ରଭାବ ପଡ଼େ ଏବଂ ତାହାକୁ (ଜୀବାତ୍ମାକୁ) **ଅବ୍ୟୟ** କହି ପ୍ରକାଶ କରିଛନ୍ତି ଯେ, ବାସ୍ତବରେ ତାହା ସ୍ୱରୂପତଃ ସକଳପ୍ରକାର ବିକାରରୁ ରହିତ ଓ ଅବିନାଶୀ ଅଟେ; ତେଣୁ ତାହାର ବନ୍ଧନ ହୋଇ ନ ପାରେ; କେବଳ ଅନାଦିସିଦ୍ଧ ଅଜ୍ଞାନହେତୁ ସେ ବନ୍ଧନରେ ପଡ଼ିଛି ବୋଲି ମନେ କରେ; ବନ୍ଧନ

ଅଛି ବୋଲି ମାନିନିଏ। ଏହି ତିନିଗୁଣ ନିଜ ଅନୁରୂପ ଭୋଗରେ ତଥା ଶରୀରରେ ତା'ଠାରେ (ଜୀବାତ୍ମାଠାରେ) ଯେଉଁ ମମତ୍ୱ, ଆସକ୍ତି ଓ ଅଭିମାନ ଉତ୍ପନ୍ନ କରିଦିଅନ୍ତି, ତାହା ହିଁ ତିନିଗୁଣଦ୍ୱାରା ଜୀବାତ୍ମାକୁ ଶରୀରରେ ବାନ୍ଧିଦେବା। ଅଭିପ୍ରାୟ ଏହି ଯେ, ତିନିଗୁଣରୁ ଉତ୍ପନ୍ନ ଶରୀରମାନଙ୍କରେ ଓ ସେମାନଙ୍କ ସହିତ ସମ୍ବନ୍ଧ ରଖୁଥିବା ପଦାର୍ଥମାନଙ୍କରେ ଜୀବାତ୍ମାର ଯେଉଁ ଅଭିମାନ, ଆସକ୍ତି ଓ ମମତ୍ୱ ରହିଛି, ତାହା ହିଁ ବନ୍ଧନ।

**ସମ୍ବନ୍ଧ –** ବର୍ତ୍ତମାନ ସତ୍ତ୍ୱଗୁଣର ସ୍ୱରୂପ ଓ ତାହାଦ୍ୱାରା ଜୀବାତ୍ମାକୁ ବନ୍ଧାଯିବାର ପ୍ରଣାଳୀ ବିଷୟରେ କହୁଛନ୍ତି–

**ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟମ୍।**
**ସୁଖସଙ୍ଗେନ ବଧ୍ନାତି ଜ୍ଞାନସଙ୍ଗେନ ଚାନଘ॥ ୬ ॥**

**ଅନ୍ୱୟ –** **ଅନଘ** = ହେ ନିଷ୍ପାପ; **ତତ୍ର** = ସେହି ତିନିଗୁଣମଧ୍ୟରୁ; **ସତ୍ତ୍ୱମ୍** = ସତ୍ତ୍ୱଗୁଣ; **ନିର୍ମଳତ୍ୱାତ୍** = ନିର୍ମଳ ହୋଇଥିବାରୁ; **ପ୍ରକାଶକମ୍** = ପ୍ରକାଶକ; **ଅନାମୟମ୍** = ବିକାରରହିତ (କିନ୍ତୁ); **ସୁଖସଙ୍ଗେନ** = ସୁଖର ସମ୍ବନ୍ଧଦ୍ୱାରା; **ଚ** = ଓ; **ଜ୍ଞାନସଙ୍ଗେନ** = ଜ୍ଞାନର ସମ୍ବନ୍ଧଦ୍ୱାରା ଅର୍ଥାତ୍ ଜ୍ଞାନର ଅଭିମାନଦ୍ୱାରା; **ବଧ୍ନାତି** = ବନ୍ଧନ କରେ।

**ହେ ନିଷ୍ପାପ! ସେହି ତିନିଗୁଣମଧ୍ୟରୁ ସତ୍ତ୍ୱଗୁଣ ନିର୍ମଳ ହୋଇଥିବାରୁ ପ୍ରକାଶକ ଓ ବିକାରରହିତ ଅଟେ; କିନ୍ତୁ ତାହା ସୁଖ ସମ୍ବନ୍ଧଦ୍ୱାରା ଓ ଜ୍ଞାନସମ୍ବନ୍ଧଦ୍ୱାରା ଅର୍ଥାତ୍ ଜ୍ଞାନର ଅଭିମାନଦ୍ୱାରା ବନ୍ଧନ କରେ॥ ୬ ॥**

**ପ୍ରଶ୍ନ –** **ନିର୍ମଳତ୍ୱାତ୍** ପଦ ପ୍ରୟୋଗର ତଥା ସତ୍ତ୍ୱଗୁଣକୁ ପ୍ରକାଶକ ଓ ଅନାମୟ କହିବାର ଅଭିପ୍ରାୟ କ'ଣ?

**ଉତ୍ତର –** ସତ୍ତ୍ୱଗୁଣର ସ୍ୱରୂପ ସର୍ବଥା ନିର୍ମଳ; ସେଥିରେ କୌଣସିପ୍ରକାର କିଛି ବି ଦୋଷ ନାହିଁ; ତେଣୁ ତାହା ପ୍ରକାଶକ ଓ ଅନାମୟ। ଏହି ଗୁଣଦ୍ୱାରା ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ ପ୍ରକାଶ ବୃଦ୍ଧି ପାଏ ଏବଂ ଦୁଃଖ, ବିକ୍ଷେପ, ଦୁର୍ଗୁଣ ଓ ଦୁରାଚାର ନାଶ ହୋଇ ଶାନ୍ତି ପ୍ରାପ୍ତ ହୁଏ। ଯେତେବେଳେ ସତ୍ତ୍ୱଗୁଣ ବୃଦ୍ଧି ପାଏ, ସେତେବେଳେ ମନର ଚଞ୍ଚଳତା ସ୍ୱତଃ ନଷ୍ଟ ହୋଇଯାଏ ଏବଂ ମନୁଷ୍ୟ ସଂସାର ପ୍ରତି ବିରକ୍ତ ଓ ଉପରତ ହୋଇ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଧ୍ୟାନରେ ମଗ୍ନ ହୋଇଯାଏ। ତା' ସଙ୍ଗେ ସଙ୍ଗେ ତା'ର ଚିତ୍ତ ଓ ସକଳ ଇନ୍ଦ୍ରିୟରୁ ଦୁଃଖ ଓ ଆଳସ୍ୟର ଅଭାବ ହୋଇ ଚେତନ ଶକ୍ତିର ବୃଦ୍ଧି ଘଟେ। **ନିର୍ମଳତ୍ୱାତ୍** ପଦଟି ହେଉଛି ସତ୍ତ୍ୱଗୁଣର ଏହିସବୁ ଲକ୍ଷଣର ବୋଧକ ଏବଂ ସତ୍ତ୍ୱଗୁଣର ଏହି ସ୍ୱରୂପ ବୁଝାଇଦେବା ଲାଗି ହିଁ ତାହାକୁ 'ପ୍ରକାଶକ' ଓ 'ଅନାମୟ' ବୋଲି କୁହାଯାଇଛି।

**ପ୍ରଶ୍ନ –** 'ସତ୍ତ୍ୱଗୁଣ ଏହି ଜୀବାତ୍ମାକୁ ସୁଖ ଓ ଜ୍ଞାନ ସଙ୍ଗଦ୍ୱାରା ବନ୍ଧନରେ ପକାଏ' କହିଲେ କ'ଣ ବୁଝାଏ?

**ଉତ୍ତର –** ଅଷ୍ଟାଦଶ ଅଧ୍ୟାୟର ଛତିଶ ଓ ସଇଁତିରିଶ ଶ୍ଳୋକରେ ଲକ୍ଷଣସହିତ ଯେଉଁ 'ସାତ୍ତ୍ୱିକ ସୁଖ' ବିଷୟ କୁହାଯାଇଛି, ଏଠାରେ ପ୍ରୟୋଗ କରାଯାଇଥିବା 'ସୁଖ' ଶବ୍ଦଟି ହେଉଛି ସେହି ସାତ୍ତ୍ୱିକ ସୁଖର ବାଚକ। ସେହି ସୁଖପ୍ରାପ୍ତିସମୟରେ 'ମୁଁ ସୁଖୀ ଅଟେ' ବୋଲି ଜୀବାତ୍ମା-ଭିତରେ ଅଭିମାନ ଉତ୍ପନ୍ନ ହୋଇଯାଇ ସୁଖ ସହିତ ତାହାର ସମ୍ବନ୍ଧ ହୋଇଯାଏ। ସେହି ସମ୍ବନ୍ଧ ସାଧନାମାର୍ଗରେ ପ୍ରତିରୋଧ ସୃଷ୍ଟି କରେ ଓ ଜୀବାତ୍ମାକୁ ଆଗ ଅଗ୍ରସର ହେବାକୁ ନ ଦେଇ ତାକୁ ଜୀବନ୍ମୁକ୍ତ ଅବସ୍ଥାପ୍ରାପ୍ତିରୁ ବଞ୍ଚିତ କରିଦିଏ। ସୁଖସଙ୍ଗଦ୍ୱାରା ସତ୍ତ୍ୱଗୁଣ ଜୀବାତ୍ମାକୁ ଏହିପରି ବନ୍ଧନରେ ପକାଇଦିଏ।

ବୋଧଶକ୍ତିର ନାମ ଜ୍ଞାନ। ଜ୍ଞାନ ପ୍ରକଟ ହୋଇଗଲେ 'ମୁଁ ଜ୍ଞାନୀ' ବୋଲି ଯେଉଁ ଅଭିମାନ ଆସିଯାଏ, ତାହା ହିଁ ଜୀବାତ୍ମାକୁ ଗୁଣାତୀତ ଅବସ୍ଥାରୁ ବଞ୍ଚିତ କରି ରଖିଦିଏ। ସତ୍ତ୍ୱଗୁଣ ଜୀବାତ୍ମାକୁ ଏହିପରି ଜ୍ଞାନସଙ୍ଗଦ୍ୱାରା ବନ୍ଧନରେ ପକାଇଦିଏ।

**ପ୍ରଶ୍ନ –** 'ଅନଘ' ସମ୍ବୋଧନର ଅଭିପ୍ରାୟ କ'ଣ?

**ଉତ୍ତର –** ପାପକୁ ଅଘ କୁହାଯାଏ। ଯାହାଙ୍କ ଠାରେ ପାପର ସର୍ବଥା ଅଭାବ ଥାଏ, ତାଙ୍କୁ ଅନଘ କୁହାଯାଏ। ଏଠାରେ ଅର୍ଜୁନଙ୍କୁ 'ଅନଘ' ବୋଲି ସମ୍ବୋଧନ କରି ଭଗବାନ୍ କହୁଛନ୍ତି, "ତୁମେ ତ ସ୍ୱଭାବତଃ ନିଷ୍ପାପ। ତେଣୁ ତୁମେ ବନ୍ଧନକୁ ଡରିବାର କିଛି ନାହିଁ।"

**ସମ୍ବନ୍ଧ –** ବର୍ତ୍ତମାନ ରଜୋଗୁଣର ସ୍ୱରୂପ କଣ ଓ ତାହା ଜୀବାତ୍ମାକୁ କିପରି ବନ୍ଧନରେ ପକାଏ, ସେହି ବିଷୟ କହୁଛନ୍ତି –

## ରଜୋ ରାଗାତ୍ମକଂ ବିଦ୍ଧି ତୃଷ୍ଣାସଙ୍ଗସମୁଦ୍ଭବମ୍ ।
## ତନ୍ନିବଧ୍ନାତି କୌନ୍ତେୟ କର୍ମସଙ୍ଗେନ ଦେହିନମ୍ ॥ ୭ ॥

**ଅନ୍ୱୟ – କୌନ୍ତେୟ** = ହେ ଅର୍ଜୁନ; **ରାଗାତ୍ମକମ୍** = ରାଗରୂପୀ; **ରଜଃ** = ରଜୋଗୁଣକୁ; **ତୃଷ୍ଣାସଙ୍ଗସମୁଦ୍ଭବମ୍** = କାମନା ଓ ଆସକ୍ତିରୁ ଉତ୍ପନ୍ନ ବୋଲି; **ବିଦ୍ଧି** = ଜାଣ; **ତତ୍** = ତାହା; **ଦେହିନମ୍** = ଜୀବାତ୍ମାକୁ; **କର୍ମସଙ୍ଗେନ** = କର୍ମ ତଥା କର୍ମଫଳ ସହିତ ଥିବା ସମ୍ବନ୍ଧଦ୍ୱାରା; **ନିବଧ୍ନାତି** = ବନ୍ଧନ କରେ ।

**ହେ ଅର୍ଜୁନ! ରାଗରୂପୀ ରଜୋଗୁଣ କାମନା ଓ ଆସକ୍ତିରୁ ଉତ୍ପନ୍ନ ହୁଏ ବୋଲି ଜାଣ । ତାହା ଏହି ଜୀବାତ୍ମାକୁ କର୍ମ ଓ କର୍ମଫଳ ସହିତ ଥିବା ସମ୍ବନ୍ଧଦ୍ୱାରା ବନ୍ଧନ କରେ ॥ ୭ ॥**

**ପ୍ରଶ୍ନ –** ରଜୋଗୁଣକୁ **ରାଗାତ୍ମକ** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ରଜୋଗୁଣ ସ୍ୱୟଂ **ରାଗ** ଅର୍ଥାତ୍ ଆସକ୍ତିରୂପରେ ପ୍ରକଟ ହୁଏ । **ରାଗ** ହେଉଛି ରଜୋଗୁଣର ମୂଳସ୍ୱରୂପ । ତେଣୁ ଏଠାରେ ରଜୋଗୁଣକୁ ରାଗାତ୍ମକ ବୋଲି ବୁଝିବାକୁ କୁହାଯାଇଛି ।

**ପ୍ରଶ୍ନ –** ଏଠାରେ ରଜୋଗୁଣକୁ କାମନା ଓ ଆସକ୍ତିରୁ ଉତ୍ପନ୍ନ ବୋଲି କିପରି କୁହାଯାଇଛି ? କାରଣ କାମନା ତ ସ୍ୱୟଂ ରଜୋଗୁଣରୁ ଉତ୍ପନ୍ନ ହୁଏ (୩/୩୭; ୧୪/୧୨) । ଅତଏବ କାମନାକୁ ରଜୋଗୁଣର କାର୍ଯ୍ୟ ବୋଲି ଧରାଯିବ, ନା କାରଣ ବୋଲି ଧରାଯିବ ?

**ଉତ୍ତର –** କାମନା ଓ ଆସକ୍ତିଦ୍ୱାରା ରଜୋଗୁଣ ବଢେ ଏବଂ ରଜୋଗୁଣରୁ କାମନା ଓ ଆସକ୍ତି ବଢେ । ଏ ଦୁଇଟି ମଧ୍ୟରେ ବୀଜ ଓ ବୃକ୍ଷର ସମ୍ବନ୍ଧପରି ଅନ୍ୟୋନ୍ୟାଶ୍ରୟ ସମ୍ବନ୍ଧ ରହିଛି । ଏମାନଙ୍କ ମଧ୍ୟରୁ ରଜୋଗୁଣ ବୀଜସ୍ଥାନୀୟ ଓ କାମନା, ଆସକ୍ତି ବୃକ୍ଷସ୍ଥାନୀୟ ଅଟନ୍ତି । ବୀଜ ବୃକ୍ଷରୁ ହିଁ ଉତ୍ପନ୍ନ ହୁଏ ତଥାପି ବୀଜ ହିଁ ବୃକ୍ଷର କାରଣ । ଏହି କଥାକୁ ସ୍ପଷ୍ଟ କରିଦେବା ନିମନ୍ତେ କେଉଁଠି ରଜୋଗୁଣରୁ କାମନାଦିର ଉତ୍ପତ୍ତି ହୁଏ ବୋଲି କୁହାଯାଇଛି ତ, କେଉଁଠି କାମନାଦିରୁ ରଜୋଗୁଣର ଉତ୍ପତ୍ତି ହୁଏ ବୋଲି କୁହାଯାଇଛି । ଏଠାରେ **ତୃଷ୍ଣାସଙ୍ଗସମୁଦ୍ଭବମ୍** ପଦର ମଧ୍ୟ ଦୁଇଟି ଅର୍ଥ ହୁଏ । ତୃଷ୍ଣା (କାମନା) ଓ ସଙ୍ଗ (ଆସକ୍ତି)ରୁ ଯାହାର ସମ୍ୟକ୍ ଉଦ୍ଭବ ହୁଏ, ତାହାକୁ ରଜୋଗୁଣ ବୋଲି ଗ୍ରହଣ କରାଗଲେ, ରଜୋଗୁଣ ଏ ଦୁଇଟିର କାର୍ଯ୍ୟ ହୋଇଯାଏ ଏବଂ ତୃଷ୍ଣା ଓ ସଙ୍ଗର ଉଦ୍ଭବ ଯାହାଠାରୁ ହୁଏ, ତାହାର ନାମ ରଜୋଗୁଣ ବୋଲି ଗ୍ରହଣ କଲେ, ରଜୋଗୁଣ ସେଦୁହିଁଙ୍କର କାରଣ ହୋଇଯାଏ । ବୀଜ-ବୃକ୍ଷନ୍ୟାୟରେ ଉଭୟ କଥା ଠିକ୍; ଅତଏବ ଏହାର ଦୁଇଟି ଅର୍ଥ କରାଯାଇପାରେ ।

**ପ୍ରଶ୍ନ –** କର୍ମମାନଙ୍କର ସଙ୍ଗ କଣ ? ତାହାଦ୍ୱାରା ରଜୋଗୁଣ ଜୀବାତ୍ମାକୁ କିପରି ବାନ୍ଧେ ?

**ଉତ୍ତର –** 'ଏସବୁ କର୍ମ ମୁଁ କରୁଛି' – କର୍ମରେ ଏପରି କର୍ତ୍ତାପଣ-ଅଭିମାନ ରଖିବା ଓ ଅଭିମାନପୂର୍ବକ 'ମୋତେ ଏଥିରୁ ଅମୁକ ଫଳ ମିଳିବ' ବୋଲି ଧରିନେବା ହିଁ କର୍ମ ସହିତ ତଥା କର୍ମଫଳ ସହିତ ନିଜର ସମ୍ବନ୍ଧ ସ୍ଥାପନା କରିବା; ଏହା ହିଁ କର୍ମସଙ୍ଗ । ଏହାଦ୍ୱାରା ରଜୋଗୁଣ ଜୀବାତ୍ମାକୁ ଜନ୍ମ-ମୃତ୍ୟୁରୂପକ ସଂସାରରେ ବାନ୍ଧିରଖେ ।

**ସମ୍ବନ୍ଧ –** ବର୍ତ୍ତମାନ ତମୋଗୁଣର ସ୍ୱରୂପ ଓ ତା'ଦ୍ୱାରା ଜୀବାତ୍ମାକୁ ବନ୍ଧନ କରିବାର ପ୍ରଣାଳୀ କହୁଛନ୍ତି –

## ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାମ୍ ।
## ପ୍ରମାଦାଲସ୍ୟନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ ॥ ୮ ॥

**ଅନ୍ୱୟ – ତୁ** = କିନ୍ତୁ; **ଭାରତ** = ହେ ଅର୍ଜୁନ; **ସର୍ବଦେହିନାମ୍** = ସମସ୍ତ ଦେହାଭିମାନୀଙ୍କୁ; **ମୋହନମ୍** = ମୋହିତ କରୁଥିବା; **ତମଃ** = ତମୋଗୁଣ; **ଅଜ୍ଞାନଜମ୍** = ଅଜ୍ଞାନରୁ ଉତ୍ପନ୍ନ; **ବିଦ୍ଧି** = (ବୋଲି) ଜାଣ; **ତତ୍** = ତାହା; (**ଦେହିନମ୍**) = ଜୀବାତ୍ମାକୁ; **ପ୍ରମାଦାଲସ୍ୟନିଦ୍ରାଭିଃ** = ପ୍ରମାଦ, ଆଳସ୍ୟ ଓ ନିଦ୍ରାଦ୍ୱାରା; **ନିବଧ୍ନାତି** = ବନ୍ଧନ କରେ ।

**କିନ୍ତୁ ହେ ଅର୍ଜୁନ! ସମସ୍ତ ଦେହାଭିମାନୀଙ୍କୁ ମୋହିତ କରୁଥିବା ତମୋଗୁଣ ଅଜ୍ଞାନରୁ ଉତ୍ପନ୍ନ ବୋଲି ଜାଣ। ତାହା ଏହି ଜୀବାତ୍ମାକୁ ପ୍ରମାଦ, ଆଳସ୍ୟ ଓ ନିଦ୍ରାଦ୍ୱାରା ବନ୍ଧନ କରେ॥ ୮ ॥**

**ପ୍ରଶ୍ନ—** 'ତମୋଗୁଣ ସମସ୍ତ ଦେହାଭିମାନୀଙ୍କୁ ମୋହିତ କରେ' କହିଲେ କ'ଣ ବୁଝାଏ ?

**ଉତ୍ତର—** ଅନ୍ତଃକରଣରେ ଏବଂ ଇନ୍ଦ୍ରିୟମାନଙ୍କରେ ଜ୍ଞାନଶକ୍ତିର ଅଭାବ କରାଇଦେଇ ସେମାନଙ୍କ ଠାରେ ମୋହ ଉତ୍ପନ୍ନ କରିଦେବା ହିଁ 'ତମୋଗୁଣ ସମସ୍ତ ଦେହାଭିମାନୀଙ୍କୁ ମୋହିତ କରିଦେବା'। ଯେଉଁମାନଙ୍କର ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ସମ୍ବନ୍ଧ ରହିଛି ତଥା ଯେଉଁମାନଙ୍କର ଶରୀର ପ୍ରତି ଅହଂତ୍ୱ ବା ମମତ୍ୱ ରହିଛି, ସେମାନେ ସମସ୍ତେ ନିଦ୍ରାଦି ସମୟରେ ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ ମୋହ ଉତ୍ପନ୍ନ ହେଲେ, ନିଜକୁ ମୋହିତ ବୋଲି ଧରିନିଅନ୍ତି। କିନ୍ତୁ ଯେଉଁମାନଙ୍କର ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କ ସମେତ ଶରୀରରେ ଅଭିମାନ ନ ଥାଏ, ସେପରି ଜୀବନ୍ମୁକ୍ତ ପୁରୁଷମାନେ ସେମାନଙ୍କ ସହିତ ନିଜର କୌଣସି ସମ୍ବନ୍ଧ ସ୍ୱୀକାର କରନ୍ତି ନାହିଁ। ତେଣୁ ଏଠାରେ 'ତମୋଗୁଣ ସମସ୍ତ ଦେହାଭିମାନୀଙ୍କୁ ମୋହିତ କରେ' ବୋଲି କୁହାଯାଇଛି।

**ପ୍ରଶ୍ନ—** ତମୋଗୁଣ ଅଜ୍ଞାନରୁ ଉତ୍ପନ୍ନ ହୁଏ ବୋଲି କହିବାର ଅଭିପ୍ରାୟ କ'ଣ? ସତର ଶ୍ଳୋକରେ ତ ଅଜ୍ଞାନ ତମୋଗୁଣରୁ ଉତ୍ପନ୍ନ ହୁଏ ବୋଲି କୁହାଯାଇଛି।

**ଉତ୍ତର—** ତମୋଗୁଣହେତୁ ଅଜ୍ଞାନ ବଢ଼େ ଓ ଅଜ୍ଞାନହେତୁ ତମୋଗୁଣ ବଢ଼େ। ଏ ଦୁଇଟି ମଧ୍ୟରେ ବି ବୀଜ-ବୃକ୍ଷ-ସମ୍ବନ୍ଧପରି ଅନ୍ୟୋନ୍ୟାଶ୍ରୟ ସମ୍ବନ୍ଧ ରହିଛି। ଏଥିରୁ ଅଜ୍ଞାନ ବୀଜସ୍ଥାନୀୟ ଓ ତମୋଗୁଣ ବୃକ୍ଷସ୍ଥାନୀୟ। ତେଣୁ କେଉଁଠି ତମୋଗୁଣ ଅଜ୍ଞାନରୁ ଜାତ ହୁଏ ବୋଲି କୁହାଯାଇଛି ତ, କେଉଁଠି ଅଜ୍ଞାନ ତମୋଗୁଣରୁ ଜାତ ହୁଏ ବୋଲି କୁହାଯାଇଛି।

**ପ୍ରଶ୍ନ— ପ୍ରମାଦ, ଆଳସ୍ୟ ଓ ନିଦ୍ରା—** ଏହି ତିନିଟି ଶବ୍ଦର ଅର୍ଥ କ'ଣ ଏବଂ ଏମାନଙ୍କ ଦ୍ୱାରା ତମୋଗୁଣ ଜୀବାତ୍ମାକୁ ବନ୍ଧନ କରେ କହିଲେ କ'ଣ ବୁଝାଏ ?

**ଉତ୍ତର—** ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କର ବ୍ୟର୍ଥ ଚେଷ୍ଟାକୁ ଏବଂ ଶାସ୍ତ୍ରବିହିତ କର୍ତ୍ତବ୍ୟ ପାଳନରେ ଅବହେଳାକୁ **ପ୍ରମାଦ** କହନ୍ତି। କର୍ତ୍ତବ୍ୟକର୍ମରେ ଅପ୍ରବୃତ୍ତିରୂପକ ନିରୁଦ୍ୟମତାର ନାମ **ଆଳସ୍ୟ**। ତନ୍ଦ୍ରା, ସ୍ୱପ୍ନ ଓ ସୁଷୁପ୍ତି—ଏ ସମସ୍ତଙ୍କର ନାମ **ନିଦ୍ରା**। ଏସବୁଙ୍କଦ୍ୱାରା ତମୋଗୁଣ ଏହି ଜୀବାତ୍ମାକୁ ମୁକ୍ତିର ସାଧନାରୁ ବଞ୍ଚିତ କରି ଜନ୍ମମୃତ୍ୟୁରୂପକ ସଂସାରଜାଲରେ ବାନ୍ଧିରଖେ। ଏହା ହିଁ ପ୍ରମାଦ, ଆଳସ୍ୟ ଓ ନିଦ୍ରାଦ୍ୱାରା ତମୋଗୁଣର ଜୀବାତ୍ମାକୁ ବାନ୍ଧିବା।

**ସମ୍ବନ୍ଧ—** *ଏପରିଭାବରେ ସତ୍ତ୍ୱ, ରଜ ଓ ତମ—ଏହି ତିନି ଗୁଣର ସ୍ୱରୂପ ଓ ସେମାନଙ୍କ ଦ୍ୱାରା ଜୀବାତ୍ମାକୁ ବନ୍ଧନ କରିବାର ଧାରା କହିସାରି ବର୍ତ୍ତମାନ ସେହି ତିନି ଗୁଣର ସ୍ୱାଭାବିକ ବ୍ୟାପାର କିପରି, ତାହା କହୁଛନ୍ତି—*

**ସତ୍ତ୍ୱଂ ସୁଖେ ସଂଜୟତି ରଜଃ କର୍ମଣି ଭାରତ।**
**ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଂଜୟତ୍ୟୁତ॥ ୯ ॥**

**ଅନ୍ୱୟ—** ଭାରତ = ହେ ଅର୍ଜୁନ; ସତ୍ତ୍ୱମ୍ = ସତ୍ତ୍ୱଗୁଣ; ସୁଖେ = ସୁଖରେ; ସଂଜୟତି = ଲଗାଏ; ରଜଃ = ରଜୋଗୁଣ; କର୍ମଣି = କର୍ମରେ (ଲଗାଏ); ତମଃ = (ଓ) ତମୋଗୁଣ; ତୁ = ତ; ଜ୍ଞାନମ୍ = ଜ୍ଞାନକୁ; ଆବୃତ୍ୟ = ଆଚ୍ଛାଦନ କରି; ପ୍ରମାଦେ = ପ୍ରମାଦରେ; ଉତ = ବି; ସଂଜୟତି = ଲଗାଇଥାଏ।

**ହେ ଅର୍ଜୁନ! ସତ୍ତ୍ୱଗୁଣ ସୁଖରେ ଲଗାଏ ଓ ରଜୋଗୁଣ କର୍ମରେ ଲଗାଏ। ତମୋଗୁଣ ତ ଜ୍ଞାନକୁ ଆଚ୍ଛାଦିତ କରି ପ୍ରମାଦରେ ବି ଲଗାଇଥାଏ।॥ ୯ ॥**

**ପ୍ରଶ୍ନ—** ଏଠାରେ **ସୁଖ** ଶବ୍ଦ କେଉଁପ୍ରକାର ସୁଖର ବାଚକ ଏବଂ ସତ୍ତ୍ୱଗୁଣ ମନୁଷ୍ୟକୁ ସେହି 'ସୁଖ'ରେ ଲଗାଏ କହିଲେ କ'ଣ ବୁଝାଏ ?

**ଉତ୍ତର—** ଏଠାରେ **ସୁଖ** ଶବ୍ଦ ସାତ୍ତ୍ୱିକ ସୁଖର ବାଚକ (୧୮/୩୬, ୩୭) ଏବଂ ସତ୍ତ୍ୱଗୁଣ ମନୁଷ୍ୟକୁ ସାଂସାରିକ ଭୋଗ ଓ ଚେଷ୍ଟାରୁ ତଥା ପ୍ରମାଦ, ଆଳସ୍ୟ

ଓ ନିଦ୍ରାରୁ ଦୂରେଇନେଇ ଆତ୍ମଚିନ୍ତନ ଆଦିଦ୍ୱାରା ଯେଉଁ ସାତ୍ତ୍ୱିକ ସୁଖରେ ସଂଯୁକ୍ତ କରିଦିଏ, ତାହା ହିଁ ସେହି 'ସୁଖ'ରେ ଲଗାଇଦେବା ।

**ପ୍ରଶ୍ନ—** ଏଠାରେ **କର୍ମ** ଶବ୍ଦ କେଉଁ କର୍ମମାନଙ୍କର ବାଚକ ଏବଂ 'ରଜୋଗୁଣ' ମନୁଷ୍ୟକୁ ସେହି କର୍ମମାନଙ୍କରେ ଲଗାଏ' ଅର୍ଥ କ'ଣ ?

**ଉତ୍ତର—** ଏଠାରେ **କର୍ମ** ଶବ୍ଦଟି ହେଉଛି ଇହଲୋକ ଓ ପରଲୋକରେ ଭୋଗରୂପକ ଫଳ ପ୍ରଦାନ କରୁଥିବା ଶାସ୍ତ୍ରବିହିତ ସକାମ କର୍ମମାନଙ୍କର ବାଚକ। ନାନାପ୍ରକାର ଭୋଗ ଇଚ୍ଛା ଉତ୍ପନ୍ନ କରି ସେସବୁକୁ ପାଇବାନିମନ୍ତେ ମନୁଷ୍ୟକୁ ସେହି କର୍ମମାନଙ୍କରେ ପ୍ରବୃତ୍ତ କରିଦେବା ହିଁ ରଜୋଗୁଣ ମନୁଷ୍ୟକୁ ସେହି କର୍ମରେ ଲଗାଇଦେବା।

**ପ୍ରଶ୍ନ—** 'ତମୋଗୁଣ ମନୁଷ୍ୟର ଜ୍ଞାନକୁ ଆଚ୍ଛାଦିତ କରିଦିଏ ଓ ତାକୁ ପ୍ରମାଦରେ ପକାଇଦିଏ' କହିଲେ କ'ଣ ବୁଝାଏ ଏବଂ ଏଠାରେ **ତୁ** ଓ **ଉତ** ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର—** ଯେତେବେଳେ ତମୋଗୁଣ ବଢ଼େ, ସେତେବେଳେ ତାହା କେବେ କେବେ ମନୁଷ୍ୟର କର୍ତ୍ତବ୍ୟ-ଅକର୍ତ୍ତବ୍ୟ ନିର୍ଣ୍ଣୟ କରୁଥିବା ବିବେକଶକ୍ତିକୁ ନଷ୍ଟ କରିଦିଏ ଏବଂ କେବେ କେବେ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କର ଚେତନାଶକ୍ତିକୁ ନଷ୍ଟ କରିଦେଇ ନିଦ୍ରାବୃତ୍ତି ଉତ୍ପନ୍ନ କରିଦିଏ। ଏପରିଭାବରେ ତମୋଗୁଣ ମନୁଷ୍ୟର ଜ୍ଞାନକୁ ଆଚ୍ଛାଦିତ କରିଦିଏ। କର୍ତ୍ତବ୍ୟପାଳନରେ ଅବହେଳା ଉତ୍ପନ୍ନ କରାଇ ବ୍ୟର୍ଥ ଚେଷ୍ଟାରେ ନିଯୁକ୍ତ କରିଦେବାର ଅର୍ଥ ପ୍ରମାଦରେ ଲଗାଇଦେବା।

ଏଠାରେ **ତୁ** ଅବ୍ୟୟ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ତମୋଗୁଣ କେବଳ ଜ୍ଞାନକୁ ଆବୃତ କରି ହିଁ କାର୍ଯ୍ୟ ସମାପ୍ତ କରେ ନାହିଁ, ଅନ୍ୟ କାର୍ଯ୍ୟ ମଧ୍ୟ କରେ ଏବଂ **ଉତ** ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏହା ଜ୍ଞାନକୁ ଆବୃତ କରି ଯେପରି ପ୍ରମାଦରେ ଲଗାଏ, ସେହିପରି ନିଦ୍ରା ଓ ଆଳସ୍ୟରେ ବି ଲଗାଇଦିଏ। ଅଭିପ୍ରାୟ ଏହି ଯେ, ଏହା ଯେତେବେଳେ ବିବେକଜ୍ଞାନକୁ ଆବୃତ କରିଦିଏ, ସେତେବେଳେ ପ୍ରମାଦରେ ଲଗାଇଦିଏ ଏବଂ ଯେତେବେଳେ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କର ଚେତନଶକ୍ତିରୂପକ ଜ୍ଞାନକୁ କ୍ଷୀଣ ଓ ଆବୃତ କରିଦିଏ, ସେତେବେଳେ ଆଳସ୍ୟ ଓ ନିଦ୍ରାରେ ଲଗାଇଦିଏ।

**ସମ୍ବନ୍ଧ—** *ସତ୍ତ୍ୱାଦି ତିନିଗୁଣ ଯେତେବେଳେ ନିଜ ନିଜ କାର୍ଯ୍ୟରେ ଜୀବକୁ ନିଯୁକ୍ତ କରନ୍ତି, ସେତେବେଳେ ସେମାନେ ଏପରି କରିବାକୁ କିପରି ସମର୍ଥ ହୁଅନ୍ତି, ତାହା ଆଗ ଶ୍ଳୋକରେ କହୁଛନ୍ତି—*

**ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ।**
**ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା ॥ ୧୦ ॥**

**ଅନ୍ୱୟ—** ଭାରତ = ହେ ଅର୍ଜୁନ; **ରଜଃ** = ରଜୋଗୁଣ; **ଚ** = ଓ; **ତମଃ** = ତମୋଗୁଣକୁ; **ଅଭିଭୂୟ** = ଚାପିଦେଇ; **ସତ୍ତ୍ୱମ୍** = ସତ୍ତ୍ୱଗୁଣ (ବୃଦ୍ଧି ପାଏ); **ସତ୍ତ୍ୱମ୍** = ସତ୍ତ୍ୱଗୁଣକୁ; **ଚ** = ଓ; **ତମଃ** = ତମୋଗୁଣକୁ (ଚାପିଦେଇ); **ରଜଃ** = ରଜୋଗୁଣ (ବୃଦ୍ଧି ପାଏ); **ତଥା, ଏବ** = ସେହିପରି; **ସତ୍ତ୍ୱମ୍, ରଜଃ** = ସତ୍ତ୍ୱ ଓ ରଜକୁ ଚାପିଦେଇ; **ତମଃ, ଭବତି** = ତମୋଗୁଣ ବୃଦ୍ଧି ପାଏ।

**ହେ ଅର୍ଜୁନ! ରଜୋଗୁଣ ଓ ତମୋଗୁଣକୁ ଚାପିଦେଇ ସତ୍ତ୍ୱଗୁଣ ବର୍ଦ୍ଧିତ ହୁଏ; ସତ୍ତ୍ୱଗୁଣ ଓ ତମୋଗୁଣକୁ ଚାପିଦେଇ ରଜୋଗୁଣ ବର୍ଦ୍ଧିତ ହୁଏ ଓ ସେହିପରି ସତ୍ତ୍ୱଗୁଣ ଓ ରଜୋଗୁଣକୁ ଚାପିଦେଇ ତମୋଗୁଣ ବର୍ଦ୍ଧିତ ହୁଏ ॥ ୧୦ ॥★**

---

★ ଗୁଣମାନଙ୍କର ବୃଦ୍ଧି ନିମନ୍ତେ ଶ୍ରୀମଦ୍ଭାଗବତରେ ନିମ୍ନଲିଖିତ ଦଶଟି ହେତୁ ଦିଆଯାଇଛି ଯଥା :—

ଆଗମୋଽପଃ ପ୍ରଜା ଦେଶଃ କାଳଃ କର୍ମ ଚ ଜନ୍ମ ଚ।
ଧ୍ୟାନଂ ମନ୍ତ୍ରୋଽଥ ସଂସ୍କାରୋ ଦଶୈତେ ଗୁଣହେତବଃ ॥ (୧୧।୧୩।୪)

ଅର୍ଥାତ୍, ଶାସ୍ତ୍ର, ଜଳ, ସନ୍ତାନ, ଦେଶ, କାଳ, କର୍ମ, ଜନ୍ମ, ଚିନ୍ତନ, ମନ୍ତ୍ର ଓ ସଂସ୍କାର— ଏହି ଦଶଟି ହେଉଛି ଗୁଣମାନଙ୍କର ହେତୁ ଅର୍ଥାତ୍ ଏମାନେ ଗୁଣକୁ ବଢ଼ାନ୍ତି। ଅଭିପ୍ରାୟ ଏହି ଯେ, ଏସବୁ ପଦାର୍ଥ ଯେଉଁ ଗୁଣ ସହିତ ଯୁକ୍ତ ହୁଅନ୍ତି, ଏମାନଙ୍କର ସଙ୍ଗ ସେହି ଗୁଣକୁ ବଢ଼ାଇ ଦିଏ।

**ପ୍ରଶ୍ନ —** ରଜୋଗୁଣ ଓ ତମୋଗୁଣକୁ ଚାପିଦେଇ ସତ୍ତ୍ୱଗୁଣ ବଢ଼ିବା କଣ ?

**ଉତ୍ତର —** ଯେତେବେଳେ ରଜୋଗୁଣ ଓ ତମୋଗୁଣର ପ୍ରବୃତ୍ତିକୁ ରୋକିଦେଇ ସତ୍ତ୍ୱଗୁଣ ନିଜର କାର୍ଯ୍ୟ ଆରମ୍ଭ କରେ, ସେତେବେଳେ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ପ୍ରକାଶ, ବିବେକ, ଓ ବୈରାଗ୍ୟ ଆଦିର ବୃଦ୍ଧି ଘଟି ସେମାନେ ଅତ୍ୟନ୍ତ ଶାନ୍ତ ଓ ସୁଖମୟ ହୋଇଯାଆନ୍ତି। ତେଣୁ ସେତେବେଳେ ରଜୋଗୁଣର କାର୍ଯ୍ୟ ଲୋଭ, ପ୍ରବୃତ୍ତି ଓ ଭୋଗବାସନାଦି ତଥା ତମୋଗୁଣର କାର୍ଯ୍ୟ ନିଦ୍ରା, ଆଳସ୍ୟ ଓ ପ୍ରମାଦ ଆଦି ପ୍ରବଳ ହୋଇପାରନ୍ତି ନାହିଁ। ଏପରିଭାବରେ ସେହି ଦୁଇଗୁଣକୁ ଚାପିଦେଇ ସତ୍ତ୍ୱଗୁଣ ଜ୍ଞାନ, ପ୍ରକାଶ (ଆଲୋକ) ଓ ସୁଖ ଆଦି ଉତ୍ପନ୍ନ କରିଦିଏ; ଏହା ହିଁ ରଜୋଗୁଣ ଓ ତମୋଗୁଣକୁ ଚାପିଦେଇ ସତ୍ତ୍ୱଗୁଣ ବଢ଼ିବା।

**ପ୍ରଶ୍ନ —** ସତ୍ତ୍ୱଗୁଣ ଓ ତମୋଗୁଣକୁ ଚାପିଦେଇ ରଜୋଗୁଣ ବଢ଼ିବା କ'ଣ ?

**ଉତ୍ତର —** ଯେତେବେଳେ ସତ୍ତ୍ୱଗୁଣ ଓ ତମୋଗୁଣର ପ୍ରବୃତ୍ତିକୁ ରୋକିଦେଇ ରଜୋଗୁଣ ନିଜର କାର୍ଯ୍ୟ ଆରମ୍ଭ କରେ, ସେତେବେଳେ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ଚଞ୍ଚଳତା, ଅଶାନ୍ତି, ଲୋଭ, ଭୋଗବାସନା ଓ ନାନାପ୍ରକାର କର୍ମରେ ପ୍ରବୃତ୍ତ ହେବାର ଉତ୍କଟ ଇଚ୍ଛା ଉତ୍ପନ୍ନ ହୁଏ। ତେଣୁ ସେତେବେଳେ ସତ୍ତ୍ୱଗୁଣର କାର୍ଯ୍ୟ ପ୍ରକାଶ, ବିବେକ, ଶାନ୍ତି ଆଦି ଅଭାବପ୍ରାୟ ହୋଇଯାଏ। ତମୋଗୁଣର କାର୍ଯ୍ୟ ନିଦ୍ରା, ପ୍ରମାଦ ଓ ଆଳସ୍ୟ ଆଦି ମଧ୍ୟ ଦବିଯାଏ। ଏହା ହିଁ ସତ୍ତ୍ୱଗୁଣ ଓ ତମୋଗୁଣକୁ ଚାପିଦେଇ ରଜୋଗୁଣ ବଢ଼ିବା।

**ପ୍ରଶ୍ନ —** ସତ୍ତ୍ୱଗୁଣ ଓ ରଜୋଗୁଣକୁ ଦାବିଦେଇ ତମୋଗୁଣ ବଢ଼ିବା କଣ ?

**ଉତ୍ତର —** ଯେତେବେଳେ ସତ୍ତ୍ୱଗୁଣ ଓ ରଜୋଗୁଣର ପ୍ରବୃତ୍ତିକୁ ରୋକିଦେଇ ତମୋଗୁଣ ନିଜର କାର୍ଯ୍ୟ ଆରମ୍ଭ କରିଦିଏ, ସେତେବେଳେ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ମୋହ ଆଦି ବଢ଼ିଯାଏ ଏବଂ ପ୍ରମାଦରେ ପ୍ରବୃତ୍ତି ଆସିଯାଏ; ବୃତ୍ତିମାନେ ବିବେକଶୂନ୍ୟ ହୋଇଯାନ୍ତି। ଫଳରେ ସତ୍ତ୍ୱଗୁଣର କାର୍ଯ୍ୟ ପ୍ରକାଶ ଓ ଜ୍ଞାନ ତଥା ରଜୋଗୁଣର କାର୍ଯ୍ୟ କର୍ମପ୍ରବୃତ୍ତି ଓ ଭୋଗ ଇଚ୍ଛା ଆଦି ଅଭାବପ୍ରାୟ ହୋଇଯାଏ; ଏମାନେ ପ୍ରକଟ ହୋଇପାରନ୍ତି ନାହିଁ। ଏହା ହିଁ ସତ୍ତ୍ୱ ଓ ରଜୋଗୁଣକୁ ଦାବିଦେଇ ତମୋଗୁଣ ବଢ଼ିବା।

*ସମ୍ବନ୍ଧ — ଏପରିଭାବରେ ଅନ୍ୟ ଦୁଇଗୁଣକୁ ଦାବିଦେଇ ପ୍ରତ୍ୟେକ ଗୁଣର ବୃଦ୍ଧି ହୁଏ ବୋଲି କହିଲେ। ବର୍ତ୍ତମାନ ପ୍ରତ୍ୟେକ ଗୁଣର ବୃଦ୍ଧିଲକ୍ଷଣ ଜାଣିବାର ଇଚ୍ଛା ହେବାରୁ ସତ୍ତ୍ୱଗୁଣବୃଦ୍ଧିର ଲକ୍ଷଣ ପ୍ରଥମେ କହୁଛନ୍ତି —*

**ସର୍ବଦ୍ୱାରେଷୁ ଦେହେଽସ୍ମିନ୍ ପ୍ରକାଶ ଉପଜାୟତେ।**
**ଜ୍ଞାନଂ ଯଦା ତଦା ବିଦ୍ୟାଦ୍ ବିବୃଦ୍ଧଂ ସତ୍ତ୍ୱମିତ୍ୟୁତ॥ ୧୧ ॥**

**ଅନ୍ୱୟ —** **ଯଦା** = ଯେତେବେଳେ; **ଅସ୍ମିନ୍** = ଏହି; **ଦେହେ** = ଦେହରେ (ତଥା); **ସର୍ବଦ୍ୱାରେଷୁ** = ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ; **ପ୍ରକାଶଃ** = ଚେତନା; **(ଚ)** = ଓ; **ଜ୍ଞାନମ୍** = ବିବେକ; **ଉପଜାୟତେ** = ଉତ୍ପନ୍ନ ହୁଏ; **ତଦା** = ସେତେବେଳେ; **ଇତି** = ଏପରି; **ବିଦ୍ୟାତ୍** = ଜାଣିବା ଉଚିତ; **ଉତ** = ଯେ; **ସତ୍ତ୍ୱମ୍** = ସତ୍ତ୍ୱଗୁଣ; **ବିବୃଦ୍ଧମ୍** = ବଢ଼ିଛି।

**ଯେତେବେଳେ ଏହି ଦେହରେ ତଥା ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ ଚେତନା ଏବଂ ବିବେକଶକ୍ତି ଉତ୍ପନ୍ନ ହୁଏ, ସେତେବେଳେ ଜାଣିବା ଉଚିତ ଯେ, ସତ୍ତ୍ୱଗୁଣ ବଢ଼ିଛି॥ ୧୧ ॥**

**ପ୍ରଶ୍ନ —** ଯଦା ଓ ତଦା କାଳବାଚକ ପଦଦ୍ୱୟର ତଥା **ବିଦ୍ୟାତ୍** କ୍ରିୟା ପ୍ରୟୋଗର ଭାବ କ'ଣ ?

**ଉତ୍ତର —** ଏହି ଦୁଇ ପଦ ତଥା **ବିଦ୍ୟାତ୍** କ୍ରିୟା ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଯେତେବେଳେ ଏହି ଶ୍ଳୋକରେ କୁହାଯାଇଥିବା ଲକ୍ଷଣଗୁଡ଼ିକ ଉତ୍ପନ୍ନ ହେବ ଓ ବଢ଼ିବ, ସେତେବେଳେ ସତ୍ତ୍ୱଗୁଣ ବଢ଼ିଲାଣି ବୋଲି ବୁଝିବା ଉଚିତ ଏବଂ ସେତେବେଳେ ମନୁଷ୍ୟ ସାବଧାନ ହୋଇ ମନକୁ ଭଜନ-ଧ୍ୟାନରେ ଲଗାଇବାକୁ ଚେଷ୍ଟା କରିବା ଉଚିତ। ତାହାହେଲେ ସତ୍ତ୍ୱଗୁଣର ପ୍ରବୃତ୍ତି ଅଧିକ ସମୟ ସ୍ଥାୟୀ ହୋଇପାରିବ; ତା'ପ୍ରତି ଅବହେଳା କଲେ, ତାହାକୁ ଶୀଘ୍ର ଚାପିଦେଇ ତମୋଗୁଣ କିମ୍ବା ରଜୋଗୁଣ ନିଜର କାର୍ଯ୍ୟ ଆରମ୍ଭ କରିଦେଇପାରେ।

**ପ୍ରଶ୍ନ —** ଦେହେ ସହିତ **ଅସ୍ମିନ୍** ପଦ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଅସ୍ମିନ୍ ପଦ ପ୍ରୟୋଗ କରି ଭଗବାନ୍ ମନୁଷ୍ୟଶରୀରର ବିଶେଷତା ପ୍ରତିପାଦନ କରିଛନ୍ତି। ଅଭିପ୍ରାୟ ହେଉଛି, ଏହି ଶ୍ଳୋକରେ କୁହାଯାଉଥିବା ସତ୍ତ୍ୱଗୁଣବୃଦ୍ଧିର ଅବସର ମନୁଷ୍ୟଶରୀରରେ ହିଁ ମିଳିପାରେ ଏବଂ ଏହି ଶରୀରରେ ସତ୍ତ୍ୱଗୁଣର ସହାୟତା ପାଇ ମନୁଷ୍ୟ ମୁକ୍ତି ଲାଭ କରିପାରେ; ଅନ୍ୟ ଯୋନିରେ ଏହି ଅଧିକାର ମିଳେ ନାହିଁ।

**ପ୍ରଶ୍ନ –** ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ **ପ୍ରକାଶ** ଓ **ଜ୍ଞାନ** ଉତ୍ପନ୍ନ ହେବା କ'ଣ ?

**ଉତ୍ତର –** ଶରୀରରେ ଚେତନା, ଲଘୁତ୍ୱ ତଥା ଇନ୍ଦ୍ରିୟ ଓ ଅନ୍ତଃକରଣରେ ନିର୍ମଳତା ଏବଂ ଚେତନାର ଆଧିକ୍ୟ ହୋଇଯିବା ହିଁ ପ୍ରକାଶ ଉତ୍ପନ୍ନ ହୋଇଯିବା। ସତ୍ୟ-ଅସତ୍ୟ ତଥା କର୍ତ୍ତବ୍ୟ-ଅକର୍ତ୍ତବ୍ୟ ନିର୍ଣ୍ଣୟ କରିବାର ବିବେକଶକ୍ତି ଜାଗ୍ରତ ହୋଇଯିବା ହିଁ **ଜ୍ଞାନ** ଉତ୍ପନ୍ନ ହୋଇଯିବା। ଯେତେବେଳେ ପ୍ରକାଶ ଓ ଜ୍ଞାନ ଉଭୟ ଉତ୍ପନ୍ନ ହୋଇଯାଏ, ସେତେବେଳେ ସଂସାର ପ୍ରତି ସ୍ୱତଃ ବୈରାଗ୍ୟ ଆସିଯାଏ ମନରେ ଉପରତି ଓ ସୁଖଶାନ୍ତିର ବନ୍ୟା ଆସେ ତଥା ରାଗ-ଦ୍ୱେଷ, ଦୁଃଖ-ଶୋକ, ଚିନ୍ତା, ଭୟ, ଚଞ୍ଚଳତା, ନିଦ୍ରା, ଆଳସ୍ୟ ଓ ପ୍ରମାଦ ଆଦି ଅଭାବପ୍ରାୟ ହୋଇଯାଏ।

**ସମ୍ବନ୍ଧ –** ସତ୍ତ୍ୱଗୁଣବୃଦ୍ଧିର ଲକ୍ଷଣଗୁଡ଼ିକ କହିସାରି ବର୍ତ୍ତମାନ ରଜୋଗୁଣ ବୃଦ୍ଧିର ଲକ୍ଷଣ କହୁଛନ୍ତି –

## ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା।
## ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ।। ୧୨ ।।

**ଅନ୍ୱୟ –** ଭରତର୍ଷଭ = ହେ ଅର୍ଜୁନ; **ରଜସି, ବିବୃଦ୍ଧେ** = ରଜୋଗୁଣର ବୃଦ୍ଧି ଘଟିଲେ; **ଲୋଭଃ** = ଲୋଭ; **ପ୍ରବୃତ୍ତିଃ** = ପ୍ରବୃତ୍ତି; **କର୍ମଣାମ୍** = (ତଥା ସ୍ୱାର୍ଥବୁଦ୍ଧିରେ) କର୍ମମାନଙ୍କର (ସକାମ ଭାବରେ); **ଆରମ୍ଭଃ** = ଆଚରଣ; **ଅଶମଃ** = (ଏବଂ) ଅଶାନ୍ତି ଅର୍ଥାତ୍ ମନର ଚଞ୍ଚଳତା; **ସ୍ପୃହା** = (ଓ) ବିଷୟଭୋଗର ଲାଳସା; **ଏତାନି** = ଏସବୁ; **ଜାୟନ୍ତେ** = ଉତ୍ପନ୍ନ ହୁଅନ୍ତି।

**ହେ ଅର୍ଜୁନ! ରଜୋଗୁଣର ବୃଦ୍ଧି ଘଟିଲେ ଲୋଭ, ପ୍ରବୃତ୍ତି, ସ୍ୱାର୍ଥବୁଦ୍ଧିପୂର୍ବକ ସକାମଭାବରେ କର୍ମାଚରଣ, ଅଶାନ୍ତି ଓ ବିଷୟଭୋଗର ଲାଳସା – ଏସବୁ ଉତ୍ପନ୍ନ ହୁଏ।। ୧୨ ।।**

**ପ୍ରଶ୍ନ – ଲୋଭ, ପ୍ରବୃତ୍ତି, କର୍ମାରମ୍ଭ, ଅଶାନ୍ତି** ଓ **ସ୍ପୃହା** – ଏମାନଙ୍କ ସ୍ୱରୂପ କ'ଣ ଏବଂ ରଜୋଗୁଣର ବୃଦ୍ଧିସମୟରେ ଏମାନେ ଉତ୍ପନ୍ନ ହୁଅନ୍ତି କହିଲେ କ'ଣ ବୁଝାଏ ?

**ଉତ୍ତର –** ଧନପ୍ରତି ଲାଳସାର ନାମ **ଲୋଭ;** ଲୋଭହେତୁ ମନୁଷ୍ୟ ପ୍ରତିକ୍ଷଣ ଧନବୃଦ୍ଧିର ଉପାୟ ଚିନ୍ତା କରିଚାଲେ। ପୁଣି ଧନବ୍ୟୟ କରିବାର ସମୁଚିତ ଅବସର ଆସିଗଲେ ବି ଲୋଭୀ ଧନ ତ୍ୟାଗ କରେ ନାହିଁ ଏବଂ ଧନ ଉପାର୍ଜନ ସମୟରେ କର୍ତ୍ତବ୍ୟ ଅକର୍ତ୍ତବ୍ୟ-ବିବେଚନ ଛାଡ଼ିଦେଇ ଅନ୍ୟର ସ୍ୱତ୍ୱ ଉପରେ ନିଜର ଅଧିକାର ଜମାଇବାକୁ ଇଚ୍ଛା ବା ଚେଷ୍ଟା କରିଚାଲେ। ନାନାପ୍ରକାର କର୍ମ କରିବାନିମନ୍ତେ ମାନସିକ ଭାବ ଜାଗ୍ରତ ହେବାକୁ **ପ୍ରବୃତ୍ତି** କୁହାଯାଏ। ସେହି କର୍ମମାନଙ୍କୁ ସକାମଭାବରେ କରିବାକୁ ଲାଗିଯିବାର ନାମ **ଆରମ୍ଭ।** ମନର ଚଞ୍ଚଳତାର ନାମ **ଅଶାନ୍ତି** ଏବଂ ଯେକୌଣସିପ୍ରକାର ସାଂସାରିକ ପଦାର୍ଥ ହେଉ ନା କାହିଁକି, ତାହା ମୋର ଆବଶ୍ୟକ ବୋଲି ଭାବିବାର ନାମ **ସ୍ପୃହା।**

ରଜୋଗୁଣ ବଢ଼ିଗଲେ ଯେତେବେଳେ ମନୁଷ୍ୟର ଅନ୍ତଃକରଣରେ ସତ୍ତ୍ୱଗୁଣର କାର୍ଯ୍ୟ ପ୍ରକାଶ, ବିବେକଶକ୍ତି ଓ ଶାନ୍ତି ଆଦି ଏବଂ ତମୋଗୁଣର କାର୍ଯ୍ୟ ନିଦ୍ରା ଓ ଆଳସ୍ୟ ଆଦି ଉଭୟପ୍ରକାର ଭାବ ଦବିଯାଏ, ସେତେବେଳେ ମନୁଷ୍ୟକୁ ନାନାପ୍ରକାର ଭୋଗର ଆବଶ୍ୟକତା ପ୍ରତୀତ ହେବାକୁ ଲାଗେ; ତାହାର ଅନ୍ତଃକରଣରେ ଲୋଭ ବଢ଼ିଯାଏ; ଧନସଂଗ୍ରହପାଇଁ ବିଶେଷ ଇଚ୍ଛା ଜାଗ୍ରତ ହୋଇଯାଏ; ନାନାପ୍ରକାର କର୍ମ କରିବାକୁ ମନରେ ନୂଆ ନୂଆ ଭାବ ଦେଖାଦିଏ; ମନ ଚଞ୍ଚଳ ହୋଇଯାଏ ଏବଂ ସେହିଭାବ ଅନୁସାରେ ବିଭିନ୍ନ କ୍ରିୟା ବି ଆରମ୍ଭ ହୋଇଯାଏ। ରଜୋଗୁଣର ବୃଦ୍ଧିରେ ଏପରିଭାବରେ ଲୋଭ ଆଦି ଭାବର ପ୍ରାଦୁର୍ଭାବ ହେବା ହିଁ ଏମାନେ ଉତ୍ପନ୍ନ ହେବା।

**ପ୍ରଶ୍ନ –** ଏଠାରେ **ଭରତର୍ଷଭ** ସମ୍ବୋଧନର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେ ଭରତବଂଶୀୟମାନଙ୍କ ମଧ୍ୟରେ ଉତ୍ତମ, ତାଙ୍କୁ **ଭରତର୍ଷଭ** କହନ୍ତି। ଏଠାରେ ଅର୍ଜୁନଙ୍କୁ ଭରତର୍ଷଭ ବୋଲି ସମ୍ବୋଧନ କରି ଭଗବାନ୍ କହୁଛନ୍ତି, ''ତୁମେ ଭରତବଂଶୀମାନଙ୍କ ମଧ୍ୟରେ ଶ୍ରେଷ୍ଠ; ତୁମ ଭିତରେ ରଜୋଗୁଣର କାର୍ଯ୍ୟରୂପ ଲୋଭାଦି ନାହିଁ।''

ସମ୍ବନ୍ଧ – ବଢ଼ିଥିବା ରଜୋଗୁଣର ଲକ୍ଷଣ କହିସାରି ବର୍ତ୍ତମାନ ତମୋଗୁଣବୃଦ୍ଧିର ଲକ୍ଷଣ କହୁଛନ୍ତି –

**ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।**
**ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ ।। ୧୩ ।।**

**ଅନ୍ୱୟ –** **କୁରୁନନ୍ଦନ** = ହେ ଅର୍ଜୁନ; **ତମସି, ବିବୃଦ୍ଧେ** = ତମୋଗୁଣର ବୃଦ୍ଧିରେ; (ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ) **ଅପ୍ରକାଶଃ** = ଅପ୍ରକାଶ; **ଅପ୍ରବୃତ୍ତିଃ** = (ଏବଂ) କର୍ତ୍ତବ୍ୟକର୍ମରେ ପ୍ରବୃତ୍ତିର ଅଭାବ; **ଚ** = ଓ; **ପ୍ରମାଦଃ** = ପ୍ରମାଦ ଅର୍ଥାତ୍ ବ୍ୟର୍ଥଚେଷ୍ଟା; **ଚ** = ଓ; **ମୋହଃ** = ନିଦ୍ରାଦି ଅନ୍ତଃକରଣର ମୋହିନୀ ବୃତ୍ତି; **ଏତାନି** = ଏସବୁ; **ଏବ** = ହିଁ; **ଜାୟନ୍ତେ** = ଉତ୍ପନ୍ନ ହୁଅନ୍ତି ।

**ହେ ଅର୍ଜୁନ ! ତମୋଗୁଣ ବୃଦ୍ଧି ହେଲେ ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ ଅପ୍ରକାଶ, କର୍ତ୍ତବ୍ୟକର୍ମରେ ଅପ୍ରବୃତ୍ତି ଓ ପ୍ରମାଦ ଅର୍ଥାତ୍ ବ୍ୟର୍ଥଚେଷ୍ଟା ଏବଂ ନିଦ୍ରାଦି ଅନ୍ତଃକରଣର ମୋହିନୀ ବୃତ୍ତି ଉତ୍ପନ୍ନ ହୁଅନ୍ତି ।। ୧୩ ।।**

**ପ୍ରଶ୍ନ – ଅପ୍ରକାଶ, ଅପ୍ରବୃତ୍ତି, ପ୍ରମାଦ** ଏବଂ **ମୋହ –** ଏମାନଙ୍କର ପୃଥକ୍ ପୃଥକ୍ ସ୍ୱରୂପ କଣ ? ଏବଂ ତମୋଗୁଣର ବୃଦ୍ଧିସମୟରେ ଏମାନେ ଉତ୍ପନ୍ନ ହୁଅନ୍ତିର ଅର୍ଥ କ'ଣ ?

**ଉତ୍ତର –** ଇନ୍ଦ୍ରିୟ ଓ ଅନ୍ତଃକରଣର ଦୀପ୍ତିର ନାମ **ପ୍ରକାଶ** ଏବଂ ତାହାର ବିପରୀତରେ ଇନ୍ଦ୍ରିୟ ଓ ଅନ୍ତଃକରଣରେ ଦୀପ୍ତିର ଅଭାବର ନାମ **ଅପ୍ରକାଶ ।** ଏଥିରୁ ସତ୍ତ୍ୱଗୁଣର ଅନ୍ୟ ଭାବଗୁଡ଼ିକର ମଧ୍ୟ ଅଭାବ ହୁଏ ବୋଲି ବୁଝିବାକୁ ପଡ଼ିବ । ବାର ଶ୍ଳୋକରେ କୁହାଯାଇଥିବା ରଜୋଗୁଣର କାର୍ଯ୍ୟରୂପୀ ପ୍ରବୃତ୍ତିର ବିରୋଧୀଭାବ ଅର୍ଥାତ୍ କୌଣସି ବି କର୍ତ୍ତବ୍ୟକର୍ମ ଆରମ୍ଭ କରିବାକୁ ଇଚ୍ଛା ନ ହେବା ହିଁ **ଅପ୍ରବୃତ୍ତି ।** ଏଥିରୁ ରଜୋଗୁଣର ଅନ୍ୟ କାର୍ଯ୍ୟରୂପଗୁଡ଼ିକର ଅଭାବ ହୁଏ ବୋଲି ବୁଝିଯିବାକୁ ପଡ଼ିବ । ଶାସ୍ତ୍ରବିହିତ କର୍ମରେ ଅବହେଳା ତଥା ବ୍ୟର୍ଥ ଚେଷ୍ଟାର ନାମ **ପ୍ରମାଦ ।** ବିବେକଶକ୍ତିର ବିରୋଧିନୀ ମୋହିନୀବୃତ୍ତିର ତଥା ନିଦ୍ରାର ନାମ **ମୋହ ।**

ଯେତେବେଳେ ତମୋଗୁଣ ବଢ଼ିଯାଏ, ସେତେବେଳେ ମନୁଷ୍ୟର ଇନ୍ଦ୍ରିୟ ଓ ଅନ୍ତଃକରଣରେ ଦୀପ୍ତିର ଅଭାବ ହୋଇଯାଏ । ଏହା ହିଁ **ଅପ୍ରକାଶ** ଉତ୍ପନ୍ନ ହୋଇଯିବା । କୌଣସି କର୍ମ କରିବାକୁ ଭଲ ନ ଲାଗିବା; କେବଳ ପଡ଼ିରହି ସମୟ କଟାଇଦେବାକୁ ଇଚ୍ଛାହେବା ହିଁ **ଅପ୍ରବୃତ୍ତି** ଉତ୍ପନ୍ନ ହୋଇଯିବା । ଶରୀର ଓ ଇନ୍ଦ୍ରିୟଦ୍ୱାରା ବ୍ୟର୍ଥ ଚେଷ୍ଟା କରିବା ଓ କର୍ତ୍ତବ୍ୟ କର୍ମରେ ଅବହେଳା କରିବାର ନାମ **ପ୍ରମାଦ** ଉତ୍ପନ୍ନ ହେବା । ମନ ମୋହିତ ହୋଇଯିବା, କୌଣସି କଥା ମନେ ନ ରହିବା, ତନ୍ଦ୍ରା, ସ୍ୱପ୍ନ ବା ସୁଷୁପ୍ତି ଅବସ୍ଥା ପ୍ରାପ୍ତ ହେବା, ବିବେକଶକ୍ତିର ଅଭାବ ହୋଇଯିବା, କୌଣସି ବିଷୟ ବୁଝିବାକୁ ଶକ୍ତି ନ ରହିବା ଇତ୍ୟାଦିକୁ **ମୋହ** ଉତ୍ପନ୍ନ ହୋଇଯିବା କହନ୍ତି । ତମୋଗୁଣର ବୃଦ୍ଧିସମୟରେ ଏହିସବୁ ଲକ୍ଷଣ ଜାତ ହୁଏ; ତେଣୁ ଏ ଭିତରୁ କୌଣସି ବି ଲକ୍ଷଣ ନିଜ ଭିତରେ ଦେଖାଦେଲେ, ବୁଝିବାକୁ ହେବ ଯେ, ତମୋଗୁଣ ବୃଦ୍ଧି ପାଇଲାଣି ।

**ସମ୍ବନ୍ଧ –** ଏପରିଭାବରେ ତିନିଗୁଣର ବୃଦ୍ଧିର ଭିନ୍ନ ଭିନ୍ନ ଲକ୍ଷଣ କହିସାରି ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ତିନିଗୁଣମଧ୍ୟରୁ କେଉଁ ଗୁଣର ବୃଦ୍ଧିସମୟରେ ମୃତ୍ୟୁ ହେଲେ ମନୁଷ୍ୟ କେଉଁ ଗତି ପ୍ରାପ୍ତ ହୁଏ, ତାହା କହୁଛନ୍ତି –

**ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ ପ୍ରଳୟଂ ଯାତି ଦେହଭୃତ୍ ।**
**ତଦୋତ୍ତମବିଦାଂ ଲୋକାନମଲାନ୍ ପ୍ରତିପଦ୍ୟତେ ।। ୧୪ ।।**

**ଅନ୍ୱୟ –** **ଯଦା** = ଯେତେବେଳେ; **ଦେହଭୃତ୍** = ଏହି ମନୁଷ୍ୟ; **ସତ୍ତ୍ୱେ, ପ୍ରବୃଦ୍ଧେ** = ସତ୍ତ୍ୱଗୁଣର ବୃଦ୍ଧିରେ; **ପ୍ରଳୟମ୍** = ମୃତ୍ୟୁକୁ; **ଯାତି** = ପ୍ରାପ୍ତ ହୁଏ; **ତଦା** = ସେତେବେଳେ; **ତୁ** = ତ; **ଉତ୍ତମବିଦାମ୍** = ଉତ୍ତମ କର୍ମ କରୁଥିବା ପୁରୁଷମାନଙ୍କର; **ଅମଲାନ୍** = ନିର୍ମଳ ଦିବ୍ୟ ସ୍ୱର୍ଗାଦି; **ଲୋକାନ୍** = ଲୋକମାନଙ୍କୁ; **ପ୍ରତିପଦ୍ୟତେ** = ପ୍ରାପ୍ତ ହୁଏ ।

**ଯେତେବେଳେ ଏହି ମନୁଷ୍ୟ ସତ୍ତ୍ୱଗୁଣବୃଦ୍ଧିରେ ମୃତ୍ୟୁ ପ୍ରାପ୍ତ ହୁଏ, ସେତେବେଳେ ସେ ଉତ୍ତମ କର୍ମ କରୁଥିବା ପୁରୁଷମାନଙ୍କର ଦିବ୍ୟ ସ୍ୱର୍ଗାଦି ଲୋକ ପ୍ରାପ୍ତ ହୁଏ॥ ୧୪ ॥**

**ପ୍ରଶ୍ନ –** ଯଦା ଓ ତଦା ଦୁଇଟି କାଳବାଚୀ ଅବ୍ୟୟ ପଦ ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ତଥା ସତ୍ତ୍ୱଗୁଣର ବୃଦ୍ଧିସମୟରେ ମୃତ୍ୟୁ ହେବା କ'ଣ ?

**ଉତ୍ତର –** **ଯଦା** ଓ **ତଦା** ଏହି ଦୁଇଟି କାଳବାଚୀ ଅବ୍ୟୟ ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯାହାର ସ୍ୱାଭାବିକ ସ୍ଥିତି ଅନ୍ୟଗୁଣରେ ହୋଇଥିଲେ ବି ସାତ୍ତ୍ୱିକ ଗୁଣର ବୃଦ୍ଧିବେଳେ ମୃତ୍ୟୁ ହୁଏ, ସେପରି ମନୁଷ୍ୟର ଗତି ଏହି ପ୍ରକରଣରେ ନିରୂପଣ କରାଯାଇଛି। ଏପରି ମନୁଷ୍ୟଠାରେ, ଯେତେବେଳେ ପୂର୍ବସଂସ୍କାର ଆଦି କୌଣସି କାରଣରୁ ସତ୍ତ୍ୱଗୁଣ ବଢ଼ିଯାଏ, ଅର୍ଥାତ୍ ଯେତେବେଳେ ଏଗାର ଶ୍ଳୋକର ବର୍ଣ୍ଣନା ଅନୁସାରେ ତାହାର ସମସ୍ତ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ 'ପ୍ରକାଶ' ଓ 'ଜ୍ଞାନ' ଉତ୍ପନ୍ନ ହୋଇଯାଏ, ସେତେବେଳେ ସ୍ଥୂଳଶରୀରରୁ ମନ, ଇନ୍ଦ୍ରିୟ ଓ ପ୍ରାଣମାନଙ୍କ ସହିତ ଜୀବାତ୍ମାର ସମ୍ବନ୍ଧବିଚ୍ଛେଦ ହୋଇଯିବାକୁ ହିଁ ସତ୍ତ୍ୱଗୁଣବୃଦ୍ଧିରେ ମୃତ୍ୟୁ ହେବା କୁହାଯାଏ।

**ପ୍ରଶ୍ନ –** **ଦେହଭୃତ୍** ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** **ଦେହଭୃତ୍** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯେଉଁମାନେ ଦେହଧାରୀ, ଯାହାଙ୍କ ଶରୀରରେ ଅହଂତ୍ୱ ଓ ମମତ୍ୱ ରହିଛି, ସେମାନଙ୍କର ପୁନର୍ଜନ୍ମରୂପକ ଭିନ୍ନ ଭିନ୍ନ ଗତି ହୁଏ। ଯାହାଙ୍କର ଶରୀରରେ ଅଭିମାନ ନାହିଁ, ସେହି ଜୀବନ୍ମୁକ୍ତ ମହାତ୍ମାମାନଙ୍କର ଜନ୍ମ-ମରଣ ହୁଏ ନାହିଁ।

**ପ୍ରଶ୍ନ –** **ଲୋକାନ୍** ସହିତ **ଅମଳାନ୍** ବିଶେଷଣ ଦେବାର ତଥା **ଉତ୍ତମବିଦାମ୍** ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** **ଲୋକାନ୍** ପଦ ସହିତ **ଅମଳାନ୍** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ସତ୍ତ୍ୱଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟମାନଙ୍କୁ ଯେଉଁସବୁ ଲୋକ ପ୍ରାପ୍ତ ହୁଏ, ସେହି ଲୋକମାନଙ୍କରେ ମଳ ଅର୍ଥାତ୍ କୌଣସିପ୍ରକାର ଦୋଷ ବା କ୍ଳେଶ ନ ଥାଏ; ସେଗୁଡ଼ିକ ଦିବ୍ୟ ପ୍ରକାଶମୟ, ଶୁଦ୍ଧ ଓ ସାତ୍ତ୍ୱିକ ଅଟେ। ଏଠାରେ **ଉତ୍ତମବିଦାମ୍** ପଦରେ ଉତ୍ତମ ଶବ୍ଦ ଶାସ୍ତ୍ରବିହିତ କର୍ମ ଓ ଉପାସନାମାନଙ୍କୁ ସୂଚିତ କରେ। ସେସବୁ ଜାଣିଥିବା ଅର୍ଥାତ୍ ନିଷ୍କାମଭାବରେ କରୁଥିବା ମନୁଷ୍ୟମାନେ ଉତ୍ତମବିତ୍ ବୋଲାନ୍ତି। ସେମାନେ ଉକ୍ତ କର୍ମୋପାସନାର ପ୍ରଭାବରେ ଯେଉଁ ଲୋକ ପ୍ରାପ୍ତ ହୁଅନ୍ତି, ସତ୍ତ୍ୱଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟମାନେ ମଧ୍ୟ ସତ୍ତ୍ୱଗୁଣର ସମ୍ବନ୍ଧହେତୁ ସେହି ଲୋକ ପ୍ରାପ୍ତ ହୁଅନ୍ତି।

**ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ।**
**ତଥା ପ୍ରଲୀନସ୍ତମସି ମୂଢ଼ଯୋନିଷୁ ଜାୟତେ॥ ୧୫ ॥**

**ଅନ୍ୱୟ –** **ରଜସି** = ରଜୋଗୁଣବୃଦ୍ଧିରେ; **ପ୍ରଳୟମ୍** = ମୃତ୍ୟୁକୁ; **ଗତ୍ୱା** = ପ୍ରାପ୍ତ ହୋଇ; **କର୍ମସଙ୍ଗିଷୁ** = କର୍ମାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ; **ଜାୟତେ** = ଜନ୍ମ ହୁଏ; **ତଥା** = ତଥା; **ତମସି** = ତମୋଗୁଣବୃଦ୍ଧିରେ; **ପ୍ରଲୀନଃ** = ମରୁଥିବା ମନୁଷ୍ୟ; **ମୂଢ଼ଯୋନିଷୁ** = ମୂଢ଼ଯୋନିମାନଙ୍କରେ ଅର୍ଥାତ୍ ପଶୁ କୀଟ ଆଦି ଯୋନିରେ; **ଜାୟତେ** = ଜନ୍ମ ହୁଏ।

**ରଜୋଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟ କର୍ମାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ ଜନ୍ମ ହୁଏ ତଥା ତମୋଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟ ପଶୁ, କୀଟ ଆଦି ମୂଢ଼ଯୋନିମାନଙ୍କରେ ଜନ୍ମ ହୁଏ॥ ୧୫ ॥**

**ପ୍ରଶ୍ନ –** ରଜୋଗୁଣବୃଦ୍ଧିରେ ମରିବା କ'ଣ ଏବଂ **କର୍ମସଙ୍ଗିଷୁ** ପଦର ଅର୍ଥ କ'ଣ? ପୁଣି ସେମାନଙ୍କ ମଧ୍ୟରେ ଜନ୍ମ ହେବା କହିଲେ କ'ଣ ବୁଝାଏ ?

**ଉତ୍ତର –** ଯେତେବେଳେ ରଜୋଗୁଣର ବୃଦ୍ଧି ହୁଏ ଅର୍ଥାତ୍ ବାର ଶ୍ଳୋକର ବର୍ଣ୍ଣନା ଅନୁସାରେ ଲୋଭ, ପ୍ରବୃତ୍ତି ଆଦି ରାଜସ ଭାବ ବଢ଼ିଥାଏ, ସେତେବେଳେ ମନ, ଇନ୍ଦ୍ରିୟ ଓ ପ୍ରାଣମାନଙ୍କ ସମେତ ସ୍ଥୂଳଶରୀରରୁ ଜୀବାତ୍ମାର ସମ୍ବନ୍ଧ-ବିଚ୍ଛେଦ ହୋଇଯିବାକୁ ରଜୋଗୁଣବୃଦ୍ଧିରେ ମରିବା ବୋଲି କୁହାଯାଏ। ଯେଉଁ ମନୁଷ୍ୟମାନଙ୍କର କର୍ମ ଓ କର୍ମଫଳରେ ଆସକ୍ତି ଥାଏ, ସେମାନଙ୍କୁ **କର୍ମସଙ୍ଗୀ** କୁହାଯାଏ। ତେଣୁ ସେପରି ମନୁଷ୍ୟଯୋନିରେ ଜନ୍ମ ନେବା ହିଁ କର୍ମସଙ୍ଗୀମାନଙ୍କ ମଧ୍ୟରେ ଜନ୍ମ ନେବା।

**ପ୍ରଶ୍ନ –** ତମୋଗୁଣବୃଦ୍ଧିରେ ମରିବା ଏବଂ ମୂଢ଼ଯୋନିରେ ଉତ୍ପନ୍ନ ହେବା କ'ଣ ?

**ଉତ୍ତର –** ଯେତେବେଳେ ତମୋଗୁଣ ବଢ଼ିଥାଏ ଅର୍ଥାତ୍ ତେର ଶ୍ଳୋକ ଅନୁସାରେ 'ଅପ୍ରକାଶ', 'ଅପ୍ରବୃତ୍ତି'

ଓ 'ପ୍ରମାଦ' ଆଦି ତାମସଭାବ ବଢ଼ିଥାଏ, ସେତେବେଳେ ମନ, ଇନ୍ଦ୍ରିୟ ଓ ପ୍ରାଣମାନଙ୍କ ସମେତ ସ୍ଥୂଳଶରୀରରୁ ଜୀବାତ୍ମାର ସମ୍ବନ୍ଧ-ବିଚ୍ଛେଦ ଘଟିଲେ, ତାହାକୁ ତମୋଗୁଣବୃଦ୍ଧିରେ ମରିବା କହନ୍ତି ଏବଂ କୀଟ-ପତଙ୍ଗ, ପଶୁପକ୍ଷୀ, ବୃକ୍ଷଲତା ଆଦି ତାମସୀ ଯୋନିରେ ଜନ୍ମ ନେବାକୁ ମୂଢ଼ଯୋନିରେ ଉତ୍ପନ୍ନ ହେବା କହନ୍ତି।

*ସମ୍ବନ୍ଧ— ସତ୍ତ୍ୱ, ରଜ ଓ ତମ— ଏହି ତିନିଗୁଣର ବୃଦ୍ଧିରେ ମରିବାର ଭିନ୍ନ ଭିନ୍ନ ଫଳ କଥା କୁହାଗଲା। ଏଥିରୁ କେତେବେଳେ କେଉଁଗୁଣର ଏବଂ ଆଉ କେତେବେଳେ ଆଉ କେଉଁଗୁଣର ବୃଦ୍ଧି କାହିଁକି ହୁଏ, ତାହା ଜାଣିବାକୁ ଇଚ୍ଛା ହୁଏ। ତେଣୁ କହୁଛନ୍ତି—*

**କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳମ୍।**
**ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳମ୍॥ ୧୬ ॥**

ଅନ୍ୱୟ— **ସୁକୃତସ୍ୟ, କର୍ମଣଃ** = ଶ୍ରେଷ୍ଠ କର୍ମର; **ସାତ୍ତ୍ୱିକମ୍** = ସାତ୍ତ୍ୱିକ ଅର୍ଥାତ୍ ସୁଖ, ଜ୍ଞାନ ଓ ବୈରାଗ୍ୟାଦି; **ନିର୍ମଳମ୍** = ନିର୍ମଳ; **ଫଳମ୍** = ଫଳ; **ଆହୁଃ** = କହନ୍ତି; **ତୁ** = କିନ୍ତୁ; **ରଜସଃ, ଫଳମ୍** = ରାଜସ କର୍ମର ଫଳ; **ଦୁଃଖମ୍** = ଦୁଃଖ; **ତମସଃ** = (ଓ) ତାମସ କର୍ମର; **ଫଳମ୍** = ଫଳ; **ଅଜ୍ଞାନମ୍** = ଅଜ୍ଞାନ (ବୋଲି କହନ୍ତି)।

**ଶ୍ରେଷ୍ଠ କର୍ମରୁ ସାତ୍ତ୍ୱିକ ଅର୍ଥାତ୍ ସୁଖ, ଜ୍ଞାନ ଓ ବୈରାଗ୍ୟାଦି ନିର୍ମଳ ଫଳ ମିଳେ ବୋଲି କହନ୍ତି; ରାଜସକର୍ମର ଫଳ ଦୁଃଖ ଏବଂ ତାମସକର୍ମର ଫଳ ଅଜ୍ଞାନ ବୋଲି କହନ୍ତି॥ ୧୬ ॥**

**ପ୍ରଶ୍ନ— ସୁକୃତସ୍ୟ** ବିଶେଷଣ ସହିତ **କର୍ମଣଃ** ପଦଟି କେଉଁ କର୍ମମାନଙ୍କର ବାଚକ ଏବଂ ସେସବୁରୁ 'ସାତ୍ତ୍ୱିକ ଓ ନିର୍ମଳ ଫଳ ମିଳେ' ବୋଲି କହିବାର ଅର୍ଥ କ'ଣ ?

**ଉତ୍ତର— ସୁକୃତସ୍ୟ** ବିଶେଷଣ ସହିତ **କର୍ମଣଃ** ପଦଟି ହେଉଛି ନିଷ୍କାମଭାବରେ କରାଯାଉଥିବା ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମମାନଙ୍କର ବାଚକ। ଏପରି କର୍ମମାନଙ୍କର ସଂସ୍କାରଦ୍ୱାରା ଅନ୍ତଃକରଣରେ ଯେଉଁ ଜ୍ଞାନ-ବୈରାଗ୍ୟାଦି ନିର୍ମଳ ଭାବଗୁଡ଼ିକର ବାରମ୍ବାର ଉତ୍ପନ୍ନ ହେଉଥାଏ ଏବଂ ମୃତ୍ୟୁପରେ ଯେଉଁ ଦୁଃଖ ଓ ଦୋଷରହିତ ଦିବ୍ୟ ପ୍ରକାଶମୟ ଲୋକ ପ୍ରାପ୍ତ ହୁଏ, ତାହା ହିଁ ସେହି କର୍ମମାନଙ୍କର 'ସାତ୍ତ୍ୱିକ ଓ ନିର୍ମଳ ଫଳ'।

**ପ୍ରଶ୍ନ—** ରାଜସକର୍ମ କହିଲେ କେଉଁ କର୍ମ ଏବଂ ତା'ର ଫଳ ଦୁଃଖ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଭୋଗପ୍ରାପ୍ତିନିମନ୍ତେ ଅହଂକାରପୂର୍ବକ ବହୁ ପରିଶ୍ରମ କରି ଯେଉଁସବୁ କର୍ମ କରାଯାଏ (୧୮/୨୪), ସେସବୁ ରାଜସ। ଏପରି କର୍ମ କରିବାବେଳେ ପରିଶ୍ରମରୂପକ ଦୁଃଖ ହିଁ ହୁଏ; ତା'ପରେ ବି ଏସବୁ କର୍ମ ଦୁଃଖ ହିଁ ଦେଇଥାଏ। ଏହି କର୍ମମାନଙ୍କର ସଂସ୍କାରଦ୍ୱାରା ଅନ୍ତଃକରଣରେ ବାରମ୍ବାର ଭୋଗ, କାମନା, ଲୋଭ ଓ ପ୍ରବୃତ୍ତି ଆଦି ରାଜସଭାବ ସ୍ଫୁରିତ ହୁଏ, ଯାହା ଫଳରେ ବି ମନ ବିକ୍ଷିପ୍ତ ହୋଇ ଅଶାନ୍ତି ଓ ଦୁଃଖରେ ପୂର୍ଣ୍ଣ ହୋଇଯାଏ। ଏହି କର୍ମମାନଙ୍କର ଫଳସ୍ୱରୂପ ଯେଉଁ ଭୋଗ ପ୍ରାପ୍ତ ହୁଏ, ତାହା ବି ଅଜ୍ଞାନହେତୁ ସୁଖପରି ମନେ ହେଉଥିଲେ ବି ବସ୍ତୁତଃ ଦୁଃଖରୂପ ହିଁ ଅଟେ। ଏହି ଫଳ ଭୋଗ କରିବାନିମନ୍ତେ ବାରମ୍ବାର ଜନ୍ମ-ମରଣ- ଚକ୍ରରେ ଯାହା ଘୁରିବାକୁ ପଡ଼େ, ତାହା ତ ବିରାଟ ଦୁଃଖ। ଏପରିଭାବରେ ରାଜସକର୍ମରୁ ଯାହା କିଛି ଫଳ ମିଳେ, ତାହା ଦୁଃଖ ଭିନ୍ନ ଅନ୍ୟ କିଛି ନୁହେଁ।

**ପ୍ରଶ୍ନ—** ତାମସକର୍ମ କେଉଁ କର୍ମକୁ କୁହାଯାଏ ଏବଂ ତା'ର ଫଳ ଅଜ୍ଞାନ ହୁଏ କିପରି ?

**ଉତ୍ତର—** ଯେଉଁସବୁ କର୍ମ ବିନା-ବୁଝିବିଚାରି ମୂର୍ଖତାବଶତଃ କରାଯାଏ ଏବଂ ଯେଉଁଥିରେ ହିଂସା ଆଦି ଦୋଷ ପୂର୍ଣ୍ଣ ହୋଇ ରହିଥାଏ (୧୮/୨୫), ସେଗୁଡ଼ିକ ହେଉଛି ତାମସ କର୍ମ। ସେଗୁଡ଼ିକର ସଂସ୍କାରଦ୍ୱାରା ଅନ୍ତଃକରଣରେ ମୋହ ବୃଦ୍ଧି ପାଏ ଏବଂ ମୃତ୍ୟୁପରେ ଅଧିକ ମାତ୍ରାରେ ତମୋଗୁଣ ରହିଥିବା ଜଡ଼ଯୋନିରେ ଜନ୍ମ ମିଳେ। ତେଣୁ ଏସବୁ କର୍ମର ଫଳ ଅଜ୍ଞାନ।

**ପ୍ରଶ୍ନ—** ଏଠାରେ ଗୁଣମାନଙ୍କର ଫଳ ବର୍ଣ୍ଣନା କରିବାର ପ୍ରସଙ୍ଗ ଥିଲା, ମଝିରେ ଏ କର୍ମଫଳ କଥା କାହିଁକି କୁହାଗଲା ? ଏହା ଅପ୍ରାସଙ୍ଗିକପରି ପ୍ରତୀତ ହେଉଛି।

**ଉତ୍ତର—** ସେପରି ନୁହେଁ; କାରଣ ଗତ ଶ୍ଳୋକରେ ପ୍ରତ୍ୟେକ ଗୁଣର ବୃଦ୍ଧିରେ ମରିବାର ଭିନ୍ନ ଭିନ୍ନ ଫଳ କୁହାଯାଇଥିଲା; ତେଣୁ ଗୁଣମାନଙ୍କର ବୃଦ୍ଧିର କାରଣରୂପୀ କର୍ମସଂସ୍କାରର ବିଷୟ ମଧ୍ୟ ଅବଶ୍ୟ ଆସିବା ଉଚିତ; ତେଣୁ କର୍ମ ବିଷୟ କୁହାଯାଇଛି। ଅଭିପ୍ରାୟ

ଏହି ଯେ, ସାତ୍ତ୍ୱିକ, ରାଜସ ଓ ତାମସ– ତିନିପ୍ରକାର କର୍ମସଂସ୍କାର ପ୍ରତ୍ୟେକ ମନୁଷ୍ୟର ଅନ୍ତଃକରଣରେ ସଞ୍ଚିତ ହୋଇ ରହେ; ତା'ଭିତରୁ ଯେତେବେଳେ ଯେପରି ସଂସ୍କାରର ପ୍ରାଦୁର୍ଭାବ ହୁଏ, ସେତେବେଳେ ସେହିପରି ସାତ୍ତ୍ୱିକ ଆଦି ଭାବ ବଢ଼େ ଏବଂ ତଦନୁସାରେ ନୂଆ ନୂଆ କର୍ମ ହୁଏ। କର୍ମରୁ ସଂସ୍କାର ଏବଂ ସଂସ୍କାରରୁ ସାତ୍ତ୍ୱିକାଦି ଗୁଣର ବୃଦ୍ଧି ହୁଏ ଏବଂ ସେହିପରି ସଂସ୍କାରରୁ ସ୍ମୃତି ଓ ସ୍ମୃତି ଅନୁସାରେ ପୁନର୍ଜନ୍ମ ହୁଏ ଏବଂ ପୁଣି କର୍ମମାନଙ୍କର ଆରମ୍ଭ ହୁଏ– ଏପରିଭାବରେ ଏହି ଚକ୍ର ଘୁରିଚାଲିଥାଏ। ଏହା ଫଳରେ ଅନନ୍ତକାଳୀନ ସାତ୍ତ୍ୱିକ ଆଦି ଭାବମାନଙ୍କ ଫଳର ଯେଉଁ ବିଶେଷତା ଗତଶ୍ଳୋକରେ ଦେଖାଇଦିଆଯାଇଛି, ତାହା ବି ପ୍ରାୟ ପୂର୍ବକୃତ ସାତ୍ତ୍ୱିକ, ରାଜସ ଓ ତାମସ କର୍ମମାନଙ୍କର ସମ୍ବନ୍ଧହେତୁ ହିଁ ହୁଏ। ଏହି ଭାବ ଦେଖାଇଦେବାନିମନ୍ତେ ଏହି ଶ୍ଳୋକ କୁହାଯାଇଛି; ତେଣୁ ଏହା ଅପ୍ରାସଙ୍ଗିକ ନୁହେଁ; କାରଣ ଗୁଣ ଓ କର୍ମ– ଏହି ଦୁଇଟିର ସମ୍ବନ୍ଧରୁ ହିଁ ଭଲ ବା ମନ୍ଦ ଯୋନିରେ ଜନ୍ମ ମିଳେ। (୪/୧୩)

*ସମ୍ବନ୍ଧ – ଏଗାର, ବାର ଓ ତେର ଶ୍ଳୋକରେ ସତ୍ତ୍ୱ, ରଜ ଓ ତମୋଗୁଣର ବୃଦ୍ଧିର ଲକ୍ଷଣସବୁ କ୍ରମାନୁସାରେ ବର୍ଣ୍ଣନା କରାଗଲା ଏବଂ ସତ୍ତ୍ୱାଦି ଗୁଣମାନଙ୍କର ବୃଦ୍ଧିରେ ମୃତ୍ୟୁ ହେଲେ ତାହାର ପୃଥକ୍ ପୃଥକ୍ ଫଳ ବିଷୟ ମଧ୍ୟ କୁହାଗଲା। ଏସବୁ ଶ୍ଳୋକମାନଙ୍କରେ ଜ୍ଞାନ ଆଦିର ଉତ୍ପତ୍ତିକୁ ସତ୍ତ୍ୱ ଆଦି ଗୁଣମାନଙ୍କ ବୃଦ୍ଧିର ଲକ୍ଷଣ ବୋଲି କାହିଁକି କୁହାଗଲା, ତାହା ଜାଣିବାକୁ ଇଚ୍ଛା ହୁଏ। ତେଣୁ କାର୍ଯ୍ୟର ଉତ୍ପତ୍ତିଦ୍ୱାରା କାରଣର ସତ୍ତାକୁ ଜାଣିବା ନିମନ୍ତେ ଜ୍ଞାନ ଆଦିର ଉତ୍ପତ୍ତିରେ ସତ୍ତ୍ୱ ଆଦି ଗୁଣ ହିଁ କାରଣ ହୋଇଥାଏ ବୋଲି କହୁଛନ୍ତି–*

**ସତ୍ତ୍ୱାତ୍ ସଂଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ।**
**ପ୍ରମାଦମୋହୌ ତମସୋ ଭବତୋଽଜ୍ଞାନମେବ ଚ॥ ୧୭ ॥**

**ଅନ୍ୱୟ –** **ସତ୍ତ୍ୱାତ୍** = ସତ୍ତ୍ୱଗୁଣରୁ; **ଜ୍ଞାନମ୍** = ଜ୍ଞାନ; **ସଂଜାୟତେ** = ଉତ୍ପନ୍ନ ହୁଏ; **ଚ** = ଏବଂ; **ରଜସଃ** = ରଜୋଗୁଣରୁ; **ଏବ** = ନିଃସନ୍ଦେହରେ; **ଲୋଭଃ** = ଲୋଭ; **ଚ** = ତଥା; **ତମସଃ** = ତମୋଗୁଣରୁ; **ପ୍ରମାଦମୋହୌ** = ପ୍ରମାଦ ଓ ମୋହ; **ଭବତଃ** = ଉତ୍ପନ୍ନ ହୁଅନ୍ତି; **ଅଜ୍ଞାନମ୍** = ଅଜ୍ଞାନ; **ଏବ** = ମଧ୍ୟ (ଉତ୍ପନ୍ନ ହୁଏ)।

**ସତ୍ତ୍ୱଗୁଣରୁ ଜ୍ଞାନ ଉତ୍ପନ୍ନ ହୁଏ ଏବଂ ରଜୋଗୁଣରୁ ନିଃସନ୍ଦେହରେ ଲୋଭ ତଥା ତମୋଗୁଣରୁ ପ୍ରମାଦ, ମୋହ ଏବଂ ଅଜ୍ଞାନ ମଧ୍ୟ ଉତ୍ପନ୍ନ ହୁଏ॥ ୧୭ ॥**

**ପ୍ରଶ୍ନ –** ସତ୍ତ୍ୱଗୁଣରୁ ଜ୍ଞାନ ଉତ୍ପନ୍ନ ହୁଏ ବୋଲି କହିବାର ଭାବ କ'ଣ ?

**ଉତ୍ତର –** ଏଠାରେ ଜ୍ଞାନ ଶବ୍ଦଟି ଉପଲକ୍ଷଣମାତ୍ର। ଏଣୁ ଏହି କଥନରୁ ବୁଝିବା ଉଚିତ ଯେ, ଜ୍ଞାନ, ପ୍ରକାଶ, ସୁଖ, ଶାନ୍ତି ପ୍ରଭୃତି ସକଳ ସାତ୍ତ୍ୱିକ ଭାବ ସତ୍ତ୍ୱଗୁଣରୁ ହିଁ ଉତ୍ପନ୍ନ ହୁଏ।

**ପ୍ରଶ୍ନ –** ରଜୋଗୁଣରୁ ଲୋଭ ଉତ୍ପନ୍ନ ହୁଏ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଲୋଭ ଶବ୍ଦର ପ୍ରୟୋଗ ମଧ୍ୟ ଏଠାରେ ଉପଲକ୍ଷଣମାତ୍ର। ଏଥିରୁ ବୁଝିବା ଉଚିତ ଯେ, ଲୋଭ, ପ୍ରବୃତ୍ତି, ଆସକ୍ତି, କାମନା ଓ ସ୍ୱାର୍ଥପୂର୍ବକ କର୍ମାଚରଣ ପ୍ରଭୃତି ସକଳ ରାଜସିକଭାବ ରଜୋଗୁଣରୁ ହିଁ ଉତ୍ପନ୍ନ ହୁଏ।

**ପ୍ରଶ୍ନ –** ତମୋଗୁଣରୁ ପ୍ରମାଦ, ମୋହ ଓ ଅଜ୍ଞାନ ଉତ୍ପନ୍ନ ହୁଏ ବୋଲି କହି ସେହି ବାକ୍ୟରେ **'ଏବ'** ପଦ ବ୍ୟବହାର କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏବ ପଦଦ୍ୱାରା ଦେଖାଇଦିଆଯାଇଛି ଯେ, ତମୋଗୁଣରୁ ପ୍ରମାଦ, ମୋହ ଓ ଅଜ୍ଞାନ ତ ଉତ୍ପନ୍ନ ହୁଏ, ତା'ଛଡ଼ା ନିଦ୍ରା, ଆଳସ୍ୟ, ଅପ୍ରକାଶ, ଅପ୍ରବୃତ୍ତି ଆଦି ଯେତେ ତାମସଭାବ ରହିଛି, ସେଗୁଡ଼ିକ ମଧ୍ୟ ତମୋଗୁଣରୁ ହିଁ ଉତ୍ପନ୍ନ ହୁଏ।

*ସମ୍ବନ୍ଧ – ସତ୍ତ୍ୱାଦି ତିନିଗୁଣର କାର୍ଯ୍ୟ ଜ୍ଞାନ ଆଦି ବୋଲି ବର୍ଣ୍ଣନା କରିସାରି ଭଗବାନ୍ ବର୍ତ୍ତମାନ ସତ୍ତ୍ୱଗୁଣରେ ଅବସ୍ଥିତ କରାଇବାପାଇଁ ଏବଂ ରଜ ଓ ତମୋଗୁଣ ତ୍ୟାଗ କରାଇବାପାଇଁ ତିନିଗୁଣରେ ଅବସ୍ଥିତ ପୁରୁଷଙ୍କର ଭିନ୍ନ ଭିନ୍ନ ଗତି ପ୍ରତିପାଦନ କରୁଛନ୍ତି–*

## ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।
## ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ।। ୧୮ ।।

**ଅନ୍ୱୟ—** **ସତ୍ତ୍ୱସ୍ଥାଃ** = ସତ୍ତ୍ୱଗୁଣରେ ସ୍ଥିତ ପୁରୁଷମାନେ; **ଊର୍ଦ୍ଧ୍ୱମ୍** = ସ୍ୱର୍ଗାଦି ଉଚ୍ଚଲୋକକୁ; **ଗଚ୍ଛନ୍ତି** = ଯାଆନ୍ତି; **ରାଜସାଃ** = ରଜୋଗୁଣରେ ସ୍ଥିତ ରାଜସ ପୁରୁଷମାନେ **ମଧ୍ୟେ** = ମଧ୍ୟରେ ଅର୍ଥାତ୍ ମନୁଷ୍ୟଲୋକରେ ହିଁ; **ତିଷ୍ଠନ୍ତି** = ରହନ୍ତି; **ଜଘନ୍ୟଗୁଣବୃତ୍ତିସ୍ଥାଃ** = ତମୋଗୁଣର କାର୍ଯ୍ୟରୂପ ନିଦ୍ରା, ପ୍ରମାଦ ଓ ଆଳସ୍ୟାଦିରେ ସ୍ଥିତ ହୋଇଥିବା; **ତାମସାଃ** = ତାମସ ପୁରୁଷମାନେ; **ଅଧଃ** = ଅଧୋଗତି ଅର୍ଥାତ୍ କୀଟ, ପଶୁ ଆଦି ନୀଚ ଯୋନିମାନଙ୍କୁ ତଥା ନରକକୁ; **ଗଚ୍ଛନ୍ତି** = ପ୍ରାପ୍ତ ହୁଅନ୍ତି।

**ସତ୍ତ୍ୱଗୁଣରେ ସ୍ଥିତ ପୁରୁଷମାନେ ସ୍ୱର୍ଗାଦି ଉଚ୍ଚଲୋକମାନଙ୍କୁ ଯାଆନ୍ତି; ରଜୋଗୁଣରେ ସ୍ଥିତ ରାଜସପୁରୁଷମାନେ ମଧ୍ୟରେ ଅର୍ଥାତ୍ ମନୁଷ୍ୟଲୋକରେ ହିଁ ରହନ୍ତି ଏବଂ ତମୋଗୁଣର କାର୍ଯ୍ୟରୂପୀ ନିଦ୍ରା, ପ୍ରମାଦ ଓ ଆଳସ୍ୟାଦିରେ ସ୍ଥିତ ତାମସପୁରୁଷମାନେ ଅଧୋଗତି ଅର୍ଥାତ୍ କୀଟ, ପଶୁ ଆଦି ନୀଚଯୋନି ତଥା ନରକ ପ୍ରାପ୍ତ ହୁଅନ୍ତି।। ୧୮ ।।**

**ପ୍ରଶ୍ନ—** **ଊର୍ଦ୍ଧ୍ୱମ୍** ପଦ କେଉଁ ସ୍ଥାନର ବାଚକ ଏବଂ ସତ୍ତ୍ୱଗୁଣରେ ସ୍ଥିତ ପୁରୁଷମାନେ ସେଠାକୁ ଯାଆନ୍ତି ବୋଲି କହିବାର ଅର୍ଥ କ'ଣ ?

**ଉତ୍ତର—** ମନୁଷ୍ୟଲୋକର ଉପରକୁ ଯେତେ ଲୋକ ରହିଛି, ତେଉଦ ଶ୍ଳୋକରେ ଯାହାକୁ 'ଉତ୍ତମବିଦାମ୍' ଓ 'ଅମଳାନ୍' ପଦଦ୍ୱୟଟି ସହିତ 'ଲୋକାନ୍' ପଦଦ୍ୱାରା ବର୍ଣ୍ଣନା କରାଯାଇଛି, ତଥା ଷଷ୍ଠ ଅଧ୍ୟାୟର ଏକଚାଳିଶ ଶ୍ଳୋକରେ ଯେଉଁ ଲୋକଗୁଡ଼ିକୁ ପୁଣ୍ୟକର୍ମୀମାନଙ୍କର ଲୋକ ବୋଲି ମାନ୍ୟତା ଦିଆଯାଇଛି, ଏଠାରେ **ଊର୍ଦ୍ଧ୍ୱମ୍** ପଦ ହେଉଛି ସେହି ଲୋକମାନଙ୍କର ବାଚକ ଏବଂ ସେଠାକୁ ଯିବା ଅର୍ଥ ମୃତ୍ୟୁ ପରେ ସାତ୍ତ୍ୱିକ ପୁରୁଷମାନଙ୍କର ସେହି ଲୋକ ପ୍ରାପ୍ତ ହେବା।

**ପ୍ରଶ୍ନ—** **ମଧ୍ୟେ** ପଦ କେଉଁ ସ୍ଥାନର ବାଚକ ଏବଂ ସେଠାରେ ରାଜସପୁରୁଷମାନେ ରହନ୍ତି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** **ମଧ୍ୟେ** ପଦଟି ହେଉଛି ମନୁଷ୍ୟଲୋକର ବାଚକ। ମୃତ୍ୟୁପରେ ରାଜସପୁରୁଷମାନେ ଅନ୍ୟଲୋକକୁ ନ ଯାଇ ଏହି ଲୋକରେ ହିଁ ପୁନର୍ଜନ୍ମ ପାଉଥିବାରୁ ରାଜସପୁରୁଷମାନେ ଏଠାରେ ହିଁ ରହନ୍ତି ବୋଲି ବୋଲାଯାଏ।

**ପ୍ରଶ୍ନ—** **ଜଘନ୍ୟଗୁଣ** ଓ ତାହାର **ବୃତ୍ତି** କହିଲେ କ'ଣ ବୁଝାଏ ? ସେଥିରେ ସ୍ଥିତ ହେବା ତଥା ତାମସ ମନୁଷ୍ୟମାନେ ଅଧୋଗତି ପ୍ରାପ୍ତ ହେବାର ଅର୍ଥ କ'ଣ ?

**ଉତ୍ତର—** ଜଘନ୍ୟ ନୀଚ ବା ନିନ୍ଦ୍ୟକୁ ବୁଝାଏ। ତେଣୁ ଜଘନ୍ୟଗୁଣ ହେଉଛି ତମୋଗୁଣର ବାଚକ ତଥା ତାହାର କାର୍ଯ୍ୟ ପ୍ରମାଦ, ମୋହ, ଅଜ୍ଞାନ, ଅପ୍ରକାଶ, ଅପ୍ରବୃତ୍ତି ଏବଂ ନିଦ୍ରା ଆଦି ହେଉଛି ତାହାର **ବୃତ୍ତି।** ସେସବୁରେ ଜଡ଼ିତ ହୋଇ ରହିବା ହିଁ ସେଥିରେ ସ୍ଥିତ ହେବା। ଏହିସବୁ ବୃତ୍ତିରେ ବୁଡ଼ିରହିଥିବା ମନୁଷ୍ୟମାନଙ୍କୁ 'ତାମସ' ବୋଲାଯାଏ। ସେହି ତାମସଲୋକେ ମନୁଷ୍ୟଶରୀର ତ୍ୟାଗ କରିବା ପରେ କୀଟ, ପତଙ୍ଗ, ପଶୁ, ପକ୍ଷୀ ଓ ବୃକ୍ଷ ଆଦି ନୀଚଯୋନିମାନଙ୍କରେ ଜନ୍ମ ନିଅନ୍ତି ଏବଂ ରୌରବ, କୁମ୍ଭୀପାକ ଆଦି ନରକରେ ପଡ଼ି ଯେଉଁ ଯମଯାତନା ତଥା ଘୋର କଷ୍ଟ ପାଆନ୍ତି, ତାହା ହିଁ ସେମାନଙ୍କର ଅଧୋଗତି ପ୍ରାପ୍ତ ହେବା।

**ପ୍ରଶ୍ନ—** ତିନିଗୁଣର ବୃଦ୍ଧିରେ ମରୁଥିବା ଲୋକେ ପ୍ରାୟତଃ ଏହିପରି ଭିନ୍ନ ଭିନ୍ନ ଫଳ ପାଉଥିବା କଥା ଚଉଦ ଓ ପନ୍ଦର ଶ୍ଳୋକରେ କୁହାଯାଇଛି; ସେହି ବିଷୟ ପୁଣି ଥରେ କାହିଁକି ଏଠାରେ କୁହାଗଲା ?

**ଉତ୍ତର—** ସେହି ଦୁଇଟି ଶ୍ଳୋକରେ 'ଯଦା' ଓ 'ତଦା' କାଳବାଚକ ଅବ୍ୟୟ ପ୍ରୟୋଗ କରାଯାଇଛି। ଅତଏବ ଅନ୍ୟ ଗୁଣମାନଙ୍କରେ ସ୍ୱାଭାବିକ ସ୍ଥିତି ରହିଥିବାବେଳେ ଯେଉଁ ଗୁଣର ବୃଦ୍ଧିରେ ମୃତ୍ୟୁ ହୋଇଥାଏ, ତାହାରି ଅନୁସାରେ ଗତିର ପରିବର୍ତ୍ତନ ହୁଏ— ଏହି ଭାବ ଦେଖାଇବାକୁ ସେହି ଦୁଇ ଶ୍ଳୋକରେ ଭିନ୍ନ ଭିନ୍ନ ଗତି କଥା କୁହାଯାଇଛି। କିନ୍ତୁ ଏଠାରେ ଯେଉଁମାନଙ୍କର ସ୍ୱାଭାବିକ ସ୍ଥାୟୀ ସ୍ଥିତି ସତ୍ତ୍ୱାଦି ଗୁଣମାନଙ୍କରେ ଥାଏ, ସେମାନଙ୍କ ଗତିର ପାର୍ଥକ୍ୟ ବର୍ଣ୍ଣନା କରାଯାଇଛି। ତେଣୁ ଏଠାରେ ପୁନରୁକ୍ତି ଦୋଷ ନାହିଁ।

**ପ୍ରଶ୍ନ—** ପନ୍ଦର ଶ୍ଲୋକରେ ତ ତମୋଗୁଣରେ ମରିବାର ଫଳ କେବଳ ମୂଢ଼ଯୋନିରେ ଜନ୍ମ ହେବା ବୋଲି କୁହାଯାଇଥିଲା, ଏଠାରେ ତାମସ ପୁରୁଷମାନଙ୍କର ଗତି ବର୍ଣ୍ଣନାକରି 'ଅଧଃ' ପଦର ଅର୍ଥ, ସେମାନେ ନରକାଦି ମଧ୍ୟ ପ୍ରାପ୍ତ ହୁଅନ୍ତି ବୋଲି କିପରି କୁହାଗଲା ?

**ଉତ୍ତର—** ସେଠାରେ ସେହିସବୁ ସାତ୍ତ୍ୱିକ ଓ ରାଜସିକ ମନୁଷ୍ୟମାନଙ୍କର ଗତି କଥା କୁହାଯାଇଛି, ଯେଉଁମାନେ କି ଅନ୍ତକାଳରେ ତମୋଗୁଣର ବୃଦ୍ଧିରେ ମରିଥାନ୍ତି; ତେଣୁ 'ଅଧଃ' ପଦ ପ୍ରୟୋଗ ନ କରି 'ମୂଢ଼ଯୋନିଷୁ' ପଦ ପ୍ରୟୋଗ କରାଯାଇଛି। କାରଣ ଏପରି ପୁରୁଷମାନଙ୍କର ସେହି ଗୁଣସଙ୍ଗରୁ ହିଁ ଏପରି ଜନ୍ମ ହୋଇଥାଏ, ଯଥା—ସତ୍ତ୍ୱଗୁଣରେ ସ୍ଥିତ ରାଜର୍ଷି ଭରତଙ୍କର ମୃଗଯୋନିରେ ଜନ୍ମ ହୋଇଗଲା ବୋଲି ପୁରାଣରେ ପଢ଼ିଛି। କିନ୍ତୁ ଯେଉଁମାନେ ସବୁବେଳେ ତମୋଗୁଣରେ ବୃତ୍ତି ରହିଥିବା ତାମସମନୁଷ୍ୟ, ସେମାନଙ୍କୁ ତ ନରକାଦି ଗତି ମଧ୍ୟ ମିଳିପାରେ। ଷୋଡଶ ଅଧ୍ୟାୟର ବିଂଶ ଶ୍ଲୋକରେ ଭଗବାନ୍ କହି ବି ଦେଇଛନ୍ତି ଯେ, ତାମସ ସ୍ୱଭାବର ମନୁଷ୍ୟମାନେ ଆସୁରୀ ଯୋନିମାନଙ୍କୁ ପ୍ରାପ୍ତ ହୋଇ ତା'ଠାରୁ ବି ନୀଚଗତି ପ୍ରାପ୍ତ ହୁଅନ୍ତି।

*ସମ୍ବନ୍ଧ— ତ୍ରୟୋଦଶ ଅଧ୍ୟାୟର ଏକୋଇଶ ଶ୍ଲୋକରେ କହିଥିଲେ ଯେ, ଗୁଣମାନଙ୍କର ସଙ୍ଗ ହିଁ ମନୁଷ୍ୟର ଭଲ-ମନ୍ଦ ଯୋନି-ପ୍ରାପ୍ତିରୂପକ ପୁନର୍ଜନ୍ମର କାରଣ ହୋଇଥାଏ; ସେହି ଅନୁସାରେ ଏହି ଅଧ୍ୟାୟର ପଞ୍ଚମଠାରୁ ଆରମ୍ଭ କରି ଅଠର ଶ୍ଲୋକପର୍ଯ୍ୟନ୍ତ ଗୁଣମାନଙ୍କର ସ୍ୱରୂପ ତଥା ଗୁଣମାନଙ୍କର କାର୍ଯ୍ୟଦ୍ୱାରା ବାନ୍ଧି ହୋଇଥିବା ମନୁଷ୍ୟମାନଙ୍କର ଗତି ଆଦି ବିସ୍ତାରପୂର୍ବକ ପ୍ରତିପାଦନ କରାଗଲା। ଏହି ବର୍ଣ୍ଣନାରେ ବୁଝାଇଦିଆଯାଇଛି ଯେ, ମନୁଷ୍ୟ ପ୍ରଥମେ ତମ ଓ ରଜ ତ୍ୟାଗ କରି ସତ୍ତ୍ୱଗୁଣରେ ସ୍ଥିତ ହେବା ଉଚିତ ଏବଂ ତା'ପରେ ସତ୍ତ୍ୱଗୁଣକୁ ବି ତ୍ୟାଗ କରି ଗୁଣାତୀତ ହୋଇଯିବା ଉଚିତ। ଅତଏବ ଗୁଣାତୀତ ହୋଇଯିବାର ଉପାୟ ଓ ଗୁଣାତୀତ ଅବସ୍ଥାର ଫଳ ପରବର୍ତ୍ତୀ ଦୁଇଟି ଶ୍ଲୋକରେ କହୁଛନ୍ତି—*

**ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦା ଦ୍ରଷ୍ଟାନୁପଶ୍ୟତି।**
**ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍‌ଭାବଂ ସୋଽଧିଗଚ୍ଛତି॥ ୧୯ ॥**

**ଅନ୍ୱୟ—** **ଯଦା** = ଯେତେବେଳେ; **ଦ୍ରଷ୍ଟା** = ସାକ୍ଷୀରୂପେ ସ୍ଥିତ ଦ୍ରଷ୍ଟା ବିବେକୀ ପୁରୁଷ; **ଗୁଣେଭ୍ୟଃ** = ତିନିଗୁଣରୁ ଭିନ୍ନ; **ଅନ୍ୟମ୍** = ଅନ୍ୟ କାହାକୁ; **କର୍ତ୍ତାରମ୍** = କର୍ତ୍ତା (ବୋଲି); **ନ**, **ଅନୁପଶ୍ୟତି** = ଦେଖେ ନାହିଁ; **ଚ** = ଏବଂ; **ଗୁଣେଭ୍ୟଃ** = ତିନି ଗୁଣଠାରୁ; **ପରମ୍** = ଅତ୍ୟନ୍ତ ଉର୍ଦ୍ଧ୍ୱରେ ସ୍ଥିତ ସଚ୍ଚିଦାନନ୍ଦଘନସ୍ୱରୂପ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ; **ବେତ୍ତି** = ତତ୍ତ୍ୱତଃ ଜାଣେ; **(ତଦା)** = ସେତେବେଳେ; **ସଃ** = ସେ; **ମଦ୍‌ଭାବମ୍** = ମୋର ସ୍ୱରୂପକୁ; **ଅଧିଗଚ୍ଛତି** = ପ୍ରାପ୍ତ ହୁଏ।

**ଯେତେବେଳେ ସାକ୍ଷୀରୂପେ ସ୍ଥିତ ଦ୍ରଷ୍ଟା ବିବେକୀ ପୁରୁଷ ତିନିଗୁଣଠାରୁ ଭିନ୍ନ ଅନ୍ୟ କାହାକୁ କର୍ତ୍ତା ବୋଲି ଦେଖନ୍ତି ନାହିଁ ଏବଂ ତିନିଗୁଣଠାରୁ ସର୍ବଥା ଅତୀତ ହୋଇ ରହିଥିବା ସଚ୍ଚିଦାନନ୍ଦଘନସ୍ୱରୂପ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ତତ୍ତ୍ୱତଃ ଜାଣନ୍ତି, ସେତେବେଳ ସେ ମୋର ସ୍ୱରୂପ ପ୍ରାପ୍ତ ହୁଅନ୍ତି॥ ୧୯ ॥**

**ପ୍ରଶ୍ନ—** କାଳବାଚକ **ଯଦା** ଅବ୍ୟୟ ଓ **ଦ୍ରଷ୍ଟା** ଶବ୍ଦ ପ୍ରୟୋଗ କରି ଏଠାରେ କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର—** ଏହି ଦୁଇଟି ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏହି ଶ୍ଲୋକରେ ମନୁଷ୍ୟର ସ୍ୱାଭାବିକ ସ୍ଥିତିଠାରୁ ଏକ ମହତ୍ତର ବିଲକ୍ଷଣ ସ୍ଥିତିର ବର୍ଣ୍ଣନା କରାଯାଇଛି। ଅଭିପ୍ରାୟ ହେଉଛି, ମନୁଷ୍ୟ ସ୍ୱାଭାବିକ ସ୍ଥିତିରେ ତ ସ୍ୱୟଂ ଶରୀରଧାରୀ ବୋଲି ଭାବି ନିଜେ କର୍ତ୍ତା ଓ ଭୋକ୍ତା ହୋଇ ରହିଥାଏ; ସେ ନିଜକୁ ସମସ୍ତ କର୍ମରୁ ଓ ସେମାନଙ୍କ ଫଳରୁ ସମ୍ବନ୍ଧରହିତ, ଉଦାସୀନ ଦ୍ରଷ୍ଟା ବୋଲି ଭାବେ ନାହିଁ; କିନ୍ତୁ ଯେତେବେଳେ ଶାସ୍ତ୍ର ଏବଂ ଆଚାର୍ଯ୍ୟଙ୍କ ଉପଦେଶଦ୍ୱାରା ବିବେକପ୍ରାପ୍ତ ହୋଇ ସେ ନିଜକୁ ଦ୍ରଷ୍ଟା ବୋଲି ଭାବିବାକୁ ଲାଗେ, ଏଠାରେ ସେହି ସମୟର ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ –** ଗୁଣମାନଙ୍କ ଠାରୁ ଭିନ୍ନ ଅନ୍ୟ କାହାକୁ କର୍ତ୍ତା ବୋଲି ନ ଦେଖିବା କହିଲେ କ'ଣ ବୁଝାଏ ?

**ଉତ୍ତର –** ଇନ୍ଦ୍ରିୟ, ଅନ୍ତଃକରଣ ଓ ପ୍ରାଣ ଆଦିର ଶ୍ରବଣ, ଦର୍ଶନ, ପାନ-ଭୋଜନ, ଚିନ୍ତନ-ମନନ, ଶୟନ, ଆସନ ଓ ବ୍ୟବହାର ଆଦି ସକଳ ସ୍ୱାଭାବିକ ଚେଷ୍ଟା ହୋଇଚାଲିଥିବାବେଳେ ସଦାସର୍ବଦା ନିଜକୁ ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ସ୍ଥିତ ବୋଲି ଦେଖି 'ଗୁଣମାନଙ୍କ ଭିନ୍ନ ଅନ୍ୟ କେହି କର୍ତ୍ତା ନାହିଁ, ଗୁଣମାନଙ୍କର କାର୍ଯ୍ୟ ଇନ୍ଦ୍ରିୟ, ମନ, ବୁଦ୍ଧି ଓ ପ୍ରାଣ ଆଦି ହିଁ ଗୁଣମାନଙ୍କର କାର୍ଯ୍ୟରୂପ ଇନ୍ଦ୍ରିୟାଦିର ବିଷୟରେ ପ୍ରବୃତ୍ତ ହୋଇଚାଲିଛନ୍ତି (୫/୮,୯); ତେଣୁ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି (୩/୨୮); ମୋର ଏସବୁ ସହିତ କିଛି ବି ସମ୍ବନ୍ଧ ନାହିଁ — ଏପରି ବୁଝିପାରିବା ହିଁ ଗୁଣମାନଙ୍କ ଠାରୁ ଭିନ୍ନ ଅନ୍ୟ କାହାକୁ କର୍ତ୍ତା ବୋଲି ନ ଦେଖିବା ।

**ପ୍ରଶ୍ନ –** ତିନିଗୁଣଠାରୁ ଅତ୍ୟନ୍ତ ଅତୀତ କିଏ ଏବଂ ତାଙ୍କୁ ତତ୍ତ୍ୱତଃ ଜାଣିବା କ'ଣ ?

**ଉତ୍ତର –** ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମା ହିଁ ତିନିଗୁଣଠାରୁ ଅତ୍ୟନ୍ତ ଅତୀତ ଅର୍ଥାତ୍ ସମ୍ବନ୍ଧରହିତ । ସେହି ନିର୍ଗୁଣ-ନିରାକାର ବ୍ରହ୍ମଙ୍କ ଠାରୁ ନିଜକୁ ଅଭିନ୍ନ ବୋଲି ବୁଝିବା ସଙ୍ଗେ ସଙ୍ଗେ ସେହି ଏକମାତ୍ର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ଭିନ୍ନ ଅନ୍ୟ କୌଣସି ବି ସତ୍ତାକୁ ନ ଦେଖିବା ଓ ସର୍ବତ୍ର ତଥା ସଦାସର୍ବଦା କେବଳ ପରମାତ୍ମାଙ୍କୁ ହିଁ ଦର୍ଶନ କରିବାର ଅର୍ଥ ତାଙ୍କୁ ତତ୍ତ୍ୱତଃ ଜାଣିବା ।

**ପ୍ରଶ୍ନ –** ଏପରି ସ୍ଥିତି ଆସିଯିବାକ୍ଷଣି ମଦ୍‌ଭାବ ଅର୍ଥାତ୍ ଭଗବଦ୍‌ଭାବ ପ୍ରାପ୍ତ ହେବା କ'ଣ ?

**ଉତ୍ତର –** ଏପରି ସ୍ଥିତି ଆସିଯିବାକ୍ଷଣି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଅଭିନ୍ନଭାବରେ ସାକ୍ଷାତ୍‌ପ୍ରାପ୍ତି ହୋଇଯାଏ ଓ ତାହା ହିଁ ଭଗବଦ୍‌ଭାବପ୍ରାପ୍ତି ।

## ଗୁଣାନେତାନତୀତ୍ୟ ତ୍ରୀନ୍ ଦେହୀ ଦେହସମୁଦ୍‌ଭବାନ୍ ।
## ଜନ୍ମମୃତ୍ୟୁ ଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ ॥ ୨୦ ॥

**ଅନ୍ୱୟ –** ଦେହୀ = (ସେହି) ପୁରୁଷ; ଦେହସମୁଦ୍‌ଭବାନ୍ = ସ୍ଥୂଳଶରୀର-ଉତ୍ପତ୍ତିର କାରଣସ୍ୱରୂପ; ଏତାନ୍ = ଏହିସବୁ; ତ୍ରୀନ୍ = ତିନି; ଗୁଣାନ୍ = ଗୁଣମାନଙ୍କୁ; ଅତୀତ୍ୟ = ଅତିକ୍ରମ କରି; ଜନ୍ମମୃତ୍ୟୁଜରାଦୁଃଖୈଃ = ଜନ୍ମ, ମୃତ୍ୟୁ, ବୃଦ୍ଧାବସ୍ଥା ଓ ସକଳପ୍ରକାର ଦୁଃଖରୁ; ବିମୁକ୍ତଃ = ମୁକ୍ତ ହୋଇ; ଅମୃତମ୍ = ପରମାନନ୍ଦକୁ; ଅଶ୍ନୁତେ = ପ୍ରାପ୍ତ ହୁଏ ।

**ସେହି ପୁରୁଷ ଶରୀର-ଉତ୍ପତ୍ତିର କାରଣରୂପ ଏହି ତିନି ଗୁଣକୁ ଅତିକ୍ରମ କରି, ଜନ୍ମ, ମୃତ୍ୟୁ, ବାର୍ଦ୍ଧକ୍ୟ ଓ ସକଳପ୍ରକାର ଦୁଃଖରୁ ବିମୁକ୍ତ ହୋଇ ପରମାନନ୍ଦ ପ୍ରାପ୍ତ ହୁଅନ୍ତି ॥ ୨୦ ॥**

**ପ୍ରଶ୍ନ –** ଏଠାରେ ଦେହୀ ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦର୍ଶାଯାଇଛି ଯେ, ଯେ ପ୍ରଥମେ ନିଜକୁ ଦେହରେ ସ୍ଥିତ ବୋଲି ବୁଝିଥିଲେ, ଗୁଣାତୀତ ହୋଇଯିବା ପରେ ସେ ହିଁ ଅମୃତକୁ — ବ୍ରହ୍ମକୁ ପ୍ରାପ୍ତ ହୋଇଯାଆନ୍ତି ।

**ପ୍ରଶ୍ନ – ଗୁଣାନ୍** ପଦ ସହିତ **ଏତାନ୍, ଦେହସମୁଦ୍‌ଭବାନ୍** ଓ **ତ୍ରୀନ୍ —** ବିଶେଷଣଗୁଡ଼ିକ ପ୍ରୟୋଗ କରିବାର ଭାବ କ'ଣ? ପୁଣି ଗୁଣମାନଙ୍କରୁ ଅତୀତ ହୋଇଯିବା କ'ଣ ?

**ଉତ୍ତର – ଏତାନ୍** ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏହି ଅଧ୍ୟାୟରେ ଯେଉଁ ଗୁଣମାନଙ୍କର ସ୍ୱରୂପ ବିଷୟ କୁହାଗଲା ଏବଂ ଯେଉଁମାନେ ଜୀବାତ୍ମାକୁ ଶରୀରରେ ବାନ୍ଧିରଖନ୍ତି, ସେହି ଗୁଣମାନଙ୍କ ଠାରୁ ଅତୀତ ହୋଇଯିବାର କଥା କୁହାଯାଇଛି । **ଦେହସମୁଦ୍‌ଭବାନ୍** ବିଶେଷଣଦ୍ୱାରା ଦେଖାଇଦିଆଯାଇଛି ଯେ, ବୁଦ୍ଧି, ଅହଂକାର ଓ ମନ ତଥା ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ କର୍ମେନ୍ଦ୍ରିୟ, ପାଞ୍ଚ ମହାଭୂତ ଓ ପାଞ୍ଚ ଇନ୍ଦ୍ରିୟର ବିଷୟ – ଏହି ତେଇଶି ତତ୍ତ୍ୱର ପିଣ୍ଡରୂପ ଏହି ସ୍ଥୂଳଶରୀରଟି ପ୍ରକୃତିଜାତ ଗୁଣମାନଙ୍କର ହିଁ କାର୍ଯ୍ୟ । ତେଣୁ ଏହା ସହିତ ନିଜର ସମ୍ବନ୍ଧ ଅଛି ବୋଲି ମାନିବା ହିଁ ଗୁଣମାନଙ୍କରେ ଲିପ୍ତ ହୋଇ ରହିବା । **ତ୍ରୀନ୍** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ଏହି ଗୁଣମାନେ ତିନିପ୍ରକାର ଏବଂ ସେହି ତିନୋଟିରୁ ସମ୍ବନ୍ଧ ତୁଟିଲେ ହିଁ ମୁକ୍ତି ମିଳେ । ରଜ ଓ ତମର ସମ୍ବନ୍ଧ ତୁଟିଯିବା ପରେ ଯଦି ସତ୍ତ୍ୱଗୁଣ ସହିତ ସମ୍ବନ୍ଧ ଲାଗିରହିଥିବ,

ତେବେ ବି ତାହା ମୁକ୍ତିରେ ବାଧକ ହୋଇ ପୁନର୍ଜନ୍ମର କାରଣ ହୋଇଯାଇପାରେ; ତେଣୁ ତା ସମ୍ବନ୍ଧ ବି ତୁଟାଇଦେବାକୁ ପଡ଼ିବ। ଆତ୍ମା ବାସ୍ତବରେ ଅସଙ୍ଗ; ଗୁଣମାନଙ୍କ ସହିତ ତା'ର କିଛି ବି ସମ୍ବନ୍ଧ ନାହିଁ; ତଥାପି ଅନାଦିସିଦ୍ଧ ଅଜ୍ଞାନହେତୁ ଗୁଣମାନଙ୍କ ସହିତ ଯେଉଁ ସମ୍ବନ୍ଧକୁ ମାନି ନିଆଯାଉଛି, ସେହି ସମ୍ବନ୍ଧକୁ ଜ୍ଞାନଦ୍ୱାରା ତୁଟାଇଦେବା ଏବଂ ନିଜକୁ ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ଠାରୁ ଅଭିନ୍ନ ଓ ଗୁଣମାନଙ୍କ ଠାରୁ ସର୍ବଥା ସମ୍ବନ୍ଧରହିତ ବୋଲି ବୁଝିଯିବା ଅର୍ଥାତ୍ ପ୍ରତ୍ୟକ୍ଷପରି ଅନୁଭବ କରିବା ହିଁ ଗୁଣାତୀତ ହୋଇଯିବା।

**ପ୍ରଶ୍ନ—** ଜନ୍ମ, ମୃତ୍ୟୁ, ଜରା ଓ ଦୁଃଖରୁ ବିମୁକ୍ତ ହୋଇଯିବା କ'ଣ ଓ ତା'ପରେ ଅମୃତକୁ ଅନୁଭବ କରିବା କ'ଣ ?

**ଉତ୍ତର—** ଜନ୍ମ ଓ ମୃତ୍ୟୁ ତଥା ବାଲ୍ୟ, ଯୌବନ ଓ ବୃଦ୍ଧାବସ୍ଥା ଶରୀରର ହିଁ ହୁଏ; ପୁଣି ଆଧି, ବ୍ୟାଧି ଆଦି ସକଳପ୍ରକାର ଦୁଃଖ ବି ଇନ୍ଦ୍ରିୟ, ମନ ଓ ପ୍ରାଣ ଆଦିର ସଂଘାତରୂପ ଶରୀରରେ ହିଁ ବ୍ୟାପ୍ତ ହୋଇ ରହେ। ତେଣୁ ଯାହାଙ୍କର ଶରୀର ସହିତ କିଞ୍ଚିତ୍‌ମାତ୍ର ବି ସମ୍ବନ୍ଧ ନ ଥାଏ, ସେ ଲୋକଦୃଷ୍ଟିରେ ଶରୀର ଧରିଥିଲେ ବି ବସ୍ତୁତଃ ଶରୀରର ଧର୍ମ ଜନ୍ମ, ମୃତ୍ୟୁ ଓ ଜରା ଆଦିରୁ ସଦାସର୍ବଦା ମୁକ୍ତ ହୋଇ ହିଁ ରହିଥାନ୍ତି। ସୁତରାଂ ତତ୍ତ୍ୱଜ୍ଞାନଦ୍ୱାରା ଶରୀରରୁ ସର୍ବଥା ସମ୍ବନ୍ଧରହିତ ହୋଇଯିବା ହିଁ ଜନ୍ମ, ମୃତ୍ୟୁ, ଜରା ଓ ଦୁଃଖରୁ ସର୍ବଥା ମୁକ୍ତ ହୋଇଯିବା। ଏହାପରେ ଅମୃତସ୍ୱରୂପ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ଅଭିନ୍ନଭାବରେ ପ୍ରତ୍ୟକ୍ଷ ଅନୁଭବ କରିବା, ଯାହାକୁ ଊଣେଇଶି ଶ୍ଳୋକରେ 'ମଦ୍‌ଭାବପ୍ରାପ୍ତି' ବୋଲି କୁହାଯାଇଛି, ତାହା ହିଁ ଅମୃତକୁ ଅନୁଭବ କରିବା।

***ସମ୍ବନ୍ଧ—** ଏପରିଭାବରେ ଜୀବିତ ଅବସ୍ଥାରେ ହିଁ ତିନିଗୁଣରୁ ଅତୀତ ହୋଇ ମନୁଷ୍ୟ ଅମୃତପ୍ରାପ୍ତ ହୋଇଯାଏ—ଏହି ରହସ୍ୟଯୁକ୍ତ କଥା ଶୁଣି ଗୁଣାତୀତ ପୁରୁଷଙ୍କ ଲକ୍ଷଣ ଓ ଆଚରଣ ତଥା ଗୁଣାତୀତ ହେବାର ଉପାୟ ଜାଣିବାକୁ ଇଚ୍ଛା କରି ଅର୍ଜୁନ ପଚାରୁଛନ୍ତି—*

ଅର୍ଜୁନ ଉବାଚ

## କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ।
## କିମାଚାରଃ କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତେ॥ ୨୧ ॥

**ଅନ୍ୱୟ—** ଏତାନ୍ = ଏହି (ସବୁ); **ତ୍ରୀନ୍** = ତିନି; **ଗୁଣାନ୍** = ଗୁଣମାନଙ୍କରୁ; **ଅତୀତଃ** = ଅତୀତ ହୋଇଥିବା ପୁରୁଷ; **କୈଃ, ଲିଙ୍ଗୈଃ** = କେଉଁ କେଉଁ ଲକ୍ଷଣରେ (ଯୁକ୍ତ); **ଭବତି** = ହୁଏ; **ଚ** = ଏବଂ; **କିମାଚାରଃ** = କେଉଁପ୍ରକାର ଆଚରଣଯୁକ୍ତ; **(ଭବତି)** = ହୁଏ; **ପ୍ରଭୋ** = (ତଥା) ହେ ପ୍ରଭୁ; **କଥମ୍** = (ମନୁଷ୍ୟ) କେଉଁ ଉପାୟରେ; **ଏତାନ୍** = ଏହି; **ତ୍ରୀନ୍** = ତିନି; **ଗୁଣାନ୍** = ଗୁଣମାନଙ୍କରୁ; **ଅତିବର୍ତ୍ତତେ** = ଅତୀତ ହୁଏ।

**ଅର୍ଜୁନ ପଚାରିଲେ— ଏହି ତିନି ଗୁଣରୁ ଅତୀତ ପୁରୁଷ କେଉଁ କେଉଁ ଲକ୍ଷଣରେ ଯୁକ୍ତ ହୁଅନ୍ତି ଏବଂ କେଉଁପ୍ରକାର ଆଚରଣଯୁକ୍ତ ହୁଅନ୍ତି? ତଥା ହେ ପ୍ରଭୁ! ମନୁଷ୍ୟ କେଉଁ ଉପାୟରେ ଏହି ତିନିଗୁଣରୁ ଅତୀତ ହୋଇଥାଏ?॥ ୨୧ ॥**

**ପ୍ରଶ୍ନ— ଗୁଣାନ୍** ପଦ ସହିତ ବାରମ୍ବାର ଏତାନ୍ ଓ ତ୍ରୀନ୍ ପଦ ପ୍ରୟୋଗ କରି କେଉଁ ଭାବ ଦେଖାଉଛନ୍ତି?

**ଉତ୍ତର—** ଏପରି ପ୍ରୟୋଗ କରି ଦେଖାଉଛନ୍ତି ଯେ, ଏହି ଅଧ୍ୟାୟରେ ଯେଉଁ ତିନି ଗୁଣ କଥା ବିସ୍ତାରପୂର୍ବକ ବର୍ଣ୍ଣିତ ହୋଇଛି, ସେହି ତିନିଗୁଣରୁ ଅତୀତ ହେବା କଥା ଅର୍ଜୁନ ପଚାରୁଛନ୍ତି।

**ପ୍ରଶ୍ନ—** 'ସେ କେଉଁ କେଉଁ ଲକ୍ଷଣରେ ଯୁକ୍ତ ହୁଅନ୍ତି?' କହି ଅର୍ଜୁନ କ'ଣ ପଚାରୁଛନ୍ତି?

**ଉତ୍ତର—** ଏହି ପ୍ରଶ୍ନ କରି ଅର୍ଜୁନ ଶାସ୍ତ୍ରଦୃଷ୍ଟିରୁ ଗୁଣାତୀତ ପୁରୁଷଙ୍କର ଲକ୍ଷଣ— ଯାହା କି ଗୁଣାତୀତ ପୁରୁଷଙ୍କ ଠାରେ ସ୍ୱାଭାବିକ ଥାଏ ତଥା ସାଧକମାନଙ୍କ ପାଇଁ ଏକାନ୍ତ ଆଦର୍ଶଣୀୟ ଅଟେ, ତାହା ପଚାରୁଛନ୍ତି।

**ପ୍ରଶ୍ନ—** 'ସେ କିପରି ଆଚରଣଯୁକ୍ତ ହୋଇଥାନ୍ତି?'— ଏହାଦ୍ୱାରା କ'ଣ ପଚାରିଛନ୍ତି?

**ଉତ୍ତର—** ଏହାଦ୍ୱାରା ଗୁଣାତୀତ ପୁରୁଷଙ୍କର ବ୍ୟବହାର କିପରି ହୋଇଥାଏ ବୋଲି ପଚାରିଛନ୍ତି, ଅର୍ଥାତ୍ ଗୁଣାତୀତ ପୁରୁଷ କାହା ସହିତ କିପରି ବ୍ୟବହାର କରନ୍ତି ଏବଂ ତାଙ୍କର ଚାଲିଚଳଣ କିପରି ଇତ୍ୟାଦି ବିଷୟ ଜାଣିବାକୁ ପଚାରିଛନ୍ତି।

**ପ୍ରଶ୍ନ— ପ୍ରଭୋ** ସମ୍ବୋଧନର ଭାବ କ'ଣ ?

**ଉତ୍ତର –** ଭଗବାନ୍ ଶ୍ରୀକୃଷ୍ଣଙ୍କୁ 'ପ୍ରଭୋ' ବୋଲି ସମ୍ବୋଧନ କରି ଅର୍ଜୁନ ଜଣାଉଛନ୍ତି, "ଆପଣ ସକଳ ଜଗତର ସ୍ୱାମୀ, କର୍ତ୍ତା, ହର୍ତ୍ତା ଏବଂ ସର୍ବସମର୍ଥ ପରମେଶ୍ୱର ଅଟନ୍ତି; ଏହି ବିଷୟ ଆପଣ ହିଁ ପୂର୍ଣ୍ଣରୂପେ ବୁଝାଇଦେଇପାରିବେ। ତେଣୁ ମୁଁ ଆପଣଙ୍କୁ ପଚାରୁଛି।"

**ପ୍ରଶ୍ନ –** 'ମନୁଷ୍ୟ ଏହି ତିନିଗୁଣରୁ କିପରି ଅତୀତ ହୁଏ ?' – ଅର୍ଜୁନ ଏଥିରୁ କ'ଣ ଜାଣିବାକୁ ଚାହୁଁଛନ୍ତି ?

**ଉତ୍ତର –** ଏହି ପ୍ରଶ୍ନ କରି ସେ ଗୁଣାତୀତ ହୋଇପାରିବାର ଉପାୟ କ'ଣ ବୋଲି ଜାଣିବାକୁ ଚାହୁଁଛନ୍ତି। ଅଭିପ୍ରାୟ ହେଉଛି, "ଆପଣ ଗୁଣାତୀତ ହେବାର ଯେଉଁ ଉପାୟ ଆଗରୁ ଉଣେଇଶ ଶ୍ଳୋକରେ କହିସାରିଛନ୍ତି, ତା' ଅପେକ୍ଷା କିଛି ସରଳତର ଉପାୟ ଅଛି କି, ଯାହାଦ୍ୱାରା ମନୁଷ୍ୟ ଶୀଘ୍ର ଓ ଅନାୟାସରେ ଏହି ତିନି ଗୁଣକୁ ଅତିକ୍ରମ କରିଯିବ ?"

**ସମ୍ବନ୍ଧ –** *ଅର୍ଜୁନ ଏପରି ପଚାରିବାରୁ, ଭଗବାନ୍ ପରବର୍ତ୍ତୀ ଚାରିଟି ଶ୍ଳୋକରେ ଅର୍ଜୁନଙ୍କ ପ୍ରଶ୍ନମଧ୍ୟରୁ ଗୁଣାତୀତଙ୍କ ଲକ୍ଷଣ ଓ ଆଚରଣ ବିଷୟକ ଦୁଇଟି ପ୍ରଶ୍ନର ଉତ୍ତର ଦେଉଛନ୍ତି –*

*ଶ୍ରୀଭଗବାନୁବାଚ*

**ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବ ଚ ପାଣ୍ଡବ।**
**ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି ନ ନିବୃତ୍ତାନି କାଙ୍କ୍ଷତି॥ ୨୨ ॥**

**ଅନ୍ୱୟ –** **ପାଣ୍ଡବ** = ହେ ଅର୍ଜୁନ; **ପ୍ରକାଶମ୍** = (ଯେଉଁ ପୁରୁଷ) ସତ୍ତ୍ୱଗୁଣର କାର୍ଯ୍ୟରୂପୀ ପ୍ରକାଶକୁ; **ଚ** = ଏବଂ; **ପ୍ରବୃତ୍ତିମ୍** = ରଜୋଗୁଣର କାର୍ଯ୍ୟରୂପୀ ପ୍ରବୃତ୍ତିକୁ; **ଚ** = ତଥା; **ମୋହମ୍** = ତମୋଗୁଣର କାର୍ଯ୍ୟରୂପୀ ମୋହକୁ; **ଏବ** = ମଧ୍ୟ; **ସଂପ୍ରବୃତ୍ତାନି** = ପ୍ରବୃତ୍ତ ହେଲେ; **ନ**, **ଦ୍ୱେଷ୍ଟି** = ଦ୍ୱେଷ କରେ ନାହିଁ; **ଚ** = ଓ; **ନିବୃତ୍ତାନି** = ନିବୃତ୍ତ ହେଲେ; **ନ**, **କାଙ୍କ୍ଷତି** = ଆକାଙ୍କ୍ଷା କରେ ନାହିଁ।- - -

**ଶ୍ରୀଭଗବାନ୍ କହିଲେ – ହେ ଅର୍ଜୁନ, ଯେଉଁ ପୁରୁଷ ସତ୍ତ୍ୱଗୁଣର କାର୍ଯ୍ୟରୂପୀ ପ୍ରକାଶ ଏବଂ ରଜୋଗୁଣର କାର୍ଯ୍ୟରୂପୀ ପ୍ରବୃତ୍ତି ତଥା ତମୋଗୁଣର କାର୍ଯ୍ୟରୂପୀ ମୋହ ପ୍ରବୃତ୍ତ ହେଲେ (ଆସିଗଲେ) ସେଗୁଡ଼ିକୁ ଦ୍ୱେଷ କରନ୍ତି ନାହିଁ, କି ନିବୃତ୍ତ ହେଲେ (ଚାଲିଗଲେ) ସେଗୁଡ଼ିକୁ ଆକାଙ୍କ୍ଷା କରନ୍ତି ନାହିଁ, ...॥ ୨୨ ॥**

**ପ୍ରଶ୍ନ –** **ପ୍ରକାଶମ୍** ପଦର ଅର୍ଥ କ'ଣ ? ପୁଣି ସତ୍ତ୍ୱଗୁଣର କାର୍ଯ୍ୟମାନଙ୍କ ମଧ୍ୟରୁ କେବଳ 'ପ୍ରକାଶ'ର ପ୍ରାଦୁର୍ଭାବକୁ ଦ୍ୱେଷ ନ କରିବା ଓ ତିରୋଭାବକୁ ଆକାଙ୍କ୍ଷା ନ କରିବା କଥା କାହିଁକି କହିଛନ୍ତି ?

**ଉତ୍ତର –** ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ଆଳସ୍ୟ ଓ ଜଡ଼ତାର ଅଭାବ ହୋଇ ଯେଉଁ ଲଘୁତା, ନିର୍ମଳତା ଓ ଚେତନତା ଆସିଯାଏ, ତାହାରି ନାମ **'ପ୍ରକାଶ'।** ଗୁଣାତୀତ ପୁରୁଷଙ୍କ ଠାରେ ଜ୍ଞାନ, ଶାନ୍ତି ଓ ଆନନ୍ଦ ସର୍ବଦା ରହିଥାଏ; ସେସବୁର କେବେ ବି ଅଭାବ ହୁଏ ନାହିଁ। ତେଣୁ ଏଠାରେ ସତ୍ତ୍ୱଗୁଣର କାର୍ଯ୍ୟମାନଙ୍କ ମଧ୍ୟରୁ କେବଳ 'ପ୍ରକାଶ'ର କଥା କୁହାଯାଇଛି। ଅଭିପ୍ରାୟ ଏହି ଯେ, ଯଦି କେବେ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ସତ୍ତ୍ୱଗୁଣର ପ୍ରକାଶବୃତ୍ତିର ସ୍ୱତଃ ପ୍ରକଟ ହୋଇଯାଏ, ତେବେ ସେ ସେଥିପାଇଁ ଦ୍ୱେଷ କରନ୍ତି ନାହିଁ, କି ଯଦି କେବେ ତାହାର ତିରୋଭାବ ହୋଇଯାଏ, ତେବେ ପୁନର୍ବାର ତାହା ଆସୁ ବୋଲି ଇଚ୍ଛା କରନ୍ତି ନାହିଁ। ପ୍ରକାଶର ପ୍ରାଦୁର୍ଭାବ ଓ ତିରୋଭାବରେ ସେ ସର୍ବଦା ଏକଭଳି ସ୍ଥିତିରେ ହିଁ ରହନ୍ତି।

**ପ୍ରଶ୍ନ –** **ପ୍ରବୃତ୍ତିମ୍** ପଦର ଅଭିପ୍ରାୟ କ'ଣ ? ପୁଣି ଏଠାରେ ରଜୋଗୁଣର କାର୍ଯ୍ୟମାନଙ୍କ ମଧ୍ୟରୁ କେବଳ ପ୍ରବୃତ୍ତିର ପ୍ରାଦୁର୍ଭାବ ଓ ତିରୋଭାବରେ ଦ୍ୱେଷ ଓ ଇଚ୍ଛାର ଅଭାବ ଦେଖାଇବାର ଭାବ କ'ଣ ?

**ଉତ୍ତର –** ନାନାପ୍ରକାର କର୍ମ କରିବାର ସ୍ଫୁରଣାକୁ **ପ୍ରବୃତ୍ତି** କହନ୍ତି। ଏହା ବ୍ୟତୀତ କାମ, ଲୋଭ, ସ୍ପୃହା ଓ ଆସକ୍ତି ଆଦି ରଜୋଗୁଣର ଯେତେ କାର୍ଯ୍ୟ ରହିଛି, ଗୁଣାତୀତ ପୁରୁଷଙ୍କ ଠାରେ ସେଗୁଡ଼ିକ ଆଦୌ ନ ଥାଏ। କର୍ମାରମ୍ଭ ଗୁଣାତୀତ ପୁରୁଷଙ୍କର ଶରୀର ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ମଧ୍ୟ ହୋଇଥାଏ, ତାହା ପ୍ରବୃତ୍ତିର ଅନ୍ତର୍ଗତ। ତେଣୁ ଏଠାରେ ରଜୋଗୁଣର କାର୍ଯ୍ୟମାନଙ୍କ ମଧ୍ୟରୁ କେବଳ 'ପ୍ରବୃତ୍ତି'ରେ ହିଁ ଗୁଣାତୀତ ପୁରୁଷଙ୍କର ରାଗଦ୍ୱେଷର ଅଭାବ କଥା କୁହାଯାଇଛି।

ଅଭିପ୍ରାୟ ଏହି ଯେ, ଯେତେବେଳେ ଗୁଣାତୀତ ପୁରୁଷଙ୍କ ମନରେ କୌଣସି କର୍ମ ଆରମ୍ଭ କରିବାକୁ ସ୍ଫୁରଣା ହୁଏ ଅଥବା ଶରୀର ଆଦିଦ୍ୱାରା କର୍ମାରମ୍ଭ ହୁଏ, ସେତେବେଳେ ସେ ସେଥିରେ ଦ୍ୱେଷ କରନ୍ତି ନାହିଁ ଏବଂ ଯେତେବେଳେ ଏପରି ହୁଏ ନାହିଁ, ସେତେବେଳେ ସେ ତାହା ଚାହାଁନ୍ତି ବି ନାହିଁ। ଯେ କୌଣସି ସ୍ଫୁରଣା ଓ କ୍ରିୟାର ପ୍ରାଦୁର୍ଭାବ ହେଉ ବା ତିରୋଭାବ ହେଉ, ତାଙ୍କର ସ୍ଥିତି ସର୍ବଦା ଏକାପରି ରହେ।

**ପ୍ରଶ୍ନ –** **ମୋହମ୍** ପଦର ଅଭିପ୍ରାୟ କ'ଣ? ଏଠାରେ ତମୋଗୁଣର କାର୍ଯ୍ୟମାନଙ୍କ ମଧ୍ୟରେ କେବଳ 'ମୋହ'ର ପ୍ରାଦୁର୍ଭାବ ଓ ତିରୋଭାବରେ ଗୁଣାତୀତଙ୍କର ଦ୍ୱେଷ ଓ ଆକାଙ୍କ୍ଷାର ଅଭାବ ଦେଖାଇବାର ଅଭିପ୍ରାୟ କ'ଣ?

**ଉତ୍ତର –** ଅନ୍ତଃକରଣର ଯେଉଁ ମୋହିନୀ ବୃତ୍ତି ରହିଛି, ଯାହାଦ୍ୱାରା ମନୁଷ୍ୟଙ୍କୁ ତନ୍ଦ୍ରା, ସ୍ୱପ୍ନ ଓ ସୁଷୁପ୍ତି ଆଦି ଅବସ୍ଥା ପ୍ରାପ୍ତ ହୁଏ ତଥା ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ସତ୍ତ୍ୱଗୁଣର କାର୍ଯ୍ୟ ପ୍ରକାଶ ଅଭାବପ୍ରାୟ ହୋଇଯାଏ, ତାହାରି ନାମ **ମୋହ**। ଏହା ବ୍ୟତୀତ ତମୋଗୁଣର ଯେଉଁ ଅଜ୍ଞାନ ଓ ପ୍ରମାଦ ପ୍ରଭୃତି କାର୍ଯ୍ୟ ରହିଛି, ଗୁଣାତୀତ ପୁରୁଷଙ୍କ ଠାରେ ତ ସେସବୁର ଅଭାବ ରହିଥାଏ; କାରଣ, ଅଜ୍ଞାନ ତ ଜ୍ଞାନ ପାଖକୁ ଆସିପାରେ ନାହିଁ ଏବଂ କର୍ତ୍ତା ବିନା ପ୍ରମାଦ କରିବ କିଏ? ତେଣୁ ଏଠାରେ ତମୋଗୁଣର କାର୍ଯ୍ୟମାନଙ୍କ ମଧ୍ୟରୁ କେବଳ ମୋହର ପ୍ରାଦୁର୍ଭାବ ଓ ତିରୋଭାବରେ ଗୁଣାତୀତଙ୍କର ରାଗ-ଦ୍ୱେଷର ଅଭାବ ଦେଖାଇଦିଆଯାଇଛି। ଅଭିପ୍ରାୟ ଏହି ଯେ, ଯେତେବେଳେ ଗୁଣାତୀତ ପୁରୁଷଙ୍କ ଶରୀରରେ ତନ୍ଦ୍ରା, ସ୍ୱପ୍ନ ବା ନିଦ୍ରା ଆଦି ତମୋଗୁଣର ବୃତ୍ତିମାନେ ବ୍ୟାପିଯାଆନ୍ତି, ସେତେବେଳେ ସେ ଦ୍ୱେଷ କରନ୍ତି ନାହିଁ ଏବଂ ଯେତେବେଳେ ସେମାନେ ନିବୃତ୍ତ ହୋଇଯାଆନ୍ତି, ସେତେବେଳେ ସେ ସେମାନଙ୍କ ପୁନରାଗମନର ଇଚ୍ଛା କରନ୍ତି ନାହିଁ। ଉଭୟ ଅବସ୍ଥାରେ ସେ ଏକାପରି ରହନ୍ତି।

## ଉଦାସୀନବଦାସୀନୋ ଗୁଣୈର୍ଯୋ ନ ବିଚାଲ୍ୟତେ।
## ଗୁଣା ବର୍ତ୍ତନ୍ତ ଇତ୍ୟେବ ଯୋଽବତିଷ୍ଠତି ନେଙ୍ଗତେ॥ ୨୩ ॥

**ଅନ୍ୱୟ –** **ଯଃ** = ଯେ; **ଉଦାସୀନବତ୍** = ସାକ୍ଷୀସଦୃଶ; **ଆସୀନଃ** = ସ୍ଥିତ ହୋଇ (ରହି); **ଗୁଣୈଃ** = ଗୁଣମାନଙ୍କ ଦ୍ୱାରା; **ନ, ବିଚାଲ୍ୟତେ** = ବିଚାଳିତ ହୁଏ ନାହିଁ; **ଗୁଣାଃ, ଏବ** = ଗୁଣମାନେ ହିଁ ଗୁଣମାନଙ୍କରେ; **ବର୍ତ୍ତନ୍ତେ** = ପ୍ରବୃତ୍ତ ହୁଅନ୍ତି; **ଇତି** = ବୋଲି ବୁଝନ୍ତି; **ଯଃ** = ଯେ; **ଅବତିଷ୍ଠତି** = (ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକୀଭାବରେ) ଅବସ୍ଥିତ ରହେ; **ନ, ଇଙ୍ଗତେ** = (ଏବଂ) ସେହି ସ୍ଥିତିରୁ କଦାପି ବିଚଳିତ ହୁଏ ନାହିଁ- - -

**ଯେ ସାକ୍ଷୀଙ୍କ ସଦୃଶ ସ୍ଥିତ ରହି ଗୁଣମାନଙ୍କ ଦ୍ୱାରା ବିଚାଳିତ ହୁଅନ୍ତି ନାହିଁ ଓ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହେଉଛନ୍ତି ଜାଣି ଯେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକୀଭାବରେ ଅବସ୍ଥିତ ହୁଅନ୍ତି ଏବଂ ସେହି ସ୍ଥିତିରୁ କଦାପି ବିଚଳିତ ହୁଅନ୍ତି ନାହିଁ, ...॥ ୨୩ ॥**

**ପ୍ରଶ୍ନ –** ଉଦାସୀନ କାହାକୁ କହନ୍ତି ଓ 'ତାଙ୍କ ସଦୃଶ ସ୍ଥିତ ରହିବା' କହିଲେ କ'ଣ ବୁଝାଏ?

**ଉତ୍ତର –** କୌଣସି ଘଟଣା ବା ବସ୍ତୁସହିତ ଯାହାଙ୍କର କୌଣସିପ୍ରକାରେ ହିଁ କୌଣସି ସମ୍ବନ୍ଧ ରହେ ନାହିଁ, ସେଥିରୁ ଯେ ସର୍ବଥା ଉପରତ ରହନ୍ତି, ତାଙ୍କୁ **ଉଦାସୀନ** କୁହାଯାଏ। ଗୁଣାତୀତ ପୁରୁଷଙ୍କର ତିନିଗୁଣସହିତ ତଥା ଗୁଣମାନଙ୍କର କାର୍ଯ୍ୟରୂପ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣ ଏବଂ ସମସ୍ତ ପଦାର୍ଥ ଓ ଘଟଣା ସହିତ କୌଣସିପ୍ରକାର ସମ୍ବନ୍ଧ ନ ଥିବାରୁ, ସେ ଉଦାସୀନସଦୃଶ ସ୍ଥିତ ଦେଖାଯାଆନ୍ତି, ପରନ୍ତୁ ସେହି ସ୍ଥିତି ମଧ୍ୟ ବାସ୍ତବରେ ତାଙ୍କର ଏକ ଔପଚାରିକ ସ୍ଥିତି; ସେହି ସ୍ଥିତି ସହିତ ବି ତାଙ୍କର କୌଣସି ସମ୍ପର୍କ ନ ଥାଏ। ଏହି ଭାବଟି ଦେଖାଇଦେବା ନିମନ୍ତେ ଉଦାସୀନ ସଦୃଶ ସ୍ଥିତ ରହିବା କଥା କହିଛନ୍ତି।

**ପ୍ରଶ୍ନ –** 'ସେ ଗୁଣମାନଙ୍କ ଦ୍ୱାରା ବିଚାଳିତ ନ ହେବା' କହିଲେ କ'ଣ ବୁଝାଏ?

**ଉତ୍ତର –** ଯେଉଁ ଜୀବମାନଙ୍କର ଗୁଣମାନଙ୍କ ସହିତ ସମ୍ବନ୍ଧ ରହିଥାଏ, ସେମାନଙ୍କୁ ଏହି ତିନିଗୁଣ ସେମାନଙ୍କ

ଇଚ୍ଛା ନ ଥିଲେ ମଧ୍ୟ ବଳତ୍କାର ପୂର୍ବକ ନାନାପ୍ରକାର କର୍ମରେ ଏବଂ ସେମାନଙ୍କୁ ଫଳଭୋଗରେ ଲଗାଇଦିଅନ୍ତି; ସେମାନଙ୍କୁ ସୁଖୀ-ଦୁଃଖୀ କରି ସେମାନଙ୍କ ଭିତରେ ବିକ୍ଷେପ ଉତ୍ପନ୍ନ କରିଦିଅନ୍ତି ଓ ପରିଣାମରେ ବିଭିନ୍ନ ଯୋନିରେ ପକାଇ ଘୂରାନ୍ତି। କିନ୍ତୁ ଯାହାଙ୍କର ଏହି ଗୁଣମାନଙ୍କ ସହିତ କୌଣସି ସମ୍ବନ୍ଧ ନ ଥାଏ, ତାଙ୍କ ଉପରେ ଗୁଣମାନଙ୍କର କୌଣସି ପ୍ରଭାବ ପଡ଼େ ନାହିଁ। ଗୁଣମାନଙ୍କର କାର୍ଯ୍ୟରୂପୀ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣର ଅବସ୍ଥାରେ ପରିବର୍ତ୍ତନ ତଥା ସେମାନଙ୍କ ସହିତ ନାନାପ୍ରକାରେ ସାଂସାରିକ ପଦାର୍ଥର ସଂଯୋଗ-ବିୟୋଗ ହୋଇଚାଲିଥିଲେ ବି, ସେ ନିଜ ସ୍ଥିତିରେ ସଦା ନିର୍ବିକାର ଏକରସ ହୋଇ ରହନ୍ତି। ଏହା ହିଁ ତାଙ୍କର 'ଗୁଣମାନଙ୍କ ଦ୍ୱାରା ବିଚାଳିତ ନ ହେବା'।

**ପ୍ରଶ୍ନ –** 'ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି'– ଏହା ବୁଝିବା ଓ 'ଏହା ଜାଣିପାରି ପରମାତ୍ମାଙ୍କ ଠାରେ ଅବସ୍ଥିତ ହେବା' କହିଲେ କ'ଣ ବୁଝାଏ ?

**ଉତ୍ତର –** ତୃତୀୟ ଅଧ୍ୟାୟର ଅଠେଇଶ ଶ୍ଳୋକରେ **'ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ'**ଦ୍ୱାରା ଯେଉଁ କଥା କୁହାଯାଇଛି, ଏଠାରେ **ଗୁଣା ବର୍ତ୍ତନ୍ତ ଇତ୍ୟେବ**ଦ୍ୱାରା ସେହି କଥା ହିଁ କୁହାଯାଇଛି। ଅଭିପ୍ରାୟ ଏହି ଯେ, ଇନ୍ଦ୍ରିୟ, ମନ, ବୁଦ୍ଧି ଓ ପ୍ରାଣ ଆଦି ସମସ୍ତ କରଣ ଓ ଶବ୍ଦାଦି ସମସ୍ତ ବିଷୟ ଏହି ଗୁଣମାନଙ୍କର ହିଁ ବିସ୍ତାର ଅଟେ; ତେଣୁ ଇନ୍ଦ୍ରିୟ, ମନ ଓ ବୁଦ୍ଧି ଆଦି ନିଜ ନିଜର ବିଷୟମାନଙ୍କରେ ବିଚରଣ କରିବା ଯାହା, ଗୁଣମାନେ ଗୁଣମାନଙ୍କରେ ପ୍ରବୃତ୍ତ ହେବା ବି ତାହା; ଏମାନଙ୍କ ସହ ଆତ୍ମାର କୌଣସି ସମ୍ବନ୍ଧ ନାହିଁ। ଆତ୍ମା ନିତ୍ୟ, ଚେତନ, ସର୍ବଥା ଅସଙ୍ଗ, ସଦା ଏକରସ ସଚ୍ଚିଦାନନ୍ଦସ୍ୱରୂପ ବୋଲି ବୁଝି ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ଚିରକାଳ ନିମନ୍ତେ ନିତ୍ୟସ୍ଥିତ ହୋଇଯିବା ହିଁ ଗୁଣମାନେ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି ବୋଲି ଜାଣି 'ପରମାତ୍ମାଙ୍କ ଠାରେ ଅବସ୍ଥିତ ହେବା।'

**ପ୍ରଶ୍ନ –** ନ ଇଙ୍ଗତେ କ୍ରିୟା ପ୍ରୟୋଗ କରି କେଉଁ ଭାବ ପ୍ରକାଶ କରାଯାଇଛି ?

**ଉତ୍ତର –** ନ ଇଙ୍ଗତେ କ୍ରିୟାର ଅର୍ଥ ହେଉଛି, 'ବିଚଳିତ ହୁଏ ନାହିଁ'। ତେଣୁ ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଗୁଣାତୀତ ପୁରୁଷଙ୍କୁ ଗୁଣ ବିଚଳିତ କରିପାରେ ନାହିଁ; ଏବଂ କେବଳ ସେତିକି ନୁହେଁ, ସେହି ପୁରୁଷ ସ୍ୱୟଂ କୌଣସି ବି କାଳରେ କେବେ ବି ନିଜସ୍ଥିତିରୁ ବିଚଳିତ ହୁଅନ୍ତି ନାହିଁ; କାରଣ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ଅବସ୍ଥିତ ହୋଇଯିବା ପରେ ଜୀବର ଭିନ୍ନ ସତ୍ତା ହୋଇ କିଛି ହିଁ ରହେ ନାହିଁ। ସେପରି ଅବସ୍ଥାରେ କିଏ ସେ କିପରି ବା ବିଚଳିତ ହେବ ?

**ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ ।**
**ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ।। ୨୪ ।।**

**ଅନ୍ୱୟ –** **ସ୍ୱସ୍ଥଃ** = ଯେ ନିରନ୍ତର ଆତ୍ମଭାବରେ ସ୍ଥିତ; **ସମଦୁଃଖସୁଖଃ** = ଯେ ଦୁଃଖ ଓ ସୁଖକୁ ସମାନ ବୋଲି ବୁଝେ; **ସମଲୋଷ୍ଟାଶ୍ମକାଞ୍ଚନଃ** = ଯେ ମାଟି, ପଥର ଓ ସୁବର୍ଣ୍ଣକୁ ସମାନ ବୋଲି ମଣେ; **ଧୀରଃ** = ଜ୍ଞାନୀ; **ତୁଲ୍ୟପ୍ରିୟାପ୍ରିୟଃ** = ଯେ ପ୍ରିୟ ଓ ଅପ୍ରିୟକୁ ସମାନ ବୋଲି ବୁଝେ; **ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ** = ଯେ ନିଜର ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ବୁଝେ।

**ଯେ ନିରନ୍ତର ଆତ୍ମଭାବରେ ସ୍ଥିତ, ଯେ ଦୁଃଖ ଓ ସୁଖକୁ ସମାନ ବୋଲି ବୁଝନ୍ତି, ଯେ ମାଟି, ପଥର ଓ ସୁନାକୁ ସମାନ ବୋଲି ମଣନ୍ତି, ଯେ ଜ୍ଞାନୀ, ଯେ ପ୍ରିୟ ଓ ଅପ୍ରିୟକୁ ସମାନ ବୋଲି ଗ୍ରହଣ କରନ୍ତି ଓ ଯେ ନିଜର ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ବୁଝନ୍ତି, ---।। ୨୪ ।।**

**ପ୍ରଶ୍ନ –** **ସ୍ୱସ୍ଥଃ** ପଦ ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ଏବଂ ସୁଖ ଓ ଦୁଃଖକୁ ସମାନ ବୁଝିବା କ'ଣ ?

**ଉତ୍ତର –** ନିଜର ବାସ୍ତବିକ ସ୍ୱରୂପରେ ସ୍ଥିତ ହୋଇଥିବା ପୁରୁଷଙ୍କୁ **ସ୍ୱସ୍ଥ** ବୋଲାଯାଏ। 'ଏପରି ସ୍ୱସ୍ଥ ପୁରୁଷ ହିଁ ସୁଖଦୁଃଖରେ ସମ ହୋଇ ରହିପାରନ୍ତି'–

ଏହି ଭାବ ଦେଖାଇଦେବାନିମନ୍ତେ ଏଠାରେ **ସ୍ୱସ୍ଥଃ** ପଦଟି ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ସାଧାରଣ ମନୁଷ୍ୟମାନଙ୍କର ସ୍ଥିତି ପ୍ରକୃତିର କାର୍ଯ୍ୟରୂପୀ ସ୍ଥୂଳ, ସୂକ୍ଷ୍ମ ଓ କାରଣ – ଏହି ତିନିପ୍ରକାର ଶରୀର ମଧ୍ୟରୁ କୌଣସି ଏକ ଶରୀରରେ ରହିଥାଏ; ତେଣୁ ସାଧାରଣ ମନୁଷ୍ୟମାନେ **ସ୍ୱସ୍ଥ** ନୁହନ୍ତି; କିନ୍ତୁ 'ପ୍ରକୃତିସ୍ଥ' ଅଟନ୍ତି ଏବଂ ସେପରି ପୁରୁଷମାନେ ହିଁ ପ୍ରକୃତିର ଗୁଣମାନଙ୍କୁ ଭୋଗ କରନ୍ତି (୧୩/୨୧); ତେଣୁ ସେମାନେ ସୁଖଦୁଃଖରେ ସମ ହୋଇପାରନ୍ତି ନାହିଁ। ଗୁଣାତୀତ ପୁରୁଷଙ୍କର ପ୍ରକୃତି ଓ ତା'ର କାର୍ଯ୍ୟମାନଙ୍କ ସହିତ କୌଣସି ସମ୍ବନ୍ଧ ନ ଥାଏ; ତେଣୁ ସେ ସ୍ୱସ୍ଥ; ସେ ନିଜର ସଚ୍ଚିଦାନନ୍ଦଘନ ସ୍ୱରୂପରେ ସ୍ଥିତ। ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ସୁଖ ବା ଦୁଃଖର ପ୍ରାଦୁର୍ଭାବ ବା ତିରୋଭାବ ହେଉଥିଲେ ବି, ଗୁଣାତୀତ ପୁରୁଷଙ୍କର ତା' ସହିତ କୌଣସି ବି ସମ୍ବନ୍ଧ ନ ଥିବାରୁ, ସେ ତାହାଦ୍ୱାରା ସୁଖୀ କି ଦୁଃଖୀ ହୁଅନ୍ତି ନାହିଁ; ତାଙ୍କର ସ୍ଥିତି ସର୍ବଦା ସମ ହୋଇ ରହିଥାଏ। ଏହା ହିଁ ତାଙ୍କର ସୁଖ-ଦୁଃଖକୁ ସମାନ ବୋଲି ଭାବିବା।

**ପ୍ରଶ୍ନ – ଲୋଷ୍ଟ, ଅଶ୍ମ** ଓ **କାଞ୍ଚନର** ଭିନ୍ନ ଭିନ୍ନ ଅର୍ଥ କ'ଣ ଏବଂ ଏହି ତିନୋଟି ମଧ୍ୟରେ ସମଭାବ କ'ଣ ?

**ଉତ୍ତର –** ଗୋବର ଓ ମାଟି ମିଶାଇ କଚା ଘରର କାନ୍ଥବାଡ ଲିପିବା ପରେ ଯେଉଁ ଖଦା ବା ପିଣ୍ଡ ବଳିଯାଏ, ତାହାକୁ **ଲୋଷ୍ଟ** କହନ୍ତି; ଗୋଇଠାଙ୍କୁ ମଧ୍ୟ **ଲୋଷ୍ଟ** କୁହାଯାଏ। ପଥରକୁ **ଅଶ୍ମ** କୁହାଯାଏ ଏବଂ **କାଞ୍ଚନ** ହେଉଛି ସୁବର୍ଣ୍ଣର ନାମ। ଏହି ତିନି ପଦାର୍ଥରେ ଗ୍ରାହ୍ୟ–ତ୍ୟାଜ୍ୟ ବୁଦ୍ଧି ନ ରଖିବାର ନାମ ସମତ୍ୱଭାବ। ଏସବୁଥିରେ ସମତ୍ୱଭାବହେବା ବର୍ଣ୍ଣନା କରି ଦେଖାଇଦିଆଯାଇଛି ଯେ, ସଂସାରରେ ଯେତେସବୁ ପଦାର୍ଥ ରହିଛି, ଲୋକେ ଯାହାକୁ ଉତ୍ତମ, ମଧ୍ୟମ ଓ ଅଧମ (ନୀଚ) ଏପରି ବିଭିନ୍ନ ଶ୍ରେଣୀରେ ବିଭକ୍ତ କରନ୍ତି, ଗୁଣାତୀତ ପୁରୁଷଙ୍କର ସେହିସବୁରେ ସମତ୍ୱଭାବ ହୁଏ; ତାଙ୍କ ଦୃଷ୍ଟିରେ ସକଳ ପଦାର୍ଥ ମୃଗତୃଷ୍ଣାର ଜଳପରି ମାୟିକ ହୋଇଥିବାରୁ କୌଣସି ବି ବସ୍ତୁରେ ତାଙ୍କର ଭେଦବୁଦ୍ଧି ହୁଏ ନାହିଁ।

**ପ୍ରଶ୍ନ – ଧୀର** ପଦର ଭାବ କ'ଣ ?

**ଉତ୍ତର –** ଜ୍ଞାନୀ ଅର୍ଥାତ୍ ସ୍ଥିତପ୍ରଜ୍ଞ ପୁରୁଷଙ୍କୁ **ଧୀର** କୁହାଯାଏ। ଯେତେ ବଡ ସୁଖ ବା ଯେତେ ବଡ ଦୁଃଖ ଆସିଲେ ବି, ଗୁଣାତୀତ ପୁରୁଷ ନିଜ ସ୍ଥିତିରୁ ବିଚଳିତ ହୁଅନ୍ତି ନାହିଁ। (୬/୨୧,୨୨) ତେଣୁ ତାଙ୍କର ବୁଦ୍ଧି ସଦା ସ୍ଥିର ରହେ।

**ପ୍ରଶ୍ନ – ପ୍ରିୟ** ଓ **ଅପ୍ରିୟ** ଶବ୍ଦ କାହାର ବାଚକ ଏବଂ ସେଥିରେ ସମ ରହିବା କ'ଣ ?

**ଉତ୍ତର –** ଯେଉଁ ପଦାର୍ଥ ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧିର ଅନୁକୂଳ ତଥା ସେମାନଙ୍କର ପୋଷକ, ସହାୟକ ଏବଂ ଶାନ୍ତିପ୍ରଦାୟକ ହୁଏ, ଲୋକଦୃଷ୍ଟିରୁ ତାହାକୁ **ପ୍ରିୟ** କୁହାଯାଏ ଏବଂ ଯେଉଁ ପଦାର୍ଥ ସେମାନଙ୍କର ପ୍ରତିକୂଳ, କ୍ଷୟକାରକ, ବିରୋଧୀ ଏବଂ ତାପକାରକ ହୁଏ, ଲୋକଦୃଷ୍ଟିରୁ ତାହାକୁ **ଅପ୍ରିୟ** କୁହାଯାଏ। ଏପରି ବିଭିନ୍ନପ୍ରକାର ପଦାର୍ଥରେ ତଥା ପ୍ରାଣୀମାନଙ୍କ ଠାରେ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣର ସମ୍ବନ୍ଧ ରହିଥିଲେ ବି, ତା ଭିତରୁ କୌଣସିଟି ପ୍ରତି ମଧ୍ୟ ଭେଦବୁଦ୍ଧି ନ ରହିବା ହିଁ ସେଥିରେ ସମ ରହିବା।

ଗୁଣାତୀତ ପୁରୁଷଙ୍କର ଅନ୍ତଃକରଣ, ଇନ୍ଦ୍ରିୟ ତଥା ଶରୀର ସହିତ କୌଣସିପ୍ରକାର ସମ୍ବନ୍ଧ ନ ଥିବାରୁ ସେସବୁ ସହିତ ସମ୍ବନ୍ଧିତ କୌଣସି ବି ପଦାର୍ଥ ପ୍ରତି ତାଙ୍କର ଭେଦଭାବ ନ ଥାଏ। କହିବାର ଅଭିପ୍ରାୟ ଏହି ଯେ, ପ୍ରିୟ ବସ୍ତୁର ସଂଯୋଗରେ ତଥା ଅପ୍ରିୟ ବସ୍ତୁର ବିୟୋଗରେ ସାଧାରଣ ମନୁଷ୍ୟର ରାଗ ଓ ହର୍ଷ ହୁଏ ଏବଂ ପ୍ରିୟବସ୍ତୁର ବିୟୋଗରେ ତଥା ଅପ୍ରିୟର ସଂଯୋଗରେ ଦ୍ୱେଷ ଓ ଶୋକ ହୁଏ; କିନ୍ତୁ ଗୁଣାତୀତ ପୁରୁଷଙ୍କର ଏପରି ଘଟେ ନାହିଁ; ସେ ରାଗ-ଦ୍ୱେଷ ଓ ହର୍ଷ-ଶୋକରୁ ସଦାସର୍ବଦା ଅତୀତ ହୋଇ ରହିଥାନ୍ତି।

**ପ୍ରଶ୍ନ – ନିନ୍ଦା** ଓ **ସ୍ତୁତି** କାହାକୁ କହନ୍ତି ଏବଂ ସେ ଦୁଇଟିକୁ ତୁଲ୍ୟ (ସମାନ) ବୁଝିବାର ଅର୍ଥ କ'ଣ ?

**ଉତ୍ତର –** ଅନ୍ୟର ପ୍ରକୃତ ଦୋଷର କିମ୍ବା ଅପ୍ରକୃତ ଦୋଷର ବର୍ଣ୍ଣନା କରିବାର ନାମ **ନିନ୍ଦା** ଏବଂ ଅନ୍ୟର ଗୁଣ ବଖାଣିବାର ନାମ **ସ୍ତୁତି**। ଏହି ଦୁଇଟିର ସମ୍ବନ୍ଧ ବିଶେଷ କରି ନାମସହିତ ଓ କେତେକାଂଶରେ ଶରୀରସହିତ ଥାଏ। କିନ୍ତୁ ଗୁଣାତୀତ ପୁରୁଷଙ୍କର ନିଜ ଶରୀର ଓ ନାମସହିତ କିଞ୍ଚିତ୍‌ମାତ୍ର ସମ୍ପର୍କ ନ ଥାଏ। ତେଣୁ ନିନ୍ଦା ବା ସ୍ତୁତିହେତୁ ତାଙ୍କର ଶୋକ ବା ହର୍ଷ ହୁଏ ନାହିଁ; ନିନ୍ଦା କରୁଥିବା ଲୋକ ଉପରେ ତାଙ୍କର କ୍ରୋଧ ହୁଏ ନାହିଁ, କି ସ୍ତୁତି କରୁଥିବା ଲୋକ ଉପରେ ସେ ପ୍ରସନ୍ନ ହୁଅନ୍ତି ନାହିଁ। ତାଙ୍କର ସଦାସର୍ବଦା ଏକାଭଳି ଭାବ ରହେ। ଏହା ହିଁ ତାଙ୍କର ସେହି ଦୁଇଟିରେ ସମ ରହିବା।

**ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋ ମିତ୍ରାରିପକ୍ଷୟୋଃ ।**
**ସର୍ବାରମ୍ଭପରିତ୍ୟାଗୀ ଗୁଣାତୀତଃ ସ ଉଚ୍ୟତେ ।। ୨୫ ।।**

**ଅନ୍ୱୟ —** ମାନାପମାନୟୋଃ = (ଯେ) ମାନ ଓ ଅପମାନରେ; ତୁଲ୍ୟଃ = ସମ; ମିତ୍ରାରିପକ୍ଷୟୋଃ = ମିତ୍ର ଓ ଶତ୍ରୁ ପକ୍ଷରେ (ବି); ତୁଲ୍ୟଃ = ସମ; ସର୍ବାରମ୍ଭପରିତ୍ୟାଗୀ = ସମସ୍ତ କର୍ମରେ କର୍ତ୍ତାପଣ-ଅଭିମାନରୁ ରହିତ; ସଃ = ସେହି ପୁରୁଷ; ଗୁଣାତୀତଃ = ଗୁଣାତୀତ; ଉଚ୍ୟତେ = ବୋଲି କଥିତ ହୁଏ ।

**ଯେ ମାନ ଓ ଅପମାନରେ ସମ, ମିତ୍ର ଓ ଶତ୍ରୁ ପକ୍ଷରେ ବି ସମ ଏବଂ ସମସ୍ତ କର୍ମରେ କର୍ତ୍ତାପଣ-ଅଭିମାନରୁ ରହିତ, ସେହି ପୁରୁଷ ଗୁଣାତୀତ ବୋଲି କଥିତ ହୁଅନ୍ତି ।। ୨୫ ।।**

**ପ୍ରଶ୍ନ —** ମାନ ଓ ଅପମାନରେ ସମ ରହିବା କ'ଣ ?

**ଉତ୍ତର —** ମାନ ଓ ଅପମାନର ସମ୍ବନ୍ଧ ବିଶେଷଭାବରେ ଶରୀରସହିତ ରହିଥାଏ । ସୁତରାଂ ଯେଉଁମାନଙ୍କର ଶରୀର ପ୍ରତି ଅଭିମାନ ଥାଏ, ସେହି ସଂସାରୀ ମନୁଷ୍ୟମାନେ ସମ୍ମାନରେ ରାଗ ଓ ଅପମାନରେ ଦ୍ୱେଷ ରଖନ୍ତି । ଫଳତଃ ସେମାନେ ମାନରେ ହର୍ଷ ଓ ଅପମାନରେ ଶୋକ ଅନୁଭବ କରନ୍ତି, ତଥା ସେମାନେ ମାନସମ୍ମାନ ଦେଉଥିବା ଲୋକଙ୍କୁ ପ୍ରେମ କରନ୍ତି ଓ ଅପମାନ ଦେଉଥିବା ଲୋକଙ୍କୁ ବୈରୀ ବୋଲି ଭାବନ୍ତି । କିନ୍ତୁ ଗୁଣାତୀତ ପୁରୁଷଙ୍କର ଶରୀରସହିତ କୌଣସି ସମ୍ବନ୍ଧ ନ ଥାଏ; ତେଣୁ ସେ ଶରୀରର ମାନସମ୍ମାନ ହେଲେ ହର୍ଷିତ ହୁଅନ୍ତି ନାହିଁ, କି ଅପମାନ ହେଲେ ଶୋକାକୁଳ ହୁଅନ୍ତି ନାହିଁ। ତାଙ୍କ ଦୃଷ୍ଟିରେ ଯାହାର ମାନାପମାନ ହୁଏ, ଯାହାଦ୍ୱାରା ମାନାପମାନ ହୁଏ ଏବଂ ଯେଉଁ ମାନାପମାନସୂଚକ କାର୍ଯ୍ୟ ହୁଏ — ସେସବୁ ମାୟିକ ଓ ସ୍ୱପ୍ନବତ୍ ଅଟେ; ସୁତରାଂ ମାନ-ଅପମାନରେ ତାଙ୍କ ଭିତରେ କିଞ୍ଚିତ୍‌ମାତ୍ର ରାଗ-ଦ୍ୱେଷ କିମ୍ବା ହର୍ଷ-ଶୋକ ହୁଏ ନାହିଁ। ଏହା ହିଁ ତାଙ୍କର ମାନ ଓ ଅପମାନରେ ସମ ରହିବା ।

**ପ୍ରଶ୍ନ —** ମିତ୍ର ଓ ଶତ୍ରୁ ଉଭୟ ପକ୍ଷରେ ସମ ରହିବା କ'ଣ ?

**ଉତ୍ତର —** ଗୁଣାତୀତ ପୁରୁଷଙ୍କ ଠାରେ ନିଜ ପକ୍ଷରୁ କୌଣସି ପ୍ରାଣୀଙ୍କ ପ୍ରତି ଶତ୍ରୁ ବା ମିତ୍ରଭାବ ନ ଥାଏ; ତେଣୁ ତାଙ୍କର ମିତ୍ର ବା ଶତ୍ରୁ ବୋଲି କେହି ନ ଥାନ୍ତି ସତ, ତଥାପି ଲୋକେ ଆପଣା ଭାବନା ଅନୁସାରେ ତାଙ୍କ ଠାରେ ମିତ୍ରଭାବ ବା ଶତ୍ରୁଭାବ କଳ୍ପନା କରିନିଅନ୍ତି । ଏହାକୁ ଲକ୍ଷ୍ୟ କରି ଭଗବାନ୍ କହୁଛନ୍ତି ଯେ, ଗୁଣାତୀତ ପୁରୁଷ ମିତ୍ର ଓ ଶତ୍ରୁ ଉଭୟ ପକ୍ଷରେ ସମ ରହନ୍ତି । ଅଭିପ୍ରାୟ ହେଉଛି, ସଂସାରୀ ମନୁଷ୍ୟ ଯେପରି ତା' ସହିତ ମିତ୍ରତା ରଖୁଥିବା ଲୋକଙ୍କ ଠାରେ, ସେମାନଙ୍କ ସମ୍ବନ୍ଧୀ ଓ ହିତୈଷୀମାନଙ୍କ ଠାରେ ଆତ୍ମୀୟତା ରଖେ, ସେମାନଙ୍କୁ ପ୍ରୀତି କରେ ତଥା ସେମାନଙ୍କ ନିମିତ୍ତ ନିଜର ସ୍ୱତ୍ୱ ତ୍ୟାଗ କରି ସେମାନଙ୍କୁ ସାହାଯ୍ୟ କରେ ଏବଂ ତା'ସହିତ ବୈରଭାବ ରଖୁଥିବା ଲୋକଙ୍କୁ ତଥା ସେମାନଙ୍କ ସମ୍ବନ୍ଧୀ ଓ ହିତୈଷୀମାନଙ୍କୁ ଦ୍ୱେଷ କରେ, ସେମାନଙ୍କର ଅନିଷ୍ଟ କରିବାକୁ ଇଚ୍ଛା କରେ ଓ ସେମାନଙ୍କର କ୍ଷତି କରିବାଲାଗି ନିଜର ଶକ୍ତି ବ୍ୟୟ କରେ, ଗୁଣାତୀତ ପୁରୁଷ ସେପରି କରନ୍ତି ନାହିଁ। ସେ ଉଭୟ ପକ୍ଷ ପ୍ରତି ସମଭାବ ରଖନ୍ତି; ସେ ରାଗ-ଦ୍ୱେଷ ବିନା ସମଭାବରେ ସମସ୍ତଙ୍କର ହିତ କରିବାକୁ ଚେଷ୍ଟା କରନ୍ତି; ସେ କାହାର ଅମଙ୍ଗଳ କରନ୍ତି ନାହିଁ; ସେ କାହାଠାରେ ବି ଭେଦବୁଦ୍ଧି ରଖନ୍ତି ନାହିଁ। ଏହା ହିଁ ତାଙ୍କର ମିତ୍ର ଓ ଶତ୍ରୁ ଉଭୟ ପକ୍ଷରେ ସମ ରହିବା ।

**ପ୍ରଶ୍ନ — ସର୍ବାରମ୍ଭପରିତ୍ୟାଗୀ**ର ଭାବ କ'ଣ ?

**ଉତ୍ତର —** ଏଠାରେ **ଆରମ୍ଭ** ପଦଟି କ୍ରିୟାମାତ୍ରର ବାଚକ। ସୁତରାଂ ଗୁଣାତୀତ ପୁରୁଷଙ୍କର ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧିଦ୍ୱାରା ପ୍ରାରବ୍ଧ ଅନୁସାରେ ଲୋକସଂଗ୍ରହ-ନିମନ୍ତେ ଅର୍ଥାତ୍ ଲୋକମାନଙ୍କୁ ଖରାପ ମାର୍ଗରୁ କାଢ଼ିଆଣି ଭଲ ମାର୍ଗରେ ଚଳାଇବାକୁ ଯାହାକିଛି ବି ଶାସ୍ତ୍ରାନୁକୂଳ କ୍ରିୟା ହୁଏ, ସେ କୌଣସିପ୍ରକାରେ ବି ସେସବୁର କର୍ତ୍ତା ହୁଅନ୍ତି ନାହିଁ। ଏହି ଭାବ ଦେଖାଇଦେବାନିମନ୍ତେ ତାଙ୍କୁ **ସର୍ବାରମ୍ଭପରିତ୍ୟାଗୀ** ଅର୍ଥାତ୍ 'ସମସ୍ତ କ୍ରିୟାକୁ ପୂର୍ଣ୍ଣରୂପେ ତ୍ୟାଗ କରୁଥିବା ବ୍ୟକ୍ତି' ବୋଲି କହନ୍ତି ।

**ପ୍ରଶ୍ନ —** 'ସେ ଗୁଣାତୀତ ବୋଲି କଥିତ ହୁଅନ୍ତି' — ଏହି ବାକ୍ୟର ଭାବ କ'ଣ ?

**ଉତ୍ତର —** ଏହି ବାକ୍ୟଦ୍ୱାରା ଅର୍ଜୁନଙ୍କ ପ୍ରଶ୍ନଗୁଡ଼ିକମଧ୍ୟରୁ ଦୁଇଟି ପ୍ରଶ୍ନର ଉତ୍ତରର ଉପସଂହାର କରାଯାଇଛି। ଅଭିପ୍ରାୟ ଏହି ଯେ, ବାଇଶଠାରୁ ପଚିଶ ଶ୍ଳୋକ ମଧ୍ୟରେ ଯେଉଁ ଲକ୍ଷଣଗୁଡ଼ିକ ବର୍ଣ୍ଣନା କରାଯାଇଛି, ସେହିସବୁ ଲକ୍ଷଣରେ ଯେ ଯୁକ୍ତ ଅଟନ୍ତି, ଲୋକେ ତାଙ୍କୁ ଗୁଣାତୀତ କହନ୍ତି। ଏହା ହିଁ ଗୁଣାତୀତ ପୁରୁଷଙ୍କ ପରିଚୟର ଚିହ୍ନ ଏବଂ ଏହା ହିଁ ତାଙ୍କର ଆଚାର-ବ୍ୟବହାର। ଅତଏବ ଯେପର୍ଯ୍ୟନ୍ତ ଅନ୍ତଃକରଣରେ ଲେଶମାତ୍ର ବି ରାଗ-ଦ୍ୱେଷ, ବିଷମତା, ହର୍ଷ-ଶୋକ, ଅବିଦ୍ୟା ଓ ଅଭିମାନ ରହିଯାଇଥିବ, ସେପର୍ଯ୍ୟନ୍ତ ବୁଝିବା ଉଚିତ ଯେ, ଗୁଣାତୀତ ଅବସ୍ଥା ଆହୁରି ପ୍ରାପ୍ତ ହୋଇ ନାହିଁ।

*ସମ୍ବନ୍ଧ — ଏପରିଭାବରେ ଅର୍ଜୁନଙ୍କର ଦୁଇଟି ପ୍ରଶ୍ନର ଉତ୍ତର ଦେଇସାରି ଭଗବାନ୍ ବର୍ତ୍ତମାନ ଗୁଣାତୀତ ହେବାର ଉପାୟବିଷୟକ ତୃତୀୟ ପ୍ରଶ୍ନର ଉତ୍ତର ଦେଉଛନ୍ତି। ଯଦିଓ ଭଗବାନ୍ ଉଣେଇଶ ଶ୍ଳୋକରେ ନିଜକୁ ଅକର୍ତ୍ତା ବୋଲି ଜାଣି ନିର୍ଗୁଣ ନିରାକାର ସଚ୍ଚିଦାନନ୍ଦଘନ ବ୍ରହ୍ମରେ ନିତ୍ୟନିରନ୍ତର ସ୍ଥିତ ରହିବା ହିଁ ଗୁଣାତୀତ ହୋଇପାରିବାର ଉପାୟ ବୋଲି କହିଛନ୍ତି ଏବଂ ଗତ ଚାରିଟି ଶ୍ଳୋକରେ ଗୁଣାତୀତ ପୁରୁଷଙ୍କର ଯେଉଁ ଲକ୍ଷଣ ଓ ଆଚରଣମାନ ବର୍ଣ୍ଣନା କରିଛନ୍ତି, ସେସବୁକୁ ଆଦର୍ଶରୂପେ ଗ୍ରହଣ କରି ପାଳନ କରିବାର ଅଭ୍ୟାସ ବି ଗୁଣାତୀତ ହୋଇପାରିବାର ଉପାୟ ବୋଲି ମାନିନିଆଯାଏ, ତଥାପି ଅର୍ଜୁନ ଏସବୁ ଉପାୟଠାରୁ ଭିନ୍ନ ଅନ୍ୟ କିଛି ସରଳ ଉପାୟ ଜାଣିବାର ଇଚ୍ଛା ନେଇ ପ୍ରଶ୍ନ କରିଛନ୍ତି; ତେଣୁ ଭଗବାନ୍ ପ୍ରଶ୍ନର ଅନୁକୂଳ ସରଳ ଉପାୟ କହୁଛନ୍ତି —*

## ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ।
## ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ॥ ୨୬॥

**ଅନ୍ୱୟ —** ଚ = ଏବଂ; **ଯଃ** = ଯେଉଁ ପୁରୁଷ; **ଅବ୍ୟଭିଚାରେଣ, ଭକ୍ତିଯୋଗେନ** = ଅବ୍ୟଭିଚାରୀ ଭକ୍ତିଯୋଗଦ୍ୱାରା; **ମାମ୍** = ମୋତେ; **ସେବତେ** = ନିରନ୍ତର ଭଜନ କରେ; **ସଃ** = ସେ (ବି); **ଏତାନ୍ ଗୁଣାନ୍** = ଏହି ତିନି ଗୁଣକୁ; **ସମତୀତ୍ୟ** = ଭଲଭାବେ ଅତିକ୍ରମ କରି; **ବ୍ରହ୍ମଭୂୟାୟ** = ସଚ୍ଚିଦାନନ୍ଦଘନ ବ୍ରହ୍ମକୁ ପ୍ରାପ୍ତ ହେବା ନିମନ୍ତେ; **କଳ୍ପତେ** = ଯୋଗ୍ୟ ହୁଏ।

**ଯେଉଁ ପୁରୁଷ ଅବ୍ୟଭିଚାରୀ ଭକ୍ତିଯୋଗଦ୍ୱାରା ମୋତେ ନିରନ୍ତର ଭଜନ କରନ୍ତି, ସେ ବି ଏହି ତିନି ଗୁଣକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ପ୍ରାପ୍ତ ହେବା ନିମନ୍ତେ ଯୋଗ୍ୟ ହୋଇଯାଆନ୍ତି॥ ୨୬ ॥**

**ପ୍ରଶ୍ନ — ଅବ୍ୟଭିଚାରୀ ଭକ୍ତିଯୋଗ** କାହାକୁ କହନ୍ତି ଏବଂ ତା'ଦ୍ୱାରା ଭଗବାନଙ୍କୁ ନିରନ୍ତର ଭଜନ କରିବା କ'ଣ ?

**ଉତ୍ତର —** କେବଳ ଏକ ପରମେଶ୍ୱର ହିଁ ସର୍ବଶ୍ରେଷ୍ଠ ଅଟନ୍ତି; ସେ ହିଁ ଆମର ସ୍ୱାମୀ, ଶରଣର ଯୋଗ୍ୟ, ପରମଗତି ଓ ପରମ ଆଶ୍ରୟ ତଥା ମାତା-ପିତା, ଭାଇ-ବନ୍ଧୁ, ପରମ ହିତକାରୀ ଏବଂ ସର୍ବସ୍ୱ ଅଟନ୍ତି; ତାଙ୍କ ବ୍ୟତୀତ ଆମର ଆଉ କେହି ନାହିଁ — ଏପରି ବୁଝି ତାଙ୍କ ପାଖରେ ସ୍ୱାର୍ଥରହିତ ହୋଇ ଅତିଶୟ ଶ୍ରଦ୍ଧାପୂର୍ବକ ଯେଉଁ ଅନନ୍ୟ ପ୍ରେମ କରାଯାଏ, ଅର୍ଥାତ୍ ଯେଉଁ ପ୍ରେମରେ ସ୍ୱାର୍ଥ, ଅଭିମାନ ଓ ବ୍ୟଭିଚାରଜନିତ ସାମାନ୍ୟ ବି ଦୋଷ ନ ଥାଏ, ଯାହା ସର୍ବଥା ଓ ସର୍ବଦା ପୂର୍ଣ୍ଣ ଓ ଅଟଳ ରହେ, ଯାହାର ସାମାନ୍ୟ ଅଂଶ ବି ଭଗବାନଙ୍କ ଠାରୁ ଭିନ୍ନ ବସ୍ତୁ ପ୍ରତି ଉଦ୍ଦିଷ୍ଟ ହୋଇ ନ ଥାଏ ଓ ସେହିହେତୁ କ୍ଷଣମାତ୍ରର ଭଗବତ୍ ବିସ୍ମୃତି ବି ଅସହ୍ୟ ବୋଧ ହୁଏ, ସେହି ଅନନ୍ୟ ପ୍ରେମର ନାମ **ଅବ୍ୟଭିଚାରୀ ଭକ୍ତିଯୋଗ**।

ଏପରି ଭକ୍ତିଯୋଗଦ୍ୱାରା ନିରନ୍ତର ଭଗବାନଙ୍କର ଗୁଣ, ପ୍ରଭାବ ଓ ଲୀଳାମାନ ଶ୍ରବଣ-କୀର୍ତ୍ତନ-ମନନ କରିଚାଲିବା, ଭଗବାନଙ୍କର ନାମ ଉଚ୍ଚାରଣ, ଜପ ତଥା ତାଙ୍କ ସ୍ୱରୂପଚିନ୍ତନ ଆଦି କରିଚାଲିବା ଏବଂ ମନ, ବୁଦ୍ଧି ଓ ଶରୀର ଆଦି ସମସ୍ତ ପଦାର୍ଥ ଭଗବାନଙ୍କର ହିଁ ବୁଝି ନିଷ୍କାମଭାବରେ ନିଜକୁ କେବଳ ନିମିତ୍ତମାତ୍ର ଜାଣି ତାଙ୍କ ଆଜ୍ଞାନୁସାରେ ତାଙ୍କରି ସେବାରୂପରେ

ସକଳ କ୍ରିୟା ତାଙ୍କରି ନିମନ୍ତେ କରିଚାଲିବା ହିଁ ଅବ୍ୟଭିଚାରୀ ଭକ୍ତିଯୋଗଦ୍ୱାରା ଭଗବାନଙ୍କୁ ନିରନ୍ତର ଭଜନ କରିବା।

**ପ୍ରଶ୍ନ –** ଏଠାରେ **ମାମ୍** ପଦଟି କାହାର ବାଚକ?

**ଉତ୍ତର – ମାମ୍** ପଦଟି ସର୍ବଶକ୍ତିମାନ୍, ସର୍ବାନ୍ତର୍ଯାମୀ, ସର୍ବବ୍ୟାପୀ, ସର୍ବାଧାର, ସମସ୍ତ ଜଗତର ହର୍ତ୍ତା-କର୍ତ୍ତା, ପରମଦୟାଳୁ, ସମସ୍ତଙ୍କର ସୁହୃଦ୍, ପରମ ପ୍ରେମୀ ସଗୁଣ ପରମେଶ୍ୱରଙ୍କ ବାଚକ।

**ପ୍ରଶ୍ନ – ଗୁଣାନ୍** ପଦ ସହିତ **ଏତାନ୍** ପଦ ପ୍ରୟୋଗର ଅଭିପ୍ରାୟ କ'ଣ ଏବଂ ଉପରୋକ୍ତ ପୁରୁଷଙ୍କର ଏହି ଗୁଣମାନଙ୍କରୁ ଅତୀତ ହେବା କ'ଣ?

**ଉତ୍ତର – ଗୁଣାନ୍** ପଦ ସହିତ **ଏତାନ୍** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ଏହି ଅଧ୍ୟାୟରେ ଯେଉଁ ତିନି ଗୁଣର ବିଷୟ ଚାଲିଛି, ଗୁଣାନ୍ ପଦଟି ହେଉଛି ସେମାନଙ୍କର ବାଚକ। ଏହି ତିନିଗୁଣ ଓ ସେମାନଙ୍କର କାର୍ଯ୍ୟରୂପ ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧି ସହିତ ଏବଂ ସମସ୍ତ ସାଂସାରିକ ପଦାର୍ଥମାନଙ୍କ ସହିତ ସାମାନ୍ୟମାତ୍ର ବି ସମ୍ବନ୍ଧ ନ ରହିବା ହିଁ ଏହି ଗୁଣମାନଙ୍କ ଠାରୁ ଅତୀତ ହୋଇଯିବା।

**ପ୍ରଶ୍ନ –** 'ବ୍ରହ୍ମପ୍ରାପ୍ତିର ଯୋଗ୍ୟ ହୋଇଯାଆନ୍ତି' – ଏହି ବାକ୍ୟର ଅର୍ଥ କ'ଣ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ଗୁଣାତୀତ ହୋଇଯିବା ସଙ୍ଗେ ସଙ୍ଗେ ମନୁଷ୍ୟ ବ୍ରହ୍ମଭାବକୁ ଅର୍ଥାତ୍ ଯେ ନିର୍ଗୁଣ-ନିରାକାର ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ଅଟନ୍ତି, ଯାହାଙ୍କୁ ପାଇଗଲେ ଆଉ କିଛି ପାଇବାକୁ ବାକି ରହିଯାଏ ନାହିଁ, ତାଙ୍କୁ ଅଭିନ୍ନଭାବରେ ପାଇବାକୁ ଯୋଗ୍ୟ ହୋଇଯାନ୍ତି ଓ ତତ୍କାଳ ତାଙ୍କୁ ବ୍ରହ୍ମପ୍ରାପ୍ତି ହୋଇଯାଏ।

*__ସମ୍ବନ୍ଧ –__ ଉପରୋକ୍ତ ଶ୍ଳୋକରେ ସଗୁଣ ପରମେଶ୍ୱରଙ୍କ ଉପାସନାର ଫଳ ନିର୍ଗୁଣନିରାକାର ବ୍ରହ୍ମଙ୍କ ପ୍ରାପ୍ତି ବୋଲି କୁହାଗଲା ତଥା ଊଣେଇଶ ଶ୍ଳୋକରେ ଗୁଣାତୀତ ଅବସ୍ଥାର ଫଳ ଭଗବଦ୍‌ଭାବର ପ୍ରାପ୍ତି ବୋଲି ଏବଂ କୋଡ଼ିଏ ଶ୍ଳୋକରେ 'ଅମୃତପ୍ରାପ୍ତି' ବୋଲି କୁହାଗଲା। ସୁତରାଂ ଫଳରେ ଏପରି ବିଷମତାର ଶଙ୍କା ନିରାକରଣନିମନ୍ତେ ସବୁର ଏକତ୍ର ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଭଗବାନ୍ ଏହି ଅଧ୍ୟାୟ ଉପସଂହାର କରୁଛନ୍ତି –*

## ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ।
## ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ॥ ୨୭ ॥

**ଅନ୍ୱୟ –** ହି = କାରଣ; **ଅବ୍ୟୟସ୍ୟ, ବ୍ରହ୍ମଣଃ** = ଅବିନାଶୀ ପରବ୍ରହ୍ମଙ୍କର; ଚ = ଓ; **ଅମୃତସ୍ୟ** = ଅମୃତର; ଚ = ତଥା; **ଶାଶ୍ୱତସ୍ୟ, ଧର୍ମସ୍ୟ** = ନିତ୍ୟ ଧର୍ମର; ଚ = ଓ; **ଐକାନ୍ତିକସ୍ୟ, ସୁଖସ୍ୟ** = ଅଖଣ୍ଡ ଏକରସ ଆନନ୍ଦର; **ଅହମ୍** = ମୁଁ; **(ହି)** = ହିଁ; **ପ୍ରତିଷ୍ଠା** = ଆଶ୍ରୟ ଅଟେ।

**କାରଣ ମୁଁ ସେହି ଅବିନାଶୀ ପରବ୍ରହ୍ମଙ୍କର ଓ ଅମୃତର ତଥା ନିତ୍ୟଧର୍ମର ଓ ଅଖଣ୍ଡ ଏକରସ ଆନନ୍ଦର ଆଶ୍ରୟ ଅଟେ॥ ୨୭ ॥**

**ପ୍ରଶ୍ନ – ବ୍ରହ୍ମଣଃ** ପଦ ସହିତ **ଅବ୍ୟୟସ୍ୟ** ବିଶେଷଣ ଦେବାର ଅଭିପ୍ରାୟ କ'ଣ ଏବଂ 'ମୁଁ ସେହି ବ୍ରହ୍ମର ପ୍ରତିଷ୍ଠା ଅଟେ' କହିବାର ଅଭିପ୍ରାୟ କ'ଣ?

**ଉତ୍ତର – ବ୍ରହ୍ମଣଃ** ପଦ ସହିତ **ଅବ୍ୟୟସ୍ୟ** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ଏଠାରେ ବ୍ରହ୍ମ ପଦ ପ୍ରକୃତିର ବାଚକ ନୁହେଁ; ଏହା ନିର୍ଗୁଣ-ନିରାକାର ପରମାତ୍ମାଙ୍କର ବାଚକ ଏବଂ 'ମୁଁ ତାହାଙ୍କର ଆଶ୍ରୟ ଅଟେ' କହିବାର ଅଭିପ୍ରାୟ ହେଉଛି, ସେହି ବ୍ରହ୍ମ ମୋଠାରୁ ଅର୍ଥାତ୍ ସଗୁଣ ପରମେଶ୍ୱରଙ୍କ ଠାରୁ ଭିନ୍ନ ନୁହନ୍ତି ଓ ମୁଁ ତାଙ୍କ ଠାରୁ ଭିନ୍ନ ନୁହେଁ। ବାସ୍ତବରେ ମୁଁ ଓ ବ୍ରହ୍ମ ଦୁଇଟି ବସ୍ତୁ ନୋହୁଁ; ଏ ଦୁଇଟି ଗୋଟିଏ ହିଁ ତତ୍ତ୍ୱ ଅଟେ। ଅତଏବ ପୂର୍ବଶ୍ଳୋକରେ ଯେଉଁ ବ୍ରହ୍ମପ୍ରାପ୍ତି ବିଷୟ କୁହାଯାଇଛି, ତାହା ମୋର ହିଁ ପ୍ରାପ୍ତି, କାରଣ ଅଧିକାରୀଭେଦରେ ଉପାସନାନିମନ୍ତେ ବାସ୍ତବରେ ଏକପରବ୍ରହ୍ମ ପରମାତ୍ମାଙ୍କର ହିଁ ଭିନ୍ନ ଭିନ୍ନ ରୂପ କୁହାଯାଇଛି। ତା'ଭିତରୁ ପରମାତ୍ମାଙ୍କର ଯେଉଁ ମାୟାତୀତ, ଅଚିନ୍ତ୍ୟ, ମନ-ବାଣୀର ଅବିଷୟ ନିର୍ଗୁଣ-ସ୍ୱରୂପ, ତାହା ତ ଏକ ହିଁ ଅଟେ, କିନ୍ତୁ ସଗୁଣ ରୂପର ସାକାର ଓ ନିରାକାର – ଏପରି ଦୁଇଟି ରୂପ ରହିଛି। ଯେଉଁ ସ୍ୱରୂପଦ୍ୱାରା ଏହି ସମଗ୍ର ଜଗତ ବ୍ୟାପ୍ତ ହୋଇଛି,

ଯେ ସମସ୍ତଙ୍କର ଆଶ୍ରୟ, ଯେ ନିଜର ଅଚିନ୍ତ୍ୟ ଶକ୍ତିଦ୍ୱାରା ସମସ୍ତଙ୍କର ଧାରଣ-ପୋଷଣ କରନ୍ତି, ତାହା ତ ଭଗବାନଙ୍କର ସଗୁଣ-ଅବ୍ୟକ୍ତ ଅର୍ଥାତ୍ ନିରାକାର ରୂପ ଅଟେ । ଶ୍ରୀଶିବ, ଶ୍ରୀବିଷ୍ଣୁ ଏବଂ ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ଭଗବାନଙ୍କର ସାକାର ରୂପ ତଥା ଏହି ସମଗ୍ର ଜଗତ ହେଉଛି ଭଗବାନଙ୍କର ବିରାଟ ସ୍ୱରୂପ ।

**ପ୍ରଶ୍ନ –** **ଅମୃତସ୍ୟ** ପଦ କାହାର ବାଚକ ଏବଂ 'ଅମୃତର ପ୍ରତିଷ୍ଠା ମୁଁ' – ଏହାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯାହାକୁ ପାଇ ମନୁଷ୍ୟ ଅମର ହୋଇଯାଏ ଅର୍ଥାତ୍ ଜନ୍ମମୃତ୍ୟୁରୂପକ ସଂସାରରୁ ଚିରକାଳନିମନ୍ତେ ମୁକ୍ତି ପାଇଯାଏ, **ଅମୃତସ୍ୟ** ପଦଟି ହେଉଛି ସେହି ବ୍ରହ୍ମର ହିଁ ବାଚକ । ନିଜକୁ ତାହାର ପ୍ରତିଷ୍ଠା ବୋଲି କହି ଭଗବାନ୍ କହୁଛନ୍ତି, ''ସେହି ଅମୃତ ମଧ୍ୟ ମୁଁ ହିଁ ଅଟେ । ଅତଏବ ଏହି ଅଧ୍ୟାୟର ବିଂଶ ଶ୍ଳୋକରେ ଏବଂ ତ୍ରୟୋଦଶ ଅଧ୍ୟାୟର ଦ୍ୱାଦଶ ଶ୍ଳୋକରେ ଯେଉଁ ଅମୃତପ୍ରାପ୍ତି କଥା କୁହାଯାଇଛି, ତାହା ମୋର ହିଁ ପ୍ରାପ୍ତି ।''

**ପ୍ରଶ୍ନ –** **ଶାଶ୍ୱତସ୍ୟ** ବିଶେଷଣ ସହିତ **ଧର୍ମସ୍ୟ** ପଦ କାହାର ବାଚକ ଏବଂ ଭଗବାନ୍ ନିଜକୁ ଏହି ଧର୍ମର ପ୍ରତିଷ୍ଠା ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯାହା ନିତ୍ୟଧର୍ମ, ଦ୍ୱାଦଶ ଅଧ୍ୟାୟର ଶେଷଶ୍ଳୋକରେ ଯେଉଁ ଧର୍ମକୁ **ଧର୍ମ୍ୟାମୃତ** ନାମ ଦିଆଯାଇଛି, ତଥା ଏହି ପ୍ରକରଣରେ ଯାହା ଗୁଣାତୀତଙ୍କ ଲକ୍ଷଣ ନାମରେ ବର୍ଣ୍ଣିତ ହୋଇଛି, ଏଠାରେ **ଶାଶ୍ୱତସ୍ୟ** ବିଶେଷଣ ସହିତ **ଧର୍ମସ୍ୟ** ପଦଟି ହେଉଛି ତାହାର ବାଚକ । ନିଜକୁ ଏପରି ଧର୍ମର ପ୍ରତିଷ୍ଠା ବୋଲି କହି ଭଗବାନ୍ ଦେଖାଉଛନ୍ତି, ''ଏହା ମୋର ପ୍ରାପ୍ତିରେ ହେତୁ ହୋଇଥିବାରୁ, ମୋର ହିଁ ସ୍ୱରୂପ ଅଟେ; କାରଣ ଏହି ଧର୍ମ ଆଚରଣ କରୁଥିବା ଲୋକେ କୌଣସି ଅନ୍ୟ ଫଳ ନ ପାଇ, ମୋତେ ହିଁ ପାଆନ୍ତି ।''

**ପ୍ରଶ୍ନ –** **ଐକାନ୍ତିକସ୍ୟ** ବିଶେଷଣ ସହିତ **ସୁଖସ୍ୟ** ପଦଟି କାହାର ବାଚକ ଏବଂ ଭଗବାନ୍ ନିଜକୁ ତାହାର ପ୍ରତିଷ୍ଠା ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯାହା ପଞ୍ଚମ ଅଧ୍ୟାୟର ଏକୋଇଶ ଶ୍ଳୋକରେ 'ଅକ୍ଷୟ ସୁଖ' ନାମରେ, ଷଷ୍ଠ ଅଧ୍ୟାୟର ଏକୋଇଶ ଶ୍ଳୋକରେ 'ଆତ୍ୟନ୍ତିକ ସୁଖ' ନାମରେ ଓ ଅଠେଇଶ ଶ୍ଳୋକରେ 'ଅତ୍ୟନ୍ତ ସୁଖ' ନାମରେ ବର୍ଣ୍ଣିତ ହୋଇଛି, ଏଠାରେ **ଐକାନ୍ତିକସ୍ୟ** ବିଶେଷଣ ସହିତ **ସୁଖସ୍ୟ** ପଦଟି ହେଉଛି ସେହି ନିତ୍ୟ ପରମାନନ୍ଦର ବାଚକ । ନିଜକୁ ତାହାର ପ୍ରତିଷ୍ଠା ବୋଲି କହି ଭଗବାନ୍ ବୁଝାଇ ଦେଇଛନ୍ତି, ''ସେହି ନିତ୍ୟ ପରମାନନ୍ଦ ମୋର ହିଁ ସ୍ୱରୂପ ଅଟେ । ତାହା ମୋଠାରୁ ଭିନ୍ନ ଅନ୍ୟ କୌଣସି ବସ୍ତୁ ନୁହେଁ । ତେଣୁ ତାହାର ପ୍ରାପ୍ତି ଯାହା, ମୋର ପ୍ରାପ୍ତି ତାହା ।''

— ୦ —

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଗୁଣତ୍ରୟବିଭାଗଯୋଗୋ*
*ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥ ୧୪ ॥*

ॐ ଶ୍ରୀପରମାତ୍ମନେ ନମଃ

# ପଞ୍ଚଦଶୋଽଧ୍ୟାୟଃ

## ପୁରୁଷୋତ୍ତମଯୋଗ

***ଅଧ୍ୟାୟର ନାମ :*** *ଏହି ଅଧ୍ୟାୟରେ ସକଳ ଜଗତର କର୍ତ୍ତାହର୍ତ୍ତା ସର୍ବଶକ୍ତିମାନ୍ ସର୍ବନିୟନ୍ତା ସର୍ବବ୍ୟାପୀ, ଅନ୍ତର୍ଯାମୀ, ପରମ ଦୟାଳୁ, ସମସ୍ତଙ୍କର ସୁହୃଦ, ସର୍ବାଧାର, ଶରଣାଗତବତ୍ସଳ, ସଗୁଣ ପରମେଶ୍ୱର ପୁରୁଷୋତ୍ତମ ଭଗବାନଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପ ବର୍ଣ୍ଣନା କରାଯାଇଛି ଏବଂ କ୍ଷର ପୁରୁଷ (କ୍ଷେତ୍ର), ଅକ୍ଷର ପୁରୁଷ (କ୍ଷେତ୍ରଜ୍ଞ) ଓ ପୁରୁଷୋତ୍ତମ (ପରମେଶ୍ୱର)— ଏହି ତିନୋଟିର ବର୍ଣ୍ଣନା କରି, କ୍ଷର ଓ ଅକ୍ଷରଠାରୁ ଭଗବାନ୍ କିପରି ଉତ୍ତମ, ତାଙ୍କୁ କାହିଁକି 'ପୁରୁଷୋତ୍ତମ' କହନ୍ତି, ତାଙ୍କୁ ପୁରୁଷୋତ୍ତମ ବୋଲି ଜାଣିବାର ମାହାତ୍ମ୍ୟ କ'ଣ ଏବଂ ତାଙ୍କୁ କିପରି ପାଇହେବ— ଇତ୍ୟାଦି ବିଷୟ ଭଲଭାବରେ ବୁଝାଇଦିଆଯାଇଛି। ତେଣୁ ଏହି ଅଧ୍ୟାୟର ନାମ 'ପୁରୁଷୋତ୍ତମଯୋଗ' ରଖାଯାଇଛି।*

***ଅଧ୍ୟାୟର ସଂକ୍ଷିପ୍ତ ସାର :*** *ଏହି ଅଧ୍ୟାୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଅଶ୍ୱତ୍ଥବୃକ୍ଷର ରୂପକ ଦେଇ ସଂସାରର ବର୍ଣ୍ଣନା କରାଯାଇଛି। ତୃତୀୟ ଶ୍ଳୋକରେ ସଂସାରବୃକ୍ଷର ଆଦି, ଅନ୍ତ ଓ ସ୍ଥିତିର ଉପଲବ୍ଧି ହୁଏ ନାହିଁ ବୋଲି କହି ଦୃଢ଼ ବୈରାଗ୍ୟରୂପକ ଶସ୍ତ୍ରଦ୍ୱାରା ତାହାକୁ ଛେଦନ କରିବାକୁ ପ୍ରେରଣା ଦେଇଛନ୍ତି। ଚତୁର୍ଥ ଶ୍ଳୋକରେ ପରମପଦସ୍ୱରୂପ ପରମେଶ୍ୱରଙ୍କୁ ପାଇବାକୁ ହେଲେ ସେହି ଆଦିପୁରୁଷଙ୍କ ଶରଣ ନେବାକୁ କୁହାଯାଇଛି। ପଞ୍ଚମରେ ସେହି ପରମପଦ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ଲକ୍ଷଣ କହି ଷଷ୍ଠରେ ସେହି ପରମପଦକୁ ପରମପ୍ରକାଶମୟ ଓ ଅପୁନରାବୃତ୍ତିଶୀଳ ବୋଲି କହିଛନ୍ତି। ତା'ପରେ ସପ୍ତମରୁ ଏକାଦଶଯାଏ ଜୀବର ସ୍ୱରୂପ, ମନ ଓ ଇନ୍ଦ୍ରିୟ ସହିତ ତା'ର ଏକ ଶରୀରରୁ ଅନ୍ୟ ଶରୀରକୁ ଯିବାର ପ୍ରଣାଳୀ ଏବଂ ଶରୀରରେ ରହି ଇନ୍ଦ୍ରିୟ ଓ ମନର ସହାୟତାରେ ବିଷୟ ଉପଭୋଗ କରିବା କଥା କହିଛନ୍ତି ଏବଂ ପ୍ରତ୍ୟେକ ଅବସ୍ଥାରେ ସ୍ଥିତ ସେହି ଜୀବାତ୍ମାକୁ ଜ୍ଞାନୀ ହିଁ ଜାଣିପାରନ୍ତି; କିନ୍ତୁ ମଳିନ-ଅନ୍ତଃକରଣବିଶିଷ୍ଟ ଅଜ୍ଞାନୀ ପୁରୁଷ କୌଣସିପ୍ରକାରେ ତାହା ଜାଣିପାରେ ନାହିଁ ବୋଲି ବର୍ଣ୍ଣନା କରିଛନ୍ତି। ବାରରେ ସମସ୍ତ ଜଗତକୁ ପ୍ରକାଶିତ କରୁଥିବା ସୂର୍ଯ୍ୟ ଓ ଚନ୍ଦ୍ରମାଦିର ତେଜ ଭଗବାନଙ୍କର ହିଁ ତେଜ ବୋଲି କହି ତେର ଓ ଚଉଦରେ ଭଗବାନଙ୍କୁ ପୃଥିବୀରେ ପ୍ରବେଶ କରି ସମସ୍ତ ପ୍ରାଣୀଙ୍କର ଧାରଣକାରୀ, ଚନ୍ଦ୍ରରୂପରେ ସମସ୍ତଙ୍କର ପୋଷଣକାରୀ ତଥା ବୈଶ୍ୱାନରରୂପରେ ସକଳପ୍ରକାର ଅନ୍ନର ଜୀର୍ଣ୍ଣକର୍ତ୍ତା ବୋଲି କହିଛନ୍ତି। ପନ୍ଦରରେ ଭଗବାନ୍ ସମସ୍ତଙ୍କ ହୃଦୟନିବାସୀ, ସମସ୍ତଙ୍କ ସ୍ମୃତି ଆଦିର କାରଣ, ସକଳବେଦଦ୍ୱାରା ଜାଣିବାର ଯୋଗ୍ୟ, ସର୍ବବେଦଜ୍ଞ ଓ ବେଦାନ୍ତକର୍ତ୍ତା ବୋଲି କୁହାଯାଇଛି। ଷୋହଳରେ ସମସ୍ତ ଭୂତଙ୍କୁ କ୍ଷର, ତଥା କୂଟସ୍ଥ ଆତ୍ମାକୁ ଅକ୍ଷର ପୁରୁଷ ବୋଲି କହି ସତରରେ ସେହିଦୁହିଁଙ୍କ ଠାରୁ ଭିନ୍ନ ସର୍ବବ୍ୟାପୀ, ସମସ୍ତଙ୍କର ଧାରଣ-ପୋଷଣକାରୀ, ଅବିନାଶୀ ପରମାତ୍ମାଙ୍କୁ ପୁରୁଷୋତ୍ତମ ବୋଲି କହିଛନ୍ତି। ଅଠରରେ ପୁରୁଷୋତ୍ତମ ନାମର ପ୍ରସିଦ୍ଧିର ହେତୁ ପ୍ରତିପାଦନ କରିଛନ୍ତି; ଉଣେଇଶରେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି ବୁଝିଥିବା ଲୋକଙ୍କର ମହିମା ଏବଂ କୋଡ଼ିଏରେ ଉପରୋକ୍ତ ଗୁହ୍ୟତମତତ୍ତ୍ୱବିଷୟକ ଜ୍ଞାନର ମହିମା କହି ଅଧ୍ୟାୟ ଉପସଂହାର କରିଛନ୍ତି।*

***ସମ୍ବନ୍ଧ—*** *ଚତୁର୍ଦ୍ଦଶ ଅଧ୍ୟାୟରେ ପଞ୍ଚମରୁ ଅଠର ଶ୍ଳୋକଯାଏ ତିନି ଗୁଣର ସ୍ୱରୂପ, ସେମାନଙ୍କର କାର୍ଯ୍ୟ ଏବଂ ସେମାନଙ୍କ ବନ୍ଧନକାରିତାର ତଥା ବନ୍ଧମନୁଷ୍ୟମାନଙ୍କର ଉତ୍ତମ, ମଧ୍ୟମ ଓ ଅଧମ ଗତି ଆଦି ବିସ୍ତାରପୂର୍ବକ ବର୍ଣ୍ଣନା କରିଛନ୍ତି। ଉଣେଇଶ ଓ କୋଡ଼ିଏ ଶ୍ଳୋକରେ ସେହି ଗୁଣମାନଙ୍କରୁ ମୁକ୍ତ ହେବାର ଉପାୟ ଓ ଫଳ କୁହାଯାଇଛି। ତା'ପରେ ଅର୍ଜୁନ ପଚାରିବାରୁ ବାଇଶରୁ ପଚିଶ ଶ୍ଳୋକଯାଏ ଗୁଣାତୀତ ପୁରୁଷଙ୍କର ଲକ୍ଷଣ ଓ ଆଚରଣ ବର୍ଣ୍ଣନା କରିଛନ୍ତି ଏବଂ ଛବିଶ ଶ୍ଳୋକରେ କହିଛନ୍ତି ଯେ, ସଗୁଣ ପରମେଶ୍ୱରଙ୍କ*

*ଅବ୍ୟଭିଚାରୀ ଭକ୍ତିଯୋଗଦ୍ୱାରା ସାଧକ ଗୁଣାତୀତ ହୋଇପାରନ୍ତି ଏବଂ ବ୍ରହ୍ମପ୍ରାପ୍ତିପାଇଁ ଯୋଗ୍ୟ ହେବାର ଏହା ଏକ ସରଳ ଉପାୟ। ଅତଏବ ଭଗବାନଙ୍କ ଠାରେ ଅବ୍ୟଭିଚାରୀ ଭକ୍ତିଯୋଗରୂପକ ଅନନ୍ୟପ୍ରେମ ଉତ୍ପନ୍ନ କରାଇବା ଉଦ୍ଦେଶ୍ୟରେ ବର୍ତ୍ତମାନ ସେହି ସଗୁଣ ପରମେଶ୍ୱର ପୁରୁଷୋତ୍ତମ ଭଗବାନଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପ ବିଷୟ ଏବଂ ଗୁଣାତୀତ ହେବାର ପ୍ରଧାନ ସାଧନା ବୈରାଗ୍ୟ ତଥା ଭଗବଦ୍-ଶରଣାଗତି ବିଷୟ ବର୍ଣ୍ଣନା କରିବାକୁ ପଞ୍ଚଦଶ ଅଧ୍ୟାୟ ଆରମ୍ଭ କରାଯାଉଛି। ଏଠାରେ ପ୍ରଥମେ ସଂସାର ପ୍ରତି ବୈରାଗ୍ୟ ଉତ୍ପନ୍ନ କରାଇବା ଉଦ୍ଦେଶ୍ୟରେ ତିନୋଟି ଶ୍ଳୋକଦ୍ୱାରା ବୃକ୍ଷରୂପରେ ସଂସାରର ବର୍ଣ୍ଣନା କରି ବୈରାଗ୍ୟରୂପକ ଶସ୍ତ୍ରଦ୍ୱାରା ତାହାକୁ ଛେଦନ କରିବାକୁ କହୁଛନ୍ତି—*

*ଶ୍ରୀଭଗବାନୁବାଚ*

**ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।**
**ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ॥ ୧ ॥**

ଅନ୍ୱୟ— **ଊର୍ଦ୍ଧ୍ୱମୂଳମ୍** = ଆଦିପୁରୁଷ ପରମେଶ୍ୱରରୂପକ ମୂଳବିଶିଷ୍ଟ; **ଅଧଃଶାଖମ୍** = ବ୍ରହ୍ମା ଯାହାର ମୁଖ୍ୟଶାଖା; **ଅଶ୍ୱତ୍ଥମ୍** = ଯେଉଁ ସଂସାରରୂପକ ଅଶ୍ୱତ୍ଥ ବୃକ୍ଷକୁ; **ଅବ୍ୟୟମ୍** = ଅବିନାଶୀ (ବୋଲି); **ପ୍ରାହୁଃ** = କହନ୍ତି (ତଥା); **ଛନ୍ଦାଂସି** = ବେଦମାନେ; **ଯସ୍ୟ** = ଯାହାର; **ପର୍ଣ୍ଣାନି** = ପତ୍ର (ବୋଲି କୁହାଯାଏ); **ତମ୍** = ସେହି ସଂସାରରୂପକ ବୃକ୍ଷକୁ; **ଯଃ** = ଯେଉଁ ପୁରୁଷ (ମୂଳସହିତ); **ବେଦ** = ତତ୍ତ୍ୱତଃ ଜାଣେ; **ସଃ** = ସେ; **ବେଦବିତ୍** = ବେଦର ତାତ୍ପର୍ଯ୍ୟ ଜାଣେ।

**ଶ୍ରୀଭଗବାନ୍ କହିଲେ— ଆଦିପୁରୁଷ ପରମେଶ୍ୱର ଯାହାର ମୂଳ, ବ୍ରହ୍ମା ଯାହାର ପ୍ରଧାନଶାଖା, ଯେଉଁ ସଂସାରରୂପକ ଅଶ୍ୱତ୍ଥବୃକ୍ଷକୁ ଅବିନାଶୀ ବୋଲି ତଥା ବେଦକୁ ଯାହାର ପତ୍ର ବୋଲି କହନ୍ତି, ସେହି ସଂସାରରୂପକ ବୃକ୍ଷକୁ ଯେଉଁ ପୁରୁଷ ମୂଳସହିତ ତତ୍ତ୍ୱତଃ ଜାଣନ୍ତି, ସେ ବେଦର ତାତ୍ପର୍ଯ୍ୟ ଜାଣନ୍ତି॥ ୧ ॥**

**ପ୍ରଶ୍ନ—** ଏଠାରେ **ଅଶ୍ୱତ୍ଥ** ଶବ୍ଦ ପ୍ରୟୋଗର ଓ ଏହି ସଂସାରରୂପକ ବୃକ୍ଷକୁ **ଊର୍ଦ୍ଧ୍ୱମୂଳ** ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଉକ୍ତ ବୃକ୍ଷକୁ **ଅଶ୍ୱତ୍ଥ** କହନ୍ତି। ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ ଉତ୍ତମ ବୋଲି ମନେ କରାଯାଏ। ତେଣୁ ତାହାର ରୂପକଦ୍ୱାରା ସଂସାରର ବର୍ଣ୍ଣନା କରିବାକୁ ଏଠାରେ **ଅଶ୍ୱତ୍ଥ** ପ୍ରୟୋଗ କରାଯାଇଛି। **ମୂଳ** ଶବ୍ଦ କାରଣର ବାଚକ। ଏହି ସଂସାରବୃକ୍ଷର ଉତ୍ପତ୍ତି ଓ ଏହାର ବିସ୍ତାର ଆଦିପୁରୁଷ ନାରାୟଣଙ୍କ ଠାରୁ ହୋଇଛି, ଏହି କଥା ଚତୁର୍ଥ ଶ୍ଳୋକରେ ଓ ଅନ୍ୟତ୍ର ମଧ୍ୟ ସ୍ଥାନେ ସ୍ଥାନେ କୁହାଯାଇଛି। ସେହି ଆଦି ପୁରୁଷ ପରମେଶ୍ୱର ହେଉଛନ୍ତି ନିତ୍ୟ, ଅନନ୍ତ ଓ ସମସ୍ତଙ୍କର ଆଧାର ଏବଂ ସେ ସଗୁଣରୂପରେ ସମସ୍ତଙ୍କ ଉପରେ ନିତ୍ୟଧାମରେ ନିବାସ କରନ୍ତି। ତେଣୁ ସେ **ଊର୍ଦ୍ଧ୍ୱ** ନାମରେ କୁହାଯା'ନ୍ତି। ଏହି ସଂସାରବୃକ୍ଷ ସେହି ମାୟାପତି ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ହୋଇଛି। ତେଣୁ ଏହାକୁ **ଊର୍ଦ୍ଧ୍ୱମୂଳ** ଅର୍ଥାତ୍ ଉପର ଆଡ଼କୁ ଥିବା ମୂଳବିଶିଷ୍ଟ ବୋଲି କହନ୍ତି। ଅଭିପ୍ରାୟ ଏହି ଯେ, ଅନ୍ୟ ସାଧାରଣ ବୃକ୍ଷର ମୂଳ ତ ତଳେ ମାଟିଭିତରେ ରହେ; କିନ୍ତୁ ଏହି ସଂସାରବୃକ୍ଷର ମୂଳ ଉପରେ ଅଛି; ଏହା ବଡ଼ ଅଲୌକିକ କଥା।

**ପ୍ରଶ୍ନ—** ଏହି ସଂସାରବୃକ୍ଷକୁ **ଅଧଃଶାଖମ୍** ବା ତଳ ଆଡ଼କୁ ଶାଖା ବିସ୍ତାର କରିଥିବା ବୃକ୍ଷ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ସଂସାରବୃକ୍ଷର ଉତ୍ପତ୍ତିସମୟରେ ସର୍ବପ୍ରଥମେ ବ୍ରହ୍ମାଙ୍କର ଉଦ୍ଭବ ହୁଏ। ତେଣୁ ବ୍ରହ୍ମା ହିଁ ଏହାର ପ୍ରଧାନ ଶାଖା। ବ୍ରହ୍ମାଙ୍କର ଲୋକ ଆଦିପୁରୁଷ ନାରାୟଣଙ୍କ ନିତ୍ୟଧାମ ଅପେକ୍ଷା ତଳେ ଏବଂ ବ୍ରହ୍ମାଙ୍କର ଅଧିକାର ମଧ୍ୟ ଭଗବାନଙ୍କ ଅଧିକାର ଅପେକ୍ଷା କମ୍; କାରଣ, ବ୍ରହ୍ମା ସେହି ଆଦିପୁରୁଷ ନାରାୟଣଙ୍କ ଠାରୁ

ଉତ୍ପନ୍ନ ହୋଇଛନ୍ତି ଓ ତାଙ୍କର ଶାସନ ଅଧୀନରେ ରହିଛନ୍ତି। ତେଣୁ ଏହି ସଂସାରବୃକ୍ଷକୁ 'ତଳ ଆଡ଼କୁ ଶାଖା ମେଲିଥିବା ବୃକ୍ଷ' ବୋଲି କୁହାଯାଇଛି।

**ପ୍ରଶ୍ନ –** **ଅବ୍ୟୟମ୍** ଓ **ପ୍ରାହୁଃ** – ଏହି ଦୁଇଟି ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଏହି ପଦ ଦୁଇଟି ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ଯଦ୍ୟପି ଏହି ସଂସାରବୃକ୍ଷ ପରିବର୍ତ୍ତନଶୀଳ ହୋଇଥିବାରୁ ନାଶବାନ୍, ଅନିତ୍ୟ ଓ କ୍ଷଣଭଙ୍ଗୁର, ତଥାପି ଏହାର ପ୍ରବାହ ଅନାଦିକାଳରୁ ଚାଲିଆସୁଛି; ଏହାର ପ୍ରବାହର ଅନ୍ତ ମଧ୍ୟ ଦେଖିବାକୁ ମିଳୁ ନାହିଁ। ତେଣୁ ଏହାକୁ ଅବ୍ୟୟ ଅର୍ଥାତ୍ ଅବିନାଶୀ ବୋଲି କୁହାଯାଏ। ଏହାର ମୂଳ ସର୍ବଶକ୍ତିମାନ୍ ପରମେଶ୍ୱର ନିତ୍ୟ ଓ ଅବିନାଶୀ ଅଟନ୍ତି ସତ କିନ୍ତୁ ବାସ୍ତବରେ ଏହି ସଂସାରବୃକ୍ଷ ଅବିନାଶୀ ନୁହେଁ। ଯଦି ଏହା ଅବିନାଶୀ ହୋଇଥାନ୍ତା, ତେବେ ଆଗାମୀ ତୃତୀୟ ଶ୍ଳୋକରେ କୁହାଯାଇ ନ ଥାନ୍ତା ଯେ, ଏହାର ସ୍ୱରୂପ ଯେପରି କୁହାଯାଉଛି, ସେପରି ଉପଲବ୍ଧ ହେଉ ନାହିଁ ଏବଂ ଏହାକୁ ବୈରାଗ୍ୟରୂପକ ଦୃଢ଼ ଶସ୍ତ୍ରଦ୍ୱାରା ଛେଦନ କରିବାକୁ ମଧ୍ୟ କୁହାଯାଇ ନ ଥାନ୍ତା।

**ପ୍ରଶ୍ନ –** ବେଦମାନଙ୍କୁ ଏହି ସଂସାରବୃକ୍ଷର ପତ୍ର ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ପତ୍ରମାନେ ବୃକ୍ଷର ଶାଖାରୁ ଉତ୍ପନ୍ନ ହୁଅନ୍ତି ଏବଂ ବୃକ୍ଷର ରକ୍ଷା ତଥା ବୃଦ୍ଧି କରନ୍ତି। ବେଦମାନେ ମଧ୍ୟ ଏହି ସଂସାରରୂପକ ବୃକ୍ଷର ମୁଖ୍ୟ ଶାଖାରୂପୀ ବ୍ରହ୍ମାଙ୍କ ଠାରୁ ପ୍ରକଟ ହୁଅନ୍ତି ଓ ବେଦବିହିତ କର୍ମମାନଙ୍କ ଦ୍ୱାରା ହିଁ ସଂସାରର ବୃଦ୍ଧି ଏବଂ ରକ୍ଷା ହୁଏ। ତେଣୁ ବେଦମାନଙ୍କୁ ସଂସାରବୃକ୍ଷର ପତ୍ର ବୋଲି କୁହାଯାଇଛି।

**ପ୍ରଶ୍ନ –** 'ଯେ ସେହି ସଂସାରବୃକ୍ଷକୁ ଜାଣନ୍ତି, ସେ ବେଦର ତାତ୍ପର୍ଯ୍ୟ ଜାଣନ୍ତି' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ମନୁଷ୍ୟ ମୂଳସହିତ ଏହି ସଂସାରବୃକ୍ଷକୁ ତତ୍ତ୍ୱତଃ ଜାଣନ୍ତି ଓ ବୁଝିପାରନ୍ତି ଯେ, ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ମାୟାରେ ଉତ୍ପନ୍ନ ଏହି ସଂସାର ବୃକ୍ଷପରି ଉତ୍ପତ୍ତି-ବିନାଶଶୀଳ ଓ କ୍ଷଣିକ ଅଟେ, ଅତଏବ ଏହାର ଚାକଚକ୍ୟରେ ଲିପ୍ତ ନ ହୋଇ ଏହାକୁ ଉତ୍ପନ୍ନ କରିଥିବା ମାୟାପତି ପରମେଶ୍ୱରଙ୍କ ଶରଣ ନେବା ଉଚିତ ଓ ଏପରି ବୁଝିପାରି ସଂସାରରୁ ବିରକ୍ତ ଓ ଉପରତ ହୋଇ ଯେଉଁ ମନୁଷ୍ୟ ଭଗବାନଙ୍କର ଶରଣ ଗ୍ରହଣ କରିନିଅନ୍ତି, ସେ ହିଁ ବାସ୍ତବରେ ବେଦମାନଙ୍କୁ ଜାଣିଥିବା ମନୁଷ୍ୟ; କାରଣ ପନ୍ଦର ଶ୍ଳୋକରେ କୁହାଯାଇଛି ଯେ, କେବଳ ଭଗବାନ୍ ହିଁ ସକଳ ବେଦଦ୍ୱାରା ଜାଣିବାଯୋଗ୍ୟ ଅଟନ୍ତି। ଯେଉଁ ପୁରୁଷ ସଂସାରବୃକ୍ଷର ଏହି ସ୍ୱରୂପ ଜାଣିଯାଆନ୍ତି, ସେ ଏଥିରୁ ଉପରତ ହୋଇ ଭଗବାନଙ୍କ ଶରଣ ଗ୍ରହଣ କରନ୍ତି ଏବଂ ଭଗବାନଙ୍କ ଶରଣ ନେବା ହିଁ ସକଳ ବେଦର ତାତ୍ପର୍ଯ୍ୟ। ଏହି ଅଭିପ୍ରାୟ ରଖି କୁହାଯାଇଛି ଯେ, ଯେଉଁ ମନୁଷ୍ୟ ସଂସାରବୃକ୍ଷକୁ ଜାଣନ୍ତି, ସେ ବେଦର ତାତ୍ପର୍ଯ୍ୟ ଜାଣନ୍ତି।

## ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ। ଅଧଶ୍ଚ ମୂଳାନ୍ୟନୁସଂତତାନି କର୍ମାନୁବନ୍ଧୀନି ମନୁଷ୍ୟଲୋକେ॥ ୨॥

**ଅନ୍ୱୟ –** **ତସ୍ୟ** = ସେହି ସଂସାରବୃକ୍ଷର; **ଗୁଣପ୍ରବୃଦ୍ଧାଃ** = ତ୍ରିଗୁଣରୂପକ ଜଳଦ୍ୱାରା ବୃଦ୍ଧିପ୍ରାପ୍ତ ହୋଇଥିବା (ଏବଂ); **ବିଷୟପ୍ରବାଳାଃ** = ବିଷୟଭୋଗରୂପକ କୋମଳପତ୍ର ଥିବା; **ଶାଖାଃ** = ଦେବ, ମନୁଷ୍ୟ ଓ ତିର୍ଯ୍ୟକ୍ ଆଦି ଯୋନିରୂପକ ଶାଖାମାନ; **ଅଧଃ** = ତଳକୁ; **ଚ** = ଓ; **ଊର୍ଦ୍ଧ୍ୱମ୍** = ଉପରକୁ; **ପ୍ରସୃତାଃ** = ସର୍ବତ୍ର ପ୍ରସାରିତ ହୋଇଛି; **ମନୁଷ୍ୟଲୋକେ** = ମନୁଷ୍ୟଯୋନିରେ; **କର୍ମାନୁବନ୍ଧୀନି** = କର୍ମାନୁସାରେ ବନ୍ଧନ କରୁଥିବା; **ମୂଳାନି** = ଅହଂତ୍ୱ, ମମତ୍ୱ ଓ ବାସନାରୂପକ ମୂଳମାନ; **(ଅପି)** = ମଧ୍ୟ; **ଅଧଃ** = ତଳକୁ; **ଚ** = ଓ; **(ଊର୍ଦ୍ଧ୍ୱମ୍)** = ଉପରକୁ; **ଅନୁସନ୍ତତାନି** = ସକଳ ଲୋକରେ ବ୍ୟାପ୍ତ ହୋଇଛନ୍ତି।

**ତ୍ରିଗୁଣରୂପୀ ଜଳଦ୍ୱାରା ବୃଦ୍ଧିପ୍ରାପ୍ତ ହୋଇଥିବା ଏବଂ ବିଷୟଭୋଗରୂପୀ କୋମଳପତ୍ର ଥିବା ସେହି ସଂସାରବୃକ୍ଷର ଦେବ, ମନୁଷ୍ୟ ଓ ତିର୍ଯ୍ୟକ୍ ଆଦି ଯୋନିରୂପୀ ଶାଖାମାନ ତଳ, ଉପର ଆଦି ସକଳ ଦିଗରେ ପ୍ରସାରିତ ହୋଇଛି ତଥା ମନୁଷ୍ୟଯୋନିରେ କର୍ମାନୁସାରେ**

**ବନ୍ଧନ କରୁଥିବା ଅହଂତ୍ୱ, ମମତ୍ୱ ଓ ବାସନାରୂପୀ ମୂଳମାନେ ମଧ୍ୟ ତଳ, ଉପର ଆଦି ସର୍ବଲୋକରେ ବ୍ୟାପ୍ତ ହେଉଛନ୍ତି ॥ ୨ ॥**

**ପ୍ରଶ୍ନ –** ଏସବୁ ଶାଖା ଗୁଣମାନଙ୍କ ଦ୍ୱାରା ବୃଦ୍ଧିପ୍ରାପ୍ତ ହୋଉଛି ବୋଲି କହିବାର ଓ ବିଷୟମାନଙ୍କୁ କୋମଳପତ୍ର ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଗୁଣମାନଙ୍କ ସଙ୍ଗରୁ ଭଲ ଓ ମନ୍ଦ ଯୋନି ପ୍ରାପ୍ତ ହୁଏ (୧୩/୨୧) ଏବଂ ସମସ୍ତ ଲୋକ ଓ ପ୍ରାଣୀଙ୍କର ଶରୀର ତିନି ଗୁଣର ହିଁ ପରିଣାମ ଅଟେ। ଏହି ଭାବ ବୁଝାଇବାକୁ ସେହି ଶାଖାଗୁଡ଼ିକ ଗୁଣମାନଙ୍କ ଦ୍ୱାରା ବୃଦ୍ଧି ପାଇଛି ବୋଲି କୁହାଯାଇଛି ଏବଂ ସେହି ଶାଖାମାନଙ୍କରେ ହିଁ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ – ଏହି ପଞ୍ଚବିଷୟ ରହନ୍ତି। ତେଣୁ ଏମାନଙ୍କୁ କୋମଳପତ୍ର ବୋଲି କୁହାଯାଇଛି।

**ପ୍ରଶ୍ନ –** ଏହି ସଂସାରବୃକ୍ଷର ବହୁସଂଖ୍ୟକ ଶାଖା କ'ଣ ତଥା ସେମାନେ ତଳ, ଉପର ଆଦି ସକଳ ଲୋକରେ ପ୍ରସାରିତ ହୋଇଥିବା କ'ଣ ?

**ଉତ୍ତର –** ବ୍ରହ୍ମଲୋକଠାରୁ ଆରମ୍ଭ କରି ପାତାଳପର୍ଯ୍ୟନ୍ତ ଯେତେ ବି ଲୋକ ଅଛି ଓ ସେଥିରେ ନିବାସ କରୁଥିବା ଯେତେ ଯୋନି ଅଛନ୍ତି, ସେସବୁ ହିଁ ଏହି ସଂସାରବୃକ୍ଷର ବହୁସଂଖ୍ୟକ ଶାଖା ଏବଂ ସେମାନେ ତଳକୁ ପାତାଳପର୍ଯ୍ୟନ୍ତ ଓ ଉପରକୁ ବ୍ରହ୍ମଲୋକପର୍ଯ୍ୟନ୍ତ ସର୍ବତ୍ର ବିସ୍ତୃତ ହୋଇ ରହିଥିବା ହିଁ ସବୁ ଲୋକରେ ପ୍ରସାରିତ ହୋଇଥିବା।

**ପ୍ରଶ୍ନ –** ମୂଳାନି ପଦ କେଉଁମାନଙ୍କ ବାଚକ ତଥା ସେଗୁଡ଼ିକ ତଳ, ଉପର ଆଦି ସବୁଲୋକରେ ବ୍ୟାପ୍ତ ବୋଲି କହିବାର ଅଭିପ୍ରାୟ କ'ଣ ଓ ସେଗୁଡ଼ିକ ମନୁଷ୍ୟଯୋନିରେ କର୍ମାନୁସାରେ ବନ୍ଧନକାରୀ ଅଟନ୍ତି କିପରି ?

**ଉତ୍ତର –** ଏଠାରେ ମୂଳାନି ପଦଟି ହେଉଛି ଅବିଦ୍ୟାମୂଳକ ଅହଂତ୍ୱ, ମମତ୍ୱ ଓ ବାସନାର ବାଚକ। ସେହି ତିନୋଟି ମୂଳ ବ୍ରହ୍ମଲୋକରୁ ପାତାଳପର୍ଯ୍ୟନ୍ତ ସମସ୍ତ ଲୋକରେ ନିବାସ କରୁଥିବା ଜନ୍ମମରଣଶୀଳ ପ୍ରାଣୀମାନଙ୍କର ଅନ୍ତଃକରଣରେ ବ୍ୟାପ୍ତ ହୋଇ ରହିଛି। ତେଣୁ ସେଗୁଡ଼ିକ ସର୍ବତ୍ର ବ୍ୟାପ୍ତ ବୋଲି କୁହାଯାଉଛି। ମନୁଷ୍ୟଶରୀରରେ କର୍ମ କରିବାର ଅଧିକାର ରହିଛି ଏବଂ ମନୁଷ୍ୟଶରୀରଦ୍ୱାରା ଅହଂତ୍ୱ, ମମତ୍ୱ ଓ ବାସନାପୂର୍ବକ କରାଯାଉଥିବା କର୍ମକୁ ବନ୍ଧନର କାରଣ ବୋଲି କୁହାଯାଉଛି। ତେଣୁ ଏସବୁ ମୂଳ ମନୁଷ୍ୟଲୋକରେ ହିଁ କର୍ମାନୁସାରେ ବନ୍ଧନକାରୀ ହୁଅନ୍ତି। ଅନ୍ୟସବୁ ଯୋନି ଭୋଗଯୋନି। ସେହିସବୁ ଯୋନିରେ କର୍ମର ଅଧିକାର ନାହିଁ। ତେଣୁ ସେଠାରେ ଅହଂତ୍ୱ, ମମତ୍ୱ ଓ ବାସନାରୂପକ ମୂଳ ଥିଲେ ମଧ୍ୟ ସେଗୁଡ଼ିକ କର୍ମାନୁସାରେ ବନ୍ଧନକାରୀ ହୁଅନ୍ତି ନାହିଁ।

## ନ ରୂପମସ୍ୟେହ ତଥୋପଲଭ୍ୟତେ ନାନ୍ତୋ ନ ଚାଦିର୍ନ ଚ ସଂପ୍ରତିଷ୍ଠା।
## ଅଶ୍ୱତ୍ଥମେନଂ ସୁବିରୂଢମୂଳମସଙ୍ଗଶସ୍ତ୍ରେଣ ଦୃଢ଼େନ ଛିତ୍ତ୍ୱା ॥ ୩ ॥

ଅନ୍ୱୟ – ଅସ୍ୟ = ଏହି ସଂସାରବୃକ୍ଷର; ରୂପମ୍ = ସ୍ୱରୂପକୁ (ଯେପରି ବର୍ଣ୍ଣନା କରାଯାଇଛି); ତଥା = ସେପରି; ଇହ = ଏଠାରେ (ବିଚାରକାଳରେ); ନ, ଉପଲଭ୍ୟତେ = ମିଳେ ନାହିଁ; (ଯତଃ) = କାରଣ (ଏହାର); ନ, ଆଦିଃ = ଆଦି ନାହିଁ; ଚ = କି; ନ, ଅନ୍ତଃ = ଅନ୍ତ ନାହିଁ; ଚ = ତଥା; ନ, ସଂପ୍ରତିଷ୍ଠା = ଭଲରୂପରେ ସ୍ଥିତି ନାହିଁ; (ଅତଃ) = ତେଣୁ; ଏନମ୍ = ଏହି; ସୁବିରୂଢ଼ମୂଳମ୍ = ଅହଂତ୍ୱ, ମମତ୍ୱ ଓ ବାସନାରୂପକ ଅତି ଦୃଢ଼ମୂଳବିଶିଷ୍ଟ; ଅଶ୍ୱତ୍ଥମ୍ = ସଂସାରରୂପକ ଅଶ୍ୱତ୍ଥବୃକ୍ଷକୁ; ଦୃଢେନ, ଅସଙ୍ଗଶସ୍ତ୍ରେଣ = ଦୃଢ଼ ବୈରାଗ୍ୟରୂପକ ଶସ୍ତ୍ରଦ୍ୱାରା; ଛିତ୍ତ୍ୱା = ଛେଦନ କରି।

**ଏହି ସଂସାରବୃକ୍ଷର ସ୍ୱରୂପ ଯେପରି କୁହାଯାଇଛି, ଏଠାରେ ବିଚାର କରିବା ସମୟରେ ସେପରି ମିଳେ ନାହିଁ; କାରଣ, ଏହାର ଆଦି ନାହିଁ, କି ଅନ୍ତ ନାହିଁ ତଥା ଏହାର ଭଲରୂପେ ସ୍ଥିତି ବି ନାହିଁ। ତେଣୁ ଏହି ଅହଂତ୍ୱ, ମମତ୍ୱ ଓ ବାସନାରୂପୀ ଅତି ଦୃଢ଼ମୂଳବିଶିଷ୍ଟ ସଂସାରରୂପୀ ଅଶ୍ୱତ୍ଥବୃକ୍ଷକୁ ଦୃଢ଼ ବୈରାଗ୍ୟରୂପୀ ଶସ୍ତ୍ରଦ୍ୱାରା ଛେଦନ କରି, - - - ॥ ୩ ॥**

**ପ୍ରଶ୍ନ –** 'ଏହି ସଂସାରବୃକ୍ଷର ରୂପ ଯେପରି କୁହାଯାଉଛି, ଏଠାରେ ସେପରି ଦେଖିବାକୁ ମିଳୁ ନାହିଁ' – ଏହି ବାକ୍ୟର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଏହି ସଂସାର ବୃକ୍ଷର ସ୍ୱରୂପ ଶାସ୍ତ୍ରରେ ଯେପରି ବର୍ଣ୍ଣନା କରାଯାଇଛି ଏବଂ ଯେପରି ଦେଖିବାକୁ ଓ ଶୁଣିବାକୁ ମିଳୁଛି, ଯଥାର୍ଥ ବିଚାର କଲେ ଓ ତତ୍ତ୍ୱଜ୍ଞାନ ହେଲେ, ସେପରି ଉପଲବ୍ଧ ହେଉ ନାହିଁ; କାରଣ, ବିଚାର କରିବା ସମୟରେ ମଧ୍ୟ ତାହା ନାଶବାନ୍ ଓ କ୍ଷଣଭଙ୍ଗୁର ବୋଲି ଜାଣିହେଉଛି ତଥା ତତ୍ତ୍ୱ-ଜ୍ଞାନ ଜାତ ହୋଇଯିବା ସଙ୍ଗେ ସଙ୍ଗେ ସବୁଦିନପାଇଁ ତାହାର ସମ୍ବନ୍ଧ ତୁଟିଯାଉଛି। ତତ୍ତ୍ୱ-ଜ୍ଞାନୀଙ୍କ ଦୃଷ୍ଟିରେ ତ ତାହା ଆଦୌ ରହେ ନାହିଁ। ତେଣୁ ଷୋହଳ ଶ୍ଳୋକରେ ତାହାର ବର୍ଣ୍ଣନା କ୍ଷରପୁରୁଷ ନାମରେ କରାଯାଇଛି।

**ପ୍ରଶ୍ନ –** 'ଏହାର ଆଦି, ଅନ୍ତ ଓ ସ୍ଥିତି ନାହିଁ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହି କଥନଦ୍ୱାରା ସଂସାରବୃକ୍ଷକୁ ଅନିର୍ବଚନୀୟ ବୋଲି କୁହାଯାଇଛି। କହିବାର ଅଭିପ୍ରାୟ ଏହି ଯେ, ଏହି ସଂସାର କଳ୍ପର ଆରମ୍ଭରେ ଉତ୍ପନ୍ନ ହୋଇ କଳ୍ପର ଅନ୍ତରେ ଲୀନ ହୋଇଯାଏ; ଏହିପରି ଆଦି-ଅନ୍ତ ପ୍ରସିଦ୍ଧ ହୋଇଥିଲେ ମଧ୍ୟ, ଏହାର ଏପରି ପ୍ରକଟ ହେବା ଓ ଲୟ ହେବାର ପରମ୍ପରା କେବେ ଆରମ୍ଭ ହେଲା ଓ କେବେଯାଏ ଚାଲୁରହିବ, ତାହାର ଠିକଣା ନାହିଁ। ସ୍ଥିତିକାଳରେ ମଧ୍ୟ ଏହା ନିରନ୍ତର ପରିବର୍ତ୍ତିତ ହେଉଛି। ଯେଉଁ ରୂପ କ୍ଷଣକ ପୂର୍ବେ ଥିଲା, ସେହି ରୂପ କ୍ଷଣକ ପରେ ରହୁ ନାହିଁ। ଏହିପରିଭାବରେ ଏହି ସଂସାରବୃକ୍ଷର ଆଦି, ଅନ୍ତ ଓ ସ୍ଥିତି– ତିନୋଟିଯାକ ଉପଲବ୍ଧ ହୁଏ ନାହିଁ।

**ପ୍ରଶ୍ନ –** ଏହି ସଂସାରବୃକ୍ଷକୁ **ସୁବିରୂଢମୂଳ** କହିବାର ଅଭିପ୍ରାୟ କ'ଣ ତଥା **ଅସଙ୍ଗ-ଶସ୍ତ୍ର** କ'ଣ ଓ ତାହାଦ୍ୱାରା ସଂସାରବୃକ୍ଷକୁ ଛେଦନ କରିବା କ'ଣ ?

**ଉତ୍ତର –** ଏହି ସଂସାରବୃକ୍ଷର ଯେଉଁ ଅବିଦ୍ୟାମୂଳକ ଅହଂତ୍ୱ, ମମତ୍ୱ ଓ ବାସନାରୂପକ ମୂଳମାନ ରହିଛି, ସେଗୁଡ଼ିକ ଅନାଦି କାଳରୁ ପୁଷ୍ଟ ହୋଇ ରହିଥିବାରୁ ଅତ୍ୟନ୍ତ ଦୃଢ଼ ହୋଇଯାଇଛି। ଅତଏବ ସେହି ମୂଳକୁ କାଟି ନ ଦେବାପର୍ଯ୍ୟନ୍ତ ଏହି ସଂସାରବୃକ୍ଷର ଉଚ୍ଛେଦ ହୋଇ ନ ପାରେ। ବୃକ୍ଷପରି ଉପରୁ କାଟିଦେଲେ ମଧ୍ୟ ଅର୍ଥାତ୍ ବାହାର ସମ୍ବନ୍ଧ ତ୍ୟାଗ କରିଦେଲେ ମଧ୍ୟ, ଯେତେବେଳଯାଏ ଅହଂତ୍ୱ, ମମତ୍ୱ ଓ ବାସନା ତ୍ୟାଗ ନ ହୋଇଛି, ସେତେବେଳଯାଏ ସଂସାରବୃକ୍ଷର ଉଚ୍ଛେଦ ହୋଇପାରିବ ନାହିଁ। ଏହି ଭାବ ଦେଖାଇବାପାଇଁ ତଥା ତାହାର ଚେରମାନଙ୍କୁ ଉଚ୍ଛେଦ କରିବା ବଡ଼ ଦୁଷ୍କର ବୋଲି ଦେଖାଇବାପାଇଁ ମଧ୍ୟ ସେହି ବୃକ୍ଷକୁ ଅତି ଦୃଢ଼ମୂଳଯୁକ୍ତ ବୋଲି କୁହାଯାଇଛି। ବିବେକଦ୍ୱାରା ସମସ୍ତ ସଂସାରକୁ ନାଶବାନ୍ ଓ କ୍ଷଣିକ ବୋଲି ବୁଝିପାରି ଇହଲୋକ ଓ ପରଲୋକର ସ୍ତ୍ରୀ, ପୁତ୍ର, ଧନ, ଗୃହ ତଥା ମାନ, ସମ୍ମାନ, ପ୍ରତିଷ୍ଠା ଓ ସ୍ୱର୍ଗ ଆଦି ସମସ୍ତ ଭୋଗରେ ସୁଖ, ପ୍ରୀତି ଓ ରମଣୀୟତାର ଆଭାସ ନ ହେବା, ସେଥିରେ ଆସକ୍ତିର ସର୍ବଥା ଅଭାବ ହେବା ହିଁ ଦୃଢ଼ବୈରାଗ୍ୟ। ତାହାରି ନାମ ଏଠାରେ **ଅସଙ୍ଗ-ଶସ୍ତ୍ର**। ଏହି ଅସଙ୍ଗ-ଶସ୍ତ୍ରଦ୍ୱାରା ଚରାଚର ସମସ୍ତ ସଂସାରର ଚିନ୍ତନ ତ୍ୟାଗ କରିଦେବା, ସେଥିରୁ ଉପରତ ହୋଇଯିବା ଏବଂ ଅହଂତ୍ୱ, ମମତ୍ୱ ଓ ବାସନାରୂପକ ମୂଳମାନଙ୍କୁ ଉଚ୍ଛେଦ କରିଦେବା ହିଁ ସଂସାରବୃକ୍ଷକୁ ଦୃଢ଼ବୈରାଗ୍ୟରୂପକ ଶସ୍ତ୍ରଦ୍ୱାରା ସମୂଳେ ଉଚ୍ଛେଦ କରିଦେବା।

**ସମ୍ବନ୍ଧ –** *ଏହିପରି ବୈରାଗ୍ୟରୂପୀ ଶସ୍ତ୍ରଦ୍ୱାରା ସଂସାରବୃକ୍ଷକୁ ଛେଦନ କରି କ'ଣ କରିବା ଉଚିତ, ବର୍ତ୍ତମାନ ତାହା କହୁଛନ୍ତି–*

## ତତଃ ପଦଂ ତତ୍ପରିମାର୍ଗିତବ୍ୟଂ ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ।
## ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ॥ ୪ ॥

**ଅନ୍ୱୟ –** **ତତଃ** = ତା'ପରେ; **ତତ୍** = ସେହି; **ପଦମ୍** = ପରମପଦରୂପକ ପରମେଶ୍ୱରଙ୍କୁ; **ପରିମାର୍ଗିତବ୍ୟମ୍** = ଭଲଭାବରେ ଖୋଜିବା ଉଚିତ; **ଯସ୍ମିନ୍** = ଯାହାଙ୍କ ଠାରେ; **ଗତାଃ** = ପ୍ରବେଶ କରିଥିବା ପୁରୁଷମାନେ; **ଭୂୟଃ** = ପୁଣି; **ନ, ନିବର୍ତ୍ତନ୍ତି** = ସଂସାରକୁ ଫେରି ଆସନ୍ତି ନାହିଁ; **ଚ** = ଏବଂ; **ଯତଃ** = ଯେଉଁ ପରମେଶ୍ୱରଙ୍କ ଠାରୁ (ଏହି); **ପୁରାଣୀ** = ପୁରାତନ; **ପ୍ରବୃତ୍ତିଃ** = ସଂସାରବୃକ୍ଷର ପ୍ରବୃତ୍ତି (ପରମ୍ପରା); **ପ୍ରସୃତା** = ପ୍ରସାରିତ ହୋଇଛି; **ତମ୍** = ସେହି;

ଆଦ୍ୟମ୍ ପୁରୁଷମ୍, ଏବ = ଆଦି ପୁରୁଷ ନାରାୟଣଙ୍କୁ (ହିଁ); ପ୍ରପଦ୍ୟେ = ମୁଁ ଶରଣ ନେଉଛି (ବୋଲି ଦୃଢ଼ ନିଶ୍ଚୟ କରି ସେହି ପରମେଶ୍ୱରଙ୍କ ମନନ ଓ ନିଦିଧ୍ୟାସନ କରିବା ଉଚିତ।)

**ତା'ପରେ ଯାହାଙ୍କୁ ପାଇଲେ ପୁରୁଷମାନେ ପୁଣି ସଂସାରକୁ ଫେରି ଆସନ୍ତି ନାହିଁ, ସେହି ପରମପଦରୂପକ ପରମେଶ୍ୱରଙ୍କୁ ଭଲଭାବରେ ଖୋଜିବା ଉଚିତ ଏବଂ ଯେଉଁ ପରମେଶ୍ୱରଙ୍କ ଠାରୁ ଏହି ପୁରାତନ ସଂସାରବୃକ୍ଷର ପ୍ରବୃତ୍ତି ବିସ୍ତାରିତ ହୋଇଛି, 'ମୁଁ ସେହି ଆଦିପୁରୁଷ ନାରାୟଣଙ୍କ ଶରଣ ନେଉଛି' ବୋଲି ଦୃଢ଼ ନିଶ୍ଚୟ କରି ସେହି ପରମେଶ୍ୱରଙ୍କର ହିଁ ମନନ ଓ ନିଦିଧ୍ୟାସନ କରିବା ଉଚିତ॥ ୪ ॥**

**ପ୍ରଶ୍ନ –** ସେହି ପରମପଦ କ'ଣ ଓ ତାହାକୁ ଖୋଜିବା କ'ଣ ?

**ଉତ୍ତର –** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଯାହାଙ୍କୁ ଊର୍ଦ୍ଧ୍ୱ କୁହାଯାଇଛି, ଚତୁର୍ଦ୍ଦଶ ଅଧ୍ୟାୟର ଛବିଶ ଶ୍ଳୋକରେ ଯାହାଙ୍କୁ ମାମ୍ ପଦଦ୍ୱାରା ଓ ସତେଇଶ ଶ୍ଳୋକରେ ଅହମ୍ ପଦଦ୍ୱାରା କୁହାଯାଇଛି ଏବଂ ଅନ୍ୟାନ୍ୟ ସ୍ଥଳରେ ଯାହାଙ୍କୁ କେଉଁଠି ପରମପଦ, କେଉଁଠି ଅବ୍ୟୟପଦ ଓ କେଉଁଠି ପରମଗତି ତଥା କେଉଁଠି ପରମଧାମ ନାମରେ ମଧ୍ୟ କୁହାଯାଇଛି, ତାହାଙ୍କୁ ଏଠାରେ ପରମପଦ ନାମରେ କୁହାଯାଇଛି। ସେହି ସର୍ବଶକ୍ତିମାନ୍, ସର୍ବାଧାର ପରମେଶ୍ୱରଙ୍କୁ ପ୍ରାପ୍ତି କରିବା ଇଚ୍ଛାରେ ବାରମ୍ବାର ତାଙ୍କର ଗୁଣ ଓ ପ୍ରଭାବ ସହିତ ସ୍ୱରୂପର ମନନ ଓ ନିଦିଧ୍ୟାସନଦ୍ୱାରା ଅନୁସନ୍ଧାନ କରିବା ହିଁ ସେହି ପରମାତ୍ମାଙ୍କୁ ଖୋଜିବା। ଅଭିପ୍ରାୟ ଏହି ଯେ, ତୃତୀୟ ଶ୍ଳୋକରେ କୁହାଯାଇଥିବା ବିଧାନ ଅନୁସାରେ ବିବେକପୂର୍ବକ ବୈରାଗ୍ୟଦ୍ୱାରା ସଂସାରରୁ ସର୍ବଥା ଉପରତ ହୋଇ ସେହି ପରମପଦସ୍ୱରୂପ ପରମେଶ୍ୱରଙ୍କୁ ପାଇବାପାଇଁ ମନନ ଓ ନିଦିଧ୍ୟାସନଦ୍ୱାରା ମନୁଷ୍ୟ ତାଙ୍କର ଅନୁସନ୍ଧାନ କରିବା ଉଚିତ।

**ପ୍ରଶ୍ନ –** 'ଯାହାଙ୍କ ଠାରେ ପ୍ରବେଶ କରିଥିବା ପୁରୁଷମାନେ ପୁଣି ସଂସାରକୁ ଫେରନ୍ତି ନାହିଁ' – ଏହି କଥନର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଇଛନ୍ତି, "ପୂର୍ବବାକ୍ୟରେ ଯେଉଁ ପରମପଦର ଅନୁସନ୍ଧାନ କରିବା ପାଇଁ କୁହାଯାଇଛି, ମୁଁ ହିଁ ସେହି ପରମପଦ।" ଅଭିପ୍ରାୟ ଏହି ଯେ, ଯେଉଁ ସର୍ବଶକ୍ତିମାନ୍, ସର୍ବାଧାର, ସମସ୍ତଙ୍କର ଧାରଣ-ପୋଷଣକାରୀ ପୁରୁଷୋତ୍ତମଙ୍କୁ ପ୍ରାପ୍ତ ହେବା ପରେ ମନୁଷ୍ୟ ଆଉ ସେଠାରୁ ଲେଉଟେ ନାହିଁ, ସେହି ପରମେଶ୍ୱରଙ୍କୁ ଏଠାରେ 'ପରମପଦ' ନାମରେ କୁହାଯାଇଛି। ଏହି କଥା ଅଷ୍ଟମ ଅଧ୍ୟାୟର ଏକୋଇଶ ଶ୍ଳୋକରେ ମଧ୍ୟ କୁହାଯାଇଛି।

**ପ୍ରଶ୍ନ –** 'ଯାହାଦ୍ୱାରା ଏହି ପୁରାତନ ସଂସାରବୃକ୍ଷର ପ୍ରବୃତ୍ତି ଅର୍ଥାତ୍ ପରମ୍ପରା ବିସ୍ତାରିତ ହୋଇଛି' – ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ଆଦିପୁରୁଷ ପରମେଶ୍ୱରଙ୍କ ଠାରୁ ଏହି ସଂସାରବୃକ୍ଷର ଅନାଦି ପରମ୍ପରା ଚାଲିଆସିଛି ଓ ଯାହାଙ୍କ ଠାରୁ ଏହା ଉତ୍ପନ୍ନ ହୋଇ ବିସ୍ତାରିତ ହୋଇଛି, ତାଙ୍କରି ଶରଣ ନେଲେ ସବୁଦିନପାଇଁ ଏହି ସଂସାରବୃକ୍ଷର ସମ୍ବନ୍ଧ ତୁଟିଯାଇ ଆଦିପୁରୁଷ ପରମାତ୍ମାଙ୍କୁ ପ୍ରାପ୍ତ କରାଯାଇପାରିବ।

**ପ୍ରଶ୍ନ – ତମ୍ ଓ ଆଦ୍ୟମ୍ –** ଏହି ଦୁଇ ପଦ ସହିତ **ପୁରୁଷମ୍** ପଦ କାହାର ବାଚକ ଓ **ପ୍ରପଦ୍ୟେ** କ୍ରିୟା ପ୍ରୟୋଗ କରି ଏଠାରେ କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର – ତମ୍ ଓ ଆଦ୍ୟମ୍ –** ଏହି ଦୁଇ ପଦ ସହିତ **ପୁରୁଷମ୍** ପଦ ହେଉଛି ସେହି ପୁରୁଷୋତ୍ତମ ଭଗବାନଙ୍କର ବାଚକ, ଯାହାଙ୍କର ବର୍ଣ୍ଣନା ପ୍ରଥମେ ତତ୍ ଓ **ପଦମ୍**ଦ୍ୱାରା କରାଯାଇଛି ଏବଂ ଯାହାଙ୍କର ମାୟାଶକ୍ତିଦ୍ୱାରା ଏହି ଚିରକାଳୀନ ସଂସାରବୃକ୍ଷର ଉତ୍ପତ୍ତି ଓ ବିସ୍ତାର ହୁଏ ବୋଲି କୁହାଯାଇଛି। **ପ୍ରପଦ୍ୟେ** କ୍ରିୟାର ଅର୍ଥ "ମୁଁ ତାଙ୍କର ଶରଣ ନେଉଛି।" ଅତଏବ ଏହା ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ସେହି ପରମପଦସ୍ୱରୂପ ପରମେଶ୍ୱରଙ୍କ ଆଶ୍ରୟ ଗ୍ରହଣ କରି ତାଙ୍କୁ ଅନୁସନ୍ଧାନ କରିବା ଉଚିତ। ଅଭିପ୍ରାୟ ଏହି ଯେ, ନିଜ ଭିତରେ ଟିକିଏ ବି ଅଭିମାନ ଆସିବାକୁ ନ ଦେଇ ଏବଂ ସବୁପ୍ରକାରେ ଅନନ୍ୟ ଆଶ୍ରୟପୂର୍ବକ ଏକ ପରମେଶ୍ୱରଙ୍କ ଉପରେ ହିଁ ପୂର୍ଣ୍ଣ ବିଶ୍ୱାସ ରଖି ତାଙ୍କରି ଭରସାରେ ଉପରୋକ୍ତପ୍ରକାରେ ତାଙ୍କର ଅନୁସନ୍ଧାନ କରି ରହିବା ଉଚିତ।

**ପ୍ରଶ୍ନ –** ଏବ ଅବ୍ୟୟ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଏବ ଅବ୍ୟୟ ପ୍ରୟୋଗ କରି ଦେଖାଇଛନ୍ତି ଯେ, ତାଙ୍କୁ ପାଇବାକୁ ହେଲେ, ଏକମାତ୍ର ସେହି ପରମେଶ୍ୱରଙ୍କର ହିଁ ଶରଣ ନେବା ଉଚିତ।

**ସମ୍ବନ୍ଧ –** ବର୍ତ୍ତମାନ ଉପରୋକ୍ତପ୍ରକାରେ ଆଦିପୁରୁଷ ପରମପଦସ୍ୱରୂପ ପରମେଶ୍ୱରଙ୍କ ଶରଣ ନେଇ ତାଙ୍କୁ ପାଇଥିବା ପୁରୁଷଙ୍କର ଲକ୍ଷଣ କହୁଛନ୍ତି–

## ନିର୍ମାନମୋହା ଜିତସଙ୍ଗଦୋଷା ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
## ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈର୍ଗଚ୍ଛନ୍ତ୍ୟମୂଢାଃ ପଦମବ୍ୟୟଂ ତତ୍ ।। ୫ ।।

**ଅନ୍ୱୟ –** **ନିର୍ମାନମୋହାଃ** = ଯେଉଁମାନଙ୍କର ମାନ ଓ ମୋହ ନଷ୍ଟ ହୋଇଯାଇଛି; **ଜିତସଙ୍ଗଦୋଷାଃ** = ଯେଉଁମାନେ ଆସକ୍ତିରୂପକ ଦୋଷକୁ ଜୟ କରିନେଇଛନ୍ତି; **ଅଧ୍ୟାତ୍ମନିତ୍ୟାଃ** = ଯେଉଁମାନେ ପରମାତ୍ମାଙ୍କ ସ୍ୱରୂପରେ ନିତ୍ୟସ୍ଥିତ ଅଛନ୍ତି; **ବିନିବୃତ୍ତକାମାଃ** = ଯେଉଁମାନଙ୍କର କାମନା ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି (ସେହି); **ସୁଖଦୁଃଖସଂଜ୍ଞୈଃ** = ସୁଖ-ଦୁଃଖନାମକ; **ଦ୍ୱନ୍ଦ୍ୱୈଃ** = ଦ୍ୱନ୍ଦ୍ୱମାନଙ୍କରୁ; **ବିମୁକ୍ତାଃ** = ବିମୁକ୍ତ; **ଅମୂଢାଃ** = ଜ୍ଞାନୀମାନେ; **ତତ୍** = ସେହି; **ଅବ୍ୟୟମ୍** = ଅବିନାଶୀ; **ପଦମ୍** = ପରମପଦକୁ; **ଗଚ୍ଛନ୍ତି** = ପ୍ରାପ୍ତ ହୁଅନ୍ତି ।

**ଯେଉଁମାନଙ୍କର ମାନ ଓ ମୋହ ନଷ୍ଟ ହୋଇଯାଇଛି, ଯେଉଁମାନେ ଆସକ୍ତିରୂପକ ଦୋଷକୁ ଜୟ କରିଛନ୍ତି, ଯେଉଁମାନେ ପରମାତ୍ମାଙ୍କ ସ୍ୱରୂପରେ ନିତ୍ୟସ୍ଥିତ ଓ ଯେଉଁମାନଙ୍କର ସମସ୍ତକାମନା ସଂପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି, ସୁଖ-ଦୁଃଖ ନାମକ ଦ୍ୱନ୍ଦ୍ୱମାନଙ୍କରୁ ବିମୁକ୍ତ ସେହି ଜ୍ଞାନୀମାନେ ସେହି ଅବିନାଶୀ ପରମପଦ ପ୍ରାପ୍ତ ହୁଅନ୍ତି ।। ୫ ।।**

**ପ୍ରଶ୍ନ –** **ନିର୍ମାନମୋହାଃ**ର ଅଭିପ୍ରାୟ କ'ଣ ?

**ଉତ୍ତର –** 'ମାନ' ଶବ୍ଦ ଏଠାରେ ମାନ, ବଡ଼ପଣିଆ ଓ ପ୍ରତିଷ୍ଠାର ବାଚକ ଏବଂ 'ମୋହ' ଶବ୍ଦ ଅବିବେକ, ବିପର୍ଯ୍ୟୟଜ୍ଞାନ ଓ ଭ୍ରମ ଆଦି ତମୋଗୁଣର ଭାବମାନଙ୍କ ବାଚକ। ଏହି ଉଭୟର ଜବଳରୁ ଯେଉଁମାନେ ମୁକ୍ତ, ଅର୍ଥାତ୍ ଜାତି, ଗୁଣ, ଐଶ୍ୱର୍ଯ୍ୟ ଓ ବିଦ୍ୟା ଆଦି ନେଇ ନିଜ ଭିତରେ ସାମାନ୍ୟ ବି ବଡ଼ିମା ଭାବନା ରଖନ୍ତି ନାହିଁ ଏବଂ ଯେଉଁମାନଙ୍କର ମାନ, ବଡ଼ିମା ବା ପ୍ରତିଷ୍ଠା ସହିତ ତଥା ଅବିବେକ ଓ ଭ୍ରମ ଆଦି ତମୋଗୁଣର ଭାବ ସହିତ ଲେଶମାତ୍ର ସମ୍ବନ୍ଧ ନାହିଁ, ସେପରି ପୁରୁଷମାନଙ୍କୁ **ନିର୍ମାନମୋହାଃ** କହନ୍ତି ।

**ପ୍ରଶ୍ନ –** **ଜିତସଙ୍ଗଦୋଷାଃ**ର ଭାବ କ'ଣ ?

**ଉତ୍ତର –** ଏଠାରେ **ସଙ୍ଗ** ଶବ୍ଦ ଆସକ୍ତିର ବାଚକ। ଏହି ଆସକ୍ତିରୂପକ ଦୋଷକୁ ଯେଉଁମାନେ ସବୁଦିନପାଇଁ ଜୟ କରିନେଇଛନ୍ତି, ଯେଉଁମାନଙ୍କର ଇହଲୋକ ଓ ପରଲୋକର ଭୋଗମାନଙ୍କରେ ଟିକିଏ ବି ଆସକ୍ତି ରହି ନାହିଁ, ବିଷୟଭୋଗ ସହିତ ସମ୍ପର୍କ ଥାଇ ମଧ୍ୟ ଯେଉଁମାନଙ୍କ ଅନ୍ତଃକରଣରେ କୌଣସିପ୍ରକାର ବିକାର ଜାତ ହୋଇପାରେ ନାହିଁ, ସେପରି ପୁରୁଷମାନଙ୍କୁ **ଜିତସଙ୍ଗଦୋଷାଃ** କହନ୍ତି ।

**ପ୍ରଶ୍ନ –** **ଅଧ୍ୟାତ୍ମନିତ୍ୟାଃ**ର ଭାବ କ'ଣ ?

**ଉତ୍ତର –** ଏଠାରେ **ଅଧ୍ୟାତ୍ମ** ଶବ୍ଦ ପରମାତ୍ମାଙ୍କ ସ୍ୱରୂପର ବାଚକ। ଅତଏବ ପରମାତ୍ମାଙ୍କ ସ୍ୱରୂପରେ ଯେଉଁମାନଙ୍କର ନିତ୍ୟସ୍ଥିତି ହୋଇଗଲାଣି, ଯେଉଁମାନଙ୍କର କ୍ଷଣକପାଇଁ ମଧ୍ୟ ପରମାତ୍ମାଙ୍କ ଠାରୁ ବିୟୋଗ ହୁଏ ନାହିଁ ଏବଂ ଯାହାଙ୍କର ସ୍ଥିତି ସର୍ବଦା ଅଟଳ ରହିଥାଏ, ସେପରି ପୁରୁଷମାନଙ୍କୁ **ଅଧ୍ୟାତ୍ମନିତ୍ୟାଃ** କହନ୍ତି ।

**ପ୍ରଶ୍ନ –** **ବିନିବୃତ୍ତକାମାଃ**ର ଭାବ କ'ଣ ?

**ଉତ୍ତର –** ଏଠାରେ **କାମ** ଶବ୍ଦ ସବୁପ୍ରକାରର ଇଚ୍ଛା, ତୃଷ୍ଣା, ଅପେକ୍ଷା, ବାସନା ଓ ସ୍ପୃହା ଆଦି ନ୍ୟୂନାଧିକ ଭେଦରେ ବର୍ଣ୍ଣନା କରାଯାଇଥିବା ମନୋବୃତ୍ତିରୂପକ କାମନାର ବାଚକ। ଅତଏବ ଯେଉଁମାନଙ୍କର ସକଳପ୍ରକାର କାମନା ସର୍ବଥା ନଷ୍ଟ ହୋଇଗଲାଣି, ଯେଉଁମାନଙ୍କ ଠାରେ ଇଚ୍ଛା, କାମନା, ତୃଷ୍ଣା ବା ବାସନା ଆଦି ଲେଶମାତ୍ର ବି ରହି ନାହିଁ, ସେପରି ପୁରୁଷମାନଙ୍କୁ **ବିନିବୃତ୍ତକାମାଃ** କହନ୍ତି ।

**ପ୍ରଶ୍ନ –** ସୁଖ-ଦୁଃଖ ନାମକ ଦ୍ୱନ୍ଦ୍ୱ କ'ଣ ଓ ସେଥିରୁ ବିମୁକ୍ତ ହେବା କ'ଣ ?

**ଉତ୍ତର –** ସୁଖ ଓ ଦୁଃଖରେ ହେତୁ ହେଉଥିବା ଶୀତ-ଉଷ୍ଣ, ପ୍ରିୟ-ଅପ୍ରିୟ, ମାନ-ଅପମାନ, ସ୍ତୁତି-ନିନ୍ଦା ଇତ୍ୟାଦି ଦ୍ୱନ୍ଦ୍ୱମାନଙ୍କୁ ସୁଖ-ଦୁଃଖ ନାମକ ଦ୍ୱନ୍ଦ୍ୱ କୁହାଯାଏ। ଏସବୁ ସହିତ ଟିକିଏ ବି ସମ୍ବନ୍ଧ ନ ରଖିବା ଅର୍ଥାତ୍ କୌଣସି ବି ଦ୍ୱନ୍ଦ୍ୱର ସଂଯୋଗ-ବିୟୋଗରେ ଟିକିଏ ବି ରାଗ-ଦ୍ୱେଷ, ହର୍ଷ-ଶୋକାଦି ବିକାର ନ ହେବା ହିଁ ଏସବୁ ଦ୍ୱନ୍ଦ୍ୱରୁ ସର୍ବଥା ମୁକ୍ତ ହୋଇଯିବା। ତେଣୁ ଏପରି ପୁରୁଷଙ୍କୁ ସୁଖଦୁଃଖ ନାମକ ଦ୍ୱନ୍ଦ୍ୱରୁ ବିମୁକ୍ତ ବୋଲି କହନ୍ତି ।

**ପ୍ରଶ୍ନ –** ଅମୂଢ଼ାଃ ପଦର ଭାବ କ'ଣ ?

**ଉତ୍ତର – ଅମୂଢ଼ାଃ** ପଦଟି ହେଉଛି ଯେଉଁମାନଙ୍କ ଠାରେ ମୂଢ଼ତା ବା ଅଜ୍ଞାନ ସର୍ବଥା ନାଶ ହୋଇଯାଇଛି, ସେହିସବୁ ଜ୍ଞାନୀ ମହାତ୍ମାମାନଙ୍କର ବାଚକ। ଏହା ହେଉଛି, ଉପରୋକ୍ତ ସମସ୍ତ ବିଶେଷଣର ବିଶେଷ୍ୟ। ଏହା ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, **ନିର୍ମାନମୋହାଃ** ଆଦି ସମସ୍ତ ଗୁଣସମ୍ପନ୍ନ ଯେଉଁ ଜ୍ଞାନୀମାନେ ଅଛନ୍ତି, ସେମାନେ ହିଁ ପରମପଦକୁ ପ୍ରାପ୍ତ ହୁଅନ୍ତି।

**ପ୍ରଶ୍ନ –** ସେହି ଅବିନାଶୀ ପରମପଦ କ'ଣ ଓ ତାହାକୁ ପ୍ରାପ୍ତ ହେବା କ'ଣ ?

**ଉତ୍ତର –** ଚତୁର୍ଥ ଶ୍ଳୋକରେ ଯେଉଁ ପଦକୁ ଅନୁସନ୍ଧାନ କରିବାପାଇଁ ଓ ଯେଉଁ ଆଦିପୁରୁଷଙ୍କର ଶରଣ ନେବାପାଇଁ କୁହାଯାଇଛି, ଅବିନାଶୀ ପରମପଦ ହେଉଛି ସେହି ସର୍ବଶକ୍ତିମାନ୍, ସର୍ବାଧାର, ପରମେଶ୍ୱରଙ୍କ ବାଚକ। ସେହି ପରମେଶ୍ୱରଙ୍କ ମାୟାଦ୍ୱାରା ବିସ୍ତାରିତ ଏହି ସଂସାରବୃକ୍ଷରୁ ସର୍ବଥା ଅତୀତ ସେହି ପରମପଦସ୍ୱରୂପ ପରମେଶ୍ୱରଙ୍କୁ ପାଇବା ହିଁ ଅବ୍ୟୟ ପଦକୁ ପାଇବା।

***ସମ୍ବନ୍ଧ –** ଉପରୋକ୍ତ ଲକ୍ଷଣସମ୍ପନ୍ନ ପୁରୁଷ ଯାହାକୁ ପାଆନ୍ତି, ସେହି ଅବିନାଶୀ ପଦ କିପରି ? ଏହି ଜିଜ୍ଞାସାର ଉତ୍ତରରେ ସେହି ପରମେଶ୍ୱରଙ୍କ ସ୍ୱରୂପଭୂତ ପରମପଦର ମହିମା କହୁଛନ୍ତି–*

## ନ ତଦ୍‌ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ। *
## ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ॥ ୬ ॥

**ଅନ୍ୱୟ –** **ତଦ୍** = ସେହି (ସ୍ୱୟଂପ୍ରକାଶ ପରମପଦକୁ); **ସୂର୍ଯ୍ୟଃ** = ସୂର୍ଯ୍ୟ; **ନ, ଭାସୟତେ** = ପ୍ରକାଶିତ କରିପାରେ ନାହିଁ; **ନ** = ନା; **ଶଶାଙ୍କଃ** = ଚନ୍ଦ୍ର (ଓ); **ନ** = ନା; **ପାବକଃ** = ଅଗ୍ନି ବି; (କେହି ପ୍ରକାଶିତ କରିପାରେ ନାହିଁ) **ଯଦ୍** = ଯେଉଁ ପରମପଦକୁ; **ଗତ୍ୱା** = ପ୍ରାପ୍ତ ହୋଇ (ମନୁଷ୍ୟ); **ନ, ନିବର୍ତ୍ତନ୍ତେ** = ସଂସାରକୁ ଫେରିଆସନ୍ତି ନାହିଁ; **ତତ୍** = ତାହା ହିଁ; **ମମ** = ମୋର; **ପରମମ୍, ଧାମ** = ପରମଧାମ।

**ସେହି ସ୍ୱୟଂପ୍ରକାଶ ପରମପଦକୁ ସୂର୍ଯ୍ୟ ପ୍ରକାଶିତ କରିପାରେ ନାହିଁ, କି ନା ଚନ୍ଦ୍ର, ନା ଅଗ୍ନି କେହି ପ୍ରକାଶିତ କରିପାରନ୍ତି ନାହିଁ। ସେହି ଯେଉଁ ପରମପଦ ପ୍ରାପ୍ତ ହେଲେ ମନୁଷ୍ୟକୁ ଆଉ ସଂସାରକୁ ଫେରି ଆସିବାକୁ ପଡ଼େ ନାହିଁ, ତାହା ହିଁ ମୋର ପରମଧାମ॥ ୬ ॥**

**ପ୍ରଶ୍ନ –** 'ସେହି ଯେଉଁ ପରମପଦକୁ ପାଇଲେ ମନୁଷ୍ୟକୁ ପୁଣି ସଂସାରକୁ ଫେରି ଆସିବାକୁ ପଡେ ନାହିଁ, ତାହା ମୋର ପରମଧାମ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ମୋର ଯେଉଁ ନିତ୍ୟଧାମ ରହିଛି, ତାହା ସଚ୍ଚିଦାନନ୍ଦମୟ, ଦିବ୍ୟ, ଚେତନ ଓ ମୋର ହିଁ ସ୍ୱରୂପ ହୋଇଥିବାରୁ ବାସ୍ତବରେ ମୋଠାରୁ ଅଭିନ୍ନ।" ଏଣୁ ଏଠାରେ **ପରମଧାମ** ଶବ୍ଦ ହେଉଛି ଭଗବାନଙ୍କର ନିତ୍ୟଧାମ ତଥା ଭଗବାନଙ୍କର ସ୍ୱରୂପ ଓ ଭାବ ଆଦି ସବୁର ବାଚକ। ଅଭିପ୍ରାୟ ଏହି ଯେ, ଯେଉଁଠି ପହଞ୍ଚିବା ପରେ ଏହି ସଂସାର-ସହିତ କେବେ ବି କୌଣସି କାଳରେ ମଧ୍ୟ କୌଣସି ଅବସ୍ଥାରେ ପୁନଃ ସମ୍ବନ୍ଧ ହୋଇପାରେନା, ତାହା ହିଁ ଭଗବାନଙ୍କର ପରମଧାମ ଅର୍ଥାତ୍ ମାୟାତୀତ ଧାମ ଓ ତାହା ହିଁ ଭଗବାନଙ୍କର ସ୍ୱରୂପ। ତାହାକୁ ଅବ୍ୟକ୍ତ, ଅକ୍ଷର ଓ ପରମଗତି ମଧ୍ୟ କହନ୍ତି (୮/୨୧)। ତାହାର ବର୍ଣ୍ଣନା କରି ଶ୍ରୁତି କହନ୍ତି–

---

* ଶ୍ରୁତି ମଧ୍ୟ କହିଛନ୍ତି –

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ।
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି॥ (କଠୋପନିଷଦ ୨/୨/୧୫)

ଅର୍ଥାତ୍ 'ସେଠି ପରବ୍ରହ୍ମ ପରମାତ୍ମାଙ୍କୁ ସୂର୍ଯ୍ୟ ପ୍ରକାଶିତ କରିପାରେ ନାହିଁ, ଚନ୍ଦ୍ରମା ନୁହେଁ, କି ତାରାଗଣ ନୁହନ୍ତି, କି ବିଦ୍ୟୁତ୍ ନୁହେଁ, କେହି ତାହାକୁ ପ୍ରକାଶିତ କରିପାରେ ନାହିଁ। ଯେଉଁଠି ତାହାଙ୍କୁ ସୂର୍ଯ୍ୟାଦି ପ୍ରକାଶିତ କରିପାରନ୍ତି ନାହିଁ, ଏହି ଲୌକିକ ଅଗ୍ନି ବା କ'ଣ? କାରଣ ଏ ସମସ୍ତେ ତାଙ୍କ ଦ୍ୱାରା ପ୍ରକାଶିତ ହେବେ ହିଁ ତାଙ୍କ ପରେ ପ୍ରକାଶିତ ହୁଅନ୍ତି ଓ ତାଙ୍କ ପ୍ରକାଶଦ୍ୱାରା ହିଁ ଏସବୁ ପ୍ରକାଶିତ ହୁଏ।

'ଯତ୍ର ନ ସୂର୍ଯ୍ୟସ୍ତପତି ଯତ୍ର ନ ବାୟୁର୍ବାତି ଯତ୍ର ନ ଚନ୍ଦ୍ରମା ଭାତି ଯତ୍ର ନ ନକ୍ଷତ୍ରାଣି ଭାନ୍ତି ଯତ୍ର ନାଗ୍ନିର୍ଦହତି ଯତ୍ର ନ ମୃତ୍ୟୁଃ ପ୍ରବିଶତି ଯତ୍ର ନ ଦୁଃଖାନି ପ୍ରବିଶନ୍ତି ସଦାନନ୍ଦଂ ପରମାନନ୍ଦଂ ଶାନ୍ତଂ ଶାଶ୍ୱତଂ ସଦାଶିବଂ ବ୍ରହ୍ମାଦିବନ୍ଦିତଂ ଯୋଗିଧ୍ୟେୟଂ ପରଂ ପଦଂ ଯତ୍ର ଗତ୍ୱା ନ ନିବର୍ତ୍ତନ୍ତେ ଯୋଗିନଃ ।' (ବୃହଜ୍ଜାବାଲ. ଉ. ୮/୬))

ଅର୍ଥାତ୍ 'ଯେଉଁଠି ସୂର୍ଯ୍ୟ ଉତ୍ତାପ ଦେଇପାରେ ନାହିଁ, ବାୟୁ ବହିପାରେ ନାହିଁ, ଯେଉଁଠି ଚନ୍ଦ୍ରମା ପ୍ରକାଶିତ ହୋଇପାରେ ନାହିଁ, ଯେଉଁଠି ତାରାମାନେ ଚମକନ୍ତି ନାହିଁ, ଯେଉଁଠି ଅଗ୍ନି ଜଳେ ନାହିଁ, ଯେଉଁଠି ମୃତ୍ୟୁ ପ୍ରବେଶ କରିପାରେ ନାହିଁ, ଯେଉଁଠି ଦୁଃଖ ପ୍ରବେଶ କରିପାରେ ନାହିଁ ଓ ଯେଉଁଠିକି ଯାଇ ଯୋଗୀମାନେ ଆଉ ଲେଉଟନ୍ତି ନାହିଁ, ତାହା ସଦାନନ୍ଦ, ପରମାନନ୍ଦ, ଶାନ୍ତ, ସନାତନ, ସଦା କଲ୍ୟାଣସ୍ୱରୂପ, ବ୍ରହ୍ମାଦି ଦେବତାମାନଙ୍କ ଦ୍ୱାରା ବନ୍ଦିତ, ଯୋଗୀମାନଙ୍କର ଧ୍ୟେୟ ପରମପଦ ଅଟେ ।'

**ପ୍ରଶ୍ନ –** ଏଠାରେ ତତ୍ ପଦ କାହାର ବାଚକ ତଥା 'ତାହାଙ୍କୁ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ପ୍ରକାଶିତ କରିପାରନ୍ତି ନାହିଁ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ ତତ୍ ପଦଟି ହେଉଛି ସେହି ଅବିନାଶୀ ପଦ ନାମରେ କଥିତ ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମଙ୍କ ବାଚକ ଏବଂ 'ସୂର୍ଯ୍ୟ, ଚନ୍ଦ୍ରମା ଓ ଅଗ୍ନି ତାହାଙ୍କୁ ପ୍ରକାଶିତ କରିପାରନ୍ତି ନାହିଁ କହି ତାଙ୍କର ଅପ୍ରମେୟତା, ଅଚିନ୍ତ୍ୟତା ଓ ଅନିର୍ବଚନୀୟତା ଦର୍ଶାଯାଇଛି । ଅଭିପ୍ରାୟ ଏହି ଯେ, ସମସ୍ତ ସଂସାରକୁ ପ୍ରକାଶିତ କରୁଥିବା ସୂର୍ଯ୍ୟ, ଚନ୍ଦ୍ର, ଓ ଅଗ୍ନି ଏବଂ ଏମାନେ ଯେଉଁ ଚକ୍ଷୁ, ମନ ଓ ବାଣୀର ଦେବତା ଅଟନ୍ତି, ସେମାନଙ୍କ ମଧ୍ୟରୁ କୌଣସିଟି ମଧ୍ୟ ସେହି ପରମପଦକୁ ପ୍ରକାଶିତ କରିପାରେ ନାହିଁ। ଏଥିରୁ ବୁଝିବା ଉଚିତ ଯେ, ଏମାନଙ୍କ ବ୍ୟତୀତ ଆଉ ଯେତେ ବି ପ୍ରକାଶକ ତତ୍ତ୍ୱ ଅଛନ୍ତି, ସେମାନଙ୍କ ମଧ୍ୟରୁ କେହି ଗୋଟିଏ ବି ବା ସମସ୍ତେ ମିଶି ମଧ୍ୟ ସେହି ପରମପଦକୁ ପ୍ରକାଶିତ କରିବାରେ ସମର୍ଥ ନୁହନ୍ତି; କାରଣ, ଏସବୁ ତାଙ୍କରି ପ୍ରକାଶଦ୍ୱାରା, ତାଙ୍କରି ସତ୍ତାବଳରେ କିଛି ଅଂଶରେ ସ୍ୱୟଂ ପ୍ରକାଶିତ ହୁଅନ୍ତି (୧୫/୧୨)। ଏହା ମଧ୍ୟ ସର୍ବଥା ଯୁକ୍ତିଯୁକ୍ତ ଯେ, ନିଜର ପ୍ରକାଶକଙ୍କୁ କିଏ କିପରି ପ୍ରକାଶିତ କରିପାରେ ? ନେତ୍ର, ବାଣୀ ବା ମନ ଆଦି କେହି ତ ସେଠାରେ ପହଞ୍ଚିପାରନ୍ତି ନାହିଁ, ସେମାନେ ବା ତାଙ୍କର ବର୍ଣ୍ଣନା କରିବେ କିପରି ? ଶ୍ରୁତି ମଧ୍ୟ କହିଛନ୍ତି –

**ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।**

(ବ୍ରହ୍ମୋପନିଷଦ)

ଅର୍ଥାତ୍ 'ମନସହିତ ବାଣୀ ଯାହାଙ୍କୁ ପାଇ ନ ପାରି ଫେରି ଆସେ, ସେ ପୂର୍ଣ୍ଣବ୍ରହ୍ମ ପରମାତ୍ମା ଅଟନ୍ତି।' ଅତଏବ ସେହି ଅବିନାଶୀ ପଦ ବାଣୀ ଓ ମନ ଆଦିରୁ ଅତ୍ୟନ୍ତ ହିଁ ଅତୀତ; ତାଙ୍କର ସ୍ୱରୂପ କୌଣସିଭାବରେ ବି ବୁଝାଇଦିଆଯାଇପାରେନା ।

**ସମ୍ବନ୍ଧ –** ପ୍ରଥମରୁ ତୃତୀୟ ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ସଂସାରବୃକ୍ଷ ନାମରେ କ୍ଷର ପୁରୁଷର ବର୍ଣ୍ଣନା କଲେ। ମନୁଷ୍ୟଯୋନିରେ ଅହଂତ୍ୱ, ମମତ୍ୱ ଓ ଆସକ୍ତିପୂର୍ବକ କରାଯାଉଥିବା କର୍ମ ହିଁ ଜୀବରୂପୀ ଅକ୍ଷର ପୁରୁଷର ବନ୍ଧନର କାରଣ ବୋଲି କହିଲେ ଏବଂ ତା'ପରେ ସୃଷ୍ଟିକର୍ତ୍ତା ଆଦିପୁରୁଷଙ୍କର ଶରଣ ଗ୍ରହଣ କରିବା ହିଁ ସେହି ବନ୍ଧନରୁ ମୁକ୍ତ ହେବାର ଉପାୟ ବୋଲି ମଧ୍ୟ କହିଦେଲେ। ଏଠାରେ ପ୍ରଶ୍ନ ହେଉଛି, ଉପରୋକ୍ତଭାବରେ ବନ୍ଧା ହୋଇଥିବା ଜୀବର ସ୍ୱରୂପ କ'ଣ? ତା'ର ବାସ୍ତବିକ ସ୍ୱରୂପ କ'ଣ? ତାହାକୁ କିଏ କିପରି ଜାଣେ? ଏହିସବୁ ବିଷୟର ସ୍ପଷ୍ଟୀକରଣ ଦେବାପାଇଁ ଭଗବାନ୍ ପ୍ରଥମେ ଜୀବର ସ୍ୱରୂପ କ'ଣ, ତାହା କହୁଛନ୍ତି–

## ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।
## ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି ॥ ୭ ॥

**ଅନ୍ୱୟ –** ଜୀବଲୋକେ = ଏହି ଦେହରେ (ସ୍ଥିତ); ସନାତନଃ = ଏହି ସନାତନ; ଜୀବଭୂତଃ = ଜୀବାତ୍ମା; **ମମ** = ମୋର; ଏବ = ହିଁ; **ଅଂଶଃ** = ଅଂଶ ଅଟେ (ଓ ସେ ହିଁ); **ପ୍ରକୃତିସ୍ଥାନି** = ଏହି ପ୍ରକୃତିରେ ସ୍ଥିତ; **ମନଃଷଷ୍ଠାନି** = ମନ ଓ ପାଞ୍ଚଟି; **ଇନ୍ଦ୍ରିୟାଣି** = ଇନ୍ଦ୍ରିୟମାନଙ୍କୁ; **କର୍ଷତି** = ଆକର୍ଷଣ କରେ ।

**ଏହି ଦେହରେ ରହିଥିବା ଏହି ସନାତନ ଜୀବାତ୍ମା ମୋର ହିଁ ଅଂଶ ଅଟେ ଏବଂ ସେ ହିଁ ଏହି ପ୍ରକୃତିରେ ସ୍ଥିତ ମନ ଓ ପାଞ୍ଚଟି ଇନ୍ଦ୍ରିୟଙ୍କୁ ଆକର୍ଷଣ କରେ ॥ ୭ ॥**

**ପ୍ରଶ୍ନ—** ଜୀବଲୋକେ ପଦ କାହାର ବାଚକ? ସେଥିରେ ସ୍ଥିତ ଜୀବାତ୍ମାଙ୍କୁ ଭଗବାନ୍ ନିଜର ସନାତନ ଅଂଶ ବୋଲି କହି କେଉଁ ଭାବ ଦେଖାଉଛନ୍ତି?

**ଉତ୍ତର—** ଏଠାରେ **ଜୀବଲୋକେ** ପଦଟି ହେଉଛି ଜୀବାତ୍ମାର ନିବାସସ୍ଥାନ 'ଶରୀର'ର ବାଚକ। ସ୍ଥୂଳ, ସୂକ୍ଷ୍ମ ଓ କାରଣ— ଏପରି ତିନିପ୍ରକାର ଶରୀର ଏହାର ଅନ୍ତର୍ଭୁକ୍ତ। ଏଥିରେ ବାସ କରୁଥିବା ଜୀବାତ୍ମାଙ୍କୁ ସନାତନ ଓ ନିଜର ଅଂଶ ବୋଲି କହି ଭଗବାନ୍ ଦେଖାଇଛନ୍ତି; "କାରଣଶରୀରମାନଙ୍କରେ ସ୍ଥିତ ଜୀବସମୁଦାୟର ସୂକ୍ଷ୍ମ ଓ ସ୍ଥୂଳଶରୀରମାନଙ୍କ ସହିତ ସମ୍ବନ୍ଧ କରାଇ ମୁଁ ହିଁ ଏହି ସଂସାରର ଉତ୍ପତ୍ତି, ସ୍ଥିତି ଓ ପାଳନ କରେ (୧୪/୩,୪)। ତେଣୁ ମୁଁ ସମସ୍ତଙ୍କର ପରମପିତା। ଏଣୁ ପୁତ୍ର ଯେପରି ପିତାର ଅଂଶ ହୁଏ, ଜୀବସମୁଦାୟ ସେହିପରି ହିଁ ମୋର ଅଂଶ ଅଟେ, ତଥା ମୁଁ ଯେପରି ଚେତନ, ଜୀବସମୁଦାୟ ମଧ୍ୟ ସେହିପରି ହିଁ ଚେତନ। ତେଣୁ ଜୀବ ମୋର ଅଂଶ; କାରଣ, ଯେ ସ୍ୱୟଂ ଚେତନ, ସେ କୌଣସି ଚେତନର ହିଁ ଅଂଶ ହୋଇପାରେ; ଜଡ଼ର ହୋଇପାରେନା। ବାସ୍ତବରେ ଅଂଶୀଠାରୁ ଅଂଶ ଭିନ୍ନ ନୁହେଁ। ଜୀବସମୁଦାୟ ମଧ୍ୟ ମୋରି ପରି ଅନାଦି ଓ ନିତ୍ୟ। ଅତଏବ ଜୀବସମୁଦାୟ ସନାତନ ଓ ମୋଠାରୁ ଭିନ୍ନ ନୁହେଁ।

"ଏହାଛଡ଼ା ଏଠାରେ ଅଦ୍ୱୈତସିଦ୍ଧାନ୍ତ ଅନୁସାରେ ମଧ୍ୟ ଏହିଭାବ ଠିକ୍ ଯେ, ସର୍ବତ୍ର ସମଭାବରେ ସ୍ଥିତ ଅବିଭକ୍ତ ମହାକାଶ ଯେପରି ଘଟ ଓ ଗୃହ ଆଦିର ସମ୍ବନ୍ଧଦ୍ୱାରା ବିଭକ୍ତ ହୋଇଥିବାପରି ପ୍ରତୀତ ହୁଏ ଓ ଘଟରେ ଥିବା ଆକାଶକୁ ମହାକାଶର ଅଂଶ ବୋଲି ମାନିବାକୁ ହୁଏ, ସେହିପରି ଯଦିଓ ମୁଁ ବିଭାଗରହିତ ହୋଇ ସର୍ବତ୍ର ସମଭାବରେ ବ୍ୟାପ୍ତ ଅଟେ, ତଥାପି ଭିନ୍ନ ଭିନ୍ନ ଶରୀର ସମ୍ବନ୍ଧରୁ ପୃଥକ୍ ପୃଥକ୍ ବିଭକ୍ତ ହୋଇଥିବାପରି ପ୍ରତୀତ ହୁଏ (୧୩/୧୬) ଏବଂ ସେହିସବୁ ଶରୀରରେ ଥିବା ଜୀବକୁ ମୋର ଅଂଶ ବୋଲି ମନେ କରାଯାଏ।" ଏହି ଭାବ ଦେଖାଇବାପାଇଁ ଜୀବାତ୍ମାଙ୍କୁ ଭଗବାନ୍ ନିଜର ଅଂଶ ବୋଲି କହିଛନ୍ତି।

**ପ୍ରଶ୍ନ—** ଏବ ପଦ ପ୍ରୟୋଗର ଅଭିପ୍ରାୟ କ'ଣ?

**ଉତ୍ତର—** ଏବ ପଦ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି, "ଉପରୋକ୍ତପ୍ରକାରେ ଜୀବାତ୍ମା ମୋର ହିଁ ଅଂଶ। ତେଣୁ ସ୍ୱରୂପତଃ ମୋଠାରୁ ଭିନ୍ନ ନୁହେଁ।"

**ପ୍ରଶ୍ନ—** **ଇନ୍ଦ୍ରିୟାଣି** ପଦ ସହିତ **ପ୍ରକୃତିସ୍ଥାନି** ବିଶେଷଣ ଦେବାର ଅଭିପ୍ରାୟ କ'ଣ ଏବଂ ମନସହିତ ସେମାନଙ୍କର ସଂଖ୍ୟା ଛଅ ବୋଲି କହିବାର ଅଭିପ୍ରାୟ କ'ଣ? କାରଣ, ମନସହିତ ଇନ୍ଦ୍ରିୟମାନଙ୍କୁ ତ ଏଗାର (୧୩/୫) ବୋଲି ମାନି ନିଆଯାଇଛି।

**ଉତ୍ତର—** ଇନ୍ଦ୍ରିୟମାନେ ପ୍ରକୃତିର କାର୍ଯ୍ୟ ଓ ପ୍ରକୃତିର କାର୍ଯ୍ୟରୂପୀ ଶରୀର ହିଁ ସେମାନଙ୍କର ଆଧାର। ଏହିଭାବ ଦେଖାଇବାକୁ ସେମାନଙ୍କ ସହିତ **ପ୍ରକୃତିସ୍ଥାନି** ବିଶେଷଣ ଦିଆଯାଇଛି। ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ଏକମନ— ଏହି ଛଅଟି ହିଁ ସବୁ ବିଷୟ ଅନୁଭବ କରିବାରେ ପ୍ରଧାନ। କର୍ମେନ୍ଦ୍ରିୟମାନଙ୍କ କାର୍ଯ୍ୟ ମଧ୍ୟ ଜ୍ଞାନେନ୍ଦ୍ରିୟମାନଙ୍କ ବିନା ଚଳେ ନାହିଁ। ତେଣୁ ଏଠାରେ ମନସହିତ ଇନ୍ଦ୍ରିୟମାନଙ୍କର ସଂଖ୍ୟା ଛଅ ବୋଲି କୁହାଯାଇଛି। ଅତଏବ ପାଞ୍ଚ କର୍ମେନ୍ଦ୍ରିୟ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ ବୋଲି ବୁଝିନେବା ଉଚିତ।

**ପ୍ରଶ୍ନ—** ଜୀବାତ୍ମା ଏହି ମନସହିତ ଛଅ ଇନ୍ଦ୍ରିୟଙ୍କୁ ଆକର୍ଷିତ କରେ କହିଲେ କ'ଣ ବୁଝାଏ? ଜୀବାତ୍ମା ଯେତେବେଳେ ଶରୀରରୁ ବାହାରିଯାଏ, ସେତେବେଳେ ସେ କର୍ମେନ୍ଦ୍ରିୟମାନଙ୍କୁ, ପ୍ରାଣକୁ ଓ ବୁଦ୍ଧିକୁ ମଧ୍ୟ ସାଥିରେ ନେଇଯାଏ ବୋଲି ଶାସ୍ତ୍ରରେ କୁହାଯାଇଛି। ପୁଣି ଏହି ଛଅଟିକୁ ହିଁ ଆକର୍ଷଣ କରିବା କଥା କିପରି କୁହାଗଲା?

**ଉତ୍ତର—** ଜୀବାତ୍ମା ଯେତେବେଳେ ଗୋଟିଏ ଶରୀର ଛାଡ଼ି ଅନ୍ୟ ଶରୀରକୁ ଯାଏ, ସେତେବେଳେ ପ୍ରଥମେ ଶରୀରରୁ ମନ ସହିତ ଇନ୍ଦ୍ରିୟମାନଙ୍କୁ ଆକର୍ଷିତ କରି ସାଥିରେ ନେଇଯାଏ। ଏହା ହିଁ ଜୀବାତ୍ମାର ମନସହିତ ଇନ୍ଦ୍ରିୟମାନଙ୍କୁ ଆକର୍ଷିତ କରିବା। ବିଷୟମାନଙ୍କୁ ଅନୁଭବ କରିବାରେ ମନ ଓ ପାଞ୍ଚ ଜ୍ଞାନ-ଇନ୍ଦ୍ରିୟ ହିଁ ମୁଖ୍ୟ; ତେଣୁ ଏହି ଛଅଟିକୁ ଆକର୍ଷିତ କରିବା କଥା କୁହାଯାଇଛି। ଏଠାରେ 'ମନ' ଶବ୍ଦ ଅନ୍ତଃକରଣର ବାଚକ। ଏଥିରେ ବୁଦ୍ଧି ଅନ୍ତର୍ଭୁକ୍ତ। ଏବଂ ଜୀବାତ୍ମା ମନ ସହିତ ଇନ୍ଦ୍ରିୟମାନଙ୍କୁ ଆକର୍ଷିତ କଲାବେଳେ ପ୍ରାଣମାନଙ୍କ ଦ୍ୱାରା ହିଁ ଆକର୍ଷିତ କରେ। ତେଣୁ ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣ ମଧ୍ୟ ଏମାନଙ୍କର ଅନ୍ତର୍ଭୁକ୍ତ।

**ସମ୍ବନ୍ଧ—** ଏହି ଜୀବାତ୍ମା ମନ ସହିତ ଛଅ ଇନ୍ଦ୍ରିୟଙ୍କୁ କେଉଁ ସମୟରେ, କିପରି ଓ କାହିଁକି ଆକର୍ଷଣ କରେ ତଥା ମନସହିତ ଛଅ ଇନ୍ଦ୍ରିୟ କିଏ କିଏ, ଏହି ଜିଜ୍ଞାସା ଉପରେ ଭଗବାନ୍ ପରବର୍ତ୍ତୀ ତୁଇ ଶ୍ଳୋକରେ କହିଛନ୍ତି—

**ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ।**
**ଗୃହୀତ୍ୱୈତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍॥ ୮ ॥**

**ଅନ୍ୱୟ—** **ବାୟୁଃ** = ବାୟୁ; **ଆଶୟାତ୍** = ଗନ୍ଧର ସ୍ଥାନରୁ; **ଗନ୍ଧାନ୍** = ଗନ୍ଧମାନଙ୍କୁ; **ଇବ** = ଯେପରି (ବୋହିନେଇଯାଏ, ସେହିପରି ହିଁ); **ଈଶ୍ୱରଃ** = ଦେହାଦିର ସ୍ୱାମୀ ଜୀବାତ୍ମା; **ଅପି** = ବି (ସେହିପରି); **ଯତ୍** = ଯେଉଁ (ଶରୀରକୁ); **ଉତ୍କ୍ରାମତି** = ତ୍ୟାଗ କରି ଚାଲିଯାଏ; **(ତସ୍ମାତ୍)** = ସେଥିରୁ; **ଏତାନି** = ମନ ସହିତ ଏହି ଇନ୍ଦ୍ରିୟମାନଙ୍କୁ; **ଗୃହୀତ୍ୱା** = ଗ୍ରହଣ କରି; **ଚ** = ପୁଣି; **ଯତ୍** = ଯେଉଁ; **ଶରୀରମ୍** = ଶରୀର; **ଅବାପ୍ନୋତି** = ପ୍ରାପ୍ତ ହୁଏ; **(ତସ୍ମିନ୍)** = ସେଥିରେ; **ସଂଯାତି** = ପ୍ରବେଶ କରେ।

**ବାୟୁ ଯେପରି ଗନ୍ଧର ସ୍ଥାନରୁ ଗନ୍ଧକୁ ବୋହିନିଏ, ଦେହାଦିର ସ୍ୱାମୀ ଜୀବାତ୍ମା ମଧ୍ୟ ସେହିପରି ଯେଉଁ ଶରୀର ତ୍ୟାଗ କରି ଚାଲିଯାଏ, ସେଥିରୁ ମନ ସହିତ ଏହି ଇନ୍ଦ୍ରିୟମାନଙ୍କୁ ଗ୍ରହଣ କରି ଯେଉଁ ଶରୀର ପ୍ରାପ୍ତ ହୁଏ, ସେଥିରେ ପ୍ରବେଶ କରେ॥ ୮ ॥**

**ପ୍ରଶ୍ନ—** ଏଠାରେ **ଆଶୟାତ୍** ପଦ କାହାର ବାଚକ ଏବଂ ଗନ୍ଧ ଓ ବାୟୁର ଦୃଷ୍ଟାନ୍ତ କିପରି ସାର୍ଥକ?

**ଉତ୍ତର—** ଏଠାରେ **ଆଶୟାତ୍** ପଦଟି ହେଉଛି ଯେଉଁ ଯେଉଁ ବସ୍ତୁରେ ସୁଗନ୍ଧ ଥାଏ, ସେହି ପୁଷ୍ପ, ଚନ୍ଦନ, କେସର ଓ କସ୍ତୂରୀ ଆଦି ବସ୍ତୁମାନଙ୍କର ବାଚକ। ସେହି ବସ୍ତୁମାନଙ୍କରୁ ସୁଗନ୍ଧକୁ ନେଇଯିବାପରି ମନ ସହିତ ଇନ୍ଦ୍ରିୟମାନଙ୍କୁ ନେଇଯିବା ଦୃଷ୍ଟାନ୍ତରେ 'ଆଶୟ' ଅର୍ଥାତ୍ ଆଧାର ସ୍ଥାନରେ ସ୍ଥୂଳଶରୀର ଏବଂ 'ଗନ୍ଧ' ସ୍ଥାନରେ ସୂକ୍ଷ୍ମଶରୀର ରହିଛି; କାରଣ ପୁଷ୍ପାଦି ଗନ୍ଧଯୁକ୍ତ ପଦାର୍ଥର ସୂକ୍ଷ୍ମ ଅଂଶ ହିଁ ଗନ୍ଧ ହୁଏ। ଏଠାରେ ବାୟୁ ସ୍ଥାନରେ ଜୀବାତ୍ମା ରହିଛି। ବାୟୁ ଯେପରି ଗନ୍ଧକୁ ଗୋଟିଏ ସ୍ଥାନରୁ ଉଡ଼ାଇ ନିଏ ଓ ନେଇ ଅନ୍ୟ ସ୍ଥାନରେ ସ୍ଥାପନ କରେ, ଜୀବାତ୍ମା ମଧ୍ୟ ସେହିପରି ଇନ୍ଦ୍ରିୟ, ମନ, ବୁଦ୍ଧି ଓ ପ୍ରାଣସମୂହରୂପୀ ସୂକ୍ଷ୍ମଶରୀରକୁ ଗୋଟିଏ ସ୍ଥୂଳଶରୀରରୁ କାଢ଼ିନେଇ ଅନ୍ୟ ସ୍ଥୂଳଶରୀରରେ ସ୍ଥାପନ କରେ।

**ପ୍ରଶ୍ନ—** ଏଠାରେ **ଏତାନି** ପଦଟି କାହାର ବାଚକ ଏବଂ ଜୀବାତ୍ମାକୁ ଈଶ୍ୱର କହିବାର ଅଭିପ୍ରାୟ କ'ଣ?

**ଉତ୍ତର—** **ଏତାନି** ପଦଟି ହେଉଛି ଉପରୋକ୍ତ ମନ ସହିତ ପଞ୍ଚଜ୍ଞାନେନ୍ଦ୍ରିୟଙ୍କର ବାଚକ। ମନ ଅନ୍ତଃକରଣର ଉପଲକ୍ଷଣ ହୋଇଥିବାରୁ ବୁଦ୍ଧି ତାହାର ଅନ୍ତର୍ଭୁକ୍ତ; ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣ ଜ୍ଞାନେନ୍ଦ୍ରିୟମାନଙ୍କର ଅନ୍ତର୍ଭୁକ୍ତ। ତେଣୁ **ଏତାନି** ପଦଟି ଏହି ସତରଟି ତତ୍ତ୍ୱର ସମୁଦାୟରୂପୀ ସୂକ୍ଷ୍ମଶରୀରର ବାଚକ। ଜୀବାତ୍ମାକୁ ଈଶ୍ୱର ବୋଲି କହି ଭଗବାନ୍ ଦେଖାଇଛନ୍ତି, ଜୀବାତ୍ମା ହେଉଛି ମନବୁଦ୍ଧିସହିତ ସମସ୍ତ ଇନ୍ଦ୍ରିୟଙ୍କ ଶାସକ ଓ ସ୍ୱାମୀ। ଅତଏବ ସେ ଏମାନଙ୍କୁ ଆକର୍ଷଣ କରିବାକୁ ସମର୍ଥ।

**ପ୍ରଶ୍ନ—** **ଯତ୍** ପଦ ଦୁଇଥର ପ୍ରୟୋଗ କରି **ଉତ୍କ୍ରାମତି** ଓ **ଅବାପ୍ନୋତି** ଏହି ଦୁଇଟି କ୍ରିୟାଦ୍ୱାରା କେଉଁ ଭାବ ଦେଖାଇଛନ୍ତି?

**ଉତ୍ତର—** ଗୋଟିଏ **ଯତ୍** ପଦ ହେଉଛି, ଯାହାକୁ ଏହି ଜୀବ ତ୍ୟାଗ କରିଦିଏ, ସେହି ଶରୀରର ବାଚକ। ଅନ୍ୟ **ଯତ୍**ଟି ହେଉଛି ଯାହାକୁ ଏହା ଗ୍ରହଣ କରେ, ସେହି ଶରୀରର ବାଚକ। ଏହି ଭାବ ଦେଖାଇବାକୁ **ଯତ୍** ପଦ ଦୁଇଥର ପ୍ରୟୋଗ କରି **ଉତ୍କ୍ରାମତି** ଓ **ଅବାପ୍ନୋତି** କ୍ରିୟା ଦୁଇଟି ପ୍ରୟୋଗ କରାଯାଇଛି। **ଉତ୍କ୍ରାମତି** ଶରୀରତ୍ୟାଗକୁ ଓ **ଅବାପ୍ନୋତି** ନୂତନ ଶରୀରଗ୍ରହଣକୁ ବୁଝାଏ।

**ପ୍ରଶ୍ନ—** ଆତ୍ମାର ସ୍ୱରୂପ ତ ଦ୍ୱିତୀୟ ଅଧ୍ୟାୟର ଚବିଶ ଶ୍ଳୋକରେ ଅଚଳ ବୋଲି ଗ୍ରହଣ କରାଯାଇଛି; ପୁଣି ଏଠାରେ **ସଂଯାତି** କ୍ରିୟା ପ୍ରୟୋଗ କରି ତା'ର ଗୋଟିଏ ଶରୀରରୁ ଅନ୍ୟ ଶରୀରକୁ ଯିବା କଥା କିପରି କୁହାଗଲା?

**ଉତ୍ତର—** ଯଦ୍ୟପି ଜୀବାତ୍ମା ପରମାତ୍ମାଙ୍କର ହିଁ ଅଂଶ, ତେଣୁ ବସ୍ତୁତଃ ନିତ୍ୟ ଓ ଅଚଳ, ତାହାର ଯିବା-ଆସିବା ହୋଇ ନ ପାରେ, ତଥାପି ସୂକ୍ଷ୍ମଶରୀର

ସହିତ ସମ୍ବନ୍ଧ ଥିବାରୁ ଜୀବାତ୍ମା ସୂକ୍ଷ୍ମଶରୀରଦ୍ୱାରା ଗୋଟିଏ ସ୍ଥୂଳଶରୀରରୁ ଅନ୍ୟ ସ୍ଥୂଳଶରୀରକୁ ଯିବାଭଳି ପ୍ରତୀତ ହୁଏ। ଏହିହେତୁ ଏଠାରେ **ସଂଯାତି** କ୍ରିୟା ପ୍ରୟୋଗ କରି ଜୀବାତ୍ମାର ଗୋଟିଏ ଶରୀରରୁ ଅନ୍ୟ ଶରୀରକୁ ଯିବା କଥା କୁହାଯାଇଛି। ଦ୍ୱିତୀୟ ଅଧ୍ୟାୟର ବାଇଶ ଶ୍ଳୋକରେ ମଧ୍ୟ ଏହା କୁହାଯାଇଛି।

## ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ ରସନଂ ଘ୍ରାଣମେବ ଚ।
## ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ॥ ୯ ॥

**ଅନ୍ୱୟ –** **ଅୟମ୍** = ଏହି ଜୀବାତ୍ମା; **ଶ୍ରୋତ୍ରମ୍** = କର୍ଣ୍ଣ; **ଚକ୍ଷୁଃ** = ଚକ୍ଷୁ; **ଚ** = ଓ; **ସ୍ପର୍ଶନମ୍** = ତ୍ୱକ (ଚର୍ମ); **ଚ** = ତଥା; **ରସନମ୍** = ଜିହ୍ୱା; **ଘ୍ରାଣମ୍** = ନାସା; **ଚ** = ଓ; **ମନଃ** = ମନକୁ; **ଅଧିଷ୍ଠାୟ** = ଆଶ୍ରୟ କରି ଅର୍ଥାତ୍ ଏସବୁର ସାହାଯ୍ୟରେ; **ଏବ** = ହିଁ; **ବିଷୟାନ୍** = ବିଷୟମାନଙ୍କୁ; **ଉପସେବତେ** = ସେବନ କରେ।

**ଏହି ଜୀବାତ୍ମା କର୍ଣ୍ଣ, ଚକ୍ଷୁ ଓ ଚର୍ମକୁ ତଥା ଜିହ୍ୱା, ନାସା ଓ ମନକୁ ଆଶ୍ରୟ କରି ଅର୍ଥାତ୍ ଏସବୁର ସାହାଯ୍ୟରେ ହିଁ ବିଷୟମାନଙ୍କୁ ସେବନ କରିଥାଏ॥ ୯ ॥**

**ପ୍ରଶ୍ନ –** ଜୀବାତ୍ମାର କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସା – ଏହି ପାଞ୍ଚ ଇନ୍ଦ୍ରିୟଙ୍କ ସହିତ ମନକୁ ଆଶ୍ରୟ କରିବା କ'ଣ? 'ଏମାନଙ୍କ ସାହାଯ୍ୟରେ ହିଁ ଜୀବାତ୍ମା ବିଷୟମାନଙ୍କୁ ସେବନ କରେ' – ଏହି କଥାର ଅଭିପ୍ରାୟ କ'ଣ?

**ଉତ୍ତର –** ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ନିଜର ସମ୍ବନ୍ଧ ସ୍ୱୀକାର କରିବା ହିଁ ଜୀବାତ୍ମା ସେମାନଙ୍କୁ ଆଶ୍ରୟ କରିବା। 'ଜୀବାତ୍ମା ଏମାନଙ୍କ ସାହାଯ୍ୟରେ ହିଁ ବିଷୟମାନଙ୍କୁ ସେବନ କରେ' – କହିବାର ଭାବ ଏହି ଯେ, ବାସ୍ତବରେ ଆତ୍ମା କର୍ମର କର୍ତ୍ତା ନୁହେଁ, କି କର୍ମଫଳରୂପକ ବିଷୟର ତଥା ସୁଖ-ଦୁଃଖାଦିର ଭୋକ୍ତା ବି ନୁହେଁ। କିନ୍ତୁ ପ୍ରକୃତି ଓ ତା'ର କାର୍ଯ୍ୟ ସହିତ ତା'ର ଅଜ୍ଞାନଜନିତ ଅନାଦି ସମ୍ବନ୍ଧ ରହିଛି; ସେହି କାରଣରୁ ସେ କର୍ତ୍ତା ଓ ଭୋକ୍ତା ହୁଏ। ତ୍ରୟୋଦଶ ଅଧ୍ୟାୟର ଏକୋଇଶ ଶ୍ଳୋକରେ ମଧ୍ୟ କୁହାଯାଇଛି, ପ୍ରକୃତିସ୍ଥ ପୁରୁଷ ହିଁ ପ୍ରକୃତିଜନ୍ୟ ଗୁଣମାନଙ୍କୁ ଭୋଗ କରୁଛି। ଶ୍ରୁତିରେ ମଧ୍ୟ କୁହାଯାଇଛି — **'ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ।'** (କଠୋପନିଷଦ ୧/୩/୪) ଅର୍ଥାତ୍ 'ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କରେ ଯୁକ୍ତ ଆତ୍ମାକୁ ହିଁ ଜ୍ଞାନୀମାନେ ଭୋକ୍ତା ବୋଲି କହନ୍ତି।'

*__ସମ୍ବନ୍ଧ –__ କୁହାଗଲା ଯେ, ତିନିଗୁଣ ସହିତ ଆବଦ୍ଧ ଜୀବାତ୍ମା ଏକ ଶରୀର ଛାଡ଼ି ଅନ୍ୟ ଶରୀରକୁ ଚାଲିଯାଏ ଓ ଶରୀରରେ ରହି ବିଷୟମାନଙ୍କୁ ସେବନ କରେ। ଅତଏବ ପ୍ରଶ୍ନ ଉଠୁଛି; ଏହି ଆତ୍ମାକୁ କିଏ କିପରି ଜାଣେ ଓ କିଏ ଜାଣେ ନାହିଁ? ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ ସେହି ବିଷୟ କହୁଛନ୍ତି–*

## ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଞ୍ଜାନଂ ବା ଗୁଣାନ୍ୱିତମ୍।
## ବିମୂଢ଼ା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ॥ ୧୦ ॥

**ଅନ୍ୱୟ –** **ଉତ୍କ୍ରାମନ୍ତମ୍** = ଶରୀର ଛାଡ଼ି ଚାଲିଯାଉଥିବା; **ବା** = ଅଥବା; **ସ୍ଥିତମ୍** = ଶରୀରରେ ରହିଥିବା; **ବା** = ଅଥବା; **ଭୁଞ୍ଜାନମ୍** = ବିଷୟ ଭୋଗ କରୁଥିବା; **ଗୁଣାନ୍ୱିତମ୍** = ଓ ତିନିଗୁଣରେ ଯୁକ୍ତ ହୋଇଥିବା ଜୀବାତ୍ମାର ସ୍ୱରୂପ; **ଅପି** = ବି; **ବିମୂଢ଼ାଃ** = ଅଜ୍ଞାନୀ ଲୋକେ; **ନ, ଅନୁପଶ୍ୟନ୍ତି** = ଜାଣନ୍ତି ନାହିଁ; **ଜ୍ଞାନଚକ୍ଷୁଷଃ** = (କେବଳ) ଜ୍ଞାନରୂପକ ଚକ୍ଷୁ ଥିବା ବିବେକଶୀଳ ଜ୍ଞାନୀମାନେ ହିଁ; **ପଶ୍ୟନ୍ତି** = ତତ୍ତ୍ୱତଃ ଜାଣନ୍ତି।

**ଶରୀର ଛାଡ଼ି ଚାଲିଯାଉଥିବା ଅଥବା ଶରୀରରେ ରହିଥିବା ଅଥବା ବିଷୟମାନଙ୍କୁ ଭୋଗ କରୁଥିବା ତଥା ତିନିଗୁଣରେ ଯୁକ୍ତ ହୋଇଥିବା ନିଜର ପ୍ରକୃତ ସ୍ୱରୂପକୁ ଅଜ୍ଞାନୀମାନେ**

**ଜାଣନ୍ତି ନାହିଁ; କେବଳ ଜ୍ଞାନଚକ୍ଷୁ ଥିବା ବିବେକଶୀଳ ଜ୍ଞାନୀମାନେ ହିଁ ତାହା ତତ୍ତ୍ୱତଃ ଜାଣନ୍ତି ।। ୧୦ ।।**

**ପ୍ରଶ୍ନ –** **ଗୁଣାନ୍ୱିତମ୍** ପଦ କାହାର ବାଚକ ତଥା **ଅପି** ପ୍ରୟୋଗ କରି ତାହା 'ଶରୀର ଛାଡ଼ି ଚାଲିଯାଉଥିବା, ଶରୀରରେ ଥିବା ଓ ବିଷୟମାନଙ୍କୁ ଭୋଗ କରୁଥିବା ଜୀବାତ୍ମାର ସ୍ୱରୂପକୁ ଅଜ୍ଞାନୀମାନେ ଜାଣନ୍ତି ନାହିଁ' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ **ଗୁଣାନ୍ୱିତମ୍** ପଦଟି ହେଉଛି ଗୁଣମାନଙ୍କ ସହିତ ସମ୍ବନ୍ଧ ରଖିଥିବା 'ପ୍ରକୃତିସ୍ଥ ପୁରୁଷ' (ଜୀବାତ୍ମା)ର ବାଚକ। ଅତଏବ **ଅପି** ପ୍ରୟୋଗ କରି ଦେଖାଇଛନ୍ତି ଯେ, ଯଦ୍ୟପି ସେ ସମସ୍ତଙ୍କ ଆଗରେ ହିଁ ଶରୀର ଛାଡ଼ି ଚାଲିଯାଏ ଓ ସମସ୍ତଙ୍କ ଆଗରେ ହିଁ ଶରୀରରେ ରହିଥାଏ ତଥା ବିଷୟମାନଙ୍କୁ ଉପଭୋଗ କରୁଥାଏ, ତଥାପି ଅଜ୍ଞାନୀ ଲୋକମାନେ ତା'ର ଯଥାର୍ଥ ସ୍ୱରୂପ ଜାଣନ୍ତି ନାହିଁ। ଏପରି ଅବସ୍ଥାରେ ଅକ୍ରିୟ ଓ ଗୁଣାତୀତରୂପରେ ଥିବା ଆତ୍ମାକୁ ସେମାନେ ବା କିପରି ବୁଝିପାରିବେ ?

**ପ୍ରଶ୍ନ –** ତାହାକୁ ଜ୍ଞାନଚକ୍ଷୁଯୁକ୍ତ ବିବେକଶୀଳ ଜ୍ଞାନୀମାନେ ହିଁ ତତ୍ତ୍ୱତଃ ଜାଣନ୍ତି, କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଛନ୍ତି ଯେ, ଯେଉଁ ପୁରୁଷମାନଙ୍କୁ ବିବେକଜ୍ଞାନରୂପକ ନେତ୍ର ପ୍ରାପ୍ତ ହୋଇସାରିଛି, ସେପରି ବିବେକଶୀଳ ଜ୍ଞାନୀମାନେ, ଗୁଣମାନଙ୍କ ସହିତ ଆତ୍ମାର ସମ୍ବନ୍ଧ ରହିଥିଲେ ମଧ୍ୟ, ଆତ୍ମାର ଯଥାର୍ଥ ସ୍ୱରୂପ ଜାଣନ୍ତି ଅର୍ଥାତ୍ ଶରୀର ଛାଡ଼ି ଚାଲିଯିବାବେଳେ, ଶରୀରରେ ରହିଥିବାବେଳେ, ଓ ବିଷୟମାନଙ୍କୁ ଉପଭୋଗ କରୁଥିବାବେଳେ– ଏହିପରି ପ୍ରତ୍ୟେକ ଅବସ୍ଥାରେ ହିଁ ସେହି ଆତ୍ମା ବାସ୍ତବରେ ପ୍ରକୃତିଠାରୁ ସର୍ବଥା ଅତୀତ, ଶୁଦ୍ଧ, ବୋଧସ୍ୱରୂପ ଓ ଅସଙ୍ଗ ହିଁ ଅଟେ ବୋଲି ବୁଝନ୍ତି।

**ଯତନ୍ତୋ ଯୋଗିନଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତମ୍ ।**
**ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ ।। ୧୧ ।।**

**ଅନ୍ୱୟ –** **ଯତନ୍ତଃ** = ଯତ୍ନ କରୁଥିବା; **ଯୋଗିନଃ** = ଯୋଗୀମାନେ ବି; **ଆତ୍ମନି** = ନିଜ ହୃଦୟରେ; **ଅବସ୍ଥିତମ୍** = ସ୍ଥିତ; **ଏନମ୍** = ଏହି ଆତ୍ମାକୁ; **ପଶ୍ୟନ୍ତି** = ତତ୍ତ୍ୱତଃ ଜାଣନ୍ତି; **ଚ** = କିନ୍ତୁ; **ଅକୃତାତ୍ମାନଃ** = ଯେଉଁମାନେ ନିଜ ଅନ୍ତଃକରଣକୁ ଶୁଦ୍ଧ କରି ନାହାନ୍ତି, (ସେପରି); **ଅଚେତସଃ** = ଅଜ୍ଞାନୀମାନେ (ତ); **ଯତନ୍ତଃ** = ଯତ୍ନ କରୁଥିଲେ; **ଅପି** = ବି; **ଏନମ୍** = ଏହି ଆତ୍ମାକୁ; **ନ, ପଶ୍ୟନ୍ତି** = ଜାଣିପାରନ୍ତି ନାହିଁ।

**ଯତ୍ନ କରୁଥିବା ଯୋଗୀମାନେ ମଧ୍ୟ ନିଜ ହୃଦୟସ୍ଥିତ ଏହି ଆତ୍ମାକୁ ତତ୍ତ୍ୱତଃ ଜାଣନ୍ତି। କିନ୍ତୁ ଯେଉଁମାନେ ନିଜ ଅନ୍ତଃକରଣକୁ ଶୁଦ୍ଧ କରି ନାହାନ୍ତି, ସେପରି ଅଜ୍ଞାନୀମାନେ ତ ଯତ୍ନ କରି ମଧ୍ୟ ଏହି ଆତ୍ମାକୁ ଜାଣିପାରନ୍ତି ନାହିଁ।। ୧୧ ।।**

**ପ୍ରଶ୍ନ –** ଯତ୍ନ କରୁଥିବା ଯୋଗୀମାନେ କିଏ ? ସେମାନେ ନିଜ ହୃଦୟସ୍ଥିତ ଏହି ଆତ୍ମାକୁ ତତ୍ତ୍ୱତଃ ଜାଣନ୍ତି କହିଲେ କ'ଣ ବୁଝାଏ ?

**ଉତ୍ତର –** ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ଓ ବଶୀଭୂତ, ପୂର୍ବଶ୍ଳୋକରେ ଯେଉଁ ବିବେକଶୀଳ ଜ୍ଞାନୀମାନେ ଆତ୍ମାକୁ ଜାଣିଥିବା କଥା କୁହାଯାଇଛି ତଥା ଯେଉଁମାନେ ଆତ୍ମସ୍ୱରୂପକୁ ଜାଣିବାପାଇଁ ନିରନ୍ତର ଶ୍ରବଣ, ମନନ ଓ ନିଦିଧ୍ୟାସନାଦି ପ୍ରଯତ୍ନ କରୁଛନ୍ତି, ସେହିପରି ଉଚ୍ଚକୋଟିର ସାଧକମାନେ ହିଁ 'ଯତ୍ନ କରୁଥିବା ଯୋଗୀ' ତଥା ଯେଉଁ ଜୀବାତ୍ମାର ପ୍ରକରଣ ଚାଲିଛି ଓ ଯେ ଶରୀରର ସମ୍ବନ୍ଧଦ୍ୱାରା ହୃଦୟରେ ସ୍ଥିତ ବୋଲି କୁହାଯାଉଛି, ତାହାର ନିତ୍ୟଶୁଦ୍ଧ ବିଜ୍ଞାନାନନ୍ଦମୟ ବାସ୍ତବିକ ସ୍ୱରୂପକୁ ଯଥାର୍ଥ ଜାଣିବା ହିଁ ଏହି ଆତ୍ମାକୁ ତତ୍ତ୍ୱତଃ ଜାଣିବା।

**ପ୍ରଶ୍ନ –** **ଅକୃତାତ୍ମାନଃ** ଓ **ଅଚେତସଃ** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ଓ 'ସେମାନେ ପ୍ରଯତ୍ନ କରି ମଧ୍ୟ ଏହି ଆତ୍ମାକୁ ଜାଣିପାରନ୍ତି ନାହିଁ'– ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ନୁହେଁ ଅର୍ଥାତ୍ ନିଷ୍କାମକର୍ମ ଆଦିଦ୍ୱାରା ଯାହାଙ୍କର ଅନ୍ତଃକରଣର ମଳ ଧୋଇହୋଇ ନାହିଁ ଏବଂ ଯେଉଁମାନେ ଭକ୍ତି ଆଦିଦ୍ୱାରା ଚିତ୍ତକୁ ସ୍ଥିର କରିବାପାଇଁ ଚେଷ୍ଟା ବି

ସମୁଚିତ ଅଭ୍ୟାସ କରି ନାହାନ୍ତି, ସେପରି ମଳିନ ଓ ବିକ୍ଷିପ୍ତ ଅନ୍ତଃକରଣବିଶିଷ୍ଟ ପୁରୁଷମାନଙ୍କୁ **ଅକୃତାତ୍ମା** କହନ୍ତି। ଯେଉଁମାନଙ୍କର ଅନ୍ତଃକରଣରେ ବୋଧ ଶକ୍ତି ନାହିଁ, ସେହି ମୂଢ଼ ମନୁଷ୍ୟମାନଙ୍କୁ **ଅଚେତସଃ** କହନ୍ତି। ଅତଏବ **ଅକୃତାତ୍ମାନଃ** ଓ **ଅଚେତସଃ** ପଦ ହେଉଛି ମଳ, ବିକ୍ଷେପ ଓ ଆବରଣ – ଏହି ତିନି ଦୋଷଯୁକ୍ତ ଅନ୍ତଃକରଣ-ବିଶିଷ୍ଟ ରାଜସ-ତାମସ ମନୁଷ୍ୟମାନଙ୍କର ବାଚକ। 'ସେମାନେ ଯତ୍ନ କଲେ ମଧ୍ୟ ଆତ୍ମାକୁ ଜାଣିପାରନ୍ତି ନାହିଁ' କହି ଦେଖାଇଦିଆଯାଇଛି ଯେ, ଏପରି ମନୁଷ୍ୟ ନିଜ ଅନ୍ତଃକରଣକୁ ଶୁଦ୍ଧ କରିବାପାଇଁ ଚେଷ୍ଟା ନ କରି ଯଦି କେବଳ ସେହି ଆତ୍ମାକୁ ଜାଣିବାପାଇଁ ଶାସ୍ତ୍ର ଆଲୋଚନାରୂପକ ପ୍ରଯତ୍ନ କରୁଥାନ୍ତି, ତେବେ ତା'ର ତତ୍ତ୍ୱ ବୁଝିପାରିବେ ନାହିଁ।

**ପ୍ରଶ୍ନ –** ଦଶମ ଶ୍ଳୋକରେ କୁହାଗଲା ଯେ, ଆତ୍ମାକୁ ମୂଢ଼ ଲୋକମାନେ ଜାଣନ୍ତି ନାହିଁ; ଜ୍ଞାନଚକ୍ଷୁ ଥିବା ବିବେକୀ ଜ୍ଞାନୀମାନେ ହିଁ ଜାଣନ୍ତି ଏବଂ ଏହି ଶ୍ଳୋକରେ କହିଲେ ଯେ, ଯତ୍ନ କରୁଥିବା ଯୋଗୀମାନେ ତାହାକୁ ଜାଣନ୍ତି; ଅଶୁଦ୍ଧ ଅନ୍ତଃକରଣ ବିଶିଷ୍ଟ ଅଜ୍ଞାନୀ ତାହା ଜାଣିପାରେ ନାହିଁ। ଏହି ଦୁଇ ବର୍ଣ୍ଣନାରେ ପ୍ରଭେଦ କ'ଣ ?

**ଉତ୍ତର –** ଦଶମ ଶ୍ଳୋକର **ବିମୂଢ଼ାଃ** ପଦ ସାଧାରଣ ଅଜ୍ଞାନ ମନୁଷ୍ୟମାନଙ୍କର ବାଚକ ଏବଂ **ଜ୍ଞାନଚକ୍ଷୁଷଃ** ପଦ ବିବେକୀ ଜ୍ଞାନୀମାନଙ୍କର ବାଚକ ଏବଂ ଏହି ଶ୍ଳୋକରେ ମଧ୍ୟ **ଯୋଗିନଃ** ପଦ ସେହି ବିବେକଶୀଳ ଉଚ୍ଚକୋଟିର ସାତ୍ତ୍ୱିକ ସାଧକମାନଙ୍କର ବାଚକ ଏବଂ **ଅଚେତସଃ** ପଦ ରାଜସ-ତାମସ ମନୁଷ୍ୟମାନଙ୍କର ବାଚକ। ଅତଏବ ଦଶମ ଶ୍ଳୋକରେ ଆତ୍ମାର ସ୍ୱରୂପକୁ ଜାଣିବା ଓ ନ ଜାଣିବାର ଯେଉଁ କଥା କୁହାଯାଇଛି, ତାହା ସ୍ପଷ୍ଟ କରିବାପାଇଁ ଏହି ଶ୍ଳୋକରେ କୁହାଯାଇଛି ଯେ, ସେହି ବିବେକଶୀଳ ବ୍ୟକ୍ତିମାନେ ପ୍ରଯତ୍ନ କଲେ ଜାଣନ୍ତି କିନ୍ତୁ ଅଜ୍ଞାନୀ ଲୋକମାନେ ପ୍ରଯତ୍ନ କଲେ ମଧ୍ୟ ଜାଣିପାରନ୍ତି ନାହିଁ। ଏଣୁ ଏଠାରେ କୌଣସି ପ୍ରଭେଦର ପ୍ରଶ୍ନ ଉଠୁ ନାହିଁ।

*ସମ୍ବନ୍ଧ – ଷଷ୍ଠ ଶ୍ଳୋକକୁ ନେଇ ଦୁଇଟି ପ୍ରଶ୍ନ ଉଠୁଛି: ପ୍ରଥମଟି ହେଉଛି, ସମସ୍ତଙ୍କର ପ୍ରକାଶକ ସୂର୍ଯ୍ୟ, ଚନ୍ଦ୍ରମା ଓ ଅଗ୍ନି ଆଦି ତେଜୋମୟ ପଦାର୍ଥ ପରମାତ୍ମାଙ୍କୁ କାହିଁକି ପ୍ରକାଶିତ କରିପାରୁନାହାନ୍ତି ? ଏବଂ ଦ୍ୱିତୀୟ ପ୍ରଶ୍ନଟି ହେଉଛି, ପରମଧାମ ପ୍ରାପ୍ତ ହେବା ପରେ ପୁରୁଷ ଫେରି ଆସେ ନାହିଁ କାହିଁକି ? ଏଥିମଧ୍ୟରୁ ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ ସପ୍ତମ ଶ୍ଳୋକରେ ଜୀବାତ୍ମାକୁ ପରମେଶ୍ୱରଙ୍କ ସନାତନ ଅଂଶ ବୋଲି କହି, ଏଗାର ଶ୍ଳୋକଯାଏ ତା'ର ସ୍ୱରୂପ, ସ୍ୱଭାବ ଓ ବ୍ୟବହାର ବର୍ଣ୍ଣନା କଲେ ଏବଂ ତା'ର ଯଥାର୍ଥ ସ୍ୱରୂପ ଜାଣିଥିବା ଲୋକଙ୍କର ମହିମା କହିଲେ। ବର୍ତ୍ତମାନ ପ୍ରଥମ ପ୍ରଶ୍ନର ଉତ୍ତର ଦେବାପାଇଁ ଭଗବାନ୍ ବାରଠାରୁ ପନ୍ଦର ଶ୍ଳୋକଯାଏ ଗୁଣ, ପ୍ରଭାବ ଓ ଐଶ୍ୱର୍ଯ୍ୟସହିତ ନିଜର ସ୍ୱରୂପ ବର୍ଣ୍ଣନା କରୁଛନ୍ତି–*

**ଯଦାଦିତ୍ୟଗତଂ ତେଜୋ ଜଗଦ୍ଭାସୟତେଽଖିଳମ୍।**
**ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍॥ ୧୨ ॥**

**ଅନ୍ୱୟ –** ଆଦିତ୍ୟଗତମ୍ = ସୂର୍ଯ୍ୟଙ୍କ ଠାରେ ଥିବା; ଯତ୍ = ଯେଉଁ; ତେଜଃ = ତେଜ; ଅଖିଳମ୍ = ସମସ୍ତ; ଜଗତ୍ = ଜଗତକୁ; ଭାସୟତେ = ପ୍ରକାଶିତ କରେ; ଚ = ତଥା; ଯତ୍ = ଯେଉଁ ତେଜ; ଚନ୍ଦ୍ରମସି = ଚନ୍ଦ୍ରଙ୍କ ଠାରେ (ରହିଛି) (ଓ); ଯତ୍ = ଯାହା; ଅଗ୍ନୌ = ଅଗ୍ନିରେ (ରହିଛି); ତତ୍ = ତାହାକୁ (ତୁମେ); ମାମକମ୍ = ମୋର (ହିଁ); ତେଜଃ = ତେଜ (ବୋଲି); ବିଦ୍ଧି = ଜାଣ।

**ସୂର୍ଯ୍ୟଙ୍କ ଠାରେ ଥିବା ଯେଉଁ ତେଜ ସମସ୍ତ ଜଗତକୁ ପ୍ରକାଶିତ କରୁଛି ତଥା ଯେଉଁ ତେଜ ଚନ୍ଦ୍ରମାରେ ରହିଛି ଓ ଯାହା ଅଗ୍ନିରେ ରହିଛି, ତାହାକୁ ତୁମେ ମୋର ହିଁ ତେଜ ବୋଲି ଜାଣ॥ ୧୨ ॥**

**ପ୍ରଶ୍ନ –** ଆଦିତ୍ୟଗତମ୍ ବିଶେଷଣ ସହିତ **ତେଜଃ** ପଦ କାହାର ବାଚକ ଓ ତାହା ସମସ୍ତ ଜଗତକୁ ପ୍ରକାଶିତ କରେ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ **ଆଦିତ୍ୟଗତମ୍** ବିଶେଷଣ ସହିତ **ତେଜଃ** ପଦଟି ହେଉଛି ସୂର୍ଯ୍ୟମଣ୍ଡଳରେ ଯେଉଁ ଏକ ମହାନ୍ ଜ୍ୟୋତି ରହିଛି, ତାହାର ବାଚକ। ତାହା

ସମଗ୍ର ଜଗତକୁ ପ୍ରକାଶିତ କରେ କହି ଭଗବାନ୍ ଦେଖାଉଛନ୍ତି ଯେ, ସ୍ଥୂଳସଂସାରର ସମସ୍ତ ବସ୍ତୁକୁ ଗୋଟିଏ ସୂର୍ଯ୍ୟଙ୍କର ତେଜ ହିଁ ଆଲୋକିତ କରୁଛି।

**ପ୍ରଶ୍ନ —** ଚନ୍ଦ୍ରରେ ଓ ଅଗ୍ନିରେ ଥିବା ତେଜ କାହାର ବାଚକ ଏବଂ 'ସେହି ତିନୋଟିଯାକରେ ଥିବା ତେଜକୁ ତୁମେ ମୋର ହିଁ ତେଜ ବୋଲି ବୁଝ' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଚନ୍ଦ୍ରମାରେ ଯେଉଁ ଜ୍ୟୋତ୍ସ୍ନା ରହିଛି, ଚନ୍ଦ୍ରସ୍ଥ ତେଜ ତାହାର ବାଚକ। ଅଗ୍ନିରେ ଯେଉଁ ପ୍ରକାଶ ରହିଛି, ଅଗ୍ନିସ୍ଥ ତେଜ ହେଉଛି ତାହାର ବାଚକ। ଏପରିଭାବରେ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିରେ ଥିବା ସମସ୍ତ ତେଜକୁ ନିଜର ତେଜ ବୋଲି କହି ଭଗବାନ୍ ଦେଖାଉଛନ୍ତି ଯେ, ସେହି ତିନୋଟିରେ ଏବଂ ସେମାନେ ଯେଉଁମାନଙ୍କର ଦେବତା ଅଟନ୍ତି, ସେହି ନେତ୍ର, ମନ ଓ ବାଣୀରେ ବସ୍ତୁକୁ ପ୍ରକାଶିତ କରିବାପାଇଁ ଯାହା କିଛି ବି ଶକ୍ତି ରହିଛି, ତାହା ଭଗବାନଙ୍କ ତେଜର ହିଁ ଏକ ଅଂଶ। ଯେହେତୁ ଏହି ତିନୋଟିରେ ଥିବା ତେଜ ଭଗବାନଙ୍କ ତେଜର ହିଁ ଅଂଶ, ତେଣୁ ଏହି ତିନୋଟିର ସଂବନ୍ଧଦ୍ୱାରା ତେଜଯୁକ୍ତ କୁହାଯାଉଥିବା ଯେଉଁ ଅନ୍ୟାନ୍ୟ ପଦାର୍ଥ ରହିଛି, ସେସବୁର ତେଜ ଯେ ଭଗବାନଙ୍କର ହିଁ ତେଜ, ତାହା କହିବା ଅନାବଶ୍ୟକ। ତେଣୁ ଷଷ୍ଠ ଶ୍ଳୋକରେ ଭଗବାନ୍ କହିଛନ୍ତି, "ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି— ଏସବୁ ମୋର ସ୍ୱରୂପକୁ ପ୍ରକାଶିତ କରିବାରେ ସମର୍ଥ ନୁହନ୍ତି।"

**ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା।**
**ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋ ଭୂତ୍ୱା ରସାତ୍ମକଃ॥ ୧୩ ॥**

**ଅନ୍ୱୟ—** ଚ = ଏବଂ; **ଅହମ୍** = ମୁଁ (ହିଁ); **ଗାମ୍** = ପୃଥିବୀରେ; **ଆବିଶ୍ୟ** = ପ୍ରବେଶ କରି; **ଓଜସା** = ନିଜ ଶକ୍ତିଦ୍ୱାରା; **ଭୂତାନି** = ସମସ୍ତ ଭୂତଙ୍କୁ; **ଧାରୟାମି** = ଧାରଣ କରେ; ଚ = ଓ; **ରସାତ୍ମକଃ** = ରସସ୍ୱରୂପ ଅର୍ଥାତ୍ ଅମୃତମୟ; **ସୋମଃ** = ଚନ୍ଦ୍ରମା; **ଭୂତ୍ୱା** = ହୋଇ; **ସର୍ବାଃ** = ସକଳ; **ଓଷଧୀଃ** = ଓଷଧିମାନଙ୍କୁ ଅର୍ଥାତ୍ ବନସ୍ପତିମାନଙ୍କୁ; **ପୁଷ୍ଣାମି** = ପୁଷ୍ଟ କରେ।

**ଏବଂ ମୁଁ ହିଁ ପୃଥିବୀରେ ପ୍ରବେଶ କରି ନିଜ ଶକ୍ତିଦ୍ୱାରା ସମସ୍ତ ଭୂତପ୍ରାଣୀଙ୍କୁ ଧାରଣ କରେ ଓ ରସସ୍ୱରୂପ ଅର୍ଥାତ୍ ଅମୃତମୟ ଚନ୍ଦ୍ର ହୋଇ ସକଳ ଓଷଧିମାନଙ୍କୁ ଅର୍ଥାତ୍ ବନସ୍ପତିମାନଙ୍କୁ ପୁଷ୍ଟ କରେ॥ ୧୩ ॥**

**ପ୍ରଶ୍ନ —** 'ମୁଁ ହିଁ ପୃଥିବୀରେ ପ୍ରବେଶ କରି ମୋ ଶକ୍ତିଦ୍ୱାରା ସମସ୍ତ ପ୍ରାଣୀଙ୍କୁ ଧାରଣ କରେ' — ଏ କଥାର ଭାବ କ'ଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ପୃଥିବୀକୁ ଉପଲକ୍ଷଣ କରି ବିଶ୍ୱବ୍ୟାପିନୀ ଧାରଣଶକ୍ତିକୁ ତାଙ୍କ ନିଜ ଶକ୍ତିର ଏକ ଅଂଶ ବୋଲି କହୁଛନ୍ତି। କହିବାର ଅଭିପ୍ରାୟ ହେଲା, "ଏହି ପୃଥିବୀରେ ପ୍ରାଣୀମାନଙ୍କୁ ଧାରଣ କରିଥିବା ଯେଉଁ ଶକ୍ତି ପ୍ରତୀତ ହେଉଛି, ତଥା ଏପ୍ରକାର ଅନ୍ୟଠାରେ ଯେଉଁ ଧାରଣଶକ୍ତି ରହିଛି, ତାହା ପ୍ରକୃତରେ ତା'ର ନୁହେଁ; ତାହା ମୋ'ଶକ୍ତିର ହିଁ ଏକ ଅଂଶ। ଅତଏବ ମୁଁ ନିଜେ ହିଁ ଆତ୍ମାରୂପରେ ପୃଥିବୀରେ ପ୍ରବେଶ କରି ନିଜବଳରେ ସମସ୍ତ ପ୍ରାଣୀଙ୍କୁ ଧାରଣ କରେ।"

**ପ୍ରଶ୍ନ — ରସାତ୍ମକଃ** ବିଶେଷଣ ସହିତ **ସୋମଃ** ପଦ କାହାର ବାଚକ ଓ ଏହି ବିଶେଷଣ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ରସ ହିଁ ଯାହାର ସ୍ୱରୂପ ଅଟେ, ତାହାକୁ **ରସାତ୍ମକ** କହନ୍ତି। ଅତଏବ **ରସାତ୍ମକଃ** ବିଶେଷଣ ସହିତ **ସୋମଃ** ପଦଟି ହେଉଛି ଚନ୍ଦ୍ରମାର ବାଚକ। ଏଠାରେ **ସୋମଃ** ସହିତ **ରସାତ୍ମକଃ** ବିଶେଷଣ ଦେଇ ଭଗବାନ୍ ଦେଖାଉଛନ୍ତି ଯେ, ଚନ୍ଦ୍ରମାର ସ୍ୱରୂପ ରସମୟ, ଅମୃତମୟ ତଥା ସେ ସମସ୍ତଙ୍କୁ ରସ ପ୍ରଦାନ କରେ।

**ପ୍ରଶ୍ନ — ଓଷଧୀଃ** ପଦ କେଉଁମାନଙ୍କ ବାଚକ? ଏବଂ 'ମୁଁ ହିଁ ଚନ୍ଦ୍ରମା ହୋଇ ସମସ୍ତ ବନସ୍ପତିଙ୍କୁ (ଔଷଧୀୟ ତରୁଲତା ଆଦିଙ୍କୁ) ପୁଷ୍ଟ କରୁଛି।'— ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର — ଓଷଧୀଃ** ପଦଟି ହେଉଛି ପତ୍ର, ପୁଷ୍ପ ଓ ଫଳ ଆଦି ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସହିତ ବୃକ୍ଷ, ଲତା ଓ ତୃଣ ଆଦି ଯେତେପ୍ରକାର ଉଦ୍ଭିଦ ଅଛନ୍ତି, ସେହିସବୁ ବନସ୍ପତିମାନଙ୍କର ବାଚକ। 'ମୁଁ ହିଁ ଚନ୍ଦ୍ରମା ହୋଇ ସମସ୍ତ ଓଷଧିମାନଙ୍କୁ ପୋଷଣ କରୁଛି।' କହି ଭଗବାନ୍ ଦେଖାଉଛନ୍ତି, "ଚନ୍ଦ୍ରମାରେ ଥିବା ପ୍ରକାଶନ ଶକ୍ତି ଯେପରି ମୋର ହିଁ ପ୍ରକାଶର ଏକ ଅଂଶ,

ସେହିପରି ସେଥିରେ ଯେଉଁ ପୋଷଣ କରିବା ଶକ୍ତି ରହିଛି, ତାହା ମଧ୍ୟ ମୋର ହିଁ ଶକ୍ତିର ଏକ ଅଂଶ। ଅତଏବ ମୁଁ ହିଁ ଚନ୍ଦ୍ରମାରୂପରେ ପ୍ରକଟ ହୋଇ ସମସ୍ତଙ୍କୁ ପୋଷଣ କରୁଛି।''

**ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ।**
**ପ୍ରାଣାପାନସମାୟୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ୍॥ ୧୪ ॥**

**ଅନ୍ୱୟ –** **ପ୍ରାଣିନାମ୍** = ପ୍ରାଣୀମାନଙ୍କର; **ଦେହମ୍** = ଶରୀରରେ; **ଆଶ୍ରିତଃ** = ସ୍ଥିତ ରହୁଥିବା; **ଅହମ୍** = ମୁଁ; **ପ୍ରାଣାପାନସମାୟୁକ୍ତଃ** = ପ୍ରାଣ ଓ ଅପାନଦ୍ୱାରା ସଂଯୁକ୍ତ (ହୋଇ); **ବୈଶ୍ୱାନରଃ** = ବୈଶ୍ୱାନର ଅଗ୍ନିରୂପ; **ଭୂତ୍ୱା** = ହୋଇ; **ଚତୁର୍ବିଧମ୍** = ଚାରିପ୍ରକାର; **ଅନ୍ନମ୍** = ଖାଦ୍ୟକୁ; **ପଚାମି** = ଜୀର୍ଣ୍ଣ କରୁଛି।

**ସକଳ ପ୍ରାଣୀଙ୍କ ଶରୀରରେ ରହୁଥିବା ମୁଁ ପ୍ରାଣ ଓ ଅପାନଦ୍ୱାରା ସଂଯୁକ୍ତ ବୈଶ୍ୱାନର ଅଗ୍ନିରୂପ ହୋଇ ଚାରିପ୍ରକାର ଅନ୍ନ ଜୀର୍ଣ୍ଣ କରୁଛି॥ ୧୪ ॥**

**ପ୍ରଶ୍ନ –** ଏଠାରେ **ପ୍ରାଣିନାଂ ଦେହମାଶ୍ରିତଃ** ବିଶେଷଣ ସହିତ **ବୈଶ୍ୱାନରଃ** ପଦ କାହାର ବାଚକ ଏବଂ 'ମୁଁ ପ୍ରାଣ ଓ ଅପାନଦ୍ୱାରା ସଂଯୁକ୍ତ ବୈଶ୍ୱାନର ହୋଇ ଚାରିପ୍ରକାର ଅନ୍ନ ଜୀର୍ଣ୍ଣ କରୁଛି।'— କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯାହାଗି ହେତୁ ସମସ୍ତଙ୍କ ଶରୀରରେ ଉଷ୍ଣତା ରହେ ଓ ଅନ୍ନ ଜୀର୍ଣ୍ଣ ହୁଏ, ଏଠାରେ **ପ୍ରାଣିନାଂ ଦେହମାଶ୍ରିତଃ** ବିଶେଷଣ ସହିତ **ବୈଶ୍ୱାନରଃ** ପଦଟି ହେଉଛି ସମସ୍ତ ପ୍ରାଣୀଙ୍କ ଶରୀରରେ ନିବାସ କରୁଥିବା ସେହି ଅଗ୍ନିର ବାଚକ। ''ମୁଁ ହିଁ ପ୍ରାଣ ଓ ଅପାନରେ ସଂଯୁକ୍ତ ବୈଶ୍ୱାନର ଅଗ୍ନି ହୋଇ ଚାରିପ୍ରକାର ଅନ୍ନ ଜୀର୍ଣ୍ଣ କରୁଛି,'' ବୋଲି ଭଗବାନ୍ ଯାହା କହିଲେ, ତା'ର ତାତ୍ପର୍ଯ୍ୟ ହେଉଛି: ''ଅଗ୍ନିର ପ୍ରକାଶନ ଶକ୍ତି ଯେପରି ମୋର ତେଜର ହିଁ ଏକ ଅଂଶ, ତା'ର ଯେଉଁ ଉଷ୍ଣତ୍ୱ ରହିଛି, ଅର୍ଥାତ୍ ତା'ର ଯେଉଁ ପାଚନ ଓ ଦୀପନ ଶକ୍ତି ରହିଛି, ତାହା ମଧ୍ୟ ସେହିପରି ମୋର ହିଁ ଶକ୍ତିର ଏକ ଅଂଶ। ଅତଏବ ମୁଁ ହିଁ ପ୍ରାଣ ଓ ଅପାନରେ ସଂଯୁକ୍ତ ହୋଇ ପ୍ରାଣୀମାନଙ୍କ ଶରୀରରେ ଥିବା ବୈଶ୍ୱାନର ଅଗ୍ନିରୂପରେ ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ଚୋଷ୍ୟ ପଦାର୍ଥମାନଙ୍କୁ ଅର୍ଥାତ୍ ଦାନ୍ତରେ ଚୋବାଇ ଖିଆ ଯାଉଥିବା ରୁଟି, ଭାତ ଇତ୍ୟାଦି, ପିଆ ଯାଉଥିବା ଦହି, ତଲ୍ଲା, ରାବିଡ଼ି, ଦୁଧ, ପାଣି ଇତ୍ୟାଦି, ଚାଟି ଖିଆ ଯାଉଥିବା ମହୁ, ଚଟଣି ଆଦି ଏବଂ ଚୁଚୁମି ଖିଆଯାଉଥିବା ଆଖୁ ଇତ୍ୟାଦି ଚାରିପ୍ରକାର ଖାଦ୍ୟ ଜୀର୍ଣ୍ଣ କରେ।''

***ସମ୍ବନ୍ଧ –*** *ଏପରିଭାବରେ ଦଶମ ଅଧ୍ୟାୟର ଏକଚାଳିଶ ଶ୍ଳୋକର ଭାବାନୁସାରେ ସଂପୂର୍ଣ୍ଣ ପ୍ରକାଶନଶକ୍ତି, ଧାରଣଶକ୍ତି, ପୋଷଣଶକ୍ତି ଓ ପାଚନଶକ୍ତି ଆଦି ସମସ୍ତ ଶକ୍ତିକୁ ନିଜ ଶକ୍ତିର ଏକ ଅଂଶ ବୋଲି କହି ଅର୍ଥାତ୍ ଯେପରି ପଙ୍ଖା ଚଳାଇ ବାୟୁ ବିସ୍ତାର କରିବାରେ, ବତି ଜଳାଇ ଆଲୋକ ବିସ୍ତାର କରିବାରେ, ଘୋରଣା ଘୂରାଇବାରେ, ଜଳ ଆଦି ଗରମ କରିବାରେ ତଥା ରେଡ଼ିଓ, ଆଦିଦ୍ୱାରା ଶବ୍ଦ-ରୂପ ପ୍ରକଟ କରାଇବାରେ ଏକମାତ୍ର ବିଜୁଳିଶକ୍ତିର ଅଂଶ ହିଁ ସବୁ କାର୍ଯ୍ୟ କରେ, ସେହିପରି ହିଁ ସୂର୍ଯ୍ୟ, ଚନ୍ଦ୍ରମା ଓ ଅଗ୍ନି ଆଦିଦ୍ୱାରା ସମସ୍ତଙ୍କୁ ପ୍ରକାଶିତ କରିବାରେ, ପୃଥିବୀ ଆଦିଦ୍ୱାରା ସମସ୍ତଙ୍କୁ ଧାରଣ କରିବାରେ, ଚନ୍ଦ୍ରଦ୍ୱାରା ସମସ୍ତଙ୍କୁ ପୋଷଣ କରିବାରେ ତଥା ବୈଶ୍ୱାନରଦ୍ୱାରା ଅନ୍ନକୁ ଜୀର୍ଣ୍ଣ କରିବାରେ ତାଙ୍କର (ଭଗବାନଙ୍କର) ଶକ୍ତିର ହିଁ ଏକ ଅଂଶ ସବୁ କିଛି କରେ ବୋଲି କହି ବର୍ତ୍ତମାନ ଭଗବାନ୍ ତାଙ୍କ ସର୍ବାନ୍ତର୍ଯାମିତ୍ୱ ଓ ସର୍ବଜ୍ଞତ୍ୱ ଆଦି ଗୁଣଦ୍ୱାରା ଯୁକ୍ତ ସ୍ୱରୂପର ବର୍ଣ୍ଣନା କରୁଛନ୍ତି ଓ ନିଜକୁ ସକଳପ୍ରକାରେ ଜାଣିବାଯୋଗ୍ୟ ବୋଲି କହୁଛନ୍ତି–*

**ସର୍ବସ୍ୟ ଚାହଂ ହୃଦି ସଂନିବିଷ୍ଟୋ ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ।**
**ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ ବେଦାନ୍ତକୃଦ୍‌ବେଦବିଦେବ ଚାହମ୍॥ ୧୫ ॥**

**ଅନ୍ୱୟ –** **ଅହମ୍** = ମୁଁ (ହିଁ); **ସର୍ବସ୍ୟ** = ସବୁ ପ୍ରାଣୀଙ୍କର; **ହୃଦି** = ହୃଦୟରେ; **ସଂନିବିଷ୍ଟଃ** = ଅନ୍ତର୍ଯାମୀରୂପରେ ରହିଛି; **ଚ** = ତଥା; **ମତ୍ତଃ** = ମୋଠାରୁ (ହିଁ); **ସ୍ମୃତିଃ** = ସ୍ମୃତି; **ଜ୍ଞାନମ୍** = ଜ୍ଞାନ; **ଚ** = ଓ; **ଅପୋହନମ୍** = ଅପୋହନ

(ସଂଶୟ, ବିପର୍ଯ୍ୟୟ ଆଦିର ନାଶ); (ଭବତି) = ହୋଇଥାଏ; ଚ = ଓ; **ସର୍ବୈଃ** = ସକଳ; **ବେଦୈଃ** = ବେଦମାନଙ୍କ ଦ୍ୱାରା; **ଅହମ୍** = ମୁଁ; **ଏବ** = ହିଁ; **ବେଦ୍ୟଃ** = ଜାଣିବାର ଯୋଗ୍ୟ (ତଥା); **ବେଦାନ୍ତକୃଦ୍** = ବେଦାନ୍ତର କର୍ତ୍ତା; ଚ = ଓ; **ବେଦବିଦ୍** = ବେଦଜ୍ଞ (ମଧ୍ୟ); **ଅହମ୍** = ମୁଁ; ଏବ = ହିଁ ଅଟେ।

**ମୁଁ ହିଁ ସବୁ ପ୍ରାଣୀଙ୍କ ହୃଦୟରେ ଅନ୍ତର୍ଯାମୀରୂପରେ ରହିଛି ତଥା ମୋଠାରୁ ହିଁ ସ୍ମୃତି, ଜ୍ଞାନ ଓ ଅପୋହନ (ସଂଶୟ-ବିପର୍ଯ୍ୟୟର ନାଶ) ଜାତ ହୁଏ ଓ ସବୁବେଦଦ୍ୱାରା ଏକମାତ୍ର ମୁଁ ହିଁ ଜାଣିବାର ଯୋଗ୍ୟ ତଥା ମୁଁ ହିଁ ବେଦାନ୍ତକର୍ତ୍ତା ଓ ବେଦଜ୍ଞ ଅଟେ।। ୧୫ ।।**

**ପ୍ରଶ୍ନ** — 'ମୁଁ ସମସ୍ତଙ୍କ ହୃଦୟରେ ରହିଛି' — ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର** — ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଯଦ୍ୟପି ମୁଁ ସର୍ବତ୍ର ସମଭାବରେ ପରିପୂର୍ଣ୍ଣ ହୋଇ ରହିଛି, ତଥାପି ସମସ୍ତଙ୍କ ହୃଦୟରେ ଅନ୍ତର୍ଯାମୀରୂପରେ ମୋର ବିଶେଷ ସ୍ଥିତି ରହିଛି। ଅତଏବ ହୃଦୟ ହେଉଛି ମୋର ଉପଲବ୍ଧିର ବିଶେଷ ସ୍ଥାନ। ତେଣୁ ମୁଁ ସମସ୍ତଙ୍କ ହୃଦୟରେ ରହିଛି ବୋଲି କୁହାଯାଏ (୧୩/୧୭, ୧୮/୬୧); କାରଣ ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ଓ ସ୍ୱଚ୍ଛ, ସେମାନଙ୍କ ହୃଦୟରେ ମୋର ପ୍ରତ୍ୟକ୍ଷ ଦର୍ଶନ ହୁଏ।''

**ପ୍ରଶ୍ନ** — **ସ୍ମୃତି, ଜ୍ଞାନ** ଓ **ଅପୋହନ** ଶବ୍ଦର ଅର୍ଥ କ'ଣ ଏବଂ 'ଏହି ତିନୋଟିଯାକ ମୋ'ଠାରୁ ହିଁ ଜାତ ହୁଏ' ବୋଲି କହି ଭଗବାନ୍ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର** — ପୂର୍ବରୁ ଦେଖିଥିବା, ଶୁଣିଥିବା ବା କୌଣସିପ୍ରକାର ଅନୁଭବ କରିଥିବା ବସ୍ତୁ ବା ଘଟଣାଦିର ସ୍ମରଣ କରିବାର ନାମ **ସ୍ମୃତି**। ଯେକୌଣସି ବସ୍ତୁର ଯଥାର୍ଥ ଜ୍ଞାନ ଲାଭ କରିବା ଶକ୍ତିର ନାମ **ଜ୍ଞାନ**। ସଂଶୟ, ବିପର୍ଯ୍ୟୟ ଆଦି ବିତର୍କଜାଲର ବାଚକ ହେଉଛି ଊହନ ଓ ଊହନ ଦୂର ହେବାର ନାମ **ଅପୋହନ**। 'ଏହି ତିନୋଟିଯାକ ମୋଠାରୁ ହିଁ ଜାତ ହୁଏ' ବୋଲି କହି ଭଗବାନ୍ ଦର୍ଶାଇଛନ୍ତି, ''ସମସ୍ତଙ୍କ ହୃଦୟରେ ବାସ କରିଥିବା ମୁଁ ଅନ୍ତର୍ଯାମୀ ପରମେଶ୍ୱର ହିଁ ପ୍ରାଣୀମାନଙ୍କର କର୍ମ ଅନୁସାରେ ସେମାନଙ୍କ ଅନ୍ତଃକରଣରେ ସ୍ମୃତି, ଜ୍ଞାନ ଓ ଅପୋହନ ଆଦି ଭାବ ଉତ୍ପନ୍ନ କରେ।''

**ପ୍ରଶ୍ନ** — 'ସମସ୍ତ ବେଦଦ୍ୱାରା କେବଳ ମୁଁ ହିଁ ଜାଣିବାର ଯୋଗ୍ୟବସ୍ତୁ' — ଏ କଥାର ଭାବ କ'ଣ ?

**ଉତ୍ତର** — ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ମୁଁ ସର୍ବଶକ୍ତିମାନ୍ ପରମେଶ୍ୱର ହିଁ ସକଳ ବେଦର ବିଧେୟ। ଅର୍ଥାତ୍ ସେଥିରେ କର୍ମକାଣ୍ଡ, ଉପାସନାକାଣ୍ଡ ଓ ଜ୍ଞାନକାଣ୍ଡାତ୍ମକ ଯେତେ ବି ବର୍ଣ୍ଣନା ରହିଛି, ସେସବୁର ଅନ୍ତିମ ଲକ୍ଷ୍ୟ ହେଉଛି ସଂସାର ପ୍ରତି ବୈରାଗ୍ୟ ଉତ୍ପନ୍ନ କରି ସବୁପ୍ରକାର ଅଧିକାରୀମାନଙ୍କୁ ମୋର ଜ୍ଞାନପ୍ରାପ୍ତ କରାଇବା। ଅତଏବ ସେମାନଙ୍କ ଦ୍ୱାରା ଯେଉଁ ମନୁଷ୍ୟ ମୋର ସ୍ୱରୂପସମ୍ବନ୍ଧୀ ଜ୍ଞାନ ପ୍ରାପ୍ତି କରନ୍ତି, ସେ ହିଁ ବେଦର ଅର୍ଥକୁ ଠିକ୍‌ଭାବରେ ବୁଝନ୍ତି ଏବଂ ଏହାର ବିପରୀତ, ସାଂସାରିକ ଭୋଗରେ ଲିପ୍ତ ଥିବା ଲୋକମାନେ ବେଦର ଅର୍ଥକୁ ଠିକ୍‌ଭାବରେ ବୁଝିପାରନ୍ତି ନାହିଁ।''

**ପ୍ରଶ୍ନ** — **ବେଦାନ୍ତ** ଶବ୍ଦ ଏଠାରେ କାହାର ବାଚକ ଏବଂ ଭଗବାନ୍ ନିଜକୁ ତାହାର କର୍ତ୍ତା ଏବଂ ସମସ୍ତ ବେଦର ଜ୍ଞାତା ବୋଲି କହିବାର ଭାବ କ'ଣ ?

**ଉତ୍ତର** — ବେଦର ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବାର ଅର୍ଥାତ୍ ବେଦବିଷୟକ ଶଙ୍କାଗୁଡ଼ିକର ସମାଧାନ କରି ଏକ ପରମାତ୍ମାଙ୍କ ଠାରେ ସବୁର ସମନ୍ୱୟ କରିବାର ନାମ **ବେଦାନ୍ତ**। ବେଦର କର୍ତ୍ତା ସେ ନିଜେ ବୋଲି କହି ଭଗବାନ୍ ବୁଝାଇଦେଉଛନ୍ତି, ''ବେଦରେ ପ୍ରତୀତ ହେଉଥିବା ବିରୋଧର ପ୍ରକୃତ ସମନ୍ୱୟ କରି ମୁଁ ହିଁ ମନୁଷ୍ୟକୁ ଶାନ୍ତି ପ୍ରଦାନ କରେ ତଥା ମୁଁ ହିଁ ବେଦର ଜ୍ଞାତା ମଧ୍ୟ ଅଟେ।'' ଏହାଦ୍ୱାରା ସେ ଦେଖାଇଛନ୍ତି, କେବଳ ମୁଁ ହିଁ ବେଦର ଯଥାର୍ଥ ତାତ୍ପର୍ଯ୍ୟ ଜାଣେ।

*ସମ୍ବନ୍ଧ* — *ପ୍ରଥମରୁ ଷଷ୍ଠ ଶ୍ଳୋକଯାଏ ବୃକ୍ଷରୂପକ ସଂସାରର, ଦୃଢ଼ ବୈରାଗ୍ୟଦ୍ୱାରା ତାହା ଛେଦନ କରିବାର, ପରମେଶ୍ୱରଙ୍କ ଶରଣ ନେବାର, ପରମାତ୍ମାଙ୍କୁ ପ୍ରାପ୍ତ କରିଥିବା ପୁରୁଷମାନଙ୍କ ଲକ୍ଷଣର ଓ ପରମଧାମସ୍ୱରୂପ ପରମେଶ୍ୱରଙ୍କ ମହିମାର ବର୍ଣ୍ଣନା କରି ଅଶ୍ୱତ୍ଥବୃକ୍ଷରୂପକ କ୍ଷରପୁରୁଷଙ୍କ ପ୍ରକରଣ ପୂର୍ଣ୍ଣ କରାଗଲା। ତା'ପରେ ସପ୍ତମ ଶ୍ଳୋକଠାରୁ 'ଜୀବ' ଶବ୍ଦବାଚ୍ୟ ଉପାସକ ଅକ୍ଷର ପୁରୁଷର ପ୍ରକରଣ ଆରମ୍ଭ କରି ତାର ସ୍ୱରୂପ, ଶକ୍ତି, ସ୍ୱଭାବ ଓ ବ୍ୟବହାରର ବର୍ଣ୍ଣନା କରାଗଲା ଏବଂ ତାହାକୁ ଜାଣିଥିବା ଲୋକଙ୍କ ମହିମା କହି ଏଗାର*

ଶ୍ଳୋକରେ ସେହି ପ୍ରକରଣ ପୂର୍ଣ୍ଣ କରାଗଲା। ପୁଣି ବାର ଶ୍ଳୋକରୁ ଉପାସ୍ୟଦେବ 'ପୁରୁଷୋତ୍ତମ'ଙ୍କ ପ୍ରକରଣ ଆରମ୍ଭ କରି ପନ୍ଦର ଶ୍ଳୋକପର୍ଯ୍ୟନ୍ତ ତାଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପ ବର୍ଣ୍ଣନା କରି ଭଗବାନ୍ ସେହି ପ୍ରକରଣକୁ ମଧ୍ୟ ପୂର୍ଣ୍ଣ କଲେ। ବର୍ତ୍ତମାନ ଅଧ୍ୟାୟର ସମାପ୍ତିଯାଏ ପୂର୍ବୋକ୍ତ ତିନୋଟିଯାକ ପ୍ରକରଣର ସାରକଥା ସଂକ୍ଷେପରେ କହିବାନିମନ୍ତେ, ପରବର୍ତ୍ତୀ ଶ୍ଳୋକରେ କ୍ଷର ଓ ଅକ୍ଷର ପୁରୁଷର ସ୍ୱରୂପ କହୁଛନ୍ତି—

**ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ।**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ॥ ୧୬ ॥**

**ଅନ୍ୱୟ—** **ଲୋକେ** = ଏହି ସଂସାରରେ; **କ୍ଷରଃ** = ନାଶବାନ୍; **ଚ** = ଓ; **ଅକ୍ଷରଃ** = ଅବିନାଶୀ; **ଏବ** = ହିଁ; **ଇମୌ** = ଏହି; **ଦ୍ୱୌ** = ଦୁଇପ୍ରକାର; **ପୁରୁଷୌ** = ପୁରୁଷ (ଅଛନ୍ତି); **ସର୍ବାଣି** = (ଏମାନଙ୍କ ମଧ୍ୟରେ) ସକଳ; **ଭୂତାନି** = ପ୍ରାଣୀମାନଙ୍କର ଶରୀର (ତ); **କ୍ଷରଃ** = ନାଶବାନ୍; **ଚ** = ଏବଂ; **କୂଟସ୍ଥଃ** = ଜୀବାତ୍ମା; **ଅକ୍ଷରଃ** = ଅବିନାଶୀ; **ଉଚ୍ୟତେ** = ବୋଲି କୁହାଯାଏ।

**ଏହି ସଂସାରରେ ନାଶବାନ୍ ଓ ଅବିନାଶୀ— ଏପରି ଦୁଇପ୍ରକାର ପୁରୁଷ ଅଛନ୍ତି। ଏମାନଙ୍କ ମଧ୍ୟରୁ ସକଳ ପ୍ରାଣୀମାନଙ୍କର ଶରୀର ନାଶବାନ୍ ଓ ଜୀବାତ୍ମା ଅବିନାଶୀ ବୋଲି କୁହାଯାଏ॥ ୧୬ ॥**

**ପ୍ରଶ୍ନ—** **ଇମୌ** ଓ **ଦ୍ୱୌ**— ଏହି ଦୁଇ ସର୍ବନାମ ପଦ ସହିତ **ପୁରୁଷୌ** ପଦ କେଉଁ ଦୁଇ ପୁରୁଷଙ୍କର ବାଚକ ତଥା ଗୋଟିକୁ କ୍ଷର ଓ ଅନ୍ୟଟିକୁ ଅକ୍ଷର କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହି ଅଧ୍ୟାୟରେ ଯେଉଁମାନଙ୍କ ପ୍ରସଙ୍ଗ ଚାଲିଛି, ସେଥିମଧ୍ୟରୁ ଦୁଇଟି ତତ୍ତ୍ୱର ବର୍ଣ୍ଣନା ଏଠାରେ 'କ୍ଷର' ଓ 'ଅକ୍ଷର' ନାମରେ କରାଯାଇଛି। ଏହି ଭାବ ଦେଖାଇବାପାଇଁ **ଇମୌ** ଓ **ଦ୍ୱୌ**— ଏହି ଦୁଇ ପଦ ପ୍ରୟୋଗ କରାଯାଇଛି। ଯେଉଁ ଦୁଇଟି ତତ୍ତ୍ୱର ବର୍ଣ୍ଣନା ସପ୍ତମ ଅଧ୍ୟାୟରେ 'ଅପରା' ଓ 'ପରା' ପ୍ରକୃତି ନାମରେ (୭/୪-୫), ଅଷ୍ଟମ ଅଧ୍ୟାୟରେ 'ଅଧିଭୂତ' ଓ 'ଅଧ୍ୟାତ୍ମ' ନାମରେ (୮/୪-୩), ତ୍ରୟୋଦଶ ଅଧ୍ୟାୟରେ 'କ୍ଷେତ୍ର' 'କ୍ଷେତ୍ରଜ୍ଞ' ନାମରେ (୧୩/୧) ଓ ଏହି ଅଧ୍ୟାୟର ଆରମ୍ଭରେ 'ଅଶ୍ୱତ୍ଥ' ଓ 'ଜୀବ' ନାମରେ କରାଯାଇଛି, **ପୁରୁଷୌ** ପଦଟି ହେଉଛି ସେହି ଦୁଇ ତତ୍ତ୍ୱର ବାଚକ। ସେଥିମଧ୍ୟରୁ ଗୋଟିକୁ 'କ୍ଷର' ଓ ଅନ୍ୟଟିକୁ 'ଅକ୍ଷର' କହି ଭଗବାନ୍ ଦେଖାଇଛନ୍ତି ଯେ, ଉଭୟ ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅଟନ୍ତି।

**ପ୍ରଶ୍ନ—** **ସର୍ବାଣି ଭୂତାନି** ଓ **କୂଟସ୍ଥଃ** ପଦ କେଉଁମାନଙ୍କ ବାଚକ ତଥା ସେମାନେ କ୍ଷର ଓ ଅକ୍ଷର ହେଲେ କିପରି ?

**ଉତ୍ତର—** **ଭୂତାନି** ପଦଟି ହେଉଛି ସମସ୍ତ ଜୀବଙ୍କର ସ୍ଥୂଳ, ସୂକ୍ଷ୍ମ ଓ କାରଣ— ଏହି ତିନିପ୍ରକାର ଶରୀରମାନଙ୍କ ବାଚକ। ଏଗୁଡ଼ିକୁ ହିଁ ତ୍ରୟୋଦଶ ଅଧ୍ୟାୟର ପ୍ରଥମ ଶ୍ଳୋକରେ **କ୍ଷେତ୍ର** ବୋଲି କହି ପଞ୍ଚମ ଶ୍ଳୋକରେ କ୍ଷେତ୍ରର ସ୍ୱରୂପ କହିଛନ୍ତି। ସେହି ବର୍ଣ୍ଣନାଦ୍ୱାରା ଏଠାରେ **ସର୍ବାଣି** ବିଶେଷଣ ସହିତ **ଭୂତାନି** ପଦଟି ହେଉଛି ସମସ୍ତ ଜଡବର୍ଗର ବାଚକ। ଏହି ତତ୍ତ୍ୱ ନାଶବାନ୍ ଓ ଅନିତ୍ୟ। ଦ୍ୱିତୀୟ ଅଧ୍ୟାୟରେ **ଅନ୍ତବନ୍ତ ଇମେ ଦେହାଃ** (୨/୧୮) ଓ ଅଷ୍ଟମ ଅଧ୍ୟାୟରେ **ଅଧିଭୂତଂ କ୍ଷରୋ ଭାବଃ** (୮/୪)ରେ ଏହି କଥା କୁହାଯାଇଛି। ଏଠାରେ **କୂଟସ୍ଥ** ଶବ୍ଦଟି ହେଉଛି ସମସ୍ତ ଶରୀରମାନଙ୍କ ମଧ୍ୟରେ ରହିଥିବା ଆତ୍ମାର ବାଚକ। ଏହା ସଦା ଏକାପରି ରହେ। ଏଥିରେ ପରିବର୍ତ୍ତନ ହୁଏ ନାହିଁ। ତେଣୁ ଏହାକୁ 'କୂଟସ୍ଥ' କହନ୍ତି। ଏବଂ ଏହାର କେବେ କୌଣସି ଅବସ୍ଥାରେ କ୍ଷୟ, ନାଶ ବା ଅଭାବ ହୁଏ ନାହିଁ ବୋଲି ଏହା "ଅକ୍ଷର" ଅଟେ।

**ସମ୍ବନ୍ଧ—** ଏପରିଭାବରେ କ୍ଷର ଓ ଅକ୍ଷର ପୁରୁଷର ସ୍ୱରୂପ କହି ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ସେହି ଦୁହିଁଙ୍କ ଠାରୁ ଶ୍ରେଷ୍ଠ ପୁରୁଷୋତ୍ତମ ଭଗବାନ୍‌ଙ୍କର ସ୍ୱରୂପ ଓ ପୁରୁଷୋତ୍ତମ ହେବାର କାରଣ ବର୍ଣ୍ଣନା କରୁଛନ୍ତି—

**ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।**
**ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ।। ୧୭ ।।**

**ଅନ୍ୱୟ—** **ଉତ୍ତମଃ** = ଉତ୍ତମ; **ପୁରୁଷଃ** = ପୁରୁଷ; **ତୁ** = ତ; **ଅନ୍ୟଃ** = ଅନ୍ୟ ଜଣେ ହିଁ ଅଟନ୍ତି; **ଯଃ** = ଯେ କି; **ଲୋକତ୍ରୟମ୍** = ତ୍ରିଲୋକରେ; **ଆବିଶ୍ୟ** = ପ୍ରବେଶ କରି; **ବିଭର୍ତ୍ତି** = (ସମସ୍ତଙ୍କୁ) ଧାରଣ-ପୋଷଣ କରନ୍ତି (ଏବଂ); **ଅବ୍ୟୟଃ** = ଅବିନାଶୀ; **ଈଶ୍ୱରଃ** = ପରମେଶ୍ୱର (ଓ) **ପରମାତ୍ମା** = ପରମାତ୍ମା; **ଇତି** = ବୋଲି; **ଉଦାହୃତଃ** = କଥିତ ହୁଅନ୍ତି;।

**ଏହି ଦୁଇ ପୁରୁଷଙ୍କ ଠାରୁ ଉତ୍ତମ ପୁରୁଷ ତ ଅନ୍ୟ ଜଣେ ହିଁ ଅଟନ୍ତି, ଯେ କି ତିନି ଲୋକରେ ପ୍ରବେଶ କରି ସମସ୍ତଙ୍କର ଧାରଣପୋଷଣ କରନ୍ତି ଏବଂ ଅବିନାଶୀ ପରମେଶ୍ୱର ଓ ପରମାତ୍ମା ବୋଲି କଥିତ ହୁଅନ୍ତି ।। ୧୭ ।।**

**ପ୍ରଶ୍ନ—** **ଉତ୍ତମଃ ପୁରୁଷଃ** କାହାର ବାଚକ ତଥା **ତୁ** ଓ **ଅନ୍ୟ**— ଏହି ଦୁଇ ପଦର ଭାବ କ'ଣ ?

**ଉତ୍ତର—** **ଉତ୍ତମଃ ପୁରୁଷଃ** ହେଉଛି ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ, ସର୍ବଶକ୍ତିମାନ୍, ପରମ ଦୟାଳୁ, ସର୍ବଗୁଣସମ୍ପନ୍ନ ପୁରୁଷୋତ୍ତମ ଭଗବାନଙ୍କର ବାଚକ ତଥା **ତୁ** ଓ **ଅନ୍ୟଃ** ଏହି ଦୁଇପଦଦ୍ୱାରା ପୂର୍ବୋକ୍ତ 'କ୍ଷର' ପୁରୁଷ ଓ 'ଅକ୍ଷର' ପୁରୁଷଙ୍କ ଠାରୁ ଭଗବାନଙ୍କର ବିଲକ୍ଷଣତା ପ୍ରତିପାଦନ କରାଯାଇଛି। ଅଭିପ୍ରାୟ ଏହି ଯେ, ଉତ୍ତମ ପୁରୁଷ ସେହି ପୂର୍ବୋକ୍ତ ଦୁଇ ପୁରୁଷଙ୍କ ଠାରୁ ଭିନ୍ନ ଓ ଅତ୍ୟନ୍ତ ଶ୍ରେଷ୍ଠ ଅଟନ୍ତି।

**ପ୍ରଶ୍ନ—** 'ଯେ କି ତିନି ଲୋକରେ ପ୍ରବେଶ କରି ସମସ୍ତଙ୍କ ଧାରଣପୋଷଣ କରନ୍ତି'— ଏହାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହାଦ୍ୱାରା ପୁରୁଷୋତ୍ତମଙ୍କର ଲକ୍ଷଣ ନିରୂପଣ କରାଯାଇଛି। ଅଭିପ୍ରାୟ ଏହି ଯେ, ଯେଉଁ ସର୍ବାଧାର, ସର୍ବବ୍ୟାପୀ ପରମେଶ୍ୱର ସାରା ଜଗତରେ ପ୍ରବିଷ୍ଟ ହୋଇ 'ପୁରୁଷ' ନାମରେ ବର୍ଣ୍ଣିତ 'କ୍ଷର' ଓ 'ଅକ୍ଷର' ଦୁଇ ତତ୍ତ୍ୱକୁ ଧାରଣ କରନ୍ତି ଏବଂ ସମସ୍ତ ପ୍ରାଣୀମାନଙ୍କୁ ପାଳନ କରନ୍ତି, ସେ ସେହି ଦୁହିଁଙ୍କ ଠାରୁ ଭିନ୍ନ ଓ ଉତ୍ତମ — ପୁରୁଷୋତ୍ତମ ଅଟନ୍ତି।

**ପ୍ରଶ୍ନ—** 'ଯାହାଙ୍କୁ ଅବ୍ୟୟ, ଈଶ୍ୱର ଓ 'ପରମାତ୍ମା' ବୋଲି କୁହାଯାଇଛି'— ଏହି ବାକ୍ୟାଂଶର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଥିରେ ମଧ୍ୟ ସେହି 'ପୁରୁଷୋତ୍ତମ'ଙ୍କର ହିଁ ଲକ୍ଷଣ କୁହାଯାଇଛି। ଅଭିପ୍ରାୟ ଏହି ଯେ, ଯେ ତିନିଲୋକରେ ପ୍ରବିଷ୍ଟ ହୋଇ ସେମାନଙ୍କ ନାଶ ହୋଇଯିବା ପରେ ମଧ୍ୟ କେବେ ବି ନଷ୍ଟ ହୁଅନ୍ତି ନାହିଁ, ସଦା ହିଁ ନିର୍ବିକାର, ଏକରସ ହୋଇ ରହନ୍ତି ତଥା ଯେ କ୍ଷର ଓ ଅକ୍ଷର ଏହି ଦୁଇ ପୁରୁଷଙ୍କର ନିୟାମକ, ସ୍ୱାମୀ ଓ ସର୍ବଶକ୍ତିମାନ୍ ଈଶ୍ୱର ଏବଂ ଯେ ଗୁଣାତୀତ, ଶୁଦ୍ଧ ଓ ସମସ୍ତଙ୍କର ଆତ୍ମା, ସେ ହିଁ ପରମାତ୍ମା 'ପୁରୁଷୋତ୍ତମ'।

କ୍ଷର, ଅକ୍ଷର ଓ ଈଶ୍ୱର — ଏହି ତିନି ତତ୍ତ୍ୱର ବର୍ଣ୍ଣନା ଶ୍ୱେତାଶ୍ୱତରୋପନିଷଦରେ ଏହିପରି ଆସିଛି—

**କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ କ୍ଷରାତ୍ମାନାବୀଶତେ ଦେବ ଏକଃ।** (୧/୧୦)

'ପ୍ରଧାନ ଅର୍ଥାତ୍ ପ୍ରକୃତିର ନାମ କ୍ଷର ଏବଂ ତା'ର ଭୋକ୍ତା ଅବିନାଶୀ ଆତ୍ମାର ନାମ ଅକ୍ଷର। ପ୍ରକୃତି ଓ ଆତ୍ମା — ଏହି ଉଭୟଙ୍କୁ ଏକ ହିଁ ଦେବ (ପୁରୁଷୋତ୍ତମ) ଶାସନ କରନ୍ତି।'

**ଯସ୍ମାତ୍କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।**
**ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।। ୧୮ ।।**

**ଅନ୍ୱୟ—** **ଯସ୍ମାତ୍** = ଯେହେତୁ; **ଅହମ୍** = ମୁଁ; **କ୍ଷରମ୍** = ନାଶବାନ୍ ଜଡ଼ବର୍ଗ କ୍ଷେତ୍ରଠାରୁ (ସର୍ବଥା); **ଅତୀତଃ** = ଅତୀତ ଅଟେ; **ଚ** = ଓ; **ଅକ୍ଷରାତ୍** = ଅବିନାଶୀ ଜୀବାତ୍ମାଠାରୁ; **ଅପି** = ମଧ୍ୟ; **ଉତ୍ତମଃ** = ଉତ୍ତମ ଅଟେ; **ଅତଃ** = ଏଣୁ; **ଲୋକେ** = ଲୋକମାନଙ୍କ ମଧ୍ୟରେ; **ଚ** = ଓ; **ବେଦେ** = ବେଦରେ (ମଧ୍ୟ); **ପୁରୁଷୋତ୍ତମଃ** = ପୁରୁଷୋତ୍ତମ ନାମରେ; **ପ୍ରଥିତଃ** = ପ୍ରସିଦ୍ଧ; **ଅସ୍ମି** = ଅଟେ।

**ଯେହେତୁ ମୁଁ ନାଶବାନ୍ ଜଡ଼ବର୍ଗକ୍ଷେତ୍ରଠାରୁ ସର୍ବଥା ଅତୀତ ଏବଂ ଅବିନାଶୀ ଜୀବାତ୍ମାଠାରୁ ମଧ ଉତ୍ତମ, ତେଣୁ ଲୋକରେ ଓ ବେଦରେ ମଧ ମୁଁ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ॥ ୧୮ ॥**

**ପ୍ରଶ୍ନ—** ଏଠାରେ **ଅହମ୍** ପଦ ପ୍ରୟୋଗର ଭାବ କ'ଣ?

**ଉତ୍ତର—** **ଅହମ୍** ପ୍ରୟୋଗ କରି ଭଗବାନ୍ ଉପରୋକ୍ତ ଲକ୍ଷଣମାନଙ୍କ ଦ୍ୱାରା ସମ୍ପନ୍ନ ପୁରୁଷୋତ୍ତମ ମୁଁ ନିଜେ ହିଁ ଅଟେ ବୋଲି ତାଙ୍କର ପରମ ରହସ୍ୟ ଅର୍ଜୁନଙ୍କ ଆଗରେ ଉଦ୍‌ଘାଟନ କରିଛନ୍ତି।

**ପ୍ରଶ୍ନ—** ଭଗବାନ୍ ନିଜକୁ କ୍ଷରଠାରୁ ଅତୀତ ଓ ଅକ୍ଷରଠାରୁ ମଧ ଉତ୍ତମ ବୋଲି କହି କେଉଁ ଭାବ ଦେଖାଇଛନ୍ତି?

**ଉତ୍ତର—** 'କ୍ଷର' ପୁରୁଷଠାରୁ ଅତୀତ ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ସେ କ୍ଷର ପୁରୁଷଠାରୁ ସର୍ବଥା ସମ୍ବନ୍ଧରହିତ ଓ ଅତ୍ୟନ୍ତ ବିଲକ୍ଷଣ— ଅର୍ଥାତ୍ ତ୍ରୟୋଦଶ ଅଧ୍ୟାୟରେ ଯାହାକୁ ଶରୀର ଓ କ୍ଷେତ୍ର ନାମରେ କୁହାଯାଇଛି, ସେହି ତ୍ରିଗୁଣର ସମୁଦାୟରୂପୀ ସକଳ ବିନାଶଶୀଳ ଜଡ଼ବର୍ଗଠାରୁ ସେ ସର୍ବଥା ନିର୍ଲିପ୍ତ। 'ଅକ୍ଷର'ଠାରୁ ନିଜକୁ ଉତ୍ତମ ବୋଲି କହି ଭଗବାନ୍ କହୁଛନ୍ତି, "ମୁଁ କ୍ଷର ପୁରୁଷପରି ଅକ୍ଷରଠାରୁ ଅତୀତ ତ ନୁହେଁ; କାରଣ, ତାହା ମୋର ହିଁ ଅଂଶ ହୋଇଥିବାରୁ ଅବିନାଶୀ ଓ ଚେତନ ଅଟେ; କିନ୍ତୁ ତା'ଠାରୁ ମୁଁ ଅବଶ୍ୟ ଉତ୍ତମ; କାରଣ, ସେ ପ୍ରକୃତିରେ ସ୍ଥିତ ଓ ମୁଁ ପ୍ରକୃତିର ଊର୍ଦ୍ଧ୍ୱରେ ଅର୍ଥାତ୍ ଗୁଣମାନଙ୍କ ଠାରୁ ସର୍ବଥା ଅତୀତ। ଏଣୁ ସେ ଅଳ୍ପଜ୍ଞ; ମୁଁ ସର୍ବଜ୍ଞ। ସେ ନିୟମ୍ୟ; ମୁଁ ନିୟାମକ; ସେ ମୋର ଉପାସକ ଓ ମୁଁ ତା'ର ସ୍ୱାମୀ ଉପାସ୍ୟ ଦେବ ଏବଂ ସେ ଅଳ୍ପଶକ୍ତିସମ୍ପନ୍ନ ଓ ମୁଁ ସର୍ବଶକ୍ତିସମ୍ପନ୍ନ। ଅତଏବ ତା' ଅପେକ୍ଷା ମୁଁ ସବୁପ୍ରକାରେ ଉତ୍ତମ।"

**ପ୍ରଶ୍ନ—ଯସ୍ମାତ୍** ଓ **ଅତଃ—** ଏହି ହେତୁବାଚକ ପଦ ଦୁଇଟି ପ୍ରୟୋଗ କରି 'ମୁଁ ଲୋକରେ ଓ ବେଦରେ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ଅଟେ' ବୋଲି କହିବାର ଭାବ କ'ଣ?

**ଉତ୍ତର— ଯସ୍ମାତ୍** ଓ **ଅତଃ—** ଏଦୁଇଟି ହେତୁବାଚକ ପଦ ପ୍ରୟୋଗ କରି, ନିଜକୁ ଲୋକରେ ଓ ବେଦରେ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ବୋଲି କହିବାଦ୍ୱାରା ଭଗବାନ୍ ନିଜର ପୁରୁଷୋତ୍ତମତ୍ୱକୁ ସିଦ୍ଧ କରିଛନ୍ତି। ଅଭିପ୍ରାୟ ଏହି ଯେ, ଉପରୋକ୍ତ କାରଣରୁ ଭଗବାନ୍ କ୍ଷରଠାରୁ ଅତୀତ ଓ ଅକ୍ଷରଠାରୁ ଉତ୍ତମ ଅଟନ୍ତି। ତେଣୁ ସମସ୍ତ ଜଗତରେ ଏବଂ ବେଦଶାସ୍ତ୍ରରେ ସେ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ଅଟନ୍ତି। ଅର୍ଥାତ୍ ସମସ୍ତେ ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ହିଁ କହନ୍ତି।

*ସମ୍ବନ୍ଧ— ବର୍ତ୍ତମାନ ଉପରୋକ୍ତଭାବରେ ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ଜାଣୁଥିବା ପୁରୁଷଙ୍କର ମହିମା ଓ ଲକ୍ଷଣ କହୁଛନ୍ତି—*

**ଯୋ ମାମେବମସଂମୂଢୋ ଜାନାତି ପୁରୁଷୋତ୍ତମମ୍।**
**ସ ସର୍ବବିଦ୍‌ଭଜତି ମାଂ ସର୍ବଭାବେନ ଭାରତ॥ ୧୯ ॥**

**ଅନ୍ୱୟ—** ଭାରତ = ହେ ଭାରତ!; **ଯଃ** = ଯେଉଁ; **ଅସଂମୂଢଃ** = ଜ୍ଞାନୀପୁରୁଷ; **ମାମ୍** = ମୋତେ; **ଏବମ୍** = ଏହିପରି; **ପୁରୁଷୋତ୍ତମମ୍** = ପୁରୁଷୋତ୍ତମ ବୋଲି; **ଜାନାତି** = ତତ୍ତ୍ୱତଃ ଜାଣେ; **ସଃ** = ସେହି; **ସର୍ବବିତ୍** = ସର୍ବଜ୍ଞ ପୁରୁଷ; **ସର୍ବଭାବେନ** = ସକଳଭାବରେ ନିରନ୍ତର; **ମାମ୍** = ମୋତେ — ବାସୁଦେବ ପରମେଶ୍ୱରଙ୍କୁ ହିଁ; **ଭଜତି** = ଭଜେ।

**ହେ ଭାରତ! ଯେଉଁ ଜ୍ଞାନୀ ପୁରୁଷ ମୋତେ ଏହିପରି ତତ୍ତ୍ୱତଃ ପୁରୁଷୋତ୍ତମ ବୋଲି ଜାଣନ୍ତି, ସେହି ସର୍ବଜ୍ଞ ପୁରୁଷ ନିରନ୍ତର ମୋତେ ଅର୍ଥାତ୍ ବାସୁଦେବ ପରମେଶ୍ୱରଙ୍କୁ ହିଁ ସକଳଭାବରେ ଭଜନ୍ତି॥ ୧୯ ॥**

**ପ୍ରଶ୍ନ –** ଏଠାରେ ଏବମ୍‌ର ଭାବ କ'ଣ ?

**ଉତ୍ତର –** ଏଠାରେ **ଏବମ୍** ଉପରୋକ୍ତ ଦୁଇ ଶ୍ଳୋକରେ କରାଯାଇଥିବା ବର୍ଣ୍ଣନାକୁ ନିର୍ଦ୍ଦେଶ କରୁଛି ।

**ପ୍ରଶ୍ନ – ମାମ୍** କାହାର ବାଚକ ଓ ତାହାଙ୍କୁ 'ପୁରୁଷୋତ୍ତମ' ବୋଲି ଜାଣିବାର ଅର୍ଥ କ'ଣ ?

**ଉତ୍ତର –** ଏଠାରେ **'ମାମ୍'** ପଦଟି ହେଉଛି ସର୍ବଶକ୍ତିମାନ୍, ସର୍ବାଧାର, ସମସ୍ତ ଜଗତର ସୃଜନ, ପାଳନ ଓ ସଂହାର ଆଦି କରୁଥିବା ସମସ୍ତଙ୍କର ପରମ ସୁହୃଦ୍, ସମସ୍ତଙ୍କର ଏକମାତ୍ର ନିୟନ୍ତା, ସର୍ବଗୁଣସମ୍ପନ୍ନ, ପରମ ଦୟାଳୁ, ପରମପ୍ରେମୀ, ସର୍ବାନ୍ତର୍ଯାମୀ, ସର୍ବବ୍ୟାପୀ ପରମେଶ୍ୱରଙ୍କ ବାଚକ । ସେ ଉପରୋକ୍ତ ଦୁଇ ଶ୍ଳୋକର ବର୍ଣ୍ଣନାପ୍ରକାରେ କ୍ଷର ଓ ଅକ୍ଷର ଦୁଇ ପୁରୁଷଙ୍କ ଠାରୁ ଉତ୍ତମ, ଗୁଣାତୀତ ଓ ସର୍ବଗୁଣସମ୍ପନ୍ନ, ସାକାର-ନିରାକାର, ବ୍ୟକ୍ତାବ୍ୟକ୍ତସ୍ୱରୂପ ପରମପୁରୁଷ ପୁରୁଷୋତ୍ତମ ଅଟନ୍ତି ବୋଲି ଶ୍ରଦ୍ଧାପୂର୍ବକ ପୂର୍ଣ୍ଣରୂପରେ ମାନିନେବା ହିଁ ତାହାଙ୍କୁ 'ପୁରୁଷୋତ୍ତମ' ବୋଲି ଜାଣିବା ।

**ପ୍ରଶ୍ନ – ଅସଂମୂଢ଼ଃ** ପଦର ଭାବ କ'ଣ ?

**ଉତ୍ତର –** ଯାହାଙ୍କର ଜ୍ଞାନ ସଂଶୟ, ବିପର୍ଯ୍ୟୟ ଆଦି ଦୋଷରୁ ଶୂନ୍ୟ, ଯାହାଙ୍କ ଠାରେ ମୋହର ସାମାନ୍ୟ ଅଂଶ ନ ଥାଏ, ତାହାଙ୍କୁ **ଅସମ୍ମୂଢ଼** କହନ୍ତି । ଅତଏବ ଏଠାରେ **ଅସମ୍ମୂଢ଼ଃ** ପ୍ରୟୋଗ କରି ଭଗବାନ୍ କହିଛନ୍ତି, ''ଯେଉଁ ମନୁଷ୍ୟ ମୋତେ ସାଧାରଣ ମନୁଷ୍ୟ ବୋଲି ନ ଭାବି, ସାକ୍ଷାତ୍ ସର୍ବଶକ୍ତିମାନ୍ ପରମେଶ୍ୱର ପୁରୁଷୋତ୍ତମ ବୋଲି ଜାଣନ୍ତି, ତାଙ୍କର ଜାଣିବା ହିଁ ଯଥାର୍ଥ ଜାଣିବା ।''

**ପ୍ରଶ୍ନ – ସର୍ବବିତ୍‌ର** ଭାବ କ'ଣ ?

**ଉତ୍ତର –** ଯେ ସମସ୍ତ ଜାଣିବା ଯୋଗ୍ୟ ବସ୍ତୁମାନଙ୍କୁ ଭଲରୂପେ ଜାଣନ୍ତି, ତାହାଙ୍କୁ **ସର୍ବବିତ୍** କହନ୍ତି । ଏହି ଅଧ୍ୟାୟରେ କ୍ଷର, ଅକ୍ଷର ଓ ପୁରୁଷୋତ୍ତମ – ଏପରି ତିନି ଭାଗରେ ବିଭକ୍ତ କରି ସମସ୍ତ ପଦାର୍ଥର ବର୍ଣ୍ଣନା କରାଗଲା । ଅତଏବ ଯେ କ୍ଷର ଓ ଅକ୍ଷର ଉଭୟର ଯଥାର୍ଥ ସ୍ୱରୂପ ଜାଣି ଉଭୟଙ୍କ ଠାରୁ ଅତ୍ୟନ୍ତ ଉତ୍ତମ ପୁରୁଷୋତ୍ତମ ତତ୍ତ୍ୱକୁ ମଧ୍ୟ ଜାଣନ୍ତି, ସେ **ସର୍ବବିତ୍** ଅଟନ୍ତି – ଅର୍ଥାତ୍ ସମସ୍ତ ପଦାର୍ଥର ଯଥାର୍ଥ ଜ୍ଞାନ ପାଇଥିବା ଲୋକ ଅଟନ୍ତି । ତେଣୁ ତାଙ୍କୁ **ସର୍ବବିତ୍ (ସର୍ବଜ୍ଞ)** କହନ୍ତି ।

**ପ୍ରଶ୍ନ –** ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ଜାଣୁଥିବା ପୁରୁଷ ତାହାଙ୍କୁ ସବୁଭାବରେ ଭଜିବା କ'ଣ, ତଥା 'ସେ ମୋତେ ସର୍ବଭାବରେ ଭଜନ୍ତି' – ଏ କଥାର ଉଦ୍ଦେଶ୍ୟ କ'ଣ ?

**ଉତ୍ତର –** ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ଜାଣୁଥିବା ପୁରୁଷ ସକଳ ସାଂସାରିକ ବସ୍ତୁରୁ ପ୍ରେମ ଓ ଆସକ୍ତି ତ୍ୟାଗ କରି କେବଳମାତ୍ର ପରମ ପ୍ରେମାସ୍ପଦ ଏକ ପରମେଶ୍ୱରଙ୍କୁ ହିଁ ପୂର୍ଣ୍ଣ ପ୍ରେମ କରିବା ଏବଂ ବୁଦ୍ଧିଦ୍ୱାରା ଭଗବାନଙ୍କର ଗୁଣ, ପ୍ରଭାବ, ତତ୍ତ୍ୱ, ରହସ୍ୟ, ଲୀଳା, ସ୍ୱରୂପ ଓ ମହିମାରେ ପୂର୍ଣ୍ଣ ବିଶ୍ୱାସ, ମନଦ୍ୱାରା ତାଙ୍କର ନାମ, ଗୁଣ, ପ୍ରଭାବ, ଚରିତ୍ର ଓ ସ୍ୱରୂପ ଆଦିର ଶ୍ରଦ୍ଧା ଓ ପ୍ରେମପୂର୍ବକ ଚିନ୍ତନ, କର୍ଣ୍ଣରେ ଶ୍ରବଣ, ବାଣୀରେ କୀର୍ତ୍ତନ, ନେତ୍ରରେ ଦର୍ଶନ ଏବଂ ତାଙ୍କର ଆଜ୍ଞାନୁସାରେ ସବୁକିଛି ତାଙ୍କର ବୋଲି ବୁଝି ତଥା ସମସ୍ତଙ୍କ ଠାରେ ସେ ବ୍ୟାପ୍ତ ହୋଇଛନ୍ତି ବୋଲି ବୁଝି ନିଜର କର୍ତ୍ତବ୍ୟ-କର୍ମଦ୍ୱାରା ସମସ୍ତଙ୍କୁ ସୁଖ ପହଞ୍ଚାଇ ସେମାନଙ୍କର ସେବା ଆଦି କରିବା — ଏହା ହିଁ ଭଗବାନଙ୍କୁ ସବୁପ୍ରକାରେ ଭଜନ କରିବା । 'ସେ ସର୍ବଭାବରେ ମୋତେ ଭଜନ୍ତି' – ଏହି ବାକ୍ୟର ପ୍ରୟୋଗ ଏଠାରେ ଭଗବାନଙ୍କୁ 'ପୁରୁଷୋତ୍ତମ' ବୋଲି ଜାଣୁଥିବା ପୁରୁଷଙ୍କର ପରିଚୟ ଦେବା ଉଦ୍ଦେଶ୍ୟରେ କରାଯାଇଛି । ଅଭିପ୍ରାୟ ଏହି ଯେ, ଯେ ଭଗବାନଙ୍କୁ କ୍ଷରଠାରୁ ଅତୀତ ଓ ଅକ୍ଷରଠାରୁ ଉତ୍ତମ ବୋଲି ଜାଣିପାରନ୍ତି, ସେ କେବଳ ଭଗବାନଙ୍କୁ ହିଁ ଉପରୋକ୍ତପ୍ରକାରେ ନିରନ୍ତର ଭଜନ୍ତି; — ଏହା ତାଙ୍କର ଲକ୍ଷଣ ।

**ସମ୍ବନ୍ଧ –** *ଏପରିଭାବରେ ଭଗବାନଙ୍କୁ ପୁରୁଷୋତ୍ତମ ବୋଲି ଜାଣୁଥିବା ପୁରୁଷଙ୍କର ମହିମା ବର୍ଣ୍ଣନା କରି, ବର୍ତ୍ତମାନ ଏହି ଅଧ୍ୟାୟରେ ବର୍ଣ୍ଣିତ ବିଷୟକୁ ଗୁହ୍ୟତମ ବୋଲି କହିବା ସଂଗେ ସଂଗେ ତାହା ଜାଣିବାର ଫଳ କହି ଅଧ୍ୟାୟ ଉପସଂହାର କରୁଛନ୍ତି–*

## ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାନଘ ।
## ଏତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ ।। ୨୦ ।।

**ଅନ୍ୱୟ –** ଅନଘ = ହେ ନିଷ୍ପାପ; ଭାରତ = ଅର୍ଜୁନ !; ଇତି = ଏପରିଭାବରେ; ଇଦମ୍ = ଏହି; ଗୁହ୍ୟତମମ୍ = ଅତ୍ୟନ୍ତ ରହସ୍ୟଯୁକ୍ତ ଗୋପନୀୟ; ଶାସ୍ତ୍ରମ୍ = ଶାସ୍ତ୍ର; ମୟା = ମୋ' ଦ୍ୱାରା; ଉକ୍ତମ୍ = କୁହାଗଲା; ଏତତ୍ = ଏହାକୁ; ବୁଦ୍ଧ୍ୱା = ତତ୍ତ୍ୱତଃ ଜାଣି (ମନୁଷ୍ୟ); ବୁଦ୍ଧିମାନ୍ = ଜ୍ଞାନବାନ୍; ଚ = ଏବଂ; କୃତକୃତ୍ୟଃ = କୃତାର୍ଥ; ସ୍ୟାତ୍ = ହୋଇଯାଏ ।

**ହେ ନିଷ୍ପାପ ଅର୍ଜୁନ! ଏପରିଭାବରେ ଏହି ଅତି ରହସ୍ୟଯୁକ୍ତ ଗୋପନୀୟ ଶାସ୍ତ୍ର ମୋ ଦ୍ୱାରା କୁହାଗଲା । ଏହାକୁ ତତ୍ତ୍ୱତଃ ଜାଣି ମନୁଷ୍ୟ ଜ୍ଞାନବାନ୍ ଓ କୃତାର୍ଥ ହୋଇଯାଏ ।। ୨୦ ।।**

**ପ୍ରଶ୍ନ –** ଅନଘ ସମ୍ବୋଧନର ଅଭିପ୍ରାୟ କ'ଣ ?

**ଉତ୍ତର –** 'ଅଘ' ଅର୍ଥ ପାପ । ଯାହାଦ୍ୱାରା ପାପ ହୁଏ ନାହିଁ, ତାହାକୁ ଅନଘ କହନ୍ତି । ଭଗବାନ୍ ଅର୍ଜୁନଙ୍କୁ ଏଠାରେ ଅନଘ ନାମରେ ସମ୍ବୋଧିତ କରି କହୁଛନ୍ତି, ''ତୁମ ଅନ୍ତରରେ ପାପ ନାହିଁ, ତୁମର ଅନ୍ତଃକରଣ ଶୁଦ୍ଧ ଓ ନିର୍ମଳ; ତେଣୁ ତୁମେ ମୋର ଏହି ଗୁହ୍ୟତମ ଉପଦେଶ ଶୁଣିବାର ଓ ଧାରଣ କରିବାର ଯୋଗ୍ୟପାତ୍ର ଅଟ ।''

**ପ୍ରଶ୍ନ –** ଇତି ଓ ଇଦମ୍ ପଦଟି ସହିତ **ଶାସ୍ତ୍ରମ୍** ପଦଟି ଏଠାରେ ଏହି ପନ୍ଦର ଅଧ୍ୟାୟର ବାଚକ, ନା ସମଗ୍ର ଗୀତାର ବାଚକ ?

**ଉତ୍ତର – ଇତି** ଓ **ଇଦମ୍** ସହିତ **ଶାସ୍ତ୍ରମ୍** ପଦଟି ହେଉଛି ଏହି ପଞ୍ଚଦଶ ଅଧ୍ୟାୟର ବାଚକ । **ଇଦମ୍**ଦ୍ୱାରା ଏହି ଅଧ୍ୟାୟର ଓ **ଇତି**ଦ୍ୱାରା ତା'ର ସମାପ୍ତିର ନିର୍ଦ୍ଦେଶ ଦେଇଛନ୍ତି ଏବଂ ତାହାକୁ ସମ୍ମାନ ଦେବାପାଇଁ ତା'ର ନାମ **ଶାସ୍ତ୍ର** ରଖାଯାଇଛି ।

**ପ୍ରଶ୍ନ –** ଏହି ଉପଦେଶକୁ ଗୁହ୍ୟତମ ବୋଲି କହିବାର ଓ 'ମୋ ଦ୍ୱାରା କୁହାଗଲା'– ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାକୁ ଗୁହ୍ୟତମ ବୋଲି କହି ଭଗବାନ୍ ସୂଚାଇଛନ୍ତି, ''ଏହି ଅଧ୍ୟାୟରେ ମୋର ଅର୍ଥାତ୍– ସଗୁଣ ପରମେଶ୍ୱରଙ୍କର ଗୁଣ, ପ୍ରଭାବ, ତତ୍ତ୍ୱ ଓ ରହସ୍ୟର କଥା ମୁଖ୍ୟତଃ କୁହାଯାଇଛି । ଅତଏବ ଏହା ଅତିଶୟ ଗୁପ୍ତ ରଖିବାର ଯୋଗ୍ୟ । ମୁଁ ଯେକୌଣସି ଲୋକ ଆଗରେ ଏପରିଭାବରେ ନିଜର ଗୁଣ, ପ୍ରଭାବ, ତତ୍ତ୍ୱ ଓ ଐଶ୍ୱର୍ଯ୍ୟ ପ୍ରକଟ କରେ ନାହିଁ । ଅତଏବ ତୁମେ ମଧ୍ୟ କୌଣସି ଅପାତ୍ର ଆଗରେ ଏହି ରହସ୍ୟ କହିବା ଉଚିତ ନୁହେଁ ।'' 'ଏହା ମୋ ଦ୍ୱାରା କୁହାଗଲା' ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ଏହା ତାଙ୍କ ଦ୍ୱାରା ଅର୍ଥାତ୍ ସର୍ବଶକ୍ତିମାନ୍ ସର୍ବଜ୍ଞ ପରମେଶ୍ୱରଙ୍କ ଦ୍ୱାରା ଉପଦିଷ୍ଟ ହୋଇଛି । ତେଣୁ ଏହା ସମସ୍ତ ବେଦ ଓ ଶାସ୍ତ୍ରର ପରମସାର ଅଟେ ।

**ପ୍ରଶ୍ନ –** ଏହି ଶାସ୍ତ୍ରକୁ ତତ୍ତ୍ୱତଃ ଜାଣିବା କ'ଣ ? ତଥା ଏହା ଜାଣିବା ଲୋକ ବୁଦ୍ଧିମାନ୍ ଓ କୃତାର୍ଥ ହୋଇଯାଏ, କହିଲେ କ'ଣ ବୁଝାଏ ?

**ଉତ୍ତର –** ଏହି ଅଧ୍ୟାୟରେ ବର୍ଣ୍ଣିତ ଭଗବାନଙ୍କର ଗୁଣ, ପ୍ରଭାବ, ତତ୍ତ୍ୱ ଓ ସ୍ୱରୂପ ଆଦି ଭଲଭାବରେ ବୁଝି ଭଗବାନଙ୍କୁ ପୂର୍ବୋକ୍ତପ୍ରକାରେ ସାକ୍ଷାତ୍ ପୁରୁଷୋତ୍ତମ ବୋଲି ଜାଣିପାରିବା ହିଁ ଏହି ଶାସ୍ତ୍ରକୁ ତତ୍ତ୍ୱତଃ ଜାଣିବା । ତାହା ଜାଣିଥିବା ଲୋକ ସେହି ପୁରୁଷୋତ୍ତମ ଭଗବାନଙ୍କୁ ଅପରୋକ୍ଷଭାବରେ ଯେଉଁ ପ୍ରାପ୍ତି କରନ୍ତି, ତାହା ହିଁ ତାଙ୍କର ବୁଦ୍ଧିମାନ୍ ଅର୍ଥାତ୍ ଜ୍ଞାନବାନ୍ ହୋଇଯିବା ଓ ସମସ୍ତ କର୍ତ୍ତବ୍ୟ ପୂର୍ଣ୍ଣ କରିନେବା; ଏପରି ସମସ୍ତ ଫଳ ପ୍ରାପ୍ତ ହୋଇଯିବା ହିଁ କୃତକୃତ୍ୟ ହୋଇଯିବା ।

—୦—

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ପୁରୁଷୋତ୍ତମଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ।। ୧୫ ।।*

ଓଁ ଶ୍ରୀ ପରମାତ୍ମନେ ନମଃ

# ଷୋଡ଼ଶୋଽଧ୍ୟାୟଃ

## ଦୈବାସୁରସମ୍ପଦ୍‌ବିଭାଗଯୋଗ

**ଅଧ୍ୟାୟର ନାମ:** ଏହି ଷୋହଳ ଅଧ୍ୟାୟରେ ବେଦଶବ୍ଦବାଚ୍ୟ ପରମେଶ୍ୱରଙ୍କ ସହିତ ସମ୍ବନ୍ଧ ରଖୁଥିବା ତଥା ପରମାତ୍ମାଙ୍କୁ ପ୍ରାପ୍ତ କରାଉଥିବା ସଦ୍‌ଗୁଣ ଓ ସଦାଚାରଗୁଡ଼ିକୁ ଦୈବୀସମ୍ପଦ ନାମ ଦେଇ ସେଗୁଡ଼ିକ ଧାରଣ କରିବାକୁ କୁହାଯାଇଛି ଏବଂ ଅସୁରମାନଙ୍କର ଦୁର୍ଗୁଣ ଓ ଦୁରାଚାରଗୁଡ଼ିକୁ ଆସୁରୀସମ୍ପଦ୍ ନାମ ଦେଇ ସେଗୁଡ଼ିକ ତ୍ୟାଗ କରିଦେବାକୁ କୁହାଯାଇଛି। ଏହି ବିଷୟ ବିଭାଗପୂର୍ବକ ବିସ୍ତୃତ ବର୍ଣ୍ଣନା କରାଯାଇଛି। ତେଣୁ ଏହି ଅଧ୍ୟାୟର ନାମ 'ଦୈବାସୁରସମ୍ପଦ୍‌ବିଭାଗଯୋଗ' ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର:** ଏହି ଅଧ୍ୟାୟର ପ୍ରଥମରୁ ତୃତୀୟ ଶ୍ଳୋକଯାଏ ଦୈବୀସମ୍ପଦ୍‌ପ୍ରାପ୍ତ ପୁରୁଷଙ୍କର ଲକ୍ଷଣଗୁଡ଼ିକ ବିସ୍ତାରପୂର୍ବକ ବର୍ଣ୍ଣନା କରି ଚତୁର୍ଥରେ ଆସୁରୀସମ୍ପଦ ସଂକ୍ଷେପରେ ନିରୂପଣ କରାଯାଇଛି। ପଞ୍ଚମରେ ଦୈବୀସମ୍ପଦର ଫଳ ମୁକ୍ତି ତଥା ଆସୁରୀସମ୍ପଦର ଫଳ ବନ୍ଧନ ବୋଲି କୁହାଯାଇଛି ଏବଂ ଅର୍ଜୁନ ଦୈବୀସମ୍ପଦ୍‌ଯୁକ୍ତ ବୋଲି କହି ତାଙ୍କୁ ଆଶ୍ୱାସନା ଦିଆଯାଇଛି। ଷଷ୍ଠରେ ପୁଣି ଥରେ ଦୈବ ଓ ଆସୁର– ଉଭୟପ୍ରକାର ଲୋକଙ୍କର ସଙ୍କେତ ଦେଇ ଆସୁରସ୍ୱଭାବଯୁକ୍ତ ଲୋକଙ୍କ ବିଷୟ ବିସ୍ତାରପୂର୍ବକ ଶୁଣିବାକୁ କୁହାଯାଇଛି। ତା'ପରେ ସପ୍ତମରୁ କୋଡ଼ିଏ ଶ୍ଳୋକଯାଏ ଆସୁରୀପ୍ରକୃତିବିଶିଷ୍ଟ ମନୁଷ୍ୟମାନଙ୍କର ଦୁର୍ଭାବ, ଦୁର୍ଗୁଣ ଓ ଦୁରାଚାର ତଥା ସେମାନଙ୍କ ଦୁର୍ଗତି ବିଷୟ ବର୍ଣ୍ଣନା କରାଯାଇଛି। ଏକୋଇଶି ଶ୍ଳୋକରେ ଆସୁରୀସମ୍ପଦମଧ୍ୟରେ ପ୍ରଧାନ କାମ, କ୍ରୋଧ ଓ ଲୋଭକୁ ନରକର ଦ୍ୱାର ବୋଲି କହିଛନ୍ତି। ବାଇଶିରେ ସେମାନଙ୍କ ଠାରୁ ମୁକ୍ତ ହୋଇଥିବା ସାଧକ ନିଷ୍କାମଭାବରେ ଦୈବୀସମ୍ପଦ ସାଧନାଦ୍ୱାରା ପରମଗତି ପାଆନ୍ତି ବୋଲି ଦେଖାଇଛନ୍ତି। ତେଇଶରେ ଶାସ୍ତ୍ରବିଧି ତ୍ୟାଗ କରି ଇଚ୍ଛାନୁସାରେ କର୍ମ କରୁଥିବା ଲୋକମାନଙ୍କର ନିନ୍ଦା କରି ଚବିଶି ଶ୍ଳୋକରେ ଶାସ୍ତ୍ରାନୁକୂଳ କର୍ମ କରିବାକୁ ପ୍ରେରଣା ଦେବା ସହିତ ଅଧ୍ୟାୟର ଉପସଂହାର କରାଯାଇଛି।

**ସମ୍ବନ୍ଧ**— ସପ୍ତମ ଅଧ୍ୟାୟର ପନ୍ଦର ଶ୍ଳୋକରେ ତଥା ନବମ ଅଧ୍ୟାୟର ଏଗାର ଓ ବାର ଶ୍ଳୋକରେ ଭଗବାନ୍ କହିଥିଲେ, "ଆସୁରୀ ଓ ରାକ୍ଷସୀ ପ୍ରକୃତି ଧାରଣ କରିଥିବା ମୂଢ଼ଲୋକେ ମୋର ଭଜନ କରନ୍ତି ନାହିଁ, ବରଂ ମୋର ତିରସ୍କାର କରନ୍ତି।" ପୁଣି ନବମ ଅଧ୍ୟାୟର ତେର ଓ ଚଉଦ ଶ୍ଳୋକରେ କହିଥିଲେ, "ଦୈବୀପ୍ରକୃତିଯୁକ୍ତ ମହାତ୍ମାଗଣ ମୋତେ ସକଳ ଭୂତପ୍ରାଣୀଙ୍କର ଆଦି ଓ ଅବିନାଶୀ ବୋଲି ବୁଝି ଅନନ୍ୟପ୍ରେମର ସହିତ ସବୁପ୍ରକାରେ ନିରନ୍ତର ମୋର ଭଜନ କରନ୍ତି।" ପରନ୍ତୁ ଅନ୍ୟ ପ୍ରସଙ୍ଗ ଚାଲିଥିବାରୁ ସେଠାରେ ଦୈବୀପ୍ରକୃତି ଓ ଆସୁରୀପ୍ରକୃତିର ଲକ୍ଷଣମାନ ବର୍ଣ୍ଣନା କରିପାରି ନ ଥିଲେ। ପୁଣି ପନ୍ଦର ଅଧ୍ୟାୟର ଉଣେଇଶି ଶ୍ଳୋକରେ ଭଗବାନ୍ କହିଲେ, "ଯେଉଁ ଜ୍ଞାନୀ ମହାତ୍ମାମାନେ ମୋତେ 'ପୁରୁଷୋତ୍ତମ' ବୋଲି ଜାଣନ୍ତି, ସେମାନେ ସବୁପ୍ରକାରେ ମୋର ଭଜନ କରନ୍ତି।" ଏହା ଉପରେ ଭଗବାନଙ୍କୁ ପୁରୁଷୋତ୍ତମ ଜାଣି ସର୍ବଭାବରେ ତାଙ୍କର ଭଜନ କରୁଥିବା ଦୈବୀପ୍ରକୃତିଯୁକ୍ତ ମହାତ୍ମା ପୁରୁଷମାନଙ୍କର ଲକ୍ଷଣ କ'ଣ ଓ ଭଗବାନଙ୍କର ଭଜନ କରୁ ନ ଥିବା ଆସୁରୀପ୍ରକୃତିଯୁକ୍ତ ଅଜ୍ଞାନୀ ମନୁଷ୍ୟମାନଙ୍କର ଲକ୍ଷଣ କ'ଣ, ତାହା ଜାଣିବାକୁ ଇଚ୍ଛା ହେବା ସ୍ୱାଭାବିକ। ଅତଏବ ବର୍ତ୍ତମାନ ଭଗବାନ୍ ସେହି ଉଭୟଙ୍କର ଲକ୍ଷଣ ଓ ସ୍ୱଭାବ ବିସ୍ତୃତଭାବରେ ବର୍ଣ୍ଣନା କରିବାପାଇଁ ଷୋହଳ ଅଧ୍ୟାୟ ଆରମ୍ଭ କରୁଛନ୍ତି। ଏଥିରେ ପ୍ରଥମ ତିନି ଶ୍ଳୋକରେ ଦୈବୀସମ୍ପଦଯୁକ୍ତ ସାତ୍ତ୍ୱିକ ପୁରୁଷମାନଙ୍କର ସ୍ୱାଭାବିକ ଲକ୍ଷଣଗୁଡ଼ିକ ବିସ୍ତୃତଭାବରେ ବର୍ଣ୍ଣନା କରାଯାଉଛି—

ଶ୍ରୀଭଗବାନୁବାଚ

## ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
## ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବମ୍ ॥ ୧ ॥

**ଅନ୍ୱୟ—** **ଅଭୟମ୍** = ଭୟର ସର୍ବଥା ଅଭାବ; **ସତ୍ତ୍ୱସଂଶୁଦ୍ଧିଃ** = ଅନ୍ତଃକରଣର ପୂର୍ଣ୍ଣନିର୍ମଳତା; **ଜ୍ଞାନଯୋଗବ୍ୟବସ୍ଥିତିଃ** = ତତ୍ତ୍ୱଜ୍ଞାନପାଇଁ ଧ୍ୟାନଯୋଗରେ ନିରନ୍ତର ଦୃଢ଼ସ୍ଥିତି; **ଚ** = ଓ; **ଦାନମ୍** = ସାତ୍ତ୍ୱିକ ଦାନ; **ଦମଃ** = ଇନ୍ଦ୍ରିୟଦମନ; **ଯଜ୍ଞଃ** = ଭଗବାନ୍, ଦେବତା ଓ ଗୁରୁଜନମାନଙ୍କର ପୂଜା ତଥା ଅଗ୍ନିହୋତ୍ରାଦି ଉତ୍ତମକର୍ମ ଆଚରଣ (ଏବଂ); **ସ୍ୱାଧ୍ୟାୟଃ** = ବେଦଶାସ୍ତ୍ରାଦିର ପଠନପାଠନ ତଥା ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ; **ତପଃ** = ସ୍ୱଧର୍ମପାଳନ ନିମନ୍ତେ କଷ୍ଟସହନ; **ଚ** = ଓ; **ଆର୍ଜବମ୍** = ଶରୀର ତଥା ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣର ସରଳତା ---

**ଶ୍ରୀଭଗବାନ୍ କହିଲେ— ଭୟର ସର୍ବଥା ଅଭାବ, ଅନ୍ତଃକରଣର ପୂର୍ଣ୍ଣନିର୍ମଳତା, ତତ୍ତ୍ୱଜ୍ଞାନ ପାଇଁ ଧ୍ୟାନଯୋଗରେ ନିରନ୍ତର ଦୃଢ଼ସ୍ଥିତି ଓ ସାତ୍ତ୍ୱିକ ଦାନ, ଇନ୍ଦ୍ରିୟଦମନ, ଭଗବାନ୍, ଦେବତା ଓ ଗୁରୁଜନମାନଙ୍କର ପୂଜା ତଥା ଅଗ୍ନିହୋତ୍ର ଆଦି ଉତ୍ତମ କର୍ମ ଆଚରଣ ଏବଂ ବେଦ-ଶାସ୍ତ୍ରାଦିର ପଠନ-ପାଠନ ତଥା ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ, ସ୍ୱଧର୍ମପାଳନପାଇଁ କଷ୍ଟସହନ ଏବଂ ଶରୀର ତଥା ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣର ସରଳତା, ---॥ ୧ ॥**

**ପ୍ରଶ୍ନ—** ଅଭୟ କାହାକୁ କହନ୍ତି ?

**ଉତ୍ତର—** ଇଷ୍ଟର ବିୟୋଗ ଓ ଅନିଷ୍ଟର ସଂଯୋଗ ଆଶଙ୍କାରେ ମନରେ ଯେଉଁ କାତରତାପୂର୍ଣ୍ଣ ବିକାର ଉଦୟ ହୁଏ, ତା'ର ନାମ ଭୟ ଯଥା, ପ୍ରତିଷ୍ଠାନାଶର ଭୟ, ଅପମାନଭୟ; ନିନ୍ଦାଭୟ, ରୋଗଭୟ, ରାଜଦଣ୍ଡଭୟ, ଭୂତପ୍ରେତଭୟ ଓ ମୃତ୍ୟୁଭୟ ଇତ୍ୟାଦି। ଭୟର ସର୍ବଥା ଅଭାବର ନାମ **ଅଭୟ**।

**ପ୍ରଶ୍ନ—** ସତ୍ତ୍ୱସଂଶୁଦ୍ଧି କ'ଣ ?

**ଉତ୍ତର—** ଅନ୍ତଃକରଣକୁ ସତ୍ତ୍ୱ କହନ୍ତି। ଅନ୍ତଃକରଣରେ ଯେଉଁ ରାଗ-ଦ୍ୱେଷ, ହର୍ଷ-ଶୋକ, ମମତ୍ୱ-ଅହଂକାର, ମୋହ-ମତ୍ସର ଆଦି ବିକାର ଓ ନାନାପ୍ରକାର କଳୁଷିତ ପାପମୟ ଭାବ ଉଠେ, ସେମାନଙ୍କର ସର୍ବଥା ଅଭାବ ହୋଇ ଅନ୍ତଃକରଣ ପୂର୍ଣ୍ଣରୂପେ ନିର୍ମଳ ଓ ପରିଶୁଦ୍ଧ ହୋଇଯିବା ହିଁ **ସତ୍ତ୍ୱସଂଶୁଦ୍ଧି** (ଅନ୍ତଃକରଣର ସମ୍ୟକ୍ ଶୁଦ୍ଧି)।

**ପ୍ରଶ୍ନ— ଜ୍ଞାନଯୋଗବ୍ୟବସ୍ଥିତି** କାହାକୁ କହନ୍ତି ?

**ଉତ୍ତର—** ପରମାତ୍ମାଙ୍କ ସ୍ୱରୂପକୁ ଯଥାର୍ଥଭାବେ ଜାଣିଯିବାର ନାମ **ଜ୍ଞାନ** ଓ ତା'ର ପ୍ରାପ୍ତିପାଇଁ ପରମାତ୍ମାଙ୍କ ଧ୍ୟାନରେ ନିରନ୍ତର ଲାଗିରହିବାର ନାମ **ଜ୍ଞାନଯୋଗବ୍ୟବସ୍ଥିତି**।

**ପ୍ରଶ୍ନ—** ଦାନମ୍ ପଦର ଭାବ କ'ଣ ?

**ଉତ୍ତର—** କର୍ତ୍ତବ୍ୟ ବିଚାରି, ଦେଶ-କାଳ ଓ ପାତ୍ର ବିଚାରି ନିଷ୍କାମଭାବରେ ଅନ୍ନ, ବସ୍ତ୍ର, ବିଦ୍ୟା ଓ ଔଷଧାଦି ବସ୍ତୁ ବିତରଣ କରିବାର ନାମ **ଦାନ** (୧୭/୨୦)।

**ପ୍ରଶ୍ନ—** ଦମଃ ପଦର ଭାବ କ'ଣ ?

**ଉତ୍ତର—** ଇନ୍ଦ୍ରିୟମାନଙ୍କୁ ବିଷୟଭୋଗରୁ କାଢ଼ିଆଣି ସେମାନଙ୍କୁ ନିଜର ବଶ କରିନେବା ହିଁ **ଦମ**।

**ପ୍ରଶ୍ନ— ଯଜ୍ଞଃ** ପଦର ଅଭିପ୍ରାୟ କ'ଣ ?

**ଉତ୍ତର—** ଭଗବାନଙ୍କର ତଥା ଦେବତା, ବ୍ରାହ୍ମଣ, ମହାତ୍ମା, ଅତିଥି, ମାତା-ପିତା ଓ ଗୁରୁଜନଙ୍କର ପୂଜା କରିବା, ହୋମ କରିବା ଓ ବଳିବୈଶ୍ୱଦେବ କରିବା ଆଦିକୁ **ଯଜ୍ଞ** କହନ୍ତି।

**ପ୍ରଶ୍ନ— ସ୍ୱାଧ୍ୟାୟ** କାହାକୁ କହନ୍ତି ?

**ଉତ୍ତର—** ବେଦ ଅଧ୍ୟୟନ କରିବା, ଯେଉଁଥିରେ ବିବେକ-ବୈରାଗ୍ୟ ତଥା ଭଗବାନଙ୍କର ଗୁଣ, ପ୍ରଭାବ, ତତ୍ତ୍ୱ, ସ୍ୱରୂପ ଏବଂ ତାଙ୍କ ଦିବ୍ୟଲୀଳାମାନ ବର୍ଣ୍ଣିତ ହୋଇଥାଏ, ସେହିସବୁ ଶାସ୍ତ୍ର, ଇତିହାସ ଓ ପୁରାଣ ଆଦି ପଠନ-ପାଠନ କରିବା ଏବଂ ଭଗବାନଙ୍କ ନାମ ଓ ଗୁଣ କୀର୍ତ୍ତନ କରିବା ଆଦିକୁ **ସ୍ୱାଧ୍ୟାୟ** କହନ୍ତି।

**ପ୍ରଶ୍ନ –** ଏଠାରେ **ତପଃ** ପଦ କାହାର ବାଚକ ?

**ଉତ୍ତର –** ନିଜର ଧର୍ମପାଳନପାଇଁ କଷ୍ଟ ସହି ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ଯେଉଁ ତାପ ଦିଆଯାଏ, ତାହାର ନାମ **ତପ**। ସତର ଅଧ୍ୟାୟରେ ଯେଉଁ ଶାରୀରିକ, ବାଚିକ ଓ ମାନସିକ ତପ ନିରୂପଣ କରାଯାଇଛି, ଏଠାରେ **ତପଃ** ପଦରେ ତାହା ନିର୍ଦ୍ଦେଶ କରାଯାଇ ନାହିଁ; କାରଣ ସେଠାରେ ଅହିଂସା, ସତ୍ୟ, ଶୌଚ, ସ୍ୱାଧ୍ୟାୟ ଓ ଆର୍ଜବ ଆଦି ଯେଉଁ ଲକ୍ଷଣମାନଙ୍କୁ ତପର ଅଙ୍ଗରୂପେ ନିରୂପଣ କରାଯାଇଛି, ଏଠାରେ ସେମାନଙ୍କର ପୃଥକ୍ ବର୍ଣ୍ଣନା କରାଯାଇଛି।

**ପ୍ରଶ୍ନ –** ଆର୍ଜବ କାହାକୁ କହନ୍ତି ?

**ଉତ୍ତର –** ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣର ସରଳତାକୁ ଆର୍ଜବ କହନ୍ତି।

**ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନମ୍।**
**ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲମ୍॥ ୨ ॥**

**ଅନ୍ୱୟ –** **ଅହିଂସା** = କାୟମନୋବାକ୍ୟରେ କାହାରିକୁ କୌଣସିପ୍ରକାର କଷ୍ଟ ନ ଦେବା; **ସତ୍ୟମ୍** = ଯଥାର୍ଥ ଓ ପ୍ରିୟ ଭାଷଣ; **ଅକ୍ରୋଧଃ** = ନିଜର ଅପକାର କରୁଥିବା ଲୋକ ପ୍ରତି କ୍ରୋଧ ନ କରିବା; **ତ୍ୟାଗଃ** = କର୍ମରେ କର୍ତ୍ତୃତ୍ୱ ଅଭିମାନ ତ୍ୟାଗ; **ଶାନ୍ତିଃ** = ଅନ୍ତଃକରଣର ଉପରତି ଅର୍ଥାତ୍ ଚିତ୍ତଚଞ୍ଚଳତାର ଅଭାବ; **ଅପୈଶୁନମ୍** = କାହାରି ନିନ୍ଦା ନ କରିବା; **ଭୂତେଷୁ** = ସବୁ ଭୂତପ୍ରାଣୀଙ୍କ ପ୍ରତି; **ଦୟା** = ଅହେତୁକ ଦୟା; **ଅଲୋଲୁପ୍ତ୍ୱମ୍** = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ସହିତ ସଂଯୋଗ ହେଲେ ମଧ୍ୟ ସେଥିରେ ଆସକ୍ତି ନ ହେବା; **ମାର୍ଦ୍ଦବମ୍** = କୋମଳତା; **ହ୍ରୀ** = ଲୋକାଚାର ଓ ଶାସ୍ତ୍ରବିରୁଦ୍ଧ ଆଚରଣରେ ଲଜ୍ଜା (ଓ); **ଅଚାପଲମ୍** = ବ୍ୟର୍ଥ ଚେଷ୍ଟାର ଅଭାବ।

**କାୟମନୋବାକ୍ୟରେ କାହାରିକୁ କୌଣସିପ୍ରକାର କଷ୍ଟ ନ ଦେବା, ଯଥାର୍ଥ ଓ ପ୍ରିୟ ବଚନ କହିବା, ନିଜର ଅପକାର କରୁଥିବା ଲୋକ ପ୍ରତି ମଧ୍ୟ କ୍ରୋଧ ନ କରିବା, କର୍ମରେ କର୍ତ୍ତୃତ୍ୱ ଅଭିମାନ ତ୍ୟାଗ, ଅନ୍ତଃକରଣର ଉପରତି ଅର୍ଥାତ୍ ଚିତ୍ତଚଞ୍ଚଳତାର ଅଭାବ, କାହାରି ମଧ୍ୟ ନିନ୍ଦା ଆଦି ନ କରିବା, ସବୁ ପ୍ରାଣୀଙ୍କ ପ୍ରତି ଅହେତୁକ ଦୟା, ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ସହିତ ସଂଯୋଗ ହେଲେ ମଧ୍ୟ ସେଥିରେ ଆସକ୍ତି ନ ହେବା, କୋମଳତା, ଲୋକାଚାର ଓ ଶାସ୍ତ୍ରବିରୁଦ୍ଧ ଆଚରଣରେ ଲଜ୍ଜା ଏବଂ ବ୍ୟର୍ଥଚେଷ୍ଟାର ଅଭାବ, ---॥ ୨ ॥**

**ପ୍ରଶ୍ନ –** ଅହିଂସା କାହାକୁ କହନ୍ତି ?

**ଉତ୍ତର –** କୌଣସି ବି ପ୍ରାଣୀକୁ କେବେ କେଉଁଠି ଲୋଭ, ମୋହ ବା କ୍ରୋଧପୂର୍ବକ ଅଧିକମାତ୍ରାରେ, ମଧ୍ୟମାତ୍ରାରେ ବା ଅଳ୍ପମାତ୍ରାରେ ବି ନିଜେ କୌଣସିପ୍ରକାର କଷ୍ଟ ଦେବାର, ଅନ୍ୟଦ୍ୱାରା କଷ୍ଟ ଦିଆଇବାର ବା କେହି କାହାକୁ କଷ୍ଟ ଦେଉଥିବାବେଳେ ତାହାକୁ ଅନୁମୋଦନ କରିବାର ନାମ ପ୍ରତ୍ୟେକ ଅବସ୍ଥାରେ ହିଂସା ହିଁ ଅଟେ। କୌଣସି ବି କାରଣରୁ ମନ, ବାଣୀ ବା ଶରୀରଦ୍ୱାରା ଏପରି ହିଂସା ନ କରିବା – ଅର୍ଥାତ୍ ମନରେ କାହାର ମନ୍ଦ ନ ଚାହିଁବା; କଥାରେ କାହାକୁ ଗାଳି ନ ଦେବା, କଠୋର ବଚନ ନ କହିବା ଓ କୌଣସିପ୍ରକାର ହାନିକାରକ ବଚନ ନ କହିବା ତଥା ଶରୀରଦ୍ୱାରା କାହାକୁ ନ ମାରିବା, କଷ୍ଟ ନ ଦେବା ଓ କୌଣସିପ୍ରକାର କ୍ଷତି ନ କରିବା ଆଦି ହେଉଛି **ଅହିଂସା**ର ଉଦାହରଣ।

**ପ୍ରଶ୍ନ –** ସତ୍ୟ କାହାକୁ କହନ୍ତି ?

**ଉତ୍ତର –** ଇନ୍ଦ୍ରିୟଦ୍ୱାରା ଓ ଅନ୍ତଃକରଣଦ୍ୱାରା ଯାହା କିଛି ଦେଖାଗଲା, ଶୁଣାଗଲା ଓ ଅନୁଭବ କରାଗଲା, ଅନ୍ୟକୁ ଠିକ୍ ତାହା ବୁଝାଇଦେବାକୁ କପଟ ଛାଡ଼ି ଯଥାସମ୍ଭବ ଯେଉଁ ପ୍ରିୟ ଓ ହିତକର ବଚନ କୁହାଯାଏ, ତାହାକୁ **ସତ୍ୟ** କହନ୍ତି।

**ପ୍ରଶ୍ନ –** **ଅକ୍ରୋଧଃ** ପଦର ଭାବ କ'ଣ ?

**ଉତ୍ତର –** ସ୍ୱଭାବଦୋଷରୁ ଅଥବା କାହାରି ଦ୍ୱାରା ଅପମାନ, ଅପକାର, ନିନ୍ଦା ବା ମନର ପ୍ରତିକୂଳ କାର୍ଯ୍ୟ

କରାଯାଉଥିବା ଦେଖି, ଦୁର୍ବଚନ ଶୁଣି ଅଥବା କାହାର ଅନୀତିଯୁକ୍ତ କାର୍ଯ୍ୟ ଦେଖି ମନରେ ଯେଉଁ ଦ୍ୱେଷପୂର୍ଣ୍ଣ, ଉତ୍ତେଜନାମୟୀ ବୃତ୍ତି ଉତ୍ପନ୍ନ ହୁଏ, ତାହା ହେଉଛି ଭିତରର କ୍ରୋଧ । ତା'ପରେ ଶରୀର ଓ ମନରେ ଯେଉଁ ଜ୍ୱାଳା ଜାତ ହୁଏ, ମୁହଁରେ ବିକାର ଫୁଟିଉଠେ ଓ ଚକ୍ଷୁ ଲାଲ ହୋଇଯାଏ, ତାହା ହେଉଛି ବୃଦ୍ଧିପ୍ରାପ୍ତ କ୍ରୋଧର ସ୍ୱରୂପ । ସେହି ଜଳିବା ଓ ଜଳାଇବା — ଉଭୟପ୍ରକାର ବୃତ୍ତିର ନାମ **କ୍ରୋଧ** । ଏହି ବୃତ୍ତିମାନଙ୍କର ସର୍ବଥା ଅଭାବ ହିଁ **ଅକ୍ରୋଧ** ।

**ପ୍ରଶ୍ନ —ତ୍ୟାଗ** କାହାକୁ କହନ୍ତି ?

**ଉତ୍ତର —** କେବଳ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହେଉଛନ୍ତି, ମୋର ଏସବୁ କର୍ମ ସହିତ କିଛି ବି ସମ୍ବନ୍ଧ ନାହିଁ— ଏହିପରି ବିଚାର କରି ଅଥବା ମୁଁ ତ ଭଗବାନଙ୍କ ହାତର କାଠ-କଣ୍ଢେଇଟିଏମାତ୍ର; ଭଗବାନ୍ ହିଁ ତାଙ୍କ ଇଚ୍ଛାନୁସାରେ ମୋର ମନ, ବାଣୀ ଓ ଶରୀରଦ୍ୱାରା ସବୁ କର୍ମ କରାଉଛନ୍ତି; ମୋଠାରେ ସ୍ୱତଃ କିଛି କରିବାର ଶକ୍ତି ନାହିଁ, କି ମୁଁ କିଛି କରୁ ନାହିଁ— ଏପରି ମନେ କରି କର୍ତ୍ତୃତ୍ୱ-ଅଭିମାନ ତ୍ୟାଗ କରିଦେବା ହିଁ **ତ୍ୟାଗ** । କର୍ତ୍ତବ୍ୟକର୍ମ କରିବା ସମୟରେ ସେଥିରେ ମମତ୍ୱ, ଆସକ୍ତି, ଫଳ-ଆଶା ଓ ସ୍ୱାର୍ଥ ସର୍ବଥା ତ୍ୟାଗ କରିବା ମଧ୍ୟ ତ୍ୟାଗ ଏବଂ ଆତ୍ମୋନ୍ନତିରେ ବିରୋଧୀ ବସ୍ତୁ, ଭାବ ଓ କ୍ରିୟା ତ୍ୟାଗ କରିଦେବାକୁ ମଧ୍ୟ **ତ୍ୟାଗ** କୁହାଯାଇପାରେ ।

**ପ୍ରଶ୍ନ — ଶାନ୍ତି** କାହାକୁ କହନ୍ତି ?

**ଉତ୍ତର —** ସଂସାରଚିନ୍ତନର ସର୍ବଥା ଅଭାବ ହୋଇଗଲେ ବିକ୍ଷେପରହିତ ଅନ୍ତଃକରଣରେ ଯେଉଁ ସାତ୍ତ୍ୱିକ ପ୍ରସନ୍ନତା ହୁଏ, ତାହାର ନାମ **ଶାନ୍ତି** ।

**ପ୍ରଶ୍ନ — ଅପୈଶୁନ** କାହାକୁ କହନ୍ତି ?

**ଉତ୍ତର —** ଅନ୍ୟର ଦୋଷ ଦେଖିବା ବା ସେହି ଦୋଷକୁ ଲୋକଙ୍କ ମଧ୍ୟରେ ପ୍ରକଟ କରିବା, ଅଥବା କାହାର ନିନ୍ଦା ବା ଚୁଗୁଲି କରିବାକୁ **ପିଶୁନତା** କହନ୍ତି । ପିଶୁନତାର ସର୍ବଥା ଅଭାବର ନାମ **ଅପୈଶୁନ** ।

**ପ୍ରଶ୍ନ —** ସବୁ ପ୍ରାଣୀଙ୍କ ପ୍ରତି **ଦୟା** କରିବା କ'ଣ ?

**ଉତ୍ତର —** କୌଣସି ବି ପ୍ରାଣୀକୁ ଦୁଃଖୀ ଦେଖିଲେ, କୌଣସି ସ୍ୱାର୍ଥ କାମନା ନ ରଖି ତା'ର ଦୁଃଖକୁ ଯେକୌଣସିପ୍ରକାରେ ନିବାରଣ କରିବା ଓ ସବୁପ୍ରକାରେ ତାହାକୁ ସୁଖୀ କରାଇବାର ଯେଉଁ ଭାବ, ତାହାକୁ **ଦୟା** କହନ୍ତି । ଅନ୍ୟମାନଙ୍କୁ କଷ୍ଟ ନ ଦେବାର ନାମ **ଅହିଂସା** ଓ ଅନ୍ୟମାନଙ୍କୁ ସୁଖ ପ୍ରଦାନ କରିବାର ଭାବ **ଦୟା** । ଅହିଂସା ଓ ଦୟା ମଧ୍ୟରେ ଏହି ପାର୍ଥକ୍ୟ ଦେଖାଯାଏ ।

**ପ୍ରଶ୍ନ — ଅଲୋଲୁପତ୍ୱ** କାହାକୁ କହନ୍ତି ?

**ଉତ୍ତର —** ଇନ୍ଦ୍ରିୟ ଓ ବିଷୟର ସଂଯୋଗ ହେଲେ ବିଷୟରେ ଆସକ୍ତି ହେବାର ତଥା ଅନ୍ୟମାନଙ୍କର ବିଷୟଭୋଗ କରୁଥିବାର ଦେଖି ସେହି ବିଷୟମାନଙ୍କୁ ପାଇବାକୁ ମନରେ ଯେଉଁ ଲାଳସା ଜାଗ୍ରତ ହୁଏ, ତାହାର ନାମ 'ଲୋଲୁପତା' । ଲୋଲୁପତାର ସର୍ବଥା ଅଭାବର ନାମ **ଅଲୋଲୁପତ୍ୱ** ।

**ପ୍ରଶ୍ନ — ମାର୍ଦ୍ଦବ** କ'ଣ ?

**ଉତ୍ତର —** ଅନ୍ତଃକରଣ, ବାଣୀ ଓ ବ୍ୟବହାରରୁ କଠୋରତା ସର୍ବଥା ଦୂର ହୋଇ ସେଗୁଡ଼ିକ ଅତିଶୟ କୋମଳ ହୋଇଯିବାକୁ **ମାର୍ଦ୍ଦବ** କହନ୍ତି ।

**ପ୍ରଶ୍ନ — ହ୍ରୀ** କାହାକୁ କହନ୍ତି ?

**ଉତ୍ତର —** ବେଦ, ଶାସ୍ତ୍ର ଓ ଲୋକ-ବ୍ୟବହାରର ବିରୁଦ୍ଧାଚରଣ ନ କରିବାପାଇଁ ନିଶ୍ଚୟ କରିଥିବାରୁ ସେସବୁର ବିରୁଦ୍ଧାଚରଣରେ ଯେଉଁ ସଙ୍କୋଚ ଜାତ ହୁଏ, ତାହାକୁ **ହ୍ରୀ** ଅର୍ଥାତ୍ ଲଜ୍ଜା କହନ୍ତି ।

**ପ୍ରଶ୍ନ — ଅଚାପଳ** କ'ଣ ?

**ଉତ୍ତର —** ଗୋଡ଼ହାତ ଆଦି ହଲାଇବା, କୁଟା ଛିଣ୍ଡାଇବା, ଭୂମି ଉଖାରିବା, ଉଦ୍ଦେଶ୍ୟ ନ ଥାଇ କଥା କହିଚାଲିବା, ଅଗ-ମୂଳ ନ ଥିବା କଥା ଭାବିବା ତଥା ହାତ, ପାଦ, ବାଣୀ ଓ ମନର ବ୍ୟର୍ଥଚେଷ୍ଟା କରିବାର ନାମ ଚପଳତା । ଏହାକୁ ପ୍ରମାଦ ମଧ୍ୟ କହନ୍ତି । ଏହାର ସର୍ବଥା ସଂପୂର୍ଣ୍ଣ ଅଭାବକୁ **ଅଚାପଳ** କହନ୍ତି ।

## ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
## ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ ॥ ୩ ॥

**ଅନ୍ୱୟ —** ତେଜଃ = ତେଜ; କ୍ଷମା = କ୍ଷମା; ଧୃତିଃ = ଧୈର୍ଯ୍ୟ; ଶୌଚମ୍ = ବାହ୍ୟଶୁଦ୍ଧି (ଏବଂ); **ଅଦ୍ରୋହଃ** = କାହାରି ପ୍ରତି ମଧ୍ୟ ଶତ୍ରୁଭାବ ନ ହେବା (ଓ); ନାତିମାନିତା = ନିଜଠାରେ ପୂଜ୍ୟତା-ଅଭିମାନର ଅଭାବ (ଏ ସବୁ); ଭାରତ = ହେ ଅର୍ଜୁନ; ଦୈବୀମ୍, ସମ୍ପଦମ୍, ଅଭିଜାତସ୍ୟ = ଦୈବୀ ସମ୍ପଦ ନେଇ ଜନ୍ମ ହୋଇଥିବା ପୁରୁଷଙ୍କ (ଲକ୍ଷଣ); ଭବନ୍ତି = ଅଟନ୍ତି ।

**ତେଜ, କ୍ଷମା, ଧୈର୍ଯ୍ୟ, ବାହ୍ୟଶୁଦ୍ଧି ଏବଂ କାହାରି ଠାରେ ବି ଶତ୍ରୁଭାବ ନ ହେବା ଓ ନିଜଠାରେ ପୂଜ୍ୟତା-ଅଭିମାନର ଅଭାବ— ହେ ଅର୍ଜୁନ! ଏସବୁ ହେଉଛି ଦୈବୀ ସମ୍ପଦ ନେଇ ଜନ୍ମ ହୋଇଥିବା ପୁରୁଷଙ୍କ ଲକ୍ଷଣ ।। ୩ ।।**

**ପ୍ରଶ୍ନ —** ତେଜ କାହାକୁ କହନ୍ତି ?

**ଉତ୍ତର —** ଶ୍ରେଷ୍ଠ ପୁରୁଷମାନଙ୍କର ସେହି ଶକ୍ତିବିଶେଷର ନାମ ହେଉଛି **ତେଜ**, ଯାହାର ପ୍ରଭାବରୁ ସେମାନଙ୍କ ଆଗରେ ବିଷୟାସକ୍ତ ଓ ନୀଚପ୍ରକୃତିର ମନୁଷ୍ୟମାନେ ମଧ୍ୟ ଅନ୍ୟାୟ ଆଚରଣରୁ ପ୍ରାୟ ବିରତ ହୋଇ ସେମାନଙ୍କ କଥାନୁସାରେ ଶ୍ରେଷ୍ଠ କର୍ମମାନଙ୍କରେ ପ୍ରବୃତ୍ତ ହୋଇଯାଆନ୍ତି ।

**ପ୍ରଶ୍ନ —** କେଉଁ ଭାବର ନାମ **କ୍ଷମା** ?

**ଉତ୍ତର —** ନିଜପ୍ରତି ଅପରାଧ କରୁଥିବା ଲୋକକୁ କୌଣସିପ୍ରକାରେ ବି ଦଣ୍ଡ ଦେବା-ଦିଆଇବା ଭାବ ନ ରଖିବା, କୌଣସିପ୍ରକାରେ ବି ତା'ର ପ୍ରତିଶୋଧ ନେବାର ଇଚ୍ଛା ନ ରଖିବା, ତା'ର ଅପରାଧକୁ ଅପରାଧ ବୋଲି ମନେ ନ କରିବା ଓ ସେହି ଅପରାଧ ସର୍ବଥା ଭୁଲିଯିବାର ନାମ **କ୍ଷମା** । ଅକ୍ରୋଧରେ କେବଳ କ୍ରୋଧର ଅଭାବମାତ୍ର ହିଁ ହୋଇଯାଏ; ପରନ୍ତୁ କ୍ଷମାରେ ଅପରାଧର ନ୍ୟାୟୋଚିତ ଦଣ୍ଡ ଦେବାର ଇଚ୍ଛା ମଧ୍ୟ ତ୍ୟାଗ କରାଯାଏ । ଏହା ହିଁ ଅକ୍ରୋଧ ଓ କ୍ଷମା ମଧ୍ୟରେ ପ୍ରଭେଦ ।

**ପ୍ରଶ୍ନ —** ଧୃତି କାହାକୁ କହନ୍ତି ?

**ଉତ୍ତର —** ବିରାଟ ଆପଦ, ଭୟ ବା ଦୁଃଖ ଉପସ୍ଥିତ ହେଲେ ମଧ୍ୟ ସେଥିରେ ବିଚଳିତ ନ ହେବାର ଓ କାମ, କ୍ରୋଧ, ଭୟ ତଥା ଲୋଭରେ ପଡ଼ି କୌଣସିପ୍ରକାରେ ବି ନିଜର ଧର୍ମ ତଥା କର୍ତ୍ତବ୍ୟରୁ ବିମୁଖ ନ ହେବାର ନାମ **ଧୃତି** । ଏହାକୁ ହିଁ **ଧୈର୍ଯ୍ୟ** କହନ୍ତି ।

**ପ୍ରଶ୍ନ —** ଶୌଚ କାହାକୁ କହନ୍ତି ?

**ଉତ୍ତର —** ସତ୍ୟତାପୂର୍ବକ ପବିତ୍ର ବ୍ୟବହାରଦ୍ୱାରା ଦ୍ରବ୍ୟର ଶୁଦ୍ଧି ହୁଏ । ସେହି ଦ୍ରବ୍ୟରୁ ପ୍ରାପ୍ତ ଅନ୍ନଦ୍ୱାରା ଆହାରଶୁଦ୍ଧି ହୁଏ । ଯଥାଯୋଗ୍ୟ ବ୍ୟବହାରଦ୍ୱାରା ଆଚରଣଶୁଦ୍ଧି ହୁଏ ଏବଂ ଜଳ, ମୃତ୍ତିକା ଆଦିଦ୍ୱାରା ପ୍ରକ୍ଷାଳନ ଆଦି କଲେ ଶରୀରଶୁଦ୍ଧି ହୁଏ । ଏସବୁକୁ ବାହ୍ୟ ଶୌଚ ଅର୍ଥାତ୍ ବାହାର ଶୁଦ୍ଧି କହନ୍ତି । ଏହାକୁ ହିଁ ଏଠାରେ **ଶୌଚ** ନାମ ଦିଆଯାଇଛି । ଭିତରର ଶୁଦ୍ଧିକୁ 'ସତ୍ତ୍ୱସଂଶୁଦ୍ଧି' ନାମରେ ପ୍ରଥମ ଶ୍ଳୋକରେ ଅଲଗା କୁହାଯାଇସାରିଛି ।

**ପ୍ରଶ୍ନ —** ଅଦ୍ରୋହର ଭାବ କ'ଣ ?

**ଉତ୍ତର —** ନିଜ ସହିତ ଶତ୍ରୁତା ବ୍ୟବହାର କରୁଥିବା ପ୍ରାଣୀମାନଙ୍କ ପ୍ରତି ମଧ୍ୟ ତିଳେମାତ୍ର ଦ୍ୱେଷ ବା ଶତ୍ରୁତା ଭାବ ନ ହେବାକୁ **ଅଦ୍ରୋହ** କୁହାଯାଏ ।

**ପ୍ରଶ୍ନ —** ନ ଅତିମାନିତାର ଭାବ କ'ଣ ?

**ଉତ୍ତର —** ନିଜକୁ ଶ୍ରେଷ୍ଠ, ବଡ଼ ବା ପୂଜ୍ୟ ମନେ କରିବା ଏବଂ ମାନ, ବଡ଼ପଣ, ପ୍ରତିଷ୍ଠା ଓ ପୂଜା ଆଦିପାଇଁ ବିଶେଷ ଇଚ୍ଛା କରିବା ତଥା ବିନା ଇଚ୍ଛାରେ ବି ଏସବୁ ମିଳିଲେ ବିଶେଷ ପ୍ରସନ୍ନ ହେବା — ଏଗୁଡ଼ିକ ହେଉଛି **ଅତିମାନିତାର** ଲକ୍ଷଣ । ଏସବୁର ସର୍ବଥା ଅଭାବର ନାମ **ନ ଅତିମାନିତା** ।

**ପ୍ରଶ୍ନ —** ଦୈବୀ ସମ୍ପଦ୍ କାହାକୁ କହନ୍ତି ?

**ଉତ୍ତର —** ଭଗବାନଙ୍କର ନାମ 'ଦେବ' । ତେଣୁ ତାଙ୍କୁ ପ୍ରାପ୍ତି କରିବାର ସାଧନାରୂପୀ ତାଙ୍କ ସହିତ ସମ୍ବନ୍ଧ ରଖିଥିବା ସଦ୍ଗୁଣ ଓ ସଦାଚାର-ସମୂହକୁ **ଦୈବୀ ସମ୍ପଦ** କହନ୍ତି । ଏହାକୁ ଦୈବୀ ପ୍ରକୃତି ମଧ୍ୟ ବୋଲାଯାଏ ।

**ପ୍ରଶ୍ନ —** 'ଏସବୁ ଦୈବୀ ସମ୍ପଦଯୁକ୍ତ ପୁରୁଷଙ୍କର ଲକ୍ଷଣ' — ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏହାର ଅଭିପ୍ରାୟ ଏହି ଯେ, ଏହି ଅଧ୍ୟାୟର ପ୍ରଥମ ଶ୍ଳୋକଠାରୁ ଏହି ଶ୍ଳୋକର ପୂର୍ବାର୍ଦ୍ଧପର୍ଯ୍ୟନ୍ତ ଅଢ଼େଇଟି ଶ୍ଳୋକରେ ଛବିଶ ଲକ୍ଷଣରୂପରେ ସେହି ଦୈବୀ ସମ୍ପଦରୂପୀ ସଦ୍ଗୁଣ ଓ ସଦାଚାରର ହିଁ ବର୍ଣ୍ଣନା କରାଯାଇଛି । ତେଣୁ ଏସବୁ ଲକ୍ଷଣ ଯାହାଙ୍କ ଠାରେ ସହଜଭାବରେ ଥାଏ ଅଥବା ଯେ ସାଧନାଦ୍ୱାରା ଏସବୁକୁ ପ୍ରାପ୍ତ ହୋଇଛନ୍ତି, ସେହି ପୁରୁଷ ଦୈବୀସମ୍ପଦଯୁକ୍ତ ।

*ସମ୍ବନ୍ଧ — ଏହିଭଳିଭାବରେ ଧାରଣ-କରିବା-ଯୋଗ୍ୟ ଦୈବୀସମ୍ପଦରେ ଯୁକ୍ତ ପୁରୁଷଙ୍କ ଲକ୍ଷଣ ବର୍ଣ୍ଣନା କରିସାରି ବର୍ତ୍ତମାନ ତ୍ୟାଗ-କରିବାଯୋଗ୍ୟ ଆସୁରୀସମ୍ପଦରେ ଯୁକ୍ତ ପୁରୁଷର ଲକ୍ଷଣ ସଂକ୍ଷେପରେ କହୁଛନ୍ତି—*

**ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ।**
**ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସଂପଦମାସୁରୀମ୍।। ୪ ।।**

**ଅନ୍ୱୟ—** **ପାର୍ଥ** = ହେ ପାର୍ଥ; **ଦମ୍ଭଃ** = ଦମ୍ଭ; **ଦର୍ପଃ** = ଗର୍ବ; **ଚ** = ଓ; **ଅଭିମାନଃ** = ଅଭିମାନ; **ଚ** = ତଥା; **କ୍ରୋଧଃ** = କ୍ରୋଧ; **ପାରୁଷ୍ୟମ୍** = କଠୋରତା; **ଚ** = ଓ; **ଅଜ୍ଞାନମ୍** = ଅଜ୍ଞାନ; **ଏବ** = ହିଁ (ଏସବୁ); **ଆସୁରୀମ୍** = ଆସୁରୀ; **ସମ୍ପଦମ୍** = ସମ୍ପଦକୁ; **ଅଭିଜାତସ୍ୟ** = ନେଇ ଜନ୍ମ ହୋଇଥିବା ପୁରୁଷର (ଲକ୍ଷଣ)।

**ହେ ପାର୍ଥ! ଦମ୍ଭ, ଗର୍ବ ଓ ଅଭିମାନ ତଥା କ୍ରୋଧ, କଠୋରତା ଓ ଅଜ୍ଞାନ— ଏସବୁ ହେଉଛି ଆସୁରୀସମ୍ପଦ ନେଇ ଜନ୍ମ ହୋଇଥିବା ପୁରୁଷର ଲକ୍ଷଣ।। ୪ ।।**

**ପ୍ରଶ୍ନ—** ଦମ୍ଭ କାହାକୁ କହନ୍ତି ?

**ଉତ୍ତର—** ମାନ, ବଡ଼ିମା ପୂଜା ଓ ପ୍ରତିଷ୍ଠାପାଇଁ ତଥା ଧନାଦି ଲୋଭରେ ବା କାହାକୁ ଠକିବା ଅଭିପ୍ରାୟରେ ନିଜକୁ ଧର୍ମାତ୍ମା, ଭଗବଦ୍‌ଭକ୍ତ, ଜ୍ଞାନୀ ବା ମହାତ୍ମା ବୋଲି ପ୍ରସିଦ୍ଧ କରାଇବା ଅଥବା ଦେଖାଣିଆ ଧାର୍ମିକତାର, ଦାନିପଣିଆର, ଭକ୍ତିର, ବ୍ରତ-ଉପବାସ ଆଦିର, ଯୋଗସାଧନାର ତଥା ଏପରି କୌଣସି ଢଙ୍ଗ ଧରି ନିଜର କାମ କରାଇନେବାର ଛଳ ରଚନା କରିବାକୁ **ଦମ୍ଭ** କହନ୍ତି।

**ପ୍ରଶ୍ନ—** **ଦର୍ପ** କାହାକୁ କହନ୍ତି ?

**ଉତ୍ତର—** ବିଦ୍ୟା, ଧନ, କୁଟୁମ୍ବ, ଜାତି, ଅବସ୍ଥା, ବଳ ଓ ଐଶ୍ୱର୍ଯ୍ୟ ଆଦି ନେଇ ମନରେ ଯେଉଁ ଗର୍ବ ହୁଏ— ଯାହାଯୋଗୁଁ ମନୁଷ୍ୟ ଅନ୍ୟକୁ ତୁଚ୍ଛ ମନେ କରି ଅବହେଳା କରେ, ତାହାର ନାମ **ଦର୍ପ**।

**ପ୍ରଶ୍ନ—** **ଅଭିମାନ** କ'ଣ ?

**ଉତ୍ତର—** ନିଜକୁ ଶ୍ରେଷ୍ଠ, ମହତ୍ ବା ପୂଜ୍ୟ ମନେ କରିବା, ମାନ, ବଡ଼ିମା, ପ୍ରତିଷ୍ଠା ଓ ପୂଜା ଆଦିପାଇଁ ଇଚ୍ଛା ରଖିବା ଏବଂ ଏସବୁକୁ ପାଇଲେ ପ୍ରସନ୍ନ ହେବା ହିଁ **ଅଭିମାନ**।

**ପ୍ରଶ୍ନ—** **କ୍ରୋଧ** କାହାକୁ କହନ୍ତି ?

**ଉତ୍ତର—** ମନ୍ଦ ଅଭ୍ୟାସ ରଖିଥିବା ଅଥବା କ୍ରୋଧୀ ମନୁଷ୍ୟମାନଙ୍କର ସଙ୍ଗଦୋଷରୁ ବା କାହାଦ୍ୱାରା ନିଜର ତିରସ୍କାର, ଅପକାର ବା ନିନ୍ଦା କରାଗଲେ, ମନର ବିରୁଦ୍ଧ କାର୍ଯ୍ୟ ହେଲେ ବା କାହାଠାରୁ ଦୁର୍ବଚନ ଶୁଣିଲେ ବା କାହାର ଅନ୍ୟାୟ ଇତ୍ୟାଦି ଦେଖିଲେ ଅନ୍ତଃକରଣରେ ଯେଉଁ ଦ୍ୱେଷଯୁକ୍ତ ଉତ୍ତେଜନା ଜାତ ହୋଇଯାଏ, ଯାହାଯୋଗୁଁ ମନୁଷ୍ୟମନରେ ପ୍ରତିହିଂସା ଭାବ ଜାଗ୍ରତ ହୁଏ, ଆଖି ଲାଲ ହୋଇଯାଏ, ଓଠ ଥରେ, ମୁଖର ଆକୃତି ଭୟାନକ ହୋଇଯାଏ, ବୁଦ୍ଧି ଲୋପ ହୋଇଯାଏ ଏବଂ କର୍ତ୍ତବ୍ୟଜ୍ଞାନ ରହେ ନାହିଁ— ଏତାଦୃଶ ସର୍ବପ୍ରକାର 'ଉତ୍ତେଜନା ବୃତ୍ତି'ର ନାମ **କ୍ରୋଧ**।

**ପ୍ରଶ୍ନ—** **ପାରୁଷ୍ୟ** କାହାର ନାମ ?

**ଉତ୍ତର—** କୋମଳତାର ଅତ୍ୟନ୍ତ ଅଭାବ ବା କଠୋରତାର ନାମ **ପାରୁଷ୍ୟ**। ଗାଳି ଦେବା, କଟୁବଚନ କହିବା ଓ ଖୁଣ୍ଟା ଦେବା ଆଦି ହେଉଛି ବାଣୀର କଠୋରତା। ବିନୟର ଅଭାବ ହେଉଛି ଶରୀରର କଠୋରତା ତଥା କ୍ଷମା ଓ ଦୟାର ବିପରୀତ ପ୍ରତିହିଂସା ଓ କ୍ରୂରତାଭାବ ହେଉଛି ମନର କଠୋରତା।

**ପ୍ରଶ୍ନ—** ଏଠାରେ **ଅଜ୍ଞାନ** ପଦ କାହାର ବାଚକ ?

**ଉତ୍ତର—** ସତ୍ୟ-ଅସତ୍ୟ ଓ ଧର୍ମ-ଅଧର୍ମ ଆଦି ଯଥାର୍ଥ ଭାବେ ନ ବୁଝିପାରିବା ତଥା ସେସବୁ ସମ୍ବନ୍ଧରେ ବିପରୀତ ଧାରଣା କରିବା ହିଁ **ଅଜ୍ଞାନ**।

**ପ୍ରଶ୍ନ—** **ଆସୁରୀ ସମ୍ପଦ୍** କାହାକୁ କହନ୍ତି ଏବଂ 'ଏସବୁ ହେଉଛି ଆସୁରୀସମ୍ପଦଯୁକ୍ତ ପୁରୁଷର ଲକ୍ଷଣ'— ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଭଗବାନଙ୍କ ସତ୍ତାକୁ ମାନୁ ନ ଥିବା ଲୋକଙ୍କୁ ଏବଂ ଭଗବାନଙ୍କର ବିରୁଦ୍ଧାଚରଣ କରୁଥିବା ନାସ୍ତିକ ମନୁଷ୍ୟମାନଙ୍କୁ **ଅସୁର** କହନ୍ତି। ଏପରି ଲୋକମାନଙ୍କ ଠାରେ ଯେଉଁ ଦୁର୍ଗୁଣ ଓ ଦୁରାଚାର ରହିଥାଏ, ତାହା **ଆସୁରୀସମ୍ପଦ**। 'ଏସବୁ ହେଉଛି ଆସୁରୀସମ୍ପଦଯୁକ୍ତ ପୁରୁଷର ଲକ୍ଷଣ' ବୋଲି କହି ଭଗବାନ୍ ଦେଖାଉଛନ୍ତି ଯେ, ଏହି ଶ୍ଳୋକରେ ଦୁର୍ଗୁଣ ଓ ଦୁରାଚାରରୂପୀ ଆସୁରୀସମ୍ପଦଗୁଡ଼ିକ ସଂକ୍ଷେପରେ କୁହାଯାଇଛି। ଏଣୁ ଯାହାଠାରେ ଏସବୁ କିମ୍ବା ଏସବୁ ମଧ୍ୟରୁ ଯେକୌଣସି ବି ଗୋଟିଏ ଲକ୍ଷଣ ରହିଛି, ତାହାକୁ ଆସୁରୀସମ୍ପଦଯୁକ୍ତ ବୋଲି ବୁଝିବା ଉଚିତ।

**ସମ୍ବନ୍ଧ –** ଏପରିଭାବରେ ଦୈବୀସମ୍ପଦଯୁକ୍ତ ଓ ଆସୁରୀସମ୍ପଦଯୁକ୍ତ ପୁରୁଷଙ୍କ ଲକ୍ଷଣ ବର୍ଣ୍ଣନା କରିସାରି, ବର୍ତ୍ତମାନ ଭଗବାନ୍ ଏହି ଦୁଇ ସମ୍ପଦର ଫଳ କହିବା ସହିତ ଅର୍ଜୁନଙ୍କୁ ଦୈବୀସମ୍ପଦଯୁକ୍ତ ବୋଲି କହି ଆଶ୍ୱାସନା ଦେଉଛନ୍ତି–

**ଦୈବୀ ସଂପଦ୍‌ବିମୋକ୍ଷାୟ ନିବନ୍ଧାୟାସୁରୀ ମତା ।**
**ମା ଶୁଚଃ ସଂପଦଂ ଦୈବୀମଭିଜାତୋଽସି ପାଣ୍ଡବ ।। ୫ ।।**

**ଅନ୍ୱୟ –** **ଦୈବୀ, ସମ୍ପତ୍** = ଦୈବୀ ସମ୍ପଦ; **ବିମୋକ୍ଷାୟ** = ମୁକ୍ତିପାଇଁ (ଓ); **ଆସୁରୀ** = ଆସୁରୀ ସମ୍ପଦ; **ନିବନ୍ଧାୟ** = ବନ୍ଧନପାଇଁ (ବୋଲି); **ମତା** = ସ୍ୱୀକାର କରାଯାଇଛି; **(ଅତଃ)** = ଏଣୁ; **ପାଣ୍ଡବ** = ହେ ଅର୍ଜୁନ (ତୁମେ); **ମା, ଶୁଚଃ** = ଶୋକ କର ନାହିଁ; **(ଯତଃ)** = କାରଣ (ତୁମେ); **ଦୈବୀମ୍, ସମ୍ପଦମ୍** = ଦୈବୀ ସମ୍ପଦକୁ ନେଇ; **ଅଭିଜାତଃ, ଅସି** = ଜନ୍ମ ହୋଇଛ ।

**ଦୈବୀ ସମ୍ପଦ ମୁକ୍ତିପ୍ରଦ ଓ ଆସୁରୀସମ୍ପଦ ବନ୍ଧନକାରକ ବୋଲି ସ୍ୱୀକାର କରାଯାଇଛି । ଏଣୁ ହେ ଅର୍ଜୁନ! ତୁମେ ଶୋକ କର ନାହିଁ; କାରଣ ତୁମେ ଦୈବୀ ସମ୍ପଦ ନେଇ ଜନ୍ମ ହୋଇଛ ।। ୫ ।।**

**ପ୍ରଶ୍ନ –** 'ଦୈବୀସମ୍ପଦକୁ ମୁକ୍ତିକାରକ ବୋଲି ସ୍ୱୀକାର କରାଯାଇଛି' – ଏହି କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏଠାରେ ଭଗବାନ୍ କହିଛନ୍ତି, ପ୍ରଥମ ଶ୍ଳୋକରୁ ତୃତୀୟ ଶ୍ଳୋକପର୍ଯ୍ୟନ୍ତ ସାତ୍ତ୍ୱିକ ଗୁଣ ଓ ଆଚରଣସମୂହରୂପକ ଯେଉଁ ଦୈବୀସମ୍ପଦ ବର୍ଣ୍ଣନା କରାଯାଇଛି, ତାହା ମନୁଷ୍ୟକୁ ସଂସାରବନ୍ଧନରୁ ଚିରଦିନପାଇଁ ସଂପୂର୍ଣ୍ଣ ମୁକ୍ତ କରିଦେଇ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କ ସହିତ ମିଳିତ କରାଇଦିଏ । ଏକଥା ବେଦ, ଶାସ୍ତ୍ର ଓ ମହାତ୍ମାଗଣ — ସମସ୍ତେ ମାନନ୍ତି ।

**ପ୍ରଶ୍ନ –** 'ଆସୁରୀସମ୍ପଦକୁ ବନ୍ଧନକାରକ ବୋଲି ମନେ କରାଯାଇଛି' – ଏ କଥାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ଦୁର୍ଗୁଣ ଓ ଦୁରାଚାରରୂପୀ ଯେଉଁ ରଜମିଶ୍ରିତ ତମୋଗୁଣପ୍ରଧାନ ଭାବସମୂହ ରହିଛି, ତାହା ହେଉଛି ଆସୁରୀସମ୍ପଦ । ତାହାର ବର୍ଣ୍ଣନା ଚତୁର୍ଥ ଶ୍ଳୋକରେ ସଂକ୍ଷେପରେ କରାଯାଇଛି । ତାହା ମନୁଷ୍ୟକୁ ସବୁପ୍ରକାରେ ସଂସାରବନ୍ଧନରେ ଓ ଅଧୋଗତିରେ ପକାଏ । ବେଦ, ଶାସ୍ତ୍ର ଓ ମହାତ୍ମା — ସମସ୍ତେ ଏହି କଥା ମାନନ୍ତି ।

**ପ୍ରଶ୍ନ –** ଅର୍ଜୁନଙ୍କୁ 'ତୁମେ ଦୈବୀସମ୍ପଦଯୁକ୍ତ ହୋଇ ଜନ୍ମ ହୋଇଛ, ଏଣୁ ଶୋକ କର ନାହିଁ' ବୋଲି କହି ଭଗବାନ୍ କି ଭାବ ଦେଖାଇଛନ୍ତି ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ଆଶ୍ୱାସନା ଦେଇ କହିଛନ୍ତି, ''ତୁମେ ସ୍ୱଭାବତଃ ଦୈବୀସମ୍ପଦ ନେଇ ହିଁ ଜନ୍ମ ହୋଇଛ । ଦୈବୀସମ୍ପଦର ସମସ୍ତ ଲକ୍ଷଣ ତୁମ ଅନ୍ତରରେ ବିଦ୍ୟମାନ ଓ ଦୈବୀସମ୍ପଦ ସଂସାରରୁ ମୁକ୍ତିପ୍ରଦାନ କରେ । ତେଣୁ ତୁମର କଲ୍ୟାଣ ହେବାରେ କୌଣସି ସନ୍ଦେହ ନାହିଁ । ଅତଏବ ତୁମେ ଶୋକ ନାହିଁ ।''

***ସମ୍ବନ୍ଧ –*** *ଏହି ଅଧ୍ୟାୟର ପ୍ରାରମ୍ଭରେ ଓ ଏହା ପୂର୍ବରୁ ମଧ୍ୟ ଦୈବୀସମ୍ପଦ ବିସ୍ତାରପୂର୍ବକ ବର୍ଣ୍ଣନା କରାଗଲା; କିନ୍ତୁ ଆସୁରୀସମ୍ପଦର ବର୍ଣ୍ଣନା ବର୍ତ୍ତମାନପର୍ଯ୍ୟନ୍ତ ସଂକ୍ଷେପରେ ହୋଇଛି । ଅତଏବ ଭଗବାନ ଆସୁରୀପ୍ରକୃତିବିଶିଷ୍ଟ ମନୁଷ୍ୟମାନଙ୍କର ସ୍ୱଭାବ ଓ ଆଚାରବ୍ୟବହାର ବିସ୍ତାରପୂର୍ବକ ବର୍ଣ୍ଣନା କରୁଛନ୍ତି–*

**ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ ।**
**ଦୈବୋ ବିସ୍ତରଶଃ ପ୍ରୋକ୍ତ ଆସୁରଂ ପାର୍ଥ ମେ ଶୃଣୁ ।। ୬ ।।**

**ଅନ୍ୱୟ –** **ପାର୍ଥ** = ହେ ଅର୍ଜୁନ; **ଅସ୍ମିନ୍, ଲୋକେ** = ଇହଲୋକରେ; **ଭୂତସର୍ଗୌ** = ଭୂତମାନଙ୍କର ସୃଷ୍ଟି ଅର୍ଥାତ୍ ମନୁଷ୍ୟସମୁଦାୟ; **ଦ୍ୱୌ, ଏବ** = କେବଳ ଦୁଇପ୍ରକାର; **ଦୈବଃ** = (ଗୋଟିଏ) ଦୈବୀପ୍ରକୃତିର; **ଚ** = ଓ;

**ଆସୁରଃ** = (ଅନ୍ୟଟି) ଆସୁରୀ ପ୍ରକୃତିର; **ଦୈବଃ** = (ସେଦୁହିଁଙ୍କ ମଧ୍ୟରୁ) ଦୈବୀପ୍ରକୃତି (ବିଷୟରେ ତ); **ବିସ୍ତରଶଃ** = ବିସ୍ତୃତଭାବରେ; **ପ୍ରୋକ୍ତଃ** = କୁହାଯାଇସାରିଛି; **ଆସୁରମ୍** = (ବର୍ତ୍ତମାନ ତୁମେ) ଆସୁରୀପ୍ରକୃତିର ମନୁଷ୍ୟସମୁଦାୟଙ୍କ ବିଷୟରେ ବିସ୍ତାରପୂର୍ବକ; **ମେ** = ମୋଠାରୁ; **ଶୃଣୁ** = ଶୁଣ ।

**ହେ ଅର୍ଜୁନ ! ଇହଲୋକରେ ଭୂତମାନଙ୍କର ସୃଷ୍ଟି ଅର୍ଥାତ୍ ମନୁଷ୍ୟସମୁଦାୟ ଦୁଇପ୍ରକାରର; ଗୋଟିଏ ଦୈବୀପ୍ରକୃତିର ଓ ଅନ୍ୟଟି ଆସୁରୀପ୍ରକୃତିର । ସେଦୁହିଁଙ୍କ ମଧ୍ୟରୁ ଦୈବୀପ୍ରକୃତିର ମନୁଷ୍ୟସମୁଦାୟ ବିଷୟରେ ତ ବିସ୍ତୃତଭାବରେ କୁହାଯାଇସାରିଛି, ବର୍ତ୍ତମାନ ତୁମେ ଆସୁରୀପ୍ରକୃତିର ମନୁଷ୍ୟ ସମୁଦାୟଙ୍କ ବିଷୟରେ ମଧ୍ୟ ବିସ୍ତାରପୂର୍ବକ ମୋଠାରୁ ଶୁଣ ।। ୬ ।।**

**ପ୍ରଶ୍ନ —** ଭୂତସର୍ଗୌ ପଦର ଅର୍ଥ ମନୁଷ୍ୟ ସମୁଦାୟ କାହିଁକି କରାଗଲା ?

**ଉତ୍ତର —** ସୃଷ୍ଟିକୁ **ସର୍ଗ** କହନ୍ତି । ପ୍ରାଣୀମାନଙ୍କ ସୃଷ୍ଟିକୁ ଭୂତସର୍ଗ କହନ୍ତି । ଏଠାରେ **ଅସ୍ମିନ୍‌ଲୋକେ**ଦ୍ୱାରା ମନୁଷ୍ୟଲୋକକୁ ସଙ୍କେତ କରାଯାଇଛି ତଥା ଏହି ଅଧ୍ୟାୟରେ ମନୁଷ୍ୟମାନଙ୍କ ଲକ୍ଷଣ କୁହାଯାଇଛି । ତେଣୁ ଏଠାରେ **ଭୂତସର୍ଗୌ** ପଦର ଅର୍ଥ ମନୁଷ୍ୟସମୁଦାୟ କରାଯାଇଛି ।

**ପ୍ରଶ୍ନ —** ମନୁଷ୍ୟସମୁଦାୟକୁ ଦୁଇପ୍ରକାର କହି ତା' ସହିତ ଏବ ପଦ ପ୍ରୟୋଗ କରିବାର ଅର୍ଥ କ'ଣ ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଗଲା ଯେ, ମନୁଷ୍ୟସମୁଦାୟର ଅନେକ ବିଭାଗ ଥିଲେ ମଧ୍ୟ ପ୍ରଧାନତଃ ତା'ର ଦୁଇଟି ବିଭାଗ ହିଁ ରହିଛି; କାରଣ ଅନ୍ୟ ସବୁପ୍ରକାର ବିଭାଗ ଏହି ଦୁଇଟି ଭିତରେ ଆସିଯାଏ ।

**ପ୍ରଶ୍ନ —** ଗୋଟିଏ ଦୈବୀପ୍ରକୃତିର ଓ ଅନ୍ୟଟି ଆସୁରୀପ୍ରକୃତିର — ଏ କଥାର ଭାବ କ'ଣ ?

**ଉତ୍ତର —** ଏହାଦ୍ୱାରା ଦୁଇପ୍ରକାର ମନୁଷ୍ୟ ସମୁଦାୟକୁ ସ୍ପଷ୍ଟ କରିଦେଇ କୁହାଯାଇଛି ଯେ, ମନୁଷ୍ୟମାନଙ୍କର ସେହି ଦୁଇସମୁଦାୟ ମଧ୍ୟରେ ଯେଉଁମାନେ ସାତ୍ତ୍ୱିକ, ସେମାନେ ଦୈବୀପ୍ରକୃତିର ଓ ଯେଉଁମାନେ ରଜୋମିଶ୍ରିତ ତମଃ-ପ୍ରଧାନ, ସେମାନେ ଆସୁରୀପ୍ରକୃତିର । 'ରାକ୍ଷସୀ' ଓ 'ମୋହିନୀ' — ପ୍ରକୃତିର ମନୁଷ୍ୟମାନଙ୍କୁ ଏଠାରେ ଆସୁରୀପ୍ରକୃତିବିଶିଷ୍ଟ ସମୁଦାୟର ହିଁ ଅନ୍ତର୍ଗତ ବୋଲି ବୁଝିବା ଉଚିତ ।

**ପ୍ରଶ୍ନ —** ''ଦୈବୀପ୍ରକୃତିର ମନୁଷ୍ୟସମୁଦାୟ ବିଷୟରେ ବିସ୍ତାରପୂର୍ବକ କୁହାଗଲା । ବର୍ତ୍ତମାନ ଆସୁରୀପ୍ରକୃତି ମନୁଷ୍ୟମାନଙ୍କର ଲକ୍ଷଣ ମଧ୍ୟ ଶୁଣ'' — ଏହି ବାକ୍ୟର ଭାବ କ'ଣ ?

**ଉତ୍ତର —** ଏହାଦ୍ୱାରା ଦର୍ଶାଇଦିଆଯାଇଛି, ''ଏହି ଅଧ୍ୟାୟର ପ୍ରଥମରୁ ତୃତୀୟ ଶ୍ଳୋକଯାଏ ଓ ଅନ୍ୟ ଅଧ୍ୟାୟମାନଙ୍କରେ ମଧ୍ୟ ଦୈବୀପ୍ରକୃତିର ମନୁଷ୍ୟ ସମୁଦାୟର ସ୍ୱଭାବ, ଆଚରଣ ଓ ବ୍ୟବହାର ଆଦିର ବର୍ଣ୍ଣନା ବିସ୍ତାରପୂର୍ବକ କରାଯାଇସାରିଛି; କିନ୍ତୁ ଆସୁରୀପ୍ରକୃତିର ମନୁଷ୍ୟମାନଙ୍କ ସ୍ୱଭାବ, ଆଚରଣ ଓ ବ୍ୟବହାରର ବର୍ଣ୍ଣନା ସଂକ୍ଷେପରେ ହିଁ ହୋଇଛି । ତେଣୁ ତ୍ୟାଗ କରିବା ଉଦ୍ଦେଶ୍ୟରେ ତୁମେ ତାହା ମଧ୍ୟ ବିସ୍ତାରପୂର୍ବକ ଶୁଣ ।''

**ସମ୍ବନ୍ଧ —** *ଏପରିଭାବରେ ଆସୁରୀପ୍ରକୃତିର ମନୁଷ୍ୟସମୂହର ଲକ୍ଷଣ ଶୁଣିବାପାଇଁ ଅର୍ଜୁନଙ୍କୁ ସାବଧାନ କରାଇଦେଇ ବର୍ତ୍ତମାନ ଭଗବାନ୍ ତାହା ବର୍ଣ୍ଣନା କରୁଛନ୍ତି—*

## ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।
## ନ ଶୌଚଂ ନାପି ଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ ।। ୭ ।।

**ଅନ୍ୱୟ —** **ଆସୁରାଃ** = ଆସୁରସ୍ୱଭାବର; **ଜନାଃ** = ମନୁଷ୍ୟମାନେ; **ପ୍ରବୃତ୍ତିମ୍** = ପ୍ରବୃତ୍ତିକୁ; **ଚ** = ଓ; **ନିବୃତ୍ତିମ୍** = ନିବୃତ୍ତିକୁ (ଏହି ଉଭୟକୁ); **ଚ** = ମଧ୍ୟ; **ନ, ବିଦୁଃ** = ଜାଣନ୍ତି ନାହିଁ (ତେଣୁ); **ତେଷୁ** = ସେମାନଙ୍କ ଠାରେ; **ନ, ଶୌଚମ୍** = ଅନ୍ତଃ ଓ ବାହ୍ୟ ଶୁଦ୍ଧି ନ ଥାଏ (କି ସେମାନଙ୍କର); **ନ, ଆଚାରଃ** = ଆଚରଣଶୁଦ୍ଧି ନ ଥାଏ; **ଚ** = ତଥା (ସେମାନଙ୍କ ଠାରେ); **ସତ୍ୟମ୍, ଅପି** = ସତ୍ୟଭାଷଣ ମଧ୍ୟ; **ନ, ବିଦ୍ୟତେ** = ନ ଥାଏ ।

**ଆସୁରସ୍ୱଭାବର ମନୁଷ୍ୟମାନେ ପ୍ରବୃତ୍ତି ଓ ନିବୃତ୍ତି– ଏହି ଉଭୟକୁ ଜାଣନ୍ତି ନାହିଁ। ତେଣୁ ସେମାନଙ୍କ ଠାରେ ବାହ୍ୟ ଓ ଅନ୍ତଃ ଶୁଦ୍ଧି ନ ଥାଏ, କି ସେମାନଙ୍କର ଆଚରଣ ଶୁଦ୍ଧି ନ ଥାଏ, ତଥା ସେମାନଙ୍କ ଠାରେ ସତ୍ୟବାଦିତା ବି ନ ଥାଏ।। ୭ ।।**

**ପ୍ରଶ୍ନ –** ଆସୁରସ୍ୱଭାବର ମନୁଷ୍ୟମାନେ ପ୍ରବୃତ୍ତି ଓ ନିବୃତ୍ତି ଜାଣନ୍ତି ନାହିଁ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁ କର୍ମ ଆଚରଣ କଲେ ଇହଲୋକରେ ଓ ପରଲୋକରେ ମନୁଷ୍ୟର ଯଥାର୍ଥ କଲ୍ୟାଣ ହୁଏ, ତାହା ହିଁ କର୍ତ୍ତବ୍ୟ। ମନୁଷ୍ୟ ସେହି କର୍ମରେ ପ୍ରବୃତ୍ତ ହେବା ଆବଶ୍ୟକ ଏବଂ ଯେଉଁ କର୍ମ ଆଚରଣ କଲେ ଅକଲ୍ୟାଣ ହୁଏ, ତାହା କର୍ତ୍ତବ୍ୟ ନୁହେଁ; ମନୁଷ୍ୟ ସେଥିରୁ ନିବୃତ୍ତ ହେବା ଉଚିତ। ଭଗବାନ୍ ଏଠାରେ ଦେଖାଇଛନ୍ତି ଯେ, ଆସୁରସ୍ୱଭାବର ମନୁଷ୍ୟମାନେ ଏହି କର୍ତ୍ତବ୍ୟ-ଅକର୍ତ୍ତବ୍ୟସମ୍ବନ୍ଧୀ ପ୍ରବୃତ୍ତି ଓ ନିବୃତ୍ତିକୁ ଆଦୌ ବୁଝନ୍ତି ନାହିଁ। ତେଣୁ ସେମାନଙ୍କ ମନରେ ଯାହା ଆସେ, ସେମାନେ ତାହା କରିବାରେ ଲାଗିଯାନ୍ତି।

**ପ୍ରଶ୍ନ –** ସେମାନଙ୍କ ଠାରେ **ଶୌଚ, ଆଚାର** ଓ **ସତ୍ୟ** ନାହିଁ– ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ବାହାରର ଓ ଭିତରର ପବିତ୍ରତାକୁ **ଶୌଚ** କହନ୍ତି; ତାହାର ବିସ୍ତୃତ ବିବେଚନ ତେର ଅଧ୍ୟାୟର ସପ୍ତମ ଶ୍ଳୋକର ଟୀକାରେ କରାଯାଇଛି। ଯାହାଦ୍ୱାରା ଏପରି ପବିତ୍ରତା ସମ୍ପନ୍ନ ହୁଏ, ସେହି ଉତ୍ତମ କ୍ରିୟାମାନଙ୍କୁ **ଆଚାର** କହନ୍ତି। ନିଷ୍କପଟ, ହିତକର ଓ ଯଥାର୍ଥ ଭାଷଣକୁ **ସତ୍ୟ** କହନ୍ତି। ତାହାର ବିବେଚନ ଏହି ଅଧ୍ୟାୟର ଦ୍ୱିତୀୟ ଶ୍ଳୋକର ଟୀକାରେ କରାଯାଇଛି। ତେଣୁ ଉପରୋକ୍ତ କଥାଦ୍ୱାରା ପ୍ରକାଶ କରାଯାଇଛି ଯେ, ଆସୁରସ୍ୱଭାବର ମନୁଷ୍ୟମାନଙ୍କ ମଧ୍ୟରେ ଏହି ତିନୋଟି ମଧ୍ୟରୁ ଗୋଟିଏ ବି ନ ଥାଏ; ବରଂ ଏସବୁର ବିପରୀତଭାବ ଅପବିତ୍ରତା, ଦୁରାଚାର ଓ ମିଥ୍ୟାବାଦିତା ହିଁ ଥାଏ।

**ପ୍ରଶ୍ନ –** ଏହି ଶ୍ଳୋକର ଉତ୍ତରାର୍ଦ୍ଧରେ ଭଗବାନ୍ ତିନିଥର **ନ** ଓ **ଅପି** ପ୍ରୟୋଗ କରି କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଏହାଦ୍ୱାରା ଦେଖାଇଛନ୍ତି ଯେ, ଆସୁରସ୍ୱଭାବର ଲୋକଙ୍କ ଠାରେ କେବଳ ଅପବିତ୍ରତା ହିଁ ନୁହେଁ, ସେମାନଙ୍କ ଠାରେ ସଦାଚାର ନ ଥାଏ, କି ସତ୍ୟବାଦିତା ନ ଥାଏ।

*__ସମ୍ବନ୍ଧ –__ ଆସୁରସ୍ୱଭାବର ଲୋକମାନଙ୍କ ଠାରେ ବିବେକ, ଶୌଚ ଓ ସଦାଚାର ଆଦିର ଅଭାବ ରହିଥାଏ କହି ବର୍ତ୍ତମାନ ଭଗବାନ୍ ସେମାନଙ୍କ ନାସ୍ତିକଭାବର ବର୍ଣ୍ଣନା କରୁଛନ୍ତି–*

**ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରମ୍।**
**ଅପରସ୍ପରସଂଭୂତଂ କିମନ୍ୟତ୍ କାମହୈତୁକମ୍।। ୮ ।।**

**ଅନ୍ୱୟ –** ତେ = ସେହି ଆସୁରୀପ୍ରକୃତିର ମନୁଷ୍ୟମାନେ; **ଆହୁଃ** = କହନ୍ତି (ଯେ); **ଜଗତ୍** = ଜଗତ; **ଅପ୍ରତିଷ୍ଠମ୍** = ଆଶ୍ରୟରହିତ; **ଅସତ୍ୟମ୍** = ସର୍ବଥା ଅସତ୍ୟ (ଓ); **ଅନୀଶ୍ୱରମ୍** = ଈଶ୍ୱରରହିତ; **ଅପରସ୍ପରସମ୍ଭୂତମ୍** = କେବଳ ସ୍ତ୍ରୀପୁରୁଷଙ୍କ ସଂଯୋଗରୁ ସ୍ୱୟଂ ଉତ୍ପନ୍ନ ହୋଇଛି (ଅତଏବ); **କାମହୈତୁକମ୍, (ଏବ)** = କେବଳ କାମ ହିଁ ଏହାର କାରଣ; **ଅନ୍ୟତ୍** = ଏହା ଛଡ଼ା (ଆଉ); **କିମ୍** = କ'ଣ ଅଛି?

**ସେହି ଆସୁରୀପ୍ରକୃତିର ମନୁଷ୍ୟମାନେ କହନ୍ତି ଯେ, ଜଗତ ଆଶ୍ରୟରହିତ, ସର୍ବଥା ଅସତ୍ୟ ଓ ଈଶ୍ୱରରହିତ; ଏହା କେବଳ ସ୍ତ୍ରୀ-ପୁରୁଷଙ୍କ ସଂଯୋଗରୁ ନିଜେ ନିଜେ ଉତ୍ପନ୍ନ ହୋଇଛି; ଅତଏବ କେବଳ କାମ ହିଁ ଏହାର କାରଣ। ଏହା ଛଡ଼ା ଆଉ କ'ଣ ଅଛି? ।। ୮ ।।**

**ପ୍ରଶ୍ନ –** ଏହି ଶ୍ଳୋକର ଭାବ କ'ଣ ?

**ଉତ୍ତର –** ଏହି ଶ୍ଳୋକରେ ଆସୁରୀପ୍ରକୃତିର ମନୁଷ୍ୟମାନଙ୍କର ମନଗଢ଼ା କଳ୍ପନା ବିଷୟ ବର୍ଣ୍ଣନା କରାଯାଇଛି। ସେହି ଲୋକମାନେ ମନେ କରନ୍ତି ଯେ, ଏହି ଚରାଚର ଜଗତର ଆଧାର ଭଗବାନ୍ ନୁହନ୍ତି, କି କୌଣସି ଧର୍ମାଧର୍ମ ବି ନୁହେଁ; ଜଗତର କୌଣସି ନିତ୍ୟସତ୍ତା ନାହିଁ; ଅର୍ଥାତ୍

ଜନ୍ମ ପୂର୍ବରୁ କୌଣସି ଜୀବର ଅସ୍ତିତ୍ୱ ନ ଥିଲା, କି ମୃତ୍ୟୁ ପରେ କୌଣସି ଅସ୍ତିତ୍ୱ ରହିବ ନାହିଁ। ସେମାନଙ୍କ ମତରେ ଏହାର କୌଣସି ସ୍ରଷ୍ଟା, ନିୟାମକ ଓ ଶାସକ ଈଶ୍ୱର ନାହାନ୍ତି; ଏହି ଚରାଚର ଜଗତ କେବଳ ସ୍ତ୍ରୀ-ପୁରୁଷଙ୍କ ସଂଯୋଗରୁ ହିଁ ଉତ୍ପନ୍ନ ହୋଇଛି; ଅତଏବ କେବଳ କାମ ହିଁ ଏହାର କାରଣ; ଏହା ବ୍ୟତୀତ ଏହାର ଆଉ କୌଣସି ପ୍ରୟୋଜନ ନାହିଁ।

**ସମ୍ବନ୍ଧ –** ଏପରି ନାସ୍ତିକ ସିଦ୍ଧାନ୍ତକୁ ମାନୁଥିବା ଲୋକମାନଙ୍କ ସ୍ୱଭାବ ଓ ଆଚରଣ କିପରି ହୋଇଥାଏ ? ଏହି ଜିଜ୍ଞାସା ଉପରେ ଭଗବାନ୍ ପରବର୍ତ୍ତୀ ଚାରିଟି ଶ୍ଳୋକରେ ସେମାନଙ୍କ ଲକ୍ଷଣ ବର୍ଣ୍ଣନା କରୁଛନ୍ତି—

**ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଲ୍ପବୁଦ୍ଧୟଃ ।**
**ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ ।। ୯ ।।**

**ଅନ୍ୱୟ –** ଏତାମ୍ = ଏହି; **ଦୃଷ୍ଟିମ୍** = ମିଥ୍ୟା ଜ୍ଞାନକୁ; **ଅବଷ୍ଟଭ୍ୟ** = ଅବଲମ୍ବନ କରି; **ନଷ୍ଟାତ୍ମାନଃ** = ଯେଉଁମାନଙ୍କର ସ୍ୱଭାବ ନଷ୍ଟ ହୋଇଗଲାଣି (ତଥା); **ଅଲ୍ପବୁଦ୍ଧୟଃ** = ଯେଉଁମାନଙ୍କ ବୁଦ୍ଧି ମନ୍ଦ; **ଅହିତାଃ** = ସମସ୍ତଙ୍କର ଅପକାରୀ; **ଉଗ୍ରକର୍ମାଣଃ** = (ସେହି) କ୍ରୂରକର୍ମା ମନୁଷ୍ୟମାନେ (କେବଳ); **ଜଗତଃ** = ଜଗତର; **କ୍ଷୟାୟ** = ବିନାଶପାଇଁ; **ପ୍ରଭବନ୍ତି** = ସମର୍ଥ ହୁଅନ୍ତି।

**ଏହି ମିଥ୍ୟା ଜ୍ଞାନକୁ ଅବଲମ୍ବନ କରି ଯେଉଁମାନଙ୍କର ସ୍ୱଭାବ ନଷ୍ଟ ହୋଇଗଲାଣି ତଥା ଯେଉଁମାନଙ୍କର ବୁଦ୍ଧି ମନ୍ଦ, ଯେଉଁମାନେ ସମସ୍ତଙ୍କର ଅପକାରୀ, ସେହି କ୍ରୂରକର୍ମା ମନୁଷ୍ୟମାନଙ୍କର ସାମର୍ଥ୍ୟ କେବଳ ଜଗତର ବିନାଶ କରିବାକୁ ହିଁ ହୋଇଥାଏ।। ୯ ।।**

**ପ୍ରଶ୍ନ –** 'ଏହି ମିଥ୍ୟା ଜ୍ଞାନକୁ ଅବଲମ୍ବନ କରି' — ଏହି ବାକ୍ୟାଂଶର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଆସୁରସ୍ୱଭାବର ମନୁଷ୍ୟମାନଙ୍କର ସକଳ କାର୍ଯ୍ୟ କେବଳ ଏହି ନାସ୍ତିକବାଦୀ ସିଦ୍ଧାନ୍ତକୁ ଦୃଷ୍ଟିରେ ରଖି ହିଁ ହୋଇଥାଏ ବୋଲି ଦେଖାଇବାପାଇଁ ଏହିପରି କୁହାଯାଇଛି।

**ପ୍ରଶ୍ନ –** ସେମାନଙ୍କୁ **ନଷ୍ଟାତ୍ମାନଃ, ଅଲ୍ପବୁଦ୍ଧୟଃ, ଅହିତାଃ** ଓ **ଉଗ୍ରକର୍ମାଣଃ** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ନାସ୍ତିକସିଦ୍ଧାନ୍ତର ମନୁଷ୍ୟମାନେ ଆତ୍ମାର ସତ୍ତା ମାନନ୍ତି ନାହିଁ। ସେମାନେ କେବଳ ଦେହବାଦୀ ତଥା ଭୌତିକବାଦୀ ହିଁ ହୋଇଯାନ୍ତି; ତା'ଦ୍ୱାରା ସେମାନଙ୍କର ସ୍ୱଭାବ ଭ୍ରଷ୍ଟ ହୋଇଯାଏ। ସେମାନଙ୍କର କୌଣସି ବି ସତ୍କାର୍ଯ୍ୟ କରିବାରେ ପ୍ରବୃତ୍ତି ହୁଏ ନାହିଁ। ସେମାନଙ୍କର ବୁଦ୍ଧି ମଧ୍ୟ ଅତ୍ୟନ୍ତ ମନ୍ଦ ହୁଏ। ସେମାନେ ଯାହାକିଛି ନିଶ୍ଚୟ କରନ୍ତି, ସବୁ କେବଳ ନିଜର ଭୋଗ ଓ ସୁଖ ଦୃଷ୍ଟିରୁ ହିଁ କରନ୍ତି। ସେମାନଙ୍କ ମନ ନିରନ୍ତର ଅନ୍ୟମାନଙ୍କର ଅହିତ କାମନା ହିଁ କରିଥାଏ। ଏହାଦ୍ୱାରା ସେମାନେ ନିରନ୍ତର ମଧ୍ୟ ଅହିତ ହିଁ କରିଥାନ୍ତି। ମନ, ବାଣୀ ଓ ଶରୀରଦ୍ୱାରା ସେମାନେ ଚରାଚର ଜୀବମାନଙ୍କୁ ଭୟଭୀତ କରିବା, ଦୁଃଖ ଦେବା ଓ ସେମାନଙ୍କର ବିନାଶ କରିବାପରି ଅତ୍ୟନ୍ତ ଉଗ୍ର କର୍ମ ହିଁ କରିଥାନ୍ତି।

**ପ୍ରଶ୍ନ –** 'ସେମାନଙ୍କର ସାମର୍ଥ୍ୟ ଜଗତର ବିନାଶ କରିବାପାଇଁ ହିଁ ହୋଇଥାଏ।' — ଏହି ବାକ୍ୟର ଭାବ କ'ଣ ?

**ଉତ୍ତର –** ଉପରୋକ୍ତପ୍ରକାରର ଲୋକମାନେ ନିଜ ଜୀବନରେ ବୁଦ୍ଧି, ମନ, ବାଣୀ ଓ ଶରୀରଦ୍ୱାରା ଯାହା କିଛି ବି କର୍ମ କରନ୍ତି, ତାହା ଚରାଚର ପ୍ରାଣୀଜଗତକୁ କଷ୍ଟ ଦେବାକୁ କିମ୍ବା ମାରିଦେବାକୁ ହିଁ କରନ୍ତି। ତେଣୁ କୁହାଯାଇଛି ଯେ, ସେମାନଙ୍କର ସାମର୍ଥ୍ୟ ଜଗତର ବିନାଶ କରିବାପାଇଁ ହିଁ ହୋଇଥାଏ।

**କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନମଦାନ୍ୱିତାଃ ।**
**ମୋହାଦ୍‌ଗୃହୀତ୍ୱାସଦ୍‌ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ।। ୧୦ ।।**

**ଅନ୍ୱୟ –** ଦମ୍ଭମାନମଦାନ୍ୱିତାଃ = ଦମ୍ଭ, ମାନ ଓ ମଦଯୁକ୍ତ ମନୁଷ୍ୟମାନେ; **ଦୁଷ୍ପୂରମ୍** = କୌଣସିପ୍ରକାରେ ମଧ୍ୟ ପୂର୍ଣ୍ଣ ହେଉ ନ ଥିବା; **କାମମ୍** = କାମନାମାନଙ୍କୁ; **ଆଶ୍ରିତ୍ୟ** = ଆଶ୍ରୟ କରି; **ମୋହାତ୍** = ଅଜ୍ଞାନବଶତଃ;

**ଅସଦ୍‌ଗ୍ରାହାନ୍** = ମିଥ୍ୟା ସିଦ୍ଧାନ୍ତମାନଙ୍କୁ; **ଗୃହୀତ୍ୱା** = ଗ୍ରହଣ କରି (ଓ); **ଅଶୁଚିବ୍ରତାଃ** = ଭ୍ରଷ୍ଟ ଆଚରଣ ଧାରଣ କରି; **ପ୍ରବର୍ତ୍ତନ୍ତେ** = ସଂସାରରେ ବିଚରଣ କରନ୍ତି।

**ସେହି ଦମ୍ଭ, ମାନ ଓ ମଦଯୁକ୍ତ ମନୁଷ୍ୟମାନେ କୌଣସିପ୍ରକାରେ ବି ପୂର୍ଣ୍ଣ ହେଉ ନ ଥିବା କାମନାମାନଙ୍କୁ ଆଶ୍ରୟ କରି, ଅଜ୍ଞାନବଶତଃ ମିଥ୍ୟା ସିଦ୍ଧାନ୍ତମାନ ଗ୍ରହଣ କରି ଓ ଭ୍ରଷ୍ଟ ଆଚରଣ ଧାରଣ କରି ସଂସାରରେ ବିଚରଣ କରନ୍ତି।। ୧୦ ।।**

**ପ୍ରଶ୍ନ –** ଦମ୍ଭମାନମଦାନ୍ୱିତାଃର ଭାବ କ'ଣ ?

**ଉତ୍ତର –** ଯେଉଁଠି ଯେପରି ହୋଇପାରିଲେ ଉଚ୍ଚସ୍ଥାନ ମିଳିବ, ପ୍ରକୃତରେ ସେପରି ନ ହୋଇ ମଧ୍ୟ ମାନ, ଧନ, ପୂଜା, ପ୍ରତିଷ୍ଠା ଆଦି ସ୍ୱାର୍ଥସାଧନ ନିମନ୍ତେ ସେପରି ହୋଇଥିଲାପରି ଭାବ ଦେଖାଇବାକୁ **ଦମ୍ଭ** କହନ୍ତି। ନିଜଠାରେ ସମ୍ମାନାସ୍ପଦ ତଥା ପୂଜ୍ୟ ହେବାର ଅଭିମାନ ରଖିବାର ନାମ **ମାନ** ଏବଂ ରୂପ, ଗୁଣ, ଜାତି, ଐଶ୍ୱର୍ଯ୍ୟ, ବିଦ୍ୟା, ପଦ, ଧନ, ସନ୍ତାନ ଆଦି ନିଶାରେ ମଜ୍ଜି ରହିବାକୁ **ମଦ** କହନ୍ତି। ଆସୁରସ୍ୱଭାବର ମନୁଷ୍ୟମାନେ ଏହି ଦମ୍ଭ, ମାନ ଓ ମଦରେ ବୁଡ଼ିରହନ୍ତି। ତେଣୁ ସେମାନଙ୍କୁ ଏପରି କୁହାଯାଇଛି।

**ପ୍ରଶ୍ନ – ଦୁଷ୍ପୂରମ୍** ବିଶେଷଣ ସହିତ **କାମମ୍** ପଦ କାହାର ବାଚକ ଓ ତା'ର ଆଶ୍ରୟ ନେବା କ'ଣ ?

**ଉତ୍ତର –** ଏଠାରେ **ଦୁଷ୍ପୂରମ୍** ବିଶେଷଣ ସହିତ **କାମମ୍** ପଦଟି ହେଉଛି ସଂସାରର ଭିନ୍ନ ଭିନ୍ନ ଭୋଗ-ପ୍ରାପ୍ତିପାଇଁ କରାଯାଉଥିବା ସେହି କାମନାର ବାଚକ, ଯାହାକୁ ପୂର୍ଣ୍ଣ କରିବା କୌଣସିପ୍ରକାରେ ସମ୍ଭବ ନୁହେଁ। ଏପରି କାମନା ପୂର୍ଣ୍ଣ କରିବାପାଇଁ ମନରେ ଦୃଢ଼ ସଂକଳ୍ପ ରଖିବା ହିଁ ସେସବୁର ଆଶ୍ରୟ ନେବା।

**ପ୍ରଶ୍ନ –** ଅଜ୍ଞାନବଶତଃ ମିଥ୍ୟା ସିଦ୍ଧାନ୍ତମାନ ଗ୍ରହଣ କରିବା କ'ଣ ?

**ଉତ୍ତର –** ଅଜ୍ଞାନର ବଶ ହୋଇ ନାନାପ୍ରକାର ଶାସ୍ତ୍ରବିରୁଦ୍ଧ ସିଦ୍ଧାନ୍ତ କଳ୍ପନା କରି ସେଗୁଡ଼ିକୁ ହଠପୂର୍ବକ ଠିକ୍ ବୋଲି ଧରିବସିବା ହିଁ ଅଜ୍ଞାନବଶତଃ ସେପରି ସିଦ୍ଧାନ୍ତ ଗ୍ରହଣ କରିବା।

**ପ୍ରଶ୍ନ – ଅଶୁଚିବ୍ରତାଃ**ର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦର୍ଶାଯାଇଛି ଯେ, ସେମାନଙ୍କର ଖାଇବା-ପିଇବା, ଚାଲିଚଳଣ, ବ୍ୟବସାୟ-ବାଣିଜ୍ୟ, ନେଣ-ଦେଣ, କଥା-ଭାଷା ଓ ଆଚାର-ବ୍ୟବହାର ଆଦି ସବୁକିଛି ନିୟମବିରୁଦ୍ଧ, ଶାସ୍ତ୍ରବିରୁଦ୍ଧ ଓ ଭ୍ରଷ୍ଟ।

**ପ୍ରଶ୍ନ – ପ୍ରବର୍ତ୍ତନ୍ତେ**ର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଜଣାଇଦିଆଯାଇଛି ଯେ, ସେହି ଲୋକମାନେ ଅଜ୍ଞାନବଶତଃ ଉପରୋକ୍ତଭାବେ ଭ୍ରଷ୍ଟାଚାରୀ ହୋଇ ସଂସାରରେ ଇଚ୍ଛାନୁସାରେ ଚଳନ୍ତି।

**ଚିନ୍ତାମପରିମେୟାଂ ଚ ପ୍ରଳୟାନ୍ତାମୁପାଶ୍ରିତାଃ।**
**କାମୋପଭୋଗପରମା ଏତାବଦିତି ନିଶ୍ଚିତାଃ।। ୧୧ ।।**

**ଅନ୍ୱୟ –** **ପ୍ରଳୟାନ୍ତାମ୍** = ମୃତ୍ୟୁପର୍ଯ୍ୟନ୍ତ ରହୁଥିବା; **ଅପରିମେୟାମ୍** = ଅସଂଖ୍ୟ; **ଚିନ୍ତାମ୍** = ଚିନ୍ତାକୁ; **ଉପାଶ୍ରିତାଃ** = ଆଶ୍ରୟ କରିଥିବା ଲୋକମାନେ; **କାମୋପଭୋଗପରମାଃ** = ବିଷୟଭୋଗପରାୟଣ (ହୋଇ); **ଚ** = ଏବଂ; **ଏତାବତ୍** = ଏତିକି ହିଁ ସୁଖ; **ଇତି, ନିଶ୍ଚିତାଃ** = ବୋଲି ମନେକରନ୍ତି।

**ତଥା ସେମାନେ ମୃତ୍ୟୁପର୍ଯ୍ୟନ୍ତ ରହୁଥିବା ଅସଂଖ୍ୟ ଚିନ୍ତାକୁ ଆଶ୍ରୟ କରି ଏବଂ ବିଷୟ-ଭୋଗପରାୟଣ ହୋଇ 'ଏତିକି ହିଁ ସୁଖ' ବୋଲି ମନେ କରନ୍ତି।। ୧୧ ।।**

**ପ୍ରଶ୍ନ –** ସେମାନଙ୍କୁ ମୃତ୍ୟୁପର୍ଯ୍ୟନ୍ତ ରହୁଥିବା ଅସଂଖ୍ୟ ଚିନ୍ତାର ଆଶ୍ରିତ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ସେହି ଅସୁରସ୍ୱଭାବର ମନୁଷ୍ୟମାନେ ଭୋଗ ଓ ସୁଖପାଇଁ ଏପରି ବିଭିନ୍ନ ଚିନ୍ତାକୁ ଆଶ୍ରୟ କରନ୍ତି, ଯାହା କି ଜୀବନସାରା ଲାଗିଲେ ବି ପୂର୍ଣ୍ଣ ହୁଏ ନାହିଁ, ଯାହା ମୃତ୍ୟୁର ଶେଷକ୍ଷଣଯାଏ ରହିଥାଏ ଓ ଯାହା ଏତେ ଅଧିକ ସଂଖ୍ୟକ ଯେ, ତାହା ଗଣିହୁଏ ନାହିଁ।

**ପ୍ରଶ୍ନ –** 'ବିଷୟଭୋଗ-ପରାୟଣ ହେବା' ତଥା 'ଏତିକି ହିଁ ସୁଖ' ବୋଲି ମନେ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ପ୍ରକାଶ କରାଯାଇଛି ଯେ, ବିଷୟଭୋଗର ବିଭିନ୍ନ ସାମଗ୍ରୀ ସଂଗ୍ରହ କରିବା ଓ ସେସବୁ ଭୋଗ କରିବାରେ ଲାଗିରହିବା ହିଁ ସେମାନଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ହୋଇଥାଏ। ଅତଏବ ସେମାନଙ୍କର ଜୀବନ ଭୋଗପରାୟଣ ହୁଏ। ସେମାନେ ଏହି ନିଶ୍ଚୟ କରିନେଇଥାନ୍ତି ଯେ, 'ବେଶ୍, ସୁଖ ବୋଲି ଯାହା କିଛି ଅଛି, ତାହା ଏତିକି ଭୋଗ କରିବାରେ ହିଁ ରହିଯାଇଛି।'

## ଆଶାପାଶଶତୈର୍ବଦ୍ଧାଃ କାମକ୍ରୋଧପରାୟଣାଃ।
## ଈହନ୍ତେ କାମଭୋଗାର୍ଥମନ୍ୟାୟେନାର୍ଥସଂଚୟାନ୍॥ ୧୨ ॥

**ଅନ୍ୱୟ –** ଆଶାପାଶଶତୈଃ, **ବଦ୍ଧାଃ** = ଶତ ଶତ ଆଶା-ପାଶରେ ଆବଦ୍ଧ ହୋଇଥିବା ମନୁଷ୍ୟମାନେ; **କାମକ୍ରୋଧପରାୟଣାଃ** = କାମକ୍ରୋଧର ପରାୟଣ ହୋଇ; **କାମଭୋଗାର୍ଥମ୍** = ବିଷୟଭୋଗପାଇଁ; **ଅନ୍ୟାୟେନ** = ଅନ୍ୟାୟପୂର୍ବକ; **ଅର୍ଥସଞ୍ଚୟାନ୍** = ଧନାଦି ପଦାର୍ଥ ସଂଗ୍ରହ କରିବା ନିମନ୍ତେ; **ଈହନ୍ତେ** = ଚେଷ୍ଟା କରୁଥାନ୍ତି।

**ଶତ ଶତ ଆଶାପାଶରେ ଆବଦ୍ଧ ହୋଇଥିବା ସେହି ମନୁଷ୍ୟମାନେ କାମକ୍ରୋଧପରାୟଣ ହୋଇ ବିଷୟଭୋଗପାଇଁ ଅନ୍ୟାୟପୂର୍ବକ ଧନାଦି ସଂଗ୍ରହ କରିବାର ଚେଷ୍ଟାରେ ଲାଗିରହିଥାନ୍ତି॥ ୧୨ ॥**

**ପ୍ରଶ୍ନ –** ସେମାନଙ୍କୁ 'ଆଶାର ଶତ ଶତ ପାଶରେ ଆବଦ୍ଧ' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଆସୁରସ୍ୱଭାବର ମନୁଷ୍ୟଙ୍କ ମନରେ କାମୋପଭୋଗର ନାନାପ୍ରକାର କାମନା ଜାଗ୍ରତ ହେଉଥାଏ ଓ ସେସବୁ କାମନାର ପୂର୍ତ୍ତିପାଇଁ ସେମାନେ ନାନାପ୍ରକାର ଶହ ଶହ ଆଶା ପୋଷଣ କରୁଥାନ୍ତି। ସେମାନଙ୍କ ମନ କେବେ କେଉଁ ବିଷୟର ଆଶାରେ ଲାଗିରହେ, ତା'ର ଠିକଣା ନାହିଁ। ଏବେ କେଉଁ ଆଡ଼େ ଆକୃଷ୍ଟ ହୁଏ ତ, ପରେ କେଉଁଥିରେ ଅଟକିଯାଏ; ଏପରିଭାବରେ ଆଶାମାନଙ୍କ ବନ୍ଧନରୁ ସେମାନେ କେବେ ବି ମୁକ୍ତ ହୁଅନ୍ତି ନାହିଁ। ତେଣୁ ସେମାନଙ୍କୁ ଶତ ଶତ ଆଶାପାଶରେ ଆବଦ୍ଧ ମନୁଷ୍ୟ ବୋଲି କୁହାଯାଇଛି।

**ପ୍ରଶ୍ନ – କାମକ୍ରୋଧପରାୟଣାଃ**ର ଭାବ କ'ଣ ?

**ଉତ୍ତର –** ସେହି ଆଶାମାନଙ୍କର ପୂର୍ତ୍ତିପାଇଁ ସେମାନେ ଭଗବାନଙ୍କର କିମ୍ବା କୌଣସି ଦେବତା, ସତ୍କର୍ମ ଓ ସଦ୍‌ବିଚାରର ଆଶ୍ରୟ ନ ନେଇ କେବଳ କାମକ୍ରୋଧକୁ ହିଁ ଅବଲମ୍ବନ କରନ୍ତି। ତେଣୁ ସେମାନଙ୍କୁ କାମକ୍ରୋଧପରାୟଣ ବୋଲି କୁହାଯାଇଛି।

**ପ୍ରଶ୍ନ –** ବିଷୟଭୋଗପାଇଁ ଅନ୍ୟାୟପୂର୍ବକ ଧନାଦି-ସଂଗ୍ରହର ଚେଷ୍ଟା କରିବା କ'ଣ ?

**ଉତ୍ତର –** ବିଷୟଭୋଗ ଉଦ୍ଦେଶ୍ୟରେ କାମକ୍ରୋଧକୁ ଅବଲମ୍ବନ କରି ଅନ୍ୟାୟପୂର୍ବକ ଅର୍ଥାତ୍ ଚୋରି, ଠକାମି, ଡକାୟତି, ମିଥ୍ୟା, କପଟ, ଛଳ, ଦମ୍ଭ, ମାରପିଟ୍, କୂଟନୀତି, ଜୁଆ, ଧୋକାବାଜୀ, ବିଷପ୍ରୟୋଗ, ମିଥ୍ୟା ମକଦ୍ଦମା ଓ ଭୟ-ପ୍ରଦାନ ଆଦି ଶାସ୍ତ୍ରବିରୁଦ୍ଧ ଉପାୟଦ୍ୱାରା ଅନ୍ୟମାନଙ୍କର ଧନାଦି ହରଣ କରିବାକୁ ଯେଉଁ ଚେଷ୍ଟା କରାଯାଏ, ତାହା ହିଁ ବିଷୟଭୋଗପାଇଁ ଅନ୍ୟାୟରେ ଅର୍ଥସଂଗ୍ରହ କରିବା।

**ସମ୍ବନ୍ଧ –** ଗତ ଚାରିଟି ଶ୍ଳୋକରେ ଆସୁରସ୍ୱଭାବର ମନୁଷ୍ୟମାନଙ୍କ ଲକ୍ଷଣ ଓ ଆଚରଣ ବର୍ଣ୍ଣନା କରି ବର୍ତ୍ତମାନ ଆଗ ଚାରିଟି ଶ୍ଳୋକରେ ଭଗବାନ୍ ସେମାନଙ୍କର ଅହଂତ୍ୱ, ମମତ୍ୱ ଓ ମୋହ-ଯୁକ୍ତ ସଂକଳ୍ପମାନଙ୍କୁ ନିରୂପଣ କରିବା ସହିତ ସେମାନଙ୍କର ଦୁର୍ଗତି ବର୍ଣ୍ଣନା କରୁଛନ୍ତି–

## ଇଦମଦ୍ୟ ମୟା ଲବ୍ଧମିମଂ ପ୍ରାପ୍ସ୍ୟେ ମନୋରଥମ୍।
## ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଧନମ୍॥ ୧୩ ॥

**ଅନ୍ୱୟ –** ମୟା = ମୋ'ଦ୍ୱାରା; ଅଦ୍ୟ = ଆଜି; ଇଦମ୍ = ଏହା; ଲବ୍ଧମ୍ = ପ୍ରାପ୍ତ ହେଲା (ଓ ଏଥର); ଇମମ୍ = ଏହି; ମନୋରଥମ୍ = ମନୋରଥକୁ; ପ୍ରାପ୍ସ୍ୟେ = ପ୍ରାପ୍ତ ହେବି; ମେ = ମୋ ପାଖରେ; ଇଦମ୍ = ଏତିକି; ଧନମ୍ = ଧନ; ଅସ୍ତି = ଅଛି; ପୁନଃ = ଆହୁରି; ଅପି = ମଧ୍ୟ; ଇଦମ୍ = ଏତକ; ଭବିଷ୍ୟତି = ହୋଇଯିବ।

**ସେମାନେ ଭାବନ୍ତି, 'ମୁଁ ଆଜି ଏହା ପାଇଗଲି ଏବଂ ଏଥର ଏହି ମନୋରଥ ପୂର୍ଣ୍ଣ ହୋଇଯିବ। ମୋ ପାଖରେ ଏତିକି ଧନ ଅଛି ଏବଂ ଆହୁରି ମଧ ଏତକ ଧନ ମୋର ହୋଇଯିବ'॥ ୧୩ ॥**

**ପ୍ରଶ୍ନ –** ଏହି ଶ୍ଳୋକର ଅଭିପ୍ରାୟ କ'ଣ ?

**ଉତ୍ତର –** 'ମନୋରଥ' ଶବ୍ଦ ଏଠାରେ ସ୍ତ୍ରୀ, ପୁତ୍ର, ଧନ, ଭୂସମ୍ପଦ, ଗୃହସମ୍ପଦ ଓ ମାନ-ବଡ଼ିମା ଆଦି ସମସ୍ତ ମନୋବାଞ୍ଛିତ-ପଦାର୍ଥ-ଚିନ୍ତନର ବାଚକ। ଅତଏବ ଏହି ଶ୍ଳୋକରେ ଦେଖାଇଦିଆଯାଇଛି ଯେ, ଆସୁରସ୍ୱଭାବର ଲୋକେ ଅହଂକାରପୂର୍ବକ ନାନାପ୍ରକାର ବିଚାର କରୁଥାନ୍ତି। ସେମାନେ ଭାବନ୍ତି, ''ଅମୁକ ଅଭୀଷ୍ଟ ବସ୍ତୁ ତ ମୋ ନିଜ ପୁରୁଷାର୍ଥରୁ ପାଇଗଲି ଏବଂ ଅମୁକ ମନୋବାଞ୍ଛିତ ବସ୍ତୁଟି ମୁଁ ନିଜ ପୁରୁଷାର୍ଥଦ୍ୱାରା ପାଇଯିବି। ମୋ ପାଖରେ ଏତକ ଧନ ଓ ଐଶ୍ୱର୍ଯ୍ୟ ତ ଆଗରୁ ଅଛି; ଆହୁରି ଏତକ ଧନ ମଧ ହୋଇଯିବ।''

## ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି।
## ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଳବାନ୍ ସୁଖୀ॥ ୧୪ ॥

**ଅନ୍ୱୟ –** **ଅସୌ** = ସେହି; **ଶତ୍ରୁଃ** = ଶତ୍ରୁ; **ମୟା** = ମୋ'ଦ୍ୱାରା; **ହତଃ** = ନିହତ ହୋଇଗଲା; **ଚ** = ଓ; **ଅପରାନ୍** = ଅନ୍ୟ ଶତ୍ରୁମାନଙ୍କୁ; **ଅପି** = ମଧ; **ଅହମ୍** = ମୁଁ; **ହନିଷ୍ୟେ** = ମାରିଦେବି; **ଅହମ୍** = ମୁଁ; **ଈଶ୍ୱରଃ** = ଈଶ୍ୱର; **ଭୋଗୀ** = ଐଶ୍ୱର୍ଯ୍ୟବାନ୍; **ଅହମ୍** = ମୁଁ; **ସିଦ୍ଧଃ** = ସିଦ୍ଧିରେ ଯୁକ୍ତ (ଓ); **ବଳବାନ୍** = ବଳବାନ୍ (ତଥା); **ସୁଖୀ** = ସୁଖୀ।

**'ସେହି ଶତ୍ରୁ ମୋ'ଦ୍ୱାରା ନିହତ ହୋଇଗଲା ଏବଂ ଅନ୍ୟ ଶତ୍ରୁମାନଙ୍କୁ ମଧ ମୁଁ ମାରିଦେବି। ମୁଁ ଈଶ୍ୱର; ମୁଁ ଐଶ୍ୱର୍ଯ୍ୟବାନ୍; ମୁଁ ସମସ୍ତ ସିଦ୍ଧିରେ ଯୁକ୍ତ, ବଳବାନ୍, ତଥା ସୁଖୀ॥ ୧୪ ॥**

**ପ୍ରଶ୍ନ –** 'ସେହି ଶତ୍ରୁ ମୋ'ଦ୍ୱାରା ନିହତ ହୋଇଗଲା ଓ ଅନ୍ୟାନ୍ୟ ଶତ୍ରୁମାନଙ୍କୁ ମଧ ମୁଁ ମାରିଦେବି' — ଏହାର ଅଭିପ୍ରାୟ କ'ଣ ?

**ଉତ୍ତର –** କାମୋପଭୋଗକୁ ହିଁ ପରମ ପୁରୁଷାର୍ଥ ବୋଲି ମନେ କରୁଥିବା ଆସୁରସ୍ୱଭାବର ମନୁଷ୍ୟମାନେ କାମକ୍ରୋଧପରାୟଣ ହୁଅନ୍ତି। ଈଶ୍ୱର, ଧର୍ମ ଓ କର୍ମଫଳରେ ସେମାନଙ୍କର ତିଳେମାତ୍ର ବିଶ୍ୱାସ ହୁଏ ନାହିଁ। ଅତଏବ ସେମାନେ ଅହଂକାରରେ ଉନ୍ମତ୍ତ ହୋଇ ଭାବନ୍ତି, ''ଜଗତରେ ଏପରି କିଏ ଅଛି ଯେ, ଆମ ବାଟରେ ବାଧା ଦେଇପାରିବ ବା ଆମ ସହିତ ବିରୋଧ କରି ବଞ୍ଚି ରହିପାରିବ ?'' ତେଣୁ ସେମାନେ କ୍ରୋଧପରବଶ ହୋଇ ମିଥ୍ୟାଭିମାନ ଓ ଗର୍ବର ସହିତ କ୍ରୂରକଣ୍ଠରେ କହନ୍ତି, ''ସେ ଯେଉଁ ଏତେ ବଡ଼ ବଳବାନ୍ ଓ ଜଗତ୍‌ପ୍ରସିଦ୍ଧ ପ୍ରଭାବଶାଳୀ ଲୋକଟା ଥିଲା, ଆମ ସହିତ ବୈରତା ଯୋଗୁଁ ଦେଖୁ ଦେଖୁ ଆମଦ୍ୱାରା ତାକୁ ଯମପୁରରେ ପହଞ୍ଚାଇଦିଆଗଲା; ଖାଲି ଏତିକି ନୁହେଁ; ଯେ କେହି ଆମର ବିରୋଧ କରିବ, ସେ ଯେତେବଡ଼ ବଳବାନ୍ ହୋଇଥାଉ ନା କାହିଁକି, ତାକୁ ମଧ ଆମେ ଅନାୟାସରେ ମାରିଦେବୁ।''

**ପ୍ରଶ୍ନ –** 'ମୁଁ ଈଶ୍ୱର, ଭୋଗୀ, ସିଦ୍ଧ, ବଳବାନ୍ ଓ ସୁଖୀ' — ଏହି ବାକ୍ୟର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଅହଂକାରହେତୁ ହିଁ ସେମାନେ ଅଭିମାନରେ ମତ୍ତ ହୋଇ ରହନ୍ତି ଏବଂ ଭାବୁଥାନ୍ତି, ''ସଂସାରରେ ଆମଠାରୁ ବଡ଼ ହୋଇ ଆଉ କେହି ନାହିଁ; ଆମେ ଯାହାକୁ ଚାହିଁବୁ, ତାକୁ ମାରିଦେଇପାରିବୁ, ଯାହାକୁ ଚାହିଁବୁ ତାକୁ ତାରିଦେଇପାରିବୁ; ଯାହାକୁ ଚାହିଁବୁ, ତା'ର ମୂଳପୋଛ କରିଦେଇ ପାରିବୁ; ଯାହାକୁ ଚାହିଁବୁ ତାହାକୁ ଥାପି ଦେଇପାରିବୁ।'' ତେଣୁ ସେମାନେ ବଡ଼ ଗର୍ବର ସହିତ କହନ୍ତି, ''ଆରେ ! ଆମେ ସର୍ବଥା ସ୍ୱତନ୍ତ୍ର। ସବୁ କିଛି ଆମ ହାତମୁଠାରେ ରହିଛି; ଆମଠାରୁ ବଳି ଐଶ୍ୱର୍ଯ୍ୟବାନ୍ ଆଉ କିଏ ଅଛି ? ଆମେ ହିଁ ତ ସକଳ ଐଶ୍ୱର୍ଯ୍ୟର ସ୍ୱାମୀ; ସମସ୍ତ ଈଶ୍ୱରମାନଙ୍କର ଈଶ୍ୱର; ଆମେ ହିଁ ପରମପୂଜ୍ୟ। ସମସ୍ତେ ଆମକୁ ହିଁ ପୂଜା କରିବା ଉଚିତ। ଆମେ କେବଳ ଐଶ୍ୱର୍ଯ୍ୟର ସ୍ୱାମୀ ନୋହୁଁ; ଆମେ ହିଁ ସମସ୍ତ ଐଶ୍ୱର୍ଯ୍ୟ ଭୋଗ କରୁ। ଆମେ ଆମ ଜୀବନରେ ବିପଳତା କ'ଣ, କେବେ ଜାଣି ନାହୁଁ।

ଆମେ ଯେଉଁଠି ହାତ ଦେଉଛୁ, ସେଇଠି ସଫଳ ହୋଉଛୁ— ସଫଳତା ଆମ ପଛରେ ଗୋଡ଼ାଉଛି। ଆମ ଜୀବନ ସଦା ସଫଳ, ଆମେ ପରମ ସିଦ୍ଧପୁରୁଷ। ଭବିଷ୍ୟତରେ କ'ଣ ଘଟିବ, ତାହା ଆମକୁ ଆଗରୁ ହିଁ ଜଣାପଡ଼ିଯାଏ। ଆମେ ସବୁ ଜାଣୁ। ଆମକୁ କୌଣସି କଥା ଅଛପା ନୁହେଁ। ଖାଲି ଏତିକି ନୁହେଁ; ଆମେ ବଡ ବଳବାନ୍। ଆମର ମନୋବଳ ଓ ଶାରୀରିକ ବଳର ଏତେ ପ୍ରଭାବ ଯେ, ଯେ କେହି ଆମ ଆଶ୍ରୟ ନେବ, ସେ ଆମ ବଳରେ ଜଗତ ଜିତିଯିବ। ଏସବୁ କାରଣରୁ ଆମେ ପରମସୁଖୀ। ସଂସାରର ସମସ୍ତ ସୁଖ ସଦା ଆମର ସେବା କରୁଛି ଓ କରୁଥିବ।''

**ଆଢ୍ୟୋଽଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋ ମୟା।**
**ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ ଇତ୍ୟଜ୍ଞାନବିମୋହିତାଃ॥ ୧୫ ॥**
**ଅନେକଚିତ୍ତବିଭ୍ରାନ୍ତା ମୋହଜାଲସମାବୃତାଃ।**
**ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ॥ ୧୬ ॥**

**ଅନ୍ୱୟ—** ଆଢ୍ୟଃ = (ମୁଁ) ବିରାଟ ଧନୀ (ଓ); **ଅଭିଜନବାନ୍** = ବିଶାଳ କୁଟୁମ୍ବୀ; **ଅସ୍ମି** = ଅଟେ; **ମୟା, ସଦୃଶଃ** = ମୋ ସମାନ; **ଅନ୍ୟଃ** = ଆଉ; **କଃ** = କିଏ; **ଅସ୍ତି** = ଅଛି (ମୁଁ); **ଯକ୍ଷ୍ୟେ** = ଯଜ୍ଞ କରିବି; **ଦାସ୍ୟାମି** = ଦାନ ଦେବି; **ମୋଦିଷ୍ୟେ** = ଆମୋଦପ୍ରମୋଦ କରିବି; **ଇତି** = ଏପରିଭାବରେ; **ଅଜ୍ଞାନବିମୋହିତାଃ** = ଅଜ୍ଞାନରେ ବିଶେଷ ମୋହିତ; **ଅନେକଚିତ୍ତବିଭ୍ରାନ୍ତାଃ** = ଅନେକପ୍ରକାରେ ବିଭ୍ରାନ୍ତଚିତ୍ତ; **ମୋହଜାଲସମାବୃତାଃ** = ମୋହରୂପୀ ଜାଲରେ ଆବଦ୍ଧ ହୋଇଥିବା (ଓ); **କାମଭୋଗେଷୁ** = ବିଷୟଭୋଗରେ; **ପ୍ରସକ୍ତାଃ** = ଅତ୍ୟନ୍ତ ଆସକ୍ତ (ଆସୁରସ୍ୱଭାବର ଲୋକେ); **ଅଶୁଚୌ** = ଅତ୍ୟନ୍ତ ଅପବିତ୍ର; **ନରକେ** = ନରକରେ; **ପତନ୍ତି** = ପଡ଼ନ୍ତି।

**'ମୁଁ ବିରାଟ ଧନୀ ଓ ବିଶାଳ କୁଟୁମ୍ବୀ। ମୋ ସମାନ ଆଉ କିଏ ଅଛି? ମୁଁ ଯଜ୍ଞ କରିବି; ଦାନ ଦେବି ଓ ଆମୋଦପ୍ରମୋଦ କରିବି।' ଏପରିଭାବରେ ଅଜ୍ଞାନରେ ମୋହିତ, ଅନେକପ୍ରକାରେ ବିଭ୍ରାନ୍ତଚିତ୍ତ ତଥା ମୋହରୂପୀ ଜାଲରେ ଆବଦ୍ଧ ଓ ବିଷୟଭୋଗରେ ଅତ୍ୟନ୍ତ ଆସକ୍ତ ଆସୁରସ୍ୱଭାବର ଲୋକେ ଅତ୍ୟନ୍ତ ଅପବିତ୍ର ନରକରେ ପଡ଼ନ୍ତି॥ ୧୫-୧୬ ॥**

**ପ୍ରଶ୍ନ—** 'ମୁଁ ବିରାଟ ଧନୀ ଓ ବିଶାଳ କୁଟୁମ୍ବୀ, ମୋପରି ଆଉ କିଏ ଅଛି?'— ଏ କଥାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଏହାଦ୍ୱାରା ଆସୁରୀପ୍ରକୃତିର ମନୁଷ୍ୟମାନଙ୍କର ଧନ-ଜନସମ୍ବନ୍ଧୀ ଗର୍ବ ଓ ଅଭିମାନର ସ୍ପଷ୍ଟୀକରଣ କରାଯାଉଛି। ଅଭିପ୍ରାୟ ଏହି ଯେ, ସେହି ଆସୁରସ୍ୱଭାବର ପୁରୁଷମାନେ ଅହଙ୍କାରରେ କହନ୍ତି, ''ଆମ ଧନର ଓ ଆମ କୁଟୁମ୍ବ, ବନ୍ଧୁବାନ୍ଧବ, ସହଯୋଗୀ, ଅନୁଗାମୀ ଓ ସାଥୀମାନଙ୍କର କଳନା ନାହିଁ। ଆମର ଗୋଟିଏ ଡାକରାରେ ଅସଂଖ୍ୟ ଲୋକ ଆସି ଆମ ପଛରେ ଠିଆ ହୋଇଯିବାକୁ ପ୍ରସ୍ତୁତ। ତେଣୁ ଧନବଳ ଓ ଜନବଳରେ ଆମ ସମାନ ଅନ୍ୟ କେହି ନାହାଁନ୍ତି।''

**ପ୍ରଶ୍ନ—** 'ମୁଁ ଯଜ୍ଞ କରିବି, ଦାନ କରିବି'— ଏ କଥାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଏହାଦ୍ୱାରା ସେମାନଙ୍କର ଯଜ୍ଞ ଓ ଦାନସମ୍ବନ୍ଧୀ ମିଥ୍ୟା ଅଭିମାନ ଦେଖାଇଦିଆଯାଇଛି। ଅଭିପ୍ରାୟ ଏହି ଯେ, ଆସୁରସ୍ୱଭାବର ମନୁଷ୍ୟମାନେ ବାସ୍ତବରେ ସାତ୍ତ୍ୱିକ ଯଜ୍ଞ ବା ଦାନ କରନ୍ତି ନାହିଁ, କି କରିବାକୁ ଚାହାଁନ୍ତି ନାହିଁ। କେବଳ ଅନ୍ୟ ଉପରେ ନିଜର ପ୍ରଭାବ ପକାଇବାପାଇଁ ଯଜ୍ଞ ଓ ଦାନର ଆଡ଼ମ୍ବର ରଚନା କରି, ନିଜର ବଡ଼ପଣିଆ ଦେଖାଇ କହୁଥାନ୍ତି, ''ଆମେ ଅମୁକ ଯଜ୍ଞ କରିବୁ, ବହୁତ ବଡ଼ ଦାନ ଦେବୁ। ଆମପରି ଦାନୀ ଓ ଯଜ୍ଞ କରିବା ଲୋକ ଆଉ କିଏ ଅଛି?''

**ପ୍ରଶ୍ନ—** 'ମୁଁ ଆମୋଦ-ପ୍ରମୋଦ କରିବି'— ଏ କଥାର ଭାବ କ'ଣ?

**ଉତ୍ତର—** ଏହାଦ୍ୱାରା ସେମାନଙ୍କର ସୁଖସମ୍ବନ୍ଧୀ ମିଥ୍ୟା ଅଭିମାନ ଦେଖାଇଦିଆଯାଉଛି। ସେହି

ଆସୁରସ୍ୱଭାବର ଲୋକମାନେ ନାନାପ୍ରକାର ଫୁଟାଣି କରନ୍ତି ଓ ଗର୍ବରେ ଫୁଲିଉଠି କହନ୍ତି, "ଆହା! ଏଥର ବଡ଼ିଆ ମଜା ହେବ; ଆମେ ମଉଜରେ ବୁଡ଼ିରହିବୁ; ମଜା କରିବୁ।"

**ପ୍ରଶ୍ନ –** ଇତି **ଅଜ୍ଞାନବିମୋହିତାଃ**ର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ସେହି ଆସୁରସ୍ୱଭାବର ଲୋକମାନେ ତେର ଶ୍ଳୋକଠାରୁ ଏହି ଶ୍ଳୋକଯାଏ କୁହାଯାଇଥିବା ଅହଙ୍କାରରୂପୀ ଅଜ୍ଞାନରେ ଅତ୍ୟନ୍ତ ମୋହିତ ହୋଇ ରହନ୍ତି।

**ପ୍ରଶ୍ନ – ଅନେକଚିତ୍ତବିଭ୍ରାନ୍ତାଃ**ର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଆସୁରସ୍ୱଭାବର ମନୁଷ୍ୟମାନଙ୍କର ଚିତ୍ତ ଅନେକ ବିଷୟରେ ବିବିଧପ୍ରକାରେ ବିଭ୍ରାନ୍ତ ରହେ। ସେମାନେ କୌଣସି ବି ବିଷୟରେ ସ୍ଥିରଚିତ୍ତ ହୁଅନ୍ତି ନାହିଁ; ସଦା ଅସ୍ଥିରଚିତ୍ତ ହୋଇ ରହନ୍ତି।

**ପ୍ରଶ୍ନ – ମୋହଜାଲସମାବୃତାଃ**ର ଭାବ କ'ଣ ?

**ଉତ୍ତର –** ଏହାର ଭାବ ଏହି ଯେ, ମାଛ ଯେପରି ଜାଲରେ ପଡ଼ି ଘେରଭିତରେ ରହେ, ଆସୁରସ୍ୱଭାବର ମନୁଷ୍ୟମାନେ ସେହିପରି ଅବିବେକରୂପୀ ମୋହମାୟାର ଜାଲରେ ପଡ଼ି ଘେରଭିତରେ ରହନ୍ତି।

**ପ୍ରଶ୍ନ – କାମଭୋଗେଷୁ ପ୍ରସକ୍ତାଃ**ର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ପ୍ରକାଶ କରାଯାଇଛି ଯେ, ଆସୁରୀପ୍ରକୃତିର ମନୁଷ୍ୟମାନେ ବିଷୟୋପଭୋଗକୁ ହିଁ ଜୀବନର ଏକମାତ୍ର ଧ୍ୟେୟ କରିଥାନ୍ତି; ତେଣୁ ସେଥିରେ ବିଶେଷରୂପେ ଆସକ୍ତ ରହନ୍ତି।

**ପ୍ରଶ୍ନ –** 'ସେମାନେ ଅପବିତ୍ର ନରକରେ ପଡ଼ନ୍ତି' – ଏ କଥାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ସେହି ଆସୁରସ୍ୱଭାବର ମନୁଷ୍ୟମାନଙ୍କ ଦୁର୍ଗତିର ବର୍ଣ୍ଣନା କରାଯାଇଛି। ଅଭିପ୍ରାୟ ଏହି ଯେ, ଉପରୋକ୍ତପ୍ରକାର ସ୍ଥିତିରେ ଥିବା ମନୁଷ୍ୟମାନେ କାମୋପଭୋଗପାଇଁ ବିଭିନ୍ନପ୍ରକାର ପାପ କରନ୍ତି ଓ ତା'ର ଫଳ ଭୋଗିବାପାଇଁ ସେମାନେ ବିଷ୍ଠା, ମୂତ୍ର, ରକ୍ତ, ପୂଜ ଆଦି ଦୁର୍ଗନ୍ଧ ବସ୍ତୁରେ ପୂର୍ଣ୍ଣ ଦୁଃଖଦାୟକ କୁମ୍ଭୀପାକ, ରୌରବାଦି ଘୋର ନରକରେ ପଡ଼ନ୍ତି।

***ସମ୍ବନ୍ଧ –*** *ପନ୍ଦର ଶ୍ଳୋକରେ ଭଗବାନ୍ କହିଥିଲେ, "ଏ ଲୋକେ 'ଆମେ ଯଜ୍ଞ କରିବୁ' ବୋଲି କହନ୍ତି"। ତେଣୁ ପରବର୍ତ୍ତୀ ଶ୍ଳୋକରେ ସେମାନଙ୍କର ଯଜ୍ଞର ସ୍ୱରୂପ କହୁଛନ୍ତି।–*

## ଆତ୍ମସଂଭାବିତାଃ ସ୍ତବ୍ଧା ଧନମାନମଦାନ୍ୱିତାଃ।
## ଯଜନ୍ତେ ନାମଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକମ୍ ॥ ୧୭ ॥

**ଅନ୍ୱୟ –** ତେ = ସେହି; ଆତ୍ମସମ୍ଭାବିତାଃ = ନିଜେ ହିଁ ନିଜକୁ ଶ୍ରେଷ୍ଠ ମନେ କରୁଥିବା; **ସ୍ତବ୍ଧାଃ** = ଗର୍ବୀ ପୁରୁଷମାନେ; **ଧନମାନମଦାନ୍ୱିତାଃ** = ଧନ ଓ ମାନରମଦରେ ଯୁକ୍ତ ହୋଇ; **ନାମଯଜ୍ଞୈଃ** = କେବଳ ନାମମାତ୍ର ଯଜ୍ଞମାନଙ୍କ ଦ୍ୱାରା; **ଦମ୍ଭେନ** = ବାହ୍ୟାଡମ୍ବରଦ୍ୱାରା; **ଅବିଧିପୂର୍ବକମ୍** = ଶାସ୍ତ୍ରବିଧିରହିତଭାବରେ; **ଯଜନ୍ତେ** = ଯଜନ କରନ୍ତି।

**ନିଜେ ନିଜକୁ ହିଁ ଶ୍ରେଷ୍ଠ ମନେକରୁଥିବା ସେହି ଗର୍ବୀ ପୁରୁଷମାନେ ଧନ ଓ ମାନର ମଦରେ ଯୁକ୍ତ ହୋଇ କେବଳ ନାମମାତ୍ର ଯଜ୍ଞମାନଙ୍କ ଦ୍ୱାରା ଓ ଆଡମ୍ବରପୂର୍ବକ ଶାସ୍ତ୍ରବିଧିରହିତ ଯଜନ କରନ୍ତି॥ ୧୭ ॥**

**ପ୍ରଶ୍ନ – ଆତ୍ମସମ୍ଭାବିତାଃ** କେଉଁମାନେ ?

**ଉତ୍ତର –** ଯେଉଁମାନେ ନିଜେ ନିଜକୁ ସବୁ କଥାରେ ସର୍ବଶ୍ରେଷ୍ଠ, ସମ୍ମାନନୀୟ, ଉଚ୍ଚ ଓ ପୂଜ୍ୟ ମଣନ୍ତି, ସେମାନେ **ଆତ୍ମସମ୍ଭାବିତ**।

**ପ୍ରଶ୍ନ – ସ୍ତବ୍ଧାଃ**ର ଅର୍ଥ କ'ଣ ?

**ଉତ୍ତର –** ଯେଉଁମାନେ ଗର୍ବଯୋଗୁଁ କାହା ପ୍ରତି, ଏପରି କି ପୂଜନୀୟମାନଙ୍କ ପ୍ରତି ମଧ୍ୟ ବିନୟ ବ୍ୟବହାର କରନ୍ତି ନାହିଁ, ସେମାନେ **ସ୍ତବ୍ଧ**।

**ପ୍ରଶ୍ନ – ଧନମାନମଦାନ୍ୱିତାଃ** କେଉଁମାନେ ?

**ଉତ୍ତର –** ଯେଉଁମାନେ ଧନ ଓ ମାନର ମଦରେ ଉନ୍ମତ୍ତ ରହନ୍ତି, ସେମାନେ **ଧନମାନମଦାନ୍ୱିତ**।

**ପ୍ରଶ୍ନ –** 'କେବଳ ନାମମାତ୍ର ଯଜ୍ଞଦ୍ୱାରା ଗର୍ବ ଅଭିମାନରେ ଶାସ୍ତ୍ରବିଧିହୀନ ଉପାସନା କରନ୍ତି' – ଏହି ବାକ୍ୟର ଅଭିପ୍ରାୟ କ'ଣ ?

ଉତ୍ତର— ଏହାଦ୍ୱାରା ଦର୍ଶାଯାଇଛି ଯେ, ଉପରୋକ୍ତ ଲକ୍ଷଣଯୁକ୍ତ ଆସୁରସ୍ୱଭାବର ମନୁଷ୍ୟମାନେ ଯେଉଁ ଯଜ୍ଞ କରନ୍ତି, ତାହା ବିଧିହୀନ; ତାହା କେବଳ ନାମମାତ୍ର ଯଜ୍ଞ। ସେହି ଲୋକମାନେ ବିନା ଶ୍ରଦ୍ଧାରେ, କେବଳ ଗର୍ବ ଅଭିମାନରେ ଲୋକମାନଙ୍କୁ ଦେଖାଇବାପାଇଁ ହିଁ ଏପରି ଯଜ୍ଞ କରିଥାନ୍ତି। ସେମାନଙ୍କର ଉକ୍ତ ଯଜ୍ଞ ତାମସଯଜ୍ଞ ହୋଇଥାଏ ଓ ତାହାଦ୍ୱାରା **ଅଧୋ ଗଚ୍ଛନ୍ତି ତାମସାଃ** ଅନୁସାରେ ସେମାନେ ନରକରେ ହିଁ ପଡ଼ନ୍ତି। ତାମସଯଜ୍ଞର ପୂର୍ଣ୍ଣବ୍ୟାଖ୍ୟା ସପ୍ତଦଶ ଅଧ୍ୟାୟର ତେର ଶ୍ଳୋକରେ ଦେଖନ୍ତୁ।

*ସମ୍ବନ୍ଧ— ଆସୁରସ୍ୱଭାବଯୁକ୍ତ ମନୁଷ୍ୟମାନଙ୍କ ଯଜ୍ଞର ସ୍ୱରୂପ କହିସାରି ବର୍ତ୍ତମାନ ସେମାନଙ୍କ ଦୁର୍ଗତିର କାରଣରୂପକ ସ୍ୱଭାବ ବର୍ଣ୍ଣନା କରୁଛନ୍ତି—*

## ଅହଂକାରଂ ବଳଂ ଦର୍ପଂ କାମଂ କ୍ରୋଧଂ ଚ ସଂଶ୍ରିତାଃ।
## ମାମାତ୍ମପରଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ॥ ୧୮ ॥

**ଅନ୍ୱୟ—** **ଅହଂକାରମ୍** = ଅହଂକାର; **ବଳମ୍** = ବଳ; **ଦର୍ପମ୍** = ଗର୍ବ; **କାମମ୍** = କାମନା (ଓ); **କ୍ରୋଧମ୍** = କ୍ରୋଧାଦିର; **ସଂଶ୍ରିତାଃ** = ପରାୟଣ; **ଚ** = ଓ; **ଅଭ୍ୟସୂୟକାଃ** = ଅନ୍ୟମାନଙ୍କ ନିନ୍ଦା କରୁଥିବା (ସେହି) ପୁରୁଷମାନେ; **ଆତ୍ମପରଦେହେଷୁ** = (ସେମାନଙ୍କର) ନିଜର ଓ ଅନ୍ୟମାନଙ୍କ ଶରୀରରେ ଅଧିଷ୍ଠିତ ଥିବା; **ମାମ୍** = ଅନ୍ତର୍ଯ୍ୟାମୀରୂପୀ ମୋ'ସହ ହିଁ; **ପ୍ରଦ୍ୱିଷନ୍ତଃ** = ଦ୍ୱେଷକାରୀ ହୁଅନ୍ତି।

**ଅହଙ୍କାର, ବଳ, ଗର୍ବ, କାମ ଓ କ୍ରୋଧପରାୟଣ ହୋଇ ଅନ୍ୟମାନଙ୍କୁ ନିନ୍ଦା କରୁଥିବା ସେହି ପୁରୁଷମାନେ ନିଜର ଓ ଅନ୍ୟମାନଙ୍କର ଶରୀରରେ ଅଧିଷ୍ଠିତ ଥିବା ଅନ୍ତର୍ଯ୍ୟାମୀରୂପୀ ମୋ'ସହିତ ହିଁ ଦ୍ୱେଷ କରନ୍ତି।॥ ୧୮ ॥**

**ପ୍ରଶ୍ନ—** 'ଅହଙ୍କାର, ବଳ, ଦର୍ପ, କାମ ଓ କ୍ରୋଧ-ପରାୟଣ'ର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ସେହି ଆସୁରସ୍ୱଭାବର ମନୁଷ୍ୟମାନେ ଅହଙ୍କାରବଶତଃ କହନ୍ତି, "ଆମେ ହିଁ ଈଶ୍ୱର, ଆମେ ସକଳ ସମ୍ପଦ ଭୋଗ କରିବା ଲୋକ; ଆମେ ସିଦ୍ଧ, ବଳବାନ୍ ଓ ସୁଖୀ। ଏପରି କୌଣସି ବି କାର୍ଯ୍ୟ ନାହିଁ, ଯାହା ବି ଆମେ କରିପାରିବୁ ନାହିଁ।" ନିଜ ବଳର ଆଶ୍ରୟ ନେଇ ସେମାନେ ଅନ୍ୟମାନଙ୍କ ସହିତ ଶତ୍ରୁତା କରନ୍ତି; ସେମାନଙ୍କୁ ଧମକାନ୍ତି; ମାରପିଟ କରନ୍ତି ଓ ବିପଦାପନ୍ନ କରିବାରେ ପ୍ରବୃତ୍ତ ହୁଅନ୍ତି। ସେମାନେ ନିଜକୁ ବଳବାନ୍ ଭାବି କାହାକୁ ଭ୍ରୂକ୍ଷେପ କରନ୍ତି ନାହିଁ। ଦର୍ପର ଆଶ୍ରୟ ନେଇ ସେମାନେ ଆସ୍ଫାଳନ କରନ୍ତି, "ଆମେ ବିରାଟ ଧନୀ ଓ ଆମର ଲୋକବାଳ ଅସଂଖ୍ୟ। ଆମପରି ଆଉ କିଏ ଅଛି?" କାମାଶ୍ରିତ ହୋଇ ସେମାନେ ନାନାପ୍ରକାର ଦୁରାଚାର କରନ୍ତି ଓ କ୍ରୋଧପରାୟଣ ହୋଇ ସେମାନେ କହନ୍ତି, "ଯିଏ ଆମର ବିରୋଧ କରିବ, ଯିଏ ଆମ କ୍ଷତି କରିବ, ଆମେ ତାକୁ ପ୍ରାଣରେ ମାରିଦେବୁ।" ଏପରିଭାବରେ କେବଳ ଅହଂକାର, ବଳ, ଦର୍ପ, କାମ ଓ କ୍ରୋଧର ଆଶ୍ରୟ ନେଇ ସେସବୁ ବଳରେ ସେମାନେ ନାନାପ୍ରକାର କଳ୍ପନାଜଳ୍ପନା କରନ୍ତି ଓ ଯାହା କିଛି ବି କାର୍ଯ୍ୟ କରନ୍ତି, କରନ୍ତି ଏସବୁ ଦୋଷର ପ୍ରେରଣାରେ ଓ ଏସବୁ ଦୋଷକୁ ଅବଲମ୍ବନ କରି। ସେମାନେ ଈଶ୍ୱର, ଧର୍ମ ବା ଶାସ୍ତ୍ର— କାହାରି ବି ଆଶ୍ରୟ ନିଅନ୍ତି ନାହିଁ।

**ପ୍ରଶ୍ନ—** ଏଥିରେ 'ଚ' ଅବ୍ୟୟ କାହିଁକି ଆସିଛି?

**ଉତ୍ତର—** 'ଚ'ଦ୍ୱାରା ଦେଖାଇଦିଆଯାଇଛି ଯେ, ସେହି ଆସୁରସ୍ୱଭାବର ମନୁଷ୍ୟମାନେ କେବଳ ଅହଂକାର, ବଳ, ଦର୍ପ, କାମ ଓ କ୍ରୋଧର ହିଁ ଆଶ୍ରିତ ନୁହନ୍ତି; ସେମାନଙ୍କ ଠାରେ ଦମ୍ଭ, ଲୋଭ, ମୋହ ଆଦି ଆହୁରି ବି ଅନେକ ଦୋଷ ପୂର୍ଣ୍ଣ ହୋଇ ରହିଥାଏ।

**ପ୍ରଶ୍ନ—** ଅଭ୍ୟସୂୟକାଃର ଭାବ କ'ଣ?

**ଉତ୍ତର—** ଅନ୍ୟମାନଙ୍କର ଦୋଷ ଦର୍ଶନ କରିବା, ଦୋଷ ଦେଖି ସେମାନଙ୍କୁ ନିନ୍ଦା କରିବା, ସେମାନଙ୍କର ଗୁଣ ଖଣ୍ଡନ କରିବା ଓ ଗୁଣରେ ଦୋଷାରୋପଣ କରିବାର ନାମ **ଅସୂୟା**। ଆସୁରସ୍ୱଭାବର ଲୋକେ ଏପରି ହିଁ କରନ୍ତି। ଅନ୍ୟମାନଙ୍କ କଥା କ'ଣ କହିବା, ସେମାନେ ଭଗବାନଙ୍କ ଠାରେ ଓ ସନ୍ଥପୁରୁଷମାନଙ୍କ ଠାରେ ମଧ୍ୟ ଦୋଷ ଦେଖନ୍ତି— ଏପରି ଭାବ ଦେଖାଉଥିବାରୁ ସେମାନଙ୍କୁ ଅଭ୍ୟସୂୟକ ବୋଲି କୁହାଯାଇଛି।

 

**ପ୍ରଶ୍ନ –** ଆସୁରୀପ୍ରକୃତିର ମନୁଷ୍ୟମାନେ 'ନିଜର ଓ ଅନ୍ୟମାନଙ୍କର ଶରୀରରେ ସ୍ଥିତ ଅନ୍ତର୍ଯାମୀରୂପୀ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ଦ୍ୱେଷ କରନ୍ତି' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହିଛନ୍ତି, "ଆସୁରୀପ୍ରକୃତିର ମନୁଷ୍ୟମାନେ ଅନ୍ୟମାନଙ୍କର ଶତ୍ରୁତା କରି ସେମାନଙ୍କୁ ଯେଉଁ ନାନାପ୍ରକାର କଷ୍ଟ ଦେବାକୁ ଚେଷ୍ଟା କରନ୍ତି ଓ ନିଜେ ମଧ୍ୟ କଷ୍ଟ ଭୋଗନ୍ତି, ତାହା ହିଁ ମୋ ସହିତ ଦ୍ୱେଷ କରିବା; କାରଣ, ସେମାନଙ୍କର ଓ ଅନ୍ୟମାନଙ୍କର — ସମସ୍ତଙ୍କର ଅନ୍ତରରେ ମୁଁ ପରମେଶ୍ୱର ହିଁ ଅନ୍ତର୍ଯାମୀରୂପରେ ରହିଛି। ଅତଏବ କାହାର ବିରୋଧ କରିବା, ଦ୍ୱେଷ କରିବା, ଅହିତ କରିବା ଓ କାହାକୁ ଦୁଃଖ ଦେବାର ଅର୍ଥ ନିଜ ସହିତ ଓ ଅନ୍ୟର ଶରୀରରେ ସ୍ଥିତ ମୋ ସହିତ ଅର୍ଥାତ୍ ପରମେଶ୍ୱରଙ୍କ ସହିତ ହିଁ ଦ୍ୱେଷାଚରଣ କରିବା।"

***ସମ୍ବନ୍ଧ –** ସପ୍ତମରୁ ଅଠର ଶ୍ଳୋକଯାଏ ଆସୁରସ୍ୱଭାବର ଲୋକଙ୍କ ଦୁର୍ଗୁଣ ଓ ଦୁରାଚାର ଆଦି ବର୍ଣ୍ଣନା କରିସାରି ବର୍ତ୍ତମାନ ସେହି ଦୁର୍ଗୁଣଦୁରାଚାର ଯେ ତ୍ୟାଜ୍ୟ — ଏହି ବୁଦ୍ଧି ଜାଗ୍ରତ କରାଇବାପାଇଁ ଆଗ ଦୁଇ ଶ୍ଳୋକରେ ଭଗବାନ୍ ସେପରି ଲୋକମାନଙ୍କୁ ଘୋର ନିନ୍ଦା କରି ସେମାନଙ୍କର ଦୁର୍ଗତି ବର୍ଣ୍ଣନା କରୁଛନ୍ତି–*

**ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍।**
**କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ॥ ୧୯ ॥**

**ଅନ୍ୱୟ –** **ତାନ୍** = ସେହି; **ଦ୍ୱିଷତଃ** = ଦ୍ୱେଷକାରୀ; **ଅଶୁଭାନ୍** = ପାପାଚାରୀ (ଓ); **କ୍ରୂରାନ୍** = କ୍ରୂରକର୍ମା; **ନରାଧମାନ୍** = ନରାଧମମାନଙ୍କୁ; **ଅହମ୍** = ମୁଁ; **ସଂସାରେଷୁ** = ସଂସାରରେ; **ଅଜସ୍ରମ୍** = ବାରମ୍ବାର; **ଆସୁରୀଷୁ** = ଆସୁରୀ; **ଯୋନିଷୁ** = ଯୋନିମାନଙ୍କରେ; **ଏବ** = ହିଁ; **କ୍ଷିପାମି** = ନିକ୍ଷେପ କରେ।

**ସେହି ଦ୍ୱେଷ କରୁଥିବା ପାପାଚାରୀ ଓ କ୍ରୂରକର୍ମା ନରାଧମମାନଙ୍କୁ ମୁଁ ସଂସାରରେ ବାରମ୍ବାର ଆସୁରୀ ଯୋନିମାନଙ୍କରେ ହିଁ ନିକ୍ଷେପ କରେ॥ ୧୯ ॥**

**ପ୍ରଶ୍ନ – ଦ୍ୱିଷତଃ, ଅଶୁଭାନ୍, କ୍ରୂରାନ୍** ଓ **ନରାଧମାନ୍ –** ଏହି ଚାରି ବିଶେଷଣ ସହିତ **ତାନ୍** ପଦ କେଉଁମାନଙ୍କର ବାଚକ ତଥା ଏହି ବିଶେଷଣମାନଙ୍କର ଅଭିପ୍ରାୟ କ'ଣ ?

**ଉତ୍ତର –** ପୂର୍ବଶ୍ଳୋକମାନଙ୍କରେ ଯେଉଁ ଲୋକମାନଙ୍କର ବିସ୍ତାରପୂର୍ବକ ବର୍ଣ୍ଣନା କରାଯାଇଛି, ଉପରୋକ୍ତ ବିଶେଷଣମାନଙ୍କ ସହିତ **ତାନ୍** ପଦଟି ହେଉଛି ସେହି ଆସୁରୀପ୍ରକୃତିର ଲୋକମାନଙ୍କର ବୋଧକ। ସେମାନଙ୍କର ଦୁର୍ଗୁଣ ଓ ଦୁରାଚାର ହିଁ ସେମାନଙ୍କର ଦୁର୍ଗତିର କାରଣ। ଏହି ଭାବ ଦେଖାଇବାପାଇଁ ଉପରୋକ୍ତ ବିଶେଷଣମାନ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ସେହି ଲୋକମାନେ ସମସ୍ତଙ୍କ ସହିତ ଦ୍ୱେଷ କରନ୍ତି; ନାନାପ୍ରକାର ଅଶୁଭ ଆଚରଣ କରି ସମାଜକୁ ଭ୍ରଷ୍ଟ କରନ୍ତି; ନିର୍ଦ୍ଦୟତାପୂର୍ବକ ବହୁ କ୍ରୂର କର୍ମ କରନ୍ତି ଓ ବିନା କାରଣରେ ହିଁ ଅନ୍ୟମାନଙ୍କର ଅମଙ୍ଗଳ କରନ୍ତି। ତେଣୁ ଭଗବାନ୍ ସେମାନଙ୍କୁ ବାରମ୍ବାର ନୀଚଯୋନିମାନଙ୍କରେ ଜନ୍ମ ଦିଅନ୍ତି।

**ପ୍ରଶ୍ନ –** ଏଠାରେ ଆସୁରୀଯୋନି କହିଲେ କେଉଁ ଯୋନିମାନଙ୍କୁ ବୁଝାଉଛି ?

**ଉତ୍ତର –** ସିଂହ, ବାଘ, ସାପ, ବିଛା, ଘୁଷୁରି, କୁକୁର ଓ କୁଆ ଆଦି ଯେତେ ପଶୁ, ପକ୍ଷୀ, କୀଟ, ପତଙ୍ଗ ଅଛନ୍ତି, ସେ ସମସ୍ତେ ଆସୁରୀଯୋନି।

**ପ୍ରଶ୍ନ – ଅଜସ୍ରମ୍** ଓ **ଏବ** ପଦର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର – ଅଜସ୍ରମ୍**ଦ୍ୱାରା ବୁଝାଯାଇଛି ଯେ, ସେମାନେ ନିରନ୍ତର ଲକ୍ଷ ଲକ୍ଷ ଥର ଆସୁରୀଯୋନିରେ ପଡ଼ନ୍ତି ଓ **'ଏବ'**ରୁ ଏହା ସ୍ପଷ୍ଟ ହୁଏ ଯେ, ସେହି ଲୋକମାନେ ଦେବତା, ପିତୃ ବା ମନୁଷ୍ୟ ଜନ୍ମ ନ ପାଇ ନିଶ୍ଚିତରୂପେ ପଶୁ-ପକ୍ଷୀ ଆଦି ନୀଚ ଯୋନିମାନଙ୍କୁ ହିଁ ପ୍ରାପ୍ତ ହୁଅନ୍ତି।

**ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି।**
**ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍॥ ୨୦ ॥**

**ଅନ୍ୱୟ –** **କୌନ୍ତେୟ** = ହେ ଅର୍ଜୁନ; **ମୂଢ଼ାଃ** = (ସେହି) ମୂଢ଼ମାନେ; **ମାମ୍** = ମୋତେ; **ଅପ୍ରାପ୍ୟ** = ନ ପାଇ; **ଏବ** = ହିଁ; **ଜନ୍ମନି, ଜନ୍ମନି** = ଜନ୍ମଜନ୍ମାନ୍ତରରେ; **ଆସୁରୀମ୍** = ଆସୁରୀ; **ଯୋନିମ୍** = ଯୋନିକୁ; **ଆପନ୍ନାଃ** = ପାଆନ୍ତି (ଏବଂ); **ତତଃ** = ତାଠାରୁ ବି; **ଅଧମାମ୍** = ଅତି ନୀଚ; **ଗତିମ୍** = ଗତିକୁ; **ଯାନ୍ତି** = ପାଆନ୍ତି ଅର୍ଥାତ୍ ଘୋର ନରକରେ ପଡ଼ନ୍ତି।

**ହେ ଅର୍ଜୁନ! ସେହି ମୂଢ଼ ଲୋକମାନେ ମୋତେ ନ ପାଇ ଜନ୍ମଜନ୍ମାନ୍ତରରେ ଆସୁରୀ ଯୋନି ହିଁ ପାଆନ୍ତି; ତା'ଠାରୁ ବି ଅତି ନୀଚଗତି ପାଆନ୍ତି, ଅର୍ଥାତ୍ ଘୋର ନରକରେ ପଡ଼ନ୍ତି॥ ୨୦ ॥**

**ପ୍ରଶ୍ନ –** ଉପରୋକ୍ତ ଆସୁରସ୍ୱଭାବଯୁକ୍ତ ମୂଢ଼ ପୁରୁଷମାନଙ୍କୁ ଭଗବତ୍‌ପ୍ରାପ୍ତି କଥା କ'ଣ କହିବା, ଯଦି ଉଚ୍ଚଗତି ମଧ୍ୟ ମିଳେ ନାହିଁ, କେବଳ ଆସୁରୀଯୋନି ହିଁ ମିଳେ, ତେବେ ଭଗବାନ୍ **'ମାମ୍ ଅପ୍ରାପ୍ୟ'** (ମୋତେ ନ ପାଇ)– ବୋଲି କହିଲେ କାହିଁକି ?

**ଉତ୍ତର –** ମନୁଷ୍ୟଯୋନିରେ ଜୀବକୁ ଭଗବତ୍‌ପ୍ରାପ୍ତିର ଅଧିକାର ମିଳିଥାଏ। ଏହି ଅଧିକାର ପ୍ରାପ୍ତ ହୋଇ ବି ଯେଉଁ ମନୁଷ୍ୟମାନେ ଏହା ଭୁଲିଯା'ନ୍ତି ଓ ଦୈବସ୍ୱଭାବରୂପୀ ଭଗବତ୍‌ପ୍ରାପ୍ତିର ମାର୍ଗ ଛାଡ଼ି ଆସୁରସ୍ୱଭାବ ଅବଲମ୍ବନ କରନ୍ତି, ସେମାନେ ମନୁଷ୍ୟ ଶରୀରର ସୁଅବସର ପାଇ ମଧ୍ୟ ଭଗବାନଙ୍କୁ ପାଇପାରନ୍ତି ନାହିଁ। ଏହି ଭାବ ଦେଖାଇବାପାଇଁ ଏପରି କୁହାଯାଇଛି। ଏଠାରେ ଦୟାମୟ ଭଗବାନ୍ ଜୀବର ଏହି ଦଶା ଦେଖି, ସତେ କି, ଦୟାର୍ଦ୍ର ହୋଇ ଏହି ଚେତାବନୀ ଦେଉଛନ୍ତି, ''ତୁମେ ମନୁଷ୍ୟ-ଶରୀର ପାଇ ଆସୁରସ୍ୱଭାବ ଅବଲମ୍ବନ କରି ମୋର ପ୍ରାପ୍ତିରୂପକ ଜନ୍ମସିଦ୍ଧ ଅଧିକାରରୁ ବଞ୍ଚିତ ହୁଅ ନାହିଁ।''

**ପ୍ରଶ୍ନ –** 'ସେମାନେ ଜନ୍ମଜନ୍ମାନ୍ତରରେ ଆସୁରୀଯୋନି ହିଁ ପାଆନ୍ତି' – ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏପରି କହି ଭଗବାନ୍ ଦେଖାଇଛନ୍ତି ଯେ, ସେମାନେ ଲକ୍ଷ ଲକ୍ଷ ଥର ଆସୁରୀଯୋନିରେ ହିଁ ଜନ୍ମ ନିଅନ୍ତି; ସେମାନଙ୍କୁ ଉଚ୍ଚଯୋନି ମିଳେ ନାହିଁ।

**ପ୍ରଶ୍ନ –** 'ତାଠାରୁ ବି ଅତ୍ୟନ୍ତ ଅଧମଗତି ପ୍ରାପ୍ତ ହୁଅନ୍ତି' – ଏହାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଛନ୍ତି ଯେ, ସେହି ଆସୁରସ୍ୱଭାବର ମନୁଷ୍ୟମାନେ ଲକ୍ଷ ଲକ୍ଷ ଥର ଆସୁରୀଯୋନିରେ ଜନ୍ମ ହୋଇ ତାଠାରୁ ବି ଅତ୍ୟନ୍ତ ଯାତନାମୟ କୁମ୍ଭୀପାକ, ମହାରୌରବ, ତାମିସ୍ର ଓ ଅନ୍ଧତାମିସ୍ର ଆଦି ଘୋର ନରକରେ ପଡ଼ନ୍ତି।

**ସମ୍ବନ୍ଧ –** *ଆସୁରସ୍ୱଭାବର ମନୁଷ୍ୟମାନଙ୍କୁ ବାରମ୍ବାର ଆସୁରୀଯୋନି ଓ ଘୋର ନରକ ମିଳେ ଶୁଣି ଜିଜ୍ଞାସା ହୋଇପାରେ, ''ଏହି ଦୁର୍ଗତିରୁ ମୁକ୍ତ ହୋଇ ପରମଗତି ପାଇବାର ଉପାୟ କ'ଣ ?'' ଏ ସମ୍ପର୍କରେ ବର୍ତ୍ତମାନ ଦୁଇଟି ଶ୍ଲୋକରେ ସମସ୍ତ ଦୁର୍ଗତିର ପ୍ରଧାନ କାରଣରୂପୀ ଆସୁରୀସମ୍ପଦର ତ୍ରିବିଧ ଦୋଷ ତ୍ୟାଗ କରିବା କଥା କହିବା ସହିତ ଭଗବାନ୍ ପରମଗତି ପ୍ରାପ୍ତିର ଉପାୟ କହୁଛନ୍ତି–*

**ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ।**
**କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ ତ୍ରୟଂ ତ୍ୟଜେତ୍॥ ୨୧ ॥**

**ଅନ୍ୱୟ –** **କାମଃ** = କାମ; **କ୍ରୋଧଃ** = କ୍ରୋଧ; **ତଥା** = ତଥା; **ଲୋଭଃ** = ଲୋଭ; **ଇଦମ୍** = ଏହି; **ତ୍ରିବିଧମ୍** = ତିନିପ୍ରକାରର; **ନରକସ୍ୟ** = ନରକର; **ଦ୍ୱାରମ୍** = ଦ୍ୱାର (ହିଁ); **ଆତ୍ମନଃ** = ଆତ୍ମାର; **ନାଶନମ୍** = ବିନାଶକ ଅଟନ୍ତି (ଅର୍ଥାତ୍ ତାହାର ଅଧୋଗତି ଘଟାଇଦିଅନ୍ତି); **ତସ୍ମାତ୍** = ତେଣୁ; **ଏତତ୍** = ଏହି; **ତ୍ରୟମ୍** = ତିନିଟିକୁ; **ତ୍ୟଜେତ୍** = ତ୍ୟାଗ କରିଦେବା ଉଚିତ।

**କାମ, କ୍ରୋଧ ଓ ଲୋଭ— ନରକର ଏହି ତିନିପ୍ରକାର ଦ୍ୱାର ହିଁ ଆତ୍ମାର ବିନାଶ କରନ୍ତି ଅର୍ଥାତ୍ ତାହାର ଅଧୋଗତି ଘଟାଇଦିଅନ୍ତି। ଅତଏବ ଏହି ତିନୋଟିକୁ ତ୍ୟାଗ କରିଦେବା ଉଚିତ॥ ୨୧ ॥**

**ପ୍ରଶ୍ନ— କାମ, କ୍ରୋଧ ଓ ଲୋଭକୁ** ନରକର ଦ୍ୱାର ବୋଲି କାହିଁକି କୁହାଗଲା ?

**ଉତ୍ତର—** ସ୍ତ୍ରୀ, ପୁତ୍ର ଆଦି ସମସ୍ତ ଭୋଗକାମନାର ନାମ **କାମ।** ଏହି କାମନାର ବଶୀଭୂତ ହୋଇ ହିଁ ମନୁଷ୍ୟମାନେ ଚୋରି, ବ୍ୟଭିଚାର ଓ ଅଭକ୍ଷ୍ୟଭୋଜନାଦି ନାନାପ୍ରକାର ପାପ କରନ୍ତି। ମନର ବିପରୀତ କିଛି ଘଟିଗଲେ ଯେଉଁ ଉତ୍ତେଜନାମୟ ବୃତ୍ତି ଉତ୍ପନ୍ନ ହୁଏ, ତା'ର ନାମ **କ୍ରୋଧ।** କ୍ରୋଧର ଆବେଶରେ ମନୁଷ୍ୟ ହିଂସାପ୍ରତିହିଂସା ଆଦି ନାନାଦି ପାପ କରେ। ଧନାଦି ବିଷୟରେ ଅତ୍ୟନ୍ତ ଲାଳସାକୁ **ଲୋଭ** କହନ୍ତି। ଲୋଭୀ ମନୁଷ୍ୟମାନେ ଉଚିତ ଅବସର ପାଇଲେ ବି ଧନ ତ୍ୟାଗ କରନ୍ତି ନାହିଁ ଏବଂ ଅନୁଚିତ ଉପାୟରେ ବି ଧନ ଉପାର୍ଜ୍ଜନ ଓ ସଂଗ୍ରହ କରିବାରେ ଲାଗିରହନ୍ତି। ଏହି କାରଣରୁ ସେମାନଙ୍କ ଦ୍ୱାରା ମିଥ୍ୟା, କପଟ, ଚୋରି ଓ ବିଶ୍ୱାସଘାତକତା ଆଦି ବଡ଼ ବଡ଼ ପାପ ହୋଇଯାଏ। ଏସବୁ ପାପର ଫଳସ୍ୱରୂପ ତାମିସ୍ର ଓ ଅନ୍ଧତାମିସ୍ର ଆଦି ନରକ ପ୍ରାପ୍ତି ହୁଏ। ଅତଏବ ଏହି ତିନିଟିକୁ ନରକର ଦ୍ୱାର ବୋଲି କୁହାଯାଇଛି।

**ପ୍ରଶ୍ନ—** କାମ, କ୍ରୋଧ ଓ ଲୋଭକୁ ଆତ୍ମାର ବିନାଶକାରୀ ବୋଲି କାହିଁକି କୁହାଗଲା ?

**ଉତ୍ତର—** 'ଆତ୍ମା' ଶବ୍ଦ ଏଠାରେ ଜୀବାତ୍ମାକୁ ନିର୍ଦ୍ଦେଶ କରୁଛି। ପରନ୍ତୁ ଜୀବାତ୍ମାର ନାଶ କଦାପି ହୁଏ ନାହିଁ। ଅତଏବ ଏଠାରେ ଆତ୍ମାର ବିନାଶ ଅର୍ଥ ଜୀବର ଅଧୋଗତି। ମନୁଷ୍ୟ ଯେଉଁ ସମୟରୁ କାମ, କ୍ରୋଧ ଓ ଲୋଭର ବଶ ହୁଏ, ସେହି ସମୟରୁ ସେ ନିଜର ବିଚାର, ଆଚରଣ ଓ ଭାବରେ ତଳକୁ ଖସିବାକୁ ଲାଗେ। କାମ, କ୍ରୋଧ ଓ ଲୋଭହେତୁ ତା'ଦ୍ୱାରା ଏପରିସବୁ କର୍ମ ହୁଏ, ଯାହାଦ୍ୱାରା ତା'ର ଶାରୀରିକ ପତନ ହୋଇଯାଏ; ମନ ଦୂଷିତ ବିଚାରରେ ଭରିଯାଏ; ବୁଦ୍ଧି ଭ୍ରଷ୍ଟ ହୋଇଯାଏ; ସବୁ କାର୍ଯ୍ୟକଳାପ ଦୂଷିତ ହୋଇଯାଏ ଓ ଫଳସ୍ୱରୂପ ତା'ର ବର୍ତ୍ତମାନ ଜୀବନ ସୁଖ, ଶାନ୍ତି ଓ ପବିତ୍ରତାଶୂନ୍ୟ ହୋଇ ଦୁଃଖମୟ ହୋଇଯାଏ ତଥା ମୃତ୍ୟୁପରେ ତାକୁ ଆସୁରୀଯୋନି ମିଳେ ଓ ନରକପ୍ରାପ୍ତି ହୁଏ। ତେଣୁ ଏହି ତ୍ରିବିଧ ଦୋଷକୁ ଆତ୍ମାର ବିନାଶକାରୀ ବୋଲି କୁହାଯାଇଛି।

**ପ୍ରଶ୍ନ—** 'ତେଣୁ ଏହି ତିନିଟିକୁ ତ୍ୟାଗ କରିଦେବା ଉଚିତ'— ଏ କଥାର ଭାବ କ'ଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି, ଯଦି ଏହା ପ୍ରମାଣିତ ହୋଇଗଲା ଯେ, ସମସ୍ତ ଅନର୍ଥର ମୂଳଭୂତ ମୋହଜନିତ କାମ, କ୍ରୋଧ ଓ ଲୋଭ ହିଁ ସମସ୍ତ ଅଧୋଗତିର କାରଣ, ତେବେ ଏଗୁଡ଼ିକୁ ଉତ୍କଟ ବିଷ ସମାନ ଜାଣି ଅବିଳମ୍ବେ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିଦେବା ଉଚିତ।

**ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ।**
**ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍॥ ୨୨ ॥**

**ଅନ୍ୱୟ— କୌନ୍ତେୟ** = ହେ ଅର୍ଜୁନ; **ଏତୈଃ** = ଏହି; **ତ୍ରିଭିଃ** = ତିନି; **ତମୋଦ୍ୱାରୈଃ** = ନରକର ଦ୍ୱାରମାନଙ୍କରୁ; **ବିମୁକ୍ତଃ** = ମୁକ୍ତ ହୋଇଥିବା; **ନରଃ** = ପୁରୁଷ; **ଆତ୍ମନଃ** = ନିଜର; **ଶ୍ରେୟଃ** = କଲ୍ୟାଣ; **ଆଚରତି** = ଆଚରଣ କରେ; **ତତଃ** = ତାହାଦ୍ୱାରା (ସେ); **ପରାମ୍** = ପରମ; **ଗତିମ୍** = ଗତିକୁ; **ଯାତି** = ପାଏ ଅର୍ଥାତ୍ ମୋତେ ପାଏ।

**ହେ ଅର୍ଜୁନ! ନରକର ଏହି ତିନି ଦ୍ୱାରରୁ ମୁକ୍ତ ହୋଇଥିବା ପୁରୁଷ ନିଜର କଲ୍ୟାଣ ଆଚରଣ କରନ୍ତି। ଏହାଦ୍ୱାରା ସେ ପରମଗତି ପାଆନ୍ତି ଅର୍ଥାତ୍ ମୋତେ ପାଆନ୍ତି॥ ୨୨ ॥**

**ପ୍ରଶ୍ନ— ଏତୈଃ** ଓ **ତ୍ରିଭିଃ—** ଏହି ଦୁଇ ପଦ ସହିତ **ତମୋଦ୍ୱାରୈଃ** ପଦ କାହାର ବାଚକ ଓ ଏସବୁରୁ ବିମୁକ୍ତ ମନୁଷ୍ୟକୁ ନର କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ପୂର୍ବଶ୍ଳୋକରେ ଯେଉଁ କାମ, କ୍ରୋଧ ଓ ଲୋଭକୁ ନରକର ତ୍ରିବିଧ ଦ୍ୱାର ବୋଲି କୁହାଗଲା, ଏଠାରେ **ଏତୈଃ** ଓ **ତ୍ରିଭିଃ** ପଦ ସହିତ **ତମୋଦ୍ୱାରୈଃ** ପଦଟି ହେଉଛି ସେହିମାନଙ୍କର ବାଚକ। ତାମିସ୍ର ଓ ଅନ୍ଧତାମିସ୍ରାଦି ନରକ ଅନ୍ଧକାରମୟ ହୋଇଥାଏ।

ଅଜ୍ଞାନରୂପୀ ଅନ୍ଧକାରରୁ ଉତ୍ପନ୍ନ ଦୁରାଚାର ଓ ଦୁର୍ଗୁଣମାନଙ୍କର ଫଳସ୍ୱରୂପ ସେସବୁ ନର୍କ ପ୍ରାପ୍ତି ହୁଏ। ଜୀବମାନଙ୍କୁ ମୋହ ଓ ଦୁଃଖରୂପୀ ତମରେ ହିଁ ଘାରି ହୋଇ ସେଥିରେ ରହିବାକୁ ପଡେ। ତେଣୁ ସେସବୁକୁ ତମ କୁହାଯାଏ। କାମ, କ୍ରୋଧ ଓ ଲୋଭ– ଏହି ତିନିଟି ସେସବୁର ଦ୍ୱାର ଅର୍ଥାତ୍ କାରଣ। ତେଣୁ ସେସବୁକୁ ତମୋଦ୍ୱାର କୁହାଯାଇଛି। ନରକର ଏହି ତିନିଦ୍ୱାରରୁ ଯେ ବିମୁକ୍ତ, ଅର୍ଥାତ୍ ସର୍ବଥା ମୁକ୍ତ ହୋଇଛନ୍ତି, ସେହି ମନୁଷ୍ୟ ନିଜର କଲ୍ୟାଣସାଧନ କରିପାରନ୍ତି ଓ ମନୁଷ୍ୟଦେହ ପାଇ ଯେ ଏହିପରି କଲ୍ୟାଣ ସାଧନ କରନ୍ତି, ସେ ହିଁ ବାସ୍ତବରେ ନର (ମନୁଷ୍ୟ) ଅଟନ୍ତି। ଏହି ଭାବ ଦେଖାଇବାପାଇଁ ତାଙ୍କୁ ନର କୁହାଯାଇଛି।

**ପ୍ରଶ୍ନ –** ନିଜର କଲ୍ୟାଣ ଆଚରଣ କରିବା କ'ଣ ?

**ଉତ୍ତର –** କାମ, କ୍ରୋଧ ଓ ଲୋଭର ବଶ ହୋଇ ମନୁଷ୍ୟମାନେ ନିଜର ପତନ କରାନ୍ତି ଏବଂ ଏମାନଙ୍କ ଠାରୁ ମୁକ୍ତ ହୋଇଥିବା ମନୁଷ୍ୟମାନେ ନିଜର କଲ୍ୟାଣପାଇଁ ଆଚରଣ କରନ୍ତି। ଏଣୁ କାମ, କ୍ରୋଧ ଓ ଲୋଭ ତ୍ୟାଗ କରି ଶାସ୍ତ୍ରପ୍ରତିପାଦିତ ସଦ୍‌ଗୁଣ ଓ ସଦାଚାରରୂପୀ ଦୈବୀସମ୍ପଦକୁ ନିଷ୍କାମଭାବରେ ବିକାଶ କରିବା ହିଁ କଲ୍ୟାଣପାଇଁ ଆଚରଣ କରିବା।

**ପ୍ରଶ୍ନ –** 'ଏହାଦ୍ୱାରା ସେ ପରମଗତି ପ୍ରାପ୍ତ ହୁଅନ୍ତି' – ଏ କଥାର ଭାବ କ'ଣ ?

**ଉତ୍ତର –** ଏହି ବାକ୍ୟଦ୍ୱାରା ଭଗବାନ୍ ଦେଖାଇଛନ୍ତି ଯେ, ଉପରୋକ୍ତପ୍ରକାରେ କାମ, କ୍ରୋଧ ଓ ଲୋଭର ବିସ୍ତୃତରୂପ ଆସୁରୀସମ୍ପଦରୁ ଭଲଭାବରେ ମୁକ୍ତ ହୋଇ ନିଷ୍କାମଭାବରେ ଦୈବୀସମ୍ପଦ ସେବନ (ଧାରଣ-ଆଚରଣ) କରିବାଦ୍ୱାରା ମନୁଷ୍ୟ ପରମଗତି ପ୍ରାପ୍ତ ହୁଏ ଅର୍ଥାତ୍ ପରମାତ୍ମପ୍ରାପ୍ତ ହୁଅନ୍ତି।

**ସମ୍ବନ୍ଧ –** *ଯେ ଉପରୋକ୍ତ ଦୈବୀସମ୍ପଦ ଧାରଣ ଓ ଆଚରଣ ନ କରି ନିଜ ଇଚ୍ଛାରେ ମନମୁଖୀ କର୍ମ କରେ, ସେ ପରମଗତି ପ୍ରାପ୍ତ ହୁଏ, ନା ନାହିଁ? ଏ ସମ୍ପର୍କରେ କହୁଛନ୍ତି–*

**ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ।**
**ନ ସ ସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିମ୍॥ ୨୩ ॥**

**ଅନ୍ୱୟ –** **ଯଃ** = ଯେଉଁ ପୁରୁଷ; **ଶାସ୍ତ୍ରବିଧିମ୍** = ଶାସ୍ତ୍ରବିଧିକୁ; **ଉତ୍ସୃଜ୍ୟ** = ତ୍ୟାଗ କରି; **କାମକାରତଃ** = ନିଜ ଇଚ୍ଛାନୁସାରେ ମନମୁଖୀ; **ବର୍ତ୍ତତେ** = ଆଚରଣ କରେ; **ସଃ** = ସେ; **ସିଦ୍ଧିମ୍** = ସିଦ୍ଧିକୁ; **ନ, ଅବାପ୍ନୋତି** = ପ୍ରାପ୍ତ ହୁଏ ନାହିଁ (କି); **ନ, ପରାମ୍, ଗତିମ୍** = ପରମଗତି ପ୍ରାପ୍ତ ହୁଏ ନାହିଁ (କି); **ନ, ସୁଖମ୍** = ସୁଖ ପାଏ ନାହିଁ।

**ଯେଉଁ ପୁରୁଷ ଶାସ୍ତ୍ରବିଧି ତ୍ୟାଗ କରି ନିଜ ଇଚ୍ଛାରେ ମନମୁଖୀ ଆଚରଣ କରେ, ସେ ସିଦ୍ଧି ପାଏ ନାହିଁ, କି ପରମଗତି ପାଏ ନାହିଁ, କି ସୁଖ ପାଏ ନାହିଁ॥ ୨୩ ॥**

**ପ୍ରଶ୍ନ –** ଶାସ୍ତ୍ରବିଧି ତ୍ୟାଗ କରି ନିଜ ଇଚ୍ଛାରେ ମନମୁଖୀ ଆଚରଣ କରିବା କ'ଣ ?

**ଉତ୍ତର –** ବେଦ ଓ ବେଦମାନଙ୍କର ଆଧାରରେ ରଚିତ ସ୍ମୃତି, ପୁରାଣ, ଇତିହାସାଦି ସବୁର ନାମ ଶାସ୍ତ୍ର। ଆସୁରୀସମ୍ପଦର ଆଚାର-ବ୍ୟବହାର ଆଦିକୁ ତ୍ୟାଗ କରିବାର ଏବଂ ଦୈବୀସମ୍ପଦରୂପୀ କଲ୍ୟାଣକାରୀ ଗୁଣ-ଆଚରଣକୁ ସେବନ କରିବାର ଜ୍ଞାନ ଏହି ଶାସ୍ତ୍ରମାନଙ୍କରୁ ହିଁ ମିଳେ। କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ଜ୍ଞାନ କରାଉଥିବା ଏହି ଶାସ୍ତ୍ରମାନଙ୍କ ବିଧାନ ପ୍ରତି ଅବହେଳା ପ୍ରଦର୍ଶନ କରି ନିଜ ବୁଦ୍ଧିରେ ମନମୁଖୀଭାବରେ କାର୍ଯ୍ୟ କରିବା ଅର୍ଥାତ୍ ନିଜର ମାନ-ବଡିମା-ପ୍ରତିଷ୍ଠା ଆଦି କୌଣସି ଇଚ୍ଛାବିଶେଷକୁ ନେଇ ଆଚରଣ କରିବା ହିଁ ଶାସ୍ତ୍ରବିଧି ତ୍ୟାଗ କରି ମନମୁଖୀ ଆଚରଣ କରିବା।

**ପ୍ରଶ୍ନ –** 'ଏପରି ଆଚରଣ କରିବା ଲୋକ ସିଦ୍ଧି, ସୁଖ ଓ ପରମଗତି ପାଏ ନାହିଁ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ମନୁଷ୍ୟ ଶାସ୍ତ୍ରବିଧି ତ୍ୟାଗ କରେ, ତା'ର କର୍ମ ଯଦି ଶାସ୍ତ୍ରନିଷିଦ୍ଧ ହୁଏ ଅର୍ଥାତ୍ ପାପ ହୁଏ, ତେବେ ତାହା ଦୁର୍ଗତିର କାରଣ ହୁଏ। ଅତଏବ ସେହି କ୍ଷେତ୍ରରେ ତ ସଦ୍‌ଗତିପ୍ରାପ୍ତିର କଥା ହିଁ ଉଠୁ ନାହିଁ। ପରନ୍ତୁ ଯଦି ସେ ନିଜ ବୁଦ୍ଧିରେ ଭଲ ଭାବି ମଧ୍ୟ କୌଣସିପ୍ରକାର କାମନାର ବଶବର୍ତ୍ତୀ ହୋଇ କର୍ମ କରେ, ତେବେ ବି ସେ ନିଜର ମନମୁଖୀ କର୍ମ କରୁଥିବାରୁ ତଥା ଶାସ୍ତ୍ରର

ଅବହେଳା କରିବାରୁ ତାଙ୍କୁ ସେହି କର୍ମରୁ କୌଣସି ବି ଫଳ ମିଳେ ନାହିଁ, ଅର୍ଥାତ୍ ପରମଗତି ମିଳେ ନାହିଁ କଥା କ'ଣ କହିବା, ତାଙ୍କୁ ଲୌକିକ ଅଣିମାଦି ସିଦ୍ଧି ଓ ସ୍ୱର୍ଗପ୍ରାପ୍ତିରୂପକ ସିଦ୍ଧି ମଧ୍ୟ ମିଳେ ନାହିଁ; ଏପରି କି ସଂସାରରେ ସାତ୍ତ୍ୱିକ ସୁଖ ମଧ୍ୟ ମିଳେ ନାହିଁ।

*ସମ୍ବନ୍ଧ* **–** *ଶାସ୍ତ୍ରବିଧି ତ୍ୟାଗ କରି କରାଯାଉଥିବା ମନମୁଖୀ କର୍ମ ନିଷ୍ଫଳ ହୁଏ। ଏହା ଶୁଣି ଜିଜ୍ଞାସା ଉଠିପାରେ, 'ଏପରି ସ୍ଥିତିରେ କ'ଣ କରିବା ଉଚିତ?' ଏ ସମ୍ପର୍କରେ ଭଗବାନ୍ କହୁଛନ୍ତି–*

## ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ।
## ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି।। ୨୪ ।।

**ଅନ୍ୱୟ –** **ତସ୍ମାତ୍** = ତେଣୁ; **ତେ** = ତୁମପାଇଁ; **ଇହ** = ଏହି; **କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ** = କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଣ୍ଣୟରେ; **ଶାସ୍ତ୍ରମ୍** = ଶାସ୍ତ୍ର (ହିଁ); **ପ୍ରମାଣମ୍** = ପ୍ରମାଣ; (**ଏବମ୍**) = ଏପରି; **ଜ୍ଞାତ୍ୱା** = ଜାଣି (ତୁମେ); **ଶାସ୍ତ୍ରବିଧାନୋକ୍ତମ୍** = ଶାସ୍ତ୍ରବିଧିଦ୍ୱାରା ନିୟତ; **କର୍ମ** = କର୍ମ (ହିଁ); **କର୍ତ୍ତୁମ୍** = କରିବା; **ଅର୍ହସି** = ଉଚିତ।

**ତେଣୁ ତୁମ ପାଇଁ ଏହି କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଣ୍ଣୟରେ ଶାସ୍ତ୍ର ହିଁ ପ୍ରମାଣ। ଏପରି ଜାଣି ତୁମେ ଶାସ୍ତ୍ରବିଧିଦ୍ୱାରା ନିୟତ କର୍ମ ହିଁ କରିବା ଉଚିତ।। ୨୪ ।।**

**ପ୍ରଶ୍ନ –** 'ଏହି କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଣ୍ଣୟରେ ଶାସ୍ତ୍ର ହିଁ ପ୍ରମାଣ'– ଏହି କଥାର ଅଭିପ୍ରାୟ କ'ଣ?

**ଉତ୍ତର –** ଏହାଦ୍ୱାରା ପ୍ରକାଶ କରାଯାଉଛି ଯେ, କ'ଣ କରିବା ଉଚିତ ଓ କ'ଣ ନ କରିବା ଉଚିତ – ଏହାର ବ୍ୟବସ୍ଥା ଶ୍ରୁତି, ବେଦମୂଳକ ସ୍ମୃତି ଓ ପୁରାଣ-ଇତିହାସାଦି ଶାସ୍ତ୍ରରେ ମିଳେ। ଅତଏବ ଏହି ବିଷୟରେ ମନୁଷ୍ୟ ମନମୁଖୀ ଆଚରଣ ନ କରି ଶାସ୍ତ୍ରମାନଙ୍କୁ ହିଁ ପ୍ରମାଣ ବୋଲି ମାନିବା ଉଚିତ। ଅର୍ଥାତ୍ ଏହି ଶାସ୍ତ୍ରମାନଙ୍କରେ ଯେଉଁ କର୍ମମାନ କରିବାର ବିଧାନ ରହିଛି, ତାହା କରିବା ଉଚିତ ଓ ଯାହା କରିବାରେ ନିଷେଧ ଅଛି, ତାହା କରିବା ଉଚିତ ନୁହେଁ।

**ପ୍ରଶ୍ନ –** 'ଏପରି ଜାଣି ତୁମେ ଶାସ୍ତ୍ରବିଧିରେ ନିୟତ କର୍ମ ହିଁ କରିବା ଉଚିତ'– ଏ କଥାର ଭାବ କ'ଣ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଏପରିଭାବରେ ଶାସ୍ତ୍ରର ପ୍ରମାଣ ମାନି ତୁମେ ଶାସ୍ତ୍ରରେ କୁହାଯାଇଥିବା କର୍ତ୍ତବ୍ୟ କର୍ମ ହିଁ ବିଧିପୂର୍ବକ ଆଚରଣ କରିବା ଉଚିତ; ନିଷିଦ୍ଧକର୍ମ କରିବା କଦାପି ଉଚିତ ନୁହେଁ। ସେହି ଶାସ୍ତ୍ରବିହିତ ଶୁଭକର୍ମ ମଧ୍ୟ ନିଷ୍କାମଭାବରେ ହିଁ କରିବା ଉଚିତ; କାରଣ, ନିଷ୍କାମଭାବରେ କରାଯାଉଥିବା ଶୁଭକର୍ମ ହିଁ ଭଗବତ୍ପ୍ରାପ୍ତିର ହେତୁ ବୋଲି ଶାସ୍ତ୍ରମାନଙ୍କରେ କୁହାଯାଇଛି।

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଦୈବାସୁରସମ୍ପଦ୍ବିଭାଗ ଯୋଗୋ*
*ନାମ ଷୋଡଶୋଽଧ୍ୟାୟଃ ।। ୧୬ ।।*

— ୦ —

ଓଁ ଶ୍ରୀପରମାତ୍ମନେ ନମଃ

# ସପ୍ତଦଶୋଽଧ୍ୟାୟଃ

## ଶ୍ରଦ୍ଧାତ୍ରୟବିଭାଗଯୋଗ

**ଅଧ୍ୟାୟର ନାମ :** ଏହି ସପ୍ତଦଶ ଅଧ୍ୟାୟର ଆରମ୍ଭରେ ଅର୍ଜୁନ ଶ୍ରଦ୍ଧାଯୁକ୍ତ ପୁରୁଷମାନଙ୍କର ନିଷ୍ଠା ସମ୍ବନ୍ଧରେ ପଚାରିଛନ୍ତି ଏବଂ ତାହାର ଉତ୍ତରରେ ଭଗବାନ୍ ତିନିପ୍ରକାର ଶ୍ରଦ୍ଧା କଥା କହି ଶ୍ରଦ୍ଧା ଅନୁସାରେ ପୁରୁଷମାନଙ୍କର ସ୍ୱରୂପ କହିଛନ୍ତି। ପୁଣି ପୂଜା, ଯଜ୍ଞ, ତପ ଆଦିରେ ଶ୍ରଦ୍ଧାର ସମ୍ବନ୍ଧ ଦେଖାଇଦେଇ ଅନ୍ତିମ ଶ୍ଲୋକରେ ଶ୍ରଦ୍ଧାରହିତ ପୁରୁଷମାନଙ୍କର କର୍ମ ଅସତ୍ ବୋଲି କହିଛନ୍ତି। ଏପରିଭାବରେ ଏହି ଅଧ୍ୟାୟରେ ବିଭାଗପୂର୍ବକ ତ୍ରିବିଧ ଶ୍ରଦ୍ଧାର ବ୍ୟାଖ୍ୟା କରାଯାଇଥିବାରୁ ଏହାର ନାମ 'ଶ୍ରଦ୍ଧାତ୍ରୟବିଭାଗଯୋଗ' ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଶ୍ଲୋକରେ ଶାସ୍ତ୍ରବିଧି ତ୍ୟାଗ କରି ଶ୍ରଦ୍ଧାପୂର୍ବକ ଉପାସନା କରୁଥିବା ଲୋକଙ୍କର ନିଷ୍ଠା ବିଷୟରେ ଅର୍ଜୁନ ଭଗବାନଙ୍କୁ ପଚାରିଛନ୍ତି। ତାହାର ଉତ୍ତରରେ ଭଗବାନଙ୍କ ଦ୍ୱାରା ଦ୍ୱିତୀୟ ଶ୍ଲୋକରେ ଗୁଣାନୁସାରେ ତ୍ରିବିଧ ସ୍ୱାଭାବିକ ଶ୍ରଦ୍ଧା ବର୍ଣ୍ଣନା କରାଯାଇଛି। ତୃତୀୟରେ ଶ୍ରଦ୍ଧା ଅନୁସାରେ ପୁରୁଷମାନଙ୍କର ସ୍ୱରୂପ କୁହାଯାଇଛି। ଚତୁର୍ଥରେ ସାତ୍ତ୍ୱିକ, ରାଜସ ଏବଂ ତାମସ-ଶ୍ରଦ୍ଧାଯୁକ୍ତ ପୁରୁଷମାନେ କ୍ରମଶଃ ଦେବ, ଯକ୍ଷରାକ୍ଷସ ଏବଂ ଭୂତପ୍ରେତଙ୍କ ପୂଜା କରନ୍ତି ବୋଲି କୁହାଯାଇଛି। ପଞ୍ଚମ ଓ ଷଷ୍ଠରେ ଶାସ୍ତ୍ରବିରୁଦ୍ଧ ଘୋର ତପସ୍ୟା କରୁଥିବା ଲୋକଙ୍କର ନିନ୍ଦା କରାଯାଇଛି। ସପ୍ତମରେ ଆହାର, ଯଜ୍ଞ, ତପ ଏବଂ ଦାନ କେତେ ପ୍ରକାର, ତାହା ଶୁଣିବା ନିମନ୍ତେ ଭଗବାନ୍ ଅର୍ଜୁନଙ୍କୁ ଆଜ୍ଞା ଦେଇଛନ୍ତି। ଅଷ୍ଟମ, ନବମ ଓ ଦଶମ ଶ୍ଲୋକରେ କ୍ରମଶଃ ସାତ୍ତ୍ୱିକ, ରାଜସ ଓ ତାମସ ଆହାର ବିଷୟ ବର୍ଣ୍ଣନା କରିଛନ୍ତି। ଏଗାର, ବାର ଓ ତେରରେ କ୍ରମଶଃ ସାତ୍ତ୍ୱିକ, ରାଜସ ଓ ତାମସ ଯଜ୍ଞର ଲକ୍ଷଣ ବର୍ଣ୍ଣନା କରିଛନ୍ତି। ଚଉଦ, ପନ୍ଦର ଓ ଷୋହଳରେ କ୍ରମଶଃ କାୟିକ, ବାଚିକ ଓ ମାନସିକ ତପର ସ୍ୱରୂପ ବର୍ଣ୍ଣନା କରି ସତରରେ ସାତ୍ତ୍ୱିକ ତପର ଲକ୍ଷଣ କହିଛନ୍ତି। ଅଠର ଏବଂ ଉଣେଇଶରେ ଯଥାକ୍ରମେ ରାଜସ ଓ ତାମସ-ତପର ଲକ୍ଷଣ ବର୍ଣ୍ଣନା କରିଛନ୍ତି। କୋଡ଼ିଏ, ଏକୋଇଶ ଏବଂ ବାଇଶରେ କ୍ରମଶଃ ସାତ୍ତ୍ୱିକ, ରାଜସ ଏବଂ ତାମସ-ଦାନର ଲକ୍ଷଣଗୁଡ଼ିକ ବ୍ୟାଖ୍ୟା କରିଛନ୍ତି। ତେଇଶରେ 'ଓଁ ତତ୍ ସତ୍'ର ମହିମା କହିଛନ୍ତି ଓ ଚବିଶରେ ଓଁ ଶବ୍ଦ ପ୍ରୟୋଗର, ପଚିଶରେ 'ତତ୍' ଶବ୍ଦ ପ୍ରୟୋଗର ଏବଂ ଛବିଶ ତଥା ସତେଇଶରେ 'ସତ୍' ଶବ୍ଦ ପ୍ରୟୋଗର ବ୍ୟାଖ୍ୟା କରି ଶେଷରେ ଅଠେଇଶ ଶ୍ଲୋକରେ ଶ୍ରଦ୍ଧା ବିନା କରାଯାଉଥିବା ଯଜ୍ଞ, ଦାନ, ତପ ଆଦି କର୍ମମାନଙ୍କୁ ଇହଲୋକ ଏବଂ ପରଲୋକରେ ସର୍ବଥା ନିଷ୍ଫଳ ଓ ଅସତ୍ ବୋଲି ବର୍ଣ୍ଣନା କରି ଅଧ୍ୟାୟ ଉପସଂହାର କରିଛନ୍ତି।

**ସମ୍ବନ୍ଧ —** ଷୋହଳ ଅଧ୍ୟାୟର ଆରମ୍ଭରେ ଶ୍ରୀଭଗବାନ୍ ନିଷ୍କାମଭାବରେ ପାଳନ କରାଯାଉଥିବା ଶାସ୍ତ୍ରବିହିତ ଗୁଣ ଏବଂ ଆଚରଣମାନଙ୍କୁ ଦୈବୀସମ୍ପଦ ନାମରେ ବର୍ଣ୍ଣନା କରିବା ପରେ ଶାସ୍ତ୍ରର ବିପରୀତ ଆସୁରୀ ସମ୍ପଦ ବର୍ଣ୍ଣନା କରିଛନ୍ତି। ତା ସଙ୍ଗେ ସଙ୍ଗେ ଆସୁରସ୍ୱଭାବଯୁକ୍ତ ପୁରୁଷମାନେ ନରକରେ ପଡ଼ନ୍ତି ବୋଲି କହି ଏହା ମଧ୍ୟ କହିଛନ୍ତି ଯେ, କାମ, କ୍ରୋଧ ଓ ଲୋଭ ହିଁ ଆସୁରସମ୍ପଦର ପ୍ରଧାନ ଅବଗୁଣ ଏବଂ ସେହି ତିନୋଟି ହିଁ ନରକର ଦ୍ୱାର। ଯେଉଁମାନେ ଏମାନଙ୍କୁ ତ୍ୟାଗ କରି ଆତ୍ମକଲ୍ୟାଣନିମନ୍ତେ ସାଧନା କରନ୍ତି, ସେମାନେ ପରମଗତି ପାଆନ୍ତି। ତା'ଛଡ଼ା ଏକଥା ମଧ୍ୟ କହିଛନ୍ତି ଯେ, ଯେଉଁଲୋକ ଶାସ୍ତ୍ରବିଧି ତ୍ୟାଗ କରି, ମନମୁଖିଭାବରେ ନିଜେ ଯାହା ଭଲ ବୋଲି ବୁଝେ, ତାହା କରେ, ତାଙ୍କୁ ସେହି କର୍ମର ଫଳ ମିଳେ ନାହିଁ; ସିଦ୍ଧିପାଇଁ କରାଯାଉଥିବା କର୍ମରୁ ସିଦ୍ଧି ମିଳେ ନାହିଁ; ସୁଖପାଇଁ କରାଯାଉଥିବା କର୍ମରୁ ସୁଖ ମିଳେ ନାହିଁ ଏବଂ କଦାପି ପରମଗତି ମିଳେ ନାହିଁ।

ଅତଏବ କରିବାଯୋଗ୍ୟ ଏବଂ ନ କରିବାଯୋଗ୍ୟ କର୍ମମାନଙ୍କର ବ୍ୟବସ୍ଥା ଦେଉଥିବା ଶାସ୍ତ୍ରମାନଙ୍କ ବିଧାନ ଅନୁସାରେ ହିଁ ନିଷ୍କାମଭାବରେ କର୍ମ କରିବା ଉଚିତ। ତାହା ଶୁଣି ଅର୍ଜୁନଙ୍କ ମନରେ ଜିଜ୍ଞାସା ଉତ୍ପନ୍ନ ହେଲା : ଯେଉଁ ଲୋକ ଶାସ୍ତ୍ରବିଧି ଛାଡ଼ିଦେଇ ମନମୁଖୀ କର୍ମ କରେ, ତା'ର କର୍ମ ତ ବ୍ୟର୍ଥ ହୁଏ— କିନ୍ତୁ ଏପରି ଲୋକ ମଧ୍ୟ ଥାଇପାରନ୍ତି, ଯେ କି ଶାସ୍ତ୍ରର ବିଧିବିଧାନ ଜାଣି ନ ଥିବାରୁ ଅଥବା ଅନ୍ୟ କୌଣସି କାରଣରୁ ବିଧିବିଧାନ ତ୍ୟାଗ କରିଦେଇଥାନ୍ତି ଅଥଚ ଯଜ୍ଞପୂଜାଦି ଶୁଭକର୍ମ ଶ୍ରଦ୍ଧାପୂର୍ବକ କରନ୍ତି, ସେମାନଙ୍କର କି ସ୍ଥିତି ହୁଏ ? ସେହି ଜିଜ୍ଞାସା ବ୍ୟକ୍ତ କରି ସେ ଭଗବାନଙ୍କୁ ପଚାରୁଛନ୍ତି—

ଅର୍ଜୁନ ଉବାଚ

## ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
## ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋ ରଜସ୍ତମଃ ॥ ୧ ॥

**ଅନ୍ୱୟ—** **କୃଷ୍ଣ** = ହେ କୃଷ୍ଣ; **ଯେ** = ଯେଉଁ ମନୁଷ୍ୟମାନେ; **ଶାସ୍ତ୍ରବିଧିମ୍** = ଶାସ୍ତ୍ରବିଧିକୁ; **ଉତ୍ସୃଜ୍ୟ** = ତ୍ୟାଗ କରି; **ଶ୍ରଦ୍ଧୟା** = ଶ୍ରଦ୍ଧାରେ; **ଅନ୍ୱିତାଃ** = ଯୁକ୍ତ ହୋଇ; **ଯଜନ୍ତେ** = ଦେବାଦିଙ୍କୁ ପୂଜା କରନ୍ତି; **ତେଷାମ୍** = ସେମାନଙ୍କର; **ନିଷ୍ଠା** = ସ୍ଥିତି; **ତୁ** = ପୁଣି; **କା** = କ'ଣ ହୁଏ; **ସତ୍ତ୍ୱମ୍** = ସାତ୍ତ୍ୱିକୀ; **ଆହୋ** = ଅଥବା; **ରଜଃ** = ରାଜସୀ(ନା); **ତମଃ** = ତାମସୀ ?

**ଅର୍ଜୁନ ପଚାରିଲେ — ହେ କୃଷ୍ଣ ! ଯେଉଁ ମନୁଷ୍ୟମାନେ ଶାସ୍ତ୍ରବିଧି ତ୍ୟାଗ କରି ଶ୍ରଦ୍ଧାଯୁକ୍ତ ହୋଇ ଦେବାଦିଙ୍କୁ ପୂଜା କରନ୍ତି, ସେମାନଙ୍କର ସ୍ଥିତି କ'ଣ ହୁଏ — ସାତ୍ତ୍ୱିକୀ, ନା ରାଜସୀ, ନା ତାମସୀ ? ॥ ୧ ॥**

**ପ୍ରଶ୍ନ—** ଶାସ୍ତ୍ରବିଧି ତ୍ୟାଗ କରିବା କଥା ଷୋଡ଼ଶ ଅଧ୍ୟାୟର ତେଇଶ ଶ୍ଳୋକରେ କୁହାଯାଇଛି ଏବଂ ଏଠାରେ ମଧ୍ୟ କହୁଛନ୍ତି। ଏହି ଦୁଇଟି କଥାର ଭାବ ଏକ, ନା ଏଥିରେ କିଛି ପାର୍ଥକ୍ୟ ଅଛି ?

**ଉତ୍ତର—** ଅବଶ୍ୟ ପାର୍ଥକ୍ୟ ଅଛି। ସେଠାରେ ଅବହେଳା କରି ଶାସ୍ତ୍ରବିଧି ତ୍ୟାଗ କରିବା କଥା ବର୍ଣ୍ଣନା କରାଯାଇଛି ଏବଂ ଏଠାରେ ଜାଣି ନ ଥିବାରୁ ଶାସ୍ତ୍ରବିଧି ତ୍ୟାଗ କରିବା କଥା ଆସିଛି। ସେମାନଙ୍କର ଶାସ୍ତ୍ରକୁ ଭ୍ରୂକ୍ଷେପ ନ ଥାଏ; ସେମାନେ ନିଜେ ଯେଉଁ କର୍ମ ଭଲ ବୋଲି ମନେ କରନ୍ତି, ତାହା କରନ୍ତି। ତେଣୁ ସେଠାରେ **ବର୍ତ୍ତତେ କାମକାରତଃ** ବୋଲି କୁହାଯାଇଛି। କିନ୍ତୁ ଏଠାରେ **ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ** କହି ପଚାରିଛନ୍ତି; ତେଣୁ ଏହି ଲୋକମାନଙ୍କର ଶ୍ରଦ୍ଧା ଥାଏ। ଯେଉଁଠାରେ ଶ୍ରଦ୍ଧା ଥାଏ, ସେଠାରେ ଅବହେଳା ହୋଇପାରେନା। ଏହି ଲୋକମାନଙ୍କ ପାଇଁ ପରିସ୍ଥିତି ଓ ବାତାବରଣ ପ୍ରତିକୂଳ ହୋଇଥିବାରୁ, ଅବକାଶ ଅଭାବରୁ ଅଥବା ପରିଶ୍ରମ ତଥା ଅଧ୍ୟୟନ ଅଭାବରୁ, ଏମାନେ ଶାସ୍ତ୍ରବିଧି ଜାଣିପାରି ନ ଥାନ୍ତି ଏବଂ ସେହି ଅଜ୍ଞତାହେତୁ ଏମାନେ ତାହା ତ୍ୟାଗ କରିଥାନ୍ତି।

**ପ୍ରଶ୍ନ— ନିଷ୍ଠା** ଶବ୍ଦର ଭାବ କ'ଣ ?

ଉତ୍ତର— ଏଠାରେ **ନିଷ୍ଠା** ଶବ୍ଦ ସ୍ଥିତିର ବାଚକ; କାରଣ ତୃତୀୟ ଶ୍ଳୋକରେ ଏହାର ଉତ୍ତର ଦେଇ ଭଗବାନ୍ କହିଛନ୍ତି ଯେ, ଏହି ପୁରୁଷମାନେ ଶ୍ରଦ୍ଧାଯୁକ୍ତ; ଯାହାର ଯେପରି ଶ୍ରଦ୍ଧା, ସେ ସେପରି ପୁରୁଷ ଅର୍ଥାତ୍ ତା'ର ସ୍ଥିତି ସେପରି। ଏହାର ନାମ ହିଁ ନିଷ୍ଠା।

**ପ୍ରଶ୍ନ—** 'ସେମାନଙ୍କର ସ୍ଥିତି ସାତ୍ତ୍ୱିକୀ, ନା ରାଜସୀ ବା ତାମସୀ ହୁଏ ?'— ବୋଲି ପଚାରିବାର ଭାବ କ'ଣ ?

**ଉତ୍ତର—** ଷୋଡ଼ଶ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଭଗବାନ୍ ଦୈବୀପ୍ରକୃତିଯୁକ୍ତ ଓ ଆସୁରୀପ୍ରକୃତିଯୁକ୍ତ — ଏପରି ଦୁଇପ୍ରକାର ମନୁଷ୍ୟଙ୍କ ବର୍ଣ୍ଣନା କରିଛନ୍ତି। ଏମାନଙ୍କ ମଧ୍ୟରୁ ଦୈବୀପ୍ରକୃତିଯୁକ୍ତ ଲୋକ ଶାସ୍ତ୍ରବିହିତ କର୍ମ ନିଷ୍କାମଭାବରେ ଆଚରଣ କରନ୍ତି; ତେଣୁ ସେମାନେ ମୋକ୍ଷ ପ୍ରାପ୍ତ ହୁଅନ୍ତି। ଯେଉଁ ଆସୁରସ୍ୱଭାବଯୁକ୍ତ ତାମସ ପ୍ରକୃତିର ଲୋକେ ପାପକର୍ମ କରନ୍ତି, ସେମାନେ ନୀଚଯୋନି ବା ନରକ ପ୍ରାପ୍ତ ହୁଅନ୍ତି ଏବଂ ଯେଉଁ ତମୋମିଶ୍ରିତ ରାଜସ ଲୋକେ ଶାସ୍ତ୍ରବିଧି ତ୍ୟାଗ କରି ମନମୁଖୀ ଶୁଭକର୍ମ କରନ୍ତି, ସେମାନଙ୍କୁ ସେହି ଶୁଭକର୍ମର କିଛି ବି ଫଳ ମିଳେ ନାହିଁ; କିନ୍ତୁ ପାପକର୍ମର ଫଳ ତ ସେମାନଙ୍କୁ ଭୋଗ କରିବାକୁ ହିଁ ପଡ଼େ। ଏହି ବର୍ଣ୍ଣନାଦ୍ୱାରା

ଦୈବୀ ଓ ଆସୁରୀ-ପ୍ରକୃତିଯୁକ୍ତ ମନୁଷ୍ୟମାନଙ୍କର ଉପରୋକ୍ତ କଥା ତ ଅର୍ଜୁନ ଭଲଭାବରେ ବୁଝିଯାଇଛନ୍ତି; କିନ୍ତୁ ଯେଉଁମାନେ ଜାଣି ନ ଥିବାରୁ ଶାସ୍ତ୍ରବିଧି ତ୍ୟାଗ କରିଦେଇ ମଧ୍ୟ ଶ୍ରଦ୍ଧାର ସହିତ ପୂଜାଦି କରନ୍ତି, ସେମାନେ ଦୈବସ୍ୱଭାବଯୁକ୍ତ, ନା ଆସୁରସ୍ୱଭାବଯୁକ୍ତ, ତାହାର ସ୍ପଷ୍ଟୀକରଣ ହୋଇ ନାହିଁ। ତାହା ବୁଝିବାପାଇଁ ଅର୍ଜୁନ ପଚାରୁଛନ୍ତି, "ଏହିପରି ଲୋକମାନଙ୍କର ସ୍ଥିତି ସାତ୍ତ୍ୱିକୀ, ନା ରାଜସୀ, ନା ତାମସୀ? ଅର୍ଥାତ୍ ଏମାନେ ଦୈବୀସମ୍ପଦଯୁକ୍ତ, ନା ଆସୁରୀସମ୍ପଦଯୁକ୍ତ?"

**ପ୍ରଶ୍ନ —** ଉପରୋକ୍ତ ବିବେଚନରୁ ଜଣାପଡୁଛି ଯେ, ସଂସାରରେ ପାଞ୍ଚପ୍ରକାର ମନୁଷ୍ୟ ଅଛନ୍ତି; ଯଥା —

୧ — ଯେଉଁମାନେ ଶାସ୍ତ୍ରବିଧି ପାଳନ କରନ୍ତି ଏବଂ ଯାହାଙ୍କ ଠାରେ ଶ୍ରଦ୍ଧା ମଧ୍ୟ ଥାଏ।

୨ — ଯେଉଁମାନେ ଶାସ୍ତ୍ରବିଧିକୁ କିଛି ଅଂଶରେ ପାଳନ କରନ୍ତି; କିନ୍ତୁ ଯାହାଙ୍କ ଠାରେ ଶ୍ରଦ୍ଧା ନ ଥାଏ।

୩ — ଯାହାଙ୍କ ଠାରେ ଶ୍ରଦ୍ଧା ଥାଏ ଅଥଚ ଯେଉଁମାନେ ଶାସ୍ତ୍ରବିଧି ପାଳନ କରିପାରନ୍ତି ନାହିଁ।

୪ — ଯେଉଁମାନେ ଶାସ୍ତ୍ରବିଧି ପାଳନ କରନ୍ତି ନାହିଁ କି ଯାହାଙ୍କ ଠାରେ ଶ୍ରଦ୍ଧା ମଧ୍ୟ ନ ଥାଏ।

୫ — ଯେଉଁମାନେ ଅବହେଳାରୁ ଶାସ୍ତ୍ରବିଧି ତ୍ୟାଗ କରନ୍ତି।

ଏହି ପାଞ୍ଚପ୍ରକାର ଲୋକଙ୍କ ସ୍ୱରୂପ କ'ଣ? ଏମାନଙ୍କର କିପ୍ରକାର ଗତି ହୁଏ? ତଥା ଏମାନଙ୍କ ବର୍ଣ୍ଣନା ଗୀତାରେ ମୁଖ୍ୟତଃ କେଉଁ ଶ୍ଲୋକରେ ଦିଆଯାଇଛି?

**ଉତ୍ତର —** (୧) ଯାହାଙ୍କ ଠାରେ ଶ୍ରଦ୍ଧା ମଧ୍ୟ ଥାଏ ଏବଂ ଯେଉଁମାନେ ଶାସ୍ତ୍ରବିଧି ମଧ୍ୟ ପାଳନ କରନ୍ତି, ସେମାନେ ଦୁଇ ପ୍ରକାରର, ଯଥା — (କ) ନିଷ୍କାମଭାବରେ କର୍ମ ଆଚରଣ କରୁଥିବା ପୁରୁଷ ଏବଂ (ଖ) ସକାମଭାବରେ କର୍ମ ଆଚରଣ କରୁଥିବା ପୁରୁଷ। ନିଷ୍କାମଭାବରେ କର୍ମ ଆଚରଣ କରୁଥିବା ଦୈବୀସମ୍ପଦଯୁକ୍ତ ସାତ୍ତ୍ୱିକ ପୁରୁଷମାନେ ମୋକ୍ଷ ପ୍ରାପ୍ତ ହୁଅନ୍ତି; ସେମାନଙ୍କର ବର୍ଣ୍ଣନା ପ୍ରଧାନତଃ ଷୋଡ଼ଶ ଅଧ୍ୟାୟର ପ୍ରଥମ ତିନି ଶ୍ଲୋକରେ ତଥା ଏହି ଅଧ୍ୟାୟର ଏଗାର, ଚଉଦରୁ ସତର ଏବଂ କୋଡ଼ିଏ ଶ୍ଲୋକରେ ରହିଛି। ସକାମଭାବରେ କର୍ମ ଆଚରଣ କରୁଥିବା ସତ୍ତ୍ୱମିଶ୍ରିତ ରାଜସ ପୁରୁଷମାନେ ସିଦ୍ଧି, ସୁଖ ତଥା ସ୍ୱର୍ଗାଦି ଲୋକ ପ୍ରାପ୍ତ ହୁଅନ୍ତି; ସେମାନଙ୍କର ବର୍ଣ୍ଣନା ଦ୍ୱିତୀୟ ଅଧ୍ୟାୟର ବୟାଳିଶ, ତେୟାଳିଶ ଓ ଚଉରାଳିଶ ଶ୍ଲୋକରେ, ଚତୁର୍ଥ ଅଧ୍ୟାୟର ବାର ଶ୍ଲୋକରେ, ସପ୍ତମ ଅଧ୍ୟାୟର କୋଡ଼ିଏ, ଏକୋଇଶ ଓ ବାଇଶ ଶ୍ଲୋକରେ ଏବଂ ନବମ ଅଧ୍ୟାୟର କୋଡ଼ିଏ, ଏକୋଇଶ ଓ ତେଇଶ ଶ୍ଲୋକରେ କରାଯାଇଛି।

(୨) ଯେଉଁମାନେ କେତେକାଂଶରେ ଶାସ୍ତ୍ରବିଧି ପାଳନ କରି ଯଜ୍ଞ, ଦାନ, ତପ ଆଦି କର୍ମ ତ କରନ୍ତି, କିନ୍ତୁ ଯାହାଙ୍କ ଠାରେ ଶ୍ରଦ୍ଧା ନ ଥାଏ, ସେମାନଙ୍କର କର୍ମ ଅସତ୍ (ନିଷ୍ଫଳ) ହୁଏ; ସେମାନଙ୍କୁ ଇହଲୋକରେ କିମ୍ବା ପରଲୋକରେ ସେହି କର୍ମମାନଙ୍କରୁ କୌଣସି ଲାଭ ମିଳେ ନାହିଁ। ଏ ସମ୍ପର୍କୀୟ ବର୍ଣ୍ଣନା ଏହି ଅଧ୍ୟାୟର ଅଠେଇଶ ଶ୍ଲୋକରେ କରାଯାଇଛି।

(୩) ଯେଉଁ ଲୋକେ ଅଜ୍ଞତାହେତୁ ଶାସ୍ତ୍ରବିଧି ତ୍ୟାଗ କରିଦେଇଥାନ୍ତି; କିନ୍ତୁ ଶ୍ରଦ୍ଧା ରଖିଥାନ୍ତି, ସେପରି ପୁରୁଷମାନେ ଶ୍ରଦ୍ଧାଭେଦରେ ସାତ୍ତ୍ୱିକ ବି ହୁଅନ୍ତି ଏବଂ ରାଜସ ତଥା ତାମସ ମଧ୍ୟ ହୁଅନ୍ତି। ସେମାନଙ୍କର ଗତି ମଧ୍ୟ ସେମାନଙ୍କ ଶ୍ରଦ୍ଧାର ସ୍ୱରୂପ ଅନୁସାରେ ହୁଏ। ସେମାନଙ୍କର ବର୍ଣ୍ଣନା ଏହି ଅଧ୍ୟାୟର ଦ୍ୱିତୀୟ, ତୃତୀୟ ତଥା ଚତୁର୍ଥ ଶ୍ଲୋକରେ କରାଯାଇଛି।

(୪) ଯେଉଁମାନେ ଶାସ୍ତ୍ରକୁ ମାନନ୍ତି ନାହିଁ, କି ଶ୍ରଦ୍ଧା ମଧ୍ୟ ରଖନ୍ତି ନାହିଁ ଏବଂ ତେଣୁ କାମ, କ୍ରୋଧ, ଲୋଭର ବଶବର୍ତ୍ତୀ ହୋଇ ପାପମୟ ଜୀବନ ଯାପନ କରନ୍ତି, ସେହି ଆସୁରୀସମ୍ପଦଯୁକ୍ତ ଲୋକମାନେ ନରକରେ ପଡ଼ନ୍ତି ତଥା ନୀଚଯୋନି ପ୍ରାପ୍ତ ହୁଅନ୍ତି। ସେମାନଙ୍କର ବର୍ଣ୍ଣନା ସପ୍ତମ ଅଧ୍ୟାୟର ପନ୍ଦର ଶ୍ଲୋକରେ, ନବମର ବାର ଶ୍ଲୋକରେ, ଷୋଡ଼ଶ ଅଧ୍ୟାୟର ସପ୍ତମ ଶ୍ଲୋକଠାରୁ ଆରମ୍ଭ କରି କୋଡ଼ିଏ ଶ୍ଲୋକପର୍ଯ୍ୟନ୍ତ ଏବଂ ଏହି ଅଧ୍ୟାୟର ପଞ୍ଚମ, ଷଷ୍ଠ ଓ ତ୍ରୟୋଦଶ ଶ୍ଲୋକରେ ରହିଛି।

(୫) ଯେଉଁ ଲୋକେ ଅବହେଳା କରି ଶାସ୍ତ୍ରବିଧି ତ୍ୟାଗ କରିଦିଅନ୍ତି ଏବଂ ନିଜକୁ ଯାହା ଭଲ ଲାଗେ ତାହା କରନ୍ତି, ସେହି ଯଥେଚ୍ଛାଚାରୀ ପୁରୁଷମାନଙ୍କ ମଧ୍ୟରୁ ଯେଉଁମାନେ ଶାସ୍ତ୍ରନିଷିଦ୍ଧ କର୍ମ କରନ୍ତି, ସେହି ତାମସ ପୁରୁଷମାନଙ୍କୁ ନରକାଦି ଦୁର୍ଗତି ପ୍ରାପ୍ତ ହୁଏ। ଏହାର ବର୍ଣ୍ଣନା ଚତୁର୍ଥ ପ୍ରଶ୍ନର ଉତ୍ତରରେ ଦିଆସରିଛି; ଏବଂ ଯେଉଁମାନେ ଭଲ କର୍ମ କରନ୍ତି, ସେହି ରଜଃପ୍ରଧାନ ତାମସ ପୁରୁଷମାନଙ୍କୁ କୌଣସି ଫଳ ମିଳେ ନାହିଁ; କାରଣ ସେମାନେ ଶାସ୍ତ୍ରବିଧି ତ୍ୟାଗ କରିଦେଇଥାନ୍ତି। ଏହାର ବର୍ଣ୍ଣନା ଷୋଡ଼ଶ ଅଧ୍ୟାୟର ତେଇଶ ଶ୍ଲୋକରେ

କରାଯାଇଛି। ସ୍ମରଣ ରଖିବା ଉଚିତ ଯେ, ସେମାନଙ୍କ ଦ୍ୱାରା ଯେଉଁ ପାପକର୍ମସବୁ କରାଯାଏ, ସେସବୁର ଫଳସ୍ୱରୂପ ସେମାନଙ୍କୁ ତିର୍ଯ୍ୟକ୍‌ଯୋନିପ୍ରାପ୍ତି ଏବଂ ନରକପ୍ରାପ୍ତି ଅବଶ୍ୟ ହୁଏ।

ଏହି ପାଞ୍ଚଟି ପ୍ରଶ୍ନର ଉତ୍ତର ଦେଇ ଏହି ବିଷୟରେ ପ୍ରମାଣସ୍ୱରୂପ ଯେଉଁ ଶ୍ଳୋକମାନଙ୍କର ସଙ୍କେତ କରାଗଲା, ସେଗୁଡ଼ିକ ଛଡ଼ା ଅନ୍ୟାନ୍ୟ ଶ୍ଳୋକରେ ମଧ୍ୟ ଏସବୁର ବର୍ଣ୍ଣନା ରହିଛି; ସେସବୁର ଉଲ୍ଲେଖ ଏଠାରେ କରାଯାଇ ନାହିଁ।

**ସମ୍ବନ୍ଧ –** ଅର୍ଜୁନଙ୍କ ପ୍ରଶ୍ନ ଶୁଣି ଭଗବାନ୍ ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ତାହାର ଉତ୍ତର ସଂକ୍ଷେପରେ ଦେଉଛନ୍ତି –

ଶ୍ରୀଭଗବାନୁବାଚ

## ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା।
## ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ॥ ୨ ॥

**ଅନ୍ୱୟ –** ଦେହିନାମ୍ = ମନୁଷ୍ୟମାନଙ୍କର; ସା = ସେହି (ଶାସ୍ତ୍ରୀୟ ସଂସ୍କାରରୁ ରହିତ); ସ୍ୱଭାବଜା = (କେବଳ) ସ୍ୱଭାବରୁ ଉତ୍ପନ୍ନ; ଶ୍ରଦ୍ଧା = ଶ୍ରଦ୍ଧା; ସାତ୍ତ୍ୱିକୀ = ସାତ୍ତ୍ୱିକୀ; ଚ = ଓ; ରାଜସୀ = ରାଜସୀ; ଚ = ତଥା; ତାମସୀ = ତାମସୀ; ଇତି = ଏପରି; ତ୍ରିବିଧା = ତିନିପ୍ରକାର; ଏବ = ହିଁ; ଭବତି = ହୋଇଥାଏ; ତାମ୍ = ତାହା (ତୁମେ); (ମତ୍ତଃ) = ମୋ ଠାରୁ; ଶୃଣୁ = ଶୁଣ।

**ଶ୍ରୀଭଗବାନ କହିଲେ — ମନୁଷ୍ୟମାନଙ୍କର ସେହି ଶାସ୍ତ୍ରୀୟ ସଂସ୍କାରରୁ ରହିତ କେବଳ ସ୍ୱଭାବରୁ ଉତ୍ପନ୍ନ ଶ୍ରଦ୍ଧା ସାତ୍ତ୍ୱିକୀ, ରାଜସୀ ତଥା ତାମସୀ – ଏପରି ତିନିପ୍ରକାର ହୋଇଥାଏ। ତାହା ତୁମେ ମୋ ଠାରୁ ଶୁଣ॥ ୨ ॥**

**ପ୍ରଶ୍ନ –** ଦେହିନାମ୍ ପଦ କେଉଁ ମନୁଷ୍ୟମାନଙ୍କ ପାଇଁ ପ୍ରଯୁକ୍ତ ହୋଇଛି ?

**ଉତ୍ତର –** ଯେଉଁମାନଙ୍କର ଦେହରେ ସ୍ୱାଭାବିକ ଅଭିମାନ ଥାଏ, ସେପରି ସାଧାରଣ ମନୁଷ୍ୟମାନଙ୍କ ପାଇଁ ଦେହିନାମ୍ ପ୍ରଯୁକ୍ତ ହୋଇଛି।

**ପ୍ରଶ୍ନ –** ସା ଏବଂ ସ୍ୱଭାବଜା ଏହି ପଦଦୁଇଟି କିଭଳି ଶ୍ରଦ୍ଧାର ବାଚକ ?

**ଉତ୍ତର –** ସା ଏବଂ ସ୍ୱଭାବଜା ପଦଦୁଇଟି ଶାସ୍ତ୍ରବିଧି ତ୍ୟାଗ କରି ଶ୍ରଦ୍ଧାପୂର୍ବକ ଯଜ୍ଞାଦି କର୍ମ କରୁଥିବା ମନୁଷ୍ୟମାନଙ୍କ ମଧ୍ୟରେ ଥିବା ଶ୍ରଦ୍ଧାର ବାଚକ। ସେହି ଶ୍ରଦ୍ଧା ଶାସ୍ତ୍ରରୁ ଉତ୍ପନ୍ନ ହୁଏ ନାହିଁ; ସ୍ୱଭାବରୁ ହୋଇଥାଏ; ତେଣୁ ତାହାକୁ ସ୍ୱଭାବଜା କହନ୍ତି। ଯେଉଁ ଶ୍ରଦ୍ଧା ଶାସ୍ତ୍ର-ଶ୍ରବଣପଠନାଦିରୁ ହୁଏ, ତାହାକୁ ଶାସ୍ତ୍ରଜା କହନ୍ତି ଏବଂ ଯାହା ପୂର୍ବଜନ୍ମମାନଙ୍କର ତଥା ଇହଜନ୍ମର କର୍ମମାନଙ୍କ ସଂସ୍କାରରୁ ସ୍ୱାଭାବିକ ଉତ୍ପନ୍ନ ହୁଏ, ତାହାକୁ ସ୍ୱଭାବଜା କୁହାଯାଏ।

**ପ୍ରଶ୍ନ –** ସାତ୍ତ୍ୱିକୀ, ରାଜସୀ, ତାମସୀ ଏବଂ ତ୍ରିବିଧା ସହିତ ଇତି ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହା ସହିତ ଇତି ପଦ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଏହି ଶ୍ରଦ୍ଧା ସାତ୍ତ୍ୱିକୀ, ରାଜସୀ ଏବଂ ତାମସୀ – ଏପରି ତିନିପ୍ରକାର ହିଁ ହୁଏ।

## ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ।
## ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ॥ ୩ ॥

**ଅନ୍ୱୟ –** ଭାରତ = ହେ ଭାରତ; ସର୍ବସ୍ୟ = ସମସ୍ତ ମନୁଷ୍ୟଙ୍କର; ଶ୍ରଦ୍ଧା = ଶ୍ରଦ୍ଧା; ସତ୍ତ୍ୱାନୁରୂପା = ସେମାନଙ୍କ ଅନ୍ତଃକରଣର ଅନୁରୂପ; ଭବତି = ହୁଏ; ଅୟମ୍ = ଏହି; ପୁରୁଷଃ = ପୁରୁଷ; ଶ୍ରଦ୍ଧାମୟଃ = ଶ୍ରଦ୍ଧାମୟ; (ଅତଃ) = ଏଣୁ; ଯଃ = ଯେଉଁ ପୁରୁଷ; ଯଚ୍ଛ୍ରଦ୍ଧଃ = ଯେପରି ଶ୍ରଦ୍ଧାଯୁକ୍ତ; ସଃ = ସେ ସ୍ୱୟଂ; ଏବ = ମଧ୍ୟ; ସଃ = ସେପରି (ଅଟେ)।

**ହେ ଭାରତ! ସବୁ ମନୁଷ୍ୟଙ୍କ ଶ୍ରଦ୍ଧା ସେମାନଙ୍କ ଅନ୍ତଃକରଣର ଅନୁରୂପ ହୁଏ। ଏହି ପୁରୁଷ ଶ୍ରଦ୍ଧାମୟ ଅଟେ। ଏଣୁ ଯେଉଁ ପୁରୁଷ ଯେପରି ଶ୍ରଦ୍ଧାବାନ୍, ସେ ସ୍ୱୟଂ ମଧ୍ୟ ସେପରି ହିଁ ଅଟେ॥ ୩ ॥**

**ପ୍ରଶ୍ନ—** 'ସବୁ ମନୁଷ୍ୟଙ୍କ' କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ପୂର୍ବଶ୍ଳୋକରେ ଯେଉଁ ଦେହାଭିମାନୀ ମନୁଷ୍ୟମାନଙ୍କ ପାଇଁ **ଦେହିନାମ୍** ପଦ ଆସିଛି, ସେହିମାନଙ୍କ ପାଇଁ **ସର୍ବସ୍ୟ** ପଦ ଆସିଛି। ଅର୍ଥାତ୍ ଏଠାରେ ଦେହାଭିମାନୀ ସମସ୍ତ ସାଧାରଣ ମନୁଷ୍ୟମାନଙ୍କ ସମ୍ବନ୍ଧରେ କୁହାଯାଇଛି। କାରଣ ଏହି ଶ୍ଳୋକରେ ଆଗକୁ କୁହାଯାଇଛି ଯେ, ଯାହାର ଯେପରି ଶ୍ରଦ୍ଧା, ସେ ସ୍ୱୟଂ ମଧ୍ୟ ସେପରି ହୁଏ। ତେଣୁ ଏହା ଦେହାଭିମାନୀ ଜୀବଙ୍କ ପାଇଁ ହିଁ ପ୍ରଯୁଜ୍ୟ ହୋଇଛି; ଗୁଣାତୀତ ଜ୍ଞାନୀଙ୍କ ପାଇଁ ନୁହେଁ।

**ପ୍ରଶ୍ନ—** ପୂର୍ବଶ୍ଳୋକରେ ଶ୍ରଦ୍ଧାକୁ **ସ୍ୱଭାବଜା**— ସ୍ୱଭାବରୁ ଉତ୍ପନ୍ନ ବୋଲି କୁହାଯାଇଛି ଏବଂ ଏଠାରେ **ସତ୍ତ୍ୱାନୁରୂପା**— ଅନ୍ତଃକରଣର ଅନୁରୂପ ବୋଲି କୁହାଯାଇଛି।— ଏହାର ଅଭିପ୍ରାୟ କ'ଣ ?

**ଉତ୍ତର—** ମନୁଷ୍ୟ ସାତ୍ତ୍ୱିକ, ରାଜସ ଓ ତାମସ— ଯେପରି କର୍ମ କରେ, ତା'ର ସ୍ୱଭାବ ସେପରି ହିଁ ହୁଏ ଏବଂ ସ୍ୱଭାବ ଅନ୍ତଃକରଣରେ ରହେ; ଏଣୁ ସେ ଯେପରି ସ୍ୱଭାବଯୁକ୍ତ, ସେପରି ଅନ୍ତଃକରଣଯୁକ୍ତ ବୋଲି ଧରାଯାଏ। ଏଣୁ ତାହାକୁ 'ସ୍ୱଭାବରୁ ଉତ୍ପନ୍ନ' ବୋଲି କୁହାଯାଉ, କି 'ଅନ୍ତଃକରଣର ଅନୁରୂପ' ବୋଲି କୁହାଯାଉ, ଉଭୟ କଥା ଏକ।

**ପ୍ରଶ୍ନ—** 'ପୁରୁଷ'କୁ ତ 'ପର' ଅର୍ଥାତ୍ ଗୁଣମାନଙ୍କରୁ ସର୍ବଥା ଅତୀତ ବୋଲି କୁହାଯାଇଛି (୧୩/୨୨), ପୁଣି ଏଠାରେ ତାହାକୁ 'ଶ୍ରଦ୍ଧାମୟ' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** 'ପୁରୁଷ'ର ବାସ୍ତବିକ ସ୍ୱରୂପ ତ ଗୁଣାତୀତ ହିଁ ଅଟେ; କିନ୍ତୁ ଏଠାରେ ସେହି ପୁରୁଷର କଥା କୁହାଯାଇଛି, ଯେ କି ପ୍ରକୃତିରେ ସ୍ଥିତ ଏବଂ ପ୍ରକୃତିରୁ ଉତ୍ପନ୍ନ ତିନିଗୁଣଦ୍ୱାରା ବନ୍ଧା ହୋଇ ରହିଛି; କାରଣ ଗୁଣହେତୁକ ପ୍ରଭେଦ **ପ୍ରକୃତିସ୍ଥ ପୁରୁଷ**ଠାରେ ହିଁ ସମ୍ଭବ। ଯେ ଗୁଣମାନଙ୍କରୁ ଅତୀତ, ତାଙ୍କ ଠାରେ ତ ଗୁଣମାନଙ୍କର ପ୍ରକାର କଳ୍ପନା କରାଯାଇ ନ ପାରେ। ଏଠାରେ ଭଗବାନ୍ କହିଛନ୍ତି ଯେ, ଯାହାର ଅନ୍ତଃକରଣ ଅନୁରୂପ ଯେପରି ଶ୍ରଦ୍ଧା ଅର୍ଥାତ୍ ସାତ୍ତ୍ୱିକୀ, ରାଜସୀ ବା ତାମସୀ ଶ୍ରଦ୍ଧା ହୁଏ, ତା'ର ନିଷ୍ଠା ବା ସ୍ଥିତି ମଧ୍ୟ ସେପରି ହିଁ ହୁଏ। ଅର୍ଥାତ୍ ଯାହାଙ୍କର ଶ୍ରଦ୍ଧା ଯେପରି, ତାଙ୍କର ସ୍ୱରୂପ ସେପରି। ଏହାଦ୍ୱାରା ଭଗବାନ୍ ଶ୍ରଦ୍ଧା, ନିଷ୍ଠା ଏବଂ ସ୍ୱରୂପର ଏକତ୍ୱ ଦର୍ଶାଇ 'ତାଙ୍କର ନିଷ୍ଠା କେଉଁପ୍ରକାର ?' ବୋଲି ଅର୍ଜୁନ ଯେଉଁ ପ୍ରଶ୍ନ ପଚାରିଥିଲେ ତାହାର ଉତ୍ତର ଦେଇଛନ୍ତି।

**ସମ୍ବନ୍ଧ—** ମନୁଷ୍ୟମାନଙ୍କ ନିଷ୍ଠାର ସ୍ୱରୂପ ସେମାନଙ୍କ ଶ୍ରଦ୍ଧାର ଅନୁରୂପ ହୋଇଥାଏ ବୋଲି କୁହାଗଲା। ତାହା ଶୁଣି କିଏ କେଉଁ ନିଷ୍ଠାର ଲୋକ, ତାହା କିପରି ଚିହ୍ନିବା ବୋଲି ଜାଣିବାକୁ ଇଚ୍ଛା ହୋଇପାରେ। ଏହା ଉପରେ ଭଗବାନ୍ କହୁଛନ୍ତି—

**ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ।**
**ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ॥ ୪ ॥**

**ଅନ୍ୱୟ—** **ସାତ୍ତ୍ୱିକାଃ** = ସାତ୍ତ୍ୱିକ ଲୋକେ; **ଦେବାନ୍** = ଦେବତାମାନଙ୍କୁ; **ଯଜନ୍ତେ** = ପୂଜା କରନ୍ତି; **ରାଜସାଃ** = ରାଜସ ଲୋକେ; **ଯକ୍ଷରକ୍ଷାଂସି** = ଯକ୍ଷ ଓ ରାକ୍ଷସମାନଙ୍କୁ (ତଥା); **ଅନ୍ୟେ** = ଅନ୍ୟ; **ତାମସାଃ** = ତାମସ; **ଜନାଃ** = ଲୋକେ; **ପ୍ରେତାନ୍** = ପ୍ରେତମାନଙ୍କୁ; **ଚ** = ଏବଂ; **ଭୂତଗଣାନ୍** = ଭୂତଗଣଙ୍କୁ; **ଯଜନ୍ତେ** = ପୂଜା କରନ୍ତି।

**ସାତ୍ତ୍ୱିକ ଲୋକେ ଦେବତାମାନଙ୍କୁ, ରାଜସ ଲୋକେ ଯକ୍ଷ ଓ ରାକ୍ଷସମାନଙ୍କୁ ଏବଂ ତାମସ ଲୋକେ ପ୍ରେତ ଓ ଭୂତମାନଙ୍କୁ ପୂଜା କରନ୍ତି॥ ୪ ॥**

**ପ୍ରଶ୍ନ —** ସାତ୍ତ୍ୱିକ ପୁରୁଷମାନେ ଦେବତାମାନଙ୍କୁ ପୂଜା କରନ୍ତି ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର —** କାର୍ଯ୍ୟ ଦେଖିଲେ କାରଣର ପରିଚୟ ମିଳିଥାଏ — ଏହି ନ୍ୟାୟରେ ଯେହେତୁ ଦେବତାମାନେ ସାତ୍ତ୍ୱିକ, ତେଣୁ ସେମାନଙ୍କୁ ପୂଜା କରୁଥିବା ଲୋକ ମଧ୍ୟ ସାତ୍ତ୍ୱିକ ହୋଇଥିବେ। 'ଯେପରି ଦିଅଁ ସେପରି ପୂଜାରୀ' ବୋଲି ଯେଉଁ ଲୋକୋକ୍ତି ରହିଛି, ସେହି ଅନୁସାରେ କୁହାଯାଇଛି ଯେ, ଦେବତାମାନଙ୍କୁ ପୂଜା କରୁଥିବା ଲୋକ ସାତ୍ତ୍ୱିକ ଅର୍ଥାତ୍ ସାତ୍ତ୍ୱିକୀନିଷ୍ଠାଯୁକ୍ତ। ଦେବତା ଅର୍ଥ ଏଠାରେ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ, ଇନ୍ଦ୍ର, ବରୁଣ, ଯମ, ଅଶ୍ୱିନୀକୁମାର ଏବଂ ବିଶ୍ୱେଦେବ ଆଦି ଶାସ୍ତ୍ରୋକ୍ତ ଦେବତା ବୋଲି ବୁଝିବାକୁ ହେବ।

ଏଠାରେ 'ଦେବପୂଜା-କ୍ରିୟା ସାତ୍ତ୍ୱିକ ହୋଇଥିବାରୁ ତାହା କରୁଥିବା ଲୋକଙ୍କୁ ସାତ୍ତ୍ୱିକ ବୋଲି କୁହାଗଲା; କିନ୍ତୁ ପୂର୍ଣ୍ଣ ସାତ୍ତ୍ୱିକ ବ୍ୟକ୍ତି ତ କେବଳ ସେ ହିଁ ଅଟନ୍ତି, ଯେ ନିଷ୍କାମଭାବରେ ସାତ୍ତ୍ୱିକ କ୍ରିୟା କରନ୍ତି।

**ପ୍ରଶ୍ନ —** 'ରାଜସ ପୁରୁଷମାନେ ଯକ୍ଷ-ରାକ୍ଷସମାନଙ୍କୁ ପୂଜା କରନ୍ତି' — ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର —** ଦେବତାମାନଙ୍କୁ ପୂଜା କରୁଥିବା ଲୋକେ ଯେପରି ସାତ୍ତ୍ୱିକ, ସେହି ନ୍ୟାୟରେ ଯକ୍ଷ-ରାକ୍ଷସମାନଙ୍କୁ ପୂଜା କରୁଥିବା ଲୋକେ ରାଜସ ବା ରାଜସୀନିଷ୍ଠାଯୁକ୍ତ ବୋଲି ଜଣାଇବାକୁ ଏଠାରେ ଏପରି କୁହାଯାଇଛି। ଯକ୍ଷ ଅର୍ଥ କୁବେରାଦି ଏବଂ ରାକ୍ଷସ ଅର୍ଥ ରାହୁକେତୁ ଆଦି ବୋଲି ବୁଝିବା ଉଚିତ।

**ପ୍ରଶ୍ନ —** 'ତାମସ ମନୁଷ୍ୟମାନେ ପ୍ରେତ ଓ ଭୂତଗଣଙ୍କୁ ପୂଜା କରନ୍ତି' — ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର —** ଏହାଦ୍ୱାରା କୁହାଯାଉଛି ଯେ, ଭୂତ, ପ୍ରେତ, ପିଶାଚମାନଙ୍କୁ ପୂଜା କରୁଥିବା ଲୋକେ ତାମସୀ-ନିଷ୍ଠାଯୁକ୍ତ। ମରିବା ପରେ ପାପକର୍ମବଶତଃ ଯେଉଁମାନେ ଭୂତପ୍ରେତାଦି ବାୟୁପ୍ରଧାନ ଦେହ ପାଆନ୍ତି, ସେମାନଙ୍କୁ ଭୂତ-ପ୍ରେତ କହନ୍ତି।

**ପ୍ରଶ୍ନ —** ଏହି ଲୋକମାନଙ୍କର କି ଗତି ହୁଏ ?

**ଉତ୍ତର —** 'ଯେପରି ଇଷ୍ଟ, ସେପରି ଗତି' ବୋଲି କଥା ରହିଛି। ଦେବତାମାନଙ୍କୁ ପୂଜା କରୁଥିବା ଲୋକେ ଦେବଗତି ପାଆନ୍ତି, ଯକ୍ଷ-ରାକ୍ଷସମାନଙ୍କୁ ପୂଜା କରୁଥିବା ଲୋକେ ଯକ୍ଷରାକ୍ଷସଙ୍କ ଗତି ପାଆନ୍ତି, ଭୂତପ୍ରେତମାନଙ୍କୁ ପୂଜା କରୁଥିବା ଲୋକେ ଭୂତପ୍ରେତମାନଙ୍କ ପରି ରୂପ, ଗୁଣ ଓ ସ୍ଥିତି ଆଦି ପାଆନ୍ତି। ନବମ ଅଧ୍ୟାୟର ପଚିଶ ଶ୍ଳୋକରେ ଭଗବାନ୍ **ଯାନ୍ତି ଦେବବ୍ରତା ଦେବାନ୍, ଭୂତାନି ଯାନ୍ତି ଭୂତେଜ୍ୟାଃ** ଆଦିରେ ଏହି ସିଦ୍ଧାନ୍ତ କହିସାରିଛନ୍ତି।

*ସମ୍ବନ୍ଧ — ଜାଣି ନ ଥିବାରୁ ଶାସ୍ତ୍ରବିଧି ତ୍ୟାଗ କରି ତ୍ରିବିଧ ସ୍ୱାଭାବିକ ଶ୍ରଦ୍ଧା ସହିତ ପୂଜା କରୁଥିବା ଲୋକମାନଙ୍କ ବର୍ଣ୍ଣନା କରାଗଲା; କିନ୍ତୁ ଶାସ୍ତ୍ରବିଧି ତ୍ୟାଗ କରୁଥିବା ଅଶ୍ରଦ୍ଧାଳୁ ଲୋକମାନଙ୍କ ବିଷୟରେ କିଛି କୁହାଯାଇ ନାହିଁ। ଏଣୁ ଜିଜ୍ଞାସା ଉତ୍ପନ୍ନ ହୁଏ, 'ଯେଉଁମାନଙ୍କର ଶ୍ରଦ୍ଧା ନାହିଁ, ଯେଉଁମାନେ ଶାସ୍ତ୍ରବିଧି ମଧ୍ୟ ମାନନ୍ତି ନାହିଁ ଏବଂ ଘୋର ତପ ଆଦି କର୍ମ କରନ୍ତି, ସେମାନେ କେଉଁ ଶ୍ରେଣୀର ?' ଏହା ଉପରେ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ କହୁଛନ୍ତି—*

**ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋ ଜନାଃ।**
**ଦମ୍ଭାହଙ୍କାରସଂଯୁକ୍ତାଃ କାମରାଗବଲାନ୍ୱିତାଃ ॥ ୫ ॥**

**ଅନ୍ୱୟ —** **ଯେ, ଜନାଃ** = ଯେଉଁମାନେ; **ଅଶାସ୍ତ୍ରବିହିତମ୍** = ଶାସ୍ତ୍ରବିଧିରହିତ (କେବଳ ମନଃକଳ୍ପିତ); **ଘୋରମ୍** = ଘୋର; **ତପଃ** = ତପ; **ତପ୍ୟନ୍ତେ** = ଆଚରଣ କରନ୍ତି (ତଥା); **ଦମ୍ଭାହଙ୍କାରସଂଯୁକ୍ତାଃ** = ଦମ୍ଭ ଓ ଅହଙ୍କାରରେ ଯୁକ୍ତ (ଏବଂ); **କାମରାଗବଲାନ୍ୱିତାଃ** = କାମନା, ଆସକ୍ତି ଓ ବଳର ଅଭିମାନରେ ମଧ୍ୟ ଜଡ଼ିତ।

**ଯେଉଁମାନେ ଶାସ୍ତ୍ରବିଧିରହିତ କେବଳ ମନଃକଳ୍ପିତ ଘୋର ତପ ଆଚରଣ କରନ୍ତି ତଥା ଦମ୍ଭ ଓ ଅହଙ୍କାରରେ ଯୁକ୍ତ ହୋଇ କାମନା, ଆସକ୍ତି ଓ ବଳର ଅଭିମାନରେ ମଧ୍ୟ ଜଡ଼ିତ ରହନ୍ତି - - - ॥ ୫ ॥**

**ପ୍ରଶ୍ନ —** 'ଶାସ୍ତ୍ରବିଧିରହିତ ଘୋର ତପ' କେଉଁ ତପକୁ କହନ୍ତି ?

**ଉତ୍ତର —** ଯେଉଁ ତପ କରିବାର ବିଧାନ ଶାସ୍ତ୍ରମାନଙ୍କରେ ନାହିଁ, ଯେଉଁଥିରେ ଶାସ୍ତ୍ରବିଧି ପାଳନ

କରାଯାଏ ନାହିଁ, ଯାହାଦ୍ୱାରା ନାନାପ୍ରକାର ଆଡ଼ମ୍ବରରେ ଶରୀର ଓ ଇନ୍ଦ୍ରିୟମାନଙ୍କୁ କଷ୍ଟ ଦିଆଯାଏ ଏବଂ ଯାହାର ସ୍ୱରୂପ ବଡ଼ ଭୟାନକ, ସେପରି ତପ ହିଁ ଶାସ୍ତ୍ରବିଧିରହିତ ଘୋର ତପ।

**ପ୍ରଶ୍ନ –** ଏପରି ତପ କରୁଥିବା ଲୋକଙ୍କୁ ଦମ୍ଭ ଓ ଅହଙ୍କାରଯୁକ୍ତ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏପରି ଶାସ୍ତ୍ରବିରୁଦ୍ଧ ଭୟାନକ ତପ କରୁଥିବା ମନୁଷ୍ୟମାନଙ୍କ ଠାରେ ଶ୍ରଦ୍ଧା ନ ଥାଏ। ସେମାନେ ଲୋକମାନଙ୍କୁ ଠକିବାପାଇଁ ଏବଂ ସେମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବାପାଇଁ ଆଡ଼ମ୍ବର ଦେଖାଉଥିଅନ୍ତି ତଥା ସଦା ଅହଙ୍କାରରେ ଫୁଲି ରହନ୍ତି। ତେଣୁ ସେମାନଙ୍କୁ ଦମ୍ଭ ଏବଂ ଅହଙ୍କାରରେ ଯୁକ୍ତ ବୋଲି କୁହାଯାଇଛି।

**ପ୍ରଶ୍ନ –** ଏପରି ଲୋକଙ୍କୁ 'କାମନା, ଆସକ୍ତି ଏବଂ ବଳର ଅଭିମାନରେ ଯୁକ୍ତ' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ସେମାନଙ୍କର ଭୋଗରେ ବିଶେଷ ଆସକ୍ତି ଥାଏ। ତେଣୁ ସେମାନଙ୍କ ଚିତ୍ତରେ ନିରନ୍ତର ସେହି ଭୋଗକାମନା ବଢ଼ିଚାଲିଥାଏ। ସେମାନେ ଭାବନ୍ତି, "ଆମେ ଯାହାକିଛି ଇଚ୍ଛା କରିବୁ, ତାହା ପ୍ରାପ୍ତ କରିନେବୁ, ଆମ ଭିତରେ ଅପାର ବଳ ରହିଛି, ଆମ ଶକ୍ତି ଆଗରେ ଆଉ କାହାର ଶକ୍ତି ହେବ ଯେ, ସେ ଆମ କାମରେ ବାଧା ଦେବ।" ତେଣୁ ସେମାନଙ୍କୁ କାମନା, ଆସକ୍ତି ଓ ବଳର ଅଭିମାନରେ ଯୁକ୍ତ ବୋଲି କୁହାଯାଇଛି।

**କର୍ଶୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।**
**ମାଂ ଚୈବାନ୍ତଃଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ ॥ ୬ ॥**

ଅନ୍ୱୟ – **ଶରୀରସ୍ଥମ୍** = ଶରୀରରୂପରେ ଅବସ୍ଥିତ; **ଭୂତଗ୍ରାମମ୍** = ଭୂତସମୁଦାୟକୁ; **ଚ** = ଏବଂ; **ଅନ୍ତଃଶରୀରସ୍ଥମ୍** = ଅନ୍ତଃକରଣରେ ସ୍ଥିତ; **ମାମ୍** = ମୋତେ (ପରମାତ୍ମାଙ୍କୁ); **ଏବ** = ମଧ୍ୟ; **କର୍ଶୟନ୍ତଃ** = କୃଶ କରାଉଥିବା; **ତାନ୍** = ସେହି; **ଅଚେତସଃ** = ଅଜ୍ଞାନୀମାନଙ୍କୁ (ତୁମେ); **ଆସୁରନିଶ୍ଚୟାନ୍** = ଆସୁରସ୍ୱଭାବ ଧରିଥିବା ଲୋକ (ବୋଲି); **ବିଦ୍ଧି** = ଜାଣ।

**ଶରୀରରୂପରେ ଅବସ୍ଥିତ ଭୂତସମୁଦାୟକୁ ଏବଂ ଅନ୍ତଃକରଣରେ ସ୍ଥିତ ମୋତେ (ପରମାତ୍ମାଙ୍କୁ) ମଧ୍ୟ କୃଶ କରାଉଥିବା ସେହି ଅଜ୍ଞାନୀମାନଙ୍କୁ ଆସୁରସ୍ୱଭାବ ଧରିଥିବା ଲୋକ ବୋଲି ଜାଣ॥ ୬ ॥**

**ପ୍ରଶ୍ନ –** ଶରୀରରୂପରେ ସ୍ଥିତ ଭୂତସମୁଦାୟର ଅର୍ଥ କ'ଣ ?

**ଉତ୍ତର –** ପଞ୍ଚମହାଭୂତ, ମନ, ବୁଦ୍ଧି, ଅହଙ୍କାର, ଦଶ ଇନ୍ଦ୍ରିୟ ଏବଂ ପାଞ୍ଚ ଇନ୍ଦ୍ରିୟର ବିଷୟ– ଏହି ତେଇଶ ତତ୍ତ୍ୱସମୂହର ନାମ **ଭୂତସମୁଦାୟ**। ଏହାର ବର୍ଣ୍ଣନା ତେର ଅଧ୍ୟାୟର ପଞ୍ଚମ ଶ୍ଳୋକରେ କ୍ଷେତ୍ର ନାମରେ କରାଯାଇଛି।

**ପ୍ରଶ୍ନ –** 'ସେହି ଲୋକମାନେ ଭୂତସମୁଦାୟକୁ ଏବଂ ଅନ୍ତଃକରଣରେ ସ୍ଥିତ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ମଧ୍ୟ କୃଶ କରିଦିଅନ୍ତି' – ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଶାସ୍ତ୍ରର ବିପରୀତ ମନମୁଖି ଘୋର ତପ କରୁଥିବା ଲୋକେ ନାନାପ୍ରକାର ଭୟାନକ ଆଚରଣଦ୍ୱାରା ଉପରୋକ୍ତ ଭୂତସମୁଦାୟକୁ ଅର୍ଥାତ୍ ଶରୀରକୁ କ୍ଷୀଣ ଓ ଦୁର୍ବଳ କରିଦିଅନ୍ତି, କେବଳ ସେତିକି ନୁହେଁ; ସେମାନେ ନିଜର ଘୋର ଆଚରଣଦ୍ୱାରା ଅନ୍ତଃକରଣରେ ସ୍ଥିତ ପରମାତ୍ମାଙ୍କୁ ମଧ୍ୟ କଷ୍ଟ ଦିଅନ୍ତି। ଯେହେତୁ ସମସ୍ତଙ୍କ ହୃଦୟରେ ଆତ୍ମରୂପରେ ପରମାତ୍ମା ବିଦ୍ୟମାନ, ତେଣୁ ନିଜର ଆତ୍ମାକୁ କିମ୍ବା ଅନ୍ୟ କାହାର ଆତ୍ମାକୁ କଷ୍ଟ ଦେବାର ଅର୍ଥ ପରମାତ୍ମାଙ୍କୁ ହିଁ କଷ୍ଟ ଦେବା। ତେଣୁ ସେମାନେ ଭୂତସମୁଦାୟକୁ ଏବଂ ପରମାତ୍ମାଙ୍କୁ କଷ୍ଟ ଦିଅନ୍ତି ବୋଲି କୁହାଯାଇଛି।

**ପ୍ରଶ୍ନ – ଅଚେତସଃ** ପଦର ଅର୍ଥ କ'ଣ ?

**ଉତ୍ତର –** ଏଠାରେ **ଅଚେତସଃ** ପଦଟି ହେଉଛି ଶାସ୍ତ୍ରର ପ୍ରତିକୂଳ ଆଚରଣ କରୁଥିବା, ବୋଧଶକ୍ତିରହିତ, ଆଚରଣଦୋଷଯୁକ୍ତ ମୂଢ଼ ମନୁଷ୍ୟମାନଙ୍କର ବାଚକ।

**ପ୍ରଶ୍ନ –** ଏପରି ମନୁଷ୍ୟମାନଙ୍କୁ ଆସୁର-ନିଶ୍ଚୟୀ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଶାସ୍ତ୍ରବିଧିରହିତ ଘୋର ତପ କରୁଥିବା

ଉପରୋକ୍ତ ଦମ୍ଭୀ ଓ ଅଭିମାନୀ ମନୁଷ୍ୟମାନେ ଷୋଡଶ ଅଧ୍ୟାୟରେ ବର୍ଣ୍ଣିତ ଆସୁରୀସମ୍ପଦଯୁକ୍ତ ହିଁ ଅଟନ୍ତି– ଏହା ଦେଖାଇବା ପାଇଁ ସେମାନଙ୍କୁ ଆସୁର-ନିଶ୍ଚୟୀ ଥିବା ଲୋକ ବୋଲି କୁହାଯାଇଛି।

**ସମ୍ବନ୍ଧ–** *ସ୍ୱଭାବରୁ ଉତ୍ପନ୍ନ ତ୍ରିବିଧ ଶ୍ରଦ୍ଧାଯୁକ୍ତ ଲୋକଙ୍କର ତଥା ଘୋର ତପ କରୁଥିବା ଲୋକଙ୍କର ଲକ୍ଷଣ କହିସାରି ଭଗବାନ୍ ବର୍ତ୍ତମାନ ସାତ୍ତ୍ୱିକଙ୍କୁ ଗ୍ରହଣ କରିବା ଏବଂ ରାଜସ ଓ ତାମସଙ୍କୁ ତ୍ୟାଗ କରିବା ଉଦ୍ଦେଶ୍ୟରେ ସାତ୍ତ୍ୱିକ, ରାଜସ, ତାମସ— ଏପରି ତିନି ତିନିପ୍ରକାରର ଆହାର, ଯଜ୍ଞ, ତପ ଓ ଦାନ ବିଷୟ ଶୁଣିବାନିମନ୍ତେ ଅର୍ଜୁନଙ୍କୁ ଆଜ୍ଞା ଦେଉଛନ୍ତି–*

**ଆହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ।**
**ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ॥ ୭ ॥**

ଅନ୍ୱୟ– **ଆହାରଃ** = ଆହାର (ଖାଦ୍ୟ); **ଅପି** = ମଧ୍ୟ; **ସର୍ବସ୍ୟ** = ସମସ୍ତଙ୍କର (ନିଜ ନିଜର ପ୍ରକୃତି ଅନୁସାର); **ତ୍ରିବିଧଃ** = ତିନିପ୍ରକାର; **ପ୍ରିୟଃ** = ପ୍ରିୟ; **ଭବତି** = ହୁଏ; **ତୁ** = ଏବଂ; **ତଥା** = ସେହିପରି; **ଯଜ୍ଞଃ** = ଯଜ୍ଞ; **ତପଃ** = ତପ (ଏବଂ); **ଦାନମ୍** = ଦାନ (ମଧ୍ୟ ତିନି ତିନିପ୍ରକାରର ହୁଏ); **ତେଷାମ୍** = ସେଗୁଡ଼ିକର; **ଇମମ୍** = ଏହି (ପୃଥକ୍ ପୃଥକ୍); **ଭେଦମ୍** = ବିଭାଗକୁ; **ଶୃଣୁ** = (ତୁମେ ମୋଠାରୁ) ଶୁଣ।

**ଆହାର (ଖାଦ୍ୟ) ମଧ୍ୟ ଲୋକଙ୍କ ପ୍ରକୃତି ଅନୁସାରେ ତିନିପ୍ରକାର ପ୍ରିୟ ହୁଏ ଏବଂ ଯଜ୍ଞ, ତପ ଓ ଦାନ ମଧ୍ୟ ସେହିପରି ତିନି ତିନିପ୍ରକାରର ହୁଏ। ସେଗୁଡ଼ିକର ଏହି ପୃଥକ୍ ପୃଥକ୍ ବିଭାଗକୁ ତୁମେ ମୋଠାରୁ ଶୁଣ॥ ୭ ॥**

**ପ୍ରଶ୍ନ–** ଅପି ପଦର ଭାବ କ'ଣ ?

**ଉତ୍ତର–** ଅପି ପଦଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଶ୍ରଦ୍ଧା ଓ ପୂଜା ଯେପରି ସାତ୍ତ୍ୱିକ, ରାଜସ ଓ ତାମସଭେଦରେ ତିନି ତିନିପ୍ରକାର, ଆହାର ମଧ୍ୟ ସେହିପରି ତିନିପ୍ରକାର।

**ପ୍ରଶ୍ନ–** ସର୍ବସ୍ୟ ପଦର ଅର୍ଥ କ'ଣ ?

**ଉତ୍ତର–** ସର୍ବସ୍ୟ ପଦ ଏଠାରେ ମନୁଷ୍ୟମାତ୍ରର ବାଚକ; କାରଣ ସମସ୍ତ ମନୁଷ୍ୟ ଆହାର କରନ୍ତି; ଏହି ପ୍ରକରଣ ମଧ୍ୟ ମନୁଷ୍ୟମାନଙ୍କର ହିଁ ଅଟେ।

**ପ୍ରଶ୍ନ–** ଆହାରାଦି ସମ୍ବନ୍ଧରେ ଅର୍ଜୁନ କିଛି ପଚାରି ନ ଥିଲେ; ବିନା ପ୍ରଶ୍ନରେ ଭଗବାନ୍ ଆହାରାଦି ବିଷୟରେ କାହିଁକି କହିଲେ ?

**ଉତ୍ତର–** ମନୁଷ୍ୟ ଯେପରି ଆହାର କରେ, ତା'ର ଅନ୍ତଃକରଣ ସେପରି ହୁଏ ଏବଂ ଶ୍ରଦ୍ଧା ମଧ୍ୟ ଅନ୍ତଃକରଣର ଅନୁରୂପ ହୁଏ। ଆହାର ଶୁଦ୍ଧ ହେଲେ, ପରିଣାମସ୍ୱରୂପ ଅନ୍ତଃକରଣ ମଧ୍ୟ ଶୁଦ୍ଧ ହେବ। **'ଆହାରଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ'** (ଛାନ୍ଦୋଗ୍ୟ ଉ. ୭/୨୬/୨)। ଅନ୍ତଃକରଣଶୁଦ୍ଧିଦ୍ୱାରା ବିଚାର, ଭାବ, ଶ୍ରଦ୍ଧାଦିଗୁଣ ଏବଂ କ୍ରିୟାଗୁଡ଼ିକ ଶୁଦ୍ଧ ହେବ। ଅତଏବ ଏହି ପ୍ରସଙ୍ଗରେ ଆହାରର ବିବେଚନ କରିବା ଆବଶ୍ୟକ। ଦ୍ୱିତୀୟରେ ଯଜନ ଅର୍ଥାତ୍ ଦେବାଦିଙ୍କ ପୂଜା ସମସ୍ତେ କରନ୍ତି ନାହିଁ; କିନ୍ତୁ ଆହାର ତ ସମସ୍ତେ କରନ୍ତି। ଦେବତା, ଯକ୍ଷ-ରାକ୍ଷସ ବା ଭୂତ-ପ୍ରେତମାନଙ୍କ ମଧ୍ୟରୁ ଯେଉଁ ଲୋକେ ଯାହାଙ୍କୁ ପୂଜା କରନ୍ତି, ସେମାନେ ଯେପରି ସେହି ଅନୁସାରେ ସାତ୍ତ୍ୱିକ, ରାଜସ ଏବଂ ତାମସଗୁଣଯୁକ୍ତ ବୋଲି ବୁଝାଯାଆନ୍ତି, ଠିକ୍ ସେହିପରି ସାତ୍ତ୍ୱିକ, ରାଜସ ଏବଂ ତାମସ ଆହାର ମଧ୍ୟରୁ ଯେଉଁମାନଙ୍କୁ ଯେଉଁ ଆହାର ପ୍ରିୟ, ସେମାନେ ସେହି ଗୁଣଯୁକ୍ତ ହୋଇଥାଆନ୍ତି। ଶ୍ଲୋକରେ **ପ୍ରିୟଃ** ପଦ ଦେଇ ଏହି ଭାବଟି ବିଶେଷରୂପେ ସୂଚିତ କରାଯାଇଛି। ସୁତରାଂ ଆହାର ଦେଖି ମଧ୍ୟ ଲୋକଙ୍କୁ ଚିହ୍ନି ହେବ। ତେଣୁ ଭଗବାନ୍ ଏଠାରେ ଆହାର ତିନିପ୍ରକାର ବୋଲି ବର୍ଣ୍ଣନା କରିଛନ୍ତି ଏବଂ ସାତ୍ତ୍ୱିକ ଆହାର ଗ୍ରହଣ କରିବାକୁ ଓ ରାଜସ-ତାମସ ଆହାର ତ୍ୟାଗ କରିବାକୁ କହିଛନ୍ତି। ଯଜ୍ଞ, ଦାନ ଏବଂ ତପ ବିଷୟରେ ମଧ୍ୟ ଏପରି ବୁଝିନେବା ଉଚିତ।

**ସମ୍ବନ୍ଧ–** *ପୂର୍ବ ଶ୍ଲୋକରେ ଭଗବାନ୍ ତିନି ତିନିପ୍ରକାର ଆହାର, ଯଜ୍ଞ, ତପ ଏବଂ ଦାନର ପାର୍ଥକ୍ୟ ଶୁଣିବାକୁ ଆଜ୍ଞା ଦେଇଛନ୍ତି; ସେହି ଅନୁସାରେ ଏହି ଶ୍ଲୋକରେ ଗ୍ରହଣଯୋଗ୍ୟ ସାତ୍ତ୍ୱିକ ଆହାରର ବର୍ଣ୍ଣନା କରୁଛନ୍ତି–*

**ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ ।**
**ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ॥ ୮ ॥**

**ଅନ୍ୱୟ—** ଆୟୁଃ-ସତ୍ତ୍ୱ-ବଳ-ଆରୋଗ୍ୟ-ସୁଖପ୍ରୀତି-ବିବର୍ଦ୍ଧନାଃ = ଆୟୁ, ବୁଦ୍ଧି, ବଳ, ଆରୋଗ୍ୟ, ସୁଖ ଏବଂ ପ୍ରୀତି-ବର୍ଦ୍ଧନକାରୀ; **ରସ୍ୟାଃ** = ରସଯୁକ୍ତ; **ସ୍ନିଗ୍ଧାଃ** = ସ୍ନିଗ୍ଧ (ଏବଂ); **ସ୍ଥିରାଃ** = ସ୍ଥିର ରହୁଥିବା (ତଥା); **ହୃଦ୍ୟାଃ** = ସ୍ୱଭାବତଃ ମନକୁ ପ୍ରିୟ (ଏପରି); **ଆହାରାଃ** = ଖାଦ୍ୟ; **ସାତ୍ତ୍ୱିକପ୍ରିୟାଃ** = ସାତ୍ତ୍ୱିକ ମନୁଷ୍ୟମାନଙ୍କର ପ୍ରିୟ।

**ଯେଉଁ ଖାଦ୍ୟ ଆୟୁ, ବୁଦ୍ଧି, ବଳ, ଆରୋଗ୍ୟ, ସୁଖ ଏବଂ ପ୍ରୀତିବର୍ଦ୍ଧନକାରୀ, ରସଯୁକ୍ତ, ସ୍ନିଗ୍ଧ ଏବଂ ସ୍ଥିର ରହେ ତଥା ସ୍ୱଭାବତଃ ମନକୁ ପ୍ରିୟ ଲାଗେ, ସେହି ଖାଦ୍ୟ ସାତ୍ତ୍ୱିକ ମନୁଷ୍ୟମାନଙ୍କର ପ୍ରିୟ ॥ ୮ ॥**

**ପ୍ରଶ୍ନ—** 'ଆୟୁ, ବୁଦ୍ଧି, ବଳ, ଆରୋଗ୍ୟ, ସୁଖ ଏବଂ ପ୍ରୀତି-ବର୍ଦ୍ଧନ' ଅର୍ଥ କ'ଣ? ଏବଂ କେଉଁ କେଉଁ ଖାଦ୍ୟ ଏମାନଙ୍କୁ ବଢ଼ାଏ?

**ଉତ୍ତର—** (୧) **ଆୟୁର** ଅର୍ଥ ଆୟୁଷ ବା ଜୀବନ; ଜୀବନକାଳର ବୃଦ୍ଧି ଘଟିବା ହିଁ ଆୟୁ ବଢ଼ିବା।
(୨) **ସତ୍ତ୍ୱ** ଅର୍ଥ ବୁଦ୍ଧି। ବୁଦ୍ଧି ନିର୍ମଳ, ତୀକ୍ଷ୍ଣ ଏବଂ ଯଥାର୍ଥ ତଥା ସୂକ୍ଷ୍ମଦର୍ଶୀ ହେବା ହିଁ ସତ୍ତ୍ୱ ବଢ଼ିବା।
(୩) **ବଳର** ଅର୍ଥ ସତ୍କାର୍ଯ୍ୟରେ ସଫଳତା ଦେଉଥିବା ମାନସିକ ଓ ଶାରୀରିକ **ଶକ୍ତି**। ଏହିପରି ଆନ୍ତରିକ ଏବଂ ବାହ୍ୟ ଶକ୍ତି ବଢ଼ିବା ହିଁ ବଳ ବଢ଼ିବା।
(୪) ମାନସିକ ଏବଂ ଶାରୀରିକ ରୋଗ ନଷ୍ଟ ହେବା ହିଁ **ଆରୋଗ୍ୟବୃଦ୍ଧି**।
(୫) ହୃଦୟରେ ସନ୍ତୋଷ, ସାତ୍ତ୍ୱିକ ପ୍ରସନ୍ନତା ଏବଂ ପୁଷ୍ଟି ହେବା ତଥା ଶରୀରର ମୁଖାଦି ଅଙ୍ଗମାନଙ୍କରେ ଶୁଦ୍ଧଭାବଜନିତ ଆନନ୍ଦର ଚିହ୍ନ ପ୍ରକଟ ହେବା ହିଁ **ସୁଖ**; ଏହା ବଢ଼ିବା ହିଁ ସୁଖ ବଢ଼ିବା।
(୬) ଚିତ୍ତବୃତ୍ତି ପ୍ରେମଭାବସମ୍ପନ୍ନ ହୋଇଯିବା ଏବଂ ଶରୀରରେ ପ୍ରୀତିକର ଚିହ୍ନମାନ ପ୍ରକଟ ହେବା ହିଁ **ପ୍ରୀତିର ବୃଦ୍ଧି**।

ଉପରୋକ୍ତ ଆୟୁ, ବୁଦ୍ଧି ଓ ବଳ ଆଦି ବଢ଼ାଉଥିବା ଯେଉଁ ଦୁଧ, ଘିଅ, ପନିପରିବା, ଫଳ, ଚିନି, ଗହମ, ଯବ, ଚଣା, ମୁଗ ଏବଂ ଚାଉଳ ଆଦି ସାତ୍ତ୍ୱିକ ଖାଦ୍ୟପଦାର୍ଥ ରହିଛି, ସେସବୁକୁ ବୁଝାଇବାପାଇଁ ସାତ୍ତ୍ୱିକ ଖାଦ୍ୟର ଏହି ଲକ୍ଷଣସବୁ କୁହାଯାଇଛି।

**ପ୍ରଶ୍ନ—** ସେହି ଖାଦ୍ୟଗୁଡ଼ିକ କିପରି ହୋଇଥାଏ?

**ଉତ୍ତର—** **ରସ୍ୟାଃ, ସ୍ନିଗ୍ଧାଃ, ସ୍ଥିରାଃ** ଏବଂ **ହୃଦ୍ୟାଃ**— ଏହି ପଦମାନଙ୍କ ଦ୍ୱାରା ଭଗବାନ୍ ଏହି କଥା ବୁଝାଇଦେଇଛନ୍ତି—
(୧) ଦୁଧ, ଚିନି, ଆଦି ରସଯୁକ୍ତ ଖାଦ୍ୟପଦାର୍ଥମାନଙ୍କୁ **ରସ୍ୟାଃ** କହନ୍ତି।
(୨) ଲହୁଣି, ଘିଅ ତଥା ସାତ୍ତ୍ୱିକ ଖାଦ୍ୟପଦାର୍ଥରୁ ବାହାରିଥିବା ତେଲ ଆଦି ସ୍ନେହସାର ପଦାର୍ଥମାନଙ୍କୁ **ସ୍ନିଗ୍ଧାଃ** କହନ୍ତି।
(୩) ଯେଉଁ ଖାଦ୍ୟପଦାର୍ଥମାନଙ୍କ ସାର ବହୁତ ସମୟପର୍ଯ୍ୟନ୍ତ ଶରୀରରେ ସ୍ଥାୟୀ ହୋଇ ରହେ, ସେପରି ଓଜଃ ଉତ୍ପାଦକ ଖାଦ୍ୟପଦାର୍ଥମାନଙ୍କୁ **ସ୍ଥିରାଃ** କହନ୍ତି।
(୪) ଯାହାସବୁ ଦୁର୍ଗନ୍ଧ ବା ଅପବିତ୍ର ନୁହେଁ ତଥା ଯାହା ଦେଖିଲେ ସାତ୍ତ୍ୱିକ ରୁଚି ଉତ୍ପନ୍ନ ହୁଏ, ସେପରି ଖାଦ୍ୟପଦାର୍ଥମାନଙ୍କୁ **ହୃଦ୍ୟାଃ** କହନ୍ତି।

**ପ୍ରଶ୍ନ—** **ଆହାରାଃ** ର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଏବଂ ଚୋଷ୍ୟ— ଏପରି ଚାରିପ୍ରକାର ଖାଦ୍ୟପଦାର୍ଥକୁ ଆହାର କହନ୍ତି। ଏହାର ବ୍ୟାଖ୍ୟା ପନ୍ଦର ଅଧ୍ୟାୟର ଚଉଦ ଶ୍ଲୋକରେ କରାଯାଇଛି। ସେଠାରେ **ଚତୁର୍ବିଧ ଅନ୍ନ** ନାମରେ ଏହାର ବର୍ଣ୍ଣନା ହୋଇଛି।

**ପ୍ରଶ୍ନ—** ଭଗବାନ୍ ପୂର୍ବଶ୍ଲୋକରେ ଆହାରର ତିନିଗୋଟି ପ୍ରକାର ଶୁଣିବାପାଇଁ କହିଥିଲେ, କିନ୍ତୁ ଏଠାରେ **ସାତ୍ତ୍ୱିକପ୍ରିୟାଃ**ଦ୍ୱାରା ଆହାର କରୁଥିବା ମନୁଷ୍ୟମାନଙ୍କର କଥା କିପରି କହିଲେ?

**ଉତ୍ତର—** ଯେଉଁ ମନୁଷ୍ୟ ଯେଉଁ ଗୁଣର, ତାଙ୍କୁ ସେହି ଗୁଣର ଆହାର ପ୍ରିୟ ହୁଏ। ଅତଏବ ମନୁଷ୍ୟମାନଙ୍କର ସ୍ୱଭାବ ବିଷୟ କହିବାବେଳେ ଆହାର ବିଷୟ ସ୍ୱତଃ ଆସିଯାଏ। ମନୁଷ୍ୟର ଭୋଜନ ବିଷୟକ ରୁଚିକୁ ଲକ୍ଷ୍ୟ କରି ତା'ର ସ୍ୱଭାବ ଜାଣିବା ଉଦ୍ଦେଶ୍ୟରେ ଏପରି ପ୍ରୟୋଗ କରାଯାଇଛି।

**ସମ୍ବନ୍ଧ –** ସାତ୍ତ୍ୱିକ ମନୁଷ୍ୟମାନଙ୍କର ଗ୍ରହଣଯୋଗ୍ୟ ଆହାର ବର୍ଣ୍ଣନା କରି ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ ତ୍ୟାଗଯୋଗ୍ୟ ରାଜସ ଏବଂ ତାମସ ଲୋକଙ୍କ ଆହାର କିପରି, ତାହା ବର୍ଣ୍ଣନା କରୁଛନ୍ତି–

**କଟ୍ୱମ୍ଳଲବଣାତ୍ୟୁଷ୍ଣତୀକ୍ଷ୍ଣରୂକ୍ଷବିଦାହିନଃ ।**
**ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ ॥ ୯ ॥**

**ଅନ୍ୱୟ –** **କଟୁ-ଅମ୍ଳ-ଲବଣ-ଅତ୍ୟୁଷ୍ଣ-ତୀକ୍ଷ୍ଣ-ରୂକ୍ଷ-ବିଦାହିନଃ** = ପିତା, ଖଟା, ଲୁଣିଆ, ଅତି ଗରମ, ରାଗ, ଶୁଖିଲା, ଦାହକାରକ (ଏବଂ); **ଦୁଃଖଶୋକାମୟପ୍ରଦାଃ** = ଦୁଃଖ, ଚିନ୍ତା ତଥା ରୋଗ ଉତ୍ପନ୍ନକାରୀ; **ଆହାରାଃ** = ଆହାରଗୁଡ଼ିକ; **ରାଜସସ୍ୟ** = ରାଜସ ଲୋକର; **ଇଷ୍ଟାଃ** = ପ୍ରିୟ ଅଟେ ।

**ପିତା, ଖଟା, ଲୁଣିଆ, ଅତି ଉଷ୍ଣ, ରାଗ, ରୂକ୍ଷ, ଦାହକାରକ ଏବଂ ଦୁଃଖ, ଚିନ୍ତା ତଥା ରୋଗ ଉତ୍ପନ୍ନକାରୀ ଖାଦ୍ୟ ରାଜସ ଲୋକଙ୍କର ପ୍ରିୟ ॥ ୯ ॥**

**ପ୍ରଶ୍ନ –** କେଉଁ କେଉଁ ଖାଦ୍ୟ ପିତା, ଖଟା, ଲୁଣିଆ, ଅତି ଉଷ୍ଣ, ବହୁତ ରାଗ, ରୂକ୍ଷ ଏବଂ ଦାହକାରକ ?

**ଉତ୍ତର –** ନିମ, କଳରା ଆଦି ପଦାର୍ଥ ପିତା । କେତେକ ଲୋକ ଗୋଲମରିଚ ଆଦି ମସଲା ପଦାର୍ଥକୁ କଟୁ ବୋଲି ଧରିନିଅନ୍ତି; କିନ୍ତୁ ଏହି ବର୍ଣ୍ଣନାରେ ତୀକ୍ଷ୍ଣ ଶବ୍ଦ ପୃଥକରୂପେ କୁହାଯାଇଛି । କଟୁ ରସ ତାହାର ଅନ୍ତର୍ଗତ । ତେଣୁ ଏଠାରେ କଟୁ ଶବ୍ଦକୁ ତିକ୍ତ ଅର୍ଥ କରି ତାହା ପିତା ବୋଲି କୁହାଯାଇଛି । ତେନ୍ତୁଳି ଆଦି ପଦାର୍ଥ ଖଟା । କ୍ଷାର ବା ବିଭିନ୍ନପ୍ରକାର ଲୁଣ ଲୁଣିଆ । ଅତି ଗରମ ବସ୍ତୁ ଅତି ଉଷ୍ଣ । ଲଙ୍କାମରିଚ ଆଦି ପଦାର୍ଥ ରାଗ । ଭଜା ହୋଇଥିବା ଚଣା ଆଦି ରୂକ୍ଷ ଏବଂ ସୋରିଷ ଆଦି ପଦାର୍ଥ ଦାହକାରକ ।

**ପ୍ରଶ୍ନ –** **ଦୁଃଖଶୋକାମୟପ୍ରଦାଃ**ର ଭାବ କ'ଣ ?

**ଉତ୍ତର –** ଖାଇବା ସମୟରେ ଗଳା ଆଦିରେ ଯେଉଁ କଷ୍ଟ ହୁଏ ତଥା ଜିଭ, ତାଳୁ ଆଦି ଜଳିବା, ଦାନ୍ତ ଖଟା ହେବା ବା ଶଢ଼ିଯିବା, ଚୋବାଇବାକୁ କଷ୍ଟ ଲାଗିବା, ଆଖି ଓ ନାକରୁ ପାଣି ବାହାରିପଡ଼ିବା, ହାକୁଟି ଉଠିବା, ଆଦି ଯେଉଁ କଷ୍ଟ ହୁଏ– ତାହାକୁ **ଦୁଃଖ** କହନ୍ତି । ଖାଇବା ପରେ ଯେଉଁ ପଶ୍ଚାତ୍ତାପ ହୁଏ, ତାହାକୁ **ଶୋକ** କହନ୍ତି ଏବଂ ଖାଇବା ଫଳରେ ଯେଉଁ ବ୍ୟାଧି ଉତ୍ପନ୍ନ ହୁଏ, ତାହାକୁ **ରୋଗ** କହନ୍ତି । ଉପରୋକ୍ତ ପିତା, ଖଟା, ଆଦି ପଦାର୍ଥ ଖାଇଲେ ଏହିସବୁ ଦୁଃଖ, ଶୋକ ଓ ରୋଗ ଉତ୍ପନ୍ନ ହୁଏ । ତେଣୁ ଏମାନଙ୍କୁ **ଦୁଃଖଶୋକାମୟପ୍ରଦାଃ** ବୋଲି କୁହାଯାଇଛି । ଅତଏବ ଏଗୁଡ଼ିକୁ ତ୍ୟାଗ କରିବା ଉଚିତ ।

**ପ୍ରଶ୍ନ –** 'ଏହା ରାଜସ ଲୋକଙ୍କ ପ୍ରିୟ ଖାଦ୍ୟ'– ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତ ଆହାର ହେଉଛି ରାଜସ; ଏଣୁ ଯେଉଁମାନଙ୍କୁ ଏପରି ଆହାର ଭଲ ଲାଗେ ଅର୍ଥାତ୍ ରୁଚିକର ଅଟେ, ସେମାନଙ୍କୁ ରଜୋଗୁଣୀ ବୋଲି ବୁଝିବା ଉଚିତ ।

**ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍ ।**
**ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟମ୍ ॥ ୧୦ ॥**

**ଅନ୍ୱୟ –** **ଯତ୍** = ଯେଉଁ; **ଭୋଜନମ୍** = ଖାଦ୍ୟ; **ଯାତଯାମମ୍** = ଅର୍ଦ୍ଧପକ୍ୱ; **ଗତରସମ୍** = ରସରହିତ; **ପୂତି** = ଦୁର୍ଗନ୍ଧଯୁକ୍ତ; **ପର୍ଯ୍ୟୁଷିତମ୍** = ବାସି; **ଚ** = ଏବଂ; **ଉଚ୍ଛିଷ୍ଟମ୍** = ଅଇଁଠା; **ଚ** = ତଥା (ଯାହା); **ଅମେଧ୍ୟମ୍** = ଅପବିତ୍ର; **ଅପି** = ମଧ୍ୟ; **(ତତ୍)** = ସେହି ଖାଦ୍ୟ; **ତାମସ-ପ୍ରିୟମ୍** = ତାମସ ଲୋକର ପ୍ରିୟ ।

**ଯେଉଁ ଖାଦ୍ୟ ଅର୍ଦ୍ଧସିଦ୍ଧ, ରସରହିତ, ଦୁର୍ଗନ୍ଧଯୁକ୍ତ, ବାସି ଓ ଅଇଁଠା ତଥା ଅପବିତ୍ର, ସେହି ଖାଦ୍ୟ ତାମସ ଲୋକର ପ୍ରିୟ ॥ ୧୦ ॥**

**ପ୍ରଶ୍ନ—** ପ୍ରହରକୁ **ଯାମ** କହନ୍ତି। ଅତଏବ **ଯାତଯାମମ୍**ର ଅର୍ଥ 'ଯେଉଁ ଖାଦ୍ୟ ତିଆରି ହେବାର ଏକ ପ୍ରହର ବିତିଗଲାଣି' ବୋଲି ନ କହି ଅର୍ଦ୍ଧପକ୍ୱ ବୋଲି କାହିଁକି କୁହାଗଲା ? ଏବଂ ଅର୍ଦ୍ଧପକ୍ୱ ଖାଦ୍ୟ କେଉଁପ୍ରକାର ଖାଦ୍ୟକୁ କହନ୍ତି ?

**ଉତ୍ତର—** ଏହି ଶ୍ଳୋକରେ **ପର୍ଯ୍ୟୁଷିତମ୍** ବା ବାସି ଖାଦ୍ୟକୁ, ତାମସ ବୋଲି କୁହାଯାଇଛି। **ଯାତଯାମମ୍**ର ଅର୍ଥ ଏକ ପ୍ରହର ପୂର୍ବରୁ ତିଆରି ହୋଇଥିବା ଖାଦ୍ୟ ବୋଲି ଧରିନେଲେ, ପୁଣି ଅଲଗେ 'ବାସି' ଖାଦ୍ୟକୁ ତାମସ କହିବାର କୌଣସି ସାର୍ଥକତା ରହୁ ନାହିଁ; କାରଣ ଯଦି ଏକ ପ୍ରହର ପୂର୍ବରୁ ତିଆରି ହୋଇଥିବା ଖାଦ୍ୟ ତାମସ; ତେବେ ଏକ ରାତି ପୂର୍ବରୁ ତିଆରି ଖାଦ୍ୟ ତାମସ ହେବା ତ ସ୍ୱତଃ ସିଦ୍ଧ ହୋଇଯାଉଛି; ତାହାକୁ ପୁଣି ଅଲଗେ ତାମସ ବୋଲି କହିବା କି ଆବଶ୍ୟକ ? ଏହା ବିଚାର କରି ଏଠାରେ **ଯାତଯାମମ୍**ର ଅର୍ଥ ଅର୍ଦ୍ଧପକ୍ୱ କରାଯାଇଛି।

ଅର୍ଦ୍ଧପକ୍ୱ ସେହି ଫଳମାନଙ୍କୁ ଅଥବା ସେହି ଖାଦ୍ୟପଦାର୍ଥଙ୍କୁ ବୁଝାଏ, ଯାହାସବୁ ପୂର୍ଣ୍ଣଭାବରେ ପାଚି ନାହିଁ ଅଥବା ଭଲରୂପେ ସିଝି ନାହିଁ।

**ପ୍ରଶ୍ନ— ଗତରସମ୍** ପଦ କିପରି ଖାଦ୍ୟର ବାଚକ ?

**ଉତ୍ତର—** ନିଆଁରେ ପୋଡ଼ିଗଲେ, ଖରା-ପବନରେ ରହିଲେ ଅଥବା ଋତୁ ଚାଲିଗଲେ ରସଯୁକ୍ତ ଖାଦ୍ୟ ପଦାର୍ଥମାନଙ୍କର ରସ ଶୁଖିଯାଏ। (ଯେପରି କମଳା, ଆମ୍ବ ଆଦି)। ସେପରି ଶୁଖିଲା ଖାଦ୍ୟକୁ **ଗତରସ** କହନ୍ତି।

**ପ୍ରଶ୍ନ— ପୂତି** ପଦ କିପରି ଖାଦ୍ୟର ବାଚକ ?

**ଉତ୍ତର—** ଖାଇବା ପାଇଁ ଯେଉଁ ବସ୍ତୁ ସ୍ୱଭାବତଃ ଦୁର୍ଗନ୍ଧପୂର୍ଣ୍ଣ ଯଥା ପିଆଜ, ରସୁଣ ଆଦି ଅଥବା ଯହିଁରେ କୌଣସି କ୍ରିୟାଦ୍ୱାରା ଦୁର୍ଗନ୍ଧ ଉତ୍ପନ୍ନ କରିଦିଆଯାଇଥାଏ, ସେହି ବସ୍ତୁକୁ **ପୂତି** କହନ୍ତି।

**ପ୍ରଶ୍ନ— ପର୍ଯ୍ୟୁଷିତମ୍** କିପରି ଖାଦ୍ୟର ବାଚକ ?

**ଉତ୍ତର—** ଗତ ଦିନ ତିଆରି ହୋଇଥିବା ଖାଦ୍ୟକୁ, **ପର୍ଯ୍ୟୁଷିତ** ବା ବାସି କହନ୍ତି। ରାତି ବିତିଯିବା ପରେ ଏପରି ଖାଦ୍ୟପଦାର୍ଥରେ ବିକୃତି ଉତ୍ପନ୍ନ ହୋଇଯାଏ ଏବଂ ତାହା ଖାଇଲେ ନାନାପ୍ରକାର ରୋଗ ଉତ୍ପନ୍ନ ହୁଏ। ଗଛରୁ ତୋଳା ଯାଇଥିବା ଫଳ ବହୁତ ଦିନ ରହିଯିବା ପରେ ସେଥିରେ ବିକାର ଉତ୍ପନ୍ନ ହୋଇଯାଏ; ତେଣୁ ସେହି ଫଳ ମଧ୍ୟ ବାସି।

**ପ୍ରଶ୍ନ— ଉଚ୍ଛିଷ୍ଟ** କେଉଁପ୍ରକାର ଖାଦ୍ୟର ବାଚକ ?

**ଉତ୍ତର—** ନିଜେ ବା ଅନ୍ୟ କେହି ଖାଇସାରିବା ପରେ ବଳିଯାଇଥିବା ଅଇଁଠା ଖାଦ୍ୟକୁ **ଉଚ୍ଛିଷ୍ଟ** କହନ୍ତି।

**ପ୍ରଶ୍ନ— ଅମେଧମ୍** ପଦ କିପରି ଖାଦ୍ୟର ବାଚକ ?

**ଉତ୍ତର—** ମାଂସ, ଅଣ୍ଡା ଆଦି ହିଂସାମୟ ପଦାର୍ଥ ଏବଂ ମଦ୍ୟ ଆଦି ନିଷିଦ୍ଧ ମାଦକଦ୍ରବ୍ୟ, ଯାହା ସ୍ୱଭାବତଃ ଅପବିତ୍ର ଅଥବା ଯେଉଁଥିରେ କୌଣସିପ୍ରକାର ସଙ୍ଗଦୋଷରୁ, କୌଣସିପ୍ରକାର ଅପବିତ୍ର ବସ୍ତୁ, ସ୍ଥାନ, ପାତ୍ର ବା ବ୍ୟକ୍ତିର ସଂଯୋଗରୁ ଅଥବା ଅନ୍ୟାୟ ଏବଂ ଅଧର୍ମରେ ଉପାର୍ଜିତ ଅସତ୍ ଧନଦ୍ୱାରା ପ୍ରାପ୍ତ ହୋଇଥିବାରୁ ଅପବିତ୍ରତା ଆସିଯାଇଥାଏ, ସେହିସବୁ ବସ୍ତୁକୁ **ଅମେଧ** କହନ୍ତି। ଏପରି ପଦାର୍ଥ ଦେବପୂଜାରେ ମଧ୍ୟ ଲାଗେ ନାହିଁ।

**ପ୍ରଶ୍ନ— ଚ** ଏବଂ **ଅପି** ଅବ୍ୟୟ ପ୍ରୟୋଗ କରି କେଉଁ ଭାବ ପ୍ରକାଶ କରାଯାଇଛି ?

**ଉତ୍ତର—** ଏହା ପ୍ରୟୋଗ କରି ପ୍ରକାଶ କରାଯାଇଛି ଯେ, ଯେଉଁ ବସ୍ତୁମାନଙ୍କରେ ଅଳ୍ପେ ବହୁତେ ଉପରୋକ୍ତ ଦୋଷ ଥାଏ, ସେସବୁ ତାମସ; ତାହା ଛଡ଼ା ଗଞ୍ଜେଇ, ଭାଙ୍ଗ, ଅଫିମ, ତମାଖୁ, ସିଗାରେଟ୍, ବିଡ଼ି, ଅର୍କ, ଆସବ ଏବଂ ଅପବିତ୍ର ଔଷଧ ଆଦି ତମୋଗୁଣ ଉତ୍ପାଦକ ଯେତେ ଖାଦ୍ୟପେୟ ରହିଛି, ସବୁ ତାମସ।

**ପ୍ରଶ୍ନ—** 'ଏପରି ଆହାର ତାମସ ପୁରୁଷର ପ୍ରିୟ'— ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଉପରୋକ୍ତ ଲକ୍ଷଣଯୁକ୍ତ ଖାଦ୍ୟ ତାମସ, ଏବଂ ତାମସପ୍ରକୃତିର ଲୋକେ ଏପରି ଖାଦ୍ୟକୁ ହିଁ ପସନ୍ଦ କରନ୍ତି; ତାହା ହିଁ ସେମାନଙ୍କର ପରିଚୟ।

*ସମ୍ବନ୍ଧ— ଏପରିଭାବରେ ତିନିପ୍ରକାର ଆହାର ବର୍ଣ୍ଣନା କରିସାରି ବର୍ତ୍ତମାନ ତିନିପ୍ରକାର ଯଜ୍ଞର ଲକ୍ଷଣ ବର୍ଣ୍ଣନା କରୁଛନ୍ତି। ସେମାନଙ୍କ ଭିତରୁ ପ୍ରଥମେ କରିବାଯୋଗ୍ୟ ସାତ୍ତ୍ୱିକ ଯଜ୍ଞର ଲକ୍ଷଣ ବର୍ଣ୍ଣନା କରୁଛନ୍ତି—*

## ଅଫଳାକାଙ୍କ୍ଷିଭିର୍ଯଜ୍ଞୋ ବିଧିଦୃଷ୍ଟୋ ଯ ଇଜ୍ୟତେ।
## ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ।। ୧୧ ।।

**ଅନ୍ୱୟ —** **ଯଃ** = ଯେଉଁ; **ଯଜ୍ଞଃ** = ଯଜ୍ଞ; **ବିଧିଦୃଷ୍ଟଃ** = ଶାସ୍ତ୍ରବିଧିରେ ନିୟତ; **ଯଷ୍ଟବ୍ୟମ୍, ଏବ** = (ଯଜନ) କରିବା ହିଁ ଉଚିତ; **ଇତି** = ବୋଲି; **ମନଃ** = ମନରେ; **ସମାଧାୟ** = ଦୃଢ଼ନିଶ୍ଚୟ କରି; **ଅଫଳାକାଙ୍କ୍ଷିଭିଃ** = ଫଳ ଚାହୁଁ ନ ଥିବା ପୁରୁଷମାନଙ୍କ ଦ୍ୱାରା; **ଇଜ୍ୟତେ** = କରାଯାଏ; **ସଃ** = ତାହା; **ସାତ୍ତ୍ୱିକଃ** = ସାତ୍ତ୍ୱିକ ଅଟେ।

**ଯେଉଁ ଯଜ୍ଞ ଶାସ୍ତ୍ରବିଧିରେ ନିୟତ, ଯାହା କରିବା ହିଁ ଉଚିତ ବୋଲି ମନକୁ ଦୃଢ଼ ନିଶ୍ଚିତ କରି ଫଳ ଇଚ୍ଛା କରୁ ନ ଥିବା ପୁରୁଷମାନଙ୍କ ଦ୍ୱାରା କରାଯାଏ, ତାହା ସାତ୍ତ୍ୱିକ।। ୧୧ ।।**

**ପ୍ରଶ୍ନ — ବିଧିଦୃଷ୍ଟଃ** ପଦର ଅର୍ଥ କ'ଣ ଏବଂ ଏଠାରେ ଏହି ବିଶେଷଣ ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର — ବିଧିଦୃଷ୍ଟ**ଦ୍ୱାରା ଭଗବାନ୍ ପ୍ରକାଶ କରିଛନ୍ତି ଯେ, ଶ୍ରୌତ ଓ ସ୍ମାର୍ତ୍ତ ଯଜ୍ଞମାନଙ୍କ ମଧ୍ୟରୁ ଯେଉଁ ବର୍ଣ୍ଣ ବା ଆଶ୍ରମନିମନ୍ତେ ଶାସ୍ତ୍ରମାନଙ୍କରେ ଯେଉଁ ଯଜ୍ଞକୁ କର୍ତ୍ତବ୍ୟରୂପେ ବିଧାନ କରାଯାଇଛି, ସେହି ଶାସ୍ତ୍ରବିହିତ ଯଜ୍ଞ ହିଁ ସାତ୍ତ୍ୱିକ। ଶାସ୍ତ୍ରର ବିପରୀତ ମନମୁଖି ଯଜ୍ଞ କଦାପି ସାତ୍ତ୍ୱିକ ନୁହେଁ।

**ପ୍ରଶ୍ନ —** ଏଠାରେ **ଯଜ୍ଞଃ** ପଦ କାହାର ବାଚକ ?

**ଉତ୍ତର —** ଦେବତା ଆଦିଙ୍କ ଉଦ୍ଦେଶ୍ୟରେ ଘୃତାଦିଦ୍ୱାରା ଅଗ୍ନିରେ ହୋମ କରିବା ବା ଅନ୍ୟ କୌଣସିଭାବରେ କୌଣସି ବସ୍ତୁକୁ ସମର୍ପଣ କରି ତାହାରି ଯଥାଯୋଗ୍ୟ ପୂଜା କରିବାକୁ **ଯଜ୍ଞ** କୁହାଯାଏ।

**ପ୍ରଶ୍ନ —** 'କରିବା ହିଁ କର୍ତ୍ତବ୍ୟ'— ମନକୁ ଏପରି ସମାହିତ କରି କରାଯାଉଥିବା ଯଜ୍ଞକୁ ସାତ୍ତ୍ୱିକ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଯଦି ଫଳର ଇଚ୍ଛା ନାହିଁ, କର୍ମ କାହିଁକି କରିବି ବୋଲି ଶଙ୍କା ହୋଇଗଲେ ମନୁଷ୍ୟର ଯଜ୍ଞରେ ପ୍ରବୃତ୍ତି ଜାତ ହୋଇ ନ ପାରେ, ତେଣୁ 'କରିବା ହିଁ କର୍ତ୍ତବ୍ୟ ଅଟେ' ବୋଲି ମନକୁ ସମାହିତ କରି ଯେଉଁ ଯଜ୍ଞ କରାଯାଏ, ସେହି ଯଜ୍ଞ ସାତ୍ତ୍ୱିକ। ଏପରି କହି ଭଗବାନ୍ ପ୍ରକାଶ କରିଛନ୍ତି ଯେ, ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ ଶାସ୍ତ୍ରମାନଙ୍କରେ ଯେଉଁ ଯଜ୍ଞ ଯାହାପାଇଁ ବିଧାନ କରାଯାଇଛି, ସେ ତାହା ଅବଶ୍ୟ କରିବା ଉଚିତ। ଏପରି ଶାସ୍ତ୍ରବିହିତ କର୍ତ୍ତବ୍ୟରୂପକ ଯଜ୍ଞ ନ କରିବା ହିଁ ଭଗବାନଙ୍କର ଆଦେଶ ଉଲ୍ଲଙ୍ଘନ କରିବା। ଏପରି ଯଜ୍ଞ କରିବାନିମନ୍ତେ ମନରେ ଦୃଢ଼ ନିଶ୍ଚୟ କରି ନିଷ୍କାମଭାବରେ ଯେଉଁ ଯଜ୍ଞ କରାଯାଏ, ସେହି ଯଜ୍ଞ ସାତ୍ତ୍ୱିକ।

**ପ୍ରଶ୍ନ — ଅଫଳାକାଙ୍କ୍ଷିଭିଃ** ପଦ କେଉଁ କର୍ତ୍ତାମାନଙ୍କର ବାଚକ ଏବଂ ସେମାନଙ୍କ ଦ୍ୱାରା କରାଯାଉଥିବା ଯଜ୍ଞକୁ ସାତ୍ତ୍ୱିକ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଯେଉଁ ଯଜ୍ଞକର୍ତ୍ତାମାନେ ଯଜ୍ଞରୁ ସ୍ତ୍ରୀ, ପୁତ୍ର, ଧନ, ଗୃହସମ୍ପଦ, ମାନ, ବଡ଼ିମା, ପ୍ରତିଷ୍ଠା, ବିଜୟ ବା ସ୍ୱର୍ଗ ଆଦି ଇଷ୍ଟପ୍ରାପ୍ତିପାଇଁ ଏବଂ କୌଣସିପ୍ରକାର ଅନିଷ୍ଟନିବୃତ୍ତିରୂପୀ ଇହଲୋକ ବା ପରଲୋକର ସୁଖଭୋଗ ବା ଦୁଃଖନିବୃତ୍ତିପାଇଁ ତିଳେମାତ୍ର ଇଚ୍ଛା କରନ୍ତି ନାହିଁ, ଏଠାରେ **ଅଫଳାକାଙ୍କ୍ଷିଭିଃ** ପଦଟି ହେଉଛି ସେମାନଙ୍କର ବାଚକ (୬/୧)। ସେମାନଙ୍କ ଦ୍ୱାରା କରାଯାଉଥିବା ଯଜ୍ଞକୁ ସାତ୍ତ୍ୱିକ ବୋଲି କହି ଏଠାରେ ଭଗବାନ୍ ଦେଖାଇଛନ୍ତି ଯେ, ଫଳ ଇଚ୍ଛା ରଖି କରାଯାଉଥିବା ଯଜ୍ଞ ବିଧିପୂର୍ବକ କରାଗଲେ ମଧ୍ୟ ପୂର୍ଣ୍ଣସାତ୍ତ୍ୱିକ ହୋଇପାରେ ନାହିଁ। ସାତ୍ତ୍ୱିକଭାବର ପୂର୍ଣ୍ଣତାପାଇଁ ଫଳେଚ୍ଛା ତ୍ୟାଗ ଏକାନ୍ତ ଆବଶ୍ୟକ।

**ସମ୍ବନ୍ଧ —** ବର୍ତ୍ତମାନ ରାଜସ ଯଜ୍ଞର ଲକ୍ଷଣ କହୁଛନ୍ତି—

## ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍।
## ଇଜ୍ୟତେ ଭରତଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସମ୍।। ୧୨ ।।

**ଅନ୍ୱୟ —** **ତୁ** = କିନ୍ତୁ; **ଭରତଶ୍ରେଷ୍ଠ** = ହେ ଅର୍ଜୁନ; **ଦମ୍ଭାର୍ଥମ୍, ଏବ** = କେବଳ ଦମ୍ଭାଚରଣପାଇଁ; **ଚ** = ଅଥବା; **ଫଳମ୍** = ଫଳକୁ; **ଅପି** = ମଧ୍ୟ; **ଅଭିସନ୍ଧାୟ** = ଦୃଷ୍ଟିରେ ରଖି; **ଯତ୍** = ଯେଉଁ ଯଜ୍ଞ; **ଇଜ୍ୟତେ** = କରାଯାଏ; **ତମ୍** = ସେହି; **ଯଜ୍ଞମ୍** = ଯଜ୍ଞକୁ (ତୁମେ); **ରାଜସମ୍** = ରାଜସ (ବୋଲି); **ବିଦ୍ଧି** = ଜାଣ।

**କିନ୍ତୁ ହେ ଅର୍ଜୁନ! କେବଳ ଦମ୍ଭାଚରଣପାଇଁ ଅଥବା ଫଳପ୍ରାପ୍ତି ଉଦ୍ଦେଶ୍ୟ ରଖି ଯେଉଁ ଯଜ୍ଞ କରାଯାଏ, ସେହି ଯଜ୍ଞକୁ ତୁମେ ରାଜସ ବୋଲି ଜାଣ ।। ୧୨ ।।**

**ପ୍ରଶ୍ନ—** ଏଠାରେ ତୁ ଅବ୍ୟୟ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର—** ସାତ୍ତ୍ୱିକ ଯଜ୍ଞଠାରୁ ଏହାର ପ୍ରଭେଦ ଦେଖାଇବାପାଇଁ ତୁ ଅବ୍ୟୟ ପ୍ରୟୋଗ କରାଯାଉଛି ।

**ପ୍ରଶ୍ନ—** 'ଦମ୍ଭ'ପାଇଁ ଯଜ୍ଞ କରିବା କ'ଣ ?

**ଉତ୍ତର—** ଯଜ୍ଞକର୍ମରେ ଆସ୍ଥା ନ ଥିଲେ ମଧ୍ୟ ଜଗତରେ ନିଜକୁ 'ଯଜ୍ଞନିଷ୍ଠ' ବୋଲି ପ୍ରସିଦ୍ଧ କରିବାପାଇଁ ଯେଉଁ ଯଜ୍ଞ କରାଯାଏ, ତାହାକୁ ଦମ୍ଭପାଇଁ କରାଯାଉଥିବା ଯଜ୍ଞ କହନ୍ତି ।

**ପ୍ରଶ୍ନ—** ଫଳପ୍ରାପ୍ତି ଉଦ୍ଦେଶ୍ୟରେ ଯଜ୍ଞ କରିବା କ'ଣ ?

**ଉତ୍ତର—** ସ୍ତ୍ରୀ, ପୁତ୍ର, ଧନ, ଗୃହ, ମାନ, ବଡ଼ିମା, ପ୍ରତିଷ୍ଠା, ବିଜୟ ଏବଂ ସ୍ୱର୍ଗାଦି ପ୍ରାପ୍ତିରୂପୀ ଇହଲୋକ ଓ ପରଲୋକର ସୁଖଭୋଗପାଇଁ କିମ୍ବା ଅନିଷ୍ଟନିବୃତ୍ତିପାଇଁ ଯେଉଁ ଯଜ୍ଞ କରାଯାଏ, ତାହା ହିଁ ଫଳପ୍ରାପ୍ତି ଉଦ୍ଦେଶ୍ୟରେ କରାଯାଉଥିବା ଯଜ୍ଞ ।

**ପ୍ରଶ୍ନ—** ଏବ, ଅପି ଓ ଚ— ଏହିସବୁ ଅବ୍ୟୟ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏସବୁ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଯେଉଁ ଯଜ୍ଞ କୌଣସି ଫଳପ୍ରାପ୍ତି ଉଦ୍ଦେଶ୍ୟରେ କରାଯାଏ, ତାହା ଶାସ୍ତ୍ରବିହିତ ହୋଇଥିଲେ ବି ଏବଂ ଶ୍ରଦ୍ଧାପୂର୍ବକ କରାଗଲେ ବି ରାଜସ ହିଁ ଅଟେ ଏବଂ ଯାହା ଦମ୍ଭପୂର୍ବକ କରାଯାଏ, ତାହା ମଧ୍ୟ ରାଜସ । ତେଣୁ ଯେଉଁଥିରେ ଏହି ଦୁଇଟିଯାକ ଦୋଷ ରହିଛି, ତାହା ଯେ 'ରାଜସ', ତାହା ନ କହିଲେ ଚଳେ ?

**ସମ୍ବନ୍ଧ—** *ଯାହା ସର୍ବଥା ତ୍ୟାଗ-କରିବାଯୋଗ୍ୟ, ବର୍ତ୍ତମାନ ସେହି ତାମସ ଯଜ୍ଞର ଲକ୍ଷଣ ବର୍ଣ୍ଣନା କରୁଛନ୍ତି—*

**ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣମ୍ ।**
**ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ ।। ୧୩ ।।**

**ଅନ୍ୱୟ—** **ବିଧିହୀନମ୍** = ଶାସ୍ତ୍ରବିଧିରହିତ; **ଅସୃଷ୍ଟାନ୍ନମ୍** = ଅନ୍ନଦାନରହିତ; **ମନ୍ତ୍ରହୀନମ୍** = ବିନା ମନ୍ତ୍ରରେ; **ଅଦକ୍ଷିଣମ୍** = ବିନା ଦକ୍ଷିଣାରେ (ଏବଂ); **ଶ୍ରଦ୍ଧାବିରହିତମ୍** = ବିନା ଶ୍ରଦ୍ଧାରେ (କରା ଯାଉଥିବା); **ଯଜ୍ଞମ୍** = ଯଜ୍ଞକୁ; **ତାମସମ୍** = ତାମସ ବୋଲି; **ପରିଚକ୍ଷତେ** = କହନ୍ତି ।

**ବିନା ମନ୍ତ୍ରରେ, ବିନା ଦକ୍ଷିଣାରେ ଏବଂ ବିନା ଶ୍ରଦ୍ଧାରେ କରାଯାଉଥିବା ଶାସ୍ତ୍ରବିଧିରହିତ ତଥା ଅନ୍ନଦାନରହିତ ଯଜ୍ଞକୁ ତାମସ ଯଜ୍ଞ ବୋଲି କୁହାଯାଏ ।। ୧୩ ।।**

**ପ୍ରଶ୍ନ—** **ବିଧିହୀନମ୍** ପଦ କେଉଁପ୍ରକାର ଯଜ୍ଞର ବାଚକ ?

**ଉତ୍ତର—** ଯେଉଁ ଯଜ୍ଞ ଶାସ୍ତ୍ରବିହିତ ନୁହେଁ ବା ଯାହାର ସମ୍ପାଦନରେ ପୂର୍ଣ୍ଣଭାବରେ ଶାସ୍ତ୍ରବିଧି ପାଳନ କରାଯାଏ ନାହିଁ ଅଥବା ଯାହା ଶାସ୍ତ୍ରର ବିଧାନକୁ ଅବହେଳା କରି ମନମୁଖି ଢଙ୍ଗରେ କରାଯାଏ, ତାହାକୁ **ବିଧିହୀନ** ଯଜ୍ଞ କହନ୍ତି ।

**ପ୍ରଶ୍ନ—** **ଅସୃଷ୍ଟାନ୍ନମ୍** ପଦ କେଉଁପ୍ରକାର ଯଜ୍ଞର ବାଚକ ?

**ଉତ୍ତର—** ଯେଉଁ ଯଜ୍ଞରେ ବ୍ରାହ୍ମଣଭୋଜନ ବା ଅନ୍ନଦାନ ଆଦିରୂପରେ ଅନ୍ନତ୍ୟାଗ କରାଯାଏ ନାହିଁ, ତାହାକୁ **ଅସୃଷ୍ଟାନ୍ନ** କହନ୍ତି ।

**ପ୍ରଶ୍ନ—** **ମନ୍ତ୍ରହୀନମ୍** ପଦ କେଉଁପ୍ରକାର ଯଜ୍ଞକୁ ବୁଝାଏ ?

**ଉତ୍ତର—** ଯେଉଁ ଯଜ୍ଞ ଶାସ୍ତ୍ରୋକ୍ତ ମନ୍ତ୍ରମାନଙ୍କରୁ ରହିତ, ଯେଉଁଥିରେ ମନ୍ତ୍ରପ୍ରୟୋଗ ହୁଏ ନାହିଁ ବା ବିଧିବତ୍ ହୁଏ ନାହିଁ ଅଥବା ଅବହେଳାରୁ ମନ୍ତ୍ରପାଠରେ ତ୍ରୁଟି ରହିଯାଏ, ସେହି ଯଜ୍ଞକୁ **ମନ୍ତ୍ରହୀନ** କହନ୍ତି ।

**ପ୍ରଶ୍ନ—** **ଅଦକ୍ଷିଣମ୍** ପଦ କିପରି ଯଜ୍ଞର ବାଚକ ?

**ଉତ୍ତର—** ଯେଉଁ ଯଜ୍ଞରେ ଯଜ୍ଞ କରୁଥିବା ଲୋକଙ୍କୁ ଏବଂ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦିଆଯାଏ ନାହିଁ, ସେହି ଯଜ୍ଞ **ଅଦକ୍ଷିଣ** ।

**ପ୍ରଶ୍ନ—** **ଶ୍ରଦ୍ଧାବିରହିତ** ଯଜ୍ଞ କିପ୍ରକାର ଯଜ୍ଞ ?

**ଉତ୍ତର—** ଯେଉଁ ଯଜ୍ଞ ବିନାଶ୍ରଦ୍ଧାରେ କେବଳ ମାନ, ମଦ, ମୋହ, ଦମ୍ଭ ଏବଂ ଅହଙ୍କାର ଆଦିର ପ୍ରେରଣାରେ କରାଯାଏ, ତାହା **ଶ୍ରଦ୍ଧାବିରହିତ** ଯଜ୍ଞ ।

**ସମ୍ବନ୍ଧ –** ଏପରିଭାବରେ ତିନିପ୍ରକାର ଯଜ୍ଞର ଲକ୍ଷଣ ବର୍ଣ୍ଣନା କରିସାରି ବର୍ତ୍ତମାନ ତପର ଲକ୍ଷଣମାନଙ୍କ ପ୍ରକରଣ ଆରମ୍ଭ କରୁଛନ୍ତି। ଚାରିଟି ଶ୍ଳୋକରେ ସାତ୍ତ୍ୱିକ ତପର ଲକ୍ଷଣଗୁଡ଼ିକ ବର୍ଣ୍ଣନା କରିବାକୁ ଯାଇ ଭଗବାନ୍ ପ୍ରଥମେ ଶାରୀରିକ ତପର ସ୍ୱରୂପ ବର୍ଣ୍ଣନା କରୁଛନ୍ତି–

**ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚମାର୍ଜବମ୍ ।**
**ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ ॥ ୧୪ ॥**

**ଅନ୍ୱୟ –** ଦେବ-ଦ୍ୱିଜ-ଗୁରୁ-ପ୍ରାଜ୍ଞ-ପୂଜନମ୍ = ଦେବତା, ବ୍ରାହ୍ମଣ, ଗୁରୁ ଏବଂ ଜ୍ଞାନୀମାନଙ୍କର ପୂଜନ; ଶୌଚମ୍ = ପବିତ୍ରତା; ଆର୍ଜବମ୍ = ସରଳତା; ବ୍ରହ୍ମଚର୍ଯ୍ୟମ୍ = ବ୍ରହ୍ମଚର୍ଯ୍ୟ; ଚ = ଏବଂ; ଅହିଂସା = ଅହିଂସା (ଏହାକୁ); ଶାରୀରମ୍ = ଶରୀରସମ୍ବନ୍ଧୀ; ତପଃ = ତପ; ଉଚ୍ୟତେ = କୁହାଯାଏ।

**ଦେବତା, ବ୍ରାହ୍ମଣ, ଗୁରୁ ଏବଂ ଜ୍ଞାନୀମାନଙ୍କର ପୂଜନ, ପବିତ୍ରତା, ସରଳତା, ବ୍ରହ୍ମଚର୍ଯ୍ୟ ଏବଂ ଅହିଂସା – ଏହାକୁ ଶରୀରସମ୍ବନ୍ଧୀ ତପ କୁହାଯାଏ ॥ ୧୪ ॥**

**ପ୍ରଶ୍ନ –** 'ଦେବ', 'ଦ୍ୱିଜ', 'ଗୁରୁ' ଏବଂ 'ପ୍ରାଜ୍ଞ' – ଏସବୁ ଶବ୍ଦ କାହାର କାହାର ବାଚକ ଏବଂ ସେମାନଙ୍କୁ ପୂଜା କରିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ବ୍ରହ୍ମା, ମହାଦେବ, ସୂର୍ଯ୍ୟ, ଚନ୍ଦ୍ର, ଦୁର୍ଗା, ଅଗ୍ନି, ବରୁଣ, ଯମ, ଇନ୍ଦ୍ର ଆଦି ଯେତେ ଶାସ୍ତ୍ରୋକ୍ତ ଦେବତା ଅଛନ୍ତି, ଶାସ୍ତ୍ରରେ ଯେଉଁମାନଙ୍କୁ ପୂଜା କରିବାର ବିଧାନ ରହିଛି, ଦେବ ଶବ୍ଦ ହେଉଛି ସେହି ସମସ୍ତଙ୍କର ବାଚକ। ଦ୍ୱିଜ ଶବ୍ଦ ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟ – ଏହି ତିନି ବର୍ଣ୍ଣର ବାଚକ ହୋଇଥିଲେ ମଧ୍ୟ ଏଠାରେ କେବଳ ବ୍ରାହ୍ମଣମାନଙ୍କ ପାଇଁ ପ୍ରଯୁକ୍ତ ହୋଇଛି; କାରଣ ଶାସ୍ତ୍ରାନୁସାରେ ବ୍ରାହ୍ମଣ ହିଁ ସମସ୍ତଙ୍କର ପୂଜ୍ୟ। ମାତା, ପିତା, ଆଚାର୍ଯ୍ୟ, ବୃଦ୍ଧ ଏବଂ ନିଜଠାରୁ ଯେଉଁମାନେ ବର୍ଣ୍ଣ, ଆଶ୍ରମ ଏବଂ ଆୟୁ ଆଦିରେ କୌଣସିପ୍ରକାରେ ବି ବଡ଼, 'ଗୁରୁ' ଶବ୍ଦ ହେଉଛି ସେହିମାନଙ୍କର ବାଚକ। 'ପ୍ରାଜ୍ଞ' ଶବ୍ଦଟି ହେଉଛି ପରମେଶ୍ୱରଙ୍କ ସ୍ୱରୂପକୁ ଭଲଭାବରେ ଜାଣିଥିବା ମହାତ୍ମା ଜ୍ଞାନୀ ପୁରୁଷମାନଙ୍କର ବାଚକ। ଏହି ସମସ୍ତଙ୍କୁ ଯଥାଯୋଗ୍ୟ ଆଦରସତ୍କାର କରିବା, ନମସ୍କାର କରିବା, ଦଣ୍ଡବତ୍‌ପ୍ରଣାମ କରିବା, ଏମାନଙ୍କର ପାଦ ଧୋଇଦେବା, ଏମାନଙ୍କୁ ଚନ୍ଦନ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ଆଦି ସମର୍ପଣ କରିବା, ଯଥାଯୋଗ୍ୟ ସେବା କରିବା ଏବଂ ସୁଖ ଦେବାକୁ ଯଥୋଚିତ ଚେଷ୍ଟା କରିବା ଆଦି ହେଉଛି ଏମାନଙ୍କର ପୂଜା କରିବା।

**ପ୍ରଶ୍ନ – ଶୌଚମ୍** ପଦ ଏଠାରେ କେଉଁ ଶୌଚର ବାଚକ ?

**ଉତ୍ତର – ଶୌଚମ୍** ପଦ ଏଠାରେ କେବଳ ଶାରୀରିକ ଶୌଚର ବାଚକ; କାରଣ ବାଣୀଶୁଦ୍ଧିର ବର୍ଣ୍ଣନା ପନ୍ଦର ଶ୍ଳୋକରେ ଏବଂ ମନଶୁଦ୍ଧିର ବର୍ଣ୍ଣନା ଷୋହଳ ଶ୍ଳୋକରେ ପୃଥକ୍‌ରୂପେ କରାଯାଇଛି। ଜଳମୃତ୍ତିକାଦିଦ୍ୱାରା ଶରୀରକୁ ସ୍ୱଚ୍ଛ ଓ ପବିତ୍ର ରଖିବା ଏବଂ ଶରୀରସମ୍ବନ୍ଧୀ ସମସ୍ତ ଚେଷ୍ଟା ପବିତ୍ର ହେବା ହିଁ ଶୌଚ (୧୬/୩)।

**ପ୍ରଶ୍ନ – ଆର୍ଜବମ୍** ପଦ ଏଠାରେ କାହାର ବାଚକ ?

**ଉତ୍ତର – ଆର୍ଜବମ୍** ପଦ ହେଉଛି ସରଳତାର ବାଚକ। ଏଠାରେ ଶାରୀରିକ ତପ ନିରୂପଣରେ ଏହାର ବର୍ଣ୍ଣନା କରାଯାଇଛି; ଏଣୁ ଏହା ହେଉଛି ଶରୀରର ଅଙ୍କାବଙ୍କା ଆଦି ବକ୍ରତାତ୍ୟାଗର ଏବଂ ଶାରୀରିକ ସରଳତାର ବାଚକ।

**ପ୍ରଶ୍ନ – ବ୍ରହ୍ମଚର୍ଯ୍ୟମ୍**ର ଭାବ କ'ଣ ?

**ଉତ୍ତର –** ଏଠାରେ ବ୍ରହ୍ମଚର୍ଯ୍ୟ ପଦଟି ହେଉଛି ଶରୀରସମ୍ବନ୍ଧୀ ସମସ୍ତପ୍ରକାର ମୈଥୁନତ୍ୟାଗର ଏବଂ ଭଲଭାବରେ ବୀର୍ଯ୍ୟଧାରଣ କରିବାର ବୋଧକ।

**ପ୍ରଶ୍ନ – ଅହିଂସା** ପଦ କାହାର ବାଚକ ?

**ଉତ୍ତର –** ଶରୀରଦ୍ୱାରା କୌଣସି ପ୍ରାଣୀକୁ କୌଣସି ବି ପ୍ରକାରେ କେବେ ବି ସାମାନ୍ୟମାତ୍ର କଷ୍ଟ ନ ଦେବାର ନାମ ହିଁ **ଅହିଂସା**।

**ପ୍ରଶ୍ନ –** ଏସବୁକୁ ଶାରୀରିକ ତପ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଉପରୋକ୍ତ କ୍ରିୟାଗୁଡ଼ିକରେ ଶରୀରର ପ୍ରଧାନତା ରହିଛି ଅର୍ଥାତ୍ ଏସବୁ ସହିତ ଶରୀରର ବିଶେଷ ସମ୍ବନ୍ଧ ରହିଛି ଏବଂ ଏସବୁ କ୍ରିୟା ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ତଥା ତାହାର ସମସ୍ତ ଦୋଷକୁ ନାଶ କରିଦେଇ ପବିତ୍ର କରିଦିଏ। ତେଣୁ ଏସବୁକୁ ଶାରୀରିକ ତପ କହନ୍ତି।

**ସମ୍ବନ୍ଧ–** ବର୍ତ୍ତମାନ ବାଣୀସମ୍ବନ୍ଧୀ ତପର ସ୍ୱରୂପ ବର୍ଣ୍ଣନା କରୁଛନ୍ତି–

## ଅନୁଦ୍ୱେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଂ ଚ ଯତ୍ ।
## ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍ମୟଂ ତପ ଉଚ୍ୟତେ ।। ୧୫ ।।

**ଅନ୍ୱୟ–** ଯତ୍ = ଯାହା; ଅନୁଦ୍ୱେଗକରମ୍ = ଉଦ୍‌ବେଗକାରକ ନୁହେଁ; ପ୍ରିୟହିତମ୍ = ପ୍ରିୟ ଏବଂ ହିତକର; ଚ = ଏବଂ; ସତ୍ୟମ୍ = ଯଥାର୍ଥ; ବାକ୍ୟମ୍ = ବଚନ (ଅଟେ); ଚ = ତଥା; ସ୍ୱାଧ୍ୟାୟ-ଅଭ୍ୟସନମ୍ = ବେଦ-ଶାସ୍ତ୍ର ପଠନ ଏବଂ ପରମେଶ୍ୱରଙ୍କ ନାମଜପ କରିବାର ଅଭ୍ୟାସ; (ତତ୍) ଏବ = ତାହାକୁ ହିଁ; ବାଙ୍ମୟମ୍ = ବାଣୀସମ୍ବନ୍ଧୀ; ତପଃ = ତପ; ଉଚ୍ୟତେ = କୁହାଯାଏ ।

**ଯାହା ଉଦ୍‌ବେଗକାରକ ନୁହେଁ, ଯାହା ପ୍ରିୟ, ହିତକର ଏବଂ ଯଥାର୍ଥ ବଚନ, ତଥା ଯାହା ବେଦ-ଶାସ୍ତ୍ରପଠନର ଏବଂ ପରମେଶ୍ୱରଙ୍କ ନାମ ଜପ କରିବାର ଅଭ୍ୟାସ, ତାହାକୁ ହିଁ ବାଣୀସମ୍ବନ୍ଧୀ ତପ କୁହାଯାଏ ।। ୧୫ ।।**

**ପ୍ରଶ୍ନ–** ଅନୁଦ୍ୱେଗକରମ୍, ସତ୍ୟମ୍ ଏବଂ **ପ୍ରିୟହିତମ୍–** ଏହି ବିଶେଷଣଗୁଡ଼ିକର ଅର୍ଥ କ'ଣ ଏବଂ **ବାକ୍ୟମ୍** ପଦ ସହିତ ଏହାର ପ୍ରୟୋଗ କରିବାର ତଥା ଚ ଅବ୍ୟୟର ଭାବ କଣ ?

**ଉତ୍ତର–** ଯେଉଁ କଥା କାହାରି ମନରେ କୌଣସି ଉଦ୍‌ବେଗ ଉତ୍ପନ୍ନ କରେ ନାହିଁ ଏବଂ ନିନ୍ଦା ବା ଚୁଗୁଲି ଆଦି ଦୋଷରୁ ସର୍ବଥା ରହିତ, ତାହାକୁ **ଅନୁଦ୍ୱେଗକର** କହନ୍ତି । ଯେପରି ଦେଖାଯାଇଥାଏ, ଶୁଣାଯାଇଥାଏ ଏବଂ ଅନୁଭବ କରାଯାଇଥାଏ, ଅନ୍ୟକୁ ଠିକ୍ ସେହିପରି ଭାବ ଜଣାଇବା ପାଇଁ ଯେଉଁ ଯଥାର୍ଥ ବଚନ କୁହାଯାଏ, ତାହାକୁ **ସତ୍ୟ** କହନ୍ତି । ଯାହା ଶୁଣିବା ଲୋକଙ୍କୁ ପ୍ରିୟ ଲାଗେ ତଥା କଟୁତା, ତୀକ୍ଷ୍ଣତା, ରୁକ୍ଷତା, ବ୍ୟଙ୍ଗ ଏବଂ ଅପମାନ ଆଦି ଦୋଷରୁ ରହିତ, ସେପରି ପ୍ରେମପୂର୍ଣ୍ଣ, ମଧୁର, ସରଳ ଏବଂ ଶାନ୍ତ ବଚନକୁ **ପ୍ରିୟ** ବଚନ କହନ୍ତି । ତଥା ଯାହା ପରିଣାମରେ ସମସ୍ତଙ୍କର ହିତ କରେ, ଯାହା ହିଂସା, ଦ୍ୱେଷ, ଈର୍ଷା ଓ ବୈରତାରୁ ସର୍ବଥା ଶୂନ୍ୟ ଏବଂ ପ୍ରେମ, ଦୟା ତଥା ମଙ୍ଗଳରେ ପୂର୍ଣ୍ଣ, ତାହାକୁ **ହିତ** ବଚନ କହନ୍ତି । ତେଣୁ ଭାଗବତ କହନ୍ତି, "କୋମଳ ମଧୁର ବଚନ, କହି ତୋଷିବ ପ୍ରାଣୀମନ ।"

**ବାକ୍ୟମ୍** ପଦ ସହିତ ଚ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଯେଉଁ ବାକ୍ୟରେ ଅନୁଦ୍ୱେଗକାରିତା, ସତ୍ୟତା, ପ୍ରିୟତା, ହିତକାରିତା– ଏହି ସମସ୍ତ ଗୁଣର ସମାବେଶ ହୋଇଥାଏ ଏବଂ ଯାହା ଶାସ୍ତ୍ରବର୍ଣ୍ଣିତ ବାଣୀସମ୍ବନ୍ଧୀ ସମସ୍ତପ୍ରକାର ଦୋଷରୁ ରହିତ, ସେପରି ବାକ୍ୟ କହିବାକୁ ବାଚିକ ତପ ବୋଲାଯାଏ । ଯେଉଁଥିରେ ଏହି ଦୋଷମାନଙ୍କ ଭିତରୁ କୌଣସି ଗୋଟିଏ ବି ଦୋଷ ରହିଥାଏ ବା ଉପରୋକ୍ତ ଗୁଣଗୁଡ଼ିକମଧ୍ୟରୁ କୌଣସି ଗୋଟିଏ ବି ଗୁଣର ଅଭାବ ଥାଏ, ସେହି ବାକ୍ୟ ପୂର୍ଣ୍ଣତଃ ବାଚିକ ତପ ନୁହେଁ ।

**ପ୍ରଶ୍ନ– ସ୍ୱାଧ୍ୟାୟାଭ୍ୟସନମ୍**ର ଅଭିପ୍ରାୟ କ'ଣ ?

**ଉତ୍ତର–** ଯଥାଧିକାର ବେଦ, ବେଦାଙ୍ଗ, ସ୍ମୃତି, ପୁରାଣ ଏବଂ ସ୍ତୋତ୍ରାଦି ପାଠ କରିବା, ଭଗବାନଙ୍କ ଗୁଣ, ପ୍ରଭାବ ଏବଂ ନାମ ଉଚ୍ଚାରଣ କରିବା ତଥା ଭଗବାନଙ୍କୁ ସ୍ତୁତି ଆଦି କରିବା **ସ୍ୱାଧ୍ୟାୟାଭ୍ୟସନମ୍**ର ଅନ୍ତର୍ଗତ ।

**ପ୍ରଶ୍ନ–** ଏସବୁକୁ **ବାଚିକ ତପ** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର–** ଉପରୋକ୍ତ ସମସ୍ତ ଗୁଣ ବାଣୀ ସହିତ ସମ୍ବନ୍ଧ ରଖନ୍ତି ଏବଂ ଏସବୁ ଗୁଣ ବାଣୀର ସମସ୍ତ ଦୋଷ ନାଶ କରି ଅନ୍ତଃକରଣ ସହିତ ତାହାକୁ ପବିତ୍ର କରିଦିଅନ୍ତି । ତେଣୁ ଏସବୁକୁ ବାଚିକ ତପ ବୋଲାଯାଏ ।

**ସମ୍ବନ୍ଧ–** ବର୍ତ୍ତମାନ ମନସମ୍ବନ୍ଧୀ ତପର ସ୍ୱରୂପ କହୁଛନ୍ତି–

## ମନଃପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ।
## ଭାବସଂଶୁଦ୍ଧିରିତ୍ୟେତତ୍ତପୋ ମାନସମୁଚ୍ୟତେ ।। ୧୬ ।।

**ଅନ୍ୱୟ –** ମନଃପ୍ରସାଦଃ = ମନର ପ୍ରସନ୍ନତା; **ସୌମ୍ୟତ୍ୱମ୍ =** ଶାନ୍ତଭାବ; **ମୌନମ୍ =** ଭଗବଦ୍‌ଚିନ୍ତନ କରିବାର ସ୍ୱଭାବ; **ଆତ୍ମବିନିଗ୍ରହଃ =** ମନର ନିଗ୍ରହ (ଏବଂ); **ଭାବସଂଶୁଦ୍ଧିଃ =** ଅନ୍ତଃକରଣସ୍ଥିତ ଭାବମାନଙ୍କର ସମ୍ୟକ୍ ପବିତ୍ରତା; **ଇତି, ଏତତ୍ =** ଏହାକୁ; **ମାନସମ୍ =** ମନସମ୍ବନ୍ଧୀ; **ତପଃ, ଉଚ୍ୟତେ =** ତପ କୁହାଯାଏ।

**ମନର ପ୍ରସନ୍ନତା, ଶାନ୍ତଭାବ, ଭଗବଦ୍-ଚିନ୍ତନ କରିବାର ସ୍ୱଭାବ, ମନର ନିଗ୍ରହ ଏବଂ ଅନ୍ତଃକରଣସ୍ଥିତ ଭାବମାନଙ୍କର ସମ୍ୟକ୍ ପବିତ୍ରତା— ଏହାକୁ ମନସମ୍ବନ୍ଧୀ ତପ କୁହାଯାଏ॥ ୧୬ ॥**

**ପ୍ରଶ୍ନ – ମନଃପ୍ରସାଦଃର** ଭାବ କ'ଣ ?

**ଉତ୍ତର –** ମନର ନିର୍ମଳତା ଓ ପ୍ରସନ୍ନତାକୁ **ମନଃପ୍ରସାଦ** କହନ୍ତି, ଅର୍ଥାତ୍ ବିଷାଦ-ଭୟ, ଚିନ୍ତା-ଶୋକ, ବ୍ୟାକୁଳତା-ଉଦ୍‌ବିଗ୍ନତା ଆଦି ଦୋଷରୁ ରହିତ ହୋଇ ମନ ବିଶୁଦ୍ଧ ହେବା ତଥା ପ୍ରସନ୍ନତା, ହର୍ଷ ଏବଂ ବୋଧଶକ୍ତିରେ ଯୁକ୍ତ ହୋଇଯିବା ହିଁ ମନର ପ୍ରସାଦ।

**ପ୍ରଶ୍ନ – ସୌମ୍ୟତ୍ୱମ୍** କାହାକୁ କହନ୍ତି ?

**ଉତ୍ତର –** ରୁକ୍ଷତା, ଈର୍ଷା, ହିଂସା, ପ୍ରତିହିଂସା, କ୍ରୂରତା, ନିର୍ଦୟତା ଆଦି ତାପକାରକ ଦୋଷରୁ ସର୍ବଥା ଶୂନ୍ୟ ହୋଇ ମନ ସଦାସର୍ବଦା ଶାନ୍ତ ଓ ଶୀତଳ ରହିବା ହିଁ **ସୌମ୍ୟତ୍ୱ**।

**ପ୍ରଶ୍ନ – ମୌନମ୍** ପଦର ଭାବ କ'ଣ ?

**ଉତ୍ତର –** ନିରନ୍ତର ଭଗବାନଙ୍କ ଗୁଣ, ପ୍ରଭାବ, ତତ୍ତ୍ୱ, ସ୍ୱରୂପ, ଲୀଳା ଏବଂ ନାମ ଆଦି ଚିନ୍ତନରେ ବା ବ୍ରହ୍ମବିଚାରରେ ଲାଗିରହିବା ହିଁ **ମୌନ**।

**ପ୍ରଶ୍ନ – ଆତ୍ମବିନିଗ୍ରହ** କ'ଣ ?

**ଉତ୍ତର –** ଅନ୍ତଃକରଣର ଚଞ୍ଚଳତା ସର୍ବଥା ନାଶ ହୋଇ ତାହା ସ୍ଥିର ହୋଇଯିବା ତଥା ଭଲଭାବରେ ନିଜର ବଶ ହୋଇଯିବା ହିଁ **ଆତ୍ମବିନିଗ୍ରହ**।

**ପ୍ରଶ୍ନ – ଭାବସଂଶୁଦ୍ଧି** କାହାକୁ କହନ୍ତି ?

**ଉତ୍ତର –** ଅନ୍ତଃକରଣରେ ରାଗ-ଦ୍ୱେଷ, କାମ-କ୍ରୋଧ, ଲୋଭ-ମୋହ, ମଦ-ମାତ୍ସର୍ଯ୍ୟ, ଈର୍ଷା-ଶତ୍ରୁତା, ଘୃଣା-ତିରସ୍କାର, ଅସୂୟା-ଅସହିଷ୍ଣୁତା, ପ୍ରମାଦ, ବ୍ୟର୍ଥଚିନ୍ତା, ଇଷ୍ଟବିରୋଧ ଏବଂ ଅନିଷ୍ଟଚିନ୍ତନ ଆଦି ଅସଦ୍‌ଭାବ ସର୍ବଥା ନଷ୍ଟ ହୋଇଯିବା ଏବଂ ଏମାନଙ୍କ ବିରୋଧୀ ଦୟା, କ୍ଷମା, ପ୍ରେମ, ବିନୟ ଆଦି ସମସ୍ତ ସଦ୍‌ଭାବ ସଦା ବିକଶିତ ରହିବା ହିଁ **ଭାବସଂଶୁଦ୍ଧି**।

**ପ୍ରଶ୍ନ –** ଏହିସବୁ ଗୁଣମାନଙ୍କୁ ମାନସ (ମନସମ୍ବନ୍ଧୀୟ) ତପ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହିସବୁ ଗୁଣ ମନ ସହିତ ସମ୍ବନ୍ଧ ରଖୁଥିବାରୁ ଏବଂ ମନକୁ ସମସ୍ତ ଦୋଷରୁ ରହିତ କରି ପରମ ପବିତ୍ର କରୁଥିବାରୁ ଏସବୁକୁ ମାନସ ତପ କହନ୍ତି।

**ସମ୍ବନ୍ଧ –** ବର୍ତ୍ତମାନ ସାତ୍ତ୍ୱିକ ତପର ଲକ୍ଷଣ କହୁଛନ୍ତି–

**ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ ତ୍ରିବିଧଂ ନରୈଃ ।**
**ଅଫଳାକାଙ୍କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ॥ ୧୭ ॥**

**ଅନ୍ୱୟ –** ଅଫଳାକାଙ୍କ୍ଷିଭିଃ = ଫଳ ଇଚ୍ଛା କରୁ ନ ଥିବା; **ଯୁକ୍ତୈଃ, ନରୈଃ =** ଯୋଗୀ ପୁରୁଷମାନଙ୍କ ଦ୍ୱାରା; **ପରୟା, ଶ୍ରଦ୍ଧୟା =** ପରମ ଶ୍ରଦ୍ଧାରେ; **ତପ୍ତଂ, ତପଃ =** କରାଯାଉଥିବା ତପ; **ତତ୍ =** ସେହି (ପୂର୍ବୋକ୍ତ); **ତ୍ରିବିଧମ୍ =** ତିନିପ୍ରକାର (କାୟିକ, ବାଚିକ ଓ ମାନସିକ); **ସାତ୍ତ୍ୱିକମ୍ =** ସାତ୍ତ୍ୱିକ; **ପରିଚକ୍ଷତେ =** କହନ୍ତି।

**ଫଳ ଇଚ୍ଛା କରୁ ନ ଥିବା ଯୋଗୀପୁରୁଷମାନଙ୍କ ଦ୍ୱାରା ପରମ ଶ୍ରଦ୍ଧାର ସହିତ କରାଯାଉଥିବା ସେହି ପୂର୍ବୋକ୍ତ କାୟିକ, ବାଚିକ ଓ ମାନସିକ– ତିନିପ୍ରକାର ତପକୁ ସାତ୍ତ୍ୱିକ ତପ କହନ୍ତି॥ ୧୭ ॥**

**ପ୍ରଶ୍ନ – ନରୈଃ** ପଦ ସହିତ **ଅଫଳାକାଙ୍କ୍ଷିଭିଃ** ଏବଂ **ଯୁକ୍ତୈଃ** ବିଶେଷଣ ପ୍ରୟୋଗ କରି କେଉଁ ଭାବ ପ୍ରକାଶ କରାଯାଇଛି ?

**ଉତ୍ତର –** ଯେଉଁ ମନୁଷ୍ୟ ଇହଲୋକ ବା ପରଲୋକରେ କୌଣସିପ୍ରକାର ସୁଖଭୋଗ ଅଥବା ଦୁଃଖନିବୃତ୍ତିରୂପକ ଫଳ କେବେହେଲେ କୌଣସି କାରଣରୁ ତିଳେମାତ୍ର ବି କାମନା କରନ୍ତି ନାହିଁ, ତାଙ୍କୁ **ଅଫଳାକାଙ୍କ୍ଷୀ** କହନ୍ତି ଏବଂ ଯାହାଙ୍କର ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନେ

ଅନାସକ୍ତ, ନିଗୃହୀତ ତଥା ଶୁଦ୍ଧ ହୋଇଥିବାରୁ କେବେହେଲେ କୌଣସିପ୍ରକାର ଭୋଗପାଇଁ ବିଚଳିତ ହୁଅନ୍ତି ନାହିଁ, ଯାହାଙ୍କର ଆସକ୍ତି ପୂର୍ଣଭାବରେ ଶୂନ୍ୟ ହୋଇଯାଇଛି, ତାହାଙ୍କୁ **ଯୁକ୍ତ** କହନ୍ତି। ତେଣୁ ଏହା ପ୍ରୟୋଗ କରି ନିଷ୍କାମଭାବର ଆବଶ୍ୟକତା ସିଦ୍ଧ କରିବା ସଙ୍ଗେ ସଙ୍ଗେ ଭଗବାନ୍ ଦେଖାଇଛନ୍ତି ଯେ, ଉପରୋକ୍ତ ତିନିପ୍ରକାର ତପ ଯଦି ଏପରି ନିଷ୍କାମ ପୁରୁଷମାନଙ୍କ ଦ୍ୱାରା କରାଯାଏ, ତା'ହେଲେ ତାହା ପୂର୍ଣ ସାତ୍ତ୍ୱିକ ହୁଏ।

**ପ୍ରଶ୍ନ —** 'ପରମଶ୍ରଦ୍ଧା' କିଭଳି ଶ୍ରଦ୍ଧାକୁ କହନ୍ତି ଏବଂ ପରମଶ୍ରଦ୍ଧାର ସହିତ ତିନିପ୍ରକାର ତପ କରିବାର ଅର୍ଥ କ'ଣ ?

**ଉତ୍ତର —** ଶାସ୍ତ୍ରରେ ଉପରୋକ୍ତ ତପର ଯାହାକିଛି ମହତ୍ତ୍ୱ, ପ୍ରଭାବ ଏବଂ ସ୍ୱରୂପ ବର୍ଣ୍ଣନା କରାଯାଇଛି, ସେଥିରେ ପ୍ରତ୍ୟକ୍ଷଠାରୁ ବି ଅଧିକ ସମ୍ମାନପୂର୍ବକ ପୂର୍ଣବିଶ୍ୱାସ ରଖିବା ହିଁ 'ପରମଶ୍ରଦ୍ଧା' ଏବଂ ଏପରି ଶ୍ରଦ୍ଧାରେ ଯୁକ୍ତ ହୋଇ ଯେତେବଡ଼ ବିଘ୍ନ ବା କଷ୍ଟ ଆସୁ ପଛେ, ଟିକିଏ ବି ଭ୍ରୂକ୍ଷେପ ନ କରି ସଦାସର୍ବଦା ଅବିଚଳିତ ରହି ଅତ୍ୟନ୍ତ ଆଦର ଓ ଉତ୍ସାହପୂର୍ବକ ଉପରୋକ୍ତ ତପ ଆଚରଣ କରିବା ହିଁ ପରମଶ୍ରଦ୍ଧାର ସହିତ ତପ କରିବା।

**ପ୍ରଶ୍ନ — ତପଃ** ପଦ ସହିତ **ତତ୍** ଏବଂ **ତ୍ରିବିଧମ୍** — ଏହି ଦୁଇ ବିଶେଷଣ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏହା ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଶରୀର, ବାଣୀ ଏବଂ ମନସମ୍ବନ୍ଧୀ ଉପରୋକ୍ତ ତପ ହିଁ ସାତ୍ତ୍ୱିକ। ତା'ଠାରୁ ଭିନ୍ନ ଅନ୍ୟ ଯେଉଁସବୁ କାୟିକ, ବାଚିକ ଏବଂ ମାନସିକ ତପ ରହିଛି, ଯେଉଁଗୁଡ଼ିକ ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ **ଅଶାସ୍ତ୍ରବିହିତମ୍** ଏବଂ **ଘୋରମ୍** ବିଶେଷଣ ପ୍ରୟୋଗ କରି ନିରୂପଣ କରାଯାଇଛି, ସେହିସବୁ ତପ ସାତ୍ତ୍ୱିକ ନୁହେଁ। ତା' ସଙ୍ଗେ ସଙ୍ଗେ ଏହା ମଧ୍ୟ ଦେଖାଇଦିଆଯାଇଛି ଯେ, ଚଉଦ, ପନ୍ଦର ଏବଂ ଷୋହଳ ଶ୍ଳୋକରେ ଯେଉଁ କାୟିକ, ବାଚିକ ଏବଂ ମାନସିକ ତପଗୁଡ଼ିକର ସ୍ୱରୂପ କୁହାଯାଇଛି, ସେଗୁଡ଼ିକ ସ୍ୱରୂପତଃ ସାତ୍ତ୍ୱିକ; କିନ୍ତୁ ଯଦି ସେଗୁଡ଼ିକୁ ଏହି ଶ୍ଳୋକରେ କୁହାଯାଇଥିବାଭାବରେ କରାଯାଏ, ତେବେ ସେସବୁ ପୂର୍ଣସାତ୍ତ୍ୱିକ ହୋଇଯାନ୍ତି।

**ସମ୍ବନ୍ଧ —** ବର୍ତ୍ତମାନ ରାଜସ ତପର ଲକ୍ଷଣଗୁଡ଼ିକ କହୁଛନ୍ତି—

## ସତ୍କାରମାନପୂଜାର୍ଥଂ ତପୋ ଦମ୍ଭେନ ଚୈବ ଯତ୍।
## କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳମଧ୍ରୁବମ୍॥ ୧୮ ॥

**ଅନ୍ୱୟ —** **ଯତ୍** = ଯେଉଁ; **ତପଃ** = ତପ; **ସତ୍କାରମାନପୂଜାର୍ଥମ୍** = ସତ୍କାର, ମାନ ଓ ପୂଜାପାଇବା ପାଇଁ (ତଥା); **ଚ**, **ଏବ** = ଅନ୍ୟ କୌଣସି ସ୍ୱାର୍ଥସିଦ୍ଧିପାଇଁ, ସ୍ୱଭାବତଃ; **(ବା)** = ବା; **ଦମ୍ଭେନ** = ଦମ୍ଭପୂର୍ବକ; **କ୍ରିୟତେ** = କରାଯାଏ; **ତତ୍** = ସେହି; **ଅଧ୍ରୁବମ୍** = ଅନିଶ୍ଚିତ; **ଚଳମ୍** = (ଓ) କ୍ଷଣିକଫଳଦାୟୀ ତପକୁ; **ଇହ** = ଏଠାରେ; **ରାଜସମ୍** = ରାଜସ (ତପ); **ପ୍ରୋକ୍ତମ୍** = କୁହାଯାଏ।

**ଯେଉଁ ତପ ସତ୍କାର, ମାନ ଓ ପୂଜା ପାଇବାପାଇଁ ତଥା ଅନ୍ୟ କୌଣସି ସ୍ୱାର୍ଥସିଦ୍ଧିପାଇଁ ସ୍ୱଭାବତଃ ବା ଦମ୍ଭପୂର୍ବକ କରାଯାଏ, ସେହି ଅନିଶ୍ଚିତ ଏବଂ କ୍ଷଣିକଫଳଦାୟୀ ତପକୁ ରାଜସ ତପ କୁହାଯାଏ॥ ୧୮ ॥**

**ପ୍ରଶ୍ନ —** ଏଠାରେ **ତପଃ** ସହିତ **ଯତ୍** ପଦ ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏଠାରେ **ତପଃ** ସହିତ **ଯତ୍** ପଦ ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଶାସ୍ତ୍ରରେ ଯେତେପ୍ରକାର ବ୍ରତ, ଉପବାସ ଏବଂ ସଂଯମ ଆଦି ତପ ବର୍ଣ୍ଣିତ ହୋଇଛି, ସେଗୁଡ଼ିକ ଯଦି ସତ୍କାର, ମାନ ଏବଂ ପୂଜାଦିପାଇଁ କରାଯାଏ, ତେବେ ସେଗୁଡ଼ିକ ରାଜସତପ ଶ୍ରେଣୀର ହୁଅନ୍ତି।

**ପ୍ରଶ୍ନ —** ସତ୍କାର, ମାନ ପୂଜାପାଇଁ ତପ କରିବା କ'ଣ ତଥା **ଚ** ଏବଂ **ଏବ** ପ୍ରୟୋଗର ଭାବ କ'ଣ ?

**ଉତ୍ତର —** ତପର ପ୍ରସିଦ୍ଧିଦ୍ୱାରା ଜଗତରେ 'ଏ ଜଣେ ବିରାଟ ତପସ୍ୱୀ, ଏହାଙ୍କ ପରି ଆଉ କିଏ ହୋଇପାରିବ! ଏ ଜଣେ ଶ୍ରେଷ୍ଠ ପୁରୁଷ' ଆଦି ଯେଉଁ ଗୌରବ ମିଳେ, ତାହାର ନାମ **ସତ୍କାର**। କାହାରିକୁ ତପସ୍ୱୀ ବୋଲି ଜାଣିବା ପରେ ତାଙ୍କୁ ସ୍ୱାଗତ କରିବା, ତାଙ୍କୁ

ଦେଖି ଠିଆ ହେବା, ତାଙ୍କୁ ପ୍ରଣାମ କରିବା, ମାନପତ୍ର ଦେବା ବା ଅନ୍ୟ କୌଣସିପ୍ରକାର କାର୍ଯ୍ୟଦ୍ୱାରା ତାଙ୍କର ଆଦରସମ୍ମାନ କରିବାକୁ **ମାନ** କହନ୍ତି; ତଥା ତାଙ୍କୁ ଆରତି କରିବା, ତାଙ୍କର ପାଦ ଧୋଇଦେବା, ପତ୍ର-ପୁଷ୍ପାଦି ଦେଇ ତାଙ୍କୁ ଷୋଡ଼ଶୋପଚାରରେ ପୂଜା କରିବା, ତାଙ୍କର ଆଜ୍ଞା ପାଳନ କରିବା ଇତ୍ୟାଦିର ନାମ **ପୂଜା**।

ଏସବୁ ପାଇବାପାଇଁ ଯେଉଁ ଲୌକିକ ବା ଶାସ୍ତ୍ରୀୟ ତପ ଆଚରଣ କରାଯାଏ, ତାହାକୁ ସତ୍କାର, ମାନ ଏବଂ ପୂଜାପାଇଁ କରାଯାଉଥିବା ତପ ବୋଲାଯାଏ। **ଚ** ଏବଂ **ଏବ** ପ୍ରୟୋଗ କରି ଦେଖାଇଛନ୍ତି ଯେ, ଏହା ବ୍ୟତୀତ ଅନ୍ୟ କୌଣସି ସ୍ୱାର୍ଥସିଦ୍ଧିନିମିତ୍ତ କରାଯାଉଥିବା ତପ ମଧ୍ୟ ରାଜସ ତପ।

**ପ୍ରଶ୍ନ –** ଦମ୍ଭପୂର୍ବକ ତପ କରିବା କ'ଣ ?

**ଉତ୍ତର –** ତପରେ ବସ୍ତୁତଃ ଆସ୍ଥା ନ ଥିଲେ ମଧ୍ୟ ଲୋକମାନଙ୍କୁ ଧୋକା ଦେଇ କୌଣସିପ୍ରକାର ସ୍ୱାର୍ଥସିଦ୍ଧିପାଇଁ ତପସ୍ୱୀଭଳି ବେଶ ଧରି ଉପରେ ଦେଖାଇହେବାକୁ ଯେଉଁ ଲୌକିକ ବା ଶାସ୍ତ୍ରୀୟ ତପ ଆଚରଣ କରାଯାଏ, ତାହା ହିଁ ଦମ୍ଭପୂର୍ବକ ତପ କରିବା।

**ପ୍ରଶ୍ନ –** ସ୍ୱାର୍ଥସିଦ୍ଧିପାଇଁ ଯେଉଁ ତପ ଦମ୍ଭପୂର୍ବକ କରାଯାଏ, ତାହାକୁ ରାଜସ ବୋଲି ଧରାଯାଏ, ନା କେବଳ ସ୍ୱାର୍ଥସମ୍ବନ୍ଧହେତୁ ହିଁ ତାହା ରାଜସ ହୋଇଯାଏ ?

**ଉତ୍ତର –** କେବଳ ସ୍ୱାର୍ଥସମ୍ବନ୍ଧହେତୁ ହିଁ ରାଜସ ହୋଇଯାଏ। ପୁଣି ଯଦି ଦମ୍ଭ ମଧ୍ୟ ତା' ସାଥିରେ ଥାଏ, ତେବେ କହିବାର କ'ଣ ଅଛି ?

**ପ୍ରଶ୍ନ –** ରାଜସ ତପକୁ **ଅଧ୍ରୁବ** ଏବଂ **ଚଳ** କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁ ଫଳପ୍ରାପ୍ତି ଆଶାରେ ତାହା ଅନୁଷ୍ଠାନ କରାଯାଏ, ତାହା ପ୍ରାପ୍ତ ହେବ, କି ନ ହେବ, ତା'ର କୌଣସି ନିଶ୍ଚିତତା ନ ଥାଏ। ତେଣୁ ତାହାକୁ **'ଅଧ୍ରୁବ'** କୁହାଯାଇଛି ଏବଂ ଯାହା କିଛି ଫଳ ମିଳେ, ତାହା ମଧ୍ୟ ସବୁଦିନପାଇଁ ରହେ ନାହିଁ; ତାହାର ନାଶ ନିଶ୍ଚିତ। ତେଣୁ ତାହାକୁ **ଚଳ** କୁହାଯାଇଛି।

*ସମ୍ବନ୍ଧ – ବର୍ତ୍ତମାନ ସର୍ବଥା ତ୍ୟାଜ୍ୟ ତାମସ ତପର ଲକ୍ଷଣ ବର୍ଣ୍ଣନା କରୁଛନ୍ତି–*

## ମୂଢ଼ଗ୍ରାହେଣାତ୍ମନୋ ଯତ୍ ପୀଡ଼ୟା କ୍ରିୟତେ ତପଃ।
## ପରସ୍ୟୋତ୍ସାଦନାର୍ଥଂ ବା ତତ୍ତାମସମୁଦାହୃତମ୍॥ ୧୯ ॥

**ଅନ୍ୱୟ –** **ଯତ୍** = ଯେଉଁ; **ତପଃ** = ତପ; **ମୂଢ଼ଗ୍ରାହେଣ** = ମୂଢ଼ତାପୂର୍ବକ ଜିଦ୍‌ଦ୍ୱାରା; **ଆତ୍ମନଃ** = ମନ, ବାଣୀ ଓ ଶରୀରର; **ପୀଡ଼ୟା** = ପୀଡ଼ା ସହିତ; **ବା** = ଅଥବା; **ପରସ୍ୟ** = ଅନ୍ୟର; **ଉତ୍ସାଦନାର୍ଥମ୍** = ଅନିଷ୍ଟ କରିବା ନିମନ୍ତେ; **କ୍ରିୟତେ** = କରାଯାଏ; **ତତ୍** = ସେହି ତପକୁ; **ତାମସମ୍** = ତାମସ; **ଉଦାହୃତମ୍** = କୁହାଯାଏ।

**ଯେଉଁ ତପ ମୂଢ଼ତାପୂର୍ବକ ଜିଦ୍ ଧରି ମନ, ବାଣୀ ଓ ଶରୀରର ପୀଡ଼ା ସହିତ କରାଯାଏ, ଅଥବା ଅନ୍ୟର ଅନିଷ୍ଟ କରିବା ନିମନ୍ତେ କରାଯାଏ, ସେହି ତପକୁ ତାମସ ତପ କୁହାଯାଏ॥ ୧୯ ॥**

**ପ୍ରଶ୍ନ –** ଏଠାରେ **ତପଃ** ସହିତ **ଯତ୍** ପଦ ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁ ତପର ବର୍ଣ୍ଣନା ଏହି ଅଧ୍ୟାୟର ପଞ୍ଚମ ଓ ଷଷ୍ଠ ଶ୍ଳୋକରେ କରାଯାଇଛି, ଯାହା ଅଶାସ୍ତ୍ରୀୟ, ମନଃକଳ୍ପିତ, ଘୋର ଏବଂ ସ୍ୱଭାବତଃ ତାମସ, ଯେଉଁଥିରେ ଦାମ୍ଭିକତାହେତୁ ବା ଅଜ୍ଞତାବଶତଃ ପାଦକୁ ଗଛଡାଳରେ ବାନ୍ଧିଦେଇ ମୁଣ୍ଡ ତଳକୁ କରି ଓହଳି ରହିବା, ଲୁହାକଣ୍ଟା ଉପରେ ବସିବା ତଥା ଏହିପରି ଅନ୍ୟାନ୍ୟ ଘୋର କ୍ରିୟା କରି ଯେଉଁ ମନ୍ଦ ଅଭିପ୍ରାୟରେ କଷ୍ଟ ସହନ କରାଯାଏ, ଏଠାରେ **ତାମସତପ** ନାମରେ ସେସବୁକୁ ହିଁ ଲକ୍ଷ୍ୟ କରାଯାଇଛି। ଏହି ଭାବ ଦେଖାଇବାକୁ **ତପଃ** ସହିତ **ଯତ୍** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **ମୂଢ଼ଗ୍ରାହ** କାହାକୁ କହନ୍ତି ଏବଂ ତାହାଦ୍ୱାରା ତପ କରିବା କ'ଣ ?

**ଉତ୍ତର –** ତପର ବାସ୍ତବିକ ଲକ୍ଷଣ ନ ଜାଣି, ଯେକୌଣସି କ୍ରିୟାକୁ ତପ ବୋଲି ମାନି, ତାହା କରିବାକୁ ଯେଉଁ ହଠ ବା ଦୁରାଗ୍ରହ ହୁଏ, ତାହାକୁ **ମୂଢ଼ଗ୍ରାହ** କହନ୍ତି। ଏପରି ଆଗ୍ରହହେତୁ ତାମସୀ କ୍ରିୟାକୁ

ତପ ବୋଲି ଭାବି କୌଣସି ଶାରୀରିକ, ବାଚିକ ବା ମାନସିକ କଷ୍ଟ ସହିବା ହିଁ ମୂଢ଼ତାପୂର୍ଣ୍ଣ ଆଗ୍ରହରେ ତପ କରିବା ।

**ପ୍ରଶ୍ନ –** ଆତ୍ମସମ୍ବନ୍ଧୀ ପୀଡ଼ା ସହିତ ତପ କରିବା କ'ଣ ?

**ଉତ୍ତର –** ଏଠାରେ ଆତ୍ମା ଶବ୍ଦଟି ହେଉଛି ମନ, ବାଣୀ ଏବଂ ଶରୀରର ବାଚକ । ଏସବୁ ସହିତ ସମ୍ବନ୍ଧ ରଖୁଥିବା କଷ୍ଟ ହିଁ ଆତ୍ମସମ୍ବନ୍ଧୀ ପୀଡ଼ା । ଅତଏବ ମନ, ବାଣୀ ଏବଂ ଶରୀର — ଏସମସ୍ତଙ୍କୁ ବା ଏଥିମଧ୍ୟରୁ କୌଣସି ଗୋଟିକୁ ଅନୁଚିତ କଷ୍ଟ ଦେଇ ଅଶାସ୍ତ୍ରୀୟ ତପ କରିବାକୁ ଆତ୍ମସମ୍ବନ୍ଧୀ ପୀଡ଼ା ସହିତ ତପ କରିବା ବୋଲାଯାଏ ।

**ପ୍ରଶ୍ନ –** ଅନ୍ୟମାନଙ୍କର ଅନିଷ୍ଟ କରିବା ନିମନ୍ତେ ତପ କରିବା କ'ଣ ?

**ଉତ୍ତର –** ଅନ୍ୟମାନଙ୍କର ସମ୍ପତ୍ତି ହରଣ କରିବା, ତାହାକୁ ନାଶ କରିବା, ସେମାନଙ୍କ ବଂଶ ଉଚ୍ଛେଦ କରିବା ଅଥବା ସେମାନଙ୍କର କୌଣସିପ୍ରକାର ଅନିଷ୍ଟ କରିବା ନିମନ୍ତେ ନିଜର ମନ, ବାଣୀ ଓ ଶରୀରକୁ କଷ୍ଟ ଦେବା ହିଁ ଅନ୍ୟମାନଙ୍କର ଅନିଷ୍ଟ କରିବା ନିମନ୍ତେ ତପ କରିବା ।

**ପ୍ରଶ୍ନ –** ଏଠାରେ ବା ଅବ୍ୟୟ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ବା ଅବ୍ୟୟ ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ଯେଉଁ ତପ ଉପରୋକ୍ତ ଲକ୍ଷଣମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବି ଲକ୍ଷଣରେ ଯୁକ୍ତ ଅଟେ, ତାହା ତାମସ ତପ ।

**ସମ୍ବନ୍ଧ –** ତିନିପ୍ରକାର ତପର ଲକ୍ଷଣ ବର୍ଣ୍ଣନା କରିସାରିବା ପରେ ବର୍ତ୍ତମାନ ତିନିପ୍ରକାର ଦାନର ବର୍ଣ୍ଣନା ଆରମ୍ଭ କରି ଭଗବାନ୍ ପ୍ରଥମେ ସାତ୍ତ୍ୱିକ ଦାନର ଲକ୍ଷଣ କହୁଛନ୍ତି–

## ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
## ଦେଶେ କାଲେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ।। ୨୦ ।।

**ଅନ୍ୱୟ –** ଦାତବ୍ୟମ୍ = ଦାନ ଦେବା ହିଁ କର୍ତ୍ତବ୍ୟ; **ଇତି** = ଏପରି ଭାବ ରଖି; **ଯତ୍** = ଯେଉଁ; ଦାନମ୍ = ଦାନ; **ଦେଶେ** = ସ୍ଥାନ; **କାଲେ** = କାଳ; **ଚ** = ଏବଂ; **ପାତ୍ରେ** = ପାତ୍ର ପ୍ରାପ୍ତ ହେଲେ; **ଅନୁପକାରିଣେ** = ପ୍ରତ୍ୟୁପକାର ଆଶା ନ ରଖି ଅନୁପକାରୀକୁ; **ଦୀୟତେ** = ନିଃସ୍ୱାର୍ଥଭାବରେ ଦିଆଯାଏ; **ତତ୍** = ସେହି; **ଦାନମ୍** = ଦାନକୁ; **ସାତ୍ତ୍ୱିକମ୍** = ସାତ୍ତ୍ୱିକ (ବୋଲି); **ସ୍ମୃତମ୍** = କୁହାଯାଇଛି ।

**ଦାନ ଦେବା ହିଁ କର୍ତ୍ତବ୍ୟ – ଏପରି ଭାବ ରଖି ଯେଉଁ ଦାନ ଦେଶ, କାଳ ଓ ପାତ୍ର ପ୍ରାପ୍ତ ହେଲେ ପ୍ରତ୍ୟୁପକାର ଆଶା ନ ରଖି ଅନୁପକାରୀକୁ ନିଃସ୍ୱାର୍ଥଭାବରେ ଦିଆଯାଏ, ସେହି ଦାନକୁ ସାତ୍ତ୍ୱିକ କହନ୍ତି ।। ୨୦ ।।**

**ପ୍ରଶ୍ନ –** ଏଠାରେ ଇତି ଅବ୍ୟୟ ସହିତ **ଦାତବ୍ୟମ୍** ପଦ ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର –** ଏ ଦୁଇଟି ପ୍ରୟୋଗ କରି ଭଗବାନ୍ ସତ୍ତ୍ୱଗୁଣର ପୂର୍ଣ୍ଣବିକାଶପାଇଁ ନିଷ୍କାମଭାବ ଯେ ଏକାନ୍ତ ଆବଶ୍ୟକ, ତାହା ପ୍ରତିପାଦନ କରିଛନ୍ତି । ସେ କହୁଛନ୍ତି – ବର୍ଣ୍ଣ, ଆଶ୍ରମ, ଅବସ୍ଥା ଏବଂ ପରିସ୍ଥିତି ଅନୁସାରେ ଶାସ୍ତ୍ରବିହିତ ଦାନ କରିବା, ନିଜର ସ୍ୱତ୍ୱକୁ ଯଥାଶକ୍ତି ଅନ୍ୟର ମଙ୍ଗଳରେ ଲଗାଇବା ହେଉଛି ମନୁଷ୍ୟର ପରମ କର୍ତ୍ତବ୍ୟ । ଯଦି ସେ ତାହା ନ କରେ, ତେବେ ସେ ମନୁଷ୍ୟତ୍ୱରୁ ତଳକୁ ଖସିପଡ଼େ ଏବଂ ଭଗବାନଙ୍କର କଲ୍ୟାଣମୟ ଆଦେଶର ଅନାଦର କରେ । ତେଣୁ ଯେଉଁ ଦାନ କେବଳ ଏହି କର୍ତ୍ତବ୍ୟବୁଦ୍ଧିରେ ହିଁ କରାଯାଏ, ଯେଉଁଥିରେ ଇହଲୋକ ବା ପରଲୋକର କୌଣସି ଫଳପାଇଁ ଟିକିଏ ବି ଅପେକ୍ଷା ନ ଥାଏ, ସେହି ଦାନ ହିଁ ପୂର୍ଣ୍ଣ ସାତ୍ତ୍ୱିକ ଦାନ ।

**ପ୍ରଶ୍ନ –** ଏଠାରେ **ଦେଶ** ଏବଂ **କାଳ** ଶବ୍ଦ କେଉଁ ଦେଶ-କାଳର ବାଚକ ?

**ଉତ୍ତର –** ଯେଉଁ ଦେଶରେ ଏବଂ ଯେଉଁ କାଳରେ ଯେଉଁ ବସ୍ତୁ ଆବଶ୍ୟକ ହୁଏ, ଅନ୍ୟର ସୁଖନିମନ୍ତେ ସେହି ବସ୍ତୁ ଦାନ କରିବାର ତାହା ହିଁ ଯୋଗ୍ୟ ଦେଶ ଓ ଯୋଗ୍ୟ କାଳ । ଯଥା ଯେଉଁ ଦେଶରେ, ଯେଉଁ ସମୟରେ ଦୁର୍ଭିକ୍ଷ ବା ମହାମାରି ପଡ଼ିଥାଏ,

ତାହା ତୀର୍ଥସ୍ଥାନ ହୋଇଥାଉ, କି ନ ହୋଇଥାଉ, ତାହା ପୁଣ୍ୟପର୍ବ ହୋଇଥାଉ, କି ନ ହୋଇଥାଉ, ଅନ୍ନଜଳ ଦାନ କରିବାପାଇଁ ସେହି ଦେଶ ଓ ସେହି ସମୟ ଉପଯୁକ୍ତ ଦେଶ-କାଳ ଅଟେ। ତା'ଛଡ଼ା ସାଧାରଣ ଅବସ୍ଥାରେ ମଧ୍ୟ କୁରୁକ୍ଷେତ୍ର, ହରିଦ୍ୱାର, ମଥୁରା, କାଶୀ, ପ୍ରୟାଗ, ନୈମିଷାରଣ୍ୟ ଆଦି ତୀର୍ଥସ୍ଥାନକୁ ଏବଂ ଗ୍ରହଣ, ପୂର୍ଣ୍ଣିମା, ଅମାବାସ୍ୟା, ସଂକ୍ରାନ୍ତି, ଏକାଦଶୀ ଆଦି ପୁଣ୍ୟକାଳକୁ ଶାସ୍ତ୍ରମାନଙ୍କରେ ଦାନପାଇଁ ପ୍ରଶସ୍ତ ଦେଶ-କାଳ ବୋଲି ଧରାଯାଇଛି। ତେଣୁ ଏସବୁ ତ ସହଜେ ଉପଯୁକ୍ତ ଦେଶ-କାଳ। ଏହି ସବୁର ବାଚକ ହେଉଛି 'ଦେଶ' ଓ 'କାଳ'।

**ପ୍ରଶ୍ନ —** ପାତ୍ର ଶବ୍ଦ କାହାର ବାଚକ?

**ଉତ୍ତର —** ଯାହା ପାଖରେ ଯେଉଁଠାରେ ଯେଉଁ ସମୟରେ ଯେଉଁ ବସ୍ତୁର ଅଭାବ ଥାଏ, ସେ ସେହି ସ୍ଥାନରେ ଏବଂ ସେହି ସମୟରେ ସେହି ବସ୍ତୁଦାନର ଯୋଗ୍ୟ ପାତ୍ର। ଉଦାହରଣସ୍ୱରୂପ, କ୍ଷୁଧାର୍ତ୍ତ, ତୃଷାର୍ତ୍ତ, ବସ୍ତ୍ରହୀନ, ଦରିଦ୍ର, ରୋଗୀ, ଆର୍ତ୍ତ, ଅନାଥ ଏବଂ ଭୟଭୀତ ପ୍ରାଣୀମାନେ ଅନ୍ନ, ଜଳ, ବସ୍ତ୍ର, ନିର୍ବାହଯୋଗ୍ୟ ଧନ, ଔଷଧ, ଆଶ୍ୱାସନା, ଆଶ୍ରୟ ଏବଂ ଅଭୟଦାନର ପାତ୍ର ଅଟନ୍ତି। ଆର୍ତ୍ତ ପ୍ରାଣୀମାନଙ୍କର ପାତ୍ରତାରେ ଜାତି, ଦେଶ ଏବଂ କାଳର କୌଣସି ବନ୍ଧନ ନାହିଁ। ସେମାନଙ୍କର ଆତୁର ଦଶା ହିଁ ସେମାନଙ୍କର ପାତ୍ରତାର ପରିଚୟ। ସେମାନଙ୍କ ଛଡ଼ା ଯେଉଁ ସଦାଚାରସମ୍ପନ୍ନ ବିଦ୍ୱାନ୍, ବ୍ରାହ୍ମଣ, ଉତ୍ତମ ବ୍ରହ୍ମଚାରୀ, ବାନପ୍ରସ୍ଥ ଏବଂ ସନ୍ନ୍ୟାସୀ ତଥା ସେବାବ୍ରତୀମାନେ ଅଛନ୍ତି, —ଯାହାଙ୍କୁ ଯେଉଁ ବସ୍ତୁ ଦାନ କରିବା ଶାସ୍ତ୍ରରେ କର୍ତ୍ତବ୍ୟ ବୋଲି କୁହାଯାଇଛି, ସେମାନେ ନିଜ ନିଜର ଅଧିକାର ଅନୁସାରେ ଯଥାଶକ୍ତି ଧନ ଆଦି ସମସ୍ତ ଆବଶ୍ୟକ ବସ୍ତୁ ଦାନ ପାଇବାର ପାତ୍ର ଅଟନ୍ତି।

**ପ୍ରଶ୍ନ —** ଏଠାରେ **ଅନୁପକାରିଣେ** ପଦ କେଉଁ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇଛି? ନିଜର ଉପକାର କରିଥିବା ଲୋକକୁ କିଛି ଦେବା ଅନୁଚିତ, ନା ତାହା ରାଜସ ଦାନ?

**ଉତ୍ତର —** ଯେ ଉପକାର କରିଛନ୍ତି, ତାଙ୍କର ସେବା କରିବା ତଥା ତାଙ୍କୁ ଯଥାସାଧ୍ୟ ସୁଖ ଦେବାକୁ ଚେଷ୍ଟା କରିବା ତ ମନୁଷ୍ୟର କର୍ତ୍ତବ୍ୟ। କେବଳ କର୍ତ୍ତବ୍ୟ ନୁହେଁ, ଭଲ ଲୋକେ ଉପକାରୀ ଲୋକର ସେବା ନ କରି ରହିପାରନ୍ତି ନାହିଁ। ସେମାନେ ଜାଣନ୍ତି ଯେ, ପ୍ରକୃତ ଉପକାର ସୁଝିଦେବାକୁ ଯିବା ହିଁ ଉପକାରୀଙ୍କୁ ତିରସ୍କାର କରିବା; କାରଣ, ପ୍ରକୃତ ଉପକାର କେହି କେବେ ସୁଝିପାରିବ ନାହିଁ; ତେଣୁ ସେ କେବଳ ଆତ୍ମସନ୍ତୋଷପାଇଁ ଉପକାରୀର ସେବା କରନ୍ତି ଏବଂ ଯେତେ କଲେ ମଧ୍ୟ ତାହା ତାଙ୍କୁ ଅଳ୍ପ ବୋଧହୁଏ। ସେ ତ କୃତଜ୍ଞତାରେ ବୁଡ଼ିରହନ୍ତି। ଶ୍ରୀରାମଚରିତ ମାନସରେ ଭଗବାନ୍ ଶ୍ରୀରାମଚନ୍ଦ୍ର ହନୁମାନଙ୍କୁ କହିଛନ୍ତି —

> **ସୁନୁ କପି ତୋହି ସମାନ ଉପକାରୀ।**
> **ନହିଂ କୋଉ ସୁରନର ମୁନି ତନୁ ଧାରୀ॥**
> **ପ୍ରତି ଉପକାର କରୌଂ କା ତୋରା।**
> **ସନମୁଖ ହୋଇ ନ ସକତ ମନ ମୋରା॥**

ଅର୍ଥାତ୍ :—

> ଶୁଣ କପି ତୁମପରି ହୋଇ ଉପକାରୀ।
> ନାହାନ୍ତି କେ ସୁର-ନର-ମୁନି-ତନୁଧାରୀ॥
> କରିବାର ଅଛି ପ୍ରତି-ଉପକାର କଥା।
> ତୁମ ଆଗେ ମନ ଟେକି ନ ପାରଇ ମଥା॥

ଶ୍ରୀମଦ୍ ଭାଗବତରେ ଭଗବାନ୍ ଶ୍ରୀକୃଷ୍ଣ ନିଜକୁ ଶ୍ରୀ ଗୋପୀଜନମାନଙ୍କର ଋଣୀ ବୋଲି ଘୋଷଣା କରିଛନ୍ତି। ସୁତରାଂ ଉପକାରୀ ଲୋକଙ୍କୁ କିଛି ଦେବା କଦାପି ଅନୁଚିତ ବା ରାଜସ ହୋଇ ନ ପାରେ। ପରନ୍ତୁ ତାହା ଦାନର ଶ୍ରେଣୀଭୁକ୍ତ ନୁହେଁ। ତାହା ତ କୃତଜ୍ଞତା ପ୍ରକାଶ କରିବାର ଏକ ସ୍ୱାଭାବିକ ଚେଷ୍ଟାମାତ୍ର। ତାହାକୁ ଯେଉଁ ଲୋକେ ଦାନ ବୋଲି ମନେକରନ୍ତି, ସେମାନେ ବସ୍ତୁତଃ ଉପକାରୀଙ୍କୁ ତିରସ୍କାର କରନ୍ତି ଏବଂ ଯେଉଁମାନେ ଉପକାରୀ ଲୋକର ସେବା କରିବାକୁ ଚାହାଁନ୍ତି ନାହିଁ, ସେମାନେ ତ କୃତଘ୍ନ ଶ୍ରେଣୀର ଲୋକ। ଅତଏବ ନିଜର ଉପକାରୀ ଲୋକଙ୍କର ସେବା କରିବା ଅତ୍ୟନ୍ତ ଆବଶ୍ୟକ।

ଏଠାରେ ଅନୁପକାରୀଙ୍କୁ ଦାନ ଦେବା କଥା କହି ଭଗବାନ୍ ଦେଖାଇଛନ୍ତି ଯେ, ଦାନ ଦେଉଥିବା ଲୋକ ଦାନର ପାତ୍ରଙ୍କ ଠାରୁ କୌଣସିପ୍ରକାର ତିଳେମାତ୍ର ପ୍ରତ୍ୟୁପକାର ପାଇବାର ଇଚ୍ଛା ନ ରଖିବା ଉଚିତ। ଯାହା ସହିତ ମନରେ କୌଣସିପ୍ରକାର ସ୍ୱାର୍ଥ-ସମ୍ବନ୍ଧ ନ ଥାଏ, ତାକୁ ଯେଉଁ ଦାନ ଦିଆଯାଏ, ତାହା ସାତ୍ତ୍ୱିକ ଦାନ। ଏହାଦ୍ୱାରା ବସ୍ତୁତଃ ଦାତାଙ୍କୁ ସ୍ୱାର୍ଥବୁଦ୍ଧି ରଖିବାକୁ ନିଷେଧ କରାଯାଇଛି।

**ସମ୍ବନ୍ଧ—** ବର୍ତ୍ତମାନ ରାଜସ ଦାନର ଲକ୍ଷଣ ବର୍ଣ୍ଣନା କରୁଛନ୍ତି—

**ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଲମୁଦ୍ଦିଶ୍ୟ ବା ପୁନଃ ।**
**ଦୀୟତେ ଚ ପରିକ୍ଲିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତମ୍ ।। ୨୧ ।।**

**ଅନ୍ୱୟ—** ତୁ = କିନ୍ତୁ; ଯତ୍ = ଯେଉଁ (ଦାନ); ପରିକ୍ଲିଷ୍ଟଂ = କ୍ଲେଶପୂର୍ବକ; ଚ = ତଥା; ପ୍ରତ୍ୟୁପକାରାର୍ଥମ୍ = ପ୍ରତ୍ୟୁପକାର ପାଇବା ନିମନ୍ତେ; ବା = ଅଥବା; ଫଳମ୍ = ଫଳପ୍ରାପ୍ତିକୁ; ଉଦ୍ଦିଶ୍ୟ = ଉଦ୍ଦେଶ୍ୟ କରି; ପୁନଃ = ପୁଣି; ଦୀୟତେ = ଦିଆଯାଏ; ତତ୍ = ସେହି; ଦାନମ୍ = ଦାନକୁ; ରାଜସମ୍ = ରାଜସ (ବୋଲି); ସ୍ମୃତମ୍ = କୁହାଯାଏ ।

**କିନ୍ତୁ ଯେଉଁ ଦାନ କ୍ଲେଶପୂର୍ବକ ତଥା ପ୍ରତ୍ୟୁପକାର ପାଇବା ନିମନ୍ତେ ଅଥବା ଫଳପ୍ରାପ୍ତିଉଦ୍ଦେଶ୍ୟରେ ଦିଆଯାଏ, ସେହି ଦାନକୁ ରାଜସ କୁହାଯାଏ ।। ୨୧ ।।**

**ପ୍ରଶ୍ନ—** ତୁର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଠାରେ ସାତ୍ତ୍ୱିକ ଦାନ ଓ ରାଜସ ଦାନ ମଧ୍ୟରେ ପ୍ରଭେଦ ଦେଖାଇବା ପାଇଁ ତୁ ପ୍ରୟୋଗ କରାଯାଇଛି ।

**ପ୍ରଶ୍ନ—** କ୍ଲେଶପୂର୍ବକ ଦାନ ଦେବା କ'ଣ ?

**ଉତ୍ତର—** କେହି ଧାରଣା ଦେବାରୁ ବା ଜବରଦସ୍ତି କରିବାରୁ ବା ଭୟ ଦେଖାଇବାରୁ ଅଥବା କୌଣସି ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଦ୍ୱାରା କିଛି ଚାପ ପଡ଼ିବାରୁ ବିନା ଇଚ୍ଛାରେ, ମନରେ ବିଷାଦ ଓ ଦୁଃଖ ରଖି, ନିରୁପାୟ ହୋଇ ଯେଉଁ ଦାନ ଦିଆଯାଏ, ତାହା କ୍ଲେଶପୂର୍ବକ ଦାନ ଦେବା ।

**ପ୍ରଶ୍ନ—** ପ୍ରତ୍ୟୁପକାରପାଇଁ ଦାନ ଦେବା କ'ଣ ?

**ଉତ୍ତର—** ଯେଉଁ ଲୋକ ପ୍ରାୟତଃ କାମରେ ଆସେ, ବା ଆଗକୁ ଯାହାଦ୍ୱାରା ନିଜର ଛୋଟ ବା ବଡ଼ କୌଣସି କାମ ହୋଇଯିବାର ସମ୍ଭାବନା ବା ଆଶା ଥାଏ, ସେପରି ଲୋକଙ୍କୁ ଦେବା ଦାନ ପ୍ରକୃତ ଦାନ ନୁହେଁ। ଏହା ତ ବଦଳ ପାଇବାପାଇଁ ଦିଆଯାଉଥିବା ବଇଁଚାପରି। ଆଜିକାଲି ଯେପରି ସୋମବତୀ ଅମାବାସ୍ୟା ଆଦି ପର୍ବରେ ଅଥବା ଅନ୍ୟ କିଛି ନିମିତ୍ତରେ ଦାନ ସଂକଳ୍ପ କରି ଏପରି ବ୍ରାହ୍ମଣଙ୍କୁ ଦାନ ଦିଆଯାଏ, ଯେ କି ନିଜର ବା ନିଜର ବନ୍ଧୁ ବାନ୍ଧବଙ୍କର ଅଥବା ମିତ୍ରଙ୍କର କାମରେ ଆସନ୍ତି ତଥା ଯାହାଙ୍କ ଦ୍ୱାରା ଭବିଷ୍ୟତରେ ନିଜର କିଛି କାମ କରାଇବାର ଆଶା ଥାଏ ବା ଏପରି ସଂସ୍ଥାମାନଙ୍କୁ ବା ସଂସ୍ଥାମାନଙ୍କର ସଂଚାଳକମାନଙ୍କୁ ଦାନ ଦିଆଯାଏ, ଯେଉଁମାନଙ୍କ ଦ୍ୱାରା ତା'ବଦଳରେ କୌଣସିପ୍ରକାର ସ୍ୱାର୍ଥସିଦ୍ଧିର ସମ୍ଭାବନା ଥାଏ, ତାହା ହିଁ ପ୍ରତ୍ୟୁପକାର ଉଦ୍ଦେଶ୍ୟରେ ଦାନ ଦେବା ।

**ପ୍ରଶ୍ନ—** ଫଳପ୍ରାପ୍ତି ଉଦ୍ଦେଶ୍ୟରେ ଦାନ ଦେବା କ'ଣ ?

**ଉତ୍ତର—** ମାନ, ବଡ଼ିମା, ପ୍ରତିଷ୍ଠା ଏବଂ ସ୍ୱର୍ଗାଦି ଇହଲୋକ ଓ ପରଲୋକର ଭୋଗପ୍ରାପ୍ତିପାଇଁ ବା ରୋଗ ଆଦିର ନିବୃତ୍ତିପାଇଁ ଯାହା କିଛି ଦାନ କୌଣସି ବ୍ୟକ୍ତି ବା ସଂସ୍ଥାକୁ ଦିଆଯାଏ, ତାହା ଫଳ ଉଦ୍ଦେଶ୍ୟରେ ଦାନ ଦେବା। କେତେକ ଲୋକ ତ ଗୋଟିଏ ଦାନ ଦେଇ ସେଥିରୁ ଏକ ସଙ୍ଗେ ଅନେକ ଲାଭ ଉଠାଇବାକୁ ଇଚ୍ଛା କରିଥାନ୍ତି। ଯଥା—

(କ) ଯାହାକୁ ଦାନ ଦିଆଯାଇଛି, ସେ କୃତଜ୍ଞତା ସ୍ୱୀକାର କରିବ ଏବଂ ସମୟକ୍ରମେ ବିଭିନ୍ନ ଭଲ-ମନ୍ଦରେ ଆମ ପକ୍ଷ ନେବ।

(ଖ) ଖ୍ୟାତି ହେବ, ଯାହାଦ୍ୱାରା ପ୍ରତିଷ୍ଠା ବଢ଼ିବ ଏବଂ ସମ୍ମାନ ମିଳିବ।

(ଗ) ଖବରକାଗଜରେ ନାମ ଛପା ହୋଇଗଲେ ଲୋକେ ବହୁତ ଧନୀ ବୋଲି ଜାଣିବେ ଏବଂ ତଦ୍ଦ୍ୱାରା ବ୍ୟବସାୟରେ ମଧ୍ୟ ନାନାପ୍ରକାର ସୁବିଧାସୁଯୋଗ ମିଳିଯିବ ଏବଂ ଅଧିକ ଧନ ଉପାର୍ଜନ କରାଯାଇପାରିବ।

(ଘ) ଭଲଭାବରେ ପ୍ରସିଦ୍ଧି ମିଳିଗଲେ ପୁଅଝିଅଙ୍କର ସମ୍ବନ୍ଧ ଖୁବ୍ ବଡ଼ ବଡ଼ ଘରେ ହୋଇପାରିବ, ଯାହାଦ୍ୱାରା ନାନାପ୍ରକାର ସ୍ୱାର୍ଥସାଧନ ହୋଇପାରିବ।

(ଙ) ଶାସ୍ତ୍ର ଅନୁସାରେ ପରଲୋକରେ ଦାନର ବହୁଗୁଣ ଭଲ ଫଳ ତ ନିଶ୍ଚିତ ମିଳିଯିବ।

ମନୁଷ୍ୟର ଏହିପରି ଭାବନାଦ୍ୱାରା ଦାନର ମହତ୍ତ୍ୱ ହ୍ରାସ ପାଇଯାଏ।

**ପ୍ରଶ୍ନ—** 'ବା', 'ପୁନଃ' ଏବଂ 'ଚ' —ଏହି ତିନି ଅବ୍ୟୟ ପ୍ରୟୋଗର ଭାବ କ'ଣ ?

**ଉତ୍ତର—** ଏହି ତିନୋଟି ପ୍ରୟୋଗ କରି ଏଠାରେ ଦେଖାଇଦିଆଯାଇଛି ଯେ, ଉପରୋକ୍ତ ତିନିପ୍ରକାର ଭାବମଧ୍ୟରୁ କୌଣସି ଗୋଟିଏ ଭାବ ରଖି ଦାନ କଲେ ମଧ୍ୟ ତାହା ରାଜସ ଦାନ ହୋଇଯାଏ।

**ସମ୍ବନ୍ଧ —** ବର୍ତ୍ତମାନ ତାମସ ଦାନର ଲକ୍ଷଣ ବର୍ଣ୍ଣନା କରୁଛନ୍ତି—

**ଅଦେଶକାଳେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।**
**ଅସତ୍କୃତମବଜ୍ଞାତଂ ତତ୍ତାମସମୁଦାହୃତମ୍ ।। ୨୨ ।।**

**ଅନ୍ୱୟ —** ଯତ୍ = ଯେଉଁ; ଦାନମ୍ = ଦାନ; ଅସତ୍କୃତମ୍ = ବିନା ସତ୍କାରରେ; (ବା) = ଅଥବା; **ଅବଜ୍ଞାତମ୍** = ତିରସ୍କାରପୂର୍ବକ; **ଅଦେଶକାଳେ** = ଅଯୋଗ୍ୟ ଦେଶକାଳରେ; **ଚ** = ଏବଂ; **ଅପାତ୍ରେଭ୍ୟଃ** = ଅପାତ୍ରମାନଙ୍କୁ; **ଦୀୟତେ** = ଦିଆଯାଏ; **ତତ୍** = ସେହି ଦାନ; **ତାମସମ୍** = ତାମସ ବୋଲି; **ଉଦାହୃତମ୍** = କୁହାଯାଏ ।

**ଯେଉଁ ଦାନ ବିନା ସତ୍କାରରେ ଅଥବା ତିରସ୍କାରପୂର୍ବକ ଅଯୋଗ୍ୟ ଦେଶକାଳରେ ଏବଂ ଅପାତ୍ରମାନଙ୍କୁ ଦିଆଯାଏ, ସେହି ଦାନକୁ ତାମସ କୁହାଯାଏ ।। ୨୨ ।।**

**ପ୍ରଶ୍ନ —** ବିନାସତ୍କାରରେ ଦିଆଯାଉଥିବା ଦାନର ସ୍ୱରୂପ କଣ ?

**ଉତ୍ତର —** ଦାନ ନେବାକୁ ଆସିଥିବା ଅଧିକାରୀ ପୁରୁଷଙ୍କୁ ଆଦର ନ କରି ଅର୍ଥାତ୍ ଯଥାଯୋଗ୍ୟ ଅଭିବାଦନ, କୁଶଳପ୍ରଶ୍ନ, ପ୍ରିୟଭାଷଣ ଏବଂ ଆସନ ଆଦିଦ୍ୱାରା ସମ୍ମାନ ନ ଦେଇ ରୁକ୍ଷଭାବରେ ଯେଉଁ ଦାନ ଦିଆଯାଏ, ତାହା ହେଉଛି ବିନାସତ୍କାରରେ ଦିଆଯାଉଥିବା ଦାନ ।

**ପ୍ରଶ୍ନ —** ତିରସ୍କାରପୂର୍ବକ ଦିଆଯାଉଥିବା ଦାନ କଣ ?

**ଉତ୍ତର —** ପାଞ୍ଚ କଥା ଶୁଣାଇ, କଡ଼ା କଥା କହି, ଧମକ ଦେଇ, ଆଉ ନ ଆସିବାକୁ କଡ଼ା ତାଗିଦ୍ କରି, ଉପହାସ କରି ଅଥବା ଅନ୍ୟ କୌଣସିପ୍ରକାର ବଚନ କହି, ଶରୀର ବା ସଙ୍କେତଦ୍ୱାରା ଅପମାନିତ କରି ଯେଉଁ ଦାନ ଦିଆଯାଏ, ତାହାକୁ ତିରସ୍କାରପୂର୍ବକ ଦିଆଯାଉଥିବା ଦାନ କହନ୍ତି ।

**ପ୍ରଶ୍ନ —** ଦାନପାଇଁ କେଉଁ ଦେଶକାଳ ଅଯୋଗ୍ୟ ? ଏବଂ ସେଥିରେ ଦିଆଯାଉଥିବା ଦାନ ତାମସ ହୁଏ କିପରି ?

**ଉତ୍ତର —** ଯେଉଁ ଦେଶ ଓ କାଳ ଦାନପାଇଁ ଉପଯୁକ୍ତ ନୁହେଁ ଅର୍ଥାତ୍ ଯେଉଁ ଦେଶ-କାଳରେ ଦାନ ଦେବାର କୌଣସି ଆବଶ୍ୟକତା ନାହିଁ ଅଥବା ଯେଉଁଠାରେ ଓ ଯେତେବେଳେ ଦାନ ଦେବାକୁ ଶାସ୍ତ୍ରରେ ନିଷେଧ କରାଯାଇଛି (ଯେପରି ମ୍ଳେଚ୍ଛମାନଙ୍କ ଦେଶରେ ଗୋଦାନ ଦେବା, ଗ୍ରହଣସମୟରେ କନ୍ୟାଦାନ ଦେବା ଆଦି) ସେହି ଦେଶ ଓ କାଳ ଦାନ ଦେବାପାଇଁ ଅଯୋଗ୍ୟ ଏବଂ ସେଥିରେ ଦିଆଯାଉଥିବା ଦାନ ଦାତାଙ୍କୁ ନରକଭାଗୀ କରାଏ । ତେଣୁ ତାହା ତାମସ ଅଟେ ।

**ପ୍ରଶ୍ନ —** ଦାନର ଅପାତ୍ର କେଉଁମାନେ ଏବଂ ସେମାନଙ୍କୁ ଦାନ ଦେବା ତାମସ କାହିଁକି ?

**ଉତ୍ତର —** ଯେଉଁ ମନୁଷ୍ୟମାନଙ୍କୁ ଦାନ ଦେବାର କୌଣସି ଆବଶ୍ୟକତା ନାହିଁ ତଥା ଯାହାଙ୍କୁ ଦାନ ଦେବାକୁ ଶାସ୍ତ୍ରରେ ନିଷେଧ କରାଯାଇଛି, ଯଥା— ଧର୍ମଧ୍ୱଜୀ, ଆଡ଼ମ୍ବରପ୍ରଦର୍ଶନକାରୀ, କପଟବେଶଧାରୀ, ହିଂସ୍ରକ, ନିନ୍ଦୁକ, ଅନ୍ୟର ଜୀବିକାନାଶ କରି ନିଜର ସ୍ୱାର୍ଥସାଧନରେ ତତ୍ପର, କପଟବିନୟୀ; ମଦ୍ୟମାଂସ ଆଦି ଅଭକ୍ଷ୍ୟଭୋଜୀ, ଚୋରି, ବ୍ୟଭିଚାର ଆଦିରେ ଲିପ୍ତ ନୀଚକର୍ମୀ, ଠକ, ଜୁଆଡ଼ି ଏବଂ ନାସ୍ତିକ ଆଦି ଲୋକେ ଦାନପାଇଁ ଅପାତ୍ର ଅଟନ୍ତି ତଥା ସେମାନଙ୍କୁ ଦିଆଯାଉଥିବା ଦାନ ବ୍ୟର୍ଥ ଏବଂ ତାହା ଦାତାଙ୍କୁ ନରକଗାମୀ କରାଏ; ତେଣୁ ତାହା ତାମସ । ଏଠାରେ ବୁଝିବା ଉଚିତ ଯେ, ଭୋକିଲା, ଶୋଷିଲା, ବସ୍ତ୍ରହୀନ ଏବଂ ରୋଗୀ, ଆର୍ତ୍ତ ମନୁଷ୍ୟମାନଙ୍କୁ ଅନ୍ନ, ଜଳ, ବସ୍ତ୍ର ଏବଂ ଔଷଧ ଆଦି ଦେବା ନିଷେଧ ନୁହେଁ ।

*ସମ୍ବନ୍ଧ — ସାତ୍ତ୍ୱିକ ଯଜ୍ଞ, ତପ ଏବଂ ଦାନ ଆଦି ସମ୍ପାଦନଯୋଗ୍ୟ ବୋଲି କହିବା ଉଦ୍ଦେଶ୍ୟରେ ଏବଂ ରାଜସ-ତାମସ ଯଜ୍ଞାଦି ତ୍ୟାଜ୍ୟ ବୋଲି କହିବା ଉଦ୍ଦେଶ୍ୟରେ ସେସବୁକୁ ଏପରି ତିନି ତିନିପ୍ରକାରରେ ବିଭକ୍ତ କରାଯାଇଛି । ବର୍ତ୍ତମାନ ସେହି ସାତ୍ତ୍ୱିକ ଯଜ୍ଞ, ଦାନ ଓ ତପ କାହିଁକି ଉପାଦେୟ, ଭଗବାନଙ୍କ ସହିତ ତାହାର ସମ୍ବନ୍ଧ କ'ଣ ତଥା ସେହି ସାତ୍ତ୍ୱିକ ଯଜ୍ଞ, ତପ ଏବଂ ଦାନମାନଙ୍କରେ ତ୍ରୁଟି ରହିଗଲେ ତାହା କିପରି ପୂର୍ତ୍ତି ହୋଇପାରେ, ତାହା ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ଏକ ପୃଥକ୍ ପ୍ରକରଣ ଆରମ୍ଭ କରାଯାଉଛି—*

**ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।**
**ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା ॥ ୨୩ ॥**

**ଅନ୍ୱୟ –** **ଓଁ** = ଓଁ; **ତତ୍** = ତତ୍; **ସତ୍** = ସତ୍; **ଇତି** = ଏପରି; **ତ୍ରିବିଧଃ** = ତିନିପ୍ରକାର; **ବ୍ରହ୍ମଣଃ** = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କର; **ନିର୍ଦ୍ଦେଶଃ** = ନାମ; **ସ୍ମୃତଃ** = କୁହାଯାଇଛି; **ତେନ** = ତାଙ୍କରି ଦ୍ୱାରା; **ପୁରା** = ସୃଷ୍ଟିର ଆଦିକାଳରେ; **ବ୍ରାହ୍ମଣାଃ** = ବ୍ରାହ୍ମଣମାନେ; **ଚ** = ଏବଂ; **ବେଦାଃ** = ବେଦମାନେ; **ଚ** = ତଥା; **ଯଜ୍ଞାଃ** = ଯଜ୍ଞମାନେ; **ବିହିତାଃ** = ରଚିତ ହୋଇଛନ୍ତି ।

**ଓଁ, ତତ୍, ସତ୍ – ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କର ଏହି ତିନିପ୍ରକାର ନାମ କୁହାଯାଇଛି । ସୃଷ୍ଟିର ଆଦିକାଳରେ ବ୍ରାହ୍ମଣମାନେ ଏବଂ ବେଦମାନେ ତଥା ଯଜ୍ଞମାନେ ତାଙ୍କରି ଦ୍ୱାରା ରଚିତ ହୋଇଛନ୍ତି ॥ ୨୩ ॥**

**ପ୍ରଶ୍ନ –** ବ୍ରହ୍ମଙ୍କର ଅର୍ଥାତ୍ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ବହୁତପ୍ରକାର ନାମ ଅଛି; ତଥାପି ଏଠାରେ ତାଙ୍କର କେବଳ ତିନୋଟି ନାମ କାହିଁକି ଦିଆଯାଇଛି ?

**ଉତ୍ତର –** ବେଦମାନଙ୍କରେ ପରମାତ୍ମାଙ୍କର 'ଓଁ', 'ତତ୍' ଓ 'ସତ୍' – ଏହି ତିନୋଟି ନାମ ପ୍ରଧାନ ବୋଲି ସ୍ୱୀକାର କରାଯାଇଛି ତଥା ଯଜ୍ଞ, ତପ, ଦାନ ଆଦି ଶୁଭକର୍ମ ସହିତ ଏହି ନାମମାନଙ୍କର ବିଶେଷ ସମ୍ବନ୍ଧ ରହିଛି । ତେଣୁ ଏଠାରେ ଏହି ତିନି ନାମର ହିଁ ବର୍ଣ୍ଣନା କରାଯାଇଛି ।

**ପ୍ରଶ୍ନ – ତେନ** ପଦଦ୍ୱାରା ଏଠାରେ ଉପରୋକ୍ତ ତିନି ନାମକୁ ଗ୍ରହଣ କରାଯାଇଛି, ନା ଯେଉଁ ପରମେଶ୍ୱରଙ୍କର ଏହି ତିନି ନାମ, ତାଙ୍କୁ ?

**ଉତ୍ତର –** ଯେଉଁ ପରମାତ୍ମାଙ୍କର ଏହି ତିନି ନାମ ରହିଛି, ଏଠାରେ ତେନ ପଦଟି ହେଉଛି ତାଙ୍କରି ବାଚକ ।

**ପ୍ରଶ୍ନ –** ତୃତୀୟ ଅଧ୍ୟାୟରେ ତ ଯଜ୍ଞ ସହିତ ସମସ୍ତ ପ୍ରଜାଙ୍କର ଉତ୍ପତ୍ତି ପ୍ରଜାପତି ବ୍ରହ୍ମାଙ୍କ ଠାରୁ ହୋଇଛି ବୋଲି କୁହାଯାଇଛି (୩/୧୦) ଅଥଚ ଏଠାରେ ବ୍ରାହ୍ମଣ ଆଦିଙ୍କ ଉତ୍ପତ୍ତି ପରମାତ୍ମାଙ୍କ ଦ୍ୱାରା ହୋଇଛି ବୋଲି କୁହାଯାଇଛି । ଏହାର ଅଭିପ୍ରାୟ କ'ଣ ?

**ଉତ୍ତର –** ପ୍ରଜାପତି ବ୍ରହ୍ମାଙ୍କର ଉତ୍ପତ୍ତି ପରମାତ୍ମାଙ୍କ ଠାରୁ ହୋଇଛି ଏବଂ ପ୍ରଜାପତିଙ୍କ ଠାରୁ ସମସ୍ତ ବ୍ରାହ୍ମଣ, ବେଦ ଏବଂ ଯଜ୍ଞାଦି ଉତ୍ପନ୍ନ ହୋଇଛନ୍ତି; ତେଣୁ କେତେକ ସ୍ଥାନରେ ଏହାଙ୍କୁ ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ବୋଲି କୁହାଯାଇଛି ଏବଂ କେତେକ ସ୍ଥାନରେ ପ୍ରଜାପତିଙ୍କ ଠାରୁ ଉତ୍ପନ୍ନ ବୋଲି କୁହାଯାଇଛି; କିନ୍ତୁ ଉଭୟ କଥା ଏକ ।

**ପ୍ରଶ୍ନ – ବ୍ରାହ୍ମଣ, ବେଦ** ଏବଂ **ଯଜ୍ଞ** – ଏହି ତିନି ଶବ୍ଦ କାହାକୁ କାହାକୁ ବୁଝାଉଛି ? **ପୁରା** ପଦ କେଉଁ ସମୟର ବାଚକ ?

**ଉତ୍ତର – ବ୍ରାହ୍ମଣ** ଶବ୍ଦ ବ୍ରାହ୍ମଣ ଆଦି ସମସ୍ତ ପ୍ରଜାଙ୍କର, **ବେଦ** ଚାରିବେଦର, **ଯଜ୍ଞ** ଶବ୍ଦ ଯଜ୍ଞ, ତପ, ଦାନ ଆଦି ସମସ୍ତ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମମାନଙ୍କର ବାଚକ ତଥା **ପୁରା** ପଦଟି ହେଉଛି ସୃଷ୍ଟିର ଆଦିକାଳର ବାଚକ ।

**ପ୍ରଶ୍ନ –** ପରମେଶ୍ୱରଙ୍କ ଉପରୋକ୍ତ ତିନି ନାମକୁ ଦେଖାଇ ପୁଣି ପରମେଶ୍ୱରଙ୍କ ଠାରୁ ସୃଷ୍ଟିର ଆଦିକାଳରେ ବ୍ରାହ୍ମଣ ଆଦିଙ୍କର ଉତ୍ପତ୍ତି ହୋଇଛି ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଅଭିପ୍ରାୟ ଏହି ଯେ, ଯେଉଁ ପରମାତ୍ମାଙ୍କ ଠାରୁ ସମସ୍ତ କର୍ତ୍ତା, କର୍ମ ଏବଂ କର୍ମବିଧି ଉତ୍ପନ୍ନ ହୋଇଛି, 'ଓଁ', 'ତତ୍' ଏବଂ 'ସତ୍' – ଏହି ତିନି ନାମ ହେଉଛି ସେହି ଭଗବାନଙ୍କର ବାଚକ । ତେଣୁ ଏହା ଉଚ୍ଚାରଣ କଲେ ସାତ୍ତ୍ୱିକ ଯଜ୍ଞ, ଦାନ ଓ ତପ ଆଦିରେ ହୋଇଯାଉଥିବା ସମସ୍ତ ଅଙ୍ଗବୈଗୁଣ୍ୟ (ନ୍ୟୂନତା ବା ତ୍ରୁଟି) ପୂର୍ଣ୍ଣ ହୋଇଯାଏ । ଅତଏବ ପ୍ରତ୍ୟେକ କର୍ମର ଆରମ୍ଭରେ ପରମେଶ୍ୱରଙ୍କ ନାମ-ଉଚ୍ଚାରଣ କରିବା ପରମ ଆବଶ୍ୟକ ।

*ସମ୍ବନ୍ଧ – ପରମେଶ୍ୱରଙ୍କ ଉପରୋକ୍ତ ଓଁ, ତତ୍ ଓ ସତ୍ – ଏହି ତିନି ନାମ ସହିତ ଯଜ୍ଞ, ଦାନ, ତପ ଆଦିର କି ସମ୍ବନ୍ଧ ରହିଛି ? ଏହି ଜିଜ୍ଞାସା ଉପରେ ପ୍ରଥମେ 'ଓଁ' ପ୍ରୟୋଗ ବିଷୟରେ କହୁଛନ୍ତି–*

**ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନତପଃକ୍ରିୟାଃ ।**
**ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ ।। ୨୪ ।।**

**ଅନ୍ୱୟ –** ତସ୍ମାତ୍ = ତେଣୁ; ବ୍ରହ୍ମବାଦିନାମ୍ = ବେଦମନ୍ତ୍ର ଉଚ୍ଚାରଣ କରୁଥିବା ଶ୍ରେଷ୍ଠ ପୁରୁଷମାନଙ୍କର; ବିଧାନୋକ୍ତାଃ = ଶାସ୍ତ୍ରବିଧିଦ୍ୱାରା ନିୟତ; ଯଜ୍ଞଦାନତପଃକ୍ରିୟାଃ = ଯଜ୍ଞ, ଦାନ ଏବଂ ତପରୂପକ କ୍ରିୟାଗୁଡ଼ିକ; ସତତମ୍ = ସଦା; ଓଁ = 'ଓଁ'; ଇତି = ଏହି (ପରମାତ୍ମାଙ୍କ ନାମକୁ); ଉଦାହୃତ୍ୟ = ଉଚ୍ଚାରଣ କରି (ହିଁ); ପ୍ରବର୍ତ୍ତନ୍ତେ = ଆରମ୍ଭ ହୁଏ ।

**ତେଣୁ ବେଦମନ୍ତ୍ର ଉଚ୍ଚାରଣ କରୁଥିବା ଶ୍ରେଷ୍ଠ ପୁରୁଷମାନଙ୍କର ଶାସ୍ତ୍ରବିଧିଦ୍ୱାରା ନିୟତ ଯଜ୍ଞ, ଦାନ ଏବଂ ତପରୂପକ କ୍ରିୟାଗୁଡ଼ିକ ସର୍ବଦା ପରମାତ୍ମାଙ୍କର ଏହି ଓଁ ନାମ ଉଚ୍ଚାରଣ କରି ହିଁ ଆରମ୍ଭ ହୁଏ ।। ୨୪ ।।**

**ପ୍ରଶ୍ନ –** ହେତୁବାଚକ ତସ୍ମାତ୍ ପଦ ପ୍ରୟୋଗ କରି ଏଠାରେ 'ବେଦବାଦୀମାନଙ୍କର ଶାସ୍ତ୍ରବିହିତ ଯଜ୍ଞାଦି କ୍ରିୟା ସଦା ଓଁକାର ଉଚ୍ଚାରଣ କରି ଆରମ୍ଭ କରାଯାଏ'– ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ପ୍ରଧାନତଃ ନାମର ମହିମା ଦେଖାଉଛନ୍ତି । ଭାବ ଏହି ଯେ, ଯେଉଁ ପରମାତ୍ମାଙ୍କ ଠାରୁ ଏହି ଯଜ୍ଞାଦି କର୍ମମାନଙ୍କର ଉତ୍ପତ୍ତି ହୋଇଛି, ତାହାଙ୍କର ନାମ ଓଁ ହୋଇଥିବାରୁ ଓଁକାର ଉଚ୍ଚାରଣଦ୍ୱାରା ସେହି ସମସ୍ତ କର୍ମର ଅଙ୍ଗବୈଗୁଣ୍ୟ ଦୂର ହୋଇଯାଏ ତଥା ସେଗୁଡ଼ିକ ପବିତ୍ର ଓ କଲ୍ୟାଣପ୍ରଦ ହୋଇଯାଏ । ଏହା ହେଉଛି ଭଗବାନଙ୍କ ନାମର ଅପାର ମହିମା । ତେଣୁ ବେଦବାଦୀ ଅର୍ଥାତ୍ ବେଦୋକ୍ତ ମନ୍ତ୍ର ଉଚ୍ଚାରଣପୂର୍ବକ ଯଜ୍ଞାଦି କର୍ମ କରିବାର ଅଧିକାରୀ ବିଦ୍ୱାନ୍, ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟମାନଙ୍କର ଯଜ୍ଞ, ଦାନ, ତପ ଆଦି ସମସ୍ତ ଶାସ୍ତ୍ରବିହିତ ଶୁଭକର୍ମ ସଦା ଓଁକାର ଉଚ୍ଚାରଣପୂର୍ବକ ହିଁ ହୋଇଥାଏ । କୌଣସି କାଳରେ ବି କୌଣସି ଶୁଭକର୍ମ ଭଗବାନଙ୍କର ପବିତ୍ର ନାମ ଓଁକାର ଉଚ୍ଚାରଣ ନ କରି ଆରମ୍ଭ କରାଯାଏ ନାହିଁ । ଅତଏବ ସମସ୍ତେ ଏପରି କରିବା ଉଚିତ ।

**ସମ୍ବନ୍ଧ –** ଓଁକାର ପ୍ରୟୋଗର କଥା କହିସାରି ବର୍ତ୍ତମାନ ପରମେଶ୍ୱରଙ୍କ 'ତତ୍' ନାମ ପ୍ରୟୋଗର ବର୍ଣ୍ଣନା କରୁଛନ୍ତି–

**ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃକ୍ରିୟାଃ ।**
**ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷକାଙ୍କ୍ଷିଭିଃ ।। ୨୫ ।।**

**ଅନ୍ୱୟ –** ତତ୍ = ତତ୍ ଅର୍ଥାତ୍ 'ତତ୍' ନାମରେ କୁହାଯାଉଥିବା ପରମାତ୍ମାଙ୍କର ହିଁ ଏହିସବୁ ଅଟେ; ଇତି = ଏହି ଭାବରେ; ଫଳମ୍ = ଫଳକୁ; ଅନଭିସନ୍ଧାୟ = ଆକାଙ୍କ୍ଷା ନ କରି; ବିବିଧାଃ = ନାନାପ୍ରକାର; ଯଜ୍ଞ-ତପଃ-କ୍ରିୟାଃ = ଯଜ୍ଞ ଓ ତପରୂପକ କ୍ରିୟାଗୁଡ଼ିକ; ଚ = ତଥା; ଦାନକ୍ରିୟାଃ = ଦାନରୂପକ କ୍ରିୟାଗୁଡ଼ିକ; ମୋକ୍ଷକାଙ୍କ୍ଷିଭିଃ = କଲ୍ୟାଣକାମୀ ପୁରୁଷମାନଙ୍କ ଦ୍ୱାରା; କ୍ରିୟନ୍ତେ = କରାଯାଏ ।

**ଏ ସବୁ 'ତତ୍' ନାମରେ କୁହାଯାଉଥିବା ପରମାତ୍ମାଙ୍କର ହିଁ ଅଟେ — ଏହି ଭାବ ରଖି କଲ୍ୟାଣକାମୀ ପୁରୁଷମାନଙ୍କ ଦ୍ୱାରା ଫଳ ଆକାଙ୍କ୍ଷା ନ କରି ନାନାପ୍ରକାର ଯଜ୍ଞ, ତପ ଓ ଦାନରୂପୀ କ୍ରିୟା କରାଯାଏ ।। ୨୫ ।।**

**ପ୍ରଶ୍ନ –** ଏଠାରେ ଇତି ସହିତ ତତ୍ ପଦର ଅଭିପ୍ରାୟ କ'ଣ ?

**ଉତ୍ତର –** ତତ୍ ପଦ ହେଉଛି ପରମେଶ୍ୱରଙ୍କ ନାମ । ତାହା ସ୍ମରଣ କରିବାର ଉଦ୍ଦେଶ୍ୟ ବୁଝାଇବାନିମନ୍ତେ ଏଠାରେ ଇତି ସହିତ ତତ୍ ପ୍ରୟୋଗ କରାଯାଇଛି । ଅଭିପ୍ରାୟ ଏହି ଯେ, କଲ୍ୟାଣକାମୀ ମନୁଷ୍ୟମାନେ ପ୍ରତ୍ୟେକ କ୍ରିୟା କରିବା ସମୟରେ ଭଗବାନଙ୍କର 'ତତ୍' ନାମ ସ୍ମରଣ କରି କରି, 'ଯେଉଁ ପରମେଶ୍ୱରଙ୍କ ଠାରୁ

ଏହି ସମସ୍ତ ଜଗତର ଉତ୍ପତ୍ତି ହୋଇଛି, ସବୁ କିଛି ତାଙ୍କରି ଅଟେ ଏବଂ ତାଙ୍କରି ବସ୍ତୁଦ୍ୱାରା ତାଙ୍କରି ଆଜ୍ଞାନୁସାରେ ତାଙ୍କରି ପାଇଁ ମୋ କର୍ତ୍ତୃକ ଯଜ୍ଞାଦି କ୍ରିୟା କରାଯାଉଛି; ଏଣୁ ମୁଁ କେବଳ ନିମିତ୍ତମାତ୍ର' — ଏହିଭାବରେ ଅହଂତ୍ୱ ଓ ମମତ୍ୱ ସର୍ବଥା ତ୍ୟାଗ କରିଦିଅନ୍ତି ।

**ପ୍ରଶ୍ନ —** ମୋକ୍ଷକାମୀ ସାଧକପୁରୁଷମାନଙ୍କ ଦ୍ୱାରା କରାଯାଉଥିବା କର୍ମ ଫଳାକାଙ୍କ୍ଷା ନ ରଖି କରାଯାଏ' — ଏ କଥାର ଭାବ କ'ଣ ?

**ଉତ୍ତର —** ଏହା କହି ଭଗବାନ୍ ଦେଖାଉଛନ୍ତି ଯେ, ବିହିତ କର୍ମ କରୁଥିବା ସାଧାରଣ ବେଦବାଦୀମାନେ ଫଳର ଇଚ୍ଛା ବା ଅହଂତ୍ୱ-ମମତ୍ୱ ତ୍ୟାଗ କରନ୍ତି ନାହିଁ; କିନ୍ତୁ କଲ୍ୟାଣକାମୀ ପୁରୁଷମାନେ, ଯେଉଁମାନେ ପରମେଶ୍ୱରଙ୍କ ପ୍ରାପ୍ତି ବ୍ୟତୀତ ଅନ୍ୟ କୌଣସି ବସ୍ତୁ ଆବଶ୍ୟକ ନାହିଁ ବୋଲି ମାନନ୍ତି, ସେମାନେ ଅହଂତ୍ୱ-ମମତ୍ୱ, ଆସକ୍ତି ଏବଂ ଫଳକାମନା ସର୍ବଥା ତ୍ୟାଗ କରି କେବଳ ପରମେଶ୍ୱରଙ୍କ ପାଇଁ ତାଙ୍କରି ଆଜ୍ଞାନୁସାରେ ସମସ୍ତ କର୍ମ କରନ୍ତି । ଏହାଦ୍ୱାରା ଭଗବାନ୍ ଫଳକାମନା-ତ୍ୟାଗର ମହତ୍ତ୍ୱ ଦେଖାଉଛନ୍ତି ।

***ସମ୍ବନ୍ଧ —*** *'ତତ୍' ନାମ ପ୍ରୟୋଗର କଥା କହିସାରି ଭଗବାନ୍ ବର୍ତ୍ତମାନ ପରମେଶ୍ୱରଙ୍କ 'ସତ୍' ନାମ ପ୍ରୟୋଗର କଥା ଦୁଇଟି ଶ୍ଳୋକରେ ବର୍ଣ୍ଣନା କରୁଛନ୍ତି—*

## ସଦ୍ଭାବେ ସାଧୁଭାବେ ଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ ।
## ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ ।। ୨୬ ।।

**ଅନ୍ୱୟ —** **ସତ୍** = 'ସତ୍'; **ଇତି** = ଏହିପରି; **ଏତଦ୍** = ଏହି (ପରମାତ୍ମାଙ୍କର ନାମ); **ସଦ୍‌ଭାବେ** = ସତ୍ୟଭାବରେ; **ଚ** = ଏବଂ; **ସାଧୁଭାବେ** = ଶ୍ରେଷ୍ଠଭାବରେ; **ପ୍ରଯୁଜ୍ୟତେ** = ପ୍ରୟୋଗ କରାଯାଏ; **ତଥା** = ତଥା; **ପାର୍ଥ** = ହେ ପାର୍ଥ; **ପ୍ରଶସ୍ତେ** = ଉତ୍ତମ; **କର୍ମଣି** = କର୍ମରେ (ମଧ୍ୟ); **ସତ୍** = ସତ୍; **ଶବ୍ଦଃ** = ଶବ୍ଦ; **ଯୁଜ୍ୟତେ** = ପ୍ରୟୋଗ କରାଯାଏ ।

**ପରମାତ୍ମାଙ୍କର ଏହି 'ସତ୍' ନାମ ସତ୍ୟଭାବରେ ଏବଂ ଶ୍ରେଷ୍ଠଭାବରେ ପ୍ରୟୋଗ କରାଯାଏ ତଥା ହେ ପାର୍ଥ ! ଉତ୍ତମ କର୍ମରେ ମଧ୍ୟ 'ସତ୍' ଶବ୍ଦ ପ୍ରୟୋଗ କରାଯାଏ ।। ୨୬ ।।**

**ପ୍ରଶ୍ନ —** ସଦ୍‌ଭାବ ଏଠାରେ କାହାର ବାଚକ ? ସେଥିରେ ପରମାତ୍ମାଙ୍କ ସତ୍ ନାମ କାହିଁକି ପ୍ରୟୋଗ କରାଯାଏ ?

**ଉତ୍ତର —** ସଦ୍‌ଭାବ ନିତ୍ୟଭାବର ଅର୍ଥାତ୍ ଯାହାର ଅସ୍ତିତ୍ୱ ସର୍ବଦା ରହେ, ସେହି ଅବିନାଶୀ ତତ୍ତ୍ୱର ବାଚକ ଏବଂ ତାହା ପରମେଶ୍ୱରଙ୍କ ସ୍ୱରୂପ ଅଟେ । ତେଣୁ ତାହାକୁ ସତ୍ ନାମରେ କୁହାଯାଏ ।

**ପ୍ରଶ୍ନ —** ସାଧୁଭାବ କେଉଁ ଭାବର ବାଚକ ଏବଂ ସେଥିରେ ପରମାତ୍ମାଙ୍କ ସତ୍ ନାମ କାହିଁକି ପ୍ରୟୋଗ କରାଯାଏ ?

**ଉତ୍ତର —** ଅନ୍ତଃକରଣରେ ଯେଉଁ ଶୁଦ୍ଧ ଏବଂ ଶ୍ରେଷ୍ଠଭାବ ରହିଛି, ଏଠାରେ 'ସାଧୁଭାବ' ହେଉଛି ତାହାର ବାଚକ । ତାହା ପରମେଶ୍ୱରଙ୍କ ପ୍ରାପ୍ତିର ହେତୁ, ତେଣୁ ସେଥିରେ ପରମେଶ୍ୱରଙ୍କର 'ସତ୍' ନାମ ପ୍ରୟୋଗ କରାଯାଏ ଅର୍ଥାତ୍ ତାହାକୁ 'ସଦ୍‌ଭାବ' କହନ୍ତି ।

**ପ୍ରଶ୍ନ — ପ୍ରଶସ୍ତ କର୍ମ** କେଉଁ କର୍ମର ବାଚକ ? ଏବଂ ସେଥିରେ **ସତ୍** ଶବ୍ଦ କାହିଁକି ପ୍ରୟୋଗ କରାଯାଉଛି ?

**ଉତ୍ତର —** ଯେଉଁସବୁ ଶାସ୍ତ୍ରବିହିତ କରଣୀୟ ଶୁଭକର୍ମ ରହିଛି, ତାହା **ପ୍ରଶସ୍ତ** ଅର୍ଥାତ୍ ଶ୍ରେଷ୍ଠକର୍ମ । ଏବଂ ନିଷ୍କାମଭାବରେ କରାଗଲେ ତାହା ପରମାତ୍ମପ୍ରାପ୍ତିର ହେତୁ ହୋଇଯାଏ । ତେଣୁ ସେଥିରେ ପରମାତ୍ମାଙ୍କର ସତ୍ ନାମ ପ୍ରୟୋଗ କରାଯାଏ, ଅର୍ଥାତ୍ ତାହାକୁ **ସତ୍‌କର୍ମ** କୁହାଯାଏ ।

## ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ ।
## କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ ।। ୨୭ ।।

**ଅନ୍ୱୟ —** **ଚ** = ତଥା; **ଯଜ୍ଞେ** = ଯଜ୍ଞରେ; **ତପସି** = ତପରେ; **ଚ** = ଏବଂ; **ଦାନେ** = ଦାନରେ; **(ଯା)** = ଯେଉଁ; **ସ୍ଥିତିଃ** = ସ୍ଥିତି ଥାଏ; **(ସା)** = ତାହା; **ଏବ** = ମଧ୍ୟ; **ସତ୍** = 'ସତ୍', **ଇତି** = ବୋଲି; **ଉଚ୍ୟତେ** = କୁହାଯାଏ; **ଚ** = ଏବଂ; **ତଦର୍ଥୀୟମ୍** = ସେହି ପରମାତ୍ମାଙ୍କ ପାଇଁ କରାଯାଉଥିବା; **କର୍ମ** = କର୍ମ; **ଏବ** = ନିଶ୍ଚିତରୂପେ; **ସତ୍** = ସତ୍; **ଇତି** = ବୋଲି; **ଅଭିଧୀୟତେ** = କୁହାଯାଏ ।

**ତଥା ଯଜ୍ଞ, ତପ ଏବଂ ଦାନରେ ଯେଉଁ ସ୍ଥିତି ଥାଏ, ତାହାକୁ ମଧ୍ୟ 'ସତ୍' ବୋଲି କୁହାଯାଏ ଏବଂ ସେହି ପରମାତ୍ମାଙ୍କ ପାଇଁ କରାଯାଉଥିବା କର୍ମକୁ ନିଶ୍ଚିତରୂପେ ସତ୍ ବୋଲି କୁହାଯାଏ।। ୨୭ ।।**

**ପ୍ରଶ୍ନ –** ଯଜ୍ଞ, ତପ ଏବଂ ଦାନ କହି ଏଠାରେ କେଉଁ ଯଜ୍ଞ, ତପ ଏବଂ ଦାନକୁ ଗ୍ରହଣ କରାଯାଇଛି ତଥା **ସ୍ଥିତି** ଶବ୍ଦ କେଉଁ ଭାବର ବାଚକ ଏବଂ ତାହା 'ସତ୍' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯଜ୍ଞ, ତପ ଏବଂ ଦାନ କହି ଏଠାରେ ସାତ୍ତ୍ୱିକ ଯଜ୍ଞ, ତପ ଏବଂ ଦାନକୁ ନିର୍ଦ୍ଦେଶ କରାଯାଇଛି ତଥା ସେଥିରେ ଯେଉଁ ଶ୍ରଦ୍ଧା ଏବଂ ପ୍ରେମପୂର୍ବକ ଆସ୍ତିକ ବୁଦ୍ଧି ରଖାଯାଇଥାଏ, ଯାହାକୁ ନିଷ୍ଠା ମଧ୍ୟ କହନ୍ତି। ଏଠାରେ **ସ୍ଥିତି** ଶବ୍ଦଟି ହେଉଛି ତାହାର ବାଚକ। ଏପରି ସ୍ଥିତି ପରମେଶ୍ୱରଙ୍କ ପ୍ରାପ୍ତିର ହେତୁ, ତେଣୁ ତାହାକୁ 'ସତ୍' କହନ୍ତି।

**ପ୍ରଶ୍ନ – ତଦର୍ଥୀୟମ୍** ବିଶେଷଣ ସହିତ **କର୍ମ** ପଦ କେଉଁ କର୍ମର ବାଚକ ଏବଂ ତାହାକୁ 'ସତ୍' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** କେବଳ ଭଗବାନଙ୍କ ଆଜ୍ଞାନୁସାରେ ତାହାଙ୍କ ପାଇଁ ଯାହା କିଛି କର୍ମ କରାଯାଏ, ଯେଉଁଥିରେ କର୍ତ୍ତାର ତିଳେମାତ୍ର ସ୍ୱାର୍ଥ ନ ଥାଏ, ଏଠାରେ **ତଦର୍ଥୀୟମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ତାହାର ବାଚକ। ଏପରି କର୍ମ କର୍ତ୍ତାର ଅନ୍ତଃକରଣକୁ ଶୁଦ୍ଧ କରିଦେଇ ତାକୁ ପରମେଶ୍ୱରଙ୍କ ପ୍ରାପ୍ତି କରାଇଦିଏ। ତେଣୁ ତାହାକୁ 'ସତ୍' କହନ୍ତି।

**ପ୍ରଶ୍ନ –** ଏବ ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ?

**ଉତ୍ତର –** ଏବ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏପରି କର୍ମ 'ସତ୍' ଅଟେ; ଏଥିରେ କୌଣସି ସନ୍ଦେହ ନାହିଁ। ତାହା ସଙ୍ଗେ ସଙ୍ଗେ ଏହା ମଧ୍ୟ ଦେଖାଇଦିଆଯାଇଛି ଯେ, ଏପରି କର୍ମ ହିଁ ବାସ୍ତବରେ 'ସତ୍'; ଅନ୍ୟ ସମସ୍ତ କର୍ମର ଫଳ ଅନିତ୍ୟ; ତେଣୁ ସେଗୁଡ଼ିକୁ 'ସତ୍' କୁହାଯାଇପାରିବ ନାହିଁ।

*ସମ୍ବନ୍ଧ – ଏପରିଭାବରେ ଶ୍ରଦ୍ଧାପୂର୍ବକ କରାଯାଉଥିବା ଶାସ୍ତ୍ରବିହିତ ଯଜ୍ଞ, ତପ, ଦାନ ଆଦି କର୍ମର ଯେଉଁ ମହତ୍ତ୍ୱ ବର୍ଣ୍ଣନା କରାଗଲା, ତାହା ଶୁଣି ଜିଜ୍ଞାସା ହୁଏ, ଶାସ୍ତ୍ରବିହିତ ଯେଉଁ ଯଜ୍ଞାଦି କର୍ମମାନ ବିନାଶ୍ରଦ୍ଧାରେ କରାଯାଏ, ସେସବୁର ଫଳ କ'ଣ ହୁଏ? ଏହି ଅଧ୍ୟାୟର ଉପସଂହାର କରିବା ସଙ୍ଗେ ସଙ୍ଗେ ଭଗବାନ୍ ଏହା ଉପରେ କହୁଛନ୍ତି—*

**ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।**
**ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ ।। ୨୮ ।।**

**ଅନ୍ୱୟ –** ପାର୍ଥ = ହେ ଅର୍ଜୁନ!; **ଅଶ୍ରଦ୍ଧୟା** = ବିନା-ଶ୍ରଦ୍ଧାରେ କରାଯାଉଥିବା; **ହୁତମ୍** = ହୋମ; **ଦତ୍ତମ୍** = ଦିଆଯାଉଥିବା ଦାନ (ଏବଂ); **ତପ୍ତମ୍, ତପଃ** = କରାଯାଉଥିବା ତପ; **ଚ** = ଏବଂ; **ଯତ୍** = ଯାହା (କିଛି ମଧ୍ୟ); **କୃତମ୍** = କରାଯାଉଥିବା ଶୁଭକର୍ମ; **(ତତ୍)** = ସେସବୁ; **ଅସତ୍** = 'ଅସତ୍'; **ଇତି** = ବୋଲି; **ଉଚ୍ୟତେ** = କୁହାଯାଏ (ତେଣୁ); **ତତ୍** = ତାହା; **ନୋ, ଇହ** = ଇହଲୋକରେ (ଲାଭଦାୟକ) ନୁହେଁ; **ଚ** = କି; **ନ, ପ୍ରେତ୍ୟ** = ମରିବା ପରେ ମଧ୍ୟ ନୁହେଁ।

**ହେ ଅର୍ଜୁନ! ବିନା ଶ୍ରଦ୍ଧାରେ କରାଯାଉଥିବା ହୋମ, ଦିଆଯାଉଥିବା ଦାନ ଏବଂ କରାଯାଉଥିବା ତପ ତଥା ଅନ୍ୟାନ୍ୟ ଶୁଭକର୍ମକୁ 'ଅସତ୍' ବୋଲି କୁହାଯାଏ; ତେଣୁ ତାହା ଇହଲୋକରେ ଲାଭଦାୟକ ନୁହେଁ, କି ମରିବା ପରେ ମଧ୍ୟ ଲାଭଦାୟକ ନୁହେଁ।। ୨୮ ।।**

**ପ୍ରଶ୍ନ –** ବିନା-ଶ୍ରଦ୍ଧାରେ କରାଯାଉଥିବା ହୋମ, ଦାନ, ଏବଂ ତପ ତଥା ଅନ୍ୟ ସମସ୍ତ ଶାସ୍ତ୍ରବିହିତ କର୍ମମାନଙ୍କୁ ଏଠାରେ 'ଅସତ୍' କହିବାର ଅଭିପ୍ରାୟ କ'ଣ ଏବଂ ସେଗୁଡ଼ିକ ଇହଲୋକରେ କିମ୍ବା ପରଲୋକରେ ଲାଭପ୍ରଦ ନୁହେଁ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯଜ୍ଞ, ଦାନ ଏବଂ ତପ ତଥା ଅନ୍ୟାନ୍ୟ

ଶୁଭକର୍ମମାନ ଶ୍ରଦ୍ଧାପୂର୍ବକ କରାଗଲେ ହିଁ ଅନ୍ତଃକରଣ ଶୁଦ୍ଧ କରିବାକୁ ଏବଂ ଇହଲୋକର ବା ପରଲୋକର ଫଳ ଦେବାକୁ ସମର୍ଥ ହୁଅନ୍ତି। ବିନା-ଶ୍ରଦ୍ଧାରେ କରାଯାଉଥିବା ଶୁଭକର୍ମ ବ୍ୟର୍ଥ; ତେଣୁ ସେସବୁ 'ଅସତ୍' ଓ ଇହଲୋକରେ କିମ୍ବା ପରଲୋକରେ ମଧ୍ୟ ଲାଭପ୍ରଦ ନୁହେଁ ବୋଲି କୁହାଯାଉଛି।

**ପ୍ରଶ୍ନ – ଯତ୍** ସହିତ **କୃତମ୍** ପଦର ଅର୍ଥ ଯଦି ନିଷିଦ୍ଧକର୍ମ ବୋଲି ମାନିନିଆଯାଏ, ତେବେ କ୍ଷତି କ'ଣ ?

**ଉତ୍ତର –** ନିଷିଦ୍ଧକର୍ମ କରିବାରେ ତ ଶ୍ରଦ୍ଧାର ଆବଶ୍ୟକତା ନାହିଁ ଏବଂ ତାର ଫଳ ମଧ୍ୟ ଶ୍ରଦ୍ଧା ଉପରେ ନିର୍ଭର କରେ ନାହିଁ। ଯେଉଁ ଲୋକେ ସେସବୁ କରନ୍ତି, ସେମାନଙ୍କର ଶାସ୍ତ୍ରରେ, ମହାପୁରୁଷଙ୍କ ଠାରେ ଏବଂ ଈଶ୍ୱରଙ୍କ ଠାରେ ପୂର୍ଣ୍ଣ ଶ୍ରଦ୍ଧା ନ ଥାଏ ତଥା ପାପକର୍ମର ଫଳ ଯେ ଭୋଗିବାକୁ ପଡ଼ିବ, ସେଥିରେ ବି ବିଶ୍ୱାସ ନ ଥାଏ; ତଥାପି ସେମାନଙ୍କୁ ତାହାର ଦୁଃଖରୂପୀ ଫଳ ଅବଶ୍ୟ ଭୋଗିବାକୁ ପଡ଼େ। ଅତଏବ ଏଠାରେ **ଯତ୍କୃତମ୍**ଦ୍ୱାରା ପାପକର୍ମକୁ ଗ୍ରହଣ କରାଯାଉ ନାହିଁ। ଏହା ବ୍ୟତୀତ ଯଜ୍ଞ, ଦାନ ଏବଂ ତପରୂପୀ ଶୁଭକର୍ମମାନଙ୍କ ସହିତ ଆସିଥିବା **ଯତ୍କୃତମ୍** ପଦ କେବଳ ସେହିଜାତୀୟ କ୍ରିୟାର ବାଚକ ହୋଇପାରେ। ତେଣୁ ସେହି କର୍ମ ଇହଲୋକ ବା ପରଲୋକରେ କୌଣସିଠାରେ ବି ଲାଭପ୍ରଦ ହୁଏ ନାହିଁ ବୋଲି ଯାହା କୁହାଯାଉଛି, ସେହି ଉକ୍ତି ପାପକର୍ମମାନଙ୍କ ପାଇଁ ଉପଯୁକ୍ତ ହୁଏ ନାହିଁ। କାରଣ ସର୍ବଥା ଦୁଃଖର ହେତୁ ହୋଇଥିବାରୁ ସେଗୁଡ଼ିକ ଲାଭପ୍ରଦ ହେବାର କୌଣସି ସମ୍ଭାବନା ହିଁ ନାହିଁ। ଅତଏବ ଏଠାରେ ବିନା-ଶ୍ରଦ୍ଧାରେ କରାଯାଉଥିବା ଶୁଭକର୍ମମାନଙ୍କର ହିଁ ପ୍ରସଙ୍ଗ ପଡ଼ିଛି; ଅଶୁଭକର୍ମମାନଙ୍କର ନୁହେଁ।

*ଓଁ ତତ୍ସଦିତି ଶ୍ରୀମଦ୍ ଭଗବଦ୍‌ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଶ୍ରଦ୍ଧାତ୍ରୟବିଭାଗଯୋଗୋ*
*ନାମ ସପ୍ତଦଶୋଽଧ୍ୟାୟଃ ॥ ୧୭ ॥*

—o—

ଓଁ ଶ୍ରୀପରମାତ୍ମନେ ନମଃ

# ଅଷ୍ଟାଦଶୋଽଧ୍ୟାୟଃ

## ମୋକ୍ଷସଂନ୍ୟାସଯୋଗ

**ଅଧ୍ୟାୟର ନାମ :** ଜନ୍ମମରଣରୂପକ ସଂସାରବନ୍ଧନରୁ ଚିରକାଳପାଇଁ ମୁକ୍ତ ହୋଇ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କୁ ପ୍ରାପ୍ତ ହେବାର ନାମ ମୋକ୍ଷ। ଏହି ଅଧ୍ୟାୟରେ ପୂର୍ବୋକ୍ତ ସମସ୍ତ ଅଧ୍ୟାୟର ସାର ସଂଗ୍ରହ କରି ମୋକ୍ଷର ଉପାୟଭୂତ ସାଂଖ୍ୟଯୋଗକୁ ସନ୍ନ୍ୟାସ ନାମରେ ଏବଂ କର୍ମଯୋଗକୁ ତ୍ୟାଗ ନାମରେ ଅଙ୍ଗପ୍ରତ୍ୟଙ୍ଗସହିତ ବର୍ଣ୍ଣନା କରାଯାଇଛି। ଏହି କାରଣରୁ ତଥା ଏହି ଅଧ୍ୟାୟରେ ସାକ୍ଷାତ୍ ମୋକ୍ଷରୂପୀ ପରମେଶ୍ୱରଙ୍କ ଠାରେ ସକଳକର୍ମ ସନ୍ନ୍ୟାସ ଅର୍ଥାତ୍ ତ୍ୟାଗ ବା ସମର୍ପଣ କରିଦେବାନିମନ୍ତେ କହି ଉପଦେଶର ଉପସଂହାର କରାଯାଇଥିବାରୁ (୧୮/୬୬) ଏହି ଅଧ୍ୟାୟର ନାମ 'ମୋକ୍ଷସନ୍ନ୍ୟାସଯୋଗ' ରଖାଯାଇଛି।

**ଅଧ୍ୟାୟର ସଂକ୍ଷିପ୍ତ ସାର :** ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଅର୍ଜୁନ ସନ୍ନ୍ୟାସର ଏବଂ ତ୍ୟାଗର ତତ୍ତ୍ୱ ଜାଣିବାକୁ ଇଚ୍ଛା ପ୍ରକାଶ କରିଛନ୍ତି। ଦ୍ୱିତୀୟ ଓ ତୃତୀୟ ଶ୍ଳୋକରେ ଭଗବାନ୍ ଏହି ବିଷୟରେ ଅନ୍ୟ ବିଦ୍ୱାନମାନଙ୍କର ମତ ବର୍ଣ୍ଣନା କରିଛନ୍ତି। ଚତୁର୍ଥ ଓ ପଞ୍ଚମରେ ଅର୍ଜୁନଙ୍କୁ ତ୍ୟାଗ ବିଷୟରେ ନିଜର ନିଶ୍ଚୟ ଶୁଣିବାକୁ କହି ସ୍ୱରୂପତଃ କର୍ତ୍ତବ୍ୟକର୍ମ ତ୍ୟାଗ ନ କରିବା ଉଚିତ ବୋଲି ସିଦ୍ଧ କରିଛନ୍ତି। ଷଷ୍ଠରେ ତ୍ୟାଗ ସମ୍ବନ୍ଧରେ ଭଗବାନ୍ ନିଜର ନିଶ୍ଚିତ ମତ କହିଛନ୍ତି ଏବଂ ତାହା ଅନ୍ୟ ମତ ଅପେକ୍ଷା ଉତ୍ତମ ବୋଲି କହିଛନ୍ତି। ତା'ପରେ ସପ୍ତମ, ଅଷ୍ଟମ ଓ ନବମରେ କ୍ରମଶଃ ତାମସ, ରାଜସ ଏବଂ ସାତ୍ତ୍ୱିକ ତ୍ୟାଗର ଲକ୍ଷଣ କହି ଦଶମ ଓ ଏକାଦଶରେ ସାତ୍ତ୍ୱିକ ତ୍ୟାଗୀଙ୍କ ଲକ୍ଷଣ ବର୍ଣ୍ଣନା କରିଛନ୍ତି। ବାରରେ ତ୍ୟାଗୀ ପୁରୁଷମାନଙ୍କର ମହତ୍ତ୍ୱ ପ୍ରତିପାଦନ କରି ତ୍ୟାଗ ପ୍ରସଙ୍ଗର ଉପସଂହାର କରିଛନ୍ତି। ତା'ପରେ ପନ୍ଦର ଶ୍ଳୋକପର୍ଯ୍ୟନ୍ତ ଅର୍ଜୁନଙ୍କୁ ସାଂଖ୍ୟ (ସନ୍ନ୍ୟାସ) ବିଷୟ ଶୁଣିବାକୁ କହି ସାଂଖ୍ୟ-ସିଦ୍ଧାନ୍ତ ଅନୁସାରେ କର୍ମସିଦ୍ଧିନିମନ୍ତେ ଅଧିଷ୍ଠାନାଦି ପାଞ୍ଚଟି ହେତୁ ବର୍ଣ୍ଣନା କରିଛନ୍ତି। ଷୋହଳରେ ଶୁଦ୍ଧ ଆତ୍ମାକୁ କର୍ତ୍ତା ବୋଲି ବୁଝୁଥିବା ଲୋକଙ୍କର ନିନ୍ଦା କରିଛନ୍ତି ଓ ସତରରେ କର୍ତ୍ତୃତ୍ୱ ଅଭିମାନ ତ୍ୟାଗ କରି କର୍ମ କରୁଥିବା ଲୋକଙ୍କର ପ୍ରଶଂସା କରିଛନ୍ତି। ଅଠରରେ କର୍ମପ୍ରେରଣା ଏବଂ କର୍ମସଂଗ୍ରହର ସ୍ୱରୂପ ବର୍ଣ୍ଣନା କରି ଉଣେଇଶରେ ତିନି ତିନି ପ୍ରକାର ଜ୍ଞାନ, କର୍ମ ଏବଂ କର୍ତ୍ତା ବର୍ଣ୍ଣନା କରିବାକୁ ପ୍ରସ୍ତାବ କରିଛନ୍ତି। କୋଡ଼ିଏଠାରୁ ଅଠେଇଶପର୍ଯ୍ୟନ୍ତ କ୍ରମଶଃ ସେଗୁଡ଼ିକର ସାତ୍ତ୍ୱିକ, ରାଜସ ଓ ତାମସ ରୂପ ବର୍ଣ୍ଣନା କରିଛନ୍ତି। ଅଣତିରିଶରେ ତିନିପ୍ରକାର ବୁଦ୍ଧି ଓ ଧୃତି କହିବାକୁ ପ୍ରସ୍ତାବନା କରି ତିରିଶଠାରୁ ପଇଁତିରିଶପର୍ଯ୍ୟନ୍ତ କ୍ରମଶଃ ସାତ୍ତ୍ୱିକ, ରାଜସ ଏବଂ ତାମସ ବୁଦ୍ଧି ଓ ଧୃତି ବର୍ଣ୍ଣନା କରିଛନ୍ତି। ଛତିଶଠାରୁ ଅଣଚାଳିଶପର୍ଯ୍ୟନ୍ତ ସାତ୍ତ୍ୱିକ, ରାଜସ ଏବଂ ତାମସ ଆଦି ତିନିପ୍ରକାର ସୁଖ ବର୍ଣ୍ଣନା କରି ଚାଳିଶ ଶ୍ଳୋକରେ ଗୁଣମାନଙ୍କର ପ୍ରସଙ୍ଗ ସମାପ୍ତ କରିଛନ୍ତି ଏବଂ ସମସ୍ତ ଜଗତକୁ ତ୍ରିଗୁଣମୟ ବୋଲି କହିଛନ୍ତି। ତାହା ପରେ ଏକଚାଳିଶରେ ଚାରି ବର୍ଣ୍ଣର ସ୍ୱାଭାବିକ କର୍ମପ୍ରସଙ୍ଗ ଆରମ୍ଭ କରି ବୟାଳିଶରେ ବ୍ରାହ୍ମଣମାନଙ୍କର, ତେୟାଳିଶରେ କ୍ଷତ୍ରିୟମାନଙ୍କର ଏବଂ ଚଉରାଳିଶରେ ବୈଶ୍ୟ ତଥା ଶୂଦ୍ରମାନଙ୍କର ସ୍ୱାଭାବିକ କର୍ମ ବର୍ଣ୍ଣନା କରିଛନ୍ତି। ପଇଁଚାଳିଶରେ ନିଜ ନିଜର ବର୍ଣ୍ଣଧର୍ମପାଳନଦ୍ୱାରା ପରମସିଦ୍ଧିପ୍ରାପ୍ତି ହୁଏ ବୋଲି କହି ଛୟାଳିଶରେ ପରମସିଦ୍ଧିପ୍ରାପ୍ତିର ବିଧି କହିଛନ୍ତି; ପୁଣି ସତଚାଳିଶ ଓ ଅଠଚାଳିଶରେ ସ୍ୱଧର୍ମର ପ୍ରଶଂସା କରି ତାହା ତ୍ୟାଗ କରିବାକୁ ନିଷେଧ କରିଛନ୍ତି। ତାହା ପରେ ଅଣଚାଶ ଶ୍ଳୋକରେ ପୁଣି ଥରେ ସନ୍ନ୍ୟାସଯୋଗ ପ୍ରସଙ୍ଗ ଆରମ୍ଭ କରି ସନ୍ନ୍ୟାସଦ୍ୱାରା ପରମସିଦ୍ଧିପ୍ରାପ୍ତି ହୁଏ ବୋଲି କହିଛନ୍ତି। ପଚାଶରେ ଜ୍ଞାନର ପରାନିଷ୍ଠା ବର୍ଣ୍ଣନା କରିବାକୁ ପ୍ରତିଜ୍ଞା କରିଛନ୍ତି ଏବଂ ଏକାବନଠାରୁ ପଞ୍ଚାବନପର୍ଯ୍ୟନ୍ତ ଫଳସହିତ ଜ୍ଞାନନିଷ୍ଠା ବର୍ଣ୍ଣନା କରିଛନ୍ତି। ପୁଣି ଛପନଠାରୁ ଅଠାବନପର୍ଯ୍ୟନ୍ତ ଭକ୍ତିପ୍ରଧାନ କର୍ମଯୋଗର ମହତ୍ତ୍ୱ ଏବଂ ତା'ର ଫଳ ଦେଖାଇ ଅର୍ଜୁନଙ୍କୁ ତାହା ଆଚରଣ କରିବାକୁ ଆଜ୍ଞା ଦେଇଛନ୍ତି ଏବଂ ତାହା ନ କଲେ କ୍ଷତି ହେବ ବୋଲି କହିଛନ୍ତି। ଅଣଷଠି ଓ ଷାଠିଏରେ ପ୍ରକୃତିର ପ୍ରବଳତାହେତୁ ସ୍ୱାଭାବିକ କର୍ମମାନଙ୍କୁ ତ୍ୟାଗ କରିବାରେ ସାମର୍ଥ୍ୟର ଅଭାବ କହି ଏକଷଠି ଓ ବାଷଠିରେ ପରମେଶ୍ୱରଙ୍କୁ ସମସ୍ତଙ୍କର ନିୟନ୍ତା, ସର୍ବାନ୍ତର୍ଯାମୀ ବୋଲି କହିଛନ୍ତି ଏବଂ ସକଳପ୍ରକାରେ ତାଙ୍କର ଶରଣ ନେବାକୁ ଆଜ୍ଞା ଦେଇଛନ୍ତି। ତେଷଠିରେ ଏହି ପ୍ରସଙ୍ଗର ଉପସଂହାର କରି ଅର୍ଜୁନଙ୍କୁ 'ସବୁ କଥା ବିଚାର କରି ଯାହା ଠିକ୍ ଲାଗୁଛି, ତାହା କର' ବୋଲି କହିଛନ୍ତି

ଏବଂ ଚଉଷଠିରେ ପୁଣି ଥରେ ସମସ୍ତ ଗୀତାର ସାରରୂପ ସର୍ବଗୁହ୍ୟତମ ରହସ୍ୟ ଶୁଣିବାକୁ ଆଜ୍ଞା ଦେଇଛନ୍ତି। ପଞ୍ଚଷଠି ଓ ଛଅଷଠିରେ ଫଳସହିତ ଅନନ୍ୟ ଶରଣାଗତିରୂପକ ସର୍ବଗୁହ୍ୟତମ ଉପଦେଶ ବର୍ଣ୍ଣନା କରି ଭଗବାନ୍ ଅର୍ଜୁନଙ୍କୁ ଶରଣାଗତ ହେବାକୁ ଆଜ୍ଞା ଦେଇଛନ୍ତି ଏବଂ ଗୀତା ଉପଦେଶର ଉପସଂହାର କରିଛନ୍ତି। ତାହା ପରେ ସତଷଠି ଶ୍ଳୋକରେ ଚାରିପ୍ରକାର ଅନଧିକାରୀଙ୍କୁ ଗୀତା ଉପଦେଶ ନ ଶୁଣାଇବାକୁ କହି ଅଠଷଠିରେ ଏବଂ ଅଣସ୍ତରିରେ ଅଧିକାରୀମାନଙ୍କ ମଧ୍ୟରେ ଗୀତାପ୍ରଚାରର, ସତୁରିରେ ଗୀତା-ଅଧ୍ୟୟନର ଏବଂ ଏକସ୍ତରିରେ କେବଳ ଶ୍ରଦ୍ଧାପୂର୍ବକ ଗୀତାଶ୍ରବଣର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି। ବାସ୍ତରି ଶ୍ଳୋକରେ ଅର୍ଜୁନ ଏକାଗ୍ରତାର ସହିତ ଗୀତା ଶୁଣିଲେ କି ଏବଂ ତାଙ୍କର ମୋହ ନାଶ ହେଲା କି ବୋଲି ପଚାରିଛନ୍ତି। ତେସ୍ତରିରେ ଅର୍ଜୁନ ନିଜର ମୋହ ନାଶ ହୋଇଗଲା ବୋଲି ତଥା ସ୍ମୃତିଲାଭ କରି ସେ ସଂଶୟରହିତ ହୋଇଗଲେ ବୋଲି କହି ଭଗବାନଙ୍କ ଆଜ୍ଞା ପାଳନ କରିବାକୁ ସ୍ୱୀକାର କରିଛନ୍ତି। ତା'ପରେ ଚଉସ୍ତରିଠାରୁ ସତସ୍ତରିପର୍ଯ୍ୟନ୍ତ ସଂଜୟ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ସଂବାଦରୂପକ ଗୀତାଶାସ୍ତ୍ର-ଉପଦେଶର ମହିମାକୁ ପ୍ରଶଂସା କରିଛନ୍ତି ଏବଂ ସେହି ଉପଦେଶ ଓ ଭଗବାନଙ୍କର ବିରାଟରୂପ ସ୍ମରଣ କରି ସେ ନିଜେ ବାରମ୍ବାର ବିସ୍ମିତ ଓ ହର୍ଷିତ ହେଉଥିବା କଥା କହିଛନ୍ତି। ଅଠସ୍ତରି ଶ୍ଳୋକରେ ଭଗବାନ୍ ଶ୍ରୀକୃଷ୍ଣ ଓ ଅର୍ଜୁନ ଯେଉଁ ପକ୍ଷରେ ଅଛନ୍ତି, ସେହି ପକ୍ଷର ବିଜୟ ଆଦି ନିଶ୍ଚିତ ବୋଲି ଘୋଷଣା କରି ସଂଜୟ ଅଧ୍ୟାୟର ଉପସଂହାର କରିଛନ୍ତି।

**ସମ୍ବନ୍ଧ—** ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ଗୀତାର ଉପଦେଶ ଆରମ୍ଭ ହୋଇଛି। ସେଠାରୁ ଆରମ୍ଭ କରି ତିରିଶ ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ଜ୍ଞାନଯୋଗବିଷୟକ ଉପଦେଶ ଦେଇଛନ୍ତି ଏବଂ ପ୍ରସଙ୍ଗକ୍ରମେ କ୍ଷାତ୍ରଧର୍ମଦୃଷ୍ଟିରୁ ଯୁଦ୍ଧ କରିବା କର୍ତ୍ତବ୍ୟ ବୋଲି ପ୍ରତିପାଦନ କରିଛନ୍ତି। ଅଣଚାଳିଶ ଶ୍ଳୋକରୁ ଆରମ୍ଭ କରି ଅଧ୍ୟାୟର ଶେଷପର୍ଯ୍ୟନ୍ତ ଭଗବାନ୍ କର୍ମଯୋଗବିଷୟକ ଉପଦେଶ ଦେଇଛନ୍ତି; ତା'ପରେ ତୃତୀୟ ଅଧ୍ୟାୟରୁ ସତର ଅଧ୍ୟାୟପର୍ଯ୍ୟନ୍ତ କେଉଁଠି ଜ୍ଞାନଯୋଗଦୃଷ୍ଟିରୁ ତ, କେଉଁଠି କର୍ମଯୋଗଦୃଷ୍ଟିରୁ ପରମାତ୍ମପ୍ରାପ୍ତିବିଷୟକ ବିଭିନ୍ନ ସାଧନା ବୁଝାଇ କହିଛନ୍ତି। ସେସବୁ ଶୁଣିବା ପରେ ବର୍ତ୍ତମାନ ଏହି ଅଷ୍ଟାଦଶ ଅଧ୍ୟାୟରେ ସବୁ ଅଧ୍ୟାୟମାନଙ୍କରେ ଦିଆଯାଇଥିବା ଉପଦେଶର ସାରକଥା ଜାଣିବାନିମନ୍ତେ ଅର୍ଜୁନ ଭଗବାନଙ୍କ ଠାରୁ ସନ୍ନ୍ୟାସ ଅର୍ଥାତ୍ ଜ୍ଞାନଯୋଗର ଏବଂ ତ୍ୟାଗ ଅର୍ଥାତ୍ ଫଳାସକ୍ତିତ୍ୟାଗରୂପକ କର୍ମଯୋଗର ତତ୍ତ୍ୱ ପୃଥକ୍ ପୃଥକ୍‌ଭାବରେ ଭଲରୂପେ ଶୁଣିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି—

ଅର୍ଜୁନ ଉବାଚ

## ସଂନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁମ୍ ।
## ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍କେଶିନିଷୂଦନ ।। ୧ ।।

**ଅନ୍ୱୟ—** ମହାବାହୋ = ହେ ମହାବାହୁ!; ହୃଷୀକେଶ = ହେ ଅନ୍ତର୍ଯାମୀ!; କେଶିନିଷୂଦନ = ହେ ବାସୁଦେବ! (ମୁଁ); ସଂନ୍ୟାସସ୍ୟ = ସନ୍ନ୍ୟାସର; ଚ = ଏବଂ; ତ୍ୟାଗସ୍ୟ = ତ୍ୟାଗର; ତତ୍ତ୍ୱମ୍ = ତତ୍ତ୍ୱକୁ; ପୃଥକ୍ = ପୃଥକ୍ ପୃଥକ୍‌ଭାବରେ; ବେଦିତୁମ୍ = ଜାଣିବାକୁ; ଇଚ୍ଛାମି = ଇଚ୍ଛା କରୁଛି।

**ଅର୍ଜୁନ କହିଲେ— ହେ ମହାବାହୁ! ହେ ଅନ୍ତର୍ଯାମୀ! ହେ ବାସୁଦେବ! ମୁଁ ସନ୍ନ୍ୟାସ ଏବଂ ତ୍ୟାଗର ତତ୍ତ୍ୱ ପୃଥକ୍ ପୃଥକ୍‌ଭାବରେ ଜାଣିବାକୁ ଇଚ୍ଛା କରୁଛି।।। ୧ ।।**

**ପ୍ରଶ୍ନ—** ଏଠାରେ **ମହାବାହୋ, ହୃଷୀକେଶ** ଏବଂ **କେଶିନିଷୂଦନ** ଏହି ତିନୋଟି ସମ୍ବୋଧନ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଏହି ସମ୍ବୋଧନଗୁଡ଼ିକ ଦ୍ୱାରା ଅର୍ଜୁନ କହୁଛନ୍ତି, ''ଆପଣ ସର୍ବଶକ୍ତିମାନ୍, ସର୍ବାନ୍ତର୍ଯାମୀ ଏବଂ ସମସ୍ତ ଦୋଷବିନାଶକାରୀ ସାକ୍ଷାତ୍ ପରମେଶ୍ୱର। ଏଣୁ ମୁଁ ଆପଣଙ୍କ ଠାରୁ ଯାହାକିଛି ଜାଣିବାକୁ ଇଚ୍ଛା କରୁଛି, ତାହା ଆପଣ ଭଲଭାବରେ ଜାଣନ୍ତି। ତେଣୁ ମୋ ପ୍ରାର୍ଥନା ରକ୍ଷା କରି ଆପଣ ମୋତେ ଏହି ବିଷୟ ଏପରିଭାବରେ ବୁଝାଇଦିଅନ୍ତୁ ଯେ, ମୁଁ ଏହା ପୂର୍ଣ୍ଣରୂପେ ଯଥାର୍ଥ ବୁଝିପାରିବି ଏବଂ ମୋର ସକଳ ଶଙ୍କା ସର୍ବଥା ଦୂର ହୋଇଯିବ।''

**ପ୍ରଶ୍ନ—** 'ମୁଁ ସନ୍ନ୍ୟାସ ଏବଂ ତ୍ୟାଗର ତତ୍ତ୍ୱ ପୃଥକ୍ ପୃଥକ୍ ଜାଣିବାକୁ ଇଚ୍ଛା କରୁଛି'— ଅର୍ଜୁନ ଏପରି କହିବାର ଅଭିପ୍ରାୟ କ'ଣ?

**ଉତ୍ତର—** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ସନ୍ନ୍ୟାସ (ଜ୍ଞାନଯୋଗ)ର ସ୍ୱରୂପ କ'ଣ, ସେଥିରେ କେଉଁ କେଉଁ ଭାବ ଓ କର୍ମ ସହାୟକ, ଏବଂ କେଉଁ କେଉଁ ଭାବ

ଓ କର୍ମ ବାଧକ, ଉପାସନାସହିତ ସାଂଖ୍ୟଯୋଗ ଏବଂ କେବଳ-ସାଂଖ୍ୟଯୋଗ କିପରି ସାଧନା କରାଯାଏ, ତ୍ୟାଗ (ଫଳାସକ୍ତିତ୍ୟାଗରୂପକ କର୍ମଯୋଗ)ର ସ୍ୱରୂପ କ'ଣ, କେବଳ କର୍ମଯୋଗର ସାଧନା କିପରି କରାଯାଏ, ଏଥିରେ କେଉଁ କର୍ମ ସହାୟକ ଏବଂ କେଉଁ କର୍ମ ବାଧକ, ଭକ୍ତିମିଶ୍ରିତ କର୍ମଯୋଗ କ'ଣ ଏବଂ ଭକ୍ତିପ୍ରଧାନ କର୍ମଯୋଗ କ'ଣ, ଲୌକିକ ଏବଂ ଶାସ୍ତ୍ରୀୟ କର୍ମ କରୁ କରୁ ଭକ୍ତିମିଶ୍ରିତ ଓ ଭକ୍ତିପ୍ରଧାନ କର୍ମଯୋଗର ସାଧନା କିପରି କରାଯାଏ, ମୁଁ ଏହିସବୁ କଥା ଭଲଭାବରେ ଜାଣିବାକୁ ଚାହୁଁଛି। ତା' ଛଡ଼ା ଏହି ଦୁଇଟି ସାଧନାର ଲକ୍ଷଣ ଓ ସ୍ୱରୂପ ମଧ୍ୟ ମୁଁ ପୃଥକ୍ ପୃଥକ୍‌ଭାବରେ ଜାଣିବାକୁ ଚାହୁଁଛି। ଏହି ଦୁଇପ୍ରକାର ଯୋଗ ବିଷୟ କୃପା କରି ଏପରି ପୃଥକ୍ ପୃଥକ୍‌ଭାବରେ ବୁଝାଇଦିଅନ୍ତୁ, ଯେପରି କି ସେଥିରେ ପରସ୍ପର ମିଶ୍ରଣ ନ ହେବ ଏବଂ ଏ ଦୁଇଟି ମଧ୍ୟରେ ରହିଥିବା ପ୍ରଭେଦ ଭଲଭାବରେ ବୁଝିହେବ।

**ପ୍ରଶ୍ନ –** ସନ୍ନ୍ୟାସ ଓ ତ୍ୟାଗର ତତ୍ତ୍ୱ ବୁଝାଇବାକୁ ଭଗବାନ୍ କେଉଁ କେଉଁ ଶ୍ଳୋକରେ କି କି କଥା କହିଛନ୍ତି ?

**ଉତ୍ତର –** ଏହି ଅଧ୍ୟାୟର ତେର ଶ୍ଳୋକଠାରୁ ସତର ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ସନ୍ନ୍ୟାସ (ଜ୍ଞାନଯୋଗ)ର ସ୍ୱରୂପ କହିଛନ୍ତି। ଉଣେଇଶଠାରୁ ଚାଳିଶଶ୍ଳୋକପର୍ଯ୍ୟନ୍ତ ଯେଉଁସବୁ ସାତ୍ତ୍ୱିକ ଭାବ ଏବଂ କର୍ମ କହିଛନ୍ତି, ସେସବୁ ଏହାର ସାଧନାରେ ଉପଯୋଗୀ ଏବଂ ରାଜସ ଓ ତାମସ ଏହାର ବିରୋଧୀ। ପଚାଶଠାରୁ ପଞ୍ଚାବନପର୍ଯ୍ୟନ୍ତ ଉପାସନାସହିତ ସାଂଖ୍ୟଯୋଗର ବିଧି ଏବଂ ଫଳ କଥା କହିଛନ୍ତି ତଥା ସତର ଶ୍ଳୋକରେ କେବଳ ସାଂଖ୍ୟଯୋଗ ସାଧନା କରିବାର ପ୍ରଣାଳୀ କହିଛନ୍ତି।

ସେହିପରି ଷଷ୍ଠ ଶ୍ଳୋକରେ (ଫଳାସକ୍ତିତ୍ୟାଗରୂପକ) କର୍ମଯୋଗର ସ୍ୱରୂପ କହିଛନ୍ତି। ନବମ ଶ୍ଳୋକରେ ସାତ୍ତ୍ୱିକତ୍ୟାଗ ନାମରେ କେବଳ କର୍ମଯୋଗର ସାଧନା-ପ୍ରଣାଳୀ କହିଛନ୍ତି। ସତଚାଳିଶ ଓ ଅଠଚାଳିଶ ଶ୍ଳୋକରେ ସ୍ୱଧର୍ମପାଳନ ଏହି ସାଧନାରେ ଉପଯୋଗୀ ବୋଲି କହିଛନ୍ତି ଏବଂ ସପ୍ତମ ଓ ଅଷ୍ଟମ ଶ୍ଳୋକରେ ବର୍ଣ୍ଣିତ ତାମସ ଓ ରାଜସ-ତ୍ୟାଗ ଏହି ସାଧନାରେ ବାଧକ ହୁଏ ବୋଲି କହିଛନ୍ତି। ପଇଁଚାଳିଶ ଏବଂ ଛୟାଳିଶରେ ଭକ୍ତିମିଶ୍ରିତ କର୍ମଯୋଗ ଏବଂ ଛପନଠାରୁ ଛଷଠି ଶ୍ଳୋକପର୍ଯ୍ୟନ୍ତ ଭକ୍ତିପ୍ରଧାନ କର୍ମଯୋଗ ବର୍ଣ୍ଣନା କରିଛନ୍ତି। ଛୟାଳିଶ ଶ୍ଳୋକରେ ଲୌକିକ ଓ ଶାସ୍ତ୍ରୀୟ ସମସ୍ତ କର୍ମ କରି ମଧ୍ୟ ଭକ୍ତିମିଶ୍ରିତ କର୍ମଯୋଗ ସାଧନା କରିବାର ପ୍ରଣାଳୀ କହିଛନ୍ତି ଏବଂ ସତାବନ ଶ୍ଳୋକରେ ଭଗବାନ୍ ଭକ୍ତିପ୍ରଧାନ କର୍ମଯୋଗ ସାଧନା କରିବାର ପ୍ରଣାଳୀ କହିଛନ୍ତି।

*ସମ୍ବନ୍ଧ – ଅର୍ଜୁନ ଏପରି ପଚାରିବାରୁ ଭଗବାନ୍ ନିଜର ଅଭିପ୍ରାୟ ପ୍ରକାଶ କରିବା ପୂର୍ବରୁ ଦୁଇଟି ଶ୍ଳୋକରେ ସନ୍ନ୍ୟାସ ଓ ତ୍ୟାଗ ବିଷୟରେ ଅନ୍ୟ ବିଦ୍ୱାନମାନଙ୍କର ଭିନ୍ନ ଭିନ୍ନ ଅଭିପ୍ରାୟ କହୁଛନ୍ତି –*

ଶ୍ରୀଭଗବାନୁବାଚ–

**କାମ୍ୟାନାଂ କର୍ମଣାଂ ନ୍ୟାସଂ ସଂନ୍ୟାସଂ କବୟୋ ବିଦୁଃ।**
**ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ॥ ୨ ॥**

**ଅନ୍ୱୟ –** **କବୟଃ** = କେତେକ ପଣ୍ଡିତ; **କାମ୍ୟାନାମ୍** = କାମ୍ୟ; **କର୍ମଣାମ୍** = କର୍ମମାନଙ୍କ; **ନ୍ୟାସମ୍** = ତ୍ୟାଗକୁ; **ସଂନ୍ୟାସମ୍** = ସନ୍ନ୍ୟାସ (ବୋଲି); **ବିଦୁଃ** = ବୁଝନ୍ତି (ଏବଂ ଅନ୍ୟ); **ବିଚକ୍ଷଣାଃ** = ବିଚାରକୁଶଳ ପୁରୁଷମାନେ; **ସର୍ବକର୍ମଫଳତ୍ୟାଗଂ** = ସକଳ କର୍ମର ଫଳତ୍ୟାଗକୁ; **ତ୍ୟାଗମ୍** = ତ୍ୟାଗ (ବୋଲି); **ପ୍ରାହୁଃ** = କହନ୍ତି।

**ଶ୍ରୀଭଗବାନ୍ କହିଲେ – କେତେକ ପଣ୍ଡିତ କାମ୍ୟକର୍ମମାନଙ୍କର ତ୍ୟାଗକୁ ସନ୍ନ୍ୟାସ ବୋଲି ବୁଝନ୍ତି ଏବଂ ଅନ୍ୟ ବିଚାରକୁଶଳ ପୁରୁଷମାନେ ସକଳ କର୍ମର ଫଳତ୍ୟାଗକୁ ତ୍ୟାଗ ବୋଲି କହନ୍ତି॥ ୨ ॥**

**ପ୍ରଶ୍ନ —** **କାମ୍ୟକର୍ମ** କେଉଁ କର୍ମମାନଙ୍କର ନାମ ତଥା 'କେତେକ ପଣ୍ଡିତ ସେଗୁଡ଼ିକ ତ୍ୟାଗ କରିବାକୁ ସନ୍ନ୍ୟାସ ବୋଲି ବୁଝନ୍ତି' — ଏହାର ଭାବ କ'ଣ ?

**ଉତ୍ତର —** ସ୍ତ୍ରୀ, ପୁତ୍ର, ଧନ ଓ ସ୍ୱର୍ଗାଦି ପ୍ରିୟବସ୍ତୁ ପ୍ରାପ୍ତିନିମନ୍ତେ ଏବଂ ରୋଗ-ସଙ୍କଟାଦି ନିବୃତ୍ତିନିମନ୍ତେ ଯଜ୍ଞ, ଦାନ, ତପ ଓ ଉପାସନା ଆଦି ଯେଉଁ ଶୁଭକର୍ମ କରିବାକୁ ଶାସ୍ତ୍ରରେ ବିଧାନ କରାଯାଇଛି ଅର୍ଥାତ୍ ଶାସ୍ତ୍ରରେ ଯେଉଁ କୁହାଯାଇଛି ଯେ, ଯଦି ଅମୁକ ଫଳ ପାଇବାକୁ ଇଚ୍ଛା ହୁଏ, ତେବେ ଅମୁକ କର୍ମ କରିବା ଉଚିତ, କିନ୍ତୁ ଉକ୍ତ ଫଳ ପାଇବାକୁ ଇଚ୍ଛା ନ ହେଲେ, ସେହି କର୍ମ ନ କଲେ କିଛି କ୍ଷତି ନାହିଁ, ସେପରି ଶୁଭକର୍ମର ନାମ **କାମ୍ୟକର୍ମ**। 'କେତେକ ପଣ୍ଡିତ କାମ୍ୟକର୍ମ-ତ୍ୟାଗକୁ ସନ୍ନ୍ୟାସ ବୋଲି ବୁଝନ୍ତି'— ଏହା କହି ଭଗବାନ୍ ଜଣାଇଦେଇଛନ୍ତି ଯେ, କେତେକ ବିଦ୍ୱାନଙ୍କ ମତରେ ଉପରୋକ୍ତ କର୍ମଗୁଡ଼ିକ ସ୍ୱରୂପତଃ ତ୍ୟାଗ କରିଦେବା ହିଁ ସନ୍ନ୍ୟାସ। ସେମାନଙ୍କ ମତରେ ଯେଉଁମାନେ କାମ୍ୟକର୍ମ ଅନୁଷ୍ଠାନ ନ କରି କେବଳ ନିତ୍ୟ ଓ ନୈମିତ୍ତିକ କର୍ତ୍ତବ୍ୟକର୍ମ ହିଁ ବିଧିବତ୍ ଅନୁଷ୍ଠାନ କରନ୍ତି, ସେମାନେ ହିଁ ସନ୍ନ୍ୟାସୀ।

**ପ୍ରଶ୍ନ —ସର୍ବକର୍ମ** ଶବ୍ଦ କେଉଁ କର୍ମମାନଙ୍କର ବାଚକ ଏବଂ ସେସବୁର ଫଳତ୍ୟାଗ କ'ଣ ? ତଥା 'କେତେକ ବିଚାରକୁଶଳ ପୁରୁଷ ସକଳ କର୍ମର ଫଳତ୍ୟାଗକୁ ତ୍ୟାଗ ବୋଲି କହନ୍ତି' — ଏହି ବକ୍ତବ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର —** ଈଶ୍ୱରଭକ୍ତି, ଦେବତାପୂଜା, ମାତା-ପିତାଦି ଗୁରୁଜନମାନଙ୍କର ସେବା, ଯଜ୍ଞ, ଦାନ ଏବଂ ତପ ତଥା ବର୍ଣ୍ଣାଶ୍ରମ ଅନୁସାରେ ଜୀବିକାପାଇଁ କର୍ମ ଏବଂ ଶରୀରସମ୍ବନ୍ଧୀ ପାନ-ଭୋଜନ ଆଦି ଯେଉଁସବୁ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ରହିଛି ଅର୍ଥାତ୍ ଯେଉଁ ବର୍ଣ୍ଣ ଏବଂ ଯେଉଁ ଆଶ୍ରମପାଇଁ ଯେଉଁ କର୍ମ ଶାସ୍ତ୍ରରେ କର୍ତ୍ତବ୍ୟ ବୋଲି କୁହାଯାଇଛି ଓ ଯେଉଁସବୁ କର୍ମ ନ କଲେ ନୀତି, ଧର୍ମ ଓ କର୍ମପରମ୍ପରାରେ ବାଧା ଉପୁଜେ, ଏଠାରେ **ସର୍ବକର୍ମ** ହେଉଛି ସେହିସବୁ କର୍ମର ବାଚକ। ସେହି କର୍ମ-ଅନୁଷ୍ଠାନରୁ ପ୍ରାପ୍ତ ହେଉଥିବା ସ୍ତ୍ରୀ, ପୁତ୍ର, ଧନ, ମାନ, ବଡ଼ିମା, ପ୍ରତିଷ୍ଠା ଓ ସ୍ୱର୍ଗସୁଖ ଆଦି ଇହଲୋକରେ ଓ ପରଲୋକରେ ଯେତେସବୁ ଭୋଗ ରହିଛି, ସେହିସବୁର କାମନା ସର୍ବଥା ତ୍ୟାଗ କରିଦେବା ଏବଂ କୌଣସି କର୍ମ ସହିତ ମଧ୍ୟ କୌଣସିପ୍ରକାର ଫଳର ସମ୍ବନ୍ଧ ନ ଯୋଡ଼ିବା ହିଁ ସମସ୍ତ କର୍ମଫଳ ତ୍ୟାଗ କରିଦେବା। 'କେତେକ ବିଚାରକୁଶଳ ପୁରୁଷ ସମସ୍ତ କର୍ମର ଫଳତ୍ୟାଗକୁ ହିଁ ତ୍ୟାଗ ବୋଲି କହନ୍ତି' — ଏହି ବାକ୍ୟଦ୍ୱାରା ଭଗବାନ୍ ଦେଖାଇଦେଇଛନ୍ତି ଯେ, ବିବେଚନାପୂର୍ବକ ନିତ୍ୟ କ'ଣ ଓ ଅନିତ୍ୟ କ'ଣ ନିଶ୍ଚୟ କରୁଥିବା ପୁରୁଷମାନେ ଉପରୋକ୍ତପ୍ରକାରେ ସମସ୍ତ କର୍ମର ଫଳ ତ୍ୟାଗ କରିଦେଇ କେବଳ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରି ରହିବାକୁ ହିଁ ତ୍ୟାଗ ବୋଲି ବୁଝନ୍ତି। ଅତଏବ ସେମାନେ ସମସ୍ତ କର୍ତ୍ତବ୍ୟକର୍ମ ଏହିପରିଭାବରେ ଅନୁଷ୍ଠାନ କରନ୍ତି।

**ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ।**
**ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟମିତି ଚାପରେ ।। ୩ ।।**

**ଅନ୍ୱୟ —** ଏକେ = କେହି କେହି; **ମନୀଷିଣଃ** = ବିଦ୍ୱାନ୍; **ଇତି** = ଏପରି; **ପ୍ରାହୁଃ** = କହନ୍ତି (ଯେ); **କର୍ମ** = କର୍ମମାତ୍ର; **ଦୋଷବତ୍** = ଦୋଷଯୁକ୍ତ (ତେଣୁ); **ତ୍ୟାଜ୍ୟମ୍** = ତ୍ୟାଗ କରିବା ଯୋଗ୍ୟ; **ଚ** = ଏବଂ; **ଅପରେ** = ଅନ୍ୟ ବିଦ୍ୱାନ୍‌ମାନେ; **ଇତି** = ଏପରି; **(ଆହୁଃ)** = କହନ୍ତି (ଯେ); **ଯଜ୍ଞଦାନତପଃକର୍ମ** = ଯଜ୍ଞ, ଦାନ ଓ ତପରୂପୀ କର୍ମ; **ନ, ତ୍ୟାଜ୍ୟମ୍** = ତ୍ୟାଗ କରିବା ଉଚିତ ନୁହେଁ।

**କେହି କେହି ବିଦ୍ୱାନ୍ କହନ୍ତି ଯେ, କର୍ମମାତ୍ରକେ ଦୋଷଯୁକ୍ତ; ତେଣୁ ତାହା ତ୍ୟାଗ କରିବା ଉଚିତ ଏବଂ ଅନ୍ୟ ବିଦ୍ୱାନ୍‌ମାନେ କହନ୍ତି ଯେ, ଯଜ୍ଞ, ଦାନ ଓ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ।। ୩ ।।**

**ପ୍ରଶ୍ନ —** 'କେହି କେହି ବିଦ୍ୱାନ୍ କହନ୍ତି ଯେ, କର୍ମମାତ୍ରକେ ଦୋଷଯୁକ୍ତ; ତେଣୁ ତାହା ତ୍ୟାଗ କରିବା ଉଚିତ' — ଏହି ବାକ୍ୟର ଭାବ କ'ଣ ?

**ଉତ୍ତର —** ଏହି ବାକ୍ୟରେ ଦେଖାଇଦିଆଯାଇଛି ଯେ, କର୍ମ କରିବାମାତ୍ରେ କିଛି ନା କିଛି ପାପ ସହିତ ସମ୍ବନ୍ଧ ହୋଇଯାଏ; ଏଣୁ ବିହିତକର୍ମ ମଧ୍ୟ ସର୍ବଥା ନିର୍ଦୋଷ

ନୁହେଁ। ଏହି ଭାବକୁ ନେଇ ଭଗବାନ୍ ମଧ୍ୟ ଆଗକୁ କହିଛନ୍ତି, **'ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ'**(୧୮/୪୮) ଅର୍ଥାତ୍ 'ଅଗ୍ନି ଧୂଆଁରେ ଯୁକ୍ତ ହୋଇଥିବାପରି କରାଯାଉଥିବା ସମସ୍ତ କର୍ମ ଦୋଷରେ ଯୁକ୍ତ ଅଟେ।' ତେଣୁ କେତେକ ବିଦ୍ୱାନ୍‌ଙ୍କର ମତ ଯେ, କଲ୍ୟାଣ ଇଚ୍ଛା କରୁଥିବା ମନୁଷ୍ୟ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଆଦି ସମସ୍ତ କର୍ମ ସ୍ୱରୂପତଃ ତ୍ୟାଗ କରିଦେବା ଉଚିତ ଅର୍ଥାତ୍ ସନ୍ନ୍ୟାସ-ଆଶ୍ରମ ଗ୍ରହଣ କରିନେବା ଉଚିତ।

**ପ୍ରଶ୍ନ –** 'ଅନ୍ୟ ବିଦ୍ୱାନ୍‌ମାନେ କହନ୍ତି ଯେ, ଯଜ୍ଞ, ଦାନ ଏବଂ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ' – ଏହି ବକ୍ତବ୍ୟର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କେତେକ ବିଦ୍ୱାନ୍‌ଙ୍କ ମତରେ ଯଜ୍ଞ, ଦାନ ଓ ତପରୂପକ କର୍ମ ବାସ୍ତବରେ ଦୋଷଯୁକ୍ତ ନୁହେଁ। ସେମାନଙ୍କ ମତରେ ସେହି କର୍ମ କରାଯାଉଥିବାବେଳେ ଯେଉଁ ଅବଶ୍ୟମ୍ଭାବୀ ହିଂସାଦି ପାପ ହେବା ଦେଖାଯାଏ, ତାହା ବାସ୍ତବିକ ପାପ ନୁହେଁ, ବରଂ ଶାସ୍ତ୍ରଦ୍ୱାରା ବିହିତ ହୋଇଥିବାରୁ ଯଜ୍ଞ, ଦାନ ଓ ତପରୂପକ କର୍ମ ମନୁଷ୍ୟକୁ ପବିତ୍ର କରିଦିଏ। ତେଣୁ କଲ୍ୟାଣ ଇଚ୍ଛା କରୁଥିବା ମନୁଷ୍ୟ ନିଷିଦ୍ଧକର୍ମ ତ୍ୟାଗ କରିଦେବା ଉଚିତ; ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ତ୍ୟାଗ କରିବା ଉଚିତ ନୁହେଁ।

***ସମ୍ବନ୍ଧ –*** *ସନ୍ନ୍ୟାସ ଓ ତ୍ୟାଗ ବିଷୟରେ ବିଦ୍ୱାନ୍‌ମାନଙ୍କର ଭିନ୍ନ ଭିନ୍ନ ମତ କହିସାରି ଭଗବାନ୍ ବର୍ତ୍ତମାନ ତ୍ୟାଗବିଷୟରେ ନିଜ ମତ କହିବାକୁ ଆରମ୍ଭ କରୁଛନ୍ତି–*

## ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତସତ୍ତମ ।
## ତ୍ୟାଗୋ ହି ପୁରୁଷବ୍ୟାଘ୍ର ତ୍ରିବିଧଃ ସମ୍ପ୍ରକୀର୍ତ୍ତିତଃ॥ ୪ ॥

**ଅନ୍ୱୟ –** **ପୁରୁଷବ୍ୟାଘ୍ର** = ହେ ପୁରୁଷଶ୍ରେଷ୍ଠ; **ଭରତସତ୍ତମ** = ଅର୍ଜୁନ !; **ତତ୍ର** = ସନ୍ନ୍ୟାସ ଓ ତ୍ୟାଗ – ଏହି ଦୁଇଟି ମଧ୍ୟରୁ (ପ୍ରଥମେ); **ତ୍ୟାଗେ** = ତ୍ୟାଗ ବିଷୟରେ (ତୁମେ); **ମେ** = ମୋର; **ନିଶ୍ଚୟମ୍** = ନିଶ୍ଚୟ; **ଶୃଣୁ** = ଶୁଣ; **ହି** = କାରଣ; **ତ୍ୟାଗଃ** = ତ୍ୟାଗ (ସାତ୍ତ୍ୱିକ, ରାଜସ ଓ ତାମସ-ଭେଦରେ); **ତ୍ରିବିଧଃ** = ତିନିପ୍ରକାର; **ସମ୍ପ୍ରକୀର୍ତ୍ତିତଃ** = କୁହାଯାଇଛି।

**ହେ ପୁରୁଷଶ୍ରେଷ୍ଠ ଅର୍ଜୁନ! ସନ୍ନ୍ୟାସ ଓ ତ୍ୟାଗ – ଏହି ଦୁଇଟି ମଧ୍ୟରୁ ପ୍ରଥମେ ତ୍ୟାଗ ବିଷୟରେ ତୁମେ ମୋର ନିଶ୍ଚିତ ମତ ଶୁଣ। ତ୍ୟାଗ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନିପ୍ରକାର ବୋଲି କୁହାଯାଇଛି॥ ୪ ॥**

**ପ୍ରଶ୍ନ –** ଏଠାରେ **ଭରତସତ୍ତମ** ଏବଂ **ପୁରୁଷବ୍ୟାଘ୍ର** – ଏହି ଦୁଇ ବିଶେଷଣ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଯେ ଭରତବଂଶୀୟମାନଙ୍କ ମଧ୍ୟରେ ଅତ୍ୟନ୍ତ ଶ୍ରେଷ୍ଠ, ତାଙ୍କୁ **ଭରତସତ୍ତମ** କହନ୍ତି ଏବଂ ଯେ ପୁରୁଷମାନଙ୍କ ମଧ୍ୟରେ ସିଂହପରି ବୀର, ତାଙ୍କୁ **ପୁରୁଷବ୍ୟାଘ୍ର** କହନ୍ତି। ଏହି ଦୁଇ ସମ୍ବୋଧନ ପ୍ରୟୋଗ କରି ଭଗବାନ୍ କହିଛନ୍ତି, "ହେ ଅର୍ଜୁନ, ତୁମେ ଭରତବଂଶୀୟମାନଙ୍କ ମଧ୍ୟରେ ଉତ୍ତମ ଏବଂ ବୀରପୁରୁଷ, ତେଣୁ ଆଗକୁ କୁହାଯାଉଥିବା ତିନିପ୍ରକାର ତ୍ୟାଗ ମଧ୍ୟରୁ ତାମସ ଓ ରାଜସ ତ୍ୟାଗ ନ କରି ସାତ୍ତ୍ୱିକତ୍ୟାଗରୂପୀ କର୍ମଯୋଗ ଅନୁଷ୍ଠାନ କରିବାକୁ ତୁମେ ସମର୍ଥ।"

**ପ୍ରଶ୍ନ –** ତତ୍ର ଶବ୍ଦର ଏବଂ ଏହା ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ ତତ୍ର 'ଉପରୋକ୍ତ ତ୍ୟାଗ ଓ ସନ୍ନ୍ୟାସ' ଉଭୟ ବିଷୟକୁ ନିର୍ଦ୍ଦେଶ କରେ। ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଅର୍ଜୁନ ଭଗବାନଙ୍କୁ ସନ୍ନ୍ୟାସ ଓ ତ୍ୟାଗ – ଏହି ଦୁଇଟି ବିଷୟକ ତତ୍ତ୍ୱ କହିବାକୁ ପ୍ରାର୍ଥନା କରିଥିଲେ; ଉକ୍ତ ଦୁଇଟିମଧ୍ୟରୁ ଏଠାରେ ପ୍ରଥମେ ଭଗବାନ୍ ତ୍ୟାଗର ତତ୍ତ୍ୱ ବୁଝାଇବାକୁ ଆରମ୍ଭ କରୁଛନ୍ତି। ଅର୍ଜୁନ ଉପରୋକ୍ତ ଦୁଇଟି ତତ୍ତ୍ୱ ପୃଥକ୍ ପୃଥକ୍ ବୁଝାଇଦେବାକୁ କହିଥିଲେ; ଭଗବାନ୍ ସେଥିରେ କୌଣସି ପ୍ରତିବାଦ ନ କରି ତ୍ୟାଗ ବିଷୟ କହିବାକୁ ସଙ୍କେତ ଦେଉଛନ୍ତି। ଏଥିରୁ ଜଣାପଡୁଛି, 'ସନ୍ନ୍ୟାସ' ପ୍ରକରଣ ଭଗବାନ୍ ପରେ କହିବେ।

**ପ୍ରଶ୍ନ –** 'ତ୍ୟାଗ ବିଷୟରେ ତୁମେ ମୋର ନିଶ୍ଚିତ ମତ ଶୁଣ' – ଏ କଥାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ତୁମେ ଯେଉଁ ଦୁଇଟି କଥା ଜାଣିବାକୁ ଇଚ୍ଛା ପ୍ରକାଶ କରିଛ, ସେହି ଦୁଇଟି ବିଷୟରେ ଏପର୍ଯ୍ୟନ୍ତ ଅନ୍ୟମାନଙ୍କର ମତ କ'ଣ, ତାହା କହିଲି। ବର୍ତ୍ତମାନ ମୋ ମତ ଅନୁସାରେ ସେହି ଦୁଇଟି ମଧ୍ୟରୁ ପ୍ରଥମେ ତ୍ୟାଗର ତତ୍ତ୍ୱ ଭଲଭାବରେ ବୁଝାଇବାକୁ ଯାଉଛି; ତୁମେ ତାହା ସାବଧାନ ହୋଇ ଶୁଣ।''

**ପ୍ରଶ୍ନ –** 'ତ୍ୟାଗ ସାତ୍ତ୍ୱିକ, ରାଜସ ଏବଂ ତାମସ-ଭେଦରେ ତିନିପ୍ରକାର ବୋଲି କୁହାଯାଏ' – ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଶାସ୍ତ୍ରକୁ ସମ୍ମାନ ଦେବାପାଇଁ ନିଜ ମତକୁ ଶାସ୍ତ୍ରସମ୍ମତ ବୋଲି କହିଛନ୍ତି। ଅଭିପ୍ରାୟ ହେଉଛି, ''ଶାସ୍ତ୍ରରେ ତ୍ୟାଗ ତିନିପ୍ରକାର ବୋଲି ଯାହା ସ୍ୱୀକାର କରାଯାଇଛି, ମୁଁ ତାହା ତୁମକୁ ଭଲଭାବରେ ବୁଝାଇଦେଉଛି।''

**ସମ୍ବନ୍ଧ –** ତ୍ୟାଗର ତତ୍ତ୍ୱ ଶୁଣିବାକୁ ଅର୍ଜୁନଙ୍କର ଧ୍ୟାନ ଆକର୍ଷଣ କରି ବର୍ତ୍ତମାନ ଭଗବାନ୍ ତ୍ୟାଗର ସ୍ୱରୂପ ବୁଝାଇଦେବା ନିମନ୍ତେ ପ୍ରଥମେ ଦୁଇଟି ଶ୍ଳୋକରେ ଶାସ୍ତ୍ରବିହିତ ଶୁଭକର୍ମ କରିବା ବିଷୟରେ ନିଜର ନିଶ୍ଚିତ ମତ କହୁଛନ୍ତି–

**ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍।**
**ଯଜ୍ଞୋ ଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍॥ ୫ ॥**

**ଅନ୍ୱୟ –** **ଯଜ୍ଞଦାନତପଃକର୍ମ** = ଯଜ୍ଞ, ଦାନ ଓ ତପରୂପକ କର୍ମ; **ନ, ତ୍ୟାଜ୍ୟମ୍** = ତ୍ୟାଗ କରିବା ଉଚିତ ନୁହେଁ (ବରଂ); **ତତ୍** = ତାହା; **କାର୍ଯ୍ୟମ୍ ଏବ** = ଅବଶ୍ୟ କର୍ତ୍ତବ୍ୟ (କାରଣ); **ଯଜ୍ଞଃ** = ଯଜ୍ଞ; **ଦାନମ୍** = ଦାନ; **ଚ** = ଏବଂ; **ତପଃ** = ତପ; **ଏବ** = (କର୍ମ) ହିଁ; **ମନୀଷିଣାମ୍** = ବୁଦ୍ଧିମାନ୍ ପୁରୁଷମାନଙ୍କୁ; **ପାବନାନି** = ପବିତ୍ର କରେ।

**ଯଜ୍ଞ, ଦାନ ଓ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ; ବରଂ ତାହା ଅବଶ୍ୟ କରଣୀୟ; କାରଣ ଯଜ୍ଞ, ଦାନ ଓ ତପ – ଏହି ତିନୋଟି କର୍ମ ହିଁ ବୁଦ୍ଧିମାନ୍ ପୁରୁଷମାନଙ୍କୁ ପବିତ୍ର କରେ॥ ୫ ॥**

**ପ୍ରଶ୍ନ –** 'ଯଜ୍ଞ, ଦାନ ଓ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ; ବରଂ ତାହା ଅବଶ୍ୟ କରଣୀୟ' – ଏହି କଥନର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହି କଥନଦ୍ୱାରା ଭଗବାନ୍ ଶାସ୍ତ୍ରବିହିତ କର୍ମ ଅବଶ୍ୟକରଣୀୟ ବୋଲି ପ୍ରତିପାଦନ କରିଛନ୍ତି। ଅଭିପ୍ରାୟ ଏହି ଯେ, ଶାସ୍ତ୍ରରେ ବର୍ଣ୍ଣ ଓ ଆଶ୍ରମ ଅନୁସାରେ ଯାହାଙ୍କ ପାଇଁ ଯେଉଁ କର୍ମ ବିଧାନ କରାଯାଇଛି, ଯାହାକୁ ଯେଉଁ ସମୟରେ ଯେଉଁପ୍ରକାର ଯଜ୍ଞ କରିବାନିମନ୍ତେ, ଦାନ ଦେବାନିମନ୍ତେ ଏବଂ ତପ କରିବାନିମନ୍ତେ କୁହାଯାଇଛି, ସେ ତାହା ତ୍ୟାଗ କରିବା ଉଚିତ ନୁହେଁ ଅର୍ଥାତ୍ ଶାସ୍ତ୍ର-ଆଜ୍ଞାକୁ ଅବହେଳା କରିବା ଉଚିତ ନୁହେଁ; କାରଣ ଏପରି ତ୍ୟାଗଦ୍ୱାରା କୌଣସିପ୍ରକାର ଲାଭ ହେବା ତ ଦୂରର କଥା, ବରଂ ପ୍ରତ୍ୟବାୟ ଦୋଷ ଲାଗିବ। ତେଣୁ ମନୁଷ୍ୟ ଏହି କର୍ମଗୁଡ଼ିକ ଅବଶ୍ୟ ଅନୁଷ୍ଠାନ କରିବା ଉଚିତ। ଏହା କିପରି ଅନୁଷ୍ଠାନ କରିବାକୁ ହେବ, ତାହା ପରବର୍ତ୍ତୀ ଶ୍ଳୋକରେ କୁହାଯାଇଛି।

**ପ୍ରଶ୍ନ – ମନୀଷିଣାମ୍** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ତଥା 'ଯଜ୍ଞ, ଦାନ ଓ ତପ – ଏ ସମସ୍ତକର୍ମ ସେମାନଙ୍କୁ ପବିତ୍ର କରେ' – ଏହି କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ବର୍ଣ୍ଣାଶ୍ରମ ଅନୁସାରେ ଯାହାଙ୍କ ପାଇଁ ଯେଉଁ କର୍ମ କର୍ତ୍ତବ୍ୟ ବୋଲି କୁହାଯାଇଛି, ଯେଉଁ ବୁଦ୍ଧିମାନ୍ ମୁମୁକ୍ଷୁମାନେ ସେହି ଶାସ୍ତ୍ରବିହିତ କର୍ମଗୁଡ଼ିକ ଶାସ୍ତ୍ରବିଧି ଅନୁସାରେ ସାଙ୍ଗୋପାଙ୍ଗ ନିଷ୍କାମଭାବରେ ଭଲରୂପେ ଅନୁଷ୍ଠାନ କରନ୍ତି, **ମନୀଷିଣାମ୍** ପଦଟି ହେଉଛି ସେହିମାନଙ୍କର ବାଚକ। ସେମାନଙ୍କ ଦ୍ୱାରା କରାଯାଉଥିବା ଯଜ୍ଞ, ଦାନ ଓ ତପରୂପକ ସମସ୍ତ କର୍ମ ବନ୍ଧନକାରକ ନୁହେଁ, ବରଂ ସେମାନଙ୍କ ଅନ୍ତଃକରଣ ପବିତ୍ର କରିଦିଏ। ଅତଏବ ମନୁଷ୍ୟ ନିଷ୍କାମଭାବରେ ଯଜ୍ଞ, ଦାନ

ଓ ତପରୂପକ କର୍ମ ଅନୁଷ୍ଠାନ ଅବଶ୍ୟ କରିବା ଉଚିତ — ଏହି ଭାବ ଦେଖାଇବାକୁ ଏଠାରେ କୁହାଯାଇଛି ଯେ, ଯଜ୍ଞ, ଦାନ ଏବଂ ତପରୂପକ କର୍ମ ମନୀଷୀ ପୁରୁଷମାନଙ୍କୁ ପବିତ୍ର କରେ।

## ଏତାନ୍ୟପି ତୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଫଳାନି ଚ।
## କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମମ୍।। ୬ ।।

**ଅନ୍ୱୟ —** **ପାର୍ଥ** = ହେ ପାର୍ଥ!; **ଏତାନି** = ଏହି ଯଜ୍ଞ, ଦାନ ଓ ତପରୂପକ କର୍ମମାନଙ୍କୁ; **ତୁ** = ତଥା; **(ଅନ୍ୟାନି)** **ଅପି** = ଅନ୍ୟାନ୍ୟ; **କର୍ମାଣି** = କର୍ତ୍ତବ୍ୟକର୍ମମାନଙ୍କୁ; **ସଙ୍ଗମ୍** = ଆସକ୍ତି; **ଚ** = ଏବଂ; **ଫଳାନି** = ଫଳମାନଙ୍କୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **କର୍ତ୍ତବ୍ୟାନି** = ଅବଶ୍ୟ କରିବା ଉଚିତ; **ଇତି** = ଏହା; **ମେ** = ମୋର; **ନିଶ୍ଚିତମ୍** = ନିଶ୍ଚୟ କରାଯାଇଥିବା; **ଉତ୍ତମମ୍** = ଉତ୍ତମ; **ମତମ୍** = ମତ ଅଟେ।

**ତେଣୁ ହେ ପାର୍ଥ! ଆସକ୍ତି ଓ ଫଳ ତ୍ୟାଗ କରି ଏହି ଯଜ୍ଞ, ଦାନ ଏବଂ ତପରୂପକ କର୍ମ ତଥା ଅନ୍ୟ ସକଳ କର୍ତ୍ତବ୍ୟକର୍ମ ଅବଶ୍ୟ କରିବା ଉଚିତ। ଏହା ହେଉଛି ମୋର ନିଶ୍ଚୟ କରାଯାଇଥିବା ଉତ୍ତମ ମତ।। ୬ ।।**

**ପ୍ରଶ୍ନ —** ଏତାନି ପଦ କେଉଁ କର୍ମମାନଙ୍କର ବାଚକ ତଥା ଏଠାରେ **ତୁ** ଓ **ଅପି** — ଏହି ଅବ୍ୟୟ ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର —** ଏଠାରେ ଏତାନି ପଦଟି ହେଉଛି ଉପରୋକ୍ତ ଯଜ୍ଞ, ଦାନ ଓ ତପରୂପକ କର୍ମମାନଙ୍କର ବାଚକ। ଏହା ସହିତ **ତୁ** ଏବଂ **ଅପି** ଅବ୍ୟୟ ପଦ ପ୍ରୟୋଗ କରି ଯଜ୍ଞତପାଦି ବ୍ୟତୀତ ମାତା-ପିତାଦି ଗୁରୁଜନମାନଙ୍କର ସେବା, ବର୍ଣ୍ଣାଶ୍ରମାନୁସାରେ ଜୀବିକାନିର୍ବାହ କର୍ମ ଏବଂ ଶରୀର ସମ୍ବନ୍ଧୀୟ ଖାଇବା-ପିଇବା ଆଦି ଯେତେ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ରହିଛି, ସେହିସବୁର ସମାହାର କରାଯାଇଛି।

**ପ୍ରଶ୍ନ —** 'ଏହିସବୁ କର୍ମମାନଙ୍କୁ ଆସକ୍ତି ଓ ଫଳ-ତ୍ୟାଗପୂର୍ବକ କରିବା ଉଚିତ' — ଏହି କଥାର ଭାବ କ'ଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ଏହି କର୍ମମାନଙ୍କରେ ସର୍ବଥା ମମତ୍ୱ ଓ ଆସକ୍ତି ତ୍ୟାଗ କରି ତଥା ସେଥିରୁ ମିଳୁଥିବା ଇହଲୋକର ଓ ପରଲୋକର ଭୋଗରୂପକ ଫଳରେ ମଧ୍ୟ ଆସକ୍ତି ଓ କାମନା ତ୍ୟାଗ କରି ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମ ଅନୁଷ୍ଠାନ କରିବା ଉଚିତ। ଏଥିରୁ ଏହା ମଧ୍ୟ ବୁଝିନେବା ଉଚିତ ଯେ, ମୁମୁକ୍ଷୁ ପୁରୁଷ କାମ୍ୟକର୍ମ ଓ ନିଷିଦ୍ଧ କର୍ମ ଆଚରଣ କରିବା ଉଚିତ ନୁହେଁ।

**ପ୍ରଶ୍ନ —** 'ଏହା ମୋର ନିଶ୍ଚୟ କରାଯାଇଥିବା ଉତ୍ତମ ମତ' — ଏହି ବକ୍ତବ୍ୟର ଭାବ କ'ଣ ? ତଥା ପ୍ରଥମେ ଯାହାସବୁ ବିଦ୍ୱାନ୍‌ମାନଙ୍କର ମତ ବୋଲି କୁହାଯାଇଥିଲା, ତାହା ଅପେକ୍ଷା ଭଗବାନଙ୍କ ମତର ବିଶେଷତ୍ୱ କ'ଣ ?

**ଉତ୍ତର —** 'ଏହା ହେଉଛି ମୋର ନିଶ୍ଚୟ କରାଯାଇଥିବା ଉତ୍ତମ ମତ' କହି ଭଗବାନ୍ ବୁଝାଇଦେଇଛନ୍ତି ଯେ, ତାଙ୍କ ମତରେ ଏହାର ନାମ ତ୍ୟାଗ; କାରଣ ଏହିପରି କର୍ମ କରୁଥିବା ମନୁଷ୍ୟ ସମସ୍ତ କର୍ମବନ୍ଧନରୁ ମୁକ୍ତ ହୋଇ ପରମପଦ ପ୍ରାପ୍ତ ହୋଇଥାନ୍ତି; କର୍ମ ସହିତ ତାଙ୍କର କୌଣସି ବି ସମ୍ବନ୍ଧ ରହେ ନାହିଁ।

ବିଦ୍ୱାନ୍‌ମାନଙ୍କର ମତାନୁସାରେ ତ୍ୟାଗ ଏବଂ ସନ୍ନ୍ୟାସର ଯେଉଁ ଲକ୍ଷଣ ଉପରେ କୁହାଯାଇଛି, ତାହା ପୂର୍ଣ୍ଣ ନୁହେଁ। କାରଣ କେବଳ ସ୍ୱରୂପତଃ କାମ୍ୟକର୍ମ ତ୍ୟାଗ କରିଦେଲେ ମଧ୍ୟ ଅନ୍ୟ ନିତ୍ୟ-ନୈମିତ୍ତିକ କର୍ମରେ ଏବଂ ସେସବୁର ଫଳରେ ଯଦି ମନୁଷ୍ୟର ମମତ୍ୱ, ଆସକ୍ତି ଓ କାମନା ରହିଯାଏ, ତେବେ ସେସବୁ ବନ୍ଧନର ହେତୁ ହୋଇଯାନ୍ତି। ସକଳପ୍ରକାର କର୍ମରୁ ଫଳେଚ୍ଛା ତ୍ୟାଗ କରିଦେଲେ ମଧ୍ୟ, ଯଦି ସେହି କର୍ମମାନଙ୍କରେ ମମତ୍ୱ ଏବଂ ଆସକ୍ତି ରହିଯାଏ, ତେବେ ସେସବୁ କର୍ମ ବନ୍ଧନକାରକ ହୋଇଯାଏ। ଅହଂତ୍ୱ, ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ ନ କରି ଯଦି ସମସ୍ତ କର୍ମ ଦୋଷଯୁକ୍ତ ବୋଲି ବୁଝି କର୍ତ୍ତବ୍ୟକର୍ମକୁ ମଧ୍ୟ ସ୍ୱରୂପତଃ ତ୍ୟାଗ କରିଦିଆଯାଏ, ତେବେ ବି ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇପାରେ ନାହିଁ; କାରଣ ତାହା କଲେ ସେ ବିହିତକର୍ମ ତ୍ୟାଗରୂପକ ପ୍ରତ୍ୟବାୟରେ ଭାଗୀ ହୋଇଯାଏ। ଠିକ୍ ସେହିପରି ଯଜ୍ଞ, ଦାନ ଓ ତପରୂପକ

କର୍ମ କରୁଥିଲେ ମଧ୍ୟ ଯଦି ସେଗୁଡ଼ିକରେ ଆସକ୍ତି ଏବଂ ତାହାର ଫଳରେ କାମନା ତ୍ୟାଗ କରା ନ ଯାଏ, ତେବେ ସେସବୁ ବନ୍ଧନର କାରଣ ହୋଇଯାଏ। ତେଣୁ ସେହି ବିଦ୍ୱାନ୍‌ମାନେ କହିଥିବା ଲକ୍ଷଣରେ ଯୁକ୍ତ ସନ୍ନ୍ୟାସ ଓ ତ୍ୟାଗଦ୍ୱାରା ମନୁଷ୍ୟ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇପାରେ ନାହିଁ। ଭଗବାନଙ୍କ କହିବା ଅନୁସାରେ ସକଳ କର୍ମରେ ମମତ୍ୱ, ଆସକ୍ତି ଓ ଫଳେଚ୍ଛା ତ୍ୟାଗ କରିଦେବା ହିଁ ପୂର୍ଣ୍ଣ ତ୍ୟାଗ। ସେପରି କଲେ କର୍ମବନ୍ଧନ ସର୍ବଥା ନାଶ ହୋଇଯାଏ; କାରଣ କର୍ମ ସ୍ୱରୂପତଃ ବନ୍ଧନକାରକ ନୁହେଁ; ତାହା ସହିତ ମମତ୍ୱ, ଆସକ୍ତି ଓ ଫଳର ସମ୍ବନ୍ଧ ହିଁ ବନ୍ଧନକାରକ। ଏହା ହିଁ ଭଗବାନଙ୍କ ମତର ବିଶେଷତ୍ୱ।

**ସମ୍ବନ୍ଧ—** ଏପରିଭାବରେ ନିଜର ସୁନିଶ୍ଚିତ ମତ ବ୍ୟକ୍ତ କରିସାରି ବର୍ତ୍ତମାନ ଭଗବାନ୍ କହୁଛନ୍ତି, ଶାସ୍ତ୍ରରେ କୁହାଯାଇଥିବା ତାମସ, ରାଜସ ଓ ସାତ୍ତ୍ୱିକ— ଏହି ତିନିପ୍ରକାର ତ୍ୟାଗ ମଧ୍ୟରୁ ସାତ୍ତ୍ୱିକ ତ୍ୟାଗ ହିଁ ବାସ୍ତବିକ ତ୍ୟାଗ ଏବଂ ତାହା କର୍ତ୍ତବ୍ୟ; ଅନ୍ୟ ଦୁଇପ୍ରକାର ତ୍ୟାଗ ବାସ୍ତବରେ ତ୍ୟାଗ ନୁହେଁ; ତେଣୁ କରିବାଯୋଗ୍ୟ ନୁହେଁ। ଏହି କଥା ବୁଝାଇଦେବାକୁ ତଥା ନିଜର ମତ ଶାସ୍ତ୍ରସମ୍ମତ ବୋଲି ଦେଖାଇବାକୁ ପରବର୍ତ୍ତୀ ତିନୋଟି ଶ୍ଲୋକରେ କ୍ରମଶଃ ତିନିପ୍ରକାର ତ୍ୟାଗର ଲକ୍ଷଣ କହୁଛନ୍ତି। ପ୍ରଥମେ ନିକୃଷ୍ଟ ତାମସ ତ୍ୟାଗର ଲକ୍ଷଣ କହୁଛନ୍ତି——

**ନିୟତସ୍ୟ ତୁ ସଂନ୍ୟାସଃ କର୍ମଣୋ ନୋପପଦ୍ୟତେ।**
**ମୋହାତ୍ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ ॥ ୭ ॥**

**ଅନ୍ୱୟ—** **ତୁ** = ପରନ୍ତୁ; **ନିୟତସ୍ୟ** = ନିୟତ; **କର୍ମଣଃ** = କର୍ମର; **ସଂନ୍ୟାସଃ** = ସ୍ୱରୂପତଃ ତ୍ୟାଗ; **ନ, ଉପପଦ୍ୟତେ** = ଉଚିତ ନୁହେଁ (ତେଣୁ); **ମୋହାତ୍** = ମୋହବଶତଃ; **ତସ୍ୟ** = ତାହାର; **ପରିତ୍ୟାଗଃ** = ତ୍ୟାଗ କରିଦେବା; **ତାମସଃ** = ତାମସ; **ପରିକୀର୍ତ୍ତିତଃ** = ବୋଲି କୁହାଯାଏ।

**(ନିଷିଦ୍ଧ ଓ କାମ୍ୟକର୍ମ ତ ସ୍ୱରୂପତଃ ତ୍ୟାଗ କରିବା ହିଁ ଉଚିତ), ପରନ୍ତୁ ନିୟତ କର୍ମ ସ୍ୱରୂପତଃ ତ୍ୟାଗ କରିବା ଉଚିତ ନୁହେଁ। ତେଣୁ ମୋହବଶତଃ ତାହା ତ୍ୟାଗ କରିଦେବାକୁ ତାମସ ତ୍ୟାଗ କୁହାଯାଏ ॥ ୭ ॥**

**ପ୍ରଶ୍ନ—** **ନିୟତସ୍ୟ** ବିଶେଷଣ ସହିତ **କର୍ମଣଃ** ପଦ କେଉଁ କର୍ମର ବାଚକ ଏବଂ ତାହା ସ୍ୱରୂପତଃ ତ୍ୟାଗ କରିବା ଉଚିତ ନୁହେଁ କାହିଁକି ?

**ଉତ୍ତର—** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟମାନଙ୍କ ପାଇଁ ଯଜ୍ଞ, ଦାନ, ତପ, ଅଧ୍ୟୟନ, ଅଧ୍ୟାପନ, ଉପଦେଶ, ଯୁଦ୍ଧ, ପ୍ରଜାପାଳନ, ପଶୁପାଳନ, କୃଷି, ବ୍ୟବସାୟ, ସେବା ଓ ପାନ-ଭୋଜନ ଆଦି ଯେଉଁ ଯେଉଁ କର୍ମ ଶାସ୍ତ୍ରମାନଙ୍କରେ ଅବଶ୍ୟକର୍ତ୍ତବ୍ୟ ବୋଲି କୁହାଯାଇଛି, ସେମାନଙ୍କ ପାଇଁ ତାହା ନିୟତକର୍ମ। ଏପରି କର୍ମଗୁଡ଼ିକୁ ସ୍ୱରୂପତଃ ତ୍ୟାଗ କରିଦେଉଥିବା ମନୁଷ୍ୟ ନିଜର କର୍ତ୍ତବ୍ୟ ପାଳନ କରୁ ନ ଥିବାରୁ ପାପଭାଗୀ ହୁଏ; କାରଣ ଏହାଦ୍ୱାରା କର୍ମଗୁଡ଼ିକର ପରମ୍ପରା ନଷ୍ଟ ହୋଇଯାଏ ଏବଂ ଜଗତରେ ବିପ୍ଳବ ସୃଷ୍ଟି ହୋଇଯାଏ (୩/୨୩-୨୪)। ଏଣୁ ନିୟତକର୍ମ ସ୍ୱରୂପତଃ ତ୍ୟାଗ କରିବା ଉଚିତ ନୁହେଁ।

**ପ୍ରଶ୍ନ—** 'ମୋହବଶତଃ ତାହା ତ୍ୟାଗ କରିଦେବାକୁ ତାମସ ତ୍ୟାଗ କୁହାଯାଏ'— ଏପରି କଥନର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯଦି କେହି ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ବିହିତ କର୍ତ୍ତବ୍ୟକର୍ମତ୍ୟାଗକୁ ଭୁଲବଶତଃ ମୁକ୍ତିର ହେତୁ ବୋଲି ବୁଝି କର୍ତ୍ତବ୍ୟକର୍ମ ତ୍ୟାଗ କରିଦିଏ, ତେବେ ତାର ସେହି ତ୍ୟାଗ ମୋହପୂର୍ବକ ହୋଇଥିବାରୁ ତାମସ ତ୍ୟାଗ ହୋଇଯାଏ। କାରଣ ତମୋଗୁଣଦ୍ୱାରା ମୋହର ଉତ୍ପତ୍ତି ହୁଏ ବୋଲି କୁହାଯାଇଛି (୧୪/୧୩,୧୭) ତଥା ତାମସୀ ମନୁଷ୍ୟମାନଙ୍କର ଅଧୋଗତି ହୁଏ ବୋଲି କୁହାଯାଇଛି (୧୪/୧୮)। ତେଣୁ ଯାହା କଲେ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇଯାଏ, ଉପରୋକ୍ତ ତ୍ୟାଗ ସେପରି ତ୍ୟାଗ ନୁହେଁ। ବରଂ ତାହା ପ୍ରତ୍ୟବାୟର ହେତୁ ହୋଇଥିବାରୁ ଓଲଟି ଅଧୋଗତି ଆଣିଦିଏ।

**ସମ୍ବନ୍ଧ—** ତାମସ ତ୍ୟାଗ ନିରୂପଣ କରିବା ପରେ ଭଗବାନ୍ ବର୍ତ୍ତମାନ ରାଜସ ତ୍ୟାଗର ଲକ୍ଷଣ କହୁଛନ୍ତି—

**ଦୁଃଖମିତ୍ୟେବ ଯତ୍କର୍ମ କାୟକ୍ଲେଶଭୟାତ୍ତ୍ୟଜେତ୍ ।**
**ସ କୃତ୍ୱା ରାଜସଂ ତ୍ୟାଗଂ ନୈବ ତ୍ୟାଗଫଳଂ ଲଭେତ୍ ॥ ୮ ॥**

**ଅନ୍ୱୟ—** **ଯତ୍,କର୍ମ** = ଯାହାକିଛି କର୍ମ ରହିଛି; **(ତତ୍)** = ସେସବୁ; **ଦୁଃଖମ୍,** **ଏବ** = ଦୁଃଖରୂପ ହିଁ ଅଟେ; **ଇତି** = ଏପରି (ବୁଝି ଯଦି କେହି); **କାୟକ୍ଲେଶଭୟାତ୍** = ଶାରୀରିକ-କ୍ଲେଶଭୟରୁ; **ତ୍ୟଜେତ୍** = (କର୍ତ୍ତବ୍ୟକର୍ମ) ତ୍ୟାଗ କରିଦିଏ (ତେବେ); **ସଃ** = ସେ (ଏପରି); **ରାଜସମ୍** = ରାଜସ; **ତ୍ୟାଗମ୍** = ତ୍ୟାଗ; **କୃତ୍ୱା** = କରି; **ତ୍ୟାଗଫଳମ୍** = ତ୍ୟାଗର ଫଳକୁ; **ନ, ଏବ, ଲଭେତ୍** = କୌଣସିପ୍ରକାରେ ମଧ୍ୟ ପାଇପାରେ ନାହିଁ ।

**ଯାହାକିଛି କର୍ମ ଅଛି, ସେସବୁ ଦୁଃଖରୂପ ହିଁ ଅଟେ— ଏପରି ବୁଝି ଯଦି କେହି ଶାରୀରିକ-କ୍ଲେଶଭୟରେ କର୍ତ୍ତବ୍ୟକର୍ମ ତ୍ୟାଗ କରିଦିଏ, ତେବେ ସେ ଏପରି ରାଜସ ତ୍ୟାଗ କରି କୌଣସିପ୍ରକାରେ ତ୍ୟାଗର ଫଳ ପାଏ ନାହିଁ ॥ ୮ ॥**

**ପ୍ରଶ୍ନ— ଯତ୍** ପଦ ସହିତ **କର୍ମ** ପଦ କେଉଁ କର୍ମମାନଙ୍କର ବାଚକ ଏବଂ ସେସବୁକୁ ଦୁଃଖରୂପକ ବୋଲି ବୁଝି ଶାରୀରିକ-କ୍ଲେଶଭୟରେ ତ୍ୟାଗ କରିଦେବା କ'ଣ ?

**ଉତ୍ତର—** ଏଠାରେ **ଯତ୍** ପଦ ସହିତ **କର୍ମ** ପଦଟି ହେଉଛି ସପ୍ତମ ଶ୍ଲୋକର ବ୍ୟାଖ୍ୟାରେ କୁହାଯାଇଥିବା ସମସ୍ତ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମର ବାଚକ । ସେହି କର୍ମମାନ ଅନୁଷ୍ଠାନ କରିବାରେ ମନ, ଇନ୍ଦ୍ରିୟ ଓ ଶରୀରର ପରିଶ୍ରମ ହୁଏ; ଅନେକପ୍ରକାର ବିଘ୍ନ ଉପସ୍ଥିତ ହୁଏ; ବହୁ ସାମଗ୍ରୀ ଏକତ୍ର କରିବାକୁ ପଡ଼େ; ବ୍ରତ, ଉପବାସ ଆଦି କରି କଷ୍ଟ ସହିବାକୁ ପଡ଼େ; ଶରୀରକୁ ଆରାମ ତ୍ୟାଗ କରିବାକୁ ପଡ଼େ ଏବଂ ବିଭିନ୍ନପ୍ରକାର ନିୟମ ପାଳନ କରିବାକୁ ପଡ଼େ । ତେଣୁ ସେସବୁ କର୍ମ କଷ୍ଟକର ବୋଲି ଜାଣି ମାନସିକ, ଇନ୍ଦ୍ରିୟଗତ ତଥା ଶାରୀରିକ ପରିଶ୍ରମରୁ ରକ୍ଷା ପାଇବାପାଇଁ ତଥା ଆରାମ କରିବା ଇଚ୍ଛାରେ ଯଜ୍ଞ, ଦାନ ଓ ତପ ଆଦି ବିଭିନ୍ନ ଶାସ୍ତ୍ରବିହିତ କର୍ମ ତ୍ୟାଗ କରିଦେବା ହିଁ ଦୁଃଖରୂପ ଭାବି ଶାରୀରିକ-କ୍ଲେଶଭୟରେ ସେସବୁ ତ୍ୟାଗ କରିଦେବା ।

**ପ୍ରଶ୍ନ—** 'ସେମାନେ ଏପରି ରାଜସ ତ୍ୟାଗ କରି ତ୍ୟାଗର ଫଳ ପାଇପାରନ୍ତି ନାହିଁ'— ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର—** ଭାବ ହେଉଛି, ଏପରି ଭାବି ବିହିତ କର୍ମ ତ୍ୟାଗ କରିଦେଇ ଯେଉଁ ସନ୍ନ୍ୟାସ ନିଆଯାଏ, ତାହା ହେଉଛି ରାଜସ ତ୍ୟାଗ; କାରଣ ମନ, ଇନ୍ଦ୍ରିୟ ଓ ଶରୀରର ଆରାମରେ ଆସକ୍ତି ରଖିବା ହେଉଛି ରଜୋଗୁଣର କାର୍ଯ୍ୟ । ଅତଏବ ଏପରି ତ୍ୟାଗ କରୁଥିବା ମନୁଷ୍ୟ ବାସ୍ତବିକ ତ୍ୟାଗର ଫଳ ପାଇପାରେନା, ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପାଇପାରେନା । କାରଣ, ଯେପର୍ଯ୍ୟନ୍ତ ମନୁଷ୍ୟର ମନ, ଇନ୍ଦ୍ରିୟ ଓ ଶରୀରରେ ମମତ୍ୱ ଓ ଆସକ୍ତି ରହିଥାଏ, ସେପର୍ଯ୍ୟନ୍ତ ସେ କୌଣସି ଉପାୟରେ ବି କର୍ମବନ୍ଧନରୁ ମୁକ୍ତ ହୋଇପାରେନା । ତେଣୁ ଏହି ରାଜସ ତ୍ୟାଗ ହେଉଛି ନାମକୁ ମାତ୍ର ତ୍ୟାଗ; ବାସ୍ତବ ତ୍ୟାଗ ନୁହେଁ । ତେଣୁ କଲ୍ୟାଣ ଚାହୁଁଥିବା ସାଧକ ଏପରି ତ୍ୟାଗ କରିବା ଉଚିତ ନୁହେଁ । ଏପରି ତ୍ୟାଗରେ ତ୍ୟାଗର ଫଳ ମିଳିବା ତ ଦୂରର କଥା, ବରଂ ବିହିତ କର୍ମ ନ କରିବାରୁ ପାପ ଲାଗିପାରେ ।

**ସମ୍ବନ୍ଧ—** ଭଗବାନ୍ ବର୍ତ୍ତମାନ ଉତ୍ତମ ଶ୍ରେଣୀର ସାତ୍ତ୍ୱିକ ତ୍ୟାଗ କଥା କହୁଛନ୍ତି—

**କାର୍ଯ୍ୟମିତ୍ୟେବ ଯତ୍କର୍ମ ନିୟତଂ କ୍ରିୟତେଽର୍ଜୁନ ।**
**ସଙ୍ଗଂ ତ୍ୟକ୍ତ୍ୱା ଫଳଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ ॥ ୯ ॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ !; **ଯତ୍** = ଯେଉଁ; **ନିୟତମ୍** = ଶାସ୍ତ୍ରବିହିତ; **କର୍ମ** = କର୍ମ; **କାର୍ଯ୍ୟମ୍** = କରିବା କର୍ତ୍ତବ୍ୟ; **ଇତି,** **ଏବ** = ଏପରି ଭାବି; **ସଙ୍ଗମ୍** = ଆସକ୍ତିକୁ; **ଚ** = ଏବଂ; **ଫଳମ୍** = ଫଳକୁ;

ତ୍ୟକ୍ତ୍ୱା = ତ୍ୟାଗ କରି; କ୍ରିୟତେ = କରାଯାଏ; ସଃ, ଏବ = ତାହା ହିଁ; ସାତ୍ତ୍ୱିକଃ = ସାତ୍ତ୍ୱିକ; ତ୍ୟାଗଃ = ତ୍ୟାଗ; ମତଃ = (ବୋଲି) ଗୃହୀତ ହୁଏ ।

**ହେ ଅର୍ଜୁନ ! ଶାସ୍ତ୍ରବିହିତ କର୍ମ କରିବା ହିଁ କର୍ତ୍ତବ୍ୟ ବୋଲି ଭାବି ଆସକ୍ତି ଓ ଫଳ-ତ୍ୟାଗପୂର୍ବକ ଯେଉଁ କର୍ମ କରାଯାଏ, ତାହା ହିଁ ସାତ୍ତ୍ୱିକ ତ୍ୟାଗ ବୋଲି ଗୃହୀତ ହୁଏ ।। ୯ ।।**

**ପ୍ରଶ୍ନ –** ଏଠାରେ **ନିୟତମ୍** ବିଶେଷଣ ସହିତ **କର୍ମ** ପଦ କେଉଁ କର୍ମମାନଙ୍କର ବାଚକ ତଥା ସେଗୁଡ଼ିକୁ କର୍ତ୍ତବ୍ୟ ବୋଲି ବୁଝି ଆସକ୍ତି ଓ ଫଳତ୍ୟାଗପୂର୍ବକ କରିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଓ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟମାନଙ୍କ ପାଇଁ ଯେଉଁ ଯେଉଁ କର୍ମ ଅବଶ୍ୟ କର୍ତ୍ତବ୍ୟ ବୋଲି ଶାସ୍ତ୍ରରେ କୁହାଯାଇଛି, ଯେଉଁମାନଙ୍କର ବ୍ୟାଖ୍ୟା ଷଷ୍ଠ ଶ୍ଳୋକରେ କରାଯାଇଛି, ଏଠାରେ **ନିୟତମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ସେହି ସମସ୍ତ କର୍ମର ବାଚକ । ଏଥିରୁ ବୁଝିନେବା ଉଚିତ ଯେ, ନିଷିଦ୍ଧ ଓ କାମ୍ୟ କର୍ମ ନିୟତକର୍ମର ଅନ୍ତର୍ଗତ ନୁହେଁ । ମନୁଷ୍ୟ ଉପରୋକ୍ତ ନିୟତକର୍ମ ଅବଶ୍ୟ କରିବା ଉଚିତ; ତାହା ନ କରିବା ଅର୍ଥ ଭଗବାନଙ୍କ ଆଜ୍ଞାକୁ ଉଲ୍ଲଂଘନ କରିବା — ଏହି ଭାବରେ ଭାବିତ ହୋଇ ସେହି କର୍ମମାନଙ୍କରେ ତଥା ସେମାନଙ୍କ ଫଳରୂପୀ ଇହଲୋକ ଓ ପରଲୋକର ସମସ୍ତ ଭୋଗମାନଙ୍କରେ ସର୍ବଥା ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି ଉତ୍ସାହପୂର୍ବକ ବିଧିବତ୍ ସେହି କର୍ମମାନଙ୍କୁ କରିବାଲିବା ହିଁ କର୍ତ୍ତବ୍ୟ । ଏହା ହିଁ ଆସକ୍ତି ଓ ଫଳ ତ୍ୟାଗପୂର୍ବକ ସେହି କର୍ମ କରିବାର ତାତ୍ପର୍ଯ୍ୟ ।

**ପ୍ରଶ୍ନ –** ଏପରି କର୍ମାନୁଷ୍ଠାନକୁ ସାତ୍ତ୍ୱିକ ତ୍ୟାଗ କହିବାର ଅଭିପ୍ରାୟ କ'ଣ ? କାରଣ ଏହା ତ କର୍ମତ୍ୟାଗ ନୁହେଁ; ବରଂ କର୍ମ ହିଁ କରିବା ।

**ଉତ୍ତର –** ଏହି କର୍ମାନୁଷ୍ଠାନରୂପକ କର୍ମଯୋଗକୁ ସାତ୍ତ୍ୱିକ ତ୍ୟାଗ ବୋଲି କହି ଭଗବାନ୍ ଦର୍ଶାଇଦେଇଛନ୍ତି, "ଶାସ୍ତ୍ରବିହିତ ଅବଶ୍ୟକର୍ତ୍ତବ୍ୟକର୍ମ ସ୍ୱରୂପତଃ ତ୍ୟାଗ ନ କରି ସେଗୁଡ଼ିକରେ ଏବଂ ସେଗୁଡ଼ିକର ଫଳରୂପୀ ସକଳ ପଦାର୍ଥରେ ଆସକ୍ତି ଓ କାମନା ସର୍ବଥା ତ୍ୟାଗ କରିଦେବା ହିଁ ମୋ ମତରେ ବାସ୍ତବ ତ୍ୟାଗ; କର୍ମମାନଙ୍କର ଫଳସ୍ୱରୂପ ମିଳୁଥିବା ଇହଲୋକ ଓ ପରଲୋକର ଭୋଗମାନଙ୍କରେ ଆସକ୍ତି ଏବଂ କାମନା ତ୍ୟାଗ ନ କରି କୌଣସି ଭାବଦ୍ୱାରା ପ୍ରେରିତ ହୋଇ ସ୍ୱରୂପତଃ ବିହିତ କର୍ମ ତ୍ୟାଗ କରିବସିବା ବାସ୍ତବ ତ୍ୟାଗ ନୁହେଁ । କାରଣ ତ୍ୟାଗର ପରିଣାମସ୍ୱରୂପ କର୍ମମାନଙ୍କରୁ ସର୍ବଥା ସମ୍ବନ୍ଧ ବିଚ୍ଛେଦ ହେବା ଆବଶ୍ୟକ; ଏହି ପରିଣାମ ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କଲେ ହିଁ ହୋଇପାରେ; କେବଳ ସ୍ୱରୂପତଃ କର୍ମ ତ୍ୟାଗ କରିଦେଲେ ଏପରି ହୁଏ ନାହିଁ । ଅତଏବ କର୍ମମାନଙ୍କରେ ଆସକ୍ତି ଓ ଫଳେଚ୍ଛା ତ୍ୟାଗ ହିଁ ସାତ୍ତ୍ୱିକ ତ୍ୟାଗ ।"

*__ସମ୍ବନ୍ଧ –__ ଉପରୋକ୍ତପ୍ରକାରେ ସାତ୍ତ୍ୱିକ ତ୍ୟାଗ କରୁଥିବା ପୁରୁଷମାନେ କେଉଁ ଭାବ ରଖି ନିଷିଦ୍ଧ ଓ କାମ୍ୟକର୍ମ ସ୍ୱରୂପତଃ ତ୍ୟାଗ କରନ୍ତି ଏବଂ କର୍ତ୍ତବ୍ୟକର୍ମ କରିଥାନ୍ତି ? ଏହି ଜିଜ୍ଞାସା ଉପରେ ଭଗବାନ୍ ସାତ୍ତ୍ୱିକ ତ୍ୟାଗୀ ପୁରୁଷମାନଙ୍କର ଅନ୍ତିମ ସ୍ଥିତିର ଲକ୍ଷଣ କହୁଛନ୍ତି–*

**ନ ଦ୍ୱେଷ୍ଟ୍ୟକୁଶଲଂ କର୍ମ କୁଶଲେ ନାନୁଷଜ୍ଜତେ ।**
**ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀ ଛିନ୍ନସଂଶୟଃ ।। ୧୦ ।।**

**ଅନ୍ୱୟ –** **ଅକୁଶଳମ୍** = (ଯେଉଁ ମନୁଷ୍ୟ) ଅକୁଶଳ; **କର୍ମ** = କର୍ମରେ; **ନ**, **ଦ୍ୱେଷ୍ଟି** = ଦ୍ୱେଷ କରେ ନାହିଁ (କି); **କୁଶଳେ** = କୁଶଳ କର୍ମରେ; **ନ ଅନୁଷଜ୍ଜତେ** = ଆସକ୍ତ ହୁଏ ନାହିଁ (ସେହି); **ସତ୍ତ୍ୱସମାବିଷ୍ଟଃ** = ଶୁଦ୍ଧସତ୍ତ୍ୱଗୁଣଯୁକ୍ତ ପୁରୁଷ; **ଛିନ୍ନସଂଶୟଃ** = ସଂଶୟରହିତ; **ମେଧାବୀ** = ବୁଦ୍ଧିମାନ୍ (ଏବଂ); **ତ୍ୟାଗୀ** = (ପ୍ରକୃତ) ତ୍ୟାଗୀ ଅଟନ୍ତି ।

**ଯେଉଁ ମନୁଷ୍ୟ ଅକୁଶଳ କର୍ମରେ ଦ୍ୱେଷ କରନ୍ତି ନାହିଁ, କି କୁଶଳ କର୍ମରେ ଆସକ୍ତ ହୁଅନ୍ତି ନାହିଁ, ସେହି ଶୁଦ୍ଧସତ୍ତ୍ୱଗୁଣଯୁକ୍ତ ପୁରୁଷ ସଂଶୟରହିତ, ବୁଦ୍ଧିମାନ୍ ଏବଂ ପ୍ରକୃତ ତ୍ୟାଗୀ ।। ୧୦ ।।**

**ପ୍ରଶ୍ନ –** **ଅକୁଶଳମ୍** ବିଶେଷଣ ସହିତ **କର୍ମ** ପଦ କେଉଁ କର୍ମମାନଙ୍କର ବାଚକ ଏବଂ ସାତ୍ତ୍ୱିକ ତ୍ୟାଗୀ-ପୁରୁଷ ସେସବୁରେ ଦ୍ୱେଷ କରନ୍ତି ନାହିଁ ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ **ଅକୁଶଳମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ଶାସ୍ତ୍ରଦ୍ୱାରା ନିଷେଧ କରାଯାଇଥିବା ପାପକର୍ମମାନଙ୍କର ତଥା କାମ୍ୟକର୍ମମାନଙ୍କର ବାଚକ; କାରଣ ପାପକର୍ମ ତ ମନୁଷ୍ୟକୁ ନାନାପ୍ରକାର ନୀଚଯୋନିରେ ଓ ନରକରେ ପକାଇଥାଏ ଏବଂ କାମ୍ୟକର୍ମ ମଧ୍ୟ ଫଳଭୋଗ ନିମିତ୍ତ ପୁନର୍ଜନ୍ମ ଦେଇଥାଏ। ଏପରିଭାବରେ ସେହି ଦୁଇପ୍ରକାର କର୍ମ ବନ୍ଧନର ହେତୁ ହୋଇଥିବାରୁ ସେଗୁଡ଼ିକୁ ଅକୁଶଳ କୁହାଯାଏ। ସାତ୍ତ୍ୱିକ ତ୍ୟାଗୀ ସେଗୁଡ଼ିକୁ ଦ୍ୱେଷ କରନ୍ତି ନାହିଁ ବୋଲି କହିବାର ଭାବ ଏହି ଯେ, ସାତ୍ତ୍ୱିକ ତ୍ୟାଗୀଙ୍କ ଠାରେ କଦାପି ରାଗ-ଦ୍ୱେଷ ନ ଥାଏ; ସେ ଯେଉଁ ନିଷିଦ୍ଧ ଓ କାମ୍ୟକର୍ମ ତ୍ୟାଗ କରନ୍ତି, ତାହା ଦ୍ୱେଷବୁଦ୍ଧିରେ କରନ୍ତି ନାହିଁ; ଅକୁଶଳ କର୍ମ ତ୍ୟାଗ କରିବା ମନୁଷ୍ୟର କର୍ତ୍ତବ୍ୟ ବୋଲି ବୁଝି ଲୋକସଂଗ୍ରହନିମନ୍ତେ ତାହା ତ୍ୟାଗ କରନ୍ତି।

**ପ୍ରଶ୍ନ –** **କୁଶଳେ** ପଦ କେଉଁ କର୍ମର ବାଚକ ଏବଂ ସାତ୍ତ୍ୱିକ ତ୍ୟାଗୀ ସେଥିରେ ଆସକ୍ତ ହୁଅନ୍ତି ନାହିଁ ବୋଲି କହିବାର ଭାବ କ'ଣ ?

**ଉତ୍ତର –** ଏଠାରେ **କୁଶଳେ** ପଦଟି ହେଉଛି ଶାସ୍ତ୍ରବିହିତ ନିତ୍ୟନୈମିତ୍ତିକ ଯଜ୍ଞ, ଦାନ, ତପ ଆଦି ଶୁଭକର୍ମର ତଥା ବର୍ଣ୍ଣାଶ୍ରମାନୁକୂଳ ସମସ୍ତ କର୍ତ୍ତବ୍ୟକର୍ମର ବାଚକ। ନିଷ୍କାମଭାବରେ କରାଯାଉଥିବା ଉପରୋକ୍ତ କର୍ମ ମନୁଷ୍ୟର ପୂର୍ବକୃତ ସଞ୍ଚିତ ପାପ ନାଶ କରିଦେଇ ତାକୁ କର୍ମବନ୍ଧନରୁ ମୁକ୍ତ କରିବାକୁ ସମର୍ଥ ହୁଏ; ତେଣୁ ଏହିସବୁ କର୍ମକୁ କୁଶଳ ବୋଲି କହନ୍ତି। ସାତ୍ତ୍ୱିକ ତ୍ୟାଗୀ ସେହି କୁଶଳ କର୍ମମାନଙ୍କରେ ଆସକ୍ତ ହୁଅନ୍ତି ନାହିଁ ବୋଲି କହି ଭଗବାନ୍ ବୁଝାଇଦେଇଛନ୍ତି ଯେ, ଉପରୋକ୍ତ ଶୁଭକର୍ମଗୁଡ଼ିକୁ ସେ ଯେଉଁ ବିଧିବତ୍ ଅନୁଷ୍ଠାନ କରନ୍ତି, ତାହା ଆସକ୍ତିପୂର୍ବକ କରନ୍ତି ନାହିଁ; ଶାସ୍ତ୍ରବିହିତ କର୍ମ କରିବା ମନୁଷ୍ୟର କର୍ତ୍ତବ୍ୟ – ଏହିଭାବରେ ମମତ୍ୱ, ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି ସେ ଲୋକସଂଗ୍ରହପାଇଁ ସେଗୁଡ଼ିକ ଅନୁଷ୍ଠାନ କରନ୍ତି।

**ପ୍ରଶ୍ନ –** 'ସେହି ଶୁଦ୍ଧସତ୍ତ୍ୱଗୁଣରେ ଯୁକ୍ତ ପୁରୁଷ ହେଉଛନ୍ତି ସଂଶୟରହିତ, ବୁଦ୍ଧିମାନ୍ ଏବଂ ବାସ୍ତବ ତ୍ୟାଗୀ' – ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଏପରିଭାବରେ ରାଗଦ୍ୱେଷରହିତ ହୋଇ କେବଳ କର୍ତ୍ତବ୍ୟବୁଦ୍ଧିରେ କର୍ମ ଗ୍ରହଣ ଓ କର୍ମ ତ୍ୟାଗ କରୁଥିବା ଶୁଦ୍ଧସତ୍ତ୍ୱଗୁଣଯୁକ୍ତ ପୁରୁଷ ସଂଶୟରହିତ ଅଟନ୍ତି, ଅର୍ଥାତ୍ ସେ ଭଲଭାବରେ ନିଶ୍ଚୟ କରିନେଇଥାନ୍ତି ଯେ, କର୍ମଯୋଗରୂପକ ସାତ୍ତ୍ୱିକ ତ୍ୟାଗ ହିଁ କର୍ମବନ୍ଧନରୁ ମୁକ୍ତ ହୋଇ ପରମପଦ ପାଇଯିବାର ପୂର୍ଣ୍ଣ ସାଧନା। ତେଣୁ ସେ ବୁଦ୍ଧିମାନ୍ ଏବଂ ବାସ୍ତବ ତ୍ୟାଗୀ ଅଟନ୍ତି।

*ସମ୍ବନ୍ଧ –* *ଉପରୋକ୍ତ ଶ୍ଳୋକରେ ସାତ୍ତ୍ୱିକ ତ୍ୟାଗୀଙ୍କୁ ଅର୍ଥାତ୍ ନିଷ୍କାମଭାବରେ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରୁଥିବା କର୍ମଯୋଗୀଙ୍କୁ ବାସ୍ତବ ତ୍ୟାଗୀ ବୋଲି କହିଛନ୍ତି। ଏହା ଉପରେ ଶଙ୍କା ହୁଏ: ନିଷିଦ୍ଧ ଓ କାମ୍ୟକର୍ମପରି ସମସ୍ତ କର୍ମ ସ୍ୱରୂପତଃ ତ୍ୟାଗ କରିଦେଉଥିବା ମନୁଷ୍ୟ ମଧ୍ୟ ତ ବାସ୍ତବ ତ୍ୟାଗୀ ହୋଇପାରନ୍ତି; କେବଳ ନିଷ୍କାମଭାବରେ କର୍ମ କରୁଥିବା ଲୋକଙ୍କୁ କାହିଁକି ବାସ୍ତବ ତ୍ୟାଗୀ ବୋଲି କୁହାଗଲା ? ଏଣୁ ଭଗବାନ୍ କହୁଛନ୍ତି–*

**ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ।**
**ଯସ୍ତୁ କର୍ମଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ॥ ୧୧ ॥**

**ଅନ୍ୱୟ –** **ହି** = କାରଣ; **ଦେହଭୃତା** = ଶରୀରଧାରୀ କୌଣସି ବି ମନୁଷ୍ୟଦ୍ୱାରା; **ଅଶେଷତଃ** = ସମ୍ପୂର୍ଣ୍ଣଭାବରେ; **କର୍ମାଣି** = ସକଳ କର୍ମକୁ; **ତ୍ୟକ୍ତୁମ୍** = ତ୍ୟାଗ କରିଦେବାକୁ; **ନ, ଶକ୍ୟମ୍** = ସକ୍ଷମ ନୁହେଁ; **(ତସ୍ମାତ୍)** = ତେଣୁ; **ଯଃ** = ଯେ; **କର୍ମଫଳତ୍ୟାଗୀ** = କର୍ମଫଳର ତ୍ୟାଗୀ; **ସଃ, ତୁ** = ସେ ହିଁ; **ତ୍ୟାଗୀ** = ତ୍ୟାଗୀ; **ଇତି** = ବୋଲି; **ଅଭିଧୀୟତେ** = କୁହାଯାଏ।

**କାରଣ ଶରୀରଧାରୀ କୌଣସି ବି ମନୁଷ୍ୟ ସମ୍ପୂର୍ଣ୍ଣରୂପେ ସକଳ କର୍ମ ତ୍ୟାଗ କରିଦେବାକୁ ସକ୍ଷମ ନୁହେଁ; ତେଣୁ ଯେ କର୍ମଫଳତ୍ୟାଗୀ, ତାଙ୍କୁ ହିଁ ତ୍ୟାଗୀ ବୋଲି କୁହାଯାଏ॥ ୧୧ ॥**

**ପ୍ରଶ୍ନ —** ଏଠାରେ **ଦେହଭୃତା** ପଦ କାହାର ବାଚକ ଏବଂ 'ସେ ସମ୍ପୂର୍ଣ୍ଣଭାବରେ ସକଳ କର୍ମ ତ୍ୟାଗ କରିଦେବାକୁ ସକ୍ଷମ ନୁହେଁ — ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର — ଦେହଭୃତା** ପଦଟି ଦେହଧାରୀ ସମସ୍ତ ମନୁଷ୍ୟସମୁଦାୟର ବାଚକ। ତେଣୁ 'ଶରୀରଧାରୀ ଯେକୌଣସି ମନୁଷ୍ୟପକ୍ଷରେ ମଧ୍ୟ ସମ୍ପୂର୍ଣ୍ଣଭାବରେ ସକଳ କର୍ମ ତ୍ୟାଗ କରିଦେବା ସମ୍ଭବ ନୁହେଁ,' ଏପରି କହି ଦେଖାଇଦିଆଯାଇଛି ଯେ, କୌଣସି ଦେହଧାରୀ ମନୁଷ୍ୟ କର୍ମ ନ କରି କେବେହେଲେ ରହିପାରିବ ନାହିଁ (୩/୫); କାରଣ କର୍ମ ନ କଲେ ଶରୀରନିର୍ବାହ ହିଁ ହୋଇପାରିବ ନାହିଁ (୩/୮)। ତେଣୁ ମନୁଷ୍ୟ ଯେକୌଣସି ଆଶ୍ରମରେ ରହିଥାଉ ନା କାହିଁକି, ଯେପର୍ଯ୍ୟନ୍ତ ସେ ଜୀବିତ ରହିଥିବ, ସେପର୍ଯ୍ୟନ୍ତ ତାକୁ ନିଜର ପରିସ୍ଥିତି ଅନୁସାରେ ଖାଇବା-ପିଇବା, ଶୋଇବା-ବସିବା, ଚାଲିବା-ବୁଲିବା ଏବଂ କହିବା ଆଦି କିଛି ନା କିଛି କର୍ମ କରିବାକୁ ପଡ଼ିବ। ତେଣୁ ସମ୍ପୂର୍ଣ୍ଣଭାବରେ ସକଳ କର୍ମ ସ୍ୱରୂପତଃ ତ୍ୟାଗ କରିଦେବା ସମ୍ଭବ ନୁହେଁ।

**ପ୍ରଶ୍ନ — କର୍ମଫଳତ୍ୟାଗୀ** ପଦ କେଉଁ ମନୁଷ୍ୟଙ୍କ ବାଚକ ଏବଂ 'ଯେ କର୍ମଫଳତ୍ୟାଗୀ, ସେ ବାସ୍ତବ ତ୍ୟାଗୀ' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏଠାରେ 'କର୍ମଫଳତ୍ୟାଗୀ' ପଦଟି ହେଉଛି କର୍ମ ଓ ତାହାର ଫଳରେ ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରୁଥିବା କର୍ମଯୋଗୀଙ୍କର ବାଚକ। ଏଣୁ 'ଯେ କର୍ମଫଳତ୍ୟାଗୀ, ସେ ବାସ୍ତବ ତ୍ୟାଗୀ' — ବୋଲି କହିବାର ଭାବ ଏହି ଯେ, ମନୁଷ୍ୟକୁ କିଛି ନା କିଛି କର୍ମ କରିବାକୁ ହିଁ ପଡ଼ିବ; କର୍ମ ନ କରି କେହି ରହିପାରିବ ନାହିଁ; ତେଣୁ ଯେ ନିଷିଦ୍ଧ ଏବଂ କାମ୍ୟକର୍ମ ସର୍ବଥା ତ୍ୟାଗ କରିଦେଇ ଯଥାବଶ୍ୟକ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କରୁଥାନ୍ତି ତଥା ସେହି କର୍ମମାନଙ୍କରେ ଓ ସେସବୁର ଫଳରେ ସର୍ବଥା ମମତ୍ୱ, ଆସକ୍ତି ଏବଂ କାମନା ତ୍ୟାଗ କରିଦେଇଥାନ୍ତି, ସେ ହିଁ ବାସ୍ତବ ତ୍ୟାଗୀ।

ଉପରୁ ଉପରୁ ଇନ୍ଦ୍ରିୟମାନଙ୍କର କ୍ରିୟା ସଂଯମ କରିଦେଇ ମନଦ୍ୱାରା ବିଷୟଚିନ୍ତନ କରୁଥିବା ମନୁଷ୍ୟ ତ୍ୟାଗୀ ନୁହେଁ, କି ଅହଂତ୍ୱ, ମମତ୍ୱ ଓ ଆସକ୍ତି ଥିବା ସତ୍ତ୍ୱେ ଶାସ୍ତ୍ରବିହିତ ଯଜ୍ଞ, ଦାନ ଓ ତପ ଆଦି କର୍ତ୍ତବ୍ୟକର୍ମ ସ୍ୱରୂପତଃ ତ୍ୟାଗ କରିଦେଉଥିବା ପୁରୁଷ ମଧ୍ୟ ତ୍ୟାଗୀ ନୁହେଁ।

*ସମ୍ବନ୍ଧ — ପୂର୍ବଶ୍ଳୋକରେ କୁହାଗଲା ଯେ, ଯେ କର୍ମଫଳତ୍ୟାଗୀ, ସେ ବାସ୍ତବ ତ୍ୟାଗୀ। ଏହା ଉପରେ ଶଙ୍କା ଉଠିପାରେ : କର୍ମଫଳପାଇଁ ଇଚ୍ଛା ନ କଲେ ମଧ୍ୟ କର୍ମ ନିଜର ଫଳ ନ ଦେଇ ନଷ୍ଟ ହୋଇପାରିବ ନାହିଁ; ବୁଣାଯାଇଥିବା ବୀଜ ଯେପରି ସମୟକ୍ରମେ ସ୍ୱତଃ ବୃକ୍ଷ ଉତ୍ପନ୍ନ କରିଦିଏ, କରାଯାଇଥିବା କର୍ମର ଫଳ ସେହିପରି କୌଣସି ନା କୌଣସି ଜନ୍ମରେ ସମସ୍ତଙ୍କୁ ଅବଶ୍ୟ ଭୋଗିବାକୁ ପଡ଼େ; ତେଣୁ କେବଳ କର୍ମଫଳ ତ୍ୟାଗ କରିଦେଇ ମନୁଷ୍ୟ କିପରି ତ୍ୟାଗୀ ଅର୍ଥାତ୍ 'କର୍ମବନ୍ଧନରହିତ' ହୋଇପାରିବ ? ଏହି ଶଙ୍କାର ସମାଧାନପାଇଁ ଭଗବାନ୍ କହୁଛନ୍ତି—*

**ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳମ୍।**
**ଭବତ୍ୟତ୍ୟାଗିନାଂ ପ୍ରେତ୍ୟ ନ ତୁ ସଂନ୍ୟାସିନାଂ କ୍ୱଚିତ୍॥ ୧୨ ॥**

**ଅନ୍ୱୟ —** **ଅତ୍ୟାଗିନାମ୍** = କର୍ମଫଳ ତ୍ୟାଗ କରୁ ନ ଥିବା ମନୁଷ୍ୟମାନଙ୍କର; **କର୍ମଣଃ** = କର୍ମର; **ଇଷ୍ଟମ୍** = ଭଲ; **ଅନିଷ୍ଟମ୍** = ମନ୍ଦ; **ଚ** = ଏବଂ; **ମିଶ୍ରମ୍** = ମିଶ୍ରିତ; **ଇତି** = ଏପରି; **ତ୍ରିବିଧମ୍** = ତିନିପ୍ରକାର; **ଫଳମ୍** = ଫଳ; **ପ୍ରେତ୍ୟ** = ମରିବା ପରେ; **ଭବତି** = ଅବଶ୍ୟ ହୁଏ; **ତୁ** = କିନ୍ତୁ; **ସଂନ୍ୟାସିନାମ୍** = କର୍ମଫଳ ତ୍ୟାଗ କରିଦେଇଥିବା ମନୁଷ୍ୟଙ୍କ (କର୍ମର ଫଳ); **କ୍ୱଚିତ୍, ନ** = କୌଣସି କାଳରେ ମଧ୍ୟ ହୁଏ ନାହିଁ।

**କର୍ମଫଳ ତ୍ୟାଗ କରି ନ ଥିବା ମନୁଷ୍ୟମାନଙ୍କର କର୍ମର ଭଲ, ମନ୍ଦ ଓ ମିଶ୍ରିତ— ଏପରି ତିନିପ୍ରକାର ଫଳ ମୃତ୍ୟୁପରେ ଅବଶ୍ୟ ହୁଏ; କିନ୍ତୁ କର୍ମଫଳ ତ୍ୟାଗ କରିଦେଇଥିବା ମନୁଷ୍ୟମାନଙ୍କ କର୍ମର ଫଳ କୌଣସି କାଳରେ ମଧ୍ୟ ହୁଏ ନାହିଁ॥ ୧୨ ॥**

**ପ୍ରଶ୍ନ –** **ଅତ୍ୟାଗିନାମ୍** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ତଥା ସେମାନଙ୍କ କର୍ମର ଭଲ, ମନ୍ଦ ଓ ମିଶ୍ରିତ– ଏପରି ତିନିପ୍ରକାର ଫଳ କ'ଣ ? ଏବଂ ତାହା 'ମରିବା ପରେ ଅବଶ୍ୟ ହୁଏ' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁମାନେ ନିଜଦ୍ୱାରା କରାଯାଉଥିବା କର୍ମମାନଙ୍କରେ ଏବଂ ସେମାନଙ୍କ ଫଳରେ ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରି ନାହାନ୍ତି, ଯେଉଁମାନେ ଆସକ୍ତି ଓ ଫଳେଚ୍ଛାପୂର୍ବକ ସକଳପ୍ରକାର କର୍ମ କରନ୍ତି, ଏଠାରେ **ଅତ୍ୟାଗିନାମ୍** ପଦଟି ହେଉଛି ସେହି ସର୍ବସାଧାରଣ ପ୍ରାକୃତ ମନୁଷ୍ୟମାନଙ୍କର ବାଚକ।

ନିଜକୃତ ଶୁଭକର୍ମମାନଙ୍କରୁ ସେମାନଙ୍କୁ ଯେଉଁ ସ୍ୱର୍ଗାଦି ପ୍ରାପ୍ତି ବା ଅନ୍ୟ କୌଣସିପ୍ରକାର ସାଂସାରିକ ଇଷ୍ଟଭୋଗପ୍ରାପ୍ତିରୂପକ ଫଳ ମିଳେ, ତାହା ଭଲ ଫଳ ଏବଂ ନିଜକୃତ ପାପକର୍ମରୁ ସେମାନଙ୍କୁ ଯେଉଁ ପଶୁ, ପକ୍ଷୀ, କୀଟ, ପତଙ୍ଗ ଏବଂ ବୃକ୍ଷାଦି ତିର୍ଯ୍ୟକ୍‌ଯୋନି ପ୍ରାପ୍ତିରୂପକ ବା ନରକ ପ୍ରାପ୍ତିରୂପକ ଅଥବା ଅନ୍ୟ କୌଣସିପ୍ରକାର ଦୁଃଖପ୍ରାପ୍ତିରୂପକ ଫଳ ମିଳେ, ତାହା ମନ୍ଦ ଫଳ। ଠିକ୍ ସେହିପରି ମନୁଷ୍ୟାଦି ଯୋନିରେ ଉତ୍ପନ୍ନ ହେଲେ କେବେ ଯେଉଁ ଇଷ୍ଟଭୋଗ ମିଳେ ଏବଂ କେବେ ଅନିଷ୍ଟ ଭୋଗ ମିଳେ, ତାହା ହେଉଛି ମିଶ୍ରିତ ଫଳ। ଏହା ହିଁ ସେମାନଙ୍କ କର୍ମର ତିନିପ୍ରକାର ଫଳ।

ସେହି ମନୁଷ୍ୟମାନଙ୍କ କର୍ମରୁ ଏହି ତିନିପ୍ରକାର ଫଳ 'ମରିବା ପରେ ଅବଶ୍ୟ ଫଳେ' ବୋଲି କହି ଦେଖାଇଦିଆଯାଇଛି ଯେ, ସେହି ମନୁଷ୍ୟମାନଙ୍କର କର୍ମ ନିଜର ଫଳ ଭୋଗ ନ କରାଇ କେବେହେଲେ ନଷ୍ଟ ହୁଏ ନାହିଁ; ଏପରି କର୍ମମାନେ ଜନ୍ମଜନ୍ମାନ୍ତରରେ ବି ଶୁଭାଶୁଭ ଫଳ ଦେଉଥାନ୍ତି; ତେଣୁ ଏପରି ମନୁଷ୍ୟମାନେ ସଂସାରଚକ୍ରରେ ଘୂରୁଥାଆନ୍ତି।

**ପ୍ରଶ୍ନ –** ଏଠାରେ 'ପ୍ରେତ୍ୟ' ପଦଦ୍ୱାରା କୁହାଯାଇଛି ଯେ, ସେମାନଙ୍କର କର୍ମର ଫଳ ମରିବା ପରେ ଫଳେ। ଜୀବିତ ଥିବା ସମୟରେ କ'ଣ ସେହି କର୍ମର ଫଳ ଫଳେ ନାହିଁ ?

**ଉତ୍ତର –** ବର୍ତ୍ତମାନ ଜନ୍ମରେ ମନୁଷ୍ୟ ପ୍ରାୟ ପୂର୍ବକୃତ କର୍ମମାନଙ୍କର ପ୍ରାରବ୍ଧ ହିଁ ଭୋଗ କରେ; ନବୀନ କର୍ମର ଫଳ ବର୍ତ୍ତମାନ ଜନ୍ମରେ ପ୍ରାୟଶଃ ବହୁତ କମ୍ ଭୋଗ କରିବାକୁ ପଡ଼େ; ତେଣୁ ଗୋଟିଏ ମନୁଷ୍ୟଯୋନିରେ କରାଯାଇଥିବା କର୍ମମାନଙ୍କର ଫଳ ଅନେକ ଯୋନିରେ ଅବଶ୍ୟ ଭୋଗିବାକୁ ପଡ଼େ– ଏହା ବୁଝାଇବାପାଇଁ ଏଠାରେ 'ପ୍ରେତ୍ୟ' ପଦ ପ୍ରୟୋଗ କରି ମରିବା ପରେ ଫଳ ଭୋଗିବା କଥା କୁହାଯାଇଛି।

**ପ୍ରଶ୍ନ –** ତୁ ଅବ୍ୟୟର ଭାବ କ'ଣ ?

**ଉତ୍ତର –** କର୍ମଫଳ ତ୍ୟାଗ କରି ନ ଥିବା ଲୋକଙ୍କ ଅପେକ୍ଷା କର୍ମଫଳ ତ୍ୟାଗ କରିଥିବା ପୁରୁଷଙ୍କର ଅତ୍ୟନ୍ତ ଶ୍ରେଷ୍ଠତା ତଥା ଅସାଧାରଣତା ଦେଖାଇବାପାଇଁ ଏଠାରେ ତୁ ଅବ୍ୟୟ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **ସନ୍ନ୍ୟାସିନାମ୍** ପଦ କେଉଁ ମନୁଷ୍ୟମାନଙ୍କର ବାଚକ ଏବଂ 'ସେମାନଙ୍କର କର୍ମର ଫଳ କେବେ ହୁଏ ନାହିଁ' – କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁମାନେ କର୍ମମାନଙ୍କରେ ଏବଂ ସେସବୁର ଫଳରେ ସର୍ବଥା ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରିଦେଇଛନ୍ତି, ଦଶମ ଶ୍ଳୋକରେ ତ୍ୟାଗୀ ନାମରେ କହି ଯେଉଁମାନଙ୍କର ଲକ୍ଷଣ ବ୍ୟକ୍ତ କରାଯାଇଛି, ଷଷ୍ଠ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଯେଉଁମାନଙ୍କ ପାଇଁ 'ସନ୍ନ୍ୟାସୀ' ଏବଂ 'ଯୋଗୀ' ଦୁଇଟି ପଦ ପ୍ରୟୋଗ କରାଯାଇଛି ତଥା ଦ୍ୱିତୀୟ ଅଧ୍ୟାୟର ଏକାବନ ଶ୍ଳୋକରେ ଯେଉଁମାନେ ଅନାମୟ ପଦ ପାଆନ୍ତି ବୋଲି କୁହାଯାଇଛି, ଏଠାରେ **ସନ୍ନ୍ୟାସିନାମ୍** ପଦଟି ହେଉଛି ସେହି କର୍ମଯୋଗୀମାନଙ୍କର ବାଚକ।

ଅତଏବ 'ସନ୍ନ୍ୟାସୀମାନଙ୍କର କର୍ମଫଳ କେବେହେଲେ ଫଳେ ନାହିଁ' କହି ଦେଖାଇଦିଆଯାଇଛି ଯେ, ଏହିପରି କର୍ମଫଳ ତ୍ୟାଗ କରିଦେଇଥିବା ତ୍ୟାଗୀ ମନୁଷ୍ୟମାନେ ଯେତେ କର୍ମ କଲେ ମଧ୍ୟ, ସେସବୁଥିରେ ଭଜାଯାଇଥିବା ବୀଜପରି ଫଳ ଉତ୍ପନ୍ନ କରିବାର ଶକ୍ତି ରହେ ନାହିଁ; ସେହିପରି ଯଜ୍ଞନିମନ୍ତେ କରାଯାଉଥିବା ନିଷ୍କାମକର୍ମମାନଙ୍କ ଦ୍ୱାରା ପୂର୍ବସଞ୍ଚିତ ସମସ୍ତ ଶୁଭାଶୁଭ କର୍ମ ମଧ୍ୟ ନାଶ ହୋଇଯାଏ (୪/୨୩)। ଏଣୁ ସେମାନଙ୍କର ଏହି ଜନ୍ମରେ ବା ଜନ୍ମାନ୍ତରରେ କରାଯାଇଥିବା କୌଣସି କର୍ମର କୌଣସିପ୍ରକାର ଫଳ କୌଣସି ଅବସ୍ଥାରେ ମଧ୍ୟ ହୁଏ ନାହିଁ; ଜୀବିତ ଥିବାବେଳେ ବା ମରିଯିବା ପରେ ମଧ୍ୟ ହୁଏ ନାହିଁ; ସେମାନେ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯାଆନ୍ତି।

**ସମ୍ବନ୍ଧ—** ପ୍ରଥମ ଶ୍ଳୋକରେ ଅର୍ଜୁନ ସନ୍ନ୍ୟାସର ଓ ତ୍ୟାଗର ତତ୍ତ୍ୱ ପୃଥକ୍ ପୃଥକ୍ ଜାଣିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ। ତାହାର ଉତ୍ତର ଦେଇ ଭଗବାନ୍ ଦ୍ୱିତୀୟ ଓ ତୃତୀୟ ଶ୍ଳୋକରେ ଏହି ବିଷୟ ଉପରେ ବିଦ୍ୱାନ୍‌ମାନଙ୍କର ଭିନ୍ନ ଭିନ୍ନ ମତ ବ୍ୟକ୍ତ କଲେ ଏବଂ ତା'ପରେ ନିଜର ମତ ଅନୁସାରେ ଚତୁର୍ଥ ଶ୍ଳୋକଠାରୁ ଦ୍ୱାଦଶ ଶ୍ଳୋକପର୍ଯ୍ୟନ୍ତ ତ୍ୟାଗର ଅର୍ଥାତ୍ କର୍ମଯୋଗର ତତ୍ତ୍ୱ ଭଲଭାବରେ ବୁଝାଇଦେଲେ। ବର୍ତ୍ତମାନ ସନ୍ନ୍ୟାସର ଅର୍ଥାତ୍ ସାଂଖ୍ୟଯୋଗର ତତ୍ତ୍ୱ ବୁଝାଇଦେବାକୁ ପ୍ରଥମେ ସାଂଖ୍ୟସିଦ୍ଧାନ୍ତ ଅନୁସାରେ କର୍ମମାନଙ୍କ ସିଦ୍ଧିର ପାଞ୍ଚଟି କାରଣ କହୁଛନ୍ତି—

**ପଞ୍ଚୈତାନି ମହାବାହୋ କାରଣାନି ନିବୋଧ ମେ।**
**ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାମ୍॥ ୧୩ ॥**

**ଅନ୍ୱୟ—** **ମହାବାହୋ** = ହେ ମହାବାହୁ; **ସର୍ବକର୍ମଣାମ୍** = ସକଳ କର୍ମର; **ସିଦ୍ଧୟେ** = ସିଦ୍ଧିପାଇଁ; **ଏତାନି** = ଏହି; **ପଞ୍ଚ** = ପାଞ୍ଚଟି; **କାରଣାନି** = କାରଣ; **କୃତାନ୍ତେ** = କର୍ମମାନଙ୍କୁ ଅନ୍ତ କରିବାର ଉପାୟ କହୁଥିବା; **ସାଂଖ୍ୟେ** = ସାଂଖ୍ୟଶାସ୍ତ୍ରରେ; **ପ୍ରୋକ୍ତାନି** = କୁହାଯାଇଛି; **(ତାନି)** = ସେଗୁଡ଼ିକୁ(ତୁମେ); **ମେ** = ମୋଠାରୁ; **ନିବୋଧ** = ଭଲଭାବରେ ଜାଣିନିଅ।

**ହେ ମହାବାହୁ! କର୍ମମାନଙ୍କୁ ଅନ୍ତ କରିବାର ଉପାୟ କହୁଥିବା ସାଂଖ୍ୟଶାସ୍ତ୍ରରେ ସକଳ କର୍ମର ସିଦ୍ଧିପାଇଁ ପାଞ୍ଚଟି କାରଣ କୁହାଯାଇଛି; ସେଗୁଡ଼ିକ ତୁମେ ମୋଠାରୁ ଭଲଭାବରେ ଜାଣିନିଅ ॥ ୧୩ ॥**

**ପ୍ରଶ୍ନ—** **ସର୍ବକର୍ମଣାମ୍** ପଦଟି ଏଠାରେ କେଉଁ କର୍ମମାନଙ୍କର ବାଚକ ଏବଂ ସେମାନଙ୍କ ସିଦ୍ଧି କ'ଣ ?

**ଉତ୍ତର—** ଏଠାରେ **ସର୍ବକର୍ମଣାମ୍** ପଦଟି ହେଉଛି ଶାସ୍ତ୍ରବିହିତ ଓ ନିଷିଦ୍ଧ— ସମସ୍ତପ୍ରକାର କର୍ମମାନଙ୍କର ବାଚକ। କୌଣସି କର୍ମ ପୂର୍ଣ୍ଣ ହୋଇଯିବା ହିଁ ତାହାର ସିଦ୍ଧି।

**ପ୍ରଶ୍ନ—** **କୃତାନ୍ତେ** ବିଶେଷଣ ସହିତ **ସାଂଖ୍ୟେ** ପଦଟି କାହାର ବାଚକ ତଥା ସେଥିରେ 'ସକଳ କର୍ମମାନଙ୍କ ସିଦ୍ଧିର ଏହି ପାଞ୍ଚଟି କାରଣ କୁହାଯାଇଛି; ସେଗୁଡ଼ିକ ତୁମେ ମୋଠାରୁ ଜାଣିନିଅ'— ଏହି କଥନର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** **କୃତ** ହେଉଛି କର୍ମମାନଙ୍କର ନାମ; ଏଣୁ ଯେଉଁ ଶାସ୍ତ୍ରରେ ସେମାନଙ୍କୁ ସମାପ୍ତ କରିବାର ଉପାୟ କୁହାଯାଇଛି, ତାହାର ନାମ **କୃତାନ୍ତ**। **ସାଂଖ୍ୟ** ଅର୍ଥ ଜ୍ଞାନ। (ସମ୍ୟକ୍ ଖ୍ୟାୟତେ ଜ୍ଞାୟତେ ପରମାତ୍ମା ଅନେନ ଇତି ସାଂଖ୍ୟଂ— ତତ୍ତ୍ୱଜ୍ଞାନମ୍)। ଅତଏବ ଯେଉଁ ଶାସ୍ତ୍ରରେ ତତ୍ତ୍ୱଜ୍ଞାନର ସାଧନାରୂପକ ଜ୍ଞାନଯୋଗ ପ୍ରତିପାଦନ କରାଯାଇଛି, ତାହାକୁ ସାଂଖ୍ୟ କହନ୍ତି। ତେଣୁ ଏଠାରେ **କୃତାନ୍ତେ** ବିଶେଷଣ ସହିତ **ସାଂଖ୍ୟେ** ପଦଟି ସେହି ଶାସ୍ତ୍ରର ବାଚକ ବୋଲି ଜଣାଯାଉଛି, ଯେଉଁଥିରେ କି ଭଲଭାବରେ ଜ୍ଞାନଯୋଗ ପ୍ରତିପାଦନ କରାଯାଇଛି ଏବଂ ସେହି ଜ୍ଞାନଯୋଗ ଅନୁସାରେ ସମସ୍ତ କର୍ମ ପ୍ରକୃତିଦ୍ୱାରା କରାଯାଏ ଓ ଆତ୍ମା ସର୍ବଥା ଅକର୍ତ୍ତା ବୋଲି ବୁଝି ସମସ୍ତ କର୍ମ ଶୂନ୍ୟ କରିବାର ରୀତି କୁହାଯାଇଛି।

ତେଣୁ ଏଠାରେ 'ସକଳ କର୍ମର ସିଦ୍ଧି ନିମନ୍ତେ ଏହି ପାଞ୍ଚଟି କାରଣ ସାଂଖ୍ୟ-ସିଦ୍ଧାନ୍ତରେ କୁହାଯାଇଛି; ସେଗୁଡ଼ିକ ତୁମେ ମୋଠାରୁ ଭଲଭାବରେ ଜାଣିନିଅ' ବୋଲି କହି ଭଗବାନ୍ ଜଣାଇଦେଇଛନ୍ତି, ''ଆତ୍ମାର ଅକର୍ତ୍ତୃତ୍ୱ ସିଦ୍ଧ କରିବାପାଇଁ ଉପରୋକ୍ତ ଜ୍ଞାନଯୋଗ ପ୍ରତିପାଦନ କରୁଥିବା ଶାସ୍ତ୍ରରେ ସମସ୍ତ କର୍ମର ସିଦ୍ଧି-ନିମନ୍ତେ ଯେଉଁ ପାଞ୍ଚଟି କାରଣ କୁହାଯାଇଛି, ଯେଉଁ ପାଞ୍ଚଟିର ସମ୍ବନ୍ଧଦ୍ୱାରା ସମସ୍ତ କର୍ମ ସମ୍ପନ୍ନ ହୁଏ, ତାହା ମୁଁ ତୁମକୁ ବୁଝାଇ କହୁଛି; ତୁମେ ସାବଧାନ ହୋଇ ଶୁଣ।''

**ସମ୍ବନ୍ଧ—** ବର୍ତ୍ତମାନ ସେହି ପାଞ୍ଚଟି କାରଣର ନାମ କୁହାଯାଉଅଛି—

## ଅଧିଷ୍ଠାନଂ ତଥା କର୍ତ୍ତା କରଣଂ ଚ ପୃଥଗ୍‌ବିଧମ୍।
## ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମମ୍॥ ୧୪ ॥

**ଅନ୍ୱୟ–** **ଅତ୍ର** = ଏହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ସିଦ୍ଧିରେ; **ଅଧିଷ୍ଠାନମ୍** = ଅଧିଷ୍ଠାନ; **ଚ** = ଏବଂ; **କର୍ତ୍ତା** = କର୍ତ୍ତା; **ଚ** = ତଥା; **ପୃଥକ୍‌ବିଧମ୍** = ବିଭିନ୍ନପ୍ରକାର; **କରଣମ୍** = କରଣ; **ଚ** = ଏବଂ; **ବିବିଧାଃ** = ନାନାପ୍ରକାର; **ପୃଥକ୍** = ଅଲଗା-ଅଲଗା; **ଚେଷ୍ଟାଃ** = ଚେଷ୍ଟାମାନ (ଏବଂ); **ତଥା, ଏବ** = ସେହିପରି; **ପଞ୍ଚମମ୍** = ପଞ୍ଚମ ହେତୁ; **ଦୈବମ୍** = ଦୈବ।

**ଏହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ସିଦ୍ଧିରେ ଅଧିଷ୍ଠାନ, କର୍ତ୍ତା, ବିଭିନ୍ନପ୍ରକାର କରଣ, ନାନାପ୍ରକାର ଚେଷ୍ଟା ଏବଂ ସେହିପରି ପଞ୍ଚମ ହେତୁ ଦୈବ ଅଟେ॥ ୧୪ ॥**

**ପ୍ରଶ୍ନ–** ଏଠାରେ **ଅଧିଷ୍ଠାନମ୍** ପଦ କାହାର ବାଚକ ?

**ଉତ୍ତର–** ଏଠାରେ **ଅଧିଷ୍ଠାନମ୍** ପଦଟି ହେଉଛି ମୁଖ୍ୟରୂପରେ କରଣ ଓ କ୍ରିୟାର ଆଧାରରୂପୀ ଶରୀରର ବାଚକ; କିନ୍ତୁ ଗୌଣରୂପରେ ଏହାକୁ ଯଜ୍ଞାଦି କର୍ମମାନଙ୍କରେ ତଦ୍‌ବିଷୟକ କ୍ରିୟାର ଆଧାରରୂପୀ ଭୂମି ଆଦିର ବାଚକ ବୋଲି ମଧ୍ୟ ଗ୍ରହଣ କରାଯାଇପାରେ।

**ପ୍ରଶ୍ନ–** ଏଠାରେ **କର୍ତ୍ତା** ପଦଟି କାହାର ବାଚକ ?

**ଉତ୍ତର–** କର୍ତ୍ତା ପଦଟି ହେଉଛି ପ୍ରକୃତିସ୍ଥ ପୁରୁଷର ବାଚକ। ଏହାକୁ ତ୍ରୟୋଦଶ ଅଧ୍ୟାୟର ଏକୋଇଶ ଶ୍ଳୋକରେ ଭୋକ୍ତା ବୋଲି କୁହାଯାଇଛି ଏବଂ ତୃତୀୟ ଅଧ୍ୟାୟର ସତେଇଶ ଶ୍ଳୋକରେ 'ଅହଙ୍କାରବିମୂଢ଼ାତ୍ମା' ବୋଲି କୁହାଯାଇଛି।

**ପ୍ରଶ୍ନ–** **ପୃଥଗ୍‌ବିଧମ୍** ବିଶେଷଣ ସହିତ **କରଣମ୍** ପଦଟି କାହାର ବାଚକ ?

**ଉତ୍ତର–** ମନ, ବୁଦ୍ଧି ଏବଂ ଅହଙ୍କାର ହେଉଛି ଆଭ୍ୟନ୍ତର କରଣ; ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ପାଞ୍ଚ କର୍ମେନ୍ଦ୍ରିୟ– ଏହି ଦଶଟି ହେଉଛି ବାହ୍ୟ କରଣ; ଏହା ବ୍ୟତୀତ ଆହୁରି ମଧ୍ୟ ଯେଉଁ ସ୍ରୁବ ଆଦି ଉପକରଣ ଯଜ୍ଞାଦି କର୍ମ କରିବାରେ ସହାୟକ ହୁଏ, ସେଗୁଡ଼ିକ ବାହ୍ୟକରଣର ଅନ୍ତର୍ଗତ। ଭିନ୍ନ ଭିନ୍ନ କର୍ମ କରିବାରେ ଯେତେସବୁ ଭିନ୍ନ ଭିନ୍ନ ଦ୍ୱାର ଅର୍ଥାତ୍ ସହାୟକ ରହିଛି, ଏଠାରେ **ପୃଥଗ୍‌ବିଧମ୍** ବିଶେଷଣ ସହିତ **କରଣମ୍** ପଦଟି ହେଉଛି ସେସବୁର ବାଚକ।

**ପ୍ରଶ୍ନ–ବିବିଧାଃ** ଏବଂ **ପୃଥକ୍**— ଏହି ଦୁଇଟି ପଦ ସହିତ **ଚେଷ୍ଟାଃ** ପଦଟି କେଉଁମାନଙ୍କ ବାଚକ ?

**ଉତ୍ତର–** ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନ କରିବା, ହସ୍ତପଦ ଆଦି ଅଙ୍ଗ ସଂଚାଳନ କରିବା, ଶ୍ୱାସର ଯିବା-ଆସିବା, ଅଙ୍ଗଗୁଡ଼ିକର ସଙ୍କୋଚନ-ପ୍ରସାରଣ କରିବା, ଚକ୍ଷୁ ଖୋଲିବା-ବନ୍ଦ କରିବା, ମନରେ ସଙ୍କଳ୍ପ-ବିକଳ୍ପ ହେବା ଆଦି ଯେତେପ୍ରକାର ଚଳନଚେଷ୍ଟାଦି ହୁଏ, ଏଠାରେ **ବିବିଧାଃ** ଏବଂ **ପୃଥକ୍**– ଏହି ଦୁଇ ପଦ ସହିତ **ଚେଷ୍ଟା** ପଦଟି ହେଉଛି ସେହିସବୁ ନାନାପ୍ରକାର ଚେଷ୍ଟାମାନଙ୍କର ବାଚକ।

**ପ୍ରଶ୍ନ–** **ଦୈବମ୍** ପଦ କାହାର ବାଚକ ଏବଂ ତାହା ସହିତ **ପଞ୍ଚମମ୍** ପଦ ପ୍ରୟୋଗର ଭାବ କ'ଣ ?

**ଉତ୍ତର–** ଦୈବମ୍ ପଦଟି ହେଉଛି ପୂର୍ବକୃତ ଶୁଭାଶୁଭକର୍ମମାନଙ୍କ ସଂସ୍କାରର ବାଚକ; ପ୍ରାରବ୍ଧ ମଧ୍ୟ ଏହାର ଅନ୍ତର୍ଗତ। ବହୁ ଲୋକ ଏହାକୁ ଅଦୃଷ୍ଟ ବୋଲି ମଧ୍ୟ କହନ୍ତି। ଏହା ସହିତ **ପଞ୍ଚମମ୍** ପଦ ପ୍ରୟୋଗ କରି 'ପଞ୍ଚମ' ସଂଖ୍ୟା ପୂର୍ଣ୍ଣ ହେବା କଥା ଦେଖାଇଦେଇଛନ୍ତି। ଅଭିପ୍ରାୟ ଏହି ଯେ, ପୂର୍ବଶ୍ଳୋକରେ ଯେଉଁ ପାଞ୍ଚଟି କାରଣ କଥା ଶୁଣିବାକୁ କୁହାଯାଇଥିଲା, ସେଥିମଧ୍ୟରୁ ଆଗରୁ ଚାରିଗୋଟି କାରଣ କହିଦିଆଯାଇଛି ଏବଂ ପଞ୍ଚମଟି ହେଉଛି ଦୈବ।

## ଶରୀରବାଙ୍‌ମନୋଭିର୍ଯତ୍ କର୍ମ ପ୍ରାରଭତେ ନରଃ।
## ନ୍ୟାଯ୍ୟଂ ବା ବିପରୀତଂ ବା ପଞ୍ଚୈତେ ତସ୍ୟ ହେତବଃ॥ ୧୫ ॥

**ଅନ୍ୱୟ–** **ନରଃ** = ମନୁଷ୍ୟ; **ଶରୀରବାଙ୍‌ମନୋଭିଃ** = ମନ, ବାଣୀ ଓ ଶରୀରଦ୍ୱାରା; **ନ୍ୟାଯ୍ୟମ୍** = ଶାସ୍ତ୍ରାନୁକୂଳ; **ବା** = ଅଥବା; **ବିପରୀତମ୍, ବା** = ବିପରୀତ; **ଯତ୍ କର୍ମ** = ଯେଉଁ କର୍ମ; **ପ୍ରାରଭତେ** = କରେ; **ଏତେ** = ଏହି; **ପଞ୍ଚ** = ପାଞ୍ଚଟି (ହିଁ); **ତସ୍ୟ** = ତାହାର; **ହେତବଃ** = ବିଭିନ୍ନ କାରଣ।

**ମନୁଷ୍ୟ ମନ, ବାଣୀ ଓ ଶରୀରଦ୍ୱାରା ଶାସ୍ତ୍ରାନୁକୂଳ ଅଥବା ବିପରୀତ, ଯାହା କିଛି ବି କର୍ମ କରେ, ଏହି ପାଞ୍ଚଟି ହିଁ ତାହାର କାରଣ ॥ ୧୫ ॥**

**ପ୍ରଶ୍ନ —** **ନରଃ** ପଦ ଏଠାରେ କାହାର ବାଚକ ଏବଂ ଏହା ପ୍ରୟୋଗ କରିବାର ଅଭିପ୍ରାୟ କ'ଣ ?

**ଉତ୍ତର —** **ନରଃ** ପଦ ଏଠାରେ ମନୁଷ୍ୟର ବାଚକ। ଏହା ପ୍ରୟୋଗ କରି ଦେଖାଇଛନ୍ତି ଯେ, ମନୁଷ୍ୟଶରୀରରେ ହିଁ ଜୀବ ପୁଣ୍ୟ ଓ ପାପରୂପକ ନୂତନ କର୍ମ କରିପାରେ। ଅନ୍ୟ ଯୋନିଗୁଡ଼ିକ କେବଳ ଭୋଗଯୋନି; ସେଥିରେ ପୂର୍ବକୃତ କର୍ମମାନଙ୍କର ଫଳ ଭୋଗ କରାଯାଏ; ସେଥିରେ ନୂତନ କର୍ମ କରିବାର ଅଧିକାର ନାହିଁ।

**ପ୍ରଶ୍ନ —** **ଶରୀରବାଙ୍ମନୋଭିଃ** ପଦରେ **ଶରୀର** ଶବ୍ଦ କାହାକୁ, **ବାକ୍** ଶବ୍ଦ କାହାକୁ ଏବଂ **ମନସ୍** ଶବ୍ଦ କାହାକୁ ବୁଝାଏ ? ଏଠାରେ ଏହି ପଦଟି ପ୍ରୟୋଗ କରିବାର ଭାବ କ'ଣ ?

**ଉତ୍ତର —** ଉପରୋକ୍ତ ପଦରେ **ଶରୀର** ଶବ୍ଦ ବାଣୀ ବ୍ୟତୀତ ଅନ୍ୟ ସମସ୍ତ ଇନ୍ଦ୍ରିୟମାନଙ୍କ ସହିତ ସ୍ଥୂଳଶରୀରକୁ ବୁଝାଏ; **ବାକ୍** ଶବ୍ଦ ବାଣୀକୁ ବୁଝାଏ ଏବଂ **ମନସ୍** ଶବ୍ଦ ସମସ୍ତ ଅନ୍ତଃକରଣକୁ ବୁଝାଏ। ମନୁଷ୍ୟ ଯେତେପ୍ରକାର ପୁଣ୍ୟ ବା ପାପ କର୍ମ କରେ, ସେସବୁକୁ ଶାସ୍ତ୍ରକାରମାନେ କାୟିକ, ବାଚିକ ଓ ମାନସିକ— ଏପରି ତିନିଭାଗରେ ବିଭକ୍ତ କରନ୍ତି। ତେଣୁ ଏଠାରେ ଏହି ପଦଟି ପ୍ରୟୋଗ କରି ସମସ୍ତ ଶୁଭାଶୁଭ କର୍ମର ସମାହାର କରାଯାଇଛି।

**ପ୍ରଶ୍ନ —** **ନ୍ୟାଯ୍ୟମ୍** ପଦ କେଉଁ କର୍ମର ବାଚକ ?

**ଉତ୍ତର —** ବର୍ଣ୍ଣ, ଆଶ୍ରମ, ପ୍ରକୃତି ଓ ପରିସ୍ଥିତିଭେଦରେ ଯାହାଙ୍କ ପାଇଁ ଯେଉଁ କର୍ମ କର୍ତ୍ତବ୍ୟ ବୋଲି ଗ୍ରହଣ କରାଯାଇଛି, ଏଠାରେ **ନ୍ୟାଯ୍ୟମ୍** ପଦଟି ହେଉଛି ସେହି ସମସ୍ତ ନ୍ୟାୟପୂର୍ବକ କରାଯାଉଥିବା ଯଜ୍ଞ, ଦାନ, ତପ, ବିଦ୍ୟାଧ୍ୟୟନ, ଯୁଦ୍ଧ, କୃଷି, ଗୋରକ୍ଷା, ବାଣିଜ୍ୟ, ସେବା ଆଦି ସମସ୍ତ ଶାସ୍ତ୍ରବିହିତ କର୍ମସମୁଦାୟର ବାଚକ।

**ପ୍ରଶ୍ନ —** **ବିପରୀତମ୍** ପଦ କେଉଁ କର୍ମର ବାଚକ ?

**ଉତ୍ତର —** ବର୍ଣ୍ଣ, ଆଶ୍ରମ, ପ୍ରକୃତି ଓ ପରିସ୍ଥିତିଭେଦରେ ଯାହାଙ୍କୁ ଯେଉଁ କର୍ମ କରିବାପାଇଁ ଶାସ୍ତ୍ରରେ ନିଷେଧ କରାଯାଇଛି ତଥା ଯେଉଁ କର୍ମ ନୀତି ଓ ଧର୍ମର ପ୍ରତିକୂଳ, ଏଠାରେ **ବିପରୀତମ୍** ପଦଟି ହେଉଛି ସେପରି ଅସତ୍ୟଭାଷଣ, ଚୋରି, ବ୍ୟଭିଚାର, ହିଂସା, ମଦ୍ୟପାନ, ଅଭକ୍ଷ୍ୟ-ଭକ୍ଷଣ ଆଦି ସମସ୍ତ ପାପକର୍ମର ବାଚକ।

**ପ୍ରଶ୍ନ —** **ଯତ୍** ପଦ ସହିତ **କର୍ମ** ପଦ କାହାର ବାଚକ ଏବଂ 'ଏହି ପାଞ୍ଚଟି ଏହାର କାରଣ'— ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର —** ଏଠାରେ **ଯତ୍** ପଦ ସହିତ **କର୍ମ** ପଦଟି ହେଉଛି ମନ, ବାଣୀ ଓ ଶରୀରଦ୍ୱାରା କରାଯାଉଥିବା ଯେତେସବୁ ପୁଣ୍ୟ ଓ ପାପରୂପୀ କର୍ମ ରହିଛି, ଜୀବକୁ ଇହଜନ୍ମରେ ତଥା ଜନ୍ମାନ୍ତରରେ ଯେଉଁମାନଙ୍କର ଫଳ ଭୋଗିବାକୁ ପଡ଼େ, ସେହି ସମସ୍ତ କର୍ମମାନଙ୍କର ବାଚକ। 'ଏହି ପାଞ୍ଚଟି ଏହାର କାରଣ'— ଏହି ବାକ୍ୟଦ୍ୱାରା ଦେଖାଇଦିଆଯାଇଛି ଯେ, ଏହି ପାଞ୍ଚଟିର ସଂଯୋଗ ବିନା କୌଣସି ବି କର୍ମ ସମ୍ପନ୍ନ ହୋଇପାରିବ ନାହିଁ; ଯେତେ ବି ଶୁଭାଶୁଭ କର୍ମ ହୁଏ, ସେସବୁ ଏହି ପାଞ୍ଚଟିର ସଂଯୋଗରେ ହିଁ ହୁଏ। ଏଥିମଧ୍ୟରୁ କୌଣସି ଗୋଟିଏ ବି କାରଣ ନ ରହିଲେ, କର୍ମ ହୋଇପାରେ ନାହିଁ। ତେଣୁ ବିନା କର୍ତ୍ତାପଣରେ କରାଯାଉଥିବା କର୍ମ ବାସ୍ତବରେ କର୍ମ ନୁହେଁ; ଏହି କଥା ସତର ଶ୍ଳୋକରେ କୁହାଯାଉଛି।

*ସମ୍ବନ୍ଧ — ଏପରିଭାବରେ ସାଂଖ୍ୟଯୋଗର ସିଦ୍ଧାନ୍ତଦ୍ୱାରା ସମସ୍ତ କର୍ମସିଦ୍ଧିପାଇଁ ଅଧିଷ୍ଠାନାଦି ପାଞ୍ଚଟି କାରଣ ନିରୂପଣ କରିସାରି, ବର୍ତ୍ତମାନ ଆତ୍ମାର ପ୍ରକୃତରେ କର୍ମମାନଙ୍କ ସହିତ କୌଣସି ସମ୍ବନ୍ଧ ନାହିଁ, ଆତ୍ମା ସର୍ବଥା ଶୁଦ୍ଧ, ନିର୍ବିକାର ଓ ଅକର୍ତ୍ତା ବୋଲି ବୁଝାଇଦେବାପାଇଁ ଭଗବାନ୍ ପ୍ରଥମେ ଆତ୍ମାକୁ କର୍ତ୍ତା ବୋଲି ଗ୍ରହଣ କରୁଥିବା ଲୋକଙ୍କର ନିନ୍ଦା କରୁଛନ୍ତି—*

**ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ ।**
**ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ ॥ ୧୬ ॥**

**ଅନ୍ୱୟ —** **ତୁ** = ପରନ୍ତୁ; **ଏବମ୍** = ଏପରି; **ସତି** = ହେଲେ ମଧ୍ୟ; **ଯଃ** = ଯେଉଁ ମନୁଷ୍ୟ; **ଅକୃତବୁଦ୍ଧିତ୍ୱାତ୍** = ଅଶୁଦ୍ଧବୁଦ୍ଧି ହୋଇଥିବାରୁ; **ତତ୍ର** = ସେହି ବିଷୟରେ ଅର୍ଥାତ୍ କର୍ମ ହେବାରେ **କେବଳମ୍** = କେବଳ

ଶୁଦ୍ଧସ୍ୱରୂପ; **ଆତ୍ମାନମ୍** = ଆତ୍ମାକୁ; **କର୍ତ୍ତାରମ୍** = କର୍ତ୍ତା; **ପଶ୍ୟତି** = (ବୋଲି) ବୁଝେ; **ସଃ** = ସେହି; **ଦୁର୍ମତିଃ** = ମଳିନବୁଦ୍ଧିଯୁକ୍ତ ଅଜ୍ଞାନୀ; **ନ, ପଶ୍ୟତି** = ଯଥାର୍ଥ ବୁଝେ ନାହିଁ।

**ପରନ୍ତୁ ଏପରି ହୋଇଥିଲେ ମଧ୍ୟ ଯେଉଁ ମନୁଷ୍ୟ ଅଶୁଦ୍ଧବୁଦ୍ଧି ହୋଇଥିବାରୁ ସେହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ହେବାରେ ନିରଞ୍ଜନ ଶୁଦ୍ଧସ୍ୱରୂପ ଆତ୍ମାକୁ କର୍ତ୍ତା ବୋଲି ବୁଝେ, ସେହି ମଳିନବୁଦ୍ଧିଯୁକ୍ତ ଅଜ୍ଞାନୀ ମନୁଷ୍ୟ ଯଥାର୍ଥ ବୁଝେ ନାହିଁ॥ ୧୬ ॥**

**ପ୍ରଶ୍ନ –** ଏଠାରେ ଏବମ୍ ସହିତ ସତି ପଦର ଭାବ କ'ଣ ?

**ଉତ୍ତର –** **'ଏବମ୍'** ସହିତ **'ସତି'** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ସମସ୍ତ କର୍ମ ହେବାରେ ଉପରୋକ୍ତ ଅଧିଷ୍ଠାନାଦି ହିଁ କାରଣ ଅଟନ୍ତି; ସେହି କର୍ମମାନଙ୍କ ସହିତ ବାସ୍ତବରେ ଆତ୍ମାର କୌଣସି ସମ୍ବନ୍ଧ ନାହିଁ; ତେଣୁ ଆତ୍ମାକୁ କର୍ତ୍ତା ବୋଲି ଗ୍ରହଣ କରିବା କୌଣସିପ୍ରକାରେ ଉଚିତ ନୁହେଁ। ତଥାପି ଲୋକେ ମୂର୍ଖତାବଶତଃ ନିଜକୁ କର୍ମର କର୍ତ୍ତା ବୋଲି ଧରିନିଅନ୍ତି। ଏହା କେଡ଼େ ଆଶ୍ଚର୍ଯ୍ୟର କଥା ନୁହେଁ!

**ପ୍ରଶ୍ନ –** ଅକୃତବୁଦ୍ଧିତ୍ୱାତ୍‌ର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ସତ୍‌ସଙ୍ଗ ଓ ସଦ୍‌ଶାସ୍ତ୍ର ଅଭ୍ୟାସଦ୍ୱାରା ତଥା ବିବେକ, ବିଚାର ଓ ଶମଦମାଦି ଆଧ୍ୟାତ୍ମିକ ସାଧନାମାନଙ୍କ ଦ୍ୱାରା ଯାହାର ବୁଦ୍ଧି ଶୁଦ୍ଧ ହୋଇ ନାହିଁ– ସେପରି ପ୍ରାକୃତ ଅଜ୍ଞାନୀ ମନୁଷ୍ୟକୁ **ଅକୃତବୁଦ୍ଧି** କହନ୍ତି। ଏଣୁ ଏଠାରେ **ଅକୃତବୁଦ୍ଧିତ୍ୱାତ୍** ପଦ ପ୍ରୟୋଗ କରି ଆତ୍ମାକୁ କର୍ତ୍ତା ବୋଲି ମାନିବାର କାରଣ କୁହାଯାଇଛି। ଅଭିପ୍ରାୟ ଏହି ଯେ, ବାସ୍ତବରେ ଆତ୍ମାର କର୍ମମାନଙ୍କ ସହିତ କୌଣସି ସମ୍ବନ୍ଧ ନ ଥିଲେ ମଧ୍ୟ, ବୁଦ୍ଧିରେ ବିବେକ ଶକ୍ତି ନ ଥିବାରୁ ଅଜ୍ଞାନବଶତଃ ମନୁଷ୍ୟ ଆତ୍ମାକୁ କର୍ତ୍ତା ବୋଲି ଧରିବସେ।

**ପ୍ରଶ୍ନ – ଆତ୍ମାନମ୍** ପଦ ସହିତ **କେବଳମ୍** ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** କେବଳମ୍ ବିଶେଷଣ ପ୍ରୟୋଗଦ୍ୱାରା ଆତ୍ମାର ଯଥାର୍ଥ ସ୍ୱରୂପ ନିର୍ଦ୍ଦେଶ କରାଯାଇଛି। ଅଭିପ୍ରାୟ ଏହି ଯେ, ଆତ୍ମାର ଯଥାର୍ଥ ସ୍ୱରୂପ ହେଉଛି **'କେବଳ'** ଅର୍ଥାତ୍ ଆତ୍ମା ସର୍ବଥା ଶୁଦ୍ଧ, ନିର୍ବିକାର ଓ ଅସଙ୍ଗ। ଶ୍ରୁତିରେ ମଧ୍ୟ କୁହାଯାଇଛି ଯେ, **ଅସଙ୍ଗୋ ହ୍ୟୟଂ ପୁରୁଷଃ** (ବୃହଦାରଣ୍ୟକ-ଉ. ୪/୩/୧୫-୧୬) ଅର୍ଥାତ୍ 'ଏହି ଆତ୍ମା ବାସ୍ତବରେ ସର୍ବଥା ଅସଙ୍ଗ ଅଟେ।' ଏଣୁ କର୍ମମାନଙ୍କ ସହିତ ଅସଙ୍ଗ ଆତ୍ମାର ସମ୍ବନ୍ଧ ଯୋଡ଼ି ଆତ୍ମାକୁ ସେହି କର୍ମମାନଙ୍କର କର୍ତ୍ତା ବୋଲି ମାନିବା ଅତ୍ୟନ୍ତ ଭୁଲ୍।

**ପ୍ରଶ୍ନ –ସଃ** ସହିତ **'ଦୁର୍ମତିଃ'** ବିଶେଷଣ ଦେଇ 'ସେ ଯଥାର୍ଥ ବୁଝେ ନାହିଁ' ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଉପରୋକ୍ତପ୍ରକାରେ ଆତ୍ମାକୁ କର୍ତ୍ତା ବୋଲି ବୁଝୁଥିବା ମନୁଷ୍ୟର ବୁଦ୍ଧି ଦୂଷିତ; ତାହାରେ ଆତ୍ମସ୍ୱରୂପକୁ ଯଥାର୍ଥରୂପେ ବୁଝିବାର ଶକ୍ତି ନାହିଁ– ଏହି ଭାବ ଦେଖାଇବାପାଇଁ ଏଠାରେ **ଦୁର୍ମତିଃ** ବିଶେଷଣ ପ୍ରୟୋଗ କରାଯାଇଛି। 'ସେ ଯଥାର୍ଥ ବୁଝେ ନାହିଁ' କହି ଦେଖାଇଛନ୍ତି ଯେ, ତ୍ରୟୋଦଶ ଅଧ୍ୟାୟର ଅଣତିରିଶ ଶ୍ଳୋକ ଅନୁସାରେ ଯେ ସମସ୍ତ କର୍ମ ପ୍ରକୃତିର ହିଁ ଖେଳ ବୋଲି ଏବଂ ଆତ୍ମାକୁ ସର୍ବଥା ଅକର୍ତ୍ତା ବୋଲି ବୁଝନ୍ତି, ସେ ହିଁ ଯଥାର୍ଥ ବୁଝନ୍ତି। ବିପରୀତ ପକ୍ଷରେ ଆତ୍ମାକୁ କର୍ତ୍ତା ବୋଲି ମାନୁଥିବା ମନୁଷ୍ୟ ଅଜ୍ଞାନ ଓ ଅହଙ୍କାରଦ୍ୱାରା ମୋହିତ ହୋଇଥାଏ (୩/୨୭); ତେଣୁ ତା'ର ବୁଝିବା ଠିକ୍ ନୁହେଁ; ଭୁଲ୍।

**ପ୍ରଶ୍ନ –** ଚଉଦ ଶ୍ଳୋକରେ କର୍ମ ହେବାରେ ଯେଉଁ ପାଞ୍ଚଟି କାରଣ କୁହାଯାଇଛି, ସେଥିମଧ୍ୟରୁ ଅଧିଷ୍ଠାନ ଆଦି ଚାରିଗୋଟି କାରଣ ତ ପ୍ରକୃତିଜନିତ, ପରନ୍ତୁ କର୍ତ୍ତାରୂପୀ ପଞ୍ଚମ କାରଣଟି ପ୍ରକୃତିସ୍ଥ ପୁରୁଷ ବୋଲି ଧରାଯାଇଛି; ଅଥଚ ଏଠାରେ କୁହାଯାଉଛି ଯେ, ଆତ୍ମା କର୍ତ୍ତା ନୁହେଁ; ଆତ୍ମା ସଙ୍ଗରହିତ। ଏପରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ ବୁଝିବା ଉଚିତ ଯେ, ବାସ୍ତବରେ ଆତ୍ମା ନିତ୍ୟ, ଶୁଦ୍ଧ, ବୁଦ୍ଧ, ନିର୍ବିକାର ଓ ସର୍ବଥା ଅସଙ୍ଗ; ପ୍ରକୃତି ସହିତ, ପ୍ରକୃତିଜନିତ ପଦାର୍ଥମାନଙ୍କ ସହିତ ବା କର୍ମମାନଙ୍କ ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ। କିନ୍ତୁ ଅନାଦିସିଦ୍ଧ ଅବିଦ୍ୟାହେତୁ ଅସଙ୍ଗ ଆତ୍ମାର ପ୍ରକୃତି ସହିତ ସମ୍ବନ୍ଧ ଥିବାପରି ମନେ ହୁଏ; ତେଣୁ ସେ ପ୍ରକୃତିଦ୍ୱାରା ସମ୍ପାଦିତ କ୍ରିୟାମାନଙ୍କରେ ମିଥ୍ୟା

ଅଭିମାନ କରି ସ୍ୱୟଂ ସେହି କର୍ମମାନଙ୍କର କର୍ତ୍ତା ପାଲଟିଯାଉଛି। ଏହିପରି କର୍ତ୍ତା ହୋଇଯାଉଥିବା ପୁରୁଷର ନାମ ହିଁ 'ପ୍ରକୃତିସ୍ଥ' ପୁରୁଷ; ପ୍ରକୃତିଦ୍ୱାରା ସମ୍ପନ୍ନ ହୋଉଥିବା ସେହି କ୍ରିୟାମାନଙ୍କର ସେ କର୍ତ୍ତା ହୋଇଗଲେ, ସେହି କ୍ରିୟାଗୁଡ଼ିକର ସଂଜ୍ଞା 'କର୍ମ' ହୋଇଯାଏ ଏବଂ ସେଗୁଡ଼ିକ ଫଳଦାୟୀ ହୋଇଯାଏ। ତେଣୁ ସେହି ପ୍ରକୃତିସ୍ଥ ପୁରୁଷକୁ ଭଲମନ୍ଦ ଯୋନିମାନଙ୍କରେ ଜନ୍ମ ହୋଇ ସେହି କର୍ମମାନଙ୍କର ଫଳ ଭୋଗ କରିବାକୁ ପଡ଼େ (୧୩/୨୧)। ସୁତରାଂ ଚଉଦ ଶ୍ଳୋକରେ, କର୍ମସିଦ୍ଧିର ପାଞ୍ଚଟି କାରଣ ମଧ୍ୟରୁ ଗୋଟିଏ କାରଣ କର୍ତ୍ତା ବୋଲି ଧରାଯାଇଛି; ସେହି କର୍ତ୍ତା ହେଉଛି ପ୍ରକୃତିରେ ସ୍ଥିତ ପୁରୁଷ। ଏଠାରେ ଆତ୍ମାର 'କେବଳ' ଅର୍ଥାତ୍ ସଙ୍ଗରହିତ, ଶୁଦ୍ଧସ୍ୱରୂପର ବର୍ଣ୍ଣନା ହୋଇଛି। ତେଣୁ ତାହାକୁ ଅକର୍ତ୍ତା କହି ତାହାର ଯଥାର୍ଥ ସ୍ୱରୂପର ଲକ୍ଷଣ ଦିଆଯାଇଛି। ଯେ ଆତ୍ମାର ଯଥାର୍ଥ ସ୍ୱରୂପକୁ ବୁଝିପାରନ୍ତି, ତାଙ୍କର କର୍ମମାନଙ୍କରେ କର୍ତ୍ତାରୂପକ ପଞ୍ଚମ କାରଣ ରହେ ନାହିଁ। ଫଳରେ ତାଙ୍କର କର୍ମଗୁଡ଼ିକରେ କର୍ମସଂଜ୍ଞା ରହେ ନାହିଁ। ଏହି କଥା ପରବର୍ତ୍ତୀ ଶ୍ଳୋକରେ ଭଲଭାବରେ ବୁଝାଇଦିଆଯାଇଛି।

*ସମ୍ବନ୍ଧ— ଆତ୍ମା ସର୍ବଥା ଶୁଦ୍ଧ, ନିର୍ବିକାର ଓ ଅକର୍ତ୍ତା — ଏହା ବୁଝାଇଦେବାପାଇଁ ଆତ୍ମାକୁ କର୍ତ୍ତା ବୋଲି ମାନୁଥିବା ଲୋକଙ୍କ ନିନ୍ଦା କରିସାରି ବର୍ତ୍ତମାନ ଆତ୍ମାର ଯଥାର୍ଥ ସ୍ୱରୂପ ଜାଣି ତାହାକୁ ଅକର୍ତ୍ତା ବୋଲି ବୁଝୁଥିବା ଲୋକଙ୍କର ପ୍ରଶଂସା କରୁଛନ୍ତି—*

**ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ।**
**ହତ୍ୱାପି ସ ଇମାଁଲ୍ଲୋକାନ୍ ନ ହନ୍ତି ନ ନିବଧ୍ୟତେ ॥ ୧୭ ॥**

**ଅନ୍ୱୟ—** **ଯସ୍ୟ** = ଯେଉଁ ପୁରୁଷଙ୍କ (ଅନ୍ତଃକରଣରେ); **ଅହଙ୍କୃତଃ** = 'ମୁଁ କର୍ତ୍ତା' (ବୋଲି); **ଭାବଃ** = ଭାବ; **ନ** = ନାହିଁ (ତଥା); **ଯସ୍ୟ** = ଯାହାଙ୍କ; **ବୁଦ୍ଧିଃ** = ବୁଦ୍ଧି (ସାଂସାରିକ ପଦାର୍ଥରେ ଓ କର୍ମରେ); **ନ**, **ଲିପ୍ୟତେ** = ଲିପ୍ତ ହୁଏ ନାହିଁ; **ସଃ** = ସେହି ପୁରୁଷ; **ଇମାନ୍** = ଏହି; **ଲୋକାନ୍** = ସମସ୍ତ ଲୋକଙ୍କୁ; **ହତ୍ୱା** = ମାରି; **ଅପି** = ମଧ୍ୟ; **ନ**, **ହନ୍ତି** = (ବାସ୍ତବରେ) ମାରନ୍ତି ନାହିଁ (କି); **ନ**, **ନିବଧ୍ୟତେ** = ପାପଦ୍ୱାରା ବାନ୍ଧିହୁଅନ୍ତି ନାହିଁ।

**ଯେଉଁ ପୁରୁଷଙ୍କ ଅନ୍ତଃକରଣରେ ମୁଁ କର୍ତ୍ତା ବୋଲି ଭାବ ନାହିଁ ତଥା ଯାହାଙ୍କ ବୁଦ୍ଧି ସାଂସାରିକ ପଦାର୍ଥରେ ଓ କର୍ମରେ ଲିପ୍ତ ହୁଏ ନାହିଁ, ସେହି ପୁରୁଷ ଏହିସବୁ ଲୋକଙ୍କୁ ମାରିଦେଲେ ମଧ୍ୟ ବାସ୍ତବରେ ମାରନ୍ତି ନାହିଁ, କି ପାପରେ ବାନ୍ଧିହୁଅନ୍ତି ନାହିଁ॥ ୧୭ ॥**

**ପ୍ରଶ୍ନ—** ଏଠାରେ **ଯସ୍ୟ** ପଦ କାହାର ବାଚକ ତଥା 'ମୁଁ କର୍ତ୍ତା'— ଏହି ଭାବ ନ ରହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏଠାରେ **ଯସ୍ୟ** ପଦଟି ହେଉଛି ସମସ୍ତ କର୍ମକୁ ପ୍ରକୃତିର ଖେଳ ବୋଲି ବୁଝୁଥିବା ସାଂଖ୍ୟଯୋଗୀଙ୍କର ବାଚକ। ଏପରି ପୁରୁଷଙ୍କ ଠାରେ ଦେହାଭିମାନ ନ ଥିବାରୁ ଆଦୌ କର୍ତ୍ତାପଣ ନ ଥାଏ। ଅର୍ଥାତ୍ ମନ, ଇନ୍ଦ୍ରିୟ ଏବଂ ଶରୀରଦ୍ୱାରା କରାଯାଉଥିବା ସମସ୍ତ କ୍ରିୟାମାନଙ୍କରେ 'ଅମୁକ କର୍ମ ମୁଁ କରିଛି, ଏହା ମୋର କର୍ତ୍ତବ୍ୟ' ଏହିପରି ଭାବ ଟିକିଏ ହେଲେ ନ ରହିବା ହିଁ 'ମୁଁ କର୍ତ୍ତା' ଭାବ ନ ରହିବା।

**ପ୍ରଶ୍ନ—** ବୁଦ୍ଧି ଲିପ୍ତ ନ ହେବା କ'ଣ ?

**ଉତ୍ତର—** କର୍ମମାନଙ୍କରେ ଏବଂ ସେମାନଙ୍କ ଫଳରୂପୀ ସ୍ତ୍ରୀ, ପୁତ୍ର, ଧନ, ଗୃହ, ମାନ, ବଡ଼ିମା, ସ୍ୱର୍ଗସୁଖ ଆଦି ଇହଲୋକର ଓ ପରଲୋକର ସମସ୍ତ ପଦାର୍ଥମାନଙ୍କରେ ମମତ୍ୱ, ଆସକ୍ତି ଓ କାମନା ନ ରହିବା, କୌଣସି କର୍ମରେ ବା ତାହାର ଫଳରେ ନିଜର କୌଣସିପ୍ରକାର ସମ୍ବନ୍ଧ ମଧ୍ୟ ନ ରଖିବା ତଥା ସେସବୁକୁ ସ୍ୱପ୍ନର କର୍ମପରି ଓ ବିଷୟଭୋଗପରି କ୍ଷଣିକ, ନାଶବାନ୍ ଓ କଳ୍ପିତ ବୋଲି ବୁଝିଯିବାରୁ ଅନ୍ତଃକରଣରେ ସେସବୁର କୌଣସି ବି ସଂସ୍କାର ସଂଗୃହୀତ ନ ହେବା ହିଁ ବୁଦ୍ଧି ଲିପ୍ତ ନ ହେବା।

**ପ୍ରଶ୍ନ—** 'ସେହି ପୁରୁଷ ଏହିସବୁ ଲୋକଙ୍କୁ ମାରିଦେଲେ ମଧ୍ୟ ବାସ୍ତବରେ ମାରନ୍ତି ନାହିଁ ଓ ପାପରେ ବାନ୍ଧିହୁଅନ୍ତି ନାହିଁ'— ଏହି ବାକ୍ୟର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ଆତ୍ମସ୍ୱରୂପକୁ ଭଲଭାବରେ ଜାଣିଥିବାରୁ ଯାହାଙ୍କର ଅଜ୍ଞାନଜନିତ ଅହଂଭାବ ସର୍ବଥା ନଷ୍ଟ ହୋଇଯାଇଛି, ମନ, ବୁଦ୍ଧି, ଇନ୍ଦ୍ରିୟ ଏବଂ ଶରୀରରେ ଅହଂତ୍ୱ-ମମତ୍ୱ ସର୍ବଥା ଶୂନ୍ୟ ହୋଇଯାଇଥିବାରୁ ସେମାନଙ୍କଦ୍ୱାରା ହେଉଥିବା କର୍ମମାନଙ୍କ ସହିତ ବା କର୍ମମାନଙ୍କ ଫଳ ସହିତ ଯାହାଙ୍କର କୌଣସି ବି ସମ୍ବନ୍ଧ ନାହିଁ, ସେହି ପୁରୁଷଙ୍କ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଲୋକସଂଗ୍ରହ ନିମନ୍ତେ ପ୍ରାରବ୍ଧ ଅନୁସାରେ ଯେଉଁ କର୍ମ କରାଯାଏ, ତାହା ଶାସ୍ତ୍ରାନୁକୂଳ ଓ ସମସ୍ତଙ୍କର ହିତକାରକ ହିଁ ହୁଏ। କାରଣ, ଅହଂତ୍ୱ, ମମତ୍ୱ, ଆସକ୍ତି ଓ ସ୍ୱାର୍ଥବୁଦ୍ଧି ନ ଥିବାରୁ ତାଙ୍କ ଦ୍ୱାରା ପାପକର୍ମ ହେବାର କୌଣସି କାରଣ ରହେ ନାହିଁ। ତେଣୁ ଅଗ୍ନି, ବାୟୁ ଓ ଜଳ ଆଦିଦ୍ୱାରା ପ୍ରାରବ୍ଧବଶତଃ କୌଣସି ପ୍ରାଣୀର ମୃତ୍ୟୁ ହୋଇଗଲେ ବି ଅଗ୍ନି, ବାୟୁ ଆଦି ଯେପରି ବାସ୍ତବରେ ସେହି ପ୍ରାଣୀକୁ ମାରନ୍ତି ନାହିଁ, କି ସେହି କର୍ମରେ ବାନ୍ଧିହୁଅନ୍ତି ନାହିଁ, ଉପରୋକ୍ତ ମହାପୁରୁଷ ସେହିପରି ଲୋକଦୃଷ୍ଟିରୁ ସ୍ୱଧର୍ମ ପାଳନ କରିବା ସମୟରେ ଯଜ୍ଞ, ଦାନ ଓ ତପ ଆଦି ଶୁଭକର୍ମ କରି ମଧ୍ୟ ସେସବୁର ଯେ କର୍ତ୍ତା ହୁଅନ୍ତି ନାହିଁ ଏବଂ ସେସବୁର ଫଳରେ ଯେ ବାନ୍ଧିହୁଅନ୍ତି ନାହିଁ, ତାହା ଆଉ କହିବାର ବା କି ଆବଶ୍ୟକ? କ୍ଷାତ୍ରଧର୍ମରେ ସ୍ଥିତ ପୁରୁଷ ଯେପରି କୌଣସି କାରଣରୁ ସକଳ ପ୍ରାଣୀଙ୍କ ସଂହାରରୂପକ କ୍ରୂରକର୍ମ କରିବାର ଅବସର ଆସିଗଲେ ତାହା କରି ମଧ୍ୟ ତାହାର କର୍ତ୍ତା ହୁଅନ୍ତି ନାହିଁ, କି ସେହିକର୍ମର ଫଳରେ ବାନ୍ଧିହୁଅନ୍ତି ନାହିଁ, ସେହି ପୁରୁଷ ବି ସେପରି ଲୋକଦୃଷ୍ଟିରୁ ସମସ୍ତ କର୍ମ କରୁଥିଲେ ମଧ୍ୟ ସେହି କର୍ମମାନଙ୍କ ବନ୍ଧନରୁ ସର୍ବଥା ମୁକ୍ତ ରହନ୍ତି।

ଅଭିପ୍ରାୟ ଏହି ଯେ, ଭଗବାନ୍ ଯେପରି ସମ୍ପୂର୍ଣ୍ଣ ଜଗତର ଉତ୍ପତ୍ତି, ପାଳନ ଓ ସଂହାର ଆଦି କାର୍ଯ୍ୟ କରି ମଧ୍ୟ ବାସ୍ତବରେ ତାହାର କର୍ତ୍ତା ନୁହଁନ୍ତି (୪/୧୩) ଏବଂ ସେହି କର୍ମ ସହିତ ତାଙ୍କର କୌଣସି ସମ୍ବନ୍ଧ ନ ଥାଏ (୪/୧୪; ୯/୯); ସାଂଖ୍ୟଯୋଗୀଙ୍କର ମଧ୍ୟ ସେହିପରି ସେମାନଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ହେଉଥିବା କୌଣସି ବି କର୍ମ ସହିତ କୌଣସି-ପ୍ରକାର ସମ୍ବନ୍ଧ ରହେ ନାହିଁ। ଅବଶ୍ୟ ଏ କଥା ସତ ଯେ, ସାଂଖ୍ୟଯୋଗୀଙ୍କର ଅନ୍ତଃକରଣ ଅତ୍ୟନ୍ତ ଶୁଦ୍ଧ ତଥା ଅହଂତ୍ୱ, ମମତ୍ୱ, ଆସକ୍ତି ଓ ସ୍ୱାର୍ଥବୁଦ୍ଧିରୁ ରହିତ ହୋଇଥିବାରୁ ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ରାଗ-ଦ୍ୱେଷ ଓ ଅଜ୍ଞାନମୂଳକ ଚୋରି, ବ୍ୟଭିଚାର, ମିଥ୍ୟାଭାଷଣ, ହିଂସା, କପଟ, ଦମ୍ଭ ଆଦି କୌଣସିପ୍ରକାର ପାପକର୍ମ ହୁଏ ନାହିଁ; ତାଙ୍କର ସମସ୍ତ କ୍ରିୟା ବର୍ଣ୍ଣାଶ୍ରମ ଓ ପରିସ୍ଥିତି ଅନୁସାରେ ଶାସ୍ତ୍ରାନୁକୂଳ ହିଁ ହୁଏ। ଏଥିପାଇଁ ତାଙ୍କୁ କୌଣସିପ୍ରକାର ପ୍ରଯତ୍ନ ମଧ୍ୟ କରିବାକୁ ପଡ଼େ ନାହିଁ; ତାଙ୍କର ସ୍ୱଭାବ ହିଁ ଏହିପରି ହୋଇଯାଇଥାଏ।

*ସମ୍ବନ୍ଧ – ଏପରିଭାବରେ ସନ୍ନ୍ୟାସ (ଜ୍ଞାନଯୋଗ)ର ତତ୍ତ୍ୱ ବୁଝାଇବା ପାଇଁ ଆତ୍ମାର ଅକର୍ତ୍ତାପଣ ପ୍ରତିପାଦନ କରିସାରି ବର୍ତ୍ତମାନ ତାହା ଅନୁସାରେ କର୍ମର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଭଲଭାବରେ ବୁଝାଇଦେବାପାଇଁ ଭଗବାନ୍ କର୍ମପ୍ରେରଣା ଓ କର୍ମସଂଗ୍ରହ ପ୍ରତିପାଦନ କରୁଛନ୍ତି—*

**ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା।**
**କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଂଗ୍ରହଃ॥ ୧୮ ॥**

**ଅନ୍ୱୟ –** **ପରିଜ୍ଞାତା** = ଜ୍ଞାତା; **ଜ୍ଞାନମ୍** = ଜ୍ଞାନ (ଏବଂ); **ଜ୍ଞେୟମ୍** = ଜ୍ଞେୟ; **ତ୍ରିବିଧା** = ତ୍ରିବିଧ (ତିନିପ୍ରକାର); **କର୍ମଚୋଦନା** = କର୍ମପ୍ରେରଣା; (ଏବଂ) **କର୍ତ୍ତା** = କର୍ତ୍ତା; **କରଣମ୍** = କରଣ (ତଥା); **କର୍ମ** = କ୍ରିୟା; **ଇତି** = ଏହା; **ତ୍ରିବିଧଃ** = ତ୍ରିବିଧ; **କର୍ମସଂଗ୍ରହଃ** = କର୍ମସଂଗ୍ରହ।

**ଜ୍ଞାତା, ଜ୍ଞାନ ଓ ଜ୍ଞେୟ – ଏହା ହେଉଛି ତ୍ରିବିଧ କର୍ମ-ପ୍ରେରଣା ଏବଂ କର୍ତ୍ତା, କରଣ ତଥା କ୍ରିୟା – ଏହା ହେଉଛି ତ୍ରିବିଧ କର୍ମସଂଗ୍ରହ।॥ ୧୮ ॥**

**ପ୍ରଶ୍ନ – ଜ୍ଞାତା, ଜ୍ଞାନ ଓ ଜ୍ଞେୟ –** ଏହି ତିନୋଟି ପଦ କେଉଁ କେଉଁ ତତ୍ତ୍ୱର ବାଚକ ତଥା ଏମାନଙ୍କୁ ତ୍ରିବିଧ କର୍ମପ୍ରେରଣା କହିବାର ଭାବ କ'ଣ?

**ଉତ୍ତର –** କୌଣସି ପଦାର୍ଥର ସ୍ୱରୂପ ନିଶ୍ଚୟ କରୁଥିବା ଲୋକଙ୍କୁ **ଜ୍ଞାତା** କହନ୍ତି। ସେ ଯେଉଁ ବୃତ୍ତିଦ୍ୱାରା ବସ୍ତୁର ସ୍ୱରୂପ ନିର୍ଣ୍ଣୟ କରନ୍ତି, ତାହାର ନାମ **ଜ୍ଞାନ**

ଏବଂ ଯେଉଁ ବସ୍ତୁର ସ୍ୱରୂପ ନିର୍ଣ୍ଣୟ କରାଯାଏ, ତାହାର ନାମ **ଜ୍ଞେୟ**। ଏମାନଙ୍କୁ କର୍ମ-ପ୍ରେରଣା କହି ଦେଖାଇଦିଆଯାଇଛି ଯେ, ଏହି ତିନୋଟିର ସଂଯୋଗରୁ ହିଁ ମନୁଷ୍ୟର କର୍ମରେ ପ୍ରବୃତ୍ତି ହୁଏ ଅର୍ଥାତ୍ ଏହି ତିନୋଟିର ସମ୍ବନ୍ଧ ହିଁ ମନୁଷ୍ୟଙ୍କୁ କର୍ମରେ ପ୍ରବୃତ୍ତ କରାଇଦିଏ। କାରଣ ଯେତେବେଳେ ଅଧିକାରୀ ପୁରୁଷ ଜ୍ଞାନବୃତ୍ତିଦ୍ୱାରା ନିଶ୍ଚୟ କରିନିଅନ୍ତି ଯେ, ତାଙ୍କୁ ଅମୁକ ଅମୁକ ବସ୍ତୁଦ୍ୱାରା ଅମୁକ ପ୍ରକାରେ ଅମୁକ କର୍ମ କରିବାକୁ ହେବ, ସେତେବେଳେ ତାଙ୍କର ସେହି କର୍ମରେ ପ୍ରବୃତ୍ତି ହୁଏ।

**ପ୍ରଶ୍ନ – କର୍ତ୍ତା, କରଣ ଓ କର୍ମ –** ଏହି ତିନୋଟି ପଦ କେଉଁ କେଉଁ ତତ୍ତ୍ୱର ବାଚକ ତଥା ଏହା ତ୍ରିବିଧ କର୍ମସଂଗ୍ରହ – କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଦେଖିବା, ଶୁଣିବା, ବୁଝିବା, ସ୍ମରଣ କରିବା, ଖାଇବା, ପିଇବା ଆଦି ସମସ୍ତ କ୍ରିୟା କରୁଥିବା ପ୍ରକୃତିସ୍ଥ ପୁରୁଷଙ୍କୁ **କର୍ତ୍ତା** କହନ୍ତି; ତାହାର ଯେଉଁ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଉପରୋକ୍ତ ସମସ୍ତ କ୍ରିୟା କରାଯାଏ, ସେମାନଙ୍କ ବାଚକ **କରଣ**। ଏବଂ ଏଠାରେ **କର୍ମ** ପଦଟି ହେଉଛି ଉପରୋକ୍ତ ସମସ୍ତ କ୍ରିୟାର ବାଚକ। 'ଏହା ତ୍ରିବିଧ କର୍ମସଂଗ୍ରହ' – କହି ଦେଖାଇଦିଆଯାଇଛି ଯେ, ଏହି ତିନୋଟିର ସଂଯୋଗରେ ହିଁ କର୍ମସଂଗ୍ରହ ହୁଏ; କାରଣ ଯେତେବେଳେ ମନୁଷ୍ୟ ସ୍ୱୟଂ କର୍ତ୍ତା ହୋଇ ନିଜର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା କ୍ରିୟା କରି କୌଣସି କର୍ମ କରେ, ସେତେବେଳେ ଯାଇ କର୍ମ ହୁଏ, ଏହା ବିନା କୌଣସି ବି କର୍ମ ହୋଇପାରେ ନାହିଁ। ଚଉଦ ଶ୍ଳୋକରେ କର୍ମସିଦ୍ଧିର ଯେଉଁ ଅଧିଷ୍ଠାନାଦି ପାଞ୍ଚଟି କାରଣ କୁହାଯାଇଛି, ସେଥିମଧ୍ୟରୁ ଅଧିଷ୍ଠାନ ଓ ଦୈବକୁ ଛାଡ଼ି ଅବଶିଷ୍ଟ ତିନୋଟିକୁ କର୍ମସଂଗ୍ରହ ନାମ ଦିଆଯାଇଛି; କାରଣ ସେହି ପାଞ୍ଚୋଟିମଧ୍ୟରେ ଉପରୋକ୍ତ ତିନୋଟି କାରଣ ହିଁ ମୁଖ୍ୟ।

*ସମ୍ବନ୍ଧ – ଏପରିଭାବରେ ସାଂଖ୍ୟଯୋଗ ସିଦ୍ଧାନ୍ତଦ୍ୱାରା କର୍ମପ୍ରେରଣା ଓ କର୍ମସଂଗ୍ରହ ନିରୂପଣ କରି ଭଗବାନ୍ ବର୍ତ୍ତମାନ ତତ୍ତ୍ୱଜ୍ଞାନର ସହାୟକ ସାତ୍ତ୍ୱିକ ଭାବକୁ ଗ୍ରହଣ କରିବାପାଇଁ ଏବଂ ତାହାର ବିରୋଧୀ ରାଜସ, ତାମସ ଭାବକୁ ତ୍ୟାଗ କରିବାପାଇଁ ଉପରୋକ୍ତ କର୍ମପ୍ରେରଣା ଓ କର୍ମସଂଗ୍ରହ ନାମରେ କୁହାଯାଇଥିବା ଜ୍ଞାନ ଆଦିରେ ଜ୍ଞାନ, କର୍ମ ଓ କର୍ତ୍ତାର ସାତ୍ତ୍ୱିକ, ରାଜସ ଓ ତାମସ – ଏପରି ତ୍ରିବିଧ ଭେଦକୁ କ୍ରମଶଃ ବୁଝାଇବେବାର ପ୍ରସ୍ତାବନା କରୁଛନ୍ତି–*

## ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ ।
## ପ୍ରୋଚ୍ୟତେ ଗୁଣସଂଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି ॥ ୧୯ ॥

**ଅନ୍ୱୟ –** **ଗୁଣସଂଖ୍ୟାନେ** = ଗୁଣମାନଙ୍କର ସଂଖ୍ୟା କରୁଥିବା ଶାସ୍ତ୍ରରେ; **ଜ୍ଞାନମ୍** = ଜ୍ଞାନ; **ଚ** = ଏବଂ; **କର୍ମ** = କର୍ମ; **ଚ** = ଏବଂ; **କର୍ତ୍ତା** = କର୍ତ୍ତା **ଗୁଣଭେଦତଃ** = ଗୁଣଭେଦରେ; **ତ୍ରିଧା** = ତିନି ତିନିପ୍ରକାରର; **ଏବ** = ହିଁ; **ପ୍ରୋଚ୍ୟତେ** = କୁହାଯାଇଛି; **ତାନି** = ସେଗୁଡ଼ିକୁ; **ଅପି** = ମଧ୍ୟ (ତୁମେ ମୋଠାରୁ); **ଯଥାବତ୍** = ଭଲଭାବରେ; **ଶୃଣୁ** = ଶୁଣ।

**ଗୁଣମାନଙ୍କର ସଂଖ୍ୟା ନିରୂପଣ କରୁଥିବା ଶାସ୍ତ୍ରରେ ଜ୍ଞାନ, କର୍ମ ଏବଂ କର୍ତ୍ତା – ଗୁଣଭେଦରେ ତିନି ତିନିପ୍ରକାରର ବୋଲି ହିଁ କୁହାଯାଇଛି; ତାହା ମଧ୍ୟ ତୁମେ ମୋଠାରୁ ଭଲଭାବରେ ଶୁଣ ॥ ୧୯ ॥**

**ପ୍ରଶ୍ନ – ଗୁଣସଂଖ୍ୟାନେ** ପଦଟି କାହାର ବାଚକ ତଥା ଗୁଣଭେଦରେ ତିନି ତିନିପ୍ରକାରର ଜ୍ଞାନ, କର୍ମ ଓ କର୍ତ୍ତା ବିଷୟ ଶୁଣିବାକୁ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁ ଶାସ୍ତ୍ରରେ ସତ୍ତ୍ୱ, ରଜ ଓ ତମ – ଏହି ତିନି ଗୁଣ ସହିତ ସମ୍ବନ୍ଧଦୃଷ୍ଟିରୁ ସମସ୍ତ ପଦାର୍ଥର ଭିନ୍ନ ଭିନ୍ନ ଭେଦଗୁଡ଼ିକର ଗଣନା କରାଯାଏ, ଗୁଣସଂଖ୍ୟାନେ ପଦଟି ହେଉଛି ସେହି ଶାସ୍ତ୍ରର ବାଚକ। ଏଣୁ ସେଥିରେ କୁହାଯାଇଥିବା ଗୁଣଭେଦରେ ତିନି ତିନିପ୍ରକାରର ଜ୍ଞାନ, କର୍ମ ଓ କର୍ତ୍ତା ବିଷୟ ଶୁଣିବାପାଇଁ କହି ଭଗବାନ୍ ସେହି ଶାସ୍ତ୍ରକୁ ଏହି ବିଷୟରେ ସମ୍ମାନ ଦେଉଛନ୍ତି ଏବଂ ସେ କହିବାକୁ ଯାଉଥିବା ଉପଦେଶ ମନ ଦେଇ ଶୁଣିବାନିମନ୍ତେ ଅର୍ଜୁନଙ୍କର ଧ୍ୟାନ ଆକର୍ଷଣ କରୁଛନ୍ତି।

ମନେ ରଖିବା ଉଚିତ ଯେ, ଜ୍ଞାତା ଏବଂ କର୍ତ୍ତା ପୃଥକ୍ ପୃଥକ୍ ନୁହଁନ୍ତି; ତେଣୁ ଭଗବାନ୍ ଜ୍ଞାତାଙ୍କର ବିଭିନ୍ନ ପ୍ରକାର ପୃଥକ୍‌ଭାବରେ କହି ନାହାନ୍ତି। ତିନି ପ୍ରକାର କରଣ ବିଷୟ ବୁଦ୍ଧି ଓ ଧୃତି ନାମରେ ଏବଂ ତିନି ପ୍ରକାର ଜ୍ଞେୟ ସୁଖ ନାମରେ ପରେ କହିବେ। ତେଣୁ ଏଠାରେ ପୂର୍ବୋକ୍ତ ଛଅଟି ପଦାର୍ଥ ମଧ୍ୟରୁ ତିନୋଟିର ବିଭାଗ ଗୁଡ଼ିକ ପ୍ରଥମେ କହିବାକୁ ସଂକେତ ଦେଉଛନ୍ତି।

*ସମ୍ବନ୍ଧ — ପୂର୍ବଶ୍ଳୋକରେ ଜ୍ଞାନ, କର୍ମ ଓ କର୍ତ୍ତାର ସାତ୍ତ୍ୱିକ, ରାଜସ ଓ ତାମସ ଲକ୍ଷଣଗୁଡ଼ିକ କ୍ରମଶଃ କହିବାର ଯେଉଁ ପ୍ରସ୍ତାବନା କରିଥିଲେ, ସେହି ଅନୁସାରେ ପ୍ରଥମେ ସାତ୍ତ୍ୱିକ ଜ୍ଞାନର ଲକ୍ଷଣ କହୁଛନ୍ତି—*

**ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ।**
**ଅବିଭକ୍ତଂ ବିଭକ୍ତେଷୁ ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍॥ ୨୦ ॥**

**ଅନ୍ୱୟ —** **ଯେନ** = ଯେଉଁ ଜ୍ଞାନଦ୍ୱାରା (ମନୁଷ୍ୟ); **ବିଭକ୍ତେଷୁ** = ପୃଥକ୍ ପୃଥକ୍; **ସର୍ବଭୂତେଷୁ** = ସମସ୍ତ ଭୂତମାନଙ୍କରେ; **ଏକମ୍** = ଏକ; **ଅବ୍ୟୟମ୍** = ଅବିନାଶୀ; **ଭାବମ୍** = ପରମାତ୍ମଭାବକୁ; **ଅବିଭକ୍ତମ୍** = ବିଭାଗରହିତ (ସମଭାବରେ ସ୍ଥିତ ରହିଥିବାର); **ଈକ୍ଷତେ** = ଦେଖେ; **ତତ୍** = ସେହି; **ଜ୍ଞାନମ୍** = ଜ୍ଞାନକୁ (ତୁମେ); **ସାତ୍ତ୍ୱିକମ୍** = ସାତ୍ତ୍ୱିକ (ଜ୍ଞାନ ବୋଲି); **ବିଦ୍ଧି** = ଜାଣ।

**ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ପୃଥକ୍ ପୃଥକ୍ ସକଳ ପ୍ରାଣୀଙ୍କ ଠାରେ ଏକ ଅବିନାଶୀ ପରମାତ୍ମଭାବକୁ ହିଁ ବିଭାଗରହିତ ହୋଇ ସମଭାବରେ ରହିଥିବାର ଦେଖେ, ସେହି ଜ୍ଞାନକୁ ତୁମେ ସାତ୍ତ୍ୱିକ ବୋଲି ଜାଣ॥ ୨୦ ॥**

**ପ୍ରଶ୍ନ —** ଏଠାରେ ଯେନ ପଦଟି କାହାର ବାଚକ ତଥା ତାହାଦ୍ୱାରା ପୃଥକ୍ ପୃଥକ୍ ଭୂତମାନଙ୍କରେ ଏକ ଅବିନାଶୀ ପରମାତ୍ମଭାବକୁ ଅବିଭକ୍ତ ହୋଇ ରହିଥିବାର ଦେଖିବା କ'ଣ ?

**ଉତ୍ତର —** **ଯେନ** ପଦଟି ଏଠାରେ ସାଂଖ୍ୟଯୋଗ-ସାଧନାଦ୍ୱାରା ମିଳୁଥିବା ସେହି ଅନୁଭବର ବାଚକ, ଯାହାର ବର୍ଣ୍ଣନା ୬ଷ୍ଠ ଅଧ୍ୟାୟର ଅଣତିରିଶ ଶ୍ଳୋକରେ ଏବଂ ତେର ଅଧ୍ୟାୟର ସତେଇଶ ଶ୍ଳୋକରେ କରାଯାଇଛି। ଆକାଶତତ୍ତ୍ୱକୁ ଜାଣିଥିବା ମନୁଷ୍ୟ ଯେପରି ଘଟ, ଗୃହ, ଗୁମ୍ଫା, ସ୍ୱର୍ଗ, ପାତାଳ ଆଦି ସମସ୍ତ ବସ୍ତୁ ସହିତ ସକଳ ବ୍ରହ୍ମାଣ୍ଡରେ ଗୋଟିଏମାତ୍ର ଆକାଶତତ୍ତ୍ୱକୁ ଦେଖେ, ଜ୍ଞାନୀ ସେହିପରି ଲୋକଦୃଷ୍ଟିରୁ ଭିନ୍ନ ଭିନ୍ନ ପ୍ରତୀତ ହେଉଥିବା ସମସ୍ତ ଚରାଚର ପ୍ରାଣୀଙ୍କ ମଧ୍ୟରେ ନିଜର ଅନୁଭବଦ୍ୱାରା ଏକ ଅଦ୍ୱିତୀୟ, ଅବିନାଶୀ, ନିର୍ବିକାର ଜ୍ଞାନସ୍ୱରୂପ ପରମାତ୍ମଭାବ ହିଁ ଅବିଭକ୍ତ ହୋଇ ସମଭାବରେ ବ୍ୟାପ୍ତ ରହିଥିବା ଦେଖନ୍ତି, ଅର୍ଥାତ୍ ଲୋକଦୃଷ୍ଟିରୁ ଭିନ୍ନ ଭିନ୍ନ ପ୍ରତୀତ ହେଉଥିବା ସମସ୍ତ ପ୍ରାଣୀମାନଙ୍କୁ ଏବଂ ସ୍ୱୟଂ ନିଜକୁ ଏକ ଅବିନାଶୀ ପରମାତ୍ମାଙ୍କ ଠାରୁ ଅଭିନ୍ନ ବୋଲି ବୁଝିପାରନ୍ତି। ଏହା ହିଁ ପୃଥକ୍ ପୃଥକ୍ ଭୂତମାନଙ୍କ ଠାରେ ଏକ ଅବିନାଶୀ ପରମାତ୍ମଭାବକୁ ଅବିଭକ୍ତ ରହିଥିବାର ଦେଖିବା।

**ପ୍ରଶ୍ନ —** 'ଏହି ଜ୍ଞାନକୁ ତୁମେ ସାତ୍ତ୍ୱିକ ବୋଲି ଜାଣ' — ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଏପରି ଯଥାର୍ଥ ଅନୁଭବ ହିଁ ବାସ୍ତବରେ ସାତ୍ତ୍ୱିକ ଜ୍ଞାନ ଅର୍ଥାତ୍ ଶୁଦ୍ଧ ଜ୍ଞାନ। ତେଣୁ କଲ୍ୟାଣକାମୀ ମନୁଷ୍ୟ ଏହାକୁ ହିଁ ପାଇବାକୁ ଚେଷ୍ଟା କରିବା ଉଚିତ। ଏହା ଭିନ୍ନ ବାକି ଯେତେ ବି ସାଂସାରିକ ଜ୍ଞାନ ରହିଛି, ତାହା ନାମମାତ୍ର ଜ୍ଞାନ; ସେସବୁ ବାସ୍ତବିକ ଜ୍ଞାନ ନୁହେଁ।

*ସମ୍ବନ୍ଧ — ବର୍ତ୍ତମାନ ରାଜସ ଜ୍ଞାନର ଲକ୍ଷଣ କହୁଛନ୍ତି—*

**ପୃଥକ୍ତ୍ୱେନ ତୁ ଯଜ୍‌ଜ୍ଞାନଂ ନାନାଭାବାନ୍ ପୃଥଗ୍‌ବିଧାନ୍।**
**ବେତ୍ତି ସର୍ବେଷୁ ଭୂତେଷୁ ତଜ୍‌ଜ୍ଞାନଂ ବିଦ୍ଧି ରାଜସମ୍॥ ୨୧ ॥**

**ଅନ୍ୱୟ —** **ତୁ** = କିନ୍ତୁ; **ଯତ୍** = ଯେଉଁ; **ଜ୍ଞାନମ୍** = ଜ୍ଞାନ (ଅର୍ଥାତ୍ ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ); **ସର୍ବେଷୁ** = ସକଳ; **ଭୂତେଷୁ** = ଭୂତମାନଙ୍କରେ; **ପୃଥଗ୍‌ବିଧାନ୍** = ବିଭିନ୍ନପ୍ରକାର; **ନାନାଭାବାନ୍** = ନାନା ଭାବମାନଙ୍କୁ;

ପୃଥକ୍ତ୍ୱେନ = ପୃଥକ୍ ପୃଥକ୍; ବେତ୍ତି = ଜାଣେ; ତତ୍ = ସେହି; ଜ୍ଞାନମ୍ = ଜ୍ଞାନକୁ (ତୁମେ); ରାଜସମ୍ = ରାଜସ (ବୋଲି); ବିଦ୍ଧି = ଜାଣ।

**କିନ୍ତୁ ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ସକଳ ଭୂତଙ୍କ ଠାରେ ଭିନ୍ନ ଭିନ୍ନପ୍ରକାରର ନାନା ଭାବକୁ ଭିନ୍ନ ଭିନ୍ନ ବୋଲି ବୁଝେ, ସେହି ଜ୍ଞାନକୁ ତୁମେ ରାଜସ ବୋଲି ଜାଣ।। ୨୧ ।।**

**ପ୍ରଶ୍ନ—** 'ସକଳ ଭୂତଙ୍କ ଠାରେ ଭିନ୍ନ ଭିନ୍ନ ପ୍ରକାରର ନାନା ଭାବକୁ ଭିନ୍ନ ଭିନ୍ନ ବୋଲି ଜାଣିବାର ଅଭିପ୍ରାୟ କ'ଣ ?

**ଉତ୍ତର—** କୀଟ, ପତଙ୍ଗ, ପଶୁ, ପକ୍ଷୀ, ମନୁଷ୍ୟ, ରାକ୍ଷସ ଓ ଦେବତା ଆଦି ଯେତେ ପ୍ରାଣୀ ଅଛନ୍ତି, ସେମାନଙ୍କ ଠାରେ ଆତ୍ମାକୁ ସେମାନଙ୍କ ଶରୀରର ଆକୃତିଭେଦରେ ଏବଂ ସ୍ୱଭାବଭେଦରେ ଭିନ୍ନ ଭିନ୍ନ ପ୍ରକାରର ଅନେକ ଓ ପୃଥକ୍ ପୃଥକ୍ ବୋଲି ବୁଝିବା, ଅର୍ଥାତ୍ ବୁଝିବା ଯେ, ପ୍ରତ୍ୟେକ ଶରୀରରେ ଆତ୍ମା ଅଲଗା ଅଲଗା ରହିଛି ଏବଂ ଆତ୍ମା ବହୁସଂଖ୍ୟକ ଓ ସେମାନେ ପରସ୍ପର ଭିନ୍ନ— ତାହା ହିଁ ସକଳ ଭୂତଙ୍କ ଠାରେ ଭିନ୍ନ ଭିନ୍ନ ପ୍ରକାରର ନାନା ଭାବକୁ ଭିନ୍ନ ଭିନ୍ନ ଦେଖିବା।

**ପ୍ରଶ୍ନ—** 'ସେହି ଜ୍ଞାନକୁ ତୁମେ ରାଜସ ବୋଲି ଜାଣ'— ଏହାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଦେଖାଉଛନ୍ତି ଯେ, ଉପରୋକ୍ତ ପ୍ରକାରର ଯେଉଁ ଅନୁଭବ, ତାହା ହେଉଛି ରାଜସ ଜ୍ଞାନ— ଅର୍ଥାତ୍ ନାମକୁମାତ୍ର ଜ୍ଞାନ; ତାହା ବାସ୍ତବିକ ଜ୍ଞାନ ନୁହେଁ। ଅଭିପ୍ରାୟ ଏହି ଯେ, ଆକାଶତତ୍ତ୍ୱ ଜାଣି ନ ଥିବା ମନୁଷ୍ୟ ଯେପରି ଭିନ୍ନ ଭିନ୍ନ ଘଟ, ମଠ ଆଦିରେ ପୃଥକ୍ ପୃଥକ୍ ପରିଚ୍ଛିନ୍ନ ଆକାଶ ଅଛି ବୋଲି ବୁଝେ ଏବଂ ସେଥିରେ ସ୍ଥିତ ସୁଗନ୍ଧ-ଦୁର୍ଗନ୍ଧାଦିକୁ ଆକାଶସହିତ ସମ୍ବନ୍ଧିତ ମାନି ଏକଠାରୁ ଅନ୍ୟକୁ ଭିନ୍ନ ବୁଝେ ଅଥଚ ତା'ର ସେହି ବୁଝିବା ଭ୍ରମ, ଠିକ୍ ସେହିପରି ଆତ୍ମତତ୍ତ୍ୱକୁ ନ ଜାଣିଥିବାରୁ ପ୍ରାଣୀମାନଙ୍କ ଶରୀରରେ ପରସ୍ପର ପୃଥକ୍ ପୃଥକ୍ ତଥା ଅନେକ ଆତ୍ମା ରହିଛି ବୋଲି ବୁଝିବା ମଧ୍ୟ ଭ୍ରମ ଅଟେ।

*ସମ୍ବନ୍ଧ— ବର୍ତ୍ତମାନ ତାମସ ଜ୍ଞାନର ଲକ୍ଷଣ କହୁଛନ୍ତି—*

**ଯତ୍ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତମହୈତୁକମ୍।**
**ଅତତ୍ତ୍ୱାର୍ଥବଦଳ୍ପଂ ଚ ତତ୍ତାମସମୁଦାହୃତମ୍।। ୨୨ ।।**

**ଅନ୍ୱୟ—** ତୁ = ପରନ୍ତୁ; ଯତ୍ = ଯାହା (ଯେଉଁ ଜ୍ଞାନଦ୍ୱାରା); ଏକସ୍ମିନ୍ = ଏକମାତ୍ର; କାର୍ଯ୍ୟେ = କାର୍ଯ୍ୟରୂପ ଶରୀରରେ (ହିଁ); କୃତ୍ସ୍ନବତ୍ = ସମସ୍ତପରି; ସକ୍ତମ୍ = (ତା ପ୍ରତି) ଆସକ୍ତ ହୁଏ; ଚ = ତଥା (ଯାହା); ଅହୈତୁକମ୍ = ଅଯୌକ୍ତିକ; ଅତତ୍ତ୍ୱାର୍ଥବତ୍ = ତାତ୍ତ୍ୱିକ ଅର୍ଥରୁ ରହିତ (ଏବଂ); ଅଳ୍ପମ୍ = ତୁଚ୍ଛ; ତତ୍ = ତାହାକୁ; ତାମସମ୍ = ତାମସ; ଉଦାହୃତମ୍ = କୁହାଯାଏ।

**ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ଏକମାତ୍ର କାର୍ଯ୍ୟରୂପ ଶରୀରରେ ହିଁ ସମ୍ପୂର୍ଣ୍ଣରୂପେ ଆସକ୍ତ ହୋଇଯାଏ ଏବଂ ଯାହା ଅଯୌକ୍ତିକ, ତାତ୍ତ୍ୱିକ ଅର୍ଥରୁ ରହିତ ତଥା ତୁଚ୍ଛ, ତାହାକୁ ତାମସ ବୋଲି କୁହାଯାଏ।। ୨୨ ।।**

**ପ୍ରଶ୍ନ—** ଏଠାରେ ତୁ ପଦର ଭାବ କ'ଣ ?

**ଉତ୍ତର—** ପୂର୍ବୋକ୍ତ ସାତ୍ତ୍ୱିକ ଜ୍ଞାନଠାରୁ ଓ ରାଜସ ଜ୍ଞାନଠାରୁ ମଧ୍ୟ ଏହି ଜ୍ଞାନକୁ ଅତ୍ୟନ୍ତ ନିକୃଷ୍ଟ ବୋଲି ଦେଖାଇବାକୁ ଏଠାରେ ତୁ ଅବ୍ୟୟ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ—**'ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ଏକମାତ୍ର କାର୍ଯ୍ୟରୂପ ଶରୀରରେ ହିଁ ସମ୍ପୂର୍ଣ୍ଣରୂପେ ଆସକ୍ତ ହୋଇଯାଏ'— ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏହାଦ୍ୱାରା ତାମସ ଜ୍ଞାନର ପ୍ରଧାନ ଲକ୍ଷଣଟି କହିଦିଆଯାଇଛି। ଅଭିପ୍ରାୟ ଏହି ଯେ, ଯେଉଁ ବିପରୀତ ଜ୍ଞାନଦ୍ୱାରା ମନୁଷ୍ୟ ପ୍ରକୃତିର କାର୍ଯ୍ୟରୂପ ଶରୀରକୁ ହିଁ ନିଜର ସ୍ୱରୂପ ବୋଲି ଏବଂ ଏପରି ବୁଝି ସେହି କ୍ଷଣଭଙ୍ଗୁର ନାଶବାନ୍ ଶରୀର ହିଁ ସର୍ବସ୍ୱ

ବୋଲି ତା ପ୍ରତି ଆସକ୍ତ ରହେ, ଅର୍ଥାତ୍ ତାହାର ସୁଖରେ ସୁଖୀ ଓ ତାହାର ଦୁଃଖରେ ଦୁଃଖୀ ହୁଏ ତଥା ତାହାର ନାଶକୁ ସର୍ବନାଶ ବୋଲି ଭାବେ, ଆତ୍ମାକୁ ତାହାଠାରୁ ଭିନ୍ନ ବା ସର୍ବବ୍ୟାପୀ ବୋଲି ବୁଝେ ନାହିଁ— ସେହି ଜ୍ଞାନ ବାସ୍ତବରେ ଜ୍ଞାନ ନୁହେଁ। ତେଣୁ ଭଗବାନ୍ ଏହି ଶ୍ଳୋକରେ 'ଜ୍ଞାନ' ପଦର ପ୍ରୟୋଗ ମଧ୍ୟ କରି ନାହାନ୍ତି, କାରଣ ଏହି ବିପରୀତ ଜ୍ଞାନ ବାସ୍ତବରେ ଅଜ୍ଞାନ ହିଁ ଅଟେ।

**ପ୍ରଶ୍ନ –** ଏହି ଜ୍ଞାନକୁ **ଅହୈତୁକମ୍** ଅର୍ଥାତ୍ ଅଯୌକ୍ତିକ କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ବିବେକଶୀଳ ମନୁଷ୍ୟ ଏପରି ବୁଝନ୍ତି ନାହିଁ; କିଛି ବି ବୁଝିପାରୁଥିବା ମନୁଷ୍ୟ ବିଚାର କଲେ ଜଡ ଶରୀର ଓ ଚେତନ ଆତ୍ମାର ପ୍ରଭେଦ ବୁଝିଯାଏ; ତେଣୁ ଯେଉଁଠାରେ ଯୁକ୍ତି ଓ ବିବେକ ଥାଏ, ସେଠାରେ ଏପରି ଅଜ୍ଞାନ ରହିପାରେ ନାହିଁ।

**ପ୍ରଶ୍ନ –** ଏହି ଜ୍ଞାନକୁ ତାତ୍ତ୍ୱିକ ଅର୍ଥରୁ ରହିତ ଏବଂ 'ଅଳ୍ପ' ବୋଲି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାକୁ ତାତ୍ତ୍ୱିକ ଅର୍ଥରୁ ରହିତ ଓ 'ଅଳ୍ପ' କହି ଦେଖାଇଦିଆଯାଇଛି ଯେ, ଏହି ଜ୍ଞାନଦ୍ୱାରା ଯାହା ବୁଝିହୁଏ, ତାହା ଯଥାର୍ଥ ନୁହେଁ ଅର୍ଥାତ୍ ଏହା ବସ୍ତୁର ଯଥାର୍ଥ ସ୍ୱରୂପକୁ ବୁଝାଉଥିବା ଜ୍ଞାନ ନୁହେଁ। ଏହା ବିପର୍ଯ୍ୟ ଜ୍ଞାନ ଏବଂ ଅତ୍ୟନ୍ତ ତୁଚ୍ଛ। ଏଣୁ ଏହା ତ୍ୟାଜ୍ୟ।

**ପ୍ରଶ୍ନ –** 'ସେହି ଜ୍ଞାନକୁ ତାମସ କୁହାଯାଏ' – ଏହି କଥନର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହି କଥନଦ୍ୱାରା ଦର୍ଶାଯାଇଛି ଯେ, ଉପରୋକ୍ତ ଲକ୍ଷଣଯୁକ୍ତ ଯେଉଁ ବିପର୍ଯ୍ୟ ଜ୍ଞାନ, ତାହା ହେଉଛି ତାମସ– ଅର୍ଥାତ୍ ଅତ୍ୟନ୍ତ ତମୋଗୁଣୀ ମନୁଷ୍ୟମାନେ ହିଁ ଏପରି ବୁଝନ୍ତି; ସେହି ଲୋକଙ୍କ ବୁଦ୍ଧିବାଟି ଏପରି ହିଁ ହୋଇଥାଏ; କାରଣ ତମୋଗୁଣର କାର୍ଯ୍ୟକୁ ଅଜ୍ଞାନ କୁହାଯାଇଛି।

**ସମ୍ବନ୍ଧ –** ବର୍ତ୍ତମାନ ସାତ୍ତ୍ୱିକ କର୍ମର ଲକ୍ଷଣ କହୁଛନ୍ତି–

**ନିୟତଂ ସଙ୍ଗରହିତମରାଗଦ୍ୱେଷତଃ କୃତମ୍।**
**ଅଫଲପ୍ରେପ୍ସୁନା କର୍ମ ଯତ୍ତତ୍ସାତ୍ତ୍ୱିକମୁଚ୍ୟତେ॥ ୨୩ ॥**

**ଅନ୍ୱୟ –** **ଯତ୍** = ଯେଉଁ; **କର୍ମ** = କର୍ମ; **ନିୟତମ୍** = ଶାସ୍ତ୍ରବିଧିଦ୍ୱାରା ନିୟତ (ଏବଂ); **ସଙ୍ଗରହିତମ୍** = କର୍ତ୍ତାପଣଅଭିମାନରୁ ରହିତ (ତଥା); **ଅଫଳପ୍ରେପ୍ସୁନା** = ଫଳ ଇଚ୍ଛା କରୁ ନ ଥିବା ପୁରୁଷଙ୍କ ଦ୍ୱାରା; **ଅରାଗଦ୍ୱେଷତଃ** = ବିନା ରାଗଦ୍ୱେଷରେ; **କୃତମ୍** = କରାଯାଇଥାଏ; **ତତ୍** = ତାହା; **ସାତ୍ତ୍ୱିକମ୍** = ସାତ୍ତ୍ୱିକ; **ଉଚ୍ୟତେ** = କୁହାଯାଏ।

**ଯେଉଁ କର୍ମ ଶାସ୍ତ୍ରବିଧିଦ୍ୱାରା ନିୟତ ଏବଂ କର୍ତ୍ତାପଣର ଅଭିମାନରୁ ରହିତ ହୋଇ ଫଳ ଇଚ୍ଛା କରୁ ନ ଥିବା ପୁରୁଷଙ୍କ ଦ୍ୱାରା ବିନା ରାଗଦ୍ୱେଷରେ କରାଯାଏ, ତାହାକୁ ସାତ୍ତ୍ୱିକ କର୍ମ କୁହାଯାଏ।॥ ୨୩ ॥**

**ପ୍ରଶ୍ନ –** **ନିୟତମ୍** ବିଶେଷଣ ସହିତ **କର୍ମ** ପଦଟି ଏଠାରେ କେଉଁ କର୍ମମାନଙ୍କର ବାଚକ ତଥା **ନିୟତମ୍** ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ପ୍ରକୃତି ଓ ପରିସ୍ଥିତି ଅନୁଯାୟୀ ଯେଉଁ ମନୁଷ୍ୟଙ୍କ ପାଇଁ ଯେଉଁ କର୍ମଗୁଡ଼ିକ ଅବଶ୍ୟକର୍ତ୍ତବ୍ୟ ବୋଲି କୁହାଯାଇଛି, ଏଠାରେ **ନିୟତମ୍** ବିଶେଷଣ ସହିତ **କର୍ମ** ପଦଟି ହେଉଛି ସେହି ଶାସ୍ତ୍ରବିହିତ ଯଜ୍ଞ, ଦାନ, ତପ ତଥା ଜୀବିକା ଓ ଶରୀର ନିର୍ବାହପାଇଁ କରାଯାଉଥିବା ସମସ୍ତ ଶ୍ରେଷ୍ଠକର୍ମର ବାଚକ। **ନିୟତମ୍** ବିଶେଷଣ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, କେବଳ ଶାସ୍ତ୍ରବିହିତ ନିତ୍ୟନୈମିତ୍ତିକ ଆଦି କର୍ତ୍ତବ୍ୟକର୍ମ ହିଁ ସାତ୍ତ୍ୱିକ ହୋଇପାରେ; କାମ୍ୟକର୍ମ ଓ ନିଷିଦ୍ଧକର୍ମ ସାତ୍ତ୍ୱିକ ହୋଇପାରେ ନା।

**ପ୍ରଶ୍ନ –** **ସଙ୍ଗରହିତମ୍** ବିଶେଷଣର ଅଭିପ୍ରାୟ କ'ଣ ?

**ଉତ୍ତର –** ଏଠାରେ **ସଙ୍ଗର** ଅର୍ଥ ଆସକ୍ତି ନୁହେଁ; କାରଣ ଆସକ୍ତିର ଅଭାବ **ଅରାଗଦ୍ୱେଷତଃ** ପଦଦ୍ୱାରା ଅଲଗା କୁହାଯାଇଛି। ତେଣୁ କର୍ମରେ କର୍ତ୍ତାପଣ-ଅଭିମାନ

କରି ସେହି କର୍ମ ସହିତ ନିଜର ସମ୍ବନ୍ଧ ଯୋଡ଼ିଦେବାର ନାମ ସଙ୍ଗ ଏବଂ ଯେଉଁ କର୍ମରେ ଏପରି ସଙ୍ଗ ନାହିଁ, ଅର୍ଥାତ୍ ଯେଉଁ କର୍ମ ବିନା-କର୍ତ୍ତାପଣରେ ଏବଂ ବିନା-ଦେହାଭିମାନରେ କରାଯାଏ, ସେହି କର୍ମକୁ ସଙ୍ଗରହିତ କର୍ମ ବୋଲି ବୁଝିବାକୁ ହେବ। ତେଣୁ **ସଙ୍ଗରହିତମ୍** ବିଶେଷଣଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତ ଶାସ୍ତ୍ରବିହିତ କର୍ମଗୁଡ଼ିକ ମଧ୍ୟ **ସଙ୍ଗରହିତ** ହେବାରୁ ହିଁ ସାତ୍ତ୍ୱିକ ହୁଏ; ଅନ୍ୟଥା ସେସବୁ କର୍ମକୁ 'ସାତ୍ତ୍ୱିକ' ବୋଲାଯାଇପାରିବ ନାହିଁ।

**ପ୍ରଶ୍ନ —** **ଅଫଳପ୍ରେପ୍ସୁନା** ପଦ କାହାର ବାଚକ ଏବଂ ଏପରି ପୁରୁଷଙ୍କ ଦ୍ୱାରା ବିନା ରାଗ-ଦ୍ୱେଷରେ କରାଯାଉଥିବା କର୍ମ କିପରି କର୍ମକୁ କହନ୍ତି ?

**ଉତ୍ତର —** କର୍ମମାନଙ୍କର ଫଳସ୍ୱରୂପ ଇହଲୋକ ଓ ପରଲୋକରେ ଯେତେ ବି ଭୋଗ ରହିଛି, ସେଗୁଡ଼ିକରେ ମମତ୍ୱ ଓ ଆସକ୍ତି ଶୂନ୍ୟ ହୋଇଯିବାରୁ ଯାହାଙ୍କର ସେହି ଭୋଗମାନଙ୍କରେ ଟିକିଏ ବି ଆକାଂକ୍ଷା ରହେ ନାହିଁ, ଯେ କୌଣସି ବି କର୍ମଦ୍ୱାରା ନିଜର କୌଣସି ସ୍ୱାର୍ଥ ସିଦ୍ଧ କରିବାକୁ ଚାହାଁନ୍ତି ନାହିଁ, ଯେ ନିଜପାଇଁ କୌଣସି ବସ୍ତୁ ଲୋଡ଼ନ୍ତି ନାହିଁ— **ଅଫଳପ୍ରେପ୍ସୁ** ପଦଟି ହେଉଛି ସେପରି ସ୍ୱାର୍ଥବୁଦ୍ଧିରହିତ ପୁରୁଷଙ୍କର ବାଚକ। ଏପରି ପୁରୁଷଙ୍କ ଦ୍ୱାରା କର୍ମରେ ଆସକ୍ତି ଓ ଦ୍ୱେଷ ନ ରଖି ଯେଉଁ କର୍ମ କରାଯାଏ, ଯେଉଁ କର୍ମ ରାଗ-ଦ୍ୱେଷ ବିନା କେବଳ ଲୋକସଂଗ୍ରହପାଇଁ କରାଯାଏ, ସେହି କର୍ମକୁ ବିନା ରାଗ-ଦ୍ୱେଷରେ କରାଯାଉଥିବା କର୍ମ କହନ୍ତି।

**ପ୍ରଶ୍ନ —** 'ସେହି କର୍ମକୁ ସାତ୍ତ୍ୱିକ କହନ୍ତି'— ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ କର୍ମରେ ଉପରୋକ୍ତ ସମସ୍ତ ଲକ୍ଷଣ ପୂର୍ଣ୍ଣରୂପରେ ରହିଥାଏ, ସେହି କର୍ମ ପୂର୍ଣ୍ଣସାତ୍ତ୍ୱିକ। ଯଦି ଉପରୋକ୍ତ ଭାବମଧ୍ୟରୁ କୌଣସିଭାବର ନ୍ୟୂନତା ହୋଇଯାଏ, ତେବେ ତାହାକୁ ସାତ୍ତ୍ୱିକତାରେ ସେତିକି କମ୍ ବୋଲି ବୁଝିବା ଉଚିତ। ଏହାଛଡ଼ା ଏଥିରୁ ବୁଝିବାକୁ ହେବ ଯେ, ସତ୍ତ୍ୱଗୁଣରୁ ଏବଂ ସାତ୍ତ୍ୱିକକର୍ମରୁ ହିଁ ଜ୍ଞାନ ଉତ୍ପନ୍ନ ହୁଏ; ତେଣୁ ପରମାତ୍ମାଙ୍କ ତତ୍ତ୍ୱ ଜାଣିବାକୁ ଇଚ୍ଛା କରୁଥିବା ମନୁଷ୍ୟ ଉପରୋକ୍ତ ସାତ୍ତ୍ୱିକ କର୍ମ ହିଁ ଆଚରଣ କରିବା ଉଚିତ; ରାଜସ-ତାମସ କର୍ମ ଆଚରଣ କରି କର୍ମବନ୍ଧନରେ ପଡ଼ିବା ଉଚିତ ନୁହେଁ।

**ପ୍ରଶ୍ନ —** ଏହି ଶ୍ଳୋକରେ କୁହାଯାଇଥିବା ସାତ୍ତ୍ୱିକ କର୍ମ ଏବଂ ନବମ ଶ୍ଳୋକରେ କୁହାଯାଇଥିବା ସାତ୍ତ୍ୱିକ ତ୍ୟାଗ ମଧ୍ୟରେ ପାର୍ଥକ୍ୟ କ'ଣ ?

**ଉତ୍ତର —** ଏହି ଶ୍ଳୋକରେ ସାଂଖ୍ୟନିଷ୍ଠାଦୃଷ୍ଟିରୁ ସାତ୍ତ୍ୱିକକର୍ମର ଲକ୍ଷଣ କୁହାଯାଇଛି, ତେଣୁ **ସଙ୍ଗରହିତମ୍** ପଦଦ୍ୱାରା ସେଥିରେ କର୍ତ୍ତାପଣ ଅଭିମାନର ଅଭାବ ଏବଂ **ଅରାଗଦ୍ୱେଷତଃ** ପଦଦ୍ୱାରା ରାଗଦ୍ୱେଷର ଅଭାବ ମଧ୍ୟ ଦେଖାଇଦିଆଯାଇଛି; କିନ୍ତୁ ନବମ ଶ୍ଳୋକରେ କର୍ମଯୋଗଦୃଷ୍ଟିରୁ କରାଯାଉଥିବା କର୍ମମାନଙ୍କରେ ଆସକ୍ତି ଏବଂ ଫଳେଚ୍ଛାତ୍ୟାଗକୁ ହିଁ ସାତ୍ତ୍ୱିକତ୍ୟାଗ ବୋଲି କୁହାଯାଇଛି; ତେଣୁ ସେଠାରେ କର୍ତ୍ତାପଣର କଥା କୁହାଯାଇ ନାହିଁ, ବରଂ କର୍ତ୍ତବ୍ୟବୁଦ୍ଧିରେ କର୍ମ କରିବାକୁ କୁହାଯାଇଛି। ଏହା ହିଁ ଏହି ଦୁଇଟି ମଧ୍ୟରେ ଥିବା ପାର୍ଥକ୍ୟ। ଦୁହିଁଙ୍କର ଫଳ ତତ୍ତ୍ୱଜ୍ଞାନଦ୍ୱାରା ପରମାତ୍ମପ୍ରାପ୍ତି; ତେଣୁ କେବଳ ଅନୁଷ୍ଠାନପ୍ରଣାଳୀରେ ପାର୍ଥକ୍ୟ ରହିଛି; ବାସ୍ତବରେ କୌଣସି ପାର୍ଥକ୍ୟ ନାହିଁ।

**ସମ୍ବନ୍ଧ —** ଭଗବାନ୍ ବର୍ତ୍ତମାନ ରାଜସ କର୍ମର ଲକ୍ଷଣ କହୁଛନ୍ତି—

**ଯତ୍ତୁ କାମେପ୍ସୁନା କର୍ମ ସାହଂକାରେଣ ବା ପୁନଃ।**
**କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତମ୍॥ ୨୪ ॥**

ଅନ୍ୱୟ — ତୁ = ପରନ୍ତୁ; ଯତ୍ = ଯେଉଁ; **କର୍ମ** = କର୍ମ; **ବହୁଳାୟାସମ୍** = ବହୁତ ପରିଶ୍ରମଯୁକ୍ତ ହୋଇଥାଏ; **ପୁନଃ** = ତଥା; **କାମେପ୍ସୁନା** = ଭୋଗ ଇଚ୍ଛା କରୁଥିବା ପୁରୁଷଦ୍ୱାରା; **ବା** = ବା; **ସାହଂକାରେଣ** = ଅହଂକାରଯୁକ୍ତ ପୁରୁଷଦ୍ୱାରା; **କ୍ରିୟତେ** = କରାଯାଏ; **ତତ୍** = ସେହି କର୍ମ; **ରାଜସମ୍** = ରାଜସ; **ଉଦାହୃତମ୍** = କୁହାଯାଏ।

**ପରନ୍ତୁ ଯେଉଁ କର୍ମ ପରିଶ୍ରମବହୁଳ ହୋଇଥାଏ ତଥା ଭୋଗ ଇଚ୍ଛା କରୁଥିବା ପୁରୁଷଦ୍ୱାରା ବା ଅହଙ୍କାରଯୁକ୍ତ ପୁରୁଷଦ୍ୱାରା କରାଯାଏ, ସେହି କର୍ମକୁ ରାଜସକର୍ମ କୁହାଯାଏ॥ ୨୪ ॥**

**ପ୍ରଶ୍ନ –** **ବହୁଳାୟାସମ୍** ବିଶେଷଣ ସହିତ **କର୍ମ** ପଦଟି କେଉଁ କର୍ମର ବାଚକ ତଥା ଏହି ବିଶେଷଣ-ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର –** ଯେଉଁ କର୍ମମାନଙ୍କରେ ନାନାପ୍ରକାର ବହୁସଂଖ୍ୟକ କ୍ରିୟାର ବିଧାନ ଥାଏ, ତଥା ଶରୀରରେ ଅହଂକାର ରହିଥିବାରୁ ଯେଉଁ କର୍ମମାନଙ୍କୁ ମନୁଷ୍ୟ ବୋଝ ବୋଲି ବୁଝି ବଡ଼ ପରିଶ୍ରମ ଓ ଦୁଃଖର ସହିତ ପୂର୍ଣ୍ଣ କରେ, ଏଠାରେ **ବହୁଳାୟାସମ୍** ବିଶେଷଣ ସହିତ କର୍ମ ପଦଟି ହେଉଛି ସେପରି କାମ୍ୟକର୍ମ ଏବଂ ବ୍ୟାବହାରିକ କର୍ମମାନଙ୍କର ବାଚକ। ଏହି ବିଶେଷଣ ପ୍ରୟୋଗ କରି ସାତ୍ତ୍ୱିକ କର୍ମଠାରୁ ରାଜସ କର୍ମର ପାର୍ଥକ୍ୟ ସ୍ପଷ୍ଟ କରିଦିଆଯାଇଛି। ଅଭିପ୍ରାୟ ଏହି ଯେ, ସାତ୍ତ୍ୱିକ କର୍ମମାନଙ୍କରେ କର୍ତ୍ତାଙ୍କର ଶରୀରରେ ଅହଙ୍କାର ନ ଥାଏ ଏବଂ କର୍ମରେ କର୍ତ୍ତାପଣ ନ ଥାଏ; ତେଣୁ ସେ କୌଣସି କ୍ରିୟା କରିବାରେ କୌଣସିପ୍ରକାର ପରିଶ୍ରମ ତଥା କ୍ଳେଶ ଅନୁଭବ କରନ୍ତି ନାହିଁ। ତେଣୁ ତାଙ୍କର କର୍ମ ଆୟାସଯୁକ୍ତ ନୁହେଁ। କିନ୍ତୁ ରାଜସ କର୍ମରେ କର୍ତ୍ତାର ଶରୀରରେ ଅହଙ୍କାର ଥିବାରୁ ସେ ଶାରୀରିକ ପରିଶ୍ରମ ଏବଂ ଦୁଃଖହେତୁ ସ୍ୱୟଂ ଦୁଃଖୀ ହୁଏ। ତେଣୁ ତାକୁ ପ୍ରତ୍ୟେକ କ୍ରିୟାରେ ପରିଶ୍ରମ ବୋଧ ହୁଏ। ଏହା ବ୍ୟତୀତ ସାତ୍ତ୍ୱିକକର୍ମରେ କର୍ତ୍ତାଙ୍କ ଦ୍ୱାରା କେବଳ ଶାସ୍ତ୍ରଦୃଷ୍ଟିରୁ ବା ଲୋକଦୃଷ୍ଟିରୁ କର୍ତ୍ତବ୍ୟରୂପରେ ପ୍ରାପ୍ତ ହୋଇଥିବା କର୍ମ କରାଯାଏ; ତେଣୁ ତାଙ୍କ ଦ୍ୱାରା କର୍ମର ବିସ୍ତାର ହୁଏ ନାହିଁ; କିନ୍ତୁ ରାଜସକର୍ମର କର୍ତ୍ତା ଆସକ୍ତି ଓ କାମନାଦ୍ୱାରା ପ୍ରେରିତ ହୋଇ ପ୍ରତିଦିନ ନୂଆ ନୂଆ କର୍ମ ଆରମ୍ଭ କରୁଥାଏ; ଏହାଦ୍ୱାରା ତା'ର କର୍ମମାନଙ୍କର ବହୁତ ବିସ୍ତାର ହୋଇଯାଏ। ଏହି କାରଣରୁ ମଧ୍ୟ **ବହୁଳାୟାସମ୍** ବିଶେଷଣ ପ୍ରୟୋଗ କରି ବହୁତ ପରିଶ୍ରମଯୁକ୍ତ କର୍ମମାନଙ୍କୁ ରାଜସ କୁହାଯାଇଛି।

**ପ୍ରଶ୍ନ –** **କାମେପ୍ସୁନା** ପଦ କେଉଁ ପୁରୁଷର ବାଚକ ?

**ଉତ୍ତର –** ଇନ୍ଦ୍ରିୟଭୋଗରେ ମମତ୍ୱ ଏବଂ ଆସକ୍ତି ରହିଥିବାରୁ ଯେ ନିରନ୍ତର ନାନାପ୍ରକାର ଭୋଗ କାମନା କରୁଥାଏ ତଥା ଯେ ଯାହାକିଛି କ୍ରିୟା କରେ, ସ୍ତ୍ରୀ, ପୁତ୍ର, ଧନ, ଗୃହ, ମାନ, ବଡ଼ିମା, ପ୍ରତିଷ୍ଠା ଆଦି ଇହଲୋକ ଓ ପରଲୋକର ଭୋଗପାଇଁ ହିଁ କରେ, ଏଠାରେ **କାମେପ୍ସୁନା** ପଦଟି ହେଉଛି ସେପରି ସ୍ୱାର୍ଥପରାୟଣ ପୁରୁଷର ବାଚକ।

**ପ୍ରଶ୍ନ –** ବା ପଦ ପ୍ରୟୋଗର ଅଭିପ୍ରାୟ କ'ଣ ?

**ଉତ୍ତର –** ବା ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯେଉଁ କର୍ମମାନ ଭୋଗପ୍ରାପ୍ତିପାଇଁ କରାଯାଏ, ସେସବୁ ବି ରାଜସ ଏବଂ ଯେଉଁଥିରେ ଭୋଗ-ଇଚ୍ଛା ନାହିଁ ଅଥଚ ଯାହା ଅହଙ୍କାରପୂର୍ବକ କରାଯାଏ, ତାହା ମଧ୍ୟ ରାଜସ। ଅଭିପ୍ରାୟ ଏହି ଯେ, ଯେଉଁ ପୁରୁଷଠାରେ ଭୋଗକାମନା ଓ ଅହଙ୍କାର ଉଭୟ ଥାଏ, ତା'ଦ୍ୱାରା କରାଯାଉଥିବା କର୍ମ ଯେ ରାଜସ, ତାହା ଆଉ କହିବାର କ'ଣ ଅଛି ! ଏଥିମଧ୍ୟରୁ କୌଣସି ଗୋଟିଏ ଦୋଷରେ ଯୁକ୍ତ ପୁରୁଷଦ୍ୱାରା କରାଯାଉଥିବା କର୍ମ ମଧ୍ୟ ରାଜସ।

**ପ୍ରଶ୍ନ –** **ସାହଂକାରେଣ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯେଉଁ ମନୁଷ୍ୟର ଶରୀରରେ ଅଭିମାନ ଅଛି ଏବଂ ଯେ ପ୍ରତ୍ୟେକ କର୍ମ ଅହଙ୍କାରପୂର୍ବକ କରେ ତଥା ଯେ, 'ମୁଁ ଅମୁକ କର୍ମ କରିଦେଇପାରିବି; ମୋ ପରି ଆଉ କିଏ ଅଛି ? ମୁଁ ଏହା କରିଦେଇପାରିବି; ତାହା କରିଦେଇପାରିବି'– ଏପରି ଭାବ ମନରେ ରଖେ ଏବଂ ଏପରି କଥା କହେ, ଏଠାରେ **ସାହଂକାରେଣ** ପଦଟି ହେଉଛି ସେପରି ପୁରୁଷର ବାଚକ।

**ପ୍ରଶ୍ନ –** ସେହି କର୍ମକୁ ରାଜସ କୁହାଯାଏ – ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତଭାବରେ କରାଯାଉଥିବା କର୍ମ ହେଉଛି ରାଜସ ଏବଂ ରାଜସ କର୍ମର ଫଳ ଦୁଃଖ ବୋଲି କୁହାଯାଇଛି (୧୪/୧୬)। କର୍ମମାନଙ୍କର ସଙ୍ଗଦ୍ୱାରା ରଜୋଗୁଣ ମନୁଷ୍ୟକୁ କର୍ମବନ୍ଧନରେ ବାନ୍ଧିଦିଏ (୧୪/୭); ଏଣୁ ମୁକ୍ତି ଇଚ୍ଛା କରୁଥିବା ମନୁଷ୍ୟ ଏପରି କର୍ମ କରିବା ଉଚିତ ନୁହେଁ।

**ସମ୍ବନ୍ଧ—** ବର୍ତ୍ତମାନ ତାମସ କର୍ମର ଲକ୍ଷଣ କହୁଛନ୍ତି—

**ଅନୁବନ୍ଧଂ କ୍ଷୟଂ ହିଂସାମନବେକ୍ଷ୍ୟ ଚ ପୌରୁଷମ୍ ।**
**ମୋହାଦାରଭ୍ୟତେ କର୍ମ ଯତ୍ତତ୍ତାମସମୁଚ୍ୟତେ ॥ ୨୫ ॥**

**ଅନ୍ୱୟ—** **ଯତ୍** = ଯେଉଁ; **କର୍ମ** = କର୍ମ; **ଅନୁବନ୍ଧମ୍** = ପରିଣାମ; **କ୍ଷୟମ୍** = ହାନି; **ହିଂସାମ୍** = ହିଂସା; **ଚ** = ଏବଂ; **ପୌରୁଷମ୍** = ସାମର୍ଥ୍ୟକୁ; **ଅନବେକ୍ଷ୍ୟ** = ବିଚାର ନ କରି; **ମୋହାତ୍** = କେବଳ ଅଜ୍ଞାନବଶତଃ; **ଆରଭ୍ୟତେ** = ଆରମ୍ଭ କରାଯାଏ; **ତତ୍** = ସେହି କର୍ମ; **ତାମସମ୍** = ତାମସ; **ଉଚ୍ୟତେ** = (ବୋଲି) କୁହାଯାଏ ।

**ଯେଉଁ କର୍ମ ପରିଣାମ, କ୍ଷତି, ହିଂସା ଓ ସାମର୍ଥ୍ୟର ବିଚାର ନ କରି କେବଳ ଅଜ୍ଞାନବଶତଃ ଆରମ୍ଭ କରାଯାଏ, ତାହା ତାମସ ବୋଲି କୁହାଯାଏ ॥ ୨୫ ॥**

**ପ୍ରଶ୍ନ—** ପରିଣାମ, ହାନି, ହିଂସା ଓ ସାମର୍ଥ୍ୟ ବିଷୟରେ ବିଚାର କରିବା କ'ଣ ଏବଂ 'ଏହା ବିଚାର ନ କରି କେବଳ ମୋହବଶତଃ କର୍ମ ଆରମ୍ଭ କରିବା'ର ଅଭିପ୍ରାୟ କ'ଣ ?

**ଉତ୍ତର—** ଅମୁକ କର୍ମ କଲେ ତାହାର ଭାବୀ ପରିଣାମ ସୁଖପ୍ରାପ୍ତି ହେବ, ନା ଦୁଃଖପ୍ରାପ୍ତି ହେବ ?— କୌଣସି କର୍ମ ଆରମ୍ଭ କରିବା ପୂର୍ବରୁ ପ୍ରଥମେ ନିଜ ବୁଦ୍ଧିରେ ଏପରି ବିଚାର କରିବା ହିଁ ତାହାର ପରିଣାମ ବିଷୟରେ ବିଚାର କରିବା । ତଥା 'ଅମୁକ କର୍ମରେ ଏତେ ଧନ ବ୍ୟୟ କରିବାକୁ ପଡ଼ିବ, ଏତେ ବଳ ପ୍ରୟୋଗ କରିବାକୁ ପଡ଼ିବ, ସେଥିରେ ଏତେ ସମୟ ଲାଗିବ, ଅମୁକ ଅଂଶରେ ଧର୍ମହାନି ହେବ ଏବଂ ଅମୁକପ୍ରକାରେ ଅନ୍ୟାନ୍ୟ କ୍ଷତି ମଧ୍ୟ ହେବ'— କର୍ମାରମ୍ଭପୂର୍ବରୁ ଏପରି ବିଚାର କରିବା ହିଁ କ୍ଷତି ବିଷୟରେ ବିଚାର କରିବା । 'ଅମୁକ କର୍ମ କଲେ, ଅମୁକ ମନୁଷ୍ୟମାନଙ୍କର ବା ଅନ୍ୟ ପ୍ରାଣୀମାନଙ୍କର ଅମୁକପ୍ରକାରେ ଏତେ କଷ୍ଟ ହେବ, ଅମୁକ ମନୁଷ୍ୟଙ୍କର ବା ପ୍ରାଣୀମାନଙ୍କର ଜୀବନ ନଷ୍ଟ ହେବ' ବୋଲି ବିଚାର କରିବା ହିଁ ହିଂସା ବିଷୟରେ ବିଚାର କରିବା । 'ଅମୁକ କର୍ମ କରିବାପାଇଁ ଏତେ ସାମର୍ଥ୍ୟ ଆବଶ୍ୟକ; ଏହାକୁ ପୂର୍ଣ୍ଣ କରିବାର ସାମର୍ଥ୍ୟ ମୋପାଖରେ ଅଛି, କି ନାହିଁ, ଦେଖିବା'— ଏପରି ବିଚାର କରିବା ହିଁ ପୌରୁଷ ଅର୍ଥାତ୍ ସାମର୍ଥ୍ୟ ବିଷୟରେ ବିଚାର କରିବା । ଏପରିଭାବରେ ପରିଣାମ, କ୍ଷତି, ହିଂସା ଏବଂ ପୌରୁଷ— ଏହି ଚାରୋଟିର ବା ଚାରୋଟିମଧ୍ୟରୁ କୌଣସି ଗୋଟିକର ବି ବିଚାର ନ କରି 'ଯାହା କିଛି ହେବ, ଦେଖାଯିବ' ବୋଲି ଦୁଃସାହସ କରି ଅଜ୍ଞାନବଶତଃ କୌଣସି କର୍ମ ଆରମ୍ଭ କରିଦେବା ହିଁ ଏସବୁ ବିଚାର ନ କରି କେବଳ ମୋହରେ ପଡ଼ି କର୍ମ ଆରମ୍ଭ କରିବା ।

**ପ୍ରଶ୍ନ—** 'ସେହି କର୍ମକୁ ତାମସ ବୋଲି କୁହାଯାଏ'— ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ କର୍ମ ବିନା ବିଚାରରେ ଆରମ୍ଭ କରିଦିଆଯାଏ, ସେହି କର୍ମ ତମୋଗୁଣର କାର୍ଯ୍ୟ ମୋହଦ୍ୱାରା ଆରମ୍ଭ କରାଯାଏ; ତେଣୁ ତାହା ତାମସ କର୍ମ । ତାମସ କର୍ମର ଫଳ ଅଜ୍ଞାନ ଅର୍ଥାତ୍ କୁକୁର, ଘୁଷୁରୀ, ବୃକ୍ଷ ଆଦି ମୂଢ଼ଯୋନିପ୍ରାପ୍ତି ବା ନରକପ୍ରାପ୍ତି ବୋଲି କୁହାଯାଇଛି (୧୪/୧୮); ତେଣୁ କଲ୍ୟାଣ ଚାହୁଁଥିବା ମନୁଷ୍ୟ କେବେହେଲେ ଏପରି କର୍ମ କରିବା ଉଚିତ ନୁହେଁ ।

**ସମ୍ବନ୍ଧ—** ବର୍ତ୍ତମାନ ସାତ୍ତ୍ୱିକ କର୍ତ୍ତାଙ୍କ ଲକ୍ଷଣ କହୁଛନ୍ତି—

**ମୁକ୍ତସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହସମନ୍ୱିତଃ ।**
**ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ॥ ୨୬ ॥**

**ଅନ୍ୱୟ—** **କର୍ତ୍ତା** = (ଯେଉଁ) କର୍ତ୍ତା; **ମୁକ୍ତସଙ୍ଗଃ** = ସଙ୍ଗରହିତ; **ଅନହଂବାଦୀ** = ଅହଂକାରଯୁକ୍ତ ବଚନ କହନ୍ତି ନାହିଁ; **ଧୃତ୍ୟୁତ୍ସାହସମନ୍ୱିତଃ** = ଧୈର୍ଯ୍ୟ ଏବଂ ଉତ୍ସାହରେ ଯୁକ୍ତ (ତଥା); **ସିଦ୍ଧ୍ୟସିଦ୍ଧ୍ୟୋଃ** = କାର୍ଯ୍ୟର ସିଦ୍ଧି ଓ ଅସିଦ୍ଧିରେ; **ନିର୍ବିକାରଃ** = ହର୍ଷ-ଶୋକାଦି ବିକାରରୁ ରହିତ; **ସାତ୍ତ୍ୱିକଃ** = (ସେ) ସାତ୍ତ୍ୱିକ; **ଉଚ୍ୟତେ** = କୁହାଯାନ୍ତି ।

**ଯେଉଁ କର୍ତ୍ତା ସଙ୍ଗରହିତ, ଯେ ଅହଂକାରଯୁକ୍ତ କଥା କହନ୍ତି ନାହିଁ, ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ଅଟନ୍ତି ତଥା କାର୍ଯ୍ୟର ସିଦ୍ଧି ଓ ଅସିଦ୍ଧିରେ ହର୍ଷଶୋକାଦି ବିକାରରୁ ରହିତ, ସେ ସାତ୍ତ୍ୱିକ କୁହାଯାଆନ୍ତି ॥ ୨୬ ॥**

**ପ୍ରଶ୍ନ –** **ମୁକ୍ତସଙ୍ଗ** କିପରି ମନୁଷ୍ୟଙ୍କୁ କହନ୍ତି ?

**ଉତ୍ତର –** ଯାହାଙ୍କର ସକଳ କର୍ମରେ ତଥା କର୍ମର ଫଳରୂପ ସମସ୍ତ ଭୋଗରେ ତିଳେମାତ୍ର ସମ୍ବନ୍ଧ ନ ଥାଏ ଅର୍ଥାତ୍ ମନ, ବଚନ ଓ ଶରୀରଦ୍ୱାରା ଯାହା କିଛି କର୍ମ କରାଯାଏ, ସେଥିରେ ଏବଂ ତାହାର ଫଳରୂପ ମାନ, ବଡ଼ିମା, ପ୍ରତିଷ୍ଠା, ସ୍ତ୍ରୀ, ପୁତ୍ର, ଧନ, ଗୃହ ଆଦି ଇହଲୋକ ଓ ପରଲୋକର ସମସ୍ତ ଭୋଗମାନଙ୍କରେ ଯାହାଙ୍କର ଟିକିଏ ବି ମମତ୍ୱ, ଆସକ୍ତି ଓ କାମନା ନ ଥାଏ, **ମୁକ୍ତସଙ୍ଗ** ସେହି ପୁରୁଷଙ୍କୁ କହନ୍ତି ।

**ପ୍ରଶ୍ନ –** **ଅନହଂବାଦୀ**ର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ମନ, ବୁଦ୍ଧି, ଇନ୍ଦ୍ରିୟଗଣ ଏବଂ ଶରୀର ଆଦି ଅନାତ୍ମପଦାର୍ଥମାନଙ୍କରେ ଆତ୍ମବୁଦ୍ଧି ରହି ନ ଥିବାରୁ ଯେ କୌଣସି ବି କର୍ମରେ କର୍ତ୍ତାପଣ ଅଭିମାନ କରନ୍ତି ନାହିଁ ତଥା ସେହି କାରଣରୁ ଯେ ଆସୁରୀ ପ୍ରକୃତିଯୁକ୍ତ ମନୁଷ୍ୟପରି 'ମୁଁ ଅମୁକ ମନୋରଥ ସିଦ୍ଧ କରିନେଇଛି, ଅମୁକକୁ ସିଦ୍ଧ କରିନେବି; ମୁଁ ଈଶ୍ୱର, ଭୋଗୀ, ବଳବାନ୍, ସୁଖୀ; ମୋପରି ଆଉ କେହି ନାହିଁ; ମୁଁ ଯଜ୍ଞ କରିବି; ଦାନ ଦେବି (୧୬/୧୩,୧୪,୧୫)' ଇତ୍ୟାଦି ଅହଂକାରପୂର୍ଣ୍ଣ କଥା କହନ୍ତି ନାହିଁ, ବରଂ ସରଳଭାବରେ ଅଭିମାନଶୂନ୍ୟ କଥା କହନ୍ତି– ତାଙ୍କୁ **ଅନହଂବାଦୀ** କୁହାଯାଏ ।

**ପ୍ରଶ୍ନ –** **ଧୃତ୍ୟୁତ୍ସାହସମନ୍ୱିତଃ** ପଦରେ **ଧୃତି** ଏବଂ **ଉତ୍ସାହ** ଶବ୍ଦ କେଉଁ ଭାବର ବାଚକ ଏବଂ ଏହି ଉଭୟରେ ଯୁକ୍ତ ପୁରୁଷଙ୍କର ଲକ୍ଷଣ କ'ଣ ?

**ଉତ୍ତର –** ଶାସ୍ତ୍ରବିହିତ ସ୍ୱଧର୍ମପାଳନରୂପକ କୌଣସି ବି କର୍ମ କରିବାବେଳେ ଯେତେ ବଡ଼ ବାଧାବିଘ୍ନ ପଡ଼ିଲେ ବି ବିଚଳିତ ନ ହେବାର ନାମ **ଧୃତି** । କର୍ମସମ୍ପାଦନରେ ସଫଳତା ନ ମିଳିଲେ ମଧ୍ୟ ଅଥବା 'ମୋର ତ ଫଳରେ ଇଚ୍ଛା ନାହିଁ, କର୍ମ କରିବା କି ଆବଶ୍ୟକ !'– ଏପରି ବିଚାର କରି କୌଣସି ବି କର୍ମରେ ଧୈର୍ଯ୍ୟଚ୍ୟୁତ ନ ହୋଇ ବରଂ ସଫଳତା ପାଇସାରିଥିବା ତଥା କର୍ମଫଳ ଇଚ୍ଛା କରୁଥିବା ମନୁଷ୍ୟପରି ଶ୍ରଦ୍ଧାପୂର୍ବକ କର୍ତ୍ତବ୍ୟକର୍ମ କରିବାକୁ ଉତ୍ସୁକ ରହିବାର ନାମ **ଉତ୍ସାହ** । ଏହି ଦୁଇଟି ଗୁଣରେ ଯୁକ୍ତ ପୁରୁଷ ଯେତେବଡ଼ ବିଘ୍ନ ଉପସ୍ଥିତ ହେଲେ ମଧ୍ୟ ନିଜର କର୍ତ୍ତବ୍ୟ ତ୍ୟାଗ କରନ୍ତି ନାହିଁ; ବରଂ ଅତ୍ୟନ୍ତ ଉତ୍ସାହପୂର୍ବକ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ନିଜର କର୍ତ୍ତବ୍ୟରେ ଦୃଢ଼ ରହନ୍ତି । ଏହା ହିଁ ତାଙ୍କର ଲକ୍ଷଣ ।

**ପ୍ରଶ୍ନ –** **ସିଦ୍ଧ୍ୟସିଦ୍ଧ୍ୟୋଃ ନିର୍ବିକାରଃ** ଏହି ବିଶେଷଣ କେଉଁ ମନୁଷ୍ୟଙ୍କର ବାଚକ ?

**ଉତ୍ତର –** ସାଧାରଣ ମନୁଷ୍ୟ ଯେଉଁ କର୍ମରେ ଆସକ୍ତ ହୁଏ ଏବଂ ଯେଉଁ କର୍ମକୁ ସେ ନିଜର ଇଷ୍ଟଫଳପ୍ରାପ୍ତିର ସାଧନ ବୋଲି ବୁଝେ, ତାହା ପୂର୍ଣ୍ଣ ହୋଇଗଲେ ତା ମନରେ ଅତ୍ୟନ୍ତ ହର୍ଷ ଜାତ ହୁଏ ଏବଂ କୌଣସିପ୍ରକାର ବିଘ୍ନ ଉପସ୍ଥିତ ହୋଇ ତାହା ଅପୂର୍ଣ୍ଣ ରହିଗଲେ ତାକୁ ଦାରୁଣ ଦୁଃଖ ଲାଗେ; ଏପରିଭାବରେ କର୍ମର ସିଦ୍ଧି-ଅସିଦ୍ଧିରେ ତା'ର ଅନ୍ତଃକରଣରେ ଆହୁରି ମଧ୍ୟ ବହୁପ୍ରକାର ବିକାର ଜାତ ହୁଏ । କିନ୍ତୁ ଅହଂତ୍ୱ, ମମତ୍ୱ, ଆସକ୍ତି ଓ ଫଳେଚ୍ଛା ନ ଥିବା ମନୁଷ୍ୟ କୌଣସି କର୍ମ ପୂର୍ଣ୍ଣ ହେଲେ ହର୍ଷିତ ହୁଅନ୍ତି ନାହିଁ, କି ସେଥିରେ ବିଘ୍ନ ଉପସ୍ଥିତ ହେଲେ ଦୁଃଖିତ ହୁଅନ୍ତି ନାହିଁ । ଏପରିଭାବରେ ଯାହାଙ୍କ ଠାରେ ଅନ୍ୟ କୌଣସିପ୍ରକାର ବିକାର ଜାତ ହୁଏ ନାହିଁ, ଯେ ସବୁ ପରିସ୍ଥିତିରେ ସଦାସର୍ବଦା ସମ ରହନ୍ତି, **ସିଦ୍ଧ୍ୟସିଦ୍ଧ୍ୟୋଃ ନିର୍ବିକାରଃ** ବିଶେଷଣଟି ହେଉଛି ସେହି ସମତ୍ୱଯୁକ୍ତ ପୁରୁଷଙ୍କର ବାଚକ ।

**ପ୍ରଶ୍ନ –** 'ସେହି କର୍ତ୍ତା ସାତ୍ତ୍ୱିକ କୁହାଯାଆନ୍ତି'– ଏପରି କଥନର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ କର୍ତ୍ତାଙ୍କ ଠାରେ ଉପରୋକ୍ତ ସମସ୍ତ ଭାବର ସମାବେଶ ହୋଇଥାଏ, ସେ ପୂର୍ଣ୍ଣସାତ୍ତ୍ୱିକ ଅଟନ୍ତି ଏବଂ ଯାହାଙ୍କ ଠାରେ ଏଥିରୁ ଯେଉଁ ଭାବ ଯେତିକି ଅଂଶରେ କମ୍ ହୁଏ, ତାଙ୍କର ସାତ୍ତ୍ୱିକତା ସେତିକି କମ୍ । ଏପରି ସାତ୍ତ୍ୱିକ ଭାବ ପରମାତ୍ମାଙ୍କ ତତ୍ତ୍ୱ-ଜ୍ଞାନ ପ୍ରକଟ କରାଇବାକୁ ସମର୍ଥ ହୁଏ; ତେଣୁ ମୁକ୍ତିକାମୀ ମନୁଷ୍ୟ ସାତ୍ତ୍ୱିକ କର୍ତ୍ତା ହେବା ଉଚିତ ।

**ସମ୍ବନ୍ଧ –** ଭଗବାନ୍ ବର୍ତ୍ତମାନ ରାଜସ କର୍ତ୍ତାଙ୍କ ଲକ୍ଷଣ କହୁଛନ୍ତି–

## ରାଗୀ କର୍ମଫଳପ୍ରେପ୍ସୁର୍ଲୁବ୍‌ଧୋ ହିଂସାତ୍ମକୋଽଶୁଚିଃ ।
## ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ ।। ୨୭ ।।

**ଅନ୍ୱୟ –** **କର୍ତ୍ତା** = (ଯେଉଁ) କର୍ତ୍ତା; **ରାଗୀ** = ଆସକ୍ତିଯୁକ୍ତ; **କର୍ମଫଳପ୍ରେପ୍ସୁଃ** = କର୍ମଫଳ ଇଚ୍ଛା କରୁଥିବା; **ଲୁବ୍‌ଧଃ** = ଲୋଭୀ (ତଥା); **ହିଂସାତ୍ମକଃ** = ଅନ୍ୟକୁ କଷ୍ଟ ଦେବାର ସ୍ୱଭାବଯୁକ୍ତ; **ଅଶୁଚିଃ** = ଅଶୁଦ୍ଧାଚାରୀ (ଏବଂ); **ହର୍ଷଶୋକାନ୍ୱିତଃ** = ହର୍ଷ ଓ ଶୋକଦ୍ୱାରା ଲିପ୍ତ (ତାକୁ); **ରାଜସଃ** = ରାଜସ; **ପରିକୀର୍ତ୍ତିତଃ** = କୁହାଯାଏ ।

**ଯେଉଁ କର୍ତ୍ତା ଆସକ୍ତିଯୁକ୍ତ, ଯେ କର୍ମଫଳ ଇଚ୍ଛା କରେ, ଯେ ଲୋଭୀ ତଥା ଅନ୍ୟକୁ କଷ୍ଟ ଦିଏ, ଯେ ଅଶୁଦ୍ଧାଚାରୀ ଓ ହର୍ଷଶୋକରେ ଲିପ୍ତ ରହେ, ତାକୁ ରାଜସ କର୍ତ୍ତା କୁହାଯାଏ ।। ୨୭ ।।**

**ପ୍ରଶ୍ନ –** ରାଗୀ ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯେଉଁ ମନୁଷ୍ୟର କର୍ମରେ ଏବଂ କର୍ମଫଳରୂପ ଇହଲୋକ ଓ ପରଲୋକର ଭୋଗରେ ମମତ୍ୱ ଓ ଆସକ୍ତି ରହେ, ଅର୍ଥାତ୍ ଯାହା କିଛି କ୍ରିୟା କଲେ ବି ସେଥିରେ ଓ ତାହାର ଫଳରେ ଆସକ୍ତି ରହେ, ସେପରି ମନୁଷ୍ୟକୁ **ରାଗୀ** କହନ୍ତି ।

**ପ୍ରଶ୍ନ – କର୍ମଫଳପ୍ରେପ୍ସୁଃ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯେଉଁ ଲୋକ କର୍ମମାନଙ୍କର ଫଳରୂପୀ ସ୍ତ୍ରୀ, ପୁତ୍ର, ଧନ, ଗୃହ, ମାନ, ବଡ଼ିମା, ପ୍ରତିଷ୍ଠା ଆଦି ଇହଲୋକ ଓ ପରଲୋକର ବିବିଧ ଭୋଗ ଇଚ୍ଛା କରେ ତଥା ଯାହାକିଛି କରେ, ତାହା ଭୋଗପ୍ରାପ୍ତିପାଇଁ ହିଁ କରେ, **କର୍ମଫଳପ୍ରେପ୍ସୁଃ** ପଦଟି ହେଉଛି ସେହି ସ୍ୱାର୍ଥପରାୟଣ ମନୁଷ୍ୟର ବାଚକ ।

**ପ୍ରଶ୍ନ – ଲୁବ୍ଧଃ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଧନାଦି ପଦାର୍ଥରେ ଆସକ୍ତି ରହିଥିବାରୁ ଯେଉଁ ମନୁଷ୍ୟ ନ୍ୟାୟରୁ ପ୍ରାପ୍ତ ଅବସରରେ ମଧ୍ୟ ନିଜ ଶକ୍ତି ଅନୁରୂପ ଧନ ବ୍ୟୟ କରେ ନାହିଁ ତଥା ନ୍ୟାୟ-ଅନ୍ୟାୟ ବିଚାର ନ କରି ସଦାସର୍ବଦା ଧନସଂଗ୍ରହର ଲାଳସା ରଖେ, ଏପରି କି, ଅନୁଚିତଭାବରେ ଅନ୍ୟର ସ୍ୱତ୍ୱ ମାରିନେବାକୁ ବି ଇଚ୍ଛା କରେ ଏବଂ ଚେଷ୍ଟା ମଧ୍ୟ କରେ, ସେପରି ଲୋଭୀ ମନୁଷ୍ୟର ବାଚକ ହେଉଛି **ଲୁବ୍ଧଃ** ।

**ପ୍ରଶ୍ନ – ହିଂସାତ୍ମକଃ** ପଦଟି କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯେକୌଣସିପ୍ରକାରେ ଅନ୍ୟମାନଙ୍କୁ କଷ୍ଟ ଦେବା ହିଁ ଯାହାର ସ୍ୱଭାବ, ଯେ ନିଜର ଅଭିଳାଷ ପୂର୍ଣ୍ଣ କରିବାପାଇଁ ରାଗଦ୍ୱେଷପୂର୍ବକ କର୍ମ କରିବା ସମୟରେ ଅନ୍ୟମାନଙ୍କ କଷ୍ଟ ବିଷୟରେ ଟିକିଏ ବି ଚିନ୍ତା ନ କରି ନିଜର ସୁଖ ତଥା ଭୋଗପାଇଁ ଅନ୍ୟମାନଙ୍କୁ କଷ୍ଟ ଦେଉଥାଏ, **ହିଂସାତ୍ମକଃ** ପଦଟି ହେଉଛି ସେପରି ହିଂସାପରାୟଣ ମନୁଷ୍ୟର ବାଚକ ।

**ପ୍ରଶ୍ନ – ଅଶୁଚିଃ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯାହାଠାରେ ଶୌଚାଚାର ଓ ସଦାଚାରର ଅଭାବ ଥାଏ ଅର୍ଥାତ୍ ଯେ ଶାସ୍ତ୍ରବିଧି ଅନୁସାରେ ଜଳ-ମୃତ୍ତିକାଦିଦ୍ୱାରା ଶରୀର ଓ ବସ୍ତ୍ରାଦିକୁ ଶୁଦ୍ଧ ରଖେ ନାହିଁ, କି ଯଥାଯୋଗ୍ୟ ବ୍ୟବହାର କରି ନିଜର ଆଚରଣ ଶୁଦ୍ଧ ରଖେ ନାହିଁ, ବରଂ ବିଷୟଭୋଗରେ ଆସକ୍ତ ହୋଇ ନାନାପ୍ରକାର ଭୋଗପ୍ରାପ୍ତିପାଇଁ ଶୌଚାଚାର ଓ ଶୁଦ୍ଧାଚାର ତ୍ୟାଗ କରିଦିଏ, ଏଠାରେ **ଅଶୁଚିଃ** ପଦଟି ହେଉଛି ସେପରି ମନୁଷ୍ୟର ବାଚକ ।

**ପ୍ରଶ୍ନ – ହର୍ଷଶୋକାନ୍ୱିତଃ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ପ୍ରତ୍ୟେକ କ୍ରିୟାରେ ଓ ତାହାର ଫଳରେ ରାଗ-ଦ୍ୱେଷ ରହିବାରୁ ଯେ ପ୍ରତ୍ୟେକ କର୍ମ କରିବା ସମୟରେ ତଥା ପ୍ରତ୍ୟେକ ଘଟଣାରେ କେବେ ହର୍ଷିତ ହୁଏ ତ, କେବେ ଦୁଃଖିତ ହୁଏ, ଯାହାର ଅନ୍ତଃକରଣରେ ଏପରି ହର୍ଷ ଓ ଶୋକ ହେଉଥାଏ, ଏଠାରେ **ହର୍ଷଶୋକାନ୍ୱିତଃ** ପଦଟି ହେଉଛି ସେପରି ମନୁଷ୍ୟର ବାଚକ ।

**ପ୍ରଶ୍ନ –** ସେହି କର୍ତ୍ତାକୁ ରାଜସ କୁହାଯାଏ – ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହି ବକ୍ତବ୍ୟରେ ଦେଖାଇଦିଆଯାଉଛି ଯେ, ଯେଉଁ ମନୁଷ୍ୟ ଉପରୋକ୍ତ ସମସ୍ତ ଭାବରେ ବା ସେଥିମଧ୍ୟରୁ କେତେକ ଭାବରେ ଯୁକ୍ତ ହୋଇ କ୍ରିୟା କରେ, ସେ ହେଉଛି ରାଜସକର୍ତ୍ତା । 'ରାଜସକର୍ତ୍ତା' ବାରମ୍ବାର ନାନା ଯୋନିରେ ଜନ୍ମ ହୁଏ ଓ ମରେ । ସେ ସଂସାରଚକ୍ରରୁ ମୁକ୍ତ ହୋଇପାରେ ନାହିଁ । ତେଣୁ ମୁକ୍ତି ଚାହୁଁଥିବା ମନୁଷ୍ୟ ରାଜସକର୍ତ୍ତା ହେବା ଉଚିତ ନୁହେଁ ।

*ସମ୍ବନ୍ଧ – ବର୍ତ୍ତମାନ ତାମସ କର୍ତ୍ତାର ଲକ୍ଷଣ କହୁଛନ୍ତି –*

# ଅଯୁକ୍ତଃ ପ୍ରାକୃତଃ ସ୍ତବ୍ଧଃ ଶଠୋ ନୈଷ୍କୃତିକୋଽଳସଃ ।
# ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ ॥ ୨୮ ॥

**ଅନ୍ୱୟ –** **କର୍ତ୍ତା** = (ଯେଉଁ) କର୍ତ୍ତା; **ଅଯୁକ୍ତଃ** = ଅଯୁକ୍ତ; **ପ୍ରାକୃତଃ** = ଅଶିକ୍ଷିତ; **ସ୍ତବ୍ଧଃ** = ଅବିନୀତ; **ଶଠଃ** = ଧୂର୍ତ୍ତ; **ନୈଷ୍କୃତିକଃ** = ଅନ୍ୟର ଜୀବିକାନାଶକାରୀ (ତଥା); **ବିଷାଦୀ** = ବିଷାଦଗ୍ରସ୍ତ; **ଅଳସଃ** = ଆଳସ୍ୟପରାୟଣ; **ଚ** = ଏବଂ; **ଦୀର୍ଘସୂତ୍ରୀ** = ଦୀର୍ଘସୂତ୍ରୀ (ତାକୁ); **ତାମସଃ** = ତାମସ; **ଉଚ୍ୟତେ** = କୁହାଯାଏ ।

**ଯେଉଁ କର୍ତ୍ତା ଅଯୁକ୍ତ, ଅଶିକ୍ଷିତ, ଅଭିମାନୀ, ଧୂର୍ତ୍ତ, ପରଜୀବିକାନାଶକାରୀ ତଥା ବିଷାଦଗ୍ରସ୍ତ, ଆଳସ୍ୟପରାୟଣ ଓ ଦୀର୍ଘସୂତ୍ରୀ, ତାକୁ ତାମସ କୁହାଯାଏ ।। ୨୮ ।।**

**ପ୍ରଶ୍ନ –** **ଅଯୁକ୍ତଃ** କେଉଁ ମନୁଷ୍ୟର ବାଚକ ?

**ଉତ୍ତର –** ଯାହାର ମନ ଓ ଇନ୍ଦ୍ରିୟମାନେ ବଶରେ ନ ଥାନ୍ତି, ବରଂ ଯେ ସ୍ୱୟଂ ସେମାନଙ୍କର ବଶୀଭୂତ ହୋଇ ରହିଥାଏ ତଥା ଯାହାଠାରେ ଶ୍ରଦ୍ଧା ଓ ଆସ୍ତିକତାର ଅଭାବ ଥାଏ, **ଅଯୁକ୍ତଃ** ପଦଟି ହେଉଛି ସେପରି ପୁରୁଷର ବାଚକ ।

**ପ୍ରଶ୍ନ –** **ପ୍ରାକୃତଃ** କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯାହାକୁ କୌଣସିପ୍ରକାର ସୁଶିକ୍ଷା ମିଳି ନ ଥାଏ, ଯାହାର ସ୍ୱଭାବ ବାଳକପରି, ଯାହାର ନିଜର କର୍ତ୍ତବ୍ୟଜ୍ଞାନ ବୋଲି କିଛି ନ ଥାଏ (୧୬/୭), ଯାହାର ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସୁଧାରି ହୁଏ ନାହିଁ, **ପ୍ରାକୃତଃ** ପଦଟି ହେଉଛି ସେପରି ସଂସ୍କାରହୀନ ସ୍ୱାଭାବିକ-ମୂର୍ଖର ବାଚକ ।

**ପ୍ରଶ୍ନ –** **ସ୍ତବ୍ଧଃ** ପଦଟି କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଯାହାର ସ୍ୱଭାବ ଅତ୍ୟନ୍ତ କଠୋର, ଯାହାଠାରେ ବିନୟଭାବ ନ ଥାଏ, ଯେ ସଦାସର୍ବଦା ଅହଂକାର ଓ ଅଭିମାନରେ ଉନ୍ମତ୍ତ ହୋଇ ରହିଥାଏ, ଯେ ନିଜ ସମକ୍ଷରେ ଅନ୍ୟମାନଙ୍କୁ ମଣିଷତଳେ ଗଣେ ନାହିଁ, **ସ୍ତବ୍ଧଃ** ପଦଟି ହେଉଛି ସେପରି ଉଦ୍ଧତ ମନୁଷ୍ୟର ବାଚକ ।

**ପ୍ରଶ୍ନ –** **ଶଠଃ** କାହାର ବାଚକ ?

**ଉତ୍ତର –** ଯେ ଅନ୍ୟକୁ ଠକିବାରେ ତତ୍ପର, ଯେ ଦ୍ୱେଷ ଘୋଡ଼ାଇ ରଖି ଗୁପ୍ତଭାବରେ ଅନ୍ୟର ଅପକାର କରେ, ଯେ ମନେ ମନେ ଅନ୍ୟର ଅନିଷ୍ଟ କରିବାକୁ କୁଟିଳ ଉପାୟ ଚିନ୍ତା କରୁଥାଏ, **ଶଠଃ** ପଦଟି ହେଉଛି ସେପରି ଧୂର୍ତ୍ତ ମନୁଷ୍ୟର ବାଚକ ।

**ପ୍ରଶ୍ନ –** **ନୈଷ୍କୃତିକଃ** କେଉଁ ମନୁଷ୍ୟର ବାଚକ ?

**ଉତ୍ତର –** ଯେ ନାନାଭାବରେ ଅନ୍ୟର ଜୀବିକା ନଷ୍ଟ କରେ, ଅନ୍ୟର ବୃତ୍ତିରେ ବାଧା ସୃଷ୍ଟି କରିବା ଯାହାର ସ୍ୱଭାବ, **ନୈଷ୍କୃତିକଃ** ପଦଟି ହେଉଛି ସେପରି ମନୁଷ୍ୟର ବାଚକ ।

**ପ୍ରଶ୍ନ –** **ଅଳସଃ** କେଉଁ ମନୁଷ୍ୟର ବାଚକ ?

**ଉତ୍ତର –** ଦିନରାତି ଶେଯରେ ପଡ଼ିରହିବା ହିଁ ଯାହାର ସ୍ୱଭାବ, କୌଣସି ଶାସ୍ତ୍ରୀୟ ବା ବ୍ୟାବହାରିକ କର୍ତ୍ତବ୍ୟକର୍ମରେ ଯାହାର ପ୍ରବୃତ୍ତି ଓ ଉତ୍ସାହ ରହେ ନାହିଁ, ଯାହାର ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ ଆଳସ୍ୟ ଭରି ରହିଥାଏ, **ଅଳସଃ** ପଦଟି ହେଉଛି ସେପରି ଆଳସ୍ୟପରାୟଣ ମନୁଷ୍ୟର ବାଚକ ।

**ପ୍ରଶ୍ନ –ବିଷାଦୀ** କାହାକୁ କହନ୍ତି ?

**ଉତ୍ତର –** ଯେ ଦିନରାତି ଶୋକ କରୁଥାଏ, ଯାହାର ଚିନ୍ତାର ଅନ୍ତ ନ ଥାଏ (୧୬/୧୧), ସେପରି ଚିନ୍ତାପରାୟଣ ପୁରୁଷକୁ **ବିଷାଦୀ** କହନ୍ତି ।

**ପ୍ରଶ୍ନ –** **ଦୀର୍ଘସୂତ୍ରୀ** କାହାକୁ କହନ୍ତି ?

**ଉତ୍ତର –** ଯେ କିଛି କାମ ଆରମ୍ଭ କରିଦେଇ ବହୁକାଳପର୍ଯ୍ୟନ୍ତ ତାହା ପୂରା କରେ ନାହିଁ, ଆଜି କରିଦେବି, କାଲି କରିଦେବି ବୋଲି ବିଚାର କରି କରି ଦିନକର କାମକୁ ବହୁଦିନ ନିଏ ଏବଂ ତଥାପି ମଧ୍ୟ ତାହା ପୂର୍ଣ୍ଣ କରିପାରେ ନାହିଁ, ସେପରି ଶିଥିଳପ୍ରକୃତିର ମନୁଷ୍ୟକୁ **ଦୀର୍ଘସୂତ୍ରୀ** କହନ୍ତି ।

**ପ୍ରଶ୍ନ –** 'ସେହି କର୍ତ୍ତାକୁ ତାମସ କୁହାଯାଏ'– ଏହାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତ ବିଶେଷଣମାନଙ୍କରେ କୁହାଯାଇଥିବା ସମସ୍ତ ଅବଗୁଣ ହେଉଛି ତମୋଗୁଣର କାର୍ଯ୍ୟ । ତେଣୁ ଯେଉଁ ପୁରୁଷଠାରେ ଉପରୋକ୍ତ ସମସ୍ତ ଲକ୍ଷଣ ଦେଖାଯାଏ ବା ସେଥିମଧ୍ୟରୁ କେତୋଟି ଲକ୍ଷଣ ଦେଖାଯାଏ, ତାକୁ ତାମସ କର୍ତ୍ତା ବୋଲି ବୁଝିବା ଉଚିତ । ତାମସ ମନୁଷ୍ୟମାନଙ୍କର ଅଧୋଗତି ହୁଏ (୧୪/୧୮); ସେମାନେ ନାନାପ୍ରକାର ପଶୁ, ପକ୍ଷୀ, କୀଟ, ପତଙ୍ଗ ଆଦି ନୀଚଯୋନିମାନଙ୍କରେ ଉତ୍ପନ୍ନ ହୁଅନ୍ତି (୧୪/୧୫) । ତେଣୁ କଲ୍ୟାଣକାମୀ ମନୁଷ୍ୟ ନିଜଠାରେ ତାମସ କର୍ତ୍ତାର କୌଣସି ଲକ୍ଷଣ ରହିବାକୁ ଦେବା ଉଚିତ ନୁହେଁ ।

**ସମ୍ବନ୍ଧ—** ଏପରିଭାବରେ ତତ୍ତ୍ୱଜ୍ଞାନର ସହାୟକ ସାତ୍ତ୍ୱିକଭାବ ଗ୍ରହଣ କରିବା ପାଇଁ ତଥା ତାହାର ବିରୋଧୀ ରାଜସ-ତାମସ ଭାବ ତ୍ୟାଗ କରିବା ପାଇଁ କର୍ମପ୍ରେରଣା ଓ କର୍ମସଂଗ୍ରହ ମଧ୍ୟରୁ ଜ୍ଞାନ, କର୍ମ ଓ କର୍ତ୍ତାଙ୍କର ସାତ୍ତ୍ୱିକାଦି ତିନି ତିନି ପ୍ରକାରର ବର୍ଣ୍ଣନା କ୍ରମାନୁସାରେ କରିଦେଲେ । ବର୍ତ୍ତମାନ ବୁଦ୍ଧି ଓ ଧୃତିର ସାତ୍ତ୍ୱିକ, ରାଜସ ଓ ତାମସ— ଏପରି ତିନି ତିନି ପ୍ରକାର କ୍ରମଶଃ ବୁଝାଇଦେବାକୁ ଭଗବାନ୍ ପ୍ରସ୍ତାବନା କରୁଛନ୍ତି—

## ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ ।
## ପ୍ରୋଚ୍ୟମାନମଶେଷେଣ ପୃଥକ୍ତ୍ୱେନ ଧନଞ୍ଜୟ ॥ ୨୯ ॥

**ଅନ୍ୱୟ—** ଧନଞ୍ଜୟ = ହେ ଧନଞ୍ଜୟ !; ବୁଦ୍ଧେଃ = ବୁଦ୍ଧିର; ଚ = ଏବଂ; ଧୃତେଃ = ଧୃତିର (ଧାରଣଶକ୍ତିର); ଏବ = ମଧ୍ୟ; ଗୁଣତଃ = ଗୁଣମାନଙ୍କ ଅନୁସାରେ; ତ୍ରିବିଧମ୍ = ତିନିପ୍ରକାର; ଭେଦମ୍ = ବିଭାଗକୁ; (ମୟା) = ମୋ ଦ୍ୱାରା; ଅଶେଷେଣ = ସମ୍ପୂର୍ଣ୍ଣରୂପେ; ପୃଥକ୍ତ୍ୱେନ = ବିଭାଗପୂର୍ବକ; ପ୍ରୋଚ୍ୟମାନମ୍ = କୁହାଯାଉଥିବା; ଶୃଣୁ = ଶୁଣ ।

**ହେ ଧନଞ୍ଜୟ! ବୁଦ୍ଧି ଓ ଧୃତି (ଧାରଣଶକ୍ତି) ମଧ୍ୟ ଗୁଣ ଅନୁସାରେ ତିନିପ୍ରକାର; ତାହା ମୁଁ ସମ୍ପୂର୍ଣ୍ଣଭାବରେ ବିଭାଗପୂର୍ବକ କହୁଛି; ତୁମେ ଶୁଣ ॥ ୨୯ ॥**

**ପ୍ରଶ୍ନ—** ଏହି ଶ୍ଳୋକରେ ବୁଦ୍ଧି ଓ ଧୃତି ଶବ୍ଦ କେଉଁ ତତ୍ତ୍ୱମାନଙ୍କର ବାଚକ? "ସେ ଦୁଇଟି ମଧ୍ୟ ଗୁଣ ଅନୁସାରେ ତିନି ତିନିପ୍ରକାର; ତାହା ସମ୍ପୂର୍ଣ୍ଣଭାବରେ ବିଭାଗପୂର୍ବକ ଶୁଣ ।" ବୋଲି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏଠାରେ **ବୁଦ୍ଧି** ଶବ୍ଦଟି ହେଉଛି ନିଶ୍ଚୟ କରିବା ଶକ୍ତିବିଶେଷର ବାଚକ; ଏହାକୁ ଅନ୍ତଃକରଣ ମଧ୍ୟ କହନ୍ତି । କୋଡ଼ିଏ, ଏକୋଇଶ ଓ ବାଇଶ ଶ୍ଳୋକରେ ଯେଉଁ ତିନିପ୍ରକାର ଜ୍ଞାନ କଥା କୁହାଯାଇଛି, ତାହା ବୁଦ୍ଧିରୁ ଉତ୍ପନ୍ନ ହୋଇଥିବା ଜ୍ଞାନ ଅର୍ଥାତ୍ ବୁଦ୍ଧିର ବୃତ୍ତିବିଶେଷ ଏବଂ ଏହି ବୁଦ୍ଧି ତାହାର କାରଣ । ଅଠର ଶ୍ଳୋକରେ 'ଜ୍ଞାନ' ଶବ୍ଦ କର୍ମପ୍ରେରଣାର ଅନ୍ତର୍ଗତ ଏବଂ ବୁଦ୍ଧିକୁ 'କରଣ' ନାମରେ କର୍ମସଂଗ୍ରହରେ ଗ୍ରହଣ କରାଯାଇଛି । ଏହା ହିଁ ଜ୍ଞାନ ଓ ବୁଦ୍ଧିର ପ୍ରଭେଦ । ଏଠାରେ କର୍ମସଂଗ୍ରହରେ ବର୍ଣ୍ଣିତ କରଣମାନଙ୍କର ସାତ୍ତ୍ୱିକ, ରାଜସ ଓ ତାମସ ରୂପକୁ ଭଲରୂପେ ବୁଝାଇଦେବା ଉଦ୍ଦେଶ୍ୟରେ ସେଥିମଧ୍ୟରୁ ପ୍ରଧାନ 'କରଣ' ବୁଦ୍ଧିର ତିନି ରୂପ କୁହାଯାଉଛି ।

**ଧୃତି** ହେଉଛି ଧାରଣ କରୁଥିବା ଶକ୍ତିବିଶେଷର ବାଚକ; ଏହା ମଧ୍ୟ ବୁଦ୍ଧିର ଏକ ବୃତ୍ତି । ମନୁଷ୍ୟ କୌଣସି କ୍ରିୟା ବା ଭାବକୁ ଏହି ଶକ୍ତିଦ୍ୱାରା ଦୃଢ଼ତାପୂର୍ବକ ଧାରଣ କରେ । ତେଣୁ ଏହା କରଣର ହିଁ ଅନ୍ତର୍ଗତ । ଛବିଶ ଶ୍ଳୋକରେ ସାତ୍ତ୍ୱିକ କର୍ତ୍ତାଙ୍କର ଲକ୍ଷଣମାନଙ୍କରେ ଧୃତି ଶବ୍ଦର ପ୍ରୟୋଗ ହୋଇଛି; ତାହାଦ୍ୱାରା ଧୃତି କେବଳ ସାତ୍ତ୍ୱିକ ହିଁ ହୁଏ ବୋଲି ବୋଧ ହେଉଛି; କିନ୍ତୁ ପ୍ରକୃତରେ ତାହା ନୁହେଁ; ଧୃତି ମଧ୍ୟ ତିନିପ୍ରକାର । ଏହା ବୁଝାଇଦେବାପାଇଁ ଏହି ପ୍ରକରଣରେ ତିନିପ୍ରକାର ଧୃତିର ବର୍ଣ୍ଣନା ଦିଆଯାଇଛି ।

ଏଠାରେ ଗୁଣ ଅନୁସାରେ ତିନିପ୍ରକାର ବୁଦ୍ଧି ଓ ଧୃତି ସମ୍ପୂର୍ଣ୍ଣଭାବରେ ବିଭାଗପୂର୍ବକ ଶୁଣିବାକୁ କହି ଭଗବାନ୍ କହୁଛନ୍ତି, "ବୁଦ୍ଧିତତ୍ତ୍ୱ ଓ ଧୃତିତତ୍ତ୍ୱର ଲକ୍ଷଣ ସତ୍ତ୍ୱ, ରଜ ଓ ତମ— ଏହି ତିନି ଗୁଣର ସମ୍ବନ୍ଧରୁ ତିନିପ୍ରକାର ହୋଇଥାଏ । ମୁଁ ତୁମକୁ ବୁଦ୍ଧି ଓ ଧୃତିର ସେହିସବୁ ଲକ୍ଷଣ ସମ୍ପୂର୍ଣ୍ଣରୂପେ ଏବଂ ପୃଥକ୍ ପୃଥକ୍ କରି କହୁଛି । ଏଣୁ ସାତ୍ତ୍ୱିକ ବୁଦ୍ଧି ଓ ସାତ୍ତ୍ୱିକ ଧୃତି ଗ୍ରହଣ କରିବାପାଇଁ ତଥା ରାଜସ ଓ ତାମସକୁ ତ୍ୟାଗ କରିବାପାଇଁ ତୁମେ ସମସ୍ତ ଲକ୍ଷଣ ସହିତ ଏହି ଉଭୟ ତତ୍ତ୍ୱ ମୋଠାରୁ ଧ୍ୟାନପୂର୍ବକ ଶୁଣ ।"

**ସମ୍ବନ୍ଧ—** ପୂର୍ବଶ୍ଳୋକରେ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ଯେଉଁ ତିନି ତିନିପ୍ରକାର ବୁଦ୍ଧି ଓ ଧୃତି କ୍ରମଶଃ କହିବାକୁ ପ୍ରସ୍ତାବନା କରିଛନ୍ତି, ସେହି ଅନୁସାରେ ପ୍ରଥମେ ସାତ୍ତ୍ୱିକ ବୁଦ୍ଧିର ଲକ୍ଷଣ କହୁଛନ୍ତି—

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।**
**ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ।। ୩୦ ।।**

**ଅନ୍ୱୟ –** ପାର୍ଥ = ହେ ପାର୍ଥ !; ଯା = ଯେଉଁ ବୁଦ୍ଧି; **ପ୍ରବୃତ୍ତିମ୍** = ପ୍ରବୃତ୍ତିମାର୍ଗକୁ; **ଚ** = ଏବଂ; **ନିବୃତ୍ତିମ୍** = ନିବୃତ୍ତିମାର୍ଗକୁ; **କାର୍ଯ୍ୟାକାର୍ଯ୍ୟେ** = କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ; **ଭୟାଭୟେ** = ଭୟ ଓ ଅଭୟକୁ; **ଚ** = ତଥା; **ବନ୍ଧମ୍** = ବନ୍ଧନକୁ; **ଚ** = ଏବଂ; **ମୋକ୍ଷମ୍** = ମୋକ୍ଷକୁ; **ବେତ୍ତି** = ଯଥାର୍ଥ ଜାଣେ; **ସା** = ସେହି; **ବୁଦ୍ଧିଃ** = ବୁଦ୍ଧି; **ସାତ୍ତ୍ୱିକୀ** = ସାତ୍ତ୍ୱିକୀ ଅଟେ ।

**ହେ ପାର୍ଥ ! ଯେଉଁ ବୁଦ୍ଧି ପ୍ରବୃତ୍ତିମାର୍ଗ ଓ ନିବୃତ୍ତିମାର୍ଗକୁ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ, ଭୟ ଓ ଅଭୟକୁ ତଥା ବନ୍ଧନ ଓ ମୋକ୍ଷକୁ ଯଥାର୍ଥଭାବରେ ଜାଣେ, ସେହି ବୁଦ୍ଧି ସାତ୍ତ୍ୱିକୀ ।। ୩୦ ।।**

**ପ୍ରଶ୍ନ – ପ୍ରବୃତ୍ତିମାର୍ଗ** କେଉଁ ମାର୍ଗକୁ କହନ୍ତି ଏବଂ ତାହା ଯଥାର୍ଥଭାବରେ ଜାଣିବା କ'ଣ ?

**ଉତ୍ତର –** ଗୃହସ୍ଥ-ବାନପ୍ରସ୍ଥାଦି ଆଶ୍ରମରେ ରହି ମମତ୍ୱ, ଆସକ୍ତି, ଅହଙ୍କାର ଓ ଫଳେଚ୍ଛା ତ୍ୟାଗ କରି ପରମାତ୍ମପ୍ରାପ୍ତିପାଇଁ ତାଙ୍କର ଉପାସନା ତଥା ଶାସ୍ତ୍ରବିହିତ ଯଜ୍ଞ, ଦାନ ଓ ତପ ଆଦି ଶୁଭକର୍ମ କରିବାର, ନିଜ ବର୍ଣ୍ଣାଶ୍ରମଧର୍ମ ଅନୁସାରେ ଜୀବିକାକର୍ମ ଏବଂ ଶରୀରସମ୍ବନ୍ଧୀ ପାନଭୋଜନ ଆଦି କର୍ମ ନିଷ୍କାମଭାବରେ ଆଚରଣ କରିବାର ଯେଉଁ ମାର୍ଗ ରହିଛି, ତାହା ହେଉଛି **ପ୍ରବୃତ୍ତିମାର୍ଗ** । ରାଜା ଜନକ, ଅମ୍ବରୀଷ, ମହର୍ଷି ବସିଷ୍ଠ ଓ ଯାଜ୍ଞବଲ୍କ୍ୟ ଆଦିଙ୍କ ପରି ତାହା ଠିକ୍‌ଭାବରେ ବୁଝି ସେହି ଅନୁସାରେ ଚଳିବା ହିଁ ତାହା ଯଥାର୍ଥ ଜାଣିବା ।

**ପ୍ରଶ୍ନ – ନିବୃତ୍ତିମାର୍ଗ** କାହାକୁ କହନ୍ତି ଏବଂ ତାହା ଯଥାର୍ଥଭାବରେ ଜାଣିବା କ'ଣ ?

**ଉତ୍ତର –** ସମସ୍ତ କର୍ମ ଓ ଭୋଗକୁ ଭିତରୁ ଓ ବାହାରୁ ସର୍ବଥା ତ୍ୟାଗ କରି, ସନ୍ନ୍ୟାସ ଆଶ୍ରମରେ ରହି ପରମାତ୍ମପ୍ରାପ୍ତିପାଇଁ ସବୁପ୍ରକାର ସାଂସାରିକ ଜଞ୍ଜାଳ ପ୍ରତି ବିରକ୍ତ ହୋଇ ଅହଂତ୍ୱ, ମମତ୍ୱ ଓ ଆସକ୍ତି ତ୍ୟାଗପୂର୍ବକ ଶମ, ଦମ, ତିତିକ୍ଷା ଆଦି ସାଧନା ସହିତ ନିରନ୍ତର ଶ୍ରବଣ, ମନନ, ନିଦିଧ୍ୟାସନ କରିବା କିମ୍ବା କେବଳ ଭଗବାନଙ୍କ ଭଜନ, ସ୍ମରଣ, କୀର୍ତ୍ତନ ଆଦିରେ ହିଁ ଲାଗିରହିବାର ଯେଉଁ ସାଧନାମାର୍ଗ ରହିଛି, ତାହାର ନାମ **ନିବୃତ୍ତିମାର୍ଗ** । ଶ୍ରୀ ସନକାଦି, ନାରଦ, ଋଷଭଦେବ ଏବଂ ଶୁକଦେବଙ୍କ ପରି ସେହି ମାର୍ଗକୁ ଠିକ୍‌ରୂପେ ବୁଝି ସେହି ଅନୁସାରେ ଚଳିବା ହିଁ ତାହା ଯଥାର୍ଥଭାବରେ ଜାଣିବା ।

**ପ୍ରଶ୍ନ – କର୍ତ୍ତବ୍ୟ** କ'ଣ ଓ **ଅକର୍ତ୍ତବ୍ୟ** କ'ଣ ? ଏ ଦୁଇଟି ଯଥାର୍ଥଭାବରେ ଜାଣିବା କ'ଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ପ୍ରକୃତି ଓ ପରିସ୍ଥିତି ଅନୁସାରେ ତଥା ଦେଶ-କାଳ ଅନୁସାରେ ଯେ ଯେତେବେଳେ ଯେଉଁ କର୍ମ କରିବା ଉଚିତ, ତାହା ହିଁ ତା'ପାଇଁ କର୍ତ୍ତବ୍ୟ ଏବଂ ଯେଉଁ ସମୟରେ ଯେ ଯେଉଁ କର୍ମ ତ୍ୟାଗ କରିବା ଉଚିତ, ତାହା ହିଁ ତା'ପାଇଁ ଅକର୍ତ୍ତବ୍ୟ । ଏହି ଦୁଇଟିକୁ ଭଲଭାବରେ ବୁଝିପାରିବା ଅର୍ଥାତ୍ କୌଣସି କାର୍ଯ୍ୟର ସମ୍ମୁଖୀନ ହେଲେ ଉକ୍ତ କାର୍ଯ୍ୟ ନିଜପାଇଁ କର୍ତ୍ତବ୍ୟ, ନା ଅକର୍ତ୍ତବ୍ୟ, ତାହା ଯଥାର୍ଥରୂପେ ନିର୍ଣ୍ଣୟ କରିପାରିବା ହିଁ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ଯଥାର୍ଥ ଜାଣିବା ।

**ପ୍ରଶ୍ନ – ଭୟ** କ'ଣ ଓ **ଅଭୟ** କ'ଣ ? ଏହି ଦୁଇଟିକୁ ଯଥାର୍ଥ ଜାଣିବା କ'ଣ ?

**ଉତ୍ତର –** କୌଣସି ଦୁଃଖପ୍ରଦ ବସ୍ତୁ ବା ଘଟଣା ଉପସ୍ଥିତ ହେଲେ ବା ତାହାର ସମ୍ଭାବନା ଦେଖାଦେଲେ ମନୁଷ୍ୟର ଅନ୍ତଃକରଣରେ ଯେଉଁ ଏକ ଆକୁଳତାପୂର୍ଣ୍ଣ କମ୍ପବୃତ୍ତି ଜାତ ହୁଏ, ତାହାକୁ **ଭୟ** କହନ୍ତି ଏବଂ ତାହାର ବିପରୀତରେ ଭୟର ଅଭାବବୃତ୍ତିକୁ, **ଅଭୟ** କହନ୍ତି । ଏ ଦୁଇଟି ତତ୍ତ୍ୱ ଜାଣିଯିବା ଅର୍ଥାତ୍ ଭୟ କ'ଣ ଓ ଅଭୟ କ'ଣ ତଥା କେଉଁ କେଉଁ କାରଣରୁ ମନୁଷ୍ୟର ଭୟ ହୁଏ ଏବଂ କିପରିଭାବରେ ତାହାର ନିବୃତ୍ତି ହୋଇ **ଅଭୟ** ଅବସ୍ଥା ପ୍ରାପ୍ତ ହୋଇପାରେ, ତାହା ଭଲଭାବରେ ବୁଝି ନିର୍ଭୟ ହୋଇଯିବା ହିଁ ଭୟ ଓ ଅଭୟକୁ ଯଥାର୍ଥ ଜାଣିବା ।

**ପ୍ରଶ୍ନ – ବନ୍ଧନ** ଓ **ମୋକ୍ଷ** କ'ଣ ?

**ଉତ୍ତର –** ଶୁଭାଶୁଭ କର୍ମମାନଙ୍କର ସମ୍ବନ୍ଧହେତୁ ଅନାଦିକାଳରୁ ଜୀବକୁ ନିରନ୍ତର ପରବଶ ହୋଇ

ଜନ୍ମ-ମୃତ୍ୟୁର ଚକ୍ରରେ ଯାହା ଘୂରିବାକୁ ପଡ଼େ, ତାହା ହିଁ **ବନ୍ଧନ** ଏବଂ ସତ୍‌ସଙ୍ଗପ୍ରଭାବରୁ କର୍ମଯୋଗ, ଭକ୍ତିଯୋଗ ତଥା ଜ୍ଞାନଯୋଗ ଆଦି ସାଧନାମାନଙ୍କ ମଧ୍ୟରୁ କୌଣସି ଏକ ସାଧନା କରିବାଦ୍ୱାରା ଭଗବଦ୍‌କୃପାରୁ ସମସ୍ତ ଶୁଭାଶୁଭ କର୍ମବନ୍ଧନ କଟିଯିବା ଏବଂ ଜୀବ ଭଗବାନଙ୍କୁ ପ୍ରାପ୍ତ ହୋଇଯିବା ହିଁ **ମୋକ୍ଷ** ।

**ପ୍ରଶ୍ନ –** ବନ୍ଧନ ଓ ମୋକ୍ଷକୁ ଯଥାର୍ଥ ଜାଣିବା କ'ଣ ?

**ଉତ୍ତର –** ବନ୍ଧନ କ'ଣ, କେଉଁ କାରଣରୁ ଏହି ଜୀବର ବନ୍ଧନ ହୁଏ ଏବଂ କେଉଁ କେଉଁ କାରଣରୁ ଏହି ବନ୍ଧନ ଦୃଢ଼ ହୋଇଯାଏ – ଏହିସବୁ କଥା ଭଲଭାବରେ ବୁଝିନେବା ହିଁ ବନ୍ଧନକୁ ଯଥାର୍ଥ ଜାଣିବା ଏବଂ ସେହି ବନ୍ଧନରୁ ମୁକ୍ତ ହେବା କ'ଣ, ତଥା କେଉଁ କେଉଁ ଉପାୟରେ କିପରିଭାବରେ ମନୁଷ୍ୟ ବନ୍ଧନରୁ ମୁକ୍ତ ହୋଇପାରିବ, ତାହା ଠିକ୍‌ରୂପେ ଜାଣିପାରିବା ହିଁ ମୋକ୍ଷକୁ ଯଥାର୍ଥରୂପେ ଜାଣିବା ।

**ପ୍ରଶ୍ନ –** 'ସେହି ବୁଦ୍ଧି ସାତ୍ତ୍ୱିକୀ ଅଟେ' – ଏହି କଥନର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ବୁଦ୍ଧି ଉପରୋକ୍ତ ବିଷୟଗୁଡ଼ିକୁ ଠିକ୍‌ରୂପେ ନିର୍ଣ୍ଣୟ କରିପାରେ, ସେମାନଙ୍କ ଭିତରୁ କୌଣସି ବି ବିଷୟ ନିର୍ଣ୍ଣୟ କରିବାରେ ତାହା ଦ୍ୱାରା ଭୁଲ୍ ହୁଏ ନାହିଁ, କି ସଂଶୟ ରହେ ନାହିଁ, ଯେତେବେଳେ ଯେଉଁ କଥା ନିର୍ଣ୍ଣୟ କରିବା ଆବଶ୍ୟକ ହୁଏ, ସେତେବେଳେ ତାହା ଯଥାର୍ଥ ନିର୍ଣ୍ଣୟ କରିଦିଏ, ସେହି ବୁଦ୍ଧି ହିଁ ସାତ୍ତ୍ୱିକୀ ବୁଦ୍ଧି। ସାତ୍ତ୍ୱିକୀବୁଦ୍ଧି ମନୁଷ୍ୟକୁ ସଂସାରବନ୍ଧନରୁ ମୁକ୍ତ କରି ପରମପଦ ପ୍ରାପ୍ତ କରାଇବାରେ ସମର୍ଥ ହୁଏ; ତେଣୁ କଲ୍ୟାଣ ଇଚ୍ଛା କରୁଥିବା ମନୁଷ୍ୟ ନିଜର ବୁଦ୍ଧିକୁ ସାତ୍ତ୍ୱିକୀ କରିନେବା ଉଚିତ।

**ସମ୍ବନ୍ଧ –** ବର୍ତ୍ତମାନ ଭଗବାନ୍ ରାଜସୀ ବୁଦ୍ଧିର ଲକ୍ଷଣ କହୁଛନ୍ତି–

## ଯୟା ଧର୍ମମଧର୍ମଂ ଚ କାର୍ଯ୍ୟଂ ଚାକାର୍ଯ୍ୟମେବ ଚ ।
## ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ ।। ୩୧ ।।

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ ! **ଯୟା** = (ମନୁଷ୍ୟ) ଯେଉଁ ବୁଦ୍ଧିଦ୍ୱାରା; **ଧର୍ମମ୍** = ଧର୍ମକୁ; **ଚ** = ଏବଂ; **ଅଧର୍ମମ୍** = ଅଧର୍ମକୁ; **ଚ** = ତଥା; **କାର୍ଯ୍ୟମ୍** = କର୍ତ୍ତବ୍ୟକୁ; **ଚ** = ଏବଂ; **ଅକାର୍ଯ୍ୟମ୍** = ଅକର୍ତ୍ତବ୍ୟକୁ; **ଏବ** = ମଧ; **ଅଯଥାବତ୍**, **ପ୍ରଜାନାତି** = ଯଥାର୍ଥରୂପେ ଜାଣେ ନାହିଁ; **ସା** = ସେହି; **ବୁଦ୍ଧିଃ** = ବୁଦ୍ଧି; **ରାଜସୀ** = ରାଜସୀ ।

**ହେ ପାର୍ଥ ! ମନୁଷ୍ୟ ଯେଉଁ ବୁଦ୍ଧିଦ୍ୱାରା ଧର୍ମ ଓ ଅଧର୍ମକୁ ତଥା କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ବି ଯଥାର୍ଥଭାବରେ ଜାଣେ ନାହିଁ, ସେହି ବୁଦ୍ଧି ରାଜସୀ ।। ୩୧ ।।**

**ପ୍ରଶ୍ନ –** ଧର୍ମ କାହାକୁ କହନ୍ତି ଓ ଅଧର୍ମ କାହାକୁ କହନ୍ତି ? ଏ ଦୁଇଟିକୁ 'ଯଥାର୍ଥ ଜାଣି ନ ପାରିବା' କହିଲେ କ'ଣ ବୁଝାଏ ?

**ଉତ୍ତର –** ଅହିଂସା, ସତ୍ୟ, ଦୟା, ଶାନ୍ତି, ବ୍ରହ୍ମଚର୍ଯ୍ୟ, ଶମ, ଦମ, ତିତିକ୍ଷା ତଥା ଯଜ୍ଞ, ଦାନ, ତପ ଏବଂ ଅଧ୍ୟୟନ, ଅଧ୍ୟାପନ, ପ୍ରଜାପାଳନ, କୃଷି, ପଶୁପାଳନ ଏବଂ ସେବା ଆଦି ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଯେତେ ବି ଶାସ୍ତ୍ରବିହିତ ଶୁଭକର୍ମ ରହିଛି, ଯେଉଁ କର୍ମମାନଙ୍କ ଆଚରଣର ଫଳ ଶାସ୍ତ୍ରରେ ଇହଲୋକ ଏବଂ ପରଲୋକର ସୁଖଭୋଗ ବୋଲି କୁହାଯାଇଛି ତଥା ଯାହା ଅନ୍ୟମାନଙ୍କର ହିତକର କର୍ମ, ସେହି ସମସ୍ତର ନାମ **ଧର୍ମ** ★ ।

---

★ ଶାସ୍ତ୍ରରେ ଧର୍ମର ବହୁ ମହିମା ବର୍ଣ୍ଣିତ ହୋଇଛି। **ବୃହଦ୍ଧର୍ମପୁରାଣ**ରେ କୁହାଯାଇଛି– ଏହି ବିଶ୍ୱକୁ ରକ୍ଷା କରୁଥିବା ବୃଷଭରୂପୀ ଧର୍ମର ଚାରିପାଦ ସ୍ୱୀକାର କରାଯାଇଛି। ସତ୍ୟଯୁଗରେ ଚାରିପାଦ ପୂରା ରହେ; କିନ୍ତୁ ତ୍ରେତାରେ ତିନିପାଦ, ଦ୍ୱାପରରେ ଦୁଇପାଦ ଏବଂ କଳିଯୁଗରେ ଏକପାଦମାତ୍ର ରହିଯାଏ।

ଧର୍ମର ଚାରିପାଦ ହେଲା – ସତ୍ୟ, ଦୟା, ଶାନ୍ତି ଓ ଅହିଂସା।

ସତ୍ୟଂ ଦୟା ତଥା ଶାନ୍ତିରହିଂସା ଚେତି କୀର୍ତ୍ତିତା। ଧର୍ମସ୍ୟାବୟବାସ୍ତାତ ଚତ୍ୱାରଃ ପୂର୍ଣ୍ଣତାଂ ଗତାଃ।।

ମିଥ୍ୟା କପଟ, ଚୋରି, ବ୍ୟଭିଚାର, ହିଂସା, ଦମ୍ଭ, ଅଭକ୍ଷ-ଭକ୍ଷଣ ଆଦି ଯେତେ ପାପକର୍ମ ଅଛି, ଯାହାର ଫଳ ଶାସ୍ତ୍ରରେ ଦୁଃଖ ବୋଲି କୁହାଯାଇଛି, ସେହିସବୁର ନାମ ଅଧର୍ମ। କେଉଁ ସମୟରେ, କେଉଁ

---

ଏଥିରେ ସତ୍ୟ ବାର ପ୍ରକାର ବୋଲି କୁହାଯାଇଛି, ଯଥା –

**''ଅମିଥ୍ୟାବଚନଂ ସତ୍ୟଂ ସ୍ୱୀକାରପ୍ରତିପାଳନଂ। ପ୍ରିୟବାକ୍ୟଂ ଗୁରୋଃ ସେବା ଦୃଢ଼ଂ ଚୈବ ବ୍ରତଂ କୃତମ୍॥**

**ଆସ୍ତିକ୍ୟଂ ସାଧୁସଙ୍ଗଶ୍ଚ ପିତୃର୍ମାତୁଃ ପ୍ରିୟଙ୍କରଃ। ଶୁଚିତ୍ୱଂ ଦ୍ୱିବିଧଂ ଚୈବ ହ୍ରୀରସଞ୍ଚୟ ଏବ ଚ॥**

'ମିଥ୍ୟା ନ କହିବା, ସ୍ୱୀକାର କରିଥିବା କଥା ପାଳନ କରିବା, ପ୍ରିୟବଚନ କହିବା, ଗୁରୁଙ୍କ ସେବା କରିବା, ନିୟମକୁ ଦୃଢ଼ଭାବରେ ପାଳନ କରିବା, ଆସ୍ତିକତା, ସାଧୁସଙ୍ଗ, ମାତା-ପିତାଙ୍କର ପ୍ରିୟକାର୍ଯ୍ୟ, ବାହ୍ୟଶୌଚ-ଆନ୍ତରଶୌଚ, ଲଜ୍ଜା ଓ ଅପରିଗ୍ରହ।'

ଦୟା ଛ'ପ୍ରକାର, ଯଥା –

**'ପରୋପକାରୋ ଦାନଂ ଚ ସର୍ବଦା ସ୍ମିତଭାଷଣମ୍। ବିନୟୋ ନ୍ୟୂନତାଭାବସ୍ୱୀକାରଃ ସମତାମତିଃ॥**

'ପରୋପକାର, ଦାନ, ସଦା ହସ ହସ ହୋଇ କଥା କହିବା, ବିନୟ, ନିଜକୁ ଛୋଟ ବୋଲି ବୁଝିବା ଏବଂ ସମତ୍ୱବୁଦ୍ଧି।'

ଶାନ୍ତିର ତିରିଶଟି ଲକ୍ଷଣ ରହିଛି, ଯଥା –

**ଅନସୂୟାଽଲ୍ପସନ୍ତୋଷ ଇନ୍ଦ୍ରିୟାଣାଂ ଚ ସଂଯମଃ। ଅସଙ୍ଗୋ ମୌନମେବଂ ଦେବପୂଜାବିଧୌ ମତିଃ॥**

**ଅକୁତଶ୍ଚିଦ୍ଭୟତ୍ୱଂ ଚ ଗାମ୍ଭୀର୍ଯ୍ୟଂ ସ୍ଥିରଚିତ୍ତତା। ଅରୁକ୍ଷଭାବଃ ସର୍ବତ୍ର ନିଃସ୍ପୃହତ୍ୱଂ ଦୃଢ଼ା ମତିଃ॥**

**ବିବର୍ଜନଂ ହ୍ୟକାର୍ଯ୍ୟାଣାଂ ସମଃ ପୂଜାପମାନୟୋଃ। ଶ୍ଲାଘା ପରଗୁଣେଽସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଧୃତିଃ କ୍ଷମା॥**

**ଆତିଥ୍ୟଂ ଚ ଜପୋ ହୋମସ୍ତୀର୍ଥସେବାଽଽର୍ଯସେବନମ୍। ଅମତ୍ସରୋ ବନ୍ଧମୋକ୍ଷଜ୍ଞାନଂ ସଂନ୍ୟାସଭାବନା॥**

**ସହିଷ୍ଣୁତା ସୁଦୁଃଖେଷୁ ଅକାର୍ପଣ୍ୟମମୂର୍ଖତା।**

'କାହାରିଠାରେ ଦୋଷ ନ ଦେଖିବା, ଅଳ୍ପରେ ସନ୍ତୁଷ୍ଟ ରହିବା, ଇନ୍ଦ୍ରିୟସଂଯମ, ଭୋଗରେ ଅନାସକ୍ତି, ମୌନ, ଦେବପୂଜାରେ ମନ ଲଗାଇବା, ନିର୍ଭୟତା, ଗମ୍ଭୀରତା, ଚିତ୍ତର ସ୍ଥିରତା, ରୁକ୍ଷତାର ଅଭାବ, ସର୍ବତ୍ର ନିଃସ୍ପୃହତା, ନିଶ୍ଚୟାତ୍ମିକା ବୁଦ୍ଧି, ନ କରିବାଯୋଗ୍ୟ କାର୍ଯ୍ୟ ତ୍ୟାଗ, ମାନ-ଅପମାନରେ ସମତା, ଅନ୍ୟର ଗୁଣକୁ ପ୍ରଶଂସା କରିବା, ଚୋରି ନ କରିବା, ବ୍ରହ୍ମଚର୍ଯ୍ୟ, ଧୈର୍ଯ୍ୟ, କ୍ଷମା, ଅତିଥିସତ୍କାର, ଜପ, ହୋମ, ତୀର୍ଥସେବା, ଶ୍ରେଷ୍ଠ ପୁରୁଷଙ୍କର ସେବା, ମତ୍ସରହୀନତା, ବନ୍ଧନ-ମୋକ୍ଷର ଜ୍ଞାନ, ସଂନ୍ୟାସଭାବନା, ଅତିଦୁଃଖରେ ମଧ୍ୟ ସହିଷ୍ଣୁତା, କୃପଣତାର ଅଭାବ ଏବଂ ମୂର୍ଖତାର ଅଭାବ।'

ଅହିଂସାର ସାତଟି ଭାବ ଅଛି—

**ଅହିଂସା ତ୍ୱାସନଜୟଃ ପରପୀଡ଼ାବିବର୍ଜନମ୍। ଶ୍ରଦ୍ଧା ଚାତିଥ୍ୟସେବା ଚ ଶାନ୍ତରୂପପ୍ରଦର୍ଶନମ୍॥**

**ଆତ୍ମୀୟତା ଚ ସର୍ବତ୍ର ଆତ୍ମବୁଦ୍ଧିଃ ପରାତ୍ମସୁ।**

'ଆସନଜୟ, ଅନ୍ୟକୁ କାୟ-ମନ-ବାକ୍ୟରେ ଦୁଃଖ ନ ଦେବା, ଶ୍ରଦ୍ଧା, ଅତିଥିସତ୍କାର, ଶାନ୍ତଭାବ ପ୍ରଦର୍ଶନ, ସର୍ବତ୍ର ଆତ୍ମୀୟତା ଏବଂ ପରଠାରେ ମଧ୍ୟ ଆତ୍ମବୁଦ୍ଧି।'

ଏହା ଧର୍ମ ଅଟେ। ଏହି ଧର୍ମକୁ ଅଳ୍ପ କିଛି ଆଚରଣ କଲେ ମଧ୍ୟ ଏହା ପରମ ଲାଭଦାୟକ ହୁଏ ଏବଂ ଏହାର ବିପରୀତ ଆଚରଣ ଅତ୍ୟନ୍ତ ହାନିକାରକ–

**ଯଥା ସ୍ୱଳ୍ପମଧର୍ମଂ ହି ଜନୟେତ୍ ତୁ ମହାଭୟମ୍। ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍॥**

(ବୃହଦ୍ଧର୍ମପୁରାଣ - ପୂର୍ବଖଣ୍ଡ ୧/୪୭)

'ସାମାନ୍ୟମାତ୍ର ଅଧର୍ମ ଆଚରଣ ଯେପରି ମହାଭୟ ଉତ୍ପନ୍ନ କରିଥାଏ, ଧର୍ମର ଅଳ୍ପ ଆଚରଣ ମଧ୍ୟ ସେହିପରି ମହାଭୟରୁ ରକ୍ଷା କରିଦିଏ।'

ଧର୍ମର ଏହି ଚାରିପାଦ ପାଳନ କରିବା ସହିତ ନିଜ ନିଜର ବର୍ଣ୍ଣାଶ୍ରମ ଅନୁସାରେ ମଧ୍ୟ ଧର୍ମ ଆଚରଣ କରିବା ଉଚିତ।

ପରିସ୍ଥିତିରେ କେଉଁ କର୍ମ ଧର୍ମ ଏବଂ କେଉଁ କର୍ମ ଅଧର୍ମ, ତାହା ଠିକ୍ ଠିକ୍ ନିର୍ଣ୍ଣୟ କରିବାରେ ବୁଦ୍ଧି କୁଣ୍ଠିତ ହୋଇଯିବା ବା ସଂଶୟଯୁକ୍ତ ହୋଇଯିବା ହିଁ ଧର୍ମ ଓ ଅଧର୍ମକୁ ଯଥାର୍ଥଭାବରେ ଜାଣି ନ ପାରିବା।

**ପ୍ରଶ୍ନ –** କାର୍ଯ୍ୟ କ'ଣ, ଅକାର୍ଯ୍ୟ କ'ଣ, ତଥା ଧର୍ମ-ଅଧର୍ମ ମଧ୍ୟରେ ଓ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ମଧ୍ୟରେ ପାର୍ଥକ୍ୟ କ'ଣ? କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ଯଥାର୍ଥ ନ ଜାଣିବା କ'ଣ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ପ୍ରକୃତି, ପରିସ୍ଥିତି ତଥା ଦେଶ ଓ କାଳ ଦୃଷ୍ଟିରୁ ଯେଉଁ ମନୁଷ୍ୟର ଯାହା କିଛି ଶାସ୍ତ୍ରବିହିତ କରଣୀୟ କର୍ମ ରହିଛି, ତାହା ହେଉଛି କାର୍ଯ୍ୟ (କର୍ତ୍ତବ୍ୟ)। ଯାହାଙ୍କ ପାଇଁ ଶାସ୍ତ୍ରରେ ଯେଉଁ କର୍ମ ଅକରଣୀୟ— ନିଷିଦ୍ଧ ବୋଲି କୁହାଯାଇଛି– ବରଂ ଯାହା ନ କରିବା ହିଁ ଉଚିତ, ତାହା ହେଉଛି ଅକାର୍ଯ୍ୟ (ଅକର୍ତ୍ତବ୍ୟ)। ଶାସ୍ତ୍ରନିଷିଦ୍ଧ ପାପକର୍ମ ତ ସମସ୍ତଙ୍କ ପାଇଁ ଅକାର୍ଯ୍ୟ ହିଁ ଅଟେ, କିନ୍ତୁ ଶାସ୍ତ୍ରବିହିତ ଶୁଭକର୍ମମାନଙ୍କ ଭିତରୁ ମଧ୍ୟ କେତେକ କର୍ମ କେତେକଙ୍କ ପାଇଁ କର୍ତ୍ତବ୍ୟ ହୁଏ ତ, କେତେକଙ୍କ ପାଇଁ ଅକାର୍ଯ୍ୟ ବା ଅକର୍ତ୍ତବ୍ୟ ହୋଇଯାଏ। ଯଥା – ଶୂଦ୍ରଙ୍କ ପାଇଁ ସେବା-କରିବା କାର୍ଯ୍ୟ ଏବଂ ଯଜ୍ଞ ବେଦାଧ୍ୟୟନ ଆଦି ଅକାର୍ଯ୍ୟ; ସନ୍ନ୍ୟାସୀଙ୍କ ପାଇଁ ବିବେକ, ବୈରାଗ୍ୟ, ଶମ, ଦମାଦି ସାଧନା କାର୍ଯ୍ୟ ଏବଂ ଯଜ୍ଞଦାନାଦି ଆଚରଣ କରିବା ଅକାର୍ଯ୍ୟ; ବ୍ରାହ୍ମଣଙ୍କ ପାଇଁ ଯଜ୍ଞ କରିବା-କରାଇବା, ଦାନ ଦେବା-ନେବା, ବେଦ ପଢ଼ିବା-ପଢ଼ାଇବା କାର୍ଯ୍ୟ, ଏବଂ ଚାକିରି କରିବା ଅକାର୍ଯ୍ୟ; ବୈଶ୍ୟଙ୍କ ପାଇଁ କୃଷି, ଗୋରକ୍ଷା ଏବଂ ବାଣିଜ୍ୟାଦି କାର୍ଯ୍ୟ, ଏବଂ ଦାନ ନେବା ଅକାର୍ଯ୍ୟ। ସେହିପରି ସ୍ୱର୍ଗାଦି କାମନାଯୁକ୍ତ ମନୁଷ୍ୟଙ୍କ ପାଇଁ କାମ୍ୟ-କର୍ମ କାର୍ଯ୍ୟ, ଏବଂ ମୁମୁକ୍ଷୁଙ୍କ ପାଇଁ ତାହା ଅକାର୍ଯ୍ୟ। ବିରକ୍ତ ବ୍ରାହ୍ମଣଙ୍କ ନିମନ୍ତେ ସନ୍ନ୍ୟାସ ଗ୍ରହଣ କରିବା କାର୍ଯ୍ୟ ଓ ଭୋଗାସକ୍ତଙ୍କ ନିମନ୍ତେ ତାହା ଅକାର୍ଯ୍ୟ। ଏହାଦ୍ୱାରା ସିଦ୍ଧ ହେଲା ଯେ, ଶାସ୍ତ୍ରବିହିତ ଧର୍ମ ହୋଇଥିବାରୁ ହିଁ ଗୋଟିଏ କର୍ମ ସମସ୍ତଙ୍କ ପାଇଁ କର୍ତ୍ତବ୍ୟ ହୋଇଯାଏନା। ସେହିପରି ଧର୍ମ ମଧ୍ୟ କେତେକଙ୍କ ପାଇଁ କାର୍ଯ୍ୟ ହୋଇପାରେ ଏବଂ ଅକାର୍ଯ୍ୟ ମଧ୍ୟ ହୋଇପାରେ। ଏହା ହିଁ ଧର୍ମ-ଅଧର୍ମ ଓ କାର୍ଯ୍ୟ-ଅକାର୍ଯ୍ୟର ପାର୍ଥକ୍ୟ। କୌଣସି କର୍ମ କରିବାପାଇଁ ବା ଛାଡ଼ିବାପାଇଁ ଅବସର ଆସିଲେ 'ଅମୁକ କର୍ମ ମୋ ପାଇଁ କର୍ତ୍ତବ୍ୟ, ନା ଅକର୍ତ୍ତବ୍ୟ, ମୋତେ କେଉଁ କର୍ମ କିପରି କରିବାକୁ ହେବ ଏବଂ କେଉଁ କର୍ମ ଛାଡ଼ିବାକୁ ହେବ,– ଏସବୁ ଠିକ୍‌ରୂପେ ନିର୍ଣ୍ଣୟ କରିବାରେ ବୁଦ୍ଧି ଯେଉଁ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ ବା ସଂଶୟଯୁକ୍ତ ହୋଇଯାଏ, ତାହା ହିଁ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ଯଥାର୍ଥ ଜାଣି ନ ପାରିବା।

**ପ୍ରଶ୍ନ –** 'ସେହି ବୁଦ୍ଧି ରାଜସୀ ଅଟେ' – ଏ କଥାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ବୁଦ୍ଧିରେ ମନୁଷ୍ୟ ଧର୍ମ-ଅଧର୍ମ ଓ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଠିକ୍‌ରୂପେ ନିର୍ଣ୍ଣୟ କରିପାରେ ନାହିଁ, ଯେଉଁ ବୁଦ୍ଧି ଏପରି ଅନ୍ୟାନ୍ୟ ବିଷୟ ମଧ୍ୟ ସଠିକ୍ ନିର୍ଣ୍ଣୟ କରିବାକୁ ସମର୍ଥ ହୋଇପାରେ ନାହିଁ, ତାହା ରଜୋଗୁଣର ସମ୍ବନ୍ଧହେତୁ ବିବେକରେ ପ୍ରତିଷ୍ଠିତ ହୋଇ ନ ପାରି ବିକ୍ଷିପ୍ତ ଏବଂ ଅସ୍ଥିର ହୋଇଯାଏ। ତେଣୁ ତାହା ରାଜସୀ। ରାଜସ ଭାବର ଫଳ ଦୁଃଖ ବୋଲି କୁହାଯାଇଛି; ଅତଏବ କଲ୍ୟାଣକାମୀ ପୁରୁଷମାନେ ସତ୍‌ସଙ୍ଗ, ସଦ୍‌ଗ୍ରନ୍ଥ-ଅଧ୍ୟୟନ ଏବଂ ସଦ୍‌ବିଚାରପୋଷଣପୂର୍ବକ ବୁଦ୍ଧିରେ ରହିଥିବା ରାଜସଭାବଗୁଡ଼ିକ ତ୍ୟାଗ କରି ଅନ୍ତରରେ ସାତ୍ତ୍ୱିକ ଭାବ ଉତ୍ପନ୍ନ କରିବାକୁ ତଥା ବଢ଼ାଇବାକୁ ଚେଷ୍ଟା କରିବା ଉଚିତ।

**ସମ୍ବନ୍ଧ –** ଭଗବାନ୍ ବର୍ତ୍ତମାନ ତାମସୀ ବୁଦ୍ଧିର ଲକ୍ଷଣ କହୁଛନ୍ତି–

**ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା।**
**ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ॥ ୩୨ ॥**

**ଅନ୍ୱୟ –** **ପାର୍ଥ** = ହେ ଅର୍ଜୁନ; **ଯା** = ଯେଉଁ; **ତମସା** = ତମୋଗୁଣଦ୍ୱାରା; **ଆବୃତା** = ଆବୃତ ହୋଇଥିବା ବୁଦ୍ଧି; **ଅଧର୍ମମ୍** = ଅଧର୍ମକୁ (ମଧ୍ୟ); **ଧର୍ମମ୍** = ଧର୍ମ; **ଇତି** = ବୋଲି; **ମନ୍ୟତେ** = ମାନିନିଏ; **ଚ** = ତଥା; **ସର୍ବାର୍ଥାନ୍** = ସକଳ ପଦାର୍ଥକୁ (ଏହିପରି); **ବିପରୀତାନ୍** = ବିପରୀତ; **(ମନ୍ୟତେ)** = ଧରିନିଏ; **ସା** = ସେହି; **ବୁଦ୍ଧିଃ** = ବୁଦ୍ଧି; **ତାମସୀ** = ତାମସୀ।

**ହେ ଅର୍ଜୁନ! ଅଜ୍ଞାନଦ୍ୱାରା ଆବୃତ ହୋଇଥିବା ଯେଉଁ ବୁଦ୍ଧି ଅଧର୍ମକୁ ଧର୍ମ ବୋଲି ମାନିନିଏ ତଥା ଅନ୍ୟ ସକଳ ପଦାର୍ଥକୁ ବି ଏହିପରି ବିପରୀତରୂପେ ଧରିନିଏ, ସେହି ବୁଦ୍ଧି ତାମସୀ ।। ୩୨ ।।**

**ପ୍ରଶ୍ନ –** ଅଧର୍ମକୁ ଧର୍ମ ବୋଲି ମାନିବା କ'ଣ ଏବଂ ଧର୍ମକୁ ଅଧର୍ମ ବୋଲି ମାନିବା କ'ଣ ?

**ଉତ୍ତର –** ଈଶ୍ୱରନିନ୍ଦା, ଦେବନିନ୍ଦା, ଶାସ୍ତ୍ରବିରୋଧ, ମାତା-ପିତା-ଗୁରୁ ଆଦିଙ୍କର ଅପମାନ, ବର୍ଣ୍ଣାଶ୍ରମଧର୍ମର ପ୍ରତିକୂଳ ଆଚରଣ, ଅସନ୍ତୋଷ, ଦମ୍ଭ, କପଟ, ବ୍ୟଭିଚାର, ଅସତ୍ୟଭାଷଣ, ପରପୀଡ଼ନ, ଅଭକ୍ଷ୍ୟଭୋଜନ, ଯଥେଚ୍ଛାଚାର ଓ ପରସ୍ୱତ୍ୱାପହରଣ ଆଦି ନିଷିଦ୍ଧ ପାପକର୍ମକୁ ଧର୍ମ ବୋଲି ମାନିନେବା ଏବଂ ଧୃତି, କ୍ଷମା, ମନୋନିଗ୍ରହ, ଅସ୍ତେୟ, ଶୌଚ, ଇନ୍ଦ୍ରିୟନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ, ଈଶ୍ୱରପୂଜନ, ଦେବୋପାସନା, ଶାସ୍ତ୍ରସେବନ, ବର୍ଣ୍ଣାଶ୍ରମଧର୍ମାନୁସାରେ ଆଚରଣ, ମାତା-ପିତା ଆଦି ଗୁରୁଜନଙ୍କର ଆଜ୍ଞାପାଳନ, ସରଳତା, ବ୍ରହ୍ମଚର୍ଯ୍ୟ, ସାତ୍ତ୍ୱିକ ଭୋଜନ, ଅହିଂସା ଓ ପରୋପକାର ଆଦି ଶାସ୍ତ୍ରବିହିତ ପୁଣ୍ୟକର୍ମକୁ ଅଧର୍ମ ବୋଲି ମାନିବା ହିଁ ଅଧର୍ମକୁ ଧର୍ମ ଏବଂ ଧର୍ମକୁ ଅଧର୍ମ ବୋଲି ମାନିବା ।

**ପ୍ରଶ୍ନ –** ଅନ୍ୟ ସମସ୍ତ ପଦାର୍ଥର ଏହିପରି ବିପରୀତ ଅର୍ଥ କରିବା କ'ଣ ?

**ଉତ୍ତର –** ଅଧର୍ମକୁ ଧର୍ମ ବୋଲି ମାନିନେବା ପରି ଅକର୍ତ୍ତବ୍ୟକୁ କର୍ତ୍ତବ୍ୟ, ଦୁଃଖକୁ ସୁଖ, ଅନିତ୍ୟକୁ ନିତ୍ୟ, ଅଶୁଦ୍ଧକୁ ଶୁଦ୍ଧ ଓ ହାନିକୁ ଲାଭ ବୋଲି ଧରିନେବା ଆଦି ଯେତେ ବିପରୀତ ଜ୍ଞାନ ଅଛି, ତାହା ହିଁ ସମସ୍ତ ପଦାର୍ଥର ବିପରୀତ ଅର୍ଥ କରିବା ।

**ପ୍ରଶ୍ନ –** 'ସେହି ବୁଦ୍ଧି ତାମସୀ ଅଟେ'– ଏହି କଥନର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଅଜ୍ଞାନଦ୍ୱାରା ଢାଙ୍କି ହୋଇ ରହିଥିବାରୁ ଯେଉଁ ବୁଦ୍ଧିରୁ ବିବେକଶକ୍ତି ସର୍ବଥା ଲୁପ୍ତପ୍ରାୟ ହୋଇଯାଇଥାଏ ଓ ତା' ଫଳରେ ପ୍ରତ୍ୟେକ ବିଷୟକୁ ସମ୍ପୂର୍ଣ୍ଣ ବିପରୀତ ବୁଝିବାର ବୃତ୍ତି ଜାତ ହୁଏ, ସେହି ବୁଦ୍ଧି ତାମସୀ ଅଟେ । ଏପରି ବୁଦ୍ଧି ମନୁଷ୍ୟକୁ ଅଧୋଗତି ଆଣିଦିଏ । ତେଣୁ କଲ୍ୟାଣ ଚାହୁଁଥିବା ମନୁଷ୍ୟ ଏପରି ବିପରୀତ ବୁଦ୍ଧି ସର୍ବଥା ତ୍ୟାଗ କରିବା ଉଚିତ ।

**ସମ୍ବନ୍ଧ –** *ଭଗବାନ୍ ବର୍ତ୍ତମାନ ସାତ୍ତ୍ୱିକୀ ଧୃତିର ଲକ୍ଷଣ କହୁଛନ୍ତି–*

**ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।**
**ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ।। ୩୩ ।।**

**ଅନ୍ୱୟ –** **ପାର୍ଥ** = ହେ ପାର୍ଥ ! **ଯୟା** = ଯେଉଁ; **ଅବ୍ୟଭିଚାରିଣ୍ୟା** = ଅବ୍ୟଭିଚାରିଣୀ; **ଧୃତ୍ୟା** = ଧୃତିଦ୍ୱାରା (ମନୁଷ୍ୟ); **ଯୋଗେନ** = ଧ୍ୟାନଯୋଗଦ୍ୱାରା; **ମନଃପ୍ରାଣେନ୍ଦ୍ରିୟକ୍ରିୟାଃ** = ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କ କ୍ରିୟାମାନଙ୍କୁ; **ଧାରୟତେ** = ଧାରଣ କରେ; **ସା** = ସେହି; **ଧୃତିଃ** = ଧୃତି; **ସାତ୍ତ୍ୱିକୀ** = ସାତ୍ତ୍ୱିକୀ ।

**ହେ ପାର୍ଥ ! ଯେଉଁ ଅବ୍ୟଭିଚାରିଣୀ ଧୃତିଦ୍ୱାରା ମନୁଷ୍ୟ ଧ୍ୟାନଯୋଗ ସାଧନାରେ ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ଧାରଣ କରେ, ସେହି ଧୃତି ସାତ୍ତ୍ୱିକୀ ।। ୩୩ ।।**

**ପ୍ରଶ୍ନ –** ଏଠାରେ **ଅବ୍ୟଭିଚାରିଣ୍ୟା** ବିଶେଷଣ ସହିତ **ଧୃତ୍ୟା** ପଦ କାହାର ବାଚକ ? ସେଥିରେ ଧ୍ୟାନଯୋଗଦ୍ୱାରା ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ଧାରଣ କରିବା କ'ଣ ?

**ଉତ୍ତର –** କୌଣସି କ୍ରିୟା, ଭାବ ବା ବୃତ୍ତିକୁ ଧାରଣ କରିବାର, ତାହାକୁ ଦୃଢ଼ତାପୂର୍ବକ ସ୍ଥିର ରଖିବାର ଯେଉଁ ଶକ୍ତିବିଶେଷ ରହିଛି, ଯାହାଦ୍ୱାରା ଧାରଣ କରାଯାଇଥିବା କୌଣସି ବି କ୍ରିୟା, ଭାବନା ବା ବୃତ୍ତି ବିଚଳିତ ହୁଏ ନାହିଁ, ବରଂ ଚିରକାଳପର୍ଯ୍ୟନ୍ତ ସ୍ଥିର ରହେ, ସେହି ଶକ୍ତିବିଶେଷର ନାମ **ଧୃତି;** କିନ୍ତୁ ଏହାଦ୍ୱାରା ମନୁଷ୍ୟ ଯେପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟରେ ବାନ୍ଧି ହୋଇ ରହିଥାଏ, ସେପର୍ଯ୍ୟନ୍ତ ଧୃତିର

ବ୍ୟଭିଚାରଦୋଷ ନଷ୍ଟ ହୁଏ ନାହିଁ; ଯେତେବେଳେ ମନୁଷ୍ୟ ଏହାଦ୍ୱାରା ନିଜର ଏକ ଅଟଳ ଉଦ୍ଦେଶ୍ୟ ସ୍ଥିର କରିନିଏ, ସେତେବେଳେ ତାହା **ଅବ୍ୟଭିଚାରିଣୀ** ହୋଇଯାଏ। ସାତ୍ତ୍ୱିକୀ ଧୃତିର ଏକମାତ୍ର ଉଦ୍ଦେଶ୍ୟ ହେଉଛି ପରମାତ୍ମପ୍ରାପ୍ତି। ଏହି କାରଣରୁ ତାହାକୁ **ଅବ୍ୟଭିଚାରିଣୀ** କହନ୍ତି। ଏଠାରେ **ଅବ୍ୟଭିଚାରିଣ୍ୟା** ବିଶେଷଣ ସହିତ **ଧୃତ୍ୟା** ପଦଟି ହେଉଛି ଏପରି ଧାରଣାଶକ୍ତିର ବାଚକ। ଏପରି ଧୃତିରେ ପରମାତ୍ମାଙ୍କୁ ପ୍ରାପ୍ତି କରିବାପାଇଁ ଧ୍ୟାନଯୋଗଦ୍ୱାରା ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ଅଟଳରୂପରେ ପରମାତ୍ମାଙ୍କ ଠାରେ ସ୍ଥିର କରି ରଖିବା ହିଁ ଉପରୋକ୍ତ ଧୃତିରେ ଧ୍ୟାନଯୋଗଦ୍ୱାରା ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ଧାରଣ କରିବା।

**ପ୍ରଶ୍ନ**– 'ସେହି ଧୃତି ସାତ୍ତ୍ୱିକୀ ଅଟେ', କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର**– ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ଧୃତି ପରମାତ୍ମପ୍ରାପ୍ତିରୂପକ ଏକମାତ୍ର ଗୋଟିଏ ଉଦ୍ଦେଶ୍ୟରେ ହିଁ ସର୍ବଦା ସ୍ଥିର ରହେ, ଯାହା ନିଜର ଲକ୍ଷ୍ୟରୁ କେବେ ବି ବିଚଳିତ ହୁଏ ନାହିଁ, ଯାହାର ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ନ ଥାଏ ତଥା ଯାହାଦ୍ୱାରା ମନୁଷ୍ୟ ପରମାତ୍ମପ୍ରାପ୍ତିପାଇଁ ମନ ଓ ଇନ୍ଦ୍ରିୟ ଆଦିକୁ ପରମାତ୍ମାଙ୍କ ଠାରେ ଲଗାଇରଖେ ଏବଂ କୌଣସି କାରଣରୁ ବି ସେମାନଙ୍କୁ ବିଷୟମାନଙ୍କରେ ଆସକ୍ତ ବା ଚଞ୍ଚଳ ହେବାକୁ ନ ଦେଇ ସଦାସର୍ବଦା ନିଜ ବଶରେ ରଖେ, ସେପରି ଧୃତି ସାତ୍ତ୍ୱିକୀ ଅଟେ। ଏପରି ଧାରଣାଶକ୍ତି ମନୁଷ୍ୟକୁ ଶୀଘ୍ର ପରମାତ୍ମପ୍ରାପ୍ତି କରାଇଦେଇଥାଏ। ଅତଏବ କଲ୍ୟାଣ ଇଚ୍ଛା କରୁଥିବା ପୁରୁଷ ନିଜ ଧାରଣାଶକ୍ତିକୁ ଏହିପରି ସାତ୍ତ୍ୱିକୀ କରିବାକୁ ଚେଷ୍ଟା କରିବା ଉଚିତ।

**ସମ୍ବନ୍ଧ**– ବର୍ତ୍ତମାନ ରାଜସୀ ଧୃତିର ଲକ୍ଷଣ କହୁଛନ୍ତି–

## ଯୟା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜୁନ।
## ପ୍ରସଙ୍ଗେନ ଫଳାକାଙ୍କ୍ଷୀ ଧୃତିଃ ସା ପାର୍ଥ ରାଜସୀ॥ ୩୪ ॥

**ଅନ୍ୱୟ**– **ତୁ** = ପରନ୍ତୁ; **ପାର୍ଥ** = ହେ ପୃଥାପୁତ୍ର; **ଅର୍ଜୁନ** = ଅର୍ଜୁନ !; **ଫଳାକାଙ୍କ୍ଷୀ** = ଫଳ ଇଚ୍ଛା କରୁଥିବା ମନୁଷ୍ୟ; **ଯୟା** = ଯେଉଁ; **ଧୃତ୍ୟା** = ଧାରଣଶକ୍ତିଦ୍ୱାରା; **ପ୍ରସଙ୍ଗେନ** = ଅତ୍ୟନ୍ତ ଆସକ୍ତି ସହିତ; **ଧର୍ମକାମାର୍ଥାନ୍** = ଧର୍ମ, ଅର୍ଥ ଓ କାମକୁ; **ଧାରୟତେ** = ଧାରଣ କରେ; **ସା** = ସେହି; **ଧୃତିଃ** = ଧୃତି; **ରାଜସୀ** = ରାଜସୀ ଅଟେ।

**ପରନ୍ତୁ ହେ ପୃଥାପୁତ୍ର ଅର୍ଜୁନ! ଫଳ ଇଚ୍ଛା କରୁଥିବା ମନୁଷ୍ୟ ଯେଉଁ ଧୃତିଦ୍ୱାରା ଅତ୍ୟନ୍ତ ଆସକ୍ତିର ସହିତ ଧର୍ମ, ଅର୍ଥ ଏବଂ କାମକୁ ଧାରଣ କରେ, ସେହି ଧୃତି ରାଜସୀ।॥ ୩୪ ॥**

**ପ୍ରଶ୍ନ – ଫଳାକାଂକ୍ଷୀ** ପଦ କିପରି ମନୁଷ୍ୟର ବାଚକ ତଥା ସେପରି ମନୁଷ୍ୟର ଧୃତିଦ୍ୱାରା ଅତ୍ୟନ୍ତ ଆସକ୍ତି ସହିତ ଧର୍ମ, ଅର୍ଥ ଓ କାମ– ଏହି ତିନିକୁ ଧାରଣ କରିବା କ'ଣ ?

**ଉତ୍ତର – ଫଳାକାଂକ୍ଷୀ** ପଦଟି ହେଉଛି କର୍ମମାନଙ୍କର ଫଳରୂପକ ଇହଲୋକ ଓ ପରଲୋକର ବିଭିନ୍ନପ୍ରକାର ଭୋଗ ଇଚ୍ଛା କରୁଥିବା ସକାମ ମନୁଷ୍ୟର ବାଚକ। ଏପରି ମନୁଷ୍ୟର ନିଜ ଧାରଣାଶକ୍ତିଦ୍ୱାରା ଅତ୍ୟନ୍ତ ଆସକ୍ତିପୂର୍ବକ ଧର୍ମପାଳନ କରିବା ହିଁ ଧୃତିଦ୍ୱାରା ତା'ର ଧର୍ମକୁ ଧାରଣ କରିବା। ସେହି ମନୁଷ୍ୟ ଧନାଦି ପଦାର୍ଥମାନଙ୍କୁ ଏବଂ ସେମାନଙ୍କ ଦ୍ୱାରା ସିଦ୍ଧ ହେଉଥିବା ଭୋଗମାନଙ୍କୁ ଜୀବନର ଲକ୍ଷ୍ୟ କରି ଅତ୍ୟନ୍ତ ଆସକ୍ତିହେତୁ ଦୃଢ଼ତାପୂର୍ବକ ଧରିରଖେ। ତାହା ହିଁ ତା'ର ରାଜସ ଧୃତିଦ୍ୱାରା ଅର୍ଥ ଓ କାମକୁ ଧାରଣ କରିବା।

**ପ୍ରଶ୍ନ**– 'ସେହି ଧାରଣାଶକ୍ତି ରାଜସୀ ଅଟେ'– ଏହି କଥନର ଭାବ କ'ଣ ?

**ଉତ୍ତର**– ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ଧୃତିଦ୍ୱାରା ମନୁଷ୍ୟ ମୋକ୍ଷଲାଭର ସାଧନା ପ୍ରତି କୌଣସି ଧ୍ୟାନ ନ ଦେଇ କେବଳ ଉପରୋକ୍ତପ୍ରକାରେ ଧର୍ମ, ଅର୍ଥ ଓ କାମ– ଏହି ତିନିକୁ ଧାରଣ କରି ରହେ, ସେହି 'ଧୃତି' ରଜୋଗୁଣ ସହିତ ସମ୍ବନ୍ଧ ରଖୁଥିବାରୁ ରାଜସୀ ଅଟେ; କାରଣ ଆସକ୍ତି ଓ କାମନା ହେଉଛି ରଜୋଗୁଣର କାର୍ଯ୍ୟ। ଏପରି ଧୃତି ମନୁଷ୍ୟକୁ କର୍ମଦ୍ୱାରା ବନ୍ଧନରେ ପକାଏ; ଅତଏବ କଲ୍ୟାଣକାମୀ ମନୁଷ୍ୟ ନିଜର ଧାରଣଶକ୍ତିକୁ ରାଜସୀ ହେବାକୁ ନ ଦେଇ ସାତ୍ତ୍ୱିକୀ କରିବାକୁ ଚେଷ୍ଟା କରିବା ଉଚିତ।

**ସମ୍ବନ୍ଧ–** ବର୍ତ୍ତମାନ ତାମସୀ ଧୃତିର ଲକ୍ଷଣ ବର୍ଣ୍ଣନା କରୁଛନ୍ତି–

**ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବ ଚ ।**
**ନ ବିମୁଞ୍ଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ ।। ୩୫ ।।**

**ଅନ୍ୱୟ–** ପାର୍ଥ = ହେ ପାର୍ଥ ! ଦୁର୍ମେଧାଃ = ଦୁଷ୍ଟବୁଦ୍ଧି ମନୁଷ୍ୟ; ଯୟା = ଯେଉଁ; (ଧୃତ୍ୟା) = ଧୃତିଦ୍ୱାରା; ସ୍ୱପ୍ନମ୍ = ନିଦ୍ରା; ଭୟମ୍ = ଭୟ; ଶୋକମ୍ = ଚିନ୍ତା; ଚ = ଏବଂ; ବିଷାଦମ୍ = ଦୁଃଖ (ତଥା); ମଦମ୍ = ଉନ୍ମତ୍ତତାକୁ; ଏବ = ମଧ୍ୟ; ନ, ବିମୁଞ୍ଚତି = ଛାଡ଼େ ନାହିଁ ଅର୍ଥାତ୍ ଧାରଣ କରି ରଖେ; ସା = ସେହି; ଧୃତିଃ = ଧୃତି; ତାମସୀ = ତାମସୀ ଅଟେ ।

**ହେ ପାର୍ଥ ! ଦୁଷ୍ଟବୁଦ୍ଧି ମନୁଷ୍ୟ ଯେଉଁ ଧୃତିଦ୍ୱାରା ନିଦ୍ରା, ଭୟ, ଚିନ୍ତା ଓ ଦୁଃଖ ତଥା ଉନ୍ମତ୍ତତାକୁ ମଧ୍ୟ ଛାଡ଼େ ନାହିଁ ଅର୍ଥାତ୍ ଧରିରଖେ, ସେହି ଧୃତି ତାମସୀ ।। ୩୫ ।।**

**ପ୍ରଶ୍ନ –** **ଦୁର୍ମେଧାଃ** ପଦ କିପରି ମନୁଷ୍ୟର ବାଚକ ତଥା ଏଠାରେ ଦୁର୍ମେଧାଃ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଯାହାର ବୁଦ୍ଧି ଅତ୍ୟନ୍ତ ମନ୍ଦ ଓ ମଳିନ, ଯାହାର ଅନ୍ତଃକରଣରେ ଅନ୍ୟର ଅନିଷ୍ଟ କରିବାର ଭାବ ପୂରି ରହିଥାଏ, **ଦୁର୍ମେଧାଃ** ହେଉଛି ସେପରି ଦୁଷ୍ଟବୁଦ୍ଧି ମନୁଷ୍ୟର ବାଚକ । ଏହା ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଏପରି ମନୁଷ୍ୟର ଧୃତି ତାମସୀ ।

**ପ୍ରଶ୍ନ – ସ୍ୱପ୍ନ, ଭୟ, ଶୋକ, ବିଷାଦ ଓ ମଦ –** ଏହି ଶବ୍ଦଗୁଡ଼ିକ ଅଲଗା ଅଲଗା କେଉଁ କେଉଁ ଭାବର ବାଚକ ତଥା 'ଧୃତିଦ୍ୱାରା ଏମାନଙ୍କୁ ନ ଛାଡ଼ିବା' ଅର୍ଥାତ୍ ଧରି ରହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ମନ ଓ ଇନ୍ଦ୍ରିୟମାନଙ୍କରେ ତମସାଚ୍ଛନ୍ନ, ବାହ୍ୟକ୍ରିୟାରହିତ ଏବଂ ମୂଢ଼ ଭାବ ଆଣିଦେଉଥିବା ଯେଉଁ ନିଦ୍ରାତନ୍ଦ୍ରାଦିଭାବ ରହିଛି, ସେହି ସବୁର ନାମ **ସ୍ୱପ୍ନ** । ଧନ ଆଦି ପଦାର୍ଥର ନାଶ, ମୃତ୍ୟୁ, ଦୁଃଖପ୍ରାପ୍ତି, ସୁଖନାଶ ଅଥବା ଏହିପରି ଅନ୍ୟ କୌଣସିପ୍ରକାର ଇଷ୍ଟନାଶ ଏବଂ ଅନିଷ୍ଟପ୍ରାପ୍ତି ଆଶଙ୍କାରେ ଅନ୍ତଃକରଣରେ ଯେଉଁ ଏକ ଆକୁଳତା ଏବଂ ଉଦ୍‌ବିଗ୍ନତାପୂର୍ଣ୍ଣ ବୃତ୍ତି ଜାତ ହୁଏ, ତାହାର ନାମ **ଭୟ** । ମନରେ ହେଉଥିବା ନାନାପ୍ରକାର ଦୁଃଶ୍ଚିନ୍ତାର ନାମ **ଶୋକ** । ତାହାଦ୍ୱାରା ଇନ୍ଦ୍ରିୟମାନଙ୍କରେ ଯେଉଁ ସନ୍ତାପ ଜାତ ହୁଏ, ତାହାକୁ **ବିଷାଦ** କହନ୍ତି; ଏହା ହେଉଛି ଶୋକର ସ୍ଥୂଳଭାବ । ତଥା ଧନ, ଜନ ଓ ବଳ ଆଦିହେତୁ ଜାତ ହେଉଥିବା ବିବେକରହିତ, ଭବିଷ୍ୟବିଚାରରହିତ ଓ ଦୂରଦର୍ଶିତାରହିତ ଉନ୍ମତ୍ତବୃତ୍ତିକୁ **ମଦ** କହନ୍ତି; ଏହାକୁ ଗର୍ବ, ଅହଂକାର ଏବଂ ଉନ୍ମତ୍ତତା ମଧ୍ୟ କହନ୍ତି । ଏସବୁକୁ ତଥା ପ୍ରମାଦ ଆଦି ଅନ୍ୟାନ୍ୟ ତାମସ ଭାବକୁ ଅନ୍ତଃକରଣରୁ ଦୂରେଇଦେବାକୁ ଚେଷ୍ଟା ନ କରି ସେଥିରେ ବୁଡ଼ିରହିବା ହିଁ ଧୃତିଦ୍ୱାରା ଏମାନଙ୍କୁ ନ ଛାଡ଼ିବା ଅର୍ଥାତ୍ ଧରିରହିବା ।

**ପ୍ରଶ୍ନ –** 'ଏହି ଧୃତି ତାମସୀ ଅଟେ'– ଏପରି କହିବାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ଧୃତିହେତୁ ମନୁଷ୍ୟ ତ୍ୟାଗ କରିବା ଯୋଗ୍ୟ ଉପରୋକ୍ତ ତାମସଭାବ ଛାଡ଼ିପାରେ ନାହିଁ, ଅର୍ଥାତ୍ ଯେଉଁ ଧୃତିହେତୁ ଉପରୋକ୍ତ ଭାବ ମନୁଷ୍ୟର ଅନ୍ତଃକରଣରେ ସ୍ୱଭାବତଃ ଦୃଢ଼ ହୋଇ ରହିଯାଏ, ସେହି ଧୃତି ତାମସୀ । ଏହି ଧୃତି ହେଉଛି ସର୍ବଥା ଅନର୍ଥର ହେତୁ । ଅତଏବ କଲ୍ୟାଣକାମୀ ମନୁଷ୍ୟ ଏହାକୁ ଅତି ଶୀଘ୍ର ସମ୍ପୂର୍ଣ୍ଣରୂପେ ତ୍ୟାଗ କରିଦେବା ଉଚିତ ।

**ସମ୍ବନ୍ଧ–** *ସାତ୍ତ୍ୱିକୀ ବୁଦ୍ଧି ଓ ଧୃତି ରଖିବା ତଥା ରାଜସୀ-ତାମସୀ ବୁଦ୍ଧି ଓ ଧୃତି ତ୍ୟାଗ କରାଇବା ଉଦ୍ଦେଶ୍ୟରେ ସାତ୍ତ୍ୱିକାଦି ତ୍ରିବିଧ ବୁଦ୍ଧି ଓ ଧୃତି କ୍ରମାନୁସାରେ କହି ଭଗବାନ୍ ବର୍ତ୍ତମାନ ମନୁଷ୍ୟ ଯେଉଁଥି ପାଇଁ ସକଳ କର୍ମ କରେ, ସେହି ସୁଖ ମଧ୍ୟ ସାତ୍ତ୍ୱିକ, ରାଜସ ଓ ତାମସ– ଏହିପରି ତ୍ରିବିଧ ବୋଲି କହି ତାହା କ୍ରମାନ୍ୱୟରେ ବର୍ଣ୍ଣନା କରୁଛନ୍ତି । ପ୍ରଥମେ ସାତ୍ତ୍ୱିକ ସୁଖର ଲକ୍ଷଣ ନିରୂପଣ କରୁଛନ୍ତି–*

**ସୁଖଂ ତ୍ୱିଦାନୀ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ ।**
**ଅଭ୍ୟାସାଦ୍ରମତେ ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି ॥ ୩୬ ॥**
**ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମମ୍ ।**
**ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜମ୍ ॥ ୩୭ ॥**

**ଅନ୍ୱୟ –** **ଭରତର୍ଷଭ** = ହେ ଭରତଶ୍ରେଷ୍ଠ !; **ଇଦାନୀମ୍** = ବର୍ତ୍ତମାନ; **ତ୍ରିବିଧମ୍** = ତିନିପ୍ରକାର; **ସୁଖମ୍** = ସୁଖକୁ; **ତୁ** = ମଧ; **ମେ** = ମୋଠାରୁ; **ଶୃଣୁ** = ଶୁଣ; **ଯତ୍ର** = ଯେଉଁ ସୁଖରେ (ସାଧକ); **ଅଭ୍ୟାସାତ୍** = ଭଜନ, ଧ୍ୟାନ ଏବଂ ସେବା ଆଦିର ଅଭ୍ୟାସରୁ; **ରମତେ** = ରମଣ କରେ; **ଚ** = ଏବଂ (ଯାହା ଦ୍ୱାରା); **ଦୁଃଖାନ୍ତମ୍** = ଦୁଃଖମାନଙ୍କର ଅନ୍ତକୁ; **ନିଗଚ୍ଛତି** = ପ୍ରାପ୍ତ ହୁଏ; **ଯତ୍** = ଯେଉଁ (ସୁଖ); **ଅଗ୍ରେ** = ଆରମ୍ଭରେ; (ଯଦିଓ) **ବିଷମ୍**, **ଇବ** = ବିଷପରି ଲାଗେ (ପରନ୍ତୁ); **ପରିଣାମେ** = ପରିଣାମରେ; **ଅମୃତୋପମମ୍** = ଅମୃତତୁଲ୍ୟ; (**ଅତଃ** = ଏଣୁ); **ତତ୍** = ସେହି; **ଆତ୍ମବୁଦ୍ଧିପ୍ରସାଦଜମ୍** = ପରମାତ୍ମବିଷୟକ ବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହେଉଥିବା; **ସୁଖମ୍** = ସୁଖକୁ; **ସାତ୍ତ୍ୱିକଂ** = ସାତ୍ତ୍ୱିକ ସୁଖ; **ପ୍ରୋକ୍ତମ୍** = କୁହାଯାଇଛି ।

**ହେ ଭରତଶ୍ରେଷ୍ଠ ! ବର୍ତ୍ତମାନ ତିନିପ୍ରକାର ସୁଖକୁ ମଧ ମୋଠାରୁ ଶୁଣ । ସାଧକ ଭଜନ, ଧ୍ୟାନ ଓ ସେବାଦି ଅଭ୍ୟାସ କରିବାଦ୍ୱାରା ଯେଉଁ ସୁଖରେ ରମଣ କରନ୍ତି ଏବଂ ଯାହାଦ୍ୱାରା ସକଳଦୁଃଖ ନାଶ ହୁଏ, ସେହି ଯେଉଁ ସୁଖ ଆରମ୍ଭରେ ଯଦିଓ ବିଷପରି ଲାଗେ, କିନ୍ତୁ ପରିଣାମରେ ଅମୃତତୁଲ୍ୟ ହୋଇଥାଏ, ପରମାତ୍ମବିଷୟକ ବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହେଉଥିବା ସେହି ସୁଖକୁ ସାତ୍ତ୍ୱିକ ସୁଖ କୁହାଯାଏ ॥ ୩୬-୩୭ ॥**

**ପ୍ରଶ୍ନ –** 'ବର୍ତ୍ତମାନ ତିନିପ୍ରକାର ସୁଖ ମଧ ତୁମେ ମୋଠାରୁ ଶୁଣ' – ଏହି ବକ୍ତବ୍ୟର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ସାତ୍ତ୍ୱିକ, ରାଜସ ଓ ତାମସଭେଦରେ ଜ୍ଞାନ, କର୍ମ, କର୍ତ୍ତା, ବୁଦ୍ଧି ଓ ଧୃତି ଯେପରି ତିନି ତିନିପ୍ରକାର ବୋଲି ମୁଁ କହିଲି, ସାତ୍ତ୍ୱିକ ସୁଖ ପ୍ରାପ୍ତ କରାଇ ରାଜସ ଓ ତାମସ ସୁଖ ତ୍ୟାଗ କରାଇବା ପାଇଁ ବର୍ତ୍ତମାନ ସେହିପରି ତିନି ତିନିପ୍ରକାର ସୁଖ କଥା କହୁଛି । ତାହା ମନ ଦେଇ ଶୁଣ ।''

**ପ୍ରଶ୍ନ –** **ଯତ୍ର** ପଦଟି କେଉଁ ସୁଖର ବାଚକ ? ସାଧକ ଅଭ୍ୟାସଦ୍ୱାରା ସେଥିରେ ରମଣ କରନ୍ତି କହିବାର ଭାବ କ'ଣ ?

**ଉତ୍ତର –** ଯେଉଁ ସୁଖ ପ୍ରଶାନ୍ତଚିତ୍ତ ଯୋଗୀଙ୍କୁ ମିଳେ (୬/୨୭), ଏଠାରେ **ଯତ୍ର** ପଦଟି ହେଉଛି ସେହି ଉତ୍ତମ ସୁଖର ବାଚକ । ମନୁଷ୍ୟ ଯେତେବେଳେ ଇହଲୋକ ଓ ପରଲୋକର ସମସ୍ତ ଭୋଗସୁଖକୁ କ୍ଷଣିକ ବୋଲି ବୁଝି ସେଥିରୁ ଆସକ୍ତି ତ୍ୟାଗ କରେ ଓ ନିରନ୍ତର ପରମାତ୍ମସ୍ୱରୂପର ଚିନ୍ତନ ଅଭ୍ୟାସ କରେ (୫/୨୧), ସେତେବେଳେ ମନୁଷ୍ୟକୁ ଏହି ସୁଖ ଅନୁଭବ ହୁଏ; ବିନା ସାଧନାରେ ଏହା ଅନୁଭବ ହୋଇପାରେ ନାହିଁ । ଏହି ଭାବ ଦେଖାଇବାପାଇଁ କୁହାଯାଇଛି ଯେ, ସାଧକ ଅଭ୍ୟାସଦ୍ୱାରା ଏହି ସୁଖରେ ରମଣ କରନ୍ତି ।

**ପ୍ରଶ୍ନ –** 'ଯାହାଦ୍ୱାରା ସକଳଦୁଃଖ ନାଶ ହୋଇଯାଏ', ଏହି କଥନର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ସୁଖରେ ରମଣ କରୁଥିବା ମନୁଷ୍ୟ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ – ସବୁପ୍ରକାର ଦୁଃଖର ସମ୍ବନ୍ଧରୁ ଚିରଦିନପାଇଁ ମୁକ୍ତ ହୋଇଯାଏ, ଯେଉଁ ସୁଖାନୁଭୂତିର ଫଳସ୍ୱରୂପ ନିରତିଶୟ ସୁଖସ୍ୱରୂପ ସଚ୍ଚିଦାନନ୍ଦଘନ ପରବ୍ରହ୍ମପରମାତ୍ମା ପ୍ରାପ୍ତ ହୁଅନ୍ତି ବୋଲି କୁହାଯାଇଛି (୫/୨୧,୨୪; ୬/୨୮), ତାହା ସାତ୍ତ୍ୱିକ ସୁଖ ।

**ପ୍ରଶ୍ନ –** ଏଠାରେ **ଅଗ୍ରେ** ପଦ କେଉଁ ସମୟର ବାଚକ ଏବଂ 'ସାତ୍ତ୍ୱିକ ସୁଖ ଆରମ୍ଭରେ ବିଷପରି ଲାଗେ' କହିଲେ କ'ଣ ବୁଝାଏ ?

**ଉତ୍ତର –** ଯେଉଁ ସମୟରେ ମନୁଷ୍ୟ ସାତ୍ତ୍ୱିକ ସୁଖର ମହିମା ଶୁଣି ତାହା ପାଇବାଇଚ୍ଛାରେ ପ୍ରାପ୍ତିର ଉପାୟଭୂତ

ବିବେକ, ବୈରାଗ୍ୟ, ଶମ, ଦମ ଏବଂ ତିତିକ୍ଷା ଆଦି ସାଧନାରେ ଲାଗିରହେ, **ଅଗ୍ରେ** ପଦଟି ହେଉଛି ସେହି ସମୟର ବାଚକ। ନିଜ ଘରଲୋକଙ୍କ ଠାରୁ ବିଦ୍ୟାର ମହିମା ଶୁଣି ବାଳକ ଯେପରି ବିଦ୍ୟାଧ୍ୟୟନର ଚେଷ୍ଟା କରେ; କିନ୍ତୁ ବିଦ୍ୟାର ମହତ୍ତ୍ୱକୁ ଯଥାର୍ଥ ଅନୁଭବ କରି ନ ଥିବାରୁ ପ୍ରଥମେ ପ୍ରଥମେ ଖେଳକୁଦ ଛାଡ଼ି ବିଦ୍ୟାଭ୍ୟାସରେ ଲାଗିରହିବା ତା'ପକ୍ଷରେ ଅତ୍ୟନ୍ତ କଷ୍ଟପ୍ରଦ ହୁଏ ଏବଂ ତାହା ବଡ଼ କଠିନ ବୋଧହୁଏ, ସାତ୍ତ୍ୱିକ ସୁଖପାଇଁ ଅଭ୍ୟାସ କରୁଥିବା ମନୁଷ୍ୟଙ୍କୁ ମଧ୍ୟ ସେହିପରି ବିଷୟ ତ୍ୟାଗ କରି ସଂଯମପୂର୍ବକ ବିବେକ, ବୈରାଗ୍ୟ, ଶମ, ଦମ ଓ ତିତିକ୍ଷା ଆଦି ସାଧନାରେ ଲାଗିରହିବା ପ୍ରଥମେ ପ୍ରଥମେ ଅତ୍ୟନ୍ତ ଶ୍ରମପୂର୍ଣ୍ଣ ଓ କଷ୍ଟପ୍ରଦ ମନେ ହୁଏ। ଏହା ହିଁ ଆରମ୍ଭରେ ସାତ୍ତ୍ୱିକ ସୁଖ ବିଷତୁଲ୍ୟ ଲାଗିବା।

**ପ୍ରଶ୍ନ** – 'ଏହି ସୁଖ ପରିଣାମରେ ଅମୃତତୁଲ୍ୟ ଅଟେ' – ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର** – ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେତେବେଳେ ସାତ୍ତ୍ୱିକ ସୁଖ ପ୍ରାପ୍ତିପାଇଁ ସାଧନା କରି କରି ସାଧକଙ୍କୁ ସେହି ଧ୍ୟାନଜନିତ ସୁଖ ଅନୁଭବ ହେବାକୁ ଲାଗେ, ସେତେବେଳେ ତାହା ତାଙ୍କୁ ଅମୃତତୁଲ୍ୟ ପ୍ରତୀତ ହୁଏ; ସେହି ସମୟରେ ସଂସାରର ସମସ୍ତ ଭୋଗସୁଖ ତାଙ୍କୁ ତୁଚ୍ଛ, ନଗଣ୍ୟ ଓ ଦୁଃଖରୂପ ପ୍ରତୀତ ହୁଏ।

**ପ୍ରଶ୍ନ** – 'ପରମାତ୍ମବିଷୟକ ବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହେଉଥିବା ସେହି ସୁଖକୁ ସାତ୍ତ୍ୱିକ କୁହାଯାଏ' ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର** – ଉପରୋକ୍ତଭାବରେ ଅଭ୍ୟାସ କରି କରି ନିରନ୍ତର ପରମାତ୍ମାଙ୍କ ଧ୍ୟାନ କରିବାର ଫଳସ୍ୱରୂପ ଅନ୍ତଃକରଣ ନିର୍ମଳ ହେବା ପରେ ଏହି ସୁଖ ଅନୁଭବ ହୁଏ। ତେଣୁ ଏହି ସୁଖ ପରମାତ୍ମବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହୁଏ ବୋଲି କୁହାଯାଏ। 'ଏହି ସୁଖ ସାତ୍ତ୍ୱିକ ଅଟେ' – କହି ଦେଖାଇଦିଆଯାଇଛି ଯେ, ଏହା ହେଉଛି ଉତ୍ତମ ସୁଖ; ରାଜସ ଓ ତାମସ ସୁଖ ବାସ୍ତବରେ ସୁଖ ନୁହେଁ। ତାହା ତ ନାମମାତ୍ର ସୁଖ; ତାହା ପରିଣାମରେ ଦୁଃଖରୂପ ହିଁ ଅଟେ। ଏଣୁ ନିଜର କଲ୍ୟାଣ ଚାହୁଁଥିବା ପୁରୁଷ ରାଜସ-ତାମସ ସୁଖରେ ବାନ୍ଧି ନ ହୋଇ ନିରନ୍ତର ସାତ୍ତ୍ୱିକ ସୁଖରେ ରମଣ କରିବା ଉଚିତ।

**ସମ୍ବନ୍ଧ** – ବର୍ତ୍ତମାନ ରାଜସ ସୁଖର ଲକ୍ଷଣ କହୁଛନ୍ତି–

## ବିଷୟେନ୍ଦ୍ରିୟସଂଯୋଗାଦ୍ୟତ୍ତଦଗ୍ରେଽମୃତୋପମମ୍ ।
## ପରିଣାମେ ବିଷମିବ ତତ୍ ସୁଖଂ ରାଜସଂ ସ୍ମୃତମ୍ ॥ ୩୮ ॥

**ଅନ୍ୱୟ** – **ଯତ୍** = ଯେଉଁ; **ସୁଖମ୍** = ସୁଖ; **ବିଷୟେନ୍ଦ୍ରିୟସଂଯୋଗାତ୍** = ବିଷୟ ଓ ଇନ୍ଦ୍ରିୟମାନଙ୍କର ସଂଯୋଗରୁ; **(ଭବତି)** = ହୁଏ; **ତତ୍** = ତାହା; **ଅଗ୍ରେ** = ପ୍ରଥମେ ଅର୍ଥାତ୍ ଭୋଗକାଳରେ; **ଅମୃତୋପମମ୍** = ଅମୃତତୁଲ୍ୟ (ପ୍ରତୀତ ହେଲେ ମଧ୍ୟ); **ପରିଣାମେ** = ପରିଣାମରେ; **ବିଷମ୍** = ବିଷ; **ଇବ** = ତୁଲ୍ୟ; **(ଅତଃ)** = ଏଣୁ; **ତତ୍** = ସେହି ସୁଖ; **ରାଜସମ୍** = ରାଜସ; **ସ୍ମୃତମ୍** = କୁହାଯାଏ।

**ଯେଉଁ ସୁଖ ବିଷୟ ଓ ଇନ୍ଦ୍ରିୟର ସଂଯୋଗରୁ ହୁଏ, ତାହା ପ୍ରଥମେ – ଭୋଗକାଳରେ ଅମୃତତୁଲ୍ୟ ପ୍ରତୀତ ହେଲେ ମଧ୍ୟ, ପରିଣାମରେ ବିଷତୁଲ୍ୟ ଅଟେ; ଏଣୁ ସେହି ସୁଖକୁ ରାଜସ କୁହାଯାଏ ॥ ୩୮ ॥**

**ପ୍ରଶ୍ନ** – **ଅଗ୍ରେ** ପଦ କେଉଁ ସମୟର ବାଚକ ତଥା 'ସେହି ସମୟରେ ଇନ୍ଦ୍ରିୟ ଓ ବିଷୟମାନଙ୍କ ସଂଯୋଗରୁ ଉତ୍ପନ୍ନ ହେଉଥିବା ସୁଖ ଅମୃତପରି ପ୍ରତୀତ ହୁଏ' କହିବାର ଅର୍ଥ କ'ଣ ?

**ଉତ୍ତର** – ଯେଉଁ ସମୟରେ ରାଜସସୁଖପ୍ରାପ୍ତି ନିମିତ୍ତ ମନୁଷ୍ୟ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା କୌଣସି ବିଷୟ ସେବନ କରିବାକୁ ଆରମ୍ଭ କରେ, ଏଠାରେ **ଅଗ୍ରେ** ପଦଟି ହେଉଛି ସେହି ସମୟର ବାଚକ। 'ଏହି ସୁଖର ଉତ୍ପତ୍ତି ଇନ୍ଦ୍ରିୟ ଓ ବିଷୟମାନଙ୍କର ସଂଯୋଗରୁ ହୁଏ' କହିବାର ଅଭିପ୍ରାୟ ଏହି ଯେ, ମନୁଷ୍ୟ ଯେପର୍ଯ୍ୟନ୍ତ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା କୌଣସି ବିଷୟ ସେବନ କରୁଥାଏ, ସେପର୍ଯ୍ୟନ୍ତ ତାକୁ ସେହି ସୁଖ ଅନୁଭବ ହେଉଥାଏ ଏବଂ ଆସକ୍ତିହେତୁ ତାହା ତାକୁ ଅତ୍ୟନ୍ତ ପ୍ରିୟ ଲାଗୁଥାଏ; ସେହି ସମୟରେ ସେହି ସୁଖର ତୁଳନାରେ

କୌଣସି ବି ଅଦୃଷ୍ଟ ସୁଖର କୌଣସି ମୂଲ୍ୟ ଥିବାପରି ମନେହୁଏ ନାହିଁ। ତେଣୁ 'ସେହି ସୁଖ ଭୋଗକାଳରେ ଅମୃତତୁଲ୍ୟ ପ୍ରତୀତ ହୁଏ' ବୋଲି କୁହାଯାଇଛି।

**ପ୍ରଶ୍ନ –** 'ରାଜସ ସୁଖ ପରିଣାମରେ ବିଷତୁଲ୍ୟ ଅଟେ' – ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ରାଜସ ସୁଖଭୋଗର ପରିଣାମ ବିଷପରି ଦୁଃଖପ୍ରଦ; ବସ୍ତୁତଃ ତାହା ସୁଖ ନୁହେଁ। ଅଭିପ୍ରାୟ ଏହି ଯେ, ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଆସକ୍ତିପୂର୍ବକ ବିଷୟମାନଙ୍କୁ ସୁଖବୁଦ୍ଧିରେ ସେବନ କରିବା ଫଳରେ ତାହାର ସଂସ୍କାର ଅନ୍ତଃକରଣରେ ଜମିଯାଏ ଏବଂ ତା'ଫଳରେ ମନୁଷ୍ୟ ପୁଣି ଥରେ ସେହି ବିଷୟଭୋଗପ୍ରାପ୍ତିପାଇଁ ଇଚ୍ଛା କରେ ଏବଂ ସେଥିପାଇଁ ଆସକ୍ତିବଶତଃ ଅନେକପ୍ରକାର ପାପକର୍ମ କରିବସେ। ସେହି ପାପକର୍ମର ଫଳ ଭୋଗ କରିବାପାଇଁ ତାକୁ କୀଟ, ପତଙ୍ଗ, ପଶୁ, ପକ୍ଷୀ ଆଦି ନୀଚଯୋନିମାନଙ୍କରେ ଜନ୍ମ ନେବାକୁ ପଡ଼େ ତଥା ଯନ୍ତ୍ରଣାମୟ ନରକରେ ପଡ଼ି ଭୀଷଣ ଦୁଃଖ ଭୋଗ କରିବାକୁ ପଡ଼େ।

ବିଷୟମାନଙ୍କରେ ଆସକ୍ତି ବଢ଼ିଯିବାରୁ ସେଗୁଡ଼ିକ ପୁନର୍ବାର ନ ମିଳିଲେ, ସେମାନଙ୍କର ଅଭାବଜନିତ ଦୁଃଖ ଅନୁଭବ ହୁଏ ତଥା ସେମାନଙ୍କ ଠାରୁ ବିୟୋଗ ହେବା ସମୟରେ ମଧ୍ୟ ଅତ୍ୟନ୍ତ ଦୁଃଖ ହୁଏ। ଅନ୍ୟମାନଙ୍କ ପାଖରେ ନିଜଠାରୁ ଅଧିକ ସୁଖ-ସମ୍ପଦ ଥିବା ଦେଖି ଈର୍ଷାରେ ଜ୍ୱଳନ ମଧ୍ୟ ହୁଏ; ପୁଣି ଭୋଗପରେ ଶରୀରରେ ବଳ, ବୀର୍ଯ୍ୟ, ବୁଦ୍ଧି, ତେଜ ଓ ଶକ୍ତି ହ୍ରାସହେତୁ ଏବଂ କ୍ଳାନ୍ତିହେତୁ ମଧ୍ୟ ଅତ୍ୟନ୍ତ କଷ୍ଟ ଅନୁଭବ ହୁଏ। ଏହିପରି ଆହୁରି ବହୁ ଦୁଃଖପ୍ରଦ ପରିଣାମ ହୁଏ। ତେଣୁ ବିଷୟ ଓ ଇନ୍ଦ୍ରିୟମାନଙ୍କ ସଂଯୋଗରୁ ମିଳୁଥିବା କ୍ଷଣିକ ସୁଖ ଯଦ୍ୟପି ବସ୍ତୁତଃ ସଦ୍‌ଦୃଷ୍ଟିରୁ ଦୁଃଖରୂପ ଅଟେ, ତଥାପି ରୋଗୀ ଯେପରି ଆସକ୍ତିହେତୁ ସ୍ୱାଦଲୋଭରେ ପରିଣାମ ବିଚାର ନ କରି କୁପଥ୍ୟ ସେବନ କରେ, ଏବଂ ପରିଣାମରେ ରୋଗ ବଢ଼ିଯିବାରୁ ଦୁଃଖୀ ହୁଏ ବା ମୃତ୍ୟୁମୁଖରେ ପଡ଼େ ଅଥବା ପତଙ୍ଗ ଯେପରି ନେତ୍ରର ବିଷୟ 'ରୂପ'ରେ ଆସକ୍ତ ହୋଇଯିବାରୁ ସୁଖ ପାଇବା ଆଶାରେ ପ୍ରଯତ୍ନପୂର୍ବକ ଦୀପଶିଖା ସହିତ ପିଟିହୋଇ ଖେଳିବାକୁ ସୁଖ ମନେ କରେ, କିନ୍ତୁ ପରିଣାମରେ ଜଳିଯାଇ କଷ୍ଟଭୋଗ କରେ ଓ ମରିଯାଏ, ବିଷୟାସକ୍ତ ମନୁଷ୍ୟ ମଧ୍ୟ ସେହିପରି ମୂର୍ଖତା ଓ ଆସକ୍ତିବଶ ହୋଇ, ପରିଣାମ ବିଚାର ନ କରି ସୁଖ ପାଇବା ଲୋଭରେ ବିଷୟ ସେବନ କରେ ଏବଂ ପରିଣାମରେ ନାନାପ୍ରକାର ଭୀଷଣ ଦୁଃଖ ଭୋଗ କରେ।

**ପ୍ରଶ୍ନ –** 'ଏହି ସୁଖକୁ ରାଜସ କୁହାଯାଏ' – ଏ କଥାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତ ଲକ୍ଷଣଯୁକ୍ତ ଯେଉଁ ପ୍ରତୀତିମାତ୍ର କ୍ଷଣିକସୁଖ ମିଳେ, ତାହା ବିଷୟାସକ୍ତିହେତୁ ସୁଖ ବୋଲି ମନେ ହୁଏ। ଆସକ୍ତି ହେଉଛି ରଜୋଗୁଣର ସ୍ୱରୂପ। ତେଣୁ ସେହି ସୁଖ ହେଉଛି ରାଜସ ସୁଖ। ତାହା ଆସକ୍ତିଦ୍ୱାରା ମନୁଷ୍ୟକୁ ବନ୍ଧନରେ ପକାଏ (୧୪/୭)। ତେଣୁ କଲ୍ୟାଣ ଚାହୁଁଥିବା ମନୁଷ୍ୟ ସେପରି ସୁଖରେ ବାନ୍ଧିହେବା ଉଚିତ ନୁହେଁ।

*ସମ୍ବନ୍ଧ –* ଭଗବାନ୍ ବର୍ତ୍ତମାନ ତାମସ ସୁଖର ଲକ୍ଷଣ କହୁଛନ୍ତି–

## ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନମାତ୍ମନଃ।
## ନିଦ୍ରାଲସ୍ୟପ୍ରମାଦୋତ୍ଥଂ ତତ୍ତାମସମୁଦାହୃତମ୍ ।। ୩୯ ।।

**ଅନ୍ୱୟ –** ଯତ୍ = ଯେଉଁ; ସୁଖମ୍ = ସୁଖ; ଅଗ୍ରେ = ଭୋଗକାଳରେ; ଚ = ତଥା; ଅନୁବନ୍ଧେ = ପରିଣାମରେ; ଚ = ମଧ୍ୟ; ଆତ୍ମନଃ = ଆତ୍ମାର; ମୋହନମ୍ = ମୋହକାରକ; ତତ୍ = ସେହି; ନିଦ୍ରାଲସ୍ୟପ୍ରମାଦୋତ୍ଥମ୍ = ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ଉତ୍ପନ୍ନ (ସୁଖ); ତାମସମ୍ = ତାମସ (ବୋଲି); ଉଦାହୃତମ୍ = କୁହାଯାଏ।

**ଯେଉଁ ସୁଖ ଭୋଗକାଳରେ ତଥା ପରିଣାମରେ ମଧ୍ୟ ଆତ୍ମାର ମୋହକାରକ ଅଟେ, ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ଉତ୍ପନ୍ନ ସେହି ସୁଖକୁ ତାମସ ବୋଲି କୁହାଯାଏ।। ୩୯ ।।**

**ପ୍ରଶ୍ନ –** କେଉଁ ସୁଖକୁ ନିଦ୍ରା, ଆଳସ୍ୟ ଏବଂ ପ୍ରମାଦଜନିତ ସୁଖ କହନ୍ତି? ଭୋଗକାଳରେ ତଥା ପରିଣାମରେ ଆତ୍ମାକୁ ତାହା କିପରି ମୋହିତ କରେ ?

**ଉତ୍ତର –** ନିଦ୍ରାସମୟରେ ମନ ଓ ଇନ୍ଦ୍ରିୟମାନଙ୍କର କ୍ରିୟା ବନ୍ଦ ହୋଇଯିବାରୁ, କ୍ଳାନ୍ତିଜନିତ ଦୁଃଖ ନ ରହିବାରୁ ତଥା ମନ ଓ ଇନ୍ଦ୍ରିୟମାନଙ୍କୁ ବିଶ୍ରାମ ମିଳିଯିବାରୁ ଯେଉଁ ସୁଖ ପ୍ରତୀତ ହୁଏ, ତାହାକୁ ନିଦ୍ରାଜନିତ ସୁଖ କହନ୍ତି। ଯେପର୍ଯ୍ୟନ୍ତ ନିଦ୍ରା ରହିଥାଏ, ସେପର୍ଯ୍ୟନ୍ତ ସେହି ସୁଖ ରହିଥାଏ; ତାହା ନିରନ୍ତର ରହେ ନାହିଁ। ତେଣୁ ତାହା କ୍ଷଣିକ। ଏହା ଛଡ଼ା ସେହି ସମୟରେ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କରେ ଚେତନାଶକ୍ତିର ଅଭାବ ହୋଇଯାଏ; କୌଣସି ବସ୍ତୁକୁ ଅନୁଭବ କରିବାର ଶକ୍ତି ରହେ ନାହିଁ। ତେଣୁ ସେହି ସୁଖ ଭୋଗକାଳରେ ଆତ୍ମାକୁ ଅର୍ଥାତ୍ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ତଥା ସେମାନଙ୍କ ଅଭିମାନୀ ପୁରୁଷକୁ ମୋହିତ କରିଦିଏ ଏବଂ ସେହି ସୁଖ ପ୍ରତି ଆସକ୍ତିହେତୁ ପରିଣାମରେ ମନୁଷ୍ୟକୁ ଅଜ୍ଞାନମୟ ବୃକ୍ଷ, ପର୍ବତ ଆଦି ଜଡ଼ଯୋନିମାନଙ୍କରେ ଜନ୍ମଗ୍ରହଣ କରିବାକୁ ପଡ଼େ; ଅତଏବ ତାହା ପରିଣାମରେ ମଧ୍ୟ ଆତ୍ମାକୁ ମୋହିତ କରିଦିଏ।

ଏହିପରି ସମସ୍ତ କ୍ରିୟା ତ୍ୟାଗ କରି ପଡ଼ିରହିଥିବା ସମୟରେ ମନ, ଇନ୍ଦ୍ରିୟ ଓ ଶରୀର କିଛି ପରିଶ୍ରମ ନ କରିବାରୁ ଯେଉଁ ଆରାମ ଲାଗେ, ତାହା ହେଉଛି ଆଳସ୍ୟଜନିତ ସୁଖ। ତାହା ମଧ୍ୟ ନିଦ୍ରାଜନିତ ସୁଖପରି ମନ ଓ ଇନ୍ଦ୍ରିୟମାନଙ୍କରେ ଜ୍ଞାନାଲୋକର ଅଭାବ କରାଇଦେଇ ଭୋଗକାଳରେ ସେମାନଙ୍କୁ ମୋହିତ କରାଇଦିଏ ତଥା ମୋହ ଓ ଆସକ୍ତି ରହିଥିବାରୁ ଜଡ଼ଯୋନିମାନଙ୍କରେ ପକାଇଦିଏ। ତେଣୁ ପରିଣାମରେ ତାହା ମଧ୍ୟ ମୋହକାରକ ଅଟେ।

ମନକୁ ଭୁଲାଇବା ପାଇଁ ଆସକ୍ତିବଶତଃ କରାଯାଉଥିବା ବ୍ୟର୍ଥକ୍ରିୟାମାନଙ୍କର ତଥା ଅଜ୍ଞାନବଶତଃ ଅବହେଳା କରି କର୍ତ୍ତବ୍ୟକର୍ମ ପରିତ୍ୟାଗ କରିଦେବାର ନାମ ପ୍ରମାଦ। ବ୍ୟର୍ଥକ୍ରିୟା କରିବାରେ ମନର ପ୍ରସନ୍ନତାହେତୁ ଏବଂ କର୍ତ୍ତବ୍ୟ ତ୍ୟାଗ କରିବାରେ ପରିଶ୍ରମରୁ ରକ୍ଷା ମିଳୁଥିବାରୁ ମୂର୍ଖତାବଶତଃ ଯେଉଁ ସୁଖ ପ୍ରତୀତ ହୁଏ, ତାହା ହେଉଛି ପ୍ରମାଦଜନିତ ସୁଖ। ମନୁଷ୍ୟ ଯେତେବେଳେ କୌଣସିପ୍ରକାରେ ମନକୁ ଭୁଲାଇବାପାଇଁ ବ୍ୟର୍ଥକ୍ରିୟାରେ ଲାଗିଯାଏ, ସେତେବେଳେ ତା'ଠାରେ କର୍ତ୍ତବ୍ୟ-ଅକର୍ତ୍ତବ୍ୟର କୌଣସି ଜ୍ଞାନ ରହେ ନାହିଁ; ତା'ର ବିବେକଶକ୍ତି ମୋହରେ ଢାଙ୍କି ହୋଇଯାଏ। ବିବେକଶକ୍ତି ଆଚ୍ଛାଦିତ ହୋଇଯିବାରୁ କର୍ତ୍ତବ୍ୟରେ ଅବହେଳା ହୁଏ। ତେଣୁ ପ୍ରମାଦଜନିତ ସୁଖ ଭୋଗକାଳରେ ଆତ୍ମାକୁ ମୋହିତ କରିଦିଏ। ଅଜ୍ଞାନ ଓ ଆସକ୍ତିବଶତଃ ଉପରୋକ୍ତ ବ୍ୟର୍ଥକର୍ମରେ ହେଉଥିବା ମିଥ୍ୟା, କପଟ, ହିଂସା ଆଦି ପାପକର୍ମର ତଥା କର୍ତ୍ତବ୍ୟକର୍ମ-ତ୍ୟାଗର ଫଳ ଭୋଗିବାପାଇଁ ବ୍ୟର୍ଥକର୍ମ କରୁଥିବା ଲୋକକୁ କୁକୁର-ଘୁଷୁରୀ ଆଦି ନୀଚଯୋନି ମିଳେ ଓ ସେ ନରକରେ ପଡ଼େ। ତେଣୁ ପରିଣାମରେ ଏହା ମଧ୍ୟ ଆତ୍ମାକୁ ମୋହିତ କରିଦିଏ।

**ପ୍ରଶ୍ନ –** ସେହି ସୁଖ ତାମସ ଅଟେ ବୋଲି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ନିଦ୍ରା, ପ୍ରମାଦ ଓ ଆଳସ୍ୟ– ଏହି ତିନୋଟି ହେଉଛି ତମୋଗୁଣର କାର୍ଯ୍ୟ (୧୪/୧୭); ଅତଏବ ଏଥିରୁ ଉତ୍ପନ୍ନ ହେଉଥିବା ସୁଖ ତାମସ। ଏହି ନିଦ୍ରା, ଆଳସ୍ୟ ଓ ପ୍ରମାଦ ଆଦିରେ ସୁଖବୁଦ୍ଧି ଉତ୍ପନ୍ନ କରି ସେହି ତମୋଗୁଣ ମନୁଷ୍ୟର ବନ୍ଧନର କାରଣ ହୁଏ (୧୪/୮)। ତେଣୁ କଲ୍ୟାଣ ଚାହୁଁଥିବା ମନୁଷ୍ୟ ଏହି କ୍ଷଣିକ, ମୋହକାରକ ଓ ପ୍ରତୀତିମାତ୍ର ତାମସସୁଖରେ ବାନ୍ଧିହେବା ଉଚିତ ନୁହେଁ।

***ସମ୍ବନ୍ଧ –*** *ଏପରିଭାବରେ ଅଠର ଶ୍ଳୋକଠାରୁ ଏପର୍ଯ୍ୟନ୍ତ ମୁଖ୍ୟ ମୁଖ୍ୟ ପଦାର୍ଥମାନଙ୍କର ସାତ୍ତ୍ୱିକ, ରାଜସ ଓ ତାମସ– ଏପରି ତିନି ତିନିପ୍ରକାର କହିସାରି ଭଗବାନ୍ ବର୍ତ୍ତମାନ ଏହି ପ୍ରକରଣର ଉପସଂହାର କରୁଛନ୍ତି ଓ ସୃଷ୍ଟିର ସମସ୍ତ ପଦାର୍ଥ ତିନିଗୁଣରେ ଯୁକ୍ତ ବୋଲି କହୁଛନ୍ତି–*

**ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ।**
**ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ।। ୪୦ ।।**

**ଅନ୍ୱୟ –** **ପୃଥିବ୍ୟାମ୍** = ପୃଥିବୀରେ; **ବା** = ବା; **ଦିବି** = ଆକାଶରେ; **ବା** = ଅଥବା; **ଦେବେଷୁ** = ଦେବତାମାନଙ୍କ ଠାରେ; **ପୁନଃ** = ତଥା ଏମାନଙ୍କ ବ୍ୟତୀତ ଅନ୍ୟ କେଉଁଠାରେ ମଧ; **ତତ୍** = ତାହା, (ଏପରି କୌଣସି ବି); **ସତ୍ତ୍ୱମ୍** = ସତ୍ତ୍ୱ; **ନ**, **ଅସ୍ତି** = ନାହିଁ; **ଯତ୍** = ଯାହା; **ପ୍ରକୃତିଜୈଃ** = ପ୍ରକୃତିରୁ ଉତ୍ପନ୍ନ; **ଏଭିଃ** = ଏହି; **ତ୍ରିଭିଃ** = ତିନି; **ଗୁଣୈଃ** = ଗୁଣମାନଙ୍କରୁ; **ମୁକ୍ତମ୍** = ମୁକ୍ତ; **ସ୍ୟାତ୍** = ହୋଇଥାଏ।

**ପୃଥିବୀରେ ବା ଆକାଶରେ ଅଥବା ଦେବତାମାନଙ୍କ ଠାରେ ତଥା ଏମାନଙ୍କ ବ୍ୟତୀତ ଅନ୍ୟ କେଉଁଠାରେ ବି ଏପରି କୌଣସି ବି ପ୍ରାଣୀ କିମ୍ବା ପଦାର୍ଥ ନାହିଁ, ଯାହା କି ପ୍ରକୃତିରୁ ଉତ୍ପନ୍ନ ଏହି ତିନିଗୁଣରୁ ମୁକ୍ତ ହୋଇଥାଏ ।। ୪୦ ।।**

**ପ୍ରଶ୍ନ –** ଏଠାରେ **ପୃଥିବ୍ୟାମ୍**, **ଦିବି** ଏବଂ **ଦେବେଷୁ** ପଦଗୁଡ଼ିକ କାହାର କାହାର ବାଚକ ତଥା **ପୁନଃ** ପଦ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** **ପୃଥିବ୍ୟାମ୍** ପଦଟି ହେଉଛି ପୃଥିବୀଲୋକର, ତାହା ମଧ୍ୟରେ ଥିବା ସମସ୍ତ ପାତାଳାଦି ଲୋକମାନଙ୍କର ଏବଂ ସେହି ଲୋକରେ ଥିବା ସମସ୍ତ ସ୍ଥାବର-ଜଙ୍ଗମ ପ୍ରାଣୀ ଓ ପଦାର୍ଥମାନଙ୍କର ବାଚକ। **ଦିବି** ପଦଟି ହେଉଛି ପୃଥିବୀରୁ ଉପରେ ଥିବା ଅନ୍ତରୀକ୍ଷଲୋକର ତଥା ସେଥିରେ ଥିବା ସମସ୍ତପ୍ରାଣୀ ଓ ପଦାର୍ଥମାନଙ୍କର ବାଚକ। **ଦେବେଷୁ** ପଦଟି ହେଉଛି ସମସ୍ତ ଦେବତାମାନଙ୍କର ଏବଂ ସେମାନଙ୍କ ସହିତ ସମ୍ପୃକ୍ତ ସମସ୍ତ ଲୋକମାନଙ୍କର ତଥା ସେମାନଙ୍କ ସହିତ ସମ୍ବନ୍ଧିତ ସମସ୍ତ ପଦାର୍ଥର ବାଚକ। ଏମାନଙ୍କ ବ୍ୟତୀତ ସମସ୍ତ ସୃଷ୍ଟିରେ ଅନ୍ୟ ଯାହା କିଛି ବସ୍ତୁ ବା ପ୍ରାଣୀ ଅଛନ୍ତି, ସେହି ସମସ୍ତଙ୍କୁ ଗ୍ରହଣ କରିବାପାଇଁ **ପୁନଃ** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** **ସତ୍ତ୍ୱମ୍** ପଦ କାହାର ବାଚକ ଏବଂ 'ଏପରି କୌଣସି ବି ପ୍ରାଣୀ ବା ପଦାର୍ଥ ନାହିଁ, ଯାହା କି ପ୍ରକୃତିଠାରୁ ଉତ୍ପନ୍ନ ଏହି ତିନିଗୁଣରୁ ମୁକ୍ତ'— ଏହି କଥନର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** **ସତ୍ତ୍ୱମ୍** ପଦ ଏଠାରେ ବସ୍ତୁମାତ୍ରର ଅର୍ଥାତ୍ ସମସ୍ତପ୍ରକାର ପ୍ରାଣୀଙ୍କର ତଥା ସମସ୍ତ ପଦାର୍ଥର ବାଚକ। 'ଏପରି କୌଣସି ବି ସତ୍ତ୍ୱ (ପ୍ରାଣୀ ବା ପଦାର୍ଥ) ନାହିଁ ଯାହା କି ପ୍ରକୃତିରୁ ଉତ୍ପନ୍ନ ଏହି ତିନିଗୁଣରୁ ମୁକ୍ତ'– ଏହି ବାକ୍ୟଦ୍ୱାରା ଦେଖାଇଦିଆଯାଇଛି ଯେ, ସମସ୍ତ ପଦାର୍ଥ ପ୍ରକୃତିଜନିତ ସତ୍ତ୍ୱ, ରଜ ଓ ତମ– ଏହି ତିନିଗୁଣର କାର୍ଯ୍ୟ ; ପ୍ରକୃତିଜନିତ ଗୁଣମାନଙ୍କ ସମ୍ବନ୍ଧରୁ ହିଁ ପ୍ରାଣୀମାନଙ୍କୁ ବିଭିନ୍ନ ଯୋନିରେ ଜନ୍ମ ନେବାକୁ ପଡ଼େ (୧୩/୨୧)। ତେଣୁ ପୃଥ୍ୱୀଲୋକ, ଅନ୍ତରୀକ୍ଷଲୋକ, ଦେବଲୋକ ତଥା ଅନ୍ୟ ସମସ୍ତ ଲୋକର ପ୍ରାଣୀମାନଙ୍କ ମଧ୍ୟରେ ଏବଂ ପଦାର୍ଥମାନଙ୍କରେ ଏପରି କୌଣସି ବି ପ୍ରାଣୀ ବା ପଦାର୍ଥ ନାହିଁ, ଯେ କି ଏହି ତିନିଗୁଣରୁ ଅତୀତ ବା ମୁକ୍ତ ; କାରଣ, ସମସ୍ତ ଜଡ଼ବର୍ଗ ଗୁଣମାନଙ୍କର କାର୍ଯ୍ୟ ହୋଇଥିବାରୁ ଗୁଣମୟ ଅଟେ ଏବଂ ସମସ୍ତ ପ୍ରାଣୀଙ୍କର ସେହି ଗୁଣମାନଙ୍କ ସହିତ ଏବଂ ଗୁଣମାନଙ୍କର କାର୍ଯ୍ୟରୂପକ ପଦାର୍ଥମାନଙ୍କ ସହିତ ସମ୍ବନ୍ଧ ଥାଏ; ସୁତରାଂ ସମସ୍ତେ ତିନିଗୁଣରେ ଯୁକ୍ତ।

**ପ୍ରଶ୍ନ –** ସୃଷ୍ଟିରେ ତ ଗୁଣାତୀତ ପୁରୁଷ ମଧ୍ୟ ଅଛନ୍ତି; ପୁଣି କିପରି କୁହାଯାଉଛି ଯେ, କୌଣସି ପ୍ରାଣୀ ଗୁଣମାନଙ୍କରୁ ମୁକ୍ତ ନୁହେଁ ?

**ଉତ୍ତର –** ଯଦ୍ୟପି ଲୋକଦୃଷ୍ଟିରେ ଗୁଣାତୀତ ପୁରୁଷ ସୃଷ୍ଟିମଧ୍ୟରେ ଅଛନ୍ତି, ତଥାପି ସେହି ପୁରୁଷଙ୍କ ଦୃଷ୍ଟିରେ ସୃଷ୍ଟି ନାହିଁ, କି ସୃଷ୍ଟିଭିତରେ ବା ଶରୀରରେ ତାଙ୍କର ସ୍ଥିତି ନାହିଁ; ସେ ତ ପରମାତ୍ମାଙ୍କ ଠାରେ ହିଁ ଅଭିନ୍ନଭାବରେ ନିତ୍ୟସ୍ଥିତ ହୋଇ ରହନ୍ତି। ତେଣୁ ସେ ପରମାତ୍ମସ୍ୱରୂପ ହିଁ ଅଟନ୍ତି। ଅତଏବ ତାଙ୍କର ଗଣନା ସାଧାରଣ ପ୍ରାଣୀମାନଙ୍କ ମଧ୍ୟରେ ହୋଇପାରିବ ନାହିଁ। ତାଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟ ଆଦିର ସଂଘାତରୂପୀ ଶରୀରକୁ, ଯାହା କି ସମସ୍ତଙ୍କର ପ୍ରତ୍ୟକ୍ଷ ଅଟେ, ତାହାକୁ ଯଦି ପ୍ରାଣୀ କୁହାଯାଏ, ତେବେ ଆପତ୍ତି ନାହିଁ; କାରଣ ସେହି ସଂଘାତ (ଶରୀର) ହେଉଛି ଗୁଣର କାର୍ଯ୍ୟ; ଅତଏବ ଗୁଣରୁ ଅତୀତ ବୋଲି କିପରି କୁହାଯାଇପାରିବ ? ତେଣୁ ସୃଷ୍ଟିମଧ୍ୟରେ କୌଣସି ପ୍ରାଣୀ ବା ପଦାର୍ଥ ତିନିଗୁଣରୁ ମୁକ୍ତ ନୁହେଁ ବୋଲି କହିବାରେ କୌଣସି ଆପତ୍ତି ନାହିଁ।

*ସମ୍ବନ୍ଧ—* *ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ ଅର୍ଜୁନ ସନ୍ନ୍ୟାସ ଓ ତ୍ୟାଗର ତତ୍ତ୍ୱ ପୃଥକ୍ ପୃଥକ୍‌ଭାବରେ ଜାଣିବାକୁ ଇଚ୍ଛା ପ୍ରକଟ କରିଥିଲେ; ତେଣୁ ଏହି ଦୁଇଟିର ତତ୍ତ୍ୱ ବୁଝାଇବାପାଇଁ ପ୍ରଥମେ ଏହି ବିଷୟରେ ବିଦ୍ୱାନ୍‌ମାନଙ୍କର ମତ କ'ଣ, ଭଗବାନ୍ ତାହା କହିଲେ। ତା'ପରେ ଚତୁର୍ଥ ଶ୍ଳୋକରୁ ଦ୍ୱାଦଶ ଶ୍ଳୋକପର୍ଯ୍ୟନ୍ତ ନିଜର ମତାନୁସାରେ ତ୍ୟାଗ ଓ ତ୍ୟାଗୀର ଲକ୍ଷଣ କହିଲେ। ତାହା ପରେ ତେର ଶ୍ଳୋକଠାରୁ ସତର ଶ୍ଳୋକପର୍ଯ୍ୟନ୍ତ ସନ୍ନ୍ୟାସ (ସାଂଖ୍ୟ)ର ସ୍ୱରୂପ ନିରୂପଣ କଲେ ଏବଂ ସନ୍ନ୍ୟାସର ସହାୟକ ସତ୍ତ୍ୱଗୁଣକୁ ଗ୍ରହଣ କରିବାପାଇଁ ତଥା ତାହାର ବିରୋଧୀ ରଜ ଓ ତମ ଗୁଣକୁ ତ୍ୟାଗ କରିବାପାଇଁ ଅଠର ଶ୍ଳୋକଠାରୁ ଚାଳିଶ ଶ୍ଳୋକପର୍ଯ୍ୟନ୍ତ ଗୁଣ ଅନୁସାରେ ଜ୍ଞାନ, କର୍ମ ଓ କର୍ତ୍ତା ଆଦି ମୁଖ୍ୟ ମୁଖ୍ୟ ପଦାର୍ଥମାନଙ୍କ ପ୍ରକାରଗୁଡ଼ିକର ବିବରଣ ଦେଲେ ଏବଂ ଶେଷରେ ସମସ୍ତ ସୃଷ୍ଟିକୁ ଗୁଣମାନଙ୍କରେ ଯୁକ୍ତ ବୋଲି କହି ସେହି ବିଷୟର ଉପସଂହାର କଲେ।*

*ସେଠାରେ ତ୍ୟାଗର ସ୍ୱରୂପ ବର୍ଣ୍ଣନା କରିବା ସମୟରେ ଭଗବାନ୍ କହିଥିଲେ ଯେ, ନିୟତକର୍ମକୁ ସ୍ୱରୂପତଃ ତ୍ୟାଗ କରିଦେବା ଉଚିତ ନୁହେଁ (୧୮/୭), ବରଂ ଆସକ୍ତି ଓ ଫଳତ୍ୟାଗପୂର୍ବକ ନିୟତକର୍ମ କରିବାଲାଗି ହିଁ ବାସ୍ତବିକ ତ୍ୟାଗ (୧୮/୯)। କିନ୍ତୁ କାହାପାଇଁ କେଉଁ କର୍ମ ନିୟତ, ତାହା ସେଠାରେ କହି ନାହାନ୍ତି। ଅତଏବ ବର୍ତ୍ତମାନ ନିୟତକର୍ମର ସ୍ୱରୂପ, ତ୍ୟାଗ ନାମରେ ବର୍ଣ୍ଣିତ କର୍ମଯୋଗରେ ଭକ୍ତିର ସହଯୋଗ ଏବଂ ତାହାର ଫଳ ପରମସିଦ୍ଧିପ୍ରାପ୍ତି ବୋଲି ସଂକ୍ଷେପରେ କହିଦେବାପାଇଁ ପୁଣି ଥରେ ସେହି ତ୍ୟାଗରୂପକ କର୍ମଯୋଗ ପ୍ରକରଣ ଆରମ୍ଭ କରିବା ସହିତ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ତଥା ଶୂଦ୍ରଙ୍କର ସ୍ୱାଭାବିକ ନିୟତକର୍ମ ବର୍ଣ୍ଣନା କରିବାକୁ ପ୍ରସ୍ତାବନା କରୁଛନ୍ତି—*

**ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଂ ଚ ପରନ୍ତପ।**
**କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ॥ ୪୧ ॥**

**ଅନ୍ୱୟ—** **ପରନ୍ତପ** = ହେ ପରନ୍ତପ! **ବ୍ରାହ୍ମଣକ୍ଷତ୍ରିୟବିଶାମ୍** = ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର; **ଚ** = ତଥା; **ଶୂଦ୍ରାଣାମ୍** = ଶୂଦ୍ରମାନଙ୍କର; **କର୍ମାଣି** = କର୍ମଗୁଡ଼ିକ; **ସ୍ୱଭାବପ୍ରଭବୈଃ** = ସ୍ୱଭାବରୁ ଉତ୍ପନ୍ନ; **ଗୁଣୈଃ** = ଗୁଣମାନଙ୍କ ଦ୍ୱାରା; **ପ୍ରବିଭକ୍ତାନି** = ବିଭକ୍ତ କରାଯାଇଛି।

**ହେ ପରନ୍ତପ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ତଥା ଶୂଦ୍ରମାନଙ୍କର କର୍ମଗୁଡ଼ିକ ସ୍ୱଭବାରୁ ଉତ୍ପନ୍ନ ଗୁଣମାନଙ୍କ ଦ୍ୱାରା ବିଭକ୍ତ କରାଯାଇଛି॥ ୪୧ ॥**

**ପ୍ରଶ୍ନ— ବ୍ରାହ୍ମଣକ୍ଷତ୍ରିୟବିଶାମ୍** ଏହି ପଦରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ— ଏହି ତିନି ଶବ୍ଦର ସମାସ କରିବାର ତଥା **ଶୂଦ୍ରାଣାମ୍** ପଦଦ୍ୱାରା ଶୂଦ୍ରମାନଙ୍କୁ ପୃଥକ୍ କରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ— ଏହି ତିନି ବର୍ଣ୍ଣ ଦ୍ୱିଜ; ଏମାନେ ଯଜ୍ଞୋପବୀତ ଧାରଣ କରି ବେଦାଧ୍ୟୟନ ତଥା ଯଜ୍ଞାଦି ବୈଦିକ କର୍ମ କରିବାରେ ଅଧିକାରୀ। ଏଣୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ— ଏହି ତିନି ପଦକୁ ସମାସ କରାଯାଇଛି। କିନ୍ତୁ ଶୂଦ୍ରମାନେ, ଦ୍ୱିଜ ନୁହଁନ୍ତି; ସେମାନଙ୍କର ଯଜ୍ଞୋପବୀତ ଧାରଣ ତଥା ବେଦାଧ୍ୟୟନରେ ଏବଂ ଯଜ୍ଞାଦି ବୈଦିକ କର୍ମରେ ଅଧିକାର ନାହିଁ— ଏହି ଭାବ ଦେଖାଇବାପାଇଁ 'ଶୂଦ୍ରାଣାମ୍' ପଦଦ୍ୱାରା ସେମାନଙ୍କୁ ପୃଥକ୍ କରି ସୂଚିତ କରାଯାଇଛି।

**ପ୍ରଶ୍ନ— ଗୁଣୈଃ** ପଦ ସହିତ **ସ୍ୱଭାବପ୍ରଭବୈଃ** ବିଶେଷଣ ଦେବାର ଭାବ କ'ଣ ଏବଂ 'ସେହି ଗୁଣମାନଙ୍କ ଅନୁସାରେ ଉପରୋକ୍ତ ଚାରି ବର୍ଣ୍ଣର କର୍ମବିଭାଗ କରାଯାଇଛି', — ଏପରି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ପ୍ରାଣୀମାନଙ୍କ ଦ୍ୱାରା ଜନ୍ମଜନ୍ମାନ୍ତରରେ କରାଯାଇଥିବା କର୍ମର ସଂସ୍କାରକୁ ସ୍ୱଭାବ କୁହାଯାଏ। ପ୍ରାଣୀମାନଙ୍କର ଅନ୍ତଃକରଣରେ ସେହି ସ୍ୱଭାବର ଅନୁରୂପ ସତ୍ତ୍ୱ, ରଜ ଓ ତମ — ଏହି ତିନିଗୁଣର ବୃତ୍ତି ଉତ୍ପନ୍ନ ହୁଏ। ଏହି ଭାବ ଦେଖାଇବାପାଇଁ **ଗୁଣୈଃ** ପଦ ସହିତ **ସ୍ୱଭାବପ୍ରଭବୈଃ** ବିଶେଷଣ ଦିଆଯାଇଛି। 'ଗୁଣମାନଙ୍କ ଅନୁସାରେ ଚାରିବର୍ଣ୍ଣର କର୍ମବିଭାଗ କରାଯାଇଛି', କହିବାର ଭାବ ଏହି ଯେ, ସେହି ଗୁଣବୃତ୍ତି- ଅନୁସାରେ ହିଁ ମନୁଷ୍ୟମାନେ ବ୍ରାହ୍ମଣ ଆଦି ବର୍ଣ୍ଣରେ

ଉତ୍ପନ୍ନ ହୁଅନ୍ତି; ତେଣୁ ସେହି ଗୁଣମାନଙ୍କ ଅନୁସାରେ ହିଁ ଶାସ୍ତ୍ରରେ ଚାରିବର୍ଣ୍ଣର କର୍ମବିଭାଗ କରାଯାଇଛି। ଯାହାଙ୍କ ସ୍ୱଭାବରେ ସତ୍ତ୍ୱଗୁଣ ଅଧିକ ଥାଏ, ସେମାନେ ବ୍ରାହ୍ମଣ ହୁଅନ୍ତି ; ତେଣୁ ସେମାନଙ୍କର ସ୍ୱଭାବିକ କର୍ମ ଶମ-ଦମାଦି ବୋଲି କୁହାଯାଇଛି। ଯାହାଙ୍କ ସ୍ୱଭାବରେ ସତ୍ତ୍ୱମିଶ୍ରିତ ରଜୋଗୁଣ ଅଧିକ ଥାଏ, ସେମାନେ କ୍ଷତ୍ରିୟ ହୁଅନ୍ତି ଓ ତେଣୁ ସେମାନଙ୍କ ସ୍ୱାଭାବିକ କର୍ମ ଶୂରବୀରତା, ତେଜ ଆଦି ବୋଲି କୁହାଯାଇଛି। ଯାହାଙ୍କ ସ୍ୱଭାବରେ ତମୋମିଶ୍ରିତ ରଜୋଗୁଣ ଅଧିକ ଥାଏ, ସେମାନେ ବୈଶ୍ୟ ହୁଅନ୍ତି; ତେଣୁ ସେମାନଙ୍କର ସ୍ୱାଭାବିକ କର୍ମ କୃଷି, ଗୋରକ୍ଷା ଆଦି ବୋଲି କୁହାଯାଇଛି ଏବଂ ଯାହାଙ୍କ ସ୍ୱଭାବରେ ପ୍ରଧାନତଃ ରଜୋମିଶ୍ରିତ ତମୋଗୁଣ ଥାଏ, ସେମାନଙ୍କୁ ଶୂଦ୍ର କହନ୍ତି; ଏହି କାରଣରୁ ତିନି ବର୍ଣ୍ଣର ସେବା କରିବା ହିଁ ସେମାନଙ୍କର ସ୍ୱାଭାବିକ କର୍ମ ବୋଲି କୁହାଯାଇଛି। ଏହା ଚତୁର୍ଥ ଅଧ୍ୟାୟର ତେର ଶ୍ଳୋକର ବ୍ୟାଖ୍ୟାରେ ବିସ୍ତାରପୂର୍ବକ ବୁଝାଇଦିଆଯାଇଛି।

**ସମ୍ବନ୍ଧ –** *ପୂର୍ବଶ୍ଳୋକରେ କରାଯାଇଥିବା ପ୍ରସ୍ତାବନା ଅନୁସାରେ ପ୍ରଥମେ ବ୍ରାହ୍ମଣଙ୍କର ସ୍ୱାଭାବିକ କର୍ମ କଥା କୁହାଯାଇଛି।–*

**ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ।**
**ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍॥ ୪୨ ॥**

**ଅନ୍ୱୟ –** **ଶମଃ** = ଅନ୍ତଃକରଣକୁ ନିଗ୍ରହ କରିବା; **ଦମଃ** = ଇନ୍ଦ୍ରିୟମାନଙ୍କୁ ଦମନ କରିବା; **ତପଃ** = ଧର୍ମପାଳନପାଇଁ କଷ୍ଟ ସହିବା; **ଶୌଚମ୍** = ବାହାରେ ଭିତରେ ଶୁଦ୍ଧ ରହିବା; **କ୍ଷାନ୍ତିଃ** = ଅନ୍ୟର ଅପରାଧକୁ କ୍ଷମା କରିବା; **ଆର୍ଜବମ୍** = ମନ, ଇନ୍ଦ୍ରିୟ ଓ ଶରୀରକୁ ସରଳ ରଖିବା; **ଆସ୍ତିକ୍ୟମ୍** = ବେଦ, ଶାସ୍ତ୍ର, ଈଶ୍ୱର ଓ ପରଲୋକ ଆଦିରେ ଶ୍ରଦ୍ଧା ରଖିବା; **ଜ୍ଞାନମ୍** = ବେଦାଦିଶାସ୍ତ୍ରମାନଙ୍କର ଅଧ୍ୟୟନ-ଅଧ୍ୟାପନ କରିବା; **ଚ** = ଏବଂ; **ବିଜ୍ଞାନମ୍** = ପରମାତ୍ମତତ୍ତ୍ୱକୁ ଅନୁଭବ କରିବା (ଏ ସମସ୍ତ); **ଏବ** = ହିଁ; **ବ୍ରହ୍ମକର୍ମସ୍ୱଭାବଜମ୍** = ବ୍ରାହ୍ମଣମାନଙ୍କର ସ୍ୱାଭାବିକ କର୍ମ ଅଟେ।

**ଅନ୍ତଃକରଣକୁ ନିଗ୍ରହ କରିବା, ଇନ୍ଦ୍ରିୟମାନଙ୍କୁ ଦମନ କରିବା, ଧର୍ମପାଳନପାଇଁ କଷ୍ଟ ସହିବା, ବାହାରେ ଓ ଭିତରେ ଶୁଦ୍ଧ ରହିବା, ଅନ୍ୟର ଅପରାଧ କ୍ଷମା କରିବା, ମନ, ଇନ୍ଦ୍ରିୟ ଓ ଶରୀରକୁ ସରଳ ରଖିବା, ବେଦ, ଶାସ୍ତ୍ର, ଈଶ୍ୱର ଓ ପରଲୋକ ଆଦିରେ ଶ୍ରଦ୍ଧା ରଖିବା, ବେଦାଦିଶାସ୍ତ୍ରମାନଙ୍କର ଅଧ୍ୟୟନ-ଅଧ୍ୟାପନ କରିବା ଏବଂ ପରମାତ୍ମତତ୍ତ୍ୱକୁ ଅନୁଭବ କରିବା – ଏସବୁ ହେଉଛି ବ୍ରାହ୍ମଣମାନଙ୍କର ସ୍ୱାଭାବିକ କର୍ମ॥ ୪୨ ॥**

**ପ୍ରଶ୍ନ –** ଶମ କ'ଣ ?

**ଉତ୍ତର –** ଅନ୍ତଃକରଣକୁ ନିଜ ବଶରେ ରଖି ତାହାକୁ ବିକ୍ଷେପରହିତ ଓ ଶାନ୍ତ କରିଦେବା ତଥା ସାଂସାରିକ ବିଷୟମାନଙ୍କର ଚିନ୍ତନ ତ୍ୟାଗ କରିଦେବାର ନାମ **ଶମ**।

**ପ୍ରଶ୍ନ –** ଦମ କାହାକୁ କହନ୍ତି ?

**ଉତ୍ତର –** ସମସ୍ତ ଇନ୍ଦ୍ରିୟ ବଶ କରିନେବା ତଥା ବଶ କରାଯାଇଥିବା ଇନ୍ଦ୍ରିୟମାନଙ୍କୁ ବାହ୍ୟ ବିଷୟମାନଙ୍କରୁ ଦୂରେଇ ଆଣି ପରମାତ୍ମପ୍ରାପ୍ତିରୂପୀ ସାଧନାରେ ଲଗାଇଦେବାର ନାମ **ଦମ**।

**ପ୍ରଶ୍ନ –** ଏଠାରେ ତପର ଅର୍ଥ କ'ଣ ?

**ଉତ୍ତର –** ସ୍ୱଧର୍ମପାଳନ କରିବାପାଇଁ କଷ୍ଟ ସହିବା, ଅର୍ଥାତ୍ ଅହିଂସାଦି ମହାବ୍ରତ ପାଳନ କରିବା, ଭୋଗସାମଗ୍ରୀ ତ୍ୟାଗ କରି ସରଳ-ନିରାଡ଼ମ୍ବର ରହିବା, ଏକାଦଶୀ ଆଦି ବ୍ରତ ଉପବାସ କରିବା ଏବଂ ଏକାନ୍ତ ଶୁଦ୍ଧ ପ୍ରଦେଶରେ ବାସ କରିବା – ଏସବୁ ତପର ଅନ୍ତର୍ଗତ।

**ପ୍ରଶ୍ନ –** ଶୌଚ କାହାକୁ କହନ୍ତି ?

**ଉତ୍ତର –** ଷୋଡ଼ଶ ଅଧ୍ୟାୟର ତୃତୀୟ ଶ୍ଳୋକରେ ଶୌଚର ବ୍ୟାଖ୍ୟାରେ ବାହ୍ୟଶୁଦ୍ଧି କଥା କୁହାଯାଇଛି ଏବଂ ପ୍ରଥମ ଶ୍ଳୋକରେ ସତ୍ତ୍ୱଶୁଦ୍ଧି ନାମରେ ଅନ୍ତଃକରଣର ଶୁଦ୍ଧି କଥା କୁହାଯାଇଛି। ସେହି ଉଭୟର ନାମ **ଶୌଚ**। ତ୍ରୟୋଦଶ ଅଧ୍ୟାୟର ସପ୍ତମ ଶ୍ଳୋକରେ ମଧ୍ୟ ଶୁଦ୍ଧିର ବର୍ଣ୍ଣନା ରହିଛି। ଅଭିପ୍ରାୟ ଏହି ଯେ, ମନ, ଇନ୍ଦ୍ରିୟ ଓ ଶରୀରକୁ ତଥା ସେମାନଙ୍କ ଦ୍ୱାରା କରାଯାଇଥିବା କ୍ରିୟାମାନଙ୍କୁ ପବିତ୍ର ରଖିବା, ସେସବୁ ଭିତରେ କୌଣସିପ୍ରକାର ଅଶୁଦ୍ଧି ପ୍ରବେଶ କରାଇ ନ ଦେବା ହିଁ **ଶୌଚ**।

**ପ୍ରଶ୍ନ— କ୍ଷାନ୍ତି** କାହାକୁ କହନ୍ତି ?

**ଉତ୍ତର—** ଅନ୍ୟମାନଙ୍କର ଅପରାଧ କ୍ଷମା କରିଦେବାର ନାମ **କ୍ଷାନ୍ତି**। ଦଶମ ଅଧ୍ୟାୟର ଚତୁର୍ଥ ଶ୍ଳୋକର ବ୍ୟାଖ୍ୟାରେ **କ୍ଷମା** ନାମରେ ଏବଂ ତ୍ରୟୋଦଶ ଅଧ୍ୟାୟର **ସପ୍ତମ** ଶ୍ଳୋକର ବ୍ୟାଖ୍ୟାରେ **କ୍ଷାନ୍ତି** ନାମରେ ଏହି ଭାବଟି ଭଲଭାବରେ ବୁଝାଇଦିଆଯାଇଛି। ★

**ପ୍ରଶ୍ନ—** ଆର୍ଜବମ୍ କ'ଣ ?

**ଉତ୍ତର—** ମନ, ଇନ୍ଦ୍ରିୟ ଓ ଶରୀରକୁ ସରଳ ରଖିବା ଅର୍ଥାତ୍ ମନରେ କୌଣସିପ୍ରକାର ଦୁରାଗ୍ରହ ଓ ଅହମିକା ନ ରଖିବା, ମନର ପ୍ରକୃତ ଭାବ ହିଁ ଇନ୍ଦ୍ରିୟମାନଙ୍କ ଦ୍ୱାରା ପ୍ରକଟ କରିବା, ତାହାଛଡ଼ା ଶରୀରରେ ବି କୌଣସିପ୍ରକାର ବକ୍ରତା ନ ରଖିବା **ଆର୍ଜବର** ଅନ୍ତର୍ଗତ।

**ପ୍ରଶ୍ନ—ଆସ୍ତିକ୍ୟମ୍** ପଦର ଅର୍ଥ କ'ଣ ?

**ଉତ୍ତର—ଆସ୍ତିକ୍ୟମ୍** ପଦ ଆସ୍ତିକତାର ବାଚକ। ବେଦ, ଶାସ୍ତ୍ର, ଈଶ୍ୱର ଓ ପରଲୋକ— ଏହିସବୁର ଅସ୍ତିତ୍ୱରେ ପୂର୍ଣ୍ଣବିଶ୍ୱାସ ରଖିବା; ବେଦ, ଶାସ୍ତ୍ର ଓ ମହାତ୍ମାମାନଙ୍କର ବଚନ ଯଥାର୍ଥ ବୋଲି ମାନିବା ଏବଂ ଧର୍ମପାଳନରେ ଦୃଢ଼ବିଶ୍ୱାସ ରଖିବା— ଏସବୁ ହେଉଛି **ଆସ୍ତିକତାର** ଲକ୍ଷଣ।

**ପ୍ରଶ୍ନ— ଜ୍ଞାନ** କାହାକୁ କହନ୍ତି ?

**ଉତ୍ତର— ଶ୍ରଦ୍ଧାପୂର୍ବକ** ବେଦ ଓ ବିଭିନ୍ନ **ଶାସ୍ତ୍ର** ଅଧ୍ୟୟନ- ଅଧ୍ୟାପନ କରିବା ଓ ସେଥିରେ ବର୍ଣ୍ଣିତ ଉପଦେଶ ଭଲଭାବରେ ବୁଝିବାକୁ ଏଠାରେ **ଜ୍ଞାନ** କୁହାଯାଇଛି।

---

★ ଥରେ ଗାଧିପୁତ୍ର ମହାରାଜ ବିଶ୍ୱାମିତ୍ର ଯାଇ ମହର୍ଷି ବଶିଷ୍ଠଙ୍କ ଆଶ୍ରମରେ ପହଞ୍ଚିଲେ। ତାଙ୍କ ସହିତ ବିରାଟ ସେନା ଥିଲେ। ନନ୍ଦିନୀ ନାମକ କାମଧେନୁ ଗାଈର ପ୍ରସାଦରେ ବଶିଷ୍ଠ ସେନାସମେତ ରାଜାଙ୍କୁ ଭିନ୍ନ ଭିନ୍ନପ୍ରକାର ସୁସ୍ୱାଦୁ ଭୋଜନ କରାଇଲେ ଏବଂ ରତ୍ନ ତଥା ବସ୍ତ୍ରାଭୂଷଣ ଦେଲେ। ବିଶ୍ୱାମିତ୍ରଙ୍କ ମନ ଗାଈଟି ପ୍ରତି ଲୋଭାସକ୍ତ ହୋଇଗଲା; ଏଣୁ ସେ ବଶିଷ୍ଠଙ୍କୁ ଗାଈଟି ମାଗିଲେ। ବଶିଷ୍ଠ କହିଲେ, ''ଏହି ଗାଈଟିକୁ ମୁଁ ଦେବତା, ଅତିଥି, ପିତୃଗଣ ଓ ଯଜ୍ଞପାଇଁ ରଖିଛି, ଏଣୁ ଦେଇପାରିବି ନାହିଁ।'' ବିଶ୍ୱାମିତ୍ରଙ୍କ ଠାରେ ନିଜ ଜନବଳ ଓ ଶସ୍ତ୍ରବଳର ଗର୍ବ ଥିଲା; ସେ ବଳପୂର୍ବକ ନନ୍ଦିନୀକୁ ନେଇଯିବାକୁ ଚାହିଁଲେ। ନନ୍ଦିନୀ କାନ୍ଦି କାନ୍ଦି ବଶିଷ୍ଠଙ୍କୁ କହିଲେ, ''ଭଗବନ୍! ବିଶ୍ୱାମିତ୍ରଙ୍କ ନିର୍ଦ୍ଦୟୀ ସିପାହୀମାନେ ମୋତେ କ୍ରୂରଭାବରେ ପ୍ରହାର କରୁଛନ୍ତି। ଆପଣ ସେମାନଙ୍କ ଅତ୍ୟାଚାରକୁ କିପରି ଉପେକ୍ଷା କରୁଛନ୍ତି ?'' ବଶିଷ୍ଠ କହିଲେ—

> କ୍ଷତ୍ରିୟାଣାଂ ବଳଂ ତେଜୋ ବ୍ରାହ୍ମଣାନାଂ କ୍ଷମା ବଳମ୍।
> କ୍ଷମା ମାଂ ଭଜତେ ଯସ୍ମାଦ୍‌ଗମ୍ୟତାଂ ଯଦି ରୋଚତେ॥ (ମହା. ଆଦି ୧୭୫/୨୮)

ଅର୍ଥାତ୍— କ୍ଷତ୍ରିୟମାନଙ୍କର ବଳ ତେଜ ଏବଂ ବ୍ରାହ୍ମଣମାନଙ୍କର ବଳ କ୍ଷମା। ମୁଁ କ୍ଷମା ଛାଡ଼ିପାରିବି ନାହିଁ; ତୁମର ଇଚ୍ଛା ହେଉଛି ତ, ଚାଲିଯାଅ।'

ନନ୍ଦିନୀ କହିଲେ, ''ଯଦି ଆପଣ ତ୍ୟାଗ ନ କରିବେ, ତେବେ ମୋତେ କେହି ବଳପୂର୍ବକ ନେଇପାରିବେ ନାହିଁ।'' ବଶିଷ୍ଠ କହିଲେ, ''ମୁଁ ତ୍ୟାଗ କରୁ ନାହିଁ; ତୁମେ ରହିପାରିବ ତ ରହ।'

ଏହା ପରେ ନନ୍ଦିନୀ ରୌଦ୍ରରୂପ ଧାରଣ କଲେ; ତାଙ୍କ ପୁଚ୍ଛରୁ ଅଗ୍ନି ବର୍ଷା ହେବାକୁ ଲାଗିଲା; ତତ୍ପରେ ତାଙ୍କ ପୁଚ୍ଛରୁ ଅନେକ ମ୍ଳେଚ୍ଛଜାତିର ସୈନ୍ୟ ଉତ୍ପନ୍ନ ହେଲେ। ସେମାନେ ବିଶ୍ୱାମିତ୍ରଙ୍କ ସୈନ୍ୟଙ୍କ ଉପରେ ଆକ୍ରମଣ କଲେ। ନନ୍ଦିନୀଙ୍କ ସେନା ବିଶ୍ୱାମିତ୍ରଙ୍କର ଜଣେ ହେଲେ ସୈନ୍ୟକୁ ମାରି ନ ଥିଲେ; ସେମାନେ ସମସ୍ତେ ଭୟରେ ପଳାଇଗଲେ। ବିଶ୍ୱାମିତ୍ରଙ୍କୁ ରକ୍ଷା କରିବାପାଇଁ କେହି ଜଣେ ହେଲେ ରହିଲେ ନାହିଁ। ତେଣୁ ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ କହିଲେ—

> ଧିଗ୍‌ବଳଂ କ୍ଷତ୍ରିୟବଳଂ ବ୍ରହ୍ମତେଜୋବଳଂ ବଳମ୍। (ମହା/ଆଦି ୧୭୫/୪୪)

'କ୍ଷତ୍ରିୟର ବଳକୁ ଧିକ୍! ବସ୍ତୁତଃ ବ୍ରାହ୍ମଣତେଜର ବଳ ହିଁ ବଳ।' ଏହା ପରେ ଶାପଗ୍ରସ୍ତ ରାକ୍ଷସ ହୋଇଥିବା ରାଜା କଲ୍ମାଷପାଦ ବିଶ୍ୱାମିତ୍ରଙ୍କ ପ୍ରେରଣାରେ ବଶିଷ୍ଠଙ୍କର ସମସ୍ତ ପୁତ୍ରଙ୍କୁ ମାରିଦେଲେ, ତଥାପି ବଶିଷ୍ଠ ପ୍ରତିଶୋଧ ନେବାକୁ ଚେଷ୍ଟା କଲେ ନାହିଁ।

ବାଲ୍ମୀକି ରାମାୟଣରେ ଅଛି ଯେ, ତାହା ପରେ ବିଶ୍ୱାମିତ୍ର ରାଜ୍ୟ ଛାଡ଼ି ଯୋଗ ତପ କରିବାକୁ ଲାଗିଲେ ଏବଂ ହଜାର ହଜାର ବର୍ଷ ଉଗ୍ରତପର ପ୍ରଭାବରେ ସେ କ୍ରମଶଃ ରାଜର୍ଷି ଓ ମହର୍ଷି ପଦ ପାଇ ଶେଷରେ ବ୍ରହ୍ମର୍ଷି ହେଲେ। ଦେବତାମାନଙ୍କ ଅନୁରୋଧରେ କ୍ଷମାଶୀଳ ମହର୍ଷି ବଶିଷ୍ଠ ତାଙ୍କୁ ବ୍ରହ୍ମର୍ଷି ବୋଲି ସ୍ୱୀକାର କଲେ। ଶେଷରେ—

> ବିଶ୍ୱାମିତ୍ରୋଽପି ଧର୍ମାତ୍ମା ଲବ୍ଧ୍ୱା ବ୍ରାହ୍ମଣ୍ୟମୁତ୍ତମମ୍।
> ପୂଜୟାମାସ ବ୍ରହ୍ମର୍ଷିଂ ବଶିଷ୍ଠଂ ଜପତାଂ ବରମ୍॥ (ବାଲ୍ମୀକୀୟ ରାମାୟଣ ୧/୬୫/୨୭)

ଅର୍ଥାତ୍— ଧର୍ମାତ୍ମା ବିଶ୍ୱାମିତ୍ର ମଧ୍ୟ ଉତ୍ତମ ବ୍ରାହ୍ମଣପଦ ଲାଭ କରି ମନ୍ତ୍ରଜପକାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ରହ୍ମର୍ଷି ଶ୍ରୀ ବଶିଷ୍ଠଙ୍କୁ ପୂଜା କଲେ।

**ପ୍ରଶ୍ନ—** ବିଜ୍ଞାନମ୍ ପଦ କାହାର ବାଚକ ?

**ଉତ୍ତର—** ବେଦ ଓ ଶାସ୍ତ୍ରରେ କୁହାଯାଇଥିବା ଓ ମହାପୁରୁଷମାନଙ୍କ ଠାରୁ ଶୁଣାଯାଇଥିବା ସାଧନାଦ୍ୱାରା ପରମାତ୍ମାଙ୍କ ସ୍ୱରୂପ ସାକ୍ଷାତ୍ କରିନେବାକୁ ଏଠାରେ ବିଜ୍ଞାନ କୁହାଯାଇଛି।

**ପ୍ରଶ୍ନ—** 'ଏସବୁ ହେଉଛି ବ୍ରାହ୍ମଣଙ୍କର ସ୍ୱାଭାବିକ କର୍ମ'— ଏ କଥାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ବ୍ରାହ୍ମଣଙ୍କ ଠାରେ କେବଳ ସତ୍ତ୍ୱଗୁଣର ପ୍ରଧାନତା ଥାଏ। ତେଣୁ ଉପରୋକ୍ତ କର୍ମମାନଙ୍କରେ ତାଙ୍କର ସ୍ୱାଭାବିକ ପ୍ରବୃତ୍ତି ହୋଇଯାଏ। ବ୍ରାହ୍ମଣଙ୍କ ସ୍ୱଭାବ ଉପରୋକ୍ତ କର୍ମମାନଙ୍କର ଅନୁକୂଳ; ତେଣୁ ଉପରୋକ୍ତ କର୍ମ କରିବାରେ ତାଙ୍କୁ କୌଣସିପ୍ରକାର କଷ୍ଟ ହୁଏ ନାହିଁ। ଏହି କର୍ମମାନଙ୍କରେ ବହୁ ସାମାନ୍ୟ ଧର୍ମର ମଧ୍ୟ ବର୍ଣ୍ଣନା ହୋଇଛି; ଏଥିରୁ ବୁଝିବା ଉଚିତ ଯେ, କ୍ଷତ୍ରିୟ ଆଦି ଅନ୍ୟବର୍ଣ୍ଣମାନଙ୍କର ଏସବୁ ସ୍ୱାଭାବିକ କର୍ମ ନୁହେଁ; କିନ୍ତୁ ପରମାତ୍ମପ୍ରାପ୍ତିରେ ସମସ୍ତଙ୍କର ଅଧିକାର ରହିଛି। ତେଣୁ ସେମାନଙ୍କ ପାଇଁ ଏଗୁଡ଼ିକ ହେଉଛି ପ୍ରଯତ୍ନସାଧ୍ୟ କର୍ତ୍ତବ୍ୟକର୍ମ।

**ପ୍ରଶ୍ନ—** ମନୁସ୍ମୃତିରେ ତ ବ୍ରାହ୍ମଣଙ୍କ ପାଇଁ ସ୍ୱୟଂ ଅଧ୍ୟୟନ କରିବା ଓ ଅନ୍ୟକୁ କରାଇବା, ସ୍ୱୟଂ ଯଜ୍ଞ କରିବା ଓ ଅନ୍ୟଦ୍ୱାରା କରାଇବା ତଥା ସ୍ୱୟଂ ଦାନ ନେବା ଓ ଅନ୍ୟକୁ ଦାନ ଦେବା— ଏପରି ଛଅପ୍ରକାର କର୍ମ କୁହାଯାଇଛି;* କିନ୍ତୁ ଏଠାରେ ଶମ, ଦମ, ଆଦି ପ୍ରାୟ ସାମାନ୍ୟ ଧର୍ମକୁ ହିଁ ବ୍ରାହ୍ମଣର କର୍ମ ବୋଲି କୁହାଯାଇଛି। ଏହାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଠାରେ କୁହାଯାଇଥିବା କର୍ମଗୁଡ଼ିକ କେବଳ ସାତ୍ତ୍ୱିକ କର୍ମ; ବ୍ରାହ୍ମଣଙ୍କ ସ୍ୱଭାବ ସହିତ ଏଗୁଡ଼ିକର ବିଶେଷ ସମ୍ବନ୍ଧ ରହିଛି। ତେଣୁ ବ୍ରାହ୍ମଣଙ୍କ ସ୍ୱାଭାବିକ କର୍ମ ସହିତ ଏସବୁର ଗଣନା କରାଯାଇଛି; ଅଧିକ ବିସ୍ତାର କରାଯାଇ ନାହିଁ। ଏହା ଛଡ଼ା ମନୁସ୍ମୃତି ଆଦିରେ ଅନ୍ୟ ଯେଉଁ ଅଧିକ ସ୍ୱାଭାବିକ କର୍ମ କଥା କୁହାଯାଇଛି, ସେଗୁଡ଼ିକୁ ମଧ୍ୟ ଏସବୁ ସହିତ ବୁଝିନେବା ଉଚିତ।

**ସମ୍ବନ୍ଧ—** ବ୍ରାହ୍ମଣମାନଙ୍କ ସ୍ୱାଭାବିକ କର୍ମ କହିସାରି ଭଗବାନ୍ ବର୍ତ୍ତମାନ କ୍ଷତ୍ରିୟମାନଙ୍କ ସ୍ୱାଭାବିକ କର୍ମ କହୁଛନ୍ତି—

## ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଳାୟନମ୍ ।
## ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜମ୍ ॥ ୪୩ ॥

**ଅନ୍ୱୟ—** ଶୌର୍ଯ୍ୟମ୍ = ଶୂରବୀରତା; ତେଜଃ = ତେଜ; ଧୃତିଃ = ଧୈର୍ଯ୍ୟ; ଦାକ୍ଷ୍ୟମ୍ = ଦକ୍ଷତା; ଚ = ଏବଂ; ଯୁଦ୍ଧେ = ଯୁଦ୍ଧରେ; ଅପି = ମଧ୍ୟ; ଅପଳାୟନମ୍ = ପଳାଇ ନ ଯିବା; ଦାନମ୍ = ଦାନ ଦେବା; ଚ = ଏବଂ; ଈଶ୍ୱରଭାବଃ = ସ୍ୱାମିତ୍ୱ (ଏସବୁ); କ୍ଷାତ୍ରମ୍ = କ୍ଷତ୍ରିୟମାନଙ୍କର; ସ୍ୱଭାବଜମ୍ = ସ୍ୱାଭାବିକ; କର୍ମ = କର୍ମ।

**ଶୂରବୀରତା, ତେଜ, ଧୈର୍ଯ୍ୟ, ଦକ୍ଷତା ଏବଂ ଯୁଦ୍ଧରୁ ପଳାଇ ନ ଯିବା, ଦାନ ଦେବା ଏବଂ ସ୍ୱାମିତ୍ୱ— ଏସବୁ ହେଉଛି କ୍ଷତ୍ରିୟମାନଙ୍କର ସ୍ୱାଭାବିକ କର୍ମ॥ ୪୩ ॥**

**ପ୍ରଶ୍ନ—** ଶୂରବୀରତା କାହାକୁ କହନ୍ତି ?

**ଉତ୍ତର—** ଶତ୍ରୁ ଯେତେବଡ଼ ବଳବାନ୍ ହେଲେ ମଧ୍ୟ ତା'ର ନ୍ୟାୟଯୁକ୍ତ ମୁକାବିଲା କରିବାରେ ଭୟ ନ କରିବା ତଥା ନ୍ୟାୟଯୁକ୍ତ ଯୁଦ୍ଧ କରିବାପାଇଁ ସର୍ବଦା ଉତ୍ସାହିତ ହୋଇ ରହିବା ଏବଂ ଯୁଦ୍ଧସମୟରେ ସାହସପୂର୍ବକ ନିର୍ଭୀକଭାବରେ ଲଢ଼ିବାକୁ 'ଶୂରବୀରତା' କୁହାଯାଏ। ଭୀଷ୍ମପିତାମହଙ୍କ ଜୀବନ ଏହାର ଜ୍ୱଳନ୍ତ ଉଦାହରଣ।**

---

* ଅଧ୍ୟାପନମଧ୍ୟୟନଂ ଯଜନଂ ଯାଜନଂ ତଥା।
ଦାନଂ ପ୍ରତିଗ୍ରହଂ ଚୈବ ବ୍ରାହ୍ମଣାନାମକଳ୍ପୟତ୍॥ (ମନୁସ୍ମୃତି ୧/୮୮)

** ବାଲବ୍ରହ୍ମଚାରୀ ପିତାମହ ଭୀଷ୍ମଙ୍କ ଠାରେ କ୍ଷତ୍ରିୟୋଚିତ ସମସ୍ତ ଗୁଣ ରହିଥିଲା। ସେ ପ୍ରସିଦ୍ଧ କ୍ଷତ୍ରିୟଶତ୍ରୁ ଭଗବାନ ପରଶୁରାମଙ୍କ ଠାରୁ ଶସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ। ଯେତେବେଳେ ପରଶୁରାମ କାଶୀରାଜଙ୍କ କନ୍ୟା ଅମ୍ବାକୁ ବିବାହ କରିବାପାଇଁ ଭୀଷ୍ମଙ୍କୁ ବହୁତ ପ୍ରବର୍ତ୍ତାଇଲେ, ସେତେବେଳେ ଭୀଷ୍ମ ନିଜର ପ୍ରତ୍ୟାରକ୍ଷାନିମିତ୍ତ ବିବାହ କରିବେ ନାହିଁ ବୋଲି ଅତ୍ୟନ୍ତ ନମ୍ରତାର ସହିତ ସ୍ପଷ୍ଟ ମନା କରିଦେଲେ; କିନ୍ତୁ ପରଶୁରାମ ଯେତେବେଳେ ତାହା ନ ଶୁଣି ତାଙ୍କୁ ଧମକାଇବାକୁ ଆରମ୍ଭ କଲେ, ସେ ସ୍ପଷ୍ଟ କହିଦେଲେ— (ପୃଷ୍ଠା ଓଲଟାନ୍ତୁ)

**ପ୍ରଶ୍ନ – ତେଜ କାହାର ନାମ ?**

**ଉତ୍ତର –** ଯେଉଁ ଶକ୍ତିର ପ୍ରଭାବରେ ମନୁଷ୍ୟ ଅନ୍ୟର ଚାପପ୍ରୟୋଗ ସତ୍ତ୍ୱେ କୌଣସି ବି କର୍ତ୍ତବ୍ୟପାଳନରେ କେବେ ବି ବିମୁଖ ହୁଏନାହିଁ ଏବଂ ଯାହାର ପ୍ରଭାବରେ ଅନ୍ୟ ଲୋକେ ନ୍ୟାୟର ତଥା ତେଜସ୍ୱୀ ମନୁଷ୍ୟଙ୍କର ପ୍ରତିକୂଳ ବ୍ୟବହାର ପ୍ରଦର୍ଶନ

---

ନ ଭୟାନ୍ନାପ୍ୟନୁକ୍ରୋଶାନ୍ନାର୍ଥଲୋଭାନ୍ନ କାମ୍ୟୟା ।
କ୍ଷାତ୍ରଂ ଧର୍ମମହଂ ଜହ୍ୟାମିତି ମେ ବ୍ରତମାହିତମ୍ ॥
ଯଚ୍ଚାପି କତ୍ଥସେ ରାମ ବହୁଶଃ ପରିଷତ୍ସୁ ବୈ ।
ନିର୍ଜିତାଃ କ୍ଷତ୍ରିୟା ଲୋକେ ମୟୈକେନେତି ତଚ୍ଛୃଣୁ ॥
ନ ତଦା ଜାତବାନ୍ ଭୀଷ୍ମଃ କ୍ଷତ୍ରିୟୋ ବାପି ମଦ୍ୱିଧଃ ।
ପଶ୍ଚାଜ୍ଜାତାନି ତେଜାଂସି ତୃଣେଷୁ ଜ୍ୱଳିତଂ ତ୍ୱୟା ॥
ବ୍ୟପନେଷ୍ୟାମି ତେ ଦର୍ପଂ ଯୁଦ୍ଧେ ରାମ ନ ସଂଶୟଃ ।

(ମହା • ଉଦ୍ୟୋଗ • ୧୭୮)

ଅର୍ଥାତ୍– ଭୟ, ଦୟା, ଧନଲୋଭ ଏବଂ କାମନାରେ ପଡ଼ି ମୁଁ କେବେହେଲେ କ୍ଷାତ୍ରଧର୍ମ ତ୍ୟାଗ କରିପାରିବି ନାହିଁ, ଏହା ମୋର ଦୃଢ଼ବ୍ରତ । ହେ ପରଶୁରାମ ! 'ମୁଁ ବହୁବର୍ଷପର୍ଯ୍ୟନ୍ତ ଏକାକୀ କ୍ଷତ୍ରିୟମାନଙ୍କୁ ଅନେକ ଥର (ଏକୋଇଶ ଥର) ସଂହାର କରିଛି' ବୋଲି ଆପଣ ଲୋକଙ୍କ ଆଗରେ ଯେଉଁ ବୀରତ୍ୱ ବଖାଣି ହେଉଛନ୍ତି, ତା'ର କାରଣ ମଧ୍ୟ ଶୁଣନ୍ତୁ; ସେତେବେଳେ ଭୀଷ୍ମ ବା ଭୀଷ୍ମଙ୍କ ପରି କୌଣସି ବୀରଙ୍କର ଜନ୍ମ ହୋଇ ନ ଥିଲା; ସେତେବେଳେ ଆପଣ ସାମାନ୍ୟ ତୃଣମାନଙ୍କ ଉପରେ ହିଁ ଆପଣଙ୍କ ପ୍ରତାପ ଦେଖାଉଛନ୍ତି । କ୍ଷତ୍ରିୟମାନଙ୍କ ମଧ୍ୟରେ ତେଜସ୍ୱୀ ବୀର ତ ପରବର୍ତ୍ତୀକାଳରେ ପ୍ରକଟ ହୋଇଛନ୍ତି । ହେ ପରଶୁରାମ ! ବର୍ତ୍ତମାନ ଯଦି ଯୁଦ୍ଧ ହୁଏ, ନିଃସନ୍ଦେହରେ ମୁଁ ଆପଣଙ୍କ ଗର୍ବ ଖର୍ବ କରିଦେବି ।''

ପରଶୁରାମ ରାଗିଗଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଗଲା । ତେଇଶ ଦିନପର୍ଯ୍ୟନ୍ତ ଭୟଙ୍କର ଯୁଦ୍ଧ ଚାଲିଲା । ତଥାପି ପରଶୁରାମ ଭୀଷ୍ମଙ୍କୁ ପରାସ୍ତ କରିପାରିଲେ ନାହିଁ । ଶେଷରେ ନାରଦ ଆଦି ଦେବର୍ଷିମାନେ ଏବଂ ଭୀଷ୍ମଜନନୀ ଗଙ୍ଗାଦେବୀ ପ୍ରକଟ ହୋଇ ମଝିରେ ଠିଆ ହୋଇଯିବାରୁ ଏବଂ ପରଶୁରାମ ଧନୁ ତ୍ୟାଗ କରିଦେବାରୁ ଯୁଦ୍ଧ ସମାପ୍ତ ହେଲା । ଭୀଷ୍ମ ଯୁଦ୍ଧରେ ପୃଷ୍ଠ ପ୍ରଦର୍ଶନ କରି ନ ଥିଲେ, କି ପ୍ରଥମେ ଶସ୍ତ୍ରତ୍ୟାଗ କରି ନ ଥିଲେ । (ମହା • ଉଦ୍ୟୋଗ • ୧୮୬)

ଅଠରଦିନିଆ ମହାଭାରତ ଯୁଦ୍ଧରେ ସଂଗ୍ରାମର ଦଶଦିନପର୍ଯ୍ୟନ୍ତ ଏକାକୀ ଭୀଷ୍ମ ହିଁ କୌରବମାନଙ୍କର ସେନାପତିତ୍ୱ କରିଥିଲେ । ଶେଷ ଆଠ ଦିନରେ ସେନାପତିମାନେ ବଦଳିଥିଲେ ।

ଭଗବାନ୍ ଶ୍ରୀକୃଷ୍ଣ ମହାଭାରତଯୁଦ୍ଧରେ ଶସ୍ତ୍ର ଗ୍ରହଣ ନ କରିବାକୁ ପ୍ରତିଜ୍ଞା କରିଥିଲେ । ପ୍ରବାଦ ଅଛି ଯେ, ଭୀଷ୍ମଦେବ କୌଣସି କାରଣବଶତଃ ପ୍ରତିଜ୍ଞା କରିଦେଲେ, ''ମୁଁ ଭଗବାନଙ୍କୁ ନିଶ୍ଚୟ ଶସ୍ତ୍ର ଧରାଇଦେବି ।'' ମହାଭାରତର ଏହି କଥାଟି ଏହି ରୂପରେ ନ ହେଲେ ମଧ୍ୟ ଭୀଷ୍ମପ୍ରତିଜ୍ଞାକୁ ଭକ୍ତ ସୂରଦାସ ଅତି ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି –

ଆଜ ଜୋ ହରିହି ନ ସସ୍ତ୍ର ଗହାଊଁ ।
ତୌ ଲାଜୌ ଗଂଗା ଜନନୀ କୋ, ସାଂତନୁ ସୁତ ନ କହାଊଁ ॥
ସ୍ୟଂଦନ ଖଂଡି ମହାରଥ ଖଂଡୌଂ କପିଧ୍ୱଜ ସହିତ ଡୁଲାଊଁ,
ଇତୀ ନ କରୌଂ ସପଥ ମୋହି ହରି କୀ, କ୍ଷତ୍ରିୟ ଗତି ହି ନ ପାଊଁ ॥
ପାଂଡବଦଲ ସନମୁଖ ହ୍ୱୈ ଧାଊଁ, ସରିତା ରୁଧିର ବହାଊଁ ।
ସୂରଦାସ ରନଭୂମି ବିଜୟ ବିନ, ଜିୟତ ନ ପୀଠ ଦିଖାଊଁ ॥

ଅର୍ଥାତ୍ –

''ହରିଙ୍କୁ ଯଦି ଶସ୍ତ୍ର ନ ଦେବି ଧରାଇ ॥ (ଘୋଷା) ॥
ହେବି ଗଙ୍ଗା-କୁଳାଙ୍ଗାର        ପୁଣି ଶାନ୍ତନୁକୁମାର
ଆଜିଠାରୁ ବୋଲାଇବି ନାହିଁ ॥ ୦ ॥
ରଥ-ମହାରଥସବୁ କରି ଛାରଖାର,
କପିଧ୍ୱଜକୁ ନ କରିଦେଲେ ଚୂରମାର,
କହୁଛି ଶପଥ କରି,        ହରିଙ୍କର ନାମ ଧରି,
ନ ଚାହିଁବି କ୍ଷାତ୍ରଗତିପାଇଁ ॥ ୧ ॥
ସମ୍ମୁଖରୁ ପାଣ୍ଡବଙ୍କୁ        କରିବି ପ୍ରହାର;
ବୁହାଇଣ ଦେବି ନିଶ୍ଚେ ରକ୍ତନଦୀ ଧାର;
ସୂରଦାସ କବି ଭଣେ,        ବିନା ବିଜୟରେ ରଣେ
ବଞ୍ଚିଥାଇଁ ପିଠି ନ ଦେଖାଇ ॥ ୨ ॥

ଯାହା ବି ହେଉ; ମହାଭାରତରେ ଲେଖା ଅଛି, ଯୁଦ୍ଧାରମ୍ଭର ତୃତୀୟ ଦିନ ଭୀଷ୍ମପିତାମହ ଯେତେବେଳେ ପ୍ରଚଣ୍ଡ ସଂଗ୍ରାମ କଲେ, ସେତେବେଳେ ଭଗବାନ୍ ଚାଣିଯାଇ ଘୋଡ଼ାଙ୍କ ଲଗାମ୍ ହାତରୁ ଛାଡ଼ିଦେଲେ ଏବଂ ହାତରେ ସୂର୍ଯ୍ୟଙ୍କ ପରି ପ୍ରଭାଯୁକ୍ତ ଚକ୍ର ଧରି, ତାକୁ ଘୁରାଇ ଘୁରାଇ ରଥରୁ ଡେଇଁପଡ଼ିଲେ । ଶ୍ରୀକୃଷ୍ଣ ଚକ୍ର ଧରିଲେଣି ଦେଖି, ସମସ୍ତେ ହାହାକାର କରିବାକୁ ଲାଗିଲେ । ଭଗବାନ୍ ପ୍ରଳୟକାଳର ଅଗ୍ନିପରି ଭୀଷ୍ମଙ୍କ ଆଡ଼କୁ ପ୍ରବଳ ବେଗରେ ଦୌଡ଼ିଲେ । ଶ୍ରୀକୃଷ୍ଣ ଚକ୍ର ଧରି ତାଙ୍କରି (ପୃଷ୍ଠା ଓଲଟାନ୍ତୁ)

କରିବାକୁ ଭୟ କରନ୍ତି, ସେହି ଶକ୍ତିର ନାମ ତେଜ। ଏହାକୁ ପ୍ରତାପ ଓ ପ୍ରଭାବ ମଧ୍ୟ କହନ୍ତି।

**ପ୍ରଶ୍ନ—** ଧୈର୍ଯ୍ୟ କାହାକୁ କହନ୍ତି?

**ଉତ୍ତର—** ବିରାଟ ସଙ୍କଟ ଉପସ୍ଥିତ ହେଲେ ମଧ୍ୟ ଯଥା : ଯୁଦ୍ଧସ୍ଥଳରେ ଶରୀରରେ ଭୀଷଣ ଆଘାତ ଲାଗିଯିବା ପରେ ମଧ୍ୟ, ନିଜର ପୁତ୍ର-ପୌତ୍ରାଦି ମରିଯିବା ପରେ

---

ଆଡ଼କୁ ଦୌଡ଼ି ଆସୁଥିବାର ଦେଖି ଭୀଷ୍ମ ପିତାମହ ନିର୍ଭୟରେ, ଅବିଚଳିତଭାବରେ ନିଜ ଧନୁର ଗୁଣକୁ ଟଙ୍କାର କରି କହିବାକୁ ଲାଗିଲେ, 'ହେ ଦେବଦେବ! ହେ ଜଗନ୍ନିବାସ! ହେ ମାଧବ! ହେ ଚକ୍ରପାଣି! ଆସନ୍ତୁ! ଆସନ୍ତୁ! ମୁଁ ଆପଣଙ୍କୁ ପ୍ରଣାମ କରୁଛି। ହେ ସମସ୍ତଙ୍କ ଶରଣଦାତା, ମୋତେ ବଳପୂର୍ବକ ଏହି ରଥରୁ ତଳେ ପକାଇଦିଅନ୍ତୁ! ହେ ଶ୍ରୀକୃଷ୍ଣ! ଆଜି ଆପଣଙ୍କ ହାତରେ ନିହତ ହେଲେ ମୋର ଇହଲୋକ ଓ ପରଲୋକରେ ବିଶେଷ ମଙ୍ଗଳ ହେବ! ହେ ଯଦୁନାଥ! ଆପଣ ଯେ ସ୍ୱୟଂ ମୋତେ ମାରିବାକୁ ଦୌଡ଼ିଆସିଲେ, ଏହା ଫଳରେ ମୋର ଗୌରବ ତିନିଲୋକରେ ବିଖ୍ୟାତ ହୋଇଗଲା।'' ଅର୍ଜୁନ ଧାଇଁଆସି ପଛରୁ ଭଗବାନଙ୍କ ପାଦ ଧରିପକାଇଲେ ଏବଂ କୌଣସିପ୍ରକାରେ ତାଙ୍କୁ ଫେରାଇନେଲେ। (ମହା.ଭୀଷ୍ମ. ୫୯)

XX XX XX XX XX XX

ନବମ ଦିନର କଥା, ଭଗବାନ୍ ଦେଖିଲେ, ଭୀଷ୍ମ ପାଣ୍ଡବସେନାମଧ୍ୟରେ ପ୍ରଳୟପରି ଆତଙ୍କ ସୃଷ୍ଟି କରିଦେଇଛନ୍ତି। ଭଗବାନ୍ ଘୋଡ଼ାଙ୍କ ଲଗାମ ଛାଡ଼ିଦେଇ ହାତରେ ଚାବୁକ ନେଇ ଭୀଷ୍ମଙ୍କ ଆଡ଼କୁ ଧାଇଁଲେ। ଭଗବାନଙ୍କ ତେଜ ଏପରି ହେଲା ଯେ, ତାଙ୍କର ପ୍ରତିପଦକ୍ଷେପରେ ପୃଥିବୀ ଫାଟିଗଲାପରି ଲାଗିଲା। କୌରବପକ୍ଷର ବୀରମାନେ ବ୍ୟାକୁଳ ହୋଇଗଲେ। ସମସ୍ତେ 'ଭୀଷ୍ମ ମରିଗଲେ! ମରିଗଲେ!' ବୋଲି ଚିତ୍କାର କରିବାକୁ ଲାଗିଲେ। ହାତୀ ଉପରକୁ ଲମ୍ଫ ଦେବାକୁ ଉଦ୍ୟତ ହେଉଥିବା ସିଂହପରି ଭଗବାନ ଭୀଷ୍ମଙ୍କ ଆଡ଼କୁ ମାଡ଼ିଗଲେ। ତାହା ଦେଖି ମଧ୍ୟ ଭୀଷ୍ମ ତିଳେମାତ୍ର ବିଚଳିତ ନ ହୋଇ ଧନୁକୁ ଟାଣି କହିଲେ—

**ଏହ୍ୟେହି ପୁଣ୍ଡରୀକାକ୍ଷ ଦେବଦେବ ନମୋଽସ୍ତୁ ତେ । ମାମଦ୍ୟ ସାତ୍ୱତଶ୍ରେଷ୍ଠ ପାତୟସ୍ୱ ମହାହବେ ॥**
**ତ୍ୱୟା ହି ଦେବ ସଂଗ୍ରାମେ ହତସ୍ୟାପି ମମାନଘ । ଶ୍ରେୟ ଏବ ପରଂ କୃଷ୍ଣ ଲୋକେ ଭବତି ସର୍ବତଃ ॥**
**ସମ୍ଭାବିତୋଽସ୍ମି ଗୋବିନ୍ଦ ତ୍ରୈଲୋକ୍ୟେନାଦ୍ୟ ସଂଯୁଗେ। ପ୍ରହରସ୍ୱ ଯଥେଷ୍ଟଂ ବୈ ଦାସୋଽସ୍ମି ତବ ଚାନଘ ॥**

**ଅର୍ଥାତ୍** ''ହେ ପୁଣ୍ଡରୀକାକ୍ଷ! ହେ ଦେବଦେବ! ଆପଣଙ୍କୁ ନମସ୍କାର! ହେ ଯାଦବଶ୍ରେଷ୍ଠ! ଆସନ୍ତୁ! ଆସନ୍ତୁ! ଆଜି ଏହି ମହାଯୁଦ୍ଧରେ ମୋତେ ବଧ କରି ବୀରଗତି ଦିଅନ୍ତୁ। ହେ ଅନଘ! ହେ ଦେବଦେବ ଶ୍ରୀକୃଷ୍ଣ! ଆଜି ଆପଣଙ୍କ ହାତରେ ମରିଗଲେ ମୋର ଲୋକରେ ସର୍ବଥା କଲ୍ୟାଣ ହେବ। ହେ ଗୋବିନ୍ଦ! ଯୁଦ୍ଧରେ ଆପଣଙ୍କର ଏହି ବ୍ୟବହାରଦ୍ୱାରା ଆଜି ମୁଁ ତ୍ରିଭୁବନରେ ସମ୍ମାନିତ ହୋଇଗଲି। ହେ ନିଷ୍ପାପ! ମୁଁ ଆପଣଙ୍କର ଦାସ; ଆପଣ ମନ ଭରି ମୋ ଉପରେ ପ୍ରହାର କରନ୍ତୁ।'' (ମହା.ଭୀଷ୍ମ. ୧୦୬/୬୪-୬୬)

ଅର୍ଜୁନ ଧାଇଁଯାଇ ଭଗବାନଙ୍କ ହାତ ଧରିପକାଇଲେ, କିନ୍ତୁ ଭଗବାନ୍ ଅଟକିଲେ ନାହିଁ ଏବଂ ତାଙ୍କୁ ଘୋଷାରି ନେଇ ଆଗକୁ ମାଡ଼ିଚାଲିଲେ। ଶେଷରେ ସେ ଅର୍ଜୁନଙ୍କୁ ତାଙ୍କର ପ୍ରତିଜ୍ଞା ସ୍ମରଣ କରାଇଦେଲେ ଏବଂ ଅର୍ଜୁନ ନିଜେ ଭୀଷ୍ମଙ୍କୁ ମାରିବେ ବୋଲି ଶପଥ କରିବା ପରେ ଭଗବାନ୍ ଫେରିଲେ।

XX XX XX XX XX XX

ଦଶଦିନର ମହାଯୁଦ୍ଧପରେ ଭୀଷ୍ମ ଯେତେବେଳେ ମୃତ୍ୟୁକଥା ଚିନ୍ତା କରୁଥିଲେ, ସେତେବେଳେ ଆକାଶମାର୍ଗରୁ ଋଷିମାନେ ଭୀଷ୍ମଙ୍କୁ କହିଲେ, ''ତାତ! ତୁମର ବିଚାରକୁ ଆମେ ଉଚିତ ମନେ କରୁଛୁ।'' ତା'ପରେ ଶିଖଣ୍ଡୀକୁ ଦେଖି ବାଣ ନ ମାରିବାରୁ ବାଳବ୍ରହ୍ମଚାରୀ ଭୀଷ୍ମ ଅର୍ଜୁନଙ୍କ ବାଣଦ୍ୱାରା ବିଦ୍ଧ ହୋଇ ଶରଶଯ୍ୟାରେ ପଡ଼ିଗଲେ। କିନ୍ତୁ ସୂର୍ଯ୍ୟଙ୍କୁ ଦକ୍ଷିଣାୟନରେ ଥିବା ଦେଖି ଭୀଷ୍ମ ପ୍ରାଣତ୍ୟାଗ କଲେ ନାହିଁ। ଗଙ୍ଗାଦେବୀ ତାଙ୍କ ନିକଟକୁ ହଂସରୂପରେ ମହର୍ଷିମାନଙ୍କୁ ପଠାଇଲେ। ଭୀଷ୍ମ କହିଲେ, ''ମୁଁ ସୂର୍ଯ୍ୟଙ୍କର ଉତ୍ତରାୟଣପର୍ଯ୍ୟନ୍ତ ଜୀବିତ ରହିବି ଏବଂ ଉପଯୁକ୍ତ ସମୟରେ ପ୍ରାଣତ୍ୟାଗ କରିବି।'' ଭୀଷ୍ମଙ୍କ ଶରୀରରେ ଦୁଇ ଅଙ୍ଗୁଳି ସ୍ଥାନ ମଧ୍ୟ ଖାଲି ନ ଥିଲା, ଯେଉଁଠାରେ କି ଅର୍ଜୁନ ବାଣ ବିଦ୍ଧି ନ ଥିଲେ। (ମହା.ଭୀଷ୍ମ.୧୧୯)। କେବଳ ତାଙ୍କର ମସ୍ତକଟି ତଳକୁ ଝୁଲିପଡ଼ିଥିଲା। ସେ ତକିଆ ମାଗିଲେ। ଦୁର୍ଯ୍ୟୋଧନ ପ୍ରଭୃତି କୋମଳ ତକିଆ ନେଇ ଧାଇଁଆସିଲେ। ଭୀଷ୍ମ ହସି ହସି କହିଲେ, 'ବୀର! ଏ ତକିଆ ବୀରଶଯ୍ୟାର ଯୋଗ୍ୟ ନୁହେଁ।' ଶେଷରେ ଅର୍ଜୁନଙ୍କୁ କହିଲେ— 'ବତ୍ସ! ମୋର ଯୋଗ୍ୟ ତକିଆ ଦିଅ।' ଅର୍ଜୁନ ତାଙ୍କ ମୁଣ୍ଡତଳକୁ ଏପରିଭାବରେ ତିନୋଟି ବାଣ ମାରିଲେ ଯେ, ତଦ୍ୱାରା ଭୀଷ୍ମଙ୍କର ମସ୍ତକଟି ଉପରକୁ ଉଠିଗଲା ଏବଂ ସେହି ତିନୋଟି ବାଣ ତକିଆର କାମ ଦେଲା। ଏଥିରେ ଭୀଷ୍ମ ବଡ଼ ଆନନ୍ଦିତ ହୋଇ କହିଲେ,

**ଏବମେବ ମହାବାହୋ ଧର୍ମେଷୁ ପରିତିଷ୍ଠତା। ସ୍ୱପ୍ତବ୍ୟଂ କ୍ଷତ୍ରିୟେଣାଜୌ ଶରତଳ୍ପଗତେନ ବୈ॥** (ମହା.ଭୀଷ୍ମ. ୧୨୦/୪୯)

**ଅର୍ଥାତ୍** 'ହେ ମହାବାହୁ! କ୍ଷାତ୍ରଧର୍ମରେ ଦୃଢ଼ତାପୂର୍ବକ ସ୍ଥିତ ରହୁଥିବା କ୍ଷତ୍ରିୟ ରଣାଙ୍ଗନରେ ପ୍ରାଣତ୍ୟାଗ କରିବା ସମୟରେ ଠିକ୍ ଏହିପରି ଶରଶଯ୍ୟାରେ ଶୋଇବା ଉଚିତ।'

ଭୀଷ୍ମ ପିତାମହ ବାଣମାନଙ୍କ ଦ୍ୱାରା ଆହତ ହୋଇ ଶରଶଯ୍ୟାରେ ପଡ଼ିଥିଲେ। ତେଣୁ ବାଣ ବାହାର କରିବାରେ **(ପୃଷ୍ଠା ଓଲଟାନ୍ତୁ)**

ମଧ୍ୟ, ନିଜର ସର୍ବସ୍ୱନାଶ ହୋଇଯିବା ପରେ ମଧ୍ୟ ବା ଏହିପରି ଅନ୍ୟ କୌଣସି ବିରାଟ ବିପତ୍ତି ପଡ଼ିଯିବା ପରେ ମଧ୍ୟ ବ୍ୟାକୁଳ ନ ହେବା ଏବଂ ନିଜର କର୍ତ୍ତବ୍ୟ ପାଳନରୁ କଦାପି ବିଚଳିତ ନ ହୋଇ ନ୍ୟାୟାନୁକୂଳ କର୍ତ୍ତବ୍ୟ ପାଳନରେ ସଂଲଗ୍ନ ରହିବା ହିଁ ଧୈର୍ଯ୍ୟ।

**ପ୍ରଶ୍ନ – ଦକ୍ଷତା କ'ଣ ?**

---

କୁଶଳ ଶସ୍ତ୍ରବୈଦ୍ୟଙ୍କୁ ଡାକିଆଣିବାକୁ ଲୋକ ପଠାଇଲା। ତାହା ଦେଖି ଭୀଷ୍ମଦେବ କହିଲେ, ''ମୋତେ କ୍ଷତ୍ରିୟର ପରମଗତି ମିଳିସାରିଛି, ବର୍ତ୍ତମାନ ଚିକିତ୍ସକଙ୍କର ଆଉ କି ଆବଶ୍ୟକତା ଅଛି ?'' (ମହା.ଭୀଷ୍ମ. ୧୨୦)

କ୍ଷତହେତୁ ଭୀଷ୍ମଙ୍କୁ ଅତ୍ୟନ୍ତ ପୀଡ଼ା ହେଉଥିଲା। ସେ ଶୀତଳଜଳ ଚାହିଁଲେ। ଲୋକେ ଅଣ୍ଟାପାଣି ନେଇ ଦୌଡ଼ିଆସିଲେ। ଭୀଷ୍ମ କହିଲେ, ''ମୁଁ ଶରଶଯ୍ୟାରେ ଶୋଇଛି ଏବଂ ଉତ୍ତରାୟଣକୁ ଅପେକ୍ଷା କରିଛି। ଆପଣମାନେ ମୋ ପାଇଁ ଏ କ'ଣ ଆଣିଦେଲେ !' ଶେଷରେ ଅର୍ଜୁନଙ୍କୁ ଡକାଇ ସେ କହିଲେ– 'ପୁତ୍ର ! ମୋର ତୋଟି ଶୁଖିଯାଉଛି। ତୁମେ ତ ସମର୍ଥ, ମୋତେ ଟିକିଏ ପାଣି ପିଆଅ।' ଅର୍ଜୁନ ରଥରେ ଆରୋହଣ କରି ଗାଣ୍ଡୀବ ଧନୁରେ ବାଣ ଚଢ଼ାଇଲେ ଏବଂ ଭୀଷ୍ମଙ୍କର ଡାହାଣ ପାଖ ଭୂମିକୁ ପାର୍ଜନ୍ୟାସ୍ତ୍ର ମାରିଲେ। ସେହିକ୍ଷଣି ସେଠାରୁ ଅମୃତପରି ଉତ୍ତମ ସୁଗନ୍ଧ ଜଳର ଧାରା ବାହାରି ଭୀଷ୍ମଦେବଙ୍କ ମୁଖରେ ପଡ଼ିଲା। ଭୀଷ୍ମଦେବ ସେହି ଜଳ ପାନ କରି ତୃପ୍ତ ହୋଇଗଲେ (ମହା.ଭୀଷ୍ମ.୧୨୧)

XX XX XX XX XX XX

ମହାଭାରତ ଯୁଦ୍ଧ ସମାପ୍ତ ହୋଇଯିବା ପରେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ସଙ୍ଗରେ ନେଇ ଭୀଷ୍ମଙ୍କ ନିକଟକୁ ଗଲେ। ସେଠାରେ ବିଶିଷ୍ଟ ବ୍ରହ୍ମବେତ୍ତା ଋଷି-ମୁନିମାନେ ଉପସ୍ଥିତ ଥିଲେ। ଭଗବାନଙ୍କୁ ଦେଖି ଭୀଷ୍ମ ପ୍ରଣାମ କଲେ ଏବଂ ସ୍ତବପାଠ କଲେ। ଭଗବାନ୍ ଶ୍ରୀକୃଷ୍ଣ ଭୀଷ୍ମଙ୍କୁ କହିଲେ, ''ଉତ୍ତରାୟଣ ହେବାକୁ ବିଳମ୍ବ ଅଛି; ଆପଣ ଧର୍ମଶାସ୍ତ୍ରର ଯେଉଁ ଜ୍ଞାନ ଅର୍ଜନ କରିଛନ୍ତି, ଏଥିମଧ୍ୟରେ ତାହା ଯୁଧିଷ୍ଠିରଙ୍କୁ ଶୁଣାଇ ତାଙ୍କ ଶୋକ ଦୂର କରନ୍ତୁ।'' ଭୀଷ୍ମ କହିଲେ, ''ପ୍ରଭୋ ! ମୋର ଶରୀର ବାଣ-ପୀଡ଼ାରେ ବ୍ୟାକୁଳ ହେଉଛି; ମନ-ବୁଦ୍ଧି ଚଞ୍ଚଳ ହେଉଛି; କହିବାର ଶକ୍ତି ଆଉ ନାହିଁ, ବାରମ୍ବାର ମୂର୍ଚ୍ଛା ଆସିଯାଉଛି; କେବଳ ଆପଣଙ୍କ କୃପାରୁ ମୁଁ ଏପର୍ଯ୍ୟନ୍ତ ବଞ୍ଚିରହିଛି; ପୁଣି ଆପଣଙ୍କ ପରି ଜଗଦ୍‌ଗୁରୁଙ୍କ ଆଗରେ ମୁଁ ଶିଷ୍ୟ ଯଦି କିଛି କହେ, ତେବେ ତାହା ଅନୁଚିତ ହେବ। କ୍ଷମା କରନ୍ତୁ, ମୋର କିଛି କହିବାର ଶକ୍ତି ନାହିଁ।'' ପ୍ରେମପୂର୍ଣ୍ଣ ଛଳଛଳ ନୟନରେ ଭଗବାନ୍ ଗଦ୍‌ଗଦ ହୋଇ କହିଲେ, ''ହେ ଭୀଷ୍ମ ! ଆପଣଙ୍କର ଗ୍ଲାନି, ମୂର୍ଚ୍ଛା, ଦାହ, ବ୍ୟଥା, କ୍ଷୁଧାକ୍ଲେଶ ଓ ମୋହ– ସବୁକିଛି ମୋ କୃପାରୁ ଏହିକ୍ଷଣି ନଷ୍ଟ ହୋଇଯିବ; ଆପଣଙ୍କ ଅନ୍ତଃକରଣରେ ସବୁପ୍ରକାର ଜ୍ଞାନର ସ୍ଫୁରଣ ହେବ; ଆପଣଙ୍କ ବୁଦ୍ଧି ନିଶ୍ଚୟାତ୍ମିକା ହୋଇଯିବ; ଆପଣଙ୍କ ମନ ନିତ୍ୟ ସତ୍ତ୍ୱଗୁଣରେ ସ୍ଥିର ହୋଇଯିବ; ଆପଣ ଧର୍ମ ତଥା ଅନ୍ୟ ଯେକୌଣସି ବିଦ୍ୟା ଚିନ୍ତନ କରିବେ, ତାହା ଆପଣଙ୍କ ବୁଦ୍ଧି କହିଦେବ।'' ଶ୍ରୀକୃଷ୍ଣ ପୁଣି କହିଲେ, ''ମୁଁ ସ୍ୱୟଂ ଉପଦେଶ ନ ଦେଇ ଆପଣଙ୍କ ଦ୍ୱାରା ଉପଦେଶ ଦେବାକୁ ଇଚ୍ଛା କରୁଛି, ଯାହାଦ୍ୱାରା ମୋର ଭକ୍ତଙ୍କର କୀର୍ତ୍ତି ଓ ଯଶର ବୃଦ୍ଧି ହେବ।'' ଭଗବତ୍‌ପ୍ରସାଦରୁ ଭୀଷ୍ମଙ୍କ ଶରୀରର ସମସ୍ତ ବେଦନା ସେହିକ୍ଷଣି ନଷ୍ଟ ହୋଇଗଲା, ତାଙ୍କ ଅନ୍ତଃକରଣ ଏକନିଷ୍ଠ ହୋଇଗଲା ଓ ବୁଦ୍ଧି ଜାଗ୍ରତ ହୋଇଗଲା। ବ୍ରହ୍ମଚର୍ଯ୍ୟ, ଅନୁଭବ, ଜ୍ଞାନ ଓ ଭଗବଦ୍‌ଭକ୍ତି ପ୍ରତାପରେ ଅଗାଧ ଜ୍ଞାନୀ ଭୀଷ୍ମ ଯୁଦ୍ଧର ପ୍ରଥମ ଦଶଦିନପର୍ଯ୍ୟନ୍ତ ରଣରେ ଯେପରି ତରୁଣ ଉତ୍ସାହରେ ପ୍ରବୃତ୍ତ ଥିଲେ, ସେହିପରି ଉତ୍ସାହରେ ସେ ଯୁଧିଷ୍ଠିରଙ୍କୁ ଧର୍ମର ସବୁ ଅଙ୍ଗ ବିଷୟରେ ଉପଦେଶ ଦେଲେ ଏବଂ ତାଙ୍କର ଶୋକ-ସନ୍ତପ୍ତ ହୃଦୟକୁ ଶାନ୍ତ କରିଦେଲେ (ମହା/ଶାନ୍ତି. ଏବଂ ଅନୁଶାସନ ପର୍ବ)। ଅଠାବନ ଦିନ ଶରଶଯ୍ୟାରେ ପଡ଼ିରହିବା ପରେ ସୂର୍ଯ୍ୟଙ୍କର ଉତ୍ତରାୟଣ ହେବାରୁ ଭୀଷ୍ମ ପ୍ରାଣତ୍ୟାଗ କରିବାକୁ ନିଶ୍ଚୟ କଲେ ଏବଂ ସେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ କହିଲେ, ''ହେ ଭଗବନ୍ ! ହେ ଦେବଦେବେଶ ! ହେ ସୁରାସୁରବନ୍ଦିତ ! ହେ ତ୍ରିବିକ୍ରମ ! ହେ ଶଙ୍ଖଚକ୍ରଗଦାପଦ୍ମଧାରୀ ! ମୁଁ ଆପଣଙ୍କୁ ପ୍ରଣାମ କରୁଛି। ହେ ବାସୁଦେବ ! ଆପଣ ହିରଣ୍ୟାତ୍ମା, ପରମପୁରୁଷ, ସବିତା, ବିରାଟ୍, ଜୀବରୂପ, ଅଣୁରୂପ, ପରମାତ୍ମା ଓ ସନାତନ। ହେ ପୁଣ୍ଡରୀକାକ୍ଷ ! ହେ ପୁରୁଷୋତ୍ତମ ! ଆପଣ ମୋତେ ଉଦ୍ଧାର କରନ୍ତୁ। ହେ ଶ୍ରୀକୃଷ୍ଣ ! ହେ ବୈକୁଣ୍ଠ ! ହେ ପୁରୁଷୋତ୍ତମ ! ବର୍ତ୍ତମାନ ମୋତେ ଯିବାକୁ ଆଜ୍ଞା ଦିଅନ୍ତୁ। ମୁଁ ମନ୍ଦବୁଦ୍ଧି ଦୁର୍ଯ୍ୟୋଧନକୁ ବହୁତ ବୁଝାଇଥିଲି– **'ଯତଃ କୃଷ୍ଣସ୍ତତୋ ଧର୍ମୋ ଯତୋ ଧର୍ମସ୍ତତୋ ଜୟଃ।'** — ଯେଉଁଠାରେ ଶ୍ରୀକୃଷ୍ଣ ଅଛନ୍ତି, ସେଠାରେ ଧର୍ମ ଅଛି, ଏବଂ ଯେଉଁଠାରେ ଧର୍ମ ଅଛି, ସେଠାରେ ବିଜୟ ନିଶ୍ଚିତ; ପରନ୍ତୁ ସେହି ମୂର୍ଖ ମୋ କଥା ମାନିଲା ନାହିଁ। ମୁଁ ଆପଣଙ୍କୁ ଜାଣିଛି; ଆପଣ ପୁରାଣପୁରୁଷ। ଆପଣ ସ୍ୱୟଂ ନାରାୟଣ ହିଁ ଅବତୀର୍ଣ୍ଣ ହୋଇଛନ୍ତି।

**ସ ମାଂ ତ୍ୱମନୁଜାନୀହି କୃଷ୍ଣ ମୋକ୍ଷ୍ୟେ କଳେବରମ୍। ତ୍ୱୟାହଂ ସମନୁଜ୍ଞାତୋ ଗଚ୍ଛେୟଂ ପରମାଂ ଗତିମ୍॥**
(ମହା.ଅନୁ. ୧୬୭/୪୪)। (ପୃଷ୍ଠା ଓଲଟାନ୍ତୁ)

**ଉତ୍ତର —** ପରସ୍ପର କଳହ କରୁଥିବା ଲୋକମାନଙ୍କର ନ୍ୟାୟ କରିବାରେ, ନିଜର କର୍ତ୍ତବ୍ୟ ନିର୍ଣ୍ଣୟ ଓ ପାଳନ କରିବାରେ, ଯୁଦ୍ଧ କରିବାରେ ତଥା ମିତ୍ର, ଶତ୍ରୁ ଓ ମଧ୍ୟସ୍ଥଙ୍କ ସହିତ ଯଥାଯୋଗ୍ୟ ବ୍ୟବହାର କରିବାରେ ଯେଉଁ କୁଶଳତା ପ୍ରଦର୍ଶନ କରାଯାଏ, ତାହାର ନାମ **ଦକ୍ଷତା**।

**ପ୍ରଶ୍ନ —** ଯୁଦ୍ଧରୁ ପଳାୟନ ନ କରିବା କ’ଣ ?

**ଉତ୍ତର —** ଯୁଦ୍ଧ କରିବା ସମୟରେ ଘୋରରୁ ଅତିଘୋର ସଙ୍କଟ ପଡ଼ିଗଲେ ମଧ୍ୟ ପୃଷ୍ଠପ୍ରଦର୍ଶନ ନ କରିବା, ନ୍ୟାୟପୂର୍ବକ ସବୁ ଅବସ୍ଥାର ସମ୍ମୁଖୀନ ହେବା ଏବଂ ନିଜର ଶକ୍ତି ପ୍ରୟୋଗ କରି ଓ ପ୍ରାଣନାଶକୁ ଭୟ ନ କରି ଯୁଦ୍ଧରେ ଲାଗିରହିବା ହିଁ ‘ଯୁଦ୍ଧରୁ ପଳାୟନ ନ କରିବା।’ ଏହି ଧର୍ମକୁ ଧ୍ୟାନରେ ରଖି ବୀରବାଳକ ଅଭିମନ୍ୟୁ ଛଅଜଣ ମହାରଥୀଙ୍କ ସହିତ ଏକାକୀ ଯୁଦ୍ଧ କରି ପ୍ରାଣ ଦେଇଦେଲେ, କିନ୍ତୁ ଶସ୍ତ୍ର ତ୍ୟାଗ କରି ନ ଥିଲେ (ମହା.ଦ୍ରୋଣ. ୪୯/୨୨)। ଆଧୁନିକକାଳରେ ମଧ୍ୟ ରାଜସ୍ଥାନର ଇତିହାସରେ ଏପରି ଅନେକ ଉଦାହରଣ ଦେଖିବାକୁ ମିଳେ, ଯେଉଁଥିରେ କି ବୀର ରାଜପୁତମାନେ ଯୁଦ୍ଧରେ ପରାସ୍ତ ହୋଇଗଲେ ମଧ୍ୟ ଶତ୍ରୁମାନଙ୍କୁ ପୃଷ୍ଠପ୍ରଦର୍ଶନ ନ କରି ଏକାକୀ ସହସ୍ର ସହସ୍ର ସୈନିକଙ୍କ ସହିତ ଯୁଦ୍ଧ କରି ପ୍ରାଣ ଦେଇଥିଲେ।

**ପ୍ରଶ୍ନ —** ଦାନ କ’ଣ ?

**ଉତ୍ତର —** ଉଦାରତାପୂର୍ବକ ଯଥାବଶ୍ୟକ ଯୋଗ୍ୟପାତ୍ରଙ୍କୁ ନିଜର ସ୍ୱତ୍ୱ ପ୍ରଦାନ କରିବା ହିଁ ଦାନ (୧୭/୨୦)।

**ପ୍ରଶ୍ନ —** **ଈଶ୍ୱରଭାବ** କାହାକୁ କହନ୍ତି ?

**ଉତ୍ତର —** ଶାସନଦ୍ୱାରା ଲୋକମାନଙ୍କୁ ଅନ୍ୟାୟାଚରଣରୁ ନିବୃତ୍ତ କରି ସଦାଚାରରେ ପ୍ରବୃତ୍ତ କରାଇବା, ଦୁରାଚାରୀମାନଙ୍କୁ ଯଥୋଚିତ ଦଣ୍ଡ ଦେବା, ଲୋକମାନଙ୍କ ଦ୍ୱାରା ନିଜର ଆଜ୍ଞାକୁ ନ୍ୟାୟପୂର୍ଣ୍ଣଭାବରେ ପାଳନ କରାଇବା ତଥା ସମସ୍ତ ପ୍ରଜାଙ୍କର ମଙ୍ଗଳ ଚିନ୍ତା କରି ସେମାନଙ୍କୁ ନିଃସ୍ୱାର୍ଥଭାବରେ ପ୍ରେମପୂର୍ବକ ପୁତ୍ରପରି ରକ୍ଷା କରିବା ଓ ପାଳନ-ପୋଷଣ କରିବା ହିଁ **ଈଶ୍ୱରଭାବ**।

**ପ୍ରଶ୍ନ —** ‘ଏସବୁ ହେଉଛି କ୍ଷତ୍ରିୟମାନଙ୍କର ସ୍ୱାଭାବିକ କର୍ମ’ — ଏହାର ଅଭିପ୍ରାୟ କ’ଣ ?

**ଉତ୍ତର —** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, କ୍ଷତ୍ରିୟମାନଙ୍କ ସ୍ୱଭାବରେ ସତ୍ତ୍ୱମିଶ୍ରିତ ରଜୋଗୁଣର ପ୍ରଧାନତା ରହେ; ତେଣୁ ଉପରୋକ୍ତ କର୍ମମାନଙ୍କରେ ସେମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ହୁଏ; ଏସବୁ ପାଳନ କରିବାରେ ସେମାନଙ୍କୁ କୌଣସିପ୍ରକାର କଷ୍ଟ ହୁଏ ନାହିଁ। ଏହି କର୍ମମାନଙ୍କ ମଧ୍ୟରେ ବି ଧୃତି, ଦାନ ଆଦି ଯେଉଁ ସାମାନ୍ୟ ଧର୍ମ ରହିଛି, ସେଥିରେ ସମସ୍ତଙ୍କର ଅଧିକାର ରହିଛି; ତାହା ଅନ୍ୟବର୍ଣ୍ଣର ଲୋକମାନଙ୍କ ପାଇଁ ଅଧର୍ମ ବା ପରଧର୍ମ ନୁହେଁ; କିନ୍ତୁ ସେଗୁଡ଼ିକ ସେମାନଙ୍କର ସ୍ୱାଭାବିକ କର୍ମ ନୁହେଁ; ତେଣୁ ସେଗୁଡ଼ିକ ସେମାନଙ୍କ ପାଇଁ ପ୍ରୟତ୍ନସାଧ୍ୟ ଅଟେ।

**ପ୍ରଶ୍ନ —** ମନୁସ୍ମୃତିରେ ତ ପ୍ରଜାଙ୍କୁ ରକ୍ଷା କରିବା, ଦାନ ଦେବା, ଯଜ୍ଞ କରିବା, ବେଦ ଅଧ୍ୟୟନ କରିବା ଏବଂ ବିଷୟରେ ଆସକ୍ତ ନ ହେବା ଇତ୍ୟାଦି କ୍ଷତ୍ରିୟକର୍ମ ★ ବୋଲି ସଂକ୍ଷେପରେ କୁହାଯାଇଛି; କିନ୍ତୁ ଏଠାରେ ପ୍ରାୟ ଅନ୍ୟ କର୍ମ ହିଁ କୁହାଯାଇଛି। ଏହାର ଅଭିପ୍ରାୟ କ’ଣ ?

**ଉତ୍ତର —** ଏଠାରେ କ୍ଷତ୍ରିୟସ୍ୱଭାବ ସହିତ ବିଶେଷ ସମ୍ବନ୍ଧ ରଖୁଥିବା କର୍ମମାନଙ୍କର ବର୍ଣ୍ଣନା କରାଯାଇଛି। ମନୁସ୍ମୃତିର କ୍ଷତ୍ରିୟସ୍ୱଭାବ ସହିତ ବିଶେଷରୂପେ ସମ୍ପୃକ୍ତ ସ୍ୱଭାବମାନଙ୍କ ମଧ୍ୟରୁ ପ୍ରଜାପାଳନ ଓ ଦାନ— ଏହି

---

‘ହେ ଶ୍ରୀକୃଷ୍ଣ! ଆପଣ ମୋତେ ଶରୀର ତ୍ୟାଗ କରିବାକୁ ଆଜ୍ଞା ଦିଅନ୍ତୁ। ଆପଣଙ୍କ ଆଜ୍ଞାରେ ଶରୀର ତ୍ୟାଗ କରି ମୁଁ ପରମଗତି ଲାଭ କରିବି।’

ଭଗବାନ୍ ଆଜ୍ଞା ଦେଲେ। ସେତେବେଳେ ଭୀଷ୍ମ ଯୋଗଦ୍ୱାରା ବାୟୁ ରୋଧ କରି କ୍ରମଶଃ ପ୍ରାଣବାୟୁକୁ ଉପରକୁ ଉଠାଇବାକୁ ଆରମ୍ଭ କଲେ। ପ୍ରାଣବାୟୁ ଯେଉଁ ଅଙ୍ଗ ଛାଡ଼ି ଉପରକୁ ଉଠୁଥିଲା; ସେହି ଅଙ୍ଗର ବାଣଗୁଡ଼ିକ ସେହିକ୍ଷଣି ବାହାରିଯାଉଥିଲା ଏବଂ କ୍ଷତସ୍ଥାନ ପୂର୍ଣ୍ଣ ହୋଇଯାଉଥିଲା। କ୍ଷଣକରେ ଭୀଷ୍ମପିତାମହଙ୍କ ଶରୀରରୁ ସମସ୍ତ ବାଣ ବାହାରିଗଲା; ଶରୀରରେ ଗୋଟିଏ ହେଲେ କ୍ଷତ ରହିଲା ନାହିଁ ଏବଂ ପ୍ରାଣ ବ୍ରହ୍ମରନ୍ଧ୍ର ଭେଦ କରି ଉପରକୁ ଚାଲିଗଲା। ଲୋକେ ଦେଖିଲେ, ବ୍ରହ୍ମରନ୍ଧ୍ରରୁ ବାହାରିଥିବା ତେଜ ଚାହିଁ ଚାହିଁ ଆକାଶରେ ବିଲୀନ ହୋଇଗଲା।

★ ପ୍ରଜାନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନମେବ ଚ।
ବିଷୟେଷ୍ୱପ୍ରସକ୍ତିଶ୍ଚ କ୍ଷତ୍ରିୟସ୍ୟ ସମାସତଃ॥ (ମନୁସ୍ମୃତି ୧/୮୯)

ଦୁଇଟି କର୍ମ ଏଠାରେ ନିଆଯାଇଛି। ଅନ୍ୟାନ୍ୟ କର୍ତ୍ତବ୍ୟକର୍ମସବୁ ଏଠାରେ ବିସ୍ତାରପୂର୍ବକ ବର୍ଣ୍ଣନା କରାଯାଇ ନାହିଁ। ତେଣୁ ଏହିଦୁଇଟି ଛଡ଼ା କ୍ଷତ୍ରିୟଙ୍କ ପାଇଁ ଯେଉଁ ଅନ୍ୟାନ୍ୟ କର୍ମ ଅନ୍ୟ ସ୍ଥାନମାନଙ୍କରେ କର୍ତ୍ତବ୍ୟ ବୋଲି କୁହାଯାଇଛି, ସେସବୁକୁ ମଧ୍ୟ ଏହା ସହିତ ବୁଝିନେବା ଉଚିତ।

**ସମ୍ବନ୍ଧ –** କ୍ଷତ୍ରିୟମାନଙ୍କ ସ୍ୱାଭାବିକ କର୍ମଗୁଡ଼ିକ ବର୍ଣ୍ଣନା କରିସାରି ବର୍ତ୍ତମାନ ବୈଶ୍ୟ ଏବଂ ଶୂଦ୍ରମାନଙ୍କ ସ୍ୱାଭାବିକ କର୍ମ ବର୍ଣ୍ଣନା କରୁଛନ୍ତି–

**କୃଷିଗୌରକ୍ଷ୍ୟବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜମ୍ ।**
**ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍ ।। ୪୪ ।।**

**ଅନ୍ୱୟ –** **କୃଷିଗୌରକ୍ଷ୍ୟବାଣିଜ୍ୟମ୍** = କୃଷି, ଗୋପାଳନ ଏବଂ କ୍ରୟ-ବିକ୍ରୟରୂପୀ ସତ୍ୟବ୍ୟବହାର; **ବୈଶ୍ୟକର୍ମ, ସ୍ୱଭାବଜମ୍** = ବୈଶ୍ୟର ସ୍ୱାଭାବିକ କର୍ମ; **ପରିଚର୍ଯ୍ୟାତ୍ମକମ୍** = (ତଥା) ସବୁ ବର୍ଣ୍ଣର ସେବା କରିବା; **ଶୂଦ୍ରସ୍ୟ** = ଶୂଦ୍ରର; **ଅପି** = ମଧ୍ୟ; **ସ୍ୱଭାବଜମ୍** = ସ୍ୱାଭାବିକ; **କର୍ମ** = କର୍ମ।

**କୃଷି, ଗୋପାଳନ ଏବଂ କ୍ରୟ-ବିକ୍ରୟରୂପ ସତ୍ୟବ୍ୟବହାର ହେଉଛି ବୈଶ୍ୟଙ୍କର ସ୍ୱାଭାବିକ କର୍ମ ତଥା ସବୁ ବର୍ଣ୍ଣର ସେବା କରିବା ହେଉଛି ଶୂଦ୍ରମାନଙ୍କର ସ୍ୱାଭାବିକ କର୍ମ।। ୪୪ ।।**

**ପ୍ରଶ୍ନ – କୃଷି** କ'ଣ ?

**ଉତ୍ତର –** ନ୍ୟାୟାନୁକୂଳ ଭୂମିରେ ବୀଜ ବୁଣି ଗହମ, ଜବ, ଚଣା, ମୁଗ, ଧାନ, ମକ୍କା, ହରଡ଼, ବିରି, ହଳଦୀ, ଧନିଆ ଆଦି ସମସ୍ତ ଖାଦ୍ୟାନ୍ନ, କପା ଏବଂ ବିଭିନ୍ନପ୍ରକାର ଔଷଧି ତଥା ଦେବତା, ମନୁଷ୍ୟ ଏବଂ ପଶୁ ଆଦିଙ୍କ ଉପଯୋଗୀ ଅନ୍ୟ ପବିତ୍ରବସ୍ତୁ ଉତ୍ପନ୍ନ କରିବାର ନାମ **କୃଷି** ଅର୍ଥାତ୍ ଚାଷ।

**ପ୍ରଶ୍ନ – ଗୋପାଳନ** କ'ଣ ?

**ଉତ୍ତର –** ନନ୍ଦ ଆଦି ଗୋପମାନଙ୍କ ପରି ନିଜ ଘରେ ଗାଈଗୋରୁଙ୍କୁ ରଖିବା, ସେମାନଙ୍କୁ ତୃଣଭୂମିରେ ଓ ବନରେ ଚରାଇବା, ଘରେ ମଧ୍ୟ ଯଥାବଶ୍ୟକ ଖାଦ୍ୟପେୟ ଦେବା, ତଥା ବ୍ୟାଘ୍ର ଆଦି ହିଂସ୍ର ଜନ୍ତୁମାନଙ୍କ ଠାରୁ ସେମାନଙ୍କୁ ରକ୍ଷା କରିବା; ସେମାନଙ୍କ ଠାରୁ ଦୁଧ, ଦହି, ଘିଅ ଆଦି ପଦାର୍ଥ ଉତ୍ପନ୍ନ କରି ତଦ୍ୱାରା ଲୋକମାନଙ୍କର ଆବଶ୍ୟକତା ପୂର୍ଣ୍ଣ କରିବା ଏବଂ ତାର ବିନିମୟରେ ପାଉଥିବା ଧନରେ ନିଜର ଗୃହସ୍ଥଧର୍ମ ସହିତ ଗାଈଗୋରୁଙ୍କୁ ଭଲଭାବରେ ନ୍ୟାୟପୂର୍ବକ ପାଳନ କରିବା ହିଁ **ଗୋପାଳନ**। ପଶୁମାନଙ୍କ ମଧ୍ୟରେ 'ଗାଈ' ପ୍ରଧାନ ତଥା ଗାଈ ମନୁଷ୍ୟମାନଙ୍କର ସବୁଠାରୁ ଅଧିକ ଉପକାରୀ ପଶୁ; ତେଣୁ ଭଗବାନ୍ ଏଠାରେ 'ପଶୁପାଳନ' ପଦ ପ୍ରୟୋଗ ନ କରି ତାହା ସ୍ଥାନରେ **ଗୋପାଳନ** ପଦ ପ୍ରୟୋଗ କରିଛନ୍ତି। ବୁଝିବା ଉଚିତ ଯେ, ମଇଁଷି, ଓଟ, ଘୋଡ଼ା ଏବଂ ହାତୀ ଆଦି ଅନ୍ୟାନ୍ୟ ମନୁଷ୍ୟ-ଉପଯୋଗୀ ପଶୁମାନଙ୍କୁ ପାଳନ କରିବା ମଧ୍ୟ ବୈଶ୍ୟମାନଙ୍କର କର୍ମ, କିନ୍ତୁ ଗୋପାଳନ ହେଉଛି ସେସବୁ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ।

**ପ୍ରଶ୍ନ – ବାଣିଜ୍ୟ** ଅର୍ଥାତ୍ କ୍ରୟବିକ୍ରୟରୂପକ ସତ୍ୟବ୍ୟବହାର କ'ଣ ?

**ଉତ୍ତର –** ମନୁଷ୍ୟମାନଙ୍କର ଏବଂ ଦେବତା, ପଶୁ, ପକ୍ଷୀ ଆଦି ଅନ୍ୟ ସମସ୍ତ ପ୍ରାଣୀମାନଙ୍କର ଉପଯୋଗୀ ସମସ୍ତ ପବିତ୍ର ବସ୍ତୁ ଧର୍ମାନୁକୂଳ ରୀତିରେ କ୍ରୟବିକ୍ରୟ କରିବା ତଥା ଆବଶ୍ୟକତାନୁସାରେ ସେସବୁକୁ ଏକ ସ୍ଥାନରୁ ନେଇ ଅନ୍ୟ ସ୍ଥାନରେ ପହଞ୍ଚାଇ ଲୋକମାନଙ୍କର ଆବଶ୍ୟକତା ପୂର୍ଣ୍ଣ କରିବା ହେଉଛି ବାଣିଜ୍ୟ ଅର୍ଥାତ୍ କ୍ରୟବିକ୍ରୟରୂପକ ବ୍ୟବହାର। ବାଣିଜ୍ୟ କରିବା ସମୟରେ ବସ୍ତୁମାନଙ୍କର କିଣା-ବିକା କରିବାରେ, ଓଜନ-ମାପ ତଥା ଗଣତି ଆଦିରେ କମ୍ ଦେଇଦେବା ବା ଅଧିକ ନେଇଯିବା, ଏକ ବସ୍ତୁ ବଦଳରେ ଅନ୍ୟବସ୍ତୁ ଦେଇଦେବା ବା ଏକବସ୍ତୁରେ ଅନ୍ୟ ବସ୍ତୁ ମିଶାଇ ଭଲ ବଦଳରେ ଖରାପ ଦେଇଦେବା ବା ଖରାପ ବଦଳରେ ଭଲ ନେଇଯିବା;

ଲାଭ, ମଧ୍ୟସ୍ଥୀ-ପାଉଣା ଏବଂ ଦଲାଲି ଆଦି କରି ଲୋକଙ୍କ ଠାରୁ ଅଧିକ ନେବା ବା କମ୍ ଦେବା, କୌଣସି ବ୍ୟାପାରରେ ମିଥ୍ୟା, କପଟ, ଚୋରି ବା ଜବରଦସ୍ତି ଆଦି ଅନ୍ୟ କୌଣସିପ୍ରକାର ଅନ୍ୟାୟ ଉପାୟରେ ଅନ୍ୟର ସ୍ୱତ୍ୱକୁ ଅନୁଚିତଭାବରେ ନେଇଯିବା ହେଉଛି ବାଣିଜ୍ୟର ଦୋଷ । ଏହିସବୁ ଦୋଷରୁ ମୁକ୍ତ ରହି ସତ୍ୟ ଏବଂ ନ୍ୟାୟମାର୍ଗରେ ବିଶୁଦ୍ଧ ବସ୍ତୁମାନଙ୍କର କ୍ରୟବିକ୍ରୟକୁ ସତ୍ୟବ୍ୟବହାର କହନ୍ତି । ତୁଳାଧାର ବୈଶ୍ୟ ଏହିପରି ବ୍ୟବହାର କରି ସିଦ୍ଧିପ୍ରାପ୍ତ ହୋଇଥିଲେ । ★

**ପ୍ରଶ୍ନ –** 'ଏହା ବୈଶ୍ୟମାନଙ୍କର ସ୍ୱାଭାବିକ କର୍ମ', —ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ବୈଶ୍ୟମାନଙ୍କର ସ୍ୱଭାବରେ ତମୋମିଶ୍ରିତ ରଜୋଗୁଣର ପ୍ରାଧାନ୍ୟ ଥାଏ । ତେଣୁ ସେମାନଙ୍କର ଉପରୋକ୍ତ କର୍ମରେ ସ୍ୱାଭାବିକ ପ୍ରବୃତ୍ତି ହୋଇଯାଏ । ସେମାନଙ୍କର ସ୍ୱଭାବ ଉପରୋକ୍ତ କର୍ମମାନଙ୍କର ଅନୁକୂଳ ହୁଏ; ଅତଏବ ଏହା କରିବାରେ ସେମାନଙ୍କୁ କୌଣସିପ୍ରକାର କଷ୍ଟ ବୋଧ ହୁଏ ନାହିଁ ।

**ପ୍ରଶ୍ନ –** ମନୁସ୍ମୃତିରେ ତ ଉପରୋକ୍ତ କର୍ମ ବ୍ୟତୀତ ଯଜ୍ଞ, ଅଧ୍ୟୟନ ଏବଂ ଦାନ ତଥା ସୁଧ ନେବା – ଏହି ଚାରିକର୍ମ ମଧ୍ୟ ବୈଶ୍ୟମାନଙ୍କ ପାଇଁ କୁହାଯାଇଛି ★★ । ଏଠାରେ କାହିଁକି ସେଗୁଡ଼ିକ ବର୍ଣ୍ଣନା କରାଯାଇ ନାହିଁ ?

**ଉତ୍ତର –** ଏଠାରେ ବୈଶ୍ୟର ସ୍ୱଭାବ ସହିତ ବିଶେଷ ସମ୍ବନ୍ଧ ରଖୁଥିବା କର୍ମମାନଙ୍କର ବର୍ଣ୍ଣନା ଅଛି; ଯଜ୍ଞାଦି ଶୁଭକର୍ମ ପ୍ରତ୍ୟେକ ଦ୍ୱିଜର କର୍ମ; ଏଣୁ ସେଗୁଡ଼ିକୁ ବୈଶ୍ୟର ସ୍ୱାଭାବିକ କର୍ମରେ କୁହାଯାଇ ନାହିଁ ଏବଂ ବୈଶ୍ୟର କର୍ମମାନଙ୍କ ମଧ୍ୟରେ ସୁଧ ନେବାଟା ଅନ୍ୟ କର୍ମ ଅପେକ୍ଷା ନୀଚ ବୋଲି ମନେ କରାଯାଏ; ତେଣୁ ତାହାକୁ ମଧ୍ୟ ସ୍ୱାଭାବିକ କର୍ମମାନଙ୍କରେ ଗଣନା କରାଯାଇ ନାହିଁ । ଏହା ବ୍ୟତୀତ ମୁକ୍ତିର ଶମଦମାଦି ଆଉ ଯେଉଁ ସାଧନା ରହିଛି, ସେଥିରେ ସମସ୍ତଙ୍କର ଅଧିକାର ଥିବାରୁ, ତାହା ବୈଶ୍ୟର ସ୍ୱଧର୍ମଠାରୁ ଭିନ୍ନ ନୁହେଁ; ସେଥିରେ ବୈଶ୍ୟର ସ୍ୱାଭାବିକ ପ୍ରବୃତ୍ତି ହୁଏ ନାହିଁ, ତେଣୁ ବୈଶ୍ୟର ସ୍ୱାଭାବିକ କର୍ମମାନଙ୍କରେ ସେସବୁକୁ ଗଣନା କରାଯାଇ ନାହିଁ ।

**ପ୍ରଶ୍ନ – ପରିଚର୍ଯ୍ୟାତ୍ମକମ୍** ଅର୍ଥାତ୍ ସବୁ ବର୍ଣ୍ଣମାନଙ୍କର ସେବା କରିବା କାହାକୁ କହନ୍ତି ?

**ଉତ୍ତର –** ଉପରୋକ୍ତ ଦ୍ୱିଜାତି ବର୍ଣ୍ଣମାନଙ୍କର ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟମାନଙ୍କର ଭୃତ୍ୟ ହୋଇ ରହିବା, ସେମାନଙ୍କର ଆଜ୍ଞା ପାଳନ କରିବା, ଘରେ ଜଳ ଭରିଦେବା, ସ୍ନାନ କରାଇଦେବା, ସେମାନଙ୍କର ଜୀବନ-ନିର୍ବାହ କାର୍ଯ୍ୟରେ ସୁବିଧା କରିଦେବା, ଦୈନିକ କାର୍ଯ୍ୟରେ ଯଥାଯୋଗ୍ୟ ସହାୟତା କରିବା, ସେମାନଙ୍କର ପଶୁମାନଙ୍କୁ ପାଳନ କରିବା, ସେମାନଙ୍କର ଜିନିଷପତ୍ର ସମ୍ଭାଳି ରଖିବା, ଲୁଗାପଟା ସଫା କରିବା, କ୍ଷୌରକର୍ମ କରିବା ଆଦି ଯେତେ ସେବା କାର୍ଯ୍ୟ ରହିଛି, ସେସବୁ କରିବା ତଥା ସେମାନଙ୍କୁ ସନ୍ତୁଷ୍ଟ ରଖିବା ଅଥବା ସମସ୍ତଙ୍କ କାମରେ ଆସୁଥିବା ବସ୍ତୁମାନଙ୍କୁ କାରୀଗରିଦ୍ୱାରା ତିଆରି କରି ସେହି ବସ୍ତୁମାନଙ୍କଦ୍ୱାରା ସେମାନଙ୍କୁ ସେବା

---

★ କାଶୀରେ ତୁଳାଧାର ନାମକ ଜଣେ ବଣିକ ଥିଲେ । ସେ ଜଣେ ବିଶିଷ୍ଟ ତପସ୍ୱୀ ଓ ଧର୍ମାତ୍ମା ଥିଲେ । ସେ ନ୍ୟାୟ ଓ ସତ୍ୟର ଆଶ୍ରୟ ନେଇ କ୍ରୟ-ବିକ୍ରୟରୂପକ ବାଣିଜ୍ୟ କରୁଥିଲେ ।

ଜାଜଳି ନାମକ ଜଣେ ବ୍ରାହ୍ମଣ ସମୁଦ୍ରକୂଳରେ ବସି କଠିନ ତପସ୍ୟା କରୁଥିବାବେଳେ ତାଙ୍କର ଜଟାରେ ପକ୍ଷୀମାନେ ବସା ବାନ୍ଧି ରହିଗଲେ । ଏଥିରେ ତାଙ୍କର ନିଜ ତପସ୍ୟା ଉପରେ ବିଶେଷ ଗର୍ବ ହୋଇଗଲା । ସେତେବେଳେ ଆକାଶବାଣୀ ହେଲା, ''ହେ ଜାଜଳି! ତୁମେ ତୁଳାଧାରଙ୍କ ପରି ଧାର୍ମିକ ନୁହଁ; ସେ ତୁମପରି ଗର୍ବ କରନ୍ତି ନାହିଁ ।'' ଏହା ଶୁଣି ତୁଳାଧାରଙ୍କୁ ଦେଖିବାଲାଗି ଜାଜଳି କାଶୀ ଆସିଲେ । ସେ ଆସି ଦେଖିଲେ ଯେ, ତୁଳାଧାର ଫଳ, ମୂଳ, ମସଲା, ଘିଅ ଆଦି ବିକୁଛନ୍ତି । ତୁଳାଧାର ତାଙ୍କୁ ପ୍ରଣାମ କରି ସ୍ୱାଗତ, ସତ୍କାର କରିବା ପରେ କହିଲେ, ''ଆପଣ ସମୁଦ୍ରକୂଳରେ ବଡ଼ ତପସ୍ୟା କରିଛନ୍ତି । ଆପଣଙ୍କ ଜଟାରେ ବସା ବାନ୍ଧି ପକ୍ଷୀମାନେ ଛୁଆ କଲେ; ତେଣୁ ଆପଣଙ୍କର ଗର୍ବ ହୋଇଗଲା ଏବଂ ବର୍ତ୍ତମାନ ଆପଣ ଆକାଶବାଣୀ ଶୁଣି ଏଠାକୁ ଆସିଛନ୍ତି । କହନ୍ତୁ, ମୁଁ ଆପଣଙ୍କର କି ସେବା କରିବି ?'' ତୁଳାଧାରଙ୍କର ଏପରି ଜ୍ଞାନ ଥିବା ଦେଖି ଜାଜଳି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେ ତାଙ୍କୁ ଧର୍ମ ବିଷୟରେ ପଚାରିଲେ; ତୁଳାଧାର ଧର୍ମର ତତ୍ତ୍ୱ ବଡ଼ ସୁନ୍ଦରଭାବରେ ନିରୂପଣ କରିଦେଲେ । ତୁଳାଧାରଙ୍କ ମୁଖରୁ ଧର୍ମର ରହସ୍ୟ ଶୁଣି ଜାଜଳି ଶାନ୍ତି ପାଇଲେ । ମହାଭାରତ, ଶାନ୍ତିପର୍ବରେ ୨୬୧ରୁ ୨୬୪ ଅଧ୍ୟାୟପର୍ଯ୍ୟନ୍ତ ଏହି ସୁନ୍ଦର କଥା ବର୍ଣ୍ଣିତ ହୋଇଛି ।

★★ ପଶୂନା ରକ୍ଷଣଂ ଦାନମିଜ୍ୟାଧ୍ୟୟନମେବ ଚ । ବଣିକ୍ପଥଂ କୁସୀଦଂ ଚ ବୈଶ୍ୟସ୍ୟ କୃଷିମେବ ଚ ॥ (ମନୁସ୍ମୃତି ୧/୯୦)

କରି ନିଜର ଜୀବିକା ଚଳାଇବା— ଏସବୁ ହେଉଛି **ପରିଚର୍ଯ୍ୟାତ୍ମକମ୍** ଅର୍ଥାତ୍ ସବୁ ବର୍ଣ୍ଣର ସେବାରୂପକ କର୍ମର ଅନ୍ତର୍ଗତ।

**ପ୍ରଶ୍ନ—** 'ଏହା ଶୂଦ୍ରମାନଙ୍କର ସ୍ୱାଭାବିକ କର୍ମ ଅଟେ'— ଏହି କଥନର ଭାବ କ'ଣ ତଥା ଏଠାରେ **ଅପି** ପଦ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର—** ଶୂଦ୍ରମାନଙ୍କର ସ୍ୱଭାବରେ ରଜୋମିଶ୍ରିତ ତମୋଗୁଣ ପ୍ରଧାନ; ତେଣୁ ଉପରୋକ୍ତ ସେବାକାର୍ଯ୍ୟରେ ସେମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ହୋଇଯାଏ। ଏହି କର୍ମ ଶୂଦ୍ରସ୍ୱଭାବର ଅନୁକୂଳ ହୁଏ। ଅତଏବ ଏହା କରିବାରେ କୌଣସିପ୍ରକାର କଷ୍ଟ ଜଣାପଡ଼େ ନାହିଁ। ଏଠାରେ **ଅପି** ପ୍ରୟୋଗ କରି ଭଗବାନ୍ ଦେଖାଇଛନ୍ତି ଯେ, ଅନ୍ୟ ବର୍ଣ୍ଣମାନଙ୍କ ପାଇଁ ଯେପରି ସେମାନଙ୍କ ଅନୁରୂପ ଅନ୍ୟ କର୍ମ ସ୍ୱାଭାବିକ ଅଟେ, ଶୂଦ୍ରଙ୍କ ପାଇଁ ମଧ୍ୟ ସେହିପରି ସେବାରୂପକ କର୍ମ ସ୍ୱାଭାବିକ ଅଟେ। ତା' ସଙ୍ଗେ ସଙ୍ଗେ ଏହା ମଧ୍ୟ ଦେଖାଇଛନ୍ତି ଯେ, କେବଳ ସେବାରୂପକ କର୍ମ ହିଁ ଶୂଦ୍ରଙ୍କର କର୍ତ୍ତବ୍ୟ। * ଏବଂ ତାହା ହିଁ ଶୂଦ୍ରଙ୍କ ପାଇଁ ସ୍ୱାଭାବିକ। ଅତଏବ ସେମାନଙ୍କ ପକ୍ଷରେ ଏହା ପାଳନ କରିବା ଅତ୍ୟନ୍ତ ସହଜ। **

---

* **ଏକମେବ ତୁ ଶୂଦ୍ରସ୍ୟ ପ୍ରଭୁଃ କର୍ମ ସମାଦିଶତ୍। ଏତେଷାମେବ ବର୍ଣ୍ଣାନାଂ ଶୁଶ୍ରୂଷାମନସୂୟୟା॥** (ମନୁସ୍ମୃତି ୧/୯୧)

ଅର୍ଥାତ୍ 'ଭଗବାନ୍ ଶୂଦ୍ରପାଇଁ କେବଳ ଗୋଟିଏ କର୍ମ କହିଛନ୍ତି; ତାହା ହେଲା ଦୋଷଦୃଷ୍ଟି ଛାଡ଼ି ପୂର୍ବୋକ୍ତ ଦ୍ୱିଜ ବର୍ଣ୍ଣମାନଙ୍କର ସେବା କରିବା।'

** ଆଜିକାଲି କୁହାଯାଏ ଯେ, ବର୍ଣ୍ଣବିଭାଗ ହେଉଛି ଅଧିକାର ମାଡ଼ିବସିଥିବା ଉଚ୍ଚବର୍ଣ୍ଣର ଲୋକଙ୍କର ସ୍ୱାର୍ଥପୂର୍ଣ୍ଣ ରଚନା; କିନ୍ତୁ ବିଚାର କଲେ ଜଣାଯାଏ, ସମାଜ-ଶରୀରର ସୁବ୍ୟବସ୍ଥାନିମିତ୍ତ ବର୍ଣ୍ଣଧର୍ମ ଅତ୍ୟନ୍ତ ଆବଶ୍ୟକ ଏବଂ ଏହା ମନୁଷ୍ୟର ରଚନା ନୁହେଁ। ବର୍ଣ୍ଣଧର୍ମ ଭଗବାନଙ୍କ ଦ୍ୱାରା ରଚିତ। ସ୍ୱୟଂ ଭଗବାନ କହିଛନ୍ତି, **'ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ'** (୪/୧୩) ଅର୍ଥାତ୍ 'ଗୁଣ ଓ କର୍ମମାନଙ୍କର ବିଭାଗଦ୍ୱାରା ଚାରିବର୍ଣ୍ଣ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର) ମୋ ଦ୍ୱାରା ହିଁ ରଚନା କରାଯାଇଛି।'

ଦିବ୍ୟଦୃଷ୍ଟିପ୍ରାପ୍ତ ତ୍ରିକାଳଜ୍ଞ ମହର୍ଷିମାନେ ଭଗବାନଙ୍କ ଦ୍ୱାରା ନିର୍ମିତ ଏହି ସତ୍ୟ ପ୍ରତ୍ୟକ୍ଷରୂପରେ ପାଇଥିଲେ ଏବଂ ଏହି ସତ୍ୟ ଉପରେ ସମାଜ ନିର୍ମାଣ କରି ତାହାକୁ ସୁବ୍ୟବସ୍ଥିତ, ଶାନ୍ତ, ଶୀଳମୟ, ସୁଖୀ, କର୍ମପ୍ରବଣ, ସ୍ୱାର୍ଥଦୃଷ୍ଟିଶୂନ୍ୟ, କଲ୍ୟାଣପ୍ରଦ ଏବଂ ସୁରକ୍ଷିତ କରିଦେଇଥିଲେ। ସାମାଜିକ ସୁବ୍ୟବସ୍ଥା ନିମିତ୍ତ ମନୁଷ୍ୟମାନଙ୍କର ଚାରି ବିଭାଗ ସବୁ ଦେଶରେ ଏବଂ ସବୁ କାଳରେ ଆବଶ୍ୟକ; ସବୁଦେଶରେ ଚାରି ବିଭାଗ ରହିଛି ଏବଂ ରହୁଛି ମଧ୍ୟ। ପରନ୍ତୁ ସେହି ଋଷିମାନଙ୍କ ଦେଶରେ ତାହା ଯେପରି ସୁବ୍ୟବସ୍ଥିତରୂପରେ ରହିଛି, ଅନ୍ୟ କୌଣସି ଦେଶରେ ସେପରି ରହି ନାହିଁ।

ସମାଜରେ ଧର୍ମର ସ୍ଥାପନା ଓ ରକ୍ଷାନିମନ୍ତେ ଏବଂ ସମାଜ ଜୀବନକୁ ସୁଖୀ କରି ରଖିବାନିମନ୍ତେ, ଯେଉଁଠାରେ ସମାଜର ଜୀବନ-ପଦ୍ଧତିରେ କୌଣସି ବାଧା ଉପସ୍ଥିତ ହୁଏ, ସେଠାରେ ପ୍ରଯତ୍ନପୂର୍ବକ ସେହି ବାଧା ଦୂର କରିବାନିମନ୍ତେ, କର୍ମପ୍ରବାହରେ ଆବର୍ଜ୍ଜ ଲୋପ କରିବାନିମନ୍ତେ, ପ୍ରତିବନ୍ଧକ ଦୂର କରିବାନିମନ୍ତେ ଏବଂ ଧର୍ମସଙ୍କଟ ଉପସ୍ଥିତ ହେଲେ ସମୁଚିତ ବ୍ୟବସ୍ଥା ଦେବାନିମନ୍ତେ ପରିଶୁଦ୍ଧ ଓ ନିର୍ମଳ ମସ୍ତିଷ୍କ ଆବଶ୍ୟକ ହୁଏ। ଧର୍ମକୁ ଏବଂ ଧର୍ମରେ ସ୍ଥିତ ସମାଜକୁ ଭୌତିକ ଆକ୍ରମଣରୁ ରକ୍ଷା କରିବାନିମନ୍ତେ ବାହୁବଳର ଆବଶ୍ୟକତା ରହିଛି। ମସ୍ତିଷ୍କ ଏବଂ ବାହୁର ଯଥାଯୋଗ୍ୟ ପୋଷଣ କରିବା ନିମନ୍ତେ ଧନ ଏବଂ ଅନ୍ନ ଆବଶ୍ୟକ ଏବଂ ଉପରୋକ୍ତ କର୍ମମାନଙ୍କୁ ଯଥାଯୋଗ୍ୟ ସମ୍ପନ୍ନ କରାଇବା ନିମନ୍ତେ ଶାରୀରିକ ପରିଶ୍ରମ ମଧ୍ୟ ଆବଶ୍ୟକ।

ତେଣୁ ସମାଜରୂପୀ ଶରୀରର ମସ୍ତିଷ୍କ ହେଉଛି ବ୍ରାହ୍ମଣ, ବାହୁ ହେଉଛି କ୍ଷତ୍ରିୟ, ଉରୁ ହେଉଛି ବୈଶ୍ୟ ଓ ପାଦ ହେଉଛ ଶୂଦ୍ର। ଏହି ଚାରିବର୍ଣ୍ଣ ହେଉଛନ୍ତି ସମାଜ-ଶରୀରର ଚାରିଟି ଆବଶ୍ୟକ ଅଙ୍ଗ ଏବଂ ଏମାନେ ଏକ ଅନ୍ୟର ସହାୟତା କରି ସୁରକ୍ଷିତ ଏବଂ ଜୀବିତ ରହନ୍ତି। ଘୃଣା ବା ଅପମାନର କଥା କ'ଣ କହିବା, ଏମାନଙ୍କ ମଧ୍ୟରୁ କାହାରି ହେଲେ ସାମାନ୍ୟମାତ୍ର ଅବହେଳା ବି କରାଯାଇ ନ ପାରେ। ଏଥିରେ ନୀଚ-ଉଚ୍ଚର କଳ୍ପନା ମଧ୍ୟ ନାହିଁ। ନିଜ ନିଜର ସ୍ଥାନ ଓ କାର୍ଯ୍ୟ ଅନୁସାରେ ଚାରିହେଁ ବଡ଼। ବ୍ରାହ୍ମଣ ଜ୍ଞାନବଳରେ, କ୍ଷତ୍ରିୟ ବାହୁବଳରେ, ବୈଶ୍ୟ ଧନବଳରେ ଏବଂ ଶୂଦ୍ର ଜନବଳରେ ବା ଶ୍ରମବଳରେ ବଡ଼ ଏବଂ ଚାରିଟିଯାକ ବର୍ଣ୍ଣର ପୂର୍ଣ୍ଣ ଉପଯୋଗିତା ରହିଛି। ଏମାନଙ୍କର ଉତ୍ପତ୍ତି ମଧ୍ୟ ଏକ ଭଗବାନଙ୍କ ଶରୀରରୁ ହୋଇଛି, କାରଣ ବ୍ରାହ୍ମଣଙ୍କ ଉତ୍ପତ୍ତି ଭଗବାନଙ୍କ ଶ୍ରୀମୁଖରୁ, କ୍ଷତ୍ରିୟଙ୍କ

**ସମ୍ବନ୍ଧ—** ଏପରି ଚାରିବର୍ଣ୍ଣର ସ୍ୱାଭାବିକ କର୍ମଗୁଡ଼ିକ ବର୍ଣ୍ଣନା କରିସାରି ବର୍ତ୍ତମାନ ଭକ୍ତିଯୁକ୍ତ କର୍ମଯୋଗର ସ୍ୱରୂପ ଓ ଫଳ ତଥା ସେହି କର୍ମ କିପରି ଆଚରଣ କଲେ ମନୁଷ୍ୟ ଅନାୟାସରେ ପରମସିଦ୍ଧି ପାଇଯାଏ, ତାହା ପରବର୍ତ୍ତୀ ଦୁଇଟି ଶ୍ଳୋକରେ କହୁଛନ୍ତି–

**ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।**
**ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ ।। ୪୫ ।।**

**ଅନ୍ୱୟ—** **ସ୍ୱେ, ସ୍ୱେ** = ନିଜ-ନିଜର; **କର୍ମଣି** = ସ୍ୱାଭାବିକ କର୍ମରେ; **ଅଭିରତଃ** = ତତ୍ପରତାର ସହିତ ଲାଗିରହିଥିବା; **ନରଃ** = ମନୁଷ୍ୟ; **ସଂସିଦ୍ଧିମ୍** = ଭଗବତ୍‌ପ୍ରାପ୍ତିରୂପକ ପରମସିଦ୍ଧିକୁ; **ଲଭତେ** = ପାଇଯାଏ; **ସ୍ୱକର୍ମନିରତଃ** = ନିଜର ସ୍ୱାଭାବିକ କର୍ମରେ ଲାଗିରହିଥିବା ମନୁଷ୍ୟ; **ଯଥା** = ଯେଉଁପରି କର୍ମ କରି; **ସିଦ୍ଧିମ୍** = ପରମ ସିଦ୍ଧି; **ବିନ୍ଦତି** = ପାଇଯାଏ; **ତତ୍** = ତାହା (ତୁମେ); **ଶୃଣୁ** = ଶୁଣ ।

---

ଉତ୍ପତ୍ତି ବାହୁରୁ, ବୈଶ୍ୟଙ୍କ ଉତ୍ପତ୍ତି ଉରୁରୁ ଏବଂ ଶୂଦ୍ରଙ୍କ ଉତ୍ପତ୍ତି ପାଦରୁ ହୋଇଛି ।

**ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ ।**
**ଊରୂ ତଦସ୍ୟ ଯଦ୍ ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ ।।** (ଋଗ୍‌ବେଦ ସଂ. ୧୦/୯୦/୧୨)

ପରନ୍ତୁ ଏମାନଙ୍କର ଏହି ଜନ୍ମ ନିଜର ସ୍ୱାର୍ଥସିଦ୍ଧିପାଇଁ ନୁହେଁ, କି ଅନ୍ୟକୁ ତଳକୁ ରଖି ସ୍ୱୟଂ ଉଚ୍ଚ ହେବାପାଇଁ ମଧ୍ୟ ନୁହେଁ। ସମାଜଶରୀରର ଆବଶ୍ୟକ ଅଙ୍ଗରୂପରେ ଏମାନଙ୍କର ଯୋଗ୍ୟତାନୁସାରେ କର୍ମବିଭାଗ ହୋଇଛି ଏବଂ ଏହା କେବଳ ଧର୍ମ ପାଳନ କରିବା ଓ କରାଇବାପାଇଁ ହୋଇଛି। ଉଚ୍ଚ-ନୀଚ ଭାବ ନ ରଖି ଯଥାଯୋଗ୍ୟ କର୍ମବିଭାଗ ହୋଇଥିବାରୁ ଚାରି ବର୍ଣ୍ଣରେ ଏକ ଶକ୍ତି-ସାମଞ୍ଜସ୍ୟ ରହିଛି। କେହି କାହାରିକୁ ଅବହେଳା କରିପାରିବେ ନାହିଁ, କି କାହାରି ନ୍ୟାଯ୍ୟ ଅଧିକାର ଉପରେ ଆଘାତ କରିପାରିବେ ନାହିଁ। ଏହି କର୍ମବିଭାଗ ଏବଂ କର୍ମାଧିକାରରୂପକ ସୁଦୃଢ଼ ଆଧାର ଉପରେ ପ୍ରତିଷ୍ଠିତ ଏହି ବର୍ଣ୍ଣଧର୍ମ ଏପରି ସୁବ୍ୟବସ୍ଥିତ ଯେ, ଏଥିରେ ଶକ୍ତି-ସାମଞ୍ଜସ୍ୟ ସ୍ୱତଃ ଆସିଥାଏ। ସ୍ୱୟଂ ଭଗବାନ୍ ଏବଂ ଧର୍ମନିର୍ମାତା ଋଷିମାନେ ପ୍ରତ୍ୟେକ ବର୍ଣ୍ଣର କର୍ମ କ'ଣ, ତାହା ପୃଥକ ପୃଥକଭାବରେ ସ୍ପଷ୍ଟରୂପେ ନିର୍ଦ୍ଦେଶ କରି ସମସ୍ତଙ୍କୁ ନିଜ ନିଜର ଧର୍ମ ନିର୍ବିଘ୍ନରେ ପାଳନ କରିବାପାଇଁ ମଧ୍ୟ ସୁବିଧା କରିଦେଇଛନ୍ତି। ସ୍ୱକର୍ମର ପୂର୍ଣ୍ଣ ପାଳନ ହେଲେ, ଶକ୍ତି-ସାମଞ୍ଜସ୍ୟରେ କେବେ ବି ବାଧା ଆସି ନ ପାରେ।

ୟୁରୋପ ଆଦି ଦେଶରେ ବି ସ୍ୱାଭାବିକଭାବେ ମନୁଷ୍ୟସମାଜରେ ଚାରି ବିଭାଗ ରହିଛି; କିନ୍ତୁ ସେଠାରେ ନିର୍ଦ୍ଦିଷ୍ଟ ନିୟମ ନ ଥିବାରୁ ଶକ୍ତି-ସାମଞ୍ଜସ୍ୟ ନାହିଁ। ତେଣୁ ସେଠାରେ କେତେବେଳେ ଜ୍ଞାନବଳ ସୈନିକବଳକୁ ଚାପିଦେଉଛି ତ, କେତେବେଳେ ଜନବଳ ଧନବଳକୁ ପରାସ୍ତ କରିଦେଉଛି। ଭାରତୀୟ ବର୍ଣ୍ଣବିଭାଗରେ ଏପରି ନ ହୋଇ ସମସ୍ତଙ୍କ ପାଇଁ ପୃଥକ୍ ପୃଥକ୍ କର୍ମ ନିର୍ଦ୍ଦିଷ୍ଟ ହୋଇ ରହିଛି।

ଋଷିସେବିତ ବର୍ଣ୍ଣଧର୍ମରେ ବ୍ରାହ୍ମଣପଦ ସବୁଠାରୁ ଉଚ୍ଚରେ। ବ୍ରାହ୍ମଣ ସମାଜଧର୍ମର ନିର୍ମାତା, ତାଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା ବିଧି ବା ନିୟମକୁ ସମସ୍ତେ ମାନନ୍ତି। ସେ ସମସ୍ତଙ୍କର ଗୁରୁ ବା ପଥପ୍ରଦର୍ଶକ; ପରନ୍ତୁ ସେ ଧନ ସଂଗ୍ରହ କରେ ନାହିଁ; ଦଣ୍ଡ ଦିଏ ନାହିଁ; ଭୋଗବିଳାସରେ ମଧ୍ୟ ରୁଚି ରଖେ ନାହିଁ। ସ୍ୱାର୍ଥ ତ, କାରଣ, ବ୍ରାହ୍ମଣର ଜୀବନରେ ଦେଖାଦିଏ ନାହିଁ। ଧନୈଶ୍ୱର୍ଯ୍ୟ ଓ ପଦଗୌରବକୁ ଧୂଳିପରି ମଣି ସେ ପତ୍ନୀପୁତ୍ରଙ୍କସହ ଜୀବନ ନିର୍ବାହପୂର୍ବକ ପରିବାରସହ ନଗରଠାରୁ ଦୂରରେ ବନରେ ରହେ। ସେ ଦିନରାତି ତପସ୍ୟା, ଧର୍ମସାଧନ ଓ ଜ୍ଞାନାର୍ଜନରେ ଲାଗିରହେ ଏବଂ ନିଜର ଶମ-ଦମ-ତିତିକ୍ଷା-କ୍ଷମା ଆଦିରେ ସମନ୍ୱିତ ମହାନ୍ ତପୋବଳ ପ୍ରଭାବରୁ ଦୁର୍ଲଭ ଜ୍ଞାନନେତ୍ର ପ୍ରାପ୍ତ ହୁଏ ଏବଂ ସେହି ଜ୍ଞାନର ଦିବ୍ୟ ଜ୍ୟୋତିରେ ସତ୍ୟ ଦର୍ଶନ କରି ସେହି ସତ୍ୟକୁ ନିଃସ୍ୱାର୍ଥଭାବେ, ସଦାଚାରପରାୟଣ, ସାଧୁସ୍ୱଭାବ ପୁରୁଷମାନଙ୍କ ଦ୍ୱାରା ସମାଜରେ ବିତରଣ କରିଦିଏ। ବିନିମୟରେ ସେ କିଛି ଚାହେଁ ନାହିଁ। ସମାଜ ନିଜ ଇଚ୍ଛାରେ ଯାହା କିଛି ଦେଇଦିଏ, ବା ଭିକ୍ଷାଦ୍ୱାରା ଯାହା କିଛି ମିଳିଯାଏ, ତାହାରି ଉପରେ ସେ ବଡ଼ ସରଳଭାବରେ ନିଜ ଜୀବନଯାତ୍ରା ଚଳାଏ। ଏହା ହିଁ ବ୍ରାହ୍ମଣଜୀବନର ଧର୍ମମୟ ଆଦର୍ଶ।

କ୍ଷତ୍ରିୟ ସମସ୍ତଙ୍କ ଉପରେ ଶାସନ କରେ। ଅପରାଧୀକୁ ଦଣ୍ଡ ଓ ସଦାଚାରୀକୁ ପୁରସ୍କାର ଦିଏ। ଦଣ୍ଡପ୍ରଭାବରୁ ଦୁଷ୍ଟମାନେ ମୁଣ୍ଡ ଟେକିପାରନ୍ତି ନାହିଁ। ସେ ଧର୍ମକୁ ତଥା ସମାଜକୁ ଦୁରାଚାରୀମାନଙ୍କ ଠାରୁ ତଥା ଚୋରଦସ୍ୟୁମାନଙ୍କ ଠାରୁ ଏବଂ ଶତ୍ରୁମାନଙ୍କ ଠାରୁ ରକ୍ଷା କରେ। କ୍ଷତ୍ରିୟ ଦଣ୍ଡ ଦିଏ, ପରନ୍ତୁ ଦଣ୍ଡ ଦେବାର ନିୟମ ନିଜେ ରଚନା କରେ ନାହିଁ। ବ୍ରାହ୍ମଣଙ୍କ ଦ୍ୱାରା ରଚିତ ନିୟମ ଅନୁସାରେ ସେ ଆଚରଣ କରେ। ବ୍ରାହ୍ମଣଙ୍କ ଦ୍ୱାରା ରଚିତ ନିୟମାନୁସାରେ ସେ ପ୍ରଜାଙ୍କ ଠାରୁ କର ଆଦାୟ କରେ ଏବଂ ସେହି

**ନିଜ-ନିଜର ସ୍ୱାଭାବିକ କର୍ମରେ ତତ୍ପରତାର ସହିତ ଲାଗିରହିଥିବା ମନୁଷ୍ୟ ଭଗବତ୍‌ପ୍ରାପ୍ତିରୂପକ ପରମସିଦ୍ଧି ପାଇଯାଏ। ନିଜର ସ୍ୱାଭାବିକ କର୍ମରେ ଲାଗିରହିଥିବା ମନୁଷ୍ୟ କର୍ମ କରି କିପରି ପରମ ସିଦ୍ଧି ପାଇଯାଏ, ତାହା ତୁମେ ଶୁଣ॥ ୪୫ ॥**

---

ନିୟମାନୁସାରେ ପ୍ରଜାଙ୍କର ମଙ୍ଗଳପାଇଁ ବ୍ୟବସ୍ଥାପୂର୍ବକ ତାହା ବ୍ୟୟ କରେ। ନିୟମର ରଚନା ବ୍ରାହ୍ମଣ କରନ୍ତି ଏବଂ ଧନର ଭଣ୍ଡାର ବୈଶ୍ୟ ପାଖରେ ରହେ। କ୍ଷତ୍ରିୟ ତ କେବଳ ବିଧି ଅନୁସାରେ ବ୍ୟବସ୍ଥାପକ ଓ ସଂରକ୍ଷକମାତ୍ର ହୋଇ ରହେ।

ଧନର ମୂଳ ବାଣିଜ୍ୟ, ପଶୁ ଏବଂ ଅନ୍ନ ଆଦି ବୈଶ୍ୟହାତରେ ରହେ। ବୈଶ୍ୟ ଧନ ଉପାର୍ଜନ କରେ ଏବଂ ତାହାକୁ ବଢ଼ାଏ କିନ୍ତୁ ତାହା ନିଜ ନିମନ୍ତେ ନୁହେଁ। ସେ ବ୍ରାହ୍ମଣଙ୍କ ଜ୍ଞାନ ଏବଂ କ୍ଷତ୍ରିୟଙ୍କ ବଳରେ ସଂରକ୍ଷିତ ହୋଇ ଧନକୁ ସବୁ ବର୍ଣ୍ଣର ହିତପାଇଁ ବିଧି ଅନୁସାରେ ବ୍ୟୟ କରେ। ଶାସନକ୍ଷେତ୍ରରେ ବୈଶ୍ୟର କୌଣସି ଅଧିକାର ନ ଥାଏ, କି ସେଥିରେ ତା'ର କୌଣସି ଆବଶ୍ୟକତା ନ ଥାଏ। କାରଣ ବ୍ରାହ୍ମଣ ବା କ୍ଷତ୍ରିୟ ତା'ର ବ୍ୟବସାୟ ଉପରେ କେବେ କୌଣସିପ୍ରକାର ହସ୍ତକ୍ଷେପ କରନ୍ତି ନାହିଁ; ସ୍ୱାର୍ଥବଶତଃ କେବେ ତା'ର ଧନ ହରଣ କରନ୍ତି ନାହିଁ; ବରଂ ତାକୁ ରକ୍ଷା କରନ୍ତି ଏବଂ ଜ୍ଞାନବଳ ଓ ବାହୁବଳରେ ତା'ପାଇଁ ଏପରି ସୁବ୍ୟବସ୍ଥା କରନ୍ତି ଯେ, ତା'ଦ୍ୱାରା ସେ ନିଜର ବାଣିଜ୍ୟବ୍ୟବସାୟ ସୁଚାରୁରୂପେ ନିର୍ବିଘ୍ନରେ ଚଳାଇପାରେ। ଏଣୁ ତା' ମନରେ କୌଣସି ଅସନ୍ତୋଷ ହୁଏ ନାହିଁ ଏବଂ ସେ ଆନନ୍ଦରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପ୍ରାଧାନ୍ୟ ସ୍ୱୀକାର କରି ଚଳେ ଏବଂ ଏପରି ସ୍ୱୀକାର କରିବା ଉଚିତ ବୋଲି ମଧ୍ୟ ମଣେ; କାରଣ ଏହାଦ୍ୱାରା ତା'ର ନିଜର ମଙ୍ଗଳ ହୁଏ। ସେ ଖୁସିରେ ରାଜାଙ୍କୁ କର ଦିଏ, ବ୍ରାହ୍ମଣଙ୍କର ସେବା କରେ ଏବଂ ବିଧିବଦ୍ଧ ଆଦରପୂର୍ବକ ଶୂଦ୍ରଙ୍କୁ ପ୍ରଚୁର ଅନ୍ନ-ବସ୍ତ୍ରାଦି ପ୍ରଦାନ କରେ।

ବାକି ରହିଲା ଶୂଦ୍ରଙ୍କ କଥା। ଶୂଦ୍ରମାନେ ସ୍ୱାଭାବିକରୂପେ ସଂଖ୍ୟାରେ ଅଧିକ। ଶୂଦ୍ରଙ୍କ ଶାରୀରିକ ଶକ୍ତି ପ୍ରବଳ; ମାନସିକ ଶକ୍ତି ଟିକିଏ କମ୍। ଅତଏବ ସେମାନଙ୍କ ଭାଗରେ ଶାରୀରିକ ଶ୍ରମ ରଖାଯାଇଛି। ସମାଜପାଇଁ ଶାରୀରିକ ଶକ୍ତିର ମଧ୍ୟ ଅତ୍ୟନ୍ତ ଆବଶ୍ୟକତା ରହିଛି। ଶାରୀରିକ ଶକ୍ତିର ମୂଲ୍ୟ କୌଣସିପ୍ରକାରେ କମ୍ ନୁହେଁ। ଶୂଦ୍ରଙ୍କ ଜନବଳ ଉପରେ ହିଁ ତିନି ବର୍ଣ୍ଣ ପ୍ରତିଷ୍ଠିତ। ଏହା ହିଁ ଆଧାର। ପାଦର ବଳ ଉପରେ ହିଁ ଶରୀର ଚଳେ। ଅତଏବ ଶୂଦ୍ରକୁ ଅନ୍ୟ ତିନିବର୍ଣ୍ଣ ନିଜର ପ୍ରିୟ ଅଙ୍ଗ ବୋଲି ମାନନ୍ତି। ଶୂଦ୍ରର ଶ୍ରମ ବିନିମୟରେ ବୈଶ୍ୟ ତାକୁ ପ୍ରଚୁର ଧନ ଦିଏ; କ୍ଷତ୍ରିୟ ଶୂଦ୍ରର ଧନ-ଜନ ରକ୍ଷା କରେ ଏବଂ ବ୍ରାହ୍ମଣ ତାକୁ ଧର୍ମର ମାର୍ଗ, ଭଗବଦ୍ ଭକ୍ତିର ମାର୍ଗ ଦେଖାନ୍ତି। ସ୍ୱାର୍ଥସିଦ୍ଧିପାଇଁ କୌଣସି ବର୍ଣ୍ଣ ଶୂଦ୍ରର ବୃତ୍ତି ହରଣ କରେ ନାହିଁ, କି ସ୍ୱାର୍ଥପରବଶ ହୋଇ ତାକୁ କମ୍ ପାରିଶ୍ରମିକ ଦିଏ ନାହିଁ, କି ନିଜଠାରୁ ନୀଚ ବୋଲି ମନେକରି ତା'ପ୍ରତି କୌଣସିପ୍ରକାର ଦୁର୍ବ୍ୟବହାର କରେ ନାହିଁ। ଏହା ଫଳରେ ସମସ୍ତେ ବୁଝିପାରନ୍ତି ଯେ, ସେମାନେ ନିଜ-ନିଜର ସ୍ୱତ୍ୱ ହିଁ ପାଉଛନ୍ତି। କେହି କାହାର ଉପକାର କରୁଛି ବୋଲି ଅଭିମାନ କରେ ନାହିଁ; ବରଂ ଏକ ଅନ୍ୟର ସହାୟତା କରୁଛି ଏବଂ ସମସ୍ତେ ନିଜର ଉନ୍ନତି କରିବା ସଙ୍ଗେ ସଙ୍ଗେ ଅନ୍ୟର ଉନ୍ନତି ମଧ୍ୟ କରୁଛନ୍ତି। ସମସ୍ତେ ଅନ୍ୟର ଉନ୍ନତିକୁ ନିଜର ଉନ୍ନତି ବୋଲି ଭାବନ୍ତି ତଥା ଅନ୍ୟର ଅବନତିକୁ ମଧ୍ୟ ନିଜର ଅବନତି ବୋଲି ମନେ କରନ୍ତି। ଏପରି ଅବସ୍ଥାରେ ଜନବଳସମ୍ପନ୍ନ ଶୂଦ୍ର ସନ୍ତୁଷ୍ଟ ରହେ। ଚାରିବର୍ଣ୍ଣଙ୍କ ମଧ୍ୟରେ କେହି କାହାକୁ ପ୍ରବଞ୍ଚନା କରନ୍ତି ନାହିଁ; କି କେହି କାହାଦ୍ୱାରା ଘୃଣିତ ବା ଅପମାନିତ ହୁଅନ୍ତି ନାହିଁ।

ଏକା ଘରର ଚାରି ଭାଇଙ୍କ ପରି ନିଜ ଘରର ସମ୍ମିଳିତ ଉନ୍ନତିପାଇଁ ସେମାନେ ଆନନ୍ଦର ସହିତ ଯୋଗ୍ୟତା ଅନୁସାରେ ନିଜ ନିଜର ପୃଥକ ପୃଥକ୍ କର୍ତ୍ତବ୍ୟପାଳନରେ ଲାଗିରହନ୍ତି। ଏହି ଚାରିବର୍ଣ୍ଣ ପରସ୍ପର— ବ୍ରାହ୍ମଣ ଧର୍ମସ୍ଥାପନଦ୍ୱାରା, କ୍ଷତ୍ରିୟ ବାହୁବଳଦ୍ୱାରା, ବୈଶ୍ୟ ଧନବଳଦ୍ୱାରା ଏବଂ ଶୂଦ୍ର ଶାରୀରିକ-ଶ୍ରମବଳଦ୍ୱାରା— ଏକ ଆରେକର ମଙ୍ଗଳ କରନ୍ତି ତଥା ସମାଜର ଶକ୍ତିବର୍ଦ୍ଧନ କରନ୍ତି। ସମସ୍ତେ ଏକପ୍ରକାର କର୍ମ କରିବାକୁ ଚାହାଁନ୍ତି ନାହିଁ, କି ଭିନ୍ନ ଭିନ୍ନ କର୍ମ କରିବାରେ ମନରେ କୌଣସି ଉଚ୍ଚ-ନୀଚ ଭାବ ରଖନ୍ତି ନାହିଁ। ଏହାଦ୍ୱାରା ସେମାନଙ୍କ ମଧ୍ୟରେ ଶକ୍ତି-ସାମଞ୍ଜସ୍ୟ ରହେ ଏବଂ ଧର୍ମ ଉତ୍ତରୋତ୍ତର ବଳିଷ୍ଠ ଓ ପୁଷ୍ଟ ହୁଏ। ଏହା ହିଁ ବର୍ଣ୍ଣଧର୍ମର ସ୍ୱରୂପ।

ଏହିପରି ଗୁଣ ଓ କର୍ମ ବିଭାଗଦ୍ୱାରା ହିଁ ବର୍ଣ୍ଣବିଭାଗ ହୁଏ। କିନ୍ତୁ ଏହାର ଅର୍ଥ ନୁହେଁ ଯେ, ମନଇଚ୍ଛା କର୍ମଦ୍ୱାରା ବର୍ଣ୍ଣ ବଦଳିଯାଏ। ବର୍ଣ୍ଣର ମୂଳ ହେଉଛି ଜନ୍ମ ଏବଂ ତାହାର ସ୍ୱରୂପକୁ ରକ୍ଷା କରିବାରେ କର୍ମ ହେଉଛି ପ୍ରଧାନ କାରଣ। ଏପରିଭାବରେ ବର୍ଣ୍ଣରେ ଜନ୍ମ ଓ କର୍ମ ଉଭୟ ଆବଶ୍ୟକ। କେବଳ କର୍ମଦ୍ୱାରା ବର୍ଣ୍ଣକୁ ମାନୁଥିବା ଲୋକେ, ବସ୍ତୁତଃ ବର୍ଣ୍ଣକୁ ମାନନ୍ତି ନାହିଁ। ବର୍ଣ୍ଣକୁ ଯଦି କର୍ମପରକ ବୋଲି ମାନିନିଆଯାଏ, ତେବେ ଗୋଟିଏ ଦିନରେ ଜଣେ ମନୁଷ୍ୟକୁ କେତେଥର ଯେ ବର୍ଣ୍ଣ ବଦଳାଇବାକୁ ପଡ଼ିବ, ତାହା ହିସାବ

**ପ୍ରଶ୍ନ –** ଏହି ବାକ୍ୟରେ **ସ୍ୱେ** ପଦ ଦୁଇଥର ପ୍ରୟୋଗ କରି କେଉଁ ଭାବ ଦେଖାଇଦିଆଯାଇଛି ? ତଥା **ସଂସିଦ୍ଧିମ୍** ପଦ କେଉଁ ସିଦ୍ଧିର ବାଚକ ?

**ଉତ୍ତର –** ଏଠାରେ **ସ୍ୱେ** ପଦ ଦୁଇଥର ପ୍ରୟୋଗ କରି ଭଗବାନ୍ ଦେଖାଉଛନ୍ତି ଯେ, ଯେଉଁ ମନୁଷ୍ୟର ଯାହା ସ୍ୱାଭାବିକ କର୍ମ, ତାହା ଅନୁଷ୍ଠାନ କରିବାଦ୍ୱାରା ତାକୁ ପରମପଦ ମିଳିଯାଏ । ଅର୍ଥାତ୍, ବ୍ରାହ୍ମଣଙ୍କୁ ନିଜ ଶମଦମାଦି କର୍ମଦ୍ୱାରା, କ୍ଷତ୍ରିୟଙ୍କୁ ଶୂରବୀରତା, ପ୍ରଜାପାଳନ ଓ ଦାନାଦି କର୍ମଦ୍ୱାରା ଏବଂ ବୈଶ୍ୟଙ୍କୁ କୃଷି ଆଦି କର୍ମମାନଙ୍କ ଦ୍ୱାରା ଯେଉଁ ଫଳ ମିଳେ, ଶୂଦ୍ରକୁ ସେବାକର୍ମଦ୍ୱାରା ମଧ୍ୟ ସେହି ଫଳ ମିଳେ । ତେଣୁ ଯାହାର ଯାହା ସ୍ୱାଭାବିକ କର୍ମ, ତା'ପାଇଁ ତାହା କଲ୍ୟାଣପ୍ରଦ; କଲ୍ୟାଣନିମନ୍ତେ ଏକ ବର୍ଣ୍ଣ ଅନ୍ୟ ବର୍ଣ୍ଣର କର୍ମ ଗ୍ରହଣ କରିବା ଅନାବଶ୍ୟକ । **ସଂସିଦ୍ଧିମ୍** ପଦ ଏଠାରେ ଅନ୍ତଃକରଣର ଶୁଦ୍ଧିରୂପକ ସିଦ୍ଧିର ବା ସ୍ୱର୍ଗପ୍ରାପ୍ତିର ଅଥବା ଅଣିମାଦି ସିଦ୍ଧିମାନଙ୍କର ବାଚକ ନୁହେଁ; ଏହା ହେଉଛି ସେହି ପରମସିଦ୍ଧିର ବାଚକ, ଯାହାକୁ ପରମାତ୍ମପ୍ରାପ୍ତି, ପରମଗତିପ୍ରାପ୍ତି, ଶାଶ୍ୱତପଦପ୍ରାପ୍ତି, ପରମପଦପ୍ରାପ୍ତି ଓ ନିର୍ବାଣବ୍ରହ୍ମପ୍ରାପ୍ତି କହନ୍ତି । ଏହା ବ୍ୟତୀତ ବ୍ରାହ୍ମଣର ସ୍ୱାଭାବିକ କର୍ମମାନଙ୍କରେ ଜ୍ଞାନ ଓ ବିଜ୍ଞାନ ମଧ୍ୟ ରହିଛି । ତେଣୁ ସେହି କର୍ମମାନଙ୍କର ଫଳ ପରମଗତି ବ୍ୟତୀତ ଅନ୍ୟ କିଛି କୁହାଯାଇ ନ ପାରେ ।

**ପ୍ରଶ୍ନ –** ଏଠାରେ **ନରଃ** ପଦ କାହାର ବାଚକ ଏବଂ ଏହା ପ୍ରୟୋଗ କରି ନିଜ କର୍ମରେ ଲାଗିରହିଥିବା ମନୁଷ୍ୟ ପରମସିଦ୍ଧି ପାଇଥାଏ ବୋଲି କହିବାର ଭାବ କ'ଣ ?

**ଉତ୍ତର –** ଏଠାରେ **ନରଃ** ପଦ ହେଉଛି ଚାରିବର୍ଣ୍ଣ ମଧ୍ୟରୁ ପ୍ରତ୍ୟେକ ବର୍ଣ୍ଣର ପ୍ରତ୍ୟେକ ମନୁଷ୍ୟର ବାଚକ; ଅତଏବ ଏହା ପ୍ରୟୋଗ କରି 'ନିଜ କର୍ମରେ ଲାଗିରହିଥିବା ମନୁଷ୍ୟ ପରମ ସିଦ୍ଧି ପାଏ' ବୋଲି କହିବାଦ୍ୱାରା ମନୁଷ୍ୟମାତ୍ରଙ୍କେ ମୋକ୍ଷପ୍ରାପ୍ତିର ଅଧିକାରୀ ବୋଲି ଦେଖାଇଦିଆଯାଇଛି । ତାହା ସଙ୍ଗେ ସଙ୍ଗେ ଦେଖାଇଦିଆଯାଇଛି ଯେ, ପରମାତ୍ମପ୍ରାପ୍ତିପାଇଁ ସ୍ୱରୂପତଃ କର୍ତ୍ତବ୍ୟକର୍ମ ତ୍ୟାଗ କରିବାର ଆବଶ୍ୟକତା ନାହିଁ; ପରମାତ୍ମାଙ୍କୁ ଲକ୍ଷ୍ୟ କରି ସଦାସର୍ବଦା ବର୍ଣ୍ଣାଶ୍ରମୋଚିତ କର୍ମ କରୁ କରୁ ମଧ୍ୟ ମନୁଷ୍ୟ ପରମାତ୍ମାଙ୍କୁ ପାଇପାରେ (୧୮/୫୬) ।

**ପ୍ରଶ୍ନ –** 'ନିଜର ସ୍ୱାଭାବିକ କର୍ମମାନଙ୍କରେ ଲାଗିରହିଥିବା ମନୁଷ୍ୟ କର୍ମ କରି କରି କିପରି ପରମସିଦ୍ଧି ପାଏ, ସେହି ବିଧି ତୁମେ ଶୁଣ', – ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର –** ପୂର୍ବାର୍ଦ୍ଧରେ କୁହାଯାଇଛି ଯେ, ନିଜ କର୍ମରେ ଲାଗିରହିଥିବା ମନୁଷ୍ୟ ପରମସିଦ୍ଧି ପାଏ । ଏଠାରେ ଶଙ୍କା ହୁଏ, "କର୍ମ ତ ମନୁଷ୍ୟକୁ ବନ୍ଧନରେ ପକାଏ, ସେଥିରେ ତତ୍ପରତାର ସହ ଲାଗିରହିଥିବା ମନୁଷ୍ୟ ପରମସିଦ୍ଧି କିପରି ପାଏ ?" ଏଣୁ ଏହି ଶଙ୍କା ସମାଧାନ କରିବାନିମନ୍ତେ ଭଗବାନ୍ ଏହି ବାକ୍ୟ କହିଛନ୍ତି । କହିବାର ଅଭିପ୍ରାୟ ହେଲା, "କର୍ମରେ ଲାଗିରହିଥିବା ମନୁଷ୍ୟ କିପରି ପରମପଦ ପାଏ, ସେହି ଉପାୟ ମୁଁ ତୁମକୁ ଆଗ ଶ୍ଳୋକରେ ସ୍ପଷ୍ଟ କରି କହିବି; ତୁମେ ତାହା ସାବଧାନ ହୋଇ ଶୁଣ ।"

---

କରିହେବ ନାହିଁ । ଏପରି ହେଲେ ସମାଜରେ କିଛି ନିୟମ ବା ଶୃଙ୍ଖଳା ରହିବ ନାହିଁ । ସବୁଆଡ଼େ ଅବ୍ୟବସ୍ଥା ପରିପ୍ରକାଶ ହୋଇଯିବ । ପରନ୍ତୁ ଭାରତୀୟ ବର୍ଣ୍ଣଧର୍ମରେ ଏପରି ନାହିଁ । ଯଦି କେବଳ କର୍ମଦ୍ୱାରା ବର୍ଣ୍ଣକୁ ମାନିନିଆଯାଉଥାଆନ୍ତା, ତେବେ ଯୁଦ୍ଧସମୟରେ ବ୍ରାହ୍ମଣୋଚିତ କର୍ମ କରିବାକୁ ପ୍ରସ୍ତୁତ ଥିବା ଅର୍ଜୁନଙ୍କୁ ଗୀତାରେ ଭଗବାନ୍ କ୍ଷତ୍ରିୟଧର୍ମ ଉପଦେଶ ଦେଇ ନ ଥାନ୍ତେ । ପୂର୍ବକୃତ ଶୁଭାଶୁଭ କର୍ମ ଅନୁସାରେ ମନୁଷ୍ୟର ବିଭିନ୍ନ ବର୍ଣ୍ଣରେ ଜନ୍ମ ହୁଏ । ଯାହାର ଯେଉଁ ବର୍ଣ୍ଣରେ ଜନ୍ମ ହୁଏ, ସେ ସେହି ବର୍ଣ୍ଣର ନିର୍ଦ୍ଦିଷ୍ଟ ଆଚରଣ କରିବା ଉଚିତ । କାରଣ ତାହା ତା'ର ସ୍ୱଧର୍ମ । ଏବଂ ସ୍ୱଧର୍ମ ପାଳନ କରୁ କରୁ ମରିଯିବାକୁ ପଡ଼ିଲେ ବି ତାହା କଲ୍ୟାଣକାରକ ହୁଏ ବୋଲି ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି, 'ସ୍ୱଧର୍ମେ ନିଧନଂ ଶ୍ରେୟଃ' । ତା' ସଙ୍ଗେ ସଙ୍ଗେ ପରଧର୍ମକୁ ଭୟାବହ ବୋଲି ମଧ୍ୟ କହିଛନ୍ତି । ଏହା ହିଁ ଠିକ୍ । କାରଣ, ସବୁ ବର୍ଣ୍ଣର ସ୍ୱଧର୍ମପାଳନରେ ହିଁ ସାମାଜିକ ଶକ୍ତିର ସାମଞ୍ଜସ୍ୟ ରହେ ଏବଂ ତେବେ ଯାଇ ସମାଜ-ଧର୍ମର ରକ୍ଷା ଓ ଉନ୍ନତି ହୁଏ । ସ୍ୱଧର୍ମତ୍ୟାଗ ଓ ପରଧର୍ମଗ୍ରହଣ ବ୍ୟକ୍ତି ଓ ସମାଜ ଉଭୟଙ୍କ ପାଇଁ କ୍ଷତିକାରକ । ଅତୀବ ଦୁଃଖର ବିଷୟ ଯେ, ବିଭିନ୍ନ କାରଣରୁ ଆର୍ଯ୍ୟଜାତିର ଏହି ବର୍ଣ୍ଣବ୍ୟବସ୍ଥା ଆଜିକାଲି ଶିଥିଳ ହୋଇଯାଉଛି । ଆଜି କୌଣସି ବର୍ଣ୍ଣ ନିଜ ଧର୍ମରେ ଆରୂଢ଼ ନୁହେଁ, ସମସ୍ତେ ମନମୁଖି ଆଚରଣ କରିବାକୁ ପ୍ରସ୍ତୁତ ହୋଇଗଲେଣି ଏବଂ ତାହାର କୁଫଳ ମଧ୍ୟ ପ୍ରତ୍ୟକ୍ଷ ଦେଖାଯାଉଛି ।

**ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।। ୪୬ ।।**

**ଅନ୍ୱୟ –** **ଯତଃ** = ଯେଉଁ ପରମେଶ୍ୱରଙ୍କ ଠାରୁ; **ଭୂତାନାମ୍** = ସମସ୍ତ ପ୍ରାଣୀଙ୍କ; **ପ୍ରବୃତ୍ତିଃ** = ଉତ୍ପତ୍ତି ହୋଇଛି (ଏବଂ); **ଯେନ** = ଯାହାଙ୍କ ଦ୍ୱାରା; **ଇଦମ୍** = ଏହି; **ସର୍ବମ୍** = ସମସ୍ତ (ଜଗତ); **ତତମ୍** = ବ୍ୟାପ୍ତ ହୋଇଛି; **ତମ୍** = ସେହି ପରମେଶ୍ୱରଙ୍କୁ; **ସ୍ୱକର୍ମଣା** = ନିଜର ସ୍ୱାଭାବିକ କର୍ମଦ୍ୱାରା; **ଅଭ୍ୟର୍ଚ୍ୟ** = ପୂଜା କରି; **ମାନବଃ** = ମନୁଷ୍ୟ; **ସିଦ୍ଧିମ୍** = ପରମସିଦ୍ଧିକୁ; **ବିନ୍ଦତି** = ପାଇଥାଏ ।

**ଯେଉଁ ପରମେଶ୍ୱରଙ୍କ ଠାରୁ ସମସ୍ତ ପ୍ରାଣୀ ଉତ୍ପନ୍ନ ହୋଇଛନ୍ତି ଏବଂ ଯାହାଙ୍କ ଦ୍ୱାରା ଏହି ସମସ୍ତ ଜଗତ ପରିବ୍ୟାପ୍ତ ହୋଇଛି, ସେହି ପରମେଶ୍ୱରଙ୍କୁ ନିଜର ସ୍ୱାଭାବିକ କର୍ମମାନଙ୍କ ଦ୍ୱାରା ପୂଜା କରି ମନୁଷ୍ୟ ପରମସିଦ୍ଧି ପାଇଥାଏ ।। ୪୬ ।।**

**ପ୍ରଶ୍ନ –** 'ଯେଉଁ ପରମେଶ୍ୱରଙ୍କ ଠାରୁ ସମସ୍ତ ପ୍ରାଣୀ ଉତ୍ପନ୍ନ ହୋଇଛନ୍ତି ଏବଂ ଯାହାଙ୍କ ଦ୍ୱାରା ଏହି ସମସ୍ତ ଜଗତ ବ୍ୟାପ୍ତ ହୋଇଛି,' – ଏ କଥାର ଭାବ କ'ଣ ?

**ଉତ୍ତର –** ନିଜ ନିଜ କର୍ମମାନଙ୍କ ଦ୍ୱାରା ଭଗବାନଙ୍କୁ ପୂଜା କରିବାର ବିଧି କହିବାପାଇଁ ଏହି କଥନଦ୍ୱାରା ପ୍ରଥମେ ଭଗବାନଙ୍କ ଗୁଣ, ପ୍ରଭାବ ଏବଂ ଶକ୍ତିସହିତ ତାଙ୍କର ସର୍ବବ୍ୟାପୀ ସ୍ୱରୂପକୁ ଲକ୍ଷ୍ୟ କରାଇଦିଆଯାଇଛି । ଅଭିପ୍ରାୟ ଏହି ଯେ, ନିଜର ପ୍ରତ୍ୟେକ କର୍ତ୍ତବ୍ୟକର୍ମ ପାଳନ କରିବା ସମୟରେ ମନୁଷ୍ୟର ଧ୍ୟାନ ରହିବା ଉଚିତ ଯେ, ସମସ୍ତ ଚରାଚର ପ୍ରାଣୀଙ୍କ ସହିତ ଏହି ସମଗ୍ର ବିଶ୍ୱ ଭଗବାନଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି ଏବଂ ଭଗବାନଙ୍କ ଦ୍ୱାରା ହିଁ ବ୍ୟାପ୍ତ ହୋଇଛି, ଅର୍ଥାତ୍ ଭଗବାନ୍ ହିଁ ନିଜ ଯୋଗମାୟାଦ୍ୱାରା ଜଗତରୂପରେ ପ୍ରକଟ ହୋଇଛନ୍ତି । ତେଣୁ ଏହି ଜଗତ୍ ହେଉଛି ତାଙ୍କରି ସ୍ୱରୂପ । ଏହି ସମସ୍ତ ବିଶ୍ୱ ଭଗବାନଙ୍କ ଦ୍ୱାରା କିପରି ବ୍ୟାପ୍ତ ହୋଇଛି, ତାହା ନବମ ଅଧ୍ୟାୟର ଚତୁର୍ଥ ଶ୍ଳୋକର ବ୍ୟାଖ୍ୟାରେ ବୁଝାଇଦିଆଯାଇଛି ।

**ପ୍ରଶ୍ନ –** ନିଜର ସ୍ୱାଭାବିକ କର୍ମଦ୍ୱାରା ସେହି ପରମେଶ୍ୱରଙ୍କୁ ପୂଜା କରିବା କ'ଣ ?

**ଉତ୍ତର –** 'ଭଗବାନ୍ ଏହି ଜଗତର ଉତ୍ପତ୍ତି, ସ୍ଥିତି ଏବଂ ସଂହାରକାରୀ, ସର୍ବଶକ୍ତିମାନ୍, ସର୍ବାଧାର, ସମସ୍ତଙ୍କର ପ୍ରେରଣାଦାତା, ସମସ୍ତଙ୍କର ଆତ୍ମା, ସର୍ବାନ୍ତର୍ଯାମୀ ଓ ସର୍ବବ୍ୟାପୀ । ଏହି ସମସ୍ତ ଜଗତ ତାଙ୍କରି ହିଁ ରଚନା ଏବଂ ସେ ସ୍ୱୟଂ ନିଜର ଯୋଗମାୟାଦ୍ୱାରା ଜଗତରୂପରେ ପ୍ରକଟ ହୋଇଛନ୍ତି । ଅତଏବ ଏହି ସମସ୍ତ ଜଗତ୍ ଭଗବାନଙ୍କର; ମୋର ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ତଥା ମୋଦ୍ୱାରା ଯାହାକିଛି ମଧ୍ୟ ଯଜ୍ଞ, ଦାନ ଆଦି ସ୍ୱବର୍ଣ୍ଣୋଚିତ କର୍ମ କରାଯାଉଛି, ସେସବୁ ମଧ୍ୟ ଭଗବାନଙ୍କର ଏବଂ ମୁଁ ସ୍ୱୟଂ ବି ଭଗବାନଙ୍କର; ସମସ୍ତ ଦେବତାଙ୍କର ଏବଂ ଅନ୍ୟ ପ୍ରାଣୀମାନଙ୍କର ଆତ୍ମା ହୋଇଥିବାରୁ ସେ ହିଁ ସମସ୍ତ କର୍ମର ଭୋକ୍ତା (୫/୨୯) ।' ପରମ ଶ୍ରଦ୍ଧା ଓ ବିଶ୍ୱାସସହିତ ଏପରି ବୁଝି, ସମସ୍ତ କର୍ମରେ ସର୍ବଥା ମମତ୍ୱ, ଆସକ୍ତି ଓ ଫଳେଚ୍ଛା ତ୍ୟାଗ କରି ଭଗବାନଙ୍କର ଆଜ୍ଞାନୁସାରେ ତାଙ୍କରି ପ୍ରସନ୍ନତାନିମନ୍ତେ ନିଜର ସ୍ୱାଭାବିକ କର୍ମଦ୍ୱାରା ସମସ୍ତ ଜଗତର ସେବା କରିବା ଅର୍ଥାତ୍, ସମସ୍ତ ପ୍ରାଣୀଙ୍କୁ ସୁଖ ଦେବାନିମନ୍ତେ ଉପରୋକ୍ତପ୍ରକାରେ ସ୍ୱାର୍ଥ ତ୍ୟାଗ କରି ନିଜର କର୍ତ୍ତବ୍ୟ ପାଳନ କରିବା ହିଁ ନିଜର ସ୍ୱାଭାବିକ କର୍ମଗୁଡ଼ିକଦ୍ୱାରା ପରମେଶ୍ୱରଙ୍କୁ ପୂଜା କରିବା ।

**ପ୍ରଶ୍ନ –** ଉପରୋକ୍ତପ୍ରକାରେ 'ନିଜର କର୍ମଦ୍ୱାରା ଭଗବାନଙ୍କୁ ପୂଜା କରି ମନୁଷ୍ୟ ପରମସିଦ୍ଧି ପ୍ରାପ୍ତ ହୋଇଯାଏ', –ଏହି କଥନର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଯେକୌଣସି ବର୍ଣ୍ଣର ବା ଆଶ୍ରମର ହେଉ ନା କାହିଁକି, ପ୍ରତ୍ୟେକ ମନୁଷ୍ୟ ନିଜ କର୍ମଦ୍ୱାରା ଭଗବାନଙ୍କୁ ପୂଜା କରି ପରମ ସିଦ୍ଧିରୂପ ପରମାତ୍ମାଙ୍କୁ ପାଇପାରେ; ପରମାତ୍ମାଙ୍କୁ ପାଇବାରେ ସମସ୍ତଙ୍କର ସମାନ ଅଧିକାର ରହିଛି । ନିଜର ଶମ, ଦମ, ଆଦି କର୍ମମାନଙ୍କୁ ଉପରୋକ୍ତପ୍ରକାରେ ଭଗବାନଙ୍କୁ ସମର୍ପଣ କରି ସେସବୁ ଦ୍ୱାରା ପ୍ରଭୁଙ୍କୁ ପୂଜା କରୁଥିବା ବ୍ରାହ୍ମଣ ଯେଉଁ ପଦ ପାଏ, ନିଜର ଶୂରବୀରତା ଆଦି କର୍ମଦ୍ୱାରା ଭଗବାନଙ୍କୁ ପୂଜା କରୁଥିବା କ୍ଷତ୍ରିୟ ମଧ୍ୟ ସେହି ପଦ ପାଏ; ସେହିପରି ନିଜର କୃଷି ଆଦି କର୍ମମାନଙ୍କ ଦ୍ୱାରା ଭଗବାନଙ୍କୁ

ପୂଜା କରୁଥିବା ବୈଶ୍ୟ ତଥା ସେବାସମ୍ବନ୍ଧୀ ସ୍ୱଧର୍ମ ପାଳନରୂପକ କର୍ମମାନଙ୍କ ଦ୍ୱାରା ଭଗବାନଙ୍କୁ ପୂଜା କରୁଥିବା ଶୂଦ୍ର ମଧ୍ୟ ସେହି ପରମପଦ ପାଏ। ଅତଏବ କର୍ମବନ୍ଧନରୁ ମୁକ୍ତ ହୋଇ ପରମାତ୍ମାଙ୍କୁ ପାଇବାର ଏହା ଏକ ଅତ୍ୟନ୍ତ ସୁଗମ ମାର୍ଗ। ତେଣୁ ମନୁଷ୍ୟ ଉପରୋକ୍ତଭାବରେ ନିଜର କର୍ତ୍ତବ୍ୟପାଳନଦ୍ୱାରା ପରମେଶ୍ୱରଙ୍କୁ ପୂଜା କରିବାର ଅଭ୍ୟାସ କରିବା ଉଚିତ।

**ସମ୍ବନ୍ଧ—** *ପୂର୍ବଶ୍ଳୋକରେ କୁହାଗଲା ଯେ, ମନୁଷ୍ୟ ନିଜର ସ୍ୱାଭାବିକ କର୍ମମାନଙ୍କ ଦ୍ୱାରା ପରମେଶ୍ୱରଙ୍କୁ ପୂଜା କରି ପରମସିଦ୍ଧି ପାଇପାରେ। ଏଥିରୁ ଶଙ୍କା ହୁଏ: ଯଦି କୌଣସି କ୍ଷତ୍ରିୟ ନିଜର ଯୁଦ୍ଧାଦି କ୍ରୂରକର୍ମ ନ କରି, ବ୍ରାହ୍ମଣଙ୍କ ପରି ଅଧ୍ୟାପନାଦି ଶାନ୍ତିମୟ କର୍ମରେ ନିଜର ଜୀବନ ନିର୍ବାହ କରି ପରମାତ୍ମାଙ୍କୁ ପାଇବାର ଚେଷ୍ଟା କରେ ବା ଏହିପରି କୌଣସି ବୈଶ୍ୟ ବା ଶୂଦ୍ର ନିଜର କର୍ମକୁ ଉଚ୍ଚବର୍ଣ୍ଣର କର୍ମ ଅପେକ୍ଷା ନୀଚ ବୋଲି ଭାବି ତ୍ୟାଗ କରିଦିଏ ଏବଂ ନିଜଠାରୁ ଉଚ୍ଚ ବର୍ଣ୍ଣର ବୃତ୍ତିଦ୍ୱାରା ନିଜର ଜୀବନ ନିର୍ବାହ କରି ପରମାତ୍ମାଙ୍କୁ ପାଇବାର ପ୍ରଯତ୍ନ କରେ, ତେବେ ତାହା ଉଚିତ ହେବ, ନା ନାହିଁ? ଶଙ୍କା ସମାଧାନ କରି ଭଗବାନ୍ ଅନ୍ୟ ଧର୍ମ ଅପେକ୍ଷା ସ୍ୱଧର୍ମକୁ ଶ୍ରେଷ୍ଠ ବୋଲି କହିଛନ୍ତି ଏବଂ ସ୍ୱଧର୍ମ ତ୍ୟାଗକୁ ନିଷେଧ କରିଛନ୍ତି—*

## ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍।
## ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍॥ ୪୭ ॥

**ଅନ୍ୱୟ—** **ସ୍ୱନୁଷ୍ଠିତାତ୍** = ଭଲଭାବରେ ଆଚରଣ କରାଯାଇଥିବା; **ପରଧର୍ମାତ୍** = ଅନ୍ୟର ଧର୍ମଠାରୁ; **ବିଗୁଣଃ** = ଗୁଣରହିତ; **(ଅପି)** = ହେଲେ ମଧ୍ୟ; **ସ୍ୱଧର୍ମଃ** = ନିଜର ଧର୍ମ; **ଶ୍ରେୟାନ୍** = ଶ୍ରେଷ୍ଠ ଅଟେ; **(ଯସ୍ମାତ୍)** = କାରଣ; **ସ୍ୱଭାବନିୟତମ୍** = ସ୍ୱଭାବଦ୍ୱାରା ନିୟତ କରାଯାଇଥିବା; **କର୍ମ** = ସ୍ୱଧର୍ମରୂପକ କର୍ମ; **କୁର୍ବନ୍** = ଆଚରଣ କରୁଥିବା (ମନୁଷ୍ୟ); **କିଲ୍ବିଷମ୍** = ପାପକୁ; **ନ, ଆପ୍ନୋତି** = ପ୍ରାପ୍ତ ହୁଏ ନାହିଁ।

**ଭଲଭାବରେ ଆଚରଣ କରାଯାଇଥିବା ପରଧର୍ମଠାରୁ ନିଜର ଧର୍ମ ଗୁଣରହିତ ହେଲେ ମଧ୍ୟ ଶ୍ରେଷ୍ଠ ଅଟେ; କାରଣ ସ୍ୱଭାବଦ୍ୱାରା ନିୟତ କରାଯାଇଥିବା ସ୍ୱଧର୍ମରୂପକ କର୍ମ ଆଚରଣ କରୁଥିବା ମନୁଷ୍ୟ ପାପଭାଗୀ ହୁଏ ନାହିଁ॥ ୪୭ ॥**

**ପ୍ରଶ୍ନ—** **ସ୍ୱନୁଷ୍ଠିତାତ୍** ବିଶେଷଣସହିତ **ପରଧର୍ମାତ୍** ପଦ କାହାର ବାଚକ ଏବଂ ଗୁଣରହିତ ସ୍ୱଧର୍ମକୁ ତାହାଠାରୁ ଶ୍ରେଷ୍ଠ ବୋଲି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଯେଉଁ ଧର୍ମର ଅନୁଷ୍ଠାନ ସାଙ୍ଗୋପାଙ୍ଗ କରାଯାଏ, ତାହାକୁ **ସୁ-ଅନୁଷ୍ଠିତ** କହନ୍ତି। ପରନ୍ତୁ ଏହି ଶ୍ଳୋକରେ 'ସ୍ୱଧର୍ମ' ସହିତ 'ବିଗୁଣ' ବିଶେଷଣ ଦିଆଯାଇଛି; ଏଣୁ 'ପରଧର୍ମ' ସହିତ 'ଗୁଣସମ୍ପନ୍ନ' ବିଶେଷଣ ଯୋଗ କରି ଏଠାରେ ବୁଝିବା ଉଚିତ ଯେ, ଯେଉଁ କର୍ମଗୁଡ଼ିକ ଗୁଣଯୁକ୍ତ ଏବଂ ଯେଉଁଗୁଡ଼ିକ ମଧ୍ୟ ପୂର୍ଣ୍ଣଭାବରେ ଅନୁଷ୍ଠାନ କରାଯାଏ, ଅଥଚ ଯେଉଁଗୁଡ଼ିକ ଅନୁଷ୍ଠାନକାରୀଙ୍କ ପାଇଁ ବିହିତ ନୁହେଁ, ଅନ୍ୟମାନଙ୍କ ପାଇଁ ବିହିତ, ଏଠାରେ **ସ୍ୱନୁଷ୍ଠିତାତ୍** ବିଶେଷଣ ସହିତ **ପରଧର୍ମାତ୍** ପଦଟି ହେଉଛି ସେପରି କର୍ମର ବାଚକ। ବୈଶ୍ୟ ଓ କ୍ଷତ୍ରିୟ ଆଦିଙ୍କ ସ୍ୱଧର୍ମ ଅପେକ୍ଷା ବ୍ରାହ୍ମଣର ବିଶେଷ ଧର୍ମମାନଙ୍କରେ ଅହିଂସାଦି ସଦ୍‌ଗୁଣ ଅଧିକ ମାତ୍ରାରେ ଥାଏ; ଗୃହସ୍ଥଧର୍ମ ଅପେକ୍ଷା ସନ୍ନ୍ୟାସ-ଆଶ୍ରମର ଧର୍ମମାନଙ୍କରେ ସଦ୍‌ଗୁଣର ବହୁଳତା ଥାଏ; ସେହିପରି ଶୂଦ୍ରର କର୍ମ ଅପେକ୍ଷା ବୈଶ୍ୟ ଓ କ୍ଷତ୍ରିୟର କର୍ମ ଗୁଣଯୁକ୍ତ ଅଟେ। ଅତଏବ ଉପରୋକ୍ତ ପରଧର୍ମ ଅପେକ୍ଷା ଗୁଣରହିତ ସ୍ୱଧର୍ମକୁ ଶ୍ରେଷ୍ଠ ବୋଲି କହି ଦେଖାଇଦିଆଯାଇଛି ଯେ, ପତି ଦେଖିବାକୁ କୁରୂପ ଓ ଗୁଣହୀନ ହେଲେ ମଧ୍ୟ ସ୍ତ୍ରୀପାଇଁ ନିଜର ପତିଙ୍କୁ ସେବା କରିବା ଯେପରି କଲ୍ୟାଣକର, ସେହିପରି ଦେଖିବାକୁ ଗୁଣହୀନ ହୋଇଥିଲେ ମଧ୍ୟ, ତଥା ଅନୁଷ୍ଠାନରେ ଅଙ୍ଗବୈଗୁଣ୍ୟ ହୋଇଯାଇଥିଲେ ମଧ୍ୟ ଯାହାପାଇଁ ଯେଉଁ କର୍ମ ବିହିତ, ତା'ପାଇଁ ତାହା ହିଁ କଲ୍ୟାଣପ୍ରଦ।

**ପ୍ରଶ୍ନ – ସ୍ୱଧର୍ମଃ** ପଦ କାହାର ବାଚକ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟପାଇଁ ଯେଉଁ କର୍ମ ବିହିତ, ତା'ପାଇଁ ତାହା ସ୍ୱଧର୍ମ । ଅଭିପ୍ରାୟ ଏହି ଯେ, ମିଥ୍ୟା, କପଟ, ଚୋରି, ହିଂସା, ଠକାମି, ବ୍ୟଭିଚାର ଆଦି ନିଷିଦ୍ଧକର୍ମ ତ କାହାରି ବି ସ୍ୱଧର୍ମ ନୁହେଁ ଏବଂ କାମ୍ୟକର୍ମ ମଧ କାହାରି ପାଇଁ ଅବଶ୍ୟକର୍ତ୍ତବ୍ୟ ନୁହେଁ; ତେଣୁ ଏଠାରେ କାହାରି ସ୍ୱଧର୍ମରେ ବି ସେସବୁ ଗଣନା କରାଯାଇ ନାହିଁ। ଏହା ଛଡ଼ା ଯେଉଁ ବର୍ଣ୍ଣ ଓ ଆଶ୍ରମ ନିମନ୍ତେ ଯେଉଁ ବିଶେଷଧର୍ମ କୁହାଯାଇଛି, ଯେଉଁଥିରେ ସେହି ଗୋଟିକ ବର୍ଣ୍ଣ ବା ଆଶ୍ରମ ଛଡ଼ା ଅନ୍ୟ କୌଣସି ବର୍ଣ୍ଣ-ଆଶ୍ରମୀଙ୍କ ଅଧିକାର ନାହିଁ, ତାହା ତ ସେହି ବର୍ଣ୍ଣ-ଆଶ୍ରମୀଙ୍କ ସ୍ୱଧର୍ମ ଏବଂ ଯେଉଁ କର୍ମଗୁଡ଼ିକରେ ଦ୍ୱିଜମାତ୍ରର ଅଧିକାର ଅଛି ବୋଲି କୁହାଯାଇଛି, ସେହି ବେଦାଧ୍ୟୟନ ଓ ଯଜ୍ଞାଦି କର୍ମ ଦ୍ୱିଜମାନଙ୍କ ନିମିତ୍ତ ସ୍ୱଧର୍ମ । ଯେଉଁଥିରେ ସମସ୍ତ ବର୍ଣ୍ଣାଶ୍ରମର ସ୍ତ୍ରୀ-ପୁରୁଷଙ୍କ ଅଧିକାର ରହିଛି, ସେହି ଈଶ୍ୱରଭକ୍ତି, ସତ୍ୟଭାଷଣ, ମାତୃପିତୃସେବା, ଇନ୍ଦ୍ରିୟସଂଯମ, ବ୍ରହ୍ମଚର୍ଯ୍ୟପାଳନ ଏବଂ ବିନୟ ଆଦି ସାମାନ୍ୟ ଧର୍ମ ସମସ୍ତଙ୍କର ସ୍ୱଧର୍ମ ।

**ପ୍ରଶ୍ନ –ସ୍ୱଧର୍ମ** ସହିତ **ବିଗୁଣଃ** ବିଶେଷଣ ଦେବାର ଅଭିପ୍ରାୟ କ'ଣ ?

**ଉତ୍ତର – ବିଗୁଣଃ** ପଦଟି ଗୁଣମାନଙ୍କ ନ୍ୟୂନତାର ଦ୍ୟୋତକ। କ୍ଷତ୍ରିୟର ସ୍ୱଧର୍ମ ଯୁଦ୍ଧ କରିବା, ଦୁଷ୍ଟଙ୍କୁ ଦଣ୍ଡ ଦେବା ଆଦି; ତା'ଠାରେ ଅହିଂସା ଓ ଶାନ୍ତି ଆଦି ଗୁଣମାନଙ୍କର ଅଭାବ ଦେଖାଯାଏ। ସେହିପରି ବୈଶ୍ୟର 'କୃଷି' ଆଦି କର୍ମମାନଙ୍କରେ ହିଂସା ଆଦି ଦୋଷର ବହୁଳତା ଥାଏ, ତେଣୁ ବ୍ରାହ୍ମଣର ଶାନ୍ତିମୟ କର୍ମମାନଙ୍କ ଅପେକ୍ଷା ସେଗୁଡ଼ିକ ମଧ ବିଗୁଣ ଅର୍ଥାତ୍ ଗୁଣହୀନ ଏବଂ ଶୂଦ୍ରର କର୍ମ ମଧ ବୈଶ୍ୟ ଏବଂ କ୍ଷତ୍ରିୟର କର୍ମ ଅପେକ୍ଷା ନିମ୍ନଶ୍ରେଣୀର। ଏହା ବ୍ୟତୀତ ସେହିସବୁ କର୍ମ ପାଳନରେ କୌଣସି ଅଙ୍ଗ ଛାଡ଼ି ହୋଇଯିବା ମଧ ଗୁଣର ନ୍ୟୂନତା। ଉପରୋକ୍ତପ୍ରକାରେ ସ୍ୱଧର୍ମରେ ଗୁଣର ନ୍ୟୂନତା ଦେଖାଯାଉଥିଲେ ମଧ ତାହା ପରଧର୍ମ ଅପେକ୍ଷା ଶ୍ରେଷ୍ଠ, ସେହି ଭାବ ଦେଖାଇବାକୁ **ସ୍ୱଧର୍ମ** ସହିତ **ବିଗୁଣ** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ – ସ୍ୱଭାବନିୟତମ୍** ବିଶେଷଣ ସହିତ **କର୍ମ** ପଦ କାହାର ବାଚକ ଏବଂ 'ତାହା କରୁଥିବା ମନୁଷ୍ୟ ପାପଭାଗୀ ହୁଏ ନାହିଁ', କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** ଯେଉଁ ବର୍ଣ୍ଣ ଓ ଆଶ୍ରମର ମନୁଷ୍ୟପାଇଁ ତା'ର ସ୍ୱଭାବ ଅନୁସାରେ ଯେଉଁ କର୍ମଗୁଡ଼ିକ ଶାସ୍ତ୍ରବିହିତ, ସେଗୁଡ଼ିକ ହିଁ ତା'ପାଇଁ **ସ୍ୱଭାବନିୟତ** କର୍ମ। ତେଣୁ ଏଠାରେ **ସ୍ୱଭାବନିୟତମ୍** ବିଶେଷଣ ସହିତ **କର୍ମ** ପଦଟି ଉପରୋକ୍ତ ସ୍ୱଧର୍ମର ହିଁ ବାଚକ। 'ସେହି କର୍ମ ଆଚରଣ କରି ମନୁଷ୍ୟ ପାପଭାଗୀ ହୁଏ ନାହିଁ'– ବୋଲି କହି ଦେଖାଇଦିଆଯାଇଛି ଯେ, ସେହିସବୁ କର୍ମ ନ୍ୟାୟପୂର୍ବକ ଆଚରଣ କରିବା ସମୟରେ ସେଥିରେ ଯେଉଁ ଆନୁଷଙ୍ଗିକ ହିଂସାଦି ପାପ ହୋଇଯାଏ, ତାହା ତାକୁ ଲାଗେ ନାହିଁ; କିନ୍ତୁ ଅନ୍ୟର ଧର୍ମ ପାଳନ କରିବାବେଳେ ସେଥିରେ ହିଂସାଦି ଦୋଷ କମ୍ ହେଉଥିଲେ ମଧ ପରବୃତ୍ତିଚ୍ଛେଦନ ଆଦି ପାପ ଲାଗେ। ତେଣୁ ସ୍ୱଧର୍ମ ଗୁଣରହିତ ହେଲେ ମଧ ଗୁଣଯୁକ୍ତ ପରଧର୍ମ ଅପେକ୍ଷା ଶ୍ରେଷ୍ଠ।

## ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।
## ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ ॥ ୪୮ ॥

**ଅନ୍ୱୟ –** **କୌନ୍ତେୟ** = ହେ କୁନ୍ତୀପୁତ୍ର !; **ସଦୋଷମ୍** = ଦୋଷଯୁକ୍ତ ହେଲେ; **ଅପି** = ମଧ; **ସହଜମ୍** = ସହଜ, ସ୍ୱାଭାବିକ; **କର୍ମ** = କର୍ମକୁ; **ନ, ତ୍ୟଜେତ୍** = ତ୍ୟାଗ କରିବା ଉଚିତ ନୁହେଁ; **ହି** = କାରଣ; **ଅଗ୍ନିଃ** = ଅଗ୍ନି; **ଧୂମେନ** = ଧୂଆଁଦ୍ୱାରା(ଆବୃତ ହୋଇଥିବା); **ଇବ** = ପରି; **ସର୍ବାରମ୍ଭାଃ** = ସମସ୍ତ କର୍ମ; **ଦୋଷେଣ** = (କୌଣସି ନା କୌଣସି) ଦୋଷଦ୍ୱାରା; **ଆବୃତାଃ** = ଯୁକ୍ତ।

**ଅତଏବ ହେ କୁନ୍ତୀପୁତ୍ର! ଦୋଷଯୁକ୍ତ ହେଲେ ମଧ୍ୟ ସ୍ୱାଭାବିକ କର୍ମ ତ୍ୟାଗ କରିବା ଉଚିତ ନୁହେଁ; କାରଣ ଅଗ୍ନି ଯେପରି ଧୂଆଁଦ୍ୱାରା ଆବୃତ ହୋଇଥାଏ, ସମସ୍ତ କର୍ମ ସେହିପରି କୌଣସି ନା କୌଣସି ଦୋଷରେ ଯୁକ୍ତ ହୋଇଥାଏ।। ୪୮ ।।**

**ପ୍ରଶ୍ନ –** ସହଜମ୍ ବିଶେଷଣ ସହିତ କର୍ମ ପଦଟି କେଉଁ କର୍ମମାନଙ୍କର ବାଚକ ତଥା 'ଦୋଷଯୁକ୍ତ ହେଲେ ମଧ୍ୟ ସହଜ କର୍ମମାନଙ୍କୁ ତ୍ୟାଗ କରିବା ଉଚିତ ନୁହେଁ' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁଯାୟୀ ଯାହାପାଇଁ ଯେଉଁ କର୍ମ କୁହାଯାଇଛି, ତାହାପାଇଁ ସେହି କର୍ମ ହିଁ **ସହଜ କର୍ମ**। ଅତଏବ ଏହି ଅଧ୍ୟାୟରେ **'ସ୍ୱଧର୍ମ'**, 'ସ୍ୱକର୍ମ', 'ନିୟତକର୍ମ', 'ସ୍ୱଭାବନିୟତକର୍ମ' ଏବଂ 'ସ୍ୱଭାବଜ' କର୍ମ ନାମରେ ଯେଉଁ କର୍ମମାନଙ୍କର ବର୍ଣ୍ଣନା ହୋଇଛି, ଏଠାରେ **ସହଜମ୍** ବିଶେଷଣ ସହିତ କର୍ମ ପଦଟି ହେଉଛି ସେମାନଙ୍କର ବାଚକ।

'ଦୋଷଯୁକ୍ତ ହେଲେ ମଧ୍ୟ ସହଜ କର୍ମ ତ୍ୟାଗ କରିବା ଉଚିତ ନୁହେଁ' – ଏହି ବାକ୍ୟଦ୍ୱାରା ଦେଖାଇଦିଆଯାଇଛି ଯେ, ଯେଉଁ ସ୍ୱାଭାବିକ କର୍ମଗୁଡ଼ିକ ଶ୍ରେଷ୍ଠ ଗୁଣରେ ଯୁକ୍ତ, ସେଗୁଡ଼ିକ ଯେ ତ୍ୟାଗ କରିବା ଉଚିତ ନୁହେଁ, ସେ ବିଷୟରେ ଆଉ ଅଧିକ କ'ଣ କହିବା ! କିନ୍ତୁ ଯେଉଁଥିରେ ସାଧାରଣତଃ ହିଂସାଦି ଦୋଷମାନଙ୍କର ମିଶ୍ରଣ ଦେଖାଯାଏ, ସେଗୁଡ଼ିକ ବି ଶାସ୍ତ୍ରବିହିତ ଓ ନ୍ୟାୟୋଚିତ ହୋଇଥିବାରୁ ଦୋଷଯୁକ୍ତ ଦେଖାଯାଉଥିଲେ ମଧ୍ୟ ବାସ୍ତବରେ ଦୋଷଯୁକ୍ତ ନୁହେଁ। ତେଣୁ ସେହି କର୍ମଗୁଡ଼ିକୁ ମଧ୍ୟ ତ୍ୟାଗ କରିବା ଉଚିତ ନୁହେଁ; ଅର୍ଥାତ୍ ସେଗୁଡ଼ିକ ଆଚରଣ କରିବା ଉଚିତ; କାରଣ ତାହା କଲେ ମନୁଷ୍ୟ ପାପଭାଗୀ ହୁଏ ନାହିଁ, ବରଂ ତାହା ତ୍ୟାଗ କଲେ ପାପଭାଗୀ ହୋଇପାରେ।

**ପ୍ରଶ୍ନ –** ହି ଅବ୍ୟୟ ପ୍ରୟୋଗ କରି 'ଧୂଆଁଦ୍ୱାରା ଅଗ୍ନି ଆବୃତ ହୋଇଥିବା ପରି ସମସ୍ତ କର୍ମ ଦୋଷଦ୍ୱାରା ଯୁକ୍ତ' କହିବାର ଅଭିପ୍ରାୟ କ'ଣ ?

**ଉତ୍ତର –** ହି ପଦ ଏଠାରେ ହେତୁ ଅର୍ଥରେ ପ୍ରୟୋଗ କରାଯାଇଛି। ତାହା ପ୍ରୟୋଗ କରି ଧୂଆଁଦ୍ୱାରା ଅଗ୍ନି ଆବୃତ ହୋଇଥିବାପରି ସମସ୍ତ କର୍ମ ଦୋଷଦ୍ୱାରା ଯୁକ୍ତ ବୋଲି କହିବାର ଅଭିପ୍ରାୟ ଏହି ଯେ, ଅଗ୍ନି ଯେପରି ଧୂଆଁଦ୍ୱାରା ଓତପ୍ରୋତ ହୋଇ ରହେ, ଧୂଆଁ ଯେପରି ସର୍ବଥା ଅଗ୍ନିରୁ ଅଲଗା ହୋଇ ରହିପାରେ ନାହିଁ, ସତ୍କ୍ରିୟା ସେହିପରି ଦୋଷଦ୍ୱାରା ଓତପ୍ରୋତ ହୋଇଥାଏ; ଯେକୌଣସି କ୍ରିୟା ହେଉ ନା କାହିଁକି, ତଦ୍ୱାରା କୌଣସି ନା କୌଣସି ପ୍ରାଣୀ ପ୍ରତି କୌଣସି ନା କୌଣସିପ୍ରକାରେ ହିଂସା ହୋଇଯାଏ; କାରଣ ସନ୍ନ୍ୟାସ ଆଶ୍ରମରେ ମଧ୍ୟ ଶୌଚ, ସ୍ନାନ ଏବଂ ଭିକ୍ଷାଟନାଦି କର୍ମଦ୍ୱାରା କୌଣସି ନା କୌଣସି ଅଂଶରେ ପ୍ରାଣୀମାନଙ୍କ ପ୍ରତି ହିଂସା ହୋଇଯାଏ ଏବଂ ବ୍ରାହ୍ମଣଙ୍କ ଯଜ୍ଞାଦି କର୍ମମାନଙ୍କରେ ମଧ୍ୟ କ୍ରିୟାମାନଙ୍କର ବହୁଳତାହେତୁ କ୍ଷୁଦ୍ର ପ୍ରାଣୀମାନଙ୍କ ପ୍ରତି ହିଂସା ହୋଇଯାଏ। ତେଣୁ କୌଣସି ବି ବର୍ଣ୍ଣ-ଆଶ୍ରମର କର୍ମ ସାଧାରଣଦୃଷ୍ଟିରୁ ସର୍ବଥା ଦୋଷରହିତ ନୁହେଁ ଏବଂ କର୍ମ ନ କରି କେହି ରହିପାରିବ ନାହିଁ (୩/୫)। ତେଣୁ ସ୍ୱଧର୍ମ ତ୍ୟାଗ କରିଦେଲେ ମଧ୍ୟ ମନୁଷ୍ୟକୁ କିଛି ନା କିଛି କର୍ମ କରିବାକୁ ପଡ଼ିବ, ଏବଂ ସେ ଯାହା କିଛି କରିବ, ତାହା ଦୋଷଯୁକ୍ତ ହେବ। ତେଣୁ ଅମୁକ କର୍ମ ନୀଚ କିମ୍ବା ଦୋଷଯୁକ୍ତ ବୋଲି ଭାବି ମନୁଷ୍ୟ ସ୍ୱଧର୍ମ ତ୍ୟାଗ କରିବା ଉଚିତ ନୁହେଁ; ବରଂ ସେଥିରେ ମମତ୍ୱ, ଆସକ୍ତି ଓ ଫଳେଚ୍ଛାରୂପକ ଦୋଷସବୁ ତ୍ୟାଗ କରି ତାହା ନ୍ୟାୟୋଚିତରୂପେ ଆଚରଣ କରିବା ଉଚିତ। ଏପରି କରିବାଦ୍ୱାରା ମନୁଷ୍ୟର ଅନ୍ତଃକରଣ ଶୁଦ୍ଧ ହୋଇ ତାକୁ ଶୀଘ୍ର ପରମାତ୍ମପ୍ରାପ୍ତି ହୋଇଯାଏ।

***ସମ୍ବନ୍ଧ –*** *ଅର୍ଜୁନଙ୍କ ଜିଜ୍ଞାସା ଅନୁସାରେ ତ୍ୟାଗ ଓ ସଂନ୍ୟାସର ତତ୍ତ୍ୱ ବୁଝାଇବାପାଇଁ ଭଗବାନ୍ ଚତୁର୍ଥରୁ ଦ୍ୱାଦଶ ଶ୍ଳୋକପର୍ଯ୍ୟନ୍ତ ତ୍ୟାଗ ବିଷୟ କହିଲେ ଏବଂ ତେରରୁ ଚାଳିଶ ଶ୍ଳୋକପର୍ଯ୍ୟନ୍ତ ସନ୍ନ୍ୟାସ ଅର୍ଥାତ୍ ସାଂଖ୍ୟ ନିରୂପଣ କଲେ। ପୁଣି ଏକଚାଳିଶ ଶ୍ଳୋକରୁ ଏପର୍ଯ୍ୟନ୍ତ କର୍ମଯୋଗରୂପକ ତ୍ୟାଗର ତତ୍ତ୍ୱ ବୁଝାଇବାପାଇଁ ସ୍ୱାଭାବିକ କର୍ମମାନଙ୍କର ସ୍ୱରୂପ ଓ ଅବଶ୍ୟକର୍ତ୍ତବ୍ୟତା ନିର୍ଦ୍ଦେଶ କରି, ତଥା କର୍ମଯୋଗରେ ଭକ୍ତିର ସହଯୋଗ ଦେଖାଇ ତାହାର ଫଳ ଭଗବତ୍ପ୍ରାପ୍ତି ବୋଲି କହିଲେ; କିନ୍ତୁ ସନ୍ନ୍ୟାସର କି ଫଳ ହୁଏ ଏବଂ କର୍ମରେ କର୍ତ୍ତାପଣ-ଅଭିମାନ ତ୍ୟାଗ କରି ଉପାସନା ସହିତ ସାଂଖ୍ୟଯୋଗ କିପରି ସାଧନା କରିବା ଉଚିତ,*

ସନ୍ନ୍ୟାସପ୍ରକରଣରେ ତାହା କହି ନାହାନ୍ତି। ଏଣୁ ଏଠାରେ ଉପାସନା ସହିତ ବିବେକ ଓ ବୈରାଗ୍ୟପୂର୍ବକ ଏକାନ୍ତରେ ରହି ସାଧନା କରିବାର ବିଧି ଓ ତାହାର ଫଳ ବୁଝାଇଦେବାପାଇଁ ଭଗବାନ୍ ପୁଣି ଥରେ ସାଂଖ୍ୟଯୋଗପ୍ରକରଣ ଆରମ୍ଭ କରୁଛନ୍ତି—

**ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତସ୍ପୃହଃ।**
**ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସଂନ୍ୟାସେନାଧିଗଚ୍ଛତି॥ ୪୯ ॥**

**ଅନ୍ୱୟ—** **ସର୍ବତ୍ର** = ସର୍ବତ୍ର; **ଅସକ୍ତବୁଦ୍ଧିଃ** = ଆସକ୍ତିରହିତ—ବୁଦ୍ଧିସମ୍ପନ୍ନ; **ବିଗତସ୍ପୃହଃ** = ନିଃସ୍ପୃହ (ଏବଂ); **ଜିତାତ୍ମା** = ଅନ୍ତଃକରଣକୁ ଜୟ କରିଥିବା ପୁରୁଷ; **ସଂନ୍ୟାସେନ** = ସାଂଖ୍ୟଯୋଗଦ୍ୱାରା; **ପରମାମ୍** = ସେହି ପରମ; **ନୈଷ୍କର୍ମ୍ୟସିଦ୍ଧିମ୍** = ନୈଷ୍କର୍ମ୍ୟସିଦ୍ଧିକୁ; **ଅଧିଗଚ୍ଛତି** = ପ୍ରାପ୍ତ ହୁଏ।

**ସର୍ବତ୍ର ଆସକ୍ତିରହିତ—ବୁଦ୍ଧିସମ୍ପନ୍ନ ତଥା ନିଃସ୍ପୃହ ହୋଇ ଅନ୍ତଃକରଣକୁ ଜୟ କରିଥିବା ପୁରୁଷ ସାଂଖ୍ୟଯୋଗଦ୍ୱାରା ସେହି ପରମ ନୈଷ୍କର୍ମ୍ୟସିଦ୍ଧି ପ୍ରାପ୍ତ ହୁଅନ୍ତି॥ ୪୯ ॥**

**ପ୍ରଶ୍ନ— ସର୍ବତ୍ର ଅସକ୍ତବୁଦ୍ଧିଃ, ବିଗତସ୍ପୃହଃ** ଏବଂ **ଜିତାତ୍ମା**— ଏହି ତିନୋଟି ବିଶେଷଣର ଅର୍ଥ କ'ଣ ଏବଂ ଏଗୁଡ଼ିକ କାହିଁକି ପ୍ରୟୋଗ କରାଯାଇଛି ?

**ଉତ୍ତର—** ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରରେ, ସେମାନଙ୍କ ଦ୍ୱାରା କରାଯାଉଥିବା କର୍ମରେ ତଥା ସମସ୍ତ ଭୋଗରେ ଏବଂ ଚରାଚର ପ୍ରାଣୀଙ୍କ ସମେତ ସମସ୍ତ ଜଗତରେ ଯାହାଙ୍କର ଆସକ୍ତି ସର୍ବଥା ଲୋପ ହୋଇଯାଇଥାଏ, ଅର୍ଥାତ୍ ଯାହାଙ୍କର ମନ ଓ ବୁଦ୍ଧିରେ କେବେ ବି କୌଣସି ବିଷୟ ପ୍ରତି କୌଣସି ଆକର୍ଷଣ ନ ଥାଏ, ସେ ହେଉଛନ୍ତି **ସର୍ବତ୍ର ଅସକ୍ତବୁଦ୍ଧିଃ**। ଯାହାଙ୍କର ସ୍ପୃହା ସର୍ବଥା ଲୋପ ହୋଇଯାଇଛି, ଯେ କୌଣସିପ୍ରକାର ସାଂସାରିକ ବସ୍ତୁ ଲୋଡ଼ନ୍ତି ନାହିଁ, ତାଙ୍କୁ **ବିଗତସ୍ପୃହଃ** କହନ୍ତି ଏବଂ ଯାହାଙ୍କ ଇନ୍ଦ୍ରିୟମାନେ ତଥା ଅନ୍ତଃକରଣ ନିଜର ବଶରେ ଅଛନ୍ତି, ତାଙ୍କୁ **ଜିତାତ୍ମା** କହନ୍ତି। ଏଠାରେ ସନ୍ନ୍ୟାସଯୋଗର ଅଧିକାରୀଙ୍କୁ ନିରୂପଣ କରିବାନିମନ୍ତେ ଏହି ତିନୋଟି ବିଶେଷଣ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଯେ ଉପରୋକ୍ତ ତିନିଗୁଣରେ ସମ୍ପନ୍ନ ହୁଅନ୍ତି, ସେହି ମନୁଷ୍ୟ ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କର ଯଥାର୍ଥ ଜ୍ଞାନ ପାଇପାରନ୍ତି।

**ପ୍ରଶ୍ନ—** ଏଠାରେ **ସନ୍ନ୍ୟାସେନ** ପଦଟି କେଉଁ ସାଧନାର ବାଚକ ଏବଂ **ପରମାମ୍** ବିଶେଷଣ ସହିତ **ନୈଷ୍କର୍ମ୍ୟସିଦ୍ଧିମ୍** ପଦଟି କେଉଁ ସିଦ୍ଧିର ବାଚକ ତଥା ସନ୍ନ୍ୟାସଦ୍ୱାରା ତାହା ପ୍ରାପ୍ତ ହେବା କଣ ?

**ଉତ୍ତର— ସନ୍ନ୍ୟାସେନ** ପଦଟି ଏଠାରେ ଜ୍ଞାନଯୋଗର ବାଚକ; ଏହାକୁ ସାଂଖ୍ୟଯୋଗ ମଧ୍ୟ କହନ୍ତି। ଏହାର ସ୍ୱରୂପ ଭଗବାନ୍ ଏକାବନରୁ ତେପନ ଶ୍ଳୋକପର୍ଯ୍ୟନ୍ତ ବର୍ଣ୍ଣନା କରିଛନ୍ତି। ଏହି ସାଧନାଫଳରେ ସାଧକ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇ ସଚ୍ଚିଦାନନ୍ଦଘନ ନିର୍ବିକାର ପରମାତ୍ମାଙ୍କର ଯଥାର୍ଥ ଜ୍ଞାନ ପାଇଯାଏ; ଏଠାରେ **ପରମାମ୍** ବିଶେଷଣ ସହିତ **ନୈଷ୍କର୍ମ୍ୟସିଦ୍ଧିମ୍** ପଦଟି ହେଉଛି ସେହି ପରମାତ୍ମତତ୍ତ୍ୱର ଯଥାର୍ଥ ଜ୍ଞାନପ୍ରାପ୍ତି। ଉପରୋକ୍ତ ସାଂଖ୍ୟଯୋଗଦ୍ୱାରା ପରମାତ୍ମାଙ୍କର ଯଥାର୍ଥ ଜ୍ଞାନପ୍ରାପ୍ତି ହିଁ ସନ୍ନ୍ୟାସଦ୍ୱାରା ଏହି ସିଦ୍ଧି ପ୍ରାପ୍ତ ହେବା।

**ସମ୍ବନ୍ଧ—** ଉପରୋକ୍ତ ଶ୍ଳୋକରେ କୁହାଯାଇଛି ଯେ, ସନ୍ନ୍ୟାସଦ୍ୱାରା ମନୁଷ୍ୟ ପରମ ନୈଷ୍କର୍ମ୍ୟସିଦ୍ଧି ପ୍ରାପ୍ତ ହୁଏ। ଏହା ଉପରେ ଜିଜ୍ଞାସା ହୁଏ, ସେହି ସନ୍ନ୍ୟାସ (ସାଂଖ୍ୟଯୋଗ)ର ସ୍ୱରୂପ କ'ଣ ଏବଂ ତାହାଦ୍ୱାରା ମନୁଷ୍ୟ କେଉଁ କ୍ରମରେ ସିଦ୍ଧି ପାଇ ବ୍ରହ୍ମପ୍ରାପ୍ତ ହୁଏ ? ଏଣୁ ଏହିସବୁ କଥା କହିବାର ପ୍ରସ୍ତାବନା କରି ଭଗବାନ୍ ଅର୍ଜୁନଙ୍କୁ ଶୁଣିବାନିମନ୍ତେ ସାବଧାନ କରୁଛନ୍ତି—

**ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧ ମେ।**
**ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା॥ ୫୦ ॥**

**ଅନ୍ୱୟ—** **ଯା** = ଯାହା; **ଜ୍ଞାନସ୍ୟ** = ଜ୍ଞାନଯୋଗର; **ପରା** = ପରା; **ନିଷ୍ଠା** = ନିଷ୍ଠା; **ସିଦ୍ଧିମ୍** = ସେହି ନୈଷ୍କର୍ମ୍ୟସିଦ୍ଧିକୁ; **ଯଥା** = ଯେଉଁ ପ୍ରକାରେ; **ପ୍ରାପ୍ତଃ** = ପ୍ରାପ୍ତ ହୋଇ (ମନୁଷ୍ୟ); **ବ୍ରହ୍ମ** = ବ୍ରହ୍ମ; **ଆପ୍ନୋତି** = ପ୍ରାପ୍ତ ହୁଏ;

ତଥା = ସେହି ପ୍ରକାରକୁ; **କୌନ୍ତେୟ** = ହେ କୁନ୍ତୀପୁତ୍ର ! (ତୁମେ); **ସମାସେନ** = ସଂକ୍ଷେପରେ; **ଏବ** = ହିଁ; **ମେ** = ମୋ ଠାରୁ; **ନିବୋଧ** = ବୁଝିନିଅ ।

**ଯାହା ଜ୍ଞାନଯୋଗର ପରାନିଷ୍ଠା ଅଟେ, ସେହି ନୈଷ୍କର୍ମ୍ୟସିଦ୍ଧିକୁ ଯେଉଁ ପ୍ରଣାଳୀରେ ଲାଭ କରି ମନୁଷ୍ୟ ବ୍ରହ୍ମପ୍ରାପ୍ତ ହୁଏ, ହେ କୁନ୍ତୀପୁତ୍ର! ସେହି ପ୍ରଣାଳୀ ତୁମେ ମୋଠାରୁ ସଂକ୍ଷେପରେ ବୁଝିନିଅ ।। ୫୦ ।।**

**ପ୍ରଶ୍ନ— ପରା** ବିଶେଷଣ ସହିତ ଏଠାରେ **ନିଷ୍ଠା** ପଦ କାହାର ବାଚକ ?

**ଉତ୍ତର—** ଯାହା ଜ୍ଞାନଯୋଗର ଅନ୍ତିମ ସ୍ଥିତି, ଯାହାକୁ ପରାଭକ୍ତି ଏବଂ ତତ୍ତ୍ୱଜ୍ଞାନ ମଧ କହନ୍ତି, ଯାହା ସମସ୍ତ ସାଧନାର ଅବଧି, ଏଠାରେ **ପରା** ବିଶେଷଣ ସହିତ **ନିଷ୍ଠା** ପଦଟି ହେଉଛି ତାହାର ବାଚକ । ଜ୍ଞାନଯୋଗର ସାଧନାସମୁଦାୟକୁ ଜ୍ଞାନନିଷ୍ଠା କହନ୍ତି ଏବଂ ସେହି ସାଧନାସମୁଦାୟର ଫଳରୂପକ ତତ୍ତ୍ୱଜ୍ଞାନକୁ ଜ୍ଞାନର **ପରାନିଷ୍ଠା** କହନ୍ତି ।

**ପ୍ରଶ୍ନ—** ଏଠାରେ **ସିଦ୍ଧିମ୍** ପଦଟି କାହାର ବାଚକ ?

**ଉତ୍ତର—** ଯାହାକୁ ପୂର୍ବଶ୍ଲୋକରେ **ନୈଷ୍କର୍ମ୍ୟସିଦ୍ଧି** ନାମରେ କୁହାଯାଇଛି, ଏଠାରେ ଯେଉଁ ଜ୍ଞାନର **ପରା ନିଷ୍ଠା** କଥା କୁହାଯାଇଛି ତଥା ଚୌବନ ଶ୍ଲୋକରେ ଯାହାକୁ ପରାଭକ୍ତି ନାମରେ ବର୍ଣ୍ଣନା କରାଯାଇଛି, **ସିଦ୍ଧିମ୍** ପଦଟି ହେଉଛି ତାହାର ବାଚକ ।

**ପ୍ରଶ୍ନ—** ଏଠାରେ **ଯଥା** ପଦର ଅର୍ଥ କ'ଣ ?

**ଉତ୍ତର—** ଶୁଦ୍ଧ ଅନ୍ତଃକରଣଯୁକ୍ତ ଅଧିକାରୀ ପୁରୁଷ ଯେଉଁ ବିଧିରେ ଜ୍ଞାନର ପରାନିଷ୍ଠା ଲାଭ କରି ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି, ଏଠାରେ **ଯଥା** ପଦଟି ହେଉଛି ସେହି ବିଧିର ଅର୍ଥାତ୍ ଅଙ୍ଗ-ପ୍ରତ୍ୟଙ୍ଗସହିତ ଜ୍ଞାନଯୋଗର ବାଚକ ।

**ପ୍ରଶ୍ନ—** ଉପରୋକ୍ତ ସିଦ୍ଧି ଲାଭ କରିଥିବା ପୁରୁଷଙ୍କର ବ୍ରହ୍ମପ୍ରାପ୍ତି କେବେ ହୁଏ ?

**ଉତ୍ତର—** ସିଦ୍ଧିଲାଭ ହେବା ପରେ ବ୍ରହ୍ମପ୍ରାପ୍ତିରେ ବିଳମ୍ବ ହୁଏ ନାହିଁ; ସେହିକ୍ଷଣି ପ୍ରାପ୍ତି ହୋଇଯାଏ ।

**ପ୍ରଶ୍ନ— ବ୍ରହ୍ମ** ପଦ କାହାର ବାଚକ ଏବଂ ତାହାକୁ ପ୍ରାପ୍ତ ହେବା ଅର୍ଥ କ'ଣ ?

**ଉତ୍ତର—** ଏଠାରେ **ବ୍ରହ୍ମ** ପଦଟି ହେଉଛି ନିତ୍ୟ-ନିର୍ବିକାର, ନିର୍ଗୁଣ-ନିରାକାର, ସଚ୍ଚିଦାନନ୍ଦଘନ, ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ବାଚକ ଏବଂ ତତ୍ତ୍ୱଜ୍ଞାନଦ୍ୱାରା ପଞ୍ଚାବନ ଶ୍ଲୋକର ବର୍ଣ୍ଣନାନୁସାରେ ଅଭିନ୍ନଭାବରେ ସେଥିରେ ପ୍ରବିଷ୍ଟ ହୋଇଯିବା ହିଁ ତାହାଙ୍କୁ ପ୍ରାପ୍ତ ହେବା ।

**ପ୍ରଶ୍ନ— ତଥା** ପଦ କାହାର ବାଚକ ଏବଂ 'ତାହା ତୁମେ ମୋଠାରୁ ସଂକ୍ଷେପରେ ବୁଝିନିଅ'— ଏହି କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଯେଉଁ ବିଧିକୁ **ଯଥା** ପଦଦ୍ୱାରା ଲକ୍ଷ୍ୟ କରାଇ ଦିଆଯାଇଛି, ଏଠାରେ **ତଥା** ପଦଟି ହେଉଛି ସେହି ବିଧିର ବାଚକ । 'ତାହା ତୁମେ ମୋଠାରୁ ସଂକ୍ଷେପରେ ବୁଝିନିଅ'— କହି ଭଗବାନ୍ ଜଣାଇଦେଉଛନ୍ତି, 'ମୁଁ ତାହା ବିସ୍ତାରରୂପେ ବର୍ଣ୍ଣନା ନ କରି ସଂକ୍ଷେପରେ ହିଁ କହିବି । ତେଣୁ ତୁମେ ସାବଧାନ ହୋଇ ଶୁଣ; ନ ହେଲେ ବୁଝିପାରିବ ନାହିଁ ।'

***ସମ୍ବନ୍ଧ—*** *ଗତ ଶ୍ଲୋକର ପ୍ରସ୍ତାବନା ଅନୁସାରେ ଭଗବାନ୍ ବର୍ତ୍ତମାନ ତିନୋଟି ଶ୍ଲୋକରେ ଅଙ୍ଗପ୍ରତ୍ୟଙ୍ଗ ସହିତ ଜ୍ଞାନଯୋଗ ବର୍ଣ୍ଣନା କରୁଛନ୍ତି—*

**ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।**
**ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ।। ୫୧ ।।**

**ବିବିକ୍ତସେବୀ ଲଘ୍ୱାଶୀ ଯତବାକ୍‌କାୟମାନସଃ ।**
**ଧ୍ୟାନଯୋଗପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ।। ୫୨ ।।**

**ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହମ୍ ।**
**ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ ।। ୫୩ ।।**

**ଅନ୍ୱୟ — ବିଶୁଦ୍ଧୟା** = ବିଶୁଦ୍ଧ; **ବୁଦ୍ଧ୍ୟା** = ବୁଦ୍ଧିଦ୍ୱାରା; **ଯୁକ୍ତଃ** = ଯୁକ୍ତ; **ଲଘ୍ୱାଶୀ** = ଲଘୁ, ସାତ୍ତ୍ୱିକ ଏବଂ ନିୟମିତଭୋଜୀ; **ଶବ୍ଦାଦୀନ୍** = ଶବ୍ଦାଦି; **ବିଷୟାନ୍** = ବିଷୟମାନଙ୍କୁ; **ତ୍ୟକ୍ତ୍ୱା** = ତ୍ୟାଗ କରି; **ବିବିକ୍ତସେବୀ** = ଏକାନ୍ତ ଏବଂ ପବିତ୍ର ଦେଶ (ସ୍ଥାନ)ରେ ବାସ କରୁଥିବା; **ଧୃତ୍ୟା** = ସାତ୍ତ୍ୱିକ ଧାରଣାଶକ୍ତିଦ୍ୱାରା; **ଆତ୍ମାନମ୍, ନିୟମ୍ୟ** = ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସଂଯମ କରି; **ଯତବାକ୍‌କାୟମାନସଃ** = ମନ, ବାଣୀ ଓ ଶରୀରକୁ ବଶରେ ରଖୁଥିବା; **ରାଗଦ୍ୱେଷୌ** = ରାଗ ଓ ଦ୍ୱେଷକୁ; **ବ୍ୟୁଦସ୍ୟ** = ସର୍ବଥା ତ୍ୟାଗ କରି; **ବୈରାଗ୍ୟମ୍** = ବୈରାଗ୍ୟକୁ; **ସମୁପାଶ୍ରିତଃ** = ଦୃଢ଼ଭାବରେ ଆଶ୍ରୟ କରିଥିବା; **ଚ** = ତଥା; **ଅହଙ୍କାରମ୍** = ଅହଙ୍କାର; **ବଳମ୍** = ବଳ; **ଦର୍ପମ୍** = ଗର୍ବ; **କାମମ୍** = କାମ; **କ୍ରୋଧମ୍** = କ୍ରୋଧ; **ଚ** = ଏବଂ; **ପରିଗ୍ରହମ୍** = ସଂଗ୍ରହ; **ବିମୁଚ୍ୟ** = ତ୍ୟାଗ କରି; **ନିତ୍ୟମ୍** = ନିରନ୍ତର; **ଧ୍ୟାନଯୋଗପରଃ** = ଧ୍ୟାନଯୋଗରେ ପରାୟଣ ହୋଇ ରହିଥିବା; **ନିର୍ମମଃ** = ମମତ୍ୱରହିତ (ଏବଂ); **ଶାନ୍ତଃ** = ପ୍ରଶାନ୍ତଚିତ୍ତ ପୁରୁଷ; **ବ୍ରହ୍ମଭୂୟାୟ** = ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥାନ କରିବାର; **କଳ୍ପତେ** = ପାତ୍ର ହୁଅନ୍ତି ।

**ବିଶୁଦ୍ଧବୁଦ୍ଧିରେ ଯୁକ୍ତ ହୋଇଥିବା, ସରଳ-ସାତ୍ତ୍ୱିକ-ନିୟମିତ ଆହାର କରୁଥିବା, ଶବ୍ଦାଦି ବିଷୟ ତ୍ୟାଗ କରି ଏକାନ୍ତ ଓ ପବିତ୍ର ସ୍ଥାନରେ ନିବାସ କରୁଥିବା, ସାତ୍ତ୍ୱିକ ଧାରଣଶକ୍ତିଦ୍ୱାରା ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସଂଯମ କରି ମନ, ବାଣୀ ଏବଂ ଶରୀରକୁ ବଶରେ ରଖୁଥିବା, ରାଗଦ୍ୱେଷକୁ ସର୍ବଥା ନଷ୍ଟ କରି ଦୃଢ଼ ବୈରାଗ୍ୟର ଆଶ୍ରୟ ନେଇଥିବା ତଥା ଅହଂକାର, ବଳ, ଗର୍ବ, କାମ, କ୍ରୋଧ ଓ ପରିଗ୍ରହ ତ୍ୟାଗ କରି ନିରନ୍ତର ଧ୍ୟାନଯୋଗରେ ପରାୟଣ ହୋଇ ରହୁଥିବା ମମତ୍ୱରହିତ ଓ ପ୍ରଶାନ୍ତଚିତ୍ତ ପୁରୁଷ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥିତ ହେବାର ପାତ୍ର ହୁଅନ୍ତି ॥ ୫୧-୫୨-୫୩ ॥**

**ପ୍ରଶ୍ନ — ବିଶୁଦ୍ଧ ବୁଦ୍ଧି** କାହାକୁ କହନ୍ତି ଏବଂ ସେଥିରେ ଯୁକ୍ତ ହେବା କ'ଣ ?

**ଉତ୍ତର —** ପୂର୍ବାର୍ଜିତ ପାପର ସଂସ୍କାରମାନଙ୍କରୁ ମୁକ୍ତ ହୋଇଥିବା ଅନ୍ତଃକରଣକୁ **ବିଶୁଦ୍ଧ ବୁଦ୍ଧି** କହନ୍ତି ଏବଂ ଯାହାଙ୍କର ଅନ୍ତଃକରଣ ଏହିପରି ଶୁଦ୍ଧ ହୋଇଯାଇଛି, ସେ ବିଶୁଦ୍ଧ ବୁଦ୍ଧିଦ୍ୱାରା ଯୁକ୍ତ ବୋଲି କୁହାଯାଏ ।

**ପ୍ରଶ୍ନ — ଲଘ୍ୱାଶୀ** କାହାକୁ କହନ୍ତି ?

**ଉତ୍ତର —** ଯେ ସାଧନାର ଉପଯୁକ୍ତ, ଅନାୟାସରେ ଜୀର୍ଣ୍ଣ ହୋଇଯାଉଥିବା ସାତ୍ତ୍ୱିକ ପଦାର୍ଥ (୧୭/୮) ତଥା ନିଜର ପ୍ରକୃତି, ଆବଶ୍ୟକତା ଏବଂ ଶକ୍ତି ଅନୁରୂପ ନିୟମିତ ଓ ପରିମିତ ଆହାର ଗ୍ରହଣ କରନ୍ତି (୬/୧୭), ସେପରି ପୁରୁଷଙ୍କୁ **ଲଘ୍ୱାଶୀ** କହନ୍ତି ।

**ପ୍ରଶ୍ନ —** ଶବ୍ଦାଦି ବିଷୟ ପରିତ୍ୟାଗପୂର୍ବକ ଏକାନ୍ତ ଏବଂ ଶୁଦ୍ଧ ଦେଶରେ ନିବାସ କରିବାର ଅର୍ଥ କ'ଣ ?

**ଉତ୍ତର —** ଇନ୍ଦ୍ରିୟମାନଙ୍କର ଯେତେ ସାଂସାରିକ ଭୋଗ ରହିଛି, ସେସବୁକୁ ତ୍ୟାଗ କରି ଅର୍ଥାତ୍ ସେସବୁକୁ ଭୋଗ କରିବାରେ ଜୀବନର ଅମୂଲ୍ୟ ସମୟ ନଷ୍ଟ ନ କରି ନିରନ୍ତର ସାଧନା କରିବାପାଇଁ ଯେଉଁ ସ୍ଥାନର ବାୟୁମଣ୍ଡଳ ଅତି ପବିତ୍ର, ଯେଉଁଠାରେ ବିଶେଷ ଲୋକଯାତାୟାତ ହୁଏ ନାହିଁ, ଯାହା ସ୍ୱଭାବତଃ ଏକାନ୍ତ ଓ ସ୍ୱଚ୍ଛ ବା ପରିଷ୍କାର କରି ଏବଂ ଧୁଆଧୋଇ କରି ଯାହାକୁ ସ୍ୱଚ୍ଛ କରିଦିଆଯାଇଥାଏ, ସେପରି ନଦୀତଟ, ଦେବାଳୟ, ବନ ଓ ପର୍ବତଗୁମ୍ଫା ଆଦି ସ୍ଥାନରେ ନିବାସ କରିବା ହିଁ ଶବ୍ଦାଦି ବିଷୟ ପରିତ୍ୟାଗପୂର୍ବକ ଏକାନ୍ତ ଓ ଶୁଦ୍ଧ ଦେଶରେ ନିବାସ କରିବା ।

**ପ୍ରଶ୍ନ —**ସାତ୍ତ୍ୱିକ ଧାରଣାଶକ୍ତିଦ୍ୱାରା ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସଂଯମ କରିବା କଣ ତଥା ଏପରି କରି ମନ, ବାଣୀ ଓ ଶରୀରକୁ ବଶ କରିନେବାର ଅର୍ଥ କଣ ?

**ଉତ୍ତର —** ଏହି ଅଧ୍ୟାୟର ତେତିଶ ଶ୍ଳୋକରେ ଯାହାର ଲକ୍ଷଣ କୁହାଯାଇଛି, ସେହି ଅଟଳ ଧାରଣାଶକ୍ତିଦ୍ୱାରା ଖୁବ ଆଗ୍ରହର ସହିତ ଅନ୍ତଃକରଣକୁ ସାଂସାରିକ ବିଷୟମାନଙ୍କ ଚିନ୍ତନରୁ ରହିତ କରି ଇନ୍ଦ୍ରିୟମାନଙ୍କୁ ସାଂସାରିକ ଭୋଗମାନଙ୍କରେ ପ୍ରବୃତ୍ତ ହେବାକୁ ନ ଦେବା ହିଁ ସାତ୍ତ୍ୱିକ ଧାରଣାଶକ୍ତିଦ୍ୱାରା ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସଂଯମ କରିବା । ଏହିପରି ସଂଯମଦ୍ୱାରା ମନ, ଇନ୍ଦ୍ରିୟ ଓ ଶରୀରକୁ ନିଜର ଅଧୀନ କରିନେବା, ସେଥିରେ ସ୍ୱେଚ୍ଛାଚାରିତା ଏବଂ ବୁଦ୍ଧିକୁ ବିଚଳିତ କରୁଥିବା ଶକ୍ତି ଶୂନ୍ୟ କରିଦେବା ହିଁ ମନ, ବାଣୀ ଓ ଶରୀରକୁ ବଶ କରିନେବା ।

**ପ୍ରଶ୍ନ —** ରାଗ ଓ ଦ୍ୱେଷ ସର୍ବଥା ତ୍ୟାଗ କରି ଦୃଢ଼ବୈରାଗ୍ୟ ଅବଲମ୍ବନ କରିବା କଣ ?

**ଉତ୍ତର —** ଇନ୍ଦ୍ରିୟମାନଙ୍କର ପ୍ରତ୍ୟେକ ଭୋଗରେ ରାଗ ଓ ଦ୍ୱେଷ ଛପି ରହିଥାଏ; ରାଗଦ୍ୱେଷ ହେଉଛି ସାଧକଙ୍କର ଘୋର ଶତ୍ରୁ (୩/୩୪) । ଅତଏବ ଇହଲୋକ ବା ପରଲୋକର କୌଣସି ବି ଭୋଗରେ, କୌଣସି

ବି ପ୍ରାଣୀଠାରେ ତଥା କୌଣସି ପଦାର୍ଥରେ, କ୍ରିୟାରେ ବା ଘଟଣାରେ ଲେଶମାତ୍ର ଆସକ୍ତି ବା ଦ୍ୱେଷ ନ ରହିବାକୁ ଦେବା ହିଁ ସର୍ବଥା ରାଗଦ୍ୱେଷ ତ୍ୟାଗ କରିଦେବା। ଏହିପରି ରାଗଦ୍ୱେଷ ତ୍ୟାଗ କରିଦେଇ ନିଃସ୍ପୃହଭାବରେ ନିରନ୍ତର ବୈରାଗ୍ୟରେ ମଗ୍ନ ରହିବା ହିଁ ରାଗଦ୍ୱେଷ ତ୍ୟାଗ କରି ଦୃଢ଼ ବୈରାଗ୍ୟର ଆଶ୍ରୟ ନେବା।

**ପ୍ରଶ୍ନ – ଅହଂକାର, ବଳ, ଦର୍ପ, କାମ, କ୍ରୋଧ** ଏବଂ **ପରିଗ୍ରହ** ତ୍ୟାଗ କରିବା ତଥା ଏସବୁ ତ୍ୟାଗ କରି ନିରନ୍ତର **ଧ୍ୟାନଯୋଗପରାୟଣ** ହେବା କ'ଣ ?

**ଉତ୍ତର –** ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣରେ ଯେଉଁ ଆତ୍ମବୁଦ୍ଧି ରହିଛି, ତାହାର ନାମ **ଅହଙ୍କାର**। ଅହଂକାରହେତୁ ମନ, ବୁଦ୍ଧି ଓ ଶରୀରଦ୍ୱାରା କରାଯାଉଥିବା କର୍ମମାନଙ୍କରେ ମନୁଷ୍ୟ ନିଜକୁ କର୍ତ୍ତା ବୋଲି ଧରିନିଏ। ସର୍ବଥା ସେହି ଦେହାଭିମାନ ତ୍ୟାଗ କରିଦେବା ହିଁ ଅହଙ୍କାର ତ୍ୟାଗ କରିଦେବା। ଅନ୍ୟାୟପୂର୍ବକ, ବଳପୂର୍ବକ ଅନ୍ୟ ଉପରେ ପ୍ରଭୁତ୍ୱ ପ୍ରଦର୍ଶନ କରିବାକୁ ଯେଉଁ ସାହସ ହୁଏ, ତାହାର ନାମ **ବଳ**। ଏପରି ଦୁଃସାହସ ସର୍ବଥା ତ୍ୟାଗ କରିଦେବା ହିଁ ବଳ ତ୍ୟାଗ କରିଦେବା। ଧନ, ଜନ, ବିଦ୍ୟା, ଜାତି ଏବଂ ଶାରୀରିକ ଶକ୍ତି ଆଦି ହେତୁ ଯେଉଁ ଗର୍ବ ହୁଏ, ତାହାର ନାମ **ଦର୍ପ**। ଏହି ଗର୍ବଭାବକୁ ସର୍ବଥା ତ୍ୟାଗ କରିଦେବା ହିଁ ଦର୍ପ ତ୍ୟାଗ କରିଦେବା। ଇହଲୋକ ଓ ପରଲୋକର ଭୋଗ ପ୍ରାପ୍ତ କରିବା ଇଚ୍ଛାର ନାମ **କାମ**। ଏହି ଇଚ୍ଛା ସର୍ବଥା ତ୍ୟାଗ କରିଦେବା ହିଁ କାମ ତ୍ୟାଗ କରିଦେବା। ନିଜର ମନ ଯାହା ଚାହେଁ, ତା'ର ପ୍ରତିକୂଳ ଆଚରଣ କରୁଥିବା ଲୋକ ଉପରେ ଏବଂ ନୀତିବିରୁଦ୍ଧ ବ୍ୟବହାର କରୁଥିବା ଲୋକ ପ୍ରତି ଅନ୍ତଃକରଣରେ ଯେଉଁ ଉତ୍ତେଜନା ଭାବ ଉତ୍ପନ୍ନ ହୁଏ, ଯାହାଫଳରେ ମନୁଷ୍ୟର ଚକ୍ଷୁ ନାଲି ହୋଇଯାଏ, ଓଠ ଥରିବାକୁ ଲାଗେ, ହୃଦୟରେ ଜ୍ୱଳନ ହୁଏ ଏବଂ ମୁଖ ବିକୃତ ହୋଇଯାଏ, ତାହାର ନାମ **କ୍ରୋଧ**। ସେହି ଉତ୍ତେଜନାକୁ ସର୍ବଥା ତ୍ୟାଗ କରିଦେବା ଏବଂ କୌଣସି ଅବସ୍ଥାରେ ବି ସେହି ଭାବ ଉତ୍ପନ୍ନ ହେବାକୁ ନ ଦେବା ହିଁ କ୍ରୋଧ ତ୍ୟାଗ କରିଦେବା। ସାଂସାରିକ ଭୋଗ ସାମଗ୍ରୀର ନାମ **ପରିଗ୍ରହ**। ଅତଏବ ସେସବୁ ସର୍ବଥା ପରିତ୍ୟାଗ କରିଦେବା ହିଁ ମୁଖ୍ୟଭାବରେ ପରିଗ୍ରହ ତ୍ୟାଗ କରିବା। ପରନ୍ତୁ ପ୍ରକାରାନ୍ତରେ ସାଂସାରିକ ସାମଗ୍ରୀ ଭୋଗ କରିବା ଉଦ୍ଦେଶ୍ୟରେ କୌଣସି ବସ୍ତୁ ସଂଗ୍ରହ ନ କରିବା ମଧ୍ୟ ପରିଗ୍ରହ ତ୍ୟାଗ କରିବା।

ଏପରିଭାବରେ ଏହିସବୁ ତ୍ୟାଗ କରି, ପୂର୍ବୋକ୍ତପ୍ରକାରେ ସାତ୍ତ୍ୱିକ ଧୃତିଦ୍ୱାରା ମନ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ ରୋଧ କରି, ସକଳପ୍ରକାର ସ୍ଫୁରଣା ସର୍ବଥା ଶୂନ୍ୟ କରିଦେଇ ନିତ୍ୟନିରନ୍ତର ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ଅଭିନ୍ନଭାବରେ ଚିନ୍ତନ କରିବା (୬/୨୫) ତଥା ଉଠିବା-ବସିବା, ଶୋଇବା-ଜାଗିବା ଏବଂ ଶୌଚ ହେବା, ଖାଇବା-ପିଇବା ଆଦି ବିଭିନ୍ନ ଆବଶ୍ୟକ କ୍ରିୟା କରିବା ସମୟରେ ମଧ୍ୟ ନିତ୍ୟନିରନ୍ତର ପରମାତ୍ମାଙ୍କ ସ୍ୱରୂପ ଚିନ୍ତନ କରି ରହିବା ଏବଂ ତାହା ହିଁ ସବୁଠାରୁ ବଡ଼ି ପରମକର୍ତ୍ତବ୍ୟ ବୋଲି ବୁଝିବା ହିଁ **ଧ୍ୟାନଯୋଗପରାୟଣ** ହୋଇ ରହିବା।

**ପ୍ରଶ୍ନ – ମମତ୍ୱଶୂନ୍ୟ** ହେବା କଣ ?

**ଉତ୍ତର –** ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀର ପ୍ରତି, ସମସ୍ତ ପ୍ରାଣୀ ଓ କର୍ମ ପ୍ରତି, ସମସ୍ତ ଭୋଗ ପ୍ରତି ଏବଂ ଜାତି, କୁଳ, ଦେଶ, ବର୍ଣ୍ଣ ଓ ଆଶ୍ରମ ପ୍ରତି ସର୍ବଥା ମମତ୍ୱ ତ୍ୟାଗ କରିଦେବା, କୌଣସି ବସ୍ତୁ, କ୍ରିୟା ବା ପ୍ରାଣୀଙ୍କ ଠାରେ 'ଅମୁକ ପଦାର୍ଥଟି ବା ପ୍ରାଣୀଟି ମୋର ଏବଂ ଅମୁକଟି ପରର'— ଏପରି ଭେଦଭାବ ରହିବାକୁ ନ ଦେବା ହିଁ **ମମତ୍ୱଶୂନ୍ୟ** ହେବା।

**ପ୍ରଶ୍ନ – ଶାନ୍ତଃ** ପଦ କିପରି ମନୁଷ୍ୟର ବାଚକ ?

**ଉତ୍ତର –** ଉପରୋକ୍ତ ସାଧନଗୁଡ଼ିକହେତୁ ଯାହାଙ୍କର ଅନ୍ତଃକରଣ ସର୍ବଥା ବିକ୍ଷେପଶୂନ୍ୟ ହୋଇଥାଏ ଏବଂ ଏହାରି ଦ୍ୱାରା ଯାହାଙ୍କର ଅନ୍ତଃକରଣ ଅଟଳଶାନ୍ତି ଓ ଶୁଦ୍ଧସାତ୍ତ୍ୱିକ ପ୍ରସନ୍ନତାରେ ପୂର୍ଣ୍ଣ ହୋଇ ରହେ, **ଶାନ୍ତଃ** ପଦଟି ହେଉଛି ସେପରି ଉପରତ ମନୁଷ୍ୟଙ୍କ ବାଚକ।

**ପ୍ରଶ୍ନ –**ଉପରୋକ୍ତ ବିଶେଷଣଗୁଡ଼ିକ ଦେଇ ''ଏପରି ପୁରୁଷ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥାନ କରିବାର ପାତ୍ର ହୁଅନ୍ତି''– କହିବାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଦେଖାଇଦିଆଯାଇଛି ଯେ, ଉପରୋକ୍ତପ୍ରକାରେ ସାଧନା କରୁଥିବା ମନୁଷ୍ୟ ଏହି ସାଧନାମାନଙ୍କରେ ସମ୍ପନ୍ନ ହେଲେ ବ୍ରହ୍ମଭାବ ପ୍ରାପ୍ତ ହେବାର ଅଧିକାରୀ ହୋଇଯାଆନ୍ତି ଏବଂ ସେହିକ୍ଷଣି ବ୍ରହ୍ମଭାବ ପ୍ରାପ୍ତ ହୋଇଯାଆନ୍ତି ଅର୍ଥାତ୍ ତାଙ୍କ ଦୃଷ୍ଟିରେ ଆତ୍ମା ଓ ପରମାତ୍ମାର ଭେଦଭାବ ସର୍ବଥା ନଷ୍ଟ ହୋଇଯାଇ 'ମୁଁ ହିଁ ସଚ୍ଚିଦାନନ୍ଦ ବ୍ରହ୍ମ' ବୋଲି ଦୃଢ଼ସ୍ଥିତି ଜନ୍ମିଥାଏ। ସେତେବେଳେ ସେ ସମସ୍ତ ଜଗତରେ ନିଜକୁ ସ୍ଥିତ ଏବଂ ସମସ୍ତ ଜଗତକୁ ନିଜଠାରେ କଳ୍ପିତ ବୋଲି ଦେଖନ୍ତି। (୬/୨୯)

*ସମ୍ବନ୍ଧ* — ଏପରିଭାବରେ ଅଙ୍ଗ-ପ୍ରତ୍ୟଙ୍ଗସହିତ ସନ୍ନ୍ୟାସର ତଥା ସାଂଖ୍ୟଯୋଗର ସ୍ୱରୂପ କହିସାରି ଭଗବାନ୍ ବର୍ତ୍ତମାନ ସେହି ସାଧନାଦ୍ୱାରା ବ୍ରହ୍ମଭାବ ପ୍ରାପ୍ତ ହୋଇଥିବା ଯୋଗୀଙ୍କର ଲକ୍ଷଣ କହୁଛନ୍ତି ଏବଂ ସେ ଜ୍ଞାନଯୋଗର ପରାନିଷ୍ଠାରୂପୀ ପରା-ଭକ୍ତି ପ୍ରାପ୍ତ ହୁଅନ୍ତି ବୋଲି କହୁଛନ୍ତି—

**ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍‌କ୍ଷତି।**
**ସମଃ ସର୍ବେଷୁ ଭୂତେଷୁ ମଦ୍‌ଭକ୍ତିଂ ଲଭତେ ପରାମ୍॥ ୫୪ ॥**

ଅନ୍ୱୟ— **ବ୍ରହ୍ମଭୂତଃ** = ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଏକୀଭାବରେ ସ୍ଥିତ; **ପ୍ରସନ୍ନାତ୍ମା** = ପ୍ରସନ୍ନଚିତ୍ତ ଯୋଗୀ; **ନ, ଶୋଚତି** = କାହାରି ପାଇଁ ଶୋକ କରେ ନାହିଁ (ଏବଂ); **ନ, କାଙ୍‌କ୍ଷତି** = କିଛି ବି ଆକାଙ୍‌କ୍ଷା କରେ ନାହିଁ; **ସର୍ବେଷୁ** = ସମସ୍ତ; **ଭୂତେଷୁ** = ପ୍ରାଣୀଙ୍କ ଠାରେ; **ସମଃ** = ସମଭାବସମ୍ପନ୍ନ (ସେହି) ଯୋଗୀ; **ପରାମ୍, ମଦ୍‌ଭକ୍ତିମ୍** = ମୋର ପରାଭକ୍ତିକୁ; **ଲଭତେ** = ଲାଭ କରେ।

**ପୁଣି ସେହି ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଏକୀଭାବରେ ସ୍ଥିତ ପ୍ରସନ୍ନଚିତ୍ତ ଯୋଗୀ କାହାରି ପାଇଁ ଶୋକ କରନ୍ତି ନାହିଁ, କି କିଛି ବି ଆକାଙ୍‌କ୍ଷା କରନ୍ତି ନାହିଁ। ସମସ୍ତ ପ୍ରାଣୀଙ୍କ ଠାରେ ସମଭାବସମ୍ପନ୍ନ ସେହି ଯୋଗୀ ମୋର ପରାଭକ୍ତି ଲାଭ କରନ୍ତି॥ ୫୪ ॥**

**ପ୍ରଶ୍ନ— ବ୍ରହ୍ମଭୂତଃ** କେଉଁ ସ୍ଥିତିଯୁକ୍ତ ଯୋଗୀଙ୍କ ବାଚକ ?

**ଉତ୍ତର—** ଯେ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥିତ ହୋଇଯାଆନ୍ତି, ଯାହାଙ୍କ ଦୃଷ୍ଟିରେ ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମଠାରୁ ଭିନ୍ନ ଅନ୍ୟ କୌଣସି ବସ୍ତୁର ସତ୍ତା ହିଁ ରହେ ନାହିଁ; **ଅହଂ ବ୍ରହ୍ମାସ୍ମି—** 'ମୁଁ ବ୍ରହ୍ମ ଅଟେ' (ବୃହଦାରଣ୍ୟକ-ଉ.୧/୪/୧୦), **ସୋଽହମସ୍ମି—** 'ସେହି ବ୍ରହ୍ମ ମୁଁ' ଆଦି ମହାବାକ୍ୟ ଅନୁସାରେ ଯାହାଙ୍କର ପରମାତ୍ମାଙ୍କ ଠାରେ ଅଭିନ୍ନଭାବରେ ନିତ୍ୟ ଅଚଳ ସ୍ଥିତି ହୋଇଯାଏ, ଏଠାରେ **ବ୍ରହ୍ମଭୂତଃ** ପଦଟି ହେଉଛି ସେହି ସାଂଖ୍ୟଯୋଗୀଙ୍କ ବାଚକ। ପଞ୍ଚମ ଅଧ୍ୟାୟର ଚବିଶ ଶ୍ଳୋକରେ ଏବଂ ଷଷ୍ଠ ଅଧ୍ୟାୟର ସତେଇଶ ଶ୍ଳୋକରେ ମଧ୍ୟ ଏହିପରି ସ୍ଥିତିଯୁକ୍ତ ଯୋଗୀଙ୍କୁ **ବ୍ରହ୍ମଭୂତ** କୁହାଯାଇଛି।

**ପ୍ରଶ୍ନ— ପ୍ରସନ୍ନାତ୍ମା** ପଦର ଭାବ କ'ଣ ?

**ଉତ୍ତର—** ଯାହାଙ୍କ ମନ ପବିତ୍ର, ସ୍ୱଚ୍ଛ ଏବଂ ଶାନ୍ତ ହୋଇଯାଇଛି, ତଥା ନିରନ୍ତର ଶୁଦ୍ଧ-ପ୍ରସନ୍ନ ହୋଇ ରହିଛି, ତାହାଙ୍କୁ **ପ୍ରସନ୍ନାତ୍ମା** କହନ୍ତି। ଏହି ବିଶେଷଣ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ବ୍ରହ୍ମଭାବ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଦୃଷ୍ଟିରେ ଏକ ସଚ୍ଚିଦାନନ୍ଦଘନ ବ୍ରହ୍ମଠାରୁ ଭିନ୍ନ ଅନ୍ୟ କୌଣସି ବି ବସ୍ତୁର ସତ୍ତା ରହେ ନାହିଁ; ତେଣୁ ତାଙ୍କର ମନ ସର୍ବଦା ପ୍ରସନ୍ନ ରହେ; କେବେ ବି କୌଣସି କାରଣରୁ କ୍ଷୁବ୍ଧ ହୁଏ ନାହିଁ।

**ପ୍ରଶ୍ନ—** 'ବ୍ରହ୍ମଭୂତ ଯୋଗୀ ଶୋକ କରନ୍ତି ନାହିଁ, କି କୌଣସି ଆକାଙ୍‌କ୍ଷା ରଖନ୍ତି ନାହିଁ',— ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଥିରେ ବ୍ରହ୍ମଭୂତ ଯୋଗୀଙ୍କ ଲକ୍ଷଣ କୁହାଯାଇଛି। ଅଭିପ୍ରାୟ ଏହି ଯେ, ବ୍ରହ୍ମଭୂତ ଯୋଗୀଙ୍କର ସର୍ବତ୍ର ବ୍ରହ୍ମବୁଦ୍ଧି ହୋଇଯିବାରୁ ସଂସାରର କୌଣସି ବି ବସ୍ତୁରେ ତାଙ୍କର ଭିନ୍ନ ପ୍ରତୀତି, ରମଣୀୟ-ବୁଦ୍ଧି ଓ ମମତ୍ୱ ରହେ ନାହିଁ। ଅତଏବ ଶରୀରାଦି ସହିତ କାହାରି ସଂଯୋଗ-ବିୟୋଗ ହେଲେ ମଧ୍ୟ ସେ କୌଣସିପ୍ରକାରେ ବିଚଳିତ ହୁଅନ୍ତି ନାହିଁ। ତେଣୁ ସେ କୌଣସି ବି ଅବସ୍ଥାରେ କୌଣସି ବି କାରଣରୁ ତିଳେମାତ୍ର ଚିନ୍ତା ବା ଶୋକ କରନ୍ତି ନାହିଁ ଏବଂ ସେ ପୂର୍ଣ୍ଣକାମ ହୋଇଯାଆନ୍ତି; କାରଣ କୌଣସି ବସ୍ତୁରେ ତାଙ୍କର ବ୍ରହ୍ମଠାରୁ ଭିନ୍ନ ଅନ୍ୟ ଦୃଷ୍ଟି ରହେ ନାହିଁ; ତେଣୁ ସେ କିଛି ଚାହାଁନ୍ତି ନାହିଁ।

**ପ୍ରଶ୍ନ— ସର୍ବେଷୁ ଭୂତେଷୁ ସମଃ—** ଏହି ବିଶେଷଣର ଭାବ କ'ଣ ?

**ଉତ୍ତର—** ଏହି ବିଶେଷଣଦ୍ୱାରା ସେହି ବ୍ରହ୍ମଭୂତ ଯୋଗୀଙ୍କର ସମସ୍ତ ପ୍ରାଣୀଙ୍କ ଠାରେ ସମଭାବ ରହୁଥିବା କଥା ଦେଖାଇଦିଆଯାଇଛି। ଅଭିପ୍ରାୟ ଏହି ଯେ, ସେ କୌଣସି ପ୍ରାଣୀଙ୍କୁ ନିଜଠାରୁ ଭିନ୍ନ ଦେଖନ୍ତି ନାହିଁ; ତେଣୁ ତାଙ୍କର କୌଣସିଥିରେ ମଧ୍ୟ ବିଷମଭାବ ରହେ ନାହିଁ। ସବୁଠାରେ ସମଭାବ ହୋଇଯାଏ। ଏହି ଭାବ ଷଷ୍ଠ ଅଧ୍ୟାୟର ଅଣତିରିଶ ଶ୍ଳୋକରେ **ସର୍ବତ୍ର ସମଦର୍ଶନଃ** ପଦଦ୍ୱାରା ଦେଖାଇଦିଆଯାଇଛି।

**ପ୍ରଶ୍ନ –** ଏଠାରେ **ପରାମ୍** ବିଶେଷଣ ସହିତ **ମଦ୍‌ଭକ୍ତିମ୍** ପଦ କାହାର ବାଚକ ?

**ଉତ୍ତର –** ଯାହା ଜ୍ଞାନଯୋଗର ଫଳ, ଯାହାକୁ ଜ୍ଞାନର ପରାନିଷ୍ଠା ଏବଂ ତତ୍ତ୍ୱଜ୍ଞାନ ମଧ୍ୟ କହନ୍ତି, ଏଠାରେ **ପରାମ୍** ବିଶେଷଣ ସହିତ **ମଦ୍‌ଭକ୍ତିମ୍** ପଦଟି ହେଉଛି ତାହାର ବାଚକ। କାରଣ ତାହା ପରମାତ୍ମାଙ୍କର ଯଥାର୍ଥ ସ୍ୱରୂପକୁ ସାକ୍ଷାତ୍ କରାଇଦେଇ ସେଥିରେ ଅଭିନ୍ନଭାବରେ ପ୍ରବିଷ୍ଟ କରାଇଦିଏ।

*ସମ୍ବନ୍ଧ – ବ୍ରହ୍ମଭୂତ ଯୋଗୀ ପରାଭକ୍ତି ଲାଭ କରନ୍ତି ବୋଲି କହିସାରି ବର୍ତ୍ତମାନ ତାହାର ଫଳ କହୁଛନ୍ତି।*

## ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ।
## ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରମ୍॥ ୫୫ ॥

**ଅନ୍ୱୟ –** **ଭକ୍ତ୍ୟା** = (ସେହି) ପରାଭକ୍ତିଦ୍ୱାରା (ସେ); **ମାମ୍** = ମୋତେ (ପରମାତ୍ମାଙ୍କୁ); **(ଅହମ୍)** = ମୁଁ; **ଯଃ** = କଣ; **ଚ** = ଏବଂ; **ଯାବାନ୍** = କିପରି ପ୍ରଭାବବିଶିଷ୍ଟ; **ଅସ୍ମି** = ଅଟେ; **ତତ୍ତ୍ୱତଃ, ଅଭିଜାନାତି** = ଠିକ୍ ସେହିପରି ତତ୍ତ୍ୱତଃ ଜାଣିପାରେ (ତଥା); **ତତଃ** = ସେହି ପରାଭକ୍ତିଦ୍ୱାରା; **ମାମ୍** = ମୋତେ; **ତତ୍ତ୍ୱତଃ** = ତତ୍ତ୍ୱତଃ; **ଜ୍ଞାତ୍ୱା** = ଜାଣି; **ତଦନନ୍ତରମ୍** = ସେହିକ୍ଷଣି; **ବିଶତେ** = (ମୋ ଭିତରେ) ପ୍ରବିଷ୍ଟ ହୋଇଯାଏ।

**ସେହି ପରାଭକ୍ତିଦ୍ୱାରା ସେ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ମୁଁ କ'ଣ ଓ କିପରି ପ୍ରଭାବବିଶିଷ୍ଟ, ତାହା ଠିକ୍ ସେହିପରି ତତ୍ତ୍ୱତଃ ଜାଣିପାରନ୍ତି ଏବଂ ସେହି ଭକ୍ତିଦ୍ୱାରା ମୋତେ ତତ୍ତ୍ୱତଃ ଜାଣି ସେହିକ୍ଷଣି ମୋ ଭିତରେ ପ୍ରବିଷ୍ଟ ହୋଇଯାଆନ୍ତି ଅର୍ଥାତ୍ ମୋସହିତ ଏକ ହୋଇଯାଆନ୍ତି॥ ୫୫ ॥**

**ପ୍ରଶ୍ନ –** ଏଠାର **ଭକ୍ତ୍ୟା** ପଦ କାହାର ବାଚକ ?

**ଉତ୍ତର –** ପୂର୍ବ ଶ୍ଳୋକରେ **ପରାମ୍** ବିଶେଷଣ ସହିତ **ମଦ୍‌ଭକ୍ତିମ୍** ପଦଦ୍ୱାରା ଏବଂ ପଚାଶ ଶ୍ଳୋକରେ ଜ୍ଞାନର ପରାନିଷ୍ଠା ନାମରେ ଯାହାର ବର୍ଣ୍ଣନା କରାଯାଇଛି, ଏଠାରେ **ଭକ୍ତ୍ୟା** ପଦଟି ହେଉଛି ସେହି ତତ୍ତ୍ୱଜ୍ଞାନର ବାଚକ। ଏହା ଜ୍ଞାନଯୋଗ, ଭକ୍ତିଯୋଗ, କର୍ମଯୋଗ ଏବଂ ଧ୍ୟାନଯୋଗ ଆଦି ସମସ୍ତ ସାଧନାର ଫଳ; ଏହାଦ୍ୱାରା ହିଁ ସାଧକମାନଙ୍କୁ ପରମାତ୍ମସ୍ୱରୂପର ଯଥାର୍ଥ ଜ୍ଞାନ ହୋଇଯାଏ ଓ ପରମାତ୍ମପ୍ରାପ୍ତି ହୋଇଯାଏ। ଏପରିଭାବରେ ସମସ୍ତ ସାଧନାର ଫଳମାନଙ୍କ ମଧ୍ୟରେ ଏକତ୍ୱ ପ୍ରତିଷ୍ଠା କରିବାପାଇଁ ହିଁ ଏଠାରେ ଜ୍ଞାନଯୋଗ ପ୍ରକରଣରେ **ଭକ୍ତ୍ୟା** ପଦ ପ୍ରୟୋଗ କରାଯାଇଛି।

**ପ୍ରଶ୍ନ –** 'ଏହି ଭକ୍ତିଦ୍ୱାରା ଯୋଗୀ ମୁଁ କିଏ ଓ କିପରି ପ୍ରଭାବବିଶିଷ୍ଟ, ତାହା ସମ୍ପୂର୍ଣ୍ଣରୂପେ ତତ୍ତ୍ୱତଃ ଜାଣିପାରନ୍ତି' – ଭଗବାନଙ୍କର ଏହି କଥାର ଭାବ କ'ଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ଏହି ପରାଭକ୍ତିରୂପକ ତତ୍ତ୍ୱଜ୍ଞାନପ୍ରାପ୍ତି ହେବା ସଙ୍ଗେ ସଙ୍ଗେ ସେହି ଯୋଗୀ ସେହି ତତ୍ତ୍ୱଜ୍ଞାନଦ୍ୱାରା ମୋର ଯଥାର୍ଥ ସ୍ୱରୂପକୁ ଜାଣିପାରନ୍ତି; ମୋର ନିର୍ଗୁଣ-ନିରାକାର ରୂପ କ'ଣ ଏବଂ ସଗୁଣ-ନିରାକାର ରୂପ କ'ଣ ଏବଂ ସଗୁଣ-ସାକାର ରୂପ କ'ଣ, ମୁଁ କିପରି ନିରାକାରରୁ ସାକାର ହୁଏ ଏବଂ ପୁଣି କିପରି ସାକାରରୁ ନିରାକାର ହୁଏ – ଇତ୍ୟାଦି କୌଣସି ବି ତତ୍ତ୍ୱ ଜାଣିବାପାଇଁ ତାଙ୍କର ଆଉ ବାକି ରହେ ନାହିଁ। ଅତଏବ ତାଙ୍କ ଦୃଷ୍ଟିରେ ଆଉ କୌଣସିପ୍ରକାର ଭେଦଭାବ ରହେ ନାହିଁ। ଏପରିଭାବରେ ଜ୍ଞାନଯୋଗସାଧନାରୁ ପ୍ରାପ୍ତ ହେଉଥିବା ନିର୍ଗୁଣ-ନିରାକାର ବ୍ରହ୍ମ ସହିତ ସଗୁଣ ବ୍ରହ୍ମର ଏକତ୍ୱ ଦେଖାଇବାନିମନ୍ତେ ଏଠାରେ ଜ୍ଞାନଯୋଗପ୍ରକରଣରେ ଭଗବାନ୍ **ବ୍ରହ୍ମ** ସ୍ଥାନରେ **ମାମ୍** ପଦ ପ୍ରୟୋଗ କରିଛନ୍ତି।

**ପ୍ରଶ୍ନ –** **ତତଃ** ପଦର ଅର୍ଥ କ'ଣ ?

**ଉତ୍ତର –** **ତତଃ** ପଦଟି ହେତୁବାଚକ। ପରମାତ୍ମାଙ୍କ ସ୍ୱରୂପର ଜ୍ଞାନ ହୋଇଯିବା ସଙ୍ଗେ ସଙ୍ଗେ ପରମାତ୍ମପ୍ରାପ୍ତି ହୋଇଯାଏ। ସେହି ଦୁଇ ବସ୍ତୁର ପ୍ରାପ୍ତି ମଧ୍ୟରେ ଆଉ କାଳର ବ୍ୟବଧାନ ରହେ ନାହିଁ। ତେଣୁ ଏଠାରେ **ତତଃ** ପଦର ଅର୍ଥ 'ତା'ପରେ' ବୋଲି କରାଯାଇ ନାହିଁ; ଯାହାର ପ୍ରକରଣ ଚାଲିଛି, **ତତଃ** ପଦଟି ହେଉଛି ସେହି ହେତୁର ବାଚକ। ଏଠାରେ **ଜ୍ଞାତ୍ୱା** ପଦ ସହିତ ତାହାର ହେତୁ ପୁନର୍ବାର କହିବା ଆବଶ୍ୟକ ମଧ୍ୟ ଥିଲା; ତେଣୁ

**ତତଃ** ପଦର ଅର୍ଥ ପୂର୍ବାର୍ଦ୍ଧରେ ବର୍ଣ୍ଣନା କରାଯାଇଥିବା 'ପରାଭକ୍ତି' ବୋଲି ବୁଝିବା ଉଚିତ।

**ପ୍ରଶ୍ନ –** ଏଠାରେ **ତଦନନ୍ତରମ୍** ପଦର ଅର୍ଥ ତତ୍କାଳ କିପରି କରାଗଲା ? **ଜ୍ଞାତ୍ୱା** ପଦ ସହିତ **ତଦନନ୍ତରମ୍** ପଦ ପ୍ରୟୋଗ କରାଯାଇଥିବାରୁ **ବିଶତେ** କ୍ରିୟାର ଭାବ : 'ପ୍ରଥମେ ମନୁଷ୍ୟ ଭଗବାନଙ୍କର ସ୍ୱରୂପକୁ ଯଥାର୍ଥରୂପେ ଜାଣେ ଏବଂ ତାହା ପରେ ସେଥିରେ ପ୍ରବିଷ୍ଟ ହୋଇଯାଏ' ହେବା ଉଚିତ ନୁହେଁ କି ?

**ଉତ୍ତର –** ସେପରି ନୁହେଁ। **ଜ୍ଞାତ୍ୱା** ପଦଦ୍ୱାରା ଯେଉଁ କାଳ-ବ୍ୟବଧାନର ଆଶଙ୍କା ହୋଇଥାଏ, ତାହା ଦୂର କରିବାପାଇଁ ଏଠାରେ **ତଦନନ୍ତରମ୍** ପଦ ପ୍ରୟୋଗ କରାଯାଇଛି। ଅଭିପ୍ରାୟ ଏହି ଯେ, ଭଗବାନଙ୍କର ତତ୍ତ୍ୱଜ୍ଞାନ ଏବଂ ତାହାର ପ୍ରାପ୍ତିରେ ଅନ୍ତର ଅର୍ଥାତ୍ କାଳ-ବ୍ୟବଧାନ ହୁଏ ନାହିଁ। ଭଗବାନଙ୍କ ସ୍ୱରୂପକୁ ଯଥାର୍ଥ ଜାଣିବା ଏବଂ ସେଥିରେ ପ୍ରବିଷ୍ଟ ହେବା – ଦୁଇଟିଯାକ କ୍ରିୟା ଏକ ସଙ୍ଗରେ ହୁଏ। ଭଗବାନ୍ ସମସ୍ତଙ୍କର ଆତ୍ମରୂପ ହୋଇଥିବାରୁ ବାସ୍ତବରେ କାହାରିକୁ ଅପ୍ରାପ୍ତ ନୁହନ୍ତି; ତେଣୁ ତାଙ୍କର ଯଥାର୍ଥ ସ୍ୱରୂପର ଜ୍ଞାନ ହୋଇଯିବା ସହିତ ହିଁ ତାଙ୍କର ପ୍ରାପ୍ତି ହୋଇଯାଏ। ଏହି ଭାବଟି ବୁଝାଇବାପାଇଁ ଏଠାରେ **ତଦନନ୍ତରମ୍** ପଦର ଅର୍ଥ **ତତ୍କାଳ** ବା ସେହିକ୍ଷଣି କରାଯାଇଛି; କାରଣ କାଳାନ୍ତରର ବୋଧ ତ 'ଜ୍ଞାତ୍ୱା' ପଦଦ୍ୱାରା ହୋଇଯାଉଛି, ତାହାପାଇଁ **ତଦନନ୍ତରମ୍** ପଦ ପ୍ରୟୋଗର ଆବଶ୍ୟକତା ନ ଥିଲା।

*ସମ୍ବନ୍ଧ – ଏପରିଭାବରେ ଅର୍ଜୁନଙ୍କର ଜିଜ୍ଞାସା ଅନୁସାରେ ତ୍ୟାଗର ଅର୍ଥାତ୍ କର୍ମଯୋଗର ଏବଂ ସନ୍ନ୍ୟାସର ଅର୍ଥାତ୍ ସାଂଖ୍ୟଯୋଗର ତତ୍ତ୍ୱ ପୃଥକ୍ ପୃଥକ୍ ବୁଝାଇଦେଇ ଏଠାରେ ସେହି ପ୍ରକରଣ ସମାପ୍ତ କରିଦେଲେ; କିନ୍ତୁ ଏହି ବର୍ଣ୍ଣନାରେ 'ଏହି ଦୁଇଟିମଧ୍ୟରୁ ତୁମପାଇଁ ଅମୁକ ସାଧନାଟି କର୍ତ୍ତବ୍ୟ' ବୋଲି ଭଗବାନ୍ କେଉଁଠି କହି ନାହାନ୍ତି। ଅତଏବ ଅର୍ଜୁନଙ୍କୁ ଭକ୍ତିପ୍ରଧାନ କର୍ମଯୋଗ ଗ୍ରହଣ କରାଇବା ଉଦ୍ଦେଶ୍ୟରେ ବର୍ତ୍ତମାନ ଭକ୍ତିପ୍ରଧାନ କର୍ମଯୋଗର ମହିମା କହୁଛନ୍ତି–*

**ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍ବ୍ୟପାଶ୍ରୟଃ।**
**ମତ୍ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍ ।। ୫୬ ।।**

**ଅନ୍ୱୟ –** **ମଦ୍ବ୍ୟପାଶ୍ରୟଃ** = ମୋର ପରାୟଣ ହୋଇଥିବା କର୍ମଯୋଗୀ (ତ); **ସର୍ବକର୍ମାଣି** = ସକଳ କର୍ମ; **ସଦା** = ସଦାସର୍ବଦା; **କୁର୍ବାଣଃ,** **ଅପି** = କରୁଥିଲେ ମଧ୍ୟ; **ମତ୍ପ୍ରସାଦାତ୍** = ମୋ କୃପାରୁ; **ଶାଶ୍ୱତମ୍** = ସନାତନ; **ଅବ୍ୟୟମ୍** = ଅବିନାଶୀ; **ପଦମ୍** = ପରମପଦକୁ; **ଅବାପ୍ନୋତି** = ପ୍ରାପ୍ତ ହୋଇଯାଆନ୍ତି।

**ମୋର ପରାୟଣ ହୋଇଥିବା କର୍ମଯୋଗୀ ତ ସଦାସର୍ବଦା ସକଳ କର୍ମ କରୁଥିଲେ ମଧ୍ୟ ମୋ କୃପାରୁ ସନାତନ ଅବିନାଶୀ ପରମପଦ ପ୍ରାପ୍ତ ହୋଇଯାଆନ୍ତି।। ୫୬ ।।**

**ପ୍ରଶ୍ନ – ମଦ୍ବ୍ୟପାଶ୍ରୟଃ** ପଦ କାହାର ବାଚକ ?

**ଉତ୍ତର –** ଭଗବତ୍ପରାୟଣ ଭକ୍ତ ସମସ୍ତ କର୍ମର ଏବଂ ତାହାର ଫଳରୂପ ସମସ୍ତ ଭୋଗର ଆଶ୍ରୟ ତ୍ୟାଗ କରି ଭଗବାନଙ୍କର ଆଶ୍ରିତ ହୋଇଯା'ନ୍ତି; ସେ ନିଜର ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀର, ତାହାଦ୍ୱାରା କରାଯାଉଥିବା ସମସ୍ତ କର୍ମ ଏବଂ କର୍ମମାନଙ୍କର ଫଳ ଭଗବାନଙ୍କୁ ସମର୍ପଣ କରିଦିଅନ୍ତି ଏବଂ ସବୁଥିରୁ ମମତ୍ୱ, ଆସକ୍ତି ଓ କାମନା ଦୂର କରି ଭଗବାନଙ୍କର ହିଁ ପରାୟଣ ହୋଇଯାଆନ୍ତି। ଭଗବାନଙ୍କୁ ହିଁ ନିଜର ପରମପ୍ରାପ୍ୟ, ପରମପ୍ରିୟ, ପରମହିତୈଷୀ, ପରମାଧାର ଓ ସର୍ବସ୍ୱ ବୋଲି ବୁଝି ସେ ଭଗବାନଙ୍କ ବିଧାନରେ ସର୍ବଦା ପ୍ରସନ୍ନ ରହନ୍ତି; ଯେକୌଣସି ସାଂସାରିକ ବସ୍ତୁର ସଂଯୋଗ-ବିୟୋଗରେ ଏବଂ ଯେକୌଣସି ବି ଘଟଣାରେ ସେ କେବେହେଲେ ହର୍ଷ-ଶୋକ କରନ୍ତି ନାହିଁ। ସେ ସଦା ଭଗବାନଙ୍କ ଉପରେ ହିଁ ନିର୍ଭର କରନ୍ତି ତଥା ଯାହା କିଛି ବି କର୍ମ କରନ୍ତି, ଭଗବାନଙ୍କ ଆଜ୍ଞାନୁସାରେ ତାଙ୍କରି ପ୍ରସନ୍ନତାପାଇଁ, ନିଜକୁ କେବଳ ନିମିତ୍ତମାତ୍ର ବୋଲି ବୁଝି, ତାଙ୍କରି ପ୍ରେରଣା ଏବଂ ଶକ୍ତିଦ୍ୱାରା ଭଗବାନ୍ ଯେପରି କରାନ୍ତି, ସେପରି କରନ୍ତି ଏବଂ ନିଜକୁ ସର୍ବଥା ଭଗବାନଙ୍କର ଅଧୀନ ବୋଲି ବୁଝନ୍ତି। **ମଦ୍ବ୍ୟପାଶ୍ରୟଃ** ପଦଟି ହେଉଛି ଏହିପରି ଭକ୍ତିପ୍ରଧାନ କର୍ମଯୋଗୀଙ୍କର ବାଚକ।

**ପ୍ରଶ୍ନ—** ଏଠାରେ **ସର୍ବକର୍ମାଣି** ପଦ କେଉଁ କର୍ମମାନଙ୍କର ବାଚକ ?

**ଉତ୍ତର—** ନିଜର ବର୍ଣ୍ଣ ଓ ଆଶ୍ରମ ଅନୁସାରେ ଯେତେ ବି ଶାସ୍ତ୍ରବିହିତ **କର୍ତ୍ତବ୍ୟକର୍ମ** ରହିଛି, ଯେଉଁମାନଙ୍କ ବର୍ଣ୍ଣନା, ପ୍ରଥମେ **ନିୟତଂ** କର୍ମ ଓ **ସ୍ୱଭାବଜଂ କର୍ମ** ନାମରେ କରାଯାଇଛି ତଥା ଯାହା ଭଗବାନଙ୍କର ଆଜ୍ଞା ଏବଂ ପ୍ରେରଣାର ଅନୁକୂଳ, ଏଠାରେ **ସର୍ବକର୍ମାଣି** ପଦଟି ହେଉଛି ସେହିସବୁ କର୍ମର ବାଚକ।

**ପ୍ରଶ୍ନ—** ଏଠାରେ **ଅପି** ଅବ୍ୟୟ ପ୍ରୟୋଗର ଭାବ କ'ଣ ?

**ଉତ୍ତର—** **ଅପି** ଅବ୍ୟୟ ପ୍ରୟୋଗ କରି ଏଠାରେ ଭକ୍ତିପ୍ରଧାନ କର୍ମଯୋଗୀଙ୍କର ମହିମା ବର୍ଣ୍ଣନା କରାଯାଇଛି ଏବଂ କର୍ମଯୋଗର ସୁଗମତା ଦେଖାଇଦିଆଯାଇଛି। ଅଭିପ୍ରାୟ ଏହି ଯେ, ସାଂଖ୍ୟଯୋଗୀ ସମସ୍ତ ପରିଗ୍ରହ ଏବଂ ସମସ୍ତ ଭୋଗ ତ୍ୟାଗ କରି ଏକାନ୍ତ ଦେଶରେ ନିରନ୍ତର ପରମାତ୍ମାଙ୍କ ଧ୍ୟାନରୂପୀ ସାଧନା କରି ଯେଉଁ ପରମାତ୍ମାଙ୍କୁ ପ୍ରାପ୍ତ କରନ୍ତି, ଭଗବଦାଶ୍ରୟୀ କର୍ମଯୋଗୀ ସଦାସର୍ବଦା ସ୍ୱବର୍ଣ୍ଣାଶ୍ରମୋଚିତ ସମସ୍ତ କର୍ମ କରି ମଧ୍ୟ ସେହି ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଆନ୍ତି; ଦୁହିଁଙ୍କ ଫଳରେ କୌଣସିପ୍ରକାର ଭେଦ ରହେ ନାହିଁ।

**ପ୍ରଶ୍ନ—** **ଶାଶ୍ୱତମ୍** ଏବଂ **ଅବ୍ୟୟମ୍** ବିଶେଷଣ ସହିତ **ପଦମ୍** ପଦଟି କାହାର ବାଚକ ଏବଂ 'ଭକ୍ତିପ୍ରଧାନ କର୍ମଯୋଗୀ ଭଗବାନଙ୍କ କୃପାରୁ ତାହା ପ୍ରାପ୍ତ ହୋଇଯାଆନ୍ତି' ବୋଲି କହିବାର ଅର୍ଥ କ'ଣ ?

**ଉତ୍ତର—** ଯେ ସର୍ବଦା ରହି ଆସିଛନ୍ତି ଓ ସଦା ରହନ୍ତି, ଯାହାଙ୍କର କେବେହେଲେ ଅଭାବ ହୁଏ ନାହିଁ, ଏଠାରେ ଉପରୋକ୍ତ ବିଶେଷଣ ସହିତ **ପଦମ୍** ପଦଟି ହେଉଛି ସେହି ସଚ୍ଚିଦାନନ୍ଦଘନ, ପୂର୍ଣ୍ଣବ୍ରହ୍ମ, ସର୍ବଶକ୍ତିମାନ୍, ସର୍ବାଧାର ପରମେଶ୍ୱରଙ୍କ ବାଚକ। 'ସେ ହିଁ ପରମପ୍ରାପ୍ୟ ଅଟନ୍ତି'— ଏହି ଭାବ ଦେଖାଇବାପାଇଁ ତାହାଙ୍କୁ **ପଦମ୍** ନାମରେ କୁହାଯାଇଛି। ପଇଁଚାଳିଶ ଶ୍ଳୋକରେ ଯେଉଁ ତତ୍ତ୍ୱର ପ୍ରାପ୍ତିକୁ **ସଂସିଦ୍ଧିପ୍ରାପ୍ତି**, ଛୟାଳିଶରେ **ସିଦ୍ଧିପ୍ରାପ୍ତି** ଏବଂ ପଞ୍ଚାବନ ଶ୍ଳୋକରେ **ମାମ୍** ପଦବାଚ୍ୟ ପରମେଶ୍ୱରପ୍ରାପ୍ତି ବୋଲି କୁହାଯାଇଛି, ତାହାକୁ ଏଠାରେ **ଶାଶ୍ୱତମ୍** ଏବଂ **ଅବ୍ୟୟମ୍** ବିଶେଷଣ ଦୁଇଟି ସହିତ **ପଦମ୍** ପଦବାଚ୍ୟ ଭଗବତ୍‌ପ୍ରାପ୍ତି ବୋଲି କୁହାଯାଇଛି। ଅଭିପ୍ରାୟ ଏହି ଯେ, ଭିନ୍ନ ଭିନ୍ନ ନାମରେ ଏକ ହିଁ ତତ୍ତ୍ୱର ବର୍ଣ୍ଣନା କରାଯାଇଛି। ଉପରୋକ୍ତ ଭକ୍ତିପ୍ରଧାନ କର୍ମଯୋଗୀଙ୍କର ଭାବଦ୍ୱାରା ଭାବିତ ଓ ପ୍ରସନ୍ନ ହୋଇ, ତାଙ୍କୁ ଅତିଶୟ ଅନୁଗ୍ରହ କରି ଭଗବାନ୍ ସ୍ୱୟଂ ହିଁ ତାଙ୍କୁ ପରାଭକ୍ତିରୂପ ବୁଦ୍ଧିଯୋଗ ପ୍ରଦାନ କରିଦିଅନ୍ତି (୧୦/୧୦)। ସେହି ବୁଦ୍ଧିଯୋଗଦ୍ୱାରା ଭଗବାନଙ୍କର ଯଥାର୍ଥ ସ୍ୱରୂପ ଜାଣି ଭକ୍ତଙ୍କର ଭଗବାନଙ୍କ ଠାରେ ତନ୍ମୟ ହୋଇଯିବା ହିଁ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କ ଠାରେ ପ୍ରବିଷ୍ଟ ହୋଇଯିବା। ଏହା ହିଁ ପରମପଦପ୍ରାପ୍ତି।

*ସମ୍ବନ୍ଧ— ଭକ୍ତିପ୍ରଧାନ କର୍ମଯୋଗୀଙ୍କ ମହିମା ବର୍ଣ୍ଣନା କରିସାରି ଭଗବାନ୍ ବର୍ତ୍ତମାନ ଅର୍ଜୁନଙ୍କୁ ସେପରି ହେବାପାଇଁ ଆଜ୍ଞା ଦେଉଛନ୍ତି—*

## ଚେତସା ସର୍ବକର୍ମାଣି ମୟି ସଂନ୍ୟସ୍ୟ ମତ୍ପରଃ।
## ବୁଦ୍ଧିଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ।। ୫୭ ।।

**ଅନ୍ୱୟ—** **ସର୍ବକର୍ମାଣି** = ସମସ୍ତ କର୍ମକୁ; **ଚେତସା** = ମନଦ୍ୱାରା; **ମୟି** = ମୋଠାରେ; **ସଂନ୍ୟସ୍ୟ** = ଅର୍ପଣ କରିଦେଇ (ତଥା); **ବୁଦ୍ଧିଯୋଗମ୍** = ସମବୁଦ୍ଧିରୂପକ ଯୋଗକୁ; **ଉପାଶ୍ରିତ୍ୟ** = ଅବଲମ୍ବନ କରି; **ମତ୍ପରଃ** = ମୋର ପରାୟଣ (ଏବଂ); **ସତତମ୍** = ନିରନ୍ତର; **ମଚ୍ଚିତ୍ତଃ** = ମୋଠାରେ ଯୁକ୍ତଚିତ୍ତ; **ଭବ** = ହୁଅ।

**ମନଦ୍ୱାରା ମୋଠାରେ ସମସ୍ତ କର୍ମ ଅର୍ପଣ କରିଦେଇ ତଥା ସମବୁଦ୍ଧିରୂପ ଯୋଗ ଅବଲମ୍ବନ କରି ମୋର ପରାୟଣ ହୁଅ ଏବଂ ନିରନ୍ତର ମୋଠାରେ ଯୁକ୍ତଚିତ୍ତ ହୋଇଯାଅ।। ୫୭ ।।**

**ପ୍ରଶ୍ନ—** ସମସ୍ତ କର୍ମ ମନଦ୍ୱାରା ଭଗବାନଙ୍କ ଠାରେ ଅର୍ପଣ କରିବାର ଅର୍ଥ କ'ଣ ?

**ଉତ୍ତର—** ନିଜର ମନ, ଇନ୍ଦ୍ରିୟ ଓ ଶରୀର ଏବଂ ସେମାନଙ୍କ ଦ୍ୱାରା କରାଯାଉଥିବା ସମସ୍ତ କର୍ମ ଓ ସଂସାରର ସମସ୍ତ ବସ୍ତୁ ଭଗବାନଙ୍କର ବୋଲି ବୁଝି ସେସବୁଥିରେ ସର୍ବଥା ମମତ୍ୱ, ଆସକ୍ତି ଓ କାମନା ତ୍ୟାଗ କରିଦେବା ତଥା 'ମୋର କିଛି ବି କରିବାର ଶକ୍ତି ନାହିଁ; ଭଗବାନ୍ ହିଁ ସମସ୍ତପ୍ରକାର ଶକ୍ତି ପ୍ରଦାନ କରି ମୋଦ୍ୱାରା ତାଙ୍କ

ଇଚ୍ଛାନୁସାରେ ସମସ୍ତ କର୍ମ କରାଉଛନ୍ତି; ମୁଁ କିଛି କରୁନି' ବୋଲି ବୁଝି ଭଗବାନଙ୍କ ଆଜ୍ଞାନୁସାରେ ତାଙ୍କରି ପାଇଁ, ତାଙ୍କରି ପ୍ରେରଣାରେ, ନିମିତ୍ତମାତ୍ର ହୋଇ ସମସ୍ତ କର୍ମ ସେ ଯେପରି କରାଉଛନ୍ତି, ସେପରି କାଠପିତୁଳାପରି କରି ଚାଲିବା ହିଁ ସମସ୍ତ କର୍ମ ମନଦ୍ୱାରା ଭଗବାନଙ୍କୁ ଅର୍ପଣ କରିଦେବା ।

**ପ୍ରଶ୍ନ –** **ବୁଦ୍ଧିଯୋଗମ୍** ପଦ କାହାର ବାଚକ ଏବଂ ତାହାକୁ ଅବଲମ୍ବନ କରିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର –** **ବୁଦ୍ଧିଯୋଗମ୍** ପଦଟି ହେଉଛି ସିଦ୍ଧି ଓ ଅସିଦ୍ଧିରେ, ସୁଖ ଓ ଦୁଃଖରେ, ହାନି ଓ ଲାଭରେ, ଓ ଏହିପରି ସଂସାରର ସମସ୍ତ ପଦାର୍ଥରେ ତଥା ପ୍ରାଣୀମାନଙ୍କ ଠାରେ ସମବୁଦ୍ଧି ରଖିବାର ବାଚକ । ତେଣୁ ଯାହା କିଛି ବି ହୁଏ, ସବୁ ଭଗବାନଙ୍କ ଇଚ୍ଛାରୁ ଏବଂ ଭଗବାନଙ୍କ ସଂକେତରେ ହିଁ ହୁଏ ବୋଲି ବୁଝି, ସକଳ ବସ୍ତୁରେ, ସମସ୍ତ ପ୍ରାଣୀଙ୍କ ଠାରେ ଏବଂ ସବୁ ଘଟଣାରେ ରାଗ-ଦ୍ୱେଷ, ହର୍ଷ-ଶୋକାଦି ବିଷମ ଭାବରୁ ରହିତ ହୋଇ ସଦାସର୍ବଦା ସମଭାବସମ୍ପନ୍ନ ହୋଇ ରହିବା ହିଁ ଉପରୋକ୍ତ ବୁଦ୍ଧିଯୋଗ ଅବଲମ୍ବନ କରିବା ।

**ପ୍ରଶ୍ନ –** ଭଗବାନଙ୍କର ପରାୟଣ ହେବା କ'ଣ ?

**ଉତ୍ତର –** ଭଗବାନଙ୍କୁ ହିଁ ପରମପ୍ରାପ୍ୟ, ପରମଗତି, ପରମହିତୈଷୀ, ପରମପ୍ରିୟ ଏବଂ ପରମାଧାର ବୋଲି ମାନିବା, ତାଙ୍କରି ବିଧାନରେ ସଦାସର୍ବଦା ସନ୍ତୁଷ୍ଟ ରହିବା ଏବଂ ତାଙ୍କରି ପ୍ରାପ୍ତି-ସାଧନାରେ ତତ୍ପର ରହିବା ହିଁ ଭଗବାନଙ୍କର ପରାୟଣ ହେବା ।

**ପ୍ରଶ୍ନ –** ନିରନ୍ତର ଭଗବାନଙ୍କ ଠାରେ ଯୁକ୍ତଚିତ୍ତ ହେବାର ଅର୍ଥ କ'ଣ ?

**ଉତ୍ତର –** ମନ-ବୁଦ୍ଧିକୁ ଅଟଳଭାବରେ ଭଗବାନଙ୍କ ଠାରେ ଲଗାଇଦେବା, ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସିଥିରେ କୌଣସିପ୍ରକାର ପ୍ରେମ ସମ୍ବନ୍ଧ ନ ରଖି ଅନନ୍ୟ ପ୍ରେମପୂର୍ବକ ନିରନ୍ତର ଭଗବାନଙ୍କୁ ହିଁ ଚିନ୍ତନ କରିରହିବା, ଭଗବାନଙ୍କର କ୍ଷଣେମାତ୍ର ବିସ୍ମୃତିରେ ମଧ୍ୟ ବ୍ୟାକୁଳ ହୋଇଯିବା, ଉଠିବା-ବସିବା, ଚାଲିବା-ବୁଲିବା, ଖାଇବା-ପିଇବା, ଶୋଇବା-ଚେଇଁବା ଆଦି ସକଳ କର୍ମ କରୁଥିବା ସମୟରେ ବି ନିତ୍ୟନିରନ୍ତର ମନରେ ଭଗବାନଙ୍କୁ ଦର୍ଶନ କରିବା – ଏହା ହିଁ ଭଗବାନଙ୍କ ଠାରେ ନିରନ୍ତର ଚିତ୍ତ ଲଗାଇଦେବା । ନବମ ଅଧ୍ୟାୟର ଅନ୍ତିମ ଶ୍ଳୋକରେ ଏବଂ ଏହି ଅଧ୍ୟାୟର ପଞ୍ଚଷଠି ଶ୍ଳୋକରେ ମନ୍ମନା ଭବଦ୍ୱାରା ମଧ୍ୟ ଏହି କଥା କୁହାଯାଇଛି ।

*__ସମ୍ବନ୍ଧ –__ ଏପରିଭାବରେ ଅର୍ଜୁନଙ୍କୁ ଭକ୍ତିପ୍ରଧାନ କର୍ମଯୋଗୀ ହେବାକୁ ଆଜ୍ଞା ଦେଇ ଭଗବାନ୍ ବର୍ତ୍ତମାନ ସେହି ଆଜ୍ଞା ପାଳନ କରିବାର ଫଳ କହିବା ସଙ୍ଗେ ସଙ୍ଗେ ତାହା ନ ମାନିଲେ ଘୋର କ୍ଷତି ହେବ ବୋଲି ମଧ୍ୟ କହୁଛନ୍ତି–*

**ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍ପ୍ରସାଦାତ୍ ତରିଷ୍ୟସି ।**
**ଅଥ ଚେତ୍ ତ୍ୱମହଙ୍କାରାନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି ।। ୫୮ ।।**

**ଅନ୍ୱୟ –** **ମଚ୍ଚିତ୍ତଃ** = ମୋଠାରେ ଯୁକ୍ତଚିତ୍ତ ହୋଇ; **ତ୍ୱମ୍** = ତୁମେ; **ମତ୍ପ୍ରସାଦାତ୍** = ମୋରି କୃପାରୁ; **ସର୍ବଦୁର୍ଗାଣି** = ସମସ୍ତ ସଙ୍କଟକୁ (ଅନାୟାସରେ); **ତରିଷ୍ୟସି** = ପାର ହୋଇଯିବ; **ଅଥ** = ଏବଂ; **ଚେତ୍** = ଯଦି; **ଅହଂକାରାତ୍** = ଅହଂକାରହେତୁ (ମୋର ବଚନକୁ); **ନ, ଶ୍ରୋଷ୍ୟସି** = ଶୁଣିବ ନାହିଁ (ତେବେ); **ବିନଙ୍କ୍ଷ୍ୟସି** = ନଷ୍ଟ ହୋଇଯିବ ଅର୍ଥାତ୍ ପରମାର୍ଥରୁ ଭ୍ରଷ୍ଟ ହୋଇଯିବ ।

**ଉପରୋକ୍ତପ୍ରକାରେ ମୋଠାରେ ଯୁକ୍ତଚିତ୍ତ ହୋଇ ତୁମେ ମୋରି କୃପାରୁ ଅନାୟାସରେ ସମସ୍ତ ସଙ୍କଟ ପାର ହୋଇଯିବ ଏବଂ ଯଦି ଅହଂକାରହେତୁ ମୋ କଥା ଶୁଣିବ ନାହିଁ, ତେବେ ନଷ୍ଟ ହୋଇଯିବ ଅର୍ଥାତ୍ ପରମାର୍ଥରୁ ଭ୍ରଷ୍ଟ ହୋଇଯିବ।। ୫୮ ।।**

**ପ୍ରଶ୍ନ –** 'ମୋଠାରେ ଯୁକ୍ତଚିତ୍ତ ହୋଇ ତୁମେ ମୋରି କୃପାରୁ ସମସ୍ତ ସଙ୍କଟ ଅନାୟାସରେ ପାର ହୋଇଯିବ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଏହି ବାକ୍ୟରେ ଭଗବାନ୍ କହିଛନ୍ତି, ''ପୂର୍ବ ଶ୍ଳୋକରେ କହିଥିବାପ୍ରକାରେ ସମସ୍ତ କର୍ମ ମୋଠାରେ ଅର୍ପଣ କରିଦେଇ ଏବଂ ମୋର ପରାୟଣ ହୋଇ ନିରନ୍ତର ମୋଠାରେ ମନ ଲଗାଇଦେବା ପରେ ତୁମକୁ ଆଉ କିଛି କରିବାକୁ ପଡ଼ିବ ନାହିଁ; ମୋର

କୃପାପ୍ରଭାବରୁ ଅନାୟାସରେ ହିଁ ତୁମର ଇହଲୋକର ଏବଂ ପରଲୋକର ସମସ୍ତ ଦୁଃଖ ନାଶ ହୋଇଯିବ; ତୁମେ ସବୁପ୍ରକାର ଦୁର୍ଗୁଣ ଓ ଦୁରାଚାରରୁ ରହିତ ହୋଇ ଚିରକାଳପାଇଁ ଜନ୍ମମରଣରୂପକ ଘୋର ସଙ୍କଟରୁ ମୁକ୍ତ ହୋଇଯିବ ଏବଂ ମୋତେ ଅର୍ଥାତ୍ ନିତ୍ୟ ଆନନ୍ଦଘନ ପରମେଶ୍ୱରଙ୍କୁ ପାଇଯିବ।''

**ପ୍ରଶ୍ନ—** ଅଥ ଏବଂ ଚେତ୍ ଦୁଇ ଅବ୍ୟୟର ଭାବ କ'ଣ ? 'ଅହଙ୍କାରହେତୁ ମୋ କଥା ନ ଶୁଣିଲେ ତୁମେ ନଷ୍ଟ ହୋଇଯିବ'— ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର—** ଅଥ ପକ୍ଷାନ୍ତରବୋଧକ ଏବଂ ଚେତ୍ 'ଯଦି' ଅର୍ଥରେ ପ୍ରୟୋଗ ହୋଇଛି। ଏହି ଦୁଇ ଅବ୍ୟୟ ସହିତ ଉପରୋକ୍ତ ବାକ୍ୟରେ ଭଗବାନ୍ କହିଛନ୍ତି, ''ତୁମେ ହେଉଛ ମୋର ଭକ୍ତ ଓ ପ୍ରିୟ ସଖା; ତେଣୁ ତୁମେ ଅବଶ୍ୟ ମୋର ଆଜ୍ଞା ପାଳନ କରିବ; ତଥାପି ତୁମକୁ ସାବଧାନ କରିଦେବାକୁ ମୁଁ କହିଦେଉଛି ଯେ, ମୋର ଆଜ୍ଞା ପାଳନ କଲେ ଯେପରି ମହାନ୍ ଲାଭ ହେବ, ତାହା ତ୍ୟାଗ କଲେ ସେହିପରି ଘୋର କ୍ଷତି ହେବ। ତେଣୁ ତୁମେ ଯଦି ଅହଙ୍କାରବଶତଃ, ନିଜକୁ ବୁଦ୍ଧିମାନ୍ ଓ ସମର୍ଥ ବୋଲି ଭାବି ମୋ କଥା ନ ଶୁଣିବ, ମୋ ଆଜ୍ଞା ପାଳନ ନ କରି ମନମୁଖି କାମ କରିବ, ତେବେ ତୁମେ ନଷ୍ଟ ହୋଇଯିବ; ତୁମକୁ ଇହଲୋକରେ କି ପରଲୋକରେ— କୌଣସିଠାରେ ବି ପ୍ରକୃତ ସୁଖ ଶାନ୍ତି ମିଳିବ ନାହିଁ ଏବଂ ତୁମେ କର୍ତ୍ତବ୍ୟରୁ ଭ୍ରଷ୍ଟ ହୋଇ ନିଜ ସ୍ଥିତିରୁ ତଳକୁ ଖସିଯିବ।''

**ପ୍ରଶ୍ନ—** ଭଗବାନ୍ ଅର୍ଜୁନଙ୍କୁ ପ୍ରଥମରୁ କହିସାରିଛନ୍ତି, 'ତୁମେ ମୋର ଭକ୍ତ' (୪/୩); ଏବଂ ଏହା ମଧ୍ୟ କହିଛନ୍ତି ଯେ, **ନ ମେ ଭକ୍ତଃ ପ୍ରଣଶ୍ୟତି** ଅର୍ଥାତ୍ 'ମୋର ଭକ୍ତଙ୍କର କେବେ ବି ପତନ ହୁଏ ନାହିଁ' (୯/୩୧), କିନ୍ତୁ ଏଠାରେ କହୁଛନ୍ତି, 'ତୁମେ ନଷ୍ଟ ହୋଇଯିବ' ଅର୍ଥାତ୍ 'ତୁମର ପତନ ହୋଇଯିବ।' ଏପରି ବିରୋଧଭାବର ସମାଧାନ କ'ଣ ?

**ଉତ୍ତର—** ଭଗବାନ୍ ସ୍ୱୟଂ ହିଁ ଉପରୋକ୍ତ ବାକ୍ୟରେ ଚେତ୍ ପଦ ପ୍ରୟୋଗ କରି ଏହି ବିରୋଧଭାବର ସମାଧାନ କରିଦେଇଛନ୍ତି। ଅଭିପ୍ରାୟ ଏହି ଯେ, ଭଗବାନଙ୍କ ଭକ୍ତଙ୍କର ଯେ କେବେ ପତନ ହୁଏ ନାହିଁ, ତାହା ଧ୍ରୁବ ସତ୍ୟ ଏବଂ ଏହା ମଧ୍ୟ ସତ୍ୟ ଯେ, ଅର୍ଜୁନ ଭଗବାନଙ୍କର ପରମଭକ୍ତ; ତେଣୁ ସେ ଯେ ଭଗବାନଙ୍କ କଥା ଶୁଣିବେ ନାହିଁ, ଆଜ୍ଞା ପାଳନ କରିବେ ନାହିଁ— ସେପରି କଦାପି ହୋଇପାରିବ ନାହିଁ; କିନ୍ତୁ ଏପରି ହୋଇ ମଧ୍ୟ ଯଦି ଅହଙ୍କାରବଶତଃ ସେ ଭଗବାନଙ୍କର ଆଜ୍ଞା ପ୍ରତି ଅବହେଳା ପ୍ରଦର୍ଶନ କରିଦେବେ, ତେବେ ତାଙ୍କୁ ଆଉ ଭଗବାନଙ୍କର ଭକ୍ତ ବୋଲି କୁହାଯାଇପାରିବ ନାହିଁ; ତେଣୁ ତାଙ୍କର ପତନ ହେବା ମଧ୍ୟ ଯୁକ୍ତିସଙ୍ଗତ।

*ସମ୍ବନ୍ଧ— ପୂର୍ବଶ୍ଳୋକରେ ଅହଙ୍କାରବଶତଃ ଭଗବାନଙ୍କର ଆଜ୍ଞା ନ ମାନିଲେ ନଷ୍ଟ ହେବା କଥା ଯାହା କୁହାଯାଇଛି, ତାହାକୁ ପୁଷ୍ଟ କରିବାପାଇଁ ବର୍ତ୍ତମାନ ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଭଗବାନ୍ କହିଦେଉଛନ୍ତି ଯେ, ଅର୍ଜୁନ ଯୁଦ୍ଧ କରିବେ ନାହିଁ ବୋଲି ଯେଉଁ ନିଶ୍ଚୟ କରିଛନ୍ତି, ତାହା ଦୋଷାବହ।—*

## ଯଦହଙ୍କାରମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ।
## ମିଥ୍ୟୈଷ ବ୍ୟବସାୟସ୍ତେ ପ୍ରକୃତିସ୍ତ୍ୱାଂ ନିୟୋକ୍ଷ୍ୟତି॥ ୫୯ ॥

**ଅନ୍ୱୟ—** ଯତ୍ = (ତୁମେ) ଯେଉଁ; ଅହଙ୍କାରମ୍ = ଅହଙ୍କାରକୁ; ଆଶ୍ରିତ୍ୟ = ଆଶ୍ରୟ କରି; ଇତି = ଏହା; ମନ୍ୟସେ = ଧରିବସିଛ ଯେ; ନ, ଯୋତ୍ସ୍ୟେ = 'ମୁଁ ଯୁଦ୍ଧ କରିବି ନାହିଁ'; ତେ = ତୁମର; ଏଷଃ = ଏହି; ବ୍ୟବସାୟଃ = ନିଶ୍ଚୟ; ମିଥ୍ୟା = ମିଥ୍ୟା; (କାରଣ ତୁମର); ପ୍ରକୃତିଃ = ସ୍ୱଭାବ; ତ୍ୱାମ୍ = ତୁମକୁ; ନିୟୋକ୍ଷ୍ୟତି = (ବଳପୂର୍ବକ ଯୁଦ୍ଧରେ) ଲଗାଇଦେବ।

**ତୁମେ ଯେଉଁ ଅହଙ୍କାରକୁ ଆଶ୍ରୟ କରି 'ମୁଁ ଯୁଦ୍ଧ କରିବି ନାହିଁ', ବୋଲି ଧରି ବସିଛ; ତୁମର ସେହି ନିଶ୍ଚୟ ମିଥ୍ୟା; କାରଣ, ତୁମର ପ୍ରକୃତି ତୁମକୁ ବଳପୂର୍ବକ ଯୁଦ୍ଧରେ ଲଗାଇଦେବ॥ ୫୯ ॥**

**ପ୍ରଶ୍ନ –** ତୁମେ ଅହଙ୍କାରକୁ ଆଶ୍ରୟ କରି 'ମୁଁ ଯୁଦ୍ଧ କରିବି ନାହିଁ' ବୋଲି– ଯେଉଁ ନିଶ୍ଚୟ କରିଛ, ଏହି ବାକ୍ୟର ଅଭିପ୍ରାୟ କ'ଣ ?

**ଉତ୍ତର –** ପ୍ରଥମେ ଭଗବାନଙ୍କ ଦ୍ୱାରା ଯୁଦ୍ଧ କରିବାକୁ ଆଜ୍ଞା ଦିଆଯିବା ପରେ (୨/୩) ଅର୍ଜୁନ ଭଗବାନଙ୍କୁ କହିଥିଲେ, 'ନ ଯୋତ୍ସ୍ୟେ'— "ମୁଁ ଯୁଦ୍ଧ କରିବି ନାହିଁ (୨/୯)।" ସେହି କଥାଟି ସ୍ମରଣ କରାଇଦେଇ ଭଗବାନ୍ ଏଠାରେ ଉପରୋକ୍ତ ବାକ୍ୟ କହିଛନ୍ତି। ଭଗବାନଙ୍କ କଥାର ଅଭିପ୍ରାୟ ହେଉଛି : "ତୁମେ ଯୁଦ୍ଧ କରିବ ନାହିଁ ବୋଲି ଯାହା ଧରିବସିଛ, ତାହା ତୁମର କେବଳ ଅହଙ୍କାରମାତ୍ର। ଯୁଦ୍ଧ ନ କରିବା ତୁମ ହାତର କଥା ନୁହେଁ। ଅତଏବ ଏପରି ଅଜ୍ଞାନଜନିତ ଅହଙ୍କାରର ବଶୀଭୂତ ହୋଇ ନିଜକୁ ପଣ୍ଡିତ, ସମର୍ଥ ଏବଂ ସ୍ୱତନ୍ତ୍ର ବୋଲି ଭାବିବା ଏବଂ ତାହାରି ବଳରେ 'ମୁଁ ଅମୁକ କାର୍ଯ୍ୟ ଏପରି ସିଦ୍ଧ କରିନେବି ଏବଂ ଅମୁକ କାର୍ଯ୍ୟ କରିବି ନାହିଁ,' ବୋଲି ନିଶ୍ଚୟ କରିବା ଅତ୍ୟନ୍ତ ଅନୁଚିତ।"

**ପ୍ରଶ୍ନ –** 'ତୁମର ସେହି ନିଶ୍ଚୟ ମିଥ୍ୟା'– ଏ କଥାର ଭାବ କ'ଣ ?

**ଉତ୍ତର –** ଏହି ବକ୍ତବ୍ୟରେ ଭଗବାନ୍ ଦେଖାଇଛନ୍ତି, "ତୁମର ଏପରି ନିଶ୍ଚୟ କରିବା ଚଳିବ ନାହିଁ; ଅର୍ଥାତ୍, ତୁମେ ଯୁଦ୍ଧ ନ କରି ରହିପାରିବ ନାହିଁ; କାରଣ ତୁମେ ସ୍ୱତନ୍ତ୍ର ନୁହଁ; ତୁମେ ପ୍ରକୃତିର ଅଧୀନ।"

**ପ୍ରଶ୍ନ –** ଏଠାରେ **ପ୍ରକୃତିଃ** ପଦ କାହାର ବାଚକ ଏବଂ 'ତୁମର ପ୍ରକୃତି ତୁମକୁ ବଳପୂର୍ବକ ଯୁଦ୍ଧରେ ଲଗାଇଦେବ' – ଏ କଥାର ଅଭିପ୍ରାୟ କ'ଣ ?

**ଉତ୍ତର –** ଜନ୍ମ-ଜନ୍ମାନ୍ତରରେ କରାଯାଇଥିବା କର୍ମମାନଙ୍କର ଯେଉଁ ସଂସ୍କାର ଏହି ଜନ୍ମରେ ସ୍ୱଭାବରୂପରେ ଦେଖାଦିଏ, ଏଠାରେ **ପ୍ରକୃତି** ପଦଟି ହେଉଛି ସେହି ସଂସ୍କାରସମୁଦାୟର ବାଚକ। ଏହାକୁ ସ୍ୱଭାବ ମଧ୍ୟ କହନ୍ତି। ଏହି ସ୍ୱଭାବ ଅନୁସାରେ ହିଁ ଭିନ୍ନ ଭିନ୍ନ କର୍ମର ଅଧିକାରୀସମୁଦାୟରେ ମନୁଷ୍ୟର ଜନ୍ମ ହୁଏ ଏବଂ ସେହି ସ୍ୱଭାବ ଅନୁସାରେ ହିଁ ଭିନ୍ନ ଭିନ୍ନ ମନୁଷ୍ୟଙ୍କର ଭିନ୍ନ ଭିନ୍ନ କର୍ମରେ ପ୍ରବୃତ୍ତି ହୋଇଥାଏ। ଅତଏବ ଏଠାରେ ଉପରୋକ୍ତ ବାକ୍ୟରେ ଭଗବାନ୍ ଦେଖାଉଛନ୍ତି, "ଯେଉଁ ସ୍ୱଭାବହେତୁ ତୁମର କ୍ଷତ୍ରିୟକୁଳରେ ଜନ୍ମ ହୋଇଛି, ସେହି ସ୍ୱଭାବ, ତୁମର ଇଚ୍ଛା ନ ଥିଲେ ମଧ୍ୟ, ତୁମକୁ ବଳପୂର୍ବକ ଯୁଦ୍ଧରେ ପ୍ରବୃତ୍ତ କରାଇଦେବ। ଯୁଦ୍ଧ କରିବାର ଆବଶ୍ୟକତା ଆସିଯିବା ପରେ ଯୁଦ୍ଧକୁ ନ ଡରି, ଯୁଦ୍ଧକ୍ଷେତ୍ରରୁ ପଳାୟନ ନ କରି ବୀରତ୍ୱପୂର୍ବକ ଯୁଦ୍ଧ କରିବା ହିଁ ତୁମର ସହଜ ସ୍ୱାଭାବିକ କର୍ମ। ଅତଏବ ତୁମେ ଏହା ନ କରି ରହିପାରିବ ନାହିଁ। ତୁମକୁ ଅବଶ୍ୟ ଯୁଦ୍ଧ କରିବାକୁ ପଡ଼ିବ।" ଏଠାରେ କ୍ଷତ୍ରିୟ ହୋଇଥିବାରୁ ଭଗବାନ୍ ଅର୍ଜୁନଙ୍କୁ ଯୁଦ୍ଧ ବିଷୟରେ ଯେଉଁ କଥା କହିଛନ୍ତି, ସେହି କଥା ଅନ୍ୟ ବର୍ଣ୍ଣର ଲୋକମାନେ ମଧ୍ୟ ନିଜ ନିଜର ସ୍ୱାଭାବିକ କର୍ମ ବିଷୟରେ ବୁଝିନେବା ଉଚିତ।

## ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା।
## କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍ କରିଷ୍ୟସ୍ୟବଶୋଽପି ତତ୍॥ ୬୦ ॥

**ଅନ୍ୱୟ –** **କୌନ୍ତେୟ** = ହେ କୁନ୍ତୀପୁତ୍ର!; **ଯତ୍** = ଯେଉଁ କର୍ମକୁ (ତୁମେ); **ମୋହାତ୍** = ମୋହହେତୁ; **କର୍ତ୍ତୁମ୍** = କରିବାକୁ; **ନ, ଇଚ୍ଛସି** = ଇଚ୍ଛା କରୁ ନାହଁ; **ତତ୍** = ତାହାକୁ; **ଅପି** = ମଧ୍ୟ; **ସ୍ୱେନ** = ନିଜର ପୂର୍ବକୃତ; **ସ୍ୱଭାବଜେନ, କର୍ମଣା** = ସ୍ୱାଭାବିକ କର୍ମଦ୍ୱାରା; **ନିବଦ୍ଧଃ** = ବାନ୍ଧିହୋଇ; **ଅବଶଃ** = ପରବଶ ହୋଇ; **କରିଷ୍ୟସି** = କରିବ।

**ହେ କୁନ୍ତୀପୁତ୍ର! ତୁମେ ମୋହହେତୁ ଯେଉଁ କର୍ମ କରିବାକୁ ଇଚ୍ଛା କରୁନାହଁ, ତାହା ମଧ୍ୟ ନିଜର ପୂର୍ବକୃତ ସ୍ୱାଭାବିକ କର୍ମଦ୍ୱାରା ବାନ୍ଧିହୋଇ, ପରବଶ ହୋଇ କରିବ॥ ୬୦ ॥**

**ପ୍ରଶ୍ନ –** **କୌନ୍ତେୟ** ସମ୍ବୋଧନର ଭାବ କ'ଣ ?

**ଉତ୍ତର –** ଅର୍ଜୁନଙ୍କ ମାତା କୁନ୍ତୀ ଜଣେ ବୀରାଙ୍ଗନା ଥିଲେ; ସେ ସ୍ୱୟଂ ଶ୍ରୀକୃଷ୍ଣଙ୍କ ହାତରେ ସନ୍ଦେଶ ପଠାଇବା ସମୟରେ ପାଣ୍ଡବମାନଙ୍କୁ ଯୁଦ୍ଧପାଇଁ ଉତ୍ସାହିତ କରିଥିଲେ। ଏଣୁ ଭଗବାନ୍ ଏଠାରେ ଅର୍ଜୁନଙ୍କୁ **କୌନ୍ତେୟ** ନାମରେ ସମ୍ବୋଧନ କରି କହୁଛନ୍ତି,– "ତୁମେ ବୀରମାତାର ପୁତ୍ର; ସ୍ୱୟଂ ମଧ୍ୟ ଶୂରବୀର; ତେଣୁ ତୁମେ ଯୁଦ୍ଧ ନ କରି ରହିପାରିବ ନାହିଁ।"

**ପ୍ରଶ୍ନ—** 'ତୁମେ ମୋହ ହେତୁ କର୍ମ କରିବାକୁ ଯାହା ଇଚ୍ଛା କରୁ ନାହଁ' — ଏ କଥାର ଭାବ କ'ଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ କହୁଛନ୍ତି, "ତୁମେ କ୍ଷତ୍ରିୟ; ଯୁଦ୍ଧ କରିବା ତୁମର ସ୍ୱାଭାବିକ ଧର୍ମ; ଅତଏବ ତାହା ତୁମପାଇଁ ପାପକର୍ମ ନୁହେଁ। ତେଣୁ ଯୁଦ୍ଧ ନ କରିବାର ଇଚ୍ଛା କୌଣସିପ୍ରକାର ଉଚିତ ନୁହେଁ। ଏପରି ଅବସ୍ଥାରେ ମଧ୍ୟ ତୁମେ ନ୍ୟାୟଦ୍ୱାରା ପ୍ରାପ୍ତ ଯୁଦ୍ଧରୂପକ ସହଜକର୍ମ ଯେ କରିବାକୁ ଇଚ୍ଛା କରୁ ନାହଁ, ଏଥିରେ କେବଳମାତ୍ର ତୁମର ଅବିବେକ ହିଁ ହେତୁ। ଏଥିରେ ଅନ୍ୟ କିଛି ଯୁକ୍ତିଯୁକ୍ତ କାରଣ ନାହିଁ।"

**ପ୍ରଶ୍ନ—** "ତାହା ମଧ୍ୟ ତୁମେ ନିଜର ସ୍ୱାଭାବିକ କର୍ମଦ୍ୱାରା ବାନ୍ଧି ହୋଇ, ପରବଶ ହୋଇ କରିବ"— ଏହି କଥାର ଭାବ କ'ଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ସୂଚାଉଛନ୍ତି, "ଯୁଦ୍ଧ କରିବା ତୁମର ସ୍ୱାଭାବିକ କର୍ମ; ଅତଏବ ତୁମେ ତାହା ସହିତ ବାନ୍ଧି ହୋଇଛ ଅର୍ଥାତ୍ ତାହା ସହିତ ତୁମର ଘନିଷ୍ଠ ସମ୍ବନ୍ଧ ରହିଛି। ତେଣୁ ତୁମର ଇଚ୍ଛା ନ ହେଲେ ମଧ୍ୟ ତାହା ତୁମକୁ ବଳପୂର୍ବକ ନିଜ ଆଡ଼କୁ ଟାଣିନେବ ଏବଂ ତୁମେ ନିଜ ସ୍ୱଭାବର ବଶ ହୋଇ ତାହା କରିବାକୁ ବାଧ୍ୟ ହେବ। ସୁତରାଂ ଯଦି ମୋର ଆଜ୍ଞା ଅନୁସାରେ ଅର୍ଥାତ୍ ସତାବନ ଶ୍ଳୋକରେ କୁହାଯାଇଥିବା ବିଧି ଅନୁସାରେ ତାହା କରିବ, ତେବେ ତୁମେ କର୍ମବନ୍ଧନରୁ ମୁକ୍ତ ହୋଇ ମୋତେ ପାଇଯିବ; ନ ହେଲେ ରାଗଦ୍ୱେଷଜାଲରେ ପଡ଼ି ଜନ୍ମମୃତ୍ୟୁରୂପକ ସଂସାରସାଗରରେ ଉବୁଡ଼ି ବୁଡ଼ି ହେଉଥିବ।"

ନଦୀପ୍ରବାହରେ ଭାସିଯାଉଥିବା ମନୁଷ୍ୟ ଯେପରି ସେହି ପ୍ରବାହର ପ୍ରତିକୂଳରେ ଗଲେ ନଦୀ ପାର ହୋଇପାରେ ନା, ବରଂ ନିଜର ନାଶ ହିଁ କରେ ଏବଂ ଯେଉଁ ଲୋକ କୌଣସି ନୌକା ବା କାଠର ଆଶ୍ରୟ ନେଇ ବା ପହଁରି ପହଁରି ନଦୀପ୍ରବାହର ଅନୁକୂଳରେ ଯାଏ, ସେ କୂଳରେ ଲାଗି ନଦୀ ପାର ହୋଇଯାଏ, ପ୍ରକୃତିର ପ୍ରବାହରେ ପଡ଼ିଯାଇଥିବା ମନୁଷ୍ୟ ସେହିପରି ଯଦି ପ୍ରକୃତିର ପ୍ରତିରୋଧ କରେ, ଅର୍ଥାତ୍ ଜିଦ୍ ଧରି କର୍ତ୍ତବ୍ୟକର୍ମ ତ୍ୟାଗ କରିଦିଏ, ତେବେ ସେ ପ୍ରକୃତିରୁ ତ୍ରାଣ ପାଇପାରେ ନାହିଁ; ବରଂ ସେଥିରେ ଅଧିକ ବୁଡ଼ିଯାଏ; କିନ୍ତୁ ଯେଉଁ ମନୁଷ୍ୟ ପରମେଶ୍ୱରଙ୍କର ବା କର୍ମଯୋଗର ଆଶ୍ରୟ ନେଇ ବା ଜ୍ଞାନମାର୍ଗ ଅନୁସାରେ ନିଜକୁ ପ୍ରକୃତିଠାରୁ ଉପରକୁ ଉଠାଇନେଇ ପ୍ରକୃତିର ଅନୁକୂଳ କର୍ମ କରିଚାଲେ, ସେ କର୍ମବନ୍ଧନରୁ ମୁକ୍ତ ହୋଇ ପ୍ରକୃତିକୁ ଅତିକ୍ରମ କରିଯାଏ ଅର୍ଥାତ୍ ପରମାତ୍ମାଙ୍କୁ ପାଇଯାଏ।

**ସମ୍ବନ୍ଧ—** ପୂର୍ବଶ୍ଳୋକରେ କର୍ମ କରିବାରେ ମନୁଷ୍ୟ ସ୍ୱଭାବର ଅଧୀନ ବୋଲି କୁହାଯାଇଛି; ଏହା ଉପରେ ଶଙ୍କା ହୋଇପାରେ : ପ୍ରକୃତି ବା ସ୍ୱଭାବ ତ ଜଡ଼, ତାହା କିପରି କାହାରିକୁ ନିଜର ବଶ କରିପାରିବ ? ତେଣୁ ଭଗବାନ୍ କହୁଛନ୍ତି—

**ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି।**
**ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢାନି ମାୟୟା॥ ୬୧ ॥**

**ଅନ୍ୱୟ—** **ଅର୍ଜୁନ** = ହେ ଅର୍ଜୁନ !; **ଯନ୍ତ୍ରାରୂଢାନି** = ଶରୀରରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା; **ସର୍ବଭୂତାନି** = ସମସ୍ତ ପ୍ରାଣୀଙ୍କୁ; **ଈଶ୍ୱରଃ** = ଅନ୍ତର୍ଯାମୀ ପରମେଶ୍ୱର; **ମାୟୟା** = ନିଜର ମାୟାଦ୍ୱାରା (ସେମାନଙ୍କର କର୍ମାନୁସାରେ); **ଭ୍ରାମୟନ୍** = ଚାଳିତ କରାଇ; **ସର୍ବଭୂତାନାମ୍** = ସମସ୍ତ ପ୍ରାଣୀଙ୍କର; **ହୃଦ୍ଦେଶେ** = ହୃଦୟରେ; **ତିଷ୍ଠତି** = ନିବାସ କରନ୍ତି।

**ହେ ଅର୍ଜୁନ! ଶରୀରରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା ସମସ୍ତ ପ୍ରାଣୀଙ୍କୁ ନିଜର ମାୟାଦ୍ୱାରା ସେମାନଙ୍କର କର୍ମାନୁସାରେ ଚାଳିତ କରାଇ ଅନ୍ତର୍ଯାମୀ ପରମେଶ୍ୱର ସମସ୍ତ ପ୍ରାଣୀଙ୍କ ହୃଦୟରେ ନିବାସ କରନ୍ତି॥ ୬୧ ॥**

**ପ୍ରଶ୍ନ—** ଏଠାରେ ଶରୀରକୁ ଯନ୍ତ୍ରର ରୂପକ ଦେବାର ଅଭିପ୍ରାୟ କ'ଣ ଏବଂ ଈଶ୍ୱର ସମସ୍ତ ପ୍ରାଣୀଙ୍କ ହୃଦୟରେ ରହନ୍ତି ବୋଲି କହିବାର ଅଭିପ୍ରାୟ କ'ଣ ?

**ଉତ୍ତର—** ଏଠାରେ ଶରୀରକୁ ଯନ୍ତ୍ରର ରୂପକ ଦେଇ ଭଗବାନ୍ ଦେଖାଉଛନ୍ତି ଯେ, ରେଳଗାଡ଼ି ଆଦି କୌଣସି ଯନ୍ତ୍ରରେ ବସିଥିବା ମନୁଷ୍ୟ ଯେପରି ସ୍ୱୟଂ ଚାଲେ

ନାହିଁ, ତଥାପି ରେଳଗାଡ଼ି ଆଦି ଯନ୍ତ୍ରର ଚଳନଦ୍ୱାରା ତାହାର ଚାଲିବା ହୋଇଯାଏ, ସେହିପରି ଯଦିଓ ଆତ୍ମା ନିଶ୍ଚଳ, ତାହାର କୌଣସି ବି କ୍ରିୟା ସହିତ ବାସ୍ତବରେ କିଛି ବି ସମ୍ବନ୍ଧ ନାହିଁ, ତଥାପି ଅନାଦିସିଦ୍ଧ ଅଜ୍ଞାନହେତୁ ତାହାର ଶରୀର ସହିତ ସମ୍ବନ୍ଧ ହୋଇଯାଏ ଏବଂ ସେ ଶରୀରର କ୍ରିୟାକୁ ତା'ର ନିଜର କ୍ରିୟା ବୋଲି ଧରିନିଏ।

ଈଶ୍ୱର ସମସ୍ତ ଭୂତଙ୍କର ହୃଦୟରେ ରହନ୍ତି ବୋଲି କହି ଭଗବାନ୍ ଦେଖାଇଛନ୍ତି ଯେ, ଯନ୍ତ୍ର ଚଳାଉଥିବା ଚାଳକ ଯେପରି ସ୍ୱୟଂ ମଧ୍ୟ ସେହି ଯନ୍ତ୍ରରେ ରହେ, ସେହିପରି ଈଶ୍ୱର ମଧ୍ୟ ସମସ୍ତ ପ୍ରାଣୀଙ୍କ ଅନ୍ତଃକରଣରେ ରହନ୍ତି ଏବଂ ସେମାନଙ୍କ ହୃଦୟରେ ରହି ସେମାନଙ୍କର କର୍ମ ଅନୁସାରେ ସେମାନଙ୍କୁ ଚାଳିତ କରାନ୍ତି। ତେଣୁ ଈଶ୍ୱରଙ୍କର କୌଣସି ବି ବିଧାନରେ ଟିକିଏ ବି ଭୁଲ୍ ହୁଏ ନାହିଁ; କାରଣ ସେ ସର୍ବଶକ୍ତିମାନ୍, ସର୍ବବ୍ୟାପୀ, ସର୍ବଜ୍ଞ, ପରମେଶ୍ୱର; ସେ ସମସ୍ତପ୍ରାଣୀଙ୍କର ସମସ୍ତକର୍ମ ଭଲରୂପେ ଜାଣନ୍ତି।

**ପ୍ରଶ୍ନ –** **ଯନ୍ତ୍ରାରୂଢ଼ାନି** ବିଶେଷଣ ସହିତ **ଭୂତାନି** ପଦ କେଉଁମାନଙ୍କର ବାଚକ ଏବଂ 'ଭଗବାନ୍ ସେମାନଙ୍କୁ ନିଜ ମାୟାଦ୍ୱାରା ଚାଳିତ କରାନ୍ତି' କହିବାର ଅର୍ଥ କ'ଣ ?

**ଉତ୍ତର –** ଏଠାରେ **ଯନ୍ତ୍ରାରୂଢ଼ାନି** ବିଶେଷଣ ସହିତ **ଭୂତାନି** ପଦଟି ହେଉଛି ଶରୀରରୂପକ ଯନ୍ତ୍ରରେ ସ୍ଥିତ ସମସ୍ତ ପ୍ରାଣୀଙ୍କ ବାଚକ ତଥା ସେମାନଙ୍କୁ ନିଜ ପୂର୍ବାର୍ଜିତ କର୍ମସଂସ୍କାର ଅନୁସାରେ ଫଳ ଭୋଗ କରାଇବାପାଇଁ ବାରମ୍ବାର ନାନା ଯୋନିରେ ଉତ୍ପନ୍ନ କରିବା ତଥା ଭିନ୍ନ ଭିନ୍ନ ପଦାର୍ଥସହିତ, କ୍ରିୟାସହିତ ଓ ପ୍ରାଣୀମାନଙ୍କ ସହିତ ସେମାନଙ୍କର ସଂଯୋଗ ବିୟୋଗ କରାଇବା ଏବଂ ସ୍ୱଭାବ (ପ୍ରକୃତି) ଅନୁସାରେ ସେମାନଙ୍କୁ ବାରମ୍ବାର ଚେଷ୍ଟା କରିବାରେ ଲଗାଇବା ହିଁ ଭଗବାନ୍ ପ୍ରାଣୀମାନଙ୍କୁ ନିଜର ମାୟାଦ୍ୱାରା ଚାଳିତ କରିବା।

**ପ୍ରଶ୍ନ –** କର୍ମ କରିବାରେ ଏବଂ ନ କରିବାରେ ମନୁଷ୍ୟ ସ୍ୱତନ୍ତ୍ର ନା ପରତନ୍ତ୍ର ? ଯଦି ପରତନ୍ତ୍ର, ତେବେ କେଉଁରୂପରେ ପରତନ୍ତ୍ର; ସେ କାହାର ଅଧୀନ ? – ପ୍ରକୃତିର, ନା ସ୍ୱଭାବର, ନା ଈଶ୍ୱରଙ୍କର ? କାରଣ କେଉଁଠି କହିଛନ୍ତି, ମନୁଷ୍ୟର କର୍ମ କରିବାରେ ଅଧିକାର ରହିଛି (୨/୪୭), ତେଣୁ ସେ କର୍ମ କରିବାରେ ସ୍ୱତନ୍ତ୍ର; ଅନ୍ୟ କେଉଁଠି କହିଛନ୍ତି, ସେ ପ୍ରକୃତିର ଅଧୀନ (୩/୩୩) ଏବଂ ପୁଣି କେଉଁଠି କହିଛନ୍ତି, ସେ ଈଶ୍ୱରଙ୍କ ଅଧୀନ (୧୦/୮)। ଏହି ଅଧ୍ୟାୟରେ ଅଣଷଠି ଓ ଷାଠିଏ ଶ୍ଳୋକରେ ମଧ୍ୟ ସେ ପ୍ରକୃତିର ଏବଂ ସ୍ୱଭାବର ଅଧୀନ ବୋଲି କୁହାଯାଇଛି ଏବଂ ଏହି ଶ୍ଳୋକରେ ସେ ଈଶ୍ୱରଙ୍କ ଅଧୀନ ବୋଲି କୁହାଯାଇଛି। ତେଣୁ ଏହାର ସ୍ପଷ୍ଟୀକରଣ ହେବା ଉଚିତ।

**ଉତ୍ତର –** ମନୁଷ୍ୟ କର୍ମ କରିବାରେ ଏବଂ କର୍ମ ନ କରିବାରେ ଉଭୟରେ ପରତନ୍ତ୍ର; ତେଣୁ କୁହାଯାଇଛି, କୌଣସି ବି ପ୍ରାଣୀ କ୍ଷଣକପାଇଁ ମଧ୍ୟ କର୍ମ ନ କରି ରହିପାରିବ ନାହିଁ (୩/୫)। ମନୁଷ୍ୟର କର୍ମ କରିବାରେ ଅଧିକାର ଅଛି ବୋଲି ଯାହା କୁହାଯାଇଛି, ତା'ର ଅଭିପ୍ରାୟ ମଧ୍ୟ ମନୁଷ୍ୟ କର୍ମ କରିବାରେ ସ୍ୱତନ୍ତ୍ର ବୋଲି କହିବା ନୁହେଁ; ବରଂ ପରତନ୍ତ୍ର ବୋଲି କହିବା ହିଁ ତାହାର ଅଭିପ୍ରାୟ। କାରଣ ତାହାଦ୍ୱାରା ସୂଚିତ କରାଯାଇଛି ଯେ, ସେ କର୍ମ ତ୍ୟାଗ କରିବାକୁ ଅସମର୍ଥ। ବର୍ତ୍ତମାନ ଅବଶିଷ୍ଟ ପ୍ରଶ୍ନ ହେଉଛି: ମନୁଷ୍ୟ କାହାର ଅଧୀନ ହୋଇ କର୍ମ କରେ ? ଏ ସମ୍ବନ୍ଧରେ କୁହାଯାଇପାରେ ଯେ, ମନୁଷ୍ୟ ପ୍ରକୃତିର ଅଧୀନ ହୋଇ, ସ୍ୱଭାବର ଅଧୀନ ହୋଇ ଏବଂ ଈଶ୍ୱରଙ୍କ ଅଧୀନ ହୋଇ କର୍ମ କରେ; ଏହି ତିନୋଟିଯାକ ଏକା କଥା। କାରଣ ସ୍ୱଭାବ ଓ ପ୍ରକୃତି ତ ପର୍ଯ୍ୟାୟବାଚୀ ଶବ୍ଦ ଏବଂ ଯେହେତୁ ଈଶ୍ୱର ସ୍ୱୟଂ ନିରପେକ୍ଷଭାବରେ ଅର୍ଥାତ୍ ସର୍ବଥା ନିର୍ଲିପ୍ତ ରହି ନିଜର ମାୟାଶକ୍ତିଦ୍ୱାରା ସେହି ଜୀବମାନଙ୍କୁ ସେମାନଙ୍କ ପ୍ରକୃତିର ଅନୁରୂପ ବିଭିନ୍ନ କର୍ମରେ ନିଯୁକ୍ତ କରାନ୍ତି, ତେଣୁ କର୍ମ କରିବାରେ ଜୀବ ଈଶ୍ୱରଙ୍କ ଅଧୀନ ବୋଲି କହିବା ଯାହା, ପ୍ରକୃତିର ଅଧୀନ ବୋଲି କହିବା ମଧ୍ୟ ତାହା। ଅନ୍ୟ ପକ୍ଷରେ ଈଶ୍ୱର ହିଁ ପ୍ରକୃତିର ସ୍ୱାମୀ ଏବଂ ପ୍ରେରଣାଦାତା; ସୁତରାଂ ପ୍ରକୃତିର ଅଧୀନ ବୋଲି କହିବା ଯାହା, ଈଶ୍ୱରଙ୍କ ଅଧୀନ ବୋଲି କହିବା ତାହା।

ଏଠାରେ ପ୍ରଶ୍ନ ଉଠେ, ଯଦି ମନୁଷ୍ୟ ସର୍ବଥା ପରତନ୍ତ୍ର, ତେବେ ତା'ର ଉଦ୍ଧାର ହେବାର ଉପାୟ କ'ଣ ? ଏବଂ ସେଥିପାଇଁ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ବିଧାନ କରୁଥିବା ଶାସ୍ତ୍ରମାନଙ୍କର ବା କି ଆବଶ୍ୟକତା ? ଏହାର ଉତ୍ତର ଏହି ଯେ, କର୍ତ୍ତବ୍ୟ-ଅକର୍ତ୍ତବ୍ୟ ବିଧାନ କରୁଥିବା ଶାସ୍ତ୍ରମାନେ ମନୁଷ୍ୟଙ୍କୁ ତା'ର ସ୍ୱାଭାବିକ କର୍ମମାନଙ୍କ

ଠାରୁ ଦୂରେଇ ରହିବାକୁ କହନ୍ତି ନାହିଁ, କି ତାକୁ ସ୍ୱଭାବବିରୁଦ୍ଧ କର୍ମ କରିବାକୁ କହନ୍ତି ନାହିଁ। ବରଂ କର୍ମ କରିବା ସମୟରେ ମନୁଷ୍ୟ ରାଗ-ଦ୍ୱେଷର ବଶ ହୋଇ ଯେଉଁ ଅନ୍ୟାୟ କରିଦିଏ, ସେହି ଅନ୍ୟାୟ ତ୍ୟାଗ କରାଇ ତାକୁ ନ୍ୟାୟପୂର୍ବକ କର୍ତ୍ତବ୍ୟକର୍ମରେ ଲଗାଇବା ପାଇଁ ଶାସ୍ତ୍ରମାନଙ୍କରେ ବିଧାନ ରହିଛି। ସୁତରାଂ ମନୁଷ୍ୟ କର୍ମ କରିବାରେ ସ୍ୱଭାବର ପରତନ୍ତ୍ର ହୋଇଥିଲେ ମଧ୍ୟ ସେହି ସ୍ୱଭାବକୁ ସୁଧାରିବାରେ ପରତନ୍ତ୍ର ନୁହେଁ। ଅତଏବ ଯଦି ସେ ସେହି ଶାସ୍ତ୍ରମାନଙ୍କର ଓ ମହାପୁରୁଷମାନଙ୍କର ଉପଦେଶଦ୍ୱାରା ସଚେତ ହୋଇ ପ୍ରକୃତିର ପ୍ରେରକ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଶରଣ ଗ୍ରହଣ କରିନିଏ ଏବଂ ରାଗଦ୍ୱେଷାଦି ବିକାର ତ୍ୟାଗ କରିଦେଇ, ଶାସ୍ତ୍ରବିଧିଅନୁସାରେ ନ୍ୟାୟପୂର୍ବକ ନିଷ୍କାମଭାବରେ ନିଜର ସ୍ୱାଭାବିକ କର୍ମ କରି ନିଜର ଜୀବନ ଅତିବାହିତ କରେ, ତେବେ ତା'ର ଉଦ୍ଧାର ହୋଇପାରେ।

*ସମ୍ବନ୍ଧ— ଉପରୋକ୍ତ ଶ୍ଳୋକରେ ସିଦ୍ଧ କରାଯାଇଛି ଯେ, ସ୍ୱରୂପତଃ କର୍ମ ତ୍ୟାଗ କରିବାରେ ମନୁଷ୍ୟ ସ୍ୱତନ୍ତ୍ର ନୁହେଁ; ତାକୁ ନିଜ ସ୍ୱଭାବର ବଶ ହୋଇ ସ୍ୱାଭାବିକ କର୍ମରେ ପ୍ରବୃତ୍ତ ହେବାକୁ ପଡ଼େ; କାରଣ ସର୍ବଶକ୍ତିମାନ୍ ସର୍ବାନ୍ତର୍ଯାମୀ ପରମେଶ୍ୱର ସ୍ୱୟଂ ସମସ୍ତ ପ୍ରାଣୀମାନଙ୍କ ହୃଦୟରେ ରହି ସେମାନଙ୍କ ପ୍ରକୃତି ଅନୁସାରେ ସେମାନଙ୍କୁ ଚାଳିତ କରାନ୍ତି ଏବଂ ପରମେଶ୍ୱରଙ୍କ ପ୍ରେରଣାର ପ୍ରତିବାଦ କରିବାକୁ ମନୁଷ୍ୟ ସକ୍ଷମ ନୁହେଁ। ଏହା ଉପରେ ପ୍ରଶ୍ନ ଉଠେ: କଥା ଯଦି ଏପରି, ତେବେ କର୍ମବନ୍ଧନରୁ ମୁକ୍ତ ହୋଇ ପରମ ଶାନ୍ତି ଲାଭ କରିବାନିମନ୍ତେ ମନୁଷ୍ୟ କ'ଣ କରିବା ଉଚିତ? ଏହି ପ୍ରଶ୍ନର ଉତ୍ତରସ୍ୱରୂପ ଭଗବାନ୍ ଅର୍ଜୁନଙ୍କୁ ତାଙ୍କର କର୍ତ୍ତବ୍ୟ କ'ଣ, ତାହା କହୁଛନ୍ତି—*

## ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ।
## ତତ୍‌ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍॥ ୬୨ ॥

**ଅନ୍ୱୟ—** ଭାରତ = ହେ ଭାରତ! (ତୁମେ); **ସର୍ବଭାବେନ** = ସର୍ବତୋଭାବେ; **ତମ୍** = ସେହି ପରମେଶ୍ୱରଙ୍କୁ; **ଏବ** = ହିଁ; **ଶରଣମ୍** = ଶରଣ; **ଗଚ୍ଛ** = ଯାଅ; **ତତ୍‌ପ୍ରସାଦାତ୍** = ସେହି ପରମାତ୍ମାଙ୍କ କୃପାରୁ (ତୁମେ); **ପରାମ୍** = ପରମ; **ଶାନ୍ତିମ୍** = ଶାନ୍ତିକୁ (ତଥା); **ଶାଶ୍ୱତମ୍** = ସନାତନ; **ସ୍ଥାନମ୍** = ପରମଧାମକୁ; **ପ୍ରାପ୍ସ୍ୟସି** = ପ୍ରାପ୍ତ ହେବ।

**ହେ ଭାରତ! ତୁମେ ସର୍ବତୋଭାବେ ସେହି ପରମେଶ୍ୱରଙ୍କୁ ହିଁ ଶରଣ ଯାଅ। ସେହି ପରମାତ୍ମାଙ୍କ କୃପାରୁ ତୁମେ ପରମ ଶାନ୍ତି ତଥା ସନାତନ ପରମଧାମ ପ୍ରାପ୍ତ ହେବ॥ ୬୨ ॥**

**ପ୍ରଶ୍ନ—** ତମ୍ ପଦ କାହାର ବାଚକ ଏବଂ ସର୍ବତୋଭାବେ ତାହାଙ୍କର ଶରଣ ଯିବାର ତାତ୍ପର୍ଯ୍ୟ କ'ଣ?

**ଉତ୍ତର—** ଯେଉଁ ସର୍ବଶକ୍ତିମାନ୍, ସର୍ବାଧାର, ସର୍ବପ୍ରେରକ, ସର୍ବାନ୍ତର୍ଯାମୀ, ସର୍ବବ୍ୟାପୀ, ପରମେଶ୍ୱରଙ୍କୁ ପୂର୍ବଶ୍ଳୋକରେ ସମସ୍ତ ପ୍ରାଣୀଙ୍କର ହୃଦୟରେ ଅବସ୍ଥିତ ବୋଲି କୁହାଯାଇଛି, ଏଠାରେ ତମ୍ ପଦଟି ହେଉଛି ତାଙ୍କରି ବାଚକ। ନିଜର ମନ, ବୁଦ୍ଧି, ସମସ୍ତ ଇନ୍ଦ୍ରିୟ, ସମସ୍ତ ପ୍ରାଣ ଓ ସମସ୍ତ ଧନ, ଜନ ଆଦି ତାଙ୍କୁ ସମର୍ପଣ କରିଦେଇ ତାଙ୍କରି ଉପରେ ନିର୍ଭର କରିବା ହିଁ ସର୍ବତୋଭାବେ ସେହି ପରମେଶ୍ୱରଙ୍କୁ ଶରଣ ଯିବା।

ଅର୍ଥାତ୍ ଭଗବତ୍‌ଶରଣାଗତ ମନୁଷ୍ୟ ଭଗବାନଙ୍କର ଗୁଣ, ପ୍ରଭାବ, ତତ୍ତ୍ୱ ଏବଂ ସ୍ୱରୂପକୁ ଶ୍ରଦ୍ଧାପୂର୍ବକ ନିଶ୍ଚୟ କରି ଭଗବାନଙ୍କୁ ହିଁ ପରମ ପ୍ରାପ୍ୟ, ପରମ ଗତି, ପରମ ଆଶ୍ରୟ ଓ ସର୍ବସ୍ୱ ବୋଲି ବୁଝିବା; ତାଙ୍କୁ ନିଜର ସ୍ୱାମୀ, ଭର୍ତ୍ତା, ପ୍ରେରକ, ରକ୍ଷକ ଓ ପରମ ହିତୈଷୀ ବୋଲି ବୁଝି, ସବୁପ୍ରକାରେ ତାଙ୍କ ଉପରେ ନିର୍ଭର କରି ନିର୍ଭୟ ହୋଇଯିବା; ସବୁ କିଛି ଭଗବାନଙ୍କର ବୋଲି ବୁଝି ଓ ଭଗବାନଙ୍କୁ ସର୍ବବ୍ୟାପୀ ବୋଲି ଜାଣି, ସମସ୍ତ କର୍ମରେ ମମତ୍ୱ, ଅଭିମାନ, ଆସକ୍ତି ଓ କାମନା ତ୍ୟାଗ କରିବା; ଭଗବାନଙ୍କ ଆଜ୍ଞାନୁସାରେ ନିଜର କର୍ମମାନଙ୍କ ଦ୍ୱାରା ସମସ୍ତ ପ୍ରାଣୀଙ୍କ ହୃଦୟରେ ଅବସ୍ଥିତ ପରମେଶ୍ୱରଙ୍କୁ ସେବା କରିବା; ଯାହା କିଛି ସୁଖ-ଦୁଃଖ ଭୋଗ ମିଳିବ, ତାହା ଭଗବାନଙ୍କର ପ୍ରଦତ୍ତ ପୁରସ୍କାର ବୋଲି ବୁଝି ସଦାସର୍ବଦା ସନ୍ତୁଷ୍ଟ ରହିବା; ଭଗବାନଙ୍କର କୌଣସି ବିଧାନରେ କେବେ ସାମାନ୍ୟମାତ୍ର ବି ଅସନ୍ତୁଷ୍ଟ ନ ହେବା ଏବଂ ମାନ, ବଡ଼ିମା ଓ ପ୍ରତିଷ୍ଠା ତ୍ୟାଗ

କରି ଭଗବାନଙ୍କ ବ୍ୟତୀତ କୌଣସି ବି ସାଂସାରିକ ବସ୍ତୁରେ ମମତ୍ୱ ଓ ଆସକ୍ତି ନ ରଖିବା; ଅତିଶୟ ଶ୍ରଦ୍ଧା ଓ ଅନନ୍ୟ ପ୍ରେମପୂର୍ବକ ଭଗବାନଙ୍କର ନାମ, ଗୁଣ, ପ୍ରଭାବ, ଲୀଳା, ତତ୍ତ୍ୱ ଓ ସ୍ୱରୂପ ନିତ୍ୟ-ନିରନ୍ତର ଶ୍ରବଣ, ଚିନ୍ତନ ଓ କୀର୍ତ୍ତନ କରିବା– ଏହିସବୁ ଭାବ ତଥା କ୍ରିୟା ହେଉଛି ସର୍ବତୋଭାବେ ପରମେଶ୍ୱରଙ୍କ ଶରଣ ଗ୍ରହଣ କରିବାର ଅନ୍ତର୍ଗତ।

**ପ୍ରଶ୍ନ –** 'ପରମେଶ୍ୱରଙ୍କ କୃପାରୁ ପରମ ଶାନ୍ତି ଏବଂ ସନାତନ ପରମଧାମ ପ୍ରାପ୍ତ ହେବା କ'ଣ?

**ଉତ୍ତର –** ଉପରୋକ୍ତପ୍ରକାରେ ଭଗବାନଙ୍କ ଶରଣ ଗ୍ରହଣ କରୁଥିବା ଭକ୍ତଙ୍କ ଉପରେ ପରମଦୟାଳୁ ପରମସୁହୃଦ୍, ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ଅପାର ଦୟାର ସ୍ରୋତ ପ୍ରବାହିତ ହୁଏ। ତାହା ଭକ୍ତଙ୍କର ସମସ୍ତ ଦୁଃଖ ଓ ବନ୍ଧନ ଚିରଦିନପାଇଁ ଧୋଇନେଇଯାଏ। ସମସ୍ତ ଦୁଃଖରୁ ଓ ସମସ୍ତପ୍ରକାର ବନ୍ଧନରୁ ଚିରମୁକ୍ତି ନିମନ୍ତେ ଭକ୍ତମାନଙ୍କର ପରମାନନ୍ଦରେ ଯୁକ୍ତ ହୋଇଯିବା ଏବଂ ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ସନାତନ ପରମେଶ୍ୱରଙ୍କୁ ପ୍ରାପ୍ତ ହୋଇଯିବା ହିଁ ପରମେଶ୍ୱରଙ୍କ କୃପାରୁ ପରମ ଶାନ୍ତି ଏବଂ ସନାତନ ପରମଧାମ ପ୍ରାପ୍ତ ହେବା।

*ସମ୍ବନ୍ଧ –* *ଏପରିଭାବରେ ଅର୍ଜୁନଙ୍କୁ ଅନ୍ତର୍ଯାମୀ ପରମେଶ୍ୱରଙ୍କ ଶରଣ ଗ୍ରହଣ କରିବାନିମନ୍ତେ ଆଜ୍ଞା ଦେଇ ଭଗବାନ୍ ବର୍ତ୍ତମାନ ଉକ୍ତ ଉପଦେଶର ଉପସଂହାର କରୁଛନ୍ତି–*

## ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍‌ଗୁହ୍ୟତରଂ ମୟା।
## ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ ॥ ୬୩ ॥

**ଅନ୍ୱୟ –** **ଇତି** = ଏପରିଭାବରେ (ଏହି); **ଗୁହ୍ୟାତ୍** = ଗୋପନୀୟଠାରୁ (ମଧ୍ୟ); **ଗୁହ୍ୟତରମ୍** = ଅତି ଗୋପନୀୟ; **ଜ୍ଞାନମ୍** = ଜ୍ଞାନ; **ମୟା** = ମୋ ଦ୍ୱାରା; **ତେ** = ତୁମକୁ; **ଆଖ୍ୟାତମ୍** = କୁହାଗଲା (ବର୍ତ୍ତମାନ ତୁମେ); **ଏତତ୍** = ଏହି ରହସ୍ୟଯୁକ୍ତ ଜ୍ଞାନକୁ; **ଅଶେଷେଣ** = ପୂର୍ଣ୍ଣରୂପେ; **ବିମୃଶ୍ୟ** = ଭଲଭାବରେ ବିଚାର କରି; **ଯଥା** = ଯେପରି; **ଇଚ୍ଛସି** = ଇଚ୍ଛା କରୁଛ; **ତଥା** = ସେହିପରି; **କୁରୁ** = କର।

**ଏପରିଭାବରେ ଗୋପନୀୟଠାରୁ ମଧ୍ୟ ଅତି ଗୋପନୀୟ ଏହି ଜ୍ଞାନ ମୁଁ ତୁମକୁ କହିଦେଲି। ବର୍ତ୍ତମାନ ତୁମେ ଏହି ରହସ୍ୟଯୁକ୍ତ ଜ୍ଞାନକୁ ପୂର୍ଣ୍ଣରୂପେ ଭଲଭାବରେ ବିଚାର କରି, ଯେପରି ଇଚ୍ଛା କରୁଛ, ସେପରି କର॥ ୬୩ ॥**

**ପ୍ରଶ୍ନ –** ଏଠାରେ **ଇତି** ପଦର ଭାବ କ'ଣ?

**ଉତ୍ତର –** **ଇତି** ପଦ ଏଠାରେ ଉପଦେଶସମାପ୍ତିର ବୋଧକ। ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ଭଗବାନ୍ ଯାହା କହିଛନ୍ତି, **ଇତି** ପଦଟି ସେହି ସବୁକୁ ଲକ୍ଷ୍ୟ କରାଉଛି।

**ପ୍ରଶ୍ନ –** **ଜ୍ଞାନମ୍** ପଦ ଏଠାରେ କେଉଁ ଜ୍ଞାନର ବାଚକ ଏବଂ ତାହା ସହିତ **ଗୁହ୍ୟାଦ୍ ଗୁହ୍ୟତରମ୍** ବିଶେଷଣ ଦେଇ କେଉଁ ଭାବ ଦେଖାଇଦିଆଯାଇଛି?

**ଉତ୍ତର –** ଭଗବାନ୍ ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ଅର୍ଜୁନଙ୍କୁ ନିଜର ଗୁଣ, ପ୍ରଭାବ, ତତ୍ତ୍ୱ ଓ ସ୍ୱରୂପର ରହସ୍ୟ ଭଲଭାବରେ ବୁଝାଇଦେବାପାଇଁ ଯାହାସବୁ କହିଛନ୍ତି, ଏଠାରେ **ଜ୍ଞାନମ୍** ପଦଟି ହେଉଛି ସେହି ସମସ୍ତ ଉପଦେଶର ବାଚକ। ସେହିସବୁ ଉପଦେଶ ଭଗବାନଙ୍କର ପ୍ରତ୍ୟକ୍ଷ ଜ୍ଞାନ ଲାଭ କରାଇବାକୁ ସମର୍ଥ; ତେଣୁ ତାହାର ନାମ ଜ୍ଞାନ ରଖାଯାଇଛି। ସଂସାରରେ ଏବଂ ଶାସ୍ତ୍ରମାନଙ୍କରେ ଯେତେ ବି ରହସ୍ୟ ଗୋପନୀୟ ବୋଲି ସ୍ୱୀକାର କରାଯାଇଛି, ସେମାନଙ୍କ ମଧ୍ୟରେ ଭଗବାନଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପ ବିଷୟରେ ଯଥାର୍ଥ ଜ୍ଞାନ ଲାଭ କରାଇଦେଉଥିବା ଉପଦେଶକୁ ସବୁଠାରୁ ବଳି ଗୋପନୀୟ ରହସ୍ୟ ବୋଲି ସ୍ୱୀକାର କରାଯାଇଛି; ତେଣୁ ଏହି ଉପଦେଶର ମହତ୍ତ୍ୱ ବୁଝାଇବାନିମନ୍ତେ ଏବଂ ଅନଧିକାରୀଙ୍କ ଆଗରେ ଏ କଥା ପ୍ରକଟ କରିବା ଉଚିତ ନୁହେଁ ବୋଲି ବୁଝାଇଦେବାନିମନ୍ତେ ଏଠାରେ **ଜ୍ଞାନମ୍** ପଦ ସହିତ **ଗୁହ୍ୟାଦ୍ ଗୁହ୍ୟତରମ୍** ବିଶେଷଣ ଦିଆଯାଇଛି।

**ପ୍ରଶ୍ନ –** ମୟା, ତେ ଏବଂ ଆଖ୍ୟାତମ୍ ପଦଗୁଡ଼ିକର ତାତ୍ପର୍ଯ୍ୟ କ'ଣ?

**ଉତ୍ତର –** **ମୟା** ପଦଦ୍ୱାରା ଭଗବାନ୍ କହୁଛନ୍ତି, "ମୋର ଅର୍ଥାତ୍ ପରମେଶ୍ୱରଙ୍କର ଗୁଣ, ପ୍ରଭାବ ଓ ସ୍ୱରୂପର ତତ୍ତ୍ୱ ମୁଁ ଯେତେ ଏବଂ ଯେପରି କହିପାରିବି, ଅନ୍ୟ କେହି ସେତେ ସେପରି କହିପାରିବେ ନାହିଁ; ତେଣୁ ମୋ ଦ୍ୱାରା କୁହାଯାଇଥିବା ଏହି ଜ୍ଞାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ।" **ତେ** ପଦଦ୍ୱାରା କହୁଛନ୍ତି, "ତୁମଙ୍କୁ ଏହାର ଅଧିକାରୀ ବୋଲି ଜାଣି ତୁମର ମଙ୍ଗଳନିମନ୍ତେ ମୁଁ ଏହି ଉପଦେଶ ଶୁଣାଇଲି।" **ଆଖ୍ୟାତମ୍** ପଦଦ୍ୱାରା କହୁଛନ୍ତି, "ମୋର ଯାହା କିଛି କହିବାର ଥିଲା, ସେସବୁ ମୁଁ କହିଦେଇସାରିଛି; ବର୍ତ୍ତମାନ ଆଉ କିଛି କହିବାକୁ ବାକି ନାହିଁ।"

**ପ୍ରଶ୍ନ –** 'ଏହି ରହସ୍ୟଯୁକ୍ତ ଜ୍ଞାନକୁ ପୂର୍ଣ୍ଣରୂପେ ଭଲଭାବରେ ବିଚାର କରି ଯେପରି ଚାହୁଁଛ, ସେପରି କର' – ଏପରି କହିବାର ଭାବ କ'ଣ ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ଉପଦେଶ ଆରମ୍ଭ କରି ଭଗବାନ୍ ଅର୍ଜୁନଙ୍କୁ ସାଂଖ୍ୟଯୋଗ ଓ କର୍ମଯୋଗ — ଏହି ଦୁଇଟିର ସାଧନା ଅନୁସାରେ ସ୍ୱଧର୍ମରୂପକ ଯୁଦ୍ଧ କରିବା କର୍ତ୍ତବ୍ୟ ବୋଲି ସ୍ଥାନେ ସ୍ଥାନେ (୨/୧୮,୩୭; ୩/୩୦; ୮/୭; ୧୧/୩୪) କହିଛନ୍ତି, ତଥା ତାଙ୍କରି ଶରଣ ଗ୍ରହଣ କରିବାପାଇଁ କହିଛନ୍ତି। ଏହା ବ୍ୟତୀତ ଅଷ୍ଟାଦଶ ଅଧ୍ୟାୟରେ ଅର୍ଜୁନଙ୍କ ଜିଜ୍ଞାସା ଅନୁସାରେ ସନ୍ନ୍ୟାସ ଓ ତ୍ୟାଗ (ଯୋଗ)ର ତତ୍ତ୍ୱ ଭଲଭାବରେ ବୁଝାଇଦେବା ପରେ ପୁଣି ଛପନ ଓ ସତାବନ ଶ୍ଳୋକରେ ଭକ୍ତିପ୍ରଧାନ କର୍ମଯୋଗର ମହିମା ବର୍ଣ୍ଣନା କରି ଅର୍ଜୁନଙ୍କୁ ନିଜର ଶରଣ ନେବାପାଇଁ କହିଛନ୍ତି। ଏତେ କଥା କହିବା ପରେ ମଧ୍ୟ ଅର୍ଜୁନଙ୍କ ମୁହଁରୁ କୌଣସି ସ୍ୱୀକୃତି ନ ବାହାରିବାରୁ, ଭଗବାନ୍ ପୁଣି ଥରେ ସେହି ଆଜ୍ଞା ପାଳନର ମହାନ୍ ଫଳ ଶୁଣାଇଲେ ଏବଂ ତାହା ନ ମାନିଲେ ଘୋର କ୍ଷତି ହେବ ବୋଲି ମଧ୍ୟ କହିଦେଲେ। ଏକଥା କହିବା ପରେ ମଧ୍ୟ କୌଣସି ଉତ୍ତର ନ ମିଳିବାରୁ, ପୁଣି ଥରେ ଅର୍ଜୁନଙ୍କୁ ସାବଧାନ କରିଦେବାପାଇଁ 'ପରମେଶ୍ୱର ସମସ୍ତଙ୍କର ପ୍ରେରଣାଦାତା ଏବଂ ସମସ୍ତଙ୍କ ହୃଦୟନିବାସୀ' ବୋଲି ବୁଝାଇ ତାଙ୍କର ଶରଣ ଗ୍ରହଣ କରିବାକୁ କହିଲେ। ଏସବୁ କଥା ଶୁଣିବା ପରେ ମଧ୍ୟ ଅର୍ଜୁନ ଯେତେବେଳେ କିଛି କହିଲେ ନାହିଁ, ସେତେବେଳେ ଏହି ଶ୍ଳୋକର ପୂର୍ବାର୍ଦ୍ଧରେ ଉପଦେଶର ଉପସଂହାର କରି ଏବଂ କହିଥିବା ଉପଦେଶର ମହତ୍ତ୍ୱ ଦର୍ଶାଇ ଏହି ବାକ୍ୟଦ୍ୱାରା ପୁଣି ଥରେ ତାହା ଉପରେ ବିଚାର କର ବୋଲି ଅର୍ଜୁନଙ୍କୁ ସାବଧାନ କରାଇଦେଲେ ଏବଂ ଶେଷରେ ଭଗବାନ୍ କହିଲେ, **ଯଥେଚ୍ଛସି ତଥା କୁରୁ** ଅର୍ଥାତ୍ 'ଉପରୋକ୍ତପ୍ରକାରେ ବିଚାର କରିବା ପରେ ତୁମେ ଯାହା ଠିକ୍ ବୋଲି ଭାବୁଛ, ତାହା କର।' ଅଭିପ୍ରାୟ ହେଉଛି, "ମୁଁ ଯେଉଁ କର୍ମଯୋଗ, ଜ୍ଞାନଯୋଗ ଏବଂ ଭକ୍ତିଯୋଗ ଆଦି ବହୁପ୍ରକାର ସାଧନା କହିଛି, ସେଥିମଧ୍ୟରୁ ତୁମକୁ ଯେଉଁ ସାଧନା ଭଲ ଜଣାପଡୁଛି, ତାହା ପାଳନ କର ବା ଆଉ ଯାହା କିଛି ଠିକ୍ ବୋଲି ମନେ କରୁଛ, ତାହା କର।"

***ସମ୍ବନ୍ଧ –*** *ଏପରିଭାବରେ ଦିଆଯାଇଥିବା ସମସ୍ତ ଉପଦେଶ ଉପରେ ବିଚାର କରି ନିଜର କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାପାଇଁ ଅର୍ଜୁନଙ୍କୁ କହିବା ପରେ ମଧ୍ୟ ଅର୍ଜୁନ ଯେତେବେଳେ କିଛି ବି ଉତ୍ତର ଦେଲେ ନାହିଁ ଏବଂ ନିଜକୁ ଅନଧିକାରୀ ତଥା କର୍ତ୍ତବ୍ୟ ନିଶ୍ଚୟ କରିବାରେ ଅସମର୍ଥ ବୋଲି ବୁଝି ଖିନ୍ନଚିତ୍ତ ଓ ଚକିତପ୍ରାୟ ହୋଇଗଲେ, ସେତେବେଳେ ସମସ୍ତଙ୍କ ହୃଦୟର କଥା ଜାଣିପାରୁଥିବା ସ୍ୱୟଂ ଅନ୍ତର୍ଯାମୀ ଭଗବାନ୍ ଅର୍ଜୁନଙ୍କ ପ୍ରତି ଦୟାର୍ଦ୍ର ହୋଇ, ତାଙ୍କୁ ସମସ୍ତ ଗୀତା ଉପଦେଶର ସାର କଥାଟି କହିଦେବାକୁ ଲାଗିଲେ–*

## ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
## ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମି ତେ ହିତମ୍ ।। ୬୪ ।।

**ଅନ୍ୱୟ –** **ସର୍ବଗୁହ୍ୟତମମ୍** = ସକଳ ଗୋପନୀୟଠାରୁ ଅଧିକ ଗୋପନୀୟ; **ମେ** = ମୋର; **ପରମମ୍** = ପରମରହସ୍ୟଯୁକ୍ତ; **ବଚଃ** = ବଚନକୁ (ତୁମେ); **ଭୂୟଃ** = ପୁଣି ଥରେ; **ଶୃଣୁ** = ଶୁଣ (ତୁମେ); **ମେ** = ମୋର; **ଦୃଢ଼ମ୍** = ଅତିଶୟ; **ଇଷ୍ଟଃ** = ପ୍ରିୟ; **ଅସି** = ଅଟ; **ତତଃ** = ତେଣୁ; **ଇତି** = ଏହି; **ହିତମ୍** = ପରମ ହିତକର ବଚନ; **ତେ** = ତୁମକୁ; **(ଭୂୟଃ)** **ବକ୍ଷ୍ୟାମି** = ମୁଁ ପୁନର୍ବାର କହିବି।

**ସକଳଗୋପନୀୟଠାରୁ ଅଧିକ ଗୋପନୀୟ ମୋର ପରମ ରହସ୍ୟଯୁକ୍ତ ବଚନ ତୁମେ ପୁଣି ଥରେ ଶୁଣ। ତୁମେ ମୋର ଅତିଶୟ ପ୍ରିୟ; ତେଣୁ ମୁଁ ତୁମକୁ ଏହି ପରମ ହିତକର ବଚନ ପୁନର୍ବାର କହିବି॥ ୬୪ ॥**

**ପ୍ରଶ୍ନ –** **ବଚଃ** ସହିତ **ସର୍ବଗୁହ୍ୟତମମ୍** ଏବଂ **ପରମମ୍** ଏହି ଦୁଇ ବିଶେଷଣ ପ୍ରୟୋଗର ଭାବ କ'ଣ ?

**ଉତ୍ତର –** ଭଗବାନ୍ ଏପର୍ଯ୍ୟନ୍ତ ଅର୍ଜୁନଙ୍କୁ ଯେତେ କଥା କହିଛନ୍ତି, ସେଗୁଡ଼ିକ ଗୁପ୍ତ ରଖିବାଯୋଗ୍ୟ; ତେଣୁ ସେଗୁଡ଼ିକୁ ସ୍ଥାନେ ସ୍ଥାନେ 'ପରମଗୁହ୍ୟ ଏବଂ 'ଉତ୍ତମ ରହସ୍ୟ' ନାମ ଦେଇଛନ୍ତି। ସେହିସବୁ ଉପଦେଶରେ ମଧ୍ୟ ଯେଉଁଠାରେ ଭଗବାନ୍ ବିଶେଷରୂପେ ନିଜର ଗୁଣ, ପ୍ରଭାବ, ସ୍ୱରୂପ, ମହିମା ଓ ଐଶ୍ୱର୍ଯ୍ୟ ପ୍ରକଟ କରି ଅର୍ଥାତ୍ 'ମୁଁ ହିଁ ସ୍ୱୟଂ ସର୍ବବ୍ୟାପୀ, ସର୍ବାଧାର, ସର୍ବଶକ୍ତିମାନ୍, ସାକ୍ଷାତ୍ ସଗୁଣ-ନିର୍ଗୁଣ ପରମେଶ୍ୱର' – ବୋଲି କହି ଅର୍ଜୁନଙ୍କୁ ତାଙ୍କର ଭଜନ କରିବାନିମନ୍ତେ ଏବଂ ତାଙ୍କର ଶରଣରେ ଆସିବାନିମନ୍ତେ କହିଛନ୍ତି, ସେହି ବଚନଗୁଡ଼ିକ ସର୍ବାଧିକ ଗୁହ୍ୟତମ। ତେଣୁ ଭଗବାନ୍ ନବମ ଅଧ୍ୟାୟର ପ୍ରଥମ ଶ୍ଳୋକରେ **ଗୁହ୍ୟତମମ୍** ଏବଂ ଦ୍ୱିତୀୟ ଶ୍ଳୋକରେ **ରାଜଗୁହ୍ୟମ୍** ବିଶେଷଣ ପ୍ରୟୋଗ କରିଛନ୍ତି; କାରଣ ସେହି ଅଧ୍ୟାୟରେ ଭଗବାନ୍ ନିଜର ଗୁଣ, ପ୍ରଭାବ, ସ୍ୱରୂପ, ରହସ୍ୟ ଏବଂ ଐଶ୍ୱର୍ଯ୍ୟ ବିଷୟ ଭଲଭାବରେ ବର୍ଣ୍ଣନା କରି ଅର୍ଜୁନଙ୍କୁ ତାଙ୍କର ଭଜନ କରିବାନିମନ୍ତେ ତଥା ତାଙ୍କର ଶରଣ ଗ୍ରହଣ କରିବାନିମନ୍ତେ ସ୍ପଷ୍ଟଶବ୍ଦରେ କହିଛନ୍ତି। ସେହିପରି ଦଶମ ଅଧ୍ୟାୟରେ ମଧ୍ୟ ତାଙ୍କର ଶରଣାଗତି ବିଷୟ ଆରମ୍ଭ କରିବା ସମୟରେ ପ୍ରଥମ ଶ୍ଳୋକରେ **ବଚଃ** ସହିତ **ପରମମ୍** ବିଶେଷଣ ଦେଇଛନ୍ତି। ଅତଏବ ଏଠାରେ ଭଗବାନ୍ **ବଚଃ** ସହିତ **ସର୍ବଗୁହ୍ୟତମମ୍** ଏବଂ **ପରମମ୍** ବିଶେଷଣ ଦେଇ କହିଛନ୍ତି, ''ମୋର କହିଥିବା ଉପଦେଶଗୁଡ଼ିକ ମଧ୍ୟରେ ବି ଯାହା ଅତ୍ୟନ୍ତ ଗୋପନୀୟ, ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ, ତାହା ମୁଁ ତୁମକୁ ପରବର୍ତ୍ତୀ ଦୁଇଟି ଶ୍ଳୋକରେ କହିବି।''

**ପ୍ରଶ୍ନ –** ସେହି ଉପଦେଶ ପୁଣି ଥରେ ଶୁଣ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର –** ତାହା ପୁଣି ଥରେ ଶୁଣିବାପାଇଁ କହି ଭଗବାନ୍ କହୁଛନ୍ତି, ''ବର୍ତ୍ତମାନ ମୁଁ ତୁମକୁ ଯାହା କହିବାକୁ ଯାଉଛି, ତାହା ପ୍ରଥମରୁ ବି କହିସାରିଛି (୯/୩୪, ୧୨/୬-୭; ୧୮/୫୬-୫୭); କିନ୍ତୁ ତୁମେ ତାହା ଭଲଭାବରେ ଗ୍ରହଣ କରି ନାହଁ; ଅତଏବ ସେହି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଉପଦେଶଟିକୁ ସମସ୍ତ ଉପଦେଶଠାରୁ ଅଲଗା କରି ମୁଁ ପୁଣି ଥରେ ତୁମକୁ କହୁଛି। ତୁମେ ତାହା ସାବଧାନ ହୋଇ ଶୁଣ।''

**ପ୍ରଶ୍ନ –** **ଦୃଢ଼ମ୍** ସହିତ **ଇଷ୍ଟଃ** ପଦଦ୍ୱାରା କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ତେଷଠି ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ନିଜ କର୍ତ୍ତବ୍ୟନିର୍ଣ୍ଣୟ ବିଷୟରେ ତାଙ୍କ ନିଜ ବିବେଚନା ଅନୁଯାୟୀ ଯେପରି ଇଚ୍ଛା ସେପରି କରିବାକୁ ଛାଡ଼ିଦେଇଛନ୍ତି; ସେହି ନିର୍ଣ୍ଣୟ କରିବା ଭାର ସେ ଆଉ ନିଜ ଉପରେ ରଖି ନାହାନ୍ତି। ତାହା ଶୁଣି ଅର୍ଜୁନଙ୍କ ମନରେ ଉଦାସ ଭାବ ଘୋଟିଯାଇଛି; ସେ ଚିନ୍ତା କରିବାକୁ ଲାଗିଛନ୍ତି, ''ଭଗବାନ୍ କାହିଁକି ଏପରି କହୁଛନ୍ତି ! କଣ ମୋର ଭଗବାନଙ୍କ ଉପରେ ବିଶ୍ୱାସ ନାହିଁ? ମୁଁ କଣ ତାଙ୍କର ଭକ୍ତ ନୁହେଁ? ପ୍ରେମୀ ନୁହେଁ?'' ତେଣୁ **ଦୃଢ଼ମ୍** ଏବଂ **ଇଷ୍ଟଃ** ଏହି ଦୁଇ ପଦଦ୍ୱାରା ଭଗବାନ୍ ଅର୍ଜୁନଙ୍କର ଶୋକ ଦୂର କରିବାକୁ ତାଙ୍କୁ ଉତ୍ସାହିତ କରି କହୁଛନ୍ତି, ''ତୁମେ ମୋର ଅତ୍ୟନ୍ତ ପ୍ରିୟ, ତୁମର ଓ ମୋର ପ୍ରେମର ସମ୍ବନ୍ଧ ଅଟୁଟ; ତେଣୁ ତୁମେ କୌଣସିପ୍ରକାର ଶୋକ କର ନାହିଁ।''

**ପ୍ରଶ୍ନ –** **ତତଃ** ଅବ୍ୟୟ ପ୍ରୟୋଗର ତଥା 'ମୁଁ ତୁମକୁ ପରମ ହିତକର କଥା କହିବି' – ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** **ତତଃ** ପଦ ଏଠାରେ ହେତୁବାଚକ, ଏହା ପ୍ରୟୋଗ କରି ଏବଂ ଅର୍ଜୁନଙ୍କୁ ତାଙ୍କର ପରମ ହିତକର କଥା କହିବାକୁ ପ୍ରତିଜ୍ଞା କରି ଭଗବାନ୍ ଜଣାଇଦେଉଛନ୍ତି, ''ତୁମେ ମୋର ଘନିଷ୍ଠ ପ୍ରେମୀ; ତେଣୁ ମୁଁ ତୁମଠାରୁ କିଛି ଛପାଇ ନ ରଖି ତୁମର ପରମ ମଙ୍ଗଳପାଇଁ, ତୁମ ଆଗରେ ଅତ୍ୟନ୍ତ ଗୋପନୀୟ କଥା କହିବି ଏବଂ ମୁଁ ଯାହା କିଛି କହିବି, ତାହା ତୁମପାଇଁ ଅତ୍ୟନ୍ତ ହିତକର ହେବ।''

*ସମ୍ବନ୍ଧ – ପୂର୍ବଶ୍ଳୋକରେ ଯେଉଁ ସର୍ବଗୁହ୍ୟତମ କଥା କହିବାକୁ ଭଗବାନ୍ ପ୍ରତିଜ୍ଞା କରିଛନ୍ତି, ତାହା ବର୍ତ୍ତମାନ କହୁଛନ୍ତି–*

**ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।**
**ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ॥ ୬୫ ॥**

**ଅନ୍ୱୟ –** ମନ୍ମନାଃ, ଭବ = ମୋଠାରେ ମନ ଲଗାଅ; **ମଦ୍‌ଭକ୍ତଃ(ଭବ)** = ମୋର ଭକ୍ତ ହୋଇଯାଅ; **ମଦ୍‌ଯାଜୀ (ଭବ)** = ମୋର ପୂଜକ ହୋଇଯାଅ; **ମାମ୍** = ମୋତେ; **ନମସ୍କୁରୁ** = ନମସ୍କାର କର; **(ଏବମ୍)** = ଏପରି କଲେ (ତୁମେ); **ମାମ୍** = ମୋତେ; **ଏବ** = ହିଁ; **ଏଷ୍ୟସି** = ପ୍ରାପ୍ତ ହେବ (ଏହା ମୁଁ); **ତେ** = ତୁମକୁ; **ସତ୍ୟମ୍** = ସତ୍ୟ; **ପ୍ରତିଜାନେ** = ପ୍ରତିଜ୍ଞା କରି କହୁଛି; **(ଯତଃ)** = କାରଣ (ତୁମେ); **ମେ** = ମୋର; **ପ୍ରିୟଃ** = ଅତ୍ୟନ୍ତ ପ୍ରିୟ; **ଅସି** = ଅଟ ।

**ହେ ଅର୍ଜୁନ! ତୁମେ ମୋଠାରେ ମନ ଲଗାଅ; ମୋର ଭକ୍ତ ହୋଇଯାଅ; ମୋର ପୂଜକ ହୋଇଯାଅ; ମୋତେ ପ୍ରଣାମ କର । ଏପରି କଲେ ତୁମେ ମୋତେ ହିଁ ପ୍ରାପ୍ତ ହେବ; ଏହା ମୁଁ ତୁମକୁ ସତ୍ୟ ପ୍ରତିଜ୍ଞା କରି କହୁଛି; କାରଣ ତୁମେ ମୋର ଅତ୍ୟନ୍ତ ପ୍ରିୟ ॥ ୬୫ ॥**

**ପ୍ରଶ୍ନ –** ଭଗବାନଙ୍କ ଠାରେ ମନ ଲଗାଇବା କ'ଣ ?

**ଉତ୍ତର –** ଭଗବାନଙ୍କୁ ସର୍ବଶକ୍ତିମାନ୍, ସର୍ବାଧାର, ସର୍ବଜ୍ଞ, ସର୍ବାନ୍ତର୍ଯାମୀ, ସର୍ବବ୍ୟାପୀ, ସର୍ବେଶ୍ୱର ତଥା ଅତିଶୟ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ଓ ଐଶ୍ୱର୍ଯ୍ୟ ଆଦି ଗୁଣମାନଙ୍କର ସାଗର ବୋଲି ବୁଝି ଅନନ୍ୟ ପ୍ରେମପୂର୍ବକ ନିଶ୍ଚଳଭାବରେ ମନକୁ ଭଗବାନଙ୍କ ଠାରେ ଲଗାଇଦେବା ଓ ଭଗବାନଙ୍କ ବିସ୍ମୃତିକୁ କ୍ଷଣେମାତ୍ର ସହି ନ ପାରିବା ହିଁ ଭଗବାନଙ୍କ ଠାରେ ମନ ଲଗାଇବା । ଏହାର ବିଶେଷ ବ୍ୟାଖ୍ୟା ନବମ ଅଧ୍ୟାୟର ଅନ୍ତିମ ଶ୍ଳୋକରେ କରାଯାଇଛି ।

**ପ୍ରଶ୍ନ –** ଭଗବାନଙ୍କର ଭକ୍ତ ହୋଇଯିବା କ'ଣ ?

**ଉତ୍ତର –** ଭଗବାନଙ୍କୁ ହିଁ ନିଜର ଏକମାତ୍ର ଭର୍ତ୍ତା, ସ୍ୱାମୀ, ସଂରକ୍ଷକ, ପରମଗତି ଏବଂ ପରମ ଆଶ୍ରୟ ବୋଲି ବୁଝି ସର୍ବଥା ତାଙ୍କର ଅଧୀନ ହୋଇଯିବା, ନିଜର ବୋଲି ତିଳେମାତ୍ର ସ୍ୱତନ୍ତ୍ରତା ନ ରଖିବା, ସବୁପ୍ରକାରେ ତାଙ୍କରି ଉପରେ ନିର୍ଭର କରିବା, ତାଙ୍କର ପ୍ରତ୍ୟେକ ବିଧାନରେ ସର୍ବଦା ସନ୍ତୁଷ୍ଟ ରହିବା ଏବଂ ତାଙ୍କ ଆଜ୍ଞାକୁ ସର୍ବଦା ପାଳନ କରିବା ତଥା ତାଙ୍କୁ ଅତିଶୟ ଶ୍ରଦ୍ଧାପୂର୍ବକ ଅନନ୍ୟ ପ୍ରେମ କରିବା ହିଁ ଭଗବାନଙ୍କର ଭକ୍ତ ହୋଇଯିବା ।

**ପ୍ରଶ୍ନ –** ଭଗବାନଙ୍କ ପୂଜା କରିବା କ'ଣ ?

**ଉତ୍ତର –** ନବମ ଅଧ୍ୟାୟର ଛବିଶ ଶ୍ଳୋକର ବର୍ଣ୍ଣନାନୁସାରେ ପତ୍ରପୁଷ୍ପାଦିଦ୍ୱାରା ଶ୍ରଦ୍ଧା, ଭକ୍ତି ଓ ପ୍ରେମପୂର୍ବକ ଭଗବାନଙ୍କ ବିଗ୍ରହକୁ ପୂଜା କରିବା, ମନେ ମନେ ଭଗବାନଙ୍କୁ ଆବାହନ କରି ତାଙ୍କୁ ମାନସିକ ପୂଜା କରିବା, ତାଙ୍କ ବଚନକୁ, ତାଙ୍କ ଲୀଳାଭୂମିକୁ ଓ ତାଙ୍କ ବିଗ୍ରହକୁ ସବୁପ୍ରକାରେ ଆଦର ସମ୍ମାନ କରିବା ତଥା ସବୁଠାରେ ଭଗବାନ୍ ବ୍ୟାପ୍ତ ହୋଇଛନ୍ତି ବୋଲି ବୁଝି ବା ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କର ସ୍ୱରୂପ ବୋଲି ବୁଝି ସେମାନଙ୍କୁ ଯଥାଯୋଗ୍ୟ ସେବା-ପୂଜା, ଆଦର-ସତ୍କାର ଆଦି କରିବା ହେଉଛି ଭଗବାନଙ୍କ ପୂଜାର ଅନ୍ତର୍ଗତ । ଏହାର ବର୍ଣ୍ଣନା ନବମ ଅଧ୍ୟାୟର ଛବିଶ ଶ୍ଳୋକରୁ ଅଠେଇଶ ଶ୍ଳୋକପର୍ଯ୍ୟନ୍ତ ବ୍ୟାଖ୍ୟାରେ ତଥା ଚଉତିରିଶ ଶ୍ଳୋକର ବ୍ୟାଖ୍ୟାରେ ଦେଖନ୍ତୁ ।

**ପ୍ରଶ୍ନ – ମାମ୍** ପଦ କାହାର ବାଚକ ଏବଂ ତାଙ୍କୁ ନମସ୍କାର କରିବା କ'ଣ ?

**ଉତ୍ତର –** ଯେଉଁ ପରମେଶ୍ୱରଙ୍କର ସଗୁଣ-ନିର୍ଗୁଣ, ନିରାକାର-ସାକାର ଆଦି ଅନେକ ରୂପ ରହିଛି, ଯେ ଅର୍ଜୁନଙ୍କ ଆଗରେ ଶ୍ରୀକୃଷ୍ଣରୂପରେ ପ୍ରକଟ ହୋଇ ଗୀତା-ଉପଦେଶ ଶୁଣାଉଛନ୍ତି, ଯେ ରାମରୂପରେ ପ୍ରକଟ ହୋଇ ସଂସାରରେ ଧର୍ମର ମର୍ଯ୍ୟାଦା ସ୍ଥାପନ କଲେ ଏବଂ ନୃସିଂହରୂପ ଧାରଣ କରି ଭକ୍ତ ପ୍ରହ୍ଲାଦଙ୍କୁ ଉଦ୍ଧାର କଲେ, ଏଠାରେ **ମାମ୍** ପଦଟି ହେଉଛି ସେହି ସର୍ବଶକ୍ତିମାନ୍, ସର୍ବଗୁଣସମ୍ପନ୍ନ, ଅନ୍ତର୍ଯାମୀ, ପରମାଧାର ସମଗ୍ର ପୁରୁଷୋତ୍ତମ ଭଗବାନଙ୍କର ବାଚକ ।

ତାଙ୍କର ଯେକୌଣସି ରୂପକୁ, ଚିତ୍ରକୁ, ଚରଣଚିହ୍ନକୁ ବା ଚରଣପାଦୁକାକୁ ତଥା ତାଙ୍କର ଗୁଣ, ପ୍ରଭାବ ଓ ତତ୍ତ୍ୱ ବର୍ଣ୍ଣନା କରୁଥିବା ଶାସ୍ତ୍ରମାନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବା ବା ସମସ୍ତ ପ୍ରାଣୀଙ୍କ ଠାରେ ତାଙ୍କୁ ବ୍ୟାପ୍ତ ଥିବା ବୁଝି, ଅଥବା ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କ ସ୍ୱରୂପ ବୋଲି ବୁଝି ସମସ୍ତଙ୍କୁ ପ୍ରଣାମ କରିବା ହିଁ ଭଗବାନଙ୍କୁ

ନମସ୍କାର କରିବା । ଏହାର ବିସ୍ତୃତ ବର୍ଣ୍ଣନା ନବମ ଅଧ୍ୟାୟର ଅନ୍ତିମ ଶ୍ଳୋକରେ ଦେଖନ୍ତୁ ।

**ପ୍ରଶ୍ନ –** 'ଏପରି କରିବାଦ୍ୱାରା ତୁମେ ମୋତେ ହିଁ ପାଇବ' – ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ଉପରୋକ୍ତପ୍ରକାରେ ସାଧନା କରିବା ପରେ ତୁମେ ଅବଶ୍ୟ ମୋତେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କୁ ପାଇଯିବ; ଏଥିରେ କିଛିମାତ୍ର ସଂଶୟ ନାହିଁ ।'' ଭଗବାନଙ୍କୁ ପାଇବା କଣ, ତାହା ନବମ ଅଧ୍ୟାୟର ଅନ୍ତିମ ଶ୍ଳୋକର ବ୍ୟାଖ୍ୟାରେ କୁହାଯାଇଛି ।

**ପ୍ରଶ୍ନ –** 'ମୁଁ ତୁମକୁ ସତ୍ୟ ପ୍ରତିଜ୍ଞା କରି କହୁଛି' – ଏ କଥାର ଭାବ କଣ ?

**ଉତ୍ତର –** ଅର୍ଜୁନ ଭଗବାନଙ୍କର ପ୍ରିୟ ଭକ୍ତ ଏବଂ ସଖା ଥିଲେ । ଅତଏବ ଭଗବାନ୍ ତାଙ୍କ ଉପରେ ପ୍ରେମ ଓ ଦୟା ପ୍ରକାଶ କରି ନିଜଠାରେ ତାଙ୍କ ବିଶ୍ୱାସକୁ ଅତିଶୟ ଦୃଢ଼ କରାଇବା ନିମନ୍ତେ ତଥା ଅର୍ଜୁନଙ୍କୁ ନିମିତ୍ତ କରି ଅନ୍ୟ ଅଧିକାରୀ ମନୁଷ୍ୟମାନଙ୍କର ଭଗବତ୍‌ବିଶ୍ୱାସକୁ ଦୃଢ଼ କରାଇବା ନିମନ୍ତେ ଭଗବାନ୍ ତାଙ୍କୁ ଉପରୋକ୍ତ ବାକ୍ୟ କହିଛନ୍ତି । ଅଭିପ୍ରାୟ ଏହି ଯେ, ଉପରୋକ୍ତପ୍ରକାରେ ସାଧନା କରୁଥିବା ଭକ୍ତ ମୋତେ ପ୍ରାପ୍ତ ହୋଇଯାଆନ୍ତି – ଏଥିରେ ଦୃଢ଼ ବିଶ୍ୱାସ ରଖି ମନୁଷ୍ୟ ସେପରି ଭକ୍ତ ହେବାପାଇଁ ଅଧିକରୁ ଅଧିକ ଚେଷ୍ଟା କରିବା ଉଚିତ ।

**ପ୍ରଶ୍ନ –** 'ତୁମେ ମୋର ପ୍ରିୟ' – ଏ କଥାର ଭାବ କଣ ?

**ଉତ୍ତର –** ଏହି ବାକ୍ୟରେ ପ୍ରେମମୟ ଭଗବାନ୍ ଉପରୋକ୍ତ ପ୍ରତିଜ୍ଞା କରିବାର ହେତୁ କହିଛନ୍ତି । କହିବାର ଅଭିପ୍ରାୟ ହେଉଛି, ''ତୁମେ ମୋର ଅତ୍ୟନ୍ତ ପ୍ରିୟ; ତୁମ ପ୍ରତି ମୋର ଯେଉଁ ପ୍ରେମ ରହିଛି, ସେହି ପ୍ରେମହେତୁ ବାଧ୍ୟ ହୋଇ ତୁମର ବିଶ୍ୱାସ ଦୃଢ଼ କରାଇବାନିମନ୍ତେ ମୁଁ ତୁମ ନିକଟରେ ଏହି ପ୍ରତିଜ୍ଞା କରୁଛି; ତାହା ନ ହୋଇଥିଲେ ମୋର ଏପ୍ରକାର ପ୍ରତିଜ୍ଞା କରିବାର କୌଣସି ଆବଶ୍ୟକତା ନ ଥିଲା ।'' ★

---

★ ଯେଉଁ ମହାତ୍ମା ଅର୍ଜୁନଙ୍କ ପାଇଁ ଭଗବାନ୍ ସ୍ୱୟଂ ନିଜର ଶ୍ରୀମୁଖରୁ ଗୀତାର ଦିବ୍ୟ ଉପଦେଶ ପ୍ରଦାନ କଲେ, ତାଙ୍କର ମହିମା କିଏ ବା ବର୍ଣ୍ଣନା କରିପାରିବ ? ମହାଭାରତରେ ଉଦ୍ୟୋଗ ପର୍ବରେ କୁହାଯାଇଛି –

**ଏଷ ନାରାୟଣଃ କୃଷ୍ଣଃ ଫାଲ୍‌ଗୁନଶ୍ଚ ନରଃ ସ୍ମୃତଃ ।**
**ନାରାୟଣୋ ନରଶ୍ଚୈବ ସତ୍ତ୍ୱମେକଂ ଦ୍ୱିଧା କୃତମ୍ ।।** (୪୯/୨୦)

ଅର୍ଥାତ୍ 'ଏହି ଶ୍ରୀକୃଷ୍ଣ ସାକ୍ଷାତ୍ ନାରାୟଣ ଏବଂ ଅର୍ଜୁନ ହେଉଛନ୍ତି ନର; ଏହି ନାରାୟଣ ଏବଂ ନର ଦୁଇଟି ରୂପରେ ପ୍ରକଟ ହୋଇଥିବା ଏକ ହିଁ ସତ୍ତ୍ୱ ଅଟନ୍ତି' । ଅର୍ଜୁନଙ୍କ ପ୍ରତି ଭଗବାନଙ୍କର କେତେ ପ୍ରେମ ଥିଲା, ତାହା ଏଠାରେ ସଂକ୍ଷେପରେ ଦେଖାଇଦିଆଯାଉଛି । ଅର୍ଜୁନ ଭଗବାନଙ୍କୁ କେତେ ପ୍ରେମ କରୁଥିଲେ, ତାହା ବି ଏଥିରୁ ଜାଣି ହୋଇଯିବ ।

ବନବିହାର, ଜଳବିହାର, ରାଜସଭା, ଯଜ୍ଞାନୁଷ୍ଠାନ ଆଦିରେ ମଧ୍ୟ ଭଗବାନ୍ ଶ୍ରୀକୃଷ୍ଣ ପ୍ରାୟ ଅର୍ଜୁନଙ୍କ ସଙ୍ଗରେ ରହୁଥିଲେ । ଦୁହିଁଙ୍କ ମଧ୍ୟରେ ଏତେ ଘନିଷ୍ଠତା ଥିଲା ଯେ, ସେହିଁଙ୍କର ପବିତ୍ର ଓ ବିଶୁଦ୍ଧ ପ୍ରେମର ନିଃସଙ୍କୋଚ ଦୃଶ୍ୟ ଅନ୍ତଃପୁରପର୍ଯ୍ୟନ୍ତ ଦେଖିବାକୁ ମିଳୁଥିଲା । ପାଣ୍ଡବମାନଙ୍କ ଗୃହରୁ ଫେରି ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କହିଥିଲେ, ''ଶ୍ରୀକୃଷ୍ଣ-ଅର୍ଜୁନଙ୍କ ମଧ୍ୟରେ ମୁଁ ବିଲକ୍ଷଣ ପ୍ରେମ ଥିବାର ଦେଖିଲି । ମୁଁ ସେ ଦୁହିଁଙ୍କ ସହିତ କଥା ହେବା ପାଇଁ ବଡ଼ ବିନୀତଭାବରେ ଅନ୍ତଃପୁରକୁ ଯାଇଥିଲି । ଯାଇ ଦେଖିଲି, ସେହି ଦୁଇ ମହାତ୍ମା ଉତ୍ତମ ବସ୍ତ୍ରାଭୂଷଣରେ ଭୂଷିତ ହୋଇ ମହାମୂଲ୍ୟବାନ୍ ଆସନ ଉପରେ ବିରାଜମାନ । ଅର୍ଜୁନଙ୍କ କୋଳରେ ଶ୍ରୀକୃଷ୍ଣଙ୍କ ଚରଣ ଥିଲା ଏବଂ ଦ୍ରୌପଦୀ ଓ ସତ୍ୟଭାମାଙ୍କ କୋଳରେ ଅର୍ଜୁନଙ୍କର ଦୁଇଚରଣ ଥିଲା । ମୋତେ ଦେଖି ଅର୍ଜୁନ ନିଜର ପାଦତଳେ ଥିବା ସୁନାର ପିଢ଼ାଟି ବାହାର କରି ମୋତେ ବସିବାକୁ କହିଲେ । ମୁଁ ସମ୍ମାନର ସହିତ ତାହାକୁ ଛୁଇଁ ତଳେ ବସିପଡ଼ିଲି ।''

++ ++ ++ ++

ଭଗବାନ୍ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ସାକ୍ଷାତ କରିବାକୁ ବନକୁ ଯାଇଥିଲେ । ସେଠାରେ କଥାବାର୍ତ୍ତାଛଳରେ ସେ ଅର୍ଜୁନଙ୍କୁ କହିଥିଲେ,

**ମମୈବ ତ୍ୱଂ ତବୈବାହଂ ଯେ ମଦୀୟାସ୍ତବୈବ ତେ ।**
**ଯସ୍ତ୍ୱାଂ ଦ୍ୱେଷ୍ଟି ସ ମାଂ ଦ୍ୱେଷ୍ଟି ଯସ୍ତ୍ୱାମନୁ ସ ମାମନୁ ।।** (ମହା/ବନ/୧୨/୪୫)

ଅର୍ଥାତ୍ 'ହେ ଅର୍ଜୁନ ! ତୁମେ ମୋର ଏବଂ ମୁଁ ତୁମର । ଯେଉଁମାନେ ମୋର, ସେମାନେ ମଧ୍ୟ ତୁମର । ଅର୍ଥାତ୍ ଯାହା କିଛି ମୋର, ତା'ଉପରେ ତୁମର ଅଧିକାର ଅଛି । ଯେ ତୁମ ସହିତ ଶତ୍ରୁତା କରେ, ସେ ମୋର ଶତ୍ରୁ ଏବଂ ଯେ ତୁମର ଅନୁଗାମୀ, ସେ ମୋର ମଧ୍ୟ ଅନୁଗାମୀ । ତୁମ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।'

++ ++ ++ ++

ଭୀଷ୍ମଙ୍କ ପାଣ୍ଡବସେନାସଂହାର ନଅ ଦିନ ଧରି ଚାଲିବା ପରେ ଯୁଧିଷ୍ଠିର ଅତ୍ୟନ୍ତ ଚିନ୍ତିତ ହୋଇ ରାତିରେ ଭଗବାନଙ୍କୁ କହିଲେ, ''ହେ ଶ୍ରୀକୃଷ୍ଣ ! ଭୀଷ୍ମଙ୍କ ସହିତ ଆମର ଲଢ଼ିବା ଯାହା, ଜଳନ୍ତା ନିଆଁକୁ ପତଙ୍ଗ ଡେଇଁପଡ଼ିବା ତାହା । (ପୃଷ୍ଠା ଓଲଟାନ୍ତୁ)

**ପ୍ରଶ୍ନ—** ଏହି ଶ୍ଳୋକରେ ଭଗବାନ୍ ଯେଉଁ ଚାରୋଟି ସାଧନା କଥା କହିଛନ୍ତି, ସେହି ଚାରୋଟିଯାକ ସାଧନା କଲେ ଭଗବତ୍‌ପ୍ରାପ୍ତି ହୁଏ, ନା ସେଥିମଧ୍ୟରୁ ଯେକୌଣସି ଗୋଟିକର ସାଧନାଦ୍ୱାରା ମଧ୍ୟ ଭଗବତ୍‌ପ୍ରାପ୍ତି ହୋଇଯାଏ ?

**ଉତ୍ତର—** ଯାହାଙ୍କ ଦ୍ୱାରା ଚାରୋଟିଯାକ ସାଧନା ପୂର୍ଣ୍ଣଭାବରେ ହୋଇଯାଏ, ତାଙ୍କୁ ଯେ ଭଗବତ୍‌ପ୍ରାପ୍ତି ହୋଇଯାଏ, ତାହା ତ ନ କହିଲେ ଚଳେ। କିନ୍ତୁ

---

ବର୍ତ୍ତମାନ କଣ କରିବା,ଆପଣ ହିଁ କହନ୍ତୁ''— ଏହା ଶୁଣି ଭଗବାନ୍ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଆଶ୍ୱାସନା ଦେଇ କହିଲେ, ''ଆପଣ ଚିନ୍ତା କରନ୍ତୁ ନାହିଁ, ମୋତେ ଆଜ୍ଞା ଦିଅନ୍ତୁ, ମୁଁ ଭୀଷ୍ମଙ୍କୁ ମାରିଦେବି। ଆପଣ ନିଶ୍ଚିତ ହୁଅନ୍ତୁ ଯେ, ଅର୍ଜୁନ ଭୀଷ୍ମଙ୍କୁ ମାରିଦେବ।'' ପୁଣି ଅର୍ଜୁନଙ୍କ ସହିତ ନିଜର ପ୍ରେମ ସମ୍ବନ୍ଧ ଦର୍ଶାଇଦେଇ ଭଗବାନ୍ କହିଲେ—

**ତବ ଭ୍ରାତା ମମ ସଖା ସମ୍ବନ୍ଧୀ ଶିଷ୍ୟ ଏବ ଚ। ମାଂସାନ୍ୟୁତ୍କୃତ୍ୟ ଦାସ୍ୟାମି ଫାଲ୍‌ଗୁନାର୍ଥେ ମହୀପତେ॥**
**ଏଷ ଚାପି ନରବ୍ୟାଘ୍ରୋ ମତ୍କୃତେ ଜୀବିତଂ ତ୍ୟଜେତ୍। ଏଷ ନଃ ସମୟସ୍ତାତ ତାରୟେମ ପରସ୍ପରମ୍॥**

(ମହା.ଭୀଷ୍ମ. ୧୦୭/୩୩-୩୪)

ଅର୍ଥାତ୍ ''ହେ ରାଜନ୍! ଆପଣଙ୍କ ଭାଇ ଅର୍ଜୁନ ହେଉଛନ୍ତି ମୋର ମିତ୍ର, ସମ୍ବନ୍ଧୀ ଓ ଶିଷ୍ୟ। ମୁଁ ଅର୍ଜୁନଙ୍କ ପାଇଁ ନିଜ ଶରୀରର ମାଂସପର୍ଯ୍ୟନ୍ତ କାଟି ଦେଇଦେବି। ପୁରୁଷସିଂହ ଅର୍ଜୁନ ମଧ୍ୟ ମୋ ପାଇଁ ପ୍ରାଣ ଦେଇଦେବେ। ହେ ତାତ। ଆମ ଦୁଇ ମିତ୍ରଙ୍କର ଏହି ପ୍ରତିଜ୍ଞା ଯେ, ଆମେ ଏକ ଅନ୍ୟକୁ ସଙ୍କଟରୁ ଉଦ୍ଧାର କରିବୁ।''

ଭଗବାନ୍ ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କ ପ୍ରତି କିପରି ଅତୁଳନୀୟ ପ୍ରେମ ଥିଲା, ତାହା ଏଥିରୁ ସ୍ପଷ୍ଟ ବୁଝି ହୋଇଯାଏ। କର୍ଣ୍ଣଙ୍କ ନିକଟରେ ଇନ୍ଦ୍ରଙ୍କ ଠାରୁ ପ୍ରାପ୍ତ ଏକ ଅମୋଘ ଶକ୍ତି ଥିଲା। ଇନ୍ଦ୍ର କହିଦେଇଥିଲେ, ''ଏହି ଶକ୍ତି ତୁମେ ଯାହା ଉପରକୁ ଛାଡ଼ିବ, ତା'ର ନିଶ୍ଚିତ ମୃତ୍ୟୁ ହେବ। ପରନ୍ତୁ ଏହା ଥରେମାତ୍ର ପ୍ରୟୋଗ କରାଯାଇପାରିବ।'' କର୍ଣ୍ଣ ଅର୍ଜୁନଙ୍କୁ ମାରିବାପାଇଁ ସେହି ଶକ୍ତିଟି ରଖିଥିଲେ। ଦୁର୍ଯ୍ୟୋଧନ ତାଙ୍କୁ ବାରମ୍ବାର କହୁଥିଲେ, 'ତୁମେ ଶକ୍ତି ପ୍ରୟୋଗ କରି ଅର୍ଜୁନଙ୍କୁ କାହିଁକି ମାରିଦେଉ ନାହଁ?' କର୍ଣ୍ଣ ଅର୍ଜୁନଙ୍କୁ ମାରିବା ପାଇଁ ଇଚ୍ଛା ମଧ୍ୟ କରିଥିଲେ; କିନ୍ତୁ ଅର୍ଜୁନ ସମ୍ମୁଖକୁ ଆସିଯିବାକ୍ଷଣି ଅର୍ଜୁନଙ୍କ ରଥରେ ସାରଥିରୂପରେ ବସିଥିବା ଭଗବାନ୍ ଶ୍ରୀକୃଷ୍ଣ କର୍ଣ୍ଣଙ୍କ ଉପରେ ଏପରି ମୋହିନୀ ଶକ୍ତି ପକାଉଥିଲେ ଯେ, କର୍ଣ୍ଣ ଶକ୍ତି ପ୍ରୟୋଗ କରିବାକୁ ଭୁଲିଯାଉଥିଲେ। ଯେତେବେଳେ ଭୀମଙ୍କ ପୁତ୍ର ଘଟୋତ୍କଚ ରାକ୍ଷସୀ ମାୟାଦ୍ୱାରା କୌରବସେନାକୁ ଭୀଷଣଭାବରେ ସଂହାର କଲା, ସେତେବେଳେ ଦୁର୍ଯ୍ୟୋଧନ ଆଦି ସମସ୍ତେ ଚିନ୍ତାରେ ପଡ଼ିଗଲେ। ସମସ୍ତେ କର୍ଣ୍ଣଙ୍କୁ ଡାକି କହିଲେ, ''ଇନ୍ଦ୍ରଙ୍କ ଶକ୍ତି ପ୍ରୟୋଗ କରି ତାହାକୁ ମାରିଦିଅ; ତା'ହେଲେ ଯାଇ ଆମେ ପ୍ରାଣ ଧରି ବଞ୍ଚିପାରିବୁ। ଏହି ଅନ୍ଧାର ରାତିରେ ଯଦି ଏହି ରାକ୍ଷସ ଆମ ସମସ୍ତଙ୍କୁ ମାରିଦେବ, ତେବେ ଅର୍ଜୁନଙ୍କୁ ମାରିବାକୁ ରଖିଥିବା ଶକ୍ତି ଆମର ଆଉ କେଉଁ କାମରେ ଆସିବ?'' ତେଣୁ କର୍ଣ୍ଣଙ୍କୁ ସେହି ଶକ୍ତି ଘଟୋତ୍କଚ ଉପରକୁ ଛାଡ଼ିବାକୁ ପଡ଼ିଲା ଏବଂ ଶକ୍ତି ବାଜିବାରୁ ଘଟୋତ୍କଚ ମରିଗଲା। ଘଟୋତ୍କଚର ମୃତ୍ୟୁରେ ସମସ୍ତ ପାଣ୍ଡବପରିବାର ଦୁଃଖୀ ହୋଇଗଲେ; କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣ ବଡ଼ ପ୍ରସନ୍ନ ହୋଇଗଲେ। ସେ ହର୍ଷୋନ୍ମତ୍ତ ହୋଇ ଅର୍ଜୁନଙ୍କୁ ବାରମ୍ବାର ଆଲିଙ୍ଗନ କରିବାକୁ ଲାଗିଲେ। ପରେ ସେ ସାତ୍ୟକିଙ୍କୁ କହିଥିଲେ, ''ହେ ସାତ୍ୟକି! ଯୁଦ୍ଧ ସମୟରେ ମୁଁ କର୍ଣ୍ଣଙ୍କୁ ମୋହିତ କରି ରଖୁଥିଲି। ସେଥିଯୋଗୁଁ ସେ ଆଜିପର୍ଯ୍ୟନ୍ତ ଅର୍ଜୁନଙ୍କ ଉପରକୁ ସେହି ଶକ୍ତି ପ୍ରୟୋଗ କରିପାରି ନ ଥିଲେ। ଅର୍ଜୁନଙ୍କୁ ମାରିଦେବାକୁ ସମର୍ଥ ସେହି ଶକ୍ତି ଯେପର୍ଯ୍ୟନ୍ତ କର୍ଣ୍ଣଙ୍କ ପାଖରେ ଥିଲା, ସେପର୍ଯ୍ୟନ୍ତ ମୁଁ ଚିନ୍ତିତ ଥିଲି। ଚିନ୍ତାଯୋଗୁଁ ମୋତେ ରାତିରେ ନିଦ ହେଉ ନ ଥିଲା ଏବଂ ଦିନରେ ଆଦୌ ହର୍ଷ ମଧ୍ୟ ନ ଥିଲା। ଆଜି ସେହି ଅମୋଘ ଶକ୍ତି ବ୍ୟର୍ଥ ହୋଇଯାଇଛି ଜାଣି ମତେ ଲାଗୁଛି, ମୁଁ ଅର୍ଜୁନଙ୍କୁ କାଳକବଳରୁ ବାହାର କରି ଆଣିଲି। ସତ କହୁଛି, ମୋର ମାତା-ପିତା, ତୁମେସବୁ, ଭାଇ-ବନ୍ଧୁ ଏବଂ ମୋର ପ୍ରାଣ ମଧ୍ୟ ମୋତେ ଅର୍ଜୁନଙ୍କ ଠାରୁ ଅଧିକ ପ୍ରିୟ ନୁହେଁ। ମୁଁ ଅର୍ଜୁନଙ୍କୁ ଯୁଦ୍ଧରୁ ରକ୍ଷା କରିବା ଯେତେ ଆବଶ୍ୟକ ବୋଲି ଭାବୁଛି, ଆଉ କାହାରିକୁ ରକ୍ଷା କରିବା ସେତେ ଆବଶ୍ୟକ ବୋଲି ଭାବୁ ନାହିଁ। ତ୍ରିଲୋକ-ରାଜ୍ୟ ଅପେକ୍ଷା ବି ଅଧିକ ଦୁର୍ଲଭ ବସ୍ତୁ ଯଦି କିଛି ଥାଏ, ତେବେ ମୁଁ ଅର୍ଜୁନଙ୍କୁ ଛାଡ଼ି ତାହା ଇଚ୍ଛା କରିବି ନାହିଁ। ଆଜି ଅର୍ଜୁନଙ୍କର ପୁନର୍ଜନ୍ମ ହେଲା ପରି ହୋଇଗଲା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ।'

**ତ୍ରୈଲୋକ୍ୟରାଜ୍ୟାଦ୍‌ଯତ୍କିଞ୍ଚିଦ୍‌ଭବେଦନ୍ୟତ୍ସୁଦୁର୍ଲଭମ୍ । ନେଚ୍ଛେୟଂ ସାତ୍ୱତାହଂ ତଦ୍ୱିନା ପାର୍ଥଂ ଧନଞ୍ଜୟମ୍॥**
**ଅତଃ ପ୍ରହର୍ଷଃ ସୁମହାନ୍ ଯୁୟୁଧାନାଦ୍ୟ ମେଽଭବତ୍। ମୃତଂ ପ୍ରତ୍ୟାଗତମିବ ଦୃଷ୍ଟ୍ୱା ପାର୍ଥଂ ଧନଞ୍ଜୟମ୍॥**

 (ମହା.ଦ୍ରୋଣ. ୧୮୨/୪୪-୪୫) (ପୃଷ୍ଠା ଓଲଟାନ୍ତୁ)

ସେଥିମଧ୍ୟରୁ ଯେକୌଣସି ଗୋଟିକର ସାଧନାବଳରେ ମଧ୍ୟ ଭଗବତ୍‌ପ୍ରାପ୍ତି ହୋଇଯାଇପାରେ। କାରଣ ଭଗବାନ୍ ସ୍ୱୟଂ ଅଷ୍ଟମ ଅଧ୍ୟାୟର ଚଉଦ ଶ୍ଳୋକରେ କେବଳ ଅନନ୍ୟଚିନ୍ତନଦ୍ୱାରା ତାଙ୍କୁ ପାଇବା ସୁଲଭ ବୋଲି କହିଛନ୍ତି; ସପ୍ତମ ଅଧ୍ୟାୟର ତେଇଶ ଶ୍ଳୋକ ଓ ନବମ ଅଧ୍ୟାୟର ପଚିଶ ଶ୍ଳୋକରେ ନିଜ ଭକ୍ତଙ୍କୁ ନିଜର ପ୍ରାପ୍ତି କଥା କହିଛନ୍ତି ଏବଂ ନବମ ଅଧ୍ୟାୟର ଛବିଶଠାରୁ ଅଠେଇଶ ଶ୍ଳୋକପର୍ଯ୍ୟନ୍ତ ଏବଂ ଏହି ଅଧ୍ୟାୟର ଛୟାଳିଶ ଶ୍ଳୋକରେ ମଧ୍ୟ କେବଳ ପୂଜନଦ୍ୱାରା ଭଗବାନ୍ ନିଜର ପ୍ରାପ୍ତି କଥା କହିଛନ୍ତି। ଅବଶ୍ୟ ଏ କଥା ଠିକ୍ ଯେ, ଉପରୋକ୍ତ ଗୋଟିଏ ଗୋଟିଏ ସାଧନା ପ୍ରଧାନରୂପରେ କରୁଥିବା ଲୋକଙ୍କର ଅନ୍ୟ ସମସ୍ତ ସାଧନା ମଧ୍ୟ ଆନୁଷଙ୍ଗିକଭାବରେ ଚାଲିଥାଏ; ପୁଣି ଶ୍ରଦ୍ଧା-ଭକ୍ତିର ଭାବ ତ ସବୁ ସାଧନାରେ ରହେ।

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ।**
**ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ॥ ୬୬ ॥**

**ଅନ୍ୱୟ—** **ସର୍ବଧର୍ମାନ୍** = ସକଳ ଧର୍ମ ଅର୍ଥାତ୍ ସମସ୍ତ କର୍ତ୍ତବ୍ୟକର୍ମମାନଙ୍କୁ; **ପରିତ୍ୟଜ୍ୟ** = (ମୋଠାରେ) ତ୍ୟାଗ କରିଦେଇ (ତୁମେ); **ଏକମ୍** = ଏକମାତ୍ର; **ମାମ୍** = ମୋର ଅର୍ଥାତ୍ ସର୍ବଶକ୍ତିମାନ୍ ସର୍ବାଧାର ପରମେଶ୍ୱର; **ଶରଣମ୍** = ଶରଣକୁ; **ବ୍ରଜ** = ଆସିଯାଅ; **ଅହମ୍** = ମୁଁ; **ତ୍ୱା** = ତୁମକୁ; **ସର୍ବପାପେଭ୍ୟଃ** = ସମସ୍ତ ପାପରୁ; **ମୋକ୍ଷୟିଷ୍ୟାମି** = ମୁକ୍ତ କରିଦେବି; **ମା, ଶୁଚଃ** = (ତୁମେ) ଶୋକ କର ନାହିଁ।

---

ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ମୈତ୍ରୀ ଏପରି ପ୍ରସିଦ୍ଧ ଥିଲା ଯେ, ସ୍ୱୟଂ ଦୁର୍ଯ୍ୟୋଧନ ମଧ୍ୟ ଏପରି କହିଥିଲେ—

ଆତ୍ମା ହି କୃଷ୍ଣଃ ପାର୍ଥସ୍ୟ କୃଷ୍ଣସ୍ୟାତ୍ମା ଧନଞ୍ଜୟଃ॥
ଯଦ୍ ବ୍ରୂୟାଦର୍ଜୁନଃ କୃଷ୍ଣଂ ସର୍ବଂ କୁର୍ଯାଦସଂଶୟମ୍।
କୃଷ୍ଣୋ ଧନଞ୍ଜୟସ୍ୟାର୍ଥେ ସ୍ୱର୍ଗଲୋକମପି ତ୍ୟଜେତ୍॥
ତଥୈବ ପାର୍ଥଃ କୃଷ୍ଣାର୍ଥେ ପ୍ରାଣାନପି ପରିତ୍ୟଜେତ୍। (ମହା.ଉଦ୍ୟୋ. ୫୨/୩୧-୩୩)

ଅର୍ଥାତ୍ 'ଶ୍ରୀକୃଷ୍ଣ ଅର୍ଜୁନଙ୍କର ଆତ୍ମା ଏବଂ ଅର୍ଜୁନ ଶ୍ରୀକୃଷ୍ଣଙ୍କର ଆତ୍ମା। ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଯାହା କିଛି କରିବାକୁ କହିବେ, ଶ୍ରୀକୃଷ୍ଣ ସେ ତାହା କରିପାରିବେ, ସେଥିରେ ଟିକିଏ ହେଲେ ସନ୍ଦେହ ନାହିଁ। ଶ୍ରୀକୃଷ୍ଣ ଅର୍ଜୁନଙ୍କ ପାଇଁ ଦିବ୍ୟଲୋକକୁ ମଧ୍ୟ ତ୍ୟାଗ କରିଦେଇପାରିବେ ତଥା ଅର୍ଜୁନ ମଧ୍ୟ ସେହିପରି ଶ୍ରୀକୃଷ୍ଣଙ୍କ ପାଇଁ ପ୍ରାଣପର୍ଯ୍ୟନ୍ତ ପରିତ୍ୟାଗ କରିଦେଇପାରିବେ।'

ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ଆଦର୍ଶ ପ୍ରୀତିର ଆହୁରି ବହୁ ଉଦାହରଣ ରହିଛି। ଏଥିପାଇଁ ମହାଭାରତ ଓ ଶ୍ରୀମଦ୍‌ଭାଗବତର ସମ୍ପୃକ୍ତ ସ୍ଥଳ ଦେଖିବା ଉଚିତ।

ଅର୍ଜୁନଙ୍କର ସେହି ବିଲକ୍ଷଣ ପ୍ରେମ ପ୍ରଭାବରୁ ହିଁ ଭଗବାନଙ୍କୁ ଗୁହ୍ୟାଦ୍‌ଗୁହ୍ୟତର ଜ୍ଞାନ ଅପେକ୍ଷା ମଧ୍ୟ ଅତ୍ୟନ୍ତ ଗୁହ୍ୟ ସର୍ବଗୁହ୍ୟତମ ନିଜ ପୁରୁଷୋତ୍ତମ ସ୍ୱରୂପର ରହସ୍ୟ ଅର୍ଜୁନଙ୍କ ଆଗରେ ଖୋଲିଦେବାକୁ ପଡିଥିଲା ଏବଂ ଏହି ପ୍ରେମର ପ୍ରତାପ ଏତେ ଯେ, ପରମଧାମରେ ମଧ୍ୟ ଅର୍ଜୁନଙ୍କୁ ଭଗବାନଙ୍କର ଅତ୍ୟନ୍ତ ଦୁର୍ଲଭ ସେବାର ସୌଭାଗ୍ୟ ହିଁ ମିଳିଲା, ଯାହା ପାଇବାକୁ ବିଶିଷ୍ଟ ବ୍ରହ୍ମବାଦୀ ମହାପୁରୁଷମାନେ ମଧ୍ୟ ଲାଳସା ରଖନ୍ତି। ସ୍ୱର୍ଗାରୋହଣ ପରେ ଧର୍ମରାଜ ଯୁଧିଷ୍ଠିର ଦିବ୍ୟଦେହ ଧାରଣ କରି ପରମଧାମରେ ଦେଖିଲେ—

ଦଦର୍ଶ ତତ୍ର ଗୋବିନ୍ଦଂ ବ୍ରାହ୍ମେଣ ବପୁଷାନ୍ୱିତମ୍॥
ଦୀପ୍ୟମାନଂ ସ୍ୱବପୁଷା ଦିବ୍ୟୈରସ୍ତ୍ରୈରୁପସ୍ଥିତମ୍।
ଚକ୍ରପ୍ରଭୃତିଭିର୍ଘୋରୈର୍ଦିବ୍ୟୈଃ ପୁରୁଷବିଗ୍ରହୈଃ॥
ଉପାସ୍ୟମାନଂ ବୀରେଣ ଫାଲ୍‌ଗୁନେନ ସୁବର୍ଚ୍ଚସା। (ମହା.ସ୍ୱର୍ଗା. ୪/୨-୪)

ଅର୍ଥାତ୍ "ଭଗବାନ୍ ଶ୍ରୀଗୋବିନ୍ଦ ସେଠାରେ ନିଜର ବ୍ରାହ୍ମଶରୀରରେ ଯୁକ୍ତ ହୋଇଛନ୍ତି। ତାଙ୍କ ଶରୀର ଦେଦୀପ୍ୟମାନ ହେଉଛି। ତାଙ୍କ ସମୀପରେ ଚକ୍ର ଆଦି ଦିବ୍ୟ ଶସ୍ତ୍ର ଏବଂ ଅନ୍ୟାନ୍ୟ ଘୋର ଅସ୍ତ୍ରମାନେ ଦିବ୍ୟପୁରୁଷ-ଶରୀର ଧାରଣ କରି ତାଙ୍କ ସେବା କରୁଛନ୍ତି। ମହାନ୍ ତେଜସ୍ୱୀ ବୀର ଅର୍ଜୁନଙ୍କ ଦ୍ୱାରା ମଧ୍ୟ ଭଗବାନ୍ ସେବିତ ହେଉଛନ୍ତି।" ଗୀତାତତ୍ତ୍ୱ ଭଲଭାବରେ ଶୁଣିବା, ବୁଝିବା ଏବଂ ଧାରଣ କରିବାର ଏହା ହିଁ 'ପରମଫଳ'। ଏବଂ ଅର୍ଜୁନଙ୍କ ପରି ଇନ୍ଦ୍ରିୟସଂଯମୀ, ମହାନ୍ ତ୍ୟାଗୀ, ବିଚକ୍ଷଣ ଜ୍ଞାନୀ— ବିଶେଷ କରି ଭଗବାନଙ୍କର ପରମପ୍ରିୟ ସଖା, ସେବକ ଓ ଶିଷ୍ୟଙ୍କୁ ଏହି 'ପରମଫଳ' ପ୍ରାପ୍ତ ହେବା ସର୍ବଥା ଉଚିତ।

**ସମସ୍ତ ଧର୍ମମାନଙ୍କୁ ଅର୍ଥାତ୍ ସମସ୍ତ କର୍ତ୍ତବ୍ୟକର୍ମମାନଙ୍କୁ ମୋଠାରେ ତ୍ୟାଗ କରିଦେଇ ତୁମେ ଏକମାତ୍ର ମୋର ଅର୍ଥାତ୍ ସର୍ବଶକ୍ତିମାନ୍ ସର୍ବାଧାର ପରମେଶ୍ୱରଙ୍କର ଶରଣକୁ ଆସିଯାଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି; ତୁମେ ଶୋକ କର ନାହିଁ ॥ ୬୬ ॥**

**ପ୍ରଶ୍ନ –** **ସର୍ବଧର୍ମାନ୍** ପଦ ଏଠାରେ କେଉଁ ଧର୍ମମାନଙ୍କର ବାଚକ ? ସେସବୁ ତ୍ୟାଗ କରିବା କଣ ?

**ଉତ୍ତର –** ବର୍ଣ୍ଣ, ଆଶ୍ରମ, ସ୍ୱଭାବ ଏବଂ ପରିସ୍ଥିତି ଅନୁସାରେ ଯେଉଁ ମନୁଷ୍ୟପାଇଁ ଯେଉଁ ଯେଉଁ କର୍ମ କର୍ତ୍ତବ୍ୟ ବୋଲି କୁହାଯାଇଛି, ଦ୍ୱାଦଶ ଅଧ୍ୟାୟର ଷଷ୍ଠ ଶ୍ଲୋକରେ **ସର୍ବାଣି** ବିଶେଷଣ ସହିତ **କର୍ମାଣି** ପଦଦ୍ୱାରା ଏବଂ ଏହି ଅଧ୍ୟାୟର ସତାବନ ଶ୍ଲୋକର **ସର୍ବକର୍ମାଣି** ପଦଦ୍ୱାରା ଯାହା ବର୍ଣ୍ଣନା କରାଯାଇଛି, ଏଠାରେ **ସର୍ବଧର୍ମାନ୍** ପଦଟି ହେଉଛି ଶାସ୍ତ୍ରବିହିତ ସେହି ସମସ୍ତ କର୍ମମାନଙ୍କର ବାଚକ। ସେହି ଦୁଇ ଶ୍ଲୋକର ବ୍ୟାଖ୍ୟାରେ କୁହାଯାଇଥିବାପ୍ରକାରେ ସମସ୍ତ କର୍ମ ଭଗବାନଙ୍କ ଠାରେ ସମର୍ପଣ କରିଦେବା ହିଁ ସେଗୁଡ଼ିକୁ **ତ୍ୟାଗ** କରିବା; କାରଣ, ଭଗବାନ୍ ଏହି ଅଧ୍ୟାୟରେ ତ୍ୟାଗର ସ୍ୱରୂପ ବୁଝାଇବା ସମୟରେ ସପ୍ତମ ଶ୍ଲୋକରେ ସ୍ପଷ୍ଟରୂପେ କହିଛନ୍ତି ଯେ, ନିୟତକର୍ମ ସ୍ୱରୂପତଃ ତ୍ୟାଗ କରିବା ନ୍ୟାୟସଙ୍ଗତ ନୁହେଁ; ତେଣୁ ମୋହପୂର୍ବକ ନିୟତକର୍ମ ତ୍ୟାଗ କରିଦେବା ହେଉଛି ତାମସ ତ୍ୟାଗ। ଏଣୁ ଏଠାରେ **ପରିତ୍ୟଜ୍ୟ** ପଦରୁ ସ୍ୱରୂପତଃ ସମସ୍ତ କର୍ମ ତ୍ୟାଗ ବୋଲି ଧରିବା ଠିକ୍ ହେବ ନାହିଁ।

ଏହା ବ୍ୟତୀତ ଭଗବାନ୍ ଅର୍ଜୁନଙ୍କୁ କ୍ଷାତ୍ରଧର୍ମରୂପକ ଯୁଦ୍ଧ ତ୍ୟାଗ ନ କରିବାପାଇଁ ଏବଂ ସମସ୍ତ କର୍ମ ଭଗବାନଙ୍କୁ ଅର୍ପଣ କରି ଯୁଦ୍ଧ କରିବାପାଇଁ ସ୍ଥାନେ ସ୍ଥାନେ ଆଜ୍ଞା ଦେଇଛନ୍ତି (୩/୩୦; ୮/୭; ୧୧/୩୪) ଏବଂ ସମସ୍ତ ଗୀତାକୁ ଭଲଭାବରେ ଶୁଣିବା ପରେ ଏହି ଅଧ୍ୟାୟର ତେସ୍ତରୀ ଶ୍ଲୋକରେ ସ୍ୱୟଂ ଅର୍ଜୁନ ଭଗବାନଙ୍କୁ, **କରିଷ୍ୟେ ବଚନଂ ତବ** (ମୁଁ ଆପଣଙ୍କ ଆଜ୍ଞା ପାଳନ କରିବି) ବୋଲି ପ୍ରତିଶ୍ରୁତି ଦେଇ ସ୍ୱଧର୍ମରୂପୀ ଯୁଦ୍ଧ ହିଁ କରିଛନ୍ତି। ତେଣୁ ଏଠାରେ ସମସ୍ତ କର୍ମ ଭଗବାନଙ୍କ ଠାରେ ସମର୍ପଣ କରିଦେବା ଅର୍ଥାତ୍ ସବୁକିଛି ଭଗବାନଙ୍କର ବୋଲି ବୁଝି ମନ, ଇନ୍ଦ୍ରିୟ ଏବଂ ଶରୀରରେ ତଥା ସେମାନଙ୍କ ଦ୍ୱାରା କରାଯାଉଥିବା କର୍ମମାନଙ୍କରେ ଏବଂ ସେସବୁର ଫଳରୂପୀ ସମସ୍ତ ଭୋଗରେ ମମତ୍ୱ, ଆସକ୍ତି, ଅଭିମାନ ଏବଂ କାମନା ସର୍ବଥା ତ୍ୟାଗ କରିଦେବା ଏବଂ କେବଳ ଭଗବାନଙ୍କ ପାଇଁ ଭଗବାନଙ୍କର ଆଜ୍ଞା ଓ ପ୍ରେରଣା ଅନୁସାରେ, ସେ ଯେପରି କରାଇବେ ସେପରିଭାବରେ କାଠପିତୁଳାପରି ସେସବୁ କରିଚାଲିବା ହିଁ ଏଠାରେ ସମସ୍ତ ଧର୍ମ ପରିତ୍ୟାଗ କରିବା; ସେସବୁକୁ ସ୍ୱରୂପତଃ ତ୍ୟାଗ କରିଦେବା ନୁହେଁ।

**ପ୍ରଶ୍ନ –** ସମସ୍ତ ଧର୍ମ ପରିତ୍ୟାଗ କରି କେବଳ ଏକମାତ୍ର ପରମେଶ୍ୱରଙ୍କ ଶରଣକୁ ଚାଲିଯିବା କଣ ?

**ଉତ୍ତର –** ଉପରୋକ୍ତପ୍ରକାରେ ସମସ୍ତ କର୍ମ ଭଗବାନଙ୍କୁ ସମର୍ପଣ କରିଦେଇ, ଦ୍ୱାଦଶ ଅଧ୍ୟାୟର ଷଷ୍ଠ ଶ୍ଲୋକରେ, ନବମ ଅଧ୍ୟାୟର ଅନ୍ତିମ ଶ୍ଲୋକରେ ତଥା ଏହି ଅଧ୍ୟାୟର ସତାବନ ଶ୍ଲୋକରେ କୁହାଯାଇଥିବା ପ୍ରକାରେ ଭଗବାନଙ୍କୁ ହିଁ ନିଜର ପରମପ୍ରାପ୍ୟ, ପରମଗତି, ପରମାଧାର, ପରମପ୍ରିୟ, ପରମହିତୈଷୀ, ପରମସୁହୃଦ୍, ପରମ-ଆତ୍ମୀୟ ତଥା ଭର୍ତ୍ତା, ସ୍ୱାମୀ, ସଂରକ୍ଷକ ବୋଲି ବୁଝି, ଉଠିବା-ବସିବା, ଖାଇବା-ପିଇବା, ଚାଲିବା-ବୁଲିବା, ଶୋଇବା-ଉଠିବା ଏବଂ ତାଙ୍କର ପ୍ରତ୍ୟେକ ଆଜ୍ଞା ପାଳନ କରିବା ସମୟରେ ପରମ ଶ୍ରଦ୍ଧାପୂର୍ବକ ଅନନ୍ୟପ୍ରେମରେ ନିତ୍ୟ-ନିରନ୍ତର ତାଙ୍କର ଚିନ୍ତନ କରିଚାଲିବା ଓ ତାଙ୍କ ବିଧାନରେ ସର୍ବଦା ସନ୍ତୁଷ୍ଟ ରହିବା ତଥା କେବଳମାତ୍ର ଏକ ଭଗବାନଙ୍କ ଉପରେ ଭକ୍ତ ପ୍ରହ୍ଲାଦଙ୍କ ପରି ନିର୍ଭର କରିବା ହିଁ ଏକମାତ୍ର ପରମେଶ୍ୱରଙ୍କ ଶରଣକୁ ଚାଲିଯିବା।

**ପ୍ରଶ୍ନ –** 'ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରି ଦେବି,' – ଏ କଥାର ଭାବ କଣ ?

**ଉତ୍ତର –** ଶୁଭାଶୁଭ କର୍ମମାନଙ୍କର ଫଳରୂପୀ ଯେଉଁ କର୍ମବନ୍ଧନରେ ବାନ୍ଧି ହୋଇ ମନୁଷ୍ୟ ଜନ୍ମଜନ୍ମାନ୍ତରରୁ ନାନା- ଯୋନିରେ ଭ୍ରମଣ କରୁଛି, ଏଠାରେ 'ପାପ' ପଦଟି ହେଉଛି ସେହି କର୍ମବନ୍ଧନର ବାଚକ ଏବଂ ସେହି କର୍ମବନ୍ଧନରୁ ମୁକ୍ତ କରିଦେବା ହିଁ ସକଳ ପାପରୁ ମୁକ୍ତ କରିଦେବା। ତେଣୁ ତୃତୀୟ ଅଧ୍ୟାୟର ଏକତିରିଶ ଶ୍ଲୋକରେ **କର୍ମଭିଃ ମୁଚ୍ୟନ୍ତେ**ଦ୍ୱାରା, ଦ୍ୱାଦଶ ଅଧ୍ୟାୟର ସପ୍ତମ ଶ୍ଲୋକରେ **ମୃତ୍ୟୁସଂସାରସାଗରାତ୍ ସମୁଦ୍ଧର୍ତ୍ତା ଭବାମି**ଦ୍ୱାରା ଏବଂ ଏହି ଅଧ୍ୟାୟର ଅଠାବନ ଶ୍ଲୋକରେ **ମତ୍ପ୍ରସାଦାତ୍ ସର୍ବଦୁର୍ଗାଣି ତରିଷ୍ୟସି**ଦ୍ୱାରା ଯେଉଁ କଥା କୁହାଯାଇଛି, ସେହି କଥା ହିଁ ଏଠାରେ 'ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି' ବାକ୍ୟରେ କୁହାଯାଇଛି।

**ପ୍ରଶ୍ନ – ମା ଶୁଚଃ** ଅର୍ଥାତ୍ 'ତୁମେ ଶୋକ କର ନାହିଁ' – କହିବାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ଆଶ୍ୱାସନା ଦେଇ ଗୀତା ଉପଦେଶର ଉପସଂହାର କରୁଛନ୍ତି ତଥା ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକରେ **ଅଶୋଚ୍ୟାନ୍** ପଦଦ୍ୱାରା ଯେଉଁ ଉପଦେଶ ଆରମ୍ଭ କରିଥିଲେ, **ମା ଶୁଚଃ** ପଦଦ୍ୱାରା ତାହାର ଉପସଂହାର କରିଛନ୍ତି । ଭଗବାନ୍ ଦେଖାଇଦେଇଛନ୍ତି, ''ଦ୍ୱିତୀୟ ଅଧ୍ୟାୟର ସପ୍ତମ ଶ୍ଳୋକରେ ତୁମେ ମୋର ଶରଣାଗତି ସ୍ୱୀକାର କରିସାରିଛ; ବର୍ତ୍ତମାନ ପୂର୍ଣ୍ଣରୂପରେ ଶରଣାଗତ ହୋଇଯାଅ; ତୁମେ ଅନ୍ୟ କିଛି ଚିନ୍ତା କର ନାହିଁ; ସକଳ ଶୋକ ସର୍ବଥା ତ୍ୟାଗ କରିଦିଅ ଏବଂ ସଦା-ସର୍ବଦା ମୋ ଉପରେ ଅର୍ଥାତ୍ ପରମେଶ୍ୱରଙ୍କ ଉପରେ ପୂର୍ଣ୍ଣଭାବରେ ନିର୍ଭର କର ।'' ସକଳ ଶୋକର ଏହି ସର୍ବଥା ତ୍ୟାଗ ଏବଂ ଭଗବତ୍-ସାକ୍ଷାତ୍କାର ହିଁ ଗୀତାର ମୁଖ୍ୟ ତାତ୍ପର୍ଯ୍ୟ ।

*ସମ୍ବନ୍ଧ – ଏପରିଭାବରେ ଗୀତା ଉପଦେଶର ଉପସଂହାର କରିସାରି ବର୍ତ୍ତମାନ ତାହାର ଅଧ୍ୟାପନ ଓ ଅଧ୍ୟୟନ କରିବା ଆଦିର ମାହାତ୍ମ୍ୟ କହିବାନିମନ୍ତେ ଭଗବାନ୍ ପ୍ରଥମେ ଅନଧିକାରୀମାନଙ୍କର ଲକ୍ଷଣ କହି ସେମାନଙ୍କୁ ଗୀତାର ଉପଦେଶ ଶୁଣାଇବାକୁ ନିଷେଧ କରୁଛନ୍ତି–*

**ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।**
**ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି ।। ୬୭ ।।**

**ଅନ୍ୱୟ –** ତେ = ତୁମର; **ଇଦମ୍** = ଏହି ଗୀତାରୂପକ ରହସ୍ୟମୟ ଉପଦେଶ; **କଦାଚନ** = କୌଣସି କାଳରେ ବି; **ଅତପସ୍କାୟ, ନ, ବାଚ୍ୟଂ** = ତପସ୍ୟାବିହୀନ ମନୁଷ୍ୟକୁ କହିବ ନାହିଁ; **ଅଭକ୍ତାୟ, ଚ, ନ** = ଭକ୍ତିରହିତ ମନୁଷ୍ୟକୁ ବି କହିବ ନାହିଁ; **ଅଶୁଶ୍ରୂଷବେ, ଚ, ନ** = ଶୁଣିବାକୁ ଅନିଚ୍ଛୁକ ଲୋକକୁ ମଧ୍ୟ କହିବ ନାହିଁ; **ଯଃ** = ଯେ; **ମାମ୍** = ମୋଠାରେ; **ଅଭ୍ୟସୂୟତି** = ଦୋଷଦୃଷ୍ଟି ରଖେ; **(ତସ୍ମୈ)** = ତାକୁ (ତ କଦାପି); ନ, **ବାଚ୍ୟମ୍** = କହିବାର ନୁହେଁ ।

**ଏହି ଗୀତାରୂପକ ରହସ୍ୟମୟ ଉପଦେଶ କୌଣସି କାଳରେ ବି ତପସ୍ୟାବିହୀନ ମନୁଷ୍ୟକୁ କହିବା ଉଚିତ ନୁହେଁ; ଭକ୍ତିରହିତ ମନୁଷ୍ୟକୁ ଏବଂ ଶୁଣିବାକୁ ଅନିଚ୍ଛୁକ ମନୁଷ୍ୟକୁ ମଧ୍ୟ କହିବା ଉଚିତ ନୁହେଁ। ଯେ ମୋଠାରେ ଦୋଷଦୃଷ୍ଟି ରଖେ, ତାକୁ ତ କଦାପି କହିବା ଉଚିତ ନୁହେଁ ।। ୬୭ ।।**

**ପ୍ରଶ୍ନ – ଇଦମ୍** ପଦ ଏଠାରେ କାହାର ବାଚକ ତଥା 'ଏହା ତପସ୍ୟାବିହୀନ ମନୁଷ୍ୟକୁ କୌଣସି କାଳରେ ବି କହିବା ଉଚିତ ନୁହେଁ' – ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକରୁ ଆରମ୍ଭ କରି ଏପର୍ଯ୍ୟନ୍ତ ଅର୍ଜୁନଙ୍କୁ ନିଜର ଗୁଣ, ପ୍ରଭାବ, ରହସ୍ୟ ଏବଂ ସ୍ୱରୂପର ତତ୍ତ୍ୱ ବୁଝାଇବା ନିମନ୍ତେ ଭଗବାନ୍ ଯେଉଁ ଉପଦେଶ ଦେଇଛନ୍ତି, ଏଠାରେ **ଇଦମ୍** ପଦଟି ହେଉଛି ସେହି ସମସ୍ତ ଉପଦେଶର ବାଚକ। ଏହା ଶୁଣିବାର ଅଧିକାରୀମାନଙ୍କୁ ନିର୍ଣ୍ଣୟ କରିବା ପାଇଁ ଭଗବାନ୍ ଏଠାରେ ଚାରିପ୍ରକାର ଦୋଷଥିବା ମନୁଷ୍ୟଙ୍କୁ ଏହି ଉପଦେଶ ଶୁଣାଇବାକୁ ମନା କରିଛନ୍ତି। ସେଥିମଧ୍ୟରୁ ଉପରୋକ୍ତ ବାକ୍ୟରେ ତପସ୍ୟାବିହୀନ ମନୁଷ୍ୟକୁ ଏହା ଶୁଣାଇବାକୁ ମନା କରିଛନ୍ତି।

ଭଗବାନଙ୍କର ଅଭିପ୍ରାୟ ହେଉଛି, ''ଏହି ଗୀତାଶାସ୍ତ୍ରର ବିଷୟ ଅତ୍ୟନ୍ତ ଗୋପନୀୟ। ତୁମେ ମୋର ଅତିଶୟ ପ୍ରେମୀ ଭକ୍ତ ଏବଂ ଦୈବୀସମ୍ପଦଯୁକ୍ତ; ତେଣୁ ତୁମେ ଏହା ଶୁଣିବାର ଅଧିକାରୀ ବୋଲି ଜାଣି ମୁଁ ତୁମର ମଙ୍ଗଳପାଇଁ ତୁମକୁ ଏହି ଉପଦେଶ ଦେଇଛି। ଅନଧିକାରୀ ଲୋକକୁ ତୁମେ ଏହା କହିବ ନାହିଁ। ଯେଉଁ ଲୋକ ସ୍ୱଧର୍ମପାଳନରୂପ ତପ କରେ ନାହିଁ, ଭୋଗାସକ୍ତିହେତୁ ସାଂସାରିକ ବିଷୟସୁଖ ପାଇବା ଲୋଭରେ ନିଜର ଧର୍ମ ତ୍ୟାଗ କରି ପାପକର୍ମରେ ପ୍ରବୃତ୍ତ ହୁଏ, ସେପରି ଲୋକକୁ ମୋର ଗୁଣ, ପ୍ରଭାବ ଏବଂ ତତ୍ତ୍ୱର ବର୍ଣ୍ଣନାରେ ପରିପୂର୍ଣ୍ଣ ଏହି ଗୀତାଶାସ୍ତ୍ର ଶୁଣାଇବା ଉଚିତ ନୁହେଁ; କାରଣ, ସେ ଏହା ଗ୍ରହଣ କରିପାରିବ ନାହିଁ; ଏହାଦ୍ୱାରା ଏହି ଉପଦେଶର ଓ ତା' ସଙ୍ଗେ-ସଙ୍ଗେ ମୋର ମଧ୍ୟ ଅନାଦର ହେବ।''

**ପ୍ରଶ୍ନ —** 'ଭକ୍ତିହୀନ ଲୋକଙ୍କୁ ମଧ୍ୟ ଏହା କେବେ କହିବ ନାହିଁ' — ଏ କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଏହାଦ୍ୱାରା ଅଭକ୍ତ ଲୋକଙ୍କୁ ଗୀତା ଉପଦେଶ ଶୁଣାଇବାକୁ ମନା କରିଛନ୍ତି। ଅଭିପ୍ରାୟ ହେଉଛି, ''ଯାହାର ମୋଠାରେ ଅର୍ଥାତ୍ ପରମେଶ୍ୱରଙ୍କ ଠାରେ ବିଶ୍ୱାସ, ପ୍ରେମ ଏବଂ ପୂଜ୍ୟଭାବ ନାହିଁ ଏବଂ ଯେ ନିଜକୁ ସର୍ବେସର୍ବା ବୋଲି ଭାବୁଥିବା ନାସ୍ତିକ, ସେପରି ମନୁଷ୍ୟକୁ ମଧ୍ୟ ଏହି ଅତ୍ୟନ୍ତ ଗୋପନୀୟ ଗୀତାଶାସ୍ତ୍ର ଶୁଣାଇବା ଉଚିତ ନୁହେଁ; କାରଣ ସେ ଏହା ଶୁଣି ଏହାର ଭାବ ବୁଝିପାରିବ ନାହିଁ ଏବଂ ତେଣୁ ଏହାକୁ ଧାରଣ କରିପାରିବ ନାହିଁ।''

**ପ୍ରଶ୍ନ — ଅଶୁଶ୍ରୂଷବେ** ପଦ କାହାର ବାଚକ ଏବଂ ତାକୁ ଗୀତା ଉପଦେଶ ଶୁଣାଅ ନାହିଁ ବୋଲି କହିବାର ଅଭିପ୍ରାୟ କଣ ?

**ଉତ୍ତର —** ଯାହାର ଗୀତାଶାସ୍ତ୍ର ଶୁଣିବାକୁ ଇଚ୍ଛା ନ ଥାଏ, ଏଠାରେ **ଅଶୁଶ୍ରୂଷବେ** ପଦଟି ହେଉଛି ତାହାର ବାଚକ। ତାକୁ ଗୀତା ଶୁଣାଇବାକୁ ମନା କରିଦେଇ ଭଗବାନ୍ କହୁଛନ୍ତି, ''କେହି ନିଜର ଧର୍ମ ପାଳନରୂପକ ତପ କରୁଥିଲେ ମଧ୍ୟ ଯଦି ଗୀତାଶାସ୍ତ୍ରରେ ଶ୍ରଦ୍ଧା ଓ ପ୍ରେମ ନ ଥିବାରୁ ତାହା ଶୁଣିବାକୁ ଇଚ୍ଛା କରୁ ନ ଥିବ, ତେବେ ତାକୁ ମଧ୍ୟ ପରମଗୋପନୀୟ ଗୀତାଶାସ୍ତ୍ର ଶୁଣାଇବା ଉଚିତ ନୁହେଁ; କାରଣ ସେପରି ମନୁଷ୍ୟ ଏହା ଶୁଣିଲେ ବିରକ୍ତି ପ୍ରକାଶ କରିବ ଏବଂ ଏହା ଗ୍ରହଣ କରିପାରିବ ନାହିଁ। ଏହାଦ୍ୱାରା ମୋ ଉପଦେଶର ଏବଂ ମୋର ଅନାଦର ହେବ।''

**ପ୍ରଶ୍ନ —** ''ଯେ ମୋଠାରେ ଦୋଷଦୃଷ୍ଟି ରଖେ, ତାକୁ ତ କେବେହେଲେ କହିବା ଉଚିତ ନୁହେଁ — ଏ କଥାର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ଭଗବାନ୍ କହୁଛନ୍ତି, ''ସଂସାରର ଉଦ୍ଧାର ନିମନ୍ତେ ମୁଁ ସଗୁଣରୂପରେ ପ୍ରକଟ ହୋଇଛି; ମୋଠାରେ ଅର୍ଥାତ୍ ପରମେଶ୍ୱରଙ୍କ ଠାରେ ଯାହାର ଦୋଷଦୃଷ୍ଟି ରହିଛି, ଯେ ମୋର ଗୁଣରେ ଦୋଷାରୋପଣ କରି ମୋର ନିନ୍ଦା କରେ, ସେପରି ଲୋକକୁ କୌଣସି ଅବସ୍ଥାରେ ବି ଏହି ଉପଦେଶ ଶୁଣାଇବା ଉଚିତ ନୁହେଁ; କାରଣ, ସେ ମୋର ଗୁଣ, ପ୍ରଭାବ ଓ ଐଶ୍ୱର୍ଯ୍ୟକୁ ସହି ପାରୁ ନ ଥିବାରୁ ଏହି ଉପଦେଶ ଶୁଣିଲେ ମୋତେ ପୂର୍ବ ଅପେକ୍ଷା ଅଧିକ ଅବଜ୍ଞା କରିବ ଏବଂ ଏହାଦ୍ୱାରା ସେ ଅଧିକ ପାପଭାଗୀ ହୋଇଯିବ।''

**ପ୍ରଶ୍ନ —** ଯାହାଠାରେ ଉପରୋକ୍ତ ଚାରୋଟିଯାକ ଦୋଷ ରହିଛି, ତାକୁ ଏହି ଉପଦେଶ କହିବା ଉଚିତ ନୁହେଁ, ନା ଚାରୋଟି ମଧ୍ୟରୁ ଯାହାଠାରେ ଗୋଟିଏ କି ଦୁଇଟି ବା ତିନୋଟି ଦୋଷ ରହିଛି, ତାକୁ ମଧ୍ୟ ଶୁଣାଇବା ଉଚିତ ନୁହେଁ ?

**ଉତ୍ତର —** ଏହି ଚାରୋଟି ମଧ୍ୟରୁ ଯାହାଙ୍କ ଠାରେ ଗୋଟିଏ ହେଲେ ଦୋଷ ନାହିଁ, ସେ ତ ଏହି ଉପଦେଶ ଶୁଣିବାର ପୂର୍ଣ୍ଣ ଅଧିକାରୀ, ତା'ଛଡ଼ା ଯାହାଙ୍କ ଠାରେ ସ୍ୱଧର୍ମପାଳନରୂପକ ତପ କମ୍ ଥାଏ; କିନ୍ତୁ ଅନ୍ୟ ତିନିଦୋଷ ନ ଥାଏ, ସେ ମଧ୍ୟ ଏହା ଶୁଣିବାର ଅଧିକାରୀ। ପୁଣି ଯେ ତପସ୍ୱୀ ନୁହେଁ, କି ଭଗବାନଙ୍କର ପୂର୍ଣ୍ଣଭକ୍ତ ମଧ୍ୟ ନୁହେଁ, ଅଥଚ ଗୀତା ଶୁଣିବାକୁ ଉତ୍ସୁକ, ସେ ମଧ୍ୟ କିଛି ଅଂଶରେ ଏହା ଶୁଣିବାର ଅଧିକାରୀ। କିନ୍ତୁ ଯେ ଭଗବାନଙ୍କ ପ୍ରତି ଦୋଷଦୃଷ୍ଟି ରଖେ, ତାଙ୍କୁ ନିନ୍ଦା କରେ, ସେ ଗୀତା-ଉପଦେଶ ଶୁଣିବାକୁ ସର୍ବଥା ଅନଧିକାରୀ; ତାକୁ ଗୀତାତତ୍ତ୍ୱ କେବେହେଲେ କହିବା ଉଚିତ ନୁହେଁ।''

*ସମ୍ବନ୍ଧ — ଗୀତାରେ କୁହାଯାଇଥିବା ଉପଦେଶ ଶୁଣିବାକୁ ଅନଧିକାରୀଙ୍କ ଲକ୍ଷଣ କହିବା ପରେ ବର୍ତ୍ତମାନ ଭଗବାନ୍ ଦୁଇଟି ଶ୍ଲୋକରେ ନିଜ ଭକ୍ତମାନଙ୍କ ଆଗରେ ଏହି ଉପଦେଶ ବର୍ଣ୍ଣନା କରିବାର ଫଳ ଏବଂ ତା'ର ମାହାତ୍ମ୍ୟ ବର୍ଣ୍ଣନା କରୁଛନ୍ତି—*

**ଯ ଇମଂ ପରମଂ ଗୁହ୍ୟଂ ମଦ୍‌ଭକ୍ତେଷ୍ୱଭିଧାସ୍ୟତି।**
**ଭକ୍ତିଂ ମୟି ପରାଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ॥ ୬୮ ॥**

**ଅନ୍ୱୟ —** **ଯଃ** = ଯେଉଁ ପୁରୁଷ; **ମୟି** = ମୋଠାରେ; **ପରାମ୍** = ପରମ; **ଭକ୍ତିମ୍** = ପ୍ରେମ; **କୃତ୍ୱା** = କରି; **ଇମମ୍** = ଏହି; **ପରମମ୍** = ପରମ; **ଗୁହ୍ୟମ୍** = ରହସ୍ୟଯୁକ୍ତ ଗୀତୋପଦେଶକୁ; **ମଦ୍‌ଭକ୍ତେଷୁ** = ମୋର ଭକ୍ତମାନଙ୍କ ମଧ୍ୟରେ; **ଅଭିଧାସ୍ୟତି** = କହିବେ; **(ସଃ)** = ସେ; **ମାମ୍** = ମୋତେ; **ଏବ** = ହିଁ; **ଏଷ୍ୟତି** = ପ୍ରାପ୍ତ ହେବେ; **ଅସଂଶୟଃ** = ଏଥିରେ କୌଣସି ସନ୍ଦେହ ନାହିଁ।

**ଯେଉଁ ପୁରୁଷ ମୋଠାରେ ପରମପ୍ରେମ କରି ଏହି ପରମ ରହସ୍ୟଯୁକ୍ତ ଗୀତୋପଦେଶ ମୋର ଭକ୍ତମାନଙ୍କ ମଧ୍ୟରେ କହିବେ, ସେ ମୋତେ ହିଁ ପ୍ରାପ୍ତ ହେବେ; ଏଥିରେ କୌଣସି ସନ୍ଦେହ ନାହିଁ।। ୬୮ ।।**

**ପ୍ରଶ୍ନ –** ଇମମ୍ ପଦ କାହାର ବାଚକ ତଥା ଏହା ସହିତ **ପରମମ୍** ଏବଂ **ଗୁହ୍ୟମ୍ –** ଏହି ଦୁଇ ବିଶେଷଣ ପ୍ରୟୋଗ କରିବାର ଭାବ କଣ ?

**ଉତ୍ତର – ଇମମ୍** ପଦଟି ହେଉଛି ଏଠାରେ ଗୀତୋକ୍ତ ସମସ୍ତ ଉପଦେଶର ବାଚକ। ଏହା ସହିତ **ପରମମ୍** ଏବଂ **ଗୁହ୍ୟମ୍** ବିଶେଷଣ ଦେଇ ଭଗବାନ୍ ଦେଖାଇଛନ୍ତି, ''ଏହି ଉପଦେଶ ମନୁଷ୍ୟଙ୍କୁ ସଂସାରବନ୍ଧନରୁ ମୁକ୍ତ କରି ସାକ୍ଷାତ୍ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ପ୍ରାପ୍ତ କରାଉଥିବାରୁ ଅତ୍ୟନ୍ତ ଶ୍ରେଷ୍ଠ ଓ ଗୋପନୀୟ ଅଟେ।''

**ପ୍ରଶ୍ନ – ମଦ୍‌ଭକ୍ତେଷୁ** ପଦ କେଉଁମାନଙ୍କର ବାଚକ ଏବଂ ଏହା ପ୍ରୟୋଗ କରି ଏଠାରେ କେଉଁ ଭାବ ଦେଖାଇଛନ୍ତି ?

**ଉତ୍ତର –** ଯେଉଁମାନଙ୍କର ଭଗବାନଙ୍କ ଠାରେ ଶ୍ରଦ୍ଧା ଅଛି, ଯେଉଁମାନେ ଭଗବାନଙ୍କୁ ସମସ୍ତ ଜଗତର ଉତ୍ପତ୍ତି, ସ୍ଥିତି ଓ ପାଳନ କରୁଥିବା ସର୍ବଶକ୍ତିମାନ୍ ଏବଂ ସର୍ବେଶ୍ୱର ବୋଲି ବୁଝି ତାଙ୍କୁ ପ୍ରେମ କରନ୍ତି, ଯେଉଁମାନଙ୍କ ଚିତ୍ତରେ ଭଗବାନଙ୍କର ଗୁଣ, ପ୍ରଭାବ, ଲୀଳା ଏବଂ ତତ୍ତ୍ୱ କଥା ଶୁଣିବାର ପ୍ରବଳ ଉତ୍କଣ୍ଠା ଥାଏ ଏବଂ ତାହା ଶୁଣି ଯେଉଁମାନେ ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି, ଏଠାରେ **ମଦ୍‌ଭକ୍ତେଷୁ** ପଦଟି ହେଉଛି ସେମାନଙ୍କର ବାଚକ। ଏହା ପ୍ରୟୋଗ କରି ଏଠାରେ ଗୀତାର ଅଧିକାରୀଙ୍କ ଲକ୍ଷଣ ନିର୍ଣ୍ଣୟ କରାଯାଇଛି। ଭଗବାନଙ୍କ କହିବାର ଅଭିପ୍ରାୟ ହେଉଛି, ''ଯେ ମୋର ଭକ୍ତ ହୁଅନ୍ତି, ତାଙ୍କ ଠାରେ ପୂର୍ବଶ୍ଳୋକରେ ବର୍ଣ୍ଣିତ ଚାରିପ୍ରକାର ଦୋଷର ସ୍ୱତଃ ଅଭାବ ହୋଇଯାଏ। ତେଣୁ ଯେ ମୋର ଭକ୍ତ, ସେ ଏହା ଶୁଣିବାର ଅଧିକାରୀ ତଥା ଯେକୌଣସି ଜାତି ବା ବର୍ଣ୍ଣର ମନୁଷ୍ୟ ହୁଅନ୍ତୁ ନା କାହିଁକି, ସମସ୍ତେ ମୋର ଭକ୍ତ ହୋଇପାରନ୍ତି (୯/୩୨); ଏଣୁ ଜାତି-ବର୍ଣ୍ଣ ଆଦି କାରଣରୁ କେହି ଗୀତାର ଅନଧିକାରୀ ନୁହନ୍ତି।

**ପ୍ରଶ୍ନ –** ଭଗବାନଙ୍କ ଠାରେ ପରମ ପ୍ରେମପୂର୍ବକ ଭଗବାନଙ୍କ ଭକ୍ତମାନଙ୍କୁ ଏହି ଉପଦେଶ କହିବା କଣ ?

**ଉତ୍ତର –** ସ୍ୱୟଂ ଭଗବାନଙ୍କ ଠାରେ ବା ତାଙ୍କ ବଚନରେ ଅତିଶୟ ଶ୍ରଦ୍ଧାଯୁକ୍ତ ହୋଇ ଏବଂ ଭଗବାନଙ୍କ ନାମ, ଗୁଣ, ଲୀଳା, ପ୍ରଭାବ ଓ ସ୍ୱରୂପର ସ୍ମୃତିଦ୍ୱାରା ତାଙ୍କ ପ୍ରେମରେ ବିହ୍ୱଳ ହୋଇ କେବଳ ଭଗବାନଙ୍କ ପ୍ରସନ୍ନତାପାଇଁ ନିଷ୍କାମଭାବରେ ଉପରୋକ୍ତ ଭଗବଦ୍‌ଭକ୍ତଙ୍କ ସମ୍ମୁଖରେ ଏହି ଗୀତାଶାସ୍ତ୍ର ବର୍ଣ୍ଣନା କରିବା ଅର୍ଥାତ୍ ଭଗବାନଙ୍କର ଭକ୍ତମାନଙ୍କୁ ଗୀତାର ମୂଳ ଶ୍ଳୋକଗୁଡ଼ିକ ଅଧ୍ୟୟନ କରାଇବା, ସେଗୁଡ଼ିକର ବ୍ୟାଖ୍ୟା କରି ଅର୍ଥ ବୁଝାଇଦେବା, ଶୁଦ୍ଧପାଠ କରାଇବା, ସେଗୁଡ଼ିକର ଭାବକୁ ଭଲଭାବରେ ପ୍ରକାଶ କରିବା ଓ ବୁଝାଇଦେବା, ଶ୍ରୋତାମାନଙ୍କର ବିଭିନ୍ନ ଶଙ୍କା ସମାଧାନ କରି ଗୀତାର ଉପଦେଶକୁ ସେମାନଙ୍କର ହୃଦୟଙ୍ଗମ କରାଇଦେବା ଏବଂ ଗୀତାର ଉପଦେଶ ଅନୁସାରେ ଚଳିବାପାଇଁ ସେମାନଙ୍କ ମଧ୍ୟରେ ଦୃଢ଼ ଭାବନା ଉତ୍ପନ୍ନ କରାଇଦେବା ଆଦି ସମସ୍ତ କ୍ରିୟା ହେଉଛି ଭଗବାନଙ୍କ ଠାରେ ପରମ ପ୍ରେମ କରି ଭଗବାନଙ୍କର ଭକ୍ତମାନଙ୍କୁ ଗୀତାର ଉପଦେଶ କହିବାର ଅନ୍ତର୍ଗତ।

**ପ୍ରଶ୍ନ –** 'ସେ ମୋତେ ହିଁ ପ୍ରାପ୍ତ ହେବେ; ଏଥିରେ କୌଣସି ସନ୍ଦେହ ନାହିଁ, – ଏହି ବାକ୍ୟର ଭାବ କଣ ?

**ଉତ୍ତର –** ଏଥିରେ ଭଗବାନ୍ କହୁଛନ୍ତି, ''ଯେଉଁ ଭକ୍ତ କେବଳ ମୋର ଭକ୍ତି– ଉଦ୍ଦେଶ୍ୟରେ ହିଁ ନିଷ୍କାମଭାବରେ ଅଧିକାରୀ ପୁରୁଷମାନଙ୍କ ମଧ୍ୟରେ ମୋର ଭାବ ପ୍ରଚାର ପ୍ରସାର କରନ୍ତି, ସେ ମୋତେ ପ୍ରାପ୍ତ ହୁଅନ୍ତି; ଏଥିରେ କୌଣସି ସନ୍ଦେହ ନାହିଁ; ଅର୍ଥାତ୍ ଏହା ହେଉଛି ମୋର ପ୍ରାପ୍ତିର ଐକାନ୍ତିକ ଉପାୟ। ତେଣୁ ଭଗବତ୍‌ପ୍ରାପ୍ତି ଚାହୁଁଥିବା ଅଧିକାରୀ ଭକ୍ତମାନଙ୍କ ନିକଟରେ ଗୀତାଶାସ୍ତ୍ରର ବର୍ଣ୍ଣନା ତଥା ପ୍ରଚାରକାର୍ଯ୍ୟ ଅବଶ୍ୟକର୍ତ୍ତବ୍ୟ।''

**ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ ।**
**ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି।। ୬୯ ।।**

**ଅନ୍ୱୟ –** ତସ୍ମାତ୍ = ତାଙ୍କଠାରୁ ବଡ଼ ହୋଇ; ମେ = ମୋର; ପ୍ରିୟକୃତ୍ତମଃ = ପ୍ରିୟକାର୍ଯ୍ୟ କରୁଥିବା ବ୍ୟକ୍ତି; **ମନୁଷ୍ୟେଷୁ** = ମନୁଷ୍ୟମାନଙ୍କ ମଧ୍ୟରେ; **କଶ୍ଚିତ୍** = କେହି; ଚ = ମଧ୍ୟ; ନ = ନାହିଁ; ଚ = ତଥା; ଭୁବି = ସମଗ୍ର ପୃଥିବୀରେ; ତସ୍ମାତ୍ = ତାଙ୍କଠାରୁ ବଳି; ମେ = ମୋର; ପ୍ରିୟତରଃ = ଅଧିକ ପ୍ରିୟ; ଅନ୍ୟଃ = ଅନ୍ୟ କେହି; **ଭବିତା, ନ** = ଭବିଷ୍ୟତରେ ମଧ୍ୟ ହେବ ନାହିଁ।

**ତାଙ୍କ ଠାରୁ ବଢ଼ ହୋଇ ମୋର ପ୍ରିୟକାର୍ଯ୍ୟ କରୁଥିବା ବ୍ୟକ୍ତି ମନୁଷ୍ୟମାନଙ୍କ ମଧ୍ୟରେ ଆଉ କେହି ନାହିଁ; ତଥା ସମଗ୍ର ପୃଥିବୀରେ ତାଙ୍କ ଠାରୁ ବଳି ମୋର ଅନ୍ୟ କେହି ପ୍ରିୟ ବ୍ୟକ୍ତି ଭବିଷ୍ୟତରେ ମଧ୍ୟ ହେବ ନାହିଁ॥ ୬୯ ॥**

**ପ୍ରଶ୍ନ–** ତସ୍ମାତ୍ ପଦ ଏଠାରେ କାହାର ବାଚକ ଏବଂ 'ତାଙ୍କ ଠାରୁ ବଢ଼ ହୋଇ ମୋର ପ୍ରିୟକାର୍ଯ୍ୟ କରୁଥିବା ବ୍ୟକ୍ତି ମନୁଷ୍ୟମାନଙ୍କ ମଧ୍ୟରେ ଆଉ କେହି ନାହିଁ'– କଥାର ଭାବ କଣ ?

**ଉତ୍ତର–** ଏଠାରେ **ତସ୍ମାତ୍** ପଦଟି ହେଉଛି ପୂର୍ବଶ୍ଳୋକରେ ବର୍ଣ୍ଣିତ ଭଗବାନଙ୍କର ଭକ୍ତମାନଙ୍କ ସମ୍ମୁଖରେ ଗୀତାଶାସ୍ତ୍ର କହୁଥିବା, ଗୀତାଶାସ୍ତ୍ରର ମର୍ମଜ୍ଞ, ଶ୍ରଦ୍ଧାଳୁ ଏବଂ ପ୍ରେମୀ ଭଗବଦ୍‌ଭକ୍ତଙ୍କର ବାଚକ। 'ତାଙ୍କଠାରୁ ବଢ଼ ହୋଇ ମୋର ପ୍ରିୟକାର୍ଯ୍ୟ କରୁଥିବା ବ୍ୟକ୍ତି ମନୁଷ୍ୟମାନଙ୍କ ମଧ୍ୟରେ ଆଉ କେହି ନାହିଁ'– ଏହି ବାକ୍ୟରେ ଭଗବାନ୍ କହୁଛନ୍ତି, "ଯଜ୍ଞ, ଦାନ, ତପ, ସେବା, ପୂଜା, ଜପ, ଧ୍ୟାନ ଆଦି ମୋର ଯେତେ ପ୍ରିୟକାର୍ଯ୍ୟ ଅଛି, ସେସବୁଠାରୁ ବଳି ଅଧିକ ପ୍ରିୟ ହେଉଛି, ମୋ ଭକ୍ତମାନଙ୍କ ମଧ୍ୟରେ ମୋର ଭାବ ବିସ୍ତାର କରିବା। ଏହି କାର୍ଯ୍ୟର ସମକକ୍ଷ ମୋର ପ୍ରିୟକାର୍ଯ୍ୟ ହୋଇ ସଂସାରରେ ଆଉ କିଛି ନାହିଁ। ତେଣୁ ମୋର ଯେଉଁ ପ୍ରେମୀ ଭକ୍ତ ଶ୍ରଦ୍ଧାଭକ୍ତିପୂର୍ବକ ମୋର ଭକ୍ତମାନଙ୍କ ମଧ୍ୟରେ ମୋର ଭାବ ବିସ୍ତାର କରନ୍ତି, ସେ ହିଁ ମୋର ସବୁଠାରୁ ଅଧିକ ପ୍ରିୟ, ତାଙ୍କଠାରୁ ଅଧିକପ୍ରିୟ ହୋଇ ମୋର ଅନ୍ୟ କେହି ନାହିଁ। ସେ ନିଜର ସ୍ୱାର୍ଥକୁ ସର୍ବଥା ତ୍ୟାଗ କରି କେବଳ ମୋର ହିଁ ପ୍ରିୟକାର୍ଯ୍ୟ କରନ୍ତି; ତେଣୁ ସେ ମୋର ଅତ୍ୟନ୍ତ ପ୍ରିୟ।"

**ପ୍ରଶ୍ନ–** 'ସମଗ୍ର ପୃଥିବୀରେ ତାଙ୍କ ଠାରୁ ବଳି ମୋର ଅନ୍ୟ କେହି ପ୍ରିୟ ବ୍ୟକ୍ତି ଭବିଷ୍ୟତରେ ମଧ୍ୟ ହେବେ ନାହିଁ'— ଏ କଥାର ଭାବ କଣ ?

**ଉତ୍ତର–** ଏହାଦ୍ୱାରା ଭଗବାନ୍ ଘୋଷଣା କରିଦେଇଛନ୍ତି, କେବଳ ବର୍ତ୍ତମାନ ଯେ ତାଙ୍କ ଠାରୁ ବଳି ମୋର କେହି ପ୍ରିୟ ନାହିଁ ତାହା ନୁହେଁ; ଭବିଷ୍ୟତରେ ମଧ୍ୟ ସମଗ୍ର ପୃଥିବୀରେ ତାଙ୍କ ଠାରୁ ବଳି ଅନ୍ୟ କେହି ଯେ ମୋର ଅଧିକ ପ୍ରିୟ ହୋଇପାରିବ, ତାହା ମଧ୍ୟ ସମ୍ଭବ ନୁହେଁ। କାରଣ, ଯେହେତୁ ସେହି କାର୍ଯ୍ୟଠାରୁ ବଳି ମୋର ଅନ୍ୟ କୌଣସି ପ୍ରିୟକାର୍ଯ୍ୟ ନାହିଁ, ତେଣୁ କୌଣସି ସାଧନାଦ୍ୱାରା କୌଣସି ବି ମନୁଷ୍ୟ ମୋର ତାହାଠାରୁ ବଳି ପ୍ରିୟ କିପରି ବା ହୋଇପାରିବ ? ତେଣୁ ମୋର ପ୍ରାପ୍ତିନିମିତ୍ତ ଯେତେ ବି ସାଧନା ରହିଛି, ସେସବୁ ଭିତରେ ମୋ ଭକ୍ତମାନଙ୍କ ମଧ୍ୟରେ ଭକ୍ତିପୂର୍ବକ ମୋର ଭାବ ବିସ୍ତାର କରିବା ହିଁ ସର୍ବୋତ୍କୃଷ୍ଟ ସାଧନା।– ଏହା ବୁଝି ମୋର ଭକ୍ତମାନେ ଏହି କାର୍ଯ୍ୟ କରିବା ଉଚିତ।"

*ସମ୍ବନ୍ଧ–* *ଉପରୋକ୍ତ ଦୁଇଟି ଶ୍ଳୋକରେ ଶ୍ରଦ୍ଧାଭକ୍ତିପୂର୍ବକ ଭଗବଦ୍‌ଭକ୍ତମାନଙ୍କ ମଧ୍ୟରେ ଗୀତାଶାସ୍ତ୍ର ପ୍ରଚାର-ପ୍ରସାର କରିବାର ଫଳ ଏବଂ ମାହାତ୍ମ୍ୟ ବର୍ଣ୍ଣନା କଲେ; କିନ୍ତୁ ସମସ୍ତେ ଏହି କାର୍ଯ୍ୟ କରିପାରିବେ ନାହିଁ; ଏପରି ଅଧିକାରୀ ମହାପୁରୁଷ ତ ବିରଳ। ତେଣୁ ଭଗବାନ୍ ବର୍ତ୍ତମାନ ଗୀତାଶାସ୍ତ୍ର ଅଧ୍ୟୟନର ମାହାତ୍ମ୍ୟ ବର୍ଣ୍ଣନା କରୁଛନ୍ତି–*

**ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସଂବାଦମାବୟୋଃ।**
**ଜ୍ଞାନଯଜ୍ଞେନ ତେନାହମିଷ୍ଟଃ ସ୍ୟାମିତି ମେ ମତିଃ॥ ୭୦ ॥**

**ଅନ୍ୱୟ–** **ଯଃ** = ଯେଉଁ ପୁରୁଷ; **ଇମମ୍** = ଏହି; **ଧର୍ମ୍ୟମ୍** = ଧର୍ମମୟ; **ଆବୟୋଃ** = ଆମ ଦୁହିଁଙ୍କର; **ସଂବାଦମ୍** = ସଂବାଦରୂପକ ଗୀତାଶାସ୍ତ୍ରକୁ; **ଅଧ୍ୟେଷ୍ୟତେ** = ଅଧ୍ୟୟନ କରିବେ; **ତେନ** = ତାହାଙ୍କ ଦ୍ୱାରା; **ଚ** = ମଧ୍ୟ; **ଅହମ୍** = ମୁଁ; **ଜ୍ଞାନଯଜ୍ଞେନ** = ଜ୍ଞାନଯଜ୍ଞଦ୍ୱାରା; **ଇଷ୍ଟଃ** = ପୂଜିତ; **ସ୍ୟାମ୍** = ହେବି; **ଇତି** = ଏହା; **ମେ** = ମୋର; **ମତିଃ** = ମତ।

**ଯେଉଁ ପୁରୁଷ ଆମ ଦୁହିଁଙ୍କର ଏହି ଧର୍ମମୟ ସଂବାଦରୂପକ ଗୀତାଶାସ୍ତ୍ର ଅଧ୍ୟୟନ କରିବେ, ତାଙ୍କ ଦ୍ୱାରା ମଧ୍ୟ ମୁଁ ଜ୍ଞାନଯଜ୍ଞରେ ପୂଜିତ ହେବି; ଏହା ମୋର ମତ॥ ୭୦ ॥**

**ପ୍ରଶ୍ନ—** **ଆବୟୋଃ ସଂବାଦମ୍** ସହିତ **ଇମମ୍** ପଦ କାହାର ବାଚକ ଏବଂ ତାହା ସହିତ **ଧର୍ମ୍ୟମ୍** ବିଶେଷଣ ଦେବାର ଭାବ କଣ ?

**ଉତ୍ତର—** ଅର୍ଜୁନ ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରଶ୍ନୋତ୍ତରରୂପରେ ଏ ଯେଉଁ ଗୀତାଶାସ୍ତ୍ର ରହିଛି, ଯାହାକୁ ଅଠଷଠି ଶ୍ଳୋକରେ **ପରମଗୁହ୍ୟ** ବୋଲି କୁହାଯାଇଛି, ଏଠାରେ **ଆବୟୋଃ ସଂବାଦମ୍** ସହିତ **ଇମମ୍** ପଦଟି ହେଉଛି ତାହାର ବାଚକ। ଏହା ସହିତ **ଧର୍ମ୍ୟମ୍** ବିଶେଷଣ ଦେଇ ଭଗବାନ୍ କହୁଛନ୍ତି, "ଏହା ସାକ୍ଷାତ୍ ମୋ ଦ୍ୱାରା ଅର୍ଥାତ୍ ପରମେଶ୍ୱରଙ୍କ ଦ୍ୱାରା କୁହାଯାଇଥିବା ଶାସ୍ତ୍ର; ତେଣୁ ଯାହା କିଛି ଉପଦେଶ ଦିଆଯାଇଛି, ତାହା ପୂର୍ଣ୍ଣତଃ ଧର୍ମରେ ଓତପ୍ରୋତ; ଏହାର କୌଣସିଟି ଉପଦେଶ ଧର୍ମବିରୁଦ୍ଧ ବା ବ୍ୟର୍ଥ ନୁହେଁ। ତେଣୁ ଏଥିରେ କୁହାଯାଇଥିବା ଉପଦେଶ ପାଳନ କରିବା ହେଉଛି ମନୁଷ୍ୟର ପରମ କର୍ତ୍ତବ୍ୟ।

**ପ୍ରଶ୍ନ—** ଗୀତାଶାସ୍ତ୍ର ଅଧ୍ୟୟନ କରିବା କଣ ?

**ଉତ୍ତର—** ଗୀତାର ମର୍ମ ଜାଣିଥିବା ଭଗବତ୍-ଭକ୍ତମାନଙ୍କ ଠାରୁ ଏହି ଗୀତାଶାସ୍ତ୍ର ପାଠ କରିବା ଶିଖିବା, ନିତ୍ୟ ଗୀତା ପାଠ କରିବା, ଗୀତାର ଅର୍ଥ ପାଠ କରିବା, ଅର୍ଥ ଉପରେ ବିଚାର କରିବା ଏବଂ ଗୀତାର ଅର୍ଥ ଜାଣିଥିବା ଭକ୍ତଙ୍କ ଠାରୁ ତାହା ବୁଝିବାକୁ ଚେଷ୍ଟା କରିବା ଆଦି ସମସ୍ତ ଅଭ୍ୟାସ ଗୀତାଶାସ୍ତ୍ର ଅଧ୍ୟୟନର ଅନ୍ତର୍ଗତ। ଶ୍ଳୋକମାନଙ୍କର ଅର୍ଥ ନ ବୁଝି ଗୀତା ପଢ଼ିବା ଏବଂ ଅର୍ଥ ନ ବୁଝି ନିତ୍ୟ ପାଠ କରିବା ଅପେକ୍ଷା ଗୀତା ପଢ଼ିବା ସହିତ ଅର୍ଥ ମଧ୍ୟ ପଢ଼ିବା ଏବଂ ଅର୍ଥଜ୍ଞାନ ସହିତ ନିତ୍ୟ ଗୀତାପାଠ କରିବା ଅଧିକ ଉତ୍ତମ। ଗୀତାର ଅର୍ଥ ବୁଝି ପଢ଼ିବା ବା ପଢ଼ିବା ସମୟରେ ପ୍ରେମରେ ବିହ୍ୱଳ ହୋଇ ଭାବାନ୍ୱିତ ହୋଇଯିବା ତାହାଠାରୁ ମଧ୍ୟ ଅଧିକ ଉତ୍ତମ।

**ପ୍ରଶ୍ନ—** 'ତାଙ୍କ ଦ୍ୱାରା ମଧ୍ୟ ମୁଁ ଜ୍ଞାନଯଜ୍ଞରେ ପୂଜିତ ହେବି; ଏହା ମୋର ମତ'— ଏହି ବାକ୍ୟର ଭାବ କଣ ?

**ଉତ୍ତର—** ଏହାଦ୍ୱାରା ଭଗବାନ୍ ଉପରୋକ୍ତଭାବରେ ଗୀତାଶାସ୍ତ୍ର ଅଧ୍ୟୟନର ମାହାତ୍ମ୍ୟ କହିଛନ୍ତି। କହିବାର ଅଭିପ୍ରାୟ ହେଉଛି : ଗୀତାଶାସ୍ତ୍ର ଅଧ୍ୟୟନ କରିବାଦ୍ୱାରା ମୋର ସଗୁଣ-ନିର୍ଗୁଣ ଓ ସାକାର-ନିରାକାର ତତ୍ତ୍ୱ ବିଷୟରେ ଭଲଭାବରେ ଯଥାର୍ଥ ଜ୍ଞାନ ହୋଇଯାଏ। ଏଣୁ ଯେକେହି ହୁଅନ୍ତୁ ନା କାହିଁକି, ସେ ଯଦି ମୋର ତତ୍ତ୍ୱ ଜାଣିବାନିମନ୍ତେ ଏହି ଗୀତାଶାସ୍ତ୍ର ଅଧ୍ୟୟନ କରିବେ, ତେବେ ମୁଁ ବୁଝିବି ଯେ, ସେ ମଧ୍ୟ ଜ୍ଞାନଯଜ୍ଞଦ୍ୱାରା ମୋର ପୂଜା କରୁଛନ୍ତି। ଏହି ଜ୍ଞାନଯଜ୍ଞରୂପକ ସାଧନାକୁ ଅନ୍ୟ ଦ୍ରବ୍ୟମୟ ସାଧନାମାନଙ୍କ ଅପେକ୍ଷା ଅଧିକ ଉତ୍ତମ ବୋଲି ସ୍ୱୀକାର କରାଯାଏ (୪/୩୩); କାରଣ ଭଗବତ୍-ତତ୍ତ୍ୱକୁ ଭଲଭାବରେ ଜାଣିଯିବା ହିଁ ସମସ୍ତ ସାଧନାର ଅନ୍ତିମ ଫଳ ଏବଂ ସେହି ଫଳ ଏହି ଜ୍ଞାନଯଜ୍ଞଦ୍ୱାରା ଅନାୟାସରେ ମିଳିଯାଏ। ତେଣୁ କଲ୍ୟାଣକାମୀ ମନୁଷ୍ୟ ତତ୍ପରତାର ସହିତ ଗୀତା ଅଧ୍ୟୟନ କରିବା ଉଚିତ।

*ସମ୍ବନ୍ଧ— ଗୀତାଶାସ୍ତ୍ର ଅଧ୍ୟୟନର ମାହାତ୍ମ୍ୟ ବର୍ଣ୍ଣନା କରିସାରି, ବର୍ତ୍ତମାନ ଯେଉଁମାନେ ଉପରୋକ୍ତଭାବରେ ଅଧ୍ୟୟନ କରିବାକୁ ଅସମର୍ଥ, ସେହି ମନୁଷ୍ୟମାନଙ୍କ ନିମିତ୍ତ ଗୀତାପାଠଶ୍ରବଣର ଫଳ ବର୍ଣ୍ଣନା କରୁଛନ୍ତି—*

**ଶ୍ରଦ୍ଧାବାନନସୂୟଶ୍ଚ ଶୃଣୁୟାଦପି ଯୋ ନରଃ।**
**ସୋଽପି ମୁକ୍ତଃ ଶୁଭାଁଲ୍ଲୋକାନ୍ ପ୍ରାପ୍ନୁୟାତ୍ ପୁଣ୍ୟକର୍ମଣାମ୍॥ ୭୧ ॥**

ଅନ୍ୱୟ— **ଯଃ** = ଯେଉଁ; **ନରଃ** = ମନୁଷ୍ୟ; **ଶ୍ରଦ୍ଧାବାନ୍** = ଶ୍ରଦ୍ଧାଯୁକ୍ତ; **ଚ** = ଏବଂ; **ଅନସୂୟଃ** = ଦୋଷଦୃଷ୍ଟିରୁ ରହିତ ହୋଇ (ଏହି ଗୀତାଶାସ୍ତ୍ର); **ଶୃଣୁୟାତ୍, ଅପି** = ଶ୍ରବଣମାତ୍ର କରିବ; **ସଃ** = ସେ; **ଅପି** = ମଧ୍ୟ; **ମୁକ୍ତଃ** = (ସମସ୍ତ ପାପରୁ) ମୁକ୍ତ ହୋଇ; **ପୁଣ୍ୟକର୍ମଣାମ୍** = ଉତ୍ତମ କର୍ମକାରୀମାନଙ୍କର; **ଶୁଭାନ୍** = ଶ୍ରେଷ୍ଠ; **ଲୋକାନ୍** = ଲୋକମାନଙ୍କୁ; **ପ୍ରାପ୍ନୁୟାତ୍** = ପ୍ରାପ୍ତ ହେବ।

**ଯେଉଁ ମନୁଷ୍ୟ ଶ୍ରଦ୍ଧାଯୁକ୍ତ ଏବଂ ଦୋଷଦୃଷ୍ଟିରହିତ ହୋଇ ଏହି ଗୀତାଶାସ୍ତ୍ର ଶ୍ରବଣମାତ୍ର କରିବେ, ସେ ମଧ୍ୟ ପାପମୁକ୍ତ ହୋଇ ଉତ୍ତମ କର୍ମକାରୀମାନଙ୍କର ଶ୍ରେଷ୍ଠ ଲୋକମାନଙ୍କୁ ପ୍ରାପ୍ତ ହେବେ॥ ୭୧ ॥**

**ପ୍ରଶ୍ନ–** ଏଠାରେ **ନରଃ** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର–** ଏଠାରେ **ନରଃ** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଯାହାର ହୃଦୟରେ ଏହି ଗୀତାଶାସ୍ତ୍ରକୁ ଶ୍ରଦ୍ଧାପୂର୍ବକ ଶ୍ରବଣ କରିବାର ମଧ୍ୟ ରୁଚି ନାହିଁ, ସେ ତ ମନୁଷ୍ୟପଦବାଚ୍ୟ ମଧ୍ୟ ନୁହେଁ, କାରଣ ତା'ର ମନୁଷ୍ୟଜନ୍ମ ଲାଭ କରିବା ବୃଥା। ତେଣୁ ସେ ମନୁଷ୍ୟରୂପରେ ଥାଇ ମଧ୍ୟ ପଶୁତୁଲ୍ୟ ଅଟେ।

**ପ୍ରଶ୍ନ–** 'ଶ୍ରଦ୍ଧାସହକାରେ ଏବଂ ଦୋଷଦୃଷ୍ଟିରୁ ରହିତ ହୋଇ ଏହି ଗୀତାଶାସ୍ତ୍ର ଶ୍ରବଣ କରିବା କଣ ?

**ଉତ୍ତର–** ଭଗବାନଙ୍କ ସତ୍ତାରେ ଏବଂ ତାଙ୍କ ଗୁଣ ଓ ପ୍ରଭାବରେ ବିଶ୍ୱାସ ରଖି ତଥା ଏହି ଗୀତାଶାସ୍ତ୍ର ସାକ୍ଷାତ୍ ଭଗବାନଙ୍କର ବାଣୀ; ଏଥିରେ ଯାହା କିଛି କୁହାଯାଇଛି, ତାହା ସତ୍ୟ ଯଥାର୍ଥ ବୋଲି ନିଶ୍ଚିତଭାବରେ ସ୍ୱୀକାର କରି ଏବଂ ବକ୍ତାଙ୍କ ଉପରେ ବିଶ୍ୱାସ ରଖି ପ୍ରେମ ଓ ଆଗ୍ରହର ସହିତ ଗୀତାର ମୂଳଶ୍ଳୋକ-ପାଠ ତଥା ସେଗୁଡ଼ିକର ଅର୍ଥ ଓ ବ୍ୟାଖ୍ୟା ଶ୍ରବଣ କରିବା ଇତ୍ୟାଦି ହିଁ ଶ୍ରଦ୍ଧାସହକାରେ ଗୀତାଶାସ୍ତ୍ର ଶ୍ରବଣ କରିବା। ଗୀତା ଶ୍ରବଣ କରିବା ସମୟରେ ଭଗବାନଙ୍କ ଉପରେ ବା ଭଗବାନଙ୍କ ବଚନ ଉପରେ କୌଣସିପ୍ରକାର ଦୋଷାରୋପଣ ନ କରିବା ଏବଂ ଗୀତାଶାସ୍ତ୍ରକୁ କୌଣସିରୂପେ ଅବଜ୍ଞା ନ କରିବା ଇତ୍ୟାଦି ହେଉଛି ଦୋଷଦୃଷ୍ଟିରୁ ରହିତ ହୋଇ ତାହା ଶ୍ରବଣ କରିବା।

**ପ୍ରଶ୍ନ– ଶୃଣୁୟାତ୍** ସହିତ **ଅପି** ପଦ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

**ଉତ୍ତର– ଶୃଣୁୟାତ୍** ସହିତ **ଅପି** ପଦ ପ୍ରୟୋଗ କରି ଦେଖାଇଦିଆଯାଇଛି ଯେ, ଅଠଷଠି ଶ୍ଳୋକର ବର୍ଣ୍ଣନାନୁସାରେ ଯେ ଏହି ଗୀତାଶାସ୍ତ୍ର ଅଧ୍ୟାପନ କରନ୍ତି ତଥା ଯେ ସତୁରି ଶ୍ଳୋକର ବର୍ଣ୍ଣନାନୁସାରେ ସ୍ୱୟଂ ଅଧ୍ୟୟନ କରନ୍ତି, ତାଙ୍କ କଥା କଣ କହିବା, ଯେ ଏହାକୁ ଶ୍ରଦ୍ଧାପୂର୍ବକ ଶ୍ରବଣମାତ୍ର କରନ୍ତି, ସେ ମଧ୍ୟ ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି। ତେଣୁ ଯାହାଦ୍ୱାରା ଗୀତାର ଅଧ୍ୟୟନ ବା ଅଧ୍ୟାପନ ହୋଇ ନ ପାରିବ, ସେ ଅବଶ୍ୟ ଗୀତା ଶ୍ରବଣ କରିବା ଉଚିତ।

**ପ୍ରଶ୍ନ–** 'ଗୀତା ଶ୍ରବଣ କରୁଥିବା ଲୋକ ପାପରୁ ମୁକ୍ତ ହୋଇ ପୁଣ୍ୟକର୍ମୀମାନଙ୍କର ଶ୍ରେଷ୍ଠଲୋକ ପ୍ରାପ୍ତ ହେବା'– କଣ ? ପୁଣି ଏଠାରେ **ସଃ** ସହିତ **ଅପି** ପଦ ପ୍ରୟୋଗର ଭାବ କଣ ?

**ଉତ୍ତର–** ଜନ୍ମ-ଜନ୍ମାନ୍ତରରେ କରାଯାଇଥିବା ପାପ ହେତୁ ଯେଉଁ ପଶୁପକ୍ଷୀ ଆଦି ନୀଚଯୋନି ପ୍ରାପ୍ତ ହୁଏ ବା ନରକରେ ପଡ଼ିବାକୁ ହୁଏ, ସେହି ପାପରୁ ମୁକ୍ତ ହୋଇ ଇନ୍ଦ୍ରଲୋକଠାରୁ ଆରମ୍ଭ କରି ଭଗବାନଙ୍କର ପରମଧାମପର୍ଯ୍ୟନ୍ତ ନିଜ ନିଜର ପ୍ରେମ ଓ ଶ୍ରଦ୍ଧା ଅନୁରୂପ ଭିନ୍ନ ଭିନ୍ନ ଲୋକରେ ନିବାସ କରିବା ହିଁ ଗୀତା ଶ୍ରୋତାମାନେ ପାପରୁ ମୁକ୍ତ ହୋଇ ପୁଣ୍ୟକର୍ମୀମାନଙ୍କର ଶ୍ରେଷ୍ଠଲୋକ ପ୍ରାପ୍ତ ହେବା।

**ସଃ** ସହିତ **ଅପି** ପଦ ପ୍ରୟୋଗ କରି ଏଠାରେ ପ୍ରକାଶ କରାଯାଇଛି ଯେ, ଯେ ଗୀତା ଅଧ୍ୟାପନ ଏବଂ ଅଧ୍ୟୟନ କରି ନ ପାରି ଉପରୋକ୍ତଭାବରେ କେବଳ ଶ୍ରବଣମାତ୍ର ହିଁ କରିବେ, ସେ ମଧ୍ୟ ପାପର ଫଳରୁ ମୁକ୍ତ ହୋଇଯିବେ, ଯଦ୍ଦ୍ୱାରା ସେ ପଶୁ-ପକ୍ଷୀ ଆଦି ଯୋନି କିମ୍ବା ନରକ ପ୍ରାପ୍ତ ହେବେ ନାହିଁ; ବରଂ ସେ ପୁଣ୍ୟକର୍ମୀମାନଙ୍କର ଶ୍ରେଷ୍ଠଲୋକ ପ୍ରାପ୍ତ ହୋଇଯିବେ।

**ସମ୍ବନ୍ଧ–** ଏପରିଭାବରେ ଗୀତାଶାସ୍ତ୍ରର କଥନ, ପଠନ ଏବଂ ଶ୍ରବଣର ମାହାତ୍ମ୍ୟ କହିସାରିବା ପରେ ଭଗବାନ୍ ସ୍ୱୟଂ ସବୁକିଛି ଜାଣିଥିଲେ ମଧ୍ୟ ଅର୍ଜୁନଙ୍କୁ ସଚେତ କରିଦେବାପାଇଁ ବର୍ତ୍ତମାନ ତାଙ୍କୁ ତାଙ୍କ ସ୍ଥିତି ବିଷୟରେ ପଚାରୁଛନ୍ତି–

**କଚ୍ଚିଦେତତ୍ ଶ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା।**
**କଚ୍ଚିଦଜ୍ଞାନସମ୍ମୋହଃ ପ୍ରନଷ୍ଟସ୍ତେ ଧନଞ୍ଜୟ।। ୭୨ ।।**

**ଅନ୍ୱୟ–** ପାର୍ଥ = ହେ ପାର୍ଥ; କଚ୍ଚିତ୍ = କଣ; ଏତତ୍ = ଏହି (ଗୀତାଶାସ୍ତ୍ର); ତ୍ୱୟା = ତୁମେ; **ଏକାଗ୍ରେଣ, ଚେତସା** = ଏକାଗ୍ରଚିତ୍ତରେ; **ଶ୍ରୁତମ୍** = ଶ୍ରବଣ କଲ ? (ଏବଂ); **ଧନଞ୍ଜୟ** = ହେ ଧନଞ୍ଜୟ; **କଚ୍ଚିତ୍** = କଣ; **ତେ** = ତୁମର; **ଅଜ୍ଞାନସମ୍ମୋହଃ** = ଅଜ୍ଞାନଜନିତ ମୋହ; **ପ୍ରନଷ୍ଟଃ** = ନଷ୍ଟ ହୋଇଗଲା ?

**ହେ ପାର୍ଥ! କଣ ଏହି ଗୀତାଶାସ୍ତ୍ରକୁ ତୁମେ ଏକାଗ୍ରଚିତ୍ତରେ ଶ୍ରବଣ କରିଛ? ଏବଂ ହେ ଧନଞ୍ଜୟ! କ'ଣ ତୁମର ଅଜ୍ଞାନଜନିତ ମୋହ ନଷ୍ଟ ହୋଇଗଲା?।। ୭୨ ।।**

**ପ୍ରଶ୍ନ –** ଏଠାରେ **ଏତତ୍** ପଦ କାହାର ବାଚକ? ଏବଂ 'ଏହା କଣ ତୁମେ ଏକାଗ୍ରଚିତ୍ତରେ ଶ୍ରବଣ କରିଛ?' – ଏହି ପ୍ରଶ୍ନର ତାତ୍ପର୍ଯ୍ୟ କଣ?

**ଉତ୍ତର –** ଦ୍ୱିତୀୟ ଅଧ୍ୟାୟର ଏଗାର ଶ୍ଳୋକଠାରୁ ଆରମ୍ଭ କରି ଏହି ଅଧ୍ୟାୟର ଛଅଷଠି ଶ୍ଳୋକପର୍ଯ୍ୟନ୍ତ ଭଗବାନ୍ ଯେଉଁ ଦିବ୍ୟ ଉପଦେଶ ଦେଇଛନ୍ତି, ଏଠାରେ **ଏତତ୍** ପଦଟି ହେଉଛି ସେହି ପରମ ଗୋପନୀୟ ସମସ୍ତ ଉପଦେଶର ବାଚକ। ସେହି ଉପଦେଶର ମହତ୍ତ୍ୱ ପ୍ରକଟ କରାଇବାପାଇଁ ହିଁ ଭଗବାନ୍ ଏଠାରେ ଅର୍ଜୁନଙ୍କୁ ଉପରୋକ୍ତ ପ୍ରଶ୍ନ କରିଛନ୍ତି। ଅଭିପ୍ରାୟ ହେଉଛି, "ମୋର ଏହି ଉପଦେଶ ଅତ୍ୟନ୍ତ ଦୁର୍ଲଭ; ମୁଁ ପ୍ରତ୍ୟେକ ଲୋକ ଆଗରେ 'ମୁଁ ହିଁ ସାକ୍ଷାତ୍ ପରମେଶ୍ୱର, ତୁମେ ମୋର ହିଁ ଶରଣ ପଶ' ଇତ୍ୟାଦି କଥା କହି ନ ପାରେ। ଏଣୁ ତୁମେ ମୋର ଉପଦେଶ ଭଲଭାବରେ ଧ୍ୟାନପୂର୍ବକ ଶୁଣିଛ, ନା ନାହିଁ? କାରଣ ଯଦି ତୁମେ ଏଥି ପ୍ରତି ଧ୍ୟାନ ଦେଇ ନ ଥିବ, ତେବେ ତୁମେ ନିଃସନ୍ଦେହରେ ବଡ଼ ଭୁଲ୍ କରିଛ।"

**ପ୍ରଶ୍ନ –** "ତୁମର ଅଜ୍ଞାନଜନିତ ମୋହ କ'ଣ ନଷ୍ଟ ହୋଇଗଲା?" – ଏହି ପ୍ରଶ୍ନର ତାତ୍ପର୍ଯ୍ୟ କଣ?

**ଉତ୍ତର –** ଏହି ପ୍ରଶ୍ନଦ୍ୱାରା ଭଗବାନ୍ କହୁଛନ୍ତି, "ଯଦି ତୁମେ ଏହି ଉପଦେଶ ଭଲଭାବରେ ଶୁଣିଛ, ତେବେ ତାହାର ଫଳ ମଧ୍ୟ ଅବଶ୍ୟ ହେବା ଉଚିତ। ତେଣୁ ତୁମେ ଯେଉଁ ମୋହରେ ବ୍ୟାପ୍ତ ହୋଇ ଧର୍ମ-ବିଷୟରେ ନିଜକୁ ମୂଢ଼ଚେତା ବୋଲି କହୁଥିଲ (୨/୭) ତଥା ନିଜର ସ୍ୱଧର୍ମ ପାଳନ କରିବାକୁ ପାପ ବୋଲି ବୁଝିଥିଲ (୧/୩୬) ଏବଂ ସମସ୍ତ କର୍ତ୍ତବ୍ୟକର୍ମ ତ୍ୟାଗ କରିଦେଇ ଭିକ୍ଷାନ୍ନରେ ନିଜର ଜୀବନ ଅତିବାହିତ କରିବାକୁ ଶ୍ରେଷ୍ଠ ମଣୁଥିଲ (୨/୫), ପୁଣି ଯେଉଁ କାରଣରୁ ତୁମେ ସ୍ୱଜନବଧ ଭୟରେ ବ୍ୟାକୁଳ ହେଉଥିଲ (୧/୪୫-୪୭) ଏବଂ ନିଜର କର୍ତ୍ତବ୍ୟ ସ୍ଥିର କରି ପାରୁ ନ ଥିଲ (୨/୬-୭), ତୁମର ସେହି ଅଜ୍ଞାନଜନିତ ମୋହ ନଷ୍ଟ ହୋଇଗଲା, ନା ନାହିଁ? ଯଦି ମୋର ଉପଦେଶ ତୁମେ ଧ୍ୟାନପୂର୍ବକ ଶୁଣିଥିବ, ତେବେ ତୁମର ମୋହ ନିଶ୍ଚୟ ନଷ୍ଟ ହୋଇଯିବା ଉଚିତ। ଯଦି ତୁମର ମୋହ ନଷ୍ଟ ହୋଇ ନାହିଁ, ତେବେ ଏହା ମାନିବାକୁ ପଡ଼ିବ ଯେ, ତୁମେ ମୋ ଉପଦେଶ ଏକାଗ୍ରଚିତ୍ତରେ ଶୁଣି ନାହିଁ।"

ଏଠାରେ ଭଗବାନଙ୍କର ଏହି ଦୁଇଟି ପ୍ରଶ୍ନରେ ଏହି ଉପଦେଶ ପୂର୍ଣ୍ଣ ହୋଇରହିଛି ଯେ, ମନୁଷ୍ୟ ଅତ୍ୟନ୍ତ ସାବଧାନତାପୂର୍ବକ ଏକାଗ୍ରଚିତ୍ତରେ ତତ୍ପର ହୋଇ ଏହି ଗୀତାଶାସ୍ତ୍ର ଅଧ୍ୟୟନ ଓ ଶ୍ରବଣ କରିବା ଉଚିତ ଏବଂ ଯେପର୍ଯ୍ୟନ୍ତ ଅଜ୍ଞାନଜନିତ ମୋହ ସର୍ବଥା ନାଶ ହୋଇ ନ ଯାଉଛି, ସେପର୍ଯ୍ୟନ୍ତ ମନୁଷ୍ୟ ବୁଝିବା ଉଚିତ ଯେ, ସେ ଭଗବାନଙ୍କର ଉପଦେଶ ଯଥାର୍ଥ ବୁଝିପାରି ନାହିଁ; ତେଣୁ ଶ୍ରଦ୍ଧା ଏବଂ ବିବେକପୂର୍ବକ ତାହା ଉପରେ ପୁଣି ଥରେ ବିଚାର କରିବା ଆବଶ୍ୟକ।

**ସମ୍ବନ୍ଧ –** ଭଗବାନ୍ ଏପରି ପଚାରିବାରୁ ଅର୍ଜୁନ ଭଗବାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରି ନିଜର ସ୍ଥିତି ବର୍ଣ୍ଣନା କରୁଛନ୍ତି –

ଅର୍ଜୁନ ଉବାଚ

**ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ।**
**ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ।। ୭୩ ।।**

**ଅନ୍ୱୟ –** ଅଚ୍ୟୁତ = ହେ ଅଚ୍ୟୁତ!; ତ୍ୱତ୍ପ୍ରସାଦାତ୍ = ଆପଣଙ୍କ କୃପାରୁ; (ମମ) = ମୋର; ମୋହଃ = ମୋହ; **ନଷ୍ଟଃ** = ନଷ୍ଟ ହୋଇଗଲା (ଏବଂ); ମୟା = ମୁଁ; ସ୍ମୃତିଃ = ସ୍ମୃତି; ଲବ୍ଧା = ପାଇଗଲି; ଗତସନ୍ଦେହଃ = (ମୁଁ) ନିଃସଂଶୟ ହୋଇ; ସ୍ଥିତଃ = ସ୍ଥିତ; ଅସ୍ମି = ଅଛି (ତେଣୁ); ତବ = ଆପଣଙ୍କର; ବଚନମ୍ = ଆଜ୍ଞାକୁ; କରିଷ୍ୟେ = ପାଳନ କରିବି।

**ଅର୍ଜୁନ କହିଲେ — ହେ ଅଚ୍ୟୁତ! ଆପଣଙ୍କ କୃପାରୁ ମୋର ମୋହ ନଷ୍ଟ ହୋଇଗଲା ଏବଂ ମୁଁ ସ୍ମୃତି ପାଇଗଲି; ମୁଁ ବର୍ତ୍ତମାନ ସମ୍ପୂର୍ଣ୍ଣ ନିଃସଂଶୟ ହୋଇଗଲି; ତେଣୁ ମୁଁ ଆପଣଙ୍କ ଆଜ୍ଞା ପାଳନ କରିବି।। ୭୩ ।।**

**ପ୍ରଶ୍ନ —** ଏଠାରେ **ଅଚ୍ୟୁତ** ସମ୍ବୋଧନର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଭଗବାନଙ୍କୁ **ଅଚ୍ୟୁତ** ନାମରେ ସମ୍ବୋଧନ କରି ଅର୍ଜୁନ ପ୍ରକାଶ କରିଛନ୍ତି, ''ଆପଣ ହିଁ ଯେ ସାକ୍ଷାତ୍ ନିର୍ବିକାର, ପରବ୍ରହ୍ମ, ପରମାତ୍ମା, ସର୍ବଶକ୍ତିମାନ୍, ଅବିନାଶୀ ପରମେଶ୍ୱର, ତାହା ମୁଁ ବର୍ତ୍ତମାନ ଭଲଭାବରେ ଜାଣିଗଲି ।''

**ପ୍ରଶ୍ନ —** 'ଆପଣଙ୍କ କୃପାରୁ ମୋର ମୋହ ନଷ୍ଟ ହୋଇଗଲା' — ଏହି କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଏହାଦ୍ୱାରା ଅର୍ଜୁନ କୃତଜ୍ଞତା ପ୍ରକାଶ କରି ଭଗବାନଙ୍କ ପ୍ରଶ୍ନର ଉତ୍ତର ଦେଉଛନ୍ତି । ଅର୍ଜୁନଙ୍କ କହିବାର ଅଭିପ୍ରାୟ ହେଉଛି, ''ଆପଣ ଏହି ଦିବ୍ୟ ଉପଦେଶ ଶୁଣାଇ ମୋ ଉପରେ ଅତ୍ୟନ୍ତ ଦୟା କରିଛନ୍ତି । ଆପଣଙ୍କ ଉପଦେଶ ଶୁଣିବାରୁ ମୋର ଅଜ୍ଞାନଜନିତ ମୋହ ସର୍ବଥା ନଷ୍ଟ ହୋଇଯାଇଛି ଅର୍ଥାତ୍ ଆପଣଙ୍କ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଏବଂ ସ୍ୱରୂପକୁ ଯଥାର୍ଥ ନ ଜାଣିଥିବାରୁ ଯେଉଁ ମୋହଦ୍ୱାରା ବ୍ୟାପ୍ତ ହୋଇ ମୁଁ ଆପଣଙ୍କ ଆଜ୍ଞା ମାନିବାକୁ ପ୍ରସ୍ତୁତ ନ ଥିଲି (୨/୯) ଏବଂ ବନ୍ଧୁବାନ୍ଧବଙ୍କ ବିନାଶ ହୋଇଯିବା ଭୟରେ ଶୋକାକୁଳ ହେଉଥିଲି (୧/୨୮-୪୭), ବର୍ତ୍ତମାନ ମୋର ସେହିସବୁ ମୋହ ସର୍ବଥା ନଷ୍ଟ ହୋଇଗଲା ।''

**ପ୍ରଶ୍ନ —** 'ମୁଁ ସ୍ମୃତି ପାଇଗଲି'— ଏହି କଥାର ମର୍ମ କଣ ?

**ଉତ୍ତର —** ଏହାଦ୍ୱାରା ଅର୍ଜୁନ ପ୍ରକାଶ କରିଛନ୍ତି, ''ମୋର ଅଜ୍ଞାନଜନିତ ମୋହ ନଷ୍ଟ ହୋଇଯିବାରୁ ମୋର ଅନ୍ତଃକରଣରେ ଦିବ୍ୟଜ୍ଞାନ ପ୍ରକାଶିତ ହୋଇସାରିଛି । ଏହା ଫଳରେ ମୋତେ ଆପଣଙ୍କ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଏବଂ ସ୍ୱରୂପର ପୂର୍ଣ୍ଣସ୍ମୃତି ମିଳିଯାଇଛି ଏବଂ ଆପଣଙ୍କ ସମଗ୍ର ରୂପ ମୋର ପ୍ରତ୍ୟକ୍ଷ ହୋଇଯାଇଛି; ମୋର ଆଉ ଅଜ୍ଞାତ ହୋଇ କିଛି ନାହିଁ ।''

**ପ୍ରଶ୍ନ —** 'ମୁଁ ସଂଶୟରହିତ ହୋଇଗଲି' — କଥାର ତାତ୍ପର୍ଯ୍ୟ କଣ ?

**ଉତ୍ତର —** ଏହାଦ୍ୱାରା ଅର୍ଜୁନ ପ୍ରକାଶ କରିଛନ୍ତି, ''ବର୍ତ୍ତମାନ ଆପଣଙ୍କ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ ଓ ସଗୁଣ-ନିର୍ଗୁଣ, ସାକାର-ନିରାକାର ସ୍ୱରୂପ ବିଷୟରେ ତଥା ଧର୍ମ-ଅଧର୍ମ ଏବଂ କର୍ତ୍ତବ୍ୟ-ଅକର୍ତ୍ତବ୍ୟ ଆଦି ବିଷୟରେ ମୋର ଆଉ ଟିକିଏ ସଂଶୟ ନାହିଁ । ମୋର ସମସ୍ତ ସଂଶୟ ନଷ୍ଟ ହୋଇଯାଇଛି ଏବଂ ସମସ୍ତ ସଂଶୟ ନଷ୍ଟ ହୋଇଯାଇଥିବାରୁ ମୋର ଅନ୍ତଃକରଣର ଚଞ୍ଚଳତା ବି ସର୍ବଥା ଦୂର ହୋଇଯାଇଛି ।''

**ପ୍ରଶ୍ନ —** 'ମୁଁ ଆପଣଙ୍କ ଆଜ୍ଞା ପାଳନ କରିବି'— ଏ କଥାର ଅଭିପ୍ରାୟ କଣ ?

**ଉତ୍ତର —** ଏହାଦ୍ୱାରା ଅର୍ଜୁନ କହୁଛନ୍ତି, ''ଆପଣଙ୍କ ଦୟାରୁ ମୁଁ କୃତକୃତ୍ୟ ହୋଇଯାଇଛି; ମୋ ପାଇଁ ବର୍ତ୍ତମାନ ଆଉ କୌଣସି କର୍ତ୍ତବ୍ୟ ବାକି ରହି ନାହିଁ; ଅତଏବ ଆପଣଙ୍କ କଥା ଅନୁସାରେ ଲୋକସଂଗ୍ରହପାଇଁ ଯୁଦ୍ଧାଦି ସମସ୍ତକର୍ମ ଆପଣ ଯେପରି କରାଇବେ, ନିମିତ୍ତମାତ୍ର ହୋଇ ମୁଁ ଲୀଳାରୂପରେ ସେହିପରି କରିବି ।''

*ସମ୍ବନ୍ଧ — ଧୃତରାଷ୍ଟ୍ରଙ୍କ ପ୍ରଶ୍ନାନୁସାରେ ଭଗବାନ୍ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ସମ୍ବାଦରୂପୀ ଗୀତାଶାସ୍ତ୍ର ବର୍ଣ୍ଣନା କରିସାରି, ସଞ୍ଜୟ ବର୍ତ୍ତମାନ ତାହାର ଉପସଂହାର କରିବାକୁ ଯାଇ ଦୁଇଟି ଶ୍ଳୋକରେ ଧୃତରାଷ୍ଟ୍ରଙ୍କ ଆଗରେ ଗୀତାର ମହତ୍ତ୍ୱ ପ୍ରକଟ କରୁଛନ୍ତି —*

ସଞ୍ଜୟ ଉବାଚ

**ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ ।**
**ସଂବାଦମିମମଶ୍ରୌଷମଦ୍ଭୁତଂ ରୋମହର୍ଷଣମ୍ ।। ୭୪ ।।**

ଅନ୍ୱୟ — ଇତି = ଏପରି; ଅହମ୍ = ମୁଁ; ବାସୁଦେବସ୍ୟ = ଶ୍ରୀବାସୁଦେବଙ୍କର; ଚ = ଏବଂ; ମହାତ୍ମନଃ = ମହାତ୍ମା; ପାର୍ଥସ୍ୟ = ଅର୍ଜୁନଙ୍କର; ଇମମ୍ = ଏହି; ଅଦ୍ଭୁତମ୍ = ଅଦ୍ଭୁତରହସ୍ୟଯୁକ୍ତ; ରୋମହର୍ଷଣମ୍ = ରୋମାଞ୍ଚକର; ସଂବାଦମ୍ = ସମ୍ବାଦକୁ; ଅଶ୍ରୌଷମ୍ = ଶୁଣିଲି ।

**ସଞ୍ଜୟ କହିଲେ — ଏହିପରି ମୁଁ ଶ୍ରୀବାସୁଦେବଙ୍କର ଏବଂ ମହାତ୍ମା ଅର୍ଜୁନଙ୍କର ଏହି ଅଦ୍ଭୁତ ରହସ୍ୟଯୁକ୍ତ ରୋମାଞ୍ଚକର ସମ୍ବାଦ ଶୁଣିଲି ।। ୭୪ ।।**

**ପ୍ରଶ୍ନ –** ଇତି ପଦର ଭାବ କଣ ?

**ଉତ୍ତର –** ଇତି ପଦଦ୍ୱାରା ଏଠାରେ ଗୀତା ଉପଦେଶର ସମାପ୍ତି ଦର୍ଶାଇଦିଆଯାଇଛି ।

**ପ୍ରଶ୍ନ –** ଭଗବାନଙ୍କର **ବାସୁଦେବ** ନାମ ପ୍ରୟୋଗ କରି ଏବଂ **ପାର୍ଥଙ୍କ** ସହିତ **ମହାତ୍ମା** ବିଶେଷଣ ଦେଇ କେଉଁ ଭାବ ଦର୍ଶାଯାଇଛି ?

**ଉତ୍ତର –** ଏହାଦ୍ୱାରା ସଞ୍ଜୟ ଗୀତାର ମହତ୍ତ୍ୱ ପ୍ରକଟ କରିଛନ୍ତି । ଅଭିପ୍ରାୟ ଏହି ଯେ, ସାକ୍ଷାତ୍ ନର ଋଷିଙ୍କ ଅବତାର **ମହାତ୍ମା** ଅର୍ଜୁନ ପଚାରିବା ପରେ ସମସ୍ତଙ୍କ ହୃଦୟରେ ନିବାସ କରୁଥିବା ସର୍ବବ୍ୟାପୀ ପରମେଶ୍ୱର ଶ୍ରୀକୃଷ୍ଣଙ୍କ ଦ୍ୱାରା ଏହି ଉପଦେଶ ଦିଆଯାଇଛି; ତେଣୁ ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଅନ୍ୟ କୌଣସି ଶାସ୍ତ୍ର ଏହାର ସମକକ୍ଷ ହୋଇପାରିବ ନାହିଁ; କାରଣ, ଏହା ହେଉଛି ସମସ୍ତ ଶାସ୍ତ୍ରର ସାର । ★

**ପ୍ରଶ୍ନ –** ଏଠାରେ **ସମ୍ବାଦମ୍** ପଦ ସହିତ **ଅଦ୍‌ଭୁତମ୍** ଏବଂ **ରୋମହର୍ଷଣମ୍** ବିଶେଷଣ ଦେବାର ତାତ୍ପର୍ଯ୍ୟ କଣ ?

**ଉତ୍ତର –** ଏହି ଦୁଇ ବିଶେଷଣ ପ୍ରୟୋଗ କରି ସଞ୍ଜୟ ପ୍ରକାଶ କରିଛନ୍ତି ଯେ, ମହାତ୍ମା ଅର୍ଜୁନ ପଚାରିବା ପରେ ସାକ୍ଷାତ୍ ପରମେଶ୍ୱରଙ୍କ ଦ୍ୱାରା କୁହାଯାଇଥିବା ଏହି ଉପଦେଶ ବଡ଼ ଅଦ୍‌ଭୁତ ଅର୍ଥାତ୍ ଆଶ୍ଚର୍ଯ୍ୟଜନକ ଓ ଅସାଧାରଣ; ଏହାଦ୍ୱାରା ମନୁଷ୍ୟଙ୍କୁ ଭଗବାନଙ୍କର ଦିବ୍ୟ ଅଲୌକିକ ଗୁଣ, ପ୍ରଭାବ ଓ ଐଶ୍ୱର୍ଯ୍ୟଯୁକ୍ତ ସମଗ୍ରରୂପର ପୂର୍ଣ୍ଣଜ୍ଞାନ ହୋଇଯାଏ ତଥା ମନୁଷ୍ୟ ଏହାକୁ ଯେତେ ଯେତେ ଶୁଣେ ଓ ବୁଝେ, ତାହାର ହର୍ଷ ଓ ଆଶ୍ଚର୍ଯ୍ୟ ସେତେ ସେତେ ଅଧିକ ହେଉଥିବାରୁ ତା'ର ଶରୀର ପୁଲକିତ ହୋଇଯାଏ; ତା'ର ସମସ୍ତ ଶରୀରରେ ରୋମାଞ୍ଚ ଖେଳିଯାଏ ।

**ପ୍ରଶ୍ନ –** **ଅଶ୍ରୌଷମ୍** ପଦର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ସଞ୍ଜୟ କହୁଛନ୍ତି, ''ମୁଁ ଏହି ଯେଉଁ ଅଦ୍‌ଭୁତ ଆଶ୍ଚର୍ଯ୍ୟମୟ ଉପଦେଶ ଶୁଣିଲି, ଏହା ମୋ ପାଇଁ ଅତ୍ୟନ୍ତ ସୌଭାଗ୍ୟର କଥା ।''

## ବ୍ୟାସପ୍ରସାଦାତ୍ ଶ୍ରୁତବାନେତଦ୍‌ଗୁହ୍ୟମହଂ ପରମ୍ ।
## ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍‌କଥୟତଃ ସ୍ୱୟମ୍ ।। ୭୫ ।।

**ଅନ୍ୱୟ –** ବ୍ୟାସପ୍ରସାଦାତ୍ = ଶ୍ରୀବ୍ୟାସଦେବଙ୍କ କୃପାରୁ (ଦିବ୍ୟଦୃଷ୍ଟି ପାଇ); **ଅହମ୍** = ମୁଁ; **ଏତତ୍** = ଏହି; **ପରମ୍** = ପରମ; **ଗୁହ୍ୟମ୍** = ଗୋପନୀୟ; **ଯୋଗମ୍** = ଯୋଗ (ଅର୍ଜୁନଙ୍କୁ); **କଥୟତଃ** = କହୁଥିବାର; **ସ୍ୱୟମ୍** = ସ୍ୱୟଂ; **ଯୋଗେଶ୍ୱରାତ୍, କୃଷ୍ଣାତ୍** = ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରୁ; **ସାକ୍ଷାତ୍** = ପ୍ରତ୍ୟକ୍ଷ; **ଶ୍ରୁତବାନ୍** = ଶୁଣିଲି ।

**ଶ୍ରୀବ୍ୟାସଦେବଙ୍କ କୃପାରୁ ଦିବ୍ୟଦୃଷ୍ଟି ପାଇ ମୁଁ ଏହି ପରମ ଗୋପନୀୟ ଯୋଗ ଅର୍ଜୁନଙ୍କୁ କହୁଥିବା ସ୍ୱୟଂ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରୁ ପ୍ରତ୍ୟକ୍ଷ ଶୁଣିଲି ।। ୭୫ ।।**

**ପ୍ରଶ୍ନ –** **ବ୍ୟାସପ୍ରସାଦାତ୍** ପଦର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ସଞ୍ଜୟ ବ୍ୟାସଦେବଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଛନ୍ତି । ସେ କହୁଛନ୍ତି, ''ଭଗବାନ୍ ବ୍ୟାସଦେବ କୃପା କରି ମୋତେ ଯେଉଁ ଦିବ୍ୟଦୃଷ୍ଟି ଅର୍ଥାତ୍ ଦୂରଦେଶରେ ହେଉଥିବା ସମସ୍ତ ଘଟଣାମାନଙ୍କୁ ଦେଖିବା, ଶୁଣିବା ଏବଂ ବୁଝିବା ଆଦିପାଇଁ ଅଦ୍‌ଭୁତ ଶକ୍ତି ପ୍ରଦାନ କରିଛନ୍ତି, ତା'ରି ବଳରେ ଆଜି ମୋତେ ଭଗବାନଙ୍କର ଏହି ଦିବ୍ୟ ଉପଦେଶ ଶୁଣିବାକୁ ମିଳିଲା; ନ ହେଲେ ମୋତେ ଏପରି ସୁଯୋଗ କିପରି ମିଳନ୍ତା !''

**ପ୍ରଶ୍ନ –** ଏତତ୍ ପଦ ଏଠାରେ କାହାର ବାଚକ ତଥା ତାହା ସହିତ **ପରମ୍, ଗୁହ୍ୟମ୍** ଏବଂ **ଯୋଗମ୍** – ଏହି ତିନୋଟି ବିଶେଷଣ ପ୍ରୟୋଗର ତାତ୍ପର୍ଯ୍ୟ କଣ ?

---

★ ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରସଂଗ୍ରହୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍ ବିନିଃସୃତା ।। (ମହା.ଭୀଷ୍ମ. ୪୩/୧)

ଅର୍ଥାତ୍ ''ଗୀତାକୁ ହିଁ ସମ୍ୟକ୍‌ପ୍ରକାରେ ଶ୍ରବଣ, କୀର୍ତ୍ତନ, ପଠନ-ପାଠନ, ମନନ ଓ ଧାରଣ କରିବା ଉଚିତ । ଅନ୍ୟ ଶାସ୍ତ୍ରସଂଗ୍ରହର କି ପ୍ରୟୋଜନ ? କାରଣ ଏହା ସ୍ୱୟଂ ପଦ୍ମନାଭ ଭଗବାନ୍ ବିଷ୍ଣୁଙ୍କର ମୁଖକମଳରୁ ନିଃସୃତ ହୋଇଛି ।''

**ଉତ୍ତର —** ଏଠାରେ ଏତତ୍ ପଦଟି ହେଉଛି ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ସମ୍ବାଦରୂପୀ ଏହି ଗୀତାଶାସ୍ତ୍ରର ବାଚକ। ଏହା ସହିତ **ପରମ୍** ବିଶେଷଣ ଦେଇ କୁହାଯାଇଛି ଯେ, ଏହା ଅତିଶୟ ଉତ୍ତମ। **ଗୁହ୍ୟମ୍** ବିଶେଷଣ ଦେଇ ଦେଖାଇଦିଆଯାଇଛି ଯେ, ଏହା ଅତ୍ୟନ୍ତ ଗୋପନୀୟ; ଏଣୁ ଅନଧିକାରୀଙ୍କ ଆଗରେ ଏହା ବର୍ଣ୍ଣନା କରିବା ଉଚିତ ନୁହେଁ; ତଥା **ଯୋଗମ୍** ବିଶେଷଣ ଦେଇ କୁହାଯାଇଛି ଯେ, ଭଗବତ୍‌ପ୍ରାପ୍ତିର ଉପାୟଭୂତ କର୍ମଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ ଏବଂ ଭକ୍ତିଯୋଗ ଆଦି ସାଧନାଗୁଡ଼ିକ ଏଥିରେ ଭଲଭାବରେ ବର୍ଣ୍ଣନା କରାଯାଇଛି ତଥା ଏହା ସ୍ୱୟଂ ମଧ୍ୟ, ଅର୍ଥାତ୍ ଶ୍ରଦ୍ଧାପୂର୍ବକ ଏହାର ପାଠ ମଧ୍ୟ ପରମାତ୍ମପ୍ରାପ୍ତିର ସାଧନା ହୋଇଥିବାରୁ ଯୋଗରୂପ ଅଟେ।

**ପ୍ରଶ୍ନ —** ଏହିସବୁ ବିଶେଷଣଦ୍ୱାରା ଯୁକ୍ତ 'ଏହି ଉପଦେଶ ଅର୍ଜୁନଙ୍କୁ କହୁଥିବା ସ୍ୱୟଂ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କଠାରୁ ମୁଁ ପ୍ରତ୍ୟକ୍ଷ ଶୁଣିଛି' — ଏହି ବାକ୍ୟଦ୍ୱାରା କି ଭାବ ପ୍ରକାଶ ପାଉଛି ?

**ଉତ୍ତର —** ଏହାଦ୍ୱାରା ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କହୁଛନ୍ତି, "ଏହି ଗୀତାଶାସ୍ତ୍ର — ଯାହା ମୁଁ ଆପଣଙ୍କୁ ଶୁଣାଇଲି — ତାହା କୌଣସି ଅନ୍ୟ ଲୋକଙ୍କ ଠାରୁ ଶୁଣିଥିବା କଥା ନୁହେଁ; ସମସ୍ତ ଯୋଗଶକ୍ତିର ଅଧ୍ୟକ୍ଷ ସର୍ବଶକ୍ତିମାନ୍ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖାରବିନ୍ଦରୁ ହିଁ ମୁଁ ତାହା ସେହି ସମୟରେ ପ୍ରତ୍ୟକ୍ଷ ଶୁଣିଛି, ଯେତେବେଳେ କି ସେ ଅର୍ଜୁନଙ୍କୁ ତାହା କହୁଥିଲେ।"

***ସମ୍ବନ୍ଧ —** ଏପରିଭାବରେ ଅତି ଦୁର୍ଲଭ ଗୀତାଶାସ୍ତ୍ର ଶୁଣିବାର ମହତ୍ତ୍ୱ କହିସାରି ବର୍ତ୍ତମାନ ସଞ୍ଜୟ ନିଜର ସ୍ଥିତି ବର୍ଣ୍ଣନା କରିବା ସହିତ ସେହି ଉପଦେଶ ସ୍ମରଣ କରିବାର ମହତ୍ତ୍ୱ ପ୍ରକାଶ କରୁଛନ୍ତି—*

## ରାଜନ୍‌ସଂସ୍ମୃତ୍ୟ ସଂସ୍ମୃତ୍ୟ ସଂବାଦମିମମଦ୍‌ଭୁତମ୍।
## କେଶବାର୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ॥ ୭୬ ॥

**ଅନ୍ୱୟ —** ରାଜନ୍ = ହେ ରାଜନ୍! **କେଶବାର୍ଜୁନୟୋଃ** = ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର; **ଇମମ୍** = ଏହି (ରହସ୍ୟମୟ); **ପୁଣ୍ୟମ୍** = କଲ୍ୟାଣକର; ଚ = ଏବଂ; **ଅଦ୍‌ଭୁତମ୍** = ଅଦ୍‌ଭୁତ; **ସମ୍ବାଦମ୍** = ସଂବାଦକୁ; **ସଂସ୍ମୃତ୍ୟ ସଂସ୍ମୃତ୍ୟ** = ସ୍ମରଣ କରି କରି (ମୁଁ); **ମୁହୁର୍ମୁହୁଃ** = ବାରମ୍ବାର; **ହୃଷ୍ୟାମି** = ହର୍ଷିତ ହେଉଅଛି।

**ହେ ରାଜନ୍! ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର ଏହି ରହସ୍ୟମୟ, କଲ୍ୟାଣକର ଏବଂ ଅଦ୍‌ଭୁତ ସମ୍ବାଦ ସ୍ମରଣ କରି କରି ମୁଁ ବାରମ୍ବାର ହର୍ଷିତ ହେଉଛି॥ ୭୬ ॥**

**ପ୍ରଶ୍ନ — ପୁଣ୍ୟମ୍** ଏବଂ **ଅଦ୍‌ଭୁତମ୍** ଏହି ଦୁଇ ବିଶେଷଣ ପ୍ରୟୋଗର ଅଭିପ୍ରାୟ କଣ ?

**ଉତ୍ତର — ପୁଣ୍ୟମ୍** ଏବଂ **ଅଦ୍‌ଭୁତମ୍ —** ଏହି ଦୁଇ ବିଶେଷଣ ପ୍ରୟୋଗ କରି ସଞ୍ଜୟ ଜଣାଉଛନ୍ତି ଯେ, ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର ଦିବ୍ୟ ସମ୍ବାଦରୂପକ ଏହି ଗୀତାଶାସ୍ତ୍ର ଅଧ୍ୟୟନ, ଅଧ୍ୟାପନ, ଶ୍ରବଣ, ମନନ ଓ ବର୍ଣ୍ଣନ ଆଦି କରୁଥିବା ଲୋକକୁ ପରମ ପବିତ୍ର କରିଦେଇ ତାଙ୍କ ସକଳପ୍ରକାର କଲ୍ୟାଣ କରେ ଏବଂ ଏହା ଭଗବାନଙ୍କର ଆଶ୍ଚର୍ଯ୍ୟମୟ ଗୁଣ, ପ୍ରଭାବ, ଐଶ୍ୱର୍ଯ୍ୟ, ତତ୍ତ୍ୱରହସ୍ୟ ଓ ସ୍ୱରୂପ ବୁଝାଇଦିଏ। ଏଣୁ ଏହା ଅତ୍ୟନ୍ତ ପବିତ୍ର, ଦିବ୍ୟ ଓ ଅଲୌକିକ।

**ପ୍ରଶ୍ନ —** 'ଏହାକୁ ସ୍ମରଣ କରି କରି ମୁଁ ବାରମ୍ବାର ହର୍ଷିତ ହେଉଛି' — ଏହି କଥାର ଭାବ କଣ ?

**ଉତ୍ତର —** ଏହାଦ୍ୱାରା ସଞ୍ଜୟ ନିଜର ସ୍ଥିତି ବର୍ଣ୍ଣନା କରି ଗୀତୋକ୍ତ ଉପଦେଶ ସ୍ମରଣ କରିବାର ମହତ୍ତ୍ୱ ପ୍ରକାଶ କରିଛନ୍ତି। ସେ କହୁଛନ୍ତି, "ଭଗବାନଙ୍କ ଦ୍ୱାରା ବର୍ଣ୍ଣିତ ଏହି ଉପଦେଶ ମୋର ହୃଦୟକୁ ଏପରି ଆକର୍ଷିତ କରିଦେଇଛି ଯେ, ବର୍ତ୍ତମାନ ମୋତେ ଅନ୍ୟ କିଛି କଥା ଭଲ ଲାଗୁ ନାହିଁ; ମୋର ବାରମ୍ବାର ସେହି ଉପଦେଶ ସ୍ମରଣ ହେଉଛି ଏବଂ ସେହି ଭାବର ଆବେଶରେ ମୁଁ ଅସୀମ ଆନନ୍ଦ ଅନୁଭବ କରୁଛି; ପ୍ରେମ ଓ ହର୍ଷହେତୁ ମୁଁ ବିହ୍ୱଳ ହୋଇଯାଉଛି।"

***ସମ୍ବନ୍ଧ —** ଏପରିଭାବରେ ଗୀତାଶାସ୍ତ୍ର ସ୍ମରଣ କରିବାର ମାହାତ୍ମ୍ୟ ବର୍ଣ୍ଣନା କରିସାରି ବର୍ତ୍ତମାନ ସଞ୍ଜୟ ନିଜର ସ୍ଥିତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଭଗବାନଙ୍କ ବିରାଟସ୍ୱରୂପ ସ୍ମରଣ କରିବାର ମହତ୍ତ୍ୱ ପ୍ରକାଶ କରୁଛନ୍ତି—*

**ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍‌ଭୁତଂ ହରେଃ ।**
**ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃ ପୁନଃ ॥ ୭୭ ॥**

**ଅନ୍ୱୟ –** ରାଜନ୍ = ହେ ରାଜନ୍ !; **ହରେଃ** = ଶ୍ରୀହରିଙ୍କର; **ତତ୍** = ସେହି; **ଅତି** = ଅତ୍ୟନ୍ତ; **ଅଦ୍‌ଭୁତମ୍** = ଅଦ୍‌ଭୁତ; **ରୂପମ୍** = ରୂପକୁ; **ଚ** = ମଧ୍ୟ; **ସଂସ୍ମୃତ୍ୟ ସଂସ୍ମୃତ୍ୟ** = ସ୍ମରଣ କରି କରି; **ମେ** = ମୋର (ଚିତ୍ତରେ); **ମହାନ୍** = ବିରାଟ; **ବିସ୍ମୟଃ** = ବିସ୍ମୟ (ଜାତ ହେଉଛି); **ଚ** = ଏବଂ; **(ଅହମ୍)** = ମୁଁ; **ପୁନଃ ପୁନଃ** = ବାରମ୍ବାର; **ହୃଷ୍ୟାମି** = ହର୍ଷିତ ହେଉଅଛି ।

**ହେ ରାଜନ୍ ! ଶ୍ରୀହରିଙ୍କର ସେହି ଅତ୍ୟନ୍ତ ଅଦ୍‌ଭୁତ ରୂପ ସ୍ମରଣ କରି କରି ମୋର ଚିତ୍ତରେ ବଡ଼ ବିସ୍ମୟ ଜାତ ହେଉଛି ଏବଂ ମୁଁ ବାରମ୍ବାର ହର୍ଷିତ ହେଉଛି ॥ ୭୭ ॥**

**ପ୍ରଶ୍ନ –** ଭଗବାନଙ୍କ ହରି ନାମର ଭାବ କଣ ?

**ଉତ୍ତର –** ଭଗବାନ୍ ଶ୍ରୀକୃଷ୍ଣଙ୍କ ଗୁଣ, ପ୍ରଭାବ, ଲୀଳା, ଐଶ୍ୱର୍ଯ୍ୟ, ମହିମା, ନାମ ଓ ସ୍ୱରୂପକୁ ଶ୍ରବଣ, ମନନ, କୀର୍ତ୍ତନ, ଦର୍ଶନ ଓ ସ୍ପର୍ଶନ ଆଦି କଲେ ମନୁଷ୍ୟର ସମସ୍ତ ପାପ ହରଣ ହୋଇଯାଏ; ତାହାଙ୍କ ସହିତ କୌଣସିପ୍ରକାର ସମ୍ବନ୍ଧ ହୋଇଗଲେ, ସେ ମନୁଷ୍ୟର ସମସ୍ତ ପାପ, ଅଜ୍ଞାନ ଓ ଦୁଃଖ ହରଣ କରିନିଅନ୍ତି ତଥା ସେ ନିଜ ଭକ୍ତମାନଙ୍କର ମନକୁ ହରି ନିଅନ୍ତି । ତେଣୁ ତାଙ୍କୁ 'ହରି' ବୋଲି କହନ୍ତି ।

**ପ୍ରଶ୍ନ –** ତତ୍ ଏବଂ ଅତି ଅଦ୍‌ଭୁତମ୍ ବିଶେଷଣ ସହିତ **ରୂପମ୍** ପଦ ଭଗବାନଙ୍କର କେଉଁ ରୂପର ବାଚକ ?

**ଉତ୍ତର –** ଭଗବାନ୍ ଅର୍ଜୁନଙ୍କୁ ଯେଉଁ ଅତ୍ୟନ୍ତ ଆଶ୍ଚର୍ଯ୍ୟମୟ ଦିବ୍ୟ ବିଶ୍ୱରୂପ ଦର୍ଶନ କରାଇଥିଲେ ଏବଂ ଯାହାର ଦର୍ଶନର ମହତ୍ତ୍ୱ ଭଗବାନ୍ ଏକାଦଶ ଅଧ୍ୟାୟର ସତଚାଳିଶ ଓ ଅଠଚାଳିଶ ଶ୍ଳୋକରେ ସ୍ୱୟଂ କହିଛନ୍ତି, ଏଠାରେ **ତତ୍** ଏବଂ **ଅତି ଅଦ୍‌ଭୁତମ୍** ବିଶେଷଣମାନଙ୍କ ସହିତ **ରୂପମ୍** ପଦଟି ହେଉଛି ସେହି ବିରାଟସ୍ୱରୂପର ବାଚକ ।

**ପ୍ରଶ୍ନ –** 'ସେହି ରୂପକୁ ପୁନଃ ପୁନଃ ସ୍ମରଣ କରି ମୋର ବଡ଼ ବିସ୍ମୟ ଜାତ ହେଉଛି'– ଏ କଥାର ଅଭିପ୍ରାୟ କଣ ?

**ଉତ୍ତର –** ଏହାଦ୍ୱାରା ସଞ୍ଜୟ କହୁଛନ୍ତି, ''ଭଗବାନଙ୍କର ସେହି ରୂପ ମୋ ଚିତ୍ତରେ ଏପରି ଗଭୀରଭାବରେ ଅଙ୍କିତ ହୋଇଯାଇଛି ଯେ, ତାହା ମୋ ଚିତ୍ତରୁ ଦୂର ହୋଇପାରୁ ନାହିଁ, ତାହାକୁ ମୁଁ ବାରମ୍ବାର ସ୍ମରଣ କରୁଛି ଏବଂ ଭଗବାନଙ୍କର ସେହି ଅତିଶୟ ଦୁର୍ଲଭ ଦିବ୍ୟରୂପର ଦର୍ଶନ ମୋତେ କିପରି ମିଳିଗଲା ବୋଲି ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି । ମୋର ତ ସେପରି କିଛି ପୁଣ୍ୟ ନ ଥିଲା, ଯାହାଦ୍ୱାରା କି ମୋତେ ସେହି ରୂପର ଦର୍ଶନ ହୋଇପାରନ୍ତା । ଆହା ! କେବଳ ଭଗବାନଙ୍କ ଅହୈତୁକୀ ଦୟା ହିଁ ଏହାର ଏକମାତ୍ର କାରଣ । ତା ସଙ୍ଗେ ସଙ୍ଗେ ସେହି ଅତ୍ୟନ୍ତ ଅଦ୍‌ଭୁତ ଦୃଶ୍ୟ ଓ ଘଟଣାବଳି ବାରମ୍ବାର ସ୍ମରଣ କରି 'ଭଗବାନଙ୍କର କି ବିଚିତ୍ର ଯୋଗଶକ୍ତି ରହିଛି !' ବୋଲି ଭାବି ମୁଁ ବଡ଼ ବିସ୍ମିତ ହୋଇଯାଉଛି ।''

**ପ୍ରଶ୍ନ –** 'ମୁଁ ବାରମ୍ବାର ହର୍ଷିତ ହେଉଛି'– ଏ କଥାର ଭାବ କଣ ?

**ଉତ୍ତର –** ଏହାଦ୍ୱାରା ସଂଜୟ କହୁଛନ୍ତି, ''ମୋତେ କେବଳ ବିସ୍ମୟ ଲାଗୁ ନାହିଁ, ତାହା ବାରମ୍ବାର ସ୍ମରଣ କରି ମୁଁ ହର୍ଷ ଓ ପ୍ରେମରେ ମଧ୍ୟ ବିହ୍ୱଳ ହୋଇଯାଉଛି; ମୋର ଆନନ୍ଦର ସୀମା ରହୁ ନାହିଁ ।''

**ସମ୍ବନ୍ଧ –** ଏପରିଭାବରେ ନିଜର ସ୍ଥିତିବର୍ଣ୍ଣନା କରୁ କରୁ ଗୀତା ଉପଦେଶର ଓ ଭଗବାନଙ୍କ ଅଦ୍‌ଭୁତ ରୂପ ସ୍ମରଣ କରିବାର ମହତ୍ତ୍ୱ ପ୍ରକାଶ କରି, ବର୍ତ୍ତମାନ ସଞ୍ଜୟ ଧୃତରାଷ୍ଟ୍ରଙ୍କ ନିକଟରେ ପାଣ୍ଡବମାନଙ୍କ ନିଶ୍ଚିତ ବିଜୟର ସମ୍ଭାବନା ପ୍ରକଟ କରିବା ସଙ୍ଗେ ସଙ୍ଗେ ଏହି ଅଧ୍ୟାୟର ଉପସଂହାର କରୁଛନ୍ତି–

**ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।**
**ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ ॥ ୭୮ ॥**

**ଅନ୍ୱୟ —** **ଯତ୍ର** = ଯେଉଁଠାରେ; **ଯୋଗେଶ୍ୱରଃ** = ଯୋଗେଶ୍ୱର; **କୃଷ୍ଣଃ** = ଭଗବାନ୍ ଶ୍ରୀକୃଷ୍ଣ (ଅଛନ୍ତି) (ଏବଂ); **ଯତ୍ର** = ଯେଉଁଠାରେ; **ଧନୁର୍ଦ୍ଧରଃ** = ଗାଣ୍ଡୀବ ଧନୁ ଧାରଣ କରିଥିବା; **ପାର୍ଥଃ** = ଅର୍ଜୁନ (ଅଛନ୍ତି); **ତତ୍ର** = ସେଠାରେ; **ଶ୍ରୀ** = ଶ୍ରୀ; **ବିଜୟଃ** = ବିଜୟ; **ଭୂତିଃ** = ବିଭୂତି (ଏବଂ); **ଧ୍ରୁବା** **ନୀତିଃ** = ଅଟଳ ନୀତି (ରହିଛି); **(ଇତି)** = ଏହା; **ମମ** = ମୋର; **ମତିଃ** = ମତ ।

**ହେ ରାଜନ୍ ! ଯେଉଁଠାରେ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଅଛନ୍ତି ଏବଂ ଯେଉଁଠାରେ ଗାଣ୍ଡୀବ ଧନୁ ଧାରଣ କରିଥିବା ଅର୍ଜୁନ ଅଛନ୍ତି, ସେଠାରେ ଶ୍ରୀ, ବିଜୟ, ବିଭୂତି ଏବଂ ଅଟଳ ନୀତି ରହିଛି; ଏହା ମୋର ମତ ।। ୭୮ ।।**

**ପ୍ରଶ୍ନ —** ଶ୍ରୀକୃଷ୍ଣଙ୍କୁ ଯୋଗେଶ୍ୱର କହି ଏବଂ ଅର୍ଜୁନଙ୍କୁ ଧନୁର୍ଦ୍ଧର ବୋଲି କହି ଏହି ଶ୍ଳୋକରେ ସଞ୍ଜୟ କେଉଁ ଭାବ ପ୍ରକାଶ କରିଛନ୍ତି ?

**ଉତ୍ତର —** ଧୃତରାଷ୍ଟ୍ରଙ୍କ ମନରେ ସନ୍ଧିର ଇଚ୍ଛା ଉତ୍ପନ୍ନ କରାଇବା ଉଦ୍ଦେଶ୍ୟରେ ଏହି ଶ୍ଳୋକରେ ସଂଜୟ ଉପରୋକ୍ତ ବିଶେଷଣମାନଙ୍କ ଦ୍ୱାରା ଭଗବାନ୍ ଶ୍ରୀକୃଷ୍ଣଙ୍କର ଏବଂ ଅର୍ଜୁନଙ୍କର ପ୍ରଭାବ ଜଣାଇଦେଇ ପାଣ୍ଡବମାନଙ୍କ ବିଜୟର ନିଶ୍ଚିତ ସମ୍ଭାବନା ପ୍ରକାଶ କରିଛନ୍ତି । ଅଭିପ୍ରାୟ ଏହି ଯେ, ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି ସମସ୍ତ ଯୋଗଶକ୍ତିର ସ୍ୱାମୀ; ସେ ନିଜର ଯୋଗଶକ୍ତିଦ୍ୱାରା କ୍ଷଣକମଧ୍ୟରେ ସମସ୍ତ ଜଗତର ଉତ୍ପତ୍ତି, ପାଳନ ଓ ସଂହାର କରିଦେଇପାରନ୍ତି; ସେହି ସାକ୍ଷାତ୍ ନାରାୟଣ ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ଧର୍ମରାଜ ଯୁଧିଷ୍ଠିରଙ୍କ ସହାୟକ, ତାଙ୍କର ଯେ ବିଜୟ ହେବ, ସେଥିରେ ଆଉ ଶଙ୍କା କ'ଣ ?

''ଏହାଛଡ଼ା ଅର୍ଜୁନ ମଧ୍ୟ ନର ଋଷିଙ୍କ ଅବତାର, ଭଗବାନଙ୍କର ପ୍ରିୟ ସଖା ଏବଂ ଗାଣ୍ଡୀବ ଧନୁ ଧାରଣ କରିଥିବା ମହାନ୍ ବୀରପୁରୁଷ । ସେ ନିଜ ଭାଇ ଯୁଧିଷ୍ଠିରଙ୍କ ବିଜୟପାଇଁ ବଦ୍ଧପରିକର । ଏଣୁ ଆଜି କେହି ବି ସେହି ଯୁଧିଷ୍ଠିରଙ୍କ ସମକକ୍ଷ ହୋଇପାରିବ ନାହିଁ; କାରଣ ଯେଉଁଠାରେ ସୂର୍ଯ୍ୟ ରହନ୍ତି, ସେଠାରେ ହିଁ ଆଲୋକ ରହେ; ସେହିପରି ଯେଉଁଠାରେ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଏବଂ ଧନୁର୍ଦ୍ଧର ଅର୍ଜୁନ ଅଛନ୍ତି, ସେଠାରେ ହିଁ ସମ୍ପୂର୍ଣ୍ଣ ଶୋଭା, ସମସ୍ତ ଐଶ୍ୱର୍ଯ୍ୟ ଏବଂ ଅଟଳ ନ୍ୟାୟ (ଧର୍ମ) ନିଶ୍ଚୟ ରହିବ । ଏବଂ ଯେଉଁ ପକ୍ଷରେ ଧର୍ମ ରହିଛି, ସେହି ପକ୍ଷର ବିଜୟ ସୁନିଶ୍ଚିତ । ଏଣୁ ପାଣ୍ଡବମାନଙ୍କ ବିଜୟରେ ତିଳେମାତ୍ର ଶଙ୍କା ନାହିଁ । ଯଦି ବର୍ତ୍ତମାନ ମଧ୍ୟ ଆପଣ ନିଜର କଲ୍ୟାଣ ଇଚ୍ଛା କରୁଛନ୍ତି, ତେବେ ନିଜର ପୁତ୍ରମାନଙ୍କୁ ବୁଝାଇ ପାଣ୍ଡବମାନଙ୍କ ସହିତ ସନ୍ଧି କରିନିଅନ୍ତୁ ।''

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ*
*ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ମୋକ୍ଷସଂନ୍ୟାସଯୋଗୋ*
*ନାମ ଅଷ୍ଟାଦଶୋଽଧ୍ୟାୟଃ ।। ୧୮ ।*

*'ଶ୍ରୀମଦ୍ଭଗବଦ୍ଗୀତା' ହେଉଛି ଆନନ୍ଦଚିଦ୍‌ଘନ, ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ, ଚରାଚରବନ୍ଦିତ, ପରମପୁରୁଷୋତ୍ତମ, ସାକ୍ଷାତ୍ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦିବ୍ୟବାଣୀ । ଏହା ଅତ୍ୟନ୍ତ ରହସ୍ୟପୂର୍ଣ୍ଣ । ପରମ ଦୟାମୟ ଭଗବାନ୍ ଶ୍ରୀକୃଷ୍ଣଙ୍କ କୃପାବଳରେ କିଛି ଅଂଶରେ ଏହାର ରହସ୍ୟ ବୁଝାଯାଇପାରେ । ଯେଉଁମାନେ ପରମ ଶ୍ରଦ୍ଧା ଓ ପ୍ରେମମୟୀ ବିଶୁଦ୍ଧ ଭକ୍ତିରେ ନିଜର ହୃଦୟ ପୂର୍ଣ୍ଣ କରି ଭଗବଦ୍ଗୀତାକୁ ମନନ କରନ୍ତି, ସେହିମାନେ ହିଁ ଭଗବଦ୍‌କୃପାର ପ୍ରତ୍ୟକ୍ଷ ଅନୁଭବ କରି କିୟଦଂଶରେ ଗୀତାର ସ୍ୱରୂପ ଦର୍ଶନ କରିପାରନ୍ତି । ଅତଏବ ନିଜ କଲ୍ୟାଣ ଚାହୁଁଥିବା ନର-ନାରୀମାନଙ୍କର ଉଚିତ ଯେ, ସେମାନେ ଭକ୍ତପ୍ରବର ଅର୍ଜୁନଙ୍କ ଆଦର୍ଶ ମାନି ନିଜ ମଧ୍ୟରେ ଅର୍ଜୁନଙ୍କ ପରି ଦିବ୍ୟଗୁଣ ଅର୍ଜନ କରିବା ସଙ୍ଗେ ସଙ୍ଗେ ଶ୍ରଦ୍ଧା-ଭକ୍ତିପୂର୍ବକ ଗୀତାର ଶ୍ରବଣ, ମନନ ଏବଂ ଅଧ୍ୟୟନ କରନ୍ତୁ ଓ ଭଗବାନଙ୍କ ଆଜ୍ଞାନୁସାରେ ଯଥାଯୋଗ୍ୟ ତତ୍ପରତାର ସହିତ ସାଧନାରେ ଲାଗିଯାଆନ୍ତୁ । ଯେଉଁମାନେ ଏପରି କରନ୍ତି, ସେମାନଙ୍କ ଅନ୍ତଃକରଣରେ ନିତ୍ୟ ନୂଆ ନୂଆ ପରମାନନ୍ଦଦାୟକ ଅନୁପମ ଏବଂ ଦିବ୍ୟଭାବ ସ୍ଫୁରଣ ହୋଇଚାଲେ ତଥା ସେମାନେ ସର୍ବଥା ଶୁଦ୍ଧାନ୍ତଃକରଣ ହୋଇ ଭଗବାନଙ୍କ ଅଲୌକିକ କୃପାସୁଧାର ରସାସ୍ୱାଦନ କରି କରି ଶୀଘ୍ର ହିଁ ଭଗବାନଙ୍କୁ ପାଇଯାଆନ୍ତି ।*

— ଓଁ ତତ୍ସତ୍ —

# ଗୀତା ଆରତୀ

ଓଁ ଜୟ ଭଗବଦ୍‌ଗୀତେ, ଓଁ ଜୟ ଭଗବଦ୍‌ଗୀତେ ।
ହରି-ହିୟ-କମଳ-ବିହାରିଣି, ସୁନ୍ଦର ସୁପୁନୀତେ ॥ ଓଁ ଜୟ.. ॥
କର୍ମ-ସୁମର୍ମ-ପ୍ରକାଶିନି, କାମାସକ୍ତିହରା ।
ତତ୍ତ୍ୱଜ୍ଞାନ-ବିକାଶିନି, ବିଦ୍ୟା ବ୍ରହ୍ମ ପରା ॥ ଓଁ ଜୟ.. ॥
ନିଶ୍ଚଳ-ଭକ୍ତି-ବିଧାୟିନି, ନିର୍ମଳ ମଳହାରୀ ।
ଶରଣ-ରହସ୍ୟ-ପ୍ରଦାୟିନି, ସବ ବିଧି ସୁଖକାରୀ ॥ ଓଁ ଜୟ.. ॥
ରାଗ-ଦ୍ୱେଷ-ବିଦାରିଣି, କାରିଣି ମୋଦ ସଦା ।
ଭବ-ଭୟ-ହାରିଣି, ତାରିଣି, ପରମାନନ୍ଦପ୍ରଦା ॥ ଓଁ ଜୟ.. ॥
ଆସୁର-ଭାବ-ବିନାଶିନି, ନାଶିନି ତମ-ରଜନୀ ।
ଦୈବୀ ସଦ୍‌ଗୁଣଦାୟିନି, ହରି-ରସିକା ସଜନୀ ॥ ଓଁ ଜୟ.. ॥
ସମତା, ତ୍ୟାଗ ସିଖାବନି, ହରି-ମୁଖକୀ ବାଣୀ ।
ସକଳ ଶାସ୍ତ୍ରକୀ ସ୍ୱାମିନି, ଶ୍ରୁତିୟୋଂକୀ ରାଣୀ ॥ ଓଁ ଜୟ.. ॥
ଦୟା-ସୁଧା ବରସାବନି ମାତୁ ! କୃପା କୀଜୈ ।
ହରି-ପଦ-ପ୍ରେମ ଦାନ କର ଅପନୋ କର ଲୀଜୈ ॥ ଓଁ ଜୟ.. ॥

-୦-

### ଓଁ ଶ୍ରୀ-ପରମାତ୍ମନେ ନମଃ

## ମହାଭାରତରେ ଶ୍ରୀ ଗୀତାଜୀଙ୍କ ମାହାତ୍ମ୍ୟ

**ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରସଂଗ୍ରହୈଃ ।**
**ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍‌ବିନିଃସୃତାଃ ॥ ୧ ॥**
**ସର୍ବଶାସ୍ତ୍ରମୟୀ ଗୀତା ସର୍ବଦେବମୟୋ ହରିଃ ।**
**ସର୍ବତୀର୍ଥମୟୀ ଗଙ୍ଗା ସର୍ବବେଦମୟୋ ମନୁଃ ॥ ୨ ॥**
**ଗୀତା ଗଙ୍ଗା ଚ ଗାୟତ୍ରୀ ଗୋବିନ୍ଦେତି ହୃଦି ସ୍ଥିତେ ।**
**ଚତୁର୍ଗକାରସଂଯୁକ୍ତେ ପୁନର୍ଜନ୍ମ ନ ବିଦ୍ୟତେ ॥ ୩ ॥**
**ଭାରତାମୃତସର୍ବସ୍ୱଗୀତାୟା ମଥିତସ୍ୟ ଚ ।**
**ସାରମୁଦ୍‌ଧୃତ୍ୟ କୃଷ୍ଣେନ ଅର୍ଜୁନସ୍ୟ ମୁଖେ ହୁତମ୍ ॥୪॥**

**(ମହାଂ ଭୀଷ୍ମଂ ୪୩/୧,୨,୩,୪)**

ଅନ୍ୟ ଶାସ୍ତ୍ର ସଂଗ୍ରହର ଆବଶ୍ୟକତା କ'ଣ ? କେବଳ ଗୀତାକୁ ହିଁ ଭଲ ଭାବରେ ଗାନ (ପଠନ ଓ ମନନ) କରିବା ଉଚିତ; କାରଣ ଏହା ଭଗବାନ୍ ପଦ୍ମନାଭ (ବିଷ୍ଣୁ)ଙ୍କର ସାକ୍ଷାଦ୍ ମୁଖକମଳରୁ ପ୍ରକଟ ହୋଇଅଛି । ଗୀତା ସମସ୍ତ ଶାସ୍ତ୍ରମୟୀ ଅଟନ୍ତି; ଶ୍ରୀହରି ସର୍ବଦେବମୟ ଅଟନ୍ତି; ଗଙ୍ଗା ସର୍ବତୀର୍ଥମୟୀ ଅଟନ୍ତି ଓ ମନୁ ସର୍ବବେଦମୟ ଅଟନ୍ତି । ଗୀତା, ଗଙ୍ଗା, ଗାୟତ୍ରୀ ଓ ଗୋବିନ୍ଦ- ଏହି ଚାରିଗକାରରେ ଯୁକ୍ତ ନାମ ଯାହାଙ୍କର ହୃଦୟରେ ବିରାଜମାନ କରନ୍ତି, ତାଙ୍କର ପୁନର୍ଜନ୍ମ ହୁଏ ନାହିଁ । ମହାଭାରତରୂପୀ ଅମୃତର ସର୍ବସ୍ୱ ଏହି ଗୀତାକୁ ମନ୍ଥନ କରି ଏବଂ ଏଥିରୁ ସାର ବାହାର କରି ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କ ମୁଖରେ ତାହା ହବନ କରିଛନ୍ତି ।